ସାରଳା ଦାସ ରଚନା ସମ୍ଭାର
ପଞ୍ଚଦଶ ଶତାବ୍ଦୀର ପ୍ରସିଦ୍ଧ
କବି ସାରଳା ଦାସଙ୍କର ସମସ୍ତ
ଲେଖାର ସଂକଳନ ।
ସାରଳାଙ୍କର ନିପୁଣ ସଂଗଠନ,
ତୀକ୍ଷ୍ଣ ଅନ୍ତର୍ଦୃଷ୍ଟି ଓ ସମକାଳୀନ
ଅନ୍ତରଙ୍ଗତା ପାଠକକୁ ମୁଗ୍ଧ
କରେ । ବିଶେଷ କରି ୫୦୦
ବର୍ଷ ତଳେ ଲେଖାଯାଇ ଥିଲେ
ବି ସାରଳାଙ୍କ ଆଧୁନିକ
ଅବବୋଧ ବିସ୍ମୟକର ।
ବିଶ୍ୱାସ ସାରଳା ସାହିତ୍ୟର
ଏହି ପ୍ରଥମ ସଂକଳନ
ପାଠକମାନଙ୍କୁ ଆନନ୍ଦ ଦେବା
ସଙ୍ଗେ ସଙ୍ଗେ ଜାତିର ସମୃଦ୍ଧ
ଐତିହ୍ୟ ସଂପର୍କରେ ସେମାନଙ୍କୁ
ସଚେତ କରିବ ।

# ସାରଳା ଦାସ ରଚନା ସମ୍ଭାର

## ମହାଭାରତ

## ଚଣ୍ଡୀପୁରାଣ

## ବିଚିତ୍ର ରାମାୟଣ

ସଂକଳନ ଓ ସଂପାଦନା
ଯତୀନ୍ଦ୍ର ମୋହନ ମହାନ୍ତି

ବିଦ୍ୟା
ଭୁବନେଶ୍ୱର

ସାରଳା ଦାସ ରଚନା ସମ୍ଭାର

ସଂକଳନ ଓ ସଂପାଦନା : ଯତୀନ୍ଦ୍ର ମୋହନ ମହାନ୍ତି

ପ୍ରକାଶକ : ବିଦ୍ୟା, ୧୫୭୩, ଭକ୍ତମଧୁ ନଗର,
ଭୁବନେଶ୍ୱର -୭୫୧୦୩୦
ଫୋନ୍ : (୦୬୭୪) ୨୩୫୦୨୮୯/୨୩୫୦୫୧୧

ଅକ୍ଷର ଶାରଳା ଗ୍ରାଫିକ୍ସ,
ନିକୋପାର୍କ ରୋଡ, ଭୁବନେଶ୍ୱର-୧୨

ମୁଦ୍ରଣ ପ୍ରିଣ୍ଟଟେକ୍ ଅଫସେଟ୍, ଭୁବନେଶ୍ୱର-୨୪

ବଂଧେଇ ସ୍ୱାଧୀନ ବାଇଣ୍ଡରସ୍, ତୁଳସୀପୁର , କଟକ

ପ୍ରଚ୍ଛଦ : ବିଭୁ ପ୍ରସାଦ ପ୍ରଧାନ

ସଂସ୍କରଣ ୧ମ ସଂସ୍କରଣ :୨୦୧୦ (ଜାନୁୟାରୀ)

ମୂଲ୍ୟ ୪୦୦ ଟଙ୍କା

**SARALA DAS RACHANA SAMBHAR**
**(Anthology of Sarala Das's Works)**
**Compiled and Edited by : Jatindra Mohan Mohanty**

Published by : **Vidya,** 1573, Madhuban Sarani
Bhaktamadhu Nagar, Bhubaneswar-751030,
Ph.(0674)2350289 / 2350511

D.T.P : **Sarala Graphics**, Nicco Park Road,
Bhubaneswar-12

Printed at : **Print-Tech Offset,**
Chandaka Industrial Area, Bhubaneswar-24
Binding at **Swadhin Binders**, Tulasipur, Cuttack
Cover design **Bibhu Prasad Pradhan**

1st Edition-**2010** (January)

Price **Rs 400.00**



I.S.B.N.No. 978-81-903438-3-1

# ଉତ୍ସର୍ଗ

ପ୍ରଫେସର କୃଷ୍ଣ ଚରଣ ସାହୁ
ଅନନ୍ୟ ଗବେଷକ, ଶିକ୍ଷକ, ବଂଧୁ,
ଯେ ନିଜର ଏକକ ଚେଷ୍ଟାରେ ଓଡ଼ିଆ ସାହିତ୍ୟର ମହାନ ଗ୍ରନ୍ଥ
ବଳରାମ ଦାସଙ୍କର 'ଜଗମୋହନ ରାମାୟଣ'
ଜଗନ୍ନାଥ ଦାସଙ୍କର 'ଶ୍ରୀମଦ୍ଭାଗବତ'
ଅଚ୍ୟୁତାନନ୍ଦ ଦାସଙ୍କର 'ହରିବଂଶ'
ଓ ସାରଳା ଦାସଙ୍କର 'ମହାଭାରତ' (ଆଂଶିକ)ର
ପ୍ରାମାଣିକ ସଂସ୍କରଣମାନ ପ୍ରସ୍ତୁତ କରିଥିଲେ,
ତାଙ୍କରି ସ୍ମୃତିରେ ।

# କୃତଜ୍ଞତା

ସଚ୍ଚିଦାନନ୍ଦ ମିଶ୍ର
ବିଭୂତିଭୂଷଣ ସାହୁ
ସାଂସ୍କୃତିକ ବ୍ୟାପାର ବିଭାଗ, ଓଡ଼ିଶା ସରକାର,
ସାରଳା ସାହିତ୍ୟ ସଂସଦ, କଟକ,
ଡକ୍ଟର ବିଷ୍ଣୁପ୍ରସାଦ ମହାପାତ୍ର,
ଓଡ଼ିଶା ଫାଉଣ୍ଡେସନ୍
ଡକ୍ଟର ଦେବୀପ୍ରସାଦ ମିଶ୍ର
ଶ୍ରୀମତୀ ସରୋଜିନୀ ମିଶ୍ର ।

# ସୂଚୀ

## ମଧ୍ୟପର୍ବ

## ସଭା ପର୍ବ

## ବନପର୍ବ



## ବିରାଟ ପର୍ବ

## ଉଦଯୋଗ ପର୍ବ



## ଭୀଷ୍ମ ପର୍ବ

## ଦ୍ରୋଣ ପର୍ବ



## କର୍ଣ୍ଣ ପର୍ବ



## ଗଦା ପର୍ବ

## କାଇଂଶିକା ପର୍ବ



## ଶାନ୍ତିପର୍ବ



## ଆଶ୍ରମିକ ପର୍ବ



## ଅଶ୍ୱମେଧ ପବ



## ମୂଷଳୀ ପର୍ବ

ସ୍ୱର୍ଗାରୋହଣ ପର୍ବ



ଆଲୋଚନା



ପରିଶିଷ୍ଟ



ପୁସ୍ତକ ବିବରଣୀ

# ଭୂମିକା

## (୧)

ସାରଳା ଦାସଙ୍କର ସମୟ ପଞ୍ଚଦଶ ଶତାବ୍ଦୀ, ବିଶେଷ କରି ଶତାବ୍ଦୀର ମଝି ଓ ଶେଷ ଆଡକୁ । ଏହି ସମୟ ସୂର୍ଯ୍ୟବଂଶର ପ୍ରଥମ ପ୍ରସିଦ୍ଧ ସମ୍ରାଟ ଗଜପତି କପିଳେନ୍ଦ୍ର ଦେବଙ୍କ ସମୟ, ଓ ଓଡ଼ିଶାର ଇତିହାସରେ ଏକ ଅତ୍ୟନ୍ତ ଗୌରବୋଜ୍ଜ୍ୱଳ ସମୟ । କପିଳେନ୍ଦ୍ର ଦେବ ଓଡିଶାର ଦକ୍ଷିଣକୁ ଅନେକ ରାଜ୍ୟ ଜୟ କରିଥିଲେ ଓ ଭାରତର ପୂର୍ବ ଉପକୂଳରେ, ଗଙ୍ଗା ଓ କୃଷ୍ଣା ମଧ୍ୟରେ ଏକ ବିରାଟ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ସାରଳାଙ୍କ ଲେଖାରେ ଆମେ ଏହି ଗୌରବୋଜ୍ଜ୍ୱଳ ସମୟର ଅନେକ ଚିତ୍ର ପାଉ । ଐତିହାସିକମାନଙ୍କ ମତରେ କପିଳେନ୍ଦ୍ରଙ୍କର ଅସଂଖ୍ୟ ଯୁଦ୍ଧ ବିଗ୍ରହ ସହିତ ସାରଳା ନିଜେ ହୁଏତ ବ୍ୟକ୍ତିଗତ ଭାବରେ ଜଡିତ ହୋଇଥିବେ, ବା ସେସବୁ ବିଷୟରେ ପୁଂଖାନୁପୁଙ୍ଖ ବିବରଣୀ ପାଇଥିବେ । ତାଙ୍କର 'ମହାଭାରତ' ଓ 'ଚଣ୍ଡୀପୁରାଣ'ରେ, ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଭାବରେ, ଓ ବିଭିନ୍ନ ପୌରାଣିକ ବର୍ଣ୍ଣନାର ମାଧ୍ୟମରେ, ଆମେ ସମକାଳୀନ ବହୁ ରାଜା ଓ ରାଜ୍ୟ ସଂପର୍କରେ ସୂଚନା ପାଉ । ବିଶିଷ୍ଟ ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ପ୍ରତ୍ୟକ୍ଷ ଅଭିଜ୍ଞତା ନ ଥିଲେ ଏତେ ବିସ୍ତାରିତ ଭାବରେ ବିବରଣୀ ହେବା ସହଜସାଧ୍ୟ ନୁହେଁ ।

ସାରଳାଙ୍କର ଜନ୍ମସ୍ଥାନ କଟକ ସହରର ପ୍ରାୟ ୫୦ କିଲୋମିଟର ପୂର୍ବକୁ ଝଙ୍କଡ ପ୍ରଗଣାରେ ବୋଲି କୁହାଯାଏ । ତାଙ୍କର ଜନ୍ମସ୍ଥାନ ନିକଟରେ ଦେବୀ ସାରଳାଙ୍କର ପ୍ରସିଦ୍ଧ ମନ୍ଦିର, ଦେବୀଙ୍କ ନାମାନୁସାରେ ସେ 'ସାରଳା' ବା 'ସାରୋଳା' ନାମ ଗ୍ରହଣ କରିଥିଲେ ବୋଲି କୁହାଯାଏ । ଅନ୍ୟ ଏକ ଭିନ୍ନ ମତରେ ତାଙ୍କର ଜନ୍ମସ୍ଥାନ ଝଙ୍କଡ଼ ନୁହେଁ, ଝଙ୍କଡ ଠାରୁ ଦକ୍ଷିଣ-ପୂର୍ବରେ ୩୦,୪୦ କିଲୋମିଟର ଦୂରରେ, ପ୍ରାୟ ସମୁଦ୍ର ପାଖାପାଖି କୋଣାର୍କ ଆଖପାଖ ଅଞ୍ଚଳରେ କୌଣସି ଗ୍ରାମରେ ଓ ତାଙ୍କର ଅଧିଷ୍ଠାତ୍ରୀ ଦେବୀ ସାରଳା ନୁହଁନ୍ତି, 'ସାରୋଳା ଚଣ୍ଡୀ' । ସେ ଯାହାହେଉ ସାରଳା ଦାସଙ୍କର ନିଜସ୍ୱ ସ୍ଥାନ ବହୁ ନଦନଦୀ ପରିପୂର୍ଣ୍ଣ ଅବିଭକ୍ତ କଟକ ଜିଲ୍ଲାର ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ, ଯେଉଁ ଅଞ୍ଚଳ ବହୁ ତୀର୍ଥସ୍ଥାନ ଓ ବହୁ ଦେବଦେବୀଙ୍କର ପୁଣ୍ୟ ମହିମାରେ ମହିମାନ୍ୱିତ। ସାରଳା ଦାସଙ୍କର ଲେଖାସବୁ ଏହି ମହିମାର ଫଳଶ୍ରୁତି, ଓ ଆଜିକି ପ୍ରାୟ ୫୦୦ ବର୍ଷରୁ ଉର୍ଦ୍ଧ୍ୱ ସମୟର ବ୍ୟବଧାନରେ ଲେଖା ଯାଇଥିଲେ ମଧ, ଏବେ ବି ନିଜର ଅଦ୍ଭୁତ ମହିମାରେ ଦୀପ୍ତିବନ୍ତ ହୋଇ ରହିଛି । ଏହି ସଂପର୍କରେ ପ୍ରଫେସର କୃଷ୍ଣଚରଣ ସାହୁଙ୍କର ମତାମତ ପ୍ରଣିଧାନର ଯୋଗ୍ୟ । ସେ କହନ୍ତି – "ସାରଳା ଦାସହିଁ ଥିଲେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଆଦି ମହାକବି, ଓଡିଆ ଭାଷା ବାଳ ରବିର କୋମଳ କିରଣ ସ୍ପର୍ଶରେ ଆହ୍ଲାଦିତ ନ ହୋଇ ଏକାବେଳକେ ମଧାହ୍ନ ରବିର ପ୍ରଚଣ୍ଡ କିରଣରେ ଉଦ୍ଭାସିତ ହେଲା । ବିକାଶ ପଥରେ ଗତି ନ କରି ପରିଣତ ଅବସ୍ଥାରୁ ହିଁ ଏହାର ଆରମ୍ଭ ହେଲା । ସାରଳା ଦାସ ଭାଷା, ଭାବ ଓ କଥା ଯୋଜନାରେ ଯେଉଁ ଆଦର୍ଶର ପ୍ରତିଷ୍ଠା କଲେ, ତାହା କେବଳ ସେହି ଯୁଗ ପାଇଁ ନୁହେଁ, ସବୁ ଯୁଗରେ ଓଡ଼ିଆ ଜାତିର ଆଦର୍ଶ ହୋଇ ରହିଗଲା ।"

ସାରଳା ଦାସ ନିଜକୁ 'ଗ୍ରନ୍ଥିକ ଶୂଦ୍ରମୁନି' କହିବା ସାଙ୍ଗେ ସାଙ୍ଗେ ନିଜେ ରଚନା କରିଥିବା ତିନୋଟି ଗ୍ରନ୍ଥର ସୂଚନା ଦେଇଛନ୍ତି । ସେ ଗ୍ରନ୍ଥ ତିନୋଟି, 'ରାମାୟଣ', 'ମହାଭାରତ', 'ଭାଗବତ', ଅର୍ଥାତ୍ 'ରାମାୟଣ', 'ମହାଭାରତ', ଓ 'ଚଣ୍ଡୀପୁରାଣ' ଯାହାକି ଅନ୍ୟ ଭାବରେ 'ଦେବୀ ଭାଗବତ' ଭାବରେ ପ୍ରସିଦ୍ଧ । ଏହାହିଁ ସାରଳା ଦାସଙ୍କର ସଂପୂର୍ଣ୍ଣ ରଚନା, ଅନ୍ତତଃ ଏପର୍ଯନ୍ତ ଜଣା ଯାଇଥିବା ସାରଳାଙ୍କର ଲିଖିତ ଗ୍ରନ୍ଥମାନଙ୍କର ସଂପୂର୍ଣ୍ଣ ପରିଚୟ। ସେ ଦେବୀ ସାରୋଳ ଚଣ୍ଡୀଙ୍କର ଅନୁରାଗୀ ଭକ୍ତ, ଓ ଦେବୀଙ୍କ ପ୍ରତି ଗଭୀର ଭକ୍ତିଭାବ, ଦେବୀଙ୍କ ଚିନ୍ତାରେ ଗଭୀର ଆନନ୍ଦ କବିଙ୍କ ଲେଖାର ବିଭିନ୍ନ ସ୍ଥାନରେ ପ୍ରକାଶ ପାଇଛି । ଯେପରିକି 'ମହାଭାରତ'ର ଆଦି ପର୍ବ ଆରମ୍ଭରୁ ଦେବୀ ବନ୍ଦନା ଓ ଦେବୀଙ୍କ ପ୍ରତି କବିଙ୍କର ଅନ୍ତରଂଗତା ଓ କବିଙ୍କ ପ୍ରତି ଦେବୀଙ୍କର ଅନୁକଂପାର ବିବରଣୀ – "ମହାଯୋଗେଶ୍ୱରୀ ସେ ପରମ ବଇଷ୍ଣବୀ / ପ୍ରତକ୍ଷେ ବର ଦିଅଇ ସେ ପରମ ସାଧବୀ / ବାଞ୍ଛା ସାର୍ଥକ ସେ ଦେବୀର ଅଟଇ / ପାଷାଣ ହୋଇକରି ବାଞ୍ଛା ତାହାର ଫୁଟଇ / ସର୍ବମଂଗଳା ରୂପମାତାଙ୍ଗୀ ମତଭୋଳୀ / ଗ୍ରନ୍ଥ ଅର୍ଥ ଶୁଣଇ ସେ ହରଷେ କୁତୋହଳୀ / ଶ୍ରୀ ସାରୋଳା ଚଣ୍ଡୀ ନାମେ ସେ ଅଟଇ ମହାଦେବୀ / ତାହାଙ୍କର ପୁତ୍ର ମୁହିଁ ସାରୋଳ ଦାସ କବି / ପ୍ରସନ୍ନେଣ ଆଜ୍ଞା ମୋତେ ଦେଲେ ଶାକାମ୍ବେରୀ / ଇଭତୁ କପିଳାସ ଶ୍ରୀ ମହାଭାରଥ କରି ।" ଅନ୍ୟତ୍ର ଦେବୀଙ୍କ ସହିତ କବିଙ୍କ ସଂପର୍କରେ ଗଭୀର ଆନନ୍ଦର ଅନୁଭୂତି – "ବିଂଝଗିରି ବାସେନି ମାଗୋ ପରଦୁଃଖେ ଦୁଃଖୀ / ଦୁର୍ଗତି ତାରେଣୀ ମାଗୋ ଶରଦ ଚନ୍ଦ୍ରମୁଖୀ /.... ପ୍ରଫୁଲ୍ଲ ଅରବିନ୍ଦ ଚରଣତଳ କାନ୍ତି / ଡାକି ଡମ୍ବରୁ ମାଗୋ ବିକସିତ ନେତ୍ରୀ /

ଜଳଧର ମେଦୁର ଜିଣି ଯାହାର ଅଙ୍ଗ ଭାବ / ସର୍ବାଙ୍ଗ ସୁନ୍ଦରୀ ମାଗୋ ମୋହନୀ ସର୍ବଦେବ ।" ନିଜ ଶକ୍ତିରେ ହେଉ କି ଦେବୀଙ୍କର ଆଶୀର୍ବାଦରେ ହେଉ, ସାରଳା ଦାସ ନିଜର ସାମାଜିକ ସ୍ତରର ଗଣ୍ଡିକୁ ଅତିକ୍ରମ କରି ନିଜ ସୃଷ୍ଟିର ଅପରୂପତାରେ ଓଡିଆ ସାହିତ୍ୟକୁ ମଣ୍ଡିତ କଲେ ଓ ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ବିକାଶ ପାଇଁ ଦୃଢ ଭିତ୍ତିଭୂମୀ ସ୍ଥାପନ କଲେ । ତାଙ୍କର 'ମହାଭାରତ' ଏହି ଭିତ୍ତିଭୂମିର ସର୍ବଶ୍ରେଷ୍ଠ ଉପାଦାନ ଓ ୬୦୦ ବର୍ଷର ଓଡ଼ିଆ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ ସୃଷ୍ଟି ।

(୨)

'ବିଚିତ୍ର ରାମାୟଣ' ବାଲ୍ମିକୀ ରାମାୟଣ ଶେଷାର୍ଦ୍ଧର ଘଟଣାବଳୀ ଉପରେ ଆଧାରିତ । ସୀତାଙ୍କର ବନବାସରୁ ଏହାର ଆରମ୍ଭ, ଓ ଶ୍ରୀରାମଙ୍କ ରାଜ ଦରବାରରେ ସୀତାଙ୍କର ପାତାଳ ପ୍ରବେଶ ଓ ଶ୍ରୀରାମଙ୍କର ମହାପ୍ରୟାଣରେ ଏହାର ଶେଷ । ମଝିରେ ଲବର ସଂଗୀତ ମାଧ୍ୟମରେ ରାମାୟଣର ପୂର୍ବବର୍ତ୍ତୀ ଘଟଣାବଳୀର ଏକ ସଂକ୍ଷିପ୍ତ ଚିତ୍ର ଦିଆଯାଇଛି । ବହିର ଆରମ୍ଭ 'ମଙ୍ଗଳାଚରଣ'ରୁ, ଯାହାକି ଗଣେଶଙ୍କ ବନ୍ଦନା । ପରେ ପରେ, ସାଙ୍ଗେ ସାଙ୍ଗେ, ଗଳ୍ପର କାର୍ଯ୍ୟକାରୀ ଭାଗର ଆରମ୍ଭ, ଅର୍ଥାତ୍ ସୀତାଙ୍କର ବିରୁଦ୍ଧ କଥାସବୁ ଶୁଣି ରାମଙ୍କର ଅଶାନ୍ତି, ଓ ସୀତାଙ୍କୁ ବନକୁ ନିର୍ବାସିତ କରିବା ପାଇଁ ନିଷ୍ପତ୍ତି :

ଶ୍ରୀରାମ କହନ୍ତି ଶୁଣ ହୋ ମହାମୁନ୍ୟ
ସୀତୟା ଥିଲେ ମୋତେ ଜଗତେ ଅପମାନ ।
ପରମୁଖେ ଉପହାସ୍ୟ ମୁଁ ନ ପାରଇ ସହି
ସୀତାଙ୍କୁ ଦେଖିଲେ ଯେ କମ୍ପଇ ମୋହର ଦେହି ।
ପବିତ୍ର କୁଳ ଅମରାଣ ସୂର୍ଯ୍ୟ ବଂଶର ସାର ହି
ଉଘାଣି କଥାକୁ ମୁଁ ସହି ନ ପାରଇ ।
ଅବଶ୍ୟ ସୀତାଙ୍କୁ ମୁଁ ବାହାର କରିବି
ଲୋକ ଅପବାଦ ମୁଁ ସହି ନ ପାରିବି ।

ସୀତାଙ୍କୁ ବଣକୁ ପଠେଇ ଦିଆଗଲା । ସେ ଜାଣନ୍ତି ନାହିଁ ଯେ ତାଙ୍କୁ ନିର୍ବାସନ ଦିଆଗଲା । ସେ ଗର୍ଭବତୀ । କିନ୍ତୁ ବଣର ସୌନ୍ଦର୍ଯ୍ୟ ଦେଖିବା ଇଚ୍ଛାରେ ସେ ଆଗ୍ରହରେ ଗଲେ । ସାଙ୍ଗରେ ଲକ୍ଷ୍ମଣ, ଲକ୍ଷ୍ମଣଙ୍କୁ ନିର୍ଦ୍ଦେଶ ସୀତାଙ୍କୁ ଚୁପଚାପ ଜଙ୍ଗଲରେ ଛାଡ଼ିଦେଇ ସେ ଫେରିଯିବେ । ସେହିଆ ହିଁ ହେଲା । ସୀତା କ୍ଲାନ୍ତ ହୋଇ ଶୋଇ ପଡ଼ିଥିବା ଅବସ୍ଥାରେ ତାଙ୍କୁ ଜଙ୍ଗଲ ମଝିରେ ଛାଡ଼ିଦେଇ ଲକ୍ଷ୍ମଣ ଅଯୋଧ୍ୟାକୁ ଫେରିଗଲେ । ନିଦ ଭାଙ୍ଗି ସୀତା ଯେତେବେଳେ ଉଠି ବସିଲେ ଲକ୍ଷ୍ମଣଙ୍କୁ ନ ଦେଖି ସେ ଆଶ୍ଚର୍ଯ୍ୟ ହେଲେ, ବିବ୍ରତ ବି ହେଲେ । କଅଣ କରିବେ ଠିକ୍ ବୁଝି ପାରିଲେ ନାହିଁ । ସୀତାଙ୍କର ମନୋଭାବ ବେଦନାଦାୟକ ଓ ସ୍ପଷ୍ଟ । କବିଙ୍କ ଭାଷାରେ :

ଶରୀର ଶ୍ରମେ ସତୀ ନିଦ୍ରା ଯାଇଥିଲା
ନୟନ ମଳିଣ ଜାନେକୀ ଚଉକତି ଚାହିଁଲା ।
ବସିଲା ଠାବରେ ଦେଖିଲାଇ ଲକ୍ଷ୍ମଣ ନାହିଁ
ଚମତ୍କାର ହୋଇଲା ସତୀ ଚଉକତି ଚାହିଁ ।
ଭାଳଭ ଅବା ପାଣି ଆଣି ପୁଷ୍କରିଣୀକି ଗଲା
ଲକ୍ଷ୍ମଣ ନାମ ଧରି ଉଚ୍ଚେଣ ଡାକ ଦେଲା ।
ଏକଇ ଯୁବତୀ ମୋତେ ଛାଡ଼ି କେମନ୍ତେ ଗଲୁ
କନ୍ଦମୂଳ ନିମନ୍ତେ ଅବା ଗହନେ ପଶିଲୁ ।
ବେଗକୁ ମୋହର ସନ୍ନିଧକୁ ଆସ
ତୋତେ ନ ଦେଖି ମୁହିଁ କଲଇ ମନେ ତ୍ରାସ ।
ଲକ୍ଷ୍ମଣର ସମାସ୍ୟା ଯହୁଁ ନ ପାଇଲା ମହାସତୀ

ଚକିତ ହୋଇଣ ଚାହାଁଇ ଚଉକତି ।
ବୋଇଲା ଯଦ୍ୟପି ଲକ୍ଷ୍ମଣ ଜୀବନ୍ତେଣ ଥାଇ
ମୋତେ ଉପେଖି କି ସେ ଆନ କତିକି ଯାଇ ।
ଜନଗମ୍ୟ ନାହିଁ ଅଗମ୍ୟ ବନ ଘୋର
କେଉଣ ଜୀବେ ଲକ୍ଷ୍ମଣକୁ କଲେକ ଆଧାର ।
ଆହା ଲକ୍ଷ୍ମଣ ତୁହି ରୂପେଣ ମଦନ
ତିନି ଜଗତେ କ୍ଷତ୍ରି ତୋତେ ନାହିଁ ସରିସମାନ ।
ସମ୍ପୂର୍ଣ୍ଣ ଚନ୍ଦ୍ରମା ଜାଣି ମୁଖ ତୋର ଦିଶଇ
ନୟନ ବେନି ଉପାମା ଓଳକାପତ୍ର ସାଦ୍ରିଶଇ ।
ପୁଷ୍ପଧନୁ ଯେସନ ଭୁଲୁତା ପରିମାଣି
ନାସିକା ଦିଶଇ ତୋର ଗରୁଡ଼ ଜାଣି ।
ଶ୍ରବଣେ କୁଣ୍ଡଳ ତୋର ଦିଶଇ ଢଳହଳ
ଓଷ୍ଠ ବିକାଶଇ ସୁସଞ୍ଚ ପକୁ ଫଳ ।
କ୍ଷୁଦ୍ର ମୋତି ଜାଣି ଯେ ଦିଶଇ ଦନ୍ତପନ୍ତି
ଉଜ୍ଜ୍ୱଳ ହୀରା ଯେସନେ ଶୋଭଇ ଦିବ୍ୟ ରୀତି ।
ଚାଚର ଚିକୁର କୁଟିଳ ଦିବ୍ୟ କେଶ
ଲୁବୁଧେ ମଧୁକରେ ନ ତେଜନ୍ତି ନିଜ ପାଶ ।
ଅକଣ୍ଟେକ ମୃନାଳ ସାଦ୍ରିଶ ବେନି ଭୁଜ
ଚମ୍ପାକଢ଼ି ଯେସନେକ ପଟାନ୍ତର ପାଣିଜ ।
ରଜତ କୁମୋଦ ଜାଣି ତୋହର ପୟରତଳି
ଜାଈକଢ଼ି ଯେସନେକ ଦଶନ ଓହଳି ।
ଉଲଟ କଦଳୀ ପ୍ରାୟେ ଦିଶଇ ତୋହର ଜାନୁ
ସ୍ୱରୂପ ସାଦ୍ରିଣ ତୁହି ଦିଶୁ ପୁଷ୍ପଧନୁ ।
ମୁହିଁ ନିଲକ୍ଷଣୀ ଏସନେକ କର୍ମହୀନ
ମୋହୋର ତୁଲେ ଆସି ଏଥେ ହୋଇଲୁ ବିନାଶନ ।

ଉଦ୍ଧୃତାଂଶରେ ଏ ଗୋଟିଏ ନିର୍ଦ୍ଦିଷ୍ଟ ଅବସ୍ଥା ଯେଉଁଠି ଭୟ ଓ ଅସହାୟତା ମିଶିକରି ରହିଛି । ଆରମ୍ଭର ସ୍ୱାଭାବିକତା ("ଶରୀର ଶ୍ରମେ ସତୀ ନିଦ୍ରା ଯାଇଥିଲା / ନୟନ ମଳିଣ ଜାନେକୀ ଚଉକତି ଚାହିଁଲା") ଓ ପରେ ପରେ ଅସହାୟତା ("ବେଗକୁ ମୋହୋର ସାନ୍ନିଧକୁ ଆସ / ତୋତେ ନ ଦେଖି ମୁହିଁ କଲଇ ମନେ ତ୍ରାସ") । ଭୟ ଓ ନିର୍ଜନତାର ଏ ଗୋଟାଏ ମାନସିକ ଅବସ୍ଥା ଓ ଏହି ନିର୍ଦ୍ଦିଷ୍ଟ ଘଟଣାରେ ଏପରି ହେବା ସ୍ୱାଭାବିକ ବି, ଯାହା କେବଳ ସୀତାଙ୍କ ପକ୍ଷରେ ନୁହେଁ, ସଚରାଚର ସମସ୍ତଙ୍କ କ୍ଷେତ୍ରରେ ହେବ । ଅର୍ଥାତ୍, ଏ ଗୋଟିଏ ବାସ୍ତବ ପରିସ୍ଥିତିର ରୂପାୟନ - ଯେକୌଣସି ସ୍ତ୍ରୀ ଲୋକର ସେହି ନିର୍ଦ୍ଦିଷ୍ଟ ପରିସ୍ଥିତିରେ ମାନସିକତା । ଏହାହିଁ ଏହି ଉଦ୍ଧୃତାଂଶର ସଂଗଠନର ମୂଳଭିତ୍ତି, ଯାହା ଉପରେ ନିର୍ଭର କରି ପରବର୍ତ୍ତୀ କଳ୍ପନାର ବିସ୍ତାର ସମ୍ଭବପର ହୋଇଛି । ଆରମ୍ଭରୁ 'ଚମତ୍କାର' ଶବ୍ଦ ବ୍ୟବହାର କରାଯାଇଛି । ଏଥିରେ ଭୟର ସୂଚନା । ପରେ ପରେ 'ଚକିତ' ଶବ୍ଦରେ ଭୟ ନାହିଁ, ବିସ୍ମୟର ମନୋଭାବ, ଯେ ଏ କିପରି ସମ୍ଭବ ଓ ପରେ ପରେ ଯୁକ୍ତିସିଦ୍ଧତାର ଧାରା ("ବୋଇଲା ଯଦ୍ୟପି ଲକ୍ଷ୍ମଣ ଜୀବନ୍ତେଣ ଥାଇ / ମୋତେ ଉପେଖି କି ସେ ଆନ କତିକି ଯାଇ") । କିନ୍ତୁ ଠିକ୍ ପରେ ପରେ ଯାହା ସଂଗଠନରେ ପ୍ରସାରିତ ହୋଇଛି ତା ସହିତ ମୂଳ ଘଟଣାର କୌଣସି ସମ୍ପର୍କ ନାହିଁ - ସେ କଳ୍ପନାର ବିସ୍ତାର, କବିଙ୍କର ସୃଜନାତ୍ମକ ପ୍ରକ୍ରିୟା । ବିଭିନ୍ନ ଉପମା ଉପମେୟର ସାହାଯ୍ୟରେ ଲକ୍ଷ୍ମଣଙ୍କର ଯେଉଁ ଚିତ୍ର ଗଢ଼ି ତୋଳା ହୋଇଛି ସେ ମୁଖ୍ୟତଃ ଶାରୀରିକ - "ଶ୍ରବଣେ କୁଣ୍ଡଳ ତୋର ଦିଶଇ ଢଳହଳ / ଓଷ୍ଠ ବିକାଶଇ ସୁସଞ୍ଚ ପକୁ ଫଳ / କ୍ଷୁଦ୍ର ମୋତି ଜାଣି ଯେ ଦିଶଇ ଦନ୍ତପନ୍ତି /

ଉଜ୍ଜ୍ୱଳ ହୀରା ଯେସନେ ଶୋଭଇ ଦିବ୍ୟ ରୀତି ।" କିନ୍ତୁ ମାନସିକ ବି, ମାନସିକତାର ସେହି ସ୍ତର, ଯେଉଁ ସ୍ତରରେ ଉପମା ଉପମେୟର ସ୍ଥୂଳ ଶାରୀରିକତା ଏକ ସୂକ୍ଷ୍ମ ଆନନ୍ଦ ଓ ସୌନ୍ଦର୍ଯ୍ୟର ଅନୁଭବରେ ରୂପାନ୍ତରିତ ହୋଇଯାଏ, ଯଥା – "ଅକଣ୍ଟେକ ମୃନାଳ ସାଦ୍ରିଶ ବେନି ଭୁଜ / ଚମ୍ପାକଢ଼ି ଯେସନେକ ପଟାନ୍ତର ପାଣିଜ / ରଜତ କୁମୋଦ ଜାଣି ତୋହର ପୟର ତଳି / ଜାଇକଢ଼ି ଯେସନେକ ଦଶନ ଓହଳି ।" କିନ୍ତୁ ସେହି ଚେତନା ପୁଣି ଫେରିଆସିଛି । ଅର୍ଥାତ ଆଗର ବାସ୍ତବ ପରିସ୍ଥିତି, ଯେ ସେ ଏକାକୀ, ଗୋଟାଏ ଲୋକ ଚଳାଚଳ ନ ଥିବା ପ୍ରତିକୂଳ ଅରଣ୍ୟର ପରିବେଶରେ, ଓ ଭୟ, ହତାଶା, ଅସହାୟତା ସବୁ ଫେରି ଆସିଛି :

କାନ୍ଦଇ ମହାସତୀ ଦଶ ଦିଗ ଚାହିଁ
ମୁହିଁ ପାପିଷ୍ଠ ଜୀବନ ଅଛି କାହିଁପାଇଁ ।
ଏସନେକେ ଉଠଇ ବସଇ ତରୁ ତଳେ
ବେନି ନୟନରୁ ଲୁହ ବହଇ ଶରୀରୁ ଝାଳ ଗଳେ ।
ଚକିତ ଚକିତ ହୋଇଣ ଶଶୀ ମୁଖୀ
ଚକିତ ହୋଇ ଚଉକତି ଗଗନକୁ ଚାହାଁଇ ନିରେଖି ।
: : : : :
ଏବେ ମୁହିଁ ଏଥି କିସ କରିବି
ବାଟ ନ ଜାଣଇ କେହୁଣ କତି ଯିବି ।
ରବିର କିରଣ ନିଉନ ତିମିରି ବ୍ୟାପିଲା
ସନ୍ଧ୍ୟାଭାଗ ଦିଗ ଯେ ଅନ୍ଧାର ଆଚ୍ଛାଦିଲା ।

ବର୍ଣ୍ଣନାର ସୃଜନାତ୍ମକ ଆୟତନ ଓ ସଂଗଠନରେ ଉଭୟ ଶୃଙ୍ଖଳା ଓ ନମନୀୟତା ଉଲ୍ଲେଖନୀୟ । ଭାଷାର ପ୍ରଭେଦ ବାଦ ଦେଲେ, ଆଶ୍ଚର୍ଯ୍ୟ ଲାଗେ ଏ କେଉଁ ଦୂର ଅତୀତର ଲେଖା ନା ସମକାଳୀନ । ଏହାହିଁ ସାରଳାଙ୍କର ଶକ୍ତି – ଗଭୀର ଅନ୍ତର୍ଦୃଷ୍ଟି, ନିପୁଣ ସଞ୍ଚରଣଶୀଳତା ଓ ବର୍ତ୍ତମାନ ସମୟ ପାଇଁ ଅନ୍ତରଙ୍ଗ ସମକାଳୀନତା ।

'ବିଚିତ୍ର ରାମାୟଣ' ପ୍ରାୟ ୪୦୦ ପୃଷ୍ଠା, ଅନ୍ତ ମିଳୁଥିବା ଦୁଇ ଚରଣ ବିଶିଷ୍ଟ ୧୦,୦୦୦ ଧାଡ଼ି । ସଚ୍ଚିଦାନନ୍ଦ ମିଶ୍ର ଏହାର ତାଳପତ୍ର ପୋଥି ୧୯୬୭ ମସିହାରେ ଗଂଜାମ ଛତ୍ରପୁରରୁ ପାଇଥିଲେ । ପରେ ସେ ଆଉ ଗୋଟିଏ ତାଳପତ୍ର ପୋଥି ଶ୍ରୀ କାକୁଳମ ଜିଲ୍ଲାର ଟିକିଲିରୁ ପାଇଥିଲେ, ଓ ପରେ ତେଲୁଗୁରେ ଅନୂଦିତ ହୋଇଥିବା ଆଉ ଛଅଟି ପୋଥି ମଧ ପାଇଥିଲେ । 'ବିଚିତ୍ର ରାମାୟଣ'ର କଥାବସ୍ତୁକୁ ବିଭିନ୍ନ ଶିରୋନାମାରେ ବିଭକ୍ତ କରାଯାଇଛି, ଯାହାକି ମନେହୁଏ ମୂଳ କବିଙ୍କର ନୁହେଁ, ମୁଖ୍ୟତଃ ସମ୍ପାଦକଙ୍କର । ଏହା ସତ୍ତ୍ୱେ 'ବିଚିତ୍ର ରାମାୟଣ'ର କଥାବସ୍ତୁକୁ କେତୋଟି ନିର୍ଦ୍ଦିଷ୍ଟ ବିଭାଗରେ ବିଭକ୍ତ କରିହେବ । ଯେପରି, (୧) ସୀତାଙ୍କର ବନବାସ, ବାଲ୍ମିକୀଙ୍କ ଆଶ୍ରମରେ ରହିବା, ପରେ ପିତା ଜନକଙ୍କ ସ୍ଥାନକୁ ଯିବା, ଯିବା ବାଟରେ ଅରଣ୍ୟରେ ଲବ କୁଶଙ୍କର ଜନ୍ମ; (୨) ଜନକଙ୍କ ପାଖରେ ରହିବା, ଜନକଙ୍କ ଇଚ୍ଛାରେ ଦ୍ୱିତୀୟ ଅଗ୍ନି ପରୀକ୍ଷା, ଲବ କୁଶଙ୍କର ବାଲ୍ୟକାଳ; (୩) ରାମାୟଣ ଗାନ କରି ଲବକୁଶଙ୍କର ବିଭିନ୍ନ ସ୍ଥାନକୁ ଯିବା, ଶେଷରେ ଅଯୋଧାରେ ରାମଙ୍କ ରାଜଦରବାରରେ ଆରମ୍ଭରୁ ସୀତାଙ୍କର ଅରଣ୍ୟରେ ନିର୍ବାସିତ ହେବା ପର୍ଯ୍ୟନ୍ତ ରାମାୟଣ ଗାନ; (୪) ରାମ ଲବକୁଶଙ୍କୁ ଚିହ୍ନିବା, ପିତା ପୁତ୍ରଙ୍କର ମିଳନ, ରାମ ଅନୁତପ୍ତ ହୃଦୟରେ ସୀତାଙ୍କ ପାଖକୁ ଫେରି ଆସିବା ଓ ଶେଷରେ ସୀତାଙ୍କର ଧରଣୀ ପ୍ରବେଶ । ଶେଷ ବିଭାଗ ସମସ୍ତ ଘଟଣାର ପରିଶିଷ୍ଟ ପରି । ରାମ ସୀତାଙ୍କୁ ହରେଇ ଦୁଃଖପୂର୍ଣ୍ଣ ହୃଦୟରେ ଅଯୋଧାକୁ ଫେରିଲେ, ଓ ଅଯୋଧାର ରାଜ୍ୟଭାର ଲବକୁଶଙ୍କୁ ଦେଇ ନାନା ତୀର୍ଥ ସ୍ଥାନ ଭ୍ରମଣ କରି, ପରିଶେଷରେ ଏ ମର ସଂସାର ଛାଡ଼ି ନିଜର ସ୍ଥାନ ଅମରପୁରୀକୁ ଫେରିଗଲେ । ପ୍ରଥମ ଦୁଇଟି ବିଭାଗ ମାନବିକ ଆବେଗରେ ପୂର୍ଣ୍ଣ । ସୀତା ମୁଖ୍ୟ ଚରିତ୍ର, ସୀତାଙ୍କର ବିବ୍ରତ ମାନସିକତା ଓ ଦୁଃଖ ଶୋକ ବେଦନାର ଧାରା ଏହି ଦୁଇ ବିଭାଗରେ ବାରମ୍ବାର ପ୍ରକାଶ ପାଇଛି, ଓ ସୀତା କେବଳ ସୀତା ନୁହନ୍ତି, ପୀଡ଼ିତ, ଅତ୍ୟାଚାରିତ ନାରୀ ଆତ୍ମାର ପ୍ରତିରୂପ – ପୁରୁଷର ଅବହେଳା ଓ ନିଷ୍ଠୁରତାର ଶିକାର । ଅରଣ୍ୟରେ ନିର୍ବାସନ, ଅରଣ୍ୟରେ ପୁତ୍ରଜନ୍ମ ବା ଦ୍ୱିତୀୟ ଅଗ୍ନି ପରୀକ୍ଷା ପ୍ରଭୃତି ଏହାର ପ୍ରକୃଷ୍ଟ ଉଦାହରଣ । କିନ୍ତୁ ଅନ୍ୟ ବିଭାଗରେ ଏ ମାନସିକ ଓ ମାନବିକ ଆବେଗର ଧାରା ନାହିଁ । ଆମେ ଯାହା ପାଉ ସେ ମୁଖ୍ୟତଃ ଆଖ୍ୟାନର ଧାରା, ଘଟଣାର ବିବରଣୀ ଓ ସାମୟିକ ଭାବରେ ଆବେଗର ସଂଗଠନ ।

ଏହି ପ୍ରସଙ୍ଗରେ ସାରଳାଙ୍କର ସୃଜନୀଶକ୍ତିର ଆଉ ଦୁଇଟି ଉଦାହରଣ ଦିଆଯାଇପାରେ । ପ୍ରଥମ, ସୀତାଙ୍କ ସମ୍ପର୍କରେ, ଅରଣ୍ୟରେ ପୁତ୍ର

ଜନ୍ମ କରିବା ସମୟରେ । ଠିକ୍ ଯେ କୌଣସି ସ୍ତ୍ରୀଲୋକ ପରି ପ୍ରତିକୂଳ ଅବସ୍ଥାରେ, ଓ ହଠାତ୍, ପୁତ୍ର ଜନ୍ମ କରିବାର ବେଦନା ଓ ଦୁର୍ଦ୍ଦଶା । ସମସ୍ତ ଘଟଣାରେ ବେଦନା ଓ ଅସହାୟତାର ସଂଗଠନ ଓ ସେଥି ସହିତ ମଣିଷର ଦମ୍ଭ ଓ ସାହସର ସୂଚନା । ସ୍ଥାନ, ଘୋର ଅରଣ୍ୟ । ସୀତା ବାଲ୍ମିକୀଙ୍କ ସହିତ ପିତାଙ୍କ ରାଜ୍ୟକୁ ପଥ ନ ଥିବା ଅପରିଚିତ ଅରଣ୍ୟରେ ଚାଲିଚାଲି ଯାଉଛନ୍ତି । ବାଲ୍ମିକୀ ଋଷି, ତାଙ୍କର ବିଭିନ୍ନ ସ୍ଥାନ ଚାଲି ଚାଲି ଯିବାର ଅଭ୍ୟାସ ଅଛି । କିନ୍ତୁ ସୀତାଙ୍କର ନାହିଁ । ସେ ଏକେ ରାଜରାଣୀ, ଦ୍ୱିତୀୟରେ ଗର୍ଭବତୀ, ପ୍ରତିକୂଳ ଅରଣ୍ୟ ପଥରେ ଚାଲି ଚାଲି ଯିବା ତାଙ୍କ ପକ୍ଷରେ ଅତ୍ୟନ୍ତ କଷ୍ଟକର । କବିଙ୍କର ବର୍ଣ୍ଣନା ଏହିପରି :

ଆଗେ ବାଲମୀକ ପଛେ ଜନେକ କୁମାରୀ
ଅଗମ୍ୟ ବନେ ଯାନ୍ତି ପନ୍ଥ ଅନୁସରି,
ଦୁର୍ଗମ ଅରଣ୍ୟ ବୃଶାଳ ଶାଳ ଶାଖ
ଚାଲନ୍ତେ ମହାସତୀ ପାଇଲା ବିମୁଖ ।...
ପଛରେ ଗୋଡ଼ାଇ ଚାଲଇ ସୀତୟା
ଗର୍ଭ ଭାରାରେ ତାହାର ବିକଳ ହୋଏ କାୟା ।...
ସିଂହାମଣ୍ଡପ ଅଛଇ ଏକ କୋଶ
ବୃଶାଳ ଶାଳ ଶାଖା ଲାଗନ୍ତି ଆକାଶ ।
ସେ ତରୁତଳେ ସତୀ ବସିଲାକ ଫୁଟି
ବାଲମୀକ ମହରଷି ଚାହିଁଲେ ଲେଉଟି ।...
ଯାହା ସେ ବିଧାତା କରିଛି ତ ନିର୍ମିତ
ଜନେକ ଦୋହିତା ପେଟ ବଥାଇଲା ତୁରିତ ।
ବଇକୁଲ୍ୟେ କହଇ ସୀତୟା ମହାସତୀ
ମୋତେ ପ୍ରତିକାର କହସି ମହାଯତି ।
ପେଟ ବଥାଇ ମୋହର କରିବଇ କିସ
କ୍ଷଣେ କ୍ଷଣେ ଅନ୍ଧାର ମୋତେ ହୋଉଛି ଦଶଦିଶ ।...
ମୂର୍ଚ୍ଛାଗତ ହୋଇ ସତୀ ଅଚେତନ ହୋଇଲା
ଗ୍ୟାନ ହାରି ମହାସତୀ ଧରଣୀ ଉପରେ ଲୋଟିଲା ।
ମୁଖେ ପାଣି ସିଞ୍ଚିଲେ ବାଲମୀକ ତପୋଧନ
କ୍ଷଣକେ ଜାନକୀ ପାଇଲା ଚେତନ ।
ବସି ନ ପାରଇ ସତୀ ଉଚେଣ ରାବ ଦେଇ
ରାମ ରାମ ସୁମରି କାନ୍ଦଇ ବଇଦେହୀ ।
କିପାଇଁ ଭୋ ନାଥ ମୋତେ ଏତେକ ଦୁଃଖ ଦେଲୁ
ଲୋକଙ୍କର କଥା ଶୁଣି ଶରୀରେ କୋପ କଲୁ ।...
କ୍ଷଣେ କାନ୍ଦଇ କ୍ଷଣେ ମୂର୍ଚ୍ଛା ଯାଇ ସତୀ
ସୀତାକୁ କହନ୍ତି ବାଲମୀକ ମହା ଯତି ।
ଶୁଣ ଗୋ ମହାସତୀ ମୋହର ବୟାଣ
ରୋଦନ କରିବାର ଏବେ ନୁହଇ କାରଣ ।...
ରୋଦ ନ ରୋଦ ଗୋ ଜନେକ ଦୁହିତ
ଏହିକ୍ଷଣି ପୁତ୍ର ତୋହର ହୋଇବାକ ଜାତ ।
କିଘ୍ନସେନୀ କହଇ ଶୁଣ ତପସାଇଁ

ପ୍ରସବର ଧର୍ମ କଥା ନ ଜାଣଇ ମୁହିଁ ।
ସ୍ତିରୀ ଜଣେକ ତ ନାହିଁ ମୋହର ସଙ୍ଗ
ଭୋ ତପିଷ୍ଟ କେ ଧରିବ ମୋହର ଅଙ୍ଗ ।
ସୀତାର ବଚନ ଶୁଣି କହନ୍ତି ତପଚାରୀ
ପ୍ରସବ ହୁଅସି ସିଆଡ଼ି ଲତା ଧରି ।
ଶୁଣିଣ ଜାନକୀ ଯେ ବିକଳିତ ଚିତ୍ତେ
ସିଆଡ଼ି ଲତା ଧରିଲେ ବେନି କର ପତ୍ରେ ।

ଯାତ୍ରାର ଅସୀମ କ୍ଳାନ୍ତି, ନିର୍ଜନ ଲୋକବାକ ଶୂନ୍ୟ ଅରଣ୍ୟର ଭୟ, ଗଭୀର ଦୁଃଖ ଯେ ତାଙ୍କୁ ବିନା କାରଣରେ ଅତ୍ୟନ୍ତ ନିଷ୍ଠୁର ଭାବରେ ପରିତ୍ୟାଗ କରାଯାଇଛି, ସମ୍ପୂର୍ଣ୍ଣ ଅଜଣା ଅପରିଚିତ ସ୍ଥାନର ଭୟ, ଚରମ ଦୁର୍ଦ୍ଦଶାପୂର୍ଣ୍ଣ ଅତ୍ୟନ୍ତ ବେଦନାଦାୟକ ଶାରୀରିକ ଅବସ୍ଥା, ମୋଟ କଥାରେ ସମ୍ପୂର୍ଣ୍ଣ ଅସହାୟତା - ଏସବୁ ମିଶି ଯେଉଁ ସ୍ଥିତି ଗଢ଼ିଉଠିଛି ସେ ଏକାନ୍ତ ଦୁଃଖ ଓ ବେଦନାର ସ୍ଥିତି, ଓ ଦୂର ଅତୀତ ପୌରାଣିକ ଘଟଣାର ଚିତ୍ର ପୌରାଣିକ ଘଟଣା ହୋଇ ରହେ ନାହିଁ, ମନେହୁଏ ଏ ଯେପରି ଆମର ପରିଚିତ ଚିତ୍ର, ସମ୍ପୂର୍ଣ୍ଣ ପ୍ରତିକୂଳ ଅବସ୍ଥାରେ ଗର୍ଭ ବେଦନାରେ ପୀଡ଼ିତ ଜଣେ ଅସହାୟ ନାରୀର ଦୁଃଖ ଓ ବେଦନାର ଚିତ୍ର । ଏହାର ଅନ୍ୟ ଗୋଟିଏ ଦିଗ ଅଛି ଯେଉଁଠି ଏ ସ୍ଥିତିକୁ ଗ୍ରହଣ କରି ସମାଧାନ କରିବାର ଶକ୍ତି ଓ ସାହସ ପ୍ରାୟ ସମାନ ସ୍ଥିତିରେ ଥିବା ଅନ୍ୟମାନଙ୍କୁ ଦମ୍ଭ ଓ ସାହସ ଯୋଗାଇଥାଏ । ଏଠାରେ ତାହାହିଁ ଘଟିଛି । ସୀତାଙ୍କର ପରିସ୍ଥିତି ବନବାସ ଶେଷରେ ଓ ଅଜ୍ଞାତବାସ ପୂର୍ବରୁ ପାଣ୍ଡବମାନଙ୍କୁ କୁହାଯାଇଛି ଓ ସେମାନଙ୍କୁ ମାନସିକ ଦମ୍ଭ ଓ ଶକ୍ତି ଆଣିଦେଇ ପାରିଛି ("ଶୁଣିଣ ବିକଳ ପାଣ୍ଡବଙ୍କ ରାଣୀ / ନୟନୁ ଲୁହ ଗଡ଼ି ପଡ଼ଇ ଧରଣୀ / କରପତ୍ର ଯୋଡ଼ି ପଚାରଇ ପଞ୍ଚାଣୀ / ଅତି କଷ୍ଟ ପାଇଲା ମୁନି ହେ ଜନକର ଦୁଲାଳି / ପିତାର ଆଶ୍ରମକୁ ଗଲାକ କେସନେ / କିସ କଲେ ତହିଁ ଯେ ବାଲମୀକ ତପୋଧନେ /... କହନ୍ତି ମାରକଣ୍ଡେ ଶୁଣସି ଜିଗ୍ନସେନୀ / ମନବାଞ୍ଛା ପୂରାଅ ତୋହର ଦ୍ରୌପଦ ନନ୍ଦନୀ / ପାଞ୍ଚ ପାର୍ଥିଏ ତଲୟ କରି ଶୁଣ / ଦୁସହ ଶତ୍ରୁ ତୁମ୍ଭର ସମରେଣ ଜିଣ ।")

ଦ୍ୱିତୀୟ ଉଦାହରଣରେ ଅନ୍ୟ ପ୍ରକାର ପରିସ୍ଥିତି - ଋଷ୍ୟଶୃଙ୍ଗ ଉପାଖ୍ୟାନ । ମୂଳ ରାମାୟଣ (ଓ ମହାଭାରତରେ ବି) ଋଷ୍ୟଶୃଙ୍ଗ ଉପାଖ୍ୟାନ ସଂକ୍ଷେପରେ ଓ ନିର୍ଦ୍ଦିଷ୍ଟ ଭାବରେ ଦିଆଯାଇଛି । ଅର୍ଥାତ୍, ବର୍ଷା ହେଉ ନ ଥିବା ଅଙ୍ଗରାଜ୍ୟକୁ ଋଷ୍ୟଶୃଙ୍ଗ ଆସିବା ଓ ବର୍ଷା ହେବା । କେବଳ 'ବିଚିତ୍ର ରାମାୟଣ'ରେ ନୁହେଁ, ସାରଳା 'ମହାଭାରତ'ରେ ମଧ ବନପର୍ବ ଋଷିଶୃଙ୍ଗ ଉପାଖ୍ୟାନ ଦେଇଛନ୍ତି, ଓ ଉଭୟ ସ୍ଥାନରେ ସେ ଋଷ୍ୟଶୃଙ୍ଗ ଉପାଖ୍ୟାନର ମୂଳ ଖସଡ଼ା ରଖିଛନ୍ତି । କିନ୍ତୁ ଏହା ସହିତ ସେ ବହୁ ଟିକିନିଖି ବିବରଣୀ ଯୁକ୍ତ କରିଛନ୍ତି, ଯାହା ମୂଳ ରାମାୟଣ ଠାରୁ ଯଥେଷ୍ଟ ଦୀର୍ଘତର ('ବିଚିତ୍ର ରାମାୟଣ'ରେ ସମୁଦାୟ ୫୯୦ ଧାଡ଼ି) । ସେହିପରି 'ମହାଭାରତ'ରେ ମଧ ଏତେ ଦୀର୍ଘ ନ ହେଲେ ବି ଦୀର୍ଘ (୧୮୪ ଧାଡ଼ି), ଓ ମୂଳଠାରୁ ଦୀର୍ଘତର । ଅର୍ଥାତ୍ ସାରଳାଙ୍କ ଲେଖାରେ ଏ ସଂକ୍ଷିପ୍ତ ସୂଚନା ନୁହେଁ, ସମ୍ପୂର୍ଣ୍ଣ ଗଳ୍ପ ବା ବିବରଣୀ, ଯେଉଁଥିରେ ମାନବିକ ଉପାଦାନ, ଆଚାର ବ୍ୟବହାର ଓ ମାନସିକତା ସହ ସ୍ୱାର୍ଥ, ଚତୁରତା ଓ ସେହି ଅନୁରୂପ କାର୍ଯ୍ୟ ଜଡ଼ିତ ହୋଇ ରହିଛି । ଋଷିଙ୍କର ସ୍ତ୍ରୀ ଲୋକମାନଙ୍କ ସହିତ ଦେଖାସାକ୍ଷାତ ଏହିପରି :

ସେ କାମେନୀଙ୍କର ଯିବାର ଯହୁଁ ଋଷିଶୃଙ୍ଗ ଦେଖିଲା
ଆଶ୍ରମ ଉପେଖି ତାହାଙ୍କ ପଛେ ଗୋଡ଼ାଇଲା ।
ଭୋ ଯତିହେଂ ମୋତେ କିମ୍ପା କୋପକର
ପିତାର ବଚନ ଦୋଷ ମୋହରେ କିମ୍ପା ଧର ।
ତୁମ୍ଭର ତହୁଁ ମୁହିଁ ଯେ ଶାସ୍ତ୍ର ଶିଖିବି
ତୁମ୍ଭେ ଯହିଁକି ଯିବ ତୁମ୍ଭର ସଙ୍ଗତେ ଆସିବି ।
ଶୁଣି ସୁନ୍ଦରୀ ବେଗେ ବାହୁଡ଼ିଲେ
ଋଷିଶୃଙ୍ଗଙ୍କୁ ମଧକରି ଶାଢ଼ୀଘରକୁ ନେଲେ ।

ସେହିପରି ବିଭିନ୍ନ ଉପାୟରେ ଋଷିଙ୍କୁ ନାରୀମାନେ ବଶ କଲେ :

ସୁରଭି ସର ଇକ୍ଷୁ ସର୍କ ଦିବ୍ୟ ରୀତି

ନଟିକାଳ କଦଳୀ ନେଇ ମୁନିବର ସନିଧେଣ ଦେନ୍ତି ।
ସୁବାସ କସ୍ତୁରୀ କର୍ପୂରବାସ ପାଣି
ମୁକୁତା ହାର ଗଳାରେ ଭରିଲେ କେବଣ ତରୁଣୀ ।
କେ ହଳଦୀ ଲେପଇ କେ ପିନ୍ଧାନ୍ତି ଝୀନବାସ
ନାନା କୁସୁମ ଖୋସନ୍ତି ନେଇ କେଶ ।
ଲଲାଟେ କେ କସ୍ତୁରୀ ଚିତା ନେଇ ଦେଲା
କେବଣ କାମେନୀ ମୁଖେ ଦର୍ପଣ ଦେଖାଇଲା ।

ବିବରଣୀରେ ଉଦ୍‌ବେଗ ଓ ଆଗ୍ରହର ଉପାଦାନ । ସେଥି ସହିତ ନିରୀହ, ନିର୍ଦ୍ଦୋଷ ଲୋକ ସହିତ କିପରି ଚାଞ୍ଚଲ୍ୟକାରିତା କାର୍ଯ୍ୟ କରାଯାଏ ତା'ର ସୂଚନା । କିନ୍ତୁ ଋଷିଙ୍କର ନାରୀମାନଙ୍କ ସହିତ ପରବର୍ତ୍ତୀ ସମ୍ପର୍କ ସନ୍ତୋଷ ଓ ଆନନ୍ଦର :

ଋଷିଶୃଙ୍ଗ ଚଳଇ ତହୁଁ ଯୁବତୀଙ୍କର ପାଶ
ଦେଖିଣ ବେଶ୍ୟାଯେ ହୋଇଲେ ହରଷ ।
ଋଷିଶୃଙ୍ଗଙ୍କୁ ମଧ୍ୟ କରି ବେଶ୍ୟାଏ ଗଲେ
ଉତ୍ତରାଅଙ୍କ ତୀରେ ଦୁଇ ଦିନେ ହୋଇଲେ ।
ନାବେଣ ମୁନିଙ୍କି ଯେ ବସାଇଣ ନେଇ
ପବନ ପୟାତେ ଗଲେ ନାବ ବାହି ।
ମଦନ ଶରେ ଭୋଳ ହୋଇଛି ତପୋଧନି
ବୀଣା ଧରି ଗୀତ ଗାବନ୍ତି କାମେନୀ ।

ସାରଳାଙ୍କର ଋଷ୍ୟଶୃଙ୍ଗ ବିବରଣୀର ପ୍ରଭାବ ବିଶେଷ କରି ତାଙ୍କର ପରବର୍ତ୍ତୀ, ୧୬ଶ ଶତାବ୍ଦୀର ଆରମ୍ଭ ସମୟର କବି, ବଳରାମ ଦାସଙ୍କର ମହାକାବ୍ୟ 'ଜଗମୋହନ ରାମାୟଣ'ରେ ଲକ୍ଷ୍ୟ କରାଯାଇ ପାରେ । ବଳରାମଙ୍କର ଋଷ୍ୟଶୃଙ୍ଗ ଉପାଖ୍ୟାନର ମୂଳ ବାଲ୍ମିକୀ ରାମାୟଣରେ । କିନ୍ତୁ ସେ ବି ସାରଳାଙ୍କ ପରି ବିବରଣୀକୁ ବିସ୍ତାରିତ କରିଛନ୍ତି, ସାରଳାଙ୍କ ପରି ସେ ବି ବିବରଣୀର ସଂଗଠନରେ ମାନବିକ ଆବେଗ ଅନୁଭବ ଓ ଆଚାର ବ୍ୟବହାରକୁ ଯୁକ୍ତ କରିଛନ୍ତି । ମନେହୁଏ ବାଲ୍ମିକୀ ନୁହନ୍ତି, ସାରଳା ବଳରାମଙ୍କର ଆଦର୍ଶ, ଯଦିଚ ଦୃଷ୍ଟିଭଙ୍ଗୀ ଓ ଅବବୋଧରେ କିଛି ବିଭିନ୍ନତା ଅଛି । ଯେପରି ନଦୀରେ ନାରୀମାନଙ୍କର ଯାତ୍ରାର ଅଧିକ ପ୍ରାଣବନ୍ତ ବିବରଣୀ :

ରାତ୍ର ଦିବସରେ ନ ବିଶ୍ରାମି ଗଲେ
ଅନେକ ଘୋର ଗିରି ବନସ୍ତ ଜିଣିଲେ ।
ଦୁସହ ଦୁର୍ଗମ ଗହନ ବନେ ଯାନ୍ତି
ଅପୂର୍ବ ପଦାର୍ଥ କୂଳରେ ଦେଖନ୍ତି ।
କାହିଁ ଗଜେ ଗଜେ ହୁଅନ୍ତି ଚଉଦନ୍ତ
କେବଣ ଶାର୍ଦ୍ଦୁଳ ଖେଦଇ ମୃଗନ୍ତ ।...
କାହିଁ ମତ୍ତ ହସ୍ତିକି ବିଦାରଇ ସିଂହ
ସର୍ବାଙ୍ଗେ ଶ୍ରୋଣିତ ଦିଶଇ ଦେହ ରଙ୍ଗ ....
କେବଣ ଜୀବଜନ୍ତୁ ନଦୀକି ଚାହାନ୍ତି
ନାବ ଚଳିଯାନ୍ତେ ଦିଶନ୍ତି ପନ୍ତି ପନ୍ତି ।
ପରାକ୍ରମ କରି ହୁଅନ୍ତି ଆଗୁସାର
କେହୁ ଭୟ କରି ପଶନ୍ତି ଲତାର ।...
ଚିତ୍ର ମୟର ଯେ କରନ୍ତି ନୃତ୍ୟରସ
କାହିଁ ବଣ ପାରୁଆ ଉଡ଼ନ୍ତି ଚଉପାଶ ।

ଗହନ ବନସ୍ତରେ ବୋବାଇ ଏକ ଜୀବ
ହୁଳହୁଳି ପ୍ରାୟେକ ଶୁଭଇ ଶବଦ ।

ହୁଏତ ବଳରାମଙ୍କ ବିବରଣୀ ଅଧିକତର ସଂଗଠିତ, କିନ୍ତୁ ସାରଳାଙ୍କ ଆଦର୍ଶ ଆଗରେ ନ ଥିଲେ ସେ ବୋଧହୁଏ ଯେମିତି ଲେଖିଲେ ସେମିତି ଲେଖିପାରି ନ ଥାନ୍ତେ ।

'ବିଚିତ୍ର ରାମାୟଣ' ପରି 'ଚଣ୍ଡୀ ପୁରାଣ' ସାରଳାଙ୍କର ଅନ୍ୟତମ ବିଶିଷ୍ଟ ଗ୍ରନ୍ଥ । 'ଚଣ୍ଡୀ ପୁରାଣ' ବୋଧହୁଏ 'ମହାଭାରତ' ପରେ ଲେଖା ଯାଇଥିଲା, ଓ ଗବେଷକମାନଙ୍କ ମତରେ ଦେବୀ ଦୁର୍ଗାଙ୍କର ବିବରଣୀବିଶିଷ୍ଟ ଏହାହିଁ 'ଦେବୀ ଭାଗବତ'। ତିନୋଟି ତାଳପତ୍ର ପୋଥି ଉପରେ ନିର୍ଭର କରି ପ୍ରଫେସର କୃଷ୍ଣ ଚରଣ ସାହୁ ଏହାର ପ୍ରାମାଣିକ ସଂସ୍କରଣ ପ୍ରସ୍ତୁତ କରିଥିଲେ, ଓ ୧୯୮୪ରେ ଏହା ପ୍ରକାଶ ପାଇଥିଲା । 'ବିଚିତ୍ର ରାମାୟଣ' ତୁଳନାରେ ଏହା କ୍ଷୁଦ୍ରତର - ୧୮୫ ପୃଷ୍ଠା ଓ ପ୍ରାୟ ୯୦୦୦ ଧାଡ଼ି, ଓ କାବ୍ୟସ୍ୱର, ବିଚାର ଓ ଦୃଷ୍ଟିଭଙ୍ଗୀରେ 'ବିଚିତ୍ର ରାମାୟଣ' ଠାରୁ ଏହାର ଅନେକ ପ୍ରଭେଦ । 'ବିଚିତ୍ର ରାମାୟଣ' ସୀତାଙ୍କର ଦୁଃଖ ଓ ବେଦନାର ବିବରଣୀ ହେଲେ ବି, ଏହା ମୁଖ୍ୟତଃ ରାମ ସୀତାଙ୍କର ବିବରଣୀ ଓ ସେହି ଦୃଷ୍ଟିରୁ ବିଚାରରେ ଯଥେଷ୍ଟ ସଂଯମ ଓ ସମ୍ମାନର ସୂଚନା ରହିଛି ଓ ଅନ୍ତର୍ନିହିତ ଆବେଗର ଧାରା ସତ୍ତ୍ୱେ କାବ୍ୟ ସ୍ୱର ଧୀର ଓ ଶାନ୍ତ । କିନ୍ତୁ 'ଚଣ୍ଡୀ ପୁରାଣ' ମୁଖ୍ୟତଃ ଯୁଦ୍ଧର ବିବରଣୀ, ଓ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏହି ବିବରଣୀର ତୀବ୍ରତା - ମହିଷାସୁରର ରାଜ୍ୟ ଜୟ ଓ ଅଭିଯାନରୁ ଦୁର୍ଗାଙ୍କ ସହିତ ଶେଷ ଯୁଦ୍ଧ ଓ ପରାଜୟ । ତେଣୁ 'ଚଣ୍ଡୀ ପୁରାଣ'ରେ ସ୍ୱାଭାବିକ ଭାବରେ ଶକ୍ତି ଓ ସାହସର ଘୋଷଣା ଓ ଉତ୍ତେଜନାର ଧାରା । ଏହା ସତ୍ତ୍ୱେ ଉଭୟ 'ବିଚିତ୍ର ରାମାୟଣ' ଓ 'ଚଣ୍ଡୀ ପୁରାଣ'ରେ କେତେକ ମୂଳ ସାମଞ୍ଜସ୍ୟ ଅଛି । ଉଭୟରେ ଯାହା ମୂଳତଃ ପ୍ରକାଶ ପାଇଛି ସେ ନାରୀ-ଶକ୍ତି । ଗୋଟିକରେ ଏହା ଧୀର, ଶାନ୍ତ, ପରୋକ୍ଷ, ଆପୋଷ ବିହୀନ ଓ ସବୁ ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ପରିଶେଷରେ ନୀରବରେ ନିଜକୁ ପ୍ରତିଷ୍ଠା କରି ପାରିଛି । ଅନ୍ୟଟିରେ ମଧ୍ୟ ସମାନ ଭାବରେ ଏହା ପ୍ରକାଶ ପାଇଛି । କିନ୍ତୁ ଏହା ପରୋକ୍ଷ ନୁହେଁ, ପ୍ରତ୍ୟକ୍ଷ, ଓ ନୀରବରେ ନୁହେଁ ସରବରେ, ଓ ନିଜର ଘୋଷଣାର ଦୃଢ଼ତାରେ ନିଜକୁ ପ୍ରତିଷ୍ଠା କରିଛି । ଅର୍ଥାତ୍, ଯାହା ଘଟଣାରେ ଅନ୍ତର୍ନିହିତ, ଯାହା ଆମେ ଦେଖୁ, ସେ ଦୃଢ଼ ମାନସିକ ଶକ୍ତି, ଯାହାକି ଅପରିସୀମ ଶାରୀରିକ ଶକ୍ତିର ପରିବେଶରେ ପ୍ରକାଶ ପାଇଛି । ପରିଶେଷରେ ନାରୀ-ଶକ୍ତିର ପ୍ରତିଷ୍ଠାର କାର୍ଯ୍ୟକୁ ପ୍ରତୀକ ଭାବରେ ଗ୍ରହଣ କରାଯାଇପାରେ - ଆଲୋକ ଓ ମଙ୍ଗଳର ଶକ୍ତିର ଅନ୍ଧକାର ଓ ଅମଙ୍ଗଳର ଶକ୍ତି ଉପରେ ବିଜୟ । ଗୋଟିଏ ଦିଗରୁ ଦେଖିଲେ ଏହାହିଁ ସାରଳାଙ୍କର 'ମହାଭାରତ'ର ମୂଳ କଥା, ଓ ସେହି ଦୃଷ୍ଟିରୁ କୁହାଯାଇପାରେ ଉଭୟ 'ବିଚିତ୍ର ରାମାୟଣ' ଓ 'ଚଣ୍ଡୀ ପୁରାଣ' ସାରଳାଙ୍କର ଶ୍ରେଷ୍ଠ କୃତିର ପରିପୂରକ ଗ୍ରନ୍ଥ ।

'ଚଣ୍ଡୀ ପୁରାଣ'ର କଥାବସ୍ତୁର ଅଭିବୃଦ୍ଧି ସିଧାସିଧା, ସହଜ । ଏହାର ୨୩ଟି ବିଭାଗକୁ ମୋଟାମୋଟି ଦୁଇଟି ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ଭାଗରେ ମହିଷାସୁରର ବ୍ରହ୍ମାଙ୍କଠାରୁ ବରପ୍ରାପ୍ତି, ତା'ର ଅଭିଯାନ ଓ ପୃଥିବୀର ଶ୍ରେଷ୍ଠ ଶକ୍ତି ଭାବରେ ପ୍ରତିଷ୍ଠା, ଦେବତାଙ୍କର ପ୍ରାଧାନ୍ୟକୁ ମହିଷାସୁରର ଆହ୍ୱାନ, ଯୁଦ୍ଧ, ଦେବତାଙ୍କର ଶୋଚନୀୟ ପରାଜୟ ଓ ମହିଷାସୁରର ପ୍ରାଧାନ୍ୟ ଘୋଷଣା । ଦ୍ୱିତୀୟ ଭାଗରେ ଦେବୀ ଦୁର୍ଗାଙ୍କର ଅଗ୍ନିରୁ ଆବିର୍ଭାବ, ଦେବୀଙ୍କ ଦେବ ଅସ୍ତ୍ର ଲାଭ, ମହିଷାସୁରର କ୍ଷମତାକୁ ଆହ୍ୱାନ, ମହିଷାସୁର ସହିତ ଭୟଙ୍କର ଯୁଦ୍ଧ, ଓ ପରିଶେଷରେ ମହିଷାସୁର ବଧ । ଏ କେବଳ ସଂକ୍ଷେପରେ ଘଟଣାର ଅଭିବୃଦ୍ଧିର ଧାରା । କିନ୍ତୁ ଯାହା ଅର୍ନ୍ତନିହିତ ସେ କବିଙ୍କର ଅନନ୍ୟ ବର୍ଣ୍ଣନାର ଧାରା ଓ ବିଭିନ୍ନ ମାନସିକ ଆବେଗ ସବୁର ମିଶ୍ରଣର ନିପୁଣତା । ଗ୍ରନ୍ଥର ଆରମ୍ଭ ଗଣେଶଙ୍କ ବନ୍ଦନାରୁ, ଓ ତା ପରେ ପରେ କବିଙ୍କର ଇଷ୍ଟଦେବୀ ସାରଳାଦେବୀଙ୍କ ବନ୍ଦନା ("ଶୟଳ ଜନ ତାରଣ ଶ୍ରୀ ସାରୋଳ ଚଣ୍ଡୀ ନାମ / ସଜନଜନ ସୋଦର ସେ ଯୋଗେଣ ଆଦି ବ୍ରହ୍ମ / ଅଭୟେ ମାତାଙ୍ଗୀ ସେ ଶ୍ରୀ ସାରୋଳା ଚଣ୍ଡୀ ଦେବି / ଶୂଦ୍ରମୁନି ସାରୋଳା ଦାସ ଜନ୍ମେ ଜନ୍ମେ ଭାବି") ଯାହାଙ୍କର ଆଶୀର୍ବାଦରେ ସେ 'ଶାହାସ୍ତ୍ର' ଲେଖିବାର କ୍ଷମତା ପାଇଥିଲେ - "ଅଭୟେ କାନ୍ତାନି ସେ ଜଙ୍ଖେର ପୁରବାସୀ / ସେ ମୋତେ ପ୍ରସନ୍ନେ କହଇ ବିଶ୍ୱାସି / ସେ ଦେବୀର ଆଜ୍ଞା ପ୍ରମାଣେ କରି / ଶାହାସ୍ତ୍ର କହିତ ଯିବଇ ମୁଁ ଦେବୀର ନାମ ଧରି ।" ଦେବୀଙ୍କ ପ୍ରତି କବିଙ୍କର ଅଗାଧ ଭକ୍ତି । ତା ସହିତ ସେ ଦେବୀଙ୍କର ବିଭିନ୍ନ ରୂପକୁ ବି ଭକ୍ତି ନିବେଦନ କରିଛନ୍ତି । ଯେପରିକି ମହିଷାସୁରର ନିଷ୍ଠୁର ସେନାପତିମାନଙ୍କୁ ଶାସ୍ତି ଦେବାପାଇଁ ଦେବୀଙ୍କର ବିଭିନ୍ନ ରୂପ - ଇନ୍ଦ୍ରାୟେଣୀ, ଉଗ୍ରତାରା, କମଳା, କାମାକ୍ଷି, କଂକାଳୀ, ଚଂଚଳା, ଚରକାନ୍ତି, ଚର୍ଚ୍ଚିକା, ଚାମୁଣ୍ଡା, ଡାକେଶ୍ୱରୀ, ତାରାକ୍ଷି, ତ୍ରିପୁରା ମୋହିନୀ, ନାରାୟେଣୀ, ବାରାହୀ, ବାସେଳୀ, ବିରଜା, ଭଦ୍ରକାଳୀ, ମହାମାୟା ଇତ୍ୟାଦି । ଏହା ବ୍ୟତୀତ ସେ ବିଭିନ୍ନ ଦେବତାଙ୍କୁ ବି ଭକ୍ତି ନିବେଦନ କରିଛନ୍ତି । ଯେପରିକି, ନରସିଂହ, ବିଷ୍ଣୁ, ଶିବ, ବ୍ରହ୍ମା, ଏପରିକି ସର୍ବୋତ୍ତମ ଋଷି ଓ ମହାଭାରତ ରଚୟିତା ବ୍ୟାସଦେବଙ୍କୁ ବି ।

'ଚଣ୍ଡି ପୁରାଣ'ରେ ବହୁ ଦେବଦେବୀଙ୍କୁ କବି ଯଥେଷ୍ଟ ସମ୍ମାନ ଓ ବିନୟର ସହିତ ବନ୍ଦନା କରିଛନ୍ତି । କହିବା ବାହୁଲ୍ୟ ନିଜର ଇଷ୍ଟ ଦେବୀ, ଦେବୀ ଦୁର୍ଗାଙ୍କ ପ୍ରତି ତାଙ୍କର ଭକ୍ତି ସର୍ବାଧିକ । ଏ ଗୋଟିଏ ଦିଗ, ଯଦିଚ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦିଗ । ଅନ୍ୟଦିଗରେ ଦେବୀ, ଯେ ମହିଷାସୁର ସହିତ ଯୁଦ୍ଧ କଲେ, ସେ କେବଳ ଐଶ୍ୱରିକ ଶକ୍ତିସମ୍ପନ୍ନ ନୁହନ୍ତି, ସେ ମୂଳତଃ ଜଣେ ନାରୀ । ସେ ଅଭୂତପୂର୍ବ ସୌନ୍ଦର୍ଯ୍ୟର ଆଧାର, ଯାହା ଯେ କୌଣସି ଲୋକଙ୍କୁ ଉତ୍ତେଜିତ କରି ପାଗଳ କରିପାରେ । ଯେପରି ମହିଷାସୁରର ଦୁଇ ସେନାପତି ଚଣ୍ଡ ଓ ମୁଣ୍ଡର ମହିଷାସୁର ନିକଟରେ ଦେବୀଙ୍କର ରୂପ ବର୍ଣ୍ଣନା :

ସ୍ୱାମୀ ଆମ୍ଭେ ମୃଗୟାକୁ ବୋଲି ଗଲୁ
ଲକ୍ଷ୍ମୀଭଦ୍ରା ନଦୀରେ ପଶି ସ୍ନାହାନ କଲୁ ।
ସୁବର୍ଣ୍ଣ ପଦ୍ମ ଫୁଟି ନଦୀଯାକ ବହିଂ
ଅତିଅନ୍ତ ରୋଷ ଭରେ ଚଣ୍ଡ ମୁଣ୍ଡ କହିଂ ।
ଶୁଖିଲା ତରୁବର ପଲ୍ଲବ ହଉଁଅଛି ବନେ
ଗଂଧ ଆମୋଦଇ ଦେବ ମଳୟ ପବନେ,
ସେ ନଦୀ ଗୋଡ଼ାଇଲୁ ଦେବ ଗଗନ ଆକ୍ରେଷି
ରତ୍ନଗିରି ଶିଖରେ କନ୍ୟା ଏକ ଅଛି ବସି ।
ଚାଚର ଚିକୁର ଦେବ ଆକୁଞ୍ଚିତ ବହଳ
ଜମ୍ଭୁଧର ମେଘ ପ୍ରାୟେ ଦିଶଇ ପରିମଳ ।
ଭସାଣ କଣୟ ପ୍ରାଏକ ଯାହାର ଲଲାଟ ପାଟି
ସୁସଞ୍ଚ ନିର୍ମଳ ବେନି ନୟନ ଗୋଟି ।
ସ୍ୱାମୀ ଆକ୍ରଷିତ ତାହାର ଦୃଷ୍ଟି
ବକ୍ର ନୟନେ ଚାହାନ୍ତେ ପର୍ବତ ଯିବ ଫୁଟି ।...
ବଂଳୁଳ ପୁଷ୍ୟ ପ୍ରାଏକ ସେ ଅଧର ସୁରଙ୍ଗ
ହୀରା ଭଳି ଦନ୍ତ କି ବିରାଜଇ ଶଶାଙ୍କ ।
ସ୍ୱାମୀ ! ବାଣୀ ସୁସଞ୍ଚ ଭାଷଇ ଶୀତଳ
ବସନ୍ତ ଋତୁ କି ଭାଷଇ ଶତଗଳ । (୧୮୨୧-୧୮୪୪)

ଏହି ବିବରଣୀକୁ ବିଭିନ୍ନ ଦିଗରୁ ବିଚାର କରାଯାଇ ପାରେ । ବିଶେଷ କରି ଗୋଟିଏ ଦିଗରେ ଶାରୀରିକ ସୌନ୍ଦର୍ଯ୍ୟର ଘନିଷ୍ଠତା - "ଚାଚର ଚିକୁର ଦେବ ଆକୁଂଚିତ ବହଳ", ଓ ସାଙ୍ଗେ ସାଙ୍ଗେ ଏହି ସୌନ୍ଦର୍ଯ୍ୟର ବିସ୍ତାର - "ଜମ୍ଭୁଧର ମେଘ ପ୍ରାଏ ଦିଶଇ ପରିମଳ" ବା, "ବାଣୀ ସୁସଞ୍ଚ ଭାଷଇ ଶୀତଳ" ଓ "ବସନ୍ତ ଋତୁ କି ଭାଷଇ ଶତଗଳ" । ଅନ୍ୟ ଦିଗରେ ଏ ସୌନ୍ଦର୍ଯ୍ୟ ନିର୍ଦ୍ଦୋଷ ବା ସରଳ ନୁହେଁ, ଇନ୍ଦ୍ରିୟ ଉତ୍ତେଜକ ("ବଂଳୁଳ ପୁଷ୍ୟ ପ୍ରାଏକ ସେ ଅଧର ସୁରଙ୍ଗ" ବା "ଭସାଣ କଣୟ ପ୍ରାଏକ ଯାହାର ଲଲାଟ ପାଟି") ଓ ସେହି ହେତୁ ଧ୍ୱଂସ କ୍ଷମ - "ସ୍ୱାମୀ ଆକ୍ରଷିତ ତାହାର ଦୃଷ୍ଟି / ବକ୍ର ନୟନେ ଚାହାଁନ୍ତେ ପର୍ବତ ଯିବ ଫୁଟି ।" ଅର୍ଥାତ୍, ସୌନ୍ଦର୍ଯ୍ୟର ଶାରୀରିକ ସ୍ତରରୁ ସୌନ୍ଦର୍ଯ୍ୟର ମାନସିକ ବିଚାରର ଧାରା ଓ ବିସ୍ମୟ ଓ ଆନନ୍ଦର ପରିବେଶକୁ ଅଗ୍ରଗତି । ଏସବୁ ସତ୍ତ୍ୱେ ଯାହା ସ୍ପଷ୍ଟ ସେ ନାରୀର ଚିତ୍ର, ଯେ ସୌନ୍ଦର୍ଯ୍ୟମୟୀ ଓ ଆକର୍ଷଣ କରେ ।

କିନ୍ତୁ ଅନ୍ୟତ୍ର, ଗ୍ରନ୍ଥର ଶେଷଆଡ଼କୁ ଆମେ ନାରୀର ଯେଉଁ ଚିତ୍ର ଦେଖୁ ସେ ଭିନ୍ନ ରୂପର ଓ ଭିନ୍ନ ଆୟତନର । ଦେବୀ ଓ ମହିଷାସୁର ମଧ୍ୟରେ ପ୍ରଚଣ୍ଡ ଯୁଦ୍ଧ । ଯେତେ ଚେଷ୍ଟା କଲେ ବି ଦେବୀ ମହିଷାସୁରକୁ ପରାଜିତ ବା ବଧ କରିପାରୁ ନାହାନ୍ତି । ଦେବୀଙ୍କୁ କୁହାଗଲା ସେ ନିଜକୁ ସମ୍ପୂର୍ଣ୍ଣ ଉଲଗ୍ନ ନ କଲେ ମହିଷାସୁରକୁ ବଧକରି ପାରିବେ ନାହିଁ । ଦେବୀ ପ୍ରବଳ ଭାବରେ ପ୍ରତିବାଦ କଲେ । ଅସମ୍ଭବ । ସେ ନାରୀ ହୋଇ ନିଜକୁ ସମ୍ପୂର୍ଣ୍ଣ ଉଲଗ୍ନ କରିବେ ଏ କଥା ଅଚିନ୍ତନୀୟ :

ସର୍ବ ମଙ୍ଗଳା ଗୋ ବିଳମ୍ୱ ନ କର
ଏ ରୂପ ଛାଡ଼ି ବିଭଳିତ ରୂପ ଧର ।

ଦୁର୍ଗା ବୋଇଲେ ତ୍ରୈଲୋକେ ଅସମ୍ଭବ କଥା
ଅଦୃଷ୍ଟି ଅଶ୍ରୁତି ପାତେକ କେମନ୍ତେ କରି ମାରିବ ପାମର ଦଇତା ।
ନ ମରଇ କି ନା ଏ ପାମର ଦଇତ ଚାଣ୍ଡାଳ
ନ ଥାନ୍ତୁ କି ନା ଏ ଦେବତାଏ ସ୍ୱର୍ଗ ମଣ୍ଡଳ ।
ନ ରହଇ କି ନା ଏ ନବ ଦୀପା ପୃଥି
ତ୍ରୈଲୋକ୍ୟ ଦୃଶ ହୋଇବ ମୋହର ଶକତି ।

ଦେବୀଙ୍କର କୁଣ୍ଠାଭାବ ଯେକୌଣସି ସ୍ତ୍ରୀଲୋକ ପକ୍ଷରେ ଅତ୍ୟନ୍ତ ସ୍ୱାଭାବିକ, ଓ ଆମେ ଆଶ୍ଚର୍ଯ୍ୟ ହୋଇ ଦେଖୁ କିପରି ଏ ମହାନ୍ ଦେବୀ ଜଣେ ସାଧାରଣ ସ୍ତ୍ରୀ ଲୋକରେ ରୂପାନ୍ତରିତ ହୋଇଯାଇଛନ୍ତି । କିନ୍ତୁ ତାହା ସମ୍ଭବ ନୁହେଁ । ଦେବୀ ଅସୀମ କ୍ଷମତାର ଅଧିକାରିଣୀ – ସେହି ପ୍ରଚଣ୍ଡ ନାରୀ-ଶକ୍ତି ଯାହା ବିଷୟରେ କବି ଶତମୁଖ । ଦେବୀଙ୍କୁ ନଇଁଯିବାକୁ ପଡ଼ିଲା ଓ ପରିଣତି ମହା ପ୍ଳାବନ ପରି, ଦୁଷ୍ଟ ଅମଙ୍ଗଳ ଶକ୍ତିର ଅବଲୁପ୍ତି :

ଅନେକ ନିରାକୁଳ ବଚନ ଶୁଣି ସେ ଦୁର୍ଗତିତାରେଣୀ
ଚାମୁଣ୍ଡା ରୂପ ଯେ ଧଇଲେ ଗୋସାମଣି ।
ବିବସନ ହୋଇଲେ ଦେବୀ କେଶ ମୁକୁଳ
କାଛଟାଏ ପିନ୍ଧିଲେ ଦେବୀ ଦିଶଇ ଜାନୁ ଯୁଗଳ ।
ସ୍ତନମାନ ସମସ୍ତ ଯେ ହୋଇଲେକ ଦୃଶ
ତ୍ରଇଲୋକକୁ ମହାଭଏ ଲାଗିଲାକ ତ୍ରାସ ।...
ନିଶ୍ଚେଷ୍ଟେ ରହଇଂ ବୀର ତାରେଣୀ ନଦୀ କୂଳେ
ମାଡ଼ି ବସିଲେ ଦେବୀ ମୟେଷାର ବକ୍ଷସ୍ଥଳେ ।

ଗ୍ରନ୍ଥ ଶେଷରେ କବି ନିଜର ପ୍ରିୟ ଦେବୀ-ବନ୍ଦନାକୁ ଫେରି ଆସିଛନ୍ତି, ନିଜର ବନ୍ଦନା ନୁହେଁ, ସବୁ ଦେବଦେବୀଙ୍କର ଦେବ-ବନ୍ଦନା :

ଦୃଗାହିଂ ସେ ଧାତା ଦୃଗା ହଂ ସେ ବିଧାତା
ଦୃଗାହିଂ ସେ ପରମବ୍ରହ୍ମ ଆପ ତେଜ ବାୟୁ ଆକାଶ ଚିନ୍ତା ।
ଦୃଗାହିଂ ସେ ଗ୍ୟାନ ଦୃଗାହିଂ ସେ ଧ୍ୟାନ
ଦୃଗାହିଂ ସେ ପରମ ତତ୍ତ୍ୱ ଧ୍ୟାନ ସାଧନ ।
ଦୃଗାହିଂ ସେ ସବୁ ସିଦ୍ଧି ଦୃଗାହିଂ ସେ ସାଧୁ
ଦୃଗାହିଂ ସେ ଧାରଣ ସେ ଯେ ପୁଣ୍ୟ ଇନ୍ଦୁ ।...

'ଚଣ୍ଡୀ ପୁରାଣ'ର ସମ୍ପାଦକ ପ୍ରଫେସର କୃଷ୍ଣ ଚରଣ ସାହୁଙ୍କ ମତରେ 'ଚଣ୍ଡୀ ପୁରାଣ'ରେ କବିଙ୍କର ସମକାଳୀନ ବହୁ ପରିସ୍ଥିତିର ସୂଚନା ରହିଛି । ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧରେ ଯେତେବେଳେ 'ଚଣ୍ଡୀ ପୁରାଣ' ଲେଖା ଯାଇଥିଲା ସେତେବେଳେ ମୁସଲିମ ଆକ୍ରମଣ ଓ ଏହି ଆକ୍ରମଣର ନିଷ୍ଠୁରତାରେ ସମଗ୍ର ଭାରତ ଜର୍ଜରିତ । ମହିଷାସୁର ଓ ତା'ର ସେନାପତି ଓ ସୈନ୍ୟମାନଙ୍କର ନିଷ୍ଠୁରତା, ପ୍ରଫେସର ସାହୁଙ୍କ ମତରେ, ସେହି ସମୟର ମୁସ୍‌ଲିମ ଯୁଦ୍ଧ ବିଗ୍ରହ ସହିତ ତୁଳନୀୟ । ସେ ଦୃଷ୍ଟିରୁ, କୁହାଯାଇପାରେ, 'ଚଣ୍ଡୀ ପୁରାଣ'ର ପଞ୍ଚଦଶ ଶତାବ୍ଦୀ ସହିତ ସମକାଳୀନତା ସ୍ପଷ୍ଟ । ମହିଷାସୁରର ଅଭିଯାନର ପ୍ରାସଙ୍ଗିକତା ଏହି ଦୃଷ୍ଟିରୁ ଲକ୍ଷ୍ୟ କରାଯାଇପାରେ :

କାଶୀ ଦେଶ କଉସିକ ଦେଶ କୁବୁଜ ଦେଶ କନାଉଜ
ଯେତେ ବିଖ୍ୟାତ ଦେଶ ଜିଣିଲା ସର୍ବ ରାଜ୍ୟ ।
ଭଏଣ ପଳାନ୍ତି ଦନ୍ତେ କୋଠାର ତିରଣ
ଧନ ଭଂଡ଼ାର ଦେଇ କେ ପଶନ୍ତି ଶରଣ ।
ଆହୋ ପରୀକ୍ଷ କାଷ୍ଟ ପାଷାଣ ଯେତେ ମୂର୍ତ୍ତିକା ଦେବତା
ସମସ୍ତ ଭାଙ୍ଗିଣ ସେ କରନ୍ତି ନାଶଗତା ।

ମେଢ଼ ମଣ୍ଡପ ଯେ ଦେଉଳ ଜଗତୀ
ଧର୍ମ କୀର୍ତ୍ତିମାନ କାହିଁ ନ ଥୋଅନ୍ତି ।
ଆହୋ ଜମ୍ବୋଦୀପେ ଦେବତା ବ୍ରାହ୍ମଣଙ୍କର ବାସ
ସୁଜନ ପଂଡ଼ିତମାନେ କରନ୍ତି ଅଭ୍ୟାସ ।
ଯେତେବେଳେ ଦୁରାନ୍ତକ ମାଡ଼ି ଯାଉଅଛି
ଜନ ମନୁଷ୍ୟ ସହିତେ ନ ରହନ୍ତି କିଛି ।
ଯେସନେକ ବନସ୍ତ ଭାଙ୍ଗନ୍ତି ବାତ ଘାତେ
ସେହିମତି ହୁଅନ୍ତି ଦଇତର ପାଦ ଘାତେ । (ଧାଡ଼ି ୭୨୦-୭୨୬)

ଅନ୍ୟତ୍ର, ସେହିପରି ଦେବୀମାନଙ୍କର ଦୁର୍ଦ୍ଦଶା - ସମକାଳୀନ ଧ୍ୱଂସର ବିବରଣୀ :

ସାତ ଦୀପକୁ ଚଣ୍ଡୀମାନଙ୍କୁ ଦେଲା ଫିଙ୍ଗି
ଅନେକ ଦୃଗମେ ଯାଇ ପଡ଼ିଲେ ସବୁ ଦେବୀ ।
ନିର୍ଘାତ ପ୍ରାଏକ ଯେ ପଡ଼ିଲେ ଦୂରେ ଦୂରେ
ଉଠି ନ ପାରିଲେ ସେ ପଡ଼ିଲେ ସେହିଠାରେ ।
ମୁହଁ ବକ୍ର କାହାର ଅଧଖଣ୍ଡ କାଏ
କାହାର ହସ୍ତ କମ୍ପଇ କାହାର ଭଗ୍ନ ବେନି ପାଏ ।
ପେଟ କୋଡ଼ କାହାର ପିଠି ହୋଇଲା କୁଜା ।
କେହୁ ଅଷ୍ଟ ବକ୍ର ହୋଇଲେ ଅପୂଜା ।
ମୁଂହ ଭଗ୍ନ କାହାର ହେଲା ଆଖି କାଣ
ଯେ ଯହିଁ ପଡ଼ିଲେ ରହିଲେ ସେ ଠାବେଣ । (ଧାଡ଼ି ୮୭୨୫-୮୭୩୦)

ସାରଳା ଦାସଙ୍କର ସମୟ ଓଡ଼ିଶାର ଗୌରବମୟ ସମୟ, ଏକଥା ଆଗରୁ କୁହାଯାଇଛି । କିନ୍ତୁ ସେହି ସମୟ ଭାରତବର୍ଷ ପାଇଁ ଅତ୍ୟନ୍ତ ବିପର୍ଯ୍ୟୟର ସମୟ, ଯେତେବେଳେ ବାହାରୁ ଆସିଥିବା ଆକ୍ରମଣକାରୀଙ୍କ ଦ୍ୱାରା ଦେଶର ପ୍ରାଚୀନ ଐତିହ୍ୟ, ସଂସ୍କୃତି, ଧର୍ମ ଓ ସମାଜ ବିପଦଗ୍ରସ୍ତ ହୋଇ ଉଠିଥିଲା । ଏସବୁ ବିଷୟରେ ଲୋକମାନଙ୍କୁ ସଚେତ କରି ଜାତିର ଧର୍ମ ଓ ସଂସ୍କୃତିକୁ ରକ୍ଷା କରିବା ଅତି ଜରୁରୀ ହୋଇ ଉଠିଥିଲା । ସାରଳା ଦାସ ତାଙ୍କ ଲେଖାରେ ପୁରାଣର ଘଟଣାବଳୀର ପ୍ରତୀକତାରେ ଏହାହିଁ ପ୍ରକାଶ କରିଛନ୍ତି । ତାଙ୍କର ସ୍ୱର ଏକତାବଦ୍ଧ ହୋଇ ଶକ୍ତିଶାଳୀ ହେବାର ସ୍ୱର, ତାଙ୍କର ଆହ୍ୱାନ ଦୁଷ୍ଟ, ଅମଙ୍ଗଳ ଶକ୍ତିକୁ ପରାଜିତ କରି ଶୁଭ, ମଙ୍ଗଳ ଶକ୍ତିର ପ୍ରତିଷ୍ଠା କରିବାର ଆହ୍ୱାନ । 'ବିଚିତ୍ର ରାମାୟଣ' ଓ 'ଚଣ୍ଡୀ ପୁରାଣ'ରେ କବିଙ୍କର ସୃଜନୀଶକ୍ତିର କ୍ରମଃ-ଉତ୍ତରଣ 'ମହାଭାରତ'ରେ ପ୍ରତିଷ୍ଠିତ ହୋଇ ଅନବଦ୍ୟ ଫଳ ପୁଷ୍ପରେ ମଣ୍ଡିତ ହୋଇପାରିଛି ।

## (୩)

ସାରଳା ଦାସଙ୍କର ସର୍ବୋତ୍ତମ କୃତି 'ମହାଭାରତ' ବିଷୟରେ ସାଧାରଣ ଭାବରେ ଓଡ଼ିଆ ପାଠକ, ଲେଖକ ଓ ଗବେଷକମାନେ ଜାଣିଥିଲେ ବି, 'ମହାଭାରତ'ର ଗୋଟିଏ ସମ୍ପୂର୍ଣ୍ଣ ସଂସ୍କରଣ ପ୍ରଥମେ ବୋଧହୁଏ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ କଟକରୁ ପ୍ରକାଶ ପାଇଥିଲା । ଏ ବିଭିନ୍ନ ପୋଥିର ସାହାଯ୍ୟରେ ଯେପରି ଭାବରେ ବିଜ୍ଞାନସମ୍ମତ ପ୍ରମାଣିକ ସଂସ୍କରଣ ପ୍ରସ୍ତୁତ କରାଯାଏ ସେପରି ନ ଥିଲା । ପରେ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ, ଓ ବହୁ ପରେ, ସ୍ୱାଧୀନତାର ପରବର୍ତ୍ତୀ ସମୟରେ କଟକର ବିଭିନ୍ନ ପ୍ରକାଶକମାନଙ୍କ ଦ୍ୱାରା ସାରଳାଙ୍କ 'ମହାଭାରତ' ବିଭିନ୍ନ ଭାବରେ ପ୍ରକାଶ ପାଇଛି । କିନ୍ତୁ ଏସବୁ ମୁଖ୍ୟତଃ ମିଳୁଥିବା ଗୋଟିଏ ଗୋଟିଏ ପୋଥି ଉପରେ ନିର୍ଭର କରି କରାଯାଇଥିଲା, ଓ କେତେକ କ୍ଷେତ୍ରରେ ଏପରିକି ସାରଳାଙ୍କ ମୂଳ ପାଠକୁ ବି ସଂଶୋଧନ କରାଯାଇ ଥିଲା । କେବଳ ବିଂଶ ଶତାବ୍ଦୀର ସପ୍ତମ ଦଶକର ଆରମ୍ଭ ସମୟରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ ହୋଇଥିବା 'ମହାଭାରତ'କୁ (ପ୍ରକାଶ,

୧୯୬୫) ପ୍ରାମାଣିକ ସଂସ୍କରଣ ଭାବରେ ଗ୍ରହଣ କରାଯାଇ ପାରେ, ଯଦିଚ ଏଥିରେ ମଧ୍ୟ ଅନେକ ଦୋଷ ତ୍ରୁଟି ଥିବାର ମନେହୁଏ । ପରେ, ପ୍ରଫେସର କୃଷ୍ଣ ଚରଣ ସାହୁ ସାରଳା 'ମହାଭାରତ'ର ସମ୍ପାଦନା କାର୍ଯ୍ୟ ଆରମ୍ଭ କରିଥିଲେ (୧୯୭୮), ଓ ଆର୍ତ୍ତବଲ୍ଲଭଙ୍କ ପରି ସେ ବି ଅନେକ ଗୁଡ଼ିଏ ପୋଥିର ସାହାଯ୍ୟ ନେଇଥିଲେ, ଓ ବିଶେଷ କରି ସେ ଆର୍ତ୍ତବଲ୍ଲଭଙ୍କ ଦୋଷ ତ୍ରୁଟି ସମ୍ପର୍କରେ ଯଥେଷ୍ଟ ସତର୍କ ଥିଲେ । କିନ୍ତୁ ତାଙ୍କର ଅସମୟରେ ଦେହାନ୍ତ ହୋଇଯିବାରୁ ତାଙ୍କର ସମ୍ପାଦନା କାର୍ଯ୍ୟ କେବଳ 'ଆଦି ପର୍ବ'ର କିଛି ଅଂଶ ଓ 'ସ୍ୱର୍ଗାରୋହଣ ପର୍ବ'ରେ ସୀମିତ ହୋଇ ରହିଗଲା । ତେଣୁ ଅନ୍ତତଃ ବର୍ତ୍ତମାନ ପାଇଁ ଆର୍ତ୍ତବଲ୍ଲଭଙ୍କ ଦ୍ୱାରା ସମ୍ପାଦିତ ସାରଳା 'ମହାଭାରତ'ର ଆଉ ବିକଳ୍ପ କିଛି ନାହିଁ ଓ ତାହାକୁ ହିଁ ମୁଖ୍ୟତଃ ସାରଳାଙ୍କର ଆଦର୍ଶ ପାଠ ଭାବରେ ଗ୍ରହଣ କରିବା ଓ ଆଲୋଚନା କରିବା ସମୀଚୀନ, ଓ ଏଠାରେ ତାହାହିଁ କରାଯାଇଛି ।

ପ୍ରଥମ କଥା, ସାରଳାଙ୍କ 'ମହାଭାରତ' ମୂଳ ସଂସ୍କୃତ ମହାଭାରତର ଅନୁକରଣ ବା ଅନୁବାଦ ନୁହେଁ । ଏଠାରେ ମୂଳ ମହାଭାରତର ଧାରାବାହିକ ଆଖ୍ୟାନର ସଂଗଠନ ରହିଛି ଓ ଏହାହିଁ ମୂଳ ଭିତ୍ତି । କିନ୍ତୁ ଏହି ଭିତ୍ତିକୁ ଆଶ୍ରୟ କରି ଯେଉଁ ସଂଗଠନ ଗଢ଼ିଉଠିଛି ସେଥିରେ ବହୁ ପରିବର୍ତ୍ତନ କରାଯାଇଛି - ବିଷୟବସ୍ତୁକୁ ବାଦ ଦିଆଯାଇଛି, ନୂଆ ବିଷୟବସ୍ତୁକୁ ଯୋଗ କରାଯାଇଛି, ପରିବର୍ତ୍ତନ କରାଯାଇଛି, ଓ ଅନେକ କ୍ଷେତ୍ରରେ ନୂଆକଥା ବି କୁହାଯାଇଛି । ସଂକ୍ଷେପରେ କହିଲେ ଏତିକି କୁହାଯିବ ଯେ ସାରଳାଙ୍କ 'ମହାଭାରତ'ରେ ଯାହା ଆମେ ଦେଖୁ ସେ କବିଙ୍କର ସୃଜନୀ ଶକ୍ତିର ଏକ ଅସାଧାରଣ ବିସ୍ତୃତି, ସତେ ଯେପରି କୌଣସି ପୁରାତନ ଗ୍ରନ୍ଥ ନୁହେଁ, ଏକ ସମ୍ପୂର୍ଣ୍ଣ ନୂତନ ଗ୍ରନ୍ଥ ଆମେ ପଢୁଛେ । ସାରଳାଙ୍କର ବିଖ୍ୟାତ ଗ୍ରନ୍ଥ ପଞ୍ଚଦଶ ଶତାବ୍ଦୀର ଓଡ଼ିଶାର ପୃଷ୍ଠଭୂମୀରେ ଲେଖାଯାଇଛି, ଓ ଦୃଷ୍ଟିଭଙ୍ଗୀ ଓ ଅନୁଭବ ସମ୍ପୂର୍ଣ୍ଣ ଭାବରେ କବିଙ୍କର ନିଜସ୍ୱ । ଏହି ପରିବର୍ତ୍ତନର ଆଦ୍ୟ ସୂଚନା ଆମେ 'ମହାଭାରତ'ର ପର୍ବର ବିଭିନ୍ନତାରୁ ପାଉ । ସଂସ୍କୃତରେ ୧୮ଟି ପର୍ବ, ଓ ୧୦୦ ଉପପର୍ବ । ସାରଳାଙ୍କର କୌଣସି ଉପପର୍ବ ନାହିଁ, ଓ ସେ ୧୮ଟି ପର୍ବର ବିଭାଗୀକରଣ ରଖିଲେ ମଧ୍ୟ, କିଛି କିଛି ପରିବର୍ତ୍ତନ କରିଛନ୍ତି, ଯେପରିକି 'ସୌପ୍ତିକ' ଓ 'ଅନୁଶାସନ' ପର୍ବକୁ ସେ ଯଥାକ୍ରମେ 'ଗଦା' ଓ 'ଐଶିକ' ପର୍ବ ନାମରେ ନାମିତ କଲେ, 'ମହାପ୍ରସ୍ଥାନିକ' ପର୍ବକୁ 'ସ୍ୱର୍ଗାରୋହଣ' ପର୍ବ ସହିତ ମିଶେଇ ଦେଲେ, ଓ 'ଆଦି' ଓ 'ସଭା' ପର୍ବ ମଧ୍ୟରେ 'ମଧ୍ୟ ପର୍ବ' ନାମରେ ଗୋଟିଏ ସମ୍ପୂର୍ଣ୍ଣ ନୂତନ ପର୍ବ ଯୁକ୍ତ କଲେ । ଏହା ସହିତ ଅନ୍ୟାନ୍ୟ ପରିବର୍ତ୍ତନ ମଧ୍ୟ ଆମେ ଲକ୍ଷ୍ୟ କରି ପାରିବା, ଯେପରିକି 'ଆଦି' ଓ 'ସଭା'ରୁ କିଛି କିଛି ଘଟଣାବଳୀ ସହିତ ସମ୍ପୂର୍ଣ୍ଣ ନୂଆ ନୂଆ ଘଟଣାମାନ ଯୁକ୍ତ କରି 'ମଧ୍ୟ ପର୍ବ'; 'ଶଲ୍ୟ ପର୍ବ'ରୁ ଭୀମ ଦୁର୍ଯ୍ୟୋଧନର ଗଦାଯୁଦ୍ଧକୁ ବିଚ୍ଛିନ୍ନ କରି ନୂଆ 'ଗଦା ପର୍ବ'ରେ ସ୍ଥାନିତ କରିବା; 'ଅନୁଶାସନ ପର୍ବ'ର ବିଷୟବସ୍ତୁକୁ ସମ୍ପୂର୍ଣ୍ଣ ଛାଡ଼ିଦେବା; ଦୀର୍ଘ 'ଶାନ୍ତି ପର୍ବ'ର ଜ୍ଞାନ, ଶିକ୍ଷା, ଦର୍ଶନ ପ୍ରଭୃତିର ବହୁବିଧ ଆଲୋଚନାକୁ ଯଥେଷ୍ଟ ସଂକ୍ଷିପ୍ତ କରି ଅଳ୍ପ କେତୋଟି ଘଟଣାରେ ସୀମିତ କରିବା ଇତ୍ୟାଦି । ଏହି ସମ୍ପର୍କରେ ସଂସ୍କୃତର ଯେଉଁ କେତେକ ଅତ୍ୟନ୍ତ ପରିଚିତ ଓ ବିଶିଷ୍ଟ ଅଂଶକୁ ସାରଳା ପୂରାପୂରି ଛାଡ଼ି ଦେଇଛନ୍ତି ସେ ହେଲା ଶକୁନ୍ତଳା, ଓ ସାବିତ୍ରୀ ସତ୍ୟବାନ ବିବରଣୀ, ବିଶେଷ କରି 'ଭୀଷ୍ମ ପର୍ବ'ର ୧୮ ଅଧ୍ୟାୟ ବିଶିଷ୍ଟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ 'ଭଗବତ ଗୀତା' । ସେହିପରି ଅନ୍ୟଏକ କୌତୂହଳର ବିଷୟ ହେଉଛି ସଂସ୍କୃତରେ କଳିଙ୍ଗ, ଉତ୍କଳ ଓ ଓଡ୍ର ପ୍ରଭୃତିର ବାରମ୍ବାର ସୂଚନା ଥିଲେ ମଧ୍ୟ ସାରଳାରେ ତାହା ଅତ୍ୟନ୍ତ ସୀମିତ ।

ସଂସ୍କୃତଠାରୁ ଅଲଗା ହୋଇ ସାରଳା ଯେ ନିଜର ଏକ ସ୍ୱତନ୍ତ୍ର ପରିଚୟ ପ୍ରତିଷ୍ଠା କରି ପାରିଥିଲେ ଏ ବିଷୟରେ ଗତ ଶତାବ୍ଦୀର ତୃତୀୟ ଦଶକରେ ଗୋପୀନାଥ ନନ୍ଦ ପ୍ରଥମେ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେ ସାରଳାଙ୍କର ପରିବର୍ତ୍ତନ ସବୁକୁ ଆଲୋଚନା କରି ସେ ସବୁକୁ ସାଧାରଣ ଭାବରେ ଚାରୋଟି ବିଭାଗରେ ବିଭକ୍ତ କରିଥିଲେ । ସେ ହେଲା, ୧. ସେସବୁ ଯାହାକୁ ସେ ଛୋଟ କରିଥିଲେ, ୨. ଯାହାକୁ ସେ ବଢ଼େଇ ଦେଇଥିଲେ, ୩. ଯାହାସବୁ ସଂସ୍କୃତରେ ଥିଲେ ମଧ୍ୟ ସେ ଛାଡ଼ି ଦେଇଥିଲେ, ଓ ୪. ସେହିସବୁ ବିବରଣୀ ଯାହାକୁ ସେ ନୂଆ ନୂଆ ଆଣିଥିଲେ । କିଛି କିଛି ଉଦାହରଣ ଦିଆଯାଇଛି । ଆଉ କିଛି ସୂଚନା ଦିଆଯାଇପାରେ । ପ୍ରଥମତଃ ସେ ଦାର୍ଶନିକ ଚିନ୍ତା ଓ ଧାରଣା ଥିବା ବିବରଣୀ ସବୁକୁ ଛୋଟ ଓ ସରଳ କରି ଦେଇଛନ୍ତି, ଯେପରି ସାଧାରଣ ଲୋକମାନେ ସେ ସବୁକୁ ବୁଝି ପାରିବେ । ଦ୍ୱିତୀୟରେ, ସାଧାରଣ ଶ୍ରୋତାକୁ ଆଗ୍ରହୀ କରିବା ପାଇଁ ସେ ବିବରଣୀ ସବୁକୁ ବଢ଼ାଇବା ସଙ୍ଗେ ସଙ୍ଗେ ଯଥେଷ୍ଟ ଉତ୍ତେଜନାମୂଳକ କରିଛନ୍ତି । ଯେପରି ଜୟଦ୍ରଥ ବଧ, ଶିଶୁପାଳ ବଧ, କୀଚକ ବଧ, ବା ଏପରିକି ଦ୍ରୌପଦୀଙ୍କ ବସ୍ତ୍ରହରଣ ଓ ରାଜସୂୟ ଯଜ୍ଞର ଆଖ୍ୟାନ । ତୃତୀୟରେ ଯାହାକୁ ସେ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ ବୋଲି ଭାବି ଛାଡ଼ିଛନ୍ତି । ଆମେ ସାବିତ୍ରୀ-ସତ୍ୟବାନ ବା 'ଗୀତା'ର ଉଦାହରଣ ଦେଖିଛେ, ସେହିପରି ଅଭିମନ୍ୟୁ ବଧ ପରେ ବ୍ୟାସଙ୍କର ଉପଦେଶ, ଓ ଭୀମ ଓ କୃଷ୍ଣଙ୍କର ଆଶ୍ୱାସନା ପ୍ରଭୃତି । ଚତୁର୍ଥରେ ସେ ବ୍ୟବହାର କରିଥିବା ନିଜସ୍ୱ, ମୌଳିକ ବିବରଣୀ ସବୁ ଯାହାକି ସେ ସମକାଳୀନ ସାମାଜିକ ଜୀବନ ବା ପୁରାଣ ଓ କିମ୍ବଦନ୍ତୀ ପ୍ରଭୃତିରୁ ଆଣିଥିଲେ

ବୋଲି କୁହାଯାଇ ପାରେ । ଯେପରିକି ଖନିକାରର ବୃତ୍ତାନ୍ତ, ବେଲାବଳୀ ବା ବେଲାଳସେନ ବୃତ୍ତାନ୍ତ, ବାବନାଭୂତ ଗଳ୍ପ, ଯୁଧିଷ୍ଠିରଙ୍କର ସୁହାଣୀ କନ୍ୟା ବିବାହ, କୋକୁଆ ଗଳ୍ପ, ସତ୍ୟ ଆମ୍ବ ଉପାଖ୍ୟାନ, ଉଷାହରଣ, ଚନ୍ଦ୍ରାବତୀ ହରଣ, ସୁରେଖା ହରଣ ଓ ଭୀମ ଓ ଦୁଃଶାସନର ଯୁଦ୍ଧ ପ୍ରଭୃତି ।

ଏହି ସମ୍ପର୍କରେ ବିଶେଷ କରି ଦୁଇଟି ଉଦାହରଣକୁ କିଛି ବିସ୍ତାରିତ ଭାବରେ ଆଲୋଚନା କରାଯାଇପାରେ । ପ୍ରଥମଟି ସଂସ୍କୃତ ମହାଭାରତର ଗୋଟିଏ ମୁଖ୍ୟ ଘଟଣା - ଦ୍ୱୈତବନର ସରୋବର ନିକଟରେ ଯୁଧିଷ୍ଠିରଙ୍କୁ ଯକ୍ଷର ପ୍ରଶ୍ନ ଓ ଯୁଧିଷ୍ଠିରଙ୍କର ଉତ୍ତର, ଓ ପୃଷ୍ଠଭୂମୀରେ ଯକ୍ଷର ପ୍ରଶ୍ନର ଉତ୍ତର ନ ଦେଇ ଯୁଧିଷ୍ଠିରଙ୍କର ସବୁ ଭାଇମାନେ ମରିପଡ଼ିଛନ୍ତି । ଯକ୍ଷ ଯୁଧିଷ୍ଠିରଙ୍କୁ ୧୨୩ଟି ପ୍ରଶ୍ନ ପଚାରିଥିଲା ଓ ଯୁଧିଷ୍ଠିର ସବୁ ପ୍ରଶ୍ନର ଉତ୍ତର ଦେଇଥିଲେ । କେତୋଟି ପ୍ରଶ୍ନ-ଉତ୍ତର ଏହିପରି :

‘ପୃଥିବୀ ଅପେକ୍ଷା ଗୁରୁତର କିଏ ?’ - ‘ମାତା’
‘ଆକାଶ ଅପେକ୍ଷା ଉଚ୍ଚତର କିଏ ?’ - ‘ପିତା’
‘ମନୁଷ୍ୟର ଆତ୍ମା କିଏ ?’ - ‘ପୁତ୍ର’
‘ପ୍ରବାସୀଙ୍କର ମିତ୍ର କିଏ ?’ - ‘ସଙ୍ଗୀ’
‘ଗୃହବାସୀଙ୍କର ମିତ୍ର କିଏ ?’ - ‘ଭାର୍ଯ୍ୟା’
‘ଆତୁର ଜନଙ୍କ ମିତ୍ର କିଏ ?’ - ‘ଚିକିତ୍ସକ’

ପରେ ପରେ, ପ୍ରଶ୍ନମାନଙ୍କର ବିଷୟବସ୍ତୁ ବଦଳିଗଲା -

‘ଲୋକରେ କେଉଁ ଧର୍ମ ଶ୍ରେଷ୍ଠ ?’
‘କେଉଁ ଧର୍ମର ନିତ୍ୟ ଫଳ ହୁଏ ?’
‘କଣ ସଂଯତ କରି ଲୋକେ ଶୋକ କରନ୍ତି ନାହିଁ ?’
‘କେଉଁମାନଙ୍କ ସହିତ ସନ୍ଧି କଲେ ତାହା ଅତୁଟ ରହେ ?’

ଉତ୍ତର -

‘ନୃଶଂସ ନ ହେବା ପରମ ଧର୍ମ ।’
‘ବେଦୋକ୍ତ ତ୍ରୟୀ ଧର୍ମ ସର୍ବକାଳରେ ଫଳଦାୟକ ହୁଏ ।’
‘ଲୋକେ ମନକୁ ସଂଯତ କରି ଶୋକ କରନ୍ତି ନାହିଁ ।’
ସାଧୁଜନଙ୍କ ସଙ୍ଗେ ସନ୍ଧି କଲେ ତାହା ଅତୁଟ ରହେ ।

ପୁଣି ପ୍ରଶ୍ନ -

‘ପୁରୁଷ କି ପ୍ରକାରେ ମୃତ ହୁଏ ?’
‘ରାଜ୍ୟ କି ପ୍ରକାରେ ମୃତ ହୁଏ ?’
‘ଶ୍ରାଦ୍ଧ କି ପ୍ରକାରେ ମୃତ ହୁଏ ?’

ଉତ୍ତର -

‘ପୁରୁଷ ଦରିଦ୍ର ହେଲେ ମୃତ ହୁଏ ।’
‘ଅରାଜକ ହେଲେ ରାଜ୍ୟ ମୃତ ହୁଏ ।’
‘ଶ୍ରୋତ୍ରୀୟହୀନ ହେଲେ ଶ୍ରାଦ୍ଧ ମୃତ ହୁଏ ।’

ପ୍ରଶ୍ନ -

‘ପୁରୁଷମାନଙ୍କର ଦୁର୍ଜୟ ଶତ୍ରୁ କିଏ ?’
‘ସେମାନଙ୍କର ଅନନ୍ତକ ବ୍ୟାଧି କାହାକୁ କହନ୍ତି ?’
‘କିପରି ପୁରୁଷକୁ ସାଧୁ ବୋଲାଯାଏ ଓ ଅସାଧୁ କେଉଁମାନଙ୍କୁ କହନ୍ତି ?’

ଉତ୍ତର -

'ମନୁଷ୍ୟର କ୍ରୋଧ ତାହାର ଶତ୍ରୁ, ତାହାକୁ ଜୟ କରିବା କଠିନ'
'ଲୋଭ ସେମାନଙ୍କର ବ୍ୟାଧି, ଯାହା ତ୍ୟାଗ କରେ ନାହିଁ ସର୍ବଦା ଥାଏ ।'
'ଯେଉଁମାନେ ସର୍ବପ୍ରାଣୀଙ୍କ ହିତକାରୀ ସେମାନେ ସାଧୁ'
ଯେଉଁମାନଙ୍କୁ ଅସାଧୁ କୁହାଯାଏ ସେମାନେ ନିର୍ଦ୍ଦୟ ।

ପୁଣି ପୁଣି ପ୍ରଶ୍ନ,
'ମୋହ କିପରି ?'
'ଆଳସ୍ୟ କାହାକୁ ଜାଣିବା ?'
'ଅହଂକାର କିପରି ?'
'କିଏ ସୁଖୀ ?'
'ଆଶ୍ଚର୍ଯ୍ୟ କ'ଣ ?'
'ପଥ କିଏ ?'
'ସଂସାରରେ ବାର୍ତ୍ତା କ'ଣ ?'

ଇତ୍ୟାଦି ଓ ଶେଷ ପ୍ରଶ୍ନ :
'ପୁରୁଷ କାହାକୁ କହନ୍ତି ଓ ସର୍ବ ଧନୀ ମନୁଷ୍ୟ କିଏ ? ବ୍ୟାଖ୍ୟା କର ।'

ଯୁଧିଷ୍ଠିରଙ୍କ ଉତ୍ତର -
'ପୁଣ୍ୟ କର୍ମ ହେତୁରୁ ଯେଉଁ ଶବ୍ଦ ଭୂମି ଓ ଆକାଶ ସ୍ପର୍ଶ କରେ, ସେହି ଶବ୍ଦ ଯେତେ କାଳ ପର୍ଯ୍ୟନ୍ତ ଥାଏ, ତେତେ କାଳ ପର୍ଯ୍ୟନ୍ତ ସେହି ପୁରୁଷ ଥାଏ । ଯାହାଙ୍କର ପ୍ରିୟ ଅପ୍ରିୟ ଦୁହେଁ ସମାନ, ସୁଖ ଓ ଦୁଃଖ ସମାନ, ଅତୀତ ଓ ଭବିଷ୍ୟତ ଦୁହେଁ ତୁଲ୍ୟ, ସେହି ମନୁଷ୍ୟ ସର୍ବ ଧନୀ ।'

ଯକ୍ଷ ପଚାରିଥିବା ପ୍ରଶ୍ନ ସବୁକୁ ସାଧାରଣତଃ ତିନୋଟି ବିଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମେ ସେହିସବୁ ପ୍ରଶ୍ନ ଯାହା ସୂର୍ଯ୍ୟ, ଆକାଶ, ଦେବତା, ସତ୍ୟ, ବେଦ ଓ ଧ୍ୟାନ ପ୍ରଭୃତି ସହିତ ସମ୍ପର୍କିତ । ଦ୍ୱିତୀୟରେ, ବ୍ରାହ୍ମଣ, କ୍ଷତ୍ରୀୟ, ସାଧୁତା, ଅସାଧୁତା ଓ ଯାଗଯଜ୍ଞର ବିଧି ସବୁ । ତୃତୀୟରେ, ଆଚାର ବ୍ୟବହାର, ଅଭ୍ୟାସ, ଜୀବନ ଯାପନ ପ୍ରଣାଳୀର ଧାରା, ସମାଜ, ବ୍ୟବହାରିକ ବସ୍ତୁ ଓ ମଣିଷର ମନସ୍ତତ୍ତ୍ୱ ଇତ୍ୟାଦି । କୁହାଯାଇ ପାରେ ଏସବୁ ପ୍ରଶ୍ନ ସେ ସମୟର ପରିସ୍ଥିତିରେ ଅତ୍ୟନ୍ତ ପ୍ରାସଙ୍ଗିକ ଥିଲା । ଏସବୁ ସେହି ସେହି ମୂଳସୂତ୍ର ଯାହାକୁ କି ଆଧାର କରି ଆର୍ଯ୍ୟମାନେ ନିଜର ଜୀବନଯାପନ କରୁଥିଲେ । ପ୍ରଫେସର କୃଷ୍ଣଚରଣ ସାହୁଙ୍କ ମତରେ ଏସବୁ ତତ୍କାଳୀନ 'ଆର୍ଯ୍ୟ ଧର୍ମ'ର ଧାରା ସବୁ, ଯାହା ଉପରେ ନିର୍ଭର କରି ଆର୍ଯ୍ୟମାନେ ଚଳୁଥିଲେ, ଓ ନିଜର ନ୍ୟାୟୋଚିତ ରାଜ୍ୟ ବା 'ଧର୍ମରାଜ୍ୟ' ସ୍ଥାପନ କରିବାକୁ ଚେଷ୍ଟିତ ଥିଲେ । ସାରଳାଙ୍କ ସମୟକୁ ବହୁ ଶତାବ୍ଦୀ ଅତିକ୍ରାନ୍ତ ହୋଇଯାଇଥିଲା, ଓ ସମ୍ପୂର୍ଣ୍ଣ ପରିବର୍ତ୍ତିତ ସ୍ଥିତିରେ ସେସବୁ ଉଦ୍ଦେଶ୍ୟ ବା ନିର୍ଦ୍ଦେଶ ସବୁ ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତିତ ହୋଇଯାଇଥିଲା । ଏ କେବଳ ଧର୍ମ ନୁହେଁ, ଜୀବନଯାପନର ଧାରା ବଦଳି ଯାଇଥିଲା ଓ ଯକ୍ଷର ବହୁ ପ୍ରଶ୍ନର ଆଉ ପ୍ରାସଙ୍ଗିକତା ନ ଥିଲା, ବା ଉତ୍ତର ସମ୍ପୂର୍ଣ୍ଣ ଅଲଗା ହୋଇ ଯାଇଥିଲା । ସାରଳା ତାଙ୍କର ପାଠକମାନଙ୍କୁ ବିବ୍ରତ କରିବାକୁ ଚାହୁଁ ନ ଥିଲେ । ତେଣୁ ପୂର୍ବର ୧୨୩ଟି ପ୍ରଶ୍ନର ପରିବର୍ତ୍ତରେ ସାରଳାଙ୍କ ଯକ୍ଷ ଯୁଧିଷ୍ଠିରଙ୍କୁ ୨୦ଟି ପ୍ରଶ୍ନ ପଚାରିଥିଲେ, ଓ ସେସବୁ ମୁଖ୍ୟତଃ ଦୁଇଟି ବିଭାଗରେ, ଗୋଟିଏ ଦେହ ଓ ଦେହ ସମ୍ପର୍କୀୟ ବ୍ୟବହାରିକ ବସ୍ତୁ, ଓ ଅନ୍ୟଟି ଦେହାତୀତ ଆଧାତ୍ମିକ ଧ୍ୟାନ ଧାରଣା ସମ୍ପର୍କରେ, ଯାହାକି ମଣିଷକୁ ପାର୍ଥିବ ଜୀବନର ଦୁଃସ୍ଥିତିରୁ ମୁକ୍ତି ଦେଇପାରିବ ।

ପ୍ରଥମ ବିଭାଗର ପ୍ରଶ୍ନ, ଉତ୍ତର ଏହିପରି -
ପ୍ର. 'ଗୋରୁ ବା ବ୍ରାହ୍ମଣଙ୍କୁ ହତ୍ୟା କରିବାଠାରୁ ବଡ଼ ପାପ କ'ଣ ?'
ଉ. 'ଯେ ଅନ୍ୟକୁ ଖାଇବାକୁ ଦେଲାପରେ ହତ୍ୟା କରେ ସେହିହିଁ ବଡ଼ ପାପୀ ।'
ପ୍ର. 'ରାଜା କାହାର ବଶ୍ୟତା ସ୍ୱୀକାର କରେ ?'
ଉ. 'ରାଜା ଧର୍ମର ହିଁ ବଶ୍ୟତା ସ୍ୱୀକାର କରିବା ଉଚିତ ।'
ପ୍ର. 'ପ୍ରକୃତ କାମଧେନୁ କିଏ ?'

ଉ. 'ବିଦ୍ୟାହିଁ ପ୍ରକୃତ କାମଧେନୁ, ଯେତେ ଦୁହୁଁଥିଲେ ବି ସରେ ନା ।'
ପ୍ର. 'ବୈତରଣୀ ନଦୀର ଜଳଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ କ'ଣ ?'
ଉ. 'ତୃଷ୍ଣା, ତୃଷ୍ଣା ନିଜେହିଁ ବୈତରଣୀ, ଯାହା ଆଦୌ ସରେ ନା ।'
ପ୍ର. 'ବିଦେଶରେ ବଂଧୁ କିଏ ?'
ଉ. 'ଶିକ୍ଷା ।'
ପ୍ର. 'ଗୃହସ୍ଥରେ ବଂଧୁ କିଏ ?'
ଉ. 'ଉତ୍ତମ ଧର୍ମବନ୍ତ ସ୍ତ୍ରୀ ।'
ପ୍ର. 'ରୋଗର ବଂଧୁ କିଏ ?'
ଉ. 'ଔଷଧ'
ପ୍ର. 'ମୃତ୍ୟୁବେଳକୁ ଉତ୍ତମ ବଂଧୁ କିଏ ?'
ଉ. 'ନିଜର ଉତ୍ତମ କାର୍ଯ୍ୟ ।'
ପ୍ର. 'ଆପଦରେ କିଏ ସାହାଯ୍ୟ କରେ ?'
ଉ. 'ଦେବୀ ଦୁର୍ଗା ।'
ପ୍ର. 'ଦୁର୍ଯୋଗରେ କିଏ ସାହାଯ୍ୟ କରେ ?'
ଉ. 'ଧର୍ମର ଶକ୍ତି ।'

ଦ୍ୱିତୀୟ ବିଭାଗରେ ପ୍ରଶ୍ନ ସବୁ ବାସ୍ତବ ଜଗତ ବା ବାସ୍ତବ ଜୀବନର ପରିବେଶରେ ନୁହେଁ, ବାସ୍ତବତାର ବାହାରେ ଆଧାତ୍ମିକ ଜଗତ ବା ଆଧାତ୍ମିକ ବିଚାରଧାରା ସହିତ ସମ୍ପର୍କିତ, ଯେଉଁସବୁ ବିଚାର ଧାରାରେ ସାରଳା ଅନ୍ୟାନ୍ୟ ସମକାଳୀନ ସନ୍ଥ, ସନ୍ନ୍ୟାସୀ ବା ଭକ୍ତମାନଙ୍କ ପରି ବିଶ୍ୱାସ କରୁଥିଲେ । ଯେପରିକି 'ପିଣ୍ଡ ବ୍ରହ୍ମାଣ୍ଡ ବାଦ'ର ଧାରଣା ବା 'ଷଡ଼ଚକ୍ର'ର ଆଚାର ବ୍ୟବହାର, ଉଦ୍ଦେଶ୍ୟ, ଆତ୍ମା କିପରି ସାଂସାରିକ ଜଂଜାଳରୁ ମୁକ୍ତିଲାଭ କରିବ ଇତ୍ୟାଦି । ଯୁଧିଷ୍ଠିରଙ୍କୁ ଧର୍ମବକର ପ୍ରଶ୍ନ ସବୁ ସେହି ଭାବରେ ପ୍ରଣୋଦିତ । ସେସବୁ ହେଲା, ସାରଳାଙ୍କ ନିଜ ଭାଷାରେ :

ଧର୍ମବକ ବୋଇଲା ହୋ ଆକାଶ ମଣ୍ଡଳ
କେତେକ ବିସ୍ତାରେ ସେ ଅଟଇ ପରିମଳ ।
ଯୁଝେଷ୍ଠି ଦେବେ କଲେ ବଚନ ପ୍ରକାଶ
ଶୁଣ ହୋ ମହାତମା ଚତୁର ଅଙ୍ଗୁଳ ଆକାଶ ।
ଧର୍ମବକ ବୋଇଲା ହୋ ଶୁଣ ମହାମତି
କେତେକ ପାଦ ଅଟଇ ହାଦେ ଯେହୁ ପୃଥ୍ୱୀ ।
ଯୁଝେଷ୍ଠି ଦେବେ ବୋଇଲେ ତୁ ବଡ଼ାଇ ଧାର୍ମିକ
ପୃଥିବୀଯାକ ସର୍ବେ ବେନି ଯେ ପାଦେକ ।
ଧର୍ମବକ ବୋଇଲେ ତୁ କହିଲୁ ବିଶେଷି
ଛଡ଼ଋତୁ ମଧ୍ୟେ କେତେ କେତେ ଧାରା ଯେ ବରଷି ।
ଶୁଣ ହୋ ମହାତମା ଗ୍ୟାଂନୀ ନିରାକାରଇ
ପୃଥୀର ମଧ୍ୟେ ବରଷଇ ନବ ଧାରଇ ।
ଧର୍ମବକ ବୋଇଲା ଶୁଣସି ପୁରୁଷ
କେତେ ତାରା ଉଦେ ହୋଅନ୍ତି ଆକାଶ ।
ଧର୍ମବକର ବଚନେ ଯୁଝେଷ୍ଠି ବୋଇଲେ
ଗଗନେ ବେନି ତାରା ସୁଗ୍ୟାଂନୀ କହିଲେ ।...

ବୋଇଲା ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ତିନିଭୁବନେ
କେତେକ ଦ୍ୱାର ବାବୁ କହକିନା ବିଦ୍ୟମାନେ ।
ଯୁଝେଷ୍ଠି ଦେବ ବୋଇଲେ ଧର୍ମବକ ଆଗର
ସଚରାଚର ମଧ୍ୟରେ ଅଟଇ ଦଶ ଦ୍ୱାର ।
ନବଦ୍ୱାର ଆତଯାତ ଦ୍ୱାରକେ ଅଟଇ ଗୋପ୍ୟ
ଯେମନ୍ତ ବୋଲି କହିଲେ ଯୁଝେଷ୍ଠି ଦେବ ନୃପ ।...
ଧର୍ମବକ ବୋଇଲାକ ଶୁଣ ହୋ ପୁରୁଷ
କେ କେ ଅଟନ୍ତି ପୃଥୀ ଆପ ତେଜ ବାୟବ୍ୟ ଆକାଶ
ଯୁଝେଷ୍ଠି ବୋଇଲେ ପୃଥୀ ଭୂମି ଆପ ପାଣି
ତେଜ ଚନ୍ଦ୍ରସୂର୍ଯ୍ୟ ବାୟବ୍ୟ ପବନ ତାରକା ଆକାଶ
ଆଦ୍ୟ ଅନ୍ତ ମଧ କରିବାକୁ ଅଟନ୍ତି ଯେ ପଂଚ ପୁରୁଷ ।
ଯୁଝେଷ୍ଠି ବୋଇଲେ ଯେ ପଂଚ ପଂଚାଶ ବୋଲାଇ
ପାଖୁଡ଼ା ମଧ କେଶର ଆବୋରନ୍ତି ଥାଇ । (‘ଯୁଧିଷ୍ଠିରଙ୍କୁ ଧର୍ମବକଙ୍କ ପ୍ରଶ୍ନ’- ବନପର୍ବ)

ଧର୍ମବକଙ୍କର ଶେଷ ପ୍ରଶ୍ନ ଏସବୁରୁ ଭିନ୍ନ ଭାବରେ, ସମ୍ପୂର୍ଣ୍ଣ ଭାବରେ ଏକ ମାନସିକ ଅବଧାରଣା ଓ ମାନସିକ ଶୃଙ୍ଖଳା ବିଷୟରେ – ସମୟ ବା ‘କାଳ ପୁରୁଷ’ କିଏ ? ଏହାର ପିତାମାତା କିଏ ? ଏହାର ନିବାସ କେଉଁଠି ? (‘‘ଧର୍ମବକ ବୋଇଲା ବାବୁ କାଳ ବୋଲି କେବଣ ପୁରୁଷ / କେ ତା’ର ପିତାମାତା କାହୁଁ କାହିଁ ତା’ର ବାସ ।’’) ଯୁଧିଷ୍ଠିରଙ୍କ ଉତ୍ତର ସେହିପରି – କାଳ କିଏ ଏକଥା କହିବା ସହଜ ନୁହେଁ । ଏହାର ବିନାଶ ନାହିଁ, ଏହା କେଉଁ ଶେଷ ହୁଏନା । ଏହାର ଆକାର ନାହିଁ ଓ ଏହା ଯେକୌଣସି ସ୍ୱାଦର ବହିସ୍ଥ । ‘ଷଡ଼ପଦ୍ମ’, ‘ତ୍ରିବେଣୀ ସଂଗମ’, ଓ ନାସିକା ଓ ଦୁଇ ଚକ୍ଷୁ ମଧ୍ୟରେ ଏହାର ସନ୍ଧାନ ମିଳିବ :

କାଳ ବୋଲିଣ ହାଦେ ଯେଉଁଣ ପୁରୁଷ ବିଷ୍ଣର
ଅକ୍ଷୟ ଅବ୍ୟୟ ଅବିକାର ଅଣାକାର।
ଷଡ଼ଚକ୍ର ପରେ ପୁଣି ତ୍ରିବେଣୀ ସଂଗମ
ନାସିକା ଚକ୍ଷୁ ମଧରେ କର ହୋ ସନ୍ଧାନ ।
ସେ କର୍ମ ପୁରୁଷକୁ ଭେଟିବ ବୁଦ୍ଧିବଳେ
ଅଜପା ଲୟେ କରିଣ ବସିବେ ନିଶ୍ଚଳେ ।

ଅର୍ଥାତ୍, ଅନ୍ୟ ଭାବରେ କାଳହିଁ ଏକମାତ୍ର ସତ୍ତା ଯାହାକି ନିରବଚ୍ଛିନ୍ନ ଭାବରେ କାର୍ଯ୍ୟରତ । ଯାହା ପୂଜା ଅର୍ଚ୍ଚନାର ଊର୍ଦ୍ଧ୍ୱ ଏହିପରି ଏକ ଅସ୍ତିତ୍ୱ ଉପରେ ଯଦି କୌଣସି ଜ୍ଞାନୀ ବା ସଚେତନ ବ୍ୟକ୍ତି ନିଜର ଧ୍ୟାନକୁ ଏକୀଭୂତ କରିପାରେ, ତେବେ ଏକମାତ୍ର ସେହି ହିଁ ଏହି ଅସ୍ତିତ୍ୱ ସମ୍ପର୍କରେ ଧାରଣା କରିପାରିବ ଓ ଏହାକୁ ଦର୍ଶନ କରିପାରିବ ।

ସାରଳା ଏହି ଅସ୍ତିତ୍ୱ ସମ୍ପର୍କରେ ଅଧିକତର ସୂଚନା ଦେଇଛନ୍ତି । ସେ କହନ୍ତି ଯେ ଏହାର ସ୍ଥାନ ଅନନ୍ତର ଶୀର୍ଷରେ, ଶୀର୍ଷତମ ବିନ୍ଦୁରେ, ଯାହାକି ପଚାଶ ପଦ୍ମ ମଝିରେ ମଣିମୁକ୍ତା ପୂରିତ ସ୍ଥାନରେ – ‘‘ମହାଅନନ୍ତ ଶିର ଶିଖରେ ମଣି ଆସନ / ବିଂଶ ଦ୍ୱାଦଶ ଷୋଡ଼ଶ ଦୁଇ ଜଳେଣ / ନ ଯାଇ ନ ଥାଇ ନାଶ ନାହିଁ ଉଦେ ଅସ୍ତ / ନାହିଁ ନିଦ୍ରା ମଇଥୁନ ନାହିଁ ଦିବା ରାତ୍ର ।’’ ଏହା ଅକଥିତ, ସର୍ବବ୍ୟାପୀ, ଅଜେୟ, ବିନାଶହୀନ, ଭୟହୀନ ଓ ସକଳ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ଓ ସୃଷ୍ଟି ପ୍ରକ୍ରିୟାରେ କ୍ରମଶଃ ପ୍ରତିଭାତ ହୁଏ – ‘‘ପ୍ରଥମେ ସେ ଅବ୍ୟକ୍ତ ହେଲା ଲୋହିତର ବର୍ଣ୍ଣ / ସବ୍ୟକତ କାଳେ ହେଲା ଶୁଦ୍ଧ ସଷ୍ଟିକର ଚିହ୍ନ / ...ଅଜୟେ ଅଭୟେ ସେ ଅବ୍ୟୟେ ନିରଞ୍ଜନ / ଅବିଶ୍ରାମ ପୁରୁଷ ସର୍ବ କରେ ସେ ଲେଖନ ।’’ ଗୋଟିଏ ଦିଗରୁ ଏସବୁ ଯୁଧିଷ୍ଠିରଙ୍କର ଉତ୍ତର । କିନ୍ତୁ ଏହାହିଁ ମଧ ସାରଳାଙ୍କର ବିଶ୍ୱାସ । ସେ ତାଙ୍କର ଏ ବିଶ୍ୱାସକୁ ତତ୍କାଳୀନ ବିଶ୍ୱାସ ସହିତ ଜଡ଼ିତ କରିଛନ୍ତି, ଓ ଏହାହିଁ ତାଙ୍କ ମତରେ ତତ୍କାଳୀନ ‘ଲୋକ ଧର୍ମ’, ‘କାଳ’ ବା ସମୟର ବିଚାରରେ ସେ ଏହାକୁ ସ୍ପଷ୍ଟ କରିଛନ୍ତି । ସଂସ୍କୃତ ମହାଭାରତର ପ୍ରଶ୍ନ-ଉତ୍ତର ସହିତ ସାରଳାଙ୍କର ପ୍ରଶ୍ନ-ଉତ୍ତରକୁ ତୁଳନା କଲେ, ଯାହା ପ୍ରଥମେ ବୁଝିହୁଏ ସେ ହେଲା ସଂସ୍କୃତର ବିସ୍ତାର ଓଡ଼ିଆରେ ନାହିଁ । ଏ କେବଳ ସଂଖ୍ୟାରେ ନୁହେଁ । ଯେତେ ଯେତେ ବିଷୟ ସମ୍ପର୍କରେ

ସଂସ୍କୃତ ମହାଭାରତରେ ସୂଚନା ଦିଆଯାଇଛି, ଓଡ଼ିଆଠାରୁ ତାହା ଯଥେଷ୍ଟ ଅଧିକ । ସାରଳା ବିଶେଷ କରି ଜ୍ଞାନ, ଶିକ୍ଷା, ଧର୍ମ ଓ ଆଧ୍ୟାତ୍ମିକ ଚେତନା ସମ୍ପର୍କରେ କହିଛନ୍ତି ଓ ମଣିଷର ଉତ୍ତମ ଗୁଣସବୁ କିପରି ତା'ର ଭଗବତ ବିଶ୍ୱାସ ସହିତ ଜଡ଼ିତ ଏକଥା କହିବା ସାଙ୍ଗେ ସାଙ୍ଗେ ଦେବୀ ଦୁର୍ଗାଙ୍କର ଐଶ୍ୱରୀକ ଶକ୍ତିରେ ନିଜର ଗଭୀର ବିଶ୍ୱାସ ପ୍ରକାଶ କରିଛନ୍ତି । ଗୁଣ ଦୃଷ୍ଟିରୁ ସାରଳାଙ୍କ ବିଚାର ସଂସ୍କୃତ ମହାଭାରତର ବିଚାର ପରି ସମାନ ଗୁଣାତ୍ମକ, ଓ ସୁସ୍ଥ, ସୁସଙ୍ଗତ ସାମାଜିକ ଜୀବନ ପାଇଁ ସମାନ ଭାବରେ ଅପରିହାର୍ଯ୍ୟ ।

ଦ୍ୱିତୀୟ ଉଦାହରଣ ଭିନ୍ନ ଭାବର । କୌଣସି ସୂକ୍ଷ୍ମ ଅବଧାରଣା, ନୀତିବୋଧ, ମୂଲ୍ୟବୋଧ ବା ପାର୍ଥିବ ଓ ଆଧ୍ୟାତ୍ମିକ ବିଚାରଧାରା ପରିବର୍ତ୍ତରେ, ଆମେ ଯାହା ପାଉ ସେ ଗଭୀର ମାନବିକ ସମ୍ବେଦନା ଓ ଆବେଗର ପରିସ୍ଥିତି – ମଣିଷର ଦୁଃଖ ଓ ଶୋକର ସୃଜନାତ୍ମକ ଚିତ୍ର ରୂପ । ଅଠର ଦିନର ମହାଭାରତ ଯୁଦ୍ଧ ସରିଗଲାଣି। ସମୟ ସନ୍ଧ୍ୟା ଓ ରାତ୍ରି । ଯୁଦ୍ଧକ୍ଷେତ୍ରର ଅବର୍ଣ୍ଣନୀୟ ଅବସ୍ଥା, ଚାରିପାଖରେ ମୃତ୍ୟୁ ଓ ମୃତ୍ୟୁର ତାଣ୍ଡବ ଲୀଳା ଓ ସମଗ୍ର ରଣକ୍ଷେତ୍ର ରକ୍ତପିପାସୁ ଯୋଗିନୀମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଗଲାଣି । ସାରଳାଙ୍କ ଭାଷାରେ – ''ରାତ୍ର ହୋଇଲାକି ଆସି ତୃତୀୟ ପ୍ରହର / ସମସ୍ତେ ଶେଷ ହୋଇଲେ ଯେ ଗଦାଯୁଦ୍ଧର / ସମର ଅନିର୍ବ୍ବାରଣ ଅନ୍ତ ନ ଯାଇ ଯୁଦ୍ଧ / ଶେଷ ଗଦା ସମରେ ନାଚିଲେ ଲକ୍ଷେକ କବନ୍ଧ / ରକତ ନଦୀ ବହିଲା ପଞ୍ଚବିଂଶ ଯୁଣ ଦୀର୍ଘ / ନବତାଳ ଗଭୀର ଏ ସାତତାଳ ଉଚ୍ଛର୍ଗ... ।'' କୌରବଙ୍କର ସମସ୍ତ ସୈନ୍ୟମାନେ ନିହତ ହେଲେ, ମହା ମହା ଯୋଦ୍ଧାମାନେ ବି । ଏକମାତ୍ର ରାଜା ଦୁର୍ଯ୍ୟୋଧନ ଅକ୍ଷତ ଅବସ୍ଥାରେ ସେ ଲୁଚିଥିବା ସ୍ଥାନରୁ ବାହାରିଆସି ସେହି ଭୟଙ୍କର ଓ ଅତ୍ୟନ୍ତ ଭୀତିପ୍ରଦ ଧ୍ୱଂସ ଭିତରୁ ନିରାପଦ ସ୍ଥାନକୁ ଚାଲିଯିବାକୁ ଚେଷ୍ଟା କଲେ । ସଂସ୍କୃତ ମହାଭାରତରେ ସଂଜୟଙ୍କ ଦ୍ୱାରା ଏହି ପ୍ରସଙ୍ଗ ଅତ୍ୟନ୍ତ ସଂକ୍ଷେପରେ ଓ ନିର୍ଦ୍ଦିଷ୍ଟ ସୂଚନାରେ ଦିଆଯାଇଛି । ବିବରଣୀଟି ଏହିପରି (ଶଲ୍ୟ ପର୍ବ, ମହାପାତ୍ର, ପୃ.୧୨୩)

''...ହେ ଭାରତଶ୍ରେଷ୍ଠ ମହାରାଜ ! ତତ୍ପରେ ରଥିଶ୍ରେଷ୍ଠ ରାଜା ଦୁର୍ଯ୍ୟୋଧନ ଏକାକୀ ରଣ ସ୍ଥଳରେ ଆପଣାର ସହାୟମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତିକୁ ସୁଦ୍ଧା ଦେଖିଲେ ନାହିଁ । ସେହି ଏକାକୀ ଦୁର୍ଯ୍ୟୋଧନ ବିପକ୍ଷମାନଙ୍କ ଗର୍ଜନ ଶୁଣି ଓ ନିଜ ପକ୍ଷର ସୈନ୍ୟକ୍ଷୟ ଦେଖି ସ୍ୱକୀୟ ନିହତ ଅଶ୍ୱକୁ ପରିତ୍ୟାଗ ପୂର୍ବକ ରଣସ୍ଥଳରୁ ପୂର୍ବମୁଖରେ ପଳାଇଲେ । ହେ ମହାରାଜା ! ଯେଉଁ ବୀର ଏକାଦଶ ଅକ୍ଷୌହିଣୀ ସୈନ୍ୟର ଅଧିପତି ଥିଲେ, ସେହି ଆପଣଙ୍କ ପୁତ୍ର ତେଜସ୍ୱୀ ଦୁର୍ଯ୍ୟୋଧନ ଏକମାତ୍ର ଗଦାକୁ ଧାରଣ କରି ପଦାତିକ ସଦୃଶ ହ୍ରଦ ଅଭିମୁଖରେ ପ୍ରସ୍ଥାନ କଲେ । ...ହେ ରାଜନ ! ଦୁର୍ଯ୍ୟୋଧନ ଏହି ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ଦୀର୍ଘ ନିଃଶ୍ୱାସ ପରିତ୍ୟାଗ ପୂର୍ବକ ଆମ୍ଭଙ୍କୁ ବାରମ୍ୱାର ଚାହିଁ ଓ କଳେବର ସ୍ପର୍ଶ କରି କହିଲେ, 'ହେ ସଂଜୟ ! ଏହି ଯୁଦ୍ଧରେ ତୁମ୍ଭ ବ୍ୟତିରେକ ଅନ୍ୟ କେହି ଜୀବିତ ନାହାନ୍ତି । ଏତେବେଳେ ଆମ୍ଭେ ଅନ୍ୟ ଦ୍ୱିତୀୟ ବ୍ୟକ୍ତି ଦେଖୁନାହୁଁ, ପାଣ୍ଡବମାନେ ସହାୟଶାଳୀ ହୋଇଅଛନ୍ତି । ଅତଏବ ଏତେବେଳେ ତୁମ୍ଭେ ପ୍ରଜ୍ଞାଚକ୍ଷୁ ଭୂପତିଙ୍କ ସମୀପକୁ ଯାଇ ନିବେଦନ କରିବ ଯେ – ହେ ମହାରାଜ ! ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ହ୍ରଦ ମଧ୍ୟରେ ପ୍ରବିଷ୍ଟ ହୋଇ ଅବସ୍ଥିତି କରିଅଛନ୍ତି । ହେ ସୂତ ! ତାଦୃଶ ସହୃଦ ଜନ ସମୂହ, ପୁତ୍ରଗଣ ଓ ଭ୍ରାତୃବୃନ୍ଦଙ୍କୁ ହରାଇ ପାଣ୍ଡବମାନଙ୍କ ଦ୍ୱାରା ରାଜ୍ୟଭ୍ରଷ୍ଟ ହୋଇ ମୋ ପରି କେଉଁ ଲୋକ ପ୍ରାଣ ଧରିପାରେ ? ଯାହାହେଉ, ମୁଁ ସଂଗ୍ରାମରୁ ମୁକ୍ତ ହୋଇ ଅତିଶୟ କ୍ଷତବିକ୍ଷତ ହେଲେ ସୁଦ୍ଧା ପ୍ରାଣରକ୍ଷାର୍ଥ ଜଳ ହ୍ରଦ ମଧ୍ୟରେ ଶୟନ କଲି । ଏହି ସମସ୍ତ ବୃତ୍ତାନ୍ତ ତୁମ୍ଭେ ରାଜାଙ୍କ ନିକଟରେ ଜଣାଇବ ।' ହେ ମହାରାଜ ! ରାଜା ଦୁର୍ଯ୍ୟୋଧନ ଆମ୍ଭଙ୍କୁ ଏହିପରି କହି ସେହି ଜଳ ହ୍ରଦରେ ପ୍ରବେଶ କଲେ ଓ ମାୟା ବଳରେ ଜଳସ୍ତମ୍ଭନ କରି ରହିଲେ...।''

ସାରଳାଙ୍କ ବିବରଣୀ ଭିନ୍ନ । ସନ୍ଧ୍ୟାବେଳକୁ ଯେତେବେଳେ ୧୮ ଦିନର ଯୁଦ୍ଧ ଶେଷ ହେଲା, ରାଜା ଦୁର୍ଯ୍ୟୋଧନ ନିଜର ଆଶ୍ରୟସ୍ଥାନ ଛାଡ଼ି ବାହାରକୁ ଆସିଲେ (''ଆହୋ ଚଇତନ ଯହୁଁ ନିଶବଦ ହୋଇଲା କୁରୁକ୍ଷେତ୍ର ଭୂଇଁ / ଘଣ୍ଟତଳୁ ବାହାର ହୋଇଲା ମାନଗୋବିନ୍ଦାଇ ।'') ସେତେବେଳେକୁ ଯୋଗିନୀମାନଙ୍କର ଉଦ୍ଦଣ୍ଡ ନୃତ୍ୟ ଓ ପ୍ରଚଣ୍ଡ କିଳିକିଳା ଶବ୍ଦରେ ସମସ୍ତ ଯୁଦ୍ଧକ୍ଷେତ୍ରର ଅବସ୍ଥା ଅତ୍ୟନ୍ତ ଭୟପ୍ରଦ – ''ଅବନ୍ତୀ ବିଜୟା ସେ ତାରେଣୀ ତ୍ରିପୁରା / ରକ୍ଷେଣୀ ଭକ୍ଷେଣୀ ଅମ୍ବିକା ଚାଚିକା ଉଗ୍ରତାରା / ମର୍ଦ୍ଦଳ ଘୁମୁରା ଯେ ବିଜିଘୋଷ ଦାଉଣ୍ଡି / ଅଷ୍ଟବକ୍ର ହୋଇଣ ନାଚନ୍ତି ଖେମଟା ନାଟ ଖଣ୍ଡି / ଡାକନ୍ତି ଡାକେଶ୍ୱରୀ ଯେ ଶବଦ କିଳିକିଳି / ଭକ୍ଷନ୍ତି ମେଦ ମେଦା ଯେ ଦିଅନ୍ତି ହୁଳହୁଳି ।'' ଦୁର୍ଯ୍ୟୋଧନ ଯୁଗପତ ଭୀତ ଓ ସ୍ତମ୍ଭିତ ହୋଇଗଲେ । ଏହା ସହିତ ସମ୍ମୁଖରେ ବିପୁଳ, ପ୍ରବଳ ବେଗରେ ବହି ଯାଉଥିବା ରକ୍ତନଦୀ (''ଉଭା ମାନଗୋବିନ୍ଦ ରକ୍ତନଦୀ ପୂର୍ବ ଆଡ଼େ / ଭାରଥ ଶୁଭ ଅମ୍ବରେ ଉଠଇ ଉପରେ / ରକତ ନଦୀକି ଚାହିଁଣ ରାଜା ମାନ ଯେ ଗୋବିନ୍ଦ / ଚଉକତି ଚାହିଁ ରାଜା କପୋଳେ କର ଧନ୍ଦ'') । ରାଜା ନିଜର କପାଳକୁ ନିନ୍ଦା କଲେ (''ଭୋ ଦଇବ ଏତେବଡ଼ ସମ୍ପଦ ମୁଁ ଅର୍ଜିଲି ପୂର୍ବ ପୁଣ୍ୟ ବଳେ / ଅଳପେ ବୁଡ଼ାଇଲି ମୁଁ କର୍ମର ଅବଳେ ।'')

ଏ ବିବରଣୀ ସଂସ୍କୃତ ମହାଭାରତରେ ନାହିଁ, ସମ୍ପୂର୍ଣ୍ଣ ଭାବରେ ସାରଳାଙ୍କର ନିଜସ୍ୱ । ଦୁର୍ଯ୍ୟୋଧନ କଅଣ କରିବେ କିଛି ଭାବି ନ ପାରି

ଓ ନିଜ ଦୁଃଖରେ ନିଜେ ମ୍ରିୟମାଣ ହୋଇ ସେହିଠାରେ ଛିଡ଼ା ହୋଇ ରହିଲେ, କିନ୍ତୁ ବେଶୀ ସମୟ ସେହିଠାରେ ସେହିପରି ଅବସ୍ଥାରେ ଛିଡ଼ା ହେବା ସମ୍ଭବ ନୁହେଁ । ନିଶ୍ଚୟ ପାଣ୍ଡବମାନେ ତାଙ୍କୁ ଖୋଜି ବୁଲୁଥିବେ, ତାଙ୍କୁ ଶୀଘ୍ର ରକ୍ତନଦୀ ଅତିକ୍ରମ କରି ନିରାପଦ ସ୍ଥାନକୁ ଯିବାକୁ ହେବ । ରକ୍ତ ନଦୀରେ ଶବ ସବୁ ଭାସି ଆସୁଥାଏ, ସେ ଶବମାନଙ୍କ ସାହାଯ୍ୟରେ ରକ୍ତନଦୀ ପାରିହବାକୁ ଚେଷ୍ଟା କଲେ । ପ୍ରଥମେ ଦୁଃଶାସନର ଶବ । ''ଶୁଭ ଥମ୍ଭେ ଉଠି ସନ୍ତାପ କରଇ ଯେ ରାଜା କୁରୁରାୟେ / ଦେଖିର୍ଲା ଧୁଶାସନ ଭାସି ଆସୁଛି ସୁୟେ / କୋଳ କରି ଧଇଲା ଯେ ମାନ ଚକ୍ରବ୍ରତୀ / ବାବୁ ଧୁଶାସନରେ ପୃଥିବୀ ଏକ ଛତ୍ରୀ /.... ବାବୁ କ୍ଷଣହେଁ ନ ସହୁରେ ମୋହର ଅଭିମାନ / ରଣମନ୍ଥନ ପଦ ତୋହର ଧୁଶାସନ /... ବାବୁ ଆକାଶେ କ୍ଷେପୁଅଛି ରକତ ନଦୀ ଲହରି / ସେ ରକତ ନଦୀରୁ ମୁଁ କେମନ୍ତେ ହୋଇବିଟି ପାରି / ବାବୁ ଗୁଣ ତୋର କହିବାକୁ ରାତ୍ର ଆଉ ନାହିଁ / ଯେ ରକତ ନଦୀରୁ ଭାଇ ନେବୁକି ପାରିଆଇ ।'' କିନ୍ତୁ ଦୁଃଶାସନ ଶବରେ ରାଜା ବସୁ ବସୁ ଶବ ବୁଡ଼ିଗଲା (''ଭେଳା କରିଣ ପଡ଼ିଲା ସେ ଧୁଶାସନର ଉପରେ / ଅଚେଷ୍ଟ ବୁଡ଼ିଲା ରାଜା ତିନିତାଳ ଗଭୀରେ'') । ତା'ପରେ ବାକି ୯୭ ଭାଇଙ୍କର ଶବ, ପରେ ପରେ କର୍ଣ୍ଣ, ଦ୍ରୋଣ, ଶକୁନି, ଶଲ୍ୟ ଓ ଅନ୍ୟାନ୍ୟ ବହୁ ଯୋଦ୍ଧାଙ୍କର ଶବସବୁ ଭାସି ଆସିଲା । ଦୁର୍ଯ୍ୟୋଧନ ସେମାନଙ୍କୁ ସବୁ ଦେଖି ଅତ୍ୟନ୍ତ ଦୁଃଖିତ ହେଲେ, ତାଙ୍କ ସହିତ ସେମାନଙ୍କର ସମ୍ପର୍କ ସବୁ ଓ ତାଙ୍କ ପ୍ରତି ସେମାନଙ୍କର ସ୍ନେହ, ଆନୁଗତ୍ୟ, ସାହାଯ୍ୟ ଓ ସହାନୁଭୂତି ପ୍ରଭୃତିକୁ ସ୍ମରଣ କଲେ ଓ ଆଶା କଲେ ଯେ କେହି ହେଲେ ତାଙ୍କୁ ରକ୍ତନଦୀରୁ ପାରିକରି ନେଇଯାଇ ପାରିବେ । ସେ ପ୍ରତ୍ୟେକଙ୍କ ପାଖରେ ଚେଷ୍ଟା କଲେ, କିନ୍ତୁ କୌଣସି ଶବ ତାଙ୍କୁ ପାରିକରି ନେଇଯାଇ ପାରିଲା ନାହିଁ । ସେ ସମ୍ପୂର୍ଣ୍ଣ ହତାଶ ହୋଇ ପଡ଼ିଲେ (''ରୋବଇ ମାନଗୋବିନ୍ଦ ଦଶଦିଗ ଅନ୍ଧାର / କେସନେକ ରୁଧିର ନଦୀରୁ ହୋଇବଇଁ ପାର'') । ଏହି ସମୟରେ ଗୋଟିଏ ଉଜ୍ଜ୍ୱଳ ଶବ ଭାସି ଆସିବା ରାଜା ଦେଖିଲେ :

ମହାଶୋକ ଅବସ୍ଥା ପାଇଣ ମହାଦୁଃଖି
ପୁରୁଷେକ ଭାସି ଆସଇ ମାନଗୋବିନ୍ଦ ହାଦେ ଦେଖି ।
ରାୟେଣୀ କାଳେ ଦିଶଇ ଚନ୍ଦ୍ରମା ଉବେ ପ୍ରାୟେ
ତାଡ଼ ତୋଡ଼ର ବାହୁଟି କଂକଣ ନାନା ଅଳଙ୍କାର ତାର କାୟେ ।
ଅପୂର୍ବ ପୁରୁଷେକ ସେ ଦେଖିଲା ଯହୁଁ ଆଗେ
ଛାଡ଼ିକରି ନୃପତି ପୁଣି ଉଠିଲା କୂଳେ ବେଗେ ।
ତାହାଙ୍କଇଁ ଆକ୍ରୋଷି ଧଇଲା ନୃପବର
ତବତେ ରହିଲା ସେ ରକତ ନଦୀ ଉପର ।
କେବଣ ମହାତମା ସେ ବଡ଼ାଇ ବିଚକ୍ଷଣ
ଯେ ଅବା ମୋତେ କରି ପାରଇ କାରଣ ।
କୋଳ କରି ଧଇଲା ତାକୁ ମାନଚକ୍ରବ୍ରତୀ
ଉପରେ ଥୋଇଲା ନେଇ ଗଦାବର ଦୁହିଁନ୍ତି ।
ସତୁରୀ ସତୁରୀ ଭାର ବେନି ଗଦା ଗୁରୁ
ସହିଲା ସେ ମୃତୁ ପିଣ୍ଡ ଭାରା ମହାମେରୁ ।
ଆପଣେ ରାଜା ଯେ ପଡ଼ଇ ତହିଁ ପରେ ମାଡ଼ି
ସୋଇଭେଳା ଜାଣି ଭାସଇ ରକତ ନଦୀରେ ନ ବୁଡ଼ି ।

ସେହି ଶବ ଉପରେ ବସି ରାଜା ଦୁର୍ଯ୍ୟୋଧନ ନିଜ ଗଦା ସହ ରକ୍ତନଦୀ ପାରି ହୋଇଗଲେ :

ପିଠିରେ ବସିଣ ରାଜା ବାହଇ ବେନି ହାଥେ
ବେନି ଘଡ଼ିରେ ଗଲା ସେ ଯୋଜନ ପରିଯନ୍ତେ ।
ଆପଣା ଭୂମିର ଯେ ପଛିମ ଦିବା ଭାଗେ
ପାରିହୋଇ ମୃତ୍ୟୁପିଣ୍ଡୁ ଉତରିଲା ବେଗେ ।

ଦୁର୍ଯ୍ୟୋଧନ ସବୁଠାରୁ ଆଶ୍ଚର୍ଯ୍ୟ ହେଲେ ଯେ ଯେଉଁ କାର୍ଯ୍ୟ ଦ୍ରୋଣ, କର୍ଣ୍ଣ, ଶଲ୍ୟ, ଶକୁନି, ଦୁଃଶାସନ ଓ ଭୁରିସ୍ରବା ପ୍ରଭୃତି ପ୍ରସିଦ୍ଧ

ଯୋଦ୍ଧାମାନଙ୍କ ଦ୍ୱାରା ହୋଇପାରିଲା ନାହିଁ, ସେ କାର୍ଯ୍ୟ ଗୋଟିଏ ଅପରିଚିତ ଶବ ଦ୍ୱାରା ସମ୍ଭବ ହେଲା କିପରି !

ଦ୍ରୋଣ କର୍ଣ୍ଣ ଶଲ୍ୟ ଶକୁନି ଧୃଶାସନ ଭୁରିସ୍ରବା
ତୋହୋର ପ୍ରାୟେ କେହି ନୋହିଲେରେ ବାବା ।
କେହି ମୋତେ ରକତ ନଦୀରୁ ନ କଲେକ ପାରି
ମରି କେବଣ ମହାତମା ତୁ ହୋଇଲୁରେ ଉପୁଗାରି ।

କିନ୍ତୁ ରାଜା ଦୁର୍ଯ୍ୟୋଧନଙ୍କ ପାଇଁ ଆହୁରି ଗଭୀରତର ବିସ୍ମୟ ଅପେକ୍ଷା କରିଥିଲା ଓ ଗଭୀରତର ଶୋକ ଓ ଅଧିକତର ବେଦନା । ସେ ଶବକୁ ଓଲଟାଇ ଦେଲେ ଓ ଯେତେବେଳେ ମୁହଁକୁ ଚାହିଁଦେଲେ ! ଏ କଅଣ !

ଲେଉଟାଇ ବଦନ ଚାହିଁଇ କୁରୁରାଣ
ନିରୋପି ଚାହିଁଲା ଏ ମୋ କୁମାର ଲକ୍ଷ୍ମଣ ।
ଆହା ମୋର ପୁତ୍ର ବୋଲି ରାୟେ ଲଗାଇଣ ହୃଦେ
ଅସାଷମେ ରୋଦଇ ରାଜା ମାନ ଯେ ଗୋବିନ୍ଦେ ।
ବାବୁରେ ପଳା ଯା ବୋଲିଣ ବୋଇଲି ମୁହିଁ ତୋତେ
ପ୍ରମାଦ ଭୂମିରେ ପୁତ୍ରରେ ପଡ଼ିଲୁ କେମନ୍ତେ ।
ଆରେ ଆରେ ମୋର ଲକ୍ଷଣ କଉଛ ଜଗଜେଠୀ
ତ୍ରଇଲୋକ୍ୟ ବନ୍ଦନା ନାଥ ତୋହୋର ନାମ ଗୋଟି ।

* * * * *

ଅନ୍ଧର ଲଉଡ଼ି ପୁତ୍ରରେ ଅନାସ୍ତ ମୋତେ କଲୁ
ଗଭୀର ସମୋଦ୍ରେ ମୋର ଭେଳା ବୁଡ଼ାଇଲୁ ।

* * * * *

ବାବୁ ସମ୍ପୂର୍ଣ୍ଣ ଚନ୍ଦ୍ରମାରେ ତୋହୋର ବଦନାଇ
ଅପାଦରେ ବାବୁ ଘେନି ଯାଇକିନା ମୁହିଁ ।
ଆରେ ବାବୁ ପନିର ଚନ୍ଦନ ମଳୟ ବସନ୍ତ କସ୍ତୁରୀ ଯେ ଦାୟେ
ରକତେ କର୍ଦ୍ଦନ ଯେବେ ତୋହୋର ହୋଇଲାକ କାୟେ ।
ବାବୁ ମାଣିକ୍ୟରେ ହୃଦୟ ତୋର ଢଳି
ମୁଣ୍ଡମାନଙ୍କରେ ପୁତ୍ରରେ ହୋଇଲୁ ତୁ ମେଳି ।

* * * * *

ବାବୁରେ ହୃଦରେ ଧରିଛି ତୋହୋର ମୃତ୍ୟୁପିଣ୍ଡ ଗୋଟି
ଯେ ମୋହୋର ଶରୀର ନ ଯାଇ କିମ୍ପା ଫାଟି ।

ଏହି ବିବରଣୀକୁ ବିଭିନ୍ନ ଦିଗରୁ ଦେଖାଯାଇପାରେ । ପ୍ରଥମେ, କେବଳ ବିବରଣୀ ଭାବରେ, ଯେଉଁଠି ଭୟ, ଉତ୍ତେଜନା, ଆବେଗ ଓ ଶୋକ ଓ ବେଦନା ମିଶିକରି ରହିଛି । କୁହାଯାଇପାରେ, ସମ୍ପୂର୍ଣ୍ଣ ନିରପେକ୍ଷ ଭାବରେ ଓ ଘଟଣା ଠାରୁ ସମ୍ପୂର୍ଣ୍ଣ ଦୂରେଇ ରହିଲେ ମଧ, ଏସବୁର କାବ୍ୟ-ସଂଗଠନ ପାଠକକୁ ସମାନ ଭାବରେ ଅଭିଭୂତ କରେ । ଦ୍ୱିତୀୟରେ, ପରମ୍ପରାଗତ ବିଶ୍ୱାସର ସୂଚନା, ବିଶେଷ କରି ପିତାପୁତ୍ରର ସୂଚନାରେ ଯେ ପୁତ୍ରହିଁ ପିତାର ଏକମାତ୍ର ଅବଲମ୍ବନ, ଆଉ କେହି ନୁହେଁ । ତୃତୀୟରେ, ଆମେ ଯାହା ଦେଖୁ ସେ ସମ୍ପୂର୍ଣ୍ଣ ଅନ୍ୟ ସ୍ତରର, ଅର୍ଥାତ୍ ଗଭୀର ଆବେଗର ଅନୁଭୂତି ଓ ଗଭୀର ମାନବିକତାବୋଧ । ପିତାର ଅକସ୍ମାତ ଆବିଷ୍କାର ଯେ ସେ ବଂଚିଛି, କିନ୍ତୁ ପୁତ୍ର ନାହିଁ ଓ ଗୋଟାଏ ମୁହୂର୍ତ୍ତରେ ତା'ର ଜୀବନର ସବୁ କାର୍ଯ୍ୟ, ତା'ର ରାଜତ୍ୱ, ତା'ର ଅଧିକାର, ତା'ର ପ୍ରୌଢ଼ୀ, ତା'ର ଯୁଦ୍ଧ ବିଗ୍ରହ ସବୁକିଛି ଅର୍ଥହୀନ ଓ ନିରର୍ଥକ ହୋଇଉଠିଛି । ମନେହୁଏ, ଗଜପତି କପିଳେନ୍ଦ୍ର ଦେବଙ୍କର ଅସଂଖ୍ୟ ଯୁଦ୍ଧ ବିଗ୍ରହ ସହିତ ସାରଳା ଦାସ ହୁଏତ ନିଜେ ଜଡ଼ିତ ହୋଇଥିବେ, ବା ସେ ସମ୍ପର୍କରେ ତାଙ୍କର ନିଜସ୍ୱ ଅନୁଭୂତି ଥିବ ଓ ସେସବୁ ଯୁଦ୍ଧର ପାରିପାର୍ଶ୍ୱିକତା, ପରିଣତି ଓ

ବ୍ୟର୍ଥତା ସମ୍ପର୍କରେ ଏ ବିବରଣୀ ତାଙ୍କର ନିଜସ୍ୱ ପ୍ରତିକ୍ରିୟା । ଯେ ଯୁଦ୍ଧ ମାତ୍ରେ ହିଁ କେବଳ ଅନର୍ଥକ ଯନ୍ତ୍ରଣାଦାୟକ ଓ ବେଦନାତ୍ମକ ନୁହେଁ, ସମ୍ପୂର୍ଣ୍ଣ ଅର୍ଥହୀନ ଓ ମଣିଷର ଶୁଭଙ୍କର ଜୀବନ ପାଇଁ କୌଣସି ସାହାଯ୍ୟ କରିପାରେ ନାହିଁ । ଏ ଦିବ୍ୟଦୃଷ୍ଟି ପରି ଓ ସାରଳା 'ମହାଭାରତ'ର ସାମଗ୍ରିକ-ସଂଗଠନରେ ଏକ ଶକ୍ତିଶାଳୀ ଆଭିମୁଖ୍ୟ । ଚତୁର୍ଥରେ, ଏହି ଘଟଣାକୁ ଉପଲକ୍ଷ୍ୟ କରି ସାରଳାଙ୍କ ବିବରଣୀକୁ ମୂଳ ମହାଭାରତର ସଂକ୍ଷିପ୍ତ ବିବରଣୀ ବା ପ୍ରତିବେଦନ ସହିତ ତୁଳନା କରାଯାଇପାରେ । ଆୟତନର ଭିନ୍ନତା ଅତ୍ୟନ୍ତ ସ୍ପଷ୍ଟ, ବିଶେଷକରି ସାରଳାଙ୍କର ସଂଯୋଜନ ସବୁ, ଓ ଏହାହିଁ ସାରଳାଙ୍କର 'ମହାଭାରତ'ର ଭିନ୍ନତା, ମୌଳିକତା ଓ କାବ୍ୟ-ସଂଗଠନର ଅନ୍ୟତମ ପ୍ରଧାନ ଶକ୍ତି ।

ସଂସ୍କୃତ ମହାଭାରତରୁ ଭିନ୍ନତା ସାରଳାଙ୍କ ଲେଖାର ବିଶିଷ୍ଟ ଗୁଣ । ଅନୁବାଦ, ଅନୁସୃଜନ ବା ଅନୁକୃତି ନୁହେଁ, ଏ ସମ୍ପୂର୍ଣ୍ଣ ମୌଳିକ ସୃଷ୍ଟି, ସାରଳାଙ୍କ କାବ୍ୟ-ସଂଗଠନ, କାବ୍ୟ-ଦୃଷ୍ଟି ଓ କାବ୍ୟ-ବିଚାରର ବିଶିଷ୍ଟ ଉପାଦାନ । ସାରଳାଙ୍କର ବିଶିଷ୍ଟତା ଅନ୍ୟ ଭାବରେ ବି ଆଲୋଚନା କରାଯାଇପାରେ । ଯେପରିକି ତାଙ୍କର ଚରିତ୍ର ଚିତ୍ରଣ । ସେମାନେ ମୂଳ ମହାଭାରତର ଚରିତ୍ର ଠିକ୍, କିନ୍ତୁ ପ୍ରତ୍ୟେକ ସ୍ଥାନୀୟ ପରିବେଶ, ସ୍ଥାନୀୟ ସ୍ଥିତି ଓ ସ୍ଥାନୀୟ ବିଚାରଧାରା ସହିତ ଜଡ଼ିତ ହୋଇ ଯାଇଛନ୍ତି । ତେଣୁ ସେମାନଙ୍କୁ କେବଳ ମହଭାରତର ବ୍ୟକ୍ତିବିଶେଷ ନ କହି ସାଧାରଣ ଭାବରେ ଓଡ଼ିଆ ଜନସମୁଦାୟର କହିଲେ ଅଧିକତର ପ୍ରାସଙ୍ଗିକ ହେବ । ଯେପରି, ଶ୍ରୀକୃଷ୍ଣ ଚତୁର ଓ କୌଶଳୀ; ଭୀମ ବିଦ୍ୱେଷହୀନ, କିନ୍ତୁ ନିର୍ବୋଧ; ବା ଗଙ୍ଗା ଗାଁ ସ୍ତ୍ରୀଲୋକ ପରି କଳହ ପ୍ରବଣ - ମନେହେବ ଯେପରି ସାଧାରଣ ଓଡ଼ିଆ ଲୋକ-ଚରିତ୍ରର ବେଶ କିଛି ଉପାଦାନ ଏମାନଙ୍କ ଠାରେ ରହିଛି । କିଛି ବିସ୍ତାରିତ ଭାବରେ କୁହାଯାଇ ପାରେ -

ଶ୍ରୀକୃଷ୍ଣ ! ମହାଭାରତ ଯୁଦ୍ଧର ପ୍ରଧାନ ବିଦ୍ଧାଣୀ ଶ୍ରୀକୃଷ୍ଣ । ତାଙ୍କର ଜ୍ଞାନ, ବୁଦ୍ଧି, ଐକାନ୍ତିକତା ଓ ନିଷ୍ଠା ଅତୁଳନୀୟ । ସାରଳାଙ୍କ ଲେଖାରେ କୃଷ୍ଣଙ୍କର ସେସବୁ ଗୁଣ ରହିଛି । ତାଙ୍କ ପାଇଁ ସେ ସର୍ବ ଶକ୍ତିମାନ, ସର୍ବୋତ୍ତମ, ଆଦି ବ୍ୟକ୍ତିତ୍ୱ - ଐଶ୍ୱରିକ ଅବତାର, ସଂସାରରୁ ଦୁଷ୍ଟଦଳନ ଓ ଅଧର୍ମର ଉତ୍ପାଟନ ଯାହାଙ୍କର କାର୍ଯ୍ୟ । ତେଣୁ ସେ ଶ୍ରୀକୃଷ୍ଣଙ୍କୁ ଓଡ଼ିଶାର ଇଷ୍ଟ ଦେବତା ଶ୍ରୀ ଜଗନ୍ନାଥଙ୍କ ସହିତ ଅଭିନ୍ନ ଭାବରେ ଦେଖିଛନ୍ତି, ଏବଂ ସୂଚନା ଦେଇଛନ୍ତି ଯେ ତାଙ୍କର ଦେହାନ୍ତ ପରେ ସେ ଐଶ୍ୱରିକ ଦାରୁ ଭାବରେ ଆସି ନୀଳାଚଳରେ 'ଦାରୁବ୍ରହ୍ମ' ଭାବରେ ପୂଜିତ ହେଲେ । ଏ ଗୋଟିଏ ଦିଗ, କିନ୍ତୁ ଅନ୍ୟ ଦିଗ ରହିଛି । ଅର୍ଥାତ୍ ଶ୍ରୀକୃଷ୍ଣ ଜଣେ ଅତ୍ୟନ୍ତ ଚତୁର ବ୍ୟକ୍ତି, ଜଣେ ଅତ୍ୟନ୍ତ ଦକ୍ଷ ରାଜନୀତିଜ୍ଞ ଓ ସବୁ ପ୍ରକାର ଯୋଜନା କରିବାରେ ଅତ୍ୟନ୍ତ ପ୍ରବୀଣ । ସାରଳା ତାଙ୍କର ବହୁ ବିବରଣୀରେ ଶ୍ରୀକୃଷ୍ଣଙ୍କର ଏହି ଦ୍ୱୈତ ଚରିତ୍ରର ସୂଚନା ଦେଇଛନ୍ତି ।

ଯୁଧିଷ୍ଠିର । ଯୁଧିଷ୍ଠିର ମହାଭାରତର ନାୟକ, କିନ୍ତୁ ଶ୍ରୀକୃଷ୍ଣଙ୍କ ଚରିତ୍ର ପରି ତାଙ୍କ ଚରିତ୍ରରେ ମଧ ଦୁଇ ଭିନ୍ନ ଭିନ୍ନ ବିଭାବ ଯୁକ୍ତ ହୋଇଛି । ପ୍ରଥମେ, ପାଣ୍ଡବମାନଙ୍କ ମଧରେ ଶ୍ରେଷ୍ଠ ଓ ଧର୍ମ ଅବତାର, ତାଙ୍କ କାର୍ଯ୍ୟରେ ମିଥ୍ୟା ନାହିଁ, ସେ ସମ୍ପୂର୍ଣ୍ଣ ନିରପେକ୍ଷ, ନିଃସ୍ପୃହ, ତାଙ୍କ ପାଇଁ ଉଭୟ ବନ୍ଧୁ ଓ ଶତ୍ରୁ ସମାନ । ତାଙ୍କର ସାଧୁତା, ସତତା, ନୈତିକ ଦୃଢ଼ତା ଓ ନ୍ୟାୟପରତା ଅତୁଳନୀୟ । ସେ କେବେହେଲେ ଅଧର୍ମ ଓ ଅନ୍ୟାୟ ସହିତ ଆପୋଷ କରୁ ନ ଥିଲେ ଓ ସମସ୍ତେ ତାଙ୍କୁ ସ୍ୱତଃ ବିଶ୍ୱାସ କରୁଥିଲେ ଓ ଶ୍ରେଷ୍ଠ ବୋଲି ମାନି ନେଇଥିଲେ । 'ବିରାଟ ପର୍ବ'ରେ ଉତ୍ତମ କୁମାରର ଯୁଧିଷ୍ଠିରଙ୍କୁ ସ୍ତୁତିବାଦନରେ ଆମେ ଏହି ମାନସିକତାର ପ୍ରତିଫଳନ ଦେଖୁ :

ପ୍ରଥମେ ବନ୍ଦିଲା କୋନ୍ତଂଙ୍କ ଶ୍ରୀ ପଦ୍ମପାଦ ଗୋଟି
ଯେହି ଚରଣ ତଳେଟି ଲକ୍ଷେ ରାଜାଙ୍କର ଶିର ଲୋଟି ।
ତ୍ରଇଲୋକ୍ୟ ଠାକୁର ନାଥ ଜଗୁଜୀବନ ଦେବସ୍ୱାମୀ
ସେହି ଚରଣ ତଳେ ଯେ ଶ୍ରୀ ବାସୁଦେବ ପରିଣାମି ।

* * * * * *

ସୁରଭି କମଳ ନାଳ ପରାୟେ ଯାହାର ବେନି କର ଗୋଟି
ଯେ କର ନେଉଟାନ୍ତେ ନେଉଟାଇ ନବସୃଷ୍ଟି ।
ସ୍ୱାମୀ ଯୁଗାନ୍ତକ ଆରୋପଣ ଜାଣି ଯାହାର କଣ୍ଠତଟ
ଅନନ୍ତ କୋଟି ବ୍ରହ୍ମାଣ୍ଡର ଚିନ୍ତାମଣି ଘଟ ।
ରସାଣିଲା ମର୍କତ ଜାଣି ଅଧର ପ୍ରକାଶି
ଦ୍ୟାବୀ ପୃଥିବୀ ଯେଣେ ସିଦ୍ଧ ହୋଇ ଆସି ।

ପରେ ପରେ, ସେହି ପର୍ବରେ ରାଜା ବିରାଟଙ୍କର ବନ୍ଦନାରେ ଯୁଧିଷ୍ଠିର ମାନବ ନୁହନ୍ତି, ଦେବତାତ୍ମା :

ତୁ ଦେବ ନିରଂଜନ ଆତ୍ମା ଅବତାର
ତ୍ରଇଲୋକ୍ୟ ଚିନ୍ତାମଣି ପ୍ରକୃତି ଯାହାର ।
ତୁ ଦେବ ଅଜାତଶତ୍ରୁ ପର ଦୁଃଖେ ଚିନ୍ତା
ତୁ ଦେବ ଅବ୍ୟଗତ ଭୂତ ଭବିଷ୍ୟତ ଗ୍ୟାଂତା ।
ତୁ ଦେବ ଯୋଗେଶ୍ୱର ପରମ ବ୍ରହ୍ମ ଅବତାର
ତୁ ଦେବ ଖଣ୍ଡିବୁ ନାଥ ଅଶେଷ ମହୀଭାର ।

ଯୁଧିଷ୍ଠିର ଦୟା, କ୍ଷମା, ଅନୁକମ୍ପାର ଅବତାର । ଶାରୀରିକ ଅର୍ଥରେ ମଧ ସେ ଯଥେଷ୍ଟ ବଳବାନ, ଯେତେବେଳେ ତାଙ୍କର ଅନ୍ୟ ସମସ୍ତ ଭାଇ ହିମବନ୍ତକୁ ଅତିକ୍ରମ କରି ପାରିଲେ ନାହିଁ, ସେ ହିମବନ୍ତକୁ ଅତିକ୍ରମ କରି ଶିଖରକୁ ଉଠି ପାରିଲେ । କୁହାଯାଇପାରେ ଯୁଧିଷ୍ଠିର ସାରଳା ଦାସଙ୍କର ଆଧ୍ୟାତ୍ମିକ ଚିନ୍ତା ଓ ସାମାଜିକ ଆଦର୍ଶର ପ୍ରତୀକ । ସେ ଇଚ୍ଛାକୃତ ଭାବରେ ଯୁଧିଷ୍ଠିରଙ୍କ ବ୍ୟକ୍ତିତ୍ୱ ଓ ଚରିତ୍ରକୁ ଜୀବନର ପରିମାପ ଠାରୁ ଏକ ବୃହତ୍ତର ବିସ୍ତାର ଦେଇଥିଲେ । ଉଦ୍ଦେଶ୍ୟ, ଗୋଟିଏ ଉଚ୍ଚାଭିଳାଷୀ, ଜାଗ୍ରତ ଜାତିକୁ ସତେ ଯେପରି ସେ ଶକ୍ତି ଓ କ୍ଷମତାର ମୂଳ ସୂତ୍ର କେଉଁଠି ତାହା ଜଣେଇ ଦେବାକୁ ଚାହୁଁଥିଲେ । ଏହାସତ୍ତ୍ୱେ ସୁନାରେ ଖାଦ ପରି ସାରଳା ଦାସ ଯୁଧିଷ୍ଠିରଙ୍କ ଚରିତ୍ରରେ ସୀମିତ ହେଲେ ବି କିଛି କିଛି ନିମ୍ନ ପ୍ରବୃତ୍ତିର ସୂଚନା ଦେଇଛନ୍ତି, ଯାହାକି ମୁଖ୍ୟତଃ ମୂଳ ମହାଭାରତର ସୂଚନା ଅନୁଯାୟୀ । ଯେପରିକି ପଶାଖେଳ ପାଇଁ ତାଙ୍କର ତୀବ୍ର ଅଭିଳାଷ, ଯାହାକି ଗୋଟାଏ ସାଧାରଣ ଜୁଆଡ଼ିର ଇଚ୍ଛା ପରି, ଯେଉଁଥିରେ ହିତାହିତ ଜ୍ଞାନ ରହେ ନାହିଁ । ସେହିପରି ଦ୍ରୌପଦୀଙ୍କ ପ୍ରତି କୀଚକର ଅମର୍ଯ୍ୟାଦାକୁ ସେ କୌଣସି ଗୁରୁତ୍ୱ ନ ଦେବାର ମନୋଭାବ, ବା ଦ୍ରୋଣଙ୍କ ସହିତ ଅଶ୍ୱତ୍ଥାମା ସମ୍ପର୍କରେ ମିଥ୍ୟାଚାର, ବା ହିମବନ୍ତରେ ନିଜର ଭାଇ ଓ ସ୍ତ୍ରୀଙ୍କ ପ୍ରତି ନିଷ୍ଠୁର ବ୍ୟବହାର । ଜୀବନର ବାସ୍ତବତାରେ ଏସବୁ ସ୍ୱାଭାବିକ ଓ ଯୁଧିଷ୍ଠିରଙ୍କର ଚରିତ୍ରରେ ଏ ସ୍ୱାଭାବିକତାର ଆକାର ରହିଛି । କିନ୍ତୁ ସାରଳାଙ୍କର ଭାଗମାପ ଧାରାରେ ଯୁଧିଷ୍ଠିର ଆଦର୍ଶ ପୁରୁଷ ଓ ତାଙ୍କର ଆଦର୍ଶକୁ ଅନ୍ୟମାନେ ଅନୁକରଣ କରିପାରିବେ ଓ ଅନୁପ୍ରାଣିତ ହେବେ ।

ଭୀମ : ଭୀମଙ୍କଠାରେ ଏହି ଦ୍ୱୈତ ଗୁଣର ମିଶ୍ରଣ ଅତ୍ୟନ୍ତ ସ୍ପଷ୍ଟ । ତେଣୁ ସେହି ଦୃଷ୍ଟିରୁ ସେ ଯେ 'ମହାଭାରତ'ର ସବୁଠାରୁ ଆକର୍ଷଣୀୟ ଚରିତ୍ର ସେତିକି ନୁହେଁ, ସେ କୁହାଯାଇପାରେ, ସାରଳାଙ୍କ ଦ୍ୱାରା ସୃଷ୍ଟ ଏକ ସମ୍ପୂର୍ଣ୍ଣ ନୂତନ ଚରିତ୍ର । ଗୋଟିଏ ଦିଗରୁ ସେ ଅତ୍ୟନ୍ତ ସରଳ, କାହାରି ପ୍ରତି ମନ୍ଦ ଚିନ୍ତା ନାହିଁ, ବ୍ୟବହାରରେ କୌଣସି ଚଂଚକତା ନାହିଁ, କୂଟ ବୁଦ୍ଧିରେ କୌଣସି କାର୍ଯ୍ୟର ଯୋଜନା କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ, ଓ କୌଣସି ଆଦର୍ଶ ଚିନ୍ତା ବା ଜ୍ଞାନ ଗରିମାର କୌଣସି ଚିହ୍ନ ତାଙ୍କଠାରେ ନାହିଁ । ଅନ୍ୟ ଦିଗରେ ସେ କଠିନ ବାସ୍ତବବାଦୀ, ବୁଲେଇ ବଙ୍କେଇ ବଙ୍ଗେଇ କଥା କହିବା ତାଙ୍କର ଅଭ୍ୟାସ ନୁହେଁ । ସବୁବେଳେ ସମସ୍ତଙ୍କୁ ଠୋସ ଠୋସ କଥା । କୌଣସି ପୁରୁଣା ଶାସ୍ତ୍ରୀୟ କଥା ବା ପରମ୍ପରା ପ୍ରତି ତାଙ୍କର ସମ୍ମାନ ନାହିଁ ଓ ଯେତେବେଳେ ଯାହା ଦରକାର ସେ ଠିକ୍ ସେହିକଥା କରିବା ପାଇଁ ପ୍ରସ୍ତୁତ । ସେ ନିଷ୍ଠୁର, କଠୋର, ଅଶିଷ୍ଟ, ଓ ଶରଣ ପଶିଥିବା ଶତ୍ରୁର ସେ ଦ୍ୱିଗୁଣ କ୍ଷତି କରନ୍ତି । ସାରଳାଙ୍କ ବିଚାରରେ ତାଙ୍କର ଶକ୍ତି ଓ ସାହସ ଅଦ୍ୱିତୀୟ, ଓ ଯୁଦ୍ଧ କରିବା ପାଇଁ ତାଙ୍କର ଆଗ୍ରହ ଲିଭୁ ନ ଥିବା ନିଆଁ ପରି ସବୁବେଳେ ପ୍ରଜ୍ୱଳିତ ହୋଇ ରହିଛି । ଏହି ସମ୍ପର୍କରେ ଭୀମଙ୍କର ସ୍ପଷ୍ଟବାଦିତା ଓ ବାସ୍ତବବାଦୀ ମନୋଭାବର ଭଲ ଉଦାହରଣ ଆମେ ପାଉ 'ଆଶ୍ରମିକ ପର୍ବ'ରୁ । ଯୁଦ୍ଧ ପରେ ହସ୍ତିନାରେ ଶାନ୍ତି ବିରାଜମାନ କରୁଛି । କିନ୍ତୁ ଧୃତରାଷ୍ଟ୍ର ପୁତ୍ର ଶୋକରେ ମୁହ୍ୟମାନ ହୋଇ ରହିଛନ୍ତି – ''ଅପାର ଦୁଃଖ ଯେ ଆପଣେ ସୁମରଇ / କେସନେକ ପାଶୋରେ ତାହାର କାୟା ଯେ ଅଛଇ / ପୁତ୍ରଙ୍କର ଶତ୍ରୁ ଯେ ଦେଖଇ ଅନୁଦିନେ / କେହୁଣସି ଦିନ ଯେ ସୁଖ ନୋହିଲା ତା'ର ମନେ ।'' ଯୁଧିଷ୍ଠିର ରାଜା, ସେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ଖୁସି ରଖିବା ଓ ପୁତ୍ରଶୋକ ଭୁଲିଯିବା ପାଇଁ ଯଥାସାଧ ଚେଷ୍ଟା କରୁଛନ୍ତି – ''ଦେବର୍ଚ୍ଚନେ ଧୃତରାଷ୍ଟ୍ର ଗାନ୍ଧାରୀ ମାତ କୋନ୍ତୀ / ବଚନେ ଭୋଜନେ ସେ କରାନ୍ତି ତ୍ରିପୁତି ।... ପୁତ୍ରନ୍ତ ପାଶୋରିଲା ଯୁଝେଷ୍ଟି ଭଗତେ / ଯେକା ଯୁଝେଷ୍ଟି ହୋଇଲେ ତାହାଙ୍କୁ ଶତେ ପୁତ୍ର ।'' ଏହି ସ୍ଥିତି ଭୀମଙ୍କର ପସନ୍ଦ ହେଲାନାହିଁ; ସେ ଆଶଙ୍କା କଲେ ଯୁଧିଷ୍ଠିର ହୁଏତ ନିଜ ଉଦାରତାରେ ସମସ୍ତ ରାଜ୍ୟ ପୁଣି ଥରେ ଧୃତରାଷ୍ଟ୍ରଙ୍କୁ ସମର୍ପଣ କରିଦେଇ ପାରନ୍ତି । (''ଯେସନେକ ଜାଣି ଭୀମସେନ ଯେ କୋପଇ / ପୁଣିହିଁ ଅନ୍ଧକଙ୍କ ଯୁଝେଷ୍ଟି ରାଜ୍ୟ ସମର୍ପଇ ।'') ଭୀମଙ୍କର ବାସ୍ତବବାଦୀ ମନ ଏ ଅବସ୍ଥାକୁ ଗ୍ରହଣ କରିପାରିଲା ନାହିଁ । ଅସହ୍ୟ ଦୁଃଖ ସହି, ଅସଂଖ୍ୟ ବଂଧୁ ସହୋଦରଙ୍କୁ ମରାଇ ସେମାନେ ଯେଉଁ ରାଜ୍ୟ, ରାଜସମ୍ପତ୍ତି ଲାଭ କଲେ ତାକୁ ସେ ହାତଛଡ଼ା କରିବାକୁ ପ୍ରସ୍ତୁତ ନ ଥିଲେ । ଧୃତରାଷ୍ଟ୍ରଙ୍କର ସେମାନଙ୍କ ପ୍ରତି ଯେ ସଦିଚ୍ଛା ମନୋଭବ ଥିବ ଏକଥା ସେ ବିଶ୍ୱାସ କରିପାରିଲେ ନାହିଁ (''କେତେ କେତେ ଦୁଃଖ ଆମ୍ଭେ ପାଇଲୁ ଭ୍ରମି

ବନେ / ତେବେହେଁ ଧୃତରାଷ୍ଟ୍ରର ଦୟା ନ ବସିଲା ମନେ / ରାଜାର ଆଜ୍ଞା ଭ୍ରଷ୍ଟ କରିତ ନୁଆରି / ଆପଣାର ଶିରୀ ଦେଇ ପୋଷଇ ବଇରି ।") ସେ ସ୍ଥିର କଲେ ସେ ନିଜେ ଏହାର ଗୋଟାଏ ସମାଧାନ କରିବେ, ଓ ଠିକ୍ କଲେ ଏପରି ଅବସ୍ଥା ହେବା ଦରକାର ଯେ ଧୃତରାଷ୍ଟ୍ର ଓ ଗାନ୍ଧାରୀ ବାନପ୍ରସ୍ଥରେ ଯିବେ, ତାହାହିଁ ଏକମାତ୍ର ସମାଧାନ (''ଯେବା ଧୃତରାଷ୍ଟ୍ରକୁ କେମନ୍ତେ ଦେଖିବି / ଯେମନ୍ତ ରାଜ୍ୟ ଛାଡ଼ିବ ତେମନ୍ତ ଉପାୟେ କରିବି ।'')

ଭୀମଙ୍କର ଯେମିତି ନିଷ୍ପତ୍ତି ସେମିତି କାର୍ଯ୍ୟ । ସେ ଧୃତରାଷ୍ଟ୍ରଙ୍କ ପାଖକୁ ଯାଇ, ସେ କିପରି ତାଙ୍କର ପୁଅମାନଙ୍କୁ ଜଣ ଜଣ କରି ମାଇଲେ ସେକଥା ମନେପକେଇ ଦେଇ, ତାଙ୍କୁ ପରିହାସ କରି ଉତ୍ୟକ୍ତ କଲେ । ଭୀମଙ୍କର ଯୋଜନା ଫଳବତୀ ହେଲା । ଧୃତରାଷ୍ଟ୍ର ବାନପ୍ରସ୍ଥରେ ଯିବାପାଇଁ ଠିକ୍ କଲେ । କିନ୍ତୁ ପୁଣି ଗୋଳମାଳ । ଧୃତରାଷ୍ଟ୍ର କହିଲେ ସେ ବାନପ୍ରସ୍ଥରେ ଥିବା ସମୟରେ ପରଲୋକଗତ ପିତୃପୁରୁଷମାନଙ୍କୁ ଶ୍ରାଦ୍ଧ ଦେବେ ଓ ସେଥିପାଇଁ ଯୁଧିଷ୍ଠିର ଧନ ଦିଅନ୍ତୁ । ଯୁଧିଷ୍ଠିର ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ – "ଶ୍ରାଦ୍ଧ ଯେବେ କରିବେ ମୃତ୍ୟୁ ଲୋକମାନଙ୍କୁ / ନିଅନ୍ତୁ ଧନ ଭଣ୍ଡାର ବହି ସମର୍ପିଲି ତାଙ୍କୁ ।'' ଭୀମ ନିଜର ବ୍ୟବହାରିକ ଚିନ୍ତାରେ ସାଙ୍ଗେ ସାଙ୍ଗେ ପ୍ରତିବାଦ କଲେ, କହିଲେ ରାଜକୋଷର ଧନ ଶତ୍ରୁମାନଙ୍କୁ ଦିଆଯାଇପାରିବ ନାହିଁ, ଓ ଯଦି ମୃତ୍ୟୁଲୋକମାନଙ୍କୁ ଶ୍ରାଦ୍ଧ ଦେବାକଥା ସେ ଶ୍ରାଦ୍ଧ ସେମାନେ ବି ଦେଇପାରିବେ – ''ଭୀମସେନ ବୋଇଲେ ଏ କେବଣ ବେଭାର / ଶତ୍ରୁକୁ ଧନ ଦେବାର ନ ମିଳଇ ବିଚାର / ଜୀବନ୍ତେ ବଂଧୁ ସୋଦର ବୋଲି ଯେ ନ ବୋଇଲେ ଆମ୍ଭଙ୍କୁ / ମରି କିଂକେ ସହୋଦ୍ର ହୋଇଲେ ତୁମ୍ଭଙ୍କୁ.... ଯୁଗତେ ଶ୍ରାଦ୍ଧ ଯେବେ ହୋଇବ ମୃତୁଲୋକଙ୍କୁ / ଆମ୍ଭେ କିଂକେ ଶ୍ରାଦ୍ଧ ନ ଦେବାଟି ତାହାଙ୍କୁ ।'' ରାଜକୋଷରୁ ଧନ ଦେବା ବନ୍ଦ ହେଲା । କିନ୍ତୁ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ସୁଶାସନ ସମ୍ପର୍କରେ ଉପଦେଶ ଦେଲେ । ଯୁଧିଷ୍ଠିର ଖୁସି ହୋଇଗଲେ, କିନ୍ତୁ ଭୀମଙ୍କର ସହ୍ୟ ହେଲା ନାହିଁ। ସେ ଭାବିଲେ ଏ ଚାଟୁକତାପୂର୍ଣ୍ଣ କଥା :

ଶୁଣିଣ ହରଷ ଯେ ଧର୍ମ ନୃପମଣି
ଭୀମସେନ କୋପକଲା ଧୃତିରାଷ୍ଟ୍ର ବଚନ ଶୁଣି।
ଭୀମସେନ ବୋଇଲା ତାତ ତୁହି ସମସ୍ତ ବୁଦ୍ଧି ଜାଣୁ
ତୋହୋର ପୁତ୍ରଙ୍କ ଆଗେ କିମ୍ପେ ନ ବଖାଣୁ।
ପରକଇଁ ବଦ୍ୟ ଆପଣେ ହୋଇ ରୋଗୀ
ଦାରାଯେ ପ୍ରମତ୍ତ ହୋଇ କିସ ବୋଲାଉଛୁ ଯୋଗୀ।
ଯୁଝେଷ୍ଟି ଦେବେ ତ ସକଳ ରାଜବିଧିରେ ଗଣନା
କେଉଁଣ ଠାବରେ ତୁ ଦେଖିଲୁନି ଜଣା।

ଧୃତରାଷ୍ଟ୍ର ଚୁପ୍ ହୋଇଗଲେ, କଷା ବସନ ପିନ୍ଧି, ହାତରେ କମଣ୍ଡଳୁ ଧରି ସେ ଯେତେବେଳେ ବନକୁ ଯିବା ପାଇଁ ପ୍ରସ୍ତୁତ ହେଲେ ସେତେବେଳେ ମଧ ଭୀମ ମନ୍ତବ୍ୟ ଦେବା ପାଇଁ ଛାଡ଼ିଲେ ନାହିଁ :

ଭୀମସେନ ବୋଲଇ ତାତ ବୃଦ୍ଧ ହଂସ ପ୍ରାୟେ
ବଂଶବର୍ଗ ଭକ୍ଷିଣ ତପୋଧନ ବେଶ ହୋୟେ।

ଭୀମଙ୍କର ସ୍ପଷ୍ଟବାଦିତା ଓ ବାସ୍ତବ ବିଚାର, ଅନ୍ୟ ଭାବରେ ବିଦୁରଙ୍କ ମତରେ 'କ୍ଷତ୍ରୀବୃତ୍ତ'। ଭୀମଙ୍କ ବିରୁଦ୍ଧରେ ଧୃତରାଷ୍ଟ୍ରଙ୍କ ଅଭିଯୋଗର ଉତ୍ତର ଦେଇ ସେ କହନ୍ତି :

ପୃଥୀରେ ଯେତେକ କ୍ଷତ୍ରୀ ହୋଇଲାକ ଶ୍ରେଷ୍ଠ
ସକଳ କ୍ଷେତ୍ରୀଙ୍କର ଭୀମସେନ ଜ୍ୟେଷ୍ଠ।....
କ୍ଷତ୍ରୀବୃତ୍ତ ଦୂଷଣ ଯେ ଅଛଇ ତା'ର ତହିଁ
ଭୀମସେନ ସନ୍ତପଣ ପାଇବୁ ତୁ କାହିଁ।
କ୍ଷତ୍ରୀଙ୍କର ତେଜ ଯେ ଶରୀରେ ପ୍ରାଣ ଥାନ୍ତେ
ଶରୀରୁ କୋପ ଯେ ନ ଯାଇଁ କଦାଣ୍ଟିତେ।
ଅଗ୍ନି ଯେସନେକେ ଲିଭିଲେ ତା' ତେଜ ସରଇ

ତେଜ ଥାଆନ୍ତେ ଯେ ସକଳ ଦ୍ରବ୍ୟନ୍ତ ଦହଇ।
କ୍ଷତ୍ରୀବୃତ୍ତ ଯେବେ ବୋଲିବ ସଂସାରେ
ଭୀମସେନଇଂ ଆନ ନାହିଁନା ବିଚାରେ।

ଭୀମଙ୍କର ଚରିତ୍ରର ଏହି ବିଚାର ଆମେ ଅନ୍ୟ ଭାବରେ ଅନ୍ୟ ଏକ ପରିସ୍ଥିତିରେ ମଧ ଲକ୍ଷ୍ୟ କରି ପାରିବା । ପାଣ୍ଡବମାନଙ୍କର ଅଜ୍ଞାତ ବାସର ସମୟ, ବିରାଟଙ୍କର ରାଜପ୍ରାସାଦ, ଦ୍ରୌପଦୀ କାମାଶକ୍ତ କୀଚକ ଦ୍ୱାରା ପୀଡ଼ିତ ହୋଇ ଯୁଧିଷ୍ଠିରଙ୍କର ଉପଦେଶରେ ଭୀମଙ୍କ ପାଖକୁ ସାହାଯ୍ୟ ପାଇଁ ଆସିଛନ୍ତି। ରାତ୍ରି ପ୍ରାୟ ଶେଷ ହୋଇ ଆସିଲାଣି। ଭୀମ ନିଜର ରୋଷଶାଳରେ ଶୋଇଛନ୍ତି। ତାଙ୍କର ନିଃଶ୍ୱାସ ପ୍ରଶ୍ୱାସରେ ସେହି ବିସ୍ତୃତ ରୋଷଶାଳର ଚାଳ ଉଠୁଛି ପଡୁଛି ("ଭୀମସେନଙ୍କ ନିଶ୍ୱାସଘାତେ ଆକାଶକୁ ଉଡ଼ଇ ଚାଳ") । ଦ୍ରୌପଦୀ ଭୀମଙ୍କ ପାଖକୁ ଯାଇଁ ତାଙ୍କୁ ଉଠେଇବାକୁ ଚେଷ୍ଟା କଲେ। ବାରମ୍ବାର ଚେଷ୍ଟାରେ ମଧ ସେ ଉଠିଲେ ନାହିଁ। ଅସହାୟ ଅବସ୍ଥାରେ ଦ୍ରୌପଦୀଙ୍କର ଦୁଇ ଚକ୍ଷୁରୁ ଲୁହ ବହି ଭୀମଙ୍କ ଉପରେ ପଡ଼ିଲା। ଲୁହ ପଡ଼ିବାରୁ ଭୀମ ସାଙ୍ଗେ ସାଙ୍ଗେ ଉଠିବସିଲେ। ତାଙ୍କର ପ୍ରଥମ ପ୍ରତିକ୍ରିୟା ବିରକ୍ତି ଓ କ୍ରୋଧର :

ଲୁଅ ଜଳ ପଡ଼ନ୍ତେଣ ଭୀମସେନ ଉଠଇ ଚେତି
ଦ୍ରୌପଦୀର କେଶ ବୀର ଧଇଲା ତତ୍‌କ୍ଷଣାନ୍ତି
ଶ୍ରୀକରେ ବିଜେ କର୍ଣ୍ଣକଟାରୀ ବେଗେ ଘେନି
କେ ତୁ ପିଚାଶୁଣୀ ରାକ୍ଷସୀ ଡାକେଣୀ
ଆଲୋ ଲୋ ଡାଙ୍କଣୀ ତୋର ଯେତେକ ଭରସା
ଇଷ୍ଟ ଦେବତା ସୁମର ଛେଦିବଇଁ ତୋର ନାସା ।

ଦ୍ରୌପଦୀଙ୍କୁ ଜାଣି ସାରିବା ପରେ ଦ୍ୱିତୀୟ ପ୍ରତିକ୍ରିୟା ଆନନ୍ଦ, ତୃପ୍ତି ଓ କିଛି ପରିମାଣରେ ଗର୍ବ ଯେ ଦ୍ରୌପଦୀ ନିଜର କାମ ଅଭିଳାଷ ପୂରଣ କରିବା ପାଇଁ ତାଙ୍କ ପାଖକୁ ଆସିଲେ। ତୃତୀୟ ପ୍ରତିକ୍ରିୟା ଦ୍ୱିତୀୟ ସହ ଜଡ଼ିତ - ନିଜକୁ ଜଣେ ସଂଯମୀ, ଜ୍ଞାନବନ୍ତ ପୁରୁଷ ଭାବରେ ପ୍ରତିପାଦିତ କରିବା ପାଇଁ ଚେଷ୍ଟା ଓ ସେହି ସଂପର୍କରେ ଦ୍ରୌପଦୀଙ୍କୁ ଉପଦେଶ। ଦ୍ରୌପଦୀଙ୍କ ଭର୍ତ୍ସନାରେ ଭୀମଙ୍କ ସଂପର୍କରେ ଯାହା ସାଧାରଣ ଧାରଣା ତାହା ହିଁ ପ୍ରକାଶ ପାଇଛି :

ଦ୍ରୌପଦୀ ବୋଇଲେ ସ୍ୱାମୀ ତୁମ୍ଭେ ଅଟ ଯେ ମୂରୁଖ ଅପଣ୍ଡିତ
ଅବିବେକ ଅଟୁ ସଦାରେକ
ଯଥା ଅନରୂପେ ତଥା ବାକ୍ୟ ଭାଷି
ବାଇକି ତୁ ହୋଇଲୁ ତୋତେ ମୁଁ ଶୃଙ୍ଗାର ମାଗି ଆସି ।

ଦ୍ରୌପଦୀ ନିଜର ଆସିବା କାରଣ କହିଲେ ଓ ଭୀମଙ୍କର ଚତୁର୍ଥ ପ୍ରତିକ୍ରିୟା କୌଣସି ସଗର୍ବ ଉକ୍ତି ନୁହେଁ, ଜଣେ ବାସ୍ତବ ଜ୍ଞାନସଂପନ୍ନ ସାହସୀ, ବଳବାନ, ନିଷ୍ପାପର ଓ ବିଶ୍ୱସ୍ତ ବ୍ୟକ୍ତିର ସ୍ୱାଭାବିକ ପ୍ରତିକ୍ରିୟା - "ଦ୍ରୌପଦୀ ବୋଇଲେ ତୁ ଶୁଣସି ବ୍ରିକୋଦର / ଠାକୁରଙ୍କ ଆଜ୍ଞା ହୋଇଛି ଗୁପତେ ତାକୁ ମାର / ଭୀମସେନ ଉଷତ ହୋଇଲା ଏସନକ ବାକ୍ୟ ଶୁଣି / ମାରିବି କିଅଁକେ ସଖୀ ଆଜର ରାୟଣୀ / ହର ଇନ୍ଦ୍ର ବ୍ରହ୍ମା ରକ୍ଷା କରଇ ଯେବେ ତାହା / ମୋଡ଼ିବି ମୁଣ୍ଡ କୀଅଁକର ଉପାଡ଼ିବି ବେନି ବାହା ।"

ଭୀମଙ୍କର ଚରିତ୍ରରେ କୋମଳ ମନୋଭାବ ବା କୋମଳ ଆବେଗର ଚିତ୍ର ସାରଳା ପ୍ରାୟ ଦେଇନାହାନ୍ତି। ଖାଇବାରେ, ଶୋଇବାରେ ବା ଯୌନକ୍ରିୟାରେ ସେ ଅତ୍ୟନ୍ତ ପାରଙ୍ଗମ ବା ସାରଳାଙ୍କ ଭାଷାରେ ସବୁବେଳେ 'ଅତୃପ୍ତି' ଓ ସିଧା ସିଧା ରୋକଠୋକ କଥା କହିବା ବା କାମ କରିବା ତାଙ୍କର ପ୍ରକୃତି। ଏହା ସତ୍ତ୍ୱେ 'ସ୍ୱର୍ଗାରୋହଣ ପର୍ବ'ରେ ତାଙ୍କର କୋମଳ ଆବେଗର ଯେଉଁ ପରିଚୟ ମିଳେ ତାହା ଯେପରି ଆନନ୍ଦଦାୟକ ସେହିପରି ଆଶ୍ଚର୍ଯ୍ୟଜନକ। 'ସ୍ୱର୍ଗାରୋହଣ ପର୍ବ'ର ଶ୍ରେଷ୍ଠ ବ୍ୟକ୍ତି ଯୁଧିଷ୍ଠିର ଯେ ନିଜର ଧର୍ମ ପ୍ରତି ପ୍ରତିବଦ୍ଧତାରେ ଓ ଚରିତ୍ରର ଦୃଢ଼ତାରେ ସ୍ୱଦେହରେ ହିମବନ୍ତ ଅତିକ୍ରମ କରି ସ୍ୱର୍ଗକୁ ଯାଇ ପାରିଥିଲେ। କିନ୍ତୁ ନାୟକ ଭୀମ । ସେ ନିଜ ଚରିତ୍ରର ସ୍ୱାଭାବିକତା ଓ ମାନବିକତାରେ, ନିଜର ଶୋକ, ବେଦନା, ଅଭାବ ଅନୁଭବ ଓ ଅନ୍ତରଙ୍ଗତାରେ ଆମ ସମସ୍ତଙ୍କର ପ୍ରତିରୂପ, ଓ ଆମେ ତାଙ୍କୁ ମାନସିକତାର ଏପରି ଏକ ସ୍ତରରେ ଦେଖୁ ଯେଉଁ ସ୍ତର ଯୁଧିଷ୍ଠିର ତାଙ୍କର ସମସ୍ତ ଜ୍ଞାନ ସତ୍ତ୍ୱେ ପହଞ୍ଚି ପାରିନାହାନ୍ତି। ଦ୍ରୌପଦୀଙ୍କ ସଂପର୍କରେ ଉଦାହରଣ ଦିଆଯାଇପାରେ। ହିମବନ୍ତରେ ପ୍ରଥମେ ଦ୍ରୌପଦୀ ପଡ଼ିଗଲେ। ଭୀମ ବ୍ୟାକୁଳ ହୋଇ ଦ୍ରୌପଦୀଙ୍କି କୋଳ କରି ଯୁଧିଷ୍ଠିରଙ୍କୁ ରହି ସାହାଯ୍ୟ କରିବା ପାଇଁ ଅନୁରୋଧ କଲେ :

ଆସ ବୋଲି ରାୟେ ଦ୍ରୌପଦୀଙ୍କି ଗଲେ ଛାଡ଼ି
ପାଦ ଢ଼ଳି ଦ୍ରୌପଦୀ ପଡ଼ିଲେ ମୁହଁ ମାଡ଼ି ।
ସ୍ୱାମୀ ରଖ ରଖ ବୋଲି ଢ଼ଳି ପଡ଼ିଲେକ ସତୀ
କୋଳକରି ତୋଳି ବେଗେ ଧଇଲା ମାରୁତି ।
ଭୀମସେନ ଡାକ ଦିଅଇ ରାୟେ ବାହୁଡ଼ିଣ ଆସ
ପ୍ରାଣର ଭାବିନୀ ତୁମ୍ଭର ହେଉଛି ବିନାଶ ।

କିନ୍ତୁ ଯୁଧିଷ୍ଠିର ନିର୍ବିକାର । ତାଙ୍କର ଉତ୍ତର :

ଯୁଝେଷ୍ଠି ବୋଇଲେ ହୋ ଦ୍ରୌପଦୀକି ଛାଡ଼ିଆସ ଭୀମ
ଯେ ଯାହାର ଗତିରେ ନିର୍ଜିତ କଲା କର୍ମ ।
ଆସ ଆସ ଭୀମ ଛାଡ଼ ତାକୁ କୋଳ
ମାୟାମୋହ ବନ୍ଧନ ସେ ନୋହଇ ଯେତେବେଳ ।
କେ କାହାର ସୋଦରରେ କେ କାହାର ଭାରିଜା
କେ କାହାର ପୁତ୍ରବନ୍ଧୁ କେ କାହାର ଆତ୍ମଜା ।

କିନ୍ତୁ ଭୀମ ଯୁଧିଷ୍ଠିରଙ୍କ କଥା ମାନି ନେଇପାରିଲେ ନାହିଁ । ସେ ଦ୍ରୌପଦୀଙ୍କର କାର୍ଯ୍ୟ, ପ୍ରକୃତି, ସୌନ୍ଦର୍ଯ୍ୟ ଓ କିପରି ଅତ୍ୟନ୍ତ ବିଶ୍ୱସ୍ତ ଓ ଅନ୍ତରଙ୍ଗ ଭାବରେ ସେ ସବୁ ଭାଇମାନଙ୍କର ଦାୟିତ୍ୱ ନେଇଛନ୍ତି ସେ କଥା କହିଲେ, ଯୁଧିଷ୍ଠିରଙ୍କୁ ଏତେ ନିଷ୍ଠୁର ନ ହେବା ପାଇଁ ଅନୁରୋଧ କଲେ :

ଶୁଣିଣ ଭୀମସେନ ବୋଲଇ ଦୁଃଖ ମନେ
ଯେଡ଼େକ ବିପ୍ରୋହି କିମ୍ପେ ହୋଇଲୁ ରାଜନେ ।
ମହାଭୃତ୍ୟ ପଣେ ଯେ ତୋତେ କଲାକ ସେବା
ନିକଳଙ୍କ ନିର୍ଦ୍ଦୋଷୀ ଯେହାକୁ କେମନ୍ତେ ଛାଡ଼ିଯିବା ।

.........................

ସ୍ୱାମୀ ଚାମରିକି ନିନ୍ଦଇଟି ଯାହାର ଯେ କେଶ
ଲୁବୁଧେ ମଧୁକରେ ଯେ ନ ଛାଡ଼ନ୍ତି ଯାର ପାଶ ।
କୁସୁମ ନ ଗନ୍ଥଇ ମଥାକୁ ହୋୟେ ଭାରି
ଅଳଙ୍କାର ନ ବହଇ ଶରୀରକୁ ଭାରା ପାଇବ ବୋଲି ।

......................

ସ୍ୱାମୀ ଯେତେକ ଲକ୍ଷଣ ଜାଣି ଅଗ୍ନିରୁ ହେଲେ ଜାତ
କେମନ୍ତେ ଛାଡ଼ିବାକୁ ବଳଇ ତୁମ୍ଭର ସତ ।
ସୋମ ବଂଶକୁ ଯେ ଶତେଗୁଣେ ଗରୁହଂସୀ
ଆବର ଜୋ ଦେବ ଯେ ତୁମ୍ଭର ପାଟବଂଶୀ ।

.....................

ସ୍ୱାମୀ ପ୍ରିୟବନ୍ତୀ ଭାର୍ଯ୍ୟାକୁ ଯେଡ଼େକ ନିର୍ଦ୍ଦୟା
ଧର୍ମରାଜାପଣ କେଣେ ଗଲା ପାଷାଣ କଲ ହିୟା ।

କେବଳ ଦ୍ରୌପଦୀ ନୁହନ୍ତି, ସବୁ ଭାଇମାନଙ୍କ ସଂପର୍କରେ, ଏପରିକି ନିଜ ସଂପର୍କରେ ମଧ୍ୟ ଭୀମ ଓ ଯୁଧିଷ୍ଠିରଙ୍କର ସମାନ ସମାନ ପ୍ରତିକ୍ରିୟା । ଯୁଧିଷ୍ଠିରଙ୍କ ମତାମତ ଧର୍ମ ଓ ଦର୍ଶନର କଥା ଓ ସେହି ଦୃଷ୍ଟିରୁ ଆବେଗଶୂନ୍ୟ ଓ ନିରପେକ୍ଷ । କିନ୍ତୁ ଭୀମଙ୍କ ବକ୍ତବ୍ୟରେ ମାନବିକ ଆବେଗ **ସ୍ପଷ୍ଟ** - ଦୁଃଖ, ବେଦନା, ଶୋକ, ଆଶା, ବିଶ୍ୱାସ । ଯୁଧିଷ୍ଠିରଙ୍କୁ ବିଚାର କଲେ ଭୟ ଲାଗେ, ସମସ୍ତଙ୍କଠାରୁ ଦୂରରେ, ସଂପୂର୍ଣ୍ଣ

ନିସ୍ୱହ। କିନ୍ତୁ ଭୀମ ଏକାନ୍ତ ଭାବରେ ଅନ୍ତରଙ୍ଗ, ତାଙ୍କର ପୀଡ଼ା ଏହି ପୃଥିବୀରେ ବଞ୍ଚିଥିବା ପ୍ରତ୍ୟେକ ଲୋକର ପୀଡ଼ା। ଏହିଠାରେ ହିଁ ସାରଳାଙ୍କର ଭୀମର ବ୍ୟାସଦେବଙ୍କର ଭୀମଠାରୁ ପାର୍ଥକ୍ୟ - ମହାଭାରତର ସମଗ୍ର ବିସ୍ତାରରେ ଏକ ଅତ୍ୟନ୍ତ ଜୀବନ୍ତ ଓ ସ୍ମରଣଯୋଗ୍ୟ ଚରିତ୍ର।

ଦୁର୍ଯ୍ୟୋଧନ: ଦୁର୍ଯ୍ୟୋଧନ ଚରିତ୍ର ମଧ୍ୟ ସାରଳାଙ୍କର ଅନ୍ୟାନ୍ୟ ଚରିତ୍ର ପରି ଦ୍ୱୈତ ଗୁଣ ବିଶିଷ୍ଟ। ସଂସ୍କୃତ ମହାଭାରତର ଦୁର୍ଯ୍ୟୋଧନ ସହିତ ସାରଳାଙ୍କର ଦୁର୍ଯ୍ୟୋଧନର ଅନେକ ସାମଞ୍ଜସ୍ୟ ଅଛି, ଅନେକ ଭିନ୍ନତା ବି। ଗୋଟିଏ ଦିଗରୁ ସେ ପ୍ରତିନାୟକ, ଯୁଧିଷ୍ଠିରଙ୍କ ସଂପୂର୍ଣ୍ଣ ବିପରୀତ ଗୁଣବିଶିଷ୍ଟ। ସେ ଅତ୍ୟନ୍ତ ଅହଙ୍କାରୀ, ଗର୍ବୀ, ପ୍ରତିଶୋଧପରାୟଣ ଓ ନିଜର କାର୍ଯ୍ୟ ହାସଲ କରିବା ପାଇଁ ଯେ କୌଣସି ନିମ୍ନସ୍ତରକୁ ଯାଇପାରେ । ତା' ନିଜର ମାମୁଁ ବଂଶକୁ ରୁଦ୍ଧ ପାଷାଣ ଗୃହରେ ଅତି ନିଷ୍ଠୁର ଭାବରେ ମାରିଦେବା, ବା ନିଜର ଭ୍ରାତୃବଧୂ ଦ୍ରୌପଦୀଙ୍କୁ ସର୍ବ ସମକ୍ଷରେ ଉଲଗ୍ନ କରି ନିର୍ଯାତନା ଦେବା ଏହାର ଉଦାହରଣ। ଏ ଗୋଟାଏ ପ୍ରକାର ଦୂଷିତ ଆନନ୍ଦ ଯାହା ଆମେ ଦୁର୍ଯ୍ୟୋଧନର କାର୍ଯ୍ୟ ଓ ଚରିତ୍ରରେ ବାରମ୍ବାର ଦେଖୁ। କିନ୍ତୁ ସାରଳା ଦୁର୍ଯ୍ୟୋଧନ ଚରିତ୍ରରେ ଅନ୍ୟ ଦିଗର ମଧ୍ୟ ସୂଚନା ଦେଇଛନ୍ତି, ଯେଉଁଠି ସେ ପ୍ରତିନାୟକ ନୁହେଁ, ନାୟକ। ସେ 'ପଦ୍ମଗ ନାରାୟଣ', ଅର୍ଦ୍ଧ-ଐଶ୍ୱରିକ ବ୍ୟକ୍ତି। ତା' ପାଦରେ ପଦ୍ମ ଚିହ୍ନ, ହାତ ପାପୁଲିରେ ଶଙ୍ଖ ଚିହ୍ନ, ତା'ର ସ୍ପର୍ଶରେ ସାଧାରଣ ପ୍ରସ୍ତର ସୁବର୍ଣ୍ଣ ହୋଇଯାଏ ଓ ସେ ଲକ୍ଷ୍ମୀଙ୍କ ଦ୍ୱାରା ଅନୁଗୃହୀତ। ତା'ର ପାରିବାରିକ ଜୀବନ ଆଦର୍ଶ ସ୍ଥାନୀୟ, ତା'ର ଏକ ପତ୍ନୀ, ଭାନୁମତି। ସେ ନିଜ ସମ୍ମାନ ବିଷୟରେ ସବୁବେଳେ ସଜାଗ ଓ କଥାଦେଇ ସେ କଥା କେବେହେଲେ ଭାଙ୍ଗୁ ନ ଥିଲା । ନିଜର ବ୍ୟକ୍ତିଗତ କ୍ଷତି ସତ୍ତ୍ୱେ ସେ ଯୁଦ୍ଧ ସମୟରେ ଅର୍ଜୁନକୁ ନିଜର ରାଜକୀୟ ସ୍ୱର୍ଣ୍ଣମୁକୁଟ ଦେବା ଏହିପରି ଗୋଟିଏ ଘଟଣା। ଯୁଦ୍ଧରେ ସଂପୂର୍ଣ୍ଣ ପରାଜିତ ହୋଇ ନିଜର ୯୮ ଭାଇଙ୍କର ମୃତ୍ୟୁ ହେଲା ପରେ ମଧ୍ୟ ସେ ବିଦୁରଙ୍କର ଉପଦେଶରେ ପାଣ୍ଡବମାନଙ୍କ ସହିତ ସନ୍ଧି କରିବା ପାଇଁ ରାଜି ହେଲାନାହିଁ କାରଣ ଏ ମାନ ସମ୍ମାନର କଥା ଓ କ୍ଷାତ୍ର ଧର୍ମର ବିରୁଦ୍ଧ। ଅନ୍ୟାନ୍ୟ ଉଦାହରଣ ବି ଅଛି। ଯେପରି ଅଶ୍ୱତ୍‌ଥାମାକୁ ସେନାପତି ପଦରେ ବରଣ କରିବାକୁ ତା'ର ଅନିଚ୍ଛା, କାରଣ ଅଶ୍ୱତଥାମା ସତ୍ୟନିଷ୍ଠ ନୁହେଁ, ବା ବଳରାମଙ୍କ ଠାରୁ ସାହାଯ୍ୟ ନେବା ପାଇଁ ଅନିଚ୍ଛା, କାରଣ ତା'ର ସମ୍ମାନରେ ଆଞ୍ଚ ଆସିବ। ଯେଉଁ ଲୋକ ଯୋଗୁଁ ବା ଯେଉଁ ଲୋକର କାର୍ଯ୍ୟ ଫଳରେ ମହାଭାରତ ଯୁଦ୍ଧ ପରି ଭୟଙ୍କର ଯୁଦ୍ଧ ସଂଗଠିତ ହେଲା, ଯୁଦ୍ଧ ସଂପର୍କରେ ତା'ର ମତାମତ ଯେପରି ଉଦାର ମନୋଭାବାପନ୍ନ ସେହିପରି ବିସ୍ମୟକର -କୁହାଯାଇପାରେ ବର୍ତ୍ତମାନ ସମୟରେ ମଧ୍ୟ ଆଦର୍ଶସ୍ଥାନୀୟ। ଯେପରି 'ଉଦ୍‌ଯୋଗ ପର୍ବ'ରେ :

ମାନଗୋବିନ୍ଦ ବୋଇଲେ ଶୁଣ ହୋ ଧର୍ମସୁତ
ଭାଇ ଭାଇରେତ ଆମ୍ଭେମାନେ କରୁଛେଁ ସାଂଗ୍ରାମ
ସଭିଏ ଏକମନରେ କର ହୋ ନିୟମ।
କାହାରି ମନରେ କିଛି ହିଂସା କପଟ ନ ଧର
ଯେହା ହେଉଅଛି ଧର୍ମ ମହାଭାରଥ ସମର।
ଯେଥକଇଁ ସାକ୍ଷୀ ହୋଇଥିବେ ପ୍ରଭୁ ଦେବ ନାରାୟଣ
ଧର୍ମ ପ୍ରାମାଣରେ ହୋଇବ ଶେଷରେ ହାରଜିଣ।

......................

ସାଂଗ୍ରାମ କାଳେ ଯାହାକଇଁ ଯେ ପାରିବ ମାରି
ଯୁଦ୍ଧ ରହିଲେ ବୁଝିବ ନିଜ ମଇତ୍ର ପରି।
ହାସ ପରିହାସ ଖେଳା କରିବାକ ସେକାଳେ
କୁଟିଳତା ନ କରିବ କେହି ଅନ୍ତରାଳେ।

ଦ୍ରୌପଦୀ: ଦ୍ରୌପଦୀ ମହାଭାରତର ନାୟିକା - ବହୁଗୁଣ ବିଶିଷ୍ଟ ଅସାଧାରଣ ବ୍ୟକ୍ତିତ୍ୱ। ସାରଳା ଦାସ ନିଜ ଲେଖାରେ ଦ୍ରୌପଦୀଙ୍କୁ ସେହିପରି ଭାବରେ ଗ୍ରହଣ କରିବା ସାଙ୍ଗେ ସାଙ୍ଗେ ତାଙ୍କର ଚରିତ୍ରରେ ଆହୁରି ଅଧିକ ବିଭାବ ଯୁକ୍ତ କରିଛନ୍ତି। ଯେପରିକି, ସେ ମହାନ ଦେବୀ ମହାମାୟା, ନାରୀ ଆଦି ଶକ୍ତି, 'ଚଣ୍ଡୀପୁରାଣ'ର ଦେବୀ ଦୁର୍ଗାଙ୍କ ସହିତ ତୁଳନୀୟ। ସେ ପ୍ରଥମ ଜନ୍ମରେ 'କେତୁକା ଚଣ୍ଡୀ', ପରେ 'ଏକବଳା ଦୁର୍ଗା', 'ସଚି' ଓ ବର୍ତ୍ତମାନ ଜନ୍ମରେ ଯଜ୍ଞ ଅଗ୍ନିରୁ ଉତ୍ପନ୍ନ ହୋଇଥିବା 'ଯାଜ୍ଞସେନୀ', ଓ ତାଙ୍କର ପ୍ରକାଶ ଅନ୍ୟାୟ, ଅତ୍ୟାଚାର ଓ ଅମଙ୍ଗଳ ବିରୁଦ୍ଧରେ । ଏ ଗୋଟିଏ ଦିଗ, କୌରବ ରାଜସଭାରେ ଦ୍ରୌପଦୀଙ୍କ ନିର୍ଯାତନା ପରେ ରାଣୀ ଭାନୁମତୀଙ୍କର ଦ୍ରୌପଦୀଙ୍କ ପ୍ରତି

ଭକ୍ତି ନିବେଦନ ଏହି ଦିଗକୁ ସ୍ପଷ୍ଟ କରିଛି ('ସଭାପର୍ବ')

ଧାଡିକାରେ ଅନ୍ତପୁରୁଂ ବାହାରିଲେ ଭାନୁମତୀ
ଦ୍ରୌପଦୀ ଚରଣ ଚଳେ ବିନୟେ ଭଗତି ।
ଭୋ ମାତ ମାହେଶ୍ୱରୀ ତୁ ଅନାଦି ସିଦ୍ଧ ଅପର୍ଣ୍ଣା
ଦୁଷ୍ଟ କଉରବେ ଏ ମୂର୍ଖଜନେ ସିନା ।
ଅନାଦି ଶକତି ତୁ ମହା ଅନଙ୍କ ବିଦାରୀ
ଯୁଗକଳ୍ପ ବଞ୍ଚାଉ ତୁ ପରମ ମାହେଶ୍ୱରୀ

ପରେ ପରେ, ଧୃତରାଷ୍ଟ୍ରଙ୍କର ସ୍ତୁତିରେ ବି ସେହି ଏକା କଥା :

ପ୍ରସନ୍ନ ଅପର୍ଣ୍ଣା ମାଗୋ ଅନାଦି ସିଦ୍ଧ ଦଇବତୀ
ଶୂନ୍ୟ ବ୍ରହ୍ମାଣ୍ଡ ଭେଦି ଯାହାର ବିକାଶଇ ଜ୍ୟୋତି ।

ଅନ୍ୟ ଦିଗରେ ଦ୍ରୌପଦୀ ବହୁ ନାରୀ ଗୁଣ ମଣ୍ଡିତ - ନାରୀର ବେଦନା, ଅସନ୍ତୋଷ ଓ କ୍ରୋଧର ବହିଃପ୍ରକାଶ । ଅର୍ଥାତ୍ ସାରଳାଙ୍କ ବିଚାରରେ ଦ୍ରୌପଦୀ କେବଳ ଦୃଢ଼ ମାନସିକ ଶକ୍ତି ଓ ସୌନ୍ଦର୍ଯ୍ୟର ଅଧିକାରିଣୀ ନୁହନ୍ତି, ତାଙ୍କର ବହୁ ମାନସିକ ଗୁଣ ରହିଛି । ଯେପରି ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା, ସବୁ ବିଷୟରେ ନିରପେକ୍ଷ ମନୋଭାବ, ସହନଶୀଳତା ଓ କେବଳ ନିଜର ପରିବାର ନୁହେଁ, ପରିବାର ବାହାରେ ସମସ୍ତଙ୍କର ସୁଖ ଦୁଃଖ ପ୍ରତି ସମାନ ଭାବରେ ଚିନ୍ତା ଓ ବିଚାର । ଯେତେବେଳେ ସତ୍ୟଭାମା ଦ୍ରୌପଦୀଙ୍କ ଠାରୁ ଜାଣିବାକୁ ଚାହିଁଲେ ଯେ ସେ ଓ ତାଙ୍କର ସପତ୍ନୀମାନେ ଯେତେବେଳେ ଜଣେ ସ୍ୱାମୀଙ୍କୁ ସନ୍ତୁଷ୍ଟ କରିପାରୁ ନାହାନ୍ତି, ସେତେବେଳେ ସେ ଏକାକୀ କିପରି ପାଞ୍ଚ ପତିଙ୍କୁ ସନ୍ତୁଷ୍ଟ କରୁଛନ୍ତି, ଦ୍ରୌପଦୀଙ୍କ ଉତ୍ତର ଅତ୍ୟନ୍ତ ପ୍ରାସଙ୍ଗିକ - ଜଣେ ନାରୀ ନିଜ ସହିତ ଓ ସଂସାରର ଅନ୍ୟ ସମସ୍ତଙ୍କ ସହିତ ସଂପୂର୍ଣ୍ଣ ଶାନ୍ତିପୂର୍ଣ୍ଣ ମନୋଭାବରେ ସହାବସ୍ଥାନ କରୁଥିବାର ଚିତ୍ର କୁହାଯାଇପାରେ । ଭାରତୀୟ ସ୍ଥିତିରେ 'ଅନନୁସରଣୀୟ ନାରୀତ୍ୱ'ର ପ୍ରତିଛବି :

ବଦୟନ୍ତି ପାଞ୍ଚାଳୀ ଗୋ ଶୁଣ ସତ୍ୟଭାମେ
ପଞ୍ଚୁପତି ପ୍ରାପତେ ମୋତେ ପୂର୍ବର କର୍ମ ଅନୁକ୍ରମେ
ନ ଜାଣଇ ମଉଷଧି ନ ଜାଣଇ ମନ୍ତ୍ରଗୁଣ୍ଡି
ନୁହଇ ଜ୍ଞାନ ଦେଇ ମୁଁ ନ ଜାଣଇ ଭଣ୍ଡି ।
ବ୍ରତମାନେ ବ୍ରତନ୍ତି ମୋହୋର ନିଜ ପତି
ମୁହିଁ ବିଚାରି ଖଟଇ ତାହାଙ୍କର ପ୍ରକୃତି ।
ନିତ୍ୟ ସାଧ ଅର୍ଥେ ସାଧଇ ନିତ୍ୟକର୍ମ
ଅନୁବ୍ରତେ ମୋତେ ସଦୟେ ଇଚ୍ଛା ଦେବଧର୍ମ ।

.....................

ଦୁଃଖୀ ଅଭାଗ୍ୟବନ୍ତ ମୁଁ ନୁଆରଇ ଦେଖି
ଅଥବା ନିରାଶ ନୁଆସଇ ମୋହୋର ବାକି ।
ମିଥ୍ୟା ବାକ୍ୟ ନ ଆସଇ ମୋତେ ହାଦେ ଭଲେ
ସମସ୍ୟା ନ ଦିଅଇ ମୁଁ ଅସଜନ ଦେଖିଲେ ।
ମାତା ପିତା ସ୍ୱାମୀ ଗୁରୁ ଅତିଥି ଦେବତା
ଯେହାନ୍ତ ଆରାଧନା କରଇ ନିରିଭ୍ରାନ୍ତା ।....
ସ୍ୱାମୀଙ୍କି ଆଦି କରି ଦାସଦାସୀଗଣ ଯାୟେ
ସବୁନ୍ତି ମୋହର ହୃଦଗତେ ଯେକଧାୟେ । ('ବନପର୍ବ')

ସାରଳାଙ୍କ 'ମହାଭାରତ'ରେ ଦ୍ରୌପଦୀ ଏକ ଅସାଧାରଣ ନାରୀ ଚରିତ୍ର । ସେ ମହାନ୍, ରାଜକୀୟ କର୍ତ୍ତୃତ୍ୱପୂର୍ଣ୍ଣ ମହାରାଣୀ, ଯାହାଙ୍କୁ ସମସ୍ତେ

ମାନନ୍ତି ଓ ଭୟ କରନ୍ତି। ସେ ପୁଣି ପରିପୂର୍ଣ୍ଣ ଶାନ୍ତି ଓ ସ୍ଥିର ମନୋଭାବର ଅନନ୍ୟ ପାରିବାରିକ ନାରୀ ଯାହାଙ୍କୁ ସମସ୍ତେ ଭଲ ପାଆନ୍ତି ଓ ସମ୍ମାନ କରନ୍ତି।

ସାରଳାଙ୍କ 'ମହାଭାରତ' ଚରିତ୍ର ମାନଙ୍କର ଏକ ବିରାଟ ସମ୍ମିଳନୀ। ଏଠାରେ ପୁରୁଷ ଓ ସ୍ତ୍ରୀ, ପୁଣି ଯେଉଁମାନେ ପୁରୁଷ ବା ସ୍ତ୍ରୀ ନୁହନ୍ତି ସେମାନେ ବି, ଓ ସବୁପ୍ରକାର ପଦବୀ, ମର୍ଯ୍ୟାଦା ଓ ଅବସ୍ଥାରୁ ଲୋକେ ରହିଛନ୍ତି । ସ୍ତ୍ରୀ ଲୋକମାନଙ୍କ ଭିତରେ ଦ୍ରୌପଦୀଙ୍କ ବ୍ୟତୀତ ଆହୁରି ଅନେକ, ଯେପରି ଗଙ୍ଗା, କୁନ୍ତୀ, ଗାନ୍ଧାରୀ, ସୁଭଦ୍ରା ପ୍ରଭୃତି; ଅପେକ୍ଷାକୃତ କମ୍ ଗୁରୁତ୍ୱପୂର୍ଣ୍ଣ ଯେପରି ଉର୍ବଶୀ, ଚନ୍ଦ୍ରରେଖା, ଲକ୍ଷ୍ମୀ, ମାୟାବତୀ, ଭାନୁମତୀ, କାମାକ୍ଷୀ ପ୍ରଭୃତି - ଶତାଧିକ ସ୍ତ୍ରୀ ଲୋକ ଶତାଧିକ ଘଟଣାମାନଙ୍କରେ। ସେହିପରି ପୁରୁଷ - ଶାନ୍ତନୁ, ଭୀଷ୍ମ, ବ୍ୟାସଦେବ, ବିଦୁର, ଶକୁନି, କର୍ଣ୍ଣ ପ୍ରଭୃତିଙ୍କର ଠାରୁ ଆରମ୍ଭ କରି କୌରବ ଓ ପାଣ୍ଡବ ଭାଇମାନେ ଓ ସେମାନଙ୍କ ସହିତ ସଂପୃକ୍ତ ବା ମହାଯୁଦ୍ଧ ସହିତ ଜଡ଼ିତ ହୋଇଥିବା ଅସଂଖ୍ୟ ଅସଂଖ୍ୟ ବ୍ୟକ୍ତି। ଲକ୍ଷ୍ୟ କରିବାର କଥା ଏସବୁ ଚରିତ୍ର ଚିତ୍ରଣରେ ସାରଳା ସଂସ୍କୃତ ମହାଭାରତ ଉପରେ ଯେତେ ନିର୍ଭର ନ କରିଛନ୍ତି ତା'ଠାରୁ ବେଶୀ ନିର୍ଭର କରିଛନ୍ତି ତାଙ୍କ ସମୟର ଓଡ଼ିଶା ଓ ସମସାମୟିକ ସ୍ଥିତି ଉପରେ। ତେଣୁ ତାଙ୍କର ଚରିତ୍ରମାନେ କୌଣସି ପୂର୍ବବର୍ତ୍ତୀ ଚରିତ୍ରମାନଙ୍କର ପ୍ରତିଲିପି ନୁହନ୍ତି। ସେମାନେ ନିଜ ନିଜ ସ୍ୱାତନ୍ତ୍ର୍ୟରେ ଉଜ୍ଜ୍ୱଳ ଓ ୧୫ଶ ଶତାବ୍ଦୀ ଓଡ଼ିଶାର ବିଭିନ୍ନ ସ୍ତରର ଚରିତ୍ରସବୁ । ଗୋଟିଏ ଦିଗରେ ସେମାନେ ରାଜବଂଶ ବା ରାଜ ଦରବାରର ପଦାଧିକାରୀ ସମ୍ମାନିତ ବ୍ୟକ୍ତିମାନେ। ଅନ୍ୟ ଦିଗରେ ସେମାନେ ସବୁ ସାଧାରଣ ବ୍ୟକ୍ତି - ଜମିରେ ଯେଉଁମାନେ ଚାଷ କରନ୍ତି, ଯୁଦ୍ଧରେ ଯେଉଁମାନେ ଯୁଦ୍ଧ କରନ୍ତି, ଯେଉଁମାନେ ମଲ୍ଲ କୁସ୍ତୀ କରନ୍ତି, ଯେଉଁ ଯୋଗୀମାନେ ଗାଁ ଗାଁ ବୁଲନ୍ତି ବା ଯେଉଁ ଚାରଣ କବିମାନେ ଗାଁ ଗାଁ ବୁଲି ଗୀତ ଗାଆନ୍ତି, ସନ୍ନ୍ୟାସୀ, ବୈଷ୍ଣବ, ଗାଁ-କବିରାଜ, ଗଣତ୍କାର, ଗାଁର ଶିଳ୍ପୀମାନେ ଯେପରି ମାଟିକାମ କରୁଥିବା କୁମ୍ଭାର, କାଠ କାମ କରୁଥିବା ବଢ଼େଇ, ଲୁହା କାମ କରୁଥିବା କମାର ବା ଘର ତିଆରି କରୁଥିବା ମିସ୍ତ୍ରୀ। ଏହା ବ୍ୟତୀତ ଯେଉଁମାନେ ଗାଁକୁ ଗାଁ ବୁଲି ବେପାର କରନ୍ତି, ଏ ଗାଁରୁ ସେ ଗାଁ ଜିନିଷପତ୍ର ବୋହି ନିଅନ୍ତି ବା ନଈରେ ଲୋକମାନଙ୍କୁ ପାର ଉତ୍ତାର କରାନ୍ତି। ଅନ୍ୟଭାବରେ ବି ଚୋର, ଡକେଇତ, ମଦୁଆ, ବେଶ୍ୟା ଏମାନେ ବି। କୁହାଯାଇପାରେ ସାରଳାଙ୍କ ବିରାଟ ଗ୍ରନ୍ଥ ମହାକାବ୍ୟ ତ ଠିକ୍, ତା' ସହିତ ତତ୍କାଳୀନ ଓଡ଼ିଶାର ଜନଜୀବନ ଓ ଗାଁ ଗଣ୍ଡାର ଟିକିନିଖି, ଅତ୍ୟନ୍ତ ଅନ୍ତରଙ୍ଗ ଚିତ୍ର। ଏହାହିଁ ସାରଳାଙ୍କ 'ମହାଭାରତ'ର ଗୁରୁତ୍ୱ ଓ ସଂସ୍କୃତ ମହାଭାରତ ଠାରୁ ଏହାର ପାର୍ଥକ୍ୟ । ଏ ଗୋଟାଏ ବିରାଟ ସମାଜ ଓ ସାମାଜିକତାର ଚିତ୍ର।

ସାରଳାଙ୍କ ଲେଖାର ସଂଗଠନରେ ଆମେ ଦୁଇଟି ମନୋଭାବ ଲକ୍ଷ୍ୟ କରିପାରିବା । ଗୋଟିଏ ତାଙ୍କର ନିଜର ସଂପୃକ୍ତି। ଅର୍ଥାତ୍, ସେ ଯାହା କହୁଛନ୍ତି, ଲେଖୁଛନ୍ତି ବା ବର୍ଣ୍ଣନା କରୁଛନ୍ତି ପ୍ରତ୍ୟେକ ସହିତ ସେ ନିଜେ ଜଡ଼ିତ ହୋଇ ରହୁଛନ୍ତି। ତାଙ୍କର ନିଜର ରୁଚି, ପସନ୍ଦ, ମତାମତ ଆମେ ପ୍ରତ୍ୟେକଠିଁ ଦେଖିବାକୁ ପାଉଁ। ଅନ୍ୟଭାବରେ ସେ କୌଣସି ଘଟଣା, ବର୍ଣ୍ଣନା ବା ବ୍ୟକ୍ତି ସହିତ ସଂପୃକ୍ତ ନୁହନ୍ତି। ସେ କେବଳ ଅନ୍ୟମାନଙ୍କୁ କହୁଛନ୍ତି, ବର୍ଣ୍ଣନା କରୁଛନ୍ତି, ସେମାନେ କିପରି ବିଚାର କରିବେ ସ୍ଥିର କରନ୍ତୁ। ଏ ଗୋଟାଏ ପ୍ରକାର ନିରପେକ୍ଷତା, ସବୁ ବିଷୟରେ ସବୁ ଲୋକଙ୍କୁ ସଚେତ କରିବା, କିନ୍ତୁ ନିଜେ ଭାଗ ନ ନେବା । ସ୍ମରଣ କରାଯାଇପାରେ, ସାରଳାଙ୍କ ସମୟ ଗଜପତି କପିଳେନ୍ଦ୍ରଙ୍କ ସମୟ ଓ ଓଡ଼ିଶା ରାଜ୍ୟ ଓ ଓଡ଼ିଆ ଜାତିର ଏକ ବିଶିଷ୍ଟ ସମୟ। ସାରଳାଙ୍କ ଲେଖାର ପୃଷ୍ଠଭୂମିରେ ଏହି ସମୟର ଛାପ ରହିଛି। ତେଣୁ ସେ ନିଜ ସ୍ଥାନ, ଅଞ୍ଚଳ ଓ ରାଜ୍ୟ ବିଷୟରେ ଓ ସେସବୁର ଆପେକ୍ଷିକ ଗୁରୁତ୍ୱ ବିଷୟରେ ଯଥେଷ୍ଟ ସଚେତ, ଓ ତାଙ୍କର ମନୋଭାବରେ ଆମେ ଏହାର ପ୍ରତିଫଳନ ଦେଖୁ - ଗର୍ବ, ପ୍ରଫୁଲ୍ଲ ଓ ଆଶାବାଦୀ ମନୋଭାବ।

ଆରମ୍ଭରୁ ଏହାର ଆରମ୍ଭ ଅର୍ଥାତ୍ ଆରମ୍ଭରୁ ହିଁ ସେ ନିଜର ସ୍ଥାନ, ଅଞ୍ଚଳ ଓ ଭକ୍ତିଭାବନାର ସୂଚନା ଦେଇଛନ୍ତି। ପରେ ପରେ ସେ ବିଭିନ୍ନ ସ୍ଥାନ ସଂପର୍କରେ କହିବା ସମୟରେ ସେସବୁକୁ ବିଭିନ୍ନ ଦେବଦେବୀଙ୍କ ସହିତ, ପୁରାଣ ଓ ଇତିହାସ ସହିତ, ଓ ଲୋକକଥା ଓ ବିଭିନ୍ନ ଧର୍ମଧାରା ସହିତ ସଂଯୁକ୍ତ କରିଛନ୍ତି। ବାରମ୍ବାର ଓଡ଼ିଶାର ସୂଚନା ଆସିଛି, ଓଡ଼ିଶାର ପୁଣ୍ୟ ପୀଠସବୁ, ଯେଉଁଠି ଦେବତାମାନେ ଅଛନ୍ତି ଓ ଲୋକମାନେ ପୂଜା ଅର୍ଚ୍ଚନା କରିବାକୁ ଯାଆନ୍ତି। 'ବନପର୍ବ'ରେ ପାଣ୍ଡବମାନେ ବିଭିନ୍ନ ସ୍ଥାନ ଭ୍ରମଣ କଲାପରେ ଓଡ଼ିଶାକୁ ଆସିଛନ୍ତି ଓ ଓଡ଼ିଶାର ବହୁ ପୁଣ୍ୟ ସ୍ଥାନର ବିବରଣୀ ଆମେ ପାଉ। ଯେପରି ପୁରୀ (ନୀଳାଚଳ), ଭୁବନେଶ୍ୱର (ଏକାମ୍ରକାନନ), କୋଣାର୍କ(ଅର୍କତୀର୍ଥ) । ବିଶେଷକରି ପୁରୀରେ ଜଗନ୍ନାଥଙ୍କର ପୂଜା ଅର୍ଚ୍ଚନାର ଦୀର୍ଘ ବିବରଣୀ। ଏହା ବ୍ୟତୀତ ଅନ୍ୟାନ୍ୟ ତୀର୍ଥସ୍ଥାନ ବି, ଯେପରି ଯାଜପୁରର ମାତୃମୂର୍ତ୍ତି, ପ୍ରାଚୀ ତୀରର ଅଷ୍ଟଶମ୍ଭୁ ଓ ଗୋମୁଖ କେଶବ, ଢେଙ୍କାନାଳର ଶିଖରେଶ୍ୱର ଓ ଛତିଆର ଅମରାବତୀ । ବିଭିନ୍ନ ପୁଷ୍କରିଣୀ, ନଦୀ ଓ ପର୍ବତ ବି, ଯେପରି ବିନ୍ଦୁସାଗର, ଚିଲିକା, ମହାନଦୀ, ବୈତରଣୀ, ସୁବର୍ଣ୍ଣରେଖା, କପିଳାସ, ନୀଳଗିରି ପ୍ରଭୃତି। ସେଥିସହିତ ପ୍ରତ୍ୟେକ ତୀର୍ଥ ସ୍ଥାନରେ ପ୍ରଚଳିତ ଥିବା ଗଳ୍ପ ବା କିମ୍ବଦନ୍ତୀର ବିବରଣୀ । ସାରଳା ଓଡ଼ିଶା କଥା କହିବା ସମୟରେ 'ଭୃଥଖଣ୍ଡ' ଓ 'ଜମ୍ବୁଦ୍ୱୀପ' କଥା

ମଧ କହିଛନ୍ତି । କିନ୍ତୁ ସବୁବେଳେ ଓଡ଼ିଶା ବା ତାଙ୍କର ନିଜ ରାଷ୍ଟ୍ର 'ଓଡ଼ରାଷ୍ଟ୍ର' ହିଁ ପ୍ରାଧାନ୍ୟ ପାଇଛି । ମହାଭାରତର ମୁଖ୍ୟ ଚରିତ୍ର ସବୁ ହସ୍ତିନାପୁରର ହେଲେ ବି ସେମାନଙ୍କର କାର୍ଯ୍ୟାବଳୀ ପ୍ରାୟ କବିଙ୍କର ପ୍ରିୟଭୂମୀ ଉତ୍କଳରେ । ଏହା ବ୍ୟତୀତ ଅନ୍ୟାନ୍ୟ ସୂଚନା ବି ରହିଛି । ଲୋକଙ୍କର ଖାଦ୍ୟଅଭ୍ୟାସ, ପୋଷାକପତ୍ର, ଖେଳ କସରତ, ଆମୋଦ ପ୍ରମୋଦ, ଶିକ୍ଷା ଶିକ୍ଷାଗତ ପ୍ରଶିକ୍ଷଣ, ଜୀବନ ଯାପନର ଧାରା, ଅଭ୍ୟାସ, ଆଚାର ବ୍ୟବହାର, ବିଶ୍ୱାସ ଏପରିକି ଅନ୍ଧବିଶ୍ୱାସ, ମୋଟାମୋଟି ସାମାଜିକ ଜୀବନର ବହୁ ବିଭାଗ ହସ୍ତିନାପୁରର ନୁହେଁ, ଓଡ଼ିଶା ଓ ଓଡ଼ିଆ ଲୋକଙ୍କର । ସେହିପରି ବିଭାଘର, ପୂଜାପାର୍ବଣ, ଦେବ ଉପାସନା, ଅତିଥି ଚର୍ଚ୍ଚା, ଏପରିକି ଭ୍ରମଣ, ବ୍ୟବସାୟ ବା ଯୁଦ୍ଧ ବିଗ୍ରହର ନିୟମକାନୁନ ପ୍ରଭୃତିରେ ବି, କୁହାଯାଇପାରେ ସବୁପ୍ରକାର ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନରେ, ଓଡ଼ିଶୀକରଣ ବା ଓଡ଼ିଶାର ପ୍ରଭାବ ସ୍ପଷ୍ଟ ।

ସାରଳାଙ୍କର ଧର୍ମଧାରଣା ମଧ ସମାନଭାବରେ ବ୍ୟାପକ ଓ ଉଦାର । ପଞ୍ଚଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ଜୈନ ଓ ବୌଦ୍ଧ ଧର୍ମର ପ୍ରଭାବ ବହୁ ପରିମାଣରେ କମି ଆସିଲାଣି ଓ ଲୋକ ମାନସରେ ହିନ୍ଦୁ ଧର୍ମ ପ୍ରମୁଖ ସ୍ଥାନ ଅଧିକାର କଲାଣି । ସାରଳାଙ୍କର ଧର୍ମବିଶ୍ୱାସ ତତ୍କାଳୀନ ଧର୍ମଧାରା ଦ୍ୱାରା ପ୍ରଭାବିତ ହୋଇଥିଲା । ପ୍ରଥମ କଥା ସେ ସବୁ ଧର୍ମକୁ ସମାନ ଗୁରୁତ୍ୱ ଦେଉଥିଲେ, ଓ ବିଭିନ୍ନ ଧର୍ମ ଗୋଷ୍ଠୀର ଦେବଦେବୀମାନଙ୍କୁ ସମାନ ଭକ୍ତିରେ ଅର୍ଚ୍ଚନା କରୁଥିଲେ । କିନ୍ତୁ ଯେଉଁ ପ୍ରମୁଖ ଦେବଦେବୀଙ୍କ ପ୍ରତି ଆମେ ତାଙ୍କର ନିରବଚ୍ଛିନ୍ନ ଗଭୀର ଭକ୍ତିର ନିଦର୍ଶନ ପାଉ ସେମାନେ ହେଲେ ଶ୍ରୀକୃଷ୍ଣ, ଶ୍ରୀଜଗନ୍ନାଥ ଓ ଶ୍ରୀ ଦୁର୍ଗା । ଶ୍ରୀକୃଷ୍ଣ ବା ବାସୁଦେବ କୃଷ୍ଣ 'ମହାଭାରତ'ର ମୁଖ୍ୟଦେବତା ଓ 'ମହାଭାରତ'ର ସମସ୍ତ କାର୍ଯ୍ୟାବଳୀର ନିୟନ୍ତକ । ସେ ନାରାୟଣ ଓ ସେହିହିଁ ଜଗନ୍ନାଥ । କବି ମାନସିକ ସ୍ତରରେ କୃଷ୍ଣ, ନାରାୟଣ ଓ ଜଗନ୍ନାଥଙ୍କୁ ପରସ୍ପର ସହିତ ଏକୀଭୂତ କରିଛନ୍ତି ଓ ସେହି ଭାବରେ 'ମହାଭାରତ'ର ବିଭିନ୍ନ ସ୍ଥାନରେ ବନ୍ଦନା ଲେଖିଛନ୍ତି । 'ଉଦ୍‌ଯୋଗ ପର୍ବ'ରେ ଯେପରି, ଦ୍ରୌପଦୀଙ୍କର କୃଷ୍ଣଙ୍କୁ ଜଗନ୍ନାଥ ଭାବରେ ସମ୍ଭାଷଣ - ''ଦ୍ରୋପତୀ ବୋଇଲେ ଜଗନ୍ନାଥ ଯେବେ ତୋହୋର ମହିମା ସତ / ଯଦ୍ୟପି ଜଗନ୍ନାଥ ତୁ ଜାତଟି ମହତ / ଯଦ୍ୟପି ଜଗନ୍ନାଥ ତୁ ବାସୁଦେବ କୋଳେ ଜାୟେ / ଯଦ୍ୟପି ଜଗନ୍ନାଥ ଦେବକୀ ତୋହୋର ମାୟେ / ଯଦ୍ୟପି ପୁରୁଷୋତ୍ତମ ଅଟୁ ତୁ ପରମ ଯୋଗୀ / ଯଦ୍ୟପି ଶରଣ ମଙ୍ଗଳ ଦୁର୍ଦ୍ଧଂସ ପରିତ୍ୟାଗୀ...'' ବା ଶ୍ରୀକୃଷ୍ଣଙ୍କ ଅନୁଗ୍ରହରେ ଅନ୍ଧ ବ୍ରାହ୍ମଣ ଚକ୍ଷୁ ପାଇଲା ପରେ ଧୃତରାଷ୍ଟ୍ରଙ୍କ ନିକଟରେ ବିଦୁରଙ୍କର ସେହି ଅଲୌକିକ ଘଟଣାର ବର୍ଣ୍ଣନା -'' ପ୍ରତକ୍ଷେ ଅନ୍ଧର ଦିଶିଲା ବେନି ଛତୁ / ବୋଇଲା ସ୍ୱାମୀ ଜଗନ୍ନାଥ ତୁ ବିଜେ କରିଅଛୁ । ଅନ୍ଧ ଦେଖିଲାକ ଶଙ୍ଖଚକ୍ର ଗଦାପଦ୍ମ ଚତୁର୍ଭୁଜ / ଜଳଧର ମେଘ ପ୍ରାୟେ ସରୂପ ଦେବରାଜ / ...ବିଦୁରେ ବୋଇଲେ ଶୁଣ ହୋ ଧୃତିରାଷ୍ଟ ୟେ ବାସୁଦେବର ମହିମାଂ ଗୋଟି / ୟେ ବାସୁଦେବର ପ୍ରସାଦେ ଶତେଜନ୍ମର ଅନ୍ଧ ପଟଳ ଗଲା ଫିଟି / ଯୁଝେଷ୍ଟି ବୋଲିକରି ତୋର ଯେବଣ ପୁତ୍ର ଗୋଟି / ୟେହି ଜଗନ୍ନାଥ ତାହାର ଚରଣ ତଳେ ଲୋଟି /...।'' ପରେ ପରେ ଜଗନ୍ନାଥଙ୍କର ବନ୍ଦନା :

ଶ୍ରୀ ଜଗନ୍ନାଥ ସୁମର ନରେ ଫିଟୁ ହୋ ଦୁର୍ଗତି
ଶ୍ରୀ ଜଗନ୍ନାଥ ସୁମର ନରେ ଯମ କାଳଦଣ୍ଡରେ ନୋହୁ ଶାସ୍ତି ।
ଶ୍ରୀ ଜଗନ୍ନାଥ ସୁମର ନରେ ପ୍ରସର ହେଉ ବୁଦ୍ଧି
ଶ୍ରୀ ଜଗନ୍ନାଥ ସୁମର ନରେ ପ୍ରାପତ ହେଉ ଋଦ୍ଧିସିଦ୍ଧି ।...

ସେହିପରି ଯୁଦ୍ଧ କ୍ଷେତ୍ରରେ ଶୁଭସ୍ତମ୍ଭ ସ୍ଥାପନା ଓ ତହିଁ ମଧ୍ୟସ୍ଥ ପୁରୁଷକୁ ଉପଲକ୍ଷ କରି ନାରାୟଣ ଭାବରେ କୃଷ୍ଣଙ୍କର କାର୍ଯ୍ୟ - ''ଗୋବିନ୍ଦ ଆଜ୍ଞା ପ୍ରମାଣେ ଭୀମ ଧୁଶାସନ ବେନି / କୁଣ୍ଡଳା ନାମେ ପର୍ବତୁଂ ତୋତେ ସେହୁ ଯିବେ ଘେନି / ଶ୍ରୀକରେ ନାରାୟଣ ତୋତେ ପୋତିବେ ମଧ୍ୟସ୍ଥାନେ / ପାଇବୁ ପରମ ଗତି ବସିବୁ ନିଜ ସ୍ଥାନେ / ...ଶୁଣ ହେ ମନୁ ପୁରୁଷ ବଦୟନ୍ତି ବ୍ରହ୍ମ ବେତ୍ତା / ତୁ ଯେ ପୁଚ୍ଛା କଲୁ ଶୁଭ ସ୍ତମ୍ଭର ବାରତା / ବ୍ରହ୍ମାଙ୍କର ଶାପେ ସେ ମଧ୍ୟପୁରେ ଥିଲା / ନାରାୟଣଙ୍କ ଦ୍ରଶନେ ସେ ମୁକତି ହୋଇଗଲା /'' ପରେ ପରେ ନାରାୟଣ ପୁରୁଷଙ୍କର ସ୍ତୁତି :

ଜୟତୁ ନିରାଲମ୍ବ ନିରାକାର ମୂରତି
ଜୟତୁ ନିରାଲମ୍ବ ନାଥ ଶୂନ୍ୟେଣ ଉତପତ୍ତି ।
ଜୟତୁ ନିରାଲମ୍ବ ଶୂନ୍ୟ ଭୁବନ ବ୍ୟାପି
ଜୟତୁ ନିରାଲମ୍ବ ନାଥ ଅରୂପ ସ୍ୱରୂପୀ ।

ସେହିପରି ଦେବୀ ଦୁର୍ଗାଙ୍କ ପ୍ରତି ସାରଳାଙ୍କର ଅଗାଧ ଭକ୍ତି । 'ଝଙ୍ଖେଂଣ ପୁର ନିବାସୀ' 'ସାରୋଳା ଚଣ୍ଡୀ' କବିଙ୍କର ଇଷ୍ଟଦେବୀ ଓ

କବି ନିଜର 'ମହାଭାରତ' ଦେବୀଙ୍କୁ ହିଁ ବନ୍ଦନା କରି ଆରମ୍ଭ କରିଛନ୍ତି,

ଶ୍ରୀ ସାରୋଳା ଚଣ୍ଡୀ ନାମେ ସେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁଂ ଯେ ସାରୋଳା ଦାସ କବି ।
ପ୍ରସନ୍ନେଣ ଆଜ୍ଞା ମୋତେ ଦିଲେ ଶାକାମ୍ୱେରୀ
ଲଭ ତୁ କପିଳାସ ଶ୍ରୀ ମହାଭାରଥ କରି ।

'ମହାଭାରତ' ବିଭିନ୍ନ ସ୍ଥାନରେ ଦେବୀଙ୍କର ବର୍ଣ୍ଣନା ଓ ବନ୍ଦନାରେ ପୂର୍ଣ୍ଣ ଓ 'ଚଣ୍ଡୀ ପୁରାଣ' ସମଗ୍ର କାବ୍ୟ ଦେବୀଙ୍କୁ ଉତ୍ସର୍ଗିତ । ସାରଳାଙ୍କ ମତରେ ଧର୍ମରେ ବିଶ୍ୱାସ ମୁଖ୍ୟତଃ ମଣିଷର ଆଚାର ବ୍ୟବହାର ଓ ଅଭ୍ୟାସରେ ପ୍ରକାଶ ପାଇଥାଏ, ଓ ସେ ସମାଜରେ କିପରି ଭାବରେ ନିଜକୁ ଜଣେ ଦାୟିତ୍ୱପୂର୍ଣ୍ଣ ଓ ସମ୍ବେଦନଶୀଳ ବ୍ୟକ୍ତି ଭାବରେ ପ୍ରକାଶ କରିପାରେ ତା ଉପରେ ନିର୍ଭର କରେ । ଏ ଅଭ୍ୟାସ ଓ ଆଚାର ବ୍ୟବହାରରେ ସାଧାରଣ ଭାବରେ ବ୍ୟକ୍ତି ଯାହା ଯାହା ପାଳନ କରିବା ଉଚିତ ସେ ହେଲା, ନିଜକୁ ଶୁଦ୍ଧ ପୁତ ରଖିବା ଓ ଉପାସ ପ୍ରଭୃତି କରିବା, ଧର୍ମ ସ୍ଥାନ ସବୁ ପରିଦର୍ଶନ କରିବା, ସମୁଦ୍ରରେ ସ୍ନାନ କରିବା, ଧର୍ମ ଆଲୋଚନା ସବୁ ଶୁଣିବା, ପିତାମାତା ଓ ଗୁରୁଙ୍କର ଆଜ୍ଞା ପାଳନ କରିବା, କ୍ରୋଧ ମୋହ ଈର୍ଷା ପ୍ରଭୃତି ପରିତ୍ୟାଗ କରିବା, ଦେବଦ୍ୱିଜଙ୍କ ପ୍ରତି ଭକ୍ତି ପରାୟଣ ହେବା ଓ ନିଜର କାର୍ଯ୍ୟ ଓ ବାକ୍ୟରେ ସତ୍ୟଶୀଳ ହେବା ପ୍ରଭୃତି । ଏହାହିଁ ସାରଳାଙ୍କର ଧର୍ମପାଳନ ବିଷୟରେ ସାଧାରଣ ମତାମତ ହେଲେ ହିଁ, ନିର୍ଦ୍ଦିଷ୍ଟ ଭାବରେ, ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ବ୍ୟକ୍ତିମାନଙ୍କ ସମ୍ପର୍କରେ ତାଙ୍କର ମତାମତ ସ୍ପଷ୍ଟ । ଅର୍ଥାତ୍, କ୍ଷତ୍ରୀୟମାନେ ଯେଉଁମାନେ ଯୁଦ୍ଧ କରନ୍ତି କାର୍ଯ୍ୟ ଓ ବାକ୍ୟରେ ଆତ୍ମନିର୍ଭରଶୀଳତା ସେମାନଙ୍କର ଧର୍ମ; ସେହିପରି ରାଜାମାନଙ୍କର ଧର୍ମ ହେଲା ଶତ୍ରୁମାନଙ୍କ ବିରୁଦ୍ଧରେ ଦେଶକୁ ରକ୍ଷା କରିବା, ଧର୍ମ ସ୍ଥାନମାନଙ୍କୁ ଦୁଷ୍ଟ ଦୁର୍ବୃତ୍ତ ବ୍ୟକ୍ତିମାନଙ୍କ ଠାରୁ ନିରାପଦ ରଖିବା ଓ ଯୁଦ୍ଧରେ ନିର୍ଭୟ ହେବା; ଯୋଗୀମାନଙ୍କର ଧର୍ମ ଭୋଗ ବାସନା ନିବୃତ୍ତ କରିବା ଓ ଆତ୍ମସଂଯମ କରିବା; ଜ୍ଞାନୀ ଓ ବିଦ୍ୱାନମାନଙ୍କର ଧର୍ମ ମାନସିକ ଉଦାରତା ଓ ବୋଧଶକ୍ତିର ପ୍ରସାର; ଓ ସ୍ୱାମୀମାନଙ୍କର ଧର୍ମ ହେଲା ନ୍ୟାୟ, ନୀତି ଓ ନିଷ୍ଠାରେ ପରିବାର ପ୍ରତିପାଳନ କରିବା । ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ସାରଳାଙ୍କ ପାଇଁ ଧର୍ମ ବିଶ୍ୱାସ କେବଳ ଆଚାର ବ୍ୟବହାରର କଥା ନୁହେଁ, ବ୍ୟକ୍ତି-ଚରିତ୍ର ଓ ସ୍ଥିତିର ସମଗ୍ରତାର ଗୁରୁତ୍ୱପୂର୍ଣ୍ଣ ଅଙ୍ଗାଙ୍ଗୀ ଅଂଶ ଓ ଜୀବନ ପ୍ରତି ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ । ସାରଳାଙ୍କ ବିଚାରରେ ଏହି ଦୃଷ୍ଟିରୁ ଯୁଧିଷ୍ଠିର ହିଁ ସେହି ସର୍ବୋତ୍ତମ ଆଦର୍ଶ ବ୍ୟକ୍ତି ଯାହାଙ୍କର ଗଭୀର ଧର୍ମ ବିଶ୍ୱାସ ଯେ କେବଳ ତାଙ୍କର ଚରିତ୍ରର କେନ୍ଦ୍ରବିନ୍ଦୁ ତା ନୁହେଁ, ତାଙ୍କର ସମସ୍ତ କାର୍ଯ୍ୟ ଓ ଅନୁଭବକୁ ନିୟନ୍ତ୍ରିତ କରୁଥିଲା । ଏହି ପ୍ରସଙ୍ଗରେ ଯୁଧିଷ୍ଠିରଙ୍କ ଜନ୍ମ ସମୟରେ ପିତା ଧର୍ମ ଦେବତାଙ୍କର ଆଶୀର୍ବାଦ ସ୍ମରଣ କରାଯାଇପାରେ :

ପୁତ୍ର କୋଳେ ଧରି ବଦୟନ୍ତି କରତା
ଯେ ମଧ୍ୟ ଭୁବନେ ହେବୁ ତୁହି ସେ ଧର୍ମ ଦେବତା ।
ଯେ ମଞ୍ଚ ସ୍ୱର୍ଗେଣ ଦେବତାଯେ ହୋଇ ଯଦ୍ୟପି ଉତପତ୍ତି
ସମସ୍ତେ ହେଁ ତୋହୋର ଦାସ ତୁ ସବୁଙ୍କରି ଆଧିପତି ।
ନାରାୟଣ ଉତପତ୍ତି ହୋଇବେ ମଞ୍ଚପୁରେ
ସେ ହରି ଆରାଧନା କରିବେ ତୋହୋର ପୟରେ ।          ('ଆଦିପର୍ବ')

ସାରଳାଙ୍କ ସାମାଜିକ ଦର୍ଶନ ମଧ ଜୀବନ ପ୍ରତି ତାଙ୍କର ଉଦାର ମନୋଭାବପନ୍ନ ଦୃଷ୍ଟିର ପ୍ରତିଫଳନ । ସେ ଲୋକଙ୍କୁ ଉଚ୍ଚ ନୀଚ ଶ୍ରେଣୀ ଭାବରେ ଦେଖୁ ନ ଥିଲେ ବା ଜାତିଗତ ପ୍ରଭେଦ ବିଚାର କରୁ ନ ଥିଲେ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ତାଙ୍କ ପକ୍ଷରେ ସମସ୍ତେ ସମାନ । ତେଣୁ ଉଚ୍ଚ ଜାତିର ବ୍ରାହ୍ମଣ ବା ନୀଚ ଜାତିର ଅରଣ୍ୟ ଅଧିବାସୀର ଖାଦ୍ୟ ଭଗବାନଙ୍କ ପାଇଁ ସମାନ ରୁଚିକର, ବା ବ୍ରାହ୍ମଣ ବାସୁ ଓ ଶବର ଜାରାର ଉତ୍ତରାଧିକାରୀ ମାନଙ୍କର ଜଗନ୍ନାଥଙ୍କୁ ପୂଜା କରିବାର ସମାନ ସମାନ ଅଧିକାର, ବା ମଧ୍ୟମ ପାଣ୍ଡବ ଭୀମ ହାତରେ ଧାନ କାଟି, ଚାଉଳ ବାହାର କରି, ରୋଷେଇ କରି ଶିଖରେଶ୍ୱରଙ୍କୁ ଭୋଗ ଦେବାରେ ଅସ୍ୱାଭାବିକତା କିଛି ନାହିଁ । ଅର୍ଥାତ୍, ସେ ଯେ ହୁଅନ୍ତି, ଉଚ୍ଚ ବା ନୀଚ ଶ୍ରେଣୀର ପ୍ରତ୍ୟେକର ନିଜ କାର୍ଯ୍ୟ ପାଇଁ ନୈତିକ ଦାୟିତ୍ୱ ରହିଛି, ଓ ପ୍ରତ୍ୟେକ ନିଜର କାର୍ଯ୍ୟ ପାଇଁ ହିସାବ ଦେବା ପାଇଁ ବାଧ୍ୟ । ତେଣୁ ଯେହେତୁ ଯୁଧିଷ୍ଠିର ଗୋଟିଏ ନିରୀହ ବେଙ୍ଗକୁ ମାରି ଦେଇଥିଲେ, ସେହି ଯୋଗୁହିଁ ରାଜା ବିରାଟ ତାଙ୍କୁ କପାଳରେ ପଶାକାଠିରେ ଆଘାତ କଲେ । ଜଣେ ଆଦର୍ଶ ଓ ଦାୟିତ୍ୱ ସଂପନ୍ନ ରାଜା କିଏ ? ଏ ବିଷୟରେ ଭୀଷ୍ମଙ୍କର ଉପଦେଶକୁ ଉପଲକ୍ଷ କରି ସାରଳାଙ୍କର ମତ :

ରାଜ୍ୟ କର ଯେବେ ବାବୁ ଧର୍ମ ପ୍ରତିପାଳି
ଅଧର୍ମ କ୍ଷଣେ ହେଁ ନ ସହିବଟି ମହୀଆଳି
ପରଜା ପାଳିବୁ କେହି ନୋହିବେଟି ଦୁଃଖୀ
ପ୍ରଜାଂକ ରକ୍ଷଣେ ସିନା ରାଜା ହୋଏ ସୁଖୀ
ନ୍ୟାୟେ ପ୍ରଜାନ୍ତ ପାଳିଲେ ଇନ୍ଦ୍ରକରେ ବୃଷ୍ଟି
ରାଜ୍ୟ ପ୍ରତିପାଳିଲେ ପରଜାଂକୁ ପଡଇ ଅରିଷ୍ଟି ।
ପ୍ରଜା ପ୍ରତିପାଳନଟି ରାଜାର ସର୍ବବିଧି
ପରଜା ଅତୁଟ ହୋଇଲେ ରାଜାକୁ ହୋଅଇ ସକଳ ସିଦ୍ଧି ।
('ଶାନ୍ତି ପର୍ବ')

ଅନ୍ୟତ୍ର, ଅନ୍ୟ ପରିସ୍ଥିତିରେ, ଧୃତରାଷ୍ଟ୍ରଙ୍କର ସମାନ ଉପଦେଶ :

ଇନ୍ଦ୍ର ଯେଉଁପରି ପାଳେ କରିଣ ସୁବୃଷ୍ଟି
ରାଜା ସେହିପରି ଯେ ପାଳଇ ନିଜ ସୃଷ୍ଟି ।....
ପୁରୁରବା ଜାନୁଘଣ୍ଟ ପ୍ରଶୁରାମ ବଳୀ ବେଣୁ ମାନଧାତା
ପରଜାର ଯଶ ବୋଲନ୍ତେ କଳ୍ପେ କଳ୍ପେ ଜୀବନ୍ତା ।
ବାବୁ ପ୍ରଜାହିଁ ପାଳିଲେ ଭୋଗ୍ୟ କରଇ ରାଜ୍ୟ
ପ୍ରଜାଂକ କଲ୍ୟାଣେ ରାଜାର ହୁଅଇ ଅଇଶ୍ୱର୍ଯ୍ୟ । ('ଆଶ୍ରମିକ ପର୍ବ')

ସାରଳାଙ୍କ ମତରେ ରାଜ୍ୟର ସମୃଦ୍ଧି ଧନ ସଂପଦରେ ନ ଥାଏ। ଥାଏ ନୈତିକ ଓ ଆଧ୍ୟାତ୍ମିକ ଗୁଣରେ ଓ ରାଜା କେତେଦୂର ଦକ୍ଷତାର ସହିତ ପ୍ରଜାପାଳନ କରୁଛନ୍ତି ଓ ସେମାନଙ୍କର ସୁଖ ଦୁଃଖ ବୁଝି ପାରୁଛନ୍ତି । କାରଣ ନୈତିକ ଓ ଆଧ୍ୟାତ୍ମିକ ଗୁଣ ବ୍ୟତୀତ କୌଣସି ସମାଜ ଉନ୍ନତି କରି ପାରିବ ନାହିଁ କି ସ୍ଥିର ହୋଇ ପାରିବ ନାହିଁ। ଅତୀତର ଆଦର୍ଶ ରାଜାମାନେ ସେହି ଯୋଗୁଁହି ଆଦର୍ଶ, ଯେ ସେମାନେ ଅର୍ଥ ବଳ ବା ବାହୁ ବଳରେ ନୁହେଁ, ନିଜର ନୈତିକ ଓ ଆଧ୍ୟାତ୍ମିକ ବଳରେ ହିଁ ସୁଶାସନ ଦେଇ ପାରୁଥିଲେ ।

ସାରଳା ଦାସ ତିନୋଟି ଗ୍ରନ୍ଥ ଲେଖିବାକୁ ଯୋଜନା କରିଥିଲେ - ରାମାୟଣ, ଦେବୀ ଭାଗବତ ଓ ମହାଭାରତ । ସେ ଯେଉଁ ସମୟରେ ବଞ୍ଚିଥିଲେ ସେହି ଗୌରବମୟ ସମୟର ଶକ୍ତି, ଦମ୍ଭ ଓ ଉଚ୍ଚାଭିଳାଷ ତାଙ୍କର ଗ୍ରନ୍ଥମାନଙ୍କରେ ପ୍ରତିଫଳିତ ହୋଇଛି, ଓ ସେ ପ୍ରଥମ ଥର ପାଇଁ ଓଡ଼ିଆ ଜାତିର ପରିଚୟ ପ୍ରତିଷ୍ଠା କଲେ । ସେ ଦର୍ଶନ, ଧର୍ମ, ରାଜନୀତି, ସମାଜନୀତି, ପ୍ରଭୃତି ବହୁ ସୂତ୍ରରୁ ନିଜର ବକ୍ତବ୍ୟ ସଂଗ୍ରହ କରିଥିଲେ, ଓ ଜୀବନ ପ୍ରତି ତାଙ୍କର ଦୃଷ୍ଟି ଭଙ୍ଗୀରେ ସହନଶୀଳତା, ଧୀରତା ଓ ମତିସ୍ଥିରତା ସହିତ ମନର ସନ୍ତୋଷ ଓ ଆନନ୍ଦ ଜଡ଼ିତ ହୋଇ ରହିଥିଲା । ବ୍ୟକ୍ତି, ଗୋଷ୍ଠୀ ଓ ରାଜ୍ୟ, ଏ ସବୁକୁ ସେ ତା'ର ସମଗ୍ରତାରେ ବିଚାର କରୁଥିଲେ ଓ ସମ୍ପୂର୍ଣ୍ଣତା ମାନବ ଜୀବନର ଲକ୍ଷ୍ୟ ହେବା ଉଚିତ ବୋଲି ତାଙ୍କର ମତ ଥିଲା । ସାରଳା ଦାସ ୫୦୦ ବର୍ଷ ତଳେ ତାଙ୍କର ସମସାମୟିକ ମାନବିକ ସ୍ଥିତି ଉପରେ ନିର୍ଭର କରି ନିଜର ଲେଖାସବୁ ଲେଖିଥିଲେ । କିନ୍ତୁ ତାଙ୍କର ଲେଖାସବୁକୁ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ବା ସମୟରେ ସୀମିତ କରି ରଖିବା ଠିକ୍ ହେବ ନାହିଁ । ତାଙ୍କର ସୃଜନୀ ଶକ୍ତି, ଜୀବନର ବିଶ୍ଳେଷଣ, ଜୀବନର ବିଭିନ୍ନ ଆୟତନର ବିଚାର ଓ ସଂଗଠନର ଦୃଢ଼ତା ଓ ନମନୀୟତାରେ ଆମେ ଅନନ୍ୟ ଆଧୁନିକ ମନୋଭାବ ଦେଖୁ । ସାରଳା ଦାସ ପଢ଼ିବା ସମୟରେ ଆମେ ଭୁଲିଯାଉ ଯେ ସେସବୁ ୫୦୦ ବର୍ଷ ତଳେ ଲେଖା ଯାଇଥିଲା । ତାଙ୍କର ଅଭିଜ୍ଞତା ଆମର ଅଭିଜ୍ଞତା ହୋଇଯାଏ, ତାଙ୍କର ଆନନ୍ଦ ଓ ଶୋକ ଆମର ଅନୁଭବରେ ମିଶି ଆମର ଆନନ୍ଦ ଓ ଶୋକ ହୋଇଯାଏ । ଏହାହିଁ ସାରଳା ସାହିତ୍ୟର ପ୍ରଧାନ ବିଶେଷତ୍ୱ ।

ଯତୀନ୍ଦ୍ର ମୋହନ ମହାନ୍ତି

# ସାରଳା ମାଳଶ୍ରୀ

ଆପଦେ ଖଣ୍ଡନୀ ମାଗୋ ବିପଦ ନାଶେନୀ
ଦୁଃସହ ଦୁର୍ଗତିରୁ ଫେଡ଼ କାନ୍ତାୟେନୀ ।
ପରମ ଯୋଗେଶ୍ୱରୀ ଗୋ ଆଦି ଯେ ଅପର୍ଣ୍ଣା
ମହାମାୟେ ମାହେଶ୍ୱରୀ ଅନାଦି ଅନ୍ନପୂର୍ଣ୍ଣା ।
ଦୁର୍ଗତି ତାରେଣୀ ମାଗୋ ଆପଦ ଖଣ୍ଡଣୀ
ଦୁଃସହ ଦୁର୍ଗତି ନାଶି ଉଦ୍ଧର ଗୋସାମଣୀ ।
ବିଂଝଗିରି ବାସେନୀ ମାଗୋ ପରଦୁଃଖେ ଦୁଃଖି
ଦୁର୍ଗତି ତାରେଣୀ ମାଗୋ ଶରଦ ଚନ୍ଦ୍ରମୁଖୀ ।
ଲୋହିତ କର୍କଶ ବଦନୀ ମାଗୋ ଅଭୟେ ମଙ୍ଗଳା
କରୁଣା ବତ୍ସଳୀ ମାଗୋ ତୁହି ସେ ସର୍ବମଙ୍ଗଳା ।
ଜଗତର ମାତ ଗୋ ରୁଚିର ମାତଙ୍ଗୀ
ଜଗତ ଜନନୀ ମାଗୋ ଭବବୃନ୍ଦ ସଙ୍ଗୀ ।
ଯୋଗେ ଯାଗେଶ୍ୱରୀ ମାଗୋ ମହାଜ୍ଞାନରୂପୀ
ବ୍ୟାଘ୍ର ମୃଗ ଶାର୍ଦ୍ଦୂଳ ଚଢ଼ି ଗଗନରେ କ୍ଷେପି ।
ପ୍ରଫୁଲ୍ଲ ଅରବିନ୍ଦ ଚରଣ ତଳ କାନ୍ତି
ଡାକି ଡମ୍ବରୁ ମାଗୋ ବିକସିତ ନେତ୍ରୀ ।
ଜଳଧର ମେଦୁର ଜିଣି ଯାହାର ଅଙ୍ଗ ଭାବ
ସର୍ବାଙ୍ଗ ସୁନ୍ଦେରୀ ମାଗୋ ମୋହନୀ ସର୍ବଦେବ ।
ତକ୍ଷଣେ ବାତୁଳ ମାଗୋ ତକ୍ଷଣେ ଗଗନ କ୍ଷେପି
ୟେକ କାୟା ଅନ୍ତେ ମାଗୋ ଅର୍ଦ୍ଧକାୟା ବ୍ୟାପି ।
ଶ୍ୟାମ ରୁଚିର ନେତ୍ରୀ ବିକସିତ ନେତ୍ରା
କାମିନୀ କାମସେଣା ଆବର ଜଗତ ମାତା ।
ମମ ସର୍ବ ପାପ ମାଗୋ ମମ ଆପଦ ଖଣ୍ଡି
ସଦା ସନ୍ତରି ଦେଉ ମାଗୋ ମଙ୍ଗଳ ଚଣ୍ଡୀ ।
ଦଧି ବାମନ ଅନୁକୂଳ ସମସ୍ତ ଅନୁକୂଳେ
ଜଗତ୍ର ୟେକେ ଯାତ୍ରା ମାଗୋ ତୁହି ସର୍ବ ମଙ୍ଗଳେ ।
ତବ ପଦ୍ମପାଦେ ଯେ ବିନୟ ଭଗତି
ଜୟ ଜୟ ଦୁର୍ଗା ମାଗୋ ଅନ୍ନପୂର୍ଣ୍ଣା ପାର୍ବତି ।
କରନ୍ତି ରଣେ ଯେ ବିନୟେ ଦୟିନି
ବଦନ୍ତି ସାରଳା ଦାସ କବି ଶୂଦ୍ର ମୁନି ।

# ସ୍ଥାନ

ଜମ୍ବୋ ଦ୍ୱୀପ ଭ୍ରଥ ଖଣ୍ଡ ଓଡ଼ ରାଷ୍ଟ୍ର ମଣ୍ଡଳେ
ଉତ୍ପଳେଶ୍ୱର ଲିଂଗ ଚିତ୍ରଉତ୍ପଳା ନଦୀର ଦକ୍ଷିଣ କୂଳେ ।
ଜଗନ୍ତାର ନିଜ ଭୂମି ଯାଯନଗ୍ରି ଗୁପତ ବାଣରାସି
କୁଶସ୍ଥଳୀ ଦ୍ୱାରିକା କ୍ଷେତ୍ର ପୁଣ୍ୟବାସୀ ।
ଶ୍ରୀ ଯମେଶ୍ୱର ଲିଂଗ ମଉଦଧିର ତଟେ
ନୀଳ ସୁନ୍ଦର ପର୍ବତ ନୀଳ କଳ୍ପବଟେ ।
ବିଜୟେ ରାମକୃଷ୍ଣ ସଉଭଦ୍ରା ରୂପେ ବ୍ରହ୍ମା
ଚାରିଲକ୍ଷ ବତିଶି ସହସ୍ର ବରଷକୁ ଯୋଗ ଲୟେ ମହାତମା ।
କଳି କାଳ ଧ୍ୱଂସିଣ ଭୋଗେଣ କୋଟି ପୂଜା
ପ୍ରକାନ୍ତିତେ ଖଟଇଂ ଶ୍ରୀ କପିଳେଶ୍ୱର ମହାରାଜା ।
ଶ୍ରୀ ନୀଳ ସୁନ୍ଦର ଗିରି ଉତ୍ତର କଛାଡ଼େ
ସାର ଭୂମି ଭ୍ରଥ ଖଣ୍ଡ ପୂର୍ବଦିଗ ଇଶାନ୍ୟ ଆଡ଼େ ।
ଚନ୍ଦ୍ରଭାଗା ନାମେଣ ଯେକଇ ନଦୀ ଗୋଟି
ବୃଦ୍ଧମାତା ଗଂଗାଉ ସେ ମଉଦଧିରେ ଯାଇଂ ଫୁଟି ।
ସେ ନଦୀରେ ପ୍ରଶୁରାମ ଘାଟଇ
କନକାବତୀ ନାମେ ପାଟଣା ପ୍ରକାଶଇ ।
ତହିଁର ଅନୁଜ ସେ ସାରୋଳ ନାମେ ଗ୍ରାମେ
ବିଜେ ମାହେଶ୍ୱରୀ ସାରୋଳ ଚଣ୍ଡୀ ନାମେ....

('ଆଦି ପର୍ବ')

ହେ ବୁଧଜନେ ଜମ୍ବୋଦୀପ ଭ୍ରଥଖଣ୍ଡ ଓଡ଼ରାଷ୍ଟ୍ର ମଣ୍ଡଳେ
ଠାବ କଣୟାବତୀ ନଗ୍ର ଚନ୍ଦ୍ରଭାଗା ନଦୀ କୂଳେ ।
ମହୋଦଧି ଉତ୍ତର ତଟେ ପ୍ରଶୁରାମଂକ ପାଟଣା
ପ୍ରଶୁରାମ ପୂଜା କଲେ ଯେବଣ ପ୍ରତିମା ।
ପ୍ରତକ୍ଷେ ଭାବାନୀ ସେହି ଶ୍ରୀଚଣ୍ଡୀ ସାରଳେ
ସେ ମୋର ତୁଳସୀମାଳା ହୋଇ ଲୁଳୁ ବକ୍ଷସ୍ଥଳେ ।....

('ସ୍ୱର୍ଗାରୋହଣ ପର୍ବ')

# ଆଦିପର୍ବ

## ୧. ଗଣେଶଙ୍କ ବନ୍ଦନା

ଜୟତୁ ଦଧି-ମଙ୍ଗଳ ବିଘ୍ନରାଜ
ଯାହାର ଦ୍ରଶନେ ସିଦ୍ଧ ହୁଅଇ ସର୍ବ କାର୍ଯ୍ୟ ।୧
ସକଳ ବିଘ୍ନ ବିନାଶନ ଜୟତୁ ଗଜାନନ
ମଙ୍ଗଳ ଯୋଗେଶ୍ୱର ପରମାନନ୍ଦ ପାର୍ବତୀ ନନ୍ଦନ ।୨
ମଙ୍ଗଳ ଶଙ୍ଖଚକ୍ର ସରୋଜ ଦଧିମୁଖ
ମଙ୍ଗଳ ବରଦାୟକ ନାଥ ସର୍ବଙ୍କ ପ୍ରତକ୍ଷ ।୩
ମହାବ୍ରହ୍ମ ଯୋଗେଶ୍ୱର ସିନ୍ଦୁରେ ଗଜମୁଖ ମଣ୍ଡି
ଯମ ଦର୍ପ ଗଞ୍ଜି ସର୍ବ ଅପରାଧ ଦୁଃଖ ଖଣ୍ଡି ।୪
ଜୟତୁ ଜୟତୁ ଦେବ ଚନ୍ଦ୍ର ଯେ ଶେଖର
ଜୟତୁ ଜୟତୁ ଦେବ ସିଦ୍ଧ ଲମ୍ୱୋଦର ।୫
ଜୟତୁ ଜୟତୁ ଦେବ ସୁରଗଣ ରଖନ୍ତା
ଜୟତୁ ଜୟତୁ ଦେବ ପରମଗତି-ଦ୍ୟନ୍ତା ।୬
ସ୍ୱାମୀ ସଂଗ୍ରାମେ ବଧ ଯହୁଂ ନୋହିଲା ତ୍ରିପୁରା
ତୋହର ବୁଦ୍ଧି ବଳେ ନାଶ ଗଲାଟି ମହାବୀରା ।୭
ହେଳେଣ ନାଶ କଲୁ ଷାଠିଏ ସହସ୍ର ବରଷେ
ଆକାଶେ ସାଧୁ ସାଧୁ ତୋତେ କଲେକ ତ୍ରିଦଶେ ।୮
ତୋଷେଣ ବର ତୋତେ ଦେଲେକ ଦେବରାଜା
ସକଳ ଭୁବନେ ନାଥ ତୋତେ ଆଗେ ପୂଜା ।୯
ଯେବେଣ ବେଳେ ସାହାସ୍ର ଅନକୂଳ ଲେଖନ
ବିବୁଧ ଗଣେ ତୋତେ ଆଜ୍ଞା ଦେଲେ ନିରାଲମ୍ୱ ।୧୦
ଗ୍ରନ୍ଥକୁ କବି ତ ହୋଇବ ବ୍ୟାସ ମହାମୁନି
ତୁ ଲେଖନ କର ଶୁଭ ଅନୁକୂଳ ଘେନି ।୧୧
ଗଙ୍ଗା ଯମୁନା ସରସ୍ୱତୀ ତିନି ନଦୀ
ରାମଘାଟ ତୀର୍ଥେ ସଙ୍ଗମ ହୋଇଲେ ଭେଦି ।୧୨
ପଶ୍ଚିମ ପାରୁଶେ ବାଞ୍ଛା କଳ୍ପବଟ
ପଛିମମୁଖୀ ଧବଳାଙ୍ଗୀ ସରସ୍ୱତୀ ନଦୀ ତଟ ।୧୩
ସିଦ୍ଧ ଦେବତା ବିଜୟେ ସେହୁ ଥାନେ
ତ୍ରିବେଣୀ ସ୍ନାହାନ କରି ସେ ମାଧବ ଦରଶନେ ।୧୪
ବଟ ତଳେ ଯହୁଁ ବସିଲେ ଯୋଗଧ୍ୟାନେ
ଶ୍ରୀଭୁଜେ ଲେଖନ କରି ବସିଲୁ ଯୋଗଲୟେ ମନେ ।୧୫
ବ୍ୟାସେ କହନ୍ତି ଲେଖନ କର ସ୍ୱାମୀ
ଆଦି ସିଦ୍ଧ ଗ୍ରନ୍ଥ ତୁ କହିଲୁ ମହାବ୍ରହ୍ମି ।୧୬
ସ୍ୱାମୀ ଯେବେଣ ସାହାସ୍ର ଲେଖନ କଲୁ ଯେବଣ ଯୋଗେ
ସେ ଅମୃତ ଦୃଷ୍ଟିରେ ପ୍ରସନ୍ନ ହୋଅ ଏବେ ।୧୭
ଗିରିଜାର ନନ୍ଦନ ସତତ ମତି ଧ୍ୟାନେ
ଶ୍ରୀକରେ ଲେଖନ ଘେନି ବସିଲେ ଏକ ମନେ ।୧୮
ଯୋଗେଣ ଯୋଗେଶ୍ୱର ସଦାନନ୍ଦର ନନ୍ଦନେ
ଅପଣ୍ଡିତ ପଣ୍ଡିତ ହୋଏ ତୁମ୍ଭର ପରସନେ ।୧୯
ମନ ଚଇତନ ଏକତ୍ୱ କଲୁ ଅହନିଶି ଯୋଗଲୟେ
ଦ୍ରଶନେ ପ୍ରସନ୍ନେ ଯାହା ଲୀଳାମୟେ ।୨୦
କରୁଣା-ମୟେ ନାଥ ଶରଣ ପଂଜର ବୀରଧ୍ୱ
ସଂସାର ବାରାନିଧି ନାଥ ବରଦାତା ଦେବ ସାଧୁ ।୨୧
ବିସ୍ତାର ଉଦରେ ଯାହାର ଜ୍ଞାନ ସଞ୍ଚା
ପୃଥୁଳ ଶରୀର ନାଥ ଅଭୟେ କାଳ ବଞ୍ଚା ।୨୨
ଏ ଘୋର ସଂସାର ସାହେର ତରିବାକୁ ବଳାଇଲି ମନୀଷା
ଦୁସ୍ତରୁ ତରାଅ ନାଥ ପୁରାଅ ମନବାଞ୍ଛା ।୨୩
ଶିଖି ପୃଚ୍ଛ ମଉଳି ବତିଶ ଗୁଣେ କଳା
ଭରହ-ରସ ନାଥ ନୃତ୍ୟ ରଙ୍ଗେଣ ଭୋଳା ।୨୪
ଦିବାରାତ୍ର ନ ଜାଣଇ ଯେବଣ ମହାତମା
ଅନନ୍ତକାଳ ବଞ୍ଚାଇଲୁ ସେ ପୁରୁଷ ଉତ୍ତମା ।୨୫
ପୁରୁଷଙ୍କର ସିଦ୍ଧତୁ ଯୋଗୀଙ୍କର ଆଦ୍ୟ
ଦର୍ଶନେ ଦୂରିତ ହରଇ ପ୍ରସନେ କାର୍ଯ୍ୟ ସିଦ୍ଧ ।୨୬
ଶ୍ରୀ ଅମୃତାକ୍ଷ ନାଥ ଚରଣେ ମୋର ସେବା
ଶ୍ରୀ ମହାଭାରଥ କହିବି ମୋତେ ପ୍ରସନ୍ନ ହୋଇବା ।୨୭
ତବ ପାଦପଦ୍ମେ ମୋର ବିନୟେ ଭାବ ନିଚି
ପ୍ରଶୁଧର ନାଥ ତୁ ସଦୟେ ଗଣପତି ।୨୮
କଳନା ନ ଯାଇ ଯାର ଆଦି ଅନ୍ତ ମଧ୍ୟ ଥାନ
ଗ୍ରନ୍ଥ ଭିଆଇଲୁ ତୁ ଭୂତ ଭବିଷ ବ୍ରତମାନ
ଶ୍ରୀୟାମାତା ବଲ୍ଲଭ ଚରଣେ ମୋର ଆଶ
ବଦନ୍ତି ଗ୍ରନ୍ଥିକ ଶୂଦ୍ରମୁନି ସାରୋଳ ଦାସ ।୩୦



## ୨. ସାରଳା ଦେବୀଙ୍କ ବନ୍ଦନା

ଜମ୍ବୋ ଦ୍ୱୀପ ଭ୍ରଥ ଖଣ୍ଡ ଓଡ଼ ରାଷ୍ଟ୍ର ମଣ୍ଡଳେ
ଉତ୍ପଳେଶ୍ୱର ଲିଙ୍ଗ ଚିତ୍ର ଉତ୍ପଳା ନଦୀର ଦକ୍ଷିଣ କୂଳେ ।୧
ଜଳନ୍ତାର ନିଜ ଭୂମି ଯାଯନଗ୍ରି ଗୁପତ ବାଣରାସି
କୁଶସ୍ଥଳୀ ଦ୍ୱାରିକା କ୍ଷେତ୍ର ପୁଣ୍ୟବାସୀ ।୨
ଶ୍ରୀ ଯମେଶ୍ୱର ଲିଙ୍ଗ ମଉଦଧିର ତଟେ
ନୀଳ ସୁନ୍ଦର ପର୍ବତ ନୀଳ କଳ୍ପବଟେ ।୩
ବିଜୟେ ରାମ କୃଷ୍ଣ ସଉଭଦ୍ରା ରୂପେ ବ୍ରହ୍ମ
ଚାରିଲକ୍ଷ ବତିଶି ସହସ୍ର ବରଷକୁ ଯୋଗ ଲୟେ ମହାତମା ।୪
କଳି କାଳ ଧ୍ୱଂସିଣ ଭୋଗେଣ କୋଟି ପୂଜା
ପ୍ରଳୟିତେ ଖଟଇଁ ଶ୍ରୀ କପିଳେଶ୍ୱର ମହାରାଜା ।୫
ଶ୍ରୀ ନୀଳ ସୁନ୍ଦର ଗିରି ଉତ୍ତର କଛାଡ଼େ
ସାର ଭୂମି ଭ୍ରଥଖଣ୍ଡ ପୂର୍ବଦିଗ ଇଶାନ୍ୟ ଆଡ଼େ ।୬
ଚନ୍ଦ୍ରଭାଗା ନାମେଣ ଯେକଇ ନଦୀ ଗୋଟି
ବୃଦ୍ଧ ମାତା ଗଙ୍ଗାଉସେ ମଉଦଧିର ଯାଇଂ ଫୁଟି ।୭
ସେ ନଦୀରେ ପ୍ରଶୁରାମ ଘାଟଇ
ଜନକାବତୀ ନାମେ ପାଟଣା ପ୍ରକାଶଇ ।୮
ତହିଁର ଅନୁଜ ସେ ସାରୋଳ ନାମେ ଗ୍ରାମେ
ବିଜେ ମାହେଶ୍ୱରୀ ସାରୋଳା ଚଣ୍ଡୀ ନାମେ ।୯
ମହାଯୋଗେଶ୍ୱରୀ ସେ ପରମ ବଇଷ୍ଣବୀ
ପ୍ରତକ୍ଷେ ବର ଦିଅଇ ସେ ପରମ ସାଧବୀ ।୧୦
ବାଞ୍ଛା ସାର୍ଥକ ସେ ଦେବୀର ଅଟଇ
ପାଷାଣ ହୋଇକରି ବାଞ୍ଛା ତାହାର ଫୁଟଇ ।୧୧
ସର୍ବ ମଙ୍ଗଳ ରୂପମାତାଙ୍ଗୀ ମତଭୋଳୀ
ଗ୍ରନ୍ଥ ଅର୍ଥ ଶୁଣଇ ସେ ହରଷେ କୁତୋହଳୀ ।୧୨
ଶ୍ରୀ ସାରୋଳା ଚଣ୍ଡୀ ନାମେ ସେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁହିଁ ସାରୋଳ ଦାସ କବି ।୧୩
ପ୍ରସନ୍ନେଣ ଆଜ୍ଞା ମୋତେ ଦେଲେ ଶାକାମ୍ୱେରୀ
ଲଭତୁ କପିଳାସ ଶ୍ରୀ ମହାଭାରଥ କରି ।୧୪
ଶୁଣି ବୁଧ ଜନେ ନଧର ଆନ ଚିତ୍ତ
ଜନ୍ମେଣ ମୁରୁଖ ମୁହିଁ ନୋହଇ ପଣ୍ଡିତ ।୧୫
ଏକ ଲୟେ କରିଣ ଶୁଣସି ସାବଧାନେ
ଫିଟିବାକ ପାତେକ ସବୁ ଦୁଷ୍କୃତ ମାନେ ।୧୬

**

## ୩. ମହାଭାରତ ପ୍ରଶସ୍ତି

କୁମ୍ଭ ଋଷିର ନନ୍ଦନ ଅଗସ୍ତି ମହାଋଷି
ମହାବ୍ରହ୍ମବେତ୍ତା ସେ ଅମୃତ ରସ ଭାଷି ।୧
ବଇବସୁତ ମନୁ ପୁଛାକଲେ ଅଗସ୍ତିଙ୍କି
କହ ପଣ୍ଡିତ ମହାତମା ଅମୃତ ରସ ବାକି ।୨
ଶ୍ରୀ ମହାଭାରଥ ନାମ ହୋଇଲା କେମନ୍ତେ
ଯେହା ତଦନ୍ତ କରି କହିବା ମୁନି ମୋତେ ।୩
ଶୁଣ ହୋ ବଇବସୁତ ମନୁ ଆଦ୍ୟ ଯେ ଚରିତ
ଦେବତା ମାନେ ରଚିଲେ ସର୍ବ ଗ୍ରନ୍ଥ ।୪
ତୁଳା ଦଣ୍ଡ କଲେ ଦ୍ୱାଦଶ ଯୋଜନ କାଠି
ତିନି ତିନି ଯୋଜନ କଲେ ବେନି କର୍ଣ୍ଣ କୋଟି ।୫
ବିଷ୍ଣୁ ଅନନ୍ତ କୋଟି ବ୍ରହ୍ମାଣ୍ଡ ଅନନ୍ତ କୋଟି
ସବୁ ପୂରୋଇଲେ ନେଇ ତୁଳଦଣ୍ଡ କାଠି ।୬
ଅଷ୍ଟାଦଶ ପୁରାଣ ପଞ୍ଚବିଂଶ ଲକ୍ଷ
ରାମାୟଣ ଚଣ୍ଡୀଯୁଦ୍ଧ ସମସ୍ତ ପୁରାଣ ପ୍ରତକ୍ଷ ।୭
ବିଷ୍ଣୁ ପୁରାଣ ରାଜା ମାରକଣ୍ଡ ପୁରାଣ ପାତର
ଶିବ ପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର ।୮
ଯେ ଚାରିପୁରାଣ ମୁଖ୍ୟ କରିଣ ସମସ୍ତ ପୁରାଣ
ଯେମନ୍ତ ବସାଇଲେ ନେଇ ତୁଳା ଦଣ୍ଡ କତିକେଣ ।୯
ଆରକ କଢେ ଭାରଥ ଅଷ୍ଟାଦଶ ଥୋଇଲେ
ସମସ୍ତ ପୁରାଣୁଂଯେ ମହାଗରୁ ହୋଇଲେ ।୧୦
ଯେ ଭାରଥ ଯହୁଁ ହୋଇଲା ମହାଭାରା
ତହୁଁ ମହାଭାରଥ ନାମ ଦେଲେ କଶ୍ୟପ ଅଙ୍ଗିରା ।୧୧
ତେଣୁ କରି ହୋଇଲା ମହାଭାରଥ ନାମ
ତୁଳନ୍ତେ ହୋଇଲା ଯେ ମହା ଅସମ୍ଭବ ।୧୨

**

## ୪. ବଂଶାନୁଚରିତ

ବଇବସୁତ ମନୁ ହୋଇଲେ ପ୍ରଳମ୍ୱ
ତବ ପ୍ରସନ୍ନେ ମୁନି ମୁଁ ଅରଜିଲି ଅନେକ ଧର୍ମ ।୧
ଶ୍ରୀକରେ ଅର୍ଘ୍ୟଘେନି ପଖାଳିଲେ ପାଦବେନି
ମୋକ୍ଷ କର୍ଣ୍ଣ କାରଣ ମୋତେ କହିବା ଅଗସ୍ତି ମହାମୁନି ।୨

ବସନ କୁଣ୍ଡଳ ରତ୍ନମାଳ ଗନ୍ଧ ଯେ ଚନ୍ଦନ
ଧୂପ ଦୀପ ନଇବେଦ୍ୟ ଉପହାର ନାନା ଦ୍ରବ୍ୟ ମାନ ।୩
ଯେତେକ ଦେଇଣ ସେ ମନୁ ମହାରାଜା
ଅନେକ ବାଗେଣ ସେ ମୁନିଙ୍କି କଲେ ପାଦ ପୂଜା ।୪
କୁମ୍ଭ ଋଷି ମୋତେ ପ୍ରତିକାର କରିବା
ତୋହୋର ପଦ୍ମପାଦେ ମୋହୋର ଅହର୍ନିଶି ସେବା ।୫
ବଦୟନ୍ତି ମହାମୁନି ଶୁଣ ଯୁଗପତି
ସପତଦ୍ୱୀପା ପୃଥ୍ୱୀରେ ସୋମବଂଶ ହିଁ ଆଧିପତି ।୬
ଆଦିହୁଁ ଶୂନ୍ୟ ଶୂନ୍ୟ ହୁଁ ପବନ
ପବନ ହୁଁ ଜାତ ଯୋଗପୁରୁଷ ମାନ ।୭
ଯୋଗ ପୁରୁଷ ତହୁଁ ଉପୁଜିଲା ଗାୟତିରୀ
ଯେହାଙ୍କର ତହୁଁ ଉପୁଜିଲା ମହାମନ୍ତ୍ର ଚାରି ।୮
ଯେ ମହାମନ୍ତ୍ର ତହୁଁ ଉପୁଜିଲା ଚାରିପାଦ
ଯେଥୁଁ ଉତପତ୍ତି ହୋଇଲା ଯମଦ ।୯
ଯମଦୁଁ ଉତପତି ହୋଇଲା କର୍ମଣ
ଯେହାର ତହୁଁ ଉତପତି ହୋଇଲା ନିରିଗୁଣ ।୧୦
ନିର୍ଗୁଣଂ ତହୁଁ ଉତପତି ହୋଇଲା ବୁବୁବୁଦ
ବୁଦୁବୁଦୁରୁ ଉପୁଜିଲା ଅଣ୍ଡ ଯେ ବିବୁଧ ।୧୧
ଅଣ୍ଡର ତହୁଁ ପୁଣି ଯେ ହୋଇଲା ନିରଞ୍ଜନୀ
ନିରଞ୍ଜନ ତହୁଁ ହୋଇଲା ଶକତି ମଣି ।୧୨
ଶକତି ତହୁଁ ଉତପତ୍ତି ହୋଇଲେ ପୁତ୍ର ତିନି
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଯ ତିନି ନାମ ଘେନି ।୧୩
ଆହୋ ତ୍ରିଦଶ ଦେବା ଯେ ଯେ ମନ୍ଥିଲେ ସମୁଦ୍ରର
ତହୁଁ ଉତପତି ହୋଇଲେ ଶଶଧର ।୧୪
ଶଶଧରୁଁ ଉତପତ୍ତି ହୋଇଲା ସନ୍ତତି
ସତାଇଶ କନ୍ୟା ପ୍ରଦାନ କଲା ଦକ୍ଷ ପ୍ରଜାପତି ।୧୫
ଚନ୍ଦ୍ର ହରିଲା ଯେ ବୃହସ୍ପତିଙ୍କ ଭାରିଯା ତାରା
ରସେଣ ପଡ଼ିଲା ସେ ଉତ୍ତମ ପର ଦାରା ।୧୬
ଚନ୍ଦ୍ରଙ୍କର ବୀର୍ଯ୍ୟେ, ତାରା ଦେବୀ ରଜେ
ତହୁଁ ଉତପତ୍ତି ହୋଇଲା ବୁଧ ନାମେଣ ଆତ୍ମଜେ ।୧୭
ଆହୋ ବୁଧର ନନ୍ଦନ ଯେ ଅଟଇ ପୁରୁରୁବା
ଅମରାଧି ନାଥ ସେ ହୋଇଲା ମଘବା ।୧୮
ପୁରୁରବା ଯେ ବାଣ୍ଟିଲେ ସଚରାଚର ପୃଥ୍ୱୀ
ନବଦ୍ୱୀପ ସପତ ସାଗର ବସାଇଲେ ବସୁମତୀ ।୧୯
ପୁରୁରବା ନନ୍ଦନ ଆୟୁ ମହୀପାଳେ
ଯେ ଯେ ସପତଦ୍ୱୀପା ପୃଥ୍ୱୀକି କଲା ଏକ ସ୍ଥଳେ ।୨୦
ଆୟୁର ନନ୍ଦନ ଯେ ହୋଇଲା ନଘୋଷ
ଇନ୍ଦ୍ରପଦେ ବସିଲା ସେ ଅମର ଆକାଶ ।୨୧

**

## ୫. ଯଯାତି ଉପାଖ୍ୟାନ

ପୁରୁରବାର ନନ୍ଦନ ଉପୁଜିଲା କୁରୁବଂଶେ
ନଘୋଷର ନନ୍ଦନଯେ ଯଯାତି ପରକାଶେ ।୧
ବଡ଼ ପ୍ରତାପୀ ସେ ଯେ ହୋଇଲା ଯଯାତି
ନବ କନ୍ୟା ପ୍ରଦାନ ସେ ହୋଇଲା ନବଜାତି ।୨
ଶୁକ୍ରଙ୍କର ଦୋହିତା ସେ ଅଟଇ ଦେବଯାନୀ
ଦେବକୁଳୁଂ ପ୍ରଦାନ ଯେ ହୋଇଲେ ନନ୍ଦିନୀ ।୩
ଅସୁର କୁଳୁଂ ପ୍ରଦାନ ହୋଇଲେ ପରମେଷ୍ଠୀ
ତକ୍ଷକ ନାଗର ଯେ ଦ୍ରୋହିତା ସନ୍ତୁଷ୍ଟି ।୪
ନାଗକୁଳୁଂ କନ୍ୟାଯେ ହୋଇଲା ପ୍ରଦାନ
ଯେମନ୍ତ ଭାଗ୍ୟ ରାଜା ଅଟଇ ବିଦ୍ୟମାନ ।୫
ମନେବ କୁଳର ରାଜା ଅଟଇ ବୁଧସେନ
ତାହା ତହୁଁ ବୃନ୍ଦାବତୀ କନ୍ୟା ହୋଇଲା ପ୍ରଦାନ ।୬
ଗୋପାଳ ନୃପତି ଯେ ରତ୍ନଧ୍ୱଜ ବୀର
ଯୁଗାବତୀ ବୋଲି ଦୋହିତାଯେ ଥିଲା ଯେ ତାହାର ।୭
ତାହାକୁ ପ୍ରଦାନ ଯେ ହୋଇଲେ ଯଯାତି
ନିଷାଦ କୁଳରୁ ପ୍ରଦାନ ହୋଇଲେ ମହାସ୍ୟତୀ ରେବତୀ ।୮
ଶବର ରାଜା ଯେ ଅଟଇ ଅଜର
ମୃଗାକ୍ଷୀ ନାମେଣ ଦୋହିତା ଯେ ତାହାର ।୯
ତାହାକୁ ପ୍ରଦାନ ହୋଇଲେ ଯଯାତି
କନ୍ୟା ଯେକ ଦିଲା କୋଶଳ ବ୍ରାହ୍ମଣ ନୃପତି ।୧୦
ଇନ୍ଦୁ ଦେଶର ରାଜା ଯେ ପଶ୍ଚିମ ସଉରାଷ୍ଟ୍ରଙ୍ଗ
ତାହାର ଦୋହିତା କୃଷ୍ଣାବତୀ ଅଟଇ ।୧୧
ପ୍ରବାଳ ସେନ ବୋଲି ହାଦେ ଇନ୍ଦୁ ନୃପତି
ନବମେ ପ୍ରଦାନ ହୋଇଲା ତାହାର ଦୋହିତୀ ।୧୨
ଯେମନ୍ତେ ନବ ଜାତିରୁ ନବକନ୍ୟା ପ୍ରଦାନ
ନବ ପୁତ୍ର ଉପୁଜିଲା ଯଯାତିଙ୍କର ବିଦ୍ୟମାନ ।୧୩

ଦ୍ୟାବ୍ୟା ପୃଥିବୀ ନବଭାଗ ରାଜା କଲେ
ନବଖଣ୍ଡ ମେଦିନୀ ନବପୁତ୍ରଙ୍କୁ ବାଣ୍ଟି ଦେଲେ ।୧୪
ତାହାର ଜ୍ୟେଷ୍ଠ ପୁତ୍ର ନାମ ପୁରୁ ମହୀପତି
ଓଢ଼ଣୀ ଭାରିଯାର ସେ ଅଟଇ ସନ୍ତତି ।୧୫
ମାତାଙ୍କର ଭାଗ ଯେ ଓଡରାଷ୍ଟ୍ର ମଣ୍ଡଳେ
ତହୁଁ ସେ ଓଡରାଷ୍ଟ୍ର ଭ୍ରଥ ଖଣ୍ଡେ ସର୍ବକାଳେ ।୧୬
ପୁରୁର ନନ୍ଦନ ସେ ପ୍ରବୀର ନୃପତି
ବାର ରାଷ୍ଟ୍ର କରିଣ ଭିଆଇଲେ ରାଷ୍ଟ୍ରପତି ।୧୭
ଯେକା ଖଣ୍ଡକଇଂ ଯେ କଲେକ ସାତସାତ ଖଣ୍ଡ
ମଣ୍ଡଳ ଭିଆଣ କରିଯେ ଯେ ଭିଆଇଲେ ପାରିଦଣ୍ଡ ।୧୮
ପ୍ରବୀର ନନ୍ଦନ ମନସିବା ନାମେଣ ବୀରା
ଅନେକ ଦୁଷ୍ଟନ୍ତ ମାରି ସେ ଉଶ୍ବାସିଲେ ମହୀଭାରା ।୧୯
ପ୍ରବୀର ନନ୍ଦନ ଯେ ମନସିବା ନୃପତି
ଯେହାଙ୍କର ନନ୍ଦନ ଯେ ଅନୁପମ ଚକ୍ରବ୍ରତୀ ।୨୦
ଥାଠ ସନ୍ୟ କିଛି ନାହିଁ ତାର ତୁଲେ
ଯେକା ଛତ୍ରେକ ଧରାଇ ନବଖଣ୍ଡ ମେଦିନୀ ସାଧ କଲେ।୨୧
ଆପଣେ ଅନୁସରି ଭିଆଇଲେ ସପତ ଦ୍ୱୀପା ପୃଥୀ
ଧାତୁ ବିଦ୍ୟା ପୁରୁଷଯେ ଅନୁପାମ ଚକ୍ରବତୀ ।୨୨
ଅନୁପମାର ନନ୍ଦନ ଅଟଇ ଇଳୀନ ବୀର
ଦୁଷ୍ୟନ୍ତ ବୋଲି କରି ଯେ ପୁତ୍ରେକ ହୋଇଲା ତାହାର ।୨୩
ମନ୍ଦର ଦେଶର ରାଜା କଉସ୍ତୁଭ ନୃପତି
ତାହାର ଦୋହିତା ଅଟଇ ମନ୍ଦାରବତୀ ।୨୪
ତୋଷେ ମୋଦବତୀ କନ୍ୟା ଦେଲା ବରମାଳା
ଆବର ଭାରିଯା ତାର ହେଲା ଶକୁନ୍ତଳା ।୨୫
ଏ ଦୁଷ୍ୟନ୍ତର ମହିମା ଯେ ନ ଯାଇ କହଣ
ସମୁଦ୍ର ଛଡ଼ାଇ ଦେଲା ଅଶୀ ସସ୍ର ଯୁଣ ।୨୬
ସମୋଦ୍ରଭିତରେ ନେଇଁ ଖମେକ ପୋତିଲା
ସେଠାଗୁଁ ସମୋଦ୍ର ଲଘି ନ ପାରିଲା ।୨୭
ଦୁଷ୍ୟନ୍ତର ନନ୍ଦନ ଯେ ଅଟଇ ବୀର ଭ୍ରଥ
ସମୋଦ୍ର ଘୁଞ୍ଚାଇଁ ଦେଲା ଯୋଜନା ସାତ ଶତ ।୨୮
ସାତ ଶତେକ ଯୋଜନ ଖଣ୍ଡେ ଖଣ୍ଡେ କଲା
ତହୁଁ ସେ ଭ୍ରଥ ଖଣ୍ଡ ନାମ ବୋଲାଇଲା ।୨୯
ଯେହି ସେ ଭିଆଇଲେ ଗ୍ରାମେକ ସୀମାଯେ
ନଳକ ମାତ୍ର କରି ପୃଥିବୀ ବାଣ୍ଟିଣ ଠୁଳ କଯେ ।୩୦
ଭ୍ରଥର ନନ୍ଦନ ଯେ ହୋଇଲୁ ଭୂମନୁ
ସମସ୍ତ ସାହାସ୍ର ସାଧିଲେ ଭୂତ ଭବିଷ ଗ୍ୟାନୁଁ ।୩୧
ଯେ ପୃଥ୍ୱୀବି ପୁଣ ବାଣ୍ଟିଣ ଭାଗ କଲେ
ମଣ୍ଡଳେକ କରିଣ ପୁଣ ନବସୃଷ୍ଟି ଭିଆଇଲେ ।୩୨
ସେ ଭୂମନୁର ନନ୍ଦନ ଉପୁଜିଲା ବିରଥ
ଯେ ସେ ଭିଆଇଲେଟି ଯୋଦ୍ଧା ପାତ୍ର ଅମନାତ୍ୟ ।୩୩
ଯେହାର ନନ୍ଦନ ଉପୁଜିଲା ବିଭୂରକ୍ଷ
ଖଣ୍ଡ ମଣ୍ଡଳ କରି ଯେ ବାଣ୍ଟିଲେ ରାଜ୍ୟ ଯେ ପ୍ରତକ୍ଷ ।୩୪

**

## ୬. ଶମ୍ଭୁରାଣ ଉପାଖ୍ୟାନ

ବିଭୂରକ୍ଷର ନନ୍ଦନ ଶମ୍ଭୁରାଣ ଆଧିପତି
ଆଦି ଦିଗପାଳମାନନ୍ତ ସେ ବରିଲା ସବୁନ୍ତି ।୧
ବିଶ୍ୱାନଳ କରିଯେ କଲାକ ଭିଆଣ
ମହା ପ୍ରତାପୀ ଯେ ହୋଇଲା ଶମ୍ଭୁରାଣ ।୨
ସୂର୍ଯ୍ୟଙ୍କର ନନ୍ଦନୀ ଯେ ହୋଇଲା ତପତୀ
ଦେବତାଯେ ସହି ନ ପାରିଲେ କନ୍ୟାର ତେଜ ଯେ ମୂରତି ।୩
କେବଳ ମାତ୍ର ତାହାକୁ ସଗ୍ୟାଂ ଜନ୍ମ ଦେଲେ,
ଅତ୍ୟନ୍ତ ମତେ କେ କତିକି ଯାଇଁ ନୁଆରିଲେ ।୪
ଆକାଶେ ସ୍ୱୟମ୍ୱର କଲେ ଦେବ ଆଦି
ଦିଗପାଳମାନନ୍ତ ବରି ସଭାଯେ ସମ୍ପାଦି ।୫
ତ୍ରିଦଶ ଦେବତାଯେ ବସିଲେ ଆସ୍ତାନେ
ତପତୀ ସୟଂବର କରନ୍ତି ବିଦ୍ୟମାନେ ।୬
ନବ ସାଗର ଯେ ବ୍ରହ୍ମରଷି ମାନନ୍ତ ଘେନି
ମଳୟ ମଣ୍ଡଳେ ଯାଇଁ ବିଜଯେ ପଦ୍ମଯୋନି ।୭
ଚଉଦ କୋଟି ଯେ ଶିବଗଣନ୍ତ ଘେନି ତୁଲେ
ବୃଷଭ ବାହନେ ଯାଇଁ ରୁଦ୍ରେ ବିଜେ କଲେ ।୮
ଅଳକା ଭୁବନୁଁ ବିଜେ କୋବେର ଦେବତା
ସାତ ପଦ୍ମ ସଇନି ଘେନି ଧନାଧିପ ଉପଗତା ।୯
ଅମର ଭୁବନ ତେଜି ଅଇଲେ ଅମରାଧି
ଅଇରାବ୍ରତ ଆରୋହି ବିଜଯେ ଜମ୍ଭୋଭେଦୀ ।୧୦
ଚଉଷଠି ପୁତ୍ର ଘେନିଣ ଅମରଗଣ
ବିଜଯେ ସୁରନାଥ ସୂର୍ଯ୍ୟ ସଭାଯେଣ ।୧୧

ଅଣଚାଶ ପବନ ଯକ୍ଷ ଯେ କିନ୍ନର
କାଳ ଗଣନ୍ତ ଘେନି ବିଜୟେ ନାଶ କର । ୧୨
ମଧୁକର ମଳୟ ବସନ୍ତ ଅନନ୍ତ
ବିଜୟେ କରୁଣାକର ନାଥ ଜଗତ ଅଧିପତ୍ୟ । ୧୩
ଗର୍ଜନ ନାଦ ଘାତ କରନ୍ତି ନଗପତି
ଏମନ୍ତେ ବିଜେ ଯାଇ ମଣ୍ଡଳ ଚକ୍ରବ୍ରତୀ । ୧୪
ମେଘମାଳ ସହିତେ ନୃପତି ହେମବନ୍ତ
ସେହି ପ୍ରବେଶ ହୋଇଲେ ମଳୟ ଗିରି ପର୍ବତ । ୧୫
ଗନ୍ଧର୍ବ କିନ୍ନର ସୁରସିଦ୍ଧ ମୁନି
ସ୍ୱୟମ୍ବର କଲେ ଦେବତାଙ୍କୁ ଘେନି । ୧୬
ଯେ ସ୍ୱୟମ୍ବର ଦେଖିଣ ବିବୁଧାଦି
ଦେବତାନ୍ତ ସମାର୍ଜନା କଲେ ଦେବ ଯେ ଅନାଦି ।୧୭
ତ୍ରିଦଶ ଦେବେ ଯେ ବସିଲେ ଆସ୍ଥାନେ
ବିନୟେ ପଚାରନ୍ତି ଗଗନାଧି ଶୂନ୍ୟେ ।୧୮
ଯେ ମୋହର ଦୋହିତା ଯେ ଅଟଇ ତାପତୀ
ସ୍ୱୟଂବର ନିମନ୍ତେ ମୁଁ ବରିଲି ସବୁନ୍ତି । ୧୯
ଯାହାର କଣ୍ଠରେ ବାଳୀ ଦିଅଇ ପୁଷ୍ପମାଳୀ
ସେ ତାର ବଲ୍ଲଭ ହୋଇବ ସତ୍ୟ ପ୍ରତିପାଳି ।୨୦
ଯାହାକୁ ଇଚ୍ଛା ଗୋ ବର ତୋର ଚିତ୍ତେ
ପାରିଜାତେକ ପୁଷ୍ପମାଳ ଗୋ ଦିଅ ତା ହୃଦଗତେ । ୨୧
ପିତାଙ୍କ ବଚନ ଯେ ଶୁଣିଣ ତାପତି
ମାଳା ଘେନି ମିଳିଲା ସୁରନାଥର କତି । ୨୨
ତାପତୀର ତେଜଜ୍ୱାଳା ଅନଳ ପରାୟେ
ଭୟେଣ ଅନ୍ତର ତହୁଁ ଯେ ହୋଇଲେ ସୁରରାୟେ । ୨୩
ଇନ୍ଦ୍ର ଦେବତା ଯହୁଁ ଅନ୍ତର ହୋଇଲା
ମାଳି ଘେନି ତାପତି କୋବେର ସନ୍ନିଦ୍ଧେ ମିଳିଲା ।୨୪
ପାଶକୁ ଆସନ୍ତେ ସେ ସଗ୍ୟାଂର ଦୁଲଳା
ତାପତୀର ତେଜ ଯେ ଲାଗିଲା ମହାଜାଳା ।୨୫
କୋବେର ଦେବତା ଯେ ସଭାରେ ନ ରହିଲେ
ଉଠିଣ ଆପଣା ଭୁବନେ ଚଳିଗଲେ ।୨୬
ତହୁଁ ମାଳା ଘେନି ଚଳିଲା ସୂର୍ଯ୍ୟର ନନ୍ଦନୀ
ସନ୍ନିଧେଣ ଦେଖିଲା ସେ ଦେବ ପଦ୍ମଯୋନି ।୨୭
ତାପତୀର ତେଜ ଯେ ମହା ଅନଳ ପରାୟେ
ମରୁଳ ଆରୋହି ପିତା ହୋଇଲା ଅନ୍ତର୍ଦ୍ଧାୟେ । ୨୮

ପିତାକୁ ନ ଦେଖି ସେ ଦିନକର କୁମାରୀ
ମାଳା ଘେନି ମିଳିଲା ଯହିଁ ବିଜୟେ ତ୍ରିପୁରାରି । ୨୯
ସଦାଶିବ କତିକୁ ଯାଆନ୍ତେଣ ଅବଳା
ରୁଦ୍ର ଶରୀରକୁ ଲାଗିଲା ସେ ମହାଜ୍ୱଳା । ୩୦
ଭୟେଣ ଘୁଞ୍ଚିଲେ ଦେବ ପଞ୍ଚୁ ମଉଳି
ଶିବଗଣନ୍ତ ଘେନି ସେ କପିଳାସେ ଗଲେ ଚଳି । ୩୧
ପୁଣ ମାଳା କରେ ଘେନିଣ ତାପତୀ
ବିଜେ ସୁନ୍ଦରୀ ଯାଇଁ ହିମବନ୍ତର କତି । ୩୨
ଦେଖିଣ ଭୟେ ସେ କଲେ ହେମବନ୍ତ
ଅନ୍ତରୀକ୍ଷେ ଚଳି ସେ ଗଲା ଶୂନ୍ୟପଥ । ୩୩
ତପତୀର ତେଜେ ପଳାଇଲେ ବୃନ୍ଦା ଅର୍କେ
ଯେ ଯାହାର ଭୁବନେ ଯେ ମିଳିଲେ ଦେବଲୋକେ ।୩୪
ଆଦିତ୍ୟେ ବୋଲିଲେ ଏ ସୟଂବର ସରିଲା
କେହି ତ କନ୍ୟାକୁ ମୋ ବରଣ ନୋଇଲା ।୩୫
ଦୋହିତା ପିତା ଘରେଣ ହୋଇଲେ ରଜବତୀ
ପିତୃ ଲୋକମାନେ ଯେ ହୁଅନ୍ତି ନର୍କଗତି । ୩୬
ଯେସନ କେ ବିଚାର କରନ୍ତେଣ ଦେବସୂର୍ଯ୍ୟ
ଅଶ୍ୱେକ ଚଢ଼ିଣ ମିଳିଲେ ଶମ୍ବୁରାଣ ମହାରାଜ । ୩୭
ବୋଲନ୍ତି କରତାର ଶୁଣ ଗୋ ତାପତୀ
ଯେ ମହାରାଜା ଗୋ ସୋମବଂଶର ଚକ୍ରବର୍ତ୍ତୀ । ୩୮
ଯେହାର ବଂଶେଣ ଅମର ହୋନ୍ତି ପାଟ
ମାଳା ଗୋଟି ଘେନିଯାଇ ସାନିଧେ ଯେହାର ଭେଟ ।୩୯
ପିତାର ବଚନେ ସେ ମୃଗ ଯେ ନୟନୀ
ମିଳିଲେ ସୁନ୍ଦେରୀ ଯେ ଶ୍ରୀହସ୍ତେ ମାଳା ଘେନି । ୪୦
ଅଶ୍ୱର ଉପରେଂ ଯେ ବିଜୟେ ଶମ୍ବୁରାଣ
ମାଳା ଘେନିଣ ତାପତୀ ମିଳିଲା ସନ୍ନିଧାନ । ୪୧
ନୃପର ହୃଦୟରେ ନେଇଣ ଦେଲା ପୁଷ୍ପର ମାଳା
ଶ୍ରୀ ଭୁଜେ ଧରି ଶମ୍ବୁରାଣ ବସାଇଲେ କୋଳ । ୪୨
ଦେଖିଣ ପରମ ସାନନ୍ଦ ହୋଇଲେ ଅଂଶୁମାଳୀ
ସାଧୁ ଶମ୍ବୁରାଣ ବୋଲି ଜୟେ ବାଣୀ ବୋଲି । ୪୩
ଅନେକ ସମ୍ପର୍ବେ ଯେ ରାଜାଧି ରାଜପତି
ତାପତୀ ପ୍ରଦାନ କଲାକ ଯଥା ରୀତି । ୪୪
କୁରୁନାମେଣ ପୁତ୍ରେକ ହୋଇଲା ଉତପତି
ତେଣୁ ସେ କୁରୁବଂଶ ଜଗତେ ବିଖ୍ୟାତି । ୪୫



## ୭. ଶାନ୍ତନୁ ଉପାଖ୍ୟାନ

କୁରୁର ଭାରିଯା ଯେ ଅଟଇ ଭାନୁବତୀ
ଯେହାର ତହୁଁ ଉପୁଜିଲା ପାର୍ଥିବ ନରପତି ।୧
ପାର୍ଥିବର ଭାରିଯା ଚିତ୍ର ଯେ ଉପ୍ଳଲା
ଶାଯେଁତନୁ ମହରଷି ଯେହାଙ୍କର ବଳା ।୨
ଶାଯେଁତନୁ ମହାରାଜା ରୁଦ୍ର ସେବା କଲେ
ସପତଦୀପେ ସେ ଏକାଙ୍ଗ ଚକ୍ରବର୍ତ୍ତୀ ହେଲେ ।୩
ଅତିଅନ୍ତ ଭଗତି ସେ କାଶୀ ସେବା କରି
କଷା କଉପୁନୀ ହୋଇଲେ ମାଥେ ଜଟାଧାରୀ ।୪
ସୋମେକ ରୂପେ ସେ ହର ଗୋହତ୍ୟା ଦୋଷ କଲେ
ହଟକେଶ୍ୱର ବୋଲି ପାତାଳେ କପିଳାସେ ରଚିଲେ ।୫
ଶିବ ସେବା କରି ଯେ ରହିଲେ ଶାୟେଂତନୁ
ମଞ୍ଚକୁ ନ ଆସନ୍ତି ସେ ପାତାଳ ଭୁବନୁଁ ।୬
ପାତାଳେ ଥାଇଁ ମଞ୍ଚକୁ ଦ୍ୟନ୍ତି ଦୃଷ୍ଟି
ଦିବ୍ୟ ଚକ୍ଷୁରେ ଦେଖନ୍ତି ରାଜ୍ୟକୁ ପଡ଼ିଲେ ଅରଷ୍ଟି ।୭
ଦଇତ ଦାନବେ ଯେବେ କରନ୍ତି ଅନୀତି
ପାତାଳେ ଥାଇଁ ସେ ନାରାଜ ବିନ୍ଧିଲେ ମଞ୍ଚେ
ହୋନ୍ତି ବିନଶ୍ୟତି ।୮
ଯେସନେକ ସେବା କରିଥାନ୍ତି ବିଶ୍ୱନାଥ
ସପ୍ତଦୀପା ପୃଥ୍ୱି ନିଛତ୍ରି କରି ରାଜ୍ୟ କରନ୍ତି ଏକଛତ୍ର ।୯
ସପତଦ୍ୱୀପା ପୃଥିକି ସେ ସପତବାଣ ବରଷି
ସୁଦ୍ରସେଣ ପ୍ରାୟେକ ନାରାଜ ବୁଲଇ ଦିବା ନିଶି ।୧୦
ବଳ ଦୃବଳ କଲେ ସେ ପକାନ୍ତି ଶିର ଛେଦି
ଯେମନ୍ତେ ସପ୍ତବାର ନିକ୍ଷେତ୍ର କଲେ ସେ ବାଦୀ ।୧୧
ସେ ଯୁଗେ ପରଜା ଯାହା ଉପୁଯାଇ କୃଷି
କାହାକୁ କିଛି ନ ଦିଅଇ ନିଅଇ ଦୁଇରାଶି ।୧୨
ଇନ୍ଦ୍ର ଦେବତା ତୁଲେ ଯେ ଅନେକ ପୀରତି
କୃଷି ଭୂମିରେ ମେଘେ ବରଷନ୍ତି ରାତି ।୧୩
ସ୍ନାହାନ ଶୌଚେ ବ୍ରତନ୍ତି ଜନ ପ୍ରଜା
ଯେସନେକ ସାର୍ଥୁକ ସେ ସୋମବଂଶ ରାଜା ।୧୪
ଗଙ୍ଗା ଜାତ ହୋଇଲେ ନିର୍ଘାତର ଘରେ
ଧବଳ ରଚିର ବପୁ ଶୁକ୍ଳାମ୍ବର ଶରୀରେ ।୧୫
ନିର୍ଘାତ ପାଳଇ ସେ ଅନାଦି ନିରଞ୍ଜନୀ
ତ୍ରୟୋଦଶ ବରଷ ହୋଇଲା ନନ୍ଦିନୀ ।୧୬
ନିର୍ଘାତ ବୋଇଲା ମାଗୋ କେମନ୍ତ କରିବି
କୁମାରୀ ରୂପଗୋ ହୋଇଲୁ ତୋତେ କାହାକୁ ମୁହିଁ ଦେବି ।୧୭
ବଡ଼ାଇ ନିରାକୁଳୀ ଆଗୋ ଅଟଇ ତୋର କାଯେ
ତୋତେ ଦେଖିଣ ମୁଁ କଲିହିଁ ବଡ଼ ଭଯେ ।୧୮
ଗଙ୍ଗା ବୋଇଲା ତୁ ଶୁଣସି ମୋର ପିତା
ମୋହୋର ବଲ୍ଲଭ ସେ ତ୍ରିଅମ୍ୟେକ ଦେବତା ।୧୯
ସେ ମୋର ପ୍ରାଣନାଥ ଅଟଇ ତ୍ରିଶୂଳୀ
ସେହି ସେ ସେହି ପାରନ୍ତି ନା ମୋହୋର ଆର୍ଦୋଳି ।୨୦
ନିର୍ଘାତ ବୋଇଲା ମାଗୋ ଶୁଣ ଧବଳାଙ୍ଗି
ବ୍ରହ୍ମ ହତ୍ୟା କଲା ସେ ରୁଦ୍ର ପରମ ଯୋଗୀ ।୨୧
ଅନେକ ତୀର୍ଥ ସେ କଲେ ବିଶ୍ୱକାଶୀ
ପାତାଳେ ପଶିଲେ ହୋଇଣ ମହାଦୋଷୀ ।୨୨
ଗଙ୍ଗା ବୋଇଲେ ପିତା ମୁଁ ଥିବି ତୋର ଘରେ
ଯେତେକାଳେ ଆସିବେ ବରିବୁ ବିଶ୍ୱେଶ୍ୱରେ ।୨୩

**

## ୮. ଶାନ୍ତନୁ ବିବାହ

ଯେମନ୍ତେ ପିତାର ଘରେ ଯେ ଅଛଇ ଗଙ୍ଗାବଳୀ
କୁମାରୀ ମାନଙ୍କ ସଙ୍ଗେ ଖେଳଇ କୁତୁହୋଳୀ ।୧
ପିତାର ଘରେ ସହସ୍ରେ ବରଷ ଭୋଗ କଲା
ଦୋହିତାକୁ ଦେଖିଣ ଯେ ନିର୍ଘାତ ଶୋକ କଲା ।୨
ସ୍ତିରୀ ଜନ୍ମ ନିଷ୍ଫଳ ହୋଇଲା ମାତ ତୁକୁ
ମାଗୋ ସୟଂବର କରି ବରି ଆଣିବିକି ଦେବତାଙ୍କୁ ।୩
ଯାହାକୁ ଭାବିବୁ ଗୋ ତୋହୋରେ ମନ ବାଞ୍ଛା
ମାଳା ଦେଇଂ ବର ଗୋ ଯେ ତୋହର ମନ ଇଛା ।୪
ଗଙ୍ଗା ବୋଇଲେ ତୁ ବିମୁଖ ନୋହ ତାତ
ରୁଦ୍ର ହୁଁ ନାହିଁ ମୋର ଆନେ ପ୍ରିୟଚିତ୍ତ ।୫
ସେ ମୋର ବଲ୍ଲଭ ମୁଂଇ ତାର ନାରୀ
ଅନେକ ଜନ୍ମରେ ମୁଁ ସଦାଶିବର ସେବା କରି ।୬
ନିର୍ଘାତ ବୋଇଲା ମାଗୋ କହଇ ମୁହିଂ ତୋତେ
ତୋହୋର ଅନେକ ଦୋଷ ଅଛିଟି ମୋତେ ।୭
ଅବିବାହୀ ଦୋହିତା ପିତା ଘରେ ହେଲେ ରଜବତୀ
ଏକୋଇଶ ପୁରୁଷ ପରିଯନ୍ତେ ପିତୃଲୋକଙ୍କୁ ଅଗତି ।୮

ଗଙ୍ଗା ବୋଇଲେ ଅନେକ ଯୁଗ ଯିବ
ସେହିମତ ଥିବି ତାତ ହୋଇଣ ବାଳ ଭାବ ।୯
ନିର୍ଘାତ ବହୁତ ସାନନ୍ଦ ହୋଇଲା ତାହାର ବଚନେ
ରହିଲେ ଜାହ୍ନବୀ ତାହାର ଭୁବନେ ।୧୦
ଗଂଗାର ବୟସ ଶତେ ଯୁଗହିଂ ଗଲା
ରୁଦ୍ର ଦେବତାଙ୍କୁ ଭେଟ ନ ପାଇଲା ।୧୧
ସତ୍ୟଯୁଗ ସତର ଲକ୍ଷ ସତାନୋଇ ସହସ୍ରବରଷ
ଖେଳଇ ନିର୍ଘାତ ଘରେ ଦେବୀ ବାଳୁତ ବୟସ ।୧୨
ତ୍ରେତୟାଯୁଗ ବାରଲକ୍ଷ ଛୟାନୋଇ ସହସ୍ର ବରଷ ହାଦେ ଗଲା
ତଦ୍ୟାପି ଈଶ୍ୱର ଗଂଗା ଭେଟଇ ନୋହିଲା ।୧୩
ତ୍ରେତୟା ଯୁଗ ଅନ୍ତରେ ଯେ ରୁଦ୍ର ପଞ୍ଚମନୁ
ଦିବାରାତ୍ରେଣ ଖଟିଥାନ୍ତି ସେ ଋଷି ଶାୟେଂତନୁ ।୧୪
ସଦାନନ୍ଦ ପୁରୁଷ ଆସି ପ୍ରସନ୍ନ ହୋଇଲେ
ଦୂତୀ ଈଶ୍ୱର ରୂପ ଶାୟେଂତନୁଙ୍କୁ ଦେଲେ ।୧୫
ବୋଲନ୍ତି କପାଳୀ ତୁ ଯାଆସି ସ୍ୱର୍ଗମଞ୍ଚ
ଭ୍ରମଣ କରି ଦେଖ ତୁହି ଭୁବନ ସୁସଞ୍ଚ ।୧୬
କେବଣ ପୁରେ ଯେ କେବଣ ହୋଇଛନ୍ତି ଦେବେ
ଯେହା ବୁଝସି ତୁ ଚଳ ସ୍ୱର୍ଗ ମଞ୍ଚ ଯେବେ ।୧୭
ସଦାଶିବର ବଚନେ ସେ ଚଳନ୍ତି ସୋମବଂଶୀ
ରୁଦ୍ର ଅବତାର ସେ ଶାୟେଂତନୁ ମହରଷି ।୧୮
ବୈଲେକ ଆରୋହି ସେ ମଥାରେ ଜଟାଧାରୀ
ଧବଳ ବର୍ଣ୍ଣ ଶରୀର ସେ ଦିଶଇ ଯେହ୍ନେ ତ୍ରୀପୁରାରି ।୧୯
ଗମଇ ଆକାଶେ ସେ ସୋମବଂଶୀ ଚକ୍ରବ୍ରତୀ
ଲକ୍ଷେକ ଡମ୍ବରୁ ଯେ ବାଜଇ ଶୂନ୍ୟଗତି ।୨୦
କରେଣ ପିନାକୀ ସମାନେ ଧନୁୟେ
ଆରକରେ ଶୋହେ ତ୍ରିଶୁଳ ଗୋଟାୟେ ।୨୧
ଭସ୍ମ ବିଲେପନ ଯେ ରୁଦ୍ରାକ୍ଷ ମାଳ ହୃଦେ
ଧବଳ ଶରୀର କି ଦିଶେ ପ୍ରତ୍ୟକ୍ଷ ସଦାନନ୍ଦେ ।୨୨
ଯେସନେକେ କରଇ ସେ ଆକାଶେ ଦିଗବିଜୟେ
ଈଶ୍ୱର ରୂପ ଦେଖି ପୂଜା କଲେ ଦେବତାୟେ ।୨୩
ଅୟେଂଳା ବୃକ୍ଷ ତଳେ ଗଂଗା ତପ କରୁଥିଲେ
ଭୋଳମତି ବେଳେ ଯେ ମନ ଚିତ୍ତ ବରିଲେ ।୨୪
ଦେଖିଣ ବଚନେ ଯେ ବୋଇଲା ନିର୍ଘାତ
ଈଶ୍ୱରର ଭାରିଯା ଗୋ ହୋଇଲୁ ଜଗତ ମାତ ।୨୫
ପିତାର ବଚନେ ଯେ ତୁଷ୍ଟ ଧବଳାଙ୍ଗୀ
ନିର୍ଘାତ୍ ହାତରୁ ମାଳା ନେଇ ତହିଂ କଲା ଲାଗି ।୨୬
ଜଳ ଘେନି ରାୟେ ସତ୍ୟ କଲା
ଦୋହିତା ତୋତେ ଦେବି ବୋଲି ସତ୍ୟ ମନାସିଲା ।୨୭
ଯେ ମୋହର ସତ୍ୟ ସତ୍ୟ ତିନିବାର
ବରିଣ ନିର୍ଘାତ ଯେ ବସାଇଲା କୋଡ଼ର ।୨୮
ଅନେକ ବାଗେଣ ଯେ ପୂଜା ବିଧି କଲା
ଦୋହିତା ନିମନ୍ତେ ସେ ସତ୍ୟକୁ ପାଳିଲା ।୨୯
ବରବେଶେ ବସିଲେ ସେ ଶାୟେଂତନୁ ମହାଋଷି
ଦୁର୍ବାସା ମୁନି ଯେ ମିଳିଗଲେ ଆସି ।୩୦
ମେଷ କୃଷ୍ଣ ଚଉଠି ଅଟଇ ଚନ୍ଦ୍ରବାର
ହସ୍ତା ନକ୍ଷତ୍ର ଧନୁ ଲଗ୍ନ ବିଚାର ।୩୧
ବେଳ ତିନି ପହରେ ଯେ ଶୁକ୍ରଙ୍କର ବେଳ
ବୃଦ୍ଧି ନାମେ ଯୋଗ କରଣ ତତୁଲ୍ୟ ।୩୨
ଯେସନେକ ସମୟେ ସ୍ୱୀକାର ସାରି
ଉଭୟ କୂଳର ଗୋତ୍ରନ୍ତ ଯେ ଉଚାରି ।୩୩
ବୋଲନ୍ତି ପ୍ରୋହିତେ ଗୋତ୍ର କହ ବୀର
ପିତା ମାତାର ଯେ ନାମ ତୋର ଘର ।୩୪
ଶାୟେଂତନୁ ବୋଇଲେ ଆମ୍ଭେ ସୋମ ଗୋତ୍ରୀ
ଆମ୍ଭର ପଣ ପିଅର ଶମ୍ଭୁରାଣ ନୃପତି ।୩୫
ଶମ୍ଭୁରାଣର ପୁତ୍ର କୁରୁ ନରନାଥ
ତାହାଙ୍କ ପୁତ୍ର ପାର୍ଥ ବର ଅଟୁ ଆମ୍ଭେ ପୁତ୍ର ।୩୬
ଶାୟେଂତନୁର ମୁଖରୁ ଯେସନ ବାକ୍ୟ ଶୁଣି
ବିସ୍ମୟେ ହୋଇଲେ ଯେ ସେ ଗଙ୍ଗା ଗୋସାମଣୀ ।୩୭
ଗଙ୍ଗା ବୋଇଲେ ତୁ ଯେ ମନ୍ଦ କଲୁ ତାତ
ସୋମବଂଶ ରାଜା ଯେହୁ ନୁହଇ ବିଶ୍ୱନାଥ ।୩୮
ଈଶ୍ୱର ଦେବତାର କୁଳ ଗୋତ୍ର ନାହିଁ
ପିତା ଅଜା ପୁଣି ଅଛି ତାର କାହିଂ ।୩୯
ଯେବେ ସ୍ୱାମୀ ମୋର ଅଟଇ ଈଶ୍ୱର ଦୈବତ
ଅକୁଳ ଅର୍ମାଗ, ନାହିଂ ତାର ଗୋତ୍ର ।୪୦
ଗଙ୍ଗା ଉଠିଣ ଗଲେ ପିତାର କୋଡରୁ
ନିର୍ଘାତ ବୋଇଲା ମାଗୋ କିପାଇଂ ନାସ୍ତିକରୁ ।୪୧
ଈଶ୍ୱର ବରିବି ବୋଲି ଯେ ମୁହିଂ ମନେ କଲି ଇଚ୍ଛା
ଦୁଇ ଯୁଗ ପଡ଼ିଲି ନୋହିଲା ମନୋବାଞ୍ଛା ।୪୨

ସଂକଳ୍ପ କରନ୍ତେ ମୁହିଂ ଯେ ତୋତେ ପଚାରିଲି
ନିର୍ଘାତ ବୋଇଲା ମା ମୁଂ ଯେ ତୋତେ ସତ୍ୟ କଲି ।୪୩
ତୋହର ବଚନେ ମୁଂ ସତ୍ୟ କଲି ତାହାଙ୍କୁ
ସତ୍ୟ ଭଗ୍ନ ଦୋଷ ମାଗୋ ହୋଇଛୁଟି ମୂକୁ ।୪୪
ପିତାର ବଚନେ ସ୍ତବଦ ହୋଇଲା ଧବଳାଙ୍ଗୀ
ବାହୁଡ଼ିଣ ଆସିଣ ମିଳିଲା ଦେବୀ ଗାଙ୍ଗୀ ।୪୫
ଗଙ୍ଗା ବୋଇଲା ତୁ ଶୁଣ ଶାୟେଂତନୁ
ମୋହୋର ବଲ୍ଲଭ ଯେ ଅଟନ୍ତି ପଞ୍ଚୁମନୁ ।୪୬
ଈଶ୍ୱର ପରା ବୁଝି ମଣିଲି ଅନୁମତ
ନଜାଣି ସତ୍ୟ ତୋତେ କଲାକ ନିର୍ଘାତ ।୪୭
ତୋହର ମନେଣ ବିଚାର କର ଭାଳି
ତୁହି ସହି ପାରିବୁକି ମୋହର ଆର୍ଦୋଳି ।୪୮
ଈଶ୍ୱର ଦେବତା ଯେ ସହି ନ ପାରିଲା
ବ୍ରହ୍ମାର କମଣ୍ଡଳେ ମୋତେ ଦେଇଗଲା ।୪୯
ପିତା ସହି ନ ପାରିଲାଟି ମୋହର ଆର୍ଦୋଳି
ବାମନ ନାରାୟଣ ପାଦରେ ନେଇ ଢାଳି ।୫୦
ବାମନ ଦେବତା ମୋତେ ନ ପାରିଲାଟି ସହି
ମେରୁ କ୍ରୋଟେ ଛାଡ଼ିଲା ମୋତେ ନେଇ ।୫୧
ଏଣୁ କରି ହୋଇଲି ମୁଁ ଅମୁକ୍ଷ ଅଗତି
ଗୃହ ବାସ କରିବାକୁ ବଳାଇଲି ମତି ।୫୨
ନିର୍ଘାତର ଘରେ ଜାତ ହୋଇ ଲୁଚାଇଲି ବର୍ଣ୍ଣଚିହ୍ନ
ଆରତ ହୋଇଲି ନ ଦେଖିଲି ତ୍ରିଲୋଚନ ।୫୩
ମୁହିଂ ଯେବେ ହୋଇବି ତୋହୋର ମନୋହାରୀ
ପାରିବୁଟିକି ମୋତେ ସମ୍ଭରଣ କରି ।୫୪
ଶାୟେଂତନୁ ବୋଇଲେ ତୁ ବଡ଼ଇ ଜଞ୍ଜାଳୀ
ଭୁଆହିଂ ସହିବ ସେ ଭାର୍ଯ୍ୟାର ଆର୍ଦୋଳି ।୫୫
ଭୁଆର ଆର୍ଦୋଳି ଯେବେ ଭାରିଯା ନ ସହିବ
ପତି ପତ୍ନୀର କେମନ୍ତେ ଗୃହବାସ ହୋଇବ ।୫୬
ଆଜ ତୋତେ ମୁହିଂ ଯେ କହଇ ନିରାଧାର
ବାଇ ବାତୁଳୀ ମୁଁ ଯେ ଅଟଇ ଦ୍ରୋହକାର ।୫୭
ଅନେକ ଦୋଷ କଲେ ହେଂ ସହିବୁ
ଭର୍ତ୍ସନା କରିଣ ବଚନ ନ ବୋଲିବୁ ।୫୮
ଗଙ୍ଗା ବୋଲିଣ ତୁ ବୋଲୁଥିବୁ ଅନୁବ୍ରତେ
ଗାଙ୍ଗୀ ବୋଇଲେ ନ ଥାଇଟି ପୂରଇ ମୋର ବ୍ରତେ ।୫୯
ଶାୟେଂତନୁ ବୋଇଲେ ଯେ ମୋହର ସତ୍ୟ କଥା
ଅନେକ ଦୋଷ କଲେ ସହିବି ହୋଇବି ଭଗତା ।୬୦
ଯେହେର୍ଣ୍ଣେ ବହୁତ ସତ୍ୟବ୍ରତ କଲେଟି ସତ୍ୟବାଦୀ
ପ୍ରଦାନ ହୋଇଲେ ସିଦ୍ଧ ସାଧବୀ ଧବଳାଙ୍ଗୀ ।୬୧
ସତ୍ୟେଣ ପ୍ରଦାନ କଲେକ ନିର୍ଘାତ
ଅନେକ ସମ୍ପର୍ବେ ଦେଲେଟି ଦୋହିତ ।୬୨
ହୋମ ଘୃତ ପାରଣା କରନ୍ତି ବର କନ୍ୟା
ଯେସନେକ ବିଧାନ ବିଭାର ପ୍ରଦାନା ।୬୩
ଯେସନେକ ସମୟେ ଯେ ବିଭାର ଯୁଗତେ
ମଧୁଶଯ୍ୟାରେଣ ଧର୍ମ ବାକ୍ୟ ମତେ ।୬୪
ଦିନା ପାଞ୍ଚ ସାତ ସାରିଗଲେ ନିଜ ଦେଶେ
ପ୍ରବେଶ ହୋଇଲେ ଗିରି ବାରୁଣାବନ୍ତ ପାଶେ ।୬୫
ଯମୁନାର କୂଳରେ ସେ ରହିଲେ ନିଜ ରାଜ୍ୟେ
ଗଂଗା ସନିଧେଣ ଖଟିଥାନ୍ତି ଶାୟଂତେନୁ ମହାରାଜେ ।୬୬
ଯେମନ୍ତେଣ ଅନେକ ଯେ ବଢ଼ିଲା ପୀରତି
ଗଂଗାର ତୁଲେ ଯେ ଅନେକ ଭୋଳମତି ।୬୭
ସହସ୍ରେ ବରଷ ପରିଯନ୍ତେ ବହିଗଲା
ମହା ଚଞ୍ଚଳା ସେ ଋଷିଙ୍କି କଟାଳିଲା ।୬୮
ନିୟମର ଦନେ ବଡାଇଲା ସୁରତି
ବାର ବରତ ବେଳେ କଟାଳି ମାଗଇ ସୁରତି ।୬୯
ବାସ୍ତରି ଉପବାସ ସେ ଋଷିଙ୍କର ଥିଲା
ପ୍ରେମ ଲଗାଇ ସେ ସମସ୍ତ ଛଡ଼ାଇଲା ।୭୦
ଶ୍ରୀୟେକାଦଶୀ ମାତ୍ର ଅଛଇ ଋଷିଙ୍କର
ତହିଂକି କଟାଳ ଯେ କରୁଛି ଅପାର ।୭୧
ମକର ମାସ ଶୁକଳ ପକ୍ଷ ଶ୍ରୀୟେକାଦଶୀ
ଅନେକ ସଂପାଦେ ଯେ ଖଟନ୍ତି ମହଋଷି ।୭୨
ଶୟେଂତନୁଙ୍କର ନିଷ୍ପାପର ଭାବ ଦେଖି
ଋଷିଙ୍କି ପ୍ରିୟଭାବ ବଢ଼ାଇଲା ଶଶୀମୁଖୀ ।୭୩
ବୋଲଇ ଧବଳାଙ୍ଗୀ ଶୁଣ ସୋମବଂଶି
ବଡ଼ ନିଷ୍ପାପର ତ ଖଟୁ ଦିବାନିଶି ।୭୪
ଶାୟେଂତନୁ ବୋଇଲେ ଶୁଣ ତୁ ପ୍ରିୟମତ
ପିଣ୍ଡକୁ କାରଣ ଏ ଯେ ଶ୍ରୀୟେକାଦଶୀ ବ୍ରତ ।୭୫
ନାରାୟଣ ବ୍ରତଟିଏ ଅଟଇ ମହାବ୍ରହ୍ମ
ସଂସାର ଅଗାଦକୁ ଯେ ନଉକା ଅଟେ ଧର୍ମ ।୭୬

ରାଗ ମୋହ ଅହଂକାର ସଂସାର ରଞ୍ଜନା
ଅଦଉବି ବନ୍ଧନ ଯେ ସଂସାର ନାମ ସିନା ।୭୭
ଯେମାନ ଯେତେକ ଯେ ରାଗ ମୋହ ହିଂସା
ସଂସାର ଭାସିବ ଯେ ଅଣାକାର ଜଳ ଧ୍ୱଂସା ।୭୮
ବଦୟନ୍ତି ଶାୟେଂତନୁ ଶୁଣ ମୋର ପ୍ରିୟା
ତୋହର ମୋହର ଅଟଇ ସତଶ୍ରିୟ ।୭୯
ତୁହି କରୁକିନା ଶ୍ରୀୟେକାଦଶୀ ବ୍ରତ
ତୋହର ମୋହର ବଇକୁଣ୍ଠେ ବସିବାରେ ସଂଗାତ ।୮୦
ଯେସନେକ ମହିମା ଏ ବ୍ରତ ଶ୍ରୀୟେକାଦଶୀ
ପାଳିଲେ ହୋଇବ ଅବଶ୍ୟ ବଇକୁଣ୍ଠବାସୀ ।୮୧
ଶୁଣିଣ ବଚନ ଯେ ବୋଲଇ ଧବଳାଙ୍ଗୀ
ଏକମାତ୍ର ତୁମ୍ଭେ ନହିଛ ପରମ ଯୋଗୀ ।୮୨
ରାଜ୍ୟ ପଦ ଭାର ଆବୋରିଲ ସଂସାର ଜନ ହିତେ
କ୍ଷତ୍ରି ବୃତ୍ତି ନ ଛାଡିଲ ବଂଶ ବର୍ଗ ଅର୍ଥେ ।୮୩
ରାଜପଦହିଂ ଯେ ଅତି ଉତକର୍ମ
କ୍ଷତ୍ରୀ ବୃତ୍ତି ଆବର ତପ କିସ ଧର୍ମ ।୮୪
ରାଜାକୁ ଉପବାସ ଯେ ନୋହୋଇ ରାଜନୀତି
ଦଣ୍ଡ ଘେନି ଦିଗ ବିଜେ କରିବ ନରପତି ।୮୫
ପରଭୂମି ଜିଣିଣ ଘେନିମ ପରରାଷ୍ଟ୍ର
ସମ୍ବର କରିଣ ସାକୁଥିବ ଥାଟ ।୮୬
ଦଣ୍ଡ ପଳାଣି କିନା ଦୁଷ୍ଟନ୍ତ ନିବାରିବ
ସୁଜନ ପାଳିଣ ସେ ତପୋଧନ ଉଧାରିବ ।୮୭
ତୁ ମହାଭିଂଗ୍ୟ ଅଟୁ ମହରଷି
ରାଜପଦେ ପଶି କିମ୍ପା କରୁ ୟେକାଦଶୀ ।୮୮
ଦୁର୍ବାର ବଚନ ଯେ ବୋଲଇ ଜାହ୍ନବୀ
ଯେ ମହାରାଜ୍ୟେ ପଶି ବ୍ରତରାଜ ସେବି ।୮୯
ଧର୍ମ ଦୂଷିତ କରଇ ଦେବି ତୋୟା
ଦେବତା ଋଷି ନ ଜାଣନ୍ତି ତାର ମାୟା ।୯୦
ଅନେକ ଭାବେଣ ଯେ ବୋଲଇ ମହାସତୀ
ଋଷିଙ୍କର ତୁଲେ ଯେ ବଢ଼ାଇଲା ପ୍ରୀତି ।୯୧
କହଇ ଅନେକ ମତେଣ ଚାଟୁ ଯେ ପଟଳ
ଆବର ବସିଲା ଯାଇଂ ଋଷିଙ୍କର କୋଳ ।୯୨
ଆପଣେ ବିବସନ କଲାକ ଯେ ଋଷିଙ୍କି
ଭୋଳେଣ ପଡ଼ିଲେ ଋଷି ଜାହ୍ନବୀ ରୂପ ଦେଖି ।୯୩
ଛାଡିଲେ ବ୍ରତରାଜ ଜଞ୍ଜାଳୀର ଭାବେ
ଇଚ୍ଛିଲେ ଶୃଙ୍ଗାର ଯେ ଶାୟେଂତନୁ ଦେବେ ।୯୪
ଯେମନ୍ତେ ଅନେକ ଯେ ବଢ଼ିଲା ପୀରତି
ଦିବା ରାତ୍ରେଣ ଯେ ରମଣେ ଅଶାନ୍ତି ।୯୫
ଏହିପରି ଅନେକ ସମୟ ବହିଗଲା
ପୁଣିହିଂ ବେନି ସହସ୍ର ବରଷ ଶୃଙ୍ଗାରେ ବଞ୍ଚିଲା ।୯୬
ଯେସନେକ ଚଞ୍ଚଳା ଜାହ୍ନବୀ ଦୁଷ୍ଟ ଯେ ପ୍ରକୃତି
ନିଶ୍ଚଳ ହୋଇଣ ବସିଥାଇ ହୁଅଇ ଅଶାନ୍ତି ।୯୭
ବାହାର ହୋଇବା ସେ ଭାବହିଂ ଛାଡିଲା
ଶାୟେଂତନୁ ଋଷିଙ୍କି ସେ ବହୁତ କଟାଳିଲା ।୯୮
ବେଳେ ଅନ୍ନ ନ ଦିଅଇ ସେ ବେଳେ ନ ଦିଅଇ ପାଣି
ଋଷିଙ୍କ ଭାବ ସେ ନ ଯାଇ ଦିବା ଯେ ରୟେଣୀ ।୯୯
ଧର୍ମ ଛାଡି ଶାୟେଂତନୁ ପଶିଲେ ଶୃଙ୍ଗାରେ
କାଳେଣ ନ ଦେଲା ଦେହ ଡେଲାଇଲା ଦୂରେ ।୧୦୦
ରମଣୀ ମନ୍ଦିରେଣ ଲେଖନ ପିତୁଳା
ରତି ବନ୍ଧ ଲିହାଇଲେ କ୍ରୀଡ଼ାରଙ୍ଗ କେଳି ।୧୦୧
ଅନେକ ଚାଟୁ ପଟଳେ ସେ କହନ୍ତି ବାଉନୀ
ଋଷିଙ୍କି କଥା ସେ ନ କହଇ ମାନେନୀ ।୧୦୨
ରତିଶାସ୍ତ୍ର ପୁରାଣ ସେ ଶିଖାନ୍ତି ବ୍ରହ୍ମଚାରୀ
ଶାୟେଂତନୁଙ୍କର ଥିଲେ ସେ ନ ପଶଇ ଅନ୍ତପୁରୀ ।୧୦୩
ଦଣ୍ଡକମଣ୍ଡଳ ଶ୍ରୁବ ଶ୍ରୋହା ଯେ ପ୍ରୋକ୍ଷଣୀ
ଚୁଲାରେ ଭରିଣ ଜାଳଇ ଅଏଂଳା ବେଣୀ ।୧୦୪
କୁଶ ବିଡ଼ା ଆଦି କରିଣ କଷା ଯେ କପଟୀ
ବହନିରେ ଭରି ତାହା କରଇ ଭସ୍ମଭୂତି ।୧୦୫
ଯେମନ୍ତେ ଅନେକ ପ୍ରକାରେ କରାଇଲା ବିମୁଖ
ଗୃହବାସ ନିମନ୍ତେ ସହିଲେ ଅନେକ ଦୁଃଖ ।୧୦୬
ଭୋଖର ବେଳେ ସେ ନ ଦିଅଇ ଅନ୍ନଯାଚି
ଅକ୍ଷୁଧା ବେଳେ ସେ ବହୁତ କରି ଯାଚି ।୧୦୭
ଅନେକ ବେଶ ହୋଇ ଶାୟେଂତନୁ ମହାଋଷି
ଶୃଙ୍ଗାର ନିମନ୍ତେ କତି କତି ହୁଅନ୍ତି ଆସି ।୧୦୮
ପଛରେ ଆସି କୋଳକରି ଧରନ୍ତି ଶାୟେଂତନୁ
ମହା ଅବଳାନାରୀ ସେ ବାହାର ହୁଅଇ ଭୁବନୁ ।୧୦୯
ପଳାଇ ପଶନ୍ତି ସେ ବହୁତଙ୍କ ମେଳେ
କାମ ରସେ ବିହ୍ୱଳିତ ସେ ମହାତ୍ମା ବହୁତ ବିକଳେ ।୧୧୦

ଚିତ୍ର ବନ୍ଧ ପିତୁଳୀ ଯେ ଲେଖା ଅଛି କାନ୍ଥେ
ତାହାକୁ ଚୁମ୍ବନ ଦିଅନ୍ତି ମଦନ ଆରତେ ।୧୧୧
ହୃଦରେ ଲଗାଇ ଯେ କରନ୍ତି ଆଲିଙ୍ଗନ
ସେ ଚିତ୍ର ପିତୁଳୀକି କରଇ ରମଣ ।୧୧୨
କାମ ବୋଲିଣ ସେ ଯେବଣ ପୁରୁଷେ
ମାୟାଘୋର ସଂସାରେ ସେ ଅବସ୍ଥା ଦିଅଇ ଅଶେଷେ ।୧୧୩
ପୁରୁଷ ହୋଇ ବା ସ୍ତିରୀ ଜନ୍ମ ହୋଇ
ଅନଙ୍ଗ ସୁନ୍ଦର ନାଥ ଅନେକ ଦୁଃଖ ଦେଇ ।୧୧୪
ଆନନ୍ଦେଣ ମହାତ୍ମା ପିତୁଳାକୁ ଘେନି କରନ୍ତି କେଳି
ଧାତିକାରେ ଛାଡିଲା କାମ ବୀର୍ଯ୍ୟସ୍ଥଳୀ ।୧୧୫
ପିତୁଳୀ ରମଣେ ଛାଡିଲେ ମୁନି ବୀର୍ଯ୍ୟ
ସଇନ୍ଦୁ ଅମୋହ ରେତ ଛାଡିଲେ ମୁନିର ଉପୁଜିଲା
ଆତ୍ମଜ ।୧୧୬
ପୁତ୍ରେକ ଉପୁଜିଲା ଯେ ମହାବଳବନ୍ତ
ଦେଖିଣ କୋଳେ ତାକୁ ଧଇଲେ ତପୋବନ୍ତ ।୧୧୭
ଚିତ୍ର ପିତୁଳୀରୁ ଯେ ଉପୁଜିଲା ଆତ୍ମଜ
ଚିତ୍ରବୀର୍ଯ୍ୟ ନାମ ଦେଲେ ସୋମବଂଶ ମହାରାଜ ।୧୧୮
ପୁତ୍ର ଘେନିଣ ମହାତ୍ମା ହୋଇଲେ ବାହାର
ଗଙ୍ଗାକୁ ଲୁଚାଇ ଦେଲେ ସତ୍ୟବତୀ କୋଡ଼ର ।୧୧୯
ଗଙ୍ଗା ନଜାଣୁଂ ଯେହା ପାଳ ଅତି ଯତ୍ନେ
ଏତେ ବୋଲି ପୁତ୍ର ଦେଇ ଚଳିଲେ ମହାମୁନ୍ୟେ ।୧୨୦
ପୁତ୍ରଗୋଟି ଯତନେ ପାଳଇ ସତ୍ୟବତୀ
ବଢ଼ଇ ଚିତ୍ରବୀର୍ଯ୍ୟ ଅଯୋନି ଜାତ ମୂର୍ତ୍ତି ।୧୨୧
ଗଂଗାର ମେଳେ ପୁଣି ଯେ ଭାଳନ୍ତି ତପୋଧନି
ଭୟେଣ କିଛି ନ ବୋଲନ୍ତି ମହାମୁନି ।୧୨୨
ପାରେଶ୍ୱର ଶାୟେଂତନୁ ଦୁହିନ୍ତି ବସାଇ
କହନ୍ତି ମଧୁବତୀ କତିରେ ହକରାଇ ।୧୨୩
ବାବୁ ଶାୟେଂତନୁ ଯେ ମୋହର ବୋଲ କର
ଧର୍ମେଣ ବ୍ରତଇ ଯେହୁ ଯେ ସଂସାର ।୧୨୪
ଆମ୍ଭେ ତୋହର ପିତା ମାତା ଆମ୍ଭନ୍ତ ନଭାଳି
କାହିଂ ପ୍ରଦାନ ହୋଇଲୁ ତୁ ଗଂଗା ଯେ ଜଞ୍ଜାଳି ।୧୨୫
ତାହାକୁ ଉପକ୍ଷା ତୁ କରସିରେ ବାବୁ
ଅନେକ କଷ୍ଟ ପାଇବୁ ପ୍ରାଣେ ନାଶ ଯିବୁ ।୧୨୬
ଗୁରୁଜନଙ୍କର ବଚନ ନ କରନ୍ତି ଯେବଣ ବଳା
ବଂଶ ନାଶ ଯାଇଟି ଅଗାଦେ ଭାସଇ ଭୋଳା ।୧୨୭
ରୁଦ୍ର ଦେବତାର ଯେ ଅଟଇ ଜାହ୍ନବୀ
ଈଶ୍ୱର ଦେବତାର ଅଟଇ ପ୍ରିୟଭାବି ।୧୨୮
ଶାୟେଂତନୁ ବୋଇଲେ ତୁମ୍ଭେ ଗୁରୁଜନ
ଦ୍ରୋହ ଯେ ଲାଗଇ ତୁମ୍ଭର ବଞ୍ଚିଲେ ବଚନ ।୧୨୯
ମାତାର ବଚନ ମେଣ୍ଟିଲେ ଆୟୁଷ ହୋୟେ କ୍ଷୟେ
ପିତାର ବଚନ ଭାଙ୍ଗିଲେ ଧର୍ମ ନାଶ ଯାୟେ ।୧୩୦
ମାତାର ବଚନେ ଶାୟେଂତନୁ ବୋଇଲେ
ଦିବସ ନ ସରଇ ମୋହର ଗଗାଂକୁ ନ ଦେଖିଲେ ।୧୩୧
ତୁମ୍ଭେ ଆମ୍ଭର ଗୁରୁଜନ ଯେ ତାତ ମାତେ
ତୁମ୍ଭଙ୍କୁ ଉପେକ୍ଷା କରିବି ଗଗାଂର ନିମନ୍ତେ ।୧୩୨
ଗୁରୁଜନ-ବଚନ ମେଣ୍ଟିଲେ ପ୍ରିୟ ଭାବେ
ଗଂଗା ଏଣ ବିନୋପତି ଶାୟେଂତନୁ ଦେବେ ।୧୩୩
ଯେକଦିନେ ଶାୟେଂତନୁ ପଚାରନ୍ତି ଗଗାଂମାତା
ତୁମ୍ଭେ ଯେ ହୋଇଥିଲ ରୁଦ୍ରେଣ ଭଗତା ।୧୩୪
ସେ ବିଶ୍ୱନାଥ ଦେବ କାହିଂ ଅଛନ୍ତି ମୁନି କହ ହେ
ଯେହା ସଞ୍ଚପି ମୋତେ କହିବା ମୁନି ହେ ।୧୩୫
ଶାୟେଂତନୁ ବୋଇଲେ ସେ ପାତାଳ ଭୁବନେ
ହଟକେଶ୍ୱର କପିଳାସେ ବିଜୟେ ତ୍ରିଲୋଚନେ ।୧୩୬
ଶୁଣିଣ ସାନନ୍ଦ ଯେ ହୋଇଲେ ଜାହ୍ନବୀ
ପୋଡୁ ଯେହାର ଘର ଏଥୁଂ ବାହାର ହୋଇଯିବି ।୧୩୭
ଅନୁବ୍ରତେ ପେଟ ମାଡିଣ ଶୋଇଥାଇ କାନ୍ଦି
ତିନି ଦିନେ ବେଳେ ଅନ୍ନ ଭଲେ ନ ଦିଅଇ ରାନ୍ଧି ।୧୩୮
ସନ୍ନିଧେଣ ବସିଣ ଶାୟେଂନୁ ମୁନିବର
ଆଶ୍ୱାସନା କରନ୍ତି ଗଂଗାର ଶରୀର ।୧୩୯
କପାଳ ଆଉଁସି ପଛେ ଚରଣ ମଞ୍ଚାଳି
ଗାଢ଼େ ଧରିଣ ମୁନିବର କରନ୍ତେ ତାକୁ କେଳି ।୧୪୦
ଗାଢ଼େ ଯେତେବେଳେ ଧଇଲେ ତପୋବନ୍ତ
କେଶ ଧରିଣ ମୁନିଙ୍କି ମାରଇ ବହୁତ ।୧୪୧
ନଖଦନ୍ତ ଘାତେ ଶରୀର ବିଦାରି
ଋଷିଙ୍କ ବସନ ଖଣ୍ଡମାନ ପକାଇଲା ଚିରି ।୧୪୨
ଋଷିଙ୍କ କୌପୁନୀ ପକାଇଲା ଆଧାରି
ମାଳି ବେଦ କରାଣ୍ଡି ବାମିରେ ପକାଇଲା ଲୋଚି କରି ।୧୪୩
ଯେମନ୍ତ ଅବସ୍ଥା ଦେଲା ତାଙ୍କୁ ଯେ ଗଗାଂ

ବୃଦ୍ଧ ଋଷି ବୋଲି ଗାଳି ଦିଅଇ ଉରଭଙ୍ଗା ।୧୪୪
ଅନେକ ମନ୍ଦରେ ବହୁତ ଦିଅଇ ଗାଳି
ଶାୟେଂତନୁ ବୋଇଲେ ଗଙ୍ଗାଂ ତୁ ଏତେକ ଜଞ୍ଜାଳୀ ।୧୪୫
ସଦ ଅସଦ ତୁ ଯେ କରୁ ଅନମିତେ
ସଂସାର ଯାକ ଅନୀତି ବୋଲନ୍ତି ମୋତେ ।୧୪୬
ପୁରୁଷଙ୍କ ଆଶା ଭଙ୍ଗ କରନ୍ତି ଯେବଣ ନାରୀ
ଜନ୍ମେ ଜନ୍ମେଣ ସେ ହୁଅନ୍ତି ପାପାଚାରୀ ।୧୪୭
ପତିବ୍ରତା ହୋଇ ଯେ ଆନକୁ ସର୍ବ କହୁ
ସୁପନ୍ଥୁ ଥାଇ କିମ୍ପା ଅମତା ପନ୍ଥୁ ଯାଉ ।୧୪୮
ସୁପକ୍ୱ କରିଣ ଯେ ରନ୍ଧନ କରାବନ୍ତି ନିତି
ଆବର ରାନ୍ଧଣା ନ ଯୋଗାଇ ଏମନ୍ତ ପ୍ରକୃତି ।୧୪୯
ଅନେକ ପ୍ରକାରେ ଯେ ଲଗାଇବ କଳି
ରାନ୍ଧଣା ପାକ ଶାଳେ ଯେ ରାନ୍ଧିଣ ଦିଅନ୍ତି ବୋବାଳି ।୧୫୦
ପୁଣି ବୋଲନ୍ତି ଋଷି ରହ ରହ ସଂଗାତ
କିମ୍ପାଇ ଗୋଳ କରୁ ତୁ ଅନମିତ ।୧୫୧
ଯେହି ମତେ ଦଶ ସହସ୍ର ବରଷ ଗଲା
ସହିଲା ଶାୟେଂତନୁ ଯେତେ ତୁକାର ବୋଇଲା ।୧୫୨
ଯେମନ୍ତେ ଅନେକ କାଳ ସହିଲେ ଶାୟଂତେନୁ ମହାଋଷି
ସମୟେକ ଗଙ୍ଗାହୋଇଲେ ଗର୍ଭବାସୀ ।୧୫୩
ଅନେକ ସାନନ୍ଦ ଯେ ହୋଇଲେ ଶାୟଂତେନୁ
ଯେ ଘାନ୍ତି ସହିବ ଯେ ଆଶାବତୀର ତନୁ ।୧୫୪
ବନ୍ଧାପନା ଉଛବ ସେ ମନ୍ତ୍ରୀକୁ ପଚାରି
ଦଶମାସ ସଂପୂର୍ଣ୍ଣ ଯେ ହୋଇଲା ଗର୍ଭ ଭାରି ।୧୫୫
କନ୍ୟାମାସ ଶୁକ୍ଳପକ୍ଷ ଦଶମୀର ତିଥି
ଶ୍ରବଣା ନକ୍ଷତ୍ର ବାର ବୃହସ୍ପତି ।୧୫୬
ରାତ୍ର ହୋଇଅଛି ପଞ୍ଚଦଶ ଘଡ଼ି
ଗଙ୍ଗାର ଗର୍ଭରୁ ହାଦେ ପୁତ୍ରେକ ଯେ ଅବତରି ।୧୫୭
ଗଣ୍ଡମୂଳ ନାସ୍ତି ଯେ ଶ୍ରାବଣା ମକର
ପୁତ୍ର ମୁଖ ଚାହିଁବାକୁ ଶାୟେଂତନୁ ପଶନ୍ତି ଘର ।୧୫୮
ସୁବର୍ଣ୍ଣ ପାତ୍ରେକ ଯେ ଅର୍ଘ୍ୟକ ସେ ଘେନି
ଭିତର ପୁରକୁ ବିଜେ ପଶନ୍ତି ମହାମୁନି ।୧୫୯
ଶାୟେଂତନୁ ଗମନ କରନ୍ତେ ଦେଖିଲେ ମାହେଶ୍ୱରୀ
ପୁତ୍ରକୁ କାଟିଲା ଯେ ବେନିଖଣ୍ଡ କରି ।୧୬୦
ନାରାୟଣ ନାରାୟଣ ସୁମରନ୍ତି ଶାୟେଂତନୁ
ବିମୁଖେ ବାହାର ହୋଇଲେ ଜାତକ ଭୁବନୁଂ ।୧୬୧
କୋପେଣ ମହାତ୍ମା ବିମୁଖ ହୋଇଲେ
ପୁଣି ପଣ୍ଡିତ ଭାବେ କୋପ ସଂଘରିଲେ ।୧୬୨
ଦଶମାସ ଗର୍ଭରେ ଧଇଲାକ ଯେ ମାତା
ସେ ଯେବେ ମୂର୍ଚ୍ଛି ପାରିଲା ଗର୍ଭର ବ୍ୟଥା ।୧୬୩
ଆମ୍ଭର କିସ ଦୋଷ ହୁଅଇ ବିଚାରିଲେ
ଏତେକ ବିଚାରି ସେ କିଛି ହିଂ ନ ବୋଇଲେ ।୧୬୪
ଆମ୍ଭର କୋପ କଲେ ବାହାର ହେଇଯିବ
ଘର ଖଣ୍ଡେ କରିବାର ସେହିତ ନୋହିବ ।୧୬୫
ଯେତେବୋଲି ମହାତ୍ମା କୋପ ଯେ ସଂଘରି
ଗଙ୍ଗା ସନିଧେ ଯାଇ ପ୍ରବେଶ ତପଚାରି ।୧୬୬
ଅନେକ ମତେଣ ଖଟନ୍ତି ସେହି ଆଳି
ଋଷିଙ୍କର ସଂଗତେ ସେ ଲଗାଇଲା କଳି ।୧୬୭
ପୁଣି ଶାୟେଂତନୁଙ୍କୁ ଯାଇ ନ ଦେଲେକ କତି
କାମେଣ ସଂଘରଣ ହୋଇଲେ କ ଯତି ।୧୬୮
ଅନେକ ମତେଣ ଚାଟୁ ବଚନ ସେ ବୋଲି
ଶୃଙ୍ଗାର ନ ଦେଇ ସେ ଋଷିଙ୍କି ପକାଇଲା ପେଲି ।୧୬୯
ଅସମ୍ଭାଳ ହୋଇଣ ଚିତ୍ର ପିତୁଳି ଘରେ ମିଳି
ବିବସନ ହୋଇ ମୁନି ତା ସଙ୍ଗରେ କରେ କେଳି ।୧୭୦
ମୁଖଏଣ ରତି କରାଇଲା ଚିତ୍ର ରତି
ଢଳିଲା ଅମୋହ ରେତ ପଡ଼ିଲା ଯାଇ କ୍ଷିତି ।୧୭୧

.........

ଋଷିଙ୍କର ଅମୋଦ ରେତ ସେ ନାଶହିଂ ନୋହିଲା
ସଇନ୍ଦୁ ଜାତ ସେ ପୁତ୍ରେକ ହୋଇଲା ।୧୭୨
କୋଳେଣ ଶାୟେଂତନୁ ଯେ ଧଇଲେ ଆତ୍ମଜ
ସେ ପୁତ୍ରର ନାମ ଦେଲେଟି ବିଚତ୍ରବୀର୍ଯ୍ୟ ।୧୭୩
ଗଙ୍ଗାକୁ ଲୁଚାଇ ଥୋଇଲେ ମହାଯତି
ଗଙ୍ଗାର ଡରେଣ ପାଳିଲେ ସତ୍ୟବତୀ ।୧୭୪
ବୋଲନ୍ତି ଅଗସ୍ତି ଶୁଣ ଗୋ ଯୋଗେଶ୍ୱର
ଚିତ୍ର, ବିଚିତ୍ରବୀର୍ଯ୍ୟ ଅଯୋନି ଅବତାର ।୧୭୫
ପୁଣିହିଂ ସତ ସଙ୍ଗ ଯେ କଲେ ମୁନି ଗଙ୍ଗାର ତୁଲେ
ଆଉବେଳେ ଗଙ୍ଗା ଗର୍ଭବତୀ ହୋଇଲେ ।୧୭୬
ମୀନମାସ ଶୁକଳ ପକ୍ଷ ଯେ ପୂର୍ଣ୍ଣମୀର ରାତି
ଉତ୍ତରାଷାଢ଼ା ନକ୍ଷତ୍ର ଯେ ପୁତ୍ରେକ ଉତପତ୍ତି ।୧୭୭

ଉତ୍ତରାଷାଢ଼ା ନକ୍ଷତ୍ର ଅର୍କବାର ମକର ରାଶି

ଯେମନ୍ତ ଯୋଗେଣ ପୁତ୍ରେକ ପରକାଶି ।୧୭୮

ପୁତ୍ରକୁ ଦେଖିବାକୁ ଯେ ହରଷ ତପୋନିଷ୍ଠି

ପୁଣି ଗଙ୍ଗା କାଟିଲା ଯେ ପୁତ୍ରର ମୁଣ୍ଡ ଗୋଟି ।୨୭୯

ଦେଖିଣ ଆଶ୍ରିଯ ଯେ ହୋଇଲେ ତପୋଧନୀ

ଧର୍ମ ଧର୍ମ ସୁମରି ଯେ ବାହାର ହୋଇଲେ ମୁନୀ ।୧୮୦

ଆସନେ ବସି ମନେଣ ବହୁତ ବଥା କଲେ

କୋପ ନ ସଂଘରି ଭ୍ରଛନା ବୋଲିବାକୁ ବୋଇଲେ ।୧୮୧

ପୁଣି ବୋଇଲେ ମାତା ହିଂ ସେ ଗର୍ଭଧାରୀ

ଦଶମାସ ଗର୍ଭେ ଧଇଲା ଅନେକ ଦୁଃଖ ପଡ଼ି ।୧୮୨

ସେ ଯେବେ ତାହାର ପୁତ୍ରକୁ ପାରିଲା ନାଶ କରି

ଆମ୍ଭର କିସ ଦୋଷ ହୋଇଲା ବୋଲନ୍ତି ତପଚାରୀ ।୧୮୩

ଯେତେ ବୋଲି ମହାମୁନି କୋପ ସଂଘରିଲେ

ପୁଣି ଗଂଗାକୁ ସମାର୍ଜିଣ କୋପ ଶାନ୍ତି କଲେ ।୧୮୪

ମକର ମାସ ଶୁକ୍ଳପକ୍ଷ ତିଥି ପ୍ରତିପତା

ଭୌମ୍ୟବାର ଅଶ୍ଳେଷା ନକ୍ଷତ୍ର ଯୁଗତା ।୧୮୫

ସେ ଦିନେ ଶାୟେନ୍ତନୁ ଗଲେ ସମୁଦ୍ର ସାହନେ

ଗଙ୍ଗା କଇ ସମୁଦ୍ର ସ୍ନାହାନେ ନେଲେ ମହାମୁନ୍ୟେ ।୧୮୬

ପାରେଶ୍ୱର ସଙ୍ଗେ ସତ୍ୟବତୀ ଗଲେ ଗଂଗା ନାହିବାକୁ

ସଂଗତରେ ନେଲେ ଚିତ୍ର ବିଚିତ୍ର ବୀର୍ଯ୍ୟକୁ ।୧୮୭

ସମୁଦ୍ର ସ୍ନାହାନ ସାରି ଚନ୍ଦ୍ରଭାଗାୟେଣ ପଶି

ବାଳ କୁମରନ୍ତ ଘେନି ସ୍ନାହାନ କରନ୍ତି ପାରେଶ୍ୱର ଋଷି ।୧୮୮

ଯେମନ୍ତର ସମୟେ ପ୍ରବେଶ ଶାୟେଂତନୁ

ଦୁଇ କୁମରେ ବାହାର ହୋଇଲେ ଜଳ ଯେ ଉଦ୍ୟାନୁଂ ।୧୮୯

ଭୋ ପିତା ବୋଲି କରି ଧରିଲେ ଶାୟେଂତନୁର ପାଦ

ଦେଖିଣ ଧବଳାଙ୍ଗୀ ହୋଇଲେ ବିଷାଦ ।୧୯୦

ଗଂଗା ପଚାରିଲେ ଯେ କାହାର ତନୟେ

ତୁମ୍ଭର ତନୟ ପରାତ ଦିଶନ୍ତି ମୁନି ହେ ।୧୯୧

ତରେ ଶାୟେଂତନୁ ବୋଇଲେ ନୋହଇ ଆମ୍ଭର ହିଂ

ନ ପୁଣ ପୁତ୍ର ବୋଇିଲେ ଏହାନ୍ତ ମାରଇ

ଯେତେକ ବିଚାରିଣ ବୋଇଲେ ତପୋନିଷ୍ଠି

ରାଗେଣ ଗଙ୍ଗା ବୋଇଲା ତୋହର ପୁତ୍ର ଯେଟି ।୧୯୩

ଶାୟେଂତନୁ ବୋଇଲେ ପାଇବୁ ଆମ୍ଭେ କାହିଂ

ତୋହର ତହୁଂ ଆମ୍ଭର ଆନେ ଭାରିଯା ନାହିଂ ।୧୯୪

ଶୁଣିଣ କୋପ ହାତେ ଯେ କଲେ ଗଙ୍ଗା ଧବଳୀ

ଭୂତ ଭବିଷ୍ୟ ସେ ଜାଣଇ ପରମ ନିରାକୁଳୀ ।୧୯୫

ଆହୋ ଶାୟେଂତନୁ ଲୁଚାଇଲୁ ଯେବେ ମୋତେ

ଅପୁତ୍ରିକ ହୋଇ ନାଶ ଯାନ୍ତୁ ତୋର ପୁତ୍ରେ ।୧୯୬

ଯେତେକ ଶାପ୍ୟ ଯେ ଦେଲେ ଧବଳାଙ୍ଗୀ

ପୁତ୍ରନ୍ତ ଘେନି ପାରେଶ୍ୱର ଚଳିଲେ ତହୁଂ ବେଗି ।୧୯୭

ପ୍ରବେଶ ହୋଇଲେ ଯାଇଂ ଯମପ୍ରସ୍ତ ପୁରେ

ସ୍ନାହନ ସାରି ଶାୟେଂତନୁ ଅଇଲେ ରାଜ୍ୟରେ ।୧୯୮

ଗଙ୍ଗାର ଶାୟେଂତନୁଙ୍କର ଅନେକ ପୀରତି

ସମୟେ ଯେ ଗଙ୍ଗା ହୋଇଲେ ଗର୍ଭବତୀ ।୧୯୯

ପ୍ରିୟା ମେଳ ବେଳେ ତାଙ୍କୁ ପଚାରନ୍ତି ତପୋଧନି

ପୁତ୍ରନ୍ତ କିମ୍ପା ନାଶ କଲୁ ଧବଳ ବଦନି ।୨୦୦

ଗଙ୍ଗା ବୋଇଲେ ମୋର ଦୁଷ୍ଟ ଯେ ପ୍ରକୃତି

ପୁତ୍ର ବୋଲି ମୋର ନାହିଂ ସଦୟ ଭାବି ମତି ।୨୦୧

ତୁଳ କୃଷ୍ଣ ଦୁତୀୟା ଚନ୍ଦ୍ରବାରେ

ରୋହେଣୀ ନକ୍ଷତ୍ର ବେଳ ବେଢ଼ ଯେ ପ୍ରହରେ ।୨୦୨

ପୁତ୍ରେକ ଉପୁଜିଲା ଗଙ୍ଗାର ଗର୍ଭଗତେ

ଦେଖିବାକୁ ଶାୟେଂତନୁ ଯେ ପଶିଲା ଗୁପତେ ।୨୦୩

ଋଷିଙ୍କର ଦେଖନ୍ତେ ଗଙ୍ଗା ଘେନିଲା କରେ ତୋଳି

ରହ ରହ ବୋଲିଣ ଶାୟେଂତନୁ ବୋଲି ।୨୦୪

କୋପେଣ ଖଡ଼ଗେକ ଯେ ଧରିଣ ଗୋସାମଣି

କରେ ତୋଳି କୁମରକୁ ପକାଇଲା ହାଣି ।୨୦୫

ଶିବ ଶିବ ବୋଲିଣ ବାହୁଡଇ ତପଚାରୀ

ସତ୍ୟ ଭଗ୍ନ ନିମନ୍ତେଣ କିଛି ବୋଲି ତ ନ ପାରି ।୨୦୬

ପୁଣି ସମୟେକ ଗଙ୍ଗା ହୋଇଲା ଗର୍ଭବତୀ

ପୁତ୍ରେକ ଉପୁଜିଲା ମଦନ ମୂରତି ।୨୦୭

ଋଷିଙ୍କି ଦେଖନ୍ତେଣ ଯେ ପକାଇଲା ଛେଦି

ଶାୟେଂତନୁ ବୋଇଲେ ତୁ ଯେଡେକ ପ୍ରମାଦି ।୨୦୮

ଯେମନ୍ତେଣ ଗଙ୍ଗା ଛପୁତ୍ର ଉପୁଜାଇଲା

ଋଷିଙ୍କର ଦେଖନ୍ତେ ସମସ୍ତ ନାଶ କଲା ।୨୦୯

ପୁଣ ସମୟେକ ଗଙ୍ଗା ହୋଇଲେ ଗର୍ଭବାସୀ

କିଛି ନ ବୋଲନ୍ତି ସେ ମହାବ୍ରହ୍ମଋଷି ।୨୧୦

ଦଶମାସ ଗର୍ଭଭାରା ସହି ନ ପାରନ୍ତି କାନ୍ତାନୀ

କୋଳ କରି ସମ୍ବୋଧନା କରନ୍ତି ତପୋଧନି ।୨୧୧

ଗଙ୍ଗା ବିଚାରଇ ଅନେକ ଦୁଃଖ ଦେଲି
ଆତ୍ମାରୁ ଜାତ କରି ଛ'ପୁତ୍ର ନାଶ କଲି ।୨୧୨
ଯେତେ ଦୋଷେ ଯେ କୋପତ ନ କଲା
ଭୃତ୍ସନା ସହିଲା ଗାଙ୍ଗୀ ନ ବୋଇଲା । ୨୧୩
ସତ୍ୟ ଛାଡି ନ ପାରେ ମୁନି ଅଛି ସତ୍ୟ ଚିତ୍ତେ
ସତ୍ୟ ଲଙ୍ଘିଣ ମୁହିଂ ଯେ ଯିବଇଂ କୈମନ୍ତେ ।୨୧୪
ଯେ ଘାନ୍ତି ଯେ ପୁତ୍ର ଗୋଟିକ ମାରିବି
ଭୃତ୍ସନା ନ ବୋଇଲେ ତୋଟି ମେଲାଇବି ।୨୧୫
ଯେସନେକ ବିଚାରନ୍ତେ ହୋଇଲା ମହାଭାରି
ମହାବଳବନ୍ତା ସେ ପୁତ୍ର ସହି ନ ପାରି ।୨୧୬
ବୋଲନ୍ତି ମାହେଶ୍ୱରୀ ଶୁଣିମା ମୁନି ହେ
ବଡ଼ ବଳବନ୍ତା ପୁତ୍ର ଗୋଟିଏ ଗର୍ଭ ରହେ ।୨୧୭
ଋଷି ବୋଇଲେ ବଳବନ୍ତା ହଉକି ସୁନ୍ଦର ହିଂ ହୋଉ
ପ୍ରାପତ ଯେବେ ନୋହିବ ସେ କି ହୋଇବ ବା ଆଉ ।୨୧୮
ଯେତେ ବୋଲି ବିଚାର ସେ କଲେ ଶାୟେଂତନୁ
ଆଳସ ଯୁବତୀ ସେ ଦଶମାସ ସମ୍ପୂର୍ଣ୍ଣ ।୨୧୯
ବିଛା କୃଷ୍ଣ ପ୍ରତିପ୍ରଦା ଦିନ
ଭୃଗୁବାର ରୋହିଣୀ ଯେ ବାର ବିଦ୍ୟମାନ ।୨୨୦
ସିଦ୍ଧି ନାମେ ଯୋଗ କରଣ ବାଣିଜ୍ୟ
ରାତ୍ର ପାଞ୍ଚ ଦଣ୍ଡରେ ଉତପତି ଆତ୍ମଜ ।୨୨୧
ପୁତ୍ରର ପ୍ରସବ ଶୁଣିଣ ମହାଯତି
ଅମୃତ-ନାମେଣ ଜାତେକ ରୋହେଣୀ ବୃକ୍ଷଜାତି ।୨୨୨
ଶୁକ୍ର ବେଳେ କୋଳେ ଜାତ ବଳା
ପୃଥୁଳ ଗୁଣ ସୁନ୍ଦର ବତିଶ ଗୁଣେ କଳା ।୨୨୩
ପଞ୍ଚମେ ଶନିଶ୍ଚର ବୃହସ୍ପତି ଚତୁର୍ଥ
ତୃତୀୟ ଘରେ ରାହୁ କେତୁ ଯେ ସପତ ।୨୨୪
ନବମ ଘରେ ମଙ୍ଗଳ ବୁଧ ଯେ ଦଶମେ
ବାମେଣ ଯୋଗ୍ନୀ ଯେ ଈଶାନ ଯୋଗ ବାମେ ।୨୨୫
ବତିଶ ପାଦ ଅଟଇ ମାହିନ୍ଦ୍ର ଯୋଗ
ଯେକତ୍ରିଂଶ ପାଦେ ଜନ୍ମ ନାହିଂ ଆରେକ ପାଦ ଭୋଗ ।୨୨୬
ପାଦେଣ ଜାତ ଯେ ହୋଇଲାକ ବାଳ
ଦେଖିଣ ଜାହ୍ନବୀ ଧଇଲେ ତାକୁ କୋଳ ।୨୨୭
ଶାୟେନ୍ତନୁ ବୋଇଲେ ଯେ ବଡ଼ ବିଚକ୍ଷଣ ବଳା
ଦେଖନ୍ତେ ମୁକତି ଅତି ଗର୍ଭର ବଳା ।୨୨୮

ଆହୋ ପୁତ୍ର ଗୋଟି ଉତପତ୍ତି ଯେତେବେଳେ
ମୁଖ ଚାହାନ୍ତେଣ ମାତାର ଜନ୍ମ ସୁଫଳେ ।୨୨୯
ଦୁତୀୟେଣ ପିତା ତାହାର ଚାହିଂବ ବଦନ
ଜହ୍ନକୁ ଫିଟିବ ତାର ଅପୁତ୍ରିକ ଲକ୍ଷଣ ।୨୩୦
ଜୀଉ କିମ୍ବା ମରୁ ଯେ ତାହାର ମନ୍ଦକର୍ମ
ପିତାକୁ ମୁକତ ହୁଅଇ ଅନେକ ଧର୍ମ ।୨୩୧
ଯେତେ ବିଚାରିଣ ପଣ୍ଡିତ ଭାଗ୍ୟବନ୍ତ
ପୂର୍ଣ୍ଣ ପାତ୍ରେକ ଯେ ଘେନିଣ ମୁନି ହସ୍ତ ।୨୩୨
ସୁବର୍ନ୍ୟ ଦୀପେକ ଗୁଆଘୃତ ପୁରାଇ
ନେତର ବଳିତାୟେ ତହିଂର ମୁଖେ ଦେଇ ।୨୩୩
ଚଳନ୍ତି ମହାତ୍ମା ଯେ ପୁତ୍ର ଦେଖିବାକୁ
ପୁତ୍ର ନିରେଖିଣ ଚଳନ୍ତି ଭିତରକୁ ।୨୩୪
ଅନ୍ତୁଡି ଘରେଣ ଯେ ପଶିଲେ ସୋମବଂଶୀ
ପୁତ୍ର ଘେନିଣ ଗଙ୍ଗା ଯେ ସାକ୍ଷାମେ ଅଛି ବସି ।୨୩୫
ଦେଖ ହୋ ମହାତମା ତୁମ୍ଭର ପୁତ୍ର ଗୋଟି
ଅର୍ଘ୍ୟ ଯେ ଦେଇଣ ଲୟେ ଚାହାନ୍ତି ତପନିଷ୍ଠି ।୨୩୬
କରେଣ ଘେନିଲା ଗଙ୍ଗା କର୍ଣ୍ଣ କଟାରି
ଋଷି ଦେଖନ୍ତେ ପୁତ୍ରକୁ ଲୋଡଇ ମାରି ।୨୩୭
ଗଙ୍ଗାର ହସ୍ତ ଯେ ଧଇଲେ ଶାୟେଂତନୁ
ଆଲୋ ଗାଙ୍ଗି କେତେ ପୁତ୍ର ମାରି ହତ୍ୟାତୁ ଘେନୁ ।୨୩୮
ଆଲୋ ଛଡ଼ ପୁତ୍ର ମାଇଲୁ ନ ପୁରିଲା ତୋର ଦୃଷ୍ଟି
ଆଲୋ ଗାଂଗି ତୁ ମନ୍ଦ ସେଟି ।୨୩୯
ଯେତେକ ଅଛନ୍ତି ଯେ ସଂସାରେ ପୋଖତୀ
ସବୁରି ଆପଦ ପଡୁ ତୋ ମୁଣ୍ଡେ ନିତି ।୨୪୦
କଟାରି କରୁ ଘେନିଲେ ସେ ଚାପୋଡେକ ମାରି
ପେଲି ପକାଇ ପୁଅ ଘେନିଲେ ଉଛୁଡି ।୨୪୧
ଗଂଗା ଉଷତ ହୋଇଲେ ଶାୟେଂତନୁଙ୍କ ଉତ୍ତରେ
ବ୍ରତ ପୂରିଲା ମୁନିୟେ ଯାଉଛି ନିର୍ଭରେ ।୨୪୨
ଯେତେକ ବୋଲିବାକୁ ମୁଁ ବାଟ ଚାହିଁଥିଲି
ଗାଙ୍ଗି ବୋଲିବ ବୋଲୀ ତୁମ୍ଭେ ମୁଁ ଛ' ପୁତ୍ର ମାଇଲି ।୨୪୩
ଯେତେ ବୋଲିଣ ଗଙ୍ଗା ଉଠିଲେ ବହନ
ପୁତ୍ର ଛାଡି ଦେବୀ ଉଠିଲେ ତୋଷମନ ।୨୪୪
ଉଠିଣ ଶାୟେଂତନୁ ଧଇଲେ କୋଳ କରି
ନିଶ୍ଚୟେ ବ୍ରତ ପୂରିଲାଟି ମୋହୋରି ।୨୪୫

ଯେତେ ବୋଲିଣ ଯେ ହୋଇଲେ ବାହାର
ସାଏଁତନୁ ବିନୟ ଭାବେ କହନ୍ତି ଅପାର ।୨୪୬
ବୋଲନ୍ତି ଯେ ଯେ ବାଳେକ ପୁତ୍ର ଗୋଟି
କେମନ୍ତେ ବଞ୍ଚିବ ଯେ ନ ପାଇ କ୍ଷୀର ଫୁଟି ।୨୪୭
ଲେଉଟି କରିଣ ଯେ ଜାହ୍ନବୀ ଚାହିଂଲା
ଜାଂଇଲେ ଜାଉଂ ମଲେ ମରୁ ମୋର କିସ ହୋଇଲା ।୨୪୮
ଗାଢେଣ କୋଳ କରି ଧଇଲେ ମୋହାମୁନି
ରାଗେଣ ପେଲି ଯେ ପକାଇଲା କାନ୍ତାନୀ ।୨୪୯
ତୁ କିମ୍ପା ମୋତେ ଆବୋରିଣ ଧରୁ
ବ୍ରତ ପୁରିଲା ମୋର ହୋଇଲି ତୋର ଗୁରୁ ।୨୫୦
ସତ୍ୟ ପାଳିଥିଲି ଯେତେ ବେଳ ପରିଯନ୍ତେ
ଭୃତ୍ୟପଣେ ସେବା ମୁଁ କରିଥିଲି ତୋତେ ।୨୫୧
ଗାଙ୍ଗି ବୋଇଲେ ନଥାଇ ଗଙ୍ଗା ବୋଇଲେ ଥାଇ
ଗାଙ୍ଗି ବୋଇଲୁ ଯାଉଛି ବରତ ପୁରାଇ ।୨୫୨
ଯେବେ ମୁଂ ତୋ ଗୁରୁ ତୁ ମୋହର ଶିଷି
ଗୁରୁ ପତ୍ନୀ କି କିଂପା ତୁ ଛୁଉଂ ମହରଷି ।୨୫୩
ଯେ ପୁତ୍ର ଗୋଟିର ଯାତ ହୋଇବ ଯେବଣ ପୁତ୍ରେ
ତୁ ଶାଏଂତନୁ ଶିରଚ୍ଛେଦ ହୁଅ ନାତିର ହାତେ ।୨୫୪
ତରେଣ ଛାଡିଲେ ସେ ଅନାଦି କାନ୍ତାନି କି
ଧାତିକାରେ ଜଳେ ସମ୍ଭାଇଲେ ତ୍ରିଅମ୍ବେକି ।୨୫୫
ପୁତ୍ରକୁ ଘେନି ମୁନି ବିସ୍ମୟ ହୋଇଲେ
ବିଚାରି ବିଚାରି ମୁନି ଭୀଷ୍ମ ନାମ ଦେଲେ ।୨୫୬
ଜୀଇଲେ ଜୀଉଂ ହିଂ ମଲେ ମରୁ ଗଙ୍ଗା ବୋଇଲା
ଇଚ୍ଛା ମୃତ୍ୟୁ ପଦ ଯେ ସେଦିନୁ ଭୀଷ୍ମ ପାଇଲା ।୨୫୭
ପାରେଶ୍ୱର ଶାଏଂତନୁ ଭୂରିଶ୍ରବା ଯେ ତିନି ଭ୍ରାଥେ
ପାରେଶ୍ୱର ହୁଂ ବ୍ୟାସେ ହୋଇଲେ ସମ୍ଭୁତେ ।୨୫୮
ଶାଏଂତୁ ବୀର୍ଯ୍ୟେ ଉପୁଜିଲେ ଚିତ୍ର ବିଚିତ୍ର ବୀର୍ଯ୍ୟେ
ଭୀଷ୍ମ ଯେ ଉପୁଜିଲେ ଏକଇ ଆତ୍ମଜେ ।୨୫୯
ଶାଏଂତନୁ ଋଷିଙ୍କର ତିନି ଗୋଟି ସନ୍ତତି
ଆଦି କୁରୁବଂଶେ ଯେଥୁ ହୋଇଲେ ଉତପତ୍ତି ।୨୭୦

✱✱

## ୯. ଭୀଷ୍ମ-ଅମ୍ବା ଉପଖ୍ୟାନ

### ଭୀଷ୍ମଙ୍କ ବିବାହ

ବଦନ୍ତି ଅଗସ୍ତି ଶୁଣ ଯୁଗପତି
ଚିତ୍ରବୀର୍ଯ୍ୟ ବିଚିତ୍ରବୀର୍ଯ୍ୟ ବିଭାର ସଂଗତି ।୧
କନ୍ୟା ଘେନିଣ ଯେ ବିଳସନ୍ତି କୁମାରେ
ସନ୍ତାନ ଜାତ ନୋହିଲା କନ୍ୟାଙ୍କ କୋଡରେ ।୨
ଦେଖିଣ ବିରସ ଯେ ଶାଯେନ୍ତନୁ ମହରଷି
ଗଙ୍ଗାର ଶାପ ଯେ ସୁମରିଲା ପରମେସି ।୩
ବିଶେଷଣ ମାଏଶ୍ୱରୀ ଆବର ନିଜ ମାତା
ଗଙ୍ଗାର ଶାପ ଗୋଟି ପ୍ରତକ୍ଷେ ବିଧାତା ।୪
ମନେ ବିଚାର କରି ଭାଳନ୍ତି ତପନିଷ୍ଠ
କେମନ୍ତ ତାହାର ଶାପ୍ୟ ମୋହର ପୋଏ ମେଣ୍ଟି ।୫
ମନରେଣ ପୁଣି ବିଚାରନ୍ତି ତପୋଧନି
ଶାପ ବଞ୍ଚାଇବାକୁ ବୁଦ୍ଧି କରନ୍ତି ମହାମୁନି ।୬
ଅନେକ ଯାଗ ଯଜ୍ଞ କରନ୍ତି ମୁନିମ୍ବର
ତେତେକେ ହେଁ ଗଙ୍ଗାର ଶାପ୍ୟ ନୋହିଲାକ ପାର ।୭
ଅପୁତ୍ରିକ ହୋଇଲେ ଚିତ୍ର ବିଚିତ୍ରବୀର୍ଯ୍ୟେ
ସନ୍ତାନ ନୋହିଲାକ ବଂଶ ଗ୍ରାହିକ୍ୟେ ।୮
ବିଚାରନ୍ତି ମହାତ୍ମା ସୋମବଂଶ ଆଧିପତି
ଭୀଷ୍ମଙ୍କୁ ଚାହିଁଣ ମହାଋଷି ପଚାରନ୍ତି ।୯
ତୁ ବାବୁ ପ୍ରଦାନ ହୋ ଅସି କୁମାରୀ
ବଂଶ ରକ୍ଷା କର କୁମାର ଜାତ କରି ।୧୦
ଯେତେକ ବିଚାର ସେ ଶାଯେନ୍ତନୁ କରନ୍ତି
ଅମ୍ବେକା କନ୍ୟା ବୋଲି ଆରେକ ଯୁବତୀ ।୧୧
ତାହାକୁ ସ୍ୱୟମ୍ବର କଲେ ନୃପମଣି
ଲକ୍ଷେ ନୃପତି ବରଣ କରାଇ ଆଣି ।୧୨
ଅନେକ ଉଛବ କଲା ମଳୟାନିଳ
ଆରମ୍ଭେ ମିଳିଲେ ଯାଇ ସମସ୍ତ ମହୀପାଳ ।୧୩
ସମସ୍ତ ରାଜାମାନ ଦିଅଇ ମୁଣୋହିଁ
ଅଶ୍ୱଗଜଙ୍କ ଚରଣେ ସମସ୍ତ ତୁଲାଇଁ ।୧୪
ଦ୍ୱାଦଶ ଯୋଜନ ଯେ ଛାୟାର ମଣ୍ଡପ
ଯେସନେକ ସମ୍ଭର୍ବ ଯେ କରିଅଛି ନୃପ ।୧୫
ପୃଥିବୀରୁ ବରି ଆଣିଲେ ଚାରିଉଣା ଲକ୍ଷେକ ନୃପତି
ଅନେକ ସମ୍ଭର୍ବେଣ ବସିଣ ଅଛନ୍ତି ।୧୬

ବଦନ୍ତି ଅଗସ୍ତି ଶୁଣ ରାଜ ସାଇଁ
ଶାୟେନ୍ତନୁକୁ ଚାରଗଣେ ବାରତା କଲେ ଯାଇଁ ।୧୭
ଅୟାର ସ୍ୱୟମ୍ବର ଉତ୍ସବ ବୋଲନ୍ତି ନିମନ୍ତଣେ
ଭୀଷ୍ମେ ବୋଇଲେ ହୋ ଶୁଣ ଚାରଗଣେ ।୧୮
ପଦ୍ମଲାଭ ନୃପ କିମ୍ପା ବିଚାର ନ କଲା
ଦୁଇ ଦୋହିତା ଆମ୍ଭ ଦୁଇ ଭାଇଙ୍କି ଦେଲା ।୧୯
ଆରେକ କନ୍ୟା ଯେବେ ଅଛଇଁ ତାଙ୍କର
ଆମ୍ଭଙ୍କୁ ପ୍ରଦାନ ତେବେ କରୁ ନୃପ ବର ।୨୦
ଯେତେକ ଆଜ୍ଞା ଶୁଣିଣ ଚାରଗଣେ ତୁରିତେ
ପଦ୍ମଦଳ ଦେଶକୁ ସେ ବାହୁଡ଼ିଲେ ଦୂତେ ।୨୧
ପଦ୍ମନାଭ ରାଜାକୁ ଯେ କହିଲେ ଯାଇ ଚାର
ଭୋ ଦେବ ନାଶ ଗଲା ଯେ ତୋହର ସ୍ୱୟଂବର ।୨୨
ଆମ୍ଭେ ଅନେକ ଦେଶ ବୁଲି ରାଜାଗଣ ବରଣ କଲୁ
କୁଞ୍ଜଗଳ ଦେଶେ ଯାଇଁ ପ୍ରବେଶ ହୋଇଲୁଁ ।୨୩
ଶାୟେନ୍ତନୁକୁ ବରଣ କରନ୍ତେ ମାଳା ଦେଇ
ଭୀଷ୍ମ ବୋଇଲେ ଆମ୍ଭନ୍ତ କତିରେ ବସାଇ ।୨୪
ଅମ୍ବିକା ଅମ୍ବାଳିକା ଚିତ୍ର ବିଚିତ୍ରବୀର୍ଯ୍ୟକୁ ଦେଲା
ଆରେକ କନ୍ୟା ଯେବେ ଅଛି ମୋତେ କିମ୍ପା ନ ବରିଲା ।୨୫
ଆହୋ ଚାରଗଣେ କହ ତୁମ୍ଭେ ଯାଇଁ
ଅମ୍ବା କନ୍ୟା ଆମ୍ଭଙ୍କୁ ଦେବ ନର ବର ।୨୬
ଶୁଣିଣ ବିରସ ଯେ ହୋଇଲା ନୃପତି
ଆଗହୁଁ ନଫୁଟରେ ଗୋପ୍ୟ କର ଧାତି ।୨୭
ଲକ୍ଷେ ରାଜା ଯେ ବରଣ କଲି ସ୍ୱୟଂମ୍ବର
ଅନେକ ଆରମ୍ଭେ ଆସି ବସିଲେ ନୃପବର ।୨୮
ଯତନେଣ ବରଣ ମୁଁ ଆଣିଲି ସ୍ୱୟଂମ୍ବର ନିମନ୍ତେ
ନାସ୍ତି କଲେ ରାଜାଗଣେ ଜୀଆଇଁବେ କି ମୋତେ ।୨୯
ଶୁଣିଣ ଚାରଗଣମାନେ ହୋଇଲେ ପରମ ତୃଷ୍ଟି
ବହନ କରି ଆଣିଲା ସେ ସଭାକୁ କନ୍ୟାଗୋଟି ।୩୦
ମାଗୋ ରାଜା ମାନନ୍ତ ବରି ଆଣିଲି ତୋହର ନିମନ୍ତେ
ବରବେଶ ହୋଇଣ ବସିଲେ ନୃପତ୍ୟେ ।୩୧
କନ୍ୟାକୁ କହନ୍ତି ଦେଖ ସଂୟେମ୍ବର ବିଧାନ
ମାଳା ଦେଇ ବରଗୋ ଯାହାକୁ ତୋର ମନ ।୩୨
ଯେମନ୍ତ ସମୟେ ସେ ଭୀଷ୍ମଙ୍କର ଦୂତ
ମନ୍ମଥ ସେନାପତି ସଙ୍ଗତେ ଘେନି ଶତେ ରଥ ।୩୩
ସୟମ୍ବର ସ୍ଥାନେ ପ୍ରବେଶ ହୋଇଲା ମନ୍ମଥ
ବୋଲନ୍ତି ଚାରଗଣେ ଆମ୍ଭେ ଭୀଷ୍ମଙ୍କର ଦୂତ ।୩୪
ଯେବଣ କନ୍ୟା ତୁମେ କରୁଛ ସଏମ୍ବର
ସେ କନ୍ୟା ଗୋଟିକୁ ଭୀଷ୍ମେଙ୍କୁ ପ୍ରଦାନ କର ।୩୫
ପଦ୍ମନାଭ ବୋଇଲା ଗାଙ୍ଗେବ ମହାକ୍ଷତ୍ରୀ
ଆଗହୁଁ ଜାଣିଲେ କିମ୍ପା ମୁଁ ସ୍ୱୟମ୍ବର କରନ୍ତି ।୩୬
ଦେଖ ହାଦେ ସୟମ୍ବର କରିଛି ଦେବତାନ୍ତ ଆଣି
ଯେହା କି ଭାଙ୍ଗିଣ ମୁଁ ପାରିବି ଯେହିକ୍ଷଣି ।୩୭
ମନ୍ମଥ ବୋଇଲା ହୋ ଶୁଣ ରାଜାମାନେ
ତୁମ୍ଭେ ଯେ ଅଇଲ ନାଶଯିବ ସ୍ୱୟମ୍ବର ବିଧାନେ ।୩୮
ପଦ୍ମନାଭ ରାଜାର ବେନି ଯେ କୁମାରୀ
ଚିତ୍ରବୀର୍ଯ୍ୟ ବିଚିତ୍ରବୀର୍ଯ୍ୟଙ୍କୁ ସେ ପ୍ରଦାନ କରି ।୩୯
ଏବେ ଅମ୍ବେକ କନ୍ୟାକୁ ସ୍ୱୟମ୍ବରେ ଦେବ
ଯେ କନ୍ୟାକୁ ପ୍ରଦାନ ହୋଇବେ ଗାଙ୍ଗେବ ।୪୦
ତୁମ୍ଭେ ବିଚାର ଏବେ କର ରାଜାଗଣେ
ଭୀଷ୍ମେ ବିଜେ ସଭାକୁ କରିବେ ଯେହିକ୍ଷଣେ ।୪୧
ଯେହୁ ଅବା ତୁମ୍ଭେମାନେ କରିବ ଅବଗ୍ୟାଂ
ଭୀଷ୍ମଙ୍କର କଥାକୁ ତୁମ୍ଭର କିସ ପ୍ରତଗ୍ୟାଂ ।୪୨
ରାଜାମାନେ ଶୁଣି ସମସ୍ତେ ଭୟ କଲେ
ଭୀଷ୍ମଙ୍କର ଆଗତ ଶୁଣି ସମସ୍ତେ ଉଠିଲେ ।୪୩
ସମସ୍ତେ ବୋଇଲେ ପଦ୍ମନାଭଙ୍କୁ ରାଇ
ଆମ୍ଭେ ଯାଉଅଛୁ ହୋ ଯେ ଯାହାର ଭୁଇଁ ।୪୪
କନ୍ୟା ପ୍ରଦାନ କରସି ଭୀଷ୍ମ ମହାଛତ୍ରୀଙ୍କୁ
ଗାଙ୍ଗେବର ଭୟ ଯେ ଲାଗିଲା ଆମ୍ଭଙ୍କୁ ।୪୫
ପଦ୍ମନାଭ ବୋଇଲା ମୁଁ ଯେ ବରିଲି ତୁମ୍ଭ ମାନନ୍ତ
ଅବଶ୍ୟ ପ୍ରଦାନ ମୁଁ କରିବି ଦୋହିତ ।୪୬
ରାଜାମାନେ ବୋଇଲେ କାହାର ସାହାସ
ଜଳନ୍ତା କୁଇରେ କେ ଦେଖୁ ଦେଖୁ ଦେବ ଝାସ ।୪୭
ଯେତେ ବୋଲି ରାଜାମାନଙ୍କୁ ଲାଗିଲା ବଡ଼ ଭୟେ
ସୟମ୍ବର ଭଗ୍ନ କରି ଉଠି ଗଲେ ରାୟେ ।୪୮
ସଭା ଭଗ୍ନ କରି ତହୁଁ ଉଠିଗଲେ ନରପତି
ଅନେକ ଅପମାନ ହୋଇଲା ସଭୁନ୍ତି ।୪୯
ପଦ୍ମନାଭ ରାଜା ଯେ ଅନେକ ସାନନ୍ଦେ
ଭୀଷ୍ମକୁ ଦେବି ବୋଲି ହୋଇଲା ଆନନ୍ଦେ ।୫୦

ଗଙ୍ଗାର ନନ୍ଦନ ଯେ ମୋହୋର ହେବେ କ୍ୱାଇଁ
ଯେହାହୁଁ ଅଧିକ ଭାଗ୍ୟ ମୁଁ ପାଇବହିଂ କାହିଁ ।୫୧
ଦୋହିତାକୁ କୋଳେ ଲାଇ ବୋଇଲେ ପଦ୍ମଲାଭ ରାଜନ
ଅନେକ ପୁଣ୍ୟ ମୋହର ସାଧୁ ଯେ ଜୀବନ ।୫୨
ଗଙ୍ଗାର ନନ୍ଦନ ହୋଇବ ତୋର ବର
ପଞ୍ଚୁ କଟକରେ ଯେ ଅଟଇ ଠାକୁର ।୫୩
ଅମର ବର ପାଇଅଛି ମୃତ୍ୟୁ ଯାହାର ଇଚ୍ଛା
ଜଗଜିତା ନାଥ ଅଭୟ ବର ଦୀକ୍ଷା ।୫୪
ଅନେକ ଉତ୍ସବ ଯେ କରନ୍ତି ନୃପ ସାଇଁ
ପରମ ସାନନ୍ଦ ଯେ ଉଚ୍ଛବ ବଧାଇ ।୫୫
ଯେସେନ ସମୟେ ସେ ଜଣାଇଲା ନରପତି
ମନମଥ ସେନାପତିଙ୍କି ବୋଇଲେ ଚକ୍ରବ୍ରତୀ ।୫୬
ବହନ ହୋଇଣ କହ ଶାୟେନ୍ତନୁକୁ
ସତ୍ୟ କଲି କନ୍ୟାକୁ ଦେବଇ ଭୀଷ୍ମଙ୍କୁ ।୫୭
ପ୍ରତକ୍ଷେ ଦେଖିଲୁ ଭାଙ୍ଗିଲି ସଏମ୍ବର
ଭୀଷ୍ମଙ୍କୁ ଦେବି ସତ୍ୟ ସତ୍ୟ ଯେ ମୋହର ।୫୮
ଆଜ୍ଞା ପ୍ରମାଣେ ଦୂତ ଯେ ଚଳିଲା ତଡ଼ତି
ଭୀଷ୍ମଙ୍କ ଛାମୁରେ ଦୂତ ଯାଇଁଣ କହନ୍ତି ।୫୯
କରପତ୍ର ଯୋଡ଼ିଣ ମନମଥ ସେନାପତି ଛାମୁରେ ଜଣାଇଲା
ତୋହର ଆଜ୍ଞାରେ ଦେବ ସୟମ୍ବର ଭାଙ୍ଗିଲା ।୬୦
ଅନେକ ସାନନ୍ଦ ରାଜା ହେଲା ତୋର ନାମେ
ଅନେକ ହରଷ ରାଜା ଯେ ହୋଇଲା ଉତକ୍ରମେ ।୬୧
ସ୍ୱାମୀର ବଚନେ ଯିବା ଚାଲ ସାଜ ସାଜ ସଇନି
ପ୍ରୋହିତ ହକାରୀ ବିଭା ଅନକୂଳ ଘେନି ।୬୨
ଅମୃତ ଯୋଗେ ମକର ଶୁକଳ ସପତମୀ
ସେଦିନ ଅନକୂଳ କଲେ କୁରୁରାଜା ସ୍ୱାମୀ ।୬୩
ବାହୁଡ଼ି ଚାରଗଣେ କହିଲେ ବାରତ
ମକର ଶୁକଳ ସପତମୀ ବରିଲୁ ବିଭା ତଥ୍ୟ ।୬୪
ଚାରଗଣେ କହିଲେ ପଦ୍ମଲାଭ ରାଜାର ଆଗେ
ମଙ୍ଗଳ ଘେନିଲା ରାଜା ତୁମ୍ଭର ଅନକୂଳ ଯୋଗେ ।୬୫
ବରବେଶ ହୁଅନ୍ତି ଯେ ଭୀଷ୍ମ ମହାରଥି
ରଥ ଗଜ ଅଶ୍ୱ ଦଣ୍ଡ ଛାତ୍ର ଆଲମ୍ୱ ସାଜନ୍ତି ।୬୬
ଅନେକ ପାଠ ଶାସ୍ତ୍ର ଅକ୍ଷର ଲେଖନ
ଗୁରୁ ବିହୁନେ ଶିଖିଲେ ଅନେକ ବିଦ୍ୟାମାନ ।୬୭
ମନ୍ତ୍ରେଣ ଶହସ୍ରେଣ ଯେ ହୋଇଣ ଭଗତି
ଅଣଗୁରୁ ବିଦ୍ୟା ଶିଖିଲେ ଭୀଷ୍ମ ମହାରଥୀ ।୬୮
ବିଭା ଯୋଗାଡ଼ ଘେନି ସେ ସଜ ହୁଅନ୍ତି କୁରୁବୀର
ଶୁଭ ଯୋଗେ ମଙ୍ଗଳ ଦିଅନ୍ତି ମୁନି ପାରେଶ୍ୱର ।୬୯
ଭୀଷ୍ମେ ଗୁହାଇଲେ ପର୍ଶୁରାମଙ୍କ ସହିତେ
ହରି ରାମ, ନୀଳରାମ, ରଘୁରାମ ଚାରିଭ୍ରାଥେ ।୭୦
ବିଶ୍ୱାମିତ୍ର ଆଦି କରି ଅଟନ୍ତି ବ୍ରହ୍ମଚାରୀ
ଯଦୁରାମ ଆଦିକରି ପ୍ରବେଶ ବାରୁଣାବନ୍ତ ପୁରୀ ।୭୧
କାଶୀମିର ଦେଶର ରାଜା ନିର୍ଝର ଗଣପତି
ଋତୁପର୍ଣ୍ଣ ସଦାନନ୍ଦ ଆବର ଅନେକ ଚକ୍ରବତୀ ।୭୨
ଅରୁଣ ସେନ ମାଧେବ ସେନ କର୍ଣ୍ଣସୁର ରାୟେ
ବନ୍ଧୁ ଯୋଗେଣ ଯେ ଯାହାର ଦଣ୍ଡ ଘେନିଣ ଯାୟେ ।୭୩
ଯେସନେକ ସମଏ ଦ୍ୱାରେ ବାଜଇ ବୀରତୁର
ଅନେକ ଥାଟ ସଇନି ମହା ସମ୍ଭର୍ବର ।୭୪
ଅନେକ ଅପକ୍ଷରୀ କରନ୍ତି ନୃତ୍ୟ ଗୀତ
ମଙ୍ଗଳ କ୍ରୀଡ଼ା ଯେ କରନ୍ତି ଚଣ୍ଡପୁତ୍ର ।୭୫
ରଥ କୋଟିଏ ଗଜ ପାଞ୍ଚ ଖର୍ବ
ବୀର ପରାୟୁଧ ଖୁରୁସାଣୀ ଚୋଖାର ତୁରଙ୍ଗମ ।୭୬
ଉଦଣ୍ଡ ପାଟଛତ୍ର ଆଲମ୍ୱ ପାଞ୍ଚଲକ୍ଷି
ଉତାରିଲେ ଦାଣ୍ଡେ ଯେହ୍ନେ ଦିବସେ ସୂର୍ଯ୍ୟ ନ ଦେଖି ।୭୭
ଟମକ ନିଶାଣ ତୁର ଢୋଲ ଶଙ୍ଖ ନାଦେ
ଆକାଶ ଉଛଳଇ ଭେରୀ ଗର୍ଜନ ଶବଦେ ।୭୮
ଲକ୍ଷେକ ଗୋ ଦୁହନ କଲେକ ଶିବ ଆଳେ
ବିଷ୍ଣୁବରଣ ବ୍ରାହ୍ମଣ ତିନିଲକ୍ଷ ଜପନ୍ତି ମନ୍ତ୍ରବଳେ ।୭୯
ଦେବୀଙ୍କି ଶୀତଳ ଯୋଗାଡ଼ ଅନେକ ପୂଜା
ପୋଡୁଅ ମେଷ ଛାଗଳ ଦିଅନ୍ତି ବଳି ଭୋଜା ।୮୦
ଗ୍ରହ ଶାନ୍ତି ମନ୍ତ୍ର ପଢ଼ନ୍ତି ଚଣ୍ଡିକେ
ଚାରି ଦ୍ୱାରେ ଅନ୍ନଛତ୍ରେ ଦିଅନ୍ତି ଯେ ଲୋକେ ।୮୧
ମୃଦଙ୍ଗ ତାଳ କଂସାଳ ରସ ବେଣୀ
ସ୍ୱର୍ଗର ଅପଛରୀ ଭରହରରସ ଗାୟେଣୀ ।୮୨
ଭିତରେଣ ଦେବପୂଜା ସାରିଣ ଗାଙ୍ଗେବ
ବ୍ରହ୍ମ ବରଣ ସମସ୍ତ ପୂଜା ସାରିଣ ସର୍ବ ଦେବ ।୮୩
ବରବେଶ ହୋଇଣ ଧବଳାଙ୍ଗୀର ବଳା
ଅନେକ ତୁଷ୍ଟି କରନ୍ତି ସର୍ବ ମଙ୍ଗଳା ।୮୪

ନମସ୍ତେ କାନ୍ତାନୀ ଗୋ ରତ୍ନଗିରି ବାସୀ
ଦେବୀଙ୍କର ତେଜ ଘେନିଣ ଯାହାର ଶରୀରେ ପ୍ରକାଶି ।୮୫
ସହସ୍ରେ ଭୁଜେଣ ସହସ୍ରେ ଆୟୁଧ
ମାନିନୀ ରୂପଧରି ଅସୁର କଲୁ ବଧ ।୮୬
ଅଭୟ ପିଙ୍ଗଳାକ୍ଷୀ ଗୋ ନାଶକର ଦର୍ପଭାଞ୍ଜି
ନବ କୋଟି କାନ୍ତାନୀ ଯାହାର ଶରୀରୁ ଉପୁଜି ।୮୭
ଅଘୋର ମୁଖ ଗୋ ଟହ ଟହ ହାସ ମୁଖୀ
ଆକାଶ ଖଟନ୍ତି କି ନିଷ୍ଠିନ୍ତ ବେନି ଆଖି ।୮୮
ଡିବି ଡିବି ବାଦ୍ୟ ଗୋ ଭୁଜେଣ ଡମ୍ବରୁ
ଶମସାନ କ୍ଷେପନ୍ତି ଗୋ ନରେ ଅସ୍ଥିମାଳା ଉରୁ ।୮୯
ହାଣ ହୋ ମା'ର ଡାକେଶ୍ୱରୀ ଡାକେ ତୋଳି
ରଣ ରଙ୍ଗ ମନ୍ଦୁନୀ ଗୋ ନାଚନ୍ତି କୁତୁହେଳୀ ।୯୦
ବିବସନ ସାହୀ ଗୋ ମତ୍ତ ମାତାଙ୍ଗୀ
ରସନ ଝଟ ବିହଡ଼େ ଦାଢ ଲାଗି ରଙ୍ଗି ।୯୧
ଆକାଶେ ଦୃଷ୍ଟି ଯାହାର ପାତାଳେଣ ଦୃଷ୍ଟି
ବାହାନ ଇଚ୍ଛଲୁ ଗୋ ଗଜରାଜ ପିଠି ।୯୨
କାଳିକା କାମସେଣି ଗୋ ମୋହିନୀ ଦୁଲଣା
ଉଡ଼ଙ୍ଗମାଳା ହୃଦେଣ ଗୋ ବାହୁଟି କଙ୍କଣା ।୯୩
ଖଟ୍ୱାଙ୍ଗ କୁଣ୍ଡଳୀ ଘଷଣୀ ଘୁମୁରା
ବକ୍ଷ ସ୍ଥଳେ ଲମ୍ବଇ ଯାହାର ମନ୍ଦାରମାଳା ହାରା ।୯୪
ଚଞ୍ଚପୁଟ, ଚାଞ୍ଚପୁଟ ରଣ ରଙ୍ଗେଣ ଭୋଳି
ଡାକେଣୀ କ୍ଷେପଣୀ ଗୋ ରଙ୍ଗେ କୁତୋହଳୀ ।୯୫
ଚଣ୍ଡଘଣ୍ଟା ମହାମାୟା ଗୋ ବିଜୟ ବିରୂପା
ଟହଟହ ହାସ ଗୋ ମହାପିଙ୍ଗଳା ମହାତପା ।୯୬
ଯୋଗେଣ ଯୋଗେଶ୍ୱରୀ ଗୋ ଜୟତୁ ଜୟ ଗୋସାବଣୀ
ଆପାଦ ଖଣ୍ଡଣୀ ଗୋ ସୁରଲୋକ ରକ୍ଷଣୀ ।୯୭
ଶ୍ରୀଚଣ୍ଡୀ ସାରଳା ସର୍ବମଙ୍ଗଳ ପରସାଦେ
ଶ୍ରୀ ମହାଭାରଥ ଆଦିପର୍ବ ସମ୍ବାଦେ ।୯୮
ସର୍ବମଙ୍ଗଳା ନାମ ଗୋଟି ମୋହର ହୃଦରେ ଧାୟେ
ଶୂଦ୍ର ମୁନି ସାରୋଳା ଦାସକୁ ଉଧରି ଧର ଯୋଗାମୟେ ।୯୯

■ ■

## ଭୀଷ୍ମଙ୍କ ପ୍ରତିଜ୍ଞା

ଶୁଣ ହୋ ବଇବ ସୁତ ମନୁ ବଦନ୍ତି ଅଗସ୍ତି
ଦେବୀଙ୍କି ଅନେକ ତୁଷ୍ଟି କଲେ ଭୀଷ୍ମ ମହାରଥୀ ।୧
ବାଞ୍ଛା କରନ୍ତି ଯେ ଗଙ୍ଗାର ତନୟେ
ବିଭା ଅନକୂଳ ବେଳ ଦେବା ମହାମାୟେ ।୨
ଯେ ତୋତେ ଅପ୍ରାଧ କରଇ ଅବଶ୍ୟ କରୁ ରକ୍ଷା
ଭଗତ ମନଛଳି ଗୋ ପୁରାଅ ମନବାଞ୍ଛା ।୩
ଶିରେଣ ରତ୍ନମଣି ଗୋ ମକୁଟ ଢଳାହଳା
ହୃଦେଣ ଭୂଷଣ ଗୋ କଣ୍ଠେଣ ରତ୍ନମାଳା ।୪
ତାଡ଼ ତୋଡ଼ର ଗୋ କର୍ଣ୍ଣେ କର୍ଣ୍ଣାଞ୍ଚଳ
ଖେଳନ୍ତା ସିଂହ ଜାଣି ଧବଳାଙ୍ଗୀର ବାଳ ।୫
ନୟନେ ଅଞ୍ଜନ ଗୋ ପାଦେଣ ଅଳତା
ନବତନ ବସ୍ତ୍ର ପିନ୍ଧି କାନ୍ଧେଣ ପବିତ୍ର ସୂତା ।୬
ଦଧିମତ୍ସ୍ୟ ଅନୁକୂଳେ ଶୁଭଯୋଗ ତୋଳି
ଗଣିକାମାନେ ଯେ ଦିଅନ୍ତି ହୁଳହୁଳି ।୭
ବେନି ଲକ୍ଷ ଚାମର ଢାଳନ୍ତି ମୁନିଙ୍କର ସନ୍ନିଧାନେ
ବିଜେ ଗାଙ୍ଗେବ ଶୟେନ୍ତନୁଙ୍କ ବିଦ୍ୟମାନେ ।୮
ପାଦେଣ ପାଦ ଅର୍ଘ୍ୟ ଦେଇଣ ପରିମାଣି
ବିଭା କାର୍ଯ୍ୟକୁ ଯିବା ଚାଲ ଏବେ ସ୍ୱାମୀ ।୯
ଦଧିବାମନ ସୁମରି ଅନକୂଳ କରିବା
ପଦ୍ମଦଳ ଦେଶକୁ ଚାଲ ଗମନ କରିବା ।୧୦
ଭୀଷ୍ମର ତହୁଁ ଯେସନେକ ବଚନ ଶୁଣି
ଶାୟେନ୍ତନୁ ଥମ୍ଭୀଭୂତ ବଧିର ଆତ୍ମାଜାଣି ।୧୧
ହେଠମାଥ ହୋଇଣ ବସିଲେ ତପନିଷ୍ଠି
ବେନି ଲୋଚନରୁ ଅଶ୍ରୁଜଳ ବୃଷ୍ଟି ।୧୨
ପିଅର ରୋଦନେ ଦେଖିଲେ ମହାରଥୀ
ଆନନ୍ଦେଣ ଅଶ୍ରୁଜଳ କି ବିଷାଦେଣ ପିତା ।୧୩
ଶାୟେନ୍ତନୁ ବୋଇଲେ ଭୀଷ୍ମଙ୍କର ମୁଖଚାହିଁ
ବାବୁ ଆନନ୍ଦ ହୋଇଲିରେ ତୋହୋର ବଚନ ପାଇ ।୧୪
ବାବୁ ବିଷାଦ ହୋଇଲିରେ ତୋହୋର ବଚନ ଶୁଣି
ଚକ୍ଷୁକେ ଆନନ୍ଦ ଏକ ଚକ୍ଷୁରେ ବିଷାଦ ହୋଏ ପୁଣି ।୧୫
ନୟନର କୋଣୁ ବହଇ ଝରଝର ପାଣି
ବାବୁ ତୋ ବାଲ୍ୟତ କଥା ମନେପଡ଼ିଲା ପୂର୍ବର କାହାଣୀ ।୧୬
ଭୀଷ୍ମେ ବୋଇଲେ ମୋହର ବିଭା ଦେଖି
ବିଷାଦ କିମ୍ପା ହୋଇଲେ ଯେ ଆନନ୍ଦ ଉପେକ୍ଷି ।୧୭
ଶାୟେନ୍ତନୁ ବୋଇଲେ ଯେ ମାତା ତୋର ଗାଙ୍ଗୀ
ତୋତେ ନାଶ କରୁ ଆମ୍ଭେ ହୋଇଲୁ ବଇରାଗୀ ।୧୮

ରାଗେଣ ତାହାଙ୍କୁ ବୋଇଲୁ ଭ୍ରଛନା
ନରହି ଯାଉଅଛୁ କିମ୍ପା ଆଦି ଯେ ଅପର୍ଣ୍ଣା ।୧୯
ଆମ୍ଭେ ଯାଇଣ ଯେ ଗଙ୍ଗାଙ୍କୁ କୋଳ କଲୁ
ପ୍ରସବ କରି କିମ୍ପା ଗଙ୍ଗା ପୁଅଙ୍କୁ ପକାଇଲୁ ।୨୦
ଗଙ୍ଗା ବୋଇଲେ ମୁଁ ତୋହର ପରମ ଗୁରୁ
ବ୍ରତ ପୁରିଲା ମୋର ଆବର କାହିଁକି ମୋତେ ଧରୁ ।୨୧
କୋପେଣ ଶାପ୍ୟ ଯେ ଦେଲେକ ଧବଳୀ
ଯେ ପୁତ୍ରର ପୁତ୍ର ହାତେ ତୁ ହୁଅ ବିଷାବଳି ।୨୨
ବାବୁ ଯେବେ ବିଭା ହୋଇବୁ ନନ୍ଦନ
ଅବଶ୍ୟ ତୋହର ପୁତ୍ର ହୋଇବ ଉତପନ୍ନ ।୨୩
ତୋହୋର ମାତା ଶାପ୍ୟ ଦେଇଅଛି ମୋତେ
ଅବଶ୍ୟ ଶିରଚ୍ଛେଦ ହୋଇବି ତୋହର ପୁତ୍ର ହାତେ ।୨୪
ପିତାର ବଚନ ଶୁଣି ଭୀଷ୍ମେ ଯେ ମୁରାଟ
ଧାଡିକାରେ କାଢ଼ି ପକାଇଲେ ମଥାର ମୁକୁଟ ।୨୫
ଛାଡ଼ିଲେ ବରବେଶ ବସିଲେ ମହାତମା
ବାଦ୍ୟମାନ ଗୁହାଇଲେ ବିଷାଦ ସର୍ବ ଆତ୍ମା ।୨୬
ପ୍ରଶୁରାମ ବୋଇଲେ ଭୀଷ୍ମ କିମ୍ପା ବିସରିଲୁ
ବରବେଶ ତେଜିଣ କିମ୍ପା ମକୁଟ ପକାଇଲୁ ।୨୭
ଭୀଷ୍ମେ ବୋଇଲେ ଶୁଣ ରାଜଦେବ
ମୋହର କି ବିଭା ଯେବେ ପିତାଙ୍କୁ ଅଭାବ ।୨୮
ଅନେକ ବାଗେଣ ପିତା ଅରଜଇ ପୁତ୍ର
ବଂଶକୁ ରକ୍ଷା ହୋ କରିବା ନିମନ୍ତ ।୨୯
ମୋହର ପୁତ୍ର ହୋଇଲେ ଯେବେ ପିତା ନାଶ ଯିବ
ସେ ବିଭା ହୋଇଲେ ମୋର କିସ ଧର୍ମ ଉପୁଜିବ ।୩୦
ପୁତ୍ର ସେ ରକ୍ଷା କରିବ ନିଜ ବଂଶ
ମୋହୋର ପୁତ୍ର ଉପୁଜିଲେ ଶୟେଂନ୍ତନୁ ପରା
ପିତା ଯିବ ନାଶ ।୩୧
ଆବର ବିଭାୟେଣ ମୋର କିସ ପ୍ରୟୋଜନ
ଛାଡ଼ିଲି ମାୟା ମୋହ ନୋହୁ ସେ ସନ୍ତାନ ।୩୨
ଡାହାଣ ବ୍ରତେକ ଶଙ୍ଖେ ଜଳ ତିଳ ଲାଇ
ଦାରା ସଂଘରିଲେ ଭୀଷ୍ମେ ସଂକଳ୍ପ କରାଇ ।୩୩
ଶରୀରେ ଥିବ ମୋର ଯେତେକାଳ ପରିଯନ୍ତେ
ସତ୍ୟ ସତ୍ୟ ତିନିବାର ଅଲଙ୍ଘିତ ନିୟମ ମୋତେ ।୩୪
ନୋହୁ ନୋହୁ ଭାରିଯା ପୁତ୍ର ସନ୍ତାନ ନୋହୁ
ଯେମନ୍ତେଣ ଶାୟେନ୍ତନୁ ଚିରକାଳ ରହୁ ।୩୫
ଉପେଖିଲେ କାମ ମୋହ ସଂଘରଣ କଲେ ଦାରା
ଯାବତ ଚନ୍ଦ୍ର ଅର୍କେ ବ୍ରତଇ ଚନ୍ଦ୍ର ଦିବାକରା ।୩୬
ତୋହୋର ଯେଡ଼େ ବିରସ ମୋହର ବିଭା ଶୁଣି
ପରମ ଯୋଗୀ ହୋଇଲେ ଭୀଷ୍ମ ଚୁଡ଼ାମଣି ।୩୭
ସାଙ୍ଗୋ ସାଙ୍ଗୋ ବାରତା ଶୁଭଇ ପଦ୍ମଦଳ ଦେଶେ
ଭୀଷ୍ମେ ବିଜେ କରି ଆସୁଛନ୍ତି ବରବେଶେ ।୩୮
ଦେଖିବା ନିମନ୍ତେ ଯେତେ ଯୁବତୀ ଗଣେ ଆସି
ଅମ୍ଭେକ କନ୍ୟା ଆଗ୍ରତେ ସମସ୍ତେ ପରକାଶି ।୩୯
ଧନ୍ୟ ଧନ୍ୟ ପୁଣ୍ୟ ସ୍ତୀରି ସାଧବୀ ଥିଲୁ ଆୟି
ଗଙ୍ଗାର ନନ୍ଦନ ଭୀଷ୍ମ ହୋଇବ ତୋର ସାଇଁ ।୪୦
ଯେ ତୋର ସାର୍ଥୁକ ଜୀବନ ଗୋଟି ଧନୀ
ଶୁଭ କ୍ଷଣେ ଉପୁଜିଲୁ ଯେ ଅମୃତ ଯୋଗ ଘେନି ।୪୧
ଅନେକ ଉଛବ ଯେ ଆନନ୍ଦେ ରାୟେ କରି
ଭୋଜନ ଯୋଗାଡ଼ ଯଉତୁକ ସମସ୍ତ ସଜ କରି ।୪୨
ରଥ ଗଜ ଅଶ୍ୱ ପାଦାନ୍ତି କୋଟି କୋଟି
ସମ୍ଭର୍ବେ ପଦ୍ମନାଭ ଆସଇ ପାଛୋଟି ।୪୩
ଦଣ୍ଡ ଘେନି ସଜ ରାଜା ପୃଥିବୀ ପୂରନ୍ତେ
ତ୍ରିପୁରା ନଦୀର ଯେ ଉତ୍ତର ତଟାନ୍ତେ ।୪୪
ଭୀଷ୍ମଙ୍କର ତହିଁକି ଯେ ଦୂତ ଯାଇଥିଲେ
ବିସ୍ମୟ ହୋଇଣ ଆସି ପଦ୍ମନାଭକୁ ଜଣାଇଲେ ।୪୫
ଭୀଷ୍ମ ମହାରଥୀ ଦେବ ବିଜେ କରିଣ ଆସୁଥିଲା
ଆସନ୍ତେଣ ପିତା ତାର ଶାୟେନ୍ତନୁ ଗୁହାଇଲା ।୪୬
ଯୋ ଧାମାନ ଯ ଯାହାର ଠାବରେ ରହିଲେ
ବରଯାତ୍ରୀମାନେ ସମସ୍ତେ ବାହୁଡ଼ିଲେ ।୪୭
ପଦ୍ମନାଭ ବୋଇଲା ମୁଁ କିସ ଦୋଷୀ
କି ନିମନ୍ତେ ନିରୋଧ କଲେ ଶାୟେନ୍ତନୁ ମହାଋଷି ।୪୮
ବାହୁଡ଼ି ନରନାଥ ଆପଣା ନିଜ ପୁରୀ
ଚାରଗଣ ବଚନକୁ କେହି ପ୍ରତେ ନକରି ।୪୯
ସେ ଦିନକ ବାଟ ଚାହିଁଲା ନରପତି
ନଗ ବାହାର ହୋଇ ଯେ ଯାହା ପୁରକୁ ଗଲେ ବରଜାତି ।୫୦
ଦିନ ଚାରି ବାଟ ଚାହିଁ ରାଜା ବିମୁଖ ହୋଇଲା
ଜୟନାଭି ବୋଲି ତା'ର ପୁତ୍ରକୁ ହକାରିଲା ।୫୧
ଯେଥିର ତଦନ୍ତ ବାବୁ ବୁଝସିରେ ଯାଇଁ

ଭୀଷ୍ମ ବିଭା କେଉଁ ଗୁଣୁ ନୋହିଲେ କିସ ପାଇଁ ।୫୨
ରାଜାର ବଚନେ ଗଲେ ଚାରି ପୁତ୍ରେ
ସପତ ଦିବସେ ପ୍ରବେଶ ହୋଇଲେ ବାରୁଣାବନ୍ତେ ।୫୩
ଶାନ୍ତନୁଙ୍କୁ ପ୍ରଣମିତ ଜୟନାଭ ସଉନାଭ
ବିଭା ହୋଇ କିମ୍ପା ନ ଗଲେ ଭୀଷ୍ମ ଦେବ ।୫୪
ଶାନ୍ତନୁ ବୋଇଲେ ସେ ଦାରା ସଂଘରିଲା
ଆମ୍ଭର ନିମନ୍ତେ ବିଭା ସେ ନୋହିଲା ।୫୫
ତୁମ୍ଭେ ଯେ ଭୀଷ୍ମଙ୍କୁ ନ କରନି ଆଶ
ଆନଙ୍କୁ ପ୍ରଦାନ କର କନ୍ୟା ହୋଇଣ ହରଷ ।୫୬
ଭୀଷ୍ମଙ୍କୁ ରାଇଣ ଆଣିଲେ ତାଙ୍କର କତି
ପଦ୍ମନାଭ ରାଜା ପଠିଆଇଛି ପୁତ୍ର ଦୁହିନ୍ତି ।୫୭
କନ୍ୟା ଗୋଟିକି ବାବୁ ହୁଅରେ ପ୍ରଦାନ
ସନ୍ତାନ ନ ଥିଲେ ତୁଟଇ ଅନେକ କାଳର ଧର୍ମମାନ ।୫୮
ଭୀଷ୍ମ ବୋଇଲେ ଆଉ ନରୁଚଇ ସେ କଥା
ମୋହୋରେ ନାଶ ଯିବ କି ତୋହୋର ପରା ପିତା ।୫୯
ଅନେକ ରୂପେ ମନାଇ କହିଲେ ନାସ୍ତି କଲେ
ରାଜାର ବେନି ପୁତ୍ରେ ବାହୁଡ଼ିଣ ଗଲେ ।୬୦
ଆପଣା ରାଜ୍ୟରେ ହୋଇଲେ ପରବେଶ
ପିତାଙ୍କୁ କହିଲେ ଛାଡ଼ ଭୀଷ୍ମଙ୍କର ଆଶ ।୬୧
ପିତାର ନିମନ୍ତେଣ ସଂଘରିଲେ ଦାରା
ସଂକଳ୍ପ କରିଣ ଯେ ଛାଡ଼ିଲେ ମହାବୀରା ।୬୨
ପୁତ୍ରର ମୁଖରୁ ରାଜା ଯେସନେକ ଶୁଣି
ବିଚାରିଣ ବୋଇଲା ସେ ପଦ୍ମନାଭ ନୃପମଣି ।୬୩

■ ■

## ଅୟା ଉପାଖ୍ୟାନ

ବାବୁ ଅୟେକ କନ୍ୟାକୁ ଶାଲୁ ମାଗୁଥିଲା ଯେ ପୂର୍ବେ
ମୁହିଁ ତାକୁ ନାସ୍ତି କରିଥିଲି ମଉଗର୍ବେ ।୧
ପୂର୍ବେ ସୟମ୍ବର କଲି ତାହା ଭୀଷ୍ମ ନାଶ କଲା
ଭୀଷ୍ମେକ ଡରେ କେହି ପ୍ରଦାନ ନୋହିଲା ।୨
ବାବୁ ଅଞ୍ଜନ ସେନ ନାମେ ଅଟଇ ତାର ମନ୍ତ୍ରୀ
ଶାଲୁର ତହିଁକି ଦୂତ ପେଷିଲା ତଡ଼ତି ।୩
ଶାଲୁକୁ ମାଳା ଦେଇ ଆସ ଯା ବହନ କରି
ତାହାକୁ ପ୍ରଦାନ କରିବା ଯୋଗେଶ୍ୱରୀ ।୪
ରାଜାର ବଚନେ ଚଳିଲେ ମନ୍ତ୍ରୀବର
ଶାକଲ୍ୟ ଦେଶରେ ଯାଇଣ ବର କର ।୫
ଶାଲୁକୁ ଜଣାଇଣ କଲେ ଦରଶନ
କହିଲା ମନ୍ତ୍ରୀବର ସକଳ ବିଧାନ ।୬
ତୁ ଯହୁଁ ଆଗହୁଁ ମାଗୁଥିଲୁ ରାୟେ
ପଦ୍ମନାଭ ରାଜା ଦେବ ଦୁହିତା ଗୋଟିଏ ।୭
ଶାଲ୍ୟ ବୋଇଲା ଯେ ଅୟେକ ନାମେ ବାଳୀ
ସେ କନ୍ୟା ଅଟଇ ଯେ ମୋହର ମନର ହିଆଳି ।୮
ମନ୍ତ୍ରୀ ବୋଇଲା ସେହି ସେ ଯୁଗତ
ଅୟେକ ନାମେ କନ୍ୟା ତୋରେ ଦେବଇଁ ଯଥାର୍ଥ ।୯
ଶୁଣିଣ ସନ୍ତୋଷ ଯେ ହୋଇଲା ମହୀପତି
ମାଳା ଦେଇଁ ବରିଲା ପଦ୍ମନାଭର ମନ୍ତ୍ରୀ ।୧୦
ଋଷଭ ଶକଳ ତ୍ରୟୋଦଶୀ ଅର୍କବାର
ଅନୁରାଧା ନକ୍ଷତ୍ର ସେ ଅଟଇ ସେ ଦିନର ।୧୧
ଦଣ୍ଡ ଘେନିଣ ତୋର ଯିବୁ ନଗ ସାଇଁ
ଶାଲୁ ଅନେକ ଗଉରବ କଲା ହରଷ ହୋଇ ।୧୨
ପଦ୍ମନାଭ ରାଜା ତୋତେ ଦେବ ଯେ ଦୋହିତି
ଯେଥହୁଁ ଆଉକି ମୁଁ ଲୋଡ଼ିବି ପୂଣ୍ୟବନ୍ତୀ ।୧୩
ବର ବରିଣ ଅଇଲେ ସେ ପଦ୍ମନାଭର ମନ୍ତ୍ରୀ
ଅନେକ ଉଚ୍ଛବ ଯେ କଲେ ନରପତି ।୧୪
ଅୟେକ କନ୍ୟା ନିମନ୍ତେଣ ପଦ୍ମନାଭ
ପୁଣିହିଁ ବିଭା ଯୋଗାଡ଼ କରଇ ସମ୍ଭର୍ବ ।୧୫
ଇଷ୍ଟ କୁଟୁମ୍ବ ଯେ ବନ୍ଧୁବର୍ଗ ମାନ
ଅନେକ ଦେଶକୁ ରଜା କଲାକ ନିମନ୍ତ୍ରଣ ।୧୬
କୋଟିଏ ରଥ ଘେନି ଶାଲୁ ଦଣ୍ଡଧାରୀ
ବିଭା ଯୋଗେ ରାଜା ଯେ ଅସାଇ ଥାଟ ଭରି ।୧୭
ଚଉବିଂଶ ନଗ୍ରେ ଆସି ପ୍ରବେଶ ହୋଇଲେ
ନୃପତି ମହୀଦାସ ଶାଲୁକୁ ପଚାରିଲେ ।୧୮
ଶାଲୁ ବୋଇଲା ମୋତେ ବରିଲେ ପଦ୍ମନାଭ
ଅୟେକ କନ୍ୟା ମୋତେ ପ୍ରଦାନ କରିବ ।୧୯
ମହୀଦାସ ବୋଇଲା କିମ୍ପା ଅନମିତ୍ତେ ଅଇଲୁ
ଡଗର ମୁଖେ କି ବାରତା ନ ଶୁଣିଲୁ ।୨୦
ଅୟେକ କନ୍ୟାକୁ ସ୍ୱୟଂବର ରାଜା କଲା
ଗଙ୍ଗାର ନନ୍ଦନ ଭୀଷ୍ମ ସ୍ୱୟଂବର ଭାଙ୍ଗିଲା ।୨୧
ଆମ୍ଭର ଥାଉଁ ଥାଉଁ ମାଳା ଦେଇଣ କରି

ଭୀଷ୍ମେ ପ୍ରଦାନ ହୋଇଲେ କୁମାରୀ ।୨୨
ଯେସନେକ ବାରତା ଯହୁଁ ପାଇଲା ବାଟରେ
ଶାଲୁ ବାହୁଡ଼ିଲା ଭୀଷ୍ମଙ୍କର ଡରେ ।୨୩
ନିଶ୍ଚୟ ଯେବେ ସେ ଭୀଷ୍ମଙ୍କୁ ବରିଲା
ଯୁଗତେ କନ୍ୟା ଆନକୁ କାହିଁ ହୋଇଲା ।୨୪
ଶାଲୁ ବାହୁଡ଼ିଲା ସେ ଯେସନେକ କଥା ଶୁଣି
ବାଟ ଚାହିଁ ରହିଛି ପଦ୍ମନାଭ ନୃପମଣି ।୨୫
ଦିବସ ରାତ୍ର ଅନୁକୂଳ ସରିଲା
ରାତ୍ର ପାହିଲା ଯେ ଶାଲୁତ ନଇଲା ।୨୬
ଡଗର ବାରତା କହିଲେ ବେଗେ ଯାଇ
ଭୀଷ୍ମଙ୍କର ଡରେ ଦେବ ନଇଲା ଗୋସାଇଁ ।୨୭
ପୁଣି ସେ ଅନକୂଳ ନାଶ ଗଲା
ଯୁବା ବୟସ ଅମ୍ବା କନ୍ୟା ଯହୁଁ ହୋଇଲା ।୨୮
ତୃତୀୟେ ବରିଲା ରାଜା ନୃପତି ବୀରବାହୁ
ଭୀଷ୍ମେକ ବରଣ ଶୁଣି ଡରେ ନଇଲାକ ସେହୁ ।୨୯
ଚତୁର୍ଥେ ମାନ ଅରଜ୍ଜୁନକୁ ବରିଲା
ପ୍ରଭୁ କନ୍ୟା ବୋଲି ଏହି ସେ ବିଭା ନୋହିଲା ।୩୦
ଯେମନ୍ତେ ଅନେକ ଦେଶର ବରିଲା ନୃପତି
ଭୀଷ୍ମେଙ୍କ ଡରେ କେହି ନଇଲେ ତାର କତି ।୩୧
ପଞ୍ଚଦଶ ବରଷ ହୋଇଲା କୁମାରୀ
ଯୁବା ବୟସ ଯହୁଁ ହୋଇଲା ମନୋହାରୀ ।୩୨
ପ୍ରଦାନ କେହି ସେ ଦୋହିତ ନୋହିଲା
ଦୋହିତାକୁ ଘେନି ରାଜା ବାରୁଣାବନ୍ତେ ଗଲା ।୩୩
ଭୀଷ୍ମଙ୍କର କତିକି ବୋଲି ଗଲା ନୃପମଣି
ଛାମୁରେ ଉଭା ନେଇ କଲାକ ଦୂଲଣୀ ।୩୪
ଭୋ ଗାଙ୍ଗେବ ଯେ ଯେ ମୋହର କୁମାରୀ
ନ ନାଶିଲୁ ନ ପୋଷିଲୁ ଛାଡ଼ିଲୁ ବରଣ କରି ।୩୫
କେବଣ ଦ୍ରୋହ ତୋତେ କଲେକ କୁମାରୀ
ଯେବେ ଅଇଲି ଘେନି ସମ୍ଭାଳ ତୋହୋର ମନୋହାରୀ ।୩୬
ଭୀଷ୍ମେ ବୋଇଲେ ମୁଁ ତ କନ୍ୟାକୁ ବରିଲି
ତାହା ଉପେକ୍ଷି କି ଆନକୁ ବିଭା ହେଲି ।୩୭
ପିତା ମୋର ନାଶ ହୋଇବ ମୋହର ପୁତ୍ର ହେଲେ
ଦାରା ସଂଘରିଲି ଶାୟଂତନୁର ବୋଲେ ।୩୮
ଯାହାକୁ ଇଚ୍ଛା ତୁ ବିଭା କର କୁମାରୀ
ମୁହିଁ ଉପେକ୍ଷା କଲି ସତ୍ୟ ସତ୍ୟ ମୋହରି ।୩୯
ପଦ୍ମନାଭ ବୋଲେ ମୁଁ ଅନେକ ବରିଲି ନୃପବର
କେହି ପ୍ରଦାନ ନୋହିଲେ ଡରେଣ ତୋହୋର ।୪୦
ଶାୟଂତନୁ ପରାଶର ଭୂରିଶ୍ରବାକୁ ତୋଳାଇ
ଜଣେ ଜଣେ ଗୁହାରୀ କରଇ ଦୋହିତାକୁ ଦେଖାଇ ।୪୧
ଯଉବନ ବତୀ ସେ ସୁସଞ୍ଚ କାମେନୀ
ଅମୂଲ୍ୟ ରୂପବନ୍ତୀ ଜଗତ୍ର ମୋହେନୀ ।୪୨
ଅନେକ ଯାଗେଣ ତିଆରିଲେ ଦେବଲୋକେ
କାହାରି ବଚନ ନକଲେ ଦୃଢ଼ ବାକ୍ୟେ ।୪୩
ସତ୍ୟେଣ ସଂସାର ଯେ ଅଛଇ ପ୍ରବର୍ତ୍ତି
ସତ୍ୟକୁ ମେଣ୍ଟି ଲଙ୍ଘିଲେ ପ୍ରାଣୀ ହୋଅନ୍ତି ନର୍କଗତି ।୪୪
ମୁହିଁ ଯେ ବରତ କଲି ପିତାର ନିମନ୍ତେ
ତୁମ୍ଭେ କିମ୍ପା ମୋହର ଧର୍ମ ଭାଙ୍ଗିବ ଅନମିତ୍ତେ ।୪୫
ସବୁଙ୍କରି ବଚନ ଯହୁଁ ଭାଙ୍ଗିଲେ ଗାଙ୍ଗେବ
ଦେଖିଣ ବିରସ ଯେ ହୋଇଲେ ପଦ୍ମନାଭ ।୪୬
ପଦ୍ମନାଭ ବୋଇଲା ଯେ ଦୁହିତାକୁ ରାଇ
ତୁ ଆଉ ମୋହର ପୁରେ କି କରିବୁ ଯାଇ ।୪୭
ଭୀଷ୍ମଙ୍କୁ ସେବା କରି ଗୋ ଥାଅ ଅନୁବ୍ରତେ
ପୋଷିଲେଣ ପୋଷୁ ନାଶିଲେଣି ନାଶୁ ତୋତେ ।୪୮
ସେବା କରୁଥିଲେ କରଇ ଅବା ଦୟେ
ବିଚାର କରି ଖଟି ଥାଅ ଗୋ ମହାମାୟେ ।୪୯
ଅମ୍ବେକ କନ୍ୟାକୁ ଯେ ଛାଡ଼ିଣ ନରନାଥ
ଚଳିଲେ ନିଜ ରାଜ୍ୟେ ବିମୋହିତ ଚିତ୍ତ ।୫୦
ରାଜାର ନନ୍ଦିନୀ ଯେ ନବଯଉବନୀ
ଭୀଷ୍ମଙ୍କର ନବର ଖଟଇ ଦିବସ ରଜନୀ ।୫୧
ଭୀଷ୍ମ କୋପ କଲେ ଦେଖିଣ ମାନନୀ
ବୋଇଲେ ପାପେଷ୍ଟୀ ବାଳ ଧରି ନିଅ ପୁଣି ।୫୨
କୋପେଣ ବାହାର କଲେ ନବର ପାତ୍ର ଅମାନତ୍ୟେ
ଦେଖିଣ ସୁନ୍ଦରୀ ବିମୋହିତ ଚିତ୍ତେ ।୫୩
ବୋଇଲେ ସୁନ୍ଦରୀ ଶୁଣ ହୋ ଗାଙ୍ଗବେ
ମୋତେ ନାଶ କଲେ କିସ ଧର୍ମ ହାଇବେ ।୫୪
ଯେହା ଶୁଣି ବୋଲଇ ସେ ଶାୟଂତନୁ ଶିଷି
ତୋତେ ଦେଖିଣ ମୁଁ ମନରେ ବଡ଼ ତ୍ରାସି ।୫୫
ମୋହର ବଡ଼ ଭୟ ଲାଗଇ ତୋତେ ଦେଖି

ପକାଇ ଯାଅସି ମୋହୋର ରାଜ୍ୟ ଉପେକ୍ଷି ।୫୬
ଅମ୍ବେକ କନ୍ୟା ବୋଇଲା ମୁହିଁ କାହିଁକି ଯିବି
ମୋହୋରେଣ ଅବଶ୍ୟ ହୋଇବୁ ପରାଭବି ।୫୭
ଅମ୍ବେ ବୋଇଲା ମୁଁ ଯାଉଅଛି କି ନା
ଯହିଁ ତହିଁ ମଲେ ତୋତେ ଲାଗଇ ସିନା ।୫୮
ଅନେକ ଭ୍ରଚ୍ଛନା ଯହୁଁ ବୋଇଲେ ଭୀଷ୍ମ ରାଗେ
ତୋତେ ନାଶିବି ମୁଁ ଝାସିବି ପ୍ରୟାଗେ ।୫୯



## ଅମ୍ବା ଚରିତ

ଯେତେକ ବୋଲିଣ ସେ ଆସଇ ସୁନ୍ଦରୀ
ପ୍ରଶୁରାମର ଆଗେ ସେ କରଇ ଗୁହାରି ।୧
ଗଙ୍ଗା କୂଳେଣ ବସି କାନ୍ଦଇ ଯୁବତୀ
ପ୍ରଶୁରାମ ବୋଇଲାକ "ଆୟୀ ତୁ କାହାର ଯୁବତୀ ।୨
ଯେ ତୋହର ରୂପଗୁଣ ଦେବେଣ ଅଗୋଚର
ତୋତେ ଉପେକ୍ଷା କଲା କେବଣ ପାମର" ।୩
ଅମ୍ବେକ ବୋଇଲା ଗୋସାଇଁ ମୁହିଁ ବଡ଼ ଦୁଖୀ
ମୁହିଁ ଶରଣ ମାଗଇ ମହତ ଜନ ଦେଖି ।୪
ପ୍ରଶୁରାମ ବୋଇଲେ ଆୟି ଯେ ତୋହର ଇଚ୍ଛା
ସତ୍ୟ ଆମ୍ଭେ କଲୁ ଯେ ତୋହର ପୁରାଇ ବାଞ୍ଛା ।୫
ଆମ୍ଭର ସତ୍ୟ ସତ୍ୟ ତିନିବାରରେ ସତୀ
ଯେହିକ୍ଷଣି ଦେବୁଁ ବର ମାଗରେ ଯୁବତୀ ।୬
ଅମ୍ବେକା ବୋଇଲେ ମୋତେ ପ୍ରସନ୍ନ ହୋଇବା
ଆନ ଅର୍ଥ ନାହିଁ ମୋତେ ସ୍ୱାମୀ ଦାନ ହେବା ।୭
ମାଗରେ ସୁନ୍ଦରୀ ଯାହାକୁ ତୋର ଇଚ୍ଛା
ତ୍ରଇ ଲୋକେ ଦେବି ମୁଁ ତୁ ଯାହାକୁ କରୁ ଇଚ୍ଛା ।୮
ଅମ୍ବେକ ବୋଇଲେ ତୁମେ ଶୁଣ ଦେବଯତି
ବରିଣ ବିଭା ମୋତେ ନୋହିଲା ଭୀଷ୍ମ ମହାରଥୀ ।୯
ମୁହିଁ ଯେ ଅମ୍ବେକ ପଦ୍ମଲାଭର କୁମାରୀ
ତାହାକୁ ସ୍ୱାମୀ ଦାନ ମାଗ ମୋତେ ଦେବା ଅଧିକାରୀ ।୧୦
ପ୍ରଶୁରାମ ବୋଇଲେ ରଘୁରାମ ନୀଳରାମ କଇରାଇ
ଭୀଷ୍ମେକୁ ସମର୍ପି ଆସ ଯେହାକୁ ନେଇ ।୧୧
ସ୍ୱାମୀର ଆଜ୍ଞା ସେ ପାଇଲି ନିବେଶିତ ଶିରେ
ଅମ୍ବେକ କନ୍ୟାକୁ ଘେନି ନୀଳରାମ ରଘୁରାମ
ବାରୁଣାବନ୍ତ ପୁରେ ।୧୨
ଭୀଷ୍ମେକୁ ବୋଇଲେ ତୋତେ ପ୍ରଶୁରାମଙ୍କର ଆଜ୍ଞା ମାନିବୁ
ଅମ୍ବେକ କନ୍ୟାକୁ ପ୍ରଦାନ ହୋଇବୁ ।୧୩
ଭୀଷ୍ମେ ବୋଇଲେ ରଘୁରାମକୁ କୋପେ ଚାହିଁ
ତୁମ୍ଭର ଡରେ କିରେ ବିଭା ହୋଇବଇ ମୁହିଁ ।୧୪
ମୋହର ଭୟ କିରେ ତୁମ୍ଭ ପ୍ରଶୁରାମଙ୍କୁ
କିମ୍ପାଇ ପ୍ରଦାନ ହେବି ଅମ୍ବେକା କନ୍ୟାକୁ ।୧୫
ନୀଳରାମେ ବୋଇଲେରେ ପ୍ରଶୁରାମ ଆଜ୍ଞା ମେଣ୍ଟୁ
ଅବଶ୍ୟ ତୋହର ଯେ ହୋଇବ ଶିର ତୁଟୁ ।୧୬
କୋପେ ଭୀଷ୍ମ ବୋଇଲେ ଶୁଣ ନୀଳରାମ
ପାରିଲେ ଆସୁ ତୋର ସ୍ୱାମୀ ପ୍ରଶୁରାମ ।୧୭
ପ୍ରଶୁରାମ ଆଗେ ତୋର କହୁକିନା ଯାଇଁ
ସଭିଏ ନାଶ ଯିବ ତୁମ୍ଭେ ଏ ଦ୍ରୋହୀର ପାଇଁ ।୧୮
ରଘୁରାମ ନୀଳରାମ ଗଲେ ଯେ ବାହୁଡ଼ି
ଅମ୍ବେକ କନ୍ୟା ଯେ ଗୋଡ଼ାଇ କାନ୍ଦି କରି ।୧୯
ପ୍ରଶୁରାମ ବିଜେ କରି ଅଛନ୍ତି ତ୍ରିପୁରା ପର୍ବତେ
ରଘୁରାମ ନୀଳରାମ ପ୍ରବେଶ ବେନି ଭ୍ରାଥେ ।୨୦
ପ୍ରଣମିତ ହୋଇଣ ଯେ ନୀଳରାମ ବୋଇଲା
ସ୍ୱାମୀ ଭୀଷ୍ମ ଆମ୍ଭଙ୍କୁ ଯେ ଅନେକ ଗାଳି ଦେଲା ।୨୧
ବୋଇଲା ଆସଇକି ନା ତୁମ୍ଭର ପ୍ରଶୁରାମ
କେତେ କେତେ ଆସି କିନା କରଇ ସଂଗ୍ରାମ ।୨୨
ଅମ୍ବେକ କାନ୍ଦଇ ଯେ ଅନେକ ବଇକୁଳେ
ପ୍ରଶୁରାମ ଆଜ୍ଞାକୁ ଯେ ସେ ହେଳେଣ ମେଣ୍ଟିଲେ ।୨୩
ଧାମଇଁ କୋପେ ସେ ପ୍ରଶୁଧର ନାଥ
ପଛେ ଗୋଡ଼ାବନ୍ତି ରଘୁରାମ ନୀଳରାମ ବେନିଭ୍ରାଥ ।୨୪
ଅନେକ ଅବସ୍ଥା ଯେ ହୋଇ ଅମ୍ବେକ ଯୁବତୀ
ସେହି ଗୋଡ଼ାଇ ଅଛନ୍ତି ସେ ତାହାଙ୍କ ପଛ କତି ।୨୫
କାଳାନଳ ରୂପ ହୋଇଣ ପ୍ରଶୁରାମେ
ରାଗେଣ ପ୍ରବେଶ ହୋଇଲେ ଯାଇ ଭୀଷ୍ମଙ୍କର ଆଶ୍ରମେ ।୨୬
ପ୍ରଶୁରାମଙ୍କ କୋପ ଦେଖିଣ ଯେ ଭୀଷ୍ମ ମହାରଥୀ
ରାଗ ଦେଖି ନ ଗଲେ ଯେ ପ୍ରଶୁରାମ କତି ।୨୭
କୋପେଣ ପ୍ରଶୁରାମ ଯେ ବଦନ୍ତି ଉତ୍ତର
ଆରେ ମୋହର ଆଗ୍ୟାଂଭ୍ରଷ୍ଟ କଲୁରେ କେବଣ ଦର୍ପ ତୋହର ।୨୮
କେବଣ କାରଣେ ବରିଲୁ ଯେହାକୁ
ବରିଣ ବିଭା ନୋହିଲୁ ଅମ୍ବେକ କନ୍ୟାକୁ ।୨୯

ପାରେଶ୍ୱର ବୋଇଲେ ଶୁଣସିରେ ତୁ ଭୀଷ୍ମ
ତୋତେ କୋପ ଯେ କରିଛି ସ୍ୱାମୀ ପ୍ରଶୁରାମ ।୩୦
ବଡ଼ କାଳନ୍ତେକ ଏ ମହା ଯେ ବିକଟ
ଆଗ୍ୟାଂ ଭ୍ରଷ୍ଟ କରିଣ ଯେ କରିଛୁ ମୁରାଟ ।୩୧
ବାବୁ ଯମଦଗ୍ନିର ଯହୁଁ ବିଷାଦ ଦେଖିଲା
ତିନିଭାଇ ମାତାଙ୍କର ଶିର ସେ ଛେଦିଲା ।୩୨
ଯମଦଗ୍ନିର ସତ୍ୟ ରଖିଲା ଯେ ଅଣ ଉପ୍ରୋଧି
ପିତୃକାର୍ଯ୍ୟ କଲା ଯେ ତ୍ରୈଲୋକ୍ୟେ ମହାଯୋଧି ।୩୩
ଯେହାର କୋପ କଲେରେ କେହି ତ ନ ବର୍ତ୍ତି
ଯେକୋଇଶ ବାରେ ରେ ନିକ୍ଷତ୍ରୀ କଲା ପୃଥ୍ୱୀ ।୩୪
ସତ୍ୟଯୁଗ ଭୋଗ କଲା ଯେହି କ୍ଷତ୍ରୀ ବୃତ୍ତ ପଣେ
ଅନେକ ବିଦ୍ୟା ସାଧିଲା ଆପଣେ ଆପଣେ ।୩୫
ଯେହା ସଙ୍ଗେ ତୁ ନୁହସି ବିବାଦୀ
କଟାକ୍ଷ ନୟନେ ଚାହିଁଲେ ହୋଇବ ଶିରଛେଦୀ ।୩୬
ଆମ୍ଭର ଶପତ ବାବୁ ନାସ୍ତି ତୁ ନ କର
ଅମ୍ଭେ କନ୍ୟାକୁ ପ୍ରଦାନ ହୋଅ ଆମ୍ଭର ବୋଲ କର ।୩୭
ଭୀଷ୍ମେ ବୋଇଲେ ମୁଁ କେମନ୍ତେ ବିଭା ହୋଇବି
ଶାୟେନ୍ତନୁ ପରା ପିତାକୁ ମୋର ପୁତ୍ରହାତେ ମରାଇବି ।୩୮
ପାରେଶ୍ୱର ବୋଇଲେ ବାବୁ ତାକୁ ପ୍ରଦାନ ହୁଅ
ଶୃଙ୍ଗାର ବଞ୍ଚାଇ ପଛେ ଅପବାଦ ଦିଅ ।୩୯
ଭୀଷ୍ମେ ବୋଇଲେ ତୁମ୍ଭେ ଶୁଣ ପିତୃ ଗଣେ
ମୁହିଁ ଶୁଣିଲି ଦେବ ଅଗସ୍ତିଙ୍କ ପୁରାଣେ ।୪୦
ତିରିଶ ଦିବସେ ଯେ ଅଶୁଦ୍ଧ ହୋଏ ନାରୀ
ତାହାକୁ ଛୁଇଁଲେ ଯେ ଚାଣ୍ଡାଳ ଛୁଇଁଲା ସରି ।୪୧
ଯେତେ ବସ୍ତ୍ରେ ଛୁଇଁ ତେତେ ବସ୍ତ୍ରେ ସ୍ନାହାନ କରି
ସେ ଦିନେକ ଉପବାସେଣ ଦିନ ହରି ।୪୨
ଦୁତୀୟ ଦିବସେଣ ଛୁଅନ୍ତି ଯେବଣ ନାରୀ
ପ୍ରତକ୍ଷେ ଦୋଷ ହୋଅଇ ବ୍ରହ୍ମହତ୍ୟା ପାପସଙ୍ଗେ ସରି ।୪୩
ତୃତୀୟ ଦିବସେ ଛୁଅନ୍ତି ଯେବଣ ଯୁବତୀ
ପୂଜାଲିଙ୍ଗ ଭାଙ୍ଗିଲେ ହୁଅଇ ଯେବଣ ଗତି ।୪୪
ଚତୁର୍ଥ ଦିବସେ ଯେ ହୁଅନ୍ତି ଯୁବତୀଙ୍କର ପାଶ
ଗୋହତ୍ୟା ବ୍ରହ୍ମହତ୍ୟା ମାତୃହରଣ ସୁରାପାନ ଦୋଷ ।୪୫
ଶୁଦ୍ଧ ସ୍ନାହାନ କରିବ ପାଞ୍ଚ ଦିବସେ
ସେଦିନ ଯିବ ପୁରୁଷ ତାହାର ପାଶେ ।୪୬
ନାନା ଧର୍ମ ଇଛି ପିତୃ କାର୍ଯ୍ୟ ଆଦି କରି
ସମସ୍ତ ତେଜ୍ୟା କରି ତାହାରେ ହୋଇ ବ୍ରତଚାରୀ ।୪୭
ଷଷ୍ଠ ଦିନ ଯେ ସପ୍ତମ ଦିନ ପରିଯନ୍ତେ
ଯେବଣ ପୁରୁଷ ନଯାନ୍ତି ଦୋଷ କୃତ ଅର୍ଥେ ।୪୮
ସେ ବୋଇଲା ଶ୍ରୋଣିତ ଆଧାର କରନ୍ତି ତାହାର ପିତୃଲୋକେ
ଯେସନେକ ଅଛି ଶାହାସ୍ତ୍ର ଧର୍ମ ବାକ୍ୟେ ।୪୯
ବୋଲ ଯେ ବିଭା ହୋଇଣ କେହ୍ନେ ଶୃଙ୍ଗାର ନଇଛିବି
ମୋହର ପୁତ୍ର ହୋଇଲେ କି ତୁମ୍ଭନ୍ତ ନାଶ କରିବି ।୫୦
ଯେସନେକ ବଚନ ଯହୁଁ କହିଲେକ ଗାଙ୍ଗେବେ
ଶୁଣିଣ ତୁଷ୍ଟ ହୋଇଲେ ପାରେଶ୍ୱର ଦେବେ ।୫୧
ପ୍ରଶୁରାମକୁ ବୋଇଲେ ଭୀଷ୍ମ ମହାରଥୀ
ଆହୋ ପ୍ରଶୁରାମ କିସ ତୋତେ ମୋହର ଭୀତି ।୫୨
ପଳା ଯା ମିଛେ ଯେଥେ ବଖାଣୁ ବଡ଼ପଣ
ସହୋଦ୍ରେ କଳଙ୍କ ନ କରାଅସି ଅକାରଣ ।୫୩
ତୁ ମୋହୋର ସୋହୋଦ୍ର ଅଟୁ ଯଥା ଅର୍ଥେ
ଯେ ଛାର ପାମେରୀ ପାଇଁ ମରିବ ତିନି ଭ୍ରାଥେ ।୫୪
କିଞ୍ଚିତ ଦୋଷେ ବଡ଼ପଣ ନ ନାଶି
ଶ୍ରିକାଳ ଯୁଦ୍ଧେ ସିଂହ ହୋଇଲାଟି ଧ୍ୱଂସି ।୫୫
ଭୀଷ୍ମଙ୍କର କଥା କଟୁ ବଚନ ଶୁଣି
କୋପେଣ ଧାଇଁଲା ଯେ ପର୍ଶୁଧର ପାଣି ।୫୬
କୋପ ମୂର୍ତ୍ତି ଧଇଲେ ଜମଦଗ୍ନିର ବଳା
ଧଇଲେ କୋପେଣ ଭୀଷ୍ମେ ଅନର୍ଗଳା ।୫୭
ଭୀଷ୍ମଙ୍କୁ ପ୍ରଶୁରାମ ଧଇଲେ ଆକ୍ରଷି
ଭୀଷ୍ମଙ୍କୁ ତଳେ ପାଡ଼ି ହୃଦେ ମାଡ଼ିବସି ।୫୮
ମୁଣ୍ଡ ମୋଡ଼ି ଭୀଷ୍ମଙ୍କର ଲୋଡ଼ନ୍ତି ପ୍ରର୍ଶୁଧର
ଧାଡିକାରେ ଲେଉଟାଇଲେ ଗଙ୍ଗାର କୁମାର ।୫୯
ପ୍ରଶୁରାମଙ୍କୁ ତଳେ ପାଡ଼ି ବସିଲେ ହୃଦଗତ
ବାମ କରେ ଚାପିଣ ପ୍ରହାରିଲେ ମୁଥ ।୬୦
ଭୀଷ୍ମଙ୍କର ମୁଥ ଯେ ସମାନ ବଜ୍ରଗିରି
ପ୍ରଶୁରାମଙ୍କର ନାସିକା ବାଟେ ଫୁଟି ବହଇ ବାରି ।୬୧
ଦେଖିଣ ଧାଇଁ ଯେ ପଡ଼ିଲେ ଶାୟେନ୍ତନୁ
ଭୀଷ୍ମଙ୍କର ଭୁଜ ଯେ ଧଇଲେ ଯୁଗମନୁ ।୬୨
ରହ ରହ ବାବୁରେ ଭୀଷ୍ମ ମହାରଥୀ
ସହୋଦ୍ର ସହୋଦ୍ର କିମ୍ପା ହେଉଛ ବଇରତୀ ।୬୩

ଶାୟେନ୍ତନୁ ପାରେଶ୍ୱର ଗୁହାଇଲେ ସଂଗ୍ରାମ
ବହୁତ ଲଜ୍ୟା ଯେ ପାଇଲେ ପ୍ରଶୁରାମ ।୬୪
ଅମ୍ୱେକ କନ୍ୟା ବାହୁଡ଼ି ପ୍ରୟାଗ ତୀର୍ଥେ ଗଲା
ତ୍ରିବେଣୀ ସ୍ନାହନ କରି ପୁଣି ମାଧବ ପୁଜିଲା ।୬୫
ଭୋ ମାଧବ ତୁ ହୋଇଥାଅ ସାକ୍ଷୀ
ଭୀଷ୍ମର ପ୍ରସାଦେ ମୁଁ ହୋଇଲି ନିରିମାଖି ।୬୬
ଭୀଷ୍ମଙ୍କର ଉପରେ ହତ୍ୟା ଯେ ମୋହର
ମାଧବ ସାକ୍ଷୀ କରି ଝାସିଲା ପ୍ରୟାଗର ।୬୭
ମୁହିଁ ସ୍ତିରୀ ହୋଇଣ ହୋଇବି ମହାଯୋଧି
ଜନ୍ମେ ଜନ୍ମେ ମୁହିଁ ଭୀଷ୍ମେକଇ କରିବଇ ସାଧି ।୬୮
ଯେ ମୋହର ରୂପ ଲକ୍ଷଣ ଦେଖନ୍ତେ
ଭୀଷ୍ମ ଶର ଛାଡ଼ିବ ମୋତେ ଦେଖନ୍ତେ ଯୁଗତେ ।୬୯
ତ୍ରିଶୂଳୀରେ ପଶି ଯେ ଲଗାଇଲା ବହନି
ଲଗାଇଲା ମାତ୍ରକେ ଯେ ଜଳିଲା ତତକ୍ଷଣି ।୭୦

**

## ୧୦. ଧୃତରାଷ୍ଟ୍ର ଗାନ୍ଧାରୀ ବିବାହ

### ଧୃତରାଷ୍ଟ୍ରଙ୍କର ବିବାହ ପ୍ରସ୍ତାବ ଓ ଅନେକ ରାଜକନ୍ୟାଙ୍କର ମୃତ୍ୟୁ

ସତ୍ୟବତୀ ବୋଇଲେ ଭୀଷ୍ମଙ୍କୁ ବସାଇ
ଧୃତରାଷ୍ଟ୍ର କଇ ବିଭା କରାଅ କନ୍ୟା ଲୋଡ଼ାଇ ।୧
ଶୁଣିଣ ସାନନ୍ଦ ହୋଇଲା ଭୀଷ୍ମ ମହାରଥୀ
ଶାଲୁ ରାଜାର ଦୁହିତା ନାମ ଶାଲୁବତୀ ।୨
ଭୀଷ୍ମେ ଶ୍ରୀହସ୍ତ ସନ୍ତକ ଦେଲେ ଶାଲୁ ରଜାଙ୍କୁ
ତୋହୋର ଦୋହିତା ଗୋଟି ଦିଅ ମୋହର ପୁତ୍ରକୁ ।୩
ଶାଲୁ ସାନନ୍ଦ ହୋଇଲେ ଭୀଷ୍ମଙ୍କ ବଚନ ଶୁଣି
ଧୃତରାଷ୍ଟ୍ରଙ୍କୁ ଦେବ କନ୍ୟା ବୋଲି ସମ୍ଭାର କରି ଆଣି ।୪
ସମଦଣ୍ଡ ଘେନିଣ ଶାଲୁ ଯେ ନୃପତି
ଦୋହିତାକୁ ଘେନି ମିଳିଲା ସତ୍ୟବତୀର କତି ।୫
ସତ୍ୟବାକ୍ୟ କରିଣ ଯହୁଁ ଶାଲୁ ଯେ ମାନିଲା
ସେହିଦିନ ରାତ୍ରେ କନ୍ୟା ଗୋଟି ପ୍ରାଣତ୍ୟାଗ ହୋଇଲା ।୬
ଦେଖିଣ ଶାଲୁ ଅନେକ ବଇକୁଲ୍ୟ ହୋଇଲା
ଯମୁନା କୂଳେ ନେଇ ସେ କନ୍ୟାକୁ ଦହନ କଲା ।୭
ଅନଙ୍ଗ ଦେଶର ଅନଙ୍ଗସେନ ରାୟେ
କାଳନ୍ଦୀ ନାମେ ତାର ଅଛଇ ଦୋହିତାୟେ ।୮
ତାହାକୁ ବରିଣ ସେ ଧୃତରାଷ୍ଟ୍ର ରାୟେ
ସତ୍ୟ କରାଇଣ ଦେଲେ ମାଳା ଯେ ଗୋଟିୟେ ।୯
ବରଣ କରିଣ ଯେଣେ ଧଇଲେ ଶାୟେନ୍ତନୁ
ସେ କନ୍ୟା ନାଶ ଗଲାଟି ସେହିଦିନୁ ।୧୦
ନିର୍ଝର ଦେଶର ଯେ ରାଜା ଗଣପତି
କନ୍ୟାୟେ ତାହାର ଘରେ ଅଛି ଉତପତ୍ତି ।୧୧
ତାହାର ନାମ ଯେ ଅଟଇ ନିଗୁଧତି
ପାରେଶ୍ୱର ବରିଲେ ସେ କନ୍ୟାକୁ ଯାଇ ସତ୍ୟବତୀ ।୧୨
ଶୁଣିଣ ନିର୍ଝର ଗଣପତି ସାନନ୍ଦ ହୋଇଲା
ଅନେକ ଭାଗ୍ୟ ବୋଲି ଯେ ନଗ୍ରେ ଉଛବ କରାଇଲା ।୧୩
ସୋମ ବଂଶକୁ ଦେବି ମୋହୋର କୁମାରୀ
ବଡ଼ ଶ୍ରେଷ୍ଠ ସୋମବଂଶ ମଧ ଭୁବନେ ଅଧିକାରୀ ।୧୪
ଯେସନେକ ବିଚାରନ୍ତେ ରାଜା ନିର୍ଝର ଗଣପତି
ସେ କନ୍ୟାନାଶ ଗଲା ସେହିଦିନ ରାତି ।୧୫
ପୁଣି ହିଁ ବରିଲେ ଆନନ୍ଦେ କନ୍ୟାୟେ
କର୍ଣ୍ଣ ମାଧବ ଦେବ ଥିଲା ଦୁହିତାୟେ ।୧୬
ଧୃତରାଷ୍ଟ୍ର ନାମେ ଯହୁଁ ସତ୍ୟ ସେ ମାନିଲା
ସେ କନ୍ୟା ସେହିଦିନ ପ୍ରାଣତ୍ୟାଗ ହୋଇଲା ।୧୭
ବଇବସୁତ ମନୁ ପୁଛାକଲେ ଅଗସ୍ତିଙ୍କି
କନ୍ୟା କିମ୍ପା ନାଶ ଯାନ୍ତି ଧୃତରାଷ୍ଟ୍ରକୁ ଦେଖି ।୧୮
ଅଗସ୍ତି ବୋଇଲେ ଯେହାର କୃତିକା ବୃଷ ରାଶି
ଜାତି ବ୍ରହ୍ମ ରାକ୍ଷାସ ଯେମନ୍ତେଣ କନ୍ୟା ନାଶି ।୧୯
ବ୍ୟାସ ପରା ଋଷି ବୀର୍ଯ୍ୟ ପ୍ରଦାନ କଲା
ବ୍ରହ୍ମ ରାକ୍ଷସ କିମ୍ପା ଜନମ ଲଭିଲା ।୨୦
କୃତିକା ଯୋଗେ ମୁନି ପଶିଲେ ଶୃଙ୍ଗାରେ
ରୋହେଣି ବେଳେ ବୀର୍ଯ୍ୟ ଛାଡ଼ିଲେ ମୁନିବରେ ।୨୧
ଅମ୍ବିକା କନ୍ୟା ଯହୁଁ ଶୃଙ୍ଗାର ସହି ନ ପାରିଲା
ଗତି ପ୍ରାଣ ହୋଇଣ ମୋହେଣ ପଡ଼ିଲା ।୨୨
ଆରତେ ମହାତମା ଯେ ତେଜ୍ୟା କଲେ ରେତ
ତେଣୁ କରି ବ୍ରହ୍ମ ରାକ୍ଷସ ହୋଇଲାକ ଜାତ ।୨୩
ଅଗସ୍ତି କହିଲେ ବଇବସୁତ ମନୁକୁ
ଏସନେକ ଯୋଗ ହୋଇଲାକ ଧୃତରାଷ୍ଟ୍ରକୁ ।୨୪

ବ୍ରହ୍ମ ଅସୁର  ଲକ୍ଷଣେ ହୋଇଲା ଉତପତ୍ତି
ତେଣୁ ସେ କନ୍ୟାଏ ବରଣ ହୋଇଲେ ନାଶ ଯାନ୍ତି ।୨୫
ମନୁ ବୋଇଲେ ପୁଣ ହୋଇବ କେମନ୍ତ
ଯେକଥା ତଦନ୍ତ କରି କହିବା ତପୋବନ୍ତ ।୨୬
ଅଗସ୍ତି ବୋଇଲେ ହୋ ଶୁଣ ଯୁଗପତି
ଧୃତରାଷ୍ଟ୍ର ବରଣେ ଏକ ଉଉର ଶତେକନ୍ୟା ହୋଇଲେ
ବିନଶ୍ୟତି ।୨୭
ବୃଜଗିରି ଦେଶର ରାଜା ବୀର କେତନ
ସେ ଆଣି କନ୍ୟାଯେ କଲାକ ପ୍ରଦାନ ।୨୮
ସେ କନ୍ୟାର ନାମ ଅଟଇ ଚନ୍ଦ୍ରବତୀ
ଅନେକ ସମ୍ଭର୍ବେ ଆସଇ ସେ ନରପତି ।୨୯
ଧୃତରାଷ୍ଟ୍ର ଅନ୍ଧ ଯେ ଅଟଇ ବେନି ଆଖି
ଅନ୍ୟ ଦେଶକୁ ବିଭାଯେଣ ନ ଯାଇ ପୁଣ କରନ୍ତି ଉପଲେଖି ।୩୦
ଯେମନ୍ତେ କନ୍ୟା ମାନନ୍ତ ଆଣିଲେ ପରରାଷ୍ଟ୍ରି
ବିଶେଷେ ନୃପତି ବଂଶେଣ ଗରିଷ୍ଠି ।୩୧
କନ୍ୟା ସେ ଆଣନ୍ତୁ ବାରୁଣା ବନ୍ତକୁ ବିଭା କରାଇବାକୁ
ସେକଥା ରହିଲାଟି ଚତୁର୍ଥ ଯୁଗକୁ ।୩୨
ରାଜାଯେ ବିଭା ହୋଇଂ ନ ଯାନ୍ତି କନ୍ୟାର ଦେଶକୁ
କନ୍ୟା ସେ ଆଣନ୍ତି ବର ଭୁବନକୁ ।୩୩
କନ୍ୟାଏ ବିଭା କଲା ବୀର ଯେ କେତନ
ମହୁଶେଯ୍ୟା ଯୁଗତେ ସେ କରାଇଲେ ଶୋୟନ ।୩୪
କ୍ରୀଡ଼ାରଙ୍ଗ ସାରିଲେ ଶୁତିରେ ବରକନ୍ୟା
ମରିଣ ଶୋଇଛି ସେ ଚନ୍ଦ୍ରବତୀ କନ୍ୟା ।୩୫
ପ୍ରାତକାଳେ ସୁନ୍ଦରୀ କି ନେଲେ ଶମଶାନେ
ଦହନ କରି ଶୁଦ୍ଧ ହୋଇଲେ ଯେକାଦଶ ଦିନେ ।୩୬
ବିଭାଯୋଗ କରନ୍ତେ ଯହୁଁ ଅନେକ କନ୍ୟା ମଲା
ଧୃତରାଷ୍ଟ୍ରଙ୍କୁ କନ୍ୟା କେହି ଦିଅନ୍ତ ନୋହିଲା ।୩୭

■ ■

### ବ୍ୟାସଙ୍କର ଗାନ୍ଧାର ସେନ ସହ ସାକ୍ଷାତ

ବ୍ୟାସେ ଯହୁଁ ଯେତେକ କହିଗଲେ ଅନ୍ତର୍ଦ୍ଧାନେ
ପ୍ରବେଶ ହୋଇଲେ ଯାଇ ଗାନ୍ଧାର ଦେଶ ସ୍ଥାନେ ।୧
ଗାନ୍ଧାର ସେନ ବୋଲି ତହିଁର ନରପତି
ଯେକ ଉଉର ଶତେ ପୁତ୍ର ତାର ଯେକଇଁ ଦୋହିତି ।୨
ଦୋହିତାର ନାମ ଯେ ଅଟଇ ଗାନ୍ଧାରୀ
ମନ୍ଦ କ୍ଷଣେ ଜାତ ହୋଇଲା ବ୍ରହ୍ମ ଅସୁରୀ ।୩
ଜ୍ୟେଷ୍ଠମାସ କୃଷ୍ଣ ପକ୍ଷ ଅମାବୈ ରାତି
କୃତ୍ତିକା ନକ୍ଷତ୍ରେ ସେ ହୋଇଲା ଉତପତ୍ତି ।୪
ନିତ୍ୟାନ୍ତ ଉଆଁସୀ କନ୍ୟା ଜାତି ବ୍ରହ୍ମ ଅସୁରୀ
ଯେସନେକ ଲକ୍ଷଣେ ସେ ଜନ୍ମିଲା ଗାନ୍ଧାରୀ ।୫
ଯାହାକୁ ଇଛା ସେ ବରଇ ଗାନ୍ଧାର ସେନରାଯେ
ମାଳା ଦେଇ ବରିଲେ ସେ ନୃପତି ଯାଇ କ୍ଷୟେ ।୬
ଓଡ଼ଙ୍ଗ ଦେଶର ଯେ ଭାନୁମତି ନୃପତି
ଗାନ୍ଧାରୀଙ୍କି ବରିଲା ସେ ମଲା ତତ୍‌କ୍ଷଣାନ୍ତି ।୭
ମହାରାଷ୍ଟ୍ର ଦେଶର ସେ ନୃପତି ବିରୁପାକ୍ଷ
ଗାନ୍ଧାରୀଙ୍କ ବରଣେ ସେ ମଲାକ ପ୍ରତ୍ୟକ୍ଷ ।୮
ନିକଟ ରାଜାମାନେ କେହି ଡରେ ବିଭା ନୋହିଲେ
ଦୁରେଣ ବାଇଶି ରାଜା ଗାନ୍ଧାରୀ ବରଣେ ମଲେ ।୯
କେହି ସେ ପ୍ରଦାନ ନୋହିଲେ ଗାନ୍ଧାରୀକି
ବିଚାରଇ ଗନ୍ଧାର ସେନ ଦୋହିତା ରୂପଗୁଣ ଦେଖି ।୧୦
କୁମ୍ଭମାସ ଶୁକଳ ପକ୍ଷ ପ୍ରତିପଦା ଦିନେ
ବ୍ୟାସ ପ୍ରବେଶ ହୋଇଲେ ଗାନ୍ଧାର ସେନ ଭୁବନେ ।୧୧
ଦେଖିଣ ସାନନ୍ଦ ସେ ନୃପତି ଗାନ୍ଧାର
ଉଦେକ ଢାଳଇଁ ନେଇଁ ବ୍ୟାସଙ୍କ ପୟର ।୧୨
ଆପଣେ ଗାନ୍ଧାର ସେନ ପୟର ପଖାଳି
ବ୍ୟାସଙ୍କର ପାଦ ଉଦକ ନେଇ ନିବେଶିତ ମାଥେଣ ତୋଳି ।୧୩
ନବତନ ବସନ କୁଣ୍ଡଳ ରତ୍ନମାଳା ଦେଲା ମହାରାଜା
ଆସନ ଦେଇଣ ପାଦାର୍ଘ୍ୟେ କଲା ପୂଜା ।୧୪
ସୁବର୍ନ୍ୟ ସିଂଘାସନେ ବସାଇଲେ ବ୍ୟାସଙ୍କୁ
କିଙ୍କର ହୋଇ ପଚାରିଲେ ମୁନିହେ ରକ୍ଷା କର ମୁକୁ ।୧୫
ଦେଖ ବଂଶ ମୋର ହୋଇଲା ଅମୁକ୍ଷ ଗତି
ପ୍ରତକ୍ଷେ ନାରାୟଣ ତୁମ୍ଭେ ବେଦବ୍ୟାସେ ଗତି ମୁକତି ।୧୬
ତୋହର ପଦରଜ ପଡ଼ିଲା ମୋହର ପୁରେ
ଅକାରଣକୁ କାରଣ ପାଇବା ମୁନିବରେ ।୧୭
ଅନେକ ବିନୟି ହୋଇ ଗାନ୍ଧାର ସେନ ନାହା
ସଂସାର ଗତି ଦେଲୁ ସ୍ୱାମୀ ଭାଷିଲୁ ଯାହା ।୧୮
ମୁହିଁ ତୋହର ଦାସ ଅଟଇ ଜନ୍ମେ ଜନ୍ମେ
ସଂସାର ଗତି ତାରିଲୁ ନାଥ ଅମୃତ ବଚନେ ।୧୯
ଭୁତ ଭବିଷ୍ୟ ବ୍ରତମାନ ତିନି ଗ୍ରନ୍ଥ କଲୁ

ଅଣାକାର ମନ୍ତେ ତୁ ଶୂନ୍ୟ ପୁରୁଷ ବୋଧିଲୁ ।୨୦
ଅନାଦି ଠାବ ଦେଇ ବକ୍ଷ ସ୍ଥଳେ
ନାରାୟଣ ରୂପ ଲେଖନ କରୁତୁ ମହପ୍ରଳୟ କାଳେ ।୨୧
ଅନେକ ସ୍ତୁତି କରି ଗାନ୍ଧାର ସେନ ସ୍ୱାମୀ
ବ୍ୟାସଙ୍କ ପାଦ ତଳେ ଶତ ସହସ୍ର ଦଣ୍ଡ ପରିଣାମି ।୨୨
ସତ୍ୟବତୀ ନନ୍ଦନ ଚରଣ ମୋର ହୃଦେ
ଶୁଦ୍ର ମୁନି ସାରୋଳା ଦାସ ନମେ ସଦାନନ୍ଦ ପଦ୍ମପାଦେ ।୨୩
ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ବ୍ୟାସେ କଲ୍ୟାଣ କଲେ ଗାନ୍ଧାରସେନ ନୃପତି ।୨୪
ବସ ବସ ମହାରାଜା ତୋର ସିଦ୍ଧ ହେଉ ମନବାଞ୍ଛା
ଅରିଷ୍ଟ ଶାନ୍ତି ହୋଉ ତୋହୋର କୁଟୁମ୍ବ କ୍ଷମେ ରକ୍ଷା ।୨୫
ଆହୋ  କୁଶଳ ହୋଇଅଛନ୍ତି ନା ତୋହୋର ସୋଦରେ
ପାଟ ମହାଦେଈ ତୋର କ୍ଷମେ ଅଛନ୍ତି ନା ପୁରେ ।୨୬
ପୁତ୍ର ସନ୍ତତି ତୋହୋର ବ୍ରତନ୍ତି ନା ସଦାଚାରେ ଭାଗ୍ୟେ
ନାତି ପଣନାତି ତୋହୋର ବ୍ରତନ୍ତି ନା ଆରୋଗ୍ୟେ ।୨୭
ଦେବତା ବ୍ରାହ୍ମଣେ ହୋଉଅଛୁଁ ନା ଭଗତି
ହବି କି ଆହୁତି ଦେଉଛୁଂତି ନିତିପ୍ରତି ।୨୮
ଶୂନ୍ୟ ପୁରୁଷମାନେ କରୁ ଅଛନ୍ତି ନା ବୃଷ୍ଟି
ସୁବିଧାନେ ଫଳଦାୟକ ହୋଉଛି ନା ସୃଷ୍ଟି ।୨୯
ସଂସାର ପାଳନ କରୁଅଛୁ କି ନା ରାଜା
କୁଶଳେ ବ୍ରତନ୍ତି ନା ତୋହୋର ଜନପ୍ରଜା ।୩୦
ପ୍ରଜାନ୍ତି ପାଳିଣ ରାଜା ନ କରୁ ନା ଅବିଧି
ଦଇତ ଦାନବ ମାନନ୍ତ ରାଜା କରୁଅଛୁ ନା ସାଧି ।୩୧
ତୀର୍ଥେଣ ଉପଦର୍ପ ନାହିଁ ନା କଉଣୋପ
ତପିଜନ ରକ୍ଷା କରୁଅଛୁ କି ନା ସର୍ବ ।୩୨
ସର୍ବ ସୁବିଧାନେ ହୋଉଅଛି ନା ରାଜ୍ୟ
ସଂସାର ଶୁଭଧ୍ୱନି ରାଜାକୁ ସର୍ବକାର୍ଯ୍ୟ ।୩୩
ଆହେ ସମସ୍ତ ସୁବିଧାନ ମୋହୋର ଶୁଣିମା ମହାମୁନ୍ୟେ
କଥାୟେ କହିବି ଶୁଣିମା ହୋଉ ସାବଧାନେ ।୩୪
ସ୍ୱାମୀ ଦୁହିତା ଗୋଟିୟେ ଅଛଇ ନାମ ତା ଗାନ୍ଧାରୀ
କୃତ୍ତିକା ବୃଷରାଶି ଜାତିରେ ବ୍ରହ୍ମ ଅସୁରୀ ।୩୫
ଯେତେକ ନୃପତି ମୁଁ ବରିଲି ବିଦ୍ୟମାନେ
ବାଇଶି ରାଜା ମଲେ ବରଣ ବିଧାନେ ।୩୬
ଦୁହିତାକୁ ପ୍ରଦାନ ନୋହିଲେ କେହି ଡରେ
ଯୁବା ଯୁବତୀ ସେ ଅଛି ମୋହୋର ଘରେ ।୩୭
ଦୁହିତା ଯେବେ ପିତା ଘରେ ଅବିଭାଇତ ରଜବତୀ
ତାହାର ଶୋଣିତେ ପିତୃ ଲୋକେ ସ୍ନାହାନ କରନ୍ତି ।୩୮
ଯେସନେକ ଦୋଷ ପୁରାଣେଣ ମୁଇଁ ଶୁଣି
ବିଧୁର ଆତ୍ମା କରି ଥାଇ ଶରୀର କଳଙ୍କ ଜାଣି ।୩୯
ମୋତେ ପ୍ରତିକାର କରିବା ପାରେଶ୍ୱର ତନୟେ
ଗାନ୍ଧାରୀକି ମୋର କରିବା କେବଣ ଉପାୟେ ।୪୦
ବ୍ୟାସେ ବୋଇଲେ ରାଜା ହୋଅଇ ଯେମନ୍ତ
ସତାଇଶି ନକ୍ଷତ୍ରେ ସମସ୍ତେ ହୋନ୍ତି ଜାତ ।୪୧
ଅଶ୍ୱିନୀ ମଘା ମୂଳାର ଆଦ୍ୟ ତିନିଦଣ୍ଡ
ଦୋଷ ଲାଗିବାରୁ ତାର ନାମ ଜାଣ ଗଣ୍ଡ ।୪୨
ଜ୍ୟେଷ୍ଠା ଅଶ୍ଳେଷା ରେବତୀ ଶେଷ ପାଞ୍ଚଦଣ୍ଡେ
ଗଣ୍ଡଦୋଷ ଲାଗେ ଲେଖାଅଛି ଶାସ୍ତ୍ର ଖଣ୍ଡେ ।୪୩
ଅଶ୍ୱିନୀ ତ୍ରିଦଣ୍ଡ ଯେବେ ପଡ଼ଇ ଦିବସ
ପୁତ୍ର କନ୍ୟା ଉପୁଜିଲେ ଯେହି ଗଣ୍ଡଦୋଷ ।୪୪
ପିତାକୁ ଯେ ଗଣ୍ଡଦୋଷ ବରଷେ ଲାଗଇ
ଯେହି ଯୋଗେ ଯେବେ ଜାତ ରାତ୍ରରେ ହୁଅଇ ।୪୫
ମାତାକୁ ଷୋଳ ବରଷେ ଲାଗେ ଗଣ୍ଡ ଦୋଷ
ଆବର କହୁଛୁ ଶୁଣ ଗାନ୍ଧାର ନରେଶ ।୪୬
ଉଭୟ ସନ୍ଧି ଯେବେ ଉପୁଜଇ ସନ୍ତତି
ସେହି ପୁତ୍ର ନାଶଯାଇ ଜାଣ ତତକ୍ଷଣାନ୍ତି ।୪୭
ମଘା ନକ୍ଷତ୍ରରେ ଗଣ୍ଡ ଆଦି ତିନିଦଣ୍ଡ
ଯେଥି ଜନ୍ମ ହେଲେ ପାଞ୍ଚବର୍ଷ ପାଇ ଗଣ୍ଡ ।୪୮
ମୂଳା ନକ୍ଷତ୍ରର ଆଦ୍ୟ ତିନି ଦଣ୍ଡ ପାଇଁ
ଚାରିବର୍ଷ ଗଣ୍ଡ ଯେବେ ପୁତ୍ର ଉପୁଜଇ ।୪୯
ଜ୍ୟେଷ୍ଠା ନକ୍ଷତ୍ରର ଜାଣ ଅନ୍ତ ପାଞ୍ଚଦଣ୍ଡ
ଯେଥି ଜନ୍ମ ହେଲେ ବେନି ବର୍ଷ ପାଇ ଗଣ୍ଡ ।୫୦
ଅଶ୍ଳେଷା ରେବତୀର ଯେ ଅନ୍ତ ପାଞ୍ଚଦଣ୍ଡ
ଯେଥି ଜନ୍ମ ହେଲେ ପାଞ୍ଚବର୍ଷ ପାଇ ଗଣ୍ଡ ।୫୧
ଯେତେ ଯୋଗେ ଦିବସରେ ଜନମ ଲଭିଲେ
ପିତାଙ୍କୁ ଗଣ୍ଡ ଲାଗଇ ପୁତ୍ର କନ୍ୟା ହେଲେ ।୫୨
ରାତ୍ର କାଳେ ଉପୁଜାଇ ଯଦ୍ୟପି ସନ୍ତତି
ମାତାଙ୍କୁ ଗଣ୍ଡ ଲାଗିବ ବୋଲନ୍ତି ଅଗସ୍ତି ।୫୩
ଉଭୟ ସନ୍ଧ୍ୟାରେ ଯେବେ ଉପୁଜଇ ବାଳ
ତାହାର ଉପରେ ପରାଭବ କରେ କାଳ ।୫୪
ଗଣ୍ଡଦୋଷ ଲାଗଇ ଯେବେ ଯେତେକ ନକ୍ଷତ୍ରେ

ବ୍ୟାସେ କହିଲେ ଗାନ୍ଧାରସେନର ଅଗ୍ରତେ ।୫୫
ଦେବ ଅସୁର ମାନବ କୁଳେ ଜାତ
ଯେହାଙ୍କର ପ୍ରକୃତି ବାରିବା କେମନ୍ତ ।୫୬
ଅଶ୍ୱିନୀ ମୃଗଶିରା ପୁଷ୍ୟା ହସ୍ତା ରେବତୀରେ ପୁତ୍ର କନ୍ୟା ଉତପତ୍ତି
ଶ୍ରବଣା ପୁନର୍ବସୁ ଅନୁରାଧା ସ୍ୱାତି ଘେନି ଦେବ ଅଂଶ ହୋନ୍ତି ।୫୭
ଦ୍ୱିଜା ଆରଦ୍ରା ରୋହିଣୀ ଉତ୍ତର ଭୋଦ୍ରୁଅ
ପୂର୍ବା ଫାଲଗୁନୀ ଉତ୍ତରପୂର୍ବାଷାଢ଼ା ଦ୍ୱୟ ।୫୮
ପୂର୍ବ ଭାଦ୍ରବ ଉତ୍ତରା ଫାଲଗୁନୀ ଯେ ଦୁଇ ନକ୍ଷତ୍ରେ ଉତପତ୍ତି
ସ୍ତିରୀ ହୋଉ ପୁରୁଷ ହୋଉ ମନୁଷ୍ୟ ଅଟଇ ଜାତି ।୫୯
କୃତିକା ମଘା ବିଶାଖା ଜ୍ୟେଷ୍ଠ ଶତଭିଷ
ଅଶ୍ଳେଷା ଧନିଷ୍ଠା ଚିତ୍ରା ମୂଳା ଯେ ହୁଅନ୍ତି ରାକ୍ଷସ ।୬୦
କୃତିକା ନକ୍ଷତ୍ରେ ଉପୁଜିଲା ଗାନ୍ଧାରୀ
ଆବର ଉଆଁସୀ ହୋଇଲା ଜାତିରେ ବ୍ରହ୍ମ ଯେ ଅସୁରୀ ।୬୧
ଆହୋ ଚନ୍ଦ୍ର ନଷ୍ଟ ହୋଅଇ ସେ ଅମାବଇ ଦିନ
ଅତି ଦୋଷେ ସ୍ତିରୀ ହୋଅନ୍ତି ଉତପନ୍ନ ।୬୨
ସେ ଉଆଁସୀ କନ୍ୟାକୁ ବିଭା ହୋଅଇ ଯେବଣ ପୁରୁଷ
ତାହାର ଦେହ ଲାଗନ୍ତେ ଯଶ ଶ୍ରୀ ଆୟୁଷ ହୁଅଇ ନାଶ ।୬୩
ଯେସନେକ ସନ୍ଦେଶ ଯହୁଁ ବ୍ୟାସେ କଲେ ପୁଚ୍ଛା
ଶୁଣିଣ ଗାନ୍ଧାରସେନ ନୃପତି ପଡ଼ିଲାକ ମୂର୍ଚ୍ଛା ।୬୪
କୋଳେ ଧଇଲା ଟୋଳି ତାର ବିଜୟସେନ୍ ମନ୍ତ୍ରୀ
ସାଷ୍ଟମ କରାଇଲେ ଯେ ପଣ୍ଡିତ ଭିଙ୍କ ଯତି ।୬୫
ବ୍ୟାସେ ବୋଇଲେ ବାବୁ ଶୁଣ ରାଜା ଗାନ୍ଧାର
ଆମ୍ଭର ବୁଦ୍ଧିଯେ ଅଛି କରିବା ପ୍ରତିକାର । ।୬୬

■■

## ସାହାଡ଼ା ବୃକ୍ଷ ମାହାତ୍ମ୍ୟ

ଗୋଇକ ବୃକ୍ଷ କରତା ନାଥ ରଞ୍ଜକ
ମହାକଳପ ବୃକ୍ଷ ସେ ହରଇ ମହାପାତକ ।୧
ପୂର୍ବେ ସ୍ରିଜିତ ତାହା କଲେକ ପ୍ରଜାପତି
ଦୋଷୀ କନ୍ୟା ହୋଇଲେ ତାକୁ ବିଭା କରାବନ୍ତି ।୨
ଗାନ୍ଧାରସେନ ବୋଇଲା ସେ ବୃକ୍ଷ ଅଛି ମୋହର ନବର
ମଝୀ ଥାନେ
ମୁଁ ତାହାକୁ ମୁନି ହୋ ପୂଜା କରଇ ନିତି ଦିନେ ।୩
ବ୍ୟାସେ ପ୍ରତିବାଚ ତୁ ଭାଗ୍ୟବନ୍ତ ରାଜା
କିସ ଫଳ ଅଛି ତୁ ସାହାଡ଼ା ବୃକ୍ଷ କରୁ ପୂଜା ।୪
ଗାନ୍ଧାରସେନ ପ୍ରତିବାଚ ସେ କରତାର ନାଥ ରଞ୍ଜକ
ଦ୍ରଶନେ ହରଇ ସେ ଅଶେଷ କୋଟି ପାତକ ।୫
ବ୍ୟାସେ ବୋଇଲେ ରାଜା ନୋହଇଟି ଯେମନ୍ତ
ଆମ୍ଭର ଠହୁଁ ଶୁଣ ହୋ ଶାହାସ୍ର ସଂଗତ ।୬
ବୃଷଭ ମାସ କୃଷ୍ଣପକ୍ଷ ତିଥି ଯେ ଦଶମୀ
ଗୁରୁବାର ଶତଭିଷା ନକ୍ଷତ୍ରେ ବିଜୟେ ବିଶ୍ୱନାଥ ସ୍ୱାମୀ ।୭
ନନ୍ଦିକେଶ୍ୱର ଦେବ ବୃଷଭ ପଲାଣି
ପିଠିରେ ବିଜେ କଲେ ଦେବ ପିନାକୀ ଶୂଳପାଣି ।୮
ହୃଦରେ ଆଭରଣ ଉଡ଼ଙ୍ଗ ସପତ ଫେରୁ
ଅନ୍ତରୀକ୍ଷେ ବାଜଇ ନବଲକ୍ଷେ ଡମ୍ବରୁ ।୯
କଉତୁକେ ବିହଡ଼ନ୍ତି ସ୍ୱାମୀ ଦେବରାଜେ
ବଇଲ ଆରୋହଣ ଦେବ ମଧପୁରେ ଦିଗବିଜେ ।୧୦
ଅନେକ ତୀର୍ଥେ ପଶି ଆସନ୍ତି ସୁଢ଼ଳେ
ଚଳନ୍ତି ମହେଶ୍ୱର ବଇତରଣୀ ନଦୀ କୂଳେ ।୧୧
ସାହାଡ଼ା ବୃକ୍ଷ ଗୋଟିଏ ଅଛି ବାମ କତି ଲାଗି
ପତ୍ର ଗୋଟିଯେକ ବଇଲ ମଥାରେ ଘେନିଲାକ ବେଗି ।୧୨
ଈଶ୍ୱର ପୁଚ୍ଛା କଲେ ଶୁଣ ହୋ ମହାବୃଷଭ
ଯେ ପତ୍ର ଗୋଟିଏ ମଥାରେ ଘେନିଲୁ କି ସୁଲଭ ହୋଇବ ।୧୩
ବୃଷଭ ବୋଇଲା ଦେବ ବାମେ ଯେବେ ସାହାଡ଼ା ବୃକ୍ଷ ଥାଇ
ପତ୍ର ଗୋଟିଏ ଶିରେ ଘେନିଲେ ଅମୃତ ଯୋଗାଡ଼ ପାଇ ।୧୪
ଡାହାଣ ଭାଗେ ଯେବେ ବୟର ବୃକ୍ଷ ଥାଇ
ତହିଁରୁ ପତ୍ର ଗୋଟିଏ ଘେନିଲେ ଶତ୍ରୁ କ୍ଷୟେ ଯାଇ ।୧୫
ଆଗରେ ଶ୍ୱେତ ଦୁବ ଦେଖିଲେ ମଥାରେ ଘେନିଣ ଟୋଳି
ଅନେକ ଦୋଷ କ୍ଷୟ ଯାୟେ ଶୁଣିମା କପାଳୀ ।୧୬
ତୁଳସୀ ବୃକ୍ଷ ଯେବେ ଦେଖିବ ପଛକତି ଲେଉଟି
ମଥାଯେଣ ଘେନିମ ହାଦେ ଝଡ଼ିଲା ପତ୍ର ଗୋଟି ।୧୭
ଗ୍ୟାନେ ଅଗ୍ୟାନେଣ ଯେତେକ ପାପ ଅଛି
ତକ୍ଷଣେ ସକଳ ପାତକ ଯାଇ ଲେଛି ।୧୮
ଭୋଜନ ପ୍ରାପତ ହୋଅଇ ସାହାଡ଼ା ପତ୍ରେକ ଘେନିଲେ
ଆଜି ପରୀଖି ଜାଣିମା ସଦାନନ୍ଦେ ବୋଇଲେ ।୧୯
ଚତୁର୍ଦ୍ଦଶ ଭୁବନ ବୁଲିଲେ ମହାଦେବ
ପାଣି ଘାସ ଆହାର କତିକି ସେ ନ ନିଅନ୍ତି ବୃଷଭ ।୨୦
ମନ ସରି ବୃଷଭକୁ ସେ ବୁଲାନ୍ତି ଉପବାସେ
ଗିରି ଅରଣ୍ୟେ ବୁଲାବନ୍ତି ନରହନ୍ତି ବୁଲାନ୍ତି ଆକାଶେ ।୨୧

ବାହୁଡ଼ନ୍ତି କପିଳାସେ ଆଦିତ୍ୟର ଅସ୍ତେ
କପିଳାସ ନିକଟେ ବିଜୟେ ପଞ୍ଚୁବକ୍ତ୍ର ତ୍ରିନେତ୍ରେ ।୨୨
ଅମୃତ ଯୋଗାଡ଼ ଯେ ରନ୍ଧନ କରନ୍ତି ଉମା
ସ୍ୱାମୀକି ବାଟ ଚାହିଁଣ ବିମୁଖ ଦେବୀ ବାମା ।୨୩
ତେର ଘଡ଼ି ଯହୁଁ ଗଡି ଗଲା କରତାର
ଆପଣେ ଠାକୁରାଣୀ ବିଜେ କଲେ ମୁଣୋହିର ।୨୪
ସୁବର୍ଣ୍ଣ ପଇଲମେ ସକଳ ଯୋଗାଡ଼ନ୍ତ ଭରି
ପିଠା ଖିରିସା ଗୋଟିକା ଛେନା ତାଗଡ଼ା ଆଦି କରି ।୨୫
ସୁବର୍ଣ୍ଣ କୋପରାରେ ସମସ୍ତ ପୂରୋଇଁ
ଦେବେପିକ୍ରେ ଅନ୍ନପାଣି ଦେଇ ତୁଣ୍ଡେ ପଞ୍ଚଗୁଣ୍ଡି ଲାଇ ।୨୬
ପାଣି ଆଧାର କରି ତିନିଗୁଣ୍ଡି ଭୁଞ୍ଜି
ଯେସନକ ସମୟେ ଡମ୍ବୁରୁ ଡିବି, ଡିବି ବାଜି ।୨୭
ଶୁଣିଣ ଗୋସାମଣୀ ସେ ବିଷାଦ ହୋଇଲେ
କେମନ୍ତ କରିବି ମୁହିଁ ଈଶ୍ୱରେ ବିଜେ କଲେ ।୨୮
ସଂକୋଚେଣ ମୁଣୋହି ଛାଡ଼ି ଉଠିଲେ ବେଗ ହୋଇ
ବୃଷଭ ଗୁଆଣିରେ ଲୁଚାଇଲେ ନେଇ ।୨୯
ପିଠା ଖିରି ଶାକର ପୂରୋଇଲେ କାଞ୍ଜୋଲାରେ
ଆଞ୍ଚୋବନ ସାରି ଦେବୀ ହୋଇଲେ ବାହାରେ ।୩୦
ରତନ ଝରୀରେ ଦେବୀ ପାଣି ଯେ ପୂରେଇ
ଛାମୁରେ ପ୍ରବେଶ ଯେ ହୋଇଲେ ମହାମାଈ ।୩୧
ନନ୍ଦିକେଶ୍ୱରଙ୍କୁ ରାଇ ଆଜ୍ଞା ଦିଲେ ସଦାନନ୍ଦ
ବୃଷଭ ଗୋଟିକ ନେଇ ଗୁଆଣିରେ ବେଗେ ବାନ୍ଧ ।୩୨
ଆଜ୍ଞା ପ୍ରମାଣେ ନନ୍ଦିକେଶ୍ୱର ଗଲା
ଯତନ କରି ତାକୁ ଖମ୍ବରେ ନେଇ ବାନ୍ଧିଲା ।୩୩
ଈଶ୍ୱରେ ଆଜ୍ଞା ଦିଲେ ନନ୍ଦିକେଶ୍ୱରକୁ
ଖଡ଼ ଆହାର ଘାସ ପାଣି କିଛି ଅନ୍ନ ନ ଦେବୁଟି ବଇଲଇଁ ।୩୪
ସ୍ୱାମୀ ଆଜ୍ଞାୟେଣ ସେ ଦୃଢ଼କରି ବାନ୍ଧିଣ ଅଇଲା
ବଜ୍ରର କିଳିଣି ଦେଇ ସେ କବାଟ କିଳିଲା ।୩୫
ବୃଷଭ ବିଚାରଇ ମୋତେ ଈଶ୍ୱର କଷିଲେ
କରତାର ନାଥ ଯେହା କମ୍ପାଇ ନ ବିଚାରିଲେ ।୩୬
ମୋହୋର ଯେତେକ କଥା ଯେ ନିଷ୍ଫଳ ହୋଅନ୍ତେ
ଆବର କରତାରଙ୍କୁ କେ ଭଗତ ହୋଇବ ଯୁଗତେ ।୩୭
ନିସତେଣ ବାସି ଖଡ଼ ନାଡ଼େ ଦିଅନ୍ତେ ସେ ତୁଣ୍ଡେ
ଦେଖିଲା ଅମୃତ ଯୋଗାଡ଼ ପୂରିଅଛି ଭାଣ୍ଡେ ।୩୮
ସନ୍ତୋଷେଣ ଭୋଜନ ଯେ କଲାକ ବୃଷଭ
ସୁମରଇ ଯେକ ଲୟେ କରି ହାଦେ କରତାର ଦେବ ।୩୯
ଭୁଞ୍ଜିଣ ବଇଲ ଯେ ହୋଇଲା ଆନନ୍ଦ
ହେ ବୁଧ ଜନେ କରତାର ନାଥଙ୍କୁ ନିତ୍ୟେ ବନ୍ଦ ।୪୦
ଈଶ୍ୱର କଷଣରୁ ହୋଇଲିଟି ପାର
କିସ କରି ପାରଇଟି ଆବର ନାଶକର ।୪୧
ଯେହି ହସ୍ତରେ ଫଳ ଲଭନ୍ତି ବିରଞ୍ଚ ନାରାୟଣ ପ୍ରସାଦେ
ଶୂଦ୍ରମୁନି ସାରୋଳା ଦାସ କରତାର ପ୍ରଦ୍ମପାଦେ ବନ୍ଦେ ।୪୨
ବ୍ୟାସେ ବୋଇଲେ ଶୁଣ ଗାନ୍ଧାରସେନ ନୃପତି
ଯେ ପତ୍ର ଶିରେ ଘେନିଲେ ଯେସନେକ ଫଳଶ୍ରୁତି ।୪୩
ଭୁଞ୍ଜିଣ ବୃଷଭ ତ୍ରିପୁତି ହୋଇଲା
ଶୋଷକୁ ପଣା ଭୋକକୁ ଅମୃତ ଯୋଗାଡ଼ ପାଇଲା ।୪୪
ଶୋଇଅଛି ବୃଷଭ ହେଇଣ ମହାତ୍ରିପୁତି
ଶୁଭେଣ ପ୍ରସର ଯେ ହୋଇଲାକ ରାତି ।୪୫
କବାଟ ଫେଡ଼ି କରି ଦେବ ଯେ ସୁଢ଼ଳେ
ଭିତରକୁ ପଶିଲେ ଦେବ ବୃଷଭ ବିକଳେ ।୪୬
ଈଶ୍ୱରେ ହସିଲେ ମହା ବୃଷଭକୁ ଚାହିଁ
କିସ ଫଳ ପାଇଲ ହୋ ସାହାଡ଼ା ବୃକ୍ଷ ଧାୟି ।୪୭
ବଇଲ ବୋଇଲା ଦେବ ଶାହାସ୍ର ନୋହଇ ଯେ ମିଥ୍ୟା
ସୁଖେଣ ପାରି ହୁଅନ୍ତି ଯେତେ କରତାର ଭଗତା ।୪୮
ଈଶ୍ୱର ବୋଇଲେ ପାଇଲୁ ତୁ ଯେହ୍ନେ
ସଂସାର ଜନଙ୍କୁ ପ୍ରାପତ ହୋଉ ତେହ୍ନେ ।୪୯
ବୃଷଭ ବୋଇଲା ଦେବ ପ୍ରତକ୍ଷେ ପାଇଲି
ତୁମ୍ଭର ମୁଣୋହିଁ ନ କରୁଣୁ ମୁଁ ଆଗେ ଯେ ଖାଇଲି ।୫୦
ଯେ ଯାହାକୁ ସ୍ୱାମୀ ହୋଇଥାଇ ଭଗତା
ଅବଶ୍ୟ ସେ ତାହାନ୍ତ କରନ୍ତି ନା ଚିନ୍ତା ।୫୧
ସେବକ ଚିନ୍ତା ଯେବେ ସ୍ୱାମୀକି ନ ଲାଗିବ
କେବଣ ମତେ ସେ ଏ ସଂସାରୁ ତରିବ ।୫୨
ଯେତେକ ଯୋଗାଡ଼ ତୁମ୍ଭର ମଢ଼ଫୁଲି
ତୁମ୍ଭର ମୁଣୋହି ନ କରୁ ମୁଁ ଆଗ ତା ପାଇଲି ।୫୩
ସ୍ୱାମୀ ଲୟେ କରି ଦେଖ ନି ମୋହୋର ଗୁଆଣି
ଗନ୍ଧ ଆମୋଦଇ କର୍ପୂର ରସ ଜାଣି ।୫୪
ସ୍ୱରୂପ ଦେଖି ଈଶ୍ୱର ବିଷାଦ ହୋଇଲେ
ପାର୍ବତୀଙ୍କି ସଲ୍ଲଜ ହୋଇ ପଚାରିଲେ ।୫୫

ବୃଷଭକୁ ନେଇ ଟି କେହ୍ନୁ ଦିଲା ମୋ ଯୋଗାଡ଼
ତୁମ୍ଭେ ଜାଣ ନିକି ଦେବି ଏଥିର ତଥ୍ୟ ଯେ ବେଭାର ।୫୬
ପାର୍ବତୀ ହସିଲେ ଈଶ୍ୱରଙ୍କ ବଚନେ
ତୁମ୍ଭର ଆସିବା ବିଳମ୍ବ ଦେଖିଣ ତ୍ରିଲୋଚନେ ।୫୭
ସମସ୍ତ ବାଢ଼ିଣ ଦେବ ବସିଲି ମୁଁ ଭୁଞ୍ଜି
ଯେସନ ସମୟେଣ ଡମ୍ବରୁ ଶବଦ ବାଜି ।୫୮
କ୍ଷୁଧାୟେଣ ତୁମ୍ଭେ ମୋତେ କୋପ କରିବ ବୋଲି
ସବୁ ନେଇ ବୃଷଭ ଗୁଆଣିରେ ଭରିଲି ।୫୯
ସଦାନନ୍ଦ ହସିଲେ ଗିରିଜାର ବଚନେ
ଯେହେର୍ଣ୍ଣକ କରି ଯେ ପ୍ରାପତଟି କରାନ୍ତି ଦେବତା ମାନେ ।୬୦
ବଦୟନ୍ତି ବ୍ୟାସେ ପାରେଶ୍ୱର ନାନେ
କରତାକୁ ସେବିଲେ ତପଫଳ ଶ୍ରୁତ ହାଦେ ଅଟଇ ଯେସନେ ।୬୧
ଚାଲ ହୋ ରାଜା ଯେବେ ସାହାଡ଼ା ବୃକ୍ଷ ଯେ ଦେଖିବା
ଗାନ୍ଧାରୀକି ତାହା ପ୍ରଦାନ କରିବା ।୬୨
ଭିତର ନବର ଅଗଣା ମଧ୍ୟ ସ୍ଥାନେ
ଗୋଲକ ବୃକ୍ଷ କଲେ ବରବେଶ ବିଧାନେ ।୬୩
କନ୍ୟାବେଶ ଯେ କଲେକ ଗାନ୍ଧାରୀ
ମଙ୍ଗଳ ବାକ୍ୟେ ତାଙ୍କ ସୀଉକାର ବରଣ କରି ।୬୪
ଉଦକ-ପାଦ ଗୋତ୍ର ଯେ ଶାକୋଟ ବୃକ୍ଷ
ବୃନ୍ଦ ଅର୍କ ଗୋତ୍ର ସେ ଗାନ୍ଧାରସେନ ବଂଶ ।୬୫
ଉଭୟ କୁଳ ଗୋତ୍ର ଉଚ୍ଚାରିଲେ ମୁନ୍ୟେ
ଗୋଲକ ବୃକ୍ଷ ଗାନ୍ଧାରୀକି କଲେକ ପ୍ରାଦନେ ।୬୬
ଗାନ୍ଧାରୀର କର ଗୋଲକ ବୃକ୍ଷ ଡାଳେ
କୁଶ ବନ୍ଧନ କରନ୍ତି ମୁନି ମନ୍ତ୍ରବଳେ ।୬୭
ଗାନ୍ଧାରୀ ବୃକ୍ଷ ଯହୁଁ ଯେକ ଯୋଗ ହୋଇଲା
ସେ ସାହାଡ଼ା ବୃକ୍ଷ ଗୋଟି ତତ୍‌କ୍ଷଣାନ୍ତି ମଲା ।୬୮
ଦେଖିଣ ଚକିତ ଯେ ହୋଇଲେ ମୁନି ବ୍ୟାସେ
ଗାନ୍ଧାର ସେନ ନୃପତି ବସିଲା ବିରସେ ।୬୯
ବ୍ୟାସେ ବୋଇଲେ ତୁ ନ ଭାଳ ନୃପତି
ସମସ୍ତ ଅରଷ୍ଟି ଏହାର ହୋଇଲାନି ଶାନ୍ତି ।୭୦

■■

### ଗାନ୍ଧାରୀ ସହ ଧୃତରାଷ୍ଟ୍ରଙ୍କ ବିବାହ

ତୁ ଯେବେ ହାଦେ ଆମ୍ଭର ବଚନ କରିବା
ଗାନ୍ଧାରୀକି ତୋର ଆମ୍ଭ ଧୃତରାଷ୍ଟ୍ରକଇ ଦେବା ।୧
ବ୍ୟାସଙ୍କ ବଚନେ ରାଜା ସମଦଣ୍ଡ ସାଜି
ଚଳଇ ମହାରାଜା ହସ୍ତିନା ପୁର ମଝି ।୨
ଗାନ୍ଧାରୀକି ଘେନି ଚଳିଲେ ବ୍ୟାସ ମହାଯତି
ଧୃତରାଷ୍ଟ୍ରକୁ ପ୍ରଦାନ କଲେ ସେ ଯୁବତୀ ।୩
ଧୃତରାଷ୍ଟ୍ର ବ୍ରହ୍ମ ଅସୁର କୃତ୍ତିକା ବୃଷରାଶି
ଗାନ୍ଧାରୀ ବ୍ରହ୍ମ ଅସୁରୀ ଆବର ଉଆଁସୀ ।୪
ଧୃତରାଷ୍ଟ୍ର ନାୟେଂ ବରିଲା ଅନେକ କନ୍ୟା ମଲା
ଗାନ୍ଧାରୀକି ବରି ବାଇଶି ରାଜା ନାଶ ଗଲା ।୫
ଧୃତରାଷ୍ଟ୍ର କଇ ନାହିଁ କନ୍ୟା ଗାନ୍ଧାରୀକି ନାହିଁ ବର
ଯେ ଜାତି ବ୍ରହ୍ମ ଅସୁରୀ ସେ ବ୍ରହ୍ମ ଅସୁର ।୬
ଦୁହିଁଙ୍କର ଯେକ ଯୋଗ ହୋଇଲା ପୀରତି
ଧୃତରାଷ୍ଟ୍ର ଗାନ୍ଧାରୀ ହୋଇଲେ ଯେକ ମେଳମତି ।୭
ବଦୟନ୍ତି ଅଗସ୍ତି ଶୁଣି ବଇବସ୍ୱତ ମନୁ
ଗାନ୍ଧାରୀକି ଧୃତରାଷ୍ଟ୍ର ଯେ ହୋଇଲେ ପ୍ରଦାନୁ ।୮
ବେନି ଅସୁର ସେ ହୋଇଲେ ସମଯୋଗ
ବଢ଼ିଲା ପୀରତି ଉପୁଜିଲା ବହୁତ ରଙ୍ଗ ।୯

✱✱

## ୧୧. କର୍ଣ୍ଣ ଜନ୍ମ

### କୁନ୍ତୀଙ୍କ ବାଲ୍ୟ ଚରିତ, ଦୁର୍ବାସାଙ୍କ ସେବା ଓ ତାଙ୍କଠାରୁ ବରପ୍ରାପ୍ତି

ବଇବସତୁ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ପଣ୍ଡୁଙ୍କୁ କେମନ୍ତେ ବିଭା କଲେ କହିବା ବ୍ରହ୍ମ ବାକି ।୧
ଶୁଣହୋ ମହାତମା ଯୁଗାନ୍ତେକ ପୁରୁଷ
ପଣ୍ଡୁର ଚରିତ ଶୁଣିମା ଅମିୟ ଦିବ୍ୟ ରସ ।୨
ସିଦ୍ଧପୁର ନଗ୍ରେ କୁନ୍ତଭୋଜ ନୃପତି
ତାହାର ଭାରିଜା ନାମ ଅଟଇ ଜମ୍ବୁବତୀ ।୩
ମଦନ ମହାଦେବର ସେ ଅଟଇ କୁମାରୀ
କରବୀର ପୁରର ସେ ଅଟଇ ଅଧିକାରୀ ।୪
କୁନ୍ତଭୋଜ ରାଜାର ସେ ଯେକଇ ଦୁହିତା
ଶ୍ରଦ୍ଧାୟେ ନୃପତି ନାମ ଦିଲେ ତାହାକୁ କୋଇନ୍ତା ।୫
ବଡ଼ାଇ ସୁନ୍ଦର ସେ ଅଟଇ ଭାଗ୍ୟବନ୍ତୀ
ଅତି ସୁନ୍ଦର ସେ ଅତୁଳାୟିତ ଯୁବତୀ ।୬

ପୁତ୍ର ନ ଥାଇ ସେ କୁନ୍ତଭୋଜ ରାଜାର
ଯେକା ଦୁଲାଳୀକି ତାର ସ୍ରାଗ ଯେ ଅପାର ।୭
ବୃଷଭ ମାସ ପଞ୍ଚମୀ ବୃହସ୍ପତି ବାର
ଗୁରୁପୁଷ୍ୟା ଯେ ଅମୃତ ଯୋଗ ସେ ଦିନର ।୮
ବବ ନାମେ କରଣ ଯେ ଶୁକ୍ଳ ନାମେ ଯୋଗ
ବୃଷଭ ସଂକରାନ୍ତିକି ତେର ଦିନ ଭୋଗ ।୯
ଯେମନ୍ତ ସମୟେଣ ଦୁର୍ବାସା ମହାରଷି
କୁନ୍ତଭୋଜ ରାଜା କଟକେ ପ୍ରବେଶ ହୋଇଲେ ଆସି ।୧୦
ଦେଖି କୁନ୍ତଭୋଜ ରାଜା ପାଦଅର୍ଘ୍ୟ ଦେଲା
ନିସ୍ତରିଲି ମହାତମା ହୋ ଆଜଦିନ ମୋତେ ଭଲା ।୧୧
ଅନେକ କାର୍ଯ୍ୟ ସୁଫଳ ହୋଇଲା ଆଜ ମୁକୁ
ମୁଁ କ୍ଷମ ହୋଇବି କି ତୋର ପାଦପଦ୍ମ ପଖାଳିବାକୁ ।୧୨
ଦୁର୍ବାସାୟେ ପ୍ରତିବାଚ ତୁ ଅଛୁ ନ କୁଶଳେ
ପାତ୍ର ଅମନାତ୍ୟେ ଖଟି ଅଛନ୍ତି ନା ସକଳେ ।୧୩
ସମସ୍ତ କୁଶଳ ବୋଲି ବୋଇଲେ କୁନ୍ତଭୋଜ
ଜୀବନ ସୁଫଳ ମୁନି ହେ ଦେଖିଲି ମୁଁ ତୋତେ ଆଜ ।୧୪
ଦୁର୍ବାସାୟେ ବୋଇଲେ ଆମ୍ଭେ ଅଇଲୁ ତୋହୋର ରାଜ୍ୟକୁ
ଚତୁର୍ମାସ୍ୟା ବଞ୍ଚିବୁ ବସା ଖଣ୍ଡିୟେ ଦେବୁ ମୁକୁ ।୧୫
ବଡ଼ାଇ ସମ୍ପଦ ରାଜା ଦେଖିଲୁ ତୋର ପୁରୀ
ରହିବାକୁ ତୃଷା ଯେ ବଳିଲା ଆମ୍ଭରି ।୧୬
କୁନ୍ତଭୋଜ ବୋଇଲେ ମୁଁ କିସ କରିବି
ରୁହାଇଲେ ତୁମ୍ଭନ୍ତ ଭଗତି ହୋଇ ନୁଆରିବି ।୧୭
ଯାଅ ବୋଲି ବୋଇଲେ ତୋର କୋପ ଉପୁଜିବ ତନୁ
ଜାଣି ଅନୁଗ୍ରହ ମୋତେ କରିବା ତପୋଧନୁ ।୧୮
ଦଶ ସହସ୍ର ଯୋଜନେ ମୁଁ ଅଟଇ ଅଧିକାରୀ
ବଂସ ଭ୍ରାଥ ସୁତ ନାହିଁ ନା ମୋହୋରି ।୧୯
ରାଜ୍ୟ ଚିନ୍ତାୟେଣ ନ ପୁଣ ପାସୋରଇ ତୋତେ
ତୁ ଈଶ୍ୱର ସମାନେ ମହାରଷି ନପୁଣେ କୋପ କରୁ ମୋତେ ।୨୦
ଦୁର୍ବାସାୟେ ବୋଇଲେ ତୁ କାହୁଁ ଆମ୍ଭଙ୍କୁ ସେବା କରିବୁ
ତୋହୋର କରି ଆମ୍ଭଙ୍କୁ ଜଣେ ତୁ ଦେଇଥିବୁ ।୨୧
ଆଶ୍ରମ ଗୋଟିକ ଲିପିବ ଅଗଣା ଝୋଟି ଦେବ
ପାଣି ଝରିୟେ ଆଣିମ ଫୁଲ ପୁଡ଼ାୟେ ତୋଳି ଦେବ ।୨୨
ପାଲଟା ବସ୍ତ୍ର ଖଣ୍ଡ ପଖାଳିବ ନେଇ
ଯେତେକ କରିଣ ସେଟି ଆମ୍ଭଙ୍କୁ ଭଗତି ହୋଇ ।୨୩

କୁନ୍ତଭୋଜ ବୋଇଲା ମୁଁ ଆନଙ୍କୁ କିମ୍ପେ ଦେବି
ଯେକା ଦୁହିତା ଗୋଟିୟେ ମୋହୋର ତୁମ୍ଭଙ୍କୁ ଥାଉ ସେବି ।୨୪
ଦୁହିତାଙ୍କୁ ରାଇ ସେ ଆଜ୍ଞା ଦିଲେ କୁନ୍ତଭୋଜ
ଆଶ୍ରମ ଖଣ୍ଡିୟେ କଲେ ନଗ୍ରର ବାହିଜ ।୨୫
କୋଇନ୍ତାୟେ ହୋଇଥାଇ ବିନୟ ଭଗତେ
ଦୁର୍ବାସା ରଷିଙ୍କି ସେବା କରଇ ଅନୁବ୍ରତେ ।୨୬
ରାତ୍ର ପ୍ରଭାତରେ ଅଗଣା ପହଁରି
ଗୋମୟ ଘେନି ଛେରା ପକାଇ ଯତ୍ନ କରି ।୨୭
ନିତିପ୍ରତି ପାଚିଲା ଆମ୍ବପତ୍ର ଲୁଚିୟେ ଆଣଇ ସାଉଣ୍ଟି
ପଖାଳି ପୀଢ଼ାରେ ଶୁଖାଇ ପାଲଟା କାଛୋଟି ।୨୮
ଗଡୁ ତମ୍ବାପାତ୍ରୀ କପୋରା ମାଜଇ ଆମ୍ବିଲେ
ଆଶ୍ରମ ଖଣ୍ଡିକ ଲେପଇଁ କୃଷ୍ଣ ଗୋମୟରେ ।୨୯
ବିଭୂତି ଗୁଡ଼ାୟେ ମେଦଇ ସଞ୍ଚ କରି
ପତ୍ର ଗୁଡ଼ାୟେ ଆଣଇ ସେ ବେଲ ଗଛରୁ ପାରି ।୩୦
ବାଳୁତ ବୟସ ସେ ରାଜାର କୁମାରୀ
ସୁଗ୍ୟାନୀ ପଣେ ଥାଇ ରଷିଙ୍କି ସେବା କରି ।୩୧
ରଷି ରାତ୍ରେ ସମାଧିରେ ବସିଥାନ୍ତି ଯେ ଭିତରେ
କପଟି ଗୋଟି ପାଡ଼ି କୋଇନ୍ତା ବସିଥାଇ ବାହାର ଦୁଆରେ ।୩୨
କୋଇନ୍ତାର ଭଗତେ ଅନେକ ସନ୍ତୋଷ ଦୁର୍ବାସା
ନାନା ତୀର୍ଥକୁ ମୁନି ନ କଲେ ମନୀଷା ।୩୩
କୁନ୍ତଭୋଜ ରାଜ୍ୟେ ମୁନି ରହିଲେ ନିଶ୍ଚିନ୍ତେ
ଚତୁର୍ମାସ୍ୟାକୁ ବୋଲି ରହିଲେ ପାଞ୍ଚବରଷ ପରିଯନ୍ତେ ।୩୪
ମଉଦଧି ତୀର୍ଥେ ଅର୍ଦ୍ଧୋଦୟ ପଡ଼ି ପାଦ ଚାରି
ଦକ୍ଷିଣ ମଉଦଧିକି ସମସ୍ତେ ଯାଉଛନ୍ତି ତୀର୍ଥ କରି ।୩୫
କୁନ୍ତଭୋଜ ରାଜାର ଅଗ୍ରତେ ମିଳିଲେ ତପୋବନ୍ତେ
ଦଣ୍ଡ କମଣ୍ଡଳ ମୁନି ତ୍ରାମପାତ୍ର ହସ୍ତେ ।୩୬
ଦେଖିଣ ଉଠିଲା ସେ ମହୀଧର ସ୍ୱାମୀ
ମୁନିଙ୍କର ଚରଣେ ସେ ହୋଇଲା ପରିଣାମି ।୩୭
ଯେତେକାଳେ ଅନୁଗ୍ରହ ମୋତେ କଲେକ ଦୁର୍ବାସା
ସମୟେକ ଆସିଣ ପୂରିଲା ମନୀକ୍ଷା ।୩୮
ଦୁର୍ବାସା ବୋଇଲେ ଆମ୍ଭେ ଯେଘାନ୍ତି ସେ ଅଇଲୁ
ପାଞ୍ଚବରଷ ହୋଇଲା ତୋର ରାଜ୍ୟରେ ରହିଲୁ ।୩୯
ବୋଲଇ ନୃପତି ନିସ୍ତରିଲି ତପୋବନ୍ତ
ଯେମନ୍ତ ହୋଇ କେ ତୋତେ ହୋଇଛି ଭଗତ ।୪୦

ଦୁର୍ଭାସାୟେ ବୋଇଲେ ବଡ଼ ସୁସ୍ଥେଣ ଯେ ଥିଲୁ
କୋଇନ୍ତାଙ୍କର ଭଗତେ ନାନା ତୀର୍ଥ ଉପେକ୍ଷିଲୁ ।୪୧
ଆମ୍ଭେ ତୋହୋର ପୁରେ ଅନେକ ପାଇଲଇ ସୁସ୍ଥ
ଆହୋ କୁନ୍ତଭୋଜ ତୋତେ ପ୍ରାପତ ହୋଉ ଶତେ ପୁତ୍ର ।୪୨
ସୋମବଂଶେ ସୁଲକ୍ଷଣୀ ହୋଉ ତୋର କୋନ୍ତା
ବୀର୍ଯ୍ୟ ପ୍ରଦାନ କରୁ ଯେହାକୁ ଧର୍ମ ଯେ ଦେବତା ।୪୩
ଧର୍ମବଳେ ବଳବନ୍ତା କ୍ଷତ୍ରୀ ହୋଇ ତାର ପୁତ୍ର ହୋଉ ଜାତ
ପଞ୍ଚୁ କଟକରେ ଠାକୁରାଣୀ ହୋଉ ତୋ ଦୁହିତ ।୪୪
ଯେସନେକ ବର ଦେଇ ଚଳନ୍ତି ବ୍ରହ୍ମଯତି
କୋଇନ୍ତାୟେ ଗୋଡ଼ାଇଛନ୍ତି ସେ ମୁନିଙ୍କ ପଛକତି ।୪୫
ରାଜ୍ୟ ଛାଡ଼ି ମହାତ୍ମାୟେ ପଶିଲେ ବନସ୍ତରେ
କୋଇନ୍ତାୟେ ଗୋଡ଼ାଇ ଅଛନ୍ତି ପଞ୍ଚୁକୋଷ ପର୍ଯ୍ୟନ୍ତରେ ।୪୬
କୋଇନ୍ତାୟେ ଛିଙ୍କିଲେ ବନସ୍ତରେ ଫୁଟି
ଧାତିକାରେ ଦୁର୍ଭାସାୟେ ଚାହିଁଲେ ଲେଉଟି ।୪୭
ଦୁର୍ଭାସାୟେ ବୋଇଲେ ତୁ ଗୋଡ଼ାଇ ଅଛୁ ଆଇ
ଆମ୍ଭନ୍ତ ଛାଡ଼ି ତୋହୋର ଚିତ୍ତ ନ ବଳଇ ଯାଇ ।୪୮
ବାହୁଡ଼ି ଯାଅ ମା ଗୋ ନ ପଶ ବନସ୍ତକୁ
ବ୍ୟାଘ୍ର ଭଲ୍ଲୁକ ଅଛନ୍ତି ନାଶ କରିବେଟି ତୁକୁ ।୪୯
କୋଇନ୍ତାୟେ ବୋଇଲେ ମୁଁ ଈଶ୍ୱର ସମାନେ ଋଷିଙ୍କ ସେବା କଲି
ଯେତେକାଳ ସେବା କରି ମୁଁ ଯେ ନିଷ୍ଫଳ ହୋଇଲି ।୫୦
ବାଳି କୁଡ଼ ଗୋଟିଏ କୁଡ଼ାଇ ପତ୍ର ଲୋଟିଏ ତହିଁରେ ଦେଇ
ଲୟେ କରି ସେବିଲେ ପ୍ରସନ୍ନ ହୋଇ ସେହି ।୫୧
ତୋହୋର ପରା ଋଷିଙ୍କି ଯେତେକାଳ ସେବାକଲି
ନିଷ୍ଫଳ ହୋଇଲା ମୁଁ କିଛି ନ ପାଇଲି ।୫୨
ଦୁର୍ଭାସାୟେ ବୋଇଲେ ତୁ ତ ତୁନୀ ହୋଇଥିଲୁ
ପାଞ୍ଚବରଷ ଯେ ସେବା କରି କିଛି ହିଁ ନ ମାଗିଲୁ ।୫୩
ମହାମନ୍ତ୍ର ହାଦେ ଗୋ ନ ଦେଉଟି ଯାଚି
ଆମ୍ଭେ ବିଚାରିଲୁ ଯେହାର କାର୍ଯ୍ୟ ନାହିଁ କିଛି ।୫୪
ଯେବେ ହେ ମହାତମା ମୋତେ ଅନୁଗ୍ରହ କରିବା
ସ୍ତିରୀ ଆମ୍ଭେ ମନ୍ଦଜାତି ପଦାର୍ଥେକ ଦେବା ।୫୫
ଦୁର୍ଭାସାୟେ ବୋଇଲେ ଗୋ ଯେ ତୋହୋର ଇଚ୍ଛା
ଦେବୁ ଅବଶ୍ୟ ଯେମନ୍ତେ ସୁନ୍ଦରୀ ତୋର ପୂରୋଇ ମନବାଞ୍ଛା ।୫୬
ମୁହିଁ ବାଳ ସ୍ତୀରୀ ମୁନି ହେ ନ ଜାଣଇଂ ସନ୍ଦେହ
ଜାଣି ମହତମା ମୋତେ କରିବା ଅନୁଗ୍ରହ ।୫୭
ଦୁର୍ଭାସାୟେ ବୋଇଲେ ଗୋ ଆଣ ସ୍ତୀରୀଙ୍କର ଯେହ୍ନେ ବ୍ରତ
ସୁନ୍ଦର ଭ୍ରଥା ହୋଇବ ସୁଭିଗ୍ୟଂ ପଣ୍ଡିତ ଭାଗ୍ୟବନ୍ତ ।୫୮
ସୁପୁତ୍ର ହୋଇବ ତୋର ଅତିଅନ୍ତି ବଳବନ୍ତା
ସଂଗ୍ରାମକୁ କେବେହେଁ ନୋହିବ ପଛଗତା ।୫୯
ଯେସନେକ ବାଞ୍ଛା ସ୍ତୀରୀଙ୍କର ପ୍ରକୃତି
ସୁନ୍ଦର ପୁରୁଷ ଦେଖିଲେ ହୋଅନ୍ତି ଭୋଳମତି ।୬୦
ଆମ୍ଭେ ଦେବୁ ତୋତେ ମହାମନ୍ତ ଜପାମାଳୀ
ଯେହା ଯତ୍ନ କରି ତୁ ଥାଅସି ସମ୍ଭାଳି ।୬୧
ଶେଜ୍ୟା ଗତେଣ ଗୋ ସୁମରିବୁ ଯାହାକୁ
ସେ ଆସି ପ୍ରସନ୍ନ ହୋଇବ ଜାଣ ତୁକୁ ।୬୨
ଯଦ୍ୟପି ବ୍ରହ୍ମା ଇନ୍ଦ୍ର ସୂର୍ଯ୍ୟ ପବନ ଯେ ବିଷ୍ଣୁ
ମୂର୍ଦ୍ଧନି ଫାଟି ପ୍ରାଣ ଯିବ ନ ଅଇଲେ ତା ଘଟୁଁ ।୬୩
ଜପାମାଳୀ ଦେଇଣ ଯେ ଗଲେ ବ୍ରହ୍ମଯତି
ଅନ୍ତରୀକ୍ଷେ ମହାତମା ଗଲେ ତତକ୍ଷଣାନ୍ତି ।୬୪

■ ■

## କର୍ଣ୍ଣ ଜନ୍ମ

ଦୁର୍ଭାସାଙ୍କ ବଚନ ଯେସନେକ ଶୁଣି
ବିଚାର କରଇ ସେ କୁନ୍ତଭୋଜର ଦୁଲଣୀ ।୧
ଯେ ମହାଯତି ଯେବେ ମାଳା ଦେଇ ଗଲେ ମୋତେ
ଯେଥିର ତଦନ୍ତ ମୁଁ ଜାଣିମି କେମନ୍ତେ ।୨
ଯମୁନା କୂଳେ ଦେବୀ ଶାଳପତ୍ର ଶେଜ୍ୟା ଗୋଟି କଲେ
ମେରୁ ପୃଷ୍ଠ ହୁଅନ୍ତେ କରତାର ସୁମରିଲେ ।୩
ଅନ୍ତରୀକ୍ଷେ ଦେବ କରତାର ଆସନ କମ୍ପିଲା
ଦୁର୍ଭାସାଙ୍କ ମହାମନ୍ତ ସେ କୋଇନ୍ତା ସୁମରିଲା ।୪
ମୁଁ ଯେହା ବଞ୍ଚାଇ ନ ଯିବି କେମନ୍ତେ
ବିଜୟେ ବିରଞ୍ଚି ନାରାୟଣ କୋଇନ୍ତାଙ୍କ ଶେଯ୍ୟାଗତେ ।୫
କୋଇନ୍ତାକୁ କରତାର ଧଇଲେ ନିଜ କୋଳେ
ମୁଖେ ଚୁମ୍ବନ ଦେଲେ ମଦନ ରସ ଭୋଳେ ।୬
କରପତ୍ର ଯୋଡ଼ିଣ ବୋଇଲେ ଭୋଜର କୁମାରୀ
କେ ଟି ତୁ ମହାତମା ମୋତେ ବଳାତ୍କାର କରି ।୭
ବୋଲନ୍ତି ଆରେ ମୁହିଁ ସେ କରତାର ବିରଞ୍ଚି ନାରାୟଣ
ଋଷିଙ୍କର ମହାମନ୍ତ୍ରେ ମୋତେ କଲୁ ସୁମରଣ ।୮
ଯେବେ ମୋତେ ଶୃଙ୍ଗାର ଦେବୁ ନାରେ ବାଳୀ

ଅନେକ ବାଗେ ତାକୁ କଟାକ୍ଷ କଲେ ଅଂଶୁମାଳୀ ।୯
କୋଇନ୍ତାୟେ ବୋଇଲେ ମୁଁ ଅବିଭାଇ ଅଟଇ ଅରଜବତୀ
ତୁ ଦିଗପାଳ ହୋଇ ମୋତେ କରୁଛୁ ଅନୀତି ।୧୦
ଦିନକରନାଥ ବୋଇଲେ ତୁ ମନ୍ଦକୃତ କଲୁ
ଅଲାଗି ବାମା ହୋଇ ମୋତ କିମ୍ପେ ସୁମରିଲୁ ।୧୧
ଭୋ କରତାର ମୁଁ ସୁମରିଲି ଋଷି ବିଦ୍ୟା ପରୀଖ ନିମନ୍ତେ
ସୁଜ୍ଞାନୀ ନାଥ ତୁ ମୋତେ ହରିବୁ କେମନ୍ତେ ।୧୨
ବିରଞ୍ଚ ବୋଇଲେ ଦୁର୍ବାସାଙ୍କର ମହାମନ୍ତ କେହୁ ମେଣ୍ଟି
ଅବଶ୍ୟ ପ୍ରାଣ ହାରିବ ମୂର୍ଦ୍ଧୁନା ଯାଇ ଫାଟି ।୧୩
ତୁ ମୋତେ ସୁମରଣା କଲୁ ନ ବିଚାରି
ରମଣ ନ କଲେ ମୁଁ ତ ନ ଯାଇ ବାହୁଡ଼ି ।୧୪
ଯମୁନା ନଦୀତୀରେ ଗହନ ଅଟବ୍ୟା
କୋଇନ୍ତାକୁ ଶୃଙ୍ଗାର ଇଛିଲେ କରତା ଆଦିଦେବା ।୧୫
ଶାନ୍ତି ମୂର୍ତ୍ତି ହୋଇଣ ଯେ କମଳଲୋଚନ
ଇନ୍ଦ୍ରି ବଢ଼ାଇଲେ ଯେ ଭଗର ସମାନ ।୧୬
ଅଖଳିତ କନ୍ୟା ସେ ଅଟଇ ସୂଚୀଭେଦ
ସୂଚୀନାଡ଼ ସ୍ୱରୂପେଣ ଉପସ୍ଥ କଲେ ଦେବ ।୧୭
ବିବସନସାହୀ ସେ ହୋଇଣ ଦେବା ଦେବୀ
ଅଜ୍ଞାନ ବାଳ ସ୍ତିରୀ ସେ କାମେଣ ଅଭାବି ।୧୮
କିଞ୍ଚିତ ଶୃଙ୍ଗାର ସେ କଲେ କରତାରେ
ବାହୁଡ଼ି ନଗଲେ ଦେବ ଦୁର୍ବାସାଙ୍କ ମନ୍ତ୍ର ଡରେ ।୧୯
ବୀର୍ଯ୍ୟ ପତନ କାଳରେ ସେ ଭୋଜର କୁମାରୀ
ବଇକୁଳ୍ୟ ହୋଇ ଦେବୀ ଅନେକ ବିନୟ କରି ।୨୦
ଭୋ କରତାର ନାଥ ନ ଛାଡ଼ ତୋର ବୀର୍ଯ୍ୟ
ଅମୋହ ରେତ ଦେବ ମୋହୋର ଗର୍ଭେ ରହିବ ଆତ୍ମଜ ।୨୧
ଅବିଭାଇତ କନ୍ୟା ଆବର ଅରଜବତୀ
ଆବର ଗର୍ଭେ ମୋହୋର ରହିବ ସନ୍ତତି ।୨୨
ପିତାର ବଦନ ମୁଁ ଚାହିଁବି କେମନ୍ତେ
ଆବର ପ୍ରଦାନ କେ ହୋଇବାକ ମୋତେ ।୨୩
ଉଭୟ କୁଳକୁ ଉପୁଜିବ ବହୁତ ଲାଜ
ଅନୁଗ୍ରହ କରି ଦେବ ଗର୍ଭେ ନ ଛାଡ଼ ତୋ ବୀର୍ଯ୍ୟ ।୨୪
ଦିନକର ନାଥ ବୋଇଲେ ଗୋ ରତିରଂଗ କଲେ
ଲିଙ୍ଗ ଭଙ୍ଗ ଦୋଷ ହୋଅଇ ବୀର୍ଯ୍ୟ ନ ଛାଡ଼ିଲେ ।୨୫
କୋଇନ୍ତା ବୋଇଲେ ଯେବଣ ବୀର୍ଯ୍ୟ ତୁ ଛାଡ଼ିବୁ ଦିନକର
ସଇନ୍ଦୁ ଉତପତ୍ତି ହୋଉ ଯେ କୁମର ।୨୬
କୋଇନ୍ତାଙ୍କର ବଚନ ଶୁଣିଣ ବିରଞ୍ଚ
ଢାଳିଲା ମହାରେତ ଗର୍ଭେଣ ନ ସଞ୍ଚ ।୨୭
ବୀର୍ଯ୍ୟ ପତନ କାଳେ ଦେବୀ ଗାଢ଼େଣ କୋଳ କଲା
ଅନେକ ରଙ୍ଗେ ସ୍ୱାମୀ ଶୃଙ୍ଗାର ରସ ଦିଲା ।୨୮
ଉପସ୍ଥ ଘୋଟିଲା କୋଇନ୍ତାଙ୍କର ଗର୍ଭଗତେ
ବିରଞ୍ଚି ହୋଇଲେ ପୁତ୍ର ଜାତ ହୋଉଛୁଟି ତୋତେ ।୨୯
କୋଇନ୍ତା ବୋଇଲେ ଭୋ ଦେବ ଭବଦ୍ୱାରୁ ଜାତ ନ ହୋଉ ସନ୍ତତି
ଭବ ଗଳନ୍ତେ ମୁଁ ଯେ ହୋଇବି ଅସତୀ ।୩୦
କୁଳକୁ ଦୂଷିତ କଲି ଯେ ମୋହୋର ଦୁହିତା ପଣେ
ବିକଳ ଦେଖି ଦୟା କଲେ ବିରଞ୍ଚ ନାରାୟଣେ ।୩୧
କର୍ଣ୍ଣ ଦ୍ୱାରେ ବୀର୍ଯ୍ୟ ଯେ ଟେକିଲେ ଉଜାଣି
ଯେସନେକେ ଅଛି ସେ ପୂର୍ବରୁ ନିର୍ବାଣି ।୩୨
ମହା ଅମୋହ ରେତ ଅକ୍ଷୟ ସେ ବୀର୍ଯ୍ୟ
କର୍ଣ୍ଣ ବାଟେ ସଇନ୍ଦୁ ଉପୁଜିଲା ଆତ୍ମଜ ।୩୩
ଦେଖିଣ ପରମ ସାନନ୍ଦ ହୋଇଲେ କମଳଲୋଚନ
କୋଳକରି ନାମ ଦେଲେ ତାହାର ବୀର କର୍ଣ୍ଣ ।୩୪
କର୍ଣ୍ଣେଣ ଚାପିଲେ ସ୍ୱାମୀ ଅମୃତ କୁଣ୍ଡଳ ବେନି
ତାଲୁରେ ଗୋପ୍ୟାନ କଲେ ଅମୃତ ଅଭେଦ କପଟ ମଣି ।୩୫
ଶରୀରେ ଲେପନ ବଜ୍ର ଯେ ଛଉରି
କର୍ଣ୍ଣେଣ କୁମରର ମହାବ୍ରହ୍ମ ମନ୍ତ ପଢ଼ି ।୩୬
ଆକୁଞ୍ଚିତ କେଶ ରସାଣିଲା ପାଟିଆ କପାଳ
ଖଗେଶ୍ୱର ଚଞ୍ଚୁ ନାସା ସୁନ୍ଦର ଗଣ୍ଡସ୍ଥଳ ।୩୭
ଶାର୍ଦ୍ଦୂଳ ଆକର୍ଷଣ ଦିଶଇ ଶରୀର ସରୋଜ
ହସ୍ତୀର ଥୋର ହସ୍ତ ଜିଣି ଦିଶଇ ବେନି ଭୁଜ ।୩୮
ଆରକ୍ତ ବେନି ଲୋଚନ ବିରାଜିତ ବେନି ନେତ୍ର
କନକ କନ୍ଧ ପଟଳ ଯେହ୍ନେ ପର୍ଣ୍ଣ ପର୍ବତ ।୩୯
ଅଫୁଟ ଚମ୍ପାକଢ଼ି ଜାଣି ଦିଶଇ ଅଙ୍ଗୁଷ୍ଠି
ଉଲଟ କଦଳୀ ଜାନୁ ଯେସନ ସୁନ୍ଦର ଗୋଟି ।୪୦
ସୁନ୍ଦର ସୁସଞ୍ଚ ଅତୁଳାୟିତ ବଳା
ଅନଙ୍ଗ ସୁନ୍ଦର ଜାଣି ତେଜ ଅନର୍ଗଳା ।୪୧
ନାନା ଶହସ୍ର ତୋର ଶରୀରେ ନ ଫୁଟୁ
କୋନ୍ତ ପରଶୁ କୃପାଣ ତୋ ଶରୀରେ ନ କାଟୁ ।୪୨
ରଣେ ଅଭୟ ତୁ ହୁଅସିରେ କୁମର
ଦାନେଣ ସାହେର ତୁ ହୋଅସି ମହାବୀର ।୪୩
ଯେତେବେଳେ ପରିଯନ୍ତେ ତୁ ରଥରେ ବସିଥିବୁ
ତ୍ରୈଲୋକ୍ୟେ ଜିଣନ୍ତା ତୋର ସଂଗ୍ରାମେ ନୋହୁ କେ ରେ ବାବୁ ।୪୪

ଅନେକ ବିଦ୍ୟା ତାକୁ ଦେଇଣ ମାରତଣ୍ଡ
ଉଦୟ ଗିରି ଭେଦି ବିକାଶିଲେ ଉଦ୍ଦଣ୍ଡ ।୪୫
କୁମର କୋଳେ ଧରି ସେ ଭୋଜର କୁମାରୀ
କିସ ବୁଦ୍ଧି କରିବି ବୋଲିଣ ମନରେ ବିଚାରି ।୪୬
ଯେ ସୁସଙ୍ଗ ପୁତ୍ର ଗୋଟିକି ମୁଁ କେମନ୍ତ କରିବି
ପିତା ମାତା ଛାମୁରେ ମୁଁ କି ବୋଲି ବୋଲିବି ।୪୭
ଅବଶ୍ୟ ପଚାରିବେ ମୋତେ ବାଳୁତ ପୁତ୍ରକଇ ଦେଖି
ବୋଲିବେ କାହୁଁ ପାଇଲୁ ତୁ ଯେ ପୁତ୍ର ଗୋଟିକି ।୪୮
ମାତା ପିତାଙ୍କ ଆଗରେ ମୁଁ କେମନ୍ତେ କହିବି ମିଥ୍ୟା
ସତ କହିଲେ ତ ହୋଇବ ଲଜ୍ୟା ଅପ୍ରମିତା ।୪୯
ପରଦାରାଯେଣୀବୋଲି କେହି ପ୍ରଦାନ ନୋହିବେ
ସମସ୍ତେ ହେଁ ଦୁର୍ବାସା ଋଷିଙ୍କ ଦୋଷ ଦେବେ ।୫୦
ବୋଲିବେ ମୁନିଙ୍କ ସଙ୍ଗେ ଯେ ଥିଲାକ ସମୟେ
ଦୁର୍ବାସାଙ୍କର ରମଣରେ ଯେ ଉପୁଜିଲା ତନୟେ ।୫୧
ଯେ ଜପାମାଳୀ ଥିଲେ କାହିଁକି ମୋର ଭୀତି
ଅନେକ ବାଗେ ମୁଁ ଯେ କରିବି ପୁତ୍ର ଉତପତ୍ତି ।୫୨
କରେଣ ଘେନି ଦେବୀ କର୍ଦ୍ଦମ ଲୋଚିୟେ
ଆପଣେ ଗଢ଼ିଲେ ଦେବୀ ମଂଜୁଷ ଗୋଟିୟେ ।୫୩
ତହିଁର ଭିତରେ ସେ ପୁତ୍ରକଇ ଭରି
ଯମୁନା ନଦୀକଇ ସେ ଦେଲେ ଫିଙ୍ଗି କରି ।୫୪
ପ୍ରତକ୍ଷେ ବାଳ ଆଦିତ୍ୟ ପ୍ରାୟେ ତେଜ ଯେବଣ ତନୟେ
କର୍ଣ୍ଣର ତେଜ ଲାଗି କର୍ଦ୍ଦମ ହୋଇଲା ସୁବର୍ଣ୍ଣ ମଞ୍ଜୁଷର ପ୍ରାୟେ ।୫୫
ଯମୁନା ନଦୀରେ ସେ ଗଲା ଉପୁଚିଆଇ
ଇଶାନ୍ୟ ମୁଖ ହୋଇ ଯାଉଛି ହେଠ ବୁଡ଼ ହୋଇ ।୫୬
ବାରୁଣାବନ୍ତ ତହିଁ ପଞ୍ଚତିରିଶ ଯୁଣ
ସେ ମଞ୍ଜୁଷ ଲାଗିଲା ଯାଇ ଉତ୍ତରାଙ୍କ କୋଣ ।୫୭

✱✱

## ୧୨. କୁନ୍ତୀଙ୍କ ସହ ପଣ୍ଡୁଙ୍କର ବିବାହ

ଯମୁନା ଜଳେ ଯେ ପୁତ୍ରକୁ ପକାଇ
କୋଇନ୍ତା ଦେବୀ ଗଲେ ବିଷାଦ ପୂର୍ଣ୍ଣ ହୋଇ ।୧
ଶରୀର ସମ୍ଭାଳି ତହୁଁ ଗଲେ ଦେବୀ କୋନ୍ତେ
ଅନ୍ତେଶ୍ୱରେ ପ୍ରବେଶ ହୋଇଲେ ଭୋଜର ଦୁହିତେ ।୨
ଦୁର୍ବାସାଙ୍କର କଲ୍ୟାଣେ ଯେ ପ୍ରତକ୍ଷେ ହୋଇଲା
କୁନ୍ତଭୋଜ ନୃପତିର ତିନିପୁତ୍ର ଉପୁଜିଲା ।୩
କର୍ଣ୍ଣଭୋଜ, ବୀରଭୋଜ, ଆବର ମୁକୁନ୍ଦଭୋଜ
ଯେମନ୍ତେ ଉପୁଜିଲେ ରାଜାର ତିନି ଯେ ଆତ୍ମଜ ।୪
ବଳବନ୍ତ ସୁନ୍ଦର ସେ ଅଟନ୍ତି ଜଗଜିଣା
ବିଦ୍ୟାରେ କୁଶଳ ହୋଇଲେ ସେ କୁନ୍ତଭୋଜର ଦୁଲଣା ।୫
କାର୍ତ୍ତିକ ମାସ ଶୁକଳପକ୍ଷ ବୁଧବାର ଯେ ପୂର୍ଣ୍ଣମୀ
ଆକାମାବଇ ସ୍ନାହାନ ଦିନ ଗଙ୍ଗାକୁ ଗଲେ କୁନ୍ତଭୋଜ ସ୍ୱାମୀ ।୬
ସେହି ଗଙ୍ଗା ସ୍ନାହାନକୁ ଭୀଷ୍ମେ ଯେ ଅଇଲେ
କୁନ୍ତଭୋଜ ରାଜା ତୁଲେ ମଇତ୍ର ହୋଇଲେ ।୭
ଦୁଇ ଲୋକଙ୍କର ହୋଇଲା ରୋହିଣୀ ବୃଷ ରାଶି
ମଇତ୍ର ଯୋଗ ହୋଇଲେ ସେ ଗଙ୍ଗାକୂଳେ ବସି ।୮
ପଣ୍ଡୁ କୁମର ଯାଇଅଛି ଯେ ଭୀଷ୍ମଙ୍କର ତୁଲେ
କୁମାରୀମାନଙ୍କର ତୁଲେ କୋଇନ୍ତାୟେ ଯାଇଥିଲେ ।୯
ପଣ୍ଡୁ ବସିଲେ ଯାଇ ଭୀଷ୍ମଙ୍କର କୋଳେ
କୋଇନ୍ତାୟେ ବସିଛନ୍ତି କୁନ୍ତଭୋଜର ଜାନୁରେ ।୧୦
ଯେହେନ୍ତେକ ସରୂପ ଦେଖିଲେ ସତ୍ୟବାଦୀ
କୁନ୍ତ ଭୋଜକୁ ପଚାରିଲେ କି ଯେ ତୋହୋର ଦୋହିତୀ ।୧୧
ଦୋହିତା ପୁତ୍ରଘେନି କୁନ୍ତଭୋଜ ରାୟେ
ପ୍ରଣପତ୍ୟ ହୋଇଲେ ଯାଇ ସତ୍ୟବତୀଙ୍କର ପାୟେ ।୧୨
ପାରେଶ୍ୱର ବୋଇଲେ ତୁ ଶୁଣ ନରନାଥ
ଆମ୍ଭ ପୁତ୍ର ପଣ୍ଡୁ କଇଁ ପ୍ରଦାନ କର ତୁ ତୋହୋର ଦୋହିତ ।୧୩
ଶୁଣିଣ କୁନ୍ତ ଭୋଜ ସାନନ୍ଦ ହୋଇଲା
ଦେବଇ ଦୋହିତା ବୋଲି ସତ୍ୟ ଉଚ୍ଚାରିଲା ।୧୪
ସେହି ତୀର୍ଥ ସ୍ଥାନେ ସେ ଉତ୍ସବ କରାଇଲା
ବିଭାର ଶୁଭଯୋଗ ଲଗ୍ନ ବେଳ ଧଇଲା ।୧୫
କାଶ୍ୟପ ଗୋତ୍ର ସେ କୁନ୍ତଭୋଜ ନରପତି
ସୋମବଂଶ ଗୋତ୍ରେ ଯେ ବିଚିତ୍ରବୀର୍ଯ୍ୟର ସନ୍ତତି ।୧୬
ଓହୋକୁଳ ଗୋତ୍ର ଉଚ୍ଚାରଣ କଲେ ସତ୍ୟବାକି
ବିଭା ଶୁଭଯୋଗ କରାବନ୍ତି ପୁରୋହିତ ଉଦ୍ଦାଳକି ।୧୭
ଶୁଭେଣ ପ୍ରଦାନ ଯେ ହୋଇଲା କୁମାରୀ
ପଦ୍ମେକ ରଥ ଯଉତୁକ ଦିଲେକ ଦଣ୍ଡଧାରୀ ।୧୮
ବେନି ପଦ୍ମ ଗଜ ଯେ ଚାରି ପଦ୍ମ ହୟେ
ଦ୍ୱାଦଶ ଯୋଜନ ପୃଥୀ ରାଜା ଯଉତୁକ ଦିୟେ ।୧୯
ପାଞ୍ଚଲକ୍ଷ ପାଟଛତ୍ର ଆଲମ୍ବ ଯେକଲକ୍ଷ ଅନେକ ବାଦ୍ୟ

ଯଉତୁକ ଦିଲା ରାଜା ପରମ ସାନନ୍ଦ ।୨୦
ଶତେ ପଦ୍ମ ଗୋଧନ ଦିଲାକ ନୃପମଣି
ଚଉବିଂଶ ଧନ ଭଣ୍ଡାର ଦାନ ଦିଲାକ ଆଣି ।୨୧
ଭୀଷ୍ମେ ବୋଇଲେ ଶାୟେଂନ୍ତନୁକୁ ଅତି ବିନୟେ କରି
ଅପୁତ୍ରିକ ଦୋଷୁଁ ମୁଁ ନୋହିବି ଦଣ୍ଡଧାରୀ ।୨୨
ଭୂରିଶ୍ରବାୟେ ତ ନ ପଶିବେ ରାଜ୍ୟପଦେ
ଧୃତରାଷ୍ଟ୍ର ନାଶଗଲେ ସେ ହେଲେ ଚକ୍ଷୁ ଅନ୍ଧେ ।୨୩
ବିଦୁର ବିଚକ୍ଷଣ ସେ ଅଟଇ ଅନ୍ୟ ଜାତି
ପଣ୍ଡୁଙ୍କୁ କରାଇବା କି ପଞ୍ଚୁ କଟକେ ଚକ୍ରବ୍ରତୀ ।୨୪
ପାରେଶ୍ୱର ବୋଇଲେ ତୁ ସତ କି ମିଛ କହୁ
ପଣ୍ଡୁଙ୍କୁ ରାଜପଦ ଦିଲେ ତୁ ନିକି ଅମରିଷ ବହୁ ।୨୫
ଭୀଷ୍ମେ ବୋଇଲେ ମୋର ଚିତ୍ତେ ଆନ ନାହିଁ
ସତ୍ୟ ସତ୍ୟ ବାକ୍ୟେ ଦୃଢ଼ ବ୍ରତ କଲି ମୁହିଁ ।୨୬
ପାରେଶ୍ୱର ଶାୟେନ୍ତନୁ ଶୁଣି ପରମ ସାନନ୍ଦ ହୋଇଲେ
ରାଜ୍ୟେଣ ଅବିଷେକ ପଣ୍ଡୁଙ୍କୁ କରାଇଲେ ।୨୭
ବ୍ୟାସେ ବଶିଷ୍ଟେ ମାରକଣ୍ଡେ ଆଦିକରି
ପୂର୍ଣ୍ଣ ଅର୍ଘ୍ୟ ଦିଲେ ସମସ୍ତେ ତପଚାରୀ ।୨୮
ଅନେକ ଯାଗ ଯଜ୍ଞ କଲେ ପୂର୍ଣ୍ଣ ଯେ ଆହୁତି
କୋଟିୟେ ତୀର୍ଥ ଘେନି ପୁଷ୍କର କ୍ଷେତ୍ର ଆଧିପତି ।୨୯
ଅବିଷେକ କଲେ ନେଇ ପଣ୍ଡୁ କୁମରର ଶିରେ
ଜୟ ଜୟ ବାଣୀ ଯେ ଶୁଭିଲା ତିନିପୁରେ ।୩୦
ବିଭା ଅବିଷେକ କଲେ କଳପବଟ ତଳେ
ନରେନ୍ଦ୍ର ପଦ ଦିଲେ ପଣ୍ଡୁଙ୍କୁ ଶୁଭବେଳେ ।୩୧
ସମଦେଣ୍ଡ ଘେନିଣ ଚଳନ୍ତି ନିଜ ଦେଶେ
ପୁରଜନମାନେ ଯେ ଅନେକ ହରଷେ... ।୩୨

**

## ୧୩. ଧୃତରାଷ୍ଟ୍ରଙ୍କର ପଣ୍ଡୁଙ୍କ ନିକଟକୁ ଯାତ୍ରା ଓ ଶିବ ସ୍ତୁତି

ଅନେକ ବାଗେ ତିଆରିଲେ ବ୍ୟାସ ଯେ ପଣ୍ଡୁଙ୍କୁ
ଚଳିଲେ ମହାମୁନି ଯେ ହସ୍ତିନା ଭୁବନକୁ ।୧
ଯହିଁ ସେ ବିଜେ କରି ଅଛନ୍ତି ଧୃତରାଷ୍ଟେ
ପାରେଶ୍ୱର ନନ୍ଦନ ଯାଇ ମିଳିଲେ ନିକଟେ ।୨
ସଞ୍ଜୟେ ବୋଇଲେ ସ୍ୱାମୀ ଶୁଣ କୁରୁନାଥ
ବ୍ୟାସେ ବିଜେ କଲେ ଆସି ତୋହୋର ଅଗ୍ରତ ।୩
ଆସ୍ତାନ ତେଜିଣ ଉଠିଲେ ଅନ୍ଧରାଜା
ସତ୍ୟବତୀ ନନ୍ଦନର ପାଦେ କଲେ ପୂଜା ।୪
କୃଷ୍ଣାଜିନ ଛାଲ ଗୋଟିୟେ ରଜା ଦିଲା
ଉଭା ହୋଇଣ ରାଜା ସମସ୍ତ ପୁଛା କଲା ।୫
ବ୍ୟାସେ ବୋଇଲେ ବାବୁ ଶୁଣ ଧୃତରାଷ୍ଟ
ପଣ୍ଡୁଙ୍କୁ ପଡ଼ିଲା ବନେ ଦୁସହ ସଂକଟ ।୬
ଅଗ୍ନିକାର ମହରଷିଙ୍କି ସେ ଶରଘାତ କଲା
କୋପେଣ ମହାତ୍ମା ତାକୁ ଦୁରାପଦ ଶାପ ଦିଲା ।୭
ପିତା ବ୍ରହ୍ମରଷିଙ୍କର ବଦନୁଁ ଅନ୍ଧ ଯେସନକ ବାକ୍ୟ ଶୁଣି
ରଥ ଗଜ ଅଶ୍ୱ ଯେ ସଇନି ପଲାଣି ।୮
ସୁବର୍ଣ୍ଣ ପଲଙ୍କରେ ବିଜୟେ ଧୃତରାଷ୍ଟ
ହାନ୍ଦୋଳାରେ ଗାନ୍ଧାରୀ ରାଜାର ନିକଟ ।୯
ଦଶଲକ୍ଷ ରଥ ଯେ ପାଞ୍ଚଣ ଲକ୍ଷ ହସ୍ତୀ
ସତୁରି ଲକ୍ଷ ବାରୁ ପାଞ୍ଚ କ୍ଷଉଣୀ ପାଦାନ୍ତି ।୧୦
ପାଟ ଛତ୍ର ହିଁ ଲକ୍ଷେ ଚାମର ହିଁ ଲକ୍ଷେ
ଉଦଣ୍ଡ ଆଲମ୍ବ ମୟୂର ଝାଲି ଲକ୍ଷେ ।୧୧
ଶଙ୍ଖତୁର ଲକ୍ଷେ ଟମକ ଲକ୍ଷେ
ନିଶାଣ ଲକ୍ଷେ ଭେରି ଦାଉଣ୍ଡି ଲକ୍ଷେ ଲକ୍ଷେ ।୧୨
ଟମକ ନିଶାଣ ଯେ ଯେମାନ ଲକ୍ଷେ ଲକ୍ଷେ
ହସ୍ତୀ ଘୋଡ଼ା ପାଇକ ପଲାଶୀ ଅଛନ୍ତି କାଛେ କାଛେ ।୧୩
ଯେସନେକ ଥାଟ ଘେନି ଅମ୍ବିକାର ବଳା
ବିହଡ଼ନ୍ତି ବନେ ସେ ତେଜ ଅନର୍ଗଳା ।୧୪
ଚଳନ୍ତି ଯୋଦ୍ଧାୟେ କାନନ ବନ ଖେଦି
କାଳ ଅଗ୍ନି ନାମେଣ ଭେଟିଲେ ଯେକ ନଦୀ ।୧୫
ସେ ନଦୀର କୂଳେ ବିଜେ ବିଶ୍ୱନାଥ
କାଳଅଗ୍ନି ରୁଦ୍ର ସେ ଅଟଇ ମହାତୀର୍ଥ ।୧୬
ବିଦୁର ସଂଜୟେ ଧୃତରାଷ୍ଟ ମୂଳେ
ଗଙ୍ଗାର ନନ୍ଦନ ଯେ ଭୀଷ୍ମ ମହାମଲ୍ଲେ ।୧୭
ତୀର୍ଥରେ ସ୍ନାହାନ କରି ବିଶ୍ୱନାଥଙ୍କୁ କଲେ ତୁଷ୍ଟି
କାଳଅଗ୍ନି ମହାଲିଙ୍ଗ ଜୟ ତୁ କାଶୀପତି ।୧୮
ଉତପତ୍ତି ପ୍ରଳୟେ ତୋ ତହୁଁ ନାହିଁ ଆନ
ଅନ୍ଧେକ ବିଦାରଣ ଜୟ ତୁ ତ୍ରିଲୋଚନ ।୧୯

ବଇଲ ବାହାନେ ଭ୍ରମଣି ଅନୁବ୍ରତେଣ ମତି ଭୋଳା
ଭଇରବ ରୂପ ଧରି ପାତିଲୁ ମହାଖେଳା ।୨୦
କମଳାର ନନ୍ଦନ ଅନଙ୍ଗ କାମଦେବ
ତାହାକୁ ଦହିଲୁ ତୁ ପିତାର ଅଭାବ ।୨୧
ନିରାଳମ୍ବ ପୁରୁଷ ତୁ ନ ଜାଣୁ ଦେବ କିଛି
ନାରାୟଣର ଅଭାବେ ତୁ କାଳକୂଟ ଭକ୍ଷି ।୨୨
ସ୍ୱାମୀ କାଶୀପତି ନାଶ ଗଲା ତୋହୋର କୂଟବୁଦ୍ଧି
ଦୟା ସାଗର ନାଥ ତୁ ଶୃଙ୍ଗାର ବାରାନିଧି ।୨୩
ଯେକା ଚରଣେକ ଚତୁର୍ଭୁଜ ତ୍ରିଲୋଚନ ପଞ୍ଚୁ ଯେ ବଦନ
ନାମ ବିଶ୍ୱନାଥ ତୁ ଗଙ୍ଗାର ରମଣ ।୨୪
ଖପର କୋଠାର ଘେନି ମହାମତ୍ତ ଭୋଳା
ଡିବି ଡିବି ଡମ୍ବରୁ ମତୁଆଳ ଖେଳା ।୨୫
ଚଣ୍ଡିକା ମତୁଆଳ ଯୋଗ୍ମୀ ଘୋରରଡ଼ି
ପ୍ରେତ ପିଶାଚ ବେତାଳମାନନ୍ତି ଘେନି ଖେଡ଼ି ।୨୬
ରକ୍ତବର୍ଣ୍ଣେ ତ୍ରାସ ସୁନ୍ଦର କପାଳୀ
ରକ୍ତ ବସନ ସିନ୍ଦୁର ରକତ ମନ୍ଦାରମାଳୀ ।୨୭
ଅପୂର୍ବକର ନାଟ କୀର୍ତ୍ତି କାଳାନ୍ତ ଭୋଳା
ବୃଷଭ ବାହାନ ନାଥ ତେଜ ଅନର୍ଗଳା ।୨୮
ଅସାଷମ ମହାତମା କାୟ ମହାମତ୍ତା
ଅଚିନ୍ତା ପୁରୁଷ ନାଥ ପର ଦୁଖେଣ ଚିନ୍ତା ।୨୯
ସିନ୍ଦୁର ବିଲେପନ ଅଣାକାର ରୂପ
କ୍ଷଣେ ବୃଦ୍ଧ କ୍ଷଣେ କନ୍ଦର୍ପ ସରୂପ ।୩୦
କେ ମାତା ପିତା କେ ଭାରିଯା କେ ଭଗିନୀ
ନାଚନ୍ତି ଗାବନ୍ତି ଭଣ୍ଡ ଗୀତ ଘେନି ।୩୧
କଡ଼ା ଦାଉଣ୍ଡି ଯେ ଟହ ଟହ ଘୁମୁରା
କେ କୋଳାହଳ କରନ୍ତି କେ ନାଚନ୍ତି ତ୍ରିପୁରା ।୩୨
ତ୍ରିଣାଯେକ ବୀଣାଯେକ ହେରମ୍ବ ଗଣପତି
ନନ୍ଦୀ ମହାକାଳ ଚଣ୍ଡ ପ୍ରଚଣ୍ଡ ସେନାପତି ।୩୩
ଜୟନ୍ତକ ଅଜୟନ୍ତକ ଜାତୁ ମଲ୍ଲ କ୍ଷେତ୍ରପାଳ
ଉନମତ୍ତର କାଳ କାଦମ୍ବରୀ ପାନେ ମତ୍ତଭୋଳ ।୩୪
ଧୁଧୁକାର ତାଣ୍ଡବ ପରପଞ୍ଚ ଯେ ଯୋଗୀ
ଅବଧୂତ ନାଥ ପିଙ୍ଗଳ ବଇରାଗୀ ।୩୫
ବଳି ଭୋଜା ମାଯେଂସ ଭୋଜା ଆବର ପୋଡ଼ବଳି
ଶଉର୍ଯ୍ୟବନ୍ତ ଭୋଳାନାଥ ନାନା ରଙ୍ଗେଣ କେଳି ।୩୬
ଗିରିଜାର ବଲ୍ଲଭ ମହା ଭଇରବ ମୂରତି
ଶୂଦ୍ରମୁନି ସାରୋଳା ଦାସ ଅଟଇ ପ୍ରକୃତି ।୩୭

**

## ୧୪. ଶତଶୃଙ୍ଗ ପର୍ବତର ବର୍ଣ୍ଣନା

କାଳଅଗ୍ନି ନାଥ ପୂଜିଣ କୁରୁନାଥେ
ବିଜେ ସୋମବଂଶୀ ମଳୟ ବସନ୍ତ ପର୍ବତେ ।୧
ଶତଶିଂଗ ନାମେଣ ଦେଖିଲେ ଯେବଣ ଗିରି
ଶୁଦ୍ଧ ସୁବର୍ଣ୍ଣ ଘଟଣ ଯୋଜନ ଶତେ ଚାରି ।୨
ତହିଂ ଉପରେ ଯେ ଅଛଇ ରସ କୂପ
ଅଷ୍ଟ ଲୋହ ପକାଇଲେ ବିବିଧ ରତ୍ନ ରୂପ ।୩
ବୃକ୍ଷେ ଶ୍ୱେତ ବର୍ଣ୍ଣ ପତ୍ରେ ଧବଳ ବର୍ଣ୍ଣ
ପୁଷ୍ପ କନକ ବର୍ଣ୍ଣ ଉଦେୟ ଯେହ୍ନେ ଜହ୍ନ ।୪
ବେନି ଶତ ଯୋଜନ ଉହର୍ଗ ଚାରି ଶତ ଯୋଜନ ପୋତା
ତହିଂର ଉପରେ ଯେ ଯାଗ କଲେ ଦକ୍ଷ ଧାତା ।୫
ସେ ପର୍ବତେ ବାଟ ଅଛି ପାତାଳ ଭୁବନକୁ
ଈଶାନ ଶିଖେ ଉଠିଲେ ଯାଇ ଆକାଶ ମଣ୍ଡଳକୁ ।୬
ଜମ୍ବୁ ଦୀପର ଯେ ମଧ୍ୟ ସ୍ଥାନ ଯେ ଅଟଇ
ପଞ୍ଚ ତିରିଶ ଧାରା ଗଙ୍ଗା ସେ ପର୍ବତେ ଫୁଟଇ ।୭
ତହୁଁ ସେ ଉତପତ୍ତି ହୋଇଛନ୍ତି ସର୍ବନଦୀ
ମେରୁ ଆବ୍ରତ ହୋଇ ସଙ୍ଗମ ମଉଦଧି ।୮
ଶତେକ ଶିଂଗ ଅଛଇ ସେ ପର୍ବତ ଉପରେ
ସୁବର୍ଣ୍ଣର ଶିଂଗ ବସଇ ସେ ଈଶନ୍ୟ ଦିଗରେ ।୯
ବଇଡୁର୍ଯ୍ୟ ଶିଂଗ ବସଇ ଦକ୍ଷିଣ ଭାଗ କତି
ହୀରା ଶିଂଗ ବସଇ ପଶ୍ଚିମ ମୂରତି ।୧୦
ମାଣିକ୍ୟର ଜ୍ୟୋତି ଶିଂଗ ଉତ୍ତରେ ବସଇ
ମରକତ ଶିଂଗ ବାୟବ୍ୟ କୋଣେ ପ୍ରକାଶଇ ।୧୧
ନୀଳା ଶିଂଗ ବସଇ ନଇରତ କୋଣେ
ଅଷ୍ଟ ରତ୍ନ ଶିଂଗ ଅଛଇ ଅଗ୍ନି କୋଣେ ।୧୨
ଯେକ ଯେକ ଶିଂଗ ଯେ ଦ୍ୱାଦଶ ଯୋଜନ ସ୍ଥଳୀ
ଶତେ ଯୋଜନ ଉହର୍ଗ ପାଞ୍ଚ ଯୋଜନ ଅଗୁଳି ।୧୩
ଈଶାନ୍ୟ କୋଣେଣ ବସଇ ଦିବାକର
ନୈରିତ କୋଣେ ବସଇ ଶଶଧର ।୧୪
ମେଘେ ବିଶ୍ରାମ କରନ୍ତି ବାୟବ୍ୟର କୋଣେ
ଅଗ୍ନିକୋଣେ ବିଶ୍ରାମ କରନ୍ତି ଦେବ ନାରାୟଣେ ।୧୫

ଈଶାନ୍ୟ ଶିଂଗ କୋଣେ ଯେ ଆକାଶକୁ ପନ୍ଥ
ବାୟବ୍ୟ ଶିଂଗ କୋଣେ ବସନ୍ତି ବିଶ୍ୱନାଥ ।୧୬
ମେରୁର ଅନୁଜ ଯେ ଶତଶିଂଗ ଗିରି
ଶ୍ରୀରାମଚନ୍ଦ୍ରଙ୍କ କାର୍ଯ୍ୟେ ତ୍ରେତୟା ଯୁଗେ ହନୁମନ୍ତ
ନେଲା ଯେ ଉପାଡି ।୧୭
ସୁସଞ୍ଚ ପର୍ବତ ବୋଲି ଶ୍ରୀରାମ ଦୟା କଲେ
ଅଙ୍ଗଦକୁ କହି ତାକୁ ଲୁଚାଇ ଥୋଇଲେ ।୧୮
ସ୍ୱାମୀଙ୍କର ଆଗ୍ୟାଂ ଯେ ତାହା ଅଙ୍ଗଦ ଫିଙ୍ଗି ଦିଲା
ଜମ୍ୱୋଦୀପ ମଧ୍ୟ ସ୍ଥାନେ ଯାଇଣ ପଡ଼ିଲା ।୧୯
ଆଦି ଈଶାନ୍ୟେ ଯେ ଶତଶିଂଗ ଗିରି
ଅଳକା ଭୁବନକୁ ଅଗୁଳି ଗୁଣ ଚାରି ।୨୦
ସେ ପର୍ବତ ଉପରେ ରହିଛନ୍ତି ପଣ୍ଡୁରାୟେ
ସପତ ଦୀପ ଦିଶଇ ତହିଂ ଥାଇଂ କଲେ ଯେକ ଲୟେ ।୨୧
ସେବା କଲେ ପରସନ୍ନ ହୋଅଇ ପରବତ
ସେ ପର୍ବତେ ଜନମ ହୋଇଲେ ହୋଅନ୍ତି ଶରବନ୍ତ ବଳବନ୍ତ ।୨୨
ଧୃତରାଷ୍ଟ୍ର ବିଜେ କଲେ ଶତଶିଂଗ ପର୍ବତେ
ପଣ୍ଡୁ ଦ୍ରଶନ କଲେ କୁରୁନାଥର ଅଗ୍ରତେ ।୨୩
କରେଣ ଧାମଣା କାଠର ଧନୁ କଣ୍ଟା ବାୟେଂଶର ଗୁଣ
ମଜୁର ପକ୍ଷୀ ଆଭରଣ ଫିରିକ ନାରାଜ ଡ୍ରୋଣ ।୨୪
କଣ୍ଠେଣ ଗୁଞ୍ଜରା ମାଳୀ ଲୋହିତ ବର୍ଣ୍ଣ ଆଖି
ବିଜେ କର୍ଣ୍ଣ କଟାରି ମେଖଳା ଝିଙ୍କ ପକ୍ଷୀ ।୨୫
ବେଣ୍ଟକାର ସରୂପେ ବିଜୟେ ପଣ୍ଡୁରାୟେ
ଧୃତରାଷ୍ଟ୍ର ଅଗ୍ରତେ କହିଲେ ସଂଜୟେ ।୨୬
ପଣ୍ଡୁ ପ୍ରଶନ କଲେ, ଶୁଣ ଧୃତରାଷ୍ଟ୍ରେ
ଅନେକ ମଧୁର ବଚନ କହନ୍ତି ରାୟେ ଜ୍ୟେଷ୍ଟେ ।୨୭
ବାବୁ ପରମ କଲ୍ୟାଣ ହୋଉ ହୋଅ ଚିରିଜୀବି ଆଷ୍ୟ
ଧନ ସନ୍ତାନ ବର୍ଦ୍ଧୁତ ହୋଉ ଚାଣ୍ଡେ ହୋଉ ଯଶ ।୨୮
ବାବୁ ଶୁଣିଲି ମୁଂ ବନସ୍ତେ ଆପରି ପଡ଼ିଲାକ ତୋତେ
ପାରେଶ୍ୱର ନନ୍ଦନ କହିଲେ ହାଦେ ଆସି ମୋତେ ।୨୯
ଅନେକ ବଇକୁଳ୍ୟ ହୋଇଲା ମୋର ଚିତ୍ତେ ।୩୦
କରପତ୍ର ଯୋଡିଣ ଯେ ପଣ୍ଡୁ ମହାରଥା
ସଞ୍ଚପି କହିଲା ହାଦେ ସକଳ ବାରତା ।୩୧
ଭୋ ଭ୍ରାତ ଅଗ୍ନିକାର ମହାରଷି ଶାପ୍ୟ ଦିଲାକ ମୋତେ
ଶୃଙ୍ଗାର କାଳେ ଅକାଳ କାଣ୍ଡ ପଡୁ ହାଦେ ତୋତେ ।୩୨
ଅନେକ ବଇକୁଳ୍ୟ ହୋଇଲେ ଶୁଣି ଧୃତରାଷ୍ଟ୍ର
ଧର୍ମ ଆଶ୍ରେ କଲା ଲୋକଙ୍କୁ ବାବୁ ପଡ଼ଇ ସଂକଟ ।୩୩
ରାଜ୍ୟକୁ ଯିବା ଚାଲ ବାବୁ ନ ଥିବା ଯେହୁ ଘୋର ବନେ
ଅନେକ ଆପାଦ ବାବୁ ସେ ଥାଇଟି ଅରଣ୍ୟେ ।୩୪
ବୋଲନ୍ତି ପଣ୍ଡୁ ନୃପତି ଶୁଣ ମହାଗ୍ୟାଂତା
ସ୍ୱାମୀ ତୁମ୍ଭେ କିସ ଜାଣ ଯେ ପର୍ବତ ବାରତା ।୩୫
ସ୍ୱାମୀ ତୁମ୍ଭେ ବିଜେ କରିଥାଅ ଯେ ହସ୍ତିନା
ସେ ପଞ୍ଚୁ କଟକକୁ ମୁହିଂ ସେ ବଜ୍ରସେହ୍ନା ।୩୬
ଅନେକ ବିନୋୟି ହୋଇ ପଣ୍ଡୁ ଯେ ନୃପତି
ବଡ଼ କୁତୋହଳେ ଫଳ ଯୋଗାଡ଼ ଆଣି ଦିଲେ ଅପ୍ରମିତ ।୩୭
ସନ୍ୟ ସାଗର ଆଦି ଯେତେକ ରାଜାର ତୁଲେ ଥିଲେ
ଆମ୍ବ ପଣସ କଦଳୀ ଦାରାକ୍ଷ ସମସ୍ତେ ଭୁଞ୍ଜିଲେ ।୩୮
ଅନେକ ଯୋଗାଡ଼ ଦିଲେ ପଣ୍ଡୁ ନରପତି
ଭୁଞ୍ଜିଣ ସାତ କ୍ଷଉଣୀ ବଳ ହୋଇଲେ ତ୍ରିପୁତି ।୩୯
ମଣୋହି ସାରିଣ ଯେ ଆଞ୍ଚୋବନ କୟେ
କର୍ପୂର ତାମ୍ୱୋଳ ଯେ ଭୁଞ୍ଜିଲେ କୁରୁରାୟେ ।୪୦
ଭୀଷ୍ମ ଭୁରିସର୍ବା ସଂଜୟେ ବିଦୁର
ସମଦଣ୍ଡ ଘେନି ବିଜୟେ ନିଜ ପୁର ।୪୧
ଥୋକାୟେକ ଦୂର ପଣ୍ଡୁ ପାଛୋଟି ଅଇଲେ
ରତିକାମ ବୋଲଣି ପର୍ବତ ତଳୁ ବାହୁଡ଼ିଲେ ।୪୨
ଚଳନ୍ତି ଧୃତରାଷ୍ଟ୍ର ଥାଠ ସେନା ଘେନି
ହସ୍ତିନା ଭୁବନେ ଯାଇ ପ୍ରବେଶ ସଇନି ।୪୩

**

## ୧୫. ପଣ୍ଡୁ ଓ କୁନ୍ତୀଙ୍କ ଆଳାପ, ଅଗସ୍ତିଙ୍କ ଆଗମନ ଓ ଉପଦେଶ

ପଣ୍ଡୁ ରହିଲେ ଯେ ଶତଶିଂଗ ପର୍ବତେ
ପାକାପରଶ ଯେ ହୋଇଲେ ଦେବୀ କୋନ୍ତେ ।୧
ଶୁଦ୍ଧ ସ୍ନାହାନ କଲେ ସେ ପଞ୍ଚମ ଦିବସେ
ରାତ୍ରେ ବିଜେ କଲେ ପଣ୍ଡୁ ରାଜାୟେ ପାଶେ ।୨
ପଣ୍ଡୁ ବୋଇଲେ ଶୁଣସି ରେ ପ୍ରାଣସଖି
ମୋର କର ଧରି ତୁ ହୋଇଲୁ ମହାଦୁଃଖୀ ।୩
କୋଇନ୍ତାୟେ ବୋଇଲେ ସ୍ୱାମୀ ଏମନ୍ତ କରିବା
ମୁହିଂ ରଜବତୀ ମୋତେ ଆକ୍ରଷଣ କରିବା ।୪
ପରମ ସାଧବୀ ଯେ ସୁଗ୍ୟାନୀ ଭାରିଯା
ତାହାର ଶରୀର ଆକର୍ଷଣ କଲେ ପଣ୍ଡୁରାଜା ।୫
ଯୁବତୀ ପତି ଯେତେବେଳେ ଯେକ ଯୋଗ ହୋଇଲା
ପ୍ରତାପୀ କାମଦେବ ସେ ଅନେକ କଠୋର କଲା ।୬

ପଣ୍ଡୁ ଇଛା କଲେ ଯହୁଁ ସେ ଶୃଙ୍ଗାର
ଧାତିକାରେ କୋଇନ୍ତାୟେ ତହୁଁ ହୋଇଲେ ବାହାର ।୭
କୋଇନ୍ତାୟେ ତୁଷ୍ଟି କରନ୍ତି ପିତୃ ଯେ ଲୋକଙ୍କୁ
ସ୍ୱାମୀର ଅଭିଶାପ ହୋଇଲା ବଞ୍ଚିଲୁ ଶୃଙ୍ଗାରକୁ ।୮
ତୁମ୍ଭର ଚରଣ କରୁଅଛୁଁ ଆମ୍ଭେ ସେବା
ଯେଥକୁ ମହାତମା ମୋତେ କୋପ ନ କରିବା ।୯
ବଞ୍ଚାଇଲ ଶୃଙ୍ଗାର ଛାଡିଲେ ରତି ଆଶା
ସଂକଳ୍ପ କରିଣେ ଯେ ଛାଡିଲେ ମନୀଷା ।୧୦
ରତି ଇଛା ନ କଲେ ସେ ମହତ ସାଧବୀ
ସ୍ୱାମୀର ନିମନ୍ତେ କରି ଶୃଙ୍ଗାର ମନେଣ ନ ଭାବି ।୧୧
କୋଇନ୍ତାୟେ ଡିଆରିଲେ ମାଦ୍ରୀଙ୍କି ହକାରି
କେତେକାଳ ବଞ୍ଚିବାଟି ଯୁବା ବୟସ ଧରି ।୧୨
ମାଦ୍ରୀ ବୋଇଲେ ତୁମ୍ଭେ ନ ଭାଳ କିଛି ଲଜ୍ଜା
ସ୍ୱାମୀର ଅର୍ଜିଲା ସିନା ଭୁଞ୍ଜଇ ଭାରିଯା ।୧୩
କାହାକଇଂ ଦୋଷ କରିଅଛୁଂ, ଅର୍ଜିଅଛୁଂ ପାପ
ଅକାରଣେ ନାଶ ଗଲାନି ଆମ୍ଭର ଯେ ତପ ।୧୪
ଇଦଂ ପ୍ରତିବାଚ ଅଗସ୍ତି ଶୁଣ ହୋ ଦଣ୍ଡଧାରୀ
କର୍ମ ଆଦରିଣ ସେ ରହିଲେ ବେନି ନାରୀ ।୧୫
ଯେଥୁ ଅନନ୍ତରେ ଶୁଣ ହୋ ନୃପରାୟେ
ଶ୍ରୀମହାଭାରଥ ଶୁଣି ପାତେକ କର କ୍ଷୟେ ।୧୬
ଦାରା ସଂଘରିଲେ ପତି ଯେ ପତନୀ
ସ୍ୱାମୀ ଶଯ୍ୟାଗତ ନୋହିଲେ ଯୁଗତେ ବରଷ ତିନି ।୧୭
ଶତଶିଂଗ ପର୍ବତେ ବିଜୟେ ପଣ୍ଡୁରାଜା ସ୍ୱାମୀ
କୋଇନ୍ତାୟେ ମଦନାବତୀ ଅଛନ୍ତି ପାଶୁଶେ ଚାମର ଘେନି ।୧୮
ବସନ୍ତ ଋତୁ ବୈଶାଖ ମାସ ଶୁକଳ ଯେ ପକ୍ଷ
ଅଗସ୍ତି ଭେଟିଲେ ଯାଇଂ ସେ ପଣ୍ଡୁଙ୍କୁ ପ୍ରତକ୍ଷ ।୧୯
ଶୁକଳ ପକ୍ଷ ତୃତୀୟା ଆବର ଅର୍କବାର
କୃତ୍ତିକା ନକ୍ଷତ୍ର ଭୋଗ ସେ ଦିନର ।୨୦
ତଭୁଲ୍ୟ ନାମେ କରଣ ଅତିଗଣ୍ଡ ନାମେ ଯୋଗ
ମେଷ ସଂକ୍ରାନ୍ତିକି ବେନି ଦିବସ ଯେ ଭୋଗ ।୨୧
ସେ ଦିନ ବିଜେ କଲେ ଅଗସ୍ତି ମହାଋଷି
ତୁଲେଣ ଅଛନ୍ତି ତାହାଙ୍କର ଚାଳିଶ ସହସ୍ର ଶିଷି ।୨୨
ଅଗସ୍ତିଙ୍କି ଦେଖିଣ ସାନନ୍ଦ ପଣ୍ଡୁରାଜା
ପାଦାର୍ଘ୍ୟ ଦେଇଣ ଯେ ମୁନିଙ୍କି କଲେ ପାଦ ପୂଜା ।୨୩
ବସନ୍ତ କୁଣ୍ଡଳ ଆବର ବଇଜୟନ୍ତୀ ମାଳା
ସାନନ୍ଦେଣ ଦିଲେ ନେଇ ସେ ଅମ୍ବାଳିକାର ବଳା ।୨୪
ମୁନିଙ୍କର ପାଦ ଉଦକ ଜଳ ଆଣି
ଶିରରେ ନିବେଶିତ ପଣ୍ଡୁ ରାୟେ ପୁଣି ।୨୫
କୃଷ୍ଣାଜିନ ଛାଲ ଗୋଟିୟେ ଗୋଟିୟେ ଆଣି
ଆସନେ ବସିଲେ ବାଳଖିଲ୍ୟା ସକଳ ଯେ ମୁନି ।୨୬
କୁଶଳ ବାରତା ଯେ ପଚାରନ୍ତି ବ୍ରହ୍ମଚାରୀ
କ୍ଷମେଣ ବୃତି ଅଛୁ ନା ପଞ୍ଚୁ କଟକେ ଅଧିକାରୀ ।୨୭
ସୋଦ୍ରିମା ପଣ ତୋର ଜାଣିଲୁ ଆମ୍ଭେ ତଥ୍ୟ
ଧୃତରାଷ୍ଟ୍ର ଅଟଇ ତୋର ଅଧକ୍ଷ ଅଯୋଗ୍ୟ ଜ୍ୟେଷ୍ଠ ଭ୍ରାଥ ।୨୮
ତାହାଙ୍କୁ ଦେଶେ ଯେ କରାଇଛୁ ରାଜାପଦ
ଆପଣେ ବନଗାମୀ ହୋଇଛୁ ସୋଦରିମା ପଦ ।୨୯
ସମସ୍ତ କୀର୍ତ୍ତି ଯିବ କଥାହିଂ ସେ ରହିଥିବ
ଦୟାଳୁ ଘଟକୁ ଧର୍ମ କେମନ୍ତେଣ ଛାଡିବ ।୩୦
ପରତେ ଗ୍ୟାନୀ ପିଣ୍ଡ ଅଟୁ ତୁ ରାୟେ ପଣ୍ଡୁ
ଅନ୍ଧକୁ ରାଜ୍ୟ ଦେଇ ତୁ ବନସ୍ତେ ଦୁଖ ପଡୁ ।୩୧
ଅଇରି ଦର୍ପମାନ ନିଶୋଧନ କରୁ ରାଜା
ସଂସାର ଜନ ରଖି ସୁଖେଣ ପାଳୁ ପ୍ରଜା ।୩୨
ସାଧୁ ଜୀବନ ଗୋଟି ପଣ୍ଡୁ ଅଟଇ ତୋହୋରି
ରାଗ ମୋହ ଅହଙ୍କାର ପକାଇଲୁ ଦୂର କରି ।୩୩
ସାବତେଣ ସଂପଦ ଦେଲୁ ନୋହଇ ସେ କ୍ଷମ
ସତ୍ୟେଣ ସଂସାର ପାଳିଲୁ ଜିଣିଲୁ ସବୁ ଧର୍ମ ।୩୪
ଶତ ସହସ୍ର ଦଣ୍ଡ ପ୍ରଣମିତ ପଣ୍ଡୁ ଯେ ନୃପତି
ତୁମ୍ଭର ପ୍ରସାଦେ ସମସ୍ତ ସାଧୁ ହେ ଅଗସ୍ତି ।୩୫
ପଣ୍ଡୁ ପ୍ରତିବାକ୍ୟ ମୁନି ହେ ମୁଂ କଲି ମନ୍ଦକୃତ୍ୟ
ଋଷି ମୃଗୀ ସଙ୍ଗମ ଅଛି କି ଯେମନ୍ତ ।୩୬
ଅଗସ୍ତି ବୋଇଲେ ହୋ ତପି ଲୋକମାନେ
ବଳବପୁ ବୟସେ ଯେ ଥାନ୍ତି ଘୋର ବନେ ।୩୭
କାମଦେବ ବୋଲି କରି ସେ ଯେବଣ ପୁରୁଷଇ
ବତିଶ କଳା ଘେନିଣ ସେ ସବୁରି ଦେହେ ବସଇ ।୩୮
ତୈଲୋକ୍ୟେ ଜିଣିବାକୁ କେ ସମାନ ନାହିଂ ସେ କାମକୁ
ସେହି ସେ ନାଶ କରଇ ସମସ୍ତ ତପିମାନଙ୍କୁ ।୩୯
ଯହିଂ ଧର୍ମ ତହିଙ୍କି ଦିଗୁଣ ଯୋଚଇ ଶର
ଦୁଲଭ ଗୋଟିୟେ ଅଛି କାମକୁ ଜିଣିମାକୁ କୋଟିକର ।୪୦

ସେ କାମ ଯେତେବେଳେ କରଇ ଉନ୍ମତ୍ତ
କେ କାହାର ଗଉରୋବ କେ କାହାର ମାନିତ ।୪୧
ବନସ୍ତରେ ସ୍ତିରୀନ୍ତ ସେ ପାଇବେ କାହିଂ ଓଲାଡି
କେ ବିନ୍ଦୁ ପକାନ୍ତି ହସ୍ତରେ ରେତ କରି ।୪୨
ପକ୍ଷୁଂ କଦଳୀ କେ ଲାଇଣ କରେ ରତି
ତେମନ୍ତେ ହେଂ ଢାଳି କରି ରେତ ପକାବନ୍ତି ।୪୩
କେ ମୃତ୍ତିକା ଖଣ୍ଡିରେ ଜଳା ଗୋଟିଯେ କରି
ପକାଇ ମହାରସ ଭିତରେ ପତ୍ର ଭରି ।୪୪
କେ ଗାଈ ମଇଂଷୀ କେ ଅବା ମେଷ ଛେଳି
କାମ ଅବସ୍ଥାଏ କରନ୍ତି ତହିଂ କେଳି ।୪୫
ମୃଗୁଣୀ ଜୀବ ତ ପବିତ୍ର ହୋଇଲା
ଅଗ୍ନିକା ମହରଷି ଏଣେ ନାଶ ଗଲା ।୪୬
ପଣ୍ଡୁ ବୋଇଲେକ ଅଗ୍ନିକାର ମହରଷି
ମୃଗୁଣୀ ଯେକ ଘେନି ସେ ରମଇ ବନେ ପଶି ।୪୭
ଶବଦ ଶୁଣି ମୁଂ ନାରାଜ କଲି ବୃଷ୍ଟି
ଋଷି ମୃଗୁଣୀ ଦୁହେଂ ଗଲେ ଫୁଟି ।୪୮
ରାଗେଣ ଶାପ୍ୟ ଦିଲା ମୋତେ ମୁନି ଗରୁ
ଶୃଙ୍ଗାର କାଳେ ତୋତେ ଅକାଳ କାଣ୍ଡ ପଡୁ ।୪୯
ଜନ୍ମ ତ ନିଷ୍ଫଳ ହୋଇଲା ନାଶ ଗଲା ବଂଶ
କହିବା ଅଗସ୍ତି ହୋ ମୋତେ ପ୍ରତିକାର କିସ ।୫୦
ଅଗସ୍ତି ବୋଇଲେ ସେ ନୁହଇଟି ମତିଭୋଳା
ନାଶକର ଶାସ୍ତିରେ ମୃଗୁଣୀ ସଂଗେ ମେଳା ।୫୧
ଦୁରାପଦ ଶାପ ତୁ ଯେ ପାଇଲୁ ମହାରାଜା
ନାଶ ଯିବୁଟି ରାଜା ଶୃଙ୍ଗାର ରସେ ନ ଯା ।୫୨
କୋଇନ୍ତା ମାଦ୍ରୀ ବେନି ରାଣୀନ୍ତି ହକାରି
ତୁ ଆପଣେ ଆଗ୍ୟାଂ ଦେବୁ ନା ତିଆରି ।୫୩
କେଉଂଣ ବାଗେ ଗୋ ଉତପତ୍ତି ହୋଅଇ ସନ୍ତତି
ତହିଂକି କାରଣ ତୁମ୍ଭେ କର ବେନି ଯେ ଯୁବତୀ ।୫୪
ଶାହାସ୍ର ପୋଥି ଫେଇ ମୁନି ଶୁଣାନ୍ତି ବେନି ରାଣୀ
ସନ୍ତାନକୁ ଉପାୟ କର ଗୋ ଭୋଜର ଦୁଲଣୀ ।୫୫
ଯତନେ ହେଂ ପରେ ନକଲ ମନ୍ଦ ଇଚ୍ଛା
ସଂସାର ନିମନ୍ତେ ଗୋ କର ବଂଶରକ୍ଷା ।୫୬
ସ୍ୱାମୀଙ୍କ ସଂକୋଚ ଗୋ ନ କର ମାହେଶ୍ୱରୀ
ପୁତ୍ର ଉପୁଜାଇ ଗୋ ଲଭ ସ୍ୱର୍ଗ ପୁରୀ ।୫୭
ଅଗସ୍ତି ବୋଇଲେ ଗୋ ଶୁଣ ଦେବୀ କୋନ୍ତେ
ଦୁର୍ଭାସାଙ୍କ ମହାମନ୍ତ୍ର ଅଛି ତୋହୋର ଯେ ହସ୍ତେ ।୫୮
ମାନବ ଇଛିଲେ ଗୋ ହୋଇବ ଦୋଚାରୀ
ଦେବତାନ୍ତ ଇଛା କର ଗୋ ହୁଅ ରତିକାରୀ ।୫୯
ଦେବ କଳା ଘେନି ଗୋ ଦେବେ ହୁଅନ୍ତି ଜନମ
ଛାଡିବ ଦୁପାତକ ଉଦିତ ହେବ ଧର୍ମ ।୬୦
କୋଇନ୍ତା ବୋଇଲେ ତୁମ୍ଭେ ଗୁରୁର ଗୁରୁ ପରମ ଗୁରୁ
ତୁମ୍ଭର ଆଗ୍ୟାଂ କେ ଅନ୍ୟସ୍ତା କରିପାରୁ ।୬୧
ଅଗସ୍ତି ବୋଇଲେ ମା ଗୋ ଯେହେର୍ଣେକ ଅଛି ପୂର୍ବେ
ତୁମ୍ଭେ କିଛି ଅନ୍ତର ନ ଧର ମନେ ଯେବେ ।୬୨
ଆଗୋ ସ୍ତିରୀଙ୍କର ଧର୍ମ ଗୋ ଅଟଇ ଯୁଗତି
ସ୍ୱାମୀର ବୀର୍ଯ୍ୟେ ଯେବେ ନ ଉପୁଜଇ ସନ୍ତତି ।୬୩
ଆଗୋ ପରଦାର କରାଇ ଗୋ ଉପୁଜାଇ ବଂଶ
ସ୍ୱାମୀର ଅଭିଶାପ ତୁମ୍ଭର କିସ ଦୋଷ ।୬୪
ତୁମ୍ଭର ଉପର ବଂଶେ ସନ୍ତତି ବିହୁନେ
ଦେଖିଲଟିକି କେମନ୍ତେ କଲେ ଶାଶୁମାନେ ।୬୫
ବ୍ୟାସେ ଅଟନ୍ତିଟିକି ତାହାଙ୍କର ଜ୍ୟେଷ୍ଠ ଶଶୁର
ତାହାନ୍ତ ଘେନି ପୁଣ ଇଛିଲେ ଶୃଙ୍ଗାର ।୬୬
ଅନ୍ଧ ପଣ୍ଡୁ ବିଦୂର ଉପୁଜିଲେ ତିନିଭ୍ରାଥେ
ତୁ ଅର୍ଣ୍ଣପୂର୍ଣ୍ଣା ମା ଗୋ ଯୁଗତେ ଥାଅ ଯେଥେ ।୬୭
ଯେବେ ଯାଉଅଛୁଂ ଆମ୍ଭେ ଆସିବୁଂ ସମୟେ
ଆମ୍ଭର ଗୋଚରେ ଦେବୁଟି ତୋହୋର ତନୟେ ଗୋ ମାୟେ ।୬୮
କୋଇନ୍ତାକୁ ବୋଇଲେ ମା ଗୋ ଆମ୍ଭର ବୁଦ୍ଧି କର
ଅବିଭାଇତ କାଳେ ତୁ ଇଛିଲୁ ଶୃଙ୍ଗାର କରତାର ।୬୯
କର୍ଣ୍ଣ ଜନ୍ମ ହୋଇଲାଟି ଆଦିତ୍ୟଙ୍କର ବୀର୍ଯ୍ୟେ
ରାଧେବ ପାଳିଲାଟି ସେହୁ ତୋହୋର ଆତ୍ମଜେ ।୭୦
କୋଇନ୍ତାୟେ ବୋଇଲେ ମୁନି ହେ ତୁମ୍ଭେ କାହିଂ ଥିଲ
ଯେ ମୋହୋର ମନ୍ତ ପରୀଖ ତୁମ୍ଭେ କେମନ୍ତେ ଜାଣିଲ ।୭୧
ଅଗସ୍ତି ପ୍ରତିବାଚ ଆମ୍ଭେ ଭୂତ ଭବିଷ୍ୟ ଗ୍ୟାଂତା
ପୁରାଣେ ସ୍ରିଜିଅଛୁଂ ଆଗତ ଭବିଷ କଥା ।୭୨
ଯେବେ ତୋତେ ହୋ କହୁଅଛୁଂ ଆଗତକୁ
ଧର୍ମେଣ ପୁତ୍ର ଗୋ ପ୍ରାପତ ହେବ ତୁକୁ ।୭୩
ପବନେଣ ପୁତ୍ର ହୋଇବ ସମ୍ଭୂତ
ଇନ୍ଦ୍ର ଦେବତା ତହୁଂ ଗୋ ପୁତ୍ରେକ ହେବ ଜାତ ।୭୪

କର୍ଣ୍ଣକୁ ଘେନି ଗୋ ତୋର ହୋଇବ ପୁତ୍ର ଚାରି
ଯୁଧେଷ୍ଠି ଭୀମ ଅର୍ଜ୍ଜୁନ ତିନି ନାମ ଧରି ।୭୫
ଯୁଧେଷ୍ଠି ହାବେ ଯେ ପ୍ରତକ୍ଷେ ହୋଇବାକ ବ୍ରହ୍ମା
ଭୀମସେନ ହୋଇବ ଯେ ଈଶ୍ୱର ମହାତମା ।୭୬
ଅର୍ଜ୍ଜୁନ ହୋଇବ ଯେ ପ୍ରତକ୍ଷେ ବିଷ୍ଣୁନାଥ
ଯେମନ୍ତେ ବ୍ରହ୍ମା ବିଷ୍ଣୁ ଶିବ ହୋଇବେ ତିନି ପୁତ୍ରେ ଜାତ ।୭୭
ମାଦ୍ରୀଙ୍କି ଦୟା କରିବୁଟି କୋନ୍ତ ଭୋଜର ଦୁଲାଳୀ
ଯେହାକୁହିଂ ଦେବୁଟି ବେଳେ ଦୁର୍ଭାସାଙ୍କ ମନ୍ତ୍ର ଜପାମାଳି ।୭୮
ଯେହାର ତହୁଂ ଜାତ ହୋଇବ ପୁତ୍ର ବେନି ଗୋଟି
ଭାରାଭର ନିବାରିଣ କରିବେ ଯେ ନବସୃଷ୍ଟି ।୭୯
ମା ଗୋ ଯେ କଥା ଅନ୍ତର ନୋହଇଟି ଆନ
ଆମ୍ଭର ଶପତ ଟି ନ ଧର ଆନ ମନ ।୮୦
ସୁଲକ୍ଷଣୀ କି ଆଶିଷ ଦେଲେ ମହାତ୍ମା ଅଗସ୍ତି
କୁଶ ଶେଜ୍ୟା ଗୋଟିଯେ ଦେଲେ ଦେବୀଙ୍କି ମନ୍ତ୍ରି ।୮୧
ଯେ ଶେଜ୍ୟାରେ ଶୋଇଣ ଦୁର୍ଭାସାଙ୍କର ମହାମନ୍ତ୍ରେ
ଯାହାକୁ ସଂକେତ କରିବୁ ସେ ଭେଟିବ ଯୁଗତେ ।୮୨
ମୋହନ ଅଞ୍ଜନ ଦିଲେ ଯେ ମଦନାକୁ
ଯେହାନ୍ତ ଘେନି ମୋହ ତୁ ଅଶ୍ୱନୀ କୁମାରଙ୍କୁ ।୮୩
ସୁକୁମାର ସୁନ୍ଦର ସେ ସଗ୍ୟାଂର ଅଟଇ ଚାଟ
କୁମାର ସମ୍ମୁଖେ ଯାକୁ ଅଛି ଆକାଶେ ପାଟ ।୮୪
ସେ ବେନି କୁମାର ଗୋ ତୋତେ ଅଙ୍ଗ ଭୋଗ କରାଇବେ
ବେନି ପୁତ୍ରେ ଉପୁଜିବେ ନକୁଳ ସହଦେବେ ।୮୫
ସହଦେବ ବୋଲିଣ ତୋର ଯେବଣ ପୁତ୍ର ଗୋଟି
ଭୂତ ଭବିଷ୍ୟ ତାହାକୁ ଦିଶିବ ନବସୃଷ୍ଟି ।୮୬
ଅନେକ ପୁଣ୍ୟ ଧର୍ମ ସେ କରିବେ ଦ୍ୱାପରେ
ଚିରାନ୍ତନ କୀର୍ତ୍ତି ଗୁହାଇବେ ସେ ମଧ ଭୁବନରେ ।୮୭
କୋଇନ୍ତାକୁ ଭଗତି ଗୋ ହୋଇ ଥାଅସି ମଦନା
ମାଗୋ କାଇନ୍ତା ଯେହାକୁ ଦୟା କରିଥିବୁଟି ଯେ
ତୋହୋର ଦାସୀସିନା ।୮୮
ଅଗସ୍ତିଙ୍କ ବଚନେ ସେ ହୋଇଲେ ପରମ ଶାନ୍ତି
ଛାଡିଲେ ଭଏମାନ ହୋଇଲେ ନିଭ୍ରାନ୍ତି ।୮୯
ପଣ୍ଡୁରାଜା କୋଇନ୍ତା ମାଦ୍ରୀ ଘେନି ହୋଇଲେ ପରିଣାମି
ସେଠାରୁ ଅନ୍ତର୍ଧାନ ହୋଇଲେ ଅଗସ୍ତି ମହାମୁନି ।୯୦

**

## ୧୬. ଭୀମ ଜନ୍ମ

ଅନେକ ସାନନ୍ଦ ହୋଇଲେ କୋଇନ୍ତାଯେ ପୁତ୍ରକଇଂ ଦେଖି
ଅତିଅନ୍ତ ସ୍ନେହେଣ ସେ ପାଳନ୍ତି ଯୁଧେଷ୍ଠିକି ।୧
ସାତ ବରଷ ଯେ ହୋଇଲେ ଧର୍ମସୁତ
ଚାଲନ୍ତେଣ ଚରଣ ନ ବାଜଇ ଭୂମିଗତ ।୨
ଦିନେକ ଦେହରେ କଷିଲା ମଶା ଗୋଟିଯେ
ଧୀର କରି ଉଡାଇ ଦିଲା ବାଳୁତ ତନଯେ ।୩
ଦିନେକ ଲିମ୍ବ ଗଛରୁ ଝିଣ୍ଟି ପିଟି ଗୋଟିଏ ପଡ଼ିଲା
ପର୍ବତରେ ପଡନ୍ତେଣ ସେହି ଅସାକ୍ଷମ ହୋଇଲା ।୪
ଖେଳୁଂ ଖେଳୁଂ ତାହା ଯୁଧେଷ୍ଠି କୁମର ଦେଖି
ଲକ୍ଷଣବନ୍ତ କୁମର ତାହା କାନରେଣ ଫୁଙ୍କି ।୫
କୋଇନ୍ତାଏ ଦେଖିଣ ତାହା ହୋଇଲେ ଆଶ୍ଚିଯ
ବିଚାରନ୍ତି ଯେ ପୁତ୍ରରେ ନୋହିବ କିଛୁ କାର୍ଯ୍ୟ ।୬
ଆଦ୍ୟହୁଂ ଗାନ୍ଧାରୀ ଯେ ଅଟଇ ହିଂସାକାରୀ
ଯେ ପୁତ୍ରକୁ ଘେନି କି କାର୍ଯ୍ୟ କରି ପାରି ।୭
ଅତିହିଂ ଧର୍ମପଣେ କି ରହଇ ଛତ୍ରୀପଣ
ଦୁଖ ପଡ଼ି ଉପୁକାଇଲି ନୋହିଲା କାରଣ ।୮
ଭୋ ଧର୍ମ ପୁରୁଷ ଯେହେର୍ଣ୍ଣକ ମୋର କର୍ମ
କେବଣ ପାପକ୍ଷଣେ ହୋଇଲି ମୁଂହି ଜନ୍ମ ।୯
ସ୍ତ୍ରୀ ଜନ୍ମରେ ମୁଂ ହୋଇଲି ଅସତୀ
କେତେ ଭ୍ରଥାରେ ଦିନ ଯିବ କର୍ମର ଅଗତି ।୧୦
ପ୍ରଥମେ ଆଦିତ୍ୟ ଦୁଜେଣ ପଣ୍ଡୁରାଯେ
ତୃତୀଯେ ଧର୍ମଦେବତା ବୀର୍ଯ୍ୟ ପ୍ରଦାନ କଯେ ।୧୧
ଯେତେକେହେଂ ଭୋ ଧର୍ମଦେବତା ନୋହିଲା ମୋର କାର୍ଯ୍ୟ
ଯେତେ ବଡ଼ ରାଜକୁଳେ ଉପୁଜି ଲେଛିଲି ସର୍ବ ଲାଜ୍ୟ ।୧୨
ସଂସାରେ ଉପୁଜି ଦେବ ନ କଲି କିଛି ଧର୍ମ
କେମନ୍ତ କରି ମୁକତ କରିବଟି ଯମ ।୧୩
ରାଗ ମୋହ ଅହଂକାର ଥିଲେ ଉପୁଜିଟି ଅନେକ ପାପ
ରାଜପଦେ ବସିଲେ ବଡ଼ାଇ ପରତାପ ।୧୪
ଯେତେକ ବିଚାର କରନ୍ତେଣ ଦେବୀ ବସି
ଆଦିତ୍ୟ ଅସ୍ତ ହୋଇଲେ ପ୍ରବେଶ ଆସି ନିଶି ।୧୫
ଅନ୍ଧାରି ବିଜେ କଲେ ପଣ୍ଡୁ ଗହନ ବିପିନେ
ବେନି ଭାରିଜା ପୁତ୍ର ଗୋଟି ଅଛନ୍ତି ସେ ସ୍ଥାନେ ।୧୬
ମାଦ୍ରୀର କୋଳେ ଦେବୀ ସମର୍ପିଲେ ପୁତ୍ର ଗୋଟି
ଗୀତରସେ ମଦନା ନିଦ୍ରା କରାଇଲା ଯୁଧେଷ୍ଠି ।୧୭

ଶ୍ରାବଣ ଶୁକଳ ପକ୍ଷ ତୃତୀୟାର ତିଥି
ତୃତୀୟା ତେର ଦଣ୍ଡ ଉତ୍ତାରେ ଚଉଠୀ ବାର ବୃହସ୍ପତି ।୧୮
ସ୍ୱାତି ନକ୍ଷତ୍ର ଯେ ପୂରା ସେ ଦିନର ଭୋଗ
ତଉ୍ଲ୍ୟ ନାମେ କରଣ ସିଦ୍ଧ ନାମେ ଯୋଗ ।୧୯
ଶେଯ୍ୟାୟେକ ସୁସଞ୍ଚ ଯେ ଆପଣେ କୋନ୍ତା ଦେବୀ କଲେ
ତହିଂର ଉପରେ ବସି ଦୁର୍ବାସାଙ୍କର ଜପାମାଳୀ ଘେନିଲେ ।୨୦
ପଞ୍ଚଭୂତ ଆତ୍ମାରେ ଲୟେ କରିଣ ଦେବୀ କୋଇନ୍ତା
ଧ୍ୟାନେଣ ସୁମରିଲେ ସେ ଦୁର୍ଦ୍ଦଣ୍ଡ ପବନ ଦେବତା ।୨୧
ଅମୃତ ପୁରୁଷ ସେ ଋଷିର ମହାମନ୍ତେ
ବିଜେ କଲେ ପବନ ଦେବତା କୋଇନ୍ତାଙ୍କର ଶେଯ୍ୟା
ଯୁଗତେ ।୨୨
ବାମ କରେ ପାଶ ଯେ ଦକ୍ଷିଣେ ମୁଦୁଗର ପୁଣି
ଦେଖିଣ ପଚାରନ୍ତି କୁନ୍ତଭୋଜର ଦୁଲଣୀ ।୨୩
ମହାପ୍ରଚଣ୍ଡ ତେଜ ଦିଶଇ ଲୋହିତ ବର୍ଣ୍ଣ ରୂପେ
ଅଦଭୂତ ମହାତ୍ମା କାହୁଂ ବିଜେ କଲୁ ମୋହୋର ସମୀପେ ।୨୪
ବଦୟନ୍ତି ଶୂନ୍ୟ ପୁରୁଷ ତୁ ଯାହା ସୁମରିଲୁ କୋଇନ୍ତା
ଚେତନା ପୁରୁଷ ହାଦେ ମୁଂ ପବନ ଦେବତା ।୨୫
ତୁ ମୋତେ ଅଭିଳାଷ କଲୁ କୋନ୍ତଭୋଜର ଦୁଲାଳୀ
ଅମୃତ ପୁରୁଷ ମୁଂ ବିଜେ କଲି ଦୁର୍ବାସାଙ୍କର
ମନ୍ତ୍ର ଭୟେ କରି ।୨୬
ସରୂପ ଜାଣି ଦେବୀ ସଲଜ୍ଜିତ ମତି
ପବନ ଦେବତାୟେ କୋଇନ୍ତାଙ୍କୁ କୋଳେ ଧଇଲେ
ତତ୍କ୍ଷଣାନ୍ତି ।୨୭
ୟେସନେକ ପ୍ରଭୁ ଭାରିଯା ବିବସନଶାହୀ
ମଦନା ହିଁ ଯତନେ ଛାଡିଗଲା ସନ୍ନିଧେ କେହି ନାହିଁ ।୨୮
ମରୁତ ଦେବତା ତୁଲେ ଯହୁଂ ଶୃଙ୍ଗାରକୁ ଇଚ୍ଛା
ବଢ଼ିଲା ରତିରଙ୍ଗ ଓହୋ କୁଳର ମନବାଞ୍ଛା ।୨୯
ଚନ୍ଦ୍ର ପବନ ଘେନି ପଞ୍ଚିଶ ପ୍ରକୃତି
ବଳବନ୍ତ ଦେବତାର ଶୃଙ୍ଗାର ସହିଲା ସେ
ଅନାଦି ଶକତି ।୩୦
ଚନ୍ଦ୍ରମେଳକ ଘେନି ବିଷ୍ଣୁ ବାତ ପ୍ରସନ୍ନେ
ଛାଡିଲା ମହାବୀର୍ଯ୍ୟ ସେ ଦୁର୍ଦ୍ଦଣ୍ଡ ପବନେ ।୩୧
ପବନ ଦେବତାର ସେ ଅମୋଦ୍ୱ ରେତ ଭାରି
ମୂର୍ଚ୍ଛାଗତ ହୋଇ ପଡ଼ିଲେ କୋଇନ୍ତାୟେ
ସହିତ ନୁଆରି ।୩୨

କୋଳ କରି ଧଇଲେ ପବନ ଦେଇଣ ଜୀବନ୍ୟାସ
ଆପଣାର ଆତ୍ମା ଯାଇ ତାହାର ଗର୍ଭରେ ପ୍ରବେଶ ।୩୩
ଯହୁଂ ମହାଭାରା ସହି ନ ପାରିଲେ ଦେବୀ କୋନ୍ତୀ
ସଇନ୍ଦୁ ପୁତ୍ରେକ ଯେ ହୋଇଲା ଉତପତ୍ତି ।୩୪
କୋଇନ୍ତାଙ୍କର ଗର୍ଭରୁ ପୁତ୍ରେକ ଅବତରି
ଥରହର କମ୍ପୁଅଛି ଚାରିଶତ ଯୁଣ ଶତଶିଂଗ ଗିରି ।୩୫
ପୁତ୍ରଭାବେ କମ୍ପିଲା ଆକାଶ ସପତ ବ୍ରହ୍ମାଣ୍ଡ
ଅାଠଲକ୍ଷ ପର୍ବତ ଘେନି କମ୍ପିଲା ମେଦିନୀ ନବଖଣ୍ଡ ।୩୬
ପୁତ୍ର ଦେଖି ପବନ ଦେବତା ସାନନ୍ଦ ଚିତ୍ତେ
ଦେଖଇ ଭୁବି ଭୁବନ ସେ କମ୍ପଇ ଅପ୍ରମିତେ ।୩୭
ଦେବରାଜା ଗିରିରାଜା କମ୍ପଇ ଯମରାଜା
ଭୀମସେନ ନାମ ଦୀଲେ ପବନ ଦେବରାଜା ।୩୮
ପୁତ୍ରକଇ ନାମ ଦେଇ ସେ ଚଳିଲେ ପବନ ପୁଣି
ନନ୍ଦନ ଦେଖି ସାନନ୍ଦ କୁନ୍ତଭୋଜର ଦୁଲଣୀ ।୩୯
ମହାଘୋର ଅନ୍ଧକାର ବରଷନ୍ତି ମେହେ
କ୍ଷେପନ୍ତି ବଳାହକେ ଯେହ୍ନେ ବିଜୁଳି କନକରେହେ ।୪୦
ପୁତ୍ରଗୋଟି ଘେନି ଦେବୀ ରାତ୍ରକାଳେ ପର୍ବତେ ଅଇଇଂ ବସି
ମହାମତ୍ତ ବ୍ୟାଘ୍ରେକ ଗର୍ଜନ କଲା ଆସି ।୪୧
ବ୍ୟାଘ୍ରର ଗର୍ଜନ ଶୁଣି ତ୍ରାସିଲେ ଦେବୀ କୋଇନ୍ତେ
ଭୟେଣ ଛାଡି ପଳାଇଲେ ପୁତ୍ରକୁ ପକାଇ ଶତଶିଂଗ ପର୍ବତେ ।୪୨
ଚାରିଶତ ଯୋଜନ ଯେବଣ ମହାଗିରି
ପର୍ବତ ରସାତଳ ହୋଇଲା କୁମର ଯହୁଂ ପଡ଼ି ।୪୩
ମହାଭାରା ପର୍ବତ ଯହୁଁ ପଶିଲା ରାସାନ୍ତଳେ
ଦେଖିଣ ତ୍ରାସିଲେ ସକଳ ଦିଗପାଳେ ।୪୪
ପୁତ୍ରନ୍ତ ତଳେ ପକାଇ କୁନ୍ତୀ ପଳାଇଲେ ଡରେ
ଧାତିକାରେ ଉଠିଲେ ସେ ବୃକ୍ଷର ଉପରେ ।୪୫
ପର୍ବତେ ପଡ଼ି କାନ୍ଦଇ ସେ ବାଳଶିଷି
ଶ୍ରାବଣମାସ ଘୋର ଅନ୍ଧକାର ପଛିମୁଂ ବତାସ କରି ବରଷି ।୪୬
ପଡ଼ିଅଛି ନନ୍ଦନ ଉତ୍ତାନଶାହୀ ହୋଇଂ
କାନ୍ଦଇ ନନ୍ଦନ ଯେ ବାଳୁତ ରାବ ଦେଇ ।୪୭
ଗର୍ଜନ ନାଦ କରି ଧାମଇ ମତ୍ତ ବ୍ରାଘ
ପୁତ୍ରକୁ ଘୋଟିଲା ସେ କରିବ ଆଧାର ଯୋଗ ।୪୮
କାନ୍ଦଇ ସେ ଭୀମସେନ ଚରଣ ହଲାଇ
ବ୍ୟାଘ୍ରର ମୃଧୁନିରେ ବାଜିଲା ପାଦ ଯାଇ ।୪୯

ଭୀମର ଦକ୍ଷିଣ ଚରଣ ବାଜିଲା ବ୍ୟାଘ୍ରର ମୃଧୁନା
ବାଜନ୍ତେ ମୃଧୁନା ତାର ହୋଇଲା ଶତେ ଚୂନା ।୫୦
ରୁଧିର ବୃଷ୍ଟି ହୋଇ ପଡ଼ିଲାକ ବ୍ୟାଘ୍ର
ରଜନୀ ପ୍ରଭାତ ହୋଇଲା କାନ୍ଦଇ ଯେ ପୁତ୍ର ।୫୧
କୋଇନ୍ତାଯେ ଉଠିଛନ୍ତି ବୃକ୍ଷର ଉପରେ
ପଣ୍ଡୁ ଆସି ହୋଇଲେ ଶତିଶିଂଗ ପର୍ବତରେ ।୫୨
ଦେଖିଲେ କାନ୍ଦୁଅଛି ସୁନ୍ଦର ବାଳୁତ
ପୁତ୍ର ପାଦତଳେ ବ୍ୟାଘ୍ର ହୋଇଅଛି ହତ ।୫୩
ପୁଣ ଯେ ରୋଦନ କରନ୍ତେ ବାଳୁତ
ସରୂପ ଦେଖିଣ ପଣ୍ଡୁ ହୋଇଲେ ଚକିତ ।୫୪
ଚଉଦିଗକୁ ଅନାଇ ଅମ୍ବାଳିକା ସୁତ
ଭାଳିଲେ ମାୟା କରିଛି କେବଣ ଦଇବତ ।୫୫
କେବଣ ମହାତ୍ମା ଯେ ପୁତ୍ର ଗଲା ଛାଡ଼ି
କେଣିକି ଗଲା ପୁତ୍ର ଯେକା ଅଛି ପଡ଼ି ।୫୬
ଅନଙ୍ଗ ଶରୀର ଜାଣି ବ୍ରହ୍ମାଣ୍ଡ ତେଜ ଫୁଟି
ବିଚାରନ୍ତି ପଣ୍ଡୁରାଯେ ଯେ କାହାର ପୁତ୍ର ଗୋଟି ।୫୭
ସ୍ୱାମୀକି ଦେଖିଣ କୋନ୍ତଭୋଜର କୁମାରୀ
ଭୟ ଛାଡ଼ିଣ ଦେବୀ ବୃକ୍ଷରୁ ଅବତରୀ ।୫୮
ପଣ୍ଡୁର ଦେଖିନ୍ତେଣ ଯେ କାନ୍ଦଇ କୁମର
ବାମପାଦ ଅଙ୍ଗୁଷ୍ଠି ବାଜିଲା ପର୍ବତ ଶିଖର ।୫୯
ଅନାଦି ସିଦ୍ଧ ସେ ଅଟଇ ଗିରିବର
ଶିଂଗ ତୁଟନ୍ତେ ଅନୁବ୍ରତେ ବହୁଅଛି କ୍ଷୀର ।୬୦
ଶିଂଗ ଦ୍ୱାଦଶ ଯୋଜନ ତଳି ଶତେ ଯୋଜନ ଶିର
ବାମପାଦ ଅଙ୍ଗୁଷ୍ଠି ଲାଗି ହୋଇଲା ଶତେ ଚୂର ।୬୧
କୋପେ ପ୍ରଜ୍ୱଳିତ ହୋଇଲା ଡିଙ୍ଗର
ପ୍ରଥମରେ ପାଦ ମୋତେ କଲୁରେ ପ୍ରହାର ।୬୨
ରାଗେଣ ବ୍ୟଥା ପାଇ ବୋଇଲା ଗିରିବର
ଆରେ ଆରେ ଭୀମା ତୁ ପ୍ରଥମ ଯୁଦ୍ଧେ ହାର ।୬୩
ଯେସନେକ ଶାପ ଯହୁଂ ଗିରିବର ଦିଲା
ଆସିଣ କୋଇନ୍ତା ଦେବୀ ପୁତ୍ରନ୍ତ ସମ୍ଭାଳିଲା ।୬୪
ପଣ୍ଡୁ ପୁଚ୍ଛା କଲେ କୋନ୍ତା ଯେ କାହାର ନନ୍ଦନ
ଯେ ପୁତ୍ର ଦେଖି ସାନନ୍ଦ ହୋଇଲା ମୋ ମନ ।୬୫
ଆହୋ ସ୍ୱାମୀ ତୁମ୍ଭେ ଛାଡ଼ିଣ ଗଲ ଯେବଣ ରାତି
ମେଘ ଅନ୍ଧାର କରି ବରଷଇ ଘୋର ମୂର୍ତ୍ତି ।୬୬
କାମେଣ ସୁମରିଲି ମୁଂ ପବନ ଦେବତାଙ୍କୁ
ସେ ମହାପୁରୁଷ ଆସି ଆବୋରିଲେ ମୁକୁ ।୬୭
ତାହାରେଣ ପୁତ୍ରେକ ପ୍ରାପତ ହୋଇଲା ଯେ ମୋତେ
ଭୀମସେନ ନାମ ଯେହାକୁ ଦିଲେକ ମରୁତେ ।୬୮
ଶୁଣିଣ ପଣ୍ଡୁରାଯେ ହୋଇଲେ ଅନେକ ଉଷତ
ବୋଇଲେ ପୁତ୍ର ଗୋଟି ମୋର କୋଳେ ଦିଅସି ସଂଘାତ ।୬୯
ଯେତେ ବୋଲି ପୁତ୍ରକୁ ଧଇଲେ ପଣ୍ଡୁ ନରନାଥ ।୭୦
ପର୍ବତ ଶାପ ଯେ ଦିଲା ଯେ ପୁଅକୁ
ଅନେକ ବିନୋୟୀ ହୋଇ ଦେବୀ କହିଲେ ପର୍ବତକୁ ।୭୧
ହେ ମହତ ପର୍ବତ ଆମ୍ଭନ୍ତ ସମ୍ଭାଳିଲୁ
ପବନ ଦେବତାର ପୁଅର ଆର୍ଦ୍ଦୋଳି ସହିତ ନୁଆରିଲୁ ।୭୨
ତୋହୋର ତହିଂ ଆମ୍ଭେ କରୁଅଛୁଂ ବାସ
ତୁ ସୟଳ ଆମ୍ଭର ଯେ ସହିବୁ ଦଶ ଦୋଷ ।୭୩
ନିକଳଙ୍କ କରି ମୁଂ ଯେ ପୁତ୍ର କଲି ଜାତ
ବାଳୁତକୁ କୋପ କିମ୍ପେ କଲୁ ହେ ମହତ ପର୍ବତ ।୭୪
ପୁତ୍ରକଇ ଶାପ ମୋର ଦିଲୁ ନ ବିଚାରି
ତୁମ୍ଭଙ୍କୁ କାଟନ୍ତୁ ଜନେ ଖଣ୍ଡ ଖଣ୍ଡ କରି ।୭୫
ଆବର ଶାପ ଦେଇଂ ଲୋଡ଼ୁଛଇ କୋନ୍ତେ
ବିନୟ ଭାବ ହୋଇ ବୋଲଇ ପରବତେ ।୭୬
ରାଗେଣ ଯେବଣ ଶାପ ଦେଲୁସି ଗୋ ମାୟେ
ଖଣ୍ଡ ଖଣ୍ଡ କରାଇଲୁ ଅତୁଟ ମୋର କାୟେ ।୭୭
ଆହୁରିହିଂ ଶାପ ଦେଇ ଲୋଡ଼ୁଅଛୁ ମୋତେ
ରହ ରହ ମାତା ଗୋ ମୁଂ ପ୍ରସନ୍ନ ହୋଇଲ ହିଂ ତୋତେ ।୭୮
ଅବଶ୍ୟ ଯେ ପୁତ୍ର ତୋର ପ୍ରଥମ ଯୁଝରେ ହାରିବ
ଦୁଜ ଯୁଝରେ ମୋତେ ସୁମରଣା କରିବ ।୭୯
ପବନର ବୀର୍ଯ୍ୟେ ଜାତ ଯେ ତୋହୋର ପୁତ୍ର ଭୀମ
ଶତେ ସିଂଘର ଯେହାର ହୋଇବ ପରାକ୍ରମ ।୮୦
ମୁଂ ଯେତେବେଳେ ବସିବି ଯେହାର ଦକ୍ଷିଣ ପାଣି
ବ୍ରିକୋଦର ମୂରତି ହୋଇବ ବ୍ରହ୍ମାଣ୍ଡ ଶିରୋମଣି ।୮୧
ଯଦ୍ୟପି ବ୍ରହ୍ମା ବିଷ୍ଣୁ ମହେଶ୍ୱର ହୋଇବ
ବ୍ରିକୋଦର ମୂରତି ଦେଖି ସବୁନ୍ତି ଭୟେ ଉପୁଜିବ ।୮୨
ଯେତେବେଳେ କ୍ରୀଡ଼ାକଲୁ ନିରଞ୍ଜନ ଦେବତାଙ୍କୁ ଘେନି
ତୋହୋର ନାମ ଗୋଟା ଗୋ ପ୍ରତକ୍ଷେ ନିରଞ୍ଜନୀ ।୮୩
ପବନକଇ ଘେନିଣ ରମଣ କଲୁ ଗୋ ଆଜ ରାତ୍ରି
ପ୍ରଭଞ୍ଜନୀ ନାମ ତୋର ଆଜ ହୁଂ ଦେବୀ କୋନ୍ତୀ ।୮୪

ସତ୍ୟଯୁଗ ଅନ୍ତେ ତ୍ରେତୟା ଯୁଗେ ଗଉତମ ମହାମୁନି
ଅହଲ୍ୟା ମହାସତୀ ଗୋ ତାହାର ଭାବିନୀ ।୮୫
ଋଷିଙ୍କର ଘରେ ଉତପତ୍ତି ଅନାଦିରୂପ ଘେନି
ପିତାମାତାୟେ ନାମ ତୋର ଦିଲେ ପ୍ରଭଞ୍ଜନୀ ।୮୬
ସେ ଜନମେ ସହିଲୁ ତୁ ବୀର୍ଯ୍ୟଦାତା ମରୁତ
ମହାବଳବନ୍ତ ତୋର ତହୁଂ ଜାତ ହୋଇଲେ ହନୁମନ୍ତ ।୮୭
ତ୍ରେତୟା ଯୁଗେ ପ୍ରଦାନ ତୋତେ ହୋଇଲେ ଉତଙ୍ଗ
ପୁଣି ପବନେ ହୋଇଲା ତୋର ରତି ରଙ୍ଗ ।୮୮
ସେ ମହାବୀର୍ଯ୍ୟର ଭାରା ତୁହି ସିନା ସହୁ
ପୃଥାର ନିମନ୍ତେ ତୁହି ମହାଭାରା ଯେ ବହୁ ।୮୯
ଯେବେ କୋନ୍ତି ଭୋଜର ଘରେ ହୋଇଲୁ ଉତପତ୍ତି
ପ୍ରଥମରେ ତୋଷିଲୁ ଗୋ ଦୁର୍ଭାସା ମହାଯତି ।୯୦
ସେ ତୋତେ ପ୍ରସନ୍ନ ହୋଇଲେ ଦୟା ପ୍ରତିପାଳି
ଅଜପା ମହାମନ୍ତ୍ରେଣ ଦିଲେକ ଜପାମାଳୀ ।୯୧
ତୁ ଯେ ପରମ ବୈଷ୍ଣବୀ ଦେବୀ ଯେ ଅର୍ଣ୍ଣପୂର୍ଣ୍ଣା
ମୋତେ ସେ ଦୟାକର ଗୋ ପଣ୍ଡୁରାଜ ବାମା ।୯୨
ଶୁଣିଣ ସନ୍ତୋଷ ଯେ କୋଇନ୍ତା ହୋଇଲେ
ତୁ ମହତ ଗିରିବର ବୋଲିଣ ବୋଇଲେ ।୯୩
ମୋହୋ ଶାପ ତୋତେ ନୋହିବାକ ଆନ
ଥୋକାୟେ ଖଣ୍ଡ ହୋଇ ହୋଇବ ଦେବତାମାନ ।୯୪
ଜଗତଯାକ ତୋତେ ଆରାଧନା କରିବେ
ତୋହୋର ଥିଲା ଥାନେ ଦେବତାୟେ ବସିବେ ।୯୫
ବଦନ୍ତି ଅଗସ୍ତି ଶୁଣସି ମହାରଥା
ଶୁଣ ସାବଧାନେ ଭୀମସେନର ବାଳକାଳ କଥା ।୯୬
ଭୀମକୁ ଶୁଆଇଣ ଦେବୀ କୋନ୍ତ ଭୋଜର କୁମାରୀ
ରାନ୍ଧଣା ବିଧି ଯୋଗାଡମାନ ଦେବୀ ସାରି ।୯୭
ମାଦ୍ରୀ କୋଇନ୍ତାୟେ ଗଲେ ଗଙ୍ଗା ଯେ ସ୍ନାହାନେ
ପଣ୍ଡୁ ରହିଛନ୍ତି ଯେ ଉଦ୍ଦାଳକ ବନେ ।୯୮
ରାନ୍ଧଣା ଶାଳରେ ସେ ପଶିଲା ମାରୁତି
ପାକଶାଳେ ଯାଇ ମିଳିଲା ତତଡି ।୯୯
ଭାତ ତିଉଣ ଯେତେ ଥିଲାଟି ରାନ୍ଧଣା
ସବୁଠାରୁ ଅଧେ ଅଧେ ଭୁଞ୍ଜଇ ବାଳୁତ ଦୁଲ୍ଲଣା ।୧୦୦
ବାହୁଡ଼ିଣ ଆସି ଭୀମସେନ ସେହିଠାରେ ଶୁତେ
ସ୍ନାହାନ ସାରି ଅଇଲେ ଦେବୀ ଯେ କୋଇନ୍ତେ ।୧୦୧
ପଣ୍ଡୁ ବିଜେ କଲେ ନିତ୍ୟକର୍ମ ସାରି
ମଣୋହିଠାରେ ସେ ବିଜୟେ ଦଣ୍ଡଧାରୀ ।୧୦୨
କୋଇନ୍ତା ଦେବୀ ବିଜେ କଲେ ରାନ୍ଧଣାଶାଳରେ
ଦେଖିଲେ ଅଧେ ଅଧେ ନାହିଂ ରାନ୍ଧଣା ହାଣ୍ଡିରେ ।୧୦୩
ବାହୁଡ଼ି କହିଲେ ଯାଇ ପଣ୍ଡୁରାଜା ଆଗେ
ଭୋ ଦେବ ଅଧେ ଅଧେ ନାହିଂ ରାନ୍ଧଣା ଯୋଗାଡ଼ ପାଗେ ।୧୦୪
ପଣ୍ଡୁ ବୋଇଲେ ଶିଝିଲାର ପଂକୁ ଅନ୍ନ
ବିଶୋଇଲେ ହୁଅଇ ସେ ଅଳପ ବିଧାନ ।୧୦୫
ଆହୁତିକି ଆଧାର ଦିଲେ ଅନ୍ନ ଯେ ମେଞ୍ଚନ
ଦେବ ପିତୃ ଦେଇ ଆପଣେ କଲେକ ଭୋଜନ ।୧୦୬
ଏହିମତି ବାଳୁତ ଭୁଞ୍ଜଇ ନିତି ପ୍ରତି
ଦିନୁଂ ଦିନୁଂ ଆଧାରେ ବଢ଼ିଲା ପୀରତି ।୧୦୭
ପୁଆଇ ପୁଆଇ କରି ଭୁଞ୍ଜୁ ଭୁଞ୍ଜୁ ଅଳପ ରହିଲା
ଏହିମତ ବରଷ ପରିଯନ୍ତେ ଗଲା ।୧୦୮
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଚଉଠି ସୌରିବାର
ଉତ୍ତରାଷାଢ଼ା ନକ୍ଷତ୍ର ଭୋଗ ସେ ଦିନର ।୧୦୯
ବବନାମେ କରଣ ସିଦ୍ଧି ନାମେ ଯୋଗ
ଋଷଭ ସଂକ୍ରାନ୍ତିକି ଦ୍ୱାଦଶ ଦିନ ଭୋଗ ।୧୧୦
ସେ ଦିନ ପାକଶାଳେ ପଶିଣ ବାଳଶଷି
ମହାସରାଗ କରି ସମସ୍ତ ଗରାସି ।୧୧୧
ଭୁଞ୍ଜୁ ଭୁଞ୍ଜୁ ନନ୍ଦନ ସମସ୍ତ କଲା ଭକ୍ଷା
ଯୋଗାଡ଼ ସରିଲା ହାଣ୍ଡିମାନ ହେଲା ତୁଚ୍ଛା ।୧୧୨
ବାହୁଡ଼ି ଶୋଇଲା ଯାଇ ଶଯ୍ୟାରେ ଯୁଗତେ
ସ୍ନାହାନ ସାରି ପ୍ରବେଶ ହେଲେ ଦେବୀ କୋନ୍ତେ ।୧୧୩
ପଣ୍ଡୁ ବିଜେ କଲେ ଆସି ଆପଣା ଆସନେ
କୋଇନ୍ତାୟେ ବିଜେ କଲେ ପାକଶାଳା ଭୁବନେ ।୧୧୪
ପ୍ରଥମ ଓରେୟାରେ ଦେଖିଲେ ତହିଂ କିଛି ନାହିଂ
ଆଶ୍ଚିଜ ହୋଇଲେ ଦେବୀ ସମସ୍ତ ପାକ ଚାହିଂ ।୧୧୫
ବିସ୍ମୟେ ହୋଇ ପ୍ରବେଶ ହୋଇଲେ ପଣ୍ଡୁ ରାଜାଙ୍କର କତି
କେବଣ ଚରିତ ବୋଲି ପୁଛା କୟେ ପଣ୍ଡୁ ନୃପତି ।୧୧୬
କୋଇନ୍ତାୟେ ବୋଇଲେ ଦେବୀ ମଣୋହି ଯୋଗାଡ଼
କିଛି ହିଂ ନାହିଂ ଦେବ ହାଣ୍ଡିମାନଙ୍କର ।୧୧୭
ପଣ୍ଡୁ ପ୍ରତିବାଚ ତୁ ଥିର ହୋଇଥାଅ ପ୍ରିୟା
ତଦନ୍ତ କରି ଦେବୀ ବୁଝିବା ଆମ୍ଭେ ଯେହା ।୧୧୮

ଶୀତଳ ଦ୍ରବ୍ୟମାନ ଭୁଞ୍ଜିଲେ ନୃପମଣି
ଦିନ ଅସ୍ତ ଗଲା ପାହିଲା ରୟଣୀ ।୧୧୯
ପଣ୍ଡୁ ବୋଇଲେ ଆଜ କ୍ଷୁଧା ବଡ଼ ଲାଗି
ଦୁଗୁଣା ମଡ଼ଫୁଲି ରାନ୍ଧଣା କର ବେଗି ।୧୨୦
କୋଇନ୍ତା ମାଦ୍ରୀ ଯେ ପାକ ସଞ୍ଚା କଲେ
କବାଟ କିଳି ତିନିହେଂ ସ୍ନାହାନକୁ ଗଲେ ।୧୨୧
ବଦୟନ୍ତି ଅଗସ୍ତି ଶୁଣସି ଯୁଗପତି
ଭୀମସେନ ବାଳୁତ କଉତୁକ ରୀତି ।୧୨୨
ଶୋଇଲା ଠାବରୁ ଗୁଳୁଗୁଞ୍ଚ ମାରି ଉଠି
ରାନ୍ଧଣା ଶାଳେ ପଶି ପାକନ୍ତ କରଇ ଅଇଂଠି ।୧୨୩
ପଣ୍ଡୁ ଗୁପତ ହୋଇ ବସିଥିଲେ ପରବତେ
ଧାଡିକାରେ କ୍‌ବାଟ ଫେଡିଣ ପଶିଲେ ଗୃହଗତେ ।୧୨୪
ମଡ଼ଫୁଲି ଘରେ ଯେ ପଶିଲେ ଗୁପତ ହୋଇ
ଦେଖିଲେ ଭୀମସେନ ପାକନ୍ତ ସବୁ ଖାଇ ।୧୨୫
ବେସାଳିନ୍ତ କରେ ଘେନି ବିସ୍ତାର କରଇ ତୁଣ୍ଡ
ଯେବା ଗ୍ରାସକେ ଢୋକଇ ତ୍ରିପୁଡି କରଇ ପିଣ୍ଡ ।୧୨୬
ରାଗେଣ ପଣ୍ଡୁ ବୋଇଲେ କୋପ ସଂଘରି ନ ପାରି
ହାଣିମି ବୋଲି ସେ ଖଡ଼ଗ ବେଗେ ଲୋଡି ।୧୨୭
ସାଂଜୋୟା ଶାଳେ ପଶି ଆଣନ୍ତେ ଅସିବର
ବାହାର ହୋଇ ପଳାଇ ସେ ବାଳୁତ କୁମର ।୧୨୮
ଅସିପତ୍ର ଘେନି ରାୟେ ଅଛନ୍ତି ଗୋଡ଼ାଇ
ପବନହୁଂ ବେଗେ ବାଳୁତ କୁମର ପଳାଇ ।୧୨୯
ବନ କନ୍ଦର ପର୍ବତ ନିର୍ଝର ଅଟବ୍ୟା
ମହାରାଗ ଗୋଡାବନ୍ତି ପଣ୍ଡୁରାଜ ଦେବା ।୧୩୦
ଭୀମସେନ ପଳାନ୍ତେ ପଣ୍ଡୁ ଗୋଡାଇ ପଛକତି
ପଣ୍ଡୁର ପଛେ ଅଗ୍ନି ବ୍ରାହ୍ମଣେକ ହୋଇଣ ଧାମନ୍ତି ।୧୩୧
ପଣ୍ଡୁ ବୋଇଲେ ମୋହୋର ଅବଶ୍ୟ ନିୟମ
ନିଶ୍ଚୟେ ଆଜ ତୋର ଶିର ଛେଦିବିରେ ଭୀମ ।୧୩୨
କୋଇନ୍ତା ମାଦ୍ରୀ ଦୁହେଂ ସ୍ନାହାନ କରି ଆସୁଥିଲେ
ଧାଇଂ କୋଳ କରି ପଣ୍ଡୁ ରାଜାଙ୍କୁ ଧଇଲେ ।୧୩୩
ରାଗେଣ ମହାରାଜା ଯେ ଅନେକ ମନ୍ଦ ବୋଲି
କୋପେଣ ବେନି ଭାରିଯାନ୍ତ ପକାଇଲେ ପେଲି ।୧୩୪
ବିକଳ ହୋଇ କରି ବୋଇଲେ କୋଇନ୍ତାୟେ
ଅଗ୍ୟାନେ ଦୋଷ କଲା ବାଳୁତ ତନୟେ ।୧୩୫
କାହିଂର ପଣ୍ଡାୟେ ତୁମ୍ଭେ ଧର୍ମ ଦଇବତ
ପୁତ୍ର ଗୋଟିକ ମୋହୋର ରକ୍ଷା କରିବା ମହତ ।୧୩୬
ରୋଦନ କରିଣ ଯେ ପଳାଇ ପୁତ୍ର ଆଗେ
ଅସିବର ଉହାଇ ଗୋଡ଼ାଇ ପଣ୍ଡୁରାଗେ ।୧୩୭
ପଣ୍ଡୁର ପଛକତି ବିଚକ୍ଷଣ ବ୍ରାହ୍ମଣେକ ହୋଇ
ଅଗ୍ନି ଦେବତାୟେ ପଛେ ଅଛନ୍ତି ଗୋଡ଼ାଇ ।୧୩୮
ତାହାଙ୍କର ପଛକତି କୋଇନ୍ତାୟେ ଗୋଡ଼ାବନ୍ତି
ମାଦ୍ରୀଦେବୀ ପଛରେ ଧାପ ଦେଇଛନ୍ତି ।୧୩୯
ଯେମନ୍ତେ ପଳାଇ ସେ ଯେ ବାଳୁତ ନନ୍ଦନ
ଭୀମସେନ ପଳାଇଲା ଶତଷଠି ଯୋଜନ ।୧୪୦
ଉର୍ଦ୍ଧ୍ବବାହୁ ବୋଲିଣ ଯେ ପର୍ବତ ଗୋଟିଏ
ସନ୍ଧ୍ୟାବେଳେ ଝୁଣ୍ଟିଲା ତାହା ବାଳୁତ ତନୟେ ।୧୪୧
ତିନି ଯୋଜନ ଆୟତନ ସେ ପର୍ବତ ପ୍ରଚଣ୍ଡ
ଭୀମସେନ ଝୁଣ୍ଟନ୍ତେଣ ହୋଇଲା ମସିଗୁଣ୍ଡା ।୧୪୨
ସେ ପର୍ବତ ତଳେ ଅଛି ନଦୀ ଯେ ଗୋଟିୟେ
ତହିଂ ଯାଇ ବୁଡି ପଡ଼ିଲା ବାଳୁତ ତନୟେ ।୧୪୩
ରାଗେ ଡେଇଂ ପଡ଼ିଲା ପଣ୍ଡୁ ବାଳୁତ ଉପର
ବାମକରେ ଆକ୍ରେଷି ଧଇଲା ଭୀମସେନର ବାଳ ।୧୪୪
ଖଡ଼ଗ ଘେନିଣ ପଣ୍ଡୁ ହାଣି ଲୋଡଇ ନିର୍ଭରେ
ଖଣ୍ଡା ଧଇଲେ ଯାଇଂ ଦେବ ବୈଶ୍ଵାନରେ ।୧୪୫
କୋପେଣ ଉଚ୍ଛୁଡନ୍ତେ ପଣ୍ଡୁ ଦେବରାୟେ
ମାରିବି ଯେ ଦୁଷ୍ଟ ପୁତ୍ର ଛାଡ ହୋ ପଣ୍ଡାୟେ ।୧୪୬
ଅଗ୍ନି ବୋଇଲେ ରାଜା କୋପ କିମ୍ପା ଯେତେ
ଅଗ୍ୟାନ ବାଳକ ଯେହାର ଦୋଷ ଅଛି କେତେ ।୧୪୭
ଆହୋ ରାଜା ତୁମ୍ଭେ ଥିର କରନି ନିଶ୍ଵାସ
ବାଳ ଛାଡି ରାୟେ ଥିର ହୋଇ ବସ ।୧୪୮
କୁନ୍ତୀ ମାଦ୍ରୀ ଦୁହେଂ ରାଜା ବାମ ହସ୍ତକୁ ଧଇଲେ
କୌଣସି ମତେ ଚୂଳଗୋଟି ଛଡ଼ାଇ ନ ପାରିଲେ ।୧୪୯
ବୈଶ୍ଵାନର ବୋଇଲେ ବାଳୁତର କିସ ଦୋଷ ବାବୁ
ସଞ୍ଚପି କରିଣ କହନି ମୋତେ ସବୁ ।୧୫୦
ପଣ୍ଡୁ ବୋଇଲେ ତୁ ଶୁଣ ସୁଗ୍ୟାନୀ ଦ୍ଵିଜ ଶ୍ରେଷ୍ଠା
ପାକମାନ ସବୁ ମୋର କରଇ ଅଇଂଠା ।୧୫୧
ଭାରିଯା କହନ୍ତି ମୁନି ଜାଣଇଂ ଯେମନ୍ତ
ପାକ ନାଶ କଲାନି ଯେ ବର୍ଷ ପରିଯନ୍ତ ।୧୫୨

ଦେବ ପିତୃ ଅତିଥି ଅଗ୍ନି ଆଦି କରି
ଯେହାର ଉଚ୍ଛିଷ୍ଟମାନ ଦିଅଇ ସବୁଙ୍କୁହିଂ ନ ବିଚାରି ।୧୫୩
ବରଷକ ଦିନୁଂ ଯେହାର ଯେହେନେକ ପ୍ରକୃତି
ଯେ ମନ୍ଦ ଦୁଷ୍ଟକୁ ମୁଂ ଥୋଇବି କେମନ୍ତି ।୧୫୪
ଦଇନି କରୁଅଛି ପଣ୍ଡାଯେ ଯେହାର ପାଇଂ ନ ବୋଲ
ଯେହାର ବ୍ରତିଥିଲେ ମୋହୋର କାଳେହେଂ ନାହିଂ ଭଲ ।୧୫୫
ସମସ୍ତ କ୍ରିୟା ମୋର ଭାଙ୍ଗିଲା ମହାଦୁଷ୍ଟ
ବାଳୁତ କାଳୁଂ ଯେହାର ହୋଇଲା ଯେତେ ପେଟ ।୧୫୬
ବୈଶ୍ୱାନର ବୋଇଲେ ପଣ୍ଡୁ ଯେମନ୍ତ ତୋର କଥା
କଣକହ ଦୋଷକୁ ଦେଉ ଯେତେକ ଅବସ୍ଥା ।୧୫୭
ବାଳପୁଅ ଆବ୍ଭର ମାଛି ସଙ୍ଗେ ସରି
ଅଗ୍ୟାନ ମୂଢ଼ ଲୋକ ସେ ଯେଥକୁ ବିଚାରି ।୧୫୮
ତୁ ଯେ ବୋଇଲୁ ମୁଂ ଦିଅଇ ପିତୃ ଲୋକଙ୍କୁ
ପିତୃଲୋକେ ଆଶା କରନ୍ତି ବାଳୁତ ଉଚ୍ଛିଷ୍ଟକୁ ।୧୫୯
ଯେବେ ବ୍ରହ୍ମହତ୍ୟା ଗୋହତ୍ୟା କରିଥିବ
ସନ୍ତାନ ଥିଲେ ଶାସ୍ତି ନ ଦିଅଇ ଯମ ଦେବ ।୧୬୦
ଯେ ଅବା ପାତକ କଲା ମୂର୍ଖ ଯେ ଅଗ୍ୟାନେ
ପୁତ୍ର ଗୋଟିଏ ଅଛି, ଯେହାର ମୋକ୍ଷ କରିବା କାରଣେ ।୧୬୧
ସନ୍ତାନକୁ ଆଶ୍ର କରଇ ଯମର ବିଚାର
ତାହାକୁ ଶାସ୍ତି ଦେଇ ନ ପାରଇ ନାଶକର ।୧୬୨
ଅନେକ ପୁଣ୍ୟ କରି ଯେବେ ଅପୁତ୍ରିକ ହୋଇ ମରଇ
ଅନେକ ଅବସ୍ଥା ତାକୁ ଦିଅଇ ଜନ୍ତୁସାଇଂ ।୧୬୩
ଶଉଚ ଅଶଉଚ ହୋଇ ବ୍ରତିଥାଉ ବାଳ
ବଂଶକୁ କାରଣ ସେ ହୋଇଥାଇ ସର୍ବକାଳ ।୧୬୪
ବାଳୁତ ଅଇଂଠା ପାଇଲେ ପିତୃଗଣେ
ବହୁତ ସାନନ୍ଦ ତାଙ୍କର ଉପୁଜଇ ମନେ ।୧୬୫
ପଣ୍ଡୁ ବୋଇଲେ ଯେବେ ପିତୃଲୋକେ ହୋଇଲେ ତ୍ରିପୁତି
ଇଷ୍ଟଦେବତାମ୍ମାନନ୍ତ ଯେ ଅନ୍ନ ଦିଅଇ ମୁଁ ନିତି ।୧୬୬
ସେ ଧର୍ମ ମୋହର ନାଶ ଗଲା ହୋ ଦ୍ୱିଜବର
ଛାଡ଼ କି ନା ଖଡ଼ଗେ ଛେଦିବି ଯେହାର ଶିର ।୧୬୭
ଦେବତାଯେ କାହିଂ ଥାନ୍ତି ହୋ ମହାବୀରା
ଶରୀରରେ ସେ ନିଜ ଦେବତା ବଦନ୍ତି ଦୋହୋରା ।୧୬୮
ପ୍ରଥମେ ଶିର ତାଳୁରେ ବିଜେ କରନ୍ତି ବ୍ରହ୍ମା
କପାଳ ପାଟିରେ ହାଦେ ନାରାୟଣ ମହାତମା ।୧୬୯
ଚନ୍ଦ୍ର ସୂର୍ଯ୍ୟ ଦେବତା ଅଟନ୍ତି ଚକ୍ଷୁବେନି
ନାସିକାଯେ ବସଇ ପବନ ମହାଗ୍ୟାନୀ ।୧୭୦
ଦୁଇ ଆଡ଼େ ଯେ କର୍ଣ୍ଣସ୍ଥଳୀ ବେନି
ରୁଦ୍ର ଦେବତା ବସଇ ଭ୍ରୂକୁଟିଗଣ ଘେନି ।୧୭୧
ବେନି ଶ୍ରବଣେ ବସଇ ରାଯେ ଚଇତନ
ଗର୍ଭଭେଦି ବସଇ ରାଯେ ଶୂନ୍ୟ ନିରଞ୍ଜନ ।୧୭୨
ବତିଶ ଦନ୍ତ ଅଛି ଯେବଣ ବେନି ପାଟି
ବଜ୍ର ନିର୍ଘାତ ବସନ୍ତି ଗ୍ରହଗଣ ଘେନିଟି ।୧୭୩
ଅନୁସରି ରୁଚିର ସଦନ ମଉଳି
ଶୁକ୍ର ବୃହସ୍ପତି ବସନ୍ତି ବେନି ଯେ ଚହଳି ।୧୭୪
ରକ୍ଷ ତୁଲେ ବସଇ ଯେବଣ ଓଷ୍ଟ
ତହିଂ ସେ ବସଇ ଇନ୍ଦ୍ର ସୁର ଶ୍ରେଷ୍ଠ ।୧୭୫
ଗଣ୍ଡସ୍ଥଳ ଆବୋରି ବସନ୍ତି ପଞ୍ଚତିରିଶ ଦେବ୍‌ତା
କୃତ କୃତାନ୍ତକଗଣ ଆଦି ଜିତା ।୧୭୬
ସଲୀଳ ଶଇଳ ଶୋଭାବନ ସମୀର
ମନ ତଳଯେ ଯେ ଗ୍ୟାନ ବୁଦ୍ଧି କଣ୍ଠର ।୧୭୭
କଣ୍ଠର ତଳେ ବସନ୍ତି ଯେତେକ ଦେବତା
ହୃଦଗତେ ରୋମେ ବସନ୍ତି ନକ୍ଷତ୍ର ଅପ୍ରମିତା ।୧୭୮
ଦ୍ୱାଦଶ ବିଶ୍ୱଦେବା ବସନ୍ତି ହୃଦଗତେ
ସନକ ସନାତନ ବସନ୍ତି କରସ୍ଥଳ ଯୁଗତେ ।୧୭୯
ଚଉଦ ବିଦ୍ୟାଯେ ବସନ୍ତି ବେନି କରସ୍ଥଳୀ
ସାଧନ ତଳଯେ ବସନ୍ତି ଆକ୍ରଷଣ ମହାବଳୀ ।୧୮୦
ପ୍ରାକର୍ମ ଗ୍ୟାନବନ୍ତ ବଳବନ୍ତ ଶକତା
ବେନି ଭୁଜେ ବସନ୍ତି ସତାଇଶ ଦେବତା ।୧୮୧
ନାଭିଠାରୁ ଉପ୍‌ରକୁ ତାଳ ବ୍ରହ୍ମଦ୍ୱାର ଯାକେ
ଯେଥେଂ ଭୋଗ କରନ୍ତି ତେତିଶ କୋଟି ଦେବଲୋକେ ।୧୮୨
ପିତୃ ଦଇବତ ପୁରୁଷ ବସନ୍ତି ନାଭିମଣ୍ଡଳ ମାଡି
ସଂକଳ୍ପ ଉଦକ ଅନ୍ତେ ସେହୁ ଯା'ନ୍ତି ଛାଡି ।୧୮୩
ତିନି ଦିହୁଡ଼ିଯେ ଆକାଶକୁ ଉଜାଣି
ଧାତୁ ଭେଦି ତଳକୁ ବହଇ ନବଝର ପାଣି ।୧୮୪
ଉପରକୁ ବହଇ ଧାରେ ତଳକୁ ବହଇ ଧାରେ
ଆଗକୁ ବହଇ ଧାରେ ଧାରେକ ପଡଇ ଆକାଶରେ ।୧୮୫
ପୃଥିବୀ ଆପ ତେଜ ବାୟବ୍ୟ ଆକାଶ
ପଞ୍ଚଧାତୁ ଭେଦି ଯେ ଦ୍ୱାଦଶ ପୁରୁଷ ।୧୮୬

କାଳ କାମ ଅର୍ଥ ଧର୍ମ ଅନୁସ୍ୱାର ପାଞ୍ଚ
ସିଦ୍ଧ ପୁରୁଷମାନଙ୍କ ଯେ ଦୃଢ଼ ସଞ୍ଚ ।୧୮୭
ବେନି ଜାନୁ ମାଡି ନାଭି ମଣ୍ଡଳ ପରିଯନ୍ତେ
ଯୋଗ ପୁରୁଷମାନେ ଯେଥେ ବସନ୍ତି ପଞ୍ଚଶତେ ।୧୮୮
ତୁ ଯେ ବୋଇଲୁ ମୁଁ ଦେବତାଙ୍କୁ ଦିଅଇ ଅନ୍ନ
ଶରୀରେ ସେ ଥାନ୍ତି ନା ସମସ୍ତ ଦେବତାମାନ ।୧୮୯
ପଣ୍ଡୁ ବୋଇଲେ ଯେ ଭୂମିରେ ପତ୍ର ପାଡି
ନାମ ସଂକେତ କରି ଯେ କରସ୍ଥଳେ ପାଣି ଛାଡି ।୧୯୦
ପଣ୍ଡାଯେ ବୋଇଲେ ତାହା ଆମ୍ଭେ କହୁଁ ତୋହୋର ଆଗେ
ସେ ଅନ୍ନକୁ ପାଆନ୍ତି ଯେ ଅଷ୍ଟକୁଳାନାଗେ ।୧୯୧
ହଣ୍ଡିଆ ଚାଣ୍ଡାଳିଆ ଆମୁଆ କ୍ଷାଙ୍କରା
ଭାଲୁଙ୍କା ରାକ୍ଷସା କ୍ଷେପଣୀ କ୍ଷେତ୍ରପାଳା ।୧୯୨
ଯେତେକ ପିଶାଚ ବୀରମାନେ ଅଗଂଠା ଚଣ୍ଡ ବୋଲି
ପ୍ରତିବାଯେ ଭୁଞ୍ଜିଲେ ପତ୍ରେ ଦିଅଇ କର ତୋଳି ।୧୯୩
ପତ୍ରରୁ ଯାଇଣ ଯେବେ ପଡଇ ଭୂଇଂରେ
ତାହା ଆହାର କରନ୍ତି ଅଗଂଠା ଅଷ୍ଟବୀରେ ।୧୯୪
ପଞ୍ଚଅସୁର ଅଛନ୍ତି ହୋ ପଞ୍ଚଭୂତ ଆତ୍ମାକୁ
ବାହାରେ ମେଞ୍ଚାଯେ ଦେଲେ ସେ ଭୋଗ୍ୟ ହୋଅଇ
ତାହାଙ୍କୁ ।୧୯୫
ଚଣ୍ଡ ପ୍ରଚଣ୍ଡ ଦୃଦଣ୍ଡ ମହାକାଳ ଅନଳ
ସେ ମେଞ୍ଚିକି ଖାଇ ଜୀଅନ୍ତି ଯେମାନେ ରକ୍ଷାପାଳ ।୧୯୬
ବାହାର ମେଞ୍ଚିଯେ ନ ଦେଇ ଭୁଞ୍ଜନ୍ତି ଯେ ଅନ୍ନ
ଅସୁର ଭୋଜନ ହାଦେ ହୋଇଟି ସେଦିନ ।୧୯୭
ହିରଣଗର୍ଭା ବୋଲି ଅଷ୍ଟ ହସ୍ତୀବର ବିଧାନ
ପାଦ ଅରବିନ୍ଦେ ହୋଅଇ ଗୋପ୍ୟାନ ।୧୯୮
ପାଦ ଶଉଚ ଜଳରେ ସେ ହୁଅନ୍ତି ତ୍ରିପୁତି
ସମସ୍ତ ଦେବତାଯେ ଯେ ଶରୀରେ ଅଛନ୍ତି ।୧୯୯
ଜନଜନ୍ତୁ ଥିଲେ ସେ ଦେବତାଯେ ପାଆନ୍ତି ପୂଜା
ଆପଣେ ଅତି ତ୍ରିପୁତି ହୋଇଲେ ସମସ୍ତେ ହୁଅନ୍ତି ପୂଜା ।୨୦୦
ପଣ୍ଡୁ ବୋଇଲେ ହୋ ଦେବତାଯେ ହୋଇଲେ ତ୍ରିପୁତି
ଦୋହରା ଅଗ୍ନିରେ ମୁଁ ଆହୁରି ଦିଅଇ ନିତି ।୨୦୧
ଅଗ୍ନିକି ଅତ୍ରିପୁତି କଲେ ନାଶଯାଇ ପିଣ୍ଡ
ଯେ ଯେ ଅନୀତି କଲା ପୁତ୍ରର କେମନ୍ତେ ନ
କାଟିବି ମୁଣ୍ଡ ।୨୦୨
ପଣ୍ଡା ବୋଇଲେ ତୁ ନ ଜାଣି ହୁଡିଲୁ ଯେବେ
ଅଗ୍ନି ଦେବତାଯେ ଥାଆନ୍ତି ସବୁଙ୍କରି ଗର୍ଭେ ।୨୦୩
ସର୍ବ୍ୟେ ଅସର୍ବ୍ୟେ ଯେବେ କରଇ ଭକ୍ଷ
ସମସ୍ତ ଦହନ କରଇ ସେ ଅଗ୍ନି ପରତକ୍ଷ ।୨୦୪
ଅଗ୍ନି ଦେବତାଯେ ନ ଜାଣନ୍ତି ନା ଉଛିଷ୍ଟ
ସମସ୍ତ ଭକ୍ଷନ୍ତି ଯେ କ୍ରୋଟାନଳ ଦୃଷ୍ଟ ।୨୦୫
ଉଛିଷ୍ଟ ଅଣଉଛିଷ୍ଟ ସେ ନ ଜାଣନ୍ତି କିଛି
ଦହନ ପାନ ପୁରୁଷ ସେ ସମସ୍ତ ପାରେ ଭଛି ।୨୦୬
କହୁ କହୁ ରୋଷେଣ କହିଲେ ମହାତମା
ଆମ୍ଭେ ସେ ଦୋହରା ଅଗ୍ନି ବୈଶ୍ୱାନର ଦେବବ୍ରହ୍ମା ।୨୦୭
ତୁ ଆଜ ସିନା ଦେଖିଲୁ ହୋ ପଣ୍ଡୁ
ଦେଢ଼ବରଷ ହୋଇଲାନି ହୋ ଉଛିଷ୍ଟ ମାନ ଛାଡୁ ।୨୦୮
ସମସ୍ତ ଭକ୍ଷି ଆମେ ହୋଉ ଯେ ତ୍ରିପୁତି
ବାଳୁତଙ୍କର ଦୋଷ ଘେନିବାର ନୋହଇ ଯୁଗତି ।୨୦୯
ଅଗ୍ନିର ପ୍ରତିବାକ୍ୟେ ଶାନ୍ତ ପଣ୍ଡୁରାଜା
ତତକ୍ଷଣେ କେଶ ରାଜା ଛାଡିଲା ଆତ୍ମଜା ।୨୧୦
ପଣ୍ଡୁ ବୋଇଲେ ଯେବେ ବୈଶ୍ୱାନର ଦେବ
ତୁମ୍ଭ ନିଜ ସ୍ୱରୂପ ମୋତେ ଦେଖାଇବ ।୨୧୧
ଯେମନ୍ତେ ମୋହୋର ମନେ ପ୍ରତେ ଯାଇଂ
ନିଜ ସରୂପ ମୋତେ ଦେଖାଇବା ଗୋସାଇଂ ।୨୧୨
ପଣ୍ଡୁର ବଚନେ ବୋଲନ୍ତି ବୈଶ୍ୱାନର
ମୋହୋର ନିଜ ସରୂପ ଯେବେ ଦେଖିବାକୁ ଶରଧା
ତୋହୋର ।୨୧୩
ପଣ୍ଡୁ ବୋଇଲେ ଦେବ ସମ୍ପଦ ନିମନ୍ତେ
ନିଜ ଶରୀର ଦେଖାଇବା ମୋତେ ।୨୧୪
ପଣ୍ଡୁର ବଚନେ ସାନନ୍ଦେ ଅଗ୍ନି ଦଇବତେ
ଆପଣାର ନିଜ ଶରୀର ବିକାଶିଲେ ଜଗତେ ।୨୧୫
ମହା ଅନଳ ବିକାଶିଲା ଜ୍ୟୋତି
କୋଟିଯେ ତେଜ ହୋଇ ବିକାଶିଲେ ଅଗ୍ନି ମୂର୍ତ୍ତି ।୨୧୬
ମହା କାଳାନଳ ବିକାଶିଲା କାଯେ
ଦେଖିଣ ପଣ୍ଡୁକୁ ଲାଗିଲା ମହାଭଯେ ।୨୧୭
ଭଯେଣ ଅନ୍ତର ହେଲେ ନୃପମଣି
କୋଇନ୍ତା ମାଦ୍ରୀ ପଳାଇଲେ ବେନି ରାଣୀ ।୨୧୮
ମହାଭଯେ ପଣ୍ଡୁ ପଳାଇଲେ ବହନ

ଅଗ୍ନି ଦେବତା ପାଗୁଶେ ଅଛଇ ଭୀମସେନ ।୨୧୯
ଅନଳ ଜ୍ୟୋତିକି ତାର କିଛି ଭୟ ନାହିଂ
ଅଗ୍ନି ଦେବତାଙ୍କ କୋଳେ ଅଛି ରହି ।୨୨୦
ମହା ଭୟେ କରି ପଳାଇଲେ ନୃପବର
ବେନି ରାଣୀ ଘେନି ରହିଲେ ଯୋଜନକ ଅନ୍ତର ।୨୨୧
ଦୋହୋରାଙ୍କ ମୂର୍ତ୍ତି ଦେଖି ପଣ୍ଡୁ ନୃପତି
ଅଗ୍ନି ଦେବତାଙ୍କୁ କରଇ ବହୁତ ତୁଷ୍ଟି ।୨୨୨
ଜୟ ତୁ ବୈଶ୍ୱାନର ଅନାଦି ସିଦ୍ଧ ଦେବତା
ଜୟ ତୁ ବୈଶ୍ୱାନର ସୟଳ ଦହନ୍ତା ।୨୨୩
ଜୟ ତୁ ବୈଶ୍ୱାନର ଅନନ୍ତ କାଳବଞ୍ଚା
ଜୟ ତୁ ବୈଶ୍ୱାନର ଅନନ୍ତ ରୂପ ସଞ୍ଚା ।୨୨୪
ଜୟ ତୁ ବୈଶ୍ୱାନର ଅନାଦି ସିଦ୍ଧ ବ୍ରହ୍ମ
ଜୟ ତୁ ବୈଶ୍ୱାନର ଦାବାନଳ ମହାତ୍ମା ।୨୨୫
ପିଙ୍ଗଳ ଜଟାଶିର ରୂପ ଅନଳ ବ୍ରହ୍ମ
ଜୟ ତୁ ବୈଶ୍ୱାନର ଯଗ୍ୟଂରେ ପୂର୍ଣ୍ଣକାମ ।୨୨୬
ଜୟ ତୁ ଜୟ ଦେବ ଜ୍ୱଳିତ ଅନଳ
ହନ୍ଦୋଳା ଲହରୀ ଦେବ ତୁହି ସେ ମହାବଳ ।୨୨୭
ଜୟ ତୁ ଜୟ ତୁ ଦେବ କ୍ରୋଟ ଅନଳ ନାଥା
ବ୍ରହ୍ମ ନିରାକାର ମହାତ୍ମା ଆକାଶ କରତା ।୨୨୮
ଜୟ ତୁ ଜୟ ତୁ ଦେବ ଯୋଗ ଯେ ଅନଳ
ଜୟ ତୁ ଜୟ ତୁ ଦେବ ବଡ଼ବା ଅନଳ ।୨୨୯
ଜୟ ତୁ ଜୟ ତୁ ନିର୍ଘାତ ବଜ୍ର ସୁଚୀ
ଜୟ ତୁ ଜୟ ତୁ ଦେବ ପାତାଳ ଅନଳ ରୁଚି ।୨୩୦
ଜୟ ତୁ ଜୟ ତୁ ଦେବ ମହାବ୍ରହ୍ମ ଅଗ୍ନି
ଜୟ ତୁ ଜୟ ତୁ ସୁର ତରଙ୍ଗ ମୁନି ।୨୩୧
ଜୟ ତୁ ଜୟ ତୁ ଦେବ ନିତ୍ୟକର୍ମ ଦୋହୋରା
ଜୟ ତୁ ଜୟ ତୁ ଦେବ ସର୍ବଭକ୍ଷ ସଚରା ।୨୩୨
ଜୟ ତୁ ଜୟ ତୁ ଦେବ ସ୍ୱାହା ସ୍ୱାଧା ଚରଣେ ନମାମି
ମୁହିଂ ତୋହୋର ଚରଣ ତଳେ ଶତେ ସହସ୍ର ଦଣ୍ଡ
ପରମାଣି । ୨୩୩
ଗୋପ୍ୟାନ ପୁରୁଷ ସ୍ୱାମୀ ତୁ ସମସ୍ତ ପ୍ରତିପାଳୁ
ନିରାକାର ଦଇବତ ତୁ ଚଳୁ ଯେ ଅଚଳୁ ।୨୩୪
ଶରଦ ଶିଶିର ହେମ ବସନ୍ତ ଗ୍ରୀଷମ ବରଷା
ଯେ ଛଡ଼ା ଋତୁ ହେତୁ ତୁ ଦ୍ୱାଦଶ ଯେ ମାସା ।୨୩୫
ଋତୁକେ ହେଉ ତୁ ଆନ ଆନ ଯେ ମୂରତି
ତୋହୋର ଉଚ୍ଛିଷ୍ଟ ଖାଇ ସଚରାଚର ବର୍ତ୍ତି ।୨୩୬
କାହିଂରେଣ ଅଛୁ ନାଥ ହାଦେ କାହିଂରେଣ ନାହୁଂ
ଆହାରେଣ ଦର୍ପ ତୋହୋର ଗୋପ୍ୟାନେ ଦେଖାଉ ।୨୩୭
ଶ୍ୱେତ ରାଜା ଯଗ୍ୟେଂ ଦେବ ଅନେକ ଘୃତ ଭକ୍ଷି
ଲୁଦୁବୁଦୁ ହୋଇ ଦେବ ମନ୍ଦାଗ୍ନି ହୋଇଅଛି ।୨୩୮
କେବଣ ପୁରୁଷ ସଞ୍ଚପି କହିବ ତୋହୋର ଚିହ୍ନବର୍ଣ୍ଣ ଗୋଟି
ଯେକ ଲୟେ ସରଇ ମେଦିନୀ ନବ କୋଟି ।୨୩୯
ସ୍ୱେଦଜ, ଅଣ୍ଡଜ, ଉଦ୍ଭିଜ, ଜରାୟୁଜ ଚାରିଖାନି
ବିନା ଅଗ୍ନିରେ ତ କେହି ନ ବ୍ରତନ୍ତି ପ୍ରାଣୀ ।୨୪୦
ଭିତରେ ଦେବ ତୁହି ବାହାରେ ଦେବ ତୁହି
ମହା ଅନଳ ରୂପେଣ ଦେବ ସକଳ ଦ୍ରବ୍ୟ ଦହି ।୨୪୧
ନାନା ପାତକ ଯେବେ କରିଥିବ ପ୍ରାଣୀ
ହୋମ କରିଣ ତୋର ତହିଂ ପକାବନ୍ତି ଆଣି ।୨୪୨
ଅଭୟା ପୁରୁଷ ତୁ ସମସ୍ତ ଦେବ ବହୁ
ଆପଣା ଶରୀରରେ ଲାଇ ଦେବ ସର୍ବପାପ ଦହୁ ।୨୪୩
ସାଧୁ ମାହେଶ୍ୱରୀ ସେ ଦକ୍ଷର କୁମାରୀ
ତବ ତେଜ ଶୀତଳ କଲେ ହୋଇଲେ ମନୋହାରୀ ।୨୪୪
ଶ୍ରୀ ଦୋହୋରା ଅଗ୍ନିଙ୍କର ସେବେ ପଦ୍ମପାଦେ
ଧର୍ମ ବର୍ଦ୍ଧିତ ହୋଇବ ସ୍ୱାମୀ ତୋହୋର ପ୍ରସାଦେ ।୨୪୫
ଶ୍ରୀ ବୈଶ୍ୱାନର ଅଗ୍ନିଙ୍କର ଚରଣେ ମୁହିଂ ଦାସ
ଶୂଦ୍ରମୁନି ସାରୋଳା ଦାସ ଜନ୍ମେ ଜନ୍ମେ ଅଭ୍ୟାସ ।୨୪୬
ଯେସନେକ ସ୍ତୁତି ଯହୁଂ କଲେ ପଣ୍ଡୁ ନୃପତି
ମହାତେଜ ଛାଡି ଅଗ୍ନି ହୋଇଲେ ଶାନ୍ତିମୂର୍ତ୍ତି ।୨୪୭
ପଣ୍ଡୁ କୋଇନ୍ତା ମାଦ୍ରୀ ହୋଇଲେ ସନ୍ନିଧାନ
ଦେଖି ଅଗ୍ନି ଦେବତା ହୋଇଲେ ତୋଷମନ ।୨୪୮
କୋଇନ୍ତା ମାଦ୍ରୀ ଦେବୀ ଦୁହେଂ ଆୟେ
ପ୍ରଣପତ୍ୟ ହେଲେ ଅଗ୍ନି ଦେବତାଙ୍କ ପାୟେ ।୨୪୯
ଭୀମସେନଙ୍କୁ ଆଶ୍ୱାସନା କଲେ ବୈଶ୍ୱାନର
ଶାନ୍ତି ହୋଇ ମହାତ୍ମା ତାଙ୍କୁ ଦିଲେ ବର ।୨୫୦
ବୈଶ୍ୱାନର ବୋଇଲେ ତୋହୋର ଆହାରେ ଏଡ଼େ ଶ୍ରଦ୍ଧା
କ୍ରୋଟ ଅନଳେ ତୋତେ ହୋଉ ବଡ଼ କ୍ଷୁଧା ।୨୫୧
ଆହାରେ ଅତ୍ରିପୁତି ହୁଅସି ରେ ଭୀମା
ଆହୋ ପଣ୍ଡୁୟେ ପୁତ୍ର ତୋହୋର ଉଦ୍ଧରିବ ସୀମା ।୨୫୨
ପଣ୍ଡୁ ବୋଇଲେ ଯେ ଆଜହୁଂ ଯେତେ ଅତ୍ରିପୁତି

ଅସଂକ୍ଷେପକ ଖାଇବ ଯେ କାହୁଂ ଦେବି ନିତି ।୨୫୩
ଦୋହୋରାଯେ ବୋଇଲେ ଆମ୍ଭେ ହୋଇଲୁ ପ୍ରସନ୍ନ
ନିତିପ୍ରତି ରାନ୍ଧଣା ଯେହାକୁ ହୋଇବ ବିଦ୍ୟମାନ ।୨୫୪
ଗଉରୀ ଶଉରୀ ଆବର ନଳବିଧି
ଯେ ତିନି ପାକ ଯେହାକୁ ହୋଇବ ପରସିଦ୍ଧି ।୨୫୫
ଅକଟା ଅବଟା ଯେ କଣ୍ଠା ଯୋଗାଡ଼ର
ଯେହା ହସ୍ତ ଲାଗନ୍ତେ ହୋଇବ ଅମିୟ ରସସାର ।୨୫୬
ଭୋଜନେ ଅତ୍ରିପ୍ତି ହୋଉ ତୋହୋର ବଳ
ସଂଗ୍ରାମେ ଦୃତି ଯମ ତେଜ ଅନର୍ଗଳ ।୨୫୭
ଶୃଙ୍ଗାରେ ଅତ୍ରିପ୍ତି ହୁଅସିରେ ଭୀମ
ବ୍ରିକୋଦର ମୁରତିକି ତୋର କେହି ନୋହିବେ ସମ ।୨୫୮
ଶୁଣ ବଇବସ୍ୱତ ମନୁ ବଦନ୍ତି ଅଗସ୍ତି
ପଣ୍ଡୁ ପ୍ରଣପତ୍ୟ ହେଲେ ବୈଶ୍ୱାନର କତି ।୨୫୯
ବହୁତ ପ୍ରସନ୍ନ ହେଲେ ବାଳୁତ କୁମରକୁ
ବୈଶ୍ୱାନର ପ୍ରସନ୍ନ ହୋଇଲେ ଭୀମସେନକୁ ।୨୬୦
ବର ଦେଇ ବୈଶ୍ୱାନର ଗଲେ ଅନ୍ତର୍ଧାନେ
ପଣ୍ଡୁ ବାହୁଡ଼ି ବିଜେ କଲେ ମନୋହର ବନେ ।୨୬୧
ଭୀମସେନକୁ କାଖେ ଘେନିଲେ ପଣ୍ଡୁ ରାଜା
ତାହାଙ୍କର ପଛରେ ଗୋଡ଼ାବନ୍ତି ବେନି ଯେ ଭାରିଯା ।୨୬୨
ପ୍ରବେଶ ହୋଇଲେ ଯାଇ ଶତଶିଂଗ ପର୍ବତେ
ପୁତ୍ର ଭାରିଯା ଘେନି ରହିଲେ ନିଶ୍ଚିନ୍ତେ ।୨୬୩
ବଇବସ୍ୱତ ମନୁ ପଚାରିଲେ ଅଗସ୍ତି ମହାଦେବ
କୋଇନ୍ତାଙ୍କ କଥା ତ ଅତି ଅସମ୍ଭବ ।୧୬୪
ଧର୍ମ ଦେବତାଙ୍କର ସେ ସହିଲା ଆରଦୋଳି
ପବନ ଦେବତା ଯେ ସେ ଅଟଇ ମହାବଳୀ ।୨୬୫
ମାନବୀ ହୋଇଣ ସେ ଦେବତାଙ୍କୁ ଦିଅଇ ରତି
ଯେ ବଡ଼ ଆଶ୍ରିଜ କଥା କହିବା ଅଗସ୍ତି ।୨୬୬
ଶୁଣ ହୋ ମନୁ ପୁରୁଷ ବଦୟନ୍ତି ଅଗସ୍ତି ମହାମୁନ୍ୟେ
ସତ୍ୟଯୁଗେ ଅଞ୍ଜନା ଯେ ଅଟଇ ପୂର୍ବଜନ୍ମେ ।୨୬୭
ସେକାଳେ ପବନ ଦେବତା ସଙ୍ଗରେ ପୀରତି
ଈଶ୍ୱର ବୀର୍ଯ୍ୟ ଆଣି ଦିଲାକ ତଡ଼ତି ।୨୬୮
ସେ ବୀର୍ଯ୍ୟ ସଂଘରିଲାକ ଗର୍ଭଗତେ
ତହୁଂ ଜନ୍ମ ହୋଇଲେ ବୀର ହନୁମନ୍ତେ ।୨୬୯
ସେ ହନୁମନ୍ତଟି ତ୍ରେତୟା ଯୁଗେ ମହାମଲ୍ଲ
ଶ୍ରୀ ରାମଚନ୍ଦ୍ର ତାହାକୁ ବୁଝିଲେକ ଭଲ ।୨୭୦
ସତ୍ୟଯୁଗରେ ଯେ ଅଞ୍ଜନା ରୂପ ଧରି
ଯେବେ କୋନ୍ତୋଭୋଜ ରାଜାର ଘରେ ଅବତରି ।୨୭୧
ଦ୍ୱାପର ଯୁଗେ ଯେ ସେ ଭାରା ନିବାରିବା ଅର୍ଥେ
ପବନ ଦେବତା ଆସି ସମ୍ଭର୍ବେ ଭେଟିଲା ଯୁଗତେ ।୨୭୨
ତହୁଂଟି ଜାତ କଲେ ଭୀମସେନ ତାହାର ପୁତ୍ର
ଯେ ଯୁଗେ ଭାଗ ଯେ କରିବ ରସାଂଗତ ।୨୭୩
ଶତଶିଂଗ ବହୁତ କଲା କୋଇନ୍ତାଙ୍କୁ ବିନୟେ
କୋଇନ୍ତାଙ୍କୁ ପଣ୍ଡୁ ରାଜା କଲାକ ମହାଭୟେ ।୨୭୪
ମୁହିଂ ଅଗ୍ୟାନ ଯେ ଗ୍ୟାନ ମୋର ନାହିଂ
ତୁ ଅନାଦି ଅପର୍ଣ୍ଣା ଅଛୁ ଯେହେନେକ ରୂପ ବହି ।୨୭୫
ଶତଶିଂଗ ପର୍ବତ କହନ୍ତେ ତୁ ଅଟୁ ମହାଦେବୀ
ଆଜ୍ଞୁଂ କୋଇନ୍ତା ଗୋ ତୋତେ ଥିବି ମୁହିଂ ସେବି ।୨୭୬
କହିଣ ପର୍ବତ ଯେ ହୋଇଲା ଗୋପ୍ୟାନ
କୋଇନ୍ତାଯେ ବିନୟ ଭାବେ ଖଟନ୍ତି ପବନ ।୨୭୭
ଯୁଝେଷ୍ଠି ଭୀମସେନ କୋଇନ୍ତାଙ୍କର ପୁତ୍ର ବେନି
ଅତିସ୍ନେହେ ପାଳନ୍ତି ମାଦ୍ରୀ ମକରଧ୍ୱଜର ନନ୍ଦିନୀ ।୨୭୮
ଭୀମସେନର ସପତ ବରଷ ଉତ୍ତାରେ
ଦୁଷ୍ଟ ପ୍ରକୃତି ଦେଖି କୋଇନ୍ତାଯେ କରନ୍ତି ବିଚାରେ ।୨୭୯
ବଳବନ୍ତ ମୂର୍ଖ ଯେ ହୋଇବ ଅପଣ୍ଡିତ
ଧନୁ ଶହସ୍ର ବିଦ୍ୟାରେ ଯେ ନୋହିବ ନିର୍ଜିତ ।୨୮୦

**

## ୧୭. ସହଦେବଙ୍କ ଜନ୍ମ

ଶୁଣ ହୋ ଯୋଗେଶ୍ୱର ବୋଲନ୍ତି ବ୍ରହ୍ମବେତ୍ତା
ମାଦ୍ରୀକି ଛାଡ଼ିଣ ଯେ ଅଇଲେ ଦେବୀ କୋଇନ୍ତା ।୧
ମହାନିଶା କାଳେ ସେ ମଦନସେନର କୁମାରୀ
ଉତ୍ତାନସାହୀ ହୋଇ ପଲଙ୍କେ ଅଛଇ ପହୁଡ଼ି ।୨
କରେଣ ଦୁର୍ଭାସାଙ୍କର ଘେନି ଅଛି ଜପାମାଳୀ
ଭୋ ଧରମ ଦେବତା ବୋଲି ପଞ୍ଚମନେ ଭାଳି ।୩
ପଣ୍ଡୁନାମ ଜପଇ ସେ ଜପାମାଳା ଘେନି
ଅନ୍ତରୀକ୍ଷେ ମିଳିଲେ ପାଇ ପଣ୍ଡୁ ନୃପମଣି ।୪
ଦେଖିଣ ତ୍ରାସିଲେ ସେ ସୁନ୍ଦରୀ ମଦନା
ତୁମ୍ଭର ଆମ୍ଭର ସ୍ୱାମୀ ଛାଡ ବ୍ରତ ସିନା ।୫
ତୁହି କିମ୍ପା ନିଶା ରାତିରେ ଅଇଲୁ ଆମ୍ଭର ତହିଂକି
ମୁହିଁ ତ୍ରାସିଲି ସ୍ୱାମୀ ତୁମ୍ଭର ଆଗତ ଦେଖି ।୬

ପଣ୍ଡୁ ବୋଇଲେ ଦୁର୍ବାସାଙ୍କର ଜପାମାଳୀ ହସ୍ତେ
ଘେନି ସୁମରିଲୁ ମୋତେ
ଯେହାକୁ ବଞ୍ଚାଇ ମୁଂ ଯିବଇଂ କେମନ୍ତେ ।୭
ଦେବେ ଦାନବେ ଯାହା ନ ପାରନ୍ତି ମେଣ୍ଟି
ଅବଶ୍ୟ ସ୍ୱପ୍ରାଣ ବିସର୍ଜିବି ମୃଧୁନା ଯିବ ଫାଟି ।୮
ସଞ୍ଚୟେ ମୃତ୍ୟୁ ମୋହୋର ହୋଇଲା ନିକଟ
ମୃତୁକାଳେ ପୁଅନ୍ତ ମୁଂ ନ ପାଇଲି ଭେଟ ।୯
ଯେ ମନ୍ତ୍ର ମେଣ୍ଟିଲେ ଗୋ ନ ବ୍ରତଇ ସଂଘାତୁଣୀ
ଶୃଙ୍ଗାର କଲେ ଗୋ ମରିବି ଯେହିକ୍ଷଣି ।୧୦
ଆବର କିପାଇଂ ରମଣ ଛାଡିବି ମନ ଇଚ୍ଛା
ଅକାରଣେ ସୁନ୍ଦରୀ ଗୋ ତୁ କଲୁ ମନ ବାଞ୍ଛା ।୧୧
ମାଦ୍ରୀ ବୋଇଲେ ମୁଂ ନ ଚିନ୍ତଇ ତୋତେ
ଅଦଭୁତେ ନୃପତି ଭେଟିଲୁ କିମ୍ପା ମୋତେ ।୧୨
ବିଶେଷେ ଅଟଇ ଯେ ନିର୍ଜନ ସ୍ଥାନ ଭୂମି
କୋଇନ୍ତାଯେ ନାହାନ୍ତି ମାଦ୍ରୀକି କଟାଳିଲେ ପଣ୍ଡୁ ନୃପମଣି ।୧୩
ପଲଙ୍କ ଉପରେ ବସିଲେ ଦେବ ମାଡି
ମଦନାକୁ କୋଳ କଲେ ସ୍ୱାମୀ ସେ ଶାପକୁ ଭୟ ଛାଡି ।୧୪
ମାଦ୍ରୀ ସୁମରଇ ନାରାୟଣ ତ୍ରାହି ତ୍ରାହି
ମୁହିଂ ସ୍ତିରୀ ମାତ୍ରକ ପୁରୁଷ ବଳବନ୍ତା ଯେହି ।୧୫
ପୁରୁଷ ବଳ କଲେ ସ୍ତିରୀ କାହିଂ ରଖି
ଯେହେନେକ ଘଟସୂତ୍ର ବିହି ଅଛି ଲେଖି ।୧୬
ଧର୍ମ ଧର୍ମ ସୁମରଇ ମଦନ ମହାଦେବୀର ନନ୍ଦନୀ
ପଣ୍ଡୁ ବିବସନ କଲେ ମାଦ୍ରୀକି କୋଳେ ଘେନି ।୧୭
ଯହିଂ ସେ ପାତକ ତହିଂ କାମଦେବର ଅନୀତି
ସମସ୍ତ ବୁଡ଼ାଇଲା ଅନଙ୍ଗ ସେନାପତି ।୧୮
ବିପରୀତ ବୁଦ୍ଧି ପ୍ରସରଇ ନାଶିବାର ବେଳେ
ମଦନାକୁ ପଣ୍ଡୁରାଜା ଧଇଲେକ ଯାଇଂ ବଳେ ।୧୯
ମାଦ୍ରୀର ତୁଳେ ଯେ ବଢ଼ିଲା ଶୃଙ୍ଗାର
ହାସ୍ୟ ଉଲ୍ଲାସ ଯେହ୍ନେ କାମର ବେଭାର ।୨୦
ପଣ୍ଡୁ ରାଜାର ରମଣ ନାହିଂ ତିନିଶ ବରଷ ପରିଯନ୍ତେ
କାମ ସଂହାରଣ କଲା ସେ ମହାଯୋଗ ମତେ ।୨୧
ଅନେକ ରମଣ ବଢ଼ିଲା ପୀରତି
ବହୁତ ଶୃଙ୍ଗାରେ ସେ ଅଶାନ୍ତି ଅତ୍ରିପୁତି ।୨୨
ଦଇବର ଘଟସୂତ୍ର କେହୁ ଆନ କରି
ଯାହା ସେ ଶାପ ଦିଲେ ଅଗ୍ନିକାର ବ୍ରହ୍ମଚାରୀ ।୨୩
ହେଠ ମାଠ ପୁରୁଷ ଶୃଙ୍ଗାର ଅପ୍ରମିତେ
ନିର୍ଘାତ ନାରାଜେକ ପଡ଼ିଲା ଅଦଭୁତେ ।୨୪
ମହାଋଷିଙ୍କର ଶାପ କେହୁ ଆନ କରିପାରୁ
ବୋଇଲେ ଯେ ତୋହୋର ଶୃଙ୍ଗାର କାଳେ ଅକାଳ
କାଣ୍ଡ ପଡୁ ।୨୫
ସେ ଋଷିର ଶାପ ଯେ ଅନ୍ୟଥା ନୋହିଲା
ପଣ୍ଡୁର ଶୃଙ୍ଗାର କାଳେ ଅଦଭୁତେ ଆସି ନାରାଜ ପଡ଼ିଲା ।୨୬
ଆକାଶୁଂ ପଡ଼ିଲା ଶର ପଣ୍ଡୁ ରାଜାର ପିଠି
ମାଦ୍ରୀର ହୃଦଗତେ ବାହାର ହୋଇଗଲା ଫୁଟି ।୨୭
ମହାତେଜ ବଳବନ୍ତା ଅଭିଶାପ ବାଣ
ଅଦଭୁତେ ପଡ଼ି ହରିଲା ପଣ୍ଡୁ ମାଦ୍ରୀଙ୍କର ପ୍ରାଣ ।୨୮
ଶୃଙ୍ଗାର ପ୍ରାନ୍ତ ଯେ ହୋଇଲା ନିକଟ
ବୀର୍ଯ୍ୟ ପ୍ରଦାନ ହୋଇଲା ଉଭୟ ସଂକଟ ।୨୯
ଯେବଣ ବୀର୍ଯ୍ୟ ପଡ଼ିଲା ମାଦ୍ରୀର ଗର୍ଭଗତେ
ସେ ଅମୋହ ରେତ ନାଶ ନୋହିଲା ଯୁଗତେ ।୩୦
ମାଦ୍ରୀ ପ୍ରାଣତ୍ୟାଜ ହୋଇଲା ଶରଘାତେ
ସଇନ୍ଦୁ ପୁତ୍ରେକ ଯେ ହୋଇଲା ଉପଜାତେ ।୩୧
ଶୁଣ ହୋ ମହାରାଜା ବଦୟନ୍ତି ଅଗସ୍ତି
ସୋମବଂଶ ଠାକୁର ପଞ୍ଚୁ କଟକେ ଅଧିପତି ।୩୨
ଯାହା ସେ ଅରଜିଲା କର୍ମର ବିପତ୍ତି
କାହାର ବେଳେ ସେ ହୋଇବ ଅନିତି ।୩୩
ଅଲଘିତ କର୍ମ ପଣେ ଯେ ପଣ୍ଡୁ ନାଶଗଲା
କେହି ଜଣେ ପୁତ୍ର ଯେ ଆବୋରନ୍ତା ନୋହିଲା ।୩୪
ପୁତ୍ର ଗୋଟି ପଡ଼ିଅଛି ଭୂମିର ମଧ୍ୟେ
ବାଳୁତ କୁମର କାନ୍ଦଇ ଅତି କ୍ରୋଧେ ।୩୫
ଯେମନ୍ତର ସମୟେ ଯେ ରୟଣୀ ପ୍ରଭାତ
ଉଦେଗିରି ପ୍ରଦକ୍ଷିଣ ଦିନକର ନାଥ ।୩୬
ତ୍ରୈଲୋକ୍ୟ ବ୍ରହ୍ମାଣ୍ଡର ସେ ଅଟଇ ଦିବ୍ୟ ଆଖି
ପାପ ପୁଣ୍ୟ ବିପଦ ସମ୍ପଦ ସମସ୍ତ ହିଂ ଦେଖି ।୩୭
ଲକ୍ଷେକ ଯୋଜନେ ଥାଇ ଦେଖିଲେ କରତାର
ମାତା ପିତା ପ୍ରାଣତ୍ୟାଗ ପୁତ୍ରେକ ହୋଇଛି ଅବତାର ।୩୮
ଗହନ ଘୋର ଅରଣ୍ୟ ଅଟଇ ଅଟବ୍ୟା
ଶତଶିଂଗେ ପ୍ରାଣତ୍ୟାଗ ପଣ୍ଡୁ ରାଜଦେବା ।୩୯

ଅନେକ ଜୀବଜନ୍ତୁ ମାନେ ତହିଁ ଛନ୍ତି ପୂରି
ବ୍ୟାଘ୍ର ଭାଲୁକ ଗ୍ରିଧିନୀ ପ୍ରେତ ତହିଁ ଭୂରି ।୪୦
ଯେମାନେ ବେଢ଼ିଲେ ସେ ଅପାର ଗହନ
ମୃତୁପିଣ୍ଡ ବାଳୁତ କୁମାର ଭକ୍ଷିତେ କଲେ ମନ ।୪୧
ବାଳୁତ ପୁତ୍ର ଚିଆଇଂ ଚାହିଂଲା ମୁଖ ଟେକି
ପିଚାଶ ଜୀବମାନେ ଗଲେ ସର୍ବେ ଜଳି ।୪୨
କୁମାର ନୟନ ତେଜ ଯେ କାଳାନଳ ଜାଣି
ଶୂନ୍ୟ ପୁରୁଷମାନେ ତ୍ରାସିଲେ ଗଗନ ଯେ ମଣି ।୪୩
ଆକାଶେଣ ଦେଖିଲେ ଯେ ଗଗନ ବିହାରୀ
ଚିନ୍ତାମଣି ପୁରୁଷ ସେ ସକଳ ଚିନ୍ତାକାରୀ ।୪୪
ଆଗ୍ୟାଂ ଦିଲେ ଅଶ୍ୱିନୀ କୁମାରନ୍ତ ରାଇ
ପୁତ୍ରକଇ ତୁମ୍ଭର ହୋ ସମ୍ଭାଳ ବେଗେ ଯାଇ ।୪୫
ସେ ପୁତ୍ରରେ କାରଣ ହୋଇବ ତୁକୁଇ ।୪୬
ବିରଞ୍ଚି ନାରାୟଣଙ୍କର ଆଗ୍ୟାଂ ପରମାଣେ
ଅଶ୍ୱିନୀ କୁମାରେ ଯାଇ ଭେଟିଲେ ତତକ୍ଷଣେ ।୪୭
ଦେଖିଲେ ନନ୍ଦନ ପଡ଼ିଛି ଉତ୍ତାନସାହୀ ହୋଇ
କୁମାରକୁ କୋଳ କରି ଧଇଲେ ଗୁଣଗ୍ରାହୀ ।୪୮
ଜାତ ହୋଇଲା ପୁତ୍ର ଯେ ସମ୍ଭାଳନ୍ତା ନୋହିଲା
କ୍ଷୀର ପାନ ନ ପାଇ ଯେ କୁମର ନାଶ ଗଲା ।୪୯
ଅଶ୍ୱିନୀ କୁମାରେ କୋଳ କରି ଧଇଲେ ବାଳ ବଛି
ଦେଖିଲେ ପୁତ୍ର ଶରୀରେ ପ୍ରାଣ ନାହିଂ କିଛି ।୫୦
କାନ ଫୁଙ୍କନ୍ତି ମହାତ୍ମା ଆଦିତ୍ୟର ଶିଷି
ମୃତୁ ଗତ କୁମର ସେ ଚେତନା ନ ଦିଶି ।୫୧
ଭାଳନ୍ତି ଅଶ୍ୱିନୀ କୁମାରେ ସୁଂ ଯେ ମନ୍ଦକୃତ୍ୟ କଲି
ଅକାରଣେ ଆସି ମୃତୁ ପିଣ୍ଡକୁ ଛୁଇଂଲି ।୫୨
ଗଗନେ ସେ ଆଗ୍ୟାଂ ମୋତେ ଦିଲେ କରତାର
ବୋଇଲେ ପୁତ୍ର ଯାଇଂ ସମ୍ଭାଳସି ତୋହୋର ।୫୩
ଆସନ୍ତେଣ ପୁତ୍ର ଗୋଟି ପ୍ରାଣେ ନାଶ ଗଲା
ମୋହୋର ଧରିବା ଯାଏ ଆତ୍ମା କିମ୍ପାଇ ନ ଥିଲା ।୫୪
ଯେ ମୃତୁ ପିଣ୍ଡକୁ ପକାଇ ବାହୁଡ଼ିଣ ଗଲେ
ଦେବତାଯେ ହାସ୍ୟ କରିବେ ନା ମୋତେ ସେ ଦେଖିଲେ ।୫୫
ଯେତେକ ବିଚାରି ସେ କୁମାର ମହାତ୍ମା
ଆପଣା ତନୁରୁ ସେ କାଢିଲେ ଅର୍ଦ୍ଧ ଆତ୍ମା ।୫୬
ସେ ମୃତୁ ପିଣ୍ଡରେ ପ୍ରବେଶ କରାଇଲେ ଜୀବ
ଜୀବନ୍ୟାସ ମନ୍ତ୍ର ପଢ଼ିଲେ ଅଶ୍ୱିନୀକୁମାର ଦେବ ।୫୭
ଅମୃତ ଭାବେ ଚାହିଂଣ ଫୁଙ୍କିଲେ କାନ ଗୋଟି
ଗତ ଆତ୍ମା କୁମର ଚାହିଂଲା ଯେକ ଦୃଷ୍ଟି ।୫୮
ଆପଣା ତହୁଂ କାଢି ଭରି ଦିଲେ ଯହୁଂ ଜୀବ
ତେଣୁ କରି ଅଶ୍ୱିନୀ କୁମାରେ ନାମ ଦିଲେ ସହଦେବ ।୫୯
ତୋଷେଣ ବର ଦିଲେ ପ୍ରସନ୍ନ ଅଶ୍ୱିନୀ
କୁମାରଙ୍କ ପ୍ରସନ୍ନେ ହୋଇଲା ମହାଗ୍ୟାନୀ ।୬୦
ଅତି ଆନନ୍ଦେ ଆଶ୍ୱିନ କୁମାରେ ବୋଇଲେ
ଭୂତ ଭବିଷ୍ୟ ବ୍ରତମାନେ ଦିଶୁ ତୋ ନୟନେ ।୬୧
ସର୍ଗ ମଞ୍ଚ ପାତାଳ ଚଉଦ ଭୁବନ-
ବ୍ରହ୍ମା ବିଷ୍ଣୁ ମହେଶ୍ୱର ନାନା ଜୀବମାନ ।୬୨
ସମସ୍ତ ମରିମାଣି ତୁ ଜାଣିମୁ ଭଲେ
ଶରୀର ସଂସାର କଥା ଜାଣିବୁ ହସ୍ତକୁ ଚାହିଁଲେ ।୬୩
ପଚାରିଲେ ସମସ୍ତ କଥା ତୁ କହିବୁ
ଏ ମୋହୋର ବଚନେ ମହାଜ୍ଞାନୀ ହୋଇବୁ ।୬୪
କୁମାର ଆଗ୍ୟାଂ ଦିଲେ ସେ ବିଶ୍ୱ ଦେବତାଙ୍କୁ
କୋଇନ୍ତାଯେ ଆସିବା ଯାଏ ସମ୍ଭାଳି ଥାଅ ପୁତ୍ରକୁ ।୬୫
ସହଦେବଙ୍କୁ ଦିଲେ ନେଇ ବିଶ୍ୱଦେବତାଙ୍କର କୋଳେ
ଚଳିଲେ ଅଶ୍ୱିନୀ କୁମାର ଆକାଶ ମଣ୍ଡଳେ ।୬୬

**

## ୧୮. ରାଜପୁତ୍ରମାନଙ୍କର ଅସ୍ତ୍ରଶିକ୍ଷାର ବିବରଣୀ

### ଯୁଧିଷ୍ଠିରାଦିଙ୍କର ଅସ୍ତ୍ର ପରୀକ୍ଷା

ବସନ୍ତ ଋତୁ ସେ ଫାଲଗୁନ ମାସ
ବହୁଳ ପକ୍ଷ ତୃତୀୟା ଶୁକ୍ରଙ୍କ ଦିବସ ।୧
ହସ୍ତା ନକ୍ଷତ୍ର ଯେ ବତିଶ ଦଣ୍ଡ ଭୋଗ
ବାଣିଜ୍ୟ ନାମେ କରଣ ଶୂଳ ନାମେ ଯୋଗ ।୨
ଅଗ୍ନିକୋଣେ ଯୋଗିନୀ ନାରାୟଣୀ ମୂର୍ତ୍ତି
ସପତମେ ଚନ୍ଦ୍ର ଯେ ପଞ୍ଚମେ ବୃହସ୍ପତି ।୩
ଯେସନେକ ଯୋଗ ଅନକୂଳ ବାଢ଼ି
ବିଦ୍ୟା ପରୀକ୍ଷ ନିମନ୍ତେ ଶୁଭ ବେଳା ଧରି ।୪
ଯେକା ହୋଇ ଗୁରୁ ପଶିଲେ ଘୋର ବନେ
ରାତ୍ରେ ବିଜେ କଲେ କୁଣ୍ଡଳୀ ନଦୀ ସନ୍ନିଧାନେ ।୫

କୋଶେ ପରିଯନ୍ତେ ନେଲେ ବନ କାଟି
କୁଣ୍ଡଳା ନାମେ ଦେଖିଲେ ଯେକ ପର୍ବତ ଗୋଟି ।୬
ସେ ପର୍ବତ ଉପରେ ଥିଲା କୃଷ୍ଣ ଅଗ୍ର ବୃକ୍ଷେ
ନାରାଜେ ଅଧେକ ତାହା ଛେଦିଲେ ପ୍ରତକ୍ଷେ ।୭
ସେ ଖମ୍ବ ଉପରେ ବସାଇଲେ ଖଡ଼ିକା ଗୋଟିଯେ
ତହିଂର ଉପରେ ବସାଇଲେ ଶୃଙ୍ଗଧାନ ଗୋଟିଯେ ।୮
ତହିଂର ଉପରେ ଗରଗଡ଼ ଗୋଟିଯେ ଯେ ଥୋଇ
ଗରଗଡ଼ ଉପରେ ସୋରିଷ ଗୋଟିଯେ ବସାଇ ।୯
ଯେସନେକ ଉପାଯେ କଲେ ଦ୍ରୋଣେ ତହିଂ
ରାଜପୁତ୍ର ମାନେ ଯେହା ନ ଜାଣନ୍ତି କେହି ।୧୦
ବାହୁଡ଼ି ଅଇଲେ ଭରଦ୍ୱାଦଶଙ୍କ ସୁତେ
କୁମରନ୍ତ ଘେନିଗଲେ ବିଦ୍ୟା ପରୀକ୍ଷ ନିମନ୍ତେ ।୧୧
ସେ ନଦୀର ତୀରେ ରହିଲେ ଭରଦ୍ୱାଦଶଙ୍କ ତନୁ
କର୍ଣ୍ଣର ହାଥରେ ଗୁରୁ ଦିଲେ ପ୍ରଥମେଣ ଧନୁ ।୧୨
ବୋଇଲେ ନାରାଜ ପୂରୋଇ ନିରୋପନିରେ କର୍ଣ୍ଣ
କିସ କିସଇ ଦିଶଇ ରେ ପର୍ବତର ସ୍ଥାନ ।୧୩
କର୍ଣ୍ଣ ଚାହିଂଲା ଯେ ନାରାଜ ପୂରୋଇ
ବେନି ଜାନୁ କମ୍ପିଲା ଯେ ଥରହର ହୋଇ ।୧୪
ଆକ୍ରଷଣ କରି ଯେ ଚାହିଂଲା ବୀର କର୍ଣ୍ଣ
ଗୁରୁଙ୍କର ମୁଖ ଚାହିଂ ବୋଇଲେ ବଚନ ।୧୫
ପର୍ବତ ଗୋଟିଯେ ଦିଶଇ ଗୁରୁ ଦୂରେ
ଖମ୍ବ ଗୋଟିଯେ ଦିଶଇ ତହିଂର ଉପରେ ।୧୬
ତହିଂର ଉପରେ ଖଡ଼ିକା ଦିଶଇ ଗୋଟିଯେ
ଖଡ଼ିକାର ପରେ ଦିଶେ ଶୃଙ୍ଗଧାନ ଗୋଟିଯେ ।୧୭
ଶୃଙ୍ଗାଧାନ ଉପେର ଗୁରୁ ହେ ଅଛଇ ଗରଗଡ଼ ପୁଣ
ଆନ କିଛି ହିଂ ନ ଦିଶଇ ବେନି ଯେ ନୟନ ।୧୮
ସୋରିଷ ନ ଦିଶଇ ବୋଇଲେ ଗୁରୁ ଦ୍ରୋଣେ
ଚାରିପାଦେ ବିଦ୍ୟା ତ ନୋହିଲା ସଂପୂର୍ଣ୍ଣେ ।୧୯
କର୍ଣ୍ଣ ହସ୍ତରୁ ଧଇଲେ ଅଜଙ୍ଗ ନାମା ଧନୁ
ଅଶତ୍ଥମା ହସ୍ତେ ଦିଲେ ଭାରଦ୍ୱାଦଶଙ୍କର ତନୁ ।୨୦
ତୁ ମୋହୋର ନନ୍ଦନରେ କ୍ଷତ୍ରିୟ ପୁତ୍ର ଗୋଟି
ଧନୁରେ ନାରାଜ ପୂରୋଇ କର ବାବୁ ଦୃଷ୍ଟି ।୨୧
କିସ କିସ ଦୃଶ୍ୟ ବାବୁରେ ହୋଇବାକ ତୋତେ
ନିରୋପି କହନି ବାବୁ ମୋହୋର ଅଗ୍ରତେ ।୨୨
ପିତାର ଆଗ୍ୟାଂରେଣ ନାରାଜ ପୂରୋଇଣ ଶିକ୍ଷି
ଆକ୍ରୋଷିଣ ବୋଇଲାକ ତାତ ପର୍ବତେକ ଦିଶି ।୨୩
ତହିଂର ଉପରେ ଦିଶଇ ଖମ୍ବ ଯେ ଗୋଟିଯେ
ଖମ୍ବର ଉପରେ ଦିଶଇ ଖଡ଼ିକା ଗୋଟିଯେ ।୨୪
ଅନ୍ତରେ ଗରଗଡ଼ ଗୋଟିଯେ ଦିଶଇ ତାତ
ଆନ କିଛି ନ ଦିଶଇ କହିଲା ବଳବନ୍ତ ।୨୫
ଛାଡ ଧନୁ ବୋଲି ଦିଲେ ଯୁଝେଷ୍ଟିଙ୍କର ହସ୍ତ
ଧନୁରେ ନାରାଜ ପୂରୋଇ ନିରୋପନ୍ତି କୌନ୍ତେ ।୨୬
ଯେତେବେଳେ ଧନୁ ଆକ୍ରୋଷିଲେ ଯୁଝେଷ୍ଟି
ଆକ୍ରଷଣ କରନ୍ତେ କମ୍ପଇ ବେନି ମୁଷ୍ଟି ।୨୭
ବନସ୍ତ ଭିତରେ ଦିଶଇ ପର୍ବତ ଗୋଟିଯେ
ପର୍ବତ ଉପରେ ଦିଶଇ ଖମ୍ବ ଯେ ଗୋଟିଯେ ।୨୮
ଖମ୍ବର ଉପରେ ଅଛି ଖଡ଼ିକା ଗୋଟିଯେ
ଆନ କିଛି ନ ଦିଶଇ କହିଲି ଗୁରୁ ହେ ।୨୯
ଛାଡ଼ ଛାଡ ଧନୁ ବୋଲି ବୋଇଲେ ଭାରଦ୍ୱାଦଶଙ୍କ ତନଯେ
ସଂପୂର୍ଣ୍ଣ ବିଦ୍ୟା ନ ଦିଶଇ ଯେତେ ଜଣ ଠାୟେ ।୩୦
ଦ୍ରି ଯୋଧନ ହସ୍ତେ ଦ୍ରୋଣେ ଦିଲେକ ନେଇ ଧନୁ
ନାରାଜ ପୂରୋଇ ନିରୋପଇ ଧୃତରାଷ୍ଟ ତନୁ ।୩୧
ଧନୁ ଆକ୍ରଷିଣ ବୋଲଇ ଧୃତରାଷ୍ଟି
ଅପାର ଦୂରେ ଦିଶଇ ଧବଳ ପର୍ବତ ଗୋଟି ।୩୨
ଖମ୍ବ ଗୋଟିଯେକ ଦିଶଇ ତହିଂର ଉପରେ
ଖଡ଼ିକା ଗୋଟିଯେ ଦିଶଇ କିଞ୍ଚିତ୍ ମାତ୍ରକରେ ।୩୩
ଆନ ତହିଂ କିଛି ନ ଦିଶଇ ଶୁଣିମା ଗୁରୁ ହେ
ଦ୍ରୋଣେ ବୋଇଲେ କିଛି ହିଂ ତୁ ନ ପାଇଲୁ ସନ୍ଦେହେ ।୩୪
ଦ୍ରିଯୋଧନ ହସ୍ତରୁ ଧନୁ ଯେ ଛଡ଼ାଇ
ଧୁଶାସନ ହସ୍ତେ ଅଜଙ୍ଗ ଧନୁ ଦିଲେ ନେଇ ।୩୫
ଦେଖରେ ଧୁଶାସନ କିସ କିସ ଦିଶି
ଗୁରୁଙ୍କର ବଚନେ ନାରାଜ ପୂରୋଇ ଆକ୍ରଷି ।୩୬
ବନସ୍ତ ଭିତରେ ପର୍ବତେକ ଦିଶଇ ତାତ
ମେଘମାଳମାନ ଦିଶଇ ଅପ୍ରମିତ ।୩୭
ଛାଡ ଛାଡ ବୋଲି ଧୁଶାସନ କରୁ ଧନୁ ଘେନି
ଭୀମସେନ ହସ୍ତରେ ଦିଲେକ ଗୁରୁ ଦ୍ରୋଣି ।୩୮
ନାରାଜ ପୂରୋଇ ନିରୋପ ରେ ଭୀମସେନ
କିସ କିସ ଦିଶଇ କହ ସ୍ୱରୂପ ବଚନ ।୩୯

କହଇ ଭୀମସେନ ଯେ ଶୁକଳ ପର୍ବତ
ଖମ୍ଭ ଗୋଟିଯେ ଦିଶଇ ବିଦ୍ୟମାନ ସାକ୍ଷାତ ।୪୦
ଖଡ଼ିକା ଗୋଟିଯେ ଦିଶଇ ଗୁରୁ ହେ
ଆନ କିଛି ନ ଦିଶଇ ବୋଇଲେ ସନ୍ଦେହେ ।୪୧
ବୋଇଲେ ଦୁର୍ଯୋଧନ ଗଦା ବିଦ୍ୟାରେ ପରିପୂର୍ଣ୍ଣ
ସମସ୍ତ ଭ୍ରାଥମାନେ ଯେହି ରୂପେ ପୁଣ ।୪୨
ଛାଡ ଛାଡ ବୋଲି ହସ୍ତରୁ ଧନୁ ଘେନି
ସନ୍ନିଧେଣ ରାଇଲେ କୁମାର ଫାଲଗୁନି ।୪୩
ଅଙ୍ଗଙ୍ଗ ଧନୁ ଦିଲେ ତାହାର ଯେ ହସ୍ତେ
ନାରାଜ ପୂରୋଇ ବାବୁ କର ଦୃଷ୍ଟି ପାତେ ।୪୪
ନାରାଜ ପୂରୋଇ ସେ ନିରୋପଇ ଅରଜୁନ
ଗୁରୁଙ୍କର ଅଗ୍ରତେ କହଇ ଫାଲଗୁନ୍ୟ ।୪୫
ଆଠ ସହସ୍ର ଆଠ ଶତ ଅଠାଇଶି ପହଣ୍ଡେ
ପର୍ବତ ଉପରେ ଦିଶଇ ବୃକ୍ଷର ଅର୍ଦ୍ଧ ଖଣ୍ଡେ ।୪୬
ତହିଂର ଉପରେ ଦିଶଇ ଖଡ଼ିକା ଗୋଟିଯେ
ତହିଂର ଉପରେ ଅଛି ଶୃଙ୍ଗଧାନ ଗୋଟିଯେ ।୪୭
ଶୃଙ୍ଗଧାନ ଉପରେ ଗରଗଡ଼ ଯେ ଅଛଇ
ତହିଂର ଉପରେ ସୋରିଷ ଗୋଟିଯେ ଦିଶଇ ।୪୮
ଖମ୍ଭକୁ ବିନ୍ଧବି କି ଖଡ଼ିକାକୁ ବିନ୍ଧିବି
କହ ଗୁରୁ ହେ ଶୃଙ୍ଗଧାନକୁ ନାରାଜ ସନ୍ଧିବି ।୪୯
ଗରଗଡ଼କୁ ବିନ୍ଧିବି କି ସୋରିଷକୁ ବିନ୍ଧିବି ସନ୍ଦେହେ
କାହାକୁ ବିନ୍ଧିବି ମୋତେ ଆଗ୍ୟାଂ ହୋଉ ଗୁରୁ ହେ ।୫୦
ଦ୍ରୋଣେ ବୋଇଲେ ବାବୁ ଛାଡ ଛାଡ ଧନୁ
ତୁ ସେ ଭାରାଭର ଉଶ୍ୱାସିବୁ ଯେ ମଧ ଭୁବନୁଂ ।୫୧
ଅର୍ଜୁନ ପୂରୋଇ ଅଛି ଦିବ୍ୟ ଶର
ଦେଖୁ ଅଛନ୍ତି ବେଢି ସର୍ବ ରାଜକୁମର ।୫୨
ଅର୍ଜୁନ ବୋଇଲା ଗୁରୁ ହେ ପୂରୋଇଲି ଶର
ନ ବିନ୍ଧିଲେ ଦୋଷ ଯେଥେଂ ଅଛଇ ଅପାର ।୫୩
ଦ୍ରୋଣେ ବୋଇଲେ ବାବୁ ତୁ ଦୃଢ଼ କରସି ମୁଷ୍ଟି
ନିଶ୍ଚଳ ହୋଇ ଖମ୍ଭ ଖଡ଼ିକା ଧାନ ଗରଗଡ଼ ଗୋଟି ।୫୪
ସମସ୍ତେ ତହିଂରେ ଯେ ହୋଇଥିବେ ନିଶ୍ଚଳ
ତହିଂ ଉପରେ ସୋରିଷ ଗୋଟିଯେ ହୋଇବ ବେନିଫାଳ ।୫୫
ଯେହେନେକ ସ୍ୱରୂପ ନାରାଜ ବିନ୍ଧ ବାବୁ
ବିନ୍ଧିଲେ ଜଗଜିତା ତୁହି ରେ ହୋଇବୁ ।୫୬
ଦ୍ରୋଣଙ୍କର ବଚନେ ସାନନ୍ଦ ଫାଲଗୁନି
ହୃଦଗତେ ଲୟେ କଲା ଅବଲୋକନ ଶସ୍ତ୍ର ଘେନି ।୫୭
କିଞ୍ଚିତ ପ୍ରାକ୍ରମେ ସେ ବିନ୍ଧିଲା ସୂତ୍ର ଶର
ଅନ୍ତରୀକ୍ଷେ ପଡ଼ିଲା ସେ ସୋରିଷ ଉପର ।୫୮
ବିଦ୍ୟାର ସ୍ୱରୂପ ଦେଖ ହେ ମହୀପାଳ
ନାରାଜ ପଡ଼ି ସୋରିଷ ହୋଇଲା ବେନି ଫାଳ ।୫୯
ଖମ୍ଭ ଖଡ଼ିକା ଧାନ ଗରଗଡ଼ ନ ଟଳିଲା
ଦୁଇଫାଳ ହୋଇ ସୋରିଷ ସେହି ଗରଗଡ଼ରେ ରହିଲା ।୬୦
ପ୍ରତକ୍ଷେ ବିଦ୍ୟା ଦେଖିଲେ ଦ୍ରୋଣ ଗୁରୁ
ସାଧୁ ସାଧୁ ଧ୍ୱନି ଗୋଟିଯେ ଶୁଭିଲା ଆକାଶରୁ ।୬୧
ଦେଖି ପରମ ସାନନ୍ଦ ଭାରଦ୍ୱାଦଶଙ୍କ ଶିଷି
ବାବୁ ପ୍ରଶୁରାମଙ୍କର ବିଦ୍ୟା ତୋହୋର ତହିଂ ଅଛି ।୬୨
ଯେତେ ବିଚାରି ସେ ରଷିକୁଳ ବନ୍ଧ
ତୁହି ସେ ଭାର ବାବୁ ନିବାରିବୁ ପ୍ରତଛ ।୬୩
ଆବର ଯେମାନଙ୍କରେ କିସ ପ୍ରୟୋଜନ
ବାହୁଡି ଶିଷ୍ୟନ୍ତ ଘେନି ଅଇଲେ ବାରୁଣାବନ୍ତ ଭୁବନ ।୬୪

■ ■

## କୌରବ ପାଣ୍ଡବାଦିଙ୍କର ଅସ୍ତ୍ର ପରୀକ୍ଷା

ଅଗସ୍ତିଙ୍କି ପଚାରିଲେ ବଇବସ୍ୱତ ମନୁ
ଯେଥ ଉତ୍ତାରୁ କେବଣ କୃତ କଲେ ଭାରଦ୍ୱାଦଶଙ୍କ ତନୁ ।୧
ପୁଣ କେତେହେଂକ ଦିନ ବହି ଯାଆନ୍ତେ
ହୃଦଗତେ ବିଚାର କଲେ ଶ୍ରୟା ଦେବୀ ସୁତେ ।୨
ଗୁପତ ପରୀକ୍ଷ ଆମ୍ଭେ କରାଇଲୁ ନିରୁତେ
ଯେବେ ବିଦ୍ୟା ପରୀକ୍ଷ କରିବା ଦେଖନ୍ତୁ ସମସ୍ତେ ।୩
ତହୁଂ ଶିଷ୍ୟନ୍ତ ଘେନି ଗୁରୁ ବେଗେ ଚଳି ଗଲେ
ରାଜାର ସିଂଘଦ୍ୱାରେ ଯାଇଣ ପ୍ରବେଶ ହୋଇଲେ ।୪
ଧୃତରାଷ୍ଟ୍ର କୃପ ଆଚାର୍ଯ୍ୟ ଯେ ସୋମଦତ୍ତ
ବାଲହିକ ବିଦୁର ଅଛନ୍ତି ସମସ୍ତ ।୫
ଭୀଷ୍ମଙ୍କର ଦ୍ରୋଣେ ବୋଇଲେ ପୁଣ ବାକ୍ୟନ୍ତ
ଶସ୍ତ୍ର ଶାସ୍ତ୍ରତ ପାଇଲେ ପୁତ୍ରେ ବହୁତ ।୬
ଆମ୍ଭର ବିଦ୍ୟା ତୁମ୍ଭର ଦେଖିବାର ଉଚିତ
ଶୁଣିଣ ସନମତ କଲେକ ବହୁତ ।୭
ଭୀଷ୍ମେ ବୋଇଲେ ଯେ ବିଦୁରଙ୍କୁ ଚାହିଂ
ଦ୍ରୋଣେ ବୋଇଲେ ବିଦ୍ୟା ପରୀକ୍ଷ ପାଇଂ ।୮

ସଭା ସମ୍ଭର ହୋ କର ତୁମ୍ଭେ ଯାଇ
ଦାଣ୍ଡେ ଘୋଷଣ ଦିଆଅ ଚାରଗଣ ରାଇ ।୯
ଶୁଣିଣ ତକ୍ଷଣେ ବିଦୁର ଚଳି ଗଲେ
ନଗ୍ରେ ଘୋଷଣ ଦିଆଇ ସମସ୍ତ ଗୁଣ୍ଠ କଲେ ।୧୦
ସୁବର୍ଣ୍ଣର କଳସ ଖଞ୍ଜିଲେ ଦିବ୍ୟ ରତ୍ନ
ମୁକୁତାର କ୍ରୋଣ ଲମ୍ବିତ ବିଚିତ୍ର ବିତପନ ।୧୧
ବିଚିତ୍ର ସଭାୟେକ କଲେ ବିଦ୍ୟମାନ
ମିଳିଲେ ସଭାୟେ ଯେ କ୍ଷତ୍ରି ବଶ୍ୟ ବିପ୍ରଜନ ।୧୨
ନଗ୍ର ନର ନାରୀ ମିଳିଲେ ସମସ୍ତ
କୁମାରମାନେ ମିଳିଲେ କରେ ଅସ୍ତ୍ର ଶସ୍ତ୍ର ।୧୩
ନାନା ବାଦ୍ୟ ବଜାଇଲେ କଲେ ଶଙ୍ଖଧ୍ୱନି
ସୂତ୍ର ଦେଖାଇଲେ ଯେ ଯାହାର ଶସ୍ତ୍ର ଘେନି ।୧୪
ଦେଖି ସଭାଙ୍କନେ ହୋଇଲେ ଚମତ୍କାର
ଯେକକୁ ଆରେକ ଯେ ତେଜ ମହା ପରଖର ।୧୫
ବିଦୁର କହନ୍ତେ ହାଦେ ଧୃତରାଷ୍ଟ୍ର ଜାଣି
ଜଣେ ଜଣେ ପ୍ରତି ସନ୍ତୋଷ ବଖାଣି ।୧୬
ନାନା ଶସ୍ତ୍ର ବିଦ୍ୟା ଦେଖାଇଲେ ସର୍ବେ
ସାଧୁ ସାଧୁ ଅର୍ଜୁନ ବୋଲି ନଗ୍ରେ ଶୁଭିଲା ଯେକ ରାବ ।୧୭
ଭୀମ ଦ୍ରିଯୋଧନ ମେଳନ୍ତି ଗଦାଯୁଦ୍ଧ
ଅଶତ୍ଥମା ଯାଇଂ କଲେ ମଧେଣ ବିରୋଧ ।୧୮
ଅର୍ଜୁନ ଧନୁ ଆକ୍ରୋଷି କଲା ଅଗ୍ନି ଶର
ପ୍ରଜ୍ୱଳିତ ବହନି ଉଠିଲା ବ୍ରହ୍ମାଣ୍ଡର ।୧୯
ପୁଣ ବାରୁଣା ଶର କଲାକ ସର୍ବସାଚୀ
ପବନା ଶସ୍ତ୍ର ଘାୟେ ପ୍ରଖର ବହୁଅଛି ।୨୦
ପବନାସ୍ତ୍ର ମେଘାସ୍ତ୍ର ବିଜୟାସ୍ତ୍ର ମାଳା
ମେଘା ଶସ୍ତ୍ରେ ପର୍ବତ ସ୍ରିଜଇ ଇନ୍ଦ୍ର ବଳା ।୨୧
ଅନ୍ତର୍ଧ୍ୟାୟେ ହୋଇ ଚଳଇ ଶସ୍ତ୍ରଘାତ
କ୍ଷଣେ ରଥ କ୍ଷଣେ ଗଜ କ୍ଷଣେ ଅଶ୍ୱଗତ ।୨୨
କ୍ଷଣେ ତୁରଙ୍ଗ ଗତ କ୍ଷଣେ ଭୂମିଗତ
ଲୁହା ଶରେକ ପୁଣ ବିନ୍ଧିଲା ଶର ଘାତ ।୨୩
ସଭାର ସମସ୍ତେ କରନ୍ତି ଧନି ଧନି
ସାଧୁ ସାଧୁ ଶସ୍ତ୍ର ବିନ୍ଧଇ ଫାଲଗୁନି ।୨୪
ଦ୍ରିଯୋଧନ ବୋଇଲା ଅଶତ୍ଥମାକୁ ରାଇ
ସମସ୍ତ ବିଦ୍ୟା ତ ଅଛି ତୋହୋର ତହିଂ ।୨୫
ଶତେ ଭାଇ ଘେନି ହୋଇଲେ ପୁଣ କତି
ଦତ୍ୟ ବିନାଶନେ ଯେସନେକେ ପଶୁପତି ।୨୬
ତଦନ୍ତରେ ପୁଣ କର୍ଣ୍ଣ ହୋଇଲାକ ଆସି
ବାଳଅର୍କ ଜାଣି ଶରୀର ଜ୍ୟୋତି ଦିଶି ।୨୭
ଯେତେକ ଶର ଦେଖାଇଲା ବୀର ପାର୍ଥ
ତୁଲା ଶହସ୍ର କଲା ସେ ରାଧେବର ସୁତ ।୨୮
ଦ୍ରିଯୋଧନ ଦେଖି ଯାଇଂ କଲା କୋଳାଗ୍ରତ
ଆଜ୍ଞୁଂଣ ସଖା ମୋତେ ହୋଇଲୁ ଭୋ ମୈତ୍ର ।୨୯
ଅଙ୍ଗ ଦେଶ ରାଜ୍ୟ ତୁ ଭୁଞ୍ଜିବୁ ବିପୁଳ
କର୍ଣ୍ଣ ବୋଇଲା ତୁ ହୋ ଶୁଣ ମହୀପାଳ ।୩୦
ଅର୍ଜୁନ ତୁଲେ କରାଅ ମୋତେ ଯୁଦ୍ଧ
ମୁଂ ତାହାକୁ ଜିଣି ପାରଇ ରଣ ମଧ ।୩୧
କୃପ ଆଚାର୍ଯ୍ୟେ ବୋଇଲେ ଅର୍ଜୁନ ରାଜାର କୁମର
ସାରଥିର ତନୟେ ହୋଇ ଯେତେକ ଗର୍ବ ତୋହୋର ।୩୨
ତୋହୋର ମାତା ପିତାକଇ କର ଯା ଅନୁମତ
ପଛେଣ ଯୁଦ୍ଧ କର ଅର୍ଜୁନ ସଙ୍ଗତ ।୩୩
ଶୁଣି କରି କର୍ଣ୍ଣ ଯେ ହୋଇଲା ନ୍ୟୁନପକ୍ଷ
ଦ୍ରିଯୋଧନ ତାହାକଇ ଆବୋରିଲା କକ୍ଷ ।୩୪
ଶୂରବନ୍ତ ଜନ କି ହୁଅନ୍ତି ଅକୁଳୀନ
ଅର୍ଜୁନ ସରିକି କର୍ଣ୍ଣ ହୋଇଛି ଘଟଣ ।୩୫
ଭୀମସେନ ବୋଇଲା ସାରଥିର ସୂତ
ରଥ ସେ ବାହିବ ଯୁଦ୍ଧ ନୋହଇ ଯୁଗତ ।୩୬
ଯେଥୁ ଅନନ୍ତରେ ଆସ୍ଥାନ ମଉଳି
ଯେ ଯାହା ସ୍ଥାନକଇ ଗଲେ ସର୍ବେ ଚଳି ।୩୭
ଦ୍ରୋଣ ଗୁରୁ ଚଳିଲେ ଆପଣା ଭୁବନେ
ଅନେକ ଦେଶ ଘୋଷ ପାଇଲେ ରତ୍ନ ଯାନେ ।୩୮
ଶୁଣ ହୋ ରାଜନ ପୁଣ ହିଂ କରନ୍ତି ବିଦ୍ୟା ଉପାସନ
ମିଳିଣ ଦେଖନ୍ତି ନଗ୍ର ଜନମାନ ।୩୯
ନାରାଜ ବିନ୍ଧନ୍ତି ସେ ଲାଖେକ ଉଭାରି
ଯେ ଯାହାର ବଳ ଧନୁ ହସ୍ତେ ଧରି ।୪୦
ଧନୁ ଧରି ନାରାଜ ବିନ୍ଧନ୍ତେ ଅଶତ୍ଥମାର କମ୍ପଇ ଭୁଜ
କର୍ଣ୍ଣର ଜାନୁ କମ୍ପଇ ନିଉନ ହୋୟେ ତେଜ ।୪୧
ଦ୍ରିଯୋଧନ ଶିର କମ୍ପଇ ଧନୁରେ ନାରାଜ ବିନ୍ଧିଲେ
ଧୁଃଶାସନ ବୁକୁସ୍ଥଳ କମ୍ପଇ ଧନୁ ଆକ୍ରୋଷିଲେ ।୪୨

ନାରାଚ୍ଚ ପୂରୋଇଲେ କୁମର ଯୁଝେଷ୍ଟି
ପବନ ଗତି ପ୍ରାୟେ କମ୍ପଇ ଅଙ୍ଗୁଷ୍ଟି ।୪୩
ଭୀଷ୍ମଙ୍କର କମ୍ପଇ ଶିର ଦ୍ରୋଣଙ୍କର କମ୍ପଇ ଭୁଜ
ନିକମ୍ପ ଅର୍ଜୁନ ସେ ବାସେବର ଆତ୍ମଜ ।୪୪
ତଦନ୍ତ କରିଣ ବୁଝିଲୁନି ସର୍ବ ତତ୍ତ୍ୱ
ଯେହାଙ୍କର ହସ୍ତରେ ହୋଇବ ସବୁଙ୍କରି ମୃତ୍ୟୁ ।୪୫
ଯେକାନ୍ତ କରିଣ ଗାଇଲେ ଦ୍ରୋଣେ ଆପଣାର ବଳା
ଯେଥି ଥିଲେ ନନ୍ଦନ ରେ ମରିବୁ, ବହନ ହୋଇ ପଳା ।୪୬
ଯେବଣ ନାରାଚ୍ଚ ଗୋଟି ବାବୁ ରେ ବିନ୍ଧଇ ଫାଲଗୁନି
ସେ ନାରାଚ୍ଚ ମୁନେ ଦିଶଇ ବ୍ରହ୍ମାଣ୍ଡ ଖଣ୍ଡ ତିନି ।୪୭
ଯେହେନେକ କରି ଯେହାକୁ ସ୍ରିଜିଲା ବିଧାତା
ତ୍ରୈଲୋକ୍ୟେ ବ୍ରହ୍ମାଣ୍ଡେ ଯେହାକୁ ନାହିଁ ନା ଜିଣନ୍ତା ।୪୮
ଅବଶ୍ୟ ଦ୍ରିଯୋଧନ ନ ଛାଡିବ ତୋତେ
ତୁ ପୁଣ ବଧ ହୋଇ ଟି ଅର୍ଜୁନର ହସ୍ତେ ।୪୯
ପୁଣି ହିଂ ବିଦ୍ୟାମାନ ଯେ କରନ୍ତି ଆରମ୍ଭ
ବାଘମୁହିଂ ଛନ୍ଦା ଯେ ପାତିଲେ ଦ୍ୱାରେ ଦମ୍ଭ ।୫୦
ପଞ୍ଚିଶ ସହସ୍ର ପିଟଣା ମୁଗୁରରେ ଲଗାଇ
କାଠ ଜଳା ଭିତରେ ଓଟାରନ୍ତି ସର୍ବେ ବୀରେ ଯାଇଂ ।୫୧
ପ୍ରଥମେ ଦ୍ରିଯୋଧନ ଓଟାରଇ ସାତ ସହସ୍ର ବଳ
ଦୂଶାସନ ଓଟାରଇ ପାଞ୍ଚ ସହସ୍ର ବଳ ।୫୨
କୃପେ ଚାରି ସହସ୍ର ଭୀଷ୍ମେ ପଞ୍ଚଶତ ତିରିଶ ସହସ୍ର ବଳ
ଦ୍ରୋଣେ ଓଟାରିଲେ ଚାଳିଶ ସହସ୍ର ପରିତାଳ ।୫୩
ଯୁଝେଷ୍ଟି ଦେବ ଓଟାରନ୍ତି ତିରିଶି ସହସ୍ର ଗରୁ
ପଞ୍ଚାଶ ସହସ୍ର ଓଟାରନ୍ତି ବ୍ରିକୋଦର ଭୟାଙ୍କାରୁ ।୫୪
କର୍ଣ୍ଣ ଓଟାରନ୍ତି ନଉ ସହସ୍ର ଭାର
ଅଶସ୍ତମା ଓଟାରନ୍ତି ଅଠୋସ୍ତରି ସହସ୍ର ପରିତାଳ ଭାର ।୫୫
ସହଦେବ ଚାରି ସହସ୍ର ନକୁଳ ପଞ୍ଚତିରିଶ ବଳ
ଦ୍ରିଯୋଧନର ଅନେଶ୍ୱତ ଭ୍ରାଥ ଯେହି ରୂପେ ପରିତାଳ ।୫୬
ଅର୍ଜୁନେ ଓଟାରନ୍ତି ସହସ୍ରେ ଲକ୍ଷେ ଭାର
ଦେଖି ଚମତ୍କାର ହୋଇଲେ ଦ୍ରୋଣେ ସମସ୍ତେ କୁରୁବୀର ।୫୭
ଦ୍ରୋଣେ ଅଶସ୍ତମାକୁ ଡାକିଲେ ସନ୍ନିଧର
ଜୀବନ ନିମନ୍ତେ ବାବୁ ଯେ ଧୂର୍ଜଟି ସେବା କର ।୫୮
ପୁଣ୍ୟତୋୟା ନଦୀକୂଳେ ସରସ୍ୱତୀ କୂଳେ
ନିରଞ୍ଜନ ସୁମର ବାବୁ ଉଦେ ବଟ ତଳେ ।୫୯
ଯେବେ ହସ୍ତିନାକୁ ଯିବାକୁ କରୁ ଇଛା
ଅମର ବର ତୁ ବାବୁ କର ମନ ବାଞ୍ଛା ।୬୦
ଦ୍ରୋଣଙ୍କର ବଚନେ ଯେ ଚଳଇ ଅଶସ୍ତମା
ତୁଳେଣ ମାତୁଳ ସେ ଚଳଇ କୃପ ବ୍ରହ୍ମା ।୬୧
ପୁଣ୍ୟତୋୟା ନଦୀ ତୀରେ ରଛିଲେ ଆଶ୍ରମେ
ଅଜପା ଲୟେ କରି ଯେ ଚିନ୍ତିଲେ ଦେବ ବ୍ରହ୍ମେ ।୬୨
ସରସ୍ୱତୀ ଯେ ସ୍ନାହାନ କରି ଯାନ୍ତି ଅନୁବ୍ରତେ
ଆହାର ତେଜ୍ୟା କଲେ ପଞ୍ଚଦଶ ବରଷ ପରିଯନ୍ତେ ।୬୩

✱✱

## ୧୯. ଜାରା ଶବର ଉପାଖ୍ୟାନ

### ଜାରା ଶବର ବୃତ୍ତାନ୍ତ

ଅଗସ୍ତି ବୋଇଲେ ଶୁଣ ବଇବସୁତ ମନୁ
ଜାରା ନାମେ କିରାତ ଯେ ଅଜପତିର ତନୁ ।୧
ଗଣ୍ଡା ଦୁଇଗୋଟା ଘେନି ଅଇଲା ଯତନେ
ବାରୁଣାବନ୍ତକକ୍ଷଂ ଚଳଇ ତୋଷମନେ ।୨
ମଥାରେ ମଜୁର ଝାଲି କଣ୍ଠେ ଗୁଞ୍ଜରା ମାଳି
ଲୋହିତ ବର୍ଣ୍ଣ ନେତ୍ର ଶରୀରେ ରଙ୍ଗଧୂଳି ।୩
ଧାମଣା କାଠର ଧନୁ କଣ୍ଡା ବାୟେଂଶର ଗୁଣ
ଡାଳି ଆଭରଣ ଫିରିକି ନାରାଜ ତ୍ରୋଣ ।୪
ଯେହେନେକ ସରୂପେ ଅଜପତିର ତନୟେ
ଦ୍ରୋଣଙ୍କୁ ଦ୍ରଶନ କଲା ବାରୁଣାବନ୍ତ ଆଖଡ଼ାୟେ ।୫
ଗଣ୍ଡା ଦେଖି ସାନନ୍ଦ ହୋଇଲେ ଦ୍ରୋଣ ଗୁରୁ
ମୁହିଂ ବିଦ୍ୟା ପୁତ୍ର ହୋଇକି ଆଗ୍ୟାଂ ଯେବେ କରୁ ।୬
ଯୁଝେଷ୍ଟି ବୋଇଲା ହୋ ଥାଉ ଯେ କିରାତ
ବନଚର ଲୋକ ଯେହାରେ କାର୍ଯ୍ୟ ଅଛି ବହୁତ ।୭
ଶୁଣିଣ କୋପ କଲା ସେ ଧୃତରାଷ୍ଟ୍ର ବଳା
ରାଗେଣ ବୋଇଲା ତୁ ହୀନ କିରାତ ରେ ବହନ ଯେଥୁଂ ପଳା ।୮
ଅର୍ଜୁନ ବୋଇଲା ଯେ ନୋହଇ ଯେମନ୍ତ
ବନରେ ଲୋକ ଯେହାରେ ଅଛଇ କାର୍ଯ୍ୟ ବହୁତ ।୯
ଗଣ୍ଡା ହରିଣ ଯେ ମୃଗ ବାହୁଟିୟା
ଚାମେରୀ ଆଦି କରି ଆଣୁଥିବ ଜିଆଦ ସାଳେହା ।୧୦
ଥାଉ ବୋଲି କରି ଆଗ୍ୟାଂ ଦିଲେ ଗୁରୁ ଦ୍ରୋଣେ
ଦ୍ରିଯୋଧନ ବୋଇଲେ କିପାଂ ଭଣ୍ଡାଅ ଅକାରଣେ ।୧୧

ଧୃଶାସନକୁ ବୋଇଲା ଯେହାକୁ ନିଅ ବାଳ ଧରି
ବନସ୍ତେ ଛାଡି ଆସ ଅନେକ ଅବସ୍ଥା କରି ।୧୨
ଶୁଣିଣ ଧୃଶାସନ କେଶ ଧରିଣ ଯେ କୋପେ
ଯୋଜନକ ଅନ୍ତରେ ଯେ ଛାଡିଲା ଗରୁ ତାପେ ।୧୩
ସେ ଜାରା କିରାତ ଅନେକ କ୍ରୋଧ କଲା
ଆଖଡା ଶାଳରୁ ଆପଣା ପଲ୍ଲିକି ଝାଡ କାଟି ନେଲା ।୧୪
ଆପଣା ପଲ୍ଲି ଦ୍ୱାରେ ଭିଆଇଲା ଆଖଡ଼ା
ଦ୍ୱାଦଶ ଯୋଜନେ ଥାଇ ସାଧଇ ମହାବୀରା ।୧୫
ଆପଣା ଦ୍ୱାରେ ଥାଇ ବାଗୁଣାବନ୍ତ ଆଖଡ଼ାକୁ ଲୟ ଦେଇ
ଦ୍ୱାଦଶ ଯୋଜନେ ଥାଇ ବିଦ୍ୟା ସାଧଇ ତହିଁ ।୧୬
ଦେଖ ହୋ ମହିମା ପ୍ରତାପୀ ଶବରା
ଦ୍ୱାଦଶ ଯୋଜନେ ଥାଇ ତଳଯେ କରଇ ଜାରା ।୧୭
ଯେବଣ ପାଦ ଗତି କରନ୍ତି ଦ୍ରୋଣ ଗୁରୁ ଦେବେ
ସେହି ମତି ସାଧନ୍ତି ସର୍ବ କଉରୋବେ ।୧୮
ସେହି ଗତିକି ଚାହିଁ ଶବର ସାଧଇ ସର୍ବ ବିଦ୍ୟା
ସମସ୍ତ ଶିଖିଲା ସେ କ୍ଷତ୍ରିୟ ମହାସିଦ୍ଧା ।୧୯
ତାରା ନାମେଣ ଯେ ତାହାର ପ୍ରିୟବତୀ
ସେ କିରାତକୁ ବୋଇଲା ବିମୁଖ କରି ମତି ।୨୦
ଆମ୍ଭେ ବନଚର ଲୋକ ବନ ଜୀବ ଆହାରୀ
ମୃଗୟା ନ ଯାଇ କିଂପା ଧାଇଂ ଧାଇଂ ମରି ।୨୧
ଜାରା ବୋଇଲା ତୁ ଶୁଣସି ରେ ସଂଘାତ
କାଳେ ଜାଣିମୁ ସିନା ଯେଥିର ତଦନ୍ତ ।୨୨
ଭାରିଯା ବୋଇଲା ଯେହାକୁ କିସ କିସ ବୋଲି
କେବଣ ପ୍ରକୃତି ତୋର ଯେହା ବୁଝି ନ ପାରିଲି ।୨୩
ଅକାରଣେ ପାମର ରେ କିଂପେ ଧାଇଂ ଧାଇଂ ମରୁ
ଯେହା ଯେ ସାଧୁଅଛୁ ହୋ କେ ତୋହୋର ଗୁରୁ ।୨୪
ଅଣ ଗୁରୁରେ ବିଦ୍ୟା ଯେ ନୋହଇ ପରାପତ
ମୂର୍ଖ ପାମର ହୋ ତୁ ବନଚରେ ଜାତ ।୨୫
ଭାରିଯାର ବଚନ ପରମ ହିତ କଲା
ମାଟିର ଦ୍ରୋଣେକ ସେ କିରାତ ବେଗେଣ ଥାପିଲା ।୨୬
ମଥାରେ ଖଞ୍ଜିଲା ସେ କୃଷ୍ଣ ମୃଗର ଚାମର
ଗୁଞ୍ଜରା ମାଳୀଯେ ଖଞ୍ଜିଲାକ ଲଲାଟେ ତାହାର ।୨୭
ସଷ୍ଟିକ ବେନି ଗୋଟି ଚକ୍ଷୁରେଣ ଖଞ୍ଜି
ଗୁଞ୍ଜ ଗରଗଡ଼ ମାଳୀ ଗଳାରେ ଅଛି ରଞ୍ଜି ।୨୮
କୋଇଲି ସୂତା ପଇତା ଆଭରଣ କଲା ବାମ କନ୍ଧେ
କୁମୁଦ ମାଳ ଉତ୍ତୁରୀ ଲମ୍ୱାଇଲା ଛନ୍ଦେ ।୨୯
ଚନ୍ଦନ କାଠ ଘୋରି ହୃଦରେ ଦିଲା ଚିତା
ଧାମଣା କାଠର ଧନୁ ଧରାଇଲା ବାମ ହସ୍ତା ।୩୦
ଡାହାଣ ଭୁଜର ଯେ ତର୍ଜନୀ ଅଙ୍ଗୁଷ୍ଠି
ଆଖଡ଼ାଶାଳକୁ ତାହାର କରାଇଛି ଦୃଷ୍ଟି ।୩୧
ସେ ମୃତ୍ତିକା ଦ୍ରୋଣର ଚରଣାମ୍ବୁଜ ସେବି
ସାଧିଲା ସମସ୍ତ ବିଦ୍ୟା କିରାତସେନ ବଇଷ୍ଣଂଭୀ ।୩୨
ବଦୟନ୍ତି ଅଗସ୍ତି ଶୁଣ ହୋ ଯୁଗପତି
ଯେମନ୍ତେ ବିଦ୍ୟା ସାଧିଲା ଚଉବିଂଶ ବର୍ଷ ପରିଯନ୍ତି ।୩୩
ସମସ୍ତ ବିଦ୍ୟାରେ ସେ ହୋଇଲା ନିର୍ଜିତା
ଧନୁ ବିଦ୍ୟାରେ ସେ ହୋଇଲା ବଳବନ୍ତା ।୩୪

■■

## ଜାରା (ଏକଲବ୍ୟ) ବୃତ୍ତାନ୍ତ

ଯେଥୁ ଅନନ୍ତରେ ଦ୍ରୋଣେ ଶିଷ୍ୟ ମାନନ୍ତ ହକାରି
ବାବୁ ତୁମ୍ଭେ ଯାଅସି ମୃଗୟା ବିନୋଦ କରି ।୧
ଅଶସ୍ତମାକୁ ପ୍ରସବି କୃପୀ ନାଶ ଗଲା
ତାହାର ପ୍ରାଣ ତ୍ୟାଜ ଦିବସ ପ୍ରବେଶ ହୋଇଲା ।୨
ଗଣ୍ଡା ଗୋଟିଯେ ବାବୁ ମାରି ଆଣ ଯାଇ ବନୁଂ
ଗୁରୁଙ୍କର ବଚନେ ଚଳନ୍ତି ସର୍ବ ତନୁ ।୩
ପଶ୍ଚିମେ ଭୀମ ଅର୍ଜୁନ ଦକ୍ଷିଣେ ବୀର କର୍ଣ୍ଣ
ଶତେ ସୋଦର ଘେନି ଉତ୍ତରକୁ ଚଳଇ ଦ୍ରିଯୋଧନ ।୪
ଭ୍ରମନ୍ତି କୁମାରେ ଖେଦନ୍ତି ମୃଗାରି
କ୍ଷିଦ୍ରେ ନ ଛାଡନ୍ତି ଯେ ଗଣ୍ଡା ଜୀବ ଲୋଡି ।୫
ଦକ୍ଷିଣେ କର୍ଣ୍ଣ ଲୋଡି ନ ପାଇଲା ଗଣ୍ଡା ଜୀବ
ମୃଗ ଭାରେକ ଘେନି ଦ୍ରଶନ କଲା ଗୁରୁଙ୍କୁ ରାଧେବ ।୬
ପଶ୍ଚିମ କୋଶଳେ ଗଲେ ଭୀମସେନ ଅରଜୁନ
ଗଣ୍ଡା ଦୁଇ ଗୋଟା ଘେନି ଗୁରୁଙ୍କୁ ଦ୍ରଶନ କଲେକ ପଞ୍ଚୁଦିନ ।୭
ଉତ୍ତରକୁ ଗଲେ ଯେ ଦ୍ରିଯୋଧନ ଶତେ ଭ୍ରାଥ
ଖେଦନ୍ତି ବନ ଗହନେ ଯେ ଅନେକ ପର୍ବତ ।୮
ଲୋଡନ୍ତି ଗହନ ଅଟବ୍ୟା ପୁଣ୍ୟ ଗଣ୍ଡା
ଖେଦନ୍ତି ବନସ୍ତରେ ବିହଡନ୍ତି ଦୁର୍ଦ୍ଦଣ୍ଡା ।୯

ମଣିନାଗ ବୋଲି ଯେକଇ ପର୍ବତ ଗୋଟିଏ
ତହିଂର ତଳେ ଅଛି ଜଳଘାଟ ଗୋଟାଏ ।୧୦
ସେ ପାଣି ଘାଟ ଜଗି ଅଛନ୍ତି ଅନୁସରି
ତହିଂକି ନିକଟ ଜାରା ବେଣ୍ଟକାର ପୁରୀ ।୧୧
ସେ ଜାରା ଶବର ଭାରିଯା ଶିରିୟା ନାମେ ବାଳୀ
ସ୍ୱାମୀକି ବୋଇଲା ଦୃଷ୍ଟି ଦେଇଥାଅ ଯେ ପଲ୍ଲୀ ।୧୨
ସ୍ନାନ କରି ମୁଁ ଆଣଇଁ ଜଳ ଘଟି ଗୋଟିଏ
ଦ୍ୱାରକୁ ଚଳଯେ କରିଥାଅ ମୋର ଆସିବାର ଯାଏ ।୧୩
ସ୍ୱାମୀକି ସମ୍ବୋଧି ଚଳଇ ଶବର ତରୁଣୀ
ସରୋବରରେ ପଶି ଘଟେ ପୂରୋଇଲା ପାଣି ।୧୪
ଘଟ ତୀରେ ଥୋଇ ସାରିଲା ସ୍ନାହାନ
କୂଳେ ଆସି କଲା ପତ୍ର ପରିହରଣ ।୧୫
ମଥାରେ ବସାଇଲା ପାଣିଘଟ ଗୋଟି
ସିଂଘ ଠାଣି ଜାଣି ସେ ଆସଇ ଲେଉଟି ।୧୬
ଦୂରେ ଥାଇ ଦେଖିଲା ତାକୁ ଧୃଶାସନ ମୂଢ଼େ
ଆକ୍ରୋଷି ବେନି ଭୁଜେ ତାକୁ ଧଇଲାକ ଗାଢ଼େ ।୧୭
ଦେଖି ସେ ଶିରିୟା ଯେ ଚାହିଂଇ ଲେଉଟି
ତ୍ରିଭୁବନେ ସୁନ୍ଦର ବାଳୁତ ଯେ କାହାର ପୁତ୍ର ଗୋଟି ।୧୮
ଶବରଣୀ ଦେଖନ୍ତେ ସେ ଧାଇଁଲେ ସର୍ବ ଦୁଷ୍ଟେ
ବେଢ଼ିଣ ଶବରଣୀକି ହରି ଲୋଡ଼ିଲେ ପାପିଷ୍ଟେ ।୧୯
ଭୋ ନାଥ ରଖ ବୋଲି ଉଚ୍ଚେ ଦିଲା ଡାକେ
ଭୋ ସ୍ୱାମୀ ବଳାତ୍କାର କରନ୍ତି କାହାର ଦୁଷ୍ଟ ଲୋକେ ।୨୦
ଉଚ୍ଚସ୍ୱରେ ଯହୁଁ ଶୁଣିଲା ଭାରିଯା ରୋଦନ ବାଣୀ
ଆଖଡ଼ାରେ ଥାଇ ତାହା ଜାରା ଶବର ଶୁଣି ।୨୧
ହସ୍ତରେ ଧନୁଶର ଘେନି ବାହାର କିରାତ
ଧାଇଁଣ ପ୍ରବେଶ ହୋଇଲା ଯାଇଂ କୁରୁବୀରଙ୍କ ସଙ୍ଗତ ।୨୨
ମହା ବିକଟାଳ ସ୍ୱରୂପ ସେ ଭଇରୋବ ମୂରତି
ହାକ ଦିଅଇ କିରାତ ରେ ତୁମ୍ଭେ କାହାର ହୋ କତି ।୨୩
ଶୁଣିଣ ପ୍ରଚଣ୍ଡ ମୂରତି ଧୃଶାସନ ମହାବୀରା
ପ୍ରତଜ୍ଞାଂ କରି ବୋଇଲା ମରିବୁରେ ଶବରା ।୨୪
ବନଚର ଲୋକ ହୋଇ କିଂପା ତୋହୋର ଯେମନ୍ତ ଘରଣୀ
ରାଜାଙ୍କର ଅବିଷେକକୁ ଯେ ଯୋଗାଇ ପାଟରାଣୀ ।୨୫
ଆମ୍ଭେ ସୋମବଂଶୀ ପୃଥୀକି ଆଧିପତି
ଯେହାର ନିମନ୍ତେ ତୁରେ ହୋଇବୁ ପ୍ରାଣେ କ୍ଷତି ।୨୬

ଦୁର୍ଭାର ବଚନ ଶୁଣି ସେ ଜାରା ବେଣ୍ଟକାର
ଧନୁରେ ବସାଇଲା ଆକ୍ରୋଷିଣ ଶର ।୨୭
ଭୂମିକି ଗୋଟିଏ ବିନ୍ଧିଲା ଗୁରୁଙ୍କ ନାମ ଧରି
ମଥାରେ ମୃତ୍ତିକା ଘେନିଲା ଦ୍ରୋଣ ଗୁରୁଙ୍କୁ ସୁମରି ।୨୮
ଯେକ ଉଊର ଶତେ ଯେ ଅଟନ୍ତି କୁରୁବୀରେ
ଜଣେ ଜଣେକେ ପୂରୋଇଲା ଶତେ ଶତେ ଶରେ ।୨୯
ଅବିକ୍ଷଣେ ବାଣ ଯହୁଁ ବିନ୍ଧିଲା ମହାମନ୍ତ୍ରେ
ଜଣେକେ ଶତେ ଶତେ ଶର ପଡ଼ିଲା ହୃଦଗତେ ।୩୦
ତ୍ରିପଣ୍ଡ ଗଳିତ ଯେ ଶରୀରେ ଅସ୍ତ୍ର ଭେଦି
ପଡ଼ିଲେ କୁରୁବୀରେ ରୁଧିର ବହଇ ନଦୀ ।୩୧
ଭାରିଯାକୁ ଘେନିଣ ଚଳଇ ବୀର ଜାରା
ଆପଣା ପଲ୍ଲୀରେ ପ୍ରବେଶ ଶବରା ।୩୨
ଦ୍ରୋଣେ ବାଟ ଚାହାନ୍ତି ଦ୍ରିଯୋଧନ ତ ନଇଲା
ପଥ ନିରୋପନ୍ତେ ଦ୍ୱାଦଶ ଦିବସ ହୋଇଲା ।୩୩
ସଙ୍ଗରେ ଘେନିଲେ ଗୁରୁ କର୍ଣ୍ଣ ଭୀମ କିରୀଟୀ
ବାଟ ଅନୁସରି ହାଦେ ଆସନ୍ତି ପାଛୋଟି ।୩୪
ପ୍ରବେଶ ହୋଇଲେ ଯାଇଂ ସରୋବର କୂଳ
ଦେଖିଲେ ପଡ଼ିଛନ୍ତି କୁରୁବୀର ସକଳ ।୩୫
ଯେସନେକ ବୃକ୍ଷେ ଲୋଟନ୍ତି ମହାବାତ କାଳେ
ତେସନେ ଦିଶନ୍ତି ସେ କୁରୁବୀର ସକଳେ ।୩୬
ହୃଦେ ନାରାଚ ପଡ଼ି ପିଠି କଟିକି ଫୁଟି
ମହା ପ୍ରତାପୀ ବୀରେ ଭୂମିରେ ଛନ୍ତି ଲୋଟି ।୩୭
ଭୀମସେନ ଧାଇଂ ଯାଇଂ ଦେଖିଲାକ ଦୁରୁ
ସମସ୍ତେ ଶରଘାତେ ପଡ଼ିଛନ୍ତି ହେ ଗୁରୁ ।୩୮
ଭାରଦ୍ୱାଦଶଙ୍କର ନନ୍ଦନ ଦେଖିଣ ବିଚାରିଲେ
ଯେ ତ ଆମ୍ଭର ବିଦ୍ୟା ବୋଲି ଅର୍ଜୁନକୁ ପଚାରିଲେ ।୩୯
ଦେଖନି ଯେ ବନସ୍ତରେ କେ ଅଛଇ ଫାଲଗୁନି
ପ୍ରଶୁରାମଙ୍କର ବିଦ୍ୟା କେ ଆନ ଅଛଇ ଘେନି ।୪୦
ଆନକୁ ଗୋଚର ନୋହଇ ଯେ ବିଦ୍ୟା
ମାନବେ ଗୋଚର କାହିଂ ଯେତେକ ପ୍ରସିଦ୍ଧା ।୪୧
ଗୁରୁଙ୍କର ବଚନେ ଲୋଡଇ ସର୍ବସାଚୀ
ଦେଖିଲା ଗହନ ବନେ ଶବର ପଲ୍ଲୀ ଯେକ ଅଛି ।୪୨
କିରାତ ଆଖଡ଼ାରେ ପଟାଯେ ବିନ୍ଧଇ ବାଣ
ଅର୍ଜ୍ଜୁନକୁ ଦେଖି ବାହାର ତତକ୍ଷଣ ।୪୩

ହସ୍ତେ ଧାମଣା କାଠର ଧନୁ କଣ୍ଠା ବାୟେଂଶର ଗୁଣ
କଟି ମେଖଳେ କୋଠାର ଫିରିକ ନାରାଜ ଦ୍ରୋଣ ।୪୪
ଗଦ ଗଦ ବାକ୍ୟେ କିସ କିସ ବୋଲି
ଅର୍ଜୁନ ଉପରକୁ ସେ ଆସୁଅଛି ପେଲି ।୪୫
ଡାକ ଦିଅଇ ଜାରା ତୁ ରେ କାହାର କତି ଅଟୁ
ମୁହିଂ ବନଚର ମୋହୋର ଆଶ୍ରମେ କିନା ଭେଟୁ ।୪୬
ଆଷ୍ୟ ଥାଉଂ ଥାଉଂ କିନା ଭରସୁ ଅଛୁ ମରଣକୁ
ମାରିଣ ପନ୍ଥାଙ୍କୁ କି ବଳି ଦେବି ମୁଂ ତୁକୁ ।୪୭
ଅର୍ଜୁନ ବୋଇଲା ଆରେ ଶୁଣସି କିରାତ
ଯେ ମୋହୋର ଭାଇ ମାନନ୍ତ କେ କଲା ଶରାଘାତ ।୪୮
ଅର୍ଜୁନ ବଚନ ଶୁଣି ଜାରା ଶବର ଯେ କୋପେ
ଧନୁରେ ନାରାଜ ପୂରୋଇଲା ଗୁରୁ ତାପେ ।୪୯
ଆକ୍ରୋଷିଣ ଶର ଛାଡନ୍ତେ ଦେଖିଲା ଫାଲଗୁନି
ଶବରକୁ ମାଇଲା ଯେ ଦିବ୍ୟ ଶସ୍ତ୍ର ଘେନି ।୫୦
ଶରେ ଶର ପଡ଼ିତାଳ ହେଉଣ ଅଛନ୍ତି
ଭାଜିଣ ସମସ୍ତ ଶହସ୍ର ଚୂର ହୋଇ ଯାନ୍ତି ।୫୧
ଶତେ ନାରାଜ ଚାପେ ପୂରୋଇଲା ଜାରା
ଅର୍ଜୁନ ଉପରକୁ ବିନ୍ଧିଲା ସେ କୋପେ ମହାବୀରା ।୫୨
ଶତେକ ନାରାଜ କୋପେ ପେଷିଲା ଅରଜୁନ
ଛେଦି ପକାଇଲା ସେ ସମସ୍ତ ଶର ମାନ ।୫୩
କିରାତ ଅର୍ଜୁନ ସେ ହୋଅନ୍ତେ ଅନ୍ୟୋଅନ୍ୟ
ଶହସ୍ର ବିଘାତେଣ ଯେ କମ୍ପିଲା ମେଦିନୀ ।୫୪
କଷୁଣି ଟଙ୍କାର ଶୁଭିଲା ଗୁଣ ଘୋଷ
ତିନି ଭୁବନକଇ ଲାଗିଲା ବଡ଼ ତ୍ରାସ ।୫୫
ଦ୍ରୋଣେ ଶୁଣିଲେ ଯହୁଂ ସହସ୍ର ମାନଙ୍କର ବାଣୀ
କର୍ଣ୍ଣ ଭୀମ ଘେନି ଗୁରୁ ଧାଇଂଲେ ବେଗେ ପୁଣି ।୫୬
ଗୁରୁ ଦେଖିଲେ ଅର୍ଜୁନ କିରାତର ସମର
ଜାରା ଅର୍ଜୁନକୁ ପୂରୋଇ ଅଛି ଲକ୍ଷେ ଶର ।୫୭
ଦ୍ରୋଣେ ଭେଟିଲେ ସମର କରନ୍ତେଣ ବେନି
କେହି କାହାକୁ ନ ଘୁଞ୍ଚନ୍ତି ଅନ୍ୟୋଅନ୍ୟ ।୫୮
ଦ୍ରୋଣେ ଡାକ ଦିଅନ୍ତି ରହ ରହ ବାବୁ
କାହାର ତହୁଂ ସାଧିଲୁ ଯେ ବିଦ୍ୟାମାନ ସବୁ ।୫୯
କାହାର ଶିଷ ତୁ କେ ତୋହୋର ଗୁରୁ
କାହାର ବିଦ୍ୟା ସାଧି ତୁ ଯେତେ ଯୁଦ୍ଧ କରୁ ।୬୦

କିରାତ ବୋଇଲା ତୁ ଶୁଣ ହୋ ବ୍ରାହ୍ମଣ
ମୋହୋର ବିଦ୍ୟାଗୁରୁ ଅଟନ୍ତି ହାଦେ ଦ୍ରୋଣ ।୬୧
ଗୁରୁ ଥମ୍ଭୀଭୂତ ହୋଇଲେ କିରାତ ବଚନେ
ଆମ୍ଭେ ସେ ଦ୍ରୋଣ ହୋ ବାବୁ ଅଟୁ ବିଦ୍ୟମାନେ ।୬୨
ବଦୟନ୍ତି ଦ୍ରୋଣେ କାହିଂ ଅଛନ୍ତି ତୋର ଗୁରୁ
ଆମ୍ଭଙ୍କୁ ଦେଖାନି ତୁ କାହାକୁ ସେବା କରୁ ।୬୩
ଆପଣା ଆଖଡ଼ା ଶାଳକୁ ସେ କଢ଼ାଇଣ ନେଲା
ମାଟିର ଦ୍ରୋଣକୁ ଯେ ନେଇଣ ଦେଖାଇଲା ।୬୪
ଯେ ମୋହୋର ଗୁରୁ ଅଟଇ ଦ୍ରୋଣ ସିଦ୍ଧା
ଯେହାଙ୍କୁ ସେବିଣ ମୁଂ ଲଭିଲି ସର୍ବ ବିଦ୍ୟା ।୬୫
ଗୁରୁ ପୁଛା କଲେ ତୁ କେମନ୍ତେ ସାଧ କଲୁ
ଅଦୃଷ୍ଟି ଅଶ୍ରାତିରେ କେମନ୍ତେ ଯେମାନ ପାଇଲୁ ।୬୬
ଆମ୍ଭର ମନ୍ତ୍ରବଳେ ତୁହି ସେ ମାଇଲୁ ।୬୭
ବୋଲଇ କିରାତ ମୁଂ ଗଲଇଂ ବାରୁଣେ
ବୋଇଲି ବିଦ୍ୟା ମୋତେ ଶିଖାଅ ଗୁରୁ ଦ୍ରୋଣେ ।୬୮
ଯୁଝେଷ୍ଟି ବୋଲି ଜଣେ ମୋତେ ଦୟା କଲା
ଦ୍ରିଯୋଧନ ବୋଲି ମୋତେ ତହୁଂ ବାହାର କରି ଦିଲା ।୬୯
ଅପମାନ ପାଇ ମୁଂ ଯେ ବାହୁଡ଼ି ଅଇଲି
ବାରୁଣାବନ୍ତଠାରୁ ଯେଠାକୁ ବୋଲି ବନସ୍ତ କାଟିଲି ।୭୦
ଆଖଡ଼ାଯେ ଭିଆଇଲି ମୁଂ ପଲ୍ଲୀର ଦୁଆରେ
ମୃତ୍ତିକା ଦ୍ରୋଣ ଗୋଟି ମୁଂ ଥାପିଲି ସାଧିଲି ସମ୍ଭରେ ।୭୧
ଯେହିଠାରେ ଥାଇ ଚାହଂଇ ମୁଂ ବାରୁଣାବନ୍ତ ଆଖଡ଼ାକୁ
ଦୃଷ୍ଟିପାତ କରିଥାଇଂ ଦ୍ୱାଦଶ ଯୋଜନକୁ ।୭୨
ଯେବଣ ପାଦଗତି କରନ୍ତି ଦ୍ରୋଣ ଗୁରୁ
ମୁଂ ଯେଥେ ସାଧଇ ଯେ ସମସ୍ତ ଗତି କରୁଂ ।୭୩
ଶୁଣି ଦ୍ରୋଣ ଗୁରୁ ଯେ ପରମ ସାନନ୍ଦେ
ଜାରାକଇଂ ଆଣି ବସାଇଲେ ଆପଣା ସନ୍ନିଧେ ।୭୪
ଆମ୍ଭେ ସେ ଦ୍ରୋଣ ଗୁରୁ ଅଟୁ ଯେ ସେ ଭୀମ ଅର୍ଜୁନ କର୍ଣ୍ଣ
ଯାହାକୁ ଶରଘାତ କଲୁ ସେହି ସେ ଦ୍ରିଯୋଧନ ।୭୫
ଯେସନ ବଚନ ଶୁଣିଣ ବୀର ଜାରା
ଗୁରୁଙ୍କ ପାଦପଦ୍ମେ ପ୍ରଳମ୍ଭ ମହାବୀରା ।୭୬
ଦ୍ରୋଣେ ବୋଇଲେ ତୁ ଆମ୍ଭର ବିଦ୍ୟା ପୁତ୍ର ବାବୁ
ସେ ପୁତ୍ର ମାନ ଯେ ମାଇଲୁ ଆମ୍ଭର ହିଂ ସବୁ ।୭୭
ବିଦ୍ୟା ପରୀକ୍ଷା ଯେବେ ବାବୁ ଜାଣିମା ଯୁଗତେ

ପୁଣ ସେ ପୁତ୍ରମାନେ ଆମ୍ଭର ବ୍ରତନ୍ତି କେମନ୍ତେ ।୭୮
ତାରାକଇଂ ଘେନିଗଲେ ସେ ସଂଗ୍ରାମ ଭୂମିକି
କିରାତ ବୋଇଲା ଯେହିକ୍ଷଣି ଗୁରୁ ହେ ତାଆଂଇବି ସଭିଙ୍କି ।୭୯
ଧନୁରେ ବସାଇ ତାବନ୍ୟାସ ଶର କଲା ବୃଷ୍ଟି
ମୋହ ତେଜି ଉଠିଲେ ସେ ସକଳ ଧୃତରାଷ୍ଟ୍ରି ।୮୦
ଦ୍ରୋଣଙ୍କର ପାଦପଦ୍ମେ ହୋଇଲେ ପରିଣାମି
ଶବର ଶରଘାତେ ପ୍ରାଣତ୍ୟାଜ ହୋଇଲୁ ଆମ୍ଭେ ସ୍ୱାମୀ ।୮୧
ତୋହୋର ପରାୟେ ଗୁରୁ ସେବି ଆମ୍ଭେ ବିଦ୍ୟାମାନ ସାଧିଲୁ
କିରାତ ମାତ୍ରକ ସମରେ ଆମ୍ଭେ କ୍ଷୟେ ଗଲୁ ।୮୨
ପ୍ରଶୁରାମଙ୍କର ବିଦ୍ୟାକୁ ଆମ୍ଭର ଗୁରୁ ଦ୍ରୋଣ
ଅଭାବେ ଶିଖାଇଲା କିଛି ନୋହିଲା କାରଣ ।୮୩
ଧିକ ହୋଇ ଆମ୍ଭର ଜୀବନ ଆମ୍ଭର ଛତ୍ରୀ ବୃତ୍ତେ କିସ କାର୍ଯ୍ୟ
କେସନେ ଜନ ମୁଖ ଚାହିଂବୁ ହୋଇଣ ନିଲଜ
ଦ୍ରୋଣେ ବୋଇଲେ ତୁମ୍ଭେ ନ ଭାବ କିଛି ଚିତ୍ତ
ଆମ୍ଭର ବିଦ୍ୟା ପୁତ୍ର ଯେ ଅଟଇ କିରାତ ।୮୪
ଯେକଇ ବିଦ୍ୟାୟେ ଧ୍ୱଂସି ହୋଇଲ ଭ୍ରାଥ ବେନି
ଘରେ ଘରେ ଯେକ ସୋଦରେ ହୋଇଲେ ଅନ୍ୟୋଅନ୍ୟି ।୮୬
ଯେଥକୁ ଅଭିମାନ ହୋ କରି ତ ନ ଯୋଗାଇ
ଆମ୍ଭର ବିଦ୍ୟା ପୁତ୍ର ଅଟଇ ଜାଣ ଯେହି ।୮୭
ଗଣ୍ଡା ଘେନି ଗଲା ଯେ ପ୍ରଥମେ ଆଖଡ଼ାକୁ
ତୁମ୍ଭେ ଅପମାନ କରି ଯେ ବାହାର କରିଦିଲ ଯେହାକୁ ।୮୮
ଦ୍ରୋଣଙ୍କର ବଚନେ ଦ୍ରିଯୋଧନ ହୋଇଲା ପରମ ଶାନ୍ତି
ଦ୍ରୋଣେ ବୋଇଲେ ତାରାରେ ତୁ ଯେ ବନେ ଥାଅ ନିଭ୍ରାନ୍ତି ।୮୯
ଆମ୍ଭେ ଯାଉଅଛୁଂ ହସ୍ତିନା ଭୁବନକୁ
ବାରୁଣାବନ୍ତରୁ ଭାଙ୍ଗି ଦେଇଣ ଆଖଡାକୁ ।୯୦
ଆମ୍ଭର ବୋଲେ ତୋତେ ସମସ୍ତ ପ୍ରାପତ ହୋଉ
ତୋତେ ତ ସମରେ ଜିଣନ୍ତା କେହି ନୋହୁ ଆଉ ।୯୧
ଉଷତ ହୋଇ ପଡ଼ିଲା କିରାତ ଗୁରୁଙ୍କ ଚରଣେ
ଦକ୍ଷିଣା ମାଗ ହୋ ମୁକୁ ଗୁରୁ ଦେବଇଂ ଯେହିକ୍ଷଣେ ।୯୨
ଶୁଣିଣ ଦ୍ରୋଣ ଗୁରୁ ପରମ ସାନନ୍ଦ ଚିତ୍ତେ
ଗୁରୁ ଦକ୍ଷିଣା ଶିଷ୍ୟରେ ଲାଗଇ ଯୁଗତେ ।୯୩
ସତ୍ୟ କଲେ ତୋତେ ମାଗିବି ଦକ୍ଷିଣା
ଯୁଗେ ଯୁଗେ କଥା ଥିବ ମୋହୋର କହଣା ।୯୪
ତାରା ବୋଇଲା ସ୍ୱାମୀ ସତ୍ୟ କଲି ମୁହିଂ
ମୋହୋର ଶିରକମଳ ମାଗିଲେ ହେଂ ଦେବଇଂ ।୯୫
ଗୁରୁ ବୋଇଲେ ତୁ ଯେବେ ସତ୍ୟ କଲୁରେ ବାବୁ
ଦକ୍ଷିଣ ହସ୍ତ ଜ୍ୟେଷ୍ଠ ଅଙ୍ଗୁଷ୍ଠି କାଟି ମୋତେ ଦେବୁ ।୯୬
ଜ୍ୟେଷ୍ଠ ଅଙ୍ଗୁଷ୍ଠି ଗୋଟି ଧଇଲେ ଗୁରୁ ଟାଣି
ନାରାଚ ବିନ୍ଧନ୍ତେ ହସ୍ତେ ନଥିବଟି କଷୁଣି ।୯୭
ଚାରି ଅଙ୍ଗୁଷ୍ଠିରେ ବିନ୍ଧିବୁ ତୁ ଶର
ଯେତେକ ଦିଲେ ଗୁରୁ ଦକ୍ଷିଣା ହୋଇଲା ଆମ୍ଭର ।୯୮
ତାରା ବୋଇଲା ଗୁରୁ ହେ ଯେବେ ଭୟ କଲ ମୁକୁ
ମୁକୁଇଂ କଳଙ୍କ କରି ଉଦ୍ଧରିଲ ଯେମାନଙ୍କୁ ।୯୯
ଯେବଣ ଅଭିମାନ କଲେ ମୋତେ ବାରୁଣାବନ୍ତେ
ସେ କଥା ଖଣ୍ଡିକ ମୁଂ ଧରିଥିଲି ହୃଦଗତେ ।୧୦୦
ମୁହିଂ ସେ ନାଶ କରନ୍ତି ଦ୍ରିଯୋଧନର ବଂଶ
କୁରୁବଳ ମାନନ୍ତ ସବୁନ୍ତି କରନ୍ତି ଯେ ଧ୍ୱଂସ ।୧୦୧
ଜାଣି ତ ରକ୍ଷା କଲ ଯେମାନଙ୍କୁ ଗୁରୁ ହେ
ପରମ ମହାତ୍ମା ତୁ ସଞ୍ଚିଲୁ ସନ୍ଦେହେ ।୧୦୨
ଯେତେ ବୋଲିଣ ଯେ ବୃଦ୍ଧା ଅଙ୍ଗୁଷ୍ଠି କାଟିଣ ସେ ଦିଲା
ତାହା ଦେଖି ଗୁରୁଙ୍କର ଚିତ୍ତ ହରଷ ହୋଇଲା ।୧୦୩
ତାରାକୁ କଲ୍ୟାଣ କରି ରୁହାଇଲେ ନିଜ ଆଶ୍ରମେ
ପୁତ୍ରନ୍ତ ଘେନି ଗଲେ ବାରୁଣାବନ୍ତ ଭୁବନେ ।୧୦୪
ବିଜେ କଲେ ମହାତ୍ମା ହସ୍ତିନା ନଗ୍ର ପୁରୀ
ନିଜ କର୍ମ ବିଧାନେ ଗଲା ପୁଣି ବରଷ ଚାରି ।୧୦୫

**

## ୨୦. ଦୁର୍ଯ୍ୟୋଧନର ପାଷାଣ ଗୃହ ନିର୍ମାଣ

ସେହି ଦିନୁ ଆସ୍ଥାନରେ ନାହିଂ ଜାଣ ସଭା
ଯେ ଯାହାର ଆସ୍ଥାନେ ଥାନ୍ତି ସକଳ ରାଜଦେବା ।୧
କୂଟ କପଟ ଛତ୍ରୀ ଯେ ମାନଚକ୍ରବ୍ରତୀ
ବୁଦ୍ଧିବନ୍ତା ଭାଗ୍ୟବନ୍ତା ଉପାୟେ ଚକ୍ରବ୍ରତୀ ।୨
ଲୋହଗିରି ବୋଲି ଯେକ ପର୍ବତ ଗୋଟିୟେ
ଉଚ୍ଚର୍ଗ ପୋତା ବିସ୍ତାର ସେ ଅଟେ କୋଶମୟେ ।୩
ଶିଳପୀ ବିଜ୍ଞାଣୀ ମାନନ୍ତ ସମସ୍ତ ଗୁଣ୍ଡିଆଇଂ
ଶ୍ରୀଭୁଜେ ଶାଢ଼ୀ ସରଳ ଅନେକ ରତ୍ନ ଦେଇ ।୪

ରାତ୍ରକାଳେ ପର୍ବତେ ସେ ଲଗାଇଲା ନେଇ
ଯେ ପର୍ବତ ଗୋଟି ଖୋଳିବ ଭିତରେ ଭଙ୍ଗାଇ ।୫
ଯତନ କରିବ ଖୋଳ ପ୍ରାୟେ କରି
ଯେକଇ ଦୁଆରେ ଯେ ହୋଇବ ତାହାରି ।୬
ଘର ପ୍ରାୟେ କରି କରିବ ଯେ ସଞ୍ଚା
ଯେତେ ବୋଲି ଆଗ୍ୟାଂ ଦିଲା ଧୃତରାଷ୍ଟ୍ର ବସା ।୭
ଯୋଜନେକ ବିସ୍ତାର ହୋଇବାକ ସଞ୍ଚ
ଉଚ୍ଛର୍ଗ ହେବ ଦୁଇ ଯୋଜନ ଯେ ଉଞ୍ଚ ।୮
ତହିଂକି ନିର୍ବାଣ କରିବ ବଜ୍ର କବାଟ ଯେ ଗୋଟି
ବାହାରେ ଥାଇ କିଳିଲେ ସେ ଭିତରେ ନ ଫିଟି ।୯
ଜଣକେ ବର୍ତନ କଲା ଗ୍ରାମ ପାଞ୍ଚଖଣ୍ଡ
ମାସକେ ବର୍ଦ୍ଧନ ହୋଇଲା ସୁବର୍ଣ୍ଣ ଯେକ ମାଢ ।୧୦
ପାଞ୍ଚ ଉଭର ଶତେକ ଲାଗିଲେ ବିନ୍ଧାଣି
କାଟନ୍ତି ପାଷାଣ ଯେହ୍ନେ ବଜ୍ର କୀଟ ନିର୍ବାଣି ।୧୧
ଦ୍ୱାଦଶ ବରଷେ ତାହା କଲେକ ନିର୍ମିତ
ସଉଭାଗୀ ନଦୀ କୂଳେ ସଉଭଦ୍ର ବନସ୍ତ ।୧୨
ତହିଂର କୂଳେ ଅରବିନ୍ଦ ଲୋହଗିରି
ଉପାୟେଣ ଦ୍ରିଯୋଧନ ତାହା ପଥର ଘର କରି ।୧୩
ଘଟଣ ନିର୍ମିତ ଯେତେବେଳେ ହୋଇଲା ସଂପୂର୍ଣ୍ଣ
ଭିତରେ ପିତୁଳିନ୍ତ ଭିଆଇଲେ ଚିତ୍ର ଯେ ଲେଖନ ।୧୪
ଗୁପତେ କରାଇଲା ତାହା ନ ଜାଣନ୍ତା କେହି
ଦିନେକ ଦ୍ରିଯୋଧନ ମାତା ଗାନ୍ଧାରୀ ଆଗେ କହି ।୧୫
ଭୋ ମାତା ମହାସତୀ ଆଗ୍ୟାଂ ଦେବା ମୁକୁ
ମୁହିଂ ଯିବି ମାତା ଗୋ ଗାନ୍ଧାରସେନ ରାଜ୍ୟକୁ ।୧୬
କେମନ୍ତ ସଂପଦେ ଗୋ ଅଛଇ ମୋର ଅଜା
କେମନ୍ତ କରିଣ ସେ ପାଳଇ ଜନପ୍ରଜା ।୧୭
କଥା ପାଶୋରିଲେ ନ ଜାଣିଲେ ଗାନ୍ଧାରୀ
ଯାଅ ବୋଲି ଦ୍ରିଯୋଧନକୁ ଆଗ୍ୟାଂ ଅବଧାରୀ ।୧୮
ଧୁଶାସନ ଦୃଜ୍ୟେ କର୍ଣ୍ଣ ଶଲ୍ୟ କୃପ
ଅଶତ୍ତମା ସହିତେ ଅଛନ୍ତି ସମସ୍ତ ନୃପ ।୧୯
ଯେତେକ ସଙ୍ଗର ସନ୍ୟ କୁମାର କୁରୁପତି
ଗାନ୍ଧାରସେନ ରାଜ୍ୟକୁ ସେ ଚଳଇ ତଡ଼ତି ।୨୦
ରାତ୍ର ଦିବସେଣ କରନ୍ତି ପ୍ରୟାଣ
ହସ୍ତିନାକୁ ଗାନ୍ଧାରସେନ ରାଜ୍ୟ ପନ୍ଦର ଶତ ଯୁଣ ।୨୧
ପ୍ରବେଶ ହୋଇଲେ ଯାଇଂ ପନ୍ଦର ଦିବସେ
କଟକେ ପ୍ରବେଶ ଯାଇଂ ହୋଇଲେ ହରଷେ ।୨୨
ବାରତା ପାଇଣ ସେ ଗାନ୍ଧାରସେନ ନୃପତି
ଦଣ୍ଡ ସନ୍ୟ ଘେନି ସେ ପାଛୋଟି ଆସଇ ତଡ଼ତି ।୨୩
ବଇଦୁର୍ଯ୍ୟ ପର୍ବତ ତଳେ ହୋଇଲେ ଭେଟା ଭେଟି
ଗାନ୍ଧାରସେନ କୁଶଳ ବାରତା ପୁଛଇ ଧୃତରାଷ୍ଟି ।୨୪
ଦ୍ରିଯୋଧନ ବୋଇଲା ଶୁଣିମା ମାତ ତାତ
ସନ୍ୟବଳ ଛାଡି ତୋହୋର ମୋହୋର ହୋଇବା ଯେକାନ୍ତ ।୨୫
ପର୍ବତ ଉପରେ ଯାଇଂ ବସିଲେ ଅଜା ନାତି
ବଂଶାଧିକ ରାଜା ତୁ ଅଟୁ ଚକ୍ରବ୍ରତୀ ।୨୬
ମୁହିଂ ସହି ନୁଆରଇ ଯୁଝେଷ୍ଟିଙ୍କ ଆରଦୋଳି
ସେ ନିମନ୍ତେ ଅଜା, ଅଇଲି ତୋହୋର ତୁଲେ ଭାଳି ।୨୭
ଭୀମସେନ ଅନେକ ଝିଂଘାସ କଲାକ ମୋତେ
ମୁହିଂ ତାହାର ପ୍ରାଣ ତ୍ୟାଗ କରିବି କେମନ୍ତେ ।୨୮
ଭୂଇଂ ଛୁଇଂ ଶ୍ରବଣେ ହସ୍ତ ଦିଲା ଗାନ୍ଧାର
ବାବୁ ଯେବଣ କଥା କହିଲୁ ସେ ଦୁସହ ଅଗୋଚର ।୨୯
ତୋହୋର ବଳେ ପାଣ୍ଡବନ୍ତ ବଳବନ୍ତେ ନୋହୁଂଟି ଯେ ସରି
ଦେବ କଳା ଘେନି ସେ ପ୍ରତକ୍ଷେ ଅବତରି ।୩୦
ଧର୍ମର ବୀର୍ଯ୍ୟେ ଜାତ ସେ ଯେବଣ ଯୁଝେଷ୍ଟି
କର ଲେଉଟାନ୍ତେ ଯାହାର ଲେଉଟଇ ନବ ସୃଷ୍ଟି ।୩୧
ବ୍ରିକୋଦର ଜାତ ହାଦେ ପବନର ବୀର୍ଯ୍ୟେ
କରେଣ ଗଦା ଧରିଲେ ତ୍ରାସଇ ଦେବରାଜେ ।୩୨
ମହା ବଳବନ୍ତା ସେ ପ୍ରତଗ୍ୟାଂ ସାର୍ଥକ ଭୀମ
ଛଡ଼ ଲକ୍ଷ ଯୋଜନେ ଥାଇଂ ତାହାକଇଂ ତ୍ରାସ କରଇ ଯମ ।୩୩
ବାସବର ନନ୍ଦନ ଯେବଣ ଫାଲଗୁନି
ଯେକା ନାରାଚକେ ତୈଲୋକ୍ୟ ପାରଇ ସେ ଜିଣି ।୩୪
ନକୁଳ ବୋଲିଣ ତାହାର ଯେବଣ ଅନୁଜ
ଆକାଶେ ପାଟ ଅଛି ଅଶ୍ୱିନୀ କୁମାରଙ୍କ ଆତ୍ମଜ ।୩୫
ତାହାର ଅନୁଜ ଯେ ସହଦେବ ବୋଲି
ଭୂତ ଭବିଷ୍ୟ ଗ୍ୟାଂତା ମୁଂ ପ୍ରତକ୍ଷେ ଦେଖିଲି ।୩୬
ବାବୁ ମୋହୋର ବଚନ ଶୁଣରେ ମାନଗୋବିନ୍ଦ
ସମୟେ ବ୍ରତିଥାଅ ଯୁଝେଷ୍ଟିଙ୍କରେ ନ କର ତୁ ଦ୍ୱନ୍ଦ ।୩୭
ଦ୍ରିଯୋଧନ ବୋଇଲା ତାତ ସମର ନ କରିବି
ଉପାୟେ କରିଣ ହାଦେ ପାଣ୍ଡବନ୍ତ ମାରିବି ।୩୮

ଭୀମାର ବଳ ବୀର୍ଯ୍ୟକୁ ମୋହୋର ଭୟ ନାହିଁ
ଯାହାକୁ ନୀଳାମ୍ବର ଦେବ ହୋଇଛନ୍ତି ସାହି ।୧୩୯
ଗାନ୍ଧାରସେନ ବୋଇଲା ବାବୁ କେବଣ ଉପାୟେ
ଦ୍ରିଯୋଧନ ବୋଇଲା ଆସ ଦେଖାଇବି ଦେବରାୟେ ।୧୪୦
ଗାନ୍ଧାରସେନ ବୋଇଲା ଯେବେ ଅଇଲୁ ମୋର ପୁରେ
ଦିନା ପାଞ୍ଚସାତ ରହିବୁ ନା ମୋହୋର ପୁର ମନ୍ଦିରେ ।୧୪୧
ଦ୍ରିଯୋଧନ ବୋଇଲା ତାତ କଟାଳ ନ କର ଯେ ମୋତେ
ପାଣ୍ଡବନ୍ତ ନାଶ କଲେ ମୁଂ ବ୍ରତଇ ନିଶ୍ଚିନ୍ତେ ।୧୪୨
ସମସ୍ତ ସନ୍ୟମାନ ପଠିଥାଅ ତୋହୋର ଦେଶ
ବର୍ଗ କୁଟୁମ୍ବମାନ ଘେନି ସଙ୍ଗତେ ମୋର ଆସ ।୧୪୩
ଆପଣାର ଶତେ ପୁତ୍ର ଘେନିଣ ଗାନ୍ଧାର
ଆବର ଛୟାଣୋଇ ଭ୍ରାଥ ଘେନିଣ ବନ୍ଧୁ ସଙ୍ଗର ।୧୪୪
ଆପଣାକୁ ଲାଇ ଶୟେ ସତାଣୋଇ ଜଣ
ଦ୍ରିଯୋଧନ ତୁଳେ ଗାନ୍ଧାରସେନ କରଇ ପୟାଣ ।୧୪୫
ସଉଭଦ୍ର ବନେ ଯାଇ ହୋଇଲେ ପ୍ରବେଶ
ଲୋହଗିରି ପର୍ବତରେ ମିଳିଲେ ତାର ପାଶ ।୧୪୬
କୂଟ କପଟ ରାଜା ଫେଡ଼ିଲା କବାଟ ଗୋଟି
ଆପଣେ ଭିତରେ ଯାଇ ପଶିଲା ଧୃତିରାଷ୍ଟି ।୧୪୭
ତାହାକୁ ଗୋଡ଼ାଇ ଯେ ପଶିଲେ ଗାନ୍ଧାରସେନ
ପିତାର ସଙ୍ଗତେ ପଶିଲେ ଗାନ୍ଧାରସେନ ପୁତ୍ରମାନ ।୧୪୮
ଦ୍ରିଯୋଧନ ବୋଇଲା ବିଚାର କର ପିତା
ଭୀମାର ଗଦାଘାତ ଯେ ସହିବଟି ପର୍ବତା ।୧୪୯
ଯେହା ଭୋ ପିତା ବିଚାର କର ଦୃଢ଼ କରି
କବାଟ ପାଡିବି ପାଣ୍ଡବନ୍ତ ଭିତରେ ମୁଂ ଭରି ।୧୫୦
ଦେଖି ବିଚାର କରଇ ଗାନ୍ଧାରସେନ ନୃପତି
ବାବୁ ଦ୍ରିଯୋଧନ ତୁ ଉପାୟେ ଚକ୍ରବ୍ରତୀ ।୧୫୧
ତୋହୋର ବୋଲେ ଯେହା ହୋଇଲା ନିର୍ବାଣି
ପ୍ରତକ୍ଷେ ଦିଶୁଅଛି ଇନ୍ଦ୍ର ବାରସ୍ୱତୀ ପୁର ଜାଣି ।୧୫୨
ଭଲ କରି ପିତାପୁତ୍ର ଯେହାକୁ ବିଚାର କର
କାହାର କିସ ବୁଦ୍ଧି କହ ମୋହୋର ଆଗର ।୧୫୩
ଯେତେକ ବଚନ କହି ବାହାର ଧୃତିରାଷ୍ଟି
ବାହାରେ ଥାଇ ପଡ଼ିଲା ବଜ୍ର କୀଳଣୀ କବାଟ ଗୋଟି ।୧୫୪
ଗାନ୍ଧାରସେନ ବୋଇଲା କବାଟ ଫେଡ ବାବୁ
ସର୍ବଗ୍ୟଂ ନାଥ ତୋତେ ବୁଦ୍ଧି ଦୃଶ୍ୟ ସବୁ ।୧୫୫
ଦ୍ରିଯୋଧନ ବୋଇଲା ଶୁଣ ହୋ ଗାନ୍ଧାର
ତୁମ୍ଭେ ନିରୁତାନ୍ତ ବଇରି ଅଟ ଯେ ମୋହୋର ।୧୫୬
ମାତାକୁ ମୋହୋର ଯେବଣ କୃତ୍ୟ କଲୁ ଗାନ୍ଧାରସେନ ରାଜା
ବିଧବା କନ୍ୟା କରାଇଲୁ ଧୃତରାଷ୍ଟ୍ରଙ୍କ ଭାରିଯା ।୧୫୭
ଗୋଲକ ବୃକ୍ଷ ଯେ ବିଭାକାଳେ ମଲା ଯୁଗତେ
ବିଧବା କନ୍ୟା ପିତାକୁ ମୋହୋର ଦିଲୁ ତୁ କେମନ୍ତେ ।୧୫୮
ଅଗ୍ନିରେ ଦହନ କିଂପେ ନ କଲୁ ମହାତମା
ସେ କଥା କଳଙ୍କ ମୋତେ ସଭାରେ ବୋଇଲା ଭୀମା ।୧୫୯
ତୋତେ ମାଇଲେ ମୁଂ ପାଶୋରଇ ସେ କଥା
ତୋହୋର ନିମନ୍ତେ ମୋତେ ହାଦେ ଲଜ୍ଜା ଅପ୍ରମିତା ।୧୬୦
ପାଣ୍ଡବଙ୍କ ନିମନ୍ତେ ନିର୍ବାଣ ନୋହଇ ଯେ ଘର
ତୋହୋର ନିମନ୍ତେ ନିର୍ବାଣ କରିଛି ଯେହୁ ପୁର ।୧୬୧
ତୁ ଯେବେ ନିଂଶ୍ଚିନ୍ତେଣ ଥାଅ ଯାଉଅଛି ମୁହିଁ
ବଜ୍ର ଯନ୍ତ୍ରୀ କୀଳଣୀ କିଳିଲା, ତହୁଂ ଗଲାକ କୁରୁସାଇଂ ।୧୬୨
ପ୍ରବେଶ ହୋଇଲା ଯାଇଂ ଆପଣା ନିଜ ଦେଶ
ସ୍ନାହାନ ଭୋଜନ ସେ କରଇ ହରଷ ।୧୬୩
ଗାନ୍ଧାରୀ ବାରତା ପାଇଲେ ତଥ୍ୟ କରି
ଦ୍ରିଯୋଧନ ସନ୍ନିଧେ ବିଜେ କଲେ ମାହେଶ୍ୱରୀ ।୧୬୪
ବାବୁ ପିତାକୁ ମୋହୋର ଲାଇଲୁ ପଥର ଘରେ
ଆରେ ସୋଦର ବଧରେ ପଶିଲୁ ବାଳୁତ ପାମରେ ।୧୬୫
ଗାନ୍ଧାରସେନ ବ୍ରତିଥିଲେ ତୋତେ ରେ ପରମ ହିତ
କେବେହେଂ ବାବୁ ନ ବାହୁଡଇ କଲା କର୍ମ କୃତ୍ୟ ।୧୬୬
ଦ୍ରିଯୋଧନ ନ ଶୁଣଇ ଗାନ୍ଧାରୀର ବୋଲ
ଗୋଟିୟେ କରି ଦ୍ରିଯୋଧନ ନ କଲୁ ତୁହି ଭଲ ।୧୬୭
ଯଦ୍ୟପି ପିତାକୁ ମୋହୋର କଲୁ ଯେତେ କୃତ୍ୟ
ଅନ୍ନ ଦେଉଥାଅ ତାହାର ଜୀବନ ଥିବା ପରିଯନ୍ତ ।୧୬୮
ଦ୍ରିଯୋଧନ ବୋଇଲା ମା ଗୋ ତୋହୋର ବଚନେ
ଦେବଇଂ ଅନ୍ନ ଯାହା ମାଗିଲୁ ତୋଷ ମନେ ।୧୬୯
ମାତାଙ୍କର ବଚନେ ଆଗ୍ୟାଂ ଦିଲା କୁରୁବୀର
ବସାଣ କଲା ଗାନ୍ଧାରକୁ ନିତ୍ୟେ ଅନ୍ନ ଯେକ ଭାର ।୧୭୦
ଭାରେକ ଅନ୍ନ ଆବର ପାଣି କଳସାୟେ
ଗୁଣ୍ଡିରି ଜଳା ବାଟେ ବଢ଼ାଇଣ ଦିୟେ ।୧୭୧
ଦେଖିଣ ଗାନ୍ଧାରସେନ ବିଚାର କରଇ ମନେ
ଅନ୍ନ ଶାସ୍ତିରେ ମଲେ ମୁକତି ନୁହନ୍ତି ଜନେ ।୧୭୨

ସମସ୍ତେହେଂ ପାତନ୍ତି ଡାହାଣ କର ଗୋଟି
ଜ୍ୟେଷ୍ଠ ପୁତ୍ର ଶକୁନି ସବୁଙ୍କୁହିଂ ଦିଅଇ ବାଣ୍ଟି ।୭୩
ଜଣକେ ହୋଅଇ ପୋଷେ ପୋଷେ ଅନ୍ନ
ଘଡ଼ାଯେକ ପାଣି ଚଳୁଯେ ଗ୍ରାସ ପୁଣ ।୭୪
ଯେସନେକ ନିତି ପତି ଦିଅଇ କୁରୁବଇ
ଉପାଯେ ଶକୁନି ତହୁଂ ଥୋକାଯେ ଥୋକାଯେ ରଖିଥାଇ ।୭୫
ଭାତ ପୁଡ଼ାଯେ ଚକଟି ଲେପିଥାଇ କାନ୍ଥେ
ବୁଦ୍ଧି ଭିଆଇଲା ଆପଣା ବ୍ରତିବା ନିମନ୍ତେ ।୭୬
ବଦଯନ୍ତି ଅଗସ୍ତି ଶୁଣ ହୋ ଯୁଗଧର
ଛଅ ମାସ ପରିଯନ୍ତେ ଦିଲା ଅନ୍ନ ଯେକ ଭାର ।୭୭
ଛ ମାସ ଅନ୍ତରେ ପୁଣ ବୁଦ୍ଧିଯେକ କଲା
ଅଙ୍ଗାଯେକ ଦିଅ ବୋଲି ସୂପକାରକୁ ବୋଇଲା ।୭୮
ଜ୍ୟେଷ୍ଠ ମାସ ଶୁକ୍ଳ ପକ୍ଷ ଚଉଠୀର ଦିନ
ଆଗ୍ୟାଂଯେ ବଢ଼ାଇ ଦିଲା ଅଧ ଭାରେକ ଅନ୍ନ ।୭୯
ତାହା ବାଣ୍ଟି ଭୁଞ୍ଜିଲେ ସମସ୍ତେ ବିକଳେ
ଥାଳିଯେକ ଅନ୍ନ ପୁଣି ଦିଲା ଅନ୍ତକାଳେ ।୮୦
ତାହା ଦେଖି ବିଚାର କରଇ ନୃପତି ଗାନ୍ଧାରସେନ
ବାବୁ ସବୁନ୍ତି ଅଦୋଷେ ନାଶ କଲାଟି ଦ୍ରିଯୋଧନ ।୮୧
ଶଯେ ସତାଣୋଇ ଜଣଙ୍କୁ ଥାଳିଯେକ ଭାତ
ଯେତେକ ଆହାର କରି ହୋ ବ୍ରତିବା କେମନ୍ତ ।୮୨
ଦ୍ରିଯୋଧନର ତ ଆମ୍ଭେ ନୋହୁଂ ନା ବଇରି
ବିନା ଅପରାଧେ କିଂପା ଆମ୍ଭନ୍ତ ନାଶ କରି ।୮୩
ଯେ ମୋହୋର ବଂଶ ଯେ ମାରୁଅଛି ଅନମିତେ
ତାହାର ବଂଶ କେହୁ ନାଶ କରିବ ଯେହିମତେ ।୮୪
ଯେ ଥାଳିକ ଭାତ ଜଣକ ହିଂ ଭୁଞ୍ଜ
ପିତୃ କାର୍ଯ୍ୟ କରି ଦ୍ରିଯୋଧନ ବଂଶ ଗଞ୍ଜ ।୮୫
ଗାନ୍ଧାରସେନ ରାଜାର ଯେସନେକ ବଚନ ଶୁଣି
ଜ୍ୟେଷ୍ଠ ପୁତ୍ର ଶକୁନି କହିଲା ଦୃଢ଼ ବାଣୀ ।୮୬
ତୁ ଯେହ୍ନେ ଆଗ୍ୟାଂ ଦିଲୁ ନରସାଇଂ
ମୁହିଂ ପାରିବି ଦ୍ରିଯୋଧନର ବଂଶ ନାଶ କରାଇ ।୮୭
ଗାନ୍ଧାରସେନ ବୋଇଲା ଥାଳିକ ଅନ୍ନ ଖାଅ
ସବୁରି ଆଷ୍ୟ ଘେନିଣ ତୁ ଶୁଭେଣ ବ୍ରତି ଥାଅ ।୮୮
ସେ ଥାଳିକ ଅନ୍ନ ଯେ ଭୁଞ୍ଜଇ ଶକୁନି
ସଭିଯେଂ ପ୍ରାଣ ପୟାଣ ହୋଇଲେ ଅବସାନି ।୮୯

ଶଯେ ପଞ୍ଚାଣୋଇ ଜଣ ହୋଇଲେ ପ୍ରାଣତ୍ୟାଜ
ଶକୁନି ଘେନି ବ୍ରତି ଅଛି ଗାନ୍ଧାରସେନ ରାଜ ।୯୦
ଗାନ୍ଧାରସେନ ପଚାରଇ ଶୁଣରେ ଶକୁନି
ତୁ ମୋହୋର ଜ୍ୟେଷ୍ଠ ପୁତ୍ର ଅଟୁ ମହାଗ୍ୟାନୀ ।୯୧
ମୁହିଂ ଯେ ପୁତ୍ରରେ ରକ୍ଷା କଲି ତୋତେ
ଦ୍ରିଯୋଧନର ବଂଶ ତୁ ନାଶିବୁ କେମନ୍ତେ ।୯୨
ଶକୁନି ବୋଇଲା ତାତ ଅଛି ନି ମୋହୋର ବୁଦ୍ଧି
ତୋହୋର ବଚନ କହ ମୋତେ କେମନ୍ତେ କାର୍ଯ୍ୟ ସିଦ୍ଧି ।୯୩
ତୁମ୍ଭେ ତ ଯାଉଅଛ ବୁଦ୍ଧିଯେ ମୋତେ କହ
ହୃଦରେ ଧରିଥିବି ତୋହୋର ବଚନ ସନ୍ଦେହ ।୯୪
ଗାନ୍ଧାରସେନ ବୋଇଲା ଶୁଣସି ମୋହୋର ପୁତ୍ର
ମୁହିଂ ଯେତେବେଳେ ହୋଇବି ମୃତ୍ୟୁ ପରାପତ ।୯୫
ଯେ ମୋହୋର ଡାହାଣ କରର ପବ ଅସ୍ଥି
ତାହା ଯତନ କରି ଥୋଇଥିବୁ ନ ଜାଣିମ କୁରୁପତି ।୯୬
ଡାହାଣ ହାଥର ଡାହାଣ ପଦ ଗୋଟି
ତାହା କରାଇବୁ ବାବୁ ପଶା ଦୁଇ କାଠି ।୯୭
ବାମ ହାତର ପବ କରାଇବୁ ପଶାର ଗୁଟି
କରାଇବୁଟି ନିର୍ବାଣ ଯତନ କରି ତିରିଶ ଗୋଟି ।୯୮
ଅବଶ୍ୟ ଦ୍ରିଯୋଧନ ତୋତେ କରିବ ବଡ଼ ଜଣେ
ରାଜାର ତୁଲେ ବସିବୁ ତୁ ମହାମନ୍ତ୍ରୀ ପଣେ ।୯୯
ବାବୁ ତୁ ତ ନାଶ କରି ନୁଆରିବୁ ତାହାକୁ
ପଶା ଖେଳାଇବୁ ତୁ ଦ୍ରିଯୋଧନ ସଂଗେ ପାଣ୍ଡବଙ୍କୁ ।୧୦୦
ଆପଣେ ପାଡିବୁ ତୁ କୂଟ କପଟ ପଶା
ଦାନ ପଡୁଥିବଟି ତୋହୋର ମନୀଷା ।୧୦୧
ଯୁଝେଷ୍ଟିଙ୍କି ହରାଇବୁ ଜିଣାଇବୁ ଦ୍ରିଯୋଧନ
ପଶା ଖେଳାଇ ଯେ ଘେନାଇବୁ ପାଣ୍ଡବଙ୍କ ରାଜ୍ୟ ସିଂହାସନ ।୧୦୨
ଆତ୍ମା ସହିତେ ଜିଣାଇବୁ ଦ୍ରିଯୋଧନଙ୍କୁ
ସଭାର ତଳେ ନେଇ ବସାଇବୁ ପାଣ୍ଡବଙ୍କୁ ।୧୦୩
ସମ୍ଭବେ ଆସ୍ତାନେ ବସିଥିବ କୁରୁରାଜା
ସଭାର ତଳକୁ କେଶ ଧରି ଅଣାଇବୁ ପାଣ୍ଡବଙ୍କର ଭାରିଯା ।୧୦୪
ବିବସନ କରାଇବୁ ଆଣି ମହାସଭା ତଳେ
ସେ କଥାମାନ ଭୀମା ଲିହିଥିବ ବକ୍ଷସ୍ଥଳେ ।୧୦୫
ତହିଂର ରାଗ ଯେ ଘେନିଣ ଭୀମସେନ
ଦ୍ରିଯୋଧନର ବଂଶ ନାଶ କରିବ ସାଂଗ୍ରାମେଣ ।୧୦୬

ବାବୁ ତୁହି ରଣ ଯାଗ୍ୟଂ କରିବୁ ସହଦେବର ହସ୍ତେ
ଭଣଜାଙ୍କୁ ମରାଇ ନ ରହିବୁ କଦାଚିତେ ।୧୦୭
ଜଳ ସ୍ଥଳ ଅନଳେ କହୁଅଛି ତୋତେ
ପାଣ୍ଡବେ ବଧ ନୋହନ୍ତି କେଉଣସି ମତେ ।୧୦୮
ଶକୁନି ବୋଇଲା ତାତ କହିଲୁ ଯେଉଣ କଥା
ଦେବଙ୍କୁ ଅଶକ୍ୟ ଯେ ତୋହୋର ବାରତା ।୧୦୯
ଯେ ତୋହୋର ଭୁଜ ଯେତେ ପୁଣ୍ୟ କରିଥିଲା କାହିଁ
ସଂପ୍ରତେ କରାଅ ମୋତେ ଯେଥିର କଥା କହି ।୧୧୦
ଗାନ୍ଧାରସେନ ବୋଇଲା ବାବୁ ଯେ ତ୍ରେତୟା ଯୁଗର କଥା
ଶହସ୍ର ଶାହାସ୍ରେ ମୁଂ ଅଟଇ ନିର୍ଜିତା ।୧୧୧
ପଶା ଖେଳିଲେ ମୁଂ ହାରଇ ପ୍ରତିଦିନେ
ଗଙ୍ଗାକଇଂ ସେବା କଲି ମୁଂ ପୁତ୍ରରେ ପଶାର ଅଭିମାନେ ।୧୧୨
ପଞ୍ଚଦଶ ବରଷ ପରିଯନ୍ତେ ମୁଂ କଲି ଘୋର ତପ
କଠୋର ତପେ ଦେଖିଲି ବାବୁ ଗଙ୍ଗାଙ୍କ ସରୂପ ।୧୧୩
ଉତ୍ତ୍ରାଙ୍କ ତୀର୍ଥେ ପ୍ରସନ୍ନ ହୋଇଲେ ଧବଳାଙ୍ଗୀ
ବୋଇଲେ ଗାନ୍ଧାରସେନରେ ବର ମାଗ ବେଗି ।୧୧୪
ମୁଂ ବୋଇଲି ଗୋ ମାତ ସୁଦୟା କର ମୋତେ ଆଦି ନାରୀ
ତୋହୋର ତହୁଂ ଦେବୁ ମୋତେ ବିଜୟ ପଶା ସାରି ।୧୧୫
ପଶାରେ କେହି ମୋତେ ନୋହିବେ ଜିଣନ୍ତା
ପ୍ରସନ୍ନେ ପଶା ସାରି ମୋତେ ଦିଲେ ଆଦିମାତା ।୧୧୬
ବିଜୟା ପଶା ସାର ବାବୁ ଆସନ୍ତେଣ ଘେନି
ଗଙ୍ଗା ବୋଇଲେ ଯେ ତୋର ତହିଂ ଥିବ ବରଷ ଯେ ତିନି ।୧୧୭
ତିନି ବରଷରେ ତୁ ତିନି ଭୁବନ ଜିଣିବୁ
କଥା ଗୁହାଇ ଆଣି ମୋତେ ବାବୁରେ ବାହୁଡ଼ାଇ ଦେବୁ ।୧୧୮
ଗଙ୍ଗାହୁଂ ବିଜୟା ସାର ଘେନି ଅଇଲି ତନୟେ
ଅନେକ ରାଜାଙ୍କୁ ବାବୁରେ ମୁଂ ଜିଣିଲି ପଶାୟେ ।୧୧୯
ଧନ ଭଣ୍ଡାର ଆଣିଲି ରଥ ଗଜ ପାଦାନ୍ତି
ପଶାର ଭୟେ କେହି ନଇଲେ ମୋର କତି ।୧୨୦
ତିନି ବରଷ ଉଭାରେ ମୁଂ ଉତ୍ତ୍ରାଙ୍କୁର ତୀର୍ଥକୁ ଗଲି
ଗଙ୍ଗାଙ୍କୁ ତୁଷ୍ଟି କରି ମୁଂ ବିଜୟା ପଶା ଦେଲି ।୧୨୧
ପଶା ଘେନିମାକୁ ଦେବୀ ପାତିଲେକ ହସ୍ତ
ବିନୟ ଭାବେ ଗୋସାମଣୀଙ୍କୁ ଯୋଡିଲି ବେନି କରପତ୍ର ।୧୨୨
ତୁ ଯେବେ ପ୍ରସନ୍ନ ହୋଇଲୁ ମାହେଶ୍ୱରୀ ମୁକୁ
ଚିରନ୍ତନ କଥା ରହୁ ମୋହୋର ବଂଶକୁ ।୧୨୩
ଗଙ୍ଗା ବୋଇଲେ ପଶା ପାତିଲୁ ଯେବଣ କରସ୍ଥଳେ
ତୋହୋର ମୃତୁକାଳେ ଅସ୍ଥି ଘେନିମ ତୋହୋର କୁମରେ ।୧୨୪
ଡାହାଣ ହସ୍ତ ପଦେ କରିବ ଦୁଇ ପଶା କାଠି
ବାମ ହସ୍ତର ପଦ କରିବ ପଶାଗୁଣ୍ଡି ତିରିଶ ଗୋଟି ।୧୨୫
ତୋହୋର ବଂଶକୁ ଯେ ରହିବ ଚିରନ୍ତନେ
କେହି ଜିଣନ୍ତା ନୋହିବଟି ତୈଲୋକ୍ୟ ଭୁବନେ ।୧୨୬
ଗଙ୍ଗାର ପ୍ରସନ୍ନ ବାବୁ ନୋହଇ ଆନ କଳା
କହୁଂ କହୁଂ ଗାନ୍ଧାରସେନ ପ୍ରାଣତ୍ୟାଜ ହୋଇଲା ।୧୨୭
ପିତାର ବଚନେ ସେ କୁମାର ଶକୁନି
ଦୁଇ ହସ୍ତର ଅସ୍ଥି ପଦ ଯତନ କରି ଘେନି ।୧୨୮
ଶୟେ ଛୟାଶୋଇ ଜଣ ତ ପ୍ରାଣତ୍ୟାଜ ହୋଇଲା
ଯେକମାତ୍ର ଶକୁନି ପ୍ରାଣ ସେ ପାଇଲା ।୧୨୯
ଥାଳିଯେକ ଅନ୍ନ ଯେ ଦେଉଥିଲା କୁରୁପତି
ଅନ୍ତେଣ ପୁଣ ନ ଦିଲା ତାହା ମୂର୍ଖମତି ।୧୩୦
କାନ୍ଥରେ ଶକୁନି ଲେପିଥିଲା ଯେବଣ ଅନ୍ନ
ତାହା ଖାଇ ପ୍ରାଣ ଯେ ରଖଇ ପ୍ରତିଦିନ ।୧୩୧-୫୭୩୧

**

## ୨୧. ଜତୁଗୃହ ଉପାଖ୍ୟାନ

### ଜତୁଗୃହ ନିର୍ମାଣ

ବଦୟନ୍ତି ଅଗସ୍ତି ଶୁଣ ବଇବସୁତ ମନୁ
କୂଟ ଉପାୟେ ପାଞ୍ଚୁ ଅଛି ଧୃତରାଷ୍ଟ୍ରର ତନୁ ।୧
ଦ୍ରିଯୋଧନ କର୍ଣ୍ଣ ଶକୁନି ଅଶତ୍ଥମା
ବାରୁଣାବନ୍ତେ ବସି ଭାଳନ୍ତି ମହାତମା ।୨
ତୁଳମାସ କୃଷ୍ଣପକ୍ଷ ଦ୍ୱିତୀୟାର ତିଥି
ବନସ୍ତେ ଥାଇ ଭାଳଇ ମାନ ଚକ୍ରବ୍ରତୀ ।୩
ଆହୋ ପୁରୋଚନ ନାମେ ଯେକଇ ଦ୍ୱିଜବର
ଯେକା ହୋଇଥାଇ ବ୍ରାହ୍ମଣ ବନସ୍ତ ଭିତର ।୪
ପୂର୍ବ ଅଭିଶାପରୁ ଅଷ୍ଟବସୁରୁ ଯେକ ବସୁ
ଶାପ ଅନୁମତୁଂ ଯେ ବୁଲଇ ବନ କନ୍ଦର ଦେଶୁ ।୫
ପୂର୍ବ ଅନୁକର୍ମରେ ଯେ ବନ ପର୍ବତେ ଅଛନ୍ତି ବସି
ପୁରୋଚନ ପଣ୍ଡାୟେ ସନ୍ନିଧେ ହୋଇଲେକ ଆସି ।୬

ଧାର୍ମିକ ବିବେକ ବେଦ ଶାହାସ୍ତ୍ରେଣ ନିର୍ଜିତା
ବେଦ ଆଧାନ ସେ କରଇ ବ୍ରାହ୍ମଣ ମହତା ।୭
କର୍ଣ୍ଣ ପଚାରିଲେ ତୁମ୍ଭେ କାହିଂର ପଣ୍ଡା ହେ
ବନସ୍ତେ ଭ୍ରମୁଅଛ ହୋଇଣ ନିର୍ଭୟେ ।୮
ବ୍ୟାଘ୍ର ଭାଲୁକେଣ ତୁମ୍ଭେ ନ କର କି ଶଙ୍କା
ଯେ ଘୋର ବନସ୍ତେ ତୁମ୍ଭେ ବୁଲ କିଂପେ ଯେକା ।୯
ପୁରୋଚନ ବୋଇଲା ତୁମ୍ଭେ କାହିଂର ନରପତି
ହତ ରାଜ୍ୟ ପ୍ରାୟେ ତୁମ୍ଭର ଭାଲୁଣି ଯେ ମତି ।୧୦
କର୍ଣ୍ଣ ବୋଇଲେ ତୁମ୍ଭେ ଶୁଣ ହୋ ଦ୍ୱିଜବର
ପଞ୍ଚୁକଟକେ ଆଧିପତି ଯେ ଦ୍ରିଯୋଧନ ମହାବୀର ।୧୧
ଯେହାର ବଡ଼ କଷ୍ଟ ଶତ୍ରୁର ଉପଦର୍ପେ
ଅନେକ ବିସରଇ ରାଜା ବଇରି ମଉ ଗର୍ବେ ।୧୨
ବିଚକ୍ଷଣ ବିବେକ ଧାର୍ମିକ ମହାରାୟେ
କେଡ଼େକ ଶତ୍ରୁ ସେ ତାହାକୁ ତୋହୋର ଯେତେକ ଭୟେ ।୧୩
ରଥ ଗଜ ଅଶ୍ୱ ପାଦାନ୍ତି ବଳ ତାର କେତେ
ସର୍ବେ ମାଆ ରାଣ୍ଡ ପାଞ୍ଚ ଗୋଟି ପୁତ୍ରେ ।୧୪
ପୁରୋଚନ ବୋଇଲା ଯେତେକ ଛାରକୁ
ବେଢିଣ ମାରି କି ହୋ ନ ପାରିଲ ତାହାଙ୍କୁ ।୧୫
ଦ୍ରିଯୋଧନ ବୋଇଲା ତାଙ୍କୁ ପ୍ରାକର୍ମେ ନୋହୁ ସରି
ଯୁଦ୍ଧେଣ ବଳବନ୍ତା ପ୍ରାକର୍ମେ କେଶରୀ ।୧୬
ପୁରୋଚନ ବୋଇଲା ମୋହୋର ଅଛି ନି ଉପାୟେ
ମୁହିଂ ତାହା ନାଶ କରି ପାରଇ କୁରୁରାୟେ ।୧୭
ଯେମନ୍ତ ଶତ୍ରୁ ସେ ତୁମ୍ଭର ତାହାକୁ ଯେତେ ଭୟେ
ଯାହା କହିବି ମୁଂ କରିବ କଥାୟେ ।୧୮
ଗ୍ରାମ ଗୋଟିୟେ ମାତ୍ରକ ତୁ ତାହାଙ୍କୁ ଛାଡିବୁ
ଜଉ ସଜଳସ ଗୁଆଘୃତ ଛଣପଟ ମୋତେ ଦେବୁ ।୧୯
ଜତୁର ଘରେକ ମୁଂ ଭିଆଇବି କୂଟେ
ଜଉ ସଜଳସ ଗୁଆଘୃତ ଛଣପଟେ ।୨୦
ଆହୋ ପାଣ୍ଡବନ୍ତ ରୁହାଇବୁ ସେ ଘରରେ ଆଣି
ନିଦ୍ରା କାଳେଣ ଜାଳି ଦେବଇଂ ମୁହିଂ ଯେ ରୟେଣୀ ।୨୧
ଜତୁର ଘରେ ଦହନ ହୋଇବେ ପଞ୍ଚୁବୀରେ
ଯେକୋଙ୍ଗ ରାଜା ତୁ ହୋଇବୁ ପଞ୍ଚୁ କଟକରେ ।୨୨
ଶୁଣିଣ ପରମ ସାନନ୍ଦ ହୋଇଲା କୁରୁପତି
ବ୍ରାହ୍ମଣକଇଂ ସମ୍ଭାଳିଲା ଅନେକ କରି ପ୍ରୀତି ।୨୩

ବୋଇଲା ଯେହି ବାରୁଣାବନ୍ତ କଟକ ଯେ ମୋହୋର ରାଜ୍ୟ
ତୋହୋର ଆଗ୍ୟାଂୟେ ଯେହା ଛାଡିଲି ହୋ ଦ୍ୱିଜ ।୨୪
ଅନେକ ରତ୍ନ ଦେଇ ସେ କଲାକ ଗଉରୋବ
ଆତ୍ମାହୁଂ ଅଧିକ ସେ ହୋଇଲା ପ୍ରିୟ ଭାବ ।୨୫
ଜଉ ସଜଳସ ଗୁଆଘୃତ ଛଣପଟ
ଯେ ଚାରିଙ୍କି ମର୍ଦ୍ଦି ପୁରେକ ନିର୍ମିତ କଲା କୂଟ ଯେ କପଟ ।୨୬
ବିଚିତ୍ର ଲେଖନ ଉପରେ ନିର୍ବାଣି
ଲମ୍ୱନ୍ତି ଅଷ୍ଟ ରତ୍ନେ ମୁକୁତା ଝରାମଣି ।୨୭
କାନ୍ଥ ଚାଳ ସେ ଗୁଅ ବତା ଆଦି କରି
ଜଉ ସଜଳସ ଗୁଆଘୃତ ଛଣପଟେ ଜଡ଼ି ।୨୮
ଭିତରେଣ ସମାନ ଉପରେ ବିଚିତ୍ର କମ
ଝଲକନ୍ତି ମଣି ରତ୍ନ ଚିରାଳ ଉତ୍ତମ ।୨୯
ସୁବର୍ଣ୍ଣର କଳସ ଯେ ବସାଇ ଉପରେ
ପୁର ନିର୍ବାଣ କଲା ବ୍ରାହ୍ମଣ ପାଞ୍ଚ ବରଷରେ ।୩୦
ଯୁଝେଷ୍ଠିଙ୍କି ହକାରି ଯେ ବୋଇଲେ ଧୃତରାଷ୍ଟ୍ରେ
ବାବୁ ତୋହୋର ଥିବା ନ ଯୋଗାଇ ହସ୍ତିନା କଟକେ ।୩୧
ବାବୁ ଭୀମସେନ ଦ୍ରିଯୋଧନ ହୋଇଲେ ଅନେକ ଅପ୍ରୀତି
ଦ୍ୱନ୍ଦ ହୋଇବ ବାବୁ ନ ରହ ତୁ ଯେଥି ।୩୨
ତୁମ୍ଭନ୍ତ ଛାଡିଲୁ କଟକ ବାରୁଣାବନ୍ତେ
ସୁଖେଣ ରାଜ୍ୟ ଭୋଗ କର ପଞ୍ଚୁ ଭ୍ରାଥେ ।୩୩
ଯୁଝେଷ୍ଠି ବୋଇଲେ ଆମ୍ଭେ ଆଦ୍ୟହୁଂ ବନଚର
ଜନ୍ମହୁଂ ବଢ଼ିଲୁ ଆମ୍ଭେ ଶତଶିଂଗ ପର୍ବତର ।୩୪
ଯେ ତୋହୋର ଆଗ୍ୟାଂ ଯେ ଶିରେ ଧରି ମାନୁ ଆମ୍ଭେ ପଞ୍ଚୁ ଭ୍ରାଥେ
ବାରୁଣାବନ୍ତ ରାଇକେ ତାତ ରହିବୁ ନିଶ୍ଚିନ୍ତେ ।୩୫
ଧୃତରାଷ୍ଟର ଆଗ୍ୟାଂ ଶିରେ ନିରାଧାର କରି
ଶୁଭ ଅନକୂଳ ଯୋଗ ଲଗ୍ନ ଯେ ବିଚାରି ।୩୬
ମାର୍ଗଶୀର କୃଷ୍ଣପକ୍ଷ ପ୍ରତିପଦା ଚନ୍ଦ୍ରବାର
ବୃଷରାଶିକୁ ଭୋଗ ଯେ ଅଟଇ ସେ ଦିନର ।୩୭
ତୈତିଳ ନାମେ କରଣ ଶିବ ନାମେ ଯୋଗ
ତାର ଚନ୍ଦ୍ର ବଳ ଶଶୀ ରୋହିଣୀ ଘରେ ଭୋଗ ।୩୮
ଯେସନେକ ଶୁଦ୍ଧ ଶୁଭ ଯୋଗ ଅନକୂଳେ
ବାରୁଣାବନ୍ତକୁ ଅନକୂଳ କଲେ ଶୁଭଲଗ୍ନ ବେଳେ ।୩୯
ଯୁଝେଷ୍ଠି ଭୀମ ଅର୍ଜୁନ ନକୁଳ ସହଦେବ
କୋଇନ୍ତାଙ୍କୁ ଘେନି ଚଳିଲେ ପଞ୍ଚୁ ଯେ ପାଣ୍ଡବ ।୪୦

ପ୍ରବେଶ ଯୁଝେଷ୍ଠି ଯାଇ ବାରୁଣାବନ୍ତ ପ୍ରଶସ୍ତେ
ଜଦୁର ଘର ଦ୍ୱାରେ ଯେ ରହିଲେ ପଞ୍ଚୁ ଭ୍ରାଥେ ।୪୧
ଦେଖନ୍ତି ଭୁବନ ଯେ ଅତି ପରିମଳ
ସୁବର୍ଣ୍ଣ କଳସ ଯେ ବସଇ ଢଳହଳ ।୪୨
ଚଉଂରୀ ନବର ବିସ୍ତାର ଭିଆଣ ସାତପୁର
ଖଞ୍ଜିତ ରତ୍ନ ମଣି ମାଣିକ୍ୟ ବିସ୍ତାର ।୪୩
ସୁବର୍ଣ୍ଣର ପାଟିଆ ଯେ ଉପରେ ଛାୟେଣୀ
ମରକତ ବଇଡୁର୍ଯ୍ୟ ଗଜଦନ୍ତ ଶୁଦ୍ଧମଣି ।୪୪
ପୀଢାର ଉପରେଣ ମାଣିକ୍ୟ ପୁଞ୍ଜି ପୁଞ୍ଜି
ବାଳ ଆଦିତ୍ୟର ତେଜ ପ୍ରଭାତେଣ ଗଞ୍ଜି ।୪୫
ପୀଢ଼ାର ଉପରେଣ ନିର୍ବାଣ ଯେ ଅଷ୍ଟରତ୍ନ କମ
ଦେଖିଣ ଅନେକ ଉଷତ ଯେ ହୋଇଲେ ବୀର ଭୀମ ।୪୬
ଭୀମସେନ ବୋଇଲେ ଯେ ବଡ଼ ସୁସଞ୍ଚ ଭୁବନ ଗୋଟି
ବାରସ୍ୱତୀ ଭୁବନ ଜାଣି ତେଜ ଯେହାର ଫୁଟି ।୪୭
ଯୁଝେଷ୍ଠି ବୋଇଲେ ବାବୁ ଭିତରେଣ ପଶ
କେମନ୍ତ ସରୂପ ତାହା ତୁ ବିଚାରିଣ ଆସ ।୪୮
ଯୁଝେଷ୍ଠିଙ୍କ ଆଗ୍ୟାଂ ପ୍ରମାଣେ ମାରୁତି
ଜଦୁର ଘର ଭିତରେ ପଶିଲା ତତକ୍ଷଣାନ୍ତି ।୪୯
କଣୟ ପତ୍ର ରସାଣି ଅନେକ ରତ୍ନ ଖଞ୍ଜି
କି ଅବା ବାରାନିଧି ଘେନି ଲକ୍ଷ୍ମୀ ଯେଥି ଭଜି ।୫୦
ଭୀମସେନ ବୋଇଲା ସ୍ୱାମୀ ଶୁଣ ରାଜଦେବ
ଯେତେ ଦୟା କିଂପେ କଲା ମାନଗୋବିନ୍ଦ କେଉଂଣ ପ୍ରସ୍ତାବ ।୫୧
ଯେ ମଧ ସ୍ୱର୍ଗରେଣ ଯେମନ୍ତ ଦେଖିଲା ମୋର ନାହିଂ
ମୁହି ଆଶ୍ରିଜ ହୋଇଲି ଯେ ପୁରକଇଂ ଚାହିଂ ।୫୨
ଧୃତରାଷ୍ଟ୍ର ପୁଅଙ୍କୁ ମୋର ଅନେକ ରାଗ ଥିଲା
ଯେ ଦିବ୍ୟ ଭୁବନ ଦେଖନ୍ତେ ଦେବ ସମସ୍ତ ପାଶୋର ଗଲା ।୫୩
ଯୁଝେଷ୍ଠି ବୋଇଲେ ଯେ ସେ ମୁର୍ଖ ପ୍ରାଣୀ
ପଣ୍ଡିତ କଥା ସେ ଯେ କେବେହେଂ ନ ଶୁଣି ।୫୪
ଆପଣେ ବିଜେ କଲେ ଜଉ ଘରର ଭିତରେ
ପୁର ପରିମଳ ଜାଣନ୍ତି ପଞ୍ଚୁ ବୀରେ ।୫୫
ଚନ୍ଦ୍ରଶାଳା ପୁରେ ଚଉଂରୀ ଭୁବନ
ଦକ୍ଷିଣ ଜଗତୀ ଯେ ନାନାବିଧ ରତ୍ନ ଚିହ୍ନ ।୫୬
ମେଢକ ନିର୍ବାଣ ଯେ ଦେଖିଣ ତୋଷମତି
ବିଶ୍ୱେଶ୍ୱର ଆସନ କି ଅମର ବାରସ୍ୱତୀ ।୫୭
ଭିତରେଣ ଥାଇ ଜଉ ଗୁଆଘୃତ ଛଣପଟ ଜଡ଼ି
ଉପରେ ସୁବର୍ଣ୍ଣ ରସାଣ ପତ୍ର ଅଷ୍ଟରତ୍ନେ ଖଞ୍ଜାଣି କରି ।୫୮
ଦେଖନ୍ତି ସୁସଞ୍ଚ ଯେ ଅତ୍ୟନ୍ତ ଅମୂଲ୍ୟ
କୁବେର ଅଳକା ଭୁବନ ଯେ ନୋହଇ ସମତୁଲ ।୫୯
ପ୍ରତକ୍ଷେ ପରିମଳ ସେ ଦେବ ଭୁବନ ପ୍ରାୟେ
ଦେଖିଣ ପରମ ସାନନ୍ଦ ସେ ଧର୍ମର ତନୟେ ।୬୦
ଯୁଝେଷ୍ଠି ବୋଇଲେ ହୋ ଆମ୍ଭେ ପଞ୍ଚୁ ଭ୍ରାଥେ
ଆମ୍ଭର ମାତା ଅଛନ୍ତି କୋନ୍ତ ଭୋଜର ଦୋହିତେ ।୬୧
ଯେହେନେକ ପୁର ଯେ ନିର୍ବାଣ କଲା ଦ୍ରିଯୋଧନ
କାହାର ବିଚାରକୁ ଯେହା ଦିଶଇ କେସନ ।୬୨
ମାୟେ ବୋଇଲେ ବାବୁ ଯେ ବଡ ସୁସଞ୍ଚ ପୁରୀ
ଦ୍ରିଯୋଧନ ବଡ଼ ସଦଭାବେ ଯେହା ନିର୍ବାଣ କରି ।୬୩
ତାହାର ହୃଦେ ଯେ ଆମ୍ଭଙ୍କୁ ନାହିଂ ପାପ ବାଧା
ମାନଗୋବିନ୍ଦ ଯେ ପୁର କରାଇଲା ବହିଣ ଶରଧା ।୬୪
ଭୀମସେନ ବୋଇଲେ ଦେବ ଯେ ଅତିଅ ସୁସଞ୍ଚ ପୁରୀ
ଅନେକ ପ୍ରିୟ ଭାବେ ଯେହା ନିର୍ବାଣିଲା ଦଣ୍ଡଧାରୀ ।୬୫
ଯେବେ ସେ ଜାଣିଲି ଦ୍ରିଯୋଧନର ନିକଳଙ୍କ ହିୟା
ସୋଦ୍ରିମା ପଣ ଦେବ ପାଳିଲା କୁରୁନାହା ।୬୬
ଅର୍ଜୁନ ବୋଇଲା ଦେବ ଦ୍ରିଯୋଧନ ଅଟଇ ଭଲ
ବଢ଼ିଲା ପୀରତି ଦେବ ହୋଇଲା ସମତୁଲ ।୬୭
ସୋଦ୍ରିମା ପଣ ଦେବ ଜାଣିମା କେମନ୍ତେ
ଭଲ ବାଞ୍ଛା କରଇ ଦେବ ତାହାର ହୃଦଗତେ ।୬୮
ଅଭାବକୁ ଭାବ ଯେବେ କରନ୍ତି ଯେବଣ ପ୍ରାଣୀ
ସୁଜନ ସଙ୍ଗତରେ ତାହାନ୍ତଇଂ ଗଣି ।୬୯
ସୋଦର ସୋଦ୍ରିମା ପଣ ଜାଣିମା କେମନ୍ତେ
ଧନ ପ୍ରାଣ ଭାରିଯା ଭାବଇ ହୃଦଗତେ ।୭୦
ନକୁଳ ବୋଇଲା ଦେବ ତାର ନିକଳଙ୍କ ହିୟା
ତେଣୁ ସେ ଦ୍ରିଯୋଧନ ଆମ୍ଭଙ୍କୁ ଦିଲା ଯେହା ।୭୧
ସେ ମହା ଧାର୍ମିକ ବିବେକ ସୋଦ୍ରିମ
ଆମ୍ଭନ୍ତ ସମ୍ଭାଳିଲା ଅଟଇ ତାର ଧର୍ମ ।୭୨
ସହଦେବ ବୋଇଲା ଦେବ ବଡ଼ ସୁସଞ୍ଚ ପୁର
ଅତି ଅନନ୍ତ ଅଲେଖ ସେ କଣୟ ବିସ୍ତାର ।୭୩
ଦ୍ରିଯୋଧନ ଆମ୍ଭଙ୍କୁ କାହିଂ ଯେତେକ ସୁହୃଦେ
କପଟ ପ୍ରାୟେ ଦେବ ବୁଝଇ ମୋହୋର ହୃଦେ ।୭୪

ଯୁଝେଷ୍ଟି କୋଳ ଯେ କଲେ ସହଦେବଙ୍କୁ
ତୋହୋର ପ୍ରସାଦେ ବାବୁ କାରଣ ଅଛଇ ମୁକୁ ।୭୫
ସହଦେବଙ୍କୁ ଘେନି ଯେକାନ୍ତ ହୋଇଲେ ଯୁଝେଷ୍ଟି ଦେବ
ବାବୁ କେମନ୍ତ କପଟରେ କହସି ସହଦେବ ।୭୬
ସହଦେବ କହଇ ପୁରୋଚନ ନାମେ ଦ୍ୱିଜ
ତାହାର ଭିଆଣ ଯେ ଅଟଇ ଧର୍ମରାଜ ।୭୭
ଜଉ ସଜଳସ ଛଣପଟ ଗୁଆଘୃତ ଭରି
ଯେହାର ସଂଯୋଗେଣ ଘର ନିର୍ବାଣ ଯେ କରି ।୭୮
କାନ୍ଥ ଚାଳ ଗୁଅ ବତା ଆଦି କରି
ଜଉ ସଜଳସ ଗୁଆଘୃତେ ଜଡ଼ି ।୭୯
ନିଦ୍ରା କାଳେ ଯେଥି ଲଗାଇବ ଜୁଇ
ଯେମନ୍ତ ଭିଆଣ କରିଅଛି କୁରୁସାଇଂ ।୮୦
ଯୁଝେଷ୍ଟି ମନେ ମନେ ସୁମରନ୍ତି ଧର୍ମ ଧର୍ମ
ବାବୁ ଗୋପ୍ୟ କର ନି ଯେ କଥା ନ ଜାଣୁ ବୀର ଭୀମ ।୮୧
ଜାଣିଲେ ଯେକ୍ଷଣି ଦ୍ୱନ୍ଦ ଯେ କରିବ ସାଂଗ୍ରାମ
ଦ୍ରିଯୋଧନ ଶତେ ଭାଇଙ୍କି ମାରିବ ଅତି ତମ ।୮୨
ଧୃତରାଷ୍ଟ୍ର ପୁଅନ୍ତ ଯେ ସବୁନ୍ତି ମାରିବ
ଅନ୍ଧରାଜା ଗୋଟି ଯେ ଅନାସ୍ତ ହୋଇବ ।୮୩
ବାବୁ ସେ ଅବା କପଟ କଲା ନ ବିଚାରି
କେମନ୍ତେ ଧର୍ମେ ଆମ୍ଭେ ହୋଇବା ଯେଥୁଂ ପାରି ।୮୪
ସହଦେବ ତୂନୀ ହୋଇଲେ ଯୁଝେଷ୍ଟିଙ୍କ ବଚନେ
ରହିଲେ ଜଗବନ୍ଦନ ବାରୁଣାବନ୍ତ ସ୍ଥାନେ ।୮୫

■ ■

## ଜତୁଗୃହ ଦାହର ମନ୍ତ୍ରଣା

ଆହୋ ବଦୟନ୍ତି ଅଗସ୍ତି ଶୁଣ ହୋ ଯୁଗବାସୀ
ଅମୃତ ରସ ଭାରଥ, ଶରୀର ଯେହ୍ନେ ତୋଷି ।୧
ପାଣ୍ଡବାସୁରକୁ ଯହୁଂ ପାଣ୍ଡବେ ବଧ କଲେ
ତହୁଂ ସେ ପାଣ୍ଡବ ନାମ ପାଞ୍ଚେହେଂ ବହିଲେ ।୨
ଧାତୁବାଦ ପୁରୁଷ ବୋଇଲେ ଶୂନ୍ୟଦେବ
ଆଜହୁଂ ତୁମ୍ଭ ନାମ ହେଉ ଯେ ପଞ୍ଚପାଣ୍ଡବ ।୩
ଅସାଷ୍ଟମ ହୋଇ ଯେ ପଡ଼ିଥିଲେ କୁରୁବୀରେ
ଶରୀର ପାଇଲେ ସେ ଅର୍ଜୁନର ଜୀବନ୍ୟାସ ଶରେ ।୪
ଭୀମସେନ ବୋଇଲା ରେ ପ୍ରତଗ୍ୟାଂ କରୁଥିଲ
କପଟ ଭିଆଇ ମୋତେ ବିଷଲଡୁ ଦେଲ ।୫
ତୁମ୍ଭର ନିମନ୍ତେ ରେ ପାଣ୍ଡବାସୁର ନାଶି
ପାଣ୍ଡବ ନାମ ଆମ୍ଭନ୍ତ ଦିଲେ ସ୍ୱର୍ଗବାସୀ ।୬
ଚଳନ୍ତି କୁରୁବୀରେ ଅନେକ ଅଭିମାନେ
ବିଜୟେ କୁରୁବୀରେ ହସ୍ତିନା ଭୁବନେ ।୭
ସଞ୍ଜୟେ କହିଲେ ଶୁଣ ଅମ୍ବିକାର ସୁତ
ପୁଅଙ୍କର ଚରିତ୍ର ତୋର ଶୁଣ ବିପରୀତ ।୮
ବଳରାମଙ୍କର ମେଲୁଂ ଆସନ୍ତେ ତୋର ପୁତ୍ରେ
ପାଣ୍ଡବାସୁର ଦାନବ ଯେ ଦେଖିଲା ବନସ୍ତେ ।୯
ସାଂଗ୍ରାମ କରି ସବୁନ୍ତିହିଂ ମାଇଲା ମହାରୋଳେ
ଭକ୍ଷଣ କରିବ ସବୁ ପକାଇ ଅନଳେ ।୧୦
ପଣ୍ଡୁର ନନ୍ଦନ ଯେ ଦେଖିଲେ ଯେମନ୍ତର ସମୟେ
ଅସୁର ମାରି ପ୍ରତଗ୍ୟାଂ ସାଚା କଲା ପବନ ତନୟେ ।୧୧
ଅସୁର ମାରି ଯହୁଂ ପ୍ରତଗ୍ୟାଂ ସାଚା କଲେ
ପଞ୍ଚ ପାଣ୍ଡବ ବୋଲି ଆକାଶେ ଡାକିଲେ ।୧୨
ସଞ୍ଜୟ କହନ୍ତେଣ ପ୍ରବେଶ ଦ୍ରିଯୋଧନ
ଧୃତରାଷ୍ଟ୍ରଙ୍କ ଅଗ୍ରେ ସମସ୍ତ କହିଲା କର୍ଣ୍ଣ ।୧୩
ଶକୁନି କହିଲା ଦେବ ଶୁଣ କୁରୁବଙ୍କ
ଭୀମସେନ ପାର କଲା ସେ ବିଷଲଡୁ ଖାଇ ।୧୪
ସଞ୍ଜୟେ ତୋ'ବଂଶ ନାଶ ହେବ ହୋ କୁରୁବଙ୍ଗ
ପାଣ୍ଡବେ ବୃତିଥିଲେ ତୋର ପୁଅଙ୍କର ଜୀବନ ନାହିଂ ।୧୫
ଶୁଣିଣ ବିଷାଦ ହୋଇଲା ସେ ଅମ୍ବିକାର ବଳା
ଅଗାଦ ସମୁଦ୍ରେ ନିଶ୍ଚେ ମୋହୋର ବୁଡ଼ିଲାକ ଭେଳା ।୧୬
ଶକୁନି ବୋଇଲା ତୁ ଶୁଣ ରାଜ୍ୟେଶ୍ୱର
ପାଣ୍ଡବଙ୍କର ନାଶ ଯେହ୍ନେ ଉପାୟେ ଦେବ କର ।୧୭
ଯେସନେକ ବିଚାର ଯେ କରଇ କୁରୁନାଥେ
ପାଣ୍ଡବେ ରହିଛନ୍ତି ବାରୁଣାବନ୍ତ ପ୍ରଶସ୍ତେ ।୧୮
ବାସୁଦେବଙ୍କୁ ସୁମରନ୍ତି ଯେକାନ୍ତେ ଯୁଝେଷ୍ଟି
ଯୁଝେଷ୍ଟି ସୁମରନ୍ତେ ଦେବ ମିଳିଲେ ଗରୁଡ଼ର ପିଠି ।୧୯
ରାତ୍ର ଅର୍ଦ୍ଧମାନେ ଶକୁନି ହକାରୀ ଭଗବାନ
ସଙ୍ଗତେ ଘେନିଛନ୍ତି ସହଦେବ ମନ୍ତ୍ରୀ ପୁଣ ।୨୦
ତିନି ଜଣ ବସି ଯେ ବିଚାର କରନ୍ତି
ଜଦୁଘର ତୁମ୍ଭ ପାଇଂ ଭିଆଇ ଅଛିଟି କୁରୁପତି ।୨୧

ସହଦେବ ବୋଇଲେ ତୁ ମାତୁଳ ଶୁଣିମା
ଜନ୍ଦୁର ଘର ଭିଆଇ ଅଛନ୍ତି କାହାକୁ ରଖିବେ ମହାତମା ।୨୨
ଗୋବିନ୍ଦେ ବୋଇଲେ ତୁମ୍ଭେ ଶୁଣ ହୋ ବେନି ମନ୍ତ୍ରୀ
ଯୁଝେଷ୍ଟିଙ୍କି ଡକାଇ କହିବା ଯେ ଘାନ୍ତି ।୨୩
ବଦନ୍ତି ଶକୁନି ଶୁଣିମା ବାସୁଦେବ
ଧର୍ମ ସୁତଙ୍କୁ ଦେବ କି ଅବା କହିବ ।୨୪
ଯୁଝେଷ୍ଟିଙ୍କି ହକାରି ଆଣିଲେ ନିଶା ଭାଗେ
ସକଳ ବୃତ୍ତାନ୍ତ ଯେ କହନ୍ତି ତାଙ୍କ ଆଗେ ।୨୫
ପୁରଞ୍ଚନ ପଣ୍ଡା ଯତୁଘର ବେଗେ ଦହନ କରିବ
ବୋଲନ୍ତି ଧର୍ମ ନନ୍ଦନ ଶୁଣ ବାସୁଦେବ ।୨୬
ଯେ ଘୋର ସଂକଟରୁ ତୁମ୍ଭେ ସେ ରଖିବ
ତୁମ୍ଭେ ସାହାପକ୍ଷ ହୋଇଥିଲେ କେ କିସ ଯେ କରିବ ।୨୭
ବ୍ୟାସ ବାସୁଦେବ ବିଦୁର ମୋତେ ସପକ୍ଷ ହୋଇଥିଲେ
କେହୁ ଜିଣିମ ମୋତେ ପୃଥିବୀରେ ଭଲେ ।୨୮
ଯେକାନ୍ତେ ବାସୁଦେବ କହିଲେ ସହଦେବଙ୍କୁ
ରାତ୍ରେଣ ଜଗାଇ ରଖାଇବ ପୁର ଭୀମସେନକୁ ।୨୯
ଯେତେ କହି ଶକୁନି ବାସୁଦେବ ଅନ୍ତର୍ଦ୍ଧାନେ ଗଲେ
ହରି ହରି ସୁମରି ପାଣ୍ଡବେ ନିଜ ନବରକୁ ଅଇଲେ ।୩୦
ପୁରଞ୍ଚନ ରାଇଣ ବୋଇଲା କୁରୁପତି
ତୁ ଯା ବ୍ରାହ୍ମଣ ହୋ ପାଣ୍ଡବଙ୍କର କତି ।୩୧
ସୂପକାର ପର୍ଣେଣ ପାକ ସଞ୍ଚି ଦେବୁ
ବିଷ ପରଶିଣ ତୁ ପାଣ୍ଡବନ୍ତ ନାଶିବୁ ।୩୨
ନିଦ୍ରା ଯିବେ ପାଣ୍ଡବେ ଯେବଣ ନିଶାକାଳେ
ଜନ୍ଦୁର ଘରେ ତୁ ଲଗାଇବୁ ଅନଳେ ।୩୩

■ ■

## ଦୁର୍ଯ୍ୟୋଧନ ଆଜ୍ଞାରେ ପୁରୋଚନର ବାରୁଣାବନ୍ତ ଗମନ

ରାଜାର ଆଗ୍ୟାଂ ସେ ପାଇଣ ପୁରଞ୍ଚନ
ବାରୁଣାବନ୍ତକୁ ସେ ଚଳଇ ବହନ ।୧
ଆଷାଢ଼ ମାସ ବିଷ୍ଟି ଯେ ପୂର୍ଣ୍ଣମୀର ଦିନ
ଉତରାଷାଢ଼ା ନକ୍ଷତ୍ର ଯେ ଧନୁ ବିଦ୍ୟମାନ ।୨
ସେ ଦିନ ପୁରଞ୍ଚନ ଯେ ବାରୁଣାବନ୍ତ ଗଲା
ଯୁଝେଷ୍ଟିଙ୍କ ସନ୍ନିଧ୍ୟେ ଯାଇ ପ୍ରବେଶ ହୋଇଲା ।୩
ବ୍ରାହ୍ମଣକୁ ଦେଖିଣ ଯେ ପଚାରନ୍ତି ଦେବୀ କୋନ୍ତେ
କେବଣ କାର୍ଯ୍ୟେ ବିପ୍ର ଅଇଲ କାହିଂର ନିମନ୍ତେ ।୪
ବ୍ରାହ୍ମଣ ବୋଇଲା ଶୁଣ ଭୋଜର କୁମାରୀ
ତୁମ୍ଭେ ଯେ ଦୁଖ ପାଉଅଛ ପାକ ପଚନ କରି ।୫
ମୁହିଂ ବଲ୍ଲଭ ଜାଣଇ ରାନ୍ଧଣା ବିଧାନ
ପାକ ରଞ୍ଚନ କରି ମୁଂ ଦେଉଥିବି ପ୍ରତିଦିନ ।୬
ପୁରଞ୍ଚନ ବୋଇଲା ଧୃତରାଷ୍ଟ ବୋଲି ଯେବଣ ରାଯେ
ତୁମ୍ଭର ଚିନ୍ତାକୁ ତାର ଅନୁବ୍ରତେ ଧାଯେ ।୭
ତାହାର ପୁତ୍ରଙ୍କୁ ନାହିଂ ତାହାଙ୍କର ଚିନ୍ତା
ଅନୁବ୍ରତେ ଧରଇ ସେ ପଞ୍ଚ ପୁତ୍ରଙ୍କର କଥା ।୮
ପୁରଞ୍ଚନ ବଚନ ଶୁଣି ବୋଲନ୍ତି ଯୁଝେଷ୍ଟିର
ସହଦେବଙ୍କୁ ହକାରି ଯେକାନ୍ତେ ନୃପବର ।୯
ବ୍ରାହ୍ମଣ ଚରିତ୍ର ତୁ କେମନ୍ତ ପ୍ରାୟେ ମଣୁ
ତୁ ଯେ ବିଚକ୍ଷଣ ବାବୁ ସବୁ କଥା ଜାଣୁ ।୧୦
ସହଦେବ ବୋଇଲା ଦେବ ଉତର କୋଶଳେ
ଗ୍ୟାନପୁର ନଗ୍ର ବୋଲି ଗଙ୍ଗା ନଦୀ କୂଳେ ।୧୧
ନଉ ସହସ୍ର ଷାଠିଯେ ଘର ତହିଂ ଯେ ବସଇ
ସମସ୍ତେ ହେଂ କୁଗ୍ୟାନୀ ନାଶ କରନ୍ତି ମନୁଷ୍ୟଇଂ ।୧୨
ତହିଂର ମହାଜନ ଯେ ଅଟଇ ଶାସେନୀ
ପାପ ପ୍ରକୃତି ଦେବ ଅଟଇ କୁଗ୍ୟାନୀ ।୧୩
ଗଉଡ଼ିଆ ଗୋଖର ଯେ ଅଟଇ ମନ୍ଦ ବାଟି
ଘର ଭିଆଇଲା ଯେ ଜଉ ସଜଳସ ଗୁଆଘୃତ ଛଣପଟି ।୧୪
ଭୀମସେନ ଠାକୁରଙ୍କୁ ଯେଟି ଦିଲା ବିଷ ଲଡୁ
ଯେବେ ଆମ୍ଭନ୍ତ ଯେ ନାଶ କରିବ ନେଇଣ ବିଷ ଯୋଗାଡୁ ।୧୫
ଯୁଝେଷ୍ଟି ବୋଇଲେ ରହ ରହ ରେ ସହଦେବ
ଭୀମସେନ ଜାଣିଲେ ଏହାକୁ ପ୍ରାଣେ ନାଶ କରିବ ।୧୬
ସବ୍ୟ ହୋଉ କି ଅସବ୍ୟ ହୋଉ ଅଟଇ ବ୍ରାହ୍ମଣ
ଅଥର୍ବ ବେଦୀ ଯେ ବହଇ ବିପ୍ର ଲକ୍ଷଣ ।୧୭
ଯେହାର ପାପେ ହୋ ନାଶ ଯାଉ ଯେହି
ବ୍ରହ୍ମହତ୍ୟା ଦୋଷ ନ ଲାଗୁ ଆମ୍ଭକଇଂ ।୧୮
ମୋହୋର ଶପତ ବାବୁ ସଂଘରଣ କର ଗର୍ଭେ
କଦାଣ୍ଡିତେ ନ କହିବୁଟି ଭୀମସେନର ଆଗେ ।୧୯
ଯୁଝେଷ୍ଟି ବୋଇଲେ ହୋ ଶୁଣିମା ପଣ୍ଡାୟେ
ତୁମ୍ଭନ୍ତ ହକାରି ଯେବେ ପେଷିଲେ ପିତାୟେ ।୨୦
ଆଦିହୁଂ ଜାତ ହୋଇଲୁ ଶତଶିଂଗ ପର୍ବତେ
ବନ ଫଳ ଭୁଞ୍ଜୁ ଆମ୍ଭେ ଥାଉଂ ଯେ ବନସ୍ତେ ।୨୧

ବନସ୍ତହୁଂ ଏବେ ଆମ୍ଭର ସେହି ସେ ପ୍ରକୃତି
ଅନ୍ନ ମେଞ୍ଚାନେ ଆମ୍ଭେ ନୋହୁ ନା ତ୍ରିପୁତି ।୨୨
ପିତା ଯେବେ ପେଷିଲେ ତୁମ୍ଭେ ଥାଅ ଆମ୍ଭ ତୁଲେ
ଅନ୍ନ ପାଞ୍ଚନ କରି ଦେବ ଆମ୍ଭର ଇଛା ଯେ ହୋଇଲେ ।୨୩

■ ■

## ବିଦୁର ଜତୁଗୃହ ଦ୍ୱାରେ ପ୍ରବେଶ

ରହିଲେ ପୁରଞ୍ଚନ ଯୁଝେଷ୍ଟିଙ୍କର ତୁଲେ
ହୃଦରେ ପାପ ଚିତ୍ତ ବାହାରେ ଅନେକ ପୀରତି ବଢ଼ାଇଲେ ।୧
କୁମ୍ଭ ମାସ ଶୁକଳ ପକ୍ଷ ଅଟଇ ତିଥି ତ୍ରୟୋଦଶୀ
ଗୁରୁବାର ଦିନ ପୁଷ୍ୟା ନକ୍ଷତ୍ରର ବେଳେ ଆସି ।୨
ସେ ଦିନ ରାତ୍ରକାଳେ ଆସି ବିଜେ କଲେ ବିଦୁରେ
ପ୍ରବେଶ ହୋଇଲେ ସେହୁ ଜଦୁଘର ଦ୍ୱାରେ ।୩
ଯୁଝେଷ୍ଟିଙ୍କି ତୋଳି ସେ ପଣ୍ଡିତ ମହାଭିଗ୍ୟଂ
ରାତ୍ରରେ ସନ୍ନିଧେଣ ବସାଇ କହନ୍ତି ସର୍ବଗ୍ୟଂ ।୪
ବାବୁ ଧୃତରାଷ୍ଟ୍ର ଚରିତ୍ର ମଣିଲୁ କି ମନେ
ଅଭିଷେକ କରାଇ ଲୋଡଇ ଦ୍ରିଯୋଧନେ ।୫
ଆମ୍ଭନ୍ତ ଘେନି ଭାଳିଲା ସନ୍ନିଧେ ବସାଇ
ଭୀଷ୍ମେ ବୋଇଲେ ଯୁଝେଷ୍ଟି ଥାଉ ଦ୍ରିଯୋଧନକୁ ପାଟ ନାହିଂ ।୬
ତାହା ଶୁଣି କୋପ କଲା ରାଜା ଅନ୍ଧ
ତେଣୁ କରି ତୁମ୍ଭନ୍ତ ଚିନ୍ତିଲା ପରମାଦ ।୭
ଗୋଖରା ବ୍ରାହ୍ମଣ ଯେ ଅଟଇ ମହାଦୁଷ୍ଟ
ଭୀମସେନ ବିଷଲଡୁ ଖୁଆଇଲା ଯେ ପାପିଷ୍ଠ ।୮
ଧର୍ମେଣ ପାର ହୋଇଲା ତୋହୋର ଅନୁଜ
ସମସ୍ତ ହେତୁ କରି ହୃଦୟେ ତୋହୋର ବୁଝ ।୯
ଆହୋ ଯେ ପୁର ଭିଆଇଲା ପୁରଞ୍ଚନ କପଟେ
ଜଉ ସଜଳସ ଗୁଆଘୃତ ଛଣପଟେ ।୧୦
ଯେବଣ ପାକଟି କରିବ ରଞ୍ଚନ
ସବୁହିଂ ବିଷ ତାହା ନ କରିବଟି ଭୋଜନ ।୧୧
ରାତ୍ରିରେ ବାବୁରେ ତୁମ୍ଭେ ଯେବେ ନିଦ୍ରା ଯିବ
ସେହି ଦିନ ବ୍ରାହ୍ମଣ ଯେ ପୁର ପୋଡି ଦେବ ।୧୨
ଅଗ୍ନି ନ ଥିବଟି ଜଦୁଘରର ଭିତରେ
ଯେହା ଚେତି କାର୍ଯ୍ୟ ହୋ କରସି ନିର୍ଭରେ ।୧୩
ସେ ଅବା ବାପ ରେ ତୁମ୍ଭନ୍ତ ଚିନ୍ତିଲା ପାପ ଚିତ୍ତ
ଗୁପତେ ପାର ହୋଅ ସମୟେ ନ ଥାଅ ଯେଥ ।୧୪
କେ କେମନ୍ତେ ବିଚାର କରଇ ତଥ୍ୟ କରି
ତୁମ୍ଭର ଚିନ୍ତାହିଂ ସେ ଥିବି ହୃଦେ ଧରି ।୧୫
ଯେତେ କହି ସେ ଗଲେ ଅମ୍ବୁବତୀର ସୁତ
ଧୃତରାଷ୍ଟ୍ରଙ୍କୁ ପ୍ରଳମ୍ବିତ କଲେକ ତୁରିତ ।୧୬
କଲ୍ୟାଣ ବାଞ୍ଛା ଯେ କରଇ କୁରୁବଇ
ଆସନ ପାଇଣ ଯେ ବସଇ ତହିଂ ଯାଇଂ ।୧୭
ଯୁଝେଷ୍ଟି ଦେବ ହକାରିଲେ ଯେ ଭୀମସେନକୁ
ତୁ ସବୁ ରାତ୍ରେଣ ଇଛା ଯେ ନ କରିବୁ ନିଦ୍ରାକୁ ।୧୮
ମହା ବନସ୍ତ ଯେ ଦଇତ ଦାନବଙ୍କ ଭୂମି
ବ୍ୟାଘ୍ର ଭଲ୍ଲୁକ ମୟମତ୍ତ ହସ୍ତୀ ଯେଥି ଅନେକ ବିଶ୍ରାମି ।୧୯
ଦିବସେ କ୍ଷେପଇ ମାରୁତି ଘୋର ବନେ
ଖାଇଜ ଜୀବ ମାରି ଭୁଞ୍ଜଇ ପ୍ରତିଦିନେ ।୨୦
କନ୍ଦମୂଳ ଦାରାକ୍ଷ ଭୁଞ୍ଜଇ କ୍ଷୁଧାବେଳ ଜାଣି
ଭୀମସେନ ଜଦୁଘରେ ଭ୍ରମୁଥାଇ ସେ ରୟଣୀ ।୨୧

ଋଷଭ ମାସ ଶୁକଳ ପକ୍ଷ ଦଶମୀର ଦିନ
ସୋମବାର ସେ ଦିନ ନକ୍ଷତ୍ର ହସ୍ତାକନ୍ୟ ।୨୨
ସେ ଦିନ ପୁରଞ୍ଚନ ପଣ୍ଡା ଗଲା ହସ୍ତିନା ଭୁବନକୁ
ବାରତା କହିଲା ଯାଇଂ ଦ୍ରିଯୋଧନ ରାଜାକୁ ।୨୩
ଆହୋ ଅନ୍ନ ପାଞ୍ଚନ ନାହିଂ ପାଣ୍ଡବଙ୍କର
କନ୍ଦମୂଳ ଭକ୍ଷନ୍ତି ସେ ଯେହ୍ନେ ବନଚର ।୨୪
ଅଗ୍ନି ବିବର୍ଜିତ ଦେବ କଲେକ ଜଦୁର ଘରେ
ଲୋଡିଲେ ନ ପାଇ ଅଗ୍ନି ଗହନ ବନସ୍ତରେ । ୨୫
ଆନ ଘରମାନ ଯେବେଟି ଥାଇ ସନ୍ନିଧାନେ
ତେବେ ଅଗ୍ନି ପାଇବା ଲୋଡିବା ବିଧାନେ ।୨୬
ଶକୁନି ବୋଇଲା ମୋହୋର ବଚନ କରିବା
ଝିମାଣିଶାଳାମାନନ୍ତ ଯେ ତହିଂ ତୋଳାଇବା ।୨୭
ସାଞ୍ଜୁ ଘଟଣ ଯେ କରୁଥାନ୍ତି ବିନ୍ଧାଣିମାନେ ତହିଂ
ଲୋଡିବାର ବେଳେ ଯେ ପାଇବାକ ଜୁଇ ।୨୮
ଯେତେବେଳେ ନିଦ୍ରା ଯେ ଯାଆନ୍ତି ରୟଣୀ
ଝିମାଣିଶାଳୁଂ ଅଗ୍ନି ଆଣି ଲଗାଇ ଦେବା ପୁଣି ।୨୯
ଶକୁନିର ବଚନ ଯେ ଶୁଣିଲା ସେ ମାନଗୋବିନ୍ଦ
ଘଟଣ ବିନ୍ଧାଣି ମାନନ୍ତ ରାଇ ଆଗ୍ୟାଂ ଦିଲା ସେ ନରେନ୍ଦ୍ର ।୩୦
ଶାଢ଼ୀ ସରଳ ଅନେକ ରତ୍ନ ଦିଲାକ ବଧାଇ
ସହସ୍ରେ ଶାଳ ଭିଆଅ ବାରୁଣାବନ୍ତେ ରହି ।୩୧

ନଦୀର ସନ୍ନିଧେଣ ଆବର ବନସ୍ତ ନିକଟ
ଅଙ୍ଗାର ପୋଡିବାକୁ ତହିଁ ପାଇବାକ ଅନେକ କାଠ ।୩୨
ଭ୍ରାଥମାନେ ମୋର ଯେ ରହିଲେ ତହିଁ ଯାଇ
ପାଣ୍ଡବନ୍ତ ସପକ୍ଷ ତୁମ୍ଭେମାନେ ଥିବ ହୋଇ ।୩୩
ଆପଣେ ବିଜେ କଲେ ମହାମନ୍ତ୍ରୀ ଶକୁନି
ବାରୁଣାବନ୍ତେ ପ୍ରବେଶ ହୋଇଲେ ବିନ୍ଧାଣିମାନନ୍ତ ଘେନି ।୩୪
ଯଦୁର ଘର ବେଢ଼ାଇ ପାତିଲେ ମହାଖଳା
ଶକୁନି ସନ୍ନିଧେ ପ୍ରବେଶ ହୋଇଲେ ପଞ୍ଚୁରାଜାର ବଳା ।୩୫
ମାତୁଳ ବୋଲି କରି କଲେ ନମସ୍କାର
ଯେ କିସ ଭିଆଣ ବୋଲି ପଚାରିଲେ ଯୁଝେଷ୍ଟିର ।୩୬
ଶକୁନି ବୋଇଲା ତୁ ଶୁଣ ଧର୍ମସୁତ
ଶୁଣସି ସାବଧାନେ କହଇ ତୋତେ ସତ ।୩୭
ପୁରଞ୍ଚନ ପଣ୍ଡା ଯେ ଯାଇ ଧୃତରାଷ୍ଟ୍ରଙ୍କୁ କହିଲେ
ମହାଘୋର ଅରଣ୍ୟେ ତୋର ପୋୟେ ଯେକା ହୋଇ
ରହିଲେ ।୩୮
ଶୁଣିଣ ଦ୍ରିଯୋଧନ ହୋଇଲା ମହାବେଗ
ଝିମାଣିଶାଳ ମାନନ୍ତ ତୁମ୍ଭନ୍ତ ଦିଲା ସାଙ୍ଗ ।୩୯
ଶକୁନି କହିଲା ଯେ ପାଣ୍ଡବଙ୍କର ସନ୍ନିଧାନେ
ନିର୍ଭୟେ ହୋଇଣ ତୁମ୍ଭେ ଥିବ ନା ଘୋର ବନେ ।୪୦
ରାତ୍ର ଦିବସେ ବିନ୍ଧାଣି କରୁଥିବେ ଘଟଣ
ପଞ୍ଚଦଶ ମାସେ ସବୁ ହୋଇବ ସଂପୂର୍ଣ୍ଣ ।୪୧
ଦ୍ୱାଦଶ ନଳେ ବଖରାୟେ କରନ୍ତି ନିର୍ବାଣ ।୪୨
ଯେମନ୍ତେ ସହସ୍ର ବଖରା ଘର ହୋଇଲା ନିର୍ମିତ
ଲୋହକାର ବିନ୍ଧାଣିମାନେ ଲାଗିଲେ ସମସ୍ତ ।୪୩
ପୁରଞ୍ଚନ ଥାଇ ହୋ ସେ ପାଣ୍ଡବଙ୍କର ତୁଲେ
ତୁମ୍ଭନ୍ତ ସଙ୍ଗ ବାବୁ କରାଇଲି ମୋହୋର ବୋଲେ ।୪୪
ଯୁଝେଷ୍ଟି ବୋଇଲେ ତୁମ୍ଭେ ମହାଭିଗ୍ୟଂ ପଣ୍ଡିତ
ଧାର୍ମିକ ବିବେକ ତୁମ୍ଭେ ବେଦ ଶାସ୍ତ୍ରରେ ନିର୍ଜିତ ।୪୫
ତୁମ୍ଭର ଗ୍ୟାନେ କି ହୋଇ ପାପ କଥା
ଧର୍ମହିଂ ସାହାପକ୍ଷ ହୋଇବ ନା ସର୍ବଥା ।୪୬
ରହିଲା ଦ୍ୱିଜବର ଯୁଝେଷ୍ଟିଙ୍କର ତୁଲେ
ଝିମାଣିଶାଳ ବିନ୍ଧାଣିମାନେ ଶାଳନ୍ତ ସିର୍ଜିଲେ ।୪୭

■ ■

## ଝିମିଟି ଶାଳ ନିର୍ମାଣ

ସିଂଘ ଶୁକଳ ତ୍ରୟୋଦଶୀ ତିଥି ଅର୍କବାର
ଧନିଷ୍ଠା ନକ୍ଷତ୍ର କୁମ୍ଭ ରାଶି ଭୋଗ୍ୟ ଅଟଇ ସେ ଦିନର ।୧
ବିଦୁର ମହାତ୍ମା ଯେ ବିଜେ କଲେ ନିଶାକାଳେ
ଭୀମସେନଙ୍କଇ ଦେଖିଲେ ବାରୁଣାବନ୍ତ ପର୍ବତର ତଳେ ।୨
ଯୁଝେଷ୍ଟିଙ୍କି ହକାରି ଆଣ ମୋର କତି
ଆଗ୍ୟାଂ ପ୍ରମାଣେ ବେଗେ ଚଳଇ ମାରୁତି ।୩
ଯୁଝେଷ୍ଟି ଅର୍ଜୁନଙ୍କୁ ଘେନିଣ ବ୍ରିକୋଦର
ବିଦୁରଙ୍କୁ ଭେଟିଲେ ସେ ସୁରନଦୀ ତୀର ।୪
ବିଦୁର କହିଲେ ତୁ ଶୁଣ ହୋ ଯୁଝେଷ୍ଟି
ଅନୁବ୍ରତେ କପଟ ତୁମ୍ଭନ୍ତ ଚିନ୍ତଇ ଧୃତିରାଷ୍ଟ୍ରି ।୫
ଝିମାଣିଶାଳ ବିନ୍ଧାଣିମାନନ୍ତ ତୋହୋ ସନିଧେ ରୁହାଇ
ତହିଂର ଚଦନ୍ତମାନ ଜାଣିଲୁଟି କି ତୁହି ।୬
ଯୁଝେଷ୍ଟି ବୋଇଲେ ତାତ ଥିଲି ମୁହିଂ ଯେକା
ଦତ୍ୟ ଦାନବଙ୍କୁ ମୋତେ ଲାଗୁଥିଲା ବଡ଼ ଶଙ୍କା ।୭
ଶକୁନି ପ୍ରସନ୍ନେ ମୁଂ ହୋଇଲି ନିର୍ଭୟେ
ଅପାର ସାଙ୍ଗ ମୁଂ ପାଇଲି ପିତାମହେ ।୮
ସେ ମୋହୋର ତାତ ଯେ ଅଟନ୍ତି ଧୃତରାଷ୍ଟ୍ର
ସକଳ ଚିନ୍ତା କରିବାକୁ ବଂଶକୁ ସେହୁ ଶ୍ରେଷ୍ଠ ।୯
ଅନେକ କାଳ ମୁଂ ରହିଲି ଘୋର ବନେ
ଅନେକ ଅରଷ୍ଟି ବଞ୍ଚିଲି ଧୃତରାଷ୍ଟ୍ରଙ୍କ ପ୍ରସନ୍ନେ ।୧୦
ବିଦୁର ବୋଇଲେ ତୁ ଧର୍ମ ନ ଛାଡିବୁ କଦାଚିତେ
ଧୃତରାଷ୍ଟ୍ର ପ୍ରକୃତି ତୋତେ ନୋହଇ ନା ଯେମନ୍ତେ ।୧୧
ଯେମନ୍ତେ ନାଶଯିବ ତୁମ୍ଭେ ପାଞ୍ଚ ଭାଇ
ତହିଂକି ବୁଦ୍ଧି ହାଦେ ଅନୁବ୍ରତେ ଚିନ୍ତୁଅଛି ସେହି ।୧୨
ତୁ ଯେ ବୋଲୁଅଛୁ ହୃଦଗତେ ଧୃତରାଷ୍ଟ୍ର ମୋହୋର ପିତା
କେବେଣ ବାଗେ ସହିବଟି ତାକୁ ଧର୍ମ ଯେ ବିଧାତା ।୧୩
ବାବୁ ଝିମାଣିଶାଳମାନ ଯେ ତୋଳାଇଲା ଯତନେ
ଅଗ୍ନି ନ ପାଇଲା ଯହୁଂ ପୁରଞ୍ଚନ ତୋହୋର ଭୁବନେ ।୧୪
ଝିମାଣିଶାଳମାନେ ଯେ ଯେଥି ନିମନ୍ତେଟି
ଅଗ୍ନି ଘେନି ପୁରଞ୍ଚନ ଦହିବ ନିଶାରାତି ।୧୫
ବାବୁ ଏମନ୍ତେଟି ହାଦେ ଧୃତିରାଷ୍ଟ ଚିତ୍ତ କଥା
ବାବୁ ସାବଧାନ ହୋଇଥାଅ ଯେମନ୍ତ ବେବସ୍ତା ।୧୬
ଯୁଝେଷ୍ଟି ବୋଇଲେ ତାତ ତୋହୋର ଯେବେ ଯେହେନେକ ଚିନ୍ତା
କେ ମୋତେ ତ୍ରୈଲୋକ୍ୟେ ଅଛି ପ୍ରମାଦ ବିହନ୍ତା ।୧୭

କହିଣ ବିଦୁର ଯେ ଗଲେ ନିଜ ସ୍ଥାନେ
ଯୁଧିଷ୍ଠିର ପ୍ରବେଶ ହୋଇଲେ ବାରୁଣାବନ୍ତ ଭୁବନେ ।୧୮
ହସ୍ତେଣ ଖଡଗ ଯେ ଘେନିଣ ବିଦୁର
ହସ୍ତିନା ଭୁବନେ ଯେ ଭ୍ରମଇ ପୁରେ ପୁର ୧୯
ନିଶାକାଳେ ଯାନ୍ତେଣ ହସ୍ତିନା ଭୁବନ ଭ୍ରମି
ତୁଲେଣ କେହି ନାହିଂ ଯେକସରେ ରାୟେ ଗମି ।୨୦
ପୁରୁଷେକ ଦେଖିଲେ ସେ ବୁଲଇ କୋନ୍ଦି କୋନ୍ଦି
ଚିରକୁଟୀ ବସ୍ତ୍ରେକ ସେ କଟିରେ ଅଛି ପିନ୍ଧି ।୨୧
ନୟନେ ଅଞ୍ଜନ ଯେ ମଥାରେ କେଶ ହୀନେ
ପରପଞ୍ଚ ଅବସ୍ଥା ସେ ବସ୍ତ୍ରର ବିହୁନେ ।୨୨
ନିଶାପତିକି ଦେଖିଣ ସେ ହୋଇଲା ଗୁପତ
ଧାଇଂ ଯାଇ ବିଦୁରେ ଯେ ଧଇଲେ ତାର ହସ୍ତ ।୨୩
ବିଦୁରେ ବୋଇଲେ ରେ ତୁ ଅଟୁ କାହାର କତି
ପ୍ରପଞ୍ଚ ଅବସ୍ଥାରେ ତୁ ଦିଶୁ ହୀନ ଜାତି ।୨୪
ଯେ ହସ୍ତିନା ଭୁବନେ ଯେମନ୍ତ ଲୋକ ଦେଖିଲା ତ ନାହିଂ
ଯେହେନେକ ଦାରିଦ୍ର ଅବସ୍ଥା ହୋଇଲୁ ତୁହି କାହିଂ ।୨୫
ଯେଥର ସରୂପ କହ ତୁ ମୋହୋର ଅଗ୍ରତେ
ମିଛ କହିଲେ ପ୍ରାଣେ ନାଶିବିଟି ତୋତେ ।୨୬

■■

## ଖନିକାର ଟସକର ବୃତ୍ତାନ୍ତ, ଖନିକାରର ବିବର ନିର୍ମାଣ

ବିଦୁର ବଚନେ ସେ ବୋଲଇ ଟସକର
ମୁହିଂ ଯେବଣ ଜାତି ଶୁଣିମା ଦଣ୍ଡଧର ।୧
ମୁହିଂ ଟସକର ଯେ ଅଟଇ ଯୁଗତେ
ବିଦୁର ବୋଇଲେ ଟସକର ଜାତିରେ କେମନ୍ତେ ।୨
ମୁଂ ଅଟଇ ହାଦେ ଚଉର୍ଯ୍ୟ ହୀନ ଜାତି
ଘର ବାସ ନାହିଂ ମୋର ଚଉର୍ଯ୍ୟ କର୍ମେଣ ବ୍ରତି ।୩
ପୁଣ ପଚାରଇ ଅମ୍ବୁବତୀର ବାଳ
କେବଣ ମତେ ପରଧନ ଚଉର୍ଯ୍ୟ ଯେ କର ।୪
କାନ୍ଥ ଖୋଳିଣ ଦେବ ପଶଇ ଭିତରେ
ପର ଧନ ଚଉର୍ଯ୍ୟ କରି ନିୟେ ନିଶାକାଳେ ।୫
ବିଦୁରେ ବୋଇଲେ ଥାନ୍ତି କବାଟ ପାଡି କରି
କେବଣ ବାଗେ ପଶ ତାହାଙ୍କର ଭିତର ପୁରୀ ।୬
କହଇ ଟସକର ଶୁଣିମା ଗୋସାଇଂ
ଚାରିଖାନି ଚଉରାଶି ଲକ୍ଷ ଜନ୍ତୁ ନାରାୟଣ ଭିଆଇ ।୭
ଚଉର ବୋଲି କରି ଯେକ ଜାତିଯେ ଭିଆଇଲା
ଲକ୍ଷଣା ଦଣ୍ଡ ବୋଲି ଶସ୍ତ୍ରେକ ସ୍ରିଜିଲା ।୮
ତାହା ଘେନି କାନ୍ଥ ଖୋଳଇ ନିଶା ରାତି
ଭିତରେଣ ପଶିଲେ ଦେବ କେହି ନ ଜାଣନ୍ତି ।୯
ବିଦୁରେ ବୋଇଲେ ତାର ସରୂପ ମୋତେ କହ
କାହା ହାଥେ ଲକ୍ଷଣା ରେ କେତେବେଳେ ଗଢ଼ାଅ ।୧୦
କହଇ ଖନିକାର ସ୍ୱାମୀ ଶୁଣିମା ସାବଧାନେ
ତୁଳମାସ କୃଷ୍ଣପକ୍ଷ ଅମାବଈ ଚଣ୍ଡୀପୂଜା ଦିନେ ।୧୧
ବିଶାଖା ନକ୍ଷତ୍ର ଯେ ଅଟଇ ସେ ଦିନର
ସେ ଦିନ ଲକ୍ଷଣାକୁ କରନ୍ତି ବିଚାର ।୧୨
ତହିଂର ପାହାନ୍ତି ଯେବେ ରୋବଇ ଅବଳା
ଚଉର୍ଯ୍ୟ ବିଦ୍ୟାକୁ ସେ ଅଟଇ ଶୁଭ ଅନକୂଳା ।୧୩
ଯେଉଣ ମହାରଣାର କୃତ୍ତିକା ବୃକ୍ଷ ରାଶି
ତାହାକୁ ବରଣ କରି ଅମାବଈ ନିଶି ।୧୪
ପ୍ରାତେ ସ୍ନାହାନ କରି କଳା ବସ୍ତ୍ରେକ ଥାଇ ପିନ୍ଧ
ମଳା ମାଇପଙ୍କ ଶଙ୍ଖା ପଟିୟେ ବାମ ହସ୍ତେ ବାନ୍ଧି ।୧୫
ରାତ୍ର ହୋଇଲେଣ ଶାଳଯନ୍ତ୍ର ପୂଜା କରି
ନବତନ ଅଗ୍ନି ଲୋହ ପାଷାଣରୁ ଉଭାରି ।୧୬
ରାତ୍ର ତିନି ପ୍ରହରେ କୃଷ୍ଣ ଛାଗଳେକ ନେଇ
ଚଉରୁଣୀ ଦେବୀଙ୍କି ରକତ ଭାତ ବଳି ଦେଇ ।୧୭
ଭୋ ଦେବ ଅବଳାମାନଙ୍କର ଯେ ପ୍ରଥମ ରାବ ଯେ ବୋବାଳି
ଅଗ୍ନିରେ ନେଇ ଲୁହା ସିଝାଇ ପରିତାଳି ।୧୮
ଯୋଗେଣ ନିର୍ବାଣ ସେ କରଇ ମହାରଣା
ତ୍ରିଅଧାର କରି ଦଣ୍ଡ କରାଇ ଲକ୍ଷଣା ।୧୯

ମୋହୋର ଚରିତ୍ର ତୁମ୍ଭେ ଶୁଣସି ବିଦୁର
ଖଲ୍ୟକାର ନାମେଣ ମୁଂ ଅଟଇ ଟସକର ।୧
ଶୁଣିଣ ବିଦୁର ବିଚାରଇ ପରମାର୍ଥ
ଯେହି ମୋହୋର ପୁଅକଇଂ ହୋଇବାକ ହିତ ।୨
ବିଦୁର ପୁଚ୍ଛା କଲେ ଶୁଣ ରେ ମହାବଳୀ
କେତେ ଦୂର ତୁହୋ ବିମ୍ବର ପାରୁ ଖୋଳି ।୩
ଖଲ୍ୟକାର ବୋଲେ ଯାହାର ଯେତେ ଦୂରେ ହୁଅଇ କାର୍ଯ୍ୟ
ତେତେକ ସମ୍ପାଦି ମୁଂ ପାରଇ ଗ୍ରାହିକ ।୪
ଶୁଣିଣ ବିଦୁର ଯେ ପରମ ସାନନ୍ଦେ

ଟସକର ଘେନିଣ ଚଳିଲେ ନିଜ ଫନ୍ଦେ ।୫
ତୁ ଯେବେ ଚଉର୍ଯ୍ୟ ରେ ଭେଟିଲୁନି ମୋତେ
ଆବର ବେଳେ ଚଉର୍ଯ୍ୟପଣ କରିବୁ କେମନ୍ତେ ।୬
ଦୁଇ ଅଧିକାର ବିଦୁରର ହସ୍ତିନା ନଗରୀ
ନଗ୍ର ରକ୍ଷା କରଇ ଆବର ଭଣ୍ଡାର ଅଧିକାରୀ ।୭
ରାତ୍ରେଣ ବିଦୁର ତୁଲେ ଘେନିଣ ଖଲ୍ୟକାର
ଭଣ୍ଡାରୁ ପାଣିଦ୍ରବ୍ୟ ଦିଲେ ଯେକ ଭାର ।୮
ସୁଖେଣ ବିଳସ ତୁ ରହି ହସ୍ତିନାପୁର
ଆବର ବେଳେ ଚଉର୍ଯ୍ୟ ପଣ ନ କରିବୁ ଖଲ୍ୟକାର ।୯
ଧନ ରତ୍ନ ମାନ ପୋତି ଥୋଇଲା ନିଜପୁରେ
ଅନୁବ୍ରତେ ଗୋଡ଼ାଇ ଥାଇ ବିଦୁରଙ୍କ ସଙ୍ଗତରେ ।୧୦
ଦିନେକ ଟସକର ବୋଇଲା କର ଯୋଡି
ତୁମ୍ଭେ ଯେ ମୋତେ ପୋଷୁ ଅଛ ମୁଇଂ କିସ ଉପୁଗାରୀ ।୧୧
ବିଦୁର ବୋଇଲେ ମୁଇଂ ତୋତେ ପୋଷୁଅଛି
ତୋହୋରେଣ ମୋତେ ଅନେକ କାର୍ଯ୍ୟ ଅଛି ।୧୨
କେବଣ ମତେ ତୋତେ ମୁଂ କରିବି କାରଣ
ଆଗ୍ୟାଂ ଦିଅ ମୋତେ ଭିଆଇବି ଯେହିକ୍ଷଣ ।୧୩
ବିଦୁରେ ବୋଇଲେ ତୁ ଯେବେ ଗର୍ଭେ କରୁ ଗୋପ୍ୟ
କାହାରି ଅଗ୍ରତେ ନ କହିବୁଟିରେ ମୋହୋର ବାପ ।୧୪
ତେବେ ସେ ବାବୁ ରେ କହି ପାରଇ ତୋତେ
ଖଲ୍ୟକାର ବୋଇଲା ମୁଂ ନୋହଇ ଯେମନ୍ତେ ।୧୫
ମୀନମାସ କୃଷ୍ଣପକ୍ଷ ଦୁତୀୟା ଭୃଗୁବାର
ହସ୍ତା ନକ୍ଷତ୍ରର ଶେଷ ଭୋଗ ସେ ଦିନର ।୧୬
ଖଲ୍ୟକାର ଘେନି ଅମ୍ବୁବତୀର ବାଳ
ବେନିଜନେ ମିଳିଲେ ଯାଇ ସୁରନଦୀ କୂଳ ।୧୭
ପଥ ବୁଲାଇଣ ଘେନିଣ ଗଲେ ଟସକରକୁ
ଜନ୍ଦୁର ଘରେ ନେଇ ଭେଟାଇଲେ ତାହାକୁ ।୧୮
ସୁରନନ୍ଦୀ କୂଳକୁ ଜନ୍ଦୁର ଘର ଯେକାଦଶ କ୍ରୁଶ
ବାବୁ ବିମ୍ବର ଗୋଟିଯେ ତହିଂ କରିବୁ ନିରିବାଣ ।୧୯
ଖଲ୍ୟକାର ବୋଇଲା କିସ ତୋହୋର ଚିନ୍ତା
ମୁହିଂ ସେ ଯେହା ଯେ ଅଟଇ ବିହନ୍ତା ।୨୦
ନାରାୟଣ ସୁମରି ସେ କଲା ଶୁଭ ଅନକୂଳ
ତ୍ରିଶିରା ପର୍ବତ ତଳୁଂ ଖୋଳଇ ବିମ୍ବର ।୨୧
ବିଦୁରେ ବୋଇଲେ ଦ୍ୱାପରଯୁଗ ଦେଉଳ ଉଚ୍ଚ ଯେତେ
ଆଠ ସହସ୍ର ଆଠ ଶତ ଅଠାଇଶ ହାଥ ପରିଯନ୍ତେ ।୨୨
ଉଚ୍ଚ ହୋଇବ ଯେ ବିସ୍ତାର ହୋଇବ ତେତେ
ଉଭାରେ ଜଣେ ଯିବ ଆସିବ ସଂପୋଡ଼େ ।୨୩
ଟସକର ବୋଇଲା ତୋହୋର କାର୍ଯ୍ୟ ଯେତେ
ଆହୁରି ବିସ୍ତାର ମୁଂ କରି ପାରଇ ତେତେ ।୨୪
ଖଲ୍ୟକାର ବିମ୍ବରେ ଲଗାଇ ବିଦୁର
ରାତ୍ରେ ଆପଣେ ନେଇ ଦିଅନ୍ତି ଅନ୍ନ ଜଳ ।୨୫
ମକର ମାସ ଶୁକଳ ପକ୍ଷ ପୂର୍ଣ୍ଣମୀର ଦିନ
ମଙ୍ଗଳବାର ନକ୍ଷତ୍ର ସେ ଦିନ ପର୍ବଫାଲଗୁନ୍ୟ ।୨୬
ସେ ଦିନ ହରି ବଳରାମ ବେନି ଭ୍ରାଥେ
ପ୍ରବେଶ ହେଲେ ହସ୍ତିନା ରାଜ୍ୟେ କୁରୁନାଥ ଅଗ୍ରତେ ।୨୭
ବିଦୁରେ ଦେଖିଲେ ରାମ କୃଷ୍ଣ ବେନି
ଅନେକ ପୂଜା କଲେ ବିନୋୟ ଦୟିନି ।୨୮
ଆସ୍ତାନୁଂ ଉଠି ଦେବ ବିଜେ କରି ଯାନ୍ତେ
ପଛେଣ ଗୋଡ଼ାଇ ଅଛନ୍ତି ଅମ୍ବୁବତୀର ସୁତେ ।୨୯
ଆଗ ହୋଇ ଗଲେ ଦେବ ବଳରାମେ ତୁରିତେ
ଯେକାନ୍ତେ ବିଦୁରକୁ ପୁଛା କଲେ ଜଗନ୍ନାଥେ ।୩୦
ଧୃତରାଷ୍ଟ୍ର ପାଣ୍ଡବଙ୍କୁ ଯେ ଚିନ୍ତଇ ପରମାଦ
ସେ ପାର ହୋଇବେ ଯେକା ତୋହୋର ପ୍ରସାଦ ।୩୧
ବିଦୁରେ ବୋଇଲେ ମୋତେ ନ କହ ଯେତେ କଥା
ସ୍ୱାମୀ ତୋତେ ସେ ଲାଗଇ ପାଣ୍ଡବଙ୍କ କଥା ।୩୨
ଦ୍ରିଯୋଧନ କୃତେ ଝିମାଣିଶାଳ କଲା ବାରୁଣାପ୍ରଶସ୍ତେ
ଜନ୍ଦୁର ଘରେ ଦହନ କରାଇବ ପୁରଞ୍ଚନ ପଣ୍ଡା ହାଥେ ।୩୩
ଖଲ୍ୟକାର ନାମେଣ ଯେ ଯେକଇ ଟସକର
ତାହାକୁ ଲଗାଇ ମୁହିଂ କରାଉଅଛି ବିମ୍ବର ।୩୪
ରାତ୍ରକାଳେ ଦେବେ ସେ ଯେ ଜନ୍ଦୁର ଘର ଜାଳି
ସେ ବିମ୍ବର ବାଟେ ପାଣ୍ଡବେ ରାତ୍ରେ ଯିବେ ଗଳି ।୩୫
ନାରାୟଣ ବୋଇଲେ ସେ ଖଲ୍ୟକାର ଚଉର୍ଯ୍ୟ
ସରହସୁନ୍ଦରୀ ପୁତ୍ର ସେ ଆମ୍ଭର ଆତ୍ମଜ ।୩୬
ଆମ୍ଭେ ଶିଖାଇଲୁ ତାହାକୁ ଚଉର୍ଯ୍ୟପଣ ବିଦ୍ୟା
ବିମ୍ବର ଖୋଳି ପାରଇ ସେ ବଚନ ସଂସିଦ୍ଧା ।୩୮
ବିଦୁରେ ବୋଇଲେ ହୋ ଶୁଣିମା ଗୋସାଇଂ
ଖଲ୍ୟକାର ବଚନ ସେ ଆହୁରି ଅଛି କହି ।୩୯
ସେ ଯେ ଖୋଳୁଅଛି ଦେବ ବିମ୍ବର ଗୋଟି

ଅସମ୍ଭାଳ ହୋଇ କାହିଁ ସମ୍ଭାଳିବ ମାଟି ।୪୦
ଖୋଳିବାକୁ ଶକତା ସେ ଅଟଇ ଦାମୋଦର
କେମନ୍ତେ ପ୍ରକାରେ ମାଟି ହୋଇବାକ ଦୂର ।୪୧
ବିଦୁର ତହୁଂ ଯେସନେକ ବଚନ ଶୁଣି
ମନେ ମନେ ବିଚାର ସେ କରନ୍ତି ଚକ୍ରପାଣି ।୪୨
ଯେତେ ବୋଲି ବିଶ୍ୱ ମୂର୍ତ୍ତିକି ଧଇଲେ
ବେନି ଭୂଜରୁ ବେନି ପୁରୁଷ ଭିଆଇଲେ ।୪୩
ଛାୟା ମାୟା ନାମେ ଯେ ଅଟନ୍ତି ବେନି ବୀର
ତାହାନ୍ତ ରାଇ ଆଗ୍ୟାଂ ଦିଲେକ ଦାମୋଦର ।୪୪
ତୁମ୍ଭେ ଦୁହେଂ ଯେବେ ସୁରନଦୀ କୂଳକୁ ଯିବ
ଖଲ୍ୟକାର ବାମ ଡାହାଣେ ଲାଗିଥିବ ।୪୫
ଯେତେକ ଭୂମି ସେ ଖୋଳିବ ପ୍ରତକ୍ଷ
ସେ ମୃତ୍ତିକାମାନ ତୁମ୍ଭେ ଦୁଇଭାଇ ଭକ୍ଷ ।୪୬
କ୍ରୋଟ ଅନଳ ଯେ ଥୋଇଲେ ତାହାଙ୍କର ଗର୍ଭେ
ସେ ମୃର୍ତ୍ତିକାମାନ ଦହନ ହୋଇବ ପଡ଼ିଲେ ଉଦର ଭାଗେ ।୪୭
ନାରାୟଣ ଆଗ୍ୟାଂଯେ ସେ ମହାବୀର ବେନି
ଖଲ୍ୟକାରକୁ ସପକ୍ଷ ହୋଇଲେ ମୃତ୍ତିକା ଦହନ କଲେ
ଭାଇ ବେନି ।୪୮
ଖୋଳନ୍ତି ଟସ୍କର ଯେ ଭକ୍ଷନ୍ତି ବେନି ଦକ୍ଷ
ତିନିହେଂ ବିମ୍ୱର ଯେ ଭିଆଇଲେ ପ୍ରତକ୍ଷ ।୪୯

■ ■

## ବିଦୁରଙ୍କର ବାରୁଣାବନ୍ତ ଗମନ

ଶ୍ରାବଣ ଶୁକଳ ଯେ ଚତୁର୍ଦ୍ଦଶୀ ଦିନ
ଭୃଗୁବାର ଉତ୍ତରାଷାଢା ନକ୍ଷତ୍ର ବିଦ୍ୟମାନ ।୧
ସେ ଦିନ ବିଦୁର ଗଲେ ବାରୁଣାବନ୍ତକୁ
ରାତ୍ର ଅଢାଇ ପ୍ରହରେ ଭେଟିଲେ ଜଦୁର ଘରଦ୍ୱାରକୁ ।୨
ବାଉନ ବାଉନ ଭାର ବେନି ଗଦା ଧରି
ରାତ୍ରକାଳେ ବୁଲଇ ଭୀମ ଜଦୁଘର ବେଢ଼ି ।୩
ବିଦୁରକୁ ଦେଖି ଭୀମ ଡାକ ଦିଲା କେ କୋଟିରେ
ଆପଣାର କାର୍ଯ୍ୟ ବୋଲି ମିଳିଲେ କତିରେ ।୪
ବିଦୁରଙ୍କୁ ଭୀମସେନ କରଇ ନମସ୍କାର
ବାବୁ ତୂନୀ ହୋଇ ଯାଇ ତୁ ଯୁଝେଷ୍ଟିଙ୍କି ହକାର ।୫
ତୂନୀ କରି ତୋଳି ଆଣଇ ଯୁଝେଷ୍ଟିଙ୍କି
ଯୁଝେଷ୍ଟି ବିନୋୟି ହୋଇଲେ ଯେ ବିଦୁରଙ୍କଇ ଦେଖି ।୬
ବିଦୁରେ ବୋଇଲେ ତଳେ କରିଥାସି ମନେ
ବିମ୍ୱର ଗୋଟାଏ ଫୁଟିବଟି ଜଦୁଘର ଥାନେ ।୭
ଖଲ୍ୟକାର ଟସ୍କରକୁ କରିବଟି ଅନେକ ଗଉରୋବ
ତାହାର ପ୍ରସାଦେ ତୁମ୍ଭେ ଗୋପ୍ୟାନେ ପାର ହୋଇ ଯିବ ।୮
କଉରୋବେ ତୁମ୍ଭନ୍ତ ଝିଙ୍ଗାସ କରିବେ ଅନେକ
ଭଲେ ପାରି ହୋଇଯାଅ ସମୟେକ ।୯
ତୁମ୍ଭଙ୍କୁ ସାହାପକ୍ଷ ଅଟନ୍ତି ଜଗନ୍ନାଥେ
ସମୟେକ ବଞ୍ଚ ବାବୁ ଦୁଖେଣ ବନସ୍ତେ ।୧୦
ପାଞ୍ଚଗୋଟି ଭ୍ରାଥ ମାତାଙ୍କୁ ଘେନି ଛଡ଼ ପ୍ରାଣୀ
ଯେକ ଆତ୍ମା ହୋଇଥିବ ନୋହିବ ପରାପର ଜାଣି ।୧୧
ମାତାଙ୍କୁ ସେବା କରି ଥିବଟି ବନସ୍ତେ
ଦୁଖେଣ ସମୟେକ ବାବୁ ବଞ୍ଚ ପଞ୍ଚୁ ଭ୍ରାଥେ ।୧୨
ଯେତେ କହି ପୁଣ କହିଲେ ବିଦୁର
ପୁରଞ୍ଜନ ହାଥେ କିଛି ନ କରିବଟି ଆହାର ।୧୩
ଯୁଝେଷ୍ଟି ବୋଇଲେ ତୁହି ଯେ ଆମ୍ଭର ପିତା
ତୁହି ସେ ଅଟୁ ଆମ୍ଭନ୍ତ ଧର୍ମ ଯେ ଦେବତା ।୧୪
କହିଣ ବିଦୁର ଗଲେକ ଗହନ ବନସ୍ତେ
ସୁରନଦୀ ତୀରେ ଯେ ତ୍ରିଶିରା ପର୍ବତେ ।୧୫
ବିମ୍ୱରେ ପଶିଲେ ଯାଇ ମହା ନିଶାକାଳେ
ଦେଖିଲେ ବିମ୍ୱର ଯେ ବିସ୍ତାର ନବ ତାଳେ ।୧୬
ଦେଖିଲେ ବିଦୁରେ ବିମ୍ୱର ଅତିହିଂ ବିସ୍ତାର
ବରଷକେ ହୋଇଲାଣି ପାଞ୍ଚଯୋଜନ ଦୂର ।୧୭
ଅନେକ ଧନରତ୍ନ ଦିଲେ ଯେ ଟସ୍କରକୁ
ତୋହୋର ଉପୁଗାର ମୁଂ କହିବି କାହାକୁ ।୧୮
ଯେତେ ବୋଲି ବିଦୁରେ ଯେ ବାହାର ହୋଇଲେ
ସୁରନଦୀ କୂଳ ନାବ ବାହୁକ କଇବ୍ରତକୁ ଦେଖିଲେ ।୧୯
ନାବ ଗୋଟି କୂଳେ ଲଗାଇ ବସିଅଛି କଣ୍ଡୋୟାର
ରାତ୍ରେ ଜନ ଅଇଲେ କରି ଦିଏ ପାର ।୨୦
ବିଦୁରେ ବୋଇଲେ ରେ କେବଣ ତୁ ଜାତି
ଯେ ବନ ନଦୀ କୂଳେ କିମ୍ପେ ବସିଲୁ ନିଶାରାତି ।୨୧
ମୁଂ ଦେବ ନିଷାଦ ଅଟଇ କଇବ୍ରତ
ନାବରେ ବସାଇ ପାର କରଇ ଜନମାନନ୍ତ ।୨୨
ପଣେ ବୋଡିୟେ ଯେ ଗଣ୍ଡାୟେ ଆଦି କରି

ଯେଣେ ବ୍ରତଜ୍ଞ ମୁଂ ଜୀବନ ଆହାରି ।୨୩
ବିଦୁରେ ବୋଇଲେ ଏ ମାନଗୋବିନ୍ଦର ରାଜ୍ୟ
ସମସ୍ତ ଜନେ ଯେଥେଂ ବ୍ରତନ୍ତି ଅଇଶୂର୍ଯ୍ୟ ।୨୪
ତୋହୋର ପରାୟେକ କଷ୍ଟି ଲୋକ ଯେଥି ନାହିଂ
କେତେ ଦିନ ବଞ୍ଚିବୁ ତୁ ଜଳଚର ହୋଇ ।୨୫
ନାବ ଗୋଟି ବୁଡ଼ାଇ ତୁ ଆସ ହୋ କଇବ୍ରତ
ଯେ ତର ପଡୁ ଲୋକେ ନୋହନ୍ତୁ ଯେଥେ ଆତଯାତ ।୨୬
ବିଦୁର ବଚନେ ନାବ ବୁଡ଼ାଇଲା କଣ୍ଡେୟାର
କଇବ୍ରତକୁ ଘେନି ତହୁଂ ଗଲେକ ବିଦୁର ।୨୭
ଭଣ୍ଡାର ଫେଡିଣ ତାହାକୁ ଦିଲେ ଅନେକ ଧନ
ଆପଣାର ପୁରେ ତାକୁ କଲେକ ଗୋପ୍ୟାନ ।୨୮
ବିଦୁର ପ୍ରସନ୍ନେ ତାର କଷ୍ଟ ପାରଗଲା
ଦିନେ ସେ କଣ୍ଡେୟାର ବିଦୁରଙ୍କୁ ପଚାରିଲା ।୨୯
ଯେତେ ଧନ ଦିଲେ ମୋତେ ଭଣ୍ଡାର ଫେଡ଼ି
ମୁହିଂ ଛାର ହୀନ ତୋତେ କଉଂଗୁଣେ ହୋଇବି ଉପୁଗାରୀ ।୩୦
ବିଦୁରେ ବୋଇଲେ ତୁ ଅଟୁ ଯେ ମହତ
ତୋହୋରେ କାରଣ ମୋତେ ଅଛଇ ବହୁତ ।୩୧
କଇବ୍ରତ ହସ୍ତ ଧରି ନେଲେ ନିଶାକାଳେ
ବିମ୍ୱର ସନ୍ନଧେ ହୋଇଲେ ରାତ୍ରକାଳେ ସୁରନଦୀ କୂଳେ ।୩୨
ବିଦୁରେ ବୋଇଲେ ତୁ ଯେହିଠାରେ ଜଗି ବସିଥିବୁ
ଦିବସେ ନାବ ଗୋଟି ପାଣିରେ ବୁଡ଼ାଇବୁ ।୩୩
ରାତ୍ରେଣ ପାଣିରୁ କାଢି ରଖିବୁ ବିମ୍ୱର ଦ୍ୱାର
ବିମ୍ୱରୁ ଯେ ଆସଇ ତାଙ୍କୁ କରିଣ ଦେବୁ ପାର ।୩୪
ପାରି କରି ଦେବୁ ସୁରନଦୀର ପଛିମ କୂଳକୁ
ତେତେବେଳେ ଯାଇ ବାରତା କହିବୁ ଆମ୍ଭଙ୍କୁ ।୩୫
ବିଦୁର ବଚନେ ସେ ନିଷାଦ କଇବ୍ରତ
ନାବ ଘେନି ଜଗି ବସିଲା ସେ ସୁରନଦୀ ତଟ ।୩୬
ଦିବସେ ନାବ ଗୋଟି ବୁଡ଼ାଇ ଘରେ ଥାଇଁ ଯାଇଁ
ରାତ୍ରେ ପାଣି ନିଗାଡ଼ି ବିମ୍ୱର ଦ୍ୱାରକୁ ଯାଏ ବାହି ।୩୭
ବିମ୍ୱର ଖୋଳିଲା ଯେ ଟସ୍କର ଖଲ୍ୟକାର
ବିମ୍ୱରେ ନିର୍ବାଣ ହୋଇଲା ବରଷ ଯେଗାର ।୩୮
ମୀନମାସ ଶୁକଳ ପକ୍ଷ ଦଶମୀର ନିଶି
ଭୌମବାର ଅଶ୍ଳେଷା ଅନ୍ତରେ ଭୋଗ ମଘା ସିଂଘ ରାଶି ।୩୯
ସୁକର୍ମା ନାମେ ଯୋଗ ବାଣିଜ୍ୟ ନାମେ କରଣ
ରାତ୍ର ନବ ଘଡ଼ି ମାନେ ଫିଟିଲା ବିମ୍ୱର ଜଦୁଘର
ଉତ୍ତର କଣ ।୪୦
ସେହି ଠାବରେ ଶୋଇଥିଲା ବୀର ଯେ ଅର୍ଜୁନ
ଧାତିକାରେ ଚିଆଇଁ ଉଠିଲା ସେ ବାସବର ନାନ ।୪୧
କେ ରେ କେ ରେ ବୋଲିଣ ଦରାଣ୍ଡିଲା ରାଗେ
ବାମ କରେ ଟସକର କେଶ ଧଇଲାକ ବେଗେ ।୪୨
ବୋଲଇ ଖଲ୍ୟକାର ମୋତେ ଛାଡ଼ ବୀର ପାର୍ଥ
ବିଦୁର ଆଜ୍ଞାୟେ ମୁଁ ତୁମର କାର୍ଯ୍ୟେ ହିତ ।୪୩
ଯେସନେକ ବଚନ ଶୁଣିଣ କିରୀଟୀ
ତତକ୍ଷଣେ ଟସ୍କରର ଛାଡ଼ିଲେ କେଶ ଗୋଟି ।୪୪
ଆଶ୍ୱାସନା କରିଣ ସେ ବାସବର ସୁତ
କତିରେ ବସାଇ ବାରତା ପୁଛଇ ତୁରିତ ।୪୫
କତିରେ ବସି କରି ଯେ କହଇ ଚଉର୍ଯ୍ୟ
ଯେହି ବିମ୍ୱରେ ପଶି ତୁମ୍ଭେ ଯିବ ଦେବରାଜ ।୪୬
ଦ୍ୱାଦଶ ବରଷକୁ ମୋତେ ଅନେକ ଧନ ଦେଇ
ବିଦୁରଙ୍କ ଆଜ୍ଞାୟେ ମୁଁ ବିମ୍ୱର ଭିଆଇ ।୪୭
ଅର୍ଜୁନ ତୋଳିଲା ଯୁଝେଷ୍ଟି ଦେବ ଠାକୁରଙ୍କୁ
ଯୁଝେଷ୍ଟି ହକାରିଲେ ଯେ ଭୀମସେନକୁ ।୪୮
ଯେ ବିମ୍ୱର ଭିତରେ ଯାଇ ପଶନି ରେ ମାରୁତି
କେତେ ଥଳ କେତେ ଦୀର୍ଘ ଉଚ୍ଛର୍ଗ ଯେ ପ୍ରତି ।୪୯
ଯାଇ ପାରିବାଟି କି ଯେ ବିମ୍ୱରେଣ ପଶି
ଆଜ୍ଞାୟେ ବ୍ରିକୋଦର ଗଲାକ ମହାନିଶି ।୫୦
ବାଉନ ବାଉନ ଗଦାଭାର ବେନି ହାଥେ
ବିମ୍ୱର ଭିତରେ ମାରୁତି ଗମଇ ଉଷତେ ।୫୧
ଉର୍ଦ୍ଧ୍ୱ ବାହୁ କରି ବନି ହାଥ ତୋଳି ଗଲା
ଆକାଶ ପ୍ରାୟେ ହୋଇ ସେ କାହିଁକି ନ ଲାଗିଲା ।୫୨
ଯେଗାର ଯୋଜନ ବିମ୍ୱର ଖେଦଇ ବ୍ରିକୋଦର
ପ୍ରବେଶ ମାରୁତି ଯାଇ ସୁର ନଦୀର ଯେ ତୀର ।୫୩
ବାହୁଡ଼ା ବେଳକୁ ମାରୁତି ବିସ୍ତାରିଲା ବେନି ହସ୍ତ
ଦୁଇ କତି ନ ଲାଗିଲା ଆକ୍ରଷଣ ବେନି କରପତ୍ର ।୫୪
ବିଚାରଇ ମାରୁତି ଯେଥି ସାଂଗ୍ରାମ ପଡ଼ିଲେ
ଯୁଦ୍ଧକୁ ଠାବ ଯେ ହୋଇବଟିକି ଦୁଇ ଭୁଜ ଆକ୍ରେଷିଲେ ।୫୫
ଗଦା ବୁଲାଇ ଯେ ଦୁଇକରେ ବୀର
ଗଦା କାହିଁ ନ ହାବୋଡ଼ିଲା ପାତାଳ ବିମ୍ୱର ।୫୬

ଭୀଷ୍ମ ରୂପ ଧରିଣ ଯେ ବୃକୋଦର ଗଲା
ଜଦୁର ଘରେ ଯାଇଁ ଯୁଷ୍ଠେଷ୍ଠି ଦେବଙ୍କୁ କହିଲା ।୫୭
ବଡ଼ାଇଁ ଆଶ୍ରିଯ ଦେବ ଯେ ଟସ୍କର କଥା
ଦେବଙ୍କୁ ଅଶକ୍ୟ ଯେ ଅସମ୍ଭବ ବଳବନ୍ତା ।୫୮
ଯେବଣ ବିମ୍ବର ଯେ ସମ୍ପାଦିଲା ଟସକର
ମଞ୍ଚ ସ୍ୱର୍ଗ ପ୍ରାୟେ ଦେବ କିଛି ନାହିଁ ଯେ ଅନ୍ତର ।୫୯
ଶୁଣି ଯୁଷ୍ଠେଷ୍ଠି ଦେବ ପରମ ସାନନ୍ଦ ଚିତ୍ତେ
ଟସକରକୁ ଅନେକ ରତ୍ନ ଦିଲେ ଜଦୁଘରେ ଥିଲା ଯେତେ ।୬୦
ତୁ ଆମ୍ଭ ନିର୍ମିତ୍ତେ ଯେତେ କଷ୍ଟ ପାଇଲୁ ଖଳ୍ୟକାର
ଧର୍ମେଣ ରାଜ୍ୟ ପାଇଲେ ତୋହୋର କରିବୁ ଉପୁଗାର ।୬୧
ଟସକର ବୋଇଲା ଦେବ ବିଦୁର ମହାତ୍ମା ହିଁ ଥିଲେ
ତୁମ୍ଭନ୍ତ ପଞ୍ଚୁ କଟକ ପ୍ରାପତ ହୋଇବ ଭଲେ ।୬୨
ନାମଗିରି ନାମେ ଯେ ପର୍ବତ ଗୋଟାୟେ
ବିମ୍ବର ଦ୍ୱାରେଣ ନେଇ ଭୀମ ଚାପିଣ ଗୋପ୍ୟ କୟେ ।୬୩
ଖଳ୍ୟକାର ଗଲା ଯେ ବିଦୁର ସନ୍ନିଧାନେ
ବିମ୍ବର ପରୀକ୍ଷ କଲେ ପାଣ୍ଡବ ଭୀମସେନେ ।୬୪
ଶୁଣିଣ ବିଦୁର ଯେ ଅନେକ ସାନନ୍ଦେ
ଖଳ୍ୟକାରକଇ ବହୁତ ଧନ ଦିଲେକ ଆନନ୍ଦେ ।୬୫
ସେହି ରାତ୍ରେ ସେ ଟସ୍କରକୁ ତୁଲେ ଘେନି
ଜଦୁର ଘରେ ପ୍ରବେଶ ଦିବା ଅନ୍ତେଣ ରୟଣୀ ।୬୬
ପ୍ରବେଶ ହୋଇଲେ ଯାଇଁ ଜଦୁର ଘରେଟି
ପ୍ରତକ୍ଷେ ଭେଟିଲେ ଯାଇଁ ଧର୍ମରାଜା ଯୁଷ୍ଠେଷ୍ଠି ।୬୭
ବୋଲନ୍ତି ମୁଁ ତ ସଞ୍ଚିଲି ଯେସନେକ ସନ୍ଦେହେ
ଧର୍ମେ ଯେଥୁଁ ପାର ହୋଇଯାଅ ସମୟେକ ଭାବିୟେ ।୬୮
ଯେମନ୍ତ ବାବୁ ରେ ତୁମ୍ଭଙ୍କୁ ନ ଜାଣନ୍ତି ଆନ ଜନେ
ବରଷ କେତେ ରହ ଯାଇ ଅଗମ୍ୟ ଘୋର ବିପୁନ୍ୟେ ।୬୯
ଜାଣିମା ଧୃତରାଷ୍ଟ କେମନ୍ତ କଥା ଧରଇ ହୃଦେ
କେମନ୍ତେ ବିଚାରଇ ସେ ବିଷାଦ କି ଆନନ୍ଦେ ।୭୦
ପରମ ଆକ୍ଷ୍ୟ ତୁମ୍ଭେ ହୋଅ ପାଞ୍ଚୁଭାଇ
ବରଷେ କେତେ ବାବୁ ତୁମ୍ଭର ଆମ୍ଭର ଭେଟାଭେଟି ନାହିଁ ।୭୧
ମୋହୋର ଆଇକ୍ଷ୍ୟ ଘେନି ବ୍ରତି ଥାଅ ଭଲେ
ଅଇରି ଦର୍ପ ଗଞ୍ଜିବ ବନସ୍ତେ ଭେଟିଲେ ।୭୨
ଯେତେ ବୋଲିଣ ସନ୍ନିଧେ ରାଇଲେ ଭୀମକୁ
ବାବୁ କଷ୍ଟ କର୍ମ କରି ଧରିଥିବୁ ଶରୀରକୁ ।୭୩
ବାବୁ ରେ ବନସ୍ତେ ପଶନ୍ତେ ହୋଇବ ଅନେକ କଷ୍ଟ ଦୁଖ
ଶରୀର ରକ୍ଷଣ ନିମନ୍ତେ ଯାଇ ମାଗିବିଟି ଶେ ଭିଖ ।୭୪
ଅଛ ସମୟେଟି ବାବୁ କର୍ମର ବିପଦ
ତହୁଁ ଅଇଲେଟି ପ୍ରାପତ ହୋଅଇ ସିନା ରାଜ୍ୟ ସମ୍ପଦ ।୭୫
ଯେତେକ ତିଆରିଣ ଯେ ଗଲେକ ବିଦୁର
ତୁଲେଣ ଗୋଡ଼ାଇ ଅଛି ଖଳ୍ୟକାର ଟସକର ।୭୬

■ ■

## ଜତୁଗୃହ ଦାହ ଓ ଭୀମଙ୍କର ଅଗ୍ନି ସ୍ତବ

ବିଦୁରେ ହସ୍ତିନା ଭୁବନେ ପ୍ରବେଶ ହୋଇଲେକ ଯାଇ
ଅଛନ୍ତି ପାଣ୍ଡବ ଯେ ଜଦୁର ଘରେ ରହି ।୧
ବିଦୁରେ ଗଲେ ଯେ ଦ୍ୱାରକା ଭୁବନକୁ
ସମସ୍ତ ସମ୍ବାଦ କହିଲେ ଶ୍ରୀ ବାସୁଦେବଙ୍କୁ ।୨
ମୋହୋରେ ଯେତେକ ଯେ ହୋଇଲା ଦାମୋଦର
ତୋହୋର ବୁଦ୍ଧିବଳେ ସ୍ୱାମୀ ଜଦୁଘରୁ ପାରିକର ।୩
ଶ୍ରାବଣ ଶୁକଳ ଯେ ତ୍ରୟୋଦଶୀ ଚନ୍ଦ୍ରବାର
ମୂଳା ନକ୍ଷତ୍ର ଯେ ଭୋଗ ଅଟଇ ସେ ଦିନର ।୪
ବିଦୁରେ ବୋଇଲେ ହରି କେବଣ କୃତ୍ୟ କରିବା
କେମନ୍ତେ ପାଣ୍ଡବନ୍ତ ପାର କରି ଦେବା ।୫
ବିମ୍ବର ବାଟେ ଯେବେ ହୋଇବେ ବାହାର
କେବଣ ବୁଦ୍ଧି ଉପାୟେ ଅଛଇ ତୋହୋର ।୬
ବୋଲନ୍ତି ଶ୍ରୀହରି ଶୁଣ ହୋ ବିଦୁର
ଯେ କଥାକୁ ଉପାୟେ ଅଛିନି ମୋହୋର ।୭
ମେଘନ୍ତ ହକାରିଣ ବୋଲନ୍ତି ନାରାୟଣ
ବାରୁଣାବନ୍ତେ ଘୋର କରିବ ବରଷଣ ।୮
ନାରାୟଣଙ୍କ ଆଜ୍ଞାୟେ ବରଷନ୍ତି ମେଘେ
ମୂଷଳ ଧାରା ପ୍ରମାଣେ ସେ ବରଷନ୍ତି ଉଚ୍ଛର୍ଗେ ।୯
ଅନୁଭବ ବନେ ଅଜରାଜ ନାମେଣ କିରାତ
ଜୟନ୍ତା ନାମେ ଭାରିଯା ତା କୋଳେ ପାଞ୍ଚ ପୁତ୍ର ।୧୦
ନିର୍ଘାତ ବଜ୍ର ସୂଚି ପଡ଼ିଲା ତାର ବାସ
ଅଜ ଶବର ଉପରେ ପଡ଼ିଲାକ ସେ ହୋଇଲାକ ନାଶ ।୧୧
ଆଶ୍ରମ ଗୋଟି ଯେ ତାର ଗଲା ଜଳି
ପାଞ୍ଚ ଗୋଟି ପୁତ୍ର ଘେନି ପଳାଇଲା ବିକଳୀ ।୧୨
ଜଦୁର ଘର କାନ୍ଥରେ ସେ ଲାଗିଲାକ ଯାଇଁ

ଭୀମସେନ ବୋଇଲା ଲୋ ଆସୁଅଛୁ କାହିଁ ।୧୩
କେ ଟି ବୋଲିଣ ଚାହିଁଲେ ଦେବୀ କୋନ୍ତୀ
ଆସ ଆସ ମହାତ୍ମାଣୀ ଗୋ ଅଟୁ କେଉଣ ଜାତି ।୧୪
ମୁହିଁ କିରାତୁଣୀ ଅଟଇ ବନଚର
ପାଞ୍ଚ ଗୋଟି ପୁତ୍ର ଗୋ ଅଟଇ ମୋହର ।୧୫
ସ୍ୱାମୀ ମୋହୋର ନାଶ ଗଲା ବଜ୍ର ସୂଚୀ ଘାୟେ
ରହିବାକୁ ଠାବ ଖଣ୍ଡିଏ ଦେଅସି ଗୋ ମାୟେ ।୧୬
ୟେ ପାଞ୍ଚଗୋଟି ପୁତ୍ର ଯେ ତୋହୋର ବାଳ ଶିଷ
ନାମ ଗୋଟି ଆଇ ଅଟଇ ତୋର କିସ ।୧୭
ବୋଲଇ ଶବରଣୀ ଶୁଣ ଗୋସାମଣୀ
ମୋହୋର ନାମ ଅଟଇ ଜୟନ୍ତା ଶବରଣୀ ।୧୮
କୋଇନ୍ତା ବୋଇଲେ ଗୋ ଭିତରେ ରହ ଆସି
ନାମ ଅକ୍ଷର ପଡ଼ିଲା ତୁ ମୋହୋର ବୟେସୀ ।୧୯
ମୋହୋର ପାଞ୍ଚଗୋଟି ପୁତ୍ର ତୋହୋର ପାଞ୍ଚପୁତ୍ର
ଆସ ଆସ ପଇଠି ଗମ୍ଭାରିରେ ପଶସିରେ ସଂଘାତ ।୨୦
ଭୀମ ଦ୍ୱାର ଛାଡ଼, ସେ ପଶନ୍ତୁ ଭିତରେ
ମାତାଙ୍କର ଆଜ୍ଞାୟେ ଛାଡ଼ିଲା ଦ୍ୱାର ବ୍ରିକୋଦରେ ।୨୧
ପଇଠ ଗମ୍ଭୀରେ ସେ ରହିଲା ଶବରୁଣୀ
ଶେଯ୍ୟା ଗୋଟିୟେ ତାହାକୁ କୋଇନ୍ତା ଦିଲେ ଆଣି ।୨୨
ବନସ୍ତେ ଅନେକ ଯେ ଅଇଲେ ଦୁଖ ପାଇ
ଉଷୁମେ ନିଦ୍ରା ଗଲେ ଯେ ଅସାଷ୍ଟମ ହୋଇ ।୨୩
ଯୁଦେଷ୍ଟି ଭୀମ ଅର୍ଜୁନ ନକୁଳ ସହଦେବ
କୋଇନ୍ତାକୁ ଘେନି ଭିତରେ ପଶିଲେ ପଞ୍ଚପାଣ୍ଡବ ।୨୪
ଯୁଦେଷ୍ଟି ବୋଇଲେ ଶୁଣସି ଗୋ ମାୟେ
ୟେଥୁ ପାର ହୋଇଯିବା ୟେହୁ ଯେ ସମୟେ ।୨୫
ପର୍ବତକୁ ଆଡ଼ିଆଇ ପଶିଲେ ଭିତରେ
କୋଇନ୍ତାକୁ ଭୀମସେନ ବସାଇଲେ ଶିରେ ।୨୬
ଡାହାଣ କାନ୍ଧେ ଯୁଦେଷ୍ଟି ବାମ କାନ୍ଧରେ କିରୀଟୀ
ଦୁଇ କାଖେ ବସାଇଲା ନକୁଳ ସହଦେବ ଦୁଇ ଗୋଟି ।୨୭
ବାଉନ ବାଉନ ଭାର ଗଦା ଧରି ବେନି ହସ୍ତେ
ବିମ୍ବରେ ଚଳଇ ଭୀମ ପବନ ଅପତ୍ୟେ ।୨୮
ସୁର ନଦୀ କୂଳେ ନେଇ ବସାଇଲା ପାଞ୍ଚନ୍ତି
ଜଦୁର ଘରକୁ ଭୀମସେନ ଲୋଉଟ ଅଇଲା ନିଶାରାତି ।୨୯
ବିମ୍ବରେଣ ପଶି ଆସି ଜଦୁ ଘରେ ମିଳି
ଝିମାଣିଶାଳୁଁ ଅଗ୍ନି ଆଣି ବାମକରେ ଦିଲା ଜାଳି ।୩୦
ଭୀମସେନ ତୋଳିଲା ପୁରଞ୍ଜନ ପଣ୍ଡାକୁ
ତୁ ସେ ପ୍ରତଜ୍ଞା କଲୁ ପାଣ୍ଡବନ୍ତ ମାରିବାକୁ ।୩୧
ପ୍ରତଜ୍ଞା ସାଚା ହୋଇଲା ତୋହୋର ଦ୍ୱିଜବର
ପାଣ୍ଡବନ୍ତ ମାରି ରାଜ୍ୟ ଦିଅ କୁରୁବୀର ।୩୨
ଜଦୁର ଘରେକ ଯେ କପଟେ ଭିଆଇଲୁ
ଭୁଞ୍ଜାଇ ବସାଇ ମୋତେ ବିଷ ଖୁଆଇଲୁ ।୩୩
ପୁରଞ୍ଜନକୁ ଝିଙ୍ଗାସଇ ପବନର ବଳା
ଧାତିକାରେ ଜଦୁର ଘରେ ଲଗାଇଲୁ ହୁଳା ।୩୪
ଜଉ ସଜଳସ ଗୁଆଘୃତ ଛଣପଟ
ୟେ ଚାରିଙ୍କି ମେଦି କରି ଘର କରିଛୁ କପଟ ।୩୫
ଯେତେବେଳେ ହୁଳା ଲଗାଇଲେ ଜଦୁର ଘରେ
ଜଳିଲା ଅନଳ ଯେ କାଳାନଳ ପରଖରେ ।୩୬
ପଣ୍ଡାୟେ ପଳାଅ ତୁମ୍ଭେ ବାହାର ହୋଇ
କାହୁଁ ଆଣି ଲଗାଇଲ ତୁମ୍ଭେ ଜୁଇ ।୩୭
ୟେହିକ୍ଷଣି ଆମ୍ଭେ ମରିବଇଁ ପୋଡ଼ି
ତୁମ୍ଭେ ପଳାଅ ପଣ୍ଡା ହେ ଅଗ୍ନି ଆସୁଅଛି ମାଡ଼ି ।୩୮
ତୁରିତେ ଅଗ୍ନି ଲାଗିଲା ବ୍ରାହ୍ମଣ ଭୀମ ଦୁହିଁଙ୍କରି କର
ମୁହଁ ମାଡ଼ି ପଡ଼ିଲା ବ୍ରାହ୍ମଣ ଭୂମିର ।୩୯
ଭୀମସେନ ପଳାବନ୍ତେ ଅଗ୍ନିର ତେଜ ଲାଗି
ଅନେକ ତୁଷ୍ଟି ଭୀମ କଲା ପରମ ଯୋଗୀ ।୪୦
ରହ ରହ ପବନ ନନ୍ଦନ ମୋହୋର ହାତରୁ ଯିବୁ କାହିଁ
ରହିଣ ଭୀମସେନ ବିସ୍ମୟ ହୋଇ ତୁଷ୍ଟି କରଇ ତହିଁ ।୪୧
ଜୟ ତୁ ଜୟ ତୁ ଦେବ ବୈଶ୍ୱାନର
ଜୟ ତୁ ଜୟ ତୁ ଦେବ ଦୋହୋରା ଅବତାର ।୪୨
ଜୟ ତୁ ଜୟ ତୁ ଦେବ ଦହନ ପାପ ଘୋରା
ଜୟ ତୁ ଜୟ ତୁ ଦେବ ଗୋପ୍ୟାନ ଦୋହୋରା ।୪୩
ଜୟ ତୁ ଜୟ ତୁ ଦେବ ଆହାରେ ମଉଭୋଳା
ଜୟ ତୁ ଜୟ ତୁ ଦେବ ଦେବ ସିଦ୍ଧ ଅନର୍ଗଳା ।୪୪
ଜୟ ତୁ ଜୟ ତୁ ଦେବ କାଳ ଯେ ଅନଳ
ଜୟ ତୁ ଜୟ ତୁ ଦେବ ପ୍ରସନ୍ନେ ପିଙ୍ଗଳ ।୪୫
ଜୟ ତୁ ଜୟ ତୁ ଦେବ ମହାରୁଦ୍ର ମୂର୍ତ୍ତି
ଜୟ ତୁ ଜୟ ତୁ ଦେବ କ୍ରୋଟ ଅନଳ ଜ୍ୟୋତି ।୪୬
ଜୟ ତୁ ଜୟ ତୁ ଦେବ ଶୂନ୍ୟ ପୁରୁଷ ଦକ୍ଷ
ଜୟ ତୁ ଜୟ ତୁ ଦେବ ଅଭକ୍ଷ ସର୍ବ ଭକ୍ଷ ।୪୭

ଜୟ ତୁ ଜୟ ତୁ ଦେବ ତୁହି ପିତା ମାତା
ଜୟ ତୁ ଜୟ ତୁ ଦେବ ପ୍ରସନ୍ନେ ବର ଦ୍ୟନ୍ତା ।୪୮
ଜୟ ତୁ ଜୟ ତୁ ଦେବ ସୁରସିଦ୍ଧ ମହାବ୍ରହ୍ମି
ଜୟ ତୁ ଜୟ ତୁ ଦେବ ପ୍ରସନ୍ନେ ଅଭୟ ସ୍ୱାମୀ ।୪୯
ଜୟ ତୁ ଜୟ ତୁ ଦେବ ମହାବ୍ରହ୍ମ ତେଜା
ଜୟ ତୁ ଜୟ ତୁ ଦେବ ମୁର୍ଖ ଦର୍ପ ଭଞ୍ଜା ।୫୦
ଜୟ ତୁ ଜୟ ତୁ ଦେବ କାଳାନଳ ହୁଅ ଶାନ୍ତି
ଜୟ ତୁ ଜୟ ତୁ ଦେବ ଅନଳ ଅନନ୍ତ ମୂର୍ତ୍ତି ।୫୧
ଜୟ ତୁ ଜୟ ତୁ ଦେବ ସ୍ୱାହାର ବଲ୍ଲଭ
ଶୂଦ୍ରମୁନି ସାରୋଳା ଦାସ ଭକତି ବିନୟ ଭାବ ।୫୨
ଭୀମସେନ ତୁଷ୍ଟି କଲା ବୈଶ୍ୱାନର ଦେବତାଙ୍କୁ
ଅପାଦ କାଳେ ସ୍ୱାମୀ କଟାଳ ନ କର ମୁକୁ ।୫୩
ମୋତେ ଯେବାରେ ଯେଥୁଂ ରକ୍ଷା କଲେ ଦେବ ହବି
ମୋହୋର ସମାନେ ସ୍ୱାମୀ ଶତେ ଜଣ ତୋତେ ଦେବି ।୫୪
ଯେତେକ ତୁଷ୍ଟି କରିଣ ବ୍ରିକୋଦର
ଧାତିକାରେ ପଶିଲା ଯାଇଂ ପାତାଳ ବିମ୍ୱର ।୫୫
ଦ୍ୱାରେଣ ଚାପିଲା ସେ ପର୍ବତ ଶିଳା ଗୋଟି
ଧାତିକାରେ ଧାଇଂ ଯାଇଂ ବ୍ରିକୋଦର ଭେଟିଲା ଯୁଝେଷ୍ଟି ।୫୬
ଅନେକ ଧନରତ୍ନ ନେଲା ଜଦୁର ଘରୁ
ଯୁଝେଷ୍ଟି ବୋଇଲେ ଯେହା ଆଣି କିସ କରୁ ।୫୭

✱✱

## ୨୨. ବକାସୁର ବୃତ୍ତାନ୍ତ

### ବକାସୁର ବୃତ୍ତାନ୍ତ

ଶୁଦ୍ଧତପା ନାମେଣ ଅଛଇ ଯେକ ନଦୀ
ଆକାଶ ଗଙ୍ଗାରୁ ମଉଦଧିକି ଅଛି ଭେଦି ।୧
ସେ ନଦୀର ତୀରେ ଯେକଇ ନଗ୍ର ଗୋଟିଏ
ଯେକଚକ୍ରା ବୋଲିଣ ତାହାର ନାମ ହୋଯେ ।୨
ବିପ୍ର ଆଦି କରି ଅଷ୍ଟାଦଶ ଜନ କୁଳ
ନିର୍ମଳ ସ୍ଥାନ ଦେଖି ବସନ୍ତି ସକଳ ।୩
ନଦୀକୂଳ ପରିମଳ ଶଉଚ ପୁଣ୍ୟଭୂମି
ବହଇ ମାହେଶ୍ୱରୀ ନଦୀ ଉତ୍ତରଗାମୀ ।୪
ବନ ତେଜିଣ ଗମନ୍ତି ସେ ପଞ୍ଚୁ ବୀରେ
ଭିକ୍ଷା କୁତୋହୋଳେ ପଶିଲେ ସେ ପୁରେ ।୫
ଯୁଝେଷ୍ଟି ସଉରଭ ପାତ୍ର ଭୀମସେନ ଚକ୍ରଭାର
ହରି ଗୋବିନ୍ଦ ମୁଣି ଅର୍ଜୁନ ହସ୍ତର ।୬
ନକୁଳ ତମ୍ୱା କପୋରା ସହଦେବ ହାଥେ ପାତ୍ରୀ
କଉତୁକେ ନଗ୍ରେ ବିହରନ୍ତି ପଞ୍ଚୁଛତ୍ରୀ ।୭
ଦେଖନ୍ତି ଜନ ଗହନ ମହା ନଗ୍ର ଗୋଟା
ସମସ୍ତେ ହେଁ ଭାଗ୍ୟବନ୍ତ ଶରୀର ଦୃମୋଟା ।୮
ଭ୍ରମନ୍ତେ ଭ୍ରମନ୍ତେ ଆଦିତ୍ୟ ଅସ୍ତ ଗଯେ
କାହିଁ ରହିବା ବୋଲି ଭାଳନ୍ତି ସଂଶଯେ ।୯
ବେଦଶର୍ମଣ ବୋଲି ଯେକଇ ଦ୍ୱିଜବର
ଭିକ୍ଷାପାତ୍ର କଲେ ନେଇ ତାହାଙ୍କର ଦ୍ୱାର ।୧୦
ସେ ବେଦଶର୍ମଣ ପଣ୍ଡା ଅଟନ୍ତି ଭିକ୍ଷାବାସୀ
ତାହାଙ୍କ ଦ୍ୱାରେ ବେଦ କରାଣ୍ଡିଯେ ଘୋଷି ।୧୧
ବିସ୍ମୟେ ବ୍ରାହ୍ମଣୀ ଯେ ବୋଇଲା ତାହା ଚାହିଁ
ପଣ୍ଡାଯେ ଭିକ୍ଷାରୁ ନୁଆସନ୍ତି ଦେବାକୁ କିଛି ନାହିଁ ।୧୨
ମୋହୋର ସ୍ୱାମୀ ଯେହିମତେ ଭିକ୍ଷାବାସୀ
ଯିବ ତ ବୋଲି ତ ମୋହୋର ବଚନକୁ ନୁଆସି ।୧୩
ଯେ ସେ ହୋଅନ୍ତା ମହତ ଦୟାବନ୍ତ
ବଚନ ମଧୁର କହି ବୋଧନ୍ତା ତାହାନ୍ତ ।୧୪
ବଚନ ସମାର୍ଜି ବୋଲନ୍ତି ଭିକ୍ଷାରୁ ଆସନ୍ତୁ ମୋହୋର ସ୍ୱାମୀ
ଅତିଥି ତ୍ରିପୁତି କରି ତଣ୍ଡୁଳ ଅଧେ ଦେମି ।୧୫
ବ୍ରାହ୍ମଣୀ ବୋଇଲା ଗୋ ଅପାର ହୋଇଲାନି ନିଶି
ମୋହୋର ଘରେ ଆଜକ ବସା କରି ରହସି ।୧୬
ଦଇବେ ଭିକ୍ଷାଶୀ ଘରେ ନାହିଁ କିଛି
ଉଆସରୁ ଅଧେକ ଯେ ତୁଛା ହୋଇଅଛି ।୧୭
ତହିଁ ଭିତରେ ଗୁହାଇଲେ ନେଇ
ରହିଲେ ପାଣ୍ଡବେ ମହା ସୁସ୍ତ ପାଇଁ ।୧୮
ସନ୍ନିଧେ ବସି ବ୍ରାହ୍ମଣୀ ସ୍ୱରୂପ ପଚାରି
ବେଦଶର୍ମଣ ପଣ୍ଡାଯେ ଅଇଲେ ଭିକ୍ଷା କରି ।୧୯
ବ୍ରାହ୍ମଣୀ ଆସିଣ ସନ୍ନିଧେ ହୋଇଲେକ ବେଗେ
ସମସ୍ତ କଥା ବ୍ରାହ୍ମଣୀ କହିଲା ବ୍ରାହ୍ମଣଙ୍କ ଆଗେ ।୨୦
ତାହାର ଭିକ୍ଷା ଯେତେକ ସେ ଆଣିଥିଲା
କଣ କଞ୍ଚ ଥୋଇ ଆଉ ହାଣ୍ଡିରେ ଭରିଲା ।୨୧
ହାଣ୍ଡି ତଣ୍ଡୁଳ ମୁଗ ନାନାଦି ପରିବା
ଛାମୁରେ ବେଦଶର୍ମଣ ପଣ୍ଡା ଥୋଇ ଅନେକ କଲଇ ସେବା ।୨୨

ଯେ ନଗ୍ରରେ ତୁମ୍ଭେ ଥିବ ଯେତେ ଦିନ
ମୁହିଁ ତୁମ୍ଭଙ୍କୁ ଦେଉଥିବି ଅନ୍ନ ଯେ ଭୋଜନ ।୨୩
ଯହୁଁ ଉଆସରୁ ଅଧେକ ଦିଲେ ବେଦଶର୍ମଣ
ରହିଲେ ନିଷ୍ଟିନ୍ତେ ମାଆନ୍ତ ଘେନି ଷଡ଼ ଜଣ ।୨୪
ଦିବସ ଭିକ୍ଷାକୁ ସଜ ହୋଅନ୍ତି ଚାରି ଭାଇ
କୋଇନ୍ତାଯେ ବୋଇଲେ ସଙ୍ଗେ ନ ନିଅ ଭୀମକଇ ।୨୫
ଯୁଧେଷ୍ଠି ବୋଇଲେ ଭୀମ ନ ଯାଉ ଭିକ୍ଷାକୁ
ବହୁତ ଦିଅନ୍ତା ନାହିଁ ଅଳପ ନ ଦିଶଇ ଯେହାକୁ ।୨୬
ଯିବ ତ ବୋଲିଣ ଯେହାକୁ ଯେବଣ ଜନ ବୋଲିବ
କୁଡ଼ିଆ ଭାଙ୍ଗି ତାର ସବୁନ୍ତି ମାରିବ ।୨୭
ଭୀମସେନ ମାତା ଦୁହିନ୍ତି ଘରେ ଛାଡ଼ି
ଭିକ୍ଷାପାତ୍ରେ ଯେକଚକ୍ରା ନଗ୍ରେ ସୁଖେଣ ବିହଡ଼ି ।୨୮
ଯିସ ଅବା ଭିକ୍ଷାରୁ ନିଅନ୍ତି ଉପୁଚାଇ
ଆପଣେ ପାଞ୍ଚନ କରନ୍ତି କୋଇନ୍ତା ଦେବୀ ଆଇ ।୨୯
ଦୁଇଭାଗ କରି ଅଧେକ ଦିଅନ୍ତି ଭୀମକୁ
ଯେହାଙ୍କର ଅଧିକରୁ ଦିଅନ୍ତି ଦେବତା ଅତିଥିଙ୍କୁ ।୩୦
ଯେତେକ ଭାତରୁ ଗଳଇ ପେଜ ପୁଟିଯେ
ଭୀମକୁ ଦିଅନ୍ତି ତାହା କୋଇନ୍ତା ଦେବୀ ମାଯେ ।୩୧
ଅଧେକ ଆହାର ଯେ କରଇ ଭୀମସେନ
କାହାକଇ କଥ ନ କହଇ ଅବିକ୍ଷଣେ କୋପମନ ।୩୨
ତୁଳ ବିଛା ତହିଁ ରହିଲେ ମାସ ବେନି
ଧନୁ ମାସର ଭୋଗ ହୋଇଲା ଦିନା ତିନି ।୩୩
ଧନୁ ମାସ କୃଷ୍ଣ ପକ୍ଷ ଦୁତୀୟାର ଦିନ
ବେଦ ଶର୍ମଣ ବ୍ରାହ୍ମଣୀକି ବୋଲଇ ବଚନ ।୩୪
ଶରୀର ଅଳସ ମୋର କପାଳ ବଥାଇ
ଆଜ୍ଜକୁ ଭିକ୍ଷାକୁ ଗୋ ମୁଁ ନ ପାରଇ ଯାଇ ।୩୫
ବ୍ରାହ୍ମଣୀ ବୋଇଲା ଯେବେ ଅଳସ ତୁମ୍ଭର କାୟେ
ଥାଅ ଭିକ୍ଷାକୁ ତୁମ୍ଭେ ନ ଯାଅ ପଣ୍ଡାଯେ ।୩୬
ଘରେ ତଣ୍ଡୁଳ ତ ଗୋଟିଯେ କାହିଁ ନାହିଁ
ସ୍ୱାମୀ ଆଳସ କଲେ କେମନ୍ତେ ଦିନ ବଞ୍ଚିବଇଁ ।୩୭
ବ୍ରାହ୍ମଣଙ୍କୁ ମୁଁ ଯେବେ ପଠିଆଇବି ବଳେ
ଘରଣୀ ପଣ ମୋର ଦିଶିବ ସର୍ବକାଳେ ।୩୮
ବୋଲିବ ଯେକା ଦିନେ ଯେବେ ନ ପାରିଲୁ ପୁରୋଇ
କେତେ ଦିନ ଅଳସ ହୋଇବା ରକତ ମାଂସ ଦେହ ବହି ।୩୯
ଜରା ଅବସ୍ତା ରୋଗ ବ୍ୟାଧି ଯେ ହୋଇଲେ
ସଭିଯେଁ ମରିବା ତ ମୋହୋର ଭିକ୍ଷାକୁ ନ ଗଲେ ।୪୦
ଯେତେ ବୋଲି ଘରଣୀ ପଣ ମୋର କରିବ ଦୁଷିତ
ନ ଯାଉ ଦ୍ୱିଜବର ଆଜକ ହୋଉ ସୁସ୍ତ ।୪୧
ପୁତ୍ର ଦୋହିତା ଦୁଇଗୋଟି ଆମ୍ଭେ ଜଣ ବେନି
ଉଦ୍ଧାର କରି ଆଣିବା ପଛେ ତଣ୍ଡୁଳ ମାଣ ତିନି ।୪୨
ବ୍ରାହ୍ମଣ ବ୍ରାହ୍ମଣୀ ଦୁହେଁ ବସିଲେ ଯେକଥାନେ
ଦୁଖ ସୁଖ କଥା ବସି ଭାଳନ୍ତି ବେନି ଜନେ ।୪୩
ବ୍ରାହ୍ମଣଙ୍କର ନାମ ଅଟେ ବେଦଶର୍ମଣ
ବ୍ରାହ୍ମଣୀର ନାମ ରମା ଦେବୀ ଜାଣ ।୪୪
ପୁତ୍ରଗୋଟି ନାମ ଯେ ଅଟଇ ବିଦ୍ୟାଧର
ଭାନୁବତୀ ନାମ ଅଟଇ ଦୁହିତା ଗୋଟିର ।୪୫
ଖେଳି ଯାଇଥିଲେ ଆସି ମିଳିଲେ ନିଜବାସେ
ଅନ୍ନ ପୁଡ଼ାଯେ ମାଯେ ଦିଲେକ ହରଷେ ।୪୬
ଯେମନ୍ତ ସମୟେ ଅମ୍ବିକା ନାମେଣ ଚାଣ୍ଡାଳ
ସେ ନଗ୍ରେ ଘୋଷଣା ଦିଅଇ ସର୍ବକାଳ ।୪୭
ସାଚୋ ସାଚୋ ବୋଲି ଘଣ୍ଟା ବଜାଇ ଅନ୍ତରାଳି
ବେଦଶର୍ମଣ ପଣ୍ଡାଙ୍କ ଘରେ କାଲି ଠାକୁରଙ୍କର ପାଳି ।୪୮
ଘଣ୍ଟ ଶବଦ ଶୁଣି ଯେ ବ୍ରାହ୍ମଣୀ ବୋଇଲା
ରହ ରହ ଶୁଣିମା କାଲି କାହା ଘରେ ପାଳି ଯେ ପଡ଼ିଲା ।୪୯
ସାଚୋ ସାଚୋ ବୋଲି ଯେ ଡାକିଲା ଚାଣ୍ଡାଳି
ବେଦଶର୍ମଣ ପଣ୍ଡାଙ୍କ ଘରେ କାଲି ଠାକୁରଙ୍କର ପଡ଼ିଲା ପାଳି ।୫୦
ବ୍ରାହ୍ମଣୀ ବୋଇଲା ପଣ୍ଡା ହେ ମୋହୋର ମୁଣ୍ଡ ତ ପୋଡ଼ିଲା
କାଲି ଆମ୍ଭର ଘରେ ଠାକୁରଙ୍କର ପାଳି ତ ପଡ଼ିଲା ।୫୧
ବ୍ରାହ୍ମଣ ବୋଇଲା ସେ ମିଛହେଁ ନୁହ ବାଇ
କେତେହେଁ ବେଦଶର୍ମଣ ଯେହି ପୁରେ ନାହିଁ ।୫୨
ବ୍ରାହ୍ମଣୀ ବୋଇଲା ଲେଖନି ପଣ୍ଡାହେ
ଆମ୍ଭର ପାଳି ଦିଲାର କେତେ କାଳ ହୋଯେ ।୫୩
ଖଡ଼ି ଘେନି ଲେଖା କରଇ ଦ୍ୱିଜବର
ଯେକଚକ୍ରା ନଗ୍ରେ ବସଇ ଯେଗାର ସହସ୍ର ନଉ ଷାଠିଯେ ଘର ।୫୪
ଘରକେ ପାଳିଯେ କରି ନେଉଅଛି ଲେଖି
ପୁଣ ପୁଣ ଲେଖଇ ବିପ୍ର ଭ୍ରାନ୍ତି ଯେ ଉପେକ୍ଷି ।୫୫
ଯେଗାର ସହସ୍ର ନଉ ଷାଠିଏ ଘର

ପାଳି ପଡ଼ଇ ତେତିଶ ବରଷ ଦୁଇମାସ କୋଡ଼ିଏ ଦିନର ।୫୬
ଲେଖି ଲେଖି ବିରସ ହୋଇଲା ଦ୍ୱିଜବର
ରାତ୍ର ପାହିଲେ ପାଳି ପଡ଼ିବ ଆମ୍ଭ ଘର ।୫୭
ଜାଣିଣ ଅସାଷ୍ଟମ ବ୍ରାହ୍ମଣ ବ୍ରାହ୍ମଣୀ
ଦୁହେଁ ମୋହେ ପଡ଼ିଲେ ବଜ୍ରଘାତ ଜାଣି ।୫୮
ମାତା ପିତାଙ୍କର ଅବସ୍ଥା ଦୁଃଖ ଦେଖି
ବାଳୁତ ପୁତ୍ର ଦୋହିତା ରୋଦନ୍ତି ନିରିମାଖି ।୫୯
ବ୍ରାହ୍ମଣ ଘରେ ଚହଳ କ୍ରୋଧ ବାଣୀ ଶୁଣି
ଜଳା କବାଟି ବାଟେ ଚାହାନ୍ତି କୋନ୍ତଭୋଜର ଦୁଲଣୀ ।୬୦
ବ୍ରାହ୍ମଣୀ ବୋଇଲା ପଣ୍ଡାଯେ ଅଳସ ତୁମ୍ଭେ କଲ
ଘରେ କିଛି ନାହିଁ ତୁମ୍ଭେ ଭିକ୍ଷାକୁ ନ ଗଲ ।୬୧
ଉଦ୍ଧାର କରି ନାଥ ବଞ୍ଚିଲି ଆଜ ମୁହିଁ
ଦୁବ ଅର୍ଘ୍ୟ ଦେବାକୁ ଘରେ ତଣ୍ଡୁଳ ଗୋଟିଏ ନାହିଁ ।୬୨
କାନ୍ଦନ୍ତି ସମସ୍ତେ ପଡ଼ି ଲୋଟନ୍ତି ମହୀଆଳୀ
ଯେମନ୍ତ ସମୟେ ପଡ଼ିଲା ବକ ରାକ୍ଷସର ପାଳି ।୬୩
ଭାତ ଶଗଡ଼େ ପିଠା ଶଗଡ଼େ ପୋଢୁଅ ହଳେ ବଳଦ ହଳେ
ନରବଳି ଜଣେ କାହିଁ ପାଇବା ବୋଲି ରୋଦନ୍ତି ବିକଳେ ।୬୪
ବ୍ରାହ୍ମଣୀ ବୋଇଲା ମୋହର ପିତାଘରକଇ ଯିବି
ପୋଢୁଅ ହଳେ ବଳଦ ହଳେ ଶଗଡ଼ ଦୁଇଗୋଟି ମାଗିବି ।୬୫
ବ୍ରାହ୍ମଣ ବୋଇଲା ମୁଁ ଅତିଥି ପଣ କରିବି
ଭାତ ପିଠା ଥାଳିଯେ ଥାଳିଯେ କରି ନଗ୍ରରେ ମାଗିବି ।୬୬
କେଉଣସି ବାଗେ ଯେହା ପୂରୋଇବା
ନରବଳି ଜଣେ ଆମ୍ଭେ କାହୁଁ ଭିଆଇବା ।୬୭
ବ୍ରାହ୍ମଣୀ ବୋଇଲା ନାଥ ବୁଦ୍ଧିଯେ କରିବା
ପୁତ୍ର ଦୋହିତା ବେନି ଗୋଟି ତୁମ୍ଭେ ସମ୍ଭାଳୁଣ ଥିବା ।୬୮
ମୁଇଁ ଭୋଜନ କାଲି ହୋଇବି ଦତ୍ୟକୁ
ତୋହୋର ବ୍ରତି ନାଥ ଭାରିଯା ଅଛି ନି ତୁକୁ ।୬୯
କର୍ମେଣ ଧନ ଅର୍ଜିଲେ ହୋଇବୁ ପୁଣ ବିଭା
ଯେକା ଥାଉଁ ସ୍ୱାମୀ ମନେ ଆନ ନ ଧରିବା ।୭୦
ବ୍ରାହ୍ମଣ ବୋଇଲା ଯେ ନୋହଇ ସଂଘାତ
ପୁତ୍ର ଦୁହିତା ବେନି ଗୋଟିଏ ଅଟନ୍ତି ବାଳୁତ ।୭୧
ଯେକା ବାଳୁତ୍କଇ ଛାଡ଼ି ମାତା ଯେବେ ମରଇ
ତାହାର ବିକଳେ ପିତା କାହିଁ ଦେହ ଯେ ଧରଇ ।୭୨
ଦେଖୁ ଦେଖୁ ଯେ ତୋହୋର ବାଳୁତ ବେନି
ଯେହାଙ୍କର ବିକଳେ କେ ବ୍ରତିବ ଦେହ ଘେନି ।୭୩
ଯେ ପୁତ୍ର ଦୁହିତା ତୁମ୍ଭେ ଥାଅସି ସମ୍ଭାଳି
ମୁଁ ହୋଇବି କାଲି ନାଥ ବକ ରାକ୍ଷସର ପାଳି ।୭୪
ବ୍ରାହ୍ମଣୀ ବୋଇଲା ନାଥ ତୋହୋର ନାଶ ଗଲେ
ମରଣହୁଁ ଅଧିକ କଷ୍ଟ ମୋତେ ବିଧବା ହୋଇଲେ ।୭୫
ସ୍ୱାମୀର ଅଭାବେ ବ୍ରତନ୍ତି ଯେବଣ ନାରୀ
ସେ ନାରୀ ପୁଣି ପଛନ୍ତେ ହୋଅନ୍ତି ଦୋଚାରୀ ।୭୬
ବ୍ରାହ୍ମଣ ବୋଇଲା ମୋହୋର ଜୀଇଁଥାନ୍ତେ
ବକ ରାକ୍ଷସ ତୋତେ ଭକ୍ଷିବ କେମନ୍ତେ ।୭୭
ପିତା ମାତାରେ ବୈକୁଲ୍ୟ ଦେଖି ପୁତ୍ର ଗୋଟିଏ ବୋଇଲା
ଭୋ ପିତା ଆମ୍ଭର ଘରେ ଯେବେ ବକ ରାକ୍ଷସର ପାଳି ପଡ଼ିଲା ।୭୮
ପିତା ମାତା ବ୍ରତିଥିଲେ ପୁତ୍ର ଉପୁଜିବ
ତୁମ୍ଭର ନାଶ ଗଲେ ସନ୍ତାନ କାହୁଁ ଯେ ହୋଇବ ।୭୯
ଅଜା ଯୂଥ ଥିଲେ ଗୋସାଇଁ କି ଅପାଦ ଯେ ନାହିଁ
କାଲି ପାଳିକି ତାତ ସୁଝ ମୋତେ ବକ ରାକ୍ଷସକୁ ଦେଇ ।୮୦
ପୁତ୍ର ଥିଲେ ପିତାମାତାଙ୍କୁ କାହିଁ କଷ୍ଟ
ମୋତେ ଭକ୍ଷଣ କରୁ କାଲି ବକ ରାକ୍ଷସ ପାପିଷ୍ଟ ।୮୧
ଦଶ ବରଷ ପୁତ୍ର ଗୋଟିର ଯେ ବଚନ ଶୁଣି
ପୁତ୍ର କୋଳେ ଧରିଣ ରୋଦନ୍ତି ବ୍ରାହ୍ମଣ ବ୍ରାହ୍ମଣୀ ।୮୨
ନିରାଶ ବଚନ ଗୋଟି ମୁଁ ପରିମୁଣ୍ଡା ଯାଇ
ତୋତେ ଦେଇ ଦେହ କିମ୍ପେ ଧରିବଇ ମୁହିଁ ।୮୩
ଯେ ତୋହୋର ମୁଖରୁ ନିରାଶ ବଚନ ଗୋଟି ଶୁଣି
ଶରୀର ଦହନ କିମ୍ପେ ଆମ୍ଭର ନୋହିଲା ଯେହିକ୍ଷଣି ।୮୪
ପରେଣ ପ୍ରଦାନ କରିବ ସିନା ମୋତେ
ଦୁହିତା ଗୋଟି ବୋଇଲା ନ ରୋଦ ପିତାମାତେ ।୮୫
ମୁଇଁତ ପର ଗୋତ୍ରୀ ସିନା ତାତ ଆନ ନ ବୁଝ
ମୋତେ ଦେଇ ମାତା ଗୋ ବକ ରାକ୍ଷସର ପାଳି ଶୁଝ ।୮୬
ବ୍ରାହ୍ମଣ ବୋଇଲା ମାତା ତୁ ଅଟୁ ବାଳୁତୀ
ତୋତେ ଦେଖି ରାକ୍ଷସ କିମ୍ପେ ହୋଇବ ତ୍ରିପୁତି ।୮୭
ବ୍ରାହ୍ମଣ ବ୍ରାହ୍ମଣୀର ଯେସନେକ ବଚନ ଶୁଣି
ଛାମୁରେ ପ୍ରବେଶ ହୋଇଲେ କୋନ୍ତଭୋଜର ଦୁଲଣୀ ।୮୮
ତୁମ୍ଭର ଯେତେକ ବଇକୁଲ୍ୟ ଗୋ କାହିଁର ନିମନ୍ତେ
କହ କିନା ପଣ୍ଡା ତାହା ମୋହୋର ଅଗ୍ରତେ ।୮୯
ବ୍ରାହ୍ମଣ ବୋଇଲା ଗୋ ଦୃଷହ ବଡ଼ କଥା

ହିରଣ୍ୟକପଟ ବୋଲି ଯେକଇ ଦୟିତା ।୯୦
ତାହାର ନନ୍ଦନ ହାଦେ ନିର୍ବାତକପଟ
ତାହାର ଠହୁଁ ଉପୁଜିଲା ଦୁହିତାଯେ ଚାରି ବଛ ।୯୧
କିମ୍ଭୀରୀ କିନ୍ନରୀ ହିଡ଼ିମ୍ବେକ ବକ
ହିଡ଼ିମ୍ବିକୀ ନାମେଣ ତାର ଦୋହିତା ଯେ ଯେକ ।୯୨
କିମ୍ଭୀରୀ ଦତ୍ୟ ଥାଇ ସୁର ନଦୀ ତୀରେ
କିନ୍ନରୀ ଦତ୍ୟ ଥାଇ ମଧୁବନ ତୋଟାରେ ।୯୩
ହିଡ଼ିମ୍ବକୀ ବନେ ଥାଇ ହିଡ଼ିମ୍ବକ ଦଇତ
ବକ ରାକ୍ଷସର ଯେକଚକ୍ରା ନଗ୍ରେ ସ୍ଥିତ ।୯୪
ଭାତ ଶଗଡ଼େ ପିଠା ଶଗଡ଼େ ଯେ ରାଜ୍ୟରେ ଭିଆଣେ
ପୋତୁଅ ହଳେ ବଳଦ ହଳେ ନରବଳି ଜଣେ ।୯୫
ତେତିଶ ବରଷ ବେନି ମାସ କୋଡ଼ିଯେ ଦିନେ ଯେତେକ ଦେଇ
ଯେତେକ ଦିଲେ ଯମ ପଶି ନୁଆରି ଯେ ପୁର କଇ ।୯୬
ତରେଣ ମେଘମାନ କରୁଥାନ୍ତି ବୃଷ୍ଟି
ପଞ୍ଚାଶ ଭରଣ ଧାନ ଫଳଇ ଯେକ ବାଟି ।୯୭
ଆନ ଉପଦର୍ପ ନାହିଁ ଯେଥେ ରୋଗ ବ୍ୟାଧି
ଜରା ମୃତ୍ୟୁ ନାହିଁ କିଛି ହିଁ ଅବିଧି ।୯୮
ମୋହୋର ଘରେ ତାର ପଡ଼ିବ କାଲି ପାଳି
ସମସ୍ତ ଭିଆଇ ପାରେ ନାହିଁ ନରବଳି ।୯୯
କୋଇନ୍ତାଯେ ବୋଇଲେ ମା ଗୋ ମୁଁ ରହିଲି ତୁମ୍ଭ ଘରେ
ପାପ ପୁଣ୍ୟ ଭାଗୀ ହୋଇ ପଶିଲୁ ତୋହୋର କର୍ମରେ ।୧୦୦
ଯେ ଯୋଗାଡ଼ମାନ ବେଗେ କରସି ସମ୍ଭାର
ନରବଳି ଜଣେକ ହୋଇଲା ଆମ୍ଭର ଭାଗର ।୧୦୧
ଭୁଇଁ ଛୁଇଁ ବ୍ରାହ୍ମଣ ଶ୍ରବଣେ ଦିଲା ହାଥ
ତୁମ୍ଭେ ଠାକୁରାଣୀ କିମ୍ପେ କହିଲ ଯେମନ୍ତ ।୧୦୨
ମୋହୋର ଘରେ ତିନିମାସ ରହିଲ ଯେ ସର୍ବେ
ମୁହିଁ ପାପିଷ୍ଠ ତୋର ପୁତ୍ରକୁ କେମନ୍ତେ ଦେବି ଯେବେ ।୧୦୩
ମୁହିଁ ଯାଉଅଛି ଗୋ ଯେବେ ଅସୁର ଠହିଁକି
ପୁଅ ଝିଅ ଭାରିଯାକୁ ମୋହୋର ଥିବ ତୁମ୍ଭେ ରଖି ।୧୦୪
କୋଇନ୍ତାଯେ ବୋଇଲେ ଯେ ମୋହୋର ସତ୍ୟ ସତ୍ୟ
ତୋହୋର ନିମନ୍ତେ ଦେବି ମୋହୋର ଯେକ ପୁତ୍ର ।୧୦୫
ତୁମ୍ଭେ କିଛି ବିସ୍ମୟେ ନୁହନି ପଣ୍ଡାୟେ
ମୋହୋର ଅଛି ହାଦେ ଦୁଷ୍ଟ ପୁତ୍ର ଯେ ଗୋଟିଏ ।୧୦୬
ଭିକ୍ଷା ମାଗି ନ ଯାଇ ଅଧେକ ଅନ୍ନ ଖାଇ
କଥା ନ କହଇ ବସିଥାଇ ମୁହଁ ଯେ ଫୁଲାଇ ।୧୦୭
ତାହାର ମରିବାର ମୁଁ ମନାସଇ ଯୁଗତେ
ଆମ୍ଭେ ଯାହା ମାରିବୁଁ ସେ ମରୁ ହାଦେ ଯେମନ୍ତେ ।୧୦୮
ଦୁଷ୍ଟ ପୁରୁଷ ଆବର ନଷ୍ଟ ଯେ ଭାରିଯା
ରଣକାରୀ ପିତା ଯେ ଅଭାବ ମଇତ୍ରା ।୧୦୯
କୁସ୍ଥାନ ଭୂମି ଅସୁର ଭୋଗ ତୀର୍ଥ
ଯେତେକ ଉପେକ୍ଷନ୍ତି ଯେ ଧାର୍ମିକ ପଣ୍ଡିତ ।୧୧୦
ଦ୍ୱିଜବରକୁ ବୁଝାଇ ଗଲେଦେବୀ କୋଇନ୍ତେ
ଭୀମସେନ ସନ୍ନିଧେ ପ୍ରବେଶ ହୋଇଲେ ତୁରିତେ ।୧୧୧
ଭୀମସେନ ହସିଲା ମାତାଙ୍କ ମୁଖ ଚାହିଁ
ଭାତ ପିଠା ବେନି ଶଗଡ଼ ବୋଲୁଥିଲ କାହିଁ ।୧୧୨
କୋଇନ୍ତାଯେ ବୋଇଲେ ମୁଁ ତୋହୋର ଅପାଦ ଘେନି ଯାଇ
କେତେ ଅନ୍ନ କଷ୍ଟ ସେ ଦେଖିବି ତୋହୋର ମୁହିଁ ।୧୧୩
ବାବୁ ବେଦଶର୍ମଣ ପଣ୍ଡା ଘରେ କାଲି ବକରାକ୍ଷସର ପାଳି
ଭାତ ପିଠା ବେନି ଶଗଡ଼ ପୋତୁଅ ବଳଦ ବେନି ହଳି ।୧୧୪
ଯେତେକ ଘେନି ବାବୁ ଯାଅସି ଅଡ଼ାଇ
ଭାଲୁଙ୍କି ନଦୀ କୂଳେ ରାକ୍ଷସକୁ ଦେଇ ଆସ ଯାଇ ।୧୧୫
ଭାତ ପିଠା ଶଗଡ଼ ଭିଆଇ କେହି ନିଅନ୍ତା ନାହିଁ ଡରେ
ମୁହିଁ ସତ୍ୟ କଲି ବ୍ରାହ୍ମଣକୁ ପୋଯେକ ଦେବି ସେ ସଙ୍ଗରେ ।୧୧୬
ଭୀମସେନ ବୋଇଲା ମାଗୋ ମୁହିଁ ଯିବିଟି କି
ରାକ୍ଷସ କେମନ୍ତଟି ଆସଇ ନା ଦେଖି ।୧୧୭
ଭୀମସେନ ସୁମରଇ ଦେବୀ ଅନାଦି ଶକତି
ମୁକଇଁ ଯେଠାକୁ ପଠିଆଇ ଦିଅନ୍ତୁ ଦେବୀ କୋନ୍ତି ।୧୧୮
ଯେସନେକ ପ୍ରସ୍ତାବେ ବିରସ ମନେ ମାୟେ
ବେଳ ଅବସାନେ ମିଳିଲେ ଚାରି ଯେ ତନୟେ ।୧୧୯
ଦ୍ୱାରେ ଉଭା ହୋଇ ଡାକନ୍ତି ବୀରମଣି
ମାଗୋ ପାଦ ଶଉଚ କରିବା ବହନ ଦିଅ ପାଣି ।୧୨୦
କୋଇନ୍ତାୟେ ବିରସେ ବାହାର ନୋହିଲେ
ଭିକ୍ଷା ତଣ୍ଡୁଳ ଘେନି ଭିତରକୁ ଗଲେ ।୧୨୧
ଚାରିଭାଇ ମାତାଙ୍କ ଚରଣେ ବିନୋୟି
ମାଗୋ ଭୀମା ଗାଳି ଦିଲା କି ବସିଛ ବିରସ ହୋଇ ।୧୨୨
ଶୁଣସିରେ ବାବୁ ବଦୟନ୍ତି କୋନ୍ତଭୋଜର ଦୁଲାଳୀ
ବେଦଶର୍ମଣ ପଣ୍ଡା ଘରେ କାଲି ବକ ରାକ୍ଷସର ପାଳି ।୧୨୩
ସମସ୍ତ ଦ୍ରବ୍ୟ ଦ୍ୱିଜବର ସମ୍ପାଦନା ହାଦେ କଲା

ନରବଳି ଜଣେ ସେ ଭିଆଇ ନ ପାରିଲା ।୧୨୪
ପୁଅ ଝିଅ ବେନି ଗୋଟି ବ୍ରାହ୍ମଣ ବ୍ରାହ୍ମଣୀ
ବସିଣ ରୋଦନ ଯେ କରନ୍ତି ଚାରି ପ୍ରାଣୀ ।୧୨୫
ତାହାଙ୍କର ବୈକୁଲ୍ୟ ଦେଖି ମୁଁ ସହି ନ ପାରିଲି
ମୁଇଁ ନରବଳି ଜଣେ ଦେବି ବୋଲି ସତ୍ୟ କଲି ।୧୨୬
ଶୁଣିଣ ଥମ୍ଭୀଭୂତ ହୋଇଲେ ଯୁଷ୍ଠେଷ୍ଟି
ମାଗୋ ସର୍ବେ ଆମ୍ଭେ ତୋହୋର ପୁତ୍ର ପାଞ୍ଚଗୋଟି ।୧୨୭
ଶତେ ଶତେ ପୁତ୍ର ଗୋ ଯାହାର ଅଛନ୍ତି
ତାହାଙ୍କର ମାୟେ ଗୋ ଯେମନ୍ତ ନ ବୋଲନ୍ତି ।୧୨୮
ମାଗୋ ଭୀମକଇ ଦିଲ ଘାନ୍ତିଯେ କିମ୍ମାରୀ ଦତ୍ୟକୁ
ଧର୍ମବଳେ ବୃତି ସେ ଅଇଲା ସାଙ୍ଗକୁ ।୧୨୯
କିନ୍ନରୀ ଦଇତ ଯେ ମଧୁବନେ ମାରୁଥିଲା
ହିଡ଼ମ୍ବକ ଦତ୍ୟ ଗୋ ଅନେକ ଦୁଖ ଦିଲା ।୧୩୦
ଭୀମସେନ ବାହୁବଳକୁ କରିଅଛଇ ଆଶ
ଆନ ଜଣେ ଦିଅ ଗୋ ଭକ୍ଷୁ ସେ ରାକ୍ଷସ ।୧୩୧
ନକୁଳ ସହଦେବ ବଇମାତ୍ରି ବେନି ଭାଇ
ମୋହୋର ଦେହେ ପ୍ରାଣ ଥିଲେ ତାହାଙ୍କୁ ଦେଇ ନ ପାରଇ ।୧୩୨
ଆମ୍ଭେ ସର୍ବେ ତୋହୋର ଅଟୁ ତିନିପୁତ୍ର
ଭୀମସେନ ଅଟେ ମୋ ସଂଗ୍ରାମେ ସାମରଥ ।୧୩୩
ଅର୍ଜୁନ ଅଟଇ ଗୋ କ୍ଷତ୍ରିୟ ଧନୁର୍ଦ୍ଧାରୀ
ଦୁତୀକୃଷ୍ଣ ନାମ ଦିଲେ ହରି ତାହାନ୍ତ ଦେଇତ ନୁଆରି ।୧୩୪
ମୁହିଁ ହାଦେ ଯୋଗ୍ୟ ନୋହଇ କାହିଁକି
ମୋତେ ପଠିଆଅ ବକ ରାକ୍ଷସ ତହିଁକି ।୧୩୫
କୋଇନ୍ତାୟେ ବୋଇଲେ ବାବୁ ଦେବା ଭୀମସେନକୁ
ଅବଶ୍ୟ ମାରିବ ସେ ବକ ରାକ୍ଷସକୁ ।୧୩୬
ମୁଇଁ ପ୍ରତକ୍ଷେ ଜାଣଇ ଯେହାରି ବଳବୀର୍ଯ୍ୟ
ଦୁର୍ଦ୍ଦଣ୍ଡ ପବନର ଯେ ଅଟଇ ଆତ୍ମଜ ।୧୩୭
ଜନ୍ମ କାଳେ ଯେହାକୁ କୋଳେ ଅଛି ଧରି
ରାତ୍ରକାଳେ ପର୍ବତ ତଳେ ବ୍ୟାଘ୍ରେକ ଦିଲା ରଡ଼ି ।୧୩୮
କୋଡ଼ରୁ ପୁଅକୁ ମୁଁ ପକାଇଲି ତଳେ
ଶତଶିଙ୍ଗ ଗିରି ପଶିଲା ପାତାଳ ଭୁବନରେ ।୧୩୯
ପକାଇ କରି ମୁଁ ଯେ ଡରେ ପଳାଇଲି
ବୃକ୍ଷ ଗୋଟାକର ଉପରେ ଯାଇଣ ଉଠିଲି ।୧୪୦
ପାଦ ହଲାଇଣ କାନ୍ଦଇ ଯେ ବାଳଶିଷି
ଗିଳିବ ବୋଲି ବ୍ୟାଘ୍ର ଧାଇଁଲା ଆକ୍ରୋଷି ।୧୪୧
ଭୀମସେନ ପାଦ ଅଙ୍ଗୁଷ୍ଠି ବାଜିଲା ବ୍ୟାଘ୍ରର ମୃଧୁନା
ଭାଙ୍ଗିଣ ମୁଣ୍ଡ ତାର ହୋଇଲା ଶତେ ଚୂନା ।୧୪୨
ଡାହାଣ ପାଦର କାଣି ଅଙ୍ଗୁଷ୍ଠିଟି ବାଜି
ଶତେ ଯୋଜନ ଆୟେତନ ପର୍ବତ ଶିଙ୍ଗ ଗଲା ଭାଜି ।୧୪୩
କୋପେଣ ଶାପ୍ୟ ଯେ ଦିଲା ଗିରିବର
ପ୍ରଥମହୁଁ ମୋତେ ଯେ ପ୍ରହାର କଲୁ, ତୁ ପ୍ରଥମ ଯୁଦ୍ଧେ ହାର ।୧୪୪
ବ୍ୟାଘ୍ରର ନିଧନ ଦେଖି ମୁଁ ବୃକ୍ଷରୁ ଓହ୍ଲାଇ
ପର୍ବତକୁ ବୋଇଲି କିମ୍ପା ଶାପ୍ୟ ଦିଲୁ ମୋହୋର ପୁତ୍ରକଇ ।୧୪୫
ଅକଳଙ୍କ କରି ମୁଁ ପୁତ୍ରକୁ କଲି ଜାତ
ଶତଶିଙ୍ଗ ବୋଇଲା ମୋତେ କୋପ ନ କର ଗୋ ମାତ ।୧୪୬
ପ୍ରଥମ ଯୁଦ୍ଧେ ଯେ ହାରିବ ଯୁଗତେ
ଦୁଜ ଯୁଦ୍ଧରେ ମୁଁ ବସିବି ଯେହାର ଗାତ୍ରେ ।୧୪୭
ଯଦ୍ୟପି ବ୍ରହ୍ମା ବିଷ୍ଣୁ ଇନ୍ଦ୍ର କୋବେର ମହେଶ୍ୱର
ବ୍ରିକୋଦର ମୂରତି ସେ ଯେ କରିବ ପ୍ରହାର ।୧୪୮
ବାବୁ ଯେସନେକ ସନ୍ଦେଶ ମୁଁ ପାଇଅଛି ପୂର୍ବେ
ତେବେ ସେ ଭୀମସେନକୁ ପଠିଆଉଅଛି ଯେବେ ।୧୪୯
ତୁମ୍ଭେ କିଛି ଚିନ୍ତା ବାବୁ ନ କର ଯେ କଥାକୁ
ଆଜ ଅବଶ୍ୟ ଭୀମସେନ ମାରିବ ବକ ରାକ୍ଷସକୁ ।୧୫୦
ବାବୁ ଆମ୍ଭେ ରହିଲାଇଁ ଆସି ଯେହୁ ଭୁବନେ
କାଳକଇ ସୁମରଣା କରୁଥିବେ ନାହିଁ କି ନଗ୍ରଜନେ ମାନେ ।୧୫୧

■■

## କୁନ୍ତୀଙ୍କ ପ୍ରସ୍ତାବରେ ଭୀମଙ୍କୁ ବକାସୁର ବଧ ନିମନ୍ତେ ପ୍ରେରଣ

ଯୁଷ୍ଠେଷ୍ଟି ଚାହିଁଲେ ସହଦେବର ବଦନ
ସଂଚୟେ ବକ ରାକ୍ଷସକଇଁ ମାରିବକି ଭୀମସେନ ।୧
ସହଦେବ ବୋଇଲା ସ୍ୱାମୀ ଶୁଣିମା ସାବଧାନେ
କୁମ୍ଭିରୀ କିନ୍ନରୀ ବକ ହିଡ଼ିମ୍ବକ ଯେକ ପିତାରୁ ଉତପନ୍ନେ ।୨
ହିଡ଼ିମ୍ବିକୀ ବହେଣୀ ଅଟଇ ଯେହାଙ୍କର
ତିନି ଭାଇଙ୍କି ମାଇଲେନି ଠାକୁର ବ୍ରିକୋଦର ।୩
ଯେ ଚାରିଙ୍କର ଭାରା ଯହୁଁ ନ ସହିଲା ମହୀ
ଆକାଶେ ଦିଗପାଳେ ନୁଆରିଲେ ରହି ।୪
ଅମର ସ୍ୱର୍ଗରୁ ଯେ ଆଣିଲେ ଅପକ୍ଷରୀ
ଦେବ ଭଣ୍ଡାର ମାନ ଆଣିଲେ ସବୁନ୍ତି କ୍ରୂର କରି ।୫
ଇନ୍ଦ୍ର ଦେବତା ପଳାଇଲା ଅସୁରଙ୍କ ଡରେ
ଯମ ଦେବତା ରହି ନ ପାରିଲା ସଞ୍ଜୀବନୀ ପୁରେ ।୬

ଈଶ୍ୱର ଇନ୍ଦ୍ର କୋବେର ବହୁତ ଯୁଦ୍ଧ କଲେ
ଯେ ଚାରି ଭାଇନ୍ତ ସଂଗ୍ରାମେ ଦେବେ ହାରି ପଳାଇଲେ ।୭
ଦେବେଣ ବଧ ଯହୁଁ ନୋହିଲେ କଉଣୋପେ
ଆମ୍ଭେ ଉତପତ୍ତି ହୋଇଲାଇଁ ମନୁଷ୍ୟ ସରୂପେ ।୮
ଯେହାନ୍ତ ବଧ କରିବା ନିମନ୍ତେ
ଆମ୍ଭନ୍ତ ବନବାସ କରାଇଲେ ଗୁପତେ ।୯
ଯୁଝେଷ୍ଟି ଦେବଙ୍କୁ କହିଲେ ସହଦେବ ମନ୍ତ୍ରୀ
ଭୀମସେନର ବଳ କୋଇନ୍ତାଯେ ଜାଣନ୍ତି ।୧୦
ସହଦେବର ବଚନେ ସାନନ୍ଦ ଯୁଝେଷ୍ଟି
ଯାଅ ବାବୁ ଆମ୍ଭ ଆଷ୍ୟ ଘେନି ବ୍ରତ ଭାଇଗୋଟି ।୧୧
ଅପାଦ ଖଣ୍ଡନ୍ତୁ ଦେବୀ ପ୍ରତକ୍ଷେ ହେଗୁଳା
ସେ ତୋତେ ଅନୁଗ୍ରହ କରନ୍ତୁ ସର୍ବମଙ୍ଗଳା ।୧୨
ତହୁଁ ବିଜେ କରି ଅଇଲେ କୋଇନ୍ତାଯେ
ସମ୍ଭାର କରି ଯୋଗାଡ଼ କରସି ପଣ୍ଡାଯେ ।୧୩
ଯହିଁର ନିମନ୍ତେ ତୁମ୍ଭେ ହୋଇଥିଲ ବିକଳି
ମୁହିଁ ତୁମ୍ଭଙ୍କୁ ଦେବି ଜଣେକ ନରବଳି ।୧୪
ଶୁଣିଣ ସାନନ୍ଦ ହୋଇଲା ଦ୍ୱିଜବର
କରଇ ଯୋଗାଡ଼ ଯେ ଅନେକ ସମ୍ଭାର ।୧୫
ବ୍ରାହ୍ମଣୀ ଗଲା ତାର ପିତାର ଘରକୁ
ଭାତ ପିଠା ମାଗିଲା ବେନି ଶଗଡ଼ ତାହାର ପିତା ମାତାଙ୍କୁ ।୧୬
ଭଲ ଭଲ ଲୋକେ ସଞ୍ଚ ଥାଆନ୍ତି ସର୍ବକାଳେ
ଶ୍ରୀଗତ ନିର୍ଗତ ଲୋକ ଲୋଡ଼ଇ ଯେତେବେଳେ ।୧୭
ସଞ୍ଚିତ ଘରେ ସେ ପାଇଲାକ ମାଗି
ଦୁଇ ଶଗଡ଼ ପୂରେଇ ଦୁଇ ହଳ ଯୋଡ଼ି ଆଣଇ ବେଗି ବେଗି ।୧୮
ଆଣି ଉଭାରିଲା ଆପଣାର ଦ୍ୱାରେ
କୋଇନ୍ତାଯେ ବୋଇଲେ ଯାଅ ରେ ବ୍ରିକୋଦରେ ।୧୯
ଯୁଝେଷ୍ଟି କାନେ କହିଲେ ଗୁପତେଣ ମାର
କେହି ନ ଜାଣୁ ଯେଥୁଁ ହୋଇଯିବା ବାହାର ।୨୦
ଶଗଡ଼ ଓଡ଼ାଇ ଚଳଇ ଭୀମସେନ
କୋଇନ୍ତାଯେ ଗୋଡ଼ାଇ ଅଛନ୍ତି ସନ୍ନିଧାନ ।୨୧
ନଗ୍ର ସ୍ତିରୀମାନେ ପଚାରନ୍ତି ଦେଖି
ଯେହାର ପରା ପୁତ୍ର ଗୋଟିକି ଗୋ ପଠିଆଅ କାହିଁକି ।୨୨
ଯେ ଯୋଗାଡ଼ ଲେଉଟି ଆସିବା ପ୍ରାୟେକ ମଣୁ
ଯେବଣ ଜଣେ ଯାଇ ଗୋ ପୋଡ଼ାବଳି ଏହା କି ନ ଜାଣୁ ।୨୩
ଶତେ ଚନ୍ଦ୍ର ଜିଣି ଯେହାର ବଦନ ଗୋଟି
କି ଯେ ଚିତ୍ରସେନ ନଳକୁବେର କାମଦେବ ହେଟି ।୨୪
କି ଅବା ଯେହାକଇ ନ ପାରିଲୁ ପୋଷି
ଅକାରଣେ ବିନାଶ ନ କର ଆମ୍ଭଙ୍କୁ ଦିଅସି ।୨୫
କୋଇନ୍ତାଯେ ବୋଇଲେ ମୁଁ ରହିଲି ଯେହାର ପୁରୀ
ପାପ ପୁଣ୍ୟେ ରହିଲି ମୁଁ ଯେହାର ଘର ଅଧେ ଆବୋରି ।୨୬
ମୋହୋର କର୍ମେ ସେ ଯେବେ ହୋଇଲା ଯେମନ୍ତ
ଧର୍ମ କି ଗଳ୍ପଇ ଯେ ହୋଇଲେ ନିସତ ।୨୭
ତେତିଶ ବରଷ ବେନି ମାସ କୋଡ଼ିଯେ ଯେ ଦିନେ
ପାଳି ପଡ଼ଇ ଗୋ ବକ ରାକ୍ଷସ ଭୋଜନେ ।୨୮
ସର୍ବେ ତୋହୋର ଯେ ଯେଥେଁ ରହିଲା ତିନି ମାସ
ତୁ କେମନ୍ତେ ନରବଳି ଗୋ ଦେବୁଟି ରାକ୍ଷସ ।୨୯
କୋଇନ୍ତାଯେ ବୋଇଲେ ମୋତେ ନ ବୋଲ ଗୋ ଯେହା
ଆପଣେ ଯାହା କରି କର୍ମ ବୋଲି ତାହା ।୩୦
ସମସ୍ତ ଜନେ ବଦନ୍ତି ବଇକୁଲ୍ୟ ବାଣୀ
ପୁତ୍ର ନୋହଇ କି ତୋର ଶତ୍ରୁ ମହାତ୍ମାଣୀ ।୩୧
ପଣ୍ଡିତ ଜନେ ବୋଲନ୍ତି ବାବୁ ଯେ ମହତ
ପର ଦୁଖେଣ କାତର ଯେ ପର ଦୁଖେଣ ହିତ ।୩୨
ନଗ୍ର ବାହାରୁ ବାହୁଡ଼ିଲେ ଭ୍ରାତା ମାୟେ
ଶଗଡ଼ ଓଡ଼ାଇ ଚଳଇ ପବନ ତନୟେ ।୩୩
ଘୋର ଗହନ ବନେ ଚଳଇ ମାରୁତି
ନଗ୍ର ଛାଡ଼ିଲାକ ଷାଠିଯେ କ୍ରୁଶ ପ୍ରତି ।୩୪
ବଳଦ ହଳେ ପୋତୁଅ ହଳେ ଓଡ଼ାଇଣ ନେଲା
ସ୍ନାହାନ କରି ଆସି ରୋଦର ତଳକୁ ଓହ୍ଲାଇଲା ।୩୫
ଡାହାଣ କରେଣ ଭାତ ବାମ କରେ ପିଠା
ବାମ ଆଣ୍ଠୁ ମାଡ଼ିଣ ଆକର୍ଷଣ ସନ୍ତୁଷ୍ଟା ।୩୬
ଡାହାଣ କରେ ଭାତ ଗୁଣ୍ଡାୟେକ ଖାଇ
ବାମ କରେ ପିଠା ଗୋଟାୟେ ଗୋଟୋୟେ ଗର୍ଭକୁ କ୍ଷେପଇ ।୩୭
ମହା କ୍ଷୁଧାର୍ତ୍ତୀ ହୋଇଣ ଯେ ଭୀମସେନ
ପବନହୁଁ ବେଗ କରି ସେ କରଇ ଭୋଜନ ।୩୮
ଯହୁଁ ବେଳ ହୋଇଲା ପ୍ରହରକ ବେନି
ରାକ୍ଷସ ବିଜେକଲା କରେ ଶୂଳ ଦୁଇଗୋଟି ଘେନି ।୩୯
ଦେଖିଲା ଭୀମସେନ ମହା ସମ୍ବର କାୟେ
ଭୋଜନ କରନ୍ତେ ଦିଶିଲା ରାହୁର ତେଜ ପ୍ରାୟେ ।୪୦

ଆରେ ଆରେ ବୋଲି ଧାମଇଁ ଦୈତ୍ୟେଶ୍ୱର
ଉଚ୍ଛିଷ୍ଟ କିମ୍ପାଇଁ କରୁ ରେ ମଣୋହି ମୋହୋର ।୪୧
ଧାଇଁଣ ଡାକ ଦିଅଇ ଦୁଷ୍ଟ ରାକ୍ଷସେ
ବ୍ରିକୋଦର ବଚନ ନ ଶୁଣଇ ଭୁଞ୍ଜିବାର ରସେ ।୪୨
ଡାକ ଯହୁଁ ନ ଶୁଣିଲା ପବନ ତନୟେ
ଗର୍ଜଇ ବକାସୁର ମହାମତ୍ତ ନାଗପ୍ରାୟେ ।୪୩
ଦଇତର ଗର୍ଜନ୍ତେ କମ୍ପିଲା ଯେ ସପତ ବ୍ରହ୍ମାଣ୍ଡ
ଭୁଞ୍ଜଇ ଭୀମସେନ ବେନି କରେ ବିସ୍ତାରିଣ ତୁଣ୍ଡ ।୪୪
ଡାକିଣ ବିରସ ଯେ ହୋଇଲା ବୀରମଣି
ନ ଶୁଣଇ ମାରୁତି ବଧୀର ମତ ଜାଣି ।୪୫
କୋପେଣ ବେନି ଶୂଳ ଯେ ବୁଲାଇ ଅସୁର
ବଜ୍ର ଜାଣି ପିଟିଲା ଭୀମସେନର ଉପର ।୪୬
ଭାଙ୍ଗିଲା ବେନି ଶୂଳ ହୋଇଲା ମସାଗୁଣ୍ଡା
ତହିଁ ନ ମାନିଲା ସେ ମାରୁତି ପରଚଣ୍ଡା ।୪୭
ରାଗେଣ ଦାନବକୁଳ ଖଣ୍ଡ ପର୍ବତେକ ଉପାଡ଼ି
ଭୀମସେନ ଉପରେ ଉର୍ଦ୍ଧ୍ୱ ବାହୁ କରି କଚାଡ଼ି ।୪୮
ବ୍ରିକୋଦର ମୁଣ୍ଡେ ଯେ ପଡ଼ିଲା ଗିରିବର
ଧୂଳିପ୍ରାୟେ ହୋଇଣ ସେ ପଡ଼ିଲା ଭୂମିର ।୪୯
ଦେଖିଣ ବିରସ ଯେ ହୋଇଲା ରାକ୍ଷସେ
ତାହା ନ ମାନିଲା ଭୀମ ଭୁଞ୍ଜିବାର ରସେ ।୫୦
ଭୁଞ୍ଜିଣ ଶରୀର ଯହୁଁ ହୋଇଲା ତାର ତୁଷ୍ଟି
ରାକ୍ଷସକୁ ମାରୁତି ଚାହିଁଲା ଲେଉଟି ।୫୧
ବାମକରେ ଦରାଣ୍ଡି ଧଇଲା ଦତ୍ୟର ବେନି ଭୁଜ
ସଞ୍ଚୟେ ମୋଡ଼ା ତୁ ରେ ଅଟୁ ଦୁଷ୍ଟ ଯେ ଦନୁଜ ।୫୨
ଅଗ୍ୟାନ ପାମରରେ ଗ୍ୟାନ ତୋର ନାହିଁ
ଭୁଞ୍ଜିବାର ବେଳେ ଶତ୍ରୁକୁ ମାରି ତ ନ ଯୋଗାଇ ।୫୩
ଦେଖିଣ ରାକ୍ଷସ ଯେ ବିଷାଦ ହୋଇଲା
ଜାଣିଲି ଯେ ମୋଡ଼ା ତ ମୋ ତହୁଁ ବଳିଲା ।୫୪
ଦାନବ ବୋଇଲା ତୁ ରେ କାହିଁର ବ୍ରାହ୍ମଣ
ମୋହୋର ମୁଣୋହି ଉଚ୍ଛିଷ୍ଟ କଲୁ କେଉଁଣ କାରଣ ।୫୫
ଭୀମସେନ ବୋଇଲା ଆବର ଜୀବନ ତୋର କାହିଁ
ସୁମର ଇଷ୍ଟ ଦେବତା ରେ ମରିବୁ ଆଜ ତୁହି ।୫୬
ରାଗେଣ ନିଶାଚର ଭୀମକୁ ଦିଅଇ ପେଲି
ହାଥ ଛାଡ଼ ବ୍ରାହ୍ମଣ ହୋ ଅସୁରେଶ୍ୱର ବୋଲି ।୫୭

ଅସୁର ବେନି ଭୁଜ ଧରିଣ ବାମହସ୍ତେ
ଡାହାଣ କରେ ମାରୁତି ମାଇଲା ବଜ୍ର ମୁଥେ ।୫୮
ଭୀମସେନର ବଜ୍ର ମୁଥ ପଡ଼ିଲା ଅସୁରର ମୁଣ୍ଡେ
ଶ୍ରୋଣିତ ଉଦ୍‌ଗାର ହୋଇଲା ତାହାର ତୁଣ୍ଡେ ।୫୯
ପୁଣ ସାଷ୍ଟାମ ହୋଇଣ ଦାନବ ମହାବଳୀ
ଭୀମକୁ ପେଲି ଦିଲା ସେ ପଡ଼ିଲା ମହୀଥଳୀ ।୬୦
ଭୀମସେନକୁ ମାଡ଼ିଣ ବସିଲା ହୃଦଗତେ
ପ୍ରଥମ ଯୁଦ୍ଧେ ହାରଇ ସେ ପବନର ସୁତେ ।୬୧
ବକକଇ ମାଡ଼ି ଯେହ୍ନେ ବସଇ ଶ୍ୟାମଳ
ପ୍ରତଗ୍ୟାଂ କରଇ ସେ ଅସୁର ଅନର୍ଗଳ ।୬୨
ତୁ ଯେ ମୁଣୋହି ମୋହୋର କଲୁସି ରେ ନଷ୍ଟ
ବିକୋଟି ମାଂସ ତୋହୋର ରେ ଭକ୍ଷିବି ପାପିଷ୍ଟ ।୬୩
ଭୀମସେନ ବୋଇଲା ରେ ଅସୁରେଶ୍ୱର ନଷ୍ଟ
ଧର୍ମ ଯୁଦ୍ଧ ତୋହୋର ମୋହୋର ହୋଇଲା କିରଣ୍ଡ ।୬୪
କିରଣ୍ଡ ବୋଇଲେ ଛାଡ଼ିଲା ଦଇତ୍ୟ ଅଇରି
ଆକ୍ରୋଷି ବ୍ରିକୋଦର ଲେଉଟାଇ ପାଡ଼ି ।୬୫
ମାଡ଼ି ବସିଲା ବ୍ରିକୋଦର ଦତ୍ୟର ବକ୍ଷସ୍ଥଳେ
ବ୍ରିକୋଦର ରୂପ ଯେ ବିକାଶିଲା ମହାବଳେ ।୬୬
ମନ୍ଦର ମାଡ଼ି ଯେହ୍ନେ ବସଇ ମାହିନ୍ଦ୍ର ଗିରି
ମାଡ଼ିଣ ବ୍ରିକୋଦର ଯେ ଦିଅଇ ମହାରଡ଼ି ।୬୭
ତୋଟି ମାଡ଼ିଣ ମାଇଲା ବଜ୍ର ମୁଥେ
ଲଲାଟ ଫାଟିଣ ଯେ ବହଇ ଶ୍ରୋଣିତେ ।୬୮
ଅସୁର ବୋଇଲା ହୋ କିରଣ୍ଡ ମୋହୋର
ଧର୍ମ ଯୁଦ୍ଧେ ହାରିଲି ଛାଡ଼ ଦ୍ୱିଜବର ।୬୯
ଆରେ ଆରେ ଦାନବ ଗ୍ୟାନ ତୋର ନାହିଁ
ବ୍ରାହ୍ମଣ ଯୁଦ୍ଧ ସେ କିରଣ୍ଡ ଲୋଡ଼ୁ କାହିଁ ।୭୦
ଦାନବ ବୋଇଲା ମାଲ୍ଲଯୁଦ୍ଧରେ ଯେ ବାଟ
ମରଣ ସମ୍ଭାଳି ଯେ ବୋଇଲୁ କିରଣ୍ଡ ।୭୧
ଭୀମସେନ ବୋଇଲା ମୋହୋର କିରଣ୍ଡ ତୋହୋର କିରଣ୍ଡକି
ମରିବାର ବେଳେ ନିଷତ ହୋଉଛୁ କାହିଁକି ।୭୨
ଆରେ ଚାରିପୁତ୍ର ଉପୁଜାଇଲା ନିର୍ବାତ କପଟ
ମୋହୋର ହାଥେ ମରଣ ତୋହୋର ପ୍ରତ୍ୟକ୍ଷ ।୭୩
ଆରେ କୁମ୍ଭୀରୀ ଦତ୍ୟକୁ ମାଇଲି ସୁର ନଦୀର ଭିତରେ
କିନ୍ନରୀ ଦତ୍ୟକୁ ମାଇଲି ମଧୁବନ ତୋଟାରେ ।୭୪

ହିଡ଼ିମ୍ବକ ଦତ୍ୟକୁ ମାରଇଲି ହିଡ଼ିମ୍ବକ ବନେ
ତୁ ଉବୁରି ଥିଲୁ ପଡ଼ିଲୁ ଯେତେ ଦିନେ ।୭୫
ଯେତେ ବୋଲି ଆକ୍ରେଷିଣ ମାଡ଼ିଲା ତାର ତଣ୍ଡି
ଅସୁର ପ୍ରାଣ ଛାଡ଼ିଲା ବେନି ଚକ୍ଷୁ ଫୁଟି ।୭୬
ଜିଭ ବାହାର ହୋଇଲା ବେନି ଦଣ୍ଡ ପରିଯନ୍ତେ
ନିଜ ପ୍ରାଣ ବିସର୍ଜିଲା ପଡ଼ିଲା ଦୁରାପାତେ ।୭୭
ଆଦିତ୍ୟ ଅସ୍ତଗଲା ପଶ୍ଚିମ ପ୍ରଦେଶେ
ସାଧୁ ସାଧୁ ପାବେନି ବୋଲନ୍ତି ତ୍ରିଦଶେ ।୭୮
ଅସୁର କେଶ ଧରି ରାତ୍ର କାଳେ ନେଲା
ନଗ୍ରଆଡ଼ ମୁହାଣେ ନେଇ ମୂର୍ତ୍ତି କରି ଥାପିଲା ।୭୯
ଶାଳବୃକ୍ଷ ଗୋଟାକରେ ଅସୁରକୁ ଆଉଜାଇ
ମହାମୃତି କରି ଥାପିଲା ନଗ୍ରକୁ ଅନାଇଁ ।୮୦
ରାତ୍ର ହୋଇଅଛି ଅଢ଼ାଇ ପ୍ରହର
ପାଛେ ହେଁ ବାଟ ଚାହୁଁ ଅଛନ୍ତି ବସିକରି ଦ୍ୱାର ।୮୧
ସମ୍ପୂର୍ଣ୍ଣ ତିନି ପ୍ରହର ହୋଇଅଛି ନିଶି
ଯୁଝେଷ୍ଟି ଛାମୁରେ ଭୀମସେନ ମିଳିଲାକ ଆସି ।୮୨
ଯୁଝେଷ୍ଟି ବୋଇଲେ ମାଗୋ ବହନ ହୋଇ ଯିବା
ରାତ୍ର ପାହିଲେ ପୁଣ ଜାଣନ୍ତା ହୋଇବା ।୮୩
ଯେ ନଗ୍ର ଲୋକେ ସମସ୍ତେ କରିବେ ଯେ ପୂଜା
ଯେ ନଗ୍ରେ ଭୀମକୁ ପୁଣ କରିବେଟି ରାଜା ।୮୪
ଯେତେ ବିଚାରିଣ ବାହାର ନିଶାରାତି
ନଗ୍ରୁଂ ତେଜି ବନେ ପଶିଲେ ତତ୍‌କ୍ଷଣାନ୍ତି ।୮୫
ବଡ଼ ବଡ଼ ବିଟପ ଯେ ଗହନ କଣ୍ଟା ଭୂମି
ଚାଲି ନ ପାରନ୍ତି ମାତାଯେ ଯୁଝେଷ୍ଟି ଦେବ ସ୍ୱାମୀ ।୮୬
ଯୁଝେଷ୍ଟି ବୋଇଲେ ଚାଲ ଧୁର ହୋଇଯିବା ଯେ ବନ ଉପେକ୍ଷି
ଲୋଡ଼ିଣ ନଗ୍ର ଜନେ ନ ପାବନ୍ତି ଯେମନ୍ତେ ଆମ୍ଭଙ୍କୁ ଦେଖି ।୮୭
ଭୀମସେନ ବୋଇଲା ମାତା ଗୋ ଶିରେ ମୋର ବସ
ଶିରେ କୋଇନ୍ତା ଦେବୀ ବସି ହୋଇଲେ ହରଷ ।୮୮
ଡାହାଣ କନ୍ଧେ ଯୁଝେଷ୍ଟି ବାମ କନ୍ଧେ କିରଟୀ
ଦୁଇ କାଖେ ବସିଲେ ନକୁଳ ସହଦେବ ଭାଇ ବେନି ଗୋଟି ।୮୯
ପବନହୁଁ ବେଗେ ଯେ ଚଳଇ ବୃକୋଦର
ଝୁଣ୍ଟିଆଣି ଘାଏ ଗିରିବର ହୋଉଛନ୍ତି ଚୂର ।୯୦
ନଗ୍ରୁଁ ବାହାର ହୋଅନ୍ତେ ରାତ୍ର ପ୍ରହରେକ ଥିଲା
ଯେକା ପ୍ରହରକେ ଭୀମସେନ ବିଶାଶତେ ଯୋଜନ ଗଲା ।୯୧

ଶ୍ରୀରାମବେଣୀ ବୋଲି ଯେକ ନଦୀ ଗୋଟିଏ
ତହିଁର କୂଳେ ପ୍ରବେଶ ହୋଇଲେ ଯାଇ ରଜନୀ ପ୍ରଭାତ
ହୋଏ ।୯୨
ଲକ୍ଷ୍ମଣ ଜପାସୁରକୁ ମାଇଲେ ସେହୁ ବନେ
ଶତତପା ବୋଲିଣ ସେ ବନସ୍ତର ନାମେ ।୯୩
ସେ ନଦୀରେ ବୀରେ ସାରିଲେ ପ୍ରାତଃ ସ୍ନାହାନ
ରଣସୁନ୍ଦର ବୋଲି ଯେ ପର୍ବତେକ ବିଦ୍ୟମାନ ।୯୪
ଦେଖନ୍ତି ଗଣ୍ଡା ହରିଣ ଚରନ୍ତି ପଲ ପଲ
ବୋଲନ୍ତି ଯୁଝେଷ୍ଟି ବାବୁ ଯେ ବନ ଅଟଇ ଭଲ ।୯୫
ରହିଲେ ପଣ୍ଡୁ ନନ୍ଦନ ଘୋର ଗହନ ଅଟବ୍ୟା
ସୁଖେ ବିହଡ଼ନ୍ତି ବନେ ସେ ଶୂରବ୍ର ପାଣ୍ଡବା ।୯୬
ଅଗସ୍ତି ପଚାରିଲେ ବଇବସ୍ୱତ ମନୁ
ବକ ଦତ୍ୟ ବଧ ହୋଇଲା ଯୁଝେଷ୍ଟିଙ୍କର ଗ୍ୟାନୁ ।୯୭
ଭୀମସେନ ରାକ୍ଷସକୁ ଆଣିଲା କେଶ ଧରି
ନଗ୍ର ବାହାରେ ଥାପିଲା ପ୍ରେତାଧିରୂପ କରି ।୯୮
ପାଣ୍ଡବେ ଯେ ବାହାର ହୋଇଲେ ମହା ନିଶାକାଳେ
ମହା ଗହନେ ପଶିଲେ ରଜନୀ ପ୍ରସରର ବେଳେ ।୯୯
ଶୁଣ ହୋ ଯୋଗେଶ୍ୱର ବୋଲନ୍ତି ଅଗସ୍ତି
ତିମିର ବିଦାରଣ ସ୍ୱାମୀ ବିକାଶିଲେ ଜ୍ୟୋତି ।୧୦୦
ପ୍ରଭାତେ ନଗ୍ରୁଂ ବାହାର ହୋନ୍ତି ଯେ ପୁରଜନ ମାନେ
ଦେଖିଲେ ଭାଷ୍କରୂପେ ତାହିଁଇ ରାକ୍ଷସ ପ୍ରଜ୍ୱଳିତ ନୟନେ ।୧୦୧
ବିକଟାଳ ବଦନ ଯେ ଊର୍ଦ୍ଧ୍ୱ ଜିହ୍ୱାବଳୀ
ଦଶ ନହ ବିରାଜିତ ତେଜ ତା ବିଜୁଳି ।୧୦୨
ବିସ୍ତାର ତୁଣ୍ଡ ଯେ ହୃଦେ ଲୁଚଇ ଜିଭା
ଦେଖିଲେ ପୁରଜନମାନେ ଆକର୍ଷଣ ଦୁଲ୍ଲଭା ।୧୦୩
ନଗ୍ରକୁ ଆକ୍ରଷଣ ମହାଭାଷ୍କ ମୂର୍ତ୍ତି
ଭାଳନ୍ତି ପୁରଜନେ ଠାକୁର ହୋଇଲେ ଅତୁପ ।୧୦୪
ଅମ୍ବିକା ନାମେଣ ହକାରିଲେ ଘୋଷଣକାରୀ
କାହାର ଘରେ ହୋଇଥିଲା କାଲି ଠାକୁରଙ୍କର ପାଳି ।୧୦୫
ଝାଟିକାରେ ଘୋଷଣାକାରୀ ଗଲା ବେଗେ ଧାଇଁ
ବେଦଶର୍ମଣ ପଣ୍ଡାକୁ ସେ ଡାକିଲେ ହକରାଇ ।୧୦୬
ପୁରଜନମାନେ ପଚାରନ୍ତି ବ୍ରାହ୍ମଣକୁ
ତ୍ରିପୁତି କରି ହୋ ନ ପାରିଲୁ ଠାକୁରଙ୍କୁ ।୧୦୭
କିସ କିସ ଯୋଗାଡ଼ ପଣ୍ଡା ହେ କିସ ଦିଲ କାଲି
ବେଦଶର୍ମଣ ବୋଇଲା ମୁଁ ସମ୍ଭର୍ବେଣ କାଲି ଯୋଗାଡ଼ ଦିଲି ।୧୦୮

ନରବଳି ଜଣେ କିସ କଲ ହେ ଦ୍ୱିଜବର
ବେଦଶର୍ମଣ କହଇ ନଗ୍ର ଜନଙ୍କ ଆଗର ।୧୦୯
ମୋହୋର ପୁରେ ରହୁଥିଲେ ମାତା ପାଞ୍ଚ ପୁତ୍ର
ମୋର କଷ୍ଟ ଦେଖି ଦିଲେ ସେ ଭାଇନ୍ତ ।୧୧୦
ନଗ୍ର ଜନ ବୋଇଲେ ପଣ୍ଡା ହେ ମନ୍ଦ କୃତ୍ୟ କଲ
ଆପଣେ ନ ଯାଇ କିମ୍ପେ ପରକୁ ପେଷିଲ ।୧୧୧
ଯାହାକୁ ପଠିଆଇଲ ଦେଖ ନି ତୋହୋର ପୁରେ
ତତକ୍ଷଣେ ଧାଇଁ ଯାଇଁ ଦେଖନ୍ତି ବ୍ରାହ୍ମଣ ଅନ୍ତପୁରେ ।୧୧୨
ଦେଖିଲେ ସେ ପୁରେ ଜନ ମନୁଷ୍ୟ କେହି ନାହିଁ
ବେଦଶର୍ମଣ ବ୍ରାହ୍ମଣ ଅଗ୍ରତେ ଯାଇ କହି ।୧୧୩
ପଣ୍ଡାଯେ ମୋଣୋହି ଯୋଗାଡ଼ ଖାଇଲା ସେ ଦୁର୍ମୁଖ ବ୍ରାହ୍ମଣ
ରାତ୍ରେ ପଳାଇ ସେ ଗଲେ ଛଡ଼ଜଣ ।୧୧୪
ବେଢ଼ିଣ ପୁରଜନେ ହୋଇଣ ବଜ ବଜ
ପର କରଇ ନିକି ହୋ ଆପଣାର କାର୍ଯ୍ୟ ।୧୧୫
ଠାକୁରଙ୍କର କୋପ ହୋଇଲା ତୋହୋର ପରମାଦେ
ଯେହିକ୍ଷଣି ନଗ୍ରକୁ ପଡ଼ିବ ଦୁସହ ପରମାଦେ ।୧୧୬
ଚଳ ହୋ ବେଦଶର୍ମଣ ପଣ୍ଡା ହେ ଯେ ମହାନଗ୍ର ରଖ
ଯେହିକ୍ଷଣି ଠାକୁରଙ୍କୁ ହୋଅ ବଳି ଭକ୍ଷ ।୧୧୭
ଅନେକ ଶୀତଳ ଯୋଗାଡ଼ ଘେନି ପୁର ଜନେ
ମୋଣୋହି ଯୋଗାଡ଼ ଅପ୍ରମିତ ଆଣନ୍ତି ବହନେ ।୧୧୮
ଶଗଡ଼ ଭିତରେ ଅନେକ ଶୀତଳ ଯୋଗାଡ଼ ସେ ଭରି
ଚଳଇ ବେଦଶର୍ମଣ ନାରାୟଣ ନାରାୟଣ ସୁମରି ।୧୧୯
ଭାତ ପିଠା ଯେତେ ଶଗଡ଼େ ପୂରୋଇ
ବକ ଦତ୍ୟ ଛାମୁରେ ପ୍ରବେଶ ବିପ୍ର ଯାଇ ।୧୨୦
ଦୂରେଣ ଥାଇ ବିପ୍ର ଯେ ହୋଇଲା ପ୍ରଣପତ୍ୟ
ବିନୟ ଭାବ ହୋଇ ସ୍ତୁତି କରଇ ବହୁତ ।୧୨୧
ପହଣ୍ଡେ ଯାଇଁ ନିଉଛାଳି କରଇ ପରିଣାମି
ବୋଇଲା ପୁରଜନ ମାନଙ୍କୁ କୋପ ନ କରିବା ଦେବସ୍ୱାମୀ ।୧୨୨
କୋପ ଶାନ୍ତି କରିବା ଯେ ଭୁବନ ଦେବ ରକ୍ଷ
ମୋହୋର ଘରେ ପାଳି ମୋତେ ଦେବ ଭକ୍ଷ ।୧୨୩
ଅନେକ ବଉକୁଳ୍ୟେ ତୁଷ୍ଟି କରଇ ବିପ୍ର କ୍ରୋଧେ
ପ୍ରଣପତ୍ୟ ହୋଇଯାଇ ମିଳିଲା ସନ୍ନିଧେ ।୧୨୪
ଦେଖଇ ବିପ୍ର ଅଲକ୍ଷଣ ବକ ରାକ୍ଷସର କାୟେ
ଜୀବନ ନିଆଶୀ ବିପ୍ର ହୋଇଲା ନିର୍ଭୟେ ।୧୨୫

ଅସୁରର ଭୁଜ ଧରି ଉଭା ଦ୍ୱିଜବର
ସ୍ୱାମୀ ତୋହୋର ସଞ୍ଚିଲା ସିନା ଯେକଚକ୍ର ନଗ୍ରପୁର ।୧୨୬
ସମସ୍ତ ପୁରଜନ ଆମ୍ଭେ ଅଛୁ ତୋର ଗର୍ଭେ
ଅନେକ ଦୋଷୀ ଆମ୍ଭେ ତୋତେ ଭାବେ ଅଭାବେ ।୧୨୭
ଯେତେ ବୋଲି ବିପ୍ର ଅସୁର ଭୁଜ ଧରି
ସ୍ୱାମୀ ମୋତେ ଭକ୍ଷ୍ୟପାନ କର ବୋଲି ଅସୁର ଭୁଜ ଉଛୁଡ଼ି ।୧୨୮
ବୃକ୍ଷକୁ ଆଉଜାଇ ସିନା ଥିଲା ଅସୁର ଥାପି
ଗଡ଼ିଣ ପଡ଼ିଲା ସେ ଅସୁର କାମରୂପୀ ।୧୨୯
ଅସୁରକଇ ଦେଖି ନିରୋପଇ ବେଦ ଯେ ଶର୍ମଣ
ଦେଖଇ ରାକ୍ଷସର ଶରୀରେ ନାହିଁ ପ୍ରାଣ ।୧୩୦
ନଗ୍ରଲୋକ ମାନେ ରହିଥିଲେ ଦୂରେ
ଧାଇଁ ଯାଇଁ ସମସ୍ତେ ମିଳିଲେ କତିରେ ।୧୩୧
ଅସୁର ବଧ ଦେଖି ବେଦଶର୍ମଣକୁ ତୁଷ୍ଟି କରି
ତୋହୋର ପ୍ରସନ୍ନେ ଆମ୍ଭର କଷ୍ଟ ଗଲା ପାରି ।୧୩୨
ମହତ ଭେଟିଲୁ ତୁ ଆମ୍ଭନ୍ତ କଲୁ ହେ କାରଣ
ଚଉକତି ଲୋଡ଼ନ୍ତି ସେ ଭିକ୍ଷୁକ ବ୍ରାହ୍ମଣ ।୧୩୩
ଅଦଭୁତ ପୁରୁଷନ୍ତ ପାଇବା କାହିଁ ଲୋଡ଼ି
ଆମ୍ଭର ରାଜ୍ୟେ ହୁଅନ୍ତା ଠାକୁର ଅଧିକାରୀ ।୧୩୪
ଯେକଚକ୍ରା ନଗ୍ର ଲୋକେ ବେଦଶର୍ମଣକୁ କଲେ ପୂଜା
ଯେକଚକ୍ର ନଗ୍ରେ ବେଦଶର୍ମଣ ହେଲା ରାଜା ।୧୩୫
ବଦୟନ୍ତି ଅଗସ୍ତି ଶୁଣ ମନୁ ମହତ
ମହତ ଆଶ୍ରେ କଲା ପ୍ରାଣୀ ହୋଅନ୍ତି ଯେମନ୍ତ ।୧୩୬
ସେହି ନଗ୍ରେ ବେଦଶର୍ମଣ ଭିକ୍ଷାପାତ୍ର କରୁଥିଲା
ବଡ଼ଲୋକ ଆଶ୍ରେ କରି ନୃପତି ହୋଇଲା ।୧୩୭
ବେଦଶର୍ମଣ ଭାରିଯା ଭିକ୍ଷୁକ ବ୍ରାହ୍ମଣୀ
ପୁଣ୍ୟ ପ୍ରସାଦେ ସେହି ନଗ୍ରେ ହେଲା ଠାକୁରାଣୀ ।୧୩୮
ବନସ୍ତେ ବକ ରାକ୍ଷସର ମୂଳେ ଯେତେକ ଥିଲା ଧନ ଭଣ୍ଡାର
ପୁରଜନ ମାନେ ସେ ସମସ୍ତ କଲେ କୂର ।୧୩୯
ରାଜ୍ୟେଣ ଅଭିଷେକ ବେଦଶର୍ମଣ ବ୍ରାହ୍ମଣ
ପାତ୍ର ଅମନାତ୍ୟ ମାନ କଲାକ ଭିଆଣ ।୧୪୦
ଅନେକ ସୁସ୍ତ ପାଇଲେ ସେ ନଗ୍ର ପୁରଜନେ
ଅସୁରକୁ ଅନେକ ଭୟ ଉପୁଜୁଥିଲା ମନେ ।୧୪୧
ଇନ୍ଦ୍ର ଦେବତା ହୋଇଲା ଅନେକ ତୁଷ୍ଟି
ଅସୁର ନାଶ ଗଲା ସରିଲା ସ୍ୱର୍ଗର ଅରଷ୍ଟି ।୧୪୨

ସୋଦରନ୍ତ ଅନେକ ନାଶ କରିଥିଲା ରାକ୍ଷସ
ପାସୋରିଲା ସମସ୍ତ କଷ୍ଟ ଫିଟିଲା ତରାସ ।୧୪୩
ପୃଥୀର ଭାରାଭାର ଉଶ୍ୱାସ ହୋଇଲା
ଦୁର୍ଭାର କଉଶୋପ କିଞ୍ଚିତେ ନାଶଗଲା ।୧୪୪
ବଦନ୍ତି ଅଗସ୍ତି ଶୁଣ ହୋ ଯୁଗପତି
ଆପଣେ ଦୁଖେ ପଡ଼ି ପାଣ୍ଡବେ ଫେଡ଼ନ୍ତି ପରର ଦୁର୍ଗତି ।୧୪୫
କୁମ୍ଭୀରୀ କିନ୍ନରୀ ହିଡ଼ିମ୍ବକ ବକାସୁର
ମନୁଷ୍ୟ ଧ୍ୱଂସନ ଯେ ପୃଥିବୀ ମହାଭାର ।୧୪୬
ଅନେକ ବ୍ୟଥା ଯହୁଁ ପାଇଲେ ଦେବତାମାନେ
ବସୁଧା ବଲ୍ଲଭ୍ୟ ଯେ ଅସୁରଙ୍କର ଗହନେ ।୧୪୭
ଋଷି ବିପ୍ର ତପୋଧନେ କରନ୍ତି ତପ ଉପଇଛା
ଦୁରାପଦ ଭୟରୁ କେହି କରନ୍ତି ନୋହିଲାକ ରକ୍ଷା ।୧୪୮
ତ୍ରିଦଶ ଦେବେ ଯେ ବସି ଭାଳିଲେ ଆକାଶେ
ଅଦଭୁତେ ପାଣ୍ଡବନ୍ତ ପେଷିଲେ ବନବାସେ ।୧୪୯
ଯେ ଚାରି ଦତ୍ୟନ୍ତ ବଧ କରିବାର ନିମନ୍ତେ
ପାଣ୍ଡବେ ବନବାସ ହୋଇଲେ ଯେଥିର ଯେ ଅର୍ଥେ ।୧୫୦
ବନ ଭୁବନ ରକ୍ଷା କଲେ ଦୁଷ୍ଟନ୍ତ ନିବାରି
ମଧୁବନେ, ହିଡ଼ିମ୍ବକ ବନେ ଘଟଉତ୍କଚକୁ କଲେ ଅଧିକାରୀ ।୧୫୧
ଓଡ଼ାଦି ଶିବପୁରେ ଚାଣ୍ଡାଳ ବଳ ଧ୍ୱଂସି
ଧର୍ମ ଉଦିତ କଲେ ଗୁପତେ ବନବାସୀ ।୧୫୨
ବିଷ୍ଣୁକର ବ୍ରାହ୍ମଣର ଆଶ୍ରିତେ ରହିଲେ
ଶିବପୁରେ ବିଷ୍ଣୁ କରକୁ ଠାକୁର କରାଇଲେ ।୧୫୩
ଯେକଚକ୍ରା ନଗ୍ରେ ରହିଲେ ବେଦଶର୍ମଣର ଘରେ
ସେହି ଠାକୁର ହୋଇଲେ ଯେକଚକ୍ରା ନଗ୍ରପୁରେ ।୧୫୪

**

## ୨୩. ଦ୍ରୌପଦୀ ସ୍ୱୟମ୍ବର

**ଦ୍ରୌପଦୀ ସ୍ୱୟଂବରେ ଲାଖ ନିର୍ମାଣ**

ମନୁ ପଚାରିଲେ ଅଗସ୍ତିଙ୍କର ପାଶେ
ଶୁଣିଲେ ମହାମୁନି ହୋଇଲେ ସନ୍ତୋଷେ ।୧
ଯେଥି ଉତ୍ତାରୁ କିସ ହେଲା ମହାମୁନି
ତବ ମୁଖୁଂ ଶୁଣି ଚିତ୍ତ ହୋଇବ ମୋର ଧନି ।୨
କାର୍ତ୍ତିକ ଶୁକ୍ଳ ଯେ ପୌର୍ଣ୍ଣମୀର ଦିନ
ଗୁରୁବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ ।୩
ଦ୍ୱାରିକାକୁ ବିଜେ କଲେ ରାମକୃଷ୍ଣ ବେନି ଭ୍ରାଥେ
ହସ୍ତିନାକୁ ବିଜେ କଲେ ଧୃତରାଷ୍ଟ୍ରଙ୍କୁ ଦେଖିବା ନିମନ୍ତେ ।୪
ଦେଖିଣ ଧୃତରାଷ୍ଟ୍ର ଅନେକ ଗଉରୋବେ କଲେ ପୂଜା
ଆସ୍ତାନେ ବିଜେ କଲେ ଦେବାଧି ଦେବରାଜା ।୫
ଗୋବିନ୍ଦେ ବିଜେ କଲେ ବିଦୁରଙ୍କୁ ଘେନିଣ ଯେକାନ୍ତେ
କୁଶଳ ବାରତା ପଚାରନ୍ତି ଜଗନ୍ନାଥେ ।୬
ବିଦୁରେ ବୋଇଲେ ସ୍ୱାମୀ ପୋଯେ ଗଲେ କେଉଂଣ ବନେ
ବାରତା ନ ପାଇଲୁ କେଣେ ଗଲେ ଛଡ଼ ଜଣେ ।୭
ବିଦୁର ବୋଇଲେ ସ୍ୱାମୀ ପୋଯେ କେମନ୍ତେ ବାରତା ପାଆନ୍ତୁ
ପଞ୍ଚାଳ ଦେଶକୁ ଯେ ବହନ ହୋଇ ଯାନ୍ତୁ ।୮
ଅର୍ଜୁନକୁ ପ୍ରାପତ ହୋଇବାକ ଦ୍ରୋପତୀ
ରାଜାନ୍ତ ନିମନ୍ତି ଅଛି ପଞ୍ଚାଳ ଆଧିପତି ।୯
ଦ୍ରୋପଦ ରାଜା ଯେ କରିଅଛି ସୟମ୍ବର
ଦ୍ରିଯୋଧନ ଯିବ ଆଜ ଅଢ଼ାଇ ପହର ।୧୦
ସମସ୍ତ ଦେଶର ଯେ ଯିବେକ ନୃପତି
ଅର୍ଜୁନ ନିମନ୍ତେ ଜାତ କରିଅଛି ଦ୍ରୋପତୀ ।୧୧
ଖୋଜି ନ ପାଇଲୁ ବୀରେ ଅଛନ୍ତି କାହିଂ
ଯେଥକୁ ଚିନ୍ତା କରୁ ତୁ ଯଦୁକୁଳ ସାଇଂ ।୧୨
ସ୍ୱାମୀ ପାଣ୍ଡବେ ଯେବେ ବ୍ରତନ୍ତି ବିଷ୍ଣୁଙ୍କ ଆଶ୍ରିତେ
ତୋହର ଚିନ୍ତା ନ କଲେ ସେ ରାଜ୍ୟ ପାଇବେ କେମନ୍ତେ ।୧୩
ବିଦୁର ତୁଲେ କଥା ହୋଅନ୍ତେ ନାରାୟଣ
ବ୍ୟାସଙ୍କୁ ଲୟେ କରି କଲେ ସୁମରଣ ।୧୪
ଦଣ୍ଡ କମଣ୍ଡଳ କକ୍ଷା କଉପୁନି ବିଭୂତି
ପାରେଶ୍ୱର ନନ୍ଦନ ଯାଇଂ ମିଳିଲେ ତତ୍କ୍ଷଣାନ୍ତି ।୧୫
ଉଠିଣ ବିଦୂର ଯେ ଶତ ସହସ୍ରେ ଦଣ୍ଡ ପରିଣାମି
ବ୍ୟାସଙ୍କୁ ପୂଜା କଲେ ଶ୍ରୀ ପୁରୁଷୋତ୍ତମ ଦେବସ୍ୱାମୀ ।୧୬
ନାରାୟଣ ପୁଛା କଲେ ବ୍ୟାସଙ୍କର ମୁଖ ଚାହିଂ
ଭୋ ବ୍ୟାସେ ଯେତେବେଳେ ପାଣ୍ଡବେ ରହିଛନ୍ତି କାହିଂ ।୧୭
ଧ୍ୟାନେଣ ଚିନ୍ତିଲେ ଯେ ସତ୍ୟବତୀର ସୁତେ
ଦେଖିଲେ ପାଣ୍ଡବେ ରହିଛନ୍ତି ପଞ୍ଚୁବଟୀ ବନସ୍ତେ ।୧୮
ବ୍ୟାସେ ବୋଇଲେ ଶୁଣିମା ଦାମୋଦର
ପାଣ୍ଡବେ ରହିଛନ୍ତି ଯେ ଶ୍ରୀ ରାମବେଣୀ ତୀର୍ଥର ।୧୯
ସୁର ନଦୀରେ ମାଇଲେ କୁମ୍ଭୀରୀ ଦତ୍ୟକୁ
ମଧୁବନେ ନାଶକଲେ କିନ୍ନରୀ ରାକ୍ଷସକୁ ।୨୦

ହିଡିମ୍ବକ ବନେ ହିଡିମ୍ବକକୁ ମାରି
ଯେକଚକ୍ରା ନଗ୍ରେ ବକାସୁରକୁ ନିବାରି ।୨୧
ହିଡିମ୍ବିକୀ ପ୍ରଦାନ ହୋଇଲା ଭୀମସେନ
ଘଟଉତ୍କଟ ନାମେ ତହିଂ ପୁତ୍ରେକ ଉତପନ୍ନ ।୨୨
ସର୍ବ କୁଶଳେ ପାଣ୍ଡବେ ତହିଂ ବ୍ରତିଛନ୍ତି କ୍ଷମେ
ଯାହାଙ୍କଇଂ ଚିନ୍ତା କରନ୍ତି ପୁରୁଷଙ୍କ ଉତ୍ତମେ ।୨୩
ବ୍ୟାସେ ବୋଇଲେ ବିଦୁରର ବଡ଼ ଦୟା
ଯେହାର ବୁଦ୍ଧିବଳେ ପାଣ୍ଡବେ ପାର ଗଲେ ମାୟା ।୨୪
ଜଗନ୍ନାଥେ ବୋଇଲେ ବ୍ୟାସେ ତୁମ୍ଭେ ଦ୍ରୋପଦର ଦେଶକୁ ଯିବ
ବ୍ୟାସ କୂଟ କରି ତହିଂ ଲାଖେକ ପାତିବ ।୨୫
ଅଶ୍ରୁତି ଅଦୃଷ୍ଟି ତ୍ରିଲୋକ୍ୟେ ହୋଇବ
ମନଭେଦୀ ନାରାଜେ ସେ ଲାଖ ଜଯେ ଯିବ ।୨୬
ଯେମନ୍ତ କରିଣ ପାତିବାକ ଲାଖ
ତଳେ ଧନୁ ଯେକ ଥୋଇବ ବଳ ଯେକଲକ୍ଷ ।୨୭
ଯେହା ସଞ୍ଚିଣ ତୁମ୍ଭେ ଯିବ ଘୋରବନେ
ପାଣ୍ଡବନ୍ତ ପଠିଆଇ ଦେବ ଦ୍ରୋପଦ ଭୁବନେ ।୨୮
ଦ୍ରିଯୋଧନ ଶକୁନି ଯେ କଲେକ ଗାରିମା
ଲକ୍ଷେ ରାଜାଙ୍କୁ ଦେଖାଇବା ନା ଅର୍ଜୁନର ମହିମା ।୨୯
ଗୋବିନ୍ଦେ ବୋଇଲେ ଆମ୍ଭନ୍ତ ନିମନ୍ତିଲେ ଦ୍ରୋପଦେ
ଆମ୍ଭେ ବେନି ଭାଇ ଯାଉଅଛୁ ଉଗ୍ରସେନ ସହିତେ ।୩୦
ନାରାୟଣଙ୍କ ଆଗ୍ୟାଂଯେ ଯେ ଚଳନ୍ତି ମୁନିବରେ
ମନଭେଦୀ ନାରାଜ ଦିଲେ ବ୍ୟାସଙ୍କ ହାଥରେ ।୩୧
ଯେ ନାରାଜ ଗୋଟି ନେଇ ଅର୍ଜୁନକୁ ଦେବ
ଯେ ଶହସ୍ରେ ବାସବି ରାଧାଚକ୍ର ବିନ୍ଧିବ ।୩୨
ରାଧାଚକ୍ର ନେଇ ପାତିବ ସଭାରେ
ଅନ୍ତର୍ଦ୍ଧାନେ ବୁଲୁଥିବଟି ଆକାଶ ଶୂନ୍ୟରେ ।୩୩
ରାଧାଚକ୍ର ମନଭେଦୀ ଶହସ୍ର ଯେ ଘେନି
ତହୁଂ ଚଳିଗଲେ ସେ ବ୍ୟାସ ମହାମୁନି ।୩୪
ପ୍ରବେଶ ହୋଇଲେ ଯାଇଂ ପଞ୍ଚାଳର ଦେଶେ
ସଦାନନ୍ଦ ମନ୍ତ୍ରୀ ଜଣାଇଲା ବିଜେ କଲେ ବ୍ୟାସେ ।୩୫
ଧାତିକାରେ ଆସ୍ତାନ ତେଜିଲେ ଦ୍ରୋପଦେ
ପାଦ୍ୟ ଅର୍ଘ୍ୟ ଦେଇ ପ୍ରଣପତ୍ୟ ବ୍ୟାସଙ୍କ ପଦ୍ମପାଦେ ।୩୬
ବ୍ୟାସେ ବୋଇଲେ ରାଜା ପରମ କଲ୍ୟାଣ ହୋଅସି
ସୟମ୍ବର ବିଧାନ ରାଜା ପାତିଲୁ କି ବିଶେଷି ।୩୭
ଗଙ୍ଗା ନଦୀକୂଳେ ଉଠଇ ଘରମାନ
ପାଞ୍ଚ ମର୍ତ୍ତ୍ୟତ ଘଟଣକାରୀ ଲାଗିଅଛନ୍ତି ବହନ ।୩୮
ପାଞ୍ଚ ଦଣ୍ଡ ଘେନି ନିର୍ମିତ ଯେ ନଳକାଠି
ତିନି ତିନି ନଳ ଆୟତନ ଯେକ ବଖରା ଗୋଟି ।୩୯
ବାଅାଷଠି ବଖରାଯେ ଘରେକ ନିର୍ମିତ
ଛତ୍ର ଘର ମାନ ହୋଇଲାନି ଚଉବିଂଶ ଅହିବ୍ରତ ।୪୦
ଗଜ ଶାଳମାନ ପାଞ୍ଚ ମେବଛ ପନ୍ଦର ସହସ୍ର ଘର
ଅଶ୍ୱ ଶାଳମାନ ହୋଇଲା ସତୁରି ସାଗର ।୪୧
ରାଜାମାନେ ଯେ ନବର ଆୟେତନ
ଦଶ ଅହିବ୍ରତ ଘର କଣୟ ନିର୍ମାଣ ।୪୨
ଥମ୍ଭର ଉପରେ ଯେ କଣୟ ଛାୟେଣୀ
ଗୁଅ ଘର ବତା ସୁବର୍ଣ୍ଣେ ନିର୍ବାଣି ।୪୩
ତହିଂର ଉପରେ ଯେ ରୂପାର ଛାୟେଣୀ
ବସନ୍ତି କଳଶ ଯେ ଢଳନ୍ତି ରତ୍ନମଣି ।୪୪
ଲକ୍ଷେକ ଜଗତୀ ଆସ୍ତାନ ରାଜା ବସିବାକୁ
ସହସ୍ରେ ସହସ୍ରେ ଯୋଗାଡ଼ ମୁଣୋହି ଠାବକୁ ।୪୫
କଣୟ ଘଟଣ ଲକ୍ଷେକ ଯୋଗାଡ଼
ଲକ୍ଷେକ ରାଜାଙ୍କୁ ଯେହିମତି ସମ୍ଭାର ।୪୬
ଛାୟା ମଣ୍ଡୋପେ ସୟମ୍ବର ଥାନକୁ ନିର୍ବାଣ
ପାଞ୍ଚ ଯୋଜନ ଆୟେତନ ଛାୟେଣି କଣୟ ରତ୍ନମାନ ।୪୭
ଲକ୍ଷେକ ଥମ୍ଭ ଅଛି ଛାୟା ମଣ୍ଡୋପର
ଅଷ୍ଟ ରତ୍ନ ନିର୍ମିତ କଲେ ସୁବର୍ଣ୍ଣ ଥମ୍ଭର ।୪୮
ରାଜାଙ୍କର ବସିବାକୁ ସୁବର୍ଣ୍ଣ ସିଂଘାସନ
ସେହି ଥମ୍ଭ ଆଉଜଣା ଆହୁଟ ହାଥ ସୁବର୍ଣ୍ଣ ।୪୯
ନେତର ସୁପାତି ଯେ ଗୋଟିଯେ ଗୋଟିଯେ
ନେତର ଚନ୍ଦ୍ରାତପ ଉପରେ ଶୋଭା ପାଯେ ।୫୦
ଯେସନେକ ନିର୍ମିତ ଯେ ସଭାର ଆୟେତନ
ଲମ୍ବନ୍ତି ମୁକୁତା ମାଳ ଝରା ଅଷ୍ଟରତ୍ନ ।୫୧
ଅଲେଖ ସୁପକାର ଛତ୍ରଶାଳ ମାନଙ୍କୁ
ଚାରି ଚାରି ମହାଜନମାନ ତୁଳେଣ ତାହାଙ୍କୁ ।୫୨
ଅଶ୍ୱ ଗଜମାନଙ୍କୁ ଚରଣୀ ପିଉଣୀ ଘାସ ବିହିରି
ସମସ୍ତ ସମ୍ପାଦିଲା ରାଜା କଲା ଦୃଢ଼ କରି ।୫୩
ବ୍ୟାସ ପରଶଂସା କଲେ ଦ୍ରୋପଦ ରାଜାକୁ
ସାଧୁ ସାଧୁ ଧ୍ୱନି ଗୋଟିଯେ କଲୁ ଦ୍ୱାପର ଯୁଗକୁ ।୫୪

ଦ୍ରୋପଦ ବୋଇଲେ ବ୍ୟାସେ ଅର୍ଜୁନ ଯେବେ ଥାଆନ୍ତା
ତାହା କଇ ପ୍ରଦାନ ମୁଂ କରନ୍ତି ଦୁହିତା ।୫୫
ଯେତ ଜିଘ୍ନସେନୀ ଅଗ୍ନିରୁ ଉତପତ୍ତି
ଯେହାର ନିମନ୍ତେ ମୁଂ ସବୁନ୍ତି ନିମନ୍ତି ।୫୬
ବ୍ୟାସେ ବୋଇଲେ ରାଜା ଆମ୍ଭର ବୋଲ କର
ଲାଖେକ ପାତିବୁ ଆମ୍ଭେ ତୋହୋର ସୟମ୍ବର ।୫୭
ପାଣ୍ଡବେ ମଲେ ବୋଲି ଯେ ସଂସାର ବାରତା ପାଉ
ଆମ୍ଭେ ଯେ କଥାକୁ ଯେ ପରତେ ନ ଯାଉ ।୫୮
ଧର୍ମ ପବନ ଇନ୍ଦ୍ର ଅଶ୍ୱିନୀକୁମାରେ
ଯେମାନଙ୍କର ପୁତ୍ର ସେ ଅଟନ୍ତି ପଞ୍ଚୁବୀରେ ।୫୯
ଅର୍ଜୁନର ଆତ୍ମା ଯେ ଅଟନ୍ତି ଜଗନ୍ନାଥ
କୋଳେ ଧରି ଦୁତୀକୃଷ୍ଣ ନାମ ଦିଲେକ ଅଚ୍ୟୁତ ।୬୦
ବିଦୁରଇ ସର୍ବଗ୍ୟଂ ଆବୋରନ୍ତି ପାଣ୍ଡବ
ଆବର ସମସ୍ତ କଥା ଜାଣଇ ସହଦେବ ।୬୧
ଯେମାନଙ୍କର ଥାଆନ୍ତେ କି ପାଣ୍ଡବଙ୍କର ହୋଇବ ପରମାଦେ
ଯେ କଥାକୁ କେବେହେଂ ଆମ୍ଭେ ନ ଯାଉ ସଂପ୍ରତେ ହାଦେ ।୬୨
ମହା ଯାଗରୁ ଜାତ କରାଇଲୁ ଜିଘ୍ନସେନୀ
ମାନବେ ପ୍ରଦାନ କରାଇବୁ କି ତୋହୋର ନନ୍ଦନୀ ।୬୩
ଲାଖ ଗୋଟିଯେକ ଆମ୍ଭେ କରିବୁ ନିର୍ବାଣ
ସେ ଲାଖ ବିନ୍ଧିବ ଯେ କନ୍ୟା ଦେବୁ ତତକ୍ଷଣ ।୬୪
ବ୍ୟାସକୃତ ଲାଖ ପାତିଲେ ମୁନି ବ୍ୟାସ
ଦେବେ ଅଗୋଚର ସେ ଯେ ମାନବେ ଅଦୃଶ ।୬୫
ମାନବ ତାଳେ ସାତ ତାଳ ଦେବେଣ ଯେକ ତାଳ ବୋଲି
ଦେବ ତାଳେ ସାତ ତାଳ ରାଧାଚକ୍ର ଘଟଣ କଲି ।୬୬
ମାନବ ତାଳେ ଅଣଚାଶ ତାଳ ହୋଇଲା ଉଚ୍ଛର୍ଗ
ଆକାଶକୁ ଚାହିଂଲେ ଅଦୃଶ ଦୁତୀସ୍ୱର୍ଗ ।୬୭
ରାଧାଚକ୍ର ଦିଶଇ ସହସ୍ରେକ ଧାର
ଅନୁବ୍ରତେ ବୁଲୁଥାଇ କୁରାଳଚକ୍ର ଆକାର ।୬୮
ତହିଂର ଉପରେ ବସାଇଲେ ସୁବର୍ଣ୍ଣ ଯେକ ମାଛ
ତଳେ ଧନୁଯେକ ଥୋଇଲେ ବଳ ଯେକ ଲକ୍ଷ ।୬୯
ତାଳେକ ଉଚ୍ଛର୍ଗ ସୁବର୍ଣ୍ଣ ପଟାଯେକ କଣ୍ଡି
ତହିଂର ତଳେ ଥୋଇଲେ ତୀର୍ଥ ଜଳଘଟ ଗୋଟି ।୭୦
ବ୍ୟାସେ ବୋଇଲେ ରାଜା ଶୁଣ ହୋ ଦ୍ରୋପଦ ନୃପତ୍ୟ
ଲକ୍ଷେ ବଳ ପିନାକ ଧରିବାକୁ କେହୁ ସାମରଥ ।୭୧

ତଳକଙ୍କଂ ଚାହିଂ ଉପରକଙ୍କଂ ମୁଷ୍ଟି
ଚକ୍ରଭେଦୀ ନାରାଜ ମାଛ ବାମଚକ୍ଷୁ ଯିବ ଫୁଟି ।୭୨
ଯେହେନେକ ସରୂପେ ଯେ ଲାଖ ବିନ୍ଧେ
ତାହାକୁ ଦୁହିତା ଦେବୁଟି ପରମ ସାନନ୍ଦେ ।୭୩
ଯେକାନ୍ତେ ଦ୍ରୋପଦଙ୍କୁ କହିଲେ ବ୍ୟାସ ମହାମୁନି
ଯେ ଲାଖ ବିନ୍ଧିବ ସେ ଇନ୍ଦ୍ର ଗୋବିନ୍ଦ ଫାଲଗୁନି ।୭୪
ଯେହା ତଦନ୍ତ କରି ଜାଣି ଥାଅସି ତୋହୋର ମନେ
ଯେତେ କହି ମହାତମା ଚଳିଲେ ଅନ୍ତର୍ଦ୍ଧାନେ ।୭୫
ପାଣ୍ଡବେ ରହିଛନ୍ତି ଯେ ଶ୍ରୀ ରାମବେଣୀ କୂଳେ
କୃପଛନ୍ନ ରୂପ ଧଇଲେ ବ୍ୟାସେ କୁତୂହୋଳେ ।୭୬
ଲମ୍ୱିତ କୁଡ଼ା ବାଳ ପୁଞ୍ଜା ସେ କାଛେଟି
ପଞ୍ଚବକ୍ର ଚାଳି ପ୍ରପଞ୍ଚ ଲାଙ୍ଗଟି ।୭୭
ଲମ୍ୱିତ ରୋମମାନେ ଦଉଡ଼ି ବର୍ଣ୍ଣି ଶିରେ
ଧବଳ ଚିହ୍ନ ମାତ୍ର ଅଛଇ ଶରୀରେ ।୭୮
ଲାଙ୍ଗଟ ଭ୍ରୂକୁଟ କୁବୁଜ ଗଳିତ ଆଖି
ଭୀମସେନ କରତାଳି ମାରି ହସିଲା ତାହା ଦେଖି ।୭୯
ମଣିଷ ବାତୁଳ କି ପ୍ରପଞ୍ଚ ରୂପ କାୟେ
ଦେଖିଲି କି ମାୟେ ଗୋ ଅନ୍ୟାକାର ରୂପ ଗୋଟାୟେ ।୮୦
ଯୁଝେଷ୍ଟି ବୋଇଲେ ସହଦେବର ମୁଖ ଚାହିଂ
ଚଉଦ ବରଷ ବନେ ବୁଲିଲୁ ଯେମନ୍ତ ରୂପ ଦେଖିଲତ ନାହିଂ ।୮୧
ସହଦେବ ବୋଇଲେ ଦେବ ନ କର ଉପହାସ୍ୟ
ଆମ୍ଭନ୍ତ କଷଣ ନିମନ୍ତେ ବିଜେ କଲେ ମୁନି ବ୍ୟାସ ।୮୨
ବିଦୁର ବାସୁଦେବ ଦିଲେ ପଠିଆଇଂ
ଆମ୍ଭନ୍ତ ଡରାଉଛନ୍ତି କୃପଛନ୍ନ ରୂପ ହୋଇ ।୮୩
ପୁତ୍ରନ୍ତ ଘେନି ସେ କୋଇନ୍ତା ମହାମାଈ
ଶତ ସହସ୍ର ଦଣ୍ଡ ପ୍ରଳମ୍ୱିତ ହୋଇ ଭୂମିରେଣ ଶୋଇ ।୮୪
ବ୍ୟାସ ବୋଇଲେ ହୋ ତୁମ୍ଭେ ଚିହ୍ନିଲ କେମନ୍ତେ
ନ ଚିହ୍ନିବୁ ବୋଲି ଆମ୍ଭେ ଅଇଲୁ ଯେମନ୍ତେ ।୮୫
ପ୍ରପଞ୍ଚ ରୂପ ଗୋଟି ଛାଡିଲେ ମୁନିବର
ନିଜ ରୂପ ଧରି ସେ ବସିଲେ ଆସ୍ତାନର ।୮୬
ପୁଣ ପୁଣ ପ୍ରଣପତ୍ୟ ପଣ୍ଡୁର ତନୟେ
ଆସନ ଦିଲେ ନେଇ କୃଷ୍ଣାଜିନ ମୃଗ ଛାଳ ଗୋଟିୟେ ।୮୭
କୋଇନ୍ତାୟେ କ୍ରୋଧ କଲେ ବ୍ୟାସଙ୍କର ମୁଖ ଚାହିଂ
ତୁମ୍ଭର ଥାଆନ୍ତେ ପୋୟେ ମୋର ବନସ୍ତେ ବୁଲନ୍ତି ଦୁଖ ପାଇ ।୮୮

ହୀନ ଜନ ପ୍ରାୟେ ନଗ୍ରେ ମାଗନ୍ତି ଯେ ଭିଖ
ଗାନ୍ଧାରୀ ପୁଅଙ୍କର ସେ ସମ୍ପଦ ମୋହୋର ପୁଅଙ୍କର
ଯେତେ ଦୁଖ ।୮୯
କୋନ୍ତଭୋଜର ଦୁଲଣୀ ମୁଂ ସୋମବଂଶର କୁଳବଧୁ
ଯେତେ ଜୀବନ ଯାକ ଆମ୍ଭର ହୋଇଲା ଅସାଧୁ ।୯୦
ଛତ୍ରୀ ପଣେ ଜାତ ହୋଇଲେ ଯେ ମୋହୋର ପୁତ୍ରେ
ଅପୂନ୍ୟେକ ହୋଇଲେ କେବଣ ଦୋଷ ଅର୍ଥେ ।୯୧
କହନ୍ତେ କୋନ୍ତାଙ୍କର କ୍ରୋଧ ଯେ ହୋଇଲେ ଅପାର
ବ୍ୟାସ କହିଲେ ମା ଗୋ କ୍ରୋଧ ଶାନ୍ତିକର ।୯୨
ଆକାଶ ନାଶ କଲେ ଯହୁଂ ଅସୁର ଚାରି ବୀରେ
କିମ୍ମିରୀ କିନ୍ନରୀ ହିଡିମ୍ବକ ବକାସୁରେ ।୯୩
ତାହାଙ୍କର ଭାରା ଯହୁଂ ନ ସହିଲା ମେଦିନୀ
ତେଣୁକରି ଆଗ୍ୟାଂ ତୁମ୍ଭଙ୍କୁ ଦିଲେ ପଦ୍ମଯୋନି ।୯୪
ଅସୁର ବଧକଲେ ପିତାମହର ବଚନେ
ଅନେକ ସାନନ୍ଦ ଯେ ହେଲେ ଦେବ ମାନେ ।୯୫
ଯେବେ ପୁଅନ୍ତ ଘେନି ସୁଖ ଭୋଗ ପାଇବ ଗୋ ମାୟେ
ନିକଣ୍ଟେକ ରାଜ୍ୟ ସଞ୍ଚିଲେନି ଦେବତାୟେ ।୯୬
ଭାରା ନିବାରଣେ ତୁମ୍ଭେ ହୋଇଛ ଜନମ
ଅପାଦ ଅନ୍ତେଣ ଗୋ ଉଦିତ ହୋଇ ଧର୍ମ ।୯୭
ଜନମ କରମ ଆଧାନ ସମସ୍ତ ନାଶି
ଯେକା ଶରୀର ଗୋଟି ଭୋଗ୍ୟ ଚାରି ଗୋଟି ରାଶି ।୯୮
ଜନ୍ମ ନକ୍ଷତ୍ରେ ଗୋ ପାଇଲେ ଯେତେ ଦୁଖ
କରମ ନକ୍ଷତ୍ରେ ଯେବେ ଭୁଞ୍ଜିବ ପରମ ସୁଖ ।୯୯
ଦୁଖ ପାର ଗଲାନି ଯେବେ ଅଳପ ଦିନ ସହ
ରାତ୍ର ଦିବସେଣ ଚଳ ଯେଥେଂ ଦଣ୍ଡେହେଂ ନ ରୁହ ।୧୦୦
ଦ୍ରୋପଦ ରାଜା ଯେ ଯେବେ କରୁଅଛି ସୟମ୍ବର
ଲକ୍ଷେକ ନୃପତି ବିଜେ କରିବେ ତାହାର ପୁର ।୧୦୧
ରାଧାଚକ୍ର ବିନ୍ଧିବ ଯେ ବୀର ଫାଲଗୁନି
ତାହାକୁ ପ୍ରାପତ ଯେ ହୋଇବ ଜିସ୍ନସେନୀ ।୧୦୨
କନ୍ୟା ଆଣନ୍ତେ ଗୋଳ ହୋଇବ ସାଂଗ୍ରାମ
କଉରୋବଙ୍କର ଦର୍ପ ତହିଂ ମର୍ଦ୍ଦିବ ଭୀମସେନ ।୧୦୩
ହରି ବଳରାମେ ଆସୁଛନ୍ତି ବେନି ଭ୍ରାଥେ
ତହିଂରେ ଭେଟ ସିନା ପୁଣି ହୋଇବ ସମସ୍ତେ ।୧୦୪
ସୟମ୍ବର ହେବାକୁ ଅଛଇ ଷୋଳଦିନ
ଯେଥକୁ ଦ୍ରୋପଦ ରାଜ୍ୟ ତିନିଶତ ପଞ୍ଚାଶ ଯୋଜନ ।୧୦୫
ବାବୁ ଅର୍ଜୁନ ତୁହି ସେ ପାରିବୁ ଲାଖ ବିନ୍ଧି
ଶ୍ରୀଜଗନ୍ନାଥେ ଦିଲେ ଆମ୍ଭର ହସ୍ତେ ନାରାଜ ମନଭେଦୀ।୧୦୬
ଯେ ମନଭେଦୀ ନାରାଜ ତୁ ସମ୍ଭାଳସି ଯତନେ
ଯେକା ଘାନ୍ତିକେ ଭେଟଇଟି ଯାହାକୁ କରିବୁ ମନେ ।୧୦୭
ଆମ୍ଭେତ ଯାଉଅଛୁ ସୟେମ୍ବରକଇ ବୋଲି
ପବନହୁଂ ବେଗେ ଯିବଟି ତୁମ୍ଭେ ସମସ୍ତେ ଚଳି ।୧୦୮
ଯେତେ ବୋଲି ମୁନି ପାଦୁକା ମନ୍ତ୍ର ଦିଲେ
ନିମିଷକେ ଲକ୍ଷେ ଯୋଜନ ଯାଇଟି ଯେ ମନ୍ତ୍ର ପଢ଼ି ପାଦୁକା
ଆଉଂଷିଲେ ।୧୦୯

■■

## ପାଣ୍ଡବଙ୍କର କୁରାଳଶାଳେ ପ୍ରବେଶ

ଦ୍ରିଯୋଧନ ଆଗତ ବୋଲି କହିଲେ ବେଦବ୍ୟାସେ
ତହୁଂ ପବନ ନନ୍ଦନ ଚଳଇ ମହାରୋଷେ ।୧
ବନ ଗହନ କନ୍ଦରେ ଚାଲଇ ବୀର ପେଲି
ଗିରି ଡିଙ୍ଗର ଖାଲ ଟିକରେ କୋନ୍ତାୟେ ନ ପାରନ୍ତି ଚାଲି ।୨
ଥୋକାୟେ ଦୂର ଯାଇ ରହଇ ମାରୁତି
ସୟଂମ୍ବର ନିକଟେ ଦେବ ଯିବାନା ତତ୍ପତି ।୩
ଯୁଝେଷ୍ଠି ବୋଇଲେ ବ୍ୟାସେ ମନ୍ଦକୃତ୍ୟ କଲେ
ସୟଂମ୍ବର ବାରତା କିମ୍ପା ଆମ୍ଭନ୍ତ କହିଲେ ।୪
ଅନେକ ସମ୍ପରେ ସେ ଅଛନ୍ତି କୁରୁପତି
ନ ଦେଖୁଂ ଯେହାର ତ ଯେତେ ଭୀଷ୍ମ ମୂର୍ତ୍ତି ।୫
ବନସ୍ତେ ଅଛି ଯେ ଅନେକ କଷ୍ଟ ପାଇ
ଭାଇନ୍ତ ମାରିବ, ଦୟା ଯେହାର ତ ନାହିଂ ।୬
ଯେହାର କୋପରେ ଦ୍ରିଯୋଧନ ନାଶଯିବ
ଅନ୍ଧରାଜା ଗୋଟି ମୋର ଅନାସ୍ତ ହୋଇବ ।୭
ଧୀରଥିର ହୋଇ ଆମ୍ଭେ ଯାଉଥିବା ବନେ
ସୟମ୍ବର ସରୁ ତେଣେ ଦ୍ରୋପଦୀକି ନେଇଯାଉ ଆନେ ।୮
କନ୍ୟା ଗୋଟିଯେକ ଗଲେଣ ପାଇବା
ସ୍ତିରୀ ଅର୍ଥେ କି ସେ ସୋଦର ମରାଇବା ।୯
ଯେସନେକ ବିଚାରି ଦେବ ଚାଲନ୍ତି ଧୀର ଧୀର
ଆସ କିନା ବୋଲି ଡାକ ଦିଅଇ ବ୍ରିକୋଦର୍ ।୧୦
ଯୁଝେଷ୍ଠି ବୋଇଲେ ତୁ ଯେ ପବନୁ ବେଗେ ଚାଲୁ

ତେତେ ବେଗେ ଆମ୍ଭେ ଚାଲି ଯେ ନ ପାରୁ ।୧୧
ଭୀମସେନ ବୋଇଲା ମୋତେ ଯେବେ ଗୋଡ଼ାଇ ନ ପାର
ତୁମ୍ଭେ ଆଗ ହୁଅ ମୁଂ ଚାଲଇ ତୁମ୍ଭ ପଛର ।୧୨
ଆଗେଣ ଯୁଧେଷ୍ଠି ପଛେଣ ମାରୁତି
କୋଇନ୍ତାଙ୍କ ପାଦ ଭୀମ ମାଡଇ ଧାଡି ଧାଡି ।୧୩
ଭୀମସେନ ବୋଇଲା ଯେ କେବଣ ବିଚାର
ଆଗରେ ନ ଚାଲ ପଛରେ ଓଟାରି ହୋଇପଡ଼ ।୧୪
ଭୀମସେନ ଭୁଜ ଧରି କୋଇନ୍ତା ଦେବୀ ମାୟେ
କୋଇନ୍ତାଙ୍କୁ ତୋଳି ଭୀମସେନ ବସାଇଲା ମଥାୟେ ।୧୫
ଡାହାଣ କାନ୍ଧେ ଯୁଧେଷ୍ଠି ବାମ କନ୍ଧେ କିରଟୀ
ଦୁଇ କାଖେ ନକୁଳ ସହଦେବ ଭାଇ ବେନି ଗୋଟି ।୧୬
ଚାଲଇ ଭୀମସେନ ପବନ ଆପାତେ
ଡିଙ୍ଗର ଚୂର ହେଉଅଛି ଭୀମସେନର ପାଦଘାତେ ।୧୭
ଆକର୍ଷଣ ମୂରତି ହୋଇ ଚାଲଇ ଭୀମସେନ
ଯେକା ରାତ୍ରକେ ଗଲା ଶୟେ ସତୁରି ଯୋଜନ ।୧୮
ଦ୍ରୋପଦର ରାଜ୍ୟକୁ ପଞ୍ଚାଶ ଯୋଜନ ଅନ୍ତରେ
ଗଙ୍ଗାଧାର ବହୁଅଛି ସଙ୍ଗମ ସାଗରେ ।୧୯
ଭୀମସେନର ତହୁଂ ଓହ୍ଳାବନ୍ତି ସେହି ନଦୀର କୂଳେ
ବସିଲେ ପାଣ୍ଡବେ ଅଗ୍ରବନିକାର ତଳେ ।୨୦
ପ୍ରାତ ସ୍ନାହାନ ସାରିଲେ ସେହି ନଦୀର ଜଳେ
ଉଠିଲେ ବାରଣ ଗିରି ପର୍ବତ ଉପରେ ।୨୧
ଦେଖିଲେ ଆସୁ ଅଛନ୍ତି ରାଜାଗଣମାନେ
ରଥ ଗଜ ଅଶ୍ୱ ଯେ ପାଦାନ୍ତି ଗହନେ ।୨୨
ଚଉବିଂଶ ଦାଣ୍ଡ ପଡ଼ିଅଛି ପାଞ୍ଚାଳ ଦେଶକୁ
ପଞ୍ଚାଶ ଯୋଜନ ଥାଉଂ ପଶି ନୁଆରନ୍ତି ଭିତରକୁ ।୨୩
ଉତ୍ତର ଦେଶରୁ ଆସୁଛନ୍ତି ଦୁଇ ଭଣା ଚାଳିଶି ସହସ୍ର ନୃପତି
ପଶ୍ଚିମ ଦିଗରୁ ଆସନ୍ତି ଯେକ ଜଣା ପଚାଶ ସହସ୍ର ନୃପତି ।୨୪
ପୂର୍ବ ଦିଗରୁ ଆସୁଛନ୍ତି ସାତ ସହସ୍ର ରାୟେ
ଦକ୍ଷିଣ ଦିଗରୁ ତିନି ସହସ୍ର ନୃପତି ଆୟେ ।୨୫
ପଞ୍ଚତିରିଶ ଯୋଜନ ଥାଉଂ ଦିଶୁଅଛି ଥାଠ
ଯୁଧେଷ୍ଠି ବୋଇଲେ ହୋ ପଶିବାକୁ ନାହିଂ ବାଟ ।୨୬
ବାବୁ ନଦୀରେ ପାଣି କେତେ କଣ୍ଟନି ଭୀମସେନ
ପାଞ୍ଚତାଳ ଗଭୀର ସେ ନଦୀର ପୂର୍ଣ୍ଣମାନ ।୨୭
ଆହୋ ଆମ୍ଭେ କେମନ୍ତେ ଯିବୁ ଯୁଧେଷ୍ଠି ଦେବ ବୋଇଲେ
ସାତତାଳ ଉପର୍ଗ ଯେ ଭୀମସେନ ହୋଇଲେ ।୨୮
ବେନି ଭୁଜ ବିସ୍ତାରି ଭୀମସେନ ଦିଲେ
ଦୁଇ କାନ୍ଧେ ଚାରିଭାଇ ମଥାୟେ ମାତାଙ୍କୁ ବସାଇଲେ ।୨୯
ଭୁଜ ବୁଡ଼ି ଶିର ପରିଯନ୍ତେ ହେଲା ପାଣି
ବୁଡ଼ି ସବୁନ୍ତି ମାରୁତି ପାରି କରି ଆଣି ।୩୦
ଉତ୍ତର କୂଳେ ବୀରେ ଉଭା ଯେ ହୋଇଲେ
ଅନେକ ଗହନ ସଇନ୍ୟ ତହିଂ ଯେ ଦେଖିଲେ ।୩୧
ରଥ ଗଜ ହୟ ପାଦାନ୍ତି ସୈନ୍ୟ ଥାଠ
ପଞ୍ଚାଶ ଯୋଜନ ଥାଉଂ ପଶିତେ ନାହିଂ ବାଟ ।୩୨
ଭୀମସେନ ବୋଇଲା ସ୍ୱାମୀ, ମୁଂ ହୋଇଥାଇ ଆଗେ
ମୋତେ ଗୋଡ଼ାଇ ତୁମ୍ଭେ ଆସ ବେଗେ ବେଗେ ।୩୩
ଚାଲଇ ବ୍ରିକୋଦର ହଲାଇ ଭୁଜ ବେନି
ହାବୋଡାର ଘାୟେ ଦୁଇପାଶେ ପଡୁଛନ୍ତି ସଇନି ।୩୪
ଭୁଜ ହାବୋଡନ୍ତେ ଯେ ଗଜେ ପଡନ୍ତି ତଳି
ହାବୋଡା ହାବୋଡି ଘାୟେ ରଥେ ହେଉଛନ୍ତି ଧୂଳି ।୩୫
ଯୁଧେଷ୍ଠି ବୋଇଲେ ରହ ରହ ଭୀମସେନ
ଯେହିକ୍ଷଣି ଜାଣନ୍ତା ରେ ହୋଇବ ବିଦ୍ୟମାନ ।୩୬
ଦିବସେ ବଞ୍ଚିବା ଯେ ଗହଳ ଦଣ୍ଡ ଛାଡି
ରାତ୍ର ହୋଇଲେ ସିନା ଯିବା ପଥ ମାଡି ।୩୭
ଯୁଧେଷ୍ଠି ବାଟ ଛାଡି ରହିଲେ ନିମ ବନିକାୟେ
ଯୁଧେଷ୍ଠି ବୋଇଲେ ଭୀମ ଯାଅ ତୁ ଯେକାୟେ ।୩୮
ଠାବ ଗୋଟିୟେ ବାବୁ ତୁ ଖୋଜି ଆସ ଯାଇ
ସୁସଞ୍ଚ ସ୍ଥାନ ହୋଇବ ଆଗମ ନିଗମ ଭୂଇଂ ।୩୯
ଆଗ୍ୟାଂ ପ୍ରମାଣେ ଯେ ଚଳଇ ବ୍ରିକୋଦର
ସନ୍ଧ୍ୟାକାଳେ ପଶିଲା ଯାଇ ଦ୍ରୋପଦ କଟକର ।୪୦
ରାଜାମାନଙ୍କର ଯେ ଅଟଇ ମଧସ୍ଥାନ
ସଇନି ମାଡି ରହିଛନ୍ତି ପଞ୍ଚ ଯେ ଯୋଜନ ।୪୧
ତିଳ ପକାଇଲେ ନ ପଡଇ ଭୂଇଂ
ଦ୍ୱାଦଶ ଯୋଜନ ଆୟେତନ ଲିତାୟେ ଠାବ ନାହିଂ ।୪୨
ନଗର ପଶ୍ଚିମ ଆଡ଼େ ଯମୁନା ନଦୀ କୂଳେ
ତହିଂ ଯେକା ମାତ୍ର ଦେଖିଲା ତୁଚ୍ଛା କୁରାଳଶାଳେ ।୪୩
ଦେଖଇ ଦ୍ରୋପଦର ରାଜ୍ୟସଭା ନବର
ଦିବ୍ୟ ପୁର ଦେଖି ବିଚାରଇ ବ୍ରିକୋଦର ।୪୪
ଭୀମସେନ ବିଚାରଇ ଯେ ଦୂରେଣ ଥାଇଂ ଚାହିଂ
ରାଜାୟେ ବସିଲେ ଯେ ମେଡରେ କେହି ନାହିଂ ।୪୫

ବିଚାରଇ ପାବେନି ସୁସଞ୍ଚ ମେଢ ଦେଖି
ଯେଥି ଆଣି ଯେହିକ୍ଷଣି ବସାଇବି ଯୁଧିଷ୍ଠିରଙ୍କି ।୪୬
ଅନେକ ସାନନ୍ଦେ ଭୀମ ଧାମଇଂ ହରଷେ
କରଯୋଡ଼ି ଜଣାଇ ଯାଇଂ ଯୁଧିଷ୍ଠିରଙ୍କ ପାଶେ ।୪୭
ସଭାର ମଧ୍ୟରେ ଦେବ ମେଢ଼େକ ନିର୍ମିତ
ଆମ୍ଭନ୍ତ ବୋଲି ତାହା ଯେ ତୋଳାଇ ଅଛି ଦ୍ରୋପଦ ।୪୮
ଯୁଧିଷ୍ଠିର ହସିଲେ ଭୀମସେନର ବଚନ ଶୁଣି
ମୂର୍ଖ ଲୋକେ କହନ୍ତି କି ପଣ୍ଡିତଙ୍କର ବାଣୀ ।୪୯
ଆମ୍ଭର ନାଶ ଗଲା ଚିହ୍ନ ବର୍ଣ୍ଣ ନାହିଂ
ଆମ୍ଭନ୍ତ ଦ୍ରୋପଦ ଅବା ଜାଣିଅଛି କାହିଂ ।୫୦
ତୋତେ କିସ ବୋଲିବୁଂ ପ୍ରକୃତି ଆମ୍ଭର ମନ୍ଦ
ଭଲ କଲୁ ବାବୁ ଯାଇଂରେ ନ କଲୁ ତହିଂ କଳି ଦ୍ୱନ୍ଦ୍ୱ ।୫୧
ଯେହି ଯେ ଅଟଇ ଆମ୍ଭର ପରମ ଭାଗ୍ୟ
ରାଜାମାନନ୍ତ ଦେଖି ଯେ ନ କଲୁ ମନେ ରାଗ ।୫୨
ଯୁଧିଷ୍ଠିର ଦେବ ବୋଇଲେ ଶୁଣରେ ଅର୍ଜୁନ
ବ୍ରାହ୍ମଣ ରୂପ ଥାଉ ଭିକ୍ଷା ପାତ୍ର ଘେନ ।୫୩
ଠାକୁରଙ୍କ ବଚନେ ଚଳଇ ଫାଲଗୁନି
ଦଦରା ଛତା କନ୍ଧେ ହାଥେ ହରି ଗୋବିନ୍ଦ ମୁଣି ।୫୪
ପଞ୍ଚାଳଦେଶ ରାଜାର ସୟଂମ୍ବର ଦେଖିଲା
ସାଧୁ ସାଧୁ ବୋଲି ପ୍ରଶଂସା ବୀର କଲା ।୫୫
ଠାବ ନ ପାଇଲା ଯେ ଦ୍ୱାଦଶ ଯୋଜନେ
ସେହି କୁରାଳଶାଳ ଦେଖଇ ଫାଲଗୁନ୍ୟେ ।୫୬
ବନସ୍ତର ନିକଟେ ଯେ ପର୍ବତର ତଳେ
ବହଇ ଜାହ୍ନବୀ ଗଙ୍ଗା ନିର୍ମଳ ନଦୀକୂଳେ ।୫୭
ଅର୍ଜୁନ ବିଚାରିଲେ ଯେହା ସଞ୍ଚିଲେ ବାସୁଦେବ
ଆନକୁ ପ୍ରାପତ୍ ହୋଇବ କାହୁଂ ଯେହୁ ଠାବ ।୫୮
ଯୁଧିଷ୍ଠିର ପାଶେ ପାର୍ଥ ହୋଇଲା ପ୍ରବେଶ
କୁରାଳଶାଳ ତୁଚ୍ଛା ହୋଇଅଛି ରହିବା ଦେବ ଆସ ।୫୯
ଭୀମସେନ ବୋଇଲା ବାବୁ ଭଲ ଠାବ କଲୁ
ଯେତେ ଠାବ ଗୋଟିଯେ ଖୋଜିଣ ଅଇଲୁ ।୬୦
ସ୍ୱାମୀ ଖାଲ ଖୁଞ୍ଚ କଣା ଖପରା ଖାର ଭୂମି
ସେଠାରେ କେମନ୍ତେ ରହିବେ ଯୁଧିଷ୍ଠିର ଦେବସ୍ୱାମୀ ।୬୧
ଧର୍ମ ନନ୍ଦନ ବୋଲନ୍ତି ରହ ରହ ବ୍ରିକୋଦର
ସେ ଠାବ ଗୋଟି ବାବୁ ବଡ଼ାଇ ପବିତ୍ର ସ୍ଥାନ ସାର ।୬୨
ଗାଈ ଗୋରୁ ଗୁହାଳ ଆବର କୁରାଳଶାଳ
ପୁଣ୍ୟ ଦେହା ଭୂମିଯେ ପାତେକ ଦହଇ ସର୍ବକାଳ ।୬୩
ଦିବସେକ ଯେବେ ବାବୁ ସେ ସ୍ଥାନରେ ରହି
ଛଡ଼ ମାସ ପରିଯନ୍ତେ ଯେ ପାତେକ ହୋଯେ ଦହି ।୬୪
ନଗ୍ର ବାହାରୁ ସେ ଚଳିଲେ ରାତ୍ରକାଳେ
ସୁବେଳେ ଯାଇ ପ୍ରବେଶ ହୋଇଲେ କୁରାଳଶାଳେ ।୬୫
ସୁମରନ୍ତି ଭଗବାନ ଦେବ ଦାମୋଦର
ଯେ କଷ୍ଟ ଅବସ୍ଥାରୁ କରିବା ଦେବ ପାର ।୬୬
ହେ ମହେଶ୍ୱର ଦେବ ତବ ଚରଣେ ନମାମି
ତବ ପଦ୍ମପାଦେ ଶତ ସହସ୍ର ଦଣ୍ଡ ପରିଣାମି ।୬୭
କାଳ ବ୍ରତମାନେ ଯେ ବ୍ରତନ୍ତି ପାଣ୍ଡବେ
ଯେଣୁ କରି ପ୍ରିୟ, ହରି ଧରନ୍ତି ହୃଦ ଭାବେ ।୬୮
ନୀଳେନ୍ଦିବଳଉତ୍ପଳ ଯାହାର ବଦନ ମଣ୍ଡଳ
ଶ୍ରୀବତ୍ସ ବିରାଜିତ ହୃଦେ ଶଙ୍ଖ ଶାର୍ଦ୍ଧୋଳ ।୬୯
ଭାବାଙ୍ଗ ପୁରୁଷ ଦେବ ଶୟନ ଜନ ଚିନ୍ତା
ତେଣୁ କରି ଜନାର୍ଦ୍ଦନ ନାମ ବହନ୍ତି ସୃଷ୍ଟି କରତା ।୭୦
ଯାବତ ଚନ୍ଦ୍ର ଦିବାକର ଥିବ
ଶ୍ରୀଜଗନ୍ନାଥ ନାମ ଗୋଟି ହୃଦୟରେ କର ଠାବ ।୭୧
ସଂସାର ମୋହଜଳେ ପଡ଼ି ଯେଥେଂ ଭାସି
ଧର୍ମଇଂ ସେ ତୀର ନାବ ହୋଇଲାକ ଆସି ।୭୨
ସେ ନାବେ ବସି ନରେ ତରନ୍ତି ଅଗାଦ ଜଳ
ନାରାୟଣ ନାମ ଗୋଟି ଅଟଇ ବେନି କୂଳ ।୭୩
ଅନୁଗ୍ରହ ନାଥ ସଦୟେ ଜଗବନ୍ଧୁ
ସଂସାର ଅଗାଦ ଜଳେ ନାରାୟଣ ପରମବନ୍ଧୁ ।୭୪
ଜଳେଣ ଦେବ ମେଦାସୁର ଶରୀର କର୍ଦ୍ଦନ କରି
ତାହାକୁ ମେଦି, ମେଦିନୀ ନାମ ଦିଲେ ବସୁନ୍ଧରୀ ।୭୫
ଶରଣ ରକ୍ଷଣ ନାଥ କଇକ୍ଷା ଜଗଜ୍ଜେଠି
ଜନ୍ମେ ଜନ୍ମେ ଭାବଇ ମୁଂ ଶ୍ରୀକୃଷ୍ଣ ନାମ ଗୋଟି ।୭୬
ତୁଳୁସାର ବଲ୍ଲଭ କାଳିନ୍ଦୀ ପ୍ରାଣନାଥ
ଶୂଦ୍ରମୁନି ସାରୋଳା ଦାସ ଶତ ସହସ୍ର ଦଣ୍ଡ ପ୍ରଳମ୍ଭିତ ।୭୭

■■

## ଦ୍ରୌପଦୀ ସ୍ୱୟମ୍ବର

ବଦୟନ୍ତି ଅଗସ୍ତି ଶୁଣ କୁମ୍ଭ ରଷିର ବାଳ
ନାରାୟଣ ସୁମରନ୍ତେ ସକଳ କାର୍ଯ୍ୟ ସୁଫଳ ।୧

ନିର୍ଜନ ସ୍ଥାନ ଭୂମି ପବିତ୍ର କୁରାଳଶାଳ
ରହିଲେ ପାଣ୍ଡବେ ଯେ ମଙ୍ଗଳ ଶୁଭବେଳ ।୨
କୋଇନ୍ତାଯେ ବୋଇଲେ କୁରାଳଶାଳ ଦେଖି
ମୋହୋର ବିଚାରକୁ ଯେ ସ୍ଥାନ ବଡ଼ ସୁଖୀ ।୩
କାଠ ଲୋଡ଼ି ନ ଯିବା ଅଗ୍ନି ଲୋଡ଼ି ନ ଯିବା
ନବତନ ହାଣ୍ଡି ଯେ ଲୋଡ଼ିଲେ ପାଇବା ।୪
ଯେ ମାଘ ମାସ ଆମ୍ଭର ଶୀତ ବସ୍ତ୍ର ନାହିଁ
ପାଉଁଶ ଗୁଡ଼ାଯେ ପାଡ଼ି ଶୋଇବା ଉଷୁମ ହୋଇ ।୫
ପଞ୍ଚୁ କଟକର ମଧ୍ୟେ ସେ ଯେ ନରନାଥ
ଆବର ବିଶେଷେ ଜଗନ୍ନାଥଙ୍କ ପଞ୍ଚଭୂତ ।୬
ଧର୍ମ ପବନ ଇନ୍ଦ୍ର ଅଶ୍ୱିନୀକୁମାରୁଁ ଜାତ
କର୍ମର ଅବଳେ ହୋଇ ଅଛନ୍ତି ଯେମନ୍ତ ।୭
ରତ୍ନଖଟେ ହଂସୁଳୀ ନେତ ତୁଳି ପାଟ ମୁଚୁଳା ସୁପାତି
ଛାର ପାଉଁଶ ପାଇ ସେ ଯେ ଭଜିଲେ ତ୍ରିପୁତି ।୮
ଆହୋ ବିପଦ କାଳେ ଯେବେ ବିଚାର କରଇ ପ୍ରାଣୀ
ଦୁଖ ସୁଖ ସହଣା କ୍ଷତ୍ରୀଙ୍କ ଧର୍ମ ପୁଣି ।୯
ସେ ଆପଣେ କଷ୍ଟ ସହିଲେ ସଂସାର ତାରଣ ନିମନ୍ତେ
ତାହାଙ୍କର ଚରିତ ଶୁଣିଲେ ଛାଡ଼ଇ ଦୁର୍ଗତି ବିପତ୍ୟେ ।୧୦
ଇତି ଶ୍ରୀ ମହାଭାରତ ଆଦିପର୍ବ କଥା
ବାଞ୍ଛା ପୂରୋଇ ଯେ ମହା ପାତକୁ ହରନ୍ତା ।୧୧
ସମ୍ପତ୍ତି ବିପତ୍ତି ଯେ ହୋଅଇ ଅବଶ୍ୟ
ଶ୍ରୀ ମହାଭାରତ ଶୁଣନେ୍ ପାତେକ ହୋୟେ ଧ୍ୱଂସ ।୧୨
କୋଇନ୍ତା ବୋଇଲେ ପୁତ୍ରନ୍ତ ପାଶେ ରାଇ
ବ୍ରାହ୍ମଣ ସଭାକୁ ଯାଅ ବ୍ରାହ୍ମଣ ବେଶ ହୋଇ ।୧୩
ଦ୍ରୋପଦ ରାଜାର ଦାନ ଦେବା ବେଳେ
ତୁମ୍ଭେ ହୋ ଥାଅ ଯାଇ ବ୍ରାହ୍ମଣଙ୍କର ମେଳେ ।୧୪
ଯୁଝେଷ୍ଟି ବୋଇଲେ ମାଗୋ ଯେହିକ୍ଷଣି ଯାଇ ପାରଇ
ତୋର ପୁଅ ଭୀମା କୋପକୁ ବଡ଼ ମୁଁ ଡରଇ ।୧୫
ଅନେକ ସମ୍ପଦ ଘେନି ଆସିଅଛି ରାଜା ମାନଗୋବିନ୍ଦ
ନ ପୁଣ ତାହାର ତୁଳେ ଭୀମା କରଇ ଦ୍ୱନ୍ଦ ।୧୬
କୋଇନ୍ତାଯେ ବୋଇଲେ ବାବୁ ଭୀମାରେ ମୋହୋର ଶପତ
ଯୁଝେଷ୍ଟିଙ୍କ ଆଜ୍ଞା ତୁ ନ ଲଙ୍ଘିବୁ ଅନୁବ୍ରତ ।୧୭
ବ୍ରାହ୍ମଣ ବେଶ ଯେ ଧଇଲେ ପଞ୍ଚୁବୀରେ
ତ୍ରିକଚ୍ଛ ବସନ ଆରୋପିଲେ କଟୀରେ ।୧୮
ନବଗୁଣ ପଇତା କନ୍ଧରେ ଉତ୍ତୁରୀ ଅଛି
ଆଧାନ ମନ୍ତ୍ର ପୋଥି କାଖରେ ସବୁରି ଅଛି ।୧୯
ଦ୍ୱାଦଶ ଚିତା ଯେ ଶ୍ରୀବସ୍ତ୍ର ଲକ୍ଷଣ
କାଖେ ବେଦ କରାଣ୍ଡି ତେଜମୟେ ବ୍ରାହ୍ମଣ ।୨୦
କାନ୍ଧେଣ ଛତା ତଥି ପ୍ରୋକ୍ଷଣୀ ଯେ ଶ୍ରୁଆ
ତମ୍ଭାର ବର୍ଣ୍ଣ ଜାଣି ବିକାଶଇ ସର୍ବ କାୟା ।୨୧
ଗୋପ୍ୟାନ ଦୋହରା ଅଣ୍ଟାରେ କୁଶ ବିଡ଼ି
ଚକ୍ର ସ୍ୱାମୀ ଦେବତା ବିଜୟେ କରାଣ୍ଡି ।୨୨
କ୍ଷତ୍ରୀବୃତ୍ତି ଛାଡ଼ି ବ୍ରାହ୍ମଣ ସ୍ୱରୂପେ
ସଭାକଇ ପାଣ୍ଡବେ ଚଳନ୍ତି ଗୋପ୍ୟାନ ରୂପେ ।୨୩
ଗଡୁ ତମ୍ଭାପାତ୍ରୀ କପୋରା କରେଣ କପାମାଳୀ
କଣ୍ଠେଣ ତୁଳସୀ ଭୁଜେ ରୁଦ୍ରାକ୍ଷର ମାଳୀ ।୨୪
ଯଦ୍ୟପି ଗୋପ୍ୟାନ ରୂପେ ଲୁଚାବନ୍ତି କାୟେ
ସ୍ୱରୂପ ବିକାଶଇ ନିର୍ଧୂମ ଅଗ୍ନି ପ୍ରାୟେ ।୨୫
ଛାୟା ମଣ୍ଡୋପ ଦକ୍ଷିଣ ଆଡ଼େ ବ୍ରାହ୍ମଣଙ୍କର ସଭା
ମହା ସମ୍ଭର୍ବେ ଯେ ଆଦିତ୍ୟ ଜ୍ୟୋତି ପ୍ରଭା ।୨୬
ବ୍ରାହ୍ମଣ ସଭାୟେ ବିଜେ ପାଞ୍ଚ ବୀରେ
ବିପ୍ର ପ୍ରତକ୍ଷେ ଦିଶନ୍ତି ବ୍ରହ୍ମା ରୁଦ୍ର କୋବେରେ ।୨୭
ସୁନାସୀର ନାରାୟଣ ପ୍ରାୟେ ଦିଶନ୍ତି ପଞ୍ଚୁ ବୀରେ
ବସୁଦେବ ନାମେ ତହିଁ ଯେକଇ ଦ୍ୱିଜବରେ ।୨୮
ବୈତରଣୀ ନଦୀକୂଳେ ଇଶାନ୍ୟ ନଗ୍ର ପୁରେ ।୨୯
ବଡ଼ାଇ ଧାର୍ମିକ ସେ ଅଟଇ ଅଥର୍ବ ବେଦୀ
ଧାର୍ମିକ ବିବେକ ସେ ମନ୍ତ୍ରେଣ ପ୍ରସିଦ୍ଧି ।୩୦
ଗୁଣବନ୍ତ ବ୍ରାହ୍ମଣ ସେ ପ୍ରାଣବନ୍ତ ରୂପ ଚାହିଁ
ଯେ ପାଞ୍ଚଙ୍କର ମୂରତି ବ୍ରାହ୍ମଣ କୁଳେ ନାହିଁ ।୩୧
ଆକାଶୁଁ ବିଜେ କଲେ କି ପଞ୍ଚୁ ଦିଗପାଳେ
କକ୍ଷଣ ଦେଖି ବିଜେ କଲେ ରାଜ୍ୟ ପାଞ୍ଚାଳେ ।୩୨
ମାନବ ଜନ୍ମ ପ୍ରାୟେ ନ ଦିଶଇ ଯେହାଙ୍କର ତେଜ
ଅନ୍ତେଣ ଜାଣିବା ଯେ ପାଞ୍ଚଙ୍କର ବଳ ବୀର୍ଯ୍ୟ ।୩୩
ଗୁଣବନ୍ତ ଲକ୍ଷ୍ମଣବନ୍ତ ଦେଖି ବସିତେ ଦିଲେ ଠାବ
ବ୍ରାହ୍ମଣଙ୍କ ସଭାରେ ବସିଲେ ପଞ୍ଚୁ ଯେ ପାଣ୍ଡବ ।୩୪
ଭୀମସେନ ବିଚାରଇ ଯେ ରାଜାଗଣ ମାନେ
ମହା ସମ୍ଭର୍ବେ ବସି ଅଛନ୍ତି ଯେ କନକ ଆସନେ ।୩୫
କିଞ୍ଚିତ କରି ଆଜ୍ଞା ଦେବେକି ଯୁଝେଷ୍ଟି
ନିମିଷକେ ମୋଡ଼ି ପକାଇବି ଲକ୍ଷେ ରାଜାଙ୍କର ମୁଣ୍ଡ ଗୋଟି ।୩୬

ଚତୁର୍ଦ୍ଦିଗର ରାଜାମାନେ ଆସିଅଛନ୍ତି ସମ୍ପରେ
ପୂଜା କରି ଦ୍ରୋପଦ ବସାଇଲେ ସଭାରେ ।୩୭
ଗଙ୍ଗାରେ ସ୍ନାହାନ କରି ମୁଣୋହି କରନ୍ତି ସର୍ବ ରାୟେ
ଆଞ୍ଚୋବନ ସାରି ସଭାୟେ ବିଜେ କୟେ ।୩୮
କର୍ପୂର ତାମ୍ବୋଳ ଦେଇଣ ସବୁନ୍ତି
ଜଣେ ଜଣେ ସମାର୍ଜ୍ଜଇ ସଦାନନ୍ଦ ମନ୍ତ୍ରୀ ।୩୯
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଦିଗ ଚାରି
ଯେ ଯାହାର ଆସନେ ରାଜାୟେ ବସନ୍ତି ଆବୋରି ।୪୦
ଅନେକ ଉଛବ ଦ୍ରୋପଦର ଭୁବନେ
ରାଜାମାନେ ପରବେଶ ହୋଇଲେ ପଞ୍ଚଦଶ ଦିନେ ।୪୧
ଶିରେ ମଣି ମୁକୁଟ ହୃଦରେ ରତ୍ନମାଳା
କର୍ଣ୍ଣେ କର୍ଣ୍ଣାଞ୍ଚଳ ସୀମନ୍ତୁନୀ ଜଗଦଳା ।୪୩
ଭୁଜେଣ ବାହୁଟି ଚରଣେ ନୂପୁର
ହାର କୁଣ୍ଡଳ ମଣିମୟେ ଦିବ୍ୟ ସାର ।୪୪
ଶରୀରେ ମୃଗଲାଭ ଚନ୍ଦୁସମ ଲେପନ
ଶିରରେ ଆଭରଣ ସୁସଞ୍ଚ ପୁଷ୍ପମାଳ ମାନ ।୪୫
ଯେକ ରାଜାକେ ବରଣ ଶତେ ଶତେ ଖଦି
ଲକ୍ଷେ ରାଜାଙ୍କୁ ଦ୍ରୋପଦ ଯେହେନ୍ନେକ ସମ୍ପାଦି ।୪୬
ସମସ୍ତ ରାଜାନ୍ତ ବରଣ କରଇ କୁମର
ଅର୍ଘ୍ୟ ଘେନି ଦ୍ରୋପଦ ମିଳିଲା ସଭାର ।୪୭
ଅର୍ଘ୍ୟ ଆଣି ଥୋଇଲା ସଭାର ମଧ୍ୟ ସ୍ଥାନେ
ଶତ ସହସ୍ର ଦଣ୍ଡ ପ୍ରଣପତ୍ୟ ବିଧାନେ ।୪୮
ଜରାସନ୍ଧ ବୋଇଲା ଉଠ ହୋ ଦ୍ରୋପଦ
କେବଣ ତୋହୋର କାମାର୍ଥ କହନି ସମ୍ପାଦ ।୪୯
ଦ୍ରୋପଦ ବୋଇଲା ସ୍ୱାମୀ ସାବଧାନେ ଶୁଣିମା
ଅଗ୍ନିରୁ ଜାତ ମୋହୋର ଦୋହିତା ଦ୍ରୋପତୀ ଶୁଦ୍ଧ ବାମା ।୫୦
କୋଟିୟେ ଋଷି ଘେନି ହୋମ କୟେ ମହାତ୍ମା ବେଦବ୍ୟାସ
ମହା ଅନଳୁଁ ତାହାର ଶରୀର ପ୍ରକାଶ ।୫୧
ମୋହୋର ମନ କାମନା କଲି ଯାହାର ଅର୍ଥେ
ଦୈବର ବିପାକେ ସେ ନାଶ ଗଲେ ଅନମିତ୍ତେ ।୫୨
ତାହାର ତୁଲ୍ୟ ବର ନ ପାଇଲି ଯେ ମଧ୍ୟ ଭୁବନେ
ତେଣୁ କରି ସୟମ୍ବର ରଞ୍ଚିଲି ବିଦ୍ୟମାନେ ।୫୩
ମୋହୋର ପୂର୍ବ ଭାଗ୍ୟେଂ ଦୁହିତା ଅନୁଯାୟୀ
ଯେ ଲକ୍ଷେ ନୃପତିଙ୍କି କେତେ ପୁଣ୍ୟେ ପାଇ ।୫୪

ସମସ୍ତେ ବରଣ ହୋଇଲ ତୁମ୍ଭେ ଚାରିଭଣା ଲକ୍ଷେ ଯେ ନୃପତି
କାହାକଇଁ ଆସ୍ତି କରିବି କାହାକଇଁ କରିବି ନାସ୍ତି ।୫୫
ମହାଲାଖ ପାଡ଼ିଲି ମୋହୋର ବ୍ରତର ନିମନ୍ତେ
ଇଚ୍ଛାୟେ ବରିବ କନ୍ୟା ମୋହୋର ନୋହଇ ଯୁଗତେ ।୫୬
ଯେ ମହାଲାଖ ମୋହୋର ଯେହୁ ବିନ୍ଧିବ ଗୋସାଇଁ
ଲାଖର ଚରିତ କହଇ ଶୁଣିମା ସାବଧାନ ହୋଇ ।୫୭
ରାଧାଚକ୍ର ବୁଲଇ ଯେ ସହସ୍ରେକ ଧାର
କନକର ମୀନ ଅଛି ତହିଁର ଉପର ।୫୮
କୁଲାଳ ଚକ୍ର ପ୍ରାୟେ ସେ ବୁଲଇ ଅନ୍ତରୀକ୍ଷେ
ତଳେ ଧନୁ ଯେକ ଅଛଇ ବଳ ଯେକ ଲକ୍ଷେ ।୫୯
ରାଧାଚକ୍ର ବୁଲୁଅଛି ସାତତାଳ ଉଚ୍ଚେ
ତାଳେକ ଉପରେ କନେକ ପଟାୟେ କଣ୍ଟିଲା ଅଛି ସଞ୍ଚେ ।୬୦
ଲକ୍ଷେ ବଳ ଧନୁ ଧରି ସେ ପଟାର ଉପରେଣ ଉଠି
ତହିଁର ତଳେ ଥୋଇଲା ଅଛି ତୀର୍ଥଜଳ ଘଟୀ ଗୋଟି ।୬୧
ତଳକୁ ହେବ ଦୃଷ୍ଟି ଉପରକୁ ହୋଇବ ମୁଷ୍ଟି
ବିନ୍ଧିବ ନାରାଜ ଚକ୍ର ଭେଦି ମୀନ ବାମ ଚକ୍ଷୁ ଯିବ ଫୁଟି ।୬୨
ଯେହେନ୍ନେକ ସରୂପେ ଯେଉଣ କ୍ଷତ୍ରୀ ଲାଖ ବିନ୍ଧିବ
ମୋହୋର ଦୁହିତା ଦ୍ରୋପତୀକି ସେ ପ୍ରଦାନ୍ ହୋଇବ ।୬୩
ଯେ ଲାଖ ବିନ୍ଧିବ ସେ ଲଭିବ କୁମାରୀ
ତହିଁକି କେହି ତୁମ୍ଭେ ନୋହିବ ହିଂସାକାରୀ ।୬୪
ଅଛ ତୁମ୍ଭେ ନୃପତିଗଣ ମହିମା ମହାବଳ
କନ୍ୟା ନିଅନ୍ତେ ତାହାକୁ ନ ପୁଣ କର ଗୋଳ ।୬୫
ଯେଥକୁ ସ୍ୱାମୀ ତୁମ୍ଭେ କହିବା ଦୃଢ଼ ବାଣୀ
ତେବେ ସେ ସଭାକୁ ମୋହୋର ଦୋହିତା ପାରଇ ଆଣି ।୬୬
ସମସ୍ତେ ରାଜାୟେ ବୋଇଲେ ଯେହି ସେ ସତ୍ୟ ସତ୍ୟ
ଯାହାର ପୁଣ୍ୟ କର୍ମ ତାହାକୁ କନ୍ୟା ପରାପତ ।୬୭
ତାହାକୁ ନ ସହି ଯେ କରିତ ଲୋଡ଼ଇ ଦ୍ୱନ୍ଦ
ସମସ୍ତ ନୃପତି ତାହାକୁ କରିବା ଶିରଚ୍ଛେଦ ।୬୮
ସୟମ୍ବର ସ୍ଥାନ ବରଣ ଲାଖ କଥା ନିବର୍ତ୍ତି
ନିଜ ଭୁବନେ ପ୍ରବେଶ ପଞ୍ଚାଳ ଅଧିପତି ।୬୯
ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମନ ବେନି ପୁତ୍ରନ୍ତ ରାଇ
ଦ୍ରୋପତୀକି ଆଣ ବାବୁ କନ୍ୟା ବେଶ କରାଇ ।୭୦
କେଶିନୀ ନାମେ ଯେ ଅଟଇ ମୁଦୁସୁଲୀ
ସର୍ବାଳଙ୍କାର କରାଇ ଲକ୍ଷେକ ପୋଇଲି ।୭୧

କନ୍ୟାଙ୍କୁ ସ୍ନାହାନ କରାନ୍ତି ସର୍ବେ ମିଳି
ନାନା ଗନ୍ଧେଣ ସେ କବେରୀଭାର ପଖାଳି ।୭୨
କୁଙ୍କୁମ କସ୍ତୁରୀ ଯେ ଲେପନ୍ତି ଶରୀରେ
ମୃଗଲାଭ କସ୍ତୁରୀ ଲେପିଲେ ତଥି ଉପରେ ।୭୩
ଆଳଟ ଢାଳିଣ ସୁଖାବନ୍ତି କେଶ
ଅଙ୍ଗେ ପରିଧାପନ କରନ୍ତି ନବତନ ଝୀନବାସ ।୭୪
ଜାଇ ଯୁଇ ମଲ୍ଲୀ ମାଳତୀ ନାଗେଶ୍ୱର ପାଖୁଡ଼ା
ସୁଗନ୍ଧ ପୁଷ୍ପ ଦେଇ ସାଙ୍ଗୋଇଲେ କବେରୀ ଭାରା ।୭୫
ସୁପଞ୍ଚ ଖୋପା ପରିମଳ ସୁବାସେ
ଲୁବ୍ଧେ ମଧୁକରେ କୁରୁଳନ୍ତି ପାଶେ ।୭୬
ମୁକୁତା ଜାଲି ଉପରେ ସୀମନ୍ତିନୀ ମଣି
ଲଲାଟ ପାଟିରେ ହୀରା ଅଷ୍ଟରତ୍ନେ ଖଞ୍ଜଣି ।୭୭
କର୍ଣ୍ଣେଣ ତଡ଼କୀ ନାଶାରେ ରତ୍ନଫୁଲ
ହୃଦେଣ ଝଟକନ୍ତି ରତ୍ନହାର ଅମୂଲ୍ୟ ।୭୮
ଭୁଜେଣ କଙ୍କଣ ଶୋଭିତ ରତ୍ନଚୂଡ଼ି
ଅଷ୍ଟରତ୍ନେ ଖଞ୍ଜି ଅଙ୍ଗୁଷ୍ଠିରେ ମୁଦି ଜଡ଼ି ।୭୯
ପାଦେଣ ନୂପୁର ଝଲକନ୍ତି ହୀରା
ନ ସହଇ ସୁନ୍ଦରୀ ବହୁତ ରତ୍ନ ଭାରା ।୮୦
ମିଳିଣ ଗଣିକାଯେ କରନ୍ତି ଅଲେଖ
ସେ ବେଶ ବେଶନମାନ ସୁନ୍ଦରୀ ବୁଝଇ ବିମୁଖ ।୮୧
ଉପରେ ପରିଧାପନ ଇନ୍ଦ୍ରଗୋବିନ୍ଦ ଦାସୀନେତ ଗୋଟି
ଅନଳ ଜ୍ୟୋତି କି ସେ ବିକାଶଇ ଦେହ ଫୁଟି ।୮୨
ତୁଳେଣ ଅଛନ୍ତି ସେ ଲକ୍ଷେକ ପରିବାରୀ
ତାହାଙ୍କର ବେଶମାନ କହିତ କି ପାରି ।୮୩
ସମ୍ପୂର୍ଣ୍ଣ ଯୁବତୀ ସେ ସ୍ତିରୀରତ୍ନ କାନ୍ତି
ଅନେକ କନ୍ୟା ଉପରେ ସେ ଅଟନ୍ତି ରୂପବନ୍ତୀ ।୮୪
ଅମରବିଳାସୁଣୀମାନେ ଉତପତ୍ତି ହୋଇଅଛନ୍ତି ଆସି
ଆନଙ୍କୁ ନାୟେକା ସେ କୃଷ୍ଣାଙ୍କଇଁ ଅଟନ୍ତି ଦାସୀ ।୮୫
ଅନେକ ବେଶ ବେଶନ ଯେ ହେଇଣ ଯୁବତୀ
ସ୍ତିରୀରତ୍ନ ନାୟେକା ସେ ଜଗତ ମୋହନ୍ତି ।୮୬
ସହସ୍ରେକ ଚାମର ଢାଳନ୍ତି ଚଉକତି
ସହସ୍ରେକ ଚାମର ଯେ ସୁବର୍ଣ୍ଣ ଝଟକନ୍ତି ।୮୭
ଉଭାରିଲେ ସୁନ୍ଦରୀ ସହସ୍ରେକ ଉଲ୍ଲୋଳ ନେତଛତ୍ରୀ
ଛାମୁରେଣ ନୃତ୍ୟ କରନ୍ତି ସହସ୍ରେକ ଯୁବତୀ ।୮୮
ମଧୁର ରସ ବାଦ୍ୟ ବାଜଇ ଶୁଦ୍ଧ ବାଣୀ
କୋକିଳ ଧ୍ୱନି ସୁସ୍ୱରେ ଗାବନ୍ତି ଗାୟେଣୀ ।୮୯
ସୁବର୍ଣ୍ଣ ଯୋଗାଡ଼ ଘେନି ସହସ୍ରେ ପରିବାରୀ
ସହସ୍ରେ କନ୍ୟା ଚଳନ୍ତି ଆଗେ ପୁଷ୍ପ ବୃଷ୍ଟି କରି ।୯୦
କନେକ ହାନ୍ଦୋଳାଯେ ବିଜୟେ ପାଞ୍ଚାଳୀ
ଚଳନ୍ତି ଯୁବତୀଗଣେ ସମସ୍ତେ ହେଁ ଶୁଦ୍ଧଶାଳୀ ।୯୧
ନାନା ବାଦ୍ୟରେଣ ଯେ ପୂରିତ ଗହଳ
ଶରଦ ଉଚ୍ଛବେ ଯେହ୍ନେ ମାତଙ୍ଗୀ ବୃନ୍ଦମେଳ ।୯୨
ତେସନେକ ଶୋଭାବନ ସରୂପ ପ୍ରକାଶି
ଦେଖିଣ ରାଜାଗଣମାନେ ସମସ୍ତେ ପ୍ରଶଂସି ।୯୩
ଦ୍ରୋପତୀର ବଦନ କେହି ନ ପାରନ୍ତି ଚାହିଁ
ଧାତ୍ରୀଗଣମାନଙ୍କ ମୁଖ ଚାହିଁ ସମସ୍ତେ ହୋଇଲେକ ମୋହି ।୯୪
ଯେଣେ ବେଢ଼ିଛନ୍ତି ଲକ୍ଷେକ ଯୁବତୀ
ଲକ୍ଷେ ରାଜାଙ୍କୁ ଯେ ଯୋଗାନ୍ତି ପ୍ରିୟବତୀ ।୯୫
ସଭାର ମଧରେ ନେଇ ଉଭାରିଲେ ବାଳୀ
ସମସ୍ତ ଗଣିକାମାନେ ମଙ୍ଗଳ ଧ୍ୱନି ତୋଳି ।୯୬
ମେଢ଼ର ମଧ୍ୟେ ବିଜେ କରାଇଲେ ଯୁବତୀ
ପୂର୍ଣ୍ଣମୀ ଚନ୍ଦ୍ର ଜାଣି ବିରାଜଇ ବଦନ ଜ୍ୟୋତି ।୯୭
ସଭାରେ ଉଭା ହୋଇ ଧୃଷ୍ଟ ଯେ ଦୃମନ
ରାଜାଗଣମାନଙ୍କୁ ପଚାରନ୍ତି ବଚନ ।୯୮
ଲକ୍ଷେ ରାଜାୟେ ତୁମ୍ଭେ ଯେ ବସିଲ ଆସ୍ତାନେ
ସବୁନ୍ତି ବରିଲି ମୁଁ ବରବେଶ ବିଧାନେ ।୯୯
ଯେ ମୋହୋର ଭଗ୍ନୀ ଯେ ଯେ ଆଣିଲି ଦ୍ରୋପତୀ
ବିଚାରି ନିରୋପିବା ଯେହାର ମୂରତି ।୧୦୦
ଯେହୁ ପାର ଲାଖ ବିନ୍ଧିବା ଗୋସାଇଁ
ସୟମ୍ବର କଲି ମୁଁ ପାଞ୍ଚାଳୀର ପାଇଁ ।୧୦୧
ସମସ୍ତ ରାଜାମାନେ ବସି ଅଛନ୍ତି ମଉନବ୍ରତେ
ସମସ୍ୟା ଦିଲା ସେ ମଗଧେଶ୍ୱର ନରନାଥେ ।୧୦୨
ଜାରାସନ୍ଧ ବୋଇଲା ହୋଇ ଶୁଣ ଧୃଷ୍ଟଦୃମନ
କେହି ନ କହନ୍ତି ତୋତେ ତଥ୍ୟ କଥା ମାନ ।୧୦୩
ତୁ ଯେ ହାନ୍ଦୋଳାରେ ବସାଇ ଆଣି ଦ୍ରୋପତୀ
କେହି ନ ଦେଖିଲେ ତାହାର ଚିହ୍ନ ବର୍ଣ୍ଣ ମୂରତୀ ।୧୦୪
ମେଢ଼ରୁ ଓହ୍ଲାଇ ଆଣ ଦ୍ରୋପତୀ ଯେ ବାଳୀ
ଦେଖନ୍ତୁ ରାଜାଗଣମାନେ ସରୂପ ହିଆଳୀ ।୧୦୫

ଜାରାସନ୍ଧ ବଚନେ ଦ୍ରୌପଦ ନୃପତି
ମେଢ଼ରୁ ଓହ୍ଲାଇ ଆଣଇ ତତକ୍ଷଣାନ୍ତି ।୧୦୬
କେଶିନୀ ଜୟସେନୀ ଧରିଛନ୍ତି ଦ୍ରୋପତୀର ହସ୍ତ
ଦେଖନ୍ତି ଚିହ୍ନ ବର୍ଣ୍ଣ ସରୂପ ସଂଜାତ ।୧୦୭
ବଦନ ଦେଖି ରାଜାୟେ ହୋଇଲେ ମତିଭ୍ରମ
ଭେଦିଲା କାମଶର ମଦନେ ଅସାଷ୍ଟମ ।୧୦୮
ନିର୍ଝର ଦେଶର ରାଜା ଯେ ଗଣପତି
ଦେଖିଣ ବିସରିଲା ସେ ସୁନ୍ଦରୀ ର ମୂର୍ତ୍ତି ।୧୦୯
ସାଧୁ ଯେ ସୁନ୍ଦରୀ ରାଜାର ଦୁଲାଳୀ
ବଂଶର ସାଧୁ ଯେ ଯେହାକୁ ପ୍ରତିପାଳି ।୧୧୦
ଆକଞ୍ଚିତ କେଶ ଗହଳ ଚିକୁର
କୁସୁମ ବିହୁନେ ବିହଡ଼ନ୍ତି ମଧୁ କର ।୧୧୧
ରସାଣ ପତ୍ର ପ୍ରାୟେ ଦିଶଇ ଲଲାଟ ପାଟି
ବଧୂକ ଅଧର ଡାଳିମ୍ବ ବୀଜ ଦଶନ ବିମ୍ବଓଷ୍ଠୀ ।୧୧୨
ଯେକଖଣ୍ଡ କପୋଳ ଖଞ୍ଜିତ ଭୂଲତା
ରୋମାବଳୀ ଅମୂଲ୍ୟ କି ଦିଶଇ ବନିତା ।୧୧୩
ଆରକତ ଶୋଭାବନ ଦିଶେ ବେନିଡ଼ୋଳ
ଅବଲୋକନେ ଚାହିଁଲେ ଢଳିବେ ସକଳ ।୧୧୪
ଚାହାନ୍ତେ ବକ୍ର ନୟନେ ହୃଦୟ ଯିବ ଫୁଟି
ସଂସାର ରକ୍ଷା ନିମନ୍ତେ ତଳକୁ କଲା ଦୃଷ୍ଟି ।୧୧୫
କିଞ୍ଚିତ କରି ସେ ଯେବେ ଚାହିଁବ ସଭାକୁ
ଅନେକ ପୁରୁଷ ହତ୍ୟା ଦୋଷ ଲାଗିବ ଯେହାକୁ ।୧୧୬
ସ୍ତିରୀଧର୍ମ ଯେହୁ ଅଟଇ ସୁଗ୍ୟାନୀ
ପାପକୁ ଭୟେ କରି ସେ ହୋଇଲା ମାନିନୀ ।୧୧୭
ଭୋ ଧର୍ମ ଦେବତା ଯେ ସଭାକୁ ନ ଚାହୁଁ
ଭଲେ ଅଇଲୁ ଆମ୍ଭେ ଅପ୍ରମାଦେ ଯେଥୁଁ ଯାଉଁ ।୧୧୮
ଯେସନେକ ମନେ ବିଚାରନ୍ତି ସର୍ବରାୟେ
ଅଦାରା ଅଯୋନି ଅଗ୍ନିରୁ ଜାତ ହୋୟେ ।୧୧୯
ଯଦ୍ୟପି ପାଷାଣ ହୋଇବ ବକ୍ର ଗୋଟି
ଅପାଙ୍ଗ ନୟନେ ଚାହିଁଲେ ସେହି ଯିବ ଫୁଟି ।୧୨୦
ଯେ ସେ ଦେବ କାର୍ଯ୍ୟେ ଜଗତ ମୋହିନୀ
ଋଷି ବିପ୍ର ତପୋଧନ ତପ ଯେ ଭଞ୍ଜନୀ ।୧୨୧
ନାସାକୁ ପଟାନ୍ତର ନୋହଇ ତିଳଫୁଲ
ଦିନକର ବିଳୟେ ଝଡ଼ି ପଡ଼ଇ ଭୂମିତଳ ।୧୨୨
ଅତୁଟ ଶୋଭାବନ କନକ ପତ୍ର ଜାଣି
ସୁଶୀତଳ ପବନ ମଳୟାନିଳମଣି ।୧୨୩
ଯେହାର ନାସାରୁ ବାହାର ଯେବଣ ପବନ
ନିମ୍ବ ବନିକାରେ ଲାଗିଲେ ହୋଇବ ଚନ୍ଦନ ।୧୨୪
ତାମ୍ବୁଳ ବିହୁନେ ଯେ ଅଧରେ ରଙ୍ଗ ଫୁଟି
ବାଳ ଆଦିତ୍ୟଙ୍କର ତେଜ ବିମ୍ବକୁ ନ ଘଟି ।୧୨୫
ବିମ୍ବ ପଟାନ୍ତର ଅଧର, ବୃଦ୍ଧ କାଳେ
ସେହି ସେ ତୁଲ୍ୟ ନୋହିବେ ଝଡ଼ିବ ଅବଶ୍ୟ ତଳେ ।୧୨୬
ଯେସନ ଘଟଣ ଶୁଦ୍ଧ ହିଙ୍ଗୁଳର ପାଟି
ତେସନେକ ଶୋଭାବନ ତାହାର ଅଧର ଗୋଟି ।୧୨୭
ବଞ୍ଜୁଳ ନ ଗଛଇ ତାହାର ଦନ୍ତପନ୍ତି
ପକ୍ୱ ଡାଳିମ୍ବ ସେ ରୂପ ବିକାଶନ୍ତି ।୧୨୮
ସୁଲଳିତ ସୁସଞ୍ଚ ଅଧର ପାଟି ଗୋଟି
ବତିଶ କଳାରେ କି ଚନ୍ଦ୍ରମା ତେଜ ଘୋଟି ।୧୨୯
ଗ୍ୟାନବନ୍ତ ସୁନ୍ଦରୀ ସେ ବିକାଶଇ ବାଣୀ
ମଉପିକ ଚୂତବନ ଉପେକ୍ଷିବେ ଯେହାର ବାକ୍ୟ ଶୁଣି ।୧୩୦
ଯେବଣ ପୁରୁଷକୁ ଯେ ବିକାଶିବ ବାକ୍ୟ
ଶରୀର କେ ଧରିବ ହୋଇ ଅଶକ୍ୟ ।୧୩୧
ଶରଦ ପୂର୍ଣ୍ଣମୀ ଚନ୍ଦ୍ର ଯେ ବଦନ ଭଲା
ରାହୁର ତେଜ ଲାଗି ସେ କଳଙ୍କ ବହିଲା ।୧୩୨
ନିକଳଙ୍କ ବଦନ ଯେହାର ଅଟଇ ନିରିଦୋଷୀ
ତେଣୁ କରି ପଟାନ୍ତର ନ ଘଟଇ ଶଶୀ ।୧୩୩
ନ ଜାଣି ପଟାନ୍ତର କରିବା କେହ୍ନେ ଜହ୍ନ
ପ୍ରଜାପତିର ଶାପେ ତନୁ ହୋଇଲା କ୍ଷୀଣ ।୧୩୪
ସୁବର୍ଣ୍ଣ ଘଟ ଜାଣି ଦିଶଇ ଗଳକନ୍ଧ
କ୍ଷୁଦ୍ର କୁନ୍ଦରେ ଦେଇ କି ଘଟିଲା ପ୍ରବନ୍ଧ ।୧୩୫
ବେନି ଶ୍ରବଣେ ଢଳନ୍ତି ବେନିବାହୁ ଶିଖେ
କୃଷ୍ଣମେଘ ଉଦେ ହୋଇ ଯେହ୍ନେ ଉଡ଼ନ୍ତି ବଳାକେ ।୧୩୬
ତେସନେକ ପଟାନ୍ତର ଅଇରି ଦର୍ପଭଞ୍ଜା
ବିସ୍ତୀର୍ଣ୍ଣ ବଛଥଳ ତାହାର କୃପଣଦାନ ମଝା ।୧୩୭
ଅନାଦି ଅପର୍ଣ୍ଣା ଯେ ସିଦ୍ଧ ଯେ ସମ୍ଭବି
ଶରୀର ବର୍ଣ୍ଣିବାକୁ କିସ କ୍ଷମ ଯେ ହୋଇବି ।୧୩୮
ଅନଳୁଁ ଉତପତ୍ତି ଯେ ତେଜ ବିସ୍ତାରି
ମୁଁ କିସ ବର୍ଣ୍ଣିବି ମାନୁଷେ ଅବତରି ।୧୩୯

ପୃଥୁଳ ସୁସଞ୍ଚ ସୁନ୍ଦର ଯେ ତୋହୋର ଭୁଜ ବେନି
କୁମୁଦ ନାଳ କମଳ ଜଡ଼ିତ ହିରଣ୍ୟ ଘେନି ।୧୪୦
ସୁରଭି ପଟାନ୍ତର ବେନି କରସ୍ଥଳୀ
ଚମ୍ପେକ କଢ଼ି ଜାଣି ଦିଶଇ ଅଙ୍ଗୁଳି ।୧୪୧
ଜାତି ପାଖୁଡ଼ା ଜାଣି ଦିଶଇ ଲଖ ରେଖ
ନୋହଇ ଅତି ସୂକ୍ଷ୍ମ ନୋହଇ ଅତି ତୀକ୍ଷ ।୧୪୨
ଉଲଟ କଦଳୀ ଜାଣି ବେନି ଜାନୁସ୍ଥଳୀ
ରକତ କୁମୁଦ ଜାଣି ବେନି କରତାଳି ।୧୪୩
ପାଟ ପୋଯେଛା ଜାଣି ପାଦନଖ ରେଖ
ହରିଲା ସବୁରି ଦର୍ପ ହୋଇଲୁ ନିରେଖ ।୧୪୪
ସଭାଯେଣ ଥାଇ ବୋଲଇ କାଳଦମନ
କନ୍ୟାର ଶରୀରେ ତ ଅଳଙ୍କାର କ୍ଷୀଣ ।୧୪୫
ଦ୍ରିଯୋଧନ ବୋଇଲା ହୋଇଲୁ କି ବାଇ
ଶରୀରକୁ ଭାରା ବୋଲି ଅଳଙ୍କାର ନ ବହି ।୧୪୬
କର୍ଣ୍ଣ ବୋଇଲା କିସ କରିବ ଅଳଙ୍କାର
କଣୟରୁ ଶତେଗୁଣ ତେଜ ଯେ ଯେହାର ।୧୪୭
ଅଗ୍ନି ସାରିକ୍ଷେ ଯାହାର ତେଜ ଝଳି
କିସ ଶୋଭାବନ କରିବ କଣୟ ଛାର ଭଳି ।୧୪୮
ଯେସନେକ ଜଳରେ ଗମଇ ହଂସ ପନ୍ତି
ଚଳନ୍ତେ ସୁନ୍ଦରୀ ତେସନେକ ପାଦଗତି ।୧୪୯
ନ ଜାଣିଣ ଦ୍ରୋପଦ କନ୍ୟାକ ସୟମ୍ବର
ଯେ ସଭାରେ ନାହିଁ ଯେହାକଇଁ ପଟାନ୍ତର ବର ।୧୫୦
ପୁଣି ହିଁ ଜନମି ଯେବେ ଆସଇ କାମଦେବ
ଯେହାର ରୂପକୁ ସେହି ସେ ଶୋଭା ପାଇବ ।୧୫୧
ଯେସନେକ ବିଚାରନ୍ତି ସମସ୍ତ ଦଣ୍ଡଧାରୀ
କେଶିନୀ ମୁଦୁସୁଲୀ ଦେଖାଯେ ରାଜାନ୍ତ ନିରାଧାରି ।୧୫୨

■■

## ସ୍ୱୟଂମ୍ବର ସଭାରେ ରାଜାମାନଙ୍କର ସ୍ୱରୂପ ନିର୍ଣ୍ଣୟ

ଦ୍ରୋପତୀ ବୋଇଲେ ଶୁଣ ଗୋ କେଶିନୀ
ଯେମାନେ କେବଣ ଦେଶରୁ ଅଇଲେ ସନ୍ୟ ଘେନି ।୧
ଆମ୍ଭର ରାଜ୍ୟକୁ ଅଇଲେ କି ନିମନ୍ତେ
କେଶିନୀ ବୋଇଲା ରାଯେ ସୟମ୍ବର କଲେ ତୋତେ ।୨
ତୁ ଦେବୀ ବାଳୁତ ଯେ ନ ଜାଣୁ ଗୋ ଯେହା
ରାଜାମାନେ ମିଳିଲେ ହୋଇବ ତୋହୋର ବିହା ।୩
ମୁଦୁସୁଲୀର ବଚନେ ବୋଲଇ ଦ୍ରୋପତୀ
ଯେ ସଭାର ମଧ୍ୟେ କେ ମୋହୋର ପତି ।୪
କେଶିନୀ ବୋଇଲା ମାଗୋ ସଂଯମ୍ବର ତୋହୋର
ଯେହୁ ଲାଖ ବିନ୍ଧିବ ସେ ତୋହୋର ବର ।୫
ଦ୍ରୋପତୀ ବୋଇଲେ କେ କେବଣ ଦେଶର ଅଧିକାରୀ
ଧନବନ୍ତ ଗୁଣବନ୍ତ ବିବେକ କେ କେବଣ ଗୁଣେ ପ୍ରଚରୀ ।୬
ଯେମାନ କେଶିନୀ ମୋତେ କହନି ସଞ୍ଚପି
ଯେହାଙ୍କର ଗୁଣ ସ୍ୱରୂପ ବୁଝଇ କିନା ଅଦ୍ୟାପି ।୭
ଦ୍ରୋପତୀର ଅଗ୍ରତେ କହଇ କେଶିନୀ
ରାଜାମାନଙ୍କର ମହିମା ଶୁଣିମା ଜିଗ୍ଯସେନୀ ।୮
କୁଞ୍ଜଗଳ ଦେଶର ଗୋ ଦେଖ ଆଧିପତି
ଧୃତରାଷ୍ଟ ନନ୍ଦନ ଯେ ମାନ ଚକ୍ରବ୍ରତୀ ।୯
କାଳ ବଞ୍ଚାଯେ ଯେ ଯେ ମାନଗୋବିନ୍ଦର ପଣେ
ଗାନ୍ଧାରସେନ ବଂଶ ଯେ ନାଶିଲା ଅକାରଣେ ।୧୦
ଶଙ୍ଖନିଧି ପଦ୍ମନିଧି ଶୋଭିତ କରସ୍ଥଳେ
ପାଷାଣେ କର ଲାଗନ୍ତେ ପାଣିଦ୍ରବ୍ୟ ସର୍ବକାଳେ ।୧୧
ଅତି ମାନେ ମାନଗୋବିନ୍ଦ ରାଜା ଅଟଇ
ଚାଲନ୍ତେ ଭୂମିରେ ଅବେଷ୍ଟ ସୁବର୍ଣ୍ଣ ପଦ୍ମ ଫୁଟଇ ।୧୨
ଭୀଷ୍ମ ବୋଲି କରି ଯେବଣ ସେନାପତି
ଇଚ୍ଛାମୃତ୍ୟୁ ସେ ଗଙ୍ଗାଙ୍କର କୋଳେ ଉତପତ୍ତି ।୧୩
ଶରୀର ନ ଛାଡ଼ଇ ଯେ କାଳର ଯୁଗତେ
ଦାରା ସଂଘରଣ କଲେ ଯେ ପିତାର ନିମନ୍ତେ ।୧୪
ଭାରଦ୍ୱାଦଶଙ୍କର ନନ୍ଦନ ଯେ ଦେଖ ଗୁରୁ ଦ୍ରୋଣ
ପ୍ରଶୁରାମଙ୍କର ବିଦ୍ୟାଯେଣ ସକଳ ଜିଣି ପାରଇ ପୁଣ ।୧୫
ହସ୍ତେ ଶହସ୍ର ଯେହାଙ୍କର ଥାଇଟି ଯେତେବେଳେ
ଜିଣନ୍ତା ନାହିଁ ଯେହାଙ୍କୁ କେ ତ୍ରଇଲୋକ୍ୟ ମଣ୍ଡଳେ ।୧୬
ଯେହାଙ୍କର ନନ୍ଦନ ଯେ ଅଶସ୍ତମା ମହାରଥୀ
ତ୍ରିଜୀବୀ ଯୋଦ୍ଧାଯେ ଯେହାଙ୍କ ଜିଣନ୍ତା ନାହିଁ ପୃଥୀ ।୧୭
ଅଶସ୍ତମାଙ୍କର ମାତୁଳ ଦ୍ରୋଣଙ୍କର ଶଳେକ ଉତ୍ତମ
କୃପ ଆଚାର୍ଯ୍ୟ ଗୋ ଅଟଇ ଯେହାଙ୍କର ନାମ ।୧୮
ଦେଖ ସଖୀ ଶାକଳ୍ୟ ଦେଶର ରାଜା ଶଲ୍ୟ ମହାରଥୀ
ପାଣ୍ଡବଙ୍କର ମାତୁଳ ଯେ ଦ୍ରିଯୋଧନ ସେନାପତି ।୧୯
ସଞ୍ଚଯେ କରି ଯେବେ କରିବ ସଂଗ୍ରାମ
ଯେହାଙ୍କର ଧନୁ ଧଇଲେ ତ୍ରାସନ୍ତି ଶ୍ରୀ ପୁରୁଷଉତ୍ତମ ।୨୦

ଶକୁନି ମହାମନ୍ତ୍ରୀ ଦେଖ ଗୋ ଗାନ୍ଧାର ଦେଶର
ଯେହାର ବଂଶ ନାଶ କଲା ଭରିଣ ପଥର ଘର ।୨୧
ଦେଖ ଦେଖ ସଖୀ ଯେ ଭୂରିସର୍ବା ମହାରଥୀ
ପ୍ରତକ୍ଷେ ସୋମବଂଶୀ ଯେ ଅଟଇ ଚକ୍ରବ୍ରତୀ ।୨୨
ଦୃଶିଳାର ବଲ୍ଲଭ ଗୋ ଦେଖ ଜଦ୍ୟରଥ
ସିନ୍ଧୁଦେଶ ଠାକୁର ଯେ ସୁରଥର ସୁତ ।୨୩
ଯେହାଙ୍କର ଚରିତ ଗୋ ଶୁଣ ମହାସତୀ
ତୋତେ ବିଭା ହୋଇବାକୁ କରିଥିଲା ମତି ।୨୪
ଯେହାର ଅନ୍ତେଣ ଗୋ ଦେଖ ଦ୍ରୋପତୀ
ଯେ ସେ ଜରାସନ୍ଧ ମଗଧ ଦେଶର ନୃପତି ।୨୫
ଛୟାଣୋଇ ସହସ୍ର ରାଜା ଖଟନ୍ତି ଯେହାକୁ
ତେଇଶି କ୍ଷଉଣୀ ବଳ ଘେନି ଯେ ଅଇଲା ଯେଥକୁ ।୨୬
ଶତେ ନଳ ଆୟେତନ ନାମଗିରି ଟାଣି
ରାଜାଙ୍କର ଉରଶଲ ଯେ ଅଟେ ନୃପମଣି ।୨୭
ଚେଦି ଦେଶର ରାଜା ଗୋ ଅଟଇ ଦମଘୋଷ
ସାତ କ୍ଷଉଣୀ ବଳ ଘେନି ହେଲା ପରବେଶ ।୨୮
ଶିଶୁପାଳ କୁମର ଯେ ଅତିଅନ୍ତ ସୁନ୍ଦର
ଯେ ସେ ରୁକୁଣୀ କି ଗୋ ହୋଇଥିଲା ବର ।୨୯
ବଳାତ୍କାରେ ତାହା ଜଗନ୍ନାଥେ ନିଲେ ହରି
ନାରାୟଣର ତୁଲେ ସେ ଅହର୍ନିଶି ଦ୍ୱନ୍ଦ କରି ।୩୦
ଦ୍ରୋପତୀ ବୋଇଲେ ଯେଣେ ତହିଁ ନାହିଁ ପିରୋଜନ
ଦଣ୍ଡେ କ୍ଷଣେ ସିନା ଗୋ ଯେହାଙ୍କର ଜୀବନ ।୩୧
ଦେଖ ଦେଖ ସଖୀ ଗୋ କୁଣ୍ଡୀ ନଗ୍ର ରାୟେ
ରକ୍ମ ରକ୍ମଣ ରକବାହୁ ରକମାଳି ଯେ ଚାରି ତନୟେ ।୩୨
ଦୁହିତାର ନାମ ଯେ ଯେହାର ଅଟଇ ରକୁଣୀ
ନାରାୟଣଙ୍କ ବଲ୍ଲଭୀ ସେ ପ୍ରତ୍ୟକ୍ଷେ କମଳଣୀ ।୩୩
ମାଗୋ ବକ୍ରଗିରି ଦେଶର ରାଜା ବନମାଳୀ
ବେନି ମର୍ଭୂତ ରଥ ଘେନି ଅନୁବ୍ରତେ ଚଳି ।୩୪
ଅତି ସୁକୁମାର ଗୋ ଅଟଇ ଯେହାର କାୟେ
ଆକାଶେ ଚଳଇ ସେ ଅଙ୍ଗାର ପନ୍ନଗର ପ୍ରାୟେ ।୩୫
ମାଳବ ଦେଶ ରାଜା ଯେ ଅଟଇ କୃତବର୍ମା
ଯେହାର ହସ୍ତୀର ନାମ ଅଟଇ ଅଶସ୍ତମା ।୩୬
ନବ କ୍ଷେଉଣୀ ବଳ ଗୋ ଅଟଇ ଅନୁବ୍ରତେ
କୋବେର ସାରିକ୍ଷେ ରାଜା ଅଟନ୍ତି ଧନବନ୍ତେ ।୩୭

କାଶୀ ଦେଶର ରାଜା ଗୋ ଅଟଇ କାଶୀଶ୍ୱର
ଯେକାଦଶ କ୍ଷଉଣୀ ବଳ ଅଟଇ ଯେହାର ।୩୮
ନିର୍ଝର ଦେଶର ରାଜା ଅଟଇ ଗଣପତି
ବଡ଼ାଇ ପ୍ରତାପୀ ରାଜା ଯେ ଜଗତେ ବିଖ୍ୟାତି ।୩୯
ପାଞ୍ଚଲକ୍ଷ ରଥ ଆଠଲକ୍ଷ ହାଥୀ
ପଞ୍ଚାଶ ଲକ୍ଷ ହୟେ ତେର କ୍ଷଉଣୀ ପାଦାନ୍ତି ।୪୦
କଳିଙ୍ଗ ଦେଶର ରାଜା ଯେ ଅଟେ କଳିଙ୍ଗସେନ
ନବଲକ୍ଷ ଗୁଞ୍ଜର ତୁଲେ ସାତକ୍ଷଉଣୀ ସନ୍ୟ ।୪୧
ସଖୀ ଉଡ଼ଙ୍ଗ ଦେଶର ରାଜା ଯେ ମଧୁକେଶର
ଶ୍ରୀଖଣ୍ଡୀର ଶଶୁର ଗୋ ଅଟଇ ମହାବୀର ।୪୨
ବଶ୍ୟାନର ଦେଶର ଗୋ ଧୃତସେନ ରାୟେ
ଦଶଲକ୍ଷ ଯୋଦ୍ଧା ଘେନି ଗୋ ତୋହୋର ଆଶେ ଆୟେ ।୪୩
କନାଉଜ ଦେଶର ଗୋ ରାଜା ଜମ୍ବୁମାଳୀ
ଆଠ କ୍ଷଉଣୀ ବଳ ଘେନି ଯେ ପଞ୍ଚାଳ ଦେଶେ ମିଳି ।୪୪
ଡାହାଳ ଦେଶର ରାଜା ଗୋ ଅଟେ ଜନାର୍ଦ୍ଦନ
ଶ୍ୱେତ ଅଶ୍ୱ ପଦ୍ମେକ ତୁଲେ କଲାକ ଗବନ ।୪୫
ବଙ୍ଗବଂଶିକ ରାଜା ଗୋ ନୃପତି ବୀରବାହୁ
ସାତଲକ୍ଷ ରଥୀ ଘେନି ବିଜୟେ କଲା ସେହୁ ।୪୬
ତେଲଙ୍ଗ ଦେଶର ଗୋ ଚୋଡ଼ଙ୍ଗ ଚକ୍ରବ୍ରତୀ
ସୂର୍ଯ୍ୟବଂଶୀ ରଜା ଗୋ ପ୍ରତାପୀ ମହାଛତ୍ରୀ ।୪୭
ଖାଞ୍ଜଣ ଦେଶର ରାଜା ଗୋ ଅନୁପାମ ଚକ୍ରବ୍ରତୀ
ଗଜ ଅଶ୍ୱ ନାହିଁ ତୁଲେ ତିନି କୋଟି ରଥୀ ।୪୮
ଶତେ ନଳ ଆୟତନ ଯେହାର ମଲ୍ଲାର ନାମେ ଗିରି
ପଶ୍ଚିମ କୋଶଳେ ଯେହାକୁ ନୃପତି ନାହିଁ ସମସରି ।୪୯
ତ୍ରିହୁତି ଦେଶର ରାଜା ଅଟଇ ବୀରବାହୁ
ମହା ଭୀଷ୍ମରୂପୀ ସାଂଗ୍ରାମରେ ନିଶଙ୍କ ରାହୁ ।୫୦
ଗୁଞ୍ଜର ଦେଶର ଦାମୋଦର ସେନ ନୃପତି
ରଥ ଗଜ ଅଶ୍ୱ ତୁଲେ ଯେଗାର କ୍ଷଉଣୀ ପାଦାନ୍ତି ।୫୧
ମଘ ଦେଶର ରାଜା ଗୋ ଅଟଇ ତ୍ରିଗର୍ତ୍ତ
ପାଞ୍ଚ କ୍ଷଉଣୀ ବଳ ତାହାର ତିନିକୋଟି ରଥ ।୫୨
କୀଞ୍ଚେକ ଯେହାର ରାଜ୍ୟ ଘେନିଲାକ ବେଳେ
ହତରାଜ୍ୟ ହୋଇ ବୁଲଇ ବନସ୍ତ ମଣ୍ଡଳେ ।୫୩
ମତ୍ସ୍ୟଦେଶର ରାଜା ଅଟଇ ବିରାଟେଶ୍ୱର
ସାତ କ୍ଷଉଣୀ ବଳ ଗୋ ତୁଲେଣ ଯେହାର ।୫୪

ଦୁହାଁଳ ଦୁଇ ପଦ୍ମ ବରଡ଼ ବାରଲକ୍ଷ ଗାଈ
ଅଣ୍ଡିର ବାର ଲକ୍ଷ ବଛା ତିରିଶ ଲକ୍ଷ ମାଈ ।୫୫
ସଖୀ, ଦୁହାଁଳ ଦୁଇପଦ୍ମ ଗୋପାଳ ଦୁହନ୍ତି
ପ୍ରଥମ ଚିରେକ ଯେ ପୃଥ୍ୱୀକି ଦୁହିଁ ପକାବନ୍ତି ।୫୬
କଟକ ବେଢ଼ି ସାତଘଡ଼ି ପରିଯନ୍ତେ ବହଇ କ୍ଷୀର ନଦୀ
ତାଳେକ ଉଚ୍ଛର୍ଗେ କ୍ଷୀର ବହଇ ଧବଳମୁଖୀ ଭେଦି ।୫୭
ଯେହାର ବନସ୍ତେ ସଖୀ ଗୋ ଅଛନ୍ତି ଯେତେକ ଜୀବଜନ୍ତୁମାନେ
ସମସ୍ତ ଜୀବମାନେ ଯେ ବ୍ରତନ୍ତି କ୍ଷୀର ପାନେ ।୫୮
ପୂର୍ବ ଜନ୍ମେ ଯେବେ ପ୍ରୟାଗେ ଥାଇ ଝାସି
ତେବେ ସେ ଯେହାର ଗୋ ରାଜ୍ୟେଣ ବିଳସି ।୫୯
ଦେଖ ଦେଖ ସଖୀ ଗୋ ଶରଦେଶ୍ୱର ଚକ୍ରବ୍ରତୀ
କଞ୍ଚନ ନାମେଣ ରାଜା ଯେ ଉତ୍ତର ଦିଗେ ବିଖ୍ୟାତି ।୬୦
କିଞ୍ଚନ ମୂଳେ ଗୋ ଶତେପୁତ୍ର ଘେନି
ପୁଣ୍ୟେଣ ତୋଷିଲା ଯେ ଦୁର୍ବାସା ମହାମୁନି ।୬୧
ଶତେ ସିଂଘର ବଳ ସଖୀ ଗୋ କାଞ୍ଚକ ସେନାପତି
କଣୟ ଗିରି ଉପାଡ଼ିଲା ନବଯୋଜନ ଦୀର୍ଘପ୍ରତି ।୬୨
ଚିର ଦେଶର ରାଜା ଗୋ ବାମଦେଵ ବୀର
ରଥ ଗଜ ଅଶ୍ୱ ଯେହାର ସତର ସାଗର ।୬୩
ବୀର ଦେଶର ରାଜା ଗୋ ଅଟଇ ସୁବାହୁ
ସୁମନ୍ତେକ ମଣି ପାଇ ଧନେଣ ବଡ଼ ସାହୁ ।୬୪
ମହାରାଷ୍ଟର ରାଜା ଗୋ ନୃପତି ଦୁର୍ଜୟେ
ଦେବ ଦାନବ ମାନବେ ଗୋ ନ କରଇ ଭୟେ ।୬୫
ଭୋଟ ଦେଶର ରଜା ଗୋ କର୍ଣ୍ଣ କେଶର ବୀର
ସନ୍ୟ ନ ଆଣିଲା ରଥ ତିନିକୋଟି ସାଗର ।୬୬
ସବୁ ରଥ ଯେହାର ଦିଶଇ ରତ୍ନମୟେ
ଇଚ୍ଛା ହୋଇଲେ ତାହାକଇ ବରସି ଗୋ ମାୟେ ।୬୭
ମନ୍ଦାର ଦେଶର ରାଜା ଅଟଇ ଋଷିକେଶୀ
ବାସ୍ତୋରି ପଦ୍ମ ସନ୍ୟ ଘେନିଣ ଯେହୁ ଆସି ।୬୮
କାଉଁରୀ ଦେଶର ରାଜା ଗୋ ସଖୀ କାମପାଳ
ମନସିଜ ଜାଣି ଗୋ କ୍ଷତ୍ରିୟ ମହାମଲ୍ଲ ।୬୯
ଦଶଲକ୍ଷ ରଥ ତାର ଦଶଲକ୍ଷ ହାଥୀ
ଦଶଲକ୍ଷ ତୁରଙ୍ଗମ ଦଶଲକ୍ଷ ପାଦାନ୍ତି ।୭୦
ବଙ୍ଗାଳ ଦେଶର ଗୋ ରାଜା ସଦାଶିବ
ପାଞ୍ଚ କ୍ଷଉଣୀ ସନ୍ୟ ଘେନି ଅଇଲା ରାଜଦେବ ।୭୧

ଖେଚର ଦେଶର ରାଜା ସଖୀ ମନୋହର
ସନ୍ୟବଳ ତୁଲେ ଯେହାର ପାଞ୍ଚ ଯେ ସାଗର ।୭୨
ଗୁର୍ଜର ଦେଶର ରାଜା ମଦନ ମହାଦେବ
ଲକ୍ଷେ ଯୁବତୀ ବିଳସଇ ପ୍ରିୟଭାବ ।୭୩
କାମ୍ୟେକ ନୃପତି ଯେ କାମାକ୍ଷୀ ପ୍ରସନ୍ନେ
ଜାଣଇ ସାଧନ ବିଦ୍ୟା ଯେ ସମସ୍ତ ବିଦ୍ୟମାନେ ।୭୪

ଯେତେକ ନୃପତି ଦେଖାଇଲି ତୋର ଆଗେ
ଶତ୍ରୁ ମଇତ୍ର ସମସ୍ତେ ଛନ୍ତି ପ୍ରିୟ ଭାବେ ।୧୯୩
ଲକ୍ଷେ ରାଜାର ଗୋ ଯେତେକ ସଇନ
ସମସ୍ତେ ହୋଇଛନ୍ତି ଗୋ ନକ୍ଷତ୍ର ଗଣମାନ ।୧୯୪
ସେହି ମହାସଭାକୁ ଗୋ ତୁହି ସେ ଅଟୁ ଶଶୀ
ଉଦେ ହୋଇଲୁ ଗୋ ଭାଜିଲା ଦର୍ପ ନିଶି ।୧୯୫
ବଦନ୍ତି ଅଗସ୍ତି ଶୁଣ ହୋ ମନୁ ପୁରୁଷ
ଦ୍ରୋପଦୀଙ୍କ ଆଗେ କେଶିନୀ କହିଲା ବିଶେଷ ।୧୯୬
କହିଲେ ଦ୍ରୋପଦୀ ଶୁଣିଲି ରାଜାଙ୍କର ନାମ
ଯେବେ କହ କେଶିନୀ ରାଜ୍ୟ ମଣ୍ଡଳ ବିଧାନ ।୧୯୭
କହଇ କେଶିନୀ ଶୁଣ ଗୋ ପାଞ୍ଚାଳୀ
ବାର ରାଷ୍ଟ୍ର ଛତିଶ ମଣ୍ଡଳ କହିବି ବିରୋଳି ।୧୯୮
କଳିଙ୍ଗ ଓଡ଼ଙ୍ଗ ବଙ୍ଗ ଯେ ତେଲଙ୍ଗ ଦେଶ
ଖାଞ୍ଜଣ ତ୍ରିହୁତ ଭୋଟ ଘୋଟ କର୍ଣ୍ଣାଟ ଦେଶ ।୧୯୯
ମନ୍ଦାର କାଉଁରୀ ଡାହାଳ ବେଲାଳ ଖେଚର ଦେଶ
ଖିନିଖିନା, ମାଳବ ଗୁଜ୍ଜର ମଘ ମତ୍ସ୍ୟଦେଶ ।୨୦୦
କାଶ୍ମୀର ଦରଦ କୌଶିକ ନିର୍ଝର ଦେଶ
କୁବୁଜ ଗାନ୍ଧାର କନାଉଜ କ୍ଷେତ୍ର ବିକ୍ଷେତ୍ର ବିଶେଷ ।୨୦୧
ପାରିଜାତକୁ ଭୋପାଳ ମଲ୍ଲାର ନେପାଳ ଗାନ୍ଧାର
ବାରସ୍ୱତୀ ବୃନ୍ଦାରକ ଲାଟ ଯେ କେଦାର ।୨୦୨
ପଦ୍ମଦଳ କରଞ୍ଜ ନୀଳ ଅନିଳ ବଙ୍ଗାଳ
ଚୀର ମହାଚୀର କନ୍ଧ ଚୁହାଣ ବିଂଝମାଳ ।୨୦୩
ଗଉଡ଼ ଗୋବିନ୍ଦ ଚୁଡ଼ଙ୍ଗ କାଞ୍ଚୀକାବେରୀ କଞ୍ଚଣ
ନୈଷଧ ମେଳେଚ୍ଛ ମଞ୍ଜେଶ୍ୱର କାଶୀ ପଦ୍ମଦଳ ହିରଣ ।୨୦୪
ଶାଖାମଣ୍ଡଳ ଭାଖାମଣ୍ଡଳ ଚୋଳ ମଣ୍ଡଳ
ପାଣି ମଣ୍ଡଳ ଉଡ଼ଙ୍ଗ ମଣ୍ଡଳ ଭାସ୍କର ମଣ୍ଡଳ ।୨୦୫
ଉଦେ ମଣ୍ଡଳ ନକ୍ଷତ୍ର ମଣ୍ଡଳ ଚନ୍ଦ୍ର ମଣ୍ଡଳ

ମାହେନ୍ଦ୍ର ମଣ୍ଡଳ ସୁବେଳ ମଣ୍ଡଳ ବିଷ୍ଣୁ ମଣ୍ଡଳ ।୨୦୬
ରୁଦ୍ର ମଣ୍ଡଳ ଜାନୁ ମଣ୍ଡଳ ଭାନୁ ମଣ୍ଡଳ
ବ୍ରହ୍ମା ମଣ୍ଡଳ କରସ୍ଥଳ ମଣ୍ଡଳ ଭଦ୍ର ଯେ ମଣ୍ଡଳ ।୨୦୭
ଯମ ମଣ୍ଡଳ କୌସ୍ତୁଭ ମଣ୍ଡଳ କଣୟ ମଣ୍ଡଳ
କୋଶଳ ମଣ୍ଡଳ ପଦ୍ମ ମଣ୍ଡଳ ବାରୁଣା ମଣ୍ଡଳ ।୨୦୮
ଇନ୍ଦ୍ର ପ୍ରଶସ୍ତ ମଣ୍ଡଳ ବଜ୍ରଗିରି ମଣ୍ଡଳ ଶୋଣିତ ମଣ୍ଡଳ
ମେରୁ ମଣ୍ଡଳ ମଳୟ ମଣ୍ଡଳ ଯେ ମନ୍ଦାର ମଣ୍ଡଳ ।୨୦୯
ଅମର ମଣ୍ଡଳ କୁଞ୍ଜାଗଳ ମଣ୍ଡଳ ଧ୍ରୁବାଦି ମଣ୍ଡଳ
ମଧୁବନ ମଣ୍ଡଳ ସୁର ମଣ୍ଡଳ ଯେ ଯୋଜନ ମଣ୍ଡଳ ।୨୧୦
ଯେମନ୍ତେ କେଶିନୀ କହଇ ଛତିଶ ମଣ୍ଡଳ ନାମ ଧରି
ଶୁଣିଣ ସାନନ୍ଦ ଯେ ଦ୍ରୋପଦ କୁମାରୀ ।୨୧୧
ଅଙ୍ଗରାଷ୍ଟ୍ର ସୋମରାଷ୍ଟ୍ର ଭଇରବ ରାଷ୍ଟ୍ର
ଅଯୋଧ ରାଷ୍ଟ୍ର ସିଂଘମାଳ ରାଷ୍ଟ୍ର ଚିତ୍ରରାଷ୍ଟ୍ର ।୨୧୨
ଓଡ଼ ରାଷ୍ଟ୍ର ଅନୁପାମ ରାଷ୍ଟ୍ର ଯେ ଜୟ ରାଷ୍ଟ୍ର
ଗଙ୍ଗ ରାଷ୍ଟ୍ର ମହାରାଷ୍ଟ୍ର ଯେ ସଉରାଷ୍ଟ୍ର ।୨୧୩
ଯେ ବିଧି ବାରରାଷ୍ଟ୍ର ଯେ କେଶିନୀ କହିଲା
ଶୁଣି ମହଦେଈ ମନେ ସନ୍ତୋଷ ହୋଇଲା ।୨୧୪
ଯାଜ ନଗ୍ର ଭଇରୋବ ନଗ୍ର ଯେ ଉଜାଣି ନଗ୍ର
କାଞ୍ଚୀପୁର ବିଜୟା ନଗ୍ର କାମପୁର ନଗ୍ର ।୨୧୫
କାଞ୍ଚୀପୁରୀ ଯମୁନା ପୁରୀ ମଥୁରା ପୁର
ଜେନାବଳୀ ମାଲ୍ୟବନ୍ତ ଜୟନ୍ତା ନଗ୍ର କାମପୁର ।୨୧୬
ବାରୁଣାବନ୍ତ ନଗ୍ର ବସନ୍ତପୁର ଶିବ ନଗ୍ର
ହସ୍ତିନାପୁର ଯେକଚକ୍ରା ବିଂଝମାଳି ନଗ୍ର ।୨୧୭
ପଦ୍ମଦଳ ନଗ୍ର ବିଷ୍ଣୁ ନଗ୍ର କଞ୍ଚନପୁର ନଗ୍ର
କାଶୀପୁର ବ୍ରହ୍ମପୁର ନଗ୍ର ଜମ୍ବେ ନଗ୍ର ।୨୧୮
ଅନୁଭବ ନଗ୍ର ଖଡ଼ଗପୁର ନଗ୍ର ମାହେନ୍ଦ୍ର ନଗ୍ର
ଭୋଜକୁଣ୍ଡଳ ନଗ୍ର ଯେ ଭୀମାଉର ନଗ୍ର ।୨୧୯
ହିରଣ ନଗ୍ର କୌଶିକ ନଗ୍ର ବେଦ ନଗ୍ର
ପାଟୋଳି ନଗ୍ର ମାଳତୀ ନଗ୍ର ଗଉରୀ ନଗ୍ର ସଉଦ ନଗ୍ର ।୨୨୦
କେଶିନୀ ବୋଇଲା ଯେ ପୁର ଆଧିପତି ମାନେ
ତୋହୋର ଆଶେ ଗୋ ଅଇଲେ ସନ୍ନିଧାନେ ।୨୨୧
ଭ୍ରଥ ଖଣ୍ଡ ଲବଣ ଖଣ୍ଡ ପ୍ରଚଣ୍ଡ ଖଣ୍ଡ
ଉଦୟ ଖଣ୍ଡ କୌସ୍ତୁଭ ଖଣ୍ଡ କାଶୀ ଖଣ୍ଡ ।୨୨୨
କୃତାନ୍ତକ ଖଣ୍ଡ କୌଶିକ ଖଣ୍ଡ ମଣ୍ଡଳ ଖଣ୍ଡ ରାଜା

ସମସ୍ତ ବଞ୍ଚାଇଲି ଗୋ ଦ୍ରୋପଦ ଆତ୍ମଜା ।୨୨୩
ବ୍ରହ୍ମ କ୍ଷତ୍ରିୟ ବଶ୍ୟ ଶୂଦ୍ର ଚାରିଜାତି
ଦଇତ ଦାନବ ରାକ୍ଷସ ପିଶାଚ ନୃପତି ।୨୨୪
ଅସୁର ଯକ୍ଷ କିନ୍ନର ହରିବଳ
ଯବନ ବଳ କୃତାନ୍ତେକ ବଳ ଯେ ବୃନ୍ଦାରକ ବଳ ।୨୨୫
ସୋମସୂର୍ଯ୍ୟ ବଂଶ ଯଦୁ ବଂଶ ଭୋଜ ବଂଶ
କୁରୁ ବଂଶ ଅନ୍ଧକ ବଂଶ ହଇହୟ ବଂଶ ।୨୨୬
ଚୂହାଣ ବଂଶ ବୃଷ୍ଣିକ ବଂଶ ଗୋପାଳ ଯେ ବଂଶ
କୁକ୍‌କୁର ବଂଶ ବୃନ୍ଦାରକ ବଂଶ ଦକ୍ଷ ବଂଶ ।୨୨୭
ଚୋଳ ଚାଲୁକ୍ୟ ଫୁଲୁକି ଗଙ୍ଗ ଭୋପାଳ ବଂଶ
ଯେ ରୂପେ ସଖୀ ଗୋ ଅଛନ୍ତି ଅଷ୍ଟାଦଶ ବଂଶ ।୨୨୮
ଅଷ୍ଟାଦଶ ବଂଶର ମଧ୍ୟେ ସଖୀ ଚାରି ଊଣା ଲକ୍ଷେକ ନୃପତି
ତୋହୋର ପ୍ରତିଆଶେ ସଭାରେ ବିଜେ କରିଣ ଅଛନ୍ତି ।୨୨୯
ପୃଥ୍ୱୀର ମଧ୍ୟେ ରାଜା ହୋଇବାକ ଯେତେକ
ମୁହିଁ ସଞ୍ଚପି କରି କହି ପାରିବି କେତେକ ।୨୩୦
ପ୍ରସ୍ତାପ ବାକ୍ୟେ ମୁହିଁ ଯେତେକେ ଗୋ ବଞ୍ଚାଇଲି
ଉଞ୍ଚ ଉଞ୍ଚ ରାଜାମାନନ୍ତ ଗୋ ଥୋକାୟେ କହିଲି ।୨୩୧
କେଶିନୀ ବୋଇଲା ଶୁଣ ଗୋସାମଣୀ
ତୋହୋର ଅର୍ଥେ ଦ୍ରୋପଦେଶ୍ୱର ସବୁନ୍ତି ବରିଆଣି ।୨୩୨
ରାଜାମାନଙ୍କୁ ଗୋ ମୁଣୋହି ଯୋଗାଡ଼
ଯେକ ଯେକ ରାଜାଙ୍କୁ ପଲମ ଶତେ ଶତେ ଭାର ।୨୩୩
ମୁଣୋହି ସାରିଣ ରାୟେ ଆଚୋବନ କରନ୍ତି ଯେତେବେଳେ
ସେ ରତ୍ନ ଯୋଗାଡ଼ମାନ ନେଇ ପକାନ୍ତି ଅଗାଦ ଜଳେ ।୨୩୪
ପୁଣି ନବତନ ପଲମ ଯୋଗାଡ଼ କରାଇ
ଆରେକ ଦିନେ ପୁଣ ରାଜାୟେ କରନ୍ତି ମୁଣୋହି ।୨୩୫
ଲକ୍ଷେ ନୃପତିଙ୍କ ଭିଆଣ ଯେହିମତେ
ଧଂସି ହୋଇଲା ରାଜା ତୋହୋର ନିମନ୍ତେ ।୨୩୬
ଦେବେଣ ଦୁର୍ଲ୍ଲଭ ଗୋ ମନୁଷ୍ୟେ ଅଗୋଚର
ଶୁଣିଲା ନାହିଁ ତ ଗୋ ଯେସନେକ ସୟଂବର ।୨୩୭
ଶତେକ ବଖରାକେ ଘରେକ ନିର୍ବାଣ
ପଞ୍ଚଶ ବୃନ୍ଦ ଗୋ ଛତ୍ରଶାଳମାନ ।୨୩୮
ଗଜଶାଳ ଅଶ୍ୱଶାଳ କେହୁ ପାରିବ କଳି
ଅନ୍ନଛତ୍ର ବସ୍ତ୍ରଛତ୍ର ଯେ ମାଗନ୍ତି ଯେତେ ଭଳି ।୨୩୯

ମନୁ ପୁଚ୍ଛା କଲେ ଅଗସ୍ତି ମହା ମୁନ୍ୟେ
ଯେଥୁ କିସ ହୋଇଲା ଯେ ଲାଖର ବିଧାନେ ।୨୮୫
ଦ୍ରୋପତୀ ବୋଇଲେ ଗୋ ମୋର ମନ୍ଦ ଭ୍ରାଥ ବେନି
ଅନମିତ୍ତେ ବରିଲେ କିମ୍ପା ଯେତେ ରାଜାର ସଇନି ।୨୮୬
ଯେତ୍ତେକ ଆରମ୍ଭେ ଯେ କଲେକ ସୟମ୍ବର
ଯେ ସଭାର ମଧ୍ୟେ କେ ମୋତେ ହୋଇବାକୁ ବର ।୨୮୭
କେଶିନୀ ବୋଇଲା ଗୋ କହିବାକୁ ସରୂପ ତୋତେ
କେ ତୋହୋର ବର ବୋଲି ନ ଜାଣଇ ନିରୁତାନ୍ତେ ।୨୮୮
ରାଜାର ବ୍ରତ ଗୋ ନିରାଧାର ଦେଖ
ଯେ ବିନ୍ଧିବ ରାଧାଚକ୍ର ମହାଲାଖ ।୨୮୯
ଯେଥକୁ ତଳଯେ ଗୋ କରିଥିବୁ ପାଞ୍ଚାଳୀ
ଯେ ଲାଖ ବିନ୍ଧିବ, ତୁ ତାହାର ମନର ହିଆଳୀ ।୨୯୦
ସୟମ୍ବର ସଞ୍ଚପି କହଇ କେଶିନୀ
ମେଢ଼ରେ ନେଇ ବିଜେ କରାଇଲେ ଜିଘ୍ନସେନୀ ।୨୯୧
କରପତ୍ର ଯୋଡ଼ିଣ ବୋଲଇ ଧୃଷ୍ଟ ଯେ ଦୃମ୍ନେ
ସାବଧାନ ହୋଇ ଶୁଣିମା ରାଜାଗଣମାନେ ।୨୯୨
କନ୍ୟାର ରୂପଗୁଣତ ନିରୋପିଲ ସମସ୍ତ
ଯେ ଲାଖ ବିନ୍ଧିବ କନ୍ୟା ତାହାକୁ ପରାପତ ।୨୯୩
ଯେମନ୍ତର ସମୟେ ରାମକୃଷ୍ଣ ବେନି
ଶୁଭ ଯୋଗେ ବିଜେକଲେ ଛପନକୋଟି ଯଦୁବଂଶ ଘେନି ।୨୯୪
ଉଗ୍ରସେନ ନନ୍ଦ ଉପନନ୍ଦ ସହିତେ
ବିଜେ ଜଗମୋହନ କୁତୋହୋଳ ଦେଖିବାର ନିମନ୍ତେ ।୨୯୫
ତୀର୍ଥଯାତ୍ରା ଯେ ଉଚ୍ଛବର ସ୍ଥାନେ
କୁତୋହୋଳେ ବିଜେ କରନ୍ତି ଯେ ବୃନ୍ଦାଅର୍କମାନେ ।୨୯୬
ପୃଥିବୀକି ଅଳଂକାର ନାରାୟଣଙ୍କର ପ୍ରଭା
ଶରୀର ବିହୁନେ ଅଳଂକାର କାହିଁ ଶୋଭା ।୨୯୭
ଶୟଳ ସଂସାରେ ନାରାୟଣ ହିଂ ବଲ୍ଲଭ
ସଭା ଶୋହିଲା ଯହୁଁ ବିଜେକଲେ ବାସୁଦେବ ।୨୯୮
ଦାନବ ବଳମାନେ କରନ୍ତି ବୋଲି ତ୍ରାସ
ଶୂନ୍ୟେ ଗୁହାଇଲେ ସ୍ୱାମୀ ରଥ ନନ୍ଦିଘୋଷ ।୨୯୯
ଶ୍ରୀ ବଳରାମେ ବିଜେ କଲେ ତାଳଧ୍ୱଜ ରଥେ
ରଥରେ ବିଜୟେ ସ୍ୱାମୀ ରେବତୀ ସହିତେ ।୩୦୦
ନାରାୟଣ ବିଜେ ଦେଖିଣ ଦେବ ଅମରାଧି
ବିଦ୍ୟାଧରଗଣ ଘେନି ବିଜୟେ ଜମ୍ଭୁଭେଦୀ ।୩୦୧

ଶ୍ରୀଭୁଜେ ବଜ୍ର ଆରୋପଣ ଆରୋହଣ ଅଇରାବ୍ରତ ପିଠି
ହସ୍ତୀ ବେନି ପାରୁଶେ ଖଟନ୍ତି ବିଦ୍ୟାଧରୀ ଚଉଷଠି କୋଟି ।୩୦୨
ଅମରଗଣ ଛତ୍ର ଘେନି ଖଟନ୍ତି ଚଉପାଶେ
ଇନ୍ଦ୍ର ଗୋବିନ୍ଦ ଯେକତ୍ୱ ହୋଇ ରହିଲେ ଶୂନ୍ୟ ଯେ ଆକାଶେ ।୩୦୩
ଅମରାଧି ନାଥ ଯହୁଁ ଅଇଲାକ ଚଳି
ରୁଦ୍ରଗଣ ଘେନି ବିଜୟେ କପାଳୀ ।୩୦୪
ବୃଷଭ ଆରୋହି ବିଜେ କଲେ ଦେବ ଯେ ଈଶାନ
ଗଣପତି କାର୍ତ୍ତିକଶ୍ୱର ଚଉଦ କୋଟି ଶିବଗଣ ।୩୦୫
ହୃଦରେଣ ଗିରିଜା ମଉଳେ ଶଶାଙ୍କ ଧବଳୀ
ଦେଖି ପ୍ରଣିପତ୍ର ଶ୍ରୀ ଜଗନ୍ନାଥ ଦେବ ହଳୀ ।୩୦୬
ମରୁତ ବଶ୍ୟାନର ଯେ ଦେବଗୁରୁ ବୃହସ୍ପତି
ଭୃଗୁ କାଶ୍ୟପ ଅଙ୍ଗିରା ନାରଦ ବ୍ରହ୍ମପତି ।୩୦୭
ବରୁଣ ନୈର୍ଋତ କୁବେର ଚନ୍ଦ୍ର ସୂର୍ଯ୍ୟ
ଅନ୍ତରୀକ୍ଷେ ବିଜୟେ ଦେବେ ଦ୍ରୋପଦେଶ୍ୱରି ରାଜ୍ୟ ।୩୦୮
ଅନ୍ତରୀକ୍ଷେ ବିଜେ କଲେ ଆସି ଦେବଗଣେ
ସୟମ୍ବର ଦେଖି ପ୍ରଶଂସା କଲେ ଦେବ ନାରାୟଣେ ।୩୦୯
ପୁଷ୍ପବୃଷ୍ଟି ହୋଉଅଛି ଆକାଶ ଭୁବନେ
ସଭାରେ ପଡୁଅଛି ଶିଶିର ଗୁଣ୍ଡିମାନେ ।୩୧୦
ଗନ୍ଧ ଆମୋଦଇ ଯେହ୍ନେ ମଳୟାନିଳ ବିଜେ
ସର୍ବେ ବିଚାରନ୍ତି ହୋ ବିଜେ କଲେ ଦେବରାଜେ ।୩୧୧
ପୁଷ୍ପବୃଷ୍ଟି ଉତ୍ତାରେ ଯେ କଣୟ ହୋଇଲା ବୃଷ୍ଟି
ଦ୍ୱାଦଶ ଯୋଜନ ପରିଯନ୍ତେ ଜନେ ସୁଖେଣ ସାଉଁଟି ।୩୧୨
ରାଜାମାନେ ପ୍ରଶଂସନ୍ତି ସାଧୁ ସାଧୁ ଦ୍ରୋପତ
ତୋହୋର ପ୍ରସାଦେ ହୋ ବିଳସିଲୁ ସମସ୍ତ ।୩୧୩

ଜଗନ୍ନାଥେ ପୁଚ୍ଛା କଲେ ବଳରାମଙ୍କ ଅଗ୍ରତେ ।୩୫୬
ଯେ ଯେ ଦୁର୍ଲ୍ଲଭ ଲାଖେକ ପାତିଲା ଦ୍ରୋପଦେ
ଯେ ଲାଖ ବିନ୍ଧିବାକୁ ସ୍ୱାମୀ କେ ଅଛି ସାମରଥେ ।୩୫୭
ବଳରାମେ ବୋଇଲେ ବାବୁ ଶୁଣ ଜନାର୍ଦ୍ଦନ
ଦୃଷ୍ଟିଭେଦୀ ଅଟଇ ଯେ ରାଧେବ ସୁତ କର୍ଣ୍ଣ ।୩୫୮
ନିଶ୍ଚୟେ କର୍ଣ୍ଣ ଯେ ମହାଲାଖ ବିନ୍ଧିବ
ଦ୍ରୋପତୀ କନ୍ୟା ମାନଗୋବିନ୍ଦକଇ ଦେବ ।୩୫୯

ଅଶକ୍ୟ ଅଗୋଚର ହୋ ଯେ ଅଟଇ ଆନକୁ
ଯେସନେକ ବିଚାର ଯେ ଦିଶଇ ଆମ୍ଭର ମନକୁ ।୩୬୦
ଯେତେକ ବିଚାରି ଯହୁଁ କହିଲେ ସଂକ୍ରିଷେଣ
ଶୁଣିଣ ତ୍ରାସିଲେ ଯେ ଦେବ ନାରାୟଣ ।୩୬୧
ଦ୍ରୋପଦ ରାଜା ଯେ ବ୍ୟାସକୂଟ ଲାଖ ପାତିଲା
ତଳେ ତୀର୍ଥଜଳ ଘଟେକ ଥାପିଲା ।୩୬୨
ତଳକୁ ଦୃଷ୍ଟି କଲେ ଦିଶଇ ଛାୟା ମୀନ
ଅଦୃଷ୍ଟିରେ ଦୃଷ୍ଟି ଭେଦି ପାରିବକି କର୍ଣ୍ଣ ।୩୬୩
ବଳରାମେ ଅଟନ୍ତି ଭୂତ ଭବିଷ୍ୟ ଜ୍ଞାତା
ନ ଜାଣି କହିଲେ କି ଯେସନେକ ବାରତା ।୩୬୪
ବଳରାମଙ୍କ ତୁଲେ କଥା ହୁଅନ୍ତେ ନାରାୟଣ
ହୃଦଗତେ ଚିନ୍ତା କଲେ ଚକ୍ର ସୁଦ୍ରିଶେନ ।୩୬୫
ଆଜ୍ଞା ଦିଲେ ସ୍ୱାମୀ ଦେବ ଦାମୋଦର
ତୁ ଅନ୍ତରୀଛେ ଭ୍ରମୁଥିବୁଟି ଚାରିତାଳ ଉଚ୍ଚର୍ଗରେ ।୩୬୬
ଯେବଣ ନାରାଜ ବିନ୍ଧିବେ ଭୀଷ୍ମ ଦ୍ରୋଣ କର୍ଣ୍ଣ
ଶଲ୍ୟ ଅଶତ୍ତମା ଜଦ୍ୟରଥ କୃପବ୍ରହ୍ମ ।୩୬୭
ଜୟ ସପତ ରଥୀ ଆଦି କରି ଭୁରିସର୍ବା ମହାବୀର
ଯେତେ ନାରାଜ ବିନ୍ଧିବେ ତୋହୋଠାରେ ବାଜି ପଡ଼ିବେ
ଭୂମିର ।୩୬୮
ନାରାୟଣ ଆଜ୍ଞାଯେ ସୁଦ୍ରିଶେନ ଚକ୍ର ଗଲା
ଚାରିତାଳ ଉଚ୍ଚର୍ଗରେ ଯାଇଣ ରହିଲା ।୩୬୯
ଦେବ ଦାନବ ମାନବ ଆଦି କରି
କାହାକଇଁ ଦୃଶ୍ୟ ନାହିଁ ଚକ୍ରକୂଟ କଲେ ଦେବ ହରି ।୩୭୦
ଚକ୍ରକୂଟ ମାୟା ଯହୁଁ ଶ୍ରୀହରି ଭିଆଇଲେ
ଚକ୍ରକୂଟ ହରି ବୋଲି ବ୍ରହ୍ମା ନାମ ଦିଲେ ।୩୭୧
ଯେସନକ ମାୟା କଲେ ଦେବ ଦାମୋଦର
ବଳରାମ ଦେବଙ୍କୁ ସେ ନୋହିଲା ଗୋଚର ।୩୭୨
ଆକାଶେଣ ଦେଖିଲେ ବ୍ରହ୍ମା ଜଗତପିତା
ମଞ୍ଚେଣ ବ୍ୟାସେ ଦେଖିଲେ ଭୂତ ଭବିଷ୍ୟ ଜ୍ଞାତା ।୩୭୩
ଆପଣେ ଜାଣନ୍ତି ଦେବ ଦାମୋଦର
ତିନି ଜଣହୁଁ ଚାରି ଜଣଙ୍କୁ ନାହିଁ ନା ଗୋଚର ।୩୭୪
ବ୍ରହ୍ମା ଦେଖି ଯେ ଅନେକ ସ୍ତୁତି କଲେ
ମାୟାଧର ବୋଲି ସେ ଅନେକ ବିନୋୟିଲେ ।୩୭୫
ଜୟ ତୁ ମାୟାଧର ମାୟା ମେଖଳୀ
ଜୟ ତୁ ମାୟାଧର ଚକ୍ରକୂଟ ବନମାଳୀ ।୩୭୬
ଜୟ ତୁ ମାୟାଧର ସୟଳ ସଂସାର ଜନବନ୍ଧୁ
ଜୟ ତୁ ମାୟାଧର ପ୍ରଳୟାନ୍ତକ ସିନ୍ଧୁ ।୩୭୭
ଜୟ ତୁ ମାୟାଧର ଅନନ୍ତ କାମରୂପୀ
ଜୟ ତୁ ମାଧବ ସୟଳ ତନୁ ବ୍ୟାପି ।୩୭୮
ଜୟ ତୁ ମାଧବ ସୟଳ ଯେକ ଆତ୍ମା
ଜୟ ତୁ ମାଧବ ଯୋଗମନ୍ତ ବ୍ରହ୍ମା ।୩୭୯
ଜୟ ତୁ ମାଧବ ଅନନ୍ତ ଶ୍ରୀରଙ୍ଗୀ
ଜୟ ତୁ ମାଧବ ହୃଦେ ବ୍ୟାସ କୂଟ ଭଙ୍ଗୀ ।୩୮୦
ଜୟ ତୁ ମାଧବ ସୟଳ ଜନସଞ୍ଚା
ଜୟ ତୁ ମାଧବ କୃତାନ୍ତକ କାଳବଞ୍ଚା ।୩୮୧
ଜୟତୁ ମାଧବ ନୀଳେନ୍ଦୀ ପୁଷ୍ପ ବର୍ଣ୍ଣ
ଜୟ ତୁ ମାଧବ ମହାପାତକ ଦହନ ।୩୮୨
ଜୟ ତୁ ମାଧବ ଭଗତ ବଚ୍ଛଳା
ଜୟ ତୁ ମାଧବ ଅନନ୍ତ ରୂପ କଳା ।୩୮୩
ଜୟ ତୁ ମାଧବ ଭାରତୀର ବଲ୍ଲଭ
ଜୟ ତୁ ମାଧବ ଶରଣ ରକ୍ଷଣ ବାସୁଦେବ ।୩୮୪
ଜୟ ତୁ ମାଧବ ତବ ଚରଣେ ଶରଣ ମମ
ଶୁଦ୍ରମୁନି ସାରୋଳ ଦାସ ଶତେ ସହସ୍ର ଦଣ୍ଡ ପରିଣାମ ।୩୮୫

■ ■

## ଲାଖବିନ୍ଧା

ବଇବସୁତ ମନୁ ପଚାରିଲେ ଶୁଣ ଅଗସ୍ତି ହେ
ଲାଖର ଚରିତ୍ର ମୋତେ କହିବା ସନ୍ଦେହେ ।୧
ଅଗସ୍ତି ବୋଇଲେ ଶୁଣ ହେ ରାଜନ
କହିତ ଶକ୍ୟ ନୋହଇ ଦ୍ରୋପଦ ଲାଖ ବିଧାନ ।୨
ଧୃଷ୍ଟଦ୍ୟୁମନ ଯାଇ ବିଜେ କଲେ ସଭା
ଯେ ପାର ଗୋସାଇଁ ଲାଖ ଯେ ବିନ୍ଧିବା ।୩
ମୁହିଁ ସୟମ୍ବର କଲି ଯହିଁର ନିମନ୍ତେ
ତହିଁକି କାରଣ ସ୍ୱାମୀ କରିବା ନା ମୋତେ ।୪
ସ୍ୱାମୀ ରାଜାଧିରାଜେଶ୍ୱର ମାନଚକ୍ରବ୍ରତୀ
ଲକ୍ଷେ ରଜା ମଉଡ଼ମଣି ସୋମବଂଶର ଆଧିପତି ।୫
ଗୁଣ ବିଦ୍ୟାଯେ ବକତା ପରାକ୍ରମେଣ ଶକତା
ଧନେଣ ଗାରିମା ତେଜେଣ ବଳବନ୍ତା ।୬

ବଂଶେଣ ନିକଳଙ୍କ ବେଦ ମନ୍ତ୍ରେଣ ପ୍ରସିଦ୍ଧି
ସାଂଗ୍ରାମେ କଇଛାବନ୍ତ ସେ ନିକଳଙ୍କ ଯୋଦ୍ଧି ।୭
ଧୃଷ୍ଟଦ୍ୟୁମନଙ୍କର ଉପହାର ବଚନେ
କର୍ଣ୍ଣର ବଦନ ଚାହିଁଲା ରାଜା ଦ୍ରିଯୋଧନେ ।୮
କାହିଁକି ମଉନ୍ତ୍ର ହୋଇଅଛ ତୁନୀ
ମହାଲାଖ ବିନ୍ଧି ଲଭିବା ଜିଘ୍ନସେନୀ ।୯
କର୍ଣ୍ଣ ବୋଇଲା ତୁମ୍ଭେ ଅତି ମାନେ ମାନଗୋବିନ୍ଦ
ଦ୍ରୋପଦ ବୋଇଲ ତୁମ୍ଭେ ରାଜାମାନେ ଲାଖ ବିନ୍ଧ ।୧୦
ତୁମ୍ଭନ୍ତ ସେ ବରିଅଛି ଦ୍ରୋପତୀ ନିମନ୍ତେ
ଅବରଣେ ମଧପାତ୍ରେ ପଶିବା କେମନ୍ତେ ।୧୧
ରଜାମାନେ ତୁମ୍ଭେ ଆଗ ଲାଖ ବିନ୍ଧିବ ପ୍ରତକ୍ଷେ
ତୁମ୍ଭେମାନେ ବିନ୍ଧି ନୁଆରିଲେ ଆମ୍ଭେ ବିନ୍ଧିବୁ ଯେ ପଛେ ।୧୨
ପାର କି ନ ପାର ବିନ୍ଧିବ ନା ଯୁଗତେ
ତୁମ୍ଭର ନ ବିନ୍ଧିଲେ ଆବର କେ ବିନ୍ଧିବ କେମନ୍ତେ ।୧୩
ସୋମବଂଶ ସୂର୍ଯ୍ୟବଂଶ ପୃଥୀକି ତୁମ୍ଭେ ମୂଳ
ଆବର ରାଜାମାନେ ତୁମ୍ଭର ବାହୁତଳ ।୧୪
କର୍ଣ୍ଣର ବଚନେ ରାଜା ମାନଚକ୍ରବ୍ରତୀ
ଆସ୍ତାନର ମଧ୍ୟୁଂ ରାଜା ଓହ୍ଲାଇଲା ଧାତି ।୧୫
ବାବୁ ମହିମା ସେ ଯେ ଧୃତରାଷ୍ଟର ତନୟେ
ପ୍ରତକ୍ଷେ ଦିଶୁଅଛି ଅମରାଧିନାଥ ପ୍ରାୟେ ।୧୬
ଚାଲନ୍ତେ ଶୋଭାବନ ବିକ୍ରମ-ସିଂହ-ଠାଣି
ଝଟକନ୍ତି ଗଜମୁକୁତା ଯେ ବିଚିତ୍ର ଶୁଦ୍ଧମଣି ।୧୭
ଶିରେ ଅନର୍ଘ୍ୟମଣି-ମୁକୁଟ କୋଟିଏ ମାଣିକ୍ୟ ଲାଗି
କୋଟିଏ ପାଦେ କମଳଣୀ ବିଜୟେ ସଉଭାଗୀ ।୧୮
ଚାଲନ୍ତେ ସୁବର୍ଣ୍ଣ ଅବେଷ୍ଟ ପଦ୍ମଫୁଟି
ଚଉରାଶି ଗୁଣ ଲକ୍ଷେଣ ଯେ ନୃପତି ଧୃତରାଷ୍ଟି ।୧୯
ପ୍ରତକ୍ଷେ ଯେ ପନଙ୍ଗାନାରାୟଣ ମୃତି
ମେଢ଼ରେ ଥାଇ କେଶିନୀକି ପଚାରଇ ଦ୍ରୋପତୀ ।୨୦
କେବଣ ଦେଶର ସଖୀ ଯେ ଅଟଇ ରାଜା
ଅମର ସ୍ୱର୍ଗ ତେଜି କି ବିଜୟେ କଲେ ବିଡ଼ୋଜା ।୨୧
କୁଙ୍କୁମ ଚନ୍ଦନ ଲେପନ ଅସରଜ ସୁତା ବରବେଶୀ
ମଙ୍ଗଳ ସ୍ୱରୂପ ତ ବିଭାଯୋଗ ଦିଶି ।୨୨
କେଶିନୀ ବୋଇଲା ଯେହାର ଭାରିଯା ଭାନୁବତୀ
ଅଷ୍ଟଦିନେ ପ୍ରଦାନ ହୋଉଥାଇ ଯୁଗତି ।୨୩
ପନଙ୍ଗାନାରାୟଣ ରୂପ ଅଟଇ ଯେହାର
ପିତା ମାତା ଆଦି କରି କାହାକୁ ନାହିଁ ନମସ୍କାର ।୨୪
ଅତି ସୁକୁମାର ଅଟଇ ଯେହାର କାୟେ
ସରୂପ ଦିଶଇ ଗୋ ତରୁଣ ଆଦିତ୍ୟର ପ୍ରାୟେ ।୨୫
ଇନ୍ଦ୍ରପ୍ରଶସ୍ତ, ଯମପ୍ରଶସ୍ତ, ଜଇନ୍ତା, ହସ୍ତିନା, ବାରୁଣା
ଯେ ପଞ୍ଚ କଟକର ରଜା ଯେ ଜମ୍ବୁଦୀପକୁ ଧାରଣା ।୨୬
ପାଣ୍ଡବନ୍ତ ନାଶ କଲା ଯେ ଜତୁର ଘର ଭିଆଇ
ଉପାୟେ ଚକ୍ରବ୍ରତୀ ଯେହାକୁ ସରିସମ କେହି ନାହିଁ ।୨୭
ଦ୍ରୋପତୀ ବୋଇଲା ଯେହାକୁ ବୟସ ଅଳପ
ଯେତେ ବେଳହୁଁ ଯେ ହତ୍ୟା ବିବାଦୀ ମହାପାପ ।୨୮
ପଥର ଘରେ ଲାଇ ନାଶ କଲା ଗାନ୍ଧାର ସେନର ବଂଶ
ଜଉ ସଜଳସ ଘର ଭିଆଇ ଯେ ପାଣ୍ଡବନ୍ତ କଲା ନାଶ ।୨୯
ଛତ୍ରୀଙ୍କ ମହିମା ଜାଣି ଶତ୍ରୁକୁ ଜିଣଇ ଯେବେ ରଣେ
ବିଶ୍ୱାସଘାତେ ସୋଦରନ୍ତ ମାଇଲା ଅକାରଣେ ।୩୦
ଯେହାର ସମାନେ ସଖୀ ନାହିଁ ନା ମନ୍ଦ ଦୋଷୀ
ଯେତେ ପାପିଷ୍ଟକୁ କିମ୍ପେ ସଭାରେ ଦିଲେ ବସି ।୩୧
ବିଷ ମଉଷଧି ସଖୀ ଗୋ ମନ୍ତ୍ରର ଉପାୟେ
ଯେମନ୍ତ ବାଗେଣ ଯେ ପ୍ରାଣୀଙ୍କ ନାଶ କୟେ ।୩୨
ଇହ ଲୋକେ ତାହାର ବଦନ ନ ଚାହିଁ
ରଉରବ ନର୍କେ ପଡ଼ଇ ପୁନରପି ଜନ୍ମ ନାହିଁ ।୩୩
ଯେହେନେକ ପାପିଷ୍ଟ ଯେବେ ଲାଖ ବିନ୍ଧିବ
ବେଦ ଶାସ୍ତ୍ର ପୁରାଣମାନନ୍ତ ମିଥ୍ୟା ଯେ ହୋଇବ ।୩୪
ଯେସନେକ ବିଚାରନ୍ତେ କେଶିନୀ ଜିଘ୍ନସେନୀ
ଲାଖର ତଳେ ପ୍ରବେଶ ଦ୍ରିଯୋଧନ ମହାତେଜ ଘେନି ।୩୫
ଧୃଷ୍ଟଦ୍ୟୁମନକୁ ଚାହିଁ ବୋଲଇ ବଚନ
କହ ଲାଖ ବିନ୍ଧିବାର କେବଣ ଚରିତ ବିଧାନ ।୩୬
ଧୃଷ୍ଟଦ୍ୟୁମନ ବୋଇଲେ ଶୁଣ କୁରୁପତି
ଲାଖ ବିନ୍ଧିବାର କଥା ଶୁଣସି ନୃପତି ।୩୭
ସାତ ତାଳ ଉଚେ ଅଛି କନକର ମୀନ
ତହିଁ ତଳେ ରାଧାଚକ୍ର ବୁଲେ ଘନ ଘନ ।୩୮
ତାଳେକ ଉପରେ ଯେ ଅପୂର୍ବ ପଟାୟେ
ତଳେ ଥୋଇଲା ଅଛି ଜଳଘଟ ଗୋଟାଏ ।୩୯
ଉପର ପଟାରେ ଅଛି ଧନୁ ଯେକ ଲକ୍ଷ୍ୟ
ସେ ଧନୁ ଧରି ପଟାରେ ଉଠିବ ପ୍ରତକ୍ଷ ।୪୦

ଉପରକୁ ଗଣ୍ଡି ମୁଠି କରିଣ ରହିବ
ତଳେ ଜଳ ଘଟକଇ ନିରେଖି ଚାହିଁବ ।୪୧
ନାରାଚ ବିନ୍ଧିବ ଆକର୍ଣ୍ଣ ପୂରୋଇ
ମାଛର ବାମ ଚକ୍ଷୁରେ ବାଣ ବିନ୍ଧିବାକ ଯାଇ ।୪୨
ଡାହାଣ ଚକ୍ଷୁ ବାଟେ ରହିବ ନିକିଳି ଶର
ତେବେ ସେ ଲଭିବୁ ରାଜା ଦ୍ରୋପତୀ ଆସ୍ୱର ।୪୩
ଯେସନେକ ବଚନ ଶୁଣି କୁରୁପତି
ମହାଲାଖ ପଟାରେ ଯାଇଁ ଉଠିଲା ତଡ଼ତି ।୪୪
ଦ୍ରୋପତୀର ବଦନ ଚାହିଁଲା ମାନ ଯେ ଗୋବିନ୍ଦ
ମଦନେ ବେଭଳ ହୋଇଲା ଚକ୍ଷୁ ଥାଉଁ ଅନ୍ଧ ।୪୫
ଦିବସେଣ କିଛି ନ ଦିଶିଲା ତାହାକୁ
ଲାଖର ତଳେ ରାଜା ଯେ ଦରାଣ୍ଡଇ ଧନୁକୁ ।୪୬
ଧନୁ ବୋଲିଣ ଯେ ବଢ଼ାଇଲା କର
ହସ୍ତ ପଶିଲା ଯାଇ ଜଳଘଟର ଉପର ।୪୭
ଶିଖଣ୍ଡୀ ଧୃଷ୍ଟଦ୍ୟୁମନେ ଯେ ଉପହାସ୍ୟେ ବୋଲି
ପଳା ଯା ପଳା ଯା ବୋଲିଣ ଦିଲେ ତାକୁ ପେଲି ।୪୮
ଧୃତରାଷ୍ଟ ପରାଯେ ହୋଇଲା କି ତୋହୋର ଚକ୍ଷୁ
ଚକ୍ଷୁ ଥାଉଁ ଥାଉଁ ତୁ ଅନ୍ଧ ହୋଉ ଅଛୁ ।୪୯
ଧନୁ ଜଳଘଟ ତୁ ଯେବେ ନୁଆରିଲୁ ବାରି
ତୁ କିସ ବିନ୍ଧିବୁ ଲାଖ ଯାଅ ଯା ବାହୁଡ଼ି ।୫୦
ବହୁତ ଝିଙ୍ଗାସ ଯେ ବୋଇଲା ଶିଖଣ୍ଡୀ
ବରବେଶ ହୋଇ ତୁ ରେ ସଂସାର ଜନ ଭଣ୍ଡି ।୫୧
ଲାଜ ପାଇଣ ବସିଲା ମାନଗୋବିନ୍ଦ
ଆଡ଼ୋ ଆଡ଼ୋ ବୋଲି ବାହାଇଲା ଜାରାସନ୍ଧ ।୫୨
ଲାଖର ତଳେ ଉଭା ହୋଇଲା ମଗଧେଶ୍ୱର ନାଥେ
ଲକ୍ଷେବଳ ଧନୁ ଧଇଲା ବାମ ହାଥେ ।୫୩
ହୁଳେକ ତୋଳି ଯେ ନୁଆରିଲା ଗୁଣ ଦେଇ
କରତାଳ ମାରି ହସିଲେ ସକଳ ନୃପସାଇଁ ।୫୪
ଲାଜେଣ ବାହୁଡ଼ିଲା ସେ ମଗଧେଶ୍ୱର ରାଯେ
ମୁକୁଟ ପକାଇ ଯାଇ ସେ ବସିଲା ସଭାଯେ ।୫୫
ତାହାର ଅଭିମାନ ଦେଖିଣ ନରପତି
ଶିଶୁପାଳ କୁମାର ଯେ ବାହାର ହୋଇଲା ଝାଟି ।୫୬
ପ୍ରତଜ୍ଞା ଆରମ୍ଭେ ସେ ଦମଘୋଷର ତନୁ
ଆକ୍ରେଷି ଶିଶୁପାଳ ଧଇଲା ବେଗେ ଧନୁ ।୫୭
ଦୁଇ ହାଥେ ଧରି ଆକ୍ରେଷିଣ ତୋଳି
ନାସିକା ବାଟେ ରୋଧିର ପଡ଼େ ତାର ଗଳି ।୫୮
କୋପେଣ ଶିଖଣ୍ଡୀ ଯେ ଧଇଲା ପଛକତି
ଗଳଥା ଦେଇଣ ଯେ ସଭାକୁ ନେଲା ଝାଟି ।୫୯
ଶିଶୁପାଳ ଅଭିମାନ ଦେଖିଣ ରୁକ୍ମଣ
ରେ ରେ କାର କରିଣ ସଭାରୁ ବାହାର ତତକ୍ଷଣ ।୬୦
ଆକ୍ରଷଣ କରିଣ ଧନୁ ଯେ ଧଇଲା
ଭୂମିରୁ ଧନୁକୁ ସେ ଛଡ଼ାଇ ନ ପାରିଲା ।୬୧
ପଳା ଯା ବୋଲିଣ ଅନେକ ଝିଙ୍ଗାସ ବୋଲି
ଶିଖଣ୍ଡୀ ଡିଆଇଁ ଦିଲାକ ଯେ ପେଲି ।୬୨
ସଭାରେ ଲାଜ ପାଇ ବସିଲା ରୁକ୍ମଣ ମହାଛତ୍ରୀ
ସଭାରୁ ବାହାର ହୋଇଲା ନିର୍ଝର ଗଣପତି ।୬୩
ଲାଖର ତଳେ ଯାଇଁ ପ୍ରବେଶ ହୋଇଲା
ଧନୁ ତୋଳି ସେ ଗୁଣ ଦେଇ ନୁଆରିଲା ।୬୪
ଲାଖର ତଳେ ସେ ପାଇଲା ମହାଲାଜ
ସଭାକୁ ଆସି ତ ସେ ନୁଆରଇ ମହାରାଜ ।୬୫
ଶିଖଣ୍ଡୀ ହସ୍ତ ଧରି ନେଲାକ କୁଣ୍ଢିଆଇଁ
ସଭାର ଭିତରେ ଛାଡ଼ିଲା ତାକୁ ନେଇଁ ।୬୬
କାଶୀ ଦେଶର ରାଜା ଯେ କାଶୀଶ୍ୱର
ଲାଖ ବିନ୍ଧିବ ବୋଲି ସଭାରୁ ବାହାର ।୬୭
ଧାଇଁ ଯାଇଣ ଧନୁ ଯେ ଧଇଲା ଆକ୍ରେଷି
ଟାଳି ନୁଆରି ସେ ଅଭିମାନେ ବସି ।୬୮
ଶିଖଣ୍ଡୀ ତାହାକୁ ବେଗେ ଧରି ତହୁଁ ନେଲା
ଗଳାରେ ହାଥ ଦେଇଣ ସଭାରେ ଛାଡ଼ିଲା ।୬୯
କାଶୀଶ୍ୱର ଅଭିମାନେ ରାଜା କଳିଙ୍ଗସେନ
ସଭାରୁ ବାହାର ହୋଇଲା କୋପମନ ।୭୦
କଳିଙ୍ଗସେନ ଟାଳି ନୁଆରିଲା ଧନୁ
ପଳା ଯା ବୋଲି ପେଲି ଦେଲା ଦ୍ରୋପଦର ତନୁ ।୭୧
କଳିଙ୍ଗସେନ ଅପମାନେ ନୃପତି ଶଅୟର
ପ୍ରତଜ୍ଞା କରିଣ ରାଜା ସଭାରୁ ବାହାର ।୭୨
ମହାପ୍ରତାପୀ ସେ ନୃପତି ବଳବନ୍ତା
ଅସୁରେଶ୍ୱର ମହାରାଜା ଯେ ସାଂଗ୍ରାମେଣ ଶକତା ।୭୩
ଲାଖର ତଳେ ଯାଇଁ ହୋଇଲା ପରବେଶ
ପ୍ରତଜ୍ଞା ସାରଥେ ଧନୁକୁ କରଇ ଆକର୍ଷି ।୭୪

ଶତେସିଂଘର ଯେ ବଳ ତାହାର ପରାକ୍ରମ
ପୃଥୀର ରଜା ହୋଇ ସାଂଗ୍ରାମେ ତାକୁ ନାହିଁ ସମ ।୭୫
ଆକ୍ରେଷିଣ ଧନୁ ଯେ ଧଇଲା ନୃପମଣି
ଆକାଶ କମ୍ପିଲା ତାହାର ଗର୍ଜନ ନାଦ ଶୁଣି ।୭୬
ଭୁଜେଣ ଧନୁ ଧରି ଉଭା ହୋଇଲା ରାୟେ
କୋପେଣ ଗର୍ଜଇ ସେ ମତ୍ତ ନାଗ ପ୍ରାୟେ ।୭୭
ଗୁଣ ଦେବାକୁ ବାମ ଭୁଜେ ଧନୁ ତୋଳି
ଆକ୍ରଷଣ ଘାୟେ ମୁଖୁଁ ରୋଧିର ତାହାର ପଡ଼ିଲା ନିକିଳି ।୭୮
ଲାଜ ପାଇ ବସିଲା ଅସୁରାଧି ନୃପତି
ସଭାରୁ ବାହାର ହୋଇଲା ବଜ୍ରଲାଭ ମହାଛତ୍ରୀ ।୭୯
ଲାଖ ସନ୍ନିଧେ ପ୍ରବେଶ ହୋଇଲା ମହାରାୟେ
ଧନୁ ଆକ୍ରଷଇ ରାହୁର ତେଜ ପ୍ରାୟେ ।୮୦
ଧନୁ ଧରି ତୋଳି ନୁଆରିଲା ଭୁଜବଳେ
ମାଡ଼ି ପଡ଼ିଲା ଧନୁ ବଜ୍ରଲାଭର ବଛଥଳେ ।୮୧
ଉଭାନସାହୀ ହୋଇ ପଡ଼ିଅଛି ଅସୁରାଧି
ଭୁଜତୋଳି ଧଇଲା ଶିଖଣ୍ଡୀ ମହାଯୋଧୀ ।୮୨
ଶଅମ୍ଭର ବଜ୍ରଲାଭ ଯହୁଁ ପାଇଲେ ଅଭିମାନ
ସଭାରୁ ବାହାର କେହି ନୋହିଲେ ଅସୁର ରାଜନ ।୮୩
ଅନେକ ଦେଶର ଯେ ରାଜାଗଣ ଉଠି
କେହି ଚାଳି ନୁଆରିଲେ ଶିବର ଧନୁ ଗୋଟି ।୮୪
ବସୁଧାର ନନ୍ଦନ ନାରକା ମହାବୀର
ରେ ରେ କାର ଶବଦ କରି ସଭାରୁ ହୋଇଲା ବାହାର ।୮୫
ଲାଖର ତଳେ ଯାଇ ପ୍ରବେଶ ହୋଇଲା
ବାମ ଭୁଜେ ଧନୁ ଧରି ଊର୍ଦ୍ଧଗତେ ତୋଳିଲା ।୮୬
ହୁଳେଣ ପାଦ ଦେଇ ମାଡ଼ିଲା ଶିବଧନୁ
ହୁଳେ ଗୁଣ ଦେଇ ନୁଆରଇ ସେ ବସୁଧାର ତନୁ ।୮୭
ଲୋଭେଣ ନାରକା ଧନୁ ନ ଛାଡ଼େ ହାଥରୁ
ଶିଖଣ୍ଡୀ ବୋଇଲା ଆବର ଥାଇ କିସ କରୁ ।୮୮
ପଳା ଯା ସଭାକୁ ବୋଲି ବୋଇଲା ଧୃଷ୍ଟ ଯେ ଦୃମନ
ଲାଜେଣ ବାହୁଡ଼ିଲା ସଭାକୁ ଯାତୁଧାନ ।୮୯
ସମସ୍ତ ରାଜାମାନେ ବସିଲେ ହେଠ ମାଥ
ଦେଖିଣ ବିଷାଦ ହୋଇଲା ଦ୍ରୋପଦ ନୃପତ୍ୟ ।୯୦
ସଭାରେ ବିଜେ କଲେ ରାଜାନ୍ତ ସମାର୍ଜି
ସମାଧାନ କରି ରାଜା ଅଭିମାନ ପରିତ୍ୟାଜି ।୯୧
ଦ୍ରୋପଦ ବୋଇଲା ଗୋସାଇଁ ଛତ୍ରୀଙ୍କର ବିଧାନ
ଯେ କଥାକୁ କେହି ନ କରିବା ଅଭିମାନ ।୯୨
ଯେହୁ ପାର ଲାଖ ବିନ୍ଧସି ନୃପମଣି
ଓହୋ କୁଳେ ଲଜ୍ଜା ଉପୁଜୁଅଛି ଜାଣି ।୯୩
ରାଜାମାନେ ଯହୁଁ ହୋଇଲେ ମଉନବ୍ରତ
ଯୋଦ୍ଧା ଅମନାତ୍ୟଙ୍କୁ ବୋଇଲା ଦ୍ରୋପଦ ନୃପତ୍ୟ ।୯୪
ଛତ୍ରୀ ହୋଇ କରି କେହୁ ଅଛ ସାମରଥ
ଯେ ଲାଖ ବିନ୍ଧିବ କନ୍ୟା ଦେବଇ ଯେ ମୋର ସତ୍ୟ ।୯୫
ଦ୍ରୋପଦର ବଚନେ ମାନଚକ୍ରବ୍ରତୀ
କର୍ଣ୍ଣର ବଦନ ରାଜା ଚାହିଁଲା ତଡ଼ତି ।୯୬
କାହିଁକି ବିଳମ୍ବ କରୁଅଛ ମଇତ୍ର
ଯେ ବଚନ ଶୁଣି ଯେ ଆଦିତ୍ୟର ସୁତ ।୯୭
ସଭାରୁ ବାହାର ହୋଇଲା ବୀର କର୍ଣ୍ଣ
ଧାର୍ମିକ ବିବେକ ସେ ସୁନ୍ଦର ଲୋହିତ ବର୍ଣ୍ଣ ।୯୮
ଅମୃତ କୁଣ୍ଡଳ ଶୋଭିତ ବେନି କର୍ଣ୍ଣ
ବାଳ ଅର୍କ ଜାତ ହୋଇଲା କି ଯେ ମଞ୍ଚ ଭୁବନ ।୯୯
ଶିରେ ମଣି ମୁକୁଟ ଚାଲନ୍ତେ ସିଂଘଠାଣି
ଦ୍ରୋପଦୀ ବୋଇଲେ ଯେ କେବଣ ଦେଶର ନୃପମଣି ।୧୦୦
କେଶିନୀ ବୋଇଲା ତୁ ଗୋ ଶୁଣସି ପାଞ୍ଚାଳୀ
କୋଇନ୍ତାୟେ ବୀର୍ଯ୍ୟ ଦିଲେ ଅଂଶୁମାଳୀ ।୧୦୧
ଆଦିତ୍ୟର ବୀର୍ଯ୍ୟେ ଜାତ ଯେ କର୍ଣ୍ଣ ମହାବଳୀ
ଅବିଭାଇତ କାଳେ ବିଦ୍ୟା ପରୀକ୍ଷା କଲେ ଭୋଜର ଦୁଲାଳୀ ।୧୦୨
ଲାଜେ ଦେବୀ ଗର୍ଭେ ନ ଧଇଲେ ଆଦିତ୍ୟଙ୍କ ବୀର୍ଯ୍ୟ
ସଇନ୍ଦୁ କର୍ଣ୍ଣବାଟେ ଉପୁଜିଲା ଆତ୍ମଜ ।୧୦୩
କର୍ଣ୍ଣେ ଜାତ ହୋଇଲା କର୍ଣ୍ଣ ଯେହାର ନାମ
ନିତ୍ୟାପତି ବିଧଂସଇ ଶତେ ଭାର ସୁବର୍ଣ୍ଣ ।୧୦୪
ଗାଢ଼େ ଚାଲନ୍ତେ ଯେ ବସୁଧା ମୁଖରୁ ରୁଧିର ବହି
ତରେଣ ନିତ୍ୟାପତି ଶତେ ଭାର ସୁବର୍ଣ୍ଣ ଲାଞ୍ଚ ଦିଅଇ ମହୀ ।୧୦୫
ଦାନେ ଶୂରବନ୍ତା ମାନେ ଶୂରବନ୍ତା ବଳେଣ ବଳବନ୍ତା
ଦ୍ରିଯୋଧନର ମଇତ୍ର ଯେ ସାଂଗ୍ରାମେ ଶକତା ।୧୦୬
ଲାଖର ତଳେ ଯାଇଁ ପ୍ରବେଶ ବୀର କର୍ଣ୍ଣ
ବଳରାମ ବୋଇଲେ ହୋ ଦେଖ ଜନାର୍ଦ୍ଦନ ।୧୦୭
ଯେହିକ୍ଷଣି କର୍ଣ୍ଣ ଯେ ମହାଲାଖ ବିନ୍ଧିବ
ଦ୍ରୋପତୀ ଘେନି ରାଜା ମାନଗୋବିନ୍ଦ ଯିବ ।୧୦୮

ଗୋବିନ୍ଦେ ବୋଇଲେ ତୁମ୍ଭେ ଗ୍ୟାନୀ ମହାବ୍ରହ୍ମି
ତୁମ୍ଭର ବଚନ ମିଥ୍ୟା ହୋଇବ କି ସ୍ୱାମୀ ।୧୦୯
ଯେମନ୍ତର ସମୟେ କର୍ଣ୍ଣ ମହାରଥୀ
ବାମ କରେ ଧନୁ ତୋଳି ଧଇଲା ତତକ୍ଷଣାନ୍ତି ।୧୧୦
ହୁଳେ ପାଦ ଦେଇ ମାଡ଼ିଲା ବେଗେ ଧନୁ
ଅବନୀଳେ ଗୁଣ ବସାଇଲା ରାଧେବର ତନୁ ।୧୧୧
ଗୁଣ ଦେଇ ଧନୁ ଆମଞ୍ଚନ କଲା
ସାଧୁ ସାଧୁ କର୍ଣ୍ଣ ବୋଲି ସଭାୟେ ଧ୍ୱନିୟେ ଶୁଭିଲା ।୧୧୨
ଧୃଷ୍ଟଦ୍ୟୁମନକୁ ପଚାରଇ ବୀର କର୍ଣ୍ଣ
ଲାଖର ଚରିତ କହ ତୋର କେଉଁଣ ବିଧାନ ।୧୧୩
ଧୃଷ୍ଟଦ୍ୟୁମନ କହଇ ଶୁଣ କର୍ଣ୍ଣ ମହାଛତ୍ରୀ
ସାତ ତାଳ ଉଚ୍ଛର୍ଗ ଲାଖ ଉର୍ଦ୍ଧଗତି ।୧୧୪
ରାଧାଚକ୍ର ଅଛି ସହସ୍ରେକ ଧାର
ଶୂନ୍ୟେଣ ଭ୍ରମଇ ସେ କୁରାଳ ଚକ୍ର ଆକାର ।୧୧୫
ତହିଁର ଉପରେ ଅଛି ସୁବର୍ଣ୍ଣର ରୋହି
ସେ ରୂପ ନିରୋପିବୁ ଜଳ ଘଟଇ ଚାହିଁ ।୧୧୬
ଛାଇ ନିରୋପନ୍ତେ ତଳକୁ ହୋଇବ ଦୃଷ୍ଟି
ନାରାଜ ବିନ୍ଧିବ ଉପରକୁ କରିବ ମୁଷ୍ଟି ।୧୧୭
ଚକ୍ର ନିକିଳି ମାଛର ଫୁଟିବ ବାମ ଆଖି
ଯେସନେକ ସରୂପେ ବିନ୍ଧିଲେ ଦେବଗଁ ଚନ୍ଦ୍ରମୁଖୀ ।୧୧୮
କୁମାର ବଚନ ଶୁଣି କର୍ଣ୍ଣ ମହାରଥୀ
ଲାଖ ପଟା ଉପରେ ଯାଇ ଉଠିଲେ ତତକ୍ଷଣାନ୍ତି ।୧୧୯
କୋଡ଼ା ଆମଞ୍ଚନ କଲା ଗୁଣ ଟଙ୍କାର ଶବଦ
ବିଦ୍ୟାଧର ତ୍ରାସିଲେ ଶବଦ ଘୋର ନାଦ ।୧୨୦
ତଳକୁ ଦୃଷ୍ଟି ଯେ ଉପରକୁ ମୁଷ୍ଟି
କର୍ଣ୍ଣର ତହିଁକି ଯେ ସବୁଙ୍କରି ଦୃଷ୍ଟି ।୧୨୧
ଆକ୍ରେଷି କର୍ଣ୍ଣବୀର ବିନ୍ଧିଲା ନାରାଜଇ
ଚାରିତାଳ ଉର୍ଦ୍ଧ୍ବର୍ଗେଣ ଚକ୍ରରେ ଅନ୍ତରୀକ୍ଷେ ବାଜଇ ।୧୨୨
ବାହୁଡ଼ି ନାରାଜ ପଡ଼ଇ ଭୂମିଗତେ
ନୋହିଲା ନୋହିଲା ବୋଲି ବୋଇଲେ ସମସ୍ତେ ।୧୨୩
ଲାଜ ପାଇ କର୍ଣ୍ଣ ବାହୁଡ଼ଇ ତଡ଼ତି
ସଭାରୁ ବାହାର ହୋଇଲେ ଦ୍ରୋଣ ମହାରଥୀ ।୧୨୪
ପ୍ରତଜ୍ଞା କରି ଭରଦ୍ୱାଦଶଙ୍କର ତନୁ
ଆକ୍ରେଷି ଧଇଲେ ଦୁତି ପିନାକୀ ଧନୁ ।୧୨୫
ନାରାଜ ପୂରୋଇ ପଟା ଉପରେଣ ଉଠି
ତଳକୁ କରି ଦୃଷ୍ଟି ପଟା ଉପରକୁ ମୁଷ୍ଟି ।୧୨୬
ଆକ୍ରେଷି ନାରାଜ ବିନ୍ଧିଲେ ଦ୍ରୋଣଗୁରୁ
ସୁଦ୍ରିଶେନ ଚକ୍ରେ ବାଜି ନାରାଜ ପଡ଼ିଲାକ ଦୂରୁ ।୧୨୭
ସଭାରେ ଲାଜ ପାଇଲେ ଗୁରୁ ମହାତମା
ପିତାର ଅଭିମାନେ ବାହାର ଅଶସ୍ତମା ।୧୨୮
ପ୍ରତଜ୍ଞା କରିଣ ସେ ଦ୍ରୋଣଙ୍କର ତନୁ
ଗୁଣ ଟଙ୍କାର କରି କରେ ଧଇଲେକ ଧନୁ ।୧୨୯
ପଟାର ଉପରେ ଉଠିଲେ ଯାଇ କୋପେ
ଆକ୍ରେଷି ନାରାଜ ବିନ୍ଧିଲେ ପରିତାପେ ।୧୩୦
ଚାରିତାଳ ଉଚ୍ଛର୍ଗେ ସୁଦ୍ରିଶେନ ଚକ୍ରେ ବାଜି
ବେନିଖଣ୍ଡ ହୋଇଲେ ନାରାଜ ଭୂମିରେ ପଡ଼ଇ ଭାଜି ।୧୩୧
ଲାଜ ପାଇ ବସିଲେ ଅଶସ୍ତମା ମହାରଥୀ
ସଭାରୁ ବାହାର ହୋଇଲେ ଭୀଷ୍ମ ସେନାପତି ।୧୩୨
ଲାଖର ସନ୍ନିଧେ ମିଳିଲେ ଗାଙ୍ଗେବ
ଆକ୍ରଷଣ କରି ଘେନିଲେ ଶିବା ଚାପ ବେଗ ।୧୩୩
ଭୀଷ୍ମେ ପଚାରିଲେ ଦ୍ରୋପଦର ବାଳେ
ଆମ୍ଭେ ଯେବେ ଲାଖ ବିନ୍ଧିବୁ ଧର୍ମବଳେ ।୧୩୪
ଦାରା ସଂଘରଣ ଆମ୍ଭେ କରିଅଛୁ ବାବୁ
ଆମ୍ଭେ ଲାଖ ବିନ୍ଧିଲେ କନ୍ୟା ଦ୍ରିଯୋଧନକୁ ଦେବୁ ।୧୩୫
ଶିଖଣ୍ଡୀ ବୋଇଲେ ବିନ୍ଧ ଯେ ତୋହୋର ଆଜ୍ଞା
ଯେବେ ଭୀଷ୍ମ ତୋହୋର ଦେଖିବା ପ୍ରତଜ୍ଞା ।୧୩୬
ଧନୁ ଧରି ଭୀଷ୍ମେ ପ୍ରତଜ୍ଞା କରୁଥିଲେ
ଶିଖଣ୍ଡୀକି ଦେଖି ସେ ବାହୁଡ଼ି ଅଇଲେ ।୧୩୭
ଦ୍ରିଯୋଧନ ବୋଇଲା ତାତ ବାହୁଡ଼ିଲ କିସ ଅର୍ଥେ
ଭୀଷ୍ମେ ବୋଇଲେ ହୋ କଷଣ ପଡ଼ିଲା ମୋତେ ।୧୩୮
ସଭାରେ ମଉନ ବ୍ରତେ ବସିଲେ ମହାମଲ୍ଲ
ସଭାରୁ ବାହାର ହୋଇଲେ ରାୟଗୁରୁ ଶଲ୍ୟ ।୧୩୯
ଲାଖର ତଳେ ଯାଇ ହୋଇଲେ ପରବେଶ
ଧନୁ ବାମ କରେ ଧରି କଲେ ଗୁଣ ଘୋଷ ।୧୪୦
ପଟାର ଉପରେ ଉଠିଲେ ନାରାଜେକ ପୂରୋଇ
ତଳକୁ ଦୃଷ୍ଟି ଉପରକୁ ମୁଷ୍ଟି କରି ବିନ୍ଧିଲେ ନିଠାଇ ।୧୪୧
ତିନିତାଳ ନାରାଜ ଯେ ଉପରକୁ ଉଠି
ଭୂମିରେଣ ନାରାଜ ଯେ ପଡ଼ିଲା ଲେଉଟି ।୧୪୨

ରାଜାମାନେ ହସିଲେ କରତାଳ ଦେଇ
ଶଲ୍ୟ ମହାରଥୀ ବସିଲେ ଅପମାନ ପାଇ ।୧୪୩
ରାୟଗୁରୁ ଶଲ୍ୟ ଯହୁଁ ବସିଲେକ ଲାଜେ
ଆସ୍ତାନୁ ଓହ୍ଲାଇଲେ କୃପ ଯେ ଆଚାର୍ଯ୍ୟେ ।୧୪୪
ଆଡ଼ୋ ଆଡ଼ୋ ବୋଲି ଯାଇଁ ଧନୁକୁ ଧଇଲେ
ପଟାର ଉପରେ ଉଠି ନାରାଜ ବିନ୍ଧିଲେ ।୧୪୫
ସର୍ବେଣ ନାରାଜ ଯେ ଉଠିଲା ତାଳ ତିନି
ବାହୁଡ଼ି ନାରାଜ ପଡ଼ିଲା ମେଦିନୀ ।୧୪୬
ଦେଖି କରି ସମସ୍ତେ ହୋଇଲେ ବ୍ୟାଜ ବ୍ୟାଜ
ଲାଜେଣ ବାହୁଡ଼ିଲେ କୃପ ଯେ ଆଚାର୍ଯ୍ୟ ।୧୪୭
ମଉନବ୍ରତ ହୋଇ ବସିଲେ ମହାଛତ୍ରୀ
ସଭାରୁ ବାହାର ହୋଇ ଭୂରିସର୍ବା ମହାରଥୀ ।୧୪୮
ରେ ରେ କାର କରି ପଟାରେ ଉଠିଲେ
ଲକ୍ଷେ ବଳ ଧନୁ ଧରି ହସ୍ତରେ ଆମଞ୍ଚିଲେ ।୧୪୯
ମହା ଭୀଷ୍ମମୂର୍ତ୍ତି କରି ନାରାଜେକ ସନ୍ଧି
ରୋଷଭରେ ମହାବୀର ନାରାଜ ଧରି ବିନ୍ଧି ।୧୫୦
ଚାରିତାଳ ପରିଯନ୍ତେ ଉପରକୁ ବାଣ ଗଲା
ଚକ୍ରେଣ ହାବୋଡ଼ି ବାଣ ବାହୁଡ଼ି ଅଇଲା ।୧୫୧
ନୋହିଲା ନୋହିଲା ବୋଲି ବୋଇଲେ ସମସ୍ତ ରାଜ ଦେବା
ତହୁଁ ଲାଜ ପାଇ ଆସ୍ତାନେ ବସିଲେ ଭୂରିସର୍ବା ।୧୫୨
ଆସ୍ତାନୁ ଡେଇଁଣ ପଡ଼ିଲା ଜଦ୍ୟରଥ
ଲାଖର ତଳେ ପରବେଶ ଦୁଶୀଳା ପ୍ରାଣନାଥ ।୧୫୩
ଧନୁ ଧରି ପଟା ଉପରେଣ ଉଠି
ତଳକୁ ଦୃଷ୍ଟି ଯେ ଉପରକୁ କଲା ମୁଷ୍ଟି ।୧୫୪
ଆକ୍ରଷଣ କରି ନାରାଜ ପୂରୋଇ ଉଛୁଡ଼ିଲା
ବେକର ଉପରେ ଧନୁ ମାଡ଼ିଣ ପଡ଼ିଲା ।୧୫୫
ମୁହଁ ମାଡ଼ି ତଳେ ପଡ଼ିଲା ନୃପତି ଜଦ୍ୟରଥ
ନାସିକା ମୁହଁ ବାଟେ ବହଇ ଶୋଣିତ ।୧୫୬
ପଡ଼ିଣ ଅସାଷ୍ଟମ ଯେ ହୋଇଲା ନୃପମଣି
ଧୃଷ୍ଟଦ୍ୟୁମନେ ଧନୁ ଉପରୁ କାଢ଼ି ଆଣି ।୧୫୭
ପକା ଯା ବୋଲି କରି ପେଲି ଦିଲା ଶିଖଣ୍ଡୀ
ପୁଣ ଥୋକାଯେ ଦୂରେ ପଡ଼ିଲା ମୁହଁ ମାଡ଼ି ।୧୫୮
କର୍ଣ୍ଣାଟ ଦେଶର ରାଜା କନ୍ଦର୍ପ ନୃପତି
ଲାଖ ବିନ୍ଧିବାକୁ ଆସଇ ମହାଛତ୍ରୀ ।୧୫୯
ଆକ୍ରେଷିଣ ଧନୁ ରାଜା କରେଣ ଧଇଲା
ପଟା ଉପରେ ଉଠି କୋଡ଼ା ଆମଞ୍ଚନ କଲା ।୧୬୦
ମାଡ଼ିଣ ଧନୁ ଯେ ପଡ଼ିଲା ହୃଦଗତେ
ପଟାର ଉପରେ ରାଜା ପଡ଼ିଲା ମୋହଗତେ ।୧୬୧
ଧାଇଁ ଯାଇଁ ପାଖେ ମିଳିଲା ଶିଖଣ୍ଡୀ
ଦୁଇ ହାଥେ ଧନୁ ଧରି ହୃଦରୁ ତାର କାଢ଼ି ।୧୬୨
ଯେମନ୍ତେ ଅପାର ରାଜା ବାହୁଡ଼ି ଅଇଲେ
ଲାଖ ବିନ୍ଧି ନ ପାରି ଅଭିମାନେ ବସିଲେ ।୧୬୩
ତବଦ ହୋଇ ସଭାରେ ବସିଲେ ସମସ୍ତ ନୃପତି
ଲାଖ ବିନ୍ଧିବାକୁ କାହାର ନ ବଳଇ ମତି ।୧୬୪
ସଭାରେ ପ୍ରବେଶ ହୋଇଲେ ଧୃଷ୍ଟଦ୍ୟୁମନ
ଭୋ ଦେବ ରାଜାଗଣମାନେ କିମ୍ପେ ହୋଇଲ ମଉନ ।୧୬୫
ଲାଖ ବିନ୍ଧିବାକୁ ଆସିବ ନା ଗୋସାଇଁ
ଯେତେ ଆର୍ଦ୍ଧୋଳି ମୁଁ ସହିଲି ଯହିଁର ପାଇଁ ।୧୬୬
ଅନ୍ତେ ଆସି ଯେ ହୋଉଛ ନିଷ୍ଫଳ
ତୁମ୍ଭଙ୍କୁ ଲଜ୍ଜା ତ ହୋଉଛି ସର୍ବକାଳ ।୧୬୭
ପୁଣ ପୁଣ ପଚାରଇ ସେ ଦ୍ରୋପଦର ବଛା
ଲାଖ ବିନ୍ଧିବାକୁ କାହାର ନାହିଁ ନା ଇଚ୍ଛା ।୧୬୮
ଲାଖର କଟିକ୍ଷି ନ କରନ୍ତି ନା ନୟନ
କନ୍ୟା ନେମାକୁ ଯେ ସବୁଙ୍କରି ମନ ।୧୬୯
ରାଜାଯେ ବୋଇଲେ ତୁମ୍ଭେ ଶୁଣସି ଶିଖଣ୍ଡୀ
ଦେବଙ୍କୁ ଦୁର୍ଲଭ ଯେବେଣ ଲାଖ ଖଣ୍ଡି ।୧୭୦
କାହିଁ ତୋର ଚକ୍ର କାହିଁ ତୋର ମହ
ଆବର ଅଶକ୍ୟ ଦେଖ ଧନୁବଳ ଯେକ ଲକ୍ଷ ।୧୭୧
ଅଦୃଷ୍ଟିକୁ ନାରାଜ ହୋ ବିନ୍ଧିତ କି ପାରି
କେବେଣ କେବେଣ ରାଜା ଅଇଲେ ବାହୁଡ଼ି ।୧୭୨
ଦ୍ରୋପତୀ ବୋଇଲା ସଖୀ ସରିଲା ସୟମ୍ବର
ଲାଖ ବିନ୍ଧିବାକୁ ରଜା କେହି ନୋହିଲେ ବାହାର ।୧୭୩
କେଶିନୀ ବୋଇଲା ବଡ଼ ବଡ଼ ରାଜାମାନେ ବିନ୍ଧି ନୁଆରିଲେ
ସାମାନ୍ୟ ରାଜାଯେ ଡରେ ବାହାର ନୋହିଲେ ।୧୭୪
ଦ୍ରୋପତୀ ବୋଇଲେ ଯେ ଯେତେବେଳେ ଆରମ୍ଭିଲେ ସୟମ୍ବର
ମୁହିଁ ବୋଇଲି ଯେ ଲାଖ ଦେବଙ୍କୁ ଅଗୋଚର ।୧୭୫
ଦୁଷ୍ଟ ଭାଇଙ୍କର ବୁଦ୍ଧି ଯେତେକ ପରପଞ୍ଚ
ଲାଖ ପାତିଲା ଦେବତାଳେ ସାତତାଳ ଉଞ୍ଚ ।୧୭୬

ମାନବତାଳକୁ ଅଣଚାଶ ତାଳ ଅଟଇ
ନିରୋପି ଚାହିଁଲେ ଦିଶଇ ଅର୍ଦ୍ଧ ଆକାଶଇ ।୧୭୭
ଚକ୍ର ଉପରକୁ ବିନ୍ଧିବେ ନା ପ୍ରତକ୍ଷ
କେମନ୍ତେ ଦୃଷ୍ଟି ପାଇବ ଅଟଇ ନା ବଡ଼ ଓଛ ।୧୭୮
ମାନବତାଳେ ସାତତାଳ ଯେବେ ହୁଅନ୍ତା ଯୁଗତେ
ତାହା ବିନ୍ଧିବାକୁ ଅପାର ରାଜା ହୁଅନ୍ତେ ।୧୭୯
ଦେବତାଳେ ସାତତାଳ ଉଚ୍ଛର୍ଗ କଲା
ତହିଁର ଉପରେ ନେଇ ଚକ୍ରେକ ପାତିଲା ।୧୮୦
ସେ ଚକ୍ର ପୁଣ ନ ଥାଇ ସ୍ଥିର ହୋଇ
ଅନୁବରତେ ଭ୍ରମୁଥାଇ କୁରାଳ ଚକ୍ର ପ୍ରାୟେ ହୋଇ ।୧୮୧
ଆବର ବିପରୀତ ଦେଖ କନକର ମସ୍ତ
ଚକ୍ର ଉପରକୁ ଯେ ବିନ୍ଧିବ ନା ପ୍ରତକ୍ଷ ।୧୮୨
ତାହା ନ କରି ଗୋ ପୁଣ ମାଛେକ ଭିଆଇଲା
ସେ ମାଛର ଦେହକୁ କିମ୍ପେ ଲାଖ ଗୋ ନ କଲା ।୧୮୩
ସେ ମାଛର ପୁଣ କଲା ବାମ ଆଖି
ଯେହେନେକ ପରପଞ୍ଚ କଲା ବିଚାରନି ସଖୀ ।୧୮୪
ଭୂମିରେ ଥାଇ ସିନା ବିନ୍ଧିବାକ ଶର
ତାହା ନ କରି ପଟାୟେକ କଣ୍ଟିଲା ତାଳେକ ଉପର ।୧୮୫
ତହିଁ ଉପରେ ଉଠି ଧନୁକୁ ଧଇଲେ
ମୁଣ୍ଡ ବୁଲାଇ ପଡ଼ନ୍ତି ତଳକୁ ଦୃଷ୍ଟି ଦିଲେ ।୧୮୬
ଯେ ଯାହାର ଧନୁ ତାହାକୁ ସେ କଳ
ତାହା ଛାଡ଼ି ଶିବଧନୁ କଲା ଲକ୍ଷେକ ବଳ ।୧୮୭
ଯେମାନ ସବୁ ଯେବେ କଲାକ ଅଶକ୍ୟ
ନାରାଚ ବିନ୍ଧିବେନା ଉପରକୁ କରି ମୁଖ ।୧୮୮
ଆବର ବିପରୀତ ଦେଖ ଉପରକୁ ଥିବ ମୁଷ୍ଟି ତଳକୁ ଥିବ ଦୃଷ୍ଟି
ଚକ୍ର ଭେଦି ମାଛର ବାମ ଚକ୍ଷୁ ଯିବ ଫୁଟି ।୧୮୯
ଯେହେନେକ ଅଗୋଚର ଲାଖ କାହିଁ ଅଛି
ଯେତେ ଧଂସି ହୋଇଲା କାର୍ଯ୍ୟ ନୋହିଲା କିଛି ।୧୯୦
ଯେଡ଼େ ସୟଂବର ସଖୀ ଗୋ ନିଷ୍ଫଳ ହୋଇଲା
କରପତ୍ର ଯୋଡ଼ି କେଶିନୀ ମୁଦୁସୁଲୀ କହିଲା ।୧୯୧
ମୋହୋର ବୁଦ୍ଧିଯେକ ବରିବୁ କି ଗୋ ମାୟେ
ଯେ ତୋହୋର ଇଚ୍ଛା କରିବୁ କି ରାଜା ଗୋଟିୟେ ।୧୯୨
ପୂର୍ବେ ସୟମ୍ବର କଲା ଭୀଷ୍ମକ ନୃପତି
ଦେବତାନ୍ତ ଛାଡ଼ି ନଳକୁ ବରିଲା ଦମୟନ୍ତୀ ।୧୯୩
ଚନ୍ଦ୍ରଧ୍ୱଜ ରାଜାର ଦୁହିତା ଇନ୍ଦୁମତୀ
ଇଚ୍ଛାୟେ ବରିଲା ସେହୁ ଅଜ ନରପତି ।୧୯୪
ଇଚ୍ଛାୟେ ବରିଲେ ସୀତା ଦେବ ରଘୁପତି
ଲକ୍ଷ୍ମୀ ଦେବୀ ଇଚ୍ଛାୟେ ବରିଲେ ଶ୍ରୀପତି ।୧୯୫
ସମୁଦ୍ର ମନ୍ଥନୁଁ ଜାତ ବରୁଣର ଦୁହିତ
ବ୍ରହ୍ମା ରୁଦ୍ର ଛାଡ଼ି ବରିଲେ ଜଗନ୍ନାଥ ।୧୯୬
ପଦ୍ମମାଧବ ଦୁହିତା ବରିଲା ଇନ୍ଦ୍ରଙ୍କୁ
ସୁମିତ୍ରା ବରିଲା ଯେ ଦଶରଥ ରଜାଙ୍କୁ ।୧୯୭
ସୂର୍ଯ୍ୟ ସୟମ୍ବର କଲା ନାହିଁକି ତପତୀ
ଦେବତାନ୍ତ ଛାଡ଼ି ବରିଲା ଶମ୍ବୁରାଣ ନୃପତି ।୧୯୮
ରୁକ୍ମଣ ଯେ ଶିଶୁପାଳକୁ ବରିଥିଲେ
ସେ ପୁଣି ଗୁପତେ ନାରାୟଣଙ୍କୁ ବରିଲେ ।୧୯୯
ତୋହୋର ବିଚାରୁ ଯେଥୁ ରାଜା ଯେକ ବର
ଯେ ମୋହୋର ବାକ୍ୟ ଦେବୀ ନିରାଧାର କର ।୨୦୦
ଦ୍ରୋପଦୀ ବୋଇଲେ ଗୋ ଯାହା ବୋଇଲୁ ଏ ସତ
ଯେ ରାଜାମାନଙ୍କୁ କାହାକଇଁ ନ ବଳଇ ମୋହୋର ଚିତ୍ତ ।୨୦୧
କେହେନେକ ଭିଆଣ ଗୋ କରିଅଛି ଚକ୍ରଧର
ସେହି ସେ ଜାଣନ୍ତି ସଖୀ ଆଶା ଯେ ମୋହୋର ।୨୦୨
ଅଭୟେ ମାହେଶ୍ୱରୀ ଗୋ ଅନାଦି ଶକତି
ସହସ୍ରେକ ଭୁଜେଣ ଯେ ଅଗ୍ନିରୁ ଉତପତ୍ତି ।୨୦୩
ଖଟ୍ୱାଙ୍ଗ ଡମ୍ବରୁ ପିନାକ ଶୂଳ ହସ୍ତର
ଶଙ୍ଖ ଚକ୍ର ଗଦା ପଦ୍ମ ଶାରଙ୍ଗ ଧନୁ ଧର ।୨୦୪
ଅଦୃଶ୍ୟେ ସୁଦ୍ରିଶେନ ନୀଳ ଚକ୍ରଧାରୀ
ଛେଲ ବାବଲ କୋନ୍ତ ନାରାଚ କରେ ଧରି ।୨୦୫
ଗଦା ମୁଦଗର ଯେ କୋଦଣ୍ଡ ପିନାକୀ
ମତୁଆଳ ତାଳେ ବାଜଇ ନବଲକ୍ଷ ଡାକି ।୨୦୬
ଶୂଳ ଶକତି ଅମୋହ ଶକତି ବଜ୍ର ଶକତି
ହିମ ଅସ୍ତ୍ର ସୂର୍ଯ୍ୟଅସ୍ତ୍ର ଅନଳ ତେଜ କାନ୍ତି ।୨୦୭
କାଳଫାଶୀ ନାଗଫାଶୀ, ଜଳଫାଶୀ ପରିମାଣି
ଅଭୟା କାନ୍ତାନୀ ମାତାଙ୍ଗୀ ମାର ଘୋର ଖଣ୍ଡଣୀ ।୨୦୮
କୋଦଣ୍ଡ ଅଜଙ୍ଗ ଧନୁ ଆଦ୍ରାବଳୀ ଧନୁଧାରୀ
ନାରାୟଣ ଶହସ୍ର ମୋହନା ଶହସ୍ର ବଜ୍ର ଶହସ୍ର ଉଭାରି ।୨୦୯
ମାନିନୀ ମାନବତୀ ଗୋ ଅଭୟେ ମହାଘୋରରୂପା
ଅନନ୍ତ ନାଗ ଭୂଷଣୀ ଗୋ ଚରଣେ ଗଗନ କ୍ଷେପା ।୨୧୦

ପାତାଳେ ପାଦ ଯାହାର ଆକାଶେ ମୂର୍ଦ୍ଧନା
ଭସ୍ମ ବିଲେପନ, ଅଙ୍ଗେ ଶୋହେ ବଜ୍ରସେହ୍ନା ।୨୧୧
ପଟହ କୁଣ୍ଡଳୀ ଅଧାଟି ସରଗୁଣା
ପିନାକୀ ଖଟ୍ୱାଙ୍ଗ ଅଭୟ ବ୍ରହ୍ମସ୍ୱର ବୀଣା ।୨୧୨
ଚଞ୍ଚପୁଟ ଚାଞ୍ଚପୁଟ ଘଟି ଯେ ଉତ୍କଟି
ଭଗହର ତାଣ୍ଡବ ଯେ ପଞ୍ଚତାଳେ ଖଟି ।୨୧୩
ବଂଶୀ ମନ୍ଦିରା ଘର୍ଘରା ବାଜେ ପୁଣି ପୁଣି
ମର୍ଦ୍ଦିଲୁ ଦତ୍ୟବଳ ମୋହିନୀ ଗୋସାମଣୀ ।୨୧୪
ଡିବି ଡିବି ଡମ୍ବରୁ ମାତାଙ୍ଗୀ ମତୁଆଳୀ
ଗାବନ୍ତି ନାଚନ୍ତି ମଦିରା ରସ ଭୋଳୀ ।୨୧୫
ଭୋଳ ରସେ ମତୁଆଳୀ ସୁରଙ୍ଗ ରସ ସଙ୍ଗିତା
ସର୍ବ ଭୟ ଭଞ୍ଜନୀ ଗୋ ଭଗତ ଜନଚିନ୍ତା ।୨୧୬
ଅରଷ୍ଟି ଅପାଦ ଗୋ ପାତକ ମୋର ଖଣ୍ଡି
ପର ଦୁଖେ କାତରା ଗୋ ଚନ୍ଦ୍ରିକା ଚୂଳ ମଣ୍ଡି ।୨୧୭
ଚଣ୍ଡୀ ଚାମଣ୍ଡୀ ଭୈରବୀ ମିଳିଣ ସକଳେ
ଭୂତ ପ୍ରେତ ପିଚାଶୁଣୀ ନାଚନ୍ତି କୁତୋହୋଳେ ।୨୧୮
ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ଭଳି
ମହାରସେ ବୁଡ଼ାଇ ଯେ ମହୁମାଂସ ଭୋଜୀ ।୨୧୯
ଅମାର୍ଗ ମାର୍ଗ ଯାହାର ତ୍ରୈଲୋକ୍ୟ ଯେକ ଖଣ୍ଡ
ତୁହି ଗୋସାମଣୀ ମଣୁ ମନୁକୁ ଚାରିଦଣ୍ଡ ।୨୨୦
ଚଞ୍ଚଳା ଚର୍ଚ୍ଚିକା ମେଖଳା ଯେ ମହାଖଳା
ପ୍ରସନ୍ନେ ଅଭୟ ବର ଦେଉ ଗୋ ସର୍ବମଙ୍ଗଳା ।୨୨୧
ଯେ କଳିକାଳ ପାତକ ତୁହି ପାରୁ ଖଣ୍ଡି
ଶୂଦ୍ରମୁନି ସାରୋଳ ଦାସକୁ ପ୍ରସନ୍ନ ହୋଇବା ସିଦ୍ଧ
ସାରୋଳଚଣ୍ଡୀ ।୨୨୨
ଯେସନେକ ସ୍ତୁତି ଯହୁଁ କଲେକ ପାଞ୍ଚାଳୀ
ସଦୟେ ପ୍ରସନ୍ନ ହୋଇଲେ ଭଦ୍ରକାଳୀ ।୨୨୩
ଧର୍ମ ଉଦିତ ଯେ ହୋଇ ପାଞ୍ଚାଳୀକି
ଆଗେ ଦୃଶ୍ୟ ହୋଇଲା ଶଙ୍ଖଚିଲ ଉଦଳିଆ ପକ୍ଷୀ ।୨୨୪
ବାମ ନୟନ ଦେବୀର ଯେ ଘନ ଘନ ଫୁରି
ଶୁଭ ଶକୁନ୍ୟ ଯେ ଦେଖାଇଲେ ଶାକାମ୍ବେରୀ ।୨୨୫
ଯେମନ୍ତର ସମୟେ ଯେ ସ୍ୱାମୀ ବଳରାମ
କଥାୟେ ପୁଚ୍ଛା କରିବା ଶୁଣ ହେ ପୁରୁଷୋତ୍ତମ ।୨୨୬
ଅସମ୍ଭବ ଲାଖ ଯେ କଳାକ ଦ୍ରୋପଦ
ଲାଖ ବିନ୍ଧି ନ ପାରିଲେ ରାଜଗଣ ବୃନ୍ଦ ।୨୨୭

ନାରାୟଣ ବୋଇଲେ ଶୁଣିମା ବଳଦେବ
ତୁମ୍ଭେ ଯେ ବୋଇଲ କର୍ଣ୍ଣ ମହାଲାଖ ବିନ୍ଧିବ ।୨୨୮
ବଳରାମେ ବୋଇଲେ ସେ ଅଟେ ଦୃଷ୍ଟିଭେଦୀ
ତେଣୁ ବିଚାରିଲୁ ଅବା କର୍ଣ୍ଣ ପାରେ ଲାଖ ବିନ୍ଧି ।୨୨୯
ଯେ ଲାଖ ବିନ୍ଧିବାକୁ ହରି କେ ଅଛି ସାମର୍ଥ
ଯେହା ସଞ୍ଚପି ମୋତେ କହସି ବାରତ ।୨୩୦
ଯହୁଁ କଷ୍ଟୋରେଣ ପଚାରିଲେ ସଂକ୍ରିଷେଣ
ବଳରାମଙ୍କ ଅଗ୍ରତେ କହନ୍ତି ନାରାୟଣ ।୨୩୧
ସାବଧାନେ ଶୁଣ ଦେବ ବଦୟନ୍ତି ଶ୍ରୀବତ୍ସ
ତିନି ଭୁବନେ ବିନ୍ଧନ୍ତା ଦେବ ତିନିଜଣ ଅଛି ।୨୩୨
ବଳରାମ ବୋଇଲେ ଶୁଣ ଜଗନ୍ନାଥ
ସରୂପ କହ କିନା କେ ବିନ୍ଧିବ ମହାଲାଖ ।୨୩୩
ଜଗନ୍ନାଥେ ବୋଇଲେ ଆକାଶେ ବିନ୍ଧି ପାରଇ ସୁରପତି
ପାତାଳେ ବିନ୍ଧି ପାରଇ ବାସୁକି ଯୁଗତି ।୨୩୪
ମର୍ତ୍ତେ ବିନ୍ଧି ପାରଇ ବୀର ଫାଲ୍‌ଗୁନି
ତୈଲୋକ୍ୟର ମଧ୍ୟେ ସର୍ବେ ଅଛନ୍ତି ଜଣ ତିନି ।୨୩୫
ହଳୀ ବୋଇଲେ ଇନ୍ଦ୍ର ଦେବତା ଲାଖ ବିନ୍ଧି ପାରଇ ଯେବେ
ଅମରପୁର ତେଜି କିମ୍ପା ନଇଲା ବାସବେ ।୨୩୬
ଜଗନ୍ନାଥେ ବୋଇଲେ ଶୁଣ ଦେବ ହଳପତି
ପୁରନ୍ଦରକୁ ଅଯୋଗ୍ୟ ଅଟଇ ଦ୍ରୋପତୀ ।୨୩୭
ବଇବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଙ୍କି
ପ୍ରତକ୍ଷେ ପାଞ୍ଚାଳୀ ଅନଳୁଁ ଜାତ ଟିକି ।୨୩୮
ଯେ କଥା କହିଲେ ଜଗନ୍ନାଥେ ବଳଦେବଙ୍କ ଆଗେ
ଇନ୍ଦ୍ର ଦେବତାଙ୍କୁ ଯିସ୍ପସେନି ହୋଇଲା ଅଯୋଗ୍ୟେ ।୨୩୯
ପ୍ରତକ୍ଷେ ଦ୍ରୋପଦ ରଜା ବ୍ରାହ୍ମଣ ନୃପତି
ମହାଯାଗ ଭେଦି କନ୍ୟା ଅନଳୁଁ ଉତପରି ।୨୪୦
ଅଗସ୍ତି ବୋଇଲେ ଶୁଣ ବଇବସ୍ୱତ ମନୁ
ମିଥ୍ୟା ବଚନ ନୁଆସଇ ନାରାୟଣଙ୍କର ବଦନୁଁ ।୨୪୧
ଅର୍ଜୁନର ଭାରିଯା ସେ ହୋଇବ ଯୁଗତେ
ଇନ୍ଦ୍ରଦେବତାଙ୍କର କୁଳବଧୂ ସେ ଅଟଇ ତେମନ୍ତେ ।୨୪୨
ବଳରାମଙ୍କୁ ବଞ୍ଚାଇଣ କହିଲେ ଦାମୋଦର
ଇନ୍ଦ୍ରକଇ ଅଯୋଗ୍ୟ ବୋଲି ବୋଇଲେ ନୀଳାମ୍ବରଙ୍କ
ଆଗର ।୨୪୩
ଶ୍ରୀବଳରାମେ ତାହା ନୁଆରିଲେ ଜାଣି
ଅଯୋଗ୍ୟ ହୋଇଲାରୁ ତ ନୁଆସିବ ବଜ୍ରପାଣି ।୨୪୪

ତୁ ଯେବେ ଲାଖ ବିନ୍ଧି ପାରିବୁ ବନମାଳୀ
ଦ୍ୱାରିକାକୁ ଅବିଷେକୀ ଯେ ତ ଯୋଗାଇ ପାଞ୍ଚାଳୀ ।୨୪୫
ପ୍ରତକ୍ଷେ ଉତପତ୍ତି ଅଦାରା ଅଯୋନି
ମହାଯାଗୁଁ ଜାତ କଲେ ବ୍ୟାସ ମହାମୁନି ।୨୪୬
ନୀଳାମ୍ବରଙ୍କ ଅଗ୍ରତେ ବଦୟନ୍ତି ଜଗନ୍ନାଥେ
ମୁହିଁ କାହିଁ ବିନ୍ଧିବି ମୋତେ ଦ୍ରୋପତୀ ଅପ୍ରାପତେ ।୨୪୭
ମନଭେଦୀ ନାରାଚ ତ ମୋହୋର ତହିଁ ନାହିଁ
ତେଣୁ ସେ ଅପ୍ରାପତ ଶୁଣ ହଳସାଇଁ ।୨୪୮
ବଳରାମ ବୋଇଲେ ଶୁଣ ମଧୁହାରୀ
ଇନ୍ଦ୍ରକୁ ଅଯୋଗ୍ୟ ତୋତେ ଅପ୍ରାପତ କୁମାରୀ ।୨୪୯
ଯୁଝେଷ୍ଟି ଭୀମ ଅର୍ଜୁନ ନକୁଳ ସହଦେବ
ଜତୁର ଘରେ ଦହନ ହେଲେ ପଞ୍ଚ ଯେ ପାଣ୍ଡବ ।୨୫୦
ଆବର ଯେଥେଁ କିମ୍ପା ଥିବାକ ଦୁଖ ପଡ଼ି
ପଞ୍ଚଯେ ଦ୍ରୋପତୀ ହୋଇଲା ଅବେହାଡ଼ୀ ।୨୫୧
ଉଠ ବାବୁ ବାସୁଦେବ ଦ୍ୱାରକାକୁ ଯିବା
ଖରା କାକର କୁହୁଡ଼ି ଶୀତରେ କିମ୍ପାଇଁ ପଡ଼ିଥିବା ।୨୫୨
ଶ୍ରୀ ଜଗନ୍ନାଥ ବୋଇଲେ ସ୍ୱାମୀ ରହିବା ଆଜକ
କାଲି ଅବଶ୍ୟ ଦେବ ବିନ୍ଧିବ ଜଣେ ଲାଖ ।୨୫୩
ବଳରାମ ବୋଇଲେ ମୋତେ କହୁ କିନା କହ୍ନାଇ
ଆପଣେ ବିନ୍ଧିବୁ ଯେବେ ଆବର କିମ୍ପା ଆମ୍ଭନ୍ତ ଲୁଚାଇ ।୨୫୪
କରପତ୍ର ଯୋଡ଼ିଣ ବୋଲନ୍ତି ଜନାର୍ଦ୍ଦନ
କାଲି ପ୍ରଭାତେ ବିନ୍ଧିବ ଲାଖ ଅରଜୁନ ।୨୫୫
ନାରାୟଣଙ୍କ ବଦନୁ ଯେସନେକ ବଚନ ଶୁଣି
ଆତ୍ମା ଉଛର୍ଗିଲା ପ୍ରାୟେ ବିରସ ଦେବ ହଳପାଣି ।୨୫୬
ଜତୁର ଘରେ ପାଣ୍ଡବେ ହୋଇଲେ ଦହନ
ଦିବସେ କୃଷ୍ଣ ତୁହି କି ଦେଖିଲୁ ସ୍ୱପନ ।୨୫୭
ଆମ୍ଭେ ସମସ୍ତେ ପାଣି ଦରଶନେ ଗଲୁ
ପାଣ୍ଡବେ ଦହନ ହୋଉ ଅଛନ୍ତି ପ୍ରତକ୍ଷେ ଦେଖିଲୁ ।୨୫୮
ପଞ୍ଚୁପାଣ୍ଡବେ କୋଇନ୍ତା ବ୍ରାହ୍ମଣ ପୁରଞ୍ଜନ
ଦହନ ହୋଇଲାଠାରେ ଯେ ଦେଖିଲୁ ବର୍ଣ୍ଣ ଚିହ୍ନ ।୨୫୯
ଅଗୋଚର କଥା ବାବୁ କହିଲୁ ବାସୁଦେବ
ଆବର ବ୍ରତି କାହିଁ ଅଛନ୍ତି ପାଣ୍ଡବ ।୨୬୦
ନାରାୟଣ ବୋଇଲେ ସ୍ୱାମୀ ଶୁଣିମା ହଳହସ୍ତେ
ପାଣ୍ଡବେ ଉତପତ୍ତି ଭାରାଭର ନିବାରିବା ଅର୍ଥେ ।୨୬୧
ଦେବକୁଳେ ଅଛନ୍ତି ଦେବ ସୁରପତି
ଋଷିକୁଳେ ଅଛନ୍ତି ବ୍ୟାସ ମହାଯତି ।୨୬୨
ରାଜାକୁଳେ ସପକ୍ଷ ଅଛନ୍ତି ବିଦୁର
ମନ୍ତ୍ରୀଚୂଡ଼ାମଣି ସହଦେବ ସଙ୍ଗତର ।୨୬୩
ଯେହାଙ୍କର ଥାନ୍ତେ ପାଣ୍ଡବଙ୍କର ନାହିଁ ମୃତୁ
ମରଭୋଳ ନାଥ ନ ଜାଣ ତୁମ୍ଭେ ତତ୍ତ୍ୱ ।୨୬୪
ସଞ୍ଚଯେ ଯେବେ ପାଣ୍ଡବଙ୍କର ହୋଅନ୍ତା ନ ମୃତୁ
ମୋତେ କାମପାଳ ସ୍ୱାମୀ କାହିଁ ତୁ ଦେଖନ୍ତୁ ।୨୬୫
ପାଣ୍ଡବଙ୍କର ମୃତପିଣ୍ଡକୁ ମୁହିଁ ଅଟଇ ସମିଧ
ଛଡ଼ ଜଣ ଆମ୍ଭେ ଉତପତ୍ତି ହୋଇଛୁ ଯେ ଭୁବନର ମଧ ।୨୬୬
ଜଗନ୍ନାଥଙ୍କର ତହୁଁ ଶୁଣି ନିଷ୍ଠୁର ବାଣୀ
ବଳରାମ ବିସରିଲେ ନାରାୟଣ ବଚନ ଶୁଣି ।୨୬୭
ମୁଁ ତୋର ସୋଦର ହରି ମୋତେ ତୋର ମାୟା
ଆମ୍ଭନ୍ତ ଲୁଚାଇ ପାଣ୍ଡବଙ୍କୁ ତୋହୋର ଯେଡ଼େ ଦୟା ।୨୬୮
ପାଣି ଦର୍ଶନେ ଯେ ମୋତେ ଘେନି ଗଲୁ
ମୃତୁପିଣ୍ଡ ଦେଖି ଯେ ମୂଚ୍ଛାଗତ ହୋଇଲୁ ।୨୬୯
ଅନେକ ବାଗେ ତୋତେ ମୁହିଁ କଲି ସମାର୍ଜନ
ଭୂମିରେ ଲୋଟି ଯେ କରୁଥିଲୁ ତୁ ରୋଦନ ।୨୭୦
ଯେଡ଼େ କଥା ହରି କାହିଁକି ତୋର ଗଲା
କାଳେ ଆସି ପୁଣ ବାବୁ ଯେମନ୍ତ ହୋଇଲା ।୨୭୧
ମୋତେ ହରି ହିଆରେ ତୋହୋର ଯେଡ଼େ କଇତବ କଥା
ତୋହୋର ସଙ୍ଗରେ ହରି ନ ଥାଇ ସର୍ବଥା ।୨୭୨
ଯେତେ ବୋଲି ବଳରାମେ ରାଗେ ଉଠିଗଲେ
ମୁହଁ ତୋର ନ ଚାହିଁବି ବୋଲିଣ ବୋଇଲେ ।୨୭୩
କାଦମ୍ବରୀ ପାନେ ଭୋଳ ଯାହାର ମତି
ଥୋକାଯେ ଦୂର ଯାଇ ଭାଳନ୍ତି ଶାନ୍ତି ମୃତି ।୨୭୪
ଆମ୍ଭେ ଯେବେ ଯେଥୁ ରାଗେ ଯିବା ଆଜ
ପାଣ୍ଡବଙ୍କୁ ଅଭାବ ବୋଲି ବୋଲିବେ ଦେବରାଜ ।୨୭୫
ଥୋକାଯେ ଦୂରୁଁ ବାହୁଡ଼ିଲେ ଦେବ ବଳେବର
ପୁଣିହିଁ ଆସି ବସିଲେ ଜଗନ୍ନାଥଙ୍କ କତିର ।୨୭୬
ପରମ କଲ୍ୟାଣ ବାବୁ ହୁଅସି ଶ୍ରୀପତି
ସତେ ହେଁ କି ପାଣ୍ଡବେ ଅଛନ୍ତି ନା ବ୍ରତି ।୨୭୭
ପାଣ୍ଡବେ କୁଶଳେ ଯେବେ ଅଛନ୍ତି ପାଞ୍ଚଭାଇ
ଜତୁର ଘରେ ଆନ କେ କେ ହୋଇଲେ ଯେ ଦହି ।୨୭୮

ଗୋବିନ୍ଦେ ବୋଇଲେ ସ୍ୱାମୀ ଶୁଣିମା ନୀଳାମ୍ବର
ପାଣ୍ଡବନ୍ତ ମାରିବା ନିମନ୍ତେ ଭିଆଇଲେ ଜତୁର ଘର ।୧୨୭୯
କକଡ଼ା ମାସ ଶୁକ୍ଳପକ୍ଷ ପଞ୍ଚମୀ ଭୂମିବାର
ମହା ବରଷଣ କଲାକ ଦେବ ଅତି ଘୋର ।୧୨୮୦
ଅଙ୍ଗର ନାମେଣ ଦେବ ଯେ ଯେକଇ କିରାତ
କଉଶିକ ବନେ ଗୃହବାସ ତାର ସ୍ଥିତ ।୧୨୮୧
ସେ କିରାତ ନାଶ ଗଲା ବଜ୍ରର ବିଘାତେ
କିରାତୁଣୀ ପଳାଇଲା ତୁଲେ ଘେନି ପଞ୍ଚଗୋଟି ପୁତ୍ରେ ।୧୨୮୨
ଜତୁର ଘରେ ଯାଇ ଆଉଜିଲେ ନିଶାରାତି
ଜୟନ୍ତା ନାମ ଶୁଣି କୋଇନ୍ତାଯେ କଲେକ ପୀରତି ।୧୨୮୩
ପଞ୍ଚଗୋଟି ପୁତ୍ର ଘେନି ରହିଲା ଜତୁର ଘରେ
ପୁରଞ୍ଚନ ପଣ୍ଡା ଥିଲା ତାହାଙ୍କର ସଙ୍ଗରେ ।୧୨୮୪
ସେହି ରାତି ପଞ୍ଚ ପାଣ୍ଡବେ ବାହାର ହୋଇଗଲେ
ଭୀମସେନ ପୁର ଦହିଲା ସମସ୍ତେହେଁ ନାଶ ଗଲେ ।୧୨୮୫
ତହୁଁଣ ସୁରନଦୀ ପାର ହୁଅନ୍ତେ ପଞ୍ଚୁବୀରେ
କୁମ୍ଭୀର ଦତ୍ୟ ମାଇଲା ଭୀମସେନ ଜଳର ଭିତରେ ।୧୨୮୬
ଶବରୁଣୀ ପଞ୍ଚପୁତ୍ରେ ପୁରଞ୍ଚନ ପଣ୍ଡା ଲାଇ
ଯେ ସାତେହେଁ ଜତୁର ଘରେ ହୋଇଲେକ ଦହି ।୧୨୮୭
ପୂର୍ବର ଦୋଷେ ତାଙ୍କୁ ପଡ଼ିଲା ପ୍ରମାଦ
ପାଣ୍ଡବେ ମଲେ ବୋଲି ଶୁଭିଲା ଶବଦ ।୧୨୮୮
ବିଦୁର ବୁଦ୍ଧିରେ ପାଣ୍ଡବେ ଗଲେ ବିମ୍ୱରେ ଗଳି
ସୁର ନଦୀରେ ନାବ ଚଢ଼ି ହୋଇଲେକ ପାରି ।୧୨୮୯
କୁମ୍ଭାରି ଦଇତକୁ ଭୀମ ମାଇଲା ସୁର ନଦୀ ଭିତରେ
କୋଇନ୍ତା ଆଦି କରି ତହୁଁ ଚଳିଗଲେ ଖରେ ।୧୨୯୦
କିମ୍ମରି ଦଇତକୁ ମାଇଲା ମଧୁବନେ
ହିଡ଼ିମ୍ବକ ବଧ୍ୟ କଲା ହିଡ଼ିମ୍ବକ ବନେ ।୧୨୯୧
ହିଡ଼ିମ୍ବିକାକି ବିଭା ହୋଇଲେ ଭୀମସେନ
ତାହାର ହୋଇଲା ଘଟଉତ୍କଟ ନନ୍ଦନ ।୧୨୯୨
ଓଡ଼ାଦି ଶିବପୁରେ ଯେକାଚକ୍ରା ନଗ୍ର କଲେ
ଚାଣ୍ଡାଳ ବଳ ମାରି ବିଷ୍ଣୁକରକୁ ରାଜ୍ୟ ଦିଲେ ।୧୨୯୩
ଯେକଚକ୍ରା ନଗ୍ରେ ମାଇଲା ବକ ରାକ୍ଷସ
ଅଙ୍ଗାରପନଙ୍ଗ ଯୁଦ୍ଧରେ ଜିଣିଲେ ବିବସ୍ତ ।୧୨୯୪
ଗୋବିନ୍ଦେ ବୋଇଲେ ସ୍ୱାମୀ ଶୁଣିମା ବଳେବର
ଯେ ବ୍ରାହ୍ମଣ ସଭାରେ ଅଛନ୍ତି ଯୁଝେଷ୍ଟି ଠାକୁର ।୧୨୯୫
ନାରାୟଣ ବଚନେ ଯେ କହନ୍ତି ସଂକ୍ରଷେଣ
କୁଶଳେ ବ୍ରତି ଥାନ୍ତୁ ଯୁଝେଷ୍ଟି ନକୁଳ ସହଦେବ ଅର୍ଜୁନ ।୧୨୯୬
ଯେକା ମରନ୍ତା ଯେବେ ଭୀମା ବଡ଼ ମନ୍ଦ
ଆମ୍ଭର ତୁଲେ ସେ କରି ଲୋଡ଼େ ଦ୍ୱନ୍ଦ ।୧୨୯୭
ଆମ୍ଭଙ୍କୁ ଦେଖିଲେ ସେ ନ ଉଠଇ ବସଇ ପିଠି କରି
ତାହାକୁ ମାତ୍ର ମୋର ହୃଦେ କିନ୍ତୁ ଅଟଇ ମୁରାରି ।୧୨୯୮
ଗୋବିନ୍ଦେ ବୋଇଲେ ସ୍ୱାମୀ ଯେବେ ଭୀମା ନାଶ ଯିବ
ପୃଥିବୀର ଭାରା ଆନେ କେ ଉଶ୍ୱାସ କରିବ ।୧୨୯୯
ଯେମାନେ ଯେ ବସିଛନ୍ତି ମହା ମହା ବୀରା
ସ୍ୱାମୀ ପୃଥୀ ନ ସହଇ ଯେହାଙ୍କର ଭାରା ।୧୩୦୦
ବଳରାମ ବିସରିଲେ ଜଗନ୍ନାଥଙ୍କ ବଚନେ
ଧୃତିରାଷ୍ଟ୍ରର ପୋୟେ ଆବର ବ୍ରତିବେ କେସନେ ।୧୩୦୧
ପାଣ୍ଡବଙ୍କୁ ଯେବେ ତୋହୋର ଯେଡ଼େକ ସଦୟେ
ନିଶ୍ଚୟେ ନାଶ ଗଲେ ଗାନ୍ଧାରୀ ଶତେ ପୋୟେ ।୧୩୦୨
ଶ୍ରୀବଳରାମେ ପଚାରିଲେ ଶୁଣ ହୋ ଗୋବିନ୍ଦି
ଅର୍ଜୁନ କିମ୍ପା ଯେବେ ନୁଆସଇ ଲାଖବିନ୍ଧି ।୧୩୦୩
କାମପାଳ ସ୍ୱାମୀଙ୍କି ନାରାୟଣ ବୁଝାଇ
ଅର୍ଜୁନ କାହୁଁ ଆସିବ ଯୁଧିଷ୍ଠିରଙ୍କ ଆଜ୍ଞା ନାହିଁ ।୧୩୦୪
କିମ୍ପାଇଁ ଆଜ୍ଞା ତାକୁ ନ ଦିଅନ୍ତି ଧର୍ମସୁତ
ଦେଖିବା କୁତୋହୋଳ ଲାଖ ବିନ୍ଧୁ ପାଥ ।୧୩୦୫
ଗୋବିନ୍ଦ ବୋଇଲେ କାହୁଁ ଆଜ୍ଞା ସେ ଦେବେ ଯୁଝେଷ୍ଟି ଠାକୁର
ରାଜାୟେ ଲାଖ ବିନ୍ଧ ବୋଲି ବୋଇଲେ ଦ୍ରୁପଦେଶ୍ୱର ।୧୩୦୬
ସେ ଯେତେବେଳକୁ ନୋହନ୍ତି ଅବିଷେକୀ
ସେ ଘେନି ଯୁଝେଷ୍ଟି ଅର୍ଜୁନକୁ ନ ଦିଅନ୍ତି ବାକି ।୧୩୦୭
ଯେତେବେଳେ ଦ୍ରୋପଦ ବୋଲିବ ଆସନି ବାହ୍ମଣ ଚାଣ୍ଡାଳ ଆଦି ଯେ ବ୍ରତି
ଯେ ଲାଖ ବିନ୍ଧିବ ତାକୁ ଦେବି ଦ୍ରୋପତୀ ଦୁହିତୀ ।୧୩୦୮
ତେତେବେଳେ ଆଜ୍ଞା ଦେବେ ଯୁଝେଷ୍ଟି
ନିମିଷକେ ଲାଖ ବିନ୍ଧିବ କିରୀଟୀ ।୧୩୦୯
ଯେସନେକ ବିଚାରନ୍ତେ ରାମକୃଷ୍ଣ ବେନି
ଧର୍ମ ଦେବତାଙ୍କୁ ସୁମରନ୍ତି ଯିଘ୍ନସେନି ।୧୩୧୦
ସଭାର ମଧ୍ୟେ ବିଜୟେ କଲେ ଦ୍ରୁପଦ ନୃପତ୍ୟେ
ବୋଇଲେ ଗୋସାଇଁ ରାଜାମାନେ ଲାଖ ବିନ୍ଧିବ ନା ଯୁଗତେ ।୧୩୧୧

ରାଜାମାନେ ଯେବେ ନ ପାରିବେ ବିନ୍ଧି
ପାତ୍ର ଅମାତ୍ୟ ସାମନ୍ତ ଯେତେ ଯୋଧୀ ।୩୧୨
ଯେ ଲାଖ ବିନ୍ଧିବ ଦେବଇ କୁମାରୀ
ଯେ ମୋର ବଚନ ସତ୍ୟ ସତ୍ୟ ନିରାଧାରି ।୩୧୩
ଦଇତ ଦାନବ ପିଶାଚ ରାକ୍ଷସ ସହିତେ
ଦେବଇଁ ପାଞ୍ଚାଳୀ ଯେ ମୋହୋର ସତ୍ୟେ ସତ୍ୟେ ।୩୧୪
ସମସ୍ତେ ତୁଷ୍ଟ ହୋଇଲେ ତାହା ଶୁଣି
କଟାଳି ଦ୍ରୁପଦ ବୋଲଇ ପୁଣି ପୁଣି ।୩୧୫
ଆଦିହୁଁ ଆସନି ଚାଣ୍ଡାଳ ବ୍ରାହ୍ମଣ ଆଦି କରି
ଯେ ଲାଖ ବିନ୍ଧିବ ଦେବି ଦୁହିତା ମୋହୋରି ।୩୧୬
ଦ୍ରୁପଦ ବୋଲଇ ଯହୁଁ ନିରାଧାର ବଚନ
ଯୁଧେଷ୍ଠି ଦେବେ ଚାହିଁଲେ ଅର୍ଜୁନ ବଦନ ।୩୧୭
ସ୍ୱାମୀଙ୍କ ଅନୁମତ ଦେଖିଣ ଫାଲଗୁନି
ଧାଡିକାରେ ଉଠିଲା ସ୍ୱାମୀଙ୍କ ଦିବ୍ୟ ଆଜ୍ଞା ଘେନି ।୩୧୮
ଅର୍ଜୁନ ଉଠନ୍ତେ ସଭାର ଦ୍ୱିଜମାନେ
ସମସ୍ତ ବ୍ରାହ୍ମଣେ ଆସି ଧଇଲେ ଫାଲ୍‌ଗୁନେ ।୩୧୯
ଆହେ ପଣ୍ଡାୟେ ତୁମ୍ଭେ ଉଠିଲ କାହିଁକି
ଲୋଭ କଲକି ସୁନ୍ଦର କନ୍ୟା ଦେଖି ।୩୨୦
ମହା ମହା ରାଜାମାନେ ପାଉଛନ୍ତି ଲାଜ
ତୋହୋ ସାତ୍ରିଶେ ବାବୁ ରେ ନାହିଁନା ନିଲ୍ଲଜ ।୩୨୧
ବ୍ରାହ୍ମଣ ବିଶେଷେ ଆମ୍ଭର ଅଟଇ କୁଶ କାଙ୍କିଁଶ
ରାଜକୁମାରୀକି ତୋର କିମ୍ପାଇଁ ମୁହାଁଶ ।୩୨୨
ଲାଖ ବିନ୍ଧି ନ ପାରିବୁ ପଳାଇବୁ ଝାଟି
ବ୍ରାହ୍ମଣକୁ ମାର ବୋଇଲେ ଯେ ମାରିବେ ସବୁନ୍ତି ।୩୨୩
ଅନେକ ଦୂରୁଁ ଯେ ଅଇଲୁ କରିଅଛୁ ଆଶା
ଜୀବନ ଯାକ ଆମ୍ଭର ଦାନରେ ଭରସା ।୩୨୪
ବ୍ରାହ୍ମଣ କୁଳକୁ କଣ୍ଟକ ହୋଇଲୁ ରେ ବାବୁ
ଦାନହିଁ ନ ପାଇବୁ ଆବର ପ୍ରାଣେ ନାଶ ଯିବୁ ।୩୨୫
ଦଦରା ଛତା ଚୀରା ପାଣ୍ଡୋଇ ଆବର ହରିଗୋବିନ୍ଦ ମୁଣି
ତିନିକି ପକାଇ ତୁ ଯେ ଉଠିଲୁ ଶିର ଝୁଣି ।୩୨୬
ସମସ୍ତ ବ୍ରାହ୍ମଣମାନେ ଅର୍ଜୁନକୁ ଧରି ବସାଇଲେ
ଯେମନ୍ତ ଚରିତ୍ରମାନ ଦ୍ରୁପଦ ଦେଖିଲେ ।୩୨୭
ବ୍ରାହ୍ମଣ ଗୋଟିଏ ଯେ ଉଠି ଆସୁଥିଲେ
ସମସ୍ତ ବ୍ରାହ୍ମଣ ହୋଇ ତାହାକୁ ନିରୋଧିଲେ ।୩୨୮

ଧୃଷ୍ଟଦ୍ୟୁମନକୁ ରାଇଣ ବୋଇଲେ ଦ୍ରୁପଦେ
ଆଦି ଛତ୍ରୀ ବିପ୍ରେ ଯେ ଅଟନ୍ତି ନା ଯୁଗତେ ।୩୨୯
ବ୍ରାହ୍ମଣ କୁଳେ ପ୍ରଶୁରାମେ ଉତପତ୍ତି
ସେହି ସେ ଯେକୋଇଶବାର ନିଛତ୍ରୀ କଲା ପୃଥ୍ୱୀ ।୩୩୦
କେବଳ ମହାତ୍ମା ଅବା ସେ ଅଛଇ ଗୁପତେ
ବ୍ରାହ୍ମଣ ସଭାକୁ ଚାହିଁ ବୋଲଇ ଦ୍ରୋପଦ ନୃପତ୍ୟେ ।୩୩୧
ଗୋସାଇଁ ଯାହର ଗୁଣ ବିଦ୍ୟା ଅଛଇ ଶରୀରେ
ଲାଖ ବିନ୍ଧିବା ହୋଉ ଦ୍ରୋପତୀକି ଦେବଇ ତାହାରେ ।୩୩୨
ପୁଣ ଯୁଧେଷ୍ଠି ଚାହିଁଲେ ଅର୍ଜୁନର ମୁଖ
ବାହାନାଦ କରି ସେ ସଭାରୁ ଉଠିଲା ବିବନ୍ଧ ।୩୩୩
ପୁଣ ବେଢ଼ିଲେ ଆସି ବ୍ରାହ୍ମଣଗଣମାନେ
ବଡ଼ାଇ ନିଲ୍ଲଜ ପ୍ରକୃତି ତୁ ରେ ବହିଲୁ କେସନେ ।୩୩୪
ବ୍ରାହ୍ମଣ ହୋଇ ତୋର କିମ୍ପେ ଯେଡ଼େକ ଭରସା
ଇନ୍ଦ୍ରପଦେ ବସିବାକୁ ବଳାଉ ମନସା ।୩୩୫
ଆମ୍ଭେ ବ୍ରାହ୍ମଣ ଅଟୁ ଭିକ୍ଷାବାସୀ
ରାଜକୁମାରୀ ହୋ ଆମ୍ଭର ନୁଆସି ।୩୩୬
ଅର୍ଜୁନର ହସ୍ତ ଧରି ବ୍ରାହ୍ମଣଗଣମାନେ
ପଚାରନ୍ତି ବାରତା ଯୁଧେଷ୍ଠିଙ୍କ ସନ୍ନିଧାନେ ।୩୩୭
ଆହୋ ପଣ୍ଡାୟେ ଯେ ତୁମ୍ଭର କିସ ଯେ ହୁଅନ୍ତି
ଯୁଧେଷ୍ଠି ବୋଇଲେ ଆମ୍ଭର କନିଷ୍ଠ ଭ୍ରାଥ ସେଟି ।୩୩୮
ଯେ ଯେବେ ପଣ୍ଡାୟେ ଭ୍ରାଥ ଅଟନ୍ତି ତୁମ୍ଭର
ଯେଡ଼େ ଦୁଷ୍ଟକୁ କିମ୍ପେ ରଖିଛି ସାଙ୍ଗର ।୩୩୯
ଅନେକ ଦୂରୁଁ ଯେ ଅଇଲୁ ଦାନ ଆଶେ
ଯେହାର ପ୍ରମାଦେ ସମସ୍ତେ ଯିବେ ନାଶେ ।୩୪୦
ଯୁଧେଷ୍ଠି ଦେବେ ବୋଇଲେ ରହ ରହ ଦ୍ୱିଜବରେ
ଲାଖ ବିନ୍ଧିଲା ଲୋକହିଁ ସେ ଲାଜ ପାଇବାନା ସଭାରେ ।୩୪୧
ଯେ ଲାଖ ବିନ୍ଧି ନ ଗଲା ନ ପାଇଲା କିଛି ଲାଜ
ତୁମ୍ଭେ କିମ୍ପେ ବ୍ରାହ୍ମଣେ ନିରୋଧ କର ଆଜ ।୩୪୨
ଯାହା ଶରୀରେ ଅଛି ଗୁଣ ବିଦ୍ୟା
ସାଧନ ନ ଥିଲେ ସେ କି ଯାଇ ପାରଇ ସିଧା ।୩୪୩
ଯୁଧେଷ୍ଠି ଦେବ ଦେଖାଇଲେ ଭୀମସେନକୁ
ଯେ ପଣ୍ଡାୟେ କିମ୍ପେ ନ ଗଲେ ଲାଖ ବିନ୍ଧିବାକୁ ।୩୪୪
ଅର୍ଜୁନର ହାଥ ଧଇଲେ ଯୁଧେଷ୍ଠି
ଦେଖ ହୋ ବେନି ଭୁଜେ ଫଳିଅଛି ଗୁଣଘୃଷ୍ଟି ।୩୪୫

ଯାଅ ହେ ପଣ୍ଡାଯେ ସୁଖେ ଲାଖ ବିନ୍ଧ
ସଭିଯେ କଲ୍ୟାଣ କର ନ କର ନିଷେଧ ।୩୪୬
ସମସ୍ତ ବ୍ରାହ୍ମଣ ତହିଁ କଲ୍ୟାଣ ଧ୍ୱନି ଭାଷି
ଲାଖ ବିନ୍ଧ ତୋତେ ପ୍ରାପତ ହୋଉ ଶୁଭ୍ରକେଶୀ ।୩୪୭
କଲ୍ୟାଣ କଲ୍ୟାଣ ବୋଲି ଶୁଭିଲାକ ଧ୍ୱନି
ଲାଖ ବିନ୍ଧ ପ୍ରାପତ ହୋଉ ଯିଗ୍ନସେନୀ ।୩୪୮
ସୁମନେଣ ଆଜ୍ଞା ଦିଲେକ ଯୁଝେଷ୍ଟି
ଶତ୍ରୁ ମାରି ଉଭାହୁଅ ନଶୁ ତୋ ଅରଷ୍ଟି ।୩୪୯
ସମସ୍ୟା କରନ୍ତି ବାସୁଦେବ ବଳରାମଙ୍କୁ
ଯେଣେ ଚକ୍ଷୁ ପଡ଼ିଅଛି ବ୍ରାହ୍ମଣ ସଭାକୁ ।୩୫୦
ଦେଖିଲେ ଅର୍ଜୁନର ବିକ୍ରମ ପାଦଗତି
ଆସ୍ଥାନ ତେଜି ବାସୁଦେବ ଉଠିଲେକ ଝାଟି ।୩୫୧
ବଦନ୍ତି ନାରାୟଣ ଆଜ ନିସ୍ତରିଲି ନିସ୍ତରିଲି
ପ୍ରାଣର ସଖା ଅର୍ଜୁନକୁ ମୁଁ ନୟନେ ଦେଖିଲି ।୩୫୨
ଯିସ ଅବା ଦୁଷ୍କୃତ ଶରୀରେ ମୋହୋର ଥିଲା
ତୋହୋର ମୁଖ ଚାହାନ୍ତେ ସର୍ବ କ୍ଷୟ ଗଲା ।୩୫୩
ଯେମନ୍ତେ କୃତ୍ୟ କୃତ୍ୟ ହୁଅନ୍ତେ ମଧୁରିପୁ
ଦେଖିଣ ବଳରାମେ ବିରସିଲେ ବପୁ ।୩୫୪
ପାଦଗତି କରି ଚଳଇ ଫାଲଗୁନି
ଦେଖିଣ ସାନନ୍ଦ ହୋଇଲେ ବ୍ୟାସ ମହାମୁନି ।୩୫୫
ବିଦୁରେ ବୋଇଲେ ନିସ୍ତରିଲି ନିସ୍ତରିଲି ଆଜ
ଦେଖିଲି ଅର୍ଜୁନକୁ ସୁଫଳ ମୋର କାର୍ଯ୍ୟ ।୩୫୬
କର୍ଣ୍ଣର ମୁଖ ଚାହିଁ ବୋଲଇ ଧୃଶାସନ
ବ୍ରାହ୍ମଣ ଚରିତ ଭ୍ରାଥ ବୁଝିଲୁ କେସନ ।୩୫୭
ହୃନ୍ଦର ଗୋଟାଯେକ କରିଅଛନ୍ତି ବ୍ରାହ୍ମଣେ
ଉପହାସ ପାଇ ଯେଥୁଁ ଯାଆନ୍ତୁ ରାଜାଗଣମାନେ ।୩୫୮
ଦୁର୍ଜୟେ ବୋଇଲା ହୋ ସମସ୍ତେ ଖଣ୍ଡା ଘେନ
ମାରିବା ସେହିଠାରେ ମରୁ ଯେ ବ୍ରାହ୍ମଣ ।୩୫୯
ଦୁଷ୍ଟଇ ବ୍ରାହ୍ମଣ ଅନର୍ଯ୍ୟାପୀ ଯୋଗୀ
ମନ୍ଦବାଟୀ ସ୍ତିରୀ ତପୋଧନ ବଇରାଗୀ ।୩୬୦
ହତକର୍ମ ଶାହାସ୍ତ୍ରେ ହେ ଯେସନେକ ଅଛି
ଯେହାନ୍ତ ମାଇଲେ ପାତକ ନାହିଁ କିଛି ।୩୬୧
ଦ୍ରିଯୋଧନ ବୋଇଲା ରେ ରହ ରହ ଧୃଶାସନ
ସେ ବ୍ରାହ୍ମଣ ଗୋଟିକି ନ ଧର ଆନ ମନ ।୩୬୨
ଲାଖ ବିନ୍ଧୁ ଯେବେ ସେ ବ୍ରାହ୍ମଣ ଗୋଟି
ରାଜକନ୍ୟା କିସ କରିବ ଭିକ୍ଷାଶୀ ବ୍ରାହ୍ମଣ ସେଟି ।୩୬୩
ଧନ ଗୁଡ଼ାଯେ ଆମ୍ଭେ ଯେ ଯେହାକଙ୍ଗ ଦେବା
କନ୍ୟା ଗୋଟି ଘେନି ଆମ୍ଭେ ହସ୍ତିନାକୁ ଯିବା ।୩୬୪
ଯେସନକ ଆଜ୍ଞା ଯହୁଁ ଦିଲେ ମାନଗୋବିନ୍ଦ
ସମସ୍ତେ ବୋଇଲେ ହୋ ବ୍ରାହ୍ମଣ ଲାଖ ବିନ୍ଧ ।୩୬୫
ଭୀଷ୍ମେ ପଚାରିଲେ ଦ୍ରୋଣଙ୍କ ମୁଖ ଚାହିଁ
ଚିହ୍ନି ପାରିଲ ଟିକି ଯେ ବ୍ରାହ୍ମଣ ଗୋଟିକଇ ।୩୬୬
ଦ୍ରୋଣେ ବୋଇଲେ ଆମ୍ଭେ ବରଯାତ୍ରୀମାନେ ଅଛୁ ବସି
ଯେତେବେଳେ ବର ଗୋଟି ମିଳିଲାକ ଆସି ।୩୬୭
ମହା ସାନନ୍ଦେ ଭୀଷ୍ମଙ୍କୁ କହିଲେ ଦ୍ରୋଣ ମହାରଥୀ
ନାଶ ଗଲେ ବୋଲି ବୋଇଲେ ଯେ ପାଣ୍ଡବେ ଛନ୍ତି ବ୍ରତି ।୩୬୮
ଅର୍ଜୁନର ପ୍ରତଜ୍ଞା ହୋ ଯହିକ୍ଷଣି ଦେଖ
ସଭା ମଣ୍ଡିଲା ଯେ ବିନ୍ଧିବ ମହାଲାଖ ।୩୬୯
ଭୀଷ୍ମ ବୋଇଲେ ତ ବଡ଼ାଇ ଦୁଲ୍ଲଭ
ଜଦୁର ଘରେ ଦହନ ଦେଖିଲୁ ସଭାବ ।୩୭୦
ଭସ୍ମ ଗଲା ଲୋକ ଅଙ୍କୁରିଲା କେମନ୍ତେ
କିମ୍ଭୂତ ମାୟା ଯେ ନ ଜାଣିଲୁ ତଥ୍ୟେ ।୩୭୧
ଭୀଷ୍ମେ ବୋଇଲେ ହୋ ନୂଆରିଲୁ ଚିହ୍ନି
ସତେହେଁ ହୋଇବ କି ପାଣ୍ଡବ ଫାଲଗୁନି ।୩୭୨
ଭୀଷ୍ମେ ବୋଇଲେ ଦ୍ରୋଣେ ଥିର ହୋଇ ଥିବା
ଆବର ଘଡ଼ିକେ ସତ୍ୟ ତଦନ୍ତ ଜାଣିବା ।୩୭୩
ଦ୍ରୋପଦ ରାଜା ବାଡ଼ିଅଛି ଯେ ଉପନ
ଧନୁ ଶହସ୍ର ଗଦା ମୁଦୁଗର ଧନ ମାନ ।୩୭୪
ଦରିଦ୍ର ହୋଇଣ ଯେବେ ଆସଇ ଲାଖ ବିନ୍ଧିବାକୁ
ସେ ରହିଣ ଚାହିଁବ ଧନକୁଡ଼ମାନଙ୍କୁ ।୩୭୫
ବୀର ହୋଇ ଯେବେ ଲାଖ ବିନ୍ଧି ଆସିବ
କୋନ୍ତ ଗଦା ମୁଦୁଗର ଖଡ଼ଗ ଧନୁ ଆମଞ୍ଛିବ ।୩୭୬
ଛତ୍ରୀ ହୋଇ ଯେବେ ଆସଇ ଲାଖ ବିନ୍ଧି
ଧନୁ ଧରି ଆମଞ୍ଛିବ ସେ ନିଚୟେ ବଡ଼ ଯୋଧୀ ।୩୭୭
ଯେବଣ ଛତ୍ରୀ ଅଟଇ ଶ୍ରୀନାରାୟଣ ଭଗତ
ପୁରାଣ ପୁସ୍ତ ଲୟେ କରି ସେ ବଖାଣିବ ଲାଖ ବିନ୍ଧିବା ତଦନ୍ତ ।୩୭୮
ଯେମନ୍ତ ସନ୍ତକମାନ ଥୋଇ ଦ୍ରୁପଦ ନୃପତ୍ୟେ
ଉପହାର ଗୋଟିଏ ବୋଲି ବୋଲିବେ ଲୋକିତେ ।୩୭୯

ଅର୍ଜୁନ ସେ ଠାବରେ ହୋଇଲେ ଯେ ପରବେଶ
ଧନକୁଡ଼ମାନ ନିନ୍ଦଇ ଯେଉଁ ପିରୋଜନ କିସ ।୩୮୦
ଧନକୁଡ଼ମାନ ଜିଣିଗଲା ପାଥ
ଧନୁ ଗୋଟି ଦେଖି ଧଇଲା ବାମ ହସ୍ତ ।୩୮୧
ଆମଞ୍ଚନ କରି ବାହୁଡ଼ାଇଁ ଥୋଇ
ରାଜାଯେ ବୋଇଲେ ଯେତ ଭିକ୍ଷୁକ ନୋହଇ ।୩୮୨
ଯେ ଯେବେ ନିଚୟେ ଭିକ୍ଷାବାସୀ ହୁଅନ୍ତା
ରତ୍ନଅଳଙ୍କାର ମାନ ଶରୀରେ ଆଭରଣ କରନ୍ତା ।୩୮୩
ଧନୁ ବାହୁଡ଼ାଇ ଥୋଇଲା ଫାଲଗୁନି
ପୁରାଣ ପୁସ୍ତକ ଘେନି ନିରୋପଇ ମନେ ମନେ ଗୁଣି ।୩୮୪
ଦ୍ରୌପଦୀ ବୋଇଲେ ସଖୀ ପାଇଲି ସନ୍ଦେଶ
ଯେତେବେଳେ ଶୁଭ ଶକୁନ ହୋଇଲା ପରବେଶ ।୩୮୫
କେଶିନୀ ମୁଦୁସୁଲୀକି ବୋଇଲେ ଦ୍ରୌପଦୀ
ଆଗୋ ଯେତେବେଳେ ବର ଅଇଲା ଆଉମାନେ ବରଯାତ୍ରୀ ।୩୮୬
ସଖୀ ଯେହି ବ୍ରାହ୍ମଣ ଗୋଟି ହାଦେ ଲାଖ ବିନ୍ଧିବ
ଯେହି ସେ ନିଚୟେ ଅଟଇ ମୋହୋର ବଲ୍ଲଭ ।୩୮୭
କେଶିନୀ ବୋଇଲା ଗୋ ଯେହ୍ନେ ତୋର କର୍ମ
କେହେନ୍ନେ ପାପ ଲକ୍ଷଣେ ଗୋ ହୋଇଲୁ ତୁ ଜନ୍ମ ।୩୮୮
ଯେ ଲକ୍ଷେ ରାଜା ଯେ ମୃଧୁନା ଅବିକ୍ଷେକୀ
ଇଚ୍ଛା ନ ବଳିଲା ତୋର ଯେମାନନ୍ତ ଦେଖି ।୩୮୯
ଭିକ୍ଷାଶୀ ବ୍ରାହ୍ମଣର ହୋଇବୁ ମନୋହାରୀ
ରାଜାନ୍ତ ଛାଡ଼ି ଯେହାର ହୋଇବୁ ଯେ ନାରୀ ।୩୯୦
ଦ୍ରୌପଦୀ ବୋଇଲେ ଗୋ ଶୁଣ ମୁଦୁସୁଲୀ
ଯେତେବେଳୁଁ ଯେହାର ମୁଁ ବଦନ ଦେଖିଲି ।୩୯୧
ପଞ୍ଚଶର ଘେନି କି ସତେ ବିଜୟେ ଅନଙ୍ଗ
ସେହି ସରୂପେ ମୋତେ ଦଶିଲା ଯେହାର ଅଙ୍ଗ ।୩୯୨
ଯେତେବେଳୁଁ ଯେହାର ମୁଁ ଦେଖିଲି ବଦନ
କାମ ଶରଘାତେ ମୋତେ ଯେ ପୀଡ଼ିଲା ମଦନ ।୩୯୩
ଆଗୋ ପ୍ରତକ୍ଷେ ଶକୁନ ଯେ ସ୍ଥିର କରି ଦେଖ
ଯେହିକ୍ଷଣି ବ୍ରାହ୍ମଣ ଯେ ବିନ୍ଧିବ ମହାଲାଖ ।୩୯୪
ପୂର୍ବେଣ ମୁଇଁ ଯେବେ ଅଛଇ ତପ କରି
ବ୍ରାହ୍ମଣର ଦୋହିତା ମୁଁ ବ୍ରାହ୍ମଣର ହୋଇବି ମନୋହାରୀ ।୩୯୫
ଯେସନେକ ବିଚାରି ସେ ପରମ ମହାସତୀ
ସୁମରଇ କାତ୍ୟାୟନୀ ଅନାଦି ଶକତି ।୩୯୬
ତୁ ଦେବୀ ବିଜୟେ ଗୋ କର ଯାର କନ୍ଧୁ
ଯେହିକ୍ଷଣି ଯେ ବ୍ରାହ୍ମଣ ମହାଲାଖ ବିନ୍ଧୁ ।୩୯୭
ଯେମନ୍ତର ସମୟେ ବୀର ଫାଲଗୁନି
ଲାଖର ତଳେ ଉଭା ତାକୁ କେହି ଯେ ନ ଚିହ୍ନି ।୩୯୮
କ୍ଷୀଣ ଦୁର୍ବଳ ଦେଖି ଉପହାସ୍ୟ କରନ୍ତି ସମସ୍ତେ
ଧାଡିକାରେ ଅର୍ଜୁନ ଧନୁ ଧଇଲା ବାମ ହସ୍ତେ ।୩୯୯
ଉର୍ଦ୍ଧ୍ୱବାହୁ କରି ଧନୁ ତୋଳିଲାକ ଘେନି
ସାଧୁ ସାଧୁ ବିପ୍ର ବୋଲି ସଭାରେ ଉଠିଲାକ ଧ୍ୱନି ।୪୦୦
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଅଛନ୍ତି ବେନି ଭ୍ରାଥ
ଅର୍ଜୁନ ପଚାରଇ ଲାଖର ଚରିତ କହନି କେମନ୍ତ ।୪୦୧
ବ୍ରାହ୍ମଣଙ୍କ ଅଗ୍ରତେ କହଇ ଦୃମନ
ଶୁଣ ହୋ ଦ୍ୱିଜବର ଲାଖର ବିଧାନ ।୪୦୨
ଆନ ରାଜାମାନଙ୍କୁ ଯେ କରିଥିଲି ଗୋପ୍ୟ
ତୋହୋର ଆଗେ ଆମ୍ଭେ କହୁଛୁଁ ସ୍ୱରୂପ ।୪୦୩
ଦେବତାଳେ ସାତତାଳ ଅଟଇ ଲାଖର ଉଞ୍ଚ
ରାଧା ଚକ୍ରେକ ତହିଁ ବୁଲଇ ସୁସଞ୍ଚ ।୪୦୪
ସେ ଚକ୍ର ଅଟଇ ଯେ ସହସ୍ରେକ ଧାର
ପବନୁଁ ବେଗେ ଭ୍ରମଇ କୁରାଳ ଚକ୍ର ଆକାର ।୪୦୫
ତହିଁର ଉପରେ ଅଛି ଜନକର ମାଛ
ଦୁତୀ ପିନାକୀ ଜାଣ ଧନୁ ବଳ ଯେକଲକ୍ଷ ।୪୦୬
ତାଳେକ ଉପରେଣ ପଟାଯେକ କଣ୍ଟି
ତହିଁର ତଳେ ଅଛି ତୀର୍ଥ ଜଳ ଘଟ ଗୋଟି ।୪୦୭
ତଳକୁ କରିବ ଦୃଷ୍ଟି ଉପରକୁ କରିବ ମୁଷ୍ଟି
ଜଳ ଘଟେ ଛାୟା ନିରୋପିବ ମୀନର ଦୃଷ୍ଟି ।୪୦୮
ଚକ୍ର ଭେଦି ମାଛର ବାମ ଚକ୍ଷୁ ଯିବ ଫୁଟି
ଯେତେ ସ୍ୱରୂପେ ଲାଖ ବିନ୍ଧିଲେ ନେମ କନ୍ୟା ଗୋଟି ।୪୦୯
ଅର୍ଜୁନ ବୋଇଲା ମୁଁ ଯେବେ ଲାଖ ବିନ୍ଧିବି
ବଳ ଦୁର୍ବଳ ପଡ଼ିଲେ ମୁଁ କେମନ୍ତେ କରିବି ।୪୧୦
ରାଜାମାନଙ୍କର ସନ୍ୟ ଅଛନ୍ତି ଅପ୍ରମିତେ
ନ ପୁଣ ଦୁଷ୍ଟ ରାଜା ବଳାତ୍କାର କରନ୍ତି ନା ମୋତେ ।୪୧୧
ଶିଖଣ୍ଡୀ ବୋଇଲା ଦ୍ୱିଜ ନ ଭାଳ ତୁମ୍ଭେ ଯେହା
ସାତ କ୍ଷଉଣୀ ବଳ ଘେନି ମୁଁ ତୋତେ ହୋଇବି ଯେ ସାହା ।୪୧୨
ତୁ ଯେବେ ଯାଇ ରାଜାଗଣନ୍ତ ପଚାର
ଲାଖ ବିନ୍ଧିବାକୁ ମନ ଅଛିକି ତାହାଙ୍କର ।୪୧୩

ଯେ ପାରନ୍ତୁ ଲାଖ ବିନ୍ଧନ୍ତୁ ଆସି ଆଜ
ବ୍ରାହ୍ମଣ ବିନ୍ଧନ୍ତେ ନ ପୁଣ ରାଜାମାନେ ପାଅ ବଡ଼ ଲାଜ ।୪୧୪
ପଶ୍ଚାତେ କୋପ ମୋତେ କରି ତ ନ ଯୋଗାଇ
ଅବଚଣେ ମଧପାତ୍ର ହୋଇଅଛି ମୁହିଁ ।୪୧୫
ଯେଂ ଶୁଣି ଶିଖଣ୍ଡୀ ଯେ ବେଗେ ଚଳି ଗଲା
ସଭା ମଧେ ଶବଦାଇ ରାଜାଙ୍କୁ କହିଲା ।୪୧୬
ଯେ ପାରିବ ଲାଖ ଆସି ବିନ୍ଧ ରାଜାଗଣ
ନୋହିଲେ ଲାଖ ଗୋଟିକି ବିନ୍ଧୁଛି ବ୍ରାହ୍ମଣ ।୪୧୭
ନ ଶୁଣିଲା ପ୍ରାୟ ରାଜା କିଛି ନ କହିଲେ
ଶିଖଣ୍ଡୀ ଫେରି ଯାଇ ବ୍ରାହ୍ମଣ ଅର୍ଜୁନଙ୍କୁ କହିଲେ ।୪୧୮
ଧନୁ ଧରି ମନେ ବିଚାରଇ ଫାଲଗୁନ୍ୟ
ଯେ ଧନୁରେ ଗୁଣ ଦେଇ ଅଛଇ ବୀର କର୍ଣ୍ଣ ।୪୧୯
ଗୁଣ ଦିଲା ଛତ୍ରୀଙ୍କି ଅଧେକ ଅଛି ଭାଗ
ଛତ୍ରୀଙ୍କର ଧର୍ମ ଯେ ପୁରୁଷଙ୍କର ଅନୁରାଗ ।୪୨୦
ବାମ ପାଦ ଦିଲା ପାଅ ଡାହାଣ ଜାନୁ ଉପରେ
କିଞ୍ଚିତ ମାତ୍ରେ ଧନୁ ଧଇଲା ବାମ କରେ ।୪୨୧
ଆଣ୍ଠୁର ଉପରେ ଧନୁହୁଳ ବସାଇ
ବାମ କରେ ଦୃଢ଼ ମୁଷ୍ଟି କରି ଧନୁରୁ ଗୁଣ ଯେ ଓହ୍ଲାଇ ।୪୨୨
ଦେଖିଣ ଆଶ୍ଚିଯ ଯେ ସକଳ ନୃପତି
ମାନବେ ତ ଗୋଚର ନୋହଇ ଯେସନେକ କୃତି ।୪୨୩
ଗୁଣ ଓହ୍ଲାଇ ପାଅ ଭୂମିରେ ଧନୁହୁଳ ଦେଇ
ଧନୁ ସଳଖିଲା ବାମ ଆଣ୍ଠୁ ଯେ ପେଲାଇ ।୪୨୪
ପୁଣ ବିକାଶଇ ଯେ ଭଇରୋବ ମୂରତି
ଯେକା ଚରଣକେ ଉଭା ହୋଇଲାକ ପୃଥୀ ।୪୨୫
ଡାହାଣ ଆଣ୍ଠୁ ଉପରେ ବାମ ପାଦ ଦିଲା
ଅବନୀଳେ ବାସବି ଯେ ଧନୁରେ ଗୁଣ ଚଢ଼ାଇଲା ।୪୨୬
ଶୂନ୍ୟେଣ ଯହୁଁ ଗୁଣ ଦିଲାକ ଫାଲଗୁନି
ସଭାରେ ଉଠିଲା ସାଧୁ ସାଧୁ ଧ୍ୱନି ।୪୨୭
ପଣ୍ଡିତ ଜନେ ବିଚାରନ୍ତି ମନେ
ଲାଖ ବିନ୍ଧନ୍ତା ନୋହିଲା କେହି ଯହୁଁ ମଧ ଯେ ଭୁବନେ ।୪୨୮
ଅଗ୍ନିରୁ ଜାତ ଅଟଇ ପାଞ୍ଚାଳୀ
ଗୋପ୍ୟ ରୂପେ ଅବା ବିଜେ କଲେ ଅଂଶୁମାଳୀ ।୪୨୯
ଆଦିତ୍ୟ ଯେବେ ନୋହିବେଟି ହାଦେ
ଅମରାଧିନାଥ ବିଜେ କଲେ ଦେବ ଇନ୍ଦ୍ରେ ।୪୩୦
ବଡ଼ ମତେ ସେ ଯେବେ ନୋହିବ ସହସ୍ର ଯୋନି
ଆଦ୍ୟହୁଁ ହରିଲା ଯେ ଗଉତମ ପତନୀ ।୪୩୧
ବ୍ରାହ୍ମଣ ରୂପ ଧରି ବିଜେ ସୁନାସୀର
ଇନ୍ଦ୍ର ଦେବତା ନୋହିଲେ କି ଯେ ଅଟଇ କୁବେର ।୪୩୨
ଯେସନେକ ବୁଦ୍ଧି ଭାଳନ୍ତି ସଭାରେ ରାଜାଯେ
ଧନୁରେ ନାରାଚ ପୂରୋଇଲା ଧନୁର୍ଜୟେ ।୪୩୩
ମାନଗୋବିନ୍ଦ ସଭାଯେ ଯେ ଦ୍ରୋଣଗୁରୁ ଅଛନ୍ତି
ନମସ୍କାର କରନ୍ତେ ନ ପୁଣି ସମସ୍ତେହେଁ ଜାଣନ୍ତି ।୪୩୪
ନାରାଚ ପୂରୋଇ ପାଅ ଯେ ଭୂମିକି ବିନ୍ଧିଲା
ଦ୍ରୋଣଙ୍କର ନାମ ଧରି ସେ ମଥାରେ ହାଥ ଦିଲା ।୪୩୫
ସଭାରେ ଥାଇଣ ଯେ ଦ୍ରୋଣଗୁରୁ ଦେଖିଲେ
କରପତ୍ର ପ୍ରସାରିଣ ଯେ କଲ୍ୟାଣ ବାଞ୍ଛିଲେ ।୪୩୬
ବିଦ୍ୟାଲାଭ ହୋଉ ତୋତେ କନ୍ୟା ପ୍ରାପତ ହୋଉ
ଯେସନେ ବାଞ୍ଛା ତୋହୋର ସେହୁ ସିଦ୍ଧ ହୋଉ ।୪୩୭
ଆମ୍ଭର ଆଷ୍ୟ ଘେନି ବ୍ରତ ଶତ୍ରୁ ନିପାତି
ପଞ୍ଚୁ କଟକ ମାଡ଼ି ତୁମ୍ଭେ ହୋଅସି ଯେକଛତ୍ରୀ ।୪୩୮
ଅମର ସ୍ୱର୍ଗରେ ଯେ ଅଛନ୍ତି ମଘବାନ
ତହିଁକି ନମସ୍କାର କରଇ କୋଇନ୍ତାଙ୍କର ନନ୍ଦନ ।୪୩୯
ଦେଖି ଆଶିଷ ଯେ ବାଞ୍ଛା କଲେ ପୁରନ୍ଦରେ
ବିଦ୍ୟାଲାଭ ହୋଉ କନ୍ୟା ପ୍ରାପତ ହୋଉ ଯେ ତୋହୋରେ ।୪୪୦
ଶତ୍ରୁମାନନ୍ତ ସମସ୍ତ ନିପାତନ ସମଯେ କରି
ପଞ୍ଚୁ କଟକେ ତୁମ୍ଭେ ହୋଅସି ଦଣ୍ଡଧାରୀ ।୪୪୧
ଦକ୍ଷିଣକୁ ମୂର୍ତ୍ତି କରିଣ ଫାଲ୍‌ଗୁନି
ଶ୍ରୀ ଜଗନ୍ନାଥଙ୍କ ନାମ ଧରି ସେ କରଇ ଦଇନି ।୪୪୨
ଗୋବିନ୍ଦେ ବୋଇଲେ ସ୍ୱାମୀ ଶୁଣିମା ହଳହସ୍ତେ
ତୁମ୍ଭଙ୍କୁ ନମସ୍କାର କରଇ ବୀରପାଥେ ।୪୪୩
ତୁମ୍ଭେ ତାହାକୁ ଦେବ କଲ୍ୟାଣ ବାଞ୍ଛା କର
ବାଞ୍ଛା ସିଦ୍ଧ ସ୍ୱାମୀ ହୋଉ ଯେ ତାହାର ।୪୪୪
କଲ୍ୟାଣର ବଚନ ନୁଆସଇ କଦାଣ୍ଟିତେ
ଅକଲ୍ୟାଣ ବାଞ୍ଛା ସେ ଆସଇ ହୃଦଗତେ ।୪୪୫
ଗୋବିନ୍ଦଙ୍କର ଭଯେ ସେ ବୋଇଲେ କଲ୍ୟାଣ ତୋତେ ହୋଉ
ତୁ ଲାଖ ବିନ୍ଧ ରେ ବାବୁ କନ୍ୟା ଆନ ନେଉ । ।୪୪୬
ବଳରାମଙ୍କର କିନ୍ତୁ ମନ ଯେ ଜାଣିଲେ ଜଗମୋହନ
ଆପଣେ ଆଶୀଷ ବାଞ୍ଛା କରନ୍ତି ଜନାର୍ଦ୍ଦନ ।୪୪୭

ବିଦ୍ୟାଲାଭ ହୋଉ କନ୍ୟା ଯେ ପ୍ରାପତ ତୋତେ ହୋଉ
ଶତ୍ରୁ ମାରି ଉଭା ହୋଅ ବଇରି ଭସ୍ମ ଯାଉ ।୪୪୮
ପୃଥୀ ଭରା ଉଶ୍ୱାସ କର ସମସ୍ତ ରାଜାନ୍ତ ନିପାତି
ପଞ୍ଚୁ କଟକେ|ତୁ ହୋଅ ଯେକଛତ୍ରୀ ।୪୪୯
ବ୍ରାହ୍ମଣଙ୍କର ସଭାରେ ଯେ ଅଛନ୍ତି ଯୁଝେଷ୍ଟି
ତହିଁକି ନମସ୍କାର କରଇ କିରୀଟୀ ।୪୫୦
ଯୁଝେଷ୍ଟି ବୋଇଲେ ଗୋସାଇଁ ବ୍ରାହ୍ମଣଗଣମାନେ
ସେ ଲାଖବିନ୍ଧା ପଣ୍ଡା ଗୋଟିକି ହୋଇବା ସାବଧାନେ ।୪୫୧
ସେ ନମସ୍କାର କରୁଅଛି ବ୍ରାହ୍ମଣ ସଭାକୁ
ସମସ୍ତ ହେଁ କଲ୍ୟାଣ କରିବା ତାହାକୁ ।୪୫୨
ସମସ୍ତ ବ୍ରାହ୍ମଣମାନେ କର ପ୍ରସାରିଲେ
ମନବାଞ୍ଛା ସିଦ୍ଧ ହୋଉ ବୋଲିଣ ବୋଇଲେ ।୪୫୩
ବିଦ୍ୟାଲାଭ ହୋଉ କନ୍ୟା ହୋଉ ତୋତେ ପ୍ରାପତ
ତୋତେ ପ୍ରାପତ ହୋଉ ଦ୍ରୋପଦର ଦୋହିତ ।୪୫୪
ଯେସନେକ ଆଜ୍ଞା ଯହୁଁ ଦିଲେ ବ୍ରାହ୍ମଣ ସଭା
ଜ୍ୟେଷ୍ଠ ଭ୍ରାଥମାନଙ୍କୁ ମନେ ଧରି କରଇ ସେବା ।୪୫୫
ଋଷିଙ୍କ ସଙ୍ଗତେ ଅଛନ୍ତି ବ୍ୟାସ ମହାମୁନି
ତହିଁକି ପ୍ରଣପତ୍ୟ କରଇ ଫାଲଗୁନି ।୪୫୬
ମାରକଣ୍ଡେ ବୋଇଲେ ବ୍ୟାସେ ସେ ଲାଖବିନ୍ଧା ବ୍ରାହ୍ମଣ
କୋଟି ତୁମ୍ଭେ ତାକୁ ଜାଣ କି ନ ଜାଣ ।୪୫୭
ବ୍ୟାସେ ବୋଇଲେ ଆଗତ କହିତ କି ପାରି
ଗୁପତ କଥାନ୍ତ ଫେଡ଼ି ଲୋକେ ନ ବିସ୍ତାରି ।୪୫୮
ଯାହାକୁ କାମ ଅର୍ଥ କଲାକ ଦ୍ରୁପଦ ନୃପତି
କାଳେ ପାଇଲା ସେ ଦେବୀ ଯେ ଦ୍ରୋପତୀ ।୪୫୯
ଯେତେକ ବିଚାରି ସମସ୍ତ ମହାମୁନି
କଲ୍ୟାଣ କଲ୍ୟାଣ ଶୁଭିଲାକ ଗରୁ ଧ୍ୱନି ।୪୬୦
ଅର୍ଜୁନ ବୋଇଲା ଲକ୍ଷେ ରାଜାର ଯେତେକ ସଇନି
ଅଷ୍ଟାଦଶ ବଂଶର ବ୍ରାହ୍ମଣ ସର୍ବ ମହାମୁନି ।୪୬୧
ଯେ ମହାସଭାରେ ମୋହୋର ସବୁନ୍ତି ଦଇନି ସେବା
ଯେବେହେଂ ଯେ ପାର ଗୋସାଇଂ ଲାଖ ଯେ ବିନ୍ଧିବା ।୪୬୨
ସହି ନ ପାରି ଦ୍ରୋଣେ ବୋଇଲେ ପଣ୍ଡା ହୋ ଲାଖ ବିନ୍ଧ
ଯା ବହନ
ପୋଡନ୍ତା ଘାଆ ଉପରେ କେତେ ଦେଉଅଛ ହୋ ଚୁନ ।୪୬୩
ସାଧୁ ସାଧୁ ଜୟେ ଜୟେ ଲକ୍ଷେ ରାଜାଙ୍କର ମୁଖେ
ଅଦୃଷ୍ଟିକି ନାରାଜ ବିନ୍ଧୁଛି ପ୍ରତକ୍ଷେ ।୪୬୪
ସମସ୍ତ ଲୋକଙ୍କର ବେନି ଯେ ନୟନ
ଯେକ ଲୟେ କରି ଦେଖନ୍ତି ଯେକା ଅର୍ଜୁନର ବଦନ ।୪୬୫
ଯେ ମହା ସଭାକୁ ମୋହୋର ଶତେ ସହସ୍ରବାର ଦଣ୍ଡବତ ସେବା
ବିନ୍ଧୁଅଛି ଲାଖ ସ୍ୱାମୀ ଆଗ୍ୟାଂ ମୋତେ ଦେବା ।୪୬୬
ମହା ସଭାର ମଧ୍ୟେ ଉଠିଲା ଘୋର ଧ୍ୱନି
ସବୁଙ୍କରି ବାଞ୍ଛା, ତୋତେ ପ୍ରାପତ ହୋଉ ଯିଘ୍ନସେନୀ ।୪୬୭
ପଣ୍ଡିତ ଜନମାନେ ଯେ ଜଗନ୍ନାଥଙ୍କର ଦାସ
ତେଣୁ ସେମାନେ କରନ୍ତି ଜନ ମାନଙ୍କର ମଙ୍ଗଳ ଅଭ୍ୟାସ ।୪୬୮
ଦୁଷ୍ଟ ରାଜାମାନେ ବିନ୍ଧ ବୋଲି ମଙ୍ଗଳ ଅଭ୍ୟାସି
ଦରିଦ୍ର ବ୍ରାହ୍ମଣଙ୍କର ଧନ ଦେଇ ନେମା ଶୁଭ୍ରକେଶୀ ।୪୬୯
କଉଂ ଦୁଷ୍ଟ ରାଜା ବିଚାରନ୍ତି କନ୍ୟା ନେମା ବଳେ
ବ୍ରାହ୍ମଣ ଲାଖ ବିନ୍ଧୁ ବୋଲି ଭାଷନ୍ତି ସକଳେ ।୪୭୦
ସନ୍ଥୁ ଦୁଷ୍ଟ ରାଜାଙ୍କର ସବୁଙ୍କରି ମୁଖେ
ମଙ୍ଗଳ ଧ୍ୱନି ଯେ ଶୁଭିଲା ପ୍ରତକ୍ଷେ ।୪୭୧
ତାଳକ ଉଛର୍ଗେ ପଟାୟେ ପାଥ ଉଠି
ଜଗନ୍ନାଥ କାଢି ନେଲେ ସୁଦ୍ରିଶେନ ଚକ୍ରଗୋଟି ।୪୭୨
ଧନୁ ଧରି କୋଡା ଆମଞ୍ଚନ କଲା
ଇନ୍ଦ୍ର ଦେବତାକଇ ସୁମରି ମନଭେଦୀ ନାରାଜ ମାଗିଲା ।୪୭୩
ମାତଳି ଆଣି କରେ ଦିଲାକ ନାରାଜ
ଧନୁଗୁଣେ ବସାଇଲା ବାସବ ଆତ୍ମଜ ।୪୭୪
ନାରାଜ ପୁରୋଇ ପାଥ ଉଭା ଠିଆ ଠାଣ
ବାବୁ ମୋର ଆଷ୍ୟ ଘେନି ବ୍ରତ ବୋଲି ବୋଇଲେ ଗୁରୁ
ଦ୍ରୋଣ ।୪୭୫
ଗୋବିନ୍ଦେ ବୋଇଲେ ଗୋସାଇଂ ଚାହିଂବାନା ହଳପତି
ଶୂର ବୀର ପ୍ରତଗ୍ୟାଂ ଦେଖ ଅର୍ଜୁନର ଠିଆ ଠାଣି ମୂର୍ତ୍ତି ।୪୭୬
ପିଠି କଟିକି ଯେ ବଦନ ଲେଉଟି
ଡାହାଣକୁ ଅଙ୍ଗ ସାରିଦେଇ ଯେ ତଳକୁ କଲା ଦୃଷ୍ଟି ।୪୭୭
ଉପରକୁ ମୁଷ୍ଟି କରି ରହିଲା ଫାଲଗୁନି
ସର୍ବମଙ୍ଗଳ ହୋଉ ବୋଲି ଭାଷିଲେ ଯିଘ୍ନସେନୀ ।୪୭୮
ମନଭେଦୀ ନାରାଜ ପାଥ ଧନୁରେ ବସାଇ
ଠିଆରଇ ବାସବି ଶହସ୍ରକୁ ଲୟ ଦେଇ ।୪୭୯
ଯେତେ ଦୂରେ ଅବା ଅଛି ଲାଖ ମୀନ
ଯାଇଂ ଭେଦ ତାହାର ବାମ ଯେ ନୟନ ।୪୮୦

ଉଚ୍ଛବ ଆନନ୍ଦ କନ୍ୟା ଭାବ ହରଷେ
ମହାସଭା ଦେଖି ପ୍ରତଗ୍ୟାଂ ଗାଢ ରୋଷେ ।୪୮୧
ଦ୍ରୋଣେ ପ୍ରଶଂସା କଲେକ ପାର୍ଥକୁ
କଉଂକ୍ଷଣେ ଯେ ବିଦ୍ୟା ପାଇଲା ଗୁରୁ କହନ୍ତି ଭୀଷ୍ମଙ୍କୁ ।୪୮୨
ସାତ ଉତ୍ତର ସତେ ଶିଷ୍ୟଙ୍କର ହୋଇଲୁ ଆମ୍ଭେ ଗୁରୁ
ପୁଣି କାହାକଇଂ ଶକ୍ୟ ନାହିଂ ଯେହାର ଧନୁ ଧରୁ ।୪୮୩
ଆମ୍ଭ ପିତା ପୁତ୍ରଙ୍କର କମ୍ପଇ ବେନି ଭୁଜ
ଦର୍ପ ଭାଙ୍ଗଇ ଶହସ୍ର ହୋଅଇ ନିସ୍ତେଜ ।୪୮୪
ଭୀଷ୍ମଙ୍କର ଶିର କମ୍ପଇ କର୍ଣ୍ଣର କମ୍ପଇ ଜାନୁ
ହୃଦୟ କମ୍ପଇ ଦ୍ରିଯୋଧନର ଧୃଶାସନର ତନୁ ।୪୮୫
ଯୁଝେଷ୍ଟି ଭୀମସେନ ଶଲ୍ୟଙ୍କର କମ୍ପଇ ମୁଷ୍ଟି
କୃପ ଭୂରିସର୍ବାଙ୍କର କମ୍ପଇ ଗୁଣଦୃଷ୍ଟି ।୪୮୬
କେସନେକ କ୍ଷଣେ ବିଧାତା ନିର୍ବାଣ କଲାକ ତୋତେ
ନିକଳଙ୍କ ନିକମ୍ପ ଅଟଇ ତୋର ଗାତ୍ରେ ।୪୮୭
ଯେହେନେକ ବିଚାର କରନ୍ତେ ଭୀଷ୍ମ ଦ୍ରୋଣ ବେନି
ଅର୍ଜୁନ ତଲଯେ କରି ସୁମରଇ ଭବାନୀ ।୪୮୮
ନାରାଜ ପୂରାନ୍ତେ ବିକାଶଇ ଭୀଷ୍ମ ମୂର୍ତ୍ତି
ତ୍ରୈଲୋକ୍ୟେ ବିକାଶିଲା ବିଷ୍ଣୁର ତେଜକାନ୍ତି ।୪୮୯
ନାରାୟଣ ସପକ୍ଷ ଯାହାକୁ ବାସବ ସପକ୍ଷ
ବ୍ୟାସ ଦ୍ରୋଣ ସପକ୍ଷ ରୁଦ୍ର ଯେ ସପକ୍ଷ ।୪୯୦
ଶତ୍ରୁ ମିତ୍ର ମୁଖେ ଭାଷନ୍ତି ଶୁଭ ଧ୍ଵନି
ତେବେ ସେ ମହାଲାଖ ବିନ୍ଧଇ ଫାଲଗୁନି ।୪୯୧
ଲକ୍ଷେ ରାଜାର ମଧ୍ୟେ ଅର୍ଜୁନ ଯେକା ଯୋଧୀ
ରେ ରେ କାର ଶବଦ କରି ଅର୍ଜୁନ ଲାଖ ବିନ୍ଧି ।୪୯୨
ଆହୋ ବହୁତ କାଳୁ ଯେ ଧଇଲା ନାହିଂ ଧନୁ
ଗାଢ଼ ରୋଷେ ଛାଡିଲା ବାସବର ତନୁ ।୪୯୩
ଦେବତାଳେ ସାତତାଳ ମାନବେ ଅଣତାଷ
ବିଚାରି ନିରୋପିଲେ ଲାଖ ଅର୍ଦ୍ଧ ଯେ ଆକାଶ ।୪୯୪
ରାଧା ଚକ୍ର ଭେଦି ମାଛର ବାମ ଚକ୍ଷୁ ଗଳି
ଡାହାଣ ଚକ୍ଷୁ ବାଟେ ଶର ହୋଇଲା ନିକିଳି ।୪୯୫
ବାହାର ହୋଇ ନାରାଜ ଗଲା ଅତି ବେଗେ
ଛଡ଼ ଲକ୍ଷ ଯୋଜନେ ବିଶ୍ରାମିଲା ଅମର ସ୍ଵର୍ଗେ ।୪୯୬
ସମସ୍ତ ରାଜାଗଣେ କଲେ ସାଧୁ ସାଧୁ ଧ୍ଵନି
ହୁଳହୁଳି ଶବଦ କଲେ ସମସ୍ତ କାମେନି ।୪୯୭
ସେ ମାଛର ବାମ ଚକ୍ଷୁରେ ଯେ ପୁଷ୍ପ ମାଳାଯେ ବନ୍ଧାଥିଲା
ସେ ପୁଷ୍ପ ମାଳ ଛିଡିଣ ସଭା ମଧରେ ପଡ଼ିଲା ।୪୯୮
ଆକାଶେ ବୃନ୍ଦାଅର୍କେ କଲେ ପୁଷ୍ପ ବୃଷ୍ଟି
ଶ୍ରୀଜଗନ୍ନାଥେ ବାଦ୍ୟ କଲେ ପଞ୍ଚଜନ୍ୟ ଶଙ୍ଖ ଗୋଟି ।୪୯୯

✱✱

# ମଧ୍ୟପର୍ବ

## ୨୪. ଅର୍ଜୁନଙ୍କର ବନବାସ

ବଦୟନ୍ତି ଅଗସ୍ତି ଶୁଣହେ ଯୁଗପତି
ବୈଶାଖ ମାସ କୃଷ୍ଣ ପକ୍ଷ ଦ୍ବିତୀୟା ଯେ ତିଥି ।୧
ଶଉରିବାର ବିଶାଖା ନକ୍ଷତ୍ର ସେ ଦିନ
ଯୁଧିଷ୍ଠିର ବିଜେ କଲେ ଦ୍ରୋପଦୀ ଭୁବନ ।୨
ଦ୍ୱାରେ ସନ୍ତକ ଯେ ରଖି ଗଲେକ ପାଣ୍ଡୋଇ ଦୁଇଗୋଟି
ଅନ୍ତେଶ୍ୱରେ ବିଜେ କଲେ ଧର୍ମରାଜ ଯୁଧିଷ୍ଠିର ।୩
ବଶ୍ୟାନର ଅଗ୍ନି ଯେ ବ୍ରାହ୍ମଣ ରୂପ ହୋଇ
ଅର୍ଜୁନର ସନ୍ନିଧେ ବିଜୟେ କଲେ ଯାଇଁ ।୪
ବେଦ ଧ୍ୱନି କରି ବୋଇଲେ କିରୀଟୀକି
ତୁ ମୋହୋର ଛାମୁକୁ ହକାରି ଆଣ ଯୁଧିଷ୍ଠିରଙ୍କି ।୫
ଯେହିକ୍ଷଣି ଧାଡିକାରେ ଯିବୁ ତୋ ଅରଜୁନ
ଛଡ଼ ନିଶ୍ୱାସ ମଧ୍ୟେ ରାଇ ଆଣିବୁ ମୋହୋର ସନ୍ନିଧାନ ।୬
କ୍ଷଣକର ମଧ୍ୟେ ଯୁଧିଷ୍ଠିରଙ୍କି ଆଣିବୁ ମୋର କତି
ନୋହିଲେ ଭସ୍ମ ମୁଁ କରିବି ସବୁନ୍ତି ।୭
ଯୁଧିଷ୍ଠିର ଦ୍ରୋପଦୀ ପାଣ୍ଡବ କୌରବ
ମୋହୋର ଶାପ ଦିଲେ ସମସ୍ତେ ନାଶଯିବ ।୮
ବ୍ରାହ୍ମଣର ତହୁଁ ଯେସନେକ ନିଷ୍ଠୁର ବଚନ ପାଥ ଶୁଣି
ମୁହିଁ ଯେବେ ନ ଯିବି ଯୁଧିଷ୍ଠିର ଦେବଙ୍କୁ ଆଣି ।୯
ମଧୁ ପିଙ୍ଗଳ ବ୍ରାହ୍ମଣ ଯେ ଅଟଇ ମହାତେଜ
ଶାପ ଦିଲେ ବଂଶ ଯାକ ହୋଇବ ଦହିଜ୍ୟ ।୧୦
ଗଲେ ମୁହିଁ ଏକା ଜଣେ ସିନା ଯିବଇଁ ବନବାସ
ବ୍ରାହ୍ମଣଙ୍କୁ ଗୁହାଇ ପାଥ ଅନ୍ତେଶ୍ୱର ଭିତରେ ପ୍ରବେଶ ।୧୧
ମୋଚ ଦୁଇଗୋଟି ଦ୍ୱାରେ ସନ୍ତକ ଯେ ଥୋଇ
ଭିତର ପୁରେ ଯୁଧିଷ୍ଠିର ପ୍ରବେଶ ହୋଇଥିଲେ ଯାଇଁ ।୧୨
ଅଗ୍ନି ଦେବତା ଯେ ମାୟାରେ ଶ୍ୱାନେକ ହୋଇ
ମୋଚ ଦୁଇଗୋଟି ଅନ୍ତରୀଛେ ନେଇ ।୧୩
ବିଶେଷେ ସନ୍ତକ ନ ଦେଖିଲା ଦ୍ୱାରେ
ଧସାଇ ଅର୍ଜୁନ ଯେ ପଶିଲା ଭିତରେ ।୧୪
ଯୁଧିଷ୍ଠିର ଦ୍ରୋପଦୀଙ୍କର ରତିରଙ୍ଗ ବେଳେ
ହେଠବୁଡ଼ା ରତି ରଙ୍ଗ କାମ ରସ ଭୋଳେ ।୧୫
ଭିତରେ ପଶିଲା ଯାଇଁ ବୀର ଫାଲଗୁନୀ
ରସ ଭଗ୍ନ ହୋଇଲା ସଂକୋଚ ପାଇଲେ ବେନି ।୧୬
ଉଲଙ୍ଗ ହୋଇ ଦେବୀ କେଶବାସ ସମ୍ଭାଳି ନୁଆରିଲେ
ସଙ୍କୋଚେ ଲୋଚି ହୋଇ ଗୃହ କବାଟ କୋଣେ
ଆଉଜିଲେ ।୧୭
ଦିବସହୁଁ ଅଧିକ ଉଜ୍ଜ୍ୱଳ ହୋଇ ଜଳୁଛି ମାଣିକ୍ୟ ଦୀପମାନ
ଛାମୁରେ ହେଠମାଥ ହୋଇ ଉଭା ଫାଲଗୁନ୍ୟ ।୧୮
ବସ୍ତ୍ର ସମ୍ଭାଳି ଯେ ବୋଲନ୍ତି ଯୁଧିଷ୍ଠିର
କିମ୍ପାଇଂ ଯେତେ କୃତ୍ୟ କଲୁରେ ଭାଇଗୋଟି ।୧୯
ଭୀମାର ଭୟେ ଆମ୍ଭେ ସିନା କଲଇଂ ଯେତେ କୃତ୍ୟ
କିମ୍ପାଇଂ ହତଗ୍ୟାନ କର୍ମ କଲୁ ରେ ବୀର ପାଥ ।୨୦
ବାବୁ ଅପାର ଦୋଷ ହୁଅଇ ଶୃଙ୍ଗାର ଭଗ୍ନ କଲେ
ଯେତେକ ପାତକ ହୁଅଇ ପୁଣ ଲିଙ୍ଗ ଯେ ଭାଙ୍ଗିଲେ ।୨୧
ଲିଙ୍ଗ ଭଗ୍ନ ବ୍ରହ୍ମହତ୍ୟା କଲା ପରି ଦୋଷ
ପର ଶୃଙ୍ଗାର ଭାଙ୍ଗିଲେ ହୋଇ ତେତେ ଦୋଷ ।୨୨
ଅର୍ଜୁନ ବୋଇଲେ ଦେବ ଆନ ନ ଧର ମନେ
ଯେକା ମୁହିଁ ଜଣେ ସିନା ଯିବଇଂ ଘୋର ବନେ ।୨୩
ବହନ ହୋଇ ଯେବେ ବିଜେ କରିବା ଦେବ ସ୍ୱାମୀ
ବ୍ରାହ୍ମଣେକ ଆସିଅଛି ହୋଇଣ ବଡ଼ ତମୀ ।୨୪
ମୋତେ ବୋଇଲେ ଯୁଧିଷ୍ଠିରଙ୍କି ବେଗେ ନୁଆଣିଲେ
ପୁର ତୋର ଦହନ ହୋଇବ ମୋର ପିଠି ଦେଇ ଗଲେ ।୨୫
ସ୍ୱାମୀ ନିଷ୍ଠୁର ବଚନ ଯହୁଁ ବୋଇଲେ ଦିଜବର
ତେଣୁ କରି ଭୋ ଦେବ ମୁହିଁ ଅଇଲି ଅତି ଖର ।୨୬
ଆବର ବିଶେଷେ ସନ୍ତକ ଯେ ଦ୍ୱାରେ ନାହିଁ
ବିଚାରିଲି ରମଣ ସମୟ ନୋହେ ଯେହି ।୨୭
ଯୁଧିଷ୍ଠିର ବୋଇଲେ ମୋଚ ଯୋଡି ନେଲା ହାଦେ ଶ୍ୱାନ
ରାଗେଣ କୋପିତ ସ୍ୱାମୀ ଧର୍ମର ନନ୍ଦନ ।୨୮
ଆରେ ଆରେ ଶ୍ୱାନ ଚାଣ୍ଡାଳ ପାପିଷ୍ଠ ମନ୍ଦଜାତି
ଆରେ ତୋହୋର ହେତୁ ଯେସନେକ ଫଳଶ୍ରୁତି ।୨୯
ତୋହୋର ନ ନେଇ ଥିଲେ ମୋଚ ଦ୍ୱାରେ ଥାନ୍ତା
ସନ୍ତକ ଦେଖିଲେ ଅର୍ଜୁନ କିମ୍ପା ଭିତରେ ପଶନ୍ତା ।୩୦
ପ୍ରତକ୍ଷେ ଶୃଙ୍ଗାର ମୋର ଦେଖିଲାକ ଭାଇ
ରସଭଗ୍ନ ହୋଇଲା ମୋର ଆକୁଳ ପଞ୍ଚଭୂତ ଦେହୀ ।୩୧
ତେଣୁ କରି ଶାପ ଘେନସି ମୋହୋର
ଅନୀତି ଭାବରୁ ଶୃଙ୍ଗାର ହୋଇବ ତୋହୋର ୩୨

ଯେ ତୋହୋର ରମଣୀ ତାହାର ତୁଲେ ଶୃଙ୍ଗାର କରନ୍ତେ
ରହିବ ଇନ୍ଦ୍ରି ତୋହୋର ଯୋନିରସ କୋରନ୍ତେ ।୩୩
ତୋହୋର ରମଣରେ ଦେଖନ୍ତୁ ଜଗତ
ଦାଣ୍ଡ ହାଟ ମଣ୍ଡୋପ ସବୁଠାରେ କର ରତ ।୩୪
ମାର ମାର ବୋଲି ସମସ୍ତେ ବୋଲିବେ
ପାଣ୍ଡବଙ୍କ ଶାପ ଯେ ସମସ୍ତେ ବିଚାରିବେ ।୩୫
ଯେମନ୍ତେ ରତି ତୋର ଦେଖିବେ ସଂସାର
ଭାଇଙ୍କି ବିଚ୍ଛେଦ ଯେବେ କଲୁ ରେ ମୋହୋର ।୩୬
ଯେତେ ବୋଲି ଭିତରୁ ଯେ ବାହାର ହୋଇଲେ
ମାୟା ବ୍ରାହ୍ମଣଙ୍କୁ ସେ ଦେଖି ନୁଆଁରିଲେ ।୩୭
ମାୟା ବ୍ରାହ୍ମଣ ସେ ଗଲେ ଅନ୍ତର୍ଦ୍ଧାନେ
ଲୋଡି ନ ପାଇଲେ ତାକୁ ପଣ୍ଡୁର ନନ୍ଦନେ ।୩୮
ଅର୍ଜୁନ ବୋଇଲେ ସ୍ୱାମୀ ଆମ୍ଭେ କଲାଉଂ ନିୟମ
ତେଣୁ କରି ଜକ୍ଷଣ ସେ କଲେ ଦେବଧର୍ମ ।୩୯
ସ୍ୱାମୀ ଜକ୍ଷଣରୁ ଯେବେ ଉଦ୍ଧୁରନ୍ତି ପ୍ରାଣୀ
ସର୍ବସିଦ୍ଧ ବୋଲି ପ୍ରତକ୍ଷେ ତାହା ଜାଣି ।୪୦
ସ୍ୱାମୀ ମୁହିଂ ଯାଉଅଛି ଯେବେ ଗହନ ଅରଣ୍ୟ ଭ୍ରମି
ସୁଚିତ୍ତେ ବିଜେ କରିଥିବାକୁ ଦେବ ସ୍ୱାମୀ ।୪୧
ଯୁଦ୍ଧେଷ୍ଟି ଦେବେ ବୋଇଲେ ବାବୁ କିଞ୍ଚିତ ଯେହୁ କଥା
ଅଳପ କଥାକୁ କାହିଂ ବହୁତ ଅବସ୍ଥା ।୪୨
ଯେଥକୁ ଭ୍ରାନ୍ତି ବାବୁ ତୁ କିଛି ନ କର ମନେ
ଅର୍ଜୁନ ବୋଇଲେ ନର୍କ ଗତି ହୋଇବ ନା ଦେବ ସତ୍ୟ ଯେ ଲଂଘନେ
ଦ୍ରୋପଦୀ ବିକଳ ହୋଇଲେ ଯେହା ଶୁଣି
ମୋତେ ଛାଡି କାହିଂକି ତୁମ୍ଭେ ଯିବ ହୋ ପ୍ରାଣମଣି ।୪୪।
ତୁହି ସ୍ୱାମୀ ସେ ଲାଖ ବିନ୍ଧିଲୁ ଯୁଗତେ
ଆପଣେ ଯେକାୟେଂ ପ୍ରଦାନ ନୋହି ଯେହାନ୍ତ ଦିଲୁ ମୋତେ ।୪୫
ମୁହିଂ ବଲ୍ଲଭୀ ତୁହି ସେ ମୋର ପ୍ରାଣନାଥ
କ୍ଷଣେ ନ ଦେଖିଲେ ମୁଛି ନ ପାରଇ ସଘାତ ।୪୬
ନିରାଶ ହୋଇ ତୁ ବନବାସ କଲେ
ମୋତେହେଂ ଭୋ ସ୍ୱାମୀ ନିଅ ତୋର ତୁଲେ ।୪୭
ତ୍ରେତୟା ଯୁଗରେ ଯେ ଶ୍ରୀରାମ ବନଗାମୀ
ସୀତାଙ୍କଙ୍କ ସଙ୍ଗତେ ନେଲେ ରଘୁନାଥ ସ୍ୱାମୀ ।୪୮
ସେ ଯେ ପରମ ସାଧବୀ ଯେ ଖଟିଲେ ଶ୍ରୀରାମଙ୍କୁ
ପତ୍ନୀ ଭ୍ରଷ୍ଟ ନୋହିଲେ ସିନା ଯୋଗାଇ ତୀର୍ଥକୁ ।୪୯
ଭାରିଯା ସଙ୍ଗେ ଥିଲେ ସେ ପ୍ରାପତ ହୋଅଇ ଧର୍ମ
ନାନା ତୀର୍ଥେ ପିତୃକାର୍ଯ୍ୟ ଯେତେ ଶ୍ରେଷ୍ଟ କର୍ମ ।୫୦
ମୁହିଂତ ଆନମାନଙ୍କୁ ନ ଜାଣଇଂ ଫାଲଗୁନି
ତୋହୋର ନିମନ୍ତେ ମୋତେ ଜାତ କଲେ ବ୍ୟାସ ମହାମୁନି।୫୧
ସତ୍ୟ ଯୁଗେ ବନବାସ କଲେ ନଳ ଯେ ନୃପତି
ସେ ପୁଣି ସଙ୍ଗତେ ନେଲେ ଦମୟନ୍ତୀ ।୫୨
ଧର୍ମଙ୍କଇଂ ଇଚ୍ଛା ଯେବେ ପ୍ରାଣବନ୍ଧୁ
ସ୍ତିରୀ ପୁରୁଷ ଯେକ ଆତ୍ମା ମୋତେ କିମ୍ପା ନିନ୍ଦୁ ।୫୩
ଯୁଦ୍ଧେଷ୍ଟି ବୋଇଲେ ଶୁଣ ଗୋ ଦ୍ରୌପଦୀ
ସତେହେଂ ଅର୍ଜୁନ ବନବାସ ଯିବ କି ମନେ କରୁ ଭ୍ରାନ୍ତି ।୫୪
ଅର୍ଜୁନ ବଦନ ଚାହିଂ ବୋଲନ୍ତି ଦେବ ଧର୍ମେ
କେବଣ ମହାତ୍ମା ବଚନେ ପଶିଲୁ ତୁ ମତି ଭ୍ରମେ ।୫୫
ଜକ୍ଷଣ କଲାକ ତୋତେ ମାୟା ଦ୍ୱିଜବର
କାମ ଅର୍ଥେ ପଶିଲୁ କି ଦ୍ରୋପଦୀର ପୁର ।୫୬
ସ୍ୱାମୀର ବଚନ ଶୁଣି ବୋଲନ୍ତି ବୀର ଫାଲଗୁନି
ଯୁଦ୍ଧେଷ୍ଟିଙ୍କି ବଞ୍ଚାଇ ସେ ଯୋଡିଲେ ବେନି ପାଣି ।୫୭
ଅର୍ଜୁନ ବୋଲଇ ଶୁଣିମା ଦେବରାୟେ
ସତ୍ୟେଣ ସଂସାର ଯେ ହୋଉଛି ଉଦୟେ ।୫୮
ସତ୍ୟ ଭଗ୍ନ ପ୍ରାଣୀ ନ ବ୍ରତନ୍ତି କଦାଚିତେ
ଆପଣାର କଲା କୃତ ମୁହିଂ ଲଙ୍ଘିମି କେମନ୍ତେ ।୫୯
ଦ୍ରୋପଦୀଙ୍କି ତିଆରିଣ ବୀର ଫାଲଗୁନି
ତୁମ୍ଭେ ଯେ ସୀତୟା କଥା କହିଲ ଯିଘ୍ନସେନୀ ।୬୦
ସୀତୟା ଗଲେ ଯେ ଶ୍ରୀରାମଙ୍କ ତୁଲେ
କାଳେ ପ୍ରମାଦ ପଡ଼ିଲାଟି ବଞ୍ଚି ତ ନ ପାରିଲେ ।୬୧
ହରି ନେଲା ରାବଣ ଯେ ଜନକ କୁମାରୀ
ଯେତେକ କଷ୍ଟ ପାଇଲେ ସେ କହି ତ କି ପାରି ।୬୨
ନଳ ଦମୟନ୍ତୀଙ୍କର କହିଲ ଯେ ରୀତି
କାଳେ ବେନି ଜନଙ୍କର ହୋଇଲା ବିପତ୍ତି ।୬୩
ଯେମାନ ମନେ ଗୋ ନ ଧରିବା ଦ୍ରୁଉପତୀ
ଯେକା ହୋଇ ବନକୁ ମୁଂ ଯିବଇଂ ରେ ସତୀ ।୬୪
ତୁମ୍ଭେମାନେ କେହି ଯେ ନୋହିବ ବିରସ
ମୁହିଂ କିଞ୍ଚିତ୍ ପରାୟେ ମଣଇଂ ଦ୍ୱାଦଶ ବରଷ ବନବାସ ।୬୫
ଯୁଦ୍ଧେଷ୍ଟି ବୋଇଲେ ବାବୁ ଯଦି ଯିବୁ ବନ
ଦୂରେ ନ ଥିବୁଟି ମହାଘୋର ବନ ଜାଣ ।୬୬

ଭୋ ଦେବ ବହୁତ ଧୂରକୁ କିମ୍ବା ମୁହିଂ ଯିବି
ଯେହି ନିକଟେ ଥାଇ ମୁଂ ସତ୍ୟ ବଞ୍ଚାଇବି ।୬୭
ମୋତେ ପରମାଦ ତ ନାହିଂ ଘୋର ବନେ
ଶୁଭେ ପାର ହୋଇବି ଶ୍ରୀଜଗନ୍ନାଥଙ୍କ ପରସନ୍ନେ ।୬୮
ଯେଥିକଇଂ ମନେ କିଛି ନ କରିବା ଚିନ୍ତା
ଅର୍ଜୁନକୁ କୋଳ କରି ଗୁବନ୍ତି କୋଇନ୍ତା ।୬୯
ବାବୁ ତୋହୋର ମୁହିଂ ଅପାଦ ଘେନି ଯାଇଂ ରେ ପାଥ
ତୋତେ ନ ଦେଖିଲେ ମୋର ଜୀବନ ଅସୁଆର୍ଥ ।୭୦
ତୁହି ସେ କୁଳମଣ୍ଡଣ ହସ୍ତିନା ଭୁବନକୁ
ଶ୍ରୀଜଗନ୍ନାଥ ଦେବଙ୍କର ତୁ ଅଟୁ କଳାବୁକୁ ।୭୧
ବାବୁ ମାସେ ବରଷେ ନୁହେଂ ଦ୍ୱାଦଶ ବରଷ ପରିଯନ୍ତେ
ମୁହିଂ ଯେତେ କାଳ ତୋତେ ନ ଦେଖିଲେ ବ୍ରତିବି
କେମନ୍ତେ ।୭୨
କହୁଂ କହୁଂ କୋଇନ୍ତାଯେ ପଡ଼ିଲେକ ଢଳି
କୋଳ କରି ଦ୍ରୋପତୀ ତାଙ୍କୁ ଧଇଲେକ ଟୋଳି ।୭୩
ହା ହା ସ୍ୱାମୀ ମୋତେ କେଣେ ଛାଡି ଗଲ ପଣ୍ଡୁ
ସ୍ୱାମୀର ବିହୁନେ ଯେ ବଞ୍ଚଇ ତାର ଜୀବନ ପୋଡୁ ପୋଡୁ ।୭୪
ଭ୍ରଥାର ବିହୁନେ ବ୍ରତଇ ଯେବଣ ନାରୀ
ଅନେକ ପାତକୀ ସେ ଯେ ହୋଅନ୍ତି ଦୋଚାରୀ ।୭୫
ସ୍ୱାମୀ ତୋତେ ଛାଡି ମୁହିଂ ଯେ ହୋଇଲି ବଡ଼ ଦୁଖୀ
ଯେ ଶରୀର ଧଇଲି ମୁଂ ଯେକା ସହଦେବକଇ ଦେଖି ।୭୬
କରପତ୍ର ଯୋଡିଣ ସେ ସମାର୍ଜଇ ପାଥ
ତୁମ୍ଭେ କିମ୍ପେ ଅସାକ୍ଷମ ହୋଉଛ ଗୋ ମାତ ।୭୭
ତୁମ୍ଭେ କିମ୍ପେ ଅନେକ ଗୋ ହୋଉଛ ବିମୁଖ
ମୁହିଂ ତ ବନବାସକୁ ଯେ ମଣଇଂ ବଡ଼ସୁଖ ।୭୮
ମାତାଙ୍କର ଚରଣ ତଳେ ଅର୍ଜୁନ ପରିଣାମି
ମୁହିଂ ବନ ଯିବି ମୋତେ ଆଗ୍ୟାଂ ଦେବା ସ୍ୱାମୀ ।୭୯
ଉଠିଣ କୋଳ କରି ଧଇଲେ ଯୁଝେଷ୍ଟି
ବାବୁ ମୁହିଂ ନିୟମ କରାଇଲି ଅର୍ଣ୍ଣ ମୋହୋର ଉପରେ
ଅରିଷ୍ଟି ।୮୦
ଯଦ୍ୟପି ବନବାସ ଯିବୁ ସର୍ବସାଚୀ
ବରଷକେ ବାହୁଡ଼ିଲେ ନାହିଂ କିଛି ବାଚି ।୮୧
ଅର୍ଜୁନ ବୋଇଲେ ବାବୁ ବୁଝିଲି ନି ଯେହୁ କଥା
ଯାଉଅଛି ବନବାସକୁ ଗୋ ଆଗ୍ୟାଂ ଦେବାକ ମୋତେ ମାତା ୮୨

ଅର୍ଜୁନ କଇ କୋଳ କରି ଧଇଲେ ବ୍ରିକୋଦର
ଦ୍ୱାଦଶ ବରଷ ପୂରିଲେ ବାବୁ ବନରୁ ବାହୁଡ ।୮୩
ଭଲ ତୀର୍ଥ ଗୋଟିକରେ ସଙ୍କଳ୍ପ ତୁ କରି
ନିୟମ ବଞ୍ଚାଇ ବାବୁ ଆସରେ ବାହୁଡ଼ି ।୮୪
ଭୀଷ୍ମ ଦ୍ରୋଣ ବିଦୁର କର୍ଣ୍ଣ ଆବର ଭୁରିସର୍ବା
ଶଲ୍ୟ ଶକୁନି କପ ଅଶସ୍ତମା କୁରୁରାଜ ଦେବା ।୮୫
ଅର୍ଜୁନ ବନବାସ ଯିବାର ବାରତ ଯେ ଶୁଣି ଆସି
ସମସ୍ତେ ସମାର୍ଜନ୍ତି ଅର୍ଜୁନକୁ ନିବେଶି ।୮୬
ଭୀଷ୍ମେ ବୋଇଲେ ଯେ କଥା ହୋଇଲା କେମନ୍ତ
ଅର୍ଜୁନ ବୋଇଲା ବ୍ରାହ୍ମଣେକ ଅଇଲା ଅଦଭୁତ ।୮୭
ବୋଇଲା ବଡ଼ ସନ୍ଦେଶ କଥାଯେ ଯୁଝେଷ୍ଟିଙ୍କି ଆଣ ବେଗେ ରାଇ
ଯେହିକ୍ଷଣି ଯିବି ମୁହିଂ ବାରତା ଜଣାଇଂ ।୮୮
ବୋଇଲା ଯୁଝେଷ୍ଟି ଦେବଙ୍କୁ ତୁ ବହନେ ରାଇ ନୁଆଣିଲେ
ପୁର ତୋ ଦହନ ହୋଇବ ମୋର ପିଠିଆଇ ଗଲେ ।୮୯
ଯେସନକ ଶୁଣି ମୁହିଂ ଆଶ୍ରିଯ୍ୟ ହୋଇଲି
ଅନ୍ତେଶ୍ୱରପୁରେ ଧାତିକାରେ ପଶିଲି ।୯୦
ଯୁଝେଷ୍ଟି ଅଛନ୍ତି କୃଷ୍ଣା ସଙ୍ଗତେ ଯେକାନ୍ତେ
ଦୁହିଂଙ୍କର ରମଣ ଦେଖିଲି ବେନି ନେତ୍ରେ ।୯୧
ଯୁଝେଷ୍ଟିଙ୍କ କୋଳେ ଯେବେ ଦ୍ରୋପତୀ ଦେବୀ ଥାଇଂ
ଆମ୍ଭର ପରମ ଗୁରୁ ସେ ଅଟନ୍ତି ମହାମାୟୀ ।୯୨
ଗୁରୁ ପତ୍ନୀ ରତିଯୋଗ ମୁଂ ଦେଖିଲି ନୟନେ
ରସ ଭଗ୍ନ ହୋଇଲା ବିକୃତ ପଞ୍ଚୁମନେ ।୯୩
ପର ଶୃଙ୍ଗାର ଯେବଣ ଜନ ଭଗ୍ନ କରି
ଲଭଇ ପାତକ ସେ ଲିଙ୍ଗଭଗ୍ନ ଦୋଷ ସରି ।୯୪
ଯେତେକ ପାତକ ଦେବ ଅରଜିଲି ମୁହିଂ
ଖଣ୍ଡିବି ସର୍ବ ପାତକ ନାନା ତୀର୍ଥେ ଯାଇଂ ।୯୫
ବିଦୁରେ ପୁଚ୍ଛା କଲେ ମନ୍ତ୍ରୀ ସହଦେବଙ୍କୁ
ତୁହି ଜାଣୁ ଟିକି ବାବୁ ସେ ଅଦଭୁତ ବ୍ରାହ୍ମଣଙ୍କୁ ।୯୬
ଅର୍ଜୁନେ ପଠିଆଇଂ ସେ ଅଦଭୁତେ କେଣେ ଗଲା
କହ ବାବୁ ସହଦେବ ସେ ବ୍ରାହ୍ମଣ କେବଣ ହୋଇଲା ।୯୭
କରସ୍ଥଳକୁ ଚାହିଂ କହଇ ମହାମନ୍ତ୍ରୀ
ଅଗ୍ନି ଦେବତା ଅଇଲେ ଧରିଣ ଗୋପ୍ୟାନ ମୂରତି ।୯୮
ବର୍ଷ୍ୟାନର ଦେବତାକଇ ହୋଇଲା ଲୁଦୁବୁଦୁ ବ୍ୟାଧି
ଅର୍ଜୁନ ବନ ଗଲେ ସେ ପାଇବ ମଉଷଧି ।୯୯

ଚେଣ୍ଡୁ କରି ଗୋପ୍ୟାନ ରୂପେ କଲେକ ଗବନ
ତାହା ଜାଣି ନ ପାରିଲେ ଠାକୁର ଅରଜୁନ ।୧୦୦
ଅଗ୍ନି ଦେବତାଙ୍କର ନିମନ୍ତେ ହୋଇଅଛି ବନବାସ
ତିନିଯୁଗ ହୋଇଲାନି ଅଗ୍ନି କରିଛନ୍ତି ଆଶ ।୧୦୧
ମନ୍ଦ ଅଗ୍ନି ହୋଇଅଛି ସେ ସତ୍ୟ ଯୁଗହୁଂ
କଉରୋବେ ଆଶ୍ରିଯ୍ୟ ହୋଇଲେ ସହଦେବ କହୁଂ କହୁଂ।୧୦୨
ଯେସନେକ ବିଚାର ଅଛି ଯେବେ ଅଗ୍ନି ଦେବତାର
ଅର୍ଜୁନକଇ ପ୍ରମାଦ କି ଅଛି ବନସ୍ତର ।୧୦୩
କେହୁ ନ ବାର ତୁମ୍ଭେ ଯେ ଯାଉ ଘୋର ବନ
ଅଗ୍ନିଙ୍କର ଆଷ୍ୟ କାମାର୍ଥ ଯେ ପୂରୋଉ ଫାଲଗୁନ୍ୟ ।୧୦୪
ଦ୍ରିଯୋଧନ କୋଳ କରି ଧଇଲେ ଅର୍ଜୁନକୁ
ବାବୁ ଆରୋଗ୍ୟ ପାଦ ଖଣ୍ଡନ ହୋଉ ତୁକୁ ।୧୦୫
ଅତି ଗହନ ବନକୁ ନ ଯିବୁଟି ପାଥ
ଦେଶାଉର ମୁଖେ ଆମ୍ଭେ ପାଉଥିବୁଟି ବାରତ ।୧୦୬
ମୀନମାସ କୃଷ୍ଣପକ୍ଷ ଚଉଠୀ ଗୁରୁବାର
ସ୍ୱାତୀ ନକ୍ଷତ୍ରକୁ ତୁଳା ଭୋଗ୍ୟ ସେ ଦିନର ।୧୦୭
ଚଉବିଂଶ ଦଣ୍ଡ ଚିତ୍ରା ନକ୍ଷତ୍ର ଭୋଗ ଥିଲା
ବୁଧର ବେଳେ ପାଥ ବାହାର ହୋଇଲା ।୧୦୮
ସ୍ୱାତୀ ଗୁରୁବାର ଅମୃତ ଯୋଗ ଅଟଇ
ସପତାଙ୍ଗ ଗଣିତାରେ ଯେ ଅନର୍ଥ ଫିଟଇ ।୧୦୯
ମାତା ଗୁରୁ ସୋଦରଙ୍କୁ ନମସ୍କାର କରି
ଦ୍ରିଯୋଧନ ମୁଖ ଚାହିଁ ଅର୍ଜୁନ ତିଆରି ।୧୧୦
ସ୍ୱାମୀ ତୁହି ପଣ୍ଡିତ କୁଳଶ୍ରେଷ୍ଠ ମହା ଭାଗ୍ୟବନ୍ତା
ଯଦ୍ୟପି ଯୁଝେଷ୍ଟି ଜ୍ୟେଷ୍ଠ ତୁହି ସମସ୍ତ ପାଳନ୍ତା ।୧୧୧
ସ୍ୱାମୀ ମୁହିଂ ଯେ ଯାଉଅଛି ଘୋର ଗହନ ବନକୁ ।
ଭାଇନ୍ତ କଥା ଦେବ ଲାଗଇଟି ତୁକୁ ।୧୧୨
ସ୍ୱାମୀ ଯଦ୍ୟପି ଦୋଷ ତୁମ୍ଭଙ୍କୁ କରିବେ ଭୀମସେନ
ମୋହୋର ଆସିବା ଯାଏ ତାହା ନ ଧରିବ ମନ ।୧୧୩
ଯଦ୍ୟପି ଭାଇଙ୍କି ମୋର କୋପ କରିବ ଅନମିତେ
ସମସ୍ତେ ନାଶଯିବଟି ମୋହୋର କୋପନ୍ତେ ।୧୧୪
ଯେତେକ ତିଆରି ଯେ ବାହାର ଫାଲଗୁନି
ଦ୍ୱିଜବରମାନେ କରନ୍ତି ଯେ ବେଦଧୂନି ।୧୧୫
କୋଇନ୍ତାଙ୍କୁ ଦ୍ରୋପଦୀଙ୍କି ସମର୍ପି ଧନୁର୍ଜୟେ
ଦ୍ରୋପଦୀକି ଦୟା କରିଥିବଟି ଗୋ ମାୟେ ।୧୧୬
ଅନେକ ସାନନ୍ଦ ସେ ଅର୍ଜୁନ ତିଆରି ବୋଲି
ତୀର୍ଥେ ପାତକ ଦହନ କରି ମାଗୋ ମୁଂ ବାହୁଡ଼ିବି କାଲି ।୧୧୭
ସବୁଙ୍କୁଇ ଦଇନି କରଇ ଯେ ବାସବର ସୁତ
ଜଣେ ଜଣେ ସମ୍ଭୋଧି ଚଳଇ ବୀର ପାଥ ।୧୧୮
ନଗ୍ର ତେଜି ଅର୍ଜୁନ ପଶିଲା ଘୋର ବନେ
ଗଙ୍ଗା କୂଳଂ ବାହୁଡ଼ିଲେ ପଣ୍ଡୁଙ୍କର ଚାରି ନାନେ ।୧୧୯
ହସ୍ତିନା ନଗରେ ଆସି ହୋଇଲେ ପରବେଶ
ଅର୍ଜୁନଙ୍କୁ ନ ଦେଖି ସବୁରି ମନରେ ବିରସ ।୧୨୦
ମହାଘୋର ଅରଣ୍ୟେ ପଶିଲା ଫାଲଗୁନି
କରଇ ବନ କ୍ରୀଡ଼ା ସେ କିରାତ ରୂପ ଘେନି ।୧୨୧
ମଥାରେ ମଜୁର ଝାଳି କଣ୍ଠେଣ ଗୁଞ୍ଜରାର ମାଳି
ଗୋପୀ ଚନ୍ଦନ ଚିତା ସର୍ବାଙ୍ଗେଣ ବୋଳି ।୧୨୨
ଧାମଣା କାଠର ଧନୁ କଣ୍ଟା ବାୟେଂଶର ଗୁଣ
ଫିରିକି ନାରାଜ ଯେ ପୂରୋଇ ବେନି ତ୍ରୋଣ ।୧୨୩
ପରଶୁ କୋଠାର ଯେ ପରିହରଣ ଝାଳି
କରେଣ ମୁଦୁଗର ଘେନି ଛନ୍ଦେ କରଇ କେଳି ।୧୨୪
କିରାତ ରୂପ ଧରି ବନେ ବିହରଇ ସର୍ବସାଚୀ
ମାରଇ ବନଜୀବ ନାରାଜ ଘେନି ପ୍ରାଞ୍ଛି ।୧୨୫
ଭାର୍ଗବୀ ବୋଲିଣ ଯେ ଯେକଇ ନଦୀ ଗୋଟାୟେ
ଭଇରବୀ ଗଙ୍ଗାରୁ ସେ ଯେ ଉତ୍ତର ମୂର୍ତ୍ତି ହୋଇ ବହେ ।୧୨୬
ତୀର୍ଥ ସ୍ଥାନ ବୋଲି ତହିଂ ରହିଲା ଫାଲଗୁନି
ସୁବିଧାନ ଭୂମି ଦେଖି ବଞ୍ଚିଲେ ମାସ ତିନି ।୧୨୭

**

## ୨୫. ଅର୍ଜୁନର ଅକ୍ଷୟତୂଣୀର ଓ ପାଶୁପତ ଅସ୍ତ୍ର ଲାଭ

ଶୁଣ ହୋ ଚଇତନ କକଡ଼ା ମାସ କୃଷ୍ଣପକ୍ଷ ଦ୍ୱିତୀୟା
ଯେ ଅଟଇ ଭୃଗୁବାର
ଶ୍ରବଣା ନକ୍ଷତ୍ର ଅର୍ଜୁନଙ୍କୁ ଅଟଇ କ୍ଷେମ ତାର ।୧
ସେ ଦିନ ଅର୍ଜୁନ ପ୍ରବେଶ କାଶୀନଦୀ ତୀରେ
ପଶିଲା ହର ଉଦ୍ୟାନ ନିର୍ଝର କନ୍ଦରେ ।୨
କପିଳାସ କନ୍ଦରୁ ବିଜୟେ ହର ଯେ ପାର୍ବତୀ
ବନ କ୍ରୀଡ଼ା ରଙ୍ଗେ ବିହରନ୍ତି ପଶୁପତି ।୩
ଶିରେଣ ଶୀତାଂଶୁ ଯେ ଅଙ୍ଗେଣ ଲେପନ ବିଭୂତି
ପ୍ରତକ୍ଷେ ବିଶ୍ୱନାଥ ତପୋଧନ ବ୍ରତୀ ।୪

ପିଙ୍ଗଳ ରୋମାବଳୀ ବିକଟାଳ ଯୁଗତେ
କଷା କଉପୀନ ସେ ପିନ୍ଧିଛନ୍ତି ଗାତ୍ରେ ।୫
କର୍ଣ୍ଣରେ ତମ୍ୱା ମୁଦୁରା ମକୂର ପୁଚ୍ଛ ବାହୀ ବେନି ହସ୍ତେ
କଷା ବସନ ଗୋଟିଯେ ପିନ୍ଧିଣ ଅଛନ୍ତି ଜଗତମାତେ ।୬
ଯେସନେକ ସ୍ୱରୂପ ଧରିଣ ଦେବସ୍ୱାମୀ
ଉମା ମହେଶ୍ୱର ଯେ ଭ୍ରମନ୍ତି ବନଗାମୀ ।୭
କାଶୀ ନଦୀ ତୀରେ ବିଜୟେ ଧୂର୍ଜଟୀ
ଭାଣ୍ଡୀର ବୃକ୍ଷ ତଳେ ଯାଇଂ ପାଡ଼ିଲେ କର୍ପଟୀ ।୮
ପାର୍ବତୀ ଜାନୁରେ ହର ସୀମସ୍ଥାନ ଦେଇ
ଦକ୍ଷିଣକୁ ଶିର କରି ସୁତିରେ ବିଶ୍ୱନାଥ ଗୋସାଇଂ ।୯
କେଶ କୁରୁଳି ଦେବୀ ମାରୁଛନ୍ତି କୃମି
ନିର୍ଭରେ ଶୋଇଲେ ଦେବ ମାଡିଲାକ ଘୁମି ।୧୦
ଗଣ୍ଡା ଗୋଟିଯେ ଦେବ ସଙ୍ଗତେ ଥିଲେ ଆଣି
କାଶୀନଦୀ ଭିତରେ ପଶି ସେ ଯେ ପିଉଥିଲା ପାଣି ।୧୧
ଅର୍ଜୁନ ବସିଅଛନ୍ତି ଶିଂଶୁପା ବୃକ୍ଷ ତଳେ
କାଶୀନଦୀ ତୀରେ ପଛିମ ଭାଗ କୂଳେ ।୧୨
ଗଣ୍ଡା ପାଣି ପିଅନ୍ତେ ଦେଖିଲା ବୀର ପାଥ
ଅପୂର୍ବ ଜୀବ ଦେଖି ଧନୁ ଧଇଲା ବାମ ହାଥ ।୧୩
ଦକ୍ଷିଣ ଭୂଜେ ବୀର ନାରାଚେକ ସନ୍ଧି
ଗଣ୍ଡାର ଉପରକୁ ସେ କିଞ୍ଚିତ ଭାବେ ବିନ୍ଧି ।୧୪
ପାଣି ଖାଇ କରି ଗଣ୍ଡା ଯାଆନ୍ତେଣ ଲେଉଟି
ପଡ଼ିଣ ନାରାଜ ଗଣ୍ଡାର ବାମ ଅଙ୍ଗ ଫୁଟି ।୧୫
ଶରଘାତ ହୋଇଣ ଯେ ପଳାଇଲା ଗଣ୍ଡା ଜୀବ
ଶର ବିଘାତେଣ ସେ ଛାଡିଲା ଘୋର ରାବ ।୧୬
ସଦାଶିବ ଛାମୁରେ ପଡ଼ି ହୋଇଲା ପ୍ରାଣତ୍ୟାଗ
ଉମା ବୋଇଲେ ସ୍ୱାମୀ ତୁମ୍ଭେ ଉଠ ବେଗ ବେଗ ।୧୭
କିଯେ ଟି ହାଦେ ମାଇଲା ମୋହୋର ଗଣ୍ଡା ଗୋଟି
ପ୍ରାଣତ୍ୟାଜ ହୋଇଲା ଦେବ ନାରାଜ ଅଛି ଫୁଟି ।୧୮
ଧାଡିକାରେ ଉଠିଲେ ତହୁଂ ବିଶ୍ୱନାଥେ
ଗଣ୍ଡାର ହତ ଦେଖିଣ ଦେବ ଡାକନ୍ତି କୋପଚିତ୍ତେ ।୧୯
କେ ରେ ମୋହୋର ପୋଷିଲା ଗଣ୍ଡା ଗୋଟି ପ୍ରାଣତ୍ୟାଜ କଲା
ଶିର ସମ୍ପଦ ଆୟୁ ତା'ର ଆଜହୁଂ ସରିଲା ।୨୦
ଯଦ୍ୟପି ଆଜ ତାକୁ ମୁଂ ଦେଖିବି ନୟନେ
ମାରି ବିଶାବଳି ଦେବି ଆଜ ଯେହି ସ୍ଥାନେ ।୨୧

ଗଣ୍ଡାକୁ ମାରିଣ ଯେ ଅର୍ଜୁନ ଆସଇ ଧାଇଂ
ଈଶ୍ୱର କୋପ କଲେ ଅର୍ଜୁନ ମୁଖ ଚାହିଂ ।୨୨
ଆରେ ଆରେ ଶବରା ବୋଲି ଡାକିଲେ ସଦାଶିବ
ଅନମିତେ ମୋହୋର କିମ୍ପା ନାଶିଲୁ ଗଣ୍ଡାଜୀବ ।୨୩
ବିପରୀତ ବୁଦ୍ଧି ତୋର ନାଶଯିବା ବେଳେ
ପ୍ରତଗ୍ୟାଂ କରି ଅର୍ଜୁନକୁ କଟାକିଲେ ସୁଢଳେ ।୨୪
ବୃକ୍ଷରୁ ଡାଳେକ ଭାଞ୍ଜିଣ ସେ ଯେ ଅନ୍ତରୀଛେ ବୁଲାଇ
ଅର୍ଜୁନର ଉପରକୁ ହର ଆସୁଛନ୍ତି ଧାଇଂ ।୨୫
ନାସା ଅଗ୍ରେ କର ଦେଇଣ ବୀର ଅର୍ଜୁନ ହସି
ଅକାରଣେ ବାଇ ତୋତେ କେ କଲା ରେ ତପୁସୀ ।୨୬
ମରିବାର ପାଇଂ ଲୋଡୁ ତୁ କିମ୍ପା ରେ ତପଧନୀ
ପଳା ଯା' ଯେ ବନସ୍ତରୁ ଭାରିଯା ଗୋଟି ଘେନି ।୨୭
ଯେତେ ଘଞ୍ଚାଳ ମୋତେ କଲୁନି ରେ ଅଭାବ
ମରଣକୁ ଇଛାକଲୁ ଲୋଡିଲୁ ନିଜ ଠାବ ।୨୮
ତୋହୋର ମରନ୍ତେଣ କିଛୁ କାର୍ଯ୍ୟ ନୋହିବ
ଯା ପ୍ରାୟେ ସୁନ୍ଦରୀ ଭାରିଯା ଗୋଟି ବିଧବା ହୋଇବ ।୨୯
ଯେହାର ବିକଳେ ମୁହିଂରେ ନ ମାରଇଂ ତୋତେ
ଯେତେକ ଝିଂଘାସ ଗାଳି ଦେଲୁଣି ତୁ ମୋତେ ।୩୦
ଅର୍ଜୁନ ପ୍ରତଗ୍ୟାଂ ଅପାର ଦର୍ପ ଶୁଣି
ସନ୍ନିଧେ କଟାକିଲେ ଦେବ ଶୂଳପାଣି ।୩୧
ହତ୍ୟା ନ ଘେନିମା ନିମନ୍ତେ ଯେ ବିଚାରଇ ଅର୍ଜୁନ
ସାମାନ୍ୟ ଲୋକକୁ କେସନେ ସମରେ କରିବି ନିଧନ ।୩୨
ତପଧନ ହୋଇ ଯେ ତୁ ଅଟୁ ନିରିମାକ୍ଷୀ
ତୋତେ ମାରନ୍ତେ ଆନ ନୋହନ୍ତା କେହୁ ରଖି ।୩୩
ସଦାଶିବଙ୍କର କଟାକ ଦେଖି ବାସବର ତନୁ
ଈଶ୍ୱରଙ୍କ ଗଳାରେ ଲାଇଲା ନେଇ ଧନୁ ।୩୪
ଦକ୍ଷିଣ ଭୂଜେଣ ଧରି ଅନ୍ତରୀଛେ ଟୋଳି
ଧନୁ ହୁଳ ଗଳାରେ ଲଗାଇ ଅନ୍ତରୀକ୍ଷେ ବୁଲାଇଲା କପାଳୀ।୩୫
ଯେସନେକ କୁରାଳ ବୁଲାଇ ଚକ୍ର ଧରି
ସଦାଶିବ ନାଥଙ୍କୁ ଯେ ବୁଲାଇ ସେହିମତି କରି ।୩୬
ମୁଖରୁ ରୁଧିର ଯେ ବହଇ ବିଶ୍ୱନାଥ
ପରମ ଯୋଗେଶ୍ୱର ପୁରୁଷ ଛାଡିଲେ କୋପ ଚିତ୍ତ ।୩୭
ବର ମାଗ କିରାତ ରେ ହୋଇଲୁ ତ୍ରିପୁତି
ଆଶ୍ରିଯ ହୋଇ ଅର୍ଜୁନ ଗୁହାଇଲା ତତକ୍ଷଣାନ୍ତି ।୩୮

ଗଳାରୁ ଧନୁ କାଢ଼ିଣ ପକାଇଲା ଭୂମି
ବର ମାଗ ବର ମାଗ ବୋଲନ୍ତି ଦେବସ୍ୱାମୀ ।୩୯
କରତାଳି ମାରିଣ ଯେ ହସିଲେ ପାର୍ବତୀ
ସ୍ୱାମୀ ଯେସନେକ ବିପରୀତ ତୁମ୍ଭେ ଅଟ ହୋ ପଶୁପତି ।୪୦
ସାଂଗ୍ରାମେ ହାରିଣ ଦେବ ହୋଇଲ ଅପରାଧି
ମାଡ଼ଖାଇ କେବଣ ଦେବତା ବର ଯେ ପ୍ରସାଦି ।୪୧
ଈଶ୍ୱରେ ବୋଇଲେ ସାଧୁ ସାଧୁରେ ଶବର
ମୋତେ ଜିଣିମାକୁ କ୍ଷେମ ପ୍ରତଗ୍ୟାଂ ତୋହୋର ।୪୨
ଯାହା ମାଗିବୁ ତାହା ଦେବଇଂ ଅବଶ୍ୟ
ଶତ୍ରୁତା ପଣେ ଜିଣି ତୁ ପାଇଲୁ ବଡ଼ ଯଶ ।୪୩
ପୁଣ ପୁଣ ବର ସେ ଯେ ଯାଚନ୍ତି ଦେବରାଜ
ଶୁଣିଣ ବାସେବି ଯେ ହୋଇଲା ଆଶ୍ରିଯ ।୪୪
ତୁମେ କେବଣ ପୁରୁଷ ମୁହିଂ ବର ମାଗିବି କେମନ୍ତେ
ସରୂପ ବର୍ଣ୍ଣ ଚିହ୍ନ ଦେଖାଇବ ମୋତେ ।୪୫
ଅର୍ଜ୍ଜୁନ କହନ୍ତେ ତାହା ପାର୍ବତୀ ଶୁଣିଲେ
ଯୋଗବଳେ ଦେବୀ ପୁଣ ମନରେ ଜାଣିଲେ ।୪୬
କିରାତ ନୋହଇ ଯେ ଅଟଇ ପାଣ୍ଡବ ଫାଲଗୁନି
ମନେ ମନେ ଉଷତ ହୋଇଲେ ଗୋସାମଣୀ ।୪୭
ପାର୍ବତୀ ବୋଇଲେ ରେ ତୁ ଶୁଣ ଧନୁର୍ଦ୍ଧରେ
ସରୂପେ ଭେଟିଲୁ ତୁ ବିଶ୍ୱନାଥ ଦେବରାଯେ ।୪୮
ବନକ୍ରୀଡା କରି ଆମ୍ଭେ ଅଇଲୁ ହର ଯେ ପାର୍ବତୀ
ସୁକ୍ଷଣେ ଭେଟିଲୁ ତୁ ଦେବ ପଶୁପତି ।୪୯
ଯେହା ଶୁଣି ଅର୍ଜ୍ଜୁନ ସହସ୍ର ପକାଇ
ସଦାଶିବ ଚରଣେ ସୁତିଲା ଦଣ୍ଡଲାଇ ।୫୦
ସ୍ୱାମୀ ଅଗ୍ୟାନେ ହୋଇଲି ମୁ ତୋହୋରେ ଦୋରେହା
ଅପରାଧି ହୋଇଲଇଂ ବର ମାଗିବଇଂ ମୁଂ କାହା ।୫୧
ପାର୍ବତୀ ବୋଇଲେ ତୁ ନ ଭାଳ ଯେମନ୍ତ
ଶତ୍ରୁତା ପଣେ ତୁ ଯେ ତୋଷିଲୁ ବିଶ୍ୱନାଥ ।୫୨
ଆରେ ସାଂଗ୍ରାମେ ମଛଳ ଯେ ଭଗତିମଛଳ
ଶରଣମଛଳ ଯେ ଯେ ସଦାମତି ଭୋଳ ।୫୩
ଶୁଣ ହୋ ଧନୁର୍ଦ୍ଧରେ ବୋଲନ୍ତି ଜଗତମାତା
ତୋତେ କହିବା ଯେ ସ୍ୱାମୀର ଅପୂର୍ବ ରସକଥା ।୫୪
ବାବୁ ବଇତରଣୀ ନଦୀ ତୀରେ ଶିବ ନାମେ ନଗ୍ରୀ
ଶିବଦାସ ବୋଲି ବ୍ରାହ୍ମଣେକ କୃଷିକାରୀ ।୫୫
ନିର୍ମଳ ବୋଲି କରି ତାର ପୁତ୍ର ଯେ ଗୋଟିଏ
ବାଳ କାଳେ ରଖଇ ସେ ଗୋଧନ ପଲିଯେ ।୫୬
ବାବୁ ସେ ନଦୀ କୂଳେ ଅଛଇ ମଣ୍ଡଳେଶ୍ୱର ନାମେ ଲିଙ୍ଗ
ଅଭୋଗ ଦେବତା ତାଙ୍କୁ ନାହିଂ ଭୋଗ ରାଗ ।୫୭
ସେ ପୁତ୍ର ଗୋଟି ତହିଂ ଗୋରୁ ରଖଇ ଯେକା
ସେ ଲିଙ୍ଗ ଉପରେ ନେଇ ନିତ୍ୟେ ଲଦଇ ଶତେ ଟେକା ।୫୮
ଯେହିମତି ପ୍ରତିଦିନ ମାରଇ ସେ ଲିଙ୍ଗର ଉପରେ
ଭ୍ରାନ୍ତି ନ କରଇ ସେ ହୋଇଲାନି ସମ୍ବସରେ ।୫୯
କୃମ୍ଭମାସ କୃଷ୍ଣପକ୍ଷ ଅମାବଇ ଚନ୍ଦ୍ରବାର
ଶତଭିଷା ନକ୍ଷତ୍ର ଯେ ଅଟଇ ସେ ଦିନର ।୬୦
ନାଗ ନାମେ କରଣ ଯେ ଶିବ ନାମେ ଯୋଗ
କୁମ୍ଭ ସଙ୍କରାନ୍ତିକି ଯେ ଚାରିଦିନ ଭୋଗ ।୬୧
ସେଦିନ ସେ ବାଳୁତ ଥିଲା କୃଷି ଖେତେ
ଭୁଞ୍ଜି ବସିଲା ସେ ଚଷାଙ୍କ ସଙ୍ଗତେ ।୬୨
ଥୋକାଯେ ଅନ୍ନ ସେ ଭୁଞ୍ଜିଲା ବାଳୁତ
ମନରେ ପଡ଼ିଲା ସେ ଛାଡ଼ିଲା ଭୁଞ୍ଜିଲାର ଭାତ ।୬୩
ଟେକା ଗୁଡ଼ାଯେ ଯେ ଅଣ୍ଟିରେ ପୂରୋଇ
ଉଚିଷ୍ଟ ହାଥେ ସେ ଆସୁଅଛି ଧାଇଂ ।୬୪
ଅପୂଜା ଲିଙ୍ଗର ସନ୍ନିଧେ ସେ ହୋଇଲା ପରବେଶ
ଟେକାମାନ ନେଇ ଲଦଇ ବାଳଶିଷ ।୬୫
ଈଶ୍ୱର ଚରିତ ହୋ ଶୁଣ ବୀର ପାଥ
ସେ ଲିଙ୍ଗରେ ବିଜୟେ କଲେ ଯେହି ବିଶ୍ୱନାଥ ।୬୬
ପଞ୍ଚଇ ବଦନ ତାଙ୍କର ଯେ ପଞ୍ଚଦଶ ନୟନ
ତୋକ୍ଷେଣ ବାଳୁତକୁ ପ୍ରସନ୍ନ ହୋଇଲେ ତ୍ରିଲୋଚନ ।୬୭
ବର ମାଗ ବୋଲି ଯେ ବୋଇଲେ ପଶୁପତି
ତଲୟ ଭାବ ଘେନି ମୋତେ କଲୁରେ ତ୍ରିପୁତି ।୬୮
ଦେଖିଣ କୁମରମଣି ପ୍ରଳମ୍ବିତ କଲା
ଉଠି କରଯୋଡ଼ି ବଚନ ବୋଇଲା ।୬୯
ବାଳୁତ ବୋଲଇ ଭୋ ବିଶ୍ୱନାଥ ମୋତେ ପ୍ରସନ୍ନ ହୋଇବା
ଯେ ଭରଥ ଖଣ୍ଡେ ମୋତେ ଚାଷ ବୃତ୍ତି ଦେବା ।୭୦
ସେ ବାଳୁତ ନନ୍ଦନ କିଛିହିଂ ନ ଜାଣଇଂ ଆନ
ସଦିଭାବେ ମାଗିଲା ସେ କୃଷି ଚଷାଙ୍କର ବିଧାନ ।୭୧
ଶୁଣ ହୋ ଅର୍ଜ୍ଜୁନ ବଦୟନ୍ତି ଦେବୀ ଉମା
ସେ ଯାହା ମାଗିଲାଟି ତାକୁ ପ୍ରସନ୍ନ ହୋଇଲେ ଯେହି
ମହାତମା ।୭୨

ସେ ବାଳୁତ ନନ୍ଦନ ଯାହା ମାଗିଲା କର ପ୍ରସାରି
ତେଣୁ ସେ ବ୍ରାହ୍ମଣେ ଯେ ହୋଇଲେ କୃଷିକାରୀ ।୭୩
ସେ ବ୍ରାହ୍ମଣର ହୋଇଲା ଶତେକ ସନ୍ତତି
ବେଦମନ୍ତ୍ର ଅପ୍ରାପତ ସେ ହୋଇଲେ ଚାଷ କର୍ମେ ବ୍ରତି ।୭୪
ପାର୍ବତୀ ବୋଇଲେ ବାବୁ ଶୁଣ ତୁ ଅର୍ଜୁନ
ଟେକା ଲଦି ସେ ବୃତ୍ତି ଅର୍ଜିଲାଟି ଅଣ୍ଡିରା ବ୍ରାହ୍ମଣ ।୭୫
ଯେମନ୍ତେ ହୋଇ ପ୍ରସନ୍ନ ହୋଇଲେଟି ଯେହି ମହାତମା
ଭଗତ ମଙ୍ଗଳଟି ଯେ ପୁରୁଷଙ୍କ ଉତ୍ତମା ।୭୬
ମନେଣ ବିରସ ତୁ ନୋହ ଫାଲଗୁନ୍ୟ
ଅନେକ ସାନନ୍ଦେ ବର ତୋତେ ଯାଚନ୍ତି ତ୍ରିଲୋଚନ ।୭୭
ଗଉରା ବଚନେ ଅର୍ଜୁନ ଅନେକ ପରିଣାମି
ବହୁତ ଅପ୍ରାଧି ମୁଂ ମୋତେ କ୍ଷମା କରିବା ଦେବସ୍ୱାମୀ ।୭୮
ପାର୍ବତୀ ବୋଇଲେ ସ୍ୱାମୀ ଯେବେ ଦେବ ବର
ଅଶଉଚେ ବର ଦିଲେ ପ୍ରାପତ ନୋହଇ ଦେବ ହର ।୭୯
ନଦୀରେ ସ୍ନାହାନ କରି ଆସ ଦେବ କାଶୀ
ଶଉଚବନ୍ତ ହୋଇ ଅର୍ଜୁନକୁ ବର ଯେ ଦେଅସି ।୮୦
ପାର୍ବତୀଙ୍କ ବଚନେ ହର ସ୍ନାହାନ କରି ଗଲେ
ଅର୍ଜୁନଙ୍କୁ ରାଇ ଦେବୀ ଗଉରା ପଚାରିଲେ ।୮୧
କହ ବାବୁ କିସ ବର ମାଗିବୁ ସଦାନନ୍ଦ ଦେବଙ୍କୁ
ସରୂପ ବଚନ ତୁ କହନି ଆମ୍ଭଙ୍କୁ ।୮୨
ଅର୍ଜୁନ ବୋଇଲେ ମା ଗୋ ମୁଂ ତ ଅଜ୍ଞାନ
ମାଗିତ ସଙ୍କୋଚ କରଇ ଭଗତି ବିହୀନ ।୮୩
ପାର୍ବତୀ ବୋଇଲେ ସେ ଭୋଳାନାଥ ବିଶ୍ୱେଶ୍ୱର
ବାବୁ ଯେହିକ୍ଷଣି ଦେବେ ତୋତେ ଅଲୋକିତ ବର ।୮୪
ବାବୁ ତ୍ରିପୁରହିଂ ଧ୍ୱଂସ କଲେ ଯେବଣହିଂ କାଳେ
ଶହସ୍ରେ ଭେଦ ନୋହିଲା ଷାଠି ସହସ୍ର ବରଷ ରୋଳେ ।୮୫
ହରିହର ପବନ ବଶ୍ୟାନର ବହନି
ନାରାଜ ଗୋଟିଯେ ହୋଇଲେ ଦିଗପାଳମାନନ୍ତ ଘେନି ।୮୬
ସେ ଶହସ୍ର ଘେନି ହର ନାଶିଲେ ତ୍ରିପୁର
ସଦାଶିବ ନାଥଙ୍କୁ ମାଗ ତୁ ରେ ସେ ପାଶୁପତ୍ର ଶର ।୮୭
ସେ ଶହସ୍ର ବାବୁରେ ଯେବେ ଥିବ ତୋହୋର ହସ୍ତେ
ସାଂଗ୍ରାମେ ସରି ତୋତେ ବ୍ରହ୍ମା ମହେଶ୍ୱର ଶଚୀପତେ ।୮୮
ସ୍ନାହାନ ସାରି ଆସି ବିଜୟେ ଶୂଳପାଣି
ବୋଇଲେ ବର ମାଗ ତୁହିରେ ପାଣ୍ଡବ ବୀରମଣି ।୮୯
ବାସେବି ବୋଇଲା ଯେ ପରସ୍ତାବ ବାକ୍ୟେ
ମୁଂ ଯାହା ମାଗିବି ଦେବ ଦୁସହ ଅଶକ୍ୟେ ।୯୦
ଈଶ୍ୱରେ ବୋଇଲେ ମାଗ ଯେ ତୋହୋର ଇଚ୍ଛା
ପ୍ରସନ୍ନ ହୋଇଲି ଯେ ପୂରୁ ତୋର ମନବାଞ୍ଛା ।୯୧
ଅର୍ଜୁନ ବୋଇଲେ ଦେବ ଯେବଣ ଶରେ ନାଶିଲ ତ୍ରିପୁର
ସେହି ଶହସ୍ର ଗୋଟି ମୋତେ ଦେବାକ ବିଶ୍ୱେଶ୍ୱର ।୯୨
ଶୁଣିଣ ସଦାଶିବ ବିରସ କଲେ ମତି
ପ୍ରସନ୍ନ ହୋଇଂଣ ମହା ଶହସ୍ର ଦିଲେକ ପଶୁପତି ।୯୩
ଈଶ୍ୱରେ ବୋଇଲେ ଗିରିଜା ମୁଖ ଚାହିଂ
ତୁମ୍ଭେ ନ କହିଲେ ଅର୍ଜୁନର ଯେତେ ଜ୍ଞାନ କାହିଂ ।୯୪
ପାର୍ବତୀ ବୋଇଲେ ସେ ଅଟଇ ମହାଭିଗ୍ୟଂ
ନାରାୟଣର ଦୁତୀ ଆତ୍ମା ସେ ଅଟଇ ସର୍ବଗ୍ୟଂ ।୯୫
ଈଶ୍ୱର ବିଚାରିଲେ ପାର୍ବତୀ ଅପ୍ରାଂଜୟେ କଲାକ ମୁକୁ
ପାର୍ବତୀର ଶହସ୍ରମାନ ଦିଆଇବି ଅର୍ଜୁନକୁ ।୯୬
ଈଶ୍ୱରେ ବୋଇଲେ ତୁମ୍ଭେ ଶୁଣ ଦେବୀ ଉମା
ଅର୍ଜୁନ ଆମ୍ଭର ପୁତ୍ର ହୋଇଲାଟିରେ ବାମା ।୯୭
ତୁମ୍ଭେ ଗୋ ପ୍ରସନ୍ନ ହୋଇବ ନା ଅର୍ଜୁନକୁ
କିଛୁ ବର ଦେବୀ ଦିଅ ଗୋ ଯେହାକୁ ।୯୮
ପାର୍ବତୀ ବୋଇଲେ ବର ମାଗ ହୋ ଫାଲଗୁନି
ସଦାଶିବ ବୋଇଲେ ଗୋ ହେମବନ୍ତର ନନ୍ଦିନୀ ।୯୯
ତୁମ୍ଭେ ସ୍ନାହାନ କରି ଆସସି ନଦୀର
ଶଉଚବନ୍ତ ହୋଇ ଅର୍ଜୁନକୁ ଦିଅ ବର ।୧୦୦
ଶୁଣିଣ ପାର୍ବତୀ ଗଲେ ସ୍ନାହାନ କରି
ଅର୍ଜୁନକୁ ଚାହିଂଣ ସଦାନନ୍ଦ ତିଆରି ।୧୦୧
କିସ ବର ମାଗିବୁ ତୁ କହସି ଅରଜୁନ
ଅର୍ଜୁନ ବୋଇଲା ସ୍ୱାମୀ ମୁଂ ଯେ ଅଟଇ ଅଗ୍ୟାନ ।୧୦୨
ସଦାଶିବ ବୋଇଲେ ଶୁଣସି ଧନୁର୍ଜୟେ
ସତ୍ୟଯୁଗେ ଅବତାର ହୋଇଲେ ଦୁର୍ଗାରୂପେ ମହାମାୟେ।୧୦୩
ସହସ୍ର ଭୁଜେ ପାଞ୍ଚଶତ ଧନୁ ଘେନି
ଅବିକ୍ଷଣେ ବିନ୍ଧିଲେ ସେ ଦିବା ଯେ ରୟେଣୀ ।୧୦୪
ଅକ୍ଷୟେ ତ୍ରୋଣ ଦେବୀ ଶରୀରୁ କଲେ ଜାତ
ରାତ୍ର ଦିବସ ବିନ୍ଧିଲେ ନ ସରଇ ଶହସ୍ରନ୍ତ ।୧୦୫
ଚଉବିଂଶ ବରଷ ପରିଯନ୍ତେ ମୟେଂଷାର ସଙ୍ଗତେ ଯୁଦ୍ଧ
ଯେ ହୋଇଲା
ସେହି ତ୍ରୋଣୁଂ ନାରାଜ ଗୋଟିଯେ ନ ସରିଲା ।୧୦୬

ଈଶ୍ୱରେ କହିଲେ ଯେ ଅର୍ଜୁନର ଆଗ
ପାର୍ବତୀ ଦେବୀଙ୍କୁ ତୁ ଅକ୍ଷୟ ତ୍ରୋଣ ମାଗ ।୧୦୭
ଯେସନେକ କହି କରି ଅର୍ଜୁନକୁ ତିଆରି
ସ୍ନାହାନ କରି ଆସି ବିଜୟେ ଶାକାମ୍ବରୀ ।୧୦୮
ପାର୍ବତୀ ବୋଇଲେ ବର ମାଗ ରେ ଅର୍ଜୁନ
ଯେ ତୋହୋର ମନବାଞ୍ଛା ପ୍ରାପତ ହୋଉ ପୁଣ ।୧୦୯
କରପତ୍ର ଯୋଡ଼ି ଯେ ବୋଲଇ ଫାଲଗୁନି
ପ୍ରସନ୍ନ ହୋଇ ମୋତେ ଦେବା ଅକ୍ଷୟେ ତ୍ରୋଣ ବେନି ।୧୧୦
ପାର୍ବତୀ ବିଚାରିଲେ ଅର୍ଜୁନ ବଚନ ଶୁଣି
ଅର୍ଜୁନର ଜ୍ଞାନ କାହିଂ ତୁମ୍ଭେ କହିଲ ଶୂଳପାଣି ।୧୧୧
ବାମଦେବ ବୋଇଲେ ସେ ଅଟଇ ମହାଗ୍ୟାଂତା
ସମସ୍ତ ଜାଣଇଂ ସେ କ୍ଷତ୍ରିୟ ମହାବଳବନ୍ତା ।୧୧୨
ମୁହିଂ ନ କହିଲି ଯେ ମୋହୋର ଦୋଷ
ତୁମ୍ଭେ ଅନମିତେ କିମ୍ପେ ଆମ୍ଭଙ୍କୁ କର ରୋଷ ।୧୧୩
ପାର୍ବତୀ ବୋଇଲେ ଦେବ ତୁମ୍ଭେ ମନ୍ଦକୃତ୍ୟ କଲ
ଆପଣାର ଛତ୍ରୀବୃତ୍ତ ପରକୁ ଦିଆଇଲ ।୧୧୪
ଅର୍ଜୁନକଙ୍କଂ ନ କହିଲ ବୋଲି ଯେ ବୋଇଲ ତ୍ରିପୁରାରି
ଶତେ ଈଶ୍ୱର ହୋଇଲେ ଅର୍ଜୁନକୁ ନୋହିବେ ସମସରି ।୧୧୫
ଅକ୍ଷୟ ତ୍ରୋଣ ବେନି ଯେ ଘେନିଣ ଜଗତମାତ
ସାନନ୍ଦେ ନେଇ ଦିଲେ ଦେବୀ ଅର୍ଜୁନର ହାଥ ।୧୧୬
ବାବୁ ସବୁ ଦେବତାଙ୍କର ଶହସ୍ରମାନ ଅଛି ଯେଥି
ଯେ ତିନି ଜଗତେ ଜଗତଜିଣନ୍ତା ତୁ ହୋଇଲୁ ସୁତକୋନ୍ତୀ ।୧୧୭
ଅର୍ଜୁନ ବୋଇଲା ଭୋ ମାତ ଯେ ଶହସ୍ରନ୍ତ ସମ୍ଭାଳିବି
ଯେ ଶହସ୍ରକୁ ଯେ ନିନ୍ଦିବ ତାହାକୁ ପ୍ରାଣେ ନାଶ କରିବି ।୧୧୮
ଯଦ୍ୟପି ପ୍ରାଣେ ତାକୁ ନ ପାରିବି ମାରି
ଅଗ୍ନି ଜାଳି ମରିବି ସତ୍ୟ ସତ୍ୟ ମୋହୋରି ।୧୧୯
ମୃତୁ ସଞ୍ଜୀବନୀ ମନ୍ତ୍ରେ ଗଣ୍ଡାକୁ ଜୀଆଂଇଲେ
ତୁ ଆମ୍ଭର ପୁତ୍ର ହେଲୁ ବୋଲି ସର୍ବସାଚୀ ନାମ ଦିଲେ ।୧୨୦
ଯେସନେକ ବର ଦେଇଣ ଦେବ ତ୍ରିଲୋଚନ
ଶଙ୍କର ଗିରିଜା ତହୁଂ ହୋଇଲେ ଅନ୍ତର୍ଦ୍ଧାନ ।୧୨୧
ବିଜୟେ ସଦାଶିବ କଇଳାସ ଭୁବନେ
ବାସବର ନନ୍ଦନ ବିହଡ଼ଇ ଘୋର ବନେ ।୧୨୨
ଶ୍ରୀଜଗନ୍ନାଥଙ୍କର ପଦ୍ମପାଦେ ସେବି
ବଦୟନ୍ତି ଗ୍ରନ୍ଥ ଯେ ସାରୋଳ ଦାସ କବି ।୧୨୩

**

## ୨୬. ବିଷ୍ଣୁଙ୍କର ନବଗୁଞ୍ଜର ରୂପ

ଅର୍ଜୁନର ବନବାସ ବାରତା ଦେବ ଶୁଣି
ଦ୍ୱାରକାରୁଂ ହସ୍ତିନାକୁ ବିଜୟ କଲେକ ଚକ୍ରପାଣି ।୧
ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ଚଇତ୍ର ମାସ କୃଷ୍ଣ ପକ୍ଷ ଯେ ତ୍ରୟୋଦଶୀ ତିଥି ।୨
ଶତଭିଷା ନକ୍ଷତ୍ର ସେ ଦିନରେ କୁମ୍ଭରେ ଅଛି ଶଶୀ
ଗରୁଡ଼ ଚଢ଼ି ହସ୍ତିନାକୁ ବିଜୟେ ହୃଷିକେଶୀ ।୩
ଆସ୍ତାନେ ବିଜୟେ କରିଅଛନ୍ତି ପଣ୍ଡୁ ସୁତ
ବିଜୟେ କଲେ ଆସି ଶଙ୍ଖଚକ୍ର ହାଥ ।୪
ଗରୁଡ଼ ପିଠିରୁ ଉତୁରି ନାରାୟଣ
ପ୍ରଳମ୍ଭ କଲେ ଦେବ ଯୁଧେଷ୍ଠିଙ୍କ ଚରଣ ।୫
କଲ୍ୟାଣ କରିଣ ଯେ ବୋଲନ୍ତି ଧର୍ମସୁତ
ଆହେ ନକୁଳ ତୁମ୍ଭେ ତୋଳ ପଦ୍ମନେତ୍ର ।୬
ମାଦ୍ରୀ ନନ୍ଦନ ଯେ ପ୍ରଳମ୍ଭ ଆସି କରି
କୋଳାଗ୍ରତ କରି ଧଇଲେ ଦେବ ହରି ।୭
ଆସ୍ତାନ ତେଜ୍ୟା କରିଣ ଧର୍ମରାଜ ସୁତ
ଗରୁଡ଼ ପାଦେ ଯୁଧେଷ୍ଠି କଲେକ ପ୍ରଣପତ୍ୟ ।୮
କଲ୍ୟାଣ କରନ୍ତି ଆପଣେ ପକ୍ଷୀବର
ଯେକାଙ୍ଗ କ୍ଷତ୍ରୀବର ହୋଅ ଧର୍ମର କୁମର ।୯
ଗରୁଡ଼ଙ୍କ କଲ୍ୟାଣେ ଆନନ୍ଦ ନୃପବର
କୃଷ୍ଣଙ୍କୁ ଘେନି ବିଜେ ଆସ୍ତାନ ଉପରେ ।୧୦
ଚାରିଭ୍ରାଥ ଘେନି ସେନା ସେନାପତି
ରଥୀ ମହାରଥୀ ଯେ ସମସ୍ତେ ଅଛନ୍ତି ।୧୧
ବୀର ମହାବୀର ରଣରାଜ ପୁତ୍ର
ବଳୀ ମହାବଳୀ ତହିଂ ଅଛନ୍ତି ସମସ୍ତ ।୧୨
ଆସ୍ତାନେ ବିଜେ କରି ଦେବ ଚକ୍ରଧର
ଯୁଧେଷ୍ଠିଙ୍କ ମୁଖ ଚାହିଂ ପ୍ରଭୁ କହନ୍ତି ଉତ୍ତର ।୧୩
ଦେବ ସମସ୍ତେ ଅଛନ୍ତି ତ ନାହିଂ ବୀର ପାଥ
ଶୁଣି ମଉନ ହୋଇଲେ ଧର୍ମରାଜ ସୁତ ।୧୪
ଶୋକେ ଗଦ ଗଦ ହୋଇ ବୋଇଲେ କୋଇନ୍ତା ଦେବୀ
ବାବୁ ଅର୍ଜୁନ ଗଲା ଯେ ବନବାସ ସେବି ।୧୫
କୋଇନ୍ତାଙ୍କ ମୁଖୁଂ ଯେସନେକ ବାଣୀ ଶୁଣି
ମନରେ ବିସ୍ମୟ ତହୁଂ ହୋଇଲେ କମ୍ବୁପାଣି ।୧୬

ଯୁଧେଷ୍ଟିଙ୍କ ମୁଖକୁ ତହୁଁ ଚାହିଁଣ ଯଦୁମଣି
ପଚାରନ୍ତି କିମର୍ଥେ ବନକୁ ଗଲା ମୋର ବୀର ଫାଲଗୁନି ।୧୧୭
ଗୋବିନ୍ଦ ପଚାରନ୍ତେଣ ତହୁଁ ଯୁଧେଷ୍ଟି କହନ୍ତି
ଯେଥର ଚରିତ କହୁ ସହଦେବ ମନ୍ତ୍ରୀ ।୧୧୮
ଯୁଧେଷ୍ଟିଙ୍କ ମୁଖୁଂ ଯେସନେକ ବାକ୍ୟ ଶୁଣି
ସହଦେବ ମୁଖକୁ ଚାହିଁ ବଦୟନ୍ତି ଚକ୍ରପାଣି ।୧୧୯
ଅର୍ଜୁନ କି ନିମନ୍ତେ ଗଲା ବନବାସ
ଯେଥର ଚରିତ ମୁକୁଂ ତଦନ୍ତ କରି କହିବା ସନ୍ଦେଶ ।୧୨୦
ସହଦେବ ବୋଇଲେ ତୁମ୍ଭେ ଶୁଣ ଯଦୁମଣି
ଯେକାନ୍ତ ସ୍ଥାନକୁ ଆମ୍ଭେ ଚାଲ ଯିବା ପୁଣି ।୧୨୧
ଯେସନେକ ବଚନ ଶୁଣି ଦେବ ଚକ୍ରପାଣି
ଅନ୍ତର ହୋଇଲେ ମନ୍ତ୍ରୀ ସହଦେବେ ଘେନି ।୧୨୨
ଗୋବିନ୍ଦେ ପୁଚ୍ଛାକଲେ ଯେ ମନ୍ତ୍ରୀ ସହଦେବଙ୍କୁ
କେବଣ ଠାବରେ ହୋ ଭେଟିବା ଅର୍ଜୁନକୁ ।୧୨୩
କି ହୋ ମନ୍ତ୍ରୀବର ଯେ ଅଟଇ କିସ ଅର୍ଥ
ସଭାରେ ତ ନ ଦେଖିଲୁଂ ବୀରବର ପାଥ ।୧୨୪
ଠାକୁରଙ୍କୁ ପଚାରିଲୁଂ ଯେ ସେ ନ କହିଲେ ମୋତେ
ତେଣୁ ହେ ସହଦେବ ମୁଂ ପଚାରଇଂ ତୋତେ ।୧୨୫
ଶ୍ରୀକୃଷ୍ଣଙ୍କ ଅବଧାନ ଶୁଣିଣ ମନ୍ତ୍ରୀବର
କରପତ୍ର ଯୋଡିଣ ଯେ କହଇ ଉତ୍ତର ।୧୨୬
ଗୁପତ କରିଣ ଯେ କହଇ ମନ୍ତ୍ରୀମଣି
ସାବଧାନେ ଶୁଣିମା ଦେବ ଶଙ୍ଖଚକ୍ରପାଣି ।୧୨୭
ପାଞ୍ଚଭାଇ ଆମ୍ଭେ ନିୟମ କରିଥିଲୁ
ଅଗ୍ନିକି ସାକ୍ଷ କରି ଯେ ଯେମନ୍ତ କହିଲୁ ।୧୨୮
ଯେକର ଶୃଙ୍ଗାର ଯେବେ ଆରେକ ଦେଖିବ
ଦ୍ୱାଦଶ ବରଷ ସେ ବନବାସ ଯିବ ।୧୨୯
ଦଇବର ଯୋଗେ ଠାକୁରଙ୍କ ସଙ୍ଗେ
ଦ୍ରୋପଦ ଦୋହିତାୟେ ବିଜୟେ ରତି ରଙ୍ଗେ ।୧୩୦
ଯେମନ୍ତର ସମୟେ ଅଗ୍ନି ଦେବତାୟେ
ବ୍ରାହ୍ମଣ ସରୂପ ଧରି ଦ୍ୱାରେ ଆସି ହୋୟେ ।୧୩୧
ଅର୍ଜୁନକୁ ବୋଇଲେ ତୁ ଯୁଧେଷ୍ଟି ଦେବଙ୍କୁ କହସି ଯାଇଂ
ଦ୍ୱାରେଣ ବିଦୁଜନ ଯେକ ଅଛନ୍ତି ଉଭାହୋଇ ।୧୩୨
ଯେମନ୍ତ ବୋଲିଣ ଯେ ଘେନିଣ ତାଙ୍କୁ ଆସ
ଗୁପତ କଥାୟେ ଆମ୍ଭେ କହିବୁଂ ବିଶ୍ୱାସ ।୧୩୩
ଯେବେ ବିଳମ୍ବ ତୁ କରିବୁ ହୋ ପାଥ
ଭସ୍ମ ହୋଇବ ନଗ୍ର ହୋଇବ ଧୂମାନ୍ତ ।୧୩୪
ମାୟା ନ ଜାଣି ପାଥ ଭିତରକୁ ଗଲେ
ଯୁଧେଷ୍ଟି ଦ୍ରୋପଦୀଙ୍କର ଶୃଙ୍ଗାର ଦେଖିଲେ ।୧୩୫
ଅଗ୍ନି ଦେବତାୟେ ତହୁଁ ହୋଇଲେ ଅନ୍ତର୍ଦ୍ଧାନ
ସତ୍ୟ ପାଳି ବନକୁ ଗଲେକ ଅରଜୁନ ।୧୩୬
ଅନେକ ବନସ୍ତ ବୁଲି ଅନେକ ଦତ୍ୟ ମାରି
ହର ଉଦ୍ୟାନ ବନେ ଜିଣିଲେ ତ୍ରିପୁରାରି ।୧୩୭
ଅର୍ଜୁନ ଈଶ୍ୱରଙ୍କୁ ଜିଣିଲେ ହର ଉଦ୍ୟାନ ବନେ
ପଶୁପତ୍ର ଅକ୍ଷୟେ ତ୍ରୋଣ ଦିଲେ ଶସ୍ତ୍ରମାନେ ।୧୩୮
ଈଶ୍ୱର ଦେବତାୟେ ଦିଲେ ବୀର ଫାଲଗୁନି
ପ୍ରସନ୍ନ ହୋଇ ବର ଦିଲେ ହର ପାର୍ବତୀ ବେନି ।୧୩୯
ବର ଦେଇଣ ହର ଯେ ଗଲେ କପିଳାସ
ଅର୍ଜୁନ ରହିଲେ କାଶୀନଦୀ ପଛିମର ଦେଶ ।୧୪୦
ବିପ୍ର ପ୍ରସାଦ ବୋଲି ଯେକା ନଦୀ ଗୋଟିୟେ
ତହିଁ ରହିଲେ ଯେ ବୀର ଧନୁର୍ଜୟେ ।୧୪୧
ଘୋର ବନ ବୁଲିଣ ପାଳି ସତ୍ୟବ୍ରତ
ଯେବେ ବିଜେ କରିଅଛନ୍ତି ମଣିଭଦ୍ରା ପର୍ବତ ।୧୪୨
ଚଉବିଂଶ ନଳ ତହିଁ ଅଛନ୍ତି ଅଗ୍ର ବୃକ୍ଷ
ମର୍କତ-ଶୀଳା ଉପରେ ବିଜୟେ ବିବସ୍ତ ।୧୪୩
ଯେବେ ବୀରବର ମହାଗୁଣ କରି
ଆଡ଼େକ ଅଗ୍ର ବୃକ୍ଷେ ବାନ୍ଧ ଆର ଆଡ ଧରି ।୧୪୪
ଆଡ଼େକ ଲଗାଇଣ ଅଛି ବେଣୁ ବୃକ୍ଷେ
ଗୁଣ ମାଳୁଛନ୍ତି ତହିଁ ପାଣ୍ଡବ ବିବସ୍ତେ ।୧୪୫
ନିମଗ୍ନ ହୋଇଣ ତହିଁ ବୀର ଅଛି
ସାବଧାନ ହୋଇଂ ଶୁଣିମା ଶ୍ରୀବତ୍ସି ।୧୪୬
ଚାରି ବରଷ ଛଡ଼ ମାସ ହୋଇଲା ତେର ଦିନ
ଆଜକୁ ବନବାସ କଲେକ ଅରଜୁନ ।୧୪୭
ହସିଣ ଶ୍ରୀହରି ଯେ ମନେ ବିଚାରିଲେ
ଦ୍ରହସିତ ହୋଇ ସେ ଆନନ୍ଦ ହୋଇଲେ ।୧୪୮
ଶ୍ରୀହରି ବୋଲନ୍ତି ଶୁଣ ହେ ମନ୍ତ୍ରୀବର
କି କାର୍ଯ୍ୟେ କପଟ କଲେ ଦେବ ବଶ୍ୟାନର ।୧୪୯
ମନ୍ତ୍ରୀ ବୋଇଲେ ସେ ଶ୍ୱେତ ରାଜା ଯାଗ୍ୟଂକାଳେ
ଶତ ବରଷ ସେ ଅଗ୍ନିରେ ହୋମ କଲେ ।୧୫୦

ଲୋଭେ ବର୍ଷ୍ୟାନର ଖାଇଲେ ଅନେକ ଘୃତ
ଲୁଦୁବୁଦୁ ବ୍ୟାଧି ହୋଇଲା ପଦ୍ମଲୋହିତ ନେତ୍ର ।୫୧
ଦେବଙ୍କୁ ଡୋଳାଇଲେ ସ୍ୱାହାଦେବୀର ପତି
ଖାଣ୍ଡବ ବନୁ ମଉଷଧି ମାଗିଲେ ନ ଦିଲେ ସୁରପତି ।୫୨
ବନବାସ ଯହୁଁ କଲେକ ଅରଜୁନ
ବ୍ରାହ୍ମଣ ରୂପ ଧରି ମାଗିବେ ସେହୁ ଦାନ ।୫୩
ତେଣୁ କରି ପିତା ସଙ୍ଗେ ବିବାଦ ଆଚରିବେ
ଅଗ୍ନି ଦେବତାଙ୍କୁ ଅର୍ଜୁନ ମଉଷୋଧି ଦେବେ ।୫୪
ତେବେ ସେ ବହ୍ନିଙ୍କର ନିର୍ବ୍ୟାଧି ହୋଇବ
ସାବଧାନ ହୋଇଣ ଶୁଣ ଲକ୍ଷ୍ମୀଙ୍କ ବଲ୍ଲଭ ।୫୫
ଶୁଣିଣ ଆସ୍ତାନ ତେଜିଣ ଦେବରାଯେ
ଯୁଧେଷ୍ଠି ଠାକୁରଙ୍କର ଚରଣେ ବିନୟେ ।୫୬
ଆଗ୍ୟାଂ ହେଉ ଦେବ ମୁହିଂ ଯିବି ଦ୍ୱାରାବତୀ
ଯେବେ ମୋହୋର ସଖା ଅର୍ଜୁନ ନାହିଂ ଯେଥି ।୫୭
ଯୁଧେଷ୍ଠି ବୋଇଲେ ମୁଣୋହିଂ ସାରି କରି
ତଦ ଅନ୍ତେ ବିଜୟେ କର ଚକ୍ରଧାରୀ ।୫୮
ଗୋବିନ୍ଦ ବୋଇଲେ ଦେବ ଆକଟ କଥା ଅଛି
ରହି ନ ପାରିବି ବଦୟନ୍ତି ଶ୍ରୀବଚ୍ଛି ।୫୯
ଯୁଧେଷ୍ଠି ବୋଇଲେ ତୁ ଶୁଣିମା ଚକ୍ରଧାରୀ
ଅର୍ଜୁନକୁ ସମାର୍ଜନା କରି ଆଣିମା ଦେବ ହରି ।୬୦
ତୁ ଦେବ ସୟଳ ଜନ ସଂସାର ହିତକାରୀ
ମୁହିଂ ତୋତେ କିସ କହିବି ତିଆରି ।୬୧
ଗତ ପଥମୁହିଂ ତୋର ଥିବି ଉପଲେସି
ଶୁଭ ଯୋଗେ ମୋତେ ଭେଟ ଅର୍ଜୁନକୁ ଘେନିଆସି ।୬୨
ବିନୟ ଭାବ ହୋଇ ବଦୟନ୍ତି ଅଚ୍ୟୁତ
ଆସିବାର ପାଇଂ ମୁଂ ଯେ ବୋଲିବି ବହୁତ ।୬୩
ପ୍ରତଗ୍ୟାଂ ସାଚ୍ଛା ସେ କଇଚ୍ଛା ଜଗଜେଠୀ
ନ ପୁଣ ନୁଆସଇ ମୁଂ ନ ପାରଇ ଭେଟି ହେଟି ।୬୪
ଧର୍ମସୁତ ବୋଇଲେ ବିଜୟେ କର ହରି
ମୁହିଂ ଯେ ଅରକ୍ଷିତ ମୋତେ ଥିବ ଦୟା କରି ।୬୫
ଗୋବିନ୍ଦେ ବୋଇଲେ ମୁଂ ଅଟଇ ତୁମ୍ଭ ଭୃତ୍ୟ
ଯହିଂକି ଅବଧାନ ମୁଂ ଯେ ତହିଂକି ଆଗତ ।୬୬
ଯେତେ ବୋଲି ଦେବ ଯେ ପ୍ରଳମ୍ବିତ କଲେ
ଭୀମ ନକୁଳଙ୍କୁ କୋଳାଗ୍ରତ ହେଲେ ।୬୭
ପହଣ୍ଡେ ପାଣ୍ଡବଙ୍କୁ ନ ଦିଲେ ଗୋଡ଼ାଇ
ଗରୁଡ଼ ପିଠିରେ ବିଜୟେ କମଳାର ସାଇଂ ।୬୮
ଆଗ୍ୟାଂ ଦିଲେ ତୁ ଶୁଣ ହୋ ବିନତା କୁମର
ମଣିଭଦ୍ରା ପର୍ବତକୁ ବେଗେ ବିଜେ କର ।୬୯
ସେଠାକୁ ସତୁରି ଯୋଜନ ସେ ମଣିଭଦ୍ରା ପର୍ବତ ଅଟଇ ଦୂର
ଦୃଷ୍ଟିରେ ଦେଖିଲା ପ୍ରାୟେକ ତିନି ନିଶ୍ୱାସରେ ତହିଂ ଯାଇଂ ହୋଇଲା ପକ୍ଷୀବର ।୭୦
ଯେତେ ରୂପେ କହିଥିଲେ ମନ୍ତ୍ରୀ ଚୂଡ଼ାମଣି
ପ୍ରତକ୍ଷେ କରି ତାହା ଦେଖିଲେ ଚକ୍ରପାଣି ।୭୧
ଧନ୍ୟ ତୁହି ସହଦେବ ବୋଲନ୍ତି ଚକ୍ରଧର
ଦୃଷ୍ଟିରେ ଦେଖିଲା ପ୍ରାୟେ କରି କହିଲୁ ମନ୍ତ୍ରୀବର ।୭୨
ମନେ ମନେ ବିଚାର କରନ୍ତି ପଦ୍ମନେତ୍ର
କଷଣ କରିବା ଆଜ ବୀରବର ପାଥ ।୭୩
ଗରୁଡ଼କୁ ଦେବରାଜ ଶୂନ୍ୟରେ ରୁହାଇ
ଅର୍ଜୁନର ନିକଟେ ବିଜେ କଲେ ଦେବ ଯାଇଂ ।୭୪
ବିଚିତ୍ର ମୂରତିୟେ ଧରିଲେ ଚକ୍ରଧର
କି ଅବା କହିବା ସେହି ରୂପ ପଟାନ୍ତର ।୭୫
ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ଯେକଇ ଶରୀରେ ଦେବ ଧଇଲେ ଯେ ନବମୂର୍ତ୍ତି ।୭୬
କୁକୁଡ଼ାର ମୁଣ୍ଡ ଗୋଟି ଅତୀଅ ସୁନ୍ଦର ଦିଶଇ
ବୃଷବର ଚୂଳ ଯେ ମଜୁରର କଣ୍ଠ ବିରାଜଇ ।୭୭
ଅହିବର ପୁଚ୍ଛା ମଝା ସିଂହକଟି ପ୍ରାୟେ
ବ୍ୟାଘ୍ରର ଚରଣ ଗୋଟି ଅତୀୟ ଶୋଭା ପାୟେ ।୭୮
ତୁରଙ୍ଗ ଚରଣେ ଯେ ଦିଶଇ ସୁନ୍ଦର
ଆବର ପାଦ ଗୋଟି ଅଟଇ କରିବର ।୭୯
ଆଗ ପାଦ ଗୋଟିକ ମନୁଷ୍ୟର କର ଯେ ଅଟଇ
ସେ କରେ ପଦ୍ମପୁଷ୍ୟ ଗୋଟିୟେକ ଘେନିଲେ ଭାବଗ୍ରହୀ ।୮୦
ଗୁଣ ଯେ ମାଜୁଅଛି ପାଣ୍ଡବ ଅରଜୁନ
ଛାମୁରେ ନୃତ୍ୟ କରି ତିଅଂନ୍ତି ନାରାୟଣ ।୮୧
ଶୁଖିଲା ପତ୍ରଙ୍କର ଉପରେ ନାଚନ୍ତି କୁଦନ୍ତି
ଖର ଖର ଶବଦେ ସେ ପତ୍ରେ ପତ୍ରେ ବାଜନ୍ତି ।୮୨
ତହିଂକି ତଳୟେ ପୁଣ ଯେ ନ କରଇ ପାଥ
ଯେସନେକ ବ୍ରହ୍ମଗ୍ୟାନୀ ବ୍ରହ୍ମରେ ଯୁଗତ ।୮୩
ସେ ଯେହ୍ନେ ନ ଜାଣଇଂ ନୃପତି ବିଜେ କଲେ

ଦୃଷ୍ଟି ନ କରଇ ଘୋର ଶବଦ ଶୁଭିଲେ ।୮୪
ସେହି ମତି ଦୃଷ୍ଟି ପାଥର ଗୁଣରେ ଅଛି ମନ
ମାୟା ସରୂପକୁ ସେହୁ ନ ଚାହେଂ ନୟନ ।୮୫
ଯତନେ ଡିଅଂନ୍ତି କମଳାର ସାଙ୍ଗ
ଶୃଙ୍ଖଳା ଲତା ଭିତରେ ପଶନ୍ତି ଦେବ ଯାଙ୍ଗ ।୮୬
ପୁଣ ନୃତ୍ୟ କରନ୍ତି ମାରନ୍ତି ଆଡଚିରା
ହଲାବନ୍ତି ଶ୍ରୀମୁଖ ଝଲକନ୍ତି ଚନ୍ଦ୍ରତାରା ।୮୭
ଡିଅଂନ୍ତି ଉକୁସନ୍ତି ଭୂମିରେଣ ଲୋଟନ୍ତି
ଚଉଷଠି ତାଳ ଯେହ୍ନେ ନୃତ୍ୟ ରଙ୍ଗେ ଦିଅନ୍ତି ।୮୮
ଯେହେନେକ ନୃତ୍ୟ ଯେ କରନ୍ତି ବାସୁଦେବ
ଗୁଣ ଛାଡି ଦୃଷ୍ଟିତହୁଂ ଦିଲାକ ପାଣ୍ଡବ ।୮୯
ଦେଖଇ ଧନୁର୍ଜୟେ ଅପୂର୍ବ ଦିବ୍ୟ ମୂରତି
ଯେକା ଦେହେ ନବ ସରୂପ-ଯେକଇ ମୂରତି ।୯୦
ଦେଖିଣ ପାଣ୍ଡବ ଯେ ଚକିତ ହୋଇ ଚାହିଂ
ମନେ ବିଚାରଇ ଯେତ ଅପୂର୍ବ ଅଟଇ ।୯୧
ଯେକ ଦେହରେ ତ ନବ ଗୋଟି ରୂପ
ମୁହିଂ ତ ପୃଥିବୀରେ ଦେଖିଲା ନାହିଂ ଯେସନେକ ସରୂପ ।୯୨
ମୋହୋର ନ ଦେଖିଲା ହୋଇ ଯେମନ୍ତ କାହିଂ ନାହିଂ ବନ
ବୁଲିଅଛି ମୁହିଂ ଯେ ଅନେକ ଅରଣ୍ୟ ।୯୩
ଶତଶିଂଗ ପରବତ ବାରୁଣାବନ୍ତ ଗିରି
ବଡ଼ ତୁମ୍ବର ପର୍ବତ ହେମ ସାରସିଧ ଗିରି ।୯୪
କାମ୍ୟକ ନାମେ ପର୍ବତ ଶରଣ ଚାରଲତା
ମନ୍ଦର ହର ଅରଣ୍ୟ ଯେ ପାରେଶି ସରିତା ।୯୫
କପାଳି ନାମେ ଅରଣ୍ୟ ତୁରଙ୍ଗ ପର୍ବତ
ଶଙ୍ଖ ନାମେ ବନ କାଳଞ୍ଜି ଗିରିଶେତ ।୯୬
ବଉଦ ନାମେ ଲତା ଯେ ମହାନ୍ଦ୍ର ନାମେ ଗିରି
କୋଟିଯେ ଲିଙ୍ଗ ଘେନି ତହିଂ ବିଜୟେ ତ୍ରିପୁରାରି ।୯୭
ମନ୍ଦରଗିରି ବିଂଝଗିରି ଶ୍ୱେତଗିରି ଜିଣି
ମେରୁ ପଶ୍ଚିମ ଭାଗ ହୟାନ୍ତ ବନ ଘେନି ।୯୮
ସର୍ବାଲକ୍ଷ ପର୍ବତ ଯେ କପିଳାସ ଗିରି
ହର ଉଦ୍ୟାନ ବନ ଯେ ଅରଣ୍ୟ ନାଗାନ୍ତରୀ ।୯୯
ସୁକ ସୁଧବି ପର୍ବତ ଯେ କାଳ କୁନ୍ଦବନ
ବାରଙ୍ଗି ପର୍ବତ ଯେ କୁଣ୍ଡଳୀ ଅରଣ୍ୟ ।୧୦୦
କୋଳାହଳ ଲତା ସୁରମେଳ ବନ
ଭାରବୀ ନାମେ ପର୍ବତ ମନୋହର ଅରଣ୍ୟ ।୧୦୧
ଚନ୍ଦ୍ରଗିରି ନିକଟେ ମଳୟ ନାମେ ଗିରି
ଯହିଂରେ ଅହିମାନେ ଅଛନ୍ତି ବାସ କରି ।୧୦୨
ଗନ୍ଧମାର୍ଦ୍ଦନ ଗିରି ପୁଞ୍ଜ ହୟ ମୁଖ
ବଙ୍କାଳ ପର୍ବତ ଆବର ଶୋଳ ଗିରି ଶିଖ ।୧୦୩
ଯେହି ରୂପେ ଅଛି ଯେ ଅଠର ଲକ୍ଷ ଗିରି
ଯେତେ ଯେତେ ପର୍ବତ ମୁଂ ଆସିଛି ବୁଲି କରି ।୧୦୪
ଯେ ପର୍ବତ ଲତାରେ ଜୀବଜନ୍ତୁ ଯେତେ
ସକଳ ଜୀବ ଜନ୍ତୁ ଦେଖିଅଛି ଦୃଷ୍ଟି ପଥେ ।୧୦୫
ଯେମନ୍ତ ସରୂପ ଜୀବ ମୋର ଦେଖିଲା ତ ନାହିଂ
ମାୟା ସରୂପ ପ୍ରାୟେ ଦିଶୁଅଛି ମୋତେ ଯେହି ।୧୦୬
ମାୟା ରୂପ ଅବା କମଳାର କାନ୍ତ
ମୋତେ କଷଣ କରିବାକୁ ଅବା ଅଇଲେ ପଦ୍ମନେତ୍ର ।୧୦୭
ଯେହାର ପାଦ ତଳେ ଶୋଇବି ଗଡ଼ଘାଲି
ଆନ ଜୀବ ହୋଇଲେ ଯେ ନିଶ୍ଚେ ଯିବ ଜଳି ।୧୦୮
ଯେତେକ ବିଚାରି ମନେ ପାଣ୍ଡବ ଅର୍ଜ୍ଜୁନ
ଗଡ଼ଘାଲି ସ୍ତୁତିଲା ସେ ଶ୍ରୀହରି ଚରଣ ।୧୦୯
ପାଦ ତଳେ ପଡ଼ି ତୁଷ୍ଟି କରଇ ବୀର
ଜୟ ତୁ ଅନାଦି ଯେ ଅବ୍ୟୟ ନିରାକାର ।୧୧୦
ତୁ ଦେବ ଦିବ୍ୟ ମୂରତି ରୂପ ଧରି ପାରୁ
ଅନାଦି ଅବତାର ତୁ ବାଞ୍ଛା କଳ୍ପତରୁ ।୧୧୧
ତୋହୋର ଆଗ୍ୟାଂରେ ଚତୁର୍ଦ୍ଦଶ ପୁର
ବ୍ରହ୍ମା ରୁଦ୍ର ଇନ୍ଦ୍ର ଯେ ତୋହୋର ପରିବାର ।୧୧୨
ସଚରାଚର ଜନେ ସର୍ବେ ତୋର ଭୃତ୍ୟ
ଜୀବ ଅଜୀବରେ ପୂରି ତୁ ସମ୍ଭୂତ ।୧୧୩
ତୋହୋର ବିହୁନେ ଯେ ସଚରାଚର ନାସ୍ତି
ଅନାହତ ପୁରୁଷ ତୁ ଅଣାକାର ଜ୍ୟୋତି ।୧୧୪
ଯାହାର ମାୟାରେଟି ଭୁଲିଲେ ତ୍ରିଲୋଚନ
ମୋ ଛାର ମାନବ ମୋତେ କିଂକେ ତୋ କଷଣ ।୧୧୫
ତୁଷ୍ଟିସାରି କର ଯୋଡି ଉଭା ହୋଇଲେ ଅରଜୁନ
ନବୀନ ମୂରତି ଯେ ହୋଇଲେ ଭଗବାନ ।୧୧୬
ନବଘନ ରୂପ କଟିରେ ପୀତାମ୍ବର
ପଦ୍ମଦଳ ଲୋଚନ ଯେ ଅରୁଣ ଅଧର ।୧୧୭
ଶ୍ରୀବତ୍ସ ଲକ୍ଷଣ କଣ୍ଠେ କଉସ୍ତୁଭ ମଣି

ବଇଜୟନ୍ତୀ ମାଳା ଯେ ମୁକୁତାର ଶ୍ରେଣୀ ।୧୧୮
ମର୍କତର କୁଣ୍ଡଳ ସୂର୍ଯ୍ୟର ସିତ କର
ନବରତ୍ନ ପାଦେକ ଯେ ବିବିଧ ମଣିହାର ।୧୧୯
ସପତ ଶିଖା ମୁକୁଟ ଶିରରେ ଶୋଭାବନ
ଶଙ୍ଖ ଚକ୍ର କରେ ଶୋଭା ଜଗତ ମୋହନ ।୧୨୦
ଦେଖିଣ ଧନୁର୍ଜୟେ ପୁଣିହିଂ ଗଡ଼ଘାଲି
କୋଳେ ଧରି ଦେବ ଦିବ୍ୟ ବାକ୍ୟ ବୋଲି ।୧୨୧
ଅର୍ଜୁନକୁ ଘେନିଣ ମର୍କତ ଶିଳା ପରେ
ବସିଣ ପଚାରନ୍ତି ତହିଂ ଠାକୁର ଚକ୍ରଧରେ ।୧୨୨
ଧନ୍ୟ ଧନ୍ୟ ଧନୁର୍ଜୟେ ଚିହ୍ନିଲୁ ତୁ ମୋତେ
ତୁ ମୋହୋର ପ୍ରାଣ ଯେ ଅଟୁ ପଞ୍ଚ ଭୂତେ ।୧୨୩
ତେଣୁ କରି ଯେ ରୂପ ତୁ ଚିହ୍ନିଲୁ ମୋହୋର
ଯେତେକ ବୋଲି ଦେବ ପୁଣିହିଂ କଲେ କୋଳ ।୧୨୪
ଅର୍ଜୁନକୁ ଚାହିଂ ପୁଚ୍ଛନ୍ତି ପୀତବାସ
କି କାର୍ଯ୍ୟେ ଧନୁର୍ଜୟେ କଲୁରେ ବନବାସ ।୧୨୫
ଶ୍ରୀହରି ପଚାରନ୍ତେ ହସିଲେ ଅରଜୁନ
ସାବଧାନ ହୋଇ ତୁମ୍ଭେ ଶୁଣିମା ଭଗବାନ ।୧୨୬
ଦ୍ରୋପତୀ ଦେବୀଙ୍କର ରମଣ ରସ ବିଧି
ଯାହା ସେ ପାଞ୍ଚ ଭାଇ ଆମ୍ଭେ ଅଛୁଂଟି ସମ୍ପାଦି ।୧୨୭
ଯେକର ରମଣ ଯେବେ ଆରେକ ଦେଖଇ
ଦ୍ୱାଦଶ ବରଷ ଯେ ବନବାସ ଯାଇଂ ।୧୨୮
ଯେମନ୍ତ ସମୟେ ବ୍ରାହ୍ମଣେକ ଆସି
ଦ୍ୱାରେଣ ବହୁତ କହିଲେ ନିବେଶି ।୧୨୯
ମୋତେ ବୋଇଲେ ବେଗେ ଯୁଧିଷ୍ଠିରଙ୍କି ଆଣ
ନୋହିଲେ ସମସ୍ତ ଭସ୍ମ ଯିବ ମୋହୋର କ୍ରୋଧେଣ ।୧୩୦
ଗୁପତ କଥାଯେ ମୁଂ ତାହାଙ୍କୁ କହିବି
ବେଗେଣ ଘେନି ଆସ ପାଣ୍ଡବ ବାସବି ।୧୩୧
ତାହାଙ୍କ ଆଗ୍ୟାଂରେ ମୁଂ ଭିତରକୁ ଗଲି
ଯୁଧିଷ୍ଠିର ପାଞ୍ଚାଳୀଙ୍କର ଯେକାନ୍ତ ଦେଖିଲି ।୧୩୨
ଲେଉଟି ଦ୍ୱାରେ ମୁଂ ହୋଅନ୍ତେ ଚକ୍ରଧର
ସେଠାରୁ ବ୍ରାହ୍ମଣ ଯେ କେଣେ ହୋଇଲେ ଅନ୍ତର ।୧୩୩
ସେ ନ୍ୟାୟୁଂ ବନବାସ ହୋଇଅଛି ମୋହୋର
ବନରେ କଷଣ ବହୁତ ହୋଇଲା ଦାମୋଦର ।୧୩୪
ଅର୍ଜୁନଠାରୁ ଶୁଣି ସନ୍ତୋଷ ଭଗବାନ
ସହଦେବ ମନ୍ତ୍ରୀ କହିଥିଲେ ତାହାଙ୍କୁ ଯେତେକ ବିଧାନ ।୧୩୫
ଆଗ୍ୟାଂ ଦିଲେ ତାହାଙ୍କୁ କମଳାର ପତି
ଚାଲ ବାବୁ ଯେବେ ଯିବା ଦ୍ୱାରାବତୀ ।୧୩୬
ଶୁଣି ଅର୍ଜୁନ ବୋଇଲେ ଯୋଡି ବେନି କରପତ୍ର
ସତ୍ୟ କରି ଅରଣ୍ୟକୁ ଅଇଲି ପଦ୍ମନେତ୍ର ।୧୩୭
ଚାରି ବରଷ ଛଡମାସ ହୋଇଲାନି ତେର ଦିନ
ଯେତେ ଦିନ ସେ ବିହରିଲି ଯେ ଅରଣ୍ୟ ।୧୩୮
ଆଉ ସାତ ବରଷ ପାଞ୍ଚମାସ ସତର ଦିନ ଗଲେ
କରିବଇଂ ଦରଶନ ଦ୍ୱାରାବତୀ ପୁରେ ।୧୩୯
ଶ୍ରୀହରି ଅର୍ଜୁନ ଦୋହେଂ ତହିଂ କରନ୍ତେ ବିଚାର
ମନ୍ଦ ମନ୍ଦ ହସି ଯେ କହନ୍ତି ଚକ୍ରଧର ।୧୪୦
ଆଜ ଯେ ଚଇତ୍ର ଶୁକଳ ପକ୍ଷ ତ୍ରୟୋଦଶୀ
ମହା ମହା ବାରୁଣୀ ଯୋଗ ଯେ ଗଙ୍ଗାରେ ପଡ଼ିଅଛି ।୧୪୧
ଯେବେ ଥାଆନ୍ତାଇଂ ଆମ୍ଭେ ପୁର ଦ୍ୱାରାବତୀ
ଗଙ୍ଗାରେ ସ୍ନାହାନ କରନ୍ତାଇଂ ହୋ ପଣ୍ଡୁର ସନ୍ତତି ।୧୪୨
ଅର୍ଜୁନ ବୋଇଲେ ହରି ଆସନ୍ତୁ ସୁରେଶ୍ୱରୀ
ଯେଠାରେ ସ୍ନାହାନ କର ତୁମ୍ଭେ ଚକ୍ରଧାରୀ ।୧୪୩
ହସି ପଚାରନ୍ତେ ଯେ କମଳାର ପତି
କି ରୂପେ ଆସିବେ ଯେଥେଂ ଧବଳ ମୂରତି ।୧୪୪
ଅର୍ଜୁନ ବୋଇଲେ ଯାହାର ପାଦରୁ ସମ୍ଭୂତ
ତାହାଙ୍କୁ ଯେ କଥା କି ଅଟଇ ବିଚିତ୍ର ।୧୪୫
ଶ୍ରୀହରି ବୋଇଲେ ସେ ଅଛନ୍ତି ଅନେକ ଦୂରେ
ଭଗୀରଥ ଆଣିଥିଲେ ସେ ଅଇଲେ ପୃଥୀରେ ।୧୪୬
ଆନ କେ ତାହାଙ୍କୁ ହୋ ଆଣିମ ଅରଜୁନ
ଯେହା ଶୁଣି ବୋଇଲେ ସେ ପାଣ୍ଡୁର ନନ୍ଦନ ।୧୪୭
ଭୋ ଦେବ ତୁମ୍ଭର ଆଗ୍ୟାଂ ପରମାଣେ
ଆସିବେ ଗଙ୍ଗା ଦେବୀ କର ଅବଧାନେ ।୧୪୮
ଶୁଣିଣ ହସିଲେ ଯେ କମଳାର ବର
ଭଗୀରଥ ପ୍ରାୟେ ଭାଗ୍ୟଥିବ ଯେ ଯାହାର ।୧୪୯
ତପସ୍ୟା ବଳେ ଆଣିଲେ ଭଗୀରଥ ରାୟେ
ତୁମ୍ଭେ ଅବା ଆଣି ପାରିବ ହେ ଧନୁର୍ଜୟେ ।୧୫୦
ଶୁଣିଣ ବୀରବର ପ୍ରଭୁଙ୍କର ଆଗ୍ୟାଂ ଘେନି
ଧନୁ ଧରି ନାରାଜ ବସାଇଲେ ଆଣି ।୧୫୧
ଅରକ୍ଷ ବୋଲି ପିଚାଶ ଯେକ ଜନ

ଧନୁର୍ବେଦ ତାହାଠାରୁ ପଢ଼ିଲେ ଅର୍ଜୁନ
ସେ କାଳେ ସୁରତରଙ୍ଗ ବୋଲି ଯେକ ଶର
ଅର୍ଜୁନକୁ ଅନୁଗ୍ରହେ ଦେଇଥିଲା ବର ।୧୫୩
ମନ୍ତ୍ର ସୁମରିଣ ବିନ୍ଧିଲାକ ବୀରମଣି
ବୋଇଲା ଘେନି ଆସିବୁ ବରୁଣ ପାଟରାଣୀ ।୧୫୪
ସେ ଅଘନାଶିନୀ ଯେଥେଂ ଆସି କରନ୍ତୁ ବିଜୟେ
ତୁମ୍ଭେ ଆଗେ ଥିବ ପଛେ ଥିବେ ମାୟେ ।୧୫୫
ଆଗ୍ୟାଂରେ ନାରାଜ ଯେ ଚଳିଲା ତତକ୍ଷଣ
ନିଶ୍ୱାସକେ ଚଳିଲା ସେ ତିନି ସହସ୍ର ଯୁଣ ।୧୫୬
ଦେବୀଙ୍କର ଛାମୁରେ ଯାଇଂ କର ଯୋଡିଣ କହି
ହରି ଅରଜୁନ ମୋତେ ପେଷିଲେ ମହାମାୟି ।୧୫୭
ତୁମ୍ଭଙ୍କୁ ନେମାକୁ ଶ୍ରୀହରିଙ୍କ ଅବଧାନ
ମଣିଭଦ୍ରା ପର୍ବତେ ଅଛନ୍ତି ଶ୍ରୀହରି ଅରଜୁନ ।୧୫୮
ଶୁଣିଣ ଶର ବାଣୀ ମାତା ହୃଦରେ କଲେ ଲୟେ
ଜାଣିଲେ ଶରଧା କରିଅଛନ୍ତି ଦେବରାୟେ ।୧୫୯
ହରି ଅର୍ଜୁନ ଯେ ଅଛନ୍ତି ଯେକ ସ୍ଥାନ
ନ ଗଲେ ହାଦେ ବଳେ ମୋତେ ଘେନି ଯିବ ବାଣ ।୧୬୦
ଯେତେ ବିଚାରିଣ ତହୁଂ ଧବଳାଙ୍ଗୀ ମୂରତି
ମନେ ମନେ ଗୁଣି ସେ ହୋଇଲେ ତ୍ରିପୁତି ।୧୬୧
ତୁମ୍ଭେ ଆଗ ହୋଇ ବାଟ କଢ଼ାଅ ହୋ ବାଣ
ତୁମ୍ଭର ପଛେ ପଛେ ଆମ୍ଭର ପୟାଣ ।୧୬୨
ଆଗ୍ୟାଂୟେ ତୁରିତେ ଆଗ ହୋଇଲାକ ଶର
ଯେସନେ ବିଚିତ୍ର କି ଶୋଭା ଅହିବର ।୧୬୩
ସଙ୍ଗେ ପରିବାରୀ ଘନଲତା ହେମଲତା
ଶର ପଛେ ବିଜେ କଲେ ଜଗତର ମାତା ।୧୬୪
ପାତାଳ ଭେଦ ହୋଇ ବିଜୟେ କଲେ ଯହୁଂ
ମଣିଭଦ୍ରା ପର୍ବତେ ପ୍ରବେଶ ହୋଇଲେ ତହୁଂ ।୧୬୫
ଶ୍ୱେତ କଛ ନାମେ ତହିଂ ଅଛଇ ବୃକ୍ଷବର
ସେ ବୃକ୍ଷ କ୍ରୋଟ ମଧ୍ୟୁଂ ଦେବୀ ହୋଇଲେ ବାହାର ।୧୬୬
ହରି ଅର୍ଜୁନ ତାହା ଦେଖନ୍ତି ଉଭାରି
ଶର ପଛେ ବିଜେ କରିଅଛନ୍ତି ମାହେଶ୍ୱରୀ ।୧୬୭
ଗୋବିନ୍ଦଙ୍କ ପାଦେ ଦେବୀ ହୋଇଲେ ଭଗତି
ଅନ୍ତର୍ଗତେ ତାହା ଜାଣିଲେ ଶିରୀପତି ।୧୬୮
ଶର ତତକ୍ଷଣେ ନିଜ ରୂପ ହୋଇ
ରଖିଲେ ତ୍ରୋଣରେ ତାହା ବାସବ ତନୟି ।୧୬୯
ଗଙ୍ଗାଙ୍କର ଚରଣେ ପଡ଼ିଲେ ବୀର ପାଥ
ପାଦେ ପଡ଼ିଣ କଲେ କୋଟିୟେ ଦଣ୍ଡବତ ।୧୭୦
ସାନନ୍ଦ ହୋଇଣ ତହିଂ ଶଙ୍ଖଚକ୍ରଧର
ପାଥକୁ ଘେନିଣ ସ୍ନାହାନ କରିଲେ ତତପର ।୧୭୧
ଗରୁଡ଼ ଯେ ସ୍ନାହାନ ସାରିଲେ ତାହାଙ୍କର ତୁଲେ
ସନ୍ଧ୍ୟା ତର୍ପଣେ ଯେ ଦେବ ପିତୃଙ୍କୁ ଜଳ ଦିଲେ ।୧୭୨
ନଦୀର ନାମ ବୀର ତୁରଙ୍ଗ ସେ ଦିଅନ୍ତି
ଦେବାଙ୍ଗ ପାଟେକ ଯେ ବାନ୍ଧିଲେ ଶିରୀପତି ।୧୭୩
ବୋଇଲେ ସୁରଭି ତୁମ୍ଭେ ଆମ୍ଭ ଆଗ୍ୟାଂଶୁଣ
ମହା ମହା ବାରୁଣୀ ଯେ ପଡ଼ିବ ଯେବଣ ଦିନ ।୧୭୪
ସତ୍ୟ ତ୍ରେତୟା ଦ୍ୱାପର କଳି ଯୁଗ ଚାରି
ଯେ ଶର ଆଗେ ଥିବ ଅହିରୂପ ଧରି ।୧୭୫
ମେଳେଛଙ୍କୁ ମୁକତି ହୋଇବାର ନିମନ୍ତେ
ଅବଶ୍ୟ ବିଜେ ଦେବୀ କରିବୁଂ ଶର ପଥେ ।୧୭୬
ଶୁଣି ମାହେଶ୍ୱରୀ ଯେ ଅବଧାନ ପୁଣି
ପାଦରେ ପ୍ରଳମ୍ବିତ କଲେକ ସୁଲକ୍ଷଣୀ ।୧୭୭
ଭୋ ପ୍ରଭୁ ତୁମ୍ଭର ଆଗ୍ୟାଂ ଯେଉଂରୂପେ
ପାଳିବଇଂ ତୁମ୍ଭ ଆଗ୍ୟାଂ କଳପ କଳପେ ।୧୭୮
ପଦ୍ମ ପାଦେ ପଡ଼ି ଦେବୀ କଲେକ ବିଜୟେ
ଆପଣା ନିଜ ଗୃହେ ପ୍ରବେଶ ଯାଇ ହୋୟେ ।୧୭୯

**

## ୨୭. ଖାଣ୍ଡବ ବନ ଦହନ

ଯେଥୁ ଅନନ୍ତରେ ଶୁଣିମା ରସବାଣୀ
ଅର୍ଜୁନକୁ ଚାହିଂ ସେ ଯେ ବୋଲନ୍ତି ଚକ୍ରପାଣି ।୧
କେଉଂଣ ଚରିତ ତୁ ଭିଆଇଲୁ ଫାଲଗୁନି
ଶତ୍ରୁ ମୁଖେ ଭାଇନ୍ତ ଦେଇ ହୋଇଲୁ ବନଗାମୀ ।୨
ଅର୍ଜୁନ ବୋଇଲେ ଦେବ ବଡ଼ାଇ ଦୁଲ୍ଲଭ
କଉତୁକେ ଜିଣିଲି ମୁହିଂ ଦେବ ସଦାଶିବ ।୩
ଯେ ଶହସ୍ରମାନ ମୋତେ ଦିଲେ ଯେ ହର ପାର୍ବତୀ
ହସ୍ତିନାରେ ଥିଲେ ଯେ କାହୁଂ ଯେହାନ୍ତ ପାଆନ୍ତି ।୪
ଗୋବିନ୍ଦେ ବୋଇଲେ ତୁ ତ ନିଶ୍ଚିନ୍ତ ହୋଇଲୁ
ଆମ୍ଭନ୍ତ ପାଶୋରିଣ ତୁହି କେମନ୍ତେ ରହିଲୁ ।୫

ଯେହା ଶୁଣି ବୋଇଲେ ସର୍ବସାଟୀ
ସତ୍ୟ ଲଙ୍ଘିଲେ ପ୍ରାଣୀଙ୍କି ମୁକତି କାହିଁ ଅଛି ।୬
ଆମ୍ଭେ ଯାହା କହିଲୁ ତାହା ଲଙ୍ଘିବୁ କେମନ୍ତେ
ବ୍ରତ ପୂରିଲେ ଦ୍ରଶନ କରିବୁ ଯୁଝେଷ୍ଟି ପାଦଗତେ ।୭
ଶ୍ରୀକୃଷ୍ଣ ଅରଜୁନ କଥା ହୁଅନ୍ତେଣ ବେନି
ବ୍ରାହ୍ମଣେକ ଆସୁଅଛି ଅର୍ଘ୍ୟ ପାତ୍ର ଘେନି ।୮
ଲୁଦୁବୁଦୁ ବ୍ୟାଧି ଶରୀର ଯେ ଦିଶଇ ପିଳୋହି
ମହାରୋଗୀ ଶରୀର ଯେ ଦୁର୍ବଳ ଅଛି ହୋଇ ।୯
ଖଣ୍ଡେ ଦୂର ଆସଇ ବସଇ ଲୋଟି ହୋଇଂ
ଅଶକତ ଶରୀର ଚାଲି ନ ପାରଇ ସେହି ।୧୦
ଦଦରା ଛତା କାନ୍ଧେ ପିନ୍ଧିଛି ଛିଦ୍ର ଧୋତି
କପାଳେ ଉର୍ଦ୍ଧ୍ୱ ପୁଣ୍ଡ୍ରି କାଖେ ପୀଢ଼ା ପୋଥି
ମଳିନ ଉତ୍ତରୀ କାନ୍ଧେ ଛିଣ୍ଡା ପଇତା ଗୋଟି ।୧୧
ଦ୍ୱାଦଶ ଲକ୍ଷଣ ଚିତା ମଳିନ ବିକାଶି
ଦରିଦ୍ର ଅଶକତ ବିପ୍ର ଅତୀୟ ଭିକ୍ଷାଶୀ ।୧୨
ପର୍ବତ ଉପରକୁ ନ ପାରଇ ଉଠି
ପାଞ୍ଚ ପହଣ୍ଡ ଯାଇ ବିପ୍ର ବସଇ ଯେ ଫୁଟି ।୧୩
ଶ୍ରୀହରି ଅରଜୁନ ବେନି କଥା ହେଉଥିଲେ
ଅଶକତ ବିପ୍ରକୁ ଦେଖି ନିରେଖି ଚାହିଁଲେ ।୧୪
ଅର୍ଜୁନ ବୋଇଲେ ସ୍ୱାମୀ ଯେ ଦ୍ୱାପର ଯୁଗେ
ଯେଡେ ବଡ଼ ଦରିଦ୍ର ଦେଖିଲା ନାହିଁ ମଧ ସ୍ୱର୍ଗେ ।୧୫
ଶରୀର ଅଶକତ ଦ୍ୱିଜ ନ ପାରଇ ଚାଲି
ରୋଗ ପ୍ରବଳ ଦେହ ବିପ୍ର ନ ପାରଇ କଥା ବୋଲି ।୧୬
ଯେ ମହାକଷ୍ଟ ଯେ ବ୍ରାହ୍ମଣ ଜଣଙ୍କୁ
କି ଦେଇ ତୋଷିବା ସ୍ୱାମୀ ଆମ୍ଭେ ଯେ ବିପ୍ରବରଙ୍କୁ ।୧୭
କର ପ୍ରସାରି ଯାଇଂ ଉଭା ହୋଇଲେ ଛାମୁରେ
ବେଦ ଧ୍ୱନି ଶବଦ ଯେ କରଇ ସୁସ୍ୱରେ ।୧୮
ଅର୍ଜୁନ ବୋଇଲେ ଦେବ କେଉଂଣ କାରଣେ
ବେଦ ଆଧାନ କର ଛାମୁରେ କେସନେ ।୧୯
ଯେସନେକ ବାକ୍ୟ ଯହୁଂ କହିଲେ ଇନ୍ଦ୍ରବାଳେ
ଶୁଣିଣ ବ୍ରାହ୍ମଣ ଯେ ବୋଲଇ ବିକଳେ ।୨୦
ବୋଲଇ ଦ୍ୱିଜବର ତୁମ୍ଭେ କ୍ଷତ୍ରିୟ ପରମ ଯୋଗୀ
ମୁହିଁ ଦରିଦ୍ର ବ୍ରାହ୍ମଣ ଆବର ହୋଇଲି ବଡ଼ ରୋଗୀ ।୨୧
ଦରିଦ୍ରେ ଦେବା ଦାନ ଅଟଇ ଅନେକ ପୁଣ୍ୟମାନ
ଅପୂଜା ଲିଙ୍ଗ ଯେହୁ କରଇ ପୂଜନ ।୨୨
ରୋଗୀଜନଙ୍କୁ ଉଦ୍ଧାରଇ ଯେଉଂଣ ବଦ୍ୟକାରୀ
ଶିର ଛେଦନ କାଳେ ଯେ ପ୍ରାଣୀଙ୍କି ରକ୍ଷା କରି ।୨୩
ଅପ୍ରତିଷ୍ଠା ଜଳକୁ ଯେ କରଇ ପ୍ରତିଷ୍ଠା
ଅଯୋଗ୍ୟ ଲୋକଙ୍କୁ ଯେ କରଇ ସଙ୍ଗୋଷ୍ଠା ।୨୪
ଅକାରଣ ଲୋକଙ୍କୁ ଯେ କାରଣ କରଇ
ପର ଦୁଖେ କାତର ଯେ ପୁଣ୍ୟ ଆତ୍ମା ଦେହୀ ।୨୫
ଅମୂର୍ତ୍ତି ଦେବତାଙ୍କୁ ଯେ କରଇ ମୂର୍ତ୍ତିବନ୍ତା
ସେହି ସେ ମହାତ୍ମା ଅଟଇ ଧର୍ମ ଯେ ଦେବତା ।୨୬
ତୁମ୍ଭନ୍ତ ବାଭିଯେ ମୁଂ ନ ପାରିଲି ଚିହ୍ନି
ଯେକ ମୂର୍ତ୍ତି ପ୍ରାୟେ ତୁମ୍ଭେ ଦିଶୁଅଛ ବେନି ।୨୭
ମୁହିଁ ଦରିଦ୍ର ବ୍ରାହ୍ମଣ ଅଟଇ ବଡ଼ ରୋଗୀ
ମୋତେ କାରଣ କଲେ ବହୁତ ଧର୍ମ ଭାଗି ।୨୮
ଅର୍ଜୁନ ବୋଇଲେ ତୁମ୍ଭେ ଅଶକତ ଦ୍ୱିଜବର
ଆମ୍ଭେ ବେନି ଗୋଟି ଭାଇ ଅଟୁଂ ବନଚର ।୨୯
ବ୍ରାହ୍ମଣ ବୋଇଲେ ମୁହିଁ ଦରିଦ୍ର ଅବା ବୋଲି
ତୁମ୍ଭର ତହିଂକି ଧନ ଦ୍ରବ୍ୟ ବସ୍ତ୍ରମାନ ମାଗି ତ ନ ଅଇଲି ।୩୦
ରୋଗ ପ୍ରବଳେ ଅଶକତ ମୋର କାୟେ
ଯେହାକୁ ଭଲ କଲେ ଅଛିନି ମୋର କାଇଂବା ଉପାୟେ ।୩୧
ବଡ଼ ଲୋକର ପୁତ୍ର ମୁଂ ଅଟଇ ବଡ଼ ଜଣ
ଯେକାଦଶ ବେଦେ ମୁଂ ଅଟଇ ବ୍ରାହ୍ମଣ ।୩୨
ଦାନେଣ ଶୂରବନ୍ତା ମୁଂ ମନ୍ତ୍ରେଣ ଶୁଚିବନ୍ତା
ବଞ୍ଚିତ ନ ଗଲା ମୋର କପାଳର ଘଟିତା ।୩୩
କ୍ରୋଧେଣ ବ୍ରାହ୍ମଣ ବୋଲଇ ଗଦ ଗଦ ବାଣୀ
ବେଦ ଆଧାନ କଲା ବିପ୍ର କୁଳମଣି ।୩୪
ଯେକ ଲୟେ କରି ଶୁଣଇ କ୍ଷତ୍ରୀ ଶିରୋମଣି
ଅର୍ଜୁନ ବୋଇଲେ ମୋହୋର ଶରୀର କମ୍ପଇ ଯେ ତୋହୋର
ବେଦ ଧ୍ୱନି ଶୁଣି ।୩୫
କିସ ଦାନ ତୁମ୍ଭେ ମାଗିବ ମାଗନି ପଣ୍ଡାୟେ
କେମନ୍ତେ ନିର୍ମଳ ହୋଇବ ତୁମ୍ଭର ନିଜ କାୟେ ।୩୬
ଶଙ୍ଖ ଗୋଟି କାଢି କମଣ୍ଡଳୁଂ ପୂରୋଇଲେ ପାଣି
ପାଥର ହସ୍ତରେ ବ୍ରାହ୍ମଣ ବେଗେ ଦିଲେ ଆଣି ।୩୭
ଆହୋ ସଙ୍କଳ୍ପ କଲେ ସେ ଦାନ ଦେଇ ପାରି
ଅଣ ସଂକଳ୍ପେ ଦାନ ଦିଲେ ସେ କାହିଁକି ନୋହେ ସରି ।୩୮
ତାହାଣ ବ୍ରତେକ ଶଙ୍ଖେ ପୂରୋଇ ଜଳତିଳ
ଦ୍ୱିଜବର ଦିଲା ନେଇ ପାଥର କରସ୍ଥଳ ।୩୯

ଉପର ହାଥେ କରି ଘେନଇଂ ସର୍ବସାଟୀ
ବେଦ ଆଧାନ କରି ବିପ୍ର ତଳ ହସ୍ତ ପାତିଅଛି ।୪୦
ବାକ୍ୟ ମନ୍ତ୍ର ପଢ଼ାଇ ପାତିଲା ତଳେ ହସ୍ତ
ପାଣି ଛଡାଇଲା ସେ ବ୍ରାହ୍ମଣ କରପାତ୍ର ।୪୧
ସତ୍ୟ ସତ୍ୟ ବାକ୍ୟ କରାଇ ସତ୍ୟ ଭାବେ
ଛାଡିଲେ ସତ୍ୟ କରିଣ କ୍ଷତ୍ରିୟ ପାଣ୍ଡବେ ।୪୨
ବ୍ରାହ୍ମଣ ସାକ୍ଷୀ କରଇ ଚନ୍ଦ୍ର ସୂର୍ଯ୍ୟଙ୍କୁ
ବ୍ରାହ୍ମଣ ସାକ୍ଷୀ କରଇ ପବନ ଦେବତାଙ୍କୁ ।୪୩
ବ୍ରାହ୍ମଣ ସାକ୍ଷୀ କରଇ ସନକାଦି ଆବର ଦଶ ବିଶ୍ୱେଦେବା
ମୁହିଂ ଯେ ଦାନ ମାଗୁଅଛି ତୁମ୍ଭେ ସାକ୍ଷୀ ହୋଇଥିବା ।୪୪
ଗୋବିନ୍ଦେ ବୋଇଲେ ଆମ୍ଭେ ହୋଇଲୁନି ସାକ୍ଷୀ
ମାଗ ହୋ ପଣ୍ଡାଯେ ସାକ୍ଷୀରେ କିସ ଅଛି ।୪୫
ମହାବାକ୍ୟ ଉଚ୍ଚାରି ବିପ୍ର କରଇ ବେଦଧ୍ୱନି
ସ୍ୱର୍ଗ ମଞ୍ଚ ପାତାଳ କମ୍ପିଲା ଭୁବନ ତିନି ।୪୬
ବ୍ରାହ୍ମଣ ବୋଇଲା ତୁ ଶୁଣ ହୋ ଅରଜୁନ
ମୋତେ ଦାନ ଦେବୁଂ ଖାଣ୍ଡବ ନାମେ ବନ ।୪୭
ମୋତେ ରୋଗ ପ୍ରବଳ ଯେ ଲୁଦୁବୁଦୁ ବ୍ୟାଧି
ଖାଣ୍ଡବ ବନରୁ ମୁହିଂ ଖାଇବି ମଉଷୋଧି ।୪୮
ଅର୍ଜ୍ଜୁନ ବୋଇଲେ ମଉଷୋଧି ଖଣ୍ଡି ଛାର
ଯେତେ ସାକ୍ଷୀ କରାଇଲୁ ବଚନ କଷ୍ଟୋର ।୪୯
ଦରିଦ୍ର ଅବସ୍ଥା ଯେତେବେଳେ ହୋଅନ୍ତି ପ୍ରାଣୀ
ଦାତବ୍ୟ ଲୋକଙ୍କୁ ନିଷ୍ଠୁର କରନ୍ତି ସେ ପୁଣି ।୫୦
ବ୍ରାହ୍ମଣର ନିଷ୍ଠୁର ବଚନ ଶୁଣିଲା ବିବଚ୍ଛ
ଅର୍ଜ୍ଜୁନ ଚାହିଂଲା ଯେ ନାରାୟଣଙ୍କ ମୁଖ ।୫୧
ଦେଖିଲ ଟିକି ଭୋ ସ୍ୱାମୀ ଭିକ୍ଷୁକର ଚରିତ
ଯେତେକ ଛାରକୁ ଯେହାର ଯେତେକ ଆସକତ ।୫୨
ଶ୍ରୀଜଗନ୍ନାଥ ବୋଇଲେ ଶୁଣ ହୋ ଫାଲଗୁନି
ତୃତୀୟ ବ୍ରାହ୍ମଣ ଅଟଇ ହାଦେ ବଶ୍ୟାନର ଅଗ୍ନି ।୫୩
ଯେହାଙ୍କର ହେତୁ ତୋତେ ବନବାସ
ତିନି ଯୁଗ ହୋଇଲାନି ଯେ କରିଛନ୍ତି ତୋତେ ଆଶ ।୫୪
ଗୋବିନ୍ଦଙ୍କ ମୁଖରୁ ଶୁଣି ଯେସନ ବଚନ
କରପତ୍ର ଯୋଡିଣ ପଚାରଇ ଅରଜୁନ ।୫୫
ଅଗ୍ନି ଦଇବତ ବୋଲି କେମନ୍ତେ ଜାଣିଲ ଗୋସାଇଂ
ଯେଥିର ଚରିତ ମୋତେ କହିବା ବୁଝାଇ ।୫୬
ଶ୍ରୀହରି ବୋଇଲେ ସହଦେବ ଯେ କହିଲା
ଯେହି ଅଗ୍ନିଙ୍କର ସକାଶୁଂ ତୋତେ ବନବାସ ହୋଇଲା ।୫୭
ଯେହି ଅଗ୍ନି ଦେବତା ଯେ ମାୟାରୂପ ହୋଇ
ଯୁଧିଷ୍ଠିରଙ୍କି ଆଣ ବୋଲି ତୋତେ କଟାଳିଲେ ଯାଇଂ ।୫୮
ମାୟା ନ ଜାଣି ତୁ ଅନ୍ତପୁରେ ପଶନ୍ତେଣ
ଯେଣେ ଅଗ୍ନି ଦେବତା ଅନ୍ତର୍ଦ୍ଧାନ ହୋଇଲେକ ପୁଣ ।୫୯
ସତ୍ୟବାଦୀ ପୁରୁଷ ତୁ ବନକୁ ଅଇଲୁ
କଇଚ୍ଛାବନ୍ତ ପଣେଣ ତୁ ବନରେ ଭ୍ରମିଲୁ ।୬୦
ଗୋବିନ୍ଦଙ୍କ ମୁଖ ଚାହିଂ ଅର୍ଜ୍ଜୁନ ବୋଲଇ
ଅଗ୍ନି ଦେବତାଙ୍କୁ ଯେ ବ୍ୟାଧି ହେଲା କାହିଂ ।୬୧
ଯେହା ସଞ୍ଚପିଣ ମୋତେ କହ ଜନାର୍ଦ୍ଦନ
ତେବେ ସିନା ଭ୍ରାନ୍ତି ମନରୁ ମୋର ଫିଟିବ ବହନ ।୬୨
ଅର୍ଜ୍ଜୁନ ପଚାରନ୍ତେ ଶ୍ରୀହରି କହନ୍ତି
ଶ୍ରୀରଙ୍ଗ ଅଧରେ ମନ୍ଦ ମନ୍ଦ ଯେ ହସନ୍ତି ।୬୩
ଆହୋ ଭାବାନୀ ନାମେଣ ଯେ ଯେକଇ ସତ୍ୟ ଯୁଗେ
ଅପାର ଘୃତ ଖାଇଲେ ଶ୍ୱେତ ରାଜାର ଯଜ୍ଞେ ।୬୪
ଅନେକ ଘୃତ ଖାଇ ତହିଂ ଯେ ହୋଇଲେ ମନ୍ଦାଅଗ୍ନି
ଲୁଦୁବୁଦୁ ବ୍ୟାଧି ହୋଇଲା ବସିଲେ ଯୁଗ ତିନି ।୬୫
ନାରାୟଣଙ୍କ ବଚନେ ପ୍ରଣପତ୍ୟ ବୀର ପାଥ
ଅଟ କି ଗୋସାଇଂ ତୁମ୍ଭେ ଅଗ୍ନି ଦଇବତ ।୬୬
ବୋଲନ୍ତି ଦ୍ୱିଜବର ଆମ୍ଭେ ଦୋହୋରା ଅଗ୍ନି ଅଟୁଂ
ଅପାଦ ଶାନ୍ତି ନିମନ୍ତେ ଆମ୍ଭେ ବିନୟ ଭାବେ ଖଟୁଂ ।୬୭
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଅନାଦି ସିଦ୍ଧ ଯୋଗୀ
କେଉଂଣ ପାତକେ ତୁମ୍ଭେ ହୋଇଲ ଯେତେ ରୋଗୀ ।୬୮
ଶୁଣ ହୋ ବୀର ପାଥ ବୋଲନ୍ତି ବଶ୍ୟାନର
ସତ୍ୟ ଯୁଗେ ଶ୍ୱେତ ବୋଲି ଯେକଇ ନୃପବର ।୬୯
ଦେବଯଜ୍ଞ କରିବାକୁ କଲାକ ସଂକଳ୍ପ
ମହାଯଜ୍ଞ କଲେ ଖଣ୍ଡଇ ମହାପାପ ।୭୦
ମହାଯଜ୍ଞ ନିମନ୍ତେ ପିତାର ତହିଂକି ଗଲା ରାୟେ ବେଗେ
ବିନୟ ଭାବ ହୋଇ ପ୍ରୋହିତ ଜଣେ ମାଗେ ।୭୧
ଭୋ ଦେବ ବିଧାତା ମୋତେ ପ୍ରସନ୍ନ ହୋଇବା
ଦେବଯଜ୍ଞ କରିବି ମୋତେ ପ୍ରୋହିତ ଜଣେ ଦେବା ।୭୨
ବଶିଷ୍ଠ ଥିଲେ ସେ ଯେ ପିତାମହଙ୍କ ଅଗ୍ରତେ
ପିତାଯେ ବୋଇଲେ ଶ୍ୱେତରାଜାର ଯଜ୍ଞ କର ଯା' ଉଚିତୋ।୭୩

ବଶିଷ୍ଠ ଅଗଲେ ଶ୍ୱେତ ରାଜାଙ୍କୁ ଘେନି
ଆସନ୍ତ ବରଣ କଲା କାଳାନଳ ଅଗ୍ନି ।୧୭୪
ଆବର୍ତ୍ତନ ସମ୍ବର୍ତ୍ତକ ଦ୍ରୋଣ ପୁଷ୍କର ଶ୍ରୋହା ପ୍ରୋକ୍ଷଣୀ
ଯାଗ୍ୟଂ କୁଣ୍ଡେ ବରଷନ୍ତି ଶଗଡ଼ ତୁମ୍ବ ଜାଣି ।୧୭୫
ଘୃତ ସଞ୍ଚା ସମିଧ ଭିଆଅ ଯାଗ୍ୟଂ ସରି କରି
ଯାଗ୍ୟେଂ ଯାଗନିକ ମୁଁ ହୋଇଲି ତୋହୋରି ।୧୭୬
ବଶିଷ୍ଠଙ୍କ ବଚନେ ଚଳିଲେ ରାଜଦେବା
ଘୃତ ସମୁଦ୍ରକୁ କରିଲା ଦ୍ୱାଦଶ ବରଷ ସେବା ।୧୭୭
ପ୍ରସନ୍ନ ହୋଇଣ ବୋଇଲେ ରତ୍ନାକର
ମାଗ ଶ୍ୱେତ ରାଜା ହୋ କିସ ଆଧାନ ତୋହୋର ।୧୭୮
ଭୋ ଦେବ ରତ୍ନାକର ମୁଁ କରିବି ଦେବଯାଗ୍ୟଂ
ବଶିଷ୍ଠ ପ୍ରୋହିତେ ମୋତେ କଲେ ରାଗ ।୧୭୯
ମୁହିଂ ଯାଗ କରିବି ଦେବ ଚଉବିଂଶ ବରଷ ପରିଯନ୍ତେ
ବଶିଷ୍ଠଙ୍କ ପ୍ରୋକ୍ଷଣୀ ପୂରୋଇ ଘୃତ ଦେଉଥିବୁ ନିତ୍ୟେ ।୧୮୦
ଘୃତ ସମୁଦ୍ର ବୋଇଲା ତୋତେ ଯେତେକ ଅଣ୍ଟଇ
ଦେଉଥିବି ତେତେକାଳ ବଶିଷ୍ଠ ନିଅଇ ।୧୮୧
ଘୃତ ସମୁଦ୍ରକୁ ରାଜା ସନମତ କରାଇ
ବଶିଷ୍ଠ ପ୍ରୋହିତଙ୍କୁ ବରିଲା ମାଳା ଦେଇ ।୧୮୨
ଆକାଶ ଗଙ୍ଗା କୂଳେ ଭୂମିକି ଚିରିଲେ ଶୂଳେ
ତହିଂର ଉପରେ ବୁଣିଲେ ମାଘୀ ତିଳେ ।୧୮୩
କାର୍ତ୍ତିକର ଅନ୍ତେ ସେ ମାର୍ଗଶିର ମାସ
ମାର୍ଗଶିର ଅନ୍ତେ ପୁଷ ପରବେଶ ।୧୮୪
ପୁଷ ମାସ ଯାଇଂ ଯେ ମାଘ ମାସ ପଶିଲା
ତିଳ ଝଡିଣ ଯେ ଭୂମିରେ ପଡ଼ିଲା ।୧୮୫
ଲାଙ୍ଗଳରେ ଭୂମି ଚଷାଇଲାକ ସତ୍ୱର
ଯାଗଶାଳ ତୋଳାଇଲା ଶ୍ୱେତ ନୃପବର ।୧୮୬
ଜଟୀ ହଟୀ ବଟୀ ଯେ ଆବର ପର୍କଟୀ
ଯେ ଚାରି ବୃକ୍ଷ ହୋଇଲେ ଯେ ଦ୍ୱାର ଅଡା ଚାରି ଗୋଟି ।୧୮୭
ବାମଦେବ ଉଦ୍ଦାଳକ ସୁମନ୍ତ ଉରଙ୍ଗ
ଯେ ଚାରିହେଂ ବରଣ ହୋଇଲେ ଚାରି ଦିଗ ।୧୮୮
ବ୍ରହ୍ମା ବରଣ ହୋଇଲେ ସୁଦେବ ବ୍ରାହ୍ମଣ
ଆଚାର୍ଯ୍ୟ ବରଣ ହୋଇଲେ ଭରଦ୍ୱାଦଶ ସୁମନ୍ତେଣ ।୧୮୯
ବଶିଷ୍ଠ ପ୍ରୋହିତ ଯାଗନିକ ହୋଇଲେ
ତ୍ରିଦଣ୍ଡ ଘେନି ଯାଗ୍ୟଂ କୁଣ୍ଡ ନିର୍ଭା କଲେ ।୧୯୦

ମକର ମାସ କୃଷ୍ଣ ପକ୍ଷ ତୃତୀୟା ଯେ ତିଥି
ଅର୍କବାର ଦିନ ମଘା ନକ୍ଷତ୍ର ପାହାନ୍ତି ।୧୯୧
ବବ ନାମେ କରଣ ପ୍ରୀତି ନାମେ ଯୋଗ
ମକର ସଙ୍କରାନ୍ତିକି ତୃତୀୟ ଦିନ ଭୋଗ ।୧୯୨
ଶ୍ୱେତ ମହାରାଜାର ଅଶ୍ଳେଷା କକଡ଼ା ରାଶି
ଦୁତୀୟ ଦିବସେ ସମ୍ପଦ ତାର ଯୋଗ ଅଛି ।୧୯୩
ତାର ବାର ନକ୍ଷତ୍ର ଯୋଗ ଶୁଭ ଅନକୂଳେ
ସେଦିନ ଯାଗଶାଳେ ବସିଲେ ମାହେନ୍ଦ୍ର ଯୋଗ ବେଳେ ।୧୯୪
ପ୍ରାଣ ଅପାନ ଯେ ସ୍ୱାହା ମହାମନ୍ତ୍ରେ
ଅଗ୍ନି ଆରୋପଣ କରାଇଲେକ ପ୍ରୋହିତେ ।୧୯୫
ମେଘନ୍ତ ସୁମରଣା କଲେ ବଶିଷ୍ଠ ମହରଷି
ଘୃତ ସମୁଦ୍ରଂ ଆଣି ଯାଗ୍ୟଂ କୁଣ୍ଡେ ବରଷି ।୧୯୬
ଶଗଡ଼ ତୁମ୍ବ ଆକାରେ ବରଷନ୍ତି ଚାରି ଧାର
ବିଶ୍ରାମ ନାହିଂ ରାତ୍ର ଦିବସ ଅଷ୍ଟ ଯେ ପ୍ରହର ।୧୯୭
ଆମ୍ଭେ ବ୍ରାହ୍ମଣ ଅଟୁଂ ଦରିଦ୍ର ମନ୍ଦ ଜାତି
ଘୃତ ପାଇଲେ ହୋଉଂ ଅନେକ ତ୍ରିପୁତି ।୧୯୮
ବାବୁ ଯେମନ୍ତେ ଚଉବିଂଶ ବରଷ ପରିଯନ୍ତେ ମହାଯାଗ୍ୟଂ କଲା
ଆବର୍ତ୍ତକ ସମ୍ବର୍ତ୍ତକ ରାତ୍ର ଦିବସ ବରଷିଲା ।୧୯୯
ଲୋଭେଣ ଖାଇଲୁଂ ଆମ୍ଭେ ଅନେକ ଯେ ଘୃତ
କାଳେ ପାର କରି ନୁଆରିଲୁଂ ହୋଇଲୁ ଯେମନ୍ତ ।୧୦୦୦
ମନ୍ଦାଅଗ୍ନି ହୋଇଲୁଂ ଲୁଦ୍ବୁବୁଦୁ ଯେ ହୋଇଲୁଂ
ଅତିହିଂ ଲୋଭ କରି ଶରୀର ନାଶକଲୁଂ ।୧୦୦୧
ବାବୁ ବାସବ ଦେବତାଙ୍କୁ ମାଗିଲୁ ମଉଷଧି
ରାଗେଣ ମୁକୁହିଂ ନ ଦିଲା ଜମ୍ଭୋଭେଦୀ ।୧୦୦୨
ବ୍ରହ୍ମା ଈଶ୍ୱରେ ଯେ ବୋଇଲେ ମୋର ପାଇଂ
କାହାରିହିଂ ବଚନ ନ କଲା ସୁରସାଇଂ ।୧୦୦୩
ବାବୁ ଦେବ ଦାନବ ଯେ ସବୁରି ଗର୍ଭେ ଥାଉଂ
ଯେ ଯାହା ଆଧାର କରଇ ସମସ୍ତ ଆମ୍ଭେ ଦହୁଂ ।୧୦୦୪
ଆମ୍ଭେ ଯେତେବେଳୁଂ ହୋଇଲୁଂ ମନ୍ଦାଅଗ୍ନି
ଲୁଦ୍ବୁବୁଦୁ ହୋଇ ବସିଲେନି ବ୍ରହ୍ମାଣ୍ଡ ଖଣ୍ଡ ତିନି ।୧୦୦୫
ଆମ୍ଭଙ୍କୁ ତୁ ଯେବେ ଉଦ୍ଧରି ଧରିବୁଂ ଧନୁର୍ଜ୍ଜୟେ
ବାହୁଡ଼ି ସଂସାର ହୋଇବ ତେଜମୟେ ।୧୦୦୬
ଯେକାଳଣେ ତାରିଲେ ସଂସାର ହୋଇବ ରକ୍ଷା
ଯାବତ ଚନ୍ଦ୍ର ଅର୍କେ ରହୁ ତୋର କଇଛା ।୧୦୦୭

ସତ୍ୟଯୁଗ ସତର ଲକ୍ଷ ଅଠାଇଶି ସହସ୍ର ବରଷ
ତ୍ରେତା ଯୁଗ ବାରଲକ୍ଷ ଛୟାଣୋଇ ସହସ୍ର ବରଷ ।୧୦୮
ଦ୍ୱାପର ଯୁଗ ଆଠଲକ୍ଷ ଚଉଷଠି ସହସ୍ର ବରଷ ଭୋଗ
ପାର କରି ନ ପାରିଲୁଂ ଆମ୍ଭେ ମନ୍ଦାଅଗ୍ନି ପିଳୋହି ରୋଗ।୧୦୯
ଉଦ୍ଧର ଅର୍ଜୁନ ମୋତେ ମୁହିଂ ତିନି ଯୁଗର ରୋଗୀ
ଆମ୍ଭର ଆଷ୍ୟ ଘେନି ତୁ ବ୍ରତ ଚାଲଯିବା ବେଗି ।୧୧୦
ଯେତେ ବୋଲି ଅଗ୍ନି ଦେବତା ଅନେକ କାର୍ପୁଣ୍ୟ
ଉଦ୍ଧରି ଧର ସର୍ବସାଚୀ ତୁ ପଣ୍ଡୁକୁଳ ଧନ୍ୟ ।୧୧୧
ଅର୍ଜୁନ ବୋଇଲେ ଦେବ ଉଠ ଉଠ ବେଗେ ହରି
ଖାଣ୍ଡବ ବନ ଯାୟେଂ ଯିବାଟି ବିଜେ କରି ।୧୧୨
ଜଗନ୍ନାଥେ ବୋଇଲେ ଆମ୍ଭେ ନ ଥାଉଂ ତୋର ତୁଲେ
ଇନ୍ଦ୍ର ଅପଖ୍ୟାତି ଦେବ ନା ଆମ୍ଭନ୍ତ ଦେଖିଲେ ।୧୧୩
ସେ ବାସବ ଦେବତା ତୋହୋର ତାତ ତୁ ତାହାର ସୁତ
ତୁମ୍ଭକଇଂ ସହିବ ସେ ଦେବ ପୁରୁହୂତ ।୧୧୪
ଆମ୍ଭଙ୍କୁ ଦେଖିଲେ ସେ କୋପ କରିବ ସୁରପତି
ତୋତେ କିଛି ନ ବୋଲି ଆମ୍ଭନ୍ତ ସେ ଦେବ ଅପଖ୍ୟାତି ।୧୧୫
ଭଲା ଆମ୍ଭେ ତୁକୁ ନେମାକୁ ଅଇଲୁ ହସ୍ତିନାକୁ
ଅଗ୍ନି ଦେବତା କଷଣ କଲାକ ତୁକୁ ।୧୧୬
ବେଳକୁ ବେଳ ତୁହି ପ୍ରମାଦେ ପଶିଲୁ
ହର ଉଦ୍ୟାନ ବନେ ହରକୁ ଜିଣିଲୁ ।୧୧୭
ଖାଣ୍ଡବ ବନ ଦହନେ ତୋତେ ନ ସହିବେ ସୁରଦେବା
ଇନ୍ଦ୍ରରେ ବିବାଦୀ ତୁ ହୋଉଛୁଂଟି ରେ ବାବା ।୧୧୮
ଯେତେ କହି ଖଗେଶ୍ୱର ପିଠିରେ କଲେ ବିଜେ
ଦ୍ୱାରିକାପୁରକୁ ସେ ବିଜୟେ ଦେବରାଜେ ।୧୧୯
ଅର୍ଜୁନ ବୋଇଲେ ଦେବ ଶୁଣିମା ବଶ୍ୟାନର
ଖାଣ୍ଡବ ବନ ଦହନେ କୋପ କରିବେ ସୁନାଶୀର ।୧୨୦
ଅଗ୍ନି ଦେବତା ବୋଇଲେ ତାର ଆକାଶର ସମ୍ବଧି
ଅନେକ ସାଂଗ୍ରାମ ସେ କରିବେ ଜୟୋଭେଦୀ ।୧୨୧
ଅର୍ଜୁନ ବୋଇଲେ କେମନ୍ତ ଯେ କରିବଇଂ ମୁହିଂ
ଅମରାଧିନାଥ ଜିଣିମାକୁ ମୋର ଶହସ୍ର ନାହିଂ ।୧୨୨
ଅଗ୍ନି ଦେବତା ବୋଇଲେ ତୁ ରହିଥାଅ ଯେଥ
ତ୍ରୈଲୋକ୍ୟ ଜିଣିମାକୁ ତୋତେ ଦେବଇଂ ଶହସ୍ରନ୍ତ ।୧୨୩
ଅର୍ଜୁନକୁ ଗୁହାଇ ଯେ ଚଳିଲେ ବହନି
ପାତାଳ ବୈକୁଣ୍ଠେ ବିଜେ କଲେ ସେହି ରୂପ ଘେନି ।୧୨୪
ନାରାୟଣ ବୋଇଲେ ତୁ ଶୁଣ ବଶ୍ୟାନର
ଲୁଦୁବୁଦୁ ବ୍ୟାଧି ତୋହୋର ନିହାୟେଂ ହୋଉଂ ପାର ।୧୨୫
ଅଗ୍ନି ଦେବତା ବୋଇଲେ ମୁଂ ତୁମ୍ଭରେ ଖଣ୍ଡିବି ବ୍ୟାଧି
ନାରାୟଣ ଶହସ୍ର ମୋତେ ଦେବୁଂ ମନଭେଦୀ ।୧୨୬
ନନ୍ଦିଘୋଷ ରଥ ଆବର ଗାଣ୍ଡିମ ଯେ ଧନୁ
ଯେତେକ ଦିଲେ ମୁଂ ତରିବି ପାପକର୍ମୁଂ ।୧୨୭
ଶଙ୍ଖ ଶ୍ୱେତ ଗୋକ୍ଷୀର କାମପାଳ ଅଶ୍ୱ ଚାରି
ଯେ ଚାରି ଅଶ୍ୱ ରଥ ଦେବ ସଜ କରି ।୧୨୮
ଶୁଣିଣ ସାନନ୍ଦ ଯେ ହୋଇଲେ ଅନାଦି
ଆମ୍ଭେ ଯେମାନ ଦିଲେ ଯେବେ ତୁଟିବ ତୋର ବ୍ୟାଧି ।୧୨୯
ମୁଂ ଯେଣେ ମୁକତ ହୋଇବି ଶୁଣସି ଅନନ୍ତ
ମୋତେ ଯେବେ ଦୟା କରିବୁ ଦାସବତ୍ସଳ ଭଗବନ୍ତ ।୧୩୦
ଯେହା ଶୁଣିଣ ସନ୍ତୋଷ ଯେ ହୋଇଲେ ଯୋଗେଶ୍ୱର
ସେ ଶହସ୍ର ମାନନ୍ତ ଯେ ଦିଲେ ଦାମୋଦର ।୧୩୧
ଘେନିଣ ଅଗ୍ନି ଦେବତାୟେ ବୈକୁଣ୍ଠୁଂ ବାହାର
ପାତାଳକୁ ଚଳନ୍ତି ହୋଇଣ ଉଦବେଗ ମନର ।୧୩୨
ବାସୁକୀ ଭୁବନେ ଯାଇଂ ହୋଇଲେ ପରବେଶ
ଦେଖିଣ ନାଗରାଜା ହୋଇଲେ ଅନେକ ସନ୍ତୋଷ ।୧୩୩
ଆହୋ ଅଗ୍ନି ଦେବତା ତୋତେ ପଡ଼ିଲା ଲୁଦୁବୁଦୁ ବ୍ୟାଧି
ଯେଥୁଂ ତରିବାକୁ ତୁହି ପୁଣ ନ କଲୁଂ କିମ୍ପେ ବୁଦ୍ଧି ।୧୩୪
ଅଗ୍ନି ବୋଇଲେ ମୁଂ ଯେଣେ ମୁକତ ହୋଇବି ଶୁଣସି ଅନନ୍ତ
ତୋ ତହୁଂ ମୋତେ ଦେବୁ ନାଗଫାଶ ଶହସ୍ରନ୍ତ ।୧୩୫
ଅମୃତା ଶହସ୍ର ମୋତେ ଦେବୁ ଭାରାଭର
ତୋଷେ ନାଗରାଜା ଯେ ଦିଲେ ବେନି ଶର ।୧୩୬
ସେ ଶହସ୍ର ରଥେ ନେଇ ଥୋଇଲା କାଳାନଳ
ପାତାଳୁଂ ବାହାର ହୋଇଲେ ଭେଟିଲେ ଆଦିତ୍ୟ ମଣ୍ଡଳ।୧୩୭
ଆଦିତ୍ୟ ଦେବତାଙ୍କୁ ବଚନ ସମ୍ବାଦି
ଆରୋଗ୍ୟ ହୋଇବାକୁ ମୁଂ କରୁଅଛି ବୁଦ୍ଧି ।୧୩୮
ସୂର୍ଯ୍ୟାବ୍ରତେକ ଚକ୍ର ମୋତେ ଦିଅସି ଦିନକର
ପ୍ରସନ୍ନ ହୋଇ ଅଗ୍ନି ଦେବତାଙ୍କୁ ଦିଲେ କରତାଳ ୧୩୯
ଚନ୍ଦ୍ର ଦେବତାଙ୍କୁ ମାଗିଲେ ଯେ ହେମଶର ଚନ୍ଦ୍ରାବଳୀ ଗଦା
ତ୍ରୈଲୋକ୍ୟ ଅଗ୍ନି ଅଟନ୍ତି ବଚନ ସଂସିଦ୍ଧା ।୧୪୦
ତହୁଂ ଯଶୋବନ୍ତୀ ପୁରେ ଯାଇଂ ଅଗ୍ନି ପ୍ରବେଶ ହୋଇଲେ
ବ୍ରହ୍ମ ଶକତି ବ୍ରହ୍ମ ଶର ପିତାଙ୍କୁ ମାଗିଲେ ।୧୪୧

ଅଗ୍ନିଙ୍କର ବଚନ କେ ମେଣ୍ଟିବ ତ୍ରୈଲୋକ୍ୟେ
ଶକତି ବ୍ରହ୍ମ ଶର ଦିଲେ ଅଗ୍ନିଙ୍କର ବାକ୍ୟେ ।୧୪୨
ସେ ଶହସ୍ର ମାନନ୍ତ ଦେବ ନନ୍ଦିଘୋଷ ରଥରେ ପୂରୋଇ
ବାରସ୍ୱତୀ ପୁରେ ଭେଟିଲେ ସୁରସାଇଁ ।୧୪୩
ଇନ୍ଦ୍ର ବୋଇଲେ ଅଗ୍ନି ଅତିହିଂ ଲୋଭ କଲୁ
ତିନି ଯୁଗ ହୋଇଲା ବ୍ୟାଧି ପାରି କରି ନ ପାରିଲୁ ।୧୪୪
ଅଗ୍ନି ଦେବତା ବୋଇଲେ ଭୋ ପୁରନ୍ଦର ମୋତେ ତୋହୋର
ଦୟା କଲେ
ତୁଟିବ ବ୍ୟାଧି ମୋହୋର ତୋର ବଜ୍ର ଶକତି ଦିଲେ ।୧୪୫
ଇନ୍ଦ୍ରାଶର ଦେବୁ ମୋତେ ଆବର ମେଘାଶର
ପୁଷ୍ପେୟକ ବିମାନ ମୋତେ ଦେବୁ ପୁରନ୍ଦର ।୧୪୬
ଅଗ୍ନିଙ୍କ ବଚନେ ସାନନ୍ଦ ଦେବ ସୁରପତି
ଦିଲେ ଇନ୍ଦ୍ରା ଶହସ୍ର ମେଘା ଶହସ୍ର ବଜ୍ର ଯେ ଶକତି ।୧୪୭
ସେ ଶହସ୍ରମାନ ନନ୍ଦିଘୋଷ ରଥରେଣ ଥୋଇ
ପୁଷ୍ପେୟକ ବିମାନ ଗୋଟି ଦିଲେକ ସୁରସାଇଁ ।୧୪୮
ବିଶ୍ୱେଦେବାଙ୍କୁ ମାଗିଲେ ଅମୋହ ଶକତି
ସାନନ୍ଦେ ପ୍ରାପତ ସେ କଲେକ ବହତି ।୧୪୯
ବିଦ୍ୟାଧର ପୁରୁଷଙ୍କୁ ମାଗିଲେ ନୀଳବାଣ ଭୁଜବାଣ
ତାହା ନେଇ ଥୋଇଲେ ନନ୍ଦିଘୋଷ ରଥେଣ ।୧୫୦
ଯମ ଦେବତାଙ୍କୁ ମାଗିଲେ କାଳଚକ୍ର ଫାଶି
ମୋହୋର ରୋଗ ଆରୋଗ୍ୟ ହୋଇଲେ ବାହୁଡ଼ାଇ ନିଅସି ।୧୫୧
କାଳଚକ୍ର କାଳଫାଶି ଦିଲେ ନାଶକର
ଘେନି ଅଗ୍ନି ଦେବତା ଥୋଇଲେ ନନ୍ଦିଘୋଷ ରଥର ।୧୫୨
ପବନ ଦେବତାଙ୍କୁ ମାଗିଲେ ପବନା ଶର
ଆବର ମାଗିଲେ ଯେ ଅଭୟେ ମୁଦୁଗର ।୧୫୩
ଶୁଣି ମରୁତ ଦେବତାଯେ ଯେ ଦିଲେ ଶହସ୍ର ବେନି
ତଳ ହସ୍ତ କରି ଅଗ୍ନି ଦେବତା ତାହା ଘେନି ।୧୫୪
ବୃହସ୍ପତିଙ୍କି ମାଗିଲେ ଜୀବନ୍ୟାସ ଶର
ତୋଷେଣ ପଣ୍ଡିତେ ଦିଲେ ଅଗ୍ନି ଦେବତାଙ୍କ କର ।୧୫୫
ହିରଣ୍ୟେ ଦେବତାଙ୍କୁ ମାଗିଲେ ନୀଳଚକ୍ର ଗଦା ବଜ୍ରାବଳୀ
ଅଗ୍ନିଙ୍କର ହାଥେ ସେ ଶର ଦିଲେ ସେହୁ ଗଲେ ଚଳି ।୧୫୬
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଯେ ଚାରି ମେଘକୁ ମାଗିଲେ ବଶ୍ୟାନର ।୧୫୭
ବୋଇଲେ ମୋତେ ଦେବ ଦିଅ ନିର୍ଘାତ ବଜ୍ରବାଣ
ବଜ୍ର ଶର ଆବର ଦେବ ଅଗ୍ନି ଶରମାନ ।୧୫୮
ବହନି ଦେବତାଙ୍କୁ ଦିଲେ ମେଘମାନେ
ରଥରେ ଥୋଇଲେ ଯେ ଅଗ୍ନି ତୋଷ ମନେ ।୧୫୯
କୁବେର ଦେବତା ପୁରେ ଯାଇଂ ପ୍ରବେଶ ହୋଇଲେ
ରତ୍ନାବଳୀ ଗଦା ଅଜଗ ଧନୁକୁ ମାଗିଲେ ।୧୬୦
ରତ୍ନ କୁଣ୍ଡଳ ରତ୍ନ ମୁକୁଟ ଶିରକୁ ସୀମନ୍ତିନୀ
କର୍ଣ୍ଣକୁ କର୍ଣ୍ଣାଞ୍ଚଳ ହୃଦକୁ ରତ୍ନପଦକ ମାଗିଲେ ଦେବ ଅଗ୍ନି ।୧୬୧
ବାହୁକୁ ବାହୁଟି ତାଡ ତୋଡର ଜଗଦଳା
ବିଦ ମୁଦି କଙ୍କଣ ଗଳାକୁ ରତ୍ନମାଳା ।୧୬୨
ରତ୍ନ ମେଖଳି ରତ୍ନ ନୂପୁର ରତ୍ନ ଯୋଗାଡ଼ମାନ
ଅଗ୍ନି ଦେବତାଙ୍କୁ କୁବେର ଦିଲେ ତୋଷମନ ।୧୬୩
ଈଶ୍ୱର ଦେବତାଙ୍କୁ ମାଗିଲେ ଯେ ଶୂଳଶକ୍ତି ଶର
ପଶୁପତ୍ର ଅନଙ୍ଗ ଶର ଖଟ୍ୱାଙ୍ଗ ପ୍ରଶୁଧର ।୧୬୪
ପିନାକୀ ଶାରଙ୍ଗ ଯେ ଦୁତୀୟବଳ ଧନୁ
ମାଗିଲେ ଅଗ୍ନି ଦେବତାଯେ ଦିଲେ ପଞ୍ଚୁମନୁ ।୧୬୫
ଯାଇଂଣ ବରୁଣ ଦେବତା ପୁରେଣ ପଶିଲେ
ଶ୍ୱେତ ଶଙ୍ଖ ଗୋକ୍ଷୀର କାମପାଳ ଚାରି ଅଶ୍ୱନ୍ତ ମାଗିଲେ ।୧୬୬
ଜଳଧର ଚକ୍ର ଯେ ଆବର ଜଳ ଫାଶି
ଆରୋଗ୍ୟ ହୋଇଲେ ବାହୁଡ଼ାଇ ଦିଅସି ।୧୬୭
ଅଗ୍ନି ଦେବତାଙ୍କ ଶରୀର ଆରୋଗ୍ୟ ନିମନ୍ତେ
ଶହସ୍ର ଦେଇ କଳପି ଅଶ୍ୱ ସମର୍ପିଲେ ଜଳନାଥେ ।୧୬୮
ଶହସ୍ର ଭେଦ ନୋହଇ ଯେବଣ ଅଶ୍ୱଙ୍କର କାୟେ
କାମରୂପୀ ଅଟନ୍ତି ଯେ ସେହି ଚାରି ହୟେ ।୧୬୯
ନିମିଷେକେ ଗମି ପାରନ୍ତି ସମସ୍ତ ଭୁବନ
ପ୍ରଳୟ କାଳେ ସେ ଯେ ନୁହନ୍ତି ନିଧନ ।୧୭୦
ଯେ ପୃଥ୍ୱୀ ଯେତେବେଳେ ପ୍ରଳୟ ହୋଇଯାଇଂ
ତେବେ ସେ ଅଶ୍ୱଙ୍କୁ ରାତ୍ର ଦିବସେକ ହୋଅଇ ।୧୭୧
ବରୁଣଙ୍କୁ ମାଗି ତା ଆଣିଲେ ବଶ୍ୟାନରେ
ଚାରି ଅଶ୍ୱନ୍ତ ନେଇ ଯୋଚିଲେ ନନ୍ଦିଘୋଷ ରଥରେ ।୧୭୨
ରତ୍ନାକର ଭୁବନୁଂ ଯେ ବାହାର ହୋଇଲେ
ହେମବନ୍ତ ରାଜାଙ୍କୁ ଯେ ପର୍ବତା ଶହସ୍ର ମାଗିଲେ ।୧୭୩
ଅଗ୍ନି ଦେବତାଙ୍କର ଶରୀର ଆରୋଗ୍ୟ ନିମନ୍ତେ
ମାଗିଲାକୁ ଦେବତାଯେ ଦିଲେ ତୋଷଚିତ୍ତେ ।୧୭୪
ଶ୍ରୀ ଦୁର୍ଗାଙ୍କୁ ମାଗିଲେ ଯେ ଅଭେଦ ବିଭୂତି
ଯେଉଂଣ ବିଭୂତି ଲାଗିଲେ ଶହସ୍ରମାନ ନ ଭେଦନ୍ତି ।୧୭୫

ଆର୍ଦ୍ରାବଳୀ ଧନୁ ଯେ କୁଣ୍ଡଳୀ ଚକ୍ର ଶର
ସ୍ତମ୍ଭନ ମୋହନ ବିଦ୍ୟା ଦିଲେ ବାମ କର ।୧୧୭୬
ନନ୍ଦିଘୋଷ ରଥେ ସମସ୍ତ ଶହସ୍ର ଘେନି
ଶିବ ପର୍ବତର ଉପରେ ଭେଟିଲେ ଫାଲଗୁନି ।୧୧୭୭
ସମସ୍ତ ଶହସ୍ରମାନ ଆଣିଲୁ ହୋ ପାଥ
ଯେ ସମସ୍ତ ଶହସ୍ରମାନ ତୋତେ ହୋଉ ଯେ ପ୍ରାପତ ।୧୧୭୮
ହରଷ ବଚନେ ବୋଇଲେ ବୀର ପାଥ
ଅଗ୍ନି ଅରଜୁନ ବେନି ଆରୋହିଲେ ନନ୍ଦିଘୋଷ ରଥ ।୧୧୭୯
ଅଗ୍ନି ଦେବତା ସାରଥୀ ଅର୍ଜୁନ ହେଲେ ରଥୀ
ଖାଣ୍ଡବ ବନ ସନ୍ନିଧେ ଯାଇଂ ବିଜୟେ ତତତି ।୧୧୮୦
ପାଦୁକା ଗଙ୍ଗା ବୋଲି ଯେକ ନଦୀ ଗୋଟି
ଖାଣ୍ଡବ ବନ ବେଢି ସେ ମେଖଳି ଧାର ଫୁଟି ।୧୧୮୧
ସେ ନଦୀ ଗୋଟି ଯେ ଖଣା ଖାଣ୍ଡବ ବନକୁ
ଅଶୀ ସାଗର କୁମ୍ଭ ବୁଡ଼ଇ ସେ ପାଣି ଦେବାକୁ ।୧୧୮୨
ସୁବର୍ଣ୍ଣ ପାଚେରୀ ଗୋଟି ଚଉବିଂଶ ଯୋଜନା ଉଚ୍ଛର୍ଗ
କମଳ ଶିଳାମାନଙ୍କ ଉପରେ ଅଛି ସ୍ୱର୍ଗ ।୧୧୮୩
ପାଚେରୀ ଚାରିଦ୍ୱାରେ ଯେ ଚାରୋଟି ଜଗତୀ
ଶତେ ତାଳ ଉଚ୍ଛର୍ଗ ଯେ ଚାରି ଯୋଜନ ପ୍ରତି ।୧୧୮୪
ସୁବର୍ଣ୍ଣର କଳସ ବସଇ ତହିଂର ଉପରେ
ଝଲକନ୍ତି ମୁକୁତା ରତ୍ନମାନ ଯେ ତହିଂରେ ।୧୧୮୫
ସହସ୍ରେକ ନବଶତ ଯୋଜନ ଖାଣ୍ଡବ ବନ ତୋଟା
ଚାରି ଚାରି କାଠି ବିସ୍ତାର ଯେକଇ ବୃକ୍ଷ ଗୋଟା ।୧୧୮୬
ଅଶୀ ମର୍ଭୁତ ଯେ ତୋଟାଳ ଖଟନ୍ତି
ବୃକ୍ଷକେ ଜଣେ ଜଣେ ପାଣି ଦେଉଛନ୍ତି ।୧୧୮୭
ଅର୍ଜୁନଙ୍କୁ ଘେନି ବଶ୍ୟାନର ବହତି
ରଥ ଗୁହାଇଲେ ଉତ୍ତର ଦ୍ୱାର ଜଗତୀ ।୧୧୮୮
ଦେଖିଲେ ବୃକ୍ଷଙ୍କର ମୂଳକୁ ଦୃଷ୍ଟି କରି
ଚାରି ଚାରି ଦଣ୍ଡ ବୃକ୍ଷଙ୍କ ଚଉଂରି ।୧୧୮୯
ସୁବର୍ଣ୍ଣର ବନ୍ଧାଇଲା ଅଛି ଚଉକତି
ପୁଷ୍ପଙ୍କର ତେଜରେ ତହିଂ ନାହିଂ ଦିବାରାତି ।୧୧୯୦
ଅନୁବ୍ରତେ ବହଇ ମଳୟ ସମୀର
ମଉଷଧିଙ୍କର ତେଜ ଲାଗି ଶତେ ଯୋଜନ ଜୀବେ ଅମର ।୧୧୯୧
ପୁଷ୍ପେ ବିକାଶନ୍ତି କନକ ପୁଷ୍ପ ପ୍ରାୟେ
ଜୀବଙ୍କର ଶରୀର ଦିଶଇ ରସାଣିଲା ସୁବର୍ଣ୍ଣ ପରାୟେ ।୧୧୯୨

ଯେସନେକ ମହିମା ସେ ଖାଣ୍ଡବ ବନ ତୋଟା
ଶତେ ଶତେ ଯୋଜନ ଯେକା ବୃକ୍ଷ ଗୋଟା ।୧୧୯୩
ବିଚାରଇ ଫାଲଗୁନି ଆପଣା ହୃଦଗତେ
ଯେ ଆକାଶର ସମ୍ବଧି ମୁଂ ଧଂସିବି କେମନ୍ତେ ।୧୧୯୪
କରପତ୍ର ଯୋଡିଣ ଯେ ବୋଲଇ ଫାଲଗୁନି
କେବଣ ମଉଷଧିରେ ତୁଟିବ ତୁମ୍ଭର ମନ୍ଦାଅଗ୍ନି ।୧୧୯୫
ଚିହ୍ନାଇ ଦିଅ ମୋତେ ଆଣଇଂ ମୁହିଂ ତାହା କାଟି
ଭକ୍ଷିଣ ଆରୋଗ୍ୟ ହୋଉ ତୁମ୍ଭର ଶରୀର ଗୋଟି ।୧୧୯୬
ଅଗ୍ନି ବୋଇଲେ ତୁ ସଙ୍କଳ୍ପ କଲୁ ଯେତେବେଳେ
ତୋଟାଯାକ ମାଗିଲି ଯେ ତହିଂକି ସାକ୍ଷୀ ଦିଗପାଳେ ।୧୧୯୭
ବୃକ୍ଷନ୍ତ ଚଢ଼େଇ କୀଟ ପତଙ୍ଗ ଆଦି କରି
ସବୁନ୍ତି ଭକ୍ଷିବି ମୁହିଂ ମୋତେ ଥିବୁ ତୁ ଆବୁରି ।୧୧୯୮
ତେବେ ସେ ତ୍ରିପୁତି ମୁହିଂ ହୋଇବି ଫାଲଗୁନି
ଉଣେଇଶ-ଶତ ଯୋଜନ ମୁଂ ଭକ୍ଷିବି ଖାଣ୍ଡବ ବନ ଘେନି ।୧୧୯୯
ସମସ୍ତ ଭକ୍ଷିବି ମୁହିଂ ହୋଇବୁ ତୁ ସଖା
ତୋହୋର ବଚନ ପାଥ ପାଷାଣର ରେଖା ।୧୨୦୦
ତୁ ହୋ ଭାରୋଇ ମଲ୍ଲ ମୋତେ ଦିଲୁ ସତ୍ୟ କରି
ମୁହିଂ ତ୍ରିପୁତି ହୋଇବି ତୋହୋରେଣ କରି ।୧୨୦୧
ଅର୍ଜୁନ ବୋଇଲେ ହୋ ଭକ୍ଷ ଯା ବଶ୍ୟାନର
ଅଗ୍ନି ବୋଇଲେ ବସା ମୋତେ ତୋହୋର ଧନୁଶର ।୧୨୦୨
ନାରାଜ କରି ମୋତେ ପେଷସି ଫାଲଗୁନି
ମୁହିଂ ଦହନ କରିବି ସିନା ତୋହୋର ତେଜ ଘେନି ।୧୨୦୩
ଅର୍ଜୁନ ନାରାଜ କରି ବସାଇଲା ଧନୁରେ
ଅଗ୍ନି ଶହସ୍ର ହୋଇ ବସିଲେ ବଶ୍ୟାନରେ ।୧୨୦୪
ଅଗ୍ନି ବୋଇଲେ ବାବୁରେ ଯାଉଅଛି ମୁହିଂ
ମେଘ ବରଷନ୍ତି କି ବାସବ ଆଗ୍ୟାଂ ପାଇ ।୧୨୦୫
ଆନକୁ ଭୟ ମୋର ନାହିଂ କଦାଚିତେ
ଜଳହିଂ ସେ ଦର୍ପ ମୋହୋର ଗଞ୍ଜଇ ତୁରିତେ ।୧୨୦୬
ତାହାତହୁଂ ଦୃଢ଼ କରି ଥିବୁଟି ମୋତେ ରଖି
ସୁଖେ ମଉଷଧିମାନ ଯେହ୍ନେ ପାରଇ ମୁଂ ଭକ୍ଷି ।୧୨୦୭
ପକ୍ଷୀଜନ୍ତୁମାନେ ଯେହ୍ନେ ଉଡି ନ ଯାନ୍ତି ଗଗନ ମାର୍ଗେ
ତାହାଙ୍କୁ ନାରାଜମାନ ବିନ୍ଧୁଥିବୁଟି ବେଗେଂ ବେଗେଂ ।୧୨୦୮
କୀଟ ପତଙ୍ଗ ଯେ ପିମ୍ପୁଡି ଆଦି କରି
କେହି ଗୋଟିଯେ ଯେଥୁଂ ନ ଯିବେଟି ଉବୁରି ।୧୨୦୯

ତେବେ ସେ ଦିଲା ଧର୍ମ ହୋଇବଟି ତୋହୋର
ତିନି ଯୁଗର ବ୍ୟାଧି ତୁଟିବ ମୋହୋର ।୨୧୦
ଯେତେ ଦୃଢ଼ କରାଇ ଅର୍ଜୁନକୁ ଦେବ ବଶ୍ୟାନର
ଜଗତୀରେ ଥାଇ ଅର୍ଜୁନ ବିନ୍ଧଇ ରୋଷଭର ।୨୧୧
ତୋଟାରେଣ ପଡି ଅଗ୍ନି ଦେବତାୟେ କ୍ଷେପି
ବ୍ୟାପିଲେ କାଳାନଳ ଅଭୟେ କାମରୂପୀ ।୨୧୨
ଅନେକ କାଳର ଶୁଖିଲା ପତ୍ର ଅଛି ତହିଂ ପଡ଼ି
ଲାଗିଲା ଅନଳ ଦେବତା ମହାତେଜ ମୂର୍ତ୍ତି ଧରି ।୨୧୩
ମହାକାଳ ଅନଳ ତହିଂରେ ବିକାଶିଲା ତେଜମୂର୍ତ୍ତି
ତୋଟାଳମାନେ ମାଡି ପଡ଼ିଲେକ ଝାଟି ।୨୧୪
ବାମ୍ଫୀରୁ ପାଣି ଆଣି ପୂରୋଇଲେ ରତ୍ନ ଘଟେ
ଅଗ୍ନିର ଉପରକୁ ଫିଙ୍ଗି ଦିଅନ୍ତି ବଳିଷ୍ଟେ ।୨୧୫
ଅଗ୍ନି ଡାକ ଦିଲେ ମୋତେ ରଖ ରଖ ହୋ ସର୍ବସାଚୀ
ତୋହୋର ଓପ୍ରୋଧ କଲେ ଆନ କେହୁ ପାରଇ ରଖି ।୨୧୬
ଦଶ ମର୍ଭୁତେ ଯେ ଅଛନ୍ତି ତୋଟାଳେ
ଜଣକେ ଦଶ ନାରାଜ ବିନ୍ଧିଲେ ବାସବର ବାଳେ ।୨୧୭
ପଡ଼ିଲା ନାରାଜ ଧାଡିକାରେ ମନଭେଦୀ
ତୋଟାଳମାନଙ୍କ ଭୁଜ ପକାଇଲା ଛେଦି ।୨୧୮
ହାର କୁଣ୍ଡଳମାନ ବିରାଜଇ ସର୍ବ କାୟେ
ଦିଶିଲେ ରକ୍ଷପାଳେ ମୁଣ୍ଡା ବୃକ୍ଷ ପ୍ରାୟେ ।୨୧୯
ଅଗ୍ନି ଦେବତାୟେ ପଡ଼ିଲେ ବେଗେ ମାଡି
ପଳାଇ ନ ପାରିଲେ ସମସ୍ତେ ମଲେ ପୋଡି ।୨୨୦
ଯେ ଅବା ପଳାଇ ଲୋଡନ୍ତି ନିସତେ
ଅଗ୍ନିରେ ପଡ଼ଇ ସେ ପାଥର ଶରଘାତେ ।୨୨୧
ଦଶ ମର୍ଭୁତ ତହିଂ ଯେ ଥିଲେ ତୋଟାଳମାନ
ଜଣେ ହେଂ କେହି ନ ଉବୁରି ହୋଇଲେ ଦହନ ।୨୨୨
ତୋଟାର ଧୂମ ଯେ ଉଠିଲା ଗଗନେ
ସୁଗନ୍ଧ ଆମୋଦଇ ଆକାଶ ଭୁବନେ ।୨୨୩
ନାରଦେ ବିଜେ କଲେ ତୋଟାର ସନ୍ନିଧାନେ
ଦେଖିଲେ ଜଗତୀରେ ବିଜେ ପାଣ୍ଡବ ଅରଜୁନେ ।୨୨୪
ନାରଦଙ୍କୁ ଦେଖି ପାଥ ଆସ୍ତାନ ତେଜି ଉଠି
ପ୍ରଣପତ୍ୟ ହୋଇ ସୁତିଲା ଭୂମିରେଣ ଲୋଟି ।୨୨୫
ନାରଦ ବୋଇଲେ ତୁ ଯେ ବାସବର ବାଳ
ଆକାଶର ସମ୍ପଦ କରୁଛୁ ନାରଖାର ।୨୨୬
ଇନ୍ଦ୍ର ଦେବତାର ଯେ ଅଟଇ ଖାଣ୍ଡବ ନାମେ ବନ
ଅନେକ ମଉଷଧି ଅଛି ଯେ ହୋଉଛି ଦହନ ।୨୨୭
ଅର୍ଜୁନ ବୋଇଲେ ମୁଂ ଅଟଇ କିସ ଦୋଷୀ
ଦିଗପାଳ ହୋଇଂ ଅଗ୍ନି ଦେବତାୟେ ନାଶି ।୨୨୮
ଯେତେକ ବଚନ ଶୁଣି ଚଳିଲେ କଳହ ପ୍ରିୟା
ଅମର ଭୁବନେ ଯାଇଂ ଭେଟିଲେ ସୁରନାହା ।୨୨୯
ତ୍ରିଦଶ୍ୟ ଦେବତାୟେ ବସିଣ ଅଛନ୍ତି ଆସ୍ତାନେ
ଅମର ବିଳାସୁଣୀ ଖଟନ୍ତି ଭରହରଷ ମନେ ।୨୩୦
ଯେମନ୍ତର ସମୟେ ଆମୋଦଇ ଗନ୍ଧ
ଆସ୍ତାନେ ଥାଇଂଣ ଯେ ବୋଲଇ ଦେବ ଇନ୍ଦ୍ର ।୨୩୧
ଅପୂର୍ବ ବାସ ତ ଆମୋଦଇ ଆକାଶେ
ଶରୀର ତ ପଲ୍ଲବିତ ହୋଉଛୁ ଦିବ୍ୟ ବାସେ ।୨୩୨
ନାରଦେ ବୋଇଲେ ହୋ ଶୁଣିମା ସୁନାଶୀର
ଖାଣ୍ଡବ ବନ ଦହନ ଗଲାକ ତୋହୋର ।୨୩୩
ଅଗ୍ନି ଦେବତା ଦହନ କରୁଅଛି ତୋହୋର ଯେ ତୋଟା
ଶୁଣିଣ କୋପାନଳ ହୋଇଲେ ସୁରଶ୍ରେଷ୍ଠା ।୨୩୪
ଆସ୍ତାନୁଂ ତେଜଂ ଯେ ପଡ଼ିଲେ ସୁରରାଜ
ଧାଅଂରେ ନନ୍ଦନେ ମୋର ଐରାବତ ବେଗେ ସାଜ ।୨୩୫
ବିଦ୍ୟାଧର ରାଇ ବୋଇଲେ ସୁରଦେବା
ଧାଅଂରେ ସମସ୍ତେ ବହନ ଅଗ୍ନି ଲିଭା ।୨୩୬
ଆରେ ତୋଟାଳେ ଯେ ଅଛନ୍ତି ଦଶ ମର୍ଭୂତେ
ତାହାଙ୍କର ଥାଆନ୍ତେ କିମ୍ପେ ଅଗ୍ନି ଅପ୍ରମିତେ ।୨୩୭
ବାବୁ ଧାଅଂରେ ଅଙ୍ଗାରପନଙ୍ଗ ଜୟସେନ ଚିତ୍ରସେନ
ସେହି ଅଗ୍ନିରେ ବାନ୍ଧି ପକାଅ ତୋଟାଳମାନ ।୨୩୮
ବାସବ ଦେବତା ଆଗ୍ୟାଂ ପାଇଣ କୁମରେ
ଧାମନ୍ତି ବାହନ ଚଢ଼ି ସମସ୍ତ ବିଦ୍ୟାଧରେ ।୨୩୯
ଅନେକ ଶହସ୍ର ଧରିଅଛନ୍ତି କରଗତେ
ଚଉଷଠି କୋଟି ଯେ ବାସବର ସୁତେ ।୨୪୦
ଗନ୍ଧର୍ବ ବିଦ୍ୟାଧରନ୍ତ କି ଅବା ପ୍ରଶଂସି
କାମଦେବର ସାଦୃଶେ ତେଜ ପରକାଶି ।୨୪୧
ଅଷ୍ଟରତ୍ନ ଅଳଙ୍କାର ବିରାଜଇ କାୟେ
ଦିଶନ୍ତି ବିଦ୍ୟାଧରେ ଅମରାଧିନାଥ ପ୍ରାୟେ ।୨୪୨
ଅଶୀପଦ୍ମ ସେନା ଘେନିଣ କୁମାର ଚିତ୍ରସେନ
ଚାରି ଦିଗେ ଧାଇଂଲେ ଦିଗପାଳ ପୁତ୍ରମାନ ।୨୪୩

ମଉଷଧି ଆପ୍ୟାନେ ଅନଳ ତେଜ ରେଖା
ବ୍ରହ୍ମାଣ୍ଡେ ବ୍ୟାପିଲା ବହ୍ନିର ତେଜ ଶିଖା ।୨୪୪
ଗଙ୍ଗାକୂଳ ଦେଇଣ ଯେ ଧାଇଁଲେ କୁମରେ
ଦକ୍ଷିଣ ଭାଗ କତି ପଶିଲେ ତୋଟାରେ ।୨୪୫
ଗଙ୍ଗାରୁ ପାଣି ପୂରୋଇଂ ରତ୍ନ ଘଟେ
ପକାନ୍ତି ଅଗ୍ନିରେ ଯେ ମହା ମହା ବଳିଷ୍ଟେ ।୨୪୬
ରଖ ହୋ ଅର୍ଜୁନ ବୋଲି ଡାକିଲେ ବଶ୍ୟାନରେ
ଅର୍ଜୁନ ଶୁଣିଲା ତା ଥାଇଂ ଜଗତୀ ଉପରେ ।୨୪୭
ପବନା ଶହସ୍ରେକ ପେଷିଲା ଫାଲଗୁନି
ଉଡିଣ ବିଦ୍ୟାଧରେ ପଡ଼ିଲେ ଯୋଜନ ତିନି ।୨୪୮
ବାସବ ଦେବତାଙ୍କୁ ନାରଦେ କହିଲେ
ପୁତ୍ରମାନେ ତୋହୋର ସମସ୍ତେ ନାଶ ଗଲେ ।୨୪୯
ସୁଖେଣ ଅଗ୍ନି ଦହନ କରଇ ଖାଣ୍ଡବ ଯେ ବନ
ଚାରି ମେଘନ୍ତ ରାଇ ଆଗ୍ୟାଂ ଦିଲେକ ମଘବାନ ।୨୫୦
ଆବର୍ତ୍ତେକ ସଂବର୍ତ୍ତେକ ଦ୍ରୋଣ ଯେ ପୁଷ୍କର
ଚାରି ମେଘେ ଯାଇଂ ବରଷିବ ଖାଣ୍ଡବ ବନ ତୋଟାର ।୨୫୧
ଆଗ୍ୟାଂ ପାଇଣ ମେଘମାନେ ଉଠିଲେକ ଗଳଗାଜି
ସମୁଦ୍ରୁଂ ପାଣି ତୋଳି ଆଣିଲେ ଦଣ୍ଡ ସାଜି ।୨୫୨
ଜମ୍ବୁପଟଳ ପ୍ରାଯେକ ଉଠିଲେ ଚଉକତି
ଗର୍ଜନ ନାଦ କରି ମେଘେ ବରଷନ୍ତି ।୨୫୩
ଅଗ୍ନି ଡାକିଦିଲେ ରଖ ହୋ ସର୍ବସାଚୀ
ମେଘେ ବରଷିଲେ ମୋହୋର କାର୍ଯ୍ୟ ନୋହିଲାକ କିଛି ।୨୫୪
ବଶ୍ୟାନରଙ୍କର ଯେସନେକ ବଚନ ଶୁଣିଣ ବୀର ଫାଲଗୁନି
କୋପେଣ ବୀର ପେଷିଲା ମନଭେଦୀ ନାରାଜ ଘେନି ।୨୫୫
ଅବିଚ୍ଛନେ ନାରାଜ ବିନ୍ଧିଲା ମହାବୀର।
ଖାଣ୍ଡବ ବନଯାକ ସବୁ କଲା ଶର ପୀଡା ।୨୫୬
ଉଣେଇଶ ସହସ୍ର ଯୋଜନ ସେ ଖାଣ୍ଡବ ନାମେ ବନ
ଶରେ ଶରେ ପୀଡା କରି ଛାଇଲା ଅରଜୁନ ।୨୫୭
ବେନି ତାଳ ବହଳ ଯେ ହୋଇଲା ଶରପୀଡ଼ା
ବରଷନ୍ତି ମେଘମାନେ ନ ଗଳନ୍ତି ଜଳଧାରା ।୨୫୮
ଉଣେଇଶ ସହସ୍ର ଯୋଜନ ଅଟଇ ଯେଉଂଣ ବନ
ବରଷନ୍ତି ମେଘମାନେ କରନ୍ତି ଗରଜନ ।୨୫୯
ଯେକାର୍ଣ୍ଣବ ହୋଇ ତହିଂ ବ୍ୟାପିଲେକ ସ୍ୱର୍ଗ
ପଞ୍ଚାଶତ ଯୋଜନ ଯେ ଶରପୀଡ଼ାର ଉଚ୍ଛର୍ଗ ।୨୬୦

ଅଗ୍ନିର ତେଜ ଲାଗିଣ ସମସ୍ତ ବିନାଶଇ
ତୋଟାର ପାଚେରୀ ତହିଂକି ହୋଇଛି ଗଡ଼ଖାଇ ।୨୬୧
ଯିବାକୁ ଜୀବଜନ୍ତୁ ତହୁଂ ନୁହନ୍ତି ବାହାର
ଚଉକତି ବିରୋଧ କଲା ପଣ୍ଡୁର କୁମର ।୨୬୨
ବ୍ୟାଘ୍ର ଭଲ୍ଲୁକ ହାଥୀ ଘୋଡ଼ା ମଇଂଷି ଗଣ୍ଡା ଶାର୍ଦ୍ଦୋଳ
ପଳାଇ ନୁଆରିଲେ ଯେ ଜନ୍ତୁଯେ ଭକ୍ଷିଲା ଅନଳ ।୨୬୩
ମୃଗ ହରିଣ ବାହୁଟିଆ ଆଦି କରି
କୋକି ଭଲ୍ଲୁକ ଶଯେମ୍ବର ବଳିଆ ତିତିରୀ ।୨୬୪
ବରେହା ଓଟ ଖୁରାଣ୍ଟି ଆବର ଖରିଆ
ଜମ୍ବୁକୀ ଠେକୁଆ ଯେ କଟାଶ ଶାଳେହା ।୨୬୫
ଅନେକ ଶଶାମାନ ପାତିମର୍କଟ କୁମ୍ଭାଟୁଆ ମାର୍ଜ୍ଜାରୀ
ସୁରୁସୁରିଆ ଗୋଧି ମକୁର କାକ ବକ ଆଦି କରି ।୨୬୬
ସର୍ପ ମଣ୍ଡୁକୀ ମୂଷିକ ଯେ କାଠପୋକ
ପକ୍ଷୀଜନ୍ତୁମାନେ ତହିଂ ଅଛନ୍ତି ଅନେକ ।୨୬୭
ଶାରୀ ଶୁଆ କଙ୍କୀ ନେପାଳୀ ମୂଷା ପାଣିକୁଆ
କୁମ୍ଭାରିଆ ପୁଣ ବଣି କୋଠାର କାଠୋରିଆ ।୨୬୮
ବରକୋଳିଆ ଅନ୍ଧାରୁଆ ଦଳଫିମ୍ପା
ବଶ୍ୟାନର ସମସ୍ତ ଖାଉଛନ୍ତି ଯେକା ।୨୬୯
କାଦୁଆ ଚକୁଆ ଚକୋଇ ଚଢ଼େଇ ଝୀଙ୍କ ଯେ ମୟୂର
ବଡ଼ ଝୀଙ୍କ କେଶର-ପାଣିଆ ସାତଭାଇଆ କଙ୍କ ।୨୭୦
କୁକୁଟ ହରିହରିଆଳୀ ଆବର ପ୍ରଶ୍ନତୂଳା
କେଶିଲା ଆମ୍ଭଲା ଗୁଞ୍ଜାର ବାଦୁରୀ ଅମଳା ।୨୭୧
ଅୟେଂଳା-ଲାଡି ସମୁଦ୍ର-ନାଭ-ଦିଆ
ତେଜି ଜଳତରଙ୍ଗ ହେମକଣ୍ଠି ହସରାଳି ଗୋବରିଆ ।୨୭୨
କଟ୍ରକଟ୍ରା ସୁତରୂଣା ରାଜଝୀଙ୍କ
ଗୁଣ୍ଡୁରି ଆଦି ଓଇଭରା କାଠଗୁମ୍ପା କରତ ପୋକ ।୨୭୩
ଝଣ୍ଡା ଡାହୁକ ଅଥାରିଆ ଦଦଯିଆ ସୋରଡପାରିଆ
ବକ ଧୋଇୟା କୋଇୟା କୋଇଲି ଘାସୁରିଆ ।୨୭୪
ପାଂକୋରୀ ପାରେୟା ହଂସ କରକଟ୍ରୀ ତ୍ରିକୂଟ ପାତି ଶୁଆ
ତାଳଚେରୀ ଶିକୋର ତେରେଣ୍ଡି କୋଳେୟା ।୨୭୫
କପୋତ-କପୋତୀ ଯେ କଳା ବଢ଼ିଶା
ଗୁଣ୍ଡୁରି-ଚିତି ତାଳକୋଳିଆ ଅୟେଂଳା ଲେଣ୍ଡି ବାଲୁଆ ।୨୭୬
ଭାଲୁ କରଣ୍ଡ-ତୁଣ୍ଡା ତାମ୍ରଚୂଡ଼ ଚିମୁଣିଆ
ପଦ୍ମ-କ୍ରୋଟକାରୀ ବଳିୟା କଜଳପାତି ସୁଇଟ-ଜଟିୟା ।୨୭୭

ସାଙ୍ଗି ସାରଙ୍ଗୀ ଢଟିଆ ଗୋଖୁଣ୍ଡିଆ କାମକା
କାମପାଳ ଫଳାନିଶା ପକ୍ଷୀଆ ଘୁରିୟା ।୧୨୭୮
ଟେଣ୍ଟୁଆ-ଟେଣ୍ଟେଇ ବାୟା ଚଟକିୟା କାର୍ତ୍ତିକୀ
ପଙ୍କଖାଇ ଚଢ଼େଇ ଗଙ୍ଗାଇ ଡୁବାଇ ଆଦି ଯେତେ
ପଶୁ ପକ୍ଷୀ ।୧୨୭୯
ଗରୁଡ଼ପକ୍ଷୀ ଶଶାପକ୍ଷୀ ଗଜ ବିହଙ୍ଗମ ଆଦି କରି
ଖାଣ୍ଡବ ବନ ଦହନେ କେହି ନ ଗଲେ ଉବୁରି ।୧୨୮୦
ଦ୍ୱାର ବାଟେ ଯାଉଅଛି ପଛୀ ଗୋଟିଏ
ଅଗ୍ନି ଡାକ ଦିଅନ୍ତି ବାବୁ ଗଲାଟି ଧନୁର୍ଜୟେ ।୧୨୮୧
ସେ ପଛୀକି ନାରାଚ ବିନ୍ଧଇ ଫାଲଗୁନି
ନେଇ ପକାଇଲେ କାଳାନଳ ଅଗ୍ନି ।୧୨୮୨
ଅବିକ୍ଷଣେ ନାରାଚ ଯେ ବିନ୍ଧଇ ସର୍ବସାଚୀ
ଅଗ୍ନି ଦେବତାଙ୍କର ଯେ ତ୍ରିପ୍ତି ମନବାଞ୍ଛି ।୧୨୮୩
ରାତ୍ର ଦିବସେ ବରଷିଲେ ମେଘମାନେ
ସମୋଦ୍ର ପ୍ରାୟେକ ହୋଇଲା ଜଳ-ଉଦ୍ୟାନେ ।୧୨୮୪
ନାନା ବୃକ୍ଷେ ଦହନ ହୋଉଛନ୍ତି ସମସ୍ତ
ବାହୁଡ଼ି ଯେ ମେଘମାନ କହିଲେ ଇନ୍ଦ୍ରଙ୍କ ଅଗ୍ରତ ।୧୨୮୫
ସ୍ୱାମୀ ଅଗ୍ନି ଦେବତାଙ୍କର ଦୋଷ ନାହିଁ କିଛି
ବୀରବର ଗୋଟିଏ ଖାଣ୍ଡବ ବନ ଦହନ କରୁଅଛି ।୧୨୮୬
ଆମ୍ଭେ ବୃଷ୍ଟି ଗାଢ଼େଂ କଲୁଂ ଯେତେବେଳେ
ତୋଟାଯାକ ଶରପୀଡ଼ା କଲା ସେ ଗଗନ ମଣ୍ଡଳେ ।୧୨୮୭
ଦେବେ ଦାନବେ ତାହାର ଦେବ ଅସଂଖ୍ୟ ମହିମା
କି ସେ ନାରାୟଣ ସଦାଶିବ ବ୍ରହ୍ମା ।୧୨୮୮
ଇନ୍ଦ୍ର ଦେବତାୟେ ବୋଇଲେ କାହାର ମୁଂ ନୁହଇ ବଇରି
ଯେହି ଖାଣ୍ଡବ ବନ ତ ସବୁଙ୍କରି ହିତକାରୀ ।୧୨୮୯
ଯେତେକ ବିଚାରିଣ ଯେ ଦେବ ପୁରୁହୂତେ
ଶ୍ରୀଭୁଜେ ଅଜଙ୍ଗ ଧନୁ ଧରି ବିଜୟେ ଐରାବତେ ।୧୨୯୦
ଅମରଗଣମାନ ଘେନିଣ ସସ୍ତ୍ରଯୋନି
ଅବଶ୍ୟ ମାରିବି ଯଦି ହୁଅନ୍ତି ଦିଗପାଳ ତିନି ।୧୨୯୧
ଅନେକ ମଉଷଧି ଅଗ୍ନି ଦେବତା ଆପ୍ୟାନ ଯେ କରି
ମନ୍ଦାଅଗ୍ନି ଲୁଦୁବୁଦୁ ବ୍ୟାଧି ଭଲ ହୋଇଲା ତାହାରି ।୧୨୯୨
ଅବିଚ୍ଛିନ୍ନେ ରୂପ ଯେ ସହସ୍ରଧାର ରେଖା
ତିନି ଲକ୍ଷ ଯୋଜନକୁ ବିକାଶଇ ଅଗ୍ନିଙ୍କର ଶିଖା ।୧୨୯୩
ଶରପୀଡ଼ା ଗୋଟା ଯେ ଆକାଶେ ଲାଗିଥିଲା
ମହାଅନଳ ଜ୍ୱାଳାରେ ଦହିଯ୍ୟ ହୋଇଲା ।୧୨୯୪
ତିନି ଲକ୍ଷ ଯୋଜନ ପରିଯନ୍ତେ ମହାଅନଳ ତେଜ
ସନ୍ନିଧକୁ ଯାଇ ନୁଆରିଲେ ଦେବରାଜ ।୧୨୯୫
ଅର୍ଜୁନ ବିଜେ କରିଅଛନ୍ତି ଦକ୍ଷିଣ ଜଗତୀ
ଆକାଶେ ଥାଇଂଣ ତାହା ଦେଖିଲେ ସୁରପତି ।୧୨୯୬
ବାସବର ପୁତ୍ରମାନେ ପବନେ ଉଡୁଥିଲେ
ମଉଷଧି ଗନ୍ଧ ପାଇ ଚେତନା ପାଇଲେ ।୧୨୯୭
ପିତାର ସନ୍ନିଧେ ଯାଇଂ ହୋଇଲେ ପରବେଶ
ସ୍ୱାମୀ ଯେକା ଅର୍ଜୁନ ତୋର ତୋଟା କଲା ନାଶ ।୧୨୯୮
ବାସବ ବୋଇଲେ ହୋ ଜାଣି ତ ନୁଆରିଲି
ଅର୍ଜୁନ ଅବା ନ ଜାଣଇଂ ମୋହୋର ତୋଟା ବୋଲି ।୧୨୯୯
କେତୁ ମହାକେତୁ ପ୍ରଚଣ୍ଡବଳୀ ବୃଦ୍ଧଶ୍ରବା
ଯେ ଚାରିନ୍ତ ରାଇ ଆଗ୍ୟାଂ ଦିଲେ ସୁରଦେବା ।୧୩୦୦
ଆରେ ଆରେ ତୁମ୍ଭେ ଅର୍ଜୁନର ଆଗରେ କହ ଯାଇଂ
ବୋଲିବ ପିତାର ତୋଟା ତୋର ଦହୁଛୁ କିସ ପାଇଂ ।୧୩୦୧
ବାସବର ଆଗ୍ୟାଂୟେ ସେ ବିଦ୍ୟାଧର ଚାରି
ଦକ୍ଷିଣ ଭାଗେ ଯାଇଂ ଅର୍ଜୁନକୁ ପୁଛା କରି ।୧୩୦୨
ବାବୁ ତୁ କିମ୍ପାଇରେ ଦହୁଅଛୁ ଯେ ଖାଣ୍ଡବ ବନ
ଆପଣେ ବିଜୟେ କରିଅଛନ୍ତି ମଘବାନ ।୧୩୦୩
ଅଗ୍ନି ଦେବତା ଅଟନ୍ତି ଯେ ଅଶାନ୍ତି ଅତ୍ରିପୁତି
ତୁ ଆଡ଼େ ହୁଅ ଆମ୍ଭେ ନିବାଉଂ ଅଗ୍ନି ଜ୍ୟୋତି ।୧୩୦୪
ବୋଲଇ ଫାଲଗୁନି ବାହୁଡନ୍ତୁ ପୁରୁହୂତେ
ମୋତେ ଦାନ ମାଗିଲା ଯେ ଅଗ୍ନି ଦଇବତେ ।୧୩୦୫
ଯେଥିର ପାଇଂ ସେ ମୋତେ ନ ବୋଲନ୍ତି ଦେବରାଜ
ନାସ୍ତି କଲେ ଯେଥି ପାଇବେ ବଡ଼ ଲାଜ ।୧୩୦୬
ଯେହା ଶୁଣି ବିଦ୍ୟାଧରେ ବୋଇଲେ ତୁ ଇନ୍ଦ୍ରରେ ବିବାଦୀ
ପୁତ୍ର ହୋଇ ନାଶ କରୁଅଛୁଂ ପିତାର ସମ୍ପଧି ।୧୩୦୭
ଯଦ୍ୟପି କୋପ ତୋତେ କରିବେ ଦେବରାଜ
ଯେହିକ୍ଷଣି ଅର୍ଜୁନ ତୁ ଯେ ହୋଇବୁ ପ୍ରାଣତ୍ୟାଜ ।୧୩୦୮
ଅର୍ଜୁନ ବୋଇଲେ ତୁମ୍ଭେ ବେଲୁଂ ବେଳ କରୁଅଛ ଅଭାବ
ମୋହୋର ଦୋଷ ନାହିଂଟି ତୁମ୍ଭେ ଅଗ୍ନିପାନ ହୋଇବ ।୧୩୦୯
ମୁହିଂ ତୁମ୍ଭନ୍ତ ନ ଚିହ୍ନଇ ତୁମ୍ଭେ ପିତାର ହୁଅ କି କି
ଅଗ୍ନି ଦେବତା ମାଗିଲେ ମୁଂ ତୁମ୍ଭନ୍ତ ନ ପାରଇ ରଖି ।୧୩୧୦
ଶୁଣିଣ କୋପ କଲେ ବାସବ କୁମରେ
ମାନବ ଛାର ହୋଇ ତୁ ଯେତେ ଗର୍ବ କହୁରେ ।୧୩୧୧

କରେଣ ପରିଘ ଶହସ୍ରନ୍ତ କୋପେଣ ବୁଲାଇ
ଅର୍ଜୁନ ଉପରକୁ ପଡ଼ିଲେ ବେଗେ ଧାଇଁ ।୩୧୨
ଦେଖିଣ ହସନ୍ତି ଯେ ପାଣ୍ଡବ ଫାଲଗୁନି
କୋପେଣ ବିନ୍ଧିଲା ଯେ ଲାଘବ ଶସ୍ତ୍ର ଘେନି ।୩୧୩
କାଳାନ୍ତକ ଶର ଯେ ଭେଦିଲେ ଦେହେ ଯାଇଁ
ଚାରି କୁମରେ ବାସବଙ୍କର ପଡ଼ିଲେ ନିମଜ୍ଜାଇ ।୩୧୪
ବାସବ ଅଗ୍ରତେ ଯାଇଁ ନାରଦେ କହିଲେ
ଅର୍ଜୁନ କୋପରେ ତୋହୋର ଚାରି ପୁତ୍ରେ ନାଶ ଗଲେ ।୩୧୫
ଶୁଣିଣ ବିଷାଦ ଯେ ହେଲେ ଦେବ ଆଖଣ୍ଡଳ
ଆଜରେ ପାଣ୍ଡବା ତୋହୋର ପୂରୋଇବି କାଳ ।୩୧୬
ଚମ୍ପାଇ ଚଳାଇଲା ଯେ ଐରାବ୍ରତ ନାଗ
ଅର୍ଜୁନ କତିରେ ଯାଇଁ ପ୍ରବେଶ ଅତି ବେଗ ।୩୧୭
ନନ୍ଦିଘୋଷ ରଥରୁ ଓହ୍ଲାଇ ଧନୁର୍ଜୟେ
ବାସବଙ୍କର ଚରଣେ ଭଗତି ବିନୟେ ।୩୧୮
ବାଞ୍ଛା ପ୍ରାପତ ହୋଉ ସର୍ବ କାର୍ଯ୍ୟ ହୋଉ ସିଦ୍ଧି
ଯାହା ବାଞ୍ଛା କରୁ ପ୍ରାପତ ହୋଉ ବୋଲଇ ଜୟୋଭେଦୀ।୩୧୯
ଇନ୍ଦ୍ର କଲ୍ୟାଣ କଲେ ଅର୍ଜୁନକୁ ବହନ
ବାବୁ କିମ୍ପେ ଦହନ କରୁଛୁ ମୋହୋର ଖାଣ୍ଡବ ବନ ।୩୨୦
ବାବୁ ସତ୍ୟ ଯୁଗେ ବିଷ୍ଣୁ ପାଇଲେ ପ୍ରାଭବ
ଶବରୀ ନାରାୟଣ ହୋଇଲେ ଆଦିଦେବ ।୩୨୧
ଆକାଶଗଙ୍ଗା କୂଳେ ରଞ୍ଚିଲେ ମଧୁବନ
ଯେଥିରେ ରୋପିଲେ ଆଣି ଅପୂର୍ବ ବୃକ୍ଷମାନ ।୩୨୨
ବାବୁ ଯେହାନ୍ତ ଦହନ କରାଉଛୁ କେମନ୍ତେ
ତ୍ରିଦଶ ଦେବତାୟେ କୋପ କରିବେଟି ତୋତେ ।୩୨୩
ଆକାଶଗଙ୍ଗା କୂଳେ ଯେ ଖାଣ୍ଡବ ନାମେ ବନ
ଦେବତାଙ୍କ ତୀର୍ଥ ଯାତ୍ରା ଉଚ୍ଛବ ଯେହୁ ସ୍ଥାନ ।୩୨୪
ଅର୍ଜୁନ ବୋଇଲେ ଦେବ ଶୁଣ ସହସ୍ରାକ୍ଷ
ଅଗ୍ନି ଦେବତା ମୋତେ କରାଇଲେ ଦାନ ବାକ୍ୟ ।୩୨୫
କପଟେ ମାଗିଲେ ମୋତେ ବ୍ରାହ୍ମଣ ରୂପ ଧରି
କିସ ମାଗିବ ବୋଲି ମୁଁ ଜାଣି ସତ୍ୟ କଲି ।୩୨୬
ତଳ ହାଥେ ମାଗିଲେ ମୁଁ ଉପର ହାଥେ ଦାନ ଦିଲି
ଯେମନ୍ତ ବୋଲିଣ ଯେ ସତ୍ୟ ମୁହିଁ କଲି ।୩୨୭
ସତ୍ୟ କରାଇ ମୋତେ ମାଗିଲେ ଖାଣ୍ଡବ ବନ
ମୁହିଁ ନ ଯାଣଇଁ ଯେ ତୁମ୍ଭର ମଧୁବନ ।୩୨୮

କଷ୍ଟି ଦିଜବର ବୋଲି ସତ୍ୟ ମୁହିଁ କଲି
ଅଗ୍ନିଙ୍କର ଚରିତ ମୁହି ଜାଣି ତ ନୁଆରିଲି ।୩୨୯
ବାସବ ବୋଇଲେ ତୁ ଯେବେ ସତ୍ୟ କଲୁ ବାଳ
ଖାଣ୍ଡବ ବନ ତୋତେ ମାଗିଲା ଅନଳ ।୩୩୦
ବାବୁ ବ୍ରାହ୍ମଣ ହୋଇ ଯେ ଅତୀୟ ବଡ଼ ଲୋଭୀ
ଯେ ଯେହାକୁ ଆହାର ଦିଅଇ ସେ ତାହାକୁ ପରାଭବି ।୩୩୧
ବାବୁ ଖାଇଲେ ଅତ୍ରିପୁତି ଦିଲେଣ ନ ସୁଝି
ପୃଥୀଯାକ ପାଇଲେ ସେ ଶାନ୍ତି ଯେ ନ ଭଜି ।୩୩୨
ବାବୁ ଧର୍ମ ଅର୍ଥେ ଶ୍ୱେତ ରାଜା ଦେବ ଯାଗ୍ୟଂ କଲା
ଘୃତ ସମୋଦ୍ରଯାକ ଆଣି ଯାଗ୍ୟଂ କୁଣ୍ଡେ ବରଷିଲା ।୩୩୩
ଶତେକ ଯୋଜନ ଦୀର୍ଘ କୁଣ୍ଡର ସାରିକ୍ଷ
ପ୍ରତି ଶତେ ଯୋଜନ ଯେ ଅଟଇ ପ୍ରତକ୍ଷ ।୩୩୪
ଗଭୀର ଶତେ ଯୋଜନ ଯେ ଅଟଇ ପ୍ରମାଣ
ଯାଗ କୁଣ୍ଡ ଯେପରି ଯେ ଅଟଇ ଭିଆଣ ।୩୩୫
ମେଘନ୍ତ ଶ୍ରୋଧ୍ୱା ପ୍ରୋକ୍ଷଣୀ କରି ବିଶିଷ୍ଟ ବରଷିଲା
ଲୋଭେଣ ଚାଣ୍ଡାଳ ମୋଡ଼ା ସମସ୍ତ ଭକ୍ଷିଲା ।୩୩୬
ଘୃତ ସମୋଦ୍ରଯାକ ଭକ୍ଷିଲା ସେ ଅଟେ ଯେତେ ଲୋଭୀ
ମନ୍ଦାଅଗ୍ନି ହୋଇଣ ସେ ବସିଲା ପରାଭବି ।୩୩୭
ମୋତେ ଆସିଣ ମାଗିଲା ଯେ ଅଗ୍ନିରାଜ ମଉଷଧି
ରାଗେଣ ବୋଇଲି ତୋର ନ ତୁଟଇ କିନା ବ୍ୟାଧି ।୩୩୮
ବ୍ରହ୍ମାଙ୍କୁ ବାବୁ ଯେ ସତ୍ୟଯୁଗେ ତୋଳାଇ ସେ
ଯେ ଆଣିଲା ମୋର ତହିଁ
ତେବେ ବି ଖଣ୍ଡିଯେ ମଉଷଧି ନ ଦିଲଇଁ ମୁହିଁ ।୩୩୯
ତ୍ରେତୟା ଯୁଗେ ତୋଳାଇ ଆଣିଲା ଈଶ୍ୱରଙ୍କୁ
ତଥାପି ମଉଷଧି ନ ଦିଲଇଁ ତାହାକୁ ।୩୪୦
ଦ୍ୱାପରେ ଆଦିତ୍ୟ ଦେବତାଙ୍କୁ ତୋଳାଇ ଆଣିଲା
ତାହାଙ୍କ ବଚନ ମେଣ୍ଟିଲି ସେ ବାହୁଡ଼ିଣ ଗଲା ।୩୪୧
ଚନ୍ଦ୍ର ବରୁଣ କୁବେର ବୃହସ୍ପତି ଆଦି କରି
ଲାଜ ପାଇ ଯେମାନେ ଗଲେକ ବାହୁଡ଼ି ।୩୪୨
ବାବୁ ଯେତେ କାଳେ ଆସି ତୋତେ ପାଇଲା ଭରସା
ପୁଣି ତୋତେ ଦାନ ମାଗି ପୂରୋଇଲା ମନୀଷା ।୩୪୩
ଇନ୍ଦ୍ର ଅର୍ଜୁନର କଥା ହୁଅନ୍ତେଣ ତହିଁ
ପକ୍ଷୀମାନେ ପଳାବନ୍ତି କୋଳାହଳ ହୋଇଁ ।୩୪୪
ଅଗ୍ନି ଡାକଦିଲେ ଶୁଣ ହୋ ସର୍ବସାଚୀ
ସତ୍ୟ ଅନ୍ତର ହୋଉଅଛିଟି ପଳାଉଛନ୍ତି ପକ୍ଷୀ ।୩୪୫

ଯେକ କୀଟ ପତଙ୍ଗ ଗୋଟିଯେ ଯେବେ ଅନ୍ତର ହୋଇଯାଇଂ
ଦିଲାର ଧର୍ମ ତୋତେ ପ୍ରାପତ ନୋହଇ ।୩୪୬
ତୁହି ସେ ପାର୍ଥିବ ଭାରଥେ ଭାରୋଇ ମଲ୍ଲ
ପାଷାଣ ରେଖ ହୋଇବନା ଯେ ତୋହୋର ବୋଲ ।୩୪୭
ଅଗ୍ନି ଦେବତାଙ୍କର ବିନୟ ବଚନ ଶୁଣି
ବିନ୍ଧିଲା ନାରାଚ ପାଥ ଗାଣ୍ଡୀମ ଧନୁ ଟାଣି ।୩୪୮
ଅନେକ ପକ୍ଷୀ ଯେ ପଳାଇ ଯାଉଥିଲେ
ଅର୍ଜୁନର ଶରାଘାତେ ସମସ୍ତେ ଅଗ୍ନିରେ ପଡ଼ିଲେ ।୩୪୯
ଇନ୍ଦ୍ର ବୋଇଲେ ତୁ ଦିଲୁ ଖାଇଲାତ ଅଗ୍ନି
ସଂକଷ୍ଟ ପୂରିଲାତ ଯେବେ ଯାଅ ତୁ ଫାଲଗୁନି ।୩୫୦
ମୁଂହି ଅଗ୍ନିଙ୍କି ଲିଭାଇବି ଶୁଣ ହୋ ଅରଜୁନ
ବାରଶତ ଯୋଜନ ତୋଟା ହୋଇଲାନି ଦହନ ।୩୫୧
ବୋଇଲ ଫାଲଗୁନି ଶୁଣିଲଟି କି ତାତ
ଚଡ଼େଇ ଛାର ଗୋଟିକି ବୋଲଇ ଯେମନ୍ତ ।୩୫୨
ଭୋ ଅମରାଧିନାଥ ଚରଣେ ତୋର ସେବା
କଥା ନ ରୁହାଅ ସ୍ୱାମୀ ବାହୁଡ଼ି ଯେଥେଂ ଯିବା ।୩୫୩
ଐରାବତ ପିଠିରୁ ଉତୁରିଲେ ସୁନାଶୀର
ଅର୍ଜୁନ ହାଥ ଧରି ପଶିଲେ ଖାଣ୍ଡବ ବନ ଭିତର ।୩୫୪
ବାବୁ ଯେବଣ ଯେବଣ ପଦାର୍ଥମାନ ହେଉଛି ଦହିଜ
ତାହା ତୋତେ ଚିହ୍ନାଇ ଦେବାରେ ଆତ୍ମଜ ।୩୫୫
ଖାଣ୍ଡବ ବନରେ ଯେ ପଶିଲେ ଅମରାଧି
ପ୍ରଥମେ ଅର୍ଜୁନଙ୍କୁ ଦେଖାଇଲେ ବିଷଲ୍ୟକରଣୀ ମଉଷଧି ।୩୫୬
ବାବୁ ରାମ ରାବଣ ଯୁଦ୍ଧ ହୋଇଲା ତ୍ରେତୟା ଯୁଗରେ
ଲକ୍ଷ୍ମଣଙ୍କୁ ରାବଣ ମାଇଲା ବ୍ରହ୍ମଶକ୍ତି ଶରେ ।୩୫୭
ପଚିଶ ଯୂଥପତି ପଞ୍ଚଶପଦ୍ମ ସେନା
ଅଷ୍ଟାଦଶ ପଦ୍ମ ବାନର ପଡ଼ିଲେ ସନା ଅକଳନା ।୩୫୮
ବାବୁ ପତ୍ର ଗୋଟିଯେ ଆସି ଯେଥୁଂ ହନୁମନ୍ତ ନେଲେ
ପବନ ଆଡ଼େ ପତ୍ର ଗଳିଲେ ସମସ୍ତେ ଜୀବନ ପାଇଲେ ।୩୫୯
ବାବୁ ଲକ୍ଷେ ଶିର ରାବଣ ଯେ ଉପୁଜିଲା
ଶୂଳ ଶକତି ଘେନି ସେ ଲକ୍ଷ୍ମଣଙ୍କୁ ମାଇଲା ।୩୬୦
ଅନେକ ରୁକ୍ଷ ହରିବଳ ଘେନି ପଡ଼ିଲା ଲକ୍ଷ୍ମଣ
ହନୁମନ୍ତ ପଶିଲା ଆସି ଯେହି ତୋଟାଯେଣ ।୩୬୧
ବିଷଲ୍ୟକରଣୀ ମଉଷଧି ଯେହି ବୃକ୍ଷ ଗୋଟି
ତାର ମୂଳୁଂ ହନୁ ନେଲା ଶିକଡ଼ ପାଣି ଫୁଟି ।୩୬୨
କୋମଣ୍ଡଲୁଂ ପାଣି ନେଇ ସିଞ୍ଚିଲା ତଡ଼ତି
ପଞ୍ଚାଶ କାଠି ସନ୍ୟ ଘେନି ଲକ୍ଷ୍ମଣ ଉଠି ବ୍ରତି ।୩୬୩
ବାବୁ ପ୍ରଳୟ ଅନ୍ତେ ରାବାୟଣେକ ହୋଇଲା
ଅହିବ୍ରତେକ ଶିର ହୋଇ ରାବଣେକ ଉପୁଜିଲା ।୩୬୪
ଲକ୍ଷ୍ମଣଙ୍କୁ ମାଇଲା ଯେ ଅମୋହ ଶକତି
ସେ ଶର ବାଜି ଲକ୍ଷ୍ମଣ ଯେ ପଡ଼ିଲାକ କ୍ଷିତି ।୩୬୫
ମଉଷଧି ନେମାକୁ ହନୁ ଯେଥକୁ ଅଇଲା
ଯେହୁ ମଉଷଧି ନିଅନ୍ତେ ଲକ୍ଷ୍ମଣ ବ୍ରତିଲା ।୩୬୬
ଆବର ଆସ ବାବୁ ଦେଖାଇ ବାସୁ ବୃକ୍ଷ ଗୋଟିଯେ
ମୃତୁସଞ୍ଜୀବନୀ ଯେ ବୃକ୍ଷର ନାମ ହୋଯେ ।୩୬୭
ବାବୁ ହନୁମନ୍ତ ଯେଥୁ ପୁଷ୍ୟ ଗୋଟିଯେକ ନେଲା
ସବୁଙ୍କର ନାଶାପୁଟେ ନେଇଣ ସୁଂଘାଇଲା ।୩୬୮
ସେ ରାମର ବଳ ସବୁହିଂ ଜୀଇଂଲେ
ରାମର ଆଗ୍ୟାଂରେ ହନୁମନ୍ତ ପୁଷ୍ୟ ଥୋଇଗଲେ ।୩୬୯
ସେହିମତି ଅଛି ସେ ଯେ ଅମଳାନ ପୁଷ୍ୟ ଗୋଟି
ଗନ୍ଧ ଆମୋଦନ୍ତେ ସମସ୍ତେହେଂ ସନ୍ୟ ବ୍ରତି ଉଠି ।୩୭୦
ବାବୁ ପ୍ରଳୟ ଅନ୍ତରେ ରାବାୟଣେକ ହୋଇଲା
ସହସ୍ରେ ଶିର ହୋଇ ରାବଣେକ ଉପୁଜିଲା ।୩୭୧
ରାବଣେକ ହୋଇ କରଇ ଅନୀତି
ଶ୍ରୀରାମ ସୀତା ଲକ୍ଷ୍ମଣ ମଞ୍ଚେଣ ଉତପତି ।୩୭୨
ସହସ୍ରେ ଶିର ରାବଣ ପୁଣ ହରିନେଲା ସୀତା
ରାବଣ ତୁଲେ ଯୁଦ୍ଧ କଲେ ଲକ୍ଷ୍ମଣ ରଘୁନାଥା ।୩୭୩
ରାବଣ ଲକ୍ଷ୍ମଣଙ୍କୁ ମାଇଲା ବ୍ରାହ୍ମଶକତି
ବାନର ବଳ ପଡ଼ିଲେ ଯୋଜନେକ ପ୍ରତି ।୩୭୪
ପୁଣି ହନୁମନ୍ତ ମଉଷଧି ନେମାକୁ ଅଇଲା ଯେଥକୁ
ଶ୍ରୀରାମର ଦୂତ ବୋଲି ଚିହ୍ନ ଥାଉ ତାଙ୍କୁ ।୩୭୫
ଆବର ଦେଖାଇଲେ ସାମାନ୍ୟ ବୃକ୍ଷ ଗୋଟି
ପ୍ରାଣତାରଣ ବୋଲି ଯେ ବୃକ୍ଷ ନାମ ହେଟି ।୩୭୬
ବାବୁ ହନୁମନ୍ତ ଯେଥୁ ଛେଲି ଖଣ୍ଡିଯେ ନେଲା
ବାଟି ଲଗାବନ୍ତେ ଲକ୍ଷ୍ମଣ ଉଠିଣ ବସିଲା ।୩୭୭
ଯେ ମଉଷଧିମାନଙ୍କର ଯେସନ ମହିମା
ଯେତେ ଦୂରେ ପବନ ଲାଗଇ ରୋଗ ବ୍ୟାଧି ନ
ପାରଇ ସିନା ।୩୭୮

ବାବୁ ବୃଦ୍ଧନାଶେନୀ ବୋଲି ଯେକ ବୃକ୍ଷ ଗୋଟିଯେ
ପାଚିଲା କେଶ କଞ୍ଚା ହୋଅଇ ଯେଥୁଂ ପିଇଲେ
ପାଣି ଫୁଟିଯେ ।୩୭୯
ବାବୁ ରୋଗନାଶନୀ ବୋଲି ଯେ ବୃକ୍ଷ ମଉଷଧି
ଯେଥୁଂ ପାଣି ପିଇଲେ ତୁଟଇ ବାତପିତ ଶଳିସମା
ନାନା ବ୍ୟାଧି ।୩୮୦
ବାବୁ ଯୁଗନାଶନ ବୋଲି ଯେହୁ ବୃକ୍ଷ ଗୋଟି
ସ୍ନାହାନ କରି ପାଣି ପିଇବ ପାଣି ଫୁଟି ।୩୮୧
ଶରୀର ନୋହିବ ଯେ ପକ୍ୱ ଗଳିତଇ
ଯେକା ଯୋଗେ ପାନ କଲେ ଚାରିଯୁଗେ ବ୍ରତଇ ।୩୮୨
ବାବୁ ଯେ ବୃକ୍ଷ ଗୋଟି ଯେ ସନ୍ତାନ ଉଦ୍ୟାନ
ଯେଥୁଂ ଫଳ ଗୋଟିଯେ ଭକ୍ଷିବ ତୁଳ ସଂକରାନ୍ତି ଦିନ ।୩୮୩
କାମଦେବ ପ୍ରାୟେ ଉପୁଜିବ ପୁତ୍ର
ଅପୁତ୍ରିକ ଜନ୍ମ ଫିଟାଇ ଜନ୍ମ ସାତ ।୩୮୪
ବାବୁ କ୍ଲେଶନାଶନ ଯେକ ବୃକ୍ଷ ଗୋଟି
ଶରୀରେ ଲେପନ କରିବ ଯେଥିର ମୂଳ ବାଟି ।୩୮୫
ଜନ୍ମେ ଜନ୍ମେ ନୋହଇ ସେ ଗର୍ଭ କଷ୍ଟି
ଯେଥିର ପାଣି ପିଇଲେ ହୁଅଇ ପୁତ୍ର ଗୋଟି ।୩୮୬
ଗଳିତକୋଷ୍ଟ ବ୍ୟାଧି ଯାୟେ ଯେହାର ପ୍ରସାଦେ ଫିଟି
ନାନା ରୋଗ ନାଶଇ ଯେଥିର ଖାଇଲେ ବକଳ ଗୋଟି ।୩୮୭
କଣୟବିନ୍ଦୁ ବୋଲି ଯେକଇ ବୃକ୍ଷ ଗୋଟି
ଶତେ ଭାର ନିତ୍ୟେ ତହିଂ କନକ ପୁଷ୍ୟ ଫୁଟି ।୩୮୮
ବାବୁ ଅନଳ ଅମୃତ ବୋଲି ବୃକ୍ଷଙ୍କର ନାମ
ଅନଳେ ନ ପୋଡଇ ଯେହା ଶରୀରେ କଲେ ଲେପନ ।୩୮୯
ବାବୁ ବାଳତରୁଣ ବୋଲି କରି ଯେକ ବୃକ୍ଷ ଗୋଟିଯେ
ଅକ୍ଷୟ ତୃତୀୟା ଦିନ ଭକ୍ଷିବ ପତ୍ର ଗୋଟିଯେ ।୩୯୦
ମନୁର ପରିଯନ୍ତେ ଶରୀର ଗୋଟି ଥାଇ
ପଚିଶ ବରଷ ପ୍ରାୟେ ସେ ପୁରୁଷ ଦିଶଇ ।୩୯୧
ବାବୁ ମୋହନ ବୋଲି କରି ଯେକ ଲତା ଗୋଟି
କ୍ଷୀର ଖଣ୍ଡିଯେ ଯେଥୁଂ କପାଳେ ଦେବା ଫୁଟି ।୩୯୨
ଗମନ୍ତେ ଶୁଭଯୋଗ ଚାଲନ୍ତେଣ ସୋହଇ
ଦେବ ଦାନବନ୍ତ ଆଦି କରି ସମସ୍ତ ମୋହି ହୋଇ ।୩୯୩
ବାବୁ ବିନ୍ଦୁଧାରଣ ବୋଲି କରି ଯେକ ବୃକ୍ଷ ଗୋଟି
ଶିଖଡ ଖଣ୍ଡିଯେ ଯେଥୁଂ କରିବା ବିନ୍ଦ ଗୋଟି ।୩୯୪
ସହସ୍ରେ ଯୁବତୀ ବାବୁ ରମଣ କରିବ
ସେ ପୁରୁଷ ତହୁଂ ଅମୋହ ରେତ ନ ଖସିବ ।୩୯୫
ବାବୁ ଯେ ବୃକ୍ଷ ଗୋଟି ଯେ କାମିନୀବସନ୍ତ
ସ୍ତିରୀଜନମାନଙ୍କୁ ଯେ ବଡ଼ାଇ ପଦାର୍ଥ ।୩୯୬
ଯେଥିରୁଂ କ୍ଷୀର ଟୋପିଯେ ନାରୀ ଲଗାଇବେ କପାଳେ
ଯୁବା ପୁରୁଷଙ୍କୁ ବଶ କରିବ ବୃଦ୍ଧକାଳେ ।୩୯୭
ବାବୁ ଉଦ୍ଧାଳେକ ବୋଲି ଯେ ଯେକ ବୃକ୍ଷ ଗୋଟିଯେ
ରାତ୍ରକାଳେ ଫୁଟଇ ଯେକା ପୁଷ୍ୟ ଗୋଟିଯେ ।୩୯୮
ସେ ପୁଷ୍ୟ ଦିଶଇ ଯେ ବାଳ ଅର୍କ ପ୍ରାୟେ
ରାତ୍ର କାଳେ ଦିଶଇ ଦିବସର ପ୍ରାୟେ ।୩୯୯
ଅର୍ଜୁନର ହାଥ ଧରି ଦେଖାନ୍ତି ଆଖଣ୍ଡଳ
ଦେବତାୟେ ତପ କରନ୍ତି ଯେ ଅମଳାନ ବୃକ୍ଷର ତଳ ।୪୦୦
ବାବୁ ସିଦ୍ଧକଷ୍ଟ ବୋଲି ଯେକ ବୃକ୍ଷ ଗୋଟିଯେ
ତୁଳ ସଂକରାନ୍ତି ଦିନ ଯେଥୁଂ ପିଇବା ପାଣି ଫୁଟିଯେ ।୪୦୧
ସମ୍ୱତ୍ସର ପରିଯନ୍ତେ ନ ଲାଗଇ କ୍ଷୁଧା
ଭୋକ ଶୋକ ମୂତ୍ର ମଳ ବ୍ୟାଧି ନ ଲାଗଇ ବାଧା ।୪୦୨
ଆରେ ବାବୁ ଅର୍ଜୁନ ଦହନ କରାଇଲୁ ଯେହୁ ବନ
ଦେବତାଙ୍କର ଅଶ୍ରଦ୍ଧା ତୋତେ ହୋଇବ ଅର୍ଜୁନ ।୪୦୩
ବାବୁ ଯେତେକ ଦହନ ହୋଇବାର ତ ହୋଇଲା
ଅଗ୍ନି ଦେବତାଙ୍କର ମନ୍ଦାଅଗ୍ନି ପାରଗଲା ।୪୦୪
ତୁ ଯେବେ ଯେଥୁଂ ଅନ୍ତର ହୋଇ ଯାଅ ଫାଲଗୁନି
ମୁହିଂ ଲିଭାଇବି ଆଉ ବନ ନ ଧ୍ୱଂସୁ ବହନି ।୪୦୫
ବାବୁରେ ଅଶୀ ଲକ୍ଷ ବୃକ୍ଷ ଯେଥି ଅଛଇ ଚନ୍ଦନ
ତିନି ମର୍ଭୁତ ଅଛଇ ଅଗର ହାଦେ ପୁଣ ।୪୦୬
ବାବୁ କସ୍ତୁରୀ କୁଆଦ ଅନେକ ଛନ୍ତି ଜୀବ
ଯେମାନ ଅଛିରେ ବାବୁ ଜାଣ ଦଶ ଖର୍ବ ।୪୦୭
ଅର୍ଜୁନ ପ୍ରଣପତ୍ୟ ହୋଇଲା ବାସବର ବୋଲ ଶୁଣି
ସ୍ୱାମୀ ବଧିର ଶୁଣଇ କି କମ୍ବୁରସ ବାଣୀ ।୪୦୮
ଭୋ ଦେବ ମୋହୋର ବେଳେ ନୁହଇ କିଛି କାର୍ଯ୍ୟ
ଅଗ୍ନି ଦେବତାଙ୍କୁ ଯାଇଂ ତୁଷ୍ଟି କରିବା ଦେବରାଜ ।୪୦୯
ଅର୍ଜୁନଙ୍କୁ ଘେନି ଯେ ଚଳନ୍ତି ମଘବା
ଦେଖିଲେ ଅଗ୍ନିର ତେଜ ଦିଶଇ ଦିବ୍ୟ ପ୍ରଭା ।୪୧୦
ଅନେକ ମଉଷଧି ଅନେକ ପଦାର୍ଥ ଖାଇ

କାଳାନଳ ବହ୍ନି ଯେ ପଡୁଅଛି ଧାଇଂ ।୪୧୧
ଅଗ୍ନିର ତେଜ ଯହୁଂ ଅନେକ ଦେଖିଲେ
ଇନ୍ଦ୍ର ଦେବତା ପ୍ରାଣପତ୍ୟ ହୋଇଣ ସ୍ତୁତିଲେ ।୪୧୨
ଜୟ ତୁ ଜୟ ତୁ ବଶ୍ୟାନର କାଳାନଳ ଅନଳ
ଜୟ ତୁ ଜୟ ତୁ ଦେବ ମହା ପିଙ୍ଗଳ ଜାଳ ।୪୧୩
ଜୟ ତୁ ଜୟ ତୁ ଦେବ ମହା ଭୀଷ୍ମରୂପୀ
ଜୟ ତୁ ଜୟ ତୁ ଦେବ ମହା ବିଶ୍ୱବ୍ୟାପୀ ।୪୧୪
ଜୟ ତୁ ଜୟ ତୁ ଦେବ ମହା ଜ୍ୟୋତି ଅନଳ
ଜୟ ତୁ ଜୟ ତୁ ଦେବ ଦହନ ସୟଳ ।୪୧୫
ଜୟ ତୁ ଜୟ ତୁ ଦେବ ଅଶାନ୍ତି ଅମୂର୍ତ୍ତି
ଜୟ ତୁ ଜୟ ତୁ ଦେବ ଉପନ ହସ୍ତ ଜ୍ୟୋତି ।୪୧୬
ଜୟ ତୁ ଜୟ ତୁ ବଶ୍ୟାନର ଅଟୁ କାମରୂପୀ
ଜୟ ତୁ ଜୟ ତୁ ନୁହସି ବଡ଼ କୋପୀ ।୪୧୭
ଜୟ ତୁ ଜୟ ତୁ ଦେବ ସକଳ ପୁରେ ପଶୁ
ଥାପିତ ଦ୍ରବ୍ୟନ୍ତ ତୁହି ସେ କରୁ ଧୂଳି ପାଂଶୁ ।୪୧୮
ଦେବ ଦାନବେ ଯେ ମାନବ ଆଦି କରି
ତୋହୋର ଉଚିଷ୍ଟ ଦେବ ଆହାର ସବୁଙ୍କରି ।୪୧୯
ଆଦି କର୍ମେଣ ଯେ ଥାପିତ ଦେବ ତୁହି
ଯେ ତୋତେ ଥାପଇ ତାହାକୁ ତୁହି ମୋହି ।୪୨୦
ଦକ୍ଷ ଯାଗ୍ୟଂ କଲା ଦେଖିଲା ତୋହୋର ତେଜ ମୃତ୍ତି
ଡରେଣ ସ୍ୱାହା ସ୍ୱଧା କନ୍ୟା ତୋତେ ଦିଲା ପ୍ରଜାପତି ।୪୨୧
ଯେମନ୍ତେ ପାର ଯେ ନ ଗଲା ଯାଗ୍ୟଂକାଳେ
ଉମାର ଝିଂଘାସେ ଯେ ଧଂସିଲୁ ସୁଢ଼ଳେ ।୪୨୨
କୋପେଣ ପ୍ରଜାପତି ଯେ ଦିଲା ତୋତେ ଶାପ୍ୟ
ଯାଅ ତୁ ଖାର ପାଉଂଶରେ ହୋଇଥାଅ ଗୋପ୍ୟ ।୪୨୩
ଚିତା ଅନଳେ ତୁହି ସେ ପ୍ରାଣ ତେଜ
ଅଖାଇଜ ଖାଇଜ ସବୁ କରୁ ତୁ ଦହିଜ୍ୟ ।୪୨୪
ସ୍ୱାହା ସୁଧା ବାକ୍ୟମାନ ସମାଧି ଜପମନ୍ତ
ଯେ କଥାମାନ ତୁହି ବିଚାରୁ ତଦନ୍ତ ।୪୨୫
ବଶ୍ୟାନର ନାଥ ତୁ ଅଭୟେ ଦୋହୋରା
ସମସ୍ତ ଦହନ ନାଥ ତୁହି ସେ ଯେକ ଶୂରା ।୪୨୬
ଶୁଭ ଅଶୁଭେ ଅଭୟ ମଙ୍ଗଳ ତୁହି ନାଥା
ଗ୍ୟାନ ଧ୍ୟାନ ଦେବ ସକଳ ତୁହି ଚିନ୍ତା ।୪୨୭
ଆଦି ଅନାଦି ତୁ ଅକ୍ଷୟାନ୍ତ ପୁରୁଷ
ସକଳ ଦହିଜ କରୁ ସକଳ ଗର୍ଭେ ବାସ ।୪୨୮
ପରମ ବ୍ରହ୍ମ ତୁ ଅଟୁସି ଅନାଦି
ସକଳ ଦର୍ପ ଧଂସିବାକୁ ତୁହି ସେ ଅଟୁ ଆଦି ।୪୨୯
ଅପାର ଆହାରେଣ ଦି'ଗୁଣ ତୋର ଜ୍ୟୋତି
ଅନୁବ୍ରତେ ଭୋଜନେ ଅଶାନ୍ତି ଅତ୍ରିପୁତି ।୪୩୦
ସ୍ୱାହାର ବଲ୍ଲଭ ତୁ ସ୍ୱଧାର ପ୍ରାଣଗୁରୁ
ବଦନ୍ତି ସାରୋଳ ଦାସ ବଶ୍ୟାନର ଦୟାକରୁ ।୪୩୧
ଅନେକ ତୃପ୍ତି ଯେ କଲେ ଆଖଣ୍ଡଳେ
ପ୍ରଣପତ୍ୟ ହୋଇଲେ ଅଗ୍ନିର ପାଦତଳେ ।୪୩୨

**

## ୨୮. ଇନ୍ଦ୍ର ଅର୍ଜୁନ ଯୁଦ୍ଧ

ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ସେ କାଳାନଳ ଦେବତା ନୋହିଲାକ ଶାନ୍ତି ।୧
ଦିଗୁଣ ତେଜେ ବ୍ୟାପିଲା ସେ ମଉଷଧିର ଆପ୍ୟାନେ
ଭୟ କରି ଘୁଞ୍ଚି ପଳାଇଲେ ମଘବାନେ ।୨
ଅଗ୍ନିର ଅଶାନ୍ତି ଦେଖି କୋପ କଲେ ମଘବାନ
ବ୍ରହ୍ମ ଦଇବତ ପୁରୁଷ ହୋଇ ତୋର ଅଶାନ୍ତି ଯେସନ ।୩
ମୋହୋର ବିନୟ ଯେବେ ନ ଘେନିଲୁ ଭଗତି
ଆବର କାହା ବୋଲେ ତୁହି ହୋଇବୁ ଶାନ୍ତି ମୂର୍ତ୍ତି ।୪
ମୋହୋର ଶାପ୍ୟ ତୋତେ ପ୍ରତକ୍ଷେଣ ହୋଉ
ଦାରିଦ୍ର୍ୟ ପଣେ ତୋର ସର୍ବଦା ଦିନ ଯାଉ ।୫
ଯେତେ ବୋଲି ବାହୁଡ଼ିଲେ ଦେବ ପୁରନ୍ଦର
ଅର୍ଜୁନର ମୁଖ ଚାହିଂ ବୋଲନ୍ତି କୋପଭର ।୬
ଆରେ ଆରେ ଅଗ୍ନି ଛାର ବେଳେ କି ମୋହୋର ତୋଟା
ହୋୟେ ଧଂସି
ତିନି ଯୁଗ ହୋଇଲା ଲୁଦୁବୁଦୁ ବ୍ୟାଧି ହୋଇଅଛି ବସି ।୭
ଆରେ ତୁ ଯେ ଯଥାର୍ଥେ ଅଟୁନା ମୋହୋର ବଇରି
ତୁ ସେ ନାଶକଲୁ ମୋର ଆକାଶର ଶିରୀ ।୮
ଯେହିକ୍ଷଣି ତୁରେ ଆଡ଼େ ହୋଇଗଲେ
ନିମିଷକେ ଅଗ୍ନି ଲିଭାଇବି ମେଘନ୍ତ ବୋଇଲେ ।୯
ତୋହୋର ମୁଖ ଚାହିଂ ସରିଲା ମୋର ବୁଦ୍ଧି
କହୁଂ କହୁଂ କୋପ ଯେ ବଢ଼ିଲା ଜମ୍ଭୋଭେଦୀ ।୧୦

ଆରେ ପୁତ୍ର ହୋଇ ଯେବେ ବଡ଼ ଦୁଷ୍ଟପଣ କଲେ
ପାତକ ନ ଲାଗଇ ସେ ପୁତ୍ରନ୍ତ ନାଶ କଲେ ।୧୧
ବାସବର ବଚନେ ବୋଲଇ ଧନୁର୍ଜ୍ଜୟେ
ବୁଦ୍ଧି ହରାଇଲେ ତାତ ଆବର କିସଯେ ଉପାୟେ ।୧୨
କୋପେଣ କାଳାନଳ ହେଲେ ଦେବ ଆଖଣ୍ଡଳ
ଆଜରେ ପାଣ୍ଡବା ତୋର ପୂରିଲାଣି କାଳ ।୧୩
ହସ୍ତେଣ ଘେନିଛନ୍ତି ବଜ୍ର ମୁଦୁଗର
ରାଗେଣ ନେଇ ପିଟିଲେ ପାଥର ଉପର ।୧୪
ଶତ୍ରୁପଣ ଯେବେ ତୁହି କଲୁରେ ଫାଲଗୁନି
ତୋତେ ନାଶ କଲେ ସେ ନିଭାଇବି ବହନି ।୧୫
ଅଗ୍ନି ଦେବତାଯେ ଅର୍ଜୁନକୁ ଦେଇଛନ୍ତି ବଜ୍ର ମୁଦୁଗର ଗୋଟି
ବାସବର ବଜ୍ର ଅର୍ଜୁନର ଦେହେ ପଡ଼ିଗଲା ତୁଟି ।୧୬
କୋପେଣ ପ୍ରଜ୍ୱଳିତ ହୋଇ ଅମରାଧିନାଥେ
ତକ୍ଷଣେ ଅଜଙ୍ଗ ଧନୁ ଇନ୍ଦ୍ର ଯେ ଧଇଲେ ବାମ ହାଥେ ।୧୭
ଲକ୍ଷେକ ନାରାଜ ବାସବ ଗୁଣରେ ବସାଇ
ଅର୍ଜୁନ ଉପରକୁ ଦେବ ବିନ୍ଧିଲେ ନିଠାଇ ।୧୮
ଅବିଚ୍ଛନ୍ନେ ବାଣ ଯେ ପଡ଼ିଲା ଅର୍ଜୁନ ଉପର
ବଜ୍ରଘୋଟ ସେହ୍ନାରେ ପଡ଼ି ସମସ୍ତେ ହୋଇଲେ ଚୂର ।୧୯
ଅର୍ଜୁନ ନାମ ଧରି ଡାକ ଦିଲେ ବଣ୍ୟାନରେ
ବାବୁ ସର୍ପମାନେ ପଶୁଛନ୍ତି ବିମ୍ୱର ଭିତରେ ।୨୦
ଇନ୍ଦ୍ରେଣ ସମର୍ ଯେ କରଇ ଫାଲଗୁନି
ଭୂମିକି ବିନ୍ଧିଲା ବୀର ନାରାଜ ଲକ୍ଷେ ତିନି ।୨୧
ସର୍ପ ମଣ୍ଡୁକୀ ଇନ୍ଦୁରେ ଯେ ବିମ୍ୱରେ ପଶୁଥିଲେ
ଅର୍ଜୁନ ଶରଘାତେ ଅଗ୍ନିରେଣ ସମସ୍ତେ ଛିଡିଣ ପଡ଼ିଲେ ।୨୨
ଅନିର୍ଯ୍ୟାପ ଶହସ୍ର ମାଇଲେ ପୁରନ୍ଦର
ଅର୍ଜୁନ ବୋଇଲା ତାତ ନ କର ସମର ।୨୩
ପିତା ପୁତ୍ରେ କି ସମର ବେଳେକ ଯାଅ ଘୁଞ୍ଚି
ତୋଟା ଧଂସ ଗଲାନି ଆବର କିସ କାର୍ଯ୍ୟ ଅଛି ।୨୪
ବାସବ ବୋଇଲେ ରେ ତୋତେ ନାଶ କଲେ
ଖାଣ୍ଡବ ବନର ଦୁଖ ପାଶୋରିବି ଭଲେ ।୨୫
ଆକ୍ରେଷିଣ ଧନୁ ଧଇଲେ ମଘବା
ପରଶୁ କୋଠାର ଯେ ମାଇଲେ ଇନ୍ଦ୍ରଦେବା ।୨୬
ଅର୍ଜୁନ ସାକ୍ଷୀ କରଇ ଦଶଦିଗପାଳମାନଙ୍କୁ
ପିତାବଧ ଦୋଷ ହାଦେ ନ ଲାଗଇଟି ମୁକୁ ।୨୭

ଯେତେକ ବୋଲିଣ ସେ ଯେ ବାସବର ବଳା
ଗାଣ୍ଡୀମ ଧନୁ ଧରିଣ ସେ ତେଜ ଅନର୍ଗଳା ।୨୮
ମୋହନା ଶର ତାକୁ ଦେଇଅଛନ୍ତି ବହନି
ଆକ୍ରେଷି ବିନ୍ଧିଲା ତାହା ସେ ବୀର ଫାଲଗୁନି ।୨୯
ବାସବର ତୁଲେ ଅନେକ ଗନ୍ଧର୍ବ ଯେ ଥିଲେ
ମୋହନା ଶରଘାତେ ସମସ୍ତେ ନିମଜ୍ଜିଲେ ।୩୦
ପଡ଼ିଲେ ଗନ୍ଧର୍ବବଳ ଗଙ୍ଗାକୂଳ ମାଡି
ତାହା ଦେଖି ବାସବ ଦେବତା ବିନ୍ଧିଲେ ଓପ୍ରୋଧ ଛାଡି ।୩୧
କୃତାନ୍ତେକ ଶର ଘେନିଣ ଦେବରାୟେ
ମହା ଭୀଷ୍ମରୂପେ ଭେଦିଲେ ଯେ ଅର୍ଜୁନର କାୟେ ।୩୨
କାଳ ମେଘ ପ୍ରାୟେ ଦିଶନ୍ତି ସସ୍ରଯୋନି
ବ୍ରହ୍ମାଣ୍ଡ ଅନ୍ଧାର ହୋଇଲା ସେ କାଳକୃତାନ୍ତକ
ତେଜମୂର୍ତ୍ତି ଘେନି ।୩୩
ଦେଖିଣ ବିଚାର କରଇ ବୀର ଫାଲଗୁନି
ସାଧୁ ମହିମା ତାତ ତୁମ୍ଭର ଅଟଇ ଧନି ଧନି ।୩୪
ସୂର୍ଯ୍ୟାବ୍ରତେକ ଶର ମାଇଲା ସର୍ବସାଚୀ
ବାସବର ଶରୀର ବିକୋଟିଲା ବିବସ୍ତି ।୩୫
ବାସବ ଦେବତାକୁ ତ୍ରାସ ଲାଗିଲା ତାହା ଦେଖି
ପୃଥୀଭେଦି ଶର ମାଇଲା ବାସବ ଓପ୍ରୋଧ ଉପେକ୍ଷି ।୩୬
ଯେକା ଶହସ୍ର ଭେଦିଲା ଶୂନ୍ୟ ଭୁବନଯାକେ
ଅର୍ଜୁନହିଂ ସାମରଥ ରହିବାକୁ ଯେକେ ।୩୭
କୋପେଣ ନାରାଜ ଯେ ବିନ୍ଧଇ ଅର୍ଜୁନ
ପଶୁପତ୍ର ଶର ପାଥ କଲାକ ସନ୍ଧାନ ।୩୮
ଉଡ଼ଇ ନାରାଜ ଯେ ବିଜୁଳି ତେଜ ଜାଣି
ବାସବର ଶରମାନ ଛେଦଇ ବୀରମଣି ।୩୯
ଦେଖିଣ ପ୍ରଜ୍ୱଳିତ ହୋଇଲେ ମଘବା
ନିର୍ଘାତ ବାଣ ମାଇଲେ ସୁରରାଜ ଦେବା ।୪୦
କ୍ଷଣେକ ବିଶ୍ରାମ ନାହିଂ ହୋଇଲା ସମର
ପିତା ପୁତ୍ର ସମର ଯେ ହୋଇଲା ମହାଘୋର ।୪୧
ବାସବ ଦେବତା ଯହୁଂ ଦେଖିଲେ ସମର ଅବିଶ୍ରାମ
ତ୍ରିପଣ୍ଡ ଗଳିତ ଯେ ବହଇ ମହାଘ୍ରମ ।୪୨
ପିତାର ଶ୍ରମ ଦେଖିଣ ଅଙ୍ଗାରପନ୍ନଙ୍ଗ
ଶତସହସ୍ର ବଳ ଧନୁ ଧରି ଉଭା ଅର୍ଜୁନର ଆଗ ।୪୩
ଆରେ ରେ ପାଣ୍ଡବା ବୋଲି ଉଚ୍ଚସ୍ୱରେ ଡାକି

ଅର୍ଜୁନର ପ୍ରାଣତ୍ୟାଜ ହେଉଅଛି ତୁମ୍ଭେ ଦିଗପାଳମାନେ
ହୋଇଥାଅ ସାକ୍ଷି ।୪୪
ସହସ୍ରେ ନାରାଜ ପୂରୋଇ ତେଜ ଅନର୍ଗଳ ଜାଣି
ଅର୍ଜୁନଙ୍କୁ ନିରୋଧିଲା ବାସବ କୁମରମଣି ।୪୫
ନାରାଜ ପୂରାବନ୍ତେଣ ତହିଂ ଦେଖଇ ସର୍ବସାଚୀ
ଆକାଶ ସମ୍ପୂର୍ଧ ସରିବ ମୋତେ ତ୍ରଇଲୋକ୍ୟେ
ହୋଇବ ବାଚି ।୪୬
ପଶୁପତ୍ର ଶର ଈଶ୍ୱରଙ୍କର ଦିଲା
ଯେବଣ ଶର ଘେନି ଦେବ ଅନ୍ଧେକ ବିଧଂସିଲା ।୪୭
ସେ ଶର ଘେନିଣ ପେଷଇ ଫାଲଗୁନି
ଅଙ୍ଗାରପନ୍ନଙ୍ଗ ପଡ଼ିଲା ଅସାଷ୍ଟମ କାୟ ଘେନି ।୪୮
ଅଙ୍ଗାରପନ୍ନଙ୍ଗ ହତ ଶୁଭିଲା ସ୍ୱର୍ଗେ ବାଣୀ
ମହାନାଗ ଆରୋହି ବିଜେ କଲେ ବଜ୍ରପାଣି ।୪୯
ଅର୍ଜୁନଙ୍କୁ ଶହସ୍ର ବିନ୍ଧିଲେ ମଘବାନ
କରପତ୍ର ଯୋଡି ବୋଲଇ କୁମର ଜୟସେନ ।୫୦
ଜୟସେନ ବୋଇଲା ସ୍ୱାମୀ ସାଂଗ୍ରାମେ ଆସି ପଡ଼ିଲା ସନ୍ଦେହ
ଅଗ୍ନିଙ୍କର ନିମନ୍ତେ ଅର୍ଜୁନ ଛାଡିଲାକ ମୋହ ।୫୧
କ୍ଷଣେକ ସାଂଗ୍ରାମେ ଦେବ କରିବାକ ଘୁଞ୍ଚି
ଜୟସେନ ସାଂଗ୍ରାମ ଆବୋରିଲା ସର୍ବସାଚୀ ।୫୨
ଯେଣେ ବଶ୍ୟାନର ହାକ ଦିଅନ୍ତି ଶୁଣ ହୋ ଫାଲଗୁନି
ମଣିନାଗ ପଳାଉଛି ତାହାର ବଂଶଯାକ ଘେନି ।୫୩
ଶୁଣି କରି ନାରାଜ ବିନ୍ଧିଲା ବୀର ପାଥ
ଅଗ୍ନିରେ ଛେଦି ପକାଇଲା ସେ ନାଗମାନନ୍ତ ।୫୪
କଦ୍ରୁର ନନ୍ଦନ ଜାଣ ଅଟଇ ଉଡଙ୍ଗ
ଉଡଙ୍ଗର ନନ୍ଦନ ଯେ ଅଟଇ ମଣିନାଗ ।୫୫
ଯେହାର ନନ୍ଦନ ଯେ ସାଦ୍ରୋଳ ଉଡଙ୍ଗ
ସାଦ୍ରୋଳ ନନ୍ଦନ ଯେ ବିରାଳ ମହାନାଗ ।୫୬
ବିରାଳର ନନ୍ଦନ ଯେ ସର୍ପ କୁରାଳାଙ୍ଗ
କୁରାଳାଙ୍ଗର ନନ୍ଦନ ଅଟଇ ମଳଙ୍ଗ ।୫୭
ଯେହାର ନନ୍ଦନ ସର୍ପ କୁଳାକ୍ଷ
କୁଳାକ୍ଷର ନନ୍ଦନ ଅଟଇ ବିଡାଳାକ୍ଷ ।୫୮
ଯେହାର ନନ୍ଦନ ଯେ ସର୍ପ ଆର୍ଦ୍ରାବଳୀ
ମହାପ୍ରତାପୀ ସେ ଆଦ୍ରାବଳୀ କୁଣ୍ଡଳୀ ।୫୯
ଯେହାର ନନ୍ଦନ ଯେ ତକ୍ଷକ ନାମେ ଅହି
ତକ୍ଷକର ନନ୍ଦନ ଯେ କମଳାଉର ଅଟଇ ।୬୦
ତାହାର ନନ୍ଦନ ଯେ କୃତାନ୍ତେକ କାଳୀ
କୁଳୀକ ନନ୍ଦନ ଶୋଷକ ନାମେ ବଳୀ ।୬୧
ଉଡଙ୍ଗ ବଂଶ ଗରୁଡ଼ ଭୟେ ପଳାଇଲେ
ଖାଣ୍ଡବ ବନେ ବାସବଙ୍କୁ ଆଶ୍ରେ କରି ରହିଲେ ।୬୨
ଅନେକ କାଳ ସେ ବନ ଆଶ୍ରେ କରି
ରହିଲେ ମହାସର୍ପେ ବନନ୍ତ ଆବୋରି ।୬୩
ଖାଣ୍ଡବ ବନ ଦହନ୍ତେ ପଳାଉଥିଲେ ଉଡି
ଅର୍ଜୁନର ଶରାଘାତେ ସମସ୍ତେ ପଡ଼ିଲେ ଛିଡି ।୬୪
ଶୋଷକ ନାମେ କାଳସର୍ପ ଯେ କୁଳୀକର ପୁତ୍ରେ
ଗଗନେ ଉଡିଲା ସେ ଅର୍ଜୁନ ଶରାଘାତେ ।୬୫
ଆବର ସର୍ପମାନେ ପଡ଼ିଲେ ସର୍ବେ ଛିଡି
ଶର ପବନଘାୟେ ଶୋଷକ ଗଲା ଉଡି ।୬୬
ଶୋଷକ କାଳସର୍ପ ଯମୁନା ଧାରେ ଧାରେ ଗଲା
ହସ୍ତିନା ନଗ୍ରେ ଯାଇଂ ବାରୁଣାବନ୍ତେ ରହିଲା ।୬୭

.....

ଯେଥୁ ଅନନ୍ତରେ ବଇବସୁତ ମନୁ ଅଗସ୍ତିଙ୍କି କଲେ ପୂଜା
ପିତା ପୁତ୍ରଙ୍କର ସମର କେମନ୍ତେ ହୋଇଲା ମୋତେ କହିବା ବ୍ରହ୍ମାର
ତନୁଜା । ୧
ତ୍ରଇଲୋକ୍ୟେ ଶୁଣିତେ ଯେହା ବଡ଼ାଇ ଦୁର୍ଲ୍ଲଭ
କହିବାକୁ ହେଉ ମୋତେ ଯେଥିର ପ୍ରସ୍ତାବ ।୨
ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ମହାଭାରଥ ମଧ୍ୟପର୍ବ କହିବା ଦିବ୍ୟରୀତି ।୩
ଶୁଣନ୍ତେ ଅତି ସୁସ୍ୱାଦ ଅମୃତ ପାନ ଜାଣି
ତୃଷାରେ ରୁଚଇ ଯେହ୍ନେ ଅମିୟ ରସ ପାଣି ।୪
ନିର୍ଘାତ ବାଣ ଯେ ମାଇଲେ ବଜ୍ରପାଣି
ତିନି ଭୁବନେ କଂପିଲା ନିର୍ଘାତ ଶବଦ ଶୁଣି ।୫
ଅଗ୍ନି ଦେବତାୟେ ବୋଇଲେ ତୁ ନ କର ମନେ ଭ୍ରାନ୍ତି
ବଜ୍ର ପରଶୁ ଘେନି ଛେଦ ହୋ ସୁତ କୋନ୍ତୀ ।୬
ହେମଶର ପେଷ ବାବୁ ନିର୍ଘାତ ଉପରେ
ଅଗ୍ନିଙ୍କ ବାକ୍ୟେ ମାଇଲେ ପାଥ ହେମଶରେ ।୭
ହେମଶର ପଡ଼ନ୍ତେ ଯେ ନିର୍ଘାତ ଶର ନାଶ ଗଲା
ସାଧୁ ସାଧୁ ଅର୍ଜୁନ ବୋଲି ଧ୍ୱନିୟେ ଶୁଭିଲା ।୮
ରାଗେଣ ଦେବ ଯେ ମାଇଲେ ବଜ୍ରସୂଚୀ

ବଜ୍ର ପରଶୁ ଘେନିଣ ତାହା ନାଶିଲା ସର୍ବସାଚୀ ।୯
ଇନ୍ଦ୍ର ପ୍ରହାର କଲେକ ବଜ୍ର ଶକତି
ଅମୋହ ଶକତି ଘେନି ଅର୍ଜୁନ ନିପାତି ।୧୦
ପର୍ବତା ଶରେକ ଯେ ପେଷିଲେ ଜମ୍ଭୋଭେଦୀ
ବଜ୍ରାବଳୀ ଶହସ୍ର ଘେନି ଅର୍ଜୁନ ତାହା ଛେଦି ।୧୧
ସାଂଗ୍ରାମେଣ ବିମୁଖ ପାଇଣ ବୀରବର ପାଥ
ମନଭେଦୀ ନାରାଚ ଯେ ଧଇଲାକ ହାଥ ।୧୨
ଗୁଣରେ ବସାଇ ତିଆରଇ ତାକୁ ଧନୁର୍ଦ୍ଧୟେ
ଯେ ମୋହୋର ପିଅର ଯେ ଅଟନ୍ତି ଦେବରାୟେ ।୧୩
ରୋମେକେ ନାରାଚ ଯେ ପଡ଼ିବୁ ଇନ୍ଦ୍ର ଦେହେ
ପ୍ରାଣେ ନ ମାରିବୁ ସେ ପଡ଼ିବ ହାଦେ ମୋହେ ।୧୪
ଅର୍ଜୁନର ଆଗ୍ୟାଂରେ ସେ ନାରାଚ ମନଭେଦୀ
ଇନ୍ଦ୍ର ଦେବତାଙ୍କର ଶରୀରେ ଯାଇଣ ସଂପାଦି ।୧୫
ଯେସନେକେ ସର୍ପେ ପଶନ୍ତି ବିମ୍ୱରେ
ସେହି ସାଦ୍ରିଶେ ଭେଦିଲେ ନାରାଚ ଯେ ବାସବ ଶରୀରେ ।୧୬
ରୋଧିରେ ଜରଜର ବାସବର କାୟେ
ଘାୟେଣ ଅସାଷମେ ପଡ଼ିଲେ ଇନ୍ଦ୍ର ଦେବରାୟେ ।୧୭
ମଉଷଧି ବୃକ୍ଷର ଗନ୍ଧ ପବନ ଯେ ଲାଗି
ସାଷାମ ପାଇ ଦେବ ବସିଲେକ ବେଗି ।୧୮
ପିତା ପୁତ୍ର ଦୁହିଙ୍କର ଯୁଦ୍ଧ କଥା ଶୁଣି
ପୁଷ୍ପେକ ବିମାନ ଆରୋହି ଅଇଲେ ଶଚୀ ଗୋସାମଣି ।୧୯
ଦେଖିଲେକ ସୁରନାଥ ବିଭୋଳିତ କାୟେ
କୋଳ କରି ଶଚୀଦେବୀ କରନ୍ତି ବିନୟେ ।୨୦
ସ୍ୱାମୀ ଅର୍ଜୁନକଇଂ କୋପ କିଂପେ କରୁ ସୁରରାୟେ
ଅଗ୍ନି ଦେବତା ଭିଆଇଲେ ଯେସନେକ ଉପାୟେ ।୨୧
ସତ୍ୟ କରାଇ ସେ ମାଗିଲେ ଧନୁର୍ଦ୍ଧୟେ
କିଂପେ ନ ଭକ୍ଷିବେ ଅନଳ ଦେବତାୟେ ।୨୨
ସାଂଗ୍ରାମେ ଅପଚୟେ ହୋଇଲା ଦେବ ତୁକୁ
ଭଲେ ପ୍ରମାଦ ତୁମ୍ଭେ କଲଟି ଅର୍ଜୁନକୁ ।୨୩
ପୁଷ୍ପେକ ବିମାନେ ବସାଇ ଶଚୀ ମହାସତୀ
ଇନ୍ଦ୍ର ଦେବତାଙ୍କୁ ଘେନି ବିଜୟେ ଅମର ବାରସ୍ୱତୀ ।୨୪
ଜଗତୀ ଉପରେ ଯେ ବିଜୟେ ଫାଲଗୁନି
ସୁଖେଣ ଖାଣ୍ଡବ ବନ ଦହଇ ସେ ଅଗ୍ନି ।୨୫
ସହସ୍ରେ ନବ ଶତ ଯୋଜନ ଖାଣ୍ଡବ ନାମେ ବନ
ତିନି ଦିବସ ତିନି ରାତ୍ର ଅଗ୍ନି କରନ୍ତି ଦହନ ।୨୬
ଖାଣ୍ଡବ ବନ ଯାକ ଯେ ଦହନ ହୋଇଲା
ଶୋଷକ କାଳସର୍ପ ପଳାଇ ଉବୁରିଲା ।୨୭
ତାରାକ୍ଷୀ ପକ୍ଷୀ ବୋଲିଣ ଚଢ଼େଇ ଗୋଟିୟେ
ଗର୍ଭବାସ ହୋଇଣ ସେ ଅର୍ଜୁନରେ ଶରଣ ସମ୍ଭାୟେ ।୨୮
ସାରଙ୍ଗ ପକ୍ଷୀ ଯେ ଚାରି ପୁତ୍ରନ୍ତ ଘେନି
ସେହି ରକ୍ଷା ହୋଇଲା ନ ଦହିଲା ବହନି ।୨୯

**

## ୨୯. ଅର୍ଜୁନଙ୍କର ବରଲାଭ

ଅଗ୍ନିରେ ଶରଣଗଲା ଯେ ଚକ୍ର ଚଢ଼େଇ
ସେ ପ୍ରାଣ ପାଇଲା ଅଗ୍ନିଙ୍କର ପାଶେ ଥାଇ ।୧
ତାମ୍ରଚୂଡ଼ ବୋଲି କରି ଚଢ଼େଇ ଗୋଟିୟେ
ଶ୍ରୀରାମ ମୁକୁଟ ଦେଖି ତାକୁ ଛାଡିଲେ ଧନୁର୍ଦ୍ଧୟେ ।୨
ବିଷ୍ଣୁପ୍ରସାଦ ବୋଲି ଯେକ ବୃକ୍ଷ ଗୋଟିୟେ
ଶରଧାରେ ଆଡ କଲେ ତାହା ପାଣ୍ଡବ ଧନୁର୍ଦ୍ଧୟେ ।୩
ବିଷ୍ଣୁପ୍ରଭବ ବୋଲିଣ ଅଶ୍ୱଥ ବୃକ୍ଷ ରକ୍ଷାଗଲା
ଅଗ୍ନି ଦେବତାୟେ ବୃକ୍ଷ ଭାବେଣ ଛାଡିଲା ।୪
ପାଳଧୁଆ ବୃକ୍ଷକୁ ରଖିଲେ ବଶ୍ୟାନରେ
ନୀଳକଣ୍ଠ ଚଢ଼େଇ ରକ୍ଷାଗଲା ରୁଦ୍ରଙ୍କ ଚିହ୍ନରେ ।୫
ପୁଷ୍ପଙ୍କ ମଧ୍ୟରେ ବକୁଳ ରକ୍ଷାଗଲା
ଭୋଜ କୁସୁମ ଲତା ଯେ ଆଦିତ୍ୟ ରଖିଲା ।୬
ବିଷ୍ଣୁ ପ୍ରସାଦ ଅଶ୍ୱଥ ଅଟଇ ପରମେଶ୍ୱର
ବକୁଳ ଭୋଜା ରଖିଲେ ପୁଷ୍ପମାନ ସାର ।୭
ଶୋଷକ କାଳସର୍ପ ତାରାକ୍ଷୀ ତାମ୍ରଚୂଡ଼
ଚକ୍ରା ଚଢ଼େଇ ପାଳଧୁଆ ଗୋଟି ରହିଲା ଅଗ୍ନିଙ୍କର ଆଡ ।୮
ଅପୂର୍ବ ପଦାର୍ଥମାନ ସେ ରକ୍ଷା ହୋଇଲା
ସହସ୍ରେ ନବଶତ ଯୋଜନ ତୋଟା ନାଶଗଲା ।୯
ସମସ୍ତ ଦହନ ସେ କଲେକ ବଶ୍ୟାନରେ
ହୋଇଲେ ନିକଳଙ୍କ ଫିଟିଲା ମନ୍ଦାଗ୍ନି ଶରୀରେ ।୧୦
ଇଚ୍ଛାୟେ ଆପାନ ସେ କଲେକ ମଉଷଧି
ହୋଇଲା ନିକଳଙ୍କ ଫିଟିଲା ଲୁଦୁବୁଦୁ ବ୍ୟାଧି ।୧୧
ଭୁଞ୍ଜି ତ୍ରିପୁତି ଓଦର କଲେ ପୁଷ୍ଟ

ହୋଇଲେ ଶାନ୍ତି ମୂର୍ତ୍ତି ଛାଡିଲେକ କଷ୍ଟ ।୧୨
ତ୍ରିକଚ୍ଛ କରିଣ ଦେବ ବସନେକ ପିନ୍ଧି
ଲମ୍ବିତ କରି କୂଡ଼ା ଗୋଟିଯେକ ବାନ୍ଧି ।୧୩
କଣ୍ଠରେ ଯଜ୍ଞୋପବୀତ ଗୋଟିଯେ ଉତ୍ତରୀ ଅଛି
ଲୋହିତ ବର୍ଣ୍ଣ ଶରୀରେ ଦ୍ୱାଦଶ ଚିତା ଗଛି ।୧୪
ଗୋପ୍ୟାନ ଦୋହରା କରେ ପାତ୍ରୀ ଗଡୁ କୁଶ କାଖେ ପିଢ଼ା
ବେଦ ମନ୍ତ୍ର ଅଧାନ ଦେବ କରାଣ୍ଡି ବିଡ଼ା ।୧୫
ଆସିଣ ମିଳିଲେ ଦେବ ଅର୍ଜୁନର କତି
ଭଗତ ଶରଣ ରକ୍ଷଣ ବୀରଧ୍ୱ ତୋର ଅଟଇ ଯୁଗତି ।୧୬
ତୁଷ୍ଟ ଭୋଜନେ ଯେହ୍ନେ ବ୍ରାହ୍ମଣେ ତ୍ରିପୁତି
ପୀଢ଼ା ମାଡି ବସିଲେ ଯାଇଂ ଅର୍ଜୁନର କତି ।୧୭
ମଉଷଧି ଅକ୍ଷତ ସେ ଯେ ଘେନିଲେ କରପୁଟେ
ଦୁର୍ବାକ୍ଷତ ଦିଲେ ନେଇ ଅର୍ଜୁନର ଲଲାଟେ ।୧୮
ସୁବର୍ଣ୍ଣର ଫରୁଆରେ ଅଷ୍ଟରତ୍ନ ଖଞ୍ଜି
ଅନେକ ମଉଷଧି ଭିତରେଣ ସଞ୍ଚି ।୧୯
ସମ୍ଭାଳ ବାସବୀ ଯେଥେଂ ତୋର ଅନେକ କାର୍ଯ୍ୟ ଅଛି
ଯେ ସେ କ୍ଷେତ୍ରୀ ତୋତେ ଶସ୍ତ୍ର ନ ପାରିବେ ଯୋଚି ।୨୦
ଆହୋ ଯାତ୍ରା ସାଂଗ୍ରାମେ ଆବର ଅନକୂଳେ
ଯେ ମଉଷଧି ଅକ୍ଷତ ତୁ ବାବୁ ଘେନିମୁଂ କପୋଳେ ।୨୧
ଜଳେ ଥଳେ ଅନଳେ ନାହିଂ ତୋତେ ଅପ୍ରାଜୟେ
ତ୍ରଇଲୋକ୍ୟ ଜିଣନ୍ତା ହେବୁ ସାଂଗ୍ରାମେ ହୋଇବୁ ନିର୍ଭୟେ ।୨୨
ସ୍ତମ୍ଭନ ମୋହନ ଯେ ବଶ ଉଚ୍ଚାଟନ
ଗୁଟିକା ଅଞ୍ଜନ ଯେ ଧରଣ ଧାରଣ ।୨୩
ଅର୍ଜୁନକୁ ଦୃଢ଼ କରି ଦିଲେ ମଉଷଧି
ଯେ ଭସ୍ମ ଲେପିଲେ ଶରୀରୁଂ ତୁଟିବ ନାନା ବ୍ୟାଧି ।୨୪
ମଉଷଧି ଦହନରୁ ଦିଲେକ ବିଭୂତି
ଯେହା ଅଙ୍ଗେ ବାବୁ ଲେପନ କରିବୁ ନିତି ।୨୫
ପଶୁପତ୍ର ମୁଦ୍‌ଗର ବଜ୍ର ଯେ ଶକତି
ଅଙ୍ଗେ ନ ଭେଦିବ ଚୂର ହୋଇବ ଯେଘାନ୍ତି ।୨୬
ମହାମନ୍ତ୍ର ପଢ଼ି କରି ଦିଲେକ ଆଶିଷ
ତ୍ରଇଲୋକ୍ୟ ବ୍ରାହ୍ମଣ୍ଡେ ତୋତେ ହୋଉ ପାଥ ଯଶ ।୨୭
ତିନିଯୁଗର ମୁହିଂ ଯେ ହୋଇଥିଲି ରୋଗୀ
ତୋହୋର ପ୍ରସାଦେ ମୁହିଂ ହୋଇଲି ସୁଖଭୋଗୀ ।୨୮
ଯେସନେକ ନିଷ୍କଳଙ୍କ ହୋଇଲା ମୋର କାୟେ
ବଂଶରେ କଳଙ୍କ ତୋର ନ ଲାଗୁ ଧନୁର୍ଜ୍ଜୟେ ।୨୯
ସକଳ ଭୁବନକୁ ଅଗ୍ନି ସେ ଅଟଇ ମୂଳ
ଅଗ୍ନିହିଂ ସେ ଖଣ୍ଡଇ ଦୂରିତ ସକଳ ।୩୦
ପୁଣ ପୁଣ ଆଶିଷ କରନ୍ତି ପରମ ସାନନ୍ଦେ
ହୋଇଲି ନିକଳଙ୍କ ବାବୁ ତୋହୋର ପରସାଦେ ।୩୧
ଜଳେ ଥଳେ ଅନଳେ ଖଡଗେ ନ ତୁଟୁଂ ତୋର କାୟେ
ତ୍ରଇଲୋକ୍ୟ ସାଂଗ୍ରାମେ ହୁଅ ତୁ ଅଜୟେ ।୩୨
ଜାତ ହନ୍ତକକୁ ଯେ ଅଜପା ଯୋଗ ଧାନେ
ଶୁଦ୍ଧ ଅଶୁଦ୍ଧ ବୁଝି ତ ଗୁଟଇ ମନ୍ତ୍ର ଗ୍ୟାନେ ।୩୩
ନାରାଚ ସନ୍ଧିବୁ ଯେବେ ଯେହି ମନ୍ତ୍ର ପଢ଼ି
ଯେକା ବାଣ ପେଷିଲେ ହୁଅନ୍ତି ଲକ୍ଷ ଚାରି ।୩୪
ଅରୁଣ କିରଣ ହାଦେ ଯେଉଂ ବେନି ମଣି
ଅର୍ଜୁନର କଣ୍ଠେ ବଶ୍ୟାନର ଲମ୍ବାଇଲେ ଆଣି ।୩୫
ଯେ ମଣି ଥିଲେ ବାବୁ ନ ପଡଇ ରୋଗ ବ୍ୟାଧି
ହରଇ ବିପତ୍ତି ଯେ ପ୍ରସରଇ ବୁଦ୍ଧି ।୩୬
ଗବନ ଅନକୂଳେ ବାଞ୍ଛା ହେଉ ପ୍ରାପତ
ଯାବତ ଚନ୍ଦ୍ରାଅର୍କେ ସିଦ୍ଧି ଯେ ସମସ୍ତ ।୩୭
ଯେତେବେଳେ ବାବୁ ସାଂଗ୍ରାମେ ଯାଉଥିବୁ
ଆମ୍ଭେ ତୋହୋର ରଥ ଦକ୍ଷିଣ କୋଣେ ଥିବୁଂ ।୩୮
ଯେତେ ଧନୁ ଶହସ୍ର ମୁଂ ଦେବତାଙ୍କ ତହୁଂ ଆଣିଲି ମାଗି
ବାଞ୍ଛାସିଦ୍ଧ କରି ଅର୍ଜୁନକୁ ଦିଲେ ବେଗି ।୩୯
ଅନେକ ବିଦ୍ୟା ଦେଇ ଦେବ ହୋଇଲେ ପରସନ
ତହୁଂଣ ଅଗ୍ନି ଦେବତା ହୋଇଲେ ଅନ୍ତର୍ଧାନ ।୪୦
ଖାଣ୍ଡବ ବନ ଦହନେ ହୋଇଲା ସେ ଅଗ୍ନିଙ୍କର ବୁଦ୍ଧି
ରାଗେଣ ହରିଲେ ଆକାଶର ସମ୍ବୃଧି ।୪୧
ସତ୍ୟ ତ୍ରେତୟା ଦ୍ୱାପର ଯେ ମନ୍ଦାଅଗ୍ନି ହୋଇଲେ
ଅର୍ଜୁନ ପ୍ରସାଦେ ଦ୍ୱାପରେ ଅନଳ ତେଜ ପ୍ରକାଶିଲେ ।୪୨
ତହୁଂଣ ବିଜେ କରି ଗଲେକ ଅର୍ଜୁନ
କପିଳାସେ ଥୋଇଲେ ନେଇ ଦେବଶସ୍ତ୍ରମାନ ।୪୩
ନନ୍ଦିଘୋଷ ରଥ ଚାରି ଅଶ୍ୱନ୍ତ ସହିତେ
ସମସ୍ତ ସମ୍ଭାଳିଲେ ଗଉରା ଜଗତମାତେ ।୪୪
ଗିରିଜାଙ୍କ ପଦ୍ମପାଦେ ପ୍ରଳମ୍ବିତ ହୋଇଲେ ଧନୁର୍ଜ୍ଜୟେ
ସୁମରିଲେ ଶହସ୍ର ଛାଡି ଦେବୁଟି ଗୋ ମାୟେ ।୪୫
ଲୟେ ବୋଧମନ୍ତ୍ର ଦିଲେକ ପାର୍ବତୀ

ଯେ ମନ୍ତ୍ର ପଢ଼ି ସୁମରିବୁ ବାବୁ ମୋତେ ମହାଛତ୍ରୀ
କରେଣ ଧାମଣା କାଠର ଧନୁ ଦୋସରା ପିନାକୀ ।୪୬
ବେନି ଦ୍ରୋଣ ଭିଡ଼ି ବାହାରିଲେ ସର୍ବସାଚୀ
ତପୋଧନ ରୂପ ସେ ଧରିଣ ଫାଲଗୁନି ।୪୭
ଶିରରେ ବାନ୍ଧିଲା ସେ ଜଟା ଗୋଟି ତିନି
ଭସ୍ମ ବିଲେପନ ଯେ ସ୍ଫଟିକ ମୁଦୁରା କର୍ଣ୍ଣେ ।୪୮
ତାମ୍ର ବସ୍ତ୍ର ଆରୋପଣ ଶରୀର ଉଦ୍ଧାନେ
ଓଡ଼ିଆଣି ଗୋଟିଯେ ପାଥ ଭିଡିଣ ଅଛି କଟି ।୪୯
ଭିଡ଼ିଲା ଗଣ୍ଡସ୍ଥଳେ ଦିବ୍ୟ ବସନ କର୍ପଟି
ଯେସନେକ ସରୂପ ରୁଦ୍ରଗଣ ଚିହ୍ନ ।୫୦
ସତ୍ୟ ଆଚାରୀ ପାଥ ଚଳଇ ଘୋର ବନ ।୫୧

**

## ୩୦. ଚିତ୍ରାଙ୍ଗଦା ପରିଣୟ

ଶୁଣ ଆହେ ମନୁରାୟେ ଅଗସ୍ତି କହିଲେ
ସେହିଠାରେ ଚିତ୍ରଧ୍ୱଜ ବିମମାଳାକି ବିଭା କରାଇଲେ ।୧
ଅନେକ ସାନନ୍ଦ ହୋଇଲେ ବେନି ରାଜା
ଅର୍ଜୁନ ଚରଣେ କଲେ ଦିବ୍ୟ ପୂଜା ।୨
ଭୋ ସ୍ୱାମୀ କିଯେ ତୁମ୍ଭେ କହିବା ବିଚାରି
ମାନବ ଦୃଷ୍ଟିରେ ଆମ୍ଭେ ଚିହ୍ନିତ ନୁଆରି ।୩
ହରିହର କିବା ସ୍ୱାମୀ ଅଟୁ ପୁରନ୍ଦର
କିବା ଯମଦଗ୍ନି ସୁତ ବୀର ପ୍ରଶୁଧର ।୪
କିବା ଧର୍ମ ବିଜେ କରିଅଛି ଅଦଭୁତେ
ଆମ୍ଭନ୍ତ ଯେ ସମାଧନା କରିବା ନିମନ୍ତେ ।୫
ହସିଣ କହଇ ତାକୁ ପାଣ୍ଡବ ସୁନ୍ଦର
ଶୁଣ ହୋ ଯେକମନେ ବେନି ନୃପବର ।୬
ନୁହଇଂ ମୁଂ ହରିହର ଇନ୍ଦ୍ର ମୋର ତାତ
ଅଜା ଗୁରୁ ମୋହୋର ରେଣୁକା ଦେବୀ ସୁତ ।୭
ପର୍ଶୁରାମଙ୍କର ଶିଷ୍ୟ ଅଟନ୍ତି ଗୁରୁ ଦ୍ରୋଣ
ଆମ୍ଭ ଗୁରୁ ଦ୍ରୋଣ ତେଣୁ ଅଜାଗୁରୁ ଭୃଗୁରାଣ ।୮
ପଣ୍ଡୁର ନନ୍ଦନ ମୋର ନାମ ଫାଲଗୁନି
ମାତା ମୋ କୋଇନ୍ତା କୋନ୍ତଭୋଜର ନନ୍ଦିନୀ ।୯
ଶୁଣିଣ ପ୍ରଳମ୍ବ କଲେ ବେନି ନୃପମଣି
ଉଠିଣ ବଇରାଷ୍ଟ୍ର ରାଜା ମାଗଇ ମେଲାଣି ।୧୦
ସ୍ୱାମୀ ଚାଳିଶ ଦିନ ହୋଇଲା ଅଇଲି ରାଜ୍ୟ ଛାଡି
ଆଗ୍ୟାଂ ହୋଇଲେଣ ମୁଂ ଯିବି ଆଗ ବଢ଼ି ।୧୧
ଶୁଣ ହୋ ମନୁରାଜା ବଦୟନ୍ତି ଅଗସ୍ତି
ଅର୍ଜୁନକୁ ମେଲାଣି ମାଗି ଚଳିଲା ବଇରାଷ୍ଟ୍ର ନୃପତି ।୧୨
ଯେଥୁ ଅନନ୍ତରେ ରାଜା ଚିତ୍ରାଙ୍କୁର ବୀର
ଉଭା ହୋଇଲାକ ଆସି ଅର୍ଜୁନ ଆଗର ।୧୩
ପାତ୍ରମନ୍ତ୍ରୀ ଘେନି ସଂଗେ ପାଥ ପାଦେ ଖଟି
ପୁତ୍ରବଧୂ ସହିତରେ ଭୂମିରେଣ ଲୋଟି ।୧୪
ଉଠ ଉଠ ବୋଇଲେ ବୀଚିତ୍ରବୀର୍ଯ୍ୟ ନାତି
ଆଗ୍ୟାଂ ପାଇଣ ରାଜା ଉଠିଲାକ ଧାତି ।୧୫
ଶିରେ କରଯୋଡି କରଇ ଅନେକ ତୁସ୍ତି
ତୋହୋର ପାଇଲି ମୁହିଂ ସକଳ ବିଭୂତି ।୧୬
ସ୍ୱାମୀ କୁମ୍ଭିରୀ କିନ୍ନରୀ ହିଡିମ୍ବକ ବକନିସୂଦନ
ପାଣ୍ଡବାସୁର ମାରି ରଖିଲୁ ଦ୍ରିଯୋଧନ ।୧୭
ଅଙ୍ଗାରପନ୍ନଙ୍ଗକୁ ଜିଣିଲୁ ବନସ୍ତରେ
ଲକ୍ଷେ ରାଜା ଗଂଜିଲୁ ଦ୍ରୌପଦୀ ସୟଂବରେ ।୧୮
ସ୍ୱାମୀ ଚାରିଗୋଟି ସୋଦରେ ସମସ୍ତ ରାଜା ଜିଣି
ଲାଖ ବିନ୍ଧ ଆଣିଲ ଦ୍ରୋପତୀ ଦୁଲଣୀ ।୧୯
ଧନୁହୂଳ ଲଗାଇ ଜିଣିଲୁ ଈଶ୍ୱରଙ୍କୁ
ଖାଣ୍ଡବ ଦହନେ ଜିଣିଲୁ ଇନ୍ଦ୍ରଙ୍କୁ ।୨୦
ଅପାର ମହିମା ଦେବ ନୁଆରଇ କହି
ଶରଣ ଉଦ୍ଧାରଣ ଯେ ଭୃତ୍ୟ ଜନସାଇଂ ।୨୧
ବିରଥୀ ଆୟୁଧେ ନ ମାରୁ ସମରେ
କଥାଯେ ମାଗିବି ଦେବ ଦୟାକର ମୋରେ ।୨୨
ଯେମନ୍ତେ ଅନେକ ତୁସ୍ତି କଲା ନୃପମଣି
ଶୁଣି ତାହା ପ୍ରସନ୍ନ ଗାଣ୍ଡୀମ ଧନୁପାଣି ।୨୩
ହସିଣ ଅର୍ଜୁନ ବୋଲନ୍ତି ବଚନ
ମାଗ ହୋ ନୃପତି ଯାହା ଇଚ୍ଛା ତୋର ମନ ।୨୪
ଅର୍ଜୁନ ପ୍ରସନ୍ନ ହେବା ଜାଣି ନୃପବର
କପାଳେ କରଯୋଡି କହଇ ଉତ୍ତର ।୨୫
ସ୍ୱାମୀ ହୋ ମୋହୋର ଯେବେ ଘେନିଲ୍ଲ ସେବା
ମୋହୋର ରାଜ୍ୟକୁ ଯେବେ ବିଜୟେ କରିବା ।୨୬
ଦୋହିତା ମୋହୋର ଯେକ ଅଛି ଅବିଭାଇ

ତାହାକୁ ପ୍ରଦାନ କରିବି ତୁମ୍ଭଙ୍କୁଇଂ ।୧୨୭
ଆବର ବିଶେଷେ ଯେ ଆମ୍ଭର ପୁରଜନ
ଦ୍ୱିତୀୟ କୃଷ୍ଣ ତୁମ୍ଭଙ୍କୁ ଦେଖିବେ ନୟନ ।୧୨୮
ତେବେ ସେ ଦିଶିବ ମୋହୋର ପୁଣ୍ୟମାନ
କହନ୍ତି ଅଗସ୍ତି ଶୁଣ ହୋ ରାଜନ ।୧୨୯
ଶୁଣି ହରଷ ହୋଇଣ ପଣ୍ଡୁର କୁମର
ଆସନ ଛାଡିଣ ଉଠିଲେ ଧାତିକାର ।୧୩୦
ଅର୍ଜୁନଙ୍କୁ ସଂଗେ ଘେନି ଚଳଇ ନୃପତି
ଆସନ କଟକେ ଯାଇଂ ହରଷେ ମିଳନ୍ତି ।୧୩୧
ଯେଥୁ ଅନନ୍ତରେ ଯେ ରାଜାର ଅଙ୍ଗବଳ
ଭୟେଣ ଲୁଚିଥିଲେ ପର୍ବତ ଜୟାଳ ।୧୩୨
ଯେତେବେଳେ ରଣ ଛାଡି ପଳାଇଲା ମହୀପତି
ତରେଣ ପଳାଇଲେ ସମସ୍ତ ସେନା ରଥୀ ।୧୩୩
ପର୍ବତ ବନସ୍ତରେ ଲୁଚି ବସିଥିଲେ
ରାଜାର ଆସନ୍ତେଣ ସମସ୍ତେ ଅଇଲେ ।୧୩୪
ସମ୍ଭର୍ବେ ହୋଇଣ ସର୍ବେ କଟକେ ପଶନ୍ତି
ରଥ ଗଜ ଅଶ୍ୱ ପଟୋଆରେ ଯାନ୍ତି ।୧୩୫
ଯାଇଣ ନୃପତି ଯେ ପଶିଲା ନବର
ଅର୍ଜୁନଙ୍କୁ ଦିଲା ସେ ସୁବର୍ଣ୍ଣମୟ ପୁର ।୧୩୬
ଗଜଦନ୍ତ ପଲଙ୍କରେ ସୁପାତିର ଶେଯ
ଯେଥୁ ଅନନ୍ତରେ ଯାହା ଶୁଣ ମନୁରାଜ ।୧୩୭
ଜଉତିଷଙ୍କୁ ରାଜଣ ପୁଛିଲା ନୃପମଣି
ବିଚାରି କହ ହୋ ବିଭାଲଗ୍ନ ତିଥି ପୁଣି ।୧୩୮
ଜଉତିଷ ଜଣାୟେ ଦେବ ଆଜ ଚଉଠି ଶନିବାର
ଆସନ୍ତା ମଙ୍ଗଳବାରେ ବିଭାଘର କର ।୧୩୯
ସ୍ୱାମୀ ସପତମୀ ଦିନ ଯୋଗାଇଟି ବିଚାରକୁ
କୁମ୍ଭ କୃଷ୍ଣପକ୍ଷ ଯେ ଯୋଗାଇ ବିଭାକୁ ।୧୪୦
ବିଛାରେ ଚନ୍ଦ୍ର ଯେ ବିଶାଖା ନାମେ ନକ୍ଷତ୍ରର
ଧ୍ରୁବ ନାମେ ଯୋଗ ବବନାମେ କରଣ ଯେ ଆର ।୧୪୧
ତାରବଳ ଚନ୍ଦ୍ରବଳ ବୋଲିଣ ବୋଇଲା
ଖଡ଼ି କାଢ ପୁଣ ଗ୍ରହ କୋଷ୍ଟିୟେ ଥାପିଲା ।୧୪୨
ସପତ ଶଳାକା ନାଗନାଡିହିଂ ଭେଦିଲା
ସ୍ୱାମୀ ଦୁଇଦିନ ଛାଡି ବିଭା କରସି ବୋଇଲା ।୧୪୩
ଶୁଣିଣ ନୃପତି ତାହା ଉଦବେଗ ମନ
ମନ୍ତ୍ରୀକି ଚାହିଂଣ ରାଜା ବୋଲଇ ବଚନ ।୧୪୪
ନଗ୍ରପୁର ସମସ୍ତ ଯେ ମଣ୍ଡାଅ ବୋଇଲା
ଶୁଣିଣ ମନ୍ତ୍ରୀବର ସମସ୍ତ ଭିଆଇଲା ।୧୪୫
ମେଢ଼ ମଣ୍ଡପ ଜଗତୀ ଦେଉଳ ମଣ୍ଡନ୍ତି
ସୁବର୍ଣ୍ଣର କଳସ ବସାନ୍ତି ପନ୍ତି ପନ୍ତି ।୧୪୬
ବିଚିତ୍ର ଚିରାଳ ଯେ ଉଡଇ ଫରହର
ଚିତ୍ରପଟ ଲେଖମାନ ସମସ୍ତଙ୍କର ଘର ।୧୪୭
ସ୍ଫଟିକର ପାବଚ୍ଛ ବାନ୍ଧିଛନ୍ତି ଦ୍ୱାରେ ଦ୍ୱାରେ
ସାଧୁତର ଜନଗଣ ବାଣିଜ ବାଣିଜାରେ ।୧୪୮
ଦାଣ୍ଡ ପହଂରାଇ ଯେ କର୍ପୂର ଧୂଳି ସିଞ୍ଚି
ଚନ୍ଦନ ଛେରା ସୁବାସ କୁସୁମ ଯେ ବିଛି ।୧୪୯
ନଗ୍ର ପରିମଳ ଯେ ଦେଖନ୍ତି ସର୍ବଜନ
ସାଧୁ ସାଧୁ ବୋଲିଣ ଯେ ବୋଲନ୍ତି ବଚନ ।୧୫୦
ଯେଥୁ ଅନନ୍ତରେ ଯେ ବେନି ଦିନ ଗତ ହେଲା
ସମସ୍ତ ଯୋଗାଡମାନ ବୁଝି ସଜାଡିଲା ।୧୫୧
ମଙ୍ଗଳ ବେଳ ଜାଣିଣ ଯେ ଅହିଅ ଯୁବତୀ
ଗ୍ରାମଦେବତାଙ୍କି ଶୁଭେ ମଙ୍ଗୁଳିଣ ଯାନ୍ତି ।୧୫୨
କେହୁ ଦୁର୍ବାକ୍ଷତ କେହୁ ଧୂପ ଦୀପ ଘେନି
ଦାଣ୍ଡରେ ବିଭା ଶୁଭ ଗୀତ ଗାବନ୍ତି କାମିନୀ ।୧୫୩
ନଗ୍ର ପରିମଳ ଯେ ବୁଲନ୍ତି ରାଜବାଟ
କାମିନୀ ଗମନେ ଶୋଭା ପାଇଲାକ ରାଷ୍ଟ ।୧୫୪
ଦେବୀଙ୍କୁ ମଙ୍ଗୁଳିଣ ସେ ନିଜ ପୁର ଆସି
ବରକୁ ମଙ୍ଗୁଳନ୍ତି ଚାରୁ ଶୁଭ୍ରକେଶୀ ।୧୫୫
ସୁବର୍ଣ୍ଣର ଖୋରାରେ କୁଙ୍କୁମ ଆଣନ୍ତି
ଅର୍ଜୁନର ଅଙ୍ଗରେ ନେଇ ତାହାକୁ ଲେପନ୍ତି ।୧୫୬
ବିବିଧ ଅଳଙ୍କାର କରନ୍ତି ଆଭରଣ
କନ୍ୟାକଇଂ ଯେ ବିଧିରେ କରନ୍ତି ମଙ୍ଗଳଣ ।୧୫୭
ରଜନୀ ବୋଲନ୍ତି ତହିଂ ଯୁବତୀୟେ ଆସି
ସାତ ଅହିଅ କାମିନୀ କାଖେ ଘେନିଣ କଳସି ।୧୫୮
ଦାଣ୍ଡରେ ସେ ବୁଲନ୍ତି ମଙ୍ଗଳ ଗୀତ ଗାଇ
ଦ୍ୱାରେ ଦ୍ୱାରେ ବୁଲି ପାଣି ମାଗନ୍ତି ସେ ଯାଇଂ ।୧୫୯
ଘରେ ଥିବା ଲୋକେ ଜାଣିଲେ ଯେ ପରିକଳି
ବୋଇଲେ ଗୋ ଦାସୀ ଅଇଲେଣି ପାଣି ତୋଳି ।୧୬୦
ଅହିଅ ଯୁବତୀମାନେ ଶୁଚିବନ୍ତ ହୋଇ

ପବିତ୍ର ଜଳ ଆଣି ସେ ଦିଅନ୍ତି ବଢ଼ାଇ ।୬୧
ଯେମନ୍ତେ ଅନେକ ଯୁବତୀଯେ ଜଳ ଦିଲେ
ରାଜାର ମୁଦୁସୁଲୀଯେ ନୀର ଘେନିଗଲେ ।୬୨
ସାତ କୁମ୍ଭେ ଯହୁଂ ଶୁଭେ ପୂରିଲାକ ପାଣି
ବାହୁଡ଼ି ଆସନ୍ତି ତହୁଂ ସକଳ ତରୁଣୀ ।୬୩
ସୁବର୍ଣ୍ଣର ପୀଢ଼ାରେ ନେଇ କନ୍ୟାକୁ ବସାଇ
ନବଗ୍ରହ ସୁଗନ୍ଧ ଯେ କେଶରେ ଲଗାଇ ।୬୪
ସେ ଜଳ ଘେନିଣ ଯେ ଅଭିଷେକ କଲେ
ତହିଂର ଉପରେ ନେଇ ଅୟେଂଳା ବୋଳିଲେ ।୬୫
ସୁବାସ ଜଳରେ ପୁଣ ସ୍ନାହାନ କରାଇ
କେଶକୁ ପୋଛିଲେ ନବତନ ବସ୍ତ୍ର ଦେଇ ।୬୬
ଅର୍ଜୁନକୁ ସେହିମତି କରାଇ ସ୍ନାହାନ
ଶ୍ରୀଅଙ୍ଗ ପୋଛିଲେ ଘେନି ଦେବାଙ୍ଗ ବସନ ।୬୭
ଦେବାଙ୍ଗ ପତନୀ ବର କନ୍ୟାଙ୍କୁ ପିନ୍ଧାଇ
ଚାରୁ ଝୀନ ବସ୍ତ୍ରମାନ ଉପୁରାଣ ଦେଇ ।୬୮
ପଞ୍ଚୁଗରାସୀ କରାନ୍ତି ଆଣି ଚୋରି ଭାତ
ଯେମନ୍ତ ସମୟେଣ ଆସି ଯେ ହୋଇଲା ପ୍ରଭାତ ।୬୯
ଜଉତିଷକୁ ଚାହିଂ ପୁଛଇ ନରସାଇଂ
ଜାଣି କହିଦେବ ଅନକୂଳ ବେଳ ଯେହି ।୭୦
ଜଉତିଷ କର ଯୋଡି କରି ଜଣାଇଲା
ବିଭାବେଳ ଆସି କରି ପ୍ରବେଶ ହୋଇଲା ।୭୧
ଶୁଣି ଛାୟା ମଣ୍ଡୋପ ବେଗେ ମଣାଇ ଦଣ୍ଡଧାରୀ
ଖଂଜଇ ହୀରା ନୀଳା ଗଜଦନ୍ତ ପିତୁଳୀ ।୭୨
ବରବେଶ ହୋଇ ବିଜେ ପାଣ୍ଡବ ସୁନ୍ଦର
ଶୁଭେ ବସାଇଲେ ନେଇ ବେଦୀର ଉପର ।୭୩
ଯେମନ୍ତର ସମୟେ ଆସି ରାଜାର ଦୁହିତା
ହୁଳହୁଳି ଦିଅନ୍ତି ସେ ଅନେକ ବନିତା ।୭୪
ବେଦୀରେ ବସିଅଛି ପାଣ୍ଡୁ ରାଜା ଶିଷ୍ୟ
ତାହାର ଉପରେ ଉହାଡ କଲେ ନବବାସ ।୭୫
ହାଥରେ ଲବଣ ତଣ୍ଡୁଳ କନ୍ୟା ଧରିଥିଲା
ଅର୍ଜୁନ ଉପରକୁ ବିଞ୍ଚିଣ ଫିଙ୍ଗିଦିଲା ।୭୬
ହରଷେ ଯୁବତୀଯେ ଗାଇଲେ ମଙ୍ଗଳ
ଯେଥୁ ଅନନ୍ତରେ କଥା ଶୁଣ ମହୀପାଳ ।୭୭
ସୁଜାଣେଶ୍ୱର ନାମେ ରାଜାର ପୁରୋହିତ
ବେଦୀରେ ବସିଲେ ଯାଇଂ ସେ ବିଭାର ନିମନ୍ତ ।୭୮
ବାକ୍ୟ କରାବନ୍ତି ଅର୍ଜୁନ ଆଗର
ପୁଣ ଆରୋପିଲେ କୁଶର ବିଷ୍ଟର ।୭୯
ଅତୁଠରୁ ରାୟେ ଅଣାଇଥିଲା ପାଣି
ବର ପାଦ ଧୋଇଲା ତାର ପୁତ୍ରମଣି ।୮୦
ମନ୍ତ୍ରିଣ ଶାଢ଼ୀ ଖଦୀ ଦିଲେକ ନିର୍ଭାଇ
କନ୍ୟାକଇଂ ଆଣହୋ ଯେ ବସନ ପିନ୍ଧାଇ ।୮୧
ସେ ବସ୍ତ୍ରକୁ ପିନ୍ଧିଣ ଯେ ରାଜାର ଦୁଲଣୀ
ବେଦୀରେ ବସିଲା ଯାଇଂ ସ୍ତିରୀ ସୁଲକ୍ଷଣୀ ।୮୨
ବରୁଣ ପୂଜାଦି ବାକ୍ୟ କଲେ ପୁରୋହିତ
କୁଶରେ ବାନ୍ଧିଲେ ବର କନ୍ୟାଙ୍କର ହାଥ ।୮୩
ଯୁବତୀଗଣ ମିଳିଣ କରନ୍ତି ମଙ୍ଗଳ
ଶଙ୍ଖେ କୁଶ ପାଣି ଘେନି ବୋଲେ ମହୀପାଳ ।୮୪
ସ୍ୱାମୀ ଆଳ୍ପୁଂ ସୋମ ବଂଶେ ପଶିଲି ଶରଣ
ଯଉତୁକ ଦେବାକୁ ମୁଂ ନୁହଇ ଭାଜନ ।୮୫
ଅର୍ଜୁନ ମୁଖକୁ ଚାହିଂ ବୋଲଇ ବଚନ
ବନ୍ଧୁତାପଣକୁ ମୁହିଂ ନୁହଇ ଭାଜନ ।୮୬
ଚିତ୍ରପଦା ନାମେ ତାର ଆରେକ ଦୁଲଣୀ
ଯଉତୁକ ଦିଲି ବୋଲି ଶଙ୍ଖେ ଦିଲା ପାଣି ।୮୭
ଶୁଣ ଆହୋ ମନୁରାୟେ ଅଗସ୍ତି କହିଲେ
ସେହି ବେଦୀରେ ଯେ ଚିତ୍ରପଦାକୁ ବିଭା କରାଇଲେ ।୮୮
ଲାଜାହୋମ ସାରିଣ ସେ କଲେ ଅଗ୍ନି ଶାନ୍ତି
ମୁଣୋହି ସାରିଣ କର୍ପୂର ତାମ୍ବୁଳ ଭୁଞ୍ଜନ୍ତି ।୮୯
ବରକନ୍ୟା ଚଳିଲେ ଯେ ମଧୁଶଯ୍ୟା ପୁର
ପାତ୍ରମନ୍ତ୍ରୀ ଚଳିଗଲେ ଯେ ଯାହା ଠାବର ।୯୦
ଧାଈ ମୁଦୁସୁଲୀ ଗଲେ ଯେ ଯାହାର ପୁରୀ
ଅନ୍ତପୁରକୁ ବିଜେ କଲେ ଦଣ୍ଡଧାରୀ ।୯୧
ରୟେଣୀ ପ୍ରଭାତେ ନିତ୍ୟକର୍ମ ସାରି
ଆସ୍ତାନ ମଣ୍ଡୋପେଣ ବିଜୟେ ଦଣ୍ଡଧାରୀ ।୯୨
ଦିବସେ ଆସ୍ତାନରେ ବସଇ ଅର୍ଜୁନ
ରୟଣୀରେ ଘରଣୀ ସଂଗେ ବଞ୍ଚେ ଦିନ ।୯୩
ସୁଖେଣ ତହିଂ ରହିଲେ ବୀର ଫାଲଗୁନି
ଯେମନ୍ତେଣ ବହିଗଲା ତହିଂ ମାସ ବେନି ।୯୪
ଲମ୍ପିତା ବୋଲିଣ ସେହୁ ଯେବଣ ଯୁବତୀ

ଅର୍ଜୁନର ବୀର୍ଯ୍ୟେ ସେ ହୋଇଲା ଗର୍ଭବତୀ ।୯୫
ମନେ ବିଚାରିଲା ମୁଂ ଯିବଇଂ ବନବାସ
ଯେତେ ବିଚାରି କହିଲେ ରାଜାଙ୍କର ପାଶ ।୯୬
କୋମଳ କରିଣ ପାର୍ଥ କହଇ ବଚନ
ସାବଧାନ ହୋଇ ତୁମ୍ଭେ ଶୁଣ ହୋ ରାଜନ ।୯୭
ସମ୍ଭାଳି ଥାଅ ଦୁହିତା ଦୁହିଙ୍କି ତୁମ୍ଭର
ମୁହିଂ ଯାଉଅଛି ଯେବେ ଅରଣ୍ୟ ଭିତର ।୯୮
ତାହା ଶୁଣନ୍ତେ ବିରସ ହୋଇଲା ନୃପତି
କି କାରଣେ ବନେ ଯିବ ବୋଇଲାକ ଧାତି ।୯୯
ସୋମବଂଶ ଉଦ୍ଧାରଣ ପଞ୍ଚୁ କଟକେ ଅଧିପତି
ହରି ବଳରାମକଇଂ ଯାହାଙ୍କର ପ୍ରୀତି ।୧୦୦
ସେବା କରି ତହିଂ ନୋହିଲି ଭାର୍ଜନ
ଦୋଷ କ୍ଷମା କରି ମୋ ଅପରାଧ ନ ଘେନ ।୧୦୧
ସ୍ୱାମୀ ଦଶ ଦୋଷ କ୍ଷମା କରିବୁନା ମୋର
ମୁହିଂ ଯେ ଶରଣ ସ୍ୱାମୀ ତୋହୋର ପୟର ।୧୦୨
କିବା ଅପରାଧ କଲେ ମୋହୋର କୁମାରୀ
ବନକୁ ଗମନ କରୁଅଛୁଂ ତେଣୁ କରି ।୧୦୩
ତୁ ତାହାଙ୍କ ଦୋଷ ନାଥ କରିବୁନା କ୍ଷମା
ତୁ କ୍ଷତ୍ରୀବର ସେ ଅଲିଅଳ ଜେମା ।୧୦୪
ରାଜାର ବାକ୍ୟ ଶୁଣି ବୋଲଇ ଅର୍ଜୁନ
ଶୁଣ ଆହେ ମହାରାଜ ମୋହୋର ବଚନ ।୧୦୫
ତୁମ୍ଭ ବେନି ଦୁହିତାଙ୍କ ନାହିଂ କିଛି ଦୋଷ
ମୋର ବନବାସ କଥା ବଡ଼ାଇ ଭବିଷ୍ୟ ।୧୦୬
ଯେଉଂଣ ଦିନେ ଲାଖ ବିନ୍ଧି ଆଣିଲୁ ଦ୍ରୋପଦୀ
ପାଞ୍ଚେ ବିଭା ହେଲୁ ଯେକା ରାଜାର ଦୁହିତୀ ।୧୦୭
ଭୀମସେନ ଶୟନ ଭୋଜନେ ଅତିପ୍ରୁତି
ନିରନ୍ତରେ ରମିତେ ବିଚାରନ୍ତି ।୧୦୮
ଭୟେ କରି ଦ୍ରୋପଦୀ ଅଗ୍ନିରେ ପଶନ୍ତେ
ସତ୍ୟ ଉଚ୍ଚାରିଲୁ ତହୁଂ ଆମ୍ଭେ ପଞ୍ଚୁ ଭ୍ରାଥେ ।୧୦୯
ପାଞ୍ଚେହେଂ ପାଞ୍ଚରାତ୍ର ବିଜୟ କରିବା
ଯେକର ଶୃଙ୍ଗାର ଯେବେ ଆରେକ ଦେଖିବା ।୧୧୦
କି ଅବା ଯେକଦିନକରେ ଯେ ଯିବ ବେନି ବେଳ
ଦ୍ୱାଦଶ ବରଷ ସେହୁ ବୁଲିବ ଗିରିମାଳ ।୧୧୧
ବନରେ ବଞ୍ଚିବ ଯେ କରିବ ତୀର୍ଥମାନ

ବାରହ ବରଷରେ ଫେରି ଆସିବ ସଦନ ।୧୧୨
ସତ୍ୟ ଶୁଣି ଦ୍ରୋପତୀ ହରଷ ହୋଇଲା
ଯେ ବିଧି ପ୍ରମାଣେ କେତେହେଂ ଦିନ ଗଲା ।୧୧୩
ଦିନେକ ବ୍ରାହ୍ମଣ ଯେକ ମିଳି ଅଦଭୁତେ
ବୋଇଲା ବେଗେ ଯୁଷ୍ଟେଷ୍ଟିଙ୍କି ଭେଟ କରାଅ ମୋତେ ।୧୧୪
ତାହାର ବଚନେ ସତ୍ୟ ଲଙ୍ଘନ ମୁହିଂ କଲି
ଯୁଷ୍ଟେଷ୍ଟିଦେବଙ୍କର ଯେକାନ୍ତ ଦେଖିଲି ।୧୧୫
ସେ ଦୋଷେ ଗମନ ମୁହିଂ କଲଇଂ ବନକୁ
ନ କର ଶୋଚନା ମୁଂ ଯିବଇଂ ସତ୍ୟ ନିମନ୍ତକୁ ।୧୧୬
ଶୁଣିଣ ସନ୍ତୋଷ ଯେ ହେଲେ ନୃପମଣି
ଲୟିତା ଚିତ୍ରପଦାଙ୍କୁ ବୋଧି ବାହାର ବୀରମଣି ।୧୧୭
କେଶବ ସୁମରି ପାଥ ଚରଣକୁ ବଢ଼ାଇଲା
ଗହନ ଅରଣ୍ୟେ ପଶି ପଥ ବାହିଗଲା ।୧୧୮
ସିଦ୍ଧ ନାମେ ବନେ ଯାଇଂ ମିଳିଲାକ ପାର୍ଥିବ
ଦେଖଇ ବିପିନ ଅତି ଅସମ୍ଭବ ।୧୧୯
ପନ୍ତି ପନ୍ତି ହୋଇଣ ଅଛନ୍ତି ବୃକ୍ଷମାଳ
ଜମ୍ବୁ ଜମ୍ବିର ଆଦି ଜେଉଟ ଜମ୍ବାଳ ।୧୨୦
ଜୟନ୍ତୀ ଜଜାଙ୍ଗୀ ଜାଠିମଧୁ ନାମେ ଗଛ
ପେଣ୍ଡି ଖଜୁରି ମରୀଚ ମାହାଳ ଦାରାକ୍ଷ ।୧୨୧
କଦମ୍ବ କରମଙ୍ଗା କରଞ୍ଜ କୁରୁବେଲି
କୋଚିଳା କଇଥ କେନ୍ଦୁଗଛ ପଲି ପଲି ।୧୨୨
କଦଳୀ କଞ୍ଚଣ କରନ୍ଦା ଯେ କଣୀଅର
କୁମ୍ଭାଟୁଆ କେତକୀ କୃଷ୍ଣପନ୍ନ ସାର ।୧୨୩
କରୁଣା କୁକୁରଛାଲିଆ କିଆ ଧାଡି ଧାଡି
କଣ୍ଟି କଣ୍ଟାହୋଳ କୁସୁମ ବୃକ୍ଷ ବଢ଼ି ।୧୨୪
ଶାଳ ବୃକ୍ଷ ସାହାଡା ଶାଳପର୍ଣ୍ଣି ସଜନା
ଶିମୂଳୀ ସଉପାଦି ଯେ ଦିଶଇ ବିତପନା ।୧୨୫
ବଇଂଚ ବରକୋଳି ବାହାଡ଼ା ବଉଳ
ବାସଙ୍ଗ ବେଗୁନିଆ ବରହାଦାଢ଼ ଫୁଲ ।୧୨୬
ବରବେଲ ବେହେଣ୍ଡା ବଧୂଲୀ ବାସ କରି
ବାଇଡଙ୍କ ବରିପୋଲୁଅ ବଡୁଆଂ ଆଦି କରି ।୧୨୭
କ୍ଷୀର କ୍ଷୀରକୋଳି ଖଇର ଖଜୁରି
ଡୋହଳ ଡାଳିମ୍ବ ଡଂକାରି ଡାକସିଙ୍ଗା ଡିମ୍ବିରୀ ।୧୨୮
ଗମ୍ଭାରି ଗରଗଡ଼ ଗଇଶ ଆଦି ଗୁଆ

ଗୋଠଫଳ ଗଗୁଳ ଯେ ଲଟାଗୁଲୁଚି ଗୁଗୁଚିଆ ।୧୨୯
ଅଶନ ଅରଖ ଓଶସ୍ତ ଦୁଦୁରା ଅଣଖୁଆ
ଅଯେଂଲା ଉଆଉ ଅଗବଥୁ ପାଳଧୂଆ ।୧୩୦
ଘଣ୍ଟଫଳ ଘିଅକୁଆଂରୀ ଘରପୋଡିଆ ଭାଣ୍ଡିର
ଭୂଇଂନିମ୍ବ ଭାଲିଆ ନାରଙ୍ଗ ଆବର ।୧୩୧
ନଡ଼ିଆ ନିମ୍ବ ଆଉ ନଅର କୋଳି
ଲେମ୍ବାଉ ନାଗେଶ୍ୱର ପୁଷ୍ପ ଯେ ନିଆଳୀ ।୧୩୨
ପାଣ୍ଡଫାଶି ବୃକ୍ଷ ଆବର ଫାମ୍ପୁଣିଆଂ
ରାଇବୃକ୍ଷ ରାଇଟ ଆବର ଶୁଣିଆଂ ।୧୩୩
ମହୁଲ ମଞ୍ଜାରୀ ମନୁଷା ମହାକାଳ
ମେଣ୍ଡି ମଥୁରା ମହାନିମ୍ବ ତମାଳ ।୧୩୪
ମାରୀଚା ମନ୍ଦାର ମଲ୍ଲୀ ମାଧବୀ ମରୁଆଭଳି ଛରିଅନା
କାଇ ଯୁଇ କୁସୁମ ପାଟେଳୀ ଧାତୁକୀ ଧନିଆଂ ।୧୩୫
ଧନ୍ୱନ୍ତରୀ ପିଆଶାଳ ପିପଳୀ ପାନମହୁରୀ ତେନ୍ତୁଳି
ତରାଟ ଟଗର ହେଙ୍ଗୁ ତାଳ ଚିତା ଚିରାଇତା ତମ୍ବୁରି ।୧୩୬
ଟୋଲଙ୍କ ହରିଡା ହଳଦା ଟଭା ସପୁରୀ ସହିତେ
ନାନା ଜାତି ଗୁଳ୍ମ ଲତା ଯେ ଅପ୍ରମିତେ ।୧୩୭
ମହାଘୋର ଲତା ଅଟଇ ସେ ବନ
ଅଛନ୍ତି ବିବିଧ ବର୍ଣ୍ଣେ ତହିଁ ଜୀବମାନ ।୧୩୮
କୃଷ୍ଣାଜିନ କୁରଙ୍ଗୀ ଯେ ଖରିଆ ଖୁରାଣ୍ଡି
ଗଣ୍ଡା ଗୟଳ ଗଜ ଘୋଡ଼ଙ୍ଗ ଘୋଡ଼ା ଗୋଟି ଗୋଟି ।୧୩୯
ନେଉଳ ନେପାଳୀ ମୂଷା ଓଧ ବଣଭୂଆ
ଝୀଙ୍କ ଝିଙ୍କାରୀ ଝାଙ୍କର ଆବର ଠେକୁଆ ।୧୪୦
ବ୍ୟାଘ୍ର ଭାଲୁକ ବରେହା କେନ୍ଦୁଆ ବଳିଆ
ମୃଗ ମଇଂଷୀ ଯେ ମୂଷା ବାଉଟିଆ ।୧୪୧
ଶଶା ଶାଳେହା ଗୋଧି ମୃଗଲାଭ ସହିତେ
ହରିଣପଲ ବନର ଜୀବମାନ ଯେତେ ।୧୪୨
ପକ୍ଷୀଜନ୍ତୁମାନେ ତହିଁ ଅଛନ୍ତି ଅପାର
କାକ କୁକୁଟ ପିକ କପୋତ ତାମ୍ରଚୂଡ଼ ।୧୪୩
କଜଳପାତିଆ ଆଉ କେଶରପାଣ୍ଡିଆ
କୋଚିଲାଖାଇ ପକ୍ଷୀ ଆବର କୁମ୍ଭାଟୁଆ ।୧୪୪
ହଂସ ହଂସରାଳୀ ଯେ ହରଡ ଚଢ଼େଇ ତିନି
ହଳଦୀବସନ୍ତ ହୁଂହୁଇଂଆ ଗୋବରାକୁ ଘେନି ।୧୪୫
ଗେଣ୍ଡାଳିଆ ଚକୁଆ ଗୋଡ଼ିଖାଇ ଯେହି
ଗୁଣ୍ଡୁରୀ ଖାକରଖାଇ ଗଙ୍ଗାଇଡୁବାଇ ।୧୪୬
ଶାରୀ ଶୁଆ ଶାଗୁଣା ଶାମଳହିଂ ଅଛି
ଶାହାଟ ସୁବର୍ଣ୍ଣଚୂଡ଼ ଶେଣା ନାମେ ପକ୍ଷୀ ।୧୪୭
ଚିଲ ଚିମୁଣିଆ ପେଚା ଯେ ଚକୋର
ଚାମରୀ ଘରଚଟିଆ ଯେ ଚାତକହିଂ ।୧୪୮
ବାଇଆ ବାୟେଂସା ବାଦୁଡ଼ି ବଢ଼ିଣା
ବକ ବିହଙ୍ଗମ କାନେଡି ଖଞ୍ଜନା ।୧୪୮
ଜଳପିମ୍ପି ଟିପି ଡାକକୁଆ ଡାହୁକ
ଟେଣ୍ଟୁଆ ତିତିରି ତାମ୍ରଚୂଡ଼ା ଅନେକ ।୧୫୦
ତାରାକ୍ଷୀ ଦୟାଳ କାଠକଟା ଶ୍ୱେତକୁଆ
ରାଜବଣି ରାଜହଂସ ରାଜବଳଭ ରାଜ କାଉଟିଆ ।୧୫୧
ଭରଥିଆ ଭଦଭଦଳିଆ ଆବର ଭାଥିଭ୍ରମର
ମଧୁମାଛି ମଧୁକର ମୁନିଆ ଚେମୁଣିଆ ଆର ।୧୫୨
ପାତିଶୁଆ ପେଚା ପାଟବଣି ପାଣିକୁଆ ସହିତେ
କୋଳାହଳ ନାଦ ଶୁଭଇ ଅପ୍ରମିତେ ।୧୫୩
ସରଯୂ ନାମେ ନଦୀ ବହଇ ବିତପନ
ତହିଁ ଯାଇଂ ମିଳିଲା ପାଣ୍ଡବ ଅରଜୁନ ।୧୫୪
ପୁଇଚାନ୍ଦିଆର ମୂଳେ ଧନୁ ତ୍ରୋଣ ଥୋଇ
ନଦୀରେ ପଶି ଯେ ବୀର ସ୍ନାହାନ କରଇ ।୧୫୫
ପିତୃ ତର୍ପଣ ସାରି କୂଳରେ ମିଳିଲା ।
ଫଳମୂଳ ଭୁଞ୍ଜି ଦେହ ସୁସ୍ତ କରାଇଲା ।୧୫୬
ଧନୁଶର ଘେନି ନିତ୍ୟେ ବନସ୍ତେ ଭ୍ରମଇ
ରାମ ନାମ ସୁମରି ସେ ବନସ୍ତେ ବଞ୍ଚଇ ।୧୫୭
ବଦୟନ୍ତି ଅଗସ୍ତି ଆହେ ଶୁଣ ନୃପବର
ଦଶମାସ ରହି ତହିଁ ପାଣ୍ଡୁର କୁମର ।୧୫୮
ପୁଣ ଯେ କାନନ ଉପେକ୍ଷିଣ ତହୁଂ ଗଲା
ଯାଉଂ ଯାଉଂ ପଥେ ଯେକ ପର୍ବତ ଦେଖିଲା ।୧୫୯
ମଣିଭଦ୍ରା ନାମ ଜାଣ ଅଟଇ ତାହାର
ତହି ଯାଇଂ ରହିଲା ପାଣ୍ଡବ ଧନୁର୍ଦ୍ଧର ।୧୬୦
ଶ୍ରୀହରିଙ୍କୁ ଯୁଦ୍ଧରେ ଜିଣିମ ସେହିଠାରେ
ଶତଧନୁ ଶରଣ ପଶିବ ବାସବାରେ ।୧୬୧
ଗୋସିଂଘକୁ ବଧ ସେ କରିବ ବୀରମଣି
କପାସୁର ଦଇତକୁ ପକାଇବ ହାଣି ।୧୬୨
ଯେମନ୍ତ ଶୁଣିଣ ବିଲଙ୍କ ଦେଶ ରାଜା

ଅଗସ୍ତିଙ୍କ ଚରଣେ କଲା ଦିବ୍ୟ ପୂଜା ।୧୬୩
ଭୋ ମୁନି ସାବଧାନ ହୋଇଣ ଶୁଣିମା
ଲମ୍ପିତା କନ୍ୟା ଯେ ଥିଲା ଚିତ୍ରାଙ୍କୁର ଜେମା ।୧୬୪
ଅର୍ଜ୍ଜୁନ ବୀର୍ଯ୍ୟେ ସେ ହୋଇଲା ଆଶାବତୀ
ପୁତ୍ର ଦୁହିତା ତାର ହେଲେ ଉତପତ୍ତି ।୧୬୫
ଯେ କଥା ସଞ୍ଚପି କହିବାକ ମୁନିବର
ବଦୟନ୍ତି ଅଗସ୍ତି ଶୁଣ ଆହେ ରାଜେଶ୍ୱର ।୧୬୬
ଅର୍ଜ୍ଜୁନ ଯେତେବେଳେ ଗଲା ଘୋର ବନ
ଚିତ୍ରାଙ୍କୁର ରାଜା ଯେ ବିପରୀତ ମନ ।୧୬୭
ବେନି ଗୋଟି ଦୁହିତାନ୍ତ ନିଜ ପୁରେ ନେଲା
ପାଶେ ଖଟିବାକୁ ଶତେକ ଦାସୀ ଦିଲା ।୧୬୮
ଅନ୍ତପୁରେ ନିଷ୍ଟିନ୍ତେ ରହିଲେ କୁମାରୀ
ଦିନକୁ ଦିନ ନାରୀ ହୋଇଲା ଗର୍ଭ ଭାରି ।୧୬୯
କ୍ରମମାସେ ନାରୀ ଯେ ହୋଇଲା ଗର୍ଭବାସ
ବିଛା ପ୍ରବେଶେଣ ହୋଇଲା ଦଶମାସ ।୧୭୦
ମାର୍ଗଶିର ଶୁକଳ ପୂର୍ଣ୍ଣମୀ ଗୁରୁବାର
ରୋହିଣୀ ନାମେ ନକ୍ଷତ୍ର ଅଟଇ ସେଦିନର ।୧୭୧
ବୃଷ ଚନ୍ଦ୍ର ସାଧ୍ୟ ଯୋଗ କରଣ ଯେ ବବ
ସେଦିନ ଲମ୍ପିତା ବାଳୀ ହୋଇଲା ପ୍ରସବ ।୧୭୨
ପାଶେ ଖଟିଛନ୍ତି ଶତେକ ବିଳାସୁଣୀ
ପୁତ୍ରେକ ଜାତ କଲା ଦୁତୀ ଚକ୍ରପାଣି ।୧୭୩
ମକରଧ୍ୱଜ ପ୍ରାୟେ ଦିଶଇ ବାଳୁତ
ନାଭି ଛେଦି ସ୍ନାନ କରାଇଲେକ ତୁରିତ ।୧୭୪
ଅନ୍ତୁଡି ଲଗାଇ ଯେ ସେକନ୍ତି ସ୍ତିରୀଗଣ
ଧାଇମାନେ ଖିର ଦିଅନ୍ତି ଯେ ତାହାର ମୁଖେଣ ।୧୭୫
ଯେମନ୍ତେଣ ତାହାକୁ ସମସ୍ତେ ଖଟିଲେ
ଶାସ୍ତ୍ର ବିଧିମତେ ଯେ ଗେଣ୍ଡୁଆ ଖୁଆଇଲେ ।୧୭୬
କହନ୍ତି ଅଗସ୍ତି ଆହେ ଶୁଣ ମହୀଧର
ପଞ୍ଚୁଆତି ଷଷ୍ଠୀ ଆଉ ସପତମ ବାର ।୧୭୭
ଯେକବିଂଶ ଦିନେ ଚିତ୍ରାଙ୍କୁର ବିଜେକଲା
ଦୋଳିରେ ଦୋହିତାର ପୁତ୍ରକୁ ଦେଖିଲା ।୧୭୮
ସରୂପରେ ଅର୍ଜ୍ଜୁନର ମୂରତି ବାଳୁତ
ପରମ ସାନନ୍ଦ କଲା ଦେଖି ରାଜା ଚିତ୍ତ ।୧୭୯
କୁମାରୀ ମୁଖ ଚାହିଁ ପଚାରଇ ରାୟେ
କେବଣ ନାମ ପୁତ୍ରକୁ ଦେବାଟି ଗୋ ମାୟେ ।୧୮୦
ଲମ୍ପିତା ବୋଇଲାକ ଶୁଣିମା ଭୋ ତାତ
ଅର୍ଜ୍ଜୁନ ନାମ ଅଟେ ଶ୍ୱେତବାହନ ତ ।୧୮୧
ତାହାର କୁମର ଯେ ଅଟଇ ବିଦ୍ୟମାନ
ଯେହାର ନାମ ଗୋଟି ହୋଉ ବଭ୍ରୁ ଯେ ବାହନ ।୧୮୨
ସ୍ୱଭାବେ ବୃଷ ରାଶିରେ ଜନମ ହୋଇଲା
ବଭ୍ରୁ ବାହନ ନାମ ଗୋଟି ଯେହାକୁ ଶୋହିଲା ।୧୮୩

**

## ୩୧. ସୁଗନ୍ଧିକା ହରଣ

ଯେଥୁ ଅନ୍ତେ ନାରଦଂକୁ ତୁଷ୍ଟି କରି ଦଇବକୀ ଯଶୋବନ୍ତୀ
ଓଷାର ଚରିତ ଯାହା କହିଲ ବ୍ରହ୍ମଯତି ।୧
ସମସ୍ତ ସମ୍ବାଦ କରି କହିଲ ପରିପୂର୍ଣ୍ଣେ
ସୁଗନ୍ଧିକା ପୁଷ୍ପ ପାଇବୁଂ କେଉଣ ସ୍ଥାନେ ।୨
ନାରଦେ ବୋଇଲେ ସେ ଦୁରାପଦ ଠାବେ ଅଛି
ଆଣିମାକୁ ଯେବେ ଗୋ ଲୋକ ପାର ସଞ୍ଚି ।୩
ଯେବଣ ଭୁବନେ ଅଛି କୁସୁମ ସୁଗନ୍ଧି
ହରି ବଳରାମଂକ ବେଳେ ନୋହଇ ସେ ସାଧି ।୪
ସୁଗନ୍ଧିକ ପୁଷ୍ପ ଯେ ଅଛଇ ଅପ୍ରମିତ
ଲଂକା ଧଂସନ ବାନ୍ଦର ଆଶ୍ରେ କରି ତାହା ଥାଇ ଅନୁବ୍ରତ ।୫
ଯେହା ଶୁଣି ଦଇବକୀ ଯଶୋବନ୍ତୀ ବିଷାଦ ହୋଇଲେ ମନେ
କାହାକୁ ବୋଲିବୁ କେ ପୁଷ୍ପ ଦେବ ଆନେ ।୬
ଯେମନ୍ତ ବିଷାଦେ ଯେ ବିସରନ୍ତି ମନେ
କରପତ୍ର ଯୋଡି ଉଭା ହୋଇଲେ ଫାଲଗୁନ୍ୟେ ।୭
ଭୋ ମୁନି ପରମ ପୁରୁଷ ମୋତେ ଆଗ୍ୟାଂ ଦେବା
ମୁହିଂ ଯାଇ ପୁଷ୍ପ ଆଣି ପାରଇଟିକି ଅବା ।୮
ଆଇମାନେ ଗୋ ସମ୍ଭାର ସଜ ତୁମ୍ଭେ କର
ସୁଗନ୍ଧିକା ଯେତେ ଲାଗଇ ସେ ହୋଇଲା ମୋହୋର ଭାଗର ।୯
ଯଦ୍ୟପି ଯକ୍ଷ ନାଗ ତାହା ଅଛଇ ଆବୋରି
କାଲକୁ ନିକଳଂକ କରିବି ସେ ଯକ୍ଷ ରାକ୍ଷସଂକୁ ମାରି ।୧୦
ଶୁଣି ସାନନ୍ଦ ହୋଇଲେ ଯଶୋବନ୍ତୀ ଦଇବକୀ
ନାରଦନ୍ତ ଘେନିଗଲେ ରାମକୃଷ୍ଣର କତିକି ।୧୧
ମାତାୟେ ବୋଇଲେ ବାବୁ ଶୁଣ ରେ ରାମହରି

ନାରଦେ କହିଲେ ବ୍ରତ କୃଷ୍ଣ ଯେ ଗଉରୀ ।୧୧୨
ଯେ ଓଷା ଯେବେ ଆମ୍ଭେ ସମ୍ପାଦନା କରିବୁ
ଜନ୍ମେ ଜନ୍ମେ ତୁମ୍ଭର ଆମ୍ଭେ ମାତା ଯେ ହୋଇଥିବୁ ।୧୧୩
ନାରଦଂକ ମୁଖ ଚାହିଁ କହନ୍ତି ନାରାୟଣ
କଳହପ୍ରିୟ ମହାତମା କାହା କରିଛ ଭିଆଣ ।୧୧୪
ନାରଦେ ବୋଇଲେ ହୋ ତୁମ୍ଭେ ଶୁଣ ପଦ୍ମନାଭ
ଦେବ ସ୍ତିରୀମାନନ୍ତ ଯେ ଓଷା ମଧ୍ୟପୁରକୁ ଦୁଲଭ ।୧୧୫
ବାବୁ ନାରଦଂକୁ ନ ଭାଙ୍ଗ ବୋଇଲେ ବଳଦେବ
ମଞ୍ଚପୁରେ ହେଉ ସେ କୃଷ୍ଣଗଉରୀ ଉଛବ ।୧୧୬
ବାବୁ ଆମ୍ଭେ ଯେ ହୋଇଲୁ ମଞ୍ଚପୁରେ ଉତପତି
ସମସ୍ତ ଜନଂକୁ ଯେ ଓଷା ହେଉ ପରାପତି ।୧୧୭
ନାରଦେ ବୋଇଲେ ଅର୍ଜୁନକୁ ଆଗ୍ୟାଂ ଦେବା ହୃଷୀକେଶି
ସୁଗନ୍ଧିକ ପୁଷ୍ପ ଆଣୁ ନିଳେନ୍ଦୀ ସରୋବରେ ପଶି ।୧୧୮
ଅର୍ଜୁନ ବଦନ ଚାହିଁ ବୋଲନ୍ତି ଶ୍ରୀବଚ୍ଛି
ଆଣି ପାରିବୁ କି ହୋ ସୁଗନ୍ଧିକା ବିବଚ୍ଛି ।୧୧୯
ଅର୍ଜୁନ ବୋଇଲେ ଦେବ ତହିଂକି ନ କରିବ ଚିନ୍ତା
ଯେତେକ ସୁଗନ୍ଧିକା ଲାଗଇ ମୁହିଁ ସେ ଦିଅନ୍ତା ।୧୨୦
ନାରଦଂକ ବଦନ ଚାହିଂଲେ ପରମ ଯୋଗୀ
ବ୍ରତର ଭିଆଣ ତୁମ୍ଭେ କର ବେଗି ବେଗି ।୧୨୧
ଦ୍ୱାରିକା ଭୁବନ ଈଶାନ କଇଛାଡେ
ନୀଳ ସୁନ୍ଦର ବଟ ଉତ୍ତର କୂଳ ଆଡ଼େ ।୧୨୨
ଆହୁଟ ଯବ ପ୍ରମାଣେ ଅଛି ଅପୋଡା ଭୂମି ଖଣ୍ଡି
ବିଜୟେ ମାହେଶ୍ୱରୀ ତହିଂ ଚିଳଂକା ନାମେ ଚଣ୍ଡୀ ।୧୨୩
ତାହାନ୍ତ ଆଗ୍ୟାଂ ମାଗିଣ ନନ୍ଦର ଯେ ବାଳ
ସେ ସ୍ଥାନ ଆବୋରି ଶୁଭ ଦିଲେ ଯାଗଶାଳ ।୧୨୪
ଯେତେକ ବିଶ୍ୱକର୍ମା ଘଟଣ ବିନ୍ଧାଣୀ
ଅନେକ ରତ୍ନମାନ ଦିଲେ ତାଂକୁ ଆଣି ।୧୨୫
ଆପଣେ ଥାଇଣ ନାରଦ ମହରଷି
ସମସ୍ତ ଯୋଗାଡ଼ମାନ ଭିଆବନ୍ତି ବସି ।୧୨୬
ଶ୍ରୀକୃଷ୍ଣ ବଳରାମ ପୁଚ୍ଛା କଲେ ପାଥକୁ
ତୋହୋରେ ସମସ୍ତ ପ୍ରାପତ ହୋଇବ ଆମ୍ଭକୁ ।୧୨୭
ଶୁଭ ଅନକୂଳ ଦିଲେ ସେ ଚକ୍ରପାଣି
ଚଳଇ ବାସବି ଯେ ସୁଗନ୍ଧିକା ପୁଷ୍ପ ଆଣି ।୧୨୮
ମକର ମାସ କୃଷ୍ଣପକ୍ଷ ଦ୍ୱତୀୟାର ଦିନ
ଭଉମବାର ମଘା ନକ୍ଷତ୍ର ବିଦ୍ୟମାନ ।୧୨୯
ବାୟବ ନାମେ କରଣ ଶୁଭ ନାମେ ଯୋଗ
ମକର ସଂକରାନ୍ତିକି ସତର ଦିନ ଭୋଗ ।୧୩୦
ବେଳ ମଧ୍ୟମାନେ ମେଷ ଲଗ୍ନ ବେଳା
ଦକ୍ଷିଣ ଭାଗେ ଯୋଗିନୀ ସପ୍ତମେ ଚନ୍ଦ୍ରକଳା ।୧୩୧
ତିଥି ବାର ନକ୍ଷତ୍ର ଯୋଗ କରଣ ଅନକୂଳ ଘେନି
ପଛିମ ପ୍ରଦେଶେ ଚଳଇ ଫାଲଗୁନି ।୧୩୨
ନାରଦ ବୋଇଲେ ଶୁଣ ଜନାର୍ଦ୍ଦନ
ଅର୍ଜୁନ ଯାଉଅଛି ଯକ୍ଷ ରାଜାର ମଧୁବନ ।୧୩୩
ନିଳେନ୍ଦୀ ସରୋବର ଯକ୍ଷ ରାଜା ପ୍ରତିପାଳି
ତୋହୋର ଭୟରେ ଯମୁନାରୁ ଯାଇ ପଶିଅଛି କାଳୀ ।୧୩୪
ସେ ସୁଗନ୍ଧ ପୁଷ୍ପେ ଆବୋରି ଅଛନ୍ତି ସର୍ପେ
ଅର୍ଜୁନ ମର୍ଦ୍ଦିପାରିବଟି କି କାଳୀ ନାଗର ଦର୍ପେ ।୧୩୫
ଶୁଣିଣ ନାରାୟଣ ସୁମରିଲେ ଖଗେଶ୍ୱର ବଇନେତ୍ର
ତୁରିତରେ ମିଳିଲା ଆସି ବିନତାର ସୁତ ।୧୩୬
ଅର୍ଜୁନ ବଦନ ଚାହିଁ ବୋଲନ୍ତି ଜଗନ୍ନାଥ
ବଇନେତ୍ର ପିଠିରେ ବିଜେ କର ହୋ ବୀର ପାଥ ।୧୩୭
ଜଗନ୍ନାଥଙ୍କର ବଚନ ଶିରେ ଘେନି
ଖଗେଶ୍ୱର ପାଦେ ପାଥ କରଇ ଦଇନି ।୧୩୮
ସ୍ୱାମୀ ନାରାୟଣ ବିଜେ କରନ୍ତି ତୋର ପିଠି
ମୁହିଂ କ୍ଷମ ହୋଇବି କି ମାନବ ଜନ୍ମ ହେଟି ।୧୩୯
ଗରୁଡ଼ ବୋଲଇ ପାଥ ତୁମ୍ଭେ ନ ବୋଲ ଯେମନ୍ତ
କେ ତୁମ୍ଭନ୍ତ ଭିନ୍ନାଭିନ୍ନ କରିବ କୃଷ୍ଣ ପାଥ ।୧୪୦
ନର ନାରାୟଣ ତୁମ୍ଭେ ଅନେକ ମୂରତି
ମେଖଳା ଅନ୍ତରଟି ତୁମ୍ଭେ ଯେକଇ ଶକତି ।୧୪୧
ଅର୍ଜୁନ ବୋଇଲେ ତୁମ୍ଭେ ରମ୍ୟେକ ଦୀପେ ଥିବ
ମୋତେ ଅଗୋଚର ପଡ଼ିଲେ ମୁଂ ସୁମରିଲେ ଆସିବ ।୧୪୨
ଗରୁଡ଼ ବୋଇଲେ ମୋତେ ସୁମରିଲେ ଦେବ ହରି
ବହନ ଯିବା ମୋର ପିଠିରେ ବିଜେ କରି ।୧୪୩
ଅନେକ କଷ୍ଟୋରେ ଯହୁଂ ବୋଇଲେକ ପକ୍ଷୀରାଜେ
ବଇନେତ୍ର ପିଠିରେ ଯାଇଂ ଅର୍ଜୁନ କଲେ ବିଜେ ।୧୪୪
ଶ୍ରୀଭୁଜେ ଶୋଭାବନ ଲକ୍ଷେ ବଳ ଗାଣ୍ଡିମ ଧନୁ
ପ୍ରତକ୍ଷେ ନାରାୟଣ କି ବିଜେ କଲେ ଗଗନୁଂ ।୧୪୫
ସୁର ମଧୁବନେ ସେ ଗନ୍ଧମାଦନ ନାମେ ପୁର

ମନ୍ଦର ପରବତକୁ ଯେଗାର ସହସ୍ର ଯୂଣ ଦୂର ।୪୬
ପବନହୁଂ ଚଞ୍ଚଳ ସେ ଅଟଇ ଖଗେଶ୍ୱର
ଯେକ ରାତ୍ରକେ ପ୍ରବେଶ ସେ ଶକ୍ର ରାଜାର ବନସ୍ତର ।୪୭
ବେଳାଳ ମଳୟ ଅନନ୍ତ ବଜ୍ର ଗିରି
ମଧ୍ୟରେ ସରୋବର ଚାରିଆଡ଼େ ପର୍ବତ ଚାରି ।୪୮
ଜନବୋଧନ ବୋଲି ଅଛି ଯେକର କଛବଟ
ସେ ବଟ ଅଛଇ ସିନ୍ଧୁ ଦକ୍ଷିଣ ଭାଗ ତଟ ।୪୯
ମଧେ ସରୋବର ଅଛି ଅଶିଯେ ଯୋଜନ
ପଞ୍ଚଦଶ ଯୋଜନ ସେ ଗଭୀରଟି ଘେନ ।୫୦
ତହିଂର ଭିତରେ ଅଛଇ ପୁଷ୍ୟ ଯେ ସୁଗନ୍ଧି
ନିରନ୍ତରେ କମଳ ସେ ଘଞ୍ଚାଳ ଘୋଟିଛି ଜଳଧି ।୫୧
ସେ ପୁଷ୍ୟଂକର ତେଜ ଯେ ବାଳ ଅର୍କଜିଣି
ତେଜେ ଉଜ୍ଜଳ ଦିଶଇ ଉଦେ କି ଦିନମଣି ।୫୨
ଯମୁନାର ଜଳ ପ୍ରାୟେ ସେ ଜଳ ଝଳକଇ
କଜ୍ଜଳ କଳା ପ୍ରାୟେକ ପୁଣ ସେ ଦିଶଇ ।୫୩
ଆକାଶକଇ ତେଜ ଲାଗଇ ଜଳବିମ୍ବ
ପର୍ବତେ ଥାଇଂଣ ଅର୍ଜୁନ ଦେଖଇ ସବୁ ।୫୪
ମନ୍ଦାର ପୁଷ୍ୟ ଯେହ୍ନେ ପ୍ରଭାତେଣ ଝଳି
ମହାପ୍ରଳୟ ଜ୍ୱାଳା ତହିଂ ଲୁଚିଅଛି କାଳୀ ।୫୫
ଅର୍ଜୁନ ବୋଇଲେ ତୁମ୍ଭେ ଶୁଣସି ବଇନେତ୍ର
ଯେହି ବଟ ତଳେ ତୁମ୍ଭେ ହୋଇଥାଅସି ଗୁପତ ।୫୬
ମୁହିଂ ହାଦେ ଦେଖଇ ସେ କାଳିୟର ଦର୍ପ
ମୋତେ ଦେଖିଣ ଆସନ୍ତି ସେ କେତେ ସର୍ପ ।୫୭
ବାମକରେ ଧନୁଶର ଦକ୍ଷିଣ କରେ ଯଷ୍ଟି
ବଟର ତଳେ ଉଭା ହୋଇଲେ କିରୀଟୀ ।୫୮
ହରିନାଥ ରାଜା ଯେ ବନର ଆଧିପତି
ସେ ମଧୁବନ ରଖଇ ହରିବଳ ଚକ୍ରବ୍ରତୀ ।୫୯
ସେ ଅପୂର୍ବ ପୁରୁଷକୁ ଦେଖି କପି ବୀରେ
ଅର୍ଜୁନକଇଂ ଆସି ସେ ବେଢ଼ିଲେ ସମରେ ।୬୦
କିଟି କିଟି ଶବଦେ ବିକରାଳ ଘୋର ମୁଖ
ଅଭୟେ କାଳୀମୁଖ ଦୁର୍ମୁଖ ଦଧିମୁଖ ।୬୧
ଅଧର ବିକାଶି ଆସି ବେଢ଼ିଲେ ସର୍ବ ସଇନି
ଯଷ୍ଟିଯେକ କରେ ଘେନି କୋପେ ପିଟଇ ଫାଲଗୁନି ।୬୨
ଧାତିକାରେ ଡେଇଂଣ ସେ ଉଠିଲେ ବୃକ୍ଷ ଶିଖେ
ଗୋଡ଼ାଇ ବାସବି ଯେ ପିଟଇ ଗରୁଡାପେ ।୬୩
ତାଙ୍କେ ପିଟନ୍ତେଣ ନାହିଂ ତାଂକ ମୃତୁ
ବୃକ୍ଷ ଉପାଡିଣ ସେ ଧାଇଂଲେ କୋପ ହେତୁ ।୬୪
ଶିଳାନ୍ତ ଘେନିଣ ସେ ଧାଇଂଲେ ବାନରେ
ଅର୍ଜୁନ ଉପରକୁ ସେ ମାରନ୍ତି ନିରନ୍ତରେ ।୬୫
ବିମୁଖ ପାଇଣ ସେ ବୀର ଫାଲଗୁନି
ଗୁଣ ନାଦ କରେ ପାଥ କରେ ଧନୁ ଘେନି ।୬୬
ପୂରୋଇଲା ନାରାଜ ସେ ଆକ୍ରେଷି ଉଛୁଡି
ବିନ୍ଧିଲା ନାରାଜ ସେ ଦ୍ରୋଣ ଗୁରୁ ସୁମରି ।୬୭
ମନେ ମନେ ପାଥ ଧନୁର୍ବେଦ ସୁମରି
ନାରାଜ ପୂରୋଇଂ ସେ ବିନ୍ଧିଲା ଦୃଢ଼ କରି ।୬୮
ଅବିଛନ୍ନେ ବାଣ ତହିଂ ବିନ୍ଧଇ ଧନୁର୍ଜୟେ
ବସିଲା ନାରାଜ ଯେ ବାନରଂକର କାୟେ ।୬୯
ପଂକୁ ଫଳ ପ୍ରାୟେ ହୋଇ ଛଇଛାଡ଼େ ବାଣ ଫୁଟି
ଚାରି ଚାରି ନାରାଜ ଜଣକେ ହୋଇଲାକ ବୃଷ୍ଟି ।୭୦
ଅନେକ ଶରଘାତ ହୋଇଣ ପଳାନ୍ତି ବାନରେ
ହନୁମନ୍ତକଇଂ ଭେଟିଲେ ଖିନିଖିନା ପର୍ବତରେ ।୭୧
ବିକଳେ ଆକୁଳ ହୋଇ ପଳାବନ୍ତି ସଇନି
ସ୍ୱାମୀ ବୀରେକ ବିନ୍ଧଇ ନାରାଜ କରେଣ ଧନୁ ଘେନି ।୭୨
ସଇନିର ଅବସ୍ଥା ଦେଖିଣ ହନୁମନ୍ତ
କୋପେଣ ଧାଇଂଲା ସେ କରେ ଘେନିଣ ପରବତ ।୭୩
ବାନର ବଳ ଭଞ୍ଜାଇ ଉଭା ବୀରମଣି
ଦିଶଇ ସୁନ୍ଦର କି ସେ ଜାଣି ଚକ୍ରପାଣି ।୭୪
ହନୁମନ୍ତ ବିଜୟ କଲା ଯେମନ୍ତର ସମୟେ
ଦେଖିଣ ନିର୍ଭୟେ ଯେ ହୋଇଲେ ଧନୁର୍ଜୟେ ।୭୫
ରେ ରେ କାର ଶବଦ ତହିଂ କରଇ ଅରଜୁନ
ବାନ୍ଦରକଇ ବାଣ ବିନ୍ଧଇ ଅବିଛନ୍ନ ।୭୬
ହନୁମନ୍ତ କୋପେ ପର୍ବତ ମାଇଲା ବୁଲାଇ
ଆରେ ଆରେ ମାନବ ତୋର ଯେତେ ଦର୍ପ କିସ ପାଇଂ ।୭୭
ପର୍ବତେକ ଉପାଡି ହନୁମନ୍ତ ପିଟି
ବଜ୍ର ଶହସ୍ର ପେଷି ତାହା ଛେଦିଲା କିରୀଟୀ ।୭୮
ଦେଖିଣ ହନୁମନ୍ତର ନ ଫୁରଇ କିଛି
ଯେତେକ ଦର୍ପ ବୀରେ କେଉଂଣ ଭୁବନୁ ଆସିଅଛି ।୭୯
ପୁଣ ପର୍ବତେକ ଧରି ମାରଇ ରାମ ଦୂତ

ବାବଲ ଶରେ ତାହା ଛେଦିଲା ବୀର ପାର୍ଥ ।୮୦
କୋପେଣ ହନୁମନ୍ତ ବଜ୍ର ମୁଥେକ ଉଞ୍ଚାଇ
ଅର୍ଜୁନ ଉପରକୁ ସେ ଆସୁଅଛି ଧାଇଁ ।୮୧
ହନୁମନ୍ତର ମୂରତି ଦେଖିଣ ବାସବି
ବଜ୍ର ମୁନା ପଞ୍ଚୁଶର ପାବେନି ପରାଭବୀ ।୮୨
ଯେସନେକ ସର୍ପେ ଯାଇଁ ପଶନ୍ତି ବିମ୍ବରେ
ନାରାଚ ଭେଦିଲା ଯାଇଁ ତେହ୍ନେ ହନୁମନ୍ତ ଶରୀରେ ।୮୩
ଶରୀର ଦିଶଇ ତାର ଡାଳିମ୍ବ ପୁଷ୍ପ ପ୍ରାୟେ
ରୋମେ ରୋମେ ଭେଦିଲା ଯେ ହନୁମନ୍ତର କାୟେ ।୮୪
ଗାଢ଼ ଶର ଘାୟେଣ ରୁଧିର ପଡଇ ଗଳି
ଶାନ୍ତି ମୂର୍ତ୍ତି ହୋଇଣ ପଚାରଇ ମହାବଳୀ ।୮୫
ରହ ରହ ବୋଲି ଉଚ୍ଚେଣ ହନୁମନ୍ତ ଡାକି
ବାବଲ ଶର ଯେ ହୃଦରୁ କାଢ଼ି ଦେଖି ।୮୬
ନାରାଚ ଗୋଟି ଦେଖି ବିଚାରଇ କପି ଇନ୍ଦ୍ର
ଯେ ଶର ଘେନି ତ୍ରେତୟା ଯୁଗେ ଅସୁରନ୍ତ ଛେଦିଲେ
ରାମଚନ୍ଦ୍ର ।୮୭
ନୋହୋଇ ସାମାନ୍ୟ ଯେ ଅଟଇ ମହାଯୋଧୀ
ଅମର ଭୁବନ ତେଜି ବିଜୟେ କି ଜମ୍ଭୋଭେଦୀ ।୮୮
କପିଳାସ ତେଜି କି ଯେ ବିଜୟେ ମହାଦେବ
କି ଯେ ଦେବକୀର ନନ୍ଦନ ଅଟନ୍ତି ବାସୁଦେବ ।୮୯
ହନୁମନ୍ତ ବୋଲଇ ହୋ ମହତମା ରହ ରହ
ନାରାଚ ସଂହରିଣ ବାରତା ମୋତେ କହ ।୯୦
କିସ ନାମ ତୋହୋର କାହାର କୋଳେ ଜାତ
ମୋତେ ଅସମ୍ଭବ ହୋଇଲା ମାୟା ତୋହୋର ତ ।୯୧
ମୁହିଁ ଯୋଗେଶ୍ୱର ଯେ ଖିନିଖିନା ଆଧିପତି
ଶ୍ରୀରାମଚନ୍ଦ୍ରଂକ ଦୂତ ମୁହିଁ ଅସୁର କୁଳ ମନ୍ଥି ।୯୨
ପର୍ବତ ଘେନିଣ ମୁଂ ଯେ ବାନ୍ଧିଲି ବାରାଧି
ମହା ରଣରଙ୍ଗେ କଉଣୋପ ବଳ ଛେଦି ।୯୩
ଅର୍ଜୁନ ବୋଇଲା ଛାର ପାମର ହେଟି କଥା
ସମୁଦ୍ରେ ବନ୍ଧ ବାନ୍ଧିବା କିଞ୍ଚିତ ବେବସ୍ତା ।୯୪
ହନୁମନ୍ତ ବୋଇଲା ପାଣିରେ ଉପୁଚିଆଇଂଲୁ ଗିରି
ଶତେ ଚଉବିଂଶ ଯୋଜନ ସମୁଦ୍ର ବାନ୍ଧିଲୁ ଦିନାଚାରି ।୯୫
ଅର୍ଜୁନ ବୋଇଲା ତୋର ଯେହେନେକ ବଳ
ମୁହିଁ ନିମିଷକେ ବାନ୍ଧି ପାରଇ ସିନ୍ଧୁ ଜଳ ।୯୬
ହନୁମନ୍ତ କହିଲା ଯାହା ବୋଇଲୁ ଯେ ତୁଣ୍ଡେ
ନିମିଷକେ ବନ୍ଧ କେ ବାନ୍ଧି ପାରିବ ସପତ ବ୍ରହ୍ମାଣ୍ଡେ ।୯୭
ଅର୍ଜୁନ ବୋଇଲେ ପର୍ବତ ଲୋଚାୟେ ମୁଣ୍ଡେ ବହି ଯେ ଆଣିଲ
ଭାଲୁକ ମର୍କଟ ଅନେକ ସଇନି ଲାଗିଲ ।୯୮
ମୋହୋର ଶକତାପଣ ପ୍ରତକ୍ଷେ ଦେଖିବୁ କି ମର୍କଟ
ଲଂକା ଜମ୍ବୁଦୀପେ କରିବି କ୍ଷଣକେ ଯେକ ବାଟ ।୯୯
ହନୁମନ୍ତେ ବୋଇଲା ତ ଆସନି ମୋ ଭାଇ
ମିଛେହେଁ ଦମ୍ଭ କହୁ କି ସଞ୍ଚୟେ ଅଚ୍ଛୁ ବାଇ ।୧୦୦
ବୋଲଇ ଫାଲଗୁନି ଭାଙ୍ଗଇ ତୋର ଗାଲ
ବାନ୍ଧବି ଶରେ ସାହେର ଦେଖ ହୋ କପିମଲ୍ଲ ।୧୦୧
ଆସ ଆସ ବୋଲିଣ ହନୁମନ୍ତ କଢ଼ାଇଲା ବାଟ
ଦିବସକେ ହୋଇଲେ ଯାଇ ମହୋଦଧି ତଟ ।୧୦୨
ଆରେ ଆରେ ପାମର ମିଛେହେଂ ବୋଲାଉ ଯୋଧୀ
ଚାରି ଦିବସ ମଧରେ ବାନ୍ଧିଲୁ ବାରାନିଧି ।୧୦୩
ଶୁଣ ହୋ ମର୍କଟ ତୁହି, ବୋଲଇ ଫାଲଗୁନି
ମୁଂ ଯେହା ବନ୍ଧନ କରି ପାରଇ ଦଣ୍ଡ ତିନି ।୧୦୪
ହନୁମନ୍ତ ବୋଇଲେ ଶହେ ଚଉବିଂଶ ଯୋଜନ ଦୀର୍ଘ
ବତିଶ ଯୂଣ ପ୍ରତି, ଦ୍ୱାଦଶଯୂଣ ଉସର୍ଗ ।୧୦୫
ବୋଲଇ ଧନୁର୍ଜୟେ ତୁମ୍ଭେ କହିଲ ନ ଜାଣି
ସମୁଦ୍ରଯାକେ ନାରାଚ ପୂରୋଇବି ଯେହିକ୍ଷଣି ।୧୦୬
ହନୁମନ୍ତ ବୋଇଲା ଯାହା ତୁମ୍ଭେ ବୋଇଲ ବଚନ
କର୍ତ୍ତବ୍ୟେ ଯେବେ କରି ତାହା ଦେଖିବା ନୟନ ।୧୦୭
ହନୁମନ୍ତ ବଚନେ କୋପିତ ଧନୁର୍ଜୟେ
ମନଭେଦୀ ନାରାଚକୁ ମନରେ କଲା ଧ୍ୟାୟେ ।୧୦୮
ଯାହା ସେ ଦେଇଛନ୍ତି ବଶ୍ୟାନର ବହନି
ସେ ମନଭେଦୀ ନାରାଚ ଆସି ଭେଟିଲା ଫାଲଗୁନି ।୧୦୯
ଅର୍ଜୁନ ବୋଇଲେ ତୁମ୍ଭେ ଯେ ମନଭେଦୀ ମହାଶର
ମୋତେ କଟାଳ ତ ଯେ ଯେ କରୁଛି ବାନ୍ଦର ।୧୧୦
ଯେ ସାଗରେ ମହାବନ୍ଧ ତୁ ହୋଅ ଯେହିକ୍ଷଣି
ଲଂକାୟେ ହାବୋଡିବୁ ଶହେ ଚଉବିଂଶ ଯୋଜନ ଜିଣି ।୧୧୧
ବାର ଯୋଜନ ଓସାର ହୋଇବୁ ଆୟତନ
ଯେତେକ ତିଆରିଣ ସେ ଛାଡିଲା ମନଭେଦୀ ବାଣ ।୧୧୨
ଆଗ୍ୟାଂ ପରମାଣେ ମନଭେଦୀ ଶର ଗଲା

ସମୋଦ୍ର କିଚରେଣ ସେ ବନ୍ଧେକ ହୋଇଲା ।୧୧୩
ତାହା ଦେଖି ଆଶ୍ଚିଯ ହୋଇଲା ଅଞ୍ଜନାର ବଳା
ସଞ୍ଚଯେ ମହାଟମା ଯେ ନାରାୟଣଂକର କଳା ।୧୧୪
ହନୁମନ୍ତ ବୋଇଲା ତୁ ବାନ୍ଧିଲୁ ନା ଶରେ ଶରେ
ଶୋଇ ଭେଳା ଜାଣି ଉପୁଚି ଅଇଲା ଜଳରେ ।୧୧୫
ତୁ ମହାଛତ୍ରୀ ଜୀବନ ତୋର ଧନି
କାହାର ବଳେ ବନ୍ଧ ବାନ୍ଧି ହୋଯେ ଶର ଘେନି ।୧୧୬
ପର୍ବତର ବନ୍ଧ ସହିଲା ଯେତେକ ଭାର
ତାହା କେମନ୍ତେ ସହିବ ଯେ ଶରବନ୍ଧ ଛାର ।୧୧୭
ରାମ ରାବଣ ବେନି ଜନକଂର ଥାଠ
ସେ ବନ୍ଧରେ ସମର ହୋଇଲେ ନ ଦିଶଇ ବାଟ ।୧୧୮
ଅର୍ଜ୍ଜୁନ ବୋଇଲା ସେ ବନ୍ଧ ଯେ ହୋଇଲେ
ସହିବ ନାହିଂକି ଭାରା ମେରୁ ଉଠି ବସିଲେ ।୧୧୯
ହନୁମନ୍ତ ବୋଇଲା ହୋ ସନ୍ୟ ବଳ ଛାଡି
ଯେକା ମୋହୋର ଉଠିଲେ ବନ୍ଧ ଯିବ ବୁଡ଼ି ।୧୨୦
ଅର୍ଜ୍ଜୁନ ବୋଇଲା ତୋହୋର ପରା ଲକ୍ଷେ
ଭୀଷ୍ମରୂପ ଧଇଲେ ସହିବ ନାହିଂକି ପ୍ରତକ୍ଷେ ।୧୨୧
ରାମ ରାବଣ ଯେ ଉଠିବେ ସନ୍ୟ ବଳ ଘେନି
ସମର ହୋଉଥିବ ଯେ ଦିବସ ରୟଣୀ ।୧୨୨
ଲକ୍ଷେ ରାବଣ ଯୁଦ୍ଧ କରନ୍ତୁ ଯେ ବନ୍ଧର ଉପର
ନିଚଯେ ନ ଲସିବ କହିଲୁ ନିକର ।୧୨୩
ଦେଖିବୁ କି ବାନ୍ଦରରେ ପୁଣିହିଂ ବାନ୍ଧିବି
ଆହୁରି ଯେତେ ଦୀର୍ଘ ପ୍ରତି ବନ୍ଧେକ ବାନ୍ଧିବି ।୧୨୪
ସ୍ୱର୍ଗ ମଞ୍ଚ ପାତାଳ ସୁତାଳ ରସାତଳ
ନିତାଳ ଭୂତାଳ ଅତିତାଳ ମହାତଳ ।୧୨୫
ଦେବଲୋକ ନାଗଲୋକ ନରଲୋକ ଚଉଦ କୋଟି ଭୁବନର
କୋଟିଯେ ବ୍ରହ୍ମାଣ୍ଡ ଉଠଇ କିନା ବନ୍ଧର ଉପର ।୧୨୬
ପ୍ରତକ୍ଷେ ଦେଖ ହୋ ସେତୁବନ୍ଧର କଥା
ଛତ୍ରୀବର ପ୍ରତଗ୍ୟାଂ ରହିବ ନାହିଂ କି ସର୍ବଥା ।୧୨୭
ହନୁମନ୍ତ ବୋଇଲା ତୁମ୍ଭେ କହୁଅଛ ବହୁତ ଯେ ଗର୍ବ
ଯେକା ମୋହୋର ଭାରା କି ତୋ ଶରବନ୍ଧ ସହିବ ।୧୨୮
ଯେତେକ ବୋଲିଣ ସେ ଅଞ୍ଜନାର ଶିଷି
ସେ ଶର ବନ୍ଧ ଉପରେ ହନୁମାନ ଉଠିଲା ଆକ୍ରୋଷି ।୧୨୯
ହନୁମନ୍ତ ଉଠନ୍ତେ ସେ ଶରବନ୍ଧ ନ ଟଳଇ
ରାଗେଣ ହନୁମନ୍ତ ଭୀଷ୍ମ ମୂର୍ତ୍ତି ପ୍ରକାଶଇ ୧୩୦
ଛଡ଼ଦଶ ସହସ୍ର ଯେ ଦଧିମୁଖା ସଙ୍ଗନି
ଲଙ୍ଗୋଡ଼େ ବସାଇଲା ଯେ ବୀର ପାବେନି ।୧୩୧
ଗଳାରେ ବନମାଳା ଲକ୍ଷେକ ପର୍ବତ
ମହାଭୀଷ୍ମ ରୂପ ତହିଂ ଧଇଲା ହନୁମନ୍ତ ।୧୩୨
ଗରୁଡ଼ ଥାଇ ତାହା ଦେଖିଲା ଅନ୍ତରୀକ୍ଷେ
ଭଇରୋବ ମୂରତି ହନୁ ଧଇଲା ପ୍ରତକ୍ଷେ ।୧୩୩
ବିଚାରଇ ଗରୁଡ଼ ଅର୍ଜ୍ଜୁନ ସଞ୍ଚଯେ ନାଶଗଲା
ହନୁମନ୍ତର ସଂଗେ କିମ୍ପେ ବିବାଦୀ ହୋଇଲା ।୧୩୪
ଅର୍ଜ୍ଜୁନ ଗରୁଡ଼ ଦୁହେଂ ଭଯେ ତାଟକା ହୁଅନ୍ତି
ଜୀବ ନ ଥିଲା ପ୍ରାଣୀ ଯେମନ୍ତ ଦିଶନ୍ତି ।୧୩୫
ଅର୍ଜ୍ଜୁନ ବିଚାରଇ ବନ୍ଧ ବୁଡ଼ିଲେ ନିଚେ ନାଶ ଗଲି
ନ ଜାଣି କିମ୍ପେ ମୁଂ ଯେହା ସଙ୍ଗେ ଦ୍ୱନ୍ଦୀ ହେଲି ।୧୩୬
ଧ୍ୟାନେଣ ଗରୁଡ଼ ସୁମରଇ ନାରାୟଣ
ଦ୍ୱାରିକାରେ ଥାଇଂ ଜାଣିଲେ ହରି ନିଚେ କଟାଳିଲା
ହନୁମାନ ।୧୩୭
ନ ଜାଣି ହନୁ ସଙ୍ଗେ ପାଥ ବିବାଦୀ ହୋଇଅଛଇ
ନ ଗଲେ ଅର୍ଜ୍ଜୁନ ମୋର ଆଉ କି ଜୀଅଂଇ ।୧୩୮
ବଳରାମଂକୁ କହି ଗଲେ ଯେ ଚଳିଣ
ମିଳିଲେ ଯାଇଂ ହରି ସମୋଦ୍ର କୂଳେଣ ।୧୩୯
ହନୁମନ୍ତ ଅର୍ଜ୍ଜୁନର ଅନ୍ୟୋଅନ୍ୟ ଦେଖି
ନାରାୟଣ ପାଖେ ଯାଇଂ ମିଳିଲା ଯେ ପଛୀ ।୧୪୦
ପାଦତଳେ ପଡ଼ି ଉଠିଲା ଝଟତି
ଗରୁଡ଼ ପିଠିରେ ବିଜେ କରି ଉଚ୍ଚବାଚ ଦେଖନ୍ତି ।୧୪୧
ବିଚାରନ୍ତି ନାରାୟଣ ଯେତ ତ୍ରେତାଯୁଗର ହନୁମନ୍ତ
ଯେହାର ପ୍ରତଗ୍ୟାଂକୁ କାହିଂ ଅର୍ଜ୍ଜୁନ ସାମରଥ ।୧୪୨
କଳ୍ପକଳ୍ପ ଅସଂକ୍ଷେପ ଆୟୁଷ ଅଟଇ ଯାହାର
ରାବଣଇ ଜାଣଇଂ ଯେ ଯେତେକ ଅବତାର ।୧୪୩
ଅର୍ଜ୍ଜୁନ ମୋହୋର ଅଟଇ ଯେ ଦୁତୀ ଆତ୍ମା
ମୋହୋର ଆଶ୍ରିତେ ସିନା ତାହାର ଗାରିମା ।୧୪୪
ରାମ ଅବତାରେ ମୋତେ ସାଖା ହନୁମନ୍ତ
ଦ୍ୱାପର ଯୁଗକୁ ସଖା ଅଟେ ବୀର ପାଥ ।୧୪୫
ଅର୍ଜ୍ଜୁନ ଆଜ ଯେବେ ହାରିବ ଯୁଗତେ
ପ୍ରାଣେ ଆଜ ଯେହାକୁ କି ଜୀଆଇବ ହନୁମନ୍ତେ ।୧୪୬
ଯେ ମୋହୋର କାର୍ଯ୍ୟେ ଅର୍ଜ୍ଜୁନ ତ ବଡ଼ ଦୁଖୀ

ଯେହାର ପ୍ରତଗ୍ୟାଂକୁ ମୁଂ କେସନେକ ରଖି ।୧୪୭
ଯେତେକ ବିଚାର କରିଣ ଯେ ଦେବ ଶିରୀବଛେ
ସମୋଦ୍ର ଜଳରେ ପ୍ରଭୁ ପଶି ହୋଇଲେ ମହା ମାଛେ ।୧୪୮
ଯେବଣ ଭୀଷ୍ମ ରୂପ ଧରିଛି ପାବେନି
ଭାଙ୍ଗିବ ଶରବନ୍ଧ ଲାଜ ପାଇବ ଫାଲଗୁନି ।୧୪୯
ମହାମୀନ ରୂପେକ ଦେବ ସମୋଦ୍ରେ ଅବତରି
ଭିତରେ ରହିଲେ ଦେବ ଶରବନ୍ଧ ସରି ।୧୫୦
ପିଠିରେ ବସାଇ ଦେବ ଆବୋରିଲେ ଶର ବନ୍ଧ
ବିଶ୍ୱରୂପ ପ୍ରକାଶିଲେ ଦେବ ଯେ ଗୋବିନ୍ଦ ।୧୫୧
ଶର ବନ୍ଧ ବସିଲା ଯେ ନାରାୟଣଂକର ପିଠି
ହନୁମନ୍ତ ଧାପ ଦିଅଇ ବନ୍ଧ ଉପରେଣ ଉଠି ।୧୫୨
ବଦୟନ୍ତି ଅଗସ୍ତି ଶୁଣ ବଇବସୁତ ମନୁ
ମହାଭୀଷ୍ମ ରୂପେ ତିନିପୁର ଘୋଟିଲା ବୀର ହନୁ ।୧୫୩
ଯେସନେକେ ବନ୍ଧ ଉପରେ ଯାଇଂ ଉଠିଲା ମହାବଳୀ
ହନୁର ପାଦ ସ୍ୱାମୀ ନୁଆଗିଲେ ସମ୍ଭାଳି ।୧୫୪
ଯେକ ପାଦ ଦେଇ ଆର ପାଦେକ ପକାଇଲା ତୋଳି
ମୁଖରୁ ରୁଧିର ପ୍ରଭୁଂକର ପଡଇ ଯେ ଗଳି ।୧୫୫
ତ୍ରଇଲୋକେ ହାନ୍ଦୋଳଇ ହନୁମନ୍ତ ଭୀଷ୍ମମୂର୍ତ୍ତି
ସପତ ଦ୍ୱୀପ ହାନ୍ଦୋଳ ଯେ ହୋଅଇ କମ୍ପଇ ବସୁମତୀ ।୧୫୬
ଆକାଶେ ତ୍ରାସିଲେ ଯେ ସକଳେ ବୃନ୍ଦାଅର୍କେ
ତ୍ରାସେଣ କମ୍ପିଲେ ଯେ ସକଳ ଦେବଲୋକେ ।୧୫୭
ଅସମ୍ଭାଳ ହୋଇଣ ଦେବ ଯେ ଶ୍ରୀବଛି ତହିଂ
ମୁଖ ନାସିକା ବାଟରେ ଯେ ଶ୍ରୋଣିତ ବହଇ ।୧୫୮
ସମୋଦ୍ରଯାକ ସବୁ ହୋଇଲା ଶ୍ରୋଣିତ
ତାହା ଦେଖି ହନୁମନ୍ତକୁ ଲାଗିଲା ଆଚମ୍ବିତ ।୧୫୯
ଶ୍ରୋଣିତ ଦେଖି ପଚାରଇ ହନୁମାନ
ଯେ କିସ ଦିଶଇ ଜଳର ଉଦଯାନ ।୧୬୦
ଶୁଣ ବୋଲି ଅର୍ଜୁନ ବୋଇଲା କପିବୀରା
ତୋହୋର ଚାଲନ୍ତେ ଶହସ୍ରରୁ କଳଂକ ଛାଡିଲା ।୧୬୧
ତେଣୁ କରି ସମୋଦ୍ର ହୋଇଲା ରଙ୍ଗମୟେ
ହନୁମନ୍ତ ବୋଇଲା ସାଧୁ ସାଧୁ ହେ ଧନୁର୍ଜୟେ ।୧୬୨
ବଇବସୁତ ମନୁ ପଚାରନ୍ତି ଯେ ବାରତ
ଭୋ ଅଗସ୍ତି ଯେତେବେଳେ ଅର୍ଜୁନକୁ କେମନ୍ତେ
ଚିହ୍ନିଲା ହନୁମନ୍ତ ।୧୬୩
ଶୁଣ ହୋ ମନୁ ପୁରୁଷ ବଦୟନ୍ତି ଅଗସ୍ତି
ଯହୁଂ ଭୀଷ୍ମ ରୂପ ଧରିଲା ମାରୁତି ।୧୬୪
ଯେକା କାୟେ ବିକାଶିଲା ସପତ ବ୍ରହ୍ମାଣ୍ଡ
ଭୀଷ୍ମ ରୂପ ପ୍ରକାଶିଲା ମେଦିନୀ ନବଖଣ୍ଡ ।୧୬୫
ଯେକା କାୟା ଘୋଟିଲା ସପତ କ୍ଷିତିଖଣ୍ଡ
ଦିବ୍ୟ ଚକ୍ଷୁକୁ ଦୃଶ ହେଲା ସପତ ବ୍ରହ୍ମାଣ୍ଡ ।୧୬୬
ବିଶ୍ୱରୂପ ପ୍ରକାଶନ୍ତେ ଦିଶିଲା ବ୍ରହ୍ମାଣ୍ଡ ଖଣ୍ଡ ତିନି
ଦେଖିଲା ମାରୁତି ଯେ ପ୍ରତକ୍ଷେ ପାଣ୍ଡବ ଫାଲଗୁନି ।୧୬୭
ବନ୍ଧରୁ ଓହ୍ଲାଇଣ ଅଞ୍ଜନାର ବାଳେ
ଅର୍ଜୁନକୁ ହନୁମନ୍ତ ବସାଇଲା କୋଳେ ।୧୬୮
ପ୍ରତକ୍ଷେ ନାରାୟଣ ତୁ ଭିନ୍ନ ନୋହୁ ପାଥ
ମୋହୋର ଗ୍ୟାନ ନାହିଂ ତୁ ମାନବ କୁଳେ ଜାତ ।୧୬୯
ଯେବେ ସେ ଜାଣିଲି ତୁ ବିଷ୍ଣୁନାଥ ସ୍ୱୟେଂ
ମୋତେ ଅନୁଗ୍ରହ କରସି ଧନୁର୍ଜୟେ ।୧୭୦
ହନୁମନ୍ତ ଅର୍ଜୁନେ ହୋଇଲା ଅନେକ ପୀରତି
ଅର୍ଜୁନକୁ ଘେନି ଚଳିଲା ତହୁଂ ଖିନିଖିନା ଆଧିପତି ।୧୭୧
ଜାମ୍ୱେବ ଆଦି କରି ଅଙ୍ଗଦ ସହିତେ
ଅନେକ ସାନନ୍ଦେ ପୂଜା କଲେ ବୀର ପାଥେ ।୧୭୨

ଅନେକ ଦାରାକ୍ଷ ଫଳ ଦିଲେ ହନୁମତ
ଭୁଞ୍ଜିଣ ତ୍ରିପୁତି ସେ ପଣ୍ଡୁ ରାଜାର ସୁତ ।୩୮୪
କରପତ୍ର ଯୋଡିଣ ସେ ବୋଲଇ ଧନୁର୍ଜୟେ
ପରମ ଯୋଗୀ ପୁରୁଷ ମୋତେ କରିବା ସଦୟେ ।୩୮୫
ଉଠି ଅର୍ଜୁନକୁ କୋଳ କରିଣ ହନୁମନ୍ତେ
ତ୍ରିପୁତି ହୋଇଲି ଅର୍ଜୁନ ତୁ ବର ମାଗ ମୋତେ ।୩୮୬
ଅର୍ଜୁନ ବୋଇଲେ ସ୍ୱାମୀ ମୋତେ ଯେବେ ହୋଇଲା ଅନୁଗ୍ରହ
ନନ୍ଦିଘୋଷ ରଥରେ ମୋର କପିକେତନ ହୋଇ ରହ ।୩୮୭
ସାଂଗ୍ରାମକୁ ଯିବା ବେଳେ ଚାହିଂବି ତୋର ମୁଖ
ସମସ୍ତ ସିଦ୍ଧ ମୋତେ ହୋଇବା ପ୍ରତକ୍ଷ ।୩୮୮
ପଣ୍ଡିତ ଲୋକେ ତାତ ଯାତ୍ରା ଅନକୂଳ ବିଧି
ହନୁମନ୍ତ ପ୍ରସନ୍ନେ ପ୍ରାପତ ହୋଉ ସର୍ବସିଦ୍ଧି ।୩୮୯
ଯେବଣ ସାଂଗ୍ରାମ ଭୂମିରେ ଥାଇ ହନୁମନ୍ତ
ପଶିତ ନୁଆରଇ ତହିଂ ପାତେକ ଦୁରାପାତ ।୩୯୦
ଯେ ଅବା ପଣ୍ଡିତ ଯୋଗ ଗ୍ୟାନବନ୍ତ

ହନୁମନ୍ତ ପ୍ରତିମା ଗୋଟିଏ ଦ୍ୱାରେ ଥାପିବ ଅନୁବ୍ରତ ।୩୯୧
ଅସୁର ନିପାତକ ଅଟଇ ପରମ ଯୋଗୀ
ସେ ଥିଲା ଭୂମିକି ନୋହଇ ଅସୁର ଭୋଗୀ ।୩୯୨
ଭୋଜନ କାଳେ ସୁମରଇ ହନୁମନ୍ତ
ସେ ଅନ୍ନକୁ ଆକ୍ରେଷି ନ ପାରଇ ଦୂରାପାତ ।୩୯୩
କରପତ୍ର ଯୋଡି ବୋଲଇ ଫାଲଗୁନି
ଆପଣେ ଦୂଷିତ ହୋଇଲି ସ୍ୱାମୀ ତୋତେ ନ ଚିହ୍ନି ।୩୯୪
ଶ୍ରୀରାମ ପ୍ରସନ୍ନେ ବର ଦିଲେଟି ଯାହାକୁ
ପୂର୍ବ ପୁଣ୍ୟେ ମହାତମା ଭେଟିଲି ମୁହିଂ ତାଂକୁ ।୩୯୫
ଅନୁଗ୍ରହ ନାଥ ମୋତେ ଦୟା କରିଥିବା
ନନ୍ଦିଘୋଷ ରଥେ ମୋର ବିଜୟେ କରିବା ।୩୯୬
ଶୁଣିଣ ପ୍ରସନ୍ନ ହୋଇଲେ ଶ୍ରୀରାମଂକ ଦୂତ
କପିକେତନ ଚିହ୍ନ ହୋଇଥିବି ତୋର ନନ୍ଦିଘୋଷ ରଥ ।୩୯୭
ବେନି କର ଯୋଡି ପାଥ ପଦ୍ମପାଦେ ପଡ଼ି
ଅନେକ ଦୃଷ୍ଟି ସେ ଯେ କରଇ ପୁରସରି ।୩୯୮
ଜୟ ଜୟ ହନୁମାନ ମହାରୁଦ୍ର ମୂର୍ତ୍ତି
ଜୟ ଜୟ ଭଗତମସ୍ତଳ ଦାଶରଥି ।୩୯୯
ଜୟ ତୁ ଶରଣ ଜନ ରକ୍ଷଣ ନାଥ ସାଧୁ
ଜୟ କୃପାନିଧି କୃପା ଜଳ ସିନ୍ଧୁ ।୪୦୦
ଜୟ ଜୟ ଲଂକା ବିଧଂସନ ଦର୍ପ ଖଇଳ
ଜୟ ଜୟ ତ୍ରେତା ଯୁଗର ମହାମଲ୍ଲ ।୪୦୧
ଜୟ ଜୟ ପରମ ମଙ୍ଗଳ ଯୋଗେଶ୍ୱର
ତୋହୋରେ ଲଂକାଗଡ଼ ଜୟେ କଲେ ରଘୁବୀର ।୪୦୨
ଜୟ ଜୟ ଶ୍ରୀରାମ ଭଗତ ଦୂତ ଶ୍ରେଷ୍ଠ
ତୋହୋରେ ଖଣ୍ଡନ ହେଲା ସୀତୟାଂକ କଷ୍ଟ ।୪୦୩
ଜୟ ଜୟ ପରମାନନ୍ଦ ଗଉତମ ନାତି
ଜୟ ଜୟ ଯମ ଅର୍ଗଳ ଭଞ୍ଜନ ମାରୁତି ।୪୦୪
ଜୟ ଜୟ କାଳାନ୍ତକ ଦନୁଜ ଦର୍ପ ନଷ୍ଟା
ଜୟ ଜୟ ଶ୍ରୀରାମ ଭଗତ ଜନ ଶ୍ରେଷ୍ଠା ।୪୦୫
ଜୟ ଜୟ ନାଥ ସେବକ ଜନବସ୍ତଳ
ଜୟ ଜୟ କରୁଣାସାଗର ଗତିଭୋଳ ।୪୦୬
ଜୟ ଜୟ ବାଳୀ ସୁଗ୍ରୀବର ଭଣଜ୍ଞା
ଜୟ ଜୟ କାଳ କାମ ଦର୍ପ ଭଞ୍ଜା ।୪୦୭
ଜୟ ଜୟ ମାନବ ତୁ ମାନଗୋବିନ୍ଦ
ଜୟ ଜୟ ଭୁବନ ଉତ୍ସବ ତୁ ପରମାନନ୍ଦ ।୪୦୮
ଜୟ ଜୟ ମହା ଯତି ମହା ପଣ୍ଡିତ ମହା ଯୋଧୀ
ଜୟ ଜୟ ଗିରିବରେ ବନ୍ଧନ ବାରାନିଧି ।୪୦୯
ଶ୍ରୀ ହନୁମନ୍ତ ଚରଣେ ଶରଣ ମୋର ସେବା
ଶୂଦ୍ରମୁନି ସାରୋଳା ଦାସକୁ ପ୍ରସନ୍ନ ହୋଇବା ।୪୧୦
ଶ୍ରୀ ମଧ୍ୟପର୍ବେ ସୁଗନ୍ଧିକା ହରଣ କଥା
ଶୁଣନ୍ତେ ଧନ ପୁତ୍ର ପ୍ରାପତ ହୋଯେ ଯଥା ।୪୧୧
ଶ୍ରୀ ହନୁମନ୍ତ ପ୍ରସନ୍ନେ ଆରୋଗ୍ୟଶୀଳ ବଞ୍ଚି
ହନୁମନ୍ତ ପ୍ରସନ୍ନେ ମୁକତି ଗତି ଇଚ୍ଛି ।୪୧୨
ହନୁମନ୍ତ ବୋଲଇ ପାଥ ତୁ ସୁମରିବୁ ଯେତେବେଳେ
କପିକେତନ ହୋଇ ରଥେ ଥିବି ସର୍ବକାଳେ ।୪୧୩

ଯେହ୍ନେ ସେ ଗ୍ରନ୍ଥ ସୁବିଧାନ ଆଦି
ଗିରିଜା ପ୍ରସନ୍ନେଣ ତାହା ଶାହାସ୍ତ୍ରେ ସମ୍ପାଦି ।୫୯୭
ଅନୁଗ୍ରହେ ଭବାନୀ ପ୍ରତକ୍ଷେ ସାଧବୀ
ସ୍ୱୟେଂ ଆଗ୍ୟାଂ ମୋତେ ଦିଲେକ ମହାଦେବୀ ।୫୯୮
ମାନବେ ଦୃଶ୍ୟ କାହିଂ ଅଦୃଷ୍ଟି ଅଶ୍ରୁତି
ପ୍ରାପତେ ପାଇଲି ମୁଂ ଅଭୟେ ସରସ୍ୱତୀ ଭେଟି ।୫୯୯
କଳିକାଳ ଧ୍ୱଂସିନୀ ଦେବୀ ସର୍ବ ମଙ୍ଗଳେ
ତଥ୍ୟ ପାଇଲି ମୁଂ ସେ ଦେବୀର ବୁଦ୍ଧିବଳେ ।୬୦୦
ମନ ବଚନ କର୍ଷବ୍ୟେ ଅଜପା ଯୋଗ ଲୟେ
ବାକ୍ୟ ଦେବୀ ଭଣ୍ଡାର ବିଧଂସିଲି ସାରୋଳା ଆଗ୍ୟାଂଯେ ।୬୦୧
ସଦା ଅନୁଗ୍ରହ ମୋତେ ଯେ କରଇ ସିଦ୍ଧ କାନ୍ତାୟେନୀ
ଜନ ସଂସାର ବୋଧିଲି ସେ ଦେବୀର ଲୟେ ଘେନି ।୬୦୨
ଅପରାପର ସଂସାର ଯହୁଂ ନୁଆରିଲି ମେଣ୍ଟି
ଦୃଶ୍ୟ ଫଳ ଶ୍ରୁତି ମୋତେ ଶ୍ରୀରାମ ନାମ ଗୋଟି ।୬୦୩
ହର ଉଦ୍ୟାନ ବନେ ମୋହୋର ତପସ୍ଥାନ
କାଶୀ ନଦୀ ତୀରେ ମୋହୋର ଦୃଢ଼ ଯେ ଆସନ ।୬୦୪
ଜନ୍ମେଣ ମୂର୍ଖ ମୁଂ ନ ପଢ଼ିଲି ଶାହାସ୍ତ୍ର ବିଦ୍ୟା
ବିନା ତପେଣ ବାଚା ମୁଂ ପାଇଲି ସଂସିଦ୍ଧା ।୬୦୫
ଶ୍ରୀ କୃପାଜଳ ନନ୍ଦିନୀ ନାମ ତା ସରସ୍ୱତୀ
କଳିକାଳେ ବିକାଶିଲା ସାରଳା ଚଣ୍ଡୀମୂର୍ତ୍ତି ।୬୦୬
ଇହଲୋକେ ବରଦାୟିନୀ ଗୋ ଶୟଳ ଜନ ଚିନ୍ତା
ଦୁଖୀଜନ ଦେଖଇ ସେ ତ୍ରଇଲୋକ୍ୟ ଜନ ମାତା ।୬୦୭

ଖଣ୍ଡିଲି ଦୁଷ୍କୃତ ସେ ଦେବୀର ପରଶନେ
ସିଦ୍ଧ ସାରୋଳା ଚରଣେ ମୁଂ ଖଟଇ ଜନ୍ମେ ଜନ୍ମେ ।୬୦୮
ଶରଣ ରକ୍ଷଣ ଦେବୀ ପ୍ରସନ୍ନେ ହିଙ୍ଗୁଳା
ପ୍ରସନ୍ନେ ଅଭୟ ବର ଦେଉ ଶ୍ରୀଚଣ୍ଡୀ ସାରଳା ।୬୦୯
ଜୟ ଜୟ ସୁବିଧାନେ ଗୋ ସର୍ବମଙ୍ଗଳେ
ଅପାଦ ଦୁଷ୍କୃତ ଗୋ ଖଣ୍ଡିବା ସର୍ବକାଳେ ।୬୧୦
ଶଇଳ ରାଜାର ନନ୍ଦିନୀ ଭଗତି ପଞ୍ଚୁଭାବେ
କହିଲି ଶ୍ରୀମହାଭାରଥ ମଧ୍ୟପର୍ବ କଥାର ପ୍ରସ୍ତାବେ ।୬୧୧
ଶ୍ରୀଚଣ୍ଡୀ ସାରୋଳାଂକୁ ଧ୍ୟାୟେ ପଞ୍ଚୁମନେ
କାଳଭୟ ମେଷ୍ଟଣ କଲି ଶ୍ରୀ ହିଙ୍ଗୁଳା ପରସନ୍ନେ ।୬୧୨
ଶ୍ରୀଜନାର୍ଦ୍ଦନ ଦେବଂକର ଚରଣେ ପରିଣାମି
ବଦନ୍ତି ସାରୋଳା ଦାସ ଗ୍ରନ୍ଥିକ ଶୂଦ୍ରମୁନି ।୬୧୩

**

## ୩୨. ଉଷା ହରଣ

ବଦୟନ୍ତ ଅଗସ୍ତି ଶୁଣ ହୋ ମନୁରାୟେ
ସଞ୍ଚପି କହିବାକୁ କାହାର ସଖ୍ୟ ହୋୟେ ।୧
ତୁମ୍ଭେ ଯେ ପୁଚ୍ଛା କଲ ବିନୟ ଭଗତେ
କହିବା ବିଷ୍ଣୁ ପୁରାଣ ସଂସାରୁ ତରିବା ନିମନ୍ତେ ।୨
ଯେ ମଧ୍ୟପର୍ବ ଯେ ମହାରସ କଥା
ହରଇ ଦୁଷ୍କୃତ ଯେ ଖଣ୍ଡଇ ମନୋବ୍ୟଥା ।୩
ଶ୍ରୀବିଷ୍ଣୁ ପୁରାଣ ଯେ ଶାହସ୍ର ସଙ୍ଗତେ
ଯେ ଅବା ଶୁଣନ୍ତି ହୋଇଣ ଯେକ ଚିତ୍ତେ ।୪
ଅନ୍ତେଣ ବଇକୁଣ୍ଠ ଦିଅନ୍ତି ଚକ୍ରପାଣି
ନାନାଦି ପାତେକରୁ ତରି ଯାନ୍ତି ପ୍ରାଣୀ ।୫
ତୁମ୍ଭେ ଯେ ଧାର୍ମିକ ବିବେକ ପୁଣ୍ୟବନ୍ତା
ଯେକମନେ ଶୁଣ ହୋ ଶ୍ରୀ ମହାଭାରଥ କଥା ।୬
ଶୋଣିତ ପୁର ବୋଲି ବଇତରଣୀ ନଦୀ ତୀରେ
ବାଣାସୁର ବୋଲି ତହିଂର ନୃପବରେ ।୭
ବଳୀର କୁମର ସେ ମହାଦେବଂକୁ ସେବି ପାଇଲା ବର
ଯୁଗେ ଯୁଗେ ଅମର ସେ ସହସ୍ରେ ତାର କର ।୮
ମହାବୀର ପଣେ ସେ ବଡ଼ାଇ କଉଣୋପ
ଯୁଗେ ଯୁଗେ ଅଜାମ୍ୟର ତାର ଭୟଂକର ରୂପ ।୯
ତାହାର କୋଳେ ଜନମ ଯେବଇ ଦୁଲଣୀ
କୋଟିୟେ ପାର୍ବତୀ ରୂପକୁ ପାରଇ ସେ ଜିଣି ।୧୦
ସୁକୁମାରୀ ସୁନ୍ଦରୀ ସେ ମୋହଇ ଜଗତ
ଚନ୍ଦ୍ର ମହାଲଗ୍ନ ଘେନିଣ ହୋଇଲାକ ଜାତ ।୧୧
ଫାଲଗୁନ ମାସ ଶୁକ୍ଳ ପକ୍ଷ ପଞ୍ଚମୀ ଚନ୍ଦ୍ରବାର
ରେବତୀ ମୀନରେ ଚନ୍ଦ୍ର କରଇ ବିହାର ।୧୨
ବବ ନାମେ କରଣ ଯେ ଶୁଭ ନାମେ ଯୋଗ
କୁମ୍ଭ ସଂକ୍ରାନ୍ତିକି ଯେ ବାଇଶି ଦିନ ଭୋଗ ।୧୩
ସପ୍ତମେ ବୃହସ୍ପତି ପଞ୍ଚମେଣ ବୁଧ
ଦିବସ ଭୋଗ ଯାଇଂ ରୟଣୀ ହୋଇଲାକ ଅର୍ଦ୍ଧ ।୧୪
ଯେମନ୍ତ ସମୟେଣ ସେ ଜାତ ହୋଇଲା କୁମାରୀ
ସର୍ବ ମଙ୍ଗଳ ଯୋଗ ପଣ୍ଡିତେ ବିଚାରି ।୧୫
ଦୋହିତାକୁ ଦେଖି ତାର ଉଲକ୍ଷିତ କାୟେ
ତେଣୁ କରି ରାଜା ତାର ଉଷା ନାମ ଦିୟେ ।୧୬
ଦିନୁଂଦିନ କୁମାରୀ ଯେ ବଢ଼ଇ ଆନୁଆନ
ଶୁକଳ ପକ୍ଷେ ଯେହ୍ନେ ଉଦିତ ହୋୟେ ଜହ୍ନ ।୧୭
କେତେହେଂକ ଦିନେ କନ୍ୟା ହୋଇଲା ନବଯୁବା
ମଦନ ପସରା ଜାଣି ଦିଶଇ ବେନି କୁଚ ଆଭା ।୧୮
ନୟନ ନୀଳ ଉତ୍ପଳ ନାସା ତିଳ ଫୁଲ
ଦନ୍ତ ଗଜମୋତି ବନ୍ଧୁଲୀ ଅଧର ଅମୂଲ୍ୟ ।୧୯
ବୃଷାଳ ବକ୍ଷସ୍ଥଳ ପଦ୍ମଳାତ ବେନି ଭୁଜ
ପଦ୍ମ ପତ୍ର ପେଟ ନିତମ୍ବ ଉରଜ ।୨୦
ରକତ କୁମୁଦ ଜାଣି ପାଦତଳ ରଙ୍ଗ
ରାଜହଂସ ଚାଲି ଶୋଭା ଦିଶଇ ସୁରଙ୍ଗ ।୨୧
କୋକିଳ ବଚନ ଭାଷଇ ମୃଦୁରସ
ଅପାଙ୍ଗ ଚାହାଣୀରେ କନ୍ଦର୍ପ ହୋଇବଟି ଧଂସ ।୨୨
କପାଳେ ସିନ୍ଦୂର ଅରୁଣ ଜ୍ୟୋତି ଜାଣି
ନାସାରେ ଗଜମୁକୁତା ସୁବର୍ଣ୍ଣ ରସାଣି ।୨୩
ନୟନେ କଜ୍ଜ୍ୱଳ ଭ୍ରୂଲତା ବେନି ସାଜେ
କର୍ଣ୍ଣେଣ ରତ୍ନ କାପ ଗରୁ ଶୁକ୍ର ଗଞ୍ଜେ ।୨୪
କଣ୍ଠେ ଶୋଭାବନ ମୁକୁତା ସରି ଚାପ
ବାହେ ରତ୍ନ ଚୁଡ଼ି ନାନା ମଣି ଧାପ ।୨୫
ପୟରେ ନେପୁର ବାଜଇ ରୁଣଝୁଣ
ଅଙ୍ଗୁଷ୍ଠି ମୁଦ୍ରିକା ଦିଶେ ସୂର୍ଯ୍ୟ ଜ୍ୟୋତି ସମ ।୨୬
ଦେବାଙ୍ଗ ବସନ ପରିହରଣ ଯେ ବାଳୀ
ନାନା କୁସୁମେ କବରୀ ଅଛଇ ଶାମଳୀ ।୨୭

ସଙ୍ଗେ ଚିତ୍ରରେଖା ନାମେ ସହଚରୀ ଘେନି
କୁସୁମ ବନିକାୟେ ଭ୍ରମଇ କାମେନୀ । ୨୮
ନାନା ଜାତି କୁସୁମ ସେ ତୋଳେ ମନଇଛା
ପୂଜଇ ସଦାଶିବ ବର ମାଗଇ ମନ ବାଞ୍ଛା । ୨୯
ଭୃଙ୍ଗ ଧ୍ୱନି ଶୁଣି ଚମକାଇ ତାର ତନୁ
ରତି ଶାହାସ୍ର ସୁମରି ବିକଳିତ ମନୁ । ୩୦
ପୁଣ ପୁଣ ବସନ ସେ ଫେଡଇ ସରାଗେ
ଦେଖଇ ମର୍ମସ୍ଥାନ ସେ ମନର ଉଦବେଗେ । ୩୧
ଯହୁଁ ନିର୍ଜନ ସେ ଅଟଇ ବିପୁନ୍ୟ
ତେଣୁ କରି ଫେଡି ପିନ୍ଧଇ ବସନ । ୩୨
ଚନ୍ଦ୍ରକଳା ସୁମରି ଯେ ରତି ଇଛା କରି
ନାନା ପରିବନ୍ଧ ସେ ମନରେ ଅନୁସରି । ୩୩
ପୁଷ୍ପକୁ ଆବୋରି ଚୁମ୍ବଇ ଭ୍ରମର
ମଉଡରେ ଧ୍ୱନି କରଇ ସୁସ୍ୱର ।୩୪
ଦେଖିଣ ବିଷାଦ କରଇ ମନକୁ
ସାତ୍ତ୍ୱିକ ବିକାର ଭେଦିଲା ତନୁକୁ । ୩୫
ଖରତର ନିଶ୍ୱାସ ଛାଡଇ ଘନ ଘନ
ତରଳିତ ତନୁ ତାର ବିରସ ବଦନ । ୩୬
ଚରଣ ବଢ଼ାଇ ବାଳୀ ନୁଆରଇ ଯାଇ
ଦେଖି ଚିତ୍ରରେଖା ଧଇଲା ବେଗ ହୋଇ । ୩୭
ଆଶ୍ୱାସନା କରି ନିଜ ପୁରକୁ ଘେନିଗଲା
ସୁବାସିତ ଜଳ ବଦନେ ଛିଞ୍ଚିଲା । ୩୮
ସୁଗନ୍ଧ ଲେପନ୍ତେ ମଣଇ ବିମୁଖ
ଭୋଜନ ଶୟନେ ଅତିହିଂ ଗରୁ ଦୁଖ । ୩୯
ନ କହେ ସଖୀକି ସରସ ବଚନ
ନୁହଂଇ ସୁବେଶ ନ ସମ୍ଭାଳଇ ବସନ । ୪୦
ଚିତ୍ରରେଖା ଚିତ୍ତ ଚଞ୍ଚଳ ତାର ଜାଣି
ବହୁତ ମତେ ତାକୁ ପ୍ରବୋଧଇ ତରୁଣୀ । ୪୧
ନ ଘେନେ ସଖୀଂକ ହାସ ପରିହାସ
ଦିବସ ଅନ୍ତେଣ ରୟଣୀ ପ୍ରବେଶ । ୪୨
ଶେଯ୍ୟାରେ ପହୁଡ଼ି ଅଳସିତ ତନୁ
ପ୍ରଦୀପ ତେଜକୁ ମଣିଲା ସେ ଭାନୁ । ୪୩
ଚନ୍ଦ୍ରଶାଳା ପୁର ନ ମଣଇ ବାଳୀ
ନୟନେଣ ନିଦ୍ରା ନୋହୋଇ ବିଭଳି । ୪୪
ଅନେକ ଚେଶଷ୍ଟା ମଦନ ବିକାର ଘେନି
ଅତି କଷ୍ଟେ ବଞ୍ଚିଲା ସେ ଦିବସ ରୟଣୀ । ୪୫
ରୟଣୀ ପ୍ରଭାତେ ଦେଖିଲା ସପନ
ଦିବ୍ୟ ପୁରୁଷେକ ମିଳି ସନ୍ନିଧାନ । ୪୬
ପଲଂକେ ବସିଣ ଅଳପେ ମୃଦୁ ହସି
ଉପରେ ଦେଇ ହାଥ ଚାଟୁ ବଚନ ଭାଷି । ୪୭
କୋଳେ ବସାଇଣ ଚୁମ୍ବଇ ଅଧର
ଯେସନେକ ସମୟେ ନିଦ୍ରା ଭାଜିଲା ତାହାର । ୪୮
ଚକ୍ଷୁ ମଳି ଚାହିଂଲା ବାଳୀ ପଲଂକ ଉପରକୁ
ନ ଦେଖି ଦରାଣ୍ଡିଣ ନ ପାଇଲା ତାହାକୁ । ୪୯
ହା ପ୍ରାଣନାଥ ବୋଲି ଉଛେ ରାବ ଦିଲା
ଶୁଣି ଚିତ୍ରରେଖା ତବଦ ହୋଇଲା । ୫୦
ବୋଲଇ ସୁନ୍ଦରୀ ଶୁଣ ମୋର ବାଣୀ
ବିପରୀତ କଥା କହୁ ଗୋ ମିତଣୀ । ୫୧
ବିଘଂସିତ ପୁଷ୍ପ ପ୍ରାୟେ ହୋଇଅଛୁ
ଭୃଙ୍ଗ ଲଭିନାହୁଂ ପୁଂସ କିଂକେ ଇଛୁ । ୫୨
ସଖୀ ବଚନ ଶୁଣି କହେ ମୃଦୁବାଣୀ
ଅଭିନବ ପୁରୁଷେ ମୋ ପାଶେ ଥିଲା ଯେହିକ୍ଷଣି । ୫୩
ତାହାଂକ ରୂପ ଗୁଣ କହିବଇଂ କିସ
କୋଟିଏ କନ୍ଦର୍ପ ଯାର ହୋଇବାକୁ ଦାସ । ୫୪
ସେ ଆସି ମୋହୋର ଶେଯ୍ୟାରେ ବସିଥିଲା
ଅଧର ଚୁମ୍ବିଣ ମୋରେ ବହୁ ଚାଟୁ କଲା ।୫୫
ଯେହିକ୍ଷଣି ଥିଲା ଗଲା କେଉଂ କତି
ଯେତେ କହି ମୋହେ ପଡ଼ିଲା ଯୁବତୀ । ୫୬
ଚିତ୍ରରେଖା ତୋଳି କରଇ ଆଶ୍ୱାସ
କାହୁଂ ଅଦଭୁତେ ଅଇଲା ପୁରୁଷ । ୫୭
ଆଗୋ ସଖୀ ସଚେତ ହୋଇ କହ ମୋତେ
ତିନି ପୁରେ ଥିଲେ ନିଚେଂ ଆଣି ଦେବି ତୋତେ । ୫୮
ନୋହସି ଅଗ୍ୟାନ ଗୋ ଚେତା ହୋଇ କହ
ସଖୀ ବଚନ ଶୁଣି ତେଜିଲାକ ମୋହ । ୫୯
ଚରଣ ଧରି କହଇ ବହୁତ ବିନୟେ
ତୁ ସଖୀ ମୋହୋରେ ଗୋ କରସି ସଦୟେ । ୬୦
ତୁ ଯେବେ ଅଟୁ ଗୋ ମୋ ପ୍ରାଣର ମିତଣୀ
ଅନରୂପେ ପତି ଦେବୁଂ ମୋତେ ଆଣି । ୬୧
ସ୍ୱପନେ ଦେଖିଲି ସଖୀ ଗୋ ଯେଉଂଣ ମୂରତି
ସେ ମୋହୋର ଜାଣ ନିଚେଂ ଅଟେ ପତି ।୬୨
ତାହାର ବିହୁନେ ମୋ ନ ସରଇ ଦିନ
ସେହି ସେ ଅଟଇ ସଖୀ ମୋହୋର ଜୀବନ । ୬୩

ତାହାକୁ ସଖୀ ଆଗୋ ଆଣିଦେବୁ ମୋତେ
ଅନେକ ବିନୋୟୀ ହୋଇ କହୁଅଛି ତୋତେ । ୬୪
ଯେତେ ବୋଲି ବାଳୀ ଧଇଲା ଚରଣ
ମୁହିଂ ସେ ଅନାସ୍ତ ସଖୀ କର ଗୋ କାରଣ । ୬୫
ଚିତ୍ରରେଖା ବୋଲଇ ଶୁଣରେ ପ୍ରାଣସଖୀ
ଆତ୍ମା ବଇକୁଲ୍ୟ ମୋର ତୋର କଷ୍ଟ ଦେଖି । ୬୬
ଯେବଣ ପୁରୁଷକୁ ଦେଖିଲୁ ସପନ
ଚିତ୍ରପଟ ଲେଖି ତୋତେ ଦେଖାଇବା ବହନ । ୬୭
ଯେ ତୋହୋର ଇଚ୍ଛା ଆଣିଦେବଇଁ ମୁଁ ତାହା
ଯେ ସେ ଚିତ୍ରପଟ ସଖୀ ନିରେଖିଣ ଚାହାଂ । ୬୮
ଯେତେ କହି ଚିତ୍ରପଟକୁ ଦେଖାଇ
ଜଣେ ଜଣେ କରି କହଇ ଚିହ୍ନାଇ । ୬୯
ଯେ ସେ ସଖୀ ଇନ୍ଦ୍ର ଦେବତାଂକ ରାଜା
ଦେଖ ଚିତ୍ରସେନ ବାସବ ତନୁଜା । ୭୦
ଅଙ୍ଗାରପନ୍ନଙ୍ଗ ବରୁଣ କୁବେର
ତେତିଶ କୋଟି ଦେବତା ଲେଖିଲା ଚିତ୍ରପଟର । ୭୧
ଗନ୍ଧର୍ବ ଯକ୍ଷଗଣ ବିଦ୍ୟାଧରମାନ
ଯେକ ଯେକ କରି କହିଲା ସବୁଂକରି ନାମ । ୭୨
ନାଗଲୋକ ଦେବଲୋକ ବ୍ରହ୍ମଲୋକ ଯାଯେ
ଚିତ୍ରପଟ ଲେଖି ଦେଖାଇଲା ତାଯେ । ୭୩
ମ୍ଧ ଭୁବନରେ ଲକ୍ଷେ ନୃପତି ଦେଖି
ବିଷାଦ ହୋଇଣ ଯେ ବସିଲା ଶଶୀମୁଖୀ । ୭୪
ଦ୍ୱାରିକା ପୁର ରଞ୍ଚିଲା ଲେଖିଲା ଉଗ୍ରସେନ
ସାତବଂଶ ଯାଦବ ଦିଶନ୍ତି ଆନୁଆନ । ୭୫
ରାମକୃଷ୍ଣେ ଦେଖି ହରଷ ଚତୁରୀ
ପ୍ରଦ୍ୟୁମ୍ନକୁ ଦେଖି ଶିର ଲମ୍ୱାଇଲା ବାଳୀ । ୭୬
ଶ୍ରୀକୃଷ୍ଣର ଲକ୍ଷେ ଷାଠିସହସ୍ର ଅଶିଯେ ନନ୍ଦନ
ସମସ୍ତେ ଦିଶନ୍ତି କୃଷ୍ଣର ତେଜବର୍ଣ୍ଣେ । ୭୭
ପୁଣି ଲେଖିଲା ଚିତ୍ରରେଖା ଅନିରୁଦ୍ଧ ବୀର
ଦେଖିଣ ହରଷ ମନ ହୋଇଲା ବାଳୀର । ୭୮
ସଖୀର କରରୁ ଚିତ୍ରପଟ ଘେନି
ଆନନ୍ଦେ ଅଶ୍ରୁଜଳ ବହଇ ନୟନ ବେନି । ୭୯
ଚିତ୍ରରେଖା ବୋଲଇ ଧନ୍ୟ ଗୋ ଚତୁରୀ
ତୋହୋର ଅନରୂପେ ଅଟଇ ଯେ ଶରୀ । ୮୦
ଶ୍ରୀକୃଷ୍ଣର ନାତି ଯେ କନ୍ଦର୍ପର ସୁତ
ରତି ମାହାତ୍ମାଣୀ ଅଟଇ ଯେହାର ନିଜ ମାତ । ୮୧
ଶତେବାର ଯେ ଗଙ୍ଗାରେ ଝାସିଥାଇ
କୋଟିଯେ ଈଶ୍ୱର ପୂଜିଲେ ଯେହାକୁ ନ ପାଇ । ୮୨
ଯେହି ସେ ସଖୀ ରେ ପୁରୁଷଂକ ସାର
ଧନ୍ୟ ଜୀବନ ସଖୀରେ ଅଟଇ ତୋହୋର । ୮୩
ବୋଲଇ କୁମାରୀ ଶୁଣ ଗୋ ମିତଣୀ
ମୋହୋରେ ଦୟା ଯେବେ ଅଛି ତୋର ପୁଣି । ୮୪
ବେଗେ ଆଣି ସଖୀ ଦିଅ ଯେହୁ ପତି
ଯେହାର ଚିତ୍ରକେ ଆନେ ନ ବଳେ ମୋର ମତି । ୮୫
ନୋହିଲେ ସଖୀ ଆରେ ନ ରଖଇ ଶରୀର
କେ ଆଣି ଦେବ ମୋତେ ପୁରୁଷ ରତ୍ନ ସାର । ୮୬
ପୁଣ ପୁଣ ବିନତି କରୁଅଛି ତୋତେ
ଯେ କଷ୍ଟରୁ ସଖୀ ଗୋ ରକ୍ଷାକର ମୋତେ । ୮୭
ଉଠି ଉଭା ହୋଇ ଧରଇ ଚରଣ
ବହୁତ ବିକଳ ହୋଇ କରଇ କାରୁଣ । ୮୮
ଚିତ୍ରରେଖା ବୋଲଇ ଗୋ ନୁହସି ବିକଳ
ଆଜର ମଧରେ ଆଣିମି ପଦ୍ମନର ବାଳ । ୮୯
ମୋହୋର ଆସିବା ଯାଯେ ଧଉର୍ଯ୍ୟ ହୋଇ ଥାଅ
ଆଜ ରୟଣୀରେ ଆଣିମି ଗୋ କନ୍ଦର୍ପର ପୁଅ । ୯୦
ନାରଦଂକ ମନ୍ତ୍ର ସୁମରି ହୋଇଲା ବାହାର
ରୟଣୀ ଅର୍ଦ୍ଧ ସମଯେ ପ୍ରବେଶ ଦ୍ୱାରାବତୀ ପୁର । ୯୧
ଦେଖିଲା ଅନିରୁଦ୍ଧ ପଲଂକେ ଅଛି ବସି
ଦିବ୍ୟ ବିଳାସୁଣୀଯେ ନୃତ୍ୟ ରଙ୍ଗେ ତୋଷି । ୯୨
ଦିବ୍ୟ ବେଶ ହୋଇ ବିରସ ବଦନ
ଚିତ୍ତ ଉଦବେଗ ଯେ ମନ ଛନ୍ନ ଛନ୍ନ । ୯୩
ଦିବ୍ୟ କଉତୁକ ଯେ ନ ରୁଚଇ ମନକୁ
ପଞ୍ଚଶର ପୀଡା କରଇ ତନୁକୁ । ୯୪
ଆପଣା ସାଦୃଶେ ବଲ୍ଲଭୀ ଯହୁଂ ନାହିଂ
ଚଞ୍ଚଳ ଚିତ୍ତ ତାର ଚଉଦିଗେ ଭ୍ରମଇ । ୯୫
ଉଠଇ ବସଇ ଯେ ତାପଇ ଚନ୍ଦନ
କ୍ଷଣକେ ସଚେତ କ୍ଷଣକେ ନିଦ୍ରା ମାଡଇ ନୟନ । ୯୬
ଚିତ୍ରରେଖା ଜାଣିଲା ମଦନ ଚେଉଷ୍ଟା ଅତି
ମନ୍ତ୍ର ସୁମରି ପଲଂକ ଶିରେ ଘେନିଲା ତଡ଼ତି । ୯୭
ପବନହୁଂ ବେଗ ସେ କରଇ ଗବନ
ପ୍ରବେଶ ହୋଇଲା ଯାଇଂ ସଖୀର ସନ୍ନିଧାନ । ୯୮
ଦେଖଇ ବିଭଳିତ ହୋଇଣ କୁମାରୀ
ଚିତ୍ରପଟକୁ ଚାହିଂ ବସିଛି ଲୟେ କରି । ୯୯

ଯେମନ୍ତର ସମୟେ ପ୍ରବେଶ ଚିତ୍ରରେଖା
ପଲଂକ ରକ୍ଷଣ ସଖୀକି ଦିଲା ଦେଖା ।୧୦୦
ଦେଖିଣ କୁମାରୀ ଯେ ଉଠିଲା ଆସନୁ
ଧାଇଂଣ କୋଳକଲା ଅସୁରର ତନୁ ।୧୦୧
ବହୁତ ବିନୋୟୀ କହଇ ପୁରସରି
ଆଜହୁଂ ଜାଣ ସଖୀ ମୁଂ ତୋହୋର ପରିଚାରୀ ।୧୦୨
ଦେଖଇ କୁମର ପଲଂକେ ଅଛି ଶୋଇ
ଚନ୍ଦ୍ରମା ପାଶରେ କି ଆରେକ ଚନ୍ଦ୍ର ଉଇଂ ।୧୦୩
ଚତୁସମ ଗୋଳି ଲେପଇ ଚିତ୍ରରେଖୀ
ନିଦ୍ରା ତେଜି କୁମର ଚକ୍ଷୁ ମଳି ଦେଖି ।୧୦୪
ଅପୂର୍ବ କାମିନୀ ପାଶେ ଅଛି ଉଭାହୋଇ
ଚକିତେ କୁମରମଣି ଚଉଦିଗେ ଚାହିଂ ।୧୦୫
ଚିତ୍ରରେଖା କହଇ ଯୋଡ଼ିଣ ବେନି କର
ଯେ ସେ ଦେବ ଅଟଇ ଶୋଣିତ ନାମେ ପୁର ।୧୦୬
ଯେଥିର ନୃପତି ଯେ ବାଣାସୁର ରାୟେ
ଯେହାର ନନ୍ଦନୀ ଉଷା ଯେ ଛାମୁରେ ତୋର ରହେ ।୧୦୭
ଅବିଭାଇତ କୁମାରୀ ଅଟଇ ନବଯୁବା
ସାଦୃଶେ ବର ନାହିଂ ହୋଇ ନାହିଂ ବିଭା ।୧୦୮
ରାଜାର ଡଗରେ ଯେ ଅଛନ୍ତି ଚଉକତି
କାହୁଂ ଆସି ପ୍ରବେଶ ହୋଇଲା ଅର୍ଦ୍ଧରାତି ।୧୦୯
କେ ତୁମ୍ଭର ମାତା କେ ତୁମ୍ଭର ପିତା
ତୁମ୍ଭନ୍ତ ଦେଖି ବଂଶ ହୋଇଲା ଯେ ରାଜାର ଦୋହିତା ।୧୧୦
କେବଣ ନାମ ତୁମ୍ଭର କାହାର କୋଳେ ଜାତ
କି କାର୍ଯ୍ୟେ ଆସି ଯେଥେ ହୋଇଲ ଉପଗତ ।୧୧୧
କୁମର ବୋଇଲା ଦ୍ୱାରିକା ଅଟଇ ଆମ୍ଭର ପୁର
ଶ୍ରୀକୃଷ୍ଣଙ୍କ ପୁତ୍ର ପଦ୍ମନ ଅଟଇ ମୋହୋର ପିଅର ।୧୧୨
ଭ୍ରମନ୍ତେ ବଣା ହୋଇଂ ଅଇଲାଇଂ ଯେଥକୁ
ତୁମ୍ଭେ କିମ୍ପା ଭୟ ଯେଥେ ପାଉଛ ମନକୁ ।୧୧୩
ଯେହା ଶୁଣି ଚିତ୍ରରେଖା ବୋଲଇ ତୁମ୍ଭର ରୂପ ଦେଖି
ଶରୀରଯାକ କିମ୍ପା ନୋହିଲା ଆମ୍ଭର ଆଖି ।୧୧୪
ଆମ୍ଭର ସଖୀକି କର ହେ ସୁଦୟା
ବିଧାତା ଘଟସୂତ୍ର କରିଅଛି ଯେହା ।୧୧୫
କୁମର ବୋଇଲା ଧନ୍ୟ ଧନ୍ୟ ଆଜର ଦିନ
କେବଣ ତୀର୍ଥେ ଅବା କଲଇଂ କେବଣ ପୁଣ୍ୟ ।୧୧୬
ରୟଣୀ ଦିବସେ ଯହିଂକି କରିଥାଇଂ ଇଚ୍ଛା
ଦଇବ ଆଣି ମୋର ପୂରୋଇଲା ମନବାଞ୍ଛା ।୧୧୭

ଯେତେ ବୋଲି ଯେ ପଲଂକରୁ ଉଠିଲା ଧାତିକାରେ
କନ୍ୟା ଭୁଜ ଧରି ନେଇ ବସାଇଲା ଜାନୁରେ ।୧୧୮
ବଦନ ଚାହିଂଣ ଯେ ଦିଅଇ ଚୁମ୍ବନ
କୋଳେ କୋଳାଗ୍ରତ କରଇ ଆଲିଙ୍ଗନ ।୧୧୯
ସେ ବେନି ଜନକଂର ଉସୁକ ଦେଖି ମତି
ଟେରା ପାଡି ଚିତ୍ରରେଖା ଅନ୍ତର ହେଲା ଧାତି ।୧୨୦
ବିବିଧ କ୍ରୀଡ଼ା ଯେ କରନ୍ତି ମନଇଚ୍ଛା
ବିରହେ ବେନି ଜନେ ତୃପ୍ତ କଲେ ମନବାଞ୍ଛା ।୧୨୧
ଚଉଷଠି ପରିବନ୍ଧେ ବାଆସ୍ତରୀ କ୍ରୀଡ଼ାରସ
ବିବିଧ ବିନୋଦେ ଯେ ବେନି ଜନେ ତୋଷ ।୧୨୨
ଅରୁଣ ଉଦୟେ ପ୍ରସର ହୋଇଲା ନିଶି
ନିତ୍ୟକର୍ମ ସାରି ସୁବେଶ ଶୁଭ୍ରକେଶୀ ।୧୨୩
ଅମୃତ ମୁଣୋହି କରନ୍ତି ବେନି ଜନ
ନାନା କଉତୁକେ ବଞ୍ଚିଲେ ସେ ଦିନ ।୧୨୪
ଗୁପତ ପୀରତି ଯେ ନ ଜାଣନ୍ତି କେହି
କେବଳ ଜାଣଇ ଯେକା ଚିତ୍ରରେଖା ସହୀ ।୧୨୫
ଯେମନ୍ତେ କେତେହେଂକେ ଦିନର ଅନ୍ତରେ
ଡଗରେ ଜଣାଇଲା ନୃପତି ଛାମୁରେ ।୧୨୬
ଶୁଣିମା ସାବଧାନେ ଅସୁରକୁଳ ସାଇଂ
କନ୍ୟା ପୁରେ ଉତପାତ ମଣିଲୁଂ ଗୋସାଇଂ ।୧୨୭
ତୋଟାପୁରେ ଦେଖିଲୁ ପୁରୁଷ ପାଦ ଚିହ୍ନ
ଚିତ୍ରରେଖାର ଗତି ମଣିଲୁଂ ଅନୁଆନ ।୧୨୮
ଶୁଣି କରି ନୃପତି ମୁଦୁସୁଲୀକି ରାଇ
କନ୍ୟାର ପୁର ଦେଖି ଖୋଜି ଆସ ଯାଇଂ ।୧୨୯
ଡଗରେ କହିଲେ ଯେ ବିପରୀତ କଥା
ତୁମ୍ଭେ ବୁଝି ଆସନି ଦେଖି ତହିଂର ବାରତା ।୧୩୦
ଆଗ୍ୟାଂ ପ୍ରମାଣେ ମୁଦୁସୁଲୀ ହୋଇଲା ବାହାର
ପ୍ରବେଶ ହୋଇଲା ଯାଇଂ ତୋଟାପୁର ଘର ।୧୩୧
ପ୍ରଥମ ଦ୍ୱାରରେ ଯେ ଦେଖିଲା ଚିତ୍ରରେଖା
ତାହାର ସଙ୍ଗ ହୋଇଲାକ ନାହିଂ ଦେଖା ।୧୩୨
କୁଶଳ ବାରତା ଯେ ପୁଛିଲେ ତାହାର
ସେ ଠାବକୁ ଶୁଭିଲା ବେନି ଜନଂକର ଉତ୍ତର ।୧୩୩
ପଶା ଖେଳୁଛନ୍ତି ଭିତରେ ବେନି ଜନେ ପଶି
ଦାନ ପାଡ଼ିବାର ଯେ ବଚନ ସମ୍ଭାଷି ।୧୩୪
ଶୁଣିଣ ମୁଦୁସୁଲୀ ଅଇଲାକ ଖରେ
ବେଗେଣ କହିଲା ଯାଇଂ ନୃପତି ଛାମୁରେ ।୧୩୫

ତଗର କହିବା କଥା ଅଟଇ ଦେବ ସତ
ତାହା ଶୁଣିଣ ନୃପତି ପ୍ରଜ୍ୱଳିତ ଚିତ୍ତ । ୧୩୬
ଧନୁ ଶହସ୍ର ଧରି ଉଠିଲା ବହନ
କ୍ରୋଧେଣ ଅସୁର ଯେ ଗର୍ଜଇ ଘନ ଘନ । ୧୩୭
ଧସାଇ ପଶିଲା ଯାଇଂ କୁମାରୀର ପୁରେ
ଚିତ୍ରରେଖା ଅପସରି ଗଲାକ ଭୟରେ । ୧୩୮
ଭିତର ପୁରକୁ ସେ କରନ୍ତେ ଗବନ
ଦେଖିଲା ପଶା ଖେଳୁଅଛନ୍ତି ବେନି ଜନ । ୧୩୯
ବୋଇଲା ନୃପତି ତୁରେ କାହାର କୁମର
ମରଣକୁ ଭୟେ କି ନାହିଂ ରେ ତୋହୋର । ୧୪୦
ଜଳନ୍ତା ଅଗ୍ନିରେ ପଶିଲୁ କିସ ପାଇଂ
ଯମର ଘରକୁ ଧାରଣା ପଡ଼ିଲୁ ରେ ତୁହି । ୧୪୧
କହୁଂ କହୁଂ ପ୍ରଜ୍ୱଳିତ ଅସୁର କୁଳ ରାୟେ
ଦେଖିଣ କୁମର ଯେ ଟବଦ ହୋଇ ଚାହେଂ । ୧୪୨
କୋପେଣ ଦାନବ ଯେ ମାଇଲା ବଜ୍ର ମୁଥେ
ଅଙ୍ଗ ଢାଳି ଦେଇ ସେ ବଞ୍ଚାଇଲା ତୁରିତେ । ୧୪୩
ଦେଖିଣ ଅସୁର ଯେ ଧନୁ ଆଧାନ କରି
ଅନିରୁଦ୍ଧହିଂ କରେ ଧନୁ ଶହସ୍ର ଧରି । ୧୪୪
ଗର୍ଜିଇ ବାଣାସୁର କାଳସର୍ପ ଜାଣି
ହାବୋଡା ଶରେକ ଯେ ବିନ୍ଧିଲା ବେଗେ ଟାଣି । ୧୪୫
ଦେଖିଣ କୁମର ଯେ ପେଷିଲା ତୀଖ ଶର
ବେନି ଜନଂକର ଯେ ବାଜିଲା ସମର । ୧୪୬
ମହାଘୋର ଯୁଦ୍ଧ ବେଳକୁ ବେଳ ଆନ
ଅନିର୍ଯାପ ଶର ବିନ୍ଧିଲା ଅସୁର ରାଜନ । ୧୪୭
କୁମରହିଂ ପ୍ରତିଅସ୍ତ୍ର କରଇ ଅସୁରକୁ
ଦେଖିଣ ବିଚାରଇ ଅସୁର ମନକୁ । ୧୪୮
ହେଳ ଯୁଦ୍ଧ କଲେ ନୋହିବାକ ଜିଣି
ଅହି ଶର ଧନୁରେ ବସାଇଲା ନୃପମଣି । ୧୪୯
ମନ୍ତ୍ର ସୁମରିଣ ଯେ ପେଷିଲା ନୃପତି
ଚଳିଲା ଅସ୍ତ୍ର ଯେ ପବନହୁଂ ଖର ଗତି । ୧୫୦
ଚରଣରୁ ବେଢ଼ାଇଲା କଣ୍ଠ ପରିଯନ୍ତେ
ଅହି ଶରେ କୁମର ପଡ଼ିଲା ମୋହଗତେ । ୧୫୧
ଦେଖିଣ ନୃପତି ଯେ ବାହୁଡ଼ିଲା ଧାତି
ଆପଣା ନବରେ ମିଳିଲା ତତତି । ୧୫୨
ଯେଥୁଂ ଅନନ୍ତରେ ମିଳିଲା ଯାଇଂ ବାଳୀ
ଦେଖିଲା ନାଗଫାଶ ବନ୍ଧନେ କୁମରକୁ ବାନ୍ଧିଛି ମହାବଳୀ । ୧୫୩

ଆହା ସ୍ୱାମୀ ବୋଲି କରଇ ରୋଦନ
ନୟନୁଂ ଅଶ୍ରୁଜଳ ବହଇ ଅବିଚ୍ଛିନ୍ନ । ୧୫୪
ମୁଖକୁ ଅନାଇଣ ବାଉନଈଂ ବସି
କୋମଳ ଶରୀର ଗୋଟି ହୋଇଲାକ ଧଂସି । ୧୫୫
ଆହା ପ୍ରାଣନାଥ ମୋତେ ଯେକା କରି ଗଲ ଛାଡ଼ି
ମୁହିଂ ଯେ ଶୋକଜଳେ ମରୁଅଛି ବୁଡ଼ି । ୧୫୬
ମୋହୋର ବିକଳ ଦେଖି କେହ୍ନେ ଧରିଅଛ ଦେହ
ଅନେକମତେ ମୋତେ କଲ ଯେ ସେନେହ । ୧୫୭
ଯେବେ ମୂର୍ଚ୍ଛାଗଲ ନାଥ କେବଣହିଂ ମତେ
ଅନେକ ବିନୋଇ କରି କହୁଥାଅ ମୋତେ । ୧୫୮
ପଲଂକେ ପହୁଡ଼ିବାର ନ ସହଇ ଦେହ
କେମନ୍ତେ ଛାଡ଼ିଲ ନାଥ ଯେତେକ ସେନେହ । ୧୫୯
ଚଣ୍ଡାଳ ପିଅର ମୋର କଲାକ ଯେତେ କର୍ମ
କେବଣ ପ୍ରକାରେ ତାକୁ ସହିବଟି ଧର୍ମ । ୧୬୦
ସୁକୁମାର ସୁନ୍ଦର ମୋହନ ମୁଖ ଦେଖି କରି
କେମନ୍ତେ ସତ ବଳିଲା ପ୍ରାଣେ ଗଲା ମାରି । ୧୬୧
ବାବୁ ଦଇବରେ ତୁ କଲୁସି ମୋତେ ଯେହା
ଜାଣିଲି ତୋର ପାଷାଣୁଂ ନିଷ୍ଠୁର ଯେ ହିୟା । ୧୬୨
ଚିତ୍ରରେଖାକୁ ଚାହିଂ କରଇ ରୋଦନ
ଅଗ୍ନି ଆରୋପଣ କର ତୁ ମୁଂ ପଶିବି ବହନ । ୧୬୩
ଚିତ୍ରରେଖା ବୋଇଲା ଶୁଣରେ ଯୁବତୀ
କେବେହେଂ ନ ମରଇ ଗୋ ଯେ ତୋହୋର ପତି । ୧୬୪
ଦ୍ୱାରିକାରେ ଅଛନ୍ତି ଯେହାଂକର ତାତ
ବେଗେ ସେ ଆସିବେ ଯେ ପାଇଲେ ବାରତ । ୧୬୫
ରାମକୃଷ୍ଣେ ନିଚୟେ ଗୋ କରିବେ ବିଜୟେ
ତାହାଂକର କ୍ରୋଧେ ସଖୀ ନୃପତି ନାଶ ଯାୟେ । ୧୬୬
ଉଷା ବୋଇଲା କେ କହିବ ତାଂକୁ ଯାଇ
ମାରନ୍ତୁ ପିଅର ପଛେ ରଖନ୍ତୁ ମୋର ସାଇଂ । ୧୬୭
ଯେମନ୍ତର ସମୟେ ନାରଦ ମୁନି ଆସି
ଅନ୍ତରୀକ୍ଷେ ଥାଇଂ ବଚନ ସମ୍ଭାଷି । ୧୬୮
ନ ରୋବରେ ସୁନ୍ଦରୀ ମୋହୋର ବୋଲ କର
ଶ୍ରୀକୃଷ୍ଣ ଅଟନ୍ତି ଯେହାର ପିଅରର ପିଅର । ୧୬୯
ତାହାଂକ ଆସିବା ଯାଏ ରଖିଥାଅ ଯତ୍ନ କରି
ଆମ୍ଭେ ଯାଉଅଛୁ ଯେ ଦ୍ୱାରବତୀ ପୁରୀ । ୧୭୦
ଯେ ତୋହୋର ଚରିତ ରାମକୃଷ୍ଣଂକୁ କହିବି
ଛପନ କୋଟି ଯାଦବ ସଇନି ଅଣାଇବି । ୧୭୧

ମହାଘୋର ସଂଗ୍ରାମ ସେ ଯେଠାରେ କରିବେ
ଅସୁରକୁ ବିନାଶି ତୋତେ ଘେନି ଯିବେ । ୧୭୨
ଶୁଣିଣ କୁମାରୀ ଯେ ପାଦରେ ପଡ଼ିଲା
ପତିଂ ଦେହି ପତିଂ ଦେହି ବୋଲିଣ ବୋଇଲା । ୧୭୩
କୁମର ପାଦତଳେ ବସି ଚାପଇ ଚରଣ
ଦ୍ରୋଣମେଘ ବୃଷ୍ଟି ପ୍ରାୟେ ନୟନରୁଂ ନୀର ପଡଇ ଗଳିଣ । ୧୭୪
ଯେତେ କହି ନାରଦ ମୁନି କଲେକ ଗବନ
ମନ ପବନ ଦଣ୍ଡେ ଚଢ଼ିଯାଇଂ ମିଳିଲେ ଦ୍ୱାରିକା ଭୁବନ । ୧୭୫
ଉଗ୍ରସେନ ନୃପତି ସାତବଂଶ ଯାଦବ
ନନ୍ଦ ବସୁଦେବ ଯେ ଶ୍ରୀରାମ ମାଧବ । ୧୭୬
ମୁନିଂକ ଚରଣେ ସେ ଯେ କରନ୍ତି ଦିବ୍ୟପୂଜା
ଆସ୍ଥାନେ ବସାଇ ପୁଚ୍ଛନ୍ତି ଦେବକୀ ତନୁଜା । ୧୭୭
ଭୋ ମହାମୁନି ମୋତେ ନ କର ଗୁପତ
କେଉଣ କାର୍ଯ୍ୟେ ଯେଥେ ହୋଇଲ ଉପଗତ । ୧୭୮
କେଉଣ ସନ୍ଦେଶମାନ ଅଛ ତୁମ୍ଭେ ଜାଣି
ସନ୍ଦେହ ତୁଟିବ ଯେ ତୁମ୍ଭର ମୁଖୁଂ ଶୁଣି । ୧୭୯
ନାରଦେ ବୋଇଲେ ହୋ ଶୁଣ ରାମକୃଷ୍ଣ ବେନିଭାଇ
ବାଣାସୁର ନୃପତିର ଊଷା ନାମେ ତନୟୀ । ୧୮୦
ଅବିଭାଇତ କନ୍ୟା ସେ ପିତାର ଘରେ ଥିଲା
ପଦ୍ମନ ପୁତ୍ର ତାର ତୁଲେ ପୀରତି ବଢ଼ାଇଲା । ୧୮୧
ତାହା ଜାଣି ନୃପତି କଲା ସମର ଘୋର
ଅହି ଶରେକ ପେଷି ପୁତ୍ରକୁ ବନ୍ଦୀ କଲା ବୀର । ୧୮୨
ଆମ୍ଭେ ଭ୍ରମନ୍ତେଣ ଦେଖିଲୁ ତାକୁ ଯାଇଂ
କରଇ ରୋଦନ ଊଷା ସ୍ୱାମୀର ମୁଖ ଚାହିଂ । ୧୮୩
ଅଗ୍ନିରେ ପଶିବେ ସେହୁ ନିଜ ପତିର ନିମନ୍ତେ
ଯେ କଥା ସରୂପେ କହିଲୁ ତୁମ୍ଭର ଅଗ୍ରତେ । ୧୮୪
ଶୁଣିଣ ରାମକୃଷ୍ଣେ ପଡ଼ିଲେ ମୂର୍ଚ୍ଛା ଯାଇଂ
ପଦ୍ମନର ଦେହରେ ଯେ ଗ୍ୟାନ ଆଉ ନାହିଂ । ୧୮୫
ବସୁଦେବ ନନ୍ଦ ଯେ କରନ୍ତି ରୋଦନ
ଦଇବକୀ ଯଶୋବନ୍ତୀ ବିକଳିତ ମନ । ୧୮୬
ରୁକ୍ମିଣୀ ସତ୍ୟଭାମା ଯେ ଆବର ଜମ୍ୱୋବତୀ
କାଳିନ୍ଦୀ ଆଦି କରି ଯେତେକ ଯୁବତୀ । ୧୮୭
ଦ୍ୱାରିକା ପୁରରେ ଯେ ପଡ଼ିଲା ବୋବାଳି
ସର୍ବୁଂକରି ନୟନରୁ ଅଶ୍ରୁଜଳ ଗଳି । ୧୮୮
ବେନିଦଣ୍ଡ ପରିଯନ୍ତେ ଉଠିଲାକ କୋହ
ରାମକୃଷ୍ଣ ସଚେତ ତେଜି କରି ମୋହ । ୧୮୯

ନାରଦେ ବୋଇଲେ ହୋ ପଦ୍ମନକୁ ଦେଖ
ଦେହରେ ଗ୍ୟାନ ନାହିଂ ବିପରୀତ ମୁଖ । ୧୯୦
ଅନିରୁଦ୍ଧ ନିମନ୍ତେ କରୁଛି ରୋଦନ
ପୁତ୍ର ଶୋକେ ମୋହ ହୋଇଛି ପଦ୍ମନ । ୧୯୧
ଦେଖିଣ ନାରାୟଣ ପୁତ୍ରକୁ କୋଳ କରି
ମୁଖରେ ସିଞ୍ଚିଲେ ଆଣି ସୁବାସିତ ବାରି । ୧୯୨
ସଚେତ ନିମନ୍ତେ ବିଞ୍ଚନ୍ତି କୃଷ୍ଣର ସୁତମାନେ
ଶାମ୍ବ ଯେ ପୁଙ୍କୁଅଛି ପଦ୍ମନର କାନେ । ୧୯୩
ବଳରାମ କର ଧରି ଫୁଟାନ୍ତି ଅଙ୍ଗୁଷ୍ଠି
କେତେହେଂକେ ବେଳେ ସେ ଯେ ସଚେତ ହୋଇ ଉଠି । ୧୯୪
ରୋବଇ ପଦ୍ମନ ଯେ ପୁତ୍ରର ନାମ ଧରି
କେଣେ ଗଲୁ ବାବୁ ରେ ମୋତେ ଯେକା କରି । ୧୯୫
ଦରିଦ୍ରର ଧନ ମୋର ଅନ୍ଧର ଲଉଡି
ମୁହିଂ ଯେ ମରୁଅଛି ଶୋକଜଳେ ବୁଡ଼ି । ୧୯୬
ଆହା ରେ ପୁତ୍ର ମୋର ସଂସାର ସୁନ୍ଦର ଅନିରୁଦ୍ଧ
ଦାନବର ହାଥେ ତୁ ହୋଇଲୁ ପ୍ରାଣେ ବଧ । ୧୯୭
ବଳରାମେ ବୋଇଲେ ଉଗ୍ରସେନକଇଂ ରାଇ
ସାତବଂଶ ଯାଦବେ ବେଗେ ସଜ କର ତୁହି । ୧୯୮
ପୁତ୍ରର ନିମନ୍ତେ ଆଜି ବାଣାସୁରକୁ ମାରି
ତାଳଧ୍ୱଜ ରଥ ମୋର ଆଣ ସଜ କରି ।୧୯୯
ଜଗନ୍ନାଥ ବୋଇଲେ ଦାରୁକକୁ ରାଇ
ନନ୍ଦିଘୋଷ ରଥ ଆଣ ବେଗେ ତୁ ସଜାଇ । ୨୦୦
ସାଜ ସାଜ ବୋଲି ଯେ ପଡିଲାକ ଡାକ
ସାଜିଲେ ରଥ ଗଜ ଚତୁରଙ୍ଗ ଲୋକ । ୨୦୧
କରେ ଶହସ୍ର ଧରି ଗର୍ଜନ୍ତି ବୀରମାନେ
ନାରାୟଣେ ସୁମରିଲେ ବିନତା ନନ୍ଦନେ । ୨୦୨
ତକ୍ଷଣେ ଖଗବର ମିଳିଲାକ କତି
ଗରୁଡ଼ ପିଠିରେ ବିଜେ କଲେ ଶିରୀପତି । ୨୦୩
ତାଳଧ୍ୱଜ ରଥେ ଯେ ବିଜୟେ କାମପାଳ
ଶ୍ରୀକରେ ଧରିଲେ ରାମ ସଉନନ୍ଦ ମୂଷଳ । ୨୦୪
ନନ୍ଦିଘୋଷ ରଥରେ ଯେ ବିଜୟେ ପଦ୍ମନ
ଢୋଲ ମର୍ଦ୍ଦଳ ଶଙ୍ଖ ମହୁରି ଟମକ ବାଦ୍ୟମାନ । ୨୦୫
ନିଶାଣ ପାଟଛତ୍ର ଆଲମ୍ୱ ପନ୍ତି ପନ୍ତି
ରଥାଂକ ଭିତରେ ଯେ ପାଦାନ୍ତି ଝଟକନ୍ତି । ୨୦୬
ସମୁଦ୍ର ଘୋଷ ଜାଣି ସନ୍ୟର ଚହଳ
ଦ୍ୱାଦଶ କ୍ଷଉଣୀ ଯେ ଯଦୁବଂଶ ବଳ । ୨୦୭

ଧାମନ୍ତି ବୀରମାନେ ଯେକୁ ଯେକ ଆଗ ହୋଇ
ଗର୍ଜନ୍ତି ଯୋଦ୍ଧାଯେ ରଥ ଅଛନ୍ତି ଧୂଆଂଇ । ୨୦୮
ତାଳଧ୍ୱଜ ରଥ ଯେ ଚଳଇ ଘନ ଘନ
ନନ୍ଦିଘୋଷ ରଥ ତହିଁ ଚଳଇ ବିତପନ । ୨୦୯
ଗରୁଡ଼ ଗବନ ତହିଁ କରଇ ଅତି ରୋଷେ
ବେଗେଣ ମିଳିଲେ ଯାଇ ବାଣାସୁର ଦେଶେ । ୨୧୦
ଗ୍ରାମ ପୁର ପାଟଣା ଅଟାଳି ଜଗତୀ ପୁରମାନ
ଯେ ମୁଖେ ପଡଇ ସେ ହୋଅଇ ନିଧନ । ୨୧୧
ବାଳ ବୃଦ୍ଧ ଯୁବାଜନ ରାଜ୍ୟର ପରଜାମାନ
ପଦ୍ମନ ଶରଘାତେ ହୋଉଛନ୍ତି ନିଧନ । ୨୧୨
ବାଣାସୁର ନୃପତିର ଆଗରେ କହିଲେ ଚାର ଯାଇଂ
ଯେ ତୋହୋର ରାଜ୍ୟ ଯେବେ ସମ୍ଭାଳ ଗୋସାଇଂ । ୨୧୩
ରାମକୃଷ୍ଣ ବିଜେ କଲେ ସାତବଂଶ ଘେନି
ଶୁଣିଣ ନୃପତି ଆଗ୍ୟାଂ ଦିଲା ସାଜ ଆମ୍ଭର ସଇନି । ୨୧୪
ରହୁବର ଆରୋହି ଅସୁରକୁଳ ସାଇଂ
ଦ୍ୱାଦଶ କ୍ଷଉଣୀ ବଳ ନେଇ ଓଗାଳିଲା ଯାଇଂ । ୨୧୫
ଦେଖିଣ ପଦ୍ମନ ଯେ ମିଳିଲା ତାର ଆଗ
ଛାଗଳ ପଲ ଦେଖି ଯେହ୍ନେ ପଳାଶଇ ବ୍ୟାଘ୍ର । ୨୧୬
କ୍ରୋଧେ ଅରୁଣ ବର୍ଣ୍ଣ ଯେ ଶ୍ରୀକୃଷ୍ଣର ସୁତ
ଗୁଣରେ ବସାଇଲା ହାବୋଡା ଶର ଶତ । ୨୧୭
ଆଗଭର ହୋଇ ପଦ୍ମନ ଦିଲାକ ଶର ଛାଡି
ତିନି ଶତ ରଥୀ ପଡ଼ିଲେ ହାବୋଡା ହାବୋଡି । ୨୧୮
ସାରଙ୍ଗ ଧନୁ ଧରିଣ ଦେବ ଦାମୋଦର
ଅସୁର ଉପରକୁ ବିନ୍ଧନ୍ତି ତୀଖ ଶର । ୨୧୯
ରେ ରେ କାର କରିଣ ଯେ ଦେବ କାମପାଳ
କରେ ବୁଲାଇ ସେ ଯେ ପିଟିଲେ ସଉନନ୍ଦ ମୂଷଳ । ୨୨୦
ଯେକା ପ୍ରହାରରେ ଯେ କୋଟି କୋଟି ମାରି
ଶ୍ରୀକୃଷ୍ଣ ପୁତ୍ରମାନେ ସମରେ ଗୋଳ କରି । ୨୨୧
ବାଣାସୁର ନୃପତି ଯେ କରଇ ସମର
ସହସ୍ରେକ କରେ ଧରିଅଛି ଧନୁଶର । ୨୨୨
ପାଞ୍ଚଶତ ନାରାଚ ଯେକାବେଳକେ ମାରି
ନିମିଷକେ ଶତେ ବେଳ ପେଷଇ ମନ ସରି । ୨୨୩
ଗରୁଡ଼ ଉପରେ ପଡ଼ି ଉପୁଡନ୍ତି କାଣ୍ଡ
ଗର୍ଜଇ ଅସୁର ଯେ କମ୍ପଇ ବ୍ରହ୍ମାଣ୍ଡ । ୨୨୪
ନନ୍ଦିଘୋଷ ରଥ ଶରରେ ଅଦୃଶ୍ୟ କଲା
କୋଟି କୋଟି କରି ନାରାଚ ଛାଡି ଦିଲା । ୨୨୫

ଈଶ୍ୱର ସେବା କରି ସେ ପାଇଅଛି ବର
କାହାକୁହିଂ ଭୟ ନାହିଂ ଯହୁଂ ହୋଇଛି ଅମର । ୨୨୬
ମହାଘୋର ଯୁଦ୍ଧ ହୋଇଲା ଅନ୍ୟାଅନ୍ୟି
ବାରି ତ ନୋହିଲା ତହିଂ ଦିବସ ରୟଣୀ । ୨୨୭
ଅନେକ ସମର ଯେ କରନ୍ତି ଯହୁଂ ବୀରେ
କେହି କାହାକୁ ଓଛ ଯେ ନୋହନ୍ତି ସମରେ । ୨୨୮
ତାହା ଦେଖିଣ ନାରାୟଣ ମନରେ ବିଚାରି
ସୁଦ୍ରିଶେନ ଚକ୍ରକୁ ଯେ ଧଇଲେ ମୁରାରି । ୨୨୯
ଯେତେ ଶର ଅସୁରେ ବିନ୍ଧୁଥିଲେ ତହିଂ
ସୁଦ୍ରିଶେନ ତେଜରେ ସମସ୍ତେ ହୋଇଲେକ ଦହି । ୨୩୦
ସୁଦ୍ରିଶେନ ଚକ୍ର ଦେଖି ପଳାଇଲା ଦନୁଜ
ବୋଲଇ ସଦାଶିବଂକୁ କହିବଇଂ ଆଜ । ୨୩୧
ଯେତେ ବିଚାରି ଅସୁର କରଇ ଗବନ
ନିମିଷକେ ମିଳିଲା ଯାଇଂ କପିଳାସ ଭୁବନ । ୨୩୨
ସଦାଶିବଂକ ପାୟେ ପଡ଼ି କହଇ ବିନୋୟୀ
ଶୁଣ ଦେବ ଶଂକର ଗଉରା ଦେବୀ ସାଇଂ । ୨୩୩
ପଦ୍ମନର କୁମର ଯେ ଅନିରୁଦ୍ଧ ବୀର
ବଳେ ଆସିଣ କନ୍ୟା ହରିଲା ମୋର ପୁର । ୨୩୪
କୋପେଣ ଅହି ଶରେ ତାକୁ କଲଇଂ ବନ୍ଧନ
ରାମକୃଷ୍ଣ ଆସିଲେ ଘେନିଣ ଯଦୁ ସଇନ । ୨୩୫
ଅଜାଗେ ପଶି ମୋର କଟକ କରଇ ନାଶ
ତେଣୁ କରି ଦେବ ଅଇଲି ତୁମ୍ଭ ପାଶ । ୨୩୬
ଶଂକର ବୋଇଲେ ଶୁଣ ହୋ ଅସୁରେଶ୍ୱର
ଆମ୍ଭର ବରେ ତୁ ଯେ ହୋଇଲୁ ଅମର । ୨୩୭
ଅମର ହୋଇ କରି ମରିବାକୁ ଡର
କୃଷ୍ଣର ତୁଲେ ଯେବେ କର ଯା ସମର । ୨୩୮
ମୁହିଂ ବିଜେ କରିବି ବୃଷଭ ଆରୋହି
ଆଗ ହୋଇ ସମର କରୁଥାଅ ତୁହି । ୨୩୯
ଶୁଣି ବିକ୍ରମି ଅସୁର ଅଇଲା ଖର ବେଗେ
ସମର କରଇ ସେ ହୋଇଣ ବଢରାଗେ । ୨୪୦
ଯେତେବେଳେ ଅସୁର ଗଲା ଆଡ଼େ ହୋଇ
ସଇନେ ପଳାଇଲେ ମହାଭୟେ ପାଇ । ୨୪୧
ଦେଖିଣ ମନ୍ତ୍ରୀ ତାର ବଇଦୁର୍ଯ୍ୟ କେତୁ
ସଇନିଂକୁ ବୋଇଲା ରେ ପଳାଇଛ ଦେଖି ଶତ୍ରୁ । ୨୪୨
କ୍ଷତ୍ରୀ ହୋଇ କରି ରେ ମରିବାକୁ ଡର
ମୋହୋର ତୁଲେ ଆସ କରିବା ସମର । ୨୪୩

ଯେତେ ବୋଲି ଅସୁର ଉଠିଲାକ ଗର୍ଜି
ମେରୁ ଗିରି ଶିଖର ଅବା ପଡ଼ିଲା କି ଭାଜି ।୨୪୪
କରେ ଶୂଳ ଘେନିଣ ସେ ହୋଇଲା ଆଗୁସାର
ଆପଣାର ସଇନି ଯେ ଅଛି ସଙ୍ଗତର ।୨୪୫
ସମର କରଇ ସେ ଭୟ ଭୀତି ଛାଡ଼ି
ଶୂଳ ଘେନି ପିଟଇ ବଜ୍ରସମ ବାଡ଼ି ।୨୪୬
ଦେଖିଣ କାମପାଳ ଓଗାଳିଲେ ଯାଇଂ
ବିନ୍ଧନ୍ତି ନାରାଜ ଯେ କୋପମୁଖ ହୋଇ ।୨୪୭
ମୁଣ୍ଡ ପାତି ଅସୁର ରାମ ଶର ମେଣ୍ଟି
ଦେଖିଣ କାମପାଳ ମୂଷଳ ଘେନି ପିଟି ।୨୪୮
ଘାଯେ ଘୁମାଇଲା ସେ ଅସୁରକୁଳ ବୀର
ବାଣାସୁର ତୁଳେ ଯେ ଯୁଝନ୍ତି ଚକ୍ରଧର ।୨୪୯
ବେଲୁଂବେଳ ସମର ବଢ଼ିଲା ରଣରଙ୍ଗ
ଚକଡେ କର୍ଦ୍ଦନ ଯେ ବେନି ଜନଂକର ଅଙ୍ଗ ।୨୫୦
ଗଦା ଛେଲ ଚକ୍ର ଯେ ଶକତି ମୃଦୁଗର
ବରଷଣ ପ୍ରାୟେ କରି ମାରଇ ଅସୁର ।୨୫୧
ଗରୁଡ଼ର ଉପରେ ଯେ ପଡନ୍ତି ଶସ୍ତ୍ରମାନ
ଅନେକ ଜୁଳୁଜୁଳା ପୋକ କି ଉଡାଇ ଗଗନ ।୨୫୨
ଯେମନ୍ତର ସମୟେ ଯେ ବିଜେ କଲେ ହର
ଡିବି ଡିବି ଡମ୍ବରୁ ଯେ ବାଜଇ ସୁସ୍ୱର ।୨୫୩
ଶ୍ରୀକୃଷ୍ଣ ଜାଣିଲେ ଯେ ବିଜୟ କଲେକ ଆସି ହର
ବାଣାସୁର ପାଇଂ ସେ ଯେ କରିବେ ସମର ।୨୫୪
କ୍ରୋଧେ କୋପାନଳ ଯେ ଦଇବକୀ ନନ୍ଦନ
ସୁଦ୍ରିଶେନ ଚକ୍ରକୁ ସୁମରିଲେ ବହନ ।୨୫୫
ତକ୍ଷଣ ଚକ୍ର ଆସି ଶ୍ରୀକୃଷ୍ଣଙ୍କର କର
ଧାଡିକାରେ ପେଷିଲେ ଯେ ଦେବ ଦାମୋଦର ।୨୫୬
ଡାହାଣ ଭୁଜ ଉପରେ ପଡ଼ିଲାକ ଯାଇ
ଛିଡିଲେ କରମାନ ନ ରହିଲେ କେହି ।୨୫୭
ପୁଣ ଯାଇ ବାମ ଭୁଜ ଉପରେଣ ପଡ଼ି
ତକ୍ଷଣେ ଭୁଜମାନ ପଡ଼ିଲାକ ଛିଡି ।୨୫୮
ମୁଣ୍ଡା ବୃକ୍ଷ ପ୍ରାୟେ ଦିଶିଲା ଅସୁର
ପୁଣ ସୁଦ୍ରିଶେନ ଚକ୍ର ଧଇଲେ ଦେବ କର ।୨୫୯
ଈଶ୍ୱରେ ବିଚାରିଲେ ବାଣାସୁର ନ ବର୍ତ୍ତିବ
ଆମ୍ଭର ବର ଦେବାର ତ ବିଅର୍ଥ ହୋଇବ ।୨୬୦
ଯେତେ ବୋଲି ଶଂକର ଶ୍ରୀକୃଷ୍ଣ ଆଗେ ମିଳି
କହନ୍ତି ପୁରସରି ଶୁଣ ହୋ ବନମାଳୀ ।୨୬୧

ମୋହୋର ବରେ ଯେ ତ ଅଟଇ ଅମର
ତୁମ୍ଭେ ଯେବେ ସୁଦ୍ରିଶେନ ଧଇଲ ନିଜ କର ।୨୬୨
ତୋହୋର ମାରନ୍ତେ ଯେବେ ଅସୁର ମରିବ
ଆମ୍ଭନ୍ତ କେମନ୍ତେ ଈଶ୍ୱର କଲୁ ହୋ ବାସୁଦେବ ।୨୬୩
କ୍ରୋଧ ଶାନ୍ତି କର ଆହେ ଦେବ ଚକ୍ରଧର
ପ୍ରସନ୍ନ ହୋଇ କରି ଦିଅ ତୁମ୍ଭେ ବର ।୨୬୪
ସହସ୍ରେକ ଭୁଜ ଗଲା ଚାରିଭୁଜ ଥାଉ
ଆମ୍ଭର ଦିଲାର ବର ଅନ୍ୟଥାହିଂ ନୋହୁ ।୨୬୫
ବିନୟ ହୋଇଣ ଯହୁଂ କହିଲେ ଈଶ୍ୱର
ସୁଦ୍ରିଶେନ ସଂହରି ଶାନ୍ତି ହୋଇଲେ ଦାମୋଦର ।୨୬୬
ବିନୟ ହୋଇଣ ପୁଛଇ ମନୁରାୟେ
ଭୋ ମୁନି ଅଗସ୍ତି ମୋତେ ଲାଗିଲା ସନ୍ଦେହେ ।୨୬୭
ଅସୁର ହୋଇ କରି ପୃଥିବୀରେ ଯେତେ ଥିଲେ
ଅମର ହୋଇ କରି ଜଣେହେଂ ନ ରହିଲେ ।୨୬୮
ଈଶ୍ୱରଂକ ବରେ ଯେ ଅମର ବାଣାସୁର
ଚକ୍ରେ ଛେଦନ କିଂପା ହୋଇଲା ତାର କର ।୨୬୯
ବଦୟନ୍ତି ଅଗସ୍ତି ଶୁଣ ହୋ ମନୁ ରାଜା
ବହୁତ ସେବା କଲା ଯେ ବଳିର ତନୁଜା ।୨୭୦
କଠୋର ତପ ଦେଖି ମିଳିଲେ ତ୍ରିଲୋଚନ
ବୋଇଲେ ବର ମାଗରେ ଅସୁର ରାଜନ ।୨୭୧
ଆମ୍ଭେ ଯେ ଈଶ୍ୱର ଜଗତର ସାଇଂ
ମାଗ ଯେବେ ବର ପ୍ରସନ୍ନ ହୋଇଲଇଂ ।୨୭୨
ଅସୁର ବୋଇଲା ମୁଂ ହୋଇବି ଅମର
ଆବର ହୋଇବ ମୋ ସହସ୍ରେକ କର ।୨୭୩
ଭୋଳେଣ ସଦାଶିବ ବୋଇଲେ ଅସ୍ତୁ ହେଉ
ଅମର ହୋଇଲୁ ତୁ ହୁଅ ସହସ୍ର ବାହୁ ।୨୭୪
ବର ପାଇ ଅସୁର ଅଇଲା ନିଜ ପୁର
ଅନେକ ନୃପତି ସେ ଜିଣିଲା କରିଣ ସମର ।୨୭୫
ଭୟେ ରାଜାମାନେ ନ ରହିଲେ କେହି
ଜଗତ ବୁଲି ଅସୁର ସାଧ କଲା ମହୀ ।୨୭୬
କେତେହେଂକ ଦିନେ ସେ କପିଳାସକୁ ଗଲା
ଈଶ୍ୱର ଦେବତାକଇଂ ଦ୍ରଶନ ଯାଇଂ କଲା ।୨୭୭
ଶିରେ କର ଦେଇ ସେ କହଇ ଉତ୍ତର
ତୋହୋର ପ୍ରସନ୍ନେ ଦେବ ସହସ୍ରେ କର ମୋର ।୨୭୮
ପୃଥୀର ରାଜାମାନେ ନ ରହିଲେ କେହି
ତୋହୋର ତୁଳେ ସାଂଗ୍ରାମ କରିବଇଂ ମୁହିଂ ।୨୭୯

ନୋହିଲେ ମୁଂ କପିଳାସ କରିବଇଂ ଧୂଳି
ସମର କର ତୁ ହୋ ପଞ୍ଚଇ ମଉଳି । ୨୮୦
ଯେହା ଶୁଣି କୋପେଣ ସଦାଶିବ ବୋଲନ୍ତି ବଚନ
ଆମ୍ଭେ ତୋହୋର ତୁଳେ ନୋହୁନା ଭାର୍ଜନ । ୨୮୧
ଭୁଜବଳ ପ୍ରତଗ୍ୟାଂ ଅଟଇ ତୋହୋର
କୃଷ୍ଣ ସେ ଛେଦନ କରିବେ ନା ତୋର କର । ୨୮୨
ଯେତେକ କହି ଈଶ୍ୱର ହୋଇଲେ ଅନ୍ତର୍ଦ୍ଧାନ
ବିଷାଦେ ଅସୁର ଆସି ମିଳିଲା ଆପଣା ଭୁବନ । ୨୮୩
ସେ କାଳର କଥା ଆସି ହୋଇଲାକ ଯେବେ
ଚକ୍ରେ ଭୁଜ ତାର ନାଶ କଲେକ ବାସୁଦେବେ । ୨୮୪
ଈଶ୍ୱର କହନ୍ତେଣ ଶ୍ରୀହରି ହୋଇଲେକ ତୋଷ
ବଳରାମ ମନରୁ ଛାଡିଲେ ଗରୁରୋଷ । ୨୮୫
ସଦାଶିବ ପ୍ରସନ୍ନେ ବାଣାସୁର ପାଇଲା ଚାରି କର
ରାମକୃଷ୍ଣ ଈଶ୍ୱରେ ବିଜେ କଲେ ବାଣାର ନବର । ୨୮୬
ଗରୁଡ଼ ପକ୍ଷଘାତ ଶୁଣିଣ ଅହି ଶର
ଭୟେ ପଳାଇଲା ସେ ହୋଇଣ ବହୁତ ଦୂର । ୨୮୭
ଅନିରୁଦ୍ଧ ଦେହ ହୋଇଲାକ ଶୂନ୍ୟ
ମୋହ ତେଜି ଉଠିଲା ସେ ପଦ୍ମନ ନନ୍ଦନ । ୨୮୮
ଆସନ ପାଦାସନ ଯେ ଅନେକ ସମ୍ଭାର
ପୂଜଇ ଅସୁର ରାମକୃଷ୍ଣଂକ ପୟର ।୨୮୯
ଦିବ୍ୟ ଭୁବନେକ ଯେ ମଣ୍ଡାଇ ରାଜନ
ନେତର ଚିରାଳ ଯେ ଉଡଇ ବିତପନ । ୨୯୦
ରାମକୃଷ୍ଣେ ବିଜେ କଲେ ସାତବଂଶ ଯାଦବନ୍ତ ଘେନି
ବ୍ୟାସ ମାରକଣ୍ଡ ଯେ ଉଦ୍ଧାଳେକ ମହାମୁନି । ୨୯୧
ଭରଦ୍ୱାଦଶ ଯେ ଗଉତମ ଆୟେ
ଦୁର୍ଭାସା ମହାମୁନି ଯେ ପ୍ରବେଶ ସଭାୟେ । ୨୯୨
ନଗ୍ର ପୁର ମଣ୍ଡାଇ ମଙ୍ଗଳ ଧ୍ୱନି କରି
ଦ୍ୱାରେ ପୂର୍ଣ୍ଣକୁମ୍ଭ ଯେ ଅଛନ୍ତି ଉଭାରି । ୨୯୩
ନଗ୍ର ନର ନାରୀ ଯେ କାମଦେବର ସଂଜାତ
ଆପଣେ ସଦାଶିବ ରଚନ୍ତି ସମସ୍ତ । ୨୯୪
ପଣ୍ଡିତେ କହିଲେ ଯେ ଶୁଭ ଅନକୂଳ
ଆଷାଢ଼ ଶୁକଳ ଯେ ଦଶମୀ ଗୁରୁବାର । ୨୯୫
ବିଭାଲଗ୍ନ ବେଳ ଯେ ହୋଇଲାକ ଆସି
ସଂକଳ୍ପ କରାବନ୍ତି ଗାଗ୍ର ବମହାଋଷି । ୨୯୬
ବରୁଣ ପୂଜା ସାରି ବର କନ୍ୟା ଆଣି
ମନ୍ତ୍ର ପଢ଼ି ବନ୍ଧନ କଲେ କୁଶପାଣି ।୨୯୭
ଡାହାଣବ୍ରତେକ ଶଙ୍ଖେ ଜଳ ତିଳ ପୂରୋଇ
ଆନନ୍ଦେ ବାଣାସୁର ଯଉତୁକ ଦେଇ । ୨୯୮
କୋଟିୟେକ ରଥ ଯେ ବେନି କୋଟି ହାଥୀ
ଚାରିକୋଟି ଅଶ୍ୱ ଯେ ଦଶ କୋଟି ପାଦାନ୍ତି । ୨୯୯
ଲକ୍ଷେକ ସୁବର୍ଣ୍ଣ ଗାଈ ସବଛା ସହିତେ
ଶତେକ ପରିବାରୀ ଯେ ଅଳଂକାର ସମେତେ । ୩୦୦
ପାଟ ଛତ୍ର ଆଲମ୍ୱ ଯେ ନେତର ସୁପାତି
ଅନେକ ସମ୍ଭରେ ଯଉତୁକ ଦିଲାକ ନୃପତି । ୩୦୧
କୋଟିୟେକ ରତ୍ନ ବଳରାମଂକ ପାଦେ ଦେଇ
ଶରଣ ପଞ୍ଜର ନାଥ କରିବାକ ମୋତେ ତ୍ରାହି । ୩୦୨
ନ ଜାଣି ଅପରାଧ କଲଇଂ ଯେତେକ
କ୍ଷମାକର ଦୋଷ ବୋଲି କରଇ ରାଜା ଶୋକ । ୩୦୩
ବହୁତ ପୁରସରି କହନ୍ତି ଦେବକୀର ତନୁ
ଆମ୍ଭର ପୁତ୍ରକୁ ଦୋହିତା ଦିଲୁ ତେଣୁ ଦୋଷ
ଯେ ନ ଘେନୁ । ୩୦୪
ଆମ୍ଭର ବନ୍ଧୁ ତୁ ହୋଇଲୁ ଯୁଗତେ
ସଦାଶିବଂକ ବର ପ୍ରାପତ ହୋଉ ତୋତେ । ୩୦୫
ଯୁଗେ ଯୁଗେ ଥିବୁ ତୁ ଅମର ତନୁ ଧରି
ତେବେ ଯେ କୀରତି ସିନା ରହିବ ଆମ୍ଭରି । ୩୦୬
ବର କନ୍ୟାକୁ ଆଶିଷ ଦିଅନ୍ତି ଋଷିମାନେ
ନଗ୍ର ନର ନାରୀ ଯେ ଦେଖନ୍ତି ଆନନ୍ଦ ମନେ । ୩୦୭
ବିଚାରନ୍ତି ସୁନ୍ଦର କୁମର ରୂପରାଶି
ବରକୁ କନ୍ୟା କନ୍ୟାକୁ ବର ଯେ ସାଦ୍ରିଶି । ୩୦୮
ବିଧାତା ନିର୍ବାଣ ନୁହଇ ଯେ ଆନ
ଯାହାକୁ ଯେମନ୍ତ ସେ କରଇ ଭିଆଣ । ୩୦୯
ୟେଥୁ ଅନନ୍ତରେ ରାଜାର ଯେତେ ରାଣୀ
ବର କନ୍ୟାକୁ ଅର୍ଘ୍ୟ ସେ ଦିଅନ୍ତି କାମିନୀ । ୩୧୦
ଅନ୍ତେଶ୍ୱର ପୁରକୁ ବର କନ୍ୟା ଗଲେ ଘେନି
ମଙ୍ଗଳ ହୁଳହୁଳି ଦିଅନ୍ତି ସକଳ କାମିନୀ । ୩୧୧
ୟେକ ପତ୍ରେ ବେନି ଜନେ କରନ୍ତି ଭୋଜନ
ବେଢ଼ିଣ ଅଛନ୍ତି ଯେ ସକଳ ପରିଜନ । ୩୧୨
ଆଞ୍ଚୋବନ ସାରିଣ କର୍ପୂର ତାମ୍ବୋଳ ଖାଇ
ଯିବାକୁ ଉଦବେଗ ସେ ସୁବେଶ ହୋନ୍ତି ତହିଂ । ୩୧୩
ତାଳଧ୍ୱଜ ରଥ ଆରୋହି କାମପାଳ
ନନ୍ଦିଘୋଷ ରଥେ ବିଜେ କଲେ ମଦନ ଗୋପାଳ ।୩୧୪
ସାତବଂଶ ଯାଦବନ୍ତ ଘେନି ଦ୍ୱାରିକାକୁ ବିଜେ

ଟମକ ନିଶାଣ ଦମାଲୁ ଭେରୀ ବାଜେ । ୩୧୫
ରତ୍ନମୟ ରଥେ ଯେ ବର କନ୍ୟା ବସି
ଗଗନୁଂ ଚନ୍ଦ୍ର କି ପଡ଼ିଲା ପୃଥୀରେ ଖସି । ୩୧୬
ହୁଳହୁଳି ଦିଅନ୍ତି ଯେ ଅନେକ ସଧବା ବନିତା
ଅମର ଅପକ୍ଷରୀ କିନ୍ନରୀ ନୃତ୍ୟରେ ଉନମତା । ୩୧୭
ଆଲମ୍ବ ପାଟଛତ୍ର ଉଡଇ ବିତପନ
ଉଗ୍ରସେନ ଆଗେ ଘେନାଇ ଯଉତୁକ ଦ୍ରବ୍ୟମାନ ।୩୧୮
ବାଟରେ ପୁଆଂଇ ଅଇଲେ ସଦାଶିବ
ଦ୍ୱାରିକା ପୁରେ କଲେ ଅନେକ ଉଛବ । ୩୧୯
ମଙ୍ଗଳ ହୁଳହୁଳି ଜୟେ ଜୟେ ଘୋଷି
ଅର୍ଘ୍ୟ ବନ୍ଦାବନ୍ତି ଯେ ଦ୍ୱାରିକା ପୁର ବାସୀ ।୩୨୦
ବର କନ୍ୟା ଦେଖି ଯେ ଅନେକ ହରଷ
ଶୁଭ ମଙ୍ଗଳର ବେଳେ ଆସି ନବରେ ପ୍ରବେଶ ।୩୨୧
ଅଷ୍ଟ ପାଟବଂଶୀ ମୂଳେ ଶ୍ରୀକୃଷ୍ଣର ଯେତେ ବାମା
ବର କନ୍ୟା ଦେଖିଣ ଉସାହ ସର୍ବ ରାମା ।୩୨୨
କନ୍ୟାକୁ ପରଶଂସା ସେ ଯେ କରନ୍ତି ବହୁତ
ଧନ୍ୟ ତୋହୋର ପିତା ଧନ୍ୟ ତୋହୋର ମାତ । ୩୨୩
ଧନ୍ୟ ଯେ ଦ୍ୱାରିକା ପୁର ଶୋଭା ଦିଶି
ଧନ୍ୟ ବିଧାତା କେତେକାଳ ଗଢ଼ିଲା ତୋତେ ବସି ।୩୨୪
ଧନ୍ୟ ହୋଇଲାଇଂ ଯେ ଆମ୍ଭେ ଦେଖିଲୁଂ ବେନି ତୋଳେ
ଧନ୍ୟ ଅନିରୁଦ୍ଧ କନ୍ୟାକୁ ଧଇଲୁ ତୁହି କୋଳେ ।୩୨୫
ଧନ୍ୟ ଯେଉଂଣ ରାଜ୍ୟେ ହୋଇଲୁ ଉତପତି
ଧନ୍ୟ ତୋର ପୁଣ୍ୟ ସାଦ୍ରିଶେ ପାଇଲୁ ଯେ ପତି । ୩୨୬
ଧନ୍ୟରେ ସୁନ୍ଦରୀ ଧନ୍ୟ ଶୋଭା ତୁହି ଦିଶୁ
ଧନ୍ୟ ଧନ୍ୟ ତୁହି କୁରଙ୍ଗୀ ବଳି ନୟନ ପ୍ରକାଶୁ ।୩୨୭
ଧନ୍ୟ ତୋହୋର କବରୀ କୃଷ୍ଣ ଚାମର ନୋହେ ସରି
ଧନ୍ୟ ସେ କୁସୁମ ଅଛଇ ଆବୋରି । ୩୨୮
ଧନ୍ୟ ନାସା ତୋହୋର ତିଳକୁସୁମ ଜାଣି
ଧନ୍ୟ ତୋ ଦନ୍ତପନ୍ତି ଡାଳିମ୍ବ ବୀଜେ କି ମାଣିକ୍ୟ ରସାଣି ।୩୨୯
ଧନ୍ୟ ବନ୍ଧୁଲି ଅଧର ଧନ୍ୟ ତୋ ଭୂଲତା
ଧନ୍ୟ ବେନି ଶ୍ରବଣରେ ହୀରା କାପ ଶୋଭିତା ।୩୩୦
ଧନ୍ୟ ବକ୍ଷସ୍ଥଳ କମ୍ବୁକଣ୍ଠ ପ୍ରାୟେ
ଧନ୍ୟ ତୋ କୁଚ ବେନି କରୀ କୁମ୍ଭ ପ୍ରାୟେ ଶୋହେ । ୩୩୧
ଧନ୍ୟ କଟିଭାଗ ଡମ୍ବରୁ ସାଦ୍ରିଶ
ଧନ୍ୟ ବେନି ଜାନୁ ଉଲଟ ରମ୍ଭା ରସ । ୩୩୨
ଧନ୍ୟ ତୋ ପାଦ ଅଙ୍ଗୁଳି ଚମ୍ପା କଢ଼ି ଜାଣି
ଧନ୍ୟ ସେ ପୟର ଅଳତା ଅରୁଣ ତେଜ ଜିଣି । ୩୩୩
ଧନ୍ୟ ସୁକୁମାରୀ ଧନ୍ୟ ତୋ ରୂପ ଶୋଭା
ଧରଣୀଧର ପ୍ରିୟା ଉପମା ହେବ ଅବା । ୩୩୪
କେ ବୋଲଇ ସାବିତ୍ରୀ ଯେ ବ୍ରହ୍ମାର ବନିତା
କେ ବୋଲଇ ପାର୍ବତୀ ଯେ ହେମବନ୍ତର ଦୋହିତା ।୩୩୫
କେ ବୋଲଇ ଶଚୀ ଯେ ଇନ୍ଦ୍ରର ପାଟରାଣୀ
କେ ବୋଲଇ ଛାୟା ଯେ ସୂର୍ଯ୍ୟର ଘରଣୀ । ୩୩୬
କେ ବୋଲଇ ବୃହସ୍ପତି ଭାରିଯା ତାରା ଯେ ଅଟଇ
ରମ୍ଭା ଉର୍ବଶୀ ମେନକା ଯେହାକୁ ସରି ନୋହି ।୩୩୭
କେ ବୋଲଇ ତୁମ୍ଭେ ନ ଜାଣ ଗୋ କିଛି
ଯେହାର ରୂପକୁ କେହି ସମ ଯେ ନ ଗଛି । ୩୩୮
ଦେବକୀ ଯଶୋବନ୍ତୀ ଯେ ବହୁତ ହରଷ
ନାତି ନାତୁଣୀବଧୂ ଘେନି ଆପଣା ପୁରରେ ପ୍ରବେଶ ।୩୩୯
ଅର୍ଘ୍ୟ ବନ୍ଦାବନ୍ତି ଯେ ସକଳ କାମେନୀ
ଆଶୀଷ କଲ୍ୟାଣ କରନ୍ତି ସମସ୍ତ ଜନନୀ ।୩୪୦
ପୁରେ ପୁରେ ଚହଳ କହିତ କି ପାରି
ବର କନ୍ୟା ଦେଖି ଆସନ୍ତି ନଗ୍ର ନର ନାରୀ ।୩୪୧
ରାମକୃଷ୍ଣ ବିଜୟେ ଯେ ସମ୍ଭର୍ବ ଆସ୍ଥାନେ
ଆବର ଅଛନ୍ତି ଦେବରଷି ବ୍ରହ୍ମର୍ଷି ରାଜରଷିମାନେ
ଅପକ୍ଷରୀ କିନ୍ନରୀ ଯେ ଦିବ୍ୟବେଶ ହୋଇ
କେ ତାଳ ମୃଦଙ୍ଗ ବେଣୁ ବୀଣା ବାଦ୍ୟ ବାଇ । ୩୪୩
ଚତୁର୍ଥ ଦିନେଣ ଯେ ଚଉଠି ବିଧି ସାରି
ଦେବୀ ଛାମୁଣ୍ଡିଆରେ ବସିଲେ ବ୍ରହ୍ମଚାରୀ । ୩୪୪
ଯଥାବିଧି କର୍ମ ସାରି ବର କନ୍ୟା ଗଲେ
ଅନେକ ଯୁବତୀ ତହିଂ ହୁଳହୁଳି ଦିଲେ ।୩୪୫
ବିଭାବିଧି ବଢ଼ାଇଣ ମୁନିମାନେ ଗଲେ
ଯେ ଯାହାର ଆଶ୍ରମେ ଯାଇଂ ପ୍ରବେଶ ହୋଇଲେ ।୩୪୬
ଶୁଣ ହୋ ମନୁରାୟେ ପୁଚ୍ଛା କଲୁ ଯାହା
ଥୋକାୟେ ଅନୁସରି ବଖାଣିଲୁ ତାହା ।୩୪୭
ଯେ ସେ ମଧ୍ୟପର୍ବ ଅମୃତ ରସ ସାର
ଆହୋ ପ୍ରାଣୀମାନେ ଯେକମନେ ଶ୍ରବଣ ଯେ କର ।୩୪୮
କଳିକାଳ ଘୋର ଯେ ହୋଇଲାକ ଆସି
ରାମ ନାମ ଧର ନ ବାଧିବ କାଳ ଫାଶି ।୩୪୯
ରାମ ନାମ ବ୍ରହ୍ମ ବେନି ଯେ ଅକ୍ଷର
ରାମ ନାମ ମୋର ମନୁ ନୋହିବ ବିସର ।୩୫୦

ତୁଳସୀର ବଲ୍ଲଭ ହୃଦରେ ମୋର ଥାଉ
ରାମ ନାମ ସୁମରି ସାରୋଳା ଦାସ ଗତି ମୁକତି ପାଉ ।୩୫୧ ।

**

## ୩୩. ଶିବ ବିବାହ

ଯେଥୁ ଅନନ୍ତରେ ବଇବସୁତ ମନୁ ନୃପବର
କୁମ୍ଭ ଋଷିଂକର ସୁତ ଅଗସ୍ତି ମୁନିବର ।୧
ତାହାଂକର ପାଦତଳେ ବଇବସୁତ ପଡ଼ି
ଉଠି ଉଭା ହୋଇ ଶିରେ କରଯୋଡ଼ି ।୨
ତୁମ୍ଭ ପାଦପଦ୍ମେ ମୁନି ନିତ୍ୟେ ମୋର ସେବା
ଯାହା ପଚାରିବି ମୋତେ ତାହା କହିଦେବା ।୩
ଆଦ୍ୟପର୍ବର କଥା ଚରିତ ସମସ୍ତ ବୁଝିଲି
ଅନେକ ବିଭା ଉତ୍ସବ ସମର ଶୁଣିଲି ।୪
ପାତାଳପୁରର ବିଭା ମଞ୍ଜପୁର ବିଭା
ସ୍ୱର୍ଗପୁର ବିଭା ଅସୁରଂକର ମରିବା ।୫
ଯେ ଆଦ୍ୟପର୍ବର ଯେତେ ଚରିତ ଯେ ମାନ
ପ୍ରତି ପ୍ରତି କରି ମୋତେ କହିଲ ଆପଣ ।୬
ଯେକକଥା ଯେ ମୋତେ ଫେଡ଼ି ନ କହିଲ ।୭
ଯେଉଂକଥା ଗୁପତ କରି ରଖିଅଛି ଚିତ୍ତେ
ସେ କଥା ଫିଟାଇଣ କହ ତୁମ୍ଭେ ମୋତେ ।୮
ଯେହା ଶୁଣି ବୋଲନ୍ତି ଅଗସ୍ତି ମୁନିମଣି
କେଉଂଣ ଚରିତ ମୋତେ କହ ନୃପମଣି ।୯
ଯେହା ଶୁଣି ବୋଲନ୍ତି ଯେ ବଇବସୁତ ରାଜନ
ସାବଧାନେ ଶୁଣ କୁମ୍ଭଋଷିଙ୍କ ନନ୍ଦନ ।୧୦
ଯେଉଂ କଥାରେ ସଂଶୟ ଅଛି ମୋହୋର ମନ
ସେ କଥା ମୁଂ କହୁଅଛି ଶୁଣ ସାବଧାନ ।୧୧
ବ୍ରହ୍ମା ବିଷ୍ଣୁ ଶିବ ଅଟନ୍ତି ତିନିଜଣ
ତିନିଜଣଙ୍କର ପଉରୁଷ କଲ ଯେ ଭିଆଣ ।୧୨
ସାବିତ୍ରୀଂକି ବିଭା ହୋଇଲେ ବ୍ରହ୍ମା ପୁଣି
ବରୁଣ ଜେମାଂକୁ ବିଭା ହେଲେ ଚକ୍ରପାଣି ।୧୩
ଈଶ୍ୱରେ କାହାକୁ ବିଭା ହେଲେ ମୁନିବର
କାହାର ନନ୍ଦିନୀ କିସ ନାମ ଯେ ତାହାର ।୧୪
କେମନ୍ତ ପ୍ରକାରେ ବିଭା ହୋଇଲେ ଈଶ୍ୱରେ
ଅଗସ୍ତି ବୋଇଲେ ବଇବସୁତ ମନୁ ଢାଳେ ।୧୫
ଯେହା ଶୁଣିବାକୁ ଅଟୁ ତୁ ଭାଉଜନ
ଆନ କେହି ବୁଝିବାକୁ ପଚାରନ୍ତା ଯେମାନ ।୧୬
ବଇବସୁତ ପୁଚ୍ଛାକଲେ ମୁନିଂକର ଚରଣରେ
କେବଣ ଚରିତ୍ରମାନ ହେଲା ସେ ବିଭାରେ ।୧୭
ଈଶ୍ୱରଙ୍କ ବିଭା ମୋତେ ବିସ୍ତାରି କହ ପୁଣ
ପ୍ରତି ପ୍ରତି କରି ମୋତେ କହିବ ଆପଣ ।୧୮
ତୁମ୍ଭ ଶ୍ରୀମୁଖରୁ ମୁଂ ଯେହି ରସ ଶୁଣି
ନିସ୍ତାର ହୋଇବି ଯେହି ଭବ ତରଙ୍ଗିଣୀ ।୧୯
ଯେହା ଶୁଣି କହନ୍ତି କୁମ୍ଭଋଷି ବାଳ
ଯେକମନେ ଶୁଣ ତୁ ହୋ ବଇବସୁତ ମହୀପାଳ ।୨୦
ତୁ ବଡ଼ ଧାର୍ମିକ ରାଜା ଅଟୁ ଯେ ମହତ
ତୋତେ ବୁଝାଇ ଆମ୍ଭେ କହିବା ସମସ୍ତ ।୨୧
ଈଶ୍ୱରଂକ ବିଭା ବଡ଼ ରହସ୍ୟ ଚରିତ୍ର
ଯେକମନେ ଶୁଣ ତୁମ୍ଭେ ବିଲଂକ ନୃପନାଥ ।୨୨
ହେମବନ୍ତର ଦୁହିତାଯେ ଯେ ହୋଇଲେ ଉତପତ୍ତି
ସୁନ୍ଦର ଦେଖି ନାମ ତାହାର ଦିଲେକ ପାର୍ବତୀ ।୨୩
ଦିନୁଂ ଦିନୁଂ କୁମାରୀ ପିତାଘରେ ଯେ ବଢ଼ଇ
ହେମବନ୍ତ ଯେ ଝିଅକୁ ଦେଖିଣ ଭାଳଇ ।୨୪
ଯେକଦିନେ ପିତା ମାତା ବସିଣ ବିଚାରନ୍ତି
କାହାକୁ ପ୍ରଦାନ କରିବା ଆମ୍ଭେ ଯେ ଦୋହିତୀ ।୨୫
ଯେତେ କହି ବେନିଜନ ଭାଳୁଛନ୍ତି ବସି
ଯେମନ୍ତର ସମୟେ ପାର୍ବତୀ ମିଳିଲେକ ଆସି ।୨୬
ପିତାମାତାଂକ ବିରସ ଦେଖିଣ କୁମାରୀ
ପଚାରନ୍ତି ମାତାଂକର କରେ କର ଧରି ।୨୭
କିମ୍ପାଇ ବିରସ ତୁମ୍ଭେ ହେଉଛ ଗୋ ମାତ
ଦୋହିତୀ ବଚନ ଶୁଣି କହେ ହେମବନ୍ତ ।୨୮
ଶୁଣ ଗୋ ପାର୍ବତୀ ତୁହି ମୋହୋର ବଚନ
ଯହିଂର ନିମନ୍ତେ ଭାଳୁଅଛୁଂ ବେନିଜନ ।୨୯
ପିତାଘରେ ଦୁହିତା ହୋଇଲେ ରଜୋବତୀ
ଯେକାଜନ ପୁରୁଷ ନର୍କଗତି ଯାନ୍ତି ।୩୦
ତୁ ବାଳଭାବ ଛାଡ଼ି ଯେବେ ହେଲୁ କନ୍ୟା
କାହାକୁ ପ୍ରଦାନ କରିବି ତୋତେ ତୁ ହେଲୁ ଯେବେ ବାମା ।୩୧
ଯେହି କଥା ବିଚାରି ଭାଳୁଛୁ ବେନିପ୍ରାଣୀ

ଯେହା ଶୁଣିଣ ପାର୍ବତୀ ବୋଲୁଛନ୍ତି ପୁଣି ।୧୩୨
ଶୁଣସି ପିତାମାତା ତୁମ୍ଭେ ମୋହୋର ବଚନ

ଯେ କଥାରେ ଭ୍ରାନ୍ତି ତୁମ୍ଭେ ନ କର ମନେଣ ।୧୩୩
ମୋହୋର ସିନା କାନ୍ତ ଅଟନ୍ତି ପଶୁପତି

ତାହାନ୍ତ ଦେଖିଲେ ମୁଂ ହୋଇବି ରଜୋବତୀ ।୧୩୪
ତାଂକୁ ନ ଦେଖିଲେ ମୁଂ ନୁହଇ ରଜକାରୀ

ଯେହି କନ୍ୟାରୂପେଣ ମୁଂ ଥିବି ଯୁଗ ଚାରି ।୧୩୫
ଯୁଗକୁ ଯୁଗ ହର ଅଟନ୍ତି ମୋର ବର

ଯେଥିକି ଶୋଚନା ତୁମ୍ଭେ ନ କର ମନର ।୧୩୬
ଯେତେ କହି ପାର୍ବତୀ ଯେ ମଉନ ହୋଇଲେ

ଯେହା ଶୁଣି ହେମବନ୍ତ ପୁଣ ପଚାରିଲେ ।୧୩୭
ବୋଇଲେ ଶୁଣ ମାଯେ ଗୋ ମୋହୋର ଉତ୍ତର

ହର ଯେବେ ଅଟନ୍ତି ତୋହୋର ନିଜ ବର ।୧୩୮
ଯେବେ ସେହୁ ଅଛନ୍ତି ଯେ କେବଣ ଭୁବନ

ଈଶ୍ୱର ଚରିତ ମୋତେ କହ ବୁଝାଇଣ ।୧୩୯
ଯେଥର ଚରିତ ମୋତେ ବୁଝାଇଣ କହ

ତେବେ ସେ ମନରୁ ମୋର ଫିଟିବ ସନ୍ଦେହ ।୧୪୦
ପିତାର ବଚନ ଶୁଣି ବୋଲନ୍ତି ପାର୍ବତୀ

ସଦାଶିବ ସ୍ୱାମୀ ମଞ୍ଚପୁରେ ତ ନାହାନ୍ତି ।୧୪୧
ଠିକ ଠିକ କରି ବଚନ କହଇ ତୁମ୍ଭଙ୍କୁ

ମଞ୍ଚ ତେଜି ହର ଯେ ଗଲେ ହଟକେଶ୍ୱରକୁ ।୧୪୨
କୁଶବିଡି ଅର୍ଥେ କପିଳାକୁ ବଧ କଲେ

ବେଦର ବିବାଦେ ବ୍ରହ୍ମାର ମୁଣ୍ଡକୁ ମୋଡିଲେ ।୧୪୩
ସେ ଦୋଷ ଅର୍ଥେ ହର ରହି ନୁଆରିଲେ

ମଞ୍ଚ ତେଜ୍ୟା କରିଣ ସେ ହଟକେଶ୍ୱରକୁ ଗଲେ ।୧୪୪
ହଟକେଶ୍ୱରେ ତପ କରୁଛନ୍ତି ବସି

ଦୋଷ ଛଡ଼ାଇଣ ତହୁଂ ଆସିବେକ କାଶୀ ।୧୪୫
ସେହି ଈଶ୍ୱରଂକୁ ମୁହିଂ ବିଭା ଯେ ହୋଇବି

ନୋହିଲେ ଯେ ତୋର ଘରେ କନ୍ୟାରୂପେ ଥିବି ।୧୪୬
ଯେତେକହି ପାର୍ବତୀ ଯେ ହୋଇଲେ ମଉନ

ଯେଥୁ ଅନ୍ତେ ତହୁଂ ଗଲା କେତେ ଦିନ ।୧୪୭
ଯେଜମନେ ତୁମ୍ଭେ ଶୁଣ ବଚ୍ଛବସୁତ

ହଟକେଶ୍ୱରପୁରେ ଈଶ୍ୱରଂକର ଯେଉଂଣ ଚରିତ ।୧୪୮
ବୃଷଭ ଉପରେ ଯେ ହର ବିଜେ କଲେ

ତ୍ରିଶୂଳ ଗୋଟିଯେ ଯେ ହାଥରେ ଧଇଲେ ।୧୪୯
ନବଲକ୍ଷ ଡମ୍ବରୁ ବାଜଇ ଶୂନ୍ୟେଣ

ହେମବନ୍ତ ବାଟେ ସେହୁ କଲେକ ଗବନ ।୧୫୦
ପାତକମୋଚନ କରିତେ ବିଶ୍ୱବାସୀ

ହଟକେଶ୍ୱରପୁରେ ଅଛନ୍ତି ସେ ବସି ।୧୫୧
ଯେସନେକ ସମଯେ ଗଲା କେତେଦିନ

ସ୍ୱାହାନ ସାରି ଈଶ୍ୱରେ ବସିଲେ ଧ୍ୟାନେଣ ।୧୫୨
ଧ୍ୟାନ କରନ୍ତି ସେ ମଞ୍ଚପୁରକୁ ଅନାଇ

ଚିତ୍ତ ସ୍ଥିର କରି ଶୁଣ ବିଲଂକ ନୃପସାଇଂ ।୧୫୩
ମଞ୍ଚପୁର ଚରିତ ଜାଣିଲେ ଯୋଗରେ

ପାର୍ବତୀ ଜନ୍ମ ହେଲେଣି ହେମବନ୍ତର ଘରେ ।୧୫୪
ହଟକେଶ୍ୱରପୁରୁ ବାହାରିଣ ହର

ବିଜଯେ କଲେ ଆସି ମଞ୍ଚ ମଣ୍ଡଳର ।୧୫୫
କପିଳାସପୁରେ ଆସି ପ୍ରବେଶ ହୋଇଲେ

ନିଚିନ୍ତ ହୋଇଣ ତହିଂ ଈଶ୍ୱରେ ରହିଲେ ।୧୫୬
ଯେଥୁଂ ଅନନ୍ତରେ ତହୁଂ ଗଲା କେତେ ଦିନ

ମେରୁ ସଭାକୁ ଈଶ୍ୱର କଲେକ ଗବନ ।୧୫୭
ଡମ୍ବରୁ ଶବଦ ଶୁଣି ପାର୍ବତୀ ଜାଣିଲେ

ହଟକେଶ୍ୱରଂକୁ ହର ଯେତେଦିନେଣ ଅଇଲେ ।୧୫୮
ମାତାଂକ ଆଗେ ଯାଇ କହିଲେ ପାର୍ବତୀ

ଶୂନ୍ୟେଣ ଡମ୍ବରୁ ବଜାଇଣ ଈଶ୍ୱରେ ଆସନ୍ତି ।୧୫୯
ଯେହି ହର ମାଗୋ ଅଟନ୍ତି ମୋର ବର

ପାର ଯେବେ ତୁମ୍ଭେ ମୋତେ ଯାଂକୁ ବିଭାକର ।୧୬୦
ଲାଜ ସଂକୋଚ ଫିଟାଇ କହିଲଇଂ ମୁହିଂ

ଯେହାଂକ ବେତ୍ରକେ ମୋର ଆନେ କାର୍ଯ୍ୟ ନାହିଂ ।୧୬୧
ଯେତେ କହିଣ ପାର୍ବତୀ ମଉନ ରହିଲେ

ଯେହା ଶୁଣି ହେମବନ୍ତୀ ଉଛନ୍ନ ହୋଇଲେ ।୧୬୨
ପାର୍ବତୀଂକ ନିଷ୍ଠୁର ବାଣୀ ଶୁଣିଣ ହେମବନ୍ତୀ

ତତକ୍ଷଣେ ବିଜେକଲେ ହେମବନ୍ତ କତି ।୧୬୩
ବୋଇଲେ ଭୋ କାନ୍ତ ଶୁଣ ମୋର ବାଣୀ

ଈଶ୍ୱରେ ଯାଉଛନ୍ତି ଯେ ମେରୁସଭାକୁ ପୁଣି ।୧୬୪
ଶୁଣ ଶୂନ୍ୟେ ନବଲକ୍ଷ ଡମ୍ବରୁ ବାଜଇ

ପାର୍ବତୀଂକି ବିଭାଦେବା ଯେଠାରେ ରଖାଇ ।୧୬୫
ଯେହା ଶୁଣି ହେମବନ୍ତ ହରଷ ହୋଇଲେ

କିଛି ଦୂର ଯାଏ ସେହୁ ପାଛୋଟି ଯେ ଗଲେ ।୬୬
ଦେଖିଲେ ବୃଷଭ ଚଢ଼ି ଈଶ୍ୱରେ ଆସନ୍ତି
ବିଭୂତି ଭୂଷଣ ଜଟା ତଳେଣ ଲମ୍ବନ୍ତି ।୬୭
ତିନି ନେତ୍ର ତାହାଂକର ଦିଶନ୍ତି ରଙ୍ଗମୟେ
କୋଟିଯେ କନ୍ଦର୍ପ ଜିଣି ଅଙ୍ଗ ଶୋଭା ପାୟେ ।୬୮
ଈଶ୍ୱରଂକ ମୂରତି ଦେଖିଣ ହେମବନ୍ତ
ହୃଦଗତେ ବିଚାରି ହୋଇଲେ କୃତକୃତ୍ୟ ।୬୯
ବୋଇଲେ ଭୋ ସଦାଶିବ ଯାଉଛ କାହିଂକି
ତମ୍ଭରୁ ଶୁଣି ଅଇଲି ତୁମ୍ଭର ତହିଂକି ।୭୦
ମୋହୋର ଭୁବନକୁ ହୋ ବିଜୟେ କର କାଶୀ
ହେମବନ୍ତ ବଚନେ ହରଷ ବିଶ୍ୱବାସୀ ।୭୧
ବେନିଜନେ ସଙ୍ଗ ହୋଇ ତହୁଂ ଚଳିଗଲେ
ହେମବନ୍ତ ନିଜପୁରେ ପ୍ରବେଶ ହୋଇଲେ ।୭୨
ବୃଷଭ ଉପରୁ ଓହ୍ଲାଇଣ ଗଙ୍ଗାଧର
ବିଜୟେ କଲେ ଯାଇଂ ଜଗତୀ ଉପର ।୭୩
ହେମବନ୍ତପୁର ଦେଖି ହରଷ ହୋଇଲେ
ବହୁତ ପ୍ରଶଂସା କରି ବଚନ ବୋଇଲେ ।୭୪
ଧନ୍ୟ ହେମବନ୍ତ ରାଜା ନବର ତୋହୋରି
କେତେ ଯୁଗ ତପକରି ପାଇଲୁ ଯେ ପୁରୀ ।୭୫
ଯେହା ଶୁଣି ହେମବନ୍ତ ହରଷ ହୋଇଲା
ଗଉରବ କରିଣ ସେ ହରଂକୁ ରଖିଲା ।୭୬
ହର ବୋଇଲେ ହେମବନ୍ତ ଯାଅ ହୋ ବହନ
ପାର୍ବତୀକି କହ ବେଗେ କରୁ ସେ ରନ୍ଧନ ।୭୭
ଯେହା ଶୁଣି ହେମବନ୍ତ ବେଗେ ଚଳିଗଲେ
ପାର୍ବତୀର ଆଗେ ଯାଇ ସକଳ କହିଲେ ।୭୮
ବୋଇଲେ ଗୋ ପାର୍ବତୀ ଶୁଣ ମୋ ବଚନ
ବହନ ରନ୍ଧନ କର ହର କରିବେ ଭୋଜନ ।୭୯
ଯେହା ଶୁଣିଣ ପାର୍ବତୀ ବେଗେ ଚଳିଗଲେ
ରୋଷାଇଶାଳରେ ଯାଇଂ ପ୍ରବେଶ ହୋଇଲେ ।୮୦
ରନ୍ଧନ କଲେ ଯାଇଂ ବେଗେ ଶାଳିଅନ୍ନ
ହେଙ୍ଗୁ ଜୀରା ମେଥି ପକାଇଣ ମୁଗ ଯେ ତିଉଣ ।୮୧
କନ୍ଦ ଲୁଚି ପୁରି ବଡ଼ା ଝିଲି ଯେ ମିଠାଇ
ଆରିସା ଲଡୁ କଚୋରୀ ସିଂଗଡା ଯେ ଖଇ ।୮୨
ଶୁଆଂମଣ୍ଡା ଯେଣ୍ଡୁରି ଗଇଂଠା ଯେଉଟ ଫୁଲ
ଚିନି ପକାଇଣ ପଣାକଲେ ସମତୁଲ ।୮୩
ଚକୁଳି ଛୁଞ୍ଚିପତର ଛେନା ମନୋହର
ଖିରି ଖିରିସା ଶାକର ସକଳ ଦ୍ରବ୍ୟ ସାର ।୮୪
ଗଉରୀ ସଉରୀ ନଳ ତ୍ରିବିଧି ତିନିପ୍ରତି
ଯୁଗତ କରିଣ ଯେ ପାର୍ବତୀ ରାନ୍ଧିଛନ୍ତି ।୮୫
ଈଶ୍ୱରଂକୁ ନିଉନ୍ତି ଭୋଜନେ ବସାଇଲେ
ଆପେ ଯେ ହେମବନ୍ତ ତହିଂ ପରଶିଲେ ।୮୬
ଭୋଜନ କରି ହରଷ ହେଲେ ପଶୁପତି
ବିଚାରିଲେ ଯେ ଯୋଗାଡ ରାନ୍ଧିଛନ୍ତି ପାର୍ବତୀ ।୮୭
ଯେ ରାନ୍ଧଣା ରାନ୍ଧିବାକୁ ଆନକେ ଭାର୍ଜନ
ହେମବନ୍ତ ଘରେ ଆସି ପାର୍ବତୀ ଜନମ ।୮୮
ଯେ କଥାମାନ ଈଶ୍ୱରେ ହୃଦଗତେ ଜାଣି
ଆଞ୍ଚୋବନ କଲେ ତହିଂ ସୁଶୀତଳ ପାଣି ।୮୯
କର୍ପୂର ପାନ ବିଡ଼ିଆ ହେମବନ୍ତ ଦିଲେ
ହରଷ ହୋଇଣ ତାହା ଈଶ୍ୱରେ ଭୁଞ୍ଜିଲେ ।୯୦
ବୃଷଭହିଂ ତହିଂ ସେହି ଯୋଗାଡମାନ ପାଇଲେ
ପାଇଣ ବୃଷଭ ତହିଂ ଆନନ୍ଦ ହୋଇଲେ ।୯୧
ଯେଥୁ ଅନନ୍ତରେ କହନ୍ତି ଅଗସ୍ତି ମୁନି ତହିଂ
ଯେକମନେ ଶୁଣ ତୁ ହୋ ବିଳଂକ ନୃପସାଇଂ ।୯୨
ବଡ଼ ରହସ୍ୟ କଥା ଯେବେ ହୋଇବ ଯେଣିକି
ଚନ୍ଦ୍ରଶେଖର ବିଭା ହୋଇବେ ପାର୍ବତୀଂକି ।୯୩
ହର ବସିଅଛନ୍ତି ମନରେ ଆନନ୍ଦିତ ହୋଇ
ହେମବନ୍ତ ସ୍ତୁତି କରି କରକୁ ଯୋଡ଼ଇ ।୯୪
ଭୋ ଦେବ ଚନ୍ଦ୍ରଶେଖର ଗଙ୍ଗା ଶିରରେ ତୋହୋର
ଭୋ ଦେବ ଚନ୍ଦ୍ରଶେଖର ତ୍ରିଶୂଳ ତୋର କର ।୯୫
ଭୋ ଦେବ ଶିବ ହୋ ତୋର ବୃଷଭ ବାହନ
ଭୋ ଦେବ ଶିବ ତୁହି ପୁରୁଷଂକ ଉତ୍ତମ ।୯୬
ଭୋ ଦେବ ଶିବ ଅଟୁ ତୁହି ମୂଳ ସ୍ତମ୍ଭ
ସମସ୍ତ ଚଳ ନାଥ ତୁହି ଅଟୁ ଦମ୍ଭ ।୯୭
କେହୁ ବ୍ରହ୍ମା କେହୁ ବିଷ୍ଣୁ କେହୁ ମହେଶ୍ୱର
ଜ୍ୟେଷ୍ଠ ନାମ ଗୋଟି ତୁମ୍ଭର ସବୁରି ଉପର ।୯୮
ଭୋ ଦେବ ଶିବ ଯେ କାହୁଂ ଉତପତ୍ତି
ଭୋ ଦେବ ଶିବ ଯେ ତୋତେ କେହି ନ ଜାଣନ୍ତି ।୯୯
ଭୋ ଦେବ ଶିବ ତୋର ଧବଳବର୍ଣ୍ଣ କାୟେ

ଭୋ ଦେବ ଶିବ ତୋତେ ପୃଥିବୀ ତିଳ ପ୍ରାୟେ ।୧୦୦
ଭୋ ଦେବ ସଦାଶିବ ତୁମ୍ଭେ ଅଟ ଯେ ଅଲୀକ
ପାଦ ନଖକୋଣେ ଯେ ରହିଛି ସକଳ ।୧୦୧
ଭୋ ଦେବ ଶିବ ତୁ ନିରଞ୍ଜନ ଅବତାର
ଜୟ ଜୟ ସଦାନନ୍ଦ ଦ୍ୱାଦଶ ନାମ ତୋର ।୧୦୨
ଅନେକ ମତେ ହରଂକୁ ହେମବନ୍ତ ସ୍ତୁତି କଲେ
କରପତ୍ର ଯୋଡିଣ ଛାମୁରେ ଉଭା ଯେ ହୋଇଲେ ।୧୦୩
ହେମବନ୍ତ ତୁଷ୍ଟି ଶୁଣି ସନ୍ତୋଷ ହର ଚିତ୍ତେ
ବୋଇଲେ ଯେତେ ତୁଷ୍ଟି କରୁ ଯେ କିମ୍ପେ ମୋତେ ।୧୦୪
ଯହିଂ ନିମନ୍ତେ ତୁଷ୍ଟି ଯେ କରୁଛ ଆପଣ
ସେ କଥା ଫେଡି କହ ମୋହୋର ଆଗେଣ ।୧୦୫
ଯାହା ସେ ତୁମ୍ଭେ କହିବ କରିବଇଂ ମୁହିଂ
ଈଶ୍ୱରଂକୁ ହେମବନ୍ତ କରଯୋଡି କହି ।୧୦୬
ମୋହୋର ବଚନ ତୁମ୍ଭେ କର ତ୍ରିପୁରାରି
ହେମବନ୍ତୀ ଗର୍ଭୁଂ ଜାତ ଯେକଇ କୁମାରୀ ।୧୦୭
ତାହାର ନାମଗୋଟି ଅଟଇ ପାର୍ବତୀ
ତ୍ରଇଲୋକ୍ୟ ମୋହିନୀ ସେହି ଅଟେ ରୂପବନ୍ତୀ ।୧୦୮
ସେ ଦୁହିତା ଗୋଟି ମୁହିଂ ଦେବଇଂ ତୁମ୍ଭଂକୁ
ଯେକଥା ଯେ ରହିଥିବ ଯୁଗ ଯୁଗାନ୍ତକୁ ।୧୦୯
ଯେହା ଶୁଣି ଈଶ୍ୱର ଯେ ହରଷ ହୋଇଲେ
କୋମଳ ବଚନେ ହେମବନ୍ତକୁ କହିଲେ ।୧୧୦
ବୋଇଲେ ହେମବନ୍ତ ଶୁଣ ମୋ ବଚନ
ଯେବେ ଯାଉଅଛୁ ଆମ୍ଭେ ମେରୁ ଯେ ଆସ୍ଥାନ ।୧୧୧
ମେରୁ ଆସ୍ଥାନରେ ଥିବେ ତ୍ରିଦଶ ଦେବତାୟେ
ସମସ୍ତଙ୍କୁ କହିବୁ ଆମ୍ଭେ କହିବା କଥାୟେ ।୧୧୨
ଦେଖୁଣି ବେଭାରମାନ ଆମ୍ଭେ ଚଳାଇବା
ପଶ୍ଚାତରେ ଆମ୍ଭେ ବିଭାଲଗ୍ନ ଧରି ବିଭାହେବା ।୧୧୩
ଆମ୍ଭେ ଯେହା କହିଲୁ ତୁମ୍ଭ ଆମ୍ଭର ସତ୍ୟ ଯେ ବଚନ
ପାର୍ବତୀ ବେତ୍ରକେ ଆମ୍ଭେ ନୋହିବୁ ଆନମନ ।୧୧୪
ଯେତେ କହି ଈଶ୍ୱରେ ଉଠି ଉଭାହେଲେ
ବୃଷଭ ଉପରେ ଚଢ଼ି ମେରୁସଭାରେ ମିଳିଲେ ।୧୧୫
ତେତିଶକୋଟି ଦେବେ ମେରୁରେ ଛନ୍ତି ବସି
ସେହି ସମୟେ ତହିଂ ବିଜୟେ କଲେ କାଶୀ ।୧୧୬
ଈଶ୍ୱରଂକୁ ଦେଖି ସର୍ବ ଦେବତାୟେ ଉଠିଲେ
ମାନନା କରି ଦେବସଭା ମଧ୍ୟେ ବସାଇଲେ ।୧୧୭
କୁଶଳ ବାରତା ତହିଂ ପୁଛା ପୁଛି ହୋଇ
ହରଷେ କହନ୍ତି ଶିବ ଦେବଂକ ମୁଖ ଚାହିଂ ।୧୧୮
ଭୋ ଦେବ ସକଳ ଶୁଣ ମୋ ବଚନ
ଦୁହିତାୟେ ଦେବ ମୋତେ ହେମବନ୍ତ ରାଜନ ।୧୧୯
ଦେଖୁଣିଘର ଦ୍ରବ୍ୟମାନ ଦିଅ ମୋତେ ତୁମ୍ଭେ
ଆବର ବେଭାର ଦ୍ରବ୍ୟ ମାଗୁଅଛୁ ଆମ୍ଭେ ।୧୨୦
ଈଶ୍ୱରଂକ ବଚନ ଶୁଣି ଦେବଗଣେ
ଦେଖୁଣିଘର ବିଧାନ ଭିଆଇ ବହନେ ।୧୨୧
ଦେଖୁଣିଘରକୁ ଯେତେ ଅଂଶ ଭାବ ହୋଇ
ସକଳ ଦେବତାୟେ ସଭାରେ ତାହା ଆଣି ଥୋଇ ।୧୨୨
ପୁରି ପାଞ୍ଚଭାର ଯେ ମିଠାଇ ପାଞ୍ଚଭାର
ଫେଣା ପାଞ୍ଚଭାର ଯେ ନଡ଼ିଆ ପାଞ୍ଚଭାର ।୧୨୩
ବସାଦଧି ପାଞ୍ଚଭାର ଆବର କନ୍ଦ ପାଞ୍ଚଭାର
କଦଳୀ ଦଶଭାର ଯେ ବିଚିତ୍ର ପ୍ରକାର ।୧୨୪
ବିଚିତ୍ର ବସନ ପାଞ୍ଚଭାର ପିନ୍ଧା ଶାଢ଼ୀ ଆଣି
ଯୁଗତ କରିଣ ଥୋଇଲେ ତାହା ପୁଣି ।୧୨୫
ହଳଦୀ ପାଞ୍ଚଭାର ଘିଅ ଦୁଇଭାର
ଅମଳାଣ ପୁଷ୍ପ ଯେ ଆଣିଲେ ସାତଭାର ।୧୨୬
ଅଗର ଚନ୍ଦନ ଯେ ଦଶଭାର ଆଣିଲେ
ପାନ ସାତଭାର ଗୁଆ ତିନିଭାର ତହିଂରେ ସଜାଡ଼ିଲେ ।୧୨୭
ଯେମନ୍ତେ ଅଣାଅଶିଭାର ତହିଂରେ ଯେ ହୋଇ
ଦ୍ରବ୍ୟ ଦେଖି ହରଷ ହେଲେ ଶିବ ତହିଂ ।୧୨୮
ଭାର ଭାର କରି ସବୁ ଦ୍ରବ୍ୟ ସଜାଡିଲେ
ଇନ୍ଦ୍ର ଥାଇଣ ସକଳ ଦେବେ ଚାଳି ଦିଲେ ।୧୨୯
ମେରୁ କନ୍ଦରକୁ ହେମବନ୍ତର ନବର
ପଞ୍ଚଦଶ ଯୋଜନ ପଥ ଅଟଇ ସେହୁ ଦୂର ।୧୩୦
ସକଳ ଭାର କରିଣ ତହୁଂ ଘେନିଗଲେ
ନାରଦେ ଯେ ଶୂନ୍ୟେ ଥାଇଣ ତାହା ଦେଖୁଥିଲେ ।୧୩୧
ମନେ ମନେ ନାରଦେ କଲେକ ବିଚାର
ଆଜ ହେମବନ୍ତେ ଲଜ୍ଜା କରାଇବି ହର ।୧୩୨
ଯେମନ୍ତ ବିଚାରିଣ ମନଦଣ୍ଡ ବିମାନେ
ଆରୋହଣ କରି ନାରଦେ ଯେ ଚଳିଗଲେ ଶୂନ୍ୟେ ।୧୩୩
ସାତଯୋଜନ ପଥରେ ରହିଲେ ସେ ଯାଇ

ଯେମନ୍ତ ସମୟରେ ଭାର ଘେନି ତହିଁ ।୧୩୪
ପ୍ରବେଶ ହୋଇଲେ ଦେବେ ଯାଇ ତାହାଂକ କତିର
ତାହାନ୍ତ ଦେଖିଣ ମାୟା କଲେ ମୁନିବର ।୧୩୫
ବୋଇଲେ ହୋ କେଣିକି ଯାଉଛ ତୁମ୍ଭେମାନେ
ଅନେକ ଦ୍ରବ୍ୟମାନ ତ ଅଛଇ ଗହନେ ।୧୩୬
ସେ ବୋଇଲେ ଶୁଣ ହୋ ନାରଦ ମୁନିବର
ଯେହୁ ଅଂଶ ଭାର ସବୁ ଦେଖୁଣି ଘରର ।୧୩୭
ଈଶ୍ୱର ଦେଇଛନ୍ତି ହେମବନ୍ତର ଘରକୁ
ଦୋହିତାୟେ ପ୍ରଦାନ ସେ କରିବ ହରଂକୁ ।୧୩୮
ନାରଦେ ବୋଇଲେ ସବୁ ଅଟଇ ଯେ ମିଛ
ଖାଇବାର ଦ୍ରବ୍ୟମାନ କାଢି ତୁମ୍ଭେ ରଖ ।୧୩୯
ପିନ୍ଧିବାର ବସ୍ତ୍ରମାନ ପିନ୍ଧ ହୋ ଯତନେ
ଯେହା ଶୁଣି ହରଷ ହୋଇଲେ ସର୍ବଜନେ ।୧୪୦
ନାରଂଦକ ବଚନ କେହି ନ ଜାଣିଲେ
ଖାଇବାର ଦ୍ରବ୍ୟ ଖାଇ ବସନ ପିନ୍ଧିଲେ ।୧୪୧
ଫୁଲ ଚନ୍ଦନ ସବୁ ଯେ ଘେନିଲେ ଦେହରେ
ପାନ ଗୁଆ ମିଶାଇ ଖାଇଲେ ରସଭରେ ।୧୪୨
ବୋଇଲେ ଆମ୍ଭେମାନେ କରିବୁ କେମନ୍ତ
ବିଚାରିଣ  କହ ତୁମ୍ଭେ ମୁନି ତପୋବନ୍ତ ।୧୪୩
ସେମାନଂକ ବଚନ ନାରଦ ଯେ ଶୁଣି
ହରଷ ହୋଇ ତାଂକୁ କହୁଛନ୍ତି ପୁଣି ।୧୪୪
ଆହେ ତୁମ୍ଭେ ସକଳ ଯେ ଆମ୍ଭଠାରୁ ଶୁଣ
ଯହିଁ ଯାହା ରଖିବ ତାହା କହିବାକ ପୁଣ ।୧୪୫
କହନ୍ତି ନାରଦେ ଯେ ଶୁଣ ଆମ୍ଭ ବାଣୀ
ପୁରି ରହିଁ ଥିଲା ଘସି ତହିଁ ଥୁଅ ପୁଣି ।୧୪୬
ମିଠାଇମାନ ଥିଲା ଯେବଣ ହାଣ୍ଡିର
ସେହି ହାଣ୍ଡିମାନଂକରେ ରଖ ଯେ ପଥର ।୧୪୭
ଫେଣା ହାଣ୍ଡିରେଣ ରଖ ଗୁଣ୍ଡାଘସି ପୁଣି
ନଡ଼ିଆ ହାଣ୍ଡିରେ ବେଲଫଳ ପୂରାଅ ଆଣି ।୧୪୮
କଦଳୀ ସ୍ଥାନରେ ଅରଖଫୁଲ ଯେ ପୂରାଅ
ଗୁଆ ଥିଲା ଯହିଁ ପାଚୋଳି ଫଳ ଥୁଅ ।୧୪୯
ଦହି ଯହିଁ ଥିଲା ପଂକ ପୂରାଅ ନେଇ ତହିଁ
କନ୍ଦ ସ୍ଥାନେ ବାଲି ଧୂଳି ପୂରାଅ ଯେ ନେଇ ।୧୫୦
ବସନମାନ ଥିଲା ଯେଉଂ ଆଡ ଖୁର
ସେ ସ୍ଥାନମାନଂକରେ ପୂରାଅ ପତର ।୧୫୧
ହଳଦୀଆ ମାଟି ରଖ ହଳଦୀ ସ୍ଥାନରେ
କିଂଶୁକ ଫୁଲ ରଖ ଅମଳାନ ପୁଷ୍ପଠାରେ ।୧୫୨
ଘିଅ କଳସିରେ ପୂରାଅ ହଳଦୀ ଯେ ପାଣି
ଚନ୍ଦନ ସ୍ଥାନରେ ଥୁଅ ଧଅକାଠ ଆଣି ।୧୫୩
ପାନ ସ୍ଥାନରେ ଆଲୁ ପତର ପୂରାଅ
ମୁଦମାନ ଦେଇଣ ହେମବନ୍ତେ ଚଳିଯାଅ ।୧୫୪
ଯେତେ କହି ନାରଦେ ଯେ ଶୂନ୍ୟମାର୍ଗେ ଗଲେ
ନାରଂଦକ ବଚନେ ଯେ ସେ ସେହିମତି କଲେ ।୧୫୫
ସ୍ଥାନମାନଂକରେ ସେ ସେହିମତି କରି
ମୁଦମାନ ଦେଇଗଲେ ହେମବନ୍ତ ପୁରୀ ।୧୫୬
ହେମବନ୍ତପୁରେ ଯାଇଂ ପ୍ରବେଶ ହୋଇଲେ
ଦେଖି ସେମାନନ୍ତ ହେମବନ୍ତ ପଚାରିଲେ ।୧୫୭
ବୋଇଲେ ଯେ ଦ୍ରବ୍ୟମାନ କାହାର ଅଟଇ
ସେ ବୋଇଲେ ଯେ ଦ୍ରବ୍ୟମାନ ହର ଛନ୍ତି ଦେଇ ।୧୫୮
ଦେଖୁଣିଘର ଦ୍ରବ୍ୟ ଅଟଇ ଯେ ପୁଣ
ଯତନ କରିଣ ଯେହା କର ସମ୍ଭାଳଣ ।୧୫୯
ଯେହା ଶୁଣି ହେମବନ୍ତ ହରଷ ହୋଇଲେ
ଯତନ କରିଣ ଭଣ୍ଡାରେ ନେଇଣ ରଖିଲେ ।୧୬୦
ଗଲା ଲୋକମାନନ୍ତ ସେ ଚରଚା କରିଣ
ବସାଇଲେ ନେଇ ତାଂକୁ ଭୋଜନ ସ୍ଥାନେଣ ।୧୬୧
ଷଡରସେ ଭୋଜନ ସେ କଲେକ ତହିଂରେ
ଆଞ୍ଚୋବନ ସାରି ସେ ବସିଲେ ହରଷରେ ।୧୬୨
ଯେମନ୍ତର ସମୟରେ ନାରଦ ମୁନିବର
ପ୍ରବେଶ ହୋଇଲେ ଯାଇ ହେମବନ୍ତ ପୁର ।୧୬୩
ନାରଂଦକୁ ଦେଖି ହେମବନ୍ତ ପୂଜାକଲେ
ଚରଣ ପଖାଳିଣ ମୃଗଛାଲେଣ ବସାଇଲେ ।୧୬୪
ବୋଇଲେ ନାରଦ ମୁନି ତୁମ୍ଭେ କାହିଁ ଥିଲ
ଆଜ ଆସି ଦୁର୍ଦ୍ଦଶା ମୋର ଉପେକ୍ଷିଲ ।୧୬୫
ନାରଦେ ବୋଇଲେ ଆମ୍ଭେ ଶୂନ୍ୟେ ଯାଉଥିଲୁ
ତୋହୋର ପୁରେ ପୁଣ ଗହଳ ଶୁଣିଲୁ ।୧୬୬
ଶବଦ ଶୁଣି ଯେଣେ ଅଇଲୁ ତୋର ପୁର
ଯେହା ଶୁଣି ହେମବନ୍ତ କହନ୍ତି ଉତ୍ତର ।୧୬୭
ଶୁଣ ହୋ ନାରଦ ତୁମ୍ଭେ ମୋହୋର ବଚନ

କନ୍ୟାଯେ ଅଛି ମୋର ହରଂକୁ କରିବି ପ୍ରଦାନ ।୧୬୮
ପାର୍ବତୀ ବୋଲିଣ ନାମ ଅଟଇ ତାହାରି
ଈଶ୍ୱରଂକୁ ବିଭା ଦେବି ମୋହୋର କୁମାରୀ ।୧୬୯
ତହିଂର ନିମନ୍ତେ ଯେ ଆସିଛନ୍ତି ପୁଣ
ଦେଖୁଣି ଘର ଦ୍ରବ୍ୟମାନ ଯେ ଘେନିଣ ।୧୭୦
ଯେହା ଶୁଣି ନାରଦେ ହରଷ ହୋଇଲେ
ସପତସ୍ୱର ଆଳାପି ବୀଣାବାଦ୍ୟ କଲେ ।୧୭୧
ଯେଥୁ ଅନନ୍ତରେ ସେ ହେମବନ୍ତ ପୁଣି
ଅଇଲା ଲୋକମାନନ୍ତ କଲାକ ମେଲାଣି ।୧୭୨
ମେଲାଣି ହୋଇଣ ତହୁଂ ସର୍ବେ ଚଳିଗଲେ
ଯେ ଯାହାର ପୁରେ ଯାଇଂ ପ୍ରବେଶ ହୋଇଲେ ।୧୭୩
ଯେଥୁ ଅନନ୍ତରେ ତହୁଂ ନାରଦ ମୁନିବର
ହେମବନ୍ତ ରାଜାକୁ ସେ କହନ୍ତି ଉତ୍ତର ।୧୭୪
ଆହୋ ହେମବନ୍ତ ରାଜା ଆମ୍ଭଠାରୁ ଶୁଣ
ଯାଉଅଛୁଂ ଆମ୍ଭେ ସେ ସ୍ୱର୍ଗ ଯେ ଭୁବନ ।୧୭୫
ନାରଦଂକ ବାଣୀ ଶୁଣି ହେମବନ୍ତ କହି
ଦେଖିବ ନାହିଂକି ହର କି କି ଛନ୍ତି ଦେଇ ।୧୭୬
ଯେହା ଶୁଣି ନାରଦେ ଯେ ହରଷ ହୋଇଲେ
କି କି ଦ୍ରବ୍ୟ ଦେଇଛନ୍ତି ଦେଖିବା ବୋଇଲେ ।୧୭୭
ଭିତରକୁ ଗଲେ ସେ ନାରଦ ମୁନିବର
ଦେଖିଲେ ଥୁଆ ହୋଇଅଛି ଅଣାଅଣି ଭାର ।୧୭୮
ଫିଟାଇ ଦେଖନ୍ତି ତହିଂ ନାରଦ ମୁନି ବସି
ଦଶଗୋଟି ହାଣ୍ଡିରେ ପଶିଛି ପରା ଘସି ।୧୭୯
ଦଶଗୋଟି ହାଣ୍ଡିରେ ପଥର ପୂରିଛଇ
ଦଶଗୋଟି ହାଣ୍ଡିରେ ଗୁଣ୍ଡା ଘସି ଅଛଇ ।୧୮୦
ଦଶଗୋଟି ହାଣ୍ଡିରେ ଅଛି ବେଲଫଳ
ପାଚୋଳି ଫଳ ଅଛଇ ଛଅଗୋଟି ହାଣ୍ଡିର ।୧୮୧
ଅରଖଫୁଲ ପୂରିଛି ଦଶ ଯେ ଭାରରେ
ପାଞ୍ଚଭାର ପଂକ ଅଛଇ ନିଚଳରେ ।୧୮୨
ବାଲି ପୂରିଅଛି ଦଶଗୋଟା ହାଣ୍ଡିରେ
କଦଳୀ ପତ୍ର ଅଛଇ ଦଶ ଆଡଖୁରେ ।୧୮୩
ହଳଦିଆ ମାଟି ଅଛି ପାଞ୍ଚ ଯେ ଭାରର
ହଳଦିଆ ପାଣି ଅଛି ଚାରି କଳଶିର ।୧୮୪
କିଂଶୁକ ଫୁଲ ଅଛି ତହିଂ ସାତଭାର
ଦଶଭାର ଧଅକାଠ ଅଛି ଯେ ତହିଂର ।୧୮୫
କଣ୍ଟାଆଳୁ ପତର ଯେ ସାତଭାର ଅଛି
ଫିଟାଇ ସବୁ ଦେଖିଲେ ବ୍ରହ୍ମାଂକର ବଚ୍ଛି ।୧୮୬
ହେମବନ୍ତ ମୁଖକୁ ଚାହିଂଣ ମୁନିବର
ଆନନ୍ଦ ହୋଇଣ ସେ ହସନ୍ତି କର କର ।୧୮୭
ହେମବନ୍ତ ନାରଂଦକ ହସ ତହିଂ ଦେଖି
ଯେ ଭବିଷ୍ୟ ଦେଖି ପିଛାଡି ନୁଆରନ୍ତି ଆଖି ।୧୮୮
ନାରଦେ କହନ୍ତି ହୋ ଶୁଣ ହେମବନ୍ତ
ଜାଣୁ ଜାଣୁ ତୁହି ପୁଣ କଲୁ ଯେହୁ କୃତ ।୧୮୯
ଈଶ୍ୱର ନାମ ବହି କରୁଥାନ୍ତି ଯେମନ୍ତ
ତାହାନ୍ତ କେମନ୍ତେ ତୁ ଦେବୁ ତୋହୋର ଦୋହିତ ।୧୯୦
ଶମଶାନ ବାସୀ ସେହୁ ଈଶ୍ୱର ଅଟଇ
ତୁହି ତ ଜାଣୁ ତାହାର କୁଳ ଗୋତ୍ର ନାହିଂ ।୧୯୧
ହାଡମାଳ ଲୋଚାଯେ ଲମ୍ବାଇଥାଇ ଗଳାରେ
ପାଉଂଶ ଲୋଚାଯେ ଗୋଳି ହୋଇଥାଯେ ସେ ଦେହରେ ।୧୯୨
ମୃଗଚର୍ମ ଗୋଟାଯେ ସେ କାନ୍ଧେ ପକାଇଣ ଥାଇ
ମୟୂର ପଛୀ ଗୋଟାଯେ ମୁଣ୍ଡରେ ଗୁଡ଼ିୟାଇ ।୧୯୩
ବସ୍ତ୍ର ବିହୀନେ ପିନ୍ଧିଥାଇ ବୃକ୍ଷର ବକଳ
ତ୍ରିଶୂଳ ଗୋଟାଯେ ଧରିଥାଯେ ବକ୍ଷସ୍ଥଳ ।୧୯୪
ବୃଷଭ ଗୋଟାଯେ ନିତ୍ୟେ ଚଢ଼ିଥାଇ
ଅନନ୍ତ ନାଗ ପଇତା ହୃଦରେ ଲମ୍ବଇ ।୧୯୫
ତାହାର ଛାରକୁ ଦେବୁ ଯେପରି କୁମାରୀ
ଶୁଣିଣ ହେମବନ୍ତ ବହୁତ କ୍ରୋଧ କରି ।୧୯୬
ହେମବନ୍ତ କ୍ରୋଧ ଦେଖି ତହିଂ ହେମବନ୍ତୀ
ସମ୍ଭାଳି ନୁଆରି କ୍ରୋଧ କଲା ଅପ୍ରମିତି ।୧୯୭
ବିପରୀତ ଅସମ୍ଭବ ଦେଖି ପୁରଜନେ
ସମସ୍ତେ ରୋଦନ କଲେ ବିଦ୍ୟମାନେ ।୧୯୮
ଯେସନେ ପର୍ବର କାଳେ ସାହେର ଗର୍ଜନ
ରୋଦନ ଶବଦ ତହିଂ ଗହନେ ତେସନ ।୧୯୯
ରୋଦନ ଶବଦ ତହିଂ ଶୁଣି ମୁନିବର
ହେମବନ୍ତ ରାଜାକୁ କରାଇଲେ ସ୍ଥିର ।୨୦୦
ରାଜା ସ୍ଥିର ହୁଅନ୍ତେ ତହୁଂ ପୁରଜନମାନେ
ସମସ୍ତେ ଯେ ସ୍ଥିର ହେଲେ ମୁନିଂକ ବଚନେ ।୨୦୧
ବିଚିତ୍ର ଦ୍ରବ୍ୟମାନ ଅଛଇ ଠାବେ ଠାବେ

ହେମବନ୍ତ ପୁରୁ ନାରଦେ ଚଳିଗଲେ ଭାବେ ।୨୦୨
ହେମବନ୍ତ ରାଜାକୁ ଲାଗିଲା ଗରୁ ବ୍ୟଥା
ଧ୍ୟାନ କରି ବ୍ରହ୍ମାଂକୁ ସେହୁ କଲେ ଚିନ୍ତା ।୨୦୩
ହେମବନ୍ତ ଆରତରେ ଚିନ୍ତିଲାକ ଯହୁଂ
ତତକ୍ଷଣେ ବ୍ରହ୍ମା ଆସି ବିଜେକଲେ ତହୁଂ ।୨୦୪
ବ୍ରହ୍ମାଯେ ବୋଇଲେ ଚିନ୍ତା କିମ୍ପେ କଲୁ ମୋତେ
କେବଣ ଚରିତ୍ରମାନ କହ ମୋ ଅଗ୍ରତେ ।୨୦୫
ହେମବନ୍ତ ବୋଇଲା ଆସ ଯିବା ଭିତରକୁ
ଦେଖୁଣି ବେଭାରମାନ ଦେଖାଇବା ତୁମ୍ଭଂକୁ ।୨୦୬
ଦେଖୁଣି ବେଭାର ଯାହା ଦେଇଛନ୍ତି ଈଶ୍ୱରେ
ଭିତରକୁ ଆସ ତୁମ୍ଭେ ତାହା ଦେଖ ଥରେ ।୨୦୭
ଯେତେ କହି ହେମବନ୍ତ ବ୍ରହ୍ମାଂକୁ ଘେନିଗଲେ
ଅସମ୍ଭବମାନ ସବୁ ଦେଖାଇଣ ଦିଲେ ।୨୦୮
ତାହା ଦେଖିଣ ବ୍ରହ୍ମା ସ୍ତମ୍ଭୀଭୂତ ହୋଇ
ବିଚାରିଲେ ଆମ୍ଭ ଦିଲା ଦ୍ରବ୍ୟ କିଛି ନାହିଂ ।୨୦୯
କେହୁ ଯେତେ ବିପରୀତ କଲା ଯେଥେ ପୁଣ
ପଚାରିବା କେହୁ ଆସିଥିଲା ଯେ ଭୁବନ ।୨୧୦
ଯେତେ ବିଚାରିଣ ବ୍ରହ୍ମା ଆପଣା ମନକୁ
ପଚାରିଲେ ଚାହିଂ ହେମବନ୍ତର ମୁଖକୁ ।୨୧୧
ବୋଇଲେ ହୋ ହେମବନ୍ତ ଶୁଣ ଆମ୍ଭ ବାଣୀ
ଆନ କେହି ଆସିଥିଲା ଯେ ଠାବକୁ ପୁଣି ।୨୧୨
ହେମବନ୍ତ କହଇ ଯେ ବ୍ରହ୍ମାଂକ ଅଗ୍ରତେ
ଯେକା ଆସିଥିଲେ ଯେ ନାରଦ ତପୋବନ୍ତେ ।୨୧୩
ଯେହା ଶୁଣି ବ୍ରହ୍ମା ହେମବନ୍ତ ମୁଖ ଚାହିଂ
ଶୁଣ ହେମବନ୍ତ ଚିତ୍ତ ସ୍ଥିରକରି ତୁହି ।୨୧୪
ଯେ କଥାକୁ ଶୋଚନା ତୁ ନ କର ମନେଣ
ଯେ କଥାମାନ ସବୁ ନାରଂଦକ ଭିଆଣ ।୨୧୫
ଦେଖୁଣ ଘର ବିଧାନ ଯେତେକ ଅଛଇ
ସକଳ ଦେବତାମାନେ ଆମ୍ଭେ ଥିଲୁ ଦେଇ ।୨୧୬
ପ୍ରବୋଧ ବଚନ କହି ବ୍ରହ୍ମା ଚଳିଗଲେ
ଆପଣା ଭୁବନେ ଯାଇଂ ପ୍ରବେଶ ହୋଇଲେ ।୨୧୭
ଯେଥୁ ଅନନ୍ତରେ ତହିଂ ଗଲା କେତେଦିନ
ଈଶ୍ୱରେ ବିଜେକଲେ ମେରୁ ସେ ଆସ୍ଥାନ ।୨୧୮
ସକଳ ଦେବତାମାନେ ମେଳିହେଲେ ତହିଂରେଣ
ହରଂକୁ ଦେଖି ଉଠିଲେ ସର୍ବ ଦେବତାଗଣ ।୨୧୯
ମାନନା କରି ବସାଇଲେ ମେରୁସଭାର ମଧ୍ୟେଣ ।୨୨୦
ସଭାରେ ଯେ ପଡ଼ିଲା ଅନେକ ବିଷୟମାନ
ପଶ୍ଚାନ୍ତେ ଈଶ୍ୱରେ ଯେ କହିଲେ ବଚନ ।୨୨୧
ଯେକମନେ ଶୁଣ ଆହେ ସକଳ ଦେବଗଣେ
ଆମ୍ଭେ ତୁମ୍ଭଠାକୁ ଆସିଲୁ ଯେବଣ କାରଣେ ।୨୨୨
ହେମବନ୍ତ ପୁରକୁ ସମସ୍ତେ କର ହୋ ଗବନ
ବିଭାର ଯେ ଦିନ ବାର ଘେନିଆସ ପୁଣ ।୨୨୩
ଯେହା ଶୁଣି ସର୍ବ ଦେବଗଣେ ବିଚାରିଲେ
ବିଚାର କରିଣ ତହୁଂ ବ୍ରହ୍ମାଂକୁ ବୋଇଲେ ।୨୨୪
ଆହୋ ବ୍ରହ୍ମାଯେ ଚଳିଯାଅ ହୋ ବହନ
ହେମବନ୍ତ ପୁରୁ ଯାଇ ବିଭାଲଗ୍ନ ଆଣ ।୨୨୫
ମକର ଯାଇଣ କୁମ୍ଭ ହୋଇଲା ପ୍ରବେଶ
ବେଗେ ଯାଇ ତୁମ୍ଭେ ବିଭାଲଗ୍ନ ଘେନିଆସ ।୨୨୬
ସର୍ବ ଦେବଗଣେ ଆମ୍ଭେ ମେଳିହୋଇ ଯିବା
ଚନ୍ଦ୍ରଶେଖରଂକୁ ଯାଇ ବିଭା କରାଇବା ।୨୨୭
ଦେବଗଣଂକ ବଚନେ ବ୍ରହ୍ମା ଚଳିଗଲେ
ହେମବନ୍ତ ପୁରେ ଯାଇ ପ୍ରବେଶ ହୋଇଲେ ।୨୨୮
ହେମବନ୍ତ ରାଜାକଇଂ କହନ୍ତି ବଚନ
ମୋତେ ପଠିଆଇଲେ ସକଳ ଦେବଗଣ ।୨୨୯
ବିଭାର ଯେ ଲଗ୍ନଦିନ ଦିଅ ତୁମ୍ଭେ ମୋତେ
ମେରୁ ଉପରେ ସଭା କରି ବସିଅଛନ୍ତି ସମସ୍ତେ ।୨୩୦
ଯେହା ଶୁଣି ହେମବନ୍ତ ହରଷ ହୋଇଲେ
ଦଇବଗ୍ୟଂକୁ ଡକାଇ ସେ ଲଗ୍ନ ବୁଝାଇଲେ ।୨୩୧
କୁମ୍ଭ ଚଉବିଂଶ ଦିନେ ବଡ଼ ଶୁଭ ହୋଇ
ତିଥିବାର ନକ୍ଷତ୍ର ସର୍ବ ଶୁଭ ଯେ ଅଟଇ ।୨୩୨
ସେହିଦିନ ପାର୍ବତୀଂକି ବିଭା କର ତୁମ୍ଭେ
ତିଥିବାର କୋଷ୍ଠୀଗୋଟି ବୁଝି କହିଲୁ ଯେ ଆମ୍ଭେ ।୨୩୩
ବୁଝି ଲଗ୍ନଦିନ ବ୍ରହ୍ମାତହୁଂ ଚଳିଗଲେ
ମେରୁସଭା ତଳେ ଯାଇଂ ପ୍ରବେଶ ହୋଇଲେ ।୨୩୪
ସମସ୍ତ ଚରିତମାନ କହିଲେ ସଭାରେ
ଆସ୍ଥାନ ମଉଳିଲା ଉଠିଗଲେ ଯେଝାପୁରେ ।୨୩୫
ସମସ୍ତ ଦେବଗଣମାନେ ତୁମ୍ଭେ ଯିବ
ଆମ୍ଭର ଆଜଠାରୁ ସଦିଭାବ ହେବ ।୨୩୬

ଯେଥୁ ଅନନ୍ତରେ ତହୁଂ କେତେଦିନ ଗଲା
ବିଭାର ବିଧାନମାନ ହେମବନ୍ତ କଲା ।୨୩୭
ନାନାରୂପେ ପୁରମାନ କଲାକ ମଣ୍ଡଣି
ମେରୁସଭାକୁ ଗଲା ଗୁଆ ଅକ୍ଷତ ଘେନି ।୨୩୮
ଗୁଆ ଅକ୍ଷତ ଦିଲେ ସର୍ବ ଦେବତାଂକୁ
ବୋଇଲେ ହରଂକୁ ଘେନିଯିବ ମୋହୋର ପୁରକୁ ।୨୩୯
ସଭାସ୍ଥ ଦେବତାଗଣମାନେ ତୁମ୍ଭେ ସବୁ ଯିବ
ହର ପାର୍ବତୀଂକି ତୁମ୍ଭେ ବିଭା କରାଇବ ।୨୪୦
ଯେତେ କହି ହେମବନ୍ତ ଗଲା ନିଜ ପୁରେ
ସମସ୍ତ ଦେବତାଯେ କଇଳାସ ପୁରକଇଂ ଗଲେ ।୨୪୧
କଇଳାସପୁରେ ଯାଇଂ ହୋଇଲେ ପ୍ରବେଶ
ଶ୍ରୀହରି ଚରଣ ସେବଇ କବି ସାରୋଳ ଦାସ ।୨୪୨
ଯେଥୁ ଅନନ୍ତରେ ଶୁଣ ବିଳଂକ ରାଜନ
ମହାଦେବଂକର ବରବେଶର ବିଧାନ ।୨୪୩
ବିଭୂତି ଲେପନ ହେଲେ ସର୍ବାଙ୍ଗରେ
କୁଳିକ କର୍କୋଟକ ଦୁଇନାଗ ବାନ୍ଧିଲେ ଶିରରେ ।୨୪୪
ମହାପଦ୍ମ ନାଗକୁ ସେ ପଇତା କରିଣ
କାନ୍ଧେ ପଇତା ସଜାଡ଼ି ଦେଉଛନ୍ତି ଦେବଗଣ ।୨୪୫
ବିରସ ନାଗକୁ ସେ କଟିରେ ଡୋର କଲେ
ଶ୍ୱେତ ନାଗକୁ ସେ କଉପୀନ କରିଣ ପିନ୍ଧିଲେ ।୨୪୬
ପଦ୍ମ ନାଗ ତକ୍ଷକକୁ ସେ ଲମ୍ବାଇ ଗଳାରେ
ଭୋଳେ ସେ ବିଜେକଲେ ଯାଇ ବୃଷଭ ଉପରେ ।୨୪୭
ତ୍ରିଶୂଳ ଗୋଟିଯେକ ସେ ଘେନିଣ ହାଥରେ
ନବଲକ୍ଷ ଡମ୍ବରୁ ଯେ ବାଜଇ ଶୂନ୍ୟରେ ।୨୪୮
ଦେବଗଣଂକୁ ଘେନିଣ ସଙ୍ଗରେ ଚଳିଲେ
ହେମବନ୍ତ ପୁରେ ଯାଇଂ ପ୍ରବେଶ ହୋଇଲେ ।୨୪୯
ଯେସନେକ ସମୟେ ତହିଂ ନାରଦ ମୁନିବର
ତୁମ୍ବୁରୁ ବଜାଇଣ ଯେ ଯାଉଥିଲେ ଶୂନ୍ୟର ।୨୫୦
ହେମବନ୍ତପୁରେ ଯେ ଗହଳ ବାଣୀ ଶୁଣି
ତୁମ୍ବୁରୁ ନ ବଜାଇ ଶୂନ୍ୟରେ ରହିଲେ ମୁନିମଣି ।୨୫୧
ହେମବନ୍ତ ପୁରେ ବିଭା ଧାନେଣ ଜାଣିଲେ
ଶୂନ୍ୟ ତେଜ୍ୟାକରି ଆସି ତା ପୁରେ ମିଳିଲେ ।୨୫୨
ଦେଖିଲେ ସଭାରେ ବସିଛନ୍ତି ଦେବଗଣ
ବରବେଶେ ବସିଛନ୍ତି ତହିଂ ହର ପୁଣ ।୨୫୩

ମନେ ବିଚାରିଲେ ଯେବେ ଉପାଯେ କରିବା
ହରଂକୁ ଯେ ସଭାରେ ଲଜ୍ଜା କରାଇବା ।୨୫୪
ଯେତେ ବିଚାରି ନାରଦେ ଭିତରକୁ ଗଲେ
ହେମବନ୍ତ ପୁରେ ଯାଇଂ ପ୍ରବେଶ ହୋଇଲେ ।୨୫୫
ନାରଦଂକୁ ହେମବନ୍ତୀ ଯହୁଂ ସେ ଦେଖିଲା
ଦଣ୍ଡବତ କରି କରଯୋଡ଼ି ଉଭାହେଲା ।୨୫୬
ହେମବନ୍ତୀ ଆଗରେ କହନ୍ତି ମୁନିବର
ଆଜ ତ ବଡ଼ ଉତ୍ସବ ଯେ ତୋହୋର ପୁର ।୨୫୭
କି ନିମନ୍ତେ ଦେବଗଣମାନେ ଆସିଛନ୍ତି
ଯେଥିର ଚରିତ ମୋତେ କହ ହେମବନ୍ତୀ ।୨୫୮
ଭୋ ଦେବ ନାରଦ ଶୁଣ ବଚନ ମୋହୋରି
ଈଶ୍ୱରଂକୁ ବିଭାଦେବି ମୋହୋର କୁମାରୀ ।୨୫୯
ଯେହା ଶୁଣି ନାରଦ ଯେ ବଚନ କହନ୍ତି
ଆଣନି ଦୋହିତା ତୋର କେଡ଼େ ରୂପବନ୍ତୀ ।୨୬୦
ଯେହା ଶୁଣି ହେମବନ୍ତୀ ଭିତରକୁ ଗଲା
ପାର୍ବତୀର ହାଥ ଧରି ଘେନିଣ ଅଇଲା ।୨୬୧
ନାରଦଂକ ଆଗରେ ଆଣି କଲା ଉଭା
ନିକଳଂକ ଚନ୍ଦ୍ର ଜାଣି ପାର୍ବତୀଂକ ଶୋଭା ।୨୬୨
ଦେଖିଣ ନାରଦେ ଯେ ହରଷ ହୋଇଲେ
ବାହାରେ ବିରସ ହୋଇ ବଚନ ବୋଇଲେ ।୨୬୩
ଶୁଣ ଆଗୋ ହେମବନ୍ତୀ ଶୁଣ ମୋ ଉତ୍ତର
ପାର୍ବତୀଂକି ହରଂକୁ କିମ୍ପାଇ କଲୁ ବର ।୨୬୪
ଯେତେ ସୁନ୍ଦର ଝିଅକୁ ଅଖଡ଼େ ନାଶ କଲୁ
ଜନ୍ମକାଳେ ବିଷ ଦେଇ କିମ୍ପେ ନ ମାଇଲୁ ।୨୬୫
ନୋହିଲେ ପକାଇ ଦେଇଥାଆନ୍ତୁ ଜଳରେ
ବାଳକାଳେ ଗୋଡ଼ କିମ୍ପେ ନ ଦିଲୁ ଗଳାରେ ।୨୬୬
ସ୍ଥିର କରି ଚାହାଂ ନିଜେ ହରକୁ ଯେ ତହିଂ
କେମନ୍ତେ ବରବେଶରେ ବସିଛନ୍ତି ସେହି ।୨୬୭
ଦେଖ ଶିରେ ବାନ୍ଧିଛନ୍ତି ବେନିଗୋଟି ଭୁଜଙ୍ଗ
ବିଭୂତି ଲେପନ ଯେ ହୋଇଛି ସର୍ବାଙ୍ଗ ।୨୬୮
ଅହି ଗୋଟାଯେ କାନ୍ଧରେ ପଇତା ପକାଇ
ଗଳାରେ ଲମ୍ବାଇଛି ସର୍ପ ଗୋଟା ଦୁଇ ।୨୬୯
କଟିରେ ଭିଡ଼ିଛି ଯୋଡାଯେକ ଅହି ପୁଣି
ପିନ୍ଧିଅଛି ସର୍ପେକ ଯେ କରିଣ କଉପୁନୀ ।୨୭୦

ତ୍ରିଶୂଳ ଗୋଟାଏକ ଧରିଛି ହାଥର
ଯେ ତୋର ଝିଅକୁ କିମ୍ପେ ଯେହାକୁ କଲୁ ବର ।୧୭୧
ଦେଖୁଦେଖୁ ଝିଅକୁ ଜଳରେ ଝାସିଲୁ
ଜନମ କାଳରୁ କିମ୍ପେ ଯେହାକୁ ନ ମାଇଲୁ ।୧୭୨
ଯେବେ କେମନ୍ତ କରି ଦେହ ଧରିବୁ ଯେ ତୁହି
ଯେ ସୁନ୍ଦର ଝିଅ ହରକୁ ପୁଣ ଦେଇ ।୧୭୩
ଦେଖ ସର୍ପ ଆଭରଣ ହର ହୋଇଛନ୍ତି
ଯେ ବିଭା ଉତ୍ସବେ ଯେହାଂକର ଯେସନକ ରୀତି ।୧୭୪
ଯେବଣ ଜନମାନେ ବସ୍ତ୍ରହୀନେ ଥାନ୍ତି
ଯାତ୍ରା ବିଭାକାଳେ ସେ ପଡ଼ିଶାଘର ଯାନ୍ତି ।୧୭୫
ସାଇ ପଡ଼ିଶାଘରୁ ଯେ ବସ୍ତ୍ରେକ ମାଗିଣ
ଆଣି ଯାତ୍ରା ସାରିଣ ଦିଅନ୍ତି ଫେରାଇଣ ।୧୭୬
ଯେଣୁ ଯେହାର କୁଳ ଗୋତ୍ର ନାହିଁ ପୁଣ
ବସ୍ତ୍ର ଆଭରଣ ସେ ପାଇବ କାହିଁକାଣ ।୧୭୭
ଦେଖ ଯେଉଂ ସର୍ପମାନେ ଫୁ ଫୁ କରୁଛନ୍ତି
ବିଭାକାଳେ ନ ପୁଣ ସେ ଝିଅକୁ ଦଂସନ୍ତି ।୧୭୮
ଯେତେ କହି ମୁନିବର ମଉନେ ରହିଲେ
ସ୍ଥିର କରି ହେମବନ୍ତୀ ହରଂକୁ ଚାହିଂଲେ ।୧୭୯
ଦେଖିଲେ ସର୍ପମାନେ ଅଛନ୍ତି ଦେହର
ଫୁ ଫୁ କାର କରି ସେହୁ ଗର୍ଜନ୍ତି ଗରୁତର ।୧୮୦
ତାହା ଦେଖିଣ ହେମବନ୍ତୀ ଝାମ ଯାଇ
ପଡ଼ିଲେକ ଭୂମିରେ ଶରୀରେ ଗ୍ୟାନ ନାହିଂ ।୧୮୧
ଦାସୀମାନେ ତୋଳିଣ ମୁଖେ ଛିଞ୍ଚିଲେକ ପାଣି
ଅସାଷମ ହୋଇ ହେମବନ୍ତୀ ରୋଦନ କରଇ ପୁଣି ।୧୮୨
ହେମବନ୍ତୀ ଅସାଷମ ହେମବନ୍ତ ଶୁଣିଲେ
ସଭାରୁ ଆସି ଭିତର ପୁରରେ ମିଳିଲେ ।୧୮୩
ସାଷାମ ହୋଇଣ ଯେ ବସିଲେ ହେମବନ୍ତୀ
କାନ୍ତ ମୁଖ ଚାହିଂଣ ସେ ରୋଦନ କରନ୍ତି ।୧୮୪
ହେମବନ୍ତ ତହିଂ ଯେ ଅନେକ କ୍ରୋଧ କଲେ
ହେମବନ୍ତୀ କର ଧରି ତାଂକୁ ବହୁତ ପ୍ରବୋଧିଲେ ।୧୮୫
ହେମବନ୍ତୀକି ପ୍ରବୋଧ କରନ୍ତି ହେମବନ୍ତ
ଦେବସଭାକୁ ବିଜୟେ କଲେକ ତୁରିତ ।୧୮୬
ଯେଥୁ ଅନନ୍ତରେ ଶୁଣ ବିଳଂକ ନୃପସାଇଂ
ହେମବନ୍ତୀ କହେ ନାରଦଂକର ଧରି ପାଦ ଦୁଇ ।୧୮୭
ଭୋ ମୁନି ଶୁଣ ତୁମ୍ଭେ ମୋହୋର ବଚନ
ଯେମନ୍ତେ ରହଇ ମୋହୋର ଦୋହିତାର ଜୀବନ ।୧୮୮
ସେ ଉପାୟେ ତୁମ୍ଭେ କରିଦିଅ ମୁନି
ତୁମ୍ଭ ପାଦତଳେ ମୁଂ କରୁଛି ଦଇନି ।୧୮୯
ଯେହା ଶୁଣି ନାରଦେ କହନ୍ତି ଉତ୍ତର
ହେମବନ୍ତୀ ମନେ ଚିନ୍ତା ନ କର ତୋହୋର ।୧୯୦
ଆମ୍ଭେ ମୁନିମାନେ ଜାଣୁ ସକଳ ଯେ କଥା
ପଚାରିଲେ କହୁଁ ଆମ୍ଭେ ତିନିପୁରର ବାରତା ।୧୯୧
ହେମବନ୍ତୀ ପଚାରିଲୁ ଆମ୍ଭନ୍ତ ତୁହି ଯେବେ
ସର୍ପମାନନ୍ତ ଉପାୟେ କରିଦେବା ଆମ୍ଭେ ।୧୯୨
ଆମ୍ଭେ ଯାହା ଦେବା ତୁମ୍ଭେ ଝିଅ ହାଥେ ଥିବ ଦେଇ
ଯେ କଡ଼ି ସଙ୍ଗେ ଥିଲେ ଫେରୁ ନ ଟେକିବେ ଅହି ।୧୯୩
ଯେତେବେଳେ ଝିଅ ଉପରକୁ ଯିବ
ଝିଅର ବାମହାଥେ ଯେ କଡ଼ିଖଣ୍ଡି ଦେବ ।୧୯୪
ଯେତେ କହି ମୁନି କଳି ଧୋକଡ଼ି ଫେଇଲେ
ଯେକ କଡ଼ି ଖଣ୍ଡିଯେ ଯେ ହାଥରେ ଘେନିଲେ ।୧୯୫
ବୋଇଲେ ଗୋ ହେମବନ୍ତୀ ଯେ ଖଣ୍ଡି ରଖିଥିବୁ
ଝିଅ ବେଦୀକି ଗଲାବେଳେ ତାହାର ହାଥେ ଦେବୁ ।୧୯୬
ହେମବନ୍ତୀ ହାଥେ କଡ଼ି ଦେଇ ମୁନିବର
ତିଆରି କହିଣ ତହୁଁ ହୋଇଲେ ବାହାର ।୧୯୭
ଦେବସଭା ମଧ୍ୟେ ଯାଇ ହୋଇଲେ ପ୍ରବେଶ
ଲକ୍ଷ୍ମୀନାରାୟଣ ଚରଣେ ଶରଣ ମୁହିଁ ସାରୋଳ ଦାସ ।୧୯୮
ଯେଥୁ ଅନନ୍ତରେ ବିଳଂକ ନୃପତି
ଯେ ବିଭା ସଭାରେ ଲଜ୍ଜା ଯେ ପାଇଲେ ପଶୁପତି ।୧୯୯
ଯହୁଁ ବିଭାଲଗ୍ନ ହୋଇଲାକ ଆସି
ସକଳ ମୁନିମାନେ ପ୍ରବେଶିଲେ ବହୁତ ପ୍ରଶଂସି ।୩୦୦
ପ୍ରଥମେଣ ଆସି ମିଳିଲେ ବେଦବ୍ୟାସେ
ଷାଠିଯେସହସ୍ର ଶିଷ୍ୟ ଛନ୍ତି ତାଙ୍କ ପାଶେ ।୩୦୧
ପାଞ୍ଚସହସ୍ର ଶିଷ୍ୟ ଘେନି ଚଳିଲେ ବିଶ୍ୱାମିତ୍ରେ
ଲକ୍ଷେ ଶିଷ୍ୟ ଘେନି ବିଜେକଲେ ଧର୍ମସୁତେ ।୩୦୨
ଲକ୍ଷେ ଶିଷ୍ୟ ଘେନି ଅଇଲେ ବିଭାଣ୍ଡେକ
ବେନିସହସ୍ର ଶିଷ୍ୟ ଘେନି ଅଇଲେ ବାଳ୍ମିକ ।୩୦୩
ଲକ୍ଷେକ ଶିଷ୍ୟ ଘେନି ଅଇଲେ ଲୋମଶ ଗାଙ୍ଗବେ
ପାଞ୍ଚଲକ୍ଷ ଶିଷ୍ୟ ଘେନି ବଶିଷ୍ଠ ବାମଦେବେ ।୩୦୪

ଅଗସ୍ତିଙ୍କ ତୁଲେଣ ଯେ ଲକ୍ଷେକ ବାଳଋଷି
ହେମବନ୍ତ ପୁରେ ଯେ ମିଳିଲେକ ଆସି ।୩୦୫
ବାଲ୍ମୀକି ସୁମନ୍ତେକ ଗାଗ୍ରେବ ଉତ୍ତମା
ଶିଷ୍ୟଗଣନ୍ତ ଘେନି ମିଳିଲେ ମହାତମା ।୩୦୬
ଗଉତମ ଭାରଦ୍ୱାଦଶ ଶିଷ୍ୟନ୍ତ ଘେନି ସଙ୍ଗତର
ଯେମାନେ ବିଜେକଲେ ହେମବନ୍ତ ପୁର ।୩୦୭
ପଉଲସ୍ତି ପାରେଶ୍ୱର ଆବର ଶାୟଂତନୁ
ଜୟଦେବ ଅଇଲେ ପଉଲସ୍ତିର ତନୁ ।୩୦୮
ଯେହାନ୍ତ ଆଦିକରି ଅନେକ ମହରଷି
ଈଶ୍ୱରଙ୍କ ବିଭାକାଳେ ମିଳିଲେକ ଆସି ।୩୦୯
ଛାୟା ମଣ୍ଡୋପକୁ ସର୍ବ ଦେବେ ବିଜେକଲେ
ବେଦୀ ଚାରିପାଖେ ମୁନିମାନେ ଯେ ବସିଲେ ।୩୧୦
ଈଶ୍ୱରେ ଯେ ବେଦୀପରେ ବସିଲେକ ଯାଇଂ
ଦିଜଗଣମାନେ ବାକ୍ୟ ଉଚ୍ଚାରିଲେ ତହିଂ ।୩୧୧
ଲବଣଚାମେରୀ ସାରି ଗଲେକ ପାର୍ବତୀ
ବେଦୀର ଉପରେ ବସିଅଛନ୍ତି ପଶୁପତି ।୩୧୨
ହେମବନ୍ତୀ ପୁଣି ପାର୍ବତୀଙ୍କି ଘେନିଣ ଅଇଲେ
ବେଦୀ ତଳେ କଟମ୍ଭ ମାଡ଼ିଣ ବସିଲେ ।୩୧୩
ପାର୍ବତୀଙ୍କ ବାମହାଥେ ଜଡ଼ି ଖଣ୍ଡିଯେ ଅଛଇ
ଜଡ଼ିଗୁଣ ଆନ ତାହା କେହି ନ ଜାଣଇ ।୩୧୪
ଈଶ୍ୱରଙ୍କ କରେ ପାର୍ବତୀଙ୍କ କର ଦେଇ
ବିଦୁଜନମାନେ ଯେ ବାକ୍ୟକଲେ ତହିଂ ।୩୧୫
ବେନିଜନଙ୍କର କର ବନ୍ଧନ ଯେ କଲେ
ଅହିଓ ଯୁବତୀମାନେ ହୁଳହୁଳି ଦିଲେ ।୩୧୬
ପୁଣ ବେନିଜନଙ୍କର କର ଫିଟାଇଣ
ପାର୍ବତୀଙ୍କ କର ତହିଁ ଧରିଣ ଈଶାନ୍ୟ ।୩୧୭
କର ଧରି ପାର୍ବତୀଙ୍କି ବୁଲାଇଣ ନେଲେ
ଈଶ୍ୱରଙ୍କ ଡାହାଣ ଭାଗରେ ବସାଇଲେ ।୩୧୮
ଯେଥୁ ଅନନ୍ତରେ ତୁ ହୋ ଶୁଣ ଦିବ୍ୟରସ
ଅକ୍ଷୟ ସଭାରେ ଉପୁଜିବ ବଡ଼ ହାସ୍ୟ ।୩୧୯
ପାର୍ବତୀ ଯହୁଁ ହରଙ୍କ ଡାହାଣେ ବସିଲେ
ସଧୀରେ ସଧୀରେ ତହୁଁ ପବନ ବହିଲେ ।୩୨୦
ମଉଷଧି ଗନ୍ଧ ତହିଁ ସର୍ପମାନେ ପାଇ
ରହି ନୁଆରନ୍ତି ତହିଁ ପୁଣ ସୁସ୍ଥ ହୋଇ ।୩୨୧
ସଧୀରେ ସଧୀରେ ହର ଅଙ୍ଗୁ ଫିଟିଗଲେ
ଫିଟିଣ ସର୍ପମାନେ ଯେଣେ ତେଣେ ପଶିଲେ ।୩୨୨
ଯହୁଁ ସର୍ପମାନେ ପଳାଇଲେ ଖରତରେ
ତହୁଁ ଉଲଗ୍ନ ହୋଇ ହର ବେଦୀରେ ବସିଲେ ।୩୨୩
ହରଂକ ଡାହାଣ ଭାଗେ ପାର୍ବତୀ ଅଛନ୍ତି
ଯେହି ସମୟରେ ହେମବନ୍ତୀ ଯେ ଆସନ୍ତି ।୩୨୪
ସଖୀଗଣମାନନ୍ତ ସେ ଘେନି ସଙ୍ଗତେଣ
ସପ୍ତ ଦୀପାବଳୀମାନ ଘନିଣ କରେଣ ।୩୨୫
ଗହ ଗହ ଶବଦେ ଯେ ହୁଳହୁଳି ଦେଇ
ଆନନ୍ଦେ ଆସନ୍ତି ବନ୍ଦାପନା କରିବାର ପାଇଁ ।୩୨୬
ନାରଦେ ହସି ନାଚନ୍ତି ବୀଣା ଧରି କର
ଦୂରୁ ଦେଖିଲେ ଉଲଗ୍ନ ହୋଇ ହର ବସିଛନ୍ତି ସେ
ସଭାର ।୩୨୭
ଦେବଗଣମାନେ ଯେ ହସନ୍ତି ହରଙ୍କୁ ଚାହିଁ
ସଂକୁଚେ ବସିଲେ ହର ବହୁତ ଲଜ୍ଜା ପାଇ ।୩୨୮
କାହାର ଦେହେ ବୁଦ୍ଧି ନ ରହଇ ହସରେ
ଯେକୁଂ ଯେକେ ଧରାଧରି ହୁଅନ୍ତି ସଭାରେ ।୩୨୯
ଦେବଗଣ ଶିବଗଣ ମୁନିଗଣ ତହିଁ
ସମସ୍ତେ ହସନ୍ତି ଯେ କରତାଳି ଦେଇ ।୩୩୦
ଯେହାଙ୍କର ହସ ଦେଖି ପୁଣି ତତପର
ଲୋଚି ହୋଇ ବସିଲେ ବେଦୀର ଉପର ।୩୩୧
ତାହା ଦେଖି ହେମବନ୍ତୀ ଲାଜେ ପଳାଇଲେ
ସଖୀମାନେ କରତାଳି ଦେଇଣ ହସିଲେ ।୩୩୨
ବୋଇଲେ ସଖୀଯେ ଗୋ ବଡ଼ ବିପରୀତ
ତିନିପୁରେ ଯେ ଭବିଷ୍ୟ ଦେଖିଲା ନାହିଁ ତ ।୩୩୩
ଝିଅ କରମରେ ତ ଯେହି ଦଶା ଥିଲା
ଯେଡ଼େ ହୀନିମାନ କରି ବିଧାତା ଲେଖିଲା ।୩୩୪
ବହୁ ବିରସ ତହୁଁ ହୁଅନ୍ତି ହେମବନ୍ତୀ
ହେମବନ୍ତୀ କର ଧରି ସଖୀମାନେ ହସନ୍ତି ।୩୩୫
ବଡ଼ ଲଜ୍ଜା ହେମବନ୍ତ ସଭାରେଣ ପାଇ
ଭିତର ପୁରକୁ ସେ ଗଲେ ବେଗ ହୋଇ ।୩୩୬
ଚାଙ୍ଗୁଡ଼ା ଘରୁ ବସ୍ତ୍ର ଅଳଂକାର ଘେନିଲେ
ବେଦୀର ତଳେ ଆସି ପ୍ରବେଶ ହୋଇଲେ ।୩୩୭
ବସ୍ତ୍ର ଅଳଂକାର ଥୋଇ ବୋଇଲେ ବଚନ

ବେଗକରି ପିନ୍ଧ ଯେହି ବସ୍ତ୍ର ଅଳଂକାରମାନ ।୩୩୮
ତତକ୍ଷଣେ ଈଶ୍ୱରେ ଯେ ବେଦୀରୁ ଉଠିଲେ
ଲାଜ ତେଜି ବସ୍ତ୍ର ଅଳଂକାରମାନ ସେ ପିନ୍ଧିଲେ ।୩୩୯
ବସ୍ତ୍ର ଅଳଂକାରମାନ ପିନ୍ଧିଲେ ଦେବ ହର
ବସିଲେ ଯାଇ ପାର୍ବତୀଙ୍କ ଡାହାଣ ଭାଗର ।୩୪୦
ବେଦଧ୍ୱନି କଲେ ବିପ୍ରେ ହସ ତେଜ୍ୟାକରି
ଯେସନେକେ ପର୍ବକାଳେ ଗର୍ଜଇ ସିନ୍ଧୁ ବାରି ।୩୪୧
ବେଦଧ୍ୱନି ଶବଦ ଶୁଣିଣ ହେମବନ୍ତୀ
ସଖୀଗଣମାନନ୍ତ ଘେନି ସେ ବନ୍ଦାଇ ଆସନ୍ତି ।୩୪୨
ଗହ ଗହ ହୁଳହୁଳି ସର୍ବ ବାମା ଦେଇ
ସପ୍ତ ଦୀପାବଳୀ ଘେନି ଅଇଲେ ଚଳାଇ ।୩୪୩
ଆସିଣ ମିଳିଲେ ସେ ବେଦୀର ଉପର
ବେଦୀପରେ ବସିଛନ୍ତି ପାର୍ବତୀ ଯେ ହର ।୩୪୪
ବିଭାର ବିଧାନମାନ ସରିଲାକ ଯହୁଁ
ହୁଳହୁଳି ଦେଇ ବନ୍ଦାପନା କଲେ ତହୁଁ ।୩୪୫
ବନ୍ଦାପନା କରି ହରପାର୍ବତୀଙ୍କି ନେଲେ
ଭିତର ପୁରେ ନେଇ ଯୁଅ ଖେଳାଇଲେ ।୩୪୬
ଯୁଅ ଖେଳମାନ ତହୁଁ ସରିଲାକ ଯହୁଁ
ବରକନ୍ୟା ଶୀତଳତୁଣ୍ଡି କଲେ ସେ ଯେ ତହୁଁ ।୩୪୭
ଯେହି ରହସ୍ୟରେ ଈଶ୍ୱରେ ବିଭାହୋଇ
ସେଦିନ ହେମବନ୍ତେ ହରପାର୍ବତୀ ଯେ ରହି ।୩୪୮
ସକଳ ଦେବତାମାନେ ଭୋଜନ ଯେ କଲେ
ଭୋଜନ କରିଣ ଆଞ୍ଚୋବନ ଯେ ସାରିଲେ ।୩୪୯
କର୍ପୂର ପାନ ବିଡ଼ିଆ ସମସ୍ତ ଯେ ପାଇ
ସନ୍ତୋଷ ହୋଇଲେ ଯେ ସର୍ବ ଦେବେ ତହିଁ ।୩୫୦
ଯେକା ମାତ୍ର ପବନ ଦେବତା ନ ଭୁଞ୍ଜିଲେ
ହେମବନ୍ତ ପୁରେ ସମସ୍ତ ଦେବତା ରହିଲେ ।୩୫୧
ଆର ଦିନ କନ୍ୟା ଘେନିଣ ସଙ୍ଗତର
ପ୍ରବେଶ ହୋଇଲେ ଆସି କପିଳାସ ପୁର ।୩୫୨
ଦେବଗଣମାନେ ଯେ ଯେଝା ପୁରେ ଗଲେ
କପିଳାସ ପୁରେ ହରପାର୍ବତୀ ରହିଲେ ।୩୫୩
ଯେକଦିନେ ପାର୍ବତୀ ବିଚାରନ୍ତି ବସି
ଯେମନ୍ତେ କାର୍ତ୍ତିକେଶ୍ୱର ମିଳିଲେକ ଆସି ।୩୫୪
ପୁଣି ଆସି ମିଳିଲେକ ଦେବ ଗଣେଶ୍ୱର
ତାହାନ୍ତ ଦେଖିଣ ଦେବୀ ହୋଇଲେ କାତର ।୩୫୫
ମନିଷରେ ସଂଜାତ ଅଟଇ କରଚାରି
ଗଜ ମୁଣ୍ଡ ଦେଖିଣ ପାର୍ବତୀ ଭୟେ କରି ।୩୫୬
ତାହାଙ୍କୁ ନ ଅନାଇଲେ ବାମଭାଗେ
କାର୍ତ୍ତିକେଶ୍ୱର ଉଭା ହୋଇଛନ୍ତି ଆଗେ ।୩୫୭
ଛଡ଼ଗୋଟି ମୁଣ୍ଡ ତାଙ୍କ ବାରଗୋଟି ଆଖି
ବଡ଼ ଭୟେ କଲେ ଯେ ପାର୍ବତୀ ତାଙ୍କୁ ଦେଖି ।୩୫୮
ବିଚାରିଲେ ଗଣେଶ ବାହାନ ମୂଷିକ ଅଟଇ
କାର୍ତ୍ତିକର ବାହାନ ଯେ ମୟୂର ଗୋଟି ହୋଇ ।୩୫୯
ମୂଷା ଧାନ ଚାଉଳ ତାହାରେ ଖାଇବ
ମୟୂର ବାଡ଼ିରେ ଫୁଲ ଫଳ ନ ରଖିବ ।୩୬୦
ଯେ ମୂଷିକ ଗୋଟି ଲୁଗା ଭିତରେଣ ପଶି
ଖଣ୍ଡି ଖଣ୍ଡି କରିଣ ଯେ କାଟିବ ନିଶେଷି ।୩୬୧
କି ବୁଦ୍ଧି କରିବି ମୋତେ ବୁଦ୍ଧି ଦିଶୁ ନାହିଁ
ଯେମନ୍ତ ସମୟେ ହର ମିଳିଲେକ ତହିଁ ।୩୬୨
ବୃଷଭ ଉପରେ ହର ଚଢ଼ିଣ ଆସନ୍ତି
ନବଲକ୍ଷ ଡମ୍ବରୁ ଯେ ଶୂନ୍ୟରେ ବାଜୁଛନ୍ତି ।୩୬୩
ବାଦ୍ୟ ଶୁଣି ପାର୍ବତୀ ଚାହିଁଲେ ସ୍ଥିରକରି
ଦେଖିଲେ ଆସୁଛନ୍ତି ଦେବ ତ୍ରିପୁରାରି ।୩୬୪
ପାଞ୍ଚଗୋଟା ମୁଣ୍ଡ ତାଙ୍କର ପନ୍ଦରଗୋଟା ଆଖି
ଆଖି ପିଛାଡ଼ି ନୁଆରନ୍ତି ପାର୍ବତୀ ଯେ ଦେଖି ।୩୬୫
ମନେ ବିଚାରିଲେ ମୁଁ କି ବୁଦ୍ଧି କରିବି
ଯେ ଭବିଷ୍ୟ ଦେଖି ଦେହ କେମନ୍ତେ ଧରିବି ।୩୬୬
ଯେତେ ବିଚାରି ତଳକୁ କଲେକ ବଦନ
ବେନି ନୟନରୁ ନୀର ବହଇ ଘନ ଘନ ।୩୬୭
ପାର୍ବତୀ ନୟନ ନୀରେ ଜଗତ ପୂରିଲା
ଦେବଗଣମାନନ୍ତ ବଡ଼ ଭୟ ଯେ ଲାଗିଲା ।୩୬୮
ଅଧାସ୍ୱର୍ଗ ପୂରେଣ ରହିଲେ ଦେବଗଣେ
ପାର୍ବତୀଙ୍କି ତୁଷ୍ଟି ସେ କରନ୍ତି ମଘବାନେ ।୩୬୯
ଜୟ ଜୟ ପାର୍ବତୀ ତୁ ହରର ଘରଣୀ
ଜୟ ଜୟ ପାର୍ବତୀ ଜଗତ ତାରେଣୀ ।୩୭୦
କପିଳାସ ଭୁବନ ଗୋ ଅଟଇ ତୋହୋରି
ଯେଥି ବିଜେକଲୁ ହେମବନ୍ତ ତେଜ୍ୟା କରି ।୩୭୧
ରୋଦନ ଜଳରେ ମାର୍ଗୋ ବୁଡୁଛି ସଂସାର

ଜୟ ଜୟ ପାର୍ବତୀ ଗୋ ସଂସାର ରକ୍ଷାକର ।୩୭୨
ତୋହୋରେଣ ଦେବେ ସ୍ୱର୍ଗେ ରକ୍ଷା ହେବେ ପୁଣି
ଜୟ ଜୟ ଦୁର୍ଗା ମାଗେ ଦୁର୍ଗତି ତାରେଣୀ ।୩୭୩
ଦେବେ ଅଗୋଚର ମାଗୋ ତୋହୋର ମହିମା
ମନୁଷ୍ୟ ଜନ୍ମରେ କେ ଜାଣିମ ତୋ ସୀମା ।୩୭୪
ତେଣୁ ତୁମ୍ଭନ୍ତ ମାଗୋ ପ୍ରାର୍ଥନା କରଇ
ନୟନୁ ଲୋତେକ ମାଗୋ ନ ପକାଅ ତୁହି ।୩୭୫
ଯେ ନୟନ ଜଳରେ ଯେ ସ୍ୱର୍ଗ ଆଚ୍ଛାଦିବ
ଦେବଲୋକ ନରଲୋକ କିଛି ନ ରହିବ ।୩୭୬
ତୁଷ୍ଟି ଶୁଣି ପାର୍ବତୀର ଯେ ତେରେଛେ ଚାହିଁଲେ
ପ୍ରଥମେ ଅଧାସ୍ୱର୍ଗରେ ଇନ୍ଦ୍ରଙ୍କୁ ଦେଖିଲେ ।୩୭୭
ସହସ୍ରନୟନ ଯେ ଇନ୍ଦ୍ରଙ୍କ ଦେହର
ତାହା ଦେଖି ପାର୍ବତୀ ଯେ ହୋଇଲେ କାତର ।୩୭୮
ପୁଣି ବ୍ରହ୍ମାଙ୍କ ଉପରେ ଦୃଷ୍ଟି ପଡ଼ିଲାକ ଯାଇ
ସ୍ଥିର କରି ପାର୍ବତୀ ଯେ ନିରେଖିଣ ଚାହିଁ ।୩୭୯
ଦେଖିଲେ ସେ ବ୍ରହ୍ମାଙ୍କର ଶିରେ ଚାରିମୁଣ୍ଡ
ଚାରିଦିଗ ଭାଗକୁ ହୋଇଛି ଚାରିତୁଣ୍ଡ ।୩୮୦
ଯେପରି ଚରିତମାନ ଦେଖି ପାର୍ବତୀ ବିଚାରିଲେ
ସ୍ୱର୍ଗରେ ତ ଯେ ଭବିଷ୍ୟ ଅଛଇ ବୋଇଲେ ।୩୮୧
କର୍ମକୁ ଆଦରି ଦେବୀ ହୋଇଲେକ ସ୍ଥିର
ଦୁଖ ସୁଖ ଆବୋରି ରହିଲେ କଇଳାସର ।୩୮୨
ଯେହି ପ୍ରକାରେଣ ହର ପାର୍ବତୀଂକ ବିଭା
ହର ପାର୍ବତୀଂକଠାରୁ ଆଉ ନାହିଂ ଶୋଭା ।୩୮୩
ଯେମନ୍ତ ହୋଇ ରାଜନ ବିଭାର ଚରିତ
ହର ଗଉରୀଂକ ବିଭା ଯେସନକ ସଂଜାତ ।୩୮୪
ଯେହା ଶୁଣି ବଇବସୁତ ମନୁ ଆନନ୍ଦ ହୋଇଲେ
ମୁନିଂକ ଚରଣେ ଗଡ଼ଘାଲିଣ ଶୁତିଲେ ।୩୮୫
ଭୋ ଅଗସ୍ତି ମୁନି ମୋତେ କଲ ଯେ କାରଣ
ତୁମ୍ଭ ମୁଖୁଂ ଶୁଣିଲି ହର ପାର୍ବତୀଂକ ବିଭା ପୁଣ ।୩୮୬
ଯେ ବିଭା ଚରିତ ଶୁଣି ମୋ ଶରୀର ଉଲ୍ଲାସ
ପଦ୍ମପାଦେ ଶରଣ ମୁଂ ଶୂଦ୍ରମୁନି ସାରୋଳା ଦାସ ।୩୮୭

✱✱

# ସଭାପର୍ବ

## ୩୪. ଜରାସନ୍ଧ ବୃତ୍ତାନ୍ତ

### ଶ୍ରୀକୃଷ୍ଣଙ୍କ ସହିତ ଭୀମାର୍ଜୁନଙ୍କର ମଗଧ ଦେଶେ ଗମନ

ମକର ମାସ ଶୁକଳପକ୍ଷ ପଞ୍ଚମୀ ଗୁରବାର
ରେବତୀ ନକ୍ଷତ୍ର ଭୋଗ୍ୟ ଅଟେ ସେ ଦିନର ।୧
ତଇତିଳ ନମେ କରଣ ସିଦ୍ଧି ନାମେ ଯୋଗ
ପଛିମ ଦିଗରେ ବିଜୟେ କରିଲେ ଶ୍ରୀରଙ୍ଗ ।୨
ଅଢ଼ାଇ ପ୍ରହର ଯେ ହୋଇଅଛି ବେଳ
ରୋହିଣୀ ଚନ୍ଦ୍ରକୁ ଭୋଗ୍ୟ ପଛିମହୁଂ ଅନକୂଳ ।୩
ଅମୃତାକ୍ଷ ନାମେ କାଳ ଉତ୍ତର ଦିଗେ ଥିତି
ବାମ ପାରୁଶରେ ଯୋଗ୍ନୀ ମହାମାୟା ମୂରତି ।୪
ତାରାବାର ନକ୍ଷତ୍ର ଯେ ଶୁଭଯୋଗ ଘେନି
ଗମିଲେ ପଛିମେ କୃଷ୍ଣ ଭୀମ ଫାଲଗୁନି ।୫
ପ୍ରଥମେ ଦିବସେ ଯେ ଚଳିଲେ ଦେବ ଜଗନ୍ନାଥେ
ଦୁତୀୟ ଦିବସେ ପ୍ରବେଶ ପଛିମ ସୋମନାଥେ ।୬
କାଶୀ କୁଣ୍ଡ ମଧ୍ୟେ ସ୍ନାହାନ ଦେବ ସାରି
ସୋମେଶ୍ୱର ଦେବତାନ୍ତ ବିନୟ ଭାବ କରି ।୭
ଜୟ ତୁ ବିଶ୍ୱନାଥ ଚନ୍ଦ୍ର ଯେ ମଉଳି
ପ୍ରସନ୍ନେ ବରାଦାତା ଜୟ ତୁ ଦେବ ଶୂଳୀ ।୮
ଅନ୍ଧକ ବିଦାରଣ ତ୍ରଇଲୋକ୍ୟ ଜନହିତେ
କାଳକୂଟ ବିଷ ବହିଲୁ ଦେବ ସଂସାର ନିମନ୍ତେ ।୯
ତ୍ରିପୁର ଧଂସନ ନାଥ ବ୍ରହ୍ମାଶିର ମୋଡୁ
ପତ୍ନୀର ନିମନ୍ତେ ଦକ୍ଷଯଗ୍ୟଂ ବିଧ୍ୱଂସନ କଲୁ ।୧୦
ଆପଣେ ଦୁଃଖ ପଡ଼ି ପରଲୋକଙ୍କ ଉଦ୍ଧରି
ଭଗତମଚ୍ଛଳ ନାଥ ଶରଣ ରକ୍ଷାକରି ।୧୧
ବହୁତ ସ୍ତୁତି ସେ କଲେ ଯେ ରୁଦ୍ର ଦେବତାଂକୁ
ଶତ ସହସ୍ରେ ପ୍ରଳମ୍ବିତ କଲେ ସଦାଶିବ ଦେବଂକୁ ।୧୨
ନାରାୟଣଂକ ବିନୟ ଦେଖିଣ ଦେବ ବିଶ୍ୱବାସୀ
ବୃଷଭ ଅରୋହିଣ ବିଜୟେ ଦେବ କାଶୀ ।୧୩
ଧବଳ ଶରୀର ପଞ୍ଚୁବଦନ ଯେ ଦେବ
ପଞ୍ଚଦଶ ନେତ୍ର ବିକାଶିତ ସଦାଶିବ ।୧୪
ଭୀମ ଅର୍ଜୁନକୁ ଦେଖି ହସିଲେ କପାଳୀ
ଜାରାର ଭୁବନକୁ ବିଜୟେ କଲୁ କି ବନମାଳୀ ।୧୫
କରପତ୍ର ଯୋଡିଣ ବୋଲନ୍ତି ନାରାୟଣ
ରାଜୁସି ଯାଗ କରିବେ ଯୁଝେଷ୍ଠି ଦେବ ରାଣ ।୧୬
ନାରଦେ କହିଲେ ଯାଇଂ ଯୁଝେଷ୍ଠି ଦେବଂକୁ
ଜରାସନ୍ଧ ବନ୍ଦୀ କରିଅଛି ରାଜାଗଣମାନଙ୍କୁ ।୧୭
ଭୀମ ଅର୍ଜୁନକଇଂ ଆଉର ଆଗ୍ୟାଂ ଦିଲେ ମୋତେ
ମଗଧ ଦେଶକୁ ଯାଉଅଛୁଂ ଜାରା ବଧର ନିମନ୍ତେ ।୧୮
ସଦାଶିବ ବୋଇଲେ ତାର ଜାଣଟି କି ମୃତୁଭେଦ
ଭୀମସେନେ ଅପହାର ହୋଇବ ଜରାସନ୍ଧ ।୧୯
ଜଗନ୍ନାଥ ଅର୍ଜୁନ ନ ପଶିବଟି ତୁମ୍ଭେ ଯୁଦ୍ଧେ
ଭୀମସେନକୁଇ ପେଷିବ ଜରାସନ୍ଧର ସନ୍ନିଧେ ।୨୦
ମହାବଳୀ ବିଭୂତି ଲେପିଲେ ଭୀମସେନ କାୟେ
ଯେ ବିଭୂତି ଲାଗିଥିଲେ ତୋତେ ନାହିଂଟି ଅପଚୟେ ।୨୧
ଜାରାର ମୃତ୍ୟୁରେ ତୋତେ କହିବଇଂ ମହାବଳ
ଆଦି ସଞ୍ଚାଉଂ ଜରାସନ୍ଧ ଅଟଇ ବେନିଫାଳ ।୨୨
ଖଡ଼ଗ ନ କାଟଇ ଶକତି ହୋଅଇ ଚୂର
ଜଳ ଅନଳେ ଜାରା ଯେ ନେହୋଇ ଅପହାର ।୨୩
ଯେହା ତଦନ୍ତ କରି ଭୀମସେନ ତୁ ଜାଣିଥିବୁ
ଦୁଇଫାଳ କରି ଜାରାକୁ ଚିରି ପକାଇବୁ ।୨୪
ତେବେବେଟି ବଧ ହାଦେ ହୋଇବ ଜରାସନ୍ଧ
ଭୀମକଇଂ କହିଲେ ପ୍ରଭୁ ସଦାନନ୍ଦ ।୨୫
ଭଲା ଯଗ୍ୟଂ ଗୋଟାଯେ କରିବେ ଯୁଝେଷ୍ଠି
ବାବୁ ଆମ୍ଭନ୍ତ ନିମନ୍ତିକରି ଆସିବୁଟି କିରୀଟୀ ।୨୬
କହିଣ ସଦାଶିବେ ଗଲେ ଅନ୍ତର୍ଦ୍ଧାନେ
ତହୁଂ ଚଳିଗଲେ ସ୍ୱାମୀ ନିରାକୁଳ ବନେ ।୨୭
ସେ ବନ ଜିଣିଗଲେ ଯୋଜନ ଦ୍ୱାଦଶ
ପଦ୍ମଦଳ ଦେଶେ ଯାଇଂ ହୋଇଲେ ପରବେଶ ।୨୮
ସେ ପଦ୍ମଦଳ କଟକେ ରାଜା ପଦ୍ମକେଶରୀ
ତାହାକଇଂ ଜରାସନ୍ଧ ନେଇଅଛି ବନ୍ଦୀ କରି ।୨୯
ସେ ଦେଶର ଜନ ପ୍ରଜା ହୋଉଛନ୍ତି ମହାକ୍ରୋଧୀ
ରାଜାର ଗୁଣ ସୁମରି ସମସ୍ତ ଜନେ କାନ୍ଦି ।୩୦
ଜଗନ୍ନାଥେ ପୁଛାକଲେ ଜନନ୍ତ ହକାରି
ଯେତେ ବଡ଼ ରାଜା ରାଜ୍ୟେ କ୍ରୋଧ କିମ୍ପେ କରି ।୩୧

ସେ ବୋଇଲେ ଆମ୍ଭ ରାଜାର ନାମ ଅଟେ ପଦ୍ମକେଶରୀ
ଜରାସନ୍ଧ ରାଜା ତାକୁ ନେଇଅଛି ଧରି ।୩୨
ଗୋବିନ୍ଦେ ଚାହିଁଲେ ଭୀମସେନର ବଦନ
ତୋହୋରେ ରକ୍ଷା ହୋଇବ ଯେ ସଂସାର କ୍ରୋଧମାନ ।୩୩
ଯେତେବୋଲି ଦେବ ସେ ରାଜ୍ୟ ଜିଣିଗଲେ
ମାନଭଙ୍ଗ ରାଜ୍ୟେ ଯାଇଂ ପ୍ରବେଶ ହୋଇଲେ ।୩୪
ମାନଅର୍ଜୁନ ବୋଲି ତହିଂର ଦଣ୍ଡଧାରୀ
ତାହାକଇଂ ଜରାସନ୍ଧ ନେଇଛି ବନ୍ଦୀକରି ।୩୫
ଅନେକ ରୋବନ୍ତି ଯେ ତହିଂର ପ୍ରଜାମାନେ
ରହିଣ ପୁଚ୍ଛାକଲେ ସେ କୃଷ୍ଣ ଫାଲଗୁନ୍ୟେ ।୩୬
ଯେଡ଼େ ବଡ଼ ରାଜ୍ୟେ ବଇକୁଳ କେବଣ ଅର୍ଥେ
ବୋଇଲେ ଆମ୍ଭ ରାଜାକଇଂ ବନ୍ଦୀ କରି ନେଇଛି ମଗଧ
ଦେଶ ନାଥେ । ୩୭
ଯେମନ୍ତେ ଜଗବନ୍ଧୁ ସେ ରାଜ୍ୟ ଜିଣିଗଲେ
ନିରସ୍ତକ ଦେଶେ ଯାଇଂ ପ୍ରବେଶ ହୋଇଲେ ।୩୮
ମାଧବସେନ ବୋଲି ତହିଂର ଚକ୍ରବର୍ତ୍ତୀ
ତାହାକଇଂ ଧରି ନେଇଅଛି ମଗଧ ଦେଶର ଆଧିପତି ।୩୯
ଅନେକ ବିକଳ ତହିଂ ହୋଉଅଛନ୍ତି ରାଜ୍ୟ ଲୋକେ
କୃଷ୍ଣକଇଂ ସମସ୍ୟା ଦେଇ ନୁଆରନ୍ତି ମହାଶୋକେ ।୪୦
ତାହାଂକ ବିକଳ ଦେଖି ମଧୁରିପୁ ପଚାରନ୍ତି
ଅତି କାକୁସ୍ଥ ବଚନେ ନାରାୟଣଂକୁ ବିନୋୟୀ ହୁଅନ୍ତି ।୪୧
ସେ ଦେଶ ଜିଣି ଦେବ ଗଳେକ ବହନ
ପ୍ରବେଶ ହୋଇଲେ ଯାଇଂ ହର ଉଦ୍ୟାନ ନାମେ ବନ ।୪୨
ତହିଂର ରାଜା ହୋୟେ ଭୀମସେନ ଚକ୍ରବ୍ରତୀ
ତାହାକୁ ଧରି ନେଇଅଛି ମଗଧ ଆଧିପତି ।୪୩
ଅନେକ ବିକଳ ତହିଂ ହୋଉଛନ୍ତି ନଗ୍ର ଲୋକେ
କେହି ସମାସ୍ୟା କରି ଯେ ନୁଆରନ୍ତି ଶୋକେ ।୪୪
ଆମ୍ଭର ରାଜାକଇଂ ଜରାସନ୍ଧ ନେଇଅଛି ଧରି
କାଲି ରାତ୍ରରେ ଯେ ପକାଇବ ଆହୁତିରେ ମାରି ।୪୫
ଗୋବିନ୍ଦେ ଚାହିଂଲେ ଯେ ତହିଂ ଭୀମସେନର ମୁଖ
ତୋହୋରେ ସେ ପାରଯିବ ଯେହାଂକର ଦୁଖ ।୪୬
ସାଧୁ ସାଧୁ ମାରୁତି ହୋ ଜୀବନ ତୋର ଧନି
କେଉଣ ପୁଣ୍ୟେଣ ଜାତ ତୋତେ କଲେଜ ଜନନୀ ।୪୭
ଭୀମସେନ ବୋଇଲା ଦେବ ସରିଲାକ ଦିନ
ପୂର୍ଣ୍ଣ ଆହୁତି କାଲି ରାତ୍ରେଣ ବିଦ୍ୟମାନ ।୪୮
ଯେଥକୁ ମଘଦେଶ ଅଛଇ କେତେ ଦୂର
ଲୋକେ ବୋଇଲେ ଅଛଇ ଯୋଜନ ପନ୍ଦର ।୪୯
ଭୀମସେନ ବୋଇଲା ଦେବ ନୋହିବାକ କିଛି କାର୍ଯ୍ୟ
ହସ୍ତିନା ପୁରକୁ ଚାଲ ଯିବା ବାହୁଡ଼ି ଦେବରାଜ ।୫୦
ଶୁଣିଣ ସାନନ୍ଦ ଯେ ଦେବ ଦାମୋଦର
ବିନତା ନନ୍ଦନଂକୁ ସୁମରିଲେ ଦେବ ଚକ୍ରଧର ।୫୧
ଖଗେଶ୍ୱର ରହିଥିଲା ରମ୍ୟେକ ନାମ ଦ୍ୱୀପେ
ତକ୍ଷଣେ ପ୍ରବେଶ ହୋଇଲା ଗୋବିନ୍ଦଂକ ସମୀପେ ।୫୨
ଗୋବିନ୍ଦେ ବୋଇଲେ ବାବୁ ପିଠିରେ ଘେନିମା ଆମ୍ଭଙ୍କୁ
ଯେହିକ୍ଷଣି ଚଳିଯାଅ ମଗଧ ଦେଶକୁ ।୫୩
ନାରାୟଣଂକ ବଚନେ ତିନିଂକି ଘେନିଣ ଆକାଶେ
ରାତ୍ର ଅର୍ଦ୍ଧମାନେ ଯାଇଂ ମିଳଇ ମଗଧ ଦେଶେ ।୫୪
ମେଳଛ ପର୍ବତ ତଳେ ସେ କାବେରୀ ନାମେ ନଦୀ
ସରସ୍ୱତୀ ତ୍ରିବେଣୀ ଈଶାନ୍ୟ ଭାଗେ ଭେଦି ।୫୫
ସେ ନଦୀର କୂଳେଣ ମଗଧ ପର୍ବତ
ରାତ୍ରକାଳେ ପ୍ରବେଶ ତହିଂ ହୋଇଲେ ବିନତାର ସୁତ ।୫୬
ଗରୁଡ଼ କହଇ ସ୍ୱାମୀ ଯେହି ସେ ମଗଧ ଦେଶ
ସେ ରାଜାର ଯଗ୍ୟଂଶାଳ ଯେଠାରୁ ଯୋଜନ ଦଶ ।୫୭
ଗୋବିନ୍ଦେ ବୋଇଲେ ତୁ ହୋ ଥାଅସି ଅନ୍ତର୍ଦ୍ଧାନେ
ରୟଣୀର ପ୍ରଭାତେ ବୁଝିବା ଆହୁତି ବିଧାନେ ।୫୮
ଭୀମ ଅର୍ଜୁନ ବିଜୟେ ଖଗେଶ୍ୱର ପିଠି
ନାରାୟଣେ ଧରିଲେ ଖୁପ ବ୍ରାହ୍ମଣ ରୂପ ଗୋଟି ।୫୯
ରୟଣୀ ପ୍ରଭାତ ଯହୁଂ ହୋଇଲା ସେହିଠାବେ
ପକ୍ଷୀରାଜ ପିଠିରୁ ଉତୁରିଲେ ବାସୁଦେବେ ।୬୦
କାବେରୀ ଗଙ୍ଗାରେ ସ୍ନାହାନ ସାରି ଦେବହରି
ପଥୁକୀ ବ୍ରାହ୍ମଣମାନନ୍ତ ଦେଖିଲେ ବାରତା ପଚାରି ।୬୧
ଆହୋ ମଗଧେଶ୍ୱର ରାଜ ବିଜେ କରିଅଛି କାହିଂ
ବ୍ରାହ୍ମଣେ ବୋଇଲେ ଯଗ୍ୟଂଶାଳେ ଅଛନ୍ତି ଆରୋହୀ ।୬୨
ଆଜ ରାତ୍ର ହୋଇଲେ ହୋଇବ ପୂର୍ଣ୍ଣ ଯେ ଆହୁତି
ରାଜାମାନନ୍ତ ବଳିଦେବ ମଗଧେଶ୍ୱର ନୃପତି ।୬୩
ଗରୁଡ଼ ପିଠିରୁ ଉତୁରିଲେ ଭୀମ ଯେ ଅର୍ଜୁନ
କାବେରୀ ନଦୀରେ ସାରି ନିତ୍ୟକର୍ମ ବିଧାନ ।୬୪
ଜପମନ୍ତେ ବସିଛନ୍ତି ସେ ନଦୀର ଭିତରେ
ଆଗ୍ୟାଂ ମାଗି ତୋଷକଲେ ଦେବ କରତାରେ ।୬୫

ଦାନ ମାଗି ବ୍ରାହ୍ମଣେ ଆସୁଛନ୍ତି ଗହଳେ
ତାହାଂକୁ ଚାହିଁ ପଚାରିଲେ ଦେବକୀର ବାଳେ ।୬୬
ଆହୋ ବ୍ରାହ୍ମଣେ ଜରାସନ୍ଧ ରାଜା ଯେ ବସିଛନ୍ତି ଆହୁତି
ଆମ୍ଭେ ଯିବାକଇଂ ଅଛି କି ଭୟେ ଭ୍ରାନ୍ତି ।୬୭
ବ୍ରାହ୍ମଣେ ବୋଇଲେ ତୁମ୍ଭେ ଶୁଣିମା ଦ୍ୱିଜବର
ପ୍ରଥମ ଦ୍ୱାରେ ରହିଛନ୍ତି ରାଜାଂକ କୁମର ।୬୮
ଶୋଧା ଘେନଇ ସେ ଅନେକହିଂ ବିଶ୍ୱାସେ
ଶହସ୍ର ଥିଲେ ବ୍ରାହ୍ମଣନ୍ତ କରଇ ପ୍ରାଣ ନାଶେ ।୬୯
ଦିଜ ଦ୍ୱାରେଣ ହାଦେ ତାର ଭେରୀ ଯେକ ଥାଇ
ଶତ୍ରୁ ଉପଗତ ହୋଇଲେ ସେହୁ ରାବେକ ଛାଡଇ ।୭୦
ଶବଦ ଶୁଣିଲେ ଶହସ୍ର ଧରଇ ଜରାସନ୍ଧ
ଯାଗଶାଳଂ ବାହାର ହୋଇଲେ ସେ ଅବଶ୍ୟ କରଇ ଦ୍ୱନ୍ଦ୍ୱ ।୭୧
ତିଜ ଦ୍ୱାରେଣ ତାର ଶିମୁଳୀ ବୃକ୍ଷେକ ଅଛି
ସେ ବୃକ୍ଷରେ ପତ୍ର ଫୁଲ ଫଳ ନ ଥାଇ ଯେ କିଛି ।୭୨
ଶତ୍ରୁ ଉପଗତ ଯେ ହୋଅଇ ଯେତେବେଳେ
ଅଦଭୂତେ ପତ୍ର ଫୁଲ ଫଳ ହୁଅଇ ତହିଂରେ ।୭୩
ଜାଣଇଂ ଜରାସନ୍ଧ ଶତ୍ରୁର ଉପଗତ
ଶହସ୍ର ଧଇଲେ ତାକୁ ଜିଣନ୍ତା ନାହିଂଟି ତିନି ଜଗତ ।୭୪
ଚତୁର୍ଥ ଦ୍ୱାରେ ତାର ଗଧ ଗୋଟାଯେକେ ଥାଇଂ
ମହାଯାଗେ ବସିଲେ ମଗଧେଶ୍ୱର ଯାଇଂ ।୭୫
ଶତ୍ରୁ ଉପଗତ ହୋଇଲେ ଗଧ ଦିଅଇ ରାବ
ଜାଣିଣ ଶହସ୍ର ଦିଅ ଆସଇ ମଗଧେଶ୍ୱର ଦେବ ।୭୬
ଯଦ୍ୟପି ରୁଦ୍ର ବ୍ରହ୍ମା ଇନ୍ଦ୍ର ଆସିବେ ଚକ୍ରଧାରୀ
ହସ୍ତେ ଶହସ୍ର ଥିଲେ ଜାରାକୁ କେହି ନୋହେ ସରି ।୭୭
ପଥୁକିଂକ ମୁଖୁ ଯେସନେକ ବାକ୍ୟ ଶୁଣି
ଖଗେଶ୍ୱରେ ହକାରିଲେ ଦେବ ଚକ୍ରପାଣି ।୭୮
ସମସ୍ତ ଶହସ୍ରମାନ ଥୋଇଲେ ଗରୁଡ଼ ଉପରେ
ଆମ୍ଭର ସଳଖରେ ତୁ ଉଡୁଥିବୁଟି ଉପରେ ।୭୯
ଯେତେବେଳେ ଯେଉଂ ଶହସ୍ରେ ହୋଇବ ଆମ୍ଭ କାର୍ଯ୍ୟ
ତତକ୍ଷଣେ ଆମ୍ଭଂକୁ ଆଣିଦେବୁ ପକ୍ଷୀରାଜ ।୮୦
ଛତ୍ରୀରୂପ ଛାଡିଲେ ଭୀମ କୃଷ୍ଣ ଫାଲଗୁନି
ବ୍ରାହ୍ମଣ ସରୂପ ସେହୁ ଧଇଲେ ଜଣ ତିନି ।୮୧
ନିତ୍ୟକର୍ମ ବିଧାନେ ଦ୍ୱାଦଶ ଚିତା ଶ୍ରୀବସ୍ତ୍ର
ଉଉରି ପଇତା ଶୋଭାବନ ଶରୀରେ ରଦ୍ରାକ୍ଷ ।୮୨
ଲମ୍ବିତ କୁତା କଟିରେ ତ୍ରିକଛ ବସନ
ବେଦମନ୍ତ୍ର ପୋଥି କାଖେ ଧାରଣ ଆଧାନ ।୮୩
ଶ୍ରୀହସ୍ତେ କୁଶବଟୁ କାଖେ ବେଦ କରାଣ୍ଡି
ସୁସଞ୍ଚ ତମ୍ବାପାତ୍ରୀ ଗଡୁ ଆସନ ଯୋଗ ପିଡି ।୮୪
କଣ୍ଠେଣ ତୁଳସୀମାନ ଗୋପ୍ୟାନ ଦୋହରା
ଶ୍ରୀକରେ ଜପାମାଳୀ ପ୍ରୋକ୍ଷଣୀ ପାବକ ସୋରା ।୮୫
କଷା ବସନ ଯେ ପିଙ୍ଗଳ ବର୍ଣ୍ଣ ତାଂକ କାୟେ
ସରୂପ ବିକାଶନ୍ତି ନିର୍ଧୂମ ଅଗ୍ନି ପ୍ରାୟେ ।୮୬
ରୁଦ୍ର ମନ୍ତ ଜପ ଛଦ୍ରମେ ବେଦଚାରି
ରାଜାଂକୁ ଭେଟିବା ଯାଇଂ ବେଳ ସାତ ଘଡ଼ି ।୮୭
ଯେମନ୍ତେ ପ୍ରଥମଦ୍ୱାରେ ଯାଇଂ ହୋଇଲେ ପ୍ରବେଶ
ଜାରାପୁତ୍ର ସହଦେବଂକୁ ବାଞ୍ଛା କଲେକ ଆଶିଷ ।୮୮
ପିଢ଼ାମାଡି ବିପ୍ରେ ଯାଇଂ ବସିଲେ ଆସନେ
ସହଦେବନ୍ତ କଲ୍ୟାଣ କଲେ ବେଦ ଆଧାନେ ।୮୯
ମନ୍ତ୍ର ଆଧାନ ଦେବ ସେ ପ୍ରତକ୍ଷେ ବାସୁଦେବ
ବେଦମନ୍ତ୍ର ପଢନ୍ତେ ବ୍ରହ୍ମା ତାହାଂକୁ କି କ୍ଷମ ହୋଇବ ।୯୦
ଜାରାର ନନ୍ଦନ ସହଦେବ ତହିଂ ବେଦଧ୍ୱନି ଶୁଣି
ଆଘ୍ରା ବିଘଂସିଲା ତାର ସୁରଭି ପୁଷ୍ୟ ଜାଣି ।୯୧
ସାଧୁ ସାଧୁ ବିପ୍ରେ ହୋ ତୁମ୍ଭର ଜୀବତି
ମାନବ ଜନ ପ୍ରାୟେ ନ ଦିଶି ମୋତେ ତିନିମୂର୍ତ୍ତି ।୯୨
ପିତା ମୋର ସଞ୍ଚିଲାତ ଅତି ଉତ୍ତମ କର୍ମ ଯାଗ
ତ୍ରିପୁତି ଭଜି ଧାତା ଅବା କଲାକ ଅନୁରାଗ ।୯୩
ପଞ୍ଚୁଦଶ ଦିବସ ହେଲା ମୁଂ ଅଛଇ ଯେହି ଦ୍ୱାରେ
ବେଦ ପରୀକ୍ଷ ଘେନିଲି ମୁଂ ତିନିଲକ୍ଷ ଦ୍ୱିଜବରେ ।୯୪
ଯେସନେକ ବେଦଗ୍ୟାଂ ବ୍ରାହ୍ମଣ ଦେଖିଲାତ ମୋର ନାହିଂ
ପ୍ରଶଂସି ଧାଡିକାରେ କୁମରମଣି ଉଠିଲା ବେଗ ହୋଇଂ ।୯୫
ରତ୍ନଝରୀ ଯେକ ଘେନି ଯେ ଜରାସନ୍ଧର ଆତ୍ମଜା
ବ୍ରାହ୍ମଣଂକ ପାଦ ପଖାଳି କଲାକ ଦିବ୍ୟ ପୂଜା ।୯୬
ଧନି ଧନି ବ୍ରାହ୍ମଣେ ହୋ ତୁମ୍ଭେ ମନ୍ତ୍ରେଣ ମହାଭିଗ୍ୟଂ
ଦାନ ବେଳ ନ ଜାଣିଲ ଯେଡ଼େକ ସର୍ବଗ୍ୟଂ ।୯୭
ଦାନର ବେଳ ହାଦେ ସରିଲାନି ହୋ ଦ୍ୱିଜବରେ
ଆଜକ ବିଶ୍ରାମି ଥିବା ଯେ ମୋହୋର ସଙ୍ଗତରେ ।୯୮
ଭୋଜନ ଯୋଗାଡ଼େ ଆଜ କରାଇବି ସନ୍ତୁଷ୍ଟ
କାଲି ପ୍ରଭାତରେ ଧର୍ମବେଳେ ମଗଧେଶ୍ୱରକଇ ଭେଟ ।୯୯
ଦାନବେଳ ସରିଲାନି ଆହାର୍ଣ୍ଣିକ ବେଳ

ଯଦ୍ୟପି ଛାମୁକୁ ଯିବ କାର୍ଯ୍ୟ ହୋଇବ ନିଷ୍ଫଳ ।୧୦୦
ବ୍ରାହ୍ମଣଂକୁ ଅନେକ ପ୍ରଶଂସା ବୋଲ ବୋଲି
ଚରଣେ କୁମର ମଣି ଶୁତିଲା ଗଡ଼ଘାଲି ।୧୦୧
କରତଳ ପ୍ରସାରି ଯେ ବୋଲନ୍ତି ନାରାୟଣ
ଯେ ମଗଧ ଦେଶେ ଠାକୁର ହୁଅ ତୁ ଆମ୍ଭର କଲ୍ୟାଣ ।୧୦୨
ଆମ୍ଭେ ତ ଆସିଅଛୁ ଅପାର ଦୂରୁ ଗମି
ରାଜାକୁ ଭେଟିବୁ ବାବୁ ଦ୍ୱାର ଛାଡ ତୁମି ।୧୦୩
ଧାର୍ମିକ ବିବେକୀ ତୁ ଯେ ମହତ ପୁଣ୍ୟଜନ
ଜରାସନ୍ଧକୁ ନ ଭେଟିଲେ ଆମ୍ଭର ନାହିଁକା ଭୋଜନ ।୧୦୪
ଯଦ୍ୟପି ଆମ୍ଭନ୍ତ ବାବୁ ଦ୍ୱାର ନ ଛାଡିବୁ
ରାଜାକୁ ନ ଦେଖିଲେ ଆମ୍ଭେ ଭୋଜନ ନ କରିବୁ ।୧୦୫
ଆମ୍ଭେ ବିଭୋକ୍ଷିତ ବାବୁ ଅଟୁ ମହା କ୍ଷୁଧାଆର୍ତ୍ତି
ଧର୍ମନାଶ ଯିବଟି ଯେବେ ଆମ୍ଭନ୍ତ ନ ବର୍ତ୍ତି ।୧୦୬
ଯେତେକ ସଂକଳ୍ପ ଆମ୍ଭେ କରିଅଛୁ ବ୍ରତ
ରାଜାର ମୁଖ ଦେଖିଲେ ଆମ୍ଭର ଭୋଜନ ଯୁଗତ ।୧୦୭
ସହଦେବ ବୋଇଲା ଠାକୁରଂକର ଆଗ୍ୟାଂ ଯେନ୍‌ହେ ମୁକୁ
ମହାଭୟେ କରଇ ଗୋସାଇଂ ତୁମ୍ଭଂକୁ ବୋଲିବାକୁ ।୧୦୮
ନାରାୟଣେ ବୋଇଲେ ତୋତେ ଯେସନେକ ଆଗ୍ୟାଂ
ମହାଗୁରୁ ବଚନ ତୁ କି କରିବୁ ଅବଗ୍ୟାଂ ।୧୦୯
ଶ୍ରୀକୃଷ୍ଣ ବୋଇଲେ ତୋ ଯହିଂକି ମନବାଧା
ତୁ ଅବା ସଂକୋଚ କରୁ ବାବୁ ଦେବୁ ଆମ୍ଭେ ଶୋଧା ।୧୧୦
ବାବୁ ବ୍ରହ୍ମକର୍ମମାନ ନେଇ ପାରିବୁ କି ଭିତରକୁ
ଶହସ୍ର ଥିଲେ ତୁ ବିରୋଧ କରନ୍ତୁ ଆମ୍ଭଂକୁ ।୧୧୧
ବସ୍ତ୍ର ଫେଡିଣ ଦେବ ଦିଲେକ ତହିଂ ଝାଡି
ଦେଖିଣ କୁମର ଯେ ମନରୁ ଭ୍ରାନ୍ତି ଛାଡି ।୧୧୨
ଦଧିବାବନ ସୁମରି ଯାଅ ଯା ପଣ୍ଡାଯେ
ଅମୃତ ଦୃଷ୍ଟିରେ ଚାହୁଂ ତୁମ୍ଭନ୍ତ ମଗଧେଶ୍ୱର ରାୟେ ।୧୧୩
ପ୍ରଥମ ଦ୍ୱାରକୁ ଦୁଜ ଦ୍ୱାର ଯୋଜନେକ ଅନ୍ତର
ଗୋବିନ୍ଦେ ପୁଛାକଲେ ଭୀମ ଅର୍ଜୁନ ଆଗର ।୧୧୪
ପ୍ରଥମେଣ ଭେରୀ ଦୁତୀୟେଣ ଶିମୁଳୀ ତିଜେଣ ଗର୍ଦଭ
କେ କେବଣ ଦ୍ୱାର ହୋ ନିବର୍ତ୍ତ କରିବ ।୧୧୫
ଭୀମସେନ କହିଲା ଶ୍ରୀଜଗନ୍ନାଥଂକର ଆଗେ
ପ୍ରଥମ ଦ୍ୱାର ଭେରୀ ହୋଇଲା ମୋର ଭାଗେ ।୧୧୬
ଅର୍ଜୁନ ବୋଇଲେ ଦେବ ଶୁଣିମା ବନମାଳୀ
ଦୁଜ ଦ୍ୱାର ମୋର ଭାଗ ବୋଇଲା ଶିମୁଳୀ ।୧୧୭
ଦୁହେଂ ତୁଷ୍ଟ ହୋଇଲେ ଦୁଇ ଦ୍ୱାର ବାଛି
ଆମ୍ଭର ଭାବେ ଗଦର୍ଭ ହୋଇଲା ବୋଇଲେ ଶ୍ରୀବଚ୍ଛି ।୧୧୮
ଚଳନ୍ତି ତିନିବୀରେ ପବନ୍ନଂ ବେଗ ହୋଇ
ଦୁଜ ଦ୍ୱାରେ ଭେରୀ ଭେଟିଲେକ ଯାଇଂ ।୧୧୯
ଭୀମସେନର ବଦନ ଚାହିଂଲେକ ଅଚ୍ୟୁତ
ଭେରୀ ବାଦ୍ୟ କରିବଟି ଯେହା ନିବର୍ତ୍ତ କର ତୁରିତ ।୧୨୦
ଶତ୍ରୁ ଉପଗତ ଦେଖିଣ ମହାଭେରୀ
ଗହ ଗହ ଶବଦ ଯେ କରି ବିକାଶୁଚି ରଡି ।୧୨୧
ପବନହୁଂ ବେଗେଣ ଭୀମସେନ କ୍ଷେପି
ଧାଡିକାରେ ମୁଥେକ ମାଇଲା ଭୀଷ୍ମରୂପୀ ।୧୨୨
ଭାଜିଣ ଭେରୀ ତହିଂ ହୋଇଲା ମସୀଗୁଣ୍ଡ
ମୁକତ ଗତି ପାଇଲା ଭେରୀ ଭେଦିଲା ବ୍ରହ୍ମାଣ୍ଡ ।୧୨୩

■■

## ଭେରୀର ପୂର୍ବ ଚରିତ ବର୍ଣ୍ଣନ

ବଇବସ୍ୱତ ମନୁ ପୁଛାକଲେ ଅଗସ୍ତିଂକି
ଅମୃତ ମିଶ୍ରିତ ମୁନି ହେ କହିଲ ତୁମ୍ଭେ ବାକି ।୧
ଯେ ଭେରୀର ଚରିତ ଯେ ବଡ଼ାଇ ଦୁର୍ଲ୍ଲଭ
ଅଜୀବ ହୋଇ କିମ୍ପେ ଅଦଭୂତେ ଦିଅଇ ରାବ ।୨
ଯେ ଅସମ୍ଭବ ବାଦ୍ୟ ଯେ ଅପର ହାଥେ ବାଜି
ଭବିଷ୍ୟ ଗ୍ୟାଂତା ହୋଇ କିମ୍ପେ ଅଦଭୁତେ ଗଳଗାଜି ।୩
ଇତିଶ୍ରୀ ବିଷ୍ଣୁ ପୁରାଣ ଯେ ମହାଭାରଥ ବାଣୀ
ନିନ୍ଦାକରି ନାଶଯାନ୍ତି ଅଗ୍ୟାନ ମୂଢ଼ ପ୍ରାଣୀ ।୪
ଅଗସ୍ତି ବୋଇଲେ ହୋ ଶୁଣିମା ଯୋଗେଶ୍ୱର
ତହିଂର ଚରିତ ଶୁଣି ପାତେକ ଧ୍ୱଂସ କର ।୫
ବଦୟନ୍ତି ଅଗସ୍ତି ଯେ ପଣ୍ଡିତ ମହାଗ୍ୟାଂତା
ଶୁଣ ହୋ ସାବଧାନେ ଭେରୀର ଆଦିଜନ୍ମ କଥା ।୬
ଯେହି ତ୍ରେତୟା ଯୁଗେ ହରିଣ୍ୟଗର୍ଭ ପୁରେ
ମଦନିକା ଅପକ୍ଷରୀ ଥାଇ ସେ ସ୍ୱର୍ଗରେ ।୭
ଅତିୟ ସୁନ୍ଦରୀ ସେ ରମ୍ଭା ତୁଲ୍ୟ ଜାଣି
ଯୁବାକାଳେ ତାକୁ ଯେ ଭଜିଲେ ବଜ୍ରପାଣି ।୮
ବାସେବ ଦେବତା ତାହାକୁ ବଡ଼ାଇ ବଡ଼ ପ୍ରୀତି
ଭୟେଣ ବିଦ୍ୟାଧରେ ଯାଇ ନୁଆରନ୍ତି ତାର କତି ।୯
ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ସଉରି ବାସର

ବିଶାଖା ନାମେ ନକ୍ଷତ୍ର ଅଟେ ସେ ଦିନର ।୧୦
ବାଣିଜ୍ୟ ନାମେ କରଣ ସିଦ୍ଧି ନାମେ ଯୋଗ
ତ୍ରିଦଶ ଲୋକ ବସିଲେ ସ୍ୱର୍ଗ ମଧଭାଗ ।୧୧
ଦିବ୍ୟ ଅଳଂକାର ହୋଇ ସେଦିନ ମଦନିକା
ଆକାଶ ଗଂଗାକୁ ସ୍ନାହାନ କରିଗଲା ଯେକା ।୧୨
ସ୍ନାହାନ ସାରି ତହୁଂ ନଳ ଯେ କୁବେର
କଣୟ ଗିରି ତଳେ ତାକୁ ଭେଟିଲେ ବାଟର ।୧୩
ଦେଖିଲେ ଜନ ମନୁଷ୍ୟ ନାହିଂତ କେହି ପାଶେ
ସେ କନ୍ୟାକୁ ଓଗାଳିଲେ ସୁରତ ପରିହାସେ ।୧୪
ସେ କନ୍ୟା ନଳକୁବେରଂକ ଅନୀତି ବଚନ ଶୁଣି
ଆଡେ ହୋଇ ସ୍ନାହାନକୁ ଗଲାକ ତରୁଣୀ ।୧୫
ନିର୍ଜନ ଦେଖିଣ ତହୁଂ ସେ ନଳକୁବେରେ
କୋଳ କରି ଧଇଲେ ତାକୁ ମଦନ ଆତୁରେ ।୧୬
କୋପେଣ ସୁନ୍ଦରୀର ବଢ଼ିଲା ବଇରାଗ
ବୋବି ଯେକ ଛାଡିଲା କମ୍ପିଲା ଅମର ସ୍ୱର୍ଗ ।୧୭
ଭୟେଣ ଛାଡିଲେ ସେ ଯେ କୁବେରର ପୁତ
ରାଗେଣ ଶାପ୍ୟ ଦିଲେ କୋପ କରିଣ ବହୁତ ।୧୮
ତୁମ୍ଭେ ଯେ ବେଶ୍ୟା ଲୋ ଅଟ ନୀଚ ସ୍ତିରୀ
ଯାଚକୀ ଚଂଚଳା ତୁମ୍ଭେ ସମସ୍ତଂକୁ ଆଶ୍ରେ କରି ।୧୯
ନ ବିଚାରି ରାବେକ ତୁ ଦେଲୁ ଅପ୍ରମିତେ
ଭେରୀ ବାଦ୍ୟ ପ୍ରାୟେକ କମ୍ପିଲା ଯେ ତିନି ଜଗତେ ।୨୦
ମର୍ତ୍ତେ ଜାତହୋଅ ତୁ ଲୋ ଭେରୀ ରୂପ ହୋଇ
ମଗଧଦେଶେ ରାଜା ଜରାସନ୍ଧ ଦ୍ୱାରେ ଥିବୁ ରହି ।୨୧
ଶତ୍ରୁ ପ୍ରାୟେ ବୁଝି ଅଦଭୂତେ ଦେଲୁ ରାବ
ଶତ୍ରୁ ଦୃଶ୍ୟ ହୋଇଲେ ତୋତେ ହୋଉ ଯେମନ୍ତ ସ୍ୱଭାବ ।୨୨
ଶୁଣିଣ ବିଷାଦ ଯେ ହୋଇଲା ଅପକ୍ଷରୀ
ନଳକୁବେରଂକୁ ବୋଇଲା ବିନୟ ଭାବ କରି ।୨୩
ଅଦୋଷ ଶାପ୍ୟ ମୋତେ ବିହିଲ ଅନମିତେ
ମୋକ୍ଷକଇଂ କାରଣ ଯେ କହିବାକ ମୋତେ ୨୪
ବିକଳ ଦେଖି ଦୟା କଲେକ ନଳକୁବେରେ
ଦ୍ୱାପର ଯୁଗରେ ଥିବୁ ତୁ ଜରାସନ୍ଧର ଦ୍ୱାରେ ।୨୫
ପାଣ୍ଡବେନ୍ତ ଘେନି ବିଜେ କରିବେ ଦେବ ଚକ୍ରଧାରୀ
ଗୋପ୍ୟେଣ ଯାଉଥିବେ ଜରାସନ୍ଧକଇଂ ଅପହାରି ।୨୬
ସେ ତୋତେ ଦୃଶ୍ୟ ହୋଇବେ ବଇରିତା ପଣେ
ଶତ୍ରୁ ଦେଖି ତୁହି ରାବ କରିବୁଟି ଅକାରଣେ ।୨୭
ବ୍ରିକୋଦର ପ୍ରହାର କରିବାକ ତୋତେ ବଜ୍ରମୁଥେ
ହୋଇବୁ ଶତେଚୂର ତାହାର ମୁଥଘାତେ ।୨୮
ଶାପ୍ୟକୁ କାରଣ ତୋତେ କରିବେ ଜଗତ ପତି
ପ୍ରତକ୍ଷେ ଦୃଶ୍ୟ ତୋତେ ହୋଇବେ ନାରାୟଣ ମୂରତି ।୨୯
ଶାପ୍ୟରୁ ମୁକତ ତୁ ହୋଇବୁ ତେତେବେଳେ
ଯେହି ରୂପ ଧରି ଆସିବୁ ଅମର ମଣ୍ଡଳେ ।୩୦
ନଳକୁବେର ଶାପେ ଅସୁର ପୁରେ ଥିଲା
ନାରାୟଣଂକ ଦ୍ରଶନେ ସେ ମୁକତି ଲଭିଲା ।୩୧
ଅମର ସ୍ୱର୍ଗେ ପ୍ରବେଶ ହୋଇଲା ଅପକ୍ଷରୀ
ପୁଣିହିଂ ସେ ହୋଇଲା ବାସବ ମନୋହାରୀ ।୩୨

■■

## ଶିମୂଳୀ ବୃକ୍ଷର ବୃତ୍ତାନ୍ତ

ଯେଥୁ ଅନନ୍ତର ବ୍ୟଗ୍ରେ ଚଳନ୍ତି ବିପ୍ର ତିନି
ଦୂଜଦ୍ୱାରୁ ଜିଣିଗଲେ କୃଷ୍ଣ ଭୀମ ଫାଲଗୁନି ।୧
ଯୋଜନେକ ଅନ୍ତରେ ଆଉର ଯେଉଂ ଦ୍ୱାର
ଶିମୂଳୀକୁ ଦେଖିଲେ ଅତ୍ୟନ୍ତ ବିସ୍ତାର ।୨
ମୃତୁ ଶାଖା ପ୍ରାୟେକ ସେ ବୃକ୍ଷ ହୋଇଥିଲା
ଶତ୍ରୁ ଉପଗତ ଦେଖି ଫଳ ପୁଷ୍ୟ ବିଙ୍ଗସିଲା ।୩
ଗୋବିନ୍ଦେ ସେ ଚାହିଂ ଆଗ୍ୟାଂ ଦିଲେ ଅର୍ଜୁନକୁ
ଦେଖ ହୋ ଧନୁର୍ଦ୍ଧୟେ ଶିମୂଳୀ ବୃକ୍ଷକୁ ।୪
ଧାନେଣ ଆକାଶକୁ ଯେ ଚାହିଂଲା ଫାଲଗୁନି
ଗଗୁଡ଼ ପ୍ରବେଶ ହୋଇଲା ସର୍ବ ଶସ୍ତ୍ର ଘେନି ।୫
ଗାଣ୍ଡିମ ଧନୁ ଧରି ବୀର ଯେ ଅର୍ଜୁନ
ବାବଲ ଶରେକ ପାଥ ବିନ୍ଧିଲେ ବହନ ।୬
ନାରାଜ ପଡ଼ିଲା ଯାଇଂ ସେ ଶିମୂଳୀ ବୃକ୍ଷ ମୂଳେ
ବୃକ୍ଷକଇ ଉପାଡି ନେଇ ପକାଇଲା ମହାବଳେ ।୭
ପବନ ଅସ୍ତ୍ର ପେଷିଲେ ନେଲାକ ଉଡ଼ାଇ
ସମୋଦ୍ର ଭିତରେ ତାହା ପକାଇଲା ନେଇ ।୮
ଯେହା ଶୁଣି ପୁଛାକଲେ ମନୁ ମହାରାଜା
ଅଗସ୍ତିଂକ ପାଦପଦ୍ମେ କଲାକ ଦିବ୍ୟ ପୂଜା ।୯
ସେ ଶିମୂଳୀର ବାରତା କେମନ୍ତେ ଅଟଇ ମୁନି ହେ
ଯେ କଥା ଲାଗିଲା ମୋତେ ବଡ଼ାଇ ସନ୍ଦେହେ ।୧୦

ଶିମୂଳୀ ବୃକ୍ଷ ତ ମୃତୁପିଣ୍ଡ ହୋଇଥିଲା
ଶତ୍ରୁ ଦେଖିଣ କେନ୍‌ହେ ସେ ଜୀବନ ପାଇଲା ।୧୧
ଯେହିତ ମୁନି ହେ ବଡ଼ାଇ ଆଶ୍ରିଜର କଥା
ବିସ୍ତାରି କହିବା ମୋତେ ଯେଥିର ବ୍ୟବସ୍ଥା ।୧୨
ଶୁଣ ହୋ ମନୁ ପୁରୁଷ ବଦନ୍ତି ଅଗସ୍ତି
ସେ ଶିମୂଳୀ ବୃକ୍ଷର ଯେ ଯେସନେକ ରୀତି ।୧୩
ଆହୋ ସତ୍ୟଯୁଗେ ଅବନ୍ତୀ ଭୁବନେ ବଇଧୃତି ନାମେଣ ଗନ୍ଧର୍ବ
ତାହାର ପୁତ୍ରର ନାମ ଅଟଇ ସଦାଶିବ ।୧୪
ଅକ୍ଷେକ ନାମେଣ ଯେ ଯେକଇ ଋଷିଯେ
ତାହାର ତହିଁ ଥିଲା କାମଧେନୁ ଯେ ଗୋଟିଯେ ।୧୫
ସେ ସଦାଶିବ ଗନ୍ଧର୍ବ ଯେ ଦେଖିଲା ସେହୁ ଗାଈ
ବନସ୍ଥଂ ଚୋରାଇ ନେଲାକ ସ୍ନେହ ବହି ।୧୬
ଗାଈ ନେଇ ଚୋରାଇ ରଖିଲା ନିଜ ପୁରେ
ଲୋଡି ନ ପାଇଲେ ମୁନି ସାତ ବରଷରେ ।୧୭
ଗାଈ ନ ପାଇଣ ମୁନି କୋପେଣ ଶାପ୍ୟଦିଲା
ଯେ ଗାଈକି ମୋହୋର ଚଉର୍ଯ୍ୟ କରିନେଲା ।୧୮
ମୋହୋର ଶାପ୍ୟହିଁ ହାଦେ ପ୍ରତକ୍ଷେ ତାକୁ ହୋଉ
ଯମ ଦେବତାହିଁ ତାକୁ ଅନେକ ଶାସ୍ତି ଦେଉ ।୧୯
ଋଷିର ଶାପ୍ୟେ ସେହୁ ହୋଇଲା ଅବସାନ
ଯମଦେବତା ଦେଖି ତାକୁ କଲାକ କୋପମନ ।୨୦
କାଳ ବିକାଳନ୍ତ ରାଇ ବୋଇଲା ଯମବୀର
ମୋହୋର ଛାମୁକୁ ନ ଆଣରେ ମୋଡା ଗୋରୁଚୋର ।୨୧
ଗାଈକି ବାନ୍ଧିଣ ଯେ ଯେ ଆଣିଲା ଛାଟ ମାରି
ଯେହାକୁ ଛାଟ ମାରି ଶିମୂଳୀ ବୃକ୍ଷ କୋଳକରି ।୨୨
ନାଶକର ଆଗ୍ୟାଂଯେ ସେ ଚଣ୍ଡ ଯେ ପ୍ରଚଣ୍ଡେ
ଶିମୂଳୀ ବୃକ୍ଷ କୋଳ କରାଇଲେ ତାର ପିଣ୍ଡେ ।୨୩
ଛାଟ ମାରନ୍ତେଣ ବିଦାରି ହୋଇଲା ତାର ପିଠି
ରୋଧିର ବାହାର ହୋଇଲା ସେ କଣ୍ଟାମାନ ଫୁଟି ।୨୪
ବିକଳରେ ରାବେକ ସେ ଦିଲାକ ବିଦ୍ୟାଧର
ଶିମୂଳୀ ବୃକ୍ଷକୁ ଶାପ ଦିଲାକ କୋପଭର ।୨୫
ଆରେ ଆକାଶର ବୃକ୍ଷ ହୋଇ ତୋର ଯେତେକ ଅହନ୍ତା
ମୋହୋର ଶାପ୍ୟରେ ତୁହି ଆକାଶ ପୁରେ ନ ଥା ।୨୬
ଦେବପୁର କଥା କି ହୋଇବ ଯେମନ୍ତ
ଅସୁର ପୁରେ ଥାଅସି ହୋଇଣ ମୃତୁଗତ ।୨୭
ଯେତେଦୂର ପରିଯନ୍ତେ ଦିଶଇ ତୋର ଶିଖ
ଯେହି ଦୋଷ ବାଛି ତୋତେ କାଟନ୍ତୁର ବୃକ୍ଷ ।୨୮
ଯେ ଅବା ତୋତେ ଦେଖି ରେ ନ କାଟନ୍ତି ଜନେ
ମୋହୋର ଅବସ୍ତା ତାକୁ ହୋଉ ସଂଜୀବନୀ ଭୁବନେ ।୨୯
ଯାଅ ଯା ବୃକ୍ଷର ଆକାଶେ ନ ଥାଅସି
ମଘଦେଶେ ଜରାସନ୍ଧ ଦ୍ୱାରେ ଦ୍ୱାରପାଳ ହୋଅସି ।୩୦
ଶୁଣି ଶିମୂଳୀ ବୃକ୍ଷ ଯେ କମ୍ପଇ ଥରହର
ଶାପ୍ୟକୁ ଅନୁଗ୍ରହ କରସି ପ୍ରତିକାର ।୩୧
ତୁହି ଯେ ଅକାରଣେ ଶାପ୍ୟ ଦିଲୁ ମୋତେ
ମୋକ୍ଷକଇଂ ପ୍ରତିକାର କହସି ନାଥ ମୋତେ ।୩୨
ଶୁଣିଣ ଗନ୍ଧର୍ବର ବସିଲାକ ଦୟା
ମୃତୁ ପରେ ଜାତ ହୋଉ ଯେ ତୋହୋର କାୟା ।୩୩
ସତ୍ୟ ତ୍ରେତୟା ଯୁଗେ ତୁ ସେହି ରୂପେ ଥିବୁ
ଦ୍ୱାପର ଯୁଗେ ତୁ ମୁକତ ହୋଇବୁ ।୩୪
ରାଜୁସି ଯାଗ ଯୁଧିଷ୍ଠି ଦେବ କରିବା ନିମନ୍ତେ
ଭୀମ ଅର୍ଜୁନକଇଂ ଘେନି ଆସିବେ ଜଗନ୍ନାଥେ ।୩୫
ଦୁହିନ୍ତି ଘେନି ହରି ବେଗେ ଚଳିଯିବେ
ଜରାସନ୍ଧ କଟକେ ପ୍ରବେଶ ହୋଇବେ ।୩୬
ପ୍ରଥମ ଦ୍ୱାରେ ଭୀମ ଭେରୀକି ନିବାର
ଭେରୀ ମୁକତ ହୋଇବ କୃଷ୍ଣଂକୁ ଦ୍ରଶନ କରି ।୩୭
ଦୁଜ ଦ୍ୱାରେଣ ଯେ ଭେଟିବେ ତୋତେ ଯାଇଂ
ମୂର୍ତ୍ତିବନ୍ତ ହୋଇବୁ ତୁ ସେହିଦ୍ୱାରେ ଥାଇଂ ।୩୮
ଶୁଷ୍କତରୁ ପ୍ରାୟେ ହୋଇ ତୁହି ରହିଥିବୁ
ଶତ୍ରୁ ଉପଗତ ଦେଖି ତୁ ପୁଷ୍ୟ ବିଙ୍ଗସିବୁ ।୩୯
ହରି ବିଜେ କରିବେ ଜରାସନ୍ଧ ବଧ ନିମନ୍ତେ
ତହିଁ ତୁ ପୁଷ୍ୟ ବିଙ୍ଗସିବୁ ତୋଷ ଚିତ୍ତେ ।୪୦
ତୋହୋର ପୁଷ୍ୟ ଦେଖି ଅର୍ଜୁନ ବିନ୍ଧିବ ନାରାଚ
ମୁକତ ହୋଇବୁ ତୁ ଦେଖିଣ ଦେବରାଜ ।୪୧
ଶ୍ରୀହରିଂକ ଦ୍ରଶନେ ମୁକତ ପାଇବୁ
ଦେବପୁରକଇଂ ବହନ ଆସିବୁ ।୪୨
ଯେସନେକ ଶାପ୍ୟ ସେ ପାଇଥିଲା ପୂର୍ବେ
ମୁକତ ହୋଇଲା ଆସି ଦ୍ୱାପର ଯୁଗେ ଯେବେ ।୪୩
ବିଦ୍ୟାଧର ଶାପ୍ୟେ ସେ ଅସୁର ପୁରେ ଥିଲା
ମୁକତିର ନିମନ୍ତେ ସେ ଫଳ ପୁଷ୍ୟ ବିଙ୍ଗସିଲା ।୪୪

ଅର୍ଜୁନର ନାରାଚେ ସେ ହୋଇଲା ମୋକ୍ଷଗତି
ବଇବସୁତ ମନୁକୁ ଯେ କହିଲେ ଅଗସ୍ତି ।୪୫
ଶୁଣିଣ ସାନନ୍ଦ ଯେ ମନୁ ମହାରାଜା
ଅଗସ୍ତିଂକ ଚରଣେ କଲା ପାଦ୍ୟ ଅର୍ଘ୍ୟେ ପୂଜା ।୪୬

■■

## ଗଧର ଚରିତ, ଜରାସନ୍ଧ ସହ କୃଷ୍ଣଙ୍କର କଥୋପକଥନ ଓ ଜରାସନ୍ଧର ମୃତ୍ୟୁ

ଦ୍ୱିଜଦ୍ୱାର ଜୟ କରିଣ ଚକ୍ରପାଣି
ତହୁଂ କେଶବ କେଉଂଣ କୃତ୍ୟ କଲେ ଯେ ପୁଣି ।୧
ଶୁଣ ହୋ ମନୁରାଜା ବଦୟନ୍ତି ଅଗସ୍ତି
ଚଳିଲେ ଜଗନ୍ନାଥେ ବ୍ରାହ୍ମଣ ରୂପେ ଭୀମ ଫାଲଗୁନ୍ୟେ ଘେନି।୨
ଯୋଜନେକ ଥାଉଂ ସେ ଦେଖିଲା ଗର୍ଦ୍ଦଭ
ଶତ୍ରୁ ଉପସ୍ଥିତ ବୋଲି ଗାଢ଼େଣ ଦିଲା ରାବ ।୩
ଅର୍ଜୁନ ବୋଇଲେ ସ୍ୱାମୀ ସମ୍ଭାଳ ଚକ୍ରପାଣି
ଦକ୍ଷିଣ ଭୁଜ ବଢ଼ାଇ ଦିଲେ ଶାରଙ୍ଗପାଣି ।୪
ଯୋଜନେକ ପରିଯନ୍ତେ ଭୁଜ ଗଲା ବଢ଼ି
ଦେବଦତ୍ତ ଶଙ୍ଖ ଦିଲେ ଗଧ ମୁଖେ ଭରି ।୫
ଅତିୟ ଗାଢ଼କରି ଗଧ ରାବ ଦିଲା
ଶଙ୍ଖଧ୍ୱନି ପ୍ରାୟେକ ଯେ ଶବଦ ଶୁଭିଲା ।୬
ପୁଣି ବିସ୍ତାରିଲେ ଦେବ ବାମଭୁଜ ଗୋଟି
ଆକ୍ରୋଷି ଧଇଲେ ଦେବ ଗଧର ନିଜ ତୋଟି ।୭
ଗଧ ବିଚାରଇ ପ୍ରଳମ୍ବ ଭୁଜ ଦେଖି
ନିଚୟେ ଜାଣିଲି ଯେ ପ୍ରତକ୍ଷେ ପଦ୍ମ ଆଖି ।୮
ବିଚାରିଣ ବୋଇଲା ସେ ସରୂପ ଉପଲେଖି
କୃଷ୍ଣର ସରୂପ ଯେ ମୋହୋର ଭାଗ୍ୟେ ଦେଖି ।୯
ବିନୟ ଭାବ ହୋଇ ବୋଲଇ ଗର୍ଦ୍ଦଭ
ପ୍ରତକ୍ଷେ ବିଜୟେ କି କହ ବାସୁଦେବ ।୧୦
ଅଷ୍ଟାଦଶ ବେଳ ତୋତେ ଜରାସନ୍ଧ ଦିଲା ଧାଡି
କି କାର୍ଯ୍ୟେ ସହିଲୁ ଦେବ ପ୍ରାଣେ ତାକୁ ନ ମାରି ।୧୧
ଗୋବିନ୍ଦେ ବୋଇଲେ ମୁହିଂ ବଧ କରିବି ଜାରା
ତୁ ହୋ ରାଗ ସମ୍ବରଣ କରସି ଗଧ ବାପୁଡ଼ା ।୧୨
ନାରାୟଣଂକ ବଚନେ ବିନୟ ଭାବ ହୋଇ ବୋଲଇ ଗର୍ଦ୍ଦଭ
ତୋହୋର ଆଗ୍ୟାଂ ପ୍ରମାଣେ ନ ଦେବି ମୁହିଂ ରାବ ।୧୩
ଇଚ୍ଛାୟେ ବଧ ତୁ ଯେ କରସି ଜରାସନ୍ଧ
ଯେକା ତୋହୋର ଶ୍ରୀକରେ ଛୁଅଂ ମୋହୋର ପାଦ ।୧୪
ଗୋବିନ୍ଦେ ତୁଷ୍ଟି ହୋଇଲେ ଗର୍ଦ୍ଦଭ ବଚନେ
କରପତ୍ର ଯୋଡି ସେ ବୋଲଇ ଭୀମସେନେ ।୧୫
ତୁ ତ ଜଗମୋହନ ବ୍ରହ୍ମାଣ୍ଡ ଶିରୋମଣି
ଯେ ଛାର ପାଦ କିଂକେ ଛୁଇଂବୁ ଚକ୍ରପାଣି ।୧୬
ଗୋବିନ୍ଦେ ବୋଇଲେ ହୋ ପୂର୍ବେ ଯେମନ୍ତ ବେଭାର ଅଛି
ଯହିଂ କାର୍ଯ୍ୟ ସାଧହୋଇ ତହିଂ ଦୋଷ ନାହିଂ କିଛି ।୧୭
ଯେସନକ ବିଚାରିଲେ ଦେବ ଦାମୋଦର
ଗର୍ଦ୍ଦଭ ଚରଣ ଦେବ ଛୁଇଂଲେ ବାମକର ।୧୮
ଶ୍ରୀକର ବଢ଼ାଇ ଦେଇ ଲଗାଇଲେ ଅଙ୍ଗୁଷ୍ଠି
ପଡ଼ିଲା ଗର୍ଦ୍ଦଭ ସେ ମୂର୍ଦ୍ଧନା ଗଲା ଫାଟି ।୧୯
ଅନ୍ତରୀକ୍ଷୁ ଲାଗେ ଆସି ପୁଷ୍ପେକ ବିମାନ
ଚଳିଲାକ ଗର୍ଦ୍ଦଭ ସେ ଅମର ସ୍ୱର୍ଗସ୍ଥାନ ।୨୦
ଯେହା ଶୁଣି ପୁଛାକଲେ ବଇବସୁତ ମନୁ
ଗର୍ଦ୍ଦଭ ଚରିତ ମୋତେ ବିସ୍ତାରି କହିବା କୁମ୍ଭରଷି ତନୁ ।୨୧
ଗଧର ପାଦ କିଂପେ ଛୁଇଂଲେ ନାରାୟଣ
କେବଣ ସେ ମହାତମା ପୂର୍ବେଣ କେଡ଼େ ବଡ଼ ଜଣ ।୨୨
କାହାର ଶାପ୍ୟେ ସେ ଯେ ହୋଇଲା ଯେମନ୍ତ
ଯେହା ମୋତେ ସଞ୍ଚପି କହିବା ଭଗବନ୍ତ ।୨୩
ଅଗସ୍ତି ବୋଇଲେ ସେ ହୋ ସତ୍ୟ ଯୁଗର କଥା
ଅପାର କାଳର ଯେ ଗର୍ଦ୍ଦଭର ବାରତା ।୨୪
ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ସଉରିବାର
ବିଶାଖା ନାମ ନକ୍ଷତ୍ର ଯେ ଭୋଗ୍ୟ ସେ ଦିନର ।୨୫
ବାଣିଜ୍ୟ ନାମେ କରଣ ସିଦ୍ଧି ନାମେ ଯୋଗ
ତ୍ରିଦଶ ଦେବତାୟେ ଯାଇ ବସିଲେ ମେରୁସ୍ୱର୍ଗ ।୨୬
ବୃଦ୍ଧଶ୍ରବା ବୋଲିଣ ଯେ ଯେକଇ ଗନ୍ଧର୍ବ
ଭରହରଷେ ଖଟଇ ନୃତ୍ୟ ଗୀତ ତାଣ୍ଡବ ।୨୭
ଦେଖିଣ ସାନନ୍ଦ ସେ ହୋଇଲେ ସୁରପତି
ବହୁତ ଅଳଂକାର ଦେଇ କଲାକ ତ୍ରିପୁତି ।୨୮
କାମସେଣୀ ବୋଲି କରି ଯେକଇ ଅପକ୍ଷରୀ
ବୃଦ୍ଧଶ୍ରବା ତୁଲେ ସେ ନୃତ୍ୟ ଗୀତ କରି ।୨୯
ଦେଖିଣ ଅନେକ ହରଷ ହୋଇଲେ ପୁରନ୍ଦର

ଜୟମାଳା ଯେକ ନେଇ ଦିଲେ ଅପକ୍ଷରୀ ଗଳାର ।୩୦
ବିଶ୍ୱାବସୁ ଆଗ୍ୟାଂ ଦିଲେ ବୃଦ୍ଧଶ୍ରବାନ୍ତ ରାଇ
ଯେ କାମସେଣୀ ଅପକ୍ଷରୀକି ନେମୁଂ ତୁ ମୋହୋର ତହିଂ ।୩୧
ବଧାଇ ଦେଇଣ ତାକୁ ଚଳିଲେ ବିଶ୍ୱାବସୁ
ବୃଦ୍ଧଶ୍ରବା ଗୋଚରେ ଦିଲେ ତୀଖ ପ୍ରଶୁ ।୩୨
ଦେଇଣ ଗନ୍ଧର୍ବ ଯେ ଚଳିଲେ ନିଜ ସ୍ଥାନ
ରାତ୍ରକାଳେ ଅପକ୍ଷରୀକୁ କରାଇଲେ ବେଶ ଯେ ବେଶନ ।୩୩
ରାତ୍ର ପହରକେ ଗଲେ ବିବାନ ଆରୋହି
କାମସେଣୀକୁ ଘେନି ଗନ୍ଧର୍ବ ଅନ୍ତରୀକ୍ଷେ ଚଳଇ ।୩୪
କାମେ ଅସାକ୍ଷମ ସେ ହୋଇଣ ବୃଦ୍ଧଶ୍ରବା
କାମସେଣୀକୁ ବୋଇଲା ସଖୀ ଶୃଙ୍ଗାର ମୋତେ ଦେବା ।୩୫
ଭରହରଷ ନାୟକ ସେ ଅଟଇ ଗନ୍ଧର୍ବ
ଅପକ୍ଷରୀ ମାତ୍ରକେ କେ ତାର ବଚନ ମେଣ୍ଟିବ ।୩୬
ବିଦ୍ୟାଧରେ ବିଦ୍ୟାଧରୀ ବଢ଼ିଲା ପୀରତି
ହାସ୍ୟ ଲାସ୍ୟ ଶୃଙ୍ଗାର ଯେ ଅନେକ ରସେ ପ୍ରୀତି ।୩୭
ଶୃଙ୍ଗାର ସାରିଣ ଯେ ଚଳିଗଲେ ତହୁଂ ବେନି
ବିଶ୍ୱାବସୁ ପୁରେ ପ୍ରବେଶ ହୋଇଲେ ପଞ୍ଚାଘଡ଼ି ରୟେଣୀ ।୩୮
ବୃଦ୍ଧଶ୍ରବା ସମର୍ପିଲା ନେଇ କାମସେଣା ଅପକ୍ଷରୀ
ବିଶ୍ୱାବସୁ ତୁଲେ ସେ ହୋଇଲା ମନୋହାରୀ ।୩୯
ଶୃଙ୍ଗାରକାଳେ ତହୁଂ ଉପୁଜିଲା ଅଭାବ
ରତିଶାସ୍ତ୍ରେ ନ ଚଳିଲା ଅଚଳ କାମଦେବ ।୪୦
ବିଶ୍ୱାବସୁ ପୁଚ୍ଛାକଲେ କାମସେଣୀ ଅପକ୍ଷରୀକି
କାମେ ଅଚଳ କିମ୍ପେ ହୋଇଲୁରେ ସଖୀ ।୪୧
କାହାରେ ପୀରତି ବଢ଼ାଇଲୁରେ ସୁନ୍ଦରୀ
ତାହା ସଂଘାତୁଣୀ ମୋତେ କହିବା ତଥ୍ୟ କରି ।୪୨
ତୁ ଯେବେ ସତ୍ୟ କରି ନ କହିବୁ ମୋହୋର ଅଗ୍ରତେ
ଯେହିକ୍ଷଣି ସୁନ୍ଦରୀରେ ଶାପ୍ୟ ଦେବି ତୋତେ ।୪୩
ବୋଲଇ ବିଦ୍ୟାଧରୀ ତୁମ୍ଭେ ଶୁଣ ବିଶ୍ୱାବସୁ
ବୃଦ୍ଧଶ୍ରବା ଶୃଙ୍ଗାର କଲା ମୋତେ ବାଟେ ଆସୁ ଆସୁ ।୪୪
କୋପେଣ ଶାପ୍ୟ ଦିଲାକ ହୋଇଣ କୋପମୂର୍ତ୍ତି
ମୋହୋର ରମଣୀକୁ ତୁ କଲୁରେ ଅନୀତି ।୪୫
ଶିଷ୍ୟପୁତ୍ର ହୋଇଣ କଲୁ ମୋତେ ଯେ ଅଭାବ
ଯାଅରେ ବିଦ୍ୟାଧର ତୁ ହୁଅସି ଗର୍ଦ୍ଧଭ ।୪୬
ରାଗେଣ ଶାପ୍ୟ ସେ ଯେ ଦିଲେକ ଦକ୍ଷେଶ୍ୱର
ବିଶ୍ୱାବସୁଂକ ଛାମୁରେ ଉଭା ହୋଇଲା ବିଦ୍ୟାଧର ।୪୭
ସ୍ୱାମୀ ଅକାରଣେ କିଂପେ କଲୁ ମୋତେ କୋପ
ଗୁରୁଶାଳା ହୋଇ ଦେଲୁ ମୋତେ ଦୁରାପଦ ଶାପ ।୪୮
ଶାପ୍ୟକୁ ଅନୁଗ୍ରହ ମୋତେ କରିବା ଦେବରାୟେ
କେମନ୍ତେ ମୁକତି ହୋଇବି ମୋତେ କହିବା ଉପାୟେ ।୪୯
ବିଶ୍ୱାବସୁ ବୋଇଲେ ଅବଶ୍ୟ ତୁ ଗଧ ହୋଇଥିବୁ
ଯେ ମୋହୋର ଶାପ୍ୟେ ତୁ ଅପାର ଦୁଖ ପାଇବୁ ।୫୦
ତ୍ରେତୟାଯୁଗେ ଥିବୁ ରାବଣ ଦକ୍ଷିଣ ଦ୍ୱାରେ
ଜରାସନ୍ଧ ଦ୍ୱାରପାଳ ହୋଇବୁ ଦ୍ୱାପରେ ।୫୧
ପ୍ରତକ୍ଷେ ଦେଖିବୁ ତୁ ଶଙ୍ଖ ଚକ୍ରଧାରୀ
ଜଗନ୍ନାଥେ ତୋର ପାଦ ଧରିବେ କାର୍ଯ୍ୟ ହେତୁ କରି ।୫୨
ସତ୍ୟଯୁଗ ସତର ଲକ୍ଷ ଅଠାଇଶ ସହସ୍ର ବରଷ
ତ୍ରେତୟାଯୁଗ ବାରଲକ୍ଷ ଛୟାଣୋଇ ସହସ୍ର ବରଷ ।୫୩
ଦ୍ୱାପର ଯୁଗ ଆଠଲକ୍ଷ ବରଷ ଉଭାରେ
ମୁକତି ପାଇବୁ ତୁ ଜରାସନ୍ଧର ଚତୁର୍ଥ ଦ୍ୱାରେ ।୫୪
ବିଶ୍ୱାବସୁ ଶାପେ ସେ ଗନ୍ଧର୍ବ ଗଧ ହୋଇଥିଲା
ଯେବେ ଜଗନ୍ନାଥ ଦ୍ରଶନେ ସେ ମୁକତି ହୋଇଲା ।୫୫
ଅଗସ୍ତି ବୋଇଲେ ଶୁଣ ହୋ ଯୋଗେଶ୍ୱର
ବୃଦ୍ଧଶ୍ରବା ଗନ୍ଧର୍ବ ସେ ଅଟଇ ପୂର୍ବର ।୫୬
ବଇବସୁତ ମନୁ ଅଗସ୍ତିଂକି କଲେ ପୂଜା
ଜରାସନ୍ଧ ବଧ ମୋତେ କହିବା ବ୍ରହ୍ମଦ୍ୱିଜା ।୫୭
ଚତୁର୍ଥଦ୍ୱାର ଜୟେ କରି ଗଲେ ଦେବହରି
ଯାଗଶାଳେ ବିଜେ ଦେବ ବିପରୂପ ଧରି ।୫୮
ଆହୋ ଯାଗଶାଳେ ବସିଛନ୍ତି ଉଦାଳକେ ବାମଦେବ
ଭାରଦ୍ୱାଦଶ ବିଶ୍ୱାମିତ୍ର ସୁମନ୍ତେକ ଯେ ସୁଦେବ ।୫୯
ବାଲମିକ ତୁଲେ ପରାଶର ଲୋମଶେକ
ଜନକ ସନକ ଗଉତମ ବିଭାଣ୍ଡେକ ।୬୦
ଦେଖିଲେ ଯେ ନାରାୟଣ ମୁନି ଶଉନକ
ଆବର ରହିଛନ୍ତି ମୁନି ଯେ ଅନେକ ।୬୧
ନିର୍ଦ୍ଧୂମ ଅଗ୍ନି ଜାଣି ବିରାଜଇ ତିନିଂକର ତେଜ
ଗୋପ୍ୟାନ ରୂପ ଧରିଅଛନ୍ତି ଦେବରାଜ ।୬୨
କର ପ୍ରସାରିଣ ଦେବ କରନ୍ତି ବେଦଧ୍ୱନି
ମହାମନ୍ତ୍ର ଶବଦେ କମ୍ପିଲା ମେଦିନୀ ।୬୩
ଦେଖି ବିଚାରନ୍ତି ସେ ଋଷିଗଣମାନେ

ଅପୂର୍ବ ବ୍ରାହ୍ମଣ କେବଣ ଦେଶୁଂ ଆଗମନେ ।୧୬୪
ଯେକମୁଖରେ ବେଦ କରନ୍ତି ତିନିଧ୍ୱନି
ଗହ ଗହ ଶବଦେ ଯେ କମ୍ପିଲା ମେଦିନୀ ।୧୬୫
ଦେଖିଣ ଆଶ୍ଚିଜ ବଡ଼ ଜାରାସନ୍ଧ ହୋଇଲା
ଯେ ବ୍ରାହ୍ମଣଂକର ସରୂପ ମୋତେ ଗୋଚର ନୋହିଲା ।୧୬୬
ପଞ୍ଚଦଶ ଦିବସ ମୁହିଂ କଲାଇ ଆହୁତି
କେହୁଣସି ଦିନେ ଦେଖିଲାତ ନାହିଂ ଯେ ତିନିଂକପ୍ରାୟେ ମୂରତି ।୧୬୭
କି ଯେ ପିତାମହ ଯେ ଅବା ଅଟନ୍ତି ଦିଗପାଳ
କି ଯେ ରୁଦ୍ର ଦେବତା କି ଅବା ଆଖଣ୍ଡଳ ।୧୬୮
ବେଦ ଆଧାନ ଶବଦେ କମ୍ପଇ ତିନିପୁର
ଆସ୍ଥାନ ତେଜି ଉଠିଲା ରାଜା ମଗଧେଶ୍ୱର ।୬୯
ଶ୍ରୀହସ୍ତେ ରତ୍ନଝରୀ ଘେନି ନୃପମଣି
ବ୍ରାହ୍ମଣ ତିନିଂକ ପାଦ ପଖାଳିଲା ଗଙ୍ଗାଜଳ ଘେନି ।୧୭୦
ଲକ୍ଷେ ସୁବର୍ଣ୍ଣ ଦେଇ କଲାକ ପାଦପୂଜା
ପାଦ ଉଦକ ଶିରେ ଘେନିଲା ବୃହଧ୍ୱଜର ଆତ୍ମଜା ।୧୭୧
କରପତ୍ର ଯୋଡିକରି ଜରାସନ୍ଧ ପଚାରି
କେଉଂଣ ଦେଶୁଂ ଆଗମନ କଲ ଯେ ଆମ୍ଭର ପୁରୀ ।୧୭୨
କେଉଣ କୁଳେ ଜାତ କିସ ତୁମ୍ଭର ନାମ
ସରୂପ କହନ୍ତେ ସେ ଉଦିତ ହୋଇବ ଧର୍ମ ।୧୭୩
ଗୋବିନ୍ଦେ ବୋଇଲେ ହୋ ଶୁଣ ମଗଧେଶ୍ୱର ଆଧିପତି
ପଚ୍ଛିମ ସୋମରାଷ୍ଟେ ହସ୍ତିନାୟେ ଆମ୍ଭ ଥିତି ।୧୭୪
ଯଦୁ ଦେବର ନନ୍ଦନ ମନ୍ତ୍ରେଣ ଯର୍ଜୁବେଦୀ
ବିଷ୍ଣୁଦାସ ଆମ୍ଭ ନାମ ଯେ ପଣ୍ଡା ଜାମ୍ବୁଭେଦୀ ।୧୭୫
ଭୀମସେନକୁ ଦେଖାଇ ବୋଇଲେ ଯେହାଂକ ନାମ କୋନ୍ତେ
ଆଦିହୁଂ ଉତପତି ଆମ୍ଭେ ପାଠରକ୍ଷିଂକର ଗୋତ୍ରେ ।୧୭୬
ରକ ସାମ ଯଜୁ ଅଥର୍ବ ବେଦ ଚାରି
ଧର୍ମେଣ ପଢ଼ିଲୁ ଆମ୍ଭେ ସୁରାର୍ଥେ ଅବତରି ।୧୭୭
ଜରାସନ୍ଧ ବୋଇଲା ଯେ ବ୍ରାହ୍ମଣ ମହାଭିଗ୍ୟଂ
ବେଦ ଶାହାସ୍ତ୍ରେ ନିର୍ଜିତ ଯେ ଅଟନ୍ତି ସର୍ବଗ୍ୟଂ ।୧୭୮
ଦାନର ବେଳ ଯେତ ନୋହୋଇ ବିପ୍ରବର
ମୋତେ ଯେବେ ଭେଟିଲ କାର୍ଯ୍ୟ ସିଦ୍ଧି ହୋଇଲା ତୁମ୍ଭର ।୧୭୯
ଆଜକ ଅନ୍ନଭୁଂଜି ମୋହୋର ପୁରେ ଥିବା
କାଲି ପ୍ରଭାତେଣ ମୋତେ ଦାନ ଯେ ପ୍ରାର୍ଥିବା ।୧୮୦
ଚବିଶ ଭଣ୍ଡାର ଦାନଦେଲି ସର୍ବ ତୁଚ୍ଛା
ସମସ୍ତ ଦାନଦେବି ଯେ କାଲି ପୂରିବ ମନବାଞ୍ଛା ।୧୮୧
ମୋହୋର ପରାୟେ ରାଜା ଯେ ଦାନଦେବି ତୋତେ
ତୋହୋର ପରା ବ୍ରାହ୍ମଣ ଘେନି ମୁଂ ତଳ ହାଥେ ।୧୮୨
ଆଉର ବେଳେ ଦାନ ନ ମାଗିବୁ ଆନକୁ
ଦରିଦ୍ର ଅପହାର ଯେ କରିବି ତୁମ୍ଭଙ୍କୁ ।୧୮୩
ଅନେକ ଦୂରୁ ଆଶ କରି ଆସିଲ ଦିଜବର
ବଂଶେ କି ଦରିଦ୍ର ହୋ ଥୋଇବି ତୋହୋର ।୧୮୪
ଗୋବିନ୍ଦେ ବୋଇଲେ ହୋ ବଚନ ତୋର ଧନି
ଯେ ମୃତୁ ମଣ୍ଡଳେ ଜାତ ତୁ ଅଟୁ ମହାଗ୍ୟାନୀ ।୧୮୫
ଯେବଣ ଯାଗ ଅରୋପଣ କରୁଛୁ ମହୀସ୍ତଳେ
ଶୁଣିଲା ନାହିଂ ଯାହା ଦେଖିଲୁ ବେନି ଡୋଳେ ।୧୮୬
ଯେ ତିନି ଭୁବନ ମଧ୍ୟେ ସାଧୁ ତୋହୋର ମହିମାଂ
ମାହେଶ୍ୱରୀ କଳା ତୁ ପ୍ରତକ୍ଷେ ମହାତମା ।୧୮୭
ଆମ୍ଭେ ଅପାର ଦୂରୁଂ ଆଗମ ଦୁଖବାସୀ
କିଞ୍ଚିତ ଦାନେ ତୁ ଆମ୍ଭନ୍ତ ପାରିବୁ କି ତୋଷି ।୧୮୮
ତୁ ଯେ ଧନ ଦେବାକୁ ବୋଇଲୁ ମଗଧେଶ୍ୱର ରାୟେ
ବହୁତ ଦାନ ଘେନିଲେ ଆଷ୍ୟ ହୋୟେ କ୍ଷୟେ ।୧୮୯
କଣକଞ୍ଚ ମାତ୍ର ଆମ୍ଭର ଅଟଇ ବ୍ରତହେତୁ
ନାହିଂ ପିରୋଜନ ଧନ ଧାନ୍ୟ ତୋଟା ବାସ୍ତୁ ।୧୯୦
ଜରାସନ୍ଧ ବୋଇଲା ତୁମ୍ଭର ଧନେ ନାହିଂ କାର୍ଯ୍ୟ
କଷଣ ପ୍ରାୟେ ତ ମୋତେ ଦିଶୁଛ ତିନି ଦ୍ୱିଜ ।୧୯୧
ଶ୍ରୀହରି ବୋଇଲେ ଆମ୍ଭେ ଖ୍ୟପ ଯେ ବ୍ରାହ୍ମଣ
ତୁ ମହାରାଜା ତୋତେ କିସ କରିବୁଂ କଷଣ ।୧୯୨
ଯେତେ ବୋଲି ଦେବ କଲେକ ବେଦଧ୍ୱନି
ଲୋକପାଳେ କମ୍ପିଲେ ଯେ ମହାମନ୍ତ୍ର ଶୁଣି ।୧୯୩
ଜରାସନ୍ଧ ବୋଇଲା ହୋ ରହ, ରହ ପଣ୍ଡାୟେ
ତୁମ୍ଭର ବେଦ ଆଧାନ ଶୁଣି କମ୍ପଇ ମୋର କାୟେ ।୧୯୪
ଯେଣେ ତୁମ୍ଭର କାର୍ଯ୍ୟ ମାଗ ହୋ ଦ୍ୱିଜବର
ତୋହୋ ଭଳି ଧନ କି ନାହିଂ ମୋ ଭଣ୍ଡାର ।୧୯୫
ଭଣ୍ଡାର ତୁଚ୍ଛା ବୋଲି କି ମୋତେ କରୁ କଷଣ
ଯେତେ ଧନ ମାଗିବ ହୋ ଦେବି ଯେହିକ୍ଷଣେ ।୧୯୬
ଯେକ କଥାୟେକ ଛାଡି ଯାହା ପାର ମାଗ
ଯେକା ମାତ୍ର ମୋହୋର ଆହୁତି ପରିତ୍ୟାଗ ।୧୯୭
ଧନ ଧାନ୍ୟ ଗୋଧନ ଯେ ପୃଥି ଆଜି କରି

ଦେବଙ୍କ ମୋହୋର ସତ୍ୟ, ସତ୍ୟ ମାଗସି ବ୍ରହ୍ମଚାରୀ ।୯୮
ଗୋବିନ୍ଦେ ବୋଇଲେ ତୋହୋର ଦୁଖେ ଅରଜିଲା ତପ
ଆହୁତି କେହେନେକ ମାଗିବୁ ଯେ ନୋହଇ ସରୂପ ।୯୯
ଡାହାଣବ୍ରଟେକ ଶଙ୍ଖେ ଜଳ ତିଳ ପୂରୋଇ
ଜରାସନ୍ଧ ହାଥରେ ଦିଲେକ ଯଦୁସାଇଂ ।୧୦୦
ମହାମନ୍ତ୍ର ବାକ୍ୟ ଯେ କରାଇ ଅଚ୍ୟୁତ
ଆପଣେ ଶ୍ରୀହରି ଯେ ପାତିଲେ ତଳହାଥ ।୧୦୧
ଉପର ହାଥକରି ଜରାସନ୍ଧ ଯେ ଦେଉଅଛି ଦାନ
ସତ୍ୟ ସତ୍ୟ ବାକ୍ୟ ଯେ କରଇ ମଗଧେଶ୍ୱର ରାଜନ ।୧୦୨
ହାଥେ ପାଣି ଦିଅନ୍ତେ ବଦୟନ୍ତି ଶ୍ରୀ ଜଗନ୍ନାଥେ
ସାକ୍ଷୀ ହୋଇଥାଅ ଯେଥେ ସକଳ ଦଇବତେ ।୧୦୩
ବିଶ୍ୱଦେବା ସନକ ଲୋକପାଳ ଚାରିମେଘେ
ଚାରିଯୁଗ ସାକ୍ଷୀ ହୁଅ ଆବର ଚାରିଦିଗେ ।୧୦୪
ଯାଗକାରୀ ବିପ୍ରମାନେ ତୁମ୍ଭେ ସାକ୍ଷୀ ହୋଇଥିବା
ଆହୋ ରାଜାଗଣମାନେ ତୁମ୍ଭେ ଯେ କଥାକୁ ସାବଧାନ ହେବା ।୧୦୫
ମୁହିଂ ତଳ ହାଥ କରି ଘେନୁଅଛି ଦାନ
ଦେଉଛି ସତ୍ୟ କଲି ଉଚ୍ଚାରି, ମଗଧେଶ୍ୱର ରାଜନ ।୧୦୬
ହାଥେ ଜଳ ପଡନ୍ତେ ବୋଇଲେ ପୁରୁଷଂକ ଉତ୍ତମ
ଆନେ ପ୍ରିୟୋଜନ ନାହିଂ ଦିଅ ହୋ ସାଂଗ୍ରାମ ।୧୦୭
ଜରାସନ୍ଧି ଆଗ୍ରିଜ ହୋଇଲା ତାହା ଶୁଣି
ବିରସ ହୋଇ ରାଜା ଛାଡିଲା ଶଙ୍ଖୁ ପାଣି ।୧୦୮
କିସ ବୋଇଲ ତୁମ୍ଭେ ହୋ ଅଗ୍ୟାନ ଦ୍ୱିଜବର
ମତିଭ୍ରମ ପଣ୍ଡାୟେ କି ହୋଇଲା ତୁମ୍ଭର ।୧୦୯
ବ୍ରାହ୍ମଣ ଜନ୍ମ ତୁମ୍ଭର ମନ୍ତ୍ର କୁଶ କାଶ
ଭିକ୍ଷାଶୀ ବ୍ରାହ୍ମଣ ହୋଇ କିଂପା ସାଂଗ୍ରାମକୁ ଆଶ ।୧୧୦
ଗୋବିନ୍ଦେ ବୋଇଲେ ଯିସ ଯାହାର ପ୍ରକୃତି
ତୋହୋର ବୋଇଲେ କି ସେ କଥା ହୋଇବାକ ନିବୃତି ।୧୧୧
ପାରୁ ଯେବେ ରାଜା ତୁ ସାଂଗ୍ରାମ ହାଦେ ଦେବୁ
ନୋହିଲେ ଯେହିକ୍ଷଣି ତୋହୋର ଆହୁତି ବିଧଂସିବୁ ।୧୧୨
ଆହୋ ଜୀବନଯାକ ଆମ୍ଭର ଯେସନେକ ପ୍ରକୃତି
ସାଂଗ୍ରାମ ନ ପାଇଲେ ଆମ୍ଭେ ନୋହୁନ୍ତା ତ୍ରିପୁତି ।୧୧୩
ଯେବେଣ ଦିନ ଆମ୍ଭେ ସାଂଗ୍ରାମ ନ ପାଉଂ
ମହାକଷ୍ଟି ହୋଇ ସେ ଦିନ ନେଉଥାଉଂ ।୧୧୪
ଶୁଣିଣ କୋପାନଳ ମଗଧ ଆଧିପତି
ତୁମ୍ଭେ ନାଶଯିବ ମୋତେ ସଂସାରେ ଅପଛାତି ।୧୧୫
ଈଶ୍ୱର ଦେବତା ପୂର୍ବେ ବ୍ରହ୍ମହତ୍ୟା ଦୋଷ କଲା
ପରମ ଯୋଗେଶ୍ୱର ସେ ପାତେକ ଯେ ଖଣ୍ଡଣ ନ ଗଲା ।୧୧୬
ମୋହୋର ମହିମାଂ ତୋହୋର ଶୁଣିଲା ନାହିଂ ଦ୍ୱିଜ
ଆକ୍ଷ୍ୟ ଥାଉଂ ମରଣ ହୋ ଲୋଡୁଛ ଆଗ୍ରିଜ ।୧୧୭
ମୋହୋର ଦୋହିତା ହାଦେ ହେତି ଯେ ପ୍ରହେତି
ତାହାଂକର ବଲ୍ଲଭ ଯେ କଂସାସୁର ନୃପତି ।୧୧୮
କାହ୍ନୁ ସଂକ୍ରିଷେଣ ନନ୍ଦ ଗଉଡର ସୁତ
ତାହାକଇଂ ନାଶକଲେ ଅଗ୍ୟାନ ବେନିଭ୍ରାଥ ।୧୧୯
ଦୋହିତାୟେ କାନ୍ଦି ଯେ ଆସି କହିଲେ ମୋର ଆଗେ
ମଥୁରାକୁ ଧାଡିଦିଲି କୁଆଇଂର ରାଗେ ।୧୨୦
ସେ ମଥୁରାଭୁବନ ଛାଡି ପଳାଇଲେ ଭାଇ ବେନି
ଉନ୍ମତଦେଶେ ଲୁଚିଲେ ବନ୍ଧୁବର୍ଗନ୍ତ ଘେନି ।୧୨୧
ଧନଭଣ୍ଡାର ଆଦି ସମସ୍ତ କଲି ଲୁର
ଅନେକ ଗୋଧନପଲ ଆଣିଲି ତାହାଂକର ।୧୨୨
ଉନ୍ମଉଦେଶକୁ ପୁଣିହିଂ ଦିଲି ଧାଡି
ବିକଳେ ପଶିଲେ ଯାଇଂ ଗୋମତ ନାମେ ଗିରି ।୧୨୩
ଶତେକ ଯୋଜନ ଯେ ଗୋମତ ପର୍ବତର ସ୍ଥଳୀ
ସାତତାଳ ଗଭୀର କରି ବେଢ଼ାଇ ଖଣା ଖୋଳି ।୧୨୪
ପର୍ବତ ନବଦିନ ଯେ ବେଢ଼ିଲି ଶତେପୁର କରି
ତାଂକର ରାଗେ ମୁଂ ଯେ ପର୍ବତ ଦିଲି ପୋଡି ।୧୨୫
ଆହୋ ତହୁଂ ପଳାଇଣ ଗଲେ ବେନିଭାଇ
ମଧୁବନ କଟକେ ଲୁଚିଲେ କୁଟୁମ୍ବ ଘେନି ଯାଇଂ ।୧୨୬
କାଳଦମନ ରାଜାକଇଂ ରାଇଣ ଆଗ୍ୟାଂ ଦିଲି
ଭାଂଜିଣ ମଧୁବନ ଧ୍ୱଂସ କରାଇଲି ।୧୨୭
ତହୁଂ ପଳାଇଣ ଗଲେ ସେହୁ ଅନେକ ଦୂର
ଅଷ୍ଟାଦଶବାର ଧାଡି ଦିଲାଇଂ ସମର ।୧୨୮
ରହି ନୁଆରିଲେ ମୋହୋର ତୁଲେ ଜମ୍ବୁଦ୍ୱୀପେ
ସମୋଦ୍ର ଭିତରେ ରହିଲେ ଯାଇଂ ଗୋପ୍ୟେ ।୧୨୯
ମୋ ତହୁଂ ବଳବନ୍ତା ଯେ ବୋଲାଇବ ରଣେ
ନିଚୟେ ପାଂଜି ତାର ପୋଛିବ ଜନ୍ତୁରାଣେ ।୧୩୦
ଯେବେ ପ୍ରତକ୍ଷେ ଦେଖ ହାଦେ ମୋହୋର ମହିମା
ଯେ ମହାରାଜାମାନଂକର ଲଂଘନ୍ତା ନାହିଂ ମୋର ସୀମା ।୧୩୧
ଛୟାଣୋଇ ସହସ୍ର ରାଜା ଦେବ ଦାନବେ ନୃପତି

ଯେକା ଧାଡିକେ ଗୋଡ଼ାଇ ମୁଂ ବାନ୍ଧିଲି ସବୁନ୍ତି ।୧୩୨
ଯତନେ ଥୋଇଅଛି ନିଅଳ ପିନ୍ଧାଇ
ପୂର୍ଣ୍ଣ ଆହୁତି ମୋହୋର ଦେଖ ଆଜ ରହି ।୧୩୩
ମାର୍ଜଣା କରାଇଅଛି ସମସ୍ତ ନରପତି
ସବୁନ୍ତି ପକାଇବି ଆଜ ପୂର୍ଣ୍ଣ ଯେ ଆହୁତି ।୧୩୪
ତୋଷେ ପ୍ରସନ୍ନ ମୋତେ ହୋଇବେ ବଶ୍ୟାନର
ଇନ୍ଦ୍ରପଦ ଘେନି ମୁଂ ବସିବି ଅମର ସ୍ୱର୍ଗପୁର ।୧୩୫
ବ୍ରାହ୍ମଣଜନ ହୋଇ ତୁମ୍ଭର ପ୍ରକୃତି ବଡ଼ ନଘୁ
ଶିରୀ ସମ୍ପଦ ବୁଡ଼ାଇ ଆସି ସାଂଗ୍ରାମ ମୋତେ ମାଗୁ ।୧୩୬
ନୁହ ନୁହ ଦ୍ୱିଜ ତୁମ୍ଭେ ମହାବେଦୀ ବ୍ରାହ୍ମଣ
କପଟରୂପ ଧରି ସାଂଗ୍ରାମ ମାଗ ପୁଣ ।୧୩୭
ଦେବ କି ଦାନବ ତୁମ୍ଭେ କପଟ ରୂପ ଧରି
ନିଚୟେ ଅଇଲ ତୁମ୍ଭେ ମରଣ ଇଚ୍ଛା କରି ।୧୩୮
ଧର୍ମକୁ କଷଣ ତୁମ୍ଭେ କରୁଅଛ ଦ୍ୱିଜ
ଋଷିମାନନ୍ତ ସାକ୍ଷୀ କରଇ ମହାରାଜ ।୧୩୯
ମୋର ହୋ ଦୋଷନାହିଂ ତୁମ୍ଭେ ଆପଣେ ମରିବ
ବ୍ରହ୍ମହତ୍ୟା ଦୋଷ ଯେ କାହାତହିଂ ଲାଗିବ ।୧୪୦
ଭୀମସେନ ବୋଇଲା ହୋ ଶୁଣ ଜରାସନ୍ଧ
ସାଂଗ୍ରାମ କଲେ ଗୋରୁ ବ୍ରାହ୍ମଣ ଶିରଚ୍ଛେଦ ।୧୪୧
ଓହୋବଳ ସାଂଗ୍ରାମରେ ହତ୍ୟା ଦୋଷ ନାହିଂ
ଯେହା ନ ବୁଝିଣ କିଂପେ କହୁ ତୁ ତ୍ରାହି ତ୍ରାହି ।୧୪୨
ଗୋବିନ୍ଦେ ବୋଇଲେ ତୁ ଯେତେ ପ୍ରତଗ୍ୟାଂ କରି
ଆପଣା ବଡ଼ିମା କହିଲେ ଆପଣା ଘାତକ ଦୋଷ ସରି ।୧୪୩
ପାରୁ ଯେବେ ଜାରା ହୋ ସାଂଗ୍ରାମ ଆମ୍ଭନ୍ତ ଦିଅ
ଆହେ ଯାଗନିକମାନେ ତୁମ୍ଭେ ଆହୁତି ଗୁହାଅ ।୧୪୪
ଗୋବିନ୍ଦେ ଆଗ୍ୟାଂ ଦିଲେ କଟାକ୍ଷ ନୟନେ
ତ୍ରାସେ ଆହୁତି ନ ଦିଲେ ଯାଗି ନିକଗଣେ ।୧୪୫
ରାଜା ବୋଇଲା କିଂପେ ଛାଡିଲ ହର୍ବଭାଗ
ଅଗ୍ନିକି ଆହୁତି ଦେଉଥାଅ ବେଗ ବେଗ ।୧୪୬
ପ୍ରୋହିତେ ବୋଇଲେ ହୋ ଅତିଥି ବସିଥିଲେ
ଧର୍ମପ୍ରାପତ ନୋହି ଅତିଥି ତ୍ରିପୁତି ନ କଲେ ।୧୪୭
ଜରାସନ୍ଧ କୋପକଲା ପ୍ରୋହିତଂକ ବଚନ ଶୁଣି
ରାଗେ ମହାବୀର ଯେ ଉଠିଲା ଶିରଝୁଣି ।୧୪୮
ତ୍ରିକଛ ବସନ ଟୋଳି ପିନ୍ଧିଲା ମାଲ କାଛ
ଲମ୍ବିତ ଜୁଡ଼ା ଫେଡ଼ି ବେଣୀ ପାଡିଲା ପ୍ରତକ୍ଷ ।୧୪୯
କନ୍ଧରୁ ପଇତା କାଢି ବାନ୍ଧିଲା ବାମକରେ
ଭୂମିଠାଣ କରି ରାଜା ପହିଜ କୋପଭରେ ।୧୫୦
ଆହୋ ଯେସନେକେ ରାହୁ ବିସ୍ତାର କରଇ ତୁଣ୍ଡ
ଜରାସନ୍ଧ ଗରଜନ୍ତେ କମ୍ପିଲା ବ୍ରହ୍ମାଣ୍ଡ ।୧୫୧
ସାଧୁ ସାଧୁ ଜରାସନ୍ଧ ବୋଲି ବୋଲନ୍ତି ଆକାଶେ
ପ୍ରତଗ୍ୟାଂ ଦ୍ୱିଗୁଣ ରାଜା ପଞ୍ଚଦଶ ଦିବସ ଉପବାସେ ।୧୫୨
ବାହାନାଦ କରିଣ ସେହୁ ରଡିଯେକ ଦିଲା
ଆକାଶ ମଞ୍ଚ ପାତାଳ ଯେ କମ୍ପିଣ ଉଠିଲା ।୧୫୩
କୋପାନଳ ହୋଇଣ ଅଧରେ ଦନ୍ତଚାପି
ବାହାନାଦ କରି ଯେ ହାକଇ କାମରୂପୀ ।୧୫୪
ମନେ ମନେ ବିଚାର କରଇ ଡରାଇବି ଯେହାଂକୁ
ଭୟେଣ ବ୍ରାହ୍ମଣେ ନ ଆସନ୍ତୁ ସାଂଗ୍ରାମକୁ ।୧୫୫
ଅଧର ପୁଷ୍ଟ କରି କୋପେଣ ରଡିଯେକ ଦିଲା
ଆରେ ତିନିହେଂ ସଜ ହୋଇଆସ ବୋଲି ମଗଧେଶ୍ୱର
ବୋଇଲା । ୧୫୬
ଜଗନ୍ନାଥେ ବୋଇଲେ ହୋ ହୋଇବନା ଅଧର୍ମ
ଯେକା ଜଣକୁ କାହିଂ ତିନିଜଣେ ସଂଗ୍ରାମ ।୧୫୭
ଜରାସନ୍ଧ ବୋଇଲା ଯେବେ କରିବା ସଂଗ୍ରାମ
ଦ୍ୱନ୍ଦ ଯେବେ କରିବା ତହିଂ କିସ ବା ଅଧର୍ମ ।୧୫୮
ଯେ ପାର ତିନିଜଣୁଂ ଜଣେ ଆସ ସଜ ହୋଇ
ନାରାୟେଣ ବୋଇଲେ ଆମ୍ଭର ଇଚ୍ଛା ନାହିଂ ।୧୫୯
ତୋହୋର ଯାହାକଇଂ ସଂଗ୍ରାମେ ହୋଇବ ଇଚ୍ଛା
ତିନିଜଣରୁ ଜଣେ ରାଅ ପୂରୁ ତୋର ମନବାଞ୍ଛା ।୧୬୦
ସରସ୍ୱତୀକି ଧ୍ୟାୟେ କଲେ ଚକ୍ରଧାରୀ
ଆସନ କମ୍ପିଲା ଦେବୀ ଥିଲେ ଦ୍ୱାରକା ପୁରୀ ।୧୬୧
ମନ ବଚନେ ଦେବୀ ଜାଣିଲେ ଯୋଗଧ୍ୟାନେ
ବିଜେ ମହାସ୍ୱତୀ ଯେ ବିଛେକ ବାହାନେ ।୧୬୨
ଦ୍ୱାରକାଉଂ ଗମିଲେ ଦେବୀ ଛଡସହସ୍ର ଯୋଜନ
ପ୍ରବେଶ ହୋଇଲେ ଆସି ବାସୁଦେବଂକ ସନ୍ନିଧାନ ।୧୬୩
ସ୍ୱାମୀର ପଦ୍ମପାଦେ ପ୍ରଣମ୍ୟ କରନ୍ତି
କରପତ୍ର ଯୋଡି ଦେବୀ ବଚନ ବୋଲନ୍ତି ।୧୬୪
ସରସ୍ୱତୀ ବୋଇଲେ ଦେବ ଶୁଣ ମଧୁରିପୁ

କେବଣ କାର୍ଯ୍ୟେ ସୁମରିଲ ଜଗତ ଆଧିପୁ ।୧୬୫
ସରସ୍ୱତୀ ବଚନେ ବୋଲନ୍ତି ନାରାୟଣ
ଯୁଧିଷ୍ଠିର ଦେବ ରାଜସୂୟ ଯାଗ କରିବେ ଆରୋପଣ ।୧୬୬
ନାରଦେ କହିଲେ ଯାଇଂ ଯୁଧିଷ୍ଠିରଂକର ଆଗେ
ଜରାସନ୍ଧ ରଜାନ୍ତ ବନ୍ଦୀ କରିଛି ମହାରାଗେ ।୧୬୭
ମୋତେ ରାଜ ଆଗ୍ୟାଂ ଦିଲେକ ଯୁଧିଷ୍ଠିର
ସାଙ୍ଗେଣ ବେନି ଭାଇ ଭୀମ ଯେ କିରିଟି ।୧୬୮
ବଳଦେବ ହାଥେ ବଧ ନୋହଇ ବ୍ରହ୍ମା କହିଲେ
ସହଦେବ କରସ୍ଥଳୀ ଚାହିଂ ମୋତେ ଯେ ବୋଇଲେ ।୧୬୯
ଭୀମସେନ ହାଥେ ଜାରା ମରିବ ବୋଲି ମୋତେ କହିଲେ
ଜରାସନ୍ଧ ମୃତ୍ୟୁ ଗୋ ଦଇବ ବିହିଲେ ।୧୭୦
ବିଜେକର ଦେବୀ ଜରାସନ୍ଧର କଣ୍ଠେ
ଭୀମସେନକୁ ଚାଉ ବୋଇଲେ ଦେବକୀର ଚାଟେ ।୧୭୧
ଅଷ୍ଟାଦଶ ବେଳ ଆମ୍ଭନ୍ତ ଦିଲା ଧାଡି
ସମୋଦ୍ରେ ସେ ରହି ପାରିଲୁ ବଦୟନ୍ତି ବନମାଳୀ ।୧୭୨
ଯେତେ ଦୁଖ ମୋତେ ଦିଲା ଜରାସନ୍ଧ
ତୁମ୍ଭେ କି ନ ଜାଣ ଗୋ ବଦୟନ୍ତି ଗୋବିନ୍ଦ ।୧୭୩
ମୋତେ ଅର୍ଜୁନକୁ ଦୁହିନ୍ତି କରୁ ନାସ୍ତି
ଭୀମସେନକୁ ଚାଉ ସେ ବୋଲନ୍ତି ଶ୍ରୀପତି ।୧୭୪
ହରି ପାଟବଂଶୀ ସେ ଅଟନ୍ତି ମହାସ୍ୱତୀ
ଜରାସନ୍ଧର କଣ୍ଠେ ବିଜୟ କଲେକ ସରସ୍ୱତୀ ।୧୭୫
ଯହୁଂ ବିଜେକଲେ ଦେବୀ ଜରାସନ୍ଧର କଣ୍ଠେ
ଶରୀର ମୋହିତ ସେ ହୋଇଲା ମହାହୃଷ୍ଟେ ।୧୭୬
ଜରାସନ୍ଧ ବୋଇଲା ଜଗନ୍ନାଥଂକର ମୁଖ ଚାହିଂ
କ୍ଷୁଦ୍ର ବ୍ରାହ୍ମଣ ଗୋଟି ତୋହୋରେ କିଛି କାର୍ଯ୍ୟ ନାହିଂ ।୧୭୭
ଅର୍ଜୁନକୁ ବୋଇଲା ତୁ ଅଟୁ କ୍ଷୀଣ ବପୁ
ତୋହୋର ସଂଗ୍ରାମେ କିସ ହୋଇବ ପୁଣ ମୁକୁ ।୧୭୮
ମଧ୍ୟରେ ଅଛଇ ଯେହୁ ଧୁର୍ମୁଷା ବ୍ରାହ୍ମଣ
କୋଳକରି ଧଇଲେ ଲାଗିବ କାଖେଣ ।୧୭୯
ପାରୁ ନ ପାରୁ ଯେହାର ଶରୀର ଦୁର୍ମୋଟା
ବାହାର ହୋଇ ଆସ ହୋ ସଂଗ୍ରାମେ ବିପ୍ର ଗୋଟା ।୧୮୦
ଗୋବିନ୍ଦେ ଚାହିଂଲେ ତହିଂ ଭୀମସେନର ବଦନ
ଯାଅ ହୋ ପଣ୍ଡାୟେ ରାଜାର ତୁମ୍ଭଂକୁ ହୋଇଲା ମନ ।୧୮୧
ନାରାୟଣଂକ ମୁଖରୁ ଯେସନକ ଅମୃତ ବଚନ ଶୁଣି

ବାହାର ପାବେନି ଯେ କୋପେଣ ଶିର ଝୁଣି ।୧୮୨
ତ୍ରିକଚ୍ଛ ବସନ ଫେଡି ମାଲକାଛ ପିନ୍ଧି
ଲମ୍ବିତ ଜୁଡ଼ା ଯେ ନାଗବନ୍ଧ କରି ବାନ୍ଧି ।୧୮୩
ପବିତ୍ର ଉତୁରି ଯେ ବାନ୍ଧିଲା ବାମକରେ
ପ୍ରତଗ୍ୟାଂ କରି ଉଭା ହୋଇଲା ବ୍ରିକୋଦରେ ।୧୮୪
ଭୂମି ଠାଣ କରି ଘେନିଲାକ ବୀର ଧୂଳି
ବାହାସ୍ଫୋଟ ଦେଇ ଉଭା ହୋଇଲା ମହାବଳୀ ।୧୮୫
ଆକ୍ରଷଣ କରି ଯହୁଂ ହୋଇଲା ଠିଆଠାଣ
ଜରାସନ୍ଧ ବୋଇଲା ଯେ ତ ନୋହୋଇ ବ୍ରାହ୍ମଣ ।୧୮୬
ଦେବ କି ଦାନେବ ତୁମ୍ଭେ କପଟ ରୂପ ଧରି
ନିଚୟେ ଅଇଲା ହୋ ମରଣ ଇଛା କରି ।୧୮୭
ଧର୍ମକୁ କକ୍ଷଣ ମୋତେ କରୁଅଛଟି କି ଦ୍ୱିଜ
ଋଷିମାନନ୍ତ ତହିଂ ସାକ୍ଷ କରଇ ମହାରାଜ ।୧୮୮
ମୋହୋର ଦୋଷ ନାହିଂଟି ତୁମ୍ଭେ ଆପଣେ ମରିବ
ବ୍ରହ୍ମହତ୍ୟା ଦୋଷ ପୁଣ କାହାତହିଂ ପଡ଼ିବ ।୧୮୯
ଭୀମସେନ ବୋଇଲା ହୋ ଶୁଣ ଜରାସନ୍ଧ
ସଂଗ୍ରାମେ ଗୋ ବ୍ରାହ୍ମଣ ହୋଇଲେ ଶିରଛେଦ ।୧୯୦
ଓହୋବଳ ସଂଗ୍ରାମରେ ହତ୍ୟାଦୋଷ ନାହିଂ
ଜରାସନ୍ଧ ଧାଇଂଲା ମାଗୁଡି ବଚନ ପାଇଂ ।୧୯୧
ରେ ରେ କାର କରିଣ ସେ ଶବଦେକ କଲା
ମହାଭଇରୋବ ମୂର୍ତ୍ତି ଧରି ଭୀମସେନେ ଆକ୍ରୋଷିଲା ।୧୯୨
ବୋଇଲା ଖଡଗ ଫଳା ଧନୁ ଯେ ବିନ୍ଧାଣ
ପଟ୍ଟା ଶକତି ଗୁରୁଜ ଗଦା କିସ ଯୁଦ୍ଧ ଜାଣ ।୧୯୩
ଭୀମସେନ ବୋଇଲା ହୋ ଆମ୍ଭେ ଦ୍ୱିଜ ଜାତି
ଆମ୍ଭେ କେହ୍ନେ ଜାଣିବୁ ହୋ ତୋର ଧନୁ ଫଳାର ଗତି ।୧୯୪
ଭୀମସେନ ବୋଇଲା ମୁଂ କିଛି ନ ଜାଣଇଂ
ଗତ୍ତୁ, ଗଡ୍ତୁ,ପଡ୍ତୁ, ପଦୁ ପଛେ ହେବ ଯେଉଣ ମାନଇଂ ।୧୯୫
ଜରାସନ୍ଧ ବୋଇଲା ଯେ ମାଲ ବିନ୍ଧାଣର କଥା
ଶୁଣ ଆହେ ଦ୍ୱିଜବର ଯୁଦ୍ଧର ବାରତା ।୧୯୬
ଭୁଜେ ଭୁଜ ପଡ଼ିତାଳ ପାଦେ ପାଦ ଛନ୍ଦି
ଶିରେ ଶିର ପଡ଼ିତାଳ ହୃଦେ ହୃଦ ବାନ୍ଧି ।୧୯୭
ତାଡଣ ମାଡଣ ଭିଡଣ ଆବର ବିକଟ
ଘୋର ପ୍ରହାର ସେ ଯେ ହୋ ବଡ଼ାଇ ସଂକଟ ।୧୯୮
ଧରଣ ଧାରଣ ହରଣ ଘୋରରୂପା

ରକ୍ଷଣ ଦେଖଣ ଆକ୍ରଷଣ ବିକଟ ସରୂପା　　।୧୧୯୯
ମାରଣ ତାରଣ ମେଷଣ ଉଦ୍ଧାରଣ
ବିଡମ୍ବଣ ମାଲବିଦ୍ୟା ଚଉରାଶି ବିନ୍ଧାଣ　　।୧୨୦୦
ଭାରା କଉତୁକ ଛତିଶ ପାରିବନ୍ଧ ଗାଢ ଛନ୍ଦ
ଯେମନ୍ତ ବିଧାନରେ ହୋଇଲା ମାଲବନ୍ଧ　　।୧୨୦୧
ଆକ୍ରେଷିଣ ମାଲଯୁଦ୍ଧ କରନ୍ତେଣ ବଢ଼ି
କିରଟି କିରଟି ବୋଇଲେଣ ସଂଗ୍ରାମ ପୁଣ ଛାଡି　　।୧୨୦୨
ରାଜାର ବଚନେ ବୋଲଇ ମରୁତର ସୁତ
ତୁ ଯାହା ବୋଇଲୁ ସେ ମୋହୋର ସନମତ　　।୧୨୦୩
ଦନ୍ତେଣ ଅଧର ଚାପି ବୋଲଇ ମହାବୀରା
ଭୀମକୁ ଆକ୍ରଷିଣ ଯେ ଧଇଲା ବୀର ଜାରା　　।୧୨୦୪
ଭୁଜେଣ ଭୁଜ ଭିଡ଼ି ମୁଥେଣ ମୁଥ ମାରି
ହୁଂକାର ଶବଦେଣ ହୁଅନ୍ତି କୋଡା କୋଡି　　।୧୨୦୫
ବାହା ଛନ୍ଦା ଛନ୍ଦି ହୋଇଲେ ଧରାଧରି
କେହି କାହାକୁ ଯେ ନୁଆରନ୍ତି ବଳେ ପାଡି　　।୧୨୦୬
ପାଦେଣ ଭୀମସେନକୁ ଛନ୍ଦିଲା ଜରାସନ୍ଧ
ଆକ୍ରେଷି ଭୀମସେନକୁ ସେ ଯେ ପାଡିଲା ମାଲବନ୍ଧ　　।୧୨୦୭
ମାଡିଣ ଜରାସନ୍ଧ ଯେ ବସିଲା ଉପରେ
ପ୍ରତିଗ୍ୟାଂ କରଇ ସେ ଅତିୟ କୋପଭରେ　　।୧୨୦୮
ଆରେ କୀଉଂ କୀଉଂ ନାଶକର ରେ ପୋଛିଲା ତୋର ପାଂଜି
ବ୍ରାହ୍ମଣ ହୋଇ ତୁ ରେ ହୋଇଲୁ ବଡ଼ ଗଂଜି　　।୧୨୦୯
ସୁମର ବ୍ରାହ୍ମଣ ରେ ତୋ ଇଷ୍ଟଦେବତା
ସୁମର ଦ୍ୱିଜବର ରେ ତୋହୋର ମାତା ପିତା　　।୧୨୧୦
ହୁଂକାର ଶବଦେକ ଯେ କଲାକ ମାରୁତି
ଜାରାକୁ ଲେଉଟାଇ ପକାଇଲା ତତକ୍ଷଣାନ୍ତି　　।୧୨୧୧
ମାଡିଣ ବସିଲା ଯେ ଜରାସନ୍ଧର ବକ୍ଷସ୍ଥଳେ
ପ୍ରତଗ୍ୟାଂ କରଇ ବୀର ଅତିୟ ମତ୍ତଭରେ　　।୧୨୧୨
ପୁଣିହିଂ ଲେଉଟାଇ ପାଡିଲା ଜରାସନ୍ଧ
ଭୀମର ବକ୍ଷସ୍ଥଳେ ମାଡି ବସିଲାକ ମାଲବନ୍ଧ　　।୧୨୧୩
ପୁଣି ଲେଉଟାଇ ମାଡି ବସିଲା ମାରୁତି
ଜାରା ବକ୍ଷସ୍ଥଳେ ମାଡି ବସିଲା ତତକ୍ଷଣାନ୍ତି　　।୧୨୧୪
ଧରାଧରି ଗଡ଼ାଗଡ଼ି ହୁଅନ୍ତି ମରାମରି
ପାଦଭରେ ହେଳ ଯେ ଘେନଇ ବସୁନ୍ଧରୀ　　।୧୨୧୫
ମୁଥେ ମୁଥ ପଡ଼ିତାଳ ହୁଅନ୍ତେଣ ବେନି
ଗଗନେ କମ୍ପିଲେ ଯେ ନାଥ ସଂଜୀବନୀ　　।୧୨୧୬
ତର୍ଜନ୍ତି ଗର୍ଜନ୍ତି ସେ ଉଠନ୍ତି ଲୋଟନ୍ତି
ମୁଖରାବ ଶବଦେ ଯେ ଦିଗପାଳେ ତ୍ରାସନ୍ତି　　।୧୨୧୭
ମହାଯୁଦ୍ଧ ଦେଖି ଯେ ଯାଗନିକେ ବିଚାରନ୍ତି
ପାଉଂଶ କୁଢ ପକାଇ ଯେ ପୋଡିଲେ ଆହୁତି　　।୧୨୧୮
ଭାରଦ୍ୱାଶେ ବୋଇଲେ ଶୁଣ ହୋ ସୁଦେବ
ସଂଗ୍ରାମ କରନ୍ତା ଯେ ବୀର କେ କେତି କହିବା ପ୍ରସ୍ତାବ　　।୧୨୧୯
ସୁଦେବ ବୋଇଲେ ଜରାସନ୍ଧ ଉତକର୍ମ ତପେ
ଭୀମ ଅର୍ଜୁନକଇ ଘେନି ହରି ବିଜେକଲେ ଗୋପ୍ୟେ　　।୧୨୨୦
ବଢ଼ିଲା ରଣରଙ୍ଗ ଯେ ବ୍ରିକୋଦର ମହାବୀରା
ଯେଇକ୍ଷଣି ମାରିବ ଭୀମସେନ ବଧ ହୋଇବଟି ଜାରା　　।୧୨୨୧
ଆହୋ ଭୀମ ଜରାସନ୍ଧର ଯେ ସମର ଗୁରୁତର
ଯାଗଶାଳ ଆଦିକରି ଭାଂଜି ହୋଇଲା ସର୍ବଚୂର　　।୧୨୨୨
ମେଢ ମଣ୍ଡୋପ ଯେ ଦେଉଳ ଜଗତୀ
ସମସ୍ତ ଭାଂଜିଣ ଯେ ପଡ଼ିଲାକ କ୍ଷିତି　　।୧୨୨୩
ଦୁସହ ସଂଗ୍ରାମ ହୋ କହିତେ କି ପାରି
ରୋଧିର ବୃଷ୍ଟି ହୋଇଲା ବେନି ଶରୀର ଜର ଜରି　　।୧୨୨୪
ବେନିକ୍ଷଣ ଯେସନେକେ ହୋଅନ୍ତି ପଡ଼ିତାଳ
ସତ୍ୟଯୁଗେ ଯୁଦ୍ଧ ଯେସନେକେ କେତୁ ଯେ ମଙ୍ଗଳ　　।୧୨୨୫
ସଂଗ୍ରାମେ ଅନିର୍ବାରଣ ସେ ବୃହଧ୍ୱଜର ବଳା
ବଳେଣ ବଳବନ୍ତା ଯେ ତେଜେଣ ଅନର୍ଗଳା　　।୧୨୨୬
ଭୀମସେନକୁ ମାଡି ବସିଲା ହୃଦଗତେ
ବକ୍ଷସ୍ଥଳ ଚାପିଣ ସେ ମାଇଲା ବଜ୍ରମୁଥେ　　।୧୨୨୭
ରାଜାମାନେ ଅଛନ୍ତି ଯେ ନିଆଳି ହାଦେ ପିନ୍ଧି
ଧାୟେ କରି ସୁମରନ୍ତି ସେ ଅନାଦି ସର୍ବସିଦ୍ଧି　　।୧୨୨୮
ନମସ୍ତେ ଅନାଦି ଗୋ ଶକତି ମାହେଶ୍ୱରୀ
ଆଦିସମ୍ଭୂତ ହୋଇଲୁ ମହା ଅନଳ ବିଦାରି　　।୧୨୨୯
ଅଗ୍ନିହୁଂ ଅଧିକ ଗୋ ବିରାଜିତ ତୋର ତେଜ
ଯେକଇ ବଦନକୁ ତୋ ଶୋହଇ ସହସ୍ରେକ ଭୁଜ　　।୧୨୩୦
ସମସ୍ତ ଦେବତାଯେ ତୋତେ ଦେଖି କଲେ ସ୍ତୁତି
ଶ୍ରୀଭୁଜେ ଆଣି ଦିଲେ ଧନୁ ତ୍ରୋଣ ଶକତି　　।୧୨୩୧
ପରିଘ କୋନ୍ତ ନାରାଜ ପଟ୍ଟିସ ଯେ କୁଣ୍ଡଳୀ
ଗୁରୁଜ କମାୟେଣ ବିଜେକର୍ଣ୍ଣକଟାରୀ ମୂଷଳୀ　　।୧୨୩୨
ସକଳ ଦେବତାୟେ କଲେ ଅନେକ ତୁଷ୍ଟି

ସମସ୍ତ ଶସ୍ତ୍ରମାନ ଦିଲେକ ବେଦପତି ।୨୩୩
କାଳପାଶୀ ଜଳପାଶୀ ନାଗପାଶୀ ଶର
ବ୍ରହ୍ମଶକ୍ତି ଶୂଳଶକ୍ତି ବଜ୍ରଶକ୍ତି ମୃଦୁଗର ।୨୩୪
ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ବିଦ୍ୟା
ଗୁଟିକା ଅଂଜନ ଧରଣ ଧାରଣ ସର୍ବସିଦ୍ଧା ।୨୩୫
ଚାରଣ ମାରଣ ଆରଣ ସିଦ୍ଧି ସାଧକ ମନ୍ତ
ସାଧନ ଶୋଧନ ବୋଧନ ସିଦ୍ଧ ସର୍ବ ଯନ୍ତ ।୨୩୬
ଉଲ୍ଲୁକପଦ ମନ୍ତ ସାଧନେ ତୁ ପରମ ଯୋଗେଶ୍ୱରୀ
ବାହାନେ ବିଜେକଲୁ ଗୋ ପିଠି ଯେ କେଶରୀ ।୨୩୭
ଦେବତାଂକର କଷ୍ଟ ମାଗୋ ଉଦ୍ଧାରିବା ନିମନ୍ତେ
ବିଜୟେ ମହାମାୟା ଗୋ କଣୟଗିରି ପର୍ବତେ ।୨୩୮
ଅସୁରବଳ ଦେଖି ଗୋ ଶରୀର କଲୁ ଗୋପ୍ୟ
ବାରିତ ନ ଗଲା ମାଗୋ ଯେ ତୋହୋର ସରୂପ ।୨୩୯
ଦତ୍ୟନ୍ତ ମୋହିଲୁ ମାଗୋ ମୋହିନୀ କାମସେଣା
ମଦନେ ବଶକଲୁ ଅସୁରନ୍ତ କଲୁ ବଣା ।୨୪୦
ଚଣ୍ଡ ମୁଣ୍ଡ ବଧିଲୁ ଗୋ ଶୁମ୍ଭ ଯେ ନିଶମ୍ଭୁ
ମାୟା ମୋହିନୀ ରୂପେ ଯେ ବଶ କଲୁ ସବୁ ।୨୪୧
ଶୁମ୍ଭ ନିଶୁମ୍ଭ ନାଶ କଲୁ ଗୋ ଭରହରଷ ନାଟେ
ବିଡ଼ାଳାକ୍ଷ କାନ୍ତିମାଳା ଗୋ ବଧିଲୁ ଦେବୀ କୂଟେ ।୨୪୨
ରକ୍ତବୀର୍ଯ୍ୟ ବଧିଲୁ ମାଗୋ ଡାଂକେଣୀବୃନ୍ଦ ପେଷି
ଭଇରୋବୀ ବାସେଳୀ ଖେଚରୀ ରୂପ ଯେ ପ୍ରକାଶି ।୨୪୩
ଚାମୁଣ୍ଡା ଚର୍ଚ୍ଚିକା ଯେ ଅଭୟେ ବାସେଳୀ
କାମାକ୍ଷୀ ତ୍ରିପୁରା କଂକାଳୀ ବେତାଳୀ ।୨୪୪
ଅଭୟେ ଅପର୍ଣ୍ଣା ଗୋ ମୋହିନୀ କାମସେଣା
ବ୍ରହ୍ମାୟେଣୀ, ରୁଦ୍ରାୟେଣୀ, ଇନ୍ଦ୍ରାୟେଣୀ, ମହାମାୟା
ସର୍ବଜିଣା ।୨୪୫
ଚଣ୍ଡିକା ଚନ୍ଦ୍ରଚୂଡ଼ା ବେତାଳୀ ଡାକେଶ୍ୱରୀ
ମହାବିଶ୍ୱରୂପିଣୀ ଗୋ ଘୋଟିଲୁ ସର୍ବପୁରୀ ।୨୪୬
ଧାଆଁ ରେ ମାରରେ କଉତୁକେ ଦ୍ୟନ୍ତି ବୋବି
ଶ୍ରୋଣେହା ପିତାଶୁଣୀ ଡାକେଣୀ ଭଇରୋବୀ ।୨୪୭
ଅନନ୍ତା ବିଜୟା ଗୋ କାଳିକା କାଳରାତ୍ରି
ଅନେକ ମୂରତି ଯେକ ଶରୀରୁଂ ଉତପତ୍ତି ।୨୪୮
ରକତବୀର୍ଯ୍ୟ ମାରି ମଧୁ ମାୟେଂସେ ଖେଡ଼ି
ଅନ୍ତରୀକ୍ଷେ ବୁଲାଇ ଅସୁରନ୍ତ ପର୍ବତେ କଚାଡ଼ି ।୨୪୯
ଚାମର ବେମାଳ ଦତ୍ୟ ମରାଇଲୁ ଭଇରୋବୀର ହାଥେ
ବାରଘଣ୍ଟ ବଧ କରାଇଲୁ ତ୍ରିପୁରାନ୍ତେ ଯେକାନ୍ତେ ।୨୫୦
ରକତବୀର୍ଯ୍ୟ ନାଶଗଲା ନାରାୟଣୀଂକର ହାଥେ
କାମରୂପେ ଯୁଦ୍ଧକଲେ କାଳିକା ସହିତେ ।୨୫୧
ବେତାଳୀ ନାଶକଲା ରାକ୍ଷସ ଯମଘଣ୍ଟ
ମାୟାମୋହେ ମୋହିଲୁ ବଧିଲୁ ସର୍ବଦୁଷ୍ଟ ।୨୫୨
ମୟେଂଷାସୁର ବଧକଲୁ ଗୋ ହୋଇଲୁ ଉଲଗ୍ନଶାୟୀ
ମୋହନ କାମଗତେ ମୂର୍ଚ୍ଛାଗଲା ଚାହିଁ ଚାହିଂ ।୨୫୩
ଶୂଳେକ ମାରି ମାଡିବସିଲୁ ବକ୍ଷସ୍ଥଳେ
ତୁହି ସେ ଅସୁର ବଳ ଧ୍ୱଂସୁ ସର୍ବକାଳେ ।୨୫୪
ଜୟ ତୁ ନାରାୟଣୀ ଗୋ ଅନାଦି ଶକତି
ତୁହି ସେ ସଂସାର ଜନଂକର ଫେଡୁ ଗୋ ଦୁର୍ଗତି ।୨୫୫
ଲୋଭ ମୋହ ଅହଂକାର ହିଂସା ଅପବାଦୁଂ
ଯେଥୁ ମୁକତି ହୋଇବୁ ମାଗୋ ତୋହୋର ପରସାଦୁଂ ।୨୫୬
ଯୋଗେ ଯୋଗେଶ୍ୱରୀ ଗୋ ଅପାଦ ଦୁଖ ଖଣ୍ଡି
ହୁଅସି ପ୍ରସନ୍ନ ଗୋ ଅଭୟେ ମଙ୍ଗଳଚଣ୍ଡୀ ।୨୫୭
ସୁର ସିଦ୍ଧମୁନି ଗୋ ଯାହା ଚରଣେ ବନ୍ଦେ
ଅତିୟ ଗୁଣବନ୍ତୀ ଗୋ ସଦାଶିବର ବିନୋଦେ ।୨୫୮
ଆନନ୍ଦନନ୍ଦିନୀ ଗୋ ସମସ୍ତ ଦୁଖ ନାଶି
ଯେ ଭବସାଗରୁ ମୋତେ ଉଦ୍ଧରି ଧର ଝଙ୍କେରପୁର
ବାସୀ ।୨୫୯
ଭଗତି ମୁକତି ମାଗୋ ତୋହୋର ପ୍ରସନ୍ନେ
ପାଇଲି ପରମଗତି ସିଦ୍ଧସାରୋଳା ଦ୍ରଶନେ ।୨୬୦
ମୁହିଂ ଜନ୍ମେ, ଜନ୍ମେ ମୂର୍ଖ ଗୋ ଗ୍ୟାନ ମୋର କିସ
ତବ ଆଗ୍ୟାଂ ପ୍ରମାଣେ ମୋତେ ଭବିଷ୍ୟ ହୋଇଲା ଦୃଶ ।୨୬୧
ନର୍ମଦା ସରସ୍ୱତୀର ମୁଂ ଭଣ୍ଡାର ବିଧ୍ୱଂସି
ଶୂଦ୍ରମୁନି ସାରୋଳ ଦାସକୁ ମୁକତି ଗତି ଦେସି ।୨୬୨
ଆହୋ ଦୁର୍ଗାଂକୁ ତୁଷ୍ଟି ଯେ କଲେ ବନ୍ଦୀରାଜାମାନେ
ଯେ ଦୁର୍ଗତିରୁ ତରିବୁଂ ଗୋ ତୋହୋର ପରସନ୍ନେ ।୨୬୩
ମାଗୋ କନ୍ୟମାସ ଶୁକଳ ପକ୍ଷ ଅଷ୍ଟମୀର ତିଥି
ଶରଦ ଉଛବ କରି ତୋତେ ହୋଇଥିବୁ ଭଗତି ।୨୬୪
ଅନେକ ସମ୍ଭର ଭରି ମାଗୋ ମହାନିଶାୟେ ତୋତେ ପୂଜି
ଚାରି, ଚାରି ଜଣ ନରବଳି ତୋତେ ଦେଉଥିବୁ ଭୋଜି ।୨୬୫
ମଇଂଷି ମେଷ ଛାଗଳ ରୋଧିର ମାଂସେ ପୂଜା

ଦୁର୍ଗାଂକୁ ତଳଯେ କରି ସୁମରଣା କରନ୍ତି ସର୍ବରାଜା ।୨୬୬
ଜରାସନ୍ଧ ବଧ ଯାଉ ଯେ ବ୍ରାହ୍ମଣଂକ ହାଥେ
ଯଦ୍ୟପି ଭଗତମଙ୍ଗଳୀ ମାଗୋ ତୁ ଅଟୁ ଜଗତମାତେ ।୨୬୭
ସୁମରନ୍ତେ ଗୋସାମଣୀ ଅଭୟେ ହିଙ୍ଗୁଳା
ରାଜାନ୍ତ ପ୍ରସନ୍ନ ହୋଇଲେ ଦେବୀ ଯେ ସର୍ବ ମଙ୍ଗଳା ।୨୬୮
ଛାଡ ହୋ ମନଭ୍ରାନ୍ତି ତୁମ୍ଭେ ସକଳ ରାଜାମାନ
ଯେହିକ୍ଷଣି ଜରାସନ୍ଧ ହୋଇବ ନିଧନ ।୨୬୯
ରାଜାଂକୁ ବର ଦେଇ ଭୀମକୁ କଲେ ଦୟା
ମାରୁତି ଅଙ୍ଗେ ବିଜେ କଲେ ମହାମାୟା ।୨୭୦
ସାଂଗ୍ରାମେ ଅପଚୟେ ପାଉଥିଲା ଭୀମ
ମହାବଳବନ୍ତ ହୋଇଣ ପାଇଲା ସାଷ୍ଟାମ ।୨୭୧
ଜରାସନ୍ଧକୁ ସେ ଯେ ପାଡିଲା ଲେଉଟାଇ
ମାଡିଣ ହୃଦଗତେ ବସିଲା ବୀର ଯାଇ ।୨୭୨
ମନ୍ଦର ମାଡି ଯେହ୍ନେ ବସଇ ମହାମେରୁ
ସେହି ସାଦୃଶେ ଭୀମସେନେ ଜରାସନ୍ଧକୁ ହେଲା ମହାଗରୁ ।୨୭୩
ଆକ୍ରେଷି ମାଡିବସିଲା ଯେ ଜାରାର ବକ୍ଷସ୍ଥଳେ
ନେଇ ବାମକରେ ଚାପେ ହୃଦୟ ମଣ୍ଡଳେ ।୨୭୪
ବେନି ପାଦେ ମାଡି ବସିଲା କଟି ମେଖଳା ଜାନୁ
ଅପାର ପ୍ରତଗ୍ୟାଂ କରଇ ପବନର ତନୁ ।୨୭୫
ରେ ରେ ଜାରା ସୁମର ତୋର ଇଷ୍ଟ ଯେ ଦେବତା
ରେ ରେ ଜାରା ସୁମର ତୋର ପିତା ମାତା ।୨୭୬
ରେ ରେ ଜାରା ତୋର ବୁଡ଼ିଲା ଆଜ ଜୀବ
ରେ ରେ ଜାରା ତୋର ପାଞ୍ଜି ପୋଛିଲା ଯମଦେବ ।୨୭୭
ରେ ରେ ଜାରା ତୁହି ତ ପ୍ରତଗ୍ୟାଂ ଉପଲେଖୁ
ରେ ରେ ଜାରା ତ୍ରଇଲୋକ୍ୟ କେ ପାରୁ ତୋତେ ରଖୁ ।୨୭୮
ଯଦ୍ୟପି ବ୍ରହ୍ମା ରୁଦ୍ର କୁବେର ବଜ୍ରଧାରୀ
ରେ ରେ ଜାରା ତୋତେ କେ ପାରେ ରକ୍ଷାକରି ।୨୭୯
ଅନେକ ପ୍ରତଗ୍ୟାଂ କରି ପବନର ସୁତେ
ଗର୍ଜନ ନାଦ କରି ମାଇଲା ବଜ୍ର ମୁଥେ ।୨୮୦
ସାଧୁ ମହିମା ତୋର ରେ ମଗଧେଶ୍ୱର ନୃପତି
ଭୀମସେନ ମୁଥଘାତେ ନୋହିଲା ନିବୃତ୍ତି ।୨୮୧
ପୁଣି ହିଂ ପ୍ରହାର ସେ କଲା ବଜ୍ରଦଣ୍ଡ
ବେନିମୁଥ ମାଇଲା ନେଇ ଜରାସନ୍ଧର ମୁଣ୍ଡ ।୨୮୨
ତଦ୍ୟାପି ଅଚେତ ନୋହିଲା ମଗଧେଶ୍ୱର ବୀର
ଭୀମସେନ ମୁଥ ଘାତେ ବାହାର ହୋଇଲା ରୋଧିର ।୨୮୩
ଗଡଇ ପଡଇ ତ୍ରିପଣ୍ଡ ଶରୀରୁ ମହାଘୁମ
ଦଶନହେ ଜାରା ବକ୍ଷସ୍ଥଳ ବିଦାରଇ ଭୀମ ।୨୮୪
ରେ ରେ କାର କରିଣ ଜାରା ବୋଲି ଅଧରେ ଦନ୍ତ ଚାପି
ଚନ୍ଦ୍ର ଦେଖିଣ ଯେହ୍ନେ ରାହୁର ତେଜ ବ୍ୟାପି ।୨୮୫
କାଳାନ୍ତକ ରୁଦ୍ର ରୂପ ବିକାଶିଲା ମାରୁତି
ରଡି ଘାୟେ କମ୍ପିଲେ ଦିଗପାଳେ ସୁରପତି ।୨୮୬
ସମରେ ଜରାସନ୍ଧ ଯହୁଂ ନୋହିଲା ନିଚେତ
ଭୀମ ପ୍ରଶଂସା କଲା ସାଧୁରେ ମଗଧେଶ୍ୱର ନାଥ ।୨୮୭
ମହାଶ୍ରମ ପାଇ ସେ ପବନର ବଳା
ଶତଶିଂଗ ପର୍ବତକଇଂ ବୀର ସୁମରଣା କଲା ।୨୮୮
ଯେକଉତ୍ତର ଶତଶିଂଗର ହୋଇଲା ପ୍ରାକର୍ମ
ବ୍ରିକୋଦର ମୂରତି ତହୁଂ ପ୍ରକାଶିଲା ଭୀମ ।୨୮୯
ଦେଖିଣ ତ୍ରାସିଲେ ସକଳ ପୁରଜନେ
ନବତାଳ ଉଚ୍ଛର୍ଗ ସେ ହୋଇଲା ବୀର ଭୀମସେନେ ।୨୯୦
ମଂଚକୁ ଅଶକ୍ୟ ଭୀମସେନ ଭୀଷ୍ମରୂପୀ
ଜରାସନ୍ଧ ପ୍ରାଣତ୍ୟାଜ ନୋହିଲା ତଥାପି ।୨୯୧
ସାଂଗ୍ରାମେ ବିମୁଖ ଯହୁଂ ହୋଇଲା ବ୍ରିକୋଦର
ବିଚାରଇ ଛାଡିବି ଯେ ହୋଇଥାଉ ଅଜରାମର ।୨୯୨
ସାଂଗ୍ରାମ ନିସତେ ଆଡେ ଚାହିଂଲା ପାବେନି
ଯେହାକୁ ନ ମାରି ପାରିବି ଠାରଇ ଚକ୍ଷୁ ଘେନି ।୨୯୩
ଯା ଦେଖି ଅର୍ଜୁନ ବୋଇଲା ଦେବ ଶୁଣିମା ନାରାୟଣ
ଜନ୍ମେ ଜନ୍ମେ ହରି ଆମ୍ଭେ ତୋହୋରେ ଶରଣ ।୨୯୪
ଯେସନେକ ସୁଲଭ ଦେବ ଶୁଭଇ ଜଗତେ
ପାଣ୍ଡବେ ବ୍ରତନ୍ତି ସିନା ବିଷ୍ଣୁଂକ ଆଶ୍ରିତେ ।୨୯୫
ସାଂଗ୍ରାମେ ମାରୁତି ଯେ ପାଇଲାନି ଅନେକ ଦୁଖ
ବଧକଇ କାରଣ କହୁକିନା ଶିରୀବସ୍ତ ।୨୯୬
ନ ପୁଣ ଭୀମସେନ ଛାଡଇ ଜାରାକୁ
କେଡ଼େ ଅଷ୍ଟାଙ୍ଗେ ଦେବ ପାଡିଲା ଅଛଇ ତାହାକୁ ।୨୯୭
ଗୋବିନ୍ଦେ ବୋଇଲେ ଯାହା କହିଲେ ବିଶ୍ୱନାଥେ
ମାରୁତି ଯେବେ ତାହା ପାସୋରିଲେ କେମନ୍ତେ ।୨୯୮
ଅର୍ଜୁନ ବୋଇଲା ସେ ସମରେ ମହାରାଗୀ
ମୂର୍ଖ ଅପଣ୍ଡିତ ସେ ସମସ୍ତ ପରିତ୍ୟାଗୀ ।୨୯୯
ମତଭୋଳେ ପାସୋରିଲା ପବନର ନାନ

ତୁ ତାକୁ ଚେତାଇ ଦେବା ପୁରୁଷ ଉତ୍ତମ ।୩୦୦
ଅର୍ଜ୍ଜୁନର ବଚନ ଶୁଣିଣ ଦେବ ଶିରୀପତି
କରତାଳି ମାରିଣ ହସିଲେ ତୋଷମତି ।୩୦୧
କରତାଳ ଶୁଣି ବ୍ରିକୋଦର ଦିଲା ଦୃଷ୍ଟି
ଶ୍ରୀଜଗନ୍ନାଥଂକ ବଦନକୁ ଚାହିଂଲା ଲେଉଟି ।୩୦୨
ଧୋତି ଗୋଟିଯେକ ଦେବ ଧଇଲେ ଶ୍ରୀଭୁଜେ
ଲେଉଟାଇ ବେନିଫାଳେ ଚିରିଲେ ଦେବରାଜେ ।୩୦୩
ବିଶ୍ୱନାଥଂକ ବଚନ ପାସୋରିଣ ଥିଲା
ନାରାୟଣଂକ ଠାରନ୍ତେ ଗ୍ୟାନ ସେ ପାଇଲା ।୩୦୪
ବାହାନାଦ କରି ଭୀମ ଜାରାର ଧଇଲା ବେନିପାଦ
ଦେଖିଣ ବିସ୍ମୟ ଯେ ହୋଇଲା ଜରାସନ୍ଧ ।୩୦୫
ମଗଧେଶ୍ୱର ବିଚାରଇ ବଇକୁଳ ଚିତ୍ତେ
ଗୁପତ ରୂପେ ବିଜୟେ କଲୁକି ଦେବ ଜଗନ୍ନାଥେ ।୩୦୬
ଅଷ୍ଟାଦଶବେଳ ପରିଯନ୍ତେ ସହିଲୁ ମୋର ଧାଡି
ତୋ ଚକ୍ରଘାତକୁ ଆଶେ କରିଥିଲି ଦେବହରି ।୩୦୭
ଆପଣେ ନ ମାରି ମରାଉଅଛୁ ପରହାଥେ
ଚକ୍ରେ ବଧ ମୋତେ କର ହୋ ଜଗନ୍ନାଥେ ।୩୦୮
ମୋକ୍ଷକଇଂ ଗତି ମୋତେ ଦେବା ହେ ଶିରୀପତି
ନାଶକର ଦଣ୍ଡେ ମୋତେ ନ ଦିଆଅ ଶାସ୍ତି ।୩୦୯
ବିକଳେ ଜରାସନ୍ଧ ଯେ ଅନେକ ବିନୋୟୀ
ଅନେକ ନିସତେ କହଇ କାରପୁଣ୍ୟ ଭାବ ହୋଇ ।୩୧୦
ଗୋବିନ୍ଦେ ବୋଇଲେ ଭୀମ ଆବର କିସ ଉପଲେଖୁ
ମାରି ପକାଅ ଯେ ଦୁଷ୍ଟକୁ ଆବର କିଂପେ ରଖୁ ।୩୧୧
ହରି ଆଗ୍ୟାଂ ପ୍ରମାଣେ ବେନି ଚରଣ ଭୀମ ଧରି
ଚରଣେ ମାଡି ଚରଣେ ଧରିଣ ଉଛୁଡି ।୩୧୨
କୋପେଣ ଗର୍ଜ୍ଜଇ ଭୀମସେନ ନରସିଂଘ ମୂର୍ତ୍ତି ପ୍ରାୟେ
ବ୍ରହ୍ମାଣ୍ଡ କମ୍ପଇ ଘୋର ଶବଦ ରଡି ଘାୟେ ।୩୧୩
ଆକ୍ରେଷିଣ ଧଇଲା ପବନର ବାଳ
ବିଶ୍ୱରୂପେ ଉଛୁଡିଣ କଲା ବେନିଫାଳ ।୩୧୪
ପବନ ଆଘାତେଣ ତହିଂ ଖଣ୍ଡେକ ବୁଲାଇ
ଦକ୍ଷିଣ ସମୁଦ୍ରକୁ ବୋଲି ଦିଲାକ ଫୋପଡାଇ ।୩୧୫
ଅଗାଦ ଜଳେ ପଡ଼ିଲା ଜରାସନ୍ଧର ଅର୍ଦ୍ଧଖଣ୍ଡ
ଜଳଭୁବନ କମ୍ପିଲା ଉଛୁଳିଲା ବ୍ରହ୍ମାଣ୍ଡ ।୩୧୬
ଆରେକ ଖଣ୍ଡ ଯେ ଭୀମ ବୁଲାଇ ଫିଙ୍ଗିଲା ମହାକୋପେ
ଆକାଶ ମଣ୍ଡଳେ ଖେପିଲା ସେ ଗରୁଡାପେ ।୩୧୭
ଶୂନ୍ୟେ ଅଦୃଶ୍ୟ ହୋଇଲା ସେ ଭୀମସେନ ଡରେ
ଭୁଅଚର ହୋଇଣ ରହିଲା ଶୂନ୍ୟ ପୁରେ ।୩୧୮

**

## ୩୫. ରାଜାମାନଙ୍କ ନିମନ୍ତ୍ରଣାର୍ଥେ ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ ଚାରି ଭାଇଙ୍କୁ ଚାରିଦିଗେ ଯିବାକୁ ଶ୍ରୀକୃଷ୍ଣଙ୍କର ପରାମର୍ଶ

ତହୁଂ ବିଜେକରି ଦେବ ଶିରୀପତି
ହସ୍ତିନା ଭୁବନେ ଯାଇଂ ବିଜୟେ ତତକ୍ଷଣାନ୍ତି ।୧
ଆସ୍ଥାନେ ବିଜୟେ କରିଛନ୍ତି କୁରୁପତି
ଭୀଷ୍ମ ଦ୍ରୋଣ କୃପ ଶଲ୍ୟ କର୍ଣ୍ଣ ମହାରଥୀ ।୨
ବିଜୟେ ଧର୍ମସୁତ ଭୀମ ଅର୍ଜ୍ଜୁନ ନକୁଳ ସହଦେବ
ଆସ୍ଥାନରେ ବିଜୟେ ଯେ ଋଷିମାନ ସର୍ବ ।୩
ଜଗନ୍ନାଥଂକୁ ଦେଖି ଆସ୍ଥାନୁ ଉଠିଲେ ସର୍ବରାଜା
ନାରାୟଣଂକ ପଦ୍ମପାଦେ କଲେ ସର୍ବେ ପୂଜା ।୪
ଆସ୍ଥାନେ ବିଜୟେ ଯାଇଂ ଦେବ ଦଇତାରି
କୁଶଳ ବାରତା ଯେ ପଚାରନ୍ତି ଶ୍ରୀହରି ।୫
ଯୁଝେଷ୍ଟି ଦେବେ ବୋଇଲେ ଶୁଣ ହୋ ଶ୍ରୀବତ୍ସ
ପିତାଂକ ବ୍ରହ୍ମହତ୍ୟା ଦୋଷ ନାରଦେ କହିଲେ ପ୍ରତକ୍ଷ ।୬
ରାଜୁସି ଯାଗ ହରି କରିବା ନିମନ୍ତେ
ଜରାସନ୍ଧ ବଧ କରାଇଲୁ ଯେବଣ କାର୍ଯ ଅର୍ଥେ ।୭
ତହିଂକି କେବଣ ଚରିତ କଲୁ ଯେ ଭିଆଣ
ଯେ ମୋହୋର ବଚନ ହରି ସାବଧାନେ ଶୁଣ ।୮
ସ୍ୱାମୀ ପ୍ରାଗେ ଝାସ ଦେବି ମୁଂ ପିତାର ନିମନ୍ତେ
ନୋହିଲେ ଭାଇନ୍ତ ଘେନି ମୁଂ ଗମିବି ସର୍ବ ତୀର୍ଥେ ।୯
ଗୋବିନ୍ଦେ ବୋଇଲେ ଦେବ ରାଜୁସି ଯାଗ କରିବା
କିସ ନିମନ୍ତେ ଯାଗ ଛାଡି କରିବ ତୀର୍ଥକଇଂ ସେବା ।୧୦
ଯୁଝେଷ୍ଟି ବୋଇଲେ ତୁ ନିଚିନ୍ତ ହୋଇଲୁ ଶ୍ରୀବତ୍ସ
ମହାଯାଗ ସଭାକୁ ଦେବ କିଛିହିଂ ନ ସଞ୍ଚି ।୧୧
ଜଗନ୍ନାଥେ ବୋଇଲେ ଦେବ ସେ କଥାକୁ ନ କର ଚିନ୍ତା
ମୁହିଂ ସେ ସକଳ ଦେବ ଭିଆଣ କରନ୍ତା ।୧୨

ଯାହାର ଆଗ୍ୟାଂୟେ ଦେବ ସଚରାଚର ବ୍ରତି
ମୁହିଂ କିଞ୍ଚିତ ପ୍ରାୟେ ମଣଇ ରାଜୁସିଯାଗ ପ୍ରତି ।୧୩
ଚାରିଦିଗକଇଂ ଯେବେ ଦୂତ ବରଗାଇ
ରାଜାଗଣମାନନ୍ତ ଆଣିମା ନିମନ୍ତାଇ ।୧୪
ଚାରିଦିଗକୁ ଦେବ ବରଗିବା ଦୂତ
ଧାର୍ମିକ ଦେଖି ଚାରିଜଣ କରିବା ସଞ୍ଚିତ ।୧୫
ଯୁଝେଷ୍ଟି ଦେବେ ବୋଇଲେ ଶୁଣିମା ଚକ୍ରଧାରୀ
ବିଚାର କରି ଦେବ ପେଷ ଯେ ଜଣ ଚାରି ।୧୬
ନାରାୟଣେ ବୋଇଲେ ହୋ ତୋହୋର ସହୋଦରେ
ତାହାଂକର ଗଲେ ରାଜାମାନେ ସାଧ ହୋଇବେ ସର୍ବପୁରେ।୧୭
ପଛିମଦିଗକୁ ସ୍ୱାମୀ ଭୀମସେନ ଯାନ୍ତୁ
ଉତ୍ତରେ ଅର୍ଜୁନ ଯାଇଂ ରାଜାମାନନ୍ତ ନିମନ୍ତୁ ।୧୮
ଦକ୍ଷିଣେ ନକୁଳ ଯାଉ ପୂର୍ବେ ସହଦେବ
ଯେହାଂକର ଗଲେ ସେ ଚାରିଦିଗ ସାଧ ହୋଇବ ।୧୯
ଯୁଝେଷ୍ଟି ବୋଇଲେ ତୁ ବିଚାର ଅଚ୍ୟୁତ
ମୋହୋର ବିଚାରକୁ ନ ଯୋଗାଇ ଯେମନ୍ତ ।୨୦
ଭୀମ ଅର୍ଜୁନ ଯାଆନ୍ତୁ ଦେଶ ନିମନ୍ତ୍ରିଣ
ନକୁଳ ସହଦେବ ଅଟନ୍ତି ଦେବ ସାନ ।୨୧
ତାହାଂକର ବୋଲେ କି ସାଧ ହୋଇବେ ରାଜାମାନେ
ଯେହୁ ନ ଯିବେ ବୋଲନ୍ତି ଯୁଝେଷ୍ଟି ରାଜନେ ।୨୨
ସ୍ୱାମୀ ଯେଉଂଣ ଦିନେ ମାଦ୍ରୀଦେବୀ ପ୍ରାଣତ୍ୟାଜ ହୋଇଲେ
ବାଳୁତ ପୁତ୍ର ଦୁଇଗୋଟି ମୋତେ ସମର୍ପିଲେ ।୨୩
କେମନ୍ତେ ଦୂରାନ୍ତର ପଠିଆଇବି ଦେଖନ୍ତେ
ସୁକୁମାର ବାଳୁତ ସେ ଅଟନ୍ତି ବେନି ଭ୍ରାଥେ ।୨୪
ରାଜୁସି ଯାଗ ହରି ନୋହୁ ମୋର ପଛେ
ତାହାନ୍ତ ପଠିଆଇ ମୁହିଂ ନୁଆରିବି ଶ୍ରୀବତ୍ସେ ।୨୫
ଜଗନ୍ନାଥେ ବୋଇଲେ ସାଧୁ ସାଧୁ ତୋହୋର ଧର୍ମ
କେବଣ ସାଧବୀ ତୋତେ କଲାକ ଜନମ ।୨୬
ଅନେକ ପ୍ରଶଂସା ଯେ କରନ୍ତି ଦେବହରି
ଆପଣାର ସୋଦରନ୍ତ ଉପେକ୍ଷା ଦେବ କରି ।୨୭
ସାବତ ଭ୍ରାଥନ୍ତ ସୋଦ୍ରିମାପଣ ତୋର ଗୁଣ
ଅନାସ୍ତ ବନ୍ଧୁ ଦେବ ଅକାରଣକଇଂ କାରଣ ।୨୮
ପଛିମେ ବସନ୍ତି ଦେବ ଦୁଷ୍ଟ ରାଜାମାନେ
ତାହାନ୍ତ ସାଧ କରିବ ପବନର ନାନେ ।୨୯

ଉତ୍ତରେ ବସନ୍ତି ରାଜା ମହା ମହା ପ୍ରତାପୀ
ଅର୍ଜୁନର ନାମେ ସେ ଶଂକା କରିବେ ସର୍ବସ୍ଥାପି ।୩୦
ସ୍ୱାମୀ ପୂର୍ବଦିଗେ ବସନ୍ତି ଯେତେକ ନୃପତି
ଧାର୍ମିକ ବିବେକ ସେ ଦୃଭାର ନୁହନ୍ତି ।୩୧
ସହଦେବ ବୋଲେ ସେ ସମସ୍ତେ ହେବେ ସାଧି
ଯେ ଦୁଷ୍ଟ ହୋଇବ ତାହାନ୍ତ ଚକ୍ରେ ମୁଂ ପକାଇବି ଛେଦି ।୩୨
ଦକ୍ଷିଣେ ବସନ୍ତି ଦେବ ଯେତେକ ନୃପତି
ଦେବତା ବ୍ରାହ୍ମଣେ ପୂଜା ଦୁଷ୍ଟ ସେ ନୋହନ୍ତି ।୩୩
ସ୍ୱାମୀ ଯେ ଅବା ସାଧ ନୋହଇ ନକୁଳ କୁମାରକୁ
ଅବଶ୍ୟ ପ୍ରାଣେ ମୁଂ ନାଶ କରିବଇଂ ତାହାକୁ ।୩୪
ଆପଣେ ଶ୍ରୀହସ୍ତେ ଶାଢ଼ୀ ଦିଲେକ ଭୀମସେନକୁ
ତୁମ୍ଭେ ବିଜେକରି ଯାଅ ପଛିମ ଦିଗକୁ ।୩୫
ଦୁଇଲଣା ପଞ୍ଚାଶ ସହସ୍ର ରାଜା ବସନ୍ତି ପଛିମ ଦିଗେ
ବିନା ସାଂଗ୍ରାମେ ସେ ସାଧ୍ୟ ନୋହନ୍ତି କେଉଂଣ ବାଗେ ।୩୬
ଯେଉଂଣ ରାଜା ହାଦେ ହୋଇବ ଅସାଧି
ସନ୍ୟ ନାଶକରି ଆଣିମୁଂ ତାହାକଇଂ ବାନ୍ଧ ।୩୭
ଅନେକ ଦୋଷକଲେ ନାଶ ନ କରିବୁ ନୃପତି
ଯେମନ୍ତେ ଚାରିଲଣା ଲକ୍ଷେକ ରାଜା ଅଛନ୍ତି ନା ପୃଥ୍ୱୀ ।୩୮
ଯେବଣ ନୃପତି ଅବା ମାରିବୁ ସମର
ଥାଠ ସନ୍ୟ ଆଦିକରି ହୋଇବ ସୁବର୍ଣ୍ଣର ।୩୯
ଦୃଭାର ଦୁଷ୍ଟ ପ୍ରକୃତି ଅଟୁ ତୁରେ ଭୀମା
ରାଜାୟେ ଅନେକ ଦୋଷ କଲେ କରିବୁଟି କ୍ଷମା ।୪୦
ଆହୋ ଆଶ୍ୱୀନ ଶୁକଳପକ୍ଷ ଦଶମୀର ଦିନ
ଚନ୍ଦ୍ରାବାର ଶ୍ରବଣା ନକ୍ଷତ୍ର ବିଦ୍ୟମାନ ।୪୧
ଧୃତି ନାମେ ଯୋଗ ତତୁଲ୍ୟ ନାମେ କରଣ
ତାର ଚନ୍ଦ୍ର ଅମୃତ ଯୋଗରେ ଘଟଣ ।୪୨
ସପତମେ ଶନୋଇଷ୍ଟର ଯେକାଦଶେ ବୃହସ୍ପତି
ସ୍ୱାତୀ ତୁଳ ରାଶିକି ସୁବିଧାନେ ଯୋଗ ପ୍ରୀତି ।୪୩
ଦିଗ ଅନକୂଳ ଯେ ମାହେନ୍ଦ୍ର ଯୋଗ ଲଗ୍ନେ
ଈଶାନେ ମହାଲକ୍ଷୀ ଯେ ମଗର ବାହନେ ।୪୪
ମାହେନ୍ଦ୍ର ଯୋଗବଳେ ଯେ କଲେକ ଅନକୂଳ
ପଛିମ ଦିଗେ ମାରୁତି ଚଳଇ ସର୍ବ ମଙ୍ଗଳ ।୪୫
ସୁବିଧାନେ ଯାତ୍ରା ଯେ ଶୁଭ ତିଥିର ଲଗ୍ନେ
ଇନ୍ଦ୍ରପ୍ରଶସ୍ତରୁ ଭୀମସେନ ବାହାର ପରସ୍ତାନେ ।୪୬

ଜୟଶଙ୍ଖ ଧ୍ୱନି ଯେ ବିପ୍ରେ ବେଦଧ୍ୱନି
ଗ୍ରହ ପୁତ୍ରେ ଯେ ମଙ୍ଗଳ ଅଷ୍ଟକ ବଖାଣି ।୪୭
ସହସ୍ରେକ ରଥ ଚାରି ସହସ୍ର ମତ୍ତହାଥୀ
ଅହିବ୍ରତେକ ଅଶ୍ୱ ଦଶଲକ୍ଷ ପାଦାନ୍ତି ।୪୮
ଅହିବ୍ରତେକ ବୀରତୂର ବୀରକାହାଳୀ ବୀରଦାଉଣ୍ଡି
ଅଷ୍ଟରତ୍ନେ ଆଭରଣ ରଥ ଗଜ ଅଶ୍ୱ ମଣ୍ଡି ।୪୯
ପାଟଛତ୍ର ଆଲମ୍ୱ ମୟୂର ଝାଲି ଛତା
ତିନିକୋଶ ମାଡି ଚଳଇଂ ନ ଯାଇ ଗଣିତା ।୫୦
ଯମୁନା ନଦୀ ପାର ହୋଇଲେ ସୁବିଧାନେ
ଗୋଡାଇ ତିଆରନ୍ତି ହରି ବଇନେତ୍ର ବାହନେ ।୫୧
ଆହୋ ଭୀମସେନ ରାଜ୍ୟକୁ ନ ପଶି ଆଗେ ବରଗିବୁ ଦେଶାଉର
ରାଜାମାନନ୍ତ ବାରତା କରିବେ ପଛିମେ ବିଜୟେ ବ୍ରିକୋଦର ।୫୨
ଜରାସନ୍ଧକୁ ବଧହିଂ କଲୁ ପଛିମ ଦିଗେ
ରାଜାମାନେ ତୋତେ ଜାଣି ଅଛନ୍ତି ଭୂଅଭାଗେ ।୫୩
ନଉ ଦିବସକୁ ତୁମ୍ଭର ସମସ୍ତ କରିବ ବରଣ
ପଞ୍ଚାଶସହସ୍ର ରାଜା ସାଧକରି ବେଗେ ଆଣ ।୫୪
ମକର ମାସ ଶୁକଳ ପକ୍ଷ ଅର୍କବାର ରେବତୀ
ସେଦିନ ଯାଗ ହେବଟି ପ୍ରଥମ ଆହୁତି ।୫୫
ରାଜାନ୍ତ ଘେନି ଆସିବୁଂ ନଉ ଯେ ଦିବସେ
ନୋହିଲେ ଚକ୍ରମାରି ଶିର ଛେଦିବି ଯୁଧେଷ୍ଠି ଦେବଂକ
ଆଦେଶେ ।୫୬
ଆହୋ ଭୀମ ଦୁଇଗୁଣା ପାଞ୍ଚସହସ୍ର ନୃପତି
ଯେହାନ୍ତ ସଭାରେ ଗଣିତା ଆଣି ଦେବୁଟି ସବୁନ୍ତି ।୫୭
ଭୀମସେନକଇଂ ଆଗ୍ୟାଂ ଦେଇଣ ଅଚ୍ୟୁତ
ହସ୍ତିନାପୁରେ ଯାଇଂ ବିଜୟେ ଜଗନ୍ନାଥ ।୫୮
ଇନ୍ଦ୍ରପ୍ରଶସ୍ତେ ଯେ ବିଜୟେ ଦେବ ଦଇତାରି
ଅର୍ଜୁନକୁ ସନ୍ନିଧେ ହକାରି ବଚନ ଅବଧାରି ।୫୯
ଆହୋ ଉତ୍ତରଦିଗେ ଚାଳିଶ ସହସ୍ର ରାୟେ
ଦଣ୍ଡଘେନି ଉତ୍ତରକୁ ବିଜୟେ କର ଧନୁର୍ଜୟେ ।୬୦
ରାଜାନ୍ତ ନିମନ୍ତଣ କର ହୋ କିରୀଟୀ
ଯେହେନେକ ଆଗ୍ୟାଦିଲେ ଧର୍ମରାଜ ଯୁଧେଷ୍ଠି ।୬୧
ରାଜାମାନଂକର ଯେତେକ ସଇନି
ସମ୍ପରେ ଆସିବେ ଦେଖା ଦରଶନ ଧନ ଘେନି ।୬୨
ଯଦ୍ୟପି ରାଜାୟେ ତୋତେ ହୋଇବେ ଦୋଷକାରୀ
କାର୍ଯ୍ୟର ନିମନ୍ତେ ତାହାନ୍ତ ଦୋଷ ଯେ ନ ଧରି ।୬୩
ଅନେକ ଦୋଷ ଯେବେ କରିବେ ନରପତି
ସନ୍ୟସେନା ମାରିବ ରାଜାନ୍ତ ଆଣିବ ନିମନ୍ତି ।୬୪
ଅହିବ୍ରତେକ ରଥ ବେନି ଅହିବ୍ରତ ହାଥୀ
ପାଞ୍ଚ ଅହିବ୍ରତ ଅଶ୍ୱ ବେନିକୋଟି ପାଦାନ୍ତି ।୬୫
ସହସ୍ରେକ ପାଟଛତ୍ର ଆଲମ୍ୱ ବେନିଲକ୍ଷ
ଉଦଣ୍ଡ ଲକ୍ଷେକ ମୟୂର ଝାଲି ବେନିଲକ୍ଷ ।୬୬
ବେନିଲକ୍ଷ ଶଙ୍ଖ ବୀରତୂର ବିଜିଘୋଷ ଦାଉଣ୍ଡି
ଅଷ୍ଟରତ୍ନେ ଆଭରଣ ରଥ ଗଜ ଅଶ୍ୱନ୍ତ ମଣ୍ଡି ।୬୭
ଦଧିବାବନ ସୁମରି ଚଳ ହୋ ଧନୁର୍ଜୟେ
ସର୍ବ ମଙ୍ଗଳ ମାତାଙ୍ଗୀ ହୃଦରେ କର ଲୟେ ।୬୮
ଆହୋ ନଉଦିବସକୁ କଣ୍ଟଟି ସବୁନ୍ତି
ମହାଯାଗ ହୋଇବ ମକର ଶୁକଳ ପକ୍ଷ ଦଶମୀ ଅର୍କବାର
ନକ୍ଷତ୍ର ରେବତୀ ।୬୯
ସେଦିନ ରାଜାମାନନ୍ତ କରାଇବୁ ଦ୍ରଶନ
କ୍ଷତ୍ରିୟ ଜଗଜିତା ତୁ ପାର୍ଥିବ ଫାଲଗୁନ୍ୟ ।୭୦
କାର୍ତ୍ତିକ ଶୁକଳ ପକ୍ଷ ପଣ୍ଡିତବାର ଚଉଠୀ
ମୂଳା ନକ୍ଷତ୍ରେ ଅନକୂଳ କଲାକ କିରୀଟୀ ।୭୧
ଆହୋ ଉତ୍ତର କୋଶଳ ରାୟେ ଅଛନ୍ତିଟି ବଡ଼ ଦୁଷ୍ଟ
ସେ ରାଜାର ନାମ ଯେ ଅଟଇ ଯମାଗୋଷ୍ଟ ।୭୨
ଯମର ବୋଲେ ସେ ଯେ ପୃଥୀକି ଅଟଇ ଅଧିକାରୀ
ତପରେ ତୋଷିଲା ସେ ଗଗନବେହାରୀ ।୭୩
ଲିହିଣ ପୋଛଇ ସେ ଯେତେକ ନାମ ଧରି
ବେନିଖଣ୍ଡେ ଛିଡଇ ଯେହ୍ନେ ଅସିଧାରେ ଛେଦନ କରି ।୭୪
କେମନ୍ତ କରି ପଶିବୁ ବାବୁ ତାହାର ଭୁବନେ
ତାହାକଇଂ ଜିଣିଲେ ସାଧ ହୋଇବେ ଆଉର ରାଜାମାନେ ।୭୫
କ୍ଷତ୍ରିୟ ପଣେ ତୁ ଯେ ଅଟୁ ଜଗତ ଜନେ ଜିତା
ମୁହିଂ ଅର୍ଜୁନ ତୋତେ ହୋ କିସ ତିଆରନ୍ତା ।୭୬
ବିଘ୍ନରାଜ ସୁମରି ତୁ ହୋ କର ଅନକୂଳ
ଚଳ ହୋ ଧନୁର୍ଜୟେ ମାହେନ୍ଦ୍ର ଲଗ୍ନ ବେଳ ।୭୭
ନାରାୟଣଂକ ଆଗ୍ୟାଂୟେ ଶୁଭଯୋଗ ଘେନି
ଚଳଇ ପାଣ୍ଡବ ଯେ ଅଭୟେ ଫାଲଗୁନି ।୭୮
ସହସ୍ରେକ ବୀରତୂର ମୃଦଙ୍ଗ ଟମକ ଭେରୀ ବାଜେ
ଉତ୍ତର ଦିଗ ପ୍ରଶସ୍ତେ ଅର୍ଜୁନ ଦିଗବିଜେ ।୭୯
ନନ୍ଦିଘୋଷ ରଥ ଜଗନ୍ନାଥ ସ୍ୱାମୀ ସାଜି
ବାଛିଣ ଅଶ୍ୱ ଯେ ଯୋଚିଲା ଚାରିବାଜୀ ।୮୦

ଖେପନ୍ତି ଅଶ୍ୱ ଯେହ୍ନେ ଗଗନେ ଖଗଇନ୍ଦ୍ର
ଆକାଶେ ଥାଇ ଦେଖିଲେ ଯେ ଦେବ ଅସକନ୍ଦ ।୮୧
ମାତଳିକି ରାଇଣ ବୋଇଲେ ସହସ୍ରାକ୍ଷ
ବସନ୍ତ ସାରଥି ଯେ ଅଟଇ ତୋର ବକ୍ଷ ।୮୨
ତାହାକଇଂ ରାଇ ଆଗ୍ୟାଂ ଦିଅ ତୁ ହୋ ପୁଣି
ସେହୁ ରଥେ ଯାଇଂ ବାହୁ ବୀର ଫାଲଗୁନି ।୮୩
ତାହାକଇଂ ରାଇ ଆଗ୍ୟାଂ ଦିଲାକ ସୁରପତି
ଦେବରାଜା ବଚନେ ସେ ବାସବର ନାତି ।୮୪
ଆଗ୍ୟାଂ ଘେନି ଚଳିଲା ସେ ବସନ୍ତ ସାରଥି
ଅନେକ ହରଷ ଯେ ହୋଇଲା ତାର ମତି ।୮୫
ମକରନ୍ଦ ବନେ ଯେ ତ୍ରିବେଣୀ ବଟ ତଳେ
ଅର୍ଜୁନଙ୍କୁ ଭେଟିଲା ସେ ମାତଳିର ବାଳେ ।୮୬
ଦେଖିଲା ଧନୁର୍ଜୟେ ଯେ ବସନ୍ତ ସାରଥି
ରଥ ତେଜି ପୂଜାକଲା ବିଚିତ୍ରବୀର୍ଯ୍ୟର ନାତି ।୮୭
ବାବୁ ବାହା ତୁ ରହୁବର  ପବନ ଆଘାତେ
ନଉ ଦିବସେ ଚାଳିଶ ସହସ୍ର ରାଜା ସାଧ ହୋଇବେ
ଯେମନ୍ତେ ।୮୮
ଯୁଝେଷ୍ଟି ସନ୍ନିଧେ ପ୍ରବେଶ ନନ୍ଦବାଳ
ସନ୍ନିଧେ ହକାରି ଆଗ୍ୟାଂ ଦିଲେକ ନକୁଳ ।୮୯
ତୁ ହୋ ନକୁଳ ଯାଅସି ଦକ୍ଷିଣ ଦିଗେ
ଯେକଭଣା ସାତ ସହସ୍ର ରାଜାନ୍ତ ନିମନ୍ତି ଘେନି ଆସିବୁ
ବେଗେ ।୯୦
ରାଜାନ୍ତ ଅଣାଇବୁ ନଉ ଦିବସର ମଧେ
ରାଜାନ୍ତ ନ ମାରିବୁ ତୁ ସନ୍ୟ ମାରିବୁ ଯୁଦ୍ଧେ ।୯୧
ଯେ ଅବା ଦୃଭାର ତୋତେ ହୋଇବ ଦଣ୍ଡଧାରୀ
ସନ୍ୟ ବଧ କରି ସେ ରାଜାନ୍ତ ଆଣିବୁ ବନ୍ଦୀ କରି ।୯୨
ଯଦ୍ୟପି ବଧ କରିବୁ ଯେଉଂଣ ରାଜାକୁ
ରାଜୁସି ଯାଗ ନୋହିବଟି ନିରାଧାର କହିଲଇଂ ତୁକୁ ।୯୩
ଦକ୍ଷିଣ କୋଶଳ ରାଜା ଭୂମନୁ ଚକ୍ରବ୍ରତୀ
ଦ୍ରିଯୋଧନର ଶ୍ୱଶୁର ସେ ତାହାର ଦୋହିତା ନାମ ଭାନୁବତୀ ।୯୪
ପ୍ରଥମେ ପ୍ରବେଶ ହୋଇବୁ ତାହାର ଭୁବନେ
ତାହାକଇଂ ନିମନ୍ତିଲେ ଆସନ୍ତିଟି ସମସ୍ତ ରାଜାମାନେ ।୯୫
ଅହିବ୍ରତେକ ରଥ ପାଞ୍ଚ ଅହିବ୍ରତ ହାଥୀ
ଦଶ ଅହିବ୍ରତ ଅଶ୍ୱ ତେରଲକ୍ଷ ପାଦାନ୍ତି ।୯୬
ଲକ୍ଷେକ ପାଟଛତ୍ର ଯେ ଲକ୍ଷେକ ବାଦ୍ୟକାର
ମାହେନ୍ଦ୍ର ବେଳେ ନକୁଳ ଦକ୍ଷିଣକୁ ବାହାର ।୯୭
ମାଦ୍ରୀର ତନୟ ତହୁଂ ଚଳଇ ହରଷେ
ମକର ଶୁକଳ ପକ୍ଷ ତ୍ରୟୋଦଶୀର ଦିବସେ ।୯୮
ସେଦିନ ପ୍ରବେଶ ଆସି ହୋଇଲା ଯାଗସ୍ଥାନେ
ସମ୍ଭରେ ଆସିବେଟି ଦକ୍ଷିଣ ଦିଗ ରାଜାମାନେ ।୯୯
ମୋହୋର ମହିମାଂ ତୁ ଜାଣିଅଛୁଂ ନା ଭଲେ
ଚକ୍ରଘାତେ ନାଶ ଯିବୁଟି ନଉ ଦିବସେ ନଇଲେ ।୧୦୦
ଆପଣେ ଶ୍ରୀଜଗନ୍ନାଥେ ରଥେକ ଦିଲେ ସାଜି
ବାଛିଣ ଯୋଚିଲେ ଯେ ବାରିଣ ଚାରି ବାଜୀ ।୧୦୧
କାର୍ତ୍ତିକମାସ ଶୁକଳ ପକ୍ଷ ତ୍ରୟୋଦଶୀ ଚନ୍ଦ୍ରବାର
ଅଶ୍ୱିନୀ ନକ୍ଷତ୍ର ବେଳ ଯେ ଦେଢ଼ ପ୍ରହର ୧୦୨
ବାଣିଜ୍ୟ ନାମେ କରଣ ବରିୟାନ ନାମେ ଯୋଗ
ଶୁଭ ଅନକୂଳେ ବିଜୟେ ନକୁଳ ଦକ୍ଷିଣ ଦିଗଭାଗ ।୧୦୩
ଅନେକ ବ୍ରାହ୍ମଣ ତହିଂ କରନ୍ତି ଦେବଧ୍ୱନି
ମଙ୍ଗଳ ହୁଳହୁଳି ଦିଅନ୍ତି ଯେ ସକଳ ସୁଲଭ କାମେନୀ ।୧୦୪
ମାଦ୍ରୀରନନ୍ଦନ ଯେ ଦକ୍ଷିଣ ଦିଗେ ବିଜେ
ବାଗୁଣାବନ୍ତ ଯାୟେ ଆସନ୍ତି ଦେବରାଜେ ।୧୦୫
ସକଳ ସୁବିଧାନେ ନକୁଳକୁ ତିଆରି
ଖଗେଶ୍ୱର ବାହାନେ ବାହୁଡନ୍ତି ଦେବହରି ।୧୦୬
ସହଦେବକଇଂ ସନ୍ନିଧେ ବସାଇ ଅଚ୍ୟୁତ
ପୂର୍ବଦିଗକଇଂ ଶାଢ଼ୀ ଦିଲେକ ଜଗନ୍ନାଥ ।୧୦୭
ମନ୍ତ୍ରୀ ଚୂଡ଼ାମଣି ସକଳ ଗୁଣେ କୁଶଳ
ମାହେନ୍ଦ୍ର ବେଳ ଘେନି ତୁ ଅଇଶାନ୍ୟ ଭାଗେ ଚଳ ।୧୦୮
ସହସ୍ରେକ ରଥ ଯେ ଦୁଇସହସ୍ର ମତ୍ତ ନାଗ
ସାତଲକ୍ଷ ପାଦାନ୍ତି ଯେ ଲକ୍ଷେକ ତୁରଙ୍ଗ ।୧୦୯
ଟମକ ନିଶାଣ ଆଦି ବହୁତ ବୀରତୁର ବାଜେ
ଶୁଭଯୋଗେ ସହଦେବ ପୂର୍ବଦିଗକଇଂ ବିଜେ ।୧୧୦
ଜଗନ୍ନାଥେ ବୋଇଲେ ଶୁଣ ହୋ ସହଦେବ ମହାମନ୍ତ୍ରୀ
ଯେକଭଣା ତିନିସହସ୍ର ପୂର୍ବ ଦିଗେଣ ନୃପତି ।୧୧୧
ଧାର୍ମିକ ବିବେକ ସେ ପଣ୍ଡିତ ସର୍ବରାଜା
ତୋତେ ଦେଖି ସମସ୍ତେହେଂ କରିବେ ପାଦପୂଜା ।୧୧୨
ରାଜାମାନେ ଆସନ୍ତି ଯେତେକ ବୁଦ୍ଧିବଳେ
ପ୍ରୀତଭାବ ଉପୁଜାଇ ଆଣିବୁଂ କୁତୂହୋଳେ ।୧୧୩

ଚଳନ୍ତ ସହଦେବ ନାରାୟଣଂକ ବଚନେ
ପୂର୍ବଦିଗକଇଂ ବିଜେ ରାଜାନ୍ତ ନିମନ୍ତଣେ ।୧୧୪
ଚାରିଦିଗକଇଂ ଚାରି ପାଣ୍ଡବନ୍ତ ପଠିଆଇ
ଅନେକ ସାନନ୍ଦ ଯେ ହୋଇଲେ ଯଦୁସାଇଂ ।୧୧୫
ଯୁଧେଷ୍ଠିଂକ ଛାମୁରେ ଯେ କହନ୍ତି ଜନାର୍ଦ୍ଦନ
ନଉଦିବସେ ଆସିବେ ସମସ୍ତ ରାଜାଗଣ ।୧୧୬
ଯୁଧେଷ୍ଠି ବୋଇଲେ ବାବୁ ଶୁଣିମା ଅନନ୍ତ
ରାଜାନ୍ତ ବିଶ୍ରାମିବାକୁ ଠାବ ହୋଇବ କେମନ୍ତ ।୧୧୭
ଖରା କାକର କୁହୁଡ଼ି ଶୀତ ଯେ ଖାଇଲେ
ପିତାର ପାତକ ଯିବ କି ଅପଖ୍ୟାତି ଉପୁଜିଲେ ।୧୧୮
ଯୁଧେଷ୍ଠି ଦେବଂକୁ ସେ ଘେନିଣ ଦେବରାଜେ
ଦ୍ରିଯୋଧନ ସହିତେ ଇନ୍ଦ୍ରିପ୍ରଶସ୍ତେ କଲେ ବିଜେ ।୧୧୯
ପ୍ରବେଶ ନାରାୟଣ ଯମୁନାନଦୀ କୂଳେ
ଘଟଣ ଭୁବନମାନ ସ୍ୱାମୀ ସେ ଦେଖାଇଲେ କୁତୂହୋଳେ।୧୨୦
ଘଟଣ ବିନ୍ଧାଣୀମାନେ ଲକ୍ଷ ଲକ୍ଷ ହୋଇଛନ୍ତି ଲାଗି
ଦିବାରାତ୍ରେ ଅପସର ନାହିଂ ଆରୋପନ୍ତି ବେଗି ବେଗି ।୨୨୧
ଜଇତ୍ରତ ନୃପତି ଯେ ନାବେ ଦାରୁନ୍ତ ପୂରୋଇ
ପାଷାଣ ସହିତେ ଯମୁନା କୂଳେ ଉଭାରୁଛନ୍ତି ନେଇ ।୨୨୨
ଅଶିଲକ୍ଷ ଯୋଦ୍ଧା ଘେନି କିରାତ ଅଧିପତି
ବାରୁଣାବନ୍ତ ଭୁବନେ ଆଣି ବହିଣ ପକାନ୍ତି ।୧୨୩
ସାତଲକ୍ଷ ପନ୍ଦର ମେବଛ ବିନ୍ଧାଣୀ
ନବର ସଞ୍ଚାମାନ ଘଟଣ ନିର୍ବାଣି ।୧୨୪
ଦେଖିଣ ଆଶ୍ଚିଜ ହେଲା ରାଜା ମାନଗୋବିନ୍ଦ
ଯୁଧେଷ୍ଠି ଦେବ ଦେଖିଣ ପରମ ସାନନ୍ଦ ।୧୨୫
କର୍ଣ୍ଣ ଶଲ୍ୟ ଶକୁନିଂକି ଦେଖି ନ ଫୁରଇ କିଛି
ଦେବଂକୁ ଅଶକ୍ୟ ଯେତ ଭିଆଣ ହୋଇଅଛି ।୧୨୬
ତିରିଶି ମେବଛ ସୂପକାର ଦିଜ ବିଦ୍ୟମାନ
ସେ ଘଟଣକାରୀମାନନ୍ତ ରାନ୍ଧି ଦିଅନ୍ତି ଭୋଜନ ।୧୨୭
ଭୀଷ୍ମେ ବିଚାର ଯେ କରନ୍ତି ତାହା ଚାହିଂ
ଯେଥକୁ ତଣ୍ଡୋଳ ମେଣ୍ଟନ ହରି ସଂଚିଥିଲୁ କାହିଂ ।୧୨୮
ଜୟତୁ ଜଗମୋହନ ସାତୁକ୍ୟ ସିଦ୍ଧବୁଦ୍ଧି
ଜୟତୁ ଜଗମୋହନ ଉପାୟ ବାରାନିଧି ।୧୨୯
ଜୟତୁ ଜଗମୋହନ ସଯଜ ଜନ ଚିନ୍ତା
ଜୟତୁ ଜଗମୋହନ ସଂସାର ଉଦ୍ଧାରନ୍ତ ।୧୩୦
ଜୟତୁ ଜଗମୋହନ ସର୍ବ ସିଦ୍ଧ ଯୋଗୀ
ଜୟତୁ ଜଗମୋହନ ତ୍ରଇଲୋକ ଜନ ଭାବି ।୧୩୧
ଜୟତୁ ଜଗମୋହନ ସକଳ ଜନ ଭାବେ
ଜୟତୁ ଜଗମୋହନ ଉପାୟ ସର୍ବଠାବେ ।୧୩୨
ଜୟତୁ ପରମେଶ୍ୱର ନିରାକୁଳ ନିରଞ୍ଜନ
ଜୟତୁ ପରମେଶ୍ୱର ଅଭୟେ କୁଳଶୂନ୍ୟ ।୧୩୩
ଜୟତୁ ପରମେଶ୍ୱର କୃତାନ୍ତେକ ଦର୍ପ ଧ୍ୱଂସା
ଜୟତୁ ପରମେଶ୍ୱର ଜଗତ ଜନ ଚିନ୍ତା ମନୀଷା ।୧୩୪
ଜୟତୁ ପରମେଶ୍ୱର ପର ଦୁଖେ ଦୁଖୀ
ଜୟତୁ ପରମେଶ୍ୱର ଆଦିଅନ୍ତ ମଧ ସାକ୍ଷୀ ।୧୩୫
ଜୟତୁ ପରମେଶ୍ୱର ଯୋଗୀଜନ ହୃଦେ
ଜୟତୁ ପରମେଶ୍ୱର ପରମ ସାନନ୍ଦେ ।୧୩୬
ଜୟତୁ ପରମେଶ୍ୱର କେଶବ ମୂରତି
ସର୍ବଜନ ଚିନ୍ତାମଣି ନାଥ ଫେଡ ମୋହୋର ଦୁର୍ଗତି ।୧୩୭
ଯାହାକଇଂ ପ୍ରସନ୍ନ ସ୍ୱାମୀ ଫେଡୁ ସର୍ବ ଚିନ୍ତା
ଅନାଥ ଜନକୁ ନାଥ ଗତି ଦିଅନ୍ତା ।୧୩୮
କିଞ୍ଚିତ ପ୍ରସନ୍ନ ସ୍ୱାମୀ ହୋଉ ତୁ ଯାହାକୁ
ଅଭଗତେ ଠାବ ଦିଲୁ ସ୍ୱାମୀ ତୁ ମାନଧାତାକୁ ।୧୩୯
ତୁ ଦେବ ତ୍ରଇଲୋକ୍ୟ ଭୁବନକୁ ଚିନ୍ତାମଣି
ନାଶକର ଦଣ୍ଡ ଦେବ ଖଣ୍ଡ ଚକ୍ରପାଣି ।୧୪୦
ଅସୁର ଦର୍ପ ନିଶୋଧନ ଜୟ ତୁ ହୃଷିକେଶି
ଶୂଦ୍ରମୁନି ସାରୋଳା ଦାସକୁ ମୁକତି ଗତି ଦେସି ।୧୪୧

**

## ୩୬. ରାଜସୂୟ ଯଜ୍ଞ, ଯଜ୍ଞଶାଳା ଓ ସଭାଗୃହ, ରାଜାମାନଙ୍କ ସହ ସୈନ୍ୟ ଗଜ ଅଶ୍ୱଙ୍କର ଗୃହ ନିର୍ମାଣ ଓ ରାଜସୂୟ ଯଜ୍ଞର ଆୟୋଜନ

ଶୁଣ ହୋ ଯୋଗେଶ୍ୱର ବଦୟନ୍ତି ବ୍ରହ୍ମବେତ୍ତା
ନାରାୟଣଂକ ବଚନେ ସେ ସକଳ ନିର୍ମିତା ।୧
ଗଙ୍ଗା ଯମୁନା ଦୁଇ ନଦୀର ମଧ୍ୟସ୍ତାନେ
ମହାକ୍ଷେତ୍ର ଭୂମି ହୋୟେ ଦ୍ୱାଦଶ ଯୋଜନେ ।୨
ଯେଥିର ଚାରିଦିଗେ ବେଢ଼ି ଚାରିଆଡ଼େ
ଇନ୍ଦ୍ରପ୍ରଶସ୍ତ ଯମପ୍ରଶସ୍ତ ହସ୍ତିନା ବାରୁଣାବନ୍ତ କଛାଡ଼େ ।୩

ଇନ୍ଦ୍ରପ୍ରଶସ୍ତ ରାଜ୍ୟେ ଦୁର୍ଗମ ଗିରି ବସି
ଯୁଝେଷ୍ଠି ଦେବ ସୁମରିଲେ ବ୍ୟାସ ମହରଷି ।୪
ଧ୍ୟାନେଣ ଜାଣିଲେ ସେ ପଣ୍ଡିତ ଭିଗ୍ୟଂବାସୀ
ମନରେ ଉଦବେଗ ହୋଇଲେ ବ୍ୟାସ ମହରଷି ।୫
ପରାଶରଂକ ନନ୍ଦନ ଜାଣିଲେ ତଲୟେ
ଷାଠିୟେ ସସ୍ତ୍ର ଶିଷ୍ୟନ୍ତ ଘେନି ପ୍ରବେଶ ସତ୍ୟବତୀର ତନୟେ।୬
ଜଇମିନି ଶୁକମୁନି ବଇଶମ୍ପାୟନ
ଅଙ୍ଗିରା ବାଲମୀକ ଉଦ୍ଦାଳକ ତପୋଧନ ।୭
ୟେହାଂକର ମୂଳେ ଯେ ଷାଠିୟେ ସହସ୍ର ଶିଷି
ତାହାନ୍ତ ଘେନି ପ୍ରବେଶ ହୋଇଲେ ବ୍ୟାସ ମହରଷି ।୮
ଇନ୍ଦ୍ରପ୍ରଶସ୍ତେ ବିଜୟେ ପାଣ୍ଡବେ କଉରୋବେ
ଆସ୍ତାନେ ଦ୍ରୋଣ କ୍ରୁର୍ଣ୍ଣ ବିଦୂର ଶକୁନି ଗାଙ୍ଗବେ ।୯
ମହା ସମ୍ଭର୍ବେ ସେ ଆସ୍ତାନ ଗହଳ
ପ୍ରବେଶ ହୋଇଲେ ଆସି ସତ୍ୟବତୀର ବାଳ ।୧୦
ୟେହେନେକ ସମୟେ ବିଜୟେ ବ୍ରହ୍ମବେତ୍ତା
ଆସ୍ତାନ ତେଜ୍ୟା କରି ଉଠିଲେ ଧର୍ମପୁତ୍ରା ।୧୧
ଶ୍ରୀକରେ ରତ୍ନଝରୀ ଘେନିଣ ଧର୍ମରାଜା
ବ୍ୟାସଂକର ପଦ୍ମପାଦେ କଲେ ଦିବ୍ୟପୂଜା ।୧୨
ସମସ୍ତ କୁଶଳ ପୁଚ୍ଛା କରନ୍ତି ତପୋନିଷ୍ଠି
ସର୍ବ କୁଶଳ ବୋଲି ବୋଲନ୍ତି ଧର୍ମରାଜା ଯୁଝେଷ୍ଠି ।୧୩
ପଚାରନ୍ତି ଧର୍ମସୁତ ଶୁଣିମା ବ୍ରହ୍ମରଷି
ସମପିତା ପଣ୍ଡୁ ହୋଇଲେ ବ୍ରହ୍ମହତ୍ୟା ଦୋଷୀ ।୧୪
ରାଜୁସି ଯଗ୍ୟଂକୁ ଆଗ୍ୟାଂ ଦିଲେକ ଶ୍ରୀପତି
ଭାଇନ୍ତ ଘେନିଣ ମୁଂ ଯେ ତୀର୍ଥ କରି ଯାନ୍ତି ।୧୫
ରାଜୁସି ଯଗ୍ୟଂ ବୋଲି ସଭା ଯେ କେମନ୍ତ
ମୋତେ ଅଶକ୍ୟ ଅଟଇ ୟେ ଅଶ୍ରୁତି ଅଦୃଷ୍ଟି ଯୁଗତ ।୧୬
ବ୍ୟାସେ ବୋଇଲେ ଯାହାକଇଂ ସଂପକ୍ଷ ପରମେଶ୍ୱର
ବାବୁ ରାଜୁସି ଯଗ୍ୟଂ ତୋତେ କେତେକ ମାତର ।୧୭
ଆହୋ ବାବୁ ୟେତେବେଳୁଂ ବଧ ଗଲା ଢାରା
ଲକ୍ଷେକ ନୃପତି ତୋତେ ହୋଇଲେ ଭୃତ୍ୟ ପରା ।୧୮
ଦେବତାମାନଂକୁ ତୁ ସୁମରିବୁ ୟେତେବେଳେ
ଆସି ପ୍ରବେଶ ହୋଇବେ ସମସ୍ତ ଦିଗପାଳେ ।୧୯
ଖାଣ୍ଡେବ ବନୁଂ ଖାଇଣ ସମସ୍ତ ମଉଷଧି
ଅଗ୍ନି ଦେବତାର ଅର୍ଜୁନ ଖଣ୍ଡିଲା ଲୁଦୁବୁଦୁ ବ୍ୟାଧି ।୨୦
ତେଣୁ ଅଗ୍ନି ଦେବତାୟେ ହୋଇଛନ୍ତି ପ୍ରସନ୍ନ
ପୁଷ୍କରଦେବତା ତୋତେ ହୋଇଛନ୍ତି ସଂପକ୍ଷ ବିଦ୍ୟମାନ ।୨୧
ଆବର ଯାହାକୁ ସଂପକ୍ଷଟି ଦେବ ନାରାୟଣ
ରାଜୁସି ଯଗ୍ୟଂ ତୁହୋ କରସି ଆରୋପଣ ।୨୨
ଯଗ୍ୟଂଶାଳ ଭୂମି ନେଇ ଦେଖାଇଲେ ଦେବ ହରି
ମକର ତିଳ ବୁଣାଇଲେ ଶୁଳେ ଭୂମି ଚିରି ।୨୩
ଯଗ୍ୟଂକୁ ସଞ୍ଚା ଯେ କରନ୍ତି ତହିଂ ବ୍ରହ୍ମବେତ୍ତା
ସମିଧ ଘୃତ ଯବ ତିଳ କରନ୍ତି ନିର୍ମିତା ।୨୪
ରାଜାମାନଂକୁ ନବର ଯେ ଅଶ୍ୱଶାଳ ଗଜଶାଳ
ଭାଗ ଭାଗ କରି ନେଇ ପାତିଲେ ତହିଂ ନଳ ।୨୫
ୟେକବିଂଶ ଦଣ୍ଡେ ପାତିଲେ ନଳକାଠି
ପାଞ୍ଚନଳ ଆୟତନ ୟେକ ବଖରା ଗୋଟି ।୨୬
ବିଶାଶତେ ବଖରାୟେ ଘରେକ ନିର୍ବାଣି
କାନ୍ଥଚାଳ ଆଦିକରି ସବୁ ପାଷାଣେ ଘଟଣ ଜାଣି ।୨୭
ଯମୁନା ନଦୀର ଯେ ଦକ୍ଷିଣ ଭାଗ କୂଳେ
ୟେତେକ ଆୟେତନ ଉଠିଲା ଯାଗଶାଳେ ।୨୮
ୟେମନ୍ତେ ଅଶିପଦ୍ମ ନଉ ସାଗର ବିଶାଶତେ ମର୍ଭୁତ
ୟେତେକ ଯଗ୍ୟଂଶାଳ ହୋଇଲା ନିର୍ମିତ ।୨୯
ଅଞ୍ଜନ ନାମେଣ ମଧୁବନର ବିଶ୍ୱକର୍ମା
ତାହାର ଉପର ବଂଶେ ଗଞ୍ଜିଲେ ସଭା ସୁଧର୍ମା ।୩୦
ତାହାନ୍ତ ଆଗ୍ୟାଂ ଯେ ଦିଲେ ବ୍ୟାସ ମହାଯତି
ତୋହୋର ଉପର ବଂଶେ ଯେ ଚାରିଯୁଗେ ସଭା ନିର୍ମିତି ।୩୧
ଆହୋ ୟେ ଆସ୍ତାନେ ବିଜେ ଲକ୍ଷେକ ରାୟେ
ସୁଧର୍ମା ସଭା ସାରିକ୍ଷେ ଘଟଣ କରିବୁ ଛାୟା ମଣ୍ଡୋପ ଗୋଟାୟେ ।୩୨
ଅଞ୍ଜନ ବୋଇଲା ମୋତେ ଆଗ୍ୟାଂ ଦିଲେନି ଚକ୍ରପାଣି
ଅଳକା ଭୁବନ ସାଦ୍ରିଶେ ଛାୟା ମଣ୍ଡୋପ ନିର୍ବାଣି ।୩୩
ନବରମାନ ଘଟଣ କରିବଇଂ ୟେ ସ୍ତାନେ
ଦୁତୀ ଅମର ଜାଣି ଦେଖିବେ ରାଜାମାନେ ।୩୪
ଆଗ୍ୟାଂ ପ୍ରମାଣେ ତହିଂ ଲାଗିଲା ଅଞ୍ଜନ
କାଠ ପାଷାଣ ଆଦି କରି ଯେ କରନ୍ତି ସର୍ଜନ ।୩୫
ଆହୋ ଚଉଷଠି କାଠିୟେ ଯେ ବଖରାୟେ କରି
ୟେମନ୍ତେ ୟେକଶାଳ ଗୋଟି ବଖରା ସହସ୍ର ଚାରି ।୩୬
ୟେମନ୍ତେ ସହସ୍ରେ ପାରାର୍ଦ୍ଧ ଘର ଉଠିଲା ବାରୁଣାବନ୍ତେ
ସହସ୍ରେ ପରାୟୁଧ ଘଣ ରଂଚିଲା ଇନ୍ଦ୍ରପ୍ରଶସ୍ତେ ।୩୭

ବିଶାଶତେ ସାଗର ଘର ଯମପ୍ରଶସ୍ତ ଭୁବନେ
ଅଶ୍ୱଶାଳ ଗଜଶାଳ ମାପି ଦିଲେ ଜନାର୍ଦ୍ଦନେ ।୩୮
ପାଟହାଥୀ ପାଟଘୋଡ଼ାକୁ ସୁବର୍ଣ୍ଣ ରସାଣ ଶାଳ ସଞ୍ଚି
ଚାରିଲକ୍ଷ ଘର ଲେଖନ ଶକୁନିର ପାଞ୍ଜି ।୩୯
ଆହୋ ଉଟ ଅଶ୍ୱ ବରାଳ ମର୍ଦ୍ଦନ ବାଦ୍ୟକାର
ଗଙ୍ଗାକୂଳେ ଉଠିଅଛି ଅଶି ସାଗର ଘର ।୪୦
ଆହୋ ଯେକୋଇଶ କାଠି ବଖରା ଯେକ ବୋଲି
ଯେକ ବଖରାକେ ତହିଁ ବସଇ ଯେକ ଚୁଲି ।୪୧
ଯେକା ଚୁଲିକରେ ଅଷ୍ଟ ଉତ୍ତର ଶତେ ପଖା
ଇକ୍ଷେ ରାଜାର ସନ୍ୟ ଆସିବେ କେ କରିବ ଲେଖା ।୪୨
ଆହୋ ଯେକୋଇଶ ଦଣ୍ଡେ ହୁଯେ ଯେ କାଠିଯେ
ଯେକୋଇଶ କାଠିରେ ଯେକ ବଖରାଯେ ।୪୩
ଯେକ ଘରକେ ଉଠଇ ତହିଁ ବଖରା ଶଯେ
ଅନେକ ଘର ନିର୍ବାଣ ଯେ ହୋଇଲା ସେହିଠାଯେ ।୪୪
ଯେମନ୍ତେ ନଉପଦ୍ମ ଅଶିସାଗର ଉଠଇ ଛତ୍ରଶାଳ
ଛତ୍ରଶାଳମାନ ହୋଇଲା ଯମୁନା ନଦୀ କୂଳ ।୪୫
ଯେମନ୍ତେ ବତିଶଲକ୍ଷ ଉଠିଲା ଯେ କୁରାଳଶାଳମାନ
ମୃତ୍ତିକା ହାଣ୍ଡିମାନ ତହିଁ କରିବେ ଘଟଣ ।୪୬
କଣ୍ଠଯଭାଗୀ ବୋଲି ଯେକଇ ନଦୀଗୋଟି
ମେଖଳାଗଙ୍ଗାଉଂ ସେ ଦକ୍ଷିଣ ଭାଗେ ଫିଟି ।୪୭
ସେ ନଦୀର ତୀରେ ବିଶାଶତେ ମେବଛ ଛତ୍ରଶାଳ
ବ୍ରାହ୍ମଣମାନଂକୁ ସେହି ବଢ଼ାଇ ବୃଷାଳ ।୪୮
ସହସ୍ରେ ଅହିବ୍ରତ ଘର ବାରୁଣାବନ୍ତେ ନିର୍ବାଣି
ଯେତେ ଶାଳ କରିବେ ତାୟରା ବିନ୍ଧାଣୀ ।୪୯
ତୟାର ଯୋଗାଡ଼ମାନ କରିବେ ନିର୍ମିତ
ଯେ ବିନ୍ଧାଣୀମାନେ ଯେ ଲାଗିଛନ୍ତି ପଞ୍ଚାଶ ମର୍ଭୁତ ।୫୦
ପାଞ୍ଚଲକ୍ଷ ଘର ତହିଁ ଉଠଇ ଝିମାଣିଶାଳ
ଲୁହା କର୍ମମାନ ଘଟଣ କରିବେ ସକଳ ।୫୧
ଅସିପତ୍ର ଧରା ତହିଁ ତେରଲକ୍ଷ ଘର
ବୁଲାନ୍ତି ଶାଣ ଯେ ଅସି କରନ୍ତି ତୀଖଧାର ।୫୨
ଚଉରାଣୋଇଂ ସହସ୍ର ଘର ଅଛଇ କମକାରାଂକି
ସୁବର୍ଣ୍ଣର କମମାନ ଯେ ଅଷ୍ଟରତ୍ନେ ଲେଖି ।୫୩
ତାଡତୋଡର ଝୁମ୍ପା ସରଳ ବାହୁଟି କଂକଣ
ନେପୂର କର୍ଣ୍ଣାଞ୍ଚଳ ହୃଦରେ ଭୂଷଣ ।୫୪
ମୁକୁଟ କୁଣ୍ଡଳ ତାଡ ବିଦ ମୁଦି ଗଢ଼ି
ଅଷ୍ଟରତ୍ନେ ଖଞ୍ଜିଲେ ଯେମାନ ସର୍ବ ଜଡ଼ି ।୫୫
ପଇଲମ ଟାଟିଆ ରତ୍ନଝରୀ ଆଦି କରି
ପୀଢ଼ା ସିଂହାସନ ଖଟୁଳି କମ କରି ।୫୬
ସୁବର୍ଣ୍ଣର ନଉତି ଘଟଣ ନିର୍ବାଣ
ଯେହା ସର୍ଜନା କରନ୍ତି ବଇଶ୍ୟ ଜାତିମାନ ।୫୭
ଚାଳିଶ ସାଗର ବସଇ ସୁପୁଟି ସୂଚୀକର୍ମ ବିନ୍ଧାଣି
ଯେମାନଂକୁ ଅଶି ସାଗର ଘଣ ନିର୍ବାଣ କଲେ ଦେବ ସ୍ୱାମୀ।୫୮
ଶେଯ ମୁକୁଳି ହଂସୁଳିତୁଳି ସୁପାତି ଶେଯ
ଯେମାନ ଭିଆଣ ଯେ କରିଲେ ଦେବରାଜ ।୫୯
ନାନା ଅଷ୍ଟରତ୍ନେ ଖଞ୍ଜଣି ରତ୍ନକର୍ମହିଂ
ପରିହରଣ ବସ୍ତ୍ର ସୁଠାମ କଲେକ ଖଞ୍ଜାଇ ।୬୦
ବ୍ୟାସନ୍ତ ଘେନିଣ ସେ ଦେବ ଚକ୍ରପାଣି
ଆଗ୍ୟାଂ ପରମାଣେ ସେ ସମସ୍ତ ନିରିବାଣି ।୬୧
ଇନ୍ଦ୍ରପ୍ରଶସ୍ତ ଯମପ୍ରଶସ୍ତ ହସ୍ତିନା ବାରୁଣା ଜଇନ୍ତା ପଞ୍ଚୁକଟକ ମାଡି
ଉଠିଲେ ଶାଳମାନେ ନଦୀ ପର୍ବତ ଛାଡି ।୬୨
ଘଟଣ କମମାନ କଳଣା ନ ଯାଇ ଲେଖା
ରାଜାମାନେ ଆସି ନିହାଇ ଦିଅନ୍ତି ଦେଖା ।୬୩
କାର୍ତ୍ତିକେ ବୁଣିଲେ ତିଳ ଫୁଟିପଡଇ ତଳେ
ଆପଣେ ଥାଇ ବ୍ୟାସେ ତୋଳାଇଲେ ଯାଗଶାଳେ ।୬୪
ପଞ୍ଚୁ ରାଜ୍ୟରେ ହୋଯେ ଯେତେକ ଧାନ ସଞ୍ଜା
ତଣ୍ଡୁଳ କରିଣ ତାହା ସଞ୍ଚିଲେ ପରଜା ।୬୫
ଦ୍ୱାପରେ ନିର୍ବାଣକଲେ ମାଡକେ ଯେକବାଟି
ବାଟିକେ ତଣ୍ଡୁଳ ଦେବ ଯେକ ଯେ ପଉଟି ।୬୬
ଯେସନକ କରି ଭିଆଇଲା ମନ୍ତ୍ରୀ ଶକୁନି
ସାଧୁ ମନ୍ତ୍ରୀ ବୋଲିକରି ପଞ୍ଚୁରାଜ୍ୟେ ଉଠିଲାକ ଧ୍ୱନି ।୬୭
ଅଶିସହସ୍ର ମାପୁଣିଆ ଘେନି ମନ୍ତ୍ରୀ ଯେ ଶକୁନି
ଇନ୍ଦ୍ରପ୍ରଶସ୍ତେ ମାପି ବସିଲେ ତଣ୍ଡୁଳମାନ ଘେନି ।୬୮
ଆଟୁ କମ କଲେକ ଦଶ ସହସ୍ର ଘର
ତଣ୍ଡୁଳମାନ ତହିଂ ପୂରାବନ୍ତି ନିରନ୍ତର ।୬୯
ଯେତେକ ସଇନ ଲାଗିଛନ୍ତି ବିନ୍ଧାଣିକାରୀ
ରାନ୍ଧଣା ବିଧାନେ ସବୁନ୍ତିହିଂ ତ୍ରିପୁତି କରି ।୭୦
ବାହାର ରୋଷଘରେ ରାନ୍ଧଣା ନିରିବାଣି
ପଦ୍ମେ ସାଗରେ ମର୍ଭୁତେ ଭୁଞ୍ଜନ୍ତି ବିନ୍ଧାଣି ।୭୧
ଉଠାବନ୍ତି ଘରମାନ ଅନେକ ରତ୍ନେ କମି

ଦେଖିଣ ସାନନ୍ଦ ଯେ ଜଗନ୍ନାଥ ଦେବସ୍ୱାମୀ ।୭୨
ଅନେକ ବିନ୍ଧାଣି ମୂଳେ ଅଞ୍ଜନ ବିଶ୍ୱକର୍ମା
ଦିବାରାତ୍ରେ ଲାଗିଲେ ସେ କମକାରୀ ମହାତମା ।୭୩
ଅନେକ ମହାରଣା ତାହାଂକ ତୁଲେ ଛନ୍ତି ଲାଗି
ଆହାର ନିଦ୍ରା ତେଜିଣ ଗଢନ୍ତି ବେଗି ବେଗି ।୭୪
ଆହୋ ବଇବସୁତ ମନୁ ଦେଖ ଜଗନ୍ନାଥଂକର ମାୟା
ଆହାର ନ ରୁଚଇ ବିନ୍ଧାଣିମାନଂକର ପୁଲକିତ କାୟା ।୭୫
ଆହାର ନିଦ୍ରା ମଇଥୁନ ତେଜନ୍ତି ସମସ୍ତ ରଣା
ସବୁହିଂ ସୁବର୍ଣ୍ଣର ନିର୍ବାଣ ପାଣିଦ୍ରବ୍ୟ ଘଟଣା ।୭୬
ଗଜଶାଳ ଅଶ୍ୱଶାଳ ଗୋଶାଳ ଆଦି କରି
ରୂପାରପତ୍ର ଛାୟେଣୀ ଝିଂକର ଓହାଡ଼ କରି ।୭୭
ହାଥୀଦନ୍ତ କମମାନଂକୁ ଦଶଲକ୍ଷ ଶିଂଗରା
ସ୍ଥୁଳ କର୍ମମାନ ନିବାଡନ୍ତି ଶତେଲକ୍ଷ କୁନ୍ଦୁରା ।୭୮
ରୂପାପତ୍ରମାନ ଯେ ଉପରେ ଛାୟେଣୀ
ବଖରାକେ ସୁବର୍ଣ୍ଣର କଳସ ନିରିବାଣି ।୭୯
ଆଡ ଦୀର୍ଘେ ପଞ୍ଚାଶ ପଞ୍ଚାଶ ଯୋଜନ ପ୍ରତି
ନିରନ୍ତରେ ଭୁବନ ଯେହ୍ନେ ଅମର ବାରସ୍ୱତୀ ।୮୦
କନେକର ଗୁଅ ଶେଣି ବତା ଆଦିକରି
ସଷ୍ଟିକର ପୀଢ ଆଣି ମୟେଦାନବ ଉହାରି ।୮୧
ଆପଣେ ନିର୍ବାଣ କରିଣଛନ୍ତି ଜଗନ୍ନାଥ ଦେବସ୍ୱାମୀ
ଯାଗଶାଳମାନ ଉଠିଅଛି ଯେ ମଧ୍ୟସ୍ତାନ ଭୂମି ।୮୨
ପୂର୍ବଦ୍ୱାରେ ଅଛି ବଟ ପଛିମ ଦ୍ୱାରେ ଶମୀ
ଉତ୍ତରେଣ ଜଟୀବଟ ଦକ୍ଷିଣରେ ଗନ୍ଧ ଆମି ।୮୩
ତିନିଶାଖା ତିନିପୁରେ ବିଶାଶତେ ତାଳ ଉଞ୍ଚ
କୋଶେକ ଆୟେତନ ଯାଗଶାଳ ସୁସଞ୍ଚ ।୮୪
ଜଟୀ ବଟୀ ହଟୀ ଯେ ଆବର ସାଂପୁଟୀ
ଯେ ଚାରି ସମିଧେ ଯଗ୍ୟଂଶାଳ ଖଟି ।୮୫
ପଛିମ ସୋମନାଥେ ନଡପ ଶାଳମାନ
ସତୁରିପଦ୍ମ ଘଣା ବୁଲଇ ପ୍ରତିଦିନ ।୮୬
କୁନ୍ଧାଣଦେଶର ରାଜା ନାମ ରଷିକେଶୀ
ନାବେ ପୂରୋଇ ଆଣି ଦେଉଅଛି ସର୍ବରାଶି ।୮୭
ପଞ୍ଚଷଠି ପଦ୍ମ ଚାରିସାଗର ଦିହୁଡ଼ି
ଶତେବୃନ୍ଦ ହୁଳା ଦୀପ ସାଗର ଚାରି ।୮୮
ଯେମନ୍ତେଣ ପଞ୍ଚାଶ ସହସ୍ର ଯୋଜନ ଦିଶଇ ଆଲୋକମୟେ
ମହାରଣାମାନେ ଘଟଣ କରୁଛନ୍ତି ରାତ୍ର ଯେ ଦିବସ ପ୍ରାୟେ।୮୯
ଦିବାରାତ୍ରେ କାହାକଇଂ ନାହିଂ ଅବସାଦ
ଖଟନ୍ତି ବେପାରୀୟେ ଯେ ଯାହାର ନିଯୋଗମାନ ।୯୦
ଆପଣେ ଜଗନ୍ନାଥେ ଅନୁବ୍ରତେ ବିଜେ କରି
ସମସ୍ତ ବିନ୍ଧାଣିମାନଂକୁ ଶ୍ରୀହାଥେ ଦିଲେ ଶାଢ଼ୀ ।୯୧
ଅନେକ ରତନେଣ ବାହୁଟି ଜଗଦଳା
ଲଲାଟେ ସୀମନ୍ତିନୀ ତାଡ ତୋଡର ହୃଦେ ରତ୍ନମାଳା ।୯୨
ଆହୋ ନଉଦିବସ ମଧ୍ୟେ ସମସ୍ତ କର ନିର୍ବାଣି
ଯେତେ ରତ୍ନ ଅଣ୍ଟଇ ଆମ୍ଭେ ଦେଉଥିବୁ ଆଣି ।୯୩
ମୋହୋର ଆଗ୍ୟାଂଭ୍ରଷ୍ଟ କରିବ ଯେଉଂଣ ଜନ
ଚକ୍ରେ ଶିର ଛେଦିବି ଯୁଝେଷ୍ଟି ଦେବଂକ ଆନ ।୯୪
ଜୀବନକଇଂ କାରଣ ଯେହୁ ରାଜୁସିୟଗ୍ୟଂ ସଭା
ସମସ୍ତ ପାତକ ଯେଥି ଦହନ କରିବା ।୯୫
ଜନ୍ମେ ଜନ୍ମେ ସୁଫଳ ଯାହାର ସୁଭାଗି
ଯେ ମହାଯଗ୍ୟଂ କାର୍ଯ୍ୟେ ସୁବିଧାନେ ଥିବ ଲାଗି ।୯୬
ଜଣ ଜଣକେ ଆଗ୍ୟାଂ ଦେଉଅଛନ୍ତି ଶ୍ରୀପତି
ଆପଣେ ଚରଚା ସ୍ୱାମୀ କରନ୍ତି ଦିବାରାତି ।୯୭
ବଇନେତ୍ର ଆରୋହି ଦେବ ମଧୁହାରୀ
ପ୍ରବେଶ ହୋଇଲେ ଯାଇଂ ଅମର ସ୍ୱର୍ଗ ପୁରୀ ।୯୮
ଛାୟାମଣ୍ଡୋପ ଯାଇଂ ଦେଖିଲେ ଅନେକେ
ସଭା ପଟାନ୍ତର କରିବାକୁ ନାହିଂ ତ୍ରିୟଲୋକେ ।୯୯
ଦେଖିଣ ସାନନ୍ଦ ଯେ ହୋଇଲେ ଦେବରାଜା
ଅଇରାବ୍ରତ ଆରୋହି ବିଜୟେ ବିଡ଼ୋଜା ।୧୦୦
ଇନ୍ଦ୍ର ଗୋବିନ୍ଦ ବସି ବିଶ୍ୱକର୍ମାକଇଂ ହକାରି
ଶ୍ରୀହାଥେ ନାରାୟଣେ ଯେ ଆପଣେ ଦିଲେ ରତ୍ନଶାଢ଼ୀ ।୧୦୧
ସୁଧର୍ମାସଭା ଯେ ଅତିଅ ସୁସଞ୍ଚ
ମାନବ ମାତ୍ରକେ କାହିଂ ଦେଖିବାକ ମଞ୍ଚ ।୧୦୨
କ୍ଷୁଧା ତୃଷା ନ ନାଗଇ ଯେଉଂଣ ସଭାୟେ ଥିଲେ ବସି
ରାତ୍ର ଦିବସେ ତହିଂ ଚନ୍ଦ୍ର ଉଦୟେ ପରକାଶି ।୧୦୩
ସଭା ଦେଖିଣ ସେ ଅନେକ ସାନନ୍ଦେ
ଅନେକ ପ୍ରଶଂସା କରନ୍ତି ଇନ୍ଦ୍ର ଯେ ଗୋବିନ୍ଦେ ।୧୦୪
ବତିଶଲକ୍ଷ ବିନ୍ଧାଣି ବିଶ୍ୱକର୍ମା ମୂଳେ
ସଭା ଆୟେତନ କରିଛନ୍ତି ମେରୁ ମେଖଳେ ।୧୦୫
କରପତ୍ର ଯୋଡିଣ କହଇ ବିଶ୍ୱକର୍ମା

ସଭାକୁ ଅନେକ ପ୍ରଶଂସା କରନ୍ତି ଦେବବ୍ରହ୍ମା ।୧୦୬
ନାରାୟଣ ବୋଇଲେ ତୁ ଅନାଦି ବିଶ୍ୱରୂପୀ
ସିଦ୍ଧସାଧକ ହେତୁ ତୁହି ଅଟୁ ସର୍ବବ୍ୟାପୀ ।୧୦୭
ତ୍ରଇଲୋକ୍ୟର ମଧ୍ୟେ ଯେ ତୋହୋର ସଭା ଦେଖି
ଫିଟିବ ଦୁଷ୍କୃତ ଅନେକ ପାତେକ ଉପେକ୍ଷି ।୧୦୮
ତିମିର ବିଦାରଣେ ଯେ ଅନର୍ଘ୍ୟ ପଞ୍ଚମଣି
ଘଟଣକରି ତୁଲେ ତାହା ଥିବୁ ତ ନିର୍ବାଣି ।୧୦୯
ଯେସନେ ଆଗ୍ୟାଂ ଦେଇଣ ଦେବରାଜେ
ଇନ୍ଦ୍ର ଗୋବିନ୍ଦ ଦୁହେଂ ନନ୍ଦନବନେ କଲେ ବିଜେ ।୧୧୦
ଦେଖନ୍ତି ତୋଟା ଯେ ସଦାଇ ବସନ୍ତ
ଫଳଭାରେ ଶାଖାଯେ ଲୋଟନ୍ତି ଭୂମିଗତ ।୧୧୧
ତୋଟାଳମାନନ୍ତ ତହିଂ ଆଗ୍ୟାଂ ଅବଧାରି
ସୁବିଧାନେ ଥାଅ ତୋଟା ଯତ୍ନେ ରକ୍ଷାକରି ।୧୧୨
ରଚ୍ଛୁସି ଯଗ୍ୟାଂ ଆସି ହୋଇଲା ସନ୍ନିଧାନ
ସର୍ବେ ଅଛଇଂ ପୁଣ ପଞ୍ଚବିଂଶ ଦିନ ।୧୧୩
ତୋଟାଳେ ବୋଇଲେ ହରି ଯେ ତୋହୋର ଆଗ୍ୟାଂ
ଦେବତା ଗନ୍ଧର୍ବ କେ ବା କରିବ ଅବଗ୍ୟାଂ ।୧୧୪
ନାରାୟଣକଇଂ ବିନୋୟୀ କହିଲେ ମଘବାନ
ତୋହୋର ପ୍ରସନ୍ନେ ମୋହୋର ଉଦିତ ହୋଇଲା ଧର୍ମ ।୧୧୫
ଯେବଣ ବିଧାନ ଦେବ କରିଅଛ ଆରୋପଣ
ଯେ ସର୍ବସମ୍ପଦ ତୋହୋର ନାରାୟଣ ।୧୧୬
ଗୋବିନ୍ଦେ ବୋଇଲେ ବହୁତ ଭାରାଯେ ହୋ ପଶିଲୁ ଦେବରାଯେ
ତୁ ସେ ସୁରେଶ୍ୱର ଯେଥକୁ କରିଥିବୁ ସଦଯେ ।୧୧୭
ଯେସନେକ ଆଗ୍ୟାଂ ଦେଇଣ ଦେବହରି
ବିଜଯେ ଜଗମୋହନ ହସ୍ତିନା ରାଜ୍ୟପୁରୀ ।୧୧୮

**

## ୩୭. ପଶ୍ଚିମ ଦିଗ ରାଜା ନିମନ୍ତେଣ କାରଣେ ଭୀମଙ୍କର ଗମନ

ଯେଥୁ ଅନନ୍ତରେ ଶୁଣ ବଇବସ୍ୱତ ମନୁ
ଛଡ଼ଅର୍ଘ୍ୟେ ପୂଜାକଲା କୁମ୍ଭରକ୍ଷିଗ ତନୁ ।୧
ଜୟତୁ ବ୍ରହ୍ମବେତ୍ତା ପଣ୍ଡିତ ଅଗସ୍ତି
ଅମୃତଦୃଷ୍ଟି ମୋତେ କରାଇଲୁ ବ୍ରହ୍ମପତି ।୨
କଳିକାଳ ତରିବାକୁ ମୁଂ ବଳାଇଲି ଇଚ୍ଛା
ତୋହୋର ପ୍ରସାଦେ ମୋର ପୂରିବ ମନବାଞ୍ଛା ।୩
ଯେହେନେକ ଆଗ୍ୟାଂ ଦିଲେ ପ୍ରଭୁ ଦେବରାଜେ
ଭୀମସେନ କଲା ଯେ ପଶ୍ଚିମଦିଗେ ବିଜେ ।୪
ରାଜାନ୍ତ ନିମନ୍ତଣ ସେ କଲାକ କେମନ୍ତେ
ଯେହା ସଞ୍ଚପିଣ ମୁନି କହିବା ସ୍ୱାମୀ ମୋତେ ।୫
ବଦନ୍ତି ଯୋଗେଶ୍ୱର ମହା ବ୍ରହ୍ମବେତ୍ତା
ଶୁଣ ସାବଧାନେ ତୁ ଧାର୍ମିକ ବଳବନ୍ତା ।୬
ତୁଳମାସ କୃଷ୍ଣପକ୍ଷ ଦଶମୀର ତିଥି
ଚନ୍ଦ୍ରବାର ପୁଷ୍ୟା କକଡ଼ାରେ ଚନ୍ଦ୍ର ତିଥି ।୭
ବାଣିଜ୍ୟ ନାମେ କରଣ ସାଧ ନାମେ ଯୋଗ
ତୁଳ ସଂକ୍ରାନ୍ତି ଠାରୁ ତିନିଦିନ ଭୋଗ ।୮
ସମଦଣ୍ଡ ଘେନିଣ ଯେ ପବନ ଆତ୍ମଜେ
ପଶ୍ଚିମ ସୋମନାଥେ ଭୀମସେନ କଲା ଦିଗବିଜେ ।୯
ଆପଣେ ରଥୀ ସେ ଆପଣେ ରଥ ବାହି
ପବନ ଦେବତା ଦେଖିଲେକ ସାରଥି ରଥେ ନାହିଂ ।୧୦
ମରୁତ ନାମେ ସାରଥିକି ହକାରିଲେ ଚଞ୍ଚଳ
ପବନ୍ନୁଂ ବେଗି ଚାରିଅଶ୍ୱ ଯେ ଦିଲେକ ମହାବଳ ।୧୧
ଯେ ଚାରିଅଶ୍ୱ ନେଇ ଯୋଗ ଭୀମସେନର ରଥେ
ତୁହି ରଥେ ସାରଥିହୋଇ ବାହିବୁ ଅନୁବ୍ରତେ ।୧୨
ପବନର ବଚନେ ସେ ମରୁତ ସାରଥି
ଚାରିଅଶ୍ୱ ଘେନିଆସି ପ୍ରବେଶ ତତ୍‌ଷ୍ଟି ।୧୩
ପଶ୍ଚିମ ସୋମନାଥ ବିଜଯେ ପାବେନି
ମରୁତ ସାରଥି ପ୍ରବେଶ ହେଲା ଚାରିଅଶ୍ୱନ୍ତ ଘେନି ।୧୪
ଶ୍ରୀକରେଣ ଘେନିଅଛି ଜୟେରତ୍ନ ମାଳା
ହୃଦରେ ଲଂବାଇଲା ନେଇ ପବନର ବଳା ।୧୫
ରତ୍ନ ମଣି ମୁକୁଟ ଯେ ଦିବ୍ୟ ଅଳଂକାର
ହୃଦରେ ଆଭରଣ କଲା ପାଣ୍ଡବ ସୁନ୍ଦର ।୧୬
ଭୀମସେନ ବୋଇଲା ତୁ ଅଇଲୁ କାହାର କତି
ଯେ ମର୍ତ୍ତ୍ୟସ୍ୱର୍ଗର ନୋହୁ ତୁ ମାନବ ଜାତି ।୧୭
ଅତିଅନ୍ତ ସୁନ୍ଦର ସୁକୁମାର ତୋହୋର କାୟେ
ପ୍ରତକ୍ଷେ ଦିଶୁଅଛି ଅମରାଧିନାଥ ପ୍ରାୟେ ।୧୮
ବୋଲଇ ମରୁତ ତୁ ହୋ ଶୁଣ ଭୀମସେନ
ମୋତେ ପେଷିଲେ ତୋହୋର ପିତା ଯେ ପବନ ।୧୯
ଯେ ତୋହୋର ରଥରେ ମୁଂ ହୋଇବି ସାରଥି
ବାହିବି ତୁରଙ୍ଗମ ମୁଂ ପଶ୍ଚିମ ମୂରତି ।୨୦
ରାଜାଗଣମାନନ୍ତ କରିବୁ ସର୍ବ ସାଧି
ତୁହି ମହାପଣ୍ଡିତ ତାରଣ ଭିଗ୍ୟଂ ବୃଦ୍ଧି ।୨୧

କେମନ୍ତେ ଯୁଦ୍ଧ କରିବୁ ତୁ ସାରଥି ବିହୁନେ
ଅନେକ ଦୃଭାର ଦୁଷ୍ଟ ଯେ ଅଛନ୍ତି ରାଜାମାନେ ।୨୨
ପବନଦେବତାର ମୁଂ ଅଟଇ ସାରଥି
ମନୁଅନ୍ତର କରାଇ ମୁଂ ଅନେକ କାଳବୃତି ।୨୩
ଭୀମସେନ ବିଚାରଇ ଯେତ ବଡ଼ାଇ ଅଗୋଚର
କକ୍ଷଣ ନିମନ୍ତେ ଅଇଲା ଅବା ଯେ କେଉଂଣ ଅସୁର ।୨୪
କାମରୂପୀ ହୋଇଥାଆନ୍ତାଟି ନିଶାଚର
କପଟେ ନାଶକରିବ ଯେ ଅବା ରହିଣ ରଥର ୨୫
ବିଚାରି ମାରୁତି ଯେ ତାକୁ କରଇ ଅପ୍ରତେ
ବୋଇଲା ଅପରତେ ସଙ୍ଗେ ବିଶ୍ୱାସ ମୁଂ କରିବି କେମନ୍ତେ ।୨୬
ବୋଲଇ ସାରଥି ବାବୁ ନ ଜାଣୁ କି ମୋତେ
ମୁହିଂ ଜାଣଇ ତୋହୋର ପିତାର ଜନମ ସହିତେ ।୨୭
ତୋହୋର ଜ୍ୟେଷ୍ଠଭ୍ରାଥ ବୀର ହନୁମନ୍ତ
ତାହାର ଜନ୍ମ ମୁଂ ଯେ ଜାଣଇ ଯଥାର୍ଥ ।୨୮
ପବନର ମାତା ଯେ ଅଟଇ ହାଦେ ଦିତି
କଶ୍ୟପ ତୋଷିଲେ ସେ ଯେ କକ୍ଷେ କକ୍ଷେ ବ୍ରତି ।୨୯
ଅନେକ ପ୍ରଳୟର ମୁଂ ଜାଣଇଂ ବାରତା
କାଳେହେଂ ନୋହିଲା ତାର ପୁତ୍ର ଯେ ଦୋହିତା ।୩୦
ଆକାଶଗଙ୍ଗା କୂଳେ ତୋଷିଲା ନିରାକାର
ପ୍ରସନ୍ନେ ଧବଳାଙ୍ଗୀକୁ ଯାଚିଦିଲେ ଅଭୟେ ବର ।୩୧
ମହାବଳବନ୍ତା ତୋର ହୋଇବ କୁମର
ଯେମନ୍ତ ବୋଲି ତାକୁ କଶ୍ୟପ ଦିଲେ ବର ।୩୨
ଗର୍ଭରେ ବହନ୍ତେ ସେ ପବନ ବଳବନ୍ତା
ଅଣଚାଷଖଣ୍ଡ କରି ତାହା କାଟିଲା ଇନ୍ଦ୍ର ଯେ ଦେବତା ।୩୩
ବାସବ ଛେଦିଲା ତାହା ତିରଣ ଆକାରେ
ତେଣୁ ଅଣଚାଷଖଣ୍ଡ ଯେ ହୋଇଲା ଶୂନ୍ୟରେ ।୩୪
ବହୁତ ମନୁର ଯେ ଅପାର କାଳର କଥା
ସଅପି କହିତେ କେହୁ ହୋଇବ ସାମରଥା ।୩୫
ତେହୋର ବଡଂକର ଚରିତ ଶୁଣିମା ବ୍ରିକୋଦର
କୋଇନ୍ତାଯେ ପ୍ରସନ୍ନ ହୋଇଲେ ପବନ ଅଣାକାର ।୩୬
ତିନିମନୁ ତପେ ଜପିଣ ସେ ଅପର୍ଣ୍ଣା ଅଞ୍ଜନୀ
ତାହାର ଚିହ୍ନ ବର୍ଣ୍ଣ ସେ ନୁଆରିଲାକ ଘେନି ।୩୭
ସାଧୁ ସାଧୁ ସାଧେବୀ ସେ କୋଇନ୍ତା ମାହେଶ୍ୱରୀ
ପବନର ବୀର୍ଯ୍ୟେ ସେ ନୋହିଲା ମହାଭାରି ।୩୮
ପ୍ରତକ୍ଷେ ଅଣାକାର ଯେ ଗର୍ଭେ ଦିଲା ତତ୍ତ୍ୱ
ସେ ବ୍ରହ୍ମଭେଦି ଗର୍ଭେ ଛନ୍ଦିଲା ମହାଧାତୁ ।୩୯
ଭୀମସେନ ଆଶ୍ରିତ ହୋଇଲା ମରୁତ ସାରଥିର ବଚନ ଶୁଣି
ଯେମନ୍ତ ସମୟେ ଶୁଭିଲା ଆକାଶରୁ ବାଣୀ ।୪୦
ଯେଥକୁ ଭ୍ରାନ୍ତି ତୁ ନ କର ଆନ ଚିତ୍ତ
ପବନ ବୋଇଲେ ଯେ ମୋହୋର ସାରଥି ମରୁତ ।୪୧
ଯେ ତୋହୋର ରଣେ ଯେବେ ହୋଇବ ସାରଥି
ବାହିବ ତୁରଙ୍ଗମ ସେ ପବନୁଂ ବେଗ ଗତି ।୪୨
ଅଦଭୁତ ବଚନେ ସେ ହୋଇଲା ମନ ତୋଷ
ସାରଥିକି ପୂଜାକଲା ଅନେକ ହରଷ ।୪୩
ପିତାର ଆଗ୍ୟାଂ ପ୍ରମାଣେ ସେ କରି
ହୋଇଲୁ ସାରଥି ରଥ ବାହାସି ମୋହୋରି ।୪୪
ଅନେକ ଆୟେ ରତ୍ନେ ସେ ମଣ୍ଡିଲାକ ବେଗେ ରଥ
ପୁଷ୍ପକ ବିବାନ ଜାଣି ଦିଶଇ ସଂଜାତ ।୪୫
ଶିବ ସାହେର ତୀର୍ଥେ ଭୀମସେନ ସ୍ନାହାନ ଯେ ସାରି
ଶ୍ରୀସୋମନାଥ ସ୍ୱାମୀକି ଅନେକ ତୁଷ୍ଟି କରି ।୪୬
ଜୟତୁ ବିଶ୍ୱନାଥ ଅନ୍ଧେକ ବିଦାରଣ ପରମଯୋଗୀ
ଜୟତୁ ବିଶ୍ୱନାଥ ଜଗୁ ସୋଦର ଶରଣ ସର୍ବଭୋଗୀ ।୪୭
ଜୟତୁ ବିଶ୍ୱନାଥ ଅସୁର ବିଦାରଣ ତ୍ରିପୁରା
ଜୟତୁ ବିଶ୍ୱନାଥ କାମାଙ୍ଗ ନାଶନ ପଞ୍ଚୁଶିରା ।୪୮
ଜୟତୁ ସୟଳ ଜନ ବୋଧନ ଶୁକଳାଙ୍ଗ
ଡାକି ଘୋର ଶବଦେଣ ବିଘଂସିତ ଖଟ୍ୱାଙ୍ଗ ।୪୯
ଜୟତୁ ଅନଙ୍ଗ ବିଚାରଣ ସିଦ୍ଧବେତ୍ତା
ଜୟତୁ ଜଗତ ବନ୍ଧୁ ସଂସାର ଉଦ୍ଧାରନ୍ତା ।୫୦
ଗିରିଜାର ବଲ୍ଲଭ କୁମାର ସମ୍ଭବେ
ବାଞ୍ଛା ପ୍ରାପତେ ତୁ ଯେ କରିବା ମହାଦେବେ ।୫୧
ଜୟତୁ ସୋଡ଼ଳ ନାଥ ତାଣ୍ଡବ ରସ ଖେଡ଼େ
ମାଇଲୁ ପ୍ରଜାପତି ତୁ କଥାର ସଂପୋତେ ।୫୨
ଭଗତମଛଳ ନାଥ ଶରଣ ପଞ୍ଜର ସ୍ୱାମୀ
ଶୂଦ୍ରମୁନି ସାରୋଳ ଦାସ ଶତ ସହସ୍ର ଦଣ୍ଡ ପରିଣାମି ।୫୩
ଭୀମସେନ ମୁଖୁଂ ଯେସନକ ସ୍ତୁତି ଶୁଣି
ବିଜୟେ ବିଶ୍ୱନାଥଦେବ ଶୂଳପାଣି ।୫୪
ବୃଷଭ ଆରୋହେ ବିଜୟେ ଦେବକାଶୀ
ପଞ୍ଚବଦନେ ପଞ୍ଚଦଶ ଲୋଚନ ପ୍ରକାଶି ।୫୫

ଗଙ୍ଗା ଯମୁନା ସରସ୍ୱତୀ ଧବଳାଙ୍ଗୀ
ବହଇ ଜହ୍ନବୀ ନଦୀ ଅଭୟେ ବରଦାଙ୍ଗୀ ।୫୬
ନବଲକ୍ଷ ଡମ୍ବରୁ ଯେ ଅନ୍ତରୀକ୍ଷେ ବାଜି
ହୃଦେ ପିବିତ୍ରା ଦେବ ବାସୁକି ସର୍ପରାଜି ।୫୭
ପବନ ନନ୍ଦନ ଦଣ୍ଡ ପ୍ରଳଂବ ଶତ ସହସ୍ରେ
ସ୍ୱାମୀ ପଶ୍ଚିମ ଦିଗେ ମୋତେ ପେଷିଲେ ଠାକୁରେ ୫୮
ସ୍ୱାମୀ ପଞ୍ଚାଶ ସହସ୍ର ନୃପତି କରିବି ନିମନ୍ତ୍ରଣ
ନଉଦିବସ ମଧ୍ୟେ ସାଧିବି ସକଳ ରାଜାଗଣ ।୫୯
ସ୍ୱାମୀ ଅନୁବ୍ରତେ ମୋତେ ତଳେ କରିଥିବା
ଶିବଗଣନ୍ତ ଘେନି ଦେବ ରାଜୁସି ଯଗ୍ୟେଂ ଯିବା ।୬୦
ବଦନ୍ତି ବିଶ୍ୱନାଥ ପଞ୍ଚବଦନ ଦେବ
ଆହୋ ପଶ୍ଚିମଦିଗ ରାଜାନ୍ତ ତୁ ନିମନ୍ତ୍ରିବୁ ସର୍ବ ।୬୧
ଯେକ ରାଜାୟେ ଅଛଇଟି ବଡ଼ାଇ ପ୍ରତାପୀ
ମେଖଳଦେଶର ନୃପତି ସେ ଅଟଇ ମହାକୋପୀ ।୬୨
ଅନେକ ସାଂଗ୍ରାମ କଲା ମଗଧେଶ୍ୱର ବୀରା
ସାଂଗ୍ରାମେ ହାରି ପଳାଇଲା ବୀର ଜାରା ।୬୩
ଭୀମସେନ ବୋଇଲା ସେ ଅଟଇ କେଉଂଣ ବଂଶୀ
କାହାର ପୁତ୍ର ହୋଇଲା ଯେତେକ ତେଜରାଶି ।୬୪
ଉମାର ବଲ୍ଲଭ ବୋଲନ୍ତି ଆଦିଦେବେ
ଭୀମସେନକଇଂ କହନ୍ତି କଥାର ପ୍ରସ୍ତାବେ ।୬୫
ସତ୍ୟଯୁଗେ ବନ ଗହନେ ଗମନ୍ତେ ମୁନି ବ୍ୟାସେ
ବଇଶାଖ ଶୁକଳ ତ୍ରୟୋଦଶୀ ଦିବସେ ।୬୬
ପୁଷ୍ୟା ନକ୍ଷତ୍ର ଯେ ବାଣିଜ୍ୟ ନାମେ କରଣ
ଧୃତି ନାମେ ଯୋଗ କକଡ଼ା ଚନ୍ଦ୍ର ଘଟଣ ୬୭
ସେ ଦିନେ ବ୍ୟାସେ ଯେ ଭ୍ରମନ୍ତି ବିପୁନ୍ୟେ
ବଡ଼ାଇ ମହାପଣ୍ଡିତ କୁତୂହୋଳ ମନେ ।୬୮
ନାନାରୂପେ ସେ ଯେ ବୁଲନ୍ତି ବନେ ଭ୍ରମି
ସମସ୍ତ ଜୀବକଇଂ ଇଛନ୍ତି ସେହୁ କାମୀ ।୬୯
କୁତୂହୋଳେ କ୍ଷଣେ କ୍ଷଣେ ହୋଅଇ ଆନରୂପୀ
ଶୃଙ୍ଗାର କଉତୁକେ ବଢ଼ିଲା ରସକ୍ଷେପି ।୭୦
ଆହୋ ହରିଣୀ ପଲେକ ଯେ ଦେଖିଲେ ବ୍ରହ୍ମଯତି
ହରିଣେକ ହୋଇ ସେ ହରିଣୀକି କଲେ ରତି ।୭୧
ସେ ରସେ ମହାତମାର ବୀର୍ଯ୍ୟ ଯେ ପଡ଼ିଲା
ହରିନାଥ ବୋଲି ତହୁଂ ପୁତ୍ରେକ ଉପୁଜିଲା ।୭୨
ମହାଭିଗ୍ୟଂ ପଣ୍ଡିତ ସେ ଅଟଇ ନରପତି
କିସ୍‌କିନ୍ଧା ଠାକୁର ସେ ଅଭୟେ ଚକ୍ରବ୍ରତୀ ।୭୩
ଶ୍ରୀରାମଂକୁ ସେବା ସେ କଲା ତ୍ରେତୟା ଯୁଗେ
ସେତୁବନ୍ଧ ବାନ୍ଧିଲା ସେ ବାରାନିଧି ସତ୍‌ସଙ୍ଗେ ।୭୪
ପୁଣିହିଂ ବିହରନ୍ତି ମୁନି ଯେକଇ ସମୟେ
କୃଷ୍ଣଭଦ୍ରା ନଦୀତୀରେ ଦେଖିଲେ ମୃଗୁଣୀ ପଲ ଗୋଟିୟେ ।୭୫
ଆହୋ ଭୀମସେନ ଯମନିକା ନାମେଣ ଯେ ଯେକଇ ମୃଗୁଣୀ
ଆତଙ୍କ କାମରେ ସେ ହୋଇଅଛଇ ବିରହିଣୀ ।୭୬
ମୃଗ ରୂପ ଧରିଣ ସେ ବ୍ୟାସ ତପୋଧନୀ
ବନେ କ୍ରୀଡ଼ା କଲେ ସେ ଯମନିକା ମୃଗୁଣୀକି ଘେନି ।୭୭
ବିଭଳିତ ଶୃଙ୍ଗାରେ ଛାଡିଲେ ବିନ୍ଦୁ ଗୋଟି
ପୁତ୍ରେକ ଉପୁଜିଲା ମଣିଷ ଶରୀର ମୃଗ ମୁଣ୍ଡଗୋଟି ।୭୮
ମୃଗସେନ ନାମ ତାର ଜଗତେ ବିଛାତି
ମେରୁ ଦକ୍ଷିଣ କୋଶଳେ ସେ ଅଟଇ ଆଧିପତି ।୭୯
ପଞ୍ଚାଶ ପଦ୍ମ ତାର ଖଟନ୍ତି ରାଉତ
ସବୁଂକରି ବାହାନ ସେ ଚଢ଼ନ୍ତି ମୃଗନ୍ତ ।୮୦
ଆହୋ ଭୀମସେନ ସେ ସହସ୍ରାର୍ଜୁନ ତୁଲେ ଅନେକ ଯୁଦ୍ଧ କଲା
ସତ୍ୟଯୁଗେ ମାନଧାତା ତାକୁ ଜିଣି ତ ନୁଆରିଲା ।୮୧
ତାହାକୁ ସାଂଗ୍ରାମେ ତୁ ଜିଣି ନୁଆରିବୁ ଭୀମ
ବ୍ୟାସଂକୁ ସୁମରିବୁ ଯେବେ କଷ୍ଟୋର ପଡ଼ିବ ସଂଗ୍ରାମ ।୮୨
ସେ ବ୍ୟାସେ ଯାଇଂ ତୋତେ ହୋଇବେ ପ୍ରସନ୍ନ
ତେବେ ସେ ସାଧ ତୋତେ ହୋଇବ ନୃପତି ମୃଗସେନ ।୮୩
ବହୁତ କଟାଳ ତୋତେ ନାହିଂନା ଆନ ଠାବ
ସମସ୍ତ ସାଧ ହୋଇବ ତୋତେ ବଦୟନ୍ତି ମହାଦେବ ।୮୪
ରାଜାମାନନ୍ତ ଘେନିକରି ଆସ ସର୍ବ ସାଧି
ଯାଅରେ ପାଣ୍ଡବ ତୋର କାର୍ଯ୍ୟ ହୋଉ ସିଦ୍ଧି ।୮୫
ଯେ ଶହସ୍ରମାନ ତୋତେ ଦେଉଛି ଭୀମସେନ
ଜଗଛିତା ନାରାଜମାନେ ତୋତେ ହୋଇବେ ପ୍ରସନ୍ନ ।୮୬
ଯେବଣ ଶହସ୍ର ଘେନି ଜିଣିଲୁଂ ତ୍ରିପୁରା
ସେ ନାରାଜ ତୋତେ ଦେଲି ତା ନାମ ପଞ୍ଚଶିରା ।୮୭
ଅମୋହ ଶକତି ହଦେ ଶୂଳ ଯେ ଶକତି
ବଜ୍ର ମୃଦୁଗର ଭୀମକୁ ଦିଲେକ ପଶୁପତି ।୮୮
ବିଜୟ ଡମ୍ବରୁ ଦିଲେ ଘୋଷଣ ସେ ବାଦ୍ୟ
କୁତୂହଳୀ ପୁରୁଷ ଭୀମକୁ ଦିଲେକ ବଜ୍ର ସିଂହନାଦ ।୮୯

ଆବର ଦିଲେ ସ୍ୱାମୀ ମହାକାଳ ବାଣ
ଯେଣୁକରି ସକଳ ରାଜାନ୍ତ ତୁ ଜିଣ ।୯୦
ପ୍ରସନ୍ନେ ଅନେକ ଶହସ୍ର ଦିଲେକ ପଶୁପତି
ଯାଅ ଯା ଭୀମ ତ୍ରିୟଲୋକେ ତୋତେ ନ ପଡୁ ଦୁର୍ଗତି ।୯୧
ଯେସନେକ ଆଗ୍ୟାଂ ତାକୁ ଦିଲେକ ପଞ୍ଚମୁଖେ
ତହୁଂଣ ବିଶ୍ୱେଶ୍ୱର ନାଥ ଗଲେକ ଅନ୍ତରୀକ୍ଷେ ।୯୨
ଯେସନେକେ ପଛିମ ସୋମନାଥ ଜିଣିଣ ଚଳଇ ମହାବୀର
ପଛିମ ଦିଗକଇଂ ଗମଇ ବ୍ରିକୋଦର ।୯୩
ସମ୍ବର୍ଭେଣ ଥାଠ ଘେନିଣ ପାଣ୍ଡବ
ପଛିମ ଦିଗ ରାଜା ବରଣେ ଚଳଇ ବେଗୁଂବେଗ ।୯୪
ମାନଭଙ୍ଗ ବୋଲି ଯେକଇ ପର୍ବତେ
ମାନେ ବସିଲେ ତହିଂ ଗଉରା ନଉଯୁଗ ପରିଯନ୍ତେ ।୯୫
ସେ ପର୍ବତେ ପ୍ରବେଶ ହୋଇଲା ପାବେନି
ଆକାଶ କମ୍ପୁଅଛି ଯେ ବୀରତୂର ଧ୍ୱନି ।୯୬
ମାନସାନନ୍ଦ ବୋଲିଣ ଯେକ ଦେଶଗୋଟି
ମାନଅର୍ଜୁନ ବୋଲି ତହିଂରେ ଅଟଇ ରାୟେଟି ।୯୭
ବିଷ୍ଣୁ ପ୍ରସାଦ ବୋଲି ଯେକଇ ନଦୀଗୋଟି
ତ୍ରିବେଣୀ ବାହିନୀ ସେ ସାଗରେ ଅଛି ଫୁଟି ।୯୮
ସେ ନଦୀର କୂଳେ ରାଇଜ ତାହାରି
ବଡ଼ାଇ ଧାର୍ମିକ ସେ ଅଟଇ ଦଣ୍ଡଧାରୀ ।୯୯
ଭୀମସେନ ପରବେଶ ସେ ମାନଭଙ୍ଗ ପରବତେ
ରାଜ୍ୟଗୋଟି କମ୍ପେ ତାର ବୀର ତୂର ଘାତେ ।୧୦୦
ଆସ୍ତାନେ ବିକେକରି ବୋଲଇ ନରପତି
କାର ବୀର ତୂର ଶବଦେ କମ୍ପିଲା ମୋର ପୃଥୀ ।୧୦୧
ରାଜାର ବଚନେ ସେ ଚଳିଲେ ଦେଶାଉରେ
ଧାତିକାରେ ରାଜ୍ୟୁଂ ବେଗେ ହୋଇଲେ ବାହାରେ ।୧୦୨
ପର୍ବତୁଂ ଓହ୍ଲାବନ୍ତି ଆଗିଆଣି ଥାଠ
ମୁନେହିଂ ପଚାରନ୍ତେ ତୁମ୍ଭେ କେଉଣ ଦେଶୀ ଅଟ ।୧୦୩
ଅଦଭୁତେ କିମ୍ପେ ରାଜ୍ୟ ପଶିଲ ଆମ୍ଭର
ପରରାଜ୍ୟେ ପଶିବାକୁ କିସ ଶକ୍ୟ ଯେ ତୁମ୍ଭର ।୧୦୪
ବୋଲନ୍ତି ଭୀମସେନ ଚାରଗଣନ୍ତ ବଚନେ
ବାରତା କହ ଯାଇଂ ତୁମ୍ଭ ରାଜାର ସନ୍ନିଧାନେ ।୧୦୫
ରାଜାକୁ ଯାଇଂ କହ ହୋ ଜାରା ନିବାରଣ
ରାଜୁସି ଯଗ୍ୟଂକୁ ପଛିମ ଦିଗ ରାଜାନ୍ତ ବରଣ ।୧୦୬
ରାଜାନ୍ତ ନିମନ୍ତ୍ରଣ କରିବେ ପଛିମେ ଦିଗେ
ସମଦଣ୍ଡ ଘେନିଣ ରାଜାୟେ ଯିବେ ବେଗେ ।୧୦୭
ତହୁଂ ବାରତା ଯହୁଂ ଶୁଣିଲେକ ସନ୍ଦେଶ
ମାନଅର୍ଜୁନର ଆଗେ ଯାଇଂ କହିଲେ ସନ୍ଦେଶ ଆଦେଶ ।୧୦୮
ସ୍ୱାମୀ ରାଜୁସି ଯାଗ ସେ କରିବା ନିମନ୍ତେ
ଜରାସନ୍ଧ ନିବାରଣ ହୋଇଲା ଯାହାର ହାଥେ ।୧୦୯
ସ୍ୱାମୀ ସୋହୋଡ଼ ସୁନ୍ଦର ସେ ପବନର ବଚ୍ଛ
ପଛିମ ଦିଗକଇଂ ସେ ରାଜାନ୍ତ ନିମନ୍ତଣେ ବିଜେ କରିଅଛି ।୧୧୦
କୋଇନ୍ତାଂକର ନନ୍ଦନ ଯେ ବ୍ୟାସଂକର ନାତି
ଭୀମସେନ ଠାକୁର ସେ ପ୍ରତକ୍ଷେ ଅଟନ୍ତି ।୧୧୧
ସନ୍ଦେଶ ବାରତା ଯହୁଂ ପାଇଲା ନୃପବର
ଜଗତୀ ଛାଡ଼ି ରାଜା ଉଠିଲା ଧାତିକାର ।୧୧୨
ଶତେକ ଭାର ସେହୁ ଘେନିଣ ପାଣିଦ୍ରବ୍ୟ
ରାଜ୍ୟରେ ପାୟେଡ଼ା ପାଡ଼ି ସେ କରଇ ଉତ୍ସବ ।୧୧୩
ଶ୍ରୀକରେ କନେକ ଅଞ୍ଜୁଳିୟେ ଘେନି ରାୟେ
ଭୀମସେନ ଛାମୁରେ ନେଇ କନେକ ବୃଷ୍ଟି କୟେ ।୧୧୪
ସନ୍ନିଧେ ପ୍ରବେଶ ହୋଇଣ ମହାବଳୀ
ପାୟେ ଯାଇଂ ନୃପତି କରଇ ନିଉଛାଳି ।୧୧୫
କରପତ୍ର ଯୋଡ଼ିଣ ସେ ଅନେକ ତୁସ୍ତି ବୋଲି
ଛାମୁରେ ମାନଅର୍ଜୁନ ଶୁତିଲା ଗଡ଼ଘାଲି ।୧୧୬
ପୁଣ ପୁଣ ନୃପତି ହୋଅଇ ପରିଣାମି
ଦଶ ଦୋଷ ଅପ୍ରାଧ କ୍ଷମା କରିବା ଦେବ ସ୍ୱାମୀ ।୧୧୭
ଦେଶାଉର ମୁଖେ ମୁଂ ବାରତା ନ ପାଇଲି
ସ୍ୱାମୀକି ଭଗତି ନିମନ୍ତେ ଥୋକାୟେ ଦୂର ପାଛୋଟି ନୁଆରିଲି ।୧୧୮
ଆନନ୍ଦେ ଅଶ୍ରୁଜଳ ବହଇ ନେତ୍ରୁ ବେନି
ଛାମୁରେ ନୃପତି ଯାଇଂ କରଇ ଦୟିନୀ ।୧୧୯
ଶରଣ ଶରଣ ବୋଲି ଫୁକାରଇ ବହୁତ କ୍ରୋଧେ
ସ୍ୱାମୀ ତୁମେ ମହତ ଉପେକ୍ଷା କରିବା ଅଗ୍ୟାନର ଅପ୍ରାଧେ ।୧୨୦
ରଥର ଉପରେ ଥାଇଂ ବୋଇଲାକ ପାବେନି
ମାନଅର୍ଜୁନେ ନିମନ୍ତିଲେ ଅକ୍ଷତଗୁଆ ଘେନି ।୧୨୧
ତୋହୋର ଥାଠ ସଇନ୍ୟ ଯେତେକ ଅଛି ବାବୁ
ସମଦଣ୍ଡ ଘେନି ମକର ମାସେ ରାଜୁସି ଯଗ୍ୟଂକୁ ଯିବୁ ।୧୨୨
ବିନୟେ ଭାବେ ବୋଲଇ ମାନଅର୍ଜୁନ ଚକ୍ରବ୍ରତୀ
ସ୍ୱାମୀ ! ମୋହୋର ପୁରେ ମୁଣୋହି କରିବା ମାଗୁତି ।୧୨୩

ସ୍ୱାମୀ ଅତିଅନ୍ତ ମହାଭାଗ୍ୟ ମୁଂ ଦେଖିଲି ନୟନେ
ପିତୃଲୋକେ ମୁକତି ମୋହୋର ଦରଶନେ ।୧୨୪
ଭୀମସେନ ବୋଇଲା ମୁଂ ନୁଆରଇ ରହି
ରାଜ୍ୟକେ ମୁଣୋହିଂ ମୋତେ ହୋଉଥିବ କାହିଂ ।୧୨୫
ପଞ୍ଚାଶସହସ୍ର ରାଜା ସାଧିବି ନଉଦିବସର ମଧେ
ସାଧ ଅସାଧ୍ୟ ରାଜାୟେ ଅଛନ୍ତି ମୁଂ ଜିଣିମଇଂ ଯୁଦ୍ଧେ ।୧୨୬
ନଉଦିବସେ ରାଜାୟେ ଯେବେ ପ୍ରବେଶ ନୋହିବେ
ଚକ୍ରେଣ ଶିର ମୋର ଛେଦିବେ ବାସୁଦେବେ ।୧୨୭
ରାଜ୍ୟକେ ମୁହିଂ ମୁଣୋହିଂ କରୁଥିଲେ ଭଲେ
ପଞ୍ଚାଶ ସହସ୍ର ରଜା ସାଧିବି କେମନ୍ତେ ମୁଂ ସୁଖଭୋଗ
ଇଛିଲେ ।୧୨୮
ମାନଅର୍ଜୁନ ରାଜାକୁ ଭୀମସେନ ନିମନ୍ତି
ମାନଭଙ୍ଗ ଦେଶରୁ ଭୀମ ବାହାର ତତକ୍ଷଣାନ୍ତି ।୧୨୯
ବୀରତୂର ଶବଦେ ଥାଠ ଯେ ଚଳାଇ
ବନ ପର୍ବତ କନ୍ଦର ଜିଣି ଅନେକ ଦୂର ଯାଇ ।୧୩୦
କରତାର ନାମ ବୋଲିଣ ଯେକଇ ପରବତେ
ଶରଣଭଦ୍ରା ବୋଲିଣ ବହଇ ଯେକ ତୀର୍ଥେ ।୧୩୧
କାର୍ତ୍ତିକମାସ ଶୁକଳପକ୍ଷ ଯେ ପଉର୍ଣ୍ଣମୀ
କୃର୍ତ୍ତିକା ଅନ୍ତେ ନକ୍ଷତ୍ରେ ଭୀମସେନ ଜଳଗାମୀ ।୧୩୨
ଆକାମାବଇ ଯେ ଅଟଇ ସେ ଦିନର
ତୀର୍ଥେ ସ୍ନାହାନ ସାରି ଦାନ ଦିଲାକ ବ୍ରିକୋଦର ।୧୩୩
ମନୋହର ଦେଶର ସେ ସୁବାହୁ ଦଣ୍ଡଧାରୀ
ଚାରିଶତ ପାରିଦଣ୍ଡ ଘେନି ସେ ଅଇଲେ ତୀର୍ଥକରି ।୧୩୪
ରାଜାର ଅଗ୍ରତେ ତହିଂ ଜଣାଇଲେ ମୁନେହି
ଭୀମସେନ ଠାକୁରେ ଅଛନ୍ତି ଶରଣଭଦ୍ରା କୂଳେ ରହି ।୧୩୫
ପଞ୍ଚାଶ ସହସ୍ର ରାଜା ସେ କରିବେ ନିମନ୍ତ୍ରଣ
ଯୁଝେଷ୍ଟି ଦେବଂକ ଆଗ୍ୟାଂୟେ ପଛିମ ଦିଗକଇଂ ବରଣ।୧୩୬
ଶୁଣି ପରମ ସାନନ୍ଦ ଯେ ସୁବାହୁ ନୃପତି
ତୁଳେଣ ଅଛଇ ତାହାର ପଞ୍ଚଖର୍ବ ହାଥୀ ।୧୩୭
ଭୀମସେନ ଆଗତ ବୋଲି ରାଜାମାନେ ଶୁଣିଲେ
ହାଥୀମାନ ତେଜ୍ୟାକରି ସମସ୍ତେ ବିଶହସ୍ର ହୋଇଲେ ।୧୩୮
ଆହୋ ସ୍ୱାମୀ ବିକୋଦର ତ୍ରାହି ତ୍ରାହି ବୋଲି
ଦନ୍ତେ ତିରଣ ଘେନି ଶୁତିଲେ ଗଡ଼ଘାଲି ।୧୩୯
ସୁବର୍ଣ୍ଣଚୂଡ଼ ପର୍ବତେ ବିଜୟେ ପାବେନି
ରାଜାମାନେ ଦ୍ରଶନ କରନ୍ତି ଦେଖା ଦରଶନି ଧନ ଘେନି।୧୪୦

କାଳିଞ୍ଜନ ପଡ଼ିହାରୀ କାଳଧ୍ୱଂସନ ଡଗର
ବିନୟେ ବାରତା ଜଣାଇଲେ ଭୀମସେନ ଛାମୁର ।୧୪୧
ମନୋହର ଦେଶର ରାଜା ସୁବାହୁ ନୃପମଣି
ଚାରିଶତ ପାରିଦଣ୍ଡ ତୁଳେ ବଳ ସାତ ଯେ କ୍ଷଉଣୀ ।୧୪୨
ତ୍ରାହି ତ୍ରାହି ବୋଲିକରି ବିନୟେ ପରିଣାମି
ସୁବାହୁ ନୃପତି ଦ୍ରଶନ କରଇ ଦେବସ୍ୱାମୀ ।୧୪୩
ଆହୋ ନାମ ସଂକେତ ଲୟେ ଯେ ପବନର ବଳା
କିଛିତେ ପାଣ୍ଡବ ସୁନ୍ଦର ସୁବାହୁ ନୃପତିକି ଦେଖିଲା ୧୪୪
ଶ୍ରୀଭୁଜ ତୋଳି ବୋଇଲେ ତାକୁ ପବନ ଆତ୍ମଜା
ଥାଠ ସଇନ ଘେନି ରାଜୁସି ଯାଗକୁ ଯା ଯା ।୧୪୫
ଯେତେକ ସଇନ ତୋହୋର ଗଜ ଅଶ୍ୱ ରଥ
ସମଦଣ୍ଡ ଘେନି ପ୍ରବେଶ ହୋଇବୁ ଇନ୍ଦ୍ର ଯେ ପ୍ରଶସ୍ତ ।୧୪୬
ମକର ମାସର ମଧେ ହୋଇବ ମହାଯଗ୍ୟଂ
ଦେଖା ଦରଶନି ଘେନି ଯାଅ ଯା ବେଗ ବେଗ ।୧୪୭
ଶୁଣିଣ ସାନନ୍ଦ ହୋଇଲେ ସକଳ ରାଜାମାନେ
ସ୍ୱାମୀ ଶ୍ରବଣେ ଯାହା ଶୁଣିଥିଲୁ ତାହା ଦେଖିଲୁ ନୟନେ ।୧୪୮
ତୁମ୍ଭେ ସେ ମାରୁତି ଅଟ ପାଣ୍ଡବ ସୁନ୍ଦର
କାରା ନିବାରଣ ସ୍ୱାମୀ ତୁ ପ୍ରଚଣ୍ଡ ବ୍ରିକୋଦର ।୧୪୯
ସ୍ୱାମୀ ବକ ହିଡିମ୍ୱେକ ଯେ କୁମ୍ଭିରୀ କିନ୍ନରୀ
ଯାହାର ବିଘାତେ ଯେ ପଡ଼ିଲେ ଦତ୍ୟଚାରି ।୧୫୦
ସ୍ୱାମୀ ତୁହି ସେ ବିଷଲଡୁ ଖାଇ ପାରକଲୁ
ନାଗେଣୀ ବଳ ଗଞ୍ଜି ବେଲାବଳୀ ଆଣିଲୁ ।୧୫୧
ପାଣ୍ଡବାସୁରକୁ ମାରି ଉଦ୍ଧରିଲୁ କଉରୋବ
ଯାହାର କୋପକୁ ଶଂକା କରନ୍ତି ବଳଦେବ ।୧୫୨
ତୁ ଦେବ ଦୁଷ୍କଂକର ପ୍ରକୃତି ଦର୍ପଧ୍ୱଂସା
ଭଗତ ଜନ ମଙ୍ଗଳ ସ୍ୱାମୀ ହୋ ପୂରାଅ ମନୀଷା ।୧୫୩
ଦୁଷ୍ଟନ୍ତ ନାଶି ଶରଣ ପଞ୍ଜର ବୀର ଭୀମ
ଅନେକ ଦୋଷ କରିଥିଲେ ସ୍ୱାମୀ କରିବାକ କ୍ଷମ ।୧୫୪
ଜରାସନ୍ଧ ବଧି ଦେବ ରାଜାନ୍ତ ଉଦ୍ଧରିଲୁ
ଛୟାଶୋଇ ସହସ୍ର ରାଜାନ୍ତ ତୁ ବନ୍ଦୀ ମୁକଳ କଲୁ ।୧୫୫
ରାଜୁସି ଯଗ୍ୟଂ ସଭା ଦେଖିବୁ ତୋହୋର ପ୍ରସନ୍ନେ
ହରିବୁ ଅନେକ ପାତକ ତରିବୁ ପିତୃଜନେ ।୧୫୬
ଅକ୍ଷତ ଗୁଆ ଘେନିଲେ ଯେ ସୁବାହୁ ନୃପତି
ଚାରିଶତ ପାରିଦଣ୍ଡ ଘେନି ଅନକୂଳ କଲା ତତକ୍ଷଣାନ୍ତି ।୧୫୭

ତହୁଁଣ ଭୀମସେନ ଚଳଇ ତୋଷମନେ
ଦଣ୍ଡ ଘେନି ବିଜୟେ କୁଣ୍ଡଳୀ ନାମେ ବନେ ।୧୫୮
କୁଣ୍ଡୀନଗ୍ର ବୋଲି ଯେକ ଦେଶଗୋଟି
ଭୀଷ୍ମେକ ବୋଲିଣ ତହିଂର ଯେକଇ ନୃପତି ।୧୫୯
ରୁକ୍ମ ରୁକ୍ମଣ ରୁକ୍ମବାହୁ କରି ତାର ଯେ ତିନି ଯେ ତନୟେ
ରୁକ୍ମିଣୀ ବୋଲିଣ କରି ତାହାର ତନୁଜାୟେ ।୧୬୦
ରୁକ୍ମିଣ ବୋଲିକରି ଯେ ତାହାଂକର ଜ୍ୟେଷ୍ଠବଳା
ଦୁଷ୍ଟଂକର ସଙ୍ଗେ ତାହାର ଅନୁବ୍ରତେ ମେଳା ।୧୬୧
ଜଗନ୍ନାଥଂକୁ ଉଙ୍ଗାଇ ରୁକ୍ମିଣୀ ବିଭାକାଳେ
ଦୁଷ୍ଟ ପ୍ରକୃତିରେ ସେ କରଇ ଶିଶୁପାଳେ ।୧୬୨
ରୁକ୍ମିଣୀଂକି ହରିଣ ନିଅନ୍ତେ ଜଗନ୍ନାଥେ
ବହୁତ ସାଂଗ୍ରାମେ କଲା ରୁକ୍ମିଣ ମନ୍ଦକୃତ୍ୟେ ।୧୬୩
ରାଗେଣ ହରି ଛେଦୁଥିଲେ ତାହାର ମୁଣ୍ଡଗୋଟି
ରୁକ୍ମିଣୀର ବିକଳେ ତାକୁ କଲେ ସାତବେଣ୍ଟି ।୧୬୪
ଲାଜେଣ ନ ଗଲା ସେହୁ ଆଉ କୁଣ୍ଡୀନଗ୍ରକୁ
ହରଉଦ୍ୟାନ ବନେ ସେ ଖଟିଲା ରୁଦ୍ର ଦେବତାଂକୁ ।୧୬୫
ଭଗତେ ପ୍ରସନ୍ନ ତାଂକୁ ହୋଇଲେ ବିଶ୍ୱନାଥେ
ପିନାକ ସମାନେ ଧନୁୟେ ଦିଲେ ତାର ହାଥେ ।୧୬୬
ରୁଦ୍ର ପ୍ରସନ୍ନେ ସେ ଅଟଇ ମହାବଳୀ
ରାଜ୍ୟେ ପ୍ରବେଶ ହୁଅନ୍ତେ ଭୀମସେନକୁ ଓଗାଳି ।୧୬୭
କାହିଂର ମାନବ ରେ ଯେଡେ ଦର୍ପ କିଂପା
ମୃତ୍ୟୁ ଆଶ୍ରେ କଲରେ ପାମର ମନ୍ଦଦର୍ପା ।୧୬୮
ରେ ରେ କାର କରି ଯେ ଧାମଇ କୁମାର
ଭୀମସେନକୁ ଓଗାଳିଲା ସେ କଟକ ବାହାର ।୧୬୯
ରୁକ୍ମଣ ଆଗ୍ୟାଂ ଦିଲା ଆପଣା ସଇନିକି
ବିନ୍ଧଶିରେ ନାରାଜ ଚାହୁଂଛ କାହିଂକି ।୧୭୦
ଆହୋ ରୁକ୍ମିଣ ଆଗ୍ୟାଂୟେ ସେ ଧାଇଂଲେ ସଇନି
ବିନ୍ଧନ୍ତି ନାରାଜନ୍ତ ଅବିଚ୍ଛନ୍ନେ ବାଣ ଘେନି ।୧୭୧
ରେ ରେ କାର ଶବଦେ ବିନ୍ଧନ୍ତି ବୀର ତାକେ
ଯେସନେକ ବରଷାକାଳେ କ୍ଷେପନ୍ତି ବଳାହକେ ।୧୭୨
ଭୀମସେନ ଯେ ଯାଉଥିଲା ଅତିବେଗେ
ଆରେ ରହ ରହ ବୋଲି ଆସି ଓଗାଳିଲା ଆଗେ ।୧୭୩
କରେଣ ଶହସ୍ର ଧରି ବେନିବଳେ ବେଗେ ଉଠି
ବାଣ ଜାଳାବଳୀରେ ହୋଇଲା ଶର ବୃଷ୍ଟି ।୧୭୪
ଶରେଣ ଶର ଯେ ପଡ଼ିତାଳ ବେନି
ଝଳକନ୍ତି ଅସିପତ୍ରେ ଯେହ୍ନେ ପ୍ରଦୋଷ ବହନି ।୧୭୫

ଭୀମସେନର ଥାଠ ଯେ ଉଠିଲେ ଗଳଗାଜି
ରୁକ୍ମଣର ଥାଠ ଯେ ପଳାଇଲେ ଭାଜି ।୧୭୬
ରୁକ୍ମଣ କୋପକଲା ଯେ ଥାଠଭଗ୍ନ ଦେଖି
ଆପଣେ ଉଠିଲା ବେଗେ ଉପ୍ରୋଧ ଉପେକ୍ଷି ।୧୭୭
ଆବାରଣ ମୁକୁଟବନ୍ଧା ସଙ୍ଗେ ଲକ୍ଷେକ ଯେ ଯୋଧୀ
ଯେକମୁଖ ହୋଇଣ ସେ ଆକ୍ରୋଷି ବାଣ ବିନ୍ଧି ।୧୭୮
ଭୀମସେନର ସଇନି ନ ଘୁଞ୍ଚନ୍ତି ଅଛନ୍ତି ସର୍ବେ ଲାଗି
ଅନିର୍ବାରଣ ଶରେ ବିନ୍ଧନ୍ତି ବେଗି ବେଗି ।୧୭୯
ଆପଣେ ଯହୁଂ ରୁକ୍ମଣ ଉଠିଲା ଥାଠ ଘେନି
ଘାୟେଣ ଭାଜିଲେ ଯେ ପାଣ୍ଡବ ସଇନି ।୧୮୦
ଯୁଝନ୍ତି ଭାଜନ୍ତି ପାଳଟନ୍ତି ଯହୁଂ ଦଣ୍ଡ
ଦେଖିଣ ମାରୁତି ଯେ କୋପେଣ ପରଚଣ୍ଡ ।୧୮୧
ରୁକ୍ମଣ ନାରାଜମାନ କରୁଅଛି ବୃଷ୍ଟି
ତୁଷାର ଆକରେ ସେ ପଡଇ ଶର ଘୋଟି ।୧୮୨
ଦୁସହ ସମର ଦେଖିଣ ବୀର ଭୀମ
କମ୍ପଇ ଅଧର ବସିଲା ଅଙ୍ଗେ ତମ ।୧୮୩
ବାହଇ ତୁରଙ୍ଗମ ସେ ମରୁତ ସାରଥି
ଆକାଶେ ରଥ ନେଲା ସେ ପବନର ଗତି ।୧୮୪
ମାରୁତିର ହାଥେ କୃତାନ୍ତେକ ଗଦା ଦେଖି
ଭୟେ ପଳାଇଲେ ସଇନି ସାଂଗ୍ରାମେ ଉପେକ୍ଷି ।୧୮୫
ଦଣ୍ଡଭଗ୍ନ ଦେଖିଣ ସେ ଉଠିଲା ଆପଣ
ନବନିଶିକୋନ୍ତ ଘେନି ଯେ ବୁଲାଇ ଧାଇଂଲା ରୁକ୍ମଣ ।୧୮୬
ମିଥୁନ ମେଘେ ଯେହ୍ନେ ଗର୍ଜଇ ନିର୍ଘାତ
ବୁଲାନ୍ତେଣ ମହାକୁନ୍ତ ଶୁଭଇ ସେହିମତ ।୧୮୭
ରୁକ୍ମଣରଡୁଳେ ସେ ଯେ ଉଠିଲେ ରାଉତେ
ମାଇଲେ ଲାଂକିଆ ଧରି ପବନ ଆପାତେ ।୧୮୮
ମୁର୍ଚ୍ଛି ଦେଖିକରି ସହି ନୁଆରିଲେ ପାବେନି
ଆପଣେ ଉଠିଲା ସେ କରେଣ ଗଦାବର ଘେନି ।୧୮୯
ରଥରୁ ଉତ୍ତୁରିଣ ଧାମଇଂ ବୀର କୋପେ
ମେଦିନୀ ଦଳଦଳିତ ପାଣ୍ଡବ ପରତାପେ ।୧୯୦
ରଥେକ ଆରୋହିଣ ଯେ ଧାମଇଂ ରୁକ୍ମଣ
ଲକ୍ଷେ କୋନ୍ତ ମାଇଲା ଭୀମସେନର ଉପରେଣ ।୧୯୧
ଗଦା ବୁଲାଇଣ ଭୀମ ପିଟିଲା ଗଳଗାଜି
ସମସ୍ତ କୋନ୍ତମାନ ସେ ପକାଇଲା ଭାଞ୍ଜି ।୧୯୨

କାଳେବର ଗଦା ବେଗେ ବୁଲାଇଣ ବୀର ପିଟି
ଭାଙ୍ଗିଣ ରଥମାନ ପଡ଼ିଲା ମହୀଲୋଟି ।୧୧୯୩
ହାଥୀଂକର ଉପରେ ଆରୋହିଲେ ରୁକ୍ମଣର ସର୍ବ ସେନା
ବ୍ରିକୋଦର ଉପରକୁ ବିନ୍ଧିଲେ ତୀଖମୁନା ।୧୧୯୪
ମରୁତ ଦେବତା ଯାହାକୁ ବରଦାୟେ
ସେ କି ଘୁଞ୍ଚଇ ହୋ ଛତ୍ରୀଂକର ଶର ଘାୟେ ।୧୧୯୫
କୋପେଣ ବୁଲାଇଲା କାଳେବର ଗଦାବରେ
ପିଟିଲା ଭୀମସେନ ହାଥୀଂକର ଉପରେ ।୧୧୯୬
ବ୍ରିକୋଦର ପ୍ରହାରେ ଭାଜିଲା ହାଥୀଂକ କୁମ୍ଭସ୍ଥଳ
ଯୋଦ୍ଧା ମାହୁନ୍ତ ଆଦି କରି ପଡ଼ିଲେ ଅସମ୍ଭାଳ ।୧୧୯୭
କୋପେଣ ହାଥୀଂକର ଧଇଲା ଥୋରହସ୍ତେ
ବୁଲାଇଲା ମାରୁତି ସେ ପବନ ଆପାତେ ।୧୧୯୮
ଯେକଇ ହାଥୀ ଉପରେ ଆରେକ ହାଥୀ ନେଇ ପିଟି
ଗଜଗାଜି ମହାନାଗେ ପଡ଼ିଲେ ମହୀଲୋଟି ।୧୧୯୯
ପୁଣିହିଂ ଉଠନ୍ତି ବୀରେ କରେ ଧରିଣ ଚାବ
ବରଷନ୍ତି ତୀକ୍ଷମୁନା ନାରାଜ ଅସମ୍ଭବ ।୧୨୦୦
ନାରାଜେଣ ପାଣ୍ଡବ ଯେ ଅଟନ୍ତି ଅଭୟେ
ଶତଶୃଙ୍ଗ ପ୍ରସନ୍ନେ ପାଷାଣ ଯାର କାୟେ ।୧୨୦୧
ପୁଣି ପୁଣି ମାରୁତି ଉଠିଲା ମହାରାଗେ
ଗଜେ ଗଜ ଅଶ୍ୱେ ଅଶ୍ୱ କଚାଡଇ ପରିତାଗ୍ୟେଂ ।୧୨୦୨
ଆହୋ ଅସମ୍ଭବ ସେନାୟେ ପଡ଼ିଲେ ମହୀଲୋଟି
ମହାବାତେ ଯେହ୍ନେ ପଂକୁ ଫଳ ହୋୟେ ବୃଷ୍ଟି ।୧୨୦୩
ଦଣ୍ଡ ଅପଚୟେ ଯହୁଂ ତାର ଦେଖିଲା ରୁକ୍ମଣ
ପରିଘେକ ବୁଲାଇ ସେ ଧାମଇଂ ଆପଣ ।୧୨୦୪
ଦିବ୍ୟ ଶହସ୍ରେକ ବୁଲାଇ ଅସିପତ୍ର
ଭୀମସେନ ଉପରକୁ ମାଇଲା ଯେସେନେକ ନିର୍ଘାତ ।୧୨୦୫
ଦେଖିଣ ମାରୁତି ଯେ ପାତିଲା ଗଦାବର
ବେନିଖଣ୍ଡ ହୋଇଲା ରୁକ୍ମଣ ଆସିବାର ।୧୨୦୬
ପୁଣିହିଂ ପିଟିଲା ଯେ ପବନ ଆତ୍ମଜେ
ରୁକ୍ମଣ ଉପରେ ନେଇ ପ୍ରହାର କଲା ଗୁରୁଜେ ।୧୨୦୭
ଶରୀରୁ ରୁଧିର ବାହାର ହୋଇ ଫୁଟି
ନିଚେଷ୍ଟେ ରୁକ୍ମଣ ଯେ ପଡ଼ିଲା ମହୀଲୋଟି ।୧୨୦୮
କୋପେଣ କ୍ଷେପିଲା ସେ ପାଣ୍ଡବ ଅଚାର୍ଗଳ
ଆକ୍ରୋଷି ଧଇଲା ଯାଇଂ ରୁକ୍ମଣର ବାଳ ।୧୨୦୯
ରକତକୁମୁଦ ଜାଣି ବେନିଚକ୍ଷୁ ଅଧରେ ଦଣ୍ଡ ଚାପି
ବାମକରେ କେଶ ଡାହଣ କରେ ଖଡଗ ଧରି କୋପୀ ।୧୨୧୦
ରାଗେଣ ଛେଦିବ ସେ ରୁକ୍ମଣର ମାଥ
ମରୁତ ସାରଥି ଯାଇଂ ଧଇଲା ଭୀମସେନର ହାଥ ।୧୨୧୧
ବାବୁ ରାଜାନ୍ତ ନିମନ୍ତଣେ ଅଇଲୁ ଧର୍ମ ଅର୍ଥେ
ଯେତେବେଡ଼ ରାଜାକୁ ନାଶକରିବୁ କେଉଂଣ ମନ୍ତେ ।୧୨୧୨
ସାରଥି ବଚନେ ଭୀମ ସଂହରିଲା ଅସିବର
ରୁକ୍ମଣ ବୋଇଲା ସ୍ୱାମୀ ତୁ କେବଣ ଦେଶର ଦଣ୍ଡଧର ।୧୨୧୩
ମୁହିଂ ଯେ ଯୁଦ୍ଧ କଲାଇଂ କୃଷ୍ଣ ବଳରାମେ
ଅଷ୍ଟାଙ୍ଗେ ସେ ବଳଦେବ ମୋତେ ଜିଣିଲେ ସାଂଗ୍ରାମେ ।୧୨୧୪
ଭୀମସେନ ବୋଇଲେ ତୁ କିଂପାଇଂ ରାମକୃଷ୍ଣେ ବଇରି
କେଉଂଣ କୃତ୍ୟେ ତୁ ତାହାନ୍ତ ଦ୍ୱନ୍ଦକାରୀ ।୧୨୧୫
ରୁକ୍ମଣ ବୋଇଲା ତୁ ଶୁଣ ହୋ ବୀରମଣି
ରୁକ୍ମଣୀଦେବୀ ଅଟନ୍ତି ସେ ମୋହୋର ଭୟେଣୀ ।୧୨୧୬
ମାତା ପିତାୟେ ବରିଲେ ଯେ ଜଗନ୍ନାଥଂକୁ
ମୁହିଂ ବଳାତ୍କାରେ ବରିଲି ଶିଶୁପାଳକୁ ।୧୨୧୭
ତହିଂର ନିମନ୍ତେଣ ହୋଇଲା ବଡ଼ ଦ୍ୱନ୍ଦ
ତେଣୁ କରି ଅପମାନ ମୋତେ କଲେକ ଗୋବିନ୍ଦ ।୧୨୧୮
ରୁକ୍ମଣ ବଚନ ଶୁଣି ଆଶ୍ରିଜ ପାଣ୍ଡବ ଅଚାର୍ଗଳ
ଧାଡିକାରେ ଛାଡିଲା ସେ ରୁକ୍ମଣର ବାଳ ।୧୨୧୯
ଭୁଜେ ଭିଡ଼ି ରୁକ୍ମଣକୁ କରଇ କୋଳାଗ୍ରତ
ତୁତ ସୋଦର ମୋହୋର ପ୍ରାଣର ସଂଘାତ ।୧୨୨୦
ଆହୋ ରୁକ୍ମଣ ହରି ବଳରାମେ ଆମ୍ଭର ଶଳା
ତୁତ ରୁକ୍ମଣୀର ସୋଦର ପଦ୍ମନର ମଉଳା ।୧୨୨୧
ତୋହୋର ଆମ୍ଭରତ ଅନେକ ପୀରତି
ନ ଜାଣିଣ ରୁକ୍ମଣ ତୋତେ କଲାଇଂ ଅନେକ ଦୁର୍ଗତି ।୧୨୨୨
ଆହୋ ରୁକ୍ମଣ ତୋତେ ନ ଜାଣଇ ଦ୍ରୋହକଲୁ
ସମରେ ପରିଘାଇ ତୋତେ ଅନେକ ବୋଇଲୁଂ ।୧୨୨୩
ତୁ ଆମ୍ଭର ସୋଦର ଯେ ଅଟୁ ଇଷ୍ଟବନ୍ଧୁ
ଧର୍ମେଣ ତୋର ଶିର ନ ଛେଦିଲି କନ୍ଧୁଂ ।୧୨୨୪
ଶୁଣିଣ ରୁକ୍ମଣ ଯେ ଶତ ସହସ୍ର ପରିଣାମି
ସାଧୁ ବ୍ରିକୋଦର ମୋତେ ରକ୍ଷାକଲ ସ୍ୱାମୀ ।୧୨୨୫
ଶୂରବର ସୁନ୍ଦର ତୁ ବ୍ରିକୋଦର ଜେନା
ମୋହୋର କିସ ଦର୍ପ ମୁଂ କିଷ୍ଠିତ ଜନ ସିନା ।୧୨୨୬

ସୁବିଧାନେ ନାଥ ମୁଂ ତୋତେ ଭେଟିଲି ପ୍ରତକ୍ଷେ
ମୁକତକଇଂ କାରଣ ଦେବ ମୁଂ ପାଇଲି ସାରିକ୍ଷେ ।୨୨୭
ଜରା ନିବାରଣ ତୁ ଯେ ପ୍ରତକ୍ଷେ କଲୁ ଭୀମା
ତୁହି ସେ ରଖିଲୁ ନାଥ ପଛିମଦିଗର ଗାରିମା ।୨୨୮
ମୁହିଂ ମୁର୍ଖଜନ ଯେ ଅଟଇ ସର୍ବଦା ଅଗ୍ୟାନ
ଶରଣମହଳ ନାଥ ମୋତେ ତ୍ରାହିକର ଭୀମସେନ ।୨୨୯
ବ୍ରିକୋଦର ବୋଇଲେ ତୁ ମୋହୋର ପ୍ରାଣସାହା
ସମଦଣ୍ଡ ଘେନି ଯେବେ ରାଜୁସିଯାଗକୁ ଯା ଯା ।୨୩୦
ଧନୁମାସ ଶୁକଳପକ୍ଷ ପଉର୍ଣ୍ଣମୀର ତିଥି
ପୁଷ୍ୟାନକ୍ଷତ୍ରେ ଯାଇଂ ପ୍ରବେଶ ହୋଇବୁ ଧାତି ।୨୩୧
ରୁକ୍ମଣ ବୋଇଲା ସ୍ୱାମୀ ସଦୟେ ଯେବେ ଚିତ୍ତେ
ମୋହୋର ପୁରେ ମୁଣୋହି କଲେ ତେବେ ସେ ଯାଇଂ
ପ୍ରତେ ।୨୩୨
ଭୀମସେନ ବୋଇଲା ତୋହୋର ମାଇଲି ଅନେକ ସଇନି
ଅନେକ କ୍ରୋଧ ତୋର ରାଜ୍ୟେ ଶୁଭଇ ଧ୍ୱନି ।୨୩୩
ଆହୋ ରୁକ୍ମଣ ମୁଂ ତୋତେ କଲଇ ଅନେକ ଅପରାଂଜୟେ
ବାରତାପାଇ ବେଗେ ଅଇଲେ ଭୀଷ୍ମେକ ମହାରାୟେ ।୨୩୪
ନଗ୍ରେଣ ପାୟେଡା ପାଡିଣ ନରପତି
ବେଳେ ଦ୍ରଶନ ଯାଇଂ କଲାକ ମାରୁତି ।୨୩୫
ଛାମୁରେ ଥୋଇଲା ନେଇ ପାଦାର୍ଘ୍ୟସ୍ଥାଳୀ
ଭୀମସେନ ଅଗ୍ରତେ କରଇ ନିଉଛାଳି ।୨୩୬
ଆନନ୍ଦେ ଅଶ୍ରୁଜଳ ବହଇ ଚକ୍ଷୁବେନି
ଭୀଷ୍ମକ ପୂଜାକଲା ଅନେକ ରତ୍ନ ଘେନି ।୨୩୭
ଅନେକ ବିନୋୟୀ କହଇ ଭୀଷ୍ମକ ନୃପବର
ତୁ ସେ ପଛିମଦିଗର ଠାକୁର ବ୍ରିକୋଦର ।୨୩୮
ସ୍ୱାମୀ ଶାସ୍ତି ଦିଲେହେଂ ତୁହି, ନାଶିଲେ ହେ ତୁହି
ଶରଣ ରକ୍ଷଣ ଦେବ ତୋ ତହୁଂ ଆନ ନାହିଂ ।୨୩୯
ମୁହିଂ ନ ଜାଣି ମରାଇଲି ଅନେକ ସଇନି
ମୁହିଂ ସେ ହାରିଲି ତୋହୋର କିସ ଅପମାନି ।୨୪୦
ମୋହୋର ଭୁବନକଇଂ ଯିବା ହେ ଦେବେ ଯେବେ
ସର୍ବପାତକ ନାଶିବି ଯାହା ଅର୍ଜିଅଛି ପୂର୍ବେ ।୨୪୧
ସ୍ୱାମୀ ମୋହୋର ରାଜ୍ୟେ ତୋହୋର ପଡ଼ିଲେ ପାଦରଜ
କୁଣ୍ଡୀନଗ୍ରୀ ମୋହୋର ହୋଇବ ଅଇଶ୍ୱର୍ଯ୍ୟ ।୨୪୨
ତୋହୋର ସ୍ନାହାନ ଉଦକ ପଡ଼ିଲେ ମୋହୋର ରାଜ୍ୟର
ସୁବିଧାନେ ବୃଷ୍ଟି ଯେ କରିବେ ସୁରେଶ୍ୱର ।୨୪୩
ଆଜହୁଂ ନିକଣ୍ଟକ ହୋଇବି ମୁହିଂ ରାଜା
ଆଜୁଂ ସୁଖୀ ହୋଇବେ ମୋହୋର ସକଳ ଜନପ୍ରଜା ।୨୪୪
ଆଜହୁଂ ସୁଲଭ ହୋଇବେ ମୋହୋର ପିତା ମାତା
ତୁହି ସେ ବ୍ରିକୋଦର ମୋହୋର ଇଷ୍ଟ ଯେ ଦେବତା ।୨୪୫
ଅନେକ ତୁଷ୍ଟି କରି ଭୀଷ୍ମେକ ନୃପବର
ଭୀମସେନ ଠାକୁରଂକୁ ଘେନି ପ୍ରବେଶ କଟକ ଭିତର ।୨୪୬
ଆହୋ ବୃନ୍ଦାଅର୍କେ ଦେଖି ଯେହ୍ନେ ଧାମନ୍ତି ମନୁଷ୍ୟେ
କ୍ରୋଧ ଚିନ୍ତା ଛାଡିକରି ଧାମନ୍ତି ହରଷେ ।୨୪୭
ତିନିପୁତ୍ରନ୍ତ ଘେନି ରାଜା ଯେ ଭୀଷ୍ମେକ
ଚାମର ଢାଳୁଛନ୍ତି ଭୀମସେନର ବେନିପାଖ ।୨୪୮
ଇନ୍ଦ୍ର ଦେବତାଂକୁ ଦେଖି ଯେହ୍ନେ ସାନନ୍ଦ ହେମବନ୍ତ
କୁଣ୍ଡୀନଗ୍ର ଦେଶ ଲୋକେ ଅନେକ କୃତ କୃତ ।୨୪୯
ସୁବର୍ଣ୍ଣ କଲଶେ ନେତପାଟାଙ୍ଗ ଉଡାନ୍ତି
ଉଭା ସଡ଼ା କ୍ରୋଶା ଉଭାରିଲେ ଚଉକତି ।୨୫୦
ଅନେକ ଆଲମ୍ବ ପାଟଛତ୍ର ଗହନେ
ଛାମୁରେ ନୃତ୍ୟ ଗୀତ କରନ୍ତି ଭରହରଷ ନାୟେକାମାନେ ।୨୫୧
ସୁବର୍ଣ୍ଣର ଜଗତୀ ମଣ୍ଡିଲେ ପରିମଳେ
ବିଜୟେ ପାଣ୍ଡବ ଯାଇଂ ମାହାନ୍ଦ୍ର ଯୋଗବେଳେ ।୨୫୨
ରାଜ୍ୟେଣ ଉତ୍ସବ ଯେ କରାଇଲେ ଭୀଷ୍ମେକ ନୃପବର
ଅନେକ କୃତ କୃତ କୁଣ୍ଡୀନଗ୍ର ପୁର ।୨୫୩
ଯେହ୍ନେ ସେ ପ୍ରସନ୍ନ ମୋତେ ପାଣ୍ଡବ ପଞ୍ଚାଳ
ଆବର କାହାକୁହିଂ ଭୟେ ନାହିଂ ମୋର ସର୍ବକାଳ ।୨୫୪
ଅହିବ୍ରତେକ ସୂପକାର ହକାରି ନୃପମଣି
ରାନ୍ଧଣା ଯୋଗାଡ଼ ଛାମୁକୁ ବେଗେ ଆଣି ।୨୫୫
ଭୀମସେନ ଛାମୁରେ ଦିଲେ ନଡପ ଯୋଗାଡ଼
ସୁପଂକୁ ଅନ୍ନମାନ ମେଞ୍ଜନ ଅପାର ।୨୫୬
ଆପଣାର ସୂପକାର କରନ୍ତି ରନ୍ଧନ
ବିଳମ୍ବ ଦେଖି ଆପଣେ ପଶଇ ଭୀମସେନ ।୨୫୭
ଗଉରୀ ଶଉରୀ ନଳ ବିଧି ରାନ୍ଧଣା ତିନିପ୍ରତି
ବାଳକାଳେ ଦୋହୋରାୟେ ପ୍ରସନ୍ନେ ଦେଇଛନ୍ତି ।୨୫୮
ଦୋହୋରା ସୁମରି ଯେବଣ ପାକ ବୀର କରଇ ଲାଗି
ତତକ୍ଷଣେ ରନ୍ଧନ ହୋଅଇ ବେଗି ବେଗି ।୨୫୯
ଶତେ ପଉଟି ତଣ୍ଡୋଳ ପ୍ରହରକେ ପଚି
ହାଥ ଲାଗନ୍ତେ ସେ ଅମୃତ ପାକ ହୋଉଅଛି ।୨୬୦
ପାଞ୍ଚଘଡିର ମଧେ ହୋଇଣ ରାନ୍ଧଣା

ସ୍ନାହାନସାରି ମୃଣୋହିରେ ବିଜେ ପବନ ଦୁଲଣା ।୨୬୧
ରାତ୍ର ହୋଇଅଛି ଯେ ସଂପୂର୍ଣ୍ଣ ସାତଘଡ଼ି
ଷାଠିଯେ ପଉଟି ଅନ୍ନ ଭୋଜନ ବୀର କରି ।୨୬୨
ଆବର ଅନ୍ନ ଯେ ଚାଳିଶପଉଟି
ଯୋଦ୍ଧା ରାଉତ ସଇନି ସବୁଂକୁହିଂ ଅଣ୍ଟି ।୨୬୩
ଭୋଜନେ ଅତ୍ରିପୁତି ଯେ ସାଂଗ୍ରାମେ ଅତ୍ରିପୁତି
ନିଦ୍ରାରେ ଅତ୍ରିପୁତି ଯେ ମଇଥୁନେ ଅତ୍ରିପୁତି ।୨୬୪
ଗମନେ ଅତ୍ରିପୁତି ସେ ଶହସ୍ରେ ଶାହାସ୍ରେ ଅତ୍ରିପୁତି
ଭରହର ବାଦ୍ୟେ ଅତ୍ରିପୁତି ଯନ୍ତ୍ରବାଦ୍ୟେ ଅତ୍ରିପୁତି ।୧୬୫
ଭୋଜନ ସାରିଣ ସେ କଲେକ ଆଂଚୋବନ
ସିଂଘାସନ ପରେ ବିଜେ ପବନ ନନ୍ଦନ ।୨୬୬
ଆପଣେ ରୁକ୍ମଣ ଯେ ତାମ୍ବୋଳ ଦିଲା ସଞ୍ଜି
ନାନା କୁସୁମେ କେଶ ଯେ ସାଂକୋଉଣ ଅଛି ।୨୬୭
କୁଟୁମ୍ବଯାକ ଘେନି ସେ ଭୀଷ୍ମେକ ନୃପବର
ଭୃତ୍ୟପଣେ ଖଟିଅଛି ଭୀମସେନର ଛାମୁର ।୨୬୮
ଶ୍ରୀହସ୍ତେ ଶାଢ଼ୀ ଦିଲେ ଯେ ପବନ ଆତ୍ମଜା
ବଡ଼ ତ୍ରିପୁତି ଆମ୍ଭକୁ ହୋ କରାଇଲୁ ମହାରାଜା ।୨୬୯
ମାଗ ହୋ ଭୀଷ୍ମେକ ଯେ ତୋହୋର ମନଇଚ୍ଛା
ସତ୍ୟବାକ୍ୟେ ବୋଲୁଅଛି ମୁଂ ତୁମ୍ଭର ପୂରୋଇବି
ମନୋବାଞ୍ଛା ।୨୭୦
ଭୀଷ୍ମେକ ବୋଇଲା ଯେବେ ବରଦେବୁ ହୋ ପାବେନି
ମହାଭାରଥ ଯୁଦ୍ଧେ ମୋହୋର ପୁତ୍ରନ୍ତ ଥିବୁ ଚିହ୍ନି ।୨୭୧
ଭୀମସେନ ବୋଇଲା ଯେ ପୋଯେ ଯେବେ ମୋହୋର କତି
ମୋହୋର ଦେହ ଥିବା ଯାଯେ ତୋହୋର ପୁତ୍ରନ୍ତ ନାହିଂ
ଭୀତି ।୨୭୨
ଆହୋ ଭୀଷ୍ମେକ ଯଦ୍ୟପି ହୋଇବେ ତୋହୋର ପୁତ୍ର
କଉରବଂକ କତି
ଚିହ୍ନିଲେ ନ ମାରିବି ଯେ ମୋହୋର ତ୍ରିବାର ସତ୍ୟି ସତ୍ୟି ।୧୭୩
ସ୍ୱାମୀ ମହନ୍ତଂକର ବାକ୍ୟ ଯେ ପାଷାଣ ରେଖା ଜାଣି
ଆଜ୍ଞୁଂ ମୋହୋର ପୁତ୍ରଂକୁ ନିଭ୍ରାନ୍ତି ହୋଇଲଇଂ ପୁଣି ।୨୭୪
ରାତ୍ର ଅଢ଼ାଇ ପ୍ରହରେ ଭୀମସେନର ସଜାଉଂ ବାଜେ
କୁଣ୍ଡୀନଗ୍ର ଜିଣି ପ୍ରବେଶ ପଦ୍ମଦଳ ରାଜ୍ୟେ ।୨୭୫
ବୃଦ୍ଧମାନବଂଶିକ ରାଜା ପଦ୍ମ ଯେ କେଶରୀ
ପାଞ୍ଚଶତ ପାରିଦଣ୍ଡ ଘେନି ସେ ରାଜା ସମ୍ପରେ ରାଜ୍ୟ
କରି ।୨୭୬

ସପତ କ୍ଷଉଣୀ ସନ୍ୟବଳ ତାହାକୁ ଖଟଇ
ପଦ୍ମଦଳ ଦେଶରେ ସେହୁ ଠାକୁର ଅଟଇ ।୨୭୭
ତାହାର ଦେଶେ ଯାଇଂ ପ୍ରବେଶ ମହାବୀର
ବୀରତୂର ଶବଦେ ଯେ କମ୍ପିଲା ମହୀଭାର ।୨୭୮
ରାଜାର ଅଗ୍ରତେ ଯାଇଂ ଜଣାଇଲେ ମୁନେହି
ସ୍ୱାମୀ କେବଣ ଦେଶର ରାଜା ପଦ୍ମଗିରି ଶିଖରେ ଅଛି ରହି ।୨୭୯
ରଥ ଅଳପ ଗଜ ଅଳପ ପାଦାନ୍ତିବଳ ହେଲି
ବୀରତୂର ଶବଦେ ଯେ କମ୍ପିଲା କୁରୁମ ଉଛୁଳି ।୨୮୦
ସ୍ୱାମୀ ବଡ଼ାଇ ପ୍ରତଗ୍ୟାଂ ସେ ଅଭଯେ ବଳବନ୍ତା
ଯୋଦ୍ଧାପଣେ ସାମରଥା ପ୍ରାକ୍ରମେ ଶକତା ।୨୮୧
ବିଚାରି ବୁଝିବା ପଦ୍ମଦଳ ଦେଶର ଅଧିକାରୀ
ସନ୍ଧାନ ଦେବା କି ତାହାକୁ ପାରିବା କି ସାଂଗ୍ରାମ କରି ।୨୮୨
ଶୁଣିଣ ରାଜ୍ୟେଶ୍ୱର କଥା କୁତୂହୋଳେ
ତିନିଲକ୍ଷ ଯୋଦ୍ଧା ରାଇଲା ରବି ଅସ୍ତକାଳେ ।୨୮୩
ସାଜରେ ମାତଙ୍ଗ ମହାବଳ ମତ୍ତହାଥୀ
ରାଜ୍ୟକୁ ପଶି ନ ଦିଅ ଧରିଆଣରେ ସେହୁ ରଥୀ ।୨୮୪
ପଦ୍ମଦଳକେଶରୀ ରାଜାର ନିରାଧାର ବଚନେ
ସମଦଣ୍ଡ ଘେନି ଧାଇଂଲେ ମୁକୁଟବନ୍ଧା ଯୋଦ୍ଧାମାନେ ।୨୮୫
ଦିହୁଡ଼ି ହୁଳା ତହିଂ ଯେ ଲାଗିଲା ବେନିକୋଟି
ରାତ୍ରକାଳେ ମହୀନ୍ଦ୍ର ଗିରିମାଳ ଆସଇ କି ଉଠି ।୨୮୬
ଧର ଧର ମାର ମାର ପଡୁଅଛି ଘୋର ଡାକ
ମେଦିନୀ କମ୍ପୁଅଛି କ୍ଷତ୍ରୀଂକର ବୀରହାକ ।୨୮୭
ଭୀମସେନକୁ ବୋଇଲା ସେ ମରୁତ ସାରଥି
ଦଣ୍ଡ ଗୋଟାଯେ ସାଜି ଆସୁଅଛି ରାଜା ନିଶାରାତି ।୨୮୮
ବିଶେଷେ ଅନ୍ଧକାର ସେ ଦୁଗୁଣ ରଜନୀ
ସାଂଗ୍ରାମେ ପଡ଼ିଲେ କେହି ନୁଆରିବା ଚିହ୍ନି ।୨୮୯
ଅହୋ ବ୍ରିକୋଦର କରିବା କେଉଂଣ ଉପାଯେ
ଯେହିକ୍ଷଣି ମରିବେ ଯେହାର ସଇନି ଲୋଚାଯେ ।୨୯୦
ଭୀମସେନ ବୋଇଲା ତାତ ନ କହ ଯେମନ୍ତ
ଥୋକାଯେ ନ ମଲେ ହାଦେ ଯେହାର ନ ଭାଙ୍ଗଇ ମତ୍ତ ।୨୯୧
ମୁହିଂତ ଅଚାର୍ଗିଲା କ୍ଷତ୍ରିୟ ରଣରଂକା
ସବୁନ୍ତି ମାରିପାରଇ ଯେକା ଜଗନ୍ନାଥଂକୁ ମୋହୋର ଶଂକା ।୨୯୨
ଯେତେ ପ୍ରତଗ୍ୟାଂ କରୁଛନ୍ତି ରାଜାମାନେ
ଯେମାନନ୍ତ ଜରା ବନ୍ଦୀ କରିଥିଲାଟି ପକାନ୍ତା ହୁତାଶନେ ।୨୯୩

ଜରାସନ୍ଧ ମାରି ମୁଂ ଯେ ଉଦ୍ଧରିଲି ସବୁନ୍ତି
ବିଶାଶତେ ଦିନ ନିହାଇ ହୋଅଇ ପାସୋରିଲେ ସକଳ
ନୃପତି ।୨୯୪
କହୁଂ କହୁଂ ବ୍ରିକୋଦରର ବଢ଼ିଲାକ ମହାରାଗ
ପର୍ବତ ଉପରୁ ଡେଇଂ ପଡ଼ିଲାକ ଅତିବେଗ ।୨୯୫
ନିଦାଘକାଳେ ଯେନ୍‌ହେ ଦିଶଇ କୃତାନ୍ତ
ସେଇ ସରୂପ ବିକାଶଇ ଭୀମସେନର ଗାତ୍ର ।୨୯୬
ବେନିଲୋଚନ ବିକାଶଇ କାଳଚକ୍ର ପ୍ରାୟେ
ଶୂନ୍ୟଭୂବନ ଭେଦଇ ଘୋର ରୂପକାୟେ ।୨୯୭
ମନ୍ଦର ଗିରି କି ନିଜ ସ୍ଥାନ ଛାଡ଼ି ଉଠି
ସେହି ସରୂପେ ବୀର ପଦ୍ମଦଳ ଥାଠକୁ ଘୋଟି ।୨୯୮
ବିରୂପ ବୀରଭଦ୍ର ବୋଲି ବେନି ସେନାପତି
ସେ ଦୁହେଂ ଲାଗିଛନ୍ତି ବ୍ରିକୋଦରର ବେନି କତି ।୨୯୯
ରାହୁର ତୁଲେ ଯେସନେକେ କେତୁ ଯେ ମଙ୍ଗଳ
ସେହି ସରୂପେ ଦିଶନ୍ତି ତିନିହେଂ ଅଚାର୍ଗଳ ।୩୦୦
ରେ ରେ କାର ଶବଦେ ଯେ ଉଠିଲେ ଗଳଗାଜି
ତ୍ରାସେଣ ପଦ୍ମଦଳ ଥାଠ ପଳାଇଲେ ଭାଜି ।୩୦୧
ପାଣ୍ଡବ ସୁନ୍ଦର ଯେ କରେଣ କାଳେବର ଗଦା ଧରି
ଯେସେନେକେ ମତ୍ତଗଜକୁ ନ ଗଣଇ କେଶରୀ ।୩୦୨
ବ୍ୟାଘ୍ର ଦେଖିଣ ଯେହ୍ନେ ପଳାବନ୍ତି ସୁରଭି
ଧାମଇଂ ମାରୁତି ଯେ ଗଦାବର ପ୍ରାଭବି ।୩୦୩
ଗିରିବର ସାଦ୍ରିଶେ ଭୀମ ଗଦା ବୁଲାଇଲା ଟୋଳି
ରଥ ଗଜ ଅଶ୍ୱ ପାଦାନ୍ତି ସମସ୍ତ ହୋଉଛନ୍ତି ଧୂଳି ।୩୦୪
କୋପଭରେ ଦନ୍ତ ସେ ଚାପନ୍ତେ ବେନିପାଟି
ମେଘଗର୍ଜନ ପ୍ରାୟେ ଶୁଭଇ ଅନାବୃଷ୍ଟି ।୩୦୫
ଆହୋ ବଇବସୁତ ମନୁ ଅଣି ସହସ୍ର ଯୋଦ୍ଧାୟେ ଯେ ଥିଲେ
ଆଗିଆଣି
ଗଦା ପ୍ରହାରେ ପଡ଼ିଲେ ଯେନ୍‌ହେ ବାତେ କଦଳୀ ବନ
ଜାଣି ।୩୦୬
ଗଦା ବୁଲାବନ୍ତେ ଉଡ଼ିଲେ ରଥ ଅଶ୍ୱ ଗଜେ
ପଡନ୍ତି ଅନେକ ଦୂରେ ଚୂର ହୋଇ ସର୍ବ ଭାଂଜେ ।୩୦୭
ରାଜାର ନବରେ ପଶିଲେ ଗଳଗାଜି
ଗଦାବର ବିଘାତେ ଘରମାନ ପଡୁଛନ୍ତି ଭାଂଜି ।୩୦୮
ତୁଳ କୃଷ୍ଣ ଅମାବଇରେ ଯେନ୍‌ହେ ସ୍ୱାତୀ ପବନ
ସେହି ରୂପେ ଭାଜିଲେ ଘର ବୃକ୍ଷମାନ ।୩୦୯

ଦେଖିଣ ପଦ୍ମକେଶରୀ ଯେ କଲାକ ମହାଭୟେ
ରାଜ୍ୟ ତେଜିଣ ସେ ଯେ ପଳାଇଲା ରାୟେ ।୩୧୦
ଆରେ ରହ ରହ ବୋଲି ଡାକଇ ପାବେନି
ରାଜାକୁ ଛାଡିକରି ପଳାଇଲେ ସକଳ ସଇନି ।୩୧୧
ମରୁତ ସାରଥି ବୋଲଇ ନ କର ଭୀମ କୋହ
ରାଜାଂକୁ ଯାଇଂ ଜଣାଇବା କଥାର ସନ୍ଦେହ ।୩୧୨
ଆହୋ ଭୀମସେନ ନିସତ ହୋଇ ସେ ପଳାଇଲା ରାଜ୍ୟ ତେଜି
ସନ୍ୟ ନ ମାରି ତାହାର ରାଜ୍ୟ ପକାଇଲୁ ଭାଂଜି ।୩୧୩
ଯେମନ୍ତେ ବ୍ରିକୋଦରେ ସମାର୍ଜି ଚଳଇ ମରୁତ
ପଦ୍ମକେଶରୀ ପଳାବନ୍ତେ ଓଗାଳିଲା ତୁରିତ ।୩୧୪
ଆହୋ ରହ ରହ ପଦ୍ମକେଶରୀ କାହିଂକି ପଳାଉ
ଖେଳନ୍ତା ସିଂଘ ଛାମୁରୁ କେତେ ଦୂର ଯାଉ ।୩୧୫
ଜାରା ନିଶୋଧନ ପ୍ରତଗ୍ୟାଂ ଯାର ସାଧୁ
ଭଗତଜନ ମଛଳ ଶରଣପଞ୍ଜର ଯାହାର ବିରଧୂ ।୩୧୬
ଆହୋ ପଦ୍ମକେଶରୀ ଭୀମସେନ ପଛିମ ଦିଗବିଜେ
ବୋଲି ନ ଜାଣୁଂ କି
ଚଞ୍ଚଳ ପବନ ଛାମୁରୁ ତୁ ପଳାଉ କାହିଂକି ।୩୧୭
ଭୀମସେନ ଦିଗବିଜେ ଶୁଣି ପଦ୍ମକେଶରୀ
ରଥର ଉପରୁ ରାଜା ପଡ଼ିଲା ଉତୁରି ।୩୧୮
ଶ୍ରିୟା ସୁମତି ବୋଲିଣ ବେନି ପାଟରାଣୀ
ତାହାନ୍ତ ଘେନି ଆସି ପ୍ରଣପତ୍ୟ କଲାକ ନୃପମଣି ।୩୧୯
ଭୀମସେନ ଠାକୁରେ ଉଭା ହୋଇଛନ୍ତି ମେଦ୍ଦର ଉପରେ
ମୁଖରେ ହାଥଭରି ପ୍ରଣପତ୍ୟ ନୃପବରେ ।୩୨୦
ପଦ୍ମକେଶରୀ ରାଜା ଅନେକ ଧୂରୁଂ ଆସଇ ପରିଣାମି
ବୋଲଇ ଦଶଦୋଷ ଅପ୍ରାଧ କ୍ଷମା କରିବାକ ଦେବସ୍ୱାମୀ।୩୨୧
ସ୍ୱାମୀ ଜରାସନ୍ଧ ଘରେ ମୁହିଂ ପଡ଼ିଥିଲି ବନ୍ଦୀ
ଅନେକ ଶାସ୍ତି ଆମ୍ଭନ୍ତ ସେ ଦେଉଥିଲା ବାନ୍ଧି ।୩୨୨
ମହାଘୋରୁ ଉଦ୍ଧାରଣ କଲା ଯେଉଣ ଜନ
ସ୍ୱାମୀ ଚିହ୍ନି ନୁଆରିଲି ଶାସ୍ତି ପାଇଲି ଅକାରଣ ।୩୨୩
ମତିହୀନ ବାକ୍ୟହୀନ କ୍ରିୟା ମୋର ହୀନ
ପରଲୋକ ବନ୍ଧୁ ମୋତେ ଉଦ୍ଧର ହୋ ଭୀମସେନ ।୩୨୪
ଜିତ ମହାପ୍ରସାଦ ବୋଇଲେ ଗଦାପାଣି
କାଳେବର ବୋଇଲେ ତୁ ଉଠ ହୋ ନୃପମଣି ।୩୨୫
ଆଗ୍ୟାଂ ପ୍ରମାଣେ ପଦ୍ମକେଶରୀ ରାୟେ ଉଠି
ଆନନ୍ଦେ ଅଶ୍ରୁଜଳ ବହଇ ବାକ୍ୟ ନୁଆସଇ ଫୁଟି ।୩୨୬

ଅକ୍ଷତ ତାମ୍ବୁଳ ନେଇ ତାକୁ ଦିଲେକ ପାବେନି
ଚଳସି ହୋ ପଦ୍ମ କେଶରୀ ତୋହୋର ପାରିଦଣ୍ଡମାନନ୍ତ
ଘେନି ।୩୨୭
ଶୁଭେ ପ୍ରବେଶ ହୋଅ ରାଜୁସିଯଗ୍ୟଂ ସଭା
ଅଗ୍ୟାନେ ଦୋଷ ତୁ କଲୁସି ରେ ବାବା ।୩୨୮
ପୁଣ ପୁଣ ପ୍ରଣପତ୍ୟ ପଦ୍ମଦଳ ଅଧିକାରୀ
ସ୍ୱାମୀ ମୋହୋର ପୁରେ ମୁଣୋହି ଯିବା ବିଜେକରି ।୩୨୯
ଭୀମସେନ ବୋଇଲା ମୋର ସୁଖଭୋଗ ନାହିଂ ଇଚ୍ଛା
ଯଗ୍ୟଂ ସନ୍ନିଧ ହୋଇଲାନି ଜଗନ୍ନାଥଂକର ବଡ଼ାଇ କଇଛା ।୩୩୦
ଆହୋ ପଦ୍ମକେଶରୀ ନଉଦିବସର ମଧେ ଯେବେ
ରାଜାନ୍ତ ଯେ ନୁଆଣିବ
ଯେଉଂଠାରେ ଥିବ ସେହିଠାରେ ଚକ୍ରରେ ଛେଦନ
ହୋଇବ ବୋଲି ବୋଲିଛନ୍ତି ବାସୁଦେବ ।୩୩୧
ଆହୋ ପଦ୍ମକେଶରୀ ଯେହେନ୍ତକେ ସନ୍ଦେଶ
ବାସୁଦେବଂକର ଆଗ୍ୟାଂ
କାହାର ବେଳେ ତାହା କରିବି ଅବଗ୍ୟାଂ ।୩୩୨
ଆହୋ ଆମ୍ଭେ ସଂଚଯେ ହୋଇଲୁନି ଅପରାଧୀ
ପଞ୍ଚାଶ ସହସ୍ର ରାଜା ନଉଦିବସେ କେମନ୍ତେ କରିବି ସାଧି ।୩୩୩
ଆହୋ ପଦ୍ମକେଶରୀ ଜରାସନ୍ଧ ବଧକାଳେ
ରାଜୁସିଯଗ୍ୟଂ ବୋଲି କହିଲେଟି ତୁମ୍ଭନ୍ତ ହରି
ନିଅଳ ଫେଡ଼ିବାର ବେଳେ ।୩୩୪
ତେଡ଼େ କଥା ଯେବେ ପାସୋରିଲୁ ତୁହି ପାଞ୍ଚମାସେ
ପୁଣିହିଂ ସାଂଗ୍ରାମ କରୁ କଥାର ଅବିଶ୍ୱାସେ ।୩୩୫
ଯେତେ ବୋଲିକରି ରାଜାକୁ ଚଳାଇ
ମରୁତ ସାରଥିକି ବୋଇଲା ଚାଲ ବେଗେ ରଥ ବାହି ।୩୩୬
ପଦ୍ମଦଳ ରାଯେ ତହୁଂ କଲାକ ପରସ୍ତାନ
ବିଜୟ ପାଣ୍ଡବ ସୁନ୍ଦର ହିରଣ୍ୟନାମେ ବନ ।୩୩୭
ହିରଣ୍ୟକେଶରୀ ବୋଲି ଯେକ ନଦୀଗୋଟି
ପଞ୍ଚୁଧାରା ପର୍ବତୁଂ ସେ ବାହାର ହୋଇ ଫୁଟି ।୩୩୮
ସେ ନଦୀର କୂଳେ ପଛିମଆଡ଼େ ମାଧବସେନ ନୃପତି
ସେହି ହିରଣ୍ୟ ନଗ୍ରେଣ ସେ ଅଟଇ ଆଧିପତି ।୩୩୯
ସେ ରାଜାର ଦେଶାଉର ପଦ୍ମଦଳ ଦେଶରେ ଥିଲା
ସେ ଯାଇ ମାଧବସେନ ରାଜା ଆଗରେ ବାରତା କହିଲା।୩୪୦
ସ୍ୱାମୀ ପଛିମଦିଗ ବଗଣେ ବ୍ରିକୋଦର ଜେନା
ଅନେକ ରାଜାମାନଂକର ରାଜ୍ୟ କରି ଆସୁଅଛି ତୂନା ।୩୪୧

ଆହୋ ମାଧବସେନ ସେ ଶରଣ ପଞ୍ଜର କଇଛା ଜଗଜେଠୀ
ସମଦଣ୍ଡ ଘେନି ରାଜା ଚାଲ ଯିବାକ ପାଛୋଟି ।୩୪୨
ଦେଶାଉର ମୁଖରୁ ଯେସନକ ବାରତ ଶୁଣି
ଅଶିଲକ୍ଷ ତୁରଙ୍ଗମ ମାଧବସେନର ପଲାଣି ।୩୪୩
ସୁବର୍ଣ୍ଣର ଲେଖନ ପାଟ ପରିହରଣ ସର୍ବାଙ୍ଗେ
ମୁକୁତା ଫେର ଝଲକିତ ମାଣିକ୍ୟର ସଙ୍ଗେ ।୩୪୪
କାହାର ହାଥେ ପାଟଛତ୍ର କେ ଆଲଟ ଚାମରେ
ଅଶିଲକ୍ଷ ଯୋଦ୍ଧା ଯେ ହୋଇଲେ ବାହାରେ ।୩୪୫
ଭୀମସେନ ଆହାର୍ଣ୍ଣିକ ସାରନ୍ତି ନଦୀ ହରିଣ୍ୟକେଶୀ
ଯେମନ୍ତର ସମୟେ ମାଧବସେନ ରାଜା ପ୍ରବେଶ
ହୋଇଲାକ ଆସି ।୩୪୬
କାଳିଞ୍ଜନ ପଡ଼ିହାରୀ ଯେ କାଳଧ୍ୱଂସନ ଡଗର
ଆହୋ ଠାକୁରଂକ ଆହାର୍ଣ୍ଣିକ ବେଳ ରହ ରହ ସେହିଠାର ।୩୪୭
ଶୁଣିଣ ମାଧବସେନ ରହିଲା ଅପସରି
ସମସ୍ତ ସନ୍ୟ ତାହାର ରହିଲେ ଦୃଷ୍ଟି ଅବଲୋକନ କରି ।୩୪୮
ଛାମୁରେ ଜଣାଇଲେ ଯାଇ କାଳିଞ୍ଜନ ପଡ଼ିହାରୀ
ସ୍ୱାମୀ ମାଧବସେନ ରାଜାଯେ ଆସୁଛି ଦ୍ରଶନ କରି ।୩୪୯
ଆଗ୍ୟାଂ ହୋଇଲା ହୋ ଆସୁ ସେ ମାଧବ
ଦେଖିଲେ ଥାଠଯାକ ତାହାର ସମସ୍ତେ ଭଗତିଭାବ ।୩୫୦
ଆଲମ୍ବ ପାଟଛତ୍ର ଉଦଣ୍ଡ ମୟୂରଝାଲ ପଛୀଯେକଲଖୀ
ଅବଲୋକନ କରି ଭୀମସେନ ଠାକୁରେ ତାହା ଦେଖି ।୩୫୧
ଚାହାନ୍ତେ ମାଧବସେନ କଲାକ ନିଉଛାଳି
ଆଲଟ ଚାମର ମୟୂରଝାଲି ପଖା ଘେନି ଢାଳି ।୩୫୨
ଦେଖା ଦରଶନିକୁ ସହସ୍ରେ ଭାର ଧନ
ଘେନିଣ ନିଉଛାଳି କଲାକ ସେ ମାଧବସେନ ।୩୫୩
ଦେଖିଣ କୋଳାଗ୍ରତ ତାହାନ୍ତ କଲେକ ଭୀମସେନ
ଆମ୍ଭର ସୋଦର ବାସୁଦେବଂକର ତୋହୋର ଯେକନାମ ।୩୫୪
ଆବର ବେଳେ ଆମ୍ଭଙ୍କୁ ନ କରିବ ପ୍ରଣାମ
ଶ୍ରୀକରେ ଶାଢ଼ୀ ଦିଲେକ ପାର୍ଥିବ ଭୀମସେନ ।୩୫୫
ସମଦଣ୍ଡ ଘେନି ରାଜୁସି ଯାଗକୁ ଯାଅ ଯା ମାଧବସେନ ।୩୫୬
ଭୀମସେନର ବଚନେ ମାଧବସେନ ନୃପତି
ସ୍ୱାମୀ ମୋର ଆଜ ସଞ୍ଚଯେ ହୋଇଛି ପିତୃତିଥି ।୫୫୭
ସ୍ୱାମୀ ଗଣ୍ଡାଗୋଟିଯେକ ମାରି ଆଣଇଂ ମୁହିଂ
କଣକଚ୍ଛ ଭୋଜନ କାରଣ ହୋଇବ ନା ମୁକୁଇଂ ।୩୫୮
ଯେସନେକ ବଚନେ ଯେ ଭୀମସେନ ତ୍ରିପୁଟି

ବନଫଳ ଯୋଗାଡ଼ ଯେ ଆଣିଲା ତତକ୍ଷଣାନ୍ତି ।୩୫୯
ଅନେକ ସୁଶୀତଳ ପଦାର୍ଥ ଦିବ୍ୟ ଯୋଗାଡ଼ମାନ
ସ୍ନାନସାରି ମାରୁତି କରଇ ଭୋଜନ ।୩୬୦
ଆଞ୍ଚୋବନ ସାରିଣ ସେ ପାଣ୍ଡବ ଶିରୋମଣି
ହିରଣ୍ୟନଗ୍ରରୁ ଚଳଇ ଘେନିଣ ଥାଟ ସନ୍ୟ ପଲାଣି ।୩୬୧
ଆହେ। ଚେଦିଦେଶ ବୋଲି ଯେକଇ ରାଜ୍ୟ ଗୋଟିଯେ
ସେହି ରାଜ୍ୟେ ପ୍ରବେଶ ହୋଇଲେ ପବନ ତନୟେ ।୩୨୬
ଆହେ। ସେ ଚେଦିଦେଶର ଠାକୁର ଅଟଇ ଦମଘୋଷ
ମଦନଗୋପାଳ, ରକ୍ଷିପାଳ, ଶିଶୁପାଳ ବୋଲି ତିନି ଶିଷ।୩୬୩
ପାଞ୍ଚପଦ୍ମ ଚାରିପରାୟୁଧ ତାର ସନ୍ୟବଳ
ଅସୁର ଅଂଶେ ଜାତ ସେ କୁମର ଶିଶୁପାଳ ।୩୬୪
ପିଙ୍ଗଳଭଦ୍ରା ବୋଲିଣ ଯେକ ନଦୀଗୋଟି
ଶିବପିଙ୍ଗଳ ଜଟାରୁ ସେ ଆସୁଅଛି ଫୁଟି ।୩୬୫
ସେ ନଦୀର କୂଳେ ଚେଦିଦେଶ ଯେ ବସଇ
ରାଜ୍ୟର ଆୟତନ ଯୋଜନ ପଞ୍ଚାଶଇ ।୩୬୬
ସେ ଦମଘୋଷ ରାଜାକୁ ଖଟନ୍ତି ବିଶାଶତେ ପାରିଦଣ୍ଡ ନୃପତି
ପଞ୍ଚବିଂଶ ସହସ୍ର ରଥ ପଞ୍ଚାଶ ଅହିବ୍ରତ ହାଥୀ ।୩୬୭
କୋଟିଯେ ଲକ୍ଷ ସାଜ଼ଇ ଚୋଖାର ତୁରଙ୍ଗ
ଜରାସନ୍ଧର ଭିଣୋଇ ସେ ଅଟଇ ଅର୍ଦ୍ଧଅଙ୍ଗ ।୩୬୮
ସେ ରାଜ୍ୟରେ ପ୍ରବେଶ ଯାଇଂ ପଣ୍ଡୁପୁତ୍ରେ
ମହୀ ହେଳ ଘେନଇ ତାହାର ବୀରତୂର ଶବଦ ଘାତେ ।୩୬୯
ମୃଗୟା ବିନୋଦେ ବନସ୍ତେ ଭ୍ରମଇ ଶିଶୁପାଳ
ଚୋଖାର ଖୁରୁସାଣୀ ତୁରଙ୍ଗମ ପଞ୍ଚଶତ ବଳ ।୩୭୦
ଭ୍ରମଇ କୁମାର ସେ ବେଣ୍ଟର ବିନୋଦେ
ବନ କନ୍ଦର ତଳ ତଳ ହାଥୀଂକର ଘଣ୍ଟରାବ ଶବଦେ ।୩୭୧
ସହସ୍ରେକ ଲାଗିଅଛି ହୁଳା ଯେ ଦିହୁଡ଼ି
ପାରିଧି ବିନୋଦେ ଶିଶୁପାଳ ଖେଦଇ ମୃଗାରି ।୩୭୨
ମାରଇ ବ୍ୟାଘ୍ର ଭାଲୁକ ଶାର୍ଦ୍ଦୁଳ ବନଜୀବ
ଗଣ୍ଡା ମୃଗ ଧରଇ କଉତୁକ ମଉଭାବ ।୩୭୩
ଦୁଷ୍ଟଜୀବମାନ ମାରଇ ସେ ରଷିଂକର ନିମନ୍ତେ
ସଜ୍ଜନଜୀବ ଧରଇ ସେ ଭୋଜନର ଅର୍ଥେ ।୩୭୪
ନନ୍ଦାବ୍ରତେକ ବୋଲି ଯେକ ପର୍ବତ ଗୋଟି
ସେ ପର୍ବତ ଉପରେ ଯାଇ ଶିଶୁପାଳ ଉଠି ।୩୭୫
ବନେ ଦେଖିଲା ଯାଇ ଶିଶୁପାଳ ଭୀମସେନର ଥାଠ
ଆସନ୍ତି ବନକ୍ଷେପି ନ ପାଇଣ ବାଟ ।୩୭୬
ପର୍ବତେ ଥାଇ ତାହା ଦେଖଇ ଶିଶୁପାଳ
ରାତ୍ରେ ବନେ ଗମଇଂ ରେ କେଉଣ ଅସୁର ମହୀପାଳ ।୩୭୭
ଶିଶୁପାଳ ଆଗ୍ୟାଂ ଦିଲା ଯୋଦ୍ଧାମାନନ୍ତ ରାଇ
ବିନ୍ଧରେ ନାରାଚ ପର୍ବତ ଉପରେଣ ଥାଇ ।୩୭୮
ମନ୍ତ୍ରିଣ ଧନୁଧରି ଧାମନ୍ତି ସର୍ବଯୋଧୀ
ପର୍ବତ ଶିଖରେ ଥାଇଂ ଆକ୍ରୋଷି ବାଣ ବିନ୍ଧି ।୩୭୯
ଉଚ୍ଛର୍ଗୁଂ ଶର ପଡନ୍ତେ ଅବିଚ୍ଛନ୍ନେ
ଘାୟେଣ ଘୁମାଇଲେ ପାଣ୍ଡବ ସଇନେ ।୩୮୦
ସଇନି ଅସାଷ୍ଟମ ଦେଖିଣ ପାବେନି
ଆପଣେ ଧାଇଂଲା କରେ କାଳେବର ଗଦା ଘେନି ।୩୮୧
କାଳ ବିକରାଳ ଯେ ବେନି ସେନାପତି
ଯେ ଦୁଇବୀରେ ବ୍ରିକୋଦର ବାମ ଡାହାଣେ ଲାଗିଛନ୍ତି ।୩୮୨
ରଥ ତେଜ୍ଜା କରିଣ ଉଠିଲା ଧାତିକାରେ
ଯେସନେକେ ଶିଳାବୃଷ୍ଟି କରଇ ଆଷାଢ଼ରେ ।୩୮୩
ସେହିମତି ପଡୁଅଛି ଅବିଛନ୍ନେ ବାଣ
ଶହସ୍ର ପଡ଼ି ଚୂର ହୋଉଅଛନ୍ତି ବ୍ରିକୋଦର ହୃଦେଣ ।୩୮୪
ପର୍ବତ ଉପୁଡ଼ି କି ଆସୁଅଛି ଚାଲି
ଥମ୍ବୀଭୂତେ ଶିଶୁପାଳ ସନ୍ୟନ୍ତ କିଛିହିଂ ନ ବୋଲି ।୩୮୫
ଆରେ ଆରେ ବୋଲି ସନ୍ୟରେ ପଶିଲା ଅବଗାହି
ରାହୁ ଆକ୍ରୋଷିଲେ ଯେହ୍ନେ ରଖିଲା କେହି ନାହିଂ ।୩୮୬
କେଶ ମୁକୁଳିତ ବିଗଳିତ ବସନ
ଶରଦମେଘ ପ୍ରାୟେକ ଶୁଭୁଅଛି ଗରଜନ ।୩୮୭
ପ୍ରହାରନ୍ତି ସଇନି କୁନ୍ତ ଯାଠି ମୁନା ତୀକ୍ଷ
ଭୀମ ଶରୀରେ ପଡ଼ି ନ ଫୁଟନ୍ତି ହୁଅନ୍ତି ବିମୁଖ ।୩୮୮
ବିନ୍ଧିଣ ବିମୁଖ ହୋଇଲେ ସମସ୍ତ ପାରିଦଣ୍ଡ ରାଜାମାନେ
ନାରାଚ ଗୋଟିଯେ ନାହିଂ କାହାରିହିଂ ତ୍ରୋଣେ ।୩୮୯
ରେ ରେ କାର କରି ଭୀମସେନ ଯହୁଂ ପଡ଼ିଲାକ ଧାଇଂ
ପର୍ବତ ଉପରୁ ସର୍ବେ ପଡ଼ିଲେକ ଡେଇଂ ।୩୯୦
ଶିଶୁପାଳ ସଇନି ପଳାବନ୍ତି କେଶବାସ ଅସମ୍ଭାଳେ
ଗୋଡାଇ ପିଟଇ ଭୀମସେନ କ୍ଷତ୍ରିୟ ଅଚାର୍ଗଳେ ।୩୯୧
ଅନେକ ସଇନି ଯେ ପଡ଼ିଲେ ସମରେ
ପର୍ବତ ଉପରୁ ପଡ଼ି କର ଚରଣ ହୋଇଲାକ ଚୂରେ ।୩୯୨
ଶତେକ ଯୋଦ୍ଧା ଘେନି ଦମଘୋଷର ବାଳ
ଭୀମସେନ ଉପରେ ଶରବୃଷ୍ଟି କଲାକ ଶିଶୁପାଳ ।୩୯୩

ଭୀମସେନ ସାନନ୍ଦ କଟାଳ ଯୁଦ୍ଧ ଦେଖି
ଗଦାବର ବୁଲାଇଲା ବୀର ଭୟ ଯେ ଉପେଖି ।୩୯୪
ଶିଶୁପାଳ ରଣେ ଅଟଇ ନିର୍ଭୟା
ଶବରୀ ପ୍ରସନେ ପାଷାଣ ଯେ ତାର କାୟା ।୩୯୫
ପିଟନ୍ତେ ଯେ ଗଦାବର ହିଡିମ୍ବିକୀ ନାହା
ଶିଶୁପାଳ ମୁଦୁଗରରେ ସମ୍ଭାଳିଲା ତାହା ।୩୯୬
ମୃଦୁଗର ବୁଲାଇ ପିଟେ ଶିଶୁପାଳ ଜେନା
ଭୀମ ବାମ ଅଙ୍ଗେ ପଡ଼ି ହୋଇଲାକ ଚୂନା ।୩୯୭
ଶିଶୁପାଳ ବୋଇଲା ତୁ ଅଟୁ ସାମରଥ
ମୋହୋର ମୃଦୁଗର ଯାହା ହୋଇଲାକ ବିଅର୍ଥ ।୩୯୮
ବିଶହସ୍ର ହୋଇଲା ଯହୁଁ ଦମଘୋଷର ବାଳ
ପଛଘୁଞ୍ଚା ଦେଇ ପଳାଇଲା ସେ ତତକାଳ ।୩୯୯
ରେ ରେ କାର ଶବଦେ ଭୀମସେନ ଆକ୍ରୋଷି
ବାମକରରେ ଧଇଲା ଯାଇ ଶିଶୁପାଳ କେଶ ପାଶି ।୪୦୦
ରାତ୍ର ହୋଇଲାନି ତହିଁ ଦ୍ୱାଦଶ ଯେ ଘଡ଼ି
ଶିଶୁପାଳ କେଶ ଧରି ଭୀମସେନ ଜାନୁରେଣ ପାଡି ।୪୦୧
ବିଢେ କର୍ଣ୍ଣକଟାର ମାଇଲା ଗଣ୍ଡସ୍ଥଳେ
ଶିଶୁପାଳର ଶିର ନ ଛିଡିଲା ଭୀମସେନର କୋପାନଳେ ।୪୦୨
ବିଢେ କର୍ଣ୍ଣକଟାର ଭାଙ୍ଗି ହୋଇଲା ବେନିଖଣ୍ଡ
ନବନିଶି ଅସିଧାରେକ ଘେନି ଭୀମସେନ ପ୍ରହାରେ ପ୍ରଚଣ୍ଡ ।୪୦୩
ଅସିପତ୍ର ପଡ଼ିଲା ଯେ ଶିଶୁପାଳ କଣ୍ଠେ
ଖଣ୍ଡାହିଁ ଚୂର ହୋଇଲା ପ୍ରତଗ୍ୟାଂ ଗଲା ଭ୍ରଷ୍ଟେ ।୪୦୪
ଶିଶୁପାଳ କେଶଧରି ପାଣ୍ଡବ ପଞ୍ଚାଳ
କେବଣ ଆଶ୍ରିଜରେ ତୋହୋର ନ ଛିଡ଼ଇ ବକ୍ଷସ୍ଥଳ ।୪୦୫
ଭୀମସେନ ପଚାରଇ ଅନଙ୍ଗ ପ୍ରାୟେ ରୂପ ଦେଖି
ଅଙ୍ଗାରପନ୍ନଗ ଅଇଲା କି ଅମର ଉପେଖି ।୪୦୬
ଦେଶାଉର କହିଲା ଯାଇଂ ଦମଘୋଷର ଆଗେ
ପୁତ୍ର ତୋର ନାଶ ଯାଉଛି ରାଜା ବିଜୟେ କର ବେଗେ ।୪୦୭
ଶୁଣି ଅସମ୍ଭାଳ ହୋଇଣ ଧାମଇଂ ନୃପମଣି
ଗୋଡ଼ାବନ୍ତି ଅମାନାତ୍ୟେ ଥାଠ ଯେ ପଲାଣି ।୪୦୮
ରାଗେଣ ଦମଘୋଷ ରାଜା କରେ ଘେନିଣ ଖଡଗେ
ଅଧର ପୁଷ୍ଟକରି ଧାମଇଂ ଅତିବେଗେ ।୪୦୯
ଦଣ୍ଡମାନନ୍ତ ଘେନି ଦମଘୋଷ ବିଜୟେ ପର୍ବତର ତଳେ
ଦେଖିଲା ଶିଶୁପାଳର କେଶ ଧରିଅଛି ପବନର ବାଳେ ।୪୧୦
ଶିଶୁପାଳର କେଶ ଧରିଅଛି ବାମକରେ
ଦକ୍ଷିଣ କରେ ଗଦା ବୁଲାଇ ଅତି ଖରେ ।୪୧୧
ପର୍ବତ ଉପରୁ ବୀର ପଡ଼ିଲାକ ଡେଇଂ
ଦମଘୋଷର ସନ୍ୟ ରହିଲେ ଥମ୍ଭୀଭୂତ ହୋଇ ।୪୧୨
ଭୀମସେନର କୋପ ଦେଖି ବିଚାରଇ ମରୁତ ସାରଥି
ଦମଘୋଷର ସମ୍ପଦ ସରିବ ଯେଘାନ୍ତି ।୪୧୩
ରଥ ଘେନି ମରୁତ ପ୍ରବେଶ ଦମଘୋଷ ପାଶେ
ରାଜାର ସନ୍ନିଧେ ଯାଇ କହଇ ବିଶ୍ୱାସେ ।୪୧୪
କାହାକଇଂ କୋପ ତୁହୋ କରୁଛୁ ନୃପମଣି
ଭୀମସେନ ଠାକୁରେ ପଛିମ ଦିଗବିଜେ ତୁ କିଂପେ ନ ଜାଣି ।୪୧୫
ଜରାସନ୍ଧ ନିବାରଣ କଲେକ ସାଂଗ୍ରାମେ
ରାଜାନ୍ତ ବନ୍ଦୀରୁ ମୁକତ କଲେ ଯୁଝେଷ୍ଟି ଦେବଂକର ଧର୍ମେ ।୪୧୬
ତାହାର ତୁଲେ ତୋହୋର କିସ ହୋ ବିବାଦ
ଯେହିକ୍ଷଣି ବୁଡ଼ାଇବୁ ଯେତେକ ସମ୍ପଦ ।୪୧୭
ଯେସନେକ ବାରତା ପାଇଣ ଚେଦିଦେଶର ରାୟେ
ପଞ୍ଚଭୂତ ଆତ୍ମାରେ ତାର ବସିଲା ବଡ଼ ଭୟେ ।୪୧୮
ଯେହି ସେ ଭୀମସେନ ହିଡିମ୍ବିକୀର ପ୍ରାଣନାହା
ଅଗ୍ୟାନେ ସୁତ ମୋର ହୋଇଲାକ ଦୋରେହା ।୪୧୯
କେଉଂଣ ସମୁଦ୍ରେ ଯାଇ ପଶିବଇଂ ମୁହିଂ
ପାଣ୍ଡବେ ବିବାଦୀ ହୋଇଲେ ଜୀବନ ମୋର କାହିଂ ।୪୨୦
ମରୁତ ସାରଥି ବୋଇଲା ସେ ଦୁଖୀଜନ ଉଦ୍ଧାରଣ
ଭଗତଜନମଚ୍ଛଳ ସେ ଶରଣ ଜନ ନିସ୍ତାରଣ ।୪୨୧
ଆସ ଆସ ରାଜା ସମର୍ପଇଂ ତୋତେ ନେଇଂ
ପୁତ୍ର ତୋର ରକ୍ଷାହେଉ ତୋର କିଛିହିଂ ଦୋଷ ନାହିଂ ।୪୨୨
ବୋଲଇ ଦମଘୋଷ ମୋହୋର କିଛିହିଂ ନାହିଂ ଭରସା
ତୋହୋର ବଚନେ ମୁହିଂ କଲି ପ୍ରତିଆଶା ।୪୨୩
ଦମଘୋଷ ହାଥ ଧରି ମରୁତ ସାରଥି
ଭୀମସେନ ଛାମୁକୁ ଆଣିଲା ତତକ୍ଷଣାନ୍ତି ।୪୨୪
ଦଶନହ ମୁଖେ ଭରି ଦମଘୋଷ ପରିଣାମି
ବୋଇଲା ଦଶଦୋଷ ଅପ୍ରାଧ କ୍ଷମା କରିବା ଦେବସ୍ୱାମୀ ।୪୨୫
ହିଡିମ୍ବକ ବିଦାରଣ ବକରାକ୍ଷସ ଦର୍ପ ଧ୍ୱଂସି
କିନ୍ନରୀ ଅସୁରୀ ବିଦାରିଲୁ ମଧୁବନେ ପଶି ।୪୨୬
ପାଣ୍ଡବାସୁର ମାରି ଉଦ୍ଧରିଲୁ କୁରୁବଂଶ
ଭକ୍ଷିଣ ପାରକଲୁ ଦେବ କାଳଗରଳ ବିଷ ।୪୨୭

ଜାରା ନିବାରଣ ନାଥ ମହାଯଗ୍ୟଂ ଭଞ୍ଜା
ଯୁଗାନ୍ତେକ ବାଦ୍ୟ ଯେ ଭେରୀ ତାର ଦର୍ପଗଞ୍ଜା ।୪୨୮
ଦେବଂକର ରକ୍ଷଣ ତୁ ସମସ୍ତ ଶାହାସ୍ରେଣ ନିର୍ଜିତା
ଦୁଖୀଜନ ଉଦ୍ଧାରଣ ଶରଣ ରଖନ୍ତା ।୪୨୯
ଦମଘୋଷ ସ୍ତୁତିକରି ଅନେକ ପରଣାମି
ଦଶଦୋଷ ଅପ୍ରାଧ କ୍ଷମା କରିବା ଦେବସ୍ୱାମୀ ।୪୩୦
ନ ଜାଣି ଶିଶୁପାଳ ମୋର ତୋତେ କଲା ଅନେକ ଦୋଷ
ଧର୍ମେଣ ରକ୍ଷା କଲୁ ସ୍ୱାମୀ ତାକୁ ନ କଲୁ ନାଶ ।୪୩୧
ଦମଘୋଷ ସ୍ତୁତି ଶୁଣି କୋଇନ୍ତାଂକ ଦୁଲାଳ
ଶାନ୍ତିଭଜି ଛାଡିଲା ସେ ଶିଶୁପାଳରବାଳ ।୪୩୨
ଭୀମସେନ ପଚାରଇ ତୁହି ସେ ଦମଘୋଷ
ମୋହୋର ଦିଗବିଜେ କି ନ ଜାଣଇଂ ତୋହୋର ଶିଷ ।୪୩୩
ପୁଣି ବୋଇଲା ତୋର ପୁତ୍ର ଦୁଷ୍ଟ ଯେ ପ୍ରକୃତି
ଜଗନ୍ନାଥଂକ ତୁଲେ ହାଦେ ଅନେକ ଅପ୍ରୀତି ।୪୩୪
ଦମଘୋଷ ବୋଇଲା ସ୍ୱାମୀ ଶୁଣିମା ବ୍ରିକୋଦର
ପରାର୍ଦ୍ଧ ଦେଶର ରାଜା ଯେ ଅଟଇ କାଶୀଶ୍ୱର ।୪୩୫
ତାହାର ଭାରିଯା ନାମ ଅଟଇ ପଦ୍ମାବତୀ
ତାର ତହୁଂ ଉପୁଜିଲେ ବେନି ଯେ ଦୁହିତୀ ।୪୩୬
ବଡ଼ ଦୁହିତାର ନାମ ଯେ ଅଟଇ ଦେବକୀ
ଆର ଦୁହିତାର ନାମ ଯେ ଶ୍ରିୟା ଦଇବକୀ ।୪୩୭
ଦେବକୀ ପ୍ରଦାନ ଯେ ହୋଇଲେ ବସୁଦେବଂକୁ
ଦଇବକୀକି ପ୍ରଦାନ କଲେ ଦେବ ମୁକୁ ।୪୩୮
ସ୍ୱାମୀ ବାସୁଦେବ ମୁହିଂ ସୋଦର ବେନିସତୁ
ଯେକ ଆତ୍ମା ହୋଇଥାଉଂ କେହି କାହାକୁହିଂ ନ ଛାଡୁ ।୪୩୯
ବାସୁଦେବ ଉପୁଜିଲେ ଦେବକୀର କୋଳେ
ଦଇବକୀ କୋଳେ ଉପୁଜିଲା ଶିଶୁପାଳେ ।୪୪୦
ନାରାୟଣ ଜ୍ୟେଷ୍ଠ ହୋୟେ ଶିଶୁପାଳ କନେଷ୍ଟ
କେବଣ ମନ୍ଦକ୍ଷଣେ ହୋଇଲେ ଦୁହେଂ ଭେଟ ।୪୪୧
ଶିଶୁପାଳେ ଦେଖି ନାରାୟଣ ଅତ୍ରିପୁତି
ଜଗନ୍ନାଥଂକୁ ଦେଖିଲେ ଶିଶୁପାଳ କରଇ ଭୀତି ।୪୪୨
ବାଳକାଳେ ଦେବକୀ ଯେ ନ ପାରିଲେ ପ୍ରତିପାଳି
ଗୋକୁଳେ ବଢ଼ିଲେ ଯାଇଂ ଦେବ ବନମାଳୀ ।୪୪୩
ସ୍ୱାମୀ ପ୍ରୟାଗେ ସ୍ନାନ ପଡ଼ିଲା ଯେକଇ ସମୟେ
ଗୋବିନ୍ଦ ନନ୍ଦ ଯଶୋଦା ତୀର୍ଥ କରି ଆୟେ ।୪୪୪

ଦଇବକୀ ଶିଶୁପାଳକଇଂ ଘେନିଣ ମୁହିଂ ଗଲି
ଦଇବକୀ ଯଶୋଦାଂକୁ ପୀରତି କରାଇଲି ।୪୪୫
ଦଇବକୀ ଶିଶୁପାଳକୁ ଦିଲେ ବାସୁଦେବଂକର କୋଳେ
ଧଇଲେ ବାସୁଦେବ ଶିଶୁପାଳକୁ ବାଳୁତ କୁତୁହୋଳେ ।୪୪୬
ସୁନ୍ଦର ଦେଖି ନାରାୟଣ ଲଗାଇଲେ ହୃଦୟରେ
ଶରୀର ତୋର ଅତୁଟ ହେଉ ବୋଇଲେ ଦାମୋଦରେ ।୪୪୭
ଆରେ ଶିଶୁପାଳ ହେଉ ତୋହୋର ସହସ୍ରେ ସିଂଘର ପରାକ୍ରମ
କେବେହେଂ ବଧ ତୁହି ନୋହିବୁ ସାଂଗ୍ରାମ ।୪୪୮
ଯେସନେକ ବରଦେଇ କୋଳେ ଛନ୍ତି ଧରି
ଶିଶୁପାଳ କାନ୍ଦଇ ଚରଣ ଦୁଇ ହଲାଇକରି ।୪୪୯
ବାସୁଦେବଙ୍କର ହୃଦେ ବାଜିଲା ତାର ପାଦ
ମୂର୍ଚ୍ଛାଗତ ହୋଇ ସ୍ୱାମୀ ପଡ଼ିଲେ ଗୋବିନ୍ଦ ।୪୫୦
ଧାଡିକାରେ କୋଳକରି ଧଇଲେ ଦେବକୀ
ରୁଧିର ବହଇ ଜଗନ୍ନାଥଂକର ବେନିଆଖି ।୪୫୧
ଚେତନା ପାଇଂ ଦେବ କୋପାନଳେ ବୋଲି
ସୋଦର ପଣେ ତୋତେ ଯେହିକ୍ଷଣି ବର ଦିଲି ।୪୫୨
ମୁହିଂ ଯେ ପଡ଼ିଲି ତୋର ପାଦ ପ୍ରହାରେଣ କରି
ଚକ୍ରେ ଅବଶ୍ୟ ଶିର ଛେଦିବଇଂ ତୋହୋରି ।୪୫୩
ଶୁଣି ଦଇବକୀ ହୋଇଲେ ବିକଳ ଚିତ୍ତ
ଅନୁଗ୍ରହ କରି କେହ୍ନେ ନାଶିବୁ ଜଗନ୍ନାଥ ।୪୫୪
ଯେ ରଖଇ ସେ ଭକ୍ଷଇ ଶୁଣିଛୁ କେଉଣସି କାଳେ
ଦଶଦୋଷ ଅପ୍ରାଧ କ୍ଷମା କରିବୁ ନା ଶିଶୁପାଳେ ।୪୫୫
ଗୋବିନ୍ଦେ ବୋଇଲେ ତୁ ଗୋ ଶୁଣ ମୋର ମାତ
ଅଷ୍ଟ ଉତ୍ତର ଶତେବାର କ୍ଷମା କରିବି ତୋର ପୁତ୍ର ।୪୫୬
ମାଗୋ ଯେତେ ବଇକୁଳ୍ୟ ହୋଇଲି ଜାଣ ମୁହିଂ
ଅବଶ୍ୟ ଚକ୍ରେ ମାରିବି ଗୋ ଯେହାକଇଂ ।୪୫୭
ମାଗୋ ଅଷ୍ଟଉତ୍ତର ଶତେବାର ଯେବେ ନ କରିବ ଦୋଷ
ସୁଖେ ଦ୍ୱାପର ଯୁଗ ଭୋଗ କରିବ ତୋର ଶିଷ ।୪୫୮
ଅଷ୍ଟଉତ୍ତର ଶତେ ବେଳୁଂ ଯେବେ କଟାକ୍ଷ କରଇ
କ୍ଷଣେହେଂ ନ ସହି ଛେଦନ କରିବି ଯେହାକଇଂ ।୪୫୯
ଦଇବକୀ ବୋଇଲେ ବାବୁ ଶୁଣ ତୁ ଦାମୋଦର
ତେଣିକି ମାଇଲେ ଦୋଷ ନୋହିବ ତୁମ୍ଭର ।୪୬୦
ସ୍ୱାମୀ ଶୁଣସି ପାଣ୍ଡବ ହୋ ଯେ ଆଦିକାଳର କଥା
ରୁକ୍ମଣୀ ହରଣ କାଳେ ହୋ ଅନେକ ଅବସ୍ଥା ।୪୬୧

ସାଂଗ୍ରାମେ ଚକ୍ରେ ଯେହାକୁ ମାରୁଥିଲେ ଦେବହରି
ବେଳେକ ଛାଡିଲେ ମାତାଂକ ବଚନ ସୁମରି ।୪୬୨
ଶିଶୁପାଳ ଗୋପାଳ ଯେ ଅଟନ୍ତି ବେନିଭାଇ
ଦେବକୀ ଦଉବକୀ ଯେ ବେନି ଭୟେଣୀ ଉପୁଜାଇ ।୪୬୩
ଗୋବିନ୍ଦଂକର ସୋହୋଦର ଯେ ଅଟଇ ଯୁଗତେ
ତୋହୋର ଅଭିନ୍ନ ସ୍ୱାମୀ ଯେହାକୁ ନାଶ କରିବୁ କେମନ୍ତ ।୪୬୪
ଦମଘୋଷର ମୁଖରୁ ଯେସନେକ ବାକ୍ୟ ଶୁଣି
ହସି ବଚନ କହନ୍ତି ଯେ ପାଣ୍ଡବ ବୀରମଣି ।୪୬୫
ଆହୋ ଦମଘୋଷ ମୁଂ ସାଂଗ୍ରାମେ ରାଗେ
ବେନିବେଳ ତଣ୍ଡିରେ ପ୍ରହାର ମୁଂ କଲଇ ଖଡଗେ ।୪୬୬
ଆହୋ ଦମଘୋଷ, ଚକ୍ରକୁ ବୋଲି ଯାହାର ବଢ଼ିଅଛି ତଣ୍ଡି
ମୋହୋର ବେଳେ ଖଡ଼ଗ ଘେନି କି ଯେହାର ମୁଣ୍ଡ କାଟି ।୪୬୭
ଶିଶୁପାଳକୁ ଛାଡିଲା ମାରୁତି ଦମଘୋଷର ବଚନେ
ଅନେକ ପୁରୁଷାର୍ଥ ତାହାକୁ କଲାକ ଭୀମସେନେ ।୪୬୮
ଭୀମସେନ ବୋଇଲା ଆହୋ ଦମଘୋଷ ନୃପତି
ରାଜୁସି ଯାଗ ସଭାକୁ ଯାଅ ସମଦଣ୍ଡ ଘେଟି ଦିବାରାତି ।୪୬୯
ମକର ମାସ ଶୁକଳ ପକ୍ଷ ଦଶମୀର ଦିନ
ସେ ଦିନ ପୂର୍ଣ୍ଣ ଆହୂତି ହୋଇବ ସଂପୂର୍ଣ୍ଣ ।୪୭୦
ପ୍ରଥମ ପକ୍ଷେ ସମସ୍ତେ ହୋଇବେ ପରବେଶ
ଅନେକ ପୂଜା କରିଣ ବୋଲଇ ଦମଘୋଷ ।୪୭୧
ସ୍ୱାମୀ ଆଜି ମୁଣୋହି କରିବା ମୋହୋର ଭୁବନେ
ରହି ନୁଆରଇ ମୁଂ ବୋଲଇ ଭୀମସେନେ ।୪୭୨
ରାଜାନ୍ତ ନିମନ୍ତିବି ମୁଂ ନଉ ଦିବସର ମଧ୍ୟେ
ଯେହିମତି ସକଳ ରାଜା ଜିଣିମଇଂ ଯୁଦ୍ଧେ ।୪୭୩
ଚଳଇ ବ୍ରିକୋଦର ଯେ ସମଦଣ୍ଡ ଚଳାଇ
ଦମଘୋଷ ବାହୁଡ଼ିଲା ଥୋକାଯେ ଦୂର ଯାଇଂ ।୪୭୪

**

## ୩୮ . ବିରାଟ ରାଜାଙ୍କ ନିକଟକୁ ଭୀମସେନଙ୍କର ପତ୍ର ପ୍ରେରଣ ଓ ଶ୍ରୀମୁଖ ଲେଖନ

ଆହୋ ବଇବସ୍ୱତ ମନୁ ଶୁଣ ବଦୟନ୍ତି ଅଗସ୍ତି
ପଞ୍ଚବେଣୀ ତୀର୍ଥକଇଂ ଭୀମସେନେ କଲେକ ଅନେକ ତୁଷ୍ଟି ।୧
ସ୍ନାହାନ କରନ୍ତେ ଦିଶିଲା ଶ୍ରୀ ଯୋଗେଶ୍ୱର ମୂର୍ତ୍ତି
ଶରୀରୁଂ ହତ୍ୟା ପାତକମାନ ଛାଡିଣ ଗଲେ ନିଭ୍ରାନ୍ତି ।୨
ଆହୋ ଯେତେକ ହତ୍ୟା କରିଥାନ୍ତି ଗ୍ୟାନେ ଅଗ୍ୟାନେ
ବେନି କନ୍ଧେ ଆବୋରି ଥାଆନ୍ତି ସେହି ଜୀବମାନେ ।୩
ସେ ପଞ୍ଚୁବେଣୀ ତୀର୍ଥେ ଯେ କରଇ ସ୍ନାହାନ
ପ୍ରତକ୍ଷେଣ ଛାଡଇ ସେ ହତ୍ୟାଦୋଷମାନ ।୪
ଆହୋ ଯେହୁ ହତ୍ୟାଦୋଷ କରିଥାନ୍ତି ଅଗ୍ୟାନ ଦୋଷେ
ସେହି ସେ କାଳ ହୁଅଇ ଗୋଡ଼ାଇଥାଇ ପାଶେ ।୫
ସେ ନାଶଗଲା ପ୍ରାଣୀଂକି ପ୍ରମାଦ କରୁଥାନ୍ତି
ଅପାର କାଳେ ପୁଣି ସେହି ଘେନିଯାନ୍ତି ।୬
ଯେ ଯାହାକୁ ନାଶ ଅବା କରଇ ଅଦୋଷେ
କାଳପୁରୁଷ ହୋଇ ନାଶ କରଇ ଅବଶ୍ୟେ ।୭
ଆହୋ ବାଳୀକି ବିନାଶ କଲେ ଶ୍ରୀରାମଚନ୍ଦ୍ରେ
ତେଡ଼େବଡ଼ ପ୍ରଭୁଂକୁ ନାଶକଲା କିରାତ ଦୁଷ୍ଟମନ୍ଦେ ।୮
ହେ ପଣ୍ଡିତଜନ ଯେ ଅଟଇ ମହତ
ଆହୋ କଦାଚିତେହେଂ ନ କରିବ ଜୀବଘାତ ।୯
ହତ୍ୟାଥିଲେ କାଳେ କାଳେ ଫଳଇ ଅବଶ୍ୟ
କାଳେହେଂ ପାର ନ ଯାଇଟି ହତ୍ୟା ପାତକ ମନ୍ଦଦୋଷ ।୧୦
ଯେହା ବିଚାର ହୋ ପଣ୍ଡିତ ସୁଭିଗ୍ୟଂ ଜନେ
ଅଗସ୍ତି କହିଲେ ମହାଭାରଥ ଶ୍ରୀବିଷ୍ଣୁ ପୁରାଣେ ।୧୧
ଅନେକ ହତ୍ୟା ସେ କରିଣ ଥିଲେ ବ୍ରିକୋଦର
ସ୍ନାନ କରୁଂ ସେ ହତ୍ୟାମାନ ଶରୀରୁଂ ହୋଇଗଲା ବାହାର ।୧୨
ଅଗାଦ ଜଳ ଭିତରେ ହୋଇଲେ ସର୍ବେ ଭାସି
ତହୁଂଣ ବ୍ରିକୋଦର ବିଜେ କରି ଆସି ।୧୩
ଦଣ୍ଡ ଘେନି ଭୀମସେନ ବିଜେ ପଞ୍ଚୁଧାରା ପରବତେ
ଦେଶାଉରେ ପଚାରିଲେ ଯେଣେ ରାଜ୍ୟ ଅଛି କେତେ ।୧୪
ମୁନେହି ଜଣାଇଲା ଦେବ ଉତ୍ତର ପଛିମ କୋଣେ
ମଘଦେଶ ମସ୍ୟଦେଶ ଦୁଇରାଜ୍ୟ ଅଛି ଯେଣେ ।୧୫
ଦେବ କୀଚକ ଜିଣିଲା ଯେ ତ୍ରିଗର୍ତ୍ତର ଥାଠ
ମଘ ମସ୍ୟଦେଶ ଭୋଗ କରଇ ବିରାଟ ।୧୬
ସଂକୋଚନ ରାଜାର ଦୁହିତା ଅଟଇ ସୁଦେଷ୍ଣା
ତାହାକୁ ପ୍ରଦାନ ହୋଇଲା ବିରାଟ ମହାତମା ।୧୭
କୀଚକର ମୂଳେ ସେ ସଂକୋଚନ ରାଜାର ଶତେବଳା
ଶତସିଂଘ ପ୍ରାକ୍ରମ ସେ ବିରାଟ ରାଜାର ଶଳା ।୧୮
ଉତ୍ତର ପଛିମ ଦୁଇ ଦିଗର ମଧ୍ୟସ୍ତାନେ
ବନସ୍ତେ ବନସ୍ତେ ଯାଇ ସେ ପନ୍ଦର ଶତ ଯୋଜନେ ।୧୯

ଦେବ ଘରଗ୍ରାମ ରାଜ୍ୟ ନାହିଁ କତି ପାଶ
ତାହାର ବ୍ରତ ହେତୁ ଯେ ବଣିଜହିଁ ଗୋରସ　।୨୦
ଦୁହାଂନ୍ତ ଦୁଇପଦ୍ମ ବରଡିଆ ବାରଲକ୍ଷ ଗାଈ
ସାତଲକ୍ଷ ଅଣ୍ଡିରା ପଞ୍ଚବିଂଶ ମର୍ଭୁତ ବସ୍ଥାମାଇ　।୨୧
ସ୍ୱାମୀ ମହାମତ୍ତ କୀଚକ ଅବଳ ମହାବଳୀ
ସାଂଗ୍ରାମେ ତାହାକୁ ସମାନ ନାହିଁ ମହୀଆଳି　।୨୨
ମୁନେହି ବଚନେ ସେ କୋଇନ୍ତା ଦେବୀର ଚାଟ
ବୋଇଲେ ମତ୍ସ୍ୟଦେଶକଇଂ କଢ଼ାଅ ବେଗେ ବାଟ　।୨୩
ଭୀମସେନ ସଙ୍ଗରେ ଅଛି ପାତ୍ର ଧୂର୍ମାକ୍ଷତ
ସେ ପାତ୍ର ଜଣାଇଲା ରାଜ୍ୟକୁ ପଥ ଦୂର ବହୁତ　।୨୪
ଶ୍ରୀମୁଖ ଦେଇଣ ଯେ ବରଗିବା ଦୂତ
ଶ୍ରୀମୁଖ ଶୁଣି ବିରାଟ ଯାଉ ଇନ୍ଦ୍ର ଯେ ପ୍ରଶସ୍ତ　।୨୫
ଯଦ୍ୟପି ଉପଦ୍ରବ ସେ ମଣିବ ମତ୍ସ୍ୟ ଆଧିପତି
ପଛିମ ରାଜାନ୍ତ ଘେନି ଆସିବା ସେହିକତି　।୨୬
ପାତ୍ରର ବଚନେ ଭୀମସେନ ତୋଷଚିତ୍ତ
ବିରାଟକଇଂ ଶ୍ରୀମୁଖ ବେଗେ କରସି ନିର୍ମିତ　।୨୭
ଆଗ୍ୟାଂ ପ୍ରମାଣେ ତହୁଂ ଶ୍ରୀମୁଖ ନିର୍ବାଣି
ଯେସନେକ ପ୍ରତଗ୍ୟାଂମାନ ଶାହାସ୍ର ମୁଖେ ଶୁଣି　।୨୮
ତାଳପତ୍ର ଧରିଣ ବସିଲେ ଲେଖନ କରି
ମହାପ୍ରଚଣ୍ଡ ସେ ଆଗ୍ୟାଂୟେ ଅବଧାରି　।୨୯
ବୀରାଧି ବୀରବର ବ୍ରିକୋଦର ମଉଡମଣି
ଶ୍ରୀମୁଖ ଲେଖନ କରନ୍ତି ମନ୍ତ୍ରୀ ଚୂଡ଼ାମଣି　।୩୦
ଶ୍ରୀ ଅନାଦି ଦେବଂକର ଶ୍ରୀଚରଣେ ଶରଣ
ଯେ ସେ ହୋଇ ସୋମରାଷ୍ଟ୍ର କୁଳର ମଣ୍ଡନ　।୩୧

**ଶ୍ରୀମୁଖ ଲେଖନ**

**ଶ୍ରୀ ଶ୍ରୀ ଦେବଗଣେ ଶରଣ ଶ୍ରୀ ଶ୍ରୀ ଅନାଦି ଦେବଙ୍କ ଶ୍ରୀଚରଣେ ଶରଣ**

ସୋମପାଳ ବୁଧଗୁରୁ ଶମ୍ଭୁରାଣ କୁଳ ମଣ୍ଡଣ
ଯଯାତି ଦେବ ରାଜ୍ୟ ରକ୍ଷା ପାଳନ　।୧
ଜାହ୍ନବୀସୁତ ରକ୍ଷଣ
ସୋମରାଷ୍ଟ୍ର କୁଳ ମଣ୍ଡଣ　।୨
ଶାୟନ୍ତନୁ କୁଳ ଉଦ୍ଧାରଣ
ନୃପତି ବଂଶ ଧାରଣ　।୩
ସର୍ବ ରାଜାମାନ ମର୍ଦ୍ଦନ
ଜାନୁଘଣ୍ଟ ସଂସିଦ୍ଧନ　।୪
ବିଚିତ୍ରବୀର୍ଯ୍ୟ କୁଳ ନନ୍ଦନ
କୁମ୍ଭକ ଦାନବ ବିଦାରଣ　।୫
ପାଣ୍ଡବାସୁର ଦର୍ପ ଚୂରଣ
କପିଳାସ ସ୍ୱର୍ଗ ଉଦ୍ଧାରଣ　।୬
କାଶୀଭୁବନ ରକ୍ଷା ପାଳନ
ଦ୍ୱାରକାପୁର ବିମଣ୍ଡନ　।୭
କୁରୁବଂଶ ଉଦ୍ଧାରଣ
ଶତଧନୁ ଶରଣ ପଞ୍ଜର, କଉଶିକ ରକ୍ଷାପାଳନ　।୮
ଅଇରିକୁଳ ଧୂମକେତୁ
ବିଷଲଡୁ କପଟେ ଭକ୍ଷଣ, ନାଗେଣୀ ଦର୍ପ ଗଞ୍ଜନ　।୯
ବିନ୍ଧ୍ୟାବଳୀ ପ୍ରାଣଗୁରୁ
ଶବରୀ ଭୁବନ ରକ୍ଷାପାଳନ, ଶିବରାଜା ମାନ ମର୍ଦ୍ଦନ　।୧୦
ବେଲାବଳୀ ସ୍ୱର୍ଗ ଉଦ୍ଧାରଣ
ଜରାସନ୍ଧ ନିଶୋଧନ, ଛୟାଶୋଇ ସସ୍ତ୍ର ରାଜାନ୍ତ ବନ୍ଦୀ ମୋକ୍ଷଣ　।୧୧
ଇନ୍ଦ୍ରପ୍ରଶସ୍ତ, ଯମପ୍ରଶସ୍ତ ବାଗୁଣାବନ୍ତ
ହସ୍ତିନାପୁର ଜୟନ୍ତାପୁର ପଞ୍ଚୁରାଜ୍ୟ ରକ୍ଷାପାଳନ ସମର୍ଥ　।୧୨
କୁଣ୍ଡଳରକ୍ଷିର ମାନ ରକ୍ଷଣ
ଶତଶୃଙ୍ଗ ପର୍ବତ ଚୂରଣ　।୧୩
ଦୋହୋରା ଦେବ ପ୍ରସନ୍ନ, ଚିତ୍ରାଙ୍ଗଦ ପର୍ବତ ମୁଥେ ଚୂରଣ
ଜାତୁରଗୃହ ଭସ୍ମାନ୍ତକ, କିମ୍ମୀରାଦତ୍ୟ ବିଦାରକ ଜଳପଥ ମୁକ୍ତି କାରଣ　।୧୪
ମଧୁବନେ କିନ୍ନରୀ ପ୍ରାଣ ହରଣ
ଶିବପୁର ଉଦ୍ଧାରଣ ଚାଣ୍ଡାଳ ବଳ ନିଶୋଧନ　।୧୫
ଯେକଚକ୍ରା ନଗର ମଣ୍ଡଣ, ବକାସୁର ମାନ ମର୍ଦ୍ଦନ
ଶଉନିକ ଦର୍ପ ଧ୍ୱଂସନ, ହିଡିମ୍ୱକ ନିସୂଦନ　।୧୬
ହିଡିମ୍ୱିକୀର ପ୍ରାଣଗୁରୁ, ଦ୍ରୁପଦପୁର ମଣ୍ଡନ
ଲକ୍ଷେ ରାଜାଗଣ ମଉଡମଣି, ପଞ୍ଚାଳୀ ମାନ ହରଣ　।୧୭
କାଳ କୃତାନ୍ତକ, କାଳଦଣ୍ଡ ପାଣି ଯମଦର୍ପ ନିଶୋଧନ
ଭୀଷ୍ମ ଦ୍ରୋଣ କୃପ କର୍ଣ୍ଣ ଶଲ୍ୟ ଶକୁନି ଦର୍ପ ଧ୍ୱଂସନ　।୧୮
ଶ୍ରୀଜଗନ୍ନାଥଂକ ପ୍ରାଣବଲ୍ଲଭ ଅଭୟ ସୋମବଂଶ ମାନ ପୂରଣ
କରୁଣ ଗନ୍ଧର୍ବ ଶରଣ ଉଦ୍ଧାରଣ　।୧୯

ଧୃତରାଷ୍ଟ୍ର ଉରଶଲ ମାନଗୋବିନ୍ଦ ଦର୍ପମର୍ଦ୍ଦନ
ଶରଣପଞ୍ଜର କଇଛା ଜଗଜେଠୀ ବାଞ୍ଛା ସମାପନ ।୨୦
ଯୋଗୀ ଜନମାନ ବିନୟ ଶରଣ
ଦୁଷ୍ଟ କାଳ କୃତାନ୍ତକ ସଜ୍ଜନ ରକ୍ଷାପାଳନ ।୨୧
ମହିମାଂ ମତ୍ତଗଜ ଦାରଣ କେଶରୀ କାମିନୀ ମନସିଜ
ମହୀସ୍ଥଳୀ ରାଜାଗଣ ଭୁଜଙ୍ଗ ।୨୨
ଶୟଳ ରାଜାଗଣନ୍ତ ବରପ୍ରସାଦ
ମନ୍ତ୍ର ସାଧକ ନିର୍ମଳ ଶାସ୍ତ୍ରବେତ୍ତା ଯଜୁର୍ବେଦାନ୍ତ ।୨୩
ବହୁ ବେଦମନ୍ତ୍ର ବୋଧନ
ବଳରାମ ଉରଶଳ ଯୋଗୀଜନ ବହୁ ମଣ୍ଡନ ।୨୪
ତପୋବନ ରକ୍ଷାପାଳନ ଋଷି ବିପ୍ର ଚରଣ ବନ୍ଦନ
ଗୁରୁ ପିତୃଗଣ ଭକ୍ତି ଭାଜନ, ରାକ୍ଷସ ବଳ ନିଶୋଧନ ।୨୫
କେଶରୀ ସହସ୍ର ପଞ୍ଚାଣ ଉତଙ୍ଗବଳ
ଶ୍ରୀ ପୁରୁଷୋତ୍ତମ ଚରଣେ ଶରଣ କରୁଣାକର ରାଜ
ରାଜେଶ୍ୱର ।୨୬
କାଳାନ୍ତକ କାଳେବର ଯମ ଉପରି ଦ୍ୱିତୀୟମ
କାଳଦଣ୍ଡ ଦୀକ୍ଷାଗୁରୁ କାଳ ବିକାଳ ଭୁଜ ବନ୍ଧନ ।୨୭
ଚିତ୍ରଗୁପ୍ତ ପାଦାସନ ଲୋହଦଣ୍ଡ ରଥ ମଣ୍ଡନ
ଶାର୍ଦ୍ଦୂଳ କେତନ ବର୍ଣ୍ଣ ଚିହ୍ନ ।୨୮
ମୁକୁଟବନ୍ଧା ଯୋଦ୍ଧୃଗଣ ଶିର ଶେଖର ମଣି
ପବନ ଦେବତାନ୍ତ ଶୟଳ ସଦାରେକ ବୀରାଧି ବୀରବର
ମଉଡମଣି ।୨୯
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ
ଚତୁର୍ଦ୍ଦିଗ ରାଜାଂକ ଉପରେ ଭୁଜଙ୍ଗ ।୩୦
ମସ୍ତକ ଚୂଡ଼ାମଣି ସର୍ବନୃପ ଦେବ
ଶ୍ରୀ ଶ୍ରୀ ଶ୍ରୀ ଭୀମ ଅଟାର୍ଗଳ ପାଣ୍ଡବ ।୩୧
ପଶ୍ଚିମ ଦିଗପତି ଭୀମ
ଶ୍ରୀ ବୀର ବୃକୋଦର ଜେନାଂକର ଅଭୟ ପାଦପଦ୍ମେ
ବିନୟେ ନମଃ ।୩୨
ମଘଦେଶ ମତ୍ସ୍ୟଦେଶ ରାଜ୍ୟଦ୍ୱୟ ମହିପାରିଦଣ୍ଡ
ବିରାଟକୁ ଯେ ଅଟଇ ଶ୍ରୀମୁଖ ପ୍ରସାଦ ଖଣ୍ଡ ।୩୩
ଆହେ ବିରାଟ ତୋହୋର ଥାଟସନ୍ୟ ଯେତେକ ଥିବ
ଦେଖା ଦରଶନି ଧନ ଘେନି ରାଜୁସି ଯଗ୍ୟଂସଭାରେ ଇନ୍ଦ୍ରପ୍ରଶସ୍ତ
ରାଜ୍ୟକୁ ଉଠି ଆସିବ ।୩୪
ଶ୍ରୀ ଗଦାବର ଚୂଡ଼ାମଣି
ଭୀମସେନ ଠାକୁରଂକ ସନ୍ତକ ମଣି ।୩୫
ଶ୍ରୀ ରାଷ୍ଟ୍ରପତି ମଣ୍ଡଳାଧିପତି
ମଙ୍ଗଳ ମୂର୍ଦ୍ଧନା, ଶ୍ରୀ ବୃକୋଦର ଠାକୁରଂକ ପ୍ରଶସ୍ତ ସନମତି ।୩୬
ଶୁଭାଙ୍ଗ ଶୂଦ୍ରମୁନି ସାରୋଳା ଦାସ
ତୁଳସାର ଚରଣେ ଶତ ସହସ୍ର ପରଣାମ ସଦାଇ ଭାବରେ
ଶ୍ରୀ ହିଙ୍ଗୁଳା ଚରଣେ କରଇ ସେବା ଅଭ୍ୟାସା ଇତି ।୩୭
ଶ୍ରୀମୁଖ ଲେଖନ କଲା ପାତ୍ର ଧୂମକ୍ଷେତ୍ର
କାଳାଞ୍ଜନ ପଡ଼ିହାରୀ କାଳଧ୍ୱଂସନ ବେନି ଦୂତ ।୩୮
ବେନି ବିମାନ ଆରୋହୀ ବେନି ସେନାପତି
ଶତେକ ଚାରସଙ୍ଗେ ଘେନିଣ ସେ ଚଳିଲେ ତତକ୍ଷଣାନ୍ତି ।୩୯
ଶ୍ରୀମୁଦ ସନ୍ତକ ଗଦାମୁଦ ଭୀମସେନ ଅଧିକାରୀ
ଶ୍ରୀବୃକୋଦର ଜେନାଂକ ବଚନ ସେ କରି ।୪୦
କାଳାଞ୍ଜନ ପଡ଼ିହାରୀ କାଳଧ୍ୱଂସନ ଡଗର ବେନି
ବାୟବ୍ୟକୋଣେ ଗଲେ ଭୀମସେନର ସନ୍ତକକୁ ଘେନି ।୪୧
ଉଡନ୍ତି ବିମାନେ ଯେ ପବନୁ ଆପାତେ
ହୃଦେ ଶ୍ରୀମୁଖ ଲଗାଇ ଚଳିଲେ ବେନିଦୂତେ ।୪୨

**

## ୩୯. ବିରାଟ ରାଜ୍ୟରେ ଭୀମଙ୍କ ଦୂତର ଅପମାନ

ଆହୋ ବଇବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଂକି
ଭୀମସେନ ଶ୍ରୀମୁଖ ଲେଖନ ଗଲା ଯେ ବିରାଟର ତହିଁକି ।୧
ଶୁଣିବାକୁ ସୁରସ ଯେ ବଡ଼ାଇ କୁତୂହୋଳ
ଶୁଣନ୍ତେ ଲଭିବି ଯେ କୋଟିୟେ ତୀର୍ଥର ଫଳ ।୨
ଅଗସ୍ତି କହିଲେ ଯେ ମନୁ ପୁରୁଷଂକୁ
କାଳିଞ୍ଜନ ଡଗର ଗଲା ଯେ ମତ୍ସଦେଶ ରାଜ୍ୟକୁ ।୩
ଶତେକ ଦୂତ ତାହାର ତୁଳେଣ ତୋଷକାରୀ
ବିମାନ ଆରୋହି ଗଲା କାଳିଞ୍ଜନ ପଡ଼ିହାରୀ ।୪
କୀଚକ ବିଜେ କରିଅଛି ଯେ ବାହାର ଜଗତୀ
ସହସ୍ରେକ ବିଳାସୁଣୀୟେ ଯେ ଛାମୁରେ ଚାମର ଢାଳନ୍ତି ।୫
ବିଜୟେ ମଣି ମୁକୁଟ ଶୋଭଇ ଲଲାଟେ
କି ଅବା ସୁରେଶ୍ୱର ବିଜୟେ ବଇରାଷ୍ଟେ ।୬
ବଡ଼ାଇ ଆଡ଼ମ୍ବର ଦେଖି ସେ କାଳିଞ୍ଜନ ପଡ଼ିହାରୀ
ଯେହି ସେ ହୋଇବ ନାମ ମତ୍ସ୍ୟ ଦେଶର ଅଧିକାରୀ ।୭
ହୃଦେ ଶ୍ରୀମୁଖ ଲାଇ ହାକଇ କାଳିଞ୍ଜନ

ଆହୋ ବିରାଟ ଜଗତୀରୁ ଆସସି ବହନ ।୮
ପାୟେଡ଼ା ପାଡ଼ି ଯେ ଶ୍ରୀମୁଖ ଘେନସି ହୋ ରାୟେ
କେଉଂଣ ଦର୍ପେ ତୁ ହୋ ଯେଡ଼େକ ନିର୍ଭୟେ ।୯
କୀଚକ ବୋଇଲା ତୁ ହୋ ଅଟୁ କାହାର କତି
ଦୂତକାରୀ ହୋଇ କିମ୍ପା ଯେଡ଼େକ ନିର୍ଭାନ୍ତି ।୧୦
କେ ରେ ମୋତେ ଶ୍ରୀମୁଖ ଦେଇତେ ସାମରଥା
ନ ଜାଣୁ କି ସାଂଗ୍ରାମେ ମୁଂ ଅଭୟେ ବଳବନ୍ତା ।୧୧
ଶରଣ ସୋଦର ମୁହିଂ ଦୁଖୀ ଲୋକକଇଂ ବନ୍ଧୁ
ନିଚୟେ ଶିର ଯେ ଆଜ ଛାଡ଼ିଲା ତୋହୋର କନ୍ଧୁଂ ।୧୨
ପ୍ରତଗ୍ୟାଂ କରିଣ ଯହୁଂ କୀଚକହିଂ ବୋଇଲା
ଶୁଣି କାଳିଞ୍ଜନ ପଡ଼ିହାରୀ ମହାକୋପ କଲା ।୧୩
ଯମ ଦର୍ପଭଞ୍ଜା ବ୍ରିକୋଦର ସେନାପତି
ଭ୍ରସନା ବଚନ ସହି ନୁଆରନ୍ତି ମାରୁତି ।୧୪
ପ୍ରତଗ୍ୟାଂ କରିଣ ସେ ବୋଇଲା କାଳିଞ୍ଜନ
ନ ଜାଣୁ କି ବିରାଟରେ ପାଣ୍ଡବ ଭୀମସେନ ।୧୫
ହିଡ଼ିମ୍ବକ ରାକ୍ଷସ ଯେ ବିଦାରିଲା ରଣେ
ଲକ୍ଷେକ ନୃପତିଂକି ସ୍ୱୟମ୍ବରେ ଜିଣିଲା ଯେକା ଜଣେ ।୧୬
ବକାସୁର ଦର୍ପ ମର୍ଦ୍ଦନ ଓଡ଼ାଦି ଶିବପୁର ନଗ୍ର ଭଞ୍ଜା
ପ୍ରତଗ୍ୟାଂ ସାଚା ସେହି ଯୁଝେଷ୍ଟି ଦେବଂକ ସାନୁଜା ।୧୭
ଆହୋ ବିରାଟ କାହ୍ନୁ ସଂକ୍ରିଷଣ କମ୍ପନ୍ତି ଯାହାର ନାୟେଂ
ଜରାସନ୍ଧକୁ ଯେହୁ ନିବାରିଲା ଯେକା ମୁଥାଘାୟେ ।୧୮
ଆହୋ ବୀରବର ସୋହୋଡ଼ ସେ ପାଣ୍ଡବ ପଞ୍ଚାଣ
ରାଜୁସି ଯାଗ ନିମନ୍ତେ ସେ ପଛିମଦିଗ ବରଣ ।୧୯
ଦୁଷ୍ଟ ଦର୍ପ ନିଶୋଧନ ସେ କଇଛା ଜଗଜ୍ଜେଠୀ
ତ୍ରଇଲୋକ୍ୟେ ଚହଳ ପଡ଼ଇ ବ୍ରିକୋଦର ନାମଗୋଟି ।୨୦
ପାୟେଡ଼ା ପାଡ଼ି ଶ୍ରୀମୁଖ ଘେନ ହୋ ବିରାଟ
ଠାକୁରେ ବିଜେ କରିଅଛନ୍ତି ପଛିମ ସଉରାଷ୍ଟ ।୨୧
କୀଚକକଇଂ ନ ଚିହ୍ନିଲା କାଳିଞ୍ଜନ ପଡ଼ିହାରୀ
ବିରାଟ ପରାୟେ ମଣି ତାକୁ ଗାଢ଼େଣ ଉତର କରି ।୨୨
ବିରାଟ ଅଭିମାନ ଯେ କୀଚକ ନ ସହଇ
ତୁକାର ବଚନ କରି କାଳିଞ୍ଜନ ଅନେକ କହଇ ।୨୩
ବେଲୁ ବେଲୁ ପ୍ରତଗ୍ୟାଂ ସହିତ ନୁଆରଇ
କୋପଭର ହୋଇ କାଳିଞ୍ଜନକୁ ଅନାଇ ।୨୪
ରାଗେଣ ବୋଇଲା ଯେହାକୁ ନିଅ ବାଳ ଧରି
ବେଗକରି ନିଅରେ ନ ଥାଉ ଯେ ଆମ୍ଭ ପୁରୀ ।୨୫
ଜଗତୀର ତଳେ ଥିଲେ କୀଚକର ଅନେଶ୍ୱତ ଭ୍ରାଥ
କୀଚକର ଆଗ୍ୟାଂରେ ସେ ଧାଇଂଲେ ଅମାନାତ୍ୟ ।୨୬
ପରଶୁ ଫାଶୀ ଗଦା ମୁଦୁଗରନ୍ତ ବୁଲାଇ
କାଳିଞ୍ଜନ ପଡ଼ିହାରୀକି ବେଢ଼ି ଧଇଲେକ ବେଗେ ଯାଇଂ ।୨୭
କେ ତାହାର ଦରାଣ୍ଡି ଧଇଲେକ ବାଳ
ଅନ୍ତରୀକ୍ଷେ ଆଣନ୍ତେ ଚରଣ ନ ପଡ଼ଇ ତଳ ।୨୮
ଶ୍ରୀମୁଖ ଉଛୁଡ଼ିଣ ଘେନିଲେକ ତାର ତହୁଂ
ଆରେ ମାନବ ଜନ୍ମ ହୋଇ ତୁ ଯେତେକ ଗର୍ବ ବହୁ ।୨୯
ଶିରଛେଦ ବୋଲିକରି ଯହୁଂ ମନ୍ତ୍ରୀ ଆଗ୍ୟାଂ ଦିଲା
ଯାଚକେଶ୍ୱର ମନ୍ତ୍ରୀ ସମ୍ଭାଳି ବିରାଟକୁ କହିଲା ।୩୦
ସ୍ୱାମୀ ଭୀମସେନ ବୋଲି ଇନ୍ଦ୍ରପ୍ରଶସ୍ତ ରାଜ୍ୟର
ଜରାସନ୍ଧକଇଂ ସାଂଗ୍ରାମେ କଲାକ ଅପହାର ।୩୧
ଯୁଝେଷ୍ଟିଦେବଂକର ରାଜୁସି ଯାଗ କାର୍ଯ୍ୟେ
ସମଦଣ୍ଡ ଘେନି ମାରୁତି ପଛିମ ଦିଗବିଜେ ।୩୨
ଅନେକ ରାଜ୍ୟ ସାଧି ବିଜେ କରିଛନ୍ତି ପଞ୍ଚୁଧାରା ପର୍ବତେ
ଶ୍ରୀମୁଖ ଗୋଟିୟେ ସ୍ୱାମୀ ଦେଇଛନ୍ତି ତୋତେ ।୩୩
କୀଚକ ଧରି ତାହାନ୍ତ କରୁଅଛି ନିଧନ
ଶୁଣିଣ ମତ୍ସ୍ୟେଶ୍ୱର ଯେ ଧାମଇଂ ବହନ ।୩୪
କୀଚକର ଭାଇ ତାହାକଇଂ ନେଉଛନ୍ତି ହାଣି
ରହ ରହ ବୋଲି ଦୂରୁଂ ଡାକଇ ନୃପମଣି ।୩୫
ରାଜାର ବଚନେଣ ସମସ୍ତେ ହୋଇଲେକ ଶାନ୍ତି
କାଳିଞ୍ଜନ ପଡିହାରୀକି କୋଳକରି ଧଇଲା ମସ୍ତପତି ।୩୬
ବନ୍ଧନୁ ଫେଡ଼ି ତାହାକଇଂ ବସାଇଲା କୋଳେ
କନେକ ସ୍ରାହାନ କରାଇଲା ମସ୍ୟମହୀପାଳେ ।୩୭
କୀଚକ ଭ୍ରାଥାମାନନ୍ତ ରାଗେ ଦିଲା ଗାଳି
ଯେଉଂଣ ସ୍ୱାମୀଂକି ଜଗନ୍ନାଥେ ଖଟନ୍ତି ମନର ହାଆଳୀ ।୩୮
ଯେସନେକ ଅଗ୍ୟାଂନ ତୁମ୍ଭେ ରେ ପାମର ଦୁଷ୍ଟ ମନ୍ଦ
ଦୁତୀ ନିରଞ୍ଜନର ଶ୍ରୀମୁଖ କିଂପାଇଂ ତୁମ୍ଭେ ନିନ୍ଦ ।୩୯
ଅନେକ ବିନୟ ଭାବେ କହଇ ମନର ହାଆଳୀ
ଶ୍ରୀମୁଖ ଘେନିଲା ସେ ରାଜା କରି ନିଉଛାଳି ।୪୦
ଶତେ ସହସ୍ର ଦଣ୍ଡଲାଇ ଶୁତିଲା ପରିଣାମି
ଶ୍ରୀମୁଖ ମଥାରେ ଲଗାଇ ଉଭା ମସାଧିପ ସ୍ୱାମୀ ।୪୧
କାଳିଞ୍ଜନକଇଂ ଅନେକ ଗଉରୋବ କରାଇ

ଆସ୍ଥାନେ ବିରାଟ ତାକୁ ବସାଇଲା ନେଇ ।୪୨
ଶତେଭାର ସୁବର୍ଣ୍ଣେ ସେ କଲାକ ପାଦପୂଜା
ଶ୍ରୀମୁଖ ମୁଦ ଭଞ୍ଜାଇଲା ମତ୍ସ୍ୟଦେଶର ରାଜା ।୪୩
ଯାଚକେଶ୍ୱର ମନ୍ତ୍ରୀ ପଢ଼ିଲା ସମସ୍ତ ତରିଜା
ଶୁଣିଣ ଶଂକିଲା ସେ ବରିରାଷ୍ଟ ଆତ୍ମଜା ।୪୪
ବହୁତ ଯତ୍ନୁଂ ଶୁଣିଲା ବଡ଼ିମା
ଦୁସହ କାଳେବରର ଅନେକ ମହିମାଂ ।୪୫
ମନେ ବହୁ ତ୍ରାସ କଲା ଯେ ରାଜା ମତ୍ସେଶ୍ୱର
ବୋଇଲା ନିଚୟେ ନାଶ ଗଲା ଯେ ରାଜ୍ୟ ମୋହୋର ।୪୬
ଦୂତକଇଂ ଝିଂଘାସିଲା କୀଚକ ମହାବୀର
ସଂଚୟେ ଶିରୀ ଆୟୁସ ତୁଟିଲା ମୋହୋର ।୪୭
ଅନେକ ବିନୋୟୀ ହୋଇ କହିଲା କାଳିଞ୍ଜନକୁ
ତୋହୋର ଦୟା କଲେ ମୋହୋର ବୁଦ୍ଧି ଅଛଇ ବ୍ରତିବାକୁ।୪୮
କୀଚକର କଲା ଦୋଷ ଯେବେ କରିପାରୁ କ୍ଷମା
ଧର୍ମଉଦିତ ମୋତେ ହୋଇବ ତୁ ମୋତେ ରକ୍ଷାକଲେ
ମହାତମା ।୪୯
କାଳିଞ୍ଜନ ବୋଇଲା ତୁ ଶୁଣ ହୋ ମତ୍ସପତି
ମୁହିଂ ଚୋହୋର ଅପରାଧ କଲଇଂନି ଶାନ୍ତି ।୫୦
ସହଦେବ ବୋଲିଣ ଯେ ଯୁଝେଷ୍ଟିଂକର ମନ୍ତ୍ରୀ
ଭୂତ ଭବିଷ୍ୟ ଯେ ଗତ ଆଗତ ଆପଣେହେଂ ଜାଣନ୍ତି ।୫୧
ଉତ୍ପତ୍ତି ପ୍ରଳୟ ଯାହାଂକୁ ହୋଅଇଟି ଦୃଶ୍ୟ
ସେ ମନ୍ତ୍ରୀ ଥିବ ଯେ ଯୁଝେଷ୍ଟିଂକ ପାଶ ।୫୨
ଅବଶ୍ୟ ରାଜୁସିଯାଗ ସଭାୟେ ସମସ୍ତ ରାଜାଂକର ବାରତା ପଢ଼ିବ
କୀଚକର ଦୋଷ ସହଦେବ ଭୀମସେନ ଠାକୁରଂକୁ କହିବ।୫୩
ସେ କଥା ବଞ୍ଚାଣ ଯେ ନ ଯାଇ କଦାଚିତେ
ଅବଶ୍ୟ କୀଚକ ବଧ ହୋଇବ ଭୀମସେନ ଠାକୁରଂକ
ହାଥେ ।୫୪
ସମଦଣ୍ଡ ଘେନି ତୁ ଇନ୍ଦ୍ରପ୍ରଶସ୍ତ ରାଜୁସି ଯାଗକଇଂ ଯିବୁ
ତୋହୋର କୀଚକକୁ ବାବୁ ସଙ୍ଗତେ କେବେହେଂ ନ ନେବୁ।୫୫
ମୁହିଂ ଯାବତ କାଳେଣ ଧର୍ମଦୂତ ପେଷକାରୀ
ମୂର୍ଖପଣେ କୀଚକ ହୋ ଅପାର ଦୋଷକରି ।୫୬
ମଧ୍ୟସ୍ଥ ହୋଇଣ ଯେବେ କହିବି ତା ଆଗେ
ଅବଶ୍ୟ ଦ୍ୱନ୍ଦ ହୋଇବ ଓହୋବଳ ଭାଗେ ।୫୭
ଦ୍ୱନ୍ଦ ହୋଇଲେ ପୁଣ ପଡ଼ଇ ଅନେକ ହତ୍ୟା
ତଦ ଦୋଷେ ବଡ଼ାଇ ଶାସ୍ତି ଯେ ଦିଅଇ ଯମ ଦେବତା ।୫୮
ଯଦ୍ୟପି କୀଚକ ତୋହୋର ହୋଇଲା ଅପରାଧୀ
ଯେ ମୋହୋର ସତ୍ୟ ସତ୍ୟ ଠାକୁରଂକ ଛାମୁରେ ନ କହିବି
ଅବିଧି ।୫୯
ଅନେକ ଯୋଗାଡ଼ ଦିଲା ମତ୍ସ୍ୟାଧି ରାଜନ
ତ୍ରିପୁତି ହୋଇଣ ଭୋଜନ କରଇ କାଳିଞ୍ଜନ ।୬୦
ବିରାଟ ରାଜାକୁ ଦିଲା ସେ ଅକ୍ଷତ ଗୁଆ
ଉଠି ମଥାରେ ଘେନିଲାକ ସୁଦେଷ୍ଣା ପ୍ରାଣନାହା ।୬୧
କାଳିଞ୍ଜନ ବୋଇଲା ତୋହୋର ଯେତେକ ଥାଠସନ୍ୟ
ତାହାନ୍ତ ଘେନି ଇନ୍ଦ୍ରପ୍ରଶସ୍ତେ ଚଳସି ବହନ ।୬୨
ପାଣିଦ୍ରବ୍ୟ ଶତେଭାର ଦିଲାକ ମତ୍ସପାଳ
ଭୀମସେନ ଠାକୁରଂକର ଶ୍ରୀମୁଖ ସମ୍ଭାଳ ।୬୩
କାଳିଞ୍ଜନ ବୋଇଲା ଯେହାନ୍ତ ଘେନିଯାଅ ତୁହି
ରାଜୁସି ଯାଗଠାରେ ଦେବୁସି ମୁକୁଇଂ ।୬୪
ଯେସନେକ ଆଗ୍ୟାଂ ଦେଇ ବାହୁଡ଼ଇ ଦୂତ
ଆସନ୍ତି ଅନ୍ତରୀକ୍ଷେ ପବନୁଂ ଆପାତ ।୬୫

**

## ୪୦.ଉତ୍ତର ଦିଗ ରାଜାଗଣ ନିମନ୍ତ୍ରେଣ ପାର୍ଥଙ୍କ ଗମନ

ବଇବସୁତ ମନୁ ପଚାରିଲେ ଶୁଣିମା ଭାଗବନ୍ତେ
ଅରଜୁନ ବିଜେକଲେ ଯେ ଉତ୍ତର ପ୍ରଶସ୍ତେ ।୧
ଉତ୍ତର ଦିଗ ରାଜାୟେ ଯେ କ୍ଷତ୍ରିୟ ମହାଯୋଧୀ
କେମନ୍ତେଣ ଅର୍ଜୁନ କଲେଟି ତାହାକଇଂ ସାଧି ।୨
ଯେଥିର ଚରିତ ମୋତେ କହ ତପୋନିଷ୍ଠୀ
ତୋହର ବଚନେ ମୋହୋର ଭ୍ରାନ୍ତି ଯାଉ ଫିଟି ।୩
କହନ୍ତି ଅଗସ୍ତି ଯେ ପଣ୍ଡିତ ବ୍ରହ୍ମବେରା
ଯୋଗାଧି ଯୋଗେଶ୍ୱର ବଇବସୁତ ମନୁ ଶ୍ରୋତା ।୪
କାର୍ତ୍ତିକ ଶୁକଳ ପକ୍ଷ ଦଶମୀ ବୃହସ୍ପତି ବାର
ଉତ୍ତର ଭୋଦୋ ନକ୍ଷତ୍ର ଅଟଇ ସେ ଦିନର ।୫
ବାଣିଜ୍ୟ ନାମେ କରଣ ଯୋଗ ବଇଧୃତି
ରୋହିଣୀ ଘରେ ଚନ୍ଦ୍ର ଦେବତାର ପୀରତି ।୬
ତାର ଚନ୍ଦ୍ର ବେଳ ଯୋଗ ଘେନିଣ ଫାଲଗୁନି
ଉତ୍ତର ଦିଗକୁ ବାହାର ହୁଅନ୍ତି ଶୁଭ ଅନୁକୂଳ ଘେନି ।୭
ଗରୁଡ଼ ପିଠିରେ ଚଢି ଦେବ ଯେ ଅଚ୍ୟୁତ

ଅର୍ଜୁନକଇଂ ପଠିଆଇ ପଥୁଂ ବାହୁଡ଼ିଲେ ଦେବ ଜଗନ୍ନାଥ ।୮
ଯମୁନା ନଦୀ କୂଳେଣ ସେ ଥାଠ ଯେ ଚଳାଇ
ଦଧିମୁଖ ପର୍ବତେ ସେ ବିଜେ କଲେ ଯାଇଂ ।୯
ଅରୁଣ ଉଲ୍ଲୋଳ ବୋଲି ଯେକଇ ବନସ୍ତ ପର୍ବତେ
କୀଚକର ଡରେ ତହିଂ ଲୁଚିଅଛି ତ୍ରିଗର୍ତ୍ତେ ।୧୦
ଚାରି ଅହିବ୍ରତ ରଥ ବତିଶ ଲକ୍ଷ ହାଥୀ
ନବକୋଟି ତୁରଙ୍ଗମ ତିନିକ୍ଷଉଣୀ ପାଦାନ୍ତି ।୧୧
ରାଜ୍ୟ ଭ୍ରଷ୍ଟ ହୋଇ ରାଜା ବୁଲଇ ଘୋର ବନେ
କନ୍ଦମୂଳ ଆହାରେ ସେ ରାଜା ଭ୍ରମଇ ଅରଣ୍ୟେ ।୧୨
ଅର୍ଜୁନର ଆଗତ ରାଜା ପାଇଣ ବାରତ
ସାନନ୍ଦେଣ ଛାମୁକୁ ଆସଇ ସେ ନୃପତି ତ୍ରିଗର୍ତ୍ତ ।୧୩
ଗଣ୍ଡା ଚାରିଗୋଟି ରାଜା ଚଳାଇଣ ଆଗେ
ଦ୍ରଶନ କଲା ଅର୍ଜୁନକୁ ଅମୃତ ବେଳ ଯୋଗେ ।୧୪
ପଚାରନ୍ତି ପାର୍ଥିବ ତୁ କେଉଂଣ ଦେଶର ରାୟେ
ବନଗାମୀ ହୋଇ ତୁ ବୁଲୁ କାହା ଭୟେ ।୧୫
କହଇ ରାଜ୍ୟେଶ୍ୱର ବିନୟ ଭଗତେ
ଶୁଣିମା ଦେବ ସାବଧାନେ ମୋହୋର ଅବସ୍ଥା ଯେତେ ।୧୬
ସ୍ୱାମୀ ମଲ୍ଲଦେଶ ବୋଲିକରି ମୋର ନିଜ ରାଜ୍ୟ
ଶୂରସେନ ନୃପତିର ମୁଂ ଅଟଇ ତନୁଜ ।୧୭
ସ୍ୱାମୀ ମୋହ ଦେଶର ପଡ଼ିଶା ଅଟଇ ମଘଦେଶ
ଇଚ୍ଛାନନ୍ଦ ବୋଲି ରାଜା ତହିଂ କର୍ଣ୍ଣ କେଶରୀର ଶିଷ ।୧୮
ଇଚ୍ଛାନନ୍ଦ ନୃପତିର ପୁତ୍ର ଅଟଇ ନୃପତି ବଇରାଷ୍ଟ
ଅନୁବ୍ରତେ ତାହାର ସେ ସାକୁଥାଇ ଥାଠ ।୧୯
କିରାତ ରାଜାର ତୁଲେ ସେ ବହୁତ ବିବାଦୀ
ଅନୁବ୍ରତେ ତାର ତୁଲେ ସାଂଗ୍ରାମ ସମ୍ପାଦି ।୨୦
ବଇରାଷ୍ଟ କିରାତର ଦେବ ଯେ ହୋଇଲା ଅନେକ ସାଂଗ୍ରାମ
ଶତେଦିବସ ଯୁଦ୍ଧ ହୋଇଲା ଦିବାରାତ୍ର ଅବିଶ୍ରାମ ।୨୧
ମହାଯୁଦ୍ଧ କରି ସେ ନୃପତି କିରାତ
ଗଦାବର ଘାତେ ଭାଙ୍ଗିଲା ବଇରାଷ୍ଟର ରଥ ।୨୨
ବିରଥୀ ହୋଇ ଯେ ପଳାଇଲା ନୃପମଣି
କିରାତ ସେନ ରାଜା ତାହାର କେଶ ଧରି ଆଣି ।୨୩
ରାଗେ କିରାତସେନ ନୃପତି ଧରିଣ ଖଡ଼ଗ
ବଇରାଷ୍ଟ ନୃପତିର କାଟିଲା ବେଗେ ମୁଣ୍ଡ ।୨୪
ଶ୍ରୀବସି ବୋଲିକରି ଦେବ ତାହାର ପାଟରାଣୀ
ସ୍ୱାମୀର ଅଭାବେ ସେ ପଳାଇଲା ଠାକୁରାଣୀ ।୨୫
ମଳହାର ଦେଶର ରାଜା ଅଟଇ ସଂକୋଚନ
ତାହାର ରାଜ୍ୟେ ରାଣୀ ହୋଇଲା ଗୋପ୍ୟାନ ।୨୬
ରାଜାର ଭାରିଯା ବୋଲି ଦୟାକଲା ନୃପମଣି
ଭିନ୍ନ ନବର ଗୋଟିଯେ ଭିଆଇ ରଖାଇଲା ବଇରାଷ୍ଟର ପାଟରାଣୀ ।୨୭
ଯେତେବେଳେ ମହାଦେଈ ବିଧବା ହୋଇ ଆସି
ତିନିମାସ ସୁନ୍ଦରୀ ହୋଇଥିଲା ଗର୍ଭବାସୀ ।୨୮
ସଂକୋଚନ ରାଜା ତାକୁ ସମ୍ଭାଳିଲା ଅତିୟ ଯତନେ
ପୁତ୍ରେକ ଉପୁଜିଲା ଶ୍ରାବଣ ଶୁକଳ ଚଉଠୀର ଦିନେ ।୨୯
ଦେଖିଣ ସଂକୋଚନ ରାଜା ପରମ ସାନନ୍ଦେ
ବିରାଟ ନାମ ତାହାକଇଂ ଦିଲାକ ଆନନ୍ଦେ ।୩୦
ବଇରାଷ୍ଟର ପୁତ୍ର ଯେ ବିରାଟ ତାହାର ନାମ
ରୂପ ଗୁଣେ ସୁନ୍ଦର ସେ ମକରଧ୍ୱଜ ସମ ।୩୧
ଅନେକ ଯତ୍ନକରି ପାଳିଲା ତାହାକଇଂ ଦେବରାୟେ
ସେ ସଂକୋଚନ ରାଜାର ଉପୁଜିଲା ଦୁହିତା ଗୋଟିଯେ ।୩୨
ଭାଳଇ ସଂକୋଚନ ରାଜା ତାହାର ପୁତ୍ରନ୍ତ ବସାଇଂ
ବାବୁ କୀଅକ ରେ ତୋତେ ପଚାରଇ ମୁହିଂ ।୩୩
ମସ୍ୟଦେଶ ମଘଦେଶର ରାଜା ଯେ ଅଟଇ ବଇରାଷ୍ଟ
କିରାତ ବିବାଦେ ସେ ହୋଇଲା ହତପାଟ ।୩୪
ଭାରିଯା ପଳାଇ ଅଇଲା ତାହାର ହୋଇଣ ଗରଭବାସୀ
କୁମର ଗୋଟିଏ ଯେଥେ ପ୍ରସବ କଲା ଆସି ।୩୫
ବଇରାଗେ ରାଣୀ ଯହୁଂ ଛାଡ଼ିଲା ନିଜ ରାଷ୍ଟ
ସେ ପୁତ୍ରର ନାମଗୋଟି ମୁଂ ଦିଲାଇଂ ବିରାଟ ।୩୬
ବାବୁ ମୁହିଂ ତାହାକଇଂ ପାଳିଲି ଅତି ଯେ ଯତନେ
ପଛେ ଉପୁଜିଲ ବାବୁ ତୁମ୍ଭେ ମୋର ପୁତ୍ରମାନେ ।୩୭
ବିଚାରକୁ ଯୋଗାଇଲେ ବାବୁ କଥାଯେ କରିବା
ଅକାରଣ ଲୋକକୁ ଯେ କାରଣ କରାଇବା ।୩୮
ଯେବେ ଯୋଗାଇ ବାବୁ ଯେହା ତୁମ୍ଭର ବିଚାରକୁ
ସୁଦେଷ୍ଣାକୁ ପ୍ରଦାନ କରାଇବା ବିରାଟକୁ ।୩୯
ସଂସିଦ୍ଧ ବଂଶରେ ସେ ଅଟଇ ଅଧିକାରୀ
ପଣ୍ଡିତ ଭିଗ୍ୟଂଲୋକେ ସେ ଯେ କଥା ବିଚାରି ।୪୦
ମସ୍ୟଦେଶର ରାଜା ଯେ ହୋଇଲା ଅମୂର୍ତ୍ତି
ତୋହୋର ବୁଦ୍ଧିବଳେ ଯେ ଯେହାକଇଂ କରାଇବା ନୃପତି ।୪୧
କୀଚକ ବୋଇଲା ତାତ ଯୋଗାଇ ଯେ ବୃଦ୍ଧି

ମହତକଙ୍କ ଦ୍ରଶନେ ସ୍ୱାମୀ ସକଳ କାର୍ଯ୍ୟ ସିଦ୍ଧି ।୪୨
ପୁତ୍ରନ୍ତ ସନମତ ସେ କରାଇ ନୃପତି ସଂକୋଚନ
ବିରାଟକଙ୍କ ସୁଦେଷ୍ଣା ଯେ କରାଇଲେ ପ୍ରଦାନ ।୪୩
ତ୍ରିଗର୍ତ୍ତ କହଇ ଦେବ ଶୁଣିମା ଫାଲ୍‌ଗୁନ୍ୟେ
ସମୟେ ବିରାଟ ଥିଲା ସଂକୋଚନ ଭୁବନେ ।୪୪
ସ୍ୱାମୀ କୀଚକ ମହିମାଂ ଯହୁଂ ଅର୍ଜ୍ଜିଲା ବହୁତ
ଅନେକ ରାଜ୍ୟ ଜିଣିଲା ସେ ପ୍ରତଗ୍ୟାଂ ବଳବନ୍ତ ।୪୫
ସ୍ୱାମୀ ଭୁବି ଭୁବନ ମଧ୍ୟେ ଯାହାକଇଂ ନାହିଂ ସମଯୋଧୀ
ଅନେକ ଭୂଅମଣ୍ଡଳ ଭାଜି କଲାକ ସର୍ବସାଧି ।୪୬
ଛାମୁରେ ମିଳି କେହି ନୋହିଲେ ତାକୁ ବାଦୀ
ସବୁ ଦିଗେ ଭ୍ରମଇ ସେ କୀଚକ ମହାଯୋଧୀ ।୪୭
ଦିନେକ ପ୍ରତଗ୍ୟାଂ ସେହୁ କରୁଛି ଆସ୍ଥାନେ
ଆବର ରାଜା ଯେକ ନ ଥୋଇବି ଯେ ମଧ ଭୁବନେ ।୪୮
ସଂକୋଚନ ବୋଇଲା ବାବୁ ତୋର ଅସଂଖ୍ୟ ମହିମାଂ
ବିରାଟକୁ ଯେବେ ମତ୍ସ୍ୟଦେଶେ ସ୍ଥାପିପାରୁ ତେବେ ସେ ରହଇ
ତୋହୋର ଗାରିମା ।୪୯
ବାବୁ ଦୁହିତା ଗୋଟିଯେ ତାକୁ ଯେବେ ସେ କଲାଇଂ ପ୍ରଦାନ
ଚିରାଚନ କରି ବାବୁ ଗୁହାଅ ସଞ୍ଚିଲା ଧର୍ମମାନ ।୫୦
ତ୍ରିଗ୍ରର୍ତ କହଇ ଯେ ଅର୍ଜ୍ଜୁନର ଆଗେ
କୀଚକ ବାହିଲା ଥାଠ ମୋର ରାଜ୍ୟକୁ ବିରାଟର ରାଗେ ।୫୧
ସ୍ୱାମୀ ଅନେକ ସମର ହୋଇଲା କୀଚକର ମୋହୋର
ମୋହୋର ରାଗେ ବାହିଲା ନୃପତି କୀରାତେଶ୍ୱର ।୫୨
ସ୍ୱାମୀ କିରାତ ତ୍ରିଗର୍ତ୍ତ ଆମ୍ଭେ ହୋଇଲୁ ବେନି ଯେ ନୃପତି
କୀଚକର ତୁଲେ ଦେବ ସମର କଲୁ ଅପ୍ରମିତି ।୫୩
ଶତେସିଂହର ପ୍ରାକର୍ମ ସେ ସଂକୋଚନର ବାଳ
ଅନେଶ୍ୱତ ଭାଇ ଘେନି ସେ ଜିଣିଗା ଶତେକ ମଣ୍ଡଳ ।୫୪
ପୃଥୀରେ ଯୋଦ୍ଧାୟେ ତାକୁ କେହି ନାହିଂନା ସମସରି
ତିନିପୁର ଜିଣିମାକୁ ସାମରଥ ସେ ଦୃଭାସାଂକ
ବଚନେଣ କରି ।୫୫
ସ୍ୱାମୀ କୀଚକର ମୋର ସାଂଗ୍ରାମ ହୋଇଲା ଅପ୍ରମିତେ
ଯେମନ୍ତେ କୀଚକ ବହିଲା ଚଉବିଂଶ ବରଷ ପରିଯନ୍ତେ ।୫୬
ଓହୋବଳ ସାଂଗ୍ରାମେ ନୋହିଲୁ ତାହାକୁ ସରି
ରାଜ୍ୟ ଛାଡ଼ିଣ ସ୍ୱାମୀ ମୁଂ ଅଇଲି ଅପସରି ।୫୭
କିରାତକୁ ଡିଆଇଂ ନେଲା ମତ୍ସ୍ୟଦେଶ ଛଡ଼ାଇ
ମତ୍ସ୍ୟଦେଶ ଛଡ଼ାଇଲା ପଳାଇଲି ମୁହିଂ ।୫୮
ବିରାଟ ଆଣିଣ ସେ କୀଚକ ସେନାପତି
ମଚ୍ଛଦେଶ, ମଘଦେଶ ଦୁଇ ଦେଶେ କରାଇଲା ଚକ୍ରବ୍ରତୀ ।୫୯
ସ୍ୱାମୀ ଦୁହାଂଙ୍କ ଦୁଇଲକ୍ଷ ବରଡ଼ ବାରପଦ୍ମ ଗାଈ
ବଳାତ୍କାରେ କୀଚକ ବିରାଟକୁ ଯେତେକ ଭୋଗ କରାଇ ।୬୦
ଭୋ ସ୍ୱାମୀ ଶିରୀ ସମ୍ପଦ ମୁଂ ପରକଇଂ ଦେଇ
ବୁଲୁଅଛି ବନଗାମୀ ମୁଂ କନ୍ଦମୂଳ ଖାଇ ।୬୧
ସ୍ୱାମୀ ଭଗତ ମହଳ ତୁ ଶରଣପଞ୍ଜର
ନିଜ ରାଜ୍ୟ ଦେଇ ମୋତେ କରିବା ପ୍ରତିକାର ।୬୨
ଅର୍ଜୁନ ବୋଇଲେ ହୋ ଶୁଣ ତ୍ରିଗର୍ତ୍ତେଶ୍ୱର ରାଜା
ସମଦଣ୍ଡ ଘେନି ଯେବେ ଇନ୍ଦ୍ରପ୍ରଶସ୍ତକଇଂ ଯା ଯା ।୬୩
ବିରାଟହିଂ ଆସିବା ହୋ ରାଜୁସି ଯାଗସଭାକୁ
ତୋହୋର ନିମନ୍ତେ ହୋ ଆମ୍ଭେ ବୋଲିବା କୀଚକକୁ ।୬୪
ଯେମନ୍ତେ ତୁ ନିଜ ରାଜ୍ୟ ପାଇବୁ ତୋହୋର
ତେମନ୍ତେ କରି ଆମ୍ଭେ ସିନା କରିବୁ ବିଚାର ।୬୫
ପାଥର ଚରଣେ ରାଜା ଓଳଗ ମେଲାଇ
ହସ୍ତିନା ରାଜ୍ୟକୁ ଚଳିଲା ଅର୍ଜୁନ ଆଗ୍ୟାଂ ପାଇ ।୬୬
ତହୁଂ ବିଜୟେ କଲା ପାଣ୍ଡବ ସୁନ୍ଦର ବୀରମଣି
ଉତ୍ତର ଦିଗେ ବିଜେ ଅର୍ଜୁନର ଥାଠ ଯେ ପଲାଣି ।୬୭
ଗାଞ୍ଜଣ ଦେଶେ ପ୍ରବେଶ ହୋଇଲା ବୀର ଫାଲଗୁନି
ପୃଥିବୀ ହାନ୍ଦୋଳ ହୋଉଛି ବୀରତୂର ବାଦ୍ୟଧ୍ୱନି ।୬୮
ଗାଞ୍ଜଣ ଦେଶର ରାଜା ସେ ଗୋପାଳ ଚକ୍ରବ୍ରତୀ
ଚାରିଶତ ପାରିଦଣ୍ଡ ତାକୁ ଖଟଇ ନୃପତି ।୬୯
ପାଞ୍ଚଲକ୍ଷ ରଥ ତାର ପଞ୍ଚାଶ କୋଟି ମାତଙ୍ଗ
ସାତ କ୍ଷଉଣୀ ପାଦାନ୍ତି ଚଉଦ ମର୍ଭୁତ ତୁରଙ୍ଗ ।୭୦
ଅର୍ଜୁନର ପ୍ରବେଶ ଯାଇଂ ସେ ରାଜାର ରାଜ୍ୟେ
ବୀରତୂର କାହାଳୀ ନିଶାଣ ଟମକ ଘୋର ବାଜେ ।୭୧
ଆସ୍ଥାନେ ବିଜେ କରିଅଛନ୍ତି ଗୋପାଳ ନୃପମଣି
ମହାଗହଳ ଶୁଭିଲା ବୀରତୂର ରବା ବାଣୀ ।୭୨
ମନ୍ତ୍ରୀର ବଦନ ଚାହିଂଣ ବୋଇଲା ନୃପତି
କିସ ଶବଦେ ଦୁଲୁ ଦୁଲୁ କମ୍ପୁଅଛି ପୃଥୀ ।୭୩
ଆସ୍ଥାନର ତଳେ ଯାଇଂ ଜଣାଇଲେ ଚାରଗଣ
ସ୍ୱାମୀ ରାଜାଧି ରାଜେଶ୍ୱର ତୁମ୍ଭେ ସାବଧାନେ ଶୁଣ ।୭୪
ବନ ଡିଙ୍ଗର ଜିଣି ଆସୁଅଛି ଯେକ ରଥୀଯେ
ରଥ ଗଜ ଅଶ୍ୱ ଅଳପ ପାଦାନ୍ତି ମହା ତେଜମୟେ ।୭୫
କେବେଣ ଦେଶରୁ ଦେବ ସେ ଆସୁଅଛି ବାହି

ରାଜା ହୋଇ ଛାମୁରେ ତାର ରହନ୍ତା କେହି ନାହିଁ ।୭୬
ଶୁଣିଣ ବିଚାର ସେ କରଇ ନୃପତି
ଛାମୁରେ ଜଣାଇଲା ତାର ଶୂରସେନ ମନ୍ତ୍ରୀ ।୭୭
ସ୍ୱାମୀ ହସ୍ତିନା ଠାକୁରେ ଯେ ଯୁଧିଷ୍ଠି ଦେବରାୟେ
ତାହାଂକର ଅନୁଜ ଯେ ପାଣ୍ଡବ ଧନୁର୍ଜୟେ ।୭୮
ଦିଗ୍‌ବିଜୟେ ବାସେବି ରାଜୁସି ଯାଗ ଅର୍ଥେ
ଅନେକ ଦେଶର ଯେ ନିମନ୍ତିବେ ମହୀପତ୍ୟେ ।୭୯
ମନ୍ତ୍ରୀର ମୁଖରୁଂ ରାଜା ପାଇଣ ଯେସନେକ ବାରତ
ସାଜିଲା ନୃପତି ତାର ଗଜ ଅଶ୍ୱ ସଇନି ବହୁତ ।୮୦
ବହୁତ ସଇନି ତହିଂ ସାଜିଣ ନୃପମଣି
ବିଜେ ଗୋପାଳ ସେନ ଥାଠ ସନ୍ୟ ପଲାଣି ।୮୧
ସକଳ ସଇନି ଘେନି ନୃପତି କଲାକ ବିଜେ
ପ୍ରତକ୍ଷେ ନାରାୟଣ ଯେ ଦେଖିଲା ଦେବରାଜେ ।୮୨
ଦ୍ରଶନେ ସୁଫଳ ମୋର ହୋଇବ ଜୀବତି
ଗାଞ୍ଜାଣ ମଣ୍ଡଳାଧିପ ଯେ ଗୋପାଳ ଚକ୍ରବ୍ରତୀ ।୮୩
ସେ କଟକ ଭିତରେ ବିଜୟେ ଫାଲଗୁନି
ଦ୍ରଶନ କଲାକ ରାଜା ଥାଠ ସେନ୍ୟ ଘେନି ।୮୪
ଅର୍ଜୁନ ଛାମୁରେ ରାଜା କରଇ ପ୍ରଣପତ୍ୟ
ଆନନ୍ଦେ ଅର୍ଜୁନ ତାକୁ କଲେକ ନିମନ୍ତ ।୮୫
ଅକ୍ଷତ ଗୁଆ ତାକୁ ଦିଲେକ ଅରଜୁନ
ଥାଠ ସେନ୍ୟ ଘେନି ଚଳିଯାଅ ଇନ୍ଦ୍ରପ୍ରଶସ୍ତ ଭୁବନ ।୮୬
ସମସ୍ତ ରାଜାୟେ ରହିଥିବେଟି ବାରୁଣାବନ୍ତେ
ଯେକସ୍ତାନେ ରହିଥିବ ସମସ୍ତ ନୃପତ୍ୟେ ।୮୭
ଚାଳିଶ ସହସ୍ର ରାଜା ନିମନ୍ତି ମୁଂ ଘେନିଯିବି
ଯୁଧିଷ୍ଠି ଦେବ ଠାକୁରଂକୁ ଦ୍ରଶନ କରାଇବି ।୮୮
ଆଗ୍ୟାଂ ଦେଇଣ ତହୁଂ ଚଳିଗଲେ ସର୍ବସାଚୀ
ଆକାଶ ଦିଗ୍‌ବିଜେ ପ୍ରାୟେକ ଦିଶଇ ଦିଗ ପ୍ରାଚୀ ।୮୯
ଉଡ଼ନ୍ତି ତୁରଙ୍ଗମେ ଯେ ଗଗନ ମେଖଳି
ବରଷା ଋତୁରେ ଯେହ୍ନେ ଝଟକଇ ବିଜୁଳୀ ।୯୦
ସେହି ମତି ପ୍ରାୟେକ ଉଡ଼ନ୍ତି ରଥ ହୟେ ଚାରି
ମାତଳି ସାରଥି ରଥ ବାହଇ ବେଶକରି ।୯୧
ମାଳବ ଦେଶରେ ଯାଇ ବିଜୟେ ଅରଜୁନ
ଯମୁନା ନଦୀ କୂଳରେ ତା ରାଇଜ ଗହନ ।୯୨
ସେ ଦେଶର ରାଜା ବୀରବର ଚକ୍ରବ୍ରତୀ

ଅନେକ ପାରିଦଣ୍ଡ ସେ ରାଜାକଇଂ ଖଟନ୍ତି ।୯୩
ସମସ୍ତ ସମ୍ପଦେ ସେ ଅଟଇ ଦଣ୍ଡସାଇଂ
ତାହାର ପୁରେ ଅର୍ଜୁନ ପ୍ରବେଶ ହେଲେ ଯାଇଂ ।୯୪
ଅନେକ ବୀରତୂର ବାଜଇ ଘୋର ଧ୍ୱନି
ଇନ୍ଦ୍ର ବିଜୟ ପ୍ରାୟେକ ସେ ଦିଶଇ ଫାଲଗୁନି ।୯୫
ରାଜ୍ୟରେ ପଶନ୍ତେ ଓଗାଳିଲେ ଚାରଗଣ
କଟକରେ ନ ପଶ ବୋଲି ତୁମ୍ଭନ୍ତ ଠାକୁରଂକ ଆନ ।୯୬
ନ ଜାଣୁ କିହୋ ନୃପତି ବୀରବର ଚକ୍ରବ୍ରତୀ
ଉତ୍ତର କୋଶଳେ ଯାର ମହିମାଂ ବିଖ୍ୟାତି ।୯୭
ଧାର୍ମିକ ବିବେକ ସେ ପଣ୍ଡିତ ଭିଗ୍ୟଂବନ୍ତା
ଯାହାକୁ ସନ୍ଧାନ ଦିଅଇ ରତ୍ନାକର ଦେବତା ।୯୮
ଜୟେ ବିଜୟେ ବୋଲିଣ ଅର୍ଜୁନର ବେନି ସେନାପତି
ଅଶ୍ୱେ ଅଶ୍ୱେ ଚଢ଼ିଣ ସେ ଆଗିଆଣି ହୋଇଛନ୍ତି ।୯୯
ଯେତେବେଳେ ଆନ ତାଙ୍କୁ ପାଡ଼ିଲେ ମୁନେହିଂ
ପଶିଲେ ଅର୍ଜୁନ ଥାଠ ରାଜ୍ୟେ ନ ରହିଲେ ବୀରେ କେହି ।୧୦୦
ଦେଖିଣ ଧାଇଂଲେ ସେ ମାଳବର ସନ୍ୟ
ବାଜଇ ବୀରତୂର ଟମକ ନିଶାଣ ଘନ ଘନ ।୧୦୧
ପାଟଛତ୍ର ଉଦଣ୍ଡ ଯେକଲକ୍ଷୀ ପାଞ୍ଚଲକ୍ଷୀ
ଉଡ଼ନ୍ତି ଆଲମ୍ୱ ଯେ ସୁରେଶ୍ୱର ଦେବା ଦେଖି ।୧୦୨
ସହସ୍ରେ ରଥୀ ଯେ ପେଷିଲା ବୀରବର
ବୋଇଲେ ପ୍ରାଣେ ନ ମାରି ଜୀବନ୍ତା ବନ୍ଧୀକର ।୧୦୩
ରାଜାର ଆଗ୍ୟାଂରେ ଧାଇଂଲେ ସର୍ବରଥୀ
ନାରାଜ ପୂରୋଇଣ ଧାମନ୍ତି କୋପମୂର୍ତ୍ତି ।୧୦୪
ମୁକୁଟବନ୍ଧା ତହିଂ ସହସ୍ରେକ ରଥୀ
ଚୋଖାର ଶ୍ୱେତଅଶ୍ୱ ରଥଣେ ଯୋଚିଛନ୍ତି ।୧୦୫
ତର୍ଜନ୍ତି ଗର୍ଜନ୍ତି ଯେ ପୂରାବନ୍ତି ତୀକ୍ଷମୁନା
ନିକଟେ ଦେଖି ବିନ୍ଧିଲେ ସେ ମାଳବ ଦେଶର ସେନା ।୧୦୬
ଦେଖିଣ କୋପାନଳ ଅର୍ଜୁନର ସେନାପତି
ପରିଘନ୍ତ ବୁଲାଇ ବେଗେ ଉଠିଲେ ତତକ୍ଷଣାନ୍ତି ।୧୦୭
ମାଳବ ଦେଶର ଯୋଦ୍ଧା ସେ ବୁଲାବନ୍ତି ଖଡ଼ଗ ଧରି
କୋପେଣ ବିନ୍ଧନ୍ତି ସେ ଯେ ଘୋରନାଦ କରି ।୧୦୮
ଦେଖିଣ ଅର୍ଜୁନ ତାହା ଦୂରହୁଂ ନିବାରି
ବିନ୍ଧିଲେ ବାବଲ ଶର କୋପମୁଖ କରି ।୧୦୯
ଅବିକ୍ଷଣେ ଯୋଦ୍ଧାୟେ ଆକ୍ରେଷିଣ ବାଣ ବିନ୍ଧି

ସେହ୍ନାନ୍ତ ଫୁଟିକରି ଶରୀରେ ଯାଇଂ ଭେଦି ।୧୧୦
ରୁଧିର ବୃଷ୍ଟି ଯେ ହୋଇଲା ସବୁଂକରି ଅଙ୍ଗେ
କିଂଶୁକ ପୁଷ୍ପ ପରାୟେ ଦିଶିଲେ ସର୍ବେ ରଙ୍ଗେ ।୧୧୧
ଅମନାତ୍ୟ ଯୋଦ୍ଧାୟେ ନ ଘୁଞ୍ଚନ୍ତି ସମରେ
ପଡ଼ନ୍ତି ଉଠନ୍ତି ଗର୍ଜନ୍ତି କୋପଭରେ ।୧୧୨
ଯାଠି କୋନ୍ତ ଲାଂକିଆ କରେ ଧରି ମାରି
ପଡ଼ିଲେ ମାଳବ ବୀରେ ନ ପାରିଲେ ଉବୁରି ।୧୧୩
ସହସ୍ରେକ ରଥୀ ଆସି ହୋଇଥିଲେ ଆଗିଆଣି
ଯୁଦ୍ଧର ସମୟରେ ସେହୁ ଲୋଟିଲେ ଧରଣୀ ।୧୧୪
ଧାଇଂଣ ଚାରଗଣେ କହିଲେ ରାଜାଂକୁ
ବଡ଼ାଇ ଦୁରାପଦ ଦେବ ପଡ଼ିଲାକ ତୁକୁ ।୧୧୫
ସହସ୍ରେକ ରଥୀ ଓଗାଳିଲେ ତାର ଆଗେ
ଗୋଟିୟେ ଉବୁରି ନୁଆରିଲେ ପଡ଼ିଲେ ରଣରଙ୍ଗେ ।୧୧୬
ଯେତେକ ମାରି ଦେବ ନୋହିଲେକ ଶ୍ୟାନ୍ତି
କଟକ ଭିତରେ ଆସି ପଶିଲେ ନିଭ୍ରାନ୍ତି ।୧୧୭
ଆହୋ ମହାରାଜା ଯେବେ ସମ୍ଭାଳ ତୋହୋର ରାଜ୍ୟ
ଜନଜନ୍ତୁ ନାଶଗଲା ନୋହିଲା କିଛି କାର୍ଯ୍ୟ ।୧୧୮
ଡଗର ମୁଖୁଂ ବାରତା ପାଇଣ ବୀରବର
ଆପଣେ ବିଜେକଲା ସେ ଚଉଦୋଳା ଉପର ।୧୧୯
ରାଜା ବିଜୟେ ଦେଖି ଧାଇଂଲେ ସର୍ବ ସଇନି
ବିନ୍ଧିଲେ ନାରାଚ ଯେ ଅବିକ୍ଷଣେ ଘେନି ।୧୨୦
ମହାଥାଠ ଦେଖିଲେ ଯହୁଂ ସେ ଜୟେ ବିଜୟେ
ବେନି ସେନାପତି ତହୁଂ ଚଳାଇଲେ ମହାହୟେ ।୧୨୧
ମାର ମାର ବୋଲି ଯେ ପାଡ଼ିଲେ ମହାବୋବି
ଯୋଗ୍ରୀବଳ ଘେନି ଯେହ୍ନେ ଉଠନ୍ତି ଭଇରୋବୀ ।୧୨୨
ସାଂଗ୍ରାମେ ଅଜୟେ ଅଟେ ଯାହାର ବିରଧୂ
ସେନାପତିଂକ ମହିମାଂ ତେହେନେକ ସାଧୁ ।୧୨୩
ଧନୁ ଆମଞ୍ଚଣ ଉଠିଲେ ଜୟେ ଯେ ବିଜୟେ
ଆଗେ ଓଗାଳିଲେ ଆସି ଯେ ପାରିଦଣ୍ଡ ରାୟେ ।୧୨୪
ସାତଖର୍ବ ରଥୀ ତାର ବତିଶ ଖର୍ବ ହାଥୀ
ଚାରିଶଙ୍ଖ ହୟେବର ତେରକ୍ଷଉଣୀ ପାଦାନ୍ତି ।୧୨୫
ଯେତେକ ସଇନି ଘେନି ଉଠିଲା ବୀରବର ଚକ୍ରବ୍ରତୀ
ରଣ ହାଦୋଳ କଲା ସେ କଉଶିକ ଗୋତ୍ରୀ ।୧୨୬
ହସ୍ତିନାର ବୀରେ ଯାଇଂ ପଶିଲେ ସମରେ
ଡାକ ହାକେ କମ୍ପିଲା ଯେ ଅନେକ ଡିଙ୍ଗରେ ।୧୨୭
ଗର୍ଜଣ ଉଠିଲେ ଯହୁଂ ମାଳବ ଦେଶର ବଳ
ବେନିବଳ ମିଶିଣ ହୋଇଲେ ମହାଗୋଳ ।୧୨୮
ବାରଣ ନ ଗଲା ତହିଂ କେହୁ ପର କେହୁ ଆପଣା
ଯେକାମାତ୍ର ବସବି ଯେ ହୋଇଛି ଧାରଣା ।୧୨୯
ଅର୍ଜୁନ ଥାଠ ଯହୁଂ ହୋଇଲେ ଭିତର
ଗୁଣ ଟଂକାରି ପଶିଲେ ସେ ସାଂଗ୍ରାମେ ଚାପଧର ।୧୩୦
ଅର୍ଜୁନ ବାଦ୍ୟକଲା ଦେବଦତ୍ତ ଶଙ୍ଖଧ୍ୱନି
ସଇନି ଲୋଟି ହୋଇଲେ ଶଙ୍ଖ ଶବଦ ଶୁଣି ।୧୩୧
ଅର୍ଜୁନର ସେନାପତି ଜୟ ଯେ ବିଜୟେ
ତାହାନ୍ତ ଓଗାଳିଲେ ଆସି ମାଳେବ ଦେଶ ରାୟେ ।୧୩୨
ବୀରବର ସୁନ୍ଦର ସେ କ୍ଷତ୍ରୀ ଅଚାର୍ଗଳା
ସମରେ ଅଭୟା ସେ ଜାଣନ୍ତି ମହାଖଳା ।୧୩୩
ମାଳବ ସେନାୟେ ସେ ଉଠିଲେ ବେଗ ହୋଇ
ବୁଲାବନ୍ତି ଲାଂକିଆ ଯେ ସିଂଘରଡ଼ି ଦେଇ ।୧୩୪
ଧାଅଂରେ ମାରରେ ବୋଲି ପ୍ରତଗ୍ୟାଂ ବୋଲାବୋଲି
ଗାଲତୁରୀ ଶବଦ ଦେଇଣ ଯେ ଡିଅଂନ୍ତି କୁରୁଳି ।୧୩୫
ଜୟେ ବିଜୟେ ବୁଲାଇ ପରିଘେ ପରିଘେ
ବରଷା ଋତୁରେ ଯେହ୍ନେ ଉଠନ୍ତି କଳାମେଘେ ।୧୩୬
ସଇନି ଉପରେ ନେଇ ପ୍ରାହାର କଲେ ଗଦା
ଭାଙ୍ଗିଲେ ଦମନ ବଳ ପିଟିଣ କଲେ ପଦା ।୧୩୭
ରଥୀ ସାରଥୀ ଯେ ପଡ଼ିଲେ ମହୀଲୋଟି
ରଥରେ ବିଜୟେ କରି ତା ଦେଖଇ ପାଣ୍ଡବ କିରୀଟୀ ।୧୩୮
ଅର୍ଜୁନ ବୋଇଲେ ଯେ ମାତଳି ସାରଥିକି
ରଥ ବେଗେ ବାହା ମୋର ବୀରବର ରାଜାର ତହିଂକି ।୧୩୯
ପବନୁଂ ବେଗେ ରଥ ସାରଥି ନେଲା ଚାଳି
ମାଳବ ଦେଶ ରାଜା ଛାମୁରେ ରଥ ନେଇ ଭେଟାଇଲା
ମହାବଳୀ ।୧୪୦
ବୀରବର ରଜା ଯେ ଚୁଟବନ୍ଧ ଶରୀର ବଜ୍ରସେହ୍ନା
ପାଥିବକୁ ଦେଖି ଶହସ୍ର ବିନ୍ଧିଲେ ବଡ଼କୁମାର ଜେନା ।୧୪୧
ରଥରେ ଥାଇଣ ତାକୁ କହଇ ଅର୍ଜୁନ
କିମ୍ପାଇଂ ନୃପତି ତୁ ହୋ ଯେଡ଼େକ ଅଗ୍ୟାନ ।୧୪୨
କାହା ତୁଲେ ବିବାଦ କରୁ ତୁ ଅନମିତେ
ଦେଶାଉରେ ବାରତା କି ନ କହିଲେ ତୋତେ ।୧୪୩
ଉତ୍ତର ଦିଗବିଜେ ମୁହିଂ ସେ ଫାଲଗୁନି
ରାଜାମାନ୍ତ ନିମନ୍ତି ରାଜୁସି ଯାଗକୁ ଯିବି ଘେନି ।୧୪୪
ନ ଜାଣି ଅନମିତେ କିଂପେ କରୁଛୁ ସମର

ଅନମିତେ ସଇନା ଲୋଚାୟେ ତୋର ହୋଇଲେ ଅପହାର ।୧୪୫
ୟେତେକ ସଇନି ମରାଇଲୁ ଅକାରଣେ
ୟେଡ଼େବଡ଼ ହୋଇ କଲୁ ଅପଣ୍ଡିତ ପଣେ ।୧୪୬
ଧନୁର୍ଜୟେ ବାକ୍ୟ ଯହୁଁ ଶୁଣିଲା ସଦିଭାବ
ରଥୁରୁ ତେଇଂଶ ପଡ଼ିଲା ନୃପତି ମାଳବ ।୧୪୭
ଅର୍ଜୁନର ରଥ ତଳେ ହୋଇଲା ପରିଣାମି
ଦଶଦୋଷ ଅପରାଧ କ୍ଷମା କରିବା ଦେବସ୍ୱାମୀ ।୧୪୮
ଅର୍ଜୁନ ବୋଇଲେ ତୁ ଉଠ ଉଠ ରେ ବାବୁ
ଅଗ୍ୟାନେ ସଇନି ନାଶଗଲେ ଆଉ ତୁ କିସ କରିବୁ ।୧୪୯
ସଇନିକି ହାକଦିଲା ରହ ରହ ହୋ ସଭିୟେଂ
ଅଗ୍ୟାନେ ନାଶଗଲ ନ ଜାଣି ସନ୍ଦେହେ ।୧୫୦
ଭଗତ ମସ୍ତଳ ନାଥ ମମ ଦୋଷ କଲେଣି ଉପେକ୍ଷା
ୟେହି ସେ ନାଶକଲା ସେ କରି ପାରଇ ରକ୍ଷା ।୧୫୧
ସମସ୍ତେ ପଳାଇଥିଲେ ମହାଭୟେ କରି
ରାଜା ମାଧୁର୍ଯ୍ୟ ବଚନେ ରହିଲେ ପୁରସରି ।୧୫୨
ନିମନ୍ତ୍ରଣ ଯୋଗାଡ଼ମାନ ଦିଲେକ ସର୍ବସାଚୀ
ବାରୁଣାବନ୍ତେ ଯାଅ ହୋ ତୋତେ ଠାକୁରଙ୍କର ଆଗ୍ୟାଂଅଛି ।୧୫୩
ଶୁଣିଣ ସାନନ୍ଦ ସେ ବୀରବର ନୃପମଣି
ସ୍ୱାମୀ ଆଗ୍ୟାଂ ପ୍ରମାଣେ ମୁଂ ଯିବଇଂ ଥାଠ ସନ୍ୟ ପଲାଣି ।୧୫୪
ମାଳବ ଦେଶର ନୃପତି ପ୍ରଣପତ୍ୟ ଅର୍ଜୁନର ପଦ୍ମପାଦେ
ସ୍ୱାମୀ ଲଭିଲାଇଂ ଅନେକ ପୁଣ୍ୟ ତୋହୋର ପରସାଦେ ।୧୫୫
ସ୍ୱାମୀ ମୁଣୋହି ଯୋଗାଡ଼ ମୁଂ କରିବଇଂ ବିଧାନ
ବେଳ ଉଛୁର ଆସି ଦେବ ହୋଇଲାନି ମଧାହ୍ନ ।୧୫୬
ଅର୍ଜୁନ ବୋଇଲେ ତୁ ହୋ ଶୁଣ ବୀରବର
ମୁଣୋହିରେ ବେଳ କାହିଂ ଅଛଇ ମୋହୋର ।୧୫୭
ଚାଳିଶ ସହସ୍ର ରାଜା ନିମନ୍ତ୍ରିବି ନଉଦିବସର ମଧେ
କେମନ୍ତେ ନୃପତି ସାଧ ହୋଇବେ ୟେହିମତି ଯୁଦ୍ଧେ ।୧୫୮
ଦଣ୍ଡ ଘେନି ବାହାର ତୁ ହୁଅ ୟେହିକ୍ଷଣ
ରାତ ଦିବସେ ଅନୁବ୍ରତେ କରସି ପୟାଣ ।୧୫୯
ୟେଉଂଣ ନୃପତି ଅବା ବିଳମ୍ବ କରିବ
ସଞ୍ଜୟ ଅପ୍ରାଧି ହୋଇ ରାଜୁସି ଯାଗସଭାରେ ନାଶଯିବ ।୧୬୦
ସ୍ୱାମୀଂକର ଆଗ୍ୟାଂ ପ୍ରମାଣ କରଇ ନିରାଧାର
ଲଗ୍ନ ବିଚାର କରି ବାହାର ହୋଇଲା ଦଣ୍ଡଧର ।୧୬୧
ମାଳବ ଦେଶୁଂ ବାହାର ହୋଇଲେ ଫାଲଗୁନି

ମହା ସମ୍ଭର୍ବେ ଚଳିଲେ ଥାଠସନ୍ୟ ଘେନି ।୧୬୨
ମାଳବ ଦେଶ ଅନ୍ତରେ ହିରଣ୍ୟକ ନାମେ ବନ
ହିରଣାକ୍ଷୀ ବୋଲି ନଦୀୟେ ପ୍ରାୟାଗୁଂ ଉଦଯାନ ।୧୬୩
ସେ ନଦୀର କୂଳେ ସଉରଭ ନାମେ ପର୍ବତ
ସେ ଗିରି ଉପରେ ଯାଇ ବିଜୟ ବୀର ପାଥ ।୧୬୪
ୟେରଙ୍ଗ ବୋଲିଣ ତହିଂ ରାଜ୍ୟ ଗୋଟିୟେ
ତହିଂ ସେ ରାଜ୍ୟ କରଇ ଭାନୁବନ୍ତ ବୋଲି ରାୟେ ।୧୬୫
ଅର୍ଜୁନ ହକାରିଲେ ଜୟେ ବିଜୟେ ସେନାପତି
ଆଦିତ୍ୟ ଅସ୍ତଗଲା ଆସି ହୋଇଲା ନିଶାରାତି ।୧୬୬
ରାତ୍ରକାଳେ କିଂପାଇଂ ପଶିବା ହୋ ପରରାଷ୍ଟେ
ରାଜାର ଆମ୍ଭର ପରଚେ ନାହିଂ ଅପରଚେ ଥାଟେ ।୧୬୭
ରହିଲେ ସଇନି ବଳ ମାଡ଼ି ସେହି ପରବତେ
ଅମୃତ ଯୋଗାଡ଼ ଆଣି ଦିଲେ ଦେବଦୂତେ ।୧୬୮
ସୂପକାରମାନେ ଅନ୍ନ କଲେକ ପଚନ
ସେ ନଦୀରେ ସ୍ନାହାନ କରି କଲେକ ଭୋଜନ ।୧୬୯
ଅମୃତ ଯୋଗାଡ଼ହିଂ ଭୁଞ୍ଜିଲେ ଫାଲଗୁନି
ଅଷ୍ଟ ନାୟିକାନ୍ତ ଆକାଶୁଂ ପଠିଆଇଲେ ସସ୍ତଯୋନି ।୧୭୦
ବିଦ୍ୟାଧର ପୁରୁଷେ ପଞ୍ଚମସ୍ୱରେ ବାଦ୍ୟକାରୀ
ସୁର ଭର ହରଷେ ଗାୟେଣୀ କନ୍ୟାଚାରୀ ।୧୭୧
ବିଦ୍ୟାଧର ବିଦ୍ୟାଧରୀ ଜଣ ଯେ କୋଡ଼ିୟେ
ଅମର ଭୁବନୁଂ ପେଷି ଦିଲେକ ଦେବରାୟେ ।୧୭୨
ପୁଷ୍ୟକ ରଥ ଆରୋହି ସେ ଅର୍ଜୁନକଇଂ ଭେଟି
ଅମର ବିଳାସୁଣୀ ତାଣ୍ଡବ ନୃତ୍ୟେ ଖଟି ।୧୭୩
କୁତୂହୋଳେ ରୟଣୀ ଯେ ହୋଇଲା ପାହାନ୍ତି
ବାରତା ପାଇଲା ସେ ୟେରଙ୍ଗ ଚକ୍ରବ୍ରତୀ ।୧୭୪
ଧାର୍ମିକ ବିବେକ ସେ ଅଜମୀଢ଼ର ତନୁ
ପର୍ବତ ଉପରେ ଆସି ଦ୍ରଶନ କଲାକ ରାୟେ ଭାନୁ ।୧୭୫
ଶତେକ ଘର ଯେ ଘେନିଣ ଶ୍ୱେତହାଥୀ
ଅର୍ଜୁନକୁ ଦ୍ରଶନ କଲା ସେ ରଜନୀ ପାହାନ୍ତି ।୧୭୬
ଦେଖିଣ ଦ୍ରହସିତ ଯେ ସୋହୋଦର ନାହା
ସମଦଣ୍ଡ ଘେନିଣ ତୁ ରାଜୁସି ଯାଗକଇଂ ଯାଅ ଯା ।୧୭୭
ରାଜା ବୋଲେ ଦୁତୀ ନାରାୟଣେ ମୁଂ ଦେଖିଲି ନୟନେ
ପାଇଲି ପରମ ଗତି ଦେବ ପାର୍ଥିବ ଦରଶନେ ।୧୭୮
ଶ୍ରବଣେ ଯାହା ଶୁଣିଥିଲି ଦେଖିଲି ତାହା ବେନି ଚକ୍ଷୁ

ପ୍ରତକ୍ଷେ ନାରାୟଣ ଦେବ ତୁ ବିଜେ କରିଅଛୁ ।୧୭୯
ଶତ ସହସ୍ର ଦଣ୍ଡଲାଇ ଭାନୁବନ୍ତ ପରିଣାମି
ମୋହାର କଟକେ ବିଜେ କରିବା ଦେବସ୍ୱାମୀ ।୧୮୦
ଯେ ରାଜ୍ୟ ନରନାରୀମାନେ ସମସ୍ତେ ତୋତେ ଦେଖୁଂ
ରାଜ୍ୟ ମୋହୋର ସୁଲଭ କିମ୍ପାଇଂ ଉପଲେଛୁ ।୧୮୧
ସେ ଭାନୁମତ ରାଜା ଦେଖି ଅନେକ ବିନୟେ
ରାଜ୍ୟକୁ ବିଜୟେ କଲେ ପାଣ୍ଡବ ଧନୁର୍ଜୟେ ।୧୮୨
ପୁରେ ପୁରେ ଉଛବ ତାର କରାଇ ରାଜଦେବ
ବାଢ଼ିଲା ଅନେକ ରତ୍ନ ଯୋଗାଡ଼ ଅନେକ ସମ୍ଭର୍ବ ।୧୮୩
ପାୟେଡ଼ା ପାଡ଼ିଣ ରାଜା କରଇ ନିଉଛାଳି
ବିଛରନ୍ତି ଗଗନମାର୍ଗେ କର୍ପୂରର ଧୂଳି ।୧୮୪
ଗମିଲେ ଫାଲଗୁନି ଯେ କଟକ ଭିତରେ
ରତ୍ନ ଯୋଗାଡ଼ମାନ ସେନାୟେ ଠାବେ ଠାବେ
କଲେ ଜୂରେ ।୧୮୫
କଟକ ଜିଣିକରି ଚଳଇ ବୀର ଫାଲଗୁନି
ଦେବ ଦୁନ୍ଦୁଭି ଯେ ବାଜଇ ଘୋର ଧ୍ୱନି ।୧୮୬
ଭାନୁମତକୁ ଦେଇଣ ଗୁଆ ଯେ ଅକ୍ଷତ
ବାରୁଣାବନ୍ତକୁ ରାଜା ଯାଅ ହେ ତୁରିତ ।୧୮୭
ସମଦଣ୍ଡର ଘେନି ଯେ ରାଜୁଂ ବାହାର ଭାନୁବନ୍ତ
ବାରୁଣାବନ୍ତକୁ ରାଜା ଚଳଇ ତୁରିତ ।୧୮୮
ଚଳଇ ଫାଲ୍‌ଗୁନି ଯେରଙ୍ଗ ଦେଶ ଜିଣି
ଶୀଘ୍ରରେ ଚଳାଇ ଯାଇଂ ପାଣ୍ଡବ ଚୂଡ଼ାମଣି ।୧୮୯
ସମ୍ଭରେ ଚଳଇ ଯେ ବୀର ଫାଲଗୁନି
ବଙ୍ଗଦେଶେ ପରବେଶ ହୋଇଲେ ଥାଠ ଘେନି ।୧୯୦
ସେ ବଙ୍ଗଦେଶର ରାଜା ଅଟଇ ଚିତ୍ରସେନ
ସାତ କ୍ଷଉଣୀ ବଳ ଘେନି ରାଜା ବସିଛି ଆସ୍ଥାନ ।୧୯୧
ଆସ୍ଥାନର ତଳେ ଯାଇଂ ଜଣାଇଲେ ଚାରଗଣେ
ଶୁଣିମା ସାବଧାନେ ବଙ୍ଗଦେଶ ନୃପରାଣେ ।୧୯୨
ସ୍ୱାମୀ ଯୁଝେଷ୍ଟି ଦେବଂକର ସାନୁଜ ଅରଜୁନ
ଉତ୍ତର ଦିଗବିଜେ ନିମନ୍ତି ନେବେ ରାଜାଗଣ ।୧୯୩
ରାଜୁସି ଯାଗ ଦେବ ହୋଇବ ମହାସଭା
ସମଦଣ୍ଡ ଘେନି ଛାମୁକୁ ବହନ ହୋଇ ଯିବା ।୧୯୪
ସ୍ୱାମୀ ଦୁର୍ଜନ ନାଶନ ଯେ ସଜ୍ଜନ ପ୍ରତିପାଳି
ଜଗଦର୍ପ ଗଞ୍ଜା ସେ ଅଟଇ ମହାବଳୀ ।୧୯୫
ଶୁଣିଣ ସାନନ୍ଦ ଯେ ଚିତ୍ରସେନ ନୃପତି
ଆସ୍ଥାନ ତେଜିଣ ରାଜ ଆସଇ ତତକ୍ଷଣାନ୍ତି ।୧୯୬
ଦେଖା ଦରଶନି ଯେ ଶତେଭାର ଧନ
ଘେନିଣ ଛାମୁକୁ ଆସଇ ଚିତ୍ରାଙ୍ଗ ରାଜନ ।୧୯୭
ଛାମୁରେ ପ୍ରବେଶ ଯେ ହୋଇଲା ମହାରାୟେ
ନୟନେ ଦେଖିଣ ଶାନ୍ତି ହୋଇଲେ ଧନୁର୍ଜୟେ ।୧୯୮
ବିନୟ ଦେଖିଣ ଦୟା କଲେ ଫାଲଗୁନି
ମାଳା ଗୋଟିୟେ ଦିଲେ ଶ୍ରୀହସ୍ତେ ତାକୁ ଘେନି ।୧୯୯
ରାଜୁସି ଯାଗ କରିବେ ଧର୍ମ ଯେ ଯୁଝେଷ୍ଟି
ପଣ୍ଡୁ ରାଜାର ପାତକ ଖଣ୍ଡିବେ ଅରିଷ୍ଟି ।୨୦୦
ଲକ୍ଷେକ ନୃପତି ସମସ୍ତେ ହୋଇବେ ଯେ ଜୁଣ୍ଟ
ଯେଉଂଣ ରାଜାର ସଇନି ଯେତେକ ପାରିଦଣ୍ଡ ।୨୦୧
ଯାହାକୁ ଯେତେ ମିଳଇ ଦେଖା ଦରଶନି
ଅନରୂପେ ସମସ୍ତେ ଯେ ଯାଉଛନ୍ତି ଘେନି ।୨୦୨
ଅକ୍ଷତ ଗୁଆ ନେଇ ଦିଲେକ ତାହାକୁ ଶ୍ରୀହସ୍ତେ
ଯେହିକ୍ଷଣି ଦଣ୍ଡ ଘେନି ଯାଅ ଯା ବାରୁଣାବନ୍ତେ ।୨୦୩
ଆଗ୍ୟାଂ ପ୍ରମାଣେ ସେ ବଙ୍ଗଦେଶର ଆଧିପତି
ସମଦଣ୍ଡ ଘେନି ରାଜା ବାହାର ତତ୍‌କ୍ଷଣାନ୍ତି ।୨୦୪

**

## ୪୧. ଅର୍ଜୁନଙ୍କର ଦୁର୍ଗା ସ୍ତୁତି

ଶାଖାପୁର ଭାଖାପୁର ଜିଣି ସର୍ବସାଚୀ
ହିରଣଗର୍ଭ ପୁରେ ପ୍ରବେଶ ହୋଇଲେ ଯହିଂ ବିଜୟେ ଦେବୀ
ହିରଣାକ୍ଷୀ ।୧
ଶୁମ୍ଭ ନିଶୁମ୍ଭ ବୋଲି ପର୍ବତ ଗୋଟି
ସେ ଦୁଇ ପର୍ବତ ମଧ୍ୟେ ବହଇ ସରସ୍ୱତୀ ଧାରା ଫୁଟି ।୨
ସେ ନଦୀରେ ସ୍ନାହାନ ନିତ୍ୟକର୍ମ ସାରି
ବିଜୟେ ଫାଲଗୁନି ଯାଇଂ ଶୁମ୍ଭ ନାମେ ଗିରି ।୩
ସେ ପର୍ବତ ଉପରେ ଯେ ବିଜୟେ ହିରଣାକ୍ଷୀ
ଦ୍ରଶନ କଲା ଅର୍ଜୁନ ଅଭୟେ କାମାକ୍ଷୀ ।୪
ଚଣ୍ଡ ମୁଣ୍ଡ ବଧକଲୁ ଗୋ କଥାର ସଂପୋଢ଼େ
ଶୁମ୍ଭ ନିଶୁମ୍ଭ ନାଶିଲୁ ଗୋ ନୃତ୍ୟରଂଗ ଖେଡ଼େ ।୫
ପଡ଼ିଲେ ଦାନବେ ମାଗୋ କଥାର କୁତୂହୋଳେ
କାମସେଣା ମୂର୍ତ୍ତି ଧରି ନାଶିଲୁ ତାଂକୁ ହେଳେ ।୬
ଶୁମ୍ଭ ନିଶୁମ୍ଭ ନାଶିଲୁ ଗୋ ଅସୁରକୁଳ ଧ୍ୱଂସି

ମହିଷାସୁର ଦାନେବ ଗୋ ନାଶିଲୁ ବକ୍ଷସ୍ଥଳେ ମାଡିବସି ।୭
ଶୁମ୍ଭ ନିଶୁମ୍ଭର ମୁଣ୍ଡ ଯେ ବେନି ପରବତ
ଅନେକ ଦୂର ବିସ୍ତାର ସେ ଯୋଜନ ଶତେଶତ ।୮
ପୁଣ ପୁଣ ବ୍ରତନ୍ତି ବୋଲି ଅସୁର ମହାବଳୀ
ଦୁଇପାଦେ ଦୁଇମୁଣ୍ଡ ମାଡିବସିଲୁ ମତ୍ତଭୋଳି ।୯
ଆପଣେ ଦୁଖୀ ହୋଇଲୁ ଦେବତାଂକ କାର୍ଯ୍ୟେ
ତବ ନାମ ଧରନ୍ତେ ଭୟେ ପଳାନ୍ତି ଦନୁଜେ ।୧୦
ଦେବତାଂକୁ ଅଭୟେ କଲୁ ଗୋ ଅସୁର ବଳ ଭାଂଗି
ଭଗତଜନ ମଙ୍ଗଳୀ ଗୋ କୃତାନ୍ତେକ ଦର୍ପ ଗଂଜି ।୧୧
ପାତେକ ଦୁରାନ୍ତେକ ପଳାନ୍ତି ମାଗୋ ତୋ ନାମ ଧରନ୍ତେ
ଫିଟଇ ଦୁର୍ଗତି ମାଗୋ ତୋହୋର ନାମ ସୁମରନ୍ତେ ।୧୨
ଡାକି ଡମ୍ବରୁ ଗୋ ଡିବି ଡିବି ବାଦ୍ୟ ବାଇ
ଶମଶାନ କ୍ଷେପଣୀ ଗୋ ଭରହରଷ ଗୀତ ଗାଇ ।୧୩
କଣ୍ଠେ ମୁଣ୍ଡମାଳ ଗୋ ମନ୍ଦାର କୁସୁମେଣ ପୂଜା
ବିହଡ ଦାଢ଼ ବକ୍ରନୟନୀ ଗୋ ଅଭୟା ଶଇଳଜା ।୧୪
ରକ୍ତବସ୍ତ୍ର ପରିଧାପନୀ ଗୋ ପାଦକେ ଗଗନ କ୍ଷେପି
ଅଭୟେ ହିଙ୍ଗୁଳା ମାଗୋ ପ୍ରସନ୍ନେ କାମରୂପୀ ।୧୫
ମର୍ଦ୍ଦଳ ତାଳ କଂସାଳ କମ କଢ଼ା କାହାଳୀ ବାଦ୍ୟେ
ଚଞ୍ଚପୁଟ ଚାଞ୍ଚପୁଟ ଉଦଘଟିତ ମଦିରା ରସ ଖାଦ୍ୟେ ।୧୬
ରୁଧିର ବିଲେପନୀ ମାଗୋ ପୋଡ଼ା ମାଂସେସ ଭୋଜି
ଶ୍ରୋଣେହା ପିଚାଶୁଣୀ ଗୋ ପ୍ରେତ ଭୂତ ତୁଲେ ମଜ୍ଜି ।୧୭
ଲହ ଲହ ରସନା ରଟମଟ ଦଶନର ଅସ୍ଥିଖଣ୍ଡ
ସ୍ୱର୍ଗ ମଂଚ ବେନି ଭୁବନ ଘୋଟଇ ଯାହାର ତୁଣ୍ଡ ।୧୮
ସୁରବର ସୁନ୍ଦରୀ ଗୋ ମଧୁ ପିଙ୍ଗଳାକ୍ଷୀ
ହୁଂକାର ଶବଦେଣ ଯେ ଗର୍ଜନ୍ତି ଘୋର ରାଖୀ ।୧୯
ରେ ରେ କାର ଶବଦେଣ ଗୋ କହ କହ ଭାଷି
ଝମ ଝମ ଝମକ ଗୋ ଝୁମାଣ ପ୍ରକାଶି ।୨୦
ଦଳ ଦଳିତ ମେଦିନୀ ଗୋ ଟଳ ଟଳିତ ଅଚଳା
ମତ୍ତାରଙ୍ଗ ନାଟେ ସେ ଖେଳଇ ମେଖଳା ମହାଖଳା ।୨୧
ସରୂପ ସିଦ୍ଧାଙ୍ଗୀ ଗୋ କାମାକ୍ଷୀ ସଉଭାଗୀ
ଶିଷୁମୁନା ବେଦ ସାଧନୀ ଗୋ ସୁରସାଙ୍ଗୀ ମାତାଙ୍ଗୀ ।୨୨
ବିଚିତ୍ର କୁତୂହୋଳେ ଗୋ ଉର୍ଦ୍ଧପାଦ ଗତା
ଧବଳାଙ୍ଗୀ ପାଦୁକା ଅଭିଷେକ କଲା ପିତାମହ ଦେବତା ।୨୩
ଯା ଯା ଧାଆଂ ଧାଆଂ ଧର ଧର ବୋଲି ଡାକି
ମାର ମାର ଭକ୍ଷ ଭକ୍ଷ ବୋଲି ଉଚ୍ଛଳନ୍ତି ଉଚବାକି ।୨୪
ଶଂକର ଅର୍ଦ୍ଧାଙ୍ଗୀ ଗୋ ଶୁଭାଙ୍ଗୀ ଶୁଦ୍ଧମୁଦ୍ରା
ବିପୁଳ ପୁଲକ ବୃନ୍ଦାରିକା ଗୋ କାମାକ୍ଷୀ ମନ୍ତ୍ର ମୁଦ୍ରା ।୨୫
ଭବାନୀ ଭଇରୋବୀ ଗୋ ଭୟଂକରୀ ଘୋରରୂପା
ଚାମୁଣ୍ଡା ଚଣ୍ଡମୁଣ୍ଡ ଚଣ୍ଡଘଣ୍ଟ ମହାତପା ।୨୬
ପଚିଶ ଶକତି ମାଗୋ କୃପାଣ ଗଦା ମୁଦୁଗର
ଛେଳ ଚକ୍ର ଗୁରୁଜ କୋନ୍ତ ବିଜେ କର୍ଣ୍ଣକଟାର ।୨୭
ଅକ୍ଷୟେ ତୃଣ କଷଣୀ କୋଦଣ୍ଡ ପିନାକୀ
କ୍ଷଣକେ ତ୍ରଇଲୋକ୍ୟ ମୋହିନୀ ଗୋ କ୍ଷଣକେ ସର୍ବବ୍ୟାପୀ ।୨୮
ରଣରଙ୍ଗ କୁତୂହୋଳେ ଗୋ ବକ୍ଷେଣ ମୁଣ୍ଡମାଳୀ
ରୋଧିର ସ୍ରାହାନୀ ମାଗୋ ଶବଦ କିଳି କିଳି ।୨୯
କମଳା ଚଞ୍ଚଳା ଗୋ ଡାକିନୀ ଡାକେଶ୍ୱରୀ
ଭଗତ ଜନ ମଙ୍ଗଳୀ ଗୋ ଦୁଷ୍କୃତ ଅପହରି ।୩୦
ମାଳତୀ ମାନିନୀ ମାଗୋ ମାଳିନୀ ମାୟା କୁଣ୍ଡଳୀ
ମହା ନିଶାୟେ ଭ୍ରମଣି ଗୋ ବହୁତ ହୁଳହୁଳି ।୩୧
ଅଭୟେ ବରଦାୟିନୀ ଗୋ ଶ୍ରୀ ସର୍ବମଙ୍ଗଳେ
ଶରଣ ଉଦ୍ଧାରିଣୀ ମାଗୋ ତାରିଣୀ ସର୍ବକାଳେ ।୩୨
ନମୋ ଭୁବନେଶ୍ୱରୀ ଗୋ ଯେକାକ୍ଷର ମନ୍ତ୍ରେ ମାତ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଗୋ ତୋହୋର ଗର୍ଭରୁ ସମ୍ଭୂତ ।୩୩
ପୃଥୀର ଭାରା ତୁ ଯେ ଖେଚରୀ ରୂପେ ଧଇଲୁ
ମହାଖଳା ଦେଖାଇ ତୁ ଅସୁରନ୍ତ ମାଇଲୁ ।୩୪
ପରମ ସାଧବୀ ତୋତେ ସର୍ବଦା ଉଚ୍ଛବେ ପୂଜା
ଭଗତି ଭାବ ଘେନି ଗୋ ଭଜିଲୁ ଦେବରାଜା ।୩୫
ମଙ୍ଗଳେ ସର୍ବମଙ୍ଗଳେ ଗୋ ସର୍ବକାର୍ଯ୍ୟ କରୁ ସିଦ୍ଧି
ମଙ୍ଗଳ ସର୍ବେଶ୍ୱରୀ ଗୋ ଭବାନୀ ଭାତରୁଦ୍ଧି ।୩୬
ପ୍ରସନ୍ନେ ଯୋଗେଶ୍ୱରୀ ଗୋ କଳିକାଳ ଦର୍ପ ଧ୍ୱଂସି
ଲୋକିତ ଲୋକେଶ୍ୱରୀ ଗୋ ହିମଗିରି ବାସୀ ।୩୭
ମଙ୍ଗଳ ପରମ ବ୍ରହ୍ମ ସ୍ୱରୂପା ଗୋ ସୟଳ ଜନ ଚିନ୍ତା
ଦୁଖୀଜନ ଉଦ୍ଧାରିଣୀ ସମସ୍ତ ସୁଖଦାତା ।୩୮
ସଦା ସମ୍ପଦ ଦାୟିନୀ ଗୋ ସର୍ବମଙ୍ଗଳେ
ଚଣ୍ଡୀକାର ସ୍ତୋତ୍ର ମୁଂ ଭାବଇ ବକ୍ଷଥଳେ ।୩୯
ଅପର୍ଣ୍ଣା ଅନ୍ନପୂର୍ଣ୍ଣା ମାଗୋ ଅଟୁ ଜଗତଧାତ୍ରୀ
କାଳାନ୍ତକୀ କୃତାନ୍ତକା କାଳିକା କାଳରାତ୍ରି ।୪୦
ଟହ ଟହ ହାସିନୀ ଗୋ ପ୍ରସନ୍ନ ଚନ୍ଦ୍ରମୁଖୀ

ଦୁଷ୍କୃତ ମେଣ୍ଟଣୀ କାନ୍ତାନୀ ଗୋ ଅଟୁ ସର୍ବସାକ୍ଷୀ ।୪୧
ଅନୀତି ସଂସାର ଯେ ଲୋଭ ମୋହ ମହାଗରୁ
ଧନହାନି କ୍ରୋଧଚିନ୍ତା ମାଗୋ ସର୍ବମଙ୍ଗଳା ପାରିକରୁ ।୪୨
ଇତିଶ୍ରୀ ମହାଭାରଥେ କାଳିକା ପୁରାଣ ମତେ
ମୁହିଂ ଯେହା ବଖାଣିଲି ସଂସାର ଜନ ହିତେ ।୪୩
ସଦା ଭଗତି ମୋହୋର ଭ୍ରଥଖଣ୍ଡ ମଣ୍ଡଳେ
ମାନବରୂପେ ଜନ୍ମ ବଢ଼ିଲି ସର୍ବମେଳେ ।୪୪
କିନ୍ତୁ ପ୍ରସନ୍ନ ମୋତେ ହୋଇଲେ ସର୍ବମଙ୍ଗଳା ଅଭୟା
ଜଙ୍ଘେରପୁର ବାସିନୀ ଗୋ କ୍ଷମାକର ବିଜୟା ।୪୫
ପରଲୋକେ ସୋଦର ଗୋ ଇହଲୋକେ ବରଦାତ୍ରୀ
ଇହଲୋକ ପରଲୋକକଇଂ ତୁହି ସେ ସର୍ବ ସ୍ଥିତି ।୪୬
ଶ୍ରୀ ଚଣ୍ଡୀ ସାରୋଳା ଦେବୀ ଚରଣେ ବିନୟେ
ଶୂଦ୍ରମୁନି ସାରୋଳା ଦାସ ଭଗତି ଯେକଲୟେ ।୪୭

**

## ୪୨. ଅର୍ଜୁନଙ୍କର ରଣସ୍ତମ୍ଭ ରାଜ୍ୟରେ ବୀରବର ରାଜା ସହିତ ଯୁଦ୍ଧ, ହିଙ୍ଗୁଳା ସ୍ତୁତି ଓ ହିଙ୍ଗୁଳାଙ୍କ ଠାରୁ ବରପ୍ରାପ୍ତି, କେଦାରେଶ୍ୱର ଦର୍ଶନ

ଚଳଇ ଧନୁର୍ଜୟେ ଶୁଦ୍ରପାଦ ଗଙ୍ଗାତୀରେ
ପ୍ରବେଶ ଅର୍ଜୁନ ଯାଇଂ ରଣସ୍ତମ୍ଭ ରାଜ୍ୟରେ ।୧
ବୀରତୂର ଶବଦ ବଜାଇ ଫାଲଗୁନି
ରଣସ୍ତମ୍ଭ ଗଡ଼େ ଯାଇଂ ପ୍ରବେଶ ରୟଣୀ ।୨
ସେ ରାଜ୍ୟର ରାଜା ବୀରବର ଚକ୍ରବ୍ରତୀ
ବଡ଼ାଇ ପ୍ରତାପୀ ସେ ଉତ୍ତର କୋଶଳେ ମହାଛତ୍ରୀ ।୩
ସେ ଗଡ଼ ଭିତରେ ଯେ ବିଜୟେ ହିଙ୍ଗୁଳା
ଯୋଗ୍ମୀ ମାତାଙ୍ଗୀ ସେ ପ୍ରସନ୍ନେ ମହାଖଳା ।୪
ମନୁଷ୍ୟ ଅବତାରେ ବିଜୟେ ଜଗନମାତା
ତାହାର ପ୍ରସାଦକେ ରାଜ୍ୟକଇଂ ନାହିଂନା ଲଂଘନ୍ତା ।୫
ଅଗ୍ନିଜ୍ୱାଳା କାଳାନଳ ମୂରି ସେ ଅଭୟେ ପିଙ୍ଗଳାକ୍ଷୀ
କଉଣପ ବଳ ଧଂସିନୀ ସେ ଅଟଇ ବିରୂପାକ୍ଷୀ ।୬
ଅର୍ଜୁନ ବିଜୟେ କଲେ ସେ ରଣଘୋଟ ପର୍ବତେ
ବହଇ କଉଶିକ ନଦୀ ସେ ପର୍ବତ ହେମବନ୍ତେ ।୭
ଧନୁମାସ କୃଷ୍ଣପକ୍ଷ ଷଷ୍ଠୀ ଶଉରୀବାର
ପୂର୍ବା ଫାଲଗୁନି ନକ୍ଷତ୍ର ଭୋଗ୍ୟ ସେ ଦିନର ।୮
ବାଣିଜ୍ୟ ନାମେ କରଣ ପ୍ରୀତିନାମେ ଯୋଗ
ଧନୁ ସଂକରାନ୍ତିରୁ ପାଞ୍ଚଦିନ ହେଲା ଭୋଗ ।୯
ପଚ୍ଛିମ ଦିଗରେ ଯୋଗ ଥିଲା ସୁବିଧାନେ
ସକଳ ଶୁଭ ମାହେନ୍ଦ୍ର ବେଳ ବିଦ୍ୟମାନେ ।୧୦
ଅମୃତ ଯୋଗ କରଣ ମାହେନ୍ଦ୍ରକୁ ଘେନି
କଉଶିକୀ ଗଙ୍ଗାକୂଳେ ବିଜୟେ ଫାଲଗୁନି ।୧୧
ସେ ନଦୀକି ରକ୍ଷା କରନ୍ତି ଯୋଦ୍ଧା ପାଞ୍ଚଲକ୍ଷ
ଅର୍ଜୁନକୁ ଓଗାଳିଲେ ଯାଇଂ ସମରେ ପ୍ରତିକକ୍ଷ ।୧୨
ଆହୋ କେବଣ ଦେଶର ରାଜା ଚଳାଉ ପରଥାଠ
ଯେ ହାଦେ ମହାତୀର୍ଥ କ୍ଷେତ୍ରରେ ଅଟେ ମହାଶ୍ରେଷ୍ଠ ।୧୩
ବିଜୟେ କାନ୍ତାନୀ ମାୟେ ପ୍ରତକ୍ଷେ ହେଙ୍ଗୁଳା
ଜନ୍ମାନ୍ତର ଦରିଦ୍ର ଫିଟଇ ଯେ ଦେଖେ ଯେକବେଳା ।୧୪
ଜ୍ୱାଳା ମାହେଶ୍ୱରୀ ଦେବୀ; ରାଜାକଇଂ କରଇ ରକ୍ଷା
ଅଭୟା ହିଙ୍ଗୁଳା ତାର ପୂରାଇ ମନବାଞ୍ଛା ।୧୫
ତେଣୁକରି ଯେଥକୁ ନ ଆସନ୍ତି ଦଇତ ପିଚାଶାଦିମାନେ
ଶୁଭଲଗ୍ନ ବେଳରେ ସେ ମାହାନ୍ଦ୍ର ସୁବିଧାନେ ।୧୬
ରହନ୍ତି ଯେ ଆଡ଼େ ହୋଇ ଭୟେକରି ମନେ
ଆମ୍ଭ ଯୋଗୁଂ ନ ପଶନ୍ତି ଯେ ଜଳ ଉଦ୍ୟାନେ ।୧୭
ଅତିଅନ୍ତ ସୁନ୍ଦର ଗର୍ବେଶ୍ୱର ଅଟୁ ତୁ କେବଣ ଦେଶର ରାଜା
ପରମାଦକଇଂ ନ ପଶ ତୁ ବାହୁଡ଼ି ଯେଥୁଂ ବେଗେ ଯା ଯା ।୧୮
ଯଦ୍ୟପି ଆସିବେ ଯେଥକଇଂ ଦେବଗଣ ଗନ୍ଧର୍ବେ
କେହି ଯେଥି ସ୍ନାହାନ କରି ନୁଆରନ୍ତି ଆମ୍ଭର ଅଭାବେ ।୧୯
ଅର୍ଜୁନ ବୋଇଲେ ହୋ ଆମ୍ଭର ମହାଯାଗେ
ରାଜାମାନନ୍ତ ନିମନ୍ତ୍ରଣ କରୁ ଆମ୍ଭେ ବେଗେ ବେଗେ ।୨୦
ଉତ୍ତର ଦିଗେ ଛନ୍ତି ହୋ ଯେତେକ ନୃପତି
ସମସ୍ତ ରାଜାୟେ ଦଣ୍ଡ ଘେନିଣ ଯାଉଛନ୍ତି ।୨୧
ରାଜାର ଅଗ୍ରତେ ତୁମ୍ଭେ ବାରତା କହ ଯାଇ ବେଗେ
ସମଦଣ୍ଡ ଘେନି ନୃପତି ଆସୁ ଆମ୍ଭର ଆଗେ ।୨୨
ଅର୍ଜୁନ ବଚନ ଶୁଣି ସେ କଲେକ ଉପହାସି
ଜୀବନ ଘେନିଣ ତୁ ଯେଥୁ ବାହୁଡ଼ି ଯାଅସି ।୨୩
ମହା ମହା ରାଜାୟେ ଆସିତ ନୁଆରନ୍ତି ଯେଥକୁ ଦଣ୍ଡ ଘେନି
ଯେ ନଦୀ ପାରହୋଇ ନୁଆରନ୍ତି ନାଶଯାନ୍ତି ସମସ୍ତ ସଇନି ।୨୪
ଆଗିଆଣି ଥାଠେ ଅର୍ଜୁନର ଜୟେ ବିଜୟେ ବେନିବୀରେ
ଗୋଳକଲେ ପଶି ଯାଇ ସେ ରାଜାର ଥାଠରେ ।୨୫

କିଳିକିଳା ନାଦ ଦେଇ ପଡ଼ିଲେ ବେଗେ ଯହୁଁ ମାଡି
ଅର୍ଜ୍ଜୁନର ସଇନିମାନେ ବିନ୍ଧିଲେ ଉପ୍ରୋଧମାନ ଛାଡି ।୧୨୬
ପାଞ୍ଚଲକ୍ଷ ଯୋଦ୍ଧା ଯେ ବୀରବର ରାଜାର ଥିଲେ
ଲୋହସାର ଧନୁରେ ନାରାଜ ପୂରୋଇ ଅର୍ଜ୍ଜୁନ ସଇନିକି
ବିନ୍ଧିଲେ ।୧୨୭
ବାସବିର ସଇନି ଯେ ପ୍ରତଗ୍ୟାଂ ସାମରଥା
ପରରାଷ୍ଟ ଜିଣନ୍ତା ସେ ଶକତା ବଳବନ୍ତା ।୧୨୮
ପୂରୋଇ ନାରାଜ ଯେ ବିନ୍ଧିଲେ ଆକ୍ରେଷି
ଯମନିକ ସନ୍ୟବଳ ଉପରେ ନାରାଜ ବରଷି ।୧୨୯
ପଂକେଣ ଯେସନେକ ବସଇ ଯାଇଁ କୀଳା
ପଡ଼ିଲେ ତୀକ୍ଷମୁନା କୋନ୍ତ ଯାଠି ନାରାଜ ଅନର୍ଗଳା ।୧୩୦
ଅଶ୍ୱ ଯୋଦ୍ଧାଂକର ଉପରେ ଯାଇଁ ପଡ଼ି ଅଭେଦ ସେହ୍ନା ଫୁଟି
ଆହୋ ଗଜ ଯୋଦ୍ଧାମାନେ ଫୁଟି ରୁଧିର ବହିଲା ବୃଷ୍ଟି ।୧୩୧
ନଦୀର ଭିତରେ ଛନ୍ତି ବୀରବର ରାଜାର ସନ୍ୟମାନେ
ଉପରେ ଥାଇଁ ବିନ୍ଧନ୍ତି ଅର୍ଜ୍ଜୁନର ସଇନ୍ୟେ ।୧୩୨
ରାଜାର ସଇନି ଉପରେ ସମସ୍ତ ଶର ଫୁଟି
ଘାୟେଣ ନିଦ୍ରାଘ ବଳ ପଡ଼ିଲେ ସର୍ବେ ମହୀଲୋଟି ।୧୩୨
ରକତେ କର୍ଦ୍ଦମମୟେ ହୋଇଲା ସବୁଙ୍କରି କାୟେ
କଉଶିକ ନଦୀରେ ପଡ଼ି ବହଇ ଶ୍ରୋଣିତ ମୟେ ।୧୩୩
ଆପଣେ ଚାବଶର ଧରି ବିନ୍ଧଇ ଫାଲ୍‌ଗୁନି
ବେନି ବଳ ସନ୍ୟ ସମରେ ହୋଇଲେ ଅନ୍ୟୋଅନ୍ୟି ।୧୩୪
ଆହୋ ପାଣ୍ଡବ ବଳ ଅଟନ୍ତି ଯେ ନାରାୟଣ ଭଗତା
ସଂଗ୍ରାମେ ପଶନ୍ତେ ବିଷ୍ଣୁ ନାମ କରନ୍ତି ବକତା ।୧୩୫
ନାରାୟଣ ନାମ ଯେ ଅଟଇ ଘଟରକ୍ଷି
ଅସୁର ବଳ ସାହେର ଯେ କୃଷ୍ଣ ଘଟଶିକ୍ଷି ।୧୩୬
ଯେତେକ ନାରାଜ ହୋ ଅର୍ଜ୍ଜୁନ ଥାଠେ ପଡ଼ି
ସମସ୍ତ ଶହସ୍ରମାନେ ପଡୁଛନ୍ତି ହାବୋଡ଼ି ।୧୩୭
ଅର୍ଜ୍ଜୁନର ସଇନି ଯେତେକ ଆକ୍ରେଷି ଶର ବିନ୍ଧି
ଶହସ୍ର ଗୋଟିକେ ରାଉତ ଗୋଟିଏ ଶିରଛେଦି ।୧୩୮
ପଡ଼ିଲେ ସଂଗ୍ରାମେ ବୀରବର ରାଜାର ସଇନି
ପାଞ୍ଚଲକ୍ଷ ଚଉବିଂଶ ସେନା ଯୋଦ୍ଧା କେହି ନ ଗଲେ
ପ୍ରାଣ ଘେନି ।୧୩୯
କଉଶିକ ନଦୀରେ ଯାଇଁ ପଶିଲେ ସର୍ବସାଚୀ
କରନ୍ତି ସ୍ନାହାନ ଯେ ପୁର୍ଣ୍ୟତୋୟା ତୀର୍ଥେ ପଶି ।୧୪୦
ଦେବ ତର୍ପଣ ପିତୃ ତର୍ପଣ ପିଣ୍ଡ ପରଦାନେ
ଇଚ୍ଛାୟେ ପାଣ୍ଡବ ବଳ ରହିଲେ ସେ ସ୍ଥାନେ ।୪୧
ବାଲି ମାଡ଼ି ଶାଢ଼ୀଘର କରି ରହିଲେ ସଇନି
ରଣସ୍ତମ୍ଭ ଉତର ଗଡ଼ ଅଛି ତହିଁକି କ୍ରୁଣ ତିନି ।୪୨
ଆସ୍ତାନେଣ ବିଜେ କରିଛନ୍ତି ବୀରବର ଚକ୍ରବ୍ରତୀ
ଛାମୁରେ ଉଭାରି ଅଛନ୍ତି ତିନି ଲକ୍ଷ ପାଦାନ୍ତି ।୪୩
ପୁର୍ଣ୍ୟତୋୟା ନଦୀରେ ପାଞ୍ଚଲକ୍ଷ ଯୋଦ୍ଧା ପଡ଼ିଲେ
ଚଉବିଂଶ ଜଣ ମାତ୍ର ତହୁଂ ଉବୁରି ପଳାଇଲେ ।୪୪
ପଞ୍ଜରାମାନଙ୍କରେ ଅଛଇ ଶର ଫୁଟି
ଶରୀର ଯାକ ତାଙ୍କ ଶ୍ରୋଣିତମୟେ ବୃଷ୍ଟି ।୪୫
ଜୀବନ ଘେନି ତହୁଁ ପଳାଇଲେ ବେଗେ
ଯାଇଂଣ ଜଣାଇଲେ ବୀରବର ଚକ୍ରବ୍ରତୀର ଆଗେ ।୪୬
ସ୍ୱାମୀ ମହେଶ୍ୱର ଦେବ ତୁମ୍ଭେ ଅବସ୍ଥା ଆମ୍ଭର ଦେଖ
ପଡ଼ିଲେ ପାଞ୍ଚଲକ୍ଷ ଯୋଦ୍ଧା ସ୍ୱାମୀ ରାଜ୍ୟ ତୋହୋର ରଖ ।୪୭
ଅଦଭୂତେ ଯୋଦ୍ଧାୟେକ ଅଇଲେ ଦେବ କାହୁଂ
ମାଇଲା ସମସ୍ତ ଯୋଦ୍ଧା ବାରତା କହୁଂ କହୁଂ ।୪୮
ସ୍ୱାମୀ ବିଚାରିଣ ଆଗ୍ୟାଂ ଦେବା ବୀରବର ରାମରାୟ ବଳା
ପଡ଼ିଲା ଅପଚୟ ଦେବ ଗଡ଼ ଛାଡି ବେଗେ ପଳା ।୪୯
ମହା ସାଂଗ୍ରାମେ ରଣଜିତା ସେ ଅଟନ୍ତି ଧନୁର୍ଦ୍ଧର
ଅଜୟ ଗଡ଼ ଭିତରୁ ଦେବ ନୁହସି ବାହାର ।୫୦
ଚାରଗଣଂକ ମୁଖୁଂ ରାୟେ ଯେସନ ବାରତା ପାଇ
ରାଗେଣ ଉଠିଲା ରାଜା ବେନି ନୟନ ବୁଲାଇ ।୫୧
ସାଜରେ ସାଜରେ ବୋଲି ଦିଲାକ ଘୋର ହାକ
ଜଗତୀ ଉପରେ ଉଠି ପିଟାଇଲା ଟମକ ।୫୨
ଆହୋ ବିଜିଘୋଷ ବାଜଣା ସଜାଉ ବୀରତୂର ବାଣୀ
ଧାଇଂଲେ ମଭାର ବଳେ ଯେ ଯାହାର ବାହାନନ୍ତ ଚଢ଼ି
ପଳାଣି ।୫୩
ଭେରୀ କାହାଳୀ ଯେ ଉର୍ଦ୍ଧ୍ୱବାଦ୍ୟ ବାଣୀ
ପାରିଦଣ୍ଡମାନ ଧାଇଂଲେ ସଜାଉ ଶବଦ ଶୁଣି ।୫୪
ଗଡଦ୍ୱାରେ ଆସି ସବୁ ଉଭାରିଲେ ରାଉତେ
ଅଶ୍ୱନ୍ତ ଖୁରିସାଣି କରି ବୁଲାବନ୍ତି ଲାଂକିଆ ଯେ କୁନ୍ତେ ।୫୫
ବିନ୍ଧନ୍ତି ବଜ୍ରବାଣ ନିର୍ଘାତ ବଜ୍ରସୂଚୀ
ପୁର୍ଣ୍ୟତୋୟା ନଦୀତୀରେ ଥାଇ ତାହା ଶୁଣିଲେ ସର୍ବସାଚୀ ।୫୬
ମୁଣୋହି ସାରିଣ ନାବେ ବିଜୟେ ଫାଲଗୁନି
ନାବରେ ପାରି ହୋଇଲେ ପାଣ୍ଡବ ବଳ ସଇନି ।୫୭

ରଣସ୍ତମ୍ଭ ରାଜ୍ୟଲୋକେ ପର ଥାଠ ବାରଚା ପାଇ
ଅନେକ ଦେଶର ରାଜାମାନେ ଦଣ୍ଡ ଘେନିଣ ଆସୁଛନ୍ତି ବାହି ।୫୮
ପ୍ରବେଶ ହୋଉଛନ୍ତି ରଣସ୍ତମ୍ଭ ଗଡ଼ରେ
ମହା ମହା ଯୋଦ୍ଧାୟେ ଆସି ମିଳିଲେ ବହୁତ ସମ୍ଭରେ ।୫୯
ବାଜଇ ବୀରତୂର ଟମକ ନିଶାଣ ଦାଉଣ୍ଡି
ବିଛରନ୍ତି କଣୟ ଯେ ମୁକୁତା ଚୂରି ଗୁଣ୍ଡି ।୬୦
ରହିଛନ୍ତି ସମଦଣ୍ଡ ମହାସମ୍ଭର କରି
ଅର୍ଜ୍ଜୁନର ସଇନି ପୁଣ୍ୟତୋୟା ନଦୀ ହୋଇଲେକ ପାରି ।୬୧
ବାହଇ ତୁରଙ୍ଗମ ଯେ ମାତଳି ସାରଥି
ଶଙ୍ଖ ଗୋକ୍ଷୀର କାମପାଳ ଶ୍ୱେତ ଚାରିଅଶ୍ୱେ ଉଡନ୍ତି
ଗଗନଗତି ।୬୨
ନେତର ଆଲମ୍ବ ଉଡନ୍ତି ଫରହରେ ରଥର ଉପରେ
ହୀରାମଣି ମାଣିକ୍ୟ ଝଲକନ୍ତି ଯେହ୍ନେ ବିଜୟେ କରତାରେ ।୬୩
ଆହୋ ସିଂହଦ୍ୱାର ଉପରେ ନବତାଳ ଉଚ୍ଛର୍ଗ ଜଗତୀ
ପାତ୍ର ଅମନାତ୍ୟ ଘେନି ବିଜେ କରିଅଛି ତହିଁ ବୀରବର
ଚକ୍ରବ୍ରତୀ ।୬୪
ଅଦଭୂତେ ରଥେକ ଯେ ଦେଖିଲେ ଆକାଶେ
ବିଚାରଇ ଇନ୍ଦ୍ର ଦେବତା ସିନା ଚଳଇ ଶୂନ୍ୟବାସେ ।୬୫
ମନ୍ତ୍ରୀବର ବୋଇଲା ହୋ ସେ ନୁହଂଇ ସୁରନାଥ
ମଘବା ହୋଇଥିଲେ ଥାଆନ୍ତାନା ହାଥୀ ଅଇରାବ୍ରତ ।୬୬
କେ ବୋଲଇ ଅଳକାର ନାଥ କୁବେର ଦେବତା ଅବା
କେ ବୋଲଇ ଅଶ୍ୱିନୀକୁମାର ଅବା ମହାଦେବା ।୬୭
ଆନ କାହାର ରଥ କି ଚଳଇ ଅନ୍ତରୀକ୍ଷେ
ଧାତୁବାଦ୍ୟ ପୁରୁଷ କି ପିତାମହ ଚତୁର୍ମୁଖେ ।୬୮
ଆହୋ ଯେସନେକେ ବିଚାରନ୍ତେ ପାତ୍ର ଅମନାତ୍ୟ
ସନ୍ନିଧ୍ୟେ ପ୍ରବେଶ ହୋଇଲା ବାସବିର ରଥ ।୬୯
ଆହୋ ଗଡ଼ର ଚାରିକତିରେ ବେଢ଼ିଛି ପାଚେରୀ
ତିନିକୋଶ ବହଳ ସେ ଉସର୍ଗ କୋଶ ଚାରି ।୭୦
ସେ ପାଚେରୀ ଉପରେ ଅଶ୍ୱନ୍ତ ଚଢ଼ିଣ ମହାଯୋଧୀ
ବୁଲାବନ୍ତି ଅସିବର ଆକ୍ଷେପିଣ ବିନ୍ଧି ।୭୧
ମେଢ଼ ମଣ୍ଡପ ଦେଉଳ ଅଟ୍ଟାଳୀ ଜଗତୀ
ପାଚେରୀ ବୃକ୍ଷ ଉପରେ ଉଠି ଲୋକେ ଅନାବନ୍ତି ।୭୨
ଆହୋ ଅର୍ଜ୍ଜୁନ ସଇନି ଯେଣେ ପଲାଣିତ ଥାଠ
ପଶିଲେ କଟକେ ଯାଇଂ ଗଡ଼ର ନିକଟ ।୭୩
ଆହୋ ନ ଧରନ୍ତି ନ ମାରନ୍ତି ନ କରନ୍ତି ଉଜାଡ଼ି
ଯେ ଯାହାର ଠାବରେ ଥାଅ ବୋଲି ପାଥ ଆଗ୍ୟାଂ ଅବଧାରି ।୭୪
ଦେଖନ୍ତି ନଗ୍ରଲୋକେ ମହା ଅପୂର୍ବ ପରାୟେ
ଆକାଶେ ଉସବ ଯେହ୍ନେ ବିଜୟେ ଦେବରାୟେ ।୭୫
ଆହୋ ନାରାୟଣ ବିଜେ କରିଛନ୍ତି ଯେବଣ ଥାଠରେ
ତ୍ରଇଲୋକ୍ୟ ମୋହନ୍ତି ଯେ ଜଗତ ସୁନ୍ଦରେ ।୭୬
ଯେସନେକ ସମ୍ପଦ ସେ ରଣସ୍ତମ୍ଭ ଗଡ଼ ଦେଶେ
ସଇନି ହାବୋଡ଼ିଲେ ଯାଇଂ ଗଡ଼ର ପୂର୍ବଦ୍ୱାର ପାଶେ ।୭୭
ଆହୋ କୋଶେକ ଓସାର ଯେ ବେନିକୋଶ ଗଭୀର
ଗଡ଼ ବେଢ଼ିଣ ଖଣା ନବଯୋଜନ ବିସ୍ତାର ।୭୮
ଆହୋ ଅର୍ଜ୍ଜୁନର ରଥ ଯେ ଗଲାକ ଅନ୍ତରୀକ୍ଷେ
ବାହାର ଗଡ଼ ଜଗତୀରେ ବିଜେ ବାସବର ବକ୍ଷେ ।୭୯
ଆହୋ ସଇନିକି ଆଗ୍ୟାଂ ଦିଲା ବୀରବର ଚକ୍ରବ୍ରତୀ
ବାହାର ଗଡ଼ ପାଚେରୀ ଛାଡିଆସ ହୋ ସର୍ବଛତ୍ରୀ ।୮୦
ଆହେ ଜାଣିମାନା କେବଣ ଦେଶର ସେ ଥାଠ
କାହୁଂ ଅଇଲା ସେ କେବଣ ଦେଶର ପରରାଷ୍ଟ୍ର ।୮୧
ବାହାର ଗଡ଼ ପାଚେରୀ ଯେ ଆବୋରିଥିଲେ ବୀରେ
ଛାଡିଲେ ଗଡ଼ଖଣା ପଶିଲେ ଭିତରେ ।୮୨
ଯେମନ୍ତେ ଖାଇ ଖଣା ତିନିପୁର ପାଚେରୀ
କୋଶେକ ବହଳ ଯେ ଉଚ୍ଛର୍ଗ କୋଶ ଚାରି ।୮୩
ତହିଁର ତଳରେ ସେ ଖଣାଯେକ ବିସ୍ତାର
ମହାନଦୀ ସମାନେ ଗଭୀର ତାଳ ଯେ ପନ୍ଦର ।୮୪
ରହିଲେ ସମଦଣ୍ଡ ଦୁଜଗଡ ଆବୋରି
ଅର୍ଜ୍ଜୁନ ସନ୍ୟ ଉଠିଲେ ବାହାନାଦ କରି ।୮୫
ବାହାର ଗଡ଼ଖଣା ଯେ ବିସ୍ତାର କୋଶ ତିନି
ପାଦଗତି ଡେଇଂଲେ ରାଉତେ ବାହନନ୍ତ ଘେନି ।୮୬
ବାହାର ଗଡ଼ ପାଚେରୀରେ ବିଜୟେ ସର୍ବସାଚୀ
ଚାରଗଣ ମୁଖେ ଯାଇଂ କହଇ ସେ ବାଚି ।୮୭
ଅର୍ଜ୍ଜୁନେ ବୋଇଲେ ଆପଣା ପ୍ରୋହିତଂକୁ ହକାରି
ତୁମ୍ଭେ ଯାଅ ଯେ ପୁଷ୍ପେକ ବିବାନ ଚଢ଼ିକରି ।୮୮
ବୀରବର ରାଜାକଇଂ ତିଆରି ଅନେକ ମତେ
ଆମ୍ଭେ ଆସିଅଛୁଂ ରାଜୁସି ଯାଗର ନିମନ୍ତଣ ନିମନ୍ତେ ।୮୯
ଆହୋ ତାହାର ଆମ୍ଭର ତ ବିବାଦ ନାହିଁ ପୂର୍ବେ
ଆମ୍ଭର ତୁଳେ ଆସି ପ୍ରୀତି ହୋଉ ଯେବେ ।୯୦

ଆମ୍ଭେ ଯେ ଅନେକ ଦୁର୍ଗମୁଂ ଅଇଲୁ ଅନେକ ଦୂରୁଂ
ହିଙ୍ଗୁଳା ଦ୍ରଶନ କରିବୁ ଆମ୍ଭେ ଆମ୍ଭନ୍ତ ନିରୋଧ ନ କରୁ ।୯୧
ଅର୍ଜୁନର ବଚନେ ଚଳିଲେ ସୁରେଶ୍ୱର ପ୍ରୋହିତେ
ଆପଣେ ବସିଲେ ଯାଇଂ ମାତଳି ପୁଷ୍ପକ ରଥେ ।୯୨
ଚଳିଲେ ଆକାଶରେ ସେ ରଣସ୍ତମ୍ଭ ଗଡ଼େ
ପ୍ରବେଶ ହୋଇଲେ ଯାଇଂ ବୀରବର ଆସ୍ତାନ ନିଆଡ଼େ ।୯୩
ରାଜାର ଛାମୁରେ ଯାଇଂ ପ୍ରବେଶ ଦ୍ୱିଜବର
କଲ୍ୟାଣ ବାଞ୍ଛା କରନ୍ତି ସେ ପ୍ରୋହିତେ ସୁରେଶ୍ୱର ।୯୪
ଆସ୍ତାନେ ବସିବାକଇଂ ନୃପତି ଆଗ୍ୟାଂ ଯେ ନ ଦିଲେ
କୁଶ ହାଥ ହୋଇଣ ପୁରୋହିତେ ବୋଇଲେ ।୯୫
ଆହୋ ମହାରାଜା ଠାକୁର ଯୁଝେଷ୍ଟି ଦେବସ୍ୱାମୀ
ଅଷ୍ଟାଦଶ ବଂଶିକ ରାଜାଂକରେ ସେ ଉତ୍ତମି ।୯୬
ରାଜସୂୟ ଯଗ୍ୟଂ ହୋଇବ ମହାସଭା
ସମଦଣ୍ଡ ଘେନି ଚାଲ ବହନ ହୋଇ ଯିବା ।୯୭
ପ୍ରୋହିତଂକ ବଚନେ ସେ ଧୂ ମାକ୍ଷ ମହାମନ୍ତ୍ରୀ
ପ୍ରୋହିତଂକୁ ବାରତା ଜଣାଇଲେ ସେ ପଣ୍ଡିତ ମହାବୃତ୍ତି ।୯୮
ଆହୋ ବିଦୁବର ତୁମ୍ଭେ ନ ବୋଲ ଯେମନ୍ତ
ରାଜାଧି ରାଜେଶ୍ୱର ଯେ ଯେ ଉତ୍ତର କୋଶଳେଣ ଯେକ ଛତ୍ର ।୯୯
ଦେଖ ହାଦେ ମହାଦେବୀ ପ୍ରସନ୍ନେ ହିଙ୍ଗୁଳା
ଅକ୍ଷୟେ ଅଭୟେ ଦେବୀ ପ୍ରସନ୍ନେ ମହାଖଳା ।୧୦୦
ଆକାଶେ ଲାଗିଅଛି ଯେଉଂଣ ଦେବୀର ମାଥ
ପାଦୁକା ମନ୍ତ ବାହିନୀ ସେ ଗମନ୍ତ କୋଟିତୀର୍ଥ ।୧୦୧
ଯେ ରଣସ୍ତମ୍ଭ ଗଡ଼ ସେ ଦେବୀର ସଞ୍ଚିଲା
ଆମ୍ଭେ କ୍ଷେତ୍ର ଆଧିପତି ଯେ କ୍ଷେତ୍ର ଅଛୁଂ ରଖିଲା ।୧୦୨
ଯେ ମହାକ୍ଷେତ୍ର ଛାଡି କାହିଂକି ଯିବୁ ଆମ୍ଭେ
ଆବର ରାଜାମାନନ୍ତ ଘେନି ବେଗେ ଚଳିଯାଅ ତୁମ୍ଭେ ।୧୦୩
ପ୍ରୋହିତେ ବୋଇଲେ ଆମ୍ଭେ ଅଇଲୁ ଯେ ଭୁବନେ
ଯେହାକଇଂ ନ ଗଲେ କି ଯାଆନ୍ତି ଆନ ରାଜାଗଣମାନେ ।୧୦୪
ଧୂମ୍ରାକ୍ଷ ମନ୍ତ୍ରୀ କହଇ ରାଜାଂକୁ ପରିମାଣି
ଅର୍ଜୁନ ଛାମୁକୁ ଆମ୍ଭେ ବହନ ଯିବା ସ୍ୱାମୀ ।୧୦୫
ପ୍ରୋହିତଂକ ବଚନେ ସେ ନୃପତି ବୀରବର
କାହାରିହିଂ ବଶ ମୁଂ ଯେ ନୋହଇ ଯେ ଦିଗର ।୧୦୬
ନ ଜାଣଇ କି ରଣସ୍ତମ୍ଭ ଅଜୟେ ଗଡ଼ ବୋଲି
ଯେ ମହୀମଣ୍ଡଳେ କାହାକଇଂ ନ ସାଧିଲି ।୧୦୭
ମୁହିଂ ଆନ ରାଜ୍ୟକୁ ନ ଯାଇଂ କେହୁଣସି ପୁରୁଷେ
ମୋହୋର ଭୁବନକଇଂ କେହି ପଶି ନୁଆରନ୍ତି ତ୍ରିଦଶେ ।୧୦୮
ଆକାଶ ଦିଗବିଜେ ମୁଂ ତୁମ୍ଭନ୍ତ ଦେଖିଲି
ଇନ୍ଦ୍ର ପ୍ରାୟେକ ମଣି ପ୍ରଥମ ଗଡ଼ ଛାଡିଦିଲି ।୧୦୯
କେ ଜାଣଇ ତୁମ୍ଭର ଅର୍ଜୁନ ଯୁଝେଷ୍ଟି
କେ ଜାଣଇ ତୁମ୍ଭର କେଶବ ଧୂର୍ଜଟୀ ।୧୧୦
କେ ଜାଣଇ ତୁମ୍ଭର ବ୍ରହ୍ମା ବଜ୍ରପାଣି
ଯେକମାତ୍ର ଜାଣଇଂ ମୁଂ ହିଙ୍ଗୁଳା ଗୋସାମଣି ।୧୧୧
କେବଣ ଦେବତା ତୋହୋର କିସ କରଇ କାମ
ଇହ ହାଥେ ବର ଦେଇ ହିଙ୍ଗୁଳା ଯାହାର ନାମ ।୧୧୨
ଆହୋ ତପୋଧନ ହୋଇଲେ ମାଡି ପାରଇ ଯେହୁ ତୀର୍ଥ
ବଳାକ୍ରାରେ ପଶିବାକଇଂ କାହାର ଛତ୍ରୀବୃତ୍ତ ।୧୧୩
ତୋହୋର ଯାଗସଭାରେ ମୋହୋର କିସ କାର୍ଯ୍ୟ
ବାହୁଡ଼ି ଜୀବନ ଘେନି ଯାଅ ଯା ପଶ ଆନ ରାଜ୍ୟ ।୧୧୪
ପ୍ରୋହିତେ ବୋଇଲେ ହୋ ତୁ କହିଲୁ ନିନା ଦର୍ପ
ତ୍ରଇଲୋକ୍ୟେ ବିକାଶୁ ଅଛି ଯାହାର ପରତାପ ।୧୧୫
ଖାଣ୍ଡେବ ବନ ଦହନେ ଯେ ବାସବେ ବିବାଦୀ
ଅଗ୍ନି ଦେବତାଂକର ପାରକଲା ଲୁଦୁବୁଦୁ ବ୍ୟାଧି ।୧୧୬
କିରାତ ରୂପେ ବନେ ହରିକଇଂ ଜିଣି
ପାଶୁପତ୍ର ଅକ୍ଷୟ ତ୍ରୋଣ ଦିଲେକ ଶୂଳପାଣି ।୧୧୭
ଦ୍ୱାରିକାୟେ ପଶି ଯେ ହରିଲେ ସୁଭଦ୍ରେ
ବହୁତ ସମର କରି ହାରିଲେ ରାମଚନ୍ଦ୍ରେ ।୧୧୮
ଯେତେବଡ଼ ନଗ୍ର କିଞ୍ଚିତେ ନ କର ତୁ ନାଶ
ଯାହାର ବାହାକୁ ଆଶ୍ରା କରିଛନ୍ତି ତ୍ରିଦଶ ।୧୧୯
ତୋତେ ଅନେକ ଉପ୍ରୋଧ ହିଙ୍ଗୁଳାର ପ୍ରସାଦେ
ସମସ୍ତ ସଇନି ନାଶଯିବେ ତୋହୋର ବିନା ଯୁଦ୍ଧେ ।୧୨୦
ଆହୋ ସମ୍ଭର ରାଜ୍ୟଗୋଟି ତୋହୋର ଅଟଇ ବଡାଇ ସୁସଞ୍ଚ
ବାରସ୍ୱତୀ ଭୁବନ କି ସଞ୍ଚିଲା ଅଛି ମଞ୍ଚ ।୧୨୧
ତୁ ମାହେଶ୍ୱର ସମାନେ ରାଜା ତୋହୋର କିଛି ନାହିଂ ଦୋଷ
ଯେତେ ବଡ଼ ସମ୍ପଦ ରାଜା କିଞ୍ଚିତେ ନ କର ତୁ ନାଶ ।୧୨୨
ଶୁଣିଣ ନୃପତି ଯେ ଗର୍ଜ୍ଜିଣ ଉଠିଲା କୋପକରି
ଯେଥକୁ ଦୋଷ ତୋତେ ବିହିପାରଇନି ତୁ ଯେ ବ୍ରାହ୍ମଣ ଦୂତକାରୀ ।୧୨୩
ଆହୋ ବ୍ରାହ୍ମଣ ତୁ ନ ବୁଝୁ କିମ୍ପେ ନ ପାଉ ଲଜ୍ଜା

ଯେହିକ୍ଷଣି ପ୍ରାଣେ ନାଶଯିବୁଟି ଯେଥୁ ବହନ ହୋଇ ଯାଅଯା ।୧୨୪
ପ୍ରସନ୍ନେ ହିଙ୍ଗୁଳା ଯାହାକଇଂ ହୋଇଛି ନିତ୍ୟେ ସାହା
ଆସୁ ତୋର ଅର୍ଜୁନ ମୁଂ ରଣେ ନ ଲେଖଇ ତାହା ।୧୨୫
ବୀରବର ପ୍ରତଗ୍ୟାଂ କଲାକ ଅପ୍ରମିତେ
ତାହାର ଦୁଷ୍ଟପଣ ଦେଖିଣ ବାହୁଡ଼ିଲେ ପୁରୋହିତେ ।୧୨୬
ଦଣ୍ଡ ସାଜ ବୋଲି ବୋଇଲେ ବୀରବର ଚକ୍ରବ୍ରତୀ
ସାଜିଲେ ଯୋଦ୍ଧାୟେ ସେ ପ୍ରଚଣ୍ଡ ମହାଛତ୍ରୀ ।୧୨୭
ରଥ ଗଜ ନାହିଂ ତାର ଚୋଖାର ଅଶ୍ୱ ପିଠି
ଗଦା ମୁଦ୍‌ଗର ପରିଘ ଛେଲ ଚକ୍ର କୁନ୍ତ ଯାଠି ।୧୨୮
ପ୍ରୋହିତଂକ ପଛକତି ରାଜା ଦଣ୍ଡ ଯେ ପଳାଣି
ଜାବଡେ ଉଠିଲେ ସଇନି କ୍ଷୀରୋଦ୍ର ଲହଡି ଜାଣି ।୧୨୮
ଫରହର ନେତ ଉଡଇ ଶୁକଳ ପତନି
ବୁଲାବନ୍ତି ଛେଲଚକ୍ର ଯେ ଲାଂକିଆ କୁନ୍ତ ଘେନି ।୧୨୯
ପୁରୋହିତ ପ୍ରବେଶ ହୋଇଲେ ଯାଇଂ ଅର୍ଜୁନ ଅଗ୍ରତେ
ପଛକତି ଦଣ୍ଡ ସାଜିଲାର ଯେ ରଥେ ଥାଇଂ ଦେଖିଲେ ବୀରବର
ପାଥେ । ୧୩୦
ଛାମୁରେ କହନ୍ତି ତାର ସୁରେଶ୍ୱର ପ୍ରୋହିତ ଆଚାର୍ଯ୍ୟେ
ବାବୁ ବହୁତ ତିଆରିଲୁଂ ବୀରବର ମହାରାଜେ ।୧୩୧
ଅନେକ ପ୍ରତଗ୍ୟାଂ କଲାକ ସେ ମହାଦୁଷ୍ଟ ରାୟେ
ବୋଇଲା ପ୍ରସନ୍ନେ ହିଙ୍ଗୁଳା ଯାହାକଇଂ ବରଦାୟେ ।୧୩୨
ଦେଖ ହୋ ଦୃଭାର ବଳ ପ୍ରତଗ୍ୟାଂ ମହାବୀରା
ସାଂଗ୍ରାମେ ସଜ ହୋଇ ଆସଇ ଦୁଷ୍ଟ ଯେ ପାମରା ।୧୩୩
ବୋଲଇ ନିହାଇ ନ ଜାଣନ୍ତି ସେ ସୁରବର ପ୍ରତଗ୍ୟାଂ
ମଦବାକ୍ୟେ ଦୁଷ୍ଟେ କଲେକ ଅନେକ ଅବଗ୍ୟାଂ ।୧୩୪
ସମର ନିମନ୍ତେ ସେ ଆସନ୍ତି ଦଣ୍ଡ ଚଢ଼ି
ପୁରୋହିତଂକର କହନ୍ତେ ଆସି ସନ୍ୟ ଉଭାରି ।୧୩୫
ରେ ରେ କାର ଶବଦ ବାବନ୍ତି ସିଂଘନାଦ
ଶୂନ୍ୟ ଭୁବନ କମ୍ପିଲା ମହାଘୋର ଶବଦ ।୧୩୬
ଦୁସହ ସନ୍ୟବଳ ଆସୁଛନ୍ତି ପଛକତି ଉଠି
ରଥେଣ ଥାଇଂ ପାଣ୍ଡବ କିରୀଟୀ କଲେକ ତାହାନ୍ତ ଦୃଷ୍ଟି ।୧୩୭
ସଇନି ମହାର୍ଣ୍ଣବ ଦେଖିଣ ବାସବର ବଳା
ଆଜ ସେ ରୁଧିର ମାୟେଂସେ ପ୍ରସନ୍ନ କରିବି ମାତାଙ୍ଗୀ
ହିଙ୍ଗୁଳା ।୧୩୮
ମାର ମାର ବୋଲିଣ ବୋଇଲେ ଅରଜୁନ
ଶୁଣିକରି ଧାଇଂଲେ ଯେ ପାଣ୍ଡବ ସଇନ ।୧୩୯
ଥାଠେ ସେନାପତି ଅଟନ୍ତି ଜୟେ ଯେ ବିଜୟେ
ଗଦାବର ବୁଲାବନ୍ତି ବିକ୍ରମ ସିଂଘ ପ୍ରାୟେ ।୧୪୦
ବିଶେଷେ ଅନଳ ସେ ପାଣ୍ଡବ ସଇନି
ତହିଂକି ପବନ ଜାଣି ପାଣ୍ଡବ ଫାଲଗୁନି ।୧୪୧
ପବନ ବହନ୍ତେ ଯେହ୍ନେ ଉଠଇ ଅନଳ
ଦୁଜଦ୍ୱାରେ ଓଗାଳିଲେ ପାଣ୍ଡବର ବଳ ।୧୪୨
ତମ୍ୱାର କବାଟ ଯେ କଣୟ ରସାଣି
ଆଦିତ୍ୟ ଉଦୟ ପ୍ରାୟେ ଝଳକନ୍ତି ରତ୍ନମଣି ।୧୪୩
ଜୟେ ବିଜୟେ ବେନିବୀରେ ଗଦା କଲେକ ପ୍ରହାର
ଭାଙ୍ଗିଣ କପାଟ ଯେ ହୋଇଲା ଶତେଚୂର ।୧୪୪
ପୁଣ ପୁଣ ପ୍ରହାର ସେ କଲେକ ଗଳଗାଜି
ଜଗତୀ ଅଟାଳୀ ଆଦି ସର୍ବ ପକାଇଲେ ଭାଞ୍ଜି ।୧୪୫
ବୀରବର ସଇନି ଉଠିଲେ ତିଜ ଗଡ଼ଦ୍ୱାର ପାଚେରୀ
ବିନ୍ଧନ୍ତି ନାରାଜ ଯେ ଅବିଚ୍ଛନ୍ନେ ଦୃଷ୍ଟିକରି ।୧୪୬
ଅର୍ଜୁନର ସଇନିଂକି ବିନ୍ଧିଲେ ନାରାଜତୀକ୍ଷମୁନା
ନିକିଳି ନାରାଜ ଯେ ଫୁଟିଲେ ବଜ୍ରସେହ୍ନା ।୧୪୭
ମାତଳିକି ବୋଇଲେ ସେ ସୁଭଦ୍ରାର ନାହା
ତିଜଗଡ଼ ପାଚେରୀକି ରଥ ମୋର ବାହା ।୧୪୮
ଆଗ୍ୟାଂ ପ୍ରମାଣେ ତହୁଂ ମାତଳି ସାରଥି
ଉଡାନ୍ତି ବାରାସ ଯେ ପବନୁଂ ବେଗଗତି ।୧୪୯
ତିଜ ଗଡ଼ଦ୍ୱାରକୁ ରଥ ସାରଥି ଆଗକରି
ଦେବଦତ୍ତ ଶଙ୍ଖ ପାଥ ଘନ ଘନ ପୁରି ।୧୫୦
ଶଙ୍ଖଧ୍ୱନି ଶବଦ ଯେ ଉଲ୍‌କାପାତ ଜାଣି
କ୍ଷତ୍ରୀଂକର ହୃଦୟ କମ୍ପଇ ତାହା ଶୁଣି ।୧୫୧
ଅଦଭୂତେ ଶହସ୍ର ଝଡି ପଡୁଛି ନିଜ ହାଥୁଂ
ବିଶହାଥ ହୋଇଣ ସଇନି ପଳାନ୍ତି କାକୁସ୍ଥୁଂ ।୧୫୨
ମା ଗୋ ହିଙ୍ଗୁଳା ରଖ ରଖ ଦିଅନ୍ତି ଘୋରଡାକ
ତୋହୋର ଥାଆନ୍ତେ କାତ୍ୟାୟିନୀ ଗୋ ହୋଇଲୁ ନିରେଖ ।୧୫୩
କରେ ଧନୁ ଧରିଣ କରନ୍ତି ଶରବୃଷ୍ଟି
ଅର୍ଜୁନର ନାରାଜେ ଶିର କମଳ ତୁଟି ।୧୫୪
ଜଗତୀ ଛାଡିକରି ପଳାଇଲେ ସର୍ବବୀରେ
ଉଠିଲେ ଧାଇଂଯାଇ ଭିତର ଜଗତୀ ଉପରେ ।୧୫୫
ଆକ୍ରେଷି ଶର ପୂରୋଇ ବିନ୍ଧନ୍ତି ସକଳ ସଇନି
ଆଦିତ୍ୟ ଉହାଡ ହୋଇଲେ ଗଗନେ ବାଣଜାଳା ଘେନି ।୧୫୬

ନିର୍ଘାତ ବଜ୍ରବାଣ ଯେ ଅଗ୍ନିମୁନା ଶର
ଆପଣେ କୋଦଣ୍ଡ ଘେନି ବିନ୍ଧଇ ବୀରବର ।୧୫୭
ଝଲକନ୍ତି ରୁଧିର ଝର ଝର ଅବିଛନ୍ନେ ବହନ୍ତି
କୁଳୁକୁଳା ପୋକ ଜାଣି ବିସରନ୍ତି ଚଉକତି ।୧୫୮
ପାଚେରୀ ଉପରେ ଥାଇ କମଳ ଶିରାନ୍ତ ଉହାଡ ଦେଇ
ବାସବିର ସଇନିକି ବିନ୍ଧିଲେ ବେଗେ ଯାଇ ।୧୫୯
ଅର୍ଜୁନ ନାରାଜ ଯେ ବିନ୍ଧିଲେ ବେଗେ ଆଗ ବଢ଼ି
କନ୍ଧୁଂଣ ଛିଡିଣ ମୁଣ୍ଡମାନ ପଡୁଛନ୍ତି ଝଡ଼ି ।୧୬୦
କାହାର ଭୁଜ ଛିଡ଼ିଲା କାହାର ଫୁଟିଲା ବକ୍ଷସ୍ଥଳ
ରୁଧିରେ ବିଲେପନ ଯେ ହୋଇଲେ ସର୍ବବଳ ।୧୬୧
ତିଜ ଗଡ଼ଦ୍ୱାରେ ସମର ହୋଇଲା ଅପ୍ରମିତା
ନବଲକ୍ଷ ମୁକୁଟ ବନ୍ଧା ପଡ଼ିଲେ ପାଦାନ୍ତି ଅଗଣିତା ।୧୬୨
ଚକ୍ରବାତ ବିଘାତେ ଯେହ୍ନେ କଦଳୀ ବନ ପଡ଼ି
ଯେକଇ ଉପରେଣ ଆରେକ ପଡ଼ନ୍ତି ମୁହଁ ମାଡ଼ି ।୧୬୩
ରୁଧିରେ କର୍ଦ୍ଦନ ଯେ ହୋଇଲା ବସୁନ୍ଧରା
ଲୁଳନ୍ତି ମଣିମାଣିକ୍ୟ ମୁକୁଟ ଚଉସରା ।୧୬୪
ଜଗତୀରେ ଥାଇ ଡାକଇ କ୍ଷତ୍ରିୟ ମହାବଳା
ସୁଖେଣ ବଳି ଭକ୍ଷଣ କରସି ଗୋ ପ୍ରସନ୍ନେ ହିଙ୍ଗୁଳା ।୧୬୫
ବଜ୍ର ବିଘାତ ପ୍ରାୟେ ଅର୍ଜୁନର ଶର ପଡ଼ି
ପଡ଼ନ୍ତେ ସଇନି ନିପାତ ବଜ୍ର ସେହ୍ନା ଛିଡ଼ି ।୧୬୬
ତୃତୀୟ ଗଡ଼ଦ୍ୱାର ପଳାଇଲେ ସର୍ବେ ଛାଡ଼ି ।୧୬୭
ସିଂଘରଡ଼ି ଶବଦେ ଯେ ପଳାଇଲେ ସଇନି
ଗଡ଼ଦ୍ୱାର ଭାଙ୍ଗି ଯେ ତିଜଗଡ଼ ଘେନି ।୧୬୮
ଅର୍ଜୁନ ବିଜେକଲେ ତିଜପୁର ଜଗତୀ
ଭଗବଳ ଘେନି ପଳାଇଲା ବୀରବର ଚକ୍ରବ୍ରତୀ ।୧୬୯
ମନୁଷ୍ୟ ଶରୀର ଧରି ବିଜୟେ ହିଙ୍ଗୁଳେ
ବୀରବର ପ୍ରଣପତ୍ୟ ହୋଇଲା ସେ ମହାଦେବୀଙ୍କର
ପାଦତଳେ ।୧୭୦
ଶତେ ସହସ୍ର ଦଣ୍ଡ ପ୍ରଳମ୍ୱ ହୋଇ ହିଙ୍ଗୁଳା ପାଦେ ବନ୍ଦି
ଦୁଖୀଜନ ଚିନ୍ତା ଛାଡ଼ିଲୁ କି ଗୋ ବୋଲି କ୍ରୋଧଭରେ
ରାୟେ କାନ୍ଦି ।୧୭୧
ତବ ଚରଣେ ମୋହୋର ପଞ୍ଚଭୂତ, ଗୋ ପ୍ରସନ୍ନେ ହିଙ୍ଗୁଳେ
ମାଗୋ ତୁହି ସେ ଗଡ଼ ମୋର ରକ୍ଷାକରୁ ସର୍ବକାଳେ ।୧୭୨
ତୋହୋର ପ୍ରସନ୍ନେ କେହି ଜିଣନ୍ତା ନାହିଁ ଯେ ରାଷ୍ଟ
ଅଦଭୂତେ କେଉଁଣ ଦେଶୁ ଆସି ପ୍ରବେଶ ହୋଇଲା ପର ଥାଠ ।୧୭୩
ରଥ ଗଜ ଅଶ୍ୱ ନାହିଁ ବହୁତ ପାଦାନ୍ତି
ଶ୍ରିକାଳ ପ୍ରାକ୍ରମେ କାହିଁ ସିଂଘର ବଳ ମନ୍ତି ।୧୭୪
ମୁହିଁ ଅବା ମାତା ଗୋ ତୋତେ ହୋଇଲି ଦୋଷକାରୀ
କେଉଁଣ ଅଭଗତେ ମାତା ଗୋ ତୋତେ ହୋଇଲି
ଦ୍ରୋହକାରୀ ।୧୭୫
ଅଜୟେ ଗଡ଼ ଜୟେ ହୋଇଲା କାହାର ବୋଲେ
ବଳୀ ବେଣୁ ମାନଧାତା ଜାନୁଘଣ୍ଟ ପ୍ରଶୁରାମ ପୁରରବାୟେ ଛଡ଼
ଚକ୍ରବ୍ରତୀ ଥିଲେ ।୧୭୬
ଯେ ଅଜୟ ଗଡ଼ କେହି ଜୟେ କରି ନୁଆରିଲେ ।୧୭୮
ମୁହିଁ ପାମର ଦୁଷ୍ଟ ମାତ୍ରକ ଗୋ ନ କଲି ତୋତେ ସେବା
ଅଭଗତ ଦେଖି ମାତ ମୋତେ କୋପକଲୁ ଅବା ।୧୭୯
କି ଅବା ଗହଳ ତୋତେ ହୋଇଲା ମୋହୋର ବନ୍ଧୁବର୍ଗ
ସେ ନିମନ୍ତେ ଗୋସାମଣି କଲୁ କି ମୋତେ ବଇରାଗ ।୧୮୦
କିବା ଖେଳ କଉତୁକ ଘର ତୋର ମହାଆଳି
କୁତୂହୋଳେ ଉଲୁକାପାତ ଗୋ ରୁଧିରେ କରି କେଳି ।୧୮୧
ବନ୍ଧୁ ବର୍ଗ କୁଟୁମ୍ୱ ଗୋ ମୋର ସମସ୍ତେ ଗଲେ ନାଶ
ନିସତେ ପଳାଇଲି ସମରୁଂ ଯେବେ ମୁଁ କରିବଇ କିସ ।୨୮୨
କେବଣ ଭୁବନେ ମାଗୋ ମୁଁ ବଞ୍ଚିବଇଂ ଯାଇଂ
ତୋର ଥାନ୍ତେ ନିରେଖ ହୋଇଲି ଯେବେ ବୁଡିବାକୁ
ଠାବ ନାହିଂ ।୨୮୩
ଦନ୍ତେ ତିରଣ ଘେନି ରାଜା ଗୁବଇ ନିରନ୍ତରେ
ମହାଯୋଦ୍ଧା ପ୍ରଣପତ୍ୟ କଲା ହିଙ୍ଗୁଳାର ପାଦତଳେ ।୧୮୪
ଦଶନହ ମୁଖେ ଭରି ଦନ୍ତେ ତିରଣ ଘେନି
ମାଗୋ ହିଙ୍ଗୁଳା ତ୍ରାହି ତ୍ରାହି ବୋଲି ଶୁଭିଲା ମୁଖଧ୍ୱନି ।୧୮୫
ପୁରଜନମାନେ ଯହୁଁ ରୋଦନ୍ତି ବିକଳେ
ରାଜାକୁ ପ୍ରତି ଆଦେଶ ଦିଲେକ ହିଙ୍ଗୁଳେ ।୧୮୬
ବିଜୟ କଲେ କାତ୍ୟାୟନୀ ସେ ପରମ ମାହେଶ୍ୱରୀ
ପାଷାଣୁଂ ବାହାର ହୋଇଲେ ତେଜକୁ ବିସ୍ତାରି ।୧୮୭
ହିଙ୍ଗୁଳା ବୋଇଲେ ତୁ କିମ୍ପାଇଁ କରୁ କ୍ରୋଧ
ଆଗହୁଂ ନ ପୁଚ୍ଛିଲୁ ଯେବେ ପଡ଼ିଲା ବିରୋଧ ।୧୮୮
ନିଚିନ୍ତ ହୋଇ ଯେବେ ଆସ ମୋହୋର ଆଳେ
ମୁଂ ଯାଇଂ ସମାଧାନ କରାଇବି ତୋହୋର ବିକଳେ ।୧୮୯
ଯେତେକ ବୋଲିଣ ସେ ଜଗତଜନ ମାୟେ

ଖେଚରୀ ବିମାନେ ବସି କଲେକ ବିଜୟେ ।୧୯୦
ଶ୍ରୀହାଥରେ ଅମଳାନ ପୁଷ୍ପମାଳା ଗୋଟିଏକ ଘେନି
ଜଗତୀ ଉପରେ ଯାଇଁ ବିଜୟ କଲେକ କାନ୍ତାନୀ ।୧୯୧
ନିର୍ଦ୍ଧୂମ ଅଗ୍ନି ଜାଣି ତେଜ ଯେ ବିକାଶି
ମହା ଅନଳ ସରୂପେ ସେ ବିଜୟେ ପୂର୍ଣ୍ଣମାସୀ ।୧୯୨
ରକ୍ତବସ୍ତ୍ର ପରିହରଣ ଲୋହିତ ବର୍ଣ୍ଣ କାୟେ
ଆସ୍ତାନରେ ଥାଇ ତାହା ଦେଖନ୍ତି ଧନୁର୍ଜୟେ ।୧୯୩
ବାସବର ନନ୍ଦନ କହଇ ରସବାଣୀ
କେଉଂଣ ଦେଶରୁ ଗୋ ବିଜୟେ ମହାତ୍ମାଣୀ ।୧୯୪
ମାନିନୀ ମାନବତୀ ଗୋ ଲୋହିତ ବର୍ଣ୍ଣ ମୂର୍ତ୍ତି
ବିପୁଳ ପୁଲକ ରଚିର ମା ଗୋ ଅଭୟେ ବରଦାତ୍ରୀ ।୧୯୫
ଡାଳିମ୍ବ ପୁଷ୍ପ ଜାଣି ବିକାଶଇ ତୋର କାୟେ
ସରୂପ ଦିଶୁଅଛି ମଧ ଭୁବନ ଲୋକ ପ୍ରାୟେ ।୧୯୬
ଅର୍ଜ୍ଜୁନର ବଚନେ ଯେ ଦେବୀ କହଇ ସମ୍ଭାଷୀ
ତୁ ରେ ଅର୍ଜ୍ଜୁନ ଉତ୍ତର ଦିଗେଣ ବିଜୟେ କଲୁ ଆସି ।୧୯୭
ଅନେକ ରାଜ୍ୟ ସାଧି ଯେ ଭୁବନ ଉତ୍ତରେ
ଯେଡ଼େ ଉପଦ୍ରବ ନ କଲୁ କେହୁଣସି ପୁରେ ।୧୯୮
ମୁହିଂ ଯେଥେ ବିଜୟେ କରିଅଛି ପ୍ରଳୟ ଅନ୍ତକାଳେ
ଅଭୟେ ମାହେଶ୍ୱରୀ ଆମ୍ଭର ନାମଟି ହିଙ୍ଗୁଳେ ।୧୯୯
ଖଡ଼ଗ ବଂଶୀ ରାଜାୟେ ମୋତେ ଜନ୍ମେ ଜନ୍ମେ ଖଟି
ମୋହୋରେ ସଞ୍ଚିଲା ଯେ ରଣସ୍ତମ୍ଭ ଗଡ଼ଗୋଟି ।୨୦୦
ବନ୍ଧୁ କୁଟୁମ୍ବ ଘେନି ମୋତେ ସେହି ସେ କରେ ସେବା
ଅଗ୍ୟାନେ ବୀରବର ରାଜା ତୋତେ ଦୋଷକଲା ଅବା ।୨୦୧
ଯେହାର ସଇନି ନାଶ କଲୁ କିମ୍ପେ ଅନମିତେ
ରକ୍ଷା ନ କରିବୁ କି ପାଥ ମୋହୋର ଦେଖନ୍ତେ ।୨୦୨
ତୁ ଯେ ଗଣ୍ଡାଗୋଟି ଆମ୍ଭର ମାଇଲୁ ବାଳକାଳେ
ସଦାନନ୍ଦ ସ୍ୱାମୀ ଶୋଇଥିଲେ ବିରୁପାକ୍ଷ ବଟ ତଳେ ।୨୦୩
ଗଣ୍ଡାର ନିଧନେ ସ୍ୱାମୀ ହୋଇଲେ ବଇରାଗୀ
ତୋହୋର ତୁଳେଣ ସମର ଇଚ୍ଛିଲେ ପରମ ଯୋଗୀ ।୨୦୪
ସଦାଶିବର କଣ୍ଠେ ଯେ ଲଗାଇଲୁ ଗାଣ୍ଡିମ ଧନୁ
ଅନ୍ତରୀକ୍ଷେ ବୁଲାନ୍ତେ ତୋତେ ପ୍ରସନ୍ନ ହେଲେ ପଞ୍ଚମନୁ ।୨୦୫
ବିରୂପ ଯୁଦ୍ଧ ଦେଖି ତୋତେ ସଦାନନ୍ଦ ବର ଯାଚି
ମୁହିଂଟି ଭେଦ ତୋତେ କହିଲି ସର୍ବସାଚୀ ।୨୦୬
ଈଶ୍ୱରଙ୍କଇଁ ମାଗିଲୁ ଯେ ପଶୁପତ୍ର ବାଣ
ମୋତେ ମାଗିଲୁ ନେଇ ମୁଂ ଦେଲଇଂ ଅକ୍ଷୟେ ବେନିତ୍ରୋଣ ।୨୦୭
ସଦାନନ୍ଦର ବଚନେ ମୁଂ ହୋଇଲଇଁ ବଇରାଗୀ
କୋଟିଏ ଈଶ୍ୱର ସମ ନୋହିବେ ବାସବି ।୨୦୮
ଯାହାଙ୍କଇଂ ସଂଗ୍ରାମେ ସମ ନୋହନ୍ତି ତ୍ରିଲୋଚନେ
ଯେ ଇହଲୋକେ ରାଜା କେ ତୋତେ ହୋଇବ ସମାନେ ।୨୦୯
ଇଗୁଛିତା ପୁରୁଷ ହୋଇ କିଂକେ ଯେଡ଼େ ବଇରାଗୀ
କିଂଚିତ ଦୋଷେ କିମ୍ବା ରାଜାମାନନ୍ତ ଦର୍ପ ଭାଙ୍ଗି ।୨୧୦
ହିଙ୍ଗୁଳାଂକର ବଚନେ ସେ ବିଚିତ୍ରବୀର୍ଯ୍ୟ ନାତି
ଦେବୀଂକର ପଦ୍ମପାଦେ ପ୍ରଣପତ୍ୟ ତତକ୍ଷଣାନ୍ତି ।୨୧୧
ଅର୍ଜ୍ଜୁନକୁ କୋଳକରି ଧଇଲେ ମାହେଶ୍ୱରୀ
ଖେଚରୀ ବିମାନେ ନେଇ ବସାଇଲେ ବାସେବିର ଭୁଜ ଧରି ।୨୧୨
ବିଜୟେ କାତ୍ୟାୟନୀ ଆପଣା ଭୁବନକୁ
ଅର୍ଜ୍ଜୁନକୁ ଘେନିଗଲେ ଦେବୀ ତ୍ରିପୁରାନ୍ତକ ପର୍ବତକୁ ।୨୧୩
ଅର୍ଜ୍ଜୁନକୁ ଘେନି ଦେବୀ ବିଜୟେ ଆସ୍ତାନେ
ଶତ ସହସ୍ର ଦଣ୍ଡ ପ୍ରଣପତ୍ୟ ହୋଇଲେ ସମସ୍ତ ଜନମାନେ ।୨୧୪
ଶ୍ରୀହାଥେ ଅର୍ଘ୍ୟ ଘେନିଣ ବୀରବର ଚକ୍ରବ୍ରତୀ
ଅର୍ଜ୍ଜୁନର ପାଦତଳେ ଶତେ ସହସ୍ର ଦଣ୍ଡ ପ୍ରଣମିତି ।୨୧୫
ହିଙ୍ଗୁଳା ବୋଇଲେ ବାବୁ ଶୁଣସି ଧନୁର୍ଜୟେ
ଦଣ୍ଡ ମରାଇଣ ରାଜା ହୋଉଛି ବିନୟେ ।୨୧୬
ଯେହାଙ୍କଇଂ ପ୍ରସନ୍ନ ତୁ ହୁଅସି ଫାଲ୍‌ଗୁନି
ଯେ ମୋହୋର ପୁତ୍ର ତୋତେ ହୋଉଛି ଭଗତି ମାନୀ ।୨୧୭
ତୋହୋର ପ୍ରସନ୍ନେଣ ଯେ ପାଇବ କାରଣ
ସମସ୍ତ କୁଟୁମ୍ବ ଘେନି ତୋହୋରେ ପଶିଲା ଶରଣ ।୨୧୮
ହିଙ୍ଗୁଳାର ବଚନେ ସେ ପ୍ରଣପତ୍ୟ କିରୀଟୀ
ମାଗୋ ତ୍ରଇଲୋକେ ବିକାଶଇ ଯେ ତୋହୋର ନାମଗୋଟି।୨୧୯
ତୁ ଗୋ ପରମ ଯୋଗେଶ୍ୱରୀ ସରୂପେ ଲୋହିତାକ୍ଷୀ
ଅଭୟପୁର ମଣ୍ଡଳୀ ସରୂପ ପିଙ୍ଗଳାକ୍ଷୀ ।୨୨୦
ମାଗୋ ବିକାଶଇ ଅନଳ ରଚିର ଲୋହିତ ଶ୍ୱେତବର୍ଣ୍ଣା
କୋଟିକଳ୍ପ ବାସିନୀ ଗୋ ଭବାନୀ ଅପର୍ଣ୍ଣା ।୨୨୧
ମା ଗୋ ହିଙ୍ଗୁଳା ବୋଲି ଶବଦେଣ ଯାହା ଭାଷି
ସମ୍ଭୂତ ଯୋଗଲୟେ ବହନି ତେଜ ରାଶି ।୨୨୨
ପ୍ରାଣତେଜ ବଇଶ୍ୟାନର କାଳାନଳ ପିଙ୍ଗଳ ଜାଳା
ଜାତ ଅନଳ ମାଗୋ ପଞ୍ଚ ଅଗ୍ନି ତୋହୋର ମେଖଳା ।୨୨୩
ଶରୀରୁଂ ସମ୍ଭୂତ ମାଗୋ ତୋହୋର ବହତି

ତୁ ଯେ ଅନ୍ତ କରାଉ ସର୍ବ ଦେବ ମୂରତି ।୨୨୪
ଜାତ କାଳେଣ ମାତା ରେତ କାଳେଣ ଭାରିଯା
ଅନ୍ତକାଳେ କାଳିକା ସେ କାଳେ ହିଙ୍ଗୁଳା ପ୍ରାଣତେଜ୍ୟା ।୨୨୫
ଅଭୟ ବ୍ରହ୍ମ କାଳକଙ୍କ ତୋହୋର ତେଜ ଉଗ୍ରତାରା
ଚାଚିକା ରୂପ ଧରି ନାଶକରୁ ମହୀଭାରା ।୨୨୬
ଆଦି ଅନ୍ତ ମଧ୍ୟେ ମାଗୋ ଅବସାନ ତୁହି
ଜାତ ଅନ୍ତ କରନ୍ତା ତୁ ତୋତହୁଂ ଆନ କେହି ନାହିଁ ।୨୨୭
ତପନୀ ତାପନୀ ଗୋ ଦହନୀ ଶୋଷଣୀ ଭବାନୀ
ତବ ପାଦପଦ୍ମେ ଲୟେଣ ଭାବନ୍ତି ସିଦ୍ଧମୁନି ।୨୨୮
ଯୁଗାନ୍ତକ ପ୍ରଳୟାନ୍ତକ ମହା ଭଇରୋବୀ
ମାହେଶ୍ୱରୀ ପଦକୁ ତୋହୋର ହିଙ୍ଗୁଳା ନାମ ଭାବି ।୨୨୯
ପରମ ବଇଷବୀ ମାଗୋ ତୁ ସାଧନୀ ସିଦ୍ଧମୁଦ୍ରା
ଅଷ୍ଟାଙ୍ଗ ଲୟେ ଗୋ ହୃଦୟେ ଯୋଗରୁଦ୍ରା ।୨୩୦
ଭଗତ ଜନ ମସଳୀ ଗୋ ଶୟଳ ଜନ ଚିନ୍ତା
ଦୁଖୀଜନ ଉଦ୍ଧାରିଣୀ ଗୋ ଭଗତ ଜନ ପାଳନ୍ତା ।୨୩୧
ଦୁଷ୍କୃତ ଖଣ୍ଡଣୀ ଗୋ ଦୁର୍ଗତି ଦୁଖ ମେଣ୍ଟି
ଯେ ଭୁବି ଭୁବନରେ ତୋହୋର ହିଙ୍ଗୁଳା ନାମଗୋଟି ।୨୩୨
ମାଗୋ ଅଗତିକି ଗତି ତୁ ଅକାରଣକଇଁ କାରେଣୀ
ଋଦ୍ଧି ସିଦ୍ଧି ବୁଦ୍ଧି ଗୋ ପ୍ରସନ୍ନେ ଦେଉ ଗୋସାମଣି ।୨୩୩
ସଦାନନ୍ଦ ହୃଦଗତେ ତୋହୋର ପାଦୁକା
ଡାକିଣୀ ଶବଦ ମାଗୋ ତୋହୋର ଶୁଭଇ ଯେକା ।୨୩୪
ଡାକୀ ଡମ୍ବରୁ ଗୋ ଘୋର ଗହନ ବାଦ୍ୟେ
ଡିବି ଡିବି ଡାକେଣୀ କିଳିକିଳା ଶବଦେ ।୨୩୫
ମାଗୋ ଯାବତ ଚନ୍ଦ୍ର ଦିବାକର ପ୍ରଳୟ ଯୁଗପତି
ସ୍ୱହା ସୁଧା ତୋହୋର ଗୋ ପାଦୁକା ରୂପ ଶାନ୍ତି ।୨୩୬
ଆକାଶହିଂ ତୁହି ମଧ୍ୟ ଭୁବନହିଂ ତୁହି ପାତାଳହିଂ ତୁହି
ପୃଥୀ ତୁହି ଆପ ତୁହି ତେଜହିଂ ତୁହି ମହାମାଈ ।୨୩୭
ମାଗୋ ଅଦୃଶକଇଂ ଦୃଶ ତୁ ତୋହୋର ନାହିଂ ଚିହ୍ନ ବର୍ଣ୍ଣା
ଶତକୋଟି ଅବତାର ରୁଦ୍ରର ତୁ ଅଭୟେ ଅପର୍ଣ୍ଣା ।୨୩୮
ଭଗତଜନ ମସଳା ସର୍ବ ପାପ ବିମୋଚନା
ଅନାସ୍ତ ଲୋକୁ ମାଗୋ ତୁହି ସେ ବଜ୍ର ସେହ୍ନା ।୨୩୯
ମା ଗୋ ରୁଦ୍ରର ଅବସାନେ ତୁ ପରମ ବ୍ରହ୍ମ ସାଧ୍ୟ
ଅବସାନ କାଳେ ହୋ ତୋତେ ପ୍ରସରଇ ଦିବ୍ୟ ବୁଦ୍ଧି ।୨୪୦
ମାଗୋ ଅଷ୍ଟୋତ୍ତର ଶତେ ବରଷ ଆଇଷ୍ୟ ମଣିଷକୁ
ଯେକ ଦିବସେକ ହୁଅଇ ସନକ ଲୋକକୁ ।୨୪୧
ଯେହି ଦିବସେ ତାହାକୁ ଆଷ୍ୟ ଅଷ୍ଟୋତ୍ତର ଶତେବରଷ
ଯେତେକ ପୂରିଲେ ଯେ ହୋଅନ୍ତି ପୁଣି ନାଶ ।୨୪୨
ଯେହାଙ୍କର ନିଧନେ ଦିବସେ ହୋୟେ ବିଶ୍ୱଦେବାଂକୁ
ଯେହି ଦିବସେ ଅଷ୍ଟୋତ୍ତର ଶତ ବରଷ ହୋୟେ ଯେହାକ ।୨୪୩
ଅଷ୍ଟ ଉତ୍ତର ଶତ ବରଷ ପୂରିଲେ ବିଶ୍ୱଦେବାୟେ ହୋଅନ୍ତି ଅବସାନ
ବିଦ୍ୟାଧର ପୁରୁଷଂକୁ ହୋଇ ଯେକଦିନ ।୨୪୪
ଯେହି ଦିନେ ଅଷ୍ଟ ଉତ୍ତର ଶତ ବରଷେ ନାଶଯାନ୍ତି ବିଦ୍ୟାଧର ପୁରୁଷେ
ଯେହାଂକର ନିଧନେ ଗ୍ରହମାନଂକୁ ହୁଅଇ ଦିବସେ ।୨୪୫
ଯେହି ଦିବସେ ଯେହାଂକର ଆଷ୍ୟ ଅଷ୍ଟ ଉତ୍ତର ଶତେ ବରଷେ
ତେତେକ ପୂରନ୍ତେ ସେ ହୁଅନ୍ତି ଅବଶେଷେ ।୨୪୬
ଯେତେକ ପୂରିଲେ ଯେହୁ ହୁଅନ୍ତି ନିଧନ
ଯେହାଂକର ନିଧନେ ଚନ୍ଦ୍ର ଦେବତାକଇଂ ହୋଇ
ଯେକଦିନ ।୨୪୭
ଯେହି ଆଷ୍ୟ ବଞ୍ଚାଇଲା ରୋହିଣୀ ପ୍ରାଣଗୁରୁ
ଯେ ଅମାବଇ ଦିନରେ ଚନ୍ଦ୍ର ନଷ୍ଟ ହୋଇ ପୁଣି କଳା ଯେ ସଞ୍ଚରୁ ।୨୪୮
ତତ୍ର ଦୋଷ ଖଣ୍ଡି ପୁଣ କରାଉ ଉଦୟେ
ନହ ରେହ ପ୍ରାୟେକ ପୁଣିହିଂ ବିକାଶଇ ତାର କାୟେ ।୨୪୯
ମାଗୋ ଚନ୍ଦ୍ର ନିଧନ କଲେ ଯେହାକଇଂ ଚନ୍ଦ୍ରେକ ବୋଲି
ମୁକୁହିଂ ଅଗୋଚର ମାଗୋ ବ୍ୟାସଂକ ମୁଖରୁ ଶୁଣିଲି ।୨୫୦
ଚନ୍ଦ୍ରଂକ ଅଷ୍ଟ ଉତ୍ତର ଶତେ ବରଷେ ପିତାମହଙ୍କୁ ହୋଅଇ ଯେକଦିନ
ଯେ ଦିନେହିଂ ଅଷ୍ଟଉତ୍ତର ଶତେ ବରଷ ପୂରିଲେ ପିତାମହ
ହୁଅନ୍ତି ନିଧନ ।୨୫୧
ଧାତାର ଅଷ୍ଟ ଉତ୍ତର ଶତେ ବରଷ ପୂରିଲେ ବିଷ୍ଣୁଂକୁ ଦିବସେ
ସେ ଲୟେ ଅନ୍ତର ହୋଇ ଅଷ୍ଟ ଉତ୍ତର ବରଷେ ।୨୫୨
ବିଷ୍ଣୁର ଅଷ୍ଟ ଉତ୍ତର ଶତେକ ବରଷେ ଦିନେକ ରୁଦ୍ର ଦେବାତାଂକୁ
ଯେହିଦିନେ ଅଷ୍ଟ ଉତ୍ତର ଶତେ ବରଷେ ଆୟୁଷ ତାହାଂକ ।୨୫୩
ମାଗୋ ରୁଦ୍ରହିଂ ଅବସାନ ହୁଅଇ ଯେତେ କାଳକଇ
ମାଗୋ ରୁଦ୍ରହିଂ ଅଭ୍ୟାଗତ କାଳ ପୁଣ ହୋଇ ।୨୫୪
ମାଗୋ ରୁଦ୍ରହିଂ ପ୍ରାଣତ୍ୟାଜ ହ୍ୱନ୍ତି ଅଭ୍ୟାଗତ କାଳେ
ତୁ ତାହାର ଶାଖାଗୋଟି ଧରିଥାଉ କୋଳେ ।୨୫୫
ଯେତେକାଳ ପରିଯନ୍ତେ ଆଷ୍ୟ ପାଅଇ ଧୂର୍ଜଟି
ତେତେକାଳ କୋଳେ ଧରିଥାଉ ତାରେ ମୃତୁପିଣ୍ଡ ଗୋଟି।୨୫୬
ମାତା ଆପଣାର ତହୁଂ ଆଷ୍ୟ କାଢ଼ିଣ ତୁ ଦେଉ
ତୋହୋର ପ୍ରାଣ ଦୁଇଭାଗ କରିଣ ରୁଦ୍ର ଦେତାକଇଂ

ଦେଇଣ ଜୀଆଉଂ ।୨୫୭
ଶୟନ ଉଚ୍ଚାଟନ ମହାମନ୍ତେ ବ୍ରତଇ ତ୍ରିପୁରାରି
ତେଣୁ ସେ ନାମ ତୋହୋର ଅଟଇ ଅର୍ଧନାରୀ ।୨୫୮
ମାଗୋ ଯୁଗାନ୍ତକ କଳପୀ ତୁ ଯୁବା ସର୍ବକାଳେ
ସତର ବରଷ ବୟସ ନୋହୋଇ ତୋହୋର
ପ୍ରଳୟ ଅନ୍ତେହେଂ ବାଳତୁ ରୂପେ ଖେଳେ ।୨୫୯
ମାଗୋ ଯେକ ଯେକ ଲୟେକେ ଯେକ ମୁହୂର୍ତ୍ତେକ ବୋଲି
ଷାଠିୟେ ମୁହୂର୍ତ୍ତେ ପେ ନିଶ୍ୱାସେ କହିଲି ।୨୬୦
ମାଗୋ ଷାଠିୟେ ନିଶ୍ୱାସକେ ଲିତାୟେ କହିଲି
ଷାଠିୟେ ଲିତାୟେ ଯେ ଦଣ୍ଡେକ କହିଲି ।୨୬୧
ବିଶାଶତ ଲିତାୟେ ଯେ ଘଡ଼ିୟେକ ବୋଲି
ଚାରିଶ ଅଶି ଲିତାୟେ ଯେ ପ୍ରହରେକ ବଞ୍ଚାଇଲି ।୨୬୨
ନବଶତ ଷାଠିୟେ ଲିତାରେ ଅର୍ଦ୍ଧେକ ହୋଇ ଦିନ
କରତାର ମଧେ ଯେହାକୁ ବୋଲି ଯେ ମଧାହ୍ନ ।୨୬୩
ମାଗୋ ଚଉଦ ଚାଳିଶ ଲିତାୟେ ଦ୍ୱାଦଶ ଘଡ଼ି ଲେଖା
ଆହାନ୍ନିକ କାଳେ ପୁରୁଷ ନବଶତ ରେଖା ।୨୬୪
ମାଗୋ ସହସ୍ରେ ନବଶତ କୋଡ଼ିୟେ ଲିପିତେ
ଚଉ ପ୍ରହର ହୋଇଲା ଦିନକର ମେରୁ ଅନ୍ତେ ।୨୬୫
ଦିବସ ଓହାଡ଼ିଲା ମାତା ଗୋ କାଳ ଯେ ପୁରୁଷ
କଳାୟେ ଅନ୍ଧକାର ହୋଇଲା ରୟଣୀ ପ୍ରବେଶ ।୨୬୬
ମାଗୋ ରାତ୍ରହିଂ ଚଳିବ ନାହିଂ ଯେହି ପରମାଣେ
ତୁ ଯେହା ନ ଜାଣୁ କି ରାତ୍ର ଦିବା ଗଲା କେଣେ ।୨୬୭
ମାଗୋ ବିନୁ ଜ୍ୱାଳାୟେ ତୁ ରାତ୍ର ଦିବସେ ହିଙ୍ଗୁଳା
ପ୍ରିୟ ଧବା ମାନିନୀ କୃତାନ୍ତ ସଂଗୀତମାଳା ।୨୬୮
ମାଗୋ ଧରି ହରି ଉଦ୍ଧାରିଅଛୁ ତୁହି ଜନ୍ମେ ଜନ୍ମେ
ଅବିକାର ଧାତ୍ରୀ ତୁ ଅଟୁ ଯେ ଅପର୍ଣ୍ଣେ ।୨୬୯
ଦିଗନ୍ତକ ଭୁଜଦଣ୍ଡ ପ୍ରଚଣ୍ଡ ଦୁର୍ଦ୍ଦଣ୍ଡୀ
ଆହାରେ ଉର୍ଦ୍ଧ୍ୱବାତା ଗୋ ବିନା ଅର୍ଣ୍ଣେ ତାପ ଖଣ୍ଡି ।୨୭୦
ଭୃଗୁ ଭଙ୍ଗୀ ଭବାନୀ ଭରହରଷେ ରସି
କ୍ରୋଟ ଅନଳ ରୂପ ତୋହୋର ଅପର୍ଣ୍ଣା ପଦ୍ମବାସୀ ।୨୭୧
ଅନରୂପ ମଳୟା ତୁ ଜାତ ଅନଳ ରୂପୀ
ଦହନୀ ଶୋଷଣୀ ମାତା ଗୋ ମରୁତ ଗଗନ କ୍ଷେପୀ ।୨୭୨
ନମୋ ହିଙ୍ଗୁଳା କାମାକ୍ଷୀ ହିରଣାକ୍ଷୀ
ଜାତ ଅନ୍ତକାଳକୁ ମାତ ଗୋ ତୁହି ସେ ରକ୍ଷ ଭକ୍ଷି ।୨୭୩
ବାହାରେଣ ଦହନୀ ମାତ ଗୋ ଗର୍ଭେଣ ସର୍ବ ଭସ୍ମୀ
ନିରଞ୍ଜନୀ ମାତା ଗୋ କଉତୁକ ବ୍ରହ୍ମରାଶି ।୨୭୪
ମାଗୋ ଆଉର ଜ୍ୟୋତିର ଧନୁର ସୁଷୁମ୍ନା ଚାରିବେଦ ଚଉମନ୍ତେ
ଉଜାଣି ହେଠାଇଲୁ ମାତ ଗୋ ଅଜପା କୂଟଯନ୍ତେ ।୨୭୫
ନବ ନାଡ଼ି ବାସ୍ତୋରୀ କୋଟିୟେ ପ୍ରାଣର ପୁରୁଷକୁ
ସୁଷୁମ୍ନା ସାଧନାକୁ ଗୋ ବହନ୍ତି ମନ୍ତ ତୁକୁ ।୨୭୬
ବ୍ରହ୍ମ କର୍ମ ସଂସ୍କାର ଅଷ୍ଟ ଚାଳିଶ ଥାପନେ
ଚାରି ଚଉଂରୀ ଚିଆଂଇଲା ଗୋ ତୋହୋର ମନ୍ତପାନେ ।୨୭୮
ବାଆସ୍ତରୀ ମୁଦ୍ରାକୁ ମାତା ଗୋ ତୁହି ସେ ଆଦିମୂଳ
ପାକଶୁଦ୍ଧି କାଳକୁ ତୁହି ସେ ସର୍ବ ମଙ୍ଗଳ ।୨୭୯
ହେ ବୁଧଜନମାନେ ହିଙ୍ଗୁଳାର ନାମ ଧରି
ପ୍ରସନ୍ନ ହିଙ୍ଗୁଳା ବୋଲି ପଞ୍ଚ ଭୂତେଣ ସୁମରି ।୨୮୦
ଆହୋ ବ୍ରହ୍ମ ଅସୁର ଯେ ବେନି ଅତାପି ବାତାପି
ଅନେକ ହତ୍ୟାକରି ସେ ଅଗତି ମହାପାପୀ ।୨୮୧
ତାହାଙ୍କର ମାୟେଂସ ଭକ୍ଷିଲେ ଅଗସ୍ତି ବ୍ରହ୍ମବେତ୍ତା
ହିଙ୍ଗୁଳାର ପ୍ରସନ୍ନେ ସେ ହୋଇଲା ଭସ୍ମଗତା ।୨୮୨
ମାହେଶ୍ୱରୀ ପଦକୁ ନରେ ଯାହାର ଅଛି ଆଶ
ବଂଶେ ଦାରିଦ୍ର ନ ଥାଇଟି ସେହି ହିଙ୍ଗୁଳା ନାମ ଘୋଷ ।୨୮୩
ଶ୍ରୀହିଙ୍ଗୁଳାର ତୁଷ୍ଟି ଯେ ଧରନ୍ତି ହୃଦଗତେ
ଧନ ସନ୍ତାନ ବର୍ଦ୍ଧିତ ହୋଇ ହିଙ୍ଗୁଳା ନାମ ଧରନ୍ତେ ।୨୮୪
ଅଜୀର୍ଣ୍ଣ ଭୋଜନ ଯାର ଜରା ମନ୍ଦବ୍ୟାଧି
ହିଙ୍ଗୁଳା ତୁଷ୍ଟି ସୁମରନ୍ତେ ସକଳ ପାପ ଛେଦି ।୨୮୫
ଶ୍ରୀ ହିଙ୍ଗୁଳା ଦେବୀ ଗୋ ପ୍ରସନ୍ନେ ହୋଅ ମୋତେ ନିତ୍ୟେ
ଶୂଦ୍ରମୁନି ସାରୋଳ ଦାସ ବୋଇଲେ ବାଞ୍ଛା ସିଦ୍ଧ ଅର୍ଥେ ।୨୮୬
ଆହୋ ବଦନ୍ତି କୁମ୍ଭ ଋଷିର ନନ୍ଦନ ଅଗସ୍ତି
ଯେବଣ ମହାତ୍ମାର ମନ୍ତେ ଉତସଲ୍ୟ ସପତଦୀପା ପୃଥୀ ।୨୮୭
ଭୂତ ଭବିଷ୍ୟ ବର୍ତ୍ତମାନ ଯେବଣ ମହାତମାକୁ ଦୃଶ
ସେ ବ୍ରହ୍ମଋଷି ପାଦପଦ୍ମେ ମୁଂ ବଢ଼ାଇଲି ଆଶ ।୨୮୮
ଶ୍ରୀ ମହାଭାରଥ ପୁରାଣ କଥିତେ
ତାହା ମୁଂ ଅଭ୍ୟାସ କଲି ମୂଢ଼ ଅମୃତ ରସଗୀତେ ।୨୮୯
ହିଙ୍ଗୁଳାକୁ ତୁଷ୍ଟି କଲେକ ଫାଲଗୁନି
ପ୍ରସନ୍ନେ ଅଭୟେ ବର ଦିଲେ ଦେବୀ ଯେ କାନ୍ତାନୀ ।୨୯୦
କାନ୍ତାନୀ ଘେନିଲେ ଯେ ଅର୍ଜ୍ଜୁନର ଭଗତି
ପ୍ରସନ୍ନେ ମହାମନ୍ତେ କହିଲେ ଶାନ୍ତିମୂର୍ତ୍ତି ।୨୯୧
ତୁମ୍ଭେ ସେ ରାଜୁସି ଯାଗ ଆରୋପଣ କଲ

ପୃଥିବୀ ରାଜାମାନନ୍ତ ସବୁନ୍ତି ନିମନ୍ତିଲ ।୨୯୨
ଅନ୍ନ ଯୋଗାଡ଼ କେମନ୍ତ ମିଳିବ ଏତେକ ସଇନିଂ କି
ଆମ୍ଭେ ବିଜେକରି ଯାଉଅଛୁଂ ତୋହୋର ତହିଂକି ।୨୯୩
ରାନ୍ଧଣା ଖନ୍ଦା ତୋହୋର ହୋଇବ ଯେତେ ଦୂରେ
ଆମ୍ଭର ନାମ ଧରି ରାନ୍ଧଣାରେ ପଶିବେ ସୂପକାରେ ।୨୯୪
ଯେଉଂସିଲା ବାଗେଣ ପଞ୍ଚନ କରିବେ କିଞ୍ଚିତେ
ଅମୃତ ପାକ ଯେ ହେଉଥିବ ଅନୁବ୍ରତେ ।୨୯୫
ସୁପଂକୁ ଅନ୍ନ ଯେ ହୋଉଥିବ ରସପାକ
ଭୁଞ୍ଜନ୍ତେ ରାଜାଯେ ସୁମଗୁ ଥିବେ ଜନ୍ମାନ୍ତେକ ।୨୯୬
ଗଉରୀ ସଉରୀ ନଳ ବିଧି ତିନିପ୍ରତି
ଅଦଭୂତେ ରାନ୍ଧଣା ହୋଉଥିବଟି ସମ୍ପାଦି ।୨୯୭
ପ୍ରସନ୍ନେ ଅଭୟେ ବର ଦିଲେଟି ହିଙ୍ଗୁଳା
କୁଡ଼ୋଇ ଗୋଟିକରୁ ଅନ୍ନ ଭୁଞ୍ଜିବେଟି ସହସ୍ରେକ ଅନର୍ଗଳା ।୨୯୮
ଅନ୍ନ ଭୁଞ୍ଜିବେ ଯାହାର ଯେତେକ ଇଚ୍ଛା
ସଂଚୟେ ପ୍ରାପତ ହୋଇବ ତୁମ୍ଭର ମନବାଞ୍ଛା ।୨୯୯
ଯେ ବୀରବର ନୃପତି ବହୁତ କାକୁସ୍ଥ ହୋଇଲା ହୋ ମହାତମା
ଦଶଦୋଷ ଅପ୍ରାଧ ପାଥ ଯେହାର ତୁ କରିବୁ ସର୍ବ କ୍ଷମା ।୩୦୦
ଅନେକ ଭଗତି ହୋଇଲା ରଣସ୍ତମ୍ଭ ଗଡ଼ ଆଧିପତି
ପ୍ରସନ୍ନେ ନାରାୟଣ ସ୍ୱାମୀ ମୋହୋର ଫେଡ଼ିବା ଦୁର୍ଗତି ।୩୦୧
ଅର୍ଜୁନ ବୋଇଲେ ବାବୁ ତୁ ଯେ ହୋଇଲୁ ମତିଭ୍ରଷ୍ଟ
କିଞ୍ଚିତ ଦୋଷେ ତୋତେ ହୋଇଲାନି ବଡ଼ କଷ୍ଟ ।୩୦୨
ଅଜୟେ ଗଡ଼ ସାଧିଲି ତୋହୋର ମାଇଲି ବହୁତ ସଇନି
ସେ ଦୋଷ ଗଲା ମୋଚନ ତୁ ମୋତେ ଆବର କରିଚି ଦଇନି ।୩୦୩
ତୁ ମୋହୋର ବାନ୍ଧବ ଯେ ଅଟୁ ସର୍ବକାଳେ
ହିଙ୍ଗୁଳା ଭେଟିଲି ମୁଂ ତୋହୋର ପୁଣ୍ୟବଳେ ।୩୦୪
ଯେ ପୃଥୀରେ ଥାଇ ହୋ ଯେତେକ କାଳ ପରିଯନ୍ତେ
ତୁହି ସେ ମୋହୋର ବାନ୍ଧବ ହୋ ଅଟୁ ପଞ୍ଚଭୂତେ ।୩୦୫
ଅକ୍ଷତ ଗୁଆ ଯେ ତାକୁ ଦିଲେ ଫାଲଗୁନି
ରାଜୁସି ଯାଗାକୁ ଯାଅ ଯା ତୋହୋର ଥାଠସନ୍ୟ ଘେନି ।୩୦୬
ବଡ଼ ସମ୍ପର୍ବ ହୋଇ ତୁହି ଯିବୁଟି ସଭାକୁ
ରାଜାମାନଂକର ଶରଧା ଅଛି ତୋତେ ଦେଖିବାକୁ ।୩୦୭
ମହାକ୍ଷେତ୍ର ମଣ୍ଡଳେ ତୁ ଅଟୁ କ୍ଷେତ୍ର ଅଧିକାରୀ
ଯେ ମଧ ଭୁବନକୁ ତୁ ତ ଦେବତା ସମାନେ ସରି ।୩୦୮
ଅନେକ ପୁରସରି ଅର୍ଜୁନ କହେ ମନାଇଂ

ଶୁଣିଣ ରାଜା ବେନିକର ଯୋଡ଼ିଣ ବୋଲଇ ।୩୦୯
ସମସ୍ତ ସଇନି ସ୍ୱାମୀ ମାଇଲୁ ମୋହୋର
କିସ ଘେନି ଯିବଇଂ ଆଉ ସଭାକୁ ତୋହୋର ।୩୧୦
ରାଜାର ବଚନେ ଅର୍ଜୁନ ଦେବୀ ମୁଖ ଚାହିଂ
ହିଙ୍ଗୁଳା ବୋଇଲେ ବାବୁରେ ଦେଉ କିନା ଜୀଆଇଂ ।୩୧୧
ଅମର ମଉଷଧି ଅଛଇ ତୋର ତାହିଂ
ତେଣୁକରି ବାବୁରେ ତୋତେ ମୁଂ ପ୍ରକାଶଇ ।୩୧୨
ଜୀବନ୍ୟାସ ଶର ସେ ଅର୍ଜୁନ ପେଷେ ହିଙ୍ଗୁଳାର ବୋଲେ
ଅମୃତ ବୃଷ୍ଟି ହୋଇଲା ସେ ସମସ୍ତ ସଇନି ଜୀଇଂଲେ ।୩୧୩
ହାଣ ହାଣ ମାର ମାର ବୋଲିଣ ବୋବି ଦେଇ
ବୀରବର ନୃପତି ଯେ ସମଦଣ୍ଡ ସାଜି ଚଳିଯାଇ ।୩୧୪
ଆହୋ ଅର୍ଜୁନ ଛାମୁରେ ଯେ କହଇ ବୀରବର
ସ୍ୱାମୀ ଜୀବନର ସୁଫଳଟି ଯେତେକାଳେ ହୋଇଲା
ମୋହୋର ।୩୧୫
ତୁ ମହାଛତ୍ରୀବୃତ୍ତ ଯେ ଅଭୟେ ସୋମବଂଶେ
ପ୍ରତକ୍ଷେ ପାଟ ତୋତେ ଅଛିଟି ଆକାଶେ ।୩୧୬
ଅନେକ ବିନୋୟୀ ଯେ କହିଲେ ରାଜସାଇଂ
ମାହେନ୍ଦ୍ର ଯୋଗ ଘେନିଣ ରାଜା ରଣସ୍ତମ୍ଭ ଗଡୁ
ବାହାର ହୋଇ ।୩୧୭
ଅର୍ଜୁନ ନମଇ ସେ ଦେବୀର ପାଦତଳେ
ଅର୍ନ୍ତଧାନ ହୋଇ ତହୁଂ ଗଲେକ ହିଙ୍ଗୁଳେ ।୩୧୮
ତହୁଂଣ ଅର୍ଜୁନ ଗଲେ ଥାଠସନ୍ୟ ଚଳାଇ
କଉଶିକ ନଦୀରେ ପ୍ରବେଶ ହୋଇଲେକ ଯାଇଂ ।୩୧୯
ପୁଣ୍ୟତୋୟା ଜିଣିଣ ଯେ ପଶିଲେ ଘୋରବନେ
ତହୁଂଣ ଅର୍ଜୁନ ଚଳଇ ପ୍ରସନ୍ନେ କେଦାର ଭୁବନେ ।୩୨୦
ହେମବନ୍ତ ସନ୍ନିଧେ ମହାନ୍ଦ୍ର ନାମେ ଗିରି
ଗିରିରାଜ ହେମବନ୍ତ ତହିଁ ପ୍ରତକ୍ଷେ ବିଜେକରି ।୩୨୧
ଆଠଲକ୍ଷ ପର୍ବତ ଅଛି ରାଜ୍ୟକଇଂ ବେଢ଼ି
ସେ ହେମବନ୍ତ ହୋ ଗିରିରାଜ ଅଧିକାରୀ ।୩୨୨
ମଇନାବତୀ ବୋଲିଣ ହେମବନ୍ତର ଭାରିଜା
ତାହାର ତହୁଂ ଉତପତି ହୋଇଲେ ଗିରିଜା ।୩୨୩
ସେହି ସେ ଗିରିଜାର ଅଟଇ ତପସ୍ଥାନ
ଗଉରୀ ପ୍ରଦାନ ତହିଂ ହୋଇଲେ ତ୍ରିଲୋଚନ ।୩୨୪
ଦୁତୀୟ ସୟମ୍ୱର ଯେ ହେମବନ୍ତର ଭୁବନେ

ଭଗତି ଭାବେ ରହିଲେ ଦେବ ତ୍ରିଲୋଚନେ ।୩୨୫
ବହଇ ଉତ୍ତରଭାଗୀ ହେମ ଯେ କେଦାରୀ
ଦ୍ୱାଦଶ ଯୋଜନ ପରିଯନ୍ତେ ତହିଁ ପଶିତେ ଭୟେକରି ।୩୨୬
ମହାହିମେଣ ସଇନି ନୁଆରନ୍ତି ଚାଲି
ତ୍ରାହି ତ୍ରାହି ଅର୍ଜୁନ ବୋଲିଣ ସମସ୍ତେହେଁ ବୋଲି ।୩୨୭
ସଇନିର ବିକଳ ଦେଖିଣ ସର୍ବସାଚୀ
ଅଗ୍ନି ନାରାଚ ଧରି ଅର୍ଜୁନ କରେଣ ଆମଞ୍ଚି ।୩୨୮
ଆଗେଣ ଅଗ୍ନି ଶର ପଛେଣ ଚଳଇ ସଇନି
ନନ୍ଦିଘୋଷ ଘେନି ଆଗୁସରେ ପାର୍ଥିବ ଫାଲଗୁନି ।୩୨୯
ଅଗ୍ନିର ଶରତେଜେ ହିମଗିରି ଗଲା ଫାଟି
ମହାଦ୍ରମାଳ ପର୍ବତେ ଅର୍ଜୁନ ଯାଇଂ ଉଠି ।୩୩୦
ତହିଁ ବହେ କୁରୁଶାଙ୍ଗୀ ହିମ ଯେ କେଦାରୀ
ତହିଁର ଭିତରେ ବିଜୟେ ଦେବ ତ୍ରିପୁରାରି ।୩୩୧
ପ୍ରସନ୍ନ ଲିଙ୍ଗ କେଦାର ଶୟଳ ଜନ ଚିନ୍ତା
ଭଗତ ମଚ୍ଛଳ ନାଥ ପ୍ରସନ୍ନେ ବରଦାତା ।୩୩୨
ଜୟତୁ କେଦାରେଶ୍ୱର ପ୍ରସନ୍ନ ମହାଭୋଳା
ଜୟତୁ କେଦାରେଶ୍ୱର ଭଗତ ମଚ୍ଛଳା ।୩୩୩
ମଉଳି ଜଟାରୁ ଗଙ୍ଗା ବହଇ ତ୍ରିବେଣୀ
ପଞ୍ଚଦଶ ନେତ୍ର ସ୍ୱାମୀ ଅଭୟ ଶୂଳପାଣି ।୩୩୪
ଯେମନ୍ତେ ଅନେକ ତୁଷ୍ଟିକରି ପାଣ୍ଡବ ଧନୁର୍ଜୟେ
ପ୍ରଣିପତ୍ୟ ହୋଇ ଅର୍ଜୁନ ବହୁତ ବିନୟେ ।୩୩୫
ଅର୍ଜୁନର ଭଗତେ ବିଜୟେ ତ୍ରିପୁରାରି
ପ୍ରସନ୍ନେ ମହା କେଦାର ଦ୍ରଶନେ ପାପ ହରି ।୩୩୬
ତୁ ଦେବ ପରମାନନ୍ଦ ଅଭୟ ପରମଯୋଗୀ
ଆପଣେ ଦୁଖ ପଡ଼ିଣ ନାଥ ପରେଣ ସୁଖଭୋଗୀ ।୩୩୭
ଅର୍ଜୁନକୁ ପ୍ରସନ୍ନେ ବଦନ୍ତି ବିଶ୍ୱବାଂସୀ
ଦେବତାଂକୁ ନିମନ୍ତ୍ରଣ କର ହୋ ଆକାଶରେ ପଶି ।୩୩୮
ତ୍ରିଦଶେ ଦେବେ ଯିବେଟି ସଭାକୁ
କୁଶଳେ ଦେବତାୟେ ପ୍ରସନ୍ନେ ବରଦେବେଟି ତୁମ୍ଭଂକୁ ।୩୩୯
ଅର୍ଜୁନକୁ ଅଭୟ ବର ଦିଲେ ପଞ୍ଚମୁଖେ
ବୃଷଭ ଆରୋହି ଦେବ ଗଲେ ଅନ୍ତରୀକ୍ଷେ ।୩୪୦
ଦେବବାଦ୍ୟ ଦୁନ୍ଦୁଭି ବାଜଇ ଘନ ଘନ
ଆକାଶ ଦିଗ ବିଜୟେ କରଇ ଫାଲ୍‌ଗୁନ୍ୟ ।୩୪୧

**

## ୪୩. ସଭାଗୃହ ନିର୍ମାଣ ଓ ଦୁର୍ଯ୍ୟୋଧନର ମନଦୁଃଖ

ବଇସୁତ ମନୁ ପଚାରିଲେ ଅଗସ୍ତିଂକି
କହିବା ମହାତମା ମୋତେ ଅମୃତ ରସ ବାକି ।୧
ଯେ ମହାରାଜାମାନେ ସମସ୍ତେ କରନ୍ତି ଗମନ
କେବଣ ଠାବରେ ବିଜେ କରିଛନ୍ତି ସର୍ବସନ୍ୟ ।୨
ଯେଥିର ଚରିତ୍ର ମୋତେ କହିବା ତପନିଷ୍ଠି
ଶ୍ରୀ ବିଷ୍ଣୁପୁରାଣ ଶୁଣନ୍ତେ ଖଣ୍ଡିବି ଅରଷ୍ଟି ।୩
ବଦନ୍ତି ଅଗସ୍ତି ଯେ କୁମ୍ଭଋଷିର ବହି
ଶୁଣ ସାବଧାନେ ତୁ ରାଜା ବିଚାରି ଯାହା ପୁଚ୍ଛି ।୪
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଚାରିଦିଗ
ଚାରିଗୁଣା ଲକ୍ଷେରାଜା ବସନ୍ତି ମଧ୍ୟ ଭୁଅଭାଗ ।୫
ଜମ୍ବୁଦ୍ୱୀପ ଲକ୍ଷେ ଯୋଜନ ସ୍ଥଳୀ
ଚାରିଗୁଣା ଲକ୍ଷେ ରାଜା ବସନ୍ତି ମହାବଳୀ ।୬
ପାତ୍ର ଅମନାତ୍ୟ ଯେ ମୁକୁଟ ଯୋଦ୍ଧାମାନ
ସଂକ୍ଷେପ ନୋହଇ ଯେତ ଅସଂକ୍ଷେପ ସନ୍ୟ ।୭
ବାଦ୍ୟଘୋଷ ଶବଦେ ସିନ୍ଧୁ ଘୋଷ ଜାଣି
ବାରୁଣାବନ୍ତେ ରହିଲେ ଉତ୍ତର ଦିଗର ଯେତେକ ନୃପମଣି ।୮
ବାରୁଣାବନ୍ତ ବୋଲିଣ ଯେବଣ ବନସ୍ତ
ମାନବ କୋଶେ ଆୟତନ ଯୋଜନ ବେନିଶତ ।୯
ତହିଁ ଆସି ପ୍ରବେଶ ସମସ୍ତ ରାଜାଗଣମାନେ
ରଥ ଗଜ ଅଶ୍ୱ ପାଦାନ୍ତି ଗହନେ ।୧୦
ପଚ୍ଛିମ ଦିଗରୁ ଯେତେକ ନୃପତି ଅଇଲେ ରାଜ୍ୟ ଛାଡ଼ି
ଇନ୍ଦ୍ରପ୍ରସ୍ଥେ ରହିଲେ ସେ ଯମୁନା କୂଳ ମାଡ଼ି ।୧୧
ଆହୋ ଗଙ୍ଗା ଯମୁନା ଦୁଇନଦୀର ମଧେ
ପୂର୍ବ କୁରୁକ୍ଷେତ୍ର ମଣ୍ଡଳ ଭୂମି ସାଧେ ।୧୨
ଆକାଶର ଛାୟା ମଣ୍ଡୋପ ସୁଧର୍ମା ସଭାସ୍ଥଳୀ
ଅମର ଭୁବନୁଂ ତାହାକଇଂ ଯେ ଆଣିଲେ ବନମାଳୀ ।୧୩
ସେ ସଭାର ଆୟେତନ ଦ୍ୱାଦଶ ଯୋଜନ
ଅମର ଗଣନ୍ତ ଘେନି ବିଜୟେ ଭଗବାନ ।୧୪
ସେ ସଭା ରଞ୍ଜଣ ଅଛନ୍ତି ଦେବହରି
କନେକର ଘଟଣ ଯେ ତାହାରି ବେଢ଼ଣ ପାଚେରୀ ।୧୫
ସୁବର୍ଣ୍ଣର ଲକ୍ଷେ ସ୍ତମ୍ଭ ସେ ସଭାର ଭିତରେ
ଲକ୍ଷେକ ସିଂଘାସନ ଯେ ଶୋଭିତ ବସିବାରେ ।୧୬
ସ୍ତମ୍ଭକେ ପାକ ଗୋଟିୟେ ଗୋଟିୟେକ ଟାଣି
ମୁକୁତା ମାଳି ମାଳି ଲମ୍ବନ୍ତି ରତ୍ନମଣି ।୧୭

ନେତର ଚନ୍ଦ୍ରାତପ ଯେ ଗୋଟିଯେ ଗୋଟିଯେ
ଢଳନ୍ତି ଅଷ୍ଟରତ୍ନ ବାଳଅର୍କ ପ୍ରାୟେ ।୧୮
ଯେସନେକ ଶୋଭାବନ ଲକ୍ଷେକ ରାଜାଂକୁ
ସୁବର୍ଣ୍ଣର ତେର ପାବଚ୍ଛ ଯେ ସଭାର ଉପରକୁ ଉଠିବାକୁ ।୧୯
ଯେସନେକ ନିର୍ମିତ ଯେ ସଭାର ଆୟତନ
ବାଳଅର୍କ ଜାଣି ସେ ଦିଶଇ ଶୋଭାବନ ।୨୦
ସଭାର ପଛିମଆଡ଼େ ତୋଳିଲେ ଯାଗଶାଳ
କୋଶେକ ବିସ୍ତାର ଯେ ଉଚ୍ଛର୍ଗ ଅଶିତାଳ ।୨୧
ସୁବର୍ଣ୍ଣର ଚଉଂରା ଯେ ବସଇ ଚାରିଆଡ଼େ
ସଷ୍ଟିକର ପୀଢ଼ ବସଇ ଚାରି ଚଉଂରୀ କଚ୍ଛାଡ଼େ ।୨୨
ସଭାର ଚାରିଆଡ଼େ ଯେ କଣୟ ପାଚେରୀ
ବେନିତାଳ ଉଚ୍ଛର୍ଗ ସେ ବେନିତାଳ ବିସ୍ତାରୀ ।୨୩
ତହିଂର ଉପରେ ନବତାଳ ଉଚ୍ଛର୍ଗ ଜଗତୀ
ସୁବର୍ଣ୍ଣ କଳସ ଅଷ୍ଟରତ୍ନେ ଝଟକନ୍ତି ।୨୪
ସୁବର୍ଣ୍ଣର କୀଳା ଯେ ମୁକୁତାର ଫେରେ
ନେତର ପାତାଙ୍ଗ ଗୋଟିଯେ ଗୋଟିଯେ ଉଡ଼ନ୍ତି
ତହିଂର ଉପରେ ।୨୫
ସହସ୍ରେ ସହସ୍ରେ ପାତାଙ୍ଗ ଉଡ଼ନ୍ତି କ୍ଷିତିକୁଳ
ଡାଳିମ୍ବ ଚାମରମାନ ଧରନ୍ତି ତହିଂର ତଳ ।୨୬
ଜଗତୀର ଆସ୍ଥାନ ମୁଂ ବାଉନିବି କିସ
ସହସ୍ରେ ସହସ୍ରେ ପାବଚ୍ଛ ତହିଂ ଉଠିବାକୁ ମାରାଗରେ
ତ୍ରାସ ।୨୭
କରସ୍ଥଳ ବିସ୍ତାର ଯେ ଚଉପଟ ହୀରା
ସହସ୍ରେ ସହସ୍ରେ ଲାଗିଛି ପାବଚ୍ଛକେ କମଳର ଶିରା ।୨୮
ଲମ୍ବନ୍ତି ଚଉସରା ଗଜ ଯେ ମୁକୁତା
ମାଣିକ୍ୟ ପୁଞ୍ଜି ପୁଞ୍ଜି ଗୁନ୍ଥିତ ପାଟସୂତା ।୨୯
ଶୁଦ୍ଧ କଣୟ ଉପରେ ନୀଳା ବଇଦୁର୍ଯ୍ୟ
ପାବଚ୍ଛକେ ଶତେ ଶତେ ପନ୍ତିକରି କଲେ ଦେବରାଜ ।୩୦
ଲକ୍ଷେକ ଶଗଡ଼ରେ ଆସଇ ଯେତେ ଧନ
ଯେକ ଜଗତୀରେ ଲାଗିଅଛି ତେତେକ ଆୟତନ ।୩୧
ଯେମନ୍ତେ ବାହାର ପାଚେରୀରେ ଚଉବିଂଶ ଜଗତୀ
ସବୁନ୍ତି ଅଷ୍ଟରତ୍ନେ ନିର୍ବାଣ ପନ୍ତି ପନ୍ତି ।୩୨
ଆହୋ ଦେଖନ୍ତେ ନ ଅଣ୍ଟଇ ଦିନ ନ ଲାଗିବ ତୃଷା କ୍ଷୁଧା
ରୋଗପୀଡ଼ା ଆଦିକରି ନ ଲାଗିବ କିଛି ବାଧା ।୩୩
ଦେଖନ୍ତେ ନିର୍ମଳ ଯେ ହୋଇବ ବେନିନେତ୍ର
ତହିଂ ବସନ୍ତେ ଶରୀର ହୋଇବାକ ପବିତ୍ର ।୩୪
ମଳୟ ବସନ୍ତ ଧାତୁବାଦ୍ୟ ଜୀବନ୍ୟାସ
ବହନ୍ତି ସମୀର ନାନା ଗନ୍ଧ ଆମୋଦନ୍ତି ଚଉପାଶ ।୩୫
ସଭାର ଆୟତନ କହିତେ କି ପାରି
ଆକାଶୁଂ କରି ଯାହା ଆଣିଲେ ଦେବ ମଧୁହାରୀ ।୩୬
ଆପଣେ ବିଶ୍ୱକର୍ମା ରୂପ ଧରିଣ ଶ୍ରୀପତି
ସଭା ନିର୍ବାଣ ଦେବ କରନ୍ତି ଦିବାରାତି ।୩୭
ଲଂକା ନିର୍ବାଣ କଲେ ଯେବଣ ରକ୍ଷ ଭକ୍ଷ ବିନ୍ଧାଣି
ସେ ସଭା ତାହାଙ୍କ ହାଥେ ନିର୍ବାଣ କଲେ ଚକ୍ରପାଣି ।୩୮
ଲଙ୍କାସ୍ୱର୍ଗ ଯେସନେକେ ଦିଶଇ ଶୋଭାବନ
ତେସନେକ ଶୋଭାବନ ଯେ ସଭାର ଆୟେତନ ।୩୯
ସୁବର୍ଣ୍ଣର ମେଢ଼ ମଣ୍ଡୋପ ଦେଉଳ ଜଗତୀ
ସୁବର୍ଣ୍ଣର ବାମ୍ପୀ ପୁଷ୍କରିଣୀମାନ ଘଟଣ ଚଉକତି ।୪୦
ନିର୍ମିତ ଘରମାନ ଯମୁନା ନଦୀ କୂଳେ
ସୁବର୍ଣ୍ଣର ନିର୍ବାଣ ତହିଁ ଉଠିଲେ ଛତ୍ରଶାଳେ ।୪୧
ପଞ୍ଚଶ ହାଥେ ଯେ କାଠିଯେକ ବୋଲି
ପଞ୍ଚାଶ କାଠି ଆଡ଼ଦୀର୍ଘେ ବଖରାୟେ କହିଲି ।୪୨
ଯେମନ୍ତେ ବଖରା ବଖରାକେ ଚାରିଚୁଲ୍ଲୀ ନିର୍ମିତ
ଚୁଲ୍ଲୀକେଣ ପଖା ଯେ ଅଷ୍ଟ ଉଭର ଶତ ।୪୩
ଶତେକ ବଖରାୟେ ଯେକ ଘରଗୋଟି
ପାଞ୍ଚ ମର୍ତ୍ତ୍ୟୁତ ଚାରିଲକ୍ଷ ଘର ଚଉବିଂଶ କୋଟି ।୪୪
ଯେମନ୍ତେ ଛତ୍ରଶାଳମାନନ୍ତ ନିର୍ମାଣି
ଅଷ୍ଟରତ୍ନେ ଘଟଣ ଯେ କଲେକ ଚକ୍ରପାଣି ।୪୫
ଲକ୍ଷେକ ରାଜ୍ୟକୁ ସଭାର ଚାରିକତି ଲକ୍ଷେକ ଭୁବନ
ଢଳନ୍ତି ମଣିମାଣିକ୍ୟ ଯେ ଅଷ୍ଟରତ୍ନମାନ ।୪୬
ତହିଂକି ବେଢ଼ାଇଲେ ସୁବର୍ଣ୍ଣର ପାଚେରୀ
ଚାରିଦ୍ୱାରେ ଘଟଣ କଲେ ଜଗତୀ ଚାରି ଚାରି ।୪୭
ଚନ୍ଦ୍ରଶାଳା ପୁର ଯେ କ୍ରୀଡ଼ାରଙ୍ଗ ଭୁବନ
ଯେମନ୍ତେ ଲକ୍ଷେ ରାଜାକଇଂ ଲକ୍ଷେକ ଭୁବନ ଶୋଭାବନ ।୪୮
ଯେସନେକ ଆୟତନ ଯେ କଲେ ଜଗନ୍ନାଥେ
ମୁହିଂ ତାହା ସଞ୍ଚପି ପାରିବି କି ମାନେବ ହେତୁ ମାତ୍ରେ ।୪୯
ଅଶ୍ୱଶାଳ ଗଜଶାଳମାନେ ଉଠନ୍ତି ବାରୁଣାବନ୍ତେ
ଯେକା ଗଜଶାଳ ଆୟେତନ କାଠି ନଳ ଶତେ ।୫୦
ଗଜଶାଳମାନ ଯେ କେ କରୁଂ ଗଣିତା

ତିନିଶତ ପରାୟୁଧ ଘର ଧାଡ଼ିକେ ନିର୍ମିତା ।୫୧
ଯେମନ୍ତେ ଲକ୍ଷେକ ପନ୍ତି ଘର ଉଠିଲା ଗଜଶାଳ
ବାରୁଣାବନ୍ତ ମାଡ଼ି ଗଙ୍ଗାନଦୀ ଦକ୍ଷିଣ କୂଳ ।୫୨
ଯେକା ପନ୍ତିକେ ଅଶ୍ୱଶାଳ ନବକୋଟି ପରାୟୁଧ
ଆବର ବତିଶ ମର୍ଭୁତ ନବଲକ୍ଷ ଅଶି ସହସ୍ର ସାଧ୍ୟ ।୫୩
ବାଦ୍ୟକାରମାନଙ୍କୁ ପଞ୍ଚାଉନ କୋଟି ଘର ଉଠି
ତମ୍ଭାର ଉପରେଣ ଜଡ଼ିତ ରତ୍ନପାଟି ।୫୪
ଭଟଶାଳମାନ ଚାରି ସହସ୍ର ମେବକ୍ଷ
ତିନି ମର୍ଭୁତ ଯେ ଆବର ଅଶିଲକ୍ଷ ।୫୫
ସବୁ ଘର ସୁବର୍ଣ୍ଣର ଉପରେ ରସାଣି
ଯେକଘର ଗୋଟିଯେ ନାହିଁ ତିରଣ ଛାୟେଣୀ ।୫୬
ସଭାର ଆୟତନ ଦେଖି ରାଜା ମାନଗୋବିନ୍ଦ
ବାହାର ମନେ ଆନନ୍ଦ ଭିତର ମନେ ବିଷାଦ ।୫୭
ପାପବୁଦ୍ଧି ନୃପତି ଯେ ଧରଇ ହୃଦଗତେ
ଶତ୍ରୁର ସମ୍ପଦ ମୁଂ ଯେ ଦେଖିବି କେମନ୍ତେ ।୫୮
ଯେସନେକ ବିଚାରଇ ରାଜା ପାଣ୍ଡବେ ଅଇଗିତା
ଅନେକ ଦୁଷ୍କରାଯେ ଅଛନ୍ତି ଯେହା କେହି ନୋହିବେ ଭାଞନ୍ତା।୫୯
ଶକୁନିକି ଘେନି ରାଜା ଭାଳଇ ଯେକାନ୍ତେ
ଶକୁନି ବୋଇଲା ସମସ୍ତ ଯଶ ଘେନିଲି କି
ଜରାସନ୍ଧ ନିବାରନ୍ତେ ।୬୦
ସେ ଚାରିଭାଇ ଗଲେନି ଚାରିଦିଗ ବରଣେ
ଲକ୍ଷେ ରାଜା ସାଧକଲେ ସର୍ବେ ଚାରିଜଣେ ।୬୧
ଧାର୍ମିକ ବିବେକ ସେ ଛତ୍ରିୟ ବଳବନ୍ତା
ବେଦଶାସ୍ତ୍ର ମତେ ସେ ହୋଇଲେ ନିର୍ଜିତା ।୬୨
ଯେବଣ ସଖାଗୋଟି ପାଇଲେ ଜଗନ୍ନାଥେ
ଆବର ତୁଲ୍ୟ ସେ ପାର୍ଥିବ ଧନଞ୍ଜୟେ ।୬୩
ଚିତ୍ତେଣ କଳଂକ ତୁ ନ ଧର କୁରୁପତି
ପାଣ୍ଡବେ ଅଭାବ ହୋଇଲେ ବୁଡ଼ାଇବୁଟି ବିଭୂତି ।୬୪
ଦେଖ ହାଦେ ଆକାଶର ସମସ୍ତ ବୃନ୍ଦାରକେ
ରତ୍ନ ଅଳଂକାର ବହି ଆଣୁଛନ୍ତି ସମସ୍ତ ଦେବଲୋକେ ।୬୫
ବରୁଣ ନୃପତି ଯେ ବାରାନିଧି ରତ୍ନ ଆଣି ଦେଉଛନ୍ତି କୂଳେ
ତହୁଂ ଭାର ଭାର କରି ବହି ଆଣୁଛନ୍ତି ସମସ୍ତ ଗୋପାଳେ ।୬୬
ଅମର ସ୍ୱର୍ଗ ଆୟତନ ଦେଖ ରାଜୁସି ଯାଗ ସଭା
ଭୃତ୍ୟପଣେ ଖଟିଛନ୍ତି ସମସ୍ତ ରାଜ ଦେବା ।୬୭
ଶ୍ରବଣେ ବାବୁ ହାଦେ ନ ଥିଲୁ ଯାହା ଶୁଣି
ପ୍ରତକ୍ଷେ ଦେଖିଲୁ ତାହା ଆହେ ନୃପମଣି ।୬୮
ତୁ କାହିଂକି ମାନଗୋବିନ୍ଦ ବିକୃତ କରୁ ଚିତ୍ତ
ପୁଣ୍ୟ ଥିଲେ ପ୍ରାଣୀକି ହାଦେ ସମସ୍ତ ହୋଇଥାଇ ଉପଗତ ।୬୯
ରାଗ ମୋହ ଅହଂକାର ସମସ୍ତ ଦୂରକରି
ଯେ ସଭାୟେ ଯୁଦ୍ଧେଷ୍ଟିଂକି ଖଟିବା ହୋ ଯେତେମାନେ
ପାରି ।୭୦
ତାହାଂକର ସଞ୍ଚିତ ଯେ ତୋତେ ଅଛି ଭାଗ
ସହୋଦ୍ର ହୋଇ କିଂପା ହୋଉ ବଇରାଗ ।୭୧
ଅନେକ ବାଗେ ମଣାଇ କହିଲା ମନ୍ତ୍ରୀବର ଶକୁନି
ଶୁଣିଣ ମାନଗୋବିନ୍ଦ ଯେ ହୋଇଲାକ ତୁନୀ ।୭୨

**

## ୪୪. ନକୁଳଙ୍କର ରାମେଶ୍ୱର ପ୍ରବେଶ, ସୁବଳ ଗିରିରେ ଗୋରେଖଙ୍କ ସହିତ ଭେଟ, ଗୋରେଖଙ୍କୁ ନିମନ୍ତ୍ରଣ

ତହୁଂ ଚଳନ୍ତି ନକୁଳେ ସେତୁବନ୍ଧ ରାମେଶ୍ୱରେ
ବିଜେ କୁମାର ଯାଇଂ ବେଳାବନ ସୁବଳୟା ପର୍ବତ ଉପରେ ।୧
ତେର ଯୋଜନ ଆୟେତନ ସେ ସୁବର୍ଣ୍ଣମୟେ ସ୍ଥଳୀ
ତିନିକୋଶ ଉଶ୍ବର୍ଗ ଅର୍ଦ୍ଧକୋଶେକ ଅଗୁଳି ।୨
ସୁବର୍ଣ୍ଣ ଦେଉଳ ଯେ ଶତେତାଳ ଉଶ୍ବର୍ଗ
ସେ ଦେଉଳ ଉପରେ ଉଠି ଦେଖିଲେ ଦିଶଇ ଦିବାସ୍ୱର୍ଗ ।୩
ପର୍ବତ ଉପରେ ଯେ ବିଜୟେ ଧୂର୍ଜଟୀ
ସଂସାରକୁ ଅଦୃଶ୍ୟ ନିମନ୍ତେ ପାତାଳ ସ୍ୱର୍ଗ ଘୋଟି ।୪
ଶ୍ରୀରାମ ଘାଟ କୁଣ୍ଡେଣ କରନ୍ତି ସ୍ନାହାନ
ଦ୍ୱାରେଣ ଦେଖିଲେ ପାଷାଣ ରୂପେ ବିଜୟେ ହନୁମାନ ।୫
ଦ୍ରଶନେ ଅନେକ ଯେ ବିନୟେ ଭଗତି
ଦେଉଳେ ଦେଖିଲେ ଯେ ଅବ୍ୟକତ ପଶୁପତି ।୬
ବଇଦୁର୍ଯ ଶକତି ଯେ ପ୍ରବାଳ ଜ୍ୟୋତି ଜାଣି
ବିକାଶନ୍ତି ଜଳବିନ୍ଦୁ ତିନିତାଳ ଗଭୀର ପାଣି ।୭
ଯେସନେକ ସରୂପ ସେ ଆଶ୍ରିଜ ବୀର ଚାହିଂ
କେମନ୍ତେ ଶିବରୂପ ଦେଖିବା ସରୂପ ପୁଣ କାହିଂ ।୮

ନକୁଳ କରପତ୍ର ଯୋଡ଼ିଣ ପରିଣାମି
ଭୂମିଜାରବଲ୍ଲଭ ଅନାଦି ସିଦ୍ଧ ସ୍ୱାମୀ ।୯
ଶୁଦ୍ଧ ସମ୍ପଦ ଯାହାର ଅମୃତ ରସ ବାକି
ଠୁଳଶୂନ୍ୟ ଭେଦିବାକୁ ତୁହି ସେ ସର୍ବସାକ୍ଷୀ ।୧୦
କାଳ ଅକାଳ ନାଥ ତୁହି ସେ ସର୍ବସଞ୍ଚା
ତୁହି ଯେ ମଧୁଭାବେ କାଳକୂଟ ଭକ୍ଷ ବଞ୍ଚା ।୧୧
ଜୟ ତୁ ଜୟ କରୁଣା ସାଗର ରାମେଶ୍ୱର
ପ୍ରସନ୍ନେ ସ୍ରିଜିଲୁ ତୁହି ଶ୍ରୀରାମ ଅବତାର ।୧୨
ଉଡ଼ଙ୍ଗ ବାହନ ନାଥ ବିଳସନ୍ତା ସର୍ବଋଦ୍ଧି
ଯାହାର ପ୍ରସନ୍ନେ ନାଥ ଲଭଇ ମଉଷଧି ।୧୩
ଶ୍ରୀରାମେଶ୍ୱର ଯେ ଶ୍ରୀରାମଚନ୍ଦ୍ରେ ପୂଜା
ଲକ୍ଷଣର ବିନୟେ ତୁ ବିଜୟେ ଦେବରାଜା ।୧୪
ବାଞ୍ଛିତ ଅବାଞ୍ଛିତ ତୁ ଜଗତ ଜନ ଗୁରୁ
କୃତାନ୍ତକର ଭୟରୁ ନାଥ ତୁହି ସେ ଉଦ୍ଧରୁ ।୧୫
ଅନ୍ଧକ ବିଦାରଣ ନାଥ ତୋହୋର ଦିବ୍ୟବୁଦ୍ଧି
ଦୁସହ ସାଗରେ ସ୍ୱାମୀ ବନ୍ଧାଇଲୁ ବାରାନିଧି ।୧୬
ଜନ ମନ ମୋହନ ନାଥ ପାଳନ୍ତା ଦେବ ସର୍ବ
ଯୋଗୀଜନ ହୃଦଗତେ ତୁହି ସେ ସର୍ବଜୀବ ।୧୭
ତୋହୋର ପାଦେ ବିନୟେ ରଘୁବଂଶର ପତି
ବଧ କଲେ ଦଶାନନକଙ୍କଂ ପରମାନନ୍ଦ ଦାଶରଥି ।୧୮
ପୃଥିବୀ ଭାରା ଉଦ୍ଧାରଣ କଲେ କଉଣପ ବଳ ଧ୍ୱଂସୀ
ତୁ ସେ ଅଣାକାର ଠୁଳ ଶୂନ୍ୟ ବିକାଶି ।୧୯
ତୁହି ସେ ବାରାନିଧି ନାଥ ଯେ ତ୍ରିପୁରାରି
ତୁହି ସେ ପିନାକୀ ଧାରଣ ଦେବ ଅନଙ୍ଗ ଅରି ।୨୦
ଶ୍ରୀ ରାମେଶ୍ୱର ଦେବଙ୍କର ଶ୍ରୀଚରଣାରବିନ୍ଦେ
କୋଟିଯେ ତୀର୍ଥ ଘେନି ପୁଷ୍କର ସଙ୍ଗମ ହୋଇ ଯାହାର ପାଦେ ।୨୧
କୋଟିଯେ ନିଧି ଘେନି ମହେଶ୍ୱର ମୁରତି
ସୁଖେ ବିଳସଇଂ ନାଥ ଯେତେ ତୋତେ ଭଗତି ।୨୨
ଶ୍ରୀମହାଲିଙ୍ଗ ଶ୍ରୀରାମ ଈଶ୍ୱର ଯୋଗାଧି
ଶୂଦ୍ରମୁନି ସାରୋଳା ଦାସ ନନ୍ଦିକେଶ୍ୱର ଦେବ ବନ୍ଦି ।୨୩
ଶ୍ରୀରାମେଶ୍ୱର ଦେବଙ୍କୁ ନକୁଳ କଲେ ଅନେକ ତୁଷ୍ଟି
ଭୂତଳ ତେଜି କରି ବିକାଶିଲେ ପଶୁପତି ।୨୪
ନକୁଳକଇଂ ପ୍ରସନ୍ନ ହୋଇଲେ ବିଶ୍ୱବାସୀ
କହିଲେ ମହାରସ ଯେଣେ ହୋଇବ ଧନରାଶି ।୨୫
ପାଇଲା ନକୁଳ ଯେ ମହାମନ୍ତ୍ର ସିଦ୍ଧି
ଯେଣେ ସେ ରତ୍ନ ଉପୁଜିବ ସର୍ବନିଧି ।୨୬
ତହୁଂ ବିଜୟେ ଯେ କୁମାର ବୀରମଣି
ସୁବଳୟା ନଗ୍ର ଯେ ବେଲାବନ ଜିଣି ।୨୭
ଦକ୍ଷିଣ କୋଶଳେ ସେ ଅନେକ ରାଜା ସାଧି
କଦଳୀବନ ରାଜ୍ୟେ ପ୍ରବେଶ ମହାଯୋଧୀ ।୨୮
ଦ୍ରଶନ କଲେ ସେ ମଛଇନ୍ଦ୍ର ନାଥ ପୁତା
ଭେଟିଲା ପରମ ଯୋଗୀ ଗୋରେଖ ଅବଧୂତା ।୨୯
ଶୁକ୍ଳାମ୍ବର ପୁରୁଷ ସେ ମଉଳେଣ ଚୂଳବେଣୀ
ଭସ୍ମ ବିଲେପନେ ଶ୍ୟାମଳ ଶୁଦ୍ଧବାଣୀ ।୩୦
ବଙ୍ଗସିନ୍ଧର ସୁରଙ୍ଗେ କ୍ରୀଡ଼ନ୍ତି ମଉଭୋଳା
ଅନନ୍ତ ଗାଇତିରୀ ସନ୍ନିଧେଣ କପିଳା ନନ୍ଦନୀ ବଉଳା ।୩୧
କରସ୍ଥଳେ ଖପର ଶୁଦ୍ଧ ସଷ୍ଟିକ ବେନି କର୍ଣ୍ଣେ
ହୃଦେଣ ବକୁଳ ମାଳୀ ବେନି ପାଦୁକା ଗବନେ ।୩୨
ପରମ ପୁରୁଷ ପୁରୀ ସେ କଦଳୀ ଭୁବନେ
ମନ ଆତଯାତ ନାହିଂ ଜନ ମନୁଷ୍ୟ ଗବନେ ।୩୩
ନକୁଳ କୁମାରେ ଭ୍ରମନ୍ତି ଚଉପାଶେ
ଜନଜନ୍ତୁ ଆଗମନ ନାହିଂ ତହିଂ ଚଉପାଶେ ।୩୪
ଯୋଗ୍ନୀ ନଦୀର ସେ ଉତ୍ତର କୂଳ ଆଡ଼େ
ଭେଟିଲେ ମହାତ୍ମାଂକୁ ବକୁଳ ବୃକ୍ଷ ତଳେ ।୩୫
ନକୁଳ ପଚାରନ୍ତି ହୋ କାହିଂର ତୁମ୍ଭେ ଯୋଗୀ
ଯେଡ଼େ ପରିମଳ ଭୁବନେ କର୍ମୀ ମନୁଷ୍ୟ ପରିତ୍ୟାଗୀ ।୩୬
ଗୋରେଖ ବୋଇଲେ ଶୁଣସି ଆରେ ପୁତା
ଆମ୍ଭେ ସେ ପଣ୍ଡିତ ହୋ ଗୋରେଖ ଅବଧୂତା ।୩୭
ଅନାଦି ନାଥେ ଅଟନ୍ତି ସେ ନିରଞ୍ଜନ ଗୋତ୍ରୀ
ତାହାଙ୍କର ନନ୍ଦନ ଯେ ମସଇନ୍ଦ୍ର ନାମେ ଯତି ।୩୮
ମସେନ୍ଦ୍ରନାଥଂକର ଯେ ଆମ୍ଭେ ଅଟୁ ପୁତା
ଆମ୍ଭେ ସେ ପଣ୍ଡିତ ହୋ ଗୋରେଖ ଅବଧୂତା ।୩୯
ଆହୋ ନକୁଳ ତୁ ନ ଜାଣୁ ଯେଥିର କଥା
ଯେ ରାଜ୍ୟ ପାଇଲୁ ଆମ୍ଭେ ଅନେକ କାଳର ବାରତା ।୩୦
ଅନୁସଦନ ବୋଲି କରି ଯେକଇ ସତ୍ୟଯୁଗେ
ଭବାନୀ ନାମେ ପୃଥିବୀ ବସଇ ମଧ୍ୟସ୍ୱର୍ଗେ ।୩୧
ଯେଥି ବହୁତକାଳ ମାଡ଼ିଥିଲା କ୍ଷୀରୋଦ୍ର
ମହାଖଳା ପାତିଲା ସୋମେକ ନାମେ ରୁଦ୍ର ।୩୨

କାଦମ୍ବରୀ ପାନେ ସେହୁ ହୋଇଲା ମତ୍ତାର
ତେତ୍କ୍ଷଣ ପଡ଼ିଲା ଆସି ସାହେର ଭିତର ।୩୩
ବହୁତ କନ୍ଦଳ କଲା ସେ ରତ୍ନାକର ତୁଳେ
କ୍ଷୀରୋଦ୍ର ଶୁଖିଲା ସେ ସଦାଶିବର ପିଇଲେ ।୩୪
ତତେଣ ଘୁଞ୍ଚିଲା ସେ ଅଗାଦ ଜଳସିନ୍ଧୁ
ଅପୋଡ଼ା ପୃଥ୍ୱୀ ଯେଥି ସର୍ବଦା ପାଳଇ ସିନ୍ଧୁ ।୩୫
କାହାରିହିଂ ରାଜ୍ୟ ନୋହୋଇ କେହୁଣସି ବେଳେ
ସମୁଦ୍ର ଛଡ଼ା ଖଣ୍ଡିଯେ ଅଟଇ ସର୍ବକାଳେ ।୩୬
କନ୍ଦଳେ ଛଡ଼ାଇଲେ ଯହୁଂ ସୋମେକ ନାମେ ରୁଦ୍ରଦେବ
କଦଳୀ ବନ ନାମ ବିହିଲା ହାଦେ ସେ ଦଇବ ।୩୭
ଅନାଥର ଭୂମି ଯେ ଅଟଇ ସର୍ବଥାପି
ଆମ୍ଭେହେଂ ଅନାଥର ନାଥ ଯେ ଅଦ୍ୟାପି ।୩୮
ଯେ ଭୁବନ ମାଡ଼ି ଆମ୍ଭେ ରହିଲୁ ନାଥ ଗ୍ରନ୍ଥି
ନିରାଲମ୍ବ ଭୂମି ଯେଥକୁ ନୂଆସନ୍ତି କେହି କତି ।୩୯
ନକୁଳ ବୋଇଲେ ଯେ ନିର୍ମଳ ତୁମ୍ଭ ଦୀକ୍ଷା
ଯାଗ ଯଗ୍ୟେଂ ଯିବାକୁ ମହାତମା ବଳଇଟି କି ଇଚ୍ଛା ।୪୦
ଗୋରେଖ ବୋଇଲେ ଆମ୍ଭେ ସର୍ବଦା କୁତୂହୋଳୀ
ଭ୍ରମଣ ଇଚ୍ଛାୟେଣ କଉତୁକେ ଖେଳି ।୪୧
ଶୁଣିଣ ଛାମୁରେ ନକୁଳ ଥୋଇଲେ ନେଇ ନିମନ୍ତଣ ଯୋଗାଡ଼
ସାନନ୍ଦେ ପରମଯୋଗୀ ବିଚାରେ ସଂକୋଡ଼ ।୪୨
ସୁଲଭ ହରଷେ ସଜ ଯେ ହୋଇଲେ ଗୋରେଖ
ତତ୍ହୁଂଣ ଚଳିଲେ ଅଶ୍ୱିନୀ କୁମାରଙ୍କ ବସ୍ତ ।୪୩
ପୁଣିହିଂ କୁମାର ଯେ ଆସଇ ନେଉଟି
ଗୋରେଖ ପଦ୍ମପାଦେ ପ୍ରଣପତ୍ୟ ହୋଇ ଲୋଟି ।୪୪
ଆହାରେ ହନ୍ତ ବୋଇଲେ ଯେ ନକୁଳ କୁମାରଙ୍କୁ
ପ୍ରତକ୍ଷେ ଭେଟିଲୁ ଆସି ଗୋରେଖ ନାଥଙ୍କୁ ।୪୫
ଯାହାକଇଂ ଭେଟିଲେ ହୋଅଇ କୋଟି କଳ୍ପି
ମାଗିଲେ ବ୍ରହ୍ମର୍ଷି ଦିଅନ୍ତି ଅଦ୍ୟାପି ।୪୬
ପିଣ୍ଡ ପ୍ରାଣ ଯେକତ୍ୱକୁ ଯାହାର ଗ୍ୟାନ ତତ୍ତୁ
ଯୋଗେଶ୍ୱର ପୁରୁଷ ସେ ଜାଣଇ ଗ୍ୟାନ ହେତୁ ।୪୭
ସାରଥିର ବଚନେ ସେ ନକୁଳ ପରିଣାମି
କିଞ୍ଚିତ ଗ୍ୟାନ ମୋରେ କହିବା ଦେବ ସ୍ୱାମୀ ।୪୮
ଗୋରେଖ ବୋଇଲେ ଯେ ସଂସାର ଜଞ୍ଜାଳ
ଯେହା ତେଜ୍ୟା କଲେ ନ ବୁଡିବ ସର୍ବକାଳ ।୪୯
କୁମାର ବୟସ ତୋର ଯେ ଭୋଗ ଯେ ବିଳାସ
ଯୋଗ ସାଧିବାର ଯେତ ନୋହୋଇ ବୟସ ।୫୦
ତୁ ଯେବେ ମାଗିଲୁ ତୋତେ ଦେବାକ ପଦାର୍ଥେ
ସ୍ତମ୍ଭନ ବିଦ୍ୟାୟେ ସେ କହିଲେ ଅଦଭୂତେ ।୫୧
ପବନ ଉଜାଣିକି କହିଲେ କାରଣ
ଶୁଷିରେ ଥକାଇ ଯେହା ସମ୍ଭାଳି କରି ଆଣ ।୫୨
ସେଠାରେ ଅନ୍ତର୍ଦ୍ଧାନ ହୋଇଲେ ପୁରୁଷଇଂ
ତତ୍ହୁଂଣ ନକୁଳ ଯେ ବିଜେ କରି ଆସଇ ।୫୩

**

## ୪୫. ସହଦେବଙ୍କର ପୂର୍ବ ଦିଗକୁ ଯାତ୍ରା

ଚଳଇ ସହଦେବ ଘେନିଣ ସମଦଣ୍ଡ
ବିହଡ଼ନ୍ତି ଯୋଦ୍ଧାମାନେ ବଡ଼ାଇ ପ୍ରଚଣ୍ଡ ।୧
ଆହୋ କ୍ଷୀରୋଦ୍ର କୂଳେ ଯେ ବେଲାଳ ଦେଶ ବୋଲି
ତହିଂ ଯାଇ ସହଦେବର ଥାଠ ପଶଇ ପେଲି ।୨
ସେ ଦେଶର ରାଜା ଯେ ବେଲାଳ ଚକ୍ରବ୍ରତୀ
ବାଳକାଳେ ସେ ଗଉତମ ମହରଷିନ୍ତ ହୋଇଲେ ଭଗତି ।୩
ଗଉତମୀ କୂଳେ ସିଂଘ ବୃହସ୍ପତି ଯୋଗେ ଅପାର ଦାନ ଘେନି
ଦାନ ଘେନନ୍ତେଣ ହୋଇଲା ଗୋରୁ ପଲ ତିନି ।୪
ଆହୋ ପଞ୍ଚ ଶତକେ ଯେ ଗୋଷ୍ଟେକ ବୋଲି
ଚଉବିଂଶ ଗୋଷ୍ଟେ ଯେ ହୋୟେ ଯେକ ପଲ୍ଲୀ ।୫
ଚଉବିଂଶ ପଲେ ଲଉଡ଼ି ଯେକ ନିର୍ବାଣି
ଚଉବିଂଶ ଲଉଡ଼ି ସେ ମହାଖୁଡ଼ ଯେକ ଜାଣି ।୬
ଚଉବିଂଶ ମହାଖୁଡ଼େ ଅଟଇ ଯେତେକ ଗାଈ
ତେତେକ ଉପରେ ଯେ ଖଟଇ ଯେକ ମହାଭୋଇ ।୭
ଯେମନ୍ତେ ଚଉବିଂଶ ମହାଭୋଇ ଗଉତମଂକର ତହିଂ ଥିଲେ
ତୋଷେଣ ମହାତମା ତାହା ବେଲାଳସେନଙ୍କକଇଂ ଦିଲେ ।୮
ଆହୋ ଯେତେକ ଘୃତ ଲାଗଇ ତାହାଂକର ହୋମକୁ
ବେଲାଳସେନ ଦିଅଇ ଯେ ନିତ୍ୟେ ଗଉତମଂକୁ ।୯
ସେ ଗଉତମଙ୍କ ପ୍ରସାଦେ ବେଲାଳସେନ ରାଜା
ମଉଦଧି କୂଳେ ତାହାଂକୁ ସମସ୍ତେ କରନ୍ତି ପୂଜା ।୧୦

ସହଦେବ ବିଜେକଲେ ବେଲାଳସେନ ରାଜ୍ୟେ
ବୀର ତୂର ବୀର ଢୋଲ ଯେ ଗହଳ ଧ୍ୱନିବାଜେ । ୧୧
ଦେଶାଉର ବାରତା କଲା ସେ ବେଲାଳସେନ ରାଜାକୁ
ସ୍ୱାମୀ ପରଦେଶୀ ରାଜାଯେ ଧାଡ଼ି ଦିଅଇ ଆମ୍ଭର ରାଜ୍ୟକୁ । ୧୨
ଆଚମ୍ଭିତ ବାରତା ଯେ ପାଇଣ ବେଲାଳ
ବୋଇଲା ରାଜ୍ୟକୁ ପଶି ନ ଦିଅରେ ବହନ ଓଗାଳ । ୧୩
ମୋହୋର ଛାମୁକୁ ଆଣ ଯେ ତାହାକଇଂ ଧରି
ଜୀବନ୍ତା ଧରିଆଣ ମୋହୋର ଛାମୁକୁ ବନ୍ଦୀକରି । ୧୪
ରାଜାର ଆଗ୍ୟାଂଯେ ସେ ଗୋପାଳ ବୀରମାନେ
ପ୍ରତଗ୍ୟାଂ କରି ସେ କୋପେ ଧାଇଂଲେ ବହନେ । ୧୫
ପାଦେଣ କଡ଼ାଉ ବେନି କରେଣ ଯେ ଯାଠି
ମାଥେଣ ଖୋଲରି କରେ ବାଉଂଶୀ ଶର ଗୋଟି । ୧୬
କର୍ଣ୍ଣେଣ ମନ୍ଦାର ପୁଷ୍ୟ ଗୁଂଜରା ଲଲାଟେ
ପ୍ରତଗ୍ୟାଂ ସାମରଥେ ଧାମନ୍ତି ଅଧର କରି ପୁଷ୍ଟେ । ୧୭
କଡ଼ା ମର୍ଦ୍ଦଳ ଯେ ମୃଦଙ୍ଗ ଘୁମୁରା ଦାଉଣ୍ଡି
ମଦିରା ରସେ ଭୋଳ ଖେମଟା ନାଟଖଣ୍ଡି । ୧୮
କଟିରେ କଟିସୂତ୍ର ଭିଡ଼ିଣ କାଛେଟି
ବିହଡ଼ନ୍ତି ଗୋପାଳେ ଦନ୍ତ ଯେ ପରକଟି । ୧୯
ବୁଲାବନ୍ତି ଲଉଡ଼ି କୁଟୁଣୀ ଗୀତ ଗାଇ
ବଇଲେ ବଇଲେ ଚଢ଼ି କେ ଆସନ୍ତି ଖତାଇ । ୨୦
ପାଣ୍ଡବ ସଇନି ଯେ ଗୋପାଳ ବଳ ଦେଖି
ପଶିଲେ ରଣରଙ୍ଗେ ଉପ୍ରୋଧ ଉପେକ୍ଷି । ୨୧
ଗଦାନ୍ତ ବୁଲାଇଣ ବୀରେ ଧଇଲେ କରେ ଚାବ
କଉତୁକ ଦେଖି କରି ରୁହାଇଲେ ସହଦେବ । ୨୨
ସମାର୍ଜନ୍ତି ସହଦେବ ଆପଣାର ସନ୍ୟବଳ
ବୋଇଲେ ଦେଖିବା ହୋ ଗୋପାଳଂକ କୁତୂହୋଳ । ୨୩
ବଡ଼ାଇ ବଇଲେକ ଆରୋହି ଆସଇ ବେଲାଳ ଚକ୍ରବ୍ରତୀ
ବାମ ଡାହାଣେ ଉଭାରିଲେ ସହସ୍ରେକ ମଞ୍ଜୁର ଝାଲି ଛତୀ । ୨୪
ସାରଥିକି ବୋଇଲେ ସେ ଅନୁଶୁୟାର ପ୍ରାଣନାହା
ବେଲାଳସେନ ଉପରକୁ ରଥ ମୋହୋର ବାହା । ୨୫
ସହଦେବ ବଚନେ ସାରଥୀ ରଥ ବାହି
ସଇନ ଉପରେ ନେଲା ରଥନ୍ତ ଚଳାଇ । ୨୬
ବେଲାଳସେନ ଛାମୁରେ ଟେକିଲା ରଥ ନେଇ
ରାଜା ପଚାରଇ ତୁମ୍ଭେ କାହିଂର ନରସାଇଂ । ୨୭
ମୋହୋର ରାଜ୍ୟରେ ମୁଂ ଅଟଇ ନିର୍ଦ୍ୱନ୍ଦୀ
କାହାରି ତୁଲେ ମୁଂ ନୋହୋଇ ଯେ ବିବାଦୀ । ୨୮
ସମୋଦ୍ର ଛଡ଼ା ଯେଥେ ନୋହେ ଆନ କୃଷି
ଯେ ଗୋଧନ ପଲ ଦିଲେ ଗଉତମ ମହରଷି । ୨୯
ସହଦେବ ବୋଇଲେ ତୋହୋରେ ବହୁତ ଅଛି କାର୍ଯ୍ୟ
ତୋତେ ନିମନ୍ତ୍ରଣ କରି ନେମି ମୁହିଂ ଆଜ । ୩୦
ରାଜୁସି ଯାଗ ସଭାକୁ ଚାଲ ଯିବା ହୋ ବେଲାଳ
ପୃଥୀରେ ଯେତେ ରାଜା ଅଛନ୍ତି ସେ ସକଳ । ୩୧
ଲକ୍ଷେ ରାଜା ଆଗମନ କରିଛନ୍ତି ମହାଯୋଗେ
ତୋତେ ହୋ ନିମନ୍ତ୍ରଣ କରିବି କାର୍ଯ୍ୟ ଯୋଗେ । ୩୨
ସହଦେବର ବଚନେ ଯେ ବୋଲଇ ବେଲାଳ
ମୁହିଂ କିଂପା ଯିବି ତୋହୋର ରାଜ୍ୟକୁ କୁତୂହୋଳ । ୩୩
ବହୁତ ପ୍ରତଗ୍ୟାଂ ଯହୁଂ ସେ କଲାକ ଅମାନୀ
ସହଦେବ ବିନ୍ଧିଲା ଯେ ମୋହୋନା ଶରେକ ଘେନି । ୩୪
ବଇଲେକ ଚଢ଼ି ଯେ ବେଲାଳସେନ ଥିଲା
ମୋହେ ଅସାଷ୍ଟମ ହୋଇ ସେ ଢଳିଣ ପଡ଼ିଲା । ୩୫
ରଥପରେ ଥାଇଂ ସେ ଅଶ୍ୱିନୀ କୁମାରଂକ ଦୁଲାଳ
ଆକ୍ରେଷି ଧଇଲେ ଯାଇଂ ବେଲାଳସେନ ବାଳ । ୩୬
ପାଟ ଡୋରେକ ଘେନି ବନ୍ଧନ କଲା ରଥେ
ଦେଖିଣ ବେଢ଼ିଲେ ଗୋପାଳ ତିନି ଯେ ମର୍ଭୁତେ । ୩୭
ଲାଉଡ଼ି ବୁଲାଇଣ ପିଟିଲେ ମହାରୋଷେ
ମାରରେ ଗୋପାଳନ୍ତ ବୋଇଲେ ମାଦ୍ରୀଦେବୀର ଶିଷ୍ୟେ । ୩୮
ସହଦେବର ବଚନେ ବେଢ଼ିଲେ ସଇନି
କରନ୍ତି ପ୍ରହାର ବୀରେ କରେ ଶସ୍ତ୍ର ଘେନି । ୩୯
ଆହୋ ପର୍ବତ ବିନ୍ଧିବାକୁ ସାମରଥ ଯେବଣ ବୀରେ
ଗୋପାଳେ ସାମରଥ କି ତାହାଂକ ଛାମୁରେ । ୪୦
କାଦମ୍ବରୀ ପାନେଣ ମହାମତ୍ତ ଭୋଳେ
ଅନେକ ସମର ତହିଂ କଲେକ ସେ ଗୋପାଳେ । ୪୧
ସମସ୍ତ ଗୋପାଳେ ଯେ ପଡ଼ିଲେ ସମରେ
ଜଣେ କେହି ନ ରହିଲେ ସହଦେବର କୋପଭରେ । ୪୨
ପାଞ୍ଚ ଅହିବ୍ରତ ତିନି ମର୍ଭୁତ ଗଉଡ଼େ
ସମସ୍ତେହେଂ ଲୋଟିଲେ ପାଣ୍ଡବ ସଇନି ଶରେ । ୪୩
ସହଦେବ ବୋଇଲେ ରେ ଅଡ଼ାଅ ଗୋଗୁପଲ
ଧାଇଂଣ ବେଢ଼ିଲେ ସେନାପତି ମହାମଲ୍ଲ । ୪୪

ଆହୋ ଘୋର ସଇନି ଦେଖି ବିହଡ଼ିଲେ ସର୍ବ ଗାଈ
ହମ୍ବାରବ ଶବଦ କରି ଉଠିଲେ କୋପେ ଧାଇଂ ।୪୫
ତହୁଂଣ ଗୋରୁପଲ ଉଠିଲେ ଗଳଗାଜି
ପାଣ୍ଡବ ବଳ ସଇନି ପଳାଇଲେ ସର୍ବଭାଜି ।୪୬
ଅନେକ ବାଗେ ବୀର କଲେକ କଟାଳ
କେମନ୍ତେ ହେଂ ସାଧ୍ୟ ନୋହିଲେ ଗୋକୁଳ ।୪୭
ବେଲାଳସେନ ବୋଇଲା ଗୋସାଇଂ ଗୋରୁଯେ ବଡ଼ ପରମାଦୀ
ପରଚେ ଗୋପାଳେ ସେ ହୋଅନ୍ତି ସର୍ବସାଧି ।୪୮
ସ୍ୱାମୀ ଦୁର୍ଭାର ଗାଈ ସେ ଅଟନ୍ତି ବଡ଼ ମନ୍ଦ
ଗୋରୁଂକର ତୁଲେ ମନିଷର କାହିଂ ଦ୍ୱନ୍ଦ ।୪୯
ଭୋ ଦେବ ସନ୍ୟ ଲୋଚାଯେ ନାଶ ନ କର ମନ୍ଦ ବୁଦ୍ଧି
ତୋହୋର ବେଳେ ସେ ଗୋରୁପଲ ନୋହେ ଦେବ ସାଧି ।୫୦
ସହଦେବ ସଇନି ପାଇଲେ ବଡ଼ ଦୁଃଖ
ଭାବିଣ ରହିଲେ ବୀରେ ପାଇଣ ବିମୁଖ ।୫୧
ଯୁଗତେ ଗୋଧନେ ଯେ ଶହସ୍ରେ ନୋହୋନ୍ତି ବଧି
ଧର୍ମ ପାରିପାଳି ଛାଡ଼ିଲେ ମହାଯୋଧୀ ।୫୨
ଆହୋ ବେଲାଳସେନକୁ ଘେନିଗଲେ ସହଦେବ
ଚଉପୁର ନଗ୍ରେ ବିଜୟେ ବୀର ପାଣ୍ଡବ ।୫୩
ଚନ୍ଦ୍ରକେଶୀ ବୋଲିକିର ଯେକଇ ନଦୀଗୋଟି
ଚଉପୀଢ଼ ପର୍ବତୁଂ ସେ ଆସୁଣ ଅଛି ଫୁଟି ।୫୪
ସହଦେବ ପ୍ରବେଶ ଯାଇଂ ଚଉନଗ୍ର ଦେଶେ
ବାରତା ପାଇ ନୃପତି ମନେଣ ହରଷେ ।୫୫
ଅନେକ ସମ୍ଭରେ ସେ ଚନ୍ଦ୍ରଚୂଡ଼ ରାଜା
ସହଦେବ ପଦ୍ମପାଦେ କରଇ ଆସି ପୂଜା ।୫୬
ସ୍ୱାମୀ ମୁହିଂ ଅନେକ ପୂଣ୍ୟ ଯେ ଅର୍ଜିଥିଲି ପୂର୍ବେ
ତୋହୋର ଶ୍ରୀଚରଣ ଦେଖିବାକୁ ଭାର୍ଜନ ହୋଇଲି ଯେବେ।୫୭
ବହୁତ ବିନୋଇ ହୋଇ କହଇ ନୃପମଣି
ସହଦେବେ ପ୍ରୀତି ବଢ଼ାଇଲେ ଭଗତି ପରିଣାମି ।୫୮
ଚନ୍ଦ୍ରଚୂଡ଼ ରାଜାଂକୁ ଦିଲେ ଅକ୍ଷତ ଯେ ଗୁଆ
ସମଦଣ୍ଡ ଘେନି ରାଜା ରାଜୁସି ଯାଗକୁ ଯାଅ ଯା ।୫୯
ଚନ୍ଦ୍ରଚୂଡ଼ ବୋଇଲା ଆଗ୍ୟାଂ ପ୍ରମାଣେ ସ୍ୱାମୀ ଯେହିକ୍ଷଣି
ବେଗେ ଯିବି
ରାଜୁସି ଯାଗ ସଭାଯେ ଯୁଝେଷ୍ଟି ଦେବଂକୁ ସେବିବି ।୬୦
ସହଦେବର ଆଗ୍ୟାଂ ଶିରେଣ ନିବେଶି
ସମଦଣ୍ଡ ଘେନି ବାହାର ହୋଇଲା ଚନ୍ଦ୍ରକେଶୀ ।୬୧
ବୀର ତୂର ବାଦ୍ୟ ବଜାନ୍ତି ଗହନେ
ଚଳନ୍ତି ସହଦେବ ଅଲେଖ ରାଜ୍ୟସ୍ଥାନେ ।୬୨
ଅଲେଖସେନ ବୋଲି ରାଜା ହରିହର ବଂଶୀ
ସହଦେବକୁ ଦ୍ରଶନ କଲେ ସେ ସିନ୍ଧୁକୂଳେ ଆସି ।୬୩
ଶତେକ ଭାର ଘେନି ପାଣିଦ୍ରବ୍ୟ ରାଯେ
ମନ୍ତ୍ରୀ ଚୂଡ଼ାମଣିର ଚରଣେ କରଇ ବିନୟେ ।୬୪
ଅକ୍ଷତ ଗୁଆ ଯେ ତାକୁ ଦେଇ ବୋଇଲେ ସହଦେବ
ଆହୋ ରାଜୁସି ଯାଗ ସଭାକୁ ତୁମ୍ଭେ ବହନ ହୋଇ ଯିବ ।୬୫
ମନ୍ତ୍ରୀବର ଆଗ୍ୟାଂ ନିବେଶିତ ଶିରେଣ
ସମଦଣ୍ଡ ଘେନି ରାଜା ବାହାର ତତକ୍ଷଣ ।୬୬
ତହୁଂଣ ସହଦେବ ଚଳନ୍ତି ସନ୍ୟ ଘେନି
ମନୋହର ଦେଶେ ବିଜୟେ ମନ୍ତ୍ରୀ ଚୂଡ଼ାମଣି ।୬୭
ତ୍ରିପୁରେଶ୍ୱର ବୋଲିଣ ତହିଂର ମହାରାଜା
ତ୍ରିଅୟକ ବିଶ୍ୱବାସୀଂକୁ ସେ କରଇ ଅନେକ ପୂଜା ।୬୮
ସେ ରାଜାର ରାଜ୍ୟେ ବିଜୟେ ସହଦେବ
ଛାମୁରେ ଦ୍ରଶନ କଲା ରାଜା ବଢ଼ାଇ ସମ୍ଭର୍ବ ।୬୯
ସହଦେବ ବୋଇଲା ଶୁଣ ହୋ ତ୍ରିପୁରାନ୍ତ
ରାଜୁସି ଯାଗ ସଭାକୁ ବେଗେ ଚଳ ହୋ ନରନାଥ ।୭୦
ନିମନ୍ତ୍ରଣ ଯୋଗାଡ଼ ଦିଲେ ମଦନା ଦେବୀର ବଳା
ସମଦଣ୍ଡ ଘେନି ତ୍ରିପୁରାନ୍ତକ ବିଜେ କରିଗଲା ।୭୧
ତହୁଂଣ ସହଦେବ ଚଳନ୍ତି ଦଣ୍ଡ ସାଜି
ଯମନିକ ତୀର୍ଥେ ଯାଇଂ ଯମେଶ୍ୱର ଲିଙ୍ଗ ପୂଜି ।୭୨
ନୀଳ କଣ୍ଟବଟ ସନ୍ନିଧ୍ୟେ ନୀଳ ସୁନ୍ଦର ପର୍ବତେ
ମନ୍ତ୍ରୀ ଚୂଡ଼ାମଣି ଯାଇଂ ବିଜୟେ ମହାତୀର୍ଥେ ।୭୩
ଧନୁମାସ ଶୁକଳ ପକ୍ଷ ତ୍ରୟୋଦଶୀ ଅର୍କବାର
ପୁର୍ନବସୁ ରକ୍ଷଭୋଗ୍ୟ ଅଟେ ସେ ଦିନର ।୭୪
ସହଦେବ ବିଜେ କଲେ ସେହି ଦିନ ନିଶି
ଭେଟିଲେ ମହାତମା ମାରକଣ୍ଡ ମହାରଷି ।୭୫
ବାହନ ତେଜ୍ୟା କରି ମାଦ୍ରୀ ଦେବୀର ସୁତ
ମାରକଣ୍ଡ ପଦ୍ମପାଦେ ବିନୟେ ଭଗତ ।୭୬
ବଦୟନ୍ତି ମହାତମା କାଶ୍ୟପ ଋଷିର ନାତି
ପୂର୍ବଦିଗ ରାଜାନ୍ତ ବାବୁ ଅଇଲୁ କି ନିମନ୍ତି ।୭୭
ସହଦେବ ବୋଇଲା ସ୍ୱାମୀ ତୋହୋର ଅନୁଗ୍ରହେ
ନିସନ୍ତିଲି ରାଜାନ୍ତ ମୁଂ କାର୍ଯ୍ୟର ସନ୍ଦେହେ ।୭୮

ଭୋ ମାରକଣ୍ଡ ତୁମ୍ଭେ ଯିବଟି ରାଜୁସି ସଭାକୁ
ତୁମ୍ଭେ ନ ଥିଲେ ସେ ସଭା ନିବର୍ତ୍ତ ହୋଇ କି ଆନକୁ ।୭୯
ମାରକଣ୍ଡେ ବୋଇଲେ ତହିଂ ଅଛନ୍ତି ବେଦବ୍ୟାସେ
ଆମ୍ଭେ ଯିବୁ ଯେହି ଦଶମୀର ଦିବସେ ।୮୦
ଯେ ହାଦେ ଯମନିକ ପର୍ବତ ନୀଳସୁନ୍ଦର ଗିରି
କୋଟିଯେ ତୀର୍ଥ ଘେନି ପୁଷ୍କର ଯେଥେ ନିତ୍ୟେହେଂ ବିଜେ
କରି ।୮୧
ଦ୍ୱାପର ଅନ୍ତେ ଯେଥି ବିଜେ କରିବେ ଜଗନ୍ନାଥେ
ବଉଧ ରୂପ ହୋଇ ବିଜେ କରିବେ ଦଶ ସହସ୍ର ବର୍ଷ ପରିଯନ୍ତେ
।୮୨
କଳିଯୁଗେ ଅନେକ ଜନ ଯେ କରିବେ ସେବା
ରଙ୍ଗ କଉତୁକେ ବିଜେ କରିବେ ଯେଥେ ରାମକୃଷ୍ଣ
ଦୁଇ ଦେବା ।୮୩
ତୁ ତ ସମସ୍ତ ଜାଣୁ ସର୍ବଗ୍ୟଂ ପଣ୍ଡିତ ମହାମନ୍ତ୍ରୀ
ଗତ ଆଗତ ତୋହୋର ସମସ୍ତ ହୃଦଗତି ।୮୪
ପରମ କଲ୍ୟାଣ ବାଞ୍ଛା କରନ୍ତି ମହାକଞ୍ଚି
ଚଳ ଯା ସହଦେବ ରାଜାନ୍ତ ଘେନି ଅଦ୍ୟାପି ।୮୫
ମାର୍କଣ୍ଡଂକ କଇଲାଣ ପାଇ ମନ୍ତ୍ରୀବର
ଅର୍କ ତୀର୍ଥେ ବିଜେ ଯାଇଂ ପାଣ୍ଡବ ସୁନ୍ଦର ।୮୬
ଶ୍ରୀରାମଚଣ୍ଡୀ ଯେ ରାମେଶ୍ୱର ଦ୍ରଶନେ
ଚନ୍ଦ୍ରଭାଗା ସ୍ନାହାନ ବିରଞ୍ଚି ନାରାୟଣ ପ୍ରସନ୍ନେ ।୮୭
ଶ୍ରୀ ଅର୍କତୀର୍ଥ ରାଜା ହୋଇଯେ ନାରାୟଣ ଦାସ
ତହିଂ ବିଜୟେ ପଣ୍ଡୁ ରାଜାର ଯେ ଶିଷ ।୮୮
ସହଦେବ ବିଜୟେ ଦେଖିଣ ନାରାୟଣସେନ ନୃପତି
ଛାମୁରେ ଦ୍ରଶନ କଲା ଆସି ତତକ୍ଷଣାନ୍ତି ।୮୯
ଅକ୍ଷତ ଗୁଆ ତାଂକୁ ଯେ ସହଦେବ ଦେଇ
ଅର୍କତୀର୍ଥେ ରନ୍ଧନ କରି କଲେକ ମୁଣୋହି ।୯୦
ନାରାୟଣେ ଚଳାଇ ସେ ଆସନ୍ତି ବହନେ
ମହ୍ଲାର ବଳରାମ ଭେଟିଲେ କନ୍ଦୁକ ଗହନେ ।୯୧
ନବଲକ୍ଷ ଯୋଦ୍ଧା ଘେନି ସେ ମଲହାର ବନରେ
ବେଣ୍ଟ ବିନୋଦେ ଭ୍ରମଇ ସେ ଚିତ୍ରଉତ୍ପଳା ନଦୀ ତୀରେ ।୯୨
ସହଦେବ ବଳ ଚଳନ୍ତେ ସେ ଓଗଳିଲା ଆସି
କାହିଂର ରେ ଗର୍ବ ତୋର ଗମନ କଲୁ ବନେ ପଶି ।୯୩
କ୍ରୀତିବାସ କ୍ଷେତ୍ର ଯେ ସୁବର୍ଣ୍ଣଚୂଡ଼ ଗରି
ବିଜୟେ ପରମାନନ୍ଦ ଦେବ ତ୍ରିପୁରାରି ।୯୪
ବଦୟନ୍ତି ସହଦେବ ଶୁଣ ହୋ ମଲ୍‌ହାର
ବିନ୍ଦୁତୀର୍ଥ ସାହେର ପରମ ସିଦ୍ଧ ସାର ।୯୫
ପିତୃକାର୍ଯ୍ୟ ନିମନ୍ତେ ଆମ୍ଭର ମହାଯୋଗ
ନୋହୁ ଦ୍ୱନ୍ଦୀ ବାଦୀ ଆମ୍ଭେ ତୁ କିଂପା ବହୁ ରାଗ ।୯୬
ରାଜୁସି ଯାଗ ନିମନ୍ତେ ରାଜାନ୍ତ ନିମନ୍ତ୍ରଣ
ଲକ୍ଷେ ରାଜା କରିବୁଂ ଆମ୍ଭେ ସଭାୟେଣ ।୯୭
ତୋହୋରେଣ କାର୍ଯ୍ୟ ଅଛି ଆମ୍ଭର ଯେ ବାବୁ
ନିମନ୍ତ୍ରଣ କରି ଆମ୍ଭେ ତୋତେ ଘେନିଯିବୁ ।୯୮
ନ କର ବିବାଦ ତୁ ଶୁଣ ହୋ ମଲ୍‌ହାର
ଆସ ମୋର ସନ୍ନିଧ୍ୟକୁ ଘେନ ବରଣ ମାଳ ।୯୯
ସହଦେବର ବଚନ ପାଇଣ ବନଚର
ଯାନ ବାହାନ ତେଜି ରାୟେ ବିଜୟେ କଲା ପୟର ।୧୦୦
କୃତ ଅଞ୍ଜଳି ହୋଇ ବିନୟେ ଭାବ ବୋଲି
ମୁହିଂ ଅପ୍ରାଧି ଜନ ନ ଜାଣି କୋପ କଲି ।୧୦୧
ଘେନ ମୋର ଭଗତି ନ ଘେନ ଆନ ମନ
ଶୁଣ ସାଗର ନାଥ ଦୟିନୀ ମୋର ଘେନ ।୧୦୨
ସହଦେବ ବୋଇଲେ ଶୁଣ ହୋ ମଲ୍‌ହାର
ରାଜୁସି ଯାଗକୁ ତୁ ଚଳ ଧାତିକାର ।୧୦୩
ଯେ ତୋହୋର ଉପମା ପଦାର୍ଥ ମିଳଇ ବାବୁ
ସନ୍ୟବଳ ଘେନି ତୁ ରାଜୁସି ଯଗ୍ୟଂକୁ ଚଳିଯିବୁ ।୧୦୪
ମଲହାର ସେନକଙ୍ଗଂ ସେ ନିମନ୍ତି ମନ୍ତ୍ରୀବର
ବିନ୍ଦୁସାଗରେ ପଶି ପଖାଳନ୍ତି ଶିର ।୧୦୫
ବିଜୟେ ମନ୍ତ୍ରୀବର ସେ ଯେକାମ୍ଭର ତୀର୍ଥେ
ପିଣ୍ଡଦାନ ଦେଇ ପୂଜଇ ବିଶ୍ୱନାଥେ ।୧୦୬
ଜୟତୁ ମହାଦେବ ଭୂବି ଭୁବନ ମଣ୍ଡି
ଅଭୟେ ଭୁବନବାସୀ ନାଥ ସକଳ ଦୁଖ ଖଣ୍ଡି ।୧୦୭
ଗିରିଜାର ବଲ୍ଲଭ ନାଥ ସିତାଂଶୁ ମଉଳି
ବୃଷଭ ବାହାନେ ବିଜୟେ ନାଥ ଜୟତୁ କାପାଳୀ ।୧୦୮
ପର ଦୁଖେଣ କାତର ସ୍ୱାମୀ ପର ଲୋକର ବନ୍ଧୁ
ଭଗତ ଜନମଙ୍ଗଳ ସ୍ୱାମୀ ଆଶା ସାଗର ସିନ୍ଧୁ ।୧୦୯
ଶ୍ରୀ ମହାଲିଙ୍ଗ ଭୁବନାଧି ଭୁବିପତି
ଅଭୟେ ସୁନ୍ଦର ନାଥ ଫେଡ଼ନ୍ତା ଦୁର୍ଗତି ।୧୧୦
ଜୟତୁ ଭୁବନେଶ୍ୱର ମହାଲିଙ୍ଗ ଦେବରାଜା
ମଉଳେଣ ଧବଳାଙ୍ଗୀ ଯାହାର ବକ୍ଷସ୍ଥଳେଣ ଗିରିଜା ।୧୧୧
ସ୍ୱାମୀ ଜନ୍ମେ ଜନ୍ମେ ସେବା ମୋହୋର ତୋହୋର ପଦ୍ମପାଦେ

ଲଭିବି ପରମ ଗତି ନାଥ ତୋହୋର ପରସାଦେ ।୧୧୨
କୃତ୍ତିବାସନ ଦୈନିଦତ୍ୟ ନିବାରଣ ଦେବସ୍ୱାମୀ
ତବ ପଦ୍ମପାଦେ ଶତ ସହସ୍ର ଦଣ୍ଡ ପରିଣାମି ।୧୧୩
ଶ୍ରୀ ମହାଲିଙ୍ଗ କ୍ଷେତ୍ର ଆଧିପତି ଭୁବନେଶ୍ୱର ପୂଜା
କ୍ଷୁଦ୍ରମୁନି ସାରୋଳା ଦାସ ପ୍ରଣପତ୍ୟ ଲିଙ୍ଗରାଜା ।୧୧୪
ସହଦେବର ବିନୟେ ଦେଖି ବିଜୟେ କାପାଳୀ
ଋଷଭ ଆରୋହି ବିଜେ ପଞ୍ଚଇ ମଉଳି ।୧୧୫
ସହଦେବ ପ୍ରଣପତ୍ୟ ହୋଇଲା ଶତେ ସହସ୍ର ଦଣ୍ଡ
ଭଗତ ଜନମସଳ ନାଥ ଅପାଦ ମୋର ଖଣ୍ଡ ।୧୧୬
ସହଦେବ ଭଗତି ଦେଖି ବିଶ୍ୱନାଥ ଦିଅନ୍ତି ସମ୍ଭାଷି
ଆହୋ ପଣ୍ଡୁର ନନ୍ଦନ ତୁ ପରମ କଲ୍ୟାଣ ହୁଅସି ।୧୧୭
ଅନେକ ପରମାର୍ଥ ଯେ କହିଲେ ଲିଙ୍ଗରାଜା
ସର୍ବକାର୍ଯ୍ୟ ସିଦ୍ଧହୋଉ ତୁହୋ ବହନ ହୋଇ ଯା ଯା ।୧୧୮
ରାଜାମାନନ୍ତ ବାବୁ ତୁ କଲୁ କି ନିମନ୍ତ୍ରଣ
ଯାଗ ନିକଟ ଆସି ହୋଇଲା ହୋ କହିଲେ ନାରାୟେଣ ।୧୧୯
ଅକ୍ଷତ ଗୁଆ ଦିଲେ ମନ୍ତ୍ରୀ ଚୂଡ଼ାମଣି
ଶିବଗଣନ୍ତ ଘେନି ରାଜୁସି ଯଗ୍ୟଂକୁ ବିଜେ କରିବା
ଶୂଳପାଣି ।୧୨୦
ଶୁଣ ହୋ ସହଦେବ ବୋଲନ୍ତି ବିଶ୍ୱନାଥେ
ଅର୍ଜୁନ ନିମନ୍ତ୍ରିଲା ଆମ୍ଭନ୍ତ ଅଚଳ ହିମବନ୍ତେ ।୧୨୧
ଆକାଶ ଦିଗବିଜେ କରିଛି ଫାଲଗୁନି
ସ୍ୱର୍ଗରୁ ଆସିବେ ସେ ଦେବଗଣମାନନ୍ତ ଘେନି ।୧୨୨
ଆମେ ଯାଉଅଛୁ ରାଜୁସି ଯାଗ ସଭାକୁ
ତୁ ବହନ ଘେନି ଯାଅ ଯା ରାଜାଗଣମାନଂକୁ ।୧୨୩
ଯେତେ ବୋଲି ଅନ୍ତରୀକ୍ଷେ ଗଲେ ବିଶ୍ୱେଶ୍ୱର
ଯେକାମ୍ରର ତୀର୍ଥରୁ ସହଦେବ ହୋଇଲେ ବାହାର ।୧୨୪
ମଲ୍ହାରସେନ ବୋଲି ଯେଉଂଣ ଦଣ୍ଡପତି
ତାହାକଇଂ ସହଦେବ ଚଳନ୍ତି ନିମନ୍ତି ।୧୨୫
ତହୁଂଣ ବିଜେ କରି ଗଲେ ମନ୍ତ୍ରୀ ଚୂଡ଼ାମଣି
ଚିତ୍ରୋତ୍ପଳା କୂଳେ ବିଜେ ଥାଠ ଯେ ପଲାଣି ।୧୨୬
କୁଣ୍ଡଳ ଭୋଜ ବୋଲି ଯେକଇ ନୃପତି
ସହଦେବଂକଇ ଦ୍ରଶନ କଲା ପୁଷ ଶୁକଳ ଦଶମୀର ରାତି।୧୨୭
ନିମନ୍ତ୍ରଣ ଯୋଗାଡ଼ ତାକୁ ଦିଲେକ ମନ୍ତ୍ରୀବର
ରାଜୁସିଯାଗ ସଭାକୁ ଯେହିକ୍ଷଣି ହୁଅସି ବାହାର ।୧୨୮
ଚଳଇ କୁଣ୍ଡଳଭୋଜ ଥାଠ ଯେ ଚଳାଇ
ତହୁଂଣ ଚଳିଲେ ସହଦେବ ରଥ ବାହି ।୧୨୯
ଶ୍ରୀ ମହାଲିଙ୍ଗ ଉତ୍ପଳେଶ୍ୱର ପୂଜି
ଅନେକ ବିନୟେ ତଲୟେ ଚିତ୍ତ ଭଜି ।୧୩୦
ବିଶ୍ୱନାଥ ସେବାକରି ଚଳଇ ସହଦେବ
କପିଳାସ ଶିଖରେ ବିଜୟେ ପାଣ୍ଡବ ।୧୩୧
କାଶୀସେବା କରି ରହିଲେ ନନ୍ଦୀକେଶ୍ୱର ତୀର୍ଥେ
ଢାରାସେନ ବୋଲିକରି ଯେକଇ କିରାତେ ।୧୩୨
ସେ ଯାଇଂ ଦ୍ରଶନ କଲା ପାଣ୍ଡବ ପଞ୍ଚାଳ
ଆହୋ ବନଚର ତୋହୋର ସଇନି ଘେନି ରାଜୁସି ଯାଗକୁ
ଚଳ ।୧୩୩
କିରାତ ସେନ ନୃପତି ସହଦେବର ଚରଣେ ପରିଣାମି
ଯେ ତୋହୋର ଆଗ୍ୟାଂ ପ୍ରମାଣେ ଯେହିକ୍ଷଣି ଯିବି ସନ୍ୟ
ଘେନି ।୧୩୪
ଅପୂର୍ବ ବନଜୀବ ଦୋହଳ ଗଣ୍ଡାଭାର ଘେନି
ତକ୍ଷଣେ କିରାତେଶ୍ୱର ଚଳାଇ ସଇନି ।୧୩୫
ଚଳନ୍ତି ସହଦେବ ଈଶାଣ କୋଣ ଦିଗେ
ଜଳତରଙ୍ଗ ରାଜ୍ୟେ ବିଜୟେ ଯାଇଂ ବେଗେ ।୧୩୬
ବାଜନ୍ତି ବୀର ତୂର ଯେ ଟମକ ନିଶାଣି
ବିହଡ଼ନ୍ତି ରାଉତେ ଖେଦନ୍ତି ଆଗିଆଣି ।୧୩୭
ରାଜ୍ୟେଣ ପଶନ୍ତେ ତହିଂ ଶୁଭଇ ଘୋର ବାଣୀ
ଡଗରେ ବାରତା କହିଲେ ଜଳତରଙ୍ଗ ନୃପମଣି ।୧୩୮
ସ୍ୱାମୀ କେଉଣ ଦେଶର ରାଜା ଯେଟି ଆସୁଅଛି ଥାଠ ଯେ ପଲାଣି
ରାଇଜେ ପଶନ୍ତି ଦେବ କାହାକଇଂ ନ ଗଣି ।୧୩୯
ରଥଗଜ ଅଶ୍ୱ ଦେବ ବହୁତ ନାହିଂ ଦଣ୍ଡ
କ୍ଷେପନ୍ତି ଯୋଦ୍ଧାୟେ ଯେ ପ୍ରତଗ୍ୟାଂ ପ୍ରଚଣ୍ଡ ।୧୪୦
ଚାରଗଣ ମୁଖଂ ଶୁଣି ଯେସନ ବାରତ
ଆଗ୍ୟାଂ ଦିଲା ଜଳତରଙ୍ଗ ସାଜରେ ମୋହୋର ରଥ ।୧୪୧
ରାଜାର ବଚନେ ସେ ସାଜିଲେ ସଇନି
ରହ ରହ ବୋଲିଣ ସେ ଡାକନ୍ତି ଘୋର ଧ୍ୱନି ।୧୪୨
ଅନେକ ଶହସ୍ର ଧରି ଆରୋହନ୍ତି ହୟେ
ଚୋଖାର ତୁରଙ୍ଗମ ଖେଦନ୍ତି ନିର୍ଭୟେ ।୧୪୩
ବହୁତ ସଇନି ତାର ନ ଯାଇ ଗଣନା
କରେଣ ଛେଲଚକ୍ର ତାଡ଼େଣୀ ବଜ୍ରସେହ୍ନା ।୧୪୪

ରଥ ଗଜ ଅଶ୍ୱମାନ ଅପାର ପାଦାନ୍ତି
ତିନିଶତ ପାରିଦଣ୍ଡ ତୁଲେ ଘେନିଣ ନୃପତି ।୧୪୫
ଆହୋ ଲୋହାର ଯେ ଶାର୍ଦ୍ଦୋଳ ଚର୍ମର ଛାୟେଣୀ
ଉଭୟେ ବଳ ମଧ୍ୟେ ଟେକିଲେ ରଥ ରାୟେ ଆଣି ।୧୪୬
ଆଗିଆଣି ଥାଠେ ଓଗାଳିଲେ ରାୟେ ଆସି
ଚନ୍ଦ୍ର ଦେବତାଂକୁ ଦେଖି ରାହୁ ଯେହ୍ନେ ଗ୍ରାସି ।୧୪୭
ପଞ୍ଚଲକ୍ଷ ଯୋଦ୍ଧା ଘେନି ସେ ଜଳତରଙ୍ଗ
ଆକାଶେ କ୍ଷେପିବାକୁ ସାମଥର ସେ ଯେବଣ ତୁରଙ୍ଗ ।୧୪୮
ରାଜାର ପ୍ରତଗ୍ୟାଂ ଦେଖି ପାଣ୍ଡବ ସଇନି
ଗର୍ଜ୍ଜିଣ ଉଠିଲେ ବୀରେ କରେ ଶସ୍ତ୍ର ଘେନି ।୧୪୯
ପତ୍ରଗ୍ୟାଂ ସାମରଥ ସେ ଜଳତରଙ୍ଗ ମହାବଳୀ
ଆପଣେ ମହାରାଜା ସଇନି ଓଗାଳି ।୧୫୦
ସନ୍ୟ ଦୁଇଭାଗ ହୋଇଲେ ରାଜାର ଉଠନ୍ତେ
ସହଦେବର ଛାମୁରେ ଓଗାଳିଲେ ଯେକ ରଥେ ।୧୫୧
ଆହୋ ମହାତ୍ମା ତୁ ଅଟୁ କେଉଣ ଦେଶର ରଥୀ
କି ନିମନ୍ତେ ଆସିଣ ତୁହି ମୋହୋର ରାଜ୍ୟ ମଝି ।୧୫୨
ସହଦେବ ବୋଇଲା ତୁ କେଉଣ ମନ୍ଦପ୍ରାଣୀ
ସହଦେବ ପୂର୍ବଦିଗ ବିଜୟେ ବୋଲି ତୁ କି ନ ଜାଣି ।୧୫୩
ରାଜୁସି ଯାଗ ଆମ୍ଭେ କରିବା ନିମନ୍ତେ
ଚଉଦିଗେ ବିଜେ ଆମ୍ଭେ କରିଅଛୁ ଚାରି ଭ୍ରାଥେ ।୧୫୪
ଲକ୍ଷେକ ନୃପତି ମିଳିବେ ତହିଂ ହୋଇବ ରାଜସୂୟ ସଭା
ସମଦଣ୍ଡ ଘେନି କରି ଚାଲ ବହନ ହୋଇ ଯିବା ।୧୫୫
ସହଦେବର ବଚନେ ଜଳତରଙ୍ଗ ରାୟେ
ରଥ ତେଜ୍ୟା କରି ପ୍ରଣପତ୍ୟ ଯାଇଂ କୟେ ।୧୫୬
ତୁ ଦେବ ସୋମବଂଶୀ କ୍ଷତ୍ରୀୟ ଉତ୍ତମା
ଦଶଦୋଷ ଅପ୍ରାଧ କରିବା ମୋହୋର କ୍ଷମା ।୧୫୭
ରାଜାକୁ କୋଳକଲେ ସେ ସହଦେବ ମହାମନ୍ତ୍ରୀ
ଅକ୍ଷତ ଯୋଗାଡ଼ ଦେଇ ଜଳତରଙ୍ଗ ରାଜାକୁ ନିମନ୍ତି ।୧୫୮
ଦଣ୍ଡ ଘେନି ବାହାର ତୁ ହୁଅସି ଯେହିକ୍ଷଣେ
ଯାଇଂ ପ୍ରବେଶ ହୋଇଲେ ନି ସମସ୍ତ ରାଜାଗଣେ ।୧୫୯
ଶୁଣିଣ ନରେନ୍ଦ୍ର ଯେ ହୋଇଲାକ ସାନନ୍ଦ
ବହୁତ ହରଷେ ସେ ମନେଣ ଆନନ୍ଦ ।୧୬୦
ଚଳଇ ଜଳତରଙ୍ଗ ନିଜ ବଳ ଘେନି
ଚଳନ୍ତି ସହଦେବ ତହୁଂ ଚଳାଇଣ ନିଜ ବଳ
ସାହେର ସଙ୍ଗମେ ପ୍ରବେଶ ଯାଇଂ ପଣ୍ଡୁରାଜାର ଦୁଲାଳ ।୧୬୧
ସେ ତୀର୍ଥେ ବିଜେ କରିଛନ୍ତି କପିଳ ମହରଷି
ତ୍ରିବେଣୀ ସଙ୍ଗମ ତୀରେ ତପ କରୁଛନ୍ତି ବସି ।୧୬୨
ଲମ୍ବିତ ଜଟା ଦୀର୍ଘ ଭୂମିରେଣ ଅଛି କଣ୍ଟି
ତିନିଯୁଗ ହୋଇଲାନି ମହାତମାର ଯେକଲୟେ ଆସନ
ଗୋଟି ।୧୬୩
ରଥରୁ ଓହ୍ଲାଇ ସେ ମଦନା ଦେବୀର ବଳା
ଋଷିଂକର ପାଦତଳେ ସହଦେବ ପ୍ରଣପତ୍ୟ ହେଲା ।୧୬୪
ପରମ ଯୋଗୀ ପୁରୁଷ ସେ କହନ୍ତି ସମ୍ବାଦ
ପ୍ରସନ୍ନେ ବାରତା କହିଲେ ଭାବନା ସଦାନନ୍ଦ ।୧୬୫
ସହଦେବକଇଂ କହନ୍ତି କପିଳ ମହାଯତି
ରାଜୁସିଯାଗ ବାଭିୟେ କରୁଅଛ ଯହିଂର ନିମନ୍ତି ।୧୬୬
କଉତୁକେ ଭାରା ନିବାରଇ ଅନନ୍ତ
ଜାତ କରାଇଣ ସେ ପୁଣ କରାବଇ ଅନ୍ତ ।୧୬୭
ଶାସକ ନାଶକ ସେ ଉଦ୍ଧରଇ ପରମ ଯୋଗୀ
କଉତୁକୀ ପୁରୁଷ ସେ ଭାରାଭର ପରିତ୍ୟାଗୀ ।୧୬୮
ତୁମ୍ଭେ ବ୍ରତ ବାବୁ ରେ ଯେଉଂ ବିଷ୍ଣୁର ଆଶ୍ରିତେ
ସେ ପରମାନନ୍ଦ ପୁରୁଷ ତୁମ୍ଭନ୍ତ ଯାଗ କରାନ୍ତି ଉଦିତ ଅର୍ଥେ ।୧୬୮
ଲକ୍ଷେ ନୃପତିକି ଆଉ ସବୁ କରାଉଅଛି ସାଧ୍ୟ
ତୁମ୍ଭନ୍ତ ଯେକଛତ୍ରୀ କରାଇବାକୁ ତାହାର ଯେ ବୁଦ୍ଧି ।୧୬୯
ଗଙ୍ଗା ଯମୁନା ସରସ୍ୱତୀ ଯେ ଯେ ତିନିଧାର
ତିନିହେଂ ପ୍ରତିକ୍ଷଣ କରାନ୍ତି ଋଷିଂକ ଜଟା ଭିତର ।୧୭୦
ସାହେର ସଙ୍ଗମେ ପୁଣ ସେ ହୋଉଛନ୍ତି ତିନିମୂର୍ତ୍ତି
ଦେଖିଣ ଆଶ୍ରିଜ ହୋଇଲା ଯେ ସହଦେବ ମହାମନ୍ତ୍ରୀ ।୧୭୧
କପିଳ ମହରଷିଂକି ସେ ପଚାରଇ ବାଣୀ
ବିନୟେଭାବ ହୋଇଣ ସେ ଯୋଡ଼ଇ ବେନିପାଣି ।୧୭୨
ବଡ଼ାଇ ଆଶ୍ରିଜ ସେ ସ୍ୱାମୀ ଦେଖିଲି ମହାତ୍ମା
ତୁମ୍ଭନ୍ତ ନ ଲଙ୍ଘଇ ଯେ ଗଙ୍ଗା ସତ୍ୟଧର୍ମା ।୧୭୨
ସହଦେବର ବଚନେ ଯେ ବୋଲନ୍ତି ବ୍ରହ୍ମଋଷି
ବହୁତ କାଳର କଥା କହିବା ତୁ ସାବଧାନ ଦଣ୍ଡେ ହୋଅସି ।୧୭୩
ଆହୋ ବିଜୟା ନାମେ ସେ ସତ୍ୟ ଯୁଗର ଯେ କଥା
ପ୍ରୋହିଣୀ ନାମେଣ ଯେ ପୃଥୀର ବାରତା ।୧୭୪
ଇକ୍ଷ୍ୱାକୁର ବଂଶେଣ ସଗର ନାମେଣ ନୃପତି
ରାଜାକୁ ବିବାଦେ ଷାଠିଯେ ସହସ୍ର ପୁତ୍ରନ୍ତ କଲାକ ଉତପତ୍ତି ।୧୭୫

ମାତା କାଳେ ତାହାନ୍ତ ନୁଆରିଲା ପୋଷି
ମୃତ୍ତିକା ଆହାର କର ବୋଲି ପୁତ୍ରନ୍ତ ବଚନ ପ୍ରକାଶି ।୧୧୭୬
ଷାଠିଯେ ସହସ୍ର ପୁତ୍ର ଯେକମୁଖ ହୋଇ
ଜମ୍ବୁଦୀପ ପୃଥୀଯେ ଦେଉଛନ୍ତି ଖାଇ ।୧୧୭୭
ନବଲକ୍ଷ ନଉସହସ୍ର ଯୋଜନ ଯେ ପୃଥୀ
ଦକ୍ଷିଣ ପୂର୍ବ ପଶ୍ଚିମ ତିନିଦିଗ ଖାଇ ଯାଉଛନ୍ତି ।୧୧୭୮
ଆହୋ ସହଦେବ ନିତ୍ୟାପତି ଖାଉଛନ୍ତି ଯେହିବାଗେ
ଦ୍ୱାଦଶ ବରଷ ପରିଯନ୍ତେ ଆହାର କଲେ ସତ୍ୟଯୁଗେ ।୧୧୭୯
ବିଦ୍ୟାଧର ପୁରୁଷମାନେ କହିଲେ ଯାଇ ପିତାଂକୁ
ଜମ୍ବୁଦୀପ ପୃଥୀ ନାଶଗଲା ଦେବ କହିଲୁ ତୁମ୍ଭଂକୁ ।୧୧୮୦
ପୃଥୀନାଶ ଯାଆନ୍ତେ ଜଗତ ପିତାମହ
ଆମ୍ଭନ୍ତ ଆଗ୍ୟାଂ ଦିଲେ ତୁ ସଗର ରାଜାର ପୁତ୍ରନ୍ତ ଦହ ।୧୧୮୧
ଧାତାର ବଚନେ ଆମ୍ଭେ କଲୁ କୋପମୂର୍ତ୍ତି
ସାଗର ରାଜା ଷାଠିଯେ ସହସ୍ର ପୁତ୍ରନ୍ତ ଦିହିଲୁଂ ତତକ୍ଷଣାନ୍ତି ।୧୧୮୨
ତାହାଂକର ନନ୍ଦନ ଯେ ଉପୁଜିଲା ଭାଗ୍ୟରଥୀ
ଆକାଶୁଂ ଗଙ୍ଗା ଆଣିଲା ସେ ମଧ୍ୟସ୍ୱର୍ଗ ପୃଥୀ ।୧୧୮୩
ଚଉଦନ୍ତେ ପ୍ରହାର କଲା ମେରୁ ମେଖଳନ୍ତ ଅଇରାବ୍ରତ
ତିନିଦଂତ ଫୁଟିଲା ଭାଗ ରହିଲା ଯେକଦନ୍ତ ।୧୧୮୪
ଗଙ୍ଗା ଯମୁନା ସରସ୍ୱତୀ ତିନିଧାର ଫୁଟି
ସେ ଅଇରାବ୍ରତ ନାଗ ପଡ଼ିଲା ମହୀ ଲୋଟି ।୧୧୮୫
ଅଗେଣ ଭାଗୀରଥୀ ପଛେଣ ଆଦିନାରୀ
ଗଙ୍ଗାକୁ କଢ଼ାଇ ଆଣଇ ସେ ଦିଗାମ୍ବରୀ ।୧୧୮୬
ଜନହୁ ନାମେ ମହରଷି କୃତାନ୍ତେକ ବନେ ତପ କରୁଅଛି
ତିନିଧାର ମହାତମା ଗଣ୍ଡୁଷ କରି ତାହା ଭଛି ।୧୧୮୭
ଅନେକ ଭଗତି ପୁଣ ସେ ସଗର ରାଜାର ନାତି
ଜାନୁ ବିଦାରି ବାହାର କଲା ଗଙ୍ଗା ଯମୁନା ସରସ୍ୱତୀ
ତିନିମୂର୍ତ୍ତି ।୧୧୮୮
ଗଙ୍ଗାକୁ ପ୍ରାର୍ଥନା କରି ଯହୁଂ ମାଗିଲା ଦୃଢ଼ବାକି
ତହୁଂ ସେ ଜାହ୍ନବୀ ନାମ ବହିଲେ ଧବଳ ମୁଖୀ ।୧୧୮୯
ଗଙ୍ଗାକୁ କଢ଼ାଇ ତହୁଂ ଯେ ଆଣି ଭାଗୀରଥୀ
ନବ ସହସ୍ର ନବଶତ ଯୋଜନ ଆଣିଲା ଈଶାନ ମୂର୍ତ୍ତି ।୧୧୯୦
ଆହୋ ବିଜୟେ ନଗ୍ରେ ଶାରଦା ବୋଲିଣ ଯେକଇ ଗନ୍ଧକାରୀ
ଗଙ୍ଗା ବହି ଆସନ୍ତେଣ ଆଣି ପାତିଲା ସୁରାଜାରୀ ।୧୧୯୧
ଆକାଶ ହାଦୋଳିତ ତିନିଧାର ରୂପ
ଗନ୍ଧକାରୀ ସୁରାକାରୀରେ ତିନିହେଂ ହୋଇଲେ ଗୋପ୍ୟ ।୧୧୯୨
ତାହାକଇଂ ଅନେକ ସେବାକଲେ ଭାଗୀରଥୀ
ଗଙ୍ଗାକୁ ସେ ମହାତ୍ମା ମାଗିଲା ଅଭ୍ୟର୍ଥୀ ।୧୧୯୨
ତୁହି ସେ ମହାତ୍ମାଣୀ ଗୋ ପଶିଲୁ ଯେ ମୋହୋର ସୁରାକାରୀ
ଆଜହୁଂ ନାମ ତୋହୋର ବହିବୁ ସରାଶୁରୀ ।୧୧୯୩
ସତ୍ୟ ମନାଇଣ ସେ ଛାଡ଼ିଲା ଗଙ୍ଗାକୁ
ଆହୋ ଭାଗୀରଥୀ ଭେଟାଇଲା ନେଇ ତାହାର
ପିତାମହମାନଂକୁ ।୧୧୯୪
ଅଗ୍ନିର ଭିତରେ ନ ପଶଇ ଭାଗୀରଥୀ
ଆମ୍ଭଂକୁ ପ୍ରତିକ୍ଷଣ କଲାକ ତିନିଘାନ୍ତି ।୧୧୯୫
ଗଙ୍ଗାହିଂ ବେଢ଼ିଅଛି ତିନିବେଳ ପରିଯନ୍ତେ
ଭାଗୀରଥୀ ବୋଇଲା ମାଗେ ମୁଂ ଆଣିଲି ପିତାମହଂକ
ନିମନ୍ତେ ।୧୧୯୬
ଯେ ଦହନ ଅଗ୍ନି ଲିଭାଇବୁ ନା ମୋହୋରେ ଭଗତି ଅର୍ଥେ
ଗଙ୍ଗା ବୋଇଲେ ଆମ୍ଭେ ସରୂପ କହୁଂ ତୋତେ ।୧୧୯୭
ଯାହାର ମଣ୍ଡୋଳ ପୋଡୁଅଛିଟି ସଭାବେ
ଆପଣେ ନ ଝାସିଲେ କେହୁ ପଶିବ ସେହୁଠାବେ ।୧୧୯୮
ଭାଗୀରଥୀ ବୋଇଲା ମୁଂ ଯେ ତୋହୋରେ ଶରଣ
ବଂଶର ନିମନ୍ତେ ଦେହ ଝାସୁଅଛି ମୋତେ ଅଛିଟି
କି କାରଣ ।୧୧୯୯
ଗଙ୍ଗା ବୋଇଲେ ଯେ ଚାରିଯୁଗର ମଧ୍ୟେ
ଭାଗୀରଥି ଗଙ୍ଗା ବୋଲି ସ୍ନାହାନ କଲେ ଧର୍ମ
ହୋଇବ ସାଧ୍ୟେ ।୧୨୦୦
ଦେବ ଦାନବ ଯେ ମାନବ ଆଦିକରି
ସାହାନ କରୁଥିବେ ଯେ ତୋହୋର ନାମ ସୁମରି ।୧୨୦୧
ଗଙ୍ଗାର ଆଗ୍ୟାଂଯେ ସେ ହୋଇଲା ଶାନ୍ତିମୂର୍ତ୍ତି
ଦହନ ଅନେକ ତତକ୍ଷଣାନ୍ତି ଝାସିଲା ଭାଗୀରଥୀ ।୧୨୦୨
ସଗର ରାଜା ଷାଠିଯେ ସହସ୍ର ପୁତ୍ରନ୍ତ ମୁକତ କରି ଧବଳାଙ୍ଗୀ
ମମ ଲଲାଟେ ପ୍ରତିକ୍ଷଣ କରିଅଛନ୍ତି ସଉଭାଗୀ ।୧୨୦୩
ସାଗରେ ସଙ୍ଗମ ଯେ ହୋଇଛନ୍ତି ମାହେଶ୍ୱରୀ
ଯେଥିର ମହିମା ଅସଂଖ୍ୟ କେହୁ ଅନ୍ତ କରିପାରି ।୧୨୦୪
ବାବୁ ଶୁଣରେ ସହଦେବ ସାଗର ସଙ୍ଗମର କଥା
କୋଟିଯେ ତୀର୍ଥ କଲେ ସେ ପୁଣ୍ୟ ସରି ନୁହଇ
ଯେହୁ କଥା ।୧୨୦୫

ଆହୋ ସୁରସିଦ୍ଧ ବୋଲି ସତ୍ୟଯୁଗେ ଗଙ୍ଗାଇଡୁବାଇ ନାମରେ ବେନି
ଏକ ପକ୍ଷୀ
ଆକାଶେ ଉଡ଼ନ୍ତେଣ ସେ ଜଳେଣ ମୀନ ଦେଖି ।୨୦୬
ମତ୍ସ୍ୟର ନିମନ୍ତେ ଯେଥେଂ ପଡ଼ିଲା ଅବଗାହି
ସଙ୍ଗମୁଂ ବାହାର ହୋଇ ନୁଆରିଲା ଜାଣ ସେହି ।୨୦୭
ନିଜକାୟା ଝାସିଲା ସେ ସଙ୍ଗମ ଭିତରେ
ଇନ୍ଦ୍ରପଦେ ବସିଲା ସେ ଅମର ସ୍ୱର୍ଗରେ ।୨୦୮
ଯେସନେକ ମହିମା ଯେ ତୀର୍ଥର ଅପ୍ରମିତି
ଆମ୍ଭର ବ୍ରହ୍ମହତ୍ୟା ଦୋଷ ଖଣ୍ଡଣ ଗଲା ଯେଥି ।୨୦୯
ତୁ ଯେବେ ଯେଥେଂ ସ୍ନାହାନ କରସି ପାଣ୍ଡବ
ପଣ୍ଡୁର ନାମ ଧରି ସ୍ନାହାନ କଲେ ବ୍ରହ୍ମହତ୍ୟା ଦୋଷ ପାର
ଯିବ ।୨୧୦
କପିଳ ମହରଷିଂକ ବଚନେ ସେ ମନ୍ତ୍ରୀ ଚୂଡ଼ାମଣି
ମହାତୀର୍ଥେ ସ୍ନାହାନ କରଇ ବଂଶର ପାତେକ ଗୁଣି ।୨୧୧
ସ୍ନାହାନ ନିତ୍ୟକର୍ମ ସାରିଣ ସହଦେବ
ପିଣ୍ଡଦାନ ଦିଲା ପିତାର ନିମନ୍ତେ ପାର୍ଥିବ ।୨୧୨
ପଣ୍ଡୁ ରାଜାର ପାତେକ ବ୍ରହ୍ମହତ୍ୟା ଦୋଷମାନ
ଖଣ୍ଡିଲା ମହାପାତେକ ସେ ମହାତୀର୍ଥେ କରି ସ୍ନାହାନ ।୨୧୩
କପିଳରଷିଂକି ନିମନ୍ତିଲା ସେ ଅଟନ୍ତି କ୍ଷେତ୍ରାଧିପତି
ରାଜୁସିଯାଗ ସଭାକଇଂ ମହାତ୍ମା ଯିବା ହୋ ବ୍ରହ୍ମ ଯତି ।୨୧୪
ସାନନ୍ଦେଣ ସନମତ ସେ କଲେକ କପିଳ
ରାଜାନ୍ତ ଘେନିଣ ବାବୁ ଶୁଭଯୋଗେ ଚଳ ।୨୧୫
ଆହୋ ଅସ୍ତୁକାର ପୁରୁଷେ ମହାତୀର୍ଥେ ଥିଲେ
ଅସ୍ତୁ ଅସ୍ତୁ ବୋଲି ମଙ୍ଗଳେ ବାକ୍ୟ କଲେ ।୨୧୬
ତହୁଂଣ ସହଦେବ ଚଳନ୍ତି ଦୁର୍ଗମେ
ସୁମରନ୍ତି ଶ୍ରୀନାରାୟଣେ ଶ୍ରୀପୁରୁଷୋତ୍ତମେ ।୨୧୭
ଜୟେ ଜୟେ ନାରାୟଣ କୃତାନ୍ତେକ ଦର୍ପଭଞ୍ଜା
କଉଶିକର ମନ୍ତ୍ରେ ଯେ ତାଡ଼େକୀ ବଳଗଞ୍ଜା ।୨୧୮
ମହାବ୍ରହ୍ମ ପୁରୁଷ ସ୍ୱାମୀ କୋଦଣ୍ଡ ଦୀକ୍ଷା ଗୁରୁ
କଉତୁକ କୁତୂହୋଳେ ଶ୍ରୀମହାଭାରଥ ଯୁଦ୍ଧ କଲୁ ।୨୧୯
ହିରଣ୍ୟ ବିଦାରଣ ନାଥ କଣକଛ ଯୁଦ୍ଧେ
କଉଣପ ଦର୍ପ ଧଂସିଲୁ ବାରାନିଧି ସେତୁବନ୍ଧେ ।୨୨୦
ସୟଳଜନ ବଲ୍ଲଭ ସ୍ୱାମୀ କମଳା ପ୍ରାଣବନ୍ଧୁ
କମଳାର ପ୍ରିୟଭାବେ ମନ୍ଥନ ସପ୍ତସିନ୍ଧୁ ।୨୨୧
ଶ୍ରୀହରିଂକ ପଦ୍ମପାଦ ବିଘସୁ ମମହୃଦେ
ଶୁଦ୍ରମୁନି ସାରୋଳ ଦାସ ବଦନ୍ତି ପରମ ସାନନ୍ଦେ ।୨୨୨

**

## ୪୬. ମୟଦାନବ ସଭାରେ ଯୁଧିଷ୍ଠିରଙ୍କ ଉପବେଶନ, ଯଜ୍ଞର ଅନୁକୂଳ, ଓ ଯେ ଯେଉଁ କାର୍ଯ୍ୟରେ ଦକ୍ଷ ତାହାଙ୍କୁ ସେହି ସେହି କାର୍ଯ୍ୟରେ ନିୟୋଗ ଓ ଶାଢ଼ୀ ପ୍ରଦାନ

ବଇବସୁତ ମନୁ ଆଗେ କହନ୍ତି ଅଗସ୍ତି
ଆହୋ ରାଜୁସି ଯାଗସଭା କହିଲେ ସରଇକି ।୧
ମୟେ ଦାନେବକଇଂ ଧାୟେ କଲେକ ଅଚ୍ୟୁତ
ମାୟାସଭା ଘେନିଣ ସେ ପ୍ରବେଶ ଇନ୍ଦ୍ର ଯେ ପ୍ରଶସ୍ତ ।୨
ପଞ୍ଚବିଂଶ ପଦ୍ମ ସେନାୟେ ଅଛନ୍ତି ମୁଣ୍ଡେ କରି
ଦେଖିଣ ଆଶ୍ଚିକ ହୋଇଲେ ସେ ସକଳ ଦଣ୍ଡଧାରୀ ।୩
ରାଜୁସି ଯାଗସଭା ଈଶାନ କୋଣ ଆଡ଼େ
ଗଙ୍ଗାକୂଳ ଯମଧର୍ମ ପର୍ବତର କଇଛାଡ଼େ ।୪
ଆକାଶର ସଭା ଛାୟା ମଣ୍ଡେପର ତଳେ
ମୟଦାନବ ସଭା ନେଇଂ ଥାପିଲା ଶୁଭବେଳେ ।୫
ଦେଖିଣ ଆଶ୍ଚିକ ଯେ ହୋଇଲେ ସକଳ ମହୀପତି
ସାଧୁ ଧର୍ମ ଯୁଝେଷ୍ଟି ତୋହୋର ଅଲୋକ୍ୟ କୀରତି ।୬
ଶ୍ରବଣେ ଯାହା ଶୁଣୁଥିଲୁ ଯେବେ ଦେଖିଲୁ ବେନିଡୋଳେ
ତୋହୋର ମହିମାଂ ଦେଖିଲୁ ଆମ୍ଭର ପୁଣ୍ୟବଳେ ।୭
ସତ୍ୟ ତ୍ରେତୟା ଦ୍ୱାପର କଳି ଚାରିଯୁଗେ ଦୁଲଭା
ମନୁଷ୍ୟେ ଗୋଚର ନୁହଇ ରାଜୁସି ଯାଗସଭା ।୮
ଦେଖିଣ ସାନନ୍ଦ ଯେ ହୋଇଲେ ଧର୍ମରାୟେ
ମୋତେ ଅଗୋଚର ହରି ତୋହର ଉପାୟେ ।୯
କରପତ୍ର ଯୋଡ଼ିଣ ବୋଲନ୍ତି ଚକ୍ରପାଣି
ସ୍ୱାମୀ ଛାୟା ମଣ୍ଡୋପେ ବିଜେକରିବେ ନୃପମଣି ।୧୦
ରାଜାଧିରାଜେଶ୍ୱର ତୁ ଜଗତେ ଅଧିକାରୀ
ତୁମ୍ଭେ ଛାୟାମଣ୍ଡୋପେ କରିବା ଦଣ୍ଡଧାରୀ ।୧୧
ସ୍ୱାମୀ ମୟେଦାନବ ସଭାୟେ ବିଜେକରିବା ଆପଣ
ଯେଥେ ଆସି ଦ୍ରଶନ କରିବେ ସମସ୍ତ ରାଜାଗଣମାନ ।୧୨
ସ୍ୱାମୀ ତୋହୋର କ୍ରୋଡ଼େ ଥିବ ଯେ ଦ୍ରୋପଦ ନନ୍ଦିନୀ
ପାବଛର ତଳେ ଥିବେ ଦ୍ରୋପଦର ପୁତ୍ର ବେନି ।୧୩

ଆରେକ ପାବଚ୍ଛ ତଳେ ଥିବ ସହଦେବ ମହାମନ୍ତ୍ରୀ
ଭୂତ ଭବିଷ୍ୟ ବାରତା ଜଣାଉଥିବ ଦିବାରାତି ।୧୧୪
ଆରେକ ପାବଚ୍ଛ ତଳେ ଥିବ କୁମାର ନକୁଳ
ଅଭିଷେକ ଦଣ୍ଡଛତ୍ର ଧରିଥିବ ମାଦ୍ରୀଦେବୀ ଦୁଲାଳ ।୧୧୫
ସ୍ୱାମୀ ଆରେକ ପାବଚ୍ଛ ତଳେ ଥିବ ବୀର ଯେ ପାବେନି
ଶ୍ରୀଭୁଜେଣ ଥିବ ସେହୁ ଗଦାବର ଘେନି ।୧୧୬
ଆରେକ ପାବଚ୍ଛ ତଳେ ଥିବ ପଞ୍ଚାଣ ଫାଲଗୁନି
ଶ୍ରୀଭୁଜେ ଥିବ ସେ ଗାଣ୍ଡିମ ଧନୁଶସ୍ତ୍ର ଘେନି ।୧୧୭
ଯେ ଅବା କିଞ୍ଚିତେ କରିବ ଅମାନୀ
ବିଜେକର୍ଣ୍ଣକଟାରୀରେ ଶିର ପକାଇବ ଛିନ୍ନି ।୧୧୮
ସ୍ୱାମୀ ଉପରକୁ ଦଶପାବଚ୍ଛ ତଳକୁ ତିନି ପାବଚ୍ଛରେ
ରାଜାମାନନ୍ତ ଦ୍ରଶନ ମୁଂ କରାଉଥିବି ସେ ଠାବରେ ।୧୧୯
ସ୍ୱାମୀ ବିଚିତ୍ର ସଭା ଯେ ମୟଦାନବ ଯାହା ନିର୍ବାଣି
ସ୍ୱାମୀ ଶତ୍ରୁ ଗଳକଣ୍ଟକ ବୋଲି ସଭାର ନାମ ଜାଣି ।୧୨୦
ସ୍ୱାମୀ ଅବାଡ଼େ ଚିତ୍ର ଯେ ଅଚିତ୍ର ଲେଖନ
ଜଳ ସଷ୍ଟିକ ଯେକତୁଲେ ନିରିବାଣ ।୧୨୧
ଯୁଝେଷ୍ଠି ପରମ ସାନନ୍ଦ ଜଗନ୍ନାଥଂକ ବଚନେ
ସ୍ୱାମୀ କେତେବେଳେ ଦ୍ରଶନ ଆସି କରିବେ ସମସ୍ତ
ରାଜାଗଣମାନେ ।୧୨୨
ଗୋବିନ୍ଦେ ବୋଇଲେ ଦେବ ଦ୍ରୋଣଂକୁ ଦେବା ଶାଢ଼ୀ ଧରି
ବ୍ରାହ୍ମଣ ଛତ୍ରଶାଳେ ସେ ହୁଅନ୍ତୁ ଅଧିକାରୀ ।୧୨୩
ନାରାୟଣଂକ ଆଗ୍ୟାଂ ଯେ ପାଇଣ ଧର୍ମସୁତେ
ଶ୍ରୀହସ୍ତେ ଅର୍ଘ୍ୟ ଘେନି ହୋଇଲେ ଦ୍ରୋଣଙ୍କର ଅଗ୍ରତେ ।୧୨୪
ରତ୍ନମଣି ମୁକୁଟ କୁଣ୍ଡଳ ବାହୁଟି କଂକଣ
ଚନ୍ଦ୍ରସମ କୁଂକୁମ ଦେବାଙ୍ଗ ବସନ ପରିହରଣ ।୧୨୫
ତୁମ୍ଭେ ମୋହୋର ଗୁରୁ ବିପ୍ରକୁଳେ ମୁଖ୍ୟା
ବ୍ରାହ୍ମଣ ଛତ୍ରଶାଳେ ତୁମ୍ଭେ ଯେବେ ହୋଇବ ପରିଚ୍ଛା ।୧୨୬
କୃପ ଆଚାର୍ଯ୍ୟେ ଅଶସ୍ତମାଂକ ସହିତେ
ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମନ ଯେ ଥିବେ ବେନିଭ୍ରାଥେ ।୧୨୭
ଚାରିପଦ୍ମ ବ୍ରାହ୍ମଣ ଯେ ସୂପକାରମାନ
ଛତ୍ରଶାଳେ କରାଇବେ ପାକ ପଞ୍ଚନ ବିଧାନ ।୧୨୮
ବ୍ରାହ୍ମଣ ରାଜା ଯେତେ ବ୍ରାହ୍ମଣ ସଙ୍ଗନି
କୁନ୍ତୀ ଅନ୍ନ ଯୋଗାଉଥିବେ ଯେତେବେଳେ ମାଗୁଥିବ ଦିବସ
ରୟଣୀ ।୧୨୯

ଯେସନେକେ ଅମୃତପାକ ହୋଇବ ପଚନ
ଯେକଜଣକଇ ଅତ୍ରିପୁତି ନୋହିବେ ତ୍ରିପୁତି ହୋଇବେ
ସର୍ବଜନ ।୧୩୦
ଶାଢ଼ୀ ପାଇଲେ ଦ୍ରୋଣ କୃପ ଅଶସ୍ତମା ସହିତେ
ଛତ୍ରଶଳ ମନ୍ଦିରେ ବିଜୟେ ତୋଷଚିତ୍ତେ ।୧୩୧
ଦ୍ରୋଣଂକର ତୁଲେ ଯେ ବିଜୟେ ବାସୁଦେବେ
ରାନ୍ଧଣାଶାଳମାନ ଯେ ଦେଖାଇଲେ ଠାବେ ଠାବେ ।୧୩୨
ଯେକା ଚୁଲିକେ ଯେ ଅଷ୍ଟଉତ୍ତର ଶତେ ପଖା
ଯେହିମତି କେତେ ଚୂଲି କେ କରିବେ ଲେଖା ।୧୩୩
ଯେଥିକେ ସୂପକାର ଚୁଲିକେ ହୋୟେ ତିନି ତିନି
ଯେକା ନଉତିକେ ତ୍ରିବିଧ ଭିଆଣନ୍ତ ଘେନି ।୧୩୪
ଦଶପଦ୍ମ ଘର ଦ୍ରୋଣେ ଦେଖାଇଲେ ଦାମୋଦର
ସମସ୍ତ ଘରେ ପୂରିଅଛି ସୁବର୍ଣ୍ଣର ଯୋଗାଡ଼ ।୧୩୫
ନଉତି କୁଡ଼ୋଇ ତେଲାଉଣୀ ମାଠିଆ
ସମସ୍ତ ସୁବର୍ଣ୍ଣ କରି ଭିଆଇଛନ୍ତି ଜଗୁନାହା ।୧୩୬
ଦେଖିଣ ଆଶ୍ଚିଜ ଯେ ହୋଇଲେ ଦ୍ରୋଣଗୁରୁ
ଜଗତତାରଣ ନାଥ ତୁହି ସେ ଯେହା ସଞ୍ଚିପାରୁ ।୧୩୭
ଦ୍ରୋଣଙ୍କର ମୁଖ ଚାହିଂ ବଦୟନ୍ତି କେଶବ
ରୋଷୁଅ ଘରେ ପରିଚ୍ଛା ତୁମ୍ଭେ ହୁଅ ବୋଲି ଆଗ୍ୟାଂ ଦିଲେ
ଯୁଝେଷ୍ଠି ରାଜଦେବ ।୧୩୮
ଗଉରୀ ଶଉରୀ ନଳ ରାନ୍ଧଣା ବିଧି ତିନିପ୍ରତି
ଦୋହରା ପ୍ରସନ୍ନେ ସବୁ ଅମୃତ ରସ ନିତି ।୧୩୯
ନାରାୟେଣ ଧାୟେ କଲେ ଦୋହରା ବହନି
ବିଜେ ବ୍ରାହ୍ମଣ ରୂପେ ଅମୃତ ଯୋଗାଡ଼ ଯେ ଘେନି ।୧୪୦
ସୁମରନ୍ତି ମାଧବ ଯେ ପ୍ରସନ୍ନ ହିଙ୍ଗୁଳା
ବିଜୟେ ମାହେଶ୍ୱରୀ କାତ୍ୟାୟିନୀ ମହାଖଳା ।୧୪୧
ବିନୟେ ଭଗତି ନାରାୟେଣ ହିଙ୍ଗୁଳା ପଦ୍ମପାଦେ
ଯେ ମହାଯାଗ ସଞ୍ଚା ହୋଇବ ତୋହୋର ପରସାଦେ ।୧୪୨
ପ୍ରସନ୍ନ ହିଙ୍ଗୁଳା ନାରାୟେଣଙ୍କ ବଚନେ
ଯାଗ ସମାପତ ପରିଯନ୍ତେ ଥିବଇଂ ଯେହିସ୍ଥାନେ ।୧୪୩
ଅକଟା ଅବଟା ଯେ ଯୋଗାଡ଼ ସହିତେ
ଅମୃତ ଯୋଗାଡ଼ ହୋଉଥିବ ପଞ୍ଚନ କରୁଥିବ ଯେତେ ।୧୪୪
ଗଉରୀ ଶଉରୀ ନଳ ରାନ୍ଧଣା ତ୍ରିବିଧି
ତୋହରା ପ୍ରସନ୍ନେ ହୋଉଥିବ ସର୍ବସିଦ୍ଧି ।୧୪୫

ଗଉରୀ ଯେହ୍ନେ ଅମୃତ ପାକ ପଚନ କରନ୍ତି ତ୍ରିଲୋଚନ ଦେବତାଙ୍କୁ
ସରସ୍ୱତୀ ଯେହ୍ନେ ଅମୃତ ପାକ କରନ୍ତି ନାରାୟଣ ଦେବତାଙ୍କୁ ।୪୬
ନଳ ଯେହ୍ନେ ନଳବିଧି କଲାକ ପଚନ
ତିନିପ୍ରତି ରାନ୍ଧଣା କଲେ ହୋଇଣ ପ୍ରସନ୍ନ ।୪୭
ତେସନେକ ସମ୍ପାଦ ରାଜସୂୟ ଯାଗସଭା
ଆପଣେ ଯାହା ସର୍ଜନା କଲେକ ବାସୁଦେବା ।୪୮
ବଦୟନ୍ତି ଜଗନ୍ନାଥେ ଯୁଧିଷ୍ଠିର ଦେବଙ୍କ ଅଗ୍ରତେ
ସ୍ୱାମୀ ଭୀଷ୍ମଙ୍କୁ ଶାଢ଼ୀ ଦେବା ସଭାରେ ସମେତେ ।୪୯
ସେହି ଛତ୍ରଶାଳେ ଦେବ ହୁଅନ୍ତୁ ଅଧିକାରୀ
ସମସ୍ତ ରାନ୍ଧଣା ଯୋଗାଡ଼କୁ ଥାଆନ୍ତୁ ଚିନ୍ତାକରି ।୫୦
କ୍ଷତ୍ରୀ ବର୍ଗେଣ ଅଛନ୍ତି ଯେତେକ ସଇନି
ଆପଣେ ତାହାନ୍ତ ସମାର୍ଜନା ଭୀଷ୍ମେ କରୁଥିବେ ଦିବା
ଯେ ରୟଣୀ ।୫୧
ଶ୍ରୀହସ୍ତେ ଶାଢ଼ୀ ଅକ୍ଷତ ଘେନିଣ ଧର୍ମସୁତେ
ଶାଢ଼ୀ ନେଇ ଆପଣେ ଗାଙ୍ଗେୟ ଯେ ବାନ୍ଧିଲେ ନିଜ ମାଥେ ।୫୨
ବୋଇଲେ ଛତ୍ରଶାଳେ ପରିଛା ଯେ ଭୀଷ୍ମ ମହାରଥା
ମନ ଜାଣି ଭୀଷ୍ମେ ତୁମ୍ଭେ ହୋଇବ ଅନ୍ନଦାତା ।୫୩
ଯେକା ଜଣକେ ଯେବେ ଅତ୍ରିପୁତି ହୋଇବ
ପାଣ୍ଡୁର ବ୍ରହ୍ମହତ୍ୟା କେବେହେଁ ପାର ନ ଯିବ ।୫୪
ଯେକଜଣକଇଂ ଯେବେ ନ ପାଇବ ଅନ୍ନ
ଚକ୍ରମାରି ଶିର ଛେଦିବି ଯେ ମୋହୋର ଦୃଢ଼ ବଚନ ।୫୫
ଶାଢ଼ୀ ପାଇଣ ଭୀଷ୍ମେ ଗଲେ ଛତ୍ରଶାଳେ
ଦଶପଦ୍ମ ସୂପକାର ଯେ ଯେହାଙ୍କର ମେଳେ ।୫୬
ତ୍ରିବିଧ ଭିଆଣ ଯେ କରିଣ ଦେବ ସଞ୍ଚ
ଯେକାଜଣକର ତୁଣ୍ଡେ ନ ଶୁଭିବ ବାଚି ।୫୭
ଶଲ୍ୟଂକୁ ଶାଢ଼ୀ ଦିଆଇଲେ ଯୁଧିଷ୍ଠିର ଦେବଙ୍କର ହାଥେ
ଭୂରିସର୍ବା ସୋମଦତ୍ତ ବାହ୍ଲିକ ସହିତେ ।୫୮
ଉତ୍ତମ ସୋମବଂଶୀ ରାଜା ଯୋଦ୍ଧା ଅଶି ଖର୍ବ
ଯେହାନ୍ତ ଘେନି ତୁମ୍ଭେ ଅନ୍ନହିଁ ପରଶିବ ।୫୯
ତ୍ରିପୁତି ଇଛାୟେ ଯେ କରୁଥିବେ ଭୋଜନ ସର୍ବଜନ ।୬୦
ଷୋଳସହସ୍ର ଗୋପାଳ ଆପଣାର ସଙ୍ଗୀ
ତାହାନ୍ତ ଆଗ୍ୟାଂ ଦିଲେ ଦେବ ଶିରିରଙ୍ଗୀ ।୬୧
ଗାବନ୍ତ ଦୋହନ କରି କ୍ଷୀରଭାରମାନନ୍ତ
ଛତ୍ରଶାଳେ ପ୍ରବେଶ ନେଇ କରୁଥିବଟି ଅନୁବ୍ରତ ।୬୨
ଶ୍ରୀହସ୍ତେ ଜଗନ୍ନାଥେ ସବୁନ୍ତି ଦିଲେ ଶାଢ଼ୀ
ଆଣନ୍ତି ଗୋପାଳେ ଯେ ଦୁଧ ଦୋହନ କରି ।୬୩
ରୋଷେଇ ଘରେକେ ଦେବ ସହସ୍ରେକ ଭାର କ୍ଷୀର
ଯେ ବିଧି ରାନ୍ଧଣା ଘର ଦଶପଦ୍ମ ମେବଛ ପନ୍ଦର ।୬୪
ଯେ ବିଧି ଘରକେ ସହସ୍ରେକ ଭାର କ୍ଷୀର ଆଣି
ଦଧି ଦୁଧ ଅଧାମ ଯେହି ଲେଖାୟେ ପରିମାଣି ।୬୫
ଶତେକ ଧେନୁ ଗାଈକେ ଭାରେକ ଉଠଇ
ଯେମନ୍ତେକ ସହସ୍ରେ ଭାରକ ଲକ୍ଷେ ଗାଈ ଖଟଇ ।୬୬
ଦଶପଦ୍ମ ପନ୍ଦର ମେବଛ ଘରକୁ ସମ୍ପାଦେ
ଦଶକ୍ଷଉଣୀ ପନ୍ଦର ପଦ୍ମ ଧେନୁ ହୋଇଲାକ ହାଦେ ।୬୭
ଲେଖ ହୋ ସୁବୁଦ୍ଧି ସୁଗ୍ୟାଂନୀ ପଣ୍ଡିତେ
ରାନ୍ଧଣା ଯୋଗାଡ଼କୁ ଦୁଧ ଆଣନ୍ତି ହାଦେ ଯେତେ ।୬୮
ତେତିଶ ମହାଖୁଡ଼ ମୂଳେ ଯେକାଦଶ ପଦ୍ମ ଗୋପାଳ
ଦୁତୀ ସମୁଦ୍ର ଜାଣି ଦିଶଇ ଗୋକୁଳ ।୬୯
ଆବର ଦଶଅହିବ୍ରତେକ ଭାର ଯେହି ଲେଖାୟେ ପରିମାଣି
ଦଧି ଦୁଧ ଅଧାମ ପରଶିବାକୁ ଯେତେ ଆଣି ।୭୦
ଲେଖନ ପଠନ ନ ଯାଇ ଶାହାସ୍ର ଯୋଗେ
ମୁଂ ଅବା କେତେ ଅନ୍ତ କରିପାରିବି ମୂର୍ଖ ସ୍ୱଭାବେ ।୭୧
ଲକ୍ଷେ ରାଜାଙ୍କର ଯେ ଅନିର୍ଯାପ ସଇନି
ସମିଦ ସମ୍ପର୍ବେ ରାଜାୟେ ଆସିଛନ୍ତି ଯେ ଯାହା ବଳ ଘେନି ।୭୨
ଗଙ୍ଗା ଯମୁନା ଦୁଇନଦୀ ମଧରେ ଛାୟା ମଣ୍ଡୋପେକ ରଞ୍ଚି
ଦ୍ୱାଦଶ ଯୋଜନ ତହିଂ ବିସ୍ତାର ହୋଇଅଛି ।୭୩
ସେ ଭୂମି ମାଡ଼ିଣ ଯେ ଭୋଜନ ଭୂମିସ୍ଥଳୀ
କିଞ୍ଚିତେ ସର୍ଜନା ତାହା କଲେକ ବନମାଳୀ ।୭୪
କିରାତ ରାଜା ଯେ ବନଚର ଆଧିପତି
ଗଙ୍ଗାକୂଳେ କାଠ ଆଣି କୁଢ଼ାବନ୍ତି ନିତିପ୍ରତି ।୭୫
ହରିଣ ବରେହା ଯେ ଗୟଳ ଗଣ୍ଡାଜୀବ
ନବକୋଟି ଯୋଦ୍ଧା ଘେନିଆଣି ଦିଅଇ କିରାତେଶ୍ୱର ଦେବ ।୭୬
ନିଷାଦ ରାଜା ଯେ ନୃପତି କଇବ୍ରତ
ଗଙ୍ଗାୟେ ନାବ ବାହଇ ନବଖର୍ବ ନଉ ମର୍ଭୁତ ।୭୭
ଆକାଶ ଗଙ୍ଗାୟେ ନାରାୟେଣଂକ ଆଗ୍ୟାଂ ପରମାଣେ
ନାବ ଲାଗଇ ଯାଇଂ ଇନ୍ଦ୍ର ଦେବତାଙ୍କର ନନ୍ଦନ ନାମେ ବନେ ।୭୮
ଲୋକାଲୋକ ନାମେଣ ସେ ଯେବଣ ପରବତ
ତହିଂର କଇଛାଡ଼େ ନାବ ନେଇ ଲଗାଇ କଇବ୍ରତ ।୭୯

ଇନ୍ଦ୍ର ଦେବତାର ବନରକ୍ଷା ତୋଟାଳମାନେ
ନବଖର୍ବ ତୋଟାଳ ଆଣି ନାବେ ପୂରାବନ୍ତି ବହନେ ।୮୦
କଦଳୀ ନଟୀକାଳ ପଣସ ଚୂତଫଳ
ଟଭା ନାରଙ୍ଗ ଜମ୍ଭିଳ ଲେମ୍ବଉ କଣ୍ଟାହୋଳ ।୮୧
ମେଞ୍ଚନ ଯୋଗାଡ଼ ରାନ୍ଧଣା ବିଧାନକୁ
ତୋଟାଳେ ନାବେ ପୂରାଇ ଦିଅନ୍ତି କଛବ୍ରତ ରାଜାକୁ ।୮୨
ନବଖର୍ବ ନଉମର୍ଭୃତ ନାବ ଭରି
ଇନ୍ଦ୍ରପ୍ରସ୍ଥେ ପକାନ୍ତି ପର୍ବତ ସମକରି ।୮୩
ବନଫଳମାନ ସବୁ ଆଣି ସୁବାହୁ
ଆଳୁ ସାରୁ ଓଲୁଅ ହଳଦୀ ଆଣନ୍ତି ସେହୁ ।୮୪
ନାରାୟେଣଂକ ଆଗ୍ୟାଂୟେ ଦୋହରା ହିଙ୍ଗୁଳା ପ୍ରସନ୍ନେ
କ୍ଷଣକେ ପାକ ସିଝଇ ଅମୃତର ସମାନେ ।୮୫
ପରିବା ଲୁଣ ବେସର କ୍ଷୀର ପିଠାଂଉ ଆଦିକରି
ଘୃତ ସଂଯୋଗେଣ ସେ ଯେକଝାନ୍ତିକେ ଯୋଗାଡ଼ି ।୮୬
ଭାଣ୍ଡେ ପୂରୋଇଣ ଚୁଲୀରେ ବସାଇଲେ
କ୍ଷଣକେ ଅମୃତ ପାକ ହୋଇ ହିଙ୍ଗୁଳା ସୁମରିଲେ ।୮୭
ଯେମନ୍ତ ରାନ୍ଧଣା ଗଉରୀ ଶଉରୀ ନଳବିଧି
ବିନାପୟେ ପାକ ଯେ ହୋଉଚନ୍ତି ସର୍ବ ସିଦ୍ଧି ।୮୮
ମକର ମାସ କୃଷ୍ଣପକ୍ଷ ତିଥି ଯେ ଚଉଠୀ
ଉତ୍ତରା ଫାଲ୍‌ଗୁନି ନକ୍ଷତ୍ର ଭୋଗ୍ୟ ବେଳ ପାଞ୍ଚଘଟି ।୮୯
ଚନ୍ଦ୍ରବାର ଆୟୁଷ୍ମାନ ଯୋଗ ଭୋଗ ତିନିଲିତା
ବାଳବ ନାମେ କରଣ ଲଗ୍ନଘରେ ସ୍ଥିତା ।୯୦
ଷଷ୍ଠଘରେ ଚନ୍ଦ୍ର ବୃହସ୍ପତି ଯେକାଦଶମେ
ଅଧକ୍ଷ ନାମେ କାଳ ବାରୁଣୀ ଅଷ୍ଟମେ ।୯୧
କର୍ମଘରେ ଦଇବତ ଜନ୍ମଘରେ ଶନି
ଘଟଲଗ୍ନେ ଯଗ୍ୟାଂକୁ ଅନୁକୂଳ କଲେ ବ୍ୟାସ ମହାମୁନି ।୯୨
ନିତ୍ୟକର୍ମ ବିଧାନ ସାରିଣ ଦେବ ଧର୍ମେ
ବିଜେ ପଣ୍ଡୁନନ୍ଦନ ଯଗ୍ୟାଂଶାଳ ଆଶ୍ରମେ ।୯୩
ତ୍ରିଶୁଳେକ କରେଣ ଘେନି ଋଷି ମାରକଣ୍ଡ
ଆପଣେ ଶ୍ରୀହସ୍ତେ ସ୍ରିଜିଲେ ଯଗ୍ୟାଂକୁଣ୍ଡ ।୯୪
ଦ୍ୱାଦଶଯବ ଆୟତନ ଚଉଦିଗ
ଗଭୀର ଆୟତନ ଦ୍ୱାଦଶ ହବିର୍ଭାଗ ।୯୫
ଇମ୍ପିତ ଲୁଡ଼ା ଯେ ତ୍ରିକଛ ବସନ
ଶ୍ରୀକରେ କୁଶବଟୁ ଦ୍ୱାଦଶ ଲକ୍ଷଣ ।୯୬

ଲକ୍ଷେକ ବ୍ରାହ୍ମଣ ଘେନି ଧଉମ୍ୟ ପୁରୋହିତେ
କୃଷ୍ଣାଜିନ ଛାଲ ମାଡ଼ି ବସିଲେ ଯୁଝେଷ୍ଟି ଦେବଂକ ଅଗ୍ରତେ ।୯୭
ଆପଣେ କୁଶହସ୍ତ ଧର୍ମରାଜା ଯୁଝେଷ୍ଟି
ଆକ୍ରଷଣ ଆସନ କଲେ କୃଷ୍ଣାଜିନ ଛାଲଗୋଟି ।୯୮
ସୁବର୍ଣ୍ଣର ଘଟେ ଯେ ତୀର୍ଥଜଳ ପାଣି
ପୁଷ୍କରଦେବତା ବହନ ଯୋଗାଇଲେ ଆଣି ।୯୯
ଡାହାଣ ବ୍ରତେକ ଶଙ୍ଖେ ଲାଇ ଜଳତିଳ
ସଂକଳ୍ପ କରନ୍ତି ପୁରୋହିତେ ଦେଶକାଳ ମନ୍ତବଳ ।୧୦୦
ବରଣ ସାରି ଆସ୍ତାନେ ବିଜେ ଦେବ ଧର୍ମେ
ଛାମୁରେ ଜଣାନ୍ତି ଦେବ ପୁରୁଷଉତ୍ତମେ ।୧୦୧
ସ୍ୱାମୀ ଚତୁର୍ଦ୍ଦିଗରୁ ଯେ ଅଇଲେ ରାଜାମାନେ
ଦ୍ରଶନ କରିବେ ନା ବରଣ ବିଧାନେ ।୧୦୨
ଅନେକ ସମ୍ପଦଘେନି ଦେବ ଧର୍ମସାଇଂ
ମୟଦାନବ ମାୟାସଭାରେ ବିଜେକଲେ ଯାଇଂ ।୧୦୩
କୋଳେ ମାହେଶ୍ୱରୀ ବିଜୟେ ଜିଷ୍ଣୁସେନୀ
ଅଗ୍ନିରୁ ଜାତ ସେ ପାଞ୍ଚାଳରାଜାର ନନ୍ଦନୀ ।୧୦୪
ହାର କଂକଣ ନୂପୁର ଚନ୍ଦ୍ରକିରଣ ମଣି
ମୁକୁଟ କର୍ଣ୍ଣାଞ୍ଚଳ ଲଲାଟେ ସୀମନ୍ତିନୀ ।୧୦୫
ଅଳଂକାର ଅଭିଷେକ ଯେତେକ ଯୋଗାଡ଼
କୁବେର ତାକୁ ଭୂଷଣ କଲା ଅଷ୍ଟାଙ୍ଗ ଶରୀର ।୧୦୬
ଅମଳାନ କୁସୁମ ଯେ ଦେବ ପୁଷ୍ପ ମାଳ
ଯୁଝେଷ୍ଟି ଦେବଂକ କଣ୍ଠେ ଲମ୍ବାଇଲେ ଆଖଣ୍ଡଳ ।୧୦୭
ଅନେକ ଅଭିଷେକ ଯୋଗାଡ଼ମାନ ଘେନି ଦେବୀ ଶଚୀ
ଦ୍ରୋପଦୀ ଦେବୀ ଶରୀରେ ତାହା ନେଇ ରଂଚି ।୧୦୮
ସଭାକୁ ଉଠିବାକୁ ତେର ଯେ ପାବଚ୍ଛ
ପାବଚ୍ଛକ ତଳେ ମନ୍ତ୍ରୀ ମଦନା ଦେବୀର ବସ୍ତ ।୧୦୯
କରେ ଘେନିଅଛି ଭୂତଭବିଷ୍ୟ ପୋଥି ।
ଗତ ଆଗତ ସମସ୍ତ କହଇ ସହଦେବ ମନ୍ତ୍ରୀ ।୧୧୦
କନକ ଦଣ୍ଡ ଛତ୍ର ଧରି ମାଦ୍ରୀ ଦେବୀର ବାଳେ
ଦୁଇପାବଚ୍ଛ ତଳେ କୁମାର ନକୁଳେ ।୧୧୧
ତୃତୀୟ ପାବଚ୍ଛ ତଳେ ବିଜୟ ଫାଲଗୁନି
ଅନେକ ବେଶ ବେଶନ ହୋଇ ଗାଣ୍ଡିମ ଧନୁ ଘେନି ।୧୧୨
ଅନନ୍ତ ପଢ଼ିହାରୀ ସରୂପେ ଜଗନ୍ନାଥ
ଦଶ ପାବଚ୍ଛର ତଳେ ରହିଲେ ପ୍ରଭୁ ଜଗନ୍ନାଥ ।୧୧୩

ଗୋବିନ୍ଦେ ବୋଇଲେ ଦେବ ଦ୍ରିଯୋଧନକୁ ଦେବା ଶାଢ଼ୀ
ଭଣ୍ଡାର ନାୟକ ହୋଉ ସେ ଭଣ୍ଡାରେ ଅଧିକାରୀ ।୧୧୪
ଭୂଇଂ ଛୁଇଂଣ ଯୁଝେଷ୍ଠି ଦେବେ ଶ୍ରବଣେ ଦିଲେ ହାଥ
ବୋଇଲେ ଧନମାନ ଧଂସନ ସ୍ୱାମୀ କରିବ ସମସ୍ତ ।୧୧୫
ସ୍ୱାମୀ ଅନ୍ୟାଚାରୀ ଭାରିଜା ଅସହଣି ଜନ
ଯେହାଙ୍କୁ ଗଉରୋବ କଲେ କାର୍ଯ୍ୟ ହୋଇବ ନାଶପାନ ।୧୧୬
ଅଭାବି ମଇତ୍ର ଯେ ଅସହୃଦ ବନ୍ଧୁଜନ
ଯେମାନନ୍ତ ପ୍ରୀତି କେଭେଂ ନ କରିବ ଜନାର୍ଦ୍ଦନ ।୧୧୭
ଅବିଶ୍ୱାସୀ ସୋଦର ଯେ ନୋହଇ ହୃଦଗତା
ଦୁର୍ଜନ ଭ୍ରାଥ ଯେ ଅନ୍ୟାଚାରୀ ମାତା ।୧୧୮
ଯେତେଲୋକ ତୁଲେ ହରି ପ୍ରୀତି ନ କରିବା
ଯେତେକଇଂ ବିଶ୍ୱାସେଣ ଧନଭାର୍ଯ୍ୟା ନ ସମର୍ପିବା ।୧୧୯
ଯେହାଂକର ଗୋଚରେ ହରି ସମର୍ପିଲେ ଧନ
କାଳକାର୍ଯ୍ୟେ ସମସ୍ତେ ହୋଇବେ ନାଶପାନ ।୧୨୦
ଯଦ୍ୟପି ସୋଦର ମୋର ଅଟଇ ମାନଗୋବିନ୍ଦ
କାଳେ ଦେଖି ନୁଆରିବ ହରି ମୋହୋର ସମ୍ପଦ ।୧୨୧
ଅଳପ ବଇବାକୁ ହରି ଦେବ ବହୁତ କରି
ଧନଭରା ନ ଥିଲେ କି କାର୍ଯ୍ୟ କରିପାରି ।୧୨୨
ଯୁଝେଷ୍ଠି ଦେବଙ୍କ ମୁଖୁଂ ନିଷ୍ଠୁର ବାକ୍ୟ ଶୁଣି
ବିନୟ ଭାବ ହୋଇଣ ବୋଲନ୍ତି ଚକ୍ରପାଣି ।୧୨୩
ସ୍ୱାମୀ ଭଣ୍ଡାରେ ଅଧିକାରୀ ଯେବେ ହୋଇବ ଦ୍ରିଯୋଧନ
ତାହାର ଇଚ୍ଛାଯେ ସେ ଯେତେ ଦେଉଥିବ ଅବିଛିନ୍ନ ଧନ।୧୨୪
ତହିଂକି ଦେବ ତୁମ୍ଭେ ନ ଭାଳ କିଛି ବୁଦ୍ଧି
ପନ୍ନଗା ନାରାୟେଣ ସେ ତାହାର କରେ ଅଛି ଶଙ୍ଖ ପଦ୍ମନିଧି।୧୨୫
ନାରାୟେଣଂକ ବଚନେ ହକାରିଲେ କାଳିଞ୍ଜନ
ଆରେ ଛାମୁକୁ ହକାରି ଆଣ ଦ୍ରିଯୋଧନ ।୧୨୬
ସ୍ୱାମୀଙ୍କର ବଚନେ ସେ କାଳିଞ୍ଜନ ପଢ଼ିହାରୀ
ଆଗ୍ୟାଂଯେ ଦ୍ରିଯୋଧନକୁ ଆଣିଲା ହକାରି ।୧୨୭
ଆହୋ ଦ୍ରିଯୋଧନ ଛାମୁକୁ ବହନ ହୋଇ ଆସ ଯେହିକ୍ଷଣ
ଭଣ୍ଡାର ନାୟକ ତୁମ୍ଭେ ହୋଇବ ଠାକୁରଙ୍କର ଆଗ୍ୟାଂ ପରମାଣ ।୧୨୮
ଶକୁନି ବଦନ ଚାହିଂଲାକ ମହୀପାଳ
ପ୍ରଚାରଇ କେମନ୍ତ ଚରିତ ପ୍ରାୟେ ବୁଝିଲୁ ହୋ କହସି ମାତୁଳ।୧୨୯
ଶକୁନି ବୋଇଲା ରାଜ ଘେନ ବହନ ଶାଢ଼ୀ
ଯୁଝେଷ୍ଠିଂକର କାର୍ଯ୍ୟେ ସେ ହୋଇବ ଅପହାରି ।୧୩୦
ଭାରେକ ଆଗ୍ୟାଂ ହୋଇଲେ ଦଶଭାର ଦେବୁ
ତାହାର ଭଣ୍ଡାର ଧ୍ୱଂସନ ହୋଇବ ତୁ ଯଶ ଅରଜିବୁ ।୧୩୧
ଧନର ଅଭାବେ ତାହାର ଧର୍ମ ହୋଇବ କାହିଂ
ଭାଜିବ ମହାଯାଗ ଯୁଝେଷ୍ଠିଙ୍କି ଧର୍ମ ପ୍ରାପତ ନୋହି ।୧୩୨
ଶକୁନି ବଚନେ ସେ କୁରୁବୀର ଦଣ୍ଡଧାରୀ
ଧାଡ଼ିକାରେ ଯୁଝେଷ୍ଠି ଦେବଂକ ଛାମୁରେ ଆସଇ ବିଜେକରି।୧୩୩
ଶ୍ରୀହସ୍ତେଣ ଶାଢ଼ୀଯେକ ଘେନିଣ ଧର୍ମସୁତେ
ଦ୍ରିଯୋଧନକୁ ତିଆରନ୍ତି ପିତୃକାର୍ଯ୍ୟ ଅର୍ଥେ ।୧୩୪
ବାବୁ ରାଜାମାନଙ୍କର ଦେଖା ଦରଶନି ଧନ ଯେତେ
ସମସ୍ତ ସମ୍ଭାଳଣ କରିଥିବୁ ମୁହିଂ ସମର୍ପିଲି ତୋତେ ।୧୩୫
ଯାହାକୁ ଆଗ୍ୟାଂ ହୋଇବ ନାରାୟେଣଙ୍କ ବଚନେ
ବିଚାରି ଧନ ଦେଉଥିବୁ ଯେ ଯେତେକ ଭାର୍ଜନେ ।୧୩୬
ଯୁଝେଷ୍ଠିଙ୍କ ବଚନେ ଦ୍ରିଯୋଧନ ପରମ ସାନନ୍ଦେ
ଅବଧାରୀ ଶାଢ଼ୀ ଘେନିଲା ସେ ମାନଗୋବିନ୍ଦେ ।୧୩୭
ତୁଲେଣ ମୁକୁଟବନ୍ଧା ଯୋଦ୍ଧା ବତିଶ ଲକ୍ଷ ରକ୍ଷା
ବାଆନ ଭଣ୍ଡାରେ ଦ୍ରିଯୋଧନ ହୋଇଲେ ପରିଛା ।୧୩୮
ମଥାରେ ଶାଢ଼ୀ ବାନ୍ଧିଣ ଚଳଇ କୁରୁନାଥେ
ଆବୋରିଲେ ଭଣ୍ଡାର ଆପଣା କାର୍ଯ୍ୟଅର୍ଥେ ।୧୩୯
ଶ୍ରୀ ଜଗନ୍ନାଥ ଦେବଂକ ଆଗ୍ୟାଂ ଅବଧାରୀ
ସ୍ୱାମୀ ଦୁର୍ଜୟ ଦମନକୁ ଧୁଶାସନେ ଦିଅ ଶାଢ଼ୀ ।୧୪୦
ତୁଲେ ଯୋଦ୍ଧା ଯେହାଂକର ଚଉରାଶି ଲକ୍ଷ
ଗଜ ଅଶ୍ୱ ଭୋଗ ନିଯୋଗେ ଯେ ହୁଅନ୍ତୁ ପରିକ୍ଷ ।୧୪୧
ଶକୁନି ମହାମନ୍ତ୍ରୀ ଯେ ଗାନ୍ଧାରସେନ ବଛା
ଗଜଅଶ୍ୱଂକୁ ଚରଣି ପିଉଣି ଦେବାକୁ ହୋଇବେ ପରିଛା ।୧୪୨
ଯୁଝେଷ୍ଠି ଦେବ ବୋଇଲେ ଶୁଣସି ମାତୁଳ
ଗଜ ଅଶ୍ୱ ନିଯୋଗୀମାନଙ୍କୁ ଭଲ କରି ପ୍ରତିପାଳ ।୧୪୩
ଯେସନକ ଚରଣି ପିଉଣି ଲାଗଇ ଘାସ ବିରି
ସବୁନ୍ତି ଦେବୁ ମାତୁଳ ସମତା ଦୃଷ୍ଟି କରି ।୧୪୪
ଶକୁନିର ମୂଳେ ଦ୍ରିଯୋଧନ ଅଠାଶୋଇ ଭାଇ
ଅଶ୍ୱ ଗଜ ପରିଛାପଣ ବୀରେ ଆବୋରିଲେ ଯାଇ ।୧୪୫
ବଦୟନ୍ତି କେଶବ ଶକୁନି ଅଗ୍ରତେ
ମହ୍ଲାର ନୃପତି ଯେ ଚଉଧର୍ମ ବନସ୍ତେ ।୧୪୬
ବତିଶ ସାଗର ଯେ ତାହାର ସଙ୍ଗନି
ଗଙ୍ଗାକୂଳକୁ ଆସୁଅଛି ଘାସବିରି ଘେନି ।୧୪୭

କଇବ୍ରତ ରାଜାଯେ ଜୟେନଗ୍ର ମନ୍ମଥ ଦଣ୍ଡଧାରୀ
ନାବରେ ପୂରୋଇ ଆଣୁଛନ୍ତି ପାରିକରି ।୧୪୮
ଆଜ୍ଞା ପାଇଣ ଗଲେ ସେ ଧୃତିରାଷ୍ଟ୍ର ଆତ୍ମଜେ
ଆବୋରିଲେ ଅଧିକାର ଯେହ୍ନେ ଆଜ୍ଞାଦିଲେ ଦେବରାଜେ ।୧୪୯
ମଳ ଘର ଅଧିକାରୀ ସମସ୍ତନିଯୋଗୀ
ଗହଳ ଧନ୍ଦୋଳ ହୋଇ ଧାମନ୍ତି ବେଗି ବେଗି ।୧୫୦
ଲକ୍ଷେ ରାଜାର ଯେତେ ଗଜ ଅଶ୍ୱମାନ
ନିଯୋଗ ମୂଳେ ତାହା ବାଣ୍ଟିଦିଲା ଦୁର୍ଦକ୍ଷ ଦ୍ରିଯୋଧନର
ଭାଇ ସାନ ।୧୫୧
ଘାସ ବିରି ନିଯୋଗେ ଶକୁନି ପରିଛା
ଗଜ ଅଶ୍ୱନ୍ତ ବାଣ୍ଟି ଦିଅଇ ଗାନ୍ଧାରସେନ ବଛା ।୧୫୨
ସମ୍ଭାଳିଲେ ମହାନିଯୋଗ ଯେ ଆଜ୍ଞା ଅବଧାନେ
ଖଟନ୍ତି ବେପାରେ ଦ୍ରିଯୋଧନର ଭ୍ରାଥମାନେ ।୧୫୩
ଯୁଦ୍ଧେଷ୍ଟି ଦେବଙ୍କ ଛାମୁରେ ବଦନ୍ତି ନାରାୟଣ
ସ୍ୱାମୀ ଧୃଶାସନଙ୍କୁ ଶାଢ଼ୀ ଦେବା ରାତ୍ରବୁଲା ମାଝିପଣ ।୧୫୪
ଦଇତ ଦାନବ ପିଶାଚ ହୋଇଛନ୍ତି ସର୍ବମେଳ
ରାତ୍ରକାଳେ କରନ୍ତି ନ ପୁଣ ଖଳବଳ ।୧୫୫
ଦୁଷ୍ଟ କୁମାର ଧୃଶାସନ ବଡ଼ାଇ ଉପେକ୍ଷା
ତାହାର ବଳେ ସ୍ୱାମୀ ନିଶି ହୋଇବ ରକ୍ଷା ।୧୫୬
ଗୋବିନ୍ଦ ବୋଇଲେ ହୋ ଶୁଣ କାଳିଞ୍ଜନ
ଛାମୁକୁ ହକାରି ବେଗେ ଆଣ ଧୃଶାସନ ।୧୫୭
କାଳିଞ୍ଜନ ପଡ଼ିଆରୀ ଧୃଶାସନକୁ ଆଣିଲା ହକାରି
ଶ୍ରୀହସ୍ତେ ଯୁଦ୍ଧେଷ୍ଟି ଦେବେ ତାକୁ ଦିଲେ ଶାଢ଼ୀ ।୧୫୮
ବାବୁ ଲକ୍ଷେ ରାଜାଙ୍କର ଅସଂକ୍ଷ ସନ୍ୟବଳ
ଉଚଳ ଚଞ୍ଚଳ ଯେ ଶୁଭଇ ମହାଗୋଳ ।୧୫୯
ଅଛନ୍ତି ଦୁଷ୍ଟ ରାଜାଯେ ମହା ମହା ବିବାଦୀ
ଯେ ତୋହୋର ଦର୍ପେ ସମସ୍ତେ ହୋଇବେ କି ସାଧି ।୧୬୦
ତିରିଶଲକ୍ଷ ଯୋଦ୍ଧା ଥିବେ ତୋହୋର ତୁଲେ
ସେଠାବେ ଶିର ଛେଦିବୁ ତୋହୋର ଆଜ୍ଞା ଅବଜ୍ଞା କଲେ ।୧୬୧
ତାଡ଼ ତୋଡ଼ର ଗୁମ୍ଫା ସରଳ ବାହୁଟି ଜଗଦଳା
ଶିରେ ମଣି ମୁକୁଟ ସୀମନ୍ତିନୀ କର୍ଣ୍ଣକୁ କର୍ଣ୍ଣାଞ୍ଚଳ ରତ୍ନମାଳା ।୧୬୨
ଧୃଶାସନ କୁମାର ମଥାରେ ବାନ୍ଧି ଶାଢ଼ୀ
ପ୍ରର୍ଶୁରାମ ତେଜ ପ୍ରାୟେ ନିଶାରେ ଅଧିକାରୀ ।୧୬୩
ଯୁଦ୍ଧେଷ୍ଟି ପଚାରିଲେ ଶୁଣିମା ଜନାର୍ଦ୍ଦନ
ଯେ ସଭା ନିବୃତ୍ତି କରିବାକୁ କେ ହୋଇବ ଭାର୍ଜନ ।୧୬୪

ଗୋବିନ୍ଦେ ବୋଇଲେ ସ୍ୱାମୀ ଶୁଣ ଧର୍ମସୁତ
ଭୀମସେନଙ୍କୁ ଆଗ୍ୟାଂଦିଲେ ସେ ସଭା କରିବ ନିବୃତ୍ତ ।୧୬୫
ଯୁଦ୍ଧେଷ୍ଟି ବୋଇଲେ ତୁ ସକଳ ଅଧିକାରୀ
ରାଜାମାନଂକୁ ରାଗ ତୋହୋର ମୁଂ ଦେବ ହରି ।୧୬୬
ପ୍ରକୃତି ମୁର୍ଖ ଯେ ଅଟଇ ମନ୍ଦପ୍ରାଣୀ
ସେ କେମନ୍ତେ ସଭା ନିବର୍ତ୍ତ କରିବ ବିଚାର ଚକ୍ରପାଣି ।୧୬୭
କିଞ୍ଚିତ ଦୋଷକୁ ନ ପୁଣ ବହୁତ କୋପ କରଇ
ସେ କେମନ୍ତେ କରି ଦେବ ସଭା ବିଚାରଇ ।୧୬୮
ହକାରି ଆଣ ବୋଇଲେ ମାରଇ ତତକ୍ଷଣେ
ତାହାର ସଭା ବିଚାରିଲେ କି ବ୍ରତନ୍ତି ରାଜାଗଣମାନେ ।୧୬୯
ଅମାର୍ଗ ଜନକୁ ସଭା ସମର୍ପିବା କେସନେ
ଅନୁବ୍ରତେ ଦୁଷ୍ଟବୁଦ୍ଧି ଯାହାର ପ୍ରସରଇ ମନେ ।୧୭୦
ଶ୍ରୀ ଜଗନ୍ନାଥେ ବୋଇଲେ ଯେହୁ ଦୁସହ ମହାସଭା
ଆନରେ ନିବୃତ୍ତି ନୁହଇ ପରିମାଣି ବୁଝିବା ।୧୭୧
ଭୟେଣ ତ୍ରାସ ଦେବ ଯାହାକଇଂ କରନ୍ତି ଜନେ
ତାହାରେ ସେ ନିବର୍ତ୍ତି ହୁଅନ୍ତି ବହୁତ ଗହନେ ।୧୭୨
ସ୍ୱାମୀ ଡଗରା ଭୟେ ଶଂକା ତ୍ରାସ ଚାରି ଚାରିପ୍ରତି
ଭାବିଲେ ଭଜିଲେ ସେ ସଭା ହୋଅଇ ନିବୃତ୍ତି ।୧୭୩
ନାରାୟେଣଂକ ମୁଖୁଂ ଯେସନେକ ବାକ୍ୟ ଶୁଣି
ପରମ ସାନନ୍ଦ ହୋଇଲେ ଯୁଦ୍ଧେଷ୍ଟି ନୃପମଣି ।୧୭୪
ଶ୍ରୀହରି ଆଗ୍ୟାଂଦିଲେ କାଳିଞ୍ଜନକୁ ରାଇ
ଭୀମସେନକୁ ବେଗେ ଘେନିଆସ ଯାଇଂ ।୧୭୫
ଆଗ୍ୟାଂ ପ୍ରମାଣେ ଯେ ଗଲାକ କାଳିଞ୍ଜନ
ଛାମୁରେ ଦ୍ରଶନ ନେଇ କରାଇଲା ଭୀମସେନ ।୧୭୬
ଶ୍ରୀହସ୍ତେ ଶାଢ଼ୀ ଦିଲେ ଧର୍ମ ଯେ ନୃପତି
ସଭା ନିବର୍ତ୍ତ ବାବୁ କରିବୁ ମାରୁତି ।୧୭୭
ଯେ ଯାହାର ଅନରୂପେ ସମାର୍ଜନ କରିବୁ
ତ୍ରାସକରି କହିବୁଟି ପ୍ରାଣେ ନ ମାରିବୁ ।୧୭୮
ମଥାରେ ଶାଢ଼ୀ ବାନ୍ଧି ପବନର ବାଳ
ଯୁଦ୍ଧେଷ୍ଟିଂକ ସନ୍ନିଧ୍ୟରୁ ଆସଇ ତତକାଳ ।୧୭୯
ଯୁଦ୍ଧେଷ୍ଟିଂକି ପୁଛାକଲେ ଦେବ ହୃଷୀକେଶି
ସ୍ୱାମୀ ରାଜାମାନେ ଦ୍ରଶନ କରିବେଟି କି ଆସି ।୧୮୦
ଯୁଦ୍ଧେଷ୍ଟି ଦେବେ ବୋଇଲେ ଶୁଣିମା ଯଦୁନାହା
ମୁଂ କିସ କହିବି ହରି ନ ଜାଣୁ ଅବା କାହା ।୧୮୧

ଆସନ୍ତୁ ରାଜାମାନେ ଶୁଣିମା ଦେବହରି
କରାଅ ଦ୍ରଶନ ବୋଲି ଆଗ୍ୟାଂ ଅବଧାରୀ ।୧୮୨

**

## ୪୭. ଯୁଧିଷ୍ଠିରଙ୍କୁ ରାଜସୂୟ ଯଜ୍ଞରେ ରାଜାମାନଙ୍କର ଦର୍ଶନ

ସହଦେବଂଙ୍କୁ ଆଗ୍ୟାଂ ହୋଇଲାକ କାଳିଞ୍ଜନ ପଢ଼ିହାରୀ ଆଗେ
ଯାଇଂଣ ବୋଲ ସହଦେବଙ୍କୁ ରାଜାନ୍ତ ଘେନି ଦ୍ରଶନ କରୁ ବେଗେ ।୧
ଆଗ୍ୟାଂ ପ୍ରମାଣେ ସେ ଚଳିଲେ ଚାରଗଣ
ବାରତା କହନ୍ତି ଯାଇଂ ସହଦେବ ଅଗ୍ରତେଣ ।୨
ପୂର୍ବଦ୍ୱାର ବାଟେ ଯେ ବିଜୟ ମନ୍ତ୍ରୀ ଚୂଡ଼ାମଣି
ରାଜାମାନଂଙ୍କୁ ଆଗ୍ୟାଂ ହୋଇଲା ଆସ ଯେହିକ୍ଷଣି ।୩
ଯେ ଯେତେ ଆଣିଛନ୍ତି ଦେଖା ଦରଶନ ଧନ ଘେନି
ଛାମୁକୁ ଆସ ବହନ ସମ୍ବର ସନ୍ୟ ଘେନି ।୪
ଯେସନେକ ବାରତା କହନ୍ତେ ଚାରଗଣେ
ଆପଣେ ବିଜୟ ସ୍ୱାମୀ କଲେକ ଜନାର୍ଦ୍ଦନେ ।୫
ଦେଖିଲେ ସହଦେବ ରଥେ ବନ୍ଧନ ବେଲାଳ
ରଥର ସନ୍ନିଧ୍ୟେ ବିଜେ କଲେକ ନନ୍ଦବାଳ ।୬
କେଶବଂଙ୍କୁ ଦେଖି ରଥରୁ ଡେଇଂ ପଡ଼ିଲା ସହଦେବ
ଗୋବିନ୍ଦଂକର ପାଦେ ଲୋଟି କହଇ ସଦିଭାବ ।୭
ବଦୟନ୍ତି ଜଗନ୍ନାଥେ ଶୁଣିମା ମନ୍ତ୍ରୀବର
କେବଣ ଦେଶ ରାଜା ଯେ ବନ୍ଧନ ରଥର ।୮
କରପତ୍ର ଯୋଡି କହଇ ମାଦ୍ରୀର ଦୁଲାଳ
ସ୍ୱାମୀ ବେଲାଳ ଦେଶର ସେ ଯେ ନୃପତି ବେଲାଳ ।୯
ଯେହାର ଦେଶରେ ମୁଂ ପଶିଲି ନିମନ୍ତଣେ
ମୋହୋର ତୁଲେ ଯେ କଲାକ ମହାରଣେ ।୧୦
ଅନେକ କୋପ ଯେ କରାଇଲା ଦେବ ମୋତେ
ବଳେ ଧରି ବନ୍ଧନ କଲି ମୋହୋର ରଥେ ।୧୧
ଅନେକ ଗୋକୁଳ ଦେବ ଅଛଇ ଯେହାର
ପୂର୍ବେ ଯେ ଯେହାକୁ ଗଉତମ ଦିଲେ ବର ।୧୨
ଗୋକୁଳ ଆଣିବାକୁ ଦେବ ବୁଦ୍ଧିକଲି ମୁହିଂ
ଅନେକ ସନ୍ୟ ମୋହୋର ମାଇଲେ ଦୁଷ୍ଟ ଗାଈ ।୧୩
ଗୋକୁଳ ଛାଡିଲି ଦେବ ଡରିଣ ପ୍ରମାଦକୁ
ବେଲାଳସେନକୁ ବନ୍ଧନକରି ଆଣିଛି ସଭାକୁ ।୧୪
ବିଚାରିଣ ଦେବ କରିବା ଅନୁରାଗ
କୋପଚିତ୍ତେ ଆଗ୍ୟାଂଦିଲେ ମାରିବି ଦେବ ବେଗ ।୧୫
ଶୁଣିଣ ପରମ ସାନନ୍ଦେ ବୋଇଲେ ଜଗନ୍ନାଥ
ଯେହାକୁ ସହଦେବ ତୁ ନ କର କୋପଚିତ୍ତ ।୧୬
ଗଉତମ ଋଷିର ଯେବେ ଯେ ଅଟଇ ସଞ୍ଚିଲା
ଆମ୍ଭର କୋପକଲେ ତାହାର କିସ ଗଲା ।୧୭
ବେଗେ ବନ୍ଧନ ବାବୁ ରେ ଫେଡସି ଯେହାର
ମୁନି ଜାଣିଲେ ଚିତ୍ତ କରିବେ ଅନ୍ତର ।୧୮
ଆହୂତି ହବିର୍ଭାଗ ନ ଦେବେ ତୋଷଚିତ୍ତେ
ଯଦି ଜାଣିବେ ବାବୁ ଗଉତମ ତପୋବନ୍ତେ ।୧୯
ପିତାର ବ୍ରହ୍ମହତ୍ୟା ଯିବ ଅନୁସରି
ଜାଣିଲେ କୋପ ପୁଣ କରଇ ବ୍ରହ୍ମଚାରୀ ।୨୦
ଭୟ ଲଗାଇ ଯହୁଂ କହିଲେ ଜଗନ୍ନାଥ
ବେଲାଳସେନର ବନ୍ଧନ ସହଦେବ କଲାକ ମୁକତ ।୨୧
ବନ୍ଧନୁ ମୁକତ ହୋଇ ବିରାଜସେନ ଆତ୍ମଜା
ଶ୍ରୀଜଗନ୍ନାଥଂକ ପାଦ ପଂକଜେ କଲାକ ଦିବ୍ୟପୂଜା ।୨୨
ଜୟତୁ ପଦ୍ମନାଭ ଦୁଖୀ ଲୋକର ଚିନ୍ତାମଣି
ଜୟତୁ ପଦ୍ମନାଭ ଶଙ୍ଖଚକ୍ର ପାଣି ।୨୩
ଜୟତୁ ପଦ୍ମନାଭ ପ୍ରସନ୍ନେ ଫେଡିପାରୁ କଷ୍ଟ
ଜୟତୁ ପଦ୍ମନାଭ ପ୍ରାପତ ବଇକୁଣ୍ଠ ।୨୪
ଜୟତୁ ପଦ୍ମନାଭ ସୟଳ ଦୁରିତ ନିବାରି
ଜୟତୁ ପଦ୍ମନାଭ ଦୁଖରୁ କରୁ ପାରି ।୨୫
ଜୟତୁ ପଦ୍ମନାଭ ଘଟଣ ପୁଣ୍ୟରାଶି
ଜୟତୁ ପଦ୍ମନାଭ ଅସୁର ବଳ ନାଶି ।୨୬
ଜୟତୁ ପଦ୍ମନାଭ ପରଦୁଖେ ଦୁଖୀ
ଜୟତୁ ପଦ୍ମନାଭ ଚଉଦଭୁବନ ଦେଖି ।୨୭
ଜୟତୁ ପଦ୍ମନାଭ ଅନନ୍ତ ଶଯ୍ୟା ହରି
ଜୟତୁ ପଦ୍ମନାଭ ପରରେ ଦୁଖକାରୀ ।୨୮
ଜୟତୁ ପଦ୍ମନାଭ ଶୟନ ପନ୍ନଗ ଶେଯ୍ୟା
ଜୟତୁ ପଦ୍ମନାଭ ପଦ୍ମିନୀ ଯାହାର ଭାରିଜା ।୨୯
ଜୟତୁ ପଦ୍ମନାଭ କାଳିନ୍ଦୀର ପ୍ରାଣବନ୍ଧୁ
ଶୂଦ୍ରମୁନି ସାରୋଳ ଦାସେ ଭାବିଲେ ପୂର୍ଣ୍ଣଇନ୍ଦୁ ।୩୦

ଅନେକ ତୁଷ୍ଟି ଯହୁଁ କଲେକ ବେଳାଳ
ଶୁଣିଣ ତୋଷ ହୋଇଲେ ଦେବକୀର ବାଳ ।୩୧
ଶରୀର ଆଶ୍ୱାସନା କରନ୍ତି ଶ୍ରୀରଙ୍ଗ
ବାବୁ ଯେ କଥା ନ କହିବୁ ଗଉତମଂକର ଆଗ ।୩୨
ଯେତେ ବୋଲିଣ ସେ ଦେବ ଚକ୍ରପାଣି
ସହଦେବଙ୍କୁ ବୋଲନ୍ତି ଅମୃତ ମୃଦୁବାଣୀ ।୩୩
ପୂର୍ବ ଦିଗରୁ ଆଣିଲୁ ରାଜା ସାତ ସହସ୍ର ଯେକ ଊଣା
ଶୀଘ୍ରେ ଘେନି ଦ୍ରଶନ କର ମାଦ୍ରୀର ଦୁଲଣା ।୩୪
ସହଦେବ ଆଗ୍ୟାଂଦିଲେ ରାଜାଗଣମାନଂକୁ
ଆସ ଦ୍ରଶନ କରାଇବା ଯୁଝେଷ୍ଟି ଦେବଂକୁ ।୩୫
ଶୁଣିଣ ସାନନ୍ଦ ଯେ ନୃପତି ସକଳ
ବାଜଇ ଟମକ ନିଶାଣ କୋଳାହଳ ।୩୬
ବାଜନ୍ତି ବୀରତୁର ମଙ୍ଗଳ ଧ୍ୱନି ବାଣୀ
ତ୍ରଇଲୋକ୍ୟ ଉଷତ ହୋଇଲା ଶଙ୍ଖ ଶବଦ ଶୁଣି ।୩୭
ଦଧିବାବନ ସୁମରି ଶୁଭ ଅନକୂଳ ବେଳେ
ଆସନ୍ତି ରାଜାମାନେ ମାହୀନ୍ଦ୍ର ଯୋଗବେଳେ ।୩୮
ପୂର୍ବଦ୍ୱାରେ ଦ୍ୱାରପାଳ କୁମାର ପ୍ରଦ୍ୟୁମ୍ନ
ତାହାଂକୁ ପୁଛା କରନ୍ତି ସ୍ୱାମୀ ଜଗତ ମୋହନ ।୩୯
ବାବୁ ବହନ ଦ୍ୱାର ଛାଡ ଯେ ରାଜାମାନେ ଭିତରକୁ ଯିବେ
ସଭାର ମଧ୍ୟେ ଯୁଝେଷ୍ଟି ଠାକୁରଂକୁ ଦ୍ରଶନ କରିବେ ।୪୦
ମଙ୍ଗଳ ଶୁଭ ଅବଧାରୀ ରକ୍ମିଣୀର ବାଳେ
ଅମୃତ ଯୋଗେ ପଶିଲେ ସର୍ବ ମହୀପାଳେ ।୪୧
ଆସ୍ଥାନେ ବିଜେ କରିଅଛନ୍ତି ଦେବ ଧର୍ମେ
ରାଜାମାନଂକୁ ଦ୍ରଶନ କରାବନ୍ତି ପୁରୁଷଂକ ଉତ୍ତମେ ।୪୨
ସକଳ ରାଜାମାନେ ଛାମୁରେ ପରିଣାମି
ଶ୍ରୀଜଗନ୍ନାଥେ ବୋଇଲେ ହୋ ପୂର୍ବଦିଗର ରାଜାମାନେ
ଦ୍ରଶନ କରନ୍ତି ଦେବସ୍ୱାମୀ ।୪୩
ଜିତ ମହାପ୍ରସାଦ ବୋଲି ଆଗ୍ୟାଂ ଅବଧାରୀ
ଆସ୍ଥାନେ ବସନ୍ତି ଯାଇଂ ସମସ୍ତ ଦଣ୍ଡଧାରୀ ।୪୪
ସମସ୍ତ ରାଜାମାନେ କରନ୍ତି ଅନେକ ସ୍ତୁତି
ନିରାକାର ପୁରୁଷ ପ୍ରାୟେ ଦେଖି ବୁଝିଲେ ଯୁଝେଷ୍ଟିଂକର ମୂର୍ତ୍ତି ।୪୫
ପରମାନନ୍ଦ ନାଥ ସମସ୍ତଂକ ଭୂଅପତି
ଖଣ୍ଡିଲୁ ସକଳ ପାତକ ଦେବ ମେଣ୍ଟିଲୁ ଦୁର୍ଗତି ।୪୬
ଛାୟା ମଣ୍ଡୋପ ପୂର୍ବାଦି ଭାଗର ଆସ୍ଥାନେ
ସମାର୍ଜି ସମସ୍ତ ରାଜାମାନଙ୍କୁ ବସାଇଲେ ଜନାର୍ଦ୍ଦନେ ।୪୭

ଯେଥୁ ଅନନ୍ତରେ କୁମାର ନକୁଳ
ଦକ୍ଷିଣ ଦ୍ୱାରେ ଉଭାରିଲା ତାହାର ସନ୍ୟବଳ ।୪୮
ଛାମୁରେ ଜଣାଇଲେ ଦେବ ଜଗନ୍ନାଥେ
ସ୍ୱାମୀ ନକୁଳ ଦ୍ରଶନ କରିବ ଦକ୍ଷିଣ ପ୍ରଶସ୍ତେ ।୪୯
ଆସୁ ବୋଲି ଆଗ୍ୟାଂ ହୋଇଲା ଛାମୁରେ ଜଣାଇ
ଆପଣେ ବାସୁଦେବ ଗଲେ ବେଗ ବେଗ ହୋଇ ।୫୦
ନାରାୟଣଂକଇଂ ଦେଖି ସମସ୍ତ ମହୀପତି
ଶ୍ରୀଜଗନ୍ନାଥଂକ ଚରଣେ ପ୍ରଣପତ୍ୟ ତତକ୍ଷଣାନ୍ତି ।୫୧
ଅନେକ ଭଗତେ ବିନୟେ ସର୍ବରାୟେ
ନାରାୟଣେ ଦ୍ରଶନ କଲେ ଦୁଷ୍କୃତ କ୍ଷୟେ ।୫୨
ସ୍ୱାମୀ ଯେବଣଂକୁ ଶ୍ରବଣେ ଥିଲୁ ଶୁଣି
ଚର୍ମ ନୟନେ ଦେଖିଲୁ ଦେବ ଚକ୍ରପାଣି ।୫୩
ରାଜାଗଣଂକୁ ବଦୟନ୍ତି ଶ୍ରୀ ବାସୁଦେବ
କୋଟିୟେ ଜନ୍ମ ଦୁଖ ମୁକତ ହୋଇବ ଯୁଝେଷ୍ଟିଂକି ଦେଖିବ ।୫୪
ମୁହିଂ ଭୃତ୍ୟପଣେ ଖଟଇ ଯାହାର ଚରଣେ
ଶୁଣିଣ ଆଶ୍ରିକ ହୋଇଲେ ସମସ୍ତ ରାଜାଗଣମାନେ ।୫୫
ସାଧୁ ଯୁଝେଷ୍ଟି ଯେ ଦେବ ମହିମାଂ ତୁମରି ଧନି
କେବଣ ମହାତ୍ମା ଅବା ଗୁପତେ ଅଛି ଜନ୍ମ ଘେନି ।୫୬
ଦ୍ରଶନେ ଖଣ୍ଡିବା ସମସ୍ତ ମହାପାପ
ନାରାୟଣ ତ୍ରାସ କରଇ ଯାହାର ପରିତାପ ।୫୭
ଗଦ କୁମାରକଇଂ ସ୍ୱାମୀ ଆଗ୍ୟାଂ ଅବଧାରୀ
ବାବୁ ଦ୍ୱାର ଛାଡ ରାଜାୟେ ଯିବେ ଠାକୁରଂକୁ ଦ୍ରଶନ କରି ।୫୮
ନାରାୟଣଂକ ବଚନେ କୁମାର ଛାଡିଲାକ ଦ୍ୱାର
ତିନି ସହସ୍ର ରାଜା ଘେନି ଭିତରେ ପଶିଲା ନକୁଳ କୁମାର ।୫୯
ଦେଖା ଦରଶନ ଯେ ଯେତେ ଦ୍ରବ୍ୟମାନ
ଆସ୍ଥାନ ତଳେ ବିଜେ ଦକ୍ଷିଣ କୋଶଳ ରାଜାଗଣ ।୬୦
ସମସ୍ତ ରାଜାୟେ ଯେ କଲେ ନିଉଛାଳି
କରପତ୍ର ଯୋଡି ଛାମୁରେ ଜଣାନ୍ତି ବନମାଳୀ ।୬୧
ସ୍ୱାମୀ ଦକ୍ଷିଣ କୋଶଳର ଯେ ତିନିସହସ୍ର ନୃପତି
ନକୁଳକୁମାର ଯେ ଆଣିଲା ନିମନ୍ତି ।୬୨
ଦେଖିଣ ସାନନ୍ଦ ଯେ ଯୁଝେଷ୍ଟି ରାଜା ଦେବେ
ଆଗ୍ୟାଂ ହୋଇଲା ରାଜାୟେ ବସନ୍ତୁ ଯେ ଯାହାର ଠାବେ ।୬୩
ସମସ୍ତ ରାଜାମାନନ୍ତ ଘେନିଣ ଦେବହରି
ଯେ ଯାହାର ଆସ୍ଥାନେ ବସାଇଲେ ଗଉରୋବ କରି ।୬୪
କାଳିଞ୍ଜନ ପଢ଼ିହାରୀ କାଳଧ୍ୱଂସନ ଡଗର

ଦରଶନି ଧନ ନେଇ ସମର୍ପିଲେ ଦ୍ରିଯୋଧନର ଛାମୁର ।୧୬୫
ପୂର୍ବଦିଗ ଦକ୍ଷିଣ ଦିଗର ଦରଶନି ଯେତେ ଧନମାନ
ଯତନେ ସମ୍ଭାଳି ଥୁଅ ହେ କୁରୁରାଣ ।୧୬୬
ଯେଥୁ ଅନନ୍ତରେ ଶୁଣ ହୋ ମହାରାଜା
ପଛିମ ଦିଗ ରାଜାନ୍ତ ଘେନି ବିଜେ ପବନ ଆତ୍ମଜା ।୧୬୭
ଶାମ୍ବକୁମାରକୁ ଯେ ବୋଇଲେ ଭୀମସେନ
ବାବୁ ଦ୍ୱାର ଛାଡ ଠାକୁରଂକୁ ମୁଂ ଦ୍ରଶନ କରିବି ବହନ ।୧୬୮
ଶାମ୍ବକୁମାର ବୋଇଲା ହୋ ଠାକୁରଂକ ବିନା ଆଗ୍ୟାଂ
ମୋହୋର ବଳେ କାହିଂ କରିପାରିବି ତା ଅବଗ୍ୟାଂ ।୧୬୯
ଆଗ୍ୟାଂ ହୋଇଲେ ସେ ତୋତେ ଛାଡି ପାରଇ ଦ୍ୱାର
ଶୁଣିଣ ଥମ୍ଭୀଭୂତ ହୋଇ ବସିଲା ବ୍ରିକୋଦର ।୧୭୦
ଉତ୍ତରଦିଗ ରାଜାମାନନ୍ତ ଘେନିଣ ଅର୍ଜୁନ
ଉତ୍ତର ଦ୍ୱାରେ ଉଭା ସେ ବାସବର ନନ୍ଦନ ।୧୭୧
ଯୁଝେଷ୍ଟିଙ୍କ ଛାମୁରେ ଯାଇଂ ଜଣାଇଲେ ଦେବହରି
ସ୍ୱାମୀ ଉତ୍ତର ଦିଗ ରାଜାମାନନ୍ତ ଘେନିକରି ।୧୭୨
ଆସିଛନ୍ତି ବିଜେ କରି ବୀର ଫାଲଗୁନି ।୧୭୩
ଯୁଝେଷ୍ଟି ବୋଇଲେ ଦେବ ପଚାର କାହାକୁ
ରାଜାନ୍ତ ଘେନି ଅର୍ଜୁନ ଆସୁ ଭିତରକୁ ।୧୭୪
ଶୁଣିଣ ସାନନ୍ଦ ଦେବ ଜଗତ ମୋହନ
ଉତ୍ତର ଦ୍ୱାରେ ପ୍ରବେଶ ହୋଇଲେ ତତକ୍ଷଣ ।୧୭୫
ରଥରୁ ଓହ୍ଲାଇଣ ବୀର ଫାଲଗୁନି
ଶ୍ରୀଜଗନ୍ନାଂଥକ ପାଦତଳେ କରଇ ଦଣ୍ଡନି ।୧୭୬
ଦେଖିଲେ ଯମାଗୋଷ୍ଟ ବନ୍ଧନ ହୋଇଅଛି ରଥେ
ଅର୍ଜୁନକୁ କୋଳାଗ୍ରତ କଲେ ଦେବ ଜଗନ୍ନାଥେ ।୧୭୭
ଅର୍ଜୁନ ବଦନ ଚାହିଂ ବଦନ୍ତି ଶ୍ରୀବତ୍ସି
କେବଣ ଦେଶର ନୃପତି ଯେ ବନ୍ଧନ ହୋଇଅଛି ।୧୭୮
କରପତ୍ର ଯୋଡି କହେ ପାଣ୍ଡବ କୁଳଶ୍ରେଷ୍ଟ
ସ୍ୱାମୀ ଉତ୍ତର କୋଶଳ ରାଜା ଯେ ନାମ ଯମାଗୋଷ୍ଟ ।୧୭୯
ତ୍ରଇଲୋକେ ଅସଂଖ୍ୟ ଦେବ ଯାହାର ମହିମାଂ ପରଚଣ୍ଡ
ନାମ ଲିହି ପୋଛିଲେ ଜନ୍ତୁ ହ୍ୱନ୍ତି ବେନିଖଣ୍ଡ ।୧୮୦
ମୋହୋର ସନ୍ୟବଳ ଯେ ସମସ୍ତ ନାଶକଲା
ବିଚାର କରିବା ସ୍ୱାମୀ ଯେ ଦୋଷ କାହାର ହୋଇଲା ।୧୮୧
ଶ୍ରୀଜଗନ୍ନାଥେ ପୁଣି ପଚାରନ୍ତି ବାଣୀ
ବାବୁ ଯମାଗୋଷ୍ଟ ବନ୍ଧନ ଫେଡ ଯେହିକ୍ଷଣି ।୧୮୨
ସଭା ନିବାଡିବାକୁ ପରିଛା ହୋଇଛନ୍ତି ଭୀମସେନ

ଯେ କଥା ଶୁଣିଲେ ଯମାଗୋଷ୍ଟ ନ ପାଇ ଜୀବନ ।୧୮୩
ଦଶଦୋଷ ଅପ୍ରାଧ କର ଯେହାର କ୍ଷମା
ଅଗ୍ୟାନ ଦୋଷ ଯେହାର କେସନେକ ଘେନିମା ।୧୮୪
ଯେସନେକେ ନାରାୟଣ ପାଥକଇଂ ବଚନେ ବୁଝାଇ
ଯମାଗୋଷ୍ଟକୁ ଦିଲେ ବନ୍ଧନୁ ମୁକୁଳାଇ ।୧୮୫
ନଜାଣୁ କି ଅର୍ଜୁନ ଭୀମସେନର କକ୍ଷା
ମୋହୋର ବେଳେ ତାହା କରି ନୋହେ ରକ୍ଷା ।୧୮୬
ବୀରବର ସୋହତ ସେ କଇଛା ଜଗଜେଠୀ
ଯେକା ଚାପୋଡେକେ ଛିଣ୍ଡାଇବ ସେ
ଯମାଗୋଷ୍ଟର ମୁଣ୍ଡଗୋଟି ।୧୮୭
ଅନେକ ତିଆରି ଦେବ ଅର୍ଜୁନକୁ ବୁଝାଇ
ଯମାଗୋଷ୍ଟକୁ ହରି ଦିଲେ ବନ୍ଦୀ ମୁକୁଳାଇଂ ।୧୮୮
ନାରାୟଣଂକ ମୁଖୁ ଯେସନେକ ବାକ୍ୟ ଶୁଣି
ରାଜାଯେ ତ୍ରାସିଲେ ଶ୍ରିକାଳ ଯୁଥ ଜାଣି ।୧୮୯
ଆଗେଣ ବାସୁଦେବ ପଛେଣ ଫାଲଗୁନି
ମଧ୍ୟେ ଯେକଉଣା ଚାଳିଶ ସହସ୍ର ରାଜା ଘେନି ।୧୯୦
ଉତ୍ତରଦ୍ୱାରେ ଦ୍ୱାରପାଳ ସତ୍ୟଭାମାଂକର ବାଳ
ଦେଖି ପାଦାର୍ଘ ଦିଲେ ସମସ୍ତ ମହୀପାଳ ।୧୯୧
ଶ୍ରୀ ନାରାୟଣ ବୋଇଲେ ଦ୍ୱାର ଛାଡରେ ବାବୁ
ରାଜାନ୍ତ ଘେନି ଆମ୍ଭେ ଠାକୁରଂକୁ ଦ୍ରଶନ କରାଇବୁ ।୧୯୨
ସତ୍ୟଭାମାର ନନ୍ଦନ କୁମାର ସତ୍ୟସେନ
ଛାଡିଲାକ ଦ୍ୱାର ଯେ ବେଗେ ପଶିଲେ ଜନାର୍ଦ୍ଦନ ।୧୯୩
ଦେଖା ଦରଶନି ଧନ ରଥରେ ଅଛି ପୂରି
ରାଜାନ୍ତ ନେଇ ଦ୍ରଶନ କରାଇଲେ ଦେବହରି ।୧୯୪
ସ୍ୱାମୀ ଉତ୍ତର ଦିଗ ରାଜାମାନେ କରନ୍ତି ଦ୍ରଶନ
କ୍ଷଣେକ ଯେଥକଇଂ ଦେବ ହୋଇବା ସାବଧାନ ।୧୯୫
ଚାଳିଶସହସ୍ର ରାଜା ଚରଣେ ପରିଣାମି
କରପତ୍ର ଯୋଡି ସ୍ୱାମୀ କରନ୍ତି ଦଣ୍ଡନି ।୧୯୬
ସ୍ୱାମୀ ଜନ୍ମର ସୁଫଳ ହେବ ଦେଖିଲୁ ଧର୍ମ ଯେ ଯୁଝେଷ୍ଟି
ଜୀବନ ସୁଫଳ ଆମ୍ଭର ରଜୁସୀ ଯାଗେ ଖଟି ।୧୯୭
ଜୀବନ ସୁଫଳ ସ୍ୱାମୀ ଆମ୍ଭେ ଦେଖିଲୁ ଜଗନ୍ନାଥ
ଜନ୍ମର ସୁଫଳ ଆଜ ଦେଖିଲୁ ଋଷିଗଣମାନନ୍ତ ।୧୯୮
ବହୁତ ବିନୋୟୀ ହୋଇଲେ ରାଜାଗଣମାନେ
ଯୁଝେଷ୍ଟି ଦେବ ବୋଇଲେ ବସ ଯାଅ ଆସ୍ତାନେ ।୧୯୯
ପରମ ଆନନ୍ଦ ସ୍ୱାମୀ ବଚନ ଶିରେ କରି

ଉତ୍ତର ଦିଗ ଆସ୍ଥାନେ ବସାଇଲେ ସମସ୍ତ ଦଣ୍ଡଧାରୀ ।୧୦୦
ଗୋବିନ୍ଦ ପୁଚ୍ଛାକଲେ ଯୁଧେଷ୍ଟି ଦେବ ସନ୍ନିଧାନେ
ସ୍ୱାମୀ ତିନିଦିଗରୁ ପ୍ରବେଶ ହୋଇଲେ ରାଜାଗଣମାନେ ।୧୦୧
ବ୍ୟାସଂକର ତୁଲେ ଶ୍ରୀଜଗନ୍ନାଥେ ହୋଇଲେ କଥା
ନାରାୟଣ ସଙ୍ଗେପି କହନ୍ତି ସମସ୍ତ ରାଜାମାନଂକ ବାରତା।୧୦୨
ଭୋ ଦେବ ବ୍ୟାସ ତିନିଦିଗରୁ ଅଇଲେ ରାଜାଗଣମାନେ
ପଚ୍ଛିମଦିଗ ରାଜାମାନନ୍ତ ଘେନି ରହିଛି ଭୀମସେନେ ।୧୦୩
ବ୍ୟାସେ ବୋଇଲେ ତୁମ୍ଭେ ଶୁଣିମା ଦେବ ଚକ୍ରଧାରୀ
ମାୟାୟେଣ ମାନବ ରୂପ ଧରି ଅଛୁ ଅବତରି ।୧୦୪
ସମସ୍ତ କୁତୋହଳ ଦେବ ତୁହି ସେ ପରିମାଣୁ
ସର୍ବଭୂତର ବାରତା ହୃଦଗତେ ସ୍ୱାମୀ ତୁହି ଜାଣୁ ।୧୦୫
ବ୍ୟାସେ ବୋଇଲେ ଦେବ ସମସ୍ତ ରାଜାନ୍ତ ଦ୍ରଶନ କରାଅ ଆଣି
ଯେକାମାତ୍ର ବିରାଟ ଭିତରେ ନ ପଶିବଟି ଚକ୍ରପାଣି ।୧୦୬
ଯୁଧେଷ୍ଟିଂକ ବିପରି ଅବଶ୍ୟ ହୋଇବଟି ହୃଷୀକେଶ
ଗ୍ୟାନ ନୋହିବ ପାଣ୍ଡବଂକୁ ଗୁପତ ଅଗ୍ୟାଂତ ବନବାସ ।୧୦୭
ଯେ ମହୀମଣ୍ଡଳେ ପାଣ୍ଡେବଂକ ଅର୍ଦ୍ଦୋଳି ସହିତେ କେହି ନାହିଂ କ୍ଷେମ
ବିରାଟ ରାଜ୍ୟେ ଗୋପ୍ୟାନେ ବଞ୍ଚିବେ ଦେବଧର୍ମ ।୧୦୮
ଅଗ୍ୟାଂତବାସ ବରଷେ ତେର ଦିବସ ପରିଯନ୍ତେ
ବିରାଟହିଂ ସେ ସମ୍ଭାଳି ପାରିବ ପଞ୍ଚୁ ଭ୍ରାଥେ ।୧୦୯
ସ୍ୱାମୀ ଶ୍ୱେତନାମେ ରାଜାୟେ ଥିଲା ସତ୍ୟଯୁଗେ
ଅନେକ ସମ୍ବର୍ବେ ସେ କଲା ମହାଯଗ୍ୟେଂ ।୧୧୦
ସ୍ୱାମୀ ପୃଥିବୀ ହାଣ୍ଡି ହୋଇଲା ସପ୍ତ ସମୁଦ୍ର ହୋଇଲା ଘୃତ
ବଶିଷ୍ଟେ ଯାଗନିକ ହୋଇଲେ ବ୍ରହ୍ମାଂକର ସୁତ ।୧୧୧
ଚାରିମେଘେ ହୋଇଲେ ସୃବ ଯେ ପ୍ରୋକ୍ଷଣୀ
ଯେମନ୍ତ ଚଉବିଂଶ ବରଷ ପରିଯନ୍ତେ ଘୃତ ବରଷିଲେ ଆଣି ।୧୧୨
ମୂଷଳଧାରା ପ୍ରମାଣେ ବରଷିଲେ ଦିବାରାତି
ବ୍ରହ୍ମାଣ୍ଡ ଉଛୁଳିଲା ମହା ଆନନ୍ଦ ଜ୍ୟୋତି ।୧୧୩
ଲୋଭେଣ ଘୃତ ଯେ ଖାଇଲେ ଲୋହିତାକ୍ଷ
ଲୁଦୁବୁଦୁ ମନ୍ଦାଅଗ୍ନି ହୋଇଲେ ପ୍ରତକ୍ଷ ।୧୧୪
ସତ୍ୟଯୁଗ ସତରଲକ୍ଷ ଅଠାଇଶ ସହସ୍ର ବରଷ ପରିଯନ୍ତେ
ଲୁଦୁବୁଦୁ ବ୍ୟାଧି ହୋଇଲା ଅଗ୍ନିଂକି ଯେତେକାଳ ପରିଯନ୍ତେ ।୧୧୫
ତ୍ରେତୟା ଯୁଗହିଂ ବାରଲକ୍ଷ ଛୟାଣୋଇ ସହସ୍ର ବରଷ ଗଲା
ପଶ୍ୟାନରଂକର ମନ୍ଦାଅଗ୍ନି କେବେହେଂ ପାର ନ ଗଲା ।୧୧୬
ଦ୍ୱାପରେ ଆଠଲକ୍ଷ ବରଷ ହୋଇଲେ ଲୁଦୁବୁଦୁ
ଖାଣ୍ଡବ ବନଦହନ କରି ଅର୍ଜୁନ ଅଗ୍ନିଦେବତାର ଖଣ୍ଡିଲା ଆପଦୁଂ ।୧୧୭
ଯେ ସେ ଶ୍ୱେତରାଜା ଯେବେ ଉପୁଜିଲା ବିରାଟ
ମଘଦେଶ ମତ୍ସଦେଶ ଯେହାର ସମରାଷ୍ଟ୍ର ।୧୧୮
ସତ୍ୟେଣ ତହିଂ ଦିନ ପାର କରିବେଟି ଯୁଧେଷ୍ଟି
ଯେମନ୍ତେ ବିରାଟ ନ ଦେଖଇ ରାଜାର ଶରୀରଗୋଟି ।୧୧୯
ତୁ ଦେବ ସୟଳ ସଂସାର ଭାରାଭର ନିଧି
ଯେଥକୁ ବିଚାରି ନାରାୟେଣ କରିବୁନା ବୁଦ୍ଧି ।୧୨୦
ସମସ୍ତ ରାଜାନ୍ତ ଘେନି ଭୀମସେନ ଆସୁ
ଯେକାମାତ୍ର ବିରାଟ ଯେ ଭିତରେ ନ ପଶୁ ।୧୨୧
ଯେସନେକ ବିଚାରି ବ୍ୟାସେ କହିଲେ ଶାସ୍ତ୍ରଯୋଗେ
ଯେତ ବଡ଼ ଦୁଲ୍ଲଭ ବୋଲି ବୋଇଲେ ବାସୁଦେବେ ।୧୨୨
ଉତ୍ତରଦିଗ ରାଜାନ୍ତ ଆସ୍ଥାନେ ବସାଇ
ଭୀମସେନ ସନ୍ନିଧ୍ୟକୁ ଚଳନ୍ତି ଯଦୁସାଇଂ ।୧୨୩
ଶ୍ରୀହସ୍ତେ ବେତଯୋଡି ପହୁଡ଼ି ଦେବଗନ୍ତା
ଅନନ୍ତ ପଡ଼ିହାରୀ ଯାଇଂ କହିଲେ ବାରତା ।୧୨୪
ଧାଡିକାରେ ଦେବ ବାହାର ହୋଇଲେ ପଚ୍ଛିମ ଦ୍ୱାରେ
ତତକ୍ଷଣେ ପ୍ରବେଶ ଯାଇଂ ଭୀମସେନର କଟିରେ ।୧୨୫
ଗୋବିନ୍ଦଂକୁ ଦେଖିଣ ଯେ ହସିଲେ ଭୀମସେନ
ଶ୍ରୀଭୁଜେ କୋଳାଗ୍ରତ କଲେ ଦେବ ଜନାର୍ଦ୍ଦନ ।୧୨୬
ବହୁତ ବିଳମ୍ବ କଲୁ ତୁହି ଭୀମସେନ
ଅଇଲେ ଟିକି ତୋହୋର ସମସ୍ତ ରାଜାଗଣମାନ ।୧୨୭
ଭୀମସେନ ବୋଇଲା ଦେବ ବଡ଼ ଦୁରୁଗମ ଭୂମି
ଯେକାମାତ୍ର ବିରାଟ ନିହାଇ ଆସଇ ଦେବସ୍ୱାମୀ ।୧୨୮
ଶୁଣିଣ କୋପକଲେ ସ୍ୱାମୀ ଦେବକୀର ବାଳ
ତୁ ଯେ ବୋଲାଉ ରେ ଭୀମ ପବନ ଦୁଲାଳ ।୧୨୯
ଯାବତ କାଳେଣ ତୁହି ଅଟୁ ବଡ଼ ଦୁଷ୍ଟ
ଯେତେ ବଡ଼ ରାଜା ତୋହୋର ନିହାଇ ଆସଇ ବିରାଟ ।୧୩୦
ଶ୍ରୀକରେ ଚକ୍ର ଘେନି କୋପକଲେ ଯେ ଶ୍ରୀବସ୍ଥି
ଭୟେ ଭୀମସେନ ଗଲା ଅପାର ଦୂର ଘୁଞ୍ଚି ।୧୩୧
ଭୀମସେନ ବୋଇଲା ଦେବ ମୋତେ କୋପ ନ କରିବା ଗୋବିନ୍ଦି
ଯେହିକ୍ଷଣି ଦେବ ବିରାଟକଇଂ ଆଣିମି ମୁହିଂ ବାନ୍ଧି ।୧୩୨
ଗୋବିନ୍ଦେ ବୋଇଲେ ତୋହୋପାଇଂ ଥୋଇଲା ଅଛି ଶାଢ଼ୀ
ଯେହିକ୍ଷଣି ପଶିବୁ ତୁହି ସଭା ନିବର୍ତ୍ତି କରି ।୧୩୩
ଯେ ନ ଅଇଲା ସେ ପଛହୋଇ ଆସୁ

ତିନିଭଣା ପଞ୍ଚାଶ ସହସ୍ର ରାଜା ଭିତରେଣ ପଶୁ ।୧୩୪
ଭୀମସେନ ବୋଇଲା ଦେବ ମୁହିଂ ସହିତ ନୁଆରିଲି
ବଜ୍ରଗିରି ଦେଶେ ମୁଂ କୃତାନ୍ତକ ନାମେ ରାଜାକୁ ମାଇଲି।୧୩୫
ଯେମନ୍ତେଣ ତିନିଭଣା ପଞ୍ଚାଶ ସହସ୍ରେ ରାଜା
ଶୁଣି ବିସ୍ମୟେ ହୋଇଲେ ଦେବକୀର ତନୁଜା ।୧୩୬
ଆମ୍ଭେ ଅଗ୍ୟାନ ଯୁଝେଷ୍ଟି ଦେବେ ବାଇ
ତୋତେ କିଂପା ରାଜା ନିମନ୍ତଣେ ପଠିଆଇ ।୧୩୭
ଯେତେକଇଂ ଆଣିଲୁ ପଣ୍ଡୁରାଜାର ମହାଭାଗ୍ୟ
ଭୀମସେନ ବୋଇଲା ଦେବ ମୋତେ ନ କରିବା ରାଗ ।୧୩୯
ଯେବଣ ରାଜାକଇଂ ମୁଂ ପକାଇଲି ହାଣି
ସେ ରାଜାର ସନ୍ୟ ଦେବ ସାତ ଯେ କ୍ଷଉଣୀ ।୧୩୯
ସ୍ୱାମୀ ଅନେକ ସୁବର୍ଣ୍ଣ ମୁଂ ଯେ ଆଣିଅଛି ରଥେ
ସୁବର୍ଣ୍ଣର ଯେତେ ସଇନି ଗଢ଼ାଇବା ନିମନ୍ତେ ।୧୪୦
ଭୀମସେନର ବଚନେ ତହିଂ ହସିଲେ ଚକ୍ରପାଣି
ସମସ୍ତ ରାଜାମାନନ୍ତ ଦ୍ୱାରେ ଆସନ୍ତେ ତାଂକୁ ଗଣି ଗଣି ।୧୪୧
ଯେମନ୍ତେ ତିନିଭଣା ପଞ୍ଚାଶ ସହସ୍ର ରାଜା
ଘେନିଣ ଭିତରକଇଂ ପଶିଲା ସେ ପବନର ଆତ୍ମଜା ।୧୪୨
ରାଜାକେ ଦେଖା ଦରଶନି ଶତେ ଶତେ ରଥ
ଗହଳ ସମ୍ପର୍ବେ ଚଳନ୍ତି ସମସ୍ତ ନୃପତ୍ୟ ।୧୪୩
ଆସ୍ଥାନ ଉପରେ ବିଜୟେ ଦେବଧର୍ମ
ରାଜାନ୍ତ ଘେନିଯାଇ ଯେ ଦ୍ରଶନ କଲେକ ଭୀମ ।୧୪୪
ଗନ୍ଧର୍ବ ବଳ ଘେନି ଯେସନେକ ସହସ୍ରାକ୍ଷ
ତେସନ ସାଦ୍ରିଶେ ଯେ ପବନର ବସ ।୧୪୫
ଜିତ ମହାପ୍ରସାଦ ବୋଲିଣ ଆଗ୍ୟାଂ ଅବଧାରୀ
ଯେ ଯାହାର ଆସ୍ଥାନେ ନେଇ ରାଜାନ୍ତ ବସାଇଲେ
ଦେବ ହରି ।୧୪୬
ଧର୍ମରାଜା ଯୁଝେଷ୍ଟିକର ସମ୍ପଦ ଯାଗ ଦେଖି
ନିର୍ମଳ ହୋଇଲା ସମସ୍ତ ରାଜାଙ୍କର ଆଖି ।୧୪୭
ଦେଖନ୍ତି ରାଜାମାନେ ଛାୟା ମଣ୍ଡୋପର ସ୍ଥଳୀ
ସ୍ୱର୍ଗ ତେଜି ବିଜୟେ କି କଲେ ଅଂଶୁମାଳୀ ।୧୪୮
ବିଶେଷେ ଅମରସ୍ଥାନ ଜଗନ୍ନାଥେ ଯାହା ସଞ୍ଚି
ଦୁତୀ ବଇକୁଣ୍ଠ ଭୁବନ କି ମଧ୍ୟସ୍ୱର୍ଗେ ଅଛି ।୧୪୯
ରୋଗ ଶୋକ ଭୋଖ ସେ ହରଇ ଯେଭଂଣ ସଭା
ସମସ୍ତ କଷ୍ଟ ପାସୋରିଲେ ସର୍ବ ରାଜାଦେବା ।୧୫୦

**

## ୪୮. ରାଜାମାନଙ୍କର ଭୋଜନ ବ୍ୟବସ୍ଥା

ବଦୟନ୍ତି ଅଗସ୍ତି ସର୍ବଗ୍ୟଂ ମହାଗ୍ୟାଂତା
କ୍ଷାଠିୟେ ଲକ୍ଷ ପୁରାଣ ଯେବଣ ମୁନି ବକତା ।୧
ଦୁତୀ ଅମର ସ୍ୱର୍ଗୟେ ରାଜୁସି ଯାଗସଭା
ସମ୍ଭରେଣ ବିଜୟେ ତହିଂ ସମସ୍ତ ରାଜଦେବା ।୨
ଜନ୍ମ ଯାହର ସୁଫଳ ଜୀବନ ଧନ୍ୟ ଧନ୍ୟ
ସେ ସଭାରେ ବସିତେ ହୋଇଲେ ସେ ଭାର୍ଜନ ।୩
ନୃପତିମାନେ ଯହୁଂ ଯାଇଂ ବସିଲେ ସମ୍ଭରେ
ଯୁଝେଷ୍ଟି ଦେବ ପୁଛାକଲେ ଜଗନ୍ନାଥଂକ ଛାମୁରେ ।୪
ସ୍ୱାମୀ ଅନେକ ଦେଶର ଯେ ଅଇଲେ ରାଜାମାନେ
ପାତ୍ର ଅମନାତ୍ୟ ଯୋଦ୍ଧାୟେ ଯେ ଅସଂଖ୍ୟ ଗହନେ ।୫
କେମନ୍ତେ କରି ହରି କଲୁ ଯେହାନ୍ତ ଚିନ୍ତା
ସଞ୍ଚିପି କରି କହିବା ମୋତେ ଭୋଜନ ବାରତା ।୬
ନାରଦେ ବୋଇଲେ ଯେବେ କେହି ଜଣେ ଭୋଜନେ
ହୋଇବ ଅତ୍ରିପୁତି
ପଣ୍ଡୁରାଜାର ବ୍ରହ୍ମହତ୍ୟା ଦୋଷ କେବେ ନୋହିବ ବିନଶ୍ୟତି ।୭
ଆହାର୍ଣ୍ଣିକ ବେଳ ଯହୁଂ ଆସି ହୋଇଲାକ ଦିନ
ମର୍ଦ୍ଦନ ମାଜଣା ଯୋଗାଡ଼ ଯେ ଅନେକ ବିଧାନ ।୮
ସୁଗନ୍ଧ ତଇଳ ମୁଳପାଗ ଯାହା ସଞ୍ଚି
ରାଜାଗଣମାନନ୍ତ ଆଣି ଶ୍ରୀଖଣ୍ଡୀ ଦେଉଅଛି ।୯
ମର୍ଦ୍ଦନ ମାୟେ ଯେ ଜଗଚ୍ଛେଠୀ ହକାରି
ବାହାସ୍ଫୋଟ ବିହାଣ ସେ ଛତ୍ରିୟ ମହାଭାରି ।୧୦
ମର୍ଦ୍ଦଣ ସାରିଣ ଯେ ରାୟେ ପଶିଲେ ଗଙ୍ଗାଜଳେ
ସୁଗନ୍ଧ ଅୟେଂଳା ଯେ ଲେପନ୍ତି ସୁସଞ୍ଚ ବାଳେ ।୧୧
ସୁବର୍ଣ୍ଣ ଘଟମାନଂକରେ ତୋଳାଜଳ ପାଣି
ପନିର ନୀର ଯେନି ସେ ନିଉଡନ୍ତି ଆଣି ।୧୨
ଗଙ୍ଗାରେ ପଶି ଯେ କୁତୁହୋଳେ ଅବଗାହୀ
କରନ୍ତି ଜଳକ୍ରୀଡ଼ା କଉତୁକ ରସ ପାଇଂ ।୧୩
ସ୍ରାହାନ ନିତ୍ୟକର୍ମ ସାରିଲେ ବିଧାନେ
ଆହାର୍ଣ୍ଣିକ ସନ୍ଧ୍ୟା ସାରନ୍ତି ପ୍ରୋହିତ ଜନମାନେ ।୧୪
ଯେ ବିଧିରେ ନିତ୍ୟକର୍ମ ସମସ୍ତ ବିଧାନେ
ଦେବ ପିତୃ ତିଳ ଉଦକ କରନ୍ତି ରାଜାଗଣେ ।୧୫
ନିତ୍ୟକର୍ମ ସାରିଣ ଯେ ଆସନ୍ତି ରାଜାଗଣମାନେ
ମୁଣୋହି ମନ୍ଦିରେ ଯାଇ ବିଜୟେ ଆସ୍ଥାନେ ।୧୬

ଆସନ ପାଦାସନ ଯେ ଅଙ୍ଗନ୍ୟାସ ପୂଜା
ବିଷ୍ଣୁ ଦଣ୍ଡବତ ଆରୋପଣ କଲେ ସର୍ବ ଦିଜା ।୧୧୭
ତ୍ରିକାଳ ଆହାନିକ ବେଳେ ଦେବ ପିତୃପିଣ୍ଡ
ବ୍ରହ୍ମ କର୍ମ ଧାରଣ ବଇଶ୍ୟାନର ସ୍ୱଧା ପରଚଣ୍ଡ ।୧୧୮
ମହାମନ୍ତ୍ର ସ୍ୱାହା ବାକ୍ୟେଣ ପ୍ରସନ୍ନ ଆହୂତି
ବିଧାତାର ବାକ୍ୟେଣ ଯେ ଦୋହରା ଶାନ୍ତିମୂର୍ତ୍ତି ।୧୧୯
ଲକ୍ଷେଣ ନୃପତି ଯେ ଭୋଜନ ସ୍ଥାନେ ବିଜେ
ପାଦ ଶଉଚ କରାଇ ପଲମ ଯୋଗାଡ଼େ ବିଜେ ।୧୨୦
ଥାଳୀ ଗରିଆ ଯେ ସୁବର୍ଣ୍ଣ ପଲମ
ମଣ୍ଡା ଚିପା ଝରୀ ଖୋରି ଯେ ଅନେକ ସମ୍ପର୍ବେ ରତ୍ନକମ ।୧୨୧
ସୁସଞ୍ଚ ସୁଶୀତଳ ଯେ ସୁବାସିତ ନୀର
ଜଣେ ଜଣେ ବସାଇଲେ ରାଜାମାନଂକ ଛାମୁର ।୧୨୨
ଇନ୍ଦ୍ର ପ୍ରଶସ୍ତ ଯେ ଗଙ୍ଗାନଦୀ କୂଳେ
ଈଶାନ ମୂର୍ତ୍ତି ହୋଇ ବସିଲେ ସମସ୍ତେ ମହୀପାଳେ ।୧୨୩
ପରଶନ୍ତି ଅନ୍ନ ଯେ ପବିତ୍ର ସୂପକାରେ
ଗୁଆଘୃତ ଲବଣ ଯେ ବହୁତ ସମ୍ପରେ ।୧୨୪
ବିଷ୍ଣୁ ପ୍ରସାଦ ମୂଳେ ଆମ୍ବ ଅଦା ନଟୀକାଳ କଦଳୀ
ଛାମୁରେ ଅଷ୍ଟରତ୍ନର ଚାରି ଚାରି ଦୀପାବଳୀ ।୧୨୫
ଦ୍ୱାଦଶ ହବିପାକ ପଞ୍ଚବାସନୀ ପଞ୍ଚମୁଦ୍ରା
ବାହ୍ୟବଳୀ ତ୍ରିପୁତି ବାକ୍ୟେଣ ବ୍ରହ୍ମରଦ୍ରା ।୧୨୬
ଯେ ଯାହାର ସଂକଳ୍ପେ ଦେବ ପିତୃଅନ୍ନ
ଶ୍ରଦ୍ଧାରେ ଧରନ୍ତି ଦେବ ପିତୃଂକର ନାମ ।୧୨୭
ଅନେକ ଯୋଗାଡ଼ ଯେ ନିରାମିଷ ପାଗ
ଭୁଞ୍ଜନ୍ତି ରାଜାମାନେ ହୃଦଗତେ ମହାସ୍ୱାଗ ।୧୨୮
ପ୍ରାଣ ଅପାନ ସମାନ ଉଦାନ ବ୍ୟାନ ପଞ୍ଚଭୂତ
ପଞ୍ଚଗୁଣ୍ଡି ଭୁକତ ଯେହ୍ନେ ପୂର୍ବର ଉକତ ।୧୨୯
ସେ ପଞ୍ଚ ପୁରୁଷଂକ ଆଞ୍ଚୋବନ ପଞ୍ଚୁଧାର
ମହାତୁଷ୍ଟ ମନେଣ ସେ କରନ୍ତି ଆହାର ।୧୩୦
ଯେବଣ ବ୍ୟଞ୍ଜନମାନ ଆସଇ ଆକାଶୁଂ
ଅମୃତରସ ପାକ ସେ ନ ସରଇ ପରଶୁଂ ପରଶୁଂ ।୧୩୧
ଭୁଞ୍ଜନ୍ତି ନୃପତିମାନେ ଯାହାର ଯେତେ ଇଚ୍ଛା
ଅନେକ ସୁପକ୍ୱ ଅନ୍ନ ଆପ୍ୟାନ ମନବାଞ୍ଛା ।୧୩୨
ଭୋଜନ ବିଧାନମାନ କହିତେ କି ପାରି
ଯାହା ସେ ସର୍ଜନା କରିଛନ୍ତି ଦେବହରି ।୧୩୩
ଗଉରୀ ଶଉରୀ ନଳବିଧ୍ୱ ତିନିପ୍ରତି
ଭୁଞ୍ଜନ୍ତି ଅଧାମ ଯେ ଅନେକ ତ୍ରିପ୍ତୁତି ।୧୩୪
ଛଡ଼ରସ ଭୋଜନ ଗୋରସ ଆଣି ଦିଅନ୍ତି
ନାନା ପିଠାର ମହିମାଂ କେ ଅସଞ୍ଚପି କହନ୍ତି ।୧୩୫
ଭୋଜନ ସାରିଣ ରାୟେ ନୁଆରନ୍ତି ଉଠି
ଭୂମିକି ଭରା ଦେଇଣ ବଢ଼ାନ୍ତି ପାଦଗୋଟି ।୧୩୬
ଆଂଚୋବନ ସ୍ଥାନେ ଯେ ବିଜୟେ ମହୀପତ୍ୟେ
ସୁବର୍ଣ୍ଣର ଝରୀ ଧରି ଉଭା ସକଳ ଭୃତ୍ୟେ ।୧୩୭
ନଦୀୟେକ ବହି ଯାଉଅଛି ରାଜାଂକର ଆଂଚୋବନେ ।୧୩୮
ବିଜୟେ ରାଜାମାନେ ନିଅବକାଶ ସ୍ଥାନେ
କ୍ରପୂର ତାମ୍ବୁଳ ଯେ ଭୁଞ୍ଜନ୍ତି ମୁଖବାସ ବିଧାନେ ।୧୩୯
ସର୍ବ ଅଳଂକାର ହୋଇ ନାନା କୁସୁମେଣ ଚାରୁଗଭା
ଅମରାଧ୍ୱ ନାଥ ପ୍ରାୟେ ଦିଶନ୍ତି ସର୍ବେ ଶୋଭା ।୧୪୦
ନବତନ ବସନ ଯେ ନବତନ ଅଳଂକାର
ସମ୍ପର୍ବେ ସମସ୍ତ ରାଜାୟେ ବସିଲେ ଆସ୍ଥାନର ।୧୪୧
ଅନେକ ବିଳାସୁଣୀୟେ ଖଟନ୍ତି ବନିତା
ବହୁତ ନୃତ୍ୟ ଚଞ୍ଚଳ ତାଣ୍ଡବ ରସଗୀତା ।୧୪୨
ଶୁଣସି ହୋ ମହାରାଜା ରାଜୁସି ଯାଗର ଚରିତ
ଲକ୍ଷେ ମାଢ ସୁବର୍ଣ୍ଣରେ ପଲମ ନିର୍ମିତ ନିତ୍ୟ ନିତ୍ୟ ।୧୪୩
ରାଜାକେ ଲକ୍ଷେମାଢ ସୁବର୍ଣ୍ଣର ଖୋରି ଚିପାଝରୀ ଆଦିକରି
ମୁଣୋହି ସାରିଲେ ତାହା ପୋଛନ୍ତି ପରିବାରୀ ।୧୪୪
ଯମୁନା ନଦୀ ଭିତରେ ପକାବନ୍ତି ତାହାନେଇ
ଅଗାଦ ଗଭାରେ ମେଲନ୍ତି ନ ଆଣନ୍ତି ବାହୁଡ଼ାଇ ।୧୪୫
ଯେହିମତେ ନିତ୍ୟାପ୍ରତି ନବତନ ଯୋଗାଡ଼
ଉଚ୍ଛିଷ୍ଟ ହୋଇଲେ ପକାବନ୍ତି ନେଇ ଅଗାଧ ଜଳର ।୧୪୬
ଯେସନେକ ସମ୍ପଦ ଯେ ରାଜୁସି ଯାଗସଭା
ସପତନିଧ୍ୱ ଫେଡିଅଛି କୁବେର ରାଜଦେବା ।୧୪୭
ରାଜାମାନଂକର ମୁଣୋହି ସାରି ଉଠିବା ଉଭାରେ
ପାତ୍ର ଅମାନାତ୍ୟମାନେ ବସନ୍ତି ତଦିଉଭାରେ ସମ୍ପରେ ।୧୪୮
ମୁକୁଟବନ୍ଧା ଯୋଦ୍ଧା ରାଉତ ସେ ସାହାଣୀ ସାମଲ ହାଦେ ଜେନା
ମାଲ ମଣ୍ଡଳିକ ବଡ଼କୁମାର ବଡ଼ଜେନା ।୧୪୯
ଛତ୍ର ନବର ଭିତରେ ବସନ୍ତି ଭୋଜନ ନିମନ୍ତେ
ସନ୍ନ୍ୟମାନେ ବସନ୍ତି ପାଦାନ୍ତି ବଳ ଯେତେ ।୧୫୦
ଛତ୍ରଶାଳେ ପରିଛା ଯେ ଭୀଷ୍ମ ମହାରଥୀ
ଅନେକ ସମ୍ପରେ ଅମୃତ ଯୋଗାଡ଼ ପରଶନ୍ତି ।୧୫୧

ଶୁଣସି ହୋ ମହାରାଜା ଯାହାକଇଂ ପ୍ରସନ୍ନ ହିଙ୍ଗୁଳା
ଅମୃତୁଂ ଅଧିକ ସ୍ୱାଦ ଭୋଜନେ ମତିଭୋଳା ।୫୨
ଭୋଜନ ସାରିଣ ସେ ଯେ କରନ୍ତି ଆଂଚୋବନ
ପବନ ଦେବତା ଉଡାଇନେଲା ଉଛିଷ୍ଟ ପତ୍ରମାନ ।୫୩
ମେଘେ ଯେ ବରଷନ୍ତି ତହିଂର ଉପରେ
ଧୋଅ ପଖାଳି ହୋଇଗଲା ସେ ଅଗାଧ ସାଗରେ ।୫୪
ପୁଣହିଂ ସନ୍ୟ ଭୁଞ୍ଜି ବସନ୍ତି ସେହି ଠାବେ
ବିହଡନ୍ତି ସମଦଣ୍ଡ କଉତୁକ ଭାବେ ।୫୫
ସହସ୍ରେକ ହାଟ ଆଠ ସହସ୍ରେକ ପେଣ୍ଠ
ଅନୁବ୍ରତେ ଯାତ୍ରା ଯେ ଆନନ୍ଦ ସମରାଷ୍ଟ ।୫୬
ନାରାୟଣଂକୁ ପୁଛାକଲେ ଯୁଝେଷ୍ଟି ରାଜଦେବେ
ହରି ରାଜାଂକର ସଇନି ଯେ ବଡ଼ାଇ ସମ୍ଭର୍ବେ ।୫୭
ଭୋଜନର ପରମାଣ ହୋଉଛି କେମନ୍ତେ
ବିଚାରିଣ ନାରାୟେଣ କହନ୍ତି ତଦଅନ୍ତେ ।୫୮
ଛତ୍ରଶାଳ ଭୁବନେ ଆପେ ଯୁଝେଷ୍ଟି କଲେ ବିଜେ
ଆପଣେ ପହଣ୍ଡ ମଣାଇ ନିଅନ୍ତି ଦେବାଧି ଦେବରାଜେ ।୫୯
ଦେଖନ୍ତି ସଇନି ଯେ ଅତିୟ ଗହନ
ବଡ଼ାଇ ସମ୍ଭର୍ବେ ଯେ ଭୁଞ୍ଜାନ୍ତି ସନ୍ୟମାନ ।୬୦
ଯୁଝେଷ୍ଟି ଦେବ ବୋଇଲେ ହରି ସନ୍ୟ କେତେ ଗଣି
କେମନ୍ତେ ଯେହା ଦେବ ଜାଣିମା ପରିମାଣି ।୬୧
ପାଇଲା ନ ପାଇଲା କେମନ୍ତେ ସଞ୍ଚପି କରି
କୋଟିଯେ ଜନ ଭୁଞ୍ଜିଲେ ଦେବ ଯେକଇ ଶଂଖ ପୁରି ।୬୨
ଯୁଝେଷ୍ଟି ବିଜେ କରିଅଛନ୍ତି ପଛିମ କଛାଡ଼େ
ଘଡ଼ିକେ ଦଶ ମର୍ଭୁତ ଶଂଖ ପୁରିଲା ପୂର୍ବଆଡ଼େ ।୬୩
ଦକ୍ଷିଣ ଆଡେ ଯେ ଖର୍ବେକ ଶଂଖ ପୁରଇ
ଶୁଣିଣ ଆଶ୍ରିଜ ଯେ ହୋଇଲେ ଯୁଝେଷ୍ଟି ରାଜସାଇଂ ।୬୪
ବିସରି ବୋଲନ୍ତି ହରି ଯେ ମୋତେ ଅସଖ୍ୟ
କେମନ୍ତେ ଅନ୍ନ ପାଉଛନ୍ତି ଯେତେ ଲୋକ ।୬୫
ବଦୟନ୍ତି କେଶବ ଶୁଣ ଧର୍ମରାୟେ
ତବ ଆଗ୍ୟାଂୟେ ଭୃତ୍ୟପଣେ ଖଟିଛନ୍ତି ଦେବତାୟେ ।୬୬
ସ୍ୱାମୀ ଦୋହୋରାୟେ ବିଜେ କରିଅଛନ୍ତି ସଭାର
ହିଙ୍ଗୁଳା ପ୍ରସନ୍ନେ ଅଣ୍ଣି ଉଗୁଳଇ ଅପାର ।୬୭
ଭୋଜନ ସାରି ଯେତେବେଳେ ଉଠନ୍ତି ସକଳ ସନ୍ୟମାନେ
ଉଛିଷ୍ଟ ପତ୍ର ଉଡାଇ ନେଲା ପବନ ଦେବତା ଗଗନେ ।୬୮
ତକ୍ଷଣେ ମେଘମାନେ ବରଷିଲେ ଭୋଜନଠାବେ
ମେଘ ଧୋଇନେଲେ ଦେଖିଲେ ରାଜଦେବେ ।୬୯
ଯୁଝେଷ୍ଟି ବୋଇଲେ ହରି ପବନ ମୋହୋର ପିତା
ମୋହୋରେ ରାଜୁସି ଯାଗେ ହୋଇଲେ ସେ ଉଛିଷ୍ଟ
ପୋଛନ୍ତା ।୭୦
ଯେ କଥା ନ ଯୋଗାଇ ମୋତେ ପୁରୁଷଂକ ଉତ୍ତମ
ପବନ ଦେବତାଂକର ଯେମନ୍ତ କଥାରେ ମୋର ନାଶଗଲା
ସକଳ ଧର୍ମ ।୭୧
ଯେକ ପିତାର ପାଇଂ କଷ୍ଟ ମୋହୋର ଯେତେ
ପବନ ଦେବତାଂକୁ ଉଛିଷ୍ଟ ପୋଛାଇବି କେମନ୍ତେ ।୭୨
ସହଦେବ ବଦନ ଚାହିଂ ବାସୁଦେବ ବୋଇଲେ ଉତ୍ତର
କିସ କରିବା ବାବୁ ଯେତ ନ ଯୋଗାଇଲା ଠାକୁରଂକ
ବିଚାର ।୭୩
ସହଦେବ ବୋଇଲା ବଚନ ଅନୁକ୍ରମେ
ମେରୁଶୂଳ ଋଷି ଅଛନ୍ତି ବଦରିକା ଆଶ୍ରମେ ।୭୪
ସ୍ୱାମୀ ଅନଳ ନୟନ ସେ ବହିଛି ମହାତମ
ତାହାରେ ଉଛିଷ୍ଟ ପତ୍ରମାନ ହୋଇବେ ସର୍ବେ ଭସ୍ମ ।୭୫
ଯେ ମହାଯାଗକଇଂ ସ୍ୱାମୀ ତୁହି ସିନା ଧାରଣ
ଭୀମସେନ ଠାକୁରଂକୁ ପଠିଆଅ ମେରୁଶୂଳ ଆଣନ୍ତୁ ବହନ।୭୬
ସହଦେବର ବଚନେ ହରି ପରମ ସାନନ୍ଦ
ଭୀମନେକଇଂ ରାଇ ଆଗ୍ୟାଂ ଦିଲେକ ଗୋବିନ୍ଦ ।୭୭
ତୁହୋ ଭୀମସେନ ବଦରିକା ଆଶ୍ରମକୁ ଯାଅ ଯେହିକ୍ଷଣ
ବୁଦ୍ଧିବଳ ପ୍ରାକ୍ରମେ ତୁ ମେରୁଶୂଳ ମହରଷିଙ୍କୁ ବେଗେ ଆଣ ।୭୮

**

## ୪୯ . ଯୁଧିଷ୍ଠିରଙ୍କୁ ଶିଶୁପାଳର ଶହେ ରଥ ସୁବର୍ଣ୍ଣ ଭିକ୍ଷା

ଆହୋ ଯୁଧେଷ୍ଟି ଦେବଂକର ଅନେକ ସମ୍ପଦ ଦେଖି
ଭାଳନ୍ତି ଦୁଷ୍ଟମାନ ଧର୍ମ ଯେ ଉପେକ୍ଷି ।୧
କର୍ଣ୍ଣ ଶଂକୁନି ଯେ ଧୁଶାସନ ମୂଳେ
ଶାଲ୍ୱ ପୁଣ୍ଡରୀକ ଆବର ଶିଶୁପାଳେ ।୨
ବିଚାରି ଶତ୍ରୁକୁ ନାଶି ନୁଆରିଲୁ କର୍ମେ
କେମନ୍ତେ ନାଶ କରିବା ଯୁଝେଷ୍ଟି ଦେବଂକର ଧର୍ମେ ।୩
ଶକୁନି ଦ୍ରିଯୋଧନକୁ ପଚାରଇ ଗୁପତ ଭାବ

ବାଉନ ଭାର ଭଣ୍ଡାର ସେ ଦ୍ରିଯୋଧନ ଅଛିଟିକି ପାଣିଦ୍ରବ୍ୟ ।୪
ଦ୍ରିଯୋଧନ ବୋଇଲା ହୋ ଭାରେ କଇଂ ନାହିଂ
ଯେଣେ ସେ କଷଣ ହୋ କରିବା ଆମ୍ଭେ ରହି ।୫
ଶକୁନି ଚିଆରିଣ ବୋଇଲା ଶିଶୁପାଳକୁ
ଶତେରଥ ପାଣିଦ୍ରବ୍ୟ ମାଗ ଯୁଝେଷ୍ଟି ଦେବ ଠାକୁରଂକୁ ।୬
ଦେଇ ନୁଆରିବି ନାହିଂତ ଭଣ୍ଡାରେ
ଦୂଷିତ କରି ନାଶ କରିବାନା ବେଭାରେ ।୭
ଦମଘୋଷ ନନ୍ଦନ ଯେସନକ ବାକ୍ୟ ଶୁଣି
ଅନେକ ହରଷ ଯେ ହୋଇଲା ବୀରମଣି ।୮
ସହସ୍ରେ ବ୍ରାହ୍ମଣ ଘେନିଣ ଖଗୋରା
ମହାଯାଗ ଉତ୍ତର ଦ୍ୱାରେ ପ୍ରବେଶ ମହାବୀରା ।୯
ଆରେ କାଳିଙ୍ଗନ ବାରତା କର ଯାଇଂ ଅନନ୍ତ ପଡ଼ିହାରୀ
ଯୁଝେଷ୍ଟିଂକ ବାରତା ଘେନ କରେ ତୋହୋରି ।୧୦
ବୋଲ ଚେଦି ଦେଶର ରାଜା ଦମଘୋଷର ପୁତ୍ର
ଦରିଦ୍ରବାସୀ ହୋଇଲି ମୁହିଂ କପାଳ ଘଟିତ ।୧୧
ଯେ ଯୁଝେଷ୍ଟିର ମହାଯାଗେ ଦାରିଦ୍ର ମୋର ଯିବ
ପାଣିଦ୍ରବ୍ୟ ଶତେ ରଥ ମୋତେ ଯେହିକ୍ଷଣି ଦେବ ।୧୨
ନୋହିଲେ ଯଗ୍ୟଂ ତାର କରିବି ଦୂଷଣ
କଲା କୃତହିଂ ନାଶ ହୋଇବ ତାହାର ଧର୍ମମାନ ।୧୩
ଶିଶୁପାଳ ବଚନେ ସେ କାଳିଙ୍ଗନ ପଡ଼ିଆରୀ
ଭୀମସେନ ଆଗେ ବାରତା ଯାଇଂ କରି ।୧୪
ଭୋ ଦେବ ଶିଶୁପାଳ ରାଜା ହୋଇଲା ଦରିଦ୍ରବାସୀ
ଧନହୀନେ କୁଟୁମ୍ବ ତାହାର ନୁଆରଇ ପୋଷି ।୧୫
ଶତେରଥ ଦେବ ସେ ଯେ ମାଗଇ ପାଣିଦ୍ରବ୍ୟ
ନ ଦିଲେ ଦେବ ଆହୁତି ସେ ଦୂଷଣ କରିବ ।୧୬
ଭୀମସେନ ଆଗ୍ୟାଂଦିଲେ କାଳିଙ୍ଗନ ପଡ଼ିହାରୀଂକୁ
ଆରେ ଯେ କଥା କହ ଯାଇଂଭଣ୍ଡାର ନାୟେକ
ଦ୍ରିଯୋଧନକୁ ।୧୭
ବୋଲ ଦରିଦ୍ର ଶିଶୁପାଳ ମାଗୁଅଛି ଦାନ
ପାଣିଦ୍ରବ୍ୟ ଦେଉ ତାକୁ ଶତେରଥ ଧନ ।୧୮
ଆଗ୍ୟାଂ ପ୍ରମାଣେ ବହନ ଚଳଇ ଦୂତକାରୀ
ଭଣ୍ଡାର ନାୟେକକୁ ବାରତା ଯାଇଂ କରି ।୧୯
ଆହୋ ଭଣ୍ଡାର ଅଧିକାରୀ ଭୀମସେନ ଠାକୁରଂକ ଦୃଢ଼ବାଣୀ
ଶିଶୁପାଳକଇଂ ଶତେରଥ ପାଣିଦ୍ରବ୍ୟ ଦେବୁ ଯେହିକ୍ଷଣି ।୨୦

ମାନଗୋବିନ୍ଦ ବୋଇଲା ଶୁଣ ହୋ ଶିଶୁପାଳ
ବାଆନ ଭଣ୍ଡାରେ ଧନ ନାହିଂ ଦେଖାଇଲା ଗାନ୍ଧାରୀର
ବାଳ ।୨୧
ଶିଶୁପାଳ ବୋଇଲା ଯେଥେତ ପାଣିଦ୍ରବ୍ୟ ନାହିଂ
ଆନ ଧନମାନ କି ହେବ ଅପୂର୍ବ ମୁକୁଇଂ ।୨୨
କହ ହୋ କାଳିଙ୍ଗନ ଯେହାର କହଣା
ତୁ ଯାହା ଦେଖିଲୁ ତାହା ଭୀମସେନକଇଂ ଜଣା ।୨୩
ତତକ୍ଷଣେ କାଳିଙ୍ଗନ ଚଳଇ ଯେ ଭୀମସେନ ଛାମୁକୁ
ସ୍ୱାମୀ ଦ୍ରିଯୋଧନ ସକଳ ଭଣ୍ଡାର ଦେଖାଇଲା ଶିଶୁପାଳକୁ ।୨୪
ଶିଶୁପାଳ ବୋଇଲା ଭଣ୍ଡାରେ ପାଣିଦ୍ରବ୍ୟ ନାହିଂ
ସମସ୍ତ ନାସ୍ତିକଲା ସେ ଧନମାନନ୍ତ ଚାହିଂ ।୨୫
ବାରତା ପାଇଣ ସେ ଯେ ପବନ ଆତ୍ମଜେ
ଶିଶୁପାଳକୁ ଘେନିଣ ଆପଣେ କଲା ବିଜେ ।୨୬
ଦ୍ରିଯୋଧନ ସନ୍ନିଧେ ଯାଇଂ ବିଜେ ବ୍ରିକୋଦର
ଶତେ ରଥ ପାଣିଦ୍ରବ୍ୟ ଶିଶୁପାଳକୁ ଦେଉକିନା ଭଣ୍ଡାର ।୨୭
ଦ୍ରିଯୋଧନ ଦେଖାଇଲା ଭଣ୍ଡାରମାନ ସର୍ବ
ଦେଖିଲେ ରଥେକହିଂ ତହିଂ ନାହିଂ ପାଣିଦ୍ରବ୍ୟ ।୨୮
ବାହୁଡ଼ି ଭୀମସେନ କହଇ ବାସୁଦେବଂକୁ
ସ୍ୱାମୀ ଶିଶୁପାଳ କଷଣ କରି ଲୋଡଇ ଆମ୍ଭଂକୁ ।୨୯
ପାଣିଦ୍ରବ୍ୟ ଶତେରଥ ମାଗଇ ଦେବହରି
ମୁଇଂ ଯାଇଂ ଦେଖିଲି ଭଣ୍ଡାରେତ ନାହିଂ ଭାରେକ ଆଦିକରି ।୩୦
ଭୀମସେନ ମୁଖୁଂ ଯେସନେକ ବାକ୍ୟ ଶୁଣି
ହନୁମନ୍ତକଇଂ ହକାରି ଆଗ୍ୟାଂ ଦିଲେ ଚକ୍ରପାଣି ।୩୧
ବୋଇଲେ ଯେହିକ୍ଷଣି ବହନ ଚଳିଯିବୁ
କେହି ନ ଜାଣିବେ ଯେ ପାଷାଣ କଢ଼ାଇବୁ ।୩୨
ବାଉନ ଭଣ୍ଡାରେ ତୁ ଭରିବୁ ଯତ୍ନ କରି
ଯେମନ୍ତେ ଆନ ଲୋକେ ନୁଆରନ୍ତି କଳି ।୩୩
ନାରାୟଣଂକ ଆଗ୍ୟାଂଯେ ହନୁମନ୍ତ ଗଲା
ଗୁପତେ ପର୍ବତ ଆଣି ଭଣ୍ଡାରେ ପୂରୋଇଲା ।୩୪
ମୁଥ ପ୍ରହାରିଣ ସବୁନ୍ତି ଚୂରକରି
ନାରାୟଣଂକ ଅଗ୍ରତେ ଜଣାଇଲା ବାହୁଡ଼ି ।୩୫
ଭୋ ଦେବ ପାଷାଣ ଆଣି ପୁରୋଇଲି ଭଣ୍ଡାରେ
କେହି ତାହା ଜାଣନ୍ତା ନାହିଂନୋହିଲା ସଭାରେ ।୩୬
ହନୁମନ୍ତର ମୁଖୁଂ ଯେସନେକ ବାକ୍ୟ ଶୁଣି

ଆପଣେ ବିଜେକଲେ ଦେବ ଚକ୍ରପାଣି ।୩୭
କଟି ମେଖଳେଣ ଗନ୍ତା କାଖେଣ ବେତଯୋଡ଼ି
ଶିଶୁପାଳ ସନ୍ନିଧେ ବିଜେ ଅନନ୍ତ ପଡ଼ିହାରୀ ।୩୮
କି ବୋଲୁ ଶିଶୁପାଳ ତୁ କାହିଂକି ମାଗୁ ଧନ
ଆମ୍ଭର ସୋଦର ହୋଇ ଯେଠାକୁ ହୋଇଲୁ ଭାର୍ଜନ ।୩୯
ଶିଶୁପାଳ ବୋଇଲା ମୋହୋର ପାଣିଦ୍ରବ୍ୟେ କାର୍ଯ୍ୟ
ଯୁଝେଷ୍ଟିଂକି ଧନ ମାଗିଲେତ ନାହିଂ ମୋର ଲାଜ ।୪୦
ଶିଶୁପାଳ ହାଥ ଧରି ଦେବ ଦାମୋଦରେ
ବିଜୟେ ଜଗମୋହନ ଅକ୍ଷୟଭଣ୍ଡାର ଦ୍ୱାରେ ।୪୧
ଆହୋ ଦ୍ରିଯୋଧନ ଶିଶୁପାଳ ଯେ ଦରିଦ୍ରବାସୀ
ପାଣିଦ୍ରବ୍ୟ ଯେବେ ମାଗଇ ଯେହାକୁ ଶତେଭାର ଦେସି ।୪୨
ବିନୟ ଭାବ ହୋଇ ବୋଲଇ କଉରୋବ
ଭଣ୍ଡାରେ ପାଣିଦ୍ରବ୍ୟ ନାହିଂ ହୋ ବାସୁଦେବ ।୪୩
ଗୋବିନ୍ଦେ ବୋଇଲେ ହୋ ଦେଖ ଭଣ୍ଡାରେଣ
ଆମ୍ଭର ଛାମୁକୁ ଦେଖି ଆଞ୍ଜୋଳାୟେ ଆଣ ।୪୪
ନାରାୟଣଂକ ବଚନେ ସେ ମାନଚକ୍ରବ୍ରତୀ
ଭଣ୍ଡାରେ ପଶି ଆଞ୍ଜୋଳାୟେ ଆଣିଲା ତତତି ।୪୫
ଛାମୁରେ ନେଇ ଦିଲା ଦେଖିଲେ ବାସୁଦେବ
ଦେଖ ହୋ ଶିଶୁପାଳ ଯେ ଅପୂର୍ବ ପାଣିଦ୍ରବ୍ୟ ।୪୬
ଗୋବିନ୍ଦଂକ ବଚନେ ଦ୍ରିଯୋଧନ କରେ ପୁରୋଂଇ ଦେଇ
ପଥରେ କର ଲାଗନ୍ତେ ସେ ପାଣିଦ୍ରବ୍ୟ ହୋଇ ।୪୭
ଯେକା ଭଣ୍ଡାରୁ ପୁରୋଇ ଶତେ ରଥ ଦିଲା
ଅତୁଟ ଭଣ୍ଡାର ତହୁଂ କୋଣେହେଂ ନ ସରିଲା ।୪୮
ଦେଖ ହୋ ମନୁ ପୁରୁଷ ଶ୍ରୀହରିଂକ ମହିମାଂ
ଅଦୃଷ୍ଟିକି ଦୃଷ୍ଟିକଲା ପୁରୁଷଂକ ଉତ୍ତମା ।୪୯
ଶିଶୁପାଳକୁ ଗଉରୋବେ ବଦୟନ୍ତି ଦେବରାଜା
ଦରିଦ୍ର ଫିଟିଲା ତୋହୋର ତ୍ରିପୁତି ହୋଇ ଯା ଯା ।୫୦
ଚଇତନ ବୋଇଲା ଶୁଣ ତୁହୋ ମନ
ଦ୍ରିଯୋଧନର ଚରିତ ଯେ ବଡ଼ାଇ ବିଧାନ ।୫୧
ମନ ବୋଇଲା ତୁ ହୋ ଚଇତନ ଶୁଣ
ଯେ ସେ ଦ୍ରିଯୋଧନ ସେ ପନ୍ନଗା ନାରାୟଣ ।୫୨
ଶଙ୍ଖ ପଦ୍ମନିଧି ଅଛଇ ଯାର କରେ
ପାଣିଦ୍ରବ୍ୟ ହୋଅଇ କର ଲାଗିଲେ ମାଂକରଡ଼ା ପଥରେ ।୫୩
ଚାଲନ୍ତେଣ ସୁବର୍ଣ୍ଣର ଅବେଣ୍ଟ ପଦ୍ମ ଫୁଟଇ
ପ୍ରତକ୍ଷେ ମାନଗୋବିନ୍ଦ ସେ କୃଷ୍ଣରୂପ ଅଟଇ ।୫୪
କାହାକଇଂ ନମସ୍କାର ସେ ନ କରଇ ବିଧି
ବଇଲେ ନ ସରଇ ଧନ ଅବୟେ ବାରାନିଧି ।୫୫
ଯେବଣ ଦ୍ରବ୍ୟେ ତାହାର ହାଥ ଲାଗିଲା
କାଷ୍ଟପାଷାଣ ସବୁ ପାଣିଦ୍ରବ୍ୟ ହୋଇଲା ।୫୬

**

## ୫୦. ଶିଶୁପାଳ ବଧ

ମନୁ ପୁଛା କଲାକ ଚଇତନକୁ ତବ ଅନ୍ତେ
ଯେ ମହା ଯାଗସଭା ସମାପତ ହୋଇଲା କେମନ୍ତେ ।୧
କୁମ୍ଭମାସ ଶୁକ୍ଳପକ୍ଷ ଷଷ୍ଠୀ ତିଥି ଗୁରୁବାର
ଅଶ୍ୱିନୀ ନାମେ ନକ୍ଷତ୍ର ଭୋଗ ସେ ଦିନର ।୨
କଉଳବ କରଣା ଶୁକ୍ଳ ନାମେ ଯୋଗ
ସେଦିନ ସମାପତ ହୋଇଲା ମହାଯାଗ ।୩
ବ୍ୟାସେ ଥାଇ ସ୍ୱାହାନ କରାନ୍ତି ମହାଶାନ୍ତି
ଯେଉଂଣ ଜଳ ପଡ଼ିଲେ ଅମୋକ୍ଷେ ମୋକ୍ଷଗତି ପାନ୍ତି ।୪
କନକ ଘଟଗୋଟି ଯେ ସହସ୍ରେକ ଧାର
କୋଟିୟେ ତୀର୍ଥ ଘେନି ତହିଂ ବିଜୟେ ପୁଷ୍କର ।୫
ଅଜପା ଗାୟତ୍ରୀ ଯେ ଆଚାର୍ଯ୍ୟ ବରଣେ
ଯୁଝେଷ୍ଟି ଦେବଂକୁ ସ୍ୱାହାନ କରାବନ୍ତି ବ୍ରାହ୍ମଣେ ।୬
ସ୍ୱାହାନ ସାରିଣ ଯେ ଅନେକ ଦିଲେ ଦାନ
ବିପ୍ରଜନମାନନ୍ତ ମହା ରସେଣ ଭୋଜନ ।୭
ଗଙ୍ଗା ଗୟା ଗୋଦାବରୀ ସରଯୁ ଯମୁନା ସରସ୍ୱତୀ
ଫଲ୍ଗୁକୀ ରଣଭଦ୍ରା କାଶୀ କଉଶିକ ଆବର ଗୋମତୀ ।୮
ବାରାଣସ ହରପାପକ ବଇତରଣୀ ଚିତ୍ରଉତ୍ପଳା ଘେନି
କେଦାର ଭାଗିରଥୀ ନର୍ମଦା ପ୍ରାଗବେଣୀ ।୯
କୋଟିୟେ ତୀର୍ଥ ଘେନି କ୍ଷେତ୍ରାଧି ପୁଷ୍କର
ବିଜେ କରିଅଛନ୍ତି ହସ୍ତିନା ନଅର ।୧୦
ଯୁଝେଷ୍ଟି ଦେବଂକର ରାଜୁସି ଯାଗର ଅଭିଷେକ
ଶୂନ୍ୟେଣ ଥାଇଂ ସମସ୍ତଂ ଦେଖନ୍ତି ବୃନ୍ଦାଅର୍କ ।୧୧
ଆକାଶେଣ ପୁଷ୍ପ୍ୟବୃଷ୍ଟି କରନ୍ତି ମଘବା
ଜୟେ ଜୟେ ଶବଦ ଭାଷନ୍ତି ସର୍ବଦେବା ।୧୨
ତ୍ରଇଲୋକ୍ୟର ନାଥ ଜଗତର ଅଧିକାରୀ

ସମ୍ମୁଖେଣ ଅଭିଷେକ ହୁଅନ୍ତି ଯୁଝେଷ୍ଟି ଦଣ୍ଡଧାରୀ ।୧୧୩
ଅଷ୍ଟରତ୍ନେ ମୁକୁଟ ହାଦେ ବାନ୍ଧିଲେ ଜଗନ୍ନାଥେ
କଟଟି ବାହୁଟି ଜଗଦଳା ପାଦେକ ସହିତେ ।୧୧୪
ଅଷ୍ଟରତ୍ନେ ଖଞ୍ଜିତ କରନ୍ତି ବନମାଳୀ
କଣ୍ଠେ କଣ୍ଠମାଳା ହାଥରେ ରତ୍ନମୁଦି ଭରି ।୧୧୫
ନାନା ଅଳଂକାରେ ସେ ସୁବେଶ ବେଶ କରି
ଗନ୍ଧ ଚନ୍ଦନ କୃପୂର କୁଆଦ କସ୍ତୁରୀ ।୧୧୬
ଯୁଝେଷ୍ଟିଙ୍କ ଶରୀରେ ବୋଳିଲେ ନାରାୟଣ
ମଣିମା-ମଣିମା ବୋଲି ଡାକନ୍ତି ଜନାର୍ଦ୍ଦନ ।୧୧୭
ସୁବର୍ଣ୍ଣର ପଇତା ଦିଲେ ଋଷିଗଣମାନେ
କଉତୁକ ଉତ୍ସବ ଯେ ମଙ୍ଗଳ ବିଧାନେ ।୧୧୮
ଅପାର ତତୁଲ୍ୟ କରନ୍ତି ସର୍ବସାଚୀ
ଯୁଝେଷ୍ଟି ଦେବଂକର କୋଳେ ଦ୍ରୋପତୀ ଦେବୀ ଛନ୍ତି ।୧୧୯
ଦେଖିଣ ପରମ ସନ୍ତୋଷ ସକଳ ଋଷିଗଣ
ଲକ୍ଷେ ରାଜା ସହିତେଣ ଅଛନ୍ତି ସଙ୍ଗତେଣ ।୧୨୦
ଅଂଶା ଅବତାର ସେ ଧର୍ମର ତନୟେ
ତାହାଂକର କୋଳେ ଯେ ଦ୍ରୋପଦ ଦୋହିତାୟେ ।୧୨୧
କୋଟିୟେ ତୀର୍ଥ ଘେନି ଯେ କ୍ଷେତ୍ରାଧି ପୁଷ୍କର
ଅବିଷେକ କରାଇଲେ ଯୁଝେଷ୍ଟି ଦେବଂକର ଶିର ।୧୨୨
ତ୍ରିଦଶ ଦେବତାୟେ ଯେ କଲେ ସାଧୁ ସାଧୁ
ଯୁଝେଷ୍ଟି ଦେବଂକ ଅବିଷେକ ହସ୍ତିନାରେ ବାନା ବିରଧୂ ।୧୨୩
ସହଦେବ ଦଣ୍ଡଛତ୍ର ଧରଇ ଦକ୍ଷିଣ ଭାଗେ
କନେକ ଛତ୍ର ଯେ ନକୁଳ ଧରିଛନ୍ତି ଆଗେ ।୧୨୪
ବିଜୟେ ଯୁଝେଷ୍ଟି ଦେବ ଶ୍ଵେତହାଥୀ ପିଠି
ଯୁଝେଷ୍ଟି ଦେବଂକର କୋଳେ ଦ୍ରୋପତୀ ଦେବୀ ଛନ୍ତି ।୧୨୫
ଭ୍ରମନ୍ତି ଯୁଝେଷ୍ଟି ଦେବ ପଞ୍ଚକଟକ ଭୁବନେ
ଜୟେ ଜୟେ ଶବଦ ସମସ୍ତ ମୁନିମାନେ ।୧୨୬
ଆପଣେ ଜଗନ୍ନାଥ ମଣିମା ମଣିମା ବୋଲି ହାକି
ଲକ୍ଷେ ରାଜା ସଙ୍ଗତେଣ ଗୋଡ଼ାଇ ଅଛନ୍ତି ।୧୨୭
ଦେବଗଣ ଋଷିଗଣ ମାନବ ସହିତେ
ଗୋଡ଼ାଇ ଅଛନ୍ତି ସମସ୍ତ ନରନାଥେ ।୧୨୮
ହାକନ୍ତି ଚଣ୍ଡପୁତ୍ରେ ମଙ୍ଗଳ ସୀଉକାରେ
ଜୟେ ଜୟେ ଶବଦ ଭାଷନ୍ତି ହସ୍ତିନା କଟକରେ ।୧୨୯
ସମସ୍ତ ଦେବସ୍ତିରୀ ଅଧାସ୍ଵର୍ଗେ ଥାଇ

ଦେଖନ୍ତି ବନ୍ଦାପନା ଅବିଷେକ ସକଳ ରାଜସାଇଂ ।୧୩୦
ହାଥୀରୁ ଉତୁରି ସେ ଚନ୍ଦ୍ରଶାଳା ପୁରେ ବିଜେକରି
ଖଟନ୍ତି ବିଳାସୁଣୀୟେ ସୁଲଭ କୁମାରୀ ।୧୩୧
ମଙ୍ଗଳ ଧ୍ଵନି ତୋଳି ଦିଅନ୍ତି ହୁଳହୁଳି
ସମସ୍ତ ଋଷି ବେଢ଼ି ଯେ ବନ୍ଦାପନା କରି ।୧୩୨
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ବ୍ରାହ୍ମଣ ଜଣକେ ଦଶ ସହସ୍ର ମାଢ ବାଆସ୍ତରୀ ସଂସିଦ୍ଧ ।୧୩୩
ବଇତରଣୀ କୂଳେ ଯେ ଉଦକେ ସ୍ରାହାନ
ଯେକ ବ୍ରାହ୍ମଣକେ ଦିଅନ୍ତି ଲକ୍ଷେଭାର ଧନ ।୧୩୪
ଆରେକ ବେଳେ ବ୍ରାହ୍ମଣେ ପ୍ରତିଗ୍ରହ ନ କରିବେ ବୋଲି ଆନେ
ଦ୍ଵାପର ଯୁଗେ ସୁସ୍ତେ ଥିବେନା ଯୁଝେଷ୍ଟି ଦେବଂକଂର ଦାନେ ।୧୩୫
ନ କରିବେ କୃଷି ଯେ ନ କରିବେ ବାଣିଜ୍ୟ
କୁଟୁମ୍ବନ୍ତ ଘେନି ବ୍ରତିଥିବେ ନା ଅଇଶୁର୍ଯ୍ୟ ।୧୩୬
ଯେହେନେକେ ଦାନ ଦିଲେକ ଯୁଝେଷ୍ଟି
ଖଣ୍ଡିଲେ ବଂଶର ଦୋଷ ପାରଗଲା ଅରଷ୍ଟି ।୧୩୭
ବ୍ୟାସେ ବୋଇଲେ ତୁମ୍ଭେ ଶୁଣ ହୋ ଧର୍ମରାୟେ
ଶ୍ରୀକରେ ଘେନ ବାବୁ ତୋର ଅର୍ଘ୍ୟ ଯେ ଗୋଟିୟେ ।୧୩୮
ସୁବର୍ଣ୍ଣର ପାତ୍ରେ ଲକ୍ଷେକ ଅଷ୍ଟରତ୍ନ
ମାଣିକ୍ୟର ଦୀପ ସହସ୍ରେକ ଘେନିଲେ ସୁଗ୍ୟାନ ।୧୩୯
ବିଜୟେ ଧର୍ମରାୟ ମହାଯାଗ ସଭାରେ
ଲକ୍ଷେକ ନୃପତି ଉଭା ଯେ ହୋଇଛନ୍ତି ଛାମୁରେ ।୧୪୦
ଆହୋ ଅଛ ତୁମ୍ଭେ ବ୍ରହ୍ମ କ୍ଷତ୍ରୀ ବଶ୍ୟ ଶୂଦ୍ର ମୂଳେ ଅଷ୍ଟାଦଶ ବଂଶୀ
ଦେବଋଷି ବ୍ରହ୍ମଋଷି ରାଜଋଷି ମହଋଷି ।୧୪୧
ଶ୍ରୀକରେ ଅର୍ଘ୍ୟ ଘେନି ପଚାରନ୍ତି ଦେବ ଧର୍ମେ
ଯେହେନେକ ବେଭାର ଅଛଇ ପୂର୍ବ କର୍ମେ ।୧୪୨
ମହା ବିଗ୍ୟଂବନ୍ତ ତୁମ୍ଭେ ଧାର୍ମିକ ବିବେକ
ଗୁଣବନ୍ତ ପଣ୍ଡିତ ତୁମ୍ଭେ ସର୍ବଗ୍ୟଂ ଶାହାସ୍ତ୍ରିକ ।୧୪୩
ପ୍ରଥମେ ପାଦାର୍ଘ୍ୟ କାହାକଇଂ କରି ପୂଜା
ଦୁକେଣ ଅକ୍ଷତ କରିବି ସର୍ବରାଜା ।୧୪୪
ଯେଥକଇଂ ଆଗ୍ୟାଂ ମୋତେ ଦେବାକ ଶୁଦ୍ଧ ଚିତ୍ତେ
ବିଚାର ସମସ୍ତେହେଂ ଆଗ୍ୟାଂ ଦେବା ମୋତେ ।୧୪୫
ଯୁଝେଷ୍ଟି ଦେବଂକ ମୁଖୁଂ ୟେସନକ ବାକ୍ୟ ଶୁଣି
ରାଜାମାନେ ଥମ୍ଭୀଭୂତ ହୋଇଲେ ମଉନବ୍ରତ ଜାଣି ।୧୪୬
ସମସ୍ତେ ନୃପତିୟେ ୟେକମୁଖ ହୋଇ

ଦ୍ରୋଣ ଗୁରୁଂକୁ ସମସ୍ତେ ଯେ ସନ୍ନିଧ୍ୟେ ବସାଇ ।୧୪୭
ଭୋ ଦ୍ରୋଣଗୁରୁ ତୁମ୍ଭେ ଭାରଦ୍ୱାଦଶଂକର ବଂଶି
ପ୍ରଶୁରାମଂକର ଗୁଣବିଦ୍ୟା ତୁମ୍ଭର ତହିଂ ଅଛି ।୧୪୮
ତ୍ରେତୟା ଯୁଗରେ ତୁମ୍ଭେ ଦ୍ୱାପର ଯୁଗେ ତୁମ୍ଭେ
ତୁମ୍ଭର ବିଦ୍ୟାରେ ସେ କ୍ଷତ୍ରୀ ଅଟୁ ସିନା ଆମ୍ଭେ ।୧୪୯
ଧନୁ ଶହସ୍ର ବିଦ୍ୟାରେ ତୁମ୍ଭେ ସବୁରି ଅଟ ଗୁରୁ
ଯୁଝେଷ୍ଠି ଯାହା ବୋଇଲେ ତୁ କାହା ବିଚାରୁ ।୧୫୦
ବିପ୍ର ମୁଖୁଂ ବାହାର ହୋଇବ ଯେବଣ କଥା
ସବୁଂକରି ଆମ୍ଭର ସନମତ ସେ ସିଦ୍ଧ ବାରତା ।୧୫୧
ଦ୍ରୋଣେ ବୋଇଲେ ବାବୁ ତୁମ୍ଭେ ଲକ୍ଷେକ ନୃପତି
ମୁକୁଇଂ ଯେ ପୁଚ୍ଛାକଲ କହିବାନା ଯୁଗତି ।୧୫୨
ଆହୋ ଧର୍ମ ଅର୍ଥ କାମ ମୋକ୍ଷ ଯେ ଚାରିବର୍ଗକୁ
ବାସୁଦେବ ପ୍ରୀତି ଯେ ବୋଲି ସଂକଳ୍ପ କାଳକୁ ।୧୫୩
ଯେହେନେକ ଯୋଗାଇଲା ମୋହୋର ବିଚାରକୁ
ଶ୍ରୀକୃଷ୍ଣ ଥାଉଂ ପାଦାର୍ଘ୍ୟ ଅଛି କି ଆନକୁ ।୧୫୪
ଯେସନେକ ବିଧାନ ସେ ଅଛଇ ଶାହାସ୍ତ୍ର ଯୋଗେ
ମୁହିଂ ଯେହା ପୁଛି ଅଛଇନି ବ୍ୟାଂସକର ଆଗେ ।୧୫୫
କାଶୀଶ୍ୱର ବୋଇଲେ ଦ୍ରୋଣେ କହିଲେ ଭଲ
ଦିଅନ୍ତୁ ପାଦାର୍ଘ ବିଷ୍ଣୁଂକୁ ଯୁଝେଷ୍ଠିଂକୁ ବୋଲ ।୧୫୬
ଦ୍ରୋଣେ ବୋଇଲେ ତୁମ୍ଭେ ଶୁଣ ହୋ ଯୁଝେଷ୍ଠି
ଶ୍ରୀଜଗନ୍ନାଥଂକ ଚରଣେ ଦିଅ ପାଦାର୍ଘ୍ୟ ଗୋଟି ।୧୫୭
ଶୁଣିଣ ଧର୍ମରାଜା ପରମ ସାନନ୍ଦେ
ଜୟତୁ ଜଗମୋହନ ପରମାନନ୍ଦ ଗୋବିନ୍ଦେ ।୧୫୮
ଚତୃବର୍ଗ ପୁରୁଷ ତୁ ଜଗତ ଜନ ଚିନ୍ତା
ଜଗୁଜନ ସୋଦର ତୁ ଅଭୟେ ବରଦାତା ।୧୫୯
ଶ୍ରୀ ତୁଳସୀର ବଲ୍ଲଭ ଶ୍ରୀଚରଣେ ନମାମି
ଶୂଦ୍ରମୁନି ସାରୋଳା ଦାସ ଶତ ସହସ୍ର ଦଣ୍ଡ ପରିମାଣି ।୧୬୦
ଶୁଣ ହୋ ଚଇତନ ଅମୃତ ରସ କଥା
ଶ୍ରୀ ମହାଭାରଥ ସଭାପର୍ବର ସନ୍ଦେଶ ବାରତା ।୧୬୧
ଶ୍ରୀକରେ ଦେବ ଯୁଝେଷ୍ଠି ପାଦାଅର୍ଘ ଘେନି
ତୀର୍ଥଜଳେ ପଖାଳିଲେ ଜଗନ୍ନାଥଂକର ପାଦ ବେନି ।୧୬୨
କୋଟିଯେ ତୀର୍ଥର ଜଳ ଶତେଫଳ ସ୍ନାହାନେ
ଆକାଶୁଂ ପୁଷ୍ପବୃଷ୍ଟି କଲେ ଦେବଗଣମାନେ ।୧୬୩
ସୁବାସିତ କୁସୁମେ ଯେ ଦ୍ୱାଦଶ ବର୍ଣ୍ଣେ ଗଭା

ଜଗୁଜନ ମୋହନ ନାଥ ଦିଶନ୍ତି ଦିବ୍ୟଶୋଭା ।୧୬୪
ସପତସରି ମାଳ ଅଷ୍ଟରତ୍ନେ ଖଞ୍ଜି
ଶ୍ରୀକୃଷ୍ଣଂକ ହୃଦେ ଆଭରଣ କଲେ ଯୁଝେଷ୍ଠି ଦେବ ରଞ୍ଜି ।୧୬୫
ଶଙ୍ଖ ଚକ୍ର ଗଦା ଯେ ସାରଙ୍ଗ ଚତୁର୍ଭୁଜେ
ତ୍ରଇଲୋକ୍ୟ ମୋହନ ନାଥ ଦେବାଧି ଦେବରାଜେ ।୧୬୬
ଅନେକ ସମ୍ପଦ କଲେ ଜଗନ୍ନାଥଙ୍କୁ ଧର୍ମନାନେ
ଦେଖି ସହି ନୁଆରିଲେ ଦୁଷ୍ଟ ରାଜାମାନେ ।୧୬୭
ଶାଲୁ ଶିଶୁପାଳ ଦ୍ରିଯୋଧନ ଯେ ଶଂକୁନି
ପୁଣ୍ଡରୀକ ବାସୁଦେବ ଧୃଶାସନ କର୍ଣ୍ଣ ଘେନି ।୧୬୮
ବିଜୟେ ଦୁଷ୍ଟମାନେ ଯେକଇ ଆସନେ
ଆହେ ପାଣ୍ଡବଙ୍କ ଚରିତ ଦେଖ ଯେସନେକ ବିଧାନେ ।୧୬୯
ଆମ୍ଭେ ରାଜ କୁମାରମାନେ କୋଟିପାଟେ ଅଭିଷେକୀ
ବଂଶେ ବଂଶେ ଧାରଣ ଆମ୍ଭେ ଅଟୁ ଯେ ପୃଥୀକି ।୧୭୦
ଆମ୍ଭନ୍ତ ବରଣ କରି ନ ଦିଲା ପାଦାଅର୍ଘ୍ୟେ
ଭୁଅ ମଣ୍ଡଳେ ଧାରଣ ଆମ୍ଭେ ଅଟୁଂ ମଧସ୍ୱର୍ଗେ ।୧୭୧
ନନ୍ଦ ଗଉଡ଼ ପୁଅ କାହ୍ନା ଗଉଡ଼ ଅଟଇ
ତାହାକୁ ପାଦାଅର୍ଘ୍ୟ ଦିଲା ଦୁସହ ସଂକଟଇ ।୧୭୨
କେହି କିଛି ନ ବୋଇଲ ହୋଇଲ ତୁମ୍ଭେ ତୁନୀ
ଦେବଇନ୍ଦ୍ର ପ୍ରାୟକ ବସିଲା ଗଉଡ଼ ଅଭିଷେକୀ ବିଧାନ ଘେନି ।୧୭୩
ଶଂକୁନି ବୋଇଲା ଯେ କୁମାର ଶିଶୁପାଳକୁ
କୃଷ୍ଣ ପାଦାଅର୍ଘ୍ୟ ଘେନିଲା ଯୋଗାଇଲା କି ତୁମ୍ଭର ମନକୁ ।୧୭୪
ସଂସାରେ ଶୁଭଇ ଶିଶୁପାଳର ଜଗନ୍ନାଥ ସୋହୋଦ୍ର ଭ୍ରାଥ
ତୋହୋର ବଚନକୁ ଛଳ ନ କରଇ ଜଗନ୍ନାଥ ।୧୭୫
ପାରିଲେ ପରିହାସ୍ୟେ ବୋଲୁ କିନା ଶ୍ରୀହରିଙ୍କି
ଶିଶୁପାଳ ବୋଇଲା ମୋତେ ପାରିବୁ ଟିକି ରଖି ।୧୭୬
ପିଠି ରକ୍ଷା ଯେବେ କରି ପାରିବ କୁରୁବୀର
ଶ୍ରୀକୃଷ୍ଣଙ୍କୁ ଝିଂଘାସି ମୁଁ ବୋଲିବି ଉତର ।୧୭୭
ଶାଲୁ ପୁଣ୍ଡରୀକ ଦ୍ରିଯୋଧନ ବୋଇଲେ
ତ୍ରଇଲୋକ ଲଂଘିବ କେ ତୋତେ ଆମ୍ଭର ସାହା ଥିଲେ ।୧୭୮
ତୋହୋର ବଚନକୁ ଯେବେ କୋପ କରଇ ହରି
ସମସ୍ତେ ହୋଇ ଅନ୍ଧେ ମାରିବା ତାଙ୍କୁ ବେଢ଼ି ।୧୭୯
ଯାହାକଇଂ ଆଶ୍ରିତ ହେଉଥିବି ମେରୁ
ଯାଅ ଯା ଶିଶୁପାଳ ତୁ କାହାକୁ ଭୟେକରୁ ।୧୮୦
ଶାଲୁ ପୁଣ୍ଡରୀକ ଦ୍ରିଯୋଧନ ସହିତେ ବୋଇଲେ

କାହିଂକି ବିଚାର ତୁହୋ କରୁ ମହୀପାଳେ ।୯୮୧
ସମୋଦ୍ର ଲଂଘିଲେ ଯେ କେତେ ମାତ୍ର ପୃଥୀ
ପାଣ୍ଡବଙ୍କ ଅଗ୍ରତେ ଯାଇଂ କହିବୁନା ଯୁଗତି ।୯୮୨
ମାନଗୋବିନ୍ଦ ବୋଇଲା ତୁ କିଛିହିଂ ନ ଭାଳ
ପିଠିରକ୍ଷା କରିବି ମୁଁ ତୁ ଯାଅ ଯା ଶିଶୁପାଳ ।୯୮୩
ଶାଲୁ ବୋଇଲା ଭାଇ ତୋତେ ସେ ଲଂଘିଲେ
ଦ୍ୱାରିକା ସମ୍ପଦ ମୁଂ ସାରିବି ତବଛଳେ ।୯୮୪
ମାନ ଅଭିମାନ ଫେଡ଼ିବି ତୋହୋର
ଛପନକୋଟି ଯାଦବ ନାଶିବି ସତ୍ୟ ସତ୍ୟ ମୋହୋର ।୯୮୫
ମାନଗୋବିନ୍ଦର ପ୍ରାୟେ ସଖା ଥାଉଂ ଥାଉଂ
ମନରେ କାହାକୁ ସେ ତୁହି ଭୟେ ପାଉ ।୯୮୬
ଶକୁନି ବୋଇଲା ତୁ ଶୁଣ ହୋ ଶିଶୁପାଳ
ଭ୍ରୁକ୍ଷନା କରି ତୁ ହରିଙ୍କି ବେଗେ ଚାଳ ।୯୮୭
ଦୁଷ୍ଟଙ୍କ ବଚନେ ଦମଘୋଷର ବାଳ
ଅସିପତ୍ର ଝୁଣି ସେ ଉଠିଲା ଧାଡ଼ିକାର ।୯୮୮
ସଭାର ମଧ୍ୟେ ବିଜେକରି ଅଛନ୍ତି ଦେବହରି
ଭୀମ ନକୁଳ ଛାମୁରେ ଅଛନ୍ତି ଚାମର ଉଭାରି ।୯୮୯
ଅଳଂକାର ଯୁଗତ କରାଉଛନ୍ତି ଦେବ ଯୁଧେଷ୍ଠି
ଦମଘୋଷ ନନ୍ଦନ ସାନ୍ନିଧ୍ୟେ ଯାଇଂ ଭେଟି ।୯୯୦
ବାମଆଣ୍ଠୁ ଭୂମିରେ ମାଡ଼ି ବସିଲା ଦର୍ପକରି
ପ୍ରତଗ୍ୟାଂ ଆରମ୍ଭେ ସେ ଖଡ଼ଗ ଉଭାରି ।୯୯୧
ଦମଘୋଷ ନନ୍ଦନ ଯୁଧେଷ୍ଠିଙ୍କି ପ୍ରକାଶି
ତୁହି ଯେ ମହାଧର୍ମ ଆରମ୍ଭିଲୁ ରାଜୁସି ।୯୯୨
ଯେତେକ ସମ୍ପଦ ଯେ ଅର୍ଜିଲୁ ସମ୍ଭର୍ବେ
ଅନେକ ଅନ୍ନଛତ୍ର ଅନେକ ବିନୟ ଭାବେ ।୯୯୩
ସମସ୍ତେ ସେବାକଲୁ ତୁମ୍ଭେ ହୋଇଲ ମହାରାଜ
ଲକ୍ଷେ ରାଜା ମାନ୍ୟକଲେ ତୁ ପାଇଲୁ ଅଇଶ୍ୱର୍ଯ୍ୟ ।୯୯୪
ପୃଥୀ ଧବଳିଲୁ ତୁ ହୋଇଲୁ ମହାରାଜା
ସମସ୍ତ ରାଜାମାନେ କଲେକ ପାଦପୂଜା ।୯୯୫
ଯେ ତିନି ଭୁବନ ମଧ୍ୟେ ତୁ ଅଟୁ ମହାରଥା
ଦ୍ୱାପର ଯୁଗରେ ଶୁହାଇଲୁ ତୋର କଥା ।୯୯୬
ଯେତେକ ବଡ଼ ଯଶ ରାଜା ନାଶକଲୁ ଅନମିତେ
ଗଉଡ଼କୁ ପାଦାର୍ଘ୍ୟ ଦିଲୁ ହୋ କେମନ୍ତେ ।୯୯୭
ଅର୍ଥକୁ ଗଉରୋବ ଗୁଣକୁ ଅଛି ପୂଜା
କେବଣ ରାଜାର ସେ ହୋ ଅଟଇ ଆତ୍ମଜା ।୯୯୮

କେ ବୋଲଇ ସେ ଆଦ୍ୟହୁଂ ଉପୁଜିଲା ବସୁଦେବର ଘରେ
କେ ବୋଲଇ ଗୋପକୁ ପଳାଇଲା କଂସ ଡରେ ।୯୯୯
ନନ୍ଦ ଗଉଡ଼ ପିତା ମାତା ଯଶୋବନ୍ତୀ ଗଉଡୁଣୀ
ଦ୍ୱାରେ ଦ୍ୱାରେ ଦହି ବିକନ୍ତି ପ୍ରତକ୍ଷେ ଯେହୁ ଜାଣି ।୧୦୦୦
ଦୁଇବାପର ଯେକପୁତ୍ର ବୃତିବାର ନିମନ୍ତେ
ଯେତେ ପାମର ଜନକୁ ପାଦାର୍ଘ୍ୟ ଦିଲୁ ହୋ କେମନ୍ତେ।୧୦୦୧
ପୁଣିହିଂ ବୋଇଲା ତୁମ୍ଭେ ଗୋଳକୁଣ୍ଡା ଜାର ଜାତକ
ପିତା ତୁମ୍ଭର ଅରଜିଲା ବ୍ରହ୍ମହତ୍ୟା ପାତକ ।୧୦୦୨
ଯେକା ମାତା ତୁମ୍ଭର ରେ ଅଟଇ ତିନି ପିତା
ଯେକା ଭାରିଜାକୁ ତୁମ୍ଭେ ରେ ହୋଇଲ ପଞ୍ଚ ଭ୍ରଥା ।୧୦୦୩
ସେହି ଜାତି ଅଟନ୍ତି ଯେ ଜାରଜାତ
ତୁମ୍ଭଙ୍କୁ ବନ୍ଧୁପଣେ ଯୋଗାଇ ଜଗନ୍ନାଥ ।୧୦୦୪
ଅବରଣି ଲୋକକୁ ରେ ବରିଲ ତୁମ୍ଭେ ଆଣି
ପଣ୍ଡିତ ଲୋକେ ସେ ଯେ ଭୁଲନ୍ତି ନ ଜାଣି ।୧୦୦୫
ଯେହୁ ଅବା ହୋ ହରି ବରଣ କଲାକ ତୋତେ
ତୁ ରେ ଗଉଡ଼ ପାଦାର୍ଘ୍ୟ ଘେନିଲୁ କେମନ୍ତେ ।୧୦୦୬
ବାଳୁତ କାଳେ ବଧ କଲୁରେ ପ୍ରୋହିଣୀ
ସ୍ତିରୀହତ୍ୟା ପାତକ ତୋର ସମସ୍ତେହେଂ ଜାଣି ।୧୦୦୭
ଭୁବିବାହାନ ରାଜା ଯେ ପୂର୍ବେ ସ୍ତିରୀହତ୍ୟା କଲା
ଶତେଜନ୍ମ ପରିଯନ୍ତେ ଚାଣ୍ଡାଳୁଣୀ ଗର୍ଭେ ଉପୁଜିଲା ।୧୦୦୮
ପ୍ରୋହିଣୀ ବଧକଲୁ ତୁ ସ୍ତିରୀହତ୍ୟା ବଡ଼ ଦୋଷୀ
ଯୁଗତେଣ ପୁଣ୍ୟସ୍ଥାନେ ନ ଦେଇ ତୋତେ ବସି ।୧୦୦୯
ଶିଶୁପାଳର ଝିଂଘାସ ଶୁଣିଣ ବ୍ରିକୋଦର
ରାଗେଣ ଅଧର ତାର କମ୍ପଇ ଥରହର ।୧୦୧୦
ଲୋଚନ ତରାଟି ସେ ଦିଅଇ ଘୋର ଡାକେ
ବିଚାରଇ ଦମଘୋଷ ନନ୍ଦନକୁ ଚାପିବି ବାମକାଖେ ।୧୦୧୧
ଯୁଧେଷ୍ଠି ଦେବ ବୋଇଲେ କୋପ ସଂହରରେ ବାବୁ
ରାଗୀ ହୋଇଲେ ଧର୍ମ ଆମ୍ଭର ନାଶଯିବଟି ସବୁ ।୧୦୧୨
ବୋଇଲେ ବୋଲୁ ଶିଶୁପାଳ ନକର ତହିଂକି କୋପ
ଦଇବ ଫଳଇ ସିନା ତହିଂର ଦୋଷ ଅନରୂପ ।୧୦୧୩
ଧର୍ମକୁ ଝିଂଘାସ କଲେ ନ ସହନ୍ତି ଦିଗପାଳ
ଆମ୍ଭର କୋପ କରିବାର ନ ଯୋଗଇ ବାବୁ
ଯେତେବେଳେ ।୧୦୧୪
ମୋହୋର ଶପତଟି ତୋତେ ଶାନ୍ତ ହୁଅ ଭୀମ
ଧର୍ମ ବର୍ଦ୍ଧିତ ହୋଉ ସଂହରଣ କର ତମ ।୧୦୧୫

ସ୍ୱାମୀଙ୍କର ବଚନେ ଯେ ଭୀମସେନ ପରମ ଶାନ୍ତି
ଅନେକ ବାଗେ ଭୀମସେନଙ୍କୁ ଯୁଷେଷ୍ଟି କରାନ୍ତି ନିବର୍ତ୍ତି ।୧୧୬
ଆହୋ ଭୀମସେନ ନଜାଣୁ ତୁ ଯେଥିର ଚରିତ
ଜଗନ୍ନାଥ ଦେବଂକର ଶିଶୁପାଳ ସୋଦର ଭ୍ରାଥ ।୧୧୭
ବାବୁ ସତ୍ୟବ୍ରତ ବୋଲିକରି ବ୍ରହ୍ମାବଂଶେ ଯେକ ରାଜା
ଦେବକୀ ଦଇବକୀ ବୋଲି ତାହାଂକର ଦୁଜ ତନୁଜା ।୧୧୮
ଜ୍ୟେଷ୍ଟ ଦୁହିତାର ନାମ ଅଟଇ ଦେବକୀ
ବସୁଦେବକଇଂ ପ୍ରଦାନ କଲେ ଧାର୍ମିକପଣ ଦେଖି ।୧୧୯
ଆରେକ ଦୁହିତାର ନାମ ଅଟଇ ଦଇବକୀ
ତାହାକଇଂ ପ୍ରଦାନ କଲେ ଦମଘୋଷ ନୃପତିକି ।୧୨୦
ଦେବକୀର ଗର୍ଭେ ଉପୁଜିଲେ ଦେବ ଜନାର୍ଦ୍ଦନ
ଦଇବକୀର ଗର୍ଭେ ଶିଶୁପାଳ ହୋଇଲା ଉତପନ୍ନ ।୧୨୧
ଯେକା ସହୋଦ୍ର ଅଟନ୍ତି ସେ ବେନି ଭୟେଣୀର ସୁତ
ସହୋଦ୍ରପଣେ ଯେହା ସହୁଛନ୍ତି ଜଗନ୍ନାଥ ।୧୨୨
ଯୁଷେଷ୍ଟିଙ୍କ ବଚନେ ଭୀମସେନ ଶାନ୍ତି ଭଜି
ପୁଣ ପୁଣ ଶିଶୁପାଳ କହଇ ଗଳଗାଜି ।୧୨୩
ଆରେ ଆରେ ଗଉଡ଼ ତୁ ଅଟୁ ବଡ଼ ମନ୍ଦ ଭଣ୍ଡ
ଗୋଗୋଷ୍ଟରେ ପଶି ତୁରେ ବଧକଲୁ ଷଣ୍ଢ ।୧୨୪
ଈଶ୍ୱର ଦେବତା ଗୋରୁ ବଧିଲେ ବାଳକାଳେ
ସେ ଗୋହତ୍ୟା ଦୋଷ ବିମୋଚନ ନ ଗଲା ଯେତେକାଳେ ।୧୨୫
ଯେଉଂଣ ଦେବତାଂକୁ ଧ୍ୟାୟେ କରନ୍ତି ସପତ ବ୍ରହ୍ମାଣ୍ଡ
ଯେବେହେଂ ଖପରେ ତାର ଲାଗିଅଛି ଗୋମାତାର ମୁଣ୍ଡ ।୧୨୬
ଗୋହତ୍ୟା ପାତକ ଯେ ନ ଯାଇ କହଣ
ସମସ୍ତ ପାତକ କଲୁ ଲୁଚାଇଲୁ ମିଛେହେଂ ବୋଲାଉ ବଡ଼ଜଣ ।୧୨୭
ଗୋପାଳୁଣୀମାନେ ସମସ୍ତେ ତୋହାର ସହୋଦ୍ର ମାନି
କୁଞ୍ଜବନେ କ୍ରୀଡ଼ାକଲୁ ସେମାନନ୍ତ ଘେନି ।୧୨୮
ଅନିର୍ଯ୍ୟାପ ଆତ୍ମା ତୋର ଯେଡ଼େ ମହାପାପୀ
ଅଗ୍ୟାନ ପାଣ୍ଡବେ ଯେ ସଭାରେ ତୋତେ ଥାପି ।୧୨୯
ଅଗସ୍ତି ଋଷିଂକର ପୁତ୍ର ଯେ ବୋଲାଇ
ପ୍ରତିଗ୍ରହ କରି ଲୋଡୁ ଯେ ସଭାରେଣ ଥାଇ ।୧୩୦
ସ୍ତିରୀହତ୍ୟା ଗୋହତ୍ୟା ପରଦାରା ହରଣ ଦୋଷ
କେମନ୍ତେ ବ୍ରତିଅଛୁ ଜୀବନେ କରି ଆଶ ।୧୩୧
ଆହୋ ଯେଉଂଣ ପ୍ରାଣୀୟେ ବ୍ରତନ୍ତି ହତ୍ୟା ଯେ ବିବାଦେ
ସଂସାରେ ଗତି ନୁହନ୍ତି ଅମୋକ୍ଷ ହୁଅନ୍ତି ହାଦେ ।୧୩୨
ଭଣ୍ଡପଣେ କାର୍ଯ୍ୟ ତୁରେ ଘେନିଲୁ ଯେହିମତେ
ଧର୍ମଦେବତା ତୋତେ ରେ ସହିଛି କେମନ୍ତେ ।୧୩୩
ଯେ ମହାସଭା ହାଦେ ଦେବଆସ୍ତାନ ଜାଣି
ହତ ମୁର୍ଖ ପାଣ୍ଡବେ ତୋତେ ରେ ବରିଛନ୍ତି ଆଣି ।୧୩୪
ମରିବା ଜୀଇଂବା ତୁ ଦୁଇ ନ ବିଚାରି
ପ୍ରାଣକୁ ଶଂକା ଯେ ନାହିଂନା ତୋହୋରି ।୧୩୫
ଦ୍ରୋଣେ ବୋଇଲେ ହୋ ଶୁଣସି ଶିଶୁପାଳ
ଜଗବନ୍ଦନ ନାଥଙ୍କୁ ତୁ ଆଉ ନକର କଟାଳ ।୧୩୬
ଯାହାର ଉଦରେ ବସଇ ମହୀ ନବଖଣ୍ଡ
ରୋମକୂପେ ଯାହାର ବସଇ କୋଟି କୋଟି ବ୍ରହ୍ମାଣ୍ଡ ।୧୩୭
ଅନେକ ଝିଂଘାସ ହରି ସହିଲାନି ତୋତେ
ପ୍ରାଣେ ନାଶ ନ କରନ୍ତି ବାନ୍ଧବ ନିମନ୍ତେ ।୧୩୮
ଯିସ ଅଗ୍ୟାନେ ଅବା ମନ୍ଦ ବୋଇଲୁ ରେ ବାବୁ
କିଞ୍ଚିତ କୋପେ ତୁରେ ସଂପୋଡ଼େ ନାଶଯିବୁ ।୧୩୯
ଦ୍ରୋଣଂକର ମୁଖୁଂ ଯେସନେକ ବାକ୍ୟ ଶୁଣି
ଅଧର ପୃଷ୍ଟ କରି ଶିଶୁପାଳ ଉଠିଲା ଶିର ଝୁଣି ।୧୪୦
ତୁ ଯାହା ବୋଇଲୁ ହୋ ଭରଦ୍ୱାଦଶଂକର ସୁତ
ଆମ୍ଭେ ତୋତେ କହୁ ସିନା ଯେଥିର ତଦନ୍ତ ।୧୪୧
ଜାରାସନ୍ଧର ଦୁହିତା ଯେ ହେତି ପରହେତି
ତାହାଙ୍କର ବଲ୍ଲଭ ଯେ କଂସାସୁର ନୃପତି ।୧୪୨
ତାହାକଇଂ ବଧ ଯେହୁ ଯେ କଲେ ବାଳକାଳେ
ପିତାର ଆଗେ ଦୋହିତାୟେ କାନ୍ଦି କହିଲେ ବିକଳେ ।୧୪୩
ଭୋ ପିତା ତ୍ରଇଲୋକ୍ୟେ ତୁ ଧାରଣ ଅଟୁ ମହାଦେବ
ତୋହୋର ପରା ପିତା ଥାଉଂ ଆମ୍ଭେ ହୋଇଲୁ ବିଧବ ।୧୪୪
ଦୟା ସାଗର ତୁ ଶରଣ ପଞ୍ଜର ବୀରଧୂ
ତୋହୋର ଦୁହିତା ହୋଇ ଆମ୍ଭର ଜୀବନ ଅସାଧୁ ।୧୪୫
କୁଆଇଂର କଷ୍ଟ ଆଉ ଦୁହିତାଂକ ବିକଳେ
ମଥୁରା ରାଜ୍ୟକୁ ସେ ବାହିଲା ଘେନିଣ ସନ୍ୟବଳେ ।୧୪୬
ଅନେକ ଧନ ଭଣ୍ଡାର ସମସ୍ତ କଲା ଜୂର
ବନ୍ଧୁବର୍ଗ ଛାଡ଼ି ତହୁଂ ପଳାଇଲା ଚକ୍ରଧର ।୧୪୭
ଦୁଇ ଭାଇ ଲୁଚିଲେ ଯାଇଂ କଉସ୍ତୁଭ ପର୍ବତେ
ତହିଂ ଲୋଡ଼ି ତଦନ୍ତ ନ ପାଇଲୁ ସମସ୍ତେ ।୧୪୮
ଦୁଜ ଧାଡ଼ିରେ ଯାଇଂ ଲୋଡ଼ିଲେ ସେହି ବନେ
ତହୁଂ ପଳାଇ ଯାଇଂ ଲୁଚିଲେ ଖିନିଖନେ ।୧୪୯

ସେ ପର୍ବତ ଧଂସିଲୁ ଆମ୍ଭର ବାହୁବଳେ
ତହୁଂ ପଳାଇଲେ ସେ ପ୍ରାଣର ବିକଳେ ।୧୫୦
କେୟୁରକୁଣ୍ଡଳ ବୋଲିକରି ଯେକଇ ବନସ୍ତେ
ତହିଂ ବିକଳେ ଲୁଚିଲେ କୁଟୁମ୍ବ ସହିତେ ।୧୫୧
ଚାରଗଣ ମୁଖେ ବାରତା ଆମ୍ଭେ ପାଇ
ସେ କେୟୁରକୁଣ୍ଡଳ ବନସ୍ତ ବେଢ଼ିଲୁଂ ଆମ୍ଭେ ଯାଇଂ ।୧୫୨
ଖଣା ଖୋଳାଇ ଯେ ଆମ୍ଭେ ଦିଲୁ ଜୁଇ ଲଗାଇ
ନାନା ଜୀବଜନ୍ତୁ ମଲେ ଯେହାଂକର ପାଇଂ ।୧୫୩
ଆମ୍ଭର ଭୟେ ତହୁଂ ଯେହୁ ପଳାଇଲେ
ଅରୁଣା ନାମେ କୁଣ୍ଡଳୀ ନିର୍ଝର ଗିରିରେ ଲୁଚିଲେ ।୧୫୪
ବାରତା ପାଇ ସମୟେକେ ପୁଣି ଆମ୍ଭେ ଧାଡ଼ିଦିଲୁ ତହିଂକି
ଅନେକ ଜନଜନ୍ତୁ ବଧକରି ଗୋଧନ ଆଣିଲୁ ନ ପାରିଲେ କେହି
ରଖି ।୧୫୫
ତହୁଂ ପଳାଇଣ ଯାଇଂ ଲୁଚିଲେ ହେମବନ୍ତେ
ବନ୍ଧୁବର୍ଗ ଛାଡ଼ିଣ ଯେ ରହିଲେ ରାମକୃଷ୍ଣ ବେନିଭ୍ରାଥେ ।୧୫୬
ଆହୋ ମହା ଧାର୍ମିକ ରାଜା ସେ ଅଟଇ ଜାରାସନ୍ଧ
ପଳାଇଲା ଲୋକଙ୍କର ସେ କୁଟୁମ୍ବ ନ କରଇ ବଧ ।୧୫୭
ପୁଣିହିଂ ପଳାଇଣ ଗଲେ ଯେ ବେନିଭ୍ରାଥେ
ସଭିୟେଂ ଲୁଚିଲେ ଯାଇଂ ହିରଣ୍ୟଗର୍ଭ ପର୍ବତେ ।୧୫୮
କଷ୍ଟ ଦେଖିଣ ସେ ଜରାସନ୍ଧ ତୁମ୍ଭନ୍ତ ରକ୍ଷାକଲା
ସମର କାଳେ ଜରାସନ୍ଧ ଯେହାଙ୍କୁ ଉପେଖିଲା ।୧୫୯
ତହୁଂଣ ପଳାଇଣ ତୁମ୍ଭେ ଗଲ ଯେ ବିମୁଖେ
ଗୋମତ ଗିରି ପର୍ବତେ ଲୁଚିଲ ମହାଦୁଃଖେ ।୧୬୦
ମହା କଇଛାବନ୍ତ ରାଜା ସେ ଅଟଇ ବୀର ଜାରା
ଲକ୍ଷେପୁର କରି ଯାଇଂ ଗୋମତ ଗିରି ବେଢ଼ିଲା ।୧୬୧
ଅଷ୍ଟାଦଶ ବେଳ ପରିଯନ୍ତେ ବେଢ଼ିଲୁ ସମ୍ଭର୍ବେଣ ଥାଠ
ପଳାଇ ଯିବାକୁ ତୁମ୍ଭେ ନ ପାଇଲ ବାଟ ।୧୬୨
ପର୍ବତ ବେଢ଼ି ପୋଡ଼ିଲୁ ଅଗ୍ନିନ୍ତ ଲଗାଇ
ଅନେକ ଜୀବଜନ୍ତୁ ନାଶଗଲେ ତୁମ୍ଭରି ପାଇଂ ।୧୬୩
ସେ ଗୋମତ ପର୍ବତ ଉପରୁ ପଳାଇଲା ଆମ୍ଭର ଡରେ
ବନ୍ଧୁ ବର୍ଗ ଘେନି ରହିଲ ଯାଇଂ ମଧୁ ବନସ୍ତରେ ।୧୬୪
ପୁଣ ତହିଂକି ନ ଗଲୁ ହୋ ଆମ୍ଭେ ଅବହେଳେ
କାଳ ଦମନକୁ ପଠାଇ ଦିଲୁ କୁତୂହୋଳେ ।୧୬୫
ଭାଙ୍ଗିଣ ମଧୁବନ ସେ କଲା ଭଗନସ୍ତ
କ୍ଷୀରୋଦ୍ର ଭିତରେ ଯାଇଂ କଲ ଯେ ବାସନ୍ତ ।୧୬୬
କହୁଂ କହୁଂ କୋପ ଦିଗୁଣ ବଢ଼ିଲା ଶିଶୁପାଳ
କରେ ଖଡ଼ଗ ଧରି ଝମକାଇ ଅନ୍ତରାଳ ।୧୬୭
ଶିଶୁପାଳର ବଡ଼ିମା ଦେଖିଣ ଭୀଷ୍ମେ ଆଗ ସରି
ଶିଶୁପାଳର ଆଗେ ଯାଇଂ ବଚନ ଉଚ୍ଚାରି ।୧୬୮
ଆରେ ଆରେ ଶିଶୁପାଳ ତୁ ଅଟୁ ବଡ଼ ଦୁଷ୍ଟ
ହରିଙ୍କି ଯେଡ଼େ କଟାକ୍ଷ କିମ୍ପାରେ କରୁ ମନ୍ଦ ପାପିଷ୍ଟ ।୧୬୯
ଆରେ ସ୍ୱର୍ଗ ମଞ୍ଚ ପାତାଳ ରସାନ୍ତଳ ଯେ ସପତ ବ୍ରହ୍ମାଣ୍ଡ
ରୋମମୂଳେ ଯାହାର ଅଛି ମହୀ ନବଖଣ୍ଡ ।୧୭୦
ଦୁସହ ପ୍ରତଗ୍ୟାଂ କରୁଥିଲେ ଅଷ୍ଟମଲ୍ଲେ
ବାଳୁତ ଖେଡ଼ କୁତୂହୋଳେ ହରି ସମସ୍ତ ନାଶକଲେ ।୧୭୧
କଂସର ମହିମାଂ ତ କହିଲୁ ଅପ୍ରମିତ
ଯେହି କେଶବ ମୂର୍ତ୍ତି ଦେଖି ସେ ହୋଇଲା ପ୍ରାଣ ହତ ।୧୭୨
ଆରେ ଶିଶୁପାଳ ଆବର କହିଲୁ ରେ ଅଷ୍ଟାଦଶ ବେଳ ଦିଲ ଧାଡ଼ି
କେତେ କେତେ ସଇନ୍ୟ ତୁମ୍ଭର ନୋହିଲେ ଅପହାରି ।୧୭୩
ଗୋମନ୍ତ ଯୁଦ୍ଧର ତୁ କହିଲୁ ଯେତେ କଥା
ଆମ୍ଭେ କି ନ ଜାଣୁ ତହିଂର ସନ୍ଦେଶ ବାରତା ।୧୭୪
ଅଶି କ୍ଷଉଣୀ ଯେ ତୁମ୍ଭେ ସଇନି ଘେନିଗଲ
ସତାଉନ କ୍ଷଉଣୀ ଯେ ତହିଂରେ ମରାଇଲ ।୧୭୫
ଯେତେ କୃତ କଲେ ତହିଂ ଦେବ ବଳରାମ
ପଳାଇଲା ଜରାସନ୍ଧ ସେ ହାରିଣ ସାଂଗ୍ରାମ ।୧୭୬
ଆରେ ଶିଶୁପାଳ କାଳଦମନ ଗଲା ଯେ ତୁମ୍ଭରି ବିଶ୍ୱଆସେ
ଯେକା ବେଳକେ ନେଉଟି ନଇଲା ତ ତୁମ୍ଭରି ପାଶେ ।୧୭୭
ଅନେକ ପ୍ରତଗ୍ୟାଂ ସେ କରୁଥିଲା ବୀର ଜାରା
ବେଳେକହିଂ ସେ ସହି ନୁଆରିଲା ଭୀମସେନର ଭାରା ।୧୭୮
ଜରା ଛାର ପାମର ବୋଲି ସେ ଆପଣେ ନ ମାରି
ସେବକ ଭୀମସେନ ହାଥେ ଜରାସନ୍ଧକୁ ନିବାରି ।୧୭୯
ଆରେ ତୁମ୍ଭର ପ୍ରସାଦେ ଶ୍ରିକାଳ ବାସୁଦେବ ନାଶଗଲା
ତୁମେ ପଳାଇଗଲ ରେ ଅନେକ ମଧସ୍ଥ ଲୋକ ମଲା ।୧୮୦
ଆରେ ଅଗ୍ୟାନ ମୁରୁଖ ବାଇ ବାଳୁତ ସଭାବ
ନାଶକର ଦେବତା ଆରେ ରେ କିସ କହି ଗର୍ବ ।୧୮୧
ଶିଶୁପାଳ ବୋଇଲା ତୁ ହୋ ନ ଜାଣୁ ଗାଙ୍ଗବ
କ୍ଷତ୍ରୀ ହୋଇ ପଳାଇଲେ କିସ ତାହାର ଗର୍ବ ।୧୮୨
ଜରାସନ୍ଧ ମଲା ଯୁଦ୍ଧରେ ପଡ଼ିଲା

କାହ୍ନା ଗଉଡ଼ ପ୍ରାୟେତ ନିସତ ନୋହିଲା ।୯୮୩
ଆହେ ଭୀଷ୍ମେ ଯେମନ୍ତ କଥା କହଇ ଶୁଣ ହାଦେ ତୁମ୍ଭେ
ଯେହାଂକର ଚଉର୍ଯ୍ୟତାପଣ କଥା କହୁଂ ଆମ୍ଭେ ।୯୮୪
ଯେମନ୍ତ କଇଛାବନ୍ତ ଭୀଷ୍ମ ମହାରାୟେ
ଲକ୍ଷେକ ରାଜା ବରି ସେ ସୟମ୍ବର କୟେ ।୯୮୫
ସମସ୍ତ ନୃପତିୟେ ସୟମ୍ବରେ ଛନ୍ତି ବସି
ପଞ୍ଚ ଦିବସ ଉତ୍ତରେଣ ରାମ କୃଷ୍ଣ ମିଳିଲେକ ଆସି ।୯୮୬
ରାଜାମାନେ ବିଚାର କଲେ ଯେ ଆସ୍ଥାନେ
ନନ୍ଦ ଗଉଡ଼ ପିତା ଯେହାର ଅଟଇ ବିଦ୍ୟମାନେ ।୯୮୭
ଆମ୍ଭେ ରାଜ କୁମାରମାନେ ସମସ୍ତେ ଅଛୁଂ ବସି
ଯେ ରାଜ ସଭାରେ ଗଉଡ଼ ବସିବେ କେହ୍ନେ ଆସି ।୯୮୮
ମୁରାଟ କରି କହିଲେ ସମସ୍ତ ନୃପତି
ତିନି ପାବଚ୍ଛର ତଳେ ଉଭାହୋଇ ଅଢ଼ାଇ ପ୍ରହରେ ଯେ ଲେଉଟିଲେ ଝାଡି ।୯୮୯
ଭୀଷ୍ମେ ବୋଇଲେ ତୁରେ କହିଲୁ ମତ୍ତଗର୍ବ
ତହିଂର ଚରିତ ରେ ଜାଣୁ ଆମ୍ଭେ ସର୍ବ ।୯୯୦
ରାଗେଣ ଜଗନ୍ନାଥ ଗଲେ ଅପସରି
ଆଜ୍ଞା ଦିଲେ ସ୍ୱାମୀ ଗରୁଡ଼େ ହକାରି ।୯୯୧
ବିନତା ନନ୍ଦନ ଯେ ମାଇଲା ପକ୍ଷଘାତେ
ସୟମ୍ବର ଭଗ୍ନଗଲା ପକ୍ଷୀର ବାତଘାତେ ।୯୯୨
ସମସ୍ତ ରାଜାୟେ ଯେ ତିରଣ ପ୍ରାୟେ ଉଡ଼ି
ସହସ୍ର ଯୋଜନେ ହାଥୀ ଘୋଡ଼ା ଯାଇଂ ପଡ଼ି ।୯୯୩
ଆରେ ଶିଶୁପାଳ ସେ ସୟମ୍ବର କାଳେ ଆମ୍ଭେ ଯାଇଥିଲୁ
ତିନିଶତ ଯୋଜନେ ଯାଇଂ ଉଡ଼ିଣ ପଡ଼ିଲୁ ।୯୯୪
ତୁ ଯେ ବୋଲାଉ ଥିଲୁ ଦମଘୋଷର ଦୁଲଣା
ଚକ୍ଷୁ ଥାଉଂ ଥାଉଂ ରାଜପଥେ ହୋଉଛୁ ରେ ବଣା ।୯୯୫
ରୁକ୍ମିଣୀକି ବର ଯେ ହୋଇଥିଲୁ ଶିଶୁପାଳ
ବିଭା ହୋଇ ବସିଲୁ ଯେ ଛାମୁଡ଼ିଆ ତଳ ।୯୯୬
ପରପଞ୍ଚ ବରବେଶ ହୋଇଲୁ ରେ ବରଣ
ଅହିଗ୍ୟଂ ସ୍ଥାନରୁ କନ୍ୟା ଗଲା ତାହା ନେଲେ ନାରାୟଣ ।୯୯୭
ଆରେ ଜରାସନ୍ଧ ସହିତେ ସାଜିଲ ସମଦଣ୍ଡ
ଅନେକ ସଇନି ମଲେ ସଭିୟେଂ ହୋଇଲେ ଯେ ଭଣ୍ଡ ।୯୯୮
ଦୟାସାଗର ହରି ସେ କଇଛା ଜଗଜ୍ଜେଠୀ
ତୁମ୍ଭର ଦେଖନ୍ତେ ରୁକ୍ମଣକୁ କଲେକ ସାତବେଣ୍ଟି ।୯୯୯
କୁତୂହୋଳେ ନ ମାରିଣ ତାକୁ କଲେ ପରପଞ୍ଚ
ନିର୍ଲ୍ଲଜ ଜୀବନ ଘେନି ତୁମ୍ଭେରେ ବ୍ରତିଅଛ ।୧୦୦୦
ଭୀଷ୍ମଙ୍କର ମୁଖୁଂ ଯେହେନ୍ନେକ ଝିଂଘାସ ବାଣୀ ଶୁଣି
ରାଗେଣ ଶିଶୁପାଳ ଯେ ଉଠିଲା ଶିର ଝୁଣି ।୧୦୦୧
ପୁଣ ପୁଣ ମତ୍ତଗର୍ବେ କହଇ ପ୍ରତଗ୍ୟାଂ
ମହତଂକର ବଚନ ସେ କଲାକ ଅବଗ୍ୟାଂ ।୧୦୦୨
ଗର୍ଜିଣ ଉଠିଲା ସେ ଅଧର ଦନ୍ତ ଚାପି
ବେନିଭୁଜେ ଗଦା ବୁଲାଇ ଉଠଇ କାମରୂପୀ ।୧୦୦୩
ବୋଇଲା ଅନେକ ଧର୍ମ ଅର୍ଜିଲୁ ହୋ ଯୁଝେଷ୍ଟି
ଧର୍ମକଇଂ କଷଣ ହୋ ପାପକଇଂ କାଣ ଭେଟି ।୧୦୦୪
ଶୁଣ ହୋ ଗାଙ୍ଗେବେ ଯେହଂକର ପ୍ରକୃତି
ଦଇପାୟନ ବ୍ରାହ୍ମଣର ଯେସନେକ ରୀତି ।୧୦୦୫
ଦଇପାୟନ ବୋଲିଣ ଯେ ଯେକଇ ବ୍ରାହ୍ମଣ
ଅନେକ ବେଦମନ୍ତ୍ରେ ନିର୍ଜିତ ଭିଗ୍ୟଂ ପୁଣ ।୧୦୦୬
ଅନେକ ଦାନ ସେହୁ ଘେନିଲା ଧନ ଲୋଭେ
ଯେକାୟେଣ ବ୍ରତଇ ସେ କୁଟୁମ୍ବ ଅଭାବେ ।୧୦୦୭
ଯେମନ୍ତେ ଚତୁର୍ଥ ବୟସ ହେଲାଣି ସେ ଭ୍ରମ
ଛାଡ଼ିଲା ସବୁ କର୍ମ ନାଶିଲା ସବୁ ଧର୍ମ ।୧୦୦୮
ମନ୍ତ ନ ପଢ଼ନ୍ତେ ସେ ହୋଇଲା ଭିକ୍ଷାବାସୀ
ତଦ୍ୟାପି ନୁଆରିଲା ଉଦର ତାର ପୋଷି ।୧୦୦୯
ଅନେକ ଦୁଃଖ ପାଇଲା ସେ ଦଇପାୟନ ବ୍ରାହ୍ମଣ
ନିତିପ୍ରତି ଗୃହେ ସେ ଅର୍ଜଇ ପାପମାନ ।୧୦୧୦
ସେ ଦେଶ ଛାଡ଼ିଣ ଗଲା ଅନ୍ୟ ଦେଶେ
ରୁଦ୍ରାକ୍ଷମାଳ କମଣ୍ଡଳ କଷା କଉପୀନ ତପୋଧନ ବେଶେ।୧୦୧୧
ଉଜାଣ ବୋଲିଣ ଯେ ଯେକଇ ନଗରୀ
ମଳୟାନିକ ବୋଲିଣ ସାଧବ ତହିଂର ଅଧିକାରୀ ।୧୦୧୨
ବଡ଼ାଇ ସମ୍ପଦ ଅଟଇ ଲକ୍ଷ୍ମୀଧର
ଶତେକ ବୋଇତର ସେ ଅଟଇ ବଣିକାର ।୧୦୧୩
ତାହାର ପିଣ୍ଡାରେ ଯାଇଂ ବସିଲା ଅଭ୍ୟାଗ
ଆଶିଷ୍ୟେ ଯଜମାନ କାଣ୍ଡି କରଇ ଉକ ।୧୦୧୪
ଧାର୍ମିକ ଦେଖି ସାଧବ କଲା ଗଉରବ
ପୁତ୍ର ପୁତ୍ରୀ ଘେନିଣ ତାର ଚରଣେ ସେବିଲା ସାଧବ ।୧୦୧୫
ଅନେକ ଭଗତି କଲେ ଜନେ ଆସି
ମଉନବ୍ରତେ ବସିଥାଇ ସେ ନ ଦିଅଇ ସମ୍ଭାଷି ।୧୦୧୬

ବସଇ ଦୃଢ଼ ଆସନେ ଫୁଟଇ ଲୋକିତ କର୍ମେ
ବଡ଼ ଧାର୍ମିକ ଦେଖି ଆସି ଭଗନ୍ତି ହୋନ୍ତି ନଗ୍ରଜନେ ।୧୨୧୭
ମିଛେହେଁ ବୋଲଇ ମୋର ଅନ୍ନ ଭୋଜନ ନାହିଁ
ଶୂନ୍ୟ ପବନ ଭେଦୀ ମୁଁ ନିରଞ୍ଜନ ଦାହି ।୧୨୧୮
ନିଷ୍ପାପର ଦେଖି ଜନେ ବହୁତ କଲେ ମାନି
ଚରଣ ପଖାଳିଣ ଉଦକ ଶିରେ ଘେନି ।୧୨୧୯
ବଡ଼ାଇ ଧାର୍ମିକ ସାଧୁ ପାପକୁ ବଡ଼ ଭୟେ
ପରାପର ନାହିଁ ତାର ସବୁ ଯେକମୟେ ।୧୨୨୦
ଯେତେବେଳେ ନିଦ୍ରା ଯାନ୍ତି ସେ ଗୃହବାସୀ ଲୋକେ
ରାନ୍ଧଣାଶାଳେ ସେ ପଶଇ ଯାଇଂ ଗୋପ୍ୟେ ।୧୨୨୧
ଉଦର ପୂରିଲେ ସେ ବାହାର ହୋଇ ଆସି
ମହା ନିଷ୍ପାପର ପାତିଣ ମଉନେ ଥାଇ ବସି ।୧୨୨୨
ଯେହିମତି ହୋଇ ସେ ଦିନା ପାଞ୍ଚସାତ ଗଲା
ସୁପଂକୁ ଅନ୍ନ ମେଞ୍ଜାନ ସମସ୍ତ ଭକ୍ଷକଲା ।୧୨୨୩
ରୟଣୀ ପ୍ରଭାତେ ଯେ ଦେଖନ୍ତି ସୂପକାରେ
ସୁସ୍ୱାଦୁ ପଦାର୍ଥମାନ ନାହିଁନା ହାଣ୍ଡିରେ ।୧୨୨୪
କେବଣ ଚରିତ ଯେ ଜାଣିମା କେମନ୍ତେ
ବୋଇଲା ଅନ୍ନ ମେଞ୍ଜନମାନ ତ ନାହିଁ ଯେଥେ ।୧୨୨୫
ଯେମନ୍ତେହେଂ ଗଲା ନବମାସ ପରିଯନ୍ତେ
ଶରୀର ପୁଷ୍ଟ ହୋଇଲା ଛଦ୍ମ ତପୋବନ୍ତେ ।୧୨୨୬
ଶିଶୁପାଳ ବୋଇଲା ଗାଙ୍ଗେବ ସାବଧାନେ ଶୁଣ
ଦିନ ବଞ୍ଚୁଥାଇ ସେ ପାତିଣ ଭଣ୍ଡପଣ ।୧୨୨୭
ପ୍ରତିଦିନ ଲୋକଙ୍କର ଯହୁଂ ଆହାର ତୁଟିଲା
ପରଶନ୍ତେ ଲୋକଙ୍କୁ ଭାତ ତିଉଣ ନ ଅଣ୍ଟିଲା ।୧୨୨୮
ସେ ସୂପକାରକୁ ବେଢ଼ି ଦିଅନ୍ତି ଯେ ଗାଳି
ବିକଳେ ଦ୍ୱିଜବର ମନେ ମନେ ଭାଳି ।୧୨୨୯
ଯେକ ଦିନେ ଦ୍ୱିଜବର ରାନ୍ଧଣା ଘରେ ଟାକି
ସେ ଛଦ୍ମ ବ୍ରାହ୍ମଣକୁ ଭିତରେ ପଶିବାର ଦେଖି ।୧୨୩୦
ହାଣ୍ଡିରେ ଖାଆନ୍ତେ ସେ ମୁଣ୍ଡରେ ପିଟିଲା ବାଡ଼ି
ଫାଟିଲା ଶିର ତାର ପଡ଼ିଲା ମୁହଁ ମାଡ଼ି ।୧୨୩୧
କରେଣ ସୂପକାର ଘେନିଲା ଦୀପାବଳୀ
ନଗ୍ର ଲୋକନ୍ତ ଡାକଦିଲା ହୋଇଲେ ସର୍ବେ ମେଳି ।୧୨୩୨
ସମସ୍ତେ ଦେଖିଲେ ଯେତ ଛଦ୍ମ ବ୍ରାହ୍ମଣ
ଚାଣ୍ଡାଳ ହାଥେ କାଢ଼ିପକଇ ଦିଲେକ ଜଳେଣ ।୧୨୩୩

ସମସ୍ତେ ଝିଂଘାସନ୍ତି ପରପଞ୍ଚ ଯେମନ୍ତେଣ ବ୍ରତି
ଧିକ ହୋଉକିନା ହୋ ଯେହାର ଜୀବତି ।୧୨୩୪
ଶିଶୁପାଳ କହିଲା, ଭୀଷ୍ମେ କହିଲା ଯେବଣ କଥା
ଯେହାର ଚରିତ ହାଦେ ତେମନ୍ତ ବେବସ୍ଥା ।୧୨୩୫
ଯେ ପାମର ପାଣ୍ଡବେ ଯେ ନ ଜାଣନ୍ତି ଯେ ଖଣ୍ଡି
ଯେହିମତେ କହ୍ନା ଗଉଡ଼ ଯେ ଖାଉଅଛି ଭଣ୍ଡି ।୧୨୩୬
ଶିଶୁପାଳର ଅନେକ ଝିଂଘାସ ବଚନ ହାଦେ ଗୁଣି
ତମ୍ଭାଚକ୍ର ପ୍ରାୟେକ ନୟନ ବୁଲାବନ୍ତି ଚକ୍ରପାଣି ।୧୨୩୭
ଦମଘୋଷ ବୋଇଲା ଶୁଣରେ ଶିଶୁପାଳ
ମୃତୁକୁ ଆଶ୍ରେକରି ତୁ ହରିଙ୍କି କରୁଛୁ କଟାଳ ।୧୨୩୮
ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣେ ଦମଘୋଷ ଶତେ ସହସ୍ର ଦଣ୍ଡ ପରିଣାମି
ବୋଲେ ଶିଶୁପାଳର ଦୋଷ ଉପେକ୍ଷା କରିବା ଦେବସ୍ୱାମୀ।୨୩୯
ସ୍ୱାମୀ ଟେଳାଇ ମାଇଲେ କି ଟଳଇ ମନ୍ଦର
ଧୂଳି ପକାଇଲେ ପୋତି ହୁଅଇ କି ସାହେର ।୧୨୪୦
ଦୁଷ୍ଟଙ୍କର ଦୋଷ ସ୍ୱାମୀ ତୁହି ସେ ଉଦ୍ଧରନ୍ତା
ମୂର୍ଖଂକର ଦୋଷ ସ୍ୱାମୀ ତୁହି ସେ ସହନ୍ତା ।୧୨୪୧
ସ୍ୱାମୀ ଯମୁନାର କୂଳେ ଖେଳ ଖେଢ଼ିବାର ବେଳେ
ଶିଶୁପାଳ ନାମ ଦିଲୁ ଧରିଣ ତାକୁ କୋଳେ ।୧୨୪୨
ତୁ ଦେବ ଶରଣ ପଞ୍ଜର ବୀରଧୂ ମହାପ୍ରଭୁ
ଅରିଷ୍ଟି ଦୋଷ ବିନାଶକ କରନ୍ତା ଦେବ ସବୁ ।୧୨୪୩
ସୟଳ ଉଦ୍ଧାରଣ ନାଥ ସକଳ ଜନ ଚିନ୍ତା
ନବଦ୍ୱୀପ ସପତ ସାଗର ନାଥ ତୁହି ସେ ଉଦ୍ଧରନ୍ତା ।୧୨୪୪
ଭାବଗ୍ରାହୀ ଜଗନ୍ନାଥ ତୁ ଭଗତ ଯେ ମସଳା
ସମସ୍ତ କଲ୍ମଷ ଧ୍ୱଂସୁ ଶରୀର ତୋର କଳା ।୧୨୪୫
ସକଳ ବ୍ରହ୍ମାଣ୍ଡ ନାଥ ତୁହି ସେ ଦିବ୍ୟଚକ୍ଷୁ
ଛାର ପାମର ଶିଶୁପାଳକଇଂ ତୁ କୋପ କରୁଅଛୁ ।୧୨୪୬
ସ୍ୱାମୀ ମୁଣ୍ଡେ ପେଲିଲେ କି ବସୁନ୍ଧରୀ ଚଳଇ
କିଞ୍ଚିତ ମାତ୍ର ଛାର ଯେ ଶିଶୁପାଳ ଅଟଇ ।୧୨୪୭
ଦୋଷ ଉପେକ୍ଷା କରିବା ନାଥ ଘେନିମା ଦଉନି
ଶ୍ରୀକୃଷ୍ଣ ଚରଣେ ଶରଣ ଗ୍ରନ୍ଥିକ ସାରୋଳା ଦାସ ଶୂଦ୍ରମୁନି ।୧୨୪୮
ଶ୍ରୀଜଗନ୍ନାଥ ବୋଇଲେ କେତେ ଦୟିନୀ ହୋଉ ତାତ
ମୋତେ କେତେ ବୋଲ ତୋହୋର ପୁତ୍ରର ପରାକୃତ ।୧୨୪୯
ନଶନ୍ତ କାଳ ଯେତେବେଳେ ହୁଅଇଟି ପ୍ରାଣୀ
ପରାପର ସେହି କିଛିହିଁ ନ ଜାଣି ।୧୨୫୦

ଶୁଣି ଶିଶୁପାଳ ଗର୍ଜଇ ମହାବୀରା
କିସ ପରାପର ମୋତେ ବୋଲୁରେ ପାମର ଗଉଡ଼ା ।୨୫୧
ଗୋପାଳ ମାତ୍ରକ ହୋଇ ତୋହୋର କିସ କଇଛା
ଗୋପାଳୁଣୀ ଲୋଚାଯେ ଘେନିଥିବୁ ରେ ଯେ ତୋହୋର ଇଛା ।୨୫୨
ତୁ କିମ୍ପାଇଂ ଆସୁରେ ଯେ ରାଜୁସି ସଭାକୁ
କିସ ସାମର୍ଥ୍ୟ ଅଟୁ ତୁରେ ପାଦାର୍ଘ୍ୟ ଘେନିମାକୁ ।୨୫୩
କୂପଜଳ ହୋଇ କି ଗଙ୍ଗାଜଳେ ସରି
ବ୍ରାହ୍ମଣ ତୁଲେ କାହିଂ ଚାଣ୍ଡାଳ ଲୋକନ୍ତ ସମସରି ।୨୫୪
ଦେବ ପାଷାଣକୁ କାହିଂ ତୁଠ ପଥର ହୋଯେ ତୁଲ
ସେବତୀ ପୁଷ୍ପେ କାହିଂ ମିଶା ହୋଇବ ଅରଖ ଫୁଲ ।୨୫୫
ଗୁଞ୍ଜ ପଟାନ୍ତର କି ମାଣିକର ତୁଲେ
ହୀରାକୁ ପଟାନ୍ତର କି ସଷ୍ଟିକରେ ପାଣିଥିଲେ ।୨୫୬
ଜାର ଜାତକା ପାଣ୍ଡବେ ଯେ କୁଳଗୋତ୍ର ନାହିଂ
ପାଣ୍ଡବନ୍ତ ଭଣ୍ଡି ଖାଉ ତୁ ଜଗନ୍ନାଥ ନାମ ବହି ।୨୫୭
ଆରେ ଆରେ ଗଉଡ଼ କିମ୍ପାଇଂ ତୁ ନ ଦେଉ ସମ୍ଭାଷି
ମଉନବ୍ରତ ହୋଇ କିମ୍ପେ ସଭାୟେଣ ଅଛୁ ବସି ।୨୫୮
ଚାପୋଡ଼େ ମାରିଣ ଛିଡ଼ାଇବି ତୋର ଶିର
ମରଣେ କାରଣ ପାଇବୁ ତୋର ଇଷ୍ଟ ଦେବତା ସୁମର ।୨୫୯
ଅସିପତ୍ର ବୁଲାଇଣ ଊର୍ଦ୍ଧ୍ୱକଇଂ ଭୁଜ ଟୋଳି
ବହୁତ ଝିଂଘାସିଣ ରାଗେଣ ଦିଅଇ ଗାଳି ।୨୬୦
ଯହୁଂ ସେ କେଶବ ସ୍ୱାମୀ ଦେଖିଲେ ଅଷ୍ଟାଙ୍ଗ
ବାତେ କଦଳୀ ପତ୍ର ପ୍ରାୟେକ କଂପଇ ତାଙ୍କ ଅଙ୍ଗ ।୨୬୧
ମୋଡ଼ିକରି ମୁଣ୍ଡ ଯେହାର ପକାଇବି ତଳେ
ଯେ ମହା ସଭାଯାକ ହୋଇବ ମହାଗୋଳେ ।୨୬୨
କଠୋର ଦେଖିଣ ବିଚାରନ୍ତି ଦେବହରି
ସୁଦ୍ରିଶେଣ ଚକ୍ରକୁ ଆଗ୍ୟାଂ ଦିଲେକ ମୁରାରି ।୨୬୩
ଶୂନ୍ୟେଣ ଚକ୍ରକୁ ସ୍ୱାମୀ ଆଗ୍ୟା ଦିଲେ ଯେକା
ଶିଶୁପାଳର ଶିର କମଳ ବହନ ଛେଦିପକା ।୨୬୪
ଅନ୍ତରୀକ୍ଷେ ପଡ଼ିଲା ଯେ ଚକ୍ର ସୁଦ୍ରିଶେଣ
ଶିଶୁପାଳର ଶିର ଛେଦି ପକାଇଲା ତତକ୍ଷଣ ।୨୬୫
ପ୍ରତକ୍ଷେ ଦେଖିଲେ ଯେ ଦୁଷ୍ଟ ରାଜାମାନେ
ବୋଇଲେ ଶିଶୁପାଳ ନାଶଗଲା ଜଗନ୍ନାଥଂକର ଗ୍ୟାନେ ।୨୬୬
ଭୀଷ୍ମେ ଦ୍ରୋଣେ ବୋଇଲେ ହୋ ନକର କିଛି ଗୋଳ
ଧର୍ମକଇଂ ଝିଂଘାସିଲେ ହୋ ଜୀବନ କେତେ କାଳ ।୨୬୭
ଅଦଭୂତେ ଜଗନ୍ନାଥକଇଂ ବହୁତ ଝିଂଘାସିଲା
ଅକାଳ ଚକ୍ର ତାକୁ ହୋ ମାଡ଼ିଣ ପଡ଼ିଲା ।୨୬୮
ଅସ୍ତୁକାର ପୁରୁଷେ ଯେ ନୁଆଁରିଲେ ସହି
ନିର୍ଘାତ ଘାତେଣ ହୋ ତୁଟିଲା ତାର ଦେହୀ ।୨୬୯
ଆସ୍ଥାନରେ ବସିଥିଲେ ଯେତେ ଦୁଷ୍ଟ ରାୟେ
ସଭାରୁ ଉଠିଣ ପଳାଇଲେ ପାଇଣ ମହାଭୟେ ।୨୭୦
ଉଠିଲାକ ଗୋଳ ଯେ ମହା ଯଗ୍ୟଂସଭା
ଆପଣେ ରାଜାନ୍ତ ସମାର୍ଜନ୍ତି ଯୁଝେଷ୍ଟି ରାଜଦେବା ।୨୭୧
ସଭାଗୋଳ ଦେଖିଣ ବ୍ୟାସ ମହାଯତି
ପାତକ ଖଣ୍ଡଣ ନିମନ୍ତେ ଦିଲେକ ପୂର୍ଣ୍ଣ ଯେ ଆହୁତି ।୨୭୨
ଯୁଝେଷ୍ଟିଙ୍କ ଛଡ଼ ନିଶ୍ୱାସେ ଲକ୍ଷେକ କୁମ୍ଭ ଯେ ଢାଳିଲା
ଆକାଶୁଂ ବାଣୀ ଶୁଭିଲା ପଣ୍ଡୁରାଜା ସ୍ୱର୍ଗକଇଂ ଗଲା ।୨୭୩
ବ୍ରହ୍ମହତ୍ୟା ପାତକ ତାର ଶରୀରୁ ଗଲା ପାର
ସ୍ୱର୍ଗପରେ ବସିଲା ସେ ପଣ୍ଡୁରାଜା ମହାବୀର ।୨୭୪

**

## ୫୧. ଦୁର୍ଯ୍ୟୋଧନର ଅପମାନ

ଶୁଣ ବଇବସୁତ ମନୁ କହିଲେ ଅଗସ୍ତି ମହାଋଷି
ଶିଶୁପାଳ ହୋଇଲା ବଇକୁଣ୍ଠ ପୁର ବାସୀ ।୧
ପୁଣ ବଇକୁଣ୍ଠ ଦ୍ୱାରେ ଯାଇଂ ଆବୋରିଲେ ବେନି
ବସିଲେ ଜୟେ ବିଜୟେ ଯୋଗ ଭୋଗ ଘେନି ।୨
ଯେହା ଶୁଣି ପୁଛାକଲା ବିଳଂକ ଆଧିପତି
ଯେକମନେ ଶୁଣ ତୁମ୍ଭେ କୁମ୍ଭ ଋଷିଂକର ସନ୍ତତି ।୩
ଶିଶୁପାଳ ମରଣ ତ ଅସଂଖ୍ୟ ଅଲୋକିତ
ଚକ୍ର ପ୍ରାପତ ତାକୁ କଲେକ ଜଗନ୍ନାଥ ।୪
ଲକ୍ଷେ ରାଜା ଯେତେ ସେ ସଭାରେ ବରଣ
କେହି ନ ଦେଖିଲେ କି ତାହାର ମରଣ ।୫
କେହି କିଛି ହାଦେ ବୋଇଲେତ ନାହିଂ
କହିବା ଯେକମନେ ପଣ୍ଡିତ ଗୁଣଗ୍ରାହୀ ।୬
କହନ୍ତି ମହାତମା ସେ ଘଟ ଋଷିଂକର ବସ୍ଥ
ସଭାରେ ଗୋଳ ଯେ ଉଠିଲା ପ୍ରତକ୍ଷ ।୭
ସଜନ ରାଜାମାନେ କରନ୍ତି ବିଚାର
ବିଷ୍ଣୁନିନ୍ଦା କଲା ସେ ହୋଇଲା ଅପହାର ।୮

ଦୁଷ୍ଟ ରାଜାମାନେ ସେ ହୁଅନ୍ତି କୁହାକୁହି
ଭାଳନ୍ତି ଯେକମନେ ପଞ୍ଚପ୍ରାଣ ଦେଇ ।୯
ଦୁର୍ଯୋଧନ ଶକୁନି ଯେ ଧୁଶାସନ ବୀର
କର୍ଣ୍ଣ ଯଦ୍ୟରଥ କଳିଙ୍ଗସେନ ନୃପବର ।୧୦
ପୁଣ୍ଡରୀକ ବାସୁଦେବ ସମାଗୋଷ୍ଠ ସହିତେ
ଶାଲ୍ଵକୁ ହକାରି ସେ ବୋଇଲେ ଗୁପତେ ।୧୧
ଆହୋ ଆମ୍ଭର ଦେଖନ୍ତେ ଶିଶୁପାଳ ହତ
କେହି ରଖି ନୁଆରିଲେ ତାହାର ନିଜ ଗାତ୍ର ।୧୨
ଅଦଭୂତେ ପ୍ରାପତ ହୋଇଲା ଯେ ମରଣ
ଦେଖୁଂ ଦେଖୁଂ ମାୟା ଯେଥେଂ କଲେକ ନାରାୟଣ ।୧୩
ଯେ ମହାସଭାରେ କୂଟ କଲେକ ଯେ ହରି
ପାରିବୁକି ଶାଲ୍ଵ ହୋ ଦ୍ୱାରିକା ଉପାଡ଼ି ।୧୪
ଛପନ କୋଟି ଯାଦବେ ସମସ୍ତେ ଛନ୍ତି ଯେଥ
ସାତବଂଶ ଘେନି ଯେଥେ ବିଜୟ ହଳନାଥ ।୧୫
ଅଷ୍ଟ ପାଟବଂଶୀ ଘେନି ବିଜୟେ ଦେବହରି
ଯେ ମହା ସଭାୟେଣ ତ ଅଛନ୍ତି ସଂଭରି ।୧୬
ଦ୍ୱାରିକା ଭୁବନ ସମସ୍ତ ଗତ
ଦେଶ ଉଜାଡ଼ି ରାଜ୍ୟ ତୁ କର ଭଗନସ୍ତ ।୧୭
ପାରିଲେ ଅଭିମାନ ଫେଡ଼ ହୋ ଶାଲ୍ଵ ବୀର
ଯାଅ ଯେହିକ୍ଷଣି ହୋ ଦଣ୍ଡ ଘେନି ତୋର ।୧୮
ଦ୍ରିଯୋଧନ ବୋଇଲା ନ ଭାଳ ମନେ ଭୀତି
ଆମ୍ଭେ ସାହା ଥିଲେ କି ଅଛଇ ଦୁରୁଗତି ।୧୯
ଯେ ଯେବେ କୂଟ ଯେଥି କଲେକ ନାରାୟଣ
ଆମ୍ଭର କୂଟ ଯେଥେ କରସି ଭିଆଣ ।୨୦
ଶକୁନି ବୋଇଲା ଯେ କଥା ସରୂପ ନିୟତ
ଆମ୍ଭର ବୋଲେ ସିନା ଶିଶୁପାଳ ହତ ।୨୧
ଯେଡ଼େ ବଡ଼ ସାହାପକ୍ଷ ଥାଉଂ ହୋଇଲା ଅକାରଣ
ସମସ୍ତ ଦୋଷ ନ ପାଇବ କି ବଚନ ।୨୨
ଦେଖୁଂ ଦେଖୁଂ ବିଶ୍ୱାସ ଘାତକୀ ଯେ ହୋଇଲ
ରଖି ଯେବେ ନୁଆରିଲ ବୋଲ କିମ୍ପେ ଦିଲ ।୨୩
ପିଠି ରକ୍ଷା କରିବାକୁ ଯେବେ ନୋହିବ ଭାଜନ
କେବଣ ସାର୍ଥକ ଯେ ଅଟଇ ଜୀବନ ।୨୪
କଟାକି ଶକୁନି କହିଲା ଯାଇଂ ବେଗେ ରାଗେ
ବାହାର ଶାଲ୍ଵ ରାୟେ ଯେ ବଚନ ସରାଗେ ।୨୫
ଦୁଷ୍ଟଂକର ବଚନ ଜାଣିଣ ଦେବ ସ୍ୱାମୀ
ପଦ୍ମନକୁ ହକାରି କହିଲେ ଦିବ୍ୟ ବାଣୀ ।୨୬
ଯେ ମୋହୋର ବଚନ ଶୁଣସି ମନସିଜ
ଯାଗ ସମାପତ ଯେ ହୋଇଲାକ ଆଜ ।୨୭
ସମସ୍ତ ରାଜାମାନେ ହୋଇଲେ ମେଲାଣି
ଗଙ୍ଗା ପାରି ହୋଇ ଚଳିଲେ ନୃପମଣି ।୨୮
ଠାକୁରଂକ ଆଗ୍ୟାଂୟେ ଯେ ମେଲାଣି କରାଇ
ଯାଅ ତୁମ୍ଭେ ସନ୍ୟବଳ ଦ୍ୱାରିକା ଚଳାଇ ।୨୯
ଅଷ୍ଟ ପାଟବଂଶୀ କୁଳବଧୂ ସହିତେ
ସମସ୍ତିଂକ ମେଲାଣି କରାଇ ଜଗଭୂତେ ।୩୦
ଜଣେ ଜଣେ ଅକ୍ଷତ ବିଧି ମୟେମର
ଶ୍ରୀହସ୍ତେ ଶାଢ଼ୀ ସେ ଦିଲେକ ଧର୍ମସୁତ ।୩୧
ନୀଳାମ୍ବର ଚରଣେ ବିନୟେ ଧର୍ମସୁତେ
କରନ୍ତି ପୂଜାବିଧି ପୂର୍ବର ବିଧିମତେ ।୩୨
ଉଗ୍ରସେନ ସହିତେ ଯାଦବ ବଳମାନ
ସମସ୍ତେ ଚଳିଲେ ସେ ଦ୍ୱାରିକା ଭୁବନ ।୩୩
ବିବାନ ଆରୋହି ଯେ ଚଳିଲେ ତୁରିତେ
କହନ୍ତି ଜଗନ୍ନାଥେ ପଦ୍ମନ ଅଗ୍ରତେ ।୩୪
ଦ୍ୱାରିକାରେ କଥା ବାବୁ ସମସ୍ତ ଲାଗଇ ତୋତେ
ଆମ୍ଭେ ପଛ ହୋଇ ଯେ ଯିବୁଂଟି ଦିନା କେତେ ।୩୫
ରାଜାମାନନ୍ତ ସେ ସମ୍ବୋଧନା କରି
ଆମ୍ଭେ ଯାଉଂ ସିନା ବୋଲି ପୁତ୍ରନ୍ତ ତିଆରି ।୩୬
ଶୁଣ ହୋ ମନୁରାୟେ ଚଇତନ କହଇ
ବିଶ୍ୱକୂଟ ମାୟା ସେ ସ୍ରିଜିଲେ ଭାବଗ୍ରାହୀ ।୩୭
ରାଜାମାନଂକଇଂ ସେ ମେଲାଣି ଅକ୍ଷତ
ଜଣେ ଜଣେ ବେଭାର କଲେ ବିଧିମତ ।୩୮
ଆସ୍ଥାନେ ଥାଇ ଆଗ୍ୟାଂ ଦେଲେକ ଧର୍ମ ଯୁଦ୍ଧେଷ୍ଟି
ଦ୍ରିଯୋଧନକଇଂ ହକାରିଣ ଆଣରେ କନିଷ୍ଠି ।୩୯
ସ୍ୱାମୀଂକର ଆଗ୍ୟାଂୟେ ଶିରାଗ୍ରତେ ଘେନି
ଦ୍ରିଯୋଧନକଇଂ ସନ୍ନିଧ୍ୟ ହକାରି ଆଣିଲେ ପାବେନୀ ।୪୦
ଯୁଦ୍ଧେଷ୍ଟି ଦେବ ବୋଇଲେ ଦ୍ରିଯୋଧନେ ଦେଖି
ବାବୁ ଆସ୍ଥାନକୁ ଉଠି ଆସ ମୋହୋର କତିକି ।୪୧
ଆସ୍ଥାନ ଉପରକୁ ଉଠଇ ଦ୍ରିଯୋଧନ
ଦ୍ୱାଦଶ ପାବଚ୍ଛରେ ଗଲାନି ଯେକଇ ଯେ ଯୁଣ ।୪୨

ସଷ୍ଟିକ ପାବଚ୍ଛ ବୋଲି ବଢ଼ାଇ ଦିଲା ପାଦ
ତିନିତାଳ ଗଭୀର ଜଳେ ପଡ଼ିଲା ଅଗାଦ ।୪୩
କରତାଳ ମାରିଣ ହସିଲା ଭୀମସେନ
ବେକେଣ ହାଥ ଦେଇ ଆଣିଲା ସନ୍ନିଧ୍ୟାନ ।୪୪
ପୁଣି ସଭାର ଉପରକୁ ନେଉଛି ମାଗୁତି
ଆସ୍ଥାନ ଦେଖାଇ ବୋଇଲା ବସ ଯା କୁରୁପତି ।୪୫
ଆସ୍ଥାନେ ଦ୍ରିଯୋଧନ ଯାଇଣ ବସିଲା
ପିଠି କତିକି ତାର କନେକ ଖମ୍ଭେକ ଦିଶିଲା ।୪୬
ଖମ୍ଭ ବୋଲିକରି ଯେ ଆଉଜିଲା ପରିମଳେ
ଉତ୍ତାନଶାୟୀ ହୋଇ ପଡ଼ିଲା ଗଭୀର ରାସାନ୍ତଳେ ।୪୭
ପୁଣି କରତାଳ ମାରି ହସିଲା ଭୀମସେନ
କୁରୁଳି ବୋବି ପାଡ଼ିଲେ ଯେ ଯୁବା ରାଜାମାନ ।୪୮
ନାସିକାୟେ ହାଥ ଦେଇ ହସିଲେ ଜଗନ୍ନାଥେ
ଭୀମସେନ ଉଛୁଡ଼ି ଯେ ଆଣିଲା ତୁରିତେ ।୪୯
ଯୁଝେଷ୍ଟି ଦେବ ବୋଇଲେ ବାବୁ କତିକି ମୋର ଆସ
ଯେ ମୋହୋର ଆସ୍ତାନ ଡାହାଣ ପାଖରେ ବସ ।୫୦
ସଷ୍ଟିକର ପୀଢ଼ବୋଲି ବସନ୍ତେଣ ଯାଇଂ
ନବତାଳ ଗଭୀର ମୁହଂ ମାଡ଼ିଣ ପଡ଼ଇ ।୫୧
ବହୁତ ଉପହାସ ଶୁଭିଲା ସଭାରେ
ପୁଣିହିଂ ବାହାଧରି ଓଟାରି ଆଣିଲା ବ୍ରିକୋଧରେ ।୫୨
ଯୁଝେଷ୍ଟି ବୋଇଲେ ବାବୁ ଘେନ ଅର୍ଘ୍ୟ ରତ୍ନମାନ
ଲଇଂ ଦରାଣ୍ଡଇଂ ରାଜା କିଛି ନାହିଂ ପୁଣ ।୫୩
ଶାଢ଼ୀ ବୋଲିଣ ରାଜା ଘେନଇ ଦରାଣ୍ଡି
ତିନି ପାବଚ୍ଛ ତଳେ ପଡ଼ିଲା ମୁହଂ ମାଡ଼ି ।୫୪
ତଳକୁ ମୁଣ୍ଡ ଯେ ବେନି ଗୋଡ଼ ଉପରକୁ
ପୁଣିହିଂ ଉଠନ୍ତେଣ ପଡ଼ିଲା ମାଡ଼ି ତାର ବୁକୁ ।୫୫
କରତାଳ ମାରିଣ ଯେ ଭୀମସେନ ହସିଲା
ବାପର ବାଆ କି ପୁଅକୁ ଲାଗିଲା ।୫୬
କିମ୍ପାଇଂ ଯେମନ୍ତ ହୋଇଲୁ ମାନଗୋବିନ୍ଦ
ଚକ୍ଷୁ ଥାଉ ଥାଉ କିମ୍ପେ ହୋଇଲୁ ତୁ ଅନ୍ଧ ।୫୭
ଜଳ ସମଷ୍ଟିକ ବୋଲି ଯେ ତୁହି ନୁଆରିଲୁ ବାରି
ଅପମାନେ ଦ୍ରିଯୋଧନ ତଳକୁ ତେଇଂପଡ଼ି ।୫୮
ଅଭିମାନ ଘେନି ନ ରହିଲା ଦଣ୍ଡେକଇଂ
ହସ୍ତିନାକୁ ବୋଲି ରାଜା ଗଲା ଦୁଖ ସହି ।୫୯
ଶଲ୍ୟ ଶକୁନି ଯେ ଧୃଶାସନ ସହିତେ
ସଭାରୁ ଚଳିଗଲେ ସକଳ ଅମନାତ୍ୟେ ।୬୦
ବିଜେକଲେ କଉରୋବେ ନିଜ ରାଜ୍ୟ ପୁରୀ
କୁଶଶେଯ୍ୟା କରି ରାଜା ଶୋଇଲା କପାଟ ପାଡ଼ି ।୬୧
ଆସ୍ତାନ ଯେ ଧର୍ମରାଜା କଲେକ ପରିତେଜ୍ୟା
ବାସୁକୀ ନାଗରାଜାକୁ ଆପଣେ କଲେ ପୂଜା ।୬୨
ଅନେକ ଧନ ରତନ ଅଳଂକାର ବିଧି
ତୋହୋ ପ୍ରସାଦେ ଅନନ୍ତ ମୋହୋର ସକଳ କାର୍ଯ୍ୟସିଦ୍ଧି ।୬୩
ଅଷ୍ଟକୁଳା ନାଗନ୍ତ କଲେ ବହୁତ ପୂଜା
ନାଗବଳ ଘେନି ତାତ ପାତାଳକୁ ଯା ଯା ।୬୪
ଚଳଇ ନାଗରାଜା ପାତାଳ ଭୁବନେ
ଯୁଝେଷ୍ଟିଂକି ଅନେକ ପୁରୁଷାର୍ଥ କଲେ ଲଂକାର ବିଭୀଷଣେ ।୬୫
ଅନେକ ଦ୍ରବ୍ୟନ୍ତ ଯେ ଅପୂର୍ବ ରତ୍ନ ଅଳଂକାର
ସମସ୍ତ ସନ୍ୟଂକୁ ଦିଲେକ କଣୟ ଯୋଗାଡ଼ ।୬୬
ଅପୂର୍ବ ବସନ ଝୀନ ଯେ ପତନି
ଲଂକପତି ସନ୍ୟଂକୁ ଅଣ୍ଟିଲା ଭଳି ଘେନି ।୬୭
ଶ୍ରୀ ଜଗନ୍ନାଥ ବୋଇଲେ ହୋ ଯାଅ ଯା ବିଭୀକ୍ଷେଣ
ପୁଣ୍ୟ ଥିଲେ ସେ ଦେଖୁଥାଇ ନାନା ଅପୂର୍ବ କଥାମାନ ।୬୮
ବିଭୀଷଣ ବୋଇଲା ଗୋସାଇଂ ଯେହି ଦ୍ୱାପର ଯୁଗେ
ଦେଖିଲି ନାରାୟଣ ଅନେକ ସଂଯୋଗେ ।୬୯
କଳିଯୁଗେ ଭୋ ଦେବ ଦେଖିବି ତୋତେ କାହିଂ
କେବଣ ଭୁବନକୁ ବୋଲି ମୁଂ ଥିବଇଂ ବାଟ ଚାହିଂ ।୭୦
ଗୋବିନ୍ଦେ ବୋଇଲେ ସଦିଭାବେ କହୁଂ ତୋତେ
ବାରାନିଧି ଉତ୍ତର ତଟେ ଯମନିକ ତୀର୍ଥେ ।୭୧
ନୀଳ ସୁନ୍ଦର ପର୍ବତେ କଞ୍ଚବଟ ତଳେ ମିଳି
ଆମ୍ଭେ ତହିଂ ବିଜେ କରିବୁ ବଉଦ୍ଧ ରୂପ ଧରି ।୭୨
ମିଥୁନ ମାସ ଶୁକଳ ପକ୍ଷ ଦ୍ୱୁତୀୟାର ତିଥି
ପୁନର୍ବସୁ ନକ୍ଷତ୍ର ସେ ଦିନର ପାହାନ୍ତି ।୭୩
ସେ ଦିନରେ ରଥଯାତ୍ରା କରିବୁ ଆମ୍ଭେ ଖେଡ଼ି
ଦକ୍ଷିଣ ମୂରତି ବିଜେ କରିବୁଂ ବଳଗଣ୍ଡି ।୭୪
ଅର୍ଦ୍ଧଘଡ଼ି ପରିଯନ୍ତେ ଆମ୍ଭେ ସେ ଦିନ ହୋଇବୁଂ ଦକ୍ଷିଣ ମୂରତି
ଉତ୍ତର ଦ୍ୱାରେ ତୋର ତୁଝିବ ଜଗତୀ ।୭୫
ଆମ୍ଭେ ଚାହିଂଥିବୁ ନୀଳସୁନ୍ଦର ପର୍ବତେ
ଲଂକା ଗଡ଼କୁ ଦୃଶ୍ୟ ହୋଇବୁଂ ଆମ୍ଭେ ତୋତେ ।୭୬

ଯାଅ ଯା ବିଭୀଷଣ ବୋଲି ଆଗ୍ୟାଂ ଦିଲେ ସ୍ୱାମୀ
ଦୃଷ୍ଟି ପରିଯନ୍ତେ ବିଭୀଷଣ ହୋଇଲା ପରିମାଣି ।୭୭
ଶ୍ରୀ ଜଗନ୍ନାଥେ ବାହୁଡ଼ିଲେ ଯମୁନା ନଦୀ କୂଳୁଂ
ଦଣ୍ଡ ଘେନି ବିଭୀଷଣ ଚଳଇ ହେଳୁଂ ହେଳୁଂ ।୭୮

* * * * * * * *

ବଦୟନ୍ତି ଅଗସ୍ତି ଶୁଣ ହୋ ଯୋଗେଶ୍ୱର
ମହାସଭା ସମାପତ ହେଲା ରାଜୁସି ଯାଗର ।୭୯
ଅନେକ ସମ୍ପଦେଣ ସେ ଯେ ଗଲେ ରାଜାମାନେ
ଯେକାମାତ୍ର ଦ୍ରିଯୋଧନ ସଭାରେ ପାଇଲା ଅପମାନେ ।୮୦
ଦଇବେଣ ଯେବଣ ସଭା ଭିଆଇଲେ ବାସୁଦେବେ
ମହାମାୟା ସଭା ଦିଲା ମୟ ନାମେଣ ଦାନେବ ।୮୧
ଅବାଡ଼େ ଚିତ୍ର ଲେଖନ ଶୂନ୍ୟ ଖମ୍ବ ଚାଳ
ସଷ୍ଟିକର ସଙ୍ଗତେ ଘଟଣ କଲା ଜଳ ।୮୨
ଭଗତ ଲୋକଂକୁ ତହିଂ ଦିଶଇ ଆକାର
ବାରଣ ନ ଯାଇ ସେହୁ ଆବର ଅଣାକାର ।୮୩
ଶତ୍ରୁ ଗଳ କଣ୍ଟକ ଅଟଇ ସେ ସଭାର ନାମ
ଚକ୍ରକୂଟେ ଯାହା ସ୍ରିଜିଲେ ଶ୍ରୀପୁରୁଷୋତ୍ତମ ।୮୪
ଯୁଝେଷ୍ଟି ଦେବଂକ ଯେ ଅଭଗତ ହୃଦଗତେ
ସେ ସଭା ତାହାକୁ ଦୃଶ୍ୟ ନୋହଇ କଦାଚିତେ ।୮୫
ଯୁଝେଷ୍ଟି ଦେବ ଯେ ଦ୍ରିଯୋଧନକୁ ରାଇଲେ ସଦିଭାବେ
ମନେ କିନ୍ତୁ କରି ଉଠିଲା କୁରୁରାଜ ଦେବେ ।୮୬
ନିକଳଂକ ଚିତ୍ତେ ସେ ଯେ ନ ଗଲା ସଭାକୁ
ଅନେକ ଝିଙ୍ଗାସି ପାଇଲା ସେ ଆସ୍ତାନେ ଉଠିବାକୁ ।୮୭
ବସିତେ ନ ଜାଣି ସେ ପାଇଲା ବହୁତ ଲଜ୍ଜା
ଅନ୍ତେଶ୍ୱର ପୁରେ ନୃପତି ପାଡ଼ି ଶୁତିଲା କୁଶଶଯ୍ୟା ।୮୮
ଆହୋ ଭୀଷ୍ମ ଦ୍ରୋଣ କର୍ଣ୍ଣ ଅଶତ୍ତମା ଭୁରିସର୍ବା ସହିତେ
ସଭାରୁ ଉଠିଗଲେ ଅମନାତ୍ୟ ପ୍ରୋହିତେ ।୮୯
ଚନ୍ଦ୍ରଶାଳା ପୁରେ ଶୟନ ମାନଚକ୍ରବ୍ରତୀ
ଦ୍ୱାରେଣ ପ୍ରବେଶ ହୋଇଲେ ସକଳ ସେନାପତି ।୯୦
କର୍ଣ୍ଣ ମହାରଥୀ ଦ୍ୱାରେଣ ଦିଅଇ ଡାକ
ଶୁଣ ଦେବ ମହାରାଜା କାହାକୁ ଯେଡ଼େ ଶୋକ ।୯୧
ତୁ ଦେବ ସୟଳ ସଂସାର ଜଗହିତା
ମହାଭିଗ୍ୟଂ ପଣ୍ଡିତ ନାଥ କାହାକୁ ତୋର ଚିନ୍ତା ।୯୨
ଦ୍ରିଯୋଧନ ବୋଇଲା ମଇତ୍ର ତୁ ମୋହୋର ସୁହୃଦେ
ପୁଣ୍ୟେଣ ପ୍ରାପତ ତୋତେ ପାଇଲଇଂ ମୁହିଂ ହାଦେ ।୯୩
ଆବର ସମକ୍ଷ ମୋତେ ମାତୁଳ ଶକୁନି
ଦୁହିଂକର ପ୍ରସାଦେ ସାଧିଲି ମେଦିନୀ ।୯୪
ଯେବଣ ସମ୍ପଦମାନ ଅର୍ଜିଲେ ପାଣ୍ଡବେ
ଦେବକଇଂ ଦୁର୍ଲ୍ଲଭ ଯେ ମାନବକଇଂ ଅସମ୍ଭବେ ।୯୫
ଚଉବିଂଶ ଦିବସ ପରିଯନ୍ତେ ହୋଇଲା ମହାଯାଗ
ଦୁଖୀ ଦରିଦ୍ର କେହୁ ନୋହିଲେ ମହାଭାଗ ।୯୬
ଅନେକ କଷଣ କଲୁ ଧନ ନାଶିବାର ଅର୍ଥେ
ତେମନ୍ତେହେଂ ଜିଣି ନୁଆରିଲୁ କଦାଚିତେ ।୯୭
ଶିଶୁପାଳ ନାଶଗଲା ଆମ୍ଭର ବିଶ୍ୱଆସେ
ଶାଲୁହିଂ ଯାଇଅଛି ଆମ୍ଭର ପ୍ରତିଆଶେ ।୯୮
କେବଣ ଉପାୟ ସେ କରିବ ନ ଜାଣି
କରଇ ସନ୍ତାପ ସେ କୁରୁକୁଳ ମଣି ।୯୯
ନାରାୟଣ ସମକ୍ଷ ଯେ ଅଟଇ ତାହାକୁ
ଅସଂଖ୍ୟ ଚରିତ ସଭା ଅଗୋଚର ଦେବଂକୁ ।୧୦୦
ଅମର ବାରସ୍ୱତୀ ଜିଣି ଦେଖିଲି ଯେହାର ପୁରୀ
ଦେବତା ସମାନେ ତହିଂ ଦେଖିଲି ନର ନାରୀ ।୧୦୧
ଅନେକ ଧନ ଧଂସନ କଲଇ ମୁହିଂ ରାଗେ
କେବଣ ମାୟାୟେ ଭଣ୍ଡାର ପୂରୋଇ ସେହୁ ବାଗେ ।୧୦୨
ଦେଉଂଣ ନ ସରଇ ଲକ୍ଷ ଲକ୍ଷ ଧନ
ଗୁଣେ ଦିଲେ ବେନିଗୁଣ ହୁଅଇ ସମ୍ପୂର୍ଣ୍ଣ ।୧୦୩
ଯେଥିର ସନ୍ଦେଶ କେହି ବୁଝି ନୁଆରିଲୁ
ବଳ ବୀର୍ଯ୍ୟ ଥାଉଂ ଆମ୍ଭେ ହତ ଯେ ହୋଇଲୁ ।୧୦୪
ସଭାୟେଣ ଭୀମା ମୋତେ ଯେତେ କୃତ୍ୟ କଲା
ଜୀଇବାଉଂ ମରଣ ମୋତେ ଶତେ ଗୁଣେ ଭଲା ।୧୦୫
ଆପଣାର ଶରୀରେଣ ବଳ ପ୍ରାଣ ଥାଆନ୍ତେ
ସାବତର ବିଭୁତି ମୁଂ ଦେଖିବି କେମନ୍ତେ ।୧୦୬
ବିଷ ଖାଇ ମରିବି ଆତ୍ମଘାତକୁ ବଡ଼ ଭୟେ
ପ୍ରାଗେ ଝାସିବି ନୋହିଲେ ଦହନ କରିବି କାୟେ ।୧୦୭
ଦିଯୋଧନର ବିରସ ଦେଖିଣ ବୋଲଇ ଶକୁନି
ଯେହେତ୍ନେକ ଛାର କଥାକୁ ତୁ ଯେଡ଼େ ଅଭିମାନୀ ।୧୦୮
ବାବୁ ତୋହୋର ନ ସହିଲେ ମୋହୋର ଯେମନ୍ତ ଅଛି ବୁଦ୍ଧି
ଘଡ଼ିକରି ମଧ୍ୟେ ହରିବି ପାଣ୍ଡବଂକର ସମ୍ପଧି ।୧୦୯

ସଞ୍ଚୟେ କରି ରାଜା ତୋହୋର ନ ସହିଲେ
ପାଣ୍ଡବଂକର ସମ୍ପଧି ଯାକ ହରି ପାରଇ ମୋହୋର ବଳେ ।୧୧୦
ଶକୁନି ମୁଖର ଯେସନେକ ବଚନ ଶୁଣିଣ କୁରୁରାଣ
କପାଟ ଫେଡ଼ିଣ ରାଜା ବାହାର ତତକ୍ଷଣ ।୧୧୧
ଶ୍ରୀଭୁଜେ ଶକୁନିକି କରଇ ରାୟେ କୋଳ
ହୃଦେ ଲମ୍ବାଇଲା ନେଇ ଚଉସରା ରତ୍ନମାଳ ।୧୧୨
ବେଳେକ ମାତୁଳ ହୋ ତୋହୋର ପରସାଦେ
ଭୀମକୁ ବିଷଲଡୁ ଖୁଆଇଲୁ ହାଦେ ।୧୧୩
ଦୁଜେଣ ଜଉଘର ଭିଆଇଲୁ ମହାକୂଟେ
ଜଉ ସଜଳସ ଗୁଆଘୃତ ଛଣପଟେ ।୧୧୪
ତିଜେଣ ମେଲି ଦିଲୁ ଯମୁନାର ଜଳେ
ନାଗୁଣୀ ଜୀଆଂଇଲେ କେଣ ପୁଣ୍ୟବଳେ ।୧୧୫
ତୁହି ସେ ଅଟୁ ମନ୍ତ୍ରୀ ମୋହୋର ପ୍ରାଣ ହିତ
ତିନିବେଳ ମରିବାଉଂ ପାଣ୍ଡବେ ପାଇଲେ ଜୀବିତ ।୧୧୬
ଯେବେ ଚତୁର୍ଥ ବେଳ ଜିଣିମା କେମନ୍ତେ
କେବଣ ଉପାୟେ ଅଛି କହକିନା ମୋତେ ।୧୧୭
ଶକୁନି ବୋଇଲା ଯେବେ ସ୍ନାହାନ ଭୋଜନ ତୁ କର
ଉପାୟେ ଶତ୍ରୁ ଜିଣିବା କରିଣ ବିଚାର ।୧୧୮
ତୁ ତାହାନ୍ତ ପଞ୍ଚଭୂତେ କରିଥିଲୁ ଅଭିନ୍ନ
ତେଣୁ ସେ ଯେଡ଼େକ ସମ୍ପଦ ଅରଜିଲେ ପଣ୍ଡୁନାନ ।୧୧୯
ଶକୁନି ବୋଇଲା ଧୁଃଶାସନକୁ ରାଇ
ରାଜାକଇଂ ସ୍ନାହାନ ତୁ କରାଅ ବେଗେ ନେଇ ।୧୨୦
ଆଗ୍ୟାଂ ପ୍ରାମାଣେ ଯେ ଗଲା ଧୁଃଶାସନ
ମାନଗୋବିନ୍ଦ ରଜାକୁ ଯେ କରାଇଲେ ସ୍ନାହାନ ।୧୨୧
ସ୍ନାହାନ ସାରିଣ ରାଜା ମୁଣୋହିରେ ବିଜେ
ମନର ବିକୃତେ ଅନ୍ନ ନ ରୁଚଇ କୁରୁରାଜେ ।୧୨୨
ଆଚୋବନ ସାରି ରାଜା କ୍ରପୂର ତାମ୍ବୋଳ ଭୁଞ୍ଜି
ଶକୁନିର ବୋଲକୁ ସେ ଯେକଲୟେ କରି ଭଜି ।୧୨୩
ବିଜୟେ ମାନଗୋବିନ୍ଦ ଚନ୍ଦ୍ରଶାଳା ପୁରେ
ଶକୁନି ହକାରି ରାଜା ବସିଲା ଯେକାନ୍ତରେ ।୧୨୪
କହିବୁଟି ମାତୁଳ ତୋହୋର ବୁଦ୍ଧିଗୋଟି
ହୋଇବି ତ୍ରିପୁତି ମୋର ମନୁ ଭ୍ରାନ୍ତି ଯାଉ ଫିଟି ।୧୨୫
ଶକୁନି ବୋଇଲା ଶୁଣ ହୋ ମାନଗୋବିନ୍ଦେ
ଯୁଝେଷ୍ଟିଂକର ନିୟମ ମୁଂ କହଇ ଶୁଣ ହାଦେ ।୧୨୬
ଆହୋ ପ୍ରାତିଭାବେ ଯେ ଯାହା କହଇ ତାହାଂକୁ
ଅବଶ୍ୟ ଦିଅଇ ସେ ତାହା କହଇ ତୁମ୍ଭଂକୁ ।୧୨୭
କୂତର ଶୁଦ୍ଧେଣ ଯେ ହାରଇଟି ଯାହାଂକୁ
ରାଜ୍ୟଭାର ସମ୍ପଦ ଘେନି ବାହାର କରି ତାକୁ ।୧୨୮
ଆସ୍ଥାନେ ବିଜେ କରାଇ ସନ୍ନିଧ୍ୟ ତାହାନ୍ତ ବସା
ଯୁଝେଷ୍ଟିଂକର ତୁଲେ ତୋତେ ଖେଳାଇବା ପଶା ।୧୨୯
ମୋହୋର ଖେଳନ୍ତେ ସେ ହାରିବେ ଯୁଗତେ
ଯୁଝେଷ୍ଟିଂକର ସମ୍ପଦ ଆମ୍ଭେ ହୋ ହାରିବା ଯେହିମତେ ।୧୩୦

**

## ୫୨. ପଶାଖେଳ ଓ ଦ୍ରୌପଦୀଙ୍କ ବସ୍ତ୍ରହରଣ

### ପଶାଖେଳ ଓ ସଭାକୁ ପାଣ୍ଡବଙ୍କ ଆଗମନ

ଯେଥୁ ଅନନ୍ତରେ ସେ କପଟ ପଶା ଖେଡ଼
କୂଟ ଭିଆଇବ ସେ ଶକୁନି ମହାମୂଢ଼ ।୧
ଶୁଣ ହୋ ମନୁରାୟେ ବଦୟନ୍ତି ଅଗସ୍ତି
କପଟା ପଶା କରିଛି ଶକୁନି ମହାମନ୍ତ୍ରୀ ।୨
କୁମ୍ଭ ଋଷିନନ୍ଦନ ଚରଣ ମମ ହୃଦେ
କହିବି ମହାଭାରଥ ତୋହୋର ପରସାଦେ ।୩
ବହୁତ ବିନୋୟୀ ଯେ ବୋଇଲା ଫାଲଗୁନି
ତୋହୋର ପ୍ରସାଦେ ନାଥ ଧଇଲି ମେଦିନୀ ।୪
ଅର୍ଜୁନକୁ ସମାର୍ଜନା କରିଣ ଦେବରାଜେ
ଦ୍ୱାରିକାକୁ ନାରାୟଣ ଗରୁଡ଼ ପିଠିରେ କଲେ ବିଜେ ।୫
ଯୁଝେଷ୍ଟିଙ୍କ ଛାମୁରେ କହିଲେ ଶ୍ରୀବଛି
ଆଗ୍ୟାଂ ଦେବ ମୁକୁ ମୁଂ ଦ୍ୱାରିକାକୁ ଯାଉଅଛି ।୬
ଯୁଝେଷ୍ଟିଙ୍କ ଆଗ୍ୟାଂ ପାଇ ଚଳନ୍ତି ଦେବହରି
ବିଜୟେ ଜଗନ୍ନାଥ ଦ୍ୱାରାବତୀ ପୁରୀ ।୭
ଭୀମ ଅରଜୁନ ଯେ ନକୁଳ ସହଦେବ
ଜଗନ୍ନାଥଙ୍କୁ ପାଛୋଟି ଗଲେ ଚାରି ଯେ ପାଣ୍ଡବ ।୮
ଯୁଝେଷ୍ଟି ଦେବ କହିଲେ ଯେ ଦିବ୍ୟ ବାକି
ଚାଲ ଆମ୍ଭେ ଯିବା ଧୃତିରାଷ୍ଟ୍ରଂକ ତହିଂକି ।୯
ମିଥୁନ ମାସ ଶୁକ୍ଳପକ୍ଷ ତୃତୀୟା ବୁଧବାର
ଅଶ୍ଳେଷା ନକ୍ଷତ୍ରକୁ ଭୋଗ ଦଣ୍ଡ ତେର ।୧୦
ତେର ଦଣ୍ଡ ଉତାରେ ମଝାସିଂହରାଶି
ଯିବାପାଇଂ ଅନୁକୂଳ ବିଚାରନ୍ତି ବସି ।୧୧

ବିଷ୍ଟିନାମେ କରଣ ଦ୍ୱାଦଶ ଦଣ୍ଡ ପରିଯନ୍ତେ
ନାଗ ନାମେ ଯୋଗ ସମ୍ପୂର୍ଣ୍ଣ ଯୁଗତେ ।୧୨
ନକ୍ଷତ୍ରେ ଯୋଗ୍ନୀ ଯେ ନାରାୟଣୀ ମୂର୍ତ୍ତି
ଯୁଧେଷ୍ଠି ଦେବଂକ ବିଜୟ କାଳେ ଅଗ୍ରତେଣ ସ୍ଥିତି ।୧୩
ଯୁଧେଷ୍ଠି ଦେବ ସଜ ହୋଇଲେ ଧୃତରାଷ୍ଟ୍ରକଇଂ ଦେଖିବାକୁ
ଭୀମ ଅର୍ଜ୍ଜୁନ ନ ଜାଣନ୍ତି ଯେହାଂକର ଯିବାର ବେଳକୁ ।୧୪
ଶ୍ୱେତ ହସ୍ତୀ ଗୋଟିଏ ଆରୋହି ଯେ ଯୁଧେଷ୍ଠି ରାଜନ
ବିଜୟେ ଧର୍ମ ନନ୍ଦନ ଯାଇଂ ହସ୍ତିନା ଭୁବନ ।୧୫
ନକୁଳ ସହଦେବ ଭୀମସେନ କିରୀଟୀ
ଯେମାନେ ଯାଇଛନ୍ତି ଜଗନ୍ନାଥକଇଂ ପାଛୋଟି ।୧୬
ବିଜୟେ ଧୃତରାଷ୍ଟ୍ର ଚନ୍ଦ୍ରଶାଳା ମନ୍ଦିରେ
ଯୁଧେଷ୍ଠି ଦେବେ ବିଜୟେ କଲେ ସିଂଘଦ୍ୱାରେ ।୧୭
ମହାନାଗ ପିଠି ତେଜ୍ୟା କଲେ ଧର୍ମରାଜା
ଶ୍ରୀଚରଣେ ଯାଇଂ ସେବା କଲେ ଧର୍ମର ତନୁଜା ।୧୮
ଧୃତିରାଷ୍ଟ୍ରର ଚରଣେ ଜଣାନ୍ତି ସଞ୍ଜୟେ
ଯୁଧେଷ୍ଠି ଦେବ ତୋହୋର ଛାମୁରେ ବିଜୟେ ।୧୯
ଅମ୍ବିକାର ନନ୍ଦନ ଦରାଣ୍ଡଇ ଚଉକତି
ବାବୁ ସୋମବଂଶର ସାଧୁ ମୋହୋର ଯେ କୁମର ଉତପତ୍ତି।୨୦
ମୁହିଂ ମହାପାତକୀ ଅସାଧୁ ପଣେ ଅବତରି
ମୋହୋର ପୋୟେ ହୋଇଲେ ଅଶେଷ ଦ୍ୱନ୍ଦକାରୀ ।୨୧
ବାବୁ ତୋହୋର ପ୍ରାୟେକ ପୁତ୍ର ଜାତ ହୋଉ
ଦ୍ରିଯୋଧନ ପ୍ରାୟେକ ଶତେ ପୁତ୍ର ନୋହୁ ।୨୨
କର୍କଶ ମଧୁ ପିଙ୍ଗଳ ପ୍ରକୃତି ତାହାର ନଷ୍ଟ
ସେ ପୁତ୍ର ଥିଲେ ବାବୁ ବଂଶକୁ ବଡ଼ କଷ୍ଟ ।୨୩
ଯଦ୍ୟପି ପୁତ୍ରେ ମୋହୋର ହୋଇବେ ମନ୍ଦଭାଗୀ
ତୁହି ସେ ଧର୍ମଶୀଳ ଦୋଷ ତାଙ୍କର କରିବୁ ପରିତ୍ୟାଗୀ ।୨୪
ବାବୁ ପାପକୁହିଂ ପୁଣ୍ୟ ସହିବ କି ସର୍ବକାଳେ
ପାପଇଂ ନାଶ ଯାଇଟି ପୁଣ୍ୟ ବର୍ଦ୍ଧୃତ ବେଳେ ।୨୫
କଦାଛିତେ ବାବୁ କୋପ ନ କରିବୁ ଦ୍ରିଯୋଧନକୁ
ଯେବେ ଚଳିଯାଅ ବାବୁ ହସ୍ତିନା ସଭାକୁ ।୨୬
ଯୁଧେଷ୍ଠି ଦେବେ କହିଲେ ତାତ କହିଲେ ନ ବିଚାରି
ଦ୍ରିଯୋଧନର ସହୋଦ୍ର ପଣକୁ ମୋତେ ଭୀମା ନୋହେ ସରି।୨୭
ସ୍ୱାମୀ ଯେବଣ ଭଣ୍ଡାର ମୋର ସମ୍ଭାଳି ମହାଯୋଗେ
ଧନେ କଳନ୍ତା ନୋହିଲା କେହୁ ମୋତେ ଦ୍ରିଯୋଧନର
ଅନୁରାଗେ ।୨୮
ଭୋ ତାତ ଲକ୍ଷେ ରାଜାଂକର ଯେତେ ଦେଖା ଦରଶନି ଧନ
ଭଣ୍ଡାରେ ପୂରୋଇ ରାତ୍ର ଦିବସେ ଦିୟେ ଦାନ ।୨୯
କେମନ୍ତେ ହେଂ ସୁଝି ପାରି ସେ କାଳର ଯେତେଗୁଣ ।୩୦
ଭୋ ତାତ ଚକ୍ଷୁ ହୀନ ପଣେ ଦୁର୍ବୁଦ୍ଧି କଥା କହୁ
ଦ୍ରିଯୋଧନ ପରାୟେକ ସହୋଦ୍ର ମୋତେ ସର୍ବକାଳେ ହୋଉ।୩୧
ଧୃତିରାଷ୍ଟ୍ର ବୋଇଲା ବାବୁ ନିସ୍ତରିଲି ନିସ୍ତିରିଲି ମୁହିଂ
ତୋହୋର ତହିଂ ମୋହୋର ପୁତ୍ର ଅଛି ଯେଡ଼େ ଯଶ ଉପୁଜାଇ ।୩୨
ଅନେକ ପ୍ରଶଂସା କଲେ ତାଂକୁ କୁରୁରାୟେ
ସଭାର ଆସ୍ଥାନେ ଯାଇଂଣ ଯୁଧେଷ୍ଠି ଦେବ ବିଜୟେ ।୩୩
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଶକୁନି ଭୂରିସର୍ବାଂକୁ
ନମସ୍କାର କଲେ ଦେବ ଗୁରୁଜନ ମାନଂକୁ ।୩୪
ସଭାର ମଧ ସ୍ଥାନେ ଦେବ ହୋଇଲେକ ଉଭା
ଦ୍ରିଯୋଧନ ଛାଡ଼ି ଆଉସର୍ବେ କଲେ ସେବା ।୩୫
ଦୁଜ ଖମ୍ବ ମାଡ଼ି ବସି ଅଛଇ ଶକୁନି
ଆପଣେ ଆପଣେ ପାଡ଼ଇ ସେ ପଶାକାଠି ଘେନି ।୩୬
ପଶା ଦେଖି ଯୁଧେଷ୍ଠି ବସିଲେ ତାର ଛାମୁ
ବୋଇଲେ ଯୁଧେଷ୍ଠି ପାଶ ଖେଳିବାକି ମାଂମୁ ।୩୭
ଅଣ୍ଟିରୁ ଆପଣେ ଯେ କାଢ଼ିଲେ ଖଡ଼ି ଗୋଟିଏ
ପଶା କୋଠି କାଟନ୍ତି ତହିଂ ଧର୍ମ ଯେ ଯୁଧେଷ୍ଠି ।୩୮
ଦ୍ୱାଦଶ କୋଠି ତିନି ଛକ ଚରଣ ଶିର
ବଇଜୟନ୍ତି ମାଳା ଯେ ଲେଖନ୍ତି ଯୁଧେଷ୍ଠିର ।୩୯
ହରଷେଣ ମହାରାଜା କାଟିଲେ ଯେକେବେଳେ
ଦେଖିଣ ଆଶ୍ରିର୍ଯ୍ୟ ଯେ ହୋଇଲେ ସକଳେ ।୪୦
ଦ୍ରିଯୋଧନ ବୋଇଲା ମାତୁଳ ହୋ ପଛଘୁଞ୍ଚ
ଯୁଧେଷ୍ଠିଙ୍କର ତୁଲେ ମୋହୋର ଖେଡ଼ ସଞ୍ଚ ।୪୧
ପୂର୍ବେଣ ଯୁଧେଷ୍ଠି ଯେ ପଚ୍ଛିମେ ଦ୍ରିଯୋଧନ
ମଧ ପାରୁଷେ ବସିଲା ଶକୁନି କୂଟ ଗ୍ୟାନ ।୪୨
ମାନଗୋବିନ୍ଦ ମୁଖ ଚାହିଂ ବୋଲନ୍ତି ଧର୍ମରାଜ
ଖେଳକୁ କିସ ବାବୁ କରିବା ପରିଜା ।୪୩
ଯୁଧେଷ୍ଠିଙ୍କ ବଚନେ ମାନଗୋବିନ୍ଦ ଯେ ପୁଛ
ମୋହୋର ପରିଜା ହୋଇଲା ଶରୀରେ ଯେତେ ଅଳଂକାର ଅଛି ।୪୪
ଆଭରଣ କାଢ଼ିଣ ଥୋଇଲା ରାୟେ ଭୂମି
ଦେଖି ବିଚାରନ୍ତି ଧର୍ମରାୟେ ସ୍ୱାମୀ ।୪୫
ଆପଣା ଶରୀରେ ଥିଲା ଯେତେକ ଅଳଂକାର
ଶରୀରୁ କାଢ଼ି ସେ ଥୋଇଲେ ଦେବ ଯୁଧେଷ୍ଠିର ।୪୬

ସମସ୍ତ ଅଳଂକାର ମାନ ଥୋଇଲେ ଭୂମିଗତ
ଯୁଝେଷ୍ଟି ଦେବେ ବୋଇଲେ ଯେହି ସେ ଯୁଗତ ।୪୭
ରାଜାୟେ ରାଜାୟେ ଯୁଗତେ ଖେଳେ ପାଢ଼ କରି
ତତକ୍ଷଣେ ଦେଇଟି ଯାହା ପଶାରେଣ ହାରି ।୪୮
ଦ୍ରିଯୋଧନ ବୋଇଲା ହୋ ଯେହି ଯୁଗତ
ଯୁଝେଷ୍ଟି ଦେବେ ବୋଇଲେ ଯାହା ମୋହୋର ସନମତ ।୪୯
ଦ୍ରିଯୋଧନ ବୋଇଲା ଶକୁନିକୁ ଚାହିଂ
ସବୁ ଧର୍ମ ମାତୁଳ ଅଛଇ ତୋର ତହିଂ ।୫୦
ଆମ୍ଭ ବେନି ତୁଲ କରିତୁ ପାଉଥିବୁ ପଶା
ଓହୋକୁଳକୁ ୟେକ ତୁଲ ହୋଇବ ମନୀଷା ।୫୧
ଯେ ସେ ମଧପାତ୍ର ପ୍ରତକ୍ଷେ ଅଟଇ ସେ ଧର୍ମ
ତୋହୋର ପାଡ଼ିଲେ ହାରଜିଣ ଯେହ୍ନେକ ଆମ୍ଭର କର୍ମ ।୫୨
ପାଡ଼ ହୋ ଶକୁନି ତୁ ଗୋରେଖ ସୁମରି
ବେନିକୁଳ ଜିଣୁ ଆମ୍ଭେ ଯେମନ୍ତେ ନ ହାରି ।୫୩
କୂଟ ପଶା ୟେକ ଘେନିଣ ନରପତି
ସୁମରଇ ଶକୁନି ଗୋରେଖ ମହାଯତୀ ।୫୪
ବେନି ଲକ୍ଷ ଅମୂଲ୍ୟ ରତ୍ନ ଥିଲା ଦ୍ରିଯୋଧନର ହୃଦେ
ଧାତିକାରେ ପୀଢ଼ କଲା ରାଜା ମାନଗୋବିନ୍ଦେ ।୫୫
ସହସ୍ରେକ ରତ୍ନ ଯୁଝେଷ୍ଟିର ତହିଂ ଥିଲା ।
ତହିଂକି ତତୁଲ୍ୟ ଯେ ମାନଗୋବିନ୍ଦ ସହିଲା ।୫୬
ପାଡ଼ଇ ଶକୁନି ଯେ ସୁମରଇ ଜାହ୍ନବୀ
ମମ ପିତାମହ ଯେ ପୂର୍ବେଣ ତୋତେ ସେବି ।୫୭
ପିତାକୁ ମାଇଲା ମୋର ଦ୍ରିଯୋଧନ ପଥର ଘରେ ଭରି
ତହିଂକି କାରଣ କରିବାକୁ ମୁଂ ନୋହଇ ତ ସରି ।୫୮
ତୋହୋର ଆଗ୍ୟାଂୟେ ମୁଂ ପାରଇ ଅବା ଜିତି
ବଂଶକଇଂ କାରଣ ଗୋ କରାଇବି ଆଜ ଶାନ୍ତି ।୫୯
ଆଜର ପଶାରେ ଯୁଝେଷ୍ଟି ହାରଇ ଯେମନ୍ତେ
ରାଜ୍ୟଭାର ସିଂହାସନ ଦ୍ରିଯୋଧନ କଇଂ ଦିଆଇବି ଯେମନ୍ତେ।୬୦
କଉରୋବଙ୍କ ହସ୍ତେ ପାଣ୍ଡବନ୍ତ ଦିଆଇବି ଶାସ୍ତି
କେଶ ଆକର୍ଷଣ ଆଜ କରାଇବି ଦ୍ରୋପଦୀ ।୬୧
ସେ ପାଞ୍ଚାଳୀର ଜିଘାସେ କୋପିଣ ଭୀମସେନ
ତେବେ ସିନା ନାଶ ଯିବେ କଉରୋବ ମାନ ।୬୨
ତୁ ଦେବ ପରମ ପଣ୍ଡିତ ଅଟୁ ହୋ ଗୋରେଖ
କାଠି ହସ୍ତେ ଘେନି ବୋଲେ ମୋତେ ହୋଇବା ସମକ୍ଷ ।୬୩
ପାଡ଼ଇ ମନ୍ତ୍ରୀବର ବୋଲଇ ଜିତଜିତ
ପ୍ରଥମ ପୀଢ଼ ଯେ ପାଡ଼ିଲା କୁରୁନାଥ ।୬୪
ପାଞ୍ଚ ଯେ ଯୁଝେଷ୍ଟି ଚାରି ଯେ ଧୃତିରାଷ୍ଟ୍ରି
ପାଡ଼ନ୍ତେ ପଡ଼ିଲା ଯେ ଚାରି ପୀଢ଼ ଗୋଟି ।୬୫
ଦ୍ରିଯୋଧନ ବୋଇଲା ଖଡ଼ୀ ଦିଅ ମୋତେ
ମୋହୋର ପୀତ ଯେ ହୋଇଲା ଯୁଗତେ ।୬୬
କଳିକାଳ ସୁମରି ପାଡ଼ିଲା ମହାମନ୍ତ୍ରୀ
ପ୍ରଥମ ଦାନ ଯେ ପଡ଼ିଲା ଚଉକତି ।୬୭
ପ୍ରଥମ ପୀଢ଼କ ଯେ ହାରିଲେ ଯୁଝେଷ୍ଟି
ଅଳଂକାରମାନ କାଢ଼ି ଆଣିଲା ଧୃତିରାଷ୍ଟ୍ରି ।୬୮
ଦ୍ରିଯୋଧନ ବୋଇଲା ମୋହୋର ମୁକୁଟ
ତିନିଙ୍କି ତୁଲ କରି ସର୍ବ ରତ୍ନ ଘଟ ।୬୯
ପାଡ଼ ପାଡ଼ ମାତୁଳ ବୋଲିଣ ବୋଇଲା
ପାଡ଼ନ୍ତେ ବେନି ଦାନ ଚଉକା ପଡ଼ିଲା ।୭୦
ଦୁତୀୟ ପୀଢ଼ ଯେ ହାରିଲେ ଯୁଝେଷ୍ଟି
ଅଳଂକାରମାନ ସବୁ ନିଲେ ଧୃତିରାଷ୍ଟି ।୭୧
ଦ୍ରିଯୋଧନ ବୋଇଲେ ତୁମ୍ଭ କର୍ଣ୍ଣର କୁଣ୍ଡଳ
ତହିଂକି କଛ ଯେହାର ଯେ ରତ୍ନମାନ ସକଳ ।୭୨
ଦୁଇରାଜାଙ୍କର ଯେତେକ ଭୂଷଣ
କୁଣ୍ଡଳକୁ କଛ ଯେ କଲାକ କୁରୁରାଣ ।୭୩
ହାରନ୍ତେ କୋପ ଯେ କଲେ ଧର୍ମବାଳ
କର୍ଣ୍ଣରୁ କାଢ଼ିଲେ ଦେବ ଅମୃତ କୁଣ୍ଡଳ ।୭୪
ସତ୍ୟଯୁଗେ ଯାଗ କଲେକ ଯଯାତି
ଚନ୍ଦ୍ର ଦେବତା ଦିଲେ କୁଣ୍ଡଳ ବେନି ମୂର୍ତ୍ତି ।୭୫
ସେ କୁଣ୍ଡଳ ଯେତେବେଳ ଯାୟେ ଥାଇ କର୍ଣ୍ଣେ
ନିଶି ଦିବସ ପ୍ରାୟେକ ଦିଶଇ ବିଦ୍ୟମାନେ ।୭୬
ସେ କୁଣ୍ଡଳ କର୍ଣ୍ଣେ ଥିଲେ ନ ପଡ଼ଇ ରୋଗ ବ୍ୟାଧି
ନାନାଦି କ୍ଳେଶକୁ ସେ ପରମ ମଉଷଧି ।୭୭
ଯେହି ସୋମବଂଶେ ନୃପତି ମରୁତ
ତାହା ତହିଂ ଥିଲା କୁଣ୍ଡଳ ଯୁଗ ସାତ ।୭୮
ଯୁଝେଷ୍ଟି ଦେବଙ୍କର ମହାଯାଗ କାଳେ
ମରତ ରାଜା ଦିଲେ ଯୁଝେଷ୍ଟିଙ୍କୁ ଧର୍ମ ବଳେ ।୭୯
ସେ କୁଣ୍ଡଳ କର୍ଣ୍ଣେ ନ ଗଛଇ ମୃତୁ
ଅଷ୍ଟ ଧାତୁ ଝରଇ ମଉଷଧି ପରମ ହେତୁ ।୮୦

ପଶାର କୁତୁହୋଳେ ଦେବ ଧର୍ମବାଳେ
ସ୍ତ୍ରୀକରେ ପାଡ଼ କଲେ ବେନି ଅମୃତ କୁଣ୍ଡଳେ ।୮୧

ଜିତ ଜିତ ବୋଲି ଯେ ପାଡ଼ିଲା ଶକୁନି
ପଞ୍ଚୁଆଡି ପଡ଼ିଲା ଯେ ହାରିଲେ କୁଣ୍ଡଳ ବେନି ।୮୨

ହସିଣ ଦ୍ରିଯୋଧନ ଘେନିଲା ତକ୍ଷଣେ
ଭୂଷଣ କଲା ନେଇ ଆପଣା ଶ୍ରବଣେ ।୮୩

ବିଜୟା ମୁକୁଟ ଯେ ଅଳକା ନାଥ ଦିଲା
ଭୋଳେଣ ଧର୍ମନାନ ଯେ ତାହା ପାଡ଼ କଲା ।୮୪

ପଞ୍ଚଆଡି ମାନଗୋବିନ୍ଦ ଦୁଇ ଚଉକା ଯୁଝେଷ୍ଟି
ପାଡ଼ ବେଗେ ମାମୁଂ ବୋଲଇ ଧୃତିରାଷ୍ଟ୍ରି ।୮୫

ଜିତଜିତ ବୋଲି ପଶା ପାଡ଼ିଲା କୂଟେଶ୍ୱର
ପଞ୍ଚୁଆଡି ପଡ଼ିଲା ହାରିଲେ ଯୁଝେଷ୍ଟିର ।୮୬

ଧୁଶାସନ ମୁକୁଟ କାଢ଼ିଲା ଧାଡିକାରେ
ଆପଣେ ଧୁଶାସନ ବାନ୍ଧିଲାକ ଶିରେ ।୮୭

ଯୁଝେଷ୍ଟିଙ୍କ ଅଳଂକାର ଭରିଣ ବୀର ହୃଦେ
ମତୁଆଳ ନାଟ ଖଣ୍ଡି ନାଚଇ ଆନନ୍ଦେ ।୮୮

ରାଗେଣ ଯୁଝେଷ୍ଟି କରୁଛନ୍ତି ପାଡ଼ସାର
ବୋଇଲେ ଯେଘାନ୍ତି ମୋହୋର ଚତୁର୍ଦ୍ଦଶ ଭଣ୍ଡାର ।୮୯

ଦ୍ରିଯୋଧନ ବୋଇଲା ମୋହୋର ହୋଇଲା ଦୁଗୁଣ
ସବୁ ଭଣ୍ଡାର ମୋହୋର ହୋଇଲାକ୍ଷଣ ।୯୦

ପାଡ଼ିଲା ଶକୁନି ଯେ ଚାହିଂଣ ପଶାକାଠି
ପଞ୍ଚୁଆଡି ପଡ଼ିଲା ଯେ ହାରିଲେ ଯୁଝେଷ୍ଟି ।୯୧

କାଠି ଘେନି କରେ ଯେ ବୋଇଲେ ଯୁଝେଷ୍ଟି
ତୋହୋର ମୋହୋର ଦାନ କରିବା ପାଲଟି ।୯୨

ଆମ୍ଭର ପଞ୍ଚୁଆଡି ତୋହୋର ଆନ ଦାନ କଚ୍ଛ
ଦ୍ରିଯୋଧନ ବୋଇଲା ମୋହୋର ହୋଇଲା ଚଉବତ ।୯୩

ପଞ୍ଚୁଆଡି ପଡ଼ିଲେ ତୁ ଜିଣିମୁ ଯୁଗତେ
ଚଉବତ ପଡ଼ିଲେ ରାୟେ ହାରିବୁ ତୁରିତେ ।୯୪

ତୁ ଯେବେ ଦାନ ପାଲଟ କଲୁ ଧର୍ମସୁତେ
ଅଶ୍ୱଦଣ୍ଡ ପାଡ଼ ମୁଂ କଲଇଂ ଯୁଗତେ ।୯୫

ଦ୍ରିଯୋଧନ ବଚନେ ଯୁଝେଷ୍ଟି ମହାରାଜ
ବୋଇଲେ ମୋହୋର ଅଶ୍ୱଦଣ୍ଡ ମୁଁ କଲଇପରିଜା ।୯୬

ପଶାକରି ମନ୍ତ୍ରୀ ପାଡ଼ଇ କୂଟ ବୁଦ୍ଧି
ପଡ଼ିଲା ଚଉବଚ ସେ ପୂର୍ବର ଯଥା ବିଧି ।୯୭

ଅଶ୍ୱଦଣ୍ଡ ହାରିଲେ ଦେବ ପଶାର କୁତୂହୋଳେ
ଦେଖିଣ ଉପହାସ୍ୟ କଲେ କଉରୋବ ବଳେ ।୯୮

ଦ୍ରିଯୋଧନ ବୋଇଲା ଯେଘାନ୍ତି ପାଡ଼ କର
ଗଜଦଣ୍ଡ ଯେଘାନ୍ତି ପାଡ଼ ହୋଇଲା ମୋହୋର ।୯୯

ଯୁଝେଷ୍ଟି ଦେବେ ବୋଇଲେ ମୋହୋର ଗଜବଳ
ଶୀଘ୍ରେଣ ବୋଇଲେ ତୁ ପାଡ଼ ହୋ ମାତୁଳ ।୧୦୦

ନବ ଖର୍ବ ଗଜ ଯେ ଚାରି ଅହିବ୍ରତ
ରାଗେଣ ପାଡ଼ କଲେ ଯେଦେବ ଧର୍ମସୁତ ।୧୦୧

ଜିତ ଜିତ ବୋଲିଣ ଯେ ଶୁକନି ପାଡ଼ିଲା
ଯୁଝେଷ୍ଟି ଦେବ ଦେଖନ୍ତେ ଚଉବଚ ପଡ଼ିଲା ।୧୦୨

ହାରିଲେ ଗଜ ବଳ ଦେବ ପଶାର କୁତୂହୋଳେ
କିଳି କିଳା ନାଦ କଲେ କୁରୁବୀରେ ।୧୦୩

ଯୁଝେଷ୍ଟି ଦେବ ବୋଇଲେ ପାଲଟାଇବା ଆନ ଦାନ
ତୁହି ଘେନ ଆନ ଦାନ ମୁହିଂ ଘେନଇ ଆନ ।୧୦୪

ଶକୁନି ବୋଇଲା ଯୁଝେଷ୍ଟି ବୋଇଲେ ହାଦେ ଯାହା
ତୁମ୍ଭେ ହୋ କୁରୁପତି କରିବ ନାହିଂ କି ତାହା ।୧୦୫

ଦ୍ରିଯୋଧନ ବୋଇଲା ଦାନ ଘେନ ତୁମ୍ଭର ଯେ ଇଚ୍ଛା
ଯହିଂକି ଯୁଝେଷ୍ଟି ହୋ ବଳିବ ତୋହୋର ମନୋବାଞ୍ଛା ।୧୦୬

ଯୁଝେଷ୍ଟି ଦେବେ ବୋଇଲେ ମୋହାର ଦାନ ଦଶ
ଦୁଇ ଚଉକ ଦାନ ଘେନେ ଗାନ୍ଧାରୀର ଶିଷ ।୧୦୭

ଦ୍ରିଯୋଧନ ବୋଇଲା ମୋହୋର ଯେତେ ରଥ ଯାନ
ସ୍ରାଗେ ହସିଲେ ଯେ ଦେବ ଧର୍ମନାନ ।୧୦୮

ଯୁଝେଷ୍ଟି ବୋଇଲେ ମୋହୋର ରଥ ବଳ ହୋଇଲା ଯୁଗତେ
ପାଡ଼ ମାମୁଂ ଶକୁନି ଧର୍ମର ଆଶ୍ରିତେ ।୧୦୯

ପଶା କାଠି ଘେନି ମନ୍ତ୍ରୀ ମଞ୍ଚାଳଇ ବେନି ଭୁଜେ
ପାଡ଼ଇ ମହାମନ୍ତ୍ରୀ ଗାନ୍ଧାର ସେନ ଆତ୍ମଜେ ।୧୧୦

ଜିତ ଜିତ ବୋଲି ସେ ପାଡ଼ିଲା ଦାନେକ
ଅଭ୍ୟାସେ ପଡ଼ିଲା ଦାନ ବେନି ଯେ ଚଉକ ।୧୧୧

ଅଶି କୋଟି ରଥ ଦେବ ଧର୍ମେ
ପ୍ରଶଂସନ୍ତି କଉରୋବେ କେବଣ ତୋହୋର କର୍ମେ ।୧୧୨

ଭୀଷ୍ମେ ବୋଇଲେ ବାବୁ ନ ଖେଳଟି ଯୁଝେଷ୍ଟି
ଆଜକ ବିପକ୍ଷ ତୋହୋର କର୍ମ ଯୋଗ ଅରଷ୍ଟି ।୧୧୩

କପଟେ ଜିଣନ୍ତି ଆବର କରନ୍ତି ଉପହାସ
ହାରିଣ ଯୁଝେଷ୍ଟି ଦେବ ବେଲୁଂ ବେଳ ଗୁରୁରୋଷ ।୧୧୪

ଦ୍ରିଯୋଧନ ବୋଇଲା ପଶା ପାଡ଼ ହୋ ଶକୁନି
ଯେଘାନ୍ତି ପାଢ଼କଲି ମୋହୋର ଯେକାଦଶ କ୍ଷଉଣୀ ସଇନି।୧୧୫
ଶୁଣି ସନନ୍ଦ ଯେ ହୋଇଲେ ଧର୍ମବାଳ
ମୋହୋରି ପାଢ଼କଲି ସାତକ୍ଷଉଣୀ ଅଙ୍ଗବଳ ।୧୧୬
ମନ୍ତ୍ରୀ ଚୂଡ଼ାମଣି ପାତିଲା କୂଟ ବୁଦ୍ଧି
ପଡ଼ିଲା ବେନି ଚଉକ ହାରିଲେ ଯୁଝେଷ୍ଟି ସମ୍ମୁଧି ।୧୧୭
ରଥ ଗଜ ଅଶ୍ୱ ହାରିଲେ ସକଳ ପାଦାତି
ହାରିଲେ ଯୁଝେଷ୍ଟି ଦେବ ଜିଣିଲେ କୁରୁପତି ।୧୧୮
ହସନ୍ତି କଉରୋବେ ମରାଳ ଗୀତଗାଇ
କରତାଳି ମାରିଣ ଯେ ଗାଲ ତୂରୀ ବାଇ ।୧୧୯
ପ୍ରେମର ମିଷ୍ଟ ଯେ ଅଟଇ ଭୁଷଣ
ଜରର ମିଷ୍ଟ ଯେ ପାଣି ଆଗ୍ରହଣ ।୧୨୦
ମନର ମିଠା ଯେ ଅଟଇ ମଉନ
କାର୍ଯ୍ୟର ମିଠା ଯେବେ ହୋଯେ ତତକ୍ଷଣ ।୧୨୧
ରାନ୍ଧଣା ମିଠା ଯେବେ ସୁପଂକୁ ହୋଇ ସିଝି
କହଣାର ମିଠା ଯେବେ ଶୁଣନ୍ତା ଲୋକ ବୁଝି ।୧୨୨
ଶାହାସ୍ର ମିଠା ଯେବେ କରତବ୍ୟେ ଘେନି
ଭରହ ମିଠା ଯେବେ କୋକିଳ ପ୍ରାୟ ଶୁଭଇ ବାଣୀ ।୧୨୩
ଯନ୍ତ୍ରର ମିଠା ଯେବେ ହସ୍ତ ଚଳଇ ଭଲେ
ଆଧାର ମିଠା ଯେବେ ଭୁଞ୍ଜେ କ୍ଷୁଧା ବେଳେ ।୧୨୪
ବଣିକ ମିଠା ଯେବେ ସୁଲଭେ ଯାଯେ ବିକା
ରୂପର ମିଠା ଯେବେ ସୁନ୍ଦର ନାସିକା ।୧୨୫
ସମର ମିଠା ଯେବେ ଦିଶଇ ରୁଧିର
ଗୃହର ମିଠା ଯେବେ କୁଟୁମ୍ବ ବିସ୍ତାର ।୧୨୬
ତପର ମିଠା ଯେବେ ନୋହେ ଦ୍ୱନ୍ଦକାରୀ
ଜୁଅର ମିଠା ଯେବେ ମଣ୍ଡଳେଣ ହାରି ।୧୨୭
ଖେଢ଼ର ମିଠା ଯେ ପାଇଲେ ଧର୍ମରାଯେ
ବେଲୁଂବେଳ ସ୍ୱାଗ ବଳିଲା ପଶାଯେ ।୧୨୮
ବଦୟନ୍ତି ଗାଙ୍ଗବେ ତୁ ନ ଖେଳରେ ବାବୁ
ସକଳ ସମ୍ପଦ ସରିଲା ଆଉ କିସ ତୁ ଦେବୁ ।୧୨୯
ବିପଦ କାଳ ତୋତେ ପଡ଼ିଅଛି ଆସି
ଯେକା ହାରୁଅଛୁ ହାଥରେ ସୁଖ ବସି ।୧୩୦
ଅତିହିଂ ହାରିଲେ ଆଉ ଆସଇକି ଖେଢ଼
ଆବେର ଜିଗାଂସ ହାସ କରନ୍ତି ସଂକୋଡ଼ ।୧୩୧

ଛାଡ଼ ଛାଡ଼ ପଶାଯେ ମୋହର ଯୁଗତ
ଯେବେ ଯାଅ ଯାଅ ଆନ ଦିନେ ଖେଢ଼ ଜୁତ ।୧୩୨
ଭୀଷ୍ମଙ୍କ ବଚନେ କର୍ଣ୍ଣ ବୀର ବୋଇଲା
ତୁମ୍ଭେ ଯେ ବୋଲୁଅଛ ଯୁଝେଷ୍ଟି କିସ ହାରିଲା ।୧୩୩
ତାହାର ଧନ ତ ନୋହଇ ଯୁଗତ
ଯୁଝେଷ୍ଟି କିସ ସେ ହାରିଲା ନିଅତ ।୧୩୪
ମରୁତ ଦିଲା କୁଣ୍ଡଳ କୁବେର ଦିଲା ମୁକୁଟ
ଜାରାସନ୍ଧ ମାରି ଆଣିଲା ରଥ ଗଜ ଅଶ୍ୱ ଥାଠ ।୧୩୫
ଦ୍ରୋପଦ ଯଉତୁକ ଦିଲା ବଳ ସାତ କ୍ଷଉଣୀ
ରାଜାମାନେ ଯାଗକୁ ଆଣିଲେ ଧନ ଦେଖା ଦରଶନି ।୧୩୬
ଯେହାଂକର ଅର୍ଜିଲାର ପଦାର୍ଥେକ ତହିଂ ନାହିଂ
ପଦାର୍ଥମାନ ଆପଣାର ଥୋଇଛନ୍ତି କାହିଂ ।୧୩୭
ରାଜ୍ୟ ହାର ଜିଣ ଯେବେ ହୋଅନ୍ତ ପଶାରେ
ତେବେ ସେ ସାର୍ଥୁକ ଖେଢ଼ ଜାଣିମା ସଂସାରେ ।୧୩୮
ଦ୍ରିଯୋଧନ ବୋଇଲା ଯାହା ତୁମ୍ଭେ କହିଲ ମଇତ୍ର
ଅଢ଼ାଇ କଟକ ମୋହୋର ଅଟଇ ଯଥା ଅର୍ଥ ।୧୩୯
ହସ୍ତିନା ଯମପ୍ରଶସ୍ତ ଅଟଇ ମୋହୋର
ଜଇନ୍ତା ବାରୁଣା ଯେ ଅଟଇ ଯେହାଙ୍କର ।୧୪୦
ଇନ୍ଦ୍ର ପ୍ରଶସ୍ତ ରାଜ୍ୟ କରିବା ଅଧ ଅଧ
ତେବେ ସେ ପଶା ଖେଢ଼ ହୋଇବ ଜାଣ ସାଧ ।୧୪୧
ମୋହୋର ବେନି ଅର୍ଦ୍ଧ ରାଜ୍ୟ ପୀଢ଼ କଲି ପଶା
ଶୁଣିଣ ଯୁଝେଷ୍ଟି ଦେବଙ୍କର ତହିଂକି ବଳିଲା ମନୀଷା ।୧୪୨
ମୋହୋର ଅଢ଼ାଇ ରାଜ୍ୟ କଲି ମୁହିଂ ପୀଢ଼
ଦୁଇ ରାଜାଙ୍କର ମନ ବଚନ ହୋଇଲାକ ଦୃଢ଼ ।୧୪୩
ଶକୁନି ପାଡ଼ନ୍ତେ ଭଞ୍ଜାଇଲେ ଯୁଝେଷ୍ଟି
ଆପଣେ ଶ୍ରୀହସ୍ତେ ମଞ୍ଚାଳନ୍ତି ପଶା କାଠି ।୧୪୪
ପାଢ଼ ପାଢ଼ ବୋଲି ଦିଲେ ଶକୁନିର ହାଥେ
ଶକୁନି ବୋଇଲା ବାବୁ ଧର୍ମ ଉଦିତ ହୋଉ ତୋତେ ।୧୪୫
ଜିତ ଜିତ ବୋଲି ଶକୁନି ମନ୍ତ୍ରୀ ପାଡ଼ି
ଦେଖିଲେ ଯୁଝେଷ୍ଟି ଦେବ ବେନି ଚଉକା ଅଛି ପଡ଼ି ।୧୪୬
ଦାନ ପଡ଼ନ୍ତେ ରାଜ୍ୟ ହାରିଲେ ଧର୍ମନାନେ
ତଦ୍ୟପି ବିକାର ନାହିଂ ତାହାଙ୍କରି ମନେ ।୧୪୭
ପଶା କାଠି ଘେନି ବିଚାରନ୍ତି ମହୀପତ୍ୟେ
କିସ ପୀଢ଼ କରିବି ବୋଲି ଭାଳନ୍ତି ହୃଦଗତେ ।୧୪୮

ଦ୍ରିଯୋଧନ ବୋଇଲା ଯେବେ ଆଉ ଖେଳି ଲୋଡୁ
ଭାଇନ୍ତ ପୀଡ଼ କରୁ କିନା ଆବର କିସ ହିଂ ବିଚାରୁ ।୧୪୯
କରୁକିନା ପୀଡ଼ କିସ ବିଚାରୁ ଯୁଝେଷ୍ଠି
ଭୀମାର ତୁଲକୁ ମୋର ଯେଘାନ୍ତି ପୀତଗୋଟି ।୧୫୦
ଯେଘାନ୍ତି ପୀତ ଯେବେ ପଡ଼ିବ ତୋହୋର
ପଞ୍ଚାଶ ଭ୍ରାଥ ମୋହୋର ହୋଇଲା ଯେ ପୀଢ଼ର ।୧୫୧
ଅନେକ ସ୍ରାଗେ ରାଜା କହଇ ଧୃତିରାଷ୍ଟ୍ରି
ଖେଡ଼ ରସ ଭୋଳେ ସନମତ କଲେକ ଯୁଝେଷ୍ଠି ।୧୫୨
ବାବୁ ପବନର ନନ୍ଦନ କଇଛା ଜଗଜେଠୀ
ଶତଶୃଙ୍ଗ ଚୂର ଗଲା ଲାଗି ଯାହାର ବାମ ପାଦ ଅଂଗୁଷ୍ଠି ।୧୫୩
ପାଣ୍ଡବାସୁର ମାରି ପାର କଲା ବିଷ ଲଡୁ
ବୀରମାନଙ୍କର ଦର୍ପ ଚୂର କଲା ଝିମାଣି ଖେଳ ଖେଡୁ ।୧୫୪
ନାଗେଣୀ ବଳ ଜିଣି ହରିଲା ବେଳାବଳୀ
କାମ୍ୟକ ବିବାଦେଣ ଧଂସିଲା ଦର୍ପ କାଳୀ ।୧୫୫
ଜତୁଘର ଭସ୍ମକଲା ଚୂଡ଼ଣ ମଧୁଗିରି
କୋପେଣ ନାଶ କଲା ଯେ କୁମ୍ଭିରୀ କିନ୍ନରୀ ।୧୫୬
ହିଡ଼ିମ୍ବେକ ଧଂସିଲା ଓଡ଼ାଦି ଶିବପୁର
ଚାଣ୍ଡାଳ ବଳଧଂସିଲା ଥାପିଲା ବିଷ୍ଣୁକର ।୧୫୭
ବକ ରାକ୍ଷସ ବଧିଲା ଯେ ଯେକଚକ୍ରା ନଗ୍ରେ
ରାଜାଙ୍କର ଦର୍ପ ଧଂସିଲା ପାଞ୍ଚାଳୀ ସୟମ୍ବରେ ।୧୫୮
ରାଜାଂକର ବିକଳେଣ ବିଦାରିଲା ଜାରା
ରାଜାନ୍ତ ଉଦ୍ଧରିଲା ଚରଣୁଂ ନିଆଳି ହରା ।୧୫୯
ପଛିମ ଦଗ ନିମନ୍ତେଣ ରାଜାନ୍ତ କଲା ସାଧି
ବିଭୁଲାକ୍ଷ ଧଂସିଲା ଯାହରା ବୁଦ୍ଧି ।୧୬୦
ଯମର ଉପରକୁ ଯାହାର କାଳଦଣ୍ଡ ବାରଧୂ
ଲକ୍ଷେ ରାଜାର ମଉଡ଼ପଣି ପ୍ରତଗ୍ୟାଂ ଯାହାର ସାଧୁ ।୧୬୧
ଦୁଷ୍ଟଙ୍କର ଦର୍ପଦଳନ କ୍ଷତ୍ରିପଣେ ଜଗତବନ୍ଧୁ ।୧୬୨
ବୀରବର ବ୍ରିକୋଦର କଇଛା ଜଗଜେଠୀ
ଆକାଶେ ଶୁଭଇ ସାଧୁ ଯାହାରି ନାମ ଗୋଟି ।୧୬୩
ଚତୁର୍ଦିଗ ରାଜନ୍ତ ଜିଣିମାକୁ ସାମର୍ଥ ମୋର ଭାଇ
ଯେ ପୀଢ଼େ ପରିଜା ମୁଂ କଲଇ ତାହାକଇଂ ।୧୬୪
ଯୁଝେଷ୍ଠିଙ୍କ ମୁଖ ଚାହିଂ ଶକୁନି ପଚାରି
ପାତୁ ଅଛି ଦୃଢ଼ ବ୍ରତ ହୋଇଲାକି ଦୁହିଂକରି ।୧୬୫
ଯୁଝେଷ୍ଠି ଦେବ ବୋଇଲେ ହୋଇଲା ମୋର ସତ୍ୟ ସତ୍ୟ
ଦ୍ରିଯୋଧନ ବୋଇଲା ଯେ ମୋହୋର ସନମତ ।୧୬୬

ମୋହୋର ଭାଇ ଧୁଶାସନ ଯେହାର ଭାଗର
ଜିଣିଅଛି ଯେତେକ ଧନ ଭଣ୍ଡାର ତାହାର ।୧୬୭
ଓହୋକୁଳ ସନମତ କରାଇ ପାଢ଼ଇ ଶକୁନି ମହାମନ୍ତ୍ରୀ
ସାକ୍ଷୀକରାଇ ଭୀଷ୍ମ ଦ୍ରୋଣ କର୍ଣ୍ଣ ଯେ ତିନିନ୍ତି ।୧୬୮
ମୋହୋର ଦୋଷ ନାହିଂଟି ଯେହାଂକରି ଯେହ୍ନେ ମନୀଷା
ଦୁହିଂକରି ଅନୁମତେ ମୁଂ ପଡୁଅଛି ପଶା ।୧୬୯
ଜିତ ଜିତ ବୋଲିଣ ଯେ ପଡ଼ିଲା ମହାନନ୍ତୀ
ପଡ଼ିଲା ବେନି ଚଉକ ଜିଣିଲା କୁରୁପତି ।୧୭୦
ସଭାରେ ବାହାସ୍ପୋଟ ଦିଲାକ ଧୁଶାସନ
ଯେଘାନ୍ତି ଜାଣିମା ହୋ ଭୀମାର ଦର୍ପମାନ ।୧୭୧
ଭୂମିରେ ଯୁଝେଷ୍ଠି ଦେବ ପ୍ରହାର କରନ୍ତି ବେନିପଶାକାଠି
ଉପହାସ ପ୍ରାୟେ କରି ହସଇ ଧୃତିରାଷ୍ଟ୍ରି ।୧୭୨
ଭୀମାର ପ୍ରାୟେ ସୋହାଦ୍ର ହାରିଲୁ ଧର୍ମରାୟେ
ଯେଘାନ୍ତି ପୀଢ କରିବକି ବୀର ଧନୁର୍ଦ୍ଧରେ ।୧୭୩
ତୁ ଯେବେ ଅର୍ଜୁନକୁ କରିବୁ ପରିଜା
ମୋହୋର ଶତେ ଭ୍ରାଥ ତାହାକୁ କଚ୍ଛ କଳି ବୋଲନ୍ତି
କୁରୁରାଜା ।୧୭୪
ହାରନ୍ତେଣ ସ୍ରାଗ ଯେ ବସଇ ଦୁଗୁଣ
ଖେଡ଼ କଇଂ ଚିତ୍ତ ଦେବ ବଢ଼ନ୍ତି ପୁଣ ପୁଣ ।୧୭୫
ତ୍ରଇଲୋକ୍ୟ ଅସଂଖ୍ୟ ଯେବଣ ଅର୍ଜୁନର ମହିଂମା
ସ୍ୱର୍ଗ ମଞ୍ଚ ପାତାଳ ଯାହାର ସାର୍ଥୁକ ବଢ଼ିମା ।୧୭୬
ଇନ୍ଦ୍ର ବିବାଦେଣ ଖାଣ୍ଡବ ବନ ସେ ଧଂସି
ମଉଷୋଧି ଦେଇ ଯେ ବଶ୍ୟାନର ମନ ତୋଷି ।୧୭୭
ସୁଗନ୍ଧିକା ହରଣେ ଯେ ଜିଣିଲା ହନୁମନ୍ତ
ଶରେ ସାଗର ବାନ୍ଧିଲା ଜାଣ ସେ ତ ।୧୭୮
ଅଙ୍ଗାର ପନ୍ନଙ୍ଗକଇ ଯେ ଜିଣିଲା ସମୋଢ଼େ
ସୁବର୍ଣ୍ଣଚୂଡ ପର୍ବତ ବାନ୍ଧିଲାକ ଶରେ ।୧୭୯
ପଞ୍ଚାଳ ଦେଶେଣ ଯେ ରାଧାଚକ୍ର ବିନ୍ଧି
ଲକ୍ଷେକ ନୃପତି ମେଳେ ଜିଣିଲା ସର୍ବ ଯୋଧୀ ।୧୮୦
ଚାଳିଶି ସହସ୍ର ରାଜା ଯେ ଜିଣିଲା ଉତ୍ତର ଦିଗ ବିଜେ
ଯମାଗୋଷ୍ଠ ରାଜକଇଂ ବନ୍ଧନ କଲା ପିତାମହ କାର୍ଯ୍ୟେ ।୧୮୧
ସାତ ବଂଶ ମୂଳେ ରାମକୃଷ୍ଣ ସହିତେ
ଜିଣି ସୋହୋଦ୍ରକୁ ପ୍ରଦାନ ହୋଇଲା ବଳବନ୍ତେ ।୧୮୨
ଯାହାର ଶହସ୍ତେକୁ ତ୍ରଇଲୋକ୍ୟ ନ ସହଇ
ସର୍ବ ଜିଣି ସେ ସର୍ବସାଚୀ ନାମ ବହି ।୧୮୩

ଧନୁ ହୁଳେ ବସାଇଲା ଯେ ସପତ ବ୍ରହ୍ମାଣ୍ଡ
କିଞ୍ଚିତେ ବହିଲା ସେ ମେଦିନୀ ନବ ଖଣ୍ଡ ।୧୮୪

ଭାରଥେ ଭାରୋଇ ମଲ୍ଲ ଶରଣ ପଞ୍ଜର ଯାହାର ବୀରଧୂ
ବୀରବର ପ୍ରତଗ୍ୟାଂ ଯାହାର ଜଗତେଣେ ସାଧୁ ।୧୮୫

କିରାତ ରୂପେଣ ଯେ ବନେ ଜିଣିଲା ପଶୁପତି
ଭୋଳେଣ ଅନେକ ବିଦ୍ୟାଦିଲେ ଶାନ୍ତମୂର୍ତ୍ତି ।୧୮୬

କହନ୍ତେ ନ ସରଇ ପ୍ରତଗ୍ୟାଂ ଯାହାର ଗାଢ଼
ତାହାର ପୁଣ୍ୟେ କରି ଅବା ଜିଣି ପାରଇ ଯେହୁ ପୀଢ଼ ।୧୮୭

ଶକୁନି ସାନନ୍ଦ ଯେ ଦ୍ରିଯୋଧନ ତୋଷ ଚିତ୍ତ
ପଶା ପାତି ଶକୁନି ଯେ ବୋଲଇ ଜିତ ଜିତ ।୧୮୮

ଧବଳାଙ୍ଗୀ ସୁମରି ଶକୁନି ମନ୍ତ୍ରୀ ପାଡ଼ି
ବେନି ଚଉକା ଦାନ ପଡ଼ିଲା ଦେଖିଲେ ଦଣ୍ଡଧାରୀ ।୧୮୯

ହସନ୍ତି କଉରୋବେ ଯେ ବାବନ୍ତି କରତାଳି
ମତ୍ତ ରସେ ଗୀତ ଗାଇ ଦ୍ୟନ୍ତି ହୁଳହୁଳି ।୧୯୦

ବେନି ସୋହୋଦ୍ରେ ଯେ ପଶାରେ ହାରିଲେ ଧର୍ମସୁତ
ତଦ୍ୟାପି ମନେ ତାଙ୍କର ନବସିଳା ବିକୃତ ।୧୯୧

ଯୁଝେଷ୍ଟିଙ୍କ ମୁଖ ଚାହିଂ ଦ୍ରିଯୋଧନ ବୋଇଲା
ଭୀମ ଅରଜୁନ ତ ପଶାରେ ହାର ଗଲା ।୧୯୨

ନକୁଳ ସହଦେବ ବାଳୁତ ଅଟନ୍ତି
ତୁ କିସ କରିବୁ ଯୁଝେଷ୍ଟି ବାଳୁତ ପୁଅନ୍ତ ଘେନି ।୧୯୩

ତାହାଂକର ପୁଣ୍ୟେ ଅବା ଜିଣିପାରୁ ଯେଘାନ୍ତି
ମୋହୋର ଲେଉଟ ପୀଢ଼ କଲି ଭୀମଅର୍ଜୁନ ଦୁହିଂନ୍ତି ।୧୯୪

ଆବର ପ୍ରତଗ୍ୟାଂ ମୁହିଂ କହୁଅଛି ତୋତେ
ଆହୁରି ପୀଢ଼ କଲି ଧୁଶାସନ ଦୁର୍ଜୟ ସହିତେ ।୧୯୫

ସ୍ୱାଗ ବଢ଼ିଲା ରାଜା କଲେକ ସନମତ
ଶକୁନିର ମୁଖ ଚାହିଂ ବୋଲନ୍ତି ଧର୍ମସୁତ ।୧୯୬

ଶୁଣ ଶକୁନି ମୋର ନକୁଳର ଚରିତ
ସୁକୁମାର ପଣେ ସରି ନାହିଂଟି ଜଗତ ।୧୯୭

କୁନ୍ତ ମୂନେ ପୃଥୀ ଧରି ପାରଇ ଛତ୍ରିଗଣେ
କୁମାର ପଣେ ପାଟ ଅଛଇ ଯାହାକୁ ପୟାଣେ ।୧୯୮

ଦକ୍ଷିଣ ଦିଗବିଜେ ଜିଣିଲା ବାହୁବଳେ
ସେ ମାଦ୍ରିର ନନ୍ଦନେ ପୀଢ଼ ମୁଂ କଲଇ ନକୁଳେ ।୧୯୯

ଯେ ଦାନ ଛାଡ଼ିଣ ମୁଂ ଘେନିମି ଆନଦାନ
ସାତ ଦାନ ମୋହୋର ବୋଲି ବୋଇଲେ ଧର୍ମନାନ ।୨୦୦

ଦ୍ରିଯୋଧନ ବୋଇଲା ହୋ କଲୁ ଆନ ଦାନ ସଞ୍ଚା
ମୋହୋର ଦାନହାଦେ ଯେବେ ହୋଇଲା ବାମଞ୍ଚା ।୨୦୧

ପାଡ଼ିଲା ଶକୁନି ପଶା ଜିତ ଜିତ ବୋଲି
ଅସ୍ତୁ ଅସ୍ତୁ ହୋଉ ମୁଂ ଯାହା ବାଞ୍ଛିଲି ।୨୦୨

ବାମଞ୍ଚା ଦାନ ଯେ ପଡ଼ିଲା ପ୍ରତକ୍ଷେ
ନକୁଳ କୁମରକୁ ହାରିଲେ ଧର୍ମ ବଚ୍ଛେ ।୨୦୩

ଯୁଝେଷ୍ଟିଙ୍କ ମୁଖ ଚାହିଂ ଦ୍ରିଯୋଧନ ବୋଇଲା
ତିନିଂକି ହାରିଲୁ ଯେକା ସହଦେବ ରହିଲା ।୨୦୪

ଯେକା ତାହାକୁ ଘେନି କିସ କରିବୁ ଯୁଝେଷ୍ଟି
ଭୀମ ଅର୍ଜୁନ ନକୁଳକୁ ହାରିଲୁ ଆବର ରାଜ୍ୟ ଭ୍ରଷ୍ଟି ।୨୦୫

ଯୁଝେଷ୍ଟି ବୋଇଲେ ମୋହର ଭାଇ ଗୁଣେ ଗୁଣବନ୍ତା
କର ପଲବ ଚାହଂନ୍ତେ ଜାଣଇଂ ଭୂତ ଭବିଷ୍ୟ ବାରତା ।୨୦୬

ଗୁଣବନ୍ତ ପଣ୍ଡିତ ଧାର୍ମିକ ଗୁଣନିଧି
ଜଗତ ଭୁତନାଥ ଯାହାକୁ ମାଗନ୍ତି ବୁଦ୍ଧି ।୨୦୭

ଯୁଗାନ୍ତେ ଜାଣନ୍ତା ଯେ ମୋହୋର ଭାଇ ସହଦେବ
ଗୋ ଲକ୍ଷଣ ବିଦ୍ୟା ପାଇଲା ତୋଷିଣ ବାସୁଦେବ ।୨୦୮

କପିଳାର ପ୍ରସନ୍ନେ ସେ ଜାଣଇଂ ସର୍ବବୁଦ୍ଧି
ଗୋକୁଳେ ହାରିଲା ସେ ଅଷ୍ଟଉତ୍ତର ଶତେ ବ୍ୟାଧି ।୨୦୯

ଅନିନ୍ଦିତ କର୍ମ ସେ ଅଟଇ ମୋର ଭାଇ
ଅଭୟେ ଭୁବନ ମଧ୍ୟେ ଯେ ସେ ଅଟଇ ଗୁଣଗ୍ରାହୀ ।୨୧୦

ଯାହାର ବୁଦ୍ଧିବଳେ ଜିଣିଲଇଂ ସମସ୍ତ
ହୃଦେ ବିଚାରିଲେ ଜାଣଇଂ ଭୂତ ଭବିଷ୍ୟ ବାରତ ।୨୧୧

ପୃଥିବୀ ଆପ ତେଜ ବାଇବ୍ୟ ଆକାଶ
ଦିବ୍ୟଚକ୍ଷୁ ଭାଇକି ମୋହୋର ଅଦୃଶ୍ୟ ହୋୟେ ଦୃଶ୍ୟ ।୨୧୨

ଯାର ବୁଦ୍ଧିବଳେ ଜରାସନ୍ଧ ନାଶ ଗଲା
ପୂର୍ବ ଦିଗ ବିଜେ ତିନି ସହସ୍ର ରାଜା ଜିଣି ସାଧିଲା ।୨୧୩

ତାର ଗୁଣ କହିବାକୁ ବେଳ ନ ଅଣ୍ଟଇ ମୁକୁ
ଯେଘାନ୍ତି ପୀଢ଼ ମୁଂ କଲି ସହଦେବକୁ ।୨୧୪

ପଶାକାଠି ବେନି କରେ ତୋଳିଣ ଭଞ୍ଜଇ
ପାଡ଼ ମାମୁଂ ବୋଲି ଶକୁନିକି କରେ ନେଲେ ଦେଇ ।୨୧୫

ଯଝେଷ୍ଟିଙ୍କ ମୁଖ ଚାହିଁ ଶକୁନି ପାଡ଼ିଲା
ଦେଖିଲେ ଯୁଝେଷ୍ଟିଦେବ ଦାନ ବାମଞ୍ଚା ପଡ଼ିଲା ।୨୧୬

ସହଦେବକଇ ପଶାୟେ ହାରିଲେ ଯୁଝେଷ୍ଟି
ସୁମରନ୍ତି ଭୋ ଦଇବ ମୋତେ କଲୁ ଅତି କଷ୍ଟି ।୨୧୭

ଶୁଣ ବଇବସୁତମନୁ ବଦୟନ୍ତି ଅଗସ୍ତି

ଦ୍ୱାରିକାଯେ ପ୍ରବେଶିଲେ ଦେବ ଶିରୀପତି ।୨୧୮
ଗରୁଡ଼ରୁ ଓହ୍ଲାଇଲେ ଦେବ ଜଗନ୍ନାଥ
ପାଣ୍ଡବଙ୍କୁ କହନ୍ତି ସେ ବହୁପୁରୁଷାର୍ଥ ।୨୧୯
ତୁମ୍ଭେ ଯେବେ ଚଳବାକୁ ବାରୁଣାବନ୍ତକୁ
ଯେକାଳି ଛାଡ଼ି ଆସିଛ ତ ଯୁଧେଷ୍ଠି ଦେବଙ୍କୁ ।୨୨୦
ଗରୁଡ଼ଙ୍କୁ ଚାହିଁ ଆଗ୍ୟାଂ ଦିଲେ ଜଗନ୍ନାଥେ
ପାଣ୍ଡବନ୍ତ ଛାଡ଼ନେଇ ହୋ ବାରୁଣାବନ୍ତେ ।୨୨୧
ଶ୍ରୀକୃଷ୍ଣଙ୍କ ଆଗ୍ୟାଂ ପାଇ କରି ପକ୍ଷୀବର
ପାଣ୍ଡବଂକୁ ଘେନି ବଳେ ବାରୁଣାବନ୍ତର ।୨୨୨
ଗରୁଡ଼ ପିଠିରୁ ଓହ୍ଲାଇ ଚାରି ଯେ ପାଣ୍ଡବ
ଭିତର ପୁରକୁ ବିଜେ କଲେ ସଦିଭାବ ।୨୨୩
ପଶାରେ ସୋଦରନ୍ତ ହାରିଲେ ଧର୍ମରାୟେ
ଚାରିଭାଇ ପ୍ରବେଶ ଆସି ଯେମନ୍ତର ସମୟେ ।୨୨୪
ବାରୁଣାବନ୍ତେ ଦେଖିଲେ ନାହାନ୍ତି ଯୁଧେଷ୍ଠି
ଦେଖିଣ ବିସରିଲେ ସହଦେବ ନକୁଳ ଭୀମସେନ କିରୀଟୀ ।୨୨୫
ଅର୍ଜୁନ ଅଗ୍ରତେ ଦ୍ରୋପଦୀ ଦେବୀ ବୋଇଲେ
ହସ୍ତିନା ରାଜ୍ୟକଇଂ ଯୁଧେଷ୍ଠି ଦେବେ ଗଲେ ।୨୨୬
ମନେଣ ବିରସ ହୋଇଲେ ଚାରିଭାଇ
ବାବୁ କପଟ ହୋଇଲା ବୋଲି ଅର୍ଜୁନ ବିଚାରଇ ।୨୨୭
ଚାଲ ହୋ ବହନ ଯିବା ଶୀଘ୍ର ଗତେ
ନ ପୁଣ ଯୁଧେଷ୍ଠିଙ୍କି ଦେଖି ମନୁଆରି ଯୁଗତେ ।୨୨୮
ଧାମନ୍ତି ପାଣ୍ଡବେ ଯେ ପବନ୍ନଂ ବେଗ ଗତି
ହସ୍ତିନା ସଭାୟେ ଯାଇଂ ପ୍ରବେଶ ତତକ୍ଷଣାନ୍ତି ।୨୨୯
ଝାଳେଣ ତ୍ରିପଣ୍ଡ ଯେ ସବୁଙ୍କରି କାୟେ
ଶ୍ରମେଣ ଦିଶନ୍ତି ସେ କାଳ ଦୂତ ପ୍ରାୟେ ।୨୩୦
ହସ୍ତିନା ଆସ୍ତାନ ସନ୍ନିଧେ ଯାଇଂ ଭେଟି
ବେନି କୋଶ ଥାଉଂ ଶୁଭିଲା ପଶାକାଠି ।୨୩୧
ଆସ୍ତାନ ତଳେ ଯେ ପ୍ରବେଶ ବୀରେ ଧାତି
ଆରେ ସଭାକୁ ନ ଉଠ ବୋଲି ବୋଇଲା କୁରୁପତି ।୨୩୨
କରେ ଗଦାବର ଘେନି ହାକଇ ଧୁଶାସନ
ସେହି ଠାବରେ ରହରେ ପାଣ୍ଡବ ଭୀମସେନ ।୨୩୩
ଧୁଶାସନ ବଚନ ଭୀମସେନ ନ ଶୁଣି
ସଭାର ଉପରକୁ ପେଲି ଉଁଠଇ ପାବେନି ।୨୩୪
ଦୁର୍ଜୟେ ଦୃଷକ ଦୁର୍ବାଳ ଦୁର୍ବିନ୍ଦ ଦୃହନ୍ତ
ଦୁର୍କର୍ଣ୍ଣ ଦୁରାଷ୍ଟ ଦୁରାପଦ ଯେ ଦୁବୃତ୍ତ ।୨୩୫
ଯେହିମତେ ଦ୍ରିଯୋଧନର ଅନେଶୋତ ଭାଇ
ଆରେ ରହ ରହ ପାଣ୍ଡବା ବୋଲି ପେଲିଣ ପକାଇ ।୨୩୬
ରାଗେଣ ମାରୁତି ଯେ ଅଧର କଲା ପୃଷ୍ଟ
କାଳ ନୟନ ବୁଲାଇ କମ୍ପାଇ ମୁକୁଟ ।୨୩୭
ବାଆନ ବାଆନ ଭାର ବେନି ଗଦା କରେ ଘେନି
ହୁଂକାର ଶବଦ କରି ବୁଲାଇ ପାବେନି ।୨୩୮
ଗୋଳ ଦେଖି ଯୁଧେଷ୍ଠି ଦେବ ଚାହିଂଲେ ଲେଉଟି
ବାବୁ ରହ ରହ ଭୀମସେନ ନ ଦିଅନ୍ତୁ କିନା ଉଠି ।୨୩୯
ବାବୁ ପଶା କୁତୁହୋଳେ ମୁହିଂ ପଶିଲିଟି ହାଦେ
ସଂହାଥେ ଅର୍ଜିଲି ମୁଂ ଯେତେ଼କ ପରମାଦେ ।୨୪୦
ରାଜ୍ୟଭାର ସିଂଘାସନ ସମସ୍ତ ହାରିଲି
ତୁମ୍ଭନ୍ତ ସହିତେଣ ପଶାୟେ କ୍ରୟ କଲି ।୨୪୧
ଥାଅ କିନା ବାବୁ ସଭାତଳେ ଦଣ୍ଡେ ରହ
ଯେଘାନ୍ତି ପାଡ଼ ଅବଶ୍ୟ ଜିଣିମିରେ ମୁହିଂ ।୨୪୨
କୋନ୍ତଂକର ଆଗ୍ୟାଂରେ ରହିଲେ ଅପସରି
ନବ ପାବଚ୍ଛ ତଳେ ବସାଇଲେ ଚାରିନ୍ତ ଭୁଜଧରି ।୨୪୩
ଝାଳେଣ ତ୍ରିପଣ୍ଡ ଯେ ଚାଳଇ ବ୍ରିକୋଦର
ଅଶ୍ରୁଜଳ ବୃଷ୍ଟି ତାର ବେନି ଲୋଚନର ।୨୪୪
ଭୀମସେନ ବୋଇଲା ଅର୍ଜୁନରେ ଆମ୍ଭେ ମନ୍ଦ କୃତ୍ୟ କଲୁ
ଯୁଧେଷ୍ଠିଙ୍କି ଛାଡ଼ି କିମ୍ପେ ଗୋବିନ୍ଦଙ୍କ ତୁଳେ ଗଲୁ ।୨୪୫
ଅର୍ଜୁନ ବୋଇଲା ସ୍ୱାମୀ ଯେହୁ ଆମ୍ଭଙ୍କୁ ବଡ଼ ଲାଭ
ପ୍ରାଣେ ନାଶ ନ ଗଲେ ଯେ ଯୁଧେଷ୍ଠି ରାଜଦେବ ।୨୪୬
ସ୍ୱାମୀ ଜୀବନ ଥିଲେ କରି ପାରିନା ବୁଦ୍ଧି
କୂଟେ ସେ ଘେନୁଛନ୍ତି ସିନା ଆମ୍ଭର ସମ୍ପଦ୍ଧି ।୨୪୭
ଭୀମସେନ ବୋଇଲା ବାବୁ ନୁଆରଇ ସହି
କ୍ରୋଟ ଅନଳ ପ୍ରାୟେ ଦହଇ ମୋର ଦେହୀ ।୨୪୮
ଆଜ କଉରୋବନ୍ତ ଯେହିକ୍ଷଣି ପକାଇବି ମାରି
ଶଲ୍ୟ ଶକୁନି କର୍ଣ୍ଣ ସବୁନ୍ତି ପକାଇବି ଚୂଡ଼ କରି ।୨୪୯
ଭୀଷ୍ମ ଦ୍ରୋଣ ଭୂରିସର୍ବା ବାହ୍ଲିକ ଅଶସ୍ତାମା
ସୋମଦତ୍ତ କୃପାଚାର୍ଯ୍ୟେ ଆବର କୃତବର୍ମା ।୨୫୦
ଆରେ ଆରେ ଅର୍ଜୁନ ଯେମନ୍ତ ମାନହୀନେ କିଂକେ ବ୍ରତୀ
ଯୋଦ୍ଧାନ୍ତ ଆଦିକରି ଲୋଟାଇବି ନା ସବୁନ୍ତି ।୨୫୧
ଅର୍ଜୁନ ବୋଇଲା ସ୍ୱାମୀ ଠାକୁରଙ୍କର ନାହିଂ ଆଗ୍ୟାଂ

ସ୍ୱାମୀଙ୍କର ବଚନକି କରିବ ଅବଗ୍ୟାଂ ।୧୨୫୨
ବହୁତ ବିନୋୟୀ ଅର୍ଜୁନ ଭୀମସେନକଇ ସମାର୍ଜି
ପୁଣ ପୁଣ ଭୀମସେନ ଉଠଇ ଗଳଗାଜି ।୧୨୫୩
କୋପ ସଂଘରିଲେ ଦେବ ପଣ୍ଡିତ ପଣ ବହି
ନବ ପାବନ୍ଥ ତଳେ ଉଭାଛନ୍ତି ଚାରିଭାଇ ।୧୨୫୪
ଦ୍ରିଯୋଧନ ବୋଇଲା ଯେ ଆହେ ଯୁଝେଷ୍ଟିର
ଭାଇନ୍ତ ହାରିଣ କିସ ଦମ୍ଭ ପୁଣ ତୁମ୍ଭର ।୧୨୫୫
ସେହିତ ହୋଇଲେନି ଆମ୍ଭର ନିଜ ଭୃତ୍ୟ
ତୁ ଥାଇ ଆବର କିସ କରିବୁ ପୁଣ ଯେଥ ।୧୨୫୬
ଭାଇନ୍ତ ଛାଡ଼ିଣ ଆର କାହିଂକି ଯିବୁ ଯେକା
ତୋ ତହୁଂ କେହି ଆଉ ନାହିଂ ନା ନିରେଖା ।୧୨୫୭
ଯେଘାନ୍ତିର ପୀଢ଼ ତୁ ହୋଇବୁ ଯୁଝେଷ୍ଟି
ଧର୍ମ ବଳ ଥିଲେ ପାରି ଅବା ଲେଉଟି ।୧୨୫୮
ତରୁ ପୀଢ଼ ହୋଇଲେ ଆମ୍ଭେ କଚ୍ଛକେ ଶତେଭାଇ
ଜିଣିଲେ ତୋର ଭାଇନ୍ତ ନେମୁଂ ମୁକୁଳାଇ ।୧୨୫୯
ଦ୍ରିଯୋଧନର ବଚନେ ସ୍ରାଗିଲେ ନୃପମଣି
ବିଚାରିଲେ ଧର୍ମ ଥିଲେ କଡ଼ାକେ ଯୂତ ଜିଣି ।୧୨୬୦
ସମ୍ପତ୍ତି ବିପତ୍ତି ଯେ କ୍ଷଣେ ମାୟା
ସର୍ବଦା ପ୍ରାଣୀଂକି ଦଇବକି ହୋଇବ ନିର୍ଦ୍ଦୟା ।୧୨୬୧
ଶକୁନିର ବଦନ ଚାହିଂ କହିଲେ ରାୟ ଦୃଢ଼
ମୁକୁହିଂ ଆତ୍ମା ପରିକା କଲଇଂ ଯେହୁ ପୀଢ଼ ।୧୨୬୨
କର୍ଣ୍ଣ ଧୁଶାସନ ନାସିକାୟେ ଦିଲେ ହସ୍ତ
ଯେ ସେ ଯୁଗତ କଥା ତୋହୋର ଅଟଇ ସତ ।୧୨୬୩
ଯାବତ କାଳକଇଂ ତ ଯେହି କଥା ରହିଲା
ଭାଇନ୍ତ ହାରିଣ ଧର୍ମ ଆତ୍ମା ବିକ୍ରେ କଲା ।୧୨୬୪
ଦ୍ରିଯୋଧନ ବୋଇଲା ଶୁଣସି ମାତୁଳ
ପାଉ କିନା ପଶା କାଠି କିମ୍ପେ କରୁ ହେଳ ।୧୨୬୫
ଜିତ ଜିତ ବୋଲି ପାଡ଼ିଲା ଶକୁନି
ବାମଞ୍ଚା ପଡ଼ିଲା ସେ ହାରିଲେ ଯୁଝେଷ୍ଟି ନୃପମଣି ।୧୨୬୬
ଦେଖିଣ ଧୁଶାସନ ଉଠିଲା କୋପଚିତ୍ତେ
ଯୁଝେଷ୍ଟିଙ୍କର ବେନି ଭୁଜ ଧରିଲା ତୁରିତେ ।୧୨୬୭
ସଭା ତଳକୁ ଯାଅ ଯା ଧର୍ମର ତନୟେ
କିମ୍ପାଇଂ ବସିଅଛୁ ରାଜା ବୃଦ୍ଧ କାକ ପ୍ରାୟେ ।୧୨୬୮
ବେନି ଭୁଜ ଧରି ଉଚ୍ଛୁଡ଼ଇ ଧୁଶାସନ
ଦ୍ରିଯୋଧନ ବୋଇଲା ନିଅ କିନ୍ନାରେ ବହନ ।୧୨୬୯
ରାଜାର ବଚନେ ଯୁଝେଷ୍ଟି ଦେବ ଉଠି
ଅରୁଣ ଉଲ୍ଲୋଳ ପ୍ରାୟେ ବେନି ଲୋଚନୁ ଅଶ୍ରୁଜଳ ଫୁଟି ।୧୨୭୦
ଆସ୍ତାନୁ ତିନି ପାବନ୍ଥ ତଳକୁ ନେଲେ ସେ ଗଳଥି
ବାହୁଧାଇ ଆଣ ବୋଲି ଆଗ୍ୟାଂ ଦିଲେ କୁରୁପତି ।୧୨୭୧
ପୁଣିହିଂ ଛାମୁକୁ ଆଣିଲା ଅନ୍ତରୀକ୍ଷେ
ଦ୍ରିଯୋଧନ ଅଗ୍ରତେ ଉଭା ହୋଇଲେ ଧର୍ମବସ୍ତେ ।୧୨୭୨
ଦ୍ରିଯୋଧନ ବୋଇଲା ସମସ୍ତ ହାରିଲୁ ଧର୍ମରାୟେ
ଆବର ଅଛି କି ବୁଦ୍ଧି କେବେଣ ଉପାୟେ ।୧୨୭୩
ମଣ୍ଡନବ୍ରତେ ଉଭା ହୋଇଛନ୍ତି ଧର୍ମଶିଷି
କ୍ରୋଧ ଭରେ କିଛି ଦେଇ ନୁଆରନ୍ତି ସମାସି ।୧୨୭୪
ଶକୁନି ବୋଇଲା ହୋ ଅପଚୟେ କାଳେ ପ୍ରାଣୀ
ହରାଇ ସମସ୍ତ ବୁଦ୍ଧି ଅପରା ପରନ୍ତ ନ ଜାଣି ।୧୨୭୫
ଦ୍ରିଯୋଧନ ବୋଇଲା ସମସ୍ତ ହାରିଲୁ ନୃପତି
କଥାୟେ ଅଛି ତୋତେ କହିବା ନିଭ୍ରାନ୍ତି ।୧୨୭୬
ଦ୍ରୋପଦୀକି ପିଢ଼ କରି ପାରିବୁକି ଧର୍ମନାନ
କତିକେ ହୋଇବ ତୋର ରଥ ଗଜ ଅଶ୍ୱ ସନ୍ୟ ।୧୨୭୭
ଧନ ଭଣ୍ଡାର ଆଦି କରି ଅଳଂକାର ସହିତେ
ରାଜ୍ୟଭାର ସିଘାଂସନ ତୁମ୍ଭେ ପଞ୍ଚୁ ଭ୍ରାଥେ ।୧୨୭୮
ମୋହୋର ଶତେ ଭ୍ରାଥ ରାଜ୍ୟ ସମସ୍ତ ଆଦିକରି
ଯେକା ଦ୍ରୋପଦୀକି କରିବା ପୀଢ଼ ସରି ।୧୨୭୯
ଯେବେ ରାୟେ ପଡ଼ଇ ଯେହୁ ଦାନ
ସବୁ ତୋହୋର ହୋଇଂ ହାରିଲା ଦ୍ରବ୍ୟମାନ ।୧୨୮୦
ମୋହୋର ରାଜ୍ୟଭାର ଧନଭଣ୍ଡାର ସଇନି ସହିତେ
ଆମ୍ଭେ କ୍ରୟେ ହୋଇଂ ଭୃତ୍ୟପଣେ ଖଟିଥିବୁ ତୋତେ ।୧୨୮୧
ଦ୍ରିଯୋଧନ ବଚନେ ଯୁଝେଷ୍ଟି ଦେବ ହସି
ପଶାକାଠି ଆବେରି କତିର ଯାଇଂ ବସି ।୧୨୮୨
ଅଣ ଦୁରାପଦ ନୋହଇ ଆନ କଲା
ଆଶା ଲୁବୁଧେ ଶଶା ଆକ୍ଷ୍ୟ ଥାଉଂ ମଲା ।୧୨୮୩
ଯେବଣ ପ୍ରାଣୀ ହୋ ହାରିଣ ପୁଣ କରନ୍ତି ଆଶ
ଆପଣାର ଆକ୍ଷ୍ୟ କ୍ଷୟେ ନିଶ୍ଚୟେ ଯାନ୍ତି ନାଶ ।୧୨୮୪
ଆଶାୟେ ପରମ ଦୁଖ ସମସ୍ତେ ହେଂ ବିଚାରି
ନ ଜାଣି ଯେଡ଼େ ଭିଗ୍ୟଂଜନ ପଡୁଛନ୍ତି ବୁଡ଼ି ।୧୨୮୫
ଯୁଝେଷ୍ଟି ଦେବେ ବିଚାରନ୍ତି ଆପଣା ହୃଦଗତେ

ମହା ଜିଘ୍ନସେନୀ ସେ ପାଞ୍ଚାଳ ରାଜାର ଦୁହିତେ　　　।୨୮୬
କୋଟିୟେ ଋଷିଯେନି ମହାଋଷି ବ୍ୟାସ
ମହା ଅନଳ ଭେଦି ଯାହାର ତେଜ ପ୍ରକାଶ　　　।୨୮୭
ପରମ ମାହେଶ୍ୱରୀ ଅନାଦି ଅପର୍ଣ୍ଣା
ଯୁଗାନ୍ତେକ ଜନ୍ମି ଅନାଦି ସିଦ୍ଧ ସେହ୍ନା　　　।୨୮୮
ତାହାକୁ ପୀଢ଼ କରି କି ଆମ୍ଭେ ହାରିବୁ ପଶାୟେ
ସେ କୃଷ୍ଣାର ପ୍ରସାଦେ ଖଣ୍ଡିବା ଅପଚୟେ　　　।୨୮୯
ଦେବ ମନ୍ତ୍ର ସିଦ୍ଧା ସେ ଅଟଇ ପରମ ଯୋଗିନୀ
ଚାରି ଅବତାରେ ସେ ହୋଇଲା ଅଯୋନି　　　।୨୯୦
ମୁହିଂ ଅବା କାରଣ ପାଇବି ତାହାର ପୁଣ୍ୟବଳେ
ବୁଡ଼ିବାର ଭେଳା ଅବା ଲାଗଇ ମୋର କୂଳେ　　　।୨୯୧
ଜାତ ଅନ୍ତ ମଧ୍ୟେ ଅବସ୍ଥାନ ଅଟଇ ସେହି
ଚାରି ମୂର୍ତ୍ତି ଧରି ସେ ସଂସାର ଜନ ମୋହି　　　।୨୯୨
ଅନଳ ପଖାଳନୀ ଶରୀର ଯାହାର ନିତି
ସେ ପାଞ୍ଚାଳୀ ପ୍ରସନ୍ନେ ଅବା ଫିଟଇ ଦୁର୍ଗତି　　　।୨୯୩
ଅମୃତ ରସ ଦାନୀ ଯେ ସଂସାର ହିତକାରୀ
ତାହାର ପ୍ରସନ୍ନେ ଅବା ମୋହୋର ଅପାଦ ହୋଇପାରି　　　।୨୯୪
ଯୁଝେଷ୍ଠି ଦେବେ ବୋଇଲେ ଶକୁନି ମନ୍ତ୍ରୀ ଛାମୁ
ଦ୍ରୋପଦୀକି ପୀଢ଼ କଲି ମୁଂ ପଶାପାଡ଼ ମାମୁଂ　　　।୨୯୫
କ୍ରୋଧେଣ ଗଦ ଗଦ ଧର୍ମରାୟେ ଯୁଝେଷ୍ଠି
ଭୋ ଦଇବ ବିଧାତା ବୋଲି ମନେ ମହାକଷ୍ଟି　　　।୨୯୬
ଧର୍ମ ଧର୍ମ ସ୍ମରନ୍ତି ଦେବ ଆପଣା ହୃଦଗତେ
ପଞ୍ଚୁରାଜ୍ୟ ପରିଜା କରିଅଛି ଯେକା ଦ୍ରୋପଦୀର
　　　　　　　　　　　　ନିମନ୍ତେ　　　।୨୯୭
ଯୁଝେଷ୍ଠିଙ୍କ କୋପ ଦେଖି ବିହନ୍ତା ପୁରୁଷେ
ଭୟେ କରି ମିଳିଲେ ଯାଇଂ ପିତାମହ ପାଶେ　　　।୨୯୮
ଭୋ ଦେବ ମଧପୁରେ ଧର୍ମରାୟେ ଯୁଝେଷ୍ଠି
ସକଳ ସମ୍ପଦ ହାରିଲା ଜିଣିଲା ଧୃତିରାଷ୍ଟ୍ରି　　　।୨୯୯
ଭାଇନ୍ତ ଘେନିଣ ଆତ୍ମା କ୍ରୟେ ହେଲେ ପଶାୟେ କୋତୋହୋଳେ
ଭାରିଯା ସହିତେ ହାରିବ ବିପାକ କର୍ମବଳେ　　　।୩୦୦
ଯେ ସେ ପାଣ୍ଡବେ ସେ ନାରାୟଣ ସରୂପ
ଅନ୍ତକାଳେ ନ ପୁଣ ସେ ଆମ୍ଭନ୍ତ କରନ୍ତି କୋପ　　　।୩୦୧
ତୁ ଧାତୁବାଦ ପୁରୁଷ ନବ ସୃଷ୍ଟିକରତା
ଧାରଣା ପୁରୁଷ ତୁହି ନାମ ତୋହୋର ଧାତା　　　।୩୦୨

ଧାତାୟେ ଆଗ୍ୟାଂଦିଲେ ଅସ୍ଥୁକାର ପୁରୁଷକୁ
କଳିକାଳ ହରାଉଛି ଯୁଝେଷ୍ଠି ଦେବଙ୍କୁ　　　।୩୦୩
ପୃଥୀର ଭାରାଭର ଲୀନ ହୋଇବା ନିମନ୍ତେ
ଜିଣୁ ଦ୍ରିଯୋଧନ ଜିଘ୍ନସେନୀ ସହିତେ　　　।୩୦୪
ସତୀଂକି ଜିଘାସେ ତୁଟିବ ତାର ଆୟୁଷ୍ୟ
ଭାରିଯା ଜିଘାସେ ସହୋଦ୍ର କରିବେ ନାଶ　　　।୩୦୫
ଯାଅ ତୁମ୍ଭେ ବେଗ ହୋଇ ଚାରିପୁରୁଷେ ଅସ୍ଥୁକରା
କଉରୋବନ୍ତ ଜିଣାଇଂ ପାଣ୍ଡବନ୍ତ ବେଗେ ହରା　　　।୩୦୬
ବହନ ଦ୍ରିଯୋଧନ ମହାସତୀଙ୍କି ଜିଘାସୁ
ରାଗେଣ ଭୀମସେନ କଉରୋବ ବଳ ଧଂସୁ　　　।୩୦୭
ବ୍ରହ୍ମାୟେ ସରଜିଲା ଯାହା ସଞ୍ଚିତ କରି
କେହୁ ତାହା ଅନ୍ୟଥା କରିବା ମାନବ ଦେହଧରି　　　।୩୦୮
ଅସ୍ଥୁକରା ପୁରୁଷେ ଯେ ବହନେ ଅଇଲେ
ଶକୁନି ହୃଦରେ ସେ ସମସ୍ତେ ହେଂ ପଶିଲେ　　　।୩୦୯
ଆତ୍ମା ବିକଳେ ଯେ ଦେବ ଧର୍ମସୁତେ
ପଞ୍ଚୁରାଜ୍ୟ ପରିଜା କରିଛନ୍ତି ଯେକା ଦ୍ରୋପଦୀର ନିମନ୍ତେ　।୩୧୦
ଯୁଝେଷ୍ଠି ଦେବେ ବୋଇଲେ ଶୁଣିମା ଦ୍ରିଯୋଧନ
ତୋହୋର ମୋହୋର ପାଲଟ କରିବାକି ଦାନ　　　।୩୧୧
ତୋହୋର ହୋଉ ବାମଞ୍ଚା ମୋହୋର ହୋଉ ପଞ୍ଚୁଆତି
ବାମଞ୍ଚା ପଡ଼ିଲେ ଆମ୍ଭେ ହାରିବୁ ଦ୍ରୋପଦୀ　　　।୩୧୨
ଯୁଝେଷ୍ଠିଂକ ବଚନେ ଦ୍ରିଯୋଧନ କଲା ସନମତ
ପଶାଯୋଡ଼ି ହସ୍ତରେ ଘେନିଲେ ଧର୍ମସୁତ　　　।୩୧୩
ଗୋରେଖ ସ୍ମରି ଯେ ଧର୍ମର କ୍ରମରେ
ପଶାକାଠି ଦିଲେ ନେଇ ଶକୁନିର କରେ　　　।୩୧୪
ଯାହା ସେ ସର୍ଜନା କରିଛନ୍ତି ଧାତା
କାହାରି ବୋଲେ ସେ ଯେ ନୋହଇ ଅନ୍ୟଥା　　　।୩୧୫
ପଶା ପାଡ଼ ମାମୁଂ ବୋଲି ବୋଲନ୍ତି ଧର୍ମସୁତେ
ପଞ୍ଚୁରାଜ୍ୟ ପରିଜା କଲି ଦ୍ରୋପଦୀର ନିମନ୍ତେ　　　।୩୧୬
ଜିତ ଜିତ ବୋଲିଣ ଶକୁନି ମହାମନ୍ତ୍ରୀ
ପଡ଼ିଲା ବାମଞ୍ଚା ହାରିଲେ ଯୁଝେଷ୍ଠି ନୃପତି　　　।୩୧୭
ହସନ୍ତି କଉରୋବେ ଯେ କରତାଳି ଦେଇ
ଅବାଢ଼େ ଚିତ୍ର ପ୍ରାୟେକ ନୋହଇ ନା ଯେହି　　　।୩୧୮
ଛାଡ଼ିଲା ଶିରୀ ସମ୍ପଦ ଅତିହିଂ ଧର୍ମପଣେ
ନେତ୍ରେ ଧୃଶାସନ ଯୁଝେଷ୍ଠିଙ୍କି ବସା ସଭାତଳେ ଯେହିକ୍ଷଣେ।୩୧୯

ରାଜାର ଆଗ୍ୟାଂଯେ ଧୃଶାସନ ମହାବୀର
ଉଠ ହୋ ଯୁଝେଷ୍ଠି ବୋଲି ଆକ୍ରେଷି ଧଇଲା ବେନି କରା ।୩୨୦
ଯୁଝେଷ୍ଠି ଦେବଙ୍କର ଅବସ୍ଥା ଦୁଖ ଦେଖି
କାଳଚକ୍ର ପ୍ରାୟେକ ଭୀମର ବୁଲଇ ବେନି ଆଖି ।୩୨୧
ଭୀଷ୍ମ ବୋଇଲେ ବାବୁ ଶୁଣ କୁରୁପତି
ଚାରି ଭାଇନ୍ତ ଦେଲୁ ଦୁଶହ ଯେ ଶାସ୍ତି ।୩୨୨
ଯୁଝେଷ୍ଠି ଥାଉ କିନା ସଭାର ଉପରେ
ଅତିହିଂ ଜିଘାସ ତୁ ନ କର କୁରୁବୀରେ ।୩୨୩
ଲକ୍ଷେ ନୃପତି ଯାହାର ଚରଣେ ହାଦେ ବନ୍ଦେ
ଜଗନ୍ନାଥ ପ୍ରଣପତ୍ୟ ଯାହାର ପଦ୍ମପାଦେ ।୩୨୪
ତେପନ ଯୁଗର ରାଜା ଯେ ଲଂକାର ବିଭୀଷଣ
ତାହାର ପାଦ ପଦ୍ମ ତଳେ କଲାକ ଦରଶନ ।୩୨୫
ବାବୁ ମହାକୋଟି କଞ୍ଚୀ ଅନନ୍ତ ନାଗରାଜା
ଯେବଣ ଯୁଝେଷ୍ଠି ପଦ୍ମପାଦେ କଲାକ ଦିବ୍ୟ ପୂଜା ।୩୨୬
ପ୍ରତକ୍ଷେ ଧର୍ମଦେବତା ତାହାଂକୁ କେତେ ଜିଘାସୁ
ଆଷ୍ୟ ଥାଉଂ ଥାଉଂ ମରଣେ କିମ୍ପେ ପଶୁ ।୩୨୭
ଆସ୍ତାନ ତଳେ ବସିଲେ ଚାରି ଭାଇ
ଯୁଝେଷ୍ଠି ଯେକା ସଭାଯେ ଥାଉଂ କିନା ରହି ।୩୨୮
କର୍ଣ୍ଣ ବୋଇଲା ସେ ହାରିଲା ସମସ୍ତ
ସଭାର ତଳେ ଯାଇଂ ବସିଲେ ଚାରି ଭ୍ରାଥ ।୩୨୯
ସୋଦର ଜିଘାସନେ ଆପଣେ କିସ ସୁଖୀ
ଯେହୁ ବୋଲି କରି ସେ କଷ୍ଟମାନ ସିନା ପାଗୁଛନ୍ତି ଦେଖି ।୩୩୦
ରକତ ମାୟେଂସ ଆବର ଛତ୍ରୀ ଦେହ ବହି
ଆପଣା ଅଭିମାନ କେହ୍ନେ ହୋୟେ ସହି ।୩୩୧
ଧୃଶାସନ ଦୁର୍ଜୟେ ହସିଲେ ନାସିକାୟେ ହସ୍ତ ଦେଇଂ
ଯେଡ଼େ ନିଲଜ୍ଜରେ ସଭାରେ ବସ କିସ ପାଇଂ ।୩୩୨
ବହୁତ ଜିଘାସ ସେ ପାଇଲେ ଅଭିମାନ
ସଭାରୁ ଉଠିଣ ଦେବ ଗଲେ ଧର୍ମନାନ ।୩୩୩
ଭାଇନ୍ତ ଘେନିଣ ତହିଂ ବସିଲେ ସଭାତଳେ
ଆଗମ୍ଭେ ବସି ହସନ୍ତି କଉରୋବ ସକଳେ ।୩୩୪
ଭୀମସେନ ଶରୀର କମ୍ପଇ ମହାକୋପେ
ଗଦାବର ବୁଲାଇ ଗର୍ଜଇ ଗରୁଡ଼ତପେ ।୩୩୫
ଯୁଝେଷ୍ଠିଂକ ବଦନ ଭୀମ ଚାହଇଂ ନିରୋପି
କିମ୍ପେ ମଉନ ହୋଉ ସ୍ୱାମୀ ଆଗ୍ୟାଂ ନ ଦେଉ ଅଦ୍ୟାପି ।୩୩୬
ଶତ୍ରୁର ଜିଘାସ ହୋ ସହତେ କି ପାରି
ବଳ ବୀର୍ଯ୍ୟ ଥାଇ କିମ୍ପେ ଦ୍ୱନ୍ଦ ହୁଂ ଅପସରି ।୩୩୭
ଅତିହିଂ ଧର୍ମ ପଣେ ସ୍ୱାମୀ ବୁଡ଼ାଇଲୁ ରାଜ୍ୟ
ସଂହାଥେଣ ପଶା ଖେଳି ହରାଇଲୁ ଅଇଶ୍ବର୍ଯ୍ୟ ।୩୩୮
ଆବର ଜୀବନେ ଆମ୍ଭର ପ୍ରୟୋଜନ କିସ
ଅବଶ୍ୟ ମରିବୁ ଆମ୍ଭେ ଖାଇଣ କାଳକୂଟ ବିଷ ।୩୩୯
ଦୁରାପଦ ପ୍ରତଗ୍ୟାଂ ଯେ କରଇ ଫାଲଗୁନି
ଗର୍ଜିଣ ଉଠିଲେ ନକୁଳ ସହଦେବ ଭାଇବେନି ।୩୪୦
ସବୁଂକରି ମୂର୍ତ୍ତି ଦେଖି ତିଆରନ୍ତି ଯୁଝେଷ୍ଠି
କୋପ ସଂହର ବାବୁରେ ନ କର ଅରଷ୍ଟି ।୩୪୧
ମୁହିଂ ଯାହା ଅର୍ଜିଲି ଭୁଞ୍ଜିବି ତାହା କର୍ମେ
ଦଇବ କଷଣ ମୋତେ କହିଅଛି ଧର୍ମେ ।୩୪୨
ମନେ ମନେ ଭାଳନ୍ତି ଯୁଝେଷ୍ଠି ରାଜଦେବ
ଭୋ ଦେବ ନିରଞ୍ଜନ ପୁରୁଷ ଧାତା ଦଇବ ।୩୪୩
ନ ପୁଣ ଭୀମସେନ କୋପ କରି ନାଶଇ କଉରୋବ
ଅନ୍ଧରାଜା ଗୋଟି ମୋର ଅନାସ୍ତ ହୋଇବ ।୩୪୪
ନ ପୁଣ ସୋଦରନ୍ତ ନ ପଡ଼ଇ ପରମାଦ
ଯେ ମୋହୋର କର୍ମେ ଦୁଖ ଅଛଇ ଅପାଦ ।୩୪୫
ବାବୁ କୋପ ନ କର ବୋଲି ଯୁଝେଷ୍ଠି ତିଆରି
ଧର୍ମର ବଚନେ ଅଲଘିତ ଭାଇ ଚାରି ।୩୪୬
ଯୁଝେଷ୍ଠିଙ୍କ ବଚନେ ସଂହରିଲେ ସର୍ବେ କୋପ
ବଇନେତ୍ର ଦେଖି ଯେହ୍ନେ ଘଞ୍ଚଇ କାଳ ସର୍ପ ।୩୪୭
କର୍ମ ଆଦରିଣ ରହିଲେ ଚାରି ଭ୍ରାଥେ
ସାଧୁ ସାଧୁ ଯୁଝେଷ୍ଠି ବୋଲି ବୋଇଲେ ସମସ୍ତେ ।୩୪୮
ଆସ୍ତାନରେ ଥାଇଂ ବୋଲନ୍ତି କୁରୁରାଣ
ହାରିଣ ରାଜ୍ୟ ଭାର ହୋଇଲେ ଭୃତ୍ୟ ପଣ ।୩୪୯
ନାପିତ ଜାଣିଣରେ ହୋଇଲେ ପେଷକାରୀ
ତୁମ୍ଭର ଜୀବନରେ ଭୃତ୍ୟର ଭୃତ୍ୟ ସରି ।୩୫୦
ବିଦୁର ବୋଇଲେ ବାବୁ ପାଣ୍ଡବନ୍ତ କେତେହେଂ ଜିଘାସୁ
ସଞ୍ଚୟେ କରି ବଂଶ ନାଶ କରିବା ବୁଦ୍ଧିରେ କିମ୍ବା ପଶୁ ।୩୫୧
ଦ୍ରିଯୋଧନ ବୋଇଲା ଦେଖିଲା ନାହିଂକି ତୁମ୍ଭେ କେହି
ମାୟା ସଭାୟେ କରି ଯେ ଜିଘାସିଲେ ଯେହି ।୩୫୨
ଜଳ ସଷ୍ଟିକ ଯେ କଲେ ଯେକ ମୂର୍ତ୍ତି
ବାରିତ ନ ଗଲା ମୋତେ ଯେହାଂକର କୃଟ ଯେ ପ୍ରକୃତି ।୩୫୩

ଆଉଛି ବସିଲି ମୁଂ ଥଳ ବୋଲି କରି
ଜଳର ଭିତରେ ମୁଁ ପଡ଼ିଗଲି ବୁଡ଼ି କରି ।୩୫୪
କରେ କରତାଳି ମାରି ସେ ହସିଲେ ପାଣ୍ଡବେ
ତେତେବେଳେ ତୁମ୍ଭର ଯେ ପଡ଼ିଲା ପରସ୍ତାବେ ।୩୫୫
ସମ୍ପଦ ବିପଦ ଯେ ରାତ୍ର ଦିବସ ପରାୟେ
ଯେବେ ବିପଦ ପଡ଼ିଲା ସହିବ ନାହିଂକି ରାୟେ ।୩୫୬
କହୁ କହୁ କୋପାନଳ ବଢ଼ିଲା କୁରୁପତି
ଆରେ ଆରେ ପାଣ୍ଡବନ୍ତ ତହିଂକି ଆଣରେ ଦ୍ରୋପତୀ ।୩୫୭

■■

## ଦୁଃଶାସନ କର୍ତ୍ତୃକ ଦୌପଦୀଙ୍କୁ ସଭାସ୍ଥଳକୁ ଆନୟନ

ଯେହାଙ୍କର ତୁଲେ ବସାଅ ତାକୁ ଆଣି
ସଭାରୁ ଧୁଶାସନ ଧାମଇଂ ଶିର ଝୁଣି ।୧
ଚଉଷଠି ଚଉଷଠି ଭାର ଗଦା ଘେନିଣ ବେନିକରେ
ଧାମଇଂ ଧୁଶାସନ ପବନୁହୁଂ ଖରେ ।୨
ଖାଂକର କେଶ ଊର୍ଦ୍ଧ କପାଳ ବିକଟାଳ
ତମ୍ୱା ଚକ୍ର ପ୍ରାୟେ ନୟନ ବୁଲାଇ ପରଖର ।୩
ଧାମଇ କୁମର ଧୁଶାସନ ଜେନା
ତାଳ ତୋଢ଼ର ବାହୁଟି ମୁକୁଟ ବଜ୍ର ସେହ୍ନା ।୪
ଅନେକ ରତ୍ନ ଯେ ଭୂଷଣ ତାର କାୟେ
ଦିଶଇ କୁମର ମଣି କାର୍ତ୍ତିକେଶ୍ୱର ପ୍ରାୟେ ।୫
ରଡ଼ି ଶବଦ ଘାୟେ କମ୍ପଇ ଭୂଅଖଣ୍ଡ
ପାଦ ଭରେ ମେଦିନୀ କମ୍ପଇ ସପତ ବ୍ରହ୍ମାଣ୍ଡ ।୬
ବୀରବର ପ୍ରତଗ୍ୟାଂ କରିଣ ଧୁଶାସନ
ପ୍ରବେଶ ହୋଇଲା ଯାଇଂ ବାରୁଣାବନ୍ତ ଭୁବନ ।୭
ଧୁଶାସନକଇଂ ଦେଖିଣ ଯେ ପଳାଇଲେ ପୋଇଲି
ଦ୍ରୋପତୀଙ୍କ ଆଗେ ଯାଇଂ କହିଲେ ମୁଦୁସୁଲୀ ।୮
ଶୁଣ ଗୋ ଗୋସାମଣୀ ଧୁଶାସନି ଧାମଇଂ ଅତିବେଗେ
ସିଂଘଦ୍ୱାରେ ଆସି ପ୍ରବେଶ ଅତିରାଗେ ।୯
ଦ୍ୱାର ରକ୍ଷା କରୁଥିଲେ ଦ୍ୱାରପାଳେ
ଧୁଶାସନକଇଂ ଉଗାଳିଲେ ପୁରେ ପଶିବାର ବେଳେ ।୧୦
ଆଢ଼ୋ ଆଢ଼ୋ କହିରେ ରେକାର ଶବଦ କରି
ହାରରକ୍ଷାମାନନ୍ତ ଆସଇ ବୀର ପେଲି ।୧୧
ଲକ୍ଷେକ ଯୋଦ୍ଧା ଯେ ଉଗାଳିଲେ ବେଗେ ଯାଇଂ
ଆରେ ଆରେ କଉରୋବା ପଶୁ କାହିଂ ପାଇଂ ।୧୨
ଗଦା ମୁଦୁଗର ଯେ ପରିଘ ତୀଖ ମୁନା
ଧନୁ କ୍ରୋଣ କୁନ୍ତ ଅସିପତ୍ର ବଜ୍ର ସେହ୍ନା ।୧୩
ଅନେକ ନାରାଜମାନ ଧନୁରେ ପୂରୋଇ
ଧୁଶାସନ ଉପରକୁ ବିନ୍ଧିଲେ ତୁହାଇ ।୧୪
ପଡ଼ନ୍ତି ନାରାଜେ ଯେ ଗଗନୁଂ ଧରା ଜାଣି
କକଡ଼ା ମାସେ ଯେହ୍ନେ ବରଷଇ ପାଣି ।୧୫
ଯେମନ୍ତ ନାରାଜ ପଡ଼ନ୍ତେ ଦେଖଇ ଧୁଶାସନ
ମତ୍ତଗଜ ପ୍ରାୟେ ଦିଶଇ ଉଦ୍ଦାମ ।୧୬
ଡାକେଣ କମ୍ପଇ ପୃଥିବୀ ମହାଭାରା
ଧାଇଂଣ ପ୍ରହାର ଯେ କରଇ ମହାବୀରା ।୧୭
ମତ୍ତଗଜ ଦେଖି ଯେହ୍ନେ ଧାମଇ ମତ୍ତ ସିଂଘେ
ହେଠ ମାଥେ ଚଳଇ ବୀର ବୟସ ମତ୍ତଗର୍ବେ ।୧୮
ଦୁସହ ଧୁଶାସନ ପ୍ରତଗ୍ୟାଂ ଯାହାର ବିରଧୁ
ଅଇରି ଦର୍ପଗଞ୍ଜନ ଗର୍ଜଇ ଯେହ୍ନେ ସିନ୍ଧୁ ।୧୯
ରେ ରେ କାର ଶବଦେଣ ଗର୍ଜିଣ ବୀର ଉଠି
ସନ୍ୟଂକ ଉପରେ ଧୁଶାସନ ଗଦା ନେଇ ପିଟି ।୨୦
ମହା ଗଜନ୍ତ ଆରୋହି ଥିଲେ ଯେ ମାହୁନ୍ତେ
ଢଳିଲେ ମତ୍ତଗଜେ ଧୁଶାସନ ଗଦା ଘାତେ ।୨୧
ପୁଣ ପୁଣ ପ୍ରହାର ଯେ କରଇ କୁମର
ଗଜଂକର କୁମ୍ଭସ୍ଥଳ ବାଜି ହୋଇଲା ଶତେ ଚୂର ।୨୨
ଅସୁଆରେ ମାହୁନ୍ତେ ମାରନ୍ତି କୁନ୍ତ ତୋଳି
ଘାୟେଣ ନ ମାନଇ ସେ କଉରୋବ ମହାବଳୀ ।୨୩
ପାଣ୍ଡବ ବୀର ଯେ ଅଟନ୍ତି ନିର୍ଭୟା
ମାରନ୍ତି ଶହସ୍ର ପଡ଼ଇ ଧୁଶା କାୟା ।୨୪
କେ ଗଦା ପିଟନ୍ତି କେ ମାରନ୍ତି କୋନ୍ତକାର
କେ ଶକତି ବଜ୍ରଶର ମାରନ୍ତି ଉପର ।୨୫
ସନ୍ୟଂକର ଶହସ୍ର ନ କାଟେ ଧୁଶା କାୟେ
ଧୁଶାସନ ଗଦାୟେ ଲୋଟନ୍ତି ଗଜହୟେ ।୨୬
ଅଶ୍ୱଗଜ ପାଦାନ୍ତି ଯେ ପଡୁଛନ୍ତି ଢଳି
ଗୁଧିରେ ଧୁଶାସନ ଯେ କରଇ ରଙ୍ଗକେଳି ।୨୭
ଖଗବର ଦେଖି ଯେହ୍ନେ ପଳାବନ୍ତି ନାଗେ
ତ୍ରାସେଣ କେହି ନ ରହନ୍ତି ତାର ଆଗେ ।୨୮

ଦ୍ୱାର ଓହାଡ଼ ଜଗତୀ ପକାଇଲା ସର୍ବଭାଙ୍ଗି
ଭିତରେ ଧୁଶାସନ ପଶିଲା ଗଳଗାଜି ।୧୨୯
ଦୁଇ ଦ୍ୱାରେ ଥିଲେ ମୁକୁଟ ବନ୍ଧା ଯୋଦ୍ଧାମାନେ
ବସୁସେନ ଶୂରସେନ କଉଶିକ ବୀର କର୍ଣ୍ଣେ ।୧୩୦
ସୁର ଧଂସନ ଗୋପାଳ ଶଶିରେଖା
ଅନୁସର କେଶବ ଯେ ଜନଗଣ ଶିଖା ।୧୩୧
ଯେହାଙ୍କର ମୂଳେ ହୋ ଅନେକ ସେନାପତି
ଅଶ୍ୱନ୍ତ ଆରୋହି ଆସି ଓଗାଳିଲେ ତତକ୍ଷଣାନ୍ତି ।୧୩୨
ନବ ଲକ୍ଷ ଯୋଧା ଯେ ମୁକୁଟ ଶିଖା ମାଥେ
ଝଲକାନ୍ତି ଲାଂକିଆ ବୁଲାବନ୍ତି ବେନି ହାଥେ ।୧୩୩
ଆରେ ଆରେ ଧୁଶାସନ ଯିବୁ ଆରେ କାହିଂ
ରାଜ୍ୟରେ ପଶୁଅଛୁରେ ଠାକୁରଙ୍କର ଆଗ୍ୟାଂ ନାହିଂ ।୧୩୪
ଗଦାବର ପିଟି ଆଜ ଘେନିମୁଂ ପରାଣ
ସୋଦର ଯହୁଂ ତୁ ପାଣ୍ଡବଂକର ଗୁରୁରାଣ ।୧୩୫
ଅବଗ୍ୟାଂ କରି ଯେବେ ଗଡ଼େ ପଶିଲୁ ଅଦ୍ୟାପି
ବାହୁଡ଼ି ଯାଅସିରେ ନ ପଶ ମୂଢ଼ ପାପୀ ।୧୩୬
ପାଣ୍ଡବ ବଳଂକର ଘୋର ମୂର୍ତ୍ତି ଦେଖି
ଭୟେ ଧୁଶାସନ କହଇ କୋପ ଯେ ଉପେଖି ।୧୩୭
ଧୁଶାସନ ବୋଇଲା ତୁମ୍ଭେ ବଡ଼ାଇ ଦୁର୍ଦ୍ଧାର
ସବୁନ୍ତି ନାଶ କରନ୍ତିରେ ତୁମ୍ଭେ ସମସ୍ତେ ଆମ୍ଭର ।୧୩୮
ଯୁଝେଷ୍ଟି ଦେବ ପଶିଲେ ପଶାର ବିନୋଦେ
ରାଜ୍ୟ ଭାର ସିଂହାସନ ହାରିଲେ ସମସ୍ତ ସମ୍ପଦେ ।୧୩୯
ଭାଇନ୍ତ ସହିତେ ହାରି ହୋଇଲେ ଆତ୍ମା କ୍ରିୟେ
ଦ୍ରୋପଦୀ ସହିତେ ସେ ହାରିଲେ ପଶାୟେ ।୧୪୦
ରଥ ଗଜ ଅଶ୍ୱ ସନ୍ୟ ଭଣ୍ଡାର ଆଦି କରି
ସବୁ ଆମ୍ଭର ହୋଇଲାନି ତୁମ୍ଭେ କିମ୍ପେ ଦ୍ୱନ୍ଦକାରୀ ।୧୪୧
ତୁମ୍ଭର ପ୍ରଭୁରେ ଅର୍ଜିଲାକ ଯାହା
ସକଳେ ବିଚାରିଣ ବୁଝସିରେ ଯେହା ।୧୪୨
ପାଣ୍ଡବେହେଁ ଆମ୍ଭର ହୋଇଲେନି ଜାଣ ଭୃତ୍ୟ
ତାହାଂକର ପତ୍ନୀ ନେଇ ଅଇଲି ନିୟତ ।୧୪୩
ସାକ୍ଷ ବାକ୍ୟ କହଇ ଧୁଶାସନ ମହାଯୋଧୀ
ସରୂପ ବାରତା କହି ସବୁନ୍ତି ପ୍ରବୋଧି ।୧୪୪
ଯଦ୍ୟପି ଦ୍ୱନ୍ଦ ତୁମ୍ଭେ କରିବ ଆମ୍ଭର ତୁଲେ
କେହି ନ ବର୍ତ୍ତିବଟି ଦ୍ରିଯୋଧନ କୋପକଲେ ।୧୪୫

ଧୁଶାସନର ବଚନେ ସଇନି ଗଲେ ବୋଧ
ଭୟେଣ ବାଟ ଛାଡ଼ିଲେ କେହି ନ କଲେ ବିରୋଧ ।୧୪୬
ରାହୁର ପ୍ରାୟେ ସେ ଘୋଟିଲା ଧୁଶାସନ ବୀର
ଗର୍ଜନ ନାଦ କରି ପଶିଲା ଅନ୍ତେଶ୍ୱର ପୁର ।୧୪୭
ଥୋକେ ଦ୍ୱାରପାଳେ ଭୟେ ପଳାଇଣ ଗଲେ
କୁନ୍ତୀଙ୍କ ଆଗରେ ଯାଇଂ ସର୍ବେ ଜଣାଇଲେ ।୧୪୮
ଭୋ ମାତ ଆଜ ଯେ କିସ ଅସମ୍ଭବ ହେଲା
ଧୁଶାସନ ଆସି ବହୁ ଉପଦ୍ରବ କଲା ।୧୪୯
ଦ୍ୱାରପାଳନ୍ତ ନ ମାନି ଭିତରକୁ ପଶେ
ଦେଖି ଯେ ବିପଦ ମାତ ଅଇଲୁଂ ତୋ ପାଶେ ।୧୫୦
ଶୁଣି କୋନ୍ତଭୋଜ ସୁତା ତକ୍ଷଣେ ଗମିଲେ
ସିଂଘଦ୍ୱାରେ ଉଭା ହୋଇ ଦ୍ୱାର ଆବୋରିଲେ ।୧୫୧
ବୋଇଲେ ଧୁଶାସନରେ ଅଇଲୁ କିସ ପାଇଂ
ସିଂହର ଗୃହରେ କିମ୍ପେ ଶ୍ରିକାଳ ପଶଇ ।୧୫୨
ବସ ଦଣ୍ଡେ ବୁଝିବାରେ କେବଣ ସମାଚାର
ଶୁଣି ଧୁଶାସନ ବୋଲେ ଯୋଡ଼ି ବେନିକର ।୧୫୩
ମୋହୋର ନାହିଂଟି ମାତ କିଞ୍ଚିତରେ ଦୋଷ
ତବ ପୁତ୍ର ମନ୍ଦ ପଣେ କଲେ ସର୍ବ ନାଶ ।୧୫୪
ଦ୍ରିଯୋଧନ ସଙ୍ଗେ ହେଲେ ପଶା ଖେଳେ ଭୋଳ
ରାଜ୍ୟ ଦଣ୍ଡ ସିଂହାସନ ହାରିଲେ ସକଳ ।୧୫୫
ଚାରି ଭାଇନ୍ତ ହାରିଲେ ଆପଣା ସହିତେ
ପୁଣିହିଂ ଦ୍ରୋପଦୀଙ୍କି ହାରିଲେ ଗୋ ମାତେ ।୧୫୬
କୁରୁପତି ଆଗ୍ୟାଂୟେ ମୁଂ ଯେଥେ ଅଛି ଆସି
ଦ୍ରୋପଦୀଙ୍କି ନେମଇ ମୁଂ ଅନ୍ତପୁରେ ପଶି ।୧୫୭
ଆଗୋ ମାତ ଛାଡ଼ ଦ୍ୱାର ଯିବଇଂ ଭିତର
ଦଣ୍ଡ ପାଇବି ମୁଂ କ୍ଷଣେ ହୋଇଲେ ଉଛୁର ।୧୫୮
କୁନ୍ତୀ ବୋଇଲେରେ ବାବୁ ଶୁଣ ମୋ ଉତ୍ତର
କେଉଂ ପାଡ଼େ କି କି ହାରିଛନ୍ତି ପୁତ୍ର ମୋର ।୧୫୯
ଧୁଶାସନ ବୋଲେ ପ୍ରଥମରେ ଅଳଂକାର
ଦୁଜେଣ ହାରିଲେ ସର୍ବ ଧନ ଯେ ଭଣ୍ଡାର ।୧୬୦
ତିଜେଣ ହାରିଲେ ପୁଣ ଦଣ୍ଡ ସିଂହାସନ
ଚତୁର୍ଥେ ହାରିଲେ ରଥଗଜ ଅଶ୍ୱମାନ ।୧୬୧
ପଞ୍ଚମରେ ହାରିଲେ ସେ ଅର୍ଦ୍ଧ ପଞ୍ଚ ରାଜ୍ୟ
ଷଷ୍ଠ ପୀଡ଼ରେ ହାରିଲେ ପବନ ଆତ୍ମଜ ।୧୬୨

ସପ୍ତମେ ଫାଲଗୁନି ଅଷ୍ଟମେ ମାଦ୍ରୀବାଳ
ସହଦେବଂକୁ ହାରିଲେ ନବମର ବେଳ　　　　୧୬୩
ଦଶମ ପୀଢ଼ରେ ଆପେ ଆତ୍ମା ତ୍ରୟେ କଲେ
ଯେକାଦଶରେ ଦ୍ରୁପଦ କୁମାରୀ ହାରିଲେ　　　　୧୬୪
ଯେପରି ସର୍ବ ସମ୍ପଦ ହାରିଲେ ତୋ ସୁତ
ଆମ୍ଭର ତ ଦୋଷ ନାହିଁ ଶୁଣସି ଗୋ ମାତ　　　　୧୬୫
କୁନ୍ତୀ ବୋଇଲେ ରେ ବାବୁ ଶୁଣ ମୋ ବଚନ
ପ୍ରଥମ ବିବାହ ନାରୀ ଦ୍ରଉପତୀ ଜାଣ　　　　୧୬୬
ପ୍ରଥମରେ ହାରିଥିଲେ ନିଅନ୍ତ ତତ୍କାଳ
ଯେ ଛାର କଥାକୁ ପୁତ୍ର କରୁଛ କଟାଳ　　　　୧୬୭
ଭାଇ ଭାଇରେ ମିଛେ କରୁଅଛ କଳି
ଯେଥିରେ କି ଦୋଷ କଲା ଦ୍ରୋପଦ ଦୁଲାଳୀ　　　　୧୬୮
ଧୁଶାସନ ବୋଲେ ମାତ ଛାଡ଼ି ଦିଅ ଦ୍ୱାର
କହି ବୁଲାଇଲା ରଙ୍ଗ ନେତ୍ର ଧୁଶା ବୀର　　　　୧୬୯
ପେଲି ଦ୍ୟେନ୍ତେ ପଡ଼ିଲେ ଦେବୀ କବାଟ କଣର
ଡାକଦିଲେ ଯେବେ ରକ୍ଷାକର ଚକ୍ରଧର　　　　୧୭୦
ଦ୍ୱାରିକା ଛାଡ଼ି କିବା ଗଲ ଦଉଡ଼ାରି
ତେଣୁ ଧୁଶାସନ ପଶୁଅଛି ଆମ୍ଭ ପୁରୀ　　　　୧୭୧
କେତେ କେତେ ବିପତ୍ତିରୁ ଉଦ୍ଧରି ଅଛ ମୋରେ
ଯେବେ ଦୟା ଛାଡ଼ିଲକି ଯୁଧେଷ୍ଟିର ଠାରେ　　　　୧୭୨
କି ଅବା ସେ ଯେବେ ମଲେ ପଞ୍ଚୁ ପୁତ୍ରେ ମୋର
ତେଣୁ କରି ଧୁଶାସନ ପଶୁଅଛି ଅନ୍ତପୁର　　　　୧୭୩
ଆଗେ ଦ୍ରୋପତୀ ଦେବୀ ହୁଅସି ସାବଧାନ
ସୋହୋଦ୍ରାକୁ ଘେନି ଲୁଚ ଅନ୍ତେଶ୍ୱର ସଦନ　　　　୧୭୪
ବଳାତ୍କାରେ ଧୁଶାସନ ପଶେ ଆମ୍ଭ ପୁରେ
ଗୁପ୍ତେ ରହିଥାଅ ତୁମ୍ଭେ ଅଦୃଶ୍ୟ ଭାବରେ　　　　୧୭୫
ଶୁଣିଣ ଦ୍ରୌପତୀ ଦେବୀ ଚମକିତ ହୋଇ
ପଳାଇ ପାକଶାଳେ ଲୁଚିଲେକ ଯାଇଁ　　　　୧୭୬
ତରତରେ ଫିଟିଣ ପଡ଼ଇ କେଶବାସ
ବ୍ୟାଘ୍ରର ଭୟେ ମୃଗୁଣୀ ପ୍ରାୟେ ଯଥା ତ୍ରାସ　　　　୧୭୭
ଆକୁଳେ ଦ୍ରୋପତୀ ଦେବୀ ଛାଡ଼ିଣ ନିଶ୍ୱାସ
ଭିତର ପୁରେ ଯାଇଂଣ ହୋଇଲେ ଅଦୃଶ୍ୟ　　　　୧୭୮
ଯେକାଳେ ଭିତରେ ପଶି ଧୁଶାସନ ବୀର
ଖୋଜଇ ଡାଳିମ୍ୱ ପୁର ନେତ୍ର ବାସ ପୁର　　　　୧୭୯
ଝୀନପୁର ରତ୍ନପୁର କଉସ୍ତୁଭମଣି ପୁର
ଇନ୍ଦ୍ର ଅବକାଶ ପୁର ଖୋଜେ ଧୁଶାସନ ବୀର　　　　୧୮୦
ଯେଉଂପୁରେ ଯୁଧେଷ୍ଟିର କରନ୍ତି ଶୟନ
ସରି ନୋହିବ ଲକ୍ଷରେ ମଘବା ଭୁବନ　　　　୧୮୧
ଚାରିକ୍ରୋଶ ଦୀର୍ଘ ପ୍ରତି ଅଟଇ ସଦନ
ହୀରା ନୀଳା ମୋତିରେ ହୋଇଛି ବିତପନ　　　　୧୮୨
ସ୍ଥାନେ ସ୍ଥାନେ ଲାଗିଅଛି ମୁକୁତାର ଝରା
ପ୍ରବାଳ ସ୍ତମ୍ଭରେ ଶୋଭା ଅଟେ ମନୋହରା　　　　୧୮୩
ସ୍ଥାନେ ସ୍ଥାନେ ପାଟବସ୍ତ୍ର ହୋଇଛି ଚାନ୍ଦୁଆ
ମର୍କତ ଚାମରମାନ ଲମ୍ୱିଅଛି ନୂଆ　　　　୧୮୪
ଖୋଜି ଖୋଜି ଧୁଶାସନ କାହିଁ ନ ପାଇଲା
ରୋଷାଇଂ ଶାଳ ଯାଇଂ ପ୍ରବେଶ ହୋଇଲା　　　　୧୮୫
ଚଉଦିଗେ ଖୋଜଇ ସେ ଗାନ୍ଧାରୀର ସୁନୁ
ବାଳ ଆଦିତ୍ୟ ପ୍ରାୟେ ଦିଶେ ପାଞ୍ଚାଳୀର ତନୁ　　　　୧୮୬
ରାହୁର ଭୟେ କି ଯେଥି ଅଛଇ ଶଶଧର
ଦେଖି ଦୁଶାସନ ମନେ ହେଲା ଆଚମ୍ୱିତ
ଆକାଶ ଛାଡ଼ି ଯେଥେ ଅଛଇ ଦିନା ନାଥ　　　　୧୮୭
ନିକଟରେ ଯାଇଂ ଚିହ୍ନିଲା ଯେ ସେ ଦ୍ରୋପତୀ ଶରୀର　　　　୧୮୮
ହସ୍ତ ବଢ଼ାବନ୍ତେ କେଶ ଆକର୍ଷେ ପାମର
ଦ୍ରୋପତୀ ଆକୁଳେ ତାକୁ ଦିଅନ୍ତି ଉତ୍ତର　　　　୧୮୯
ନଛୁଅଁ ମୋହୋର ଅଙ୍ଗ ଆହେ ଧୁଶାସନ
ମୋର ଅଙ୍ଗ ହୋଇଅଛି ପାକା ଯେ ସ୍ପର୍ଶନ　　　　୧୯୦
ଧୁଶାସନ ବୋଇଲା ବାଇ ହୋଇଲୁ ଅସତୀ
ନିର୍ଲଜ ହୋଇ ବୋଲୁଛୁ ମୁଖେ ରଜୋବତୀ　　　　୧୯୧
ଯେକାଳେ ଛୁଇଂଲେ ଅଙ୍ଗ ଘୋଟିବ କି ଦୋଷ
ଶୁଣି ଦ୍ରୋପତୀ କହନ୍ତି ଧୁଶାସନ ପାଶ　　　　୧୯୨
ପ୍ରଥମଦିନ ରଜୋବତୀ ନାରୀକି ଛୁଇଂଲେ
ଲିଙ୍ଗଭଗ୍ନ ଦୋଷ ଯେ ପୁରୁଷ ଯାଇ ହେଲେ　　　　୧୯୩
ଦୁତୀୟ ଦିନ ଛୁଇଂଲେ ରଜୋବତୀ ନାରୀ
ଗୋ ହତ୍ୟା ଦୋଷ ଲଭେ ପୁରୁଷର ତୁଟେ ଶିରୀ　　　　୧୯୪
ତୃତୀୟ ଦିନ ଛୁଂଇଲେ ବ୍ରହ୍ମହତ୍ୟା ଦୋଷ
ଚତୁର୍ଥ ଦିନ ବାଳହତ୍ୟା ଦୋଷ ଲଭେ ଯେ ପୁରୁଷ　　　　୧୯୫
ସୋଦର ବଧ ଦୋଷ ପଞ୍ଚମ ଦିନେ ପାଇ
ମାତୃ ହରଣ ଦୋଷଟି ଷଷ୍ଠରେ ଲଭଇ　　　　୧୯୬

ସପତ ଦିନଟି ଶୁଦ୍ଧ ହୋଯେ ନାରୀ
ଅଯେଂଲା ଘେନିଣ ଯାନ୍ତି ଥାଉଂ ବିଭାବରୀ ।୯୭
ସ୍ନାହାନ ସାରି ଓଦା ବାସ ପିନ୍ଧି କୂଳେ ଉଠି
କାହାକଇଂ ନ ଚାହିଂ ଆସଇ ଘରକୁ ନେଉଟି ।୯୮
ପ୍ରଣମି ଗୁରୁ ବ୍ରାହ୍ମଣ ଶାଶୁ ଯେ ଶ୍ୱଶୁରେ
ଗୃହ କୁଟୁମ୍ବାଦି କାର୍ଯ୍ୟ ତାହା ଉତ୍ତାରୁ ସେ କରେ ।୯୯
ନିଜ ଅଙ୍ଗ ସୁବେଶ କରିଣ ରୟଣୀରେ
କାନ୍ତ ସଙ୍ଗତେ ବିହାର କରଇ ଆନନ୍ଦରେ ।୧୦୦
ତେବେ ଜାଣ ଉପୁଜଇ ଅପୁରୁବ ନନ୍ଦନ
ଲକ୍ଷେ ପ୍ରାଣୀ ପୋଷେଣ ସେ ହୁଅଇ ଭାଜନ ।୧୦୧
ଧୁଶାସନ ବୋଇଲା ମୁଂ ନ ଜାଣଇ ବିଶୁଆସ
ନୟନ ତରାଟି ଧାଇଂଲା ଦ୍ରୋପଦୀର ପାଶ ।୧୦୨
ଯେସନେକେ ରାହୁ ଧାମଇଂ କୋପଭରେ
ଗର୍ଜନ ଶବଦ କରି ପଶିଲା ଅନ୍ତପୁରେ ।୧୦୩
ଧୁଶାସନର ଦୁର୍ବୁଦ୍ଧି ଦେଖିଣ ପାଞ୍ଚାଳୀ
ଅନ୍ତେଶ୍ୱର ପୁରେ ଲୁଚିଲେ ଯାଇଂ ଦ୍ରୁପଦ ଦୁଲାଳୀ ।୧୦୪
ଆଲୋ ଆଲୋ ବୋଲିଣ ହାକଇ ବୀରମଣି
କାହିଂ ଲୁଚିଅଛୁ ଲୋ ପାଣ୍ଡବକୁଳ ରାଣୀ ।୧୦୫
ଧୁଶାସନ ମୁଖୁଂ ଶୁଣିଣ ଯେସନ ଅନୀତି
ଦ୍ୱାର ଆବୋରି ରହିଲେ କୁନ୍ତଭୋଜର ଦୁହିତୀ ।୧୦୬
ଅନେକ ତିଆରିଣ ଦେବୀ ବିନୟ ବଚନ ବୋଲି
କୋପଭରେ ଧୁଶାସନ କୋଇନ୍ତାଂକୁ ପକାଇ ଦିଲା ପେଲି ।୧୦୭
ଉତ୍ତାନଶାୟୀ ହୋଇ ପଡ଼ିଲେ କୋନ୍ତି ଭୋଜର କୁମାରୀ
ଡେଇଂଣ ଧୁଶାସନ ଯେ ପଶିଲା ଅନ୍ତପୁରୀ ।୧୦୮
ପୁରେ ପଶନ୍ତେ ଦେବୀ ରୋବଇ ଉଚ୍ଚସ୍ୱରେ
ଶବଦ ଶୁଣିଣ ଧୁଶାସନ ଭେଟିଲା କତିରେ ।୧୦୯
ଧୁଶାସନଙ୍କୁ ଦେଖି ଦେବୀ ପଳାଇଲେ ଅତି ଖରେ
ଯାଇଂଣ ପଶିଲେ ଦେବୀ ଚନ୍ଦ୍ରଶାଳା ପୁରେ ।୧୧୦
ଚନ୍ଦ୍ର ଦେବତାଙ୍କୁ ଦେଖି ଯେହ୍ନେ ଘୋଟଇ ରାହୁ
ସେହି ସରୂପେଣ ତାହାର ବିକଶଇ ଊର୍ଦ୍ଧ୍ୱବାହୁ ।୧୧୧
ଆକ୍ରେଷଇ ଧୁଶାସନ ଯେ ମୁରୁଖ ଚାଣ୍ଡାଳ
ଧାତିକାରେ ପାଞ୍ଚାଳୀର ଧଇଲା ଯାଇଂ ବାଳ ।୧୧୨
ଛାଡ଼ ଛାଡ଼ ଧୁଶାସନ ମମ କେଶ ପାଣି
ଯୁଗତେ ମୁହିଂ ଅଟଇ ସ୍ତିରୀ ସେ ଧର୍ମିଣୀ ।୧୧୩

ଭୋ ଦଇବ ପୁରୁଷ କିସ ବୋଲି ବୋଲିବଇଂ ତୁକୁ
ଯେ ଦଶା ବିହିଲ ତୁମ୍ଭେ ଅନାଦି ଅପର୍ଣ୍ଣାକୁ ।୧୧୪
ଚାରି ଅବତାରେ ଯେ ଉପୁଜିଲେ ଅଯୋନି ମେଦିନୀ
କୋଟିୟେ ଋଷି ଘେନି ଯାଗକଲେ ବେଦବ୍ୟାସ ମହାମୁନି ।୧୧୫
ପ୍ରାଣାନ୍ତକ ବଇଶ୍ୟାନର କାଳାନଳ ପିଙ୍ଗଳ ଜାଳା
ଚାରି ଅଗ୍ନି ବିଦାରି ଯେ ବାହାର ତେଜ ଯେବଣ ଅବଳା ।୧୧୬
ମହାଭିଗ୍ୟଂ ବ୍ରାହ୍ମଣ ଦ୍ରୋପଦ ଯାହାର ପିତା
ନିରଞ୍ଜନ ଅବତାରେ ଯୁଝେଷ୍ଟି ଦେବଂକର ବନିତା ।୧୧୭
ଭୀମ ଅର୍ଜ୍ଜୁନ ପୁଣ ନକୁଳ ସହଦେବ
ଧର୍ମ ପବନ ଇନ୍ଦ୍ର ଅଶ୍ୱିନୀ କୁମାରେ ସମ୍ଭବ ।୧୧୮
ଦିଗପାଳଂକର ବଧୂ ସେ ପଞ୍ଚୁ ଇନ୍ଦ୍ରଂକର ଭାରିଯା
କୋଟିୟେ ବିଳାସୁଣୀ ଯାହାକୁ ନିତ୍ୟେ ଖଟନ୍ତି ପରିଜା ।୧୧୯
ଯେସନେକ ସୁଲକ୍ଷଣୀ ଯେବଣ ବନିତା
ତାହାକଇ ଯେଡ଼େକ ଅପ୍ରାଧ ହୋ ବିହିଲୁ ବିହନ୍ତା ବିଧାତା ।୧୨୦
ବିହନ୍ତା ପୁରୁଷ ତୁ ଅପୂର୍ବ ତୋର କାୟା
ଦେବଂକଇ ଦୁର୍ଲଭ ଯେ ଦେଖିଲି ତୋର ମାୟା ।୧୨୧
ଅପାଦ ବିପଦ ଦେବ ତୁହି ସେ ସର୍ବ ବିହୁ
ଯେ ତୋହୋର କଷଣ ମାନବ ଦେହେ ସହୁ ।୧୨୨
ଅଦୃଷ୍ଟି ଅଶ୍ରୁତି ସ୍ୱାମୀ ଯାହାର ଦିବ୍ୟ ରୁଚି
ଠୂଳ ଶୂନ୍ୟ ପୁରୁଷ ତୁ କାହାରି ନୋହୁ କିଛି ।୧୨୩
ସ୍ତମ୍ଭନ ମୋହନ ଦେବ ଯେ ଉଚ୍ଚାଟନ
ଗୋଟିକେ ଅଞ୍ଜନ ଧାତୁ ବାଦ ଧରଣ ଧାରଣ ।୧୨୪
ସତ ରଜ ତମ ତ୍ରିଗୁଣ ଦେବ ତୁହି
ସମ୍ପଦ ବିପଦ ନାଥ ବିହନ୍ତା ବିଧାତା ନାମ ବହି ।୧୨୫
ଅଗୁଣକଇଂ ଗୁଣ ଅକାରଣ କଇଂ କାରଣ ଦେଉ
ଦୁସହ ଦୁଷ୍କୃତ ନାଥ ଦୁର୍ଗତି କି ଛଡ଼ାଉ ।୧୨୬
ମହା କର୍ମଣ ପୁରୁଷ ନାଥ ତୁହି ସେ ବିଧାତା
ଅକାରଣକଇଂ କାରଣ ତୁହି ସେ ଆତ ଜାତା ।୧୨୭
ଚିତ୍ତୁ ଅନ୍ତର ନୋହୁ ମୋର ମନ ବଚନ କର୍ତ୍ତବ୍ୟେ
ଭକ୍ତୁଂ ପଞ୍ଚୁଭୂତ ମୋହୋର ଧାତାର ଲୟ ଭାବେ ।୧୨୮
ନମୋ ଦଇବ ବିଧାତା ତୁ ସକଳ ଗୁଣନିଧି
ଅପରଚେ ମୋହୋର ତୁ ସରଣ ବାରାନିଧି ।୧୨୯
ମହୀଧର ଧାରଣ ନାଥ ପ୍ରସନ୍ନ ପରମ ଯୋଗୀ

ଅନୀତି ସଂସାରେ ହୋଉଅଛୁଂ ପରାଭବି ।୧୩୦
ଶୂନ୍ୟ ଅଣାକାରତୁ ଅକାଳ ଅସଛା
ନାଶକର ଦଣ୍ଡରୁ ଦେବ ବହନ ମୋତେ ବଞ୍ଚା ।୧୩୧
ବିଧାତା ସୁମର ନରେ ଅପାଦଦୁସ୍ତର ଖଣ୍ଡୁ
ବିଧାତା ସୁମର ନରେ ବିପଦ ମଣ୍ଡୁ ।୧୩୨
ଅଭାବ ଅପ୍ରୀତି ମୋତେ ନ କରା ଅସ୍ଥୁକାର ଜନେ
ଲଭବି ମହା ପୁଣ୍ୟ ମୁହିଂ ବିଧାତାର ପ୍ରସନ୍ନେ ।୧୩୩
ଉଦ୍ଧାରଣ ପୁରୁଷତୁ ତୋହୋର ଚରଣେ ଶତସହସ୍ର ଦହିନି
ବଦୟନ୍ତି ସାରୋଳଦାସ ଗ୍ରନ୍ଥିକ ଶୂଦ୍ର ମୁନି ।୧୩୪

■■

## କୁରୁ ସଭାରେ ଦ୍ରୌପଦୀଙ୍କ ଅପମାନ

ଶୁଣ ହୋ ମନୁରାୟେ ହୃଦଗତେ ବିଧାତା ସୁମରଇ ପାଞ୍ଚାଳୀ
କେଶଧରି ଆକ୍ରେଶି ଆଣଇ ଧୁଶାସନ ମହାବଳୀ ।୧
ଦ୍ରୋପତୀ ନଚାହିଂଲେ ଧୁଶାସନର ମୁଖଳଇଂ
ମମକର୍ମେ ଯେହେନେକ ଯେବେ ଭବିଷ୍ୟ ଅଛଇ ।୨
ନାରାୟଣ ନାରାୟଣ ସୁମରଇ ଜିଘ୍ନସେନୀ
ଆକ୍ରେଷିଣ କଉରୋବ ଆସୁଅଛଇ ଘେନି ।୩
ସମସ୍ତେ ବିଚାରନ୍ତି ପାଣ୍ଡବେ ନାହାନ୍ତିକି ଜୀବନ୍ତେ
ଭାରିଜା ଜିଘାସ ସେ ସହୁଛନ୍ତି କେମନ୍ତେ ।୪
କୂଟ କପଟ ମନ୍ତ୍ରୀ ସେ କେମନ୍ତ ଭିଆଇଲା
ହସ୍ତିନା ରାଜ୍ୟ ସଞ୍ଚୟେତ ନାଶକଲା ।୫
ରାଜ୍ୟରକ୍ଷାଥିଲେ ଯେତେକ ସଇନି
ତ୍ରାସେ ଆଡ଼େ ହୋଇଲେ ଦୁଶା ଆସନ୍ତେ ଦ୍ରୋପଦୀକି ଘେନି ।୬
ବାରୁଣାବନ୍ତକଇଂ ହସ୍ତିନା ଯେ ପାଞ୍ଚଇ ଯୋଜନଦୂର
ଦ୍ରୋପତୀର କେଶଧରି ଆଣନ୍ତେ ଚରଣପଡ଼ଇ ଭୂମିର ।୭
ବାମକରେ ଧରିଅଛି ଦ୍ରୋପଦୀର ବାଳ
ଡାହାଣକରେ ଗଦାବର ବୁଲାଇ ଅନ୍ତରାଳ ।୮
ଆଣନ୍ତେଣ ଆପଣେ ପାଞ୍ଚାଳୀ ଧର୍ମଧର୍ମ ସୁମରି
ପୁର ଜନମାନେ ସମସ୍ତେ ହା ହା କରି ।୯
ଦ୍ରୌପଦୀ ବୋଇଲେ ରଖ ରଖ ଆଦିମୂଳ
ରକ୍ଷାକର ଦୀନବନ୍ଧୁ ଭକତ ବତ୍ସଳ ।୧୦
ତୁମ୍ଭେ ନ ରଖିଲେ ଅନାଥିନୀ ହେଲି ନାରୀ
ନିଯେ ପାମର କାହାଗେ କରିବି ଗୁହାରି ।୧୧
ଯେ ଆରତୁଂ ବାରେ ରକ୍ଷାକର ଆର୍ତ୍ତତ୍ରାଣ
ତୁମ୍ଭେ ଦୀନବନ୍ଧୁ ଅଟ ସଂସାର ଧାରଣ ।୧୨
ଦ୍ରୌପଦୀଙ୍କି ନେଲା ଧୁଶା ପବନହୁଂ ଖରେ
ପ୍ରବେଶ ହୋଇଲା ଯାଇଂ ହସ୍ତିନା ରାଜ୍ୟରେ ।୧୩
ଦ୍ରୋପଦୀ ବୋଲନ୍ତି ସଭାକୁ ନ ନିଅହେ ବୀର
ସଭାରେ ବସିଛନ୍ତି ଅନେକ ଦଣ୍ଡଧର ।୧୪
ଭୀଷ୍ମ ଦ୍ରୋଣ ଆଦି ବସି ଅଛନ୍ତି ସଭାରେ
ତହିଂକି ନ ନିଅ ମୋତେ ଆହେ ଧୁଶବୀରେ ।୧୫
ସଭାର ତଳେ ରଖି ଧୁଶା ରାଜା ପାଶେ ଗଲା
ଆଗ୍ୟାଂ ପ୍ରମାଣେ ଦ୍ରୋପତୀ ଆଣିଲି ବୋଇଲା ।୧୬
ପାକାସ୍ୱରଣ ହୋଇଅଛି ଦେବ ତାର ଦେହ
ଯେହା ଶୁଣି ଦ୍ରିଯୋଧନ ହସେ ଟହ ଟହ ।୧୭
ଶକୁନିକି କୁରୁପତି ବୋଲେ ମାମୁଂ ଶୁଣ
ଦ୍ରୌପଦୀ ପାକାସ୍ୱରଣ ଆଣିମା ଅକାରଣ ।୧୮
ସେ ଯେବେ ଅଟଇ ମାମୁ ରଜୋବତୀ ନାରୀ
ମୁଖ ତା ନ ଚାହିଂ ଛୁଇଂଲେ ତୁଟଇ ଯେ ଶିରୀ ।୧୯
ଶକୁନି ବୋଲେ ସେ ଯେଡ଼େ ନିର୍ଲଜୀ ଯୁବତୀ
ପଞ୍ଚପତି କରି ବୋଲାଉଛି ମହାସ୍ୱତୀ ।୨୦
ସେ ମୂଢ଼ୀକି ତୁମ୍ଭ ଠାକୁ ଆଣ ଯେହି ଘଡ଼ି
ତା ପିନ୍ଧିଲା ପାକା ବସନକୁ ପକାଇବା ଫେଡ଼ି ।୨୧
ସତୀକି ଅସତୀ ସେହି ଜାଣିବା ସାକ୍ଷାତେ
ହସି ଦ୍ରିଯୋଧନ ବୋଲେ ଆଣଯା ତ୍ୱରିତେ ।୨୨
ଯେହାଶୁଣି ଧୁଶାସନ ବୀର ଚଳିଗଲା
ଦେବୀ କେଶଧରି ସଭା ଭିତରକୁ ନେଲା ।୨୩
ଦ୍ରିଯୋଧନ ବୋଲେ ତୋର ପାଞ୍ଚପତି ଥାଇଂ
ଜଣେ ତୋତେ ରଖି ନୁଆରିଲେତ ଯେ କେହି ।୨୪
ଗାରିମା କରନ୍ତି ଯେବେ ରଖନ୍ତୁ ତୋ ବର
ରକ୍ଷାକର୍ତ୍ତା ଶ୍ରୀକୃଷ୍ଣପରା ଅଟଇ ତୁମ୍ଭର ।୨୫
ପାଣ୍ଡବନ୍ତ ସଦାପରା ରଖନ୍ତି କହ୍ନାଇ
ଯେଡ଼େ ଆରତ ହୋଉତ ନ ରଖନ୍ତି କିମ୍ପାଇଂ ।୨୬
ଦ୍ରୌପଦୀଦେବୀ ବୋଇଲେ ଯେ କୁରୁ ସଭାରେ
ଧାର୍ମିକ ବିବେକ ଜନେ ଅଛନ୍ତି ଯେଠାରେ ।୨୭
କେହି ପଦେ ନ କହୁଛ କରୁଛି ଅନୀତି
ଭୀଷ୍ମ ଦ୍ରୋଣ ଭୂରିସର୍ବା ଆଉରି ଅଛନ୍ତି ।୨୮

ଆତ୍ମାକୁ ହାରିଲେ ଖଳେ ଧର୍ମ ନୃପବର
ମୋତେ ତହିଁ ରହିଲା କାହିଁ ତାଂକ ଅଧିକାର ।୨୯
କେହି ନ କହିଲେ କିଛି ରହିଲେ ମଉନେ
ଦ୍ରିଯୋଧନ ନୃପତିକି ଭୟେ ରଖି ମନେ ।୩୦
ଯେବେ କହିଛନ୍ତି ତୋର ସେହି ଚକ୍ରଧାରୀ
ତାହାକଇଂ କିମ୍ପେ ଚିନ୍ତା ନ କରୁରେ ସୁନ୍ଦରୀ ।୩୧
କହନ୍ତି ଦ୍ରୋପତୀ କୁରୁ ସଭାକୁ ଅନାଇଂ
ଆରତ ତ୍ରାଣଂକୁ ନିନ୍ଦା କରୁଛ କିମ୍ପାଇ ।୩୨
ସତ୍ୟ ଯୁଗରେ ଗୋଟିଏ ଚରିତ ତୁମ୍ଭନ୍ତ କହିବା
ତୁମ୍ଭମାନଙ୍କ ମନରୁ ସଂଶୟ ଛଡ଼ାଇବା ।୩୩
ଘୋରବନେ ଯେକ ଶଶା ଯେ ବାସ କରୁଥିଲା
ସେ ବନେ ଯେକ ସରକୁ ଜଳପାନେ ଗଲା ।୩୪
ଦୁରୁଂ ଆସନ୍ତେ ଯେକ ସିଂହକୁ ଦେଖିଲା
ପ୍ରାଣର ଭୟେ ଶଶା ତହୁଂ ପଳାଇଣ ଗଲା ।୩୫
ଆଗେ ଧାୟେଂ ଶଶା ସିଂହ ଗୋଡ଼ାୟେ ପଛରେ
ବିବରେକ ଦେଖିଲା ଶଶା ସେହି ବନରେ ।୩୬
ବିକଳ ହୋଇଣ ଶଶା ତହିଂ ଭିତରେ ପଶିଲା
ସିଂହ ଯାଇଂନ ସେ ବିବର ମୁଂହରେ ବସିଲା ।୩୭
ଶ୍ରୀକାଳଗର୍ତ୍ତେ ସେ ତହିଂ ଅଛଇ ଶ୍ରିକାଳ
ତାହା କଇଂ ଦେଖି ଶଶା ହେଲା ଭୟରେ ଆକୁଳ ।୩୮
ଶଶାଭାବେ ଯେକର ମୁଖୁଂ ବ୍ରତିଲଇଂ ମୁହିଂ
ଆରେକ ଶତ୍ରୁ ମୁଖରେ ଯେବେ ଯେ ପଡ଼ିଲଇଂ ।୩୯
ପଳାଇ ଯିବାକୁ ବାଟ ଆଉ ନାହିଁ ମୋତେ
ବିବର ଦ୍ୱାରେ ଜଗିଛି ସିଂହ ମୋ ନିମନ୍ତେ ।୪୦
ଜାଣିଲେ ବିପଦକାଳ ହୋଇଲେ ଉପସ୍ଥିତ
ନାନାଦି ସଂକଟ ଆସି ହୋଅଇ ଆଗତ ।୪୧
ନିଶ୍ଚୟ ବିନାଶ ଯେବେ ହେଲି ଜାଣ ମୁହିଂ
ଯେଥୁଂ ଉଦ୍ଧରିତ ମୋତେ ବାଟ ନ ଦିଶଇ ।୪୨
ତାରି ପାରନ୍ତି ଯେଥିରୁ କେବଳ ଶ୍ରୀହରି
ତାଙ୍କ ବିନା ଯେ ବିପଦୁଂ କେ ପାରେ ଉଦ୍ଧାରି ।୪୩
ଯେତେ ଭାବି ମନେ ସୁମରଇ ଜଗନ୍ନାଥ
ରକ୍ଷାକର ଦୀନବନ୍ଧୁ ହୋଇଲି ଅନାଥ ।୪୪
ତୁମ୍ଭେତ ଆରତତ୍ରାଣ ଜଗତର ବନ୍ଧୁ
ଯେଥୁଂ ତାରିପାରୁଂ ଯେକା ତୁହି କୃପାସିନ୍ଧୁ ।୪୫
ତୁମ୍ଭେ ନ ରଖିଲେ ନିଷ୍ଟେ ହୋଇଲି ନିଧନ
ତୁମ୍ଭ ବିନେ ଭରସା କେ ନାହିଂ ଭଗବାନ ।୪୬
ଶଶା ଆରତ ଗୋବିନ୍ଦ କର୍ଣ୍ଣରେ ଶୁଣିଲେ
ରଖିଲୁ ବୋଲି ଉଚ୍ଚରେ ବୋଇଲେ ।୪୭
ଶଶାକଇଂ ସାହା ହୋନ୍ତେ ଜଗତ ଜୀବନ
ଦିଶିଲା ତାହାକୁ ନାନା କୂଟ ଛନ୍ଦ ମାନ ।୪୮
ଶଶାକଇଂ ଦେଖି ଶ୍ରୀକାଳ କରଇ ବିଚାର
ଦଇବ ଯୋଗେ ଆସି ମୋତେ ମିଳିଲା ଆଧାର ।୪୯
ହରଷ ହୋଇ ବୋଇଲା ରେ କିମ୍ପେ ତୁ ଅଇଲୁ
କେଉଣ କାରଣେ ଆସି ମୋ ଗର୍ତ୍ତେ ପଶିଲୁ ।୫୦
ଶଶା ବୋଇଲା ଆହେ ଶୁଣ ଶ୍ରିକାଳ ଈଶ
ସର୍ବ ଜନ୍ତୁୟେ ପେଷିଲେ ମୋତେ ତୁମ୍ଭ ପାଶ ।୫୧
ବୋଇଲେ ଶଶା ତୁ ଗର୍ତ୍ତୁଂ ଶ୍ରୀକାଳକୁ ଆଣ
ଯେ ବନେ ହେବ ସେ ଆମ୍ଭମାନଙ୍କ ରାଜନ ।୫୨
ସମସ୍ତେ ମିଶି କରିବା ତାଙ୍କ ପାଦପୂଜା
ଆମ୍ଭେମାନେ ହେବା ପ୍ରଜା ସେ ହୋଇବେ ରାଜା ।୫୩
ଶଶା ମୁଖରୁ ଶ୍ରୀକାଳ ଶୁଣିଣ ଯେସନେକ ଭାଷ
ଆନନ୍ଦ ମନେ କହଇ ହୋଇ ହସ ହସ ।୫୪
ଯେବେ ରେ ଶଶା ମୁଂ ଯେ ବନେ ନୃପତି ହୋଇବି
ନିଶ୍ଚେଂ ମନ୍ତ୍ରୀପଣେ ତୋ ଶିରେ ଶାଢ଼ୀ ସେ ବାନ୍ଧିବି ।୫୫
ଚାଲ ଯେ ଅରଣ୍ୟକୁ ଯିବାରେ ସତ୍ୱର
ଶଶା ବୋଲେ ଦେବ ଚାଲିବା ହୋଉ ଯେ ଆଗର ।୫୬
ପ୍ରଭୁ ଆଗେ ଭୃତ୍ୟ ଚାଲିବାରତ ନ ଯୋଗାଇ
ଆଗରେ ବିଜେ ହୁଅନ୍ତୁ ଆହେ ବନସାଇଂ ।୫୭
ତୁମ୍ଭର ପଛେ ଯିବାର ମୋ ଉଚିତ ହୋଇଲା
ଶଶା କପଟ ଶ୍ରିକାଳ ଜାଣି ନୁଆରିଲା ।୫୮
ଗର୍ତ୍ତମଧ୍ୟରୁ ଶ୍ରିକାଳ ହୁଅନ୍ତେ ବାହାର
ବସିଥିଲା ସିଂହ ମାଡ଼ି ବସିଲା ସତ୍ୱର ।୫୯
ଶୁଣ କୁରୁପତି ହରି ସହାୟ ନେମାରୁ
ବଞ୍ଚିଲା ଶଶାଯେ ଯେ ଓହ ସଂକଟ ମୁଖରୁ ।୬୦
ତୁମ୍ଭେ କାହିଂ ପାଇଂ ନିନ୍ଦା କରୁଛ ନୃପତି
ହରିଂକି ଚିନ୍ତିଲେ କେବେ ନଥାଇ ଦୁର୍ଗତି ।୬୧
ଶୁଣି ରୋଷେ ବୋଲେ ରାଜା ଆରେ ଧୃଶାସନ
ସଭାରେ ଫେଡ଼ତ ଦ୍ରୌପଦୀ ଅଙ୍ଗରୁ ବସନ ।୬୨

ସଭାଜନେ ଦେଖନ୍ତୁ ତା ଜାନୁ ଯଉବନ
କିପରି ରଖିବେ ତାକୁ କମଳ ଲୋଚନ ।୧୬୩
ଯେହା ଶୁଣି ଧୂଶାସନ ସତ୍ୱରେ ଉଠିଲା
ଦ୍ରୌପଦୀର ଅଙ୍ଗୁ ଯାଇଂ ବସନ କାଢ଼ିଲା ।୧୬୪
ଦ୍ରୌପଦୀ ବୋଲନ୍ତି ରହ ରହ ଧୂଶାସନ
ମୋର ପଞ୍ଚୁପତି ବସିଛନ୍ତି ସନ୍ନିଧାନ ।୧୬୫
ଯେତେବେଳେ ପଦେ ପଦେ ରହ ମୁଂ କହଇ
ରଖିବେ କି ନ ରଖିବେ ଯେ ବିପଦୁଂ ସେହି ।୧୬୬
ଯୁଧେଷ୍ଠିଙ୍କି ଚାହିଁ ଦେବୀ ଛନ୍ନ ଛନ୍ନ ହୋଇ
କହନ୍ତି ଭୋଦେବ ତୁମ୍ଭ ପରା ପ୍ରଭୁ ଥାଇ ।୧୬୭
ଯେଢ଼େ ନିରିମାଖୀ ମୁହିଂ ହେଲି ଯେତେବେଳେ
ଧର୍ମ୍ମରାଜ ବୋଲାଉଛ ଯେ ମହୀ ମଣ୍ଡଳେ ।୧୬୮
ମହା ସଭାତଳେ ଦେବ ତୁମ୍ଭର ନାରୀଙ୍କି
ବିବସ୍ତ୍ର କରେ ତୁମ୍ଭନ୍ତ ଲଜ୍ଜା ନୋହିବ କି ।୧୬୯
ଶୁଣି ଯୁଧେଷ୍ଠି ତଳକୁ ପୋତିଲେ ବଦନ
ପ୍ରତି ଉତ୍ତର ନଦେଇ ହୋଇଲେ ମଉନ ।୧୭୦
ପାର୍ଥ ମୁଖ ଚାହିଂ ଦେବୀ ଗଦଗଦ ସ୍ୱରେ
କହଇ ଦ୍ରୌପଦୀ ଦେବୀ ଅତ୍ୟନ୍ତ ଶୋକରେ ।୧୭୧
ବାସବ ନନ୍ଦନ କିମ୍ପେ ମୋହାରେ ବିମନ
ଦୂତାକୃଷ୍ଣ ହୋଇ କେହ୍ନେ ସହ ମୋ କଷଣ ।୧୭୨
ଧିକ ବୀରପଣ ତୁମ୍ଭ ଧିକ ଜୀଇଂବାର
ତୁମ୍ଭେ ଥାଉଂ ବିବସ୍ତ୍ର ମୁଂ ହେଉଛି ସଭାର ।୧୭୩
ଦ୍ରୌପଦି ମୁଖୁଂ ଯେସନ ଶୁଣି ଅରଜୁନ
ବୋଇନ୍ତି କିମ୍ପେ ମୋତେ ଧିକାରୀଂ ଅକାରଣ ।୧୭୪
ମୋହୋର ପ୍ରତଗ୍ୟାଂ ଜାଣି ନାହୁଂକି ସୁନ୍ଦରୀ
ପୂର୍ବେ ଗୋ ସିଂହ ସତ୍ୟଭାମାକୁ ନେଉଥିଲା ହରି ।୧୭୫
ଅର୍ଜୁନ ରଖ ବୋଲି ଡାକିଲେ ସେ ରାତ୍ରରେ
ସେ ଶବଦ ଶୁଭିଲା ଆସି ମୋହୋର କର୍ଣ୍ଣରେ ।୧୭୬
ପୁଣି ଶତ ଧନୁ ସେହି କଥା କହି ଦେଲା
ଶରେ ପଥ ରୁନ୍ଧିଲି ସେ ଯାଇଂ ନୁଆରିଲା ।୧୭୭
ଯୁଦ୍ଧକରି ଗୋ ସିଂହ ଦୈତ୍ୟକୁ ହେଳେ ମାରି
ସତ୍ୟଭାମା ଜଇଂ ବିପଦୁଂ ଆଣିଲଇଂ ଉଦ୍ଧାରି ।୧୭୮
ରୈବତ ଗିରିରେ ଯାଇଂ କୃଷ୍ଣଂକୁ ଭେଟିଲି
ଶକ୍ରାଜିତ ଦୋହିତା କଇଂ ନେଇଂଣ ସମର୍ପିଲି ।୧୭୯
ମୋତେ ନ ଧିକ୍କାର ତୁ କୁରୁ ସନ୍ୟ କେତେ ଛାର
ଯେକା ଶରକେ ସମସ୍ତ କରନ୍ତି ସଂହାର ।୧୮୦
କିଞ୍ଚିତେ ଆଗ୍ୟାଂ ଯେବେ ଦିଅନ୍ତେ ଧର୍ମସୁତ
ଦେଖନ୍ତୁ ସଖି କିପରି ମୁହିଂ ଅଟଇ ସାମରଥ ।୧୮୧
ପାର୍ଥ ମୁଖୁଂ ଯେହା ଶୁଣି ଦ୍ରୁପଦ ଦୁଲଣୀ
ନକୁଳ ମୁଖକୁ ଚାହିଂ କହୁଛନ୍ତି ବାଣୀ ।୧୮୨
ହେ ବାବୁ ନକୁଳ ତୁମ୍ଭେ ପରା ବଳିଷ୍ଠେ ବଳୀୟାର
ଯେ କଷଣୁଂ ପାର ଯେବେ ମୋତେ ବାରେକ ରକ୍ଷାକର ।୧୮୩
ନବ ନିଶି କୁନ୍ତ ପରା ବହ ବୀର ପଣେ
ଯେ କଷଣ ଦେଖି ଯାହା ରହିଅଛ ପ୍ରାଣେ ।୧୮୪
ସଭାତଳେ ଧୂଶା ମତେ ଉଲଗ୍ନ କରୁଛି
ଦେଖିଣ ଯେ ହା କିପରି ତୁମ୍ଭର ଦେହ ସହୁଅଛି ।୧୮୫
ନକୁଳ ବୋଲେରେ ସଖି ଯା ଧାତା ଲିଖନ
ଅଛି କେ ସାମର୍ଥ ତାହା କରିପାରେ ଆନ ।୧୮୬
ସଖି କାହିଂ ପାଇଂ ମୋତେ କରୁ ତୁ ଝିଘାସ
କିଞ୍ଚିତରେ ଆଗ୍ୟାଂ ମୋତେ ଯେବେ ଦିଅନ୍ତେ ଧର୍ମଶିଷ ।୧୮୭
କୁରୁ ସନ୍ୟ ସହ ଯେ ଧୂଶା ଦ୍ରିଯୋଧନକୁ
କୁନ୍ତ ମୁନେ ଗୁନ୍ଥି ପେଷନ୍ତି ଯମ ଭୁବନକୁ ।୧୮୮
ନକୁଳ ବିମୁଖ ଦେଖି ଦ୍ରୋପତୀ କୁମାରୀ
ସହଦେବ ଚାହିଂ ଶୋକେ ବୋଲନ୍ତି ଯେପରି ।୧୮୯
ତୁମ୍ଭେ ମନ୍ତ୍ରୀ ବର ପରା ତିନି କାଳ ଗ୍ୟାଂତା
ଛାମୁରେ କହୁଥାଅ ଭୂତ ଭବିଷ୍ୟତ କଥା ।୧୯୦
ତୁମ୍ଭଠାରେ ଅଛି ଯେତେ ଅଦ୍ଭୁତ ଶକତି
ଜାଣି ନ ଥିଲକି ଆଗୁଂ ହେବ ବୋଲି ଯେ ବିପତ୍ତି ।୧୯୧
ଆଗହୁଂ କିମ୍ପେ ମୋଠାରେ ନ କଲ ଗୋଚର
ଯେ ହରି ପାରିବକି ଦୁର୍ଗତି ମୋହୋର ।୧୯୨
ସହଦେବ ବୋଲେ ସଖି ଯେତ ଦେବକୂଟ
ତୁମ୍ଭଂକୁ କଷଣ ହେଲେ ମରିବେ ଯେ ଦୁଷ୍ଟ ।୧୯୩
ଯେ ଦ୍ରିଯୋଧନ ନୃପତିର ଶତେଭାଇ
ମହା ମହା ବୀରେ ଯେଥେ ଛନ୍ତି ଯେତେ ରହି ।୧୯୪
ଯେମାନଙ୍କର ବିନାଶ ପାଇଂ ଦେବଗଣ
କୂଟ କରି ତୁମ୍ଭଂକୁ ଦେଇଛନ୍ତି କଷଣ ।୧୯୫
ବିରସ ନୋହିଣ ଦଣ୍ଡେ ମାତ୍ର ଦୁଖ ସହ
ଜଗଜନ ମାତ ତୁମ୍ଭେ କିମ୍ପେ କର କୋହ ।୧୯୬

ମନ୍ତ୍ରୀର ଯେ ନିଷ୍ଠୁର ବାଣୀ ଦ୍ରଉପଦୀ ଶୁଣି
ଶୋକେ ଅନାଥିନୀ ପ୍ରାୟେ ନେତ୍ରୁଂ ବହେ ପାଣି ।୯୭
ବୁଡ଼ି ଚିନ୍ତା ସାଗରେ ଗ୍ୟାଂନ ବୁଡ଼ି ଗଲା
ଚନ୍ଦ୍ରମା ବଦନ ଗୋଟି ମଳିନ ଦିଶିଲା ।୯୮
ମୁନି କହନ୍ତି ନୃପତି ଶୁଣ ଦିବ୍ୟରସ
ହେଠ ମୁଖେ ଭୀମ ବସିଅଛି ଭ୍ରାଥ ପାଶ ।୯୯
ମନ ରୋଷେ ଖରଶ୍ୱାସେ ନଖେ ଚିରେ ମହୀ
ବେନି ନୟନୁଂ ଲୋତକ ଝର ଝର ବହି ।୧୦୦
ଶିରେ କରଦେଇ ହୃଦେ ଗୁରୁ ଚିନ୍ତା
ସନ୍ତାପ ଜଳେ ବୁଡ଼ିଲା ଦେଖି ଦେବୀ ବ୍ୟଥା ।୧୦୧
ଦ୍ରୌପଦୀ ଚାହିଂ ଭୀମକୁ ବୋଲେ ବୀର ଦେଖ
ତୋ ପରା ବୀର ଥାଉଂ ମୋହୋର ଯେଡ଼େ ଦୁଖ ।୧୦୨
ଧୁଶା ହୀନ ପାମର ଧଇଲା ମୋର କେଶ
ନେତ୍ରରେ ଦେଖି ବୀର ନ ପାଉ ମନେ ରୋଷ ।୧୦୩
ବାଉନ ବାଉନ ଭାର ଗଦା ତୋର କରେ ନାହୁଂକି ଘେନି
ସିଂହ ନାରୀକି ଶ୍ରିକାଳ କରେ ହୀନ ମାନୀ ।୧୦୪
ସଭା ମଧ୍ୟେ ବିବସନ କରେ ତୁମ୍ଭ ଆଗେ
ଧିକ ତୁମ୍ଭ ବଳ ବୀର୍ଯ୍ୟ ଧର କେଉଂ ବାଗେ ।୧୦୫
ଭୀମ ବୋଲେ ସହି ଶୁଣ ନାହିଂ ମୋର ଦୋଷ
ମୋ ପ୍ରତଗ୍ୟାଂ ଟାଣ ଯୁଝେଷ୍ଟିର କଲେ ନାଶ ।୧୦୬
ବାରେ ଚାହିଂ ଠାରି ଦିଅନ୍ତେ ଯେବେ ସେ ଚକ୍ଷୁ
ହସ୍ତିନା କୁର କରନ୍ତି ତୋର ଦେଖୁଂ ଦେଖୁଂ ।୧୦୭
କଦଳୀବନ ଯେହ୍ନେ ପବନେ ପଡ଼େ ଓଲଟି
ରଥୀ ଗଜ ପାଦାନ୍ତି କ୍ଷଣକେ ଦ୍ୟନ୍ତି ପିଟି ।୧୦୮
ଯେ ଶତେ ଭାର ଗଦା ବୁଲାଇ ବେନିକର
ଦ୍ରିଯୋଧନ ସହିତେ ପେଷନ୍ତି ଯମପୁର ।୧୦୯
ଦ୍ରୌପଦୀ ବୋଇଲେ ବୀର ଧିକ ତୁମ୍ଭ ପ୍ରାଣ
ନିର୍ଲଜ ହୋଇଣ କିମ୍ପେ ଜୀଇଂଛ ପାଞ୍ଚ ଜଣ ।୧୧୦
ଯେତେକ ଦୁଖେ ତୁମ୍ଭେ ଜଣେ ରଖିଲାତ ନାହିଂ
ତୁମ୍ଭକଇଂ ଆଶାକରି ମୁଂ ଅନାଥିନୀ ହେଲାଇଂ ।୧୧୧
ତୁମ୍ଭେ ମହତ ବୋଲି ମୁଂ ଆଶା କରିଥିଲି
ଅନାଥିନୀ ନାରୀ ପରାୟେ ବିଅର୍ଥେ ଦିନ ନେଲି ।୧୧୨
ଲକ୍ଷେ ରାଜାର ମଧ୍ୟରୁ ମେତେ କିମ୍ପେ ଆଣିଲତ ଜିଣି
ପଞ୍ଚପତି ଥାଉଂ ଧୁଶା କେଶଧରି ଟାଣି ।୧୧୩

ଧିକ ତୁମ୍ଭର ଗଦାବଳ ଧିକ ତୁମ୍ଭର ବାହା
ଧୁଶା ଉଲଗ୍ନ କରଇ ଜଣେ କେହି ନୋହିଲ ସାହା ।୧୧୪
ଦେବୀର ଯେ କଟୁ ଗୀର ଶୁଣିଣ ବ୍ରିକୋଦର
ସହି ନୁଆରି ଉଠିଲା ଦେଇଣ ଆଣ୍ଠୁ ଭର ।୧୧୫
ରେ ରେ ଶବଦ କରିଣ ଛାଡ଼ିଲା ବୀର ରଡ଼ି
ଅଦଭୂତେ କି ମନ୍ଦର ଗିରି ପଡ଼ିଲାକ ଝଡ଼ି ।୧୧୬
ଲକ୍ଷେ ଯୂଣେ ଯମଦେବ ଆସ୍ଥାନ ତେଜିଗଲା
ମେରୁ ସହ ଭୂମି ସପ୍ତ ପାତାଳ କମ୍ପିଲା ।୧୧୭
ଭୀଷ୍ମ ଦ୍ରୋଣ ସହିତେ ସଭାରେ ବସିଥିଲେ
ଭୀମର ଗର୍ଜନ ଶୁଣି ଆସ୍ଥାନ ଛାଡ଼ିଗଲେ ।୧୧୮
ଭୀଷ୍ମ କହନ୍ତି ଭୋ ଦେବ ଗୁରୁ ଦ୍ରୋଣ ଦେଖ
ଯେ ଭୀମ କୁପିଲାଣିତ ଦେଖିଣ ଦ୍ରୋପତୀର ଦୁଖ ।୧୧୯
ଯେକା ଯୁଝେଷ୍ଟି ଯେବେ ଯେହାକୁ ଆଗ୍ୟାଂ ଦେବ
ଦ୍ରିଯୋଧନ ସହ ସବୁ କ୍ଷଣକେ ନାଶିବ ।୧୨୦
ଗଣେ ଶରଣ ବୋଇଲେ ଦୁଗୁଣ ସେ ମାରେ
ଦୁତୀୟ ଯମ ଅଟଇ ସେ ଯୋଦ୍ଧାଂକ ଉପରେ ।୧୨୧
ଦ୍ରିଯୋଧନ ସଭା ପାଖେ ଥିଲା ଧୁଶାସନ
ଭୀମ ଗର୍ଜନ ଶୁଣି ମିଳିଲା ସନ୍ନିଧାନ ।୧୨୨
କ୍ରୋଧେ ଭୀମକୁ ବୋଲେ କିରେ ପାମର ବାଇ
ଗତ କଥା ପରାୟେ କିରେ ମଣିଅଛୁ ତୁହି ।୧୨୩
ଯେବେ ସେବକ ମତରେ ହୋଇଲ ପାଞ୍ଚଜଣ
ନିର୍ଲଜ ପଣରେ ଯେଡ଼େ କରୁଅଛୁ ଟାଣ ।୧୨୪
ଯେ ଯେଉଂ ସେବା କରିବ ତୁମ୍ଭେ ପାଞ୍ଚଭାଇ
ପ୍ରମାଣ କଥାକୁ କିମ୍ପେ ଦ୍ୱନ୍ଦ କରୁ ତୁହି ।୧୨୫
ଯୁଝେଷ୍ଟି ଉଠି ନୁଆରି ଦ୍ୱାରେ ବସିବାରେ ଥାଉ
ରଥ ଦଉଡ଼ି ଯେତେ ଲୋଡ଼ା ବଳିବଟି ସେହୁ ।୧୨୬
ଅର୍ଜୁନ ରୋଷଘରେ ହୋଇବ ସୂପକାର
ତୁରେ ଭୀମା ଅନ୍ତପୁରେ ନିତି ଦେବୁ ନୀର ।୧୨୭
ନକୁଳ ସିଂହ ଦୁଆରେ ଜଗି ବସିଥିବ
ପଣ୍ଡୁପୁତ୍ର ସହଦେବ ଅର୍ଦ୍ଧରାଜ୍ୟ ନେବ ।୧୨୮
ତୁମ୍ଭେ ଚାରି ପାଣ୍ଡବେ ଅଟରେ ଜାରଜାତ
ଯେକା ମନ୍ତ୍ରୀ ସହଦେବ ଅଟେ ଆତ୍ମଭ୍ରାଥ ।୧୨୯
ଅର୍ଦ୍ଧରାଜ୍ୟ ଦେଇ ତାକୁ କରିବୁ ନୃପସାଇଂ
ଭୀମସେନ ବୋଲରେ ଯୁଝେଷ୍ଟି ଆଗ୍ୟାଂନାହିଂ ।୧୩୦

ଯେବେଟି ଆଗ୍ୟାଂ ଦିଅନ୍ତେ ମୋତେ ଯୁଧିଷ୍ଠିର
ଚାପୋଡ଼େ ମାରି ଶିର ଛିଡ଼ାନ୍ତି ତୋହୋର ।୧୩୧
ଧୃଶାସନ ଶୁଣି ଅତି ଘୋଷାହେଲା ପରଚଣ୍ଡା
ବୋଇଲା ଗଦାରେ ତୋର ଶିର କରିବିରେ ଗୁଣ୍ଡା ।୧୩୨
ଶୁଣି ଭୀମସେନ କୋପକରି ବୋଲେରେ ପାମର
ଗଦାପର୍ବ ଆଦ୍ୟରେଣ ଛେଦିବି ତୋର ଶିର ।୧୩୩
ଯେହା କହି କୁହାଟି ଧଇଲା ବେନି ଗଦା
ରେ ରେ କାର ଶବଦ କରିଣ ବୀର ମାଇଲା ବେନି କୁଦା ।୧୩୪
ଦୁିଯୋଧନ ଦ୍ୱନ୍ଦ ଦେଖି ସଭାକୁ ଅନାଇଂ
ବୋଲେ ନିସତ ହେଲ କିମ୍ପେ ଯୁଧିଷ୍ଠି ନୃପସାଇଂ ।୧୩୫
ତା ସାନ ଭାଇ ଦ୍ୱନ୍ଦେ ହେଉଛି ଛଟପଟ
ନିସତ ମୁଖେ ବୋଲି ଯୁଧିଷ୍ଠି ନେଉ ତାର ରାଷ୍ଟ୍ର ।୧୩୬
ଶୁଣି ଯୁଧିଷ୍ଠି ଉଠି ବୋଇଲେ ଆରେ ଭୀମ
କଥା ନ ଜାଣି ତୁ କିମ୍ପେ କରୁଅଛୁ ଦ୍ୱନ୍ଦତମ ।୧୩୭
ଯେତେବେଳେ କୋପ ତୋର କରିବାରତ ନ ଯୋଗାଇ
ଆମ୍ଭ କର୍ମେ ବିଧାତା ଯା ଲେଖିଣ ଅଛଇ ।୧୩୮
ତୋ ମୂର୍ଖ ବୁଦ୍ଧି କେବେ କିଛି ନ ଗଲାତ ଛଡ଼ା
ଜାଣିଲି ତୋ ମୂର୍ଖଭାବ ହେଲୁ ଘରବୁଡ଼ା ।୧୩୯
ଦ୍ରୋପତୀ ପରା ଭାର୍ଯ୍ୟା ଶତେ ମିଳିବେ ଥିଲେ ଭାଇ
ନିଜଭାଇ ମରାଇ ଆଉ ପାଇବାଟି କାହିଂ ।୧୪୦
ଯେସନେକ ତିଆରନ୍ତେ ଯୁଧିଷ୍ଠିରାଜନ
କୋପେ ଯୁଧିଷ୍ଠି ମୁଖଚାହିଂ ବୋଲେ ଭୀମସେନ ।୧୪୧
ଅନ୍ଧର ଶତେ ପୁତ୍ର ବା କି କରିବେ ମୋତେ
ଆଗ୍ୟାଂ ଦେଲେ ମୁଂ ମାରନ୍ତି ଯେକା କ୍ଷଣେ ମାତ୍ରେ ।୧୪୨
ପାର୍ଥ ବୋଲେ ସ୍ଥିର ହୁଅ ଆହେ ଭୀମ ଠାକୁର
ବିନା ଆଗ୍ୟାଂଯେତ ନାହିଂ ପ୍ରାକର୍ମ ଆମ୍ଭର ।୧୪୩
ନୋହସି କାତର ତୁମ୍ଭେ ନୋହସି କୋପ ମୂର୍ତ୍ତି
ଅର୍ଜୁନର ବୋଲେ ଭୀମ ବସିଲା ହୋଇ ଶାନ୍ତି ।୧୪୪
ନକ୍ଷତ୍ର ମଧେ ଚନ୍ଦ୍ରମା ଯେସନେ ବିରାଜଇ
ଚାରିଭାଇ ମଧ ବୀର ତେସନ ଦିଶଇ ।୧୪୫
ଭୀମବୋଲେ ଦ୍ରୋପଦୀ ମୋ ନକର ମୋତେ ମାନ
ଯେଉଂଣ କରେ ତୋ କେଶ ଧରିଛି ପାମର ଧୃଶାସନ ।୧୪୬
ଯୁଧିଷ୍ଠି ରାଣ ଛେଦିବି ନିଶ୍ଚଯେ ଭୁଜ ତାର
ହୃଦେ କାଟିଲା ଗାର କାଳେ ଯାଇ ପାସୋର ।୧୪୭

ପାଣ୍ଡବଂକ ନିଷ୍ଠୁର ଦେଖିଣ ମହାସ୍ୱତୀ
ଭୟେ ମନେ ସୁମରିଲେ ରଖ ଲକ୍ଷ୍ମୀପତି ।୧୪୮
ମନ ଚଇତନ ଧ୍ୟାନ ଗୋବିନ୍ଦ ପାଦେ ଦେଇ
ମନ ବିରସେ ବସିଲେ ଯେକ ଲୟେ ଧ୍ୟାଇ ।୧୪୯
ଯେଥୁ ଅନନ୍ତରେ ଶୁଣ ହେ ଦିବ୍ୟ ବଚନ
ଦ୍ରୌପଦୀ ଡାକିଲେ ରକ୍ଷାକର ଶ୍ରୀମଧୁସୂଦନ ।୧୫୦
ତୁମ୍ଭେ ନ ରଖିଲେ ମୁହିଂ ହୋଇଲି ଅନାଥ
ରଖ ରଖ ଜଗନ୍ନାଥ ଦୁଖୀର ସଂଘାତ ।୧୫୧
କୁରୁ ସଭାତଳେ ମୋର ହୋଉଅଛି ମାନ
ଯେତେବେଳେ ରକ୍ଷାକର ହେ ଦୁଖନାଶନ ।୧୫୨
ଲଗାଇଲେ ପଦ୍ମ ପାଦତଳେ ଦେବୀ ଧ୍ୟାନ
ଦ୍ୱାରକାରେ ଜାଣିଲେ ତା ଶ୍ରୀମଧୁସୂଦନ ।୧୫୩
ସତ୍ୟଭାମା ସଙ୍ଗେ ପଶା ଖେଳନ୍ତି ଶ୍ରୀହରି
ଦ୍ରୌପଦୀର ଡାକ ପ୍ରଭୁ ଶ୍ରବଣେ ଶୁଣି କରି ।୧୫୪
ରଖିଲୁ ରଖିଲୁ ଆମ୍ଭେ ବୋଲିଣ ବୋଇଲେ
ଆଜାନୁଲମ୍ବିତ ଭୁଜ ବେଗେ ଟେକି ଦେଲେ ।୧୫୫
ସତ୍ୟଭାମା ବୋଲୁଛନ୍ତି ଶ୍ରୀକୃଷ୍ଣକଇଂ ଚାହିଂ
କେଉଂ ସାରକୁ ରଖିଲ କାହିଂହେ ଗୋସାଇଂ ।୧୫୬
ପଞ୍ଚୁଆତୀ ଦାନ ଯେ ମୋର ପଡ଼ିଅଛି ସାର
କାହାକୁ ରଖିଲ କହ ହେ ପ୍ରାଣ ଈଶ୍ୱର ।୧୫୭
ସତ୍ୟଭାମା ବୋଇଲେ ଶ୍ରୀକୃଷ୍ଣଙ୍କ ଅଗ୍ରତ
ପଡ଼ିଲା ଦାନସାର ମୁଂ ମାରିଛି ନିୟତ ।୧୫୮
କେବଣ ରାଜ୍ୟେ ସ୍ୱାମୀ କାହାକୁ ରଖିଲ
ରଖିଲି ରଖିଲି ବୋଲି ଦେବ କାହାକୁ ବୋଇଲ ।୧୫୯
ଗୋବିନ୍ଦ ବୋଇଲେ ଯେ ପଶା ଖେଳ ଗୋ ନୁହଇ
ଦ୍ରୌପଦୀ ଡାକୁ ଅଛନ୍ତି କୁରୁ ସଭାରେ ଥାଇଂ ।୧୬୦
ଦୁିଯୋଧନ ସଙ୍ଗେ ଯୁଧିଷ୍ଠି ପଶା ଖେଳିଲେ
ଅବିବେକ ପଣେ ଦ୍ରୌପଦୀକି ସେ ହାରିଲେ ।୧୬୧
ବିବସ୍ତ୍ର କରୁଛି ତାଂକୁ ଧୃଶା ଯେ ପାମର
ଦ୍ରୌପଦୀ ଡାକିଲେ ମୋତେ ରଖ ହେ ଠାକୁର ।୧୬୨
ସତ୍ୟଭାମା ବୋଇଲେ ଯେ କପଟ ବଚନ
ହସ୍ତିନାକୁ ଦ୍ୱାରକା ଯେ ଲକ୍ଷେକ ଯୋଜନ ।୧୬୩
କେଉଂ ପ୍ରକାରେ ଶୁଭିଲା ଯେତେ ଦୂର ଡାକ
ମିଛେ ଭଣ୍ଡୁ ଅଛ ମୋତେ ପରାଣ ନାୟକ ।୧୬୪

ବଦୟନ୍ତି କେଶବ ଶୁଣ ଗୋ ଶକ୍ରାବତୀ
କୁରୁ ସଭାରେ କୌରବେ କେଶାକର୍ଷଣ କରନ୍ତି ଦ୍ରୌପଦୀ ।୧୬୫
ସେ ମୋତେ ସୁମରଣା କଲାକ ଆରତେ
ମୁହିଂ ତାହା କଇଂ ରଖିଲି କାରଣ ନିମନ୍ତେ ।୧୬୬
ଶୁଣିଲ ଥମ୍ଭୀଭୂତ ହୋଇଲେ ଶକ୍ରାଜିତର ନନ୍ଦିନୀ
ହସ୍ତରୁ ପଶାସାର ପକାଇଲେ ମେଦିନୀ ।୧୬୭
କେମନ୍ତେ ସମ୍ପ୍ରତେ ଯିବଇଂ ମୁହିଂ ଯେହା
ସ୍ୱରୂପ କରି ମୋତେ କହିବା ଚଉବାହା ।୧୬୮
ପୂର୍ବେଣ ଗଜକୁ ଯେ ରଖିଲ ମୁରାରି
ଗ୍ରାହାକୁ ଛେଦିଲ ସମ୍ମୁଖେ ଦେଖି ମୁହିଂ ହାରି ।୧୬୯
ଦ୍ରୌପଦୀ ଚରିତତ ଅତି ଅଗୋଚର
ପଞ୍ଚ ପାଣ୍ଡବେ କି ଅବା ନାହାନ୍ତି ସଂଗତର ।୧୭୦
କିମ୍ପାଇଂ ଦ୍ରୌପଦୀକି ଯେତ୍ତେ ବିଡ଼ମ୍ୱଣତ
ଯେ ମୋହୋର ଅଗ୍ରତେ କହିବା ପଦ୍ମନେତ୍ର ।୧୭୧
କହନ୍ତି ନାରାୟଣ ଶୁଣ ଶକ୍ରାବତୀ
ପଦ୍ମନ ସ୍ୱ ନକ୍ଷତ୍ରେ ପାଣ୍ଡବେ ଥିଲେ ଯେଥି ।୧୭୨
ଚାରିଭାଇଂକି ଛାଡ଼ିଗଲେ ଯୁଝେଷ୍ଟି ରାଜଦେବ
ସୋଦରନ୍ତ ଦେଖିବାକୁ ହସ୍ତିନା ବିଜୟେ ବେଗ ।୧୭୩
କୂଟ କପଟ ଭିଆଇଲା ଶକୁନି ମହାମନ୍ତ୍ରୀ
ଦ୍ରିଯୋଧନ ତୁଲେ ପଶାଖେଳିଲେ ସୁତ କୋନ୍ତି ।୧୭୪
ରାଜ୍ୟଭାର ସମ୍ପଦ ହାରିଲେ ଧର୍ମ ମହୀପତି
ଚାରିଭାଇ ସହିତେ ହାରିଲେ ଦ୍ରୌପତି ।୧୭୫
ସେ ମୂଢ଼ କଉରୋବେ ଅଟନ୍ତି ବଡ଼ ଦୁଷ୍ଟ
ପାଞ୍ଚାଳୀକି ବିବସନ କରନ୍ତି ପାପିଷ୍ଟ ।୧୭୬
ତେଣୁ ସେ ଆମ୍ଭର ମନ ଗୋ ଅଥୟେ
ସତ୍ୟଭାମା ବୋଇଲେ ମୋତେ ଦେଖାଇବା ଦେବରାୟେ ।୧୭୭
ସତ୍ୟଭାମାଂକ ବଚନେ ଦେବ ମଧୁହାରି
ତତକ୍ଷଣେ ବଇନେତ୍ର ସୁମରଣା କରି ।୧୭୮
ଗରୁଡ଼କୁ ସୁମରିଲେ ରୁକ୍ମିଣୀ ବଲ୍ଲଭ
ରମ୍ୟେକ ଦୀପରେ ପକ୍ଷୀ ଜାଣିଲା ତା ଜବ ।୧୭୯
ଗରୁଡ଼ ବୋଇଲା ତାର ପତ୍ନୀକୁ ଅନାଇଂ
ଅମୃତ ଭୋଜନ ମୋତେ ପିତା ଯେ ଲାଗଇ ।୧୮୦
ମଦନା ବୋଲଇ ମୋର ପ୍ରାଣର ଈଶ୍ୱର
କି ପ୍ରମାଦ ପଡ଼ିଲା ଅବା ଦ୍ୱାରକା ପୁରର ।୧୮୧
ଶୁଣିଣ ଖଗବର ବେଗେହେଂ ଅଇଲା ।
ଶତେକ ଯୋଜନ ଡେଣା ବିସ୍ତାରିଣ ଦେଲା ।୧୮୨
ଗୋବିନ୍ଦଂକୁ ସୁମରିଣ ପକ୍ଷଗଲା ଚଳି
କ୍ଷଣକ ଭିତରେ ଯାଇଂ ଦ୍ୱାରକାୟେ ମିଳି ।୧୮୩
ଆସ୍ଥାନ ଉପରେ ବସିଅଛନ୍ତି ଗୋସାଇଂ
ପଦ୍ମ ପାଦତଳେ ପକ୍ଷିବର ପଡ଼ିଲାକ ଯାଇ ।୧୮୪
ଉଠ ଉଠ ବୋଲି ପ୍ରଭୁ ଧଇଲେକ ଟେକି
ଦେଖିଣ ହରଷ ଯେ ଶକ୍ରାଜିତର ଦୁଲାଳୀ ।୧୮୫
ଗରୁଡ଼ ବୋଇଲା କିମ୍ପାକଲ ସୁମରଣ
କି କାର୍ଯ୍ୟ କରିବି କହ ହେ ଲକ୍ଷ୍ମୀରମଣ ।୧୮୬
ଗୋବିନ୍ଦେ ବୋଇଲେ ବାବୁ ପିଠିଟୁ ବିସ୍ତାର
ଆମ୍ଭଂକୁ ଘେନିଣ ଯିବୁ ହସ୍ତିନା ନଗର ।୧୮୭
ଶୁଣିକରି ଖଗେବର ବେଗେ ପିଠି ବିସ୍ତାରିଲେ
ସତ୍ୟଭାମା ଘେନି ପ୍ରଭୁ ବିଜୟେ ଯେ କଲେ ।୧୮୮
ପ୍ରବେଶ ହୋଇଲେ ଯାଇଂ ହସ୍ତିନା ନଗରେ
ଅଦୃଶ୍ୟ ହୋଇ ରହିଲେ ଆକାଶ ମାର୍ଗରେ ।୧୮୯
କୁରୁସଭା ମଣ୍ଡଳ ମଧ୍ୟେ ଥାଇଂ ଦେବହରି
ସତ୍ୟଭାମାକୁ ଦେଖାନ୍ତି ଦେବ ମଧୁହାରି ।୧୯୦
ଦେଖିଣ ତ୍ରିପୁଟି ସେ ଭଜିଲା ଶକ୍ରାବତୀ
ସ୍ୱାମୀର ପାଦତଳେ ବିନୟ ଯୁଗତି ।୧୯୧
ସ୍ୱାମୀ ଦ୍ରୌପଦୀଙ୍କର ବୈକୁଲ୍ୟ ନ ପାରିଲେ ସହି
ମହାଦୁଷ୍ଟ କଉରୋବେ ଦୁଖ ଦେଉଛନ୍ତି ତହିଂ ।୧୯୨
ମୁଖ ଟେକି ଦ୍ରୌପଦୀ ଯେ ଦେଲେକ ଅନାଇଂ
ଗରୁଡ଼ ପିଠିରେ ବିଜେ ତ୍ରଇଲୋକ୍ୟ ଗୋସାଇଂ ।୧୯୩
ଚର୍ମନେତ୍ର ଘେନି ଦେବୀ କରିଲେ ଦର୍ଶନ
ନିସ୍ତରିଲି ନିସ୍ତରିଲି ବୋଇଲେ ବଚନ ।୧୯୪
କୋଟି କୋଟି ଜନ୍ମର ମୋ ଯେତେ ପାପଥିଲା
ଶ୍ୱେତ ପଦ୍ମ ତୋଳା ଦେଖି ଦୂର ହୋଇଗଲା ।୧୯୫
ଦ୍ରୌପଦୀ ଡାକିଲେ ହେ ପ୍ରଭୁ ପଦ୍ମ ଲୋଚନ
ତୁମ୍ଭଘେନି ବଡ଼ ଲୋକ ପାଣ୍ଡୁର ନନ୍ଦନ ।୧୯୬
ରାଜସୂୟ ଯାଗ୍ୟଂକାଳେ ହେ ଦେବ ଅନନ୍ତ
ପ୍ରତିହାରୀ ପଣେ ତୁମ୍ଭେ ଧରିଥିଲ ବେତ ।୧୯୭
ମଣିମା ମଣିମା ବୋଲକରି ବୋଲୁଥିଲ
ଯେବେ ଯୁଧିଷ୍ଟିଙ୍କ ଠାରୁ ଦୟାତ ଛାଡ଼ିଲ ।୧୯୮

କପଟ ପଶାରେ ଜିଣିଣ ରାଜ୍ୟ ସମ୍ପଦ
ସଭାତଳେ ବସାଇଛି ମାନ ଯେ ଗୋବିନ୍ଦ ।୧୯୯
ମୋହୋର ଯେ ଦୁଖ ପ୍ରଭୁ କହିବଇଂ କେତେ
କେଶଧରି ଧୃଶାସନ ଆଣିଲା ଯେ ମୋତେ ।୨୦୦
ଯେବେ ବିବସ୍ତ୍ର କରେ ମୋତେ ଯେ ଧୃଶା ପାମର
ତୁମ୍ଭେ ନ ରଖିଲେ ପ୍ରଭୁ ହେବି ମୁଂ କାହାର ।୨୦୧
ଜଗନ୍ନାଥ ବୋଇଲେ ଛାଡ଼ ମନୁ ବେଦନା
ଯେ ଛାର କଥାକୁ କିମ୍ପା କରୁଛ ଭାବନା ।୨୦୨
ଯେତେ ବସ୍ତ୍ର ଅଭ୍ୟାଗତେ ଦେଇଅଛ ଦାନ
ଆଦିତ୍ୟଂକଠାରେ ସେହୁ ଅଛଇ ସେ ମାନ ।୨୦୩
ସମ୍ପଦ କାଳେ ଯେ ଯାହା ଦାନ ଦେଇଥାଇ
ବିପଦର କାଳେ ଲକ୍ଷେ ଗୁଣରେ ମିଳଇ ।୨୦୪
ଆଦିତ୍ୟଂକୁ ସୁମରଣାକର ଗୋ ସରାଗେ
ଲକ୍ଷ ଗୁଣେ ହୋଇ ତାହା ମିଳିବଗୋ ବେଗେ ।୨୦୫
ଯେତେ ବୋଲି ଶୂନ୍ୟେଣ ଯାନ୍ତି ଦେବହରି
ଆକାଶେ ଭେଟିଲେ ଯାଇଂ ଗଗନ ବିହାରୀ ।୨୦୬
ଶୁଣହୋ ଦିନକର ବଦୟନ୍ତି କେଶବ
ପୂର୍ବର କଥା ଗୋଟିକି ପାଶୋରିଲ ଯେବ ।୨୦୭
ତୋହୋର ପୁତ୍ର ଶନିଶ୍ଚର ବିଭା କରିବୁ ବୋଲି
ପଞ୍ଚଉନ କୋଟି ବସ୍ତ୍ର ଆଣିଲୁ ଉଧାରି ।୨୦୮
ଛପନ କୋଟି ବସ୍ତ୍ର ମାନିଲ ନିୟତ
ପାଞ୍ଚାଳୀ ଅଭିମାନେ କିମ୍ପା ନ ଦିଅ ଯୁଗତ ।୨୦୯
କଷଣ ବେଳେ କିମ୍ପେ ବସ୍ତ୍ର ନ ଦିଅ ଆଣି
କୁରୁସଭା ମଣ୍ଡଳେ ବିବସ୍ତ୍ର ଯେ ଜିଘ୍ନସେନୀ ।୨୧୦
ଯହୁଂଣ ଆଗ୍ୟାଂ ଦେଲେ ଦେବଶିରୀରଙ୍ଗ
ତେଣୁ ସେ ଗୋଚର ହୋଇଲେ ଗଗନ ଲିଙ୍ଗ ।୨୧୧
ଯେଥୁ ଅନନ୍ତରେ ଦେବୀ ଯେ ପାଞ୍ଚାଳୀ
ଯେକ ଲୟେ ଅନ୍ତରେ ଚିନ୍ତଇ ଗଗନ ବିହାରୀ ।୨୧୨
ଜୟତୁ କମଳଲୋଚନ ଦିବାକର
ଅନାଦି ପୁରୁଷ ଜୟେ ଜୟେ କରତାର ।୨୧୩
ପ୍ରସନ୍ନ ନାରାୟଣ ଅନାଦି ସିଦ୍ଧ ପିତା
ତୁ ସେ ଜାଣୁ ନାଥ ଭୁତ ଭବିଷ୍ୟତ ଗ୍ୟାଂତ ।୨୧୪
ଜଳସ୍ଥଳ ଅନଳ ତୁହି ସେ ପାତାଳ ଆଦି
ପୃଥ୍ୱୀ ଆପ ତେଜ ବାୟିବ୍ୟ ଆକାଶ ପ୍ରସିଦ୍ଧି ।୨୧୫

ଯୁଗେ ଯୋଗେଶ୍ୱର ତୁ ପ୍ରସନ୍ନ ପରମବନ୍ଧୁ
ଅଣାକାର ପୁରୁଷ ତୁ ଅନନ୍ତ ରୂପ ସଇନ୍ଧୁ ।୨୧୬
ଅବ୍ୟୟ ଅକ୍ଷୟତୁ ନିରଞ୍ଜନ ନିରାକାର
ତିମିରି ବିଦାରଣ ନାଥ ଜୟ ତୁ ଭାସ୍କର ।୨୧୭
ତୁ ଦେବ ଜଗତ ଜନ ବନ୍ଧୁ ପରମ ସାକ୍ଷୀ
ଯେ ଦ୍ୱାପର ଯୁଗେ ମୁଂ ହୋଇଲି ନିରାମାଖି ।୨୧୮
ଦୁଖୀ ଜନ ଶରଣ ନାଥ ତିମିରି ବିଦାରଣ
ନିରାକାର ପୁରୁଷ ତୁ ଦେବ ନିରଞ୍ଜନ ।୨୧୯
ପରେ ଉପୁଗାରି ତୁ ପରମାନନ୍ଦ ସ୍ୱାମୀ
ଦୀନ ଜନ ତାରଣ ହେ ତୁହି ଅନ୍ତର୍ଯ୍ୟାମୀ
ଆନ ନଗଣଇ ତୋହୋର ଚରଣେ ପରିଣାମି ।୨୨୦
ସ୍ୱାମୀ ଦକ୍ଷିଣ ମଉଦଧି ତୀର ଚନ୍ଦ୍ରଭାଗା ଅର୍କ ତୀର୍ଥେ
ଅର୍କ ଦତ୍ୟ ବିଦାରିଲୁ ନାଥ ସଂସାର ଜନହିତେ ।୨୨୧
ବାରାନିଧି ମଛନୁଂ ତୁ ଆଦିତ୍ୟ ଉତପରି
ସର୍ବତେଜ ନାଥ ତୁ ପରମାନନ୍ଦ ଯତୀ ।୨୨୨
ନମସ୍ତେ ବିରଞ୍ଚି ନାରାୟଣ ନମୋ ନମୋ ଦେବଦେବ
ନମୋନମୋ ବ୍ରହ୍ମାଣ୍ଡ ଧାରଣ ସଦାଶିବ ।୨୨୩
ନମୋ ନମୋ ବିରଞ୍ଚିତୁ ସିଦ୍ଧ ଦେବତା
ସଂଗ୍ୟାର ବଲ୍ଲଭ ନାଥ ସର୍ବଗ୍ୟଂ ମହାଗ୍ୟାଂତା ।୨୨୪
ତୁ ଦେବ ସୟଳ ପାଳନ୍ତା ପ୍ରଳୟ ଉଦ୍ଧାରି
ନମୋ ନମୋ ବିରଞ୍ଚି ଗଗନ ବିହାରୀ ।୨୨୫
ମମ କଷ୍ଟେ ଉଦ୍ଧାରଣ କରସି କରତାର
ପରମାନନ୍ଦ ସ୍ୱାମୀ ତୁ ପରଦୁଖେ କାତର ।୨୨୬
ସକଳ ଦେବତାଙ୍କର ତୁହି ସେ ଦିବ୍ୟ ଚକ୍ଷୁ
ପାପ ପୁଣ୍ୟ ଆଚାର ତୁ ସର୍ବ ଦେଖୁଅଛୁ ।୨୨୭
ଅନୁଭବନାଥ ବତିଶ କୋଟି କଳା
ନିର୍ଦ୍ଧୁମ ଅଗ୍ନି ତୋହୋର କାଳାନଳ ପିଙ୍ଗଳଜାଳା ।୨୨୮
ଚଉଷଠୀ ମନ୍ତ୍ରେ ନାଥ ତୁ କରୁଣାର ଭଗବାନ
ସଂଗ୍ୟାର ବିବାଦେ ତୁ ଜଗତ ମୋହନ ।୨୨୯
ସ୍ୱାମୀ ନକାଣି ଦକ୍ଷର ନନ୍ଦିନୀ ହୋଇଲା ମତ୍ତଗର୍ବୀ
ବୋଇଲା ତୋହୋର ଚରଣେ ସଂସାର ଜନେ ସେବି ।୨୩୦
ତୋହୋର ତେଜ କେହି ନାହିଂ ଯେ ସହନ୍ତା
ମୋହୋର ହୃଦେ ସ୍ୱାମୀ ହୋଇଲୁ ଗୋପ୍ୟଗଂତା ।୨୩୧
ସଗ୍ୟାଂ ନିନ୍ଦିଲା ତୋତେ ବୟସ ମତ୍ତଗର୍ବେ
ଆପଣେ ବିଚାର ତୁ କଲୁ ଆଦି ଦେବେ ।୨୩୨

ଆମ୍ଭନ୍ତ ନିନ୍ଦା କଲା ସେ ସ୍ତୀରୀ ହୀନ ବୁଦ୍ଧି
ଆମ୍ଭର ରୂପର ଦେଖି ସେ ହୋଇବ ଭସ୍ମାଧି ।୨୩୩
ଆମ୍ଭେ ସର୍ବ ସହ ଯେ ହୋଇ ମହା ଗ୍ୟାଂତା
ସ୍ୱାମୀର ତେଜହୀନ ହୋଇଲେ ନଗଣଇ ବନିତା ।୨୩୪
ଯେତେ ବିଚାରି ଦେବ ଦେଖାଇଲୁ ବିଶ୍ୱରୂପ
ବ୍ରହ୍ମାଣ୍ଡେ ଘୋଟିଲା ଦେବ ତୋହୋର ତେଜ
ଅସଂକ୍ଷେପ ।୨୩୫
ଅନନ୍ତ ମୂରତି ତୋହୋର ନୁଆରିଲା ସହି
ପଡ଼ିଲା ଅସାଷ୍ଟମ ହୋଇଛ ତାର ଦେହୀ ।୨୩୬
ତେଜ ସହି ନୁଆରିଲା ଦେବୀ ପଳାଇଲା ଡରେ
ଅଶ୍ୱରୂପେ ଗୋପ୍ୟଗଲା ମରୁର କ୍ରୋଟରେ ।୨୩୭
ଶରୀରୁ ଛାୟା ଯେକ ଜାତ କରି ଗଲା
ଅନେକ ମଉଷଧି ମତେ ସର୍ବ ପ୍ରଭୃତି ସହିଲା ।୨୩୮
ଛାୟାରେ ନାରାୟଣ ତୁ ବିହିଲୁ ଅଭିଳାଷ
ନବକଲ୍ପ ପରିଯନ୍ତେ ସ୍ୱାମୀ କଲୁ ଗୃହବାସ ।୨୩୯
ନାଶକର ତୁଳେ ଦେବୀ କଲାକ ଯହୁଂ କଳି
କୋପେଣ ଯମ ଛାୟାକୁ ପାଦ ପ୍ରହାରକଲା ତୋଳି ।୨୪୦
ରାଗେଣ ଛାୟା ଶାପ୍ୟ ଦେଲା ତାକୁ ହେଲୁଂ
ମୋହୋର ଦେହେ ପାଦ ପ୍ରହାର କଲୁ ଚରଣେ ତୋହୋର କୁଷ୍ଟ
ଗଲୁଂ ।୨୪୧
ଯମର ଦେହେଂ ଯହୁଂ ଗଲୁତ କୁଷ୍ଟ ବ୍ୟାଧି
ଧାନେଣ ଜାଣିଲୁ ନାଥ ତହିଂର ସଂସିଦ୍ଧି ।୨୪୨
ଛାୟାକୁ ତେଜ୍ୟା କରିଗଲୁ ଦେବ ଯେ ବିରଞ୍ଚି
ଅଶ୍ୱରୂପ ହୋଇ ସଂଗ୍ୟାରେଣ ବଞ୍ଚି ।୨୪୩
ଅଶ୍ୱରୂପ ହୋଇଣ ଶୃଙ୍ଗାର କଲୁ ଇଛା
ସ ଇନ୍ଦୁ ଜାତ ହୋଇଲେ ଅଶ୍ୱିନୀକୁମର ବେନି ବସା ।୨୪୪
ସ୍ୱାମୀ ନିଜ କାୟେ ଛିନାଇଲୁ ଛିଦ୍ର କୁଳେ ବସି
ସହସ୍ର କିରଣ ହୋନ୍ତେ ସହିଲା ଶୁଭ୍ରକେଶୀ ।୨୪୫
ମେଷ ମାସେ ସ୍ୱାମୀ ତୋହୋର ଷାଠିୟେ କିରଣ
ବୃଷମାସେ ତେଜ ତୋହୋର ସତୁରୀ ପରିମାଣ ।୨୪୬
ମିଥୁନ ମାସେ ଅଶିକିରଣ ପରକାଶ
କକଡ଼ାୟେ ତୋହୋର ରଶ୍ମି ତିନି ତିରିଶି ସମ୍ଭାଷ ।୨୪୭
ସିଂହେଣ ଶତ କିରଣ ନିରି ମିତେ
କନ୍ୟେଣ ଅର୍ଦ୍ଧଶତ କିରଣ ବହୁ ବିଶ୍ୱଭୂତେ ।୨୪୮
ଷାଠିୟେ କିରଣ ତୋହୋର ଅଟଇ ଯେ ତୁଳେ
ବିଛାୟେ ସପ୍ତଦଶ ବହୁ ଗଗନ ମଣ୍ଡଳେ ।୨୪୯
ଧନୁୟେ ଶତ ଚାଳିଶ ନାଥ ହିମ ନାଶୁ
ଶତ କିରଣ ନାଥ ମକରେ ପ୍ରକାଶୁ ।୨୫୦
ଯାଗଯଗ୍ୟେଂ ଅରୁଣ ଯେ ତୋହୋର ସଙ୍ଗୀ
ସୟଳ ଜନ ଉଦ୍ଧାରଣ ନାଥ ତୁହି ସେ ପରମ ଯୋଗୀ ।୨୫୧
ମୋହୋର ଚରିତ ନାଥ ଜାଣୁ ତୁହି ପୂର୍ବେ
ବେଳେକ ସଂକଟୁ ନାଥ ଉଦ୍ଧରୁ ତୁ ଯେବେ ।୨୫୨
ସ୍ୱାମୀ ତୁଳ ମାସରେ ଉଦିତ ଅମୃତାକ୍ଷ ଆଦିତ୍ୟ
ବିଛା ମାସେ ଦେବ ବିଷଦତ୍ତ ମଇତ୍ର ।୨୫୩
ବାଳ ଆଦିତ୍ୟ ଉଦୟେ ହୁୟେ ଧନୁମାସେ
ଅନନ୍ତ ଆଦିତ୍ୟ ଦେବ ଉଦିତ ମକର ମାସେ ।୨୫୪
କୁମ୍ଭ ମାସେ ଉଦିତ ମାରକଣ୍ଡ ମୁରତି
ମୀନ ମାସେ ଉଦୟ ମହା ଅର୍କ ଜ୍ୟୋତି ।୨୫୫
ମହା ଅନଳ ଆଦିତ୍ୟ ଉଦୟେ ମେଷ ମାସେ
ଅନିଳେକ ଆଦିତ୍ୟ ଋଷଭ ମାସେ ପ୍ରକାଶେ ।୨୫୬
ମଇତ୍ର ଜିତ ଆଦିତ୍ୟ ମିଥୁନ ମାସେ ସଞ୍ଚି
କକଡ଼ା ମାସେ ଦେବ ଉଦିତ କମଳା ବିରଞ୍ଚି ।୨୫୭
ସୁହୃଦେକ ଆଦିତ୍ୟ ଉଦିତ ସିଂହ ମାସେ
ଜ୍ୟୋତି ଲିଙ୍ଗ ଆଦିତ୍ୟ କନ୍ୟା ମାସେ ପ୍ରକାଶେ ।୨୫୮
ଦ୍ୱାଦଶ ମାସକୁ ଦେବ ଦ୍ୱାଦଶ ଆଦିତ୍ୟ
ଯେକ ଆଦିତ୍ୟେକେ କିରଣ ଶତେ ଶତ ।୨୫୯
ଶରଦ ଶିଶିର ହେମନ୍ତ ବସନ୍ତ ଗୀଷମ
ବରଷା ଋତୁ ଘେନି ଯେ ଷଡ଼ ଋତୁ ବିଶ୍ରାମ ।୨୬୦
ଧାତୁ ବାଦ ପୁରୁଷ ତୋର ଗଳଇ ଋତୁ ତିନି
ତେଣୁ ସେ ପଲ୍ଲବ ନାଥ ହୋଅଇ ମେଦନୀ ।୨୬୧
ସ୍ୱାମୀ ବେଦମନ୍ତ ବାକ୍ୟେ ତୁହି ସେ ଦେବସଞ୍ଚା
କର ଅନୁଗ୍ରହ ମୋତେ ଗ୍ରହକାଳ ବଞ୍ଚା ।୨୬୨
ଅଣାକାର ପୁରୁଷ ତୋତେ ଦେଲା ଅଭିଶାପ
ତେଣୁ ସେ ବିପ୍ର ଚାଣ୍ଡାଳ ତୋର ଯେକ ରୂପ ।୨୬୩
ସ୍ୱାମୀ ଉଦୟେ ଗିରି ବିଦାରି ନାଥ ଅନୁବ୍ରତେ ଭ୍ରମୁଂ
ମୋତେ ଦୂଷିତ କେମନ୍ତେ କରିବେ ତବ ଛାମୁ ।୨୬୪
ଯଦ୍ୟପି ନାଥତୁ ଧର୍ମ ଯେ ଦେବତା
ସମସ୍ତ ଜନଂକୁ ନାଥ ତୁହି ସେ ଉଦ୍ଧାରନ୍ତା ।୨୬୫

ଅନାଦି ଯୁଗାନ୍ତକ ତୁହି ସେ ଜଗବନ୍ଧୁ
ଯେକ ଲଯେ ବଞ୍ଚାଇ ଅଜପାଳଯେ ସାଧୁ ।୨୬୬
ସ୍ୱାମୀ ଆୟୁର ଜ୍ୟୋତିର ଧନୁର ଶୁଷୁମ୍ନା
ତୋହୋର ଶରୀରକୁ ଯେ ଗୋପ୍ୟନ ଯୋଗସିନା ।୨୬୭
ସର୍ବଦା ଭଗତି ନାଥ ତବଚରଣେ ଶରଣ
ସେବାଜାଣି ଦୟାକର ବିରଞ୍ଚ ନାରାୟଣ ।୨୬୮
ଆଦିଗର୍ଭେ ସମ୍ଭୂତ ତୋହୋର କୋଟିଯେ କିରଣ
କାଳେ ଖଣ୍ଡିଲା ପ୍ରିୟା ତୋହୋର ଅକାରଣ ।୨୬୯
ମୁହିଂ ଜନମିଲି ସ୍ୱାମୀ ମାନେବର ଯୋନି
ତୁହି ସେ ସଂପକ୍ଷ ମୋତେ ସନ୍ଧ୍ୟା କାଳ ତିନି ।୨୭୦
ଚେତନା ପୁରୁଷ ତୋର ଜାତ ଅନ୍ତ ନାହିଂ
କେ ତୋତେ ବିନୟ ହୋଇବ କଷ୍ଟ କଷ୍ଟାନ୍ତ ଦାହି ।୨୭୧
ତୁ ଦେବ ଯୋଗେଶ୍ୱର ସଂଗ୍ୟାର ପ୍ରାଣ ନାହା
ଅପାଦ କାଳ ହୋଇଲା ସ୍ୱାମୀ ମୋତେ ହୁଅ ସାହା ।୨୭୨
ଶ୍ରୀ ବିରଞ୍ଚ ନାରାୟଣ ଚରଣେ ନମସ୍ତେ
ଶୂଦ୍ର ମୁନି ସାରୋଳ ଦାସ ଅନୁଗ୍ରହ ମାଗଇ ନିତ୍ୟେ ।୨୭୩

■■

## ଦ୍ରୌପଦୀଙ୍କ ବସ୍ତ୍ରହରଣ ଓ ଧୃତରାଷ୍ଟ୍ରଙ୍କଠାରୁ ବରପ୍ରାପ୍ତି

ଶୁଣ ବଇବ ସୁତ ମନୁ ଯେ ବଦୟନ୍ତି ଅଗସ୍ତି
ବିରଞ୍ଚିକି ଅନେକ ସ୍ତୁତି କଲେକ ଦ୍ରୌପଦୀ ।୧
ପାଞ୍ଚାଳୀର ସ୍ତୁତି ଶୁଣି କମଳ ଲୋଚନ
ଗଗନର ନାଥ ସ୍ୱାମୀ ହୋଇଲେ ପ୍ରସନ୍ନ ।୨
ଶୂନ୍ୟେଣ ଶବଦ ଯେ ଭାଷିଲେ ଅଂଶୁମାଳୀ
ବୋଇଲେ ଅଭୟେ ବର ମାଗସି ପାଞ୍ଚଳୀ ।୩
କରପତ୍ର ଯୋଡ଼ି ବୋଲଇ ଜିଘ୍ନସେନୀ
ଯେ ଧୁଶାସନ ଚାଣ୍ଡାଳ ଅଇଲା ମୋତେ ଘେନି ।୪
ଯେ ମୋହୋର କେଶ ଧରି ଅଇଲା କୋପାନଳେ
ପଞ୍ଚ ଯୋଜନ ଯାଯେ ମୋର ଚରଣ ନ ପଡ଼ିଲା ତଳେ ।୫
ଅପର ପ୍ରପଞ୍ଚ ମୋତେ କରଇ ବିବସନ
ସତୀପଣ ଦୂଷଣ ମୋତେ ହୋଇବ ଦିଶିଲେ ଜାନୁ ସ୍ତନ ।୬
ମୁକୁଳ ପ୍ରସନ୍ନ ହୋଇବା ଗଗନ ଲିଙ୍ଗ
ଯେମନ୍ତେ ଚାଣ୍ଡାଳେ ମୋର ନ ଦେଖନ୍ତି ଅଙ୍ଗ ।୭
ଯେଥକୁ ହେଳା ଯେବେ କରିବୁ ଦେବ ରବି
ତୋହୋର ଉପରେ ମୁଂ ଅବଶ୍ୟ ପ୍ରାଣ ବିସର୍ଜିବି ।୮

ଦ୍ରୌପଦୀର କଠୋର ବାକ୍ୟ ଦିନକରନାଥ ଶୁଣି
ଛାୟା ମାୟା ବେନିଯୁବତୀକି ହକାରିଲେ ଦିନମଣି ।୯
ଯାଅ ତୁମ୍ଭେ ବେନି କୋଟି ପାଟଳିବସ୍ତ୍ରଘେନି
ଶରୀରେ ଘୋଡ଼ାଅ ତୁମ୍ଭେ ଦ୍ରୋପଦ ନନ୍ଦିନୀ ।୧୦
ଯେସନେକ ଆଗ୍ୟାଂ ଯହୁଂ ଦେଲେ ଦେବ ମାରତଣ୍ଡ
ନିରନ୍ତରେ ଘୋଡ଼ାଇଲେ ନେଇ ଦ୍ରୌପଦୀର ପିଣ୍ଡ ।୧୧
ଦୁର୍ଜୟ ଧୁଶାସନ ପକାବନ୍ତି ବସ୍ତ୍ର କାଢ଼ି
ଛାମୁରେ ବସନ ଯେ କୂଢ଼ କୂଢ଼ ହୋଇ ପଡ଼ି ।୧୨
କୋଟିୟେକ ବସ୍ତ୍ର ଯହୁଂ ଶେଷ ଯେ ହୋଇଲା
ମୂର୍ଖ ପାମର ସେ ତଦ୍ୟପି ଶାନ୍ତି ନୋହିଲା ।୧୩
କଷ୍ଟୋର ଦେଖିଣ ଦେବ ବିରଞ୍ଚ ନାରାୟଣ
କୋଟିଯେ ବସ୍ତ୍ର ପୁଣ ଛାଡ଼ିଲେ ତତକ୍ଷଣ ।୧୪
ଛାୟା ମାୟା ସେ ଯେ ବେନି ଯୁବତୀ
ପାଞ୍ଚାଳୀର ଶରୀରେ ବସ୍ତ୍ର ନେଇ ଗୁଡ଼ିଆନ୍ତି ।୧୫
ପୁଣ ପୁଣ ବସ୍ତ୍ର ପକାବନ୍ତି ପାଲାଟାଇଂ
ବେନି କୋଟି ବସ୍ତ୍ର ପାଲଟାଇଲେ ତଦ୍ୟାପି ଦୁର୍ଯ୍ୟୋଧନର ମନେ
ଶାନ୍ତି ନାହିଂ ।୧୬
ଅନାଦି ପୁରୁଷ ଯହୁଂ ପ୍ରସନ୍ନ ହୋଇଲା
ପୁଣିହିଂ କୋଟିଯେ ବସ୍ତ୍ର ଯାଇଂ ଶରୀରେ ଲାଗିଲା ।୧୭
ପୁଣିହିଂ କୋଟିଏ ବସ୍ତ୍ର ପକାଇଲେ କାଢି
ଚାରିକୂଢ଼ ହୋଇଣ ବସ୍ତ୍ର ସଭାତଳେ ପଡ଼ି ।୧୮
ମୂର୍ଖ ସ୍ୱଭାବେ ଯେ ନବୁଝନ୍ତି କଉରୋବେ
ପୁଣିହିଂ କୋଟିଯେ ବସ୍ତ୍ର ଛାଡ଼ିଲେ ଗଗନଲିଙ୍ଗଦେବେ ।୧୯
ଶୂନ୍ୟେଣ ଲାଗଇ ଆସି ଦ୍ରୌପଦୀର କାୟେ
ଅନ୍ତରୀକ୍ଷେ ଫେଡ଼ି ପକାବନ୍ତି ଗାନ୍ଧାରୀରପୋୟେ ।୨୦
ଅସଂକ୍ଷେପ ବସ୍ତ୍ର ଦିଅନ୍ତି କମଳ ଲୋଚନ
ଆହୁରି କୋଟିଯେ ବସ୍ତ୍ର ଲାଗିଲା ଦ୍ରୌପଦୀ ଶରୀରେଣ ।୨୧
ଛାୟା ମାୟା ବେନି କନ୍ୟାଯେ ଦ୍ରୌପଦୀଶରୀର ଘୋଟି
ନିରନ୍ତରେ ବସ୍ତ୍ର ଗୁଡ଼ିଆନ୍ତି ପଞ୍ଚାବନ କୋଟି ।୨୨
ତଦ୍ୟାପି ଗୋଚର ନୋହନ୍ତି କଉରୋବେ
ଦେଖିବା ଜାନୁ ଯଉବନ ହାକଇ ରାଜଦେବେ ।୨୩
ଅସମ୍ଭବ ଦେଖିଣ ସେ କମଳ ଲୋଚନ
ଆହୁରି କୋଟିଯେ ବସ୍ତ୍ର ଲାଗିଲା ଦ୍ରୌପଦୀ ହୃଦେଣ ।୨୪
ଅସମ୍ଭବ ଦେଖିଣ ପଚାରନ୍ତି ଗାଙ୍ଗବେ
ବାବୁ ଗ୍ୟାଂନ ହୀନ ହୋଇଲୁ କୁରୁରାଜଦେବେ ।୨୫

ଅନେକ କୋଟି ବସ୍ତ୍ର ପକାଇଲ ଫେଡ଼ି
ପୁଣ ପୁଣ ପାଞ୍ଚାଳୀ ଶରୀରେ ବସ୍ତ୍ରଯାଇଂ ଜଡ଼ି ।୧୨୬
ବାବୁ ଅନ୍ତସ୍ୱର ପୁରେ ଥାଆନ୍ତି ଯେ ତୁମ୍ଭର ଭାରିଜା
କେତେ କେତେ ବସ୍ତ୍ର ପିନ୍ଧିଥାନ୍ତି ହୋ କୁରୁଦେବରାଜା ।୧୨୭
ଅନାଦି ଅପର୍ଣ୍ଣା ସେ ତାଂକୁ କେତେହେଂ ଝିଂଘାସୁ
କୋପାନଳେ ଚାହିଁଲେ ସମସ୍ତେ ହୋଇବେ ଧୂଳିପାଂଶୁ ।୧୨୮
ବାବୁ ବିଚକ୍ଷଣ ପଣ୍ଡିତତୁ ମାନ ଯେ ଗୋବିନ୍ଦ
ପିତାର ପରାୟେ ତୁହିକି ହୋଇଲୁ ଜାତି ଅନ୍ଧ ।୧୨୯
ପରମ ମାହେଶ୍ୱରୀ ସେ ସ୍ତିରୀକୁଳେ ଉତ୍ତମ
ତାହାର ଜାନୁ ସ୍ତନ ଦେଖିବାକୁ ତୁମ୍ଭେ କି ଭାଜନ ।୧୩୦

ଅନେକ ଝିଂଘାସ ଯହୁଂ କଲେକ ଦ୍ରୋପତୀ
କାଳାନ୍ତକ ଜାଣି ଚାରି ପାଣ୍ଡବଂକ ମୃତ୍ତି ।୧୩୧
ମହାବାତେ ଯେହ୍ନେ କମ୍ପଇ ତରୁ ଶିଖେ
ମେଦିନୀ କମ୍ପୁଅଛି ଭୀମସେନର କୋପେ ।୧୩୨
ଅର୍ଜୁନ ନକୁଳ ସହଦେବ ମହାକୋପେ
ଜନ ଗହଳ କଟାଳେ ଯେହ୍ନେ ଗର୍ଜଇ କାଳସର୍ପେ ।୧୩୩
ଅଧର ପୁଷ୍ଟ କରି ଭୂମିରେ ତାଡ଼ନ୍ତି ମୁଷ୍ଟି
ବାବୁ ଶାନ୍ତି ହୁଅ ବୋଲି ବୋଧ ଦିଅନ୍ତି ଯୁଧିଷ୍ଠି ।୧୩୪
ସହଦେବ ବୋଇଲା ସ୍ୱାମୀ ନୋହଇ ଯେବେଳ
ବିପଦ ବେଳେ ଆମ୍ଭଂକୁ ପଡ଼ିଛି କଟାଳ ।୧୩୫
ସହଦେବର ବଚନେ ଭୀମ ଗର୍ଜିଉଠି
ବୀରବର ପ୍ରତଗ୍ୟାଂ କରଇ ଗଦା ମୁଷ୍ଟି ।୧୩୬
ଆରେ ଆରେ କଉରୋବା ମୋହୋର ଭାରିଜା ଝିଂଘାସ
ଅବଶ୍ୟ ଶତେ କରିବଇଂ ନାଶ ।୧୩୭
ରାଗେଣ ପ୍ରତଗ୍ୟାଂ କରଇ ବୀର ଭୀମ
ପ୍ରତଗ୍ୟାଂ କରନ୍ତେ ସେ ଦିଶଇ ଦୃତୀଯମ ।୧୩୮
ଭୀମସେନ ବୋଇଲା ଆରେ ଆରେ ମୂର୍ଖ ଧୁଶା
ମୋହୋର ଜୀବନ୍ତେ ତୋହୋର ଯେଡ଼େକ ଭରସା ।୧୩୯
ଅଗ୍ନିରୁ ଉତପତ୍ତି ଯେବଣ ପାଞ୍ଚାଳୀ
ବ୍ରାହ୍ମଣ ରାଜା ଦ୍ରୁପଦର ଅଟଇ ଦୁଲାଳୀ ।୧୪୦
ପ୍ରତକ୍ଷେ ଅନଳୁଂ ଜାତ ଯେବଣ ଅପର୍ଣ୍ଣା
ମୁନିମାନେ ସୁମରନ୍ତି ଯାହାର ନାମ ପ୍ରସନ୍ନା ।୧୪୧
ଯେ ମୋହୋର ଅନ୍ତପୁରେ ପଶିଲୁ ଚାଣ୍ଡାଳ
ଆମ୍ଭନ୍ତ ଦେଖନ୍ତେ ଝିଂଘାସ କଲୁ ରେ ପାମର ।୧୪୨

ଆରେ ଯୁଧିଷ୍ଠି ଠକରଙ୍କର ଯେ ଅଟଇ ପାଟରାଣୀ
ତାହାର କେଶ ଧରି ତୁ ସଭାତଳକୁ ଆଣି ।୧୪୩
ଆରେ ପାମର ଗୁରୁ ଗଉରୋବ ଜନେ ଅଛନ୍ତି ଅପାର
ସଭାତଳେ ନକରି ଯେସନେକ ବେଭାର ।୧୪୪
ରାଗେ ବ୍ରିକୋଦର ପ୍ରତଗ୍ୟାଂ ଗଳଗାଜି
ଆଝୁଂ ନାଶକର ପୋଛିଲା ତୋର ପାଞ୍ଜି ।୧୪୫
ଆମ୍ଭଂକୁ ଝିଂଘାସ କଲୁ ଅନମିତେ
ତୁମ୍ଭନ୍ତ ରକ୍ଷା କେହୁ କରଇ ଯେ ତିନି ଜଗତେ ।୧୪୬
ଯଦ୍ୟପି ବ୍ରହ୍ମା ଇନ୍ଦ୍ର ଆବର ସଦାଶିବ
ଯମ ବରୁଣ କୁବେର ଗ୍ରହରଣଇ ସର୍ବ ।୧୪୭
ତିନି ବ୍ରହ୍ମାଣ୍ଡରେ ଯେତେ ଯେକାଦଶ ଲୋକେ
କୌରବନ୍ତ ରକ୍ଷା କରନ୍ତା ନାହିଂ ତ ତ୍ରଇଲୋକେ ।୧୪୮
ବେନି ଆଣ୍ଠୁ ବୀର ତାର ମାଡ଼ିବସି ଜାନୁ
ରାଗେଣ ପ୍ରତଗ୍ୟାଂ ଯେ କରଇ ଭୀମସେନୁ ।୧୪୯
ଆରେ ଧୁଶାସନ ମୋଡ଼ା ଅଟୁ ଯେଡ଼େ ଚାଣ୍ଡାଳ
ଆଜହୁଂ ନାଶଗଲେ ଧୃତିରାଷ୍ଟର ବାଳ ।୧୫୦
ଯେଥିର ଫଳଶ୍ରୁତି ପାଇବୁ ପୁଣ କାଳେ
ଶତଭ୍ରାଥ କଉରୋବ ମାରିବି ଯେକାବଳେ ।୧୫୧
ଯେବଣ ଭୁଜରେ କେଶ ଧଇଲୁ ଧୁଶାସନ
ସେ ଭୁଜ ଉପାଡ଼ିବି ସତ୍ୟ ମୋହୋର ବଚନ ।୧୫୨
ଦ୍ରୋପତୀକି କରାଇବି ରୁଧିରେ ସ୍ନାହାନ
ସତ୍ୟ ସତ୍ୟ ଅଟଇ ଯେ ମୋର ବଚନ ପ୍ରମାଣ ।୧୫୩
ମୁହିଂ ଯେବେ ଶତେଭାଇଂକି ସାଂଗ୍ରାମେ ନ ମାରଇ
କୋଟିୟେ କପିଳା ବଧ ଦୋଷ ମୁଂ ଲଭଇ ।୧୫୪
ଶିବଥାଳେ ମୁହିଂ ପରଶଇ ବିଷ
ତୋତେ ନ ମାଇଲେ ଅଗ୍ନିରେ ପଶିବି ଅବଶ୍ୟ ।୧୫୫
ଯେତେ ବୋଲି ବ୍ରିକୋଦର ତୀଖନହ ଘେନି
ପାଶୋରଇ ବୋଲି ବୁକୁରେ କାଟିଲା ଗାର ତିନି ।୧୫୬
ଶୁଣି ଭୀଷ୍ମ ଦ୍ରୋଣେ ହୋଇଲେ ତବଦ
ଆଝୁଂ ନାଶିଲା ଯେବେ ଧୃତିରାଷ୍ଟର ସମ୍ପଦ ।୧୫୭
ଅତି ଉଗ୍ରତାପ କରନ୍ତେ ମାରୁତି
ଆକାଶେ ତ୍ରାସିଲେ ତେଣେ ଦେବ ସୁରପତି ।୧୫୮
ଶୂନ୍ୟ ପୁରୁଷମାନେ ବୁଜିଲେ ସର୍ବେ ଦୃଷ୍ଟି
ତ୍ରାସେ ନାଶକର ଆସ୍ତାନୁଂ ଗଲେ ବେଗେ ଉଠି ।୧୫୯

ରାଗେଣ ପ୍ରତଗ୍ୟାଂ କରଇ ପୁଣ ପୁଣି
ଶାନ୍ତି ନ ଭଜଇ ବୀର ରାଗେଣ ଶିର ଝୁଣି ।୬୦
କଉରୋବେ ହସନ୍ତି ଭୀମର ପ୍ରତଗ୍ୟାଂ ଶୁଣି
ଦ୍ରୋପତୀ ବଢ଼କୁଳ୍ୟେ ନାରାୟଣ ନାରାୟଣ ଗୁଣି ।୬୨
ଶୁଣ ହୋ ଚଇତନ ବଦୟନ୍ତି ପୁଣ ମନୁ
ଦ୍ରୋପତୀ ବଢ଼କୁଳ୍ୟେ ସୁମରନ୍ତି ଭଗବାନ ।୬୩
ସତ୍ୟଭାମା ତୁଳେ ଖେଳୁଛନ୍ତି ଦେବ ପଶା
ଦାନ ପାରି ସତ୍ୟଭାମା କରଇ ମନୀଷା ।୬୪
ଯହୁଂ ଆପଣେ ସ୍ୱାମୀ ରଖିଲେ ଶ୍ରୀରଙ୍ଗ
ତହୁଂ ନ ଦେଖିଲେ କେହି ଦ୍ରୋପତୀର ଅଙ୍ଗ ।୬୫
ବଦୟନ୍ତି ଅଗସ୍ତି ଆହୋ ଶୁଣ ବ୍ରହ୍ମବେତ୍ତା
ତାରା ନାଶନେ ଯାହା ଭିଆଇଲେ ବିଧାତା ।୬୬
ସହଦେବ ନକୁଳ ଚରଣେ ପରିଣାମି
ସହିଲେ ପଣ୍ଡିତ ସିନା ବୋଲି ଦେବସ୍ୱାମୀ ।୬୭
ସହଦେବର ବଚନେ ଭୀମସେନ ଶାନ୍ତି
ବସ୍ତ୍ର ଅବଶେଷ ଦେଖି କୋପ ବଢ଼ିଲା ଦ୍ରୋପତୀ ।୬୭
ପଞ୍ଚାଉନ କୋଟି ବସ୍ତ୍ର ସରିଲାନି ଯୁଗତେ
ଆବର କୋଟିଯେ ବସ୍ତ୍ର କାଢ଼ିଲେ ବେନିଭ୍ରାଥେ ।୬୮
ଦେବତାଙ୍କର ବସ୍ତ୍ର ଯେ ଶୂନ୍ୟେ ଯାନ୍ତି ଉଡ଼ି
ବାହୁଡ଼ି ଦ୍ରୋପତୀର ଶରୀରେ ହୋନ୍ତି ଓଡ଼ି ।୬୯
ଦେଖି ଭୀଷ୍ମ ଦ୍ରୋଣେ ନ ପାରିଲେ ସହି
କଷ୍ଟ ଦେଖି ଲୋଚନୁଂ ଅଶ୍ରୁ ଜଳ ବହି ।୭୦
ଭୀଷ୍ମ ବୋଇଲେ ହୋ ରାଜା କୁରୁବୀର
ବାପର ଚକ୍ଷୁ ପ୍ରାୟେ କି ହୋଇଲା ତୋହୋର ।୭୧
ଲକ୍ଷେ ରାଜାର ତୁ ଅଟୁ ଶିରୋମଣି
ଭାନୁ ରାଜାର ଦୁହିତା ତୋହୋର ପାଟରାଣୀ ।୭୨
ଯେକ ବସ୍ତ୍ର ଖଣ୍ଡିକେ ପିନ୍ଧନ୍ତି ବେନିଖଣ୍ଡ
ସଭାରେ ଯେତେ ତୁମ୍ଭେ ସମସ୍ତେହେଂ ଦୃଦଣ୍ଡ ।୭୩
ପର୍ବତ ସମାନେ ପଡ଼ିଲାନି ବସ୍ତ୍ର କୁଢ଼ କୁଢ଼
ତଥାପି ଶାନ୍ତି ତୁମ୍ଭେ ନୋହିଲ ରେ ମୂଢ଼ ।୭୪
ବହୁତ ଝିଂଘାସିଣ ବୋଇଲେ ଭୀଷ୍ମ ଦ୍ରୋଣେ
ତଦ୍ୟାପି ଚେତନା ଯେ ନ ବସିଲା କୁରୁଗଣେ ।୭୫
ମହା କଷ୍ଟୋର ଦେଖିଣ କୋପିତ ପାଞ୍ଚାଳୀ
ହସ୍ତିନା ରାଜ୍ୟକୁ ଚାହିଂ ଦିଲେ ଚକ୍ଷୁ ଢାଳି ।୭୬
ଅଦଭୂତେ ଜଗତୀ ପଡ଼ିଲାକ ତାର ଭାଜି
ଦୋହୋରା ଘରୁ ଅଗ୍ନି ଉଠିଲାକ ଗଳଗାଜି ।୭୭
ମହାତେଜ ଅନଳ ଲୋହିତ ପିଙ୍ଗଳ ଜାଳା
ଅନ୍ତେଶ୍ୱର ପୁରୁଂ ରୋଦନ କରି ପଳାବନ୍ତି ସମସ୍ତ ଅବଳା ।୭୮
ରାଜାର ନବର ସହିତେ ଲାଗିଲାକ ଅଗ୍ନି
ଗହନ କାରୁଣ ବାଣୀ ଶୁଭେ ଘୋରଧ୍ୱନି ।୭୯
ଭୀଷ୍ମେ ବୋଇଲେ ରାଜା ନ କଲୁ ଆମ୍ଭ ବୋଲ
ମହତ ଝିଂଘାସେ ନୋହଇ କାଳେ ଭଲ ।୮୦
ଦେଖ ତୋହୋର ନବର ଅଗ୍ନି ଅଛି ବେଢ଼ି
ରାଣୀହଂସ ପୁରମାନ ଯାଉଅଛି ପୋଡ଼ି ।୮୧
ସେ ମହାସତୀ ଯେବେ ଚାହାନ୍ତେ ସଭାକୁ
ସମସ୍ତେହେଂ ଦହନ ହୋନ୍ତେ ଦେଖନ୍ତୁ କାହାକୁ ।୮୨
ଆରେ ଆରେ ଧୁଶାସନ ଛାଡ଼ ଦ୍ରୋପତୀର ବାଳ
ତଦ୍ୟାପି କେଶ ଧରି ଆକ୍ରେଷଇ ଚାଣ୍ଡାଳ ।୮୩
କ୍ରୋଟ ଅନଳ ନୟନେ ଚାହିଂଲେ ଜିଘ୍ନସେନୀ
ବଜ୍ରଘାତ ଜାଣି ପଡ଼ିଲେ ଦୁର୍ଜୟ ଧୁଶାସନ ବେନି ।୮୪
ପାଷାଣ ପାବଚ୍ଛେ ପଡ଼ି ଫାଟିଲା ଲଲାଟ ପାଟି
ଅସାଷ୍ଟମେ ଅଚେବନ ହୋଇଲା ରୋଧିର ବହେ ଫୁଟି ।୮୫
ଆସ୍ଥାନ ଉପରୁ ଯେ ପଡ଼ିଲା କୁରୁପତି
ଶଲ୍ୟ ଶକୁନି କର୍ଣ୍ଣ ମୋହେଣ ନିବର୍ତ୍ତି ।୮୬
ଭୀଷ୍ମ ଦ୍ରୋଣ ଦୁହେଂ ଦ୍ରିଯୋଧନକୁ ଧରି
ଗତଆତ୍ମା ପ୍ରାୟେ ଚେତନା ନାହିଂ କାହାରି ।୮୭
ନଗ୍ରର ଭିତରେ ତାହାର ଯେତେକ ପୁତ୍ରବାଳୀ
ଅଦଭୂତେ ଗୋଳ ଶୁଭିଲାକ ବୋବାଳି ।୮୮
ଧୃତିରାଷ୍ଟ ପୁଛିଲେ ସଞ୍ଜୟ ମୁଖ ଚାହିଂ
କିମ୍ପାଇ ଭୁବନେ ଗୋଳ ବହୁତ ଶୁଭଇ ।୮୯
ସିନ୍ଧୁ ଘୋଷ ପ୍ରାୟେକ ଶୁଭଇ ମୁଖଧ୍ୱନି
କହ ତୁ ସଞ୍ଜୟେ ମନ୍ତ୍ରୀ ମହାଗ୍ୟାନୀ ।୯୦
ସଞ୍ଜୟେ ବୋଇଲେ ଶୁଣ ତୁ ରାଜା ଧୃତିରାଷ୍ଟ
କିମ୍ପାଇଂ ନ ତିଆରୁ ତୋର ପୋୟେ ବଡ଼ ଦୁଷ୍ଟ ।୯୧
କୂଟ କପଟ ମନ୍ତ୍ରୀ ଅଟଇ ଶକୁନି ମନ୍ଦବୁଦ୍ଧି
ସଞ୍ଚୟେ ବୁଡ଼ାଇଲା ରାୟେ ତୋହୋର ଯେତେକ ସମ୍ପଧି
ତୋର ପୁତ୍ରକଇଂ ବୁଦ୍ଧି ଶିଖାଇଲେ ନାନାଦି ।୯୨
ପୁତ୍ରେ ତୋର ସେ କଥା ମଣି ନୁଆରିଲେ
ଶକୁନି ବୁଦ୍ଧିରେ ପଡ଼ି ପଶା ଭିଆଇଲେ ।୯୩

ବିଶ୍ୱାସଘାତ କରି ବସାଇଲେ ଯୁଧିଷ୍ଠି
ସକଳ ସମ୍ପଦ ହାରିଲେ ଧର୍ମ ମହୀପତି　　।୯୪
ପଞ୍ଚ ଭାଇନ୍ତ ବସାଇଲେ ସଭାତଳେ
ବହୁତ ଝିଂଘାସ କରି ବସାଇଲେ ତୋର ବାଳେ　　।୯୫
ସେ ନିଷ୍କଳଂକ ପୁରୁଷ ସକଳ କଥା ସହି
ପୁଣ ତୋର ପୁତ୍ରେ ଉପାୟେ କଲେ ତହିଂ　　।୯୬
ତୋହୋର କୁଳବଧୂ ଦେବୀ ଯେ ପାଞ୍ଚାଳୀ
ଦୁଷ୍ଟ ପାମରେ ତାକୁ ସଭାକୁ ଆଣିଲେ କେଶ ଧରି　　।୯୭
କେଶ ଆକୃଷଣ କରି କରିଲେ ବିବସନ
ପୁତ୍ରଂକର ସମ୍ପଦ ଦେଖ ହୋ ରାଜନ　　।୯୮
ସେ ମହାସତୀ ଯହୁଂ କୋପାନଳେ ଚାହିଂ
ତେଣୁ ସେ ନବର ତୋର ବେଢ଼ିଣ ପୋଡ଼ଇ　　।୯୯
ସେ ମହାସତୀ ଯେବେ ଚାହାନ୍ତା ନୟନ
ସମସ୍ତ ପୁତ୍ରେ ତୋର ହୋଅନ୍ତେ ଦହନ　　।୧୦୦
ଶକୁନି ମନ୍ତ୍ରୀ ତୋର ଯେସନ ଉପାୟେ
ଧୃତିରାଷ୍ଟ ଅଗ୍ରତେ କହନ୍ତି ସଞ୍ଜୟେ　　।୧୦୧
ଧାତିକାରେ ଅନ୍ତପୁରୁଂ ବାହାରିଲେ ଭାନୁମତୀ
ଦ୍ରୋପତୀ ଚରଣ ତଳେ ବିନୟେ ଭଗତି　　।୧୦୨
ଭୋ ମାତ ମାହେଶ୍ୱରୀ ତୁ ଅନାଦି ସିଦ୍ଧ ଅପର୍ଣ୍ଣା
ଦୁଷ୍ଟ କଉରୋବେ ଯେ ମୂର୍ଖଜନେ ସିନା　　।୧୦୩
ଅନାଦି ଶକତି ତୁ ମହା ଅନଳ ବିଦାରି
ଅଗ୍ନି ସ୍ୱାହାନ ସିନା ନିତ୍ୟେ ଅଟଇ ତୋହୋରି　　।୧୦୪
ଯୁଗକଛ ବଞ୍ଚାଉ ତୁ ପରମ ମାହେଶ୍ୱରୀ
ବେଦମନ୍ତ୍ର ଯାହାର ହୃଦ ଗତେ ବିଶ୍ରାମ କରି　　।୧୦୫
ମାଗୋ ଧାର୍ମିକ ମହତ ବିବେକ ଶାନ୍ତି କୁଳଶୀଳ
କଷଣେ ଅଭୟା ତୁ ଚିନ୍ତାମଣି ସୟଳ　　।୧୦୬
ଲକ୍ଷେକ ନୃପତି ଯାହାର ଚରଣେ ସେ ବନ୍ଦେ
ପାପର ଚାଣ୍ଡାଳେ ତୋତେ ବିହିଲେ ଯେତେକ ପ୍ରମାଦେ।୧୦୭
ଯେ ଭୁବି ଭୁବନ ମଧ୍ୟେ ଯାହାର ଅଶେଷ ମହିମାଂ
ଦଶଦୋଷ ଅପ୍ରାଧ ମୋହୋର କରିବାକ କ୍ଷମା　　।୧୦୮
ପୁଣ ପୁଣ ପ୍ରଣପତ୍ୟ ଭାନୁମତୀ ଦ୍ରୋପତୀର ପାଦପୃଷ୍ଟେ
ସନ୍ନିଧ୍ୟେ ମିଳିଲେ ଗାନ୍ଧାରୀ ବିଦୁର ସଞ୍ଜୟେ ଧୃତିରାଷ୍ଟ୍ରେ ।୧୦୯
ବିନୟ ଭାବେ ଅନ୍ଧରାଜା ହୋଇଣ କୃତାଞ୍ଜୋଳି
ମାଗୋ କେବଣ ଠାବେ ବିଜେ କୁଳ ମଣ୍ଡନୀ ପାଞ୍ଚାଳୀ　।୧୧୦
ପସନ୍ନ ଅପର୍ଣ୍ଣା ମାଗୋ ଅନାଦି ସିଦ୍ଧ ଦଇବତୀ
ଶୂନ୍ୟ ବ୍ରହ୍ମାଣ୍ଡ ଭେଦି ଯାହାର ବିକାଶଇ ଜ୍ୟୋତି　　।୧୧୧
ମମ ଦୋଷ ଅପ୍ରାଧ ଗୋ କ୍ଷମାକର ମାୟେ
ମୁହିଁ ମନ୍ଦକ୍ଷଣେ ମାଗୋ ପୁତ୍ର ଉପୁଜାୟେ　　।୧୧୨
ନ ଜାଣି ପାମରେ ତୋତେ କଲେ ମନ୍ଦକୃତ୍ୟ
ଦୁଷ୍ଟଂକର ଦୋଷମାନ ଯେ ନ ଘେନନ୍ତି ମହତ　　।୧୧୩
ଯାବତ ଚନ୍ଦ୍ର ଦିବାକର ତୁହି ସେ ଆଦି ଯେକା
ଅଭୟ ବର ଦାୟିନୀ ଗୋ ପଳୟେ ନିଶଂକା　　।୧୧୪
ବହୁତ ବିନୟ ହୋଇ ଯେ ବଦୟନ୍ତି ଧୃତିରାଷ୍ଟେ
ବହୁତ ଅପ୍ରାଧ ଗୋ କଲେ ମନ୍ଦ ଦୁଷ୍ଟେ　　।୧୧୫
ଅପାର ଅପ୍ରାଧ ମାଗୋ କରିବୁ ଉପେକ୍ଷା
ତୋହୋର କୋପକଲେ କି ମୋହୋର ବଂଶ ହୋଇବ
　　ରକ୍ଷା　　।୧୧୬
କୁଳେ କଳଂକ ମାଗୋ ସେ ଗୁହାଇଲେ କଥା
ତୁହିତ ମହାକଷଣଗୁ ଗୋ ଉତୁରିଲୁ ମାତା　　।୧୧୭
ମହା ଧାର୍ମିକ ସେ ଯେ ପରମ ବଇଷ୍ଣବୀ
ଧୃତିରାଷ୍ଟ ବଚନେ ଶାନ୍ତି ହୋଇଲେକ ଦେବୀ　　।୧୧୮
ଶାନ୍ତି ହୋଇ ଚାହିଂଲେ ଦେବୀ ଅମୃତ ଲୋଚନେ
ଲିଭିଲା ବହନି ଯେ ଦେଖିଲେ ସର୍ବଜନେ　　।୧୧୯
ଦ୍ରୋପତୀକି ଘେନିଣ ଗାନ୍ଧାରୀ ଭାନୁମତୀ
ଆପଣା ଭୁବନେ ଯାଇଂ ପ୍ରବେଶ ତଡତି　　।୧୨୦
ଅନ୍ତେଶ୍ୱର ଭିତରେ ସର୍ବ ବଧୂଜନ ମିଳି
ଦ୍ରୋପତୀଂକି ବନ୍ଦାବନ୍ତି କରେଣ ଘେନି ଅର୍ଘ୍ୟସ୍ଥାଳୀ　　।୧୨୧
ଯୁଧିଷ୍ଠିକ ହାଥ ଧଇଲେ ଧୃତିରାଷ୍ଟେ
ବାବୁ ଥିନମିତେ ଦ୍ରୋପତୀଂକି ଝିଂଘାସିଲେ ଦୁଷ୍ଟେ　　।୧୨୨
ପରମ ପଣ୍ଡିତ ତୁହି ସହିବୁ ନାହିଂ କି ତାହା
ଉଠବୋଲି କୋଳକଲେ ଗାନ୍ଧାରୀର ପ୍ରାଣନାହା　　।୧୨୩
ବାବୁ ଯଦ୍ୟପି ଦୁଷ୍ଟେ ଲଘଂନ୍ତି ପଣ୍ଡିତକୁ
ପଣ୍ଡିତ ଜନେ କଟାଳ କରିବେ କି ତାହାକୁ　　।୧୨୪
ଅଜାତଶତ୍ରୁ ଯେ ଅଟନ୍ତି ଧର୍ମରାୟେ ଯୁଧିଷ୍ଠି
ପାଶୋରିଲେ ସମସ୍ତ କ୍ରୋଧ ଧୃତିରାଷ୍ଟ ବଚନେ ଉଠି　　।୧୨୫
ଭୀମକୁ କୋଳକରି ଧଇଲେ ବିଦୁର ସଞ୍ଜୟେ
ବାବୁ ଛାଡି ଅଭିମାନ ଧୃତିରାଷ୍ଟ୍ରର ବିନୟେ　　।୧୨୬
ବାବୁ ଅନେକ ଦୁର୍ଗତି ତୋତେ ଚିନ୍ତିଲେ ରେ ଭୀମ
ବିଷଲଡୁ ପାରକଲୁ ତୋର ପୁଣ୍ୟଧର୍ମ　　।୧୨୭

ଜଦୁର ଘରେ ଯେ ଭିଆଇଲେ କୂଟେ
ପୁରଞ୍ଜନ ପଣ୍ଡାକୁ ଯେ ପେଷିଲେ କପଟେ ।୧୨୮
ବାବୁ ତୁମ୍ଭେ ପାର ହୋଇଗଲ ଧର୍ମବଳେ
ପୁରଞ୍ଜନ ପଣ୍ଡା ନାଶଗଲା କର୍ମର ଅବଳେ ।୧୨୯
ବାବୁ ଚାରି ଯୁଗେ ହାଦେ ଧର୍ମ ଅଟଇ ସେ ମୂଳ
ପ୍ରତକ୍ଷେ ଯେହିକ୍ଷଣି ଦିଶିଲା ଧର୍ମବଳ ।୧୩୦
ଉଠ ଉଠ ଭୀମସେନ ଉଠରେ କିରୀଟୀ
ବିଦୁର ସଞ୍ଜୟଂକ ବଚନେ ଶାନ୍ତି ହୋଇ ଉଠି ।୧୩୧
ଆପଣାର ମନ୍ଦିରେ ବିଜୟେ ଧୃତିରାଷ୍ଟ୍ରେ
ପାଣ୍ଡବନ୍ତ ଘେନିଣ ସାନନ୍ଦ ମନ ତୁଷ୍ଟେ ।୧୩୨
ବହୁତ ପୁରୁଷାର୍ଥ କହିଲେ ଅନ୍ଧରାୟେ
ଅନେକ ଅଳଂକାର ଦେଇ ବହୁତ ବିନୟେ ।୧୩୩
ସ୍ନାହାନ ଭୋଜନ କରାଇ ପାଣ୍ଡବନ୍ତ
ଗାନ୍ଧାରୀ ଧୃତିରାଷ୍ଟ୍ର ବହୁତ ଉଷତ ।୧୩୪
ଦିବ୍ୟ ପଲଂକ ଉପରେ ଦ୍ରୋପତୀଂକି ବସାଇ
ଗାନ୍ଧାରୀ ଭାନୁବତୀ ସଞ୍ଜୟେ ବିଦୁର ଧୃତିରାଷ୍ଟ୍ର ଅଗ୍ରତେ
ଉଭା ହୋଇ ।୧୩୫
ଦ୍ରୋପତୀକି ବୋଇଲେ ମାଗୋ ଯାଆ ଯା ନିଜ ପୁରେ
ଧୃତିରାଷ୍ଟ୍ର ବୋଇଲେ ଅନୁଗ୍ରହ ହୋଇଲା କି ମୋହୋରେ ।୧୩୬
ଦ୍ରୋପତୀ ବୋଇଲେ ତାତ ଆମ୍ଭର ବିପଦର କାଳ
ତୁ କୁହିଂ କିସ ବୋଲିବୁ ଆମ୍ଭ କର୍ମର ଅବଳ ।୧୩୭
ଧୃତିରାଷ୍ଟ୍ର ବୋଇଲେ ମାଗୋ ତୁ ପରମ ମାହେଶ୍ୱରୀ
ସୁଗ୍ୟାନୀ ମହାପଣ୍ଡିତ ପାଞ୍ଚାଳ ରାଜାର କୁମାରୀ ।୧୩୮
ଧୃତିରାଷ୍ଟ୍ରେ ବୋଇଲେ ମୋତେ ଯେବେ ହୋଇଲା ଅନୁଗ୍ରହ
ମୋହୋର ମନଭ୍ରାନ୍ତି ଫିଟୁ ମୋତେ ବର ମାଗି କହ ।୧୩୯
ଦ୍ରୋପତୀ ବୋଇଲେ ଆମ୍ଭେ ତୁମ୍ଭର ଯେ ଭୃତ୍ୟ
ଦଇବ ବିଧାତା ଯାହା କରିଛି ନିର୍ମିତ ।୧୪୦
ଯେହେନେକ କୃତ୍ୟ କଲେ ତୁମ୍ଭର ଯେ ପୋୟେ
ଚାରି ଦିଗକୁ ତାତ କଥା ଗୋଟିୟେ ଯେ ରହେ ।୧୪୧
ରାଜ୍ୟଭାର ସିଂଘାସନ ଧନରତ୍ନ ଆଦିକରି
ପାଞ୍ଚଭାଇ ତୁଲେ ପାଣ୍ଡବଂକ ନାରୀ ।୧୪୨
କପଟ କୂଟେ ଯେହା ସମସ୍ତ ହରାଇଲେ
ସଭାର ତଳେ ଯାଇ ଯେହ୍ନେକ କୃତକଲେ ।୧୪୩
ଶରୀରେ ପ୍ରାଣ ଥାଉଂ ପାଣ୍ଡବ ପାଞ୍ଚଭାଇ
ତୁମ୍ଭର ମୁଖ ଚାହିଂ ସମସ୍ତ ତେଜ୍ୟା କରଇ ।୧୪୪
ଯେତେକ ବୋଲିଣ ଯେ ଦ୍ରୋପତୀ ମଉନ
ଧୃତିରାଷ୍ଟ୍ର ବୋଇଲେ ପୁଣ ପୁଣ ଯେ ବଚନ ।୧୪୫
ମୋତେ ଯେବେ ତୁମ୍ଭ ମନରେ ଦୟାଥିବ
ପ୍ରସନ୍ନ ହୋଇ ମୋତେ ବର ବହନ ମାଗିବ ।୧୪୬
ଯେ ମୋହୋର ସତ୍ୟ ସତ୍ୟ ଅଟେ ତିନିବାର
ଯାହା ମାଗୁଁ ତାହା ମୁଁ ଦେବଇଂ ନିରାଧାର ।୧୪୭
ଦ୍ରୋପତୀ ବୋଇଲେ ଦେବ ବଇଦେବ ମୋତେ
ସ୍ୱାମୀ ଯେ ହାରିଲେ ରାଜ୍ୟଭାର ସହିତେ ।୧୪୮
ତାହା ପ୍ରାର୍ଥନା କରି ମାଗଇ ଅଭ୍ୟର୍ଥୀ
ଧୃତିରାଷ୍ଟ୍ର ବୋଇଲେ ମୋର ହୋଇଲା ସତ୍ୟସତି ।୧୪୯
ଆବର ବର ମୋତେ ମାଗସି ପାଞ୍ଚାଳୀ
ଯେ ତୋହର ମନଇଛା ମନର ହିଆଳି ।୧୫୦
ଦ୍ରୋପତୀ ବୋଇଲେ ମୋର ରଥ ଗଜ ଅଶ୍ୱ ସଇନି
ଦିଲି ସ୍ୱସ୍ତି ବାକ୍ୟେ ଆବର ଗୋ ମାଗ ଜିଘ୍ନସେନୀ ।୧୫୧
ଦ୍ରୋପତୀ ବୋଇଲେ ମୋର ମାଗିଲି ପଞ୍ଚୁପତି
ମୋତେ ଆଦି ବରିଲେ ଯୁଧେଷ୍ଟି ନୃପତି ।୧୫୨
ସନ୍ତୋଷେ ବର ଦିଲେ ଅମ୍ବିକାର ସୁତ
ଆବର ଦେବି ତୋତେ ଯେତେ ମୋହୋର ସନମତ ।୧୫୩
ଦ୍ରୋପତୀ ବୋଇଲେ ତାତ ସ୍ତିରୀଂକ ତିନିବର
ପୁରୁଷଂକର ଦଶବର ଅଟଇ ବେଭାର ।୧୫୪
ତିନିବରୁ ତିରୀ ଯେବେ ଅଧିକ କରେ ଆଶା
ଅବଶ୍ୟ ସେ ସ୍ତିରୀଂକର ଛେଦନ ହୋୟେ ନାସା ।୧୫୫
ଦଶ ବରୁ ଅଧିକ ଯେବେ ମାଗଇ ପୁରୁଷ
ଅବଶ୍ୟ ଯେ ପୁରୁଷର କନ୍ଧ ଯାଇ ନାଶ ।୧୫୬
ଧୃତିରାଷ୍ଟ୍ର ବୋଇଲେ ଗୋ ତୁ ସର୍ବଗ୍ୟଂ ମହାଗ୍ୟାଂତା
ସ୍ୱାମୀନ୍ତ ଘେନି ତୋର ବେଗେ ବିଜେକର ମାତା ।୧୫୭
ଦ୍ରିଯୋଧନ ତହିଂ ଥିଲା ଯେତେ ଅଳଂକାର
ତାହା ଘେନି ଅଇଲେ ଯେ ସଞ୍ଜୟେ ବିଦୁର ।୧୫୮
ବର ପାଇ ଦ୍ରୋପତୀ ଯେ ପାଣ୍ଡବନ୍ତ ଘେନି
ଚାରୁଣାବନ୍ତେ ଯାଇ ବିଜୟେ ଜିଘ୍ନସେନୀ ।୧୫୯
ସମଦଣ୍ଡ ଘେନିଣ ଯେ ରାଜା ଧୃତିରାଷ୍ଟ୍ରି
ଭୀଷ୍ମ ଦ୍ରୋଣ ସହିତେ ଗଲେକ ପାଛୋଟି ।୧୬୦

ସମାର୍ଜନା କରି ବାହୁଡ଼ାଇଲେ ଧର୍ମସୁତେ
ଅନେକ ପ୍ରୀତି ବଢ଼ିଲା ଶତେ ଉତ୍ତର ପଞ୍ଚୁ ଭ୍ରାଥେ ।୨୬୧
ଦ୍ରୋପଦୀ କେଶ ତାର ବନ୍ଧନ ନକରି
ଭୀମସେନ ହୃଦଗତେ ରାଗ ଅଛି ପୂରି ।୨୬୨
ପୁଣ ଯେକଆତ୍ମା ପ୍ରାୟେକ ହୋଇଲେ ପୀରତି
ଧୃତିରାଷ୍ଟ୍ରଙ୍କଙ୍ଗ ସେବା କରିଥାନ୍ତି ନିତ୍ୟପାତି ।୨୬୩

✱✱

## ୫୩. ପାଣ୍ଡବଙ୍କର ଦ୍ୱିତୀୟ ବନବାସର କାରଣ

ବଇବସ୍ତୁତ ମନୁ ଅଗସ୍ତିଂକି କଲେ ପୁଚ୍ଛା
କଉରବେ ପାଣ୍ଡବେ ଯେ ହୋଇବେ ଯେକ ସଞ୍ଚା ।୧
ଯୁଦ୍ଧେଷ୍ଟିଂକି ବନବାସ ହୋଇଲା କେମନ୍ତେ
ଯେକଥା ବିଚାରି କହିବା ମୁନି ମୋତେ ।୨
ଶୁଣ ହୋ ମହାରାଜା ବଦନ୍ତି ଅଗସ୍ତି
ପାଣ୍ଡବଂକୁ ଅଭିମାନ ଯେ କଲା କୁରୁପତି ।୩
ତୁଳ ମାସ କୃଷ୍ଣପକ୍ଷ ଉଉମବାସର ଚଉଠୀ
ରୋହିଣୀ ନାମେ ନକ୍ଷତ୍ର ଯେ ବେଳ ତିନିଘଟି ।୪
ସେ ଦିନ ଯୁଦ୍ଧେଷ୍ଟି ଯେ ହସ୍ତିନାକୁ ଗଲେ
ଧୃତରାଷ୍ଟଂକ ଚରଣେ ପ୍ରଳମ୍ବିତ ହେଲେ ।୫
ଦେଖିଣ ଧୃତରାଷ୍ଟ୍ର ବହୁତ ପୁରସରି
ଆସ୍ଥାନେ ବସ ବୋଲି ଆଗ୍ୟାଂ ଅବଧାରି ।୬
ଆସ୍ଥାନ ମଧେ ବିଜୟେ ଧର୍ମ ଦଣ୍ଡଧାରୀ ।୭
ଯୁଦ୍ଧେଷ୍ଟି ଦ୍ରିଯୋଧନ ଯେ ଯେକଇ ଆସନେ
ଅନେକ କଉତୁକ କରନ୍ତି ଯୋଦ୍ଧାମାନେ ।୮
ଆସ୍ଥାନେ ଶକୁନି ନେଇ ପକାଇଲା ପଶା
ଯୁଦ୍ଧେଷ୍ଟି ଦେବେ ତହିଂକି ବଢ଼ାଇଲେ ମନୀଷା ।୯
ଶ୍ରୀଭୁଜେ ଖଡି ଯେକ ଘେନିଣ ଧର୍ମସୁତେ
କୋଠି କାଟ ବୋଲି ଦିଲେ ସହଦେବ ହାଥେ ।୧୦
ଆପଣେ ସହଦେବ କୋଠି କାଟଇ ଖଡି ଘେନି
ବଇଜୟନ୍ତୀ ମାଳା ଦେଇ କଲାକ ଝକ ତିନି ।୧୧
ଯେ ପଶା କପଟ ବୋଲି କହିଲା ସାର ପିଠି
ଦେଖିଣ ଦ୍ରହସିତ ଯେ ହୋଇଲେ ଯୁଦ୍ଧେଷ୍ଟି ।୧୨
ବଦୟନ୍ତି ଧର୍ମେ ମାମୁଂ ନୋହଇ ତୋହୋର ପଶା
ଆନ ପଶାକୁ ମୋହୋର ବଳଇ ମନୀଷା ।୧୩
ଆନ ପଶା ଆଣ ବୋଲି ହାକନ୍ତେ ଯୁଦ୍ଧେଷ୍ଟି
ଅଦଭୁତେ ସଭାରେ ପଡିଲା ଆସି ବେନି ପଶାକାଠି ।୧୪
ବଡ଼ ସୁଢଳିତ ପଶା ସୁବର୍ଣ୍ଣ ଦଶଦାନ
ଦେଖିଣ ହରଷ କୋନ୍ତେ ଆବର ଦ୍ରିଯୋଧନ ।୧୫
ଧର୍ମେଣ ପଶା ଆସି ହୋଇଲାକ ପ୍ରାପତ
ସହଦେବ ପାତୁ ଯେହା ବୋଲି ବୋଇଲେ କୁରୁନାଥ ।୧୬
ଦକ୍ଷିଣେ ମାନଗୋବିନ୍ଦ ଉତ୍ତରେ ଯୁଦ୍ଧେଷ୍ଟି
ମଧ୍ୟ ପୀଢ଼କେ ସହଦେବ ଘେନିଲା ପଶାକାଠି ।୧୭
କାଠି ନିରୋପିଣ ଯେ ହସିଲା ମନ୍ତ୍ରୀବର
ଯେହେନେକ ଭିଆଣ ଯେ ହୋଇଲା ଦେବଂକର ।୧୮
ଚଇତନ ପୁଚ୍ଛାକଲେ ମନୁ ପୁରୁଷଂକୁ
ସହଦେବ ଅପଚ୍ଛାତି ଦିଲେ କିଂପେ ଦେବତାମାନଂକୁ ।୧୯
ବଦୟନ୍ତି ମନୁ ପୁରୁଷ ଶୁଣ ହୋ ତଦନ୍ତ
ଦେବତାଯେ ବିଜେ କରିଛନ୍ତି ମେରୁ ଯେ ପର୍ବତ ।୨୦
ଯେମନ୍ତର ସମୟେ ପାତାଳୁଂ ଯେ ଅଇଲା ଅବନୀ
ଆସ୍ତାନେ ଗୁହାରି କଲା ଦନ୍ତେ ତିରଣ ଘେନି ।୨୧
ଧାତାର ଅଗ୍ରତେ ବିକଳେ କହଇ ମହୀ
କୀଚକର ଶତେ ଭାଇଂକର ଭାରା ମୁଂ ନୁଆରଇ ସହି ।୨୨
ବିକ୍ରମେ ଚାଲନ୍ତେ ସେ ରୁଧିର ବହଇ ମୋର ମୁଖେ
ରାସାଂଗତ ହୋଇବି ମୁଂ କଟାଳ ବଡ଼ ଦୁଖେ ।୨୩
ଦେବତାଯେ ରାଇଲେ ଖଳ ଦୁର୍ବଳ ବେନିଦୂର
ତୁମ୍ଭେ ଅନର୍ଥ କରାଇବ ପାଣ୍ଡବ କଉରୋବନ୍ତ ।୨୪
ଯୁଦ୍ଧେଷ୍ଟିକି ପଶାରେ ହରାଇଣ ତୁମ୍ଭେ ଆଜ ଆସ
ପରିଜା ରେ ଯୁଦ୍ଧେଷ୍ଟି ଯାଆନ୍ତୁ ବନବାସ ।୨୫
ଦ୍ୱାଦଶ ବରଷ ପରିଯନ୍ତେ ସେ ହୋଇବେ ବନଗାମୀ
ବରଷେ ତେର ଦିବସ ହୋଅନ୍ତୁ ଗୋପ୍ୟାନ ଯୁଦ୍ଧେଷ୍ଟି
ଦେବସ୍ୱାମୀ ।୨୬
ବିରାଟ ଭୁବନେ ଯାଇଂ ହୋଇବେ ଗୋପ୍ୟାନ
ଦ୍ରୋପଦୀର ଅର୍ଥେ ଭୀମ କୀଚକଙ୍କଂ କରିବ ନିଧନ ।୨୭
ପିତାଂକ ଆଗ୍ୟାଂୟେ ଗଲେ ଖଳ ଯେ ଦୁର୍ବଳ
ବିଶ୍ରାମିଲେ ଖଳ ଦ୍ରିଯୋଧନର ବକ୍ଷସ୍ଥଳ ।୨୮
ଦୁର୍ବଳ ପଶିଲା ଯାଇଂ ଯୁଦ୍ଧେଷ୍ଟିଂକ ଗର୍ଭେ
ଯେମନ୍ତେ ଦୁଇଦୂତ ଲଗାଇ ଉପାୟ ଭାବେ ।୨୯
କଳିକାଳ ଦୁହେଂ ଯେ ହୋଇଲେ ପଶାକାଠି
ଯେହା ବାରି ନୁଆରିଲେ ଯୁଦ୍ଧେଷ୍ଟି ଧୃତରାଷ୍ଟି ।୩୦

ଦ୍ରିଯୋଧନ ମୁଖ ଚାହିଁ ବୋଇଲେ ଧର୍ମରାଜା
ଯେ ପଶାକଇଁ କିସ ଯେ କରିବା ପରିଜା ।୩୧
ଦ୍ରିଯୋଧନ ବୋଇଲା ଯେ ପଶାର କିସ ଅଟଇ ଚରିତ
ଆକାଶୁଂ ଆସି ଅଦଭୁତେ ହୋଇଲା ପରାପତ ।୩୨
ଦୁହେଂ ଦାନେ ଦାନେ ଆମ୍ଭେ ଘେନିବା ଯେ ବାଛି
ଯେହୁ ହାରିବ ସେ ପଞ୍ଚୁରାଜ୍ୟ ନୋହେ କିଛି ।୩୩
ଯୁଝେଷ୍ଟି ଦେବେ ବୋଇଲେ ଦ୍ୱାଦଶ ବରଷ ପରିଯନ୍ତେ
ରାଜ୍ୟଭାର ଛାଡ଼ିଣ ସେ ବୁଲିବ ବନସ୍ତେ ।୩୪
ଶକୁନି ବୋଇଲା ଆବର ବରଷେ ତେର ଦିନ
ଯେତେକ ଅଦୃଶ୍ୟ ଅବଶ୍ୟ ହୋଇବ ଗୋପ୍ୟାନ ।୩୫
ଯେ ବରଷେ ତେରଦିନେ ଯେବେ ହୋଇବ ଜାଣନ୍ତା
ପୁଣି ତେର ବରଷ ସେ ହୋଇବେ ରାଜ୍ୟ ହତା ।୩୬
ଯୁଝେଷ୍ଟି ଦ୍ରିଯୋଧନ ଶୁଣି ହୋଇଲେକ ତୁନି
ସହଦେବ ବୋଇଲା ସତ୍ୟ ଯାହା କହିଲେ ଶକୁନି ।୩୭
ଜାଣଇ ସହଦେବ ଦେବତାଂକର ଚରିତ
ଆମ୍ଭର ଗୋପ୍ୟାନ ନୋହିଲେ କୀଚକ ନୋହିବ ହତ ।୩୮
ଅବଶ୍ୟ କୀଚକ ମରିବ ଭୀମସେନର ହାଥେ
ସହଦେବ ସନମତ କରାଇଲା ତେମନ୍ତେ ।୩୯
ଦୁଇ ମନ୍ତ୍ରୀ ବଚନେ ବେନିରାଯେ ହୋଇଲେ ଯେ ତୁଷ୍ଟି
ହୋଇଲା ଯେହି ପରିଜା ବୋଇଲେ ଦ୍ରିଯୋଧନ ଯୁଝେଷ୍ଟି ।୪୦
ବଦଯନ୍ତି କୋନ୍ତେ ଦ୍ରିଯୋଧନର ମୁଖ ଚାହିଁ
ଘେନ ତୋହୋର ଦାନ ଯେସନ ଇଚ୍ଛାଇ ।୪୧
ଯୁଝେଷ୍ଟିଂକର ବଚନେ ଦ୍ରିଯୋଧନ ବୋଇଲା
ଯେ ମୋହୋର ଭାଗେ ବେନି ଚଉକ ହୋଇଲା ।୪୨
ଯୁଝେଷ୍ଟି ଦେବେ ବୋଇଲେ ଯେ ତୋହୋର ଇଚ୍ଛା
ଯେ ମୋହୋର ଦାନ ହାବେ ହୋଇଲା ବାମଞ୍ଚା ।୪୩
ଯେସନ ବଚନ ଯହୁଂ ବୋଇଲେ ଯୁଝେଷ୍ଟି
ଗୋରେଖ ସୁମରି ଦ୍ରିଯୋଧନ ସହଦେବ କରେ ଦିଲା
ପଶାକାଠି ।୪୪
ଶତେଭ୍ରାଥା ମାନଗୋବିନ୍ଦର ଯେତେ ସାଖା ସଙ୍ଗ
ସଭିଯେ ସନମତ କରି କରନ୍ତି ନୃତ୍ୟରଂଗ ।୪୫
ଭୋ ଦଇବ ପୁରୁଷ କର୍ମ ଯହିଂଟି କରଇ ଯାହା ଯାହା
କାହାରି ହିଂ ବେଳେ ସେ ମେଣ୍ଟାଇ ନୋହେ ତାହା ।୪୬
ଧର୍ମ ଧର୍ମ ସୁମରି ପାଡ଼ ହୋ ମନ୍ତ୍ରୀବର
ଜାଣିମା ଧର୍ମକର୍ମ ଯେ ଅଟଇ କାହାର ।୪୭
ଦେବତାଂକର ଭିଆଣ ସୁମରି ପାଡଇ ମନ୍ତ୍ରୀବର
ପଡ଼ିଲା ବେନି ଚଉକ ଜିଣିଲେ କଉରୋବେ ସକଳ ।୪୮
ଯୁଝେଷ୍ଟି ଦେବ ପଶାରେ ହାରିଲେ ରାଜ୍ୟଭାର
କଉରୋବ ଆନନ୍ଦ ଯେ ହୋଇଲେ ଅପାର ।୪୯
ଯାଅ ହୋ ପାଣ୍ଡବେ ତୁମ୍ଭେ କ୍ଷେଣେହେଂ ନ ରହ
କର୍ମ ଆଦରିଣ ବନବାସ ଦୁଖ ସହ ।୫୦
ଖାଇବ କନ୍ଦମୂଳ ମୃଗୟା ବେଣ୍ଟ ବନଜୀବ
ଦ୍ୱନ୍ଦମାନ ତେଜି ଯେବେ ନିଦ୍ୱନ୍ଦ ହୋଇବ ।୫୧
ଯେ ସଂସାର ସାଗର ବହୁତ ଅପଚ୍ଛାତି
ବହୁତ କଉତୁକ ଇଚ୍ଛାୟେଣ ବ୍ରତୀ ।୫୨
ହସନ୍ତି ବିଖଣ୍ଡେ ଯେ ବୋଲନ୍ତି କୂଟବୋଲ
କୋପେଣ ଚାରିଭାଇ ଯେ କରନ୍ତି ଗର୍ଜନ
ରୋଷେଣ ଭୀମସେନ ନିଶ୍ୱାସ ଛାଡଇ ଘନ ଘନ ।୫୪
ରକତ କୁମୋଦ ଜାଣିଣ ନେତ୍ର ଓଳି
ଯୁଝେଷ୍ଟି ଦେବ ଚରାଚି ଚାହାନ୍ତେ ତାଂକ କୋପ ସମ୍ଭାଳି ।୫୫
ଯେସନେକେ ଜଳଧାରା ଶୋଇଷ ସର୍ପନାହା ?
ଚାରିହେଂ ଶାନ୍ତି ହୋଇଲେ ତହିଂ ସ୍ଥିରକରି ଦେହା ।୫୬
ଶୁଣ ହୋ ରାଜନ ତପସ୍ୱୀଙ୍କ ରୂପ ଯେ ଧଇଲେ ଶରୀରେ
ଉଠିଣ ଚଳିଲେ ଯେ ବନେ ପଞ୍ଚୁବୀରେ ।୫୭
କୋପେଣ ଭୀମସେନ ବୋଇଲା ଆକ୍ରୋଷି
ବଚନେକ ଶୁଣିମା ସଭାଯେ ଯେତେକ ଅଛ ବସି ।୫୮
ଦ୍ୱାଦଶ ବରଷ ବୁଲିବୁଂ ଯେ ଆମ୍ଭେ ବନେ
ମଧ୍ୟେଣ ବରଷେ ଆମ୍ଭେ ଥିବୁଇଂ ଗୋପ୍ୟାନେ ।୫୯
ତ୍ରିଯୋଦଶ ବରଷ ତେର ଦିବସ ପ୍ରାପତ
ଶତେ ଭ୍ରାଥଂକର ମୁହିଂ ଘେନିମି ଜୀବିତ ।୬୦
ସ୍ୱର୍ଗ ଲୋକନ୍ତ ମୁହିଂ ନ ପାଇ ଆଦରେ
ଯେକେ ଯେକେ ନ ମାରଇ ଯେବେ କୁରୁ ଶତବୀରେ ।୬୧
କର୍ଣ୍ଣ ଶକୁନି ଦ୍ରିଯୋଧନର ଦେଖନ୍ତେ
ଧୃଶାସନର ହୃଦୟ ବିଦାରିବି ଯେହି ହାଥେ ।୬୨
ରୋଧିର ପାନେ କୋପ କରିବଇଂ ଶାନ୍ତି
ଯେଥକଇଂ କେହି ତୁମ୍ଭେ ନ କହିବ ଚାବି ।୬୩
ଦ୍ରୋପଦୀର କେଶ ଆକ୍ରୁଷଣ କଲା ସଭାର ଅଗ୍ରତେ
ତେବେ ସେ କେଶ ବନ୍ଧାଯିବ ଯେହାର ରକତେ ।୬୪
ପିତା ମୋହୋର ସ୍ୱର୍ଗେ ନ ପାଇବ ସଦଗତି
କୁରୁରାଜାକଇଂ ଯେବେ ନ ମାରିବି ବିକୋତି ।୬୫

ଯେତେକ ଧର୍ମ କଲଇଠ ଯେହି ଜନ୍ମେ
ତାହା ମୁଂ ନ ପାଇବଇଂ ଯଦି ନ କରଇ ଯେହୁ କର୍ମେ ।୬୬
ଦ୍ରିଯୋଧନ ଝିଂଘାସିଲା ଯେ ଦେଖାଇ ଜାନୁ ଦୁଇ ତୋଳି
ତହିଂ ମୋ ଗଦା ନେଇ ପିଟିବି ନିରୋଳି ।୬୭
ମାରିଣ ମୁକୁଟ ଯେ ମର୍ଦ୍ଦିବି ଯେହାରି
ଯିବ ସେ ଯମପୁର ଭାଇନ୍ତ ଆଗକରି ।୬୮
ଶତେଭ୍ରାଥ ହୋଇଲେ ମୋହୋର ଯେ ଭାଗେ
ଅର୍ଜୁନ କର୍ଣ୍ଣକଇଂ ମାରିବ ସମର ସଂଯୋଗେ ।୬୯
ସହଦେବ ଭାଗେ ଯେ ଶକୁନି କୂଟବାଦୀ
ପଶାଖେଳେ ଆମ୍ଭର ଯେ ଘେନାଇଲା ସମ୍ପଧି ।୭୦
ଶୁଣିଣ ସଭାଜନେ ଯେ ବିସ୍ମୟେ ମନ ଚିତ୍ତ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶକୁନି ସୋମଦତ୍ତ ।୭୧
ପାଣ୍ଡବେ ଅଭିନ୍ନ କଲେ କୂଟେ ପରପଞ୍ଚ
ଯେହା ଯୋଗୁଂ ଆମ୍ଭେ ଯିବା ଯମପୁର ପ୍ରତ୍ୟକ୍ଷ ।୭୨
ବିଚାରି ରାଜାମାନେ ମନ ବିକଳିତ
ଯାହା ବୋଲଇ ଭୀମ କରିବ ନିୟତ ।୭୩
କୁଳକ୍ଷୟେ କାରଣ ଯେବେ ହୋଇଲାକ ଆସି
ଭୀଷ୍ମ ଦ୍ରୋଣ କୃପ ସଭାୟେଣ ପ୍ରକାଶି ।୭୪
ଲୋକେଣ ଅପଛାଡ଼ି ସେ ପାଇଲା ଧୃତିରାଷ୍ଟ
କୁଳକ୍ଷୟକୁ କାରଣ କଲା ଆସି ବାଟ ।୭୫
କର୍ଣ୍ଣ ଶକୁନି ବୋଇଲେ ରାଜା ବଂଶ ଗଲା ହତ
ବନବାସ ତାହାଂକୁ ସେ ହୋଇଲା ଭଲମତ ।୭୬
ତ୍ରିୟୋଦଶ ବରଷ ସୁଖେ ବନରେ ବିତିବ
ତହୁଂ ଆସି ବାନ୍ଧେବ ସହିତେଣ ନାଶିବ ।୭୭
ଭଲକଇଂ କାରଣ ନକଲା ରାଜସୁତ
କାଲେଲଣ ସେହି ତ ହୋଇଲା ଅଣହିତ ।୭୮
ଯେଥୁ ଅନନ୍ତରେ ଶୁଣ ହୋ ରାଜନ
ଯୁଝେଷ୍ଠି ଚରିତ ଯେ ପବିତ୍ର ଆଖ୍ୟାନ ।୭୯
ଆହୋ ଚଳନ୍ତି ପାଣ୍ଡବେ ଯେ ବନବାସ ମାର୍ଗେ
ପୁର ଜନମାନେ ଅନେକ ବୋଲନ୍ତି ବଇରାଗେ ।୮୦
ଗୃହବାସ ଛାଡିଣ ସେ ସମସ୍ତେ ରାଜଦଣ୍ଡେ ମିଳନ୍ତି ଆସି
ନୟନରୁ ନୀର ଗଳଇ ପାଞ୍ଚଭାଇଂକର ମୁଖ ଦେଖି ।୮୧
ଆହୋ ପଣ୍ଡୁର ପିତୃ ପିତାମହର ସିନା ଯେହି ମହୀ
କୂଟେଣ ରାଜ୍ୟ ଯେହାର ପୁତ୍ରକଇଂ ଦିଅଇ ।୮୨
ସୁକୁମାର ଶରୀର ତାର ଭୋଗ ଅନରୂପ
କେସନେକ ବନ ଦୁଖ ସହିବେ ଯେ ନୃପ ।୮୩
ଆହୋ ଅଧର୍ମ କୃତ ଯେ କଲାକ ଧୃତିରାଷ୍ଟି
କେସନେକେ ଅନୁଜ ଭ୍ରାଥକୁ ଯେତେ କଷ୍ଟି ।୮୪
ଗୋଡ଼ାବନ୍ତି ସାଧୁଜନେ ପାତ୍ର ଅମନାତ୍ୟ
ଯୁଝେଷ୍ଠି ଦେବଂକୁ ଦେଖିବୁ ସ୍ୱାମୀ ଆମ୍ଭର ପଞ୍ଚୁଭୁତେ ।୮୫
ଛାଡିବୁ ପୁତ୍ର ପତ୍ନୀ ଆବର ଗୃହବାସ
ବନେ ସେବା କରିଥିବୁଂ ଯେ ଧର୍ମ ସ୍ୱାମୀଂକର ପାଶ ।୮୬
ଭୀଷ୍ମଂକର ଥାଆନ୍ତେ ସେ ଯେତେକ କର୍ମ କାହିଂ
ବିଦୁର ମହାତ୍ମା କି ସଭାରେଣ ନାହିଂ ।୮୭
ଦ୍ରୋଣ କୃପ ଶଲ୍ୟ କି ସଭାରେ ନ ଥିଲେ
କିଂପାଇଂ ଯୁଝେଷ୍ଠିଂକି ସେ ଯେତେ କଷ୍ଟ ବିହିଲେ ।୮୮
ଧୃତିରାଷ୍ଟ୍ର ଗାନ୍ଧାରୀ କେମନ୍ତେ ଛାଡିଲେ ସେନେହ
କେସନେକେ ଦହିଜ ନ ଗଲା ତାର ଦେହ ।୮୯
ଯେ ଯେ ସୁକୁମାରୀ ଦ୍ରୋପଦ ରାଜାର ଦୁହିତା
କେସନେକେ ବନବାସ ବିହିଲୁ ବିଧାତା ।୯୦
ଅତିଅନ୍ତ ସୁନ୍ଦର କୋମଳ ଯାର ବେନିପାଦ
ବନଗିରି ବୁଲନ୍ତେ କି ନୋହିବ ପରମାଦ ।୯୧
ଦ୍ରୋପତୀ ଦେଖିଣ ଯେ ରୋବନ୍ତି ନରନାରୀ
ଧିକ ହୋଉ ଧୃତରାଷ୍ଟ୍ର ଅଟଇ ମନ୍ଦଚାରୀ ।୯୨
ଲକ୍ଷେ ରାଜା ଯେଉଂଣ ସ୍ତିରୀର ନ ଦେଖିଲେ ପାଦ
ସେ ଯେବେ ବୁଲିବେ ଯେ ବନଗିରି ମଧ୍ୟ ।୯୩
ଆହୋ ଯୁଝେଷ୍ଠି ଦେବଂକର ଯେ ବନ ଗମନ ଶୁଣି
ଆସନ୍ତି ବ୍ରାହ୍ମଣେ ଯେ ଆବର ତପୋଧନୀ ।୯୪
ନିତ୍ୟହେଂ ଭୁଞ୍ଜନ୍ତେ ଯେ ଅଠାଶି ସହସ୍ର ଦ୍ୱିଜ
ବାରସସ୍ର ଉର୍ଦ୍ଧ୍ୱରେତା ଆବର ପରିବ୍ରାଜ ।୯୫
କରନ୍ତି ପ୍ରଳମ୍ଭ ଯେ ଯୁଝେଷ୍ଠି ଦେବ ଯେହଂାକୁ ଦେଖି
ସୁଖେଣ ଥିବା ମୁନି ହେ ଆଜ ଆମ୍ଭଂକୁ ଉପେକ୍ଷି ।୯୬
ତ୍ରୟୋଦଶ ବରଷ ଥିବାକ ଅପ୍ରମାଦେ
ବିଧାତା କରିଛି ମୋତେ ଯେହେନେକ ପ୍ରମାଦେ ।୯୭
କଲ୍ୟାଣ କରିଣ ଯେ ବୋଲନ୍ତି ବିପ୍ରମାନେ
ତୋହୋର ବିତ୍ରକେ ନ ଶୋହଇ ଯେହୁ ସ୍ଥାନେ ।୯୮
ତୋତେ ଘେନି ଆମ୍ଭେ ପଶିବୁଂ ବିପିନେ
ଛାଡିଣ ଯିବାକଇଂ ଆମ୍ଭର ନ ବଳଇ ମନେ ।୯୯

ସ୍ୱଚ୍ଛନ୍ଦେ ବନେ ପଶି ଫଳମୂଳ ଆହାର ଯେ କରି
ସର୍ବଦାୟେ ଥିବୁଂ ଆମ୍ଭେ ତୋହୋର ମନ ଧରି ।୧୦୦
ଆହୋ ବ୍ରାହ୍ମଣ ଭାଇ ଭାରିଯା ସହିତେ
ବନେଣ ଗମନ୍ତି ଯେ ପଣ୍ଡୁରାଜା ପୁତ୍ରେ ।୧୦୧
ଆମ୍ଭନ୍ତ ନ ନିବର୍ତ୍ତାଅ ତୁମ୍ଭେ ରାଜ୍ୟୁଂ ଯାନ୍ତେ
ତୋହୋ ବିତ୍ରକେ ହୋଇବ କେହୁ ପୁଣ୍ୟବନ୍ତେ ।୧୦୨
ଯେଥୁ ଅନନ୍ତରେ ଯେ ପୁରଜନମାନେ
ସମସ୍ତେ ଗୋଡାବନ୍ତି ସେ ଯୁଧେଷ୍ଟି ସନ୍ନିଧ୍ୟାନେ ।୧୦୩
ଭ୍ରାଥ ସୁତ ବଧୂ ଭାରିଯା ବ୍ରାହ୍ମଣ ସହିତେ
ଯାଇଂଣ ମିଳିଲେ ଯୁଧେଷ୍ଟିଦେବଂକ ଅଗ୍ରତେ ।୧୦୪
ଦେଖିଣ ବଚନ ଯେ ବୋଲନ୍ତି ଧର୍ମନୃପ
କିଂପାଇଂ ଗୋଡାଇ ଅଇଲେ ମୋହୋର ସମୀପ ।୧୦୫
ବିଚାରି ନଗ୍ରଲୋକେ ବୋଲନ୍ତି ମଧୁର ବାଣୀ
ତୋହୋର ସଂଗତେ ବନେ ଯିବୁଂ ହୋ ନୃପମଣି ।୧୦୬
ତୁ ଯେବେ ବନ ଗମିବୁ ଆମ୍ଭର କିସ ଘର
କାହାକଇଂ ସେବା ଯେବେ କରିବୁ ହୋ ନୃପବର ।୧୦୭
ବୋଲନ୍ତି ଯୁଧେଷ୍ଟି ଦେବ ପୁରଜନଂକର ପାଶେ
ଦ୍ରିଯୋଧନକୁ ସେବା କରିଥିବ ମନର ହରଷେ ।୧୦୮
ନିତ୍ୟହେଂ କଲ୍ୟାଣ କରିବ ସର୍ବେ ମିଳି
ଯେସନେକେ ଦୁଃଖ ପାଉଯାଇ ତେସନେକ ବୋଲି ।୧୦୯
ତହୁଂଣ ଯୁଧେଷ୍ଟି ବୋଧି ପୁରଜନନ୍ତ ଗୁହାଇ
ବନ ଗହନେ ଯେ ଯୁଧେଷ୍ଟି ପଞ୍ଚୁଭାଇ ଯାଇ ।୧୧୦
ସକଳ ପୁରଜନ ବାହୁଡନ୍ତି ବିମୁଖେ
ନିଜ ପୁରେ ପ୍ରବେଶ ମନର ଅସୁଖେ ।୧୧୧
ଯେଥୁ ଅନନ୍ତରେ ଯେ ରାଜା ଧୃତିରାଷ୍ଟେ
ଚିନ୍ତା ସାଗରେ ବୁଡ଼ିଲେ ଉପୁଜିଲାକ ମହାକଷ୍ଟେ ।୧୧୨
ବିଦୁରକୁ ହକାରି ଯେ ବୋଇଲା ଅନ୍ଧରାଜ
କୁରୁକ୍ଷୟ ଉପାୟେ ହୋଇଲା ଯେବେ ଆଜ ।୧୧୩
ଯୁଧେଷ୍ଟି ଭାଇ ଭାରିଯା ଗଲେ ବନବାସ
ମୁକୁଇଂ ବହୁତ କଷ୍ଟ ହୋଇଲା ବଡ଼ ତ୍ରାସ ।୧୧୪
ଦୁଖକଇଂ ଆନ ମନ ନୋହନ୍ତି ପଞ୍ଚୁଭାଇ
କେସନେକେ ବନସ୍ତେ ପଶିବେଟି ଯାଇଂ ।୧୧୫
କେଉଂଣ ଚରିତ ଯେ କଲାକ ମୋହୋର ସୁତ
ଭୃତ୍ୟ ପ୍ରାୟେ ସେବା କରିଥାନ୍ତି ପଞ୍ଚୁଭ୍ରାଥ ।୧୧୬
ଜନ ମୁଖେ ମୋତେ କିସ ବୋଲିବେ ସର୍ବଇଂ
ବୋଲଇ ବିଦୁର ଯେ ଶୁଣ କୁରୁସାଇଂ ।୧୧୭
ଯେତେ କଥାମାନ ତୋତେ କହିଲଇଂ ଆଦି
ସ୍ୱୟେଂ ଗଞ୍ଜି ହୋଇଲୁନି ଯେ ତୋହୋର ବୁଦ୍ଧି ।୧୧୮
ଯାହା ସେ ପଶାକାଠି କାଟିଲା ଶକୁନି
ଶେଷେ ହୋଇବ ସେ ରଣରଙ୍ଗ ମେଦିନୀ ।୧୧୯
ଯହୁଂ ସେ କାଠି ବେନି କୃଷ୍ଣ ଯେ ଶୁକଳ
ଯେ ସେ କୁରୁ ପାଣ୍ଡବେ ଅଟନ୍ତି ବେନିବଳ ।୧୨୦
ଯେକକୁ ଆରେକ ଯେ ରଣ ସାରଗୋଟି ମାରି
ଅନ୍ୟୋଅନ୍ୟି ତେସନେକେ ହୋଇବେ ସଂହାରି ।୧୨୧
ପଶାକାଠି ହାଦେ ଯେସନେକ ବେଭାର
ବାନ୍ଧ ମାର ଶବଦ ଯେ ଶୁଭଇ ବିସ୍ତାର ।୧୨୨
ଅଂକ ଯେ ପଡଇ ବୀରଂକର ଶିର
ଗୁଣ ଅବିଗୁଣ ଯେ ବାବଲ ଆକାର ।୧୨୩
ଦାନ ଭାଙ୍ଗିଣ ଯେ ବିବିଧ ବୀର ଡାକ ଦେଇ
ପ୍ରତ୍ୟେକ୍ଷେ ପ୍ରମୋଦିତ ଅନ୍ୟୋଅନ୍ୟି ପ୍ରକାଶଇ ।୧୨୪
ଧନ ଭୂମି ଯେହ୍ନେ ହୋଇଲୁ ଆନନ୍ଦ
ସୁତ ବାନ୍ଧବ ନାଶନେ ସେହି ମତି ହୋଇବୁ ନରେନ୍ଦ୍ର ।୧୨୫
ବିଷ ଅମୃତ ପ୍ରାୟେ ବୁଝି କଲୁ ଭୋଗ
ସଞ୍ଚୟେ କୁଟୁମ୍ବ ବନ୍ଧୁ ତୁ କଲୁ ତେସନେକେ ମୃତୁଯୋଗ ।୧୨୬
ଭୀମସେନ ଗଲା ଯେ ବାହା ଦୁଇ ତୋଳି
ଅର୍ଜୁନ ନିରନ୍ତରେ ଶହସ୍ର ଟାଳି ଚଳି ।୧୨୭
ଦ୍ରୋପତୀ କେଶ ଯେ ମୁକୁଳ କରିଗଲା
ଧଉମ୍ୟ ପୁରୋହିତଂକୁ ସେ ଦେଖିଣ ଅର୍ଘ୍ୟ ଦିଲା ।୧୨୮
ନକୁଳ ଗଲା ମୁଖେ ପାଉଂଶ ଲଗାଇ
ସହଦେବ ଗଲା ଯେ ଛତ୍ରୀଂକ ମୁଖ ଚାହିଂ ।୧୨୯
ଭ୍ରାଥ ପୁତ୍ରଂକୁ ତୋର ହୋଇଲାକ ଛିଦ୍ର
କେସନେକେ ଦୁର୍ବୁଦ୍ଧି ପଶିଲା ତୋର ଚିତ୍ତ ମଧ୍ୟ ।୧୩୦
ଚାରିଭ୍ରାଥେ ଯାନ୍ତେଣ ଯେ ନିରୁତ୍ତର
ସଭାତଳେ ବାହୁଡ଼ି ବୋଇଲା ବ୍ରିକୋଦର ।୧୩୧
ବୋଇଲା ଗଦା ପିଟିବି ଦ୍ରିଯୋଧନର ଜାନୁତଳ
ଶତେଭାଇ ଯେ କାରଣେ ମାଟିବିଟି ଯେହାର ।୧୩୨
ବୋଇଲା ଯେତେଦିନ କେଶ ମୁକଳ କଲାକ ପାଞ୍ଚାଳୀ
ଧୁଶାସନ ରୋଧିରେ କେଶ ତା ପଖାଳି ।୧୩୩

କର୍ଣ୍ଣକଇଂ ମାରିବ ନିଚୟେ ଫାଲଗୁନି
ସହଦେବ ଭାଗେଣ ଯେ ହୋଇଲା ଶକୁନି ।୧୩୪
ଅନର୍ଥ ବୃକ୍ଷକୁ ତୁ ହୋଇଲୁ ଆଦିମୂଳ
କର୍ଣ୍ଣ ଦ୍ରିଯୋଧନ ଧୁଃଶାସନ ସକଳ ଫଳ ।୧୩୫
ସୋମବଂଶେ ଯେକ ପୁତ୍ର ହୋଇଲା ଉତପନ୍ନ
ତୋହୋରେଣ ସୋମବଂଶ ହୋଇଲା ଲୋପ୍ୟାନ ।୧୩୬
ଭୀମସେନ ସଭାୟେଣ ଯେତେକ ବୋଇଲା
ନିଚୟ ବିପଦ ଯେ ତୋତେ ସେ ହୋଇଲା ।୧୩୭
ବୋଲଇ ବିଦୁର ଶୁଣିମା ଧୃତିରାଷ୍ଟ୍ର ବୀର
ବାହୁ ବେନି ତୋଳି ଯେ ଗଲାକ ବ୍ରିକୋଦର ।୧୩୮
କୁରୁ ପାଣ୍ଡବେ ଯେ ହୋଇବାକ ମହାଯୁଦ୍ଧ
ଯେ ବେନିବାହେ ଶତ୍ରୁକୁ ସେ କରିବ ଯେ ବଧ ।୧୩୯
ଯୁଝେଷ୍ଠି ଦେବେ ଯେ ଗଲେ ମୁଖେ ବସ୍ତ୍ର ଘୋଡ଼ାଇ କରି
ଲେଉଟି ମୁଖ ଚାହିଂବେ କୁରୁପୁରୀ ।୧୪୦
ଅର୍ଜୁନ ଗଲା ଯେ ବାଲିକି ବିଛରି
ରଣେ ଶହସ୍ର ପେଷିବି ଅନିର୍ଯ୍ୟାପ କରି ।୧୪୧
ନକୁଳ ବୋଇଲା ଯେ ଶତ୍ରୁର ପାଉଂଶ ହାଦେ ଦେଖି
ତେବେ ସେ ମୋହୋର ମୁଖୁଂ ଭସ୍ମ ଯେ ଉପେକ୍ଷି ।୧୪୨
ହସ୍ତିନା ପୁର ଦେଖି ସହଦେବ ଭାଷି
ଯେ ପୁର ଶୂନ୍ୟ ଦେଖିବୁଂ ଅବଶ୍ୟ ଆମ୍ଭେ ଆସି ।୧୪୩
ଧଉମ୍ୟ ପ୍ରୋହିତଂକର ଅଭିପ୍ରାୟ ଶୁଣ
ନିର୍ବଂଶ ହୋଇଣ ଯେ ପଡ଼ିବେ ମହାରଣ ।୧୪୪
ଆମ୍ଭେ ସେ ତାହାଂକର ପ୍ରେତକାର୍ଯ୍ୟ କରନ୍ତା
ଯେହା ସେ ପରିମାଣି ଅଛଇ ବିଧାତା ।୧୪୫
ସୁତ ସହୋଦର ଯେ ବନ୍ଧୁଜନମାନନ୍ତ
ସକଳ ପାଉଂଶ ଯେ ଦେଖବୁଂ ନିୟତ ।୧୪୬
ଯେସନେକ ଅରିଷ୍ଟି ଯେ ଦେଖିବୁ ମହାରାଜ୍ୟ
ନିଚୟେ ଦୁଖ ତୁ ପାଇବୁ ଅକାର୍ଯ୍ୟେ ।୧୪୭
ଗଣନା ପ୍ରକାରେ ଆଜୁଂ ତେର ବରଷ ଅନ୍ତେ
ସନ୍ତାନ ଚିନ୍ତା ତୁ କରିବୁ ନୃପତ୍ୟେ ।୧୪୮
ବିଦୁର ବଚନେ ନୃପତି ଦୁଖେଣ ପୂରିତ
ଯୁଝେଷ୍ଠି ବନ ଗମନେ ବିକଳ ମୋହୋର ଚିତ୍ତ ।୧୪୯
ଯେଥୁ ଅନନ୍ତରେ ଯେ ଆରଣ୍ୟକ ପର୍ବର ବାଣୀ
ଶୁଣନ୍ତେ ସୁରସିଦ୍ଧ କେ ବ୍ରତିବାକ ପ୍ରାଣୀ ।୧୫୦
ପରମ ଆତ୍ମାର ଯେ ଅଟଇ ପଞ୍ଚଭୂତ
ବନ୍ଦଇ ବିଷ୍ଣୁ ଯେ ସର୍ବ ଲୋକନାଥ ।୧୫୧
ମନଧ୍ୟାନେ ଭକ୍ତି ମୋ ଶତ ସହସ୍ର ଚିତ୍ତେ
ବନ୍ଦନ୍ତି ସାରୋଳା ଦାସ ଶ୍ରୀ ମହାଭାରଥ ସଂଗୀତେ ।୧୫୨
ଇତିଶ୍ରୀ ସଭାପର୍ବ ଶୁଣନ୍ତେ ସର୍ବ ପାତେକ ଯାଇ କ୍ଷୟେ
ଶୂଦ୍ରମୁନି ସାରୋଳା ଦାସଂକୁ ଜଗନ୍ନାଥଂକ ସଦୟେ ।୧୫୩
ଶ୍ରୀ ସାରୋଳା ଚଣ୍ଡୀର ମୁଂ ନିଜ ଦାସ
ବଦୟନ୍ତି ଶୂଦ୍ରମୁନି ସାରୋଳା ଦାସ ଜନ୍ମେ ଜନ୍ମେ ଅଭ୍ୟାସ ।୧୫୪



# ବନପର୍ବ

## ୫୪. ପାଣ୍ଡବଙ୍କର ବନବାସ

ଜୟତୁ ବାସୁଦେବ କମଳା ବିଳାସ
ତୋ ନାମ ସୁମରନ୍ତେ ବଇକୁଣ୍ଠେ ବାସ ।୧
ସେହି ପାଦପଦ୍ମେ ନିତ୍ୟେହେଂ ଶରଣ
ଶୂଦ୍ରମୁନି ସାରୋଳ ଦାସ ସେବେ ସେ ଦେବୀ ଚରଣ ।୨
ବଇବସୁତ ମନୁ ଅଗସ୍ତିଂକି କଲେ ପୁଚ୍ଛା
ପାଣ୍ଡବେ କଉରୋବେ କେମନ୍ତେ ହୋଇଲେ ଯେ କକ୍ଷା । ।୩
ଯୁଦେଷ୍ଟି ବନବାସେ ରହିଲେ କେମନ୍ତେ
ଯେଥିର ପ୍ରସ୍ତାବ ମୁନି କହିବାକୁ ମୋତେ ।୪
ଶୁଣ ଆହୋ ବଇବସୁତ ବଦନ୍ତି ଅଗସ୍ତି
ପାଣ୍ଡବଙ୍କ ବନବାସ ହେଲା ଯେଉଂ ମତି ।୫
ଅନେକ ସାନନ୍ଦେ ଯେ ଧର୍ମର ନନ୍ଦନ
ଶୁକ୍ର ରୋହିଣୀ ଯୋଗେ କଲେକ ପରସ୍ଥାନ ।୬
ତୁଳମାସ କୃଷ୍ଣପକ୍ଷ ପୁଣ ବୁଧବାର
ଅମୃତ ଯୋଗ ରୋହିଣୀ ବୃକ୍ଷ ଅଟଇ ସେ ଦିନର ।୭
ବାଳବ ନାମେ କରଣ ବ୍ୟତିପାତ ନାମେ ଯୋଗ
ପଞ୍ଚମୀ ତିଥି ସେଦିନ ପାଣ୍ଡବେ ପଶିଲେ ବନମାର୍ଗ ।୮
ପ୍ରଥମ ଦିନେ ରହିଲେ ଇନ୍ଦ୍ର ଯେ ପ୍ରଶସ୍ତେ
ଧଶାସନ ଗୋଡ଼ାଇ ଅଛି କର୍ଣ୍ଣ ଶକୁନି ସହିତେ ।୯
ଧନ ରତ୍ନମାନ ନ ପୁଣ ନିଅନ୍ତି ସେ ବନେ
ସମସ୍ତ ଛଡ଼ାଇ ଘେନ ବୋଲି ଆଗ୍ୟାଂ ଦିଲା ଦ୍ରିଯୋଧନେ ।୧୦
ଇନ୍ଦ୍ର ପ୍ରଶସ୍ତୁଂ ବାହାର ହୋଇଲେ ବହନ
ଆଉ ଦିନେ ବାରୁଣାବନ୍ତେ କରନ୍ତି ଗମନ ।୧୧
ଯୁଦେଷ୍ଟି ଭୀମ ଅର୍ଜୁନ ନକୁଳ ସହଦେବ
କୋଇନ୍ତା ଦ୍ରୋପଦୀ, ସୁଭଦ୍ରାକଇଂ ଘେନିଣ ଚଳନ୍ତି ପଞ୍ଚୁ ଯେ ପାଣ୍ଡବ ।୧୨
ସୁରନଦୀର ତୀରେ ଚଳନ୍ତି ପଞ୍ଚୁବୀରେ
ତୃତୀୟ ଦିନେ ପ୍ରବେଶ ମନୋହର ବନସ୍ତରେ ।୧୩
ଅଂଗେଣ ଥିଲା ତାଙ୍କର ଯେତେକ ଅଳଂକାରମାନ
ସମସ୍ତ ଶୋଧିଣ ଯେ ଘେନିଲା ଧୁଶାସନ ।୧୪
ଭୀମସେନର ଶରୀର କମ୍ପଇ ଅତି ରାଗେ
ଧୁଶାସନକଇଂ ପ୍ରହାର କି କରିବ ସାକ୍ଷାଂଗେ ।୧୫
ଯୁଦେଷ୍ଟି ଦେବେ ବୋଇଲେ କୋପ ନ କର ରେ ଭୀମ
ଉଚିତ କଥାକୁ ବାବୁ କିମ୍ପେ କରୁ ତମ ।୧୬
ବାବୁ ଦ୍ରିଯୋଧନ ବୋଲି କରି ଯେଉଂଣ ମୋର ଭ୍ରାତ
ତେମନ୍ତ ସୋଦର ଆମ୍ଭନ୍ତ ଜନ୍ମେ ଜନ୍ମେ ହୋଉ ପ୍ରାପତ ।୧୭
ଅଳଂକାରମାନ ଯେବେ ଆମ୍ଭର ରହିଂ ଥାନ୍ତା
ବନସ୍ତରେ ଅବଶ୍ୟ ଯେ ପ୍ରମାଦ ଆମ୍ଭନ୍ତ ପଡ଼ନ୍ତା ।୧୮
ବାବୁ ବିପଦ କାଳକଇଂ ଧନ ସୁନ୍ଦର ଭାରିଯା
ପଣ୍ଡିତ ଜନେ ଯେହାକଇଂ କରନ୍ତି ପରିତେଜ୍ୟା ।୧୯
ଆମ୍ଭର ସେ ଧନ ବସ୍ତ୍ର ଅଳଂକାର କେହେନେକେ ନେବା
ବାବୁ ବନବାସୁଂ ଅଇଲେ ପୁଣ ଲୋଡ଼ିଲେ ପାଇବା ।୨୦
ବାବୁ ଆପଣା କର୍ମ ବିପାକରେ କିମ୍ପେ ପରେ ଦ୍ୱନ୍ଦୀ
ଆପଣେ ଅପଣ୍ଡିତରେ ପରେ କିମ୍ପା ନିନ୍ଦି ।୨୧
ଆପଣାର ଗୁଣ ନାହିଂ ନିନ୍ଦଇ ଗୁଣବନ୍ତେ
ଆପଣେ ପ୍ରହାର କି କରିବ ଅନିମିତେ ।୨୨
ଯେହା ତୁ ବିଚାର ରେ ନ କରୁ କିମ୍ପା ମନେ
ଅନୁବ୍ରତେ ମୂର୍ଖପଣେ ବ୍ରତିବୁ କେସନେ ।୨୩
ବାବୁ ଯେବେ ସୁବୁଦ୍ଧିପଣ କରିଥାଅ ବ୍ରତିବାକୁ
ଯେମନ୍ତେ ରିପୁ କଳି ନୁଆରନ୍ତି ଆମ୍ଭଙ୍କୁ ।୨୪
ଧୁଶାସନ କର୍ଣ୍ଣ ଶକୁନିକି ବାହୁଡ଼ାଇ
ତକ୍ଷକ ବନେ ବିଜୟ କଲେ ବେଗେ ଯାଇଂ ।୨୫
ଅସକତେ ଚାଲି ନୁଆରନ୍ତି ଦେବୀ କୋଇନ୍ତେ
ନିର୍ଝର ଝର ସେ ଯେ ଗହନ ବନସ୍ତେ ।୨୬
ସେ ଦିନ ରହିଲେ ଯାଇଂ ବାରାହୀ ନଦୀ କୂଳେ
ରାତ୍ରେକ ବଞ୍ଚିଲେ ସେ ନିମ୍ବ ବୃକ୍ଷ ତଳେ ।୨୭
ବିହରନ୍ତି ରାତ୍ରକାଳେ ରାମବେଣ୍ଟ ପାରିଧି
ହରିଣୀ ବାହୁଟିଆ ନାନା ଜୀବନ୍ତ ବିନ୍ଧି ।୨୮
ଯେମନ୍ତେ ପାଣ୍ଡବେ ଯେ ବିହଡ଼ନ୍ତି ବନେ
ତହୁଂ ଯାଇଂ ବିଶ୍ରାମିଲେ କାମ୍ୟକ ନାମେ ଅରଣ୍ୟେ ।୨୯
କର୍ଣ୍ଣକେଶରୀ ବୋଲି ଯେକ ନଦୀ ଗୋଟି ।
ମେଖଳୀ ଗଙ୍ଗାରୁ ସେ ତିନି ଧାର ଫୁଟି ।୩୦
କାମ୍ୟକ ବୋଲି କରି ଯେକଇ ପର୍ବତ
ଥଳ ଉଚ୍ଛର୍ଗ ସେ ଅଟଇ ଲୁଣ ସାତ ।୩୧

ଯମଦଗ୍ନି ନିଧନେ ପ୍ରଶୁରାମ ତପୋବନ୍ତେ
କାମ୍ୟ ଶ୍ରାଦ୍ଧ କଲେ ତହିଁ ଦେବ ପିତୃକାର୍ଯ୍ୟ ଅର୍ଥେ ।୩୨
ତେଣୁ ସେ କାମ୍ୟେକ ବୋଲି ନାମ ପରସିଦ୍ଧି
ସେ ପରବତେ ଥିଲେ ପଞ୍ଚମନ ହୋଯେ ସାଧି ।୩୩
ସେ ବନ ପରିମଳ ଦେଖି ରହିଲେ ଯୁଦ୍ଧେଷ୍ଠି
ସେ କାମ୍ୟେକ ପର୍ବତ ଉପରେ ରଞ୍ଚିଲେ ପର୍ଣ୍ଣକୁଟୀ ।୩୪
ଯୁଦ୍ଧେଷ୍ଠି ଦେବେ ବୋଇଲେ ଶୁଣ ରେ ପାର୍ଥିବ
ଅରଣ୍ୟକୁ ଯିବା ଯେବେ କହିବା ବାସୁଦେବ ।୩୫
ହରିଂକି ସୁମରଣା ତୁ ହୋ କରସି ବୀର ପାର୍ଥ
ତାହାଙ୍କର ଆଗେ କହିବା ନା ସମସ୍ତ ବୃତ୍ତାନ୍ତ ।୩୬
ସ୍ୱାମୀଙ୍କର ଆଗ୍ୟାଂ ଯେ ପାଇଣ ଧନୁର୍ଜଯେ
ସଉରଭ ପାତ୍ରେ ଜଳ ଭରି କୃଷ୍ଣଂକୁ କଲା ଧ୍ୟାଯେ ।୩୭
ମନ ବଚନ କର୍ଣ୍ଣବ୍ୟେ କୃଷ୍ଣଂକୁ ଧ୍ୟାଯେ କରଇ
ନାରାୟଣ ପାଦପଦ୍ମେ ଲଯେ ବାସବ ତନଯି ।୩୮
ଚନ୍ଦ୍ରଶାଳା ମନ୍ଦିରେ ସେ ବିଜଯେ ଜନାର୍ଦ୍ଦନ
ଅର୍ଜ୍ଜୁନର ଚିନ୍ତନ୍ତେ ଦେବଙ୍କର ଟଳିଲା ଆସନ ।୩୯
ଧ୍ୟାନେଣ ଜାଣିଲେ ସେ ଦେବ ଯେ ଗୋବିନ୍ଦ
ବିଚାରନ୍ତି ପାଣ୍ଡବନ୍ତ ପଡ଼ିଲା ପରମାଦ ।୪୦
ବଇନେତ୍ରକୁ ସୁମରଣା କଲେ ଚକ୍ରଧାରୀ
ରମ୍ୟକ ଦ୍ୱୀପରୁ ଆସି ବଇନେତ୍ର ବିଜେ କରି ।୪୧
ବିଜୟ ନାରାୟଣ ବଇନେତ୍ରର ପିଠି
ପ୍ରବେଶ କାମ୍ୟେକ ବନେ ଯହିଁ ବିଜୟ କରଛନ୍ତି ଯୁଦ୍ଧେଷ୍ଠି।୪୨
ବଇନେତ୍ର ପିଠିରୁ ଉତୁରିଲେ ଦେବ ଚକ୍ରପାଣି
ଯୁଦ୍ଧେଷ୍ଠିଙ୍କ ଛାମୁରେ ଦେବ ବିଜେ ବ୍ରହ୍ମାଣ୍ଡ ଶିରୋମଣି ।୪୩
ଯୁଦ୍ଧେଷ୍ଠିଙ୍କ ମୁଖ ଚାହିଁଣ ଦେବ ଯେ ଅଚ୍ୟୁତେ
ଶତେ ସହସ୍ର ଦଣ୍ଡ ପ୍ରଲମ୍ବ କରନ୍ତି ଜଗନ୍ନାଥେ ।୪୪
ଉଠିଣ ଯୁଦ୍ଧେଷ୍ଠି ଜଗନ୍ନାଥକଙ୍କଂ କଲେ କୋଳ
ଦେଖିଣ ବିଷାଦ ହେଲେ ଦେବଙ୍କର ବାଳ ।୪୫
ସ୍ୱାମୀ ଯେ ଦୁରାପଦ ଘୋର ଦୁସହ ବନସ୍ତେ
ଯେ ନିର୍ଝର ଝର ବନସ୍ତେ ପଶିଲ କିମର୍ଥେ ।୪୬
ଯୁଦ୍ଧେଷ୍ଠି ଦେବ ବୋଇଲେ ଶୁଣିମା ଦେବରାଜ
ପଶାର କୁତୂହୋଳେ ଯେ ହରାଇଲି ସମ ରାଜ୍ୟ ।୪୭
ଯୁଦ୍ଧେଷ୍ଠିଙ୍କ ବଚନ ଶୁଣି ଦେବ ସୁମରିଲେ ବ୍ୟାସ ମହାରଷି
କାମ୍ୟକ ବନେ ବ୍ୟାସେ ପ୍ରବେଶ ହୋଇଲେ ଆସି ।୪୮

ତୁଳେଣ ଅଛନ୍ତି ତାଂକ ଷାଠିଯେ ସହସ୍ର ଶିଷି
ବାଳଖିଲ୍ୟାମାନନ୍ତ ଘେନି ପ୍ରବେଶ ହେଲେ ଆସି ।୪୯
ଧର୍ମଂକର ନନ୍ଦନ ଯେ ଉଠିଲେ ଧାଡିକାରେ
କରନ୍ତି ପୂଜା ବିଧି ବ୍ୟାସଙ୍କ ପୟରେ ।୫୦
ଗୋବିନ୍ଦେ ବୋଇଲେ ଶୁଣିମା ମୁନି ବ୍ୟାସ
ଯୁଦ୍ଧେଷ୍ଠି ଦେବଙ୍କର ହାଦେ ପୁଣିହିଂ ବନବାସ ।୫୧
ବ୍ୟାସେ ବୋଇଲେ ହରି ତୋତେ କେଉଣ କଥା ଦୁଲ୍ଲଭ
ଯେଉଣ ଅର୍ଥେ ଯୁଦ୍ଧେଷ୍ଠି ବନବାସ ନ ଜାଣୁ କି ବାସୁଦେବ।୫୨
କୀଚକ ଭାରା ଯେ ନ ସହିଲା ବସୁମତୀ
ଅଗ୍ୟାଂତବାସେ ବିରାଟ ରାଜ୍ୟରେ ବଞ୍ଚିବେ ଯୁଦ୍ଧେଷ୍ଠି ନୃପତି।୫୩
ଦ୍ରୋପତୀର ଅର୍ଥେ ଯେ ବଧ କୀଚକ ନୃପତ୍ୟ
ବଲ୍ଲଭ ରୂପେ ଭୀମ ମାରିବ କୀଚକ ଶତେଭ୍ରାତ ।୫୪
ତଦ ନିମନ୍ତେ ଯୁଦ୍ଧେଷ୍ଠି ହୋଇଲେ ବନବାସୀ
ଶୁଣିକରି ହରଷ ହୋଇଲେ ଯେ ହୃଷିକେଶି ।୫୫
କାମ୍ୟକ ବନେ ରହିଲେ ହରି ବେନି ମାସ
ଯେମନ୍ତେଣ ଗଲା ଯେ କେତେକ ଦିବସ ।୫୬
ଯୁଦ୍ଧେଷ୍ଠି ବୋଲନ୍ତି ଶୁଣ ହେ ଅଚ୍ୟୁତ
ତୁମ୍ଭର ତୁଳେ ନିଅ ଆମ୍ଭ କୋଇନ୍ତା ଯେ ମାତ ।୫୭
ତୁମ୍ଭର ଭଗିନୀ ଯେ ଆବର ଦ୍ରୋପତୀ
ତାହାନ୍ତ ନିଅ ବୋଲି ବୋଇଲେ ଯୁଦ୍ଧିଷ୍ଠି ନୃପତି ।୫୮
ଗୋବିନ୍ଦେ ବୋଇଲେ ଦ୍ରୋପତୀ ନିମନ୍ତେ ବନବାସ
ତାହାର ହେତୁ ସେ କୀଚକ ଯିବ ନାଶ ।୫୯
ସୁଭଦ୍ରା କୋଇନ୍ତାକୁ ଘେନି ଆମ୍ଭେ ଯିବୁ
ବିଦୁର ଘରେ ନେଇ କୋଇନ୍ତାଂକୁ ଛାଡ଼ିବୁ ।୬୦
ଯେତେ ବିଚାରି ଦେବ ବେନିଂକି ଘେନି ଅଇଲେ
ଦ୍ରୋପତୀକି ଘେନି ପାଣ୍ଡବେ ବନସ୍ତେ ରହିଲେ ।୬୧
ପାଞ୍ଚାଳୀ କୁମାରଂକୁ ଛାଡ଼ିଲେ ଦ୍ରୁପଦର ଘରେ
ଯେସନେକ ପାଣ୍ଡବେ ପଶିଲେ ବନସ୍ତରେ ।୬୨
ଆହୋ ପାଣ୍ଡବଂକର ତୁଳେ ଯେ ବିଦୁରେ ଥିଲେ ରହି
ସରସ୍ୱତୀରୁ ତାଂକୁ ପଠାଇଲେ ବାହୁଡ଼ାଇ ।୬୩
ବାହୁଡ଼ନ୍ତି ବିଦୁରେ ଯେ ପଣ୍ଡିତ ମହାଯୋଧୀ
ସୋଦର ବିଅର୍ଥେଣ ଶରୀର ବଡ଼ କ୍ରୋଧୀ ।୬୪
ଆସନେ ବିଜେକରି ଅଛନ୍ତି ଧୃତରାଷ୍ଟ
ଯେସନେକ ସମୟେ ବିଦୁରେ ହୋଇଲେ ଯାଇଂ ଭେଟ ।୬୫

ଧୃତରାଷ୍ଟ ଚରଣେ ବିଦୁର ପରିଣାମି
ସଞ୍ଜୟେ ବୋଇଲେ ଅବଧାନ କରିବା ଦେବସ୍ୱାମୀ ।୬୬
ବିଦୁରେ ଦରଶନ କରୁଅଛି କୁରୁପତି
ଧୃତରାଷ୍ଟେ ବୋଇଲେ ବିଦୁର ଆସ ମୋର କତି ।୬୭
ତୁ ଯେ ଗୋଡ଼ାଇଲୁ ପୋଅଂକର ତୁଲେ
କେସନେ ରୂପ ହୋଇ ବନବାସ ଗଲେ ।୬୮
ବିଦୁରେ କହିଲେ ଧୃତରାଷ୍ଟଂକର ପାଶ
ଦେଖନ୍ତା ଲୋକଙ୍କର ମନ ବଡ଼ାଇ ବିରସ ।୬୯
ତାହାଂକର ମନେ ଦେବ ଅନ୍ତର କିଛି ନାହିଂ
ମହା ପୁରୁଣା ହୋଇ ଚଳନ୍ତି ଗୁଣଗ୍ରାହୀ ।୭୦
ପୁଣ ପୁଣ ବିଦୁରକୁ ପଚାରଇ ଧୃତିରାଷ୍ଟି
କେସନେକ ରୂପେ ଯେଥୁଂ ଗଲାକ ଯୁଝେଷ୍ଟି ।୭୧
ଅମ୍ବୁବତୀର ନନ୍ଦନ କହଇ କରଯୋଡ଼ି
ଓଦା ବସ୍ତ୍ର ଯେକ ପିନ୍ଧି ଓଦା ବସ୍ତ୍ର ଯେକ ଓଢ଼ି ।୭୨
ହେଠମାଥ ହୋଇ ଚଳଇ ଧର୍ମସୁତ
ଭୂମିକି ନିରୋପି ସେ ଯେସନେ ମୟେମନ୍ତ ।୭୩
ସ୍ୱାମୀ କୁଟୁମ୍ବ ଲୋକେ ମୃତୁ ହୋଇବାର ପରାଯେ
ସେହି ସରୂପେଣ ଚାଲଇ କୋନ୍ତୀର ତନୟେ ।୭୪
ଶୁଣିଣ ଧୃତରାଷ୍ଟ ବିରସ କଲେ ମନ
କେହ୍ନେକ ସରୂପେ ବାହାର ହେଲା ଭୀମସେନ ।୭୫
ବିଦୁର କହିଲେ ସବୁ ଭୀମସେନର କଥା
ତାହାର ବିଶ୍ୱମୂର୍ତ୍ତି ଛାଡ଼ଇ କି ସର୍ବଥା ।୭୬
ଭୁଜ ବିସ୍ତାରିଣ ତାର ଅଧରେ ଦନ୍ତ ଚାପି
ଗଦା ବୁଲାଇ ବିକ୍ରମେ ଚାଲଇ ମହାକୋପୀ ।୭୭
ପୁଣ ପୁଣ ଗଦା ବୁଲାଇ ପ୍ରହାର କରଇ ଭୂମି
ତୁ ମହାପଣ୍ଡିତ ଯେହା ବିଚାର କର ସ୍ୱାମୀ ।୭୮
ଶୁଣି ଧୃତରାଷ୍ଟ ବିଦୁରକୁ ବୋଇଲା
ଅଣକୋପୀ ତ ଭାରୋଇମଲ୍ଲ ଅର୍ଜୁନ କେମନ୍ତ ହୋଇଗଲା ।୭୯
ବିଦୁର ବୋଇଲେ ଦେବ ଶୁଣ ଜଗତାଧି
ଅର୍ଜ୍ଜୁନର ଶରୀର ଦେବ ଅଟଇ ବଡ଼ କ୍ରୋଧୀ ।୮୦
ବାମଭୁଜେ ଧନୁ ଦ୍ରୋଣ ଦକ୍ଷିଣେ ବାଲିମୁଠି
ଭୂମିକି ଆକ୍ରୋଷିଣ ଚାଲଇ କୋପ ଦୃଷ୍ଟି ।୮୧
ଇନ୍ଦ୍ରପ୍ରଶସ୍ତେ ବାଲି ବିଞ୍ଚିଗଲା ପାର୍ଥେ
ଦ୍ୱାଦଶ ଯୋଜନ ସୁରନଦୀ ପରିଯନ୍ତେ ।୮୨
ଅମ୍ବିକାର ନନ୍ଦନ ପୁଣ ବଚନ ପ୍ରକାଶି
ନକୁଳର ବାରତା ବାବୁ କେହ୍ନେକ କହସି ।୮୩
ନକୁଳର କୋପ ସ୍ୱାମୀ କି କରିବା ଅନ୍ତ
ଉର୍ଦ୍ଧ୍ୱବାହୁ କରି କରେ ବୁଲାବଇ କୋନ୍ତ ।୮୪
ଭୂମିକି ମାରି ଛତ୍ର ଆକାର କରି ତୋଳି
ଆକ୍ରୋଷି ଲୋଚନେ ସେ ଭୂମିକି ଚାହାଂଇ ନିରୋଳି ।୮୫
ଶୁଣି ଧୃତରାଷ୍ଟ ପଚାରଇ ବଚନ
କହସି ବିଦୁର ସହଦେବର ଗମନ ।୮୬
ବିନୟ ଭାବେ ବିଦୁର ଧୃତରାଷ୍ଟେ ବୋଇଲା
ହସ୍ତିନାକୁ ଚାହିଂ ମନ୍ତ୍ରୀବର ଚଉଦିଗ ଆକ୍ରୋଷିଲା ।୮୭
ସ୍ୱାମୀ ସୁରନଦୀରେ ନାବେ ବସିବାର ବେଳେ
ଦ୍ରୋପଦୀଂକ ବିନୋଇ ଯେ ବୋଇଲେ ସକଳେ ।୮୮
ବନବାସ କାଳେ କିମ୍ପେ କେଶ ତୋର ମୁକୁଳା
ଯେହା ବନ୍ଧନ କର ଗୋ ଦ୍ରୁପଦର ଦୁଲାଳୀ ।୮୯
ବ୍ୟାସ ଆଦିକରି ସେ ନ କଲା କାହା ବୋଲ
ତୁ ମହାଭିଗ୍ୟଂ ଯେହା ବିଚାର ମନ୍ଦ ଭଲ ।୯୦
ଧୃତରାଷ୍ଟ ବୋଇଲେ ବାବୁ ଶୁଣ ରେ ବିଦୁର
ସମ୍ପଦ ବିଅର୍ଥେ ଆବର କିସ ସୋଦର ।୯୧
ବାବୁ ତୁ ଯେ ବୋଇଲୁ ପାଣ୍ଡବଂକର ନାହିଂ ବିରସ
ପ୍ରତଗ୍ୟାଂ ଛାଡ଼ିଲେ କି ସେହି ପଉରୋଷ ।୯୨
ମୁହିଂ ବିଚାରିଲି ପାଣ୍ଡବଙ୍କର କୋପ ନାହିଂ
ତୋହୋର ବଚନେ ମୋହୋର ଶରୀର କମ୍ପଇ ।୯୩
ପୁଣ ପୁଣ ବିଚାରଇ ଧୃତରାଷ୍ଟ ମହାରାୟେ
ଯେକାନ୍ତ କରି ସନ୍ନିଧେ ହକାରିଲେ ସଂଜୟେ ।୯୪
ବାବୁ ବିଦୁର ଯାହା କହିଲା ମୁଂ ହେଜିଲଇଂ ହୃଦେ
ତୁ ତାହା କେମନ୍ତ ପ୍ରାୟ ମଣିଲୁ ସୋହୋଦ୍ରେ ।୯୫
ଗାଲବର ନନ୍ଦନ ଧୃତରାଷ୍ଟକୁ ପ୍ରକାଶ
ସମ୍ପଦ ହରଣେ ଆବର କିସ ହରଷ ।୯୬
ଯଝେଷ୍ଟି ଗଲା ଯେ ମଥାୟେ ଓଦା ବସ୍ତ୍ର ଦେଇ
ଗାନ୍ଧାରୀ ପୁଅନ୍ତ କାଳେ ଯେହିମତି କ୍ରିୟା ଘେନିମଇଂ ମୁହିଂ ।୯୭
ଭୀମ ଅବଶ୍ୟ କଉରୋବକୁ ମାରିବ ନିଶଂକୁ
ଯେହାନ୍ତେ କାରଣ କରିବାକୁ ଧାତା ସ୍ରିଜିଲା ନାହିଂକି ମୁକୁ ।୯୮
ସ୍ୱାମୀ ଯୁଝେଷ୍ଟି ଯେତେକ ଶୁଣିକରି ହୃଦେ
ଓଦାବସ୍ତ୍ର ଶିରେ ଦେଇ ବନବାସ ଗଲା ହାଦେ ।୯୯

ଶୁଣ ହେ ଧୃତରାଷ୍ଟ ଭୀମସେନର କଥା
ବଇରିକି ତାପଗଣ ତାର ଛାଡ଼ଇ କି ସର୍ବଥା ।୧୦୦
ଗଦା ବୁଲାଇ ଯାଉଅଛି ଯେ ଭୂମିକି ଆକ୍ରେଷି
ଗାନ୍ଧାରୀ ପୁଅକୁ ମାରିବି ବନସ୍ତରୁ ଆସି ।୧୦୧
ଅର୍ଜୁନ ଭୂମିରେ ଯେ ପୁଣି ବୁଣିଗଲା ବାଲି
ଯେହିମିତି ସଂଗ୍ରାମରେ ଶର ବୃଷ୍ଟି କରିବି ବୋଲି ।୧୦୨
ବାଲି ପ୍ରାୟ କରି କରିବି ଶର ବୃଷ୍ଟି
ଅବଶ୍ୟ ସମର ହୋଇବ କୁରୁକ୍ଷେତ୍ର ସୃଷ୍ଟି ।୧୦୩
ସଞ୍ଜୟ ବୋଇଲା ଦେବ ଶୁଣିମା ଧୃତରାଷ୍ଟ୍ର ଦଣ୍ଡଧାରୀ
ନକୁଳ ବୀର ଗଲା କୁନ୍ତ ଯେ ଉଭାରି ।୧୦୪
ଯେହିମତି କୁନ୍ତମୁନେ ଛତ୍ରପ୍ରାୟ ଗୁଚ୍ଛି ଯୋଖି
ମାରିବି କଉରୋବନ୍ତ କେ ପାରିବ ରଖି ।୧୦୫
ଯେହି କୋନ୍ତେ ଯେକା ପ୍ରହାରକେ ମାରିବି ଦଶବିଂଶ
ବୁଲାଇଣ କୋନ୍ତମୁନ ଆଉଂସଇ ନିଶ ।୧୦୬
ସହଦେବ ଚାହିଁ ଯାହା ସେ ବୁଲାଇଣ ଅଙ୍ଗୁଷ୍ଠି
ଚତୁର୍ଦ୍ଦିଗ ରାଜାନ୍ତ ଯେଥି ମରାଇବ ଧୃତିରାଷ୍ଟି ।୧୦୭
ସହଦେବ ଜାଣଇ ଗତ ଆଗତ ଭବିଷ୍ୟ
ବନବାସୁଂ ଅଇଲେ ଯେମନ୍ତ ହୋଇ ଅବଶ୍ୟ ।୧୦୮
ସଂଜୟ ବୋଇଲେ ଯେଉଂ ବୃକ୍ଷ ରୋପି ଅବଶ୍ୟ ଫଳ ଭୁଂକି
ଅତି ଉତ୍କ୍ରମିଲା ଫଳ ଥିବ କି ମହୀମଣ୍ଡଳ ତେଜି ।୧୦୯
ଯେହୁ ସହିବ ସେ ଅବଶ୍ୟ ଲଭିବ ନା କାର୍ଯ୍ୟ
ଦୁଖର ଅନ୍ତେଣ ପୁଣ ପାଇବ ଅଇଶ୍ୱର୍ଯ୍ୟ ।୧୧୦
ଅନୁବ୍ରତେ ପ୍ରାଣୀଂକି ତ ନୋହୋଇ ବିପଦ
ସର୍ବଦା ପ୍ରାଣୀଂକି ପୁଣ ନୋହୋଇଟି ସମ୍ପଦ ।୧୧୧
ସଞ୍ଜୟ ବୋଇଲା ତୁ ପ୍ରମେଷୀ ବୁଝସି ଧୃତରାଷ୍ଟ
ସମ୍ପଦ ବିପଦ ଯେ ରାତ୍ର ଦିବସ ଅଟଇ ଇଷ୍ଟ ।୧୧୨
ପାଣ୍ଡବେ ଯେ ଘୋରବନେ ହୋଇଲେ ମହାକଷ୍ଟି
ପୁଣ ସମୟ ସମୟେକେ ଭୋଗ କରିବେ ଯେ ସୃଷ୍ଟି ।୧୧୩
ଦ୍ରୋପଦୀର କେଶ ଯେ କରିଛି ମୁକୁଳା
କଇଛାବନ୍ତୀ ସାଧେବୀ ସେ ଭଗତମଛଳା ।୧୧୪
ଧୁଶାସନ ଭୁଜ ଓପାଡ଼ିବ ଭୀମସେନ
ତେବେ ସେ ଶାନ୍ତି ହୋଇବ ଦ୍ରୋପଦୀର ମନ ।୧୧୫
ଯେଥକୁ ପାଣ୍ଡବେ କଲେ ହାଦେ ଆଶ
ତୁ ଯାହା ପଚାରିଲୁ ମୋତେ ଯେମନ୍ତ କଥା ଦୃଶ୍ୟ ।୧୧୬
ଗାଳବର ନନ୍ଦନ କହିଲେ ଯହୁଂ ସାଧ
ବିସରିଲା ଧୃତରାଷ୍ଟ ବସିଲା ମହାକ୍ରୋଧ ।୧୧୭
ଧୃତରାଷ୍ଟ୍ର ବୋଇଲା ମୋହାର କ୍ରୋଧ କହିବି କାହାର ଆଗେ
ଦ୍ରିଯୋଧନ ନ ଶୁଣଇ କେହୁଣିହିଂ ବାଗେ ।୧୧୮
ସଞ୍ଜୟ ବୋଇଲେ ସେ ଅନୁବ୍ରତେ ଯେକା ଶକୁନିକି ଘେନି
କଦାଚିତେ ସମାଧାନ ନ କହଇ ଶକୁନି ।୧୧୯
ବଂଶ ତାହାର ମାଇଲା ଯେ ପଥର ଘରେ ଭରି
ଯେହାର ବଂଶ ମରାଇବ ସେ କୂଟ ଉପାୟ କରି ।୧୨୦
ପାଣ୍ଡବେ ଅଛନ୍ତି ଯେ କାମ୍ୟକ ବନେ ରହି
ଡଗର ବାରତା କଲାକ କୁରୁନାଥ ସାଇଂ ।୧୨୧
ଗଲେ ଯେ ଯେଥୁ ପୁଣ ପଞ୍ଚଭ୍ରାଥେ
କାମ୍ୟକ ବନରେ ଯେଣେ ଅଛନ୍ତି ନିଚିନ୍ତେ ।୧୨୨

**

## ୫୫. ଯୁଧିଷ୍ଠିରଙ୍କର ନାନା ସ୍ଥାନ ଭ୍ରମଣ ଓ ରାମଗୟା ତୀର୍ଥର ବିବରଣ

ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
କାମ୍ୟକ ପର୍ବତ ଯେ ଅଟଇ ମହାକସ୍ତି ।୧
ଅତି ପୁଣ୍ୟ ସ୍ଥାନ ଦେଖି ରହିଲେ ପଣ୍ଡୁର ପଞ୍ଚୁନାନେ
ରହିଲେ ସମ୍ବସରେ ସେ କାମ୍ୟକ ନାମେ ବନେ ।୨
ବିଛାମାସ ଶୁକ୍ଳପକ୍ଷ ତୃତୀୟାର ତିଥି
ଚନ୍ଦ୍ର ବାର ଶ୍ରବଣା ଯେ ନକ୍ଷତ୍ର ଯୁଗତି ।୩
ଶ୍ରବଣା ଅମୃତ ଯୋଗ ଉପସ୍ଥିତ ବେଳେ
କାମ୍ୟକ ବନୁଂ ବାହାର ଶୁଭ ଅନକୂଳେ ।୪
ଚଉଷଠି ଯୋଜନ ସେ ବନର ଆୟତନ
ତହୁଂଣ ପାଣ୍ଡବେ ସେ କରନ୍ତି ଗବନ ।୫
ଅନନ୍ତଭଦ୍ରା ବୋଲି ଯେକ ନଦୀ ଗୋଟି
ବହନ ଗହନ ଜିଣି ଯାଇ ସେ ନଦୀ କୂଳେ ଭେଟି ।୬
ମହା ଅଗମ୍ୟ ବନ ଘୋର ଗହନ ବନଲତା
ହରିଣ ଶୟମ୍ବର ଗଜଯୂଥ ଅପ୍ରମିତା ।୭
ଗଗନ ମେଖଳାରେ ଲାଗିଅଛି ଶିଖା
ବେନିତାଳ ଉହର୍ଗ ବିସ୍ତାର ମହାରୁକ୍ଷା ।୮

ଅଗମ୍ୟ ଅଟବ୍ୟା ନିର୍ଝର ଝରବନ
ବିହରନ୍ତି ପାଣ୍ଡବେ ଯେ ଗହନ ଅରଣ୍ୟ ।୧୯
କୋମଳ ପତ୍ର କନ୍ଦମୂଳ ବହୁତ ତହିଁ ପାଇ
ଅନେକ ହରଷ ମନେ ବନେ ପଶିଲେ ପାଞ୍ଚ ଭାଇ ।୧୦
ଯୁଝେଷ୍ଟି ଦେବେ ବୋଇଲେ ରହିବା ଯେହି ବନେ
ମହା ହିମରତୁ ବଞ୍ଚିବାକୁ ଯେହୁ ପୁଣ୍ୟ ସ୍ଥାନେ ।୧୧
ବୃକ୍ଷ ଗହଳେ ତହିଁ ଯେଥି ନ ଲାଗଇ ଶୀତ
କନ୍ଦମୂଳ ଦାରାକ୍ଷା ଫଳ ଅଛଇ ଅପ୍ରମିତ ।୧୨
ବହୁତ ଜଳ ଚଞ୍ଚଳ ବହଇ ନଦୀଗୋଟି
ନିତ୍ୟକର୍ମ ସାରିଣ ବାଲୁଂକା ଲିଂଗେ ଭେଟି ।୧୩
ବିହରନ୍ତି ବନସ୍ତେ ଯେ ମାରନ୍ତି ମୃଗାରି
ପରମ ସାନନ୍ଦେଣ ସେ ଅଛନ୍ତି ବନେ ହେରି ।୧୪
ହିମର ଅନ୍ତେ ବହଇ ବସନ୍ତ ଋତୁ
ରହିଲେ ପଣ୍ଡୁ ନନ୍ଦନେ ଯେ ଯାହାର ବ୍ରତ ହେତୁ ।୧୫
କଣୟ ସାଗର ବୋଲି ଯେ ଯେକଇ ପରବତେ
ତହିଁ ଯାଇଂ ରହିଲେ ଗ୍ରୀଷମର ଅନ୍ତେ ।୧୬
ରହିଲେ ପାଣ୍ଡବେ କଣୟ ଗିରି ପରବତେ
ଗଣ୍ଡୁକି ନଦୀ ତୀରେ ରହିଲେ ପଞ୍ଚ ଭ୍ରାଥେ ।୧୭
ବଞ୍ଚିଲେ ପାଣ୍ଡବେ ତହିଁ ବରଷା ଚାରିମାସ
ଆଶ୍ୱିନ ମାସ ଅନ୍ତେ ମହା କାର୍ତ୍ତିକ ପରବେଶ ।୧୮
ବରଷା ଋତୁ ସାରିଣ ପାଣ୍ଡବେ ଚଳିଲେ
ପ୍ରୟାଗ ବଟ ତୀର୍ଥେ ପ୍ରବେଶ ଯାଇଂ ହେଲେ ।୧୯
ବିଜୟେ ପାଣ୍ଡବେ ଯାଇଂ ପ୍ରାଗବଟ ତୀର୍ଥେ
ବିଜୟେ ସୁବର୍ଣ୍ଣଭଦ୍ରା ନଦୀ ଉତ୍ତର ପ୍ରଶସ୍ତେ ।୨୦
ରାମଘାଟେ ଯାଇଂ ଦେବ ସ୍ନାହାନ ବେଗେ କରି
ମହା କାର୍ତ୍ତିକ ମାସେ ପିତୃଶ୍ରାଦ୍ଧ ସାରି ।୨୧
ଫଲ୍ଗୁ ସ୍ନାହାନ କରି ରହିଲେ ସୁବର୍ଣ୍ଣଭଦ୍ରା
ବଞ୍ଚନ୍ତି ପାଞ୍ଚରାତ୍ର କାଳ କାମ ନିଦ୍ରା ।୨୨
ତୁଳମାସ ଶୁକ୍ଳପକ୍ଷ ତୃତୀୟା ଭୃଗୁବାର
ଅନୁରାଧା ନକ୍ଷତ୍ର ଅଟଇ ସେ ଦିନର ।୨୩
ତଇତିଳ ନାମେ କରଣ ଅତିଗଣ୍ଡ ଯୋଗ
ତୁଳ ସଂକରାନ୍ତିକି ପଞ୍ଚବିଂଶ ଦିନଭୋଗ ।୨୪
ସୁବର୍ଣ୍ଣଭଦ୍ରା ନଦୀ କୂଳେ ରହିଲେ ବାଲିପିଣ୍ଡ ଦେଇ
ସୋମବଂଶ ପିତୃଲୋକେ ବିଜେ କଲେ ତହିଁ ଯାଇ ।୨୫
ବାଲି ପିଣ୍ଡ ଦିଅନ୍ତେ ତହିଁ ଭୋଗ କରନ୍ତି ପିତୃଲୋକେ
ଅମୋକ୍ଷ ମୋକ୍ଷ ହୋଇଣ ବସନ୍ତି ସ୍ୱର୍ଗେ ଥୋକେ ।୨୬
ଆପଣେ ବାଲିପିଣ୍ଡ ଦିଅନ୍ତି ଯୁଝେଷ୍ଟି
ଆପଣେ ପଣ୍ଡୁରାଜା ପାତିଲେ କରଗୋଟି ।୨୭
ଯୁଝେଷ୍ଟି ପଚାରିଲେ ଦେଖିଣ ବେନିହାଥ
ପୁଚ୍ଛା କଲେ ତୁମ୍ଭେ ହୋ କେବଣ ଦଇବତ ।୨୮
ଶୂନ୍ୟେ ବାକ୍ୟ ତହିଁ କହିଲେ ମହତ
ମୁହିଁ ସେ ପଣ୍ଡୁରାଜା ଅଟଇ ତୋହୋର ତାତ ।୨୯
ବାବୁ ଅଗ୍ନିକା ମହରଷିଙ୍କି ବିନ୍ଧିଲି ନାରାଚେ
ତଦ ଦୋଷେ ଶାସ୍ତି ମୋତେ ଦିଲା ଜନ୍ତୁରାଜେ ।୩୦
ଯେକସ୍ତୋରୀ ବରଷ ମୋତେ ଆସ୍ଥାନେ ନ ଦିଲାକ ବସି
ତୁ ପୁଣ୍ୟବନ୍ତ ପୁରୁଷ ଯହୁଂ ଆରମ୍ଭିଲୁ ରାଜୁସି ।୩୧
ଜମ୍ବୋଦୀପ ରାଜାନ୍ତ ତୁ ଦେଲୁ ଅନ୍ନଛତ୍ର
ନାଗଲୋକ ସହିତେ ଯେ ତୋଷିଲୁ ସମସ୍ତ ।୩୨
ବାବୁ ଯେ ତୋହୋର ରାଜୁସି ଯଗ୍ୟଂ ପୁଣ୍ୟ ଫଳେ
ମୋହୋର ପାତକ ଖଣ୍ଡଣ ହୋଇଲା ଗଗନ ମଣ୍ଡଳେ ।୩୩
ଅନେକ ବିନୟ ମୋତେ ହୋଇଲା ଜନ୍ତୁରାଜା
ଇନ୍ଦ୍ର ସମାନେ ମୋତେ କଲାକ ଦିବ୍ୟପୂଜା ।୩୪
ପାଇଲି ପରମ ଗତି ପୁତ୍ର ତୋହୋର ପରସନ୍ନେ
ଯେ ଗୟାତୀର୍ଥ ପାଇଲି ତୋଷ ହୋଇଲା ମୋ ମନେ ।୩୫
ତୁହି ମୋହୋର ସୁପୁତ୍ର କୁଳର ମୋହୋର ଭାଗ୍ୟ
ତୋତେ ଉପୁଜାଇ ମୁହିଁ ପାଇଲି ସ୍ୱର୍ଗଭୋଗ ।୩୬
ଯେହି ମହାଶ୍ରାଦ୍ଧ ମୁହିଁ ପାଇଲି ତୋଷମନେ
ଦିଅସି ପିଣ୍ଡ ମୋତେ ମୁହିଁ କରିବି ଭୋଜନେ ।୩୭
ଶୁଣିଣ ଯୁଝେଷ୍ଟି ଦେବ ହୋଇଲେ ଆଶ୍ରିଜ
ଧଉମ୍ୟ ପୁରୋହିତଂକୁ ପୁଛନ୍ତି ଦେବରାଜ ।୩୮
ଯୁଝେଷ୍ଟି ଦେବ ବୋଇଲେ ଧଉମ୍ୟ ପୁରୋହିତଂକୁ
ସ୍ୱାମୀ ଯେ ମହାତୀର୍ଥ ପ୍ରାପତ ହୋଇଲାକ ମୁକୁ ।୩୯
ଯେ ମୋହୋର ପିତୃଗଣେ ଦେଖିଲି ଚକ୍ଷୁଗତେ
ପିତା ମୋର ବାଲିପିଣ୍ଡ ଭକ୍ଷିଲେ କରପତ୍ରେ ।୪୦
ପୂର୍ବେଣ ଯେହି ତୀର୍ଥ କାହାର ସଞ୍ଚିତ
ଯୁଝେଷ୍ଟି ଅଗ୍ରତେ କହନ୍ତି ଧଉମ୍ୟ ପୁରୋହିତ ।୪୧
ଆହୋ ତ୍ରେତୟା ଯୁଗେଣ ଶ୍ରୀରାମ ଗୋସାଇଂ
ମକର ମାସେ ପରବେଶ ହୋଇଲେ ଯେଥକଇଂ ।୪୨

ବାବୁ ଯେ ପୁଣ୍ୟଭଦ୍ରା ଅଟଇ ପୁଣ୍ୟ ସ୍ଥାନ
ଯେଥେଣ ଶ୍ରୀରାମ ଆସି କଲେକ ବିଶ୍ରାମ ।୧୪୩
ଶ୍ରୀରାମ ଲକ୍ଷଣ ଯେ ସୀତୟା ତିନିଜଣ
ବନବାସେ ଆସି ରହିଲେ ଯେ ତୀର୍ଥେଣ ।୧୪୪
ପିତୃକାର୍ଯ୍ୟ ଅର୍ଥେ ଦେବ ରଘୁନାଥ
ଲକ୍ଷ୍ମଣଙ୍କଇଂ ହକାରି ସେ କହନ୍ତି ବାରତ ।୧୪୫
ଗଣ୍ଡାଜୀବ ଆମ୍ଭେ ଯେ ବନସ୍ତେ ଲୋଡ଼ିବା
ପିତୃଲୋକ କାରଣ ଅର୍ଥେ ପିଣ୍ଡଦାନ ଦେବା ।୧୪୬
ସୀତୟାକୁ କାହା ପାଖେ କରିବା ରକ୍ଷଣ
ଆମ୍ଭର ଆସିବା ଯାଏ ଥିବ ସୀତୟା ସନ୍ନିଧାନ ।୧୪୭
ଯେସନେକ ବୋଲାବୋଲି ହୋଅନ୍ତେ ରଘୁନାଥ
ବ୍ରହ୍ମାର ନନ୍ଦନ ଫଲ୍‌ଗୁକୀ ମିଳିଲେ ଅଗ୍ରତ ।୧୪୮
ହରଷେ ଶ୍ରୀରାମ ଯେ ଫଲ୍‌ଗୁକୀ ମୁଖ ଚାହିଁ
ଆମ୍ଭର ଆସିବା ଯାଏ ସୀତାକୁ ଲକ୍ଷ୍ୟକର ତୁହି ।୧୪୯
ସୀତାକୁ ଛାଡ଼ିଣ ଯେ ଅନ୍ୟ ଠାବକୁ ନ ଯିବୁ
ଆମ୍ଭର ଆସିବା ଯାଏ ଯେଥେ ଜଗି ବସିଥିବୁ ।୧୫୦
ଫଲ୍‌ଗୁକୀର ପାଶେ ସୀତାଙ୍କୁ ବସାଇ
ଗଣ୍ଡା ମାରିବାର ଅର୍ଥେ ଯେ ଗଲେ ବେନିଭାଇ ।୧୫୧
ସୀତାଂକୁ ଛାଡ଼ିଣ ଯେ ବେନିଭାଇ ଗଲେ ବନ ହେରି
ପିତୃକାର୍ଯ୍ୟ ଅର୍ଥେ ଗଣ୍ଡାଜୀବ ଲୋଡ଼ି କରି ।୧୫୨
ମକର ମାସ ଅମାବଇ ପୁଣି ଅର୍କବାର
ଶ୍ରବଣା ନକ୍ଷତ୍ର ଭୋଗ ଅଟଇ ସେ ଦିନର ।୧୫୩
କଉଳବ ନାମେ କରଣ ବ୍ୟତିପାତ ନାମେ ଯୋଗ
ଅର୍ଦ୍ଧ ଉଦୟା ଯୋଗ ପଡ଼ିଲା ସେ ଦିନ ପୂର୍ବଭାଗ ।୧୫୪
ଯହୁଂ ପଡ଼ିଲା ବ୍ୟତିପାତ ଯୋଗ ଅର୍ଦ୍ଧ ଉଦୟା
ଦେଖିଣ ବିଚାରନ୍ତି ମହାଦେବୀ ସୀତୟା ।୧୫୫
ସ୍ୱାମୀ ଯେବେ ମୋହୋର ଯେମନ୍ତର ବେଳେ ଥାନ୍ତେ
ଯେ ମହା ତୀର୍ଥରେ ସେହୁ ପିଣ୍ଡଦାନ ଦ୍ୟନ୍ତେ ।୧୫୬
ଯେତେ ବିଚାରି ଦେବୀ ଘେନିଲେ ବାଲି ଲୋଟିଯେ
ଛଡ଼ଭାଗ କରି ବାଣ୍ଟିଲେ ଦେବୀ ଯେ ସୀତଯେ ।୧୫୭
କର ଆକ୍ରେଷିଣ କରି ଦେଉଛନ୍ତି ସୀତେ
ସ୍ୱାମୀ ମୋହୋର ପିଣ୍ଡଦାନ ଦିଅନ୍ତେ ନା ଯେହିମତେ ।୧୫୮
ସେ ବାଲିଗୁଡ଼ାକ ଦେବୀ ଛାଡ଼ିଲେ ଖେଡ଼ରସ କୁତୂହୋଳେ
ଦଶରଥ ରାଜାଯେ ଆସି ପାତିଲେ କରତଳେ ।୧୫୯
କାୟା ନ ଦିଶଇ ଯେ ଦିଶଇ ବେନିହାଥ
ଦେଖିଣ ଜାନକୀ ଯେ ହୋଇଲେ ତରସ୍ତ ।୧୬୦
ବାଲିପିଣ୍ଡ ଦିଅନ୍ତେ କେଉଣ ପୁରୁଷ ହାଥ ପାତି
ମାଗୋ ମୁହିଂ ସେ ଅମଳାଣ ସୂର୍ଯ୍ୟବଂଶୀ ଦଶରଥ ନୃପତି ।୧୬୧
ମାଗୋ ତୁମ୍ଭେ ବନବାସେ ଯେତେବେଳେ ଅଇଲ ଯେଣିକି
ମୁହିଂ ପ୍ରାଣତ୍ୟାଜ ହୋଇଲି ତୁମ୍ଭନ୍ତ ନ ଦେଖି ।୧୬୨
ମାଗୋ ଭ୍ରଥ ଶତ୍ରୁଘ୍ନ ଅଛନ୍ତି ମାତୁଳ ଦେଶେ
ଶ୍ରୀରାମ ଲକ୍ଷଣ ତୁମ୍ଭେ ଅଇଲ ବନବାସେ ।୧୬୩
ମାଗୋ ଘୃତକୁଣ୍ଡେ ଭରି ମୋତେ ଥୋଇଥିଲେ କଇକେଇ
ପଞ୍ଚଦିବସ ହୋଇଲା ମୋତେ ମୁକତି ଗତି ନାହିଁ ।୧୬୪
ତୁ ମୋତେ ରକ୍ଷାକଲୁ ଗୋ କୁଳର କୁଳବଧୂ
ମହାଯଗ୍ଯଂ ଜାତ କଲେ ଜନକ ସାଧୁ ସାଧୁ ।୧୬୫
ଆହୋ ରାଜନ ବଇକୁଳ୍ୟ ହୋଇ ଯହୁଂ ମାଗିଲେ ଦଶରଥେ
ସେ ବାଳି ମୁଠିକ ହାଥରୁ ଛାଡ଼ିଲେକ ଦେବୀ ସୀତେ ।୧୬୬
ପୁଣ ପୁଣ ଜାନକୀ ଯେ ଦିଲେ ବାଲି ତିନିମୁଠି
ଯେକାଉନ ପୁରୁଷ ପିତୃଲୋକେ ଭୁଞ୍ଜିଲେ ତାହା ବାଣ୍ଟି ।୧୬୭
ବାଲିପିଣ୍ଡ ଭୁଞ୍ଜି ଯେ ହୋଇଲେ ସୁଆର୍ଥ
ଫଲ୍‌ଗୁକୀକୁ ସାକ୍ଷୀ କଲେ ଜନକ ଦୋହିତ ।୧୬୮
ଆହୋ ଫଲ୍‌ଗୁକୀ ତୁ ଯେ ବ୍ରହ୍ମାଂକର ନିଜ ପୁତ୍ରେ
ସାକ୍ଷୀହୋଇ ଥାଅ ତୁମ୍ଭେ ମୋହୋର କହନ୍ତେ ।୧୬୯
ଯେ ମୋହୋର ବାଲିପିଣ୍ଡ ଭକ୍ଷିଲେ ଦଶରଥେ
ଶ୍ରୀରାମଚନ୍ଦ୍ରଂକୁ ତୁ କହିବୁ ତଦନ୍ତେ ।୧୭୦
ଫଲ୍‌ଗୁକୀ ବୋଇଲା ଯେବେ ସାକ୍ଷୀ କଲୁ ଆମ୍ଭଂକୁ
ବେଳେକ ଶୃଙ୍ଗାର ତୁ ଦିଅ ସତୀ ମୁକୁ ।୧୭୧
ଶୁଣିଣ ବିସ୍ମୟେ ହୋଇଲେ ଦେବୀ ସୀତେ
ସ୍ୱାମୀ ସମର୍ପଣ କରିଗଲେ ନା ମୋହୋର ତୋତେ ।୧୭୨
ବ୍ରହ୍ମାର ପୁତ୍ର ହୋଇ ତୁ ଯେଡ଼େକ ଅଭାବି
ନାଶଯିବା କାଳେ ତୁ ଯେ ହୋଇଲୁ ଯେଡ଼େ ଲୋଭୀ ।୧୭୩
ମୃତକୁ ଆଶ୍ରେ ତୁହି କଲୁ ହୋ ବ୍ରାହ୍ମଣ
ଯେତେ କହିଣ ସୀତୟା ହୋଇଲେ ମଉନ ।୧୭୪
ହିଂସାଯେ କହିଲେ ଗୟା ବ୍ରାହ୍ମଣଂକ ଆଗେ
ଆହୋ ଯେ ମହାତ୍ମାଣୀ ପିଣ୍ଡ ଦିଲେଟି ତୀର୍ଥମାର୍ଗେ ।୧୭୫
ଦକ୍ଷିଣା ଘେନସି ହୋ ଧନ ହୋଇ ଯେତେ
ଲେଖିଣ ଧନ ଘେନ ନ ଛାଡ଼ କଦାଚିତେ ।୧୭୬

ଗୟା ବ୍ରାହ୍ମଣମାନେ ଯେ ବେଢ଼ିଲେ ସୀତୟାଂକୁ
ପିଣ୍ଡ ଦାନ ଦିଲୁ ଦକ୍ଷିଣା ଦେବୁ ନା ଆମ୍ଭଂକୁ　　।୧୭୭
ସୀତୟା ବୋଇଲେ ଆମ୍ଭେ ବନେ ବଡ଼ ଦୁଃଖୀ
କିସ ଦକ୍ଷିଣା ଦେବୁ ନାହିଂ ନା ଆମ୍ଭର କିଛି　　।୧୭୮
ସ୍ୱାମୀଂକର ଆସିବା ଯାଏ ଥାଅ କି ନା ଦଣ୍ଡେ
ବ୍ରାହ୍ମଣେ ବୋଇଲେ ତୁ ଯେ ପିନ୍ଧିଅଛୁ ଶାଢ଼ୀ ଖଣ୍ଡେ　　।୧୭୯
ସେ ଶାଢ଼ୀ ପଖାଳିଣ ଦିଅସି ଆମ୍ଭନ୍ତ ପାଲଟି
ଆନ ବସ୍ତ୍ର ନ ଥିଲେ ଯେଥୁ ଅର୍ଦ୍ଧେକ ଦିଅ କାଟି　　।୧୮୦
ଫଲ୍ଗୁକୀ ବୋଇଲା ତୁ ନିସତ କିଂପେ ହୋଉ
ପିଣ୍ଡଦାନ ଦିଲୁ ଦକ୍ଷିଣା କିଂପେ ନ ଦେଉ　　।୧୮୧
ସହି ନୁଆରିଲେ ଦେବୀ କଷ୍ଟୋର ବାକ୍ୟ ଗୋଟି
ପିନ୍ଧିଲାର ବସ୍ତ୍ର ଦେବୀ ଅର୍ଦ୍ଧେକ ଦିଲେ କାଟି　　।୧୮୨
ଉପରେ ପଦ୍ମପତ୍ର ଗୁଡ଼ାୟେକ ଦେବୀ କଲେକ ପରିହରଣ
ଯେ ସମୟେ ଆସି ପ୍ରବେଶ ହୋଇଲେ ଶ୍ରୀରାମ ଲକ୍ଷଣ　　।୧୮୩
ସୀତୟାକୁ ଦେଖିଣ ଆଶ୍ରୀଙ୍କ ରଘୁନାଥ
ଶାଢ଼ୀ କିସ କଲ ଗୋ, ପରିହରଣ କଲ ପତ୍ର　　।୧୮୪
ସୀତୟା ବୋଇଲେ ମୁହିଂ ଯେ ବାଲିପିଣ୍ଡ ଦିଲି
ଦଶରଥ ରାଜାଂକର ହାଥରେ ପରଶିଲି　　।୧୮୫
ମୋହୋର ହାତରୁ ଛଡ଼ାଇ କଲେକ ଭୋଜନ
ମିଛ ନ ହୋଇ ମୁଂ ସାକ୍ଷୀ କରିଛଇ ରଘୁନାନ　　।୧୮୬
ସୀତୟାର ବଚନେ ଯେ ହସିଲେ ରଘୁପତି
ଅଯୋଧ୍ୟାୟେ ପିତା ମୋହୋର ଜୀବନ୍ତେଣ ଛନ୍ତି　　।୧୮୭
ବାଲିପିଣ୍ଡ ଛାରକୁ ପାତିଲେ ଆସି ହାଥ
ତିରୀଂକର ସଭାବ ଯେ ଅଟଇ ଯେମନ୍ତ　　।୧୮୮
ଯେତେ ମିଛ ଗୋଟିକୁ କେହୁ କରିବାକ ସତ୍ୟ
ଯେସନେକେ ଭଣ୍ଡିଲୁ ତୁ ଗୋ ଜନକ ଦୋହିତ　　।୧୮୯
ସୀତୟା ବୋଇଲେ ମିଛ ନୋହୋଇ ରଘୁବୀର
ସତ ଯେବେ ନୋହୋଇ ଫଲ୍ଗୁକୀକୁ ପଚାର　　।୧୯୦
ଫଲ୍ଗୁକୀ ବୋଇଲା ଦେବ ତିରୀଂକର ଚରିତ
ଯେହାଂକର ବଚନ ଦେବ ନୋହୋଇ ନା ସତ　　।୧୯୧
ମୃତୁପିଣ୍ଡ ଲୋକେ କାହୁଂଣ ହାଥ ପାତି
ଭାବ ବଢ଼ିଗଣ ଯେ ଭଣନ୍ତି ଯୁବତୀ　　।୧୯୨
ଶ୍ରୀରାମ କୋପକଲେ ଫଲ୍ଗୁକୀ ତହୁଂ ଶୁଣି
ମୋତେ ଭଣ୍ଡି ଲୋଡୁ କି ଗୋ ଜନକ ଦୁଲଣୀ　　।୧୯୩
ଅନ୍ତରୀକ୍ଷେ ଥାଇଣ ଯେ ବୋଇଲେ ଦଶରଥ
ସୀତୟାକଇଂ କୋପ ତୁ ନ କର ରଘୁନାଥ　　।୧୯୪
ତୋହୋର ବନବାସ ଦିନୁ ମୁହିଂ ପ୍ରାଣତ୍ୟାଜ୍ଞ ହେଲି
ସତୀର ବାଲିପିଣ୍ଡ ପାଇଣ ମୁଂ ସ୍ୱର୍ଗରେ ବସିଲି　　।୧୯୫
ଶ୍ରୀରାମଚନ୍ଦ୍ର ଶୁଣିଣ କଲେକ ସମ୍ପ୍ରତେ
ତୁ ମୋହୋର ପିତୃ ଲୋକନ୍ତ ମୁକତ କଲୁସି ଗୋ ସୀତେ　　।୧୯୬
ଫଲ୍ଗୁକୀ ବଚନେ ତୋତେ କୋପ କଲି ମୁଂ ନ ଜାଣି
ଯେ ମୋହୋର ଅପ୍ରାଧ ସୀତା ହୋଇଲାକ ପୁଣି　　।୧୯୭
ଧନ୍ୟ ତୁ ସୀତୟା ଗୋ ଅଟୁ ପୁଣ୍ୟ ଯୁବତୀ
ବାଲିପିଣ୍ଡ ଦେଇଣ ତୁ ଗୋ ତୋଷିଲୁ ମୋର ପିତ୍ରି　　।୧୯୮
ଶ୍ରୀରାମ ବୋଇଲେ ସୀତୟାଂକ ମୁଖ ଚାହିଂ
ତୁମ୍ଭେ କିଂକେ ହୋଇଲ ବିବସନଶାହୀ　　।୧୯୯
ସୀତୟା ବୋଇଲେ ମୁହିଂ ଦିଲି ପିଣ୍ଡ ଦାନ
ବ୍ରାହ୍ମଣ ଦକ୍ଷିଣା ମାଗିଲେ ମୋତେ ଦେବାକୁ ନାହିଂ ଧନ　　।୧୦୦
ନିର୍ଦ୍ଦୟ କ୍ଷେତ୍ର ଯେ ନିରାପକ୍ଷ ଥାନ ଯେତି
ପିନ୍ଧିଲା ବସ୍ତ୍ର ଅର୍ଦ୍ଧେକ ମୋର ନେଲେ ସେହି କାଟି　　।୧୦୧
ତୁମ୍ଭର ଆସିବା ଯାଏ ନ ସହିଲେଟି ମୋତେ
ତେଣୁ ସେ ବସ୍ତ୍ର ଲେଛି ଓଢ଼ିଲି କମଳ ପତ୍ରେ　　।୧୦୨
ଶ୍ରୀରାମ କୋପକଲେ ଯେ ସେ ଗୟାଳି ବ୍ରାହ୍ମଣଂକୁ
ଆରେ ଅନେକ ଧନ ଅରଜ ଅନ୍ନ ନ ମିଳୁ ତୁମ୍ଭଂକୁ　　।୧୦୩
ଯେତେ ଧନ ଅରଜିବ ସବୁ ନେବେ ରାଜା
ପତ୍ର ପରିହରଣ ହୁଅନ୍ତୁ ରେ ତୁମ୍ଭର ଭାରିଯା　　।୧୦୪
ଯେତେ ଲୋକେ ଯେଥେ ଦେବେ ବାଲିପିଣ୍ଡ
ତାହାଂକରତହୁଂ ଦକ୍ଷିଣା ନେଲେ ପ୍ରଶୁରାମ ନାରାଜେ
ଛିଡୁ ମୁଣ୍ଡ　　।୧୦୫
ଯେସନେକ ଶାପ୍ୟ ଦିଲେକ ଶ୍ରୀରାମ
କହନ୍ତି ଧଉମ୍ୟ ପ୍ରୋହିତେ ଶୁଣ ପଣ୍ଡୁନାନ　　।୧୦୬
ସୀତୟା ବୋଇଲେ ସ୍ୱାମୀ ଫଲ୍ଗୁକୀ ବ୍ରହ୍ମାଂକର ପୁତ୍ର
ପିଣ୍ଡ ଦିଲା ବେଳେ ମୁଂ ସାକ୍ଷୀ କଲାଇଂ ଯେହାନ୍ତ　　।୧୦୭
ଯେହୁ ଚାଣ୍ଡାଳ ଯେ ମୋତେ ମାଗିଲା ରମଣ
ଶୃଙ୍ଗାର ନ ଦିଲାରୁ କହିଲା ଅକାରଣ　　।୧୦୮
ଶ୍ରୀରାମଚନ୍ଦ୍ର ଶୁଣି ଫଲ୍ଗୁକୀକୁ କଲେ କୋପ
ଅଗତି ହୋଇ ଥାଅ ରେ ଯେ ମୋହୋର ଅଭିଶାପ୍ୟ　　।୧୦୯
ରାଗେଣ ଯେମନ୍ତ ଯେ ବୋଇଲେ ରଘୁକୁଳ ଦେବା
ଆରବେଳେ ଯେ ତୀର୍ଥ ନ ମାଡ଼ିବ ପୁନର୍ଭବା　　।୧୧୦

ବାବୁ ବାଳିପିଣ୍ଡ ମୋକ୍ଷଟି ଅଟଇ ଯେହୁ ତୀର୍ଥେ
ପିତୃଲୋକମାନେ ତୃଶ ହୋଅନ୍ତି ନିୟତେ ।୧୧୧
ଯୁଝେଷ୍ଟି ଦେବେ ବୋଇଲେ ଯେ ବାଳିପିଣ୍ଡ ଦିଲେକ ସୀତୟା
ଆବର ତୀର୍ଥ କିମ୍ପା ଯେ ବୋଲାଇଲା ରାମଗୟା ।୧୧୨
ଧଉମ୍ୟ ପୁରୋହିତେ ବୋଇଲେ ରାମ ରାବଣ ମାରି ବାହୁଡ଼ିବାର ବେଳେ
ଯେଥେ ଶ୍ରୀରାମ ନ ଆସି ରହିଲେ ଉତ୍ତର କୂଳେ ।୧୧୩
ପୁନର୍ଭବା ତୀର୍ଥ ବୋଲି ରାମ ନ ଅଇଲେ ଯେଥିକି
ବାଲି ଗୁଡ଼ାୟେ ଘେନି ବ୍ରାହ୍ମଣେ ଧାଇଂଲେ ରାମର ତହିଂକି ।୧୧୪
ସ୍ୱାମୀ ଯେ ତୀର୍ଥକଇଂ ନିନ୍ଦା କରିଣ ଯାଉଛୁ ରଘୁନାଥେ
ଯେ ତୀର୍ଥ ନାଶଯାଉଛିଟି ତୋହୋର ଅସନମତେ ।୧୧୫
ସ୍ୱାମୀ ଯେହି ତୀର୍ଥରେ ଶ୍ରୀରାମଚନ୍ଦ୍ର ବିଜୟେ କର ଦଣ୍ଡେ
ଯେ ମହାତୀର୍ଥ ଗୋଟି ସୁଲଭ ହୋଉ ଯେ ବ୍ରହ୍ମାଣ୍ଡେ ।୧୧୬
ଅନେକ ବିନୋୟୀ ଯହୁଂ ବ୍ରାହ୍ମଣେ କଲେ ସେବା
ସୀତୟା ବୋଇଲେ ସ୍ୱାମୀ ବାହୁଡ଼ି ଚାଲ ଯିବା ।୧୧୭
ବାହୁଡ଼ି ବିଜୟେ ସ୍ୱାମୀ ରଘୁକୁଳ ନାଥେ
ତେଣୁଟି ବୋଲାଇଲା ଯେ ରାମଗୟା ତୀର୍ଥେ ।୧୧୮
ବ୍ରାହ୍ମଣେ ଅଭ୍ୟର୍ଥୀ ମାଗିଲେ ଶ୍ରୀରାମଚନ୍ଦ୍ରଙ୍କୁ
ଉତ୍ତରେ ଗୟାର କୋଠି ହୋଇଲା ଧନ ଉପୁଜିବାକୁ ।୧୧୯
ଯୁଝେଷ୍ଟି ଦେବେ ବୋଇଲେ ତେଣେ ଅଛି କିସ ଅର୍ଥ
ଯେ ଗୟା ଶ୍ରାଦ୍ଧ ବୋଲି ପିଣ୍ଡହିଂ ସେ ସତ ।୧୨୦
ଗୟାରେ ବାଲି ପିଣ୍ଡ ଦିଲେ ଯୁଝେଷ୍ଟି ରାଜଦେବେ
ପିତୃଲୋକେ ମୁକତ କାରଣ ପାଇଲେକ ତେବେ ।୧୨୧
ଗୟାରେ ଶ୍ରାଦ୍ଧକଲେ ପିତୃଲୋକନ୍ତ ଦେଖି
ଯୁଝେଷ୍ଟିର ପଚାରିଲେ ମାତା ଯେ କୋଇନ୍ତୀଂକି ।୧୨୨
ମାଗୋ ତୁମ୍ଭେ ଯେ ବୋଇଲ ଦ୍ରିଯୋଧନ ବଡ଼ ମନ୍ଦ
ସୁଲଭ ସୋହୋଦ୍ର ମୋର ମାନ ଯେ ଗୋବିନ୍ଦ ।୧୨୩
ସେ ଯେବେ ମାତା ଗୋ ମୋତେ ନ ପେଷନ୍ତା ବନେ
ଯେ ମହାତୀର୍ଥ କାହିଂ ପାଆନ୍ତି ଥିଲେ ହସ୍ତିନା ଭୁବନେ ।୧୨୪
କୋଇନ୍ତାୟେ ପିଣ୍ଡ ଦିଲେ ଭୋଜବଂଶର ନିମନ୍ତେ
ଦ୍ରୋପଦୀ ଯେ ପିଣ୍ଡ ଦିଲେ ସନ୍ତାନ ଜାତ ଅର୍ଥେ ।୧୨୫

**

## ୫୬. ମଣିକର୍ଣ୍ଣିକା ଓ ବାରାଣସୀ ବିବରଣୀ

ବ୍ୟାସ ଯେ ବୋଇଲେ ବାବୁ ଶୁଣସି ଯୁଝେଷ୍ଟି
ସପତ ବ୍ରହ୍ମାଣ୍ଡକୁ ପବିତ୍ର ଯେହୁ ମହାତୀର୍ଥ ଗୋଟି ।୧
ଆଉ ତୀର୍ଥମାନ କରନ୍ତି ଉପାସନ
ଯେ ମଣିକର୍ଣ୍ଣିକା ତୀର୍ଥେ ଯେ କରନ୍ତି ସ୍ନାହାନ ।୨
ଯାହାର କେଶ ଯେଥି ହୋଇବ ବେଳେକ ପଖାଳଣ
ତେବେ ସେ ସକଳ ତୀର୍ଥର ପାବନ୍ତି କାରଣ ।୩
ଯେ ମଣିକର୍ଣ୍ଣିକା ତୀର୍ଥ ତିମିର ବିଦାରଣ କୁଣ୍ଡ
ଈଶ୍ୱରେ ପଶି ସ୍ନାହାନ କଲେ ଯେଥି ଛିଡ଼ିଲା କପିଳାର ମୁଣ୍ଡ ।୪
ଈଶ୍ୱରେ ବ୍ରହ୍ମହତ୍ୟା ଲାଗିଲା ନବଯୁଗ ପରିଯନ୍ତେ
ସେ ବ୍ରହ୍ମା କପାଳ ଲାଗିଥିଲା ଈଶ୍ୱରଂକ ବାମହସ୍ତେ ।୫
ଯେ ମହାତୀର୍ଥେ ସେ ପାପ ହୋଇଲା ବିମୋଚନ
ବ୍ରହ୍ମହତ୍ୟା ମୋଚନ ଯେଥି କଲେକ ତ୍ରିଲୋଚନ ।୬
କହନ୍ତି ବ୍ୟାସମୁନି ବାବୁ ଶୁଣ ହେ ଯୁଝେଷ୍ଟି
ଯେମନ୍ତେ ବିଜୟେ ଯେଥେଂ କଲେକ ଧୂର୍ଜ୍ଜଟୀ ।୭
ବଇଲ ବାହାନେଯେ ବିଶ୍ୱନାଥ ସ୍ୱାମୀ
ବିଜେ ବିଶ୍ୱନାଥ ହୋଇଲେ ପାତାଳଗାମୀ ।୮
ସଇନ୍ଦୁ ବାମଘୋର ଈଶାନ ତତ୍‌ପୁରୁଖ
ପଞ୍ଚମୁଖ ପଞ୍ଚଦଶ ନୟନ ସୋମସୂର୍ଯ୍ୟ ଅନଳ ଶିଖ ।୯
ସଙ୍ଗମ ମେଖଳୀ ନିଖିଳ ପିଙ୍ଗଳ ନନ୍ଦକ ପଞ୍ଚୁଜଟା
ପରପଞ୍ଚ ରୂପ ସ୍ୱାମୀ ଦିଶନ୍ତି ଭ୍ରୂକୁଟା ।୧୦
ଗଙ୍ଗା ଯମୁନା ଯେ ସରସ୍ୱତୀ ତ୍ରିବେଣୀ
ବହନ୍ତି ଧବଳାଙ୍ଗୀ ଗୋପ୍ୟାନ ବାସିନୀ ।୧୧
ପରମବ୍ରହ୍ମ ପୁରୁଷ ତପନ ଅମୃତ୍ୟାକ୍ଷ ଶୀତଳ
ପ୍ରତକ୍ଷେ ମହେଶ୍ୱର ବିଜୟେ ସଉଢଳ ।୧୨
ଦକ୍ଷିଣେ ଧାତାଲିଙ୍ଗ ରୂପେ ବ୍ରହ୍ମେଶ୍ୱର
ଈଶାନ ବସଇ ଇନ୍ଦ୍ର ଲିଙ୍ଗେଶ୍ୱର ।୧୩
ଦ୍ୱାଦଶ ରୁଦ୍ର ଯେ ଦ୍ୱାଦଶ ମୂରତି
ଚନ୍ଦ୍ର ସୂର୍ଯ୍ୟ ଈଶ୍ୱର କୁବେର ପଶୁପତି ।୧୪
ଯେମାନେ ଲିଙ୍ଗେ ଲିଙ୍ଗେ ହୋଇଲେ ସେହୁ ସ୍ଥାନ
କହନ୍ତି ବ୍ୟାସମୁନି ଶୁଣ ଧର୍ମନାନ ।୧୫

ଧର୍ମେଶ୍ୱର କର୍ମେଶ୍ୱର ମହେଶ୍ୱର ନନ୍ଦିକେଶ୍ୱର ରତ୍ନେଶ୍ୱର
ପବନେଶ୍ୱର ପଣ୍ଡିତେଶ୍ୱର ଭାଇରୋବ ଅବତାର
ଆଦି ଅଷ୍ଟକୁଳନାଗ ମହା ନାଗେଶ୍ୱର ।୧୬
କପାଳେଶ୍ୱର ଯୋଗେଶ୍ୱର ପରମ ବଇଷବ
ଦ୍ୱାଦଶ ବିଶ୍ୱଦେବାୟେ ଛନ୍ତି ତିନି ଠାବ ।୧୭
ସପତ ମଣିକୁଣ୍ଡଳ ସୋମେଶ୍ୱର ମଣିଭଦ୍ରା
ଚଣ୍ଡ ପ୍ରଚଣ୍ଡ କାମ୍ୟେକେଶ୍ୱର ମହାରୁଦ୍ରା ୧୮
ମେଷଲିଙ୍ଗ ଅନଙ୍ଗ ଅନ୍ତକ କାଳାନ୍ତକ
ଯଉନିଧି ବିଶ୍ୱେଶ୍ୱର କାଳରୁଦ୍ରାନ୍ତକ ।୧୯
ଭାନୁ ଭୁବନ ପୁଷ୍ୟକ କାଶ୍ୟପ ପରମ ରୂପ
କାଶୀଶ୍ୱର ଯମେଶ୍ୱର ନାରଦ କପିଳ କନ୍ଦର୍ପ ।୨୦
ପୁରରବା ନରାଧିପ ମାନଧାତା ଈଶ୍ୱର
ଶ୍ରୀରାମେଶ୍ୱର ପ୍ରମେଶ୍ୱର ମୀନେଶ୍ୱର କୂର୍ମେଶ୍ୱର ।୨୧
ଗୋକର୍ଣ୍ଣେଶ୍ୱର ଅମରେଶ୍ୱର ଗଙ୍ଗେଶ୍ୱର ବରେହା ରୂପ ଦେବକାଶୀ
ପାତାଳେଶ୍ୱର ପ୍ରଶୁରାମନରୂପ ବାରାଣସୀ ।୨୨
ଦତ୍ତାତ୍ରେଶ୍ୱର ବିଶ୍ୱେଶ୍ୱର ଭୁବନେଶ୍ୱର ଦେବତା
ପାଞ୍ଚକୋଟି ଲିଙ୍ଗ ଯେ ମୂରତି ସଙ୍ଗତା ।୨୩
ଅନନ୍ତ କୋଟି ଲିଙ୍ଗ ଯେ ଅନନ୍ତ ମୂରତି
ବିଜେ ବିଶ୍ୱେଶ୍ୱର ଯେ ବାରାଣସୀ କ୍ଷେତ୍ରପତି ।୨୪
ଆଠଲକ୍ଷ ଗିରି ଘେନିଣ ବିଜୟେ ହେମବନ୍ତେ
ପ୍ରସନ୍ନ ନାରାୟଣ ବିଜୟେ ବିଶ୍ୱନାଥେ ।୨୫
ଯେ ବାରାଣସୀ ତୀର୍ଥେ ଯେ ପଶନ୍ତି ଯେକକ୍ଷଣେ
ବସନ୍ତି କପିଳାସେ ଶିବନାଥ ଭୁବନେ ।୨୬
ଦେବଗଣମାନେ ତହିଁ ଅଇଲେ ପାଛୋଟି
ମୁକତି ତୀର୍ଥ ଦେଖି ବିଶ୍ୱନାଥକଇଁ ଖଟି ।୨୭
ଆହୋ ଚଇତନ ପାଣ୍ଡବନ୍ତ ଘେନିଣ ସେ ପାରେଶ୍ୱରକଂର ସୁତ
ଆପଣେ ଥାଇ ମଣାଇଲେ ମଣିକର୍ଣ୍ଣିକା ତୀର୍ଥ ।୨୮
କହନ୍ତି ଯେ ବ୍ୟାସମୁନି ସେ ତୀର୍ଥର ମହିଂମା
ଡାକକେ ଶତେଲିଙ୍ଗ ବସନ୍ତି ବାବୁ ବାରାଣସୀ ସୀମା ।୨୯
ଯେ ମହାତୀର୍ଥ ଯେ ନବକୋଶ ପରିଯନ୍ତେ
ପ୍ରକୃତି ଶଂକା ବାବୁରେ ନ କରିବା ଯେଥେ ।୩୦
ଯେତେକ ଦିବସ ବସିଥିବ ଯେଥେ ନିଆହାରେ
ମନ ବଚନ କର୍ତ୍ତବ୍ୟେ ନ ଥିବ ପାପାଚାରେ ।୩୧
ଜୟ ତୁ ବିଶ୍ୱନାଥ ବାରାଣସୀ ପୁର ପ୍ରତ୍ୟେ
ମମ କର୍ମ ପ୍ରାପତ ସ୍ୱାମୀ କରିବା ଯେହୁ ତୀର୍ଥେ ।୩୨
ତବ ଲୟେ ଭାବୁ ମୋହୋର ପଞ୍ଚୁଭୂତ ଆତ୍ମା
ପରମ ପୁରୁଷ ଈଶ୍ୱର ପରମବ୍ରହ୍ମ ମହାତ୍ମା ।୩୩
ଯାବତ ଚନ୍ଦ୍ର ଯେ ଦିବାକର ଜ୍ୟୋତି
ଶ୍ରୀ ବିଶ୍ୱନାଥ ପ୍ରସନ୍ନେ ଖଣ୍ଡଣ ହେଉ ମୋ ଦୁର୍ଗତି ।୩୪
ନମାମି ବିଶ୍ୱନାଥ ଗିରିଜା ବଲ୍ଲଭ
ସଦା ବିବୁଧାଦି ଜନେ ଭାବନ୍ତି ହୃଦଭାବ ।୩୫
ନମୋ ନମୋ ସଦାନନ୍ଦ ପୁରୁଷ ପରମଯୋଗୀ
ଜଳ ସ୍ଥଳ ଅନଳ ନାଥ ସର୍ବସ୍ଥାନ ଭୋଗୀ ।୩୬
ଶଇଳାଜାର ବଲ୍ଲଭ ଚରଣ ସରୋଜେ
ପ୍ରଣପ୍ରତ୍ୟଭାବେ ଖଟନ୍ତି ଦେବରାଜେ ।୩୮
ନମୋ ନମୋ ବିଶ୍ୱନାଥ ଜଗତ ତାରଣ
ନମୋ ନମୋ ବିଶ୍ୱନାଥ ଜଗତ ସଂହାରଣ ।୩୯
ଜୟ ଜୟ ଶିବ ହେ ଜୟ ମହାଦେବ
ଦେବଂକର ଉପରେ ତୁ ବୋଲାଉ ଦେବ ଦେବ ।୪୦
ଶଇଳଜାର ନନ୍ଦନୀ ବଲ୍ଲଭ ଚରଣେ ଦୟିନୀ
ବଦୟନ୍ତି ସାରୋଳା ଦାସ ଯେ ଶୂଦ୍ରମୁନି ।୪୧
ଶୁଣ ହୋ ଯୁଧେଷ୍ଠିର ଯେ ତୀର୍ଥର ଯେ ଧର୍ମ
ତ୍ରେତୟା ଯୁଗେ ଯେଥକଇଂ ଅଇଲେ ଶ୍ରୀରାମ ।୪୨
ଶ୍ରୀରାମ ଲକ୍ଷ୍ମଣ ସ୍ନାହାନ କରନ୍ତି ଈଶାନ୍ୟଭାଗ ତୁଠେ
ମେଖଳୀ ବେଶ୍ୟା ସ୍ନାହାନ କରଇ ଯେ ତହିଂର ନିକଟେ ।୪୩
ଲକ୍ଷ୍ମଣ ବୋଇଲେ ଲୋ ତୁ ମୋଢ଼ୀ ନେଞ୍ଚ ସ୍ତିରୀ
ଦ୍ରବ୍ୟ ଗୁଚିତ ତୁ ମୋଢ଼ୀ ବେଶ୍ୟା ଦୋଚାରୀ ।୪୪
ବ୍ରହ୍ମକପାଳ ଯେ ତୀର୍ଥେ ତେଜିଲେ ଧୂର୍ଜଟୀ
ତୁ ଯେଥେଂ ଅବଗାହି ଲୋ ପଶିଲୁ ପାପିଷ୍ଟୀ ।୪୫
ବ୍ରତହେତୁ ନିମନ୍ତେ ଲୋ ତୁମ୍ଭେ ମୁଖେ ରତିକର
ଜନ୍ମର ସୁକୃତ ଯାଇ ଛୁଇଂଲେ ଶରୀର ତୋହୋର ।୪୬
ଆହୋ ଚଇତନ ଲକ୍ଷ୍ମଣ ବଚନେ କଟାକ୍ଷି ଚାହିଂଲା ଦୁର୍ଭାଷୀ
ତୁ କିସ ଭାଗ୍ୟବନ୍ତ ବୋଲାଉ ତପୁସୀ ।୪୭
ତୁହି ଯେବଣ କାଳେ ଛାଡିବୁ ନିଜ କାୟା
ଯେ ତୀର୍ଥ ଚରିତ ହୋ ଶୁଣ ତପୁସାୟା ।୪୮
ମୁହିଂ ମଲେ ଯେଥି ହୋଇବି ଲିଙ୍ଗଟିୟେ
ତୁହି ମଲେ ଯେଥି ଅବଶ୍ୟ ହୋଇବୁ ଶମ୍ଭୁୟେ ।୪୯
ସର୍ବ୍ୟେ ଅସର୍ବ୍ୟେ ଯେ ନାହାନ୍ତି ଯେ ଗାଙ୍ଗେ
ଅବଶ୍ୟ ମୃତ୍ୟୁ ପାଇଲେ ଯେଥେ ହୁଅନ୍ତି ଶମ୍ଭୁଲିଙ୍ଗେ ।୫୦

ଶୁଣିଣ ରାମଚନ୍ଦ୍ର ଆଶ୍ଚିଜ ହୋଇଲେ
ବହୁତ ହରଷେ ପାୟେ ପଡ଼ିଣ ବିଶ୍ୱନାଥଂକୁ ପଚାରିଲେ ।୫୧
ସ୍ୱାମୀ ମେଖଳା ନାମେ ବେଶ୍ୟାୟେ ମଣିକର୍ଣ୍ଣିକାରେ କେଶ
ଯେ ପଖାଳି
ଦେଖିଣ ଲକ୍ଷ୍ମଣ ତାହାକଇଂ ଭ୍ରସନାୟେ ଦିଲା ଗାଳି ।୫୨
ବେଶ୍ୟା ବୋଇଲା ତପୁସୀଆରେ ମରୁ କେଉଂଣ ରଙ୍ଗେ
ତୁହି ମଲେ ମୁହିଂ ମଲେ ଯେଥେଂ ହୋଇବା ଲିଙ୍ଗେ ଲିଙ୍ଗେ।୫୩
ସ୍ୱାମୀ ଯେ କଥା ସତଟିକି ବୋଲି ବୋଇଲେ ଶ୍ରୀରାମେ
ସମସ୍ତ ଯେକ ହୋଇବ କି ଧର୍ମେ ଯେ ଅଧର୍ମେ ।୫୪
କଷ୍ଟ ପାଇଣ ଯେ କଷ୍ଟୋରେ ତୋତେ କରେ ସେବା
ଦୁଖେଣ ଖଟିବ ଯେ ସେ ଲିଙ୍ଗେକ କି ହୋଇବା ।୫୫
ସେ ପାମେରୀ ସୁଖ ଅର୍ଥେ ମୁଖେ କରନ୍ତି ରତି
ସେହି ଲିଙ୍ଗେକ ହୋଇବ କି ବୋଲି ବୋଲନ୍ତି ରଘୁପତି ।୫୬
ଯେହା ଶୁଣି ଶ୍ରୀରାମକଇଂ ବୋଇଲେ ବିଶ୍ୱେଶ୍ୱର
ବାବୁ ଅବଶ୍ୟ ଲିଙ୍ଗେକ ହୋଅନ୍ତି ଯେ ଝାସଇ ତୀର୍ଥର ।୫୭
ତପୋଧନ ରୂପେ ଯେହୁ ତୀର୍ଥ କରନ୍ତି
ଦେବରାଜା ସମାନେ ସେ ଲିଙ୍ଗେକ ହୁଅନ୍ତି ।୫୮
ସୁଖଭୋଗ ବାଞ୍ଛି ଯେହୁ କରନ୍ତି ଯେ ସେବା
କଣକଛ ଭୋଗ ସେ ପାବନ୍ତି ପୁନର୍ଭବା ।୫୯
ଅକ୍ରିୟା ଅହଂଗୁଣେ ଯେ କରନତି ସ୍ରାହାନ
ଅବଶ୍ୟ ଲିଙ୍ଗେକ ସେ ହୋଅଇ ଶ୍ରୀରାମ ।୬୦
ଶୁଣିଣ ଶ୍ରୀରାମ ଲକ୍ଷ୍ମଣଂକୁ କଲେ ବାଚି
ବାବୁ ଖଣ୍ଡିଆଳ କରି ନ ବୋଲ ତୁ କିଛି ।୬୧
କହନ୍ତି ବ୍ରହ୍ମମୁନି ପଣ୍ଡିତ ମହାଗ୍ୟାଂତା
ବାବୁ ଯେସନେକ ଚରିତ ଯେ ତୀର୍ଥର ହାଦେ ଅଛି କଥା ।୬୨
ଯେକ ତାର ମଧ୍ୟେ ଶତେଲିଙ୍ଗ ପୋତା ଅଛି
ତାକକେ ଶତେଲିଙ୍ଗ ପ୍ରତ୍ୟକ୍ଷେଣ ବିରୂପାକ୍ଷୀ ।୬୩

✱✱

## ୫୭. ପାଣ୍ଡବମାନଙ୍କର ବନରୁ ପ୍ରତ୍ୟାବର୍ତ୍ତନ ନିମନ୍ତେ ଶ୍ରୀକୃଷ୍ଣଙ୍କ ସହ ବିଦୁର ଓ ଶକୁନିଙ୍କର ଯୁଧିଷ୍ଠିରଙ୍କ ସମୀପେ ଗମନ

ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ହସ୍ତିନା ରାଜ୍ୟ ଆସ୍ତାନେଣ ବିଜୟେ କୁରୁପତି ।୧
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଶକୁନି ଭୂରିଶ୍ରବା
ବାଲହିକ ସୋମଦତ୍ତ ଅଶସ୍ତାମା ଆବର କୃତବର୍ମା ।୨
ଆସ୍ତାନର ସନ୍ନିଧ୍ୟ ଯାଇଂ କହଇ ବୀରକର୍ଣ୍ଣ
ଆକାଶେ ଯାଇଂ ବଡ଼ ମହିଂମା କଲାକ ଅରଜୁନ ।୩
ନିର୍ବାତକପଚ ବୋଲି ଦେବତାଂକ ଅଇରି
ଚଉରାଶି ବେଳ ସେ ଅମରକଇଂ ଦିଲା ଧାଡି ।୪
ସତ୍ୟ ତ୍ରେତୟା ଆବର ଦ୍ୱାପର ତିନିଯୁଗେ
ଦେବତାୟେ ରହି ନୁଆରିଲେ ଅମର ସ୍ୱର୍ଗେ ।୫
ଅର୍ଜୁନ ତାହାକଇଂ ବଧ କଲାକ ଆକାଶେ
ଅନେକ ଉତ୍ସବ କରାଇଲେ ଅମରାଧି ବିଳାସେ ।୬
କୋଳେ ବସାଇ ଆଖଣ୍ଡଳ ଅନେକ ଆନନ୍ଦେ
କିରଟୀ ମୁକୁଟ ବାନ୍ଧି କିରୀଟୀ ନାମ ଦିଲେକ ଦେବ ଇନ୍ଦ୍ରେ ।୭
ଧୃତରାଷ୍ଟ୍ର ବୋଇଲେ କର୍ଣ୍ଣର ବଚନ ଶୁଣି
ବାବୁ ବିଦୁର ତୁ ସୁମରଣା କର ଚକ୍ରପାଣି ।୮
ଜଗନ୍ନାଥଂକୁ ଘେନି ତୁ ଯାଅ ଏହିକ୍ଷଣି
ସମାର୍ଜନା କରି ତୁମ୍ଭେ ପାଣ୍ଡବନ୍ତ ଆଣି ।୯
ଅମ୍ବୁବତୀର ନନ୍ଦନ ପୁରୁଷୋତ୍ତମକୁ କଲେ ଧ୍ୟାୟେ
ବଇନେତ୍ର ବାହାନେ ବିଜୟେ ଦେବରାୟେ ।୧୦
ଧୃତରାଷ୍ଟ ଭୀଷ୍ମ ଦ୍ରୋଣ ଚରଣେ କଲେ ପୂଜା
ଧୃତରାଷ୍ଟ ବୋଇଲେ ସ୍ୱାମୀ ବିଦୁରଂକୁ ଘେନି
ପାଣ୍ଡବଂକ ତହିଂକି ଯାଅ ଯା ।୧୧
ବନବାସ ସଂକଳ୍ପ ଆଜହୁଂ ଗଲା ପାର
ଶକୁନି ଘେନିଯାଅ ତୁମ୍ଭର ସଂଗତର ।୧୨
ଧୃତରାଷ୍ଟ୍ରଂକ ବଚନେ ବିଦୁରେ ଜଗନ୍ନାଥେ
ଚଳନ୍ତି ନାରାୟଣ ଶକୁନି ସହିତେ ।୧୩
ରଥେ ରଥେ ଆରୋହିଣ ଶକୁନି ମହାମନ୍ତ୍ରୀ
ବଇନେତ୍ର ବାହାନେ ବାସୁଦେବ ଚଳନ୍ତି ।୧୪
ବାରାଣସୀ ପୁରେ ବିଜେକଲେ ଦେବ ହରି
ବ୍ୟାସ ବାଲମ୍ୱୀକ ଯେ ମାରକଣ୍ଡ ଆଦିକରି ।୧୫
ଯୁଝେଷ୍ଟିଂକ ଆସନ ଦେଖିଲେ ଦେବ ଦୂରେ
ବଇନେତ୍ର ପିଠିରୁ ଉତୁରିଲେ ଦେବ ଦାମୋଦରେ ।୧୬
ଯୁଝେଷ୍ଟିକ ବଦନ ଚାହିଂଣ ବନମାଳୀ
ପାୟେ ଯାଇଂ କେଶବ ଯେ କରନ୍ତି ନିଉଛାଳି ।୧୭
ଅନେକ ପ୍ରବୋଧି ବହୁତ ବିନୟେ ବୋଲି
ସନ୍ନିଧ୍ୟ ଜଗନ୍ନାଥେ ଶୁତିଲେ ଗଡଘାଲି ।୧୮

ଯୁଧେଷ୍ଠି ଦେବ ଠାରିଲେ ନକୁଳ ମୁଖ ଚାହିଁ
ନକୁଳ ବୋଇଲା ଠାକୁରଂକର ଆଗ୍ୟାଂ ହୋଇଲେ ଉଠ ହୋ
ଗୋସାଇଂ । ୧୯
କରପତ୍ର ଯୋଡିଣ ଦେବକୀର ବାଳ
ସମସ୍ତ ବାରତା ଯେ ପୁଚ୍ଛନ୍ତି କୁଶଳ ।୨୦
ବିଦୁରଂକୁ କୁଶଳ ଯେ ପୁଚ୍ଛନ୍ତି ଯୁଧେଷ୍ଠି
କ୍ଷମେଣ ବ୍ରତି ଅଛନ୍ତିନା ନୃପତି ଧୃତରାଷ୍ଟି ।୨୧
କ୍ଷମେଣ ବ୍ରତି ଅଛନ୍ତିନା ମାତା ଯେ ଗାନ୍ଧାରୀ
ଦ୍ରିଯୋଧନ ଧୃଶାସନ ଭୀଷ୍ମ ଦ୍ରୋଣ ଆଦିକରି ।୨୨
ଶକୁନିକି ଅନେକ ପୁରସରି ଧର୍ବବାଳ
ଶକୁନି ବୋଇଲା ବାବୁ ସମସ୍ତ କୁଶଳ ।୨୩
ଗୋବିନ୍ଦେ ପୁଚ୍ଛାକଲେ ଯୋଡିଣ କର ବେନି
ତୁମ୍ଭେମାନେ ଅଛତ ମୋ ନାହିଁ ଫାଲଗୁନି ।୨୪
ଯୁଧେଷ୍ଠି ଦେବ ବୋଇଲେ ବାବୁ ଇନ୍ଦ୍ର ଦଇବତ
ଅମର ଭୁବନକୁ ନିଆଇଲେ ବୀର ପାଥ ।୨୫
ବିଦୁର ପୁଚ୍ଛା କଲେ ଶୁଣ ସହଦେବ
କିସ କାର୍ଯ୍ୟେ ଅର୍ଜୁନକୁ ନିଆଇଲେ ବାସବ ।୨୬
ସହଦେବ ବୋଇଲା ଇନ୍ଦ୍ର ନିର୍ବାତକପଟର ଭୟେ
ତେଣୁକରି ଅର୍ଜୁନକୁ ନେଲେ ଦେବରାୟେ ।୨୭
ମାତଳି ଘେନିଯାନ୍ତେ ପାର୍ଥକୁ ଅଧାବାଟେ
ଭେଟି ତାଂକ ସଂଗେ ଦତ୍ୟ ଯୁଝିଲା କପଟେ ।୨୮
ତାହାକୁ ସାଂଗ୍ରାମରେ ଜିଣିଲେ ବୀର ଧନୁର୍ଜୟେ
ସ୍ୱର୍ଗରେ ଶୁଭିଲା ବାଣୀ ସାଧୁ ଜୟେ ଜୟେ ।୨୯
ପଞ୍ଚମଭୂତ ସଇନି ତୁଳେଣ ତାର ଥିଲେ
ଦିବସକର ମଧ୍ୟେ ପାର୍ଥ ତାହା ନାଶକଲେ ।୩୦
ଅନେକ ଉତ୍ସବ ଯେ କଲେ ମଘବାନ
କିରଟୀ ମୁକୁଟ ଶିରେ ବାନ୍ଧିଲେ ଅଭିଷେକ ବିଧାନ ।୩୧
ଅନେକ ଦେବଗଣ ଯେ ହୋଇଲେ ତ୍ରିପୁତି
କିରୀଟୀ ନାମ ସ୍ୱର୍ଗେ ଦିଲେ ସୁରପତି ।୩୨
ପୂଜାକଲା ବୃଦ୍ଧଶ୍ରବା ଶ୍ୱେତଅଶ୍ୱ ଚାରି ଘେନି
ସେହୁ ଅମରେ ନାମ ଦିଲା ଶ୍ୱେତ ଯେ ବାହନି ।୩୩
ସ୍ୱାମୀ ଅର୍ଜୁନ ରୂପ ଦେଖିଣ ଢଳିଲା ଉର୍ବଶୀ
ବାସବ ଦେବତା ଉର୍ବଶୀକି ପାଥଠାକୁ ଦିଲେ ପେଷି ।୩୪
ଅନେକ ବାଗେଣ ଅପଛରୀ ଅର୍ଜୁନକଇଂ ଖଟି
ତାହାରେ ରମଣ ସେ ନ ଦିଲେ କିରୀଟୀ ।୩୫
ରାଗେଣ ଉର୍ବଶୀ ଦିଲାକ ଅଭିଶାପ
ନପୁଂସକ ହୋଅ ବୋଲି ବୋଇଲା ଅତି କୋପ ।୩୬
ତେଣୁ କରି ଅରଜୁନ ଉର୍ବଶୀକି ଖଟି
ଶୁଣିଣ ବିରସ ଦେବ ହୋଇଲେ ଯୁଧେଷ୍ଠି ।୩୭
ଆକାଶ ଆସ୍ଥାନେଣ ବିଜୟେ ମଘବାନ
ମାତଳିକି ରାଇ ଆଗ୍ୟାଂ ଦିଲେକ ପାକଶାସନ ।୩୮
ପୁଷ୍ପେକ ଆରୋହି ତୁହି ଯାଅ ମଧ୍ୟଭୁବନକୁ
ଯେ ବାରତା କହ ଯାଇଂ ଯୁଧେଷ୍ଠି ଦେବଂକୁ ।୩୯
ବୋଲିବୁ ଅର୍ଜୁନକୁ ସ୍ୱର୍ଗେ ଗୁହାଇଲେ ବଜ୍ରଧାରୀ
ଅସୁର ଥୋକାଯେ ଯାଇଛନ୍ତି ଉବୁରି ।୪୦
ପୁଣ ସମୟେକ ବାହୀ ଆସନ୍ତି ସେ ବୋଲି
ତେଣୁ କରି ଅର୍ଜୁନକୁ ମୁଂ ଅମରେ ଗୁହାଇଲି ।୪୧
ବାସବ ଦେବତାର ଆଗ୍ୟାଂ ଯେ ପ୍ରତିପାଳି
ବାରାଣସୀ ଭୁବନେ ଯାଇଂ ବିଜୟେ ମାତଳି ।୪୨
ଅମର ସାରଥିକି ଦେଖିଣ ଉଠିଲେ ଧାତିକାରେ
ସମସ୍ତେହେଂ ପ୍ରଣପତ୍ୟ ହୋଇଲେ ମାତଳି ପୟରେ ।୪୩
ଶ୍ରୀଜଗନ୍ନାଥଂକ ଚରଣେ ମାତଳି ପରଣାମି
ସାନନ୍ଦେ ଅର୍ଜୁନର ବାରତା ପୁଚ୍ଛନ୍ତି ଦେବ ସ୍ୱାମୀ ।୪୪
କୁଶଳ ବାରତା ଟିକି ପାଥ ସୁନାସୀର
କୁଶଳ ବାରତା ଟିକି ସେ ସ୍ୱର୍ଗପୁରର ।୪୫
ମାତଳି ବୋଇଲା ସ୍ୱାମୀ ସମସ୍ତ କୁଶଳ
ତୋହୋର କୁଶଳ ସେ ସମସ୍ତ ଦିଗପାଳ ।୪୬
ଶୁଣ ଦେବ ନାରାୟଣ ମାତଳି ବୋଇଲା
ନିର୍ବାତକପଟ ଅମରକଇଂ ଧାତିଦିଲା ।୪୭
ସତ୍ୟ ତ୍ରେତୟା ଦ୍ୱାପର ତିନିଯୁଗେ
ଚଉରାଶି ବେଳ ଧାତିଦିଲା ଅମର ଯେ ସ୍ୱର୍ଗେ ।୪୮
ତେଣୁ କରି ଇନ୍ଦ୍ରଦେବ ଅର୍ଜୁନକୁ ନିଆଇଲା
ପୃଥିଦେବୀ ଯଦୁଂ ଅନେକ ଆକୁଳ ହୋଇଲା ।୪୯
ମୋତେ ରାଇ ଆଗ୍ୟାଂଦିଲେ ପୁଷ୍ପେକ ମଣ୍ଡାଇ
ଅର୍ଜୁନକୁ ଆଣ ବୋଲି ବୋଇଲେ ସୁରସାଇଂ ।୫୦
ମୁହିଂ ଯେଉଂଦିନ ଅର୍ଜୁନକୁ ନେଲଇଂ
ନିର୍ବାତ ସେହିଦିନ ଦେବ ଅମରକୁ ବାହି ।୫୧
ଅନେକ ସମ୍ବରେ ଯେ ଆସଇ ଦତ୍ୟନାହା

ଅର୍ଜୁନ ବୋଇଲା ଅସୁର ଛାମୁକୁ ରଥ ମୋର ବାହା ।୫୨
ମୁହିଂ ବୋଇଲି ଆଗ ଦ୍ରଶନ କରିବା ଆଖଣ୍ଡଳ
ଇନ୍ଦ୍ର ଦେବତା ତହୁଂ ନେମାକ ଜୟମାଳ ।୫୩
ସେ ମାଳା ଥିଲେ ଯେ ରଣେ ନାହିଂ ଅପ୍ରାଞ୍ଚୟେ
ଶୁଣିଣ ହସିଲା ତୋର ସୋହୋଦ୍ର ଧନୁର୍ଜ୍ଜୟେ ।୫୪
ସେ ମାଳା ଥାଇ ଯେ ଇନ୍ଦ୍ରଦେବତା ହୃଦଗତେ
ନିର୍ବାତକପଟକଇଂ ହାରିଲେ କିମ୍ପେ ଚଉରାଶି ବେଳ
ପରିଯନ୍ତେ ।୫୫
ବ୍ରହ୍ମା ଈଶ୍ୱର ଚନ୍ଦ୍ର ସୂର୍ଯ୍ୟ ଆଦିକରି
ସମସ୍ତ ଦେବତାନ୍ତ ନିର୍ବାତକପଟ ଜିଣଇଂ ଧରି ।୫୬
ଯେକା ଅର୍ଜୁନକେ ଦେବ କଲାକ ସମର ମହାଘୋର
ରାତ୍ରି ଦିବସେକ ଶହସ୍ର କଲାକ ପ୍ରହାର ।୫୭
ବାବୁ ପ୍ରତକ୍ଷେ ଦେଖିଲି ତୋ ଅର୍ଜୁନର ମହିଂମା
ସାଂଗ୍ରାମେ ସରି ତାହାକୁ ନୋହନ୍ତି ହର ବ୍ରହ୍ମା ।୫୮
ସମସ୍ତ ବାରତା କହିଲା ଯହୁଂ ମାତଳି ସାରଥି
ସାଂଗ୍ରାମ ଡରେ ଅନେକ ଅସୁରେ ପଳାଇ ଅଛନ୍ତି ।୫୯
ପୁଣ ବାହାନ୍ତିନି କି ସେ ଅମର ଭୁବନକୁ
ତେଣୁ କରି ଇନ୍ଦ୍ର ଦେବତା ଅମରେ ଗୁହାଇଅଛି ଅର୍ଜୁନକୁ ।୬୦
ମୋତେ ରାଇକରି ଯେ ଆଗ୍ୟାଂ ଦିଲେ ମଘବାନ
ଯୁଝେଷ୍ଟିଂକି କହ ଯାଇଂ ମୁଂ ଯେଥେ ଗୁହାଇଲି ଅରଜୁନ ।୬୧
ତୁ ଦେବ ଅର୍ଜୁନକୁ ଚିନ୍ତା ନ କର ଯେବେ
ବରଷ ସାତ ପାଞ୍ଚ ରହିବ ଅମର ସ୍ୱର୍ଗେ ।୬୨
ବିଦ୍ୟାଧରମାନେ ଅନେକ କରନ୍ତି ସେବା
ଅର୍ଜୁନକୁ ଚିନ୍ତା ନ କର ମନେ ବାବା ।୬୩
ସମସ୍ତ କୁଶଳ ଯେ କହିଲା ମାତଳି
ଅନେକ ତ୍ରିପୁତି ହୋଇଲେ ଯୁଝେଷ୍ଟି ବନମାଳୀ ।୬୪
ଅନେକ ରତ୍ନ ଯୋଗାଡ଼ ଦିଲାକ ଯୁଝେଷ୍ଟିକି
ବିନୟ ବଚନ ଯେ କହିଲା ଦୃଢ଼ ବାକି ।୬୫
ଚାରି ଭାଇନ୍ତ ଆଭରଣ ଆବର ସୋହୋଦ୍ରା ଦ୍ରୋପତୀ
ରତ୍ନମାନ ଶୋଭନ୍ତି ଦିଲେ ପ୍ରତି ପ୍ରତି ।୬୬
ଅମର ଅଳଂକାରମାନ ଦିଲେକ ମାତଳି
ନିର୍ଧୁର୍ମ ଅଗ୍ନିକାଣି ରତ୍ନଂକର ତେଜ ଝଳି ।୬୭
ଦେଖିଣ ସାନନ୍ଦ ଯେ ହୋଇଲେ ବ୍ରିକୋଦର
ରତ୍ନମାଳା ଘେନିମାକୁ ଅନେକ ସ୍ରାଗ ତାହାର ।୬୮
ଯୁଝେଷ୍ଟି ଦେବେ ବୋଇଲେ ଭୀମ ରତ୍ନମାନଂକୁ କଲୁ କି ତୁ ଇଛା
ପୂର୍ବେ ସେ ଶିବସେବା ନ କଲୁ ମନବାଞ୍ଛା ।୬୯
ବାବୁ ଆମ୍ଭେ ଥିବାରେ ଗହନ ଅରଣ୍ୟ ବନେ
ବନସ୍ତେ ଥାନ୍ତି ଯେ ଅନେକ ରାକ୍ଷସ ପିଚାଶମାନେ ।୭୦
ବାବୁ ବିପତ୍ତି କାଳେ ଯେ ନ ଯୋଗାଇ ରତନ
ଧନ ଥିଲେ କାୟାଟି ହୋଅଇ ପତନ ।୭୧
ସୁନ୍ଦର ସ୍ତିରୀଧନ ନ ଯୋଗାଇ ବିପଦେ
ଥିଲେ ପ୍ରାଣୀଂକି ଅବଶ୍ୟ ପଡଇ ପରମାଦେ ।୭୨
ସମସ୍ତ ଧନ ସମର୍ପିଲେ ବିଦୁରଂକ ଗୋଚରେ
ଥୋକାୟେ ଆଭରଣ କଲେ ଶକୁନି ଶରୀରେ ।୭୩
ଅନେକ ପ୍ରଶଂସା ଯେ କଲେ ଦେଖିଣ ତା ମାତଳି
ଅମର ସ୍ୱର୍ଗକଇଂ ଗଲେ ପୁଷ୍ପେକ ଘେନି ଚଳି ।୭୪
ସମସ୍ତ ବାରତା ଯାଇଂ କହିଲେ ଇନ୍ଦ୍ର ଦେବତାଂକୁ
ଯୁଝେଷ୍ଟି ଦେବଂକ କୁଶଳ କହିଲେ ଅର୍ଜୁନକୁ ।୭୫
ବଦୟନ୍ତି ଅଗସ୍ତି ଶୁଣ ବଇବସୁତ ମନୁ
ସୋହୋଦ୍ରାର ଗର୍ଭେ ପାଞ୍ଚମାସ ଯେକ ତନୁ ।୭୬
ଗୟା ତୀର୍ଥେଣ ସେ କଲାକ ଶୁଦ୍ଧ ଯେ ସ୍ରାହାନ
ଶୃଙ୍ଗାର ବେଳେ ତହୁଂ ରହିଲା ନନ୍ଦନ ।୭୭
ବିଦୁରେ ପଚାରିଲେ ଶୁଣିମା ଯୁଝେଷ୍ଟି
ମୋତେ ରାଇ ଆଗ୍ୟାଂଦିଲା ରାଜା ଧୃତରାଷ୍ଟି ।୭୮
ମଣିକର୍ଣ୍ଣିକା କୁଣ୍ଡେ ସ୍ରାହାନ କରି ବିଶ୍ୱନାଥକଇଂ ଦେଖି
ସରିଲା ବନବାସ ସକଳ କଷ୍ଟମାନ ଉପେକ୍ଷି ।୭୯
ବାହୁଡ଼ି ଯିବା ଚାଲ ହୋ ଇନ୍ଦ୍ରପ୍ରଣସ୍ତକୁ
ଆମ୍ଭେ ଆସିଅଛୁଂ ବାବୁ ତୁମ୍ଭଂକୁ ନେବାକୁ ।୮୦
ଯୁଝେଷ୍ଟି ଦେବ ବୋଇଲେ ତାତ ମିଳଇ କି ଯେ ଯୁଗତ
ଧର୍ମ ଲଂଘିଲା ପ୍ରାଣୀଂକର କିସ ଯେ ଜୀବିତ ।୮୧
ଆପଣାର କଲାକୃତ୍ୟକୁ କର୍ମ ସେ ଯେ ବୋଲି
କେମନ୍ତେ ଲଂଘିବି ତାତ ଆପଣେ ଯାହାକଲି ।୮୨
ବରଷକ ପ୍ରାନ୍ତ ଆସି ଯେ ହୋଇଲା ଯେକ ଦିନ
ତୀର୍ଥଇଂ ଥୋକାୟେ କରି ଅରଜିବି ପୁଣ୍ୟମାନ ।୮୩
ବାସୁଦେବ ବୋଇଲେ ଦେବ ବନବାସ ନ କରିବା
ଧୃତରାଷ୍ଟ ଆଗ୍ୟାଂୟେ ଚାଲ ଯେଥଂ ଯିବା ।୮୪
ଯେକାନ୍ତେ ସହଦେବକୁ ଘେନିଣ ବାସୁଦେବେ
କହନ୍ତି ଠାକୁରେ ଯେଥୁ ଯିବେ କି ନ ଯିବେ ।୮୫

ସହଦେବ ବୋଇଲା ସ୍ୱାମୀ ଆମ୍ଭର ନିଚୟେ ବନବାସ
ଯୁଝେଷ୍ଟିଂକି ଦେଖି ମୁକ୍ତ ହୋଇବ ନୃପତି ନଘୋଷ ।୮୬
ସ୍ୱାମୀ ଧର୍ମଦେବତା ଅଛନ୍ତି ଯେଥେଂ ବକ ରୂପ ହୋଇ
ଅନେକ ବ୍ରହ୍ମହତ୍ୟା କରିଛନ୍ତି ସେହି ।୮୭
ଯୁଝେଷ୍ଟିଂକ ଦ୍ରଶନେ ସେ ପାଇବେ ମୁକତି
ନାରାୟଣ ଅଗ୍ରତେ କହଇ ସହଦେବ ମନ୍ତ୍ରୀ ।୮୮
ଅଷ୍ଟବସୁ ଚୋରାଇଲେ ବଶିଷ୍ଟଂକ ଗାଈ
ସେହି ଋଷି ଶାପ୍ୟେ ଅନିଳବସୁ ଅଛି ଅନ୍ଧ ହୋଇ ।୮୯
ଯୁଝେଷ୍ଟିକର ଦ୍ରଶନେ ସେ ମୁକତି ହୋଇବ
ଚକ୍ଷୁକୁ ଦିଶିବ ଗୋରୁଚୋରା ଦୋଷ ପାରଯିବ ।୯୦
କନ୍ଧପୁର ନଗ୍ରେ ଅଛି ଯେ ବଇଧୃତି ନାମେ ରାକ୍ଷସ
ଭୀମସେନ ଠାକୁରଂକ ହାଥେ ସେ ହୋଇବ ପ୍ରାଣେ ନାଶ ।୯୧
ସହଦେବ ବୋଇଲେ ସ୍ୱାମୀ ଯୁଝେଷ୍ଟି ଦେବ ନ ଗଲେଣ ବନେ
ଯେମାନ ମୁକତ ପୁଣ ହୋଇବେ କେସନେ ।୯୨
ସ୍ୱାମୀ ଶେଷନାଗର ପୁତ୍ର ନିରାବନ୍ତ ନିରାଳ
ଯେହାନ୍ତ ବଧକଲା କୀଚକ ମହାବଳ ।୯୩
କରେ କୁମ୍ଭ ଘେନି ଦେବସଭାରେ କାନ୍ଦି କହିଲା ବସୁମତୀ
କୀଚକ ଭାରା ସହି ନୁଆରଇ ଦେବପତି ।୯୪
ଦଶ ମୁଖରେ ମୋହୋର ଗଳଇ ରୋଧିର
ଛାଡିଲି ପୃଥୀଭାରା ସମ୍ଭାଳ ତୋହୋର ।୯୫
ତେଣୁକରି ଦେବତାଯେ ଆଗ୍ୟାଂ ଦିଲେକ ଆକାଶେ
କୀଚକ ବଧ ହୋଇବ ଆମ୍ଭର ଅଗ୍ୟାଂତ ବନବାସେ ।୯୬
ଦ୍ରୋପତୀକି ହରିତେ ଲୋଡିବ ପାମର
କୀଶେକ ଶତେଭାଇକି ବଧ କରିବେ ଯେ ବ୍ରିକୋଦର
ଠାକୁର ।୯୭
ସହଦେବ ବୋଇଲେ ଦେବ ଯୁଝେଷ୍ଟିକର ବନେ ବଡ଼ ଇଛା
ସତ୍ୟ ସତ୍ୟ ବନବାସ ଯିବୁ ଯେହେନେକ ଅଛି ମନବାଞ୍ଛା ।୯୮
ସହଦେବ ବଚନେ ଯେ ନାରାୟଣ ତୁଷ୍ଟି
ବିଦୁରକୁ କହିଲେ ନ ବାହୁଡନ୍ତି ଯୁଝେଷ୍ଟି ।୯୯
ଗୋବିନ୍ଦେ ବୋଇଲେ ଦେବ ସୋହୋଦ୍ରା ଗର୍ଭବତୀ
ଦ୍ୱାରକା ପୁରକୁ ମୁଂ ନେଉଅଛି ଯେଘାନ୍ତି ।୧୦୦୦
ବିଦୁରେ ବୋଇଲେ ଆମ୍ଭେ କୋଇନ୍ତାଂକୁହିଂ ନେମୁ
ବନବାସ ସରିବା ଯାଯେ ଅନ୍ତପୁରେ ଥାଆନ୍ତୁ ବାବୁ ।୧୦୦୧
ଯୁଝେଷ୍ଟି ଦେବେ ଯାଇଂ ପଡ଼ିଲେ କୋଇନ୍ତାଂକ ପାଯେ
ବିଦୁରଂକ ଭୁବନେ ଗୋ ରହିଥାଅ ମାଯେ ।୧୦୦୨
ଯୁଝେଷ୍ଟି ଦେବଂକୁ ସେ କୋଇନ୍ତାଯେ ବହୁତ ତିଆରି
ଚଳନ୍ତି କୋଇନ୍ତାଯେ ଯୁଝେଷ୍ଟିଂକି କଲ୍ୟାଣ କରି ।୧୦୦୩
ବାବୁ ଭୀମ ଅରଜୁନକୁ ନାହିଂ ମୋର ଚିନ୍ତେ
ନକୁଳ ସହଦେବ ମୋ କ୍ଷମେ ଥାଆନ୍ତି ଯେମନ୍ତେ ।୧୦୦୪
ପୁଅନ୍ତ ତିଆରି କୋନ୍ତଭୋଜର ଦୋହିତୀ
ସୋହୋଦ୍ରା ପ୍ରଣପତ୍ୟ ହୋଇଲେ ଦ୍ରୋପତୀ ପାଦଗତି ।୧୦୦୫
ବିଦୁର ବୋଇଲେ ବାବୁ ଦ୍ରୁପଦ ରାଜାର ଦୁଲଣୀ
କୋଇନ୍ତାଂକର ତୁଲେ ଯିବୁ ଆମ୍ଭେ ଯେହାନ୍ତ ଯେ ଘେନି ।୧୦୦୬
ବିଦୁରଂକ ଅଗ୍ରତେ ଯୁଝେଷ୍ଟି ଦେବେ ବୋଇଲେ
ଦ୍ରୋପତୀଂକି ବୋଇଲେ ତୁମ୍ଭେ ଯିବ କି ମାତାଂକର ତୁଲେ ।୧୦୦୭
ଆମ୍ଭେ ଶୁଭେ ବନବାସ ସାରି ଯାଉଂକିନା ହସ୍ତିନା
ତୁମ୍ଭର ଥିଲେ ଆମ୍ଭନ୍ତ ବହୁତ ଜଞ୍ଜାଳ ସିନା ।୧୦୦୮
ଯୁଝେଷ୍ଟିଂକର ଅଗ୍ରତେ ଦ୍ରୋପତୀ ବୋଇଲେ
ଦୁଖକାଳେ କଷ୍ଟ ହୋଇ ଭାରିଯା ନ ଥିଲେ ।୧୦୦୯
ଶ୍ରୀରାମଚନ୍ଦ୍ର ଯେ ପୂର୍ବେ ଗଲେ ବନବାସ
ଜନକ ଦୋହିତା ସୀତାଯାକଇଂ ନ ଛାଡିଲେ ପାଶ ।୧୧୦
ଦ୍ରୋପତୀର ବଚନେ ଧଉମ୍ୟ ପ୍ରୋହିତେ ବୋଇଲେ
ସୀତା ଯୋଗେ ଶ୍ରୀରାମ ଅନେକ କଷ୍ଟହିଂ ପାଇଲେ ।୧୧୧
ଅନେକ ପ୍ରକାରେ ରାମ ରକ୍ଷା କରିଥିଲେ
ତହୁଂ ପୁଣ କାଳେ ରାବଣ ସୀତାଂକୁ ହରିନେଲେ ।୧୧୨
ଭୀମସେନ ବୋଇଲେ ପ୍ରୋହିତେ ସେ କଥାମାନ ଯେବେ ଛାଡ
'ଯେ ମହୀମଣ୍ଡଳେ କେ ଆମ୍ଭତହୁଂ ଅଛି ବଡ଼ ।୧୧୩
ସହଦେବ ବୋଇଲେ ହୋ ସଙ୍ଗେ ଥାଆନ୍ତୁ ଦ୍ରୋପତୀ
ନାନା ତୀର୍ଥେ ସ୍ନାନ କରିବା ଭାରିଯା ଥିଲେ ହେଂ ଯୁଗତି ।୧୧୪
ଯୁଝେଷ୍ଟିଂକର ଚରଣେ ନାରାୟଣ ବିନୟେ ଦୟିନୀ
ଚଳିଗଲେ ଜଗନ୍ନାଥେ ସୋହୋଦ୍ରକଇଂ ଘେନି ।୧୧୫
ବିଦୁର ଶକୁନି ଦୁହେଂ କୋଇନ୍ତୀଂକୁ ଘେନିଗଲେ
ଇନ୍ଦ୍ରପ୍ରଶସ୍ତେ ଯାଇଂ ପ୍ରବେଶ ହୋଇଲେ ।୧୧୬
କୋଇନ୍ତାଯେ ରହିଲେ ଯାଇଂ ବିଦୁରଂକ ମନ୍ଦିରେ
ଦ୍ୱାରକା ସେ ପ୍ରବେଶ ହୋଇଲେ ଦେବ ଦାମୋଦରେ ।୧୧୭
ନନ୍ଦ ଯଶୋଦାଂକ ଘରେ ରହିଲେ ସୋହୋଦ୍ରେ
ଅନେକ ଭଗତି ହୁଅନ୍ତି ସମସ୍ତେ ନାରୀବୃନ୍ଦେ ।୧୧୮
କଉରୋବ ଆସ୍ଥାନେ ଯାଇଂ ଶକୁନି କହିଲେ
ଅନେକ ସମ୍ପଦ ଘେନି ପାଣ୍ଡବେ ବନେ ଗଲେ ।୧୧୯

ତୁଳେଣ ବ୍ୟାସ ବାଲମ୍ମୀକ ବାମଦେବ ମାରକଣ୍ଡେ
ବିଶ୍ୱାମିତ୍ର ଗଉତମ ବସୁଦେବ ବିଭାଣ୍ଡେ ।୧୨୦
ସଂଗେଣ ଅଛନ୍ତି ଅଠାଶିଶସ୍ର ମହାମୁନି
ଧଉମ୍ୟ ପୁରୋହିତ ଅଛନ୍ତି ଲକ୍ଷେକ ବ୍ରାହ୍ମଣନ୍ତ ଘେନି ।୨୨୧
ପୁଣ୍ୟବନ୍ତ ପ୍ରାଣୀ ଥାଇଂ ଯହିଂ ତହିଂ ଥିଲେହେଂ ସମ୍ପଦ
ଧର୍ମ ଆଶ୍ରିତେ ପ୍ରାଣୀକି ନ ପଡଇ ପରମାଦ ।୧୨୨
ଯେଉଂଣ ସ୍ଥାନେ ଯୁଧେଷ୍ଠି ଥାଆନ୍ତି ଯେ ବସି
ଅନୁବ୍ରତେ ପୁରାଣ ପଢୁଥାନ୍ତି ଜୟମୁନି ଶୁକ ମହରଷି ।୧୨୩
ଯୁଧେଷ୍ଠି ବୋଇଲେ ସେବା ମୋର ସଦା ଧୃତରାଷ୍ଟ ପାଦେ
ଯେ ବନ କଷଣ୍ଟ ବଞ୍ଚିବି ମୁଂ ପିତାଂକର ପରସାଦେ ।୧୨୪
ଶୁଣିଣ ଅତି ସାନନ୍ଦ ହୋଇଲେ କଉରୋବେ
ଆବର କି ରାଜ୍ୟକୁ ଆସିବେ ପାଣ୍ଡବେ ।୧୨୫
ଧର୍ମ ଲଂଘିବାକୁ ଯେବେ ନ କଲେକ ଇଚ୍ଛା
ସତ୍ୟ ଆଚାରକୁ ଯେବେ କଲେନି ମନବାଞ୍ଛା ।୧୨୬
ଅଗ୍ୟାଂତବାସ ବଞ୍ଚିବେ ସେ କେବଣ ଯେ ସ୍ଥାନେ
ଅବଶ୍ୟ ଜାଣନ୍ତା ହୋଇଲେ ସେ ପୁଣ ଯିବେ ବନେ ।୧୨୭
ଯେସନେକ ବୋଲିଣ ଭାଳନ୍ତି କୁରୁବଳ
ଅକଣ୍ଟକ ରାଜ୍ୟ ଯେଘାନ୍ତି ଆମ୍ଭର ନିଚଳ ।୧୨୮

**

## ୫୮. ଦାତା କର୍ଣ୍ଣ ଉପାଖ୍ୟାନ

ବଇବସୁତ ମନୁ ପଚାରନ୍ତି ଅଗସ୍ତିଂକି
ଅର୍ଜୁନ ଯେ ଅନେକ ସେବା କଲାକ ଉର୍ବଶୀକି ।୧
ସେହୁ ପୁଣ କାରଣ ପାଇଲା ଟିକି ସ୍ୱର୍ଗେ
ଯେଥିର ଚରିତ ମୋତେ କହିବାକ ମୁନି ବେଗେ ।୨
ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି ବ୍ରହ୍ମବେତ୍ତା
ଗଣ୍ଡୁକୀ ନଦୀତୀରେ ଥିଲେ ପାଣ୍ଡବ ବଳବନ୍ତା ।୩
ତହିଂ ଦେବୀ ଦ୍ରଉପଦୀ ଯେ ହୋଇଲେ ରଜୋବତୀ
ସେ ତୀର୍ଥ ତେଜ୍ୟାକରି ଦେବୀ ଅନ୍ତରେ ରହନ୍ତି ।୪
କୁଞ୍ଜଗିରି ପର୍ବତ ତଳେ କଲେକ ପର୍ଣ୍ଣକୁଟୀ
ତହିଂ ଯାଇଂ ପାଞ୍ଚାଳୀ ରହିଲେ ସଙ୍ଗମେଣ୍ଟି ।୫
ଯେମନ୍ତର ସମୟେ ଶ୍ରୀ ଭାଗବତ ପୁସ୍ତକ ଯେ ଘେନି
ଗଣ୍ଡୁକୀ ତୀର୍ଥେ ଯଝେଷ୍ଠିଂକି ଭେଟିଲେ ଶୁକ ବ୍ରହ୍ମମୁନି ।୬
ଯୁଝେଷ୍ଠି ଦେବେ ଦେଖି କଲେ ତାଂକ ପାଦପୂଜା
ବସନ କୁଣ୍ଡଳ ରତ୍ନମାଳା ଦିଲେ ଧର୍ମରାଜା ।୭
ନବତନ ବସନ ପୁଷ୍ପ ପାଣି ଯେ ଅକ୍ଷତ
ପୂଜାପାଇ କୃଷ୍ଣାଞ୍ଜିନ ଛାଲେ ବସିଲେ ଭଗବନ୍ତ ।୮
ପୁସ୍ତକ ଫେଡ଼ିଣ ଶୁଣାଇଲେ ଶ୍ରୀ ବିଷ୍ଣୁ ଯେ ପୁରାଣ
ଅନେକ ଧର୍ମ କଥା ଶୁଣାଇଲେ ଯୁଝେଷ୍ଠି ଆଗେଣ ।୯
ଯୁଝେଷ୍ଠି ଦେବେ ଯେ ଶୁକ ମୁନିଂକି ବଚନ ପଚାରି
ଅମର ସ୍ୱର୍ଗପୁର ଯାଯେ ଯିବ କି ହେ ତପଚାରୀ ।୧୦
ଦ୍ରଉପତୀ ହୋଇଛନ୍ତି ଯେଥେ ପାକାପରଶନ
ଯେଥକୁ ଆସୁ ମୋର ବୀର ଫାଲଗୁନ୍ୟ ।୧୧
ଯୁଝେଷ୍ଠି ଦେବଂକ ବଚନେ ଚଳିଲେ ଶୁକ ମହରଷି
ଅମରାବତୀ ଭୁବନେ ମହାତ୍ମା ପ୍ରବେଶ ହେଲେ ଆସି ।୧୨
ସମସ୍ତ କୁଶଳ ବାରତା ପଚାରନ୍ତି ବିଡ଼ୋଜା
କୋଳେ ଅର୍ଜୁନକୁ ବସାଇ ଅଛନ୍ତି ଦେବରାଜା ।୧୩
ଅମର ସ୍ୱର୍ଗ ଭୁବନେ ଯେତେକ ସିଦ୍ଧବିଦ୍ୟା
ଅର୍ଜୁନକୁ ଶିଖାବନ୍ତି ଗନ୍ଧର୍ବେ ସର୍ବସିଦ୍ଧା ।୧୪
ଶୁକବ୍ରହ୍ମ ମୁଖ ଚାହିଂ ବଦୟନ୍ତି ଆଖଣ୍ଡଳ
ଅର୍ଜୁନକୁ ନୃତ୍ୟ କରାଇବା ଉର୍ବଶୀର ମେଳ ।୧୫
ଯାଅ ବାବୁ ତାଣ୍ଡବ ନୃତ୍ୟକର ସର୍ବସାଚୀ
ଅପଛରୀଂକ ମେଳେ ଅର୍ଜୁନ ସ୍ତିରୀ ରୂପେ କାଛି ।୧୬
ଗଣିକା ରୂପେ ନୃତ୍ୟ କରଇ ବୀର ଫାଲଗୁନି
ଦେଖି ମୋହେ ବଶ ହୋଇଲେ ଅମରପୁର କାମିନୀ ।୧୭
ଅର୍ଜୁନକଇଂ ଶୁକମୁନି ନୁଆରିଲେ ଚିହ୍ନି
ବୋଇଲେ ନୃତ୍ୟକୁ ତ ନଇଲେ ଫାଲ୍‌ଗୁନି ।୧୮
ଶୁକମୁନିଂକ ବଚନେ ହସିଲେ ସହସ୍ରାକ୍ଷ
ଯେ ନୃତ୍ୟ କରନ୍ତା ମୁନି ହୋ ସେ ପ୍ରତକ୍ଷେ ବିବସ୍ତ ।୧୯
ଅର୍ଜୁନ ମୁଖ ଚାହିଂ ନୃତ୍ୟେ ମୋହ ହୋଇଲେ ଅପଛରୀ
ଅଙ୍ଗ ଡାଳନ୍ତେ ଉର୍ବଶୀ ଅର୍ଜୁନକୁ ଧଇଲା କୋଳକରି ।୨୦
ବାବୁ ଆମ୍ଭେ କଷ୍ଟେ କଷ୍ଟେ ସାଧିଲୁ ଯେହୁ ବିଦ୍ୟା
ଆମ୍ଭନ୍ତ ପ୍ରାପତ ନୋହିଲା ଯେତେ ମୁଦ୍ରା ।୨୧
ଉର୍ବଶୀ ବୋଇଲେ ବର ମାଗ ସର୍ବସାଚୀ
ଗୁଣକୁ ଭାବିଲେ ଦେବତା ପ୍ରସ୍ତାବେ ଯେ ଅଛି ।୨୨
ଉର୍ବଶୀର ବଚନେ ବୋଇଲେ ଧନୁର୍ଜୟେ
ଶାପ୍ୟକୁ ଅନୁଗ୍ରହ କରସି ଗୋ ମାୟେ ।୨୩

ଅର୍ଜୁନ ବୋଇଲେ ଆନ ବରେ କାର୍ଯ୍ୟ ନାହିଁ
ତୋହୋର ବଚନେ ମୁହିଁ ନପୁଂସକ ହୋଇ ।୨୪
ନପୁଂସକ ହୋଅ ବୋଲି ବୋଇଲୁ ମହାତ୍ମାଣୀ
ଯେଥକଇଂ କାରଣ ମୋତେ କରିବା ଯେହିକ୍ଷଣି ।୨୫
ଉର୍ବଶୀ ବୋଇଲେ ତୋତେ ପୁରୁଷ ଲକ୍ଷଣ ହୋଉ ପରାପତ
ରତିଶାହାସ୍ର ନୃତ୍ୟବିଦ୍ୟା ଉର୍ବଶୀ ଶିଖାଇଲେ ସମସ୍ତ ।୨୬
ଉର୍ବଶୀର ମୁଖଚାହିଁ ଯେ ବଦୟନ୍ତି ଶୁକମୁନି
ସର୍ବଗୁଣେ ସୁଲକ୍ଷଣ ତୁ କରାଇଲୁ ଫାଲଗୁନି ।୨୭
ଉର୍ବଶୀ ବୋଇଲେ ମୁଂ ଯେହାକୁ କଲାଇଂ ପରମାର୍ଥ
ମୋହୋର ବିପାକ କର୍ମେ ଯେ ମୋତେ ନୋହିଲା
ପରାପତ ।୨୮
କୋପେଣ ଶାପ ମୁହିଁ ଦିଲାଇଂ ଅର୍ଜୁନକୁ
ରାଗେଣ ବୋଇଲି ନପୁଂସକ ଲକ୍ଷଣରେ ପାଥ ହୋଉ ତୁକୁ ।୨୯
ଅର୍ଜୁନ ବୋଇଲା ତୁ ମୋହୋର ନିଜ ମାତା
ମହତଂକର କୋପ କାଳେଣ ପରମହିତା ।୩୦
ମୁହିଁ ଯେ ପାଞ୍ଚବରଷ ବଞ୍ଚିଲି ଅମରେ
ଅପକ୍ଷରୀଯେ ଅନେକ କଷୋର କଲେ ମୋରେ ।୩୧
ମୁହିଁ ଯେବେ ତୋହୋର ଶାପ୍ୟ ପାଇଣ ନ ଥାନ୍ତି
ଯେମାନଙ୍କ ତହୁଂ ମୁଂ କେହେନେକେ ଉବୁରନ୍ତି ।୩୨
ଅମର ବିଦ୍ୟାଧରୀ ଗୋ ସବୁରି ପ୍ରିୟବତୀ
ଅବଶ୍ୟ ଦ୍ୱନ୍ଦ ହୁଅନ୍ତା ମୁଂ ସଞ୍ଚୟେ ନାଶଯାନ୍ତି ।୩୩
ତୁ ମୋହୋର ମାତା ଗୋ ଗୁଣେ ଗୁଣ ହିତା
ଯେ ଦୁସହ କଷଣୁଂ ମୋତେ ତୁହି ସେ ଉଦ୍ଧାରନ୍ତା ।୩୪
ଉର୍ବଶୀ ବୋଇଲେ ତୁମ୍ଭେ ଶୁଣିମା ଶୁକମୁନି
ଦୋଷ ଛାଡ଼ିଣ ଗୁଣ ଘେନିଲାନି ଫାଲଗୁନି ।୩୫
ମୋହୋର ଶାପ୍ୟ ତୋତେ ହୋଇବ ପରମହିତ
ଯେବେ ତୋତେ ପୁରୁଷ ଲକ୍ଷଣ ହୋଉ ପରାପତ ।୩୬
ଉର୍ବଶୀ ବୋଇଲେ ଶୁକ ତୁମ୍ଭେ ସାବଧାନେ ଶୁଣ
ଯେ ନୃତ୍ୟ ଶିଖାଇଲୁ ଯେହାକୁ ହୋଇ ବଡ଼ ଗୁଣ ।୩୭
ବିରାଟ ରାଜ୍ୟେ ଅଜ୍ଞାତବାସେ ବଞ୍ଚିବେ ବରଷେ ତେରଦିନ ପରିୟନ୍ତେ
ନପୁଂସକ ଲକ୍ଷଣ ତହିଁ ଲାଗିବ ଯୁଗତେ ।୩୮
ଉତ୍ତରା ବାଳୀକି ତହିଁ ଶିଖାଇବ ନୃତ୍ୟ
ତହିଁ ସେ ଜାଣିମନା ଶାପ୍ୟର ଗୁଣହିତ ।୩୯
ଶୁକମୁନି ବୋଇଲେ ତୁ ଅମଳାଣ ମହାସତୀ
ମନୋହର ବନେ ରଜୋବତୀ ହୋଇଛନ୍ତି ଦ୍ରୋପତୀ ।୪୦

ଯୁଦ୍ଧେଷ୍ଠି ଦେବେ ଆମ୍ଭନ୍ତ ସମ୍ଭାଦିଲେ ରାଇ
ଆମ୍ଭେ ଆସିଅଛୁଂ ଅର୍ଜୁନକଇଂ ନେମାପାଇଂ ।୪୧
ଶୁଣିଣ ପରମ ସାନନ୍ଦ ଯେ ହୋଇଲା ଉର୍ବଶୀ
ଯାଅସି ଫାଲଗୁନି ଜଗୁଜନେ ଅଜୟେ ହୋଅସି ।୪୨
ଯେତେକାଳ ମୂର୍ଚ୍ଛିଲାନି ତୋତେ ଦ୍ରୋପଦ ଦୋହିତ
ଯେଘାନ୍ତି ହୋଉ ତାକୁ ପଞ୍ଚପୁତ୍ର ପରାପତ ।୪୩
ଉର୍ବଶୀରତହୁଂ ପାଥ ପାଇଣ ହିତକଥା
ଅର୍ଜୁନର ମନରୁ ଛାଡ଼ିଲାକ ସକଳ ବ୍ୟଥା ।୪୪
ଇନ୍ଦ୍ରଦେବତାଙ୍କ ଆଗେ ଉର୍ବଶୀ କହିଲେ
ଅର୍ଜୁନେ ନେମାକୁ ଧର୍ମେ ଶୁକ ମୁନିଂକି ପେଷିଲେ ।୪୫
ତହୁଂ ଇନ୍ଦ୍ର ଦେବତା ବିଶ୍ୱଦେବ ପଞ୍ଚ ପୁରୁଷନ୍ତ ରାଇ
ଦ୍ରୋପତୀ ଉଦରେ ତୁମ୍ଭେ ପ୍ରବେଶ ହୋଅ ଯାଇଂ ।୪୬
ପାର୍ଥିବର ବଂଶେ ତୁମ୍ଭେ ପାଞ୍ଚେହେଂ ହୋ ଜାତ
ବିଶ୍ୱାମିତ୍ରଂକର ଶାପୁଂ ତୁମ୍ଭେ ହୋଅସି ମୁକତ ।୪୭
ଇନ୍ଦ୍ର ଦେବତା ସେ ଅର୍ଜୁନକୁ କୋଳେ ଘେନି
ବାବୁ ନୃତ୍ୟରେ ମୋହିଲୁ ମୋତେ ବର ମାଗ ଫାଲଗୁନି ।୪୮
ଅର୍ଜୁନ ବୋଇଲା ଆନ ବରେ କାର୍ଯ୍ୟ ନାହିଁ
ବଜ୍ର ଛତଂରୀ ଅମୃତ କୁଣ୍ଡଳ ଅଭେଦ କପଚ କର୍ଣ୍ଣତହୁଂ ଆଣି
ଦେବଟି ଗୋସାଇଂ ।୪୯
ଅନେକ ପୁରୁଷାର୍ଥ କଲେକ ଅର୍ଜୁନକୁ ଅମରେ ସୁରପତି
ଧନ୍ୟ ଅର୍ଜୁନ ବୋଲି ମୁଖେ ଚୁମ୍ବନ ଦିଅନ୍ତି ।୫୦
ପୁଷ୍ପେକ ବିମାନ ହକରାଇଣ ମଘବାନ
ଅର୍ଜୁନକୁ ଛାଡ଼ିଆସ ଯାଇଂ ତୁ ବହନ ।୫୧
ମାତଳିକି ରାଇଣ ଆଗ୍ୟାଂ ଦିଲେକ ସୁରପତି
ବିମାନେ ବସାଇ ମାତଳି ଚଳଇ ତତକ୍ଷଣାନ୍ତି ।୫୨
ଆହୋ ଯୁଦ୍ଧେଷ୍ଠି ଦେବ ବିଜେ କରିଅଛନ୍ତି ଗଣ୍ଡକୀ ନଦୀ ସନ୍ନିଧାନେ
ତହିଁ ଯାଇଂ ପ୍ରବେଶ ହୋଇଲେ ପୁଷ୍ପେକ ବିମାନେ ।୫୩
ଯୁଦ୍ଧେଷ୍ଠି ଦେବଂକର ଯେତେ ଦୂରୁଂ ଦିଶିଲା ଆସନ
ନିଉଛାଳି କରିଣ ଯେ ଶୁତିଲା ଅର୍ଜୁନ ।୫୪
ଆସ୍ତାନ ତେଜ୍ୟାକରି ଯେ ଉଠିଲେ ଯୁଦ୍ଧେଷ୍ଠି
ଦେଖିଲେ ଅର୍ଜୁନ ଶିରେ ଅଛି ମୁକୁଟ କିରଟୀ ।୫୫
ବାବୁ ଅର୍ଜୁନ ରେ ଯେ ମୁକୁଟ ପାଇଲୁ ତୁ କାହିଁ
ଇନ୍ଦ୍ର ଗୋବିନ୍ଦ ବିନୁଂ ଆନ ବହନ୍ତା କେହି ନାହିଁ ।୫୬
ଅର୍ଜୁନ ବୋଇଲା ଦେବ ନିର୍ବାତକପଚ ବଧ ଅର୍ଥେ
ଭଜିଣ ସୁରନାଥ ବାନ୍ଧିଲେ ମୋର ମାଥେ ।୫୭

ଯୁଝେଷ୍ଠି ବୋଇଲେ ନ ପୁଣ କୋପ କରନ୍ତି ବାସୁଦେବ
ହରିଂକି ଅପ୍ରୀତି ହୋଇଲେ ସମସ୍ତ ଅଭାବ ।୫୮
ବାବୁ ଅର୍ଜୁନରେ ସୋହୋଦ୍ରା କୋଳେ ହୋଇଲା ପୁତ୍ର ଜାତ
ସହଦେବ କହିଲେ ଆମ୍ଭେ ନିହାଇ କରୁଂ ସତ୍ୟ ।୫୯
ଶ୍ରୀହରି ଅଇଲେ ସେ ଜାଣିମା ବାରତା ତତ୍ତ୍ୱ କରି
ଆଗ୍ୟାଂଯେ ମନ୍ତ୍ରୀବର ଶ୍ରୀ ନାରାୟଣଂକୁ ସୁମରି ।୬୦
ଧ୍ୟାନେଣ ଜାଣିଲେ ହରି କମ୍ପିଲା ଆସନ
ଖଗେଶ୍ୱର ବାହାନେ ବିଜୟେ ଭଗବାନ ।୬୧
ପାଣ୍ଡବେ ରହିଛନ୍ତି ମନୋହର ବନେ
ତହିଂ ଯାଇଂ ପ୍ରବେଶ ହୋଇଲେ ଦେବ ଜନାର୍ଦ୍ଦନେ ।୬୨
ଗଣ୍ଡୁକୀ ନଦୀତୀରେ ପବନର ଚାଟ
ଶାଳଗ୍ରାମ ଶିଳାଘେନି ଖେଳୁଛନ୍ତି ନାଟ ।୬୩
ଖଗେବର ପିଠିରେ ଯାଇଂ ଦେଖନ୍ତି ମଧୁହାରୀ
ଗରୁଡ଼ ପିଠି ତେଜ୍ୟାକରି ଭୀମସେନକଇଂ କୋଳକରି ।୬୪
ହରି ବୋଇଲେ ଯେ ବ୍ରହ୍ମଜାତି ଶାଳଗ୍ରାମ ଶିଳା
ବାବୁ ପାଦେଣ ଠେଲାଇଣ କିମ୍ପା କରୁଅଛ ନାଟ ଖେଳା ।୬୫
ଭୀମସେନ ବୋଇଲା କେ ତୁମ୍ଭର ଶିଳା ଚିହ୍ନି
ଦୁଇଗୋଟି ପିଟିଲେ ଯେଥ ବାହାର ହୋଯେ ଅଗ୍ନି ।୬୬
ପାଦରେ ଘଷିଲେ ହାଦେ ଛାଡ଼ଇ ବଡ଼ ମଳି
ନାସିକାରେ ହାଥଦେଇ ହସନ୍ତି ବନମାଳୀ ।୬୭
ଗୋବିନ୍ଦେ ବୋଇଲେ ମୂର୍ଖ ଅଗ୍ୟାନର ହାଥେ
ହୀରାହିଂ ପଡ଼ିଲେ ତାହା ସେ ଜାଣିମ କେଉଣ ମତେ ।୬୮
ନବଲକ୍ଷ ମାଢ଼ ସୁବର୍ଣ୍ଣ ଗଉଡ଼ଂକୁ ଶ୍ରୀରାମ ବନ୍ଧାଦିଲେ
ପାଦେଣ ବାନ୍ଧି ସେହୁ ମତୁଆଳ ନାଟକଲେ ।୬୯
ଶ୍ରୀହରି ବୋଇଲେ ଯେ ଦେବତା ଅନନ୍ତ ମୂରତି
ଭୀମସେନ ବୋଇଲା ମୁଁ ପ୍ରକୃତି ଶଂକା କରଇ ନିତ୍ୟେ ଯେଥି ।୭୦
ଯେହା ଶୁଣି ହସିଲେ ଯେ ଦେବ ହୃଷୀକେଶ
ଅଗ୍ୟାନୀ ମୁଢ଼ଂକର ଦେବତାଯେ ନ ଧରନ୍ତି ଦୋଷ ।୭୧
ଭୀମସେନର ହାଥ ଧରିଣ ଦେବ ବନମାଳୀ
ଯୁଝେଷ୍ଠି ଦେବଂକ ଚରଣେ କରନ୍ତି ନିଉଛାଳି ।୭୨
ଅନେକ ବିନୋୟୀ ଯେ ବହୁତ ତୁଷ୍ଟି ବୋଲି
ଛାମୁରେ ଜଗନ୍ନାଥେ ଶୁତିଲେ ଗଡ଼ଘାଳି ।୭୩
ଯୁଝେଷ୍ଠି ଦେବେ ଯେ ବହୁତ କଲ୍ୟାଣ ବାଞ୍ଛ
ଆପଣେ କୋଳ କରି ଧଇଲେ ଶ୍ରୀବସ୍ତ ।୭୪
ସମସ୍ତ କୁଶଳ ଯେ ପଚାରନ୍ତି ଦେବ ଧର୍ମେ
ଗୋବିନ୍ଦେ ବୋଇଲେ ଦେବ ଅର୍ଜୁନର ହୋଇଲାକ
ପୁତ୍ର ଜନ୍ମେ ।୭୫
ତ୍ରଇଲୋକ୍ୟ ସୁନ୍ଦର ଯେ ଅଟଇ ସେହୁ ତନୁ
ଗୁଣବନ୍ତ ଦେଖି ତାହାର ନାମ ଦିଲୁଂ ଅଭିମନ୍ୟୁ ।୭୬
ବହୁତ ସାନନ୍ଦ ଯେ ହୋଇଲେ ଧର୍ମସୁତେ
ଗଣ୍ଡୁକୀରେ ଦାନଦିଲେ କୁମର ଜାତ ନିମନ୍ତେ ।୭୭
କିରଟୀ ମୁକୁଟ ଅଛି ଅର୍ଜୁନର ମାଥେ
ଦେଖିଣ ଅନେକ ହରଷ ହୋଇଲେ ଜଗନ୍ନାଥେ ।୭୮
ବାବୁ ତୁହି ଯେ ମୁହିଂ ସେ ଅଟଇଂ ଯେକ ଆତ୍ମା
ଯେ କିରଟୀ ମୁକୁଟ ବହି ନୁଆରନ୍ତି ବେଦବ୍ରହ୍ମା ।୭୯
ଇନ୍ଦ୍ର ଗୋବିନ୍ଦ ଆମ୍ଭେ ହୋଇଥିଲୁ ସିନା ବେନି
ତୋତେ ଘେନି ଯେବେ ଆମ୍ଭେ ହୋଇଲୁ ଜଣ ତିନି ।୮୦
ନିର୍ବାତକପଚ ମାରି ଉଦ୍ଧରିଲୁ ତିନିପୁର
ଆନ କିସ ବାବୁ ତୋତେ ଦିଲେ ପୁରନ୍ଦର ।୮୧
ଅର୍ଜୁନ ବୋଇଲେ ମୋତେ ବହୁତ କଲେ ଅନୁରାଗ
ବୋଇଲେ ତ୍ରିପୁତି ହୋଇଲୁ ପାଥ ବର ମୋତେ ମାଗ ।୮୨
ମୁହିଂ ବୋଇଲି ପିତା ଅନୁଗ୍ରହ ଯେବେ ହୋଇଲା ତୁମ୍ଭର
କର୍ଣ୍ଣରତହୁଂ ଆଣିଦେବୁଂ ଅମୃତ କୁଣ୍ଡଳ ବଜ୍ରଛଉଂରୀ ଅଭେଦ
କପଚ ମଣିସାର ।୮୩
ଇନ୍ଦ୍ରଦେବତା ବୋଇଲେ ତୁ ସୁମରିବୁ ଯେତେବେଳେ
ଆଣିମି ତିନିପଦାର୍ଥ ବୋଇଲେ ଆଖଣ୍ଡଳେ ।୮୪
ଗୋବିନ୍ଦେ ବୋଇଲେ ବରମାଗିଲୁ ଯେତେବେଳେ
ସଭାରେ ବସିଥିଲେ କେଉଣ ଦିଗପାଳେ ।୮୫
ଅର୍ଜୁନ ବୋଇଲେ ନିର୍ବାତକପଚକୁ ବଧକରି
ସାନନ୍ଦେ ଦେବତାମାନେ ସମସ୍ତେ ଥିଲେ ପୂରି ।୮୬
ବ୍ରହ୍ମାରୁଦ୍ର ଆଦି କୁବେର ପବନ
ଚନ୍ଦ୍ର ସୂର୍ଯ୍ୟ ଆଦିକରି ସମସ୍ତ ଦେବଗଣମାନ ।୮୭
ଜଗନ୍ନାଥେ ବୋଇଲେ ସଭାରେ ଯେବେ ଥିଲେଟି ଆଦିତ୍ୟ
କର୍ଣ୍ଣକଇଂ କହିବେ ଯାଇଂ ଯେସନେକ ବୃତ୍ତାନ୍ତ ।୮୮
ତୋହୋର ନିମନ୍ତେ କର୍ଣ୍ଣତହୁଂ ଆଣିମେ ତୋର ପିତା
ଅବଶ୍ୟ କହିବ କର୍ଣ୍ଣକୁ ଆଦିତ୍ୟ ଦେବତା ।୮୯
ନାରାୟଣ ବୋଇଲେ ତୁ ମାଗିଲୁ ମନ୍ଦବେଳେ
ବଡ଼ ନିରାଧାର କଥା ଗଲାକ ନିଷ୍ଫଳେ ।୯୦

ଯୁଝେଷ୍ଟି ବୋଇଲେ ସେ ଯେ ମହାଦାନୀ କର୍ଣ୍ଣ
ଜାଣିଲେହେଁ ଅବଶ୍ୟ ଦେବଟି ମଘବାନେ ଦାନ ।୯୧
ଗୋବିନ୍ଦ ବୋଇଲେ ମୋହୋର ବଚନ କରିବା
ଦେବ କି ନ ଦେବ କର୍ଣ୍ଣର ତହିଁକି ଗୁପତ ରୂପେ ଯିବା ।୯୨
ଗୋବିନ୍ଦ ବୋଇଲେ ଦେବ କାଲି ମୁହିଁ ଯିବି
ବ୍ରାହ୍ମଣ ରୂପ ଧରିଣ ଦାନ ଯେ ମାଗିବି ।୯୩
ଯେକଗୋଟି ପୁତ୍ର ତାର ବିଶି ଯେ କେଶନ
ତାହାକୁ ମାରିଣ ମୋତେ ଦେବାକ ଭୋଜନ ।୯୪
ସେ ପୁତ୍ର ମାରିଣ ଯେବେ ଭୋଜନ ଦିଅଇ ମୁକୁ
ତେବେ ସେ କପଚ କୁଣ୍ଡଳ ଦେବ ଇନ୍ଦ୍ର ଦେବତାଂକୁ ।୯୫
ବ୍ରାହ୍ମଣ ସରୂପ ଧରି ଦେବ ଜନାର୍ଦ୍ଦନ
ଅଙ୍ଗଦେଶେ ପ୍ରବେଶ ହୋଇଲେ ମଧୁ ଯେ ସୂଦନ ।୯୬
ଆପଣାର ନିଜ ଶରୀର କଲେକ ଗୋପ୍ୟ
ହୋଇଲେ ନାରାୟଣ ବ୍ରାହ୍ମଣ ସରୁପ ।୯୭
ତ୍ରିକଚ୍ଛ ବସନ ଲମ୍ବିତ କୁଡ଼ାଗୋଟି
ଦ୍ୱାଦଶ ଚିତା କାଟି ଶ୍ରୀବତ୍ସ ଲାଞ୍ଛନ ଦିଶେ ଫୁଟି ।୯୮
ଶ୍ରୀଅଙ୍ଗେ ଶୋଭାବନ ପବିତ୍ରା ଉତୁରି
ତାମ୍ର ବର୍ଣ୍ଣ ପ୍ରାୟେକ ସରୂପ ଶ୍ରୀହରି ।୯୯
ରକତ କୁମୁଦ ପ୍ରାୟେ ବେନି ଯେ ଲୋଚନ
ଅଣଚାଳିଶ ସଂସ୍କାରେ ବିପ୍ରର ଲକ୍ଷଣ ।୧୦୦
ଧୋତି ଛତା କାନ୍ଧେ କାଖେଣ ବେଦପୋଥି
ଗଡୁ ତମ୍ବାପାତ୍ରୀ ଯେ କରେ ଜପାମାଳି ଶୋଭାପାନ୍ତି ।୧୦୧
ହାତେ କୁଶବଟୁ କାଖେ ବେଦକରାଣ୍ଡି
ରୁଦ୍ରାକ୍ଷ ତୁଳସୀମାଳ ଅଣ୍ଟାରେ କୁଶବିଡ଼ି ।୧୦୨
ସମାର୍ଜ୍ଜନେ ଅଧାନେ ଗୋପ୍ୟାନ ଦୋହୋରା
ଭଗବନ୍ତ ବିପ୍ରରୂପ ଛଦ୍ମେ ହାଥରେ ପ୍ରୋକ୍ଷଣୀ ସୁରା ।୧୦୩
ଋକ୍ ଯଜୁ ସାମ ଅର୍ଥବ ଚାରିବେଦ
ଅଜପା ଗାୟତ୍ରୀ ମହାମନ୍ତ୍ର ରୁଦ୍ର ।୧୦୪
ସେ ଜନାର୍ଦ୍ଦନ ପଣ୍ଡାଂକର ଶ୍ରୀଚରଣେ ଶରଣ ମୋର ନିତ୍ୟ
ଶୂଦ୍ରମୁନି ସାରୋଳା ଦାସ ଭକ୍ତି ସଂସାର ଜନହିତ୍ୟେ ।୧୦୫
ଶୁଣ ହୋ ବଇବସୁତ ମନୁ ପୁରୁଷ ଯେ ନାରାୟେଣଂକ କଉତୁକ
କୁତୂହୋଳେ ଯେକ ମୂର୍ତ୍ତିକା ସରୂପ ଅନେକ ।୧୦୬
ଆହାନିକ ବେଳେ ପ୍ରବେଶେ ବେଳ ସାତଘଡ଼ି
ଶତେଭାର ସୁବର୍ଣ୍ଣ କର୍ଣ୍ଣ ଦିଅଇ ନିତ୍ୟେ ଦାନ ବାଢ଼ି ।୧୦୭
ବଇତରଣୀ ଉତ୍ତରକୂଳେ କର୍ଣ୍ଣର ଅଙ୍ଗଦେଶ
ଗାଢ଼େ ପାଦ ପଡ଼ନ୍ତେ ବସୁଧା ପାଇ ତ୍ରାସ ।୧୦୮
ଧୀର ଧୀର କରି ପାଦ ବଢ଼ାଇବା ନିମନ୍ତେ
ଡରେ ବସୁଧା ଲାଞ୍ଛ ଦିଅଇ ସୁବର୍ଣ୍ଣ ଭାର ଶତେ ।୧୦୯
ଯେତେକ କର୍ଣ୍ଣ ଦାନ ଦିଅଇ ନିତ୍ୟେ ସବୁ
ମହାଦାନୀ କର୍ଣ୍ଣ ସେ ଅଟଇ ମହାପ୍ରଭୁ ।୧୧୦
ଯୁଗତେ ମକର ମାସ ଶୁକଳ ପକ୍ଷ ଚଉଠୀ
ରେବତୀ ନକ୍ଷତ୍ର ବେଳ ସାତ ଘଡ଼ି ଘଟି ।୧୧୧
ଭଉମବାର ସେଦିନ ଶୋଭନ ନାମେ ଯୋଗ
କର୍ଣ୍ଣର ଦୁଆରେ ଯାଇଂ ବିଜୟେ ଶ୍ରୀରଙ୍ଗ ।୧୧୨
ଦ୍ୱାରେ ଥାଇଂ ଦେବ କରନ୍ତି ବେଦଧ୍ୱନି
ଯଜମାନ ଆଷ୍ୟବାକ୍ୟ ବିଭୁଛିତ କାଣ୍ଡ ଘେନି ।୧୧୩
କାଣ୍ଡିର ଆଗେ ଯାଇଂ କହିଲେ ଦୂତିକାରେ
ସ୍ୱାମୀ ବିଭୁଛିତ ବ୍ରାହ୍ମଣେକ ବସିଅଛି ଦ୍ୱାରେ ।୧୧୪
ରାଧେବ ବୋଇଲେ ଛାଡ଼ ଆସନ୍ତୁ ଭିତରକୁ
କ୍ଷୁଧାର୍ଥୀ ବ୍ରାହ୍ମଣ ହୋଇ ଅଇଲାନି ଭୋଜନ ନିମନ୍ତକୁ ।୧୧୫
ଚାରଗଣେ କହିଲେ ପଣ୍ଡାୟେ ଠାକୁରଙ୍କର ଆଗ୍ୟାଂ ତୁମ୍ଭକୁ
ନିଅବକାଶେ ଯେ ରାଜା ବିଜେ ତୁମ୍ଭେ ଆସ ଭିତରକୁ ।୧୧୬
ବ୍ରାହ୍ମଣ ବୋଇଲା ମୁଂ ନ ଯାଇଂ ଭିତରକୁ
କର୍ଣ୍ଣ ଆସଇ କିନାରେ ମୋହୋର ଛାମୁକୁ ।୧୧୭
ଯେତେ ବୋଲି ସ୍ୱାମୀ ଗାଢ଼େ ସାମବେଦ ଧ୍ୱନି କଲେ
ନିଅବକାଶ ମନ୍ଦିରେ କର୍ଣ୍ଣର ଆସନ କମ୍ପିଲେ ।୧୧୮
କର୍ଣ୍ଣ ବୋଇଲା ବ୍ରାହ୍ମଣ ଅଟଇ ବଡ଼ କକ୍ଷାବନ୍ତ
ବେଦ ଆଧାନ କରନ୍ତେ କମ୍ପିଲା ମୋର ଗାତ୍ର ।୧୧୯
ଶ୍ରୀକରେ ରତ୍ନଝରୀ ଘେନିଣ କର୍ଣ୍ଣ ଯେ ଆପଣ
ବ୍ରାହ୍ମଣ ଚରଣ ଆସି କଲେକ ପଖାଳଣ ।୧୨୦
ଭିତରକୁ ବିଜେକରି ଯିବା ହେ ପଣ୍ଡାୟେ
ବ୍ରାହ୍ମଣ ବୋଇଲା ଆମ୍ଭେ ଥାଉ କିନା ଯେହିଠାୟେ ।୧୨୧
କର୍ଣ୍ଣ ବୋଇଲା ମୋତେ ଆଉ କଟାଳ ନ କରିବା
ଭୋଜନ କରି ଆଜକ ମୋହୋର ପୁରେ ଥିବା ।୧୨୨
ସମସ୍ତ ଦାନଦେଇ ସାରିଲି ମୋର ଭଣ୍ଡାରେ ନାହିଁ କିଛି
ଯେକା ବସ୍ତ୍ରେ ମାତ୍ର ପିନ୍ଧି ବସିଅଛି ।୧୨୩
ଆଜ କିଛି ପଣ୍ଡାୟେ ଦେବାକଇଂ ନୁହଇ କ୍ଷମ
କକ୍ଷଣକଯେ ମୋତେ ନାଶଯିବ ସର୍ବ ଧର୍ମ ।୧୨୪

କାଲି ପ୍ରାର୍ଥନା ମୋତେ କରିବା ସକାଳେ
ଶତେଭାର ସୁବର୍ଣ୍ଣ ମୁଂ ତୋତେ ଦେବଇଂ ଯେକାବେଳେ।୧୨୫
ଅନେକ କାଳ ହୋଇଲା ମୁଂ ଦେଉଅଛି ଦାନ
ତୋହୋର ପ୍ରାୟେ ବେଦଗ୍ୟାନୀ ନାହିଂନା ସମାନ ।୧୨୬
ମୋହୋର ପ୍ରାୟେ ଦାନୀ ତୋହୋର ପ୍ରାୟେ ବ୍ରାହ୍ମଣକୁ ଦାନ ଦେବି
ସାତ ପୁରୁଷ ପରିଯନ୍ତେ ତୋହୋର ଦାରିଦ୍ର ନ ଥୋଇବି ।୧୨୭
ସୁଭାଗ୍ୟ କର୍ମ ତୋର ଭେଟିଲୁ ଯେ ମୋତେ
ଆନବେଳେ କାହାକୁ ଦାନ ନ ମାଗିବୁ ତଳହାଥେ ।୧୨୮
ପଣ୍ଡାୟେ ବୋଲେ ତୁ ଦାନେ ଶୂରବନ୍ତ କର୍ଣ୍ଣ
ରହିଲି ଆଜକ ମୋତେ ତୁ ଦିଅସି ଭୋଜନ ।୧୨୯
ଯେମନ୍ତେ ଆମ୍ଭର ସନ୍ତୋଷେ ପୂରୋଇ ମନ
ତେମନ୍ତ କରିଦେଇ ପାରିବୁଟି କି ଭୋଜନ ।୧୩୦
କର୍ଣ୍ଣ ବୋଇଲା ବିପ୍ର ତୋତେ ଯେମନ୍ତ ଅଣ୍ଟଇ
ମୁହିଂ ସେ ତୋତେ ଭୋଜନେ ତ୍ରିପୁତି କରିବଇଂ ।୧୩୧
ସତ୍ୟ ସତ୍ୟ ଅଟେ ମୋହୋର ସତ୍ୟ ତିନିବାର
କପିଳା ମାଇଲା ଦ୍ରୋହୋ କରଇ କରତାର ।୧୩୨
ମୁହିଂ ମହାରାଜା ତୁ ବ୍ରାହ୍ମଣ ଯେକଗୋଟି
ସଂକଳ୍ପ କଲଇଂ ଦେବି ଯେତେକ ତୋତେ ଅଣ୍ଟି ।୧୩୩
ତାହାଣାବ୍ରତେକ ଶଙ୍ଖେ ଭରି ଜଳ ତିଳ
କେତେ ନିଷ୍ଠାକରୁ ବିପ୍ର ଅନ୍ନ ଯେକବେଳ ।୧୩୪
ବ୍ରାହ୍ମଣ ଘେନି କର୍ଣ୍ଣ ଗଲେ ନିଜ ପୁରୀ
ଚନ୍ଦ୍ରଶାଳା ମନ୍ଦିରେ ରାଂଧଣାକୁ ଠାବକରି ।୧୩୫
କନେକ ନିମତ ହାଣ୍ଡି ଆଣି ଦିଲେ ଯୋଗାଡ଼ରେ
ଲକ୍ଷ୍ମୀ ନାରାୟଣ ତଣ୍ଡୁଳ ଥୋଇଲେ ଛାମୁରେ ।୧୩୬
ନାଡ଼ି ପତ୍ର କଳାମୁଗ ଗୁଆଘୃତ ଲବଣୀ
ଅଦା ନଟୀକାଳ ଦଧି ସହିତେ ଜୁଆଣୀ ।୧୩୭
ଆଖୁ ଅମୃତ ପାଣି କଦଳୀ ଗଙ୍ଗବାଣ ପଇଡ଼
ଓଲୁଅ ସାରୁ ଆଳୁ ଜିରା, ହେଙ୍ଗୁ ମେଥି ଆଦିକରି ଯୋଗାଡ଼ ।୧୩୮
ପାଚିଲା ଜେଉଟ କାକୁଡ଼ି ଆଦିକରି କଣ୍ଟିଆଳି
ଟଭା ନାରଙ୍ଗ ଲେମ୍ବୁ ବୃକ୍ଷରୁ ଆଣନ୍ତି ତୋଳି ।୧୩୯
ଯେମନ୍ତେ ଅନେକ ପଦାର୍ଥ କେ କହିବ ସମାର୍ଜି
କଦଳୀପତ୍ର ଆଣି ଦିଲେ ଯେମନ୍ତେ ବିପ୍ରମନ ରଞ୍ଜି ।୧୪୦
ମହାସମ୍ଭାର ଯୋଗାଡ଼ ଥୋଇଲା ରାୟେ ଆଣି
କର୍ଣ୍ଣର ପୁତ୍ର ବିଶିକେଶନ ଯୋଗାଇଲା ପାଣି ।୧୪୧
ଶଉଚବନ୍ତ ହୋଇ ରାନ୍ଧଣା କର ହୋ ପଣ୍ଡାୟେ
ମୋତେ ମୁଣୋହି ନାହିଂ ତୁମ୍ଭର ଭୋଜନ ନ ସରିବା ଯାୟେ।୧୪୨
ବ୍ରାହ୍ମଣ ବୋଇଲା ତୁ ସାର୍ଥୁକ ଦାନୀ କର୍ଣ୍ଣ
ଅତିଥି ବସାଇ ଆପଣେ କି କରିବୁ ଭୋଜନ ।୧୪୩
ବ୍ରାହ୍ମଣ ମୁଖଚାହିଂ ବୋଲଇ କର୍ଣ୍ଣ ମହାରଥି
ଯେମାନ ଦେଖି ତୁମ୍ଭେ କି ନୋହିଲ ତ୍ରିପୁତି ।୧୪୪
ଆମିଷ ଯୋଗାଡ଼ ତୁମ୍ଭେ ଲୋଡ଼ କି ପଣ୍ଡାୟେ
ବ୍ରାହ୍ମଣ ବୋଇଲା ମୋର ରୋଗ ପ୍ରବଳକାୟେ ।୧୪୫
ଆବର ବିଶେଷେ ନରସିଂଘ କବଚ ବେଦୀ
ଆମିଷ ଭୋଜନେ ଯେ ପିଣ୍ଡ ହୋୟେ ସିଦ୍ଧି ।୧୪୬
କର୍ଣ୍ଣ ବୋଇଲା ଯେ କଥା ଶୁଣିଲା ମୋର ନାହିଂ
ବ୍ରାହ୍ମଣ ହୋଇ ଆମିଷ ଭକ୍ଷ କେ କରଇ ।୧୪୭
ବାବୁ ଆମିଷ ବଞ୍ଚିବାକୁ ବ୍ରାହ୍ମଣ ଅଛି କାହିଂ
ପାଣି ଯେ ଭକ୍ଷଇ ପ୍ରଥମେ ଆମିଷ ଅଟଇ ସେହି ।୧୪୮
କର୍ଣ୍ଣ ବୋଇଲା ପଣ୍ଡାୟେ କହିଲନି ଅପାର
ନାମ ଗୋତ୍ର କିସ ତୁମ୍ଭର କେବଣ ଦେଶେ ଘର ।୧୪୯
ଗୋବିନ୍ଦ ବୋଇଲେ ହୋ ଯମୁନା ନଦୀର କୂଳେ
ନିଷାଦପୁର ବୋଲି ନଗ୍ରେକ ପରିମଳେ ।୧୫୦
ଗୋପାଳଂକ ପ୍ରକୃତି ସମସ୍ତ ତହିଂ ମିଶି
ମତ୍ସ୍ୟଗୋତ୍ର ଆମ୍ଭର ମଥୁରା ପୁରବାସୀ ।୧୫୧
ବସୁକଳ୍ପ ପଣ୍ଡା ବୋଲି ଅଟନ୍ତି ହାଦେ ତାତ
ଦଇବକୀ ବୋଲି ଆମ୍ଭର ଗର୍ଭଧାରୀ ମାତ ।୧୫୨
ଚତୃବେଦ ଆମ୍ଭର ନିଜ ପିତୃକର୍ମ
ସାକ୍ଷାତେ ମୋହୋର ଯେ କହ୍ନାଇ ପଣ୍ଡା ନାମ ।୧୫୩
କୁଳଗୋତ୍ର ବେଦମନ୍ତ୍ର କିସ କଷଣ କରୁ ମୋତେ
ଅନେଶ୍ୱତ କାଣ୍ଡି ପରିଯନ୍ତେ ଜାଣଇ ପାଠମନ୍ତେ ।୧୫୪
ନରସିଂଘ କପଚ ମନ୍ତ୍ରେ ପଶିଲୁ ଭକ୍ତଭାବେ
ଆମିଷ ଭୋଜନେ ସେ ତ୍ରିପୁତି ହେଉ ଆମ୍ଭେ ।୧୫୫
କର୍ଣ୍ଣ ବୋଇଲା ପଣ୍ଡାୟେ ଜାଣିଲି ମହାବାକ୍ୟ
ଆରେ ବିଶିକେଶନ ବନୁ ମାରିଆଣ ହରିଣ ଛାଗଳେକ ।୧୫୬
କୃଷ୍ଣଛାଗଳ ତିନି ହରିଣ ଗୋଟାଚାରି
ଛାମୁରେ କେଳାଇଲା ମାୟେଂସ ଲୋଚି କରି ।୧୫୭
ଆମ୍ବିଳା ପାଚଲା ମହୁର ଶାକର ଭଜା
ରାନ୍ଧିଲେ ପଣ୍ଡାୟେ ତୁମ୍ଭଂକୁ ଯେମନ୍ତେ ହୋୟେ ଭୋଜା ।୧୫୮

ତଦ୍ୟାପି ତ୍ରିପୁତି ଯେ ନୋହିଲା ବିଦୂଜନ
ଆଉର କିସ ଲୋଡ଼ ପଣ୍ଡାଯେ ବୋଲଇ ବୀରକର୍ଣ୍ଣ ।୧୫୯
ବ୍ରାହ୍ମଣ ବୋଇଲେ କର୍ଣ୍ଣ ଆମ୍ଭର ଚିତ୍ତ ଯେଣେ ନ ଭଜି
ନୃସିଂହ କପଟି ଆମ୍ଭେ ମନୁମାଂସ ଭୋଜୀ ।୧୬୦
ଶୁଣିଣ ବିଷାଦ ଯେ କର୍ଣ୍ଣ ମହାରଥୀ
ମନୁମାଂସ ବୋଲିକରି ପଣ୍ଡାଯେ କେବଣ ଯୁଗତି ।୧୬୧
ବ୍ରାହ୍ମଣେ ବୋଇଲେ ନୃସିଂଘ ଯେ ବିଦାରିଲେ ହିରଣ
ବକ୍ଷସ୍ଥଳ ବିଦାରିଣ ଖାଇଲେ ଦାଢ଼େଣ ।୧୬୨
କହୁ କହୁ ନାରାୟଣ କାଳାନଳ ମୂର୍ତ୍ତି
ଦେଖିଣ କର୍ଣ୍ଣବୀର ମନେ କଲା ଭାତି ।୧୬୩
କର୍ଣ୍ଣ ବୋଇଲା ତୁମ୍ଭେ ଶୁଣ ବିଦୂଜନ
ବିନା ଅପରାଧେ ମାନୁଷ କେହ୍ନେ କରିବି ଛେଦନ ।୧୬୪
ବ୍ରାହ୍ମଣ ବୋଇଲେ ତୁ ହୋ ଶୁଣ ରାୟେ କର୍ଣ୍ଣ
ଆମ୍ଭେ ନ ମାଗିଲୁ ତୁହି ସେ ଯାଚିଦିଲୁ ଭୋଜନ ।୧୬୫
ଆଶା ଦେଖାଇ ଯେ ଆମ୍ଭନ୍ତ କରୁଛୁ ନିରାଶ
ସମସ୍ତ ଧର୍ମମାନ ତୋର ଗଲାଟି ଯେବେ ନାଶ ।୧୬୬
ଯାହାକୁ ଭୁଞ୍ଜାଇ କରି ନୁଆରିବ ତ୍ରିପୁତି
ଆବର କିମ୍ପା ଅତିଥିମାନନ୍ତ ଆଣିଲୁ ନିମନ୍ତ୍ରି ।୧୬୭
ମିଛେହେଂ ବୋଲାଉ ତୁ ଦାନେଣ ଶୂରବନ୍ତା
ଆପଣେ କହୁଥାଉ ଆପଣାର ଗର୍ବକଥା ।୧୬୮
ମୁହିଂ ଯେ ଆଶାକରି ରହିଲି ତୋହୋର ବଚନେ
କ୍ଷୁଧାରେ ଶରୀର ମୋହୋର ହେଉଛି ଦହନେ ।୧୬୯
ଆମ୍ଭର ବିଚାରନ୍ତେ ତୋର ନୋହିବ କାରଣ
କ୍ଷୁଧାରେ ବିଭୁକ୍ଷିତ ମୁହିଂ ଅଟଇ ବ୍ରାହ୍ମଣ ।୧୭୦
କର୍ଣ୍ଣ ବୋଇଲେ ପୁତ୍ର ବିଶିକେଶନର ମୁଖ ଚାହିଂ
ମାରିଆଣ ଜଣେ ମନୁଷ୍ୟ ଭୋଜନ କରନ୍ତୁ ଯେହି ।୧୭୧
ବିଶିକେଶନ ବୋଇଲା ସ୍ୱାମୀ ତୋତେ କେତେକେ ଅଣ୍ଟିବ
କେତେକ ଜନ ମାରି ଆଣିବି ବିପ୍ରଦେବ ।୧୭୨
ବ୍ରାହ୍ମଣ ବୋଇଲା ଯେକଜଣଂକର ଅଣ୍ଟଇ ମାୟେଂସ
ମାୟାକଲେ କେଶବ ସମସ୍ତ ଜନ ନଗ୍ରେ ହୋଇଲେ ଅଦୃଶ ।୧୭୩
ମନ୍ତ୍ରୀଯେକ ପାତ୍ରଯେକ ତୋହୋର ପୁତ ଭାରିଯା
ଆପଣାକୁ ଘେନି ପାଞ୍ଚଜଣ ଦେଖଇ କର୍ଣ୍ଣ ମହାରାଜା ।୧୭୪
ବ୍ରାହ୍ମଣ ବୋଇଲା ହୋ ଅକ୍ରିୟାବନ୍ତ ଯେବଣ ଜନ
ତାହାର ମାୟେଂସ ଆମ୍ଭେ ନ କରିବୁଟି ଭୋଜନ ।୧୭୫
ଅଛୁଆଂ ଅସୁର କଲା ଲୋକ ଅଜାତି
ଯେହାଂକର ମାୟେଂସେ ଆମ୍ଭେ ନୋହୁଂ ଯେ ତ୍ରିପୁତି ।୧୭୬
ନିଚଯେ ଆମ୍ଭନ୍ତ ଯେବେ ଦେବୁ ତୁ ଭୋଜନ
ଯେହି ପୁତ୍ରଗୋଟିକି ତୋର ମାରି ଦେବୁ ହୋ ରାଜନ ।୧୭୭
ଯେହାର ମାୟେଂସ ଖାଇଲେ ତ୍ରିପୁତି ହେବ ମନବାଞ୍ଛା
ତାହା ଶୁଣି କର୍ଣ୍ଣ ବଜ୍ରଘାତ ପ୍ରାୟେ ପଡ଼ିଗଲା ମୂର୍ଚ୍ଛା ।୧୭୮
କୋଳକରି ପିତାକୁ କୁମାର ଧଇଲା ଯେ ଟେକି
କମଣ୍ଡଳୁଂ ନୀର ନେଇ ସିଞ୍ଚିଲେ ଦେବ ବନମାଳୀ ।୧୭୯
ସାଷ୍ଟାମହୋଇ କର୍ଣ୍ଣ କହଇ ଅସ୍ତୁବାକ୍ୟ
ଆହୋ କହ୍ନାଇପଣ୍ଡା ତୁମ୍ଭେ ଯେଡ଼େ ଦୁଷ୍ଟଲୋକ ।୧୮୦
ବ୍ରାହ୍ମଣ ହୋଇ ତୁ ଅଟୁ ଅସୁରଅଂଶୀ
ବେଦବ୍ରାହ୍ମଣ ହୋଇ ତୁ ହୋଇଲୁ ମନୁଷ୍ୟ ମାଂସ ଆଶୀ ।୧୮୧
ବେଦ ମନ୍ତ୍ର ନିର୍ଜିତ ତୁ ଆଚାରେ ଯେଡ଼େ ଲୋଭି
ତୋହୋର ପାଇଂ କେମନ୍ତେ ମୋହୋର ଯେକାପୁତ୍ର ଗୋଟିକି ମାରିବି ।୧୮୨
ବ୍ରାହ୍ମଣ ବୋଇଲା ମୁଂ ଯାଉଅଛି କର୍ଣ୍ଣ
ତୁହି ସେ ଅତିଥିକୁ ଯାଚିଲୁ ଭୋଜନ ।୧୮୩
ଉଠନ୍ତେ ବ୍ରାହ୍ମଣ ବିଶିକେଶନ ଯାଇଂ କୋଳାଗ୍ରତ କରି
ବସିବା ଗୋସାଇଂ ଆମ୍ଭନ୍ତ କିମ୍ପା ଝିଂଘାସ କରି ।୧୮୪
ଅନେକ ବିନୋୟୀ ଯେ ବିଶିକେଶନ ବୋଲି
ବ୍ରାହ୍ମଣ ବେନି ଚରଣେ ଶୁତିଲା ଗଡ଼ଘାଲି ।୧୮୫
କରପତ୍ର ଯୋଡ଼ିଣ ବୋଲଇ ବିଶିକେଶନ
ଆବର ନିସତ କିମ୍ପା ହେଉ ପିତା କର୍ଣ୍ଣ ।୧୮୬
ଦାନେ ଶୂରନାମ ତୁହି ବୋଲାଉ ସୟଳେ
କିଂପା ନିସତ ତୁ ହେଉଛୁ ମହୀତଳେ ।୧୮୭
କର୍ମ ବୋଲି ତାତ ଆପଣେ ଯାହା କରି
ସତ୍ୟଭଗ୍ନ ପ୍ରାଣୀକି ଯେ କାହିଂରେ ନ ବରି ।୧୮୮
ଭୋ ତାତ ମୋତେ ମାରି ଭୋଜନ ଦିଅସି ବ୍ରାହ୍ମଣେ
ଯେହାନ୍ତ ତ୍ରିପୁତି କରିପାରିଲେ ତୋତେ ଅଛଇଟି ବହୁତ କାରଣେ ।୧୮୯
କର୍ଣ୍ଣ ବୋଇଲା ମୁଂ ଜାଣିଲିଣି ରେ ବାବୁ
ଅସୁର ଦାନବ ରାକ୍ଷସ ପିଚାଶ ଦତ୍ୟ ଦାନବ ରେ ମାଇଲୁ ପୁତ୍ର ସବୁ ।୧୯୦
କେବଣ ରାକ୍ଷସଟି ବ୍ରାହ୍ମଣ ରୂପ ଧରି
କୂଟେ ନାଶିତେ ଆସିଛେ ସମରେ ନୁଆରି ।୧୯୧

ବିଶିକେଶନ ବୋଇଲା ତାତ ବ୍ରାହ୍ମଣେ କିଂପା ନିନ୍ଦୁ
ଯତନେ ବରଣ କରି ଯେବେ କିଂକେ କାନ୍ଦୁ ।୧୯୨
ବସିଲା କୁମର ଯେ କୃଷ୍ଣାଜିନ ଛାଲ ମାଡ଼ି
ପୂର୍ବକୁ ମୁଖ କରି ହୃଦରେ ଶ୍ରୀହରି ସୁମରି ।୧୯୩
ବିଜେକର୍ଣ୍ଣକଟାରୀ ଘେନିଣ ଆପଣେ ବୀର କର୍ଣ୍ଣ
ଆହୋ କହ୍ନାଇ ପଣ୍ଡାଯେ ଯେହି ପୁତ୍ରକଇଂ ମୁଂ କରୁଛି ଛେଦନ ।୧୯୪
ଆରେ ଆରେ ମୋର କଗୁଜନ ସୁନ୍ଦର ପୁତ୍ରଗୋଟି
ଦେବତା ବ୍ରାହ୍ମଣେ ଭଗତ ତୁ ଦୟାସାଗର ହେଟି ।୧୯୫
ବାବୁ ଦାନେ ଶୂରବନ୍ତା ପୁତ୍ର ରେ ପରଦୁଃଖେ ଦୁଖୀ
ଦୁଷ୍ଟ ଅସୁର ଧ୍ୱଂସିଣ ସଜ୍ଜନ ତପୀନ୍ତ ରଖି ।୧୯୬
ମୋହୋର ପରାୟେ ପିତା ତୋତେ ଜନ୍ମେ ଜନ୍ମେ ନୋହୁ
ତୋହୋର ପରାୟେ ପୁତ୍ର ମୋତେ ଜନ୍ମେ ଜନ୍ମେ ହୋଇଥାଉ ।୧୯୭
ପୁତ୍ରର ଗୁଣ ସୁମରି କର୍ଣ୍ଣ ଖଡ଼୍ଗ ଧରି ଝୁଣି
ଆପଣାର ପୁତ୍ର ମୁଣ୍ଡକୁ ସେ ଖଡ଼୍ଗେ ପକାଇଲା ହାଣି ।୧୯୮
ସୁକ୍ତତାମହଳା ବୋଲି କର୍ଣ୍ଣର ଭାରିଯା
ବିଶିକେଶନ ଅଟଇ ଯେ ତାହାର ଆତ୍ମଜା ।୧୯୯
କାନ୍ଦଇ ମହାଦେଈ ଯେ ପୁତ୍ରର ବିକଳେ
ବିନୋପି ପଡ଼ିଲା ଆସି ବ୍ରାହ୍ମଣ ପାଦତଳେ ।୨୦୦
ସୁନ୍ଦର ସୁକୁମାର ସେ ମୋହୋର ତନୟେ
ପୁତ୍ର ନାଶଗଲା ମୋହୋର ତୁମ୍ଭେ ତ୍ରିପୁତି ହୁଅସି ପଣ୍ଡାୟେ ।୨୦୧
ବ୍ରାହ୍ମଣ ବୋଇଲା ଶୁଣି ଜୀବନ ତୋର ସାଧୁ ସାଧୁ
ମାତାର ସନମତ ତୁ କିଂପେ କର୍ଣ୍ଣ କାନ୍ଦୁ ।୨୦୨
କର୍ଣ୍ଣ ବୋଇଲା ପଣ୍ଡା ହେ ଜାତକଲା ପୁତ୍ରକୁ ପ୍ରତିପାଳିଲି
ଗୁଣବନ୍ତ ନନ୍ଦନକୁ ସ୍ୱୟଂ ହାଥେ ବଧକରି ।୨୦୩
ବ୍ରାହ୍ମଣ ବୋଇଲା ହାଦେ ତୁ ସୁକ୍ତତାମହଳା
ସାନ ସାନ ଖଣ୍ଡିକରି ମାୟେଂସ ଆପଣେ ତୁ କେଳା ।୨୦୪
ଆନକୁ ଛୁଆଇଂ ନ ଦେବୁଟି ହୋ ବୀର କର୍ଣ୍ଣ
ସାର୍ଥୁକ ହୋଇବ ରାଜା ତୋର ବ୍ରାହ୍ମଣ ଭୋଜନ ।୨୦୫
ବଇକୁଳ ହୋଇ ସାଷ୍ଟାମ କର୍ଣ୍ଣ ରାୟେ
କାଟିଣ ମାଂସ ସବୁ କଲା ଯେକଠାୟେ ।୨୦୬
ଆହୋ କର୍ଣ୍ଣ ଆମ୍ଳିଳ ମହୁର ପାଚଲ ଭଜାୟେ ଚାରି
ରାଣୀ ଆପଣେ ରାନ୍ଧଣା କରୁ ବୋଲି ବୋଇଲେ ମୁରାରି ।୨୦୭
ବ୍ରାହ୍ମଣେ କ୍ଷତ୍ରିୟ ଅମ୍ଭେ ନୋହୁଂ ଭିନ୍ନାଭିନ୍ନ
ତୋହୋର ଭାରିଯା ରାନ୍ଧିଲେ ଆମ୍ଭେ କରିବୁ ଭୋଜନ ।୨୦୮

ଆମ୍ଭେ ଯିବା ହୋ କର୍ଣ୍ଣ ଆହ୍ନିକ ସାରି
କର୍ଣ୍ଣକୁ ସଙ୍ଗେ ଘେନିଣ ବିଜୟେ ମଧୁହାରୀ ।୨୦୯
ଚାରି ତିଉଣ କରିଣ ରାଣୀ ରନ୍ଧନ କରିଅଛି
ପୁତ୍ରର ମୁଣ୍ଡଗୋଟି ରାଣୀ ଲୁଚାଇ ରଖିଅଛି ।୨୧୦
ସାନ୍ଧ୍ୟକର୍ମ ସାରି ଅଇଲେକ ବେଗେ ବେନି
ପାଦ ଶଉଚ କରି ଦେବ ବସିଲେ କର୍ଣ୍ଣକଇଂ ଘେନି ।୨୧୧
ବିଷ୍ଣୁ ବିଷ୍ଣୁ ବୋଲି ଜଳ ସିଞ୍ଚିଲେ ତତକ୍ଷଣ
ଆଣ ହୋ କିସ ରାନ୍ଧଣା ତୁମ୍ଭର ପାଚନ ।୨୧୨
ଛାମୁରେ ପାକନ୍ତ ଯେ ଥୋଇଲେ ରାଣୀ ଆଣି
ଚାରିପତ୍ର କରି ବାଢ଼ ବୋଲି ବୋଇଲେ ଚକ୍ରପାଣି ।୨୧୩
ବ୍ରାହ୍ମଣ ବଚନେ ସୁକ୍ତତାମହଳା
ଚାରିପତ୍ର କରିଣ ସେ ସମସ୍ତ ବାଢ଼ିଲା ।୨୧୪
ଆପଣେ ପତ୍ରେ ଆବୋରି ବସିଲେ ହୃଷୀକେଶ
ତୁ ହୋ ବୀର କର୍ଣ୍ଣ ପତ୍ରେକେଣ ବସ ।୨୧୫
କର୍ଣ୍ଣ ବୋଇଲେ ବ୍ରାହ୍ମଣ ପୋଡୁ ପୋଡୁ ମୋର ଆତ୍ମା
କେତେ ଝିଂଘାସ ମୋତେ ତୁ କର ହୋ ମହାତ୍ମା ।୨୧୬
ଆତ୍ମାରୁ ଜାତକଲା ପୁତ୍ର ଆପଣେ ସ୍ୱହସ୍ତେ କଲି ନାଶ
ମୁହିଂ ଚାଣ୍ଡାଳ କେମନ୍ତେ କରିବି ତାହା ଗ୍ରାସ ।୨୧୭
ନ ବୋଲ ପଣ୍ଡାୟେ ତୁମ୍ଭେ ଯେସନେକ ବଚନ
ତୋହୋର ବାକ୍ୟ ଶୁଣି ମୋର ହୃଦୟ ହୋଉଛି ଦହନ ।୨୧୮
ଆହୋ କହ୍ନାଇ ପଣ୍ଡା ତୋହୋର ଚରଣେ ଦୟିନୀ ଶତେବାର
ତୁମ୍ଭେ ଭୁଞ୍ଜ ମୋତେ କଟାଳ ନ କର ।୨୧୯
ବ୍ରାହ୍ମଣ ବୋଇଲେ ତୁ ଯେବେ ନ କରିବୁ ଗ୍ରାସ
ତୋହୋର ଭାରିଯା ଅବା ମୋତେ ରାନ୍ଧି ଦେଉଅଛି ବିଷ ।୨୨୦
ତୁହି ଭୁଞ୍ଜିବୁ ତୋହୋର ଭାରିଯାହିଂ ଭୁଞ୍ଜିବ
ତେବେ ସେ ଶ୍ୱରୀର ମୋର ତ୍ରିପୁତି ହୋଇବ ।୨୨୧
ଠାବକେଣ କର୍ଣ୍ଣ ଠାବକେଣ ବସଇ ତାର ରାଣୀ
ସାଧୁ ସାଧୁ କର୍ଣ୍ଣ ବୋଲି ବୋଲନ୍ତି ଚକ୍ରପାଣି ।୨୨୨
ହୃଦଗତେ ବିଚାର କରନ୍ତି ବାସୁଦେବ
ବଇକୁଣ୍ଠ ବ୍ୟତ୍ରେକ ତୋତେ ନାହିଂ ଆନଠାବ ।୨୨୩
ରାଣୀ ବୋଇଲା ତୁମ୍ଭେ ଶୁଣିମା ହେ କହ୍ନାଇ ପଣ୍ଡାୟେ
ତୁମ୍ଭର ଶାହାସ୍ତ୍ରେ ଅଛି କି ଯେମନ୍ତ କଥାୟେ ।୨୨୪
ଆପଣାର ପୁତ୍ର ନାଶିଣ ସ୍ୱହସ୍ତେ
ପିତା ମାତା ମାଂସ ତାର ଭକ୍ଷିବେ କେମନ୍ତେ ।୨୨୫

ବ୍ରାହ୍ମଣ ବୋଇଲେ ଯେବେ କାମ୍ୟଶ୍ରାଦ୍ଧ କରି
ଯାହା ପାଇ ତାହା ଭୋଜନ ଯେ କରି ।୨୨୬
କାମ୍ୟଶ୍ରାଦ୍ଧ ଗୋଟି ସେ ମୋହୋର ଭଗତି
ତୁକୁହିଂ କାରଣ ତୋହୋର ପିତୃଲୋକେ ସଦଗତି ।୨୨୭
ବ୍ରାହ୍ମଣ ବଚନେ ଯେ କର୍ଣ୍ଣରାୟେ କ୍ରୋଧ
ଅଶ୍ରୁଜଳ ଧାରାୟେ ପଡ଼ଇ ଭୁବିମଧ ୨୨୮
ରାଣୀ ବୋଇଲା ରଜା କ୍ରୋଧ ଯେ ସଂହର
ବିପ୍ରଂକୁ ଭୁଂଜାଇ ବେଗେ କର ନମସ୍କାର ।୨୨୯
ନ ଜାଣି ସତ୍ୟକଲୁ କିଂପା ଆଗ ତୁହି
ମନରେ ଦୁଃଖ କରିଲେ ଧର୍ମ ନାଶଯାଇ ।୨୩୦
ଆବର ପୁତ୍ରଗୋଟି ପାଇବା କି ରାଜନ
କ୍ରୋଧକଲେ ଧର୍ମହାନି ହୋଇବ ନିଚେ ଜାଣ ।୨୩୧
ଯାହା ଆମ୍ଭର କର୍ମରେ ଲେଖିଲ ଗୋସାଇଂ
ବିଷ୍ଣୁର ମାୟା ଯେହୁ କହଣା ନ ଯାଇ ।୨୩୨
ତୁହି ଯହୁଂ ଦାନେଶ୍ୱର ହୋଇଲୁ ରାଜନ
ତୋହୋର ଚିତ୍ତ ବିଡ଼ିବା ନିମନ୍ତେ ଅଇଲେ କି ଭଗବାନ।୨୩୩
କ୍ରୋଧ ନ କର ରାଜା ଶାନ୍ତିହୁଅ ମନେ
ବିପ୍ରଂକୁ ଭୁଞ୍ଜାଇ ଆମ୍ଭେ ଝାସିବା ହୁତାସନେ ।୨୩୪
ରାଣୀର ବଚନେ ଯେ କର୍ଣ୍ଣ ହେଲା ତୋଷ
ବ୍ରାହ୍ମଣେ ବୋଇଲେ ରାଜା ପତ୍ରେକ ମାଡ଼ିବସ ।୨୩୫
ରାଣୀ ତୋହୋର ପତ୍ରେକ ମାଡ଼ି ଭୁଂଜିବସୁ ତୋର ପାଶ
ସେହି ଦୁଇସ୍ଥାନେ ନେଇ ଯେମାନ ପରଶ ।୨୩୬
ରାଣୀ ବୋଇଲା ଯେ ପତ୍ରେକ ହୋଇଲାକ ମୁକୁ
କର୍ଣ୍ଣକୁ ପତ୍ରେକ ତୁମ୍ଭଂକୁ ପତ୍ରେ ଆରପତ୍ରେ ରହିଲା ଦେବା
ଦେବା ହୋ କାହାକୁ ।୨୩୭
ବ୍ରାହ୍ମଣ ବୋଇଲେ ରଣୀ ହୃଦେ ଧରଲୁ ପାପକଥା
ତୋହୋରେ ତ ଭାବ ମୋତେ ନୋହିଲା ସର୍ବଥା ।୨୩୮
ଅଭାବ ଭୋଜନ ଯେ ଅନାଚାର ଭୂମି
ଅକ୍ରିୟାବନ୍ତ ବ୍ରାହ୍ମଣ ଛଦ୍ମ ତପସୀ ଗ୍ୟାନୀ ।୨୩୯
ଅମାନନା ପୁତ୍ର ପରଦାରେଣୀ ଭାରିଯା
ଗୁଣବନ୍ତ ଲୋକେ ଯେମାନନ୍ତ କରନ୍ତି ପରିତେଜ୍ୟା ।୨୪୦
ଶରୀର ମଧେ ଗୋ ସାର ଅଟେ ଶିରଗୋଟି
ତହିଂର ମାୟେଂସ ନ ରନ୍ଧିଲୁ ତୋହୋର ଅଭାବ ଚିତ୍ତଗୋଟି।୨୪୧
ରାଣୀ ବିଚାରିଲେ ଯେ ନୋହଇ ମାନବ
କିଯେ ବ୍ରହ୍ମା ଇନ୍ଦ୍ର ରୁଦ୍ର କିବା ବାସୁଦେବ ।୨୪୨
ଅଦୃଷ୍ଟି ଜାଣିମାକଇଂ ଅଛି କେହୁ କ୍ଷମ
କର୍ଣ୍ଣକୁ କଷଣ ହୋ ପଡ଼ିଅଛଇ ରକ୍ଷାକର ମହାଧର୍ମ ।୨୪୩
ବ୍ରାହ୍ମଣର ବଚନେ କର୍ଣ୍ଣରାୟେ କହି
ଅନୀତି ବଚନ କିମ୍ପେ କହିଲୁ ଗୋସାଇଂ ।୨୪୪
ଆହୋ କହ୍ନାଇ ପଣ୍ଡା ତୋହୋର ଆଗେ ମୁହିଂ
ପୁତ୍ରକୁ ବଧି ମାଂସ ଦେଲଇଂ କେଳାଇ ।୨୪୫
ସମସ୍ତ ମାୟେଂସ ଆଗ ଦେଲଇଂ ପ୍ରତି ପ୍ରତି
କିମ୍ପାଇ ଦୂଷଣ ମୋତେ କରୁଛୁ ଅତିଥି ।୨୪୬
ବ୍ରାହ୍ମଣ ବୋଇଲା ରାଜା ତୋର ଦୋଷ ନାହିଂ
ରାଣୀ ତୋର ଗୁପତଭାବେ ଅଛଇ ଲୁଚାଇ ।୨୪୭
ଗମ୍ଭିରୀ ଭିତରେ ମୁଣ୍ଡ ଅଛଇ ଲୁଚାଇ
ଗର୍ଭଧାରୀ ଆଇ ପୁତ୍ରକୁ ମୁରୁଛିବ କାହିଂ ।୨୪୮
କର୍ଣ୍ଣ ବୋଇଲା ତୁ ଶୁଣ ପ୍ରାଣସହୀ
ପୁତ୍ରର ମୁଣ୍ଡଗୋଟି ତୁ ଅଛୁନି ଲୁଚାଇ ।୨୪୯
ଯେବେ ଲୁଚାଇଣ ତୁହି ଥୋଇଅଛୁ ଜାଣ
ବହନ ମେଂଜନ କର ଛେଚିଣ କୁଟିଣ ।୨୫୦
ବ୍ରାହ୍ମଣ ବୋଇଲା ଆମ୍ଭର ଆଗରେ ରାଣୀ ମୁଣ୍ଡଗୋଟି ଛେଚ
କ୍ଷୁଧା ବଡ଼ ଲାଗୁଅଛି ବହନ କରି ପାଗ ସଞ୍ଚ ।୨୫୧
ଭିତର ଭବନୁ ରାଣୀ ଆଣିଲା ମୁଣ୍ଡଗୋଟି
ବ୍ରାହ୍ମଣ କର୍ଣ୍ଣ ଦୁହିଂକରି ଛାମୁରେ ନେଇ ବେଗେ କୁଟି ।୨୫୨
କାନ୍ଦିଣ ରାନ୍ଧଇ ରାଣୀ ଡରେଣ ହୋଇ ତୃଷ୍ଟି
ନ ପୁଣ ବ୍ରାହ୍ମଣ ଭୋଜନ ଛାଡ଼ି ଯାଇ ଉଠି ।୨୫୩
ଆହୋ ଆମ୍ବିଳ ପାଚଲ କରି ବେନି ତିଉଣ କଲା
ଲୋଟିୟେ ଲୋଟିୟେ କରିଣ ସେ ଚାରିଠାବରେ ବାଢ଼ିଲା ।୨୫୪
ପତ୍ରେକ ଆବୋରି କରି ବସିଲା ବ୍ରାହ୍ମଣ
ଆରେକ ପତ୍ର ଆବୋରି କରି ବସିଲା କର୍ଣ୍ଣରାଣ ।୨୫୫
ଯେକପତ୍ର ଆବୋରିଣ ବସିଲାକ ରାଣୀ
ତିନି ଠାବରେ ବସିଲେ ତିନି ଯେ ପରାଣୀ ।୨୫୬
କର୍ଣ୍ଣ ବୋଇଲା ଆରେକ ପତ୍ରେ କେ ଭୁଞ୍ଜି ବସିବ
ପତ୍ର ପକାଇଲ ତୁମ୍ଭେ କିଂପା ଚାରିଠାବ ।୨୫୭
ବ୍ରାହ୍ମଣ ବୋଇଲା ପତ୍ରେକ ବସିବ ବିଶି ଯେ କେଶନ
କର୍ଣ୍ଣ ବୋଇଲା ବ୍ରାହ୍ମଣ ହେ ହୋଇଲ କି ମତିଭ୍ରମ ।୨୫୮
ବ୍ରାହ୍ମଣ ବୋଇଲେ ରାଣୀ ପାଣି ଝରୀୟେକ ଘେନି
ବାଟିକେଟିକି ଯାଇଂ ବିଶିକେଶନ ବୋଲି ଡାକଦିଅ ବେଳ ତିନି।୨୫୯

ରତ୍ନଝରୀଯେକ କରେ ଘେନି ବାହାର ହୋଇଲାକ ରାଣୀ
ଆରେ ଆରେ ବିଶିକେଶନ ବୋଲି ସେ ଉଚ୍ଚେ ଦିଲା ବାଣୀ ।୨୬୦
ଅନାସ୍ତର ବାନ୍ଧବ ରେ ଜଗୁଜନ ସୁନ୍ଦର ବଳା
ଅଗାଦ ସମୋଦ୍ରେ ମୋର ବୁଡ଼ାଇଲୁ ଭେଳା ।୨୬୧
ଆରେ ବାବୁ ଦୁଖୀର ସଂଘାତ ତୁ ମୋର ଅନ୍ଧର ଲଉଡ଼ି
ଗଳା ରତ୍ନହାର ମୋର କେ ନେଲା ଉଛୁଡ଼ି ।୨୬୨
ମୁଖେ ବସ୍ତ୍ର ଦେଇ ପୁଣ କାନ୍ଦଇ ମହାଦେଇ
ଅଶ୍ୱେକ ଚଢ଼ିଣ କୁମର ଛାମୁରେ ମିଳିଲାକ ଯାଇଂ ।୨୬୩
ଅନେକ ଅଳଂକାର ଭୂଷଣ ତାର କାୟେ
ଦିଶଇ ବିଶିକେଶନ କାର୍ତ୍ତିକେଶ୍ୱର ପ୍ରାୟେ ।୨୬୪
ଅଶ୍ୱରୁ ଉତୁରି କୁମର ମାତାଂକ ଚରଣେ ସେ ଲୋଟି
କାହିଂ ଥିଲୁ ବାବୁ ମୋର ଅନ୍ଧର ଲଉଡ଼ି ଗୋଟି ।୨୬୫
ମାଗୋ ଯମୁନା ତୀରକୁ ମୁଂ ଯେ ଯାଇଥିଲି ଖେଳି
ମୋହୋର କର୍ଣ୍ଣେ ସମ୍ଭାଳିଲା ଗୋ ତୁମ୍ଭର ବୋବାଳି ।୨୬୬
କୋଳେ ଧରି ରଣୀ କାଖେ ବସାଇଲେ ବଳା
ବ୍ରାହ୍ମଣ ଛାମୁରେ ପ୍ରଣପତ୍ୟ ସୁକ୍ତାମସଳା ।୨୬୭
ଉଠିଣ କର୍ଣ୍ଣ ଯେ ବ୍ରାହ୍ମଣ ଚରଣେ ପରଣାମି
ମୁକୁହିଂ ଗୋଚର ନୋହିଲା ତୁ କେଉଣ ଦେବ ସ୍ୱାମୀ ।୨୬୮
ନିଜରୂପ ଧଇଲେ ପ୍ରଭୁ ବନମାଳୀ
ଶତ ସହସ୍ର ଦଣ୍ଡବତ କର୍ଣ୍ଣ କରଇ ନିଉଛାଳି ।୨୬୯
ଦେଖିଲା ଶଙ୍ଖ ଚକ୍ର ଗଦା ଶାରଙ୍ଗ ଚତୁର୍ଭୁଜ
ନୀଳ ଉପ୍ତଳ ତେଜ ବିରାଜନ୍ତି ଦେବରାଜ ।୨୭୦
ସ୍ୱାମୀ ପରଂବ୍ରହ୍ମ ସରୂପ ଦେବ ପୀତବାସ
ଯୋଗୀଜନ ମନ ମାନସରୋବର ରାଜହଂସ ।୨୭୧
ସ୍ୱାମୀ ପରମବ୍ରହ୍ମ ପୁରୁଷ ଜୟ ତୁ ବିଶ୍ୱବାସ
ଯୋଗୀଜନମାନେ ଯାହାର ଚରଣକୁ କରନ୍ତି ଅଭ୍ୟାସ ।୨୭୨
ପରମ ସରୁପ ସେ ଜଗତ ହିତକାରୀ
ଅନନ୍ତ କୋଟି ବ୍ରହ୍ମାଣ୍ଡ ରୋମମୂଳେ ଯାହାରି ୨୭୩
ପରମବ୍ରହ୍ମ ପୁରୁଷ ଯୋଗୀଜନ ହୃଦଗତା
ସୟଳ ସୋଦର ନାଥ ସମସ୍ତ ଜନ ଚିନ୍ତା ।୨୭୪
ପରମବ୍ରହ୍ମ ପୁରୁକ୍ଷ ନାଥ ଯୋଗେଣ ଯୋଗଚିନ୍ତା
ଯାବତ ଚନ୍ଦ୍ର ଦିବାକର ତୁହି ସେ ଉଦ୍ଧାରନ୍ତା ।୨୭୫
ପରମବ୍ରହ୍ମ ପୁରୁଷ ତୁ ସୟଳ ଚିନ୍ତାମଣି
ମାୟାଧର ପୁରୁଷ ନାଥ ତୁ ଦେବ ଚକ୍ରପାଣି ।୨୭୬
ପରମବ୍ରହ୍ମ ସରୂପ ନାଥ ଅକାଳ ଅକାମ
ପରମବ୍ରହ୍ମ ପୁରୁଷ ନାଥ ପୁରୁଷଂକ ଉତ୍ତମ ।୨୭୭
ପରମବ୍ରହ୍ମ ପୁରୁଷ କରୁଣା ବାରିଧି
ପରମବ୍ରହ୍ମ ପୁରୁଷ ତୁହି ସେ କୂଟସିଦ୍ଧି ।୨୭୮
ପରମବ୍ରହ୍ମ ସରୂପ ମାଳତୀ କାମମୁଦ୍ରା
ଯେକାଦଶ ଲୋକନାଥ ଆସନ ଯୋଗନିଦ୍ରା ।୨୭୯
ଦ୍ରଶନେ ପ୍ରସନ୍ନ ନାଥ, ପ୍ରସନ୍ନେ କାର୍ଯ୍ୟ ସିଦ୍ଧି
ମଣିତ ନୁଆରିଲି ନାଥ ତୋହୋର କୂଟବୁଦ୍ଧି ।୨୮୦
ଯେସନେକ ସରୂପେ ଅବତରିଲୁ ଚକ୍ରପାଣି
ମୁହିଂ ଛାର ମାନବ ନାଥ ତାହା ନୁଆରିଲି ଜାଣି ।୨୮୧
ସ୍ୱାମୀ ମୋହୋର ଲଲାଟେ ବସୁ ତୋହୋର ପଦ୍ମପାଦ ଗୋଟି
ନୀଳସୁନ୍ଦରେ ଭେଟିଳି ଜଗନ୍ନାଥ ରୂପ ଗୋଟି ।୨୮୨
ପରମବ୍ରହ୍ମ ପୁରୁଷଂକ ଚରଣେ ନମାମି
ଶୂଦ୍ରମୁନି ସାରୋଳା ଦାସ ଶତ ସହସ୍ର ଦଣ୍ଡ ପରିଣାମି ।୨୮୩
କର୍ଣ୍ଣ ବୋଇଲା ଭୋ ଦେବ ସ୍ୱାମୀ ଅଚୁତ
ଆନ କେଉଣ ଜନ୍ମେ ତୋତେ ହୋଇଥିଲାଇଂ ଭଗତ ।୨୮୪
ଯେ ଜନମେ ତୋତେ ମୋର କିଛି ନାହିଂ ସେବା
ମୋତେ କେବଣ ଅର୍ଥେ ଯେଡ଼େକ କଷଣ ଦିଲୁ ବାସୁଦେବା ।୨୮୫
ଭୋ ଦେବ ଯାହାର କଷଣୁଂ ଉତୁରି ନୁଆରିଲା ବଳୀ
କର୍ଣ୍ଣର ବଚନ ଶୁଣି ହସିଲେ ବନମାଳୀ ।୨୮୬
ବାବୁ ପାପୀ ଅଦାତବ୍ୟ ଲୋକର ନ ଯାଇ ଆମ୍ଭେ କତି
ଯହିଂ ଧର୍ମ ତହିଂ କଷଣ ଦିଅଇ ଯୁଗତି ।୨୮୭
ବିଶିକେଶନ ପରା ପୁତ୍ରକଇଂ ମାଇଲୁ ଅନମିତେ
ଭଲେ କୂଟବୁଦ୍ଧି ତୋତେ ନ କଲେ ଦଇତେ ।୨୮୮
ବିଶିକେଶନକଇଂ କୋଳେ ଧରି ଜଗନ୍ନାଥେ ବୋଇଲେ
ଆଜହୁଂ ଯେ ପୁତ୍ର ଗୋଟି ଥାଉ ଆମ୍ଭର ତୁଲେ ।୨୮୯
ଯାବତ ଚନ୍ଦ୍ର ଦିବାକର ଯେ ମେଦିନୀ ଥିବ
ଯେହୁ ବିଶିକେଶନ ଚଣ୍ଡ ହୋଇ ଆମ୍ଭ ତୁଲେଣ ରହିବ ।୨୯୦
ଅନେକ ଭଗତେ କର୍ଣ୍ଣ କରଇ ଦୟିନୀ ।
ବଇନେତ୍ର ବାହାନେ ଚଳନ୍ତି ଚକ୍ରପାଣି ।୨୯୧
ଦ୍ୱାରକା ଭୁବନକୁ ଚଳିଗଲେ ବାସୁଦେବ
ଗଣ୍ଡକୀ ନଦୀତୀରେ ରହିଅଛନ୍ତି ପାଣ୍ଡବ ।୨୯୨
ସପତମ ଦିବସେଣ ଦ୍ରୋପତୀ ମହାସ୍ୱତୀ
ଶୁଦ୍ଧ ସ୍ନାହାନ କରିଣ ନାରାୟଣେ ଭଗତି ।୨୯୩

ଲକ୍ଷ୍ମୀ ନାରାୟଣ ଶିଳା ସଦାନନ୍ଦ ମୂରତି
ଶୁକ୍ଳାମ୍ବର ଶିଳା ଶ୍ରୀରାମ ମୁଦ୍ରା କୃଷ୍ଣବର୍ଣ୍ଣ ସଂଜାତି ।୨୯୪
ଯେ ପଞ୍ଚଶିଳା ସ୍ନାହାନ ଜଳପାଣି
ତାହା ଗଣ୍ଡୁଷ କରାଇଲେ ଧଉମ୍ୟ ପୁରୋହିତେ ଆଣି ।୨୯୫
ପାଣ୍ଡବେ ଅଭିଳାଷ ହୋଇଣ ମହାସତୀ
ପଞ୍ଚୁବୀର୍ଯ୍ୟେ ରହିଲା ସେ ହୋଇଲେ ଗର୍ଭବତୀ ।୨୯୬
ଆହେ। ବିଶ୍ୱଦେବା ପଞ୍ଚପୁରୁଷେ ପୂର୍ବର ଶାପ ଅର୍ଥେ
ସେ ଆସି ପାଞ୍ଚାଳୀ ଗର୍ଭେ ରହିଲେ ମୁକତି ନିମନ୍ତେ ।୨୯୭

**

## ୫୯. ଯୁଧିଷ୍ଠିରଙ୍କୁ ଧର୍ମବକଙ୍କ ପ୍ରଶ୍ନ

ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ବାଣ୍ଡାବଟକୁ ଅନେକ ତୁଷ୍ଟି କଲେକ ଯୁଝେଷ୍ଠି ଦେବ ନୃପତି ।୧
ଲୋମଶ ବୋଇଲେ ତାଂକୁ ଅନେକ ପରମାର୍ଥ
ରାଜ୍ୟତେଜି ବନେ କିମ୍ପେ ବୁଲ ପଞ୍ଚ ଭ୍ରାଥ ।୨
ବାବୁ ସୁଖଭୋଗ ଇଚ୍ଛା ଯେ ଅଟଇ ରାଜପଦ
ପୁଣି ସେ ଆମ୍ଭ ବିଚାରକୁ ଅଟଇ ବଡ଼ ମନ୍ଦ ।୩
ଧର୍ମର ନନ୍ଦନ ଯେ ମୁନିଂକି ବହୁତ କଲେ ପୂଜା
ଶୁଣି ମହାମୁନି ବଦୟନ୍ତି ଧର୍ମରାଜା ।୪
ସ୍ୱାମୀ ବିପଦ ସମ୍ପଦ ଯେ ଅଟଇ ବୃକ୍ଷ ଛାଇ
ସୂର୍ଯ୍ୟ ଥିବାଯାଏ ଛାଇ ସଙ୍ଗେ ସଙ୍ଗେ ତା ଗୋଡ଼ାଇ ।୫
ଆଦିତ୍ୟ ଅସ୍ତ ହୋଇଲେ ଦେହରେ ହୋଇ ଗୋପ୍ୟ
ତେହେନେକ ସାଦ୍ରିଶ ଯେ ଅଦୃଷ୍ଟ ବିପାକ ।୬
ପାଯେକ ନିଧି ଯେ ପାଯେକ ଅଛି ବୃଦ୍ଧି
ତୁ ବ୍ରହ୍ମବେତ୍ତା ତୋତେ ମୁଂ କିସ ଯେ ସମ୍ପାଦି ।୭
ଅବଶ୍ୟ ପ୍ରାଣୀଂକି ହୁଅଇ ଦୁଖ ସୁଖ
ସମ୍ପଦ ଥିଲେ ବିପଦ ଆସଇ କି ପାଖ ।୮
ସର୍ବଦା ଦିନ ସମ୍ପଦେ କାହାରହିଂ ନ ଯାଇ
ଯହୁଂ ଆସିଥାଇ ତହିଂରେଣ ମିଶଇ ।୯
ବୋଲନ୍ତି ମର୍ତ୍ତ୍ୟଲୋକ ସମ୍ପଦ ଆମ୍ଭର
କେ ଅର୍ଜିଥିଲା ତାହାର ମୂଳ କେଉଂଠାର ।୧୦
ଅଜା ବାପ ଦେହାନ୍ତରେ ଧନ ବିନା ଦୁଖୀ
ଯେବେ ପୁତ୍ର ବୋଲେ ମୋହୋର ଚତୁବର୍ଗେ ସୁଖୀ ।୧୧
ସେ ନୁହଇ ତାହାର ଧନ ଧନୀକର ଜାଣ
ଆସିଥାଇ ଯେହା ପାଶ ଜଗିବାକୁ ପୁଣ ।୧୨
ସମ୍ପଦ ଥିଲେ ବିପଦ ନ ଆସଇଟି ପାଶ
ବିପଦର ବେଳେ ସମ୍ପଦ କାହିଂ କରେ ବାସ ।୧୩
ବିପଦ କାଳେ ସମ୍ପଦ କାହିଂ ଥାଇ
ସମ୍ପଦ କାଳେ କି ବିପଦ ଥାଇ ରହି ।୧୪
ସ୍ୱାମୀ ଜନ୍ମର ସୁଫଳେ ମୁଂ ଭେଟିଲଇ ଆଜ ତୋତେ
ଲୋମଶ କହିଲେ ରାଜା ଧନ୍ୟ ତୋହୋର ଜୀବିତେ ।୧୫
ପାଣ୍ଡବନ୍ତ ଘେନିଣ ସେ ଚଳିଲେ ଲୋମଶେ
ବନସ୍ତେ ଭେଟିଲେ ଯାଇଂ ମୁନି ଭାର ଯେ ଦ୍ୱାଦଶେ ।୧୬
ଧର୍ମର ନନ୍ଦନ ଯେ ମୁନିଂକି କଲେ ପୂଜା
ପ୍ରଣପତ୍ୟ ଭାବେଣ ଖଟନ୍ତି ଯୁଝେଷ୍ଠି ଦେବରାଜା ।୧୭
ଭାରଦ୍ୱାଦଶ ବୋଇଲେ ଯେ ଯୁଝେଷ୍ଠିଂକି ଦେଖି
ବନ ଗହନ ସେବିଲ ତୁମ୍ଭେ ସକଳ ପାପ ଉପେଖି ।୧୮
ଧାର୍ମିକ ବିବେକ ତୁ ଯେ ପୁରୁଷ ଭାଗ୍ୟବନ୍ତ
ଆପଣେ ତରି ତାରିଲୁ ପିତୃଲୋକମାନନ୍ତ ।୧୯
ଶତେକୋଟି ତୀର୍ଥ ଯେ ମଞ୍ଚ ଭୁବନେଣ ଅଛି
ଅବଶ୍ୟ ଫଳଶ୍ରୁତି ହୋଇବ ଯେ ଯାହା ମନେ ବାଞ୍ଛି ।୨୦
ବାବୁ ଆମ୍ଭର ଯେ ଦଇତ ଦାନବନ୍ତ ବଡ଼ ଭଯେ
ତେଣୁକରି ଯାଇତ ନୁଆରିଲୁ ବହୁତ ଦୂରଯାଏ ।୨୧
ଯେ ତୋହୋର ତୁଲେ ଆମ୍ଭେ ଭ୍ରମିବୁଂ ବନସ୍ତ
ତୀର୍ଥମାନ କରିଣ ଯେ ପାପରୁ ହୋଇବୁଂ ମୁକତ ।୨୨
ଯେତେକ ବଚନ ଯେ ବୋଇଲେ ଦେବଧର୍ମେ
ଲୋଶମ ଭାରଦ୍ୱାଦଶ ଯେ ରହିଲେ ନିଜାଶ୍ରମେ ।୨୩
ଲୋମଶ ଭାରଦ୍ୱାଦଶ ଗଲେ ନିତ୍ୟକର୍ମେ
ଅନ୍ଦେକ ସରୋବରକୁ ଗମିଲେ ଦେବ ଧର୍ମେ ।୨୪
ଚଇତ୍ରମାସ ଶୁକଳପକ୍ଷ ଦଶମୀ ଗୁରୁବାର
ମଘାନାମେ ନକ୍ଷତ୍ର ଯେ ଅଟଇ ସେ ଦିନର ।୨୫
ଗରନାମେ କରଣ ଯେ ଶୁଭନାମେ ଯୋଗ
ମୀନ ସଂକ୍ରାନ୍ତି ଯେ ଯେଗାର ଦିନ ଭୋଗ ।୨୬
ବାମଦେବ ନାମେଣ ଯେ ଅଟଇ ଯେକ ବନ
ତହିଂ ଯାଇଂ ବିଜେକଲେ ପଣ୍ଡୁର ନନ୍ଦନ ।୨୭
ଯୁଝେଷ୍ଠି ବିଜେକଲେ ବାମଦେବ ପର୍ବତେ
ଜଳସ୍ଥାନ ନ ଦେଖି ବୋଲନ୍ତି କୁନ୍ତୀସୁତେ ।୨୮

କି ବୁଦ୍ଧି କରିବା ହୋ କହ ଭୀମସେନ
ତୃଷାରେ ଦେହ ମୋର ହେଉଛି ବଇଗୁନ୍ୟ ।୨୯
ଖୋଜିଣ ବେଗେ ବାବୁ ଜଳ ଆଣ ତୁହି
କେବଣ ଠାବରେ ଯେ ପୁଷ୍କରିଣୀ ଅଛଇ ।୩୦
ସ୍ୱାମୀଙ୍କର ଆଗ୍ୟାଂ ପାଇଣ ଭୀମସେନ
ଜଳ ଖୋଜିତେ ସେ ସଜ ହୋଇଲା ବହନ ।୩୧
ଯୁଧେଷ୍ଠି ବୋଇଲେ ଜଳ ଖୋଜିଆସ ତୁହି
ନିକଟେ ଥିଲେ ସନ୍ଧ୍ୟା ସାରିବା ଯେଥେଂ ଥାଇ ।୩୨
ସ୍ୱାମୀଂକର ଆଗ୍ୟାଂଯେ ଚଳଇ ପାବେନି
ଖେପିଣ ଭୀମସେନ ଲୋଡ଼ଇ କ୍ରୁଶ ତିନି ।୩୩
ଗିରି କନ୍ଦର ବନସ୍ତ ଅନେକ ଦୂର ଭ୍ରମି
ଜଳଘାଟ ନ ପାଇ ଭୀମସେନ ଅନେକ ପଥଶ୍ରମୀ ।୩୪
ବାମଦେବ ପର୍ବତକୁ ଅନ୍ଧେକ ସରୋବର
ଯୁଗତେ ଅଟଇ ସେ କୋଶ ଯେ ପନ୍ଦର ।୩୫
ସେ ଅନ୍ଧେକ ସରୋବର ଯାଇଂ ଭେଟିଲା ମାରୁତି
ଦୂରହୁଂ ଜଳ ଦେଖିଣ ହୋଇଲା ତ୍ରିପୁତି ।୩୬
ସେ ସରୋବର ବିସ୍ତାର ଯେକଇ ଯୋଜନ
ମଧ୍ୟେଣ ସୁରଭି ବୃକ୍ଷେକ ଅଛଇ ବିଦ୍ୟମାନ ।୩୭
ସେ ସୁରଭୀ ବୃକ୍ଷେ ବସିଛି ବକ ଯେ ଗୋଟାଯେ
ଧବଳ କୋମଳ ସେ ଅତି ସୁସଞ୍ଚ ତାର କାୟେ ।୩୮
ଭୂତ ଭବିଷ୍ୟ ବାରତା ସେ ଗତ ଆଗତ କଥା ଜାଣଇ
ବେଦ ମନ୍ତ୍ର ଆଧାନ ଧର୍ମଶାସ୍ତ୍ର ପୁରାଣ ବଖାଣଇ ।୩୯
ଶ୍ରମେ ବ୍ରିକୋଦର ସେ ଜଳରେ ପଶଇ ଯାଇଂ
ଧର୍ମବକ ବୋଇଲା ମହାତ୍ମା କ୍ଷଣକେ ରହ ତୁହି ।୪୦
କ୍ଷଣକେ ବିଶ୍ରାମ କର ମୋହୋର ବଚନ ଶୁଣି
ଜାଣି ମହାତମା ହୋ ପିଉକିନା ପାଣି ।୪୧
ଆହୋ ମହାତମା ଜନ୍ତୁଂକର ଶ୍ରେଷ୍ଟ ମାନବ ଶ୍ରେଷ୍ଟ ଯେ ବ୍ରାହ୍ମଣ
ଯେ ଗଙ୍ଗାର ପାଣିଖାଇ ନାଶଗଲେଣିଂ ଲକ୍ଷେଜଣ ।୪୨
ସେହୁ ବ୍ରହ୍ମହତ୍ୟା ଦୋଷହୁଂ ଯେବେ ଅଛି ମହାପାପୀ
ଯେଥୁଂ ମହାତ୍ମା ତୁ ପାଣି ନ ପିଅ ଅଦ୍ୟାପି ।୪୩
ଭୀମସେନ ବୋଇଲା ମୁହିଂ ଅଟଇ ତୃଷାର୍ଥୀ
ଗଙ୍ଗା କିସ ଦୋଷୀ ଯେ ଅନୁବ୍ରତେ ବହନ୍ତି ।୪୪
ଧର୍ମବକର ବଚନ ସେ କଲାକ ଦୂଷଣ
ପାଣି ପିଅନ୍ତେ ଅନ୍ଧ ହୋଇଲା ବେନି ଯେ ଲୋଚନ ।୪୫
ପାଣି ପିଇ ଆସନ୍ତେ ଭୀମ ପଡ଼ିଲା ମହୀଲୋଟି
ନିଜ ପ୍ରାଣ ବିସର୍ଜ୍ଜିଣ ପଡ଼ିଲା ଅସାଷ୍ଟି ।୪୬
ଭୀମସେନର ବିଳମ୍ବ ଦେଖିଣ ଯୁଧେଷ୍ଠି
ବୋଇଲେ ତୁ ବାବୁ ବହନ ହୋଇଯାଅ ରେ କିରୀଟୀ ।୪୭
ବାବୁ ଅପାର ବେଳ ହୋଇଲା ଭୀମସେନ ଗଲା
ପାଣି ନ ପାଇଲା କି ଅବା ପ୍ରମାଦ ପଡ଼ିଲା ।୪୮
ସ୍ୱାମୀଙ୍କର ବଚନେ ସେ ଚଳଇ ଫାଲଗୁନି
ଭ୍ରମିଣ ବନସ୍ତେ ସେ ଗଲା ଯୋଜନ ଯେ ତିନି ।୪୯
ପ୍ରବେଶ ହୋଇଲା ଯାଇଂ ସେ ସେହି ବନସ୍ତରେ
ଅର୍ଜ୍ଜୁନ ଭେଟିଲା ଯାଇଂ ଅନ୍ଧକ ସରୋବରେ ।୫୦
ଆକ୍ରେଷିଣ କରି ବୀର ଜଳକୁ ଦିଲା ଦୃଷ୍ଟି
ଦକ୍ଷିଣ ଦିଗଭାଗେ ଜଳକୁ ଡେଇଂ ପଡ଼ିଲା କିରୀଟୀ ।୫୧
ଧର୍ମବକ ବୋଇଲା ଆହୋ ଶୁଣସି ପୁରୁଷ
ପାଣି ନ ଖାଅ ଯେଥି ଭିତରେ ନ ପଶ ।୫୨
ଅତିଅନ୍ତ ସୁସଞ୍ଚ ସୁକୁମାର ତୋହୋର କାୟେ
ପ୍ରତକ୍ଷେଣେ ଦିଶୁଅଛୁଂ ତୁ ବିଦ୍ୟାଧର ପ୍ରାୟେ ।୫୩
ହତ୍ୟା ବିବାଦୀ ଯେ ଅଟଇ ସରୋବର
ଗୋ ବ୍ରାହ୍ମଣ ସହିତେ ଜନଜନ୍ତୁ ଯେ ଅଟଇ ନାଶକର ।୫୪
ଯେ ଜଳ ପିଅନ୍ତେଣ ବାବୁ ବେନିଚକ୍ଷୁ ଯାଇ ଫୁଟି
କୂଳରେ ଉଠିଗଲେ ନିଜପ୍ରାଣ ଯାଇଂ ତୁଟି ।୫୫
ବ୍ରହ୍ମହତ୍ୟା ଦୋଷୀ ଯେ ଅଟଇ ମହାପାପୀ
ଯେହା କହିଲି ମାହାତ୍ମା ପାଣି ନ ପିଅ ଅଦ୍ୟାପି ।୫୬
ଶ୍ରମେ ବୋଇଲା ପାର୍ଥ ଆଗେ ମୁଂ ପାଣି ମନ୍ଦିଯେ ପିଅଇ
ତୋହୋର ଅଗ୍ରତେ ମୁହିଂ ତଦନ୍ତ କହିବଇଂ ।୫୭
ଶ୍ରମେଣ ପାଣି ପାର୍ଥ ପିଅଇ ଆକ୍ରେଷି
ବେନିଚକ୍ଷୁ ଅନ୍ଧ ହୋଇଲା କିଛିହିଂ ନ ଦିଶି ।୫୮
କୂଳରେ ଉଠନ୍ତେ ବୀର ପଡ଼ିଲା ମହୀଲୋଟି
ପୂର୍ବକୂଳେ ମାରୁତି ଦକ୍ଷିଣକୂଳେ କିରୀଟୀ ।୫୯
ଭୀମ ଅର୍ଜ୍ଜୁନ ଦୁହିଂକର ନ ପାଇ ବାରତ
ବିଳମ୍ବ ଦେଖି ଯୁଧେଷ୍ଠି ଦେବ ବଡ଼ାଇ ଚକିତ ।୬୦
ବାବୁ ଥୋକାଯେ ଦୂର ଯାଅକିନା ରେ ନକୁଳ
ଭୀମ ଅର୍ଜ୍ଜୁନତ ନଇଲେ ହେଲାନି ଆହାନିକ ବେଳ ।୬୧
ଧାମଇଂ ନକୁଳ ଅତି ବେଗେ ବନେ
ସଂକେତ ଗୋଡ଼ାଇ ଯାଇଂ ପ୍ରବେଶ ସେହି ସ୍ଥାନେ ।୬୨

ନକୁଳ ପ୍ରବେଶ ହୋଇଲା ଯାଇଂ ଉତର ପ୍ରଶସ୍ତେ
ଶ୍ରମେଣ ଜଳେ ଯାଇଂ ପଶଇ ତୃଷାର୍ତ୍ତେ ।୬୩
ସେ ଧର୍ମବକ ବୋଇଲା ତୁ ରହ ରହ ବାବୁ
ବଡ଼ାଇ ଦୋଷୀ ଯେ ଜଳ ପିଇଲେ ମରିବୁ ।୬୪
ଗୋ ବ୍ରାହ୍ମଣ ଅତିଥି ଯେଥେଂ ଯେତେ ଜଳ ଭକ୍ଷି
ସମସ୍ତେ ନାଶ ଯାଆନ୍ତିଟି ଯେଥି ସଂଶୟ ନାହିଂ କିଛି ।୬୫
ଯେଥିର ତଦନ୍ତ ତୋତେ ସର୍ବ କହିଲଇଂ ବାବୁ
ତୋହୋର ଇଚ୍ଛାଯେ ଜଳ ଭକ୍ଷିଲେ ମରିବୁ ।୬୬
ନକୁଳ ବୋଇଲା ହେ ତୃଷାୟେ ଦହନ ମୋର କାୟେ
ଆଗେ ତ ପିଅଇ ମୁହିଂ ଯେଥୁ ପାଣି ଫୁଟିଯେ ।୬୭
ଧର୍ମବକର ବଚନ ତାର ମନରେ ନ ପଶି
ପିଇଲା ପାଣି ଯେ ବେନି ଲୋଚନକୁ ନ ଦିଶି ।୬୮
କୂଳରେ ଉଠନ୍ତେଣ ପଡ଼ିଲା ମୁହଂ ମାଡ଼ି
ଶରୀର ବିସର୍ଜିଲା ତାର ଜୀବ ଗଲା ଛାଡ଼ି ।୬୯
ତିନି ସହୋଦର ଯହୁଂ ନଇଲେ ବାହୁଡ଼ି
ଆପଣେ ଯୁଝେଷ୍ଠି ଦେବ ଯେ ପର୍ବତୁଂ ଉତୁରି ।୭୦
ଯୁଝେଷ୍ଠି ବୋଇଲେ ମୋର ନଇଲେ ତିନିଭ୍ରାଥ
ହୃଦୟ ବିକଳ ମୋର ମନ ବିଚଳିତ ।୭୧
କରପତ୍ର ଯୋଡ଼ିଣ ସହଦେବ ଆଗେ ଉଭାହୋଇ
ପ୍ରଣପତ୍ୟ ହୋଇଣ ବିନୟେଣ କହଇ ।୭୨
ତୁମ୍ଭେ କିମ୍ପେ ସ୍ୱାମୀ ଶ୍ରମପାଇ ଯିବ
ଯେହିକ୍ଷଣି ଠାବକରି ଆସିବି ତୁମ୍ଭେ ଯେହି ପର୍ବତେ ବସିଥିବ ।୭୩
ଯେତେ ବୋଲିଣ ସେ ମଦନାଦେବୀର କନିଷ୍ଠବାଳେ
ଗହନ ବନରେ ଯାଇଂ ପଶଇ ଅବହେଳେ ।୭୪
ଶୀଘ୍ରେଣ ପଶଇ ଗହନ ବିପିନେ
ସହଦେବ ପ୍ରବେଶ ହୋଇଲା ଯାଇଂ ସେହି ଜଳ ସନ୍ନିଧାନେ ।୭୫
ଶ୍ରମେଣ ତେଇଂ ସେ ଯାଇଂ ପଡ଼ିଲା ମହାଜଳେ
ଧର୍ମବକ ଡାକଦିଲା ତାର ପାଣି ପିଇବାର ବେଳେ ।୭୬
ବୋଇଲା ନ ପିଅ ପାଣି ବାବୁ ଯେ ଜଳ ବଡ଼ ମନ୍ଦ
ପ୍ରାଣ ବିସର୍ଜନ ହୋଅଇ ଯେଠାରେ ଚକ୍ଷୁ ହୋଅଇ ଅନ୍ଧ ।୭୭
ତୃଷାରେ ସହଦେବ ବଚନ ନ ଶୁଣି
ଆକ୍ରେଷି ସହଦେବ ପିଇଲା ବେଗେ ପାଣି ।୭୮
ମୂର୍ଚ୍ଛା ତତକ୍ଷଣେ ଅନ୍ଧ ହୋଇଲା ବେନିଦୃଷ୍ଟି
ମୂର୍ଚ୍ଛାଗତ ହୋଇ ପଡ଼ିଲା ମହୀଲୋଟି ।୭୯

ଚାରିଭାଇ ଯହୁଂ ଯାଇଂ ନଇଲେ ଲେଉଟି
ହୃଦରେ ବଡ଼ ବ୍ୟାକୁଳ ହୋଇଲେ ଯୁଝେଷ୍ଠି ।୮୦
ଯୁଝେଷ୍ଠି ଦେବେ ପାଶକୁ ରାଇଲେ ଦ୍ରୋପତୀ
ଚାଲ ଯିବା କାହିଂ ଯେ ଗଲେ ଚାରିଭାଇଟି ।୮୧
ଯେଥୁ ଅନନ୍ତରେ ଯୁଝେଷ୍ଠି ଦ୍ରୋପତୀ ଯେ ହୋଇଲେ ପରବେଶ
ଜଳ ଦେଖି ମହାତମା ବଳାଇଲା ମୁହାଂସ ।୮୨
ଭୀମସେନ ଶୋଇଅଛି ସରୋବର ପୂର୍ବକୂଳେ
ତୃଷାୟେ ତହିଂକି ତ ଲୟେ ନ କଲେ ଧର୍ମବାଳେ ।୮୩
ସେ ଧର୍ମବକ ବୋଇଲା ତୁ ଶୁଣ ହୋ ପୁରୁଷ
ଚାରିକୂଳେ ଚାରିଜଣେ ଯେ ହୋଇଛନ୍ତି ନାଶ ।୮୪
ଗୋରୁ ବ୍ରାହ୍ମଣେ ଯେ ଚାଣ୍ଡାଳ ଆଦିକରି
ଅନେକ ହତ୍ୟାୟେଣ ଯେ ଜଳ ପ୍ରାଣୀଂକ ପ୍ରାଣହାରି ।୮୫
ନ ଜାଣିକରି ଯେଉଂ ଜନ ଯେ ଜଳ ପିଅଇ
କୂଳକୁ ଉଠନ୍ତେଣ ଯେ କ୍ଷଣେହେଂ ନ ଜୀବଇ ।୮୬
ଗୋରୁ ବ୍ରାହ୍ମଣ ହତ୍ୟାରୁ ଅଛଇ କି ଦୋଷ
ଯେହା ଜାଣି ମହାତମା ଜଳରେ ଯାଇଂ ପଶ ।୮୭
ଯୁଝେଷ୍ଠି ଦେବେ ବୋଇଲେ ଯେ ହୋଇ ବିଶ୍ୱାସଘାତକୀ
ଭୋଜନ ଦେଇ ଯେ ନାଶ କରଇ ପ୍ରାଣୀଂକି ।୮୮
ଆପଣେ ନ ଦେଇ ଯେ ଦାତବ୍ୟ ଲୋକନ୍ତ ବାରି
ବ୍ରହ୍ମହତ୍ୟା ଦୋଷରୁ ଯେ ଅଟଇ ବଡ଼ ଭାରି ।୮୯
ଯେତେକ କହିଣ ସେ ଦେବ ଧର୍ମସୁତେ
ଜଳ ଭିତରେ ନେଇ ନୁଡ଼ାଇଲେ ବେନିହାଥେ ।୯୦
ଧର୍ମବକ ବୋଇଲେ ରହ ରହ ଆରେ ବାବୁ
ଯେ ପାଣି ପିଇଲେ ତୁ ସମ୍ପୋଡ଼େ ନାଶଯିବୁ ।୯୧
ଆହୋ ମହାତମା ରାଜା କାହାକଇଂ ବଶ୍ୟ
ଭଣ୍ଡାର ବିଧ୍ୱଂସଇ କେ ସଂସାର କରଇ ନାଶ ।୯୨
ଯୁଝେଷ୍ଠି ଦେବେ ବୋଇଲେ ରଜା ଧର୍ମରେ ହୋୟେ ବଶ୍ୟ
ଅଧର୍ମ କ୍ରୋଧରେ ଭଣ୍ଡାର ଯାଇ ନାଶ ।୯୩
ଧର୍ମବକ ବୋଇଲା କାମଧେନୁ ଦୁଷ୍ଟଗାଈ
ଯୁଝେଷ୍ଠି ଦେବେ ବୋଇଲେ ସେ କଥା ନୋହୋଇ
ନୋହୋଇ ।୯୪
କାମଦୁଗ୍ଧା ଧେନୁ ଯଦ୍ୟପି ହୋଇବ
ରାତ୍ରିଦିବସ ଅହନିଶି ଦୁହୁଂଥିବ ।୯୫
ଆହୋ ଧର୍ମବକ ତୁ ଅଟୁ ବଡ଼ାଇ ସୁଗ୍ୟାଂନ
ବିଦ୍ୟାହିଂ ନ ସରଇ ଦୁହୁଂଥିଲେ ପୁଣ ।୯୬

ଧର୍ମବକ ବୋଇଲା ଜଳ ବଇତରଣୀ ନଦୀ
ତାହା ଦେଖନ୍ତେ ଆନ ଜଳ ଯେ ନ ବନ୍ଧି ।୯୭
ଯୁଝେଷ୍ଟି ବୋଇଲେ ହୋ ନୋହୋଇ ଯେ ବାଣୀ
ତୃଷାହିଂ ସେ ଅଟଇ ନଦୀ ବଇତରଣୀ ।୯୮
ଧର୍ମବକ ବୋଇଲେ ବନସ୍ତହୁଂ କେ ବଡ଼ ଅଛି ଟିକି
ଯେ ମୋତେ ଦୃଢ଼ କରି କହଯେକ ବାକି ।୯୯
ଯୁଝେଷ୍ଟି ବେଇଲେ ଯେ ବଡ଼ାଇ ଗହନ
ଯାଉଂ ଯାଉଂ ଅବଶ୍ୟ ଶେଷ ହୋଇ ବନ ।୧୦୦
ଶାହାସ୍ର ବୋଲି କରିଣ ଯେବଣ ବାଟଗୋଟି
ପ୍ରାନ୍ତ କରି ନ ପାରିଲେ ସେହି ଗହନଟି ।୧୦୧
ଧର୍ମବକ ବୋଇଲା ବୁଝାଇ କହ ମୁକୁ
କେବଣ ପୁରୁଷ ମିତ୍ର ହୋଯେ ପ୍ରବାସକୁ ।୧୦୨
ଯୁଝେଷ୍ଟି ବୋଇଲେ ଆହୋ ଶୁଣ ଧର୍ମବକ
ବିଦ୍ୟା ମଇତ୍ର ପ୍ରବାସକୁ ଶୁଣ ହୋ ଧାର୍ମିକ ।୧୦୩
ଧର୍ମବକ ବୋଇଲା ହୋ ତୁ ଅଟୁ ପଣ୍ଡିତ
ଗୃହକୁ ମଇତ୍ର କେହୁ କହିବାକ ବାକ୍ୟ ସତ୍ୟ ।୧୦୪
ଯୁଝେଷ୍ଟି ବୋଇଲେ ସୁଲକ୍ଷଣୀ ଗୁଣବନ୍ତୀ
ଗୃହକୁ ମଇତ୍ର ହୋଇ ଆପଣା ଯୁବତୀ ।୧୦୫
ପୁଣ ଧର୍ମବକ ପୁଚ୍ଛାକଲା ଯୁଝେଷ୍ଟିଙ୍କି
ଆହୋ ମହାତମା କେ ସଖା ହୋଇବ ବ୍ୟାଧିକି ।୧୦୬
ଆହୋ ମହାତମା ଶରୀରକଇଂ ହୋଅଇ ଅପାର ବ୍ୟାଧି
ବ୍ୟାଧିକି ମଇତ୍ର ଅଟଇ ମଉଷଧି ।୧୦୭
ଶ୍ରାନ୍ତେଣ ଯୁଝେଷ୍ଟି ଦେବ ଯେ ପିଇ ଲୋଡ଼ନ୍ତି ପାଣି
ଧର୍ମବକ ବୋଇଲା ରହ ରହ ପିଉକିନା ଯେହିକ୍ଷଣି ।୧୦୮
ଧର୍ମବକ ବୋଇଲା ଅନେକ ପାପ ସଂସାରକୁ
କେ ମଇତ୍ର ହୁଅଇ ପ୍ରାଣ ସନ୍ଦେହ କାଳକୁ ।୧୦୯
ଯୁଝେଷ୍ଟି ବୋଇଲେ ହୋ ଆନ ମଇତ୍ର ନାହିଂ
ଧର୍ମ କରିଥିଲେ ପ୍ରାଣ ସନ୍ଦେହକୁ ମଇତ୍ରଟି ସେହି ।୧୧୦
ଧର୍ମବକ ବୋଇଲା ଆପଦ ପଡ଼ିଲେ କେ ପାର କରଇ
ଯୁଝେଷ୍ଟି ବୋଇଲେ ହୋ ଦୁର୍ଗା ସୁମରିଲେ ରକ୍ଷାପାଇ ।୧୧୧
ଧର୍ମବକ ବୋଇଲେ ପ୍ରମାଦ ପଡ଼ିଲେ କେ କରଇ ମୁକତି
ଯୁଝେଷ୍ଟି ବୋଇଲେ ଧର୍ମବଳ ଥିଲେ ଫିଟଇ ଦୁର୍ଗତି ।୧୧୨
ଶ୍ରାନ୍ତେ ଯୁଝେଷ୍ଟି ଦେବ ପିଇ ଲୋଡ଼ନ୍ତେଣ ପାଣି
ଧର୍ମବକ ବୋଇଲା କ୍ଷଣେ ରହ ପାଣି ଖାଉସିନା ଯେହିକ୍ଷଣି ।୧୧୩

ଧର୍ମବକ ବୋଇଲା ହୋ ଆକାଶ ମଣ୍ଡଳ
କେତେକ ବିସ୍ତାରେ ସେ ଅଟଇ ପରିମଳ ।୧୧୪
ଯୁଝେଷ୍ଟି ଦେବ କଲେ ବଚନ ପ୍ରକାଶ
ଶୁଣ ହୋ ମହାତମା ଚତୁର ଅଙ୍ଗୁଳ ଆକାଶ ।୧୧୫
ଧର୍ମବକ ବୋଇଲା ହୋ ଶୁଣ ମହାମତି
କେତେକ ପାଦ ଅଟଇ ହାଦେ ଯେହୁ ପୃଥୀ ।୧୧୬
ଯୁଝେଷ୍ଟି ଦେବେ ବୋଇଲେ ତୁ ବଡ଼ାଇ ଧାର୍ମିକ
ପୃଥିବୀଯାକ ସର୍ବେ ବେନି ଯେ ପାଦେକ ।୧୧୭
ଧର୍ମବକ ବୋଇଲେ ତୁ କହିଲୁ ବିଶେଷି
ଛଡରତୁ ମଧେ କେତେ କେତେ ଧାରା ଯେ ବରଷି ।୧୧୮
ଶୁଣ ହୋ ମହାତମା ଗ୍ୟାନୀ ନିରାକାରଇ
ପୃଥୀର ମଧେ ବରଷଇ ନବ ଧାରଇ ।୧୧୯
ଧର୍ମବକ ବୋଇଲା ଶୁଣସି ପୁରୁଷ
କେତେ ତାରା ଉଦେ ହୋଅନ୍ତି ଆକାଶ ।୧୨୦
ଧର୍ମବକର ବଚନେ ଯୁଝେଷ୍ଟି ବୋଇଲେ
ଗଗନେ ବେନିତାରା ସୁଗ୍ୟାନୀ କହିଲେ ।୧୨୧
ଯେତେ ବୋଲି ଯୁଝେଷ୍ଟି ଆପ୍ୟାନ କରି ଲୋଡ଼ନ୍ତି ପାଣି
ଧର୍ମବକ ବୋଇଲେ ମହାତମା ପାଣି ପିଉସିନା ଯେହିକ୍ଷଣି ।୧୨୨
ବୋଇଲେ ସ୍ୱର୍ଗ ମର୍ଚ୍ଚ ପାତାଳ ଯେ ତିନିଭୁବନେ
କେତେକ ଦ୍ୱାର ବାବୁ କହକିନା ବିଦ୍ୟମାନେ ।୧୨୩
ଯୁଝେଷ୍ଟି ଦେବେ ବୋଇଲେ ଧର୍ମବକ ଆଗର
ସଚରାଚର ମଧରେ ଅଟଇ ଦଶଦ୍ୱାର ।୧୨୪
ନବଦ୍ୱାର ଆତଯାତ ଦ୍ୱାରେକ ଅଟଇ ଗୋପ୍ୟ
ଯେମନ୍ତ ବୋଲି କହିଲେ ଯୁଝେଷ୍ଟି ଦେବ ନୃପ ।୧୨୫
ଧର୍ମବକ ବୋଇଲା ଶୁଣ ହୋ ମହାବ୍ରହ୍ମ
କେବଣ ଭୁବନେ ଥାଇ ସତ୍ୱ ରଜ ତମ ।୧୨୬
ରଜୁଂ ଜାତ ବ୍ରହ୍ମା ସେବନ୍ତି ଆକାଶେ
ସତୁଂ ଜାତ ବିଷ୍ଣୁ ସେବନ୍ତି ପାତାଳ ସ୍ୱର୍ଗବାସେ ।୧୨୭
ତମୁଂ ଜାତ ରୁଦ୍ର ସେବନ୍ତି ମର୍ତ୍ତମଣ୍ଡଳେ
ବ୍ରହ୍ମକର୍ମ ସାଧନ୍ତି ଯେ ତ୍ରିକାଳେ ।୧୨୮
ଆହୋ ଧର୍ମବକ ପ୍ରାତକାଳେ ବ୍ରହ୍ମା ମଧକାଳେ ବାସୁଦେବ
ସନ୍ଧ୍ୟାକାଳେଣ ସେ ଯେ ବସନ୍ତି ସଦାଶିବ ।୧୨୯
ଧର୍ମବକ ବୋଇଲାକ ଶୁଣ ହୋ ପୁରୁଷ
କେ କେ ଅଟନ୍ତି ପୃଥ୍ୱୀ ଆପ ତେଜ ବାୟବ୍ୟ ଆକାଶ ।୧୩୦

ଯୁଧେଷ୍ଠି ବୋଇଲେ ପୃଥୀ ଭୂମି, ଆପ ପାଣି, ତେଜ ଚନ୍ଦ୍ର ସୂର୍ଯ୍ୟ
ବାୟବ୍ୟ ପବନ, ତାରକା ଆକାଶ
ଆଦ୍ୟ ଅନ୍ତ ମଧ କରିବାକୁ ଅଟନ୍ତି ଯେ ପଞ୍ଚ ପୁରୁଷ ।୧୩୧
ଯୁଧେଷ୍ଠି ବୋଇଲେ ଯେ ପଞ୍ଚ ପଞ୍ଚାଶ ବୋଲାଇ
ପାଖୁଡ଼ା ମଧ କେଶର ଆବୋରନ୍ତି ଥାଇ ।୧୩୨
ଧର୍ମବକ ବୋଇଲା ବାବୁ କାଳ ବୋଲି କେବଣ ପୁରୁଷ
କେ ତାର ପିତାମାତା କାହୁଂ କାହିଁ ତାର ବାସ ।୧୩୩
ଯୁଧେଷ୍ଠି ବୋଇଲେ ଯାହା ପୁଚ୍ଛାକଲୁ ମୁକୁ
କାଳପୁରୁଷର କଥା କହଇ ମୁଂ ତୁକୁ ।୧୩୪
ସ୍ତମ୍ଭନ ମୋହନ ଯେ ବଶ ଉଚ୍ଚାଟନ ଧାତୁବାଦ ବିଦ୍ୟା
ଧାର୍ମିକ ବିବେକ ସେ କହି ପାରଇ ସଂସିଦ୍ଧା ।୧୩୫
ଯୁଧେଷ୍ଠି ଦେବେ ବୋଇଲେ ଯେ ଜନ୍ମେ ତୁହି ଅବା
ହୋଇଲୁ ଆସି ବକ
ବିବେକ ଗୁଣବନ୍ତ ତୁ ବଡ଼ାଇ ଧାର୍ମିକ ।୧୩୬
କାଳ ବୋଲିଣ ହାଦେ ଯେଉଂଣ ପୁରୁଷ ବିଚାର
ଅକ୍ଷୟ ଅବ୍ୟୟ ଅବିକାର ଅଣାକାର ।୧୩୭
ଷଡ଼ପଦ୍ମ ପରେ ପୁଣି ତ୍ରିବେଣୀ ସଂଗମ
ନାସିକା ଚକ୍ଷୁ ମଧରେ କର ହୋ ସନ୍ଧାନ ।୧୩୮
ସେ କର୍ମ ପୁରୁଷକୁ ଭେଟିବ ବୁଦ୍ଧିବଳେ
ଅଜପା ଲୟେ କରିଣ ବସିବ ନିଷ୍ଠଳେ ।୧୩୯
ମହାଅନନ୍ତ ଶିର ଶେଖରେ ମଣି ଆସନ
ବିଂଶ ଦ୍ୱାଦଶ ଷୋଡ଼ଶ ଦୁଇ ଦଳେଣ ।୧୪୦
ନ ଯାଇ ନ ଥାଇ ନାଶ ନାହିଁ ଉଦେ ଅସ୍ତ
ନାହିଁ ନିଦ୍ରା ମଇଥୁନ ନାହିଁ ଦିବାରାତ୍ର ।୧୪୧
ପ୍ରଥମେ ସେ ଅବ୍ୟକ୍ତ ହେଲା ଲୋହିତର ବର୍ଣ୍ଣ
ସର୍ବ୍ୟକତ କାଳେ ହେଲା ଶୁଦ୍ଧ ସଷ୍ଟିକର ଚିହ୍ନ ।୧୪୨
ନାଦବିନ୍ଦୁରୁ ବାହାର ମହାବ୍ରହ୍ମ ଭେଦି
ପଦ୍ମାସନ ହୋଇଣ ସେ ସ୍ଥୂଳ ଶୂନ୍ୟ ଶୁଦ୍ଧି ।୧୪୩
ତିନିଧାତୁ ତିନିତତ୍ତ୍ୱ ଘେନି ନିରାମୟେ
କଳପ ଶେଷ କରଇ ସବୁଂକରି କାୟେ ।୧୪୪
ଆକାଶରେ ଶିର ହୃଦଗତେ ମଧପୁରୀ
ପାଦ ପାତାଳରେ ତୁମ୍ଭେ ଥିଲ ଯା ପଚାରି ।୧୪୫
ଅଜୟେ ଅଭୟେ ସେ ଅବ୍ୟୟେ ନିରଞ୍ଜନ
ଅବିଶ୍ରାମ ପୁରୁଷ ସର୍ବ କରେ ସେ ଲେଖନ ।୧୪୬
ଶୁଣ ଧର୍ମବକ ବ୍ରହ୍ମା ନ ଜାଣନ୍ତି ମୂର୍ତ୍ତି
ଚିହ୍ନ ବର୍ଣ୍ଣ ନାହିଁ ସେ ଶବଦକୁ ଜାଣନ୍ତି ।୧୪୭
ଜାଣିଶୁଣି ଯେ ସଂସାରେ ହେଉଛନ୍ତି ବଣା
କାହାକୁ କେଉଂ ପୁରୁଷ ନ କରେ ଗଣନା ।୧୪୮
ବୀଜ ପତନ ହୋଇଲେ କ୍ଷୟେ ନୋହେ କର୍ମେ
କାଳ କାମ ବିଚାରି କରିବ ଲୋକ ଧର୍ମେ ।୧୪୯
ବକ ବୋଲେ ମହାତ୍ମା ଅଛଇ ଯେବେ ଧର୍ମ
ପାଣି ଫୁଟିଯେ ପିଅ ତୁ ଶାନ୍ତି ହୋଉ ଶ୍ରମ ।୧୫୦
କିଞ୍ଚିତ ପାତକ ଥିଲେ ନ ଭକ୍ଷିବୁ ପାଣି
ଧର୍ମ ଥିଲେ ତରିବୁ ପାପ ଥିଲେ ମରିବୁ ସେହିକ୍ଷଣି ।୧୫୧
ଧର୍ମ ଧର୍ମ ସୁମରି ସେ ଦେବ ଧର୍ମରାୟେ
ଆକ୍ରୋଷିଣ ଆହର କଲେ ପାଣି ଯେ ଫୁଟିଯେ ।୧୫୨
ଶାନ୍ତି ଉପୁଜିବା ଯାଯେ ପିଇଲେ ଦେବ ପାଣି
ଶରୀର ସୁସ୍ଥ କରି ଉତୁରିଲେ ନୃପମଣି ।୧୫୩
ଧର୍ମବକ ବୋଇଲା ତୋହୋର ନାମଗୋଟି
କଣକଣ୍ଠ କରି ଜାଣିଲି ତୁ ଅଟୁ ଯେ ଯୁଧେଷ୍ଠି ।୧୫୪
ବଦୟନ୍ତି ଧର୍ମସୁତ ଶୁଣ ହୋ ମହାଧର୍ମବକ
ମୁହିଁ ସେ ଯୁଧେଷ୍ଠି ତୁ ଶୁଣସି ଧାର୍ମିକ ।୧୫୫
ଶ୍ରାନ୍ତ ଭାଗନ୍ତେ ଶରୀର ହୋଇଲାକ ତ୍ରିପୁତି
ଦେଖିଲେ ମୃତୁପିଣ୍ଡ ପଡ଼ିଅଛି ମାରୁତି ।୧୫୬
ଯୁଧେଷ୍ଠି ବୋଇଲେ ହୋ ଶୁଣ ଧର୍ମବକ
ଭାଇଗୋଟି ମୃତୁଗତ କେମନ୍ତ କରି ରଖ ।୧୫୭
ଯୁଧେଷ୍ଠି ଦେବଂକୁ ଧର୍ମବକ ଯେ ପଚାରି
ଚାରିଦିଗେ ପଡ଼ିଅଛନ୍ତି ଯେ ଜଣଚାରି ।୧୫୮
ମୋହୋ ବଚନ ନ କରି ଶ୍ରାନ୍ତେ ପାଣି ଭକ୍ଷି
ମରିବଚି ବୋଇଲେ ଶ୍ରାନ୍ତି ନ ପାରିଲେ ମୂଚ୍ଛି ।୧୫୯
ଚାରିଦିଗରେ ଦେବ ଦେଖିଲେ ଚାରିନ୍ତି
ନକୁଳକୁ ଯୁଧେଷ୍ଠି ଧଇଲେ, ଅର୍ଜ୍ଜୁନକୁ ଧଇଲେ ଦ୍ରୋପତୀ ।୧୬୦
ଭୀମସେନ କଟିରେ ନେଇ ସବୁନ୍ତି ଶୁଆଇଲେ
ସହଦେବକୁ ଆଣି ଯେକଠାବ କଲେ ।୧୬୧
ଭୋ ଧର୍ମବକ ତୁ ମହତ ସୁଗ୍ୟାନୀ ଯୁଗତେ
ମୋହୋର ଚାରି ସୋଦରେ ବ୍ରତନ୍ତି କେମନ୍ତେ ।୧୬୨
ଧର୍ମବକ ବୋଇଲେ ହୋ ନବ୍ରତିବେ ଚାରିଜଣ
ଦୁଇଗୋଟିକି ପାରିବା ହୋ ମିଥ୍ୟା କହିବା ଅକାରଣ ।୧୬୩

ଯେ ତୋହୋର ସହୋଦ୍ର ହୃଦୟକୁ ଅଭିନ୍ନ
ଦୁଇଜଣ କୋଳକରି ତୋଳ ହୋ ସେ ପାଆନ୍ତୁ ଜୀବନ ।୧୬୪
ଯୁଝେଷ୍ଟି ବୋଇଲେ ଧର୍ମବକ ତ୍ରାହିକର ମୋତେ
ଚାରିଗୋଟି ଭାଇ ମୋର ବ୍ରତନ୍ତି କେମନ୍ତେ ।୧୬୫
ଧର୍ମବକ ବୋଇଲା ହୋ ଗତପ୍ରାଣ ନ ବ୍ରତି
ତୋତେ ସଖା ହୋଇବା ନିମନ୍ତେ ଜୀଆଂଇବା ଦୁହିନ୍ତି ।୧୬୬
ଆମ୍ଭର ତହୁଂ ମହାତମା ହୋ ଆକ୍ଷ୍ୟ କାଢ଼ିଦେବୁଂ
ଯେତେ ବାଗେ ତୋହୋର ବେନି ସୋଦର ଜୀଆଂଇବୁ ।୧୬୭
ଯୁଝେଷ୍ଟିଙ୍କ ମୁଖ ଚାହିଂ ବୋଇଲେ ଦ୍ରୋପତୀ
ଭୀମ ଅର୍ଜୁନେ ଦେବ ତୋଳ ଯେ ଦୁହିନ୍ତି ।୧୬୮
ଯୁଝେଷ୍ଟି ଦେବ ବୋଇଲେ ଯେ ନୋହୋଇ ମହତଂକ ବାଣୀ
ପରକୁ ପରମାଦ କଲେ ଆପଣାକୁ ଧର୍ମହାନି ।୧୬୯
ଯେତେକ ବିଚାର କରିଣ ସେ ଦେବ ଧର୍ମସୁତ
ଦ୍ରୋପତୀଙ୍କି ବୋଇଲେ ଯେ ନୋହୋଇ ଯୁଗତ ।୧୭୦
ମଦନା ଦେବୀର ଗୋ ପ୍ରାଣ ପ୍ରଦୋଷ କାଳେ
ନକୁଳ ସହଦେବନ୍ତ ଆଣି ଦିଲେ ମୋହୋର କୋଳେ ।୧୭୧
ଯେ ମୋହୋର ବାଲୁତ ପୁତ୍ର ବେନିଗୋଟି
ଯେହାନ୍ତ ତୋତେ ସମର୍ପି ମୁହିଂ ଯାଉଅଛି ଯୁଝେଷ୍ଟି ।୧୭୨
ଯେ ପୁତ୍ର ଦୁଇଗୋଟି ସମର୍ପି ଗଲେ ମୋତେ
ମୁହିଂ ଯେବେ ଧର୍ମ ଲଂଘି ତାହାନ୍ତ ଛାଡ଼ିବି କେମନ୍ତେ ।୧୭୩
ମରନ୍ତୁ ପଛେ ସେ ଭୀମ ଅର୍ଜୁନ ବେନି ଭ୍ରାଥ
ଶ୍ରୀଭୁଜେ କୋଳକଲେ ଦେବ ନକୁଳ ସହଦେବନ୍ତ ।୧୭୪
ଧର୍ମବକ ପୁଣ ପୁଣ ତିଆରନ୍ତି ଯୁଝେଷ୍ଟିଂକି
ଯେ ଦୁହେଂ ତୋହୋର ବାବୁ ସୋଦର ଅଟନ୍ତି ଟିକି ।୧୭୫
ଯୁଝେଷ୍ଟି ବୋଇଲେ ତୁମ୍ଭେ ଶୁଣ ହୋ ଧାର୍ମିକ
ଯେ ଦୁହେଂ ଅଟନ୍ତି ମୋହୋର ଯେ ଆତ୍ମାର ସାରିକ୍ଷ ।୧୭୬
ଧର୍ମବକ ବୋଇଲା ବ୍ରତରେ ତୁମ୍ଭେ ବେନି
ନକୁଳ ସହଦେବ ଉଠି ବସିଲେ ନିଜ ପ୍ରାଣ ଘେନି ।୧୭୭
ଯେସନେକେ ଚେତନା ପାବନ୍ତି ନିଦ୍ରାଗତ ପ୍ରାଣୀ
ସାଷ୍ଟମ ହୋଇ ବସିଲେ ନିଦ୍ରାଭଙ୍ଗ ଜାଣି ।୧୭୮
ଧର୍ମବକ ବୋଇଲା ତୁ ପୁରୁଷଂକର ଉତ୍ତମ
ସୁଜାଣ ପୁରୁଷ ତୁ ପ୍ରତକ୍ଷେ ଅଟୁ ଦେବଧର୍ମ ।୧୭୯
ଯେଡ଼େ ଧାର୍ମିକ ତୁ ଅଟୁ ସାଧୁ ତୋହୋର ଜୀବନଗୋଟି
ମନୁଷ୍ୟ ଜନ୍ମ ପ୍ରାୟେ ତୋତେ ବୁଝୁଥିଲି ଯୁଝେଷ୍ଟି ।୧୮୦

ବହୁତ ପ୍ରଶଂସି ଧର୍ମବକ ଯେ ପଚାରି
ବାବୁ ତୋହୋର ମନେ ଟିକିଏ ହିଂସା ଭାବ ନ ଧରି ।୧୮୧
ସାବତ ହିଂସା ତୁମ୍ଭେ ନ ଧଇଲ ମନ
ନିଚୟେ ଅଟୁ ତୁ ଧର୍ମ ପୁରୁଷ ଉତ୍ତମ ।୧୮୨
ଯେବେ ତୋହୋ ଚିତ୍ତେ ଯେସନେକ ବିଚାରି
ସେ ଦୁହିନ୍ତି ମହାତମା ହୋ ଧର କୋଳକରି ।୧୮୩
ଯୁଝେଷ୍ଟି ଦେବ ତୋଳିଲେ ଭୀମ ଅର୍ଜୁନଙ୍କୁ
ଧର୍ମବକ ବୋଇଲେ ରେ ପରମ ଆକ୍ଷ୍ୟ ହୋଉ ତୁକୁ ।୧୮୪
ଭୀମ ଅର୍ଜୁନ ଦୁହେଂ ଉଠି ବସିଲେକ ଚେତି
ଦେଖିଣ ସାନନ୍ଦ ହୋଇଲେକ ଧର୍ମ ଭୂଅପତି ।୧୮୫
ଧର୍ମବକ ବୋଇଲା ତୁ ଅଟୁ ସୋମବଂଶୀ
ମୋହୋର ପାଶକୁ ବାବୁ ପାରିବୁ କି ଆସି ।୧୮୬
ଯୁଝେଷ୍ଟି ଦେବେ ବୋଇଲେ ଅକାଦ ଜଳପାଣି
ଅପାର ଦୃଗମ ଯେ କେମନ୍ତେ ଯିବି ଜିଣି ।୧୮୭
ଧର୍ମବକ ବୋଇଲେ ତୋହୋର ସତ ଯେବେ ଧର୍ମ
ପାପ ଥିଲେ ନାଶଯାନ୍ତି ଜଳରେ ଯେ କରନ୍ତି ଉତକର୍ମ ।୧୮୮
ଶୁଣ ହୋ ଯୁଝେଷ୍ଟିର ପୂର୍ବର ଯେହେନେକ କଥା
ତୋତେ କହୁଂ ଆମ୍ଭେ ସତ୍ୟଯୁଗର ବାରତା ।୧୮୯
ସତ୍ୟଯୁଗ ସତର ଲକ୍ଷ ଅଠେଇଶ ସହସ୍ର ବରଷ
ଊନମତେ ନବଲକ୍ଷ ନଉ ସହସ୍ର ବରଷ ।୧୯୦
ମାଧୁର୍ଯ୍ୟ ବୋଲିକରି ଯେକଇ ସତ୍ୟଯୁଗେ
ସହସ୍ର ମୁଖ ବ୍ରହ୍ମା ବସଇ ଯଶୋବନ୍ତୀ ଭୁବନ ସ୍ୱର୍ଗେ ।୧୯୧
ପଦ୍ମହସ୍ତକ ବୋଲିଣ ଯେ ନାରାୟଣ ଉତପତ୍ତି
ଶତେକ ମୁଖ ଈଶ୍ୱର ହଟକେଶ୍ୱର ପୁରେ ଚକ୍ରବ୍ରତୀ ।୧୯୨
ପଞ୍ଚାଶ ବଦନ ସୁରପତି ଅବତରି
ପୁରୁହୂତ ନାମେଣ ଯେ ଅଟଇ ବାସବାରି ।୧୯୩
ସେ ଇନ୍ଦ୍ରକାଳେ ନବଲକ୍ଷ ନଉସହସ୍ର ଯୋଜନ ପୃଥୀ
ବଳୀବେଣୁ ମାନଧାତା ଜାନୁଘଣ୍ଟ ପୁରୁରବା ହରିଚେନ୍ଦନ ନୃପତି ।୧୯୪
ସେ ସୂର୍ଯ୍ୟବଂଶରେ ରାଜା ଇକ୍ଷ୍ୱାକୁର ନରପତି
ସୂର୍ଯ୍ୟସେନର ପୁତ୍ର ସେ ଦକ୍ଷ ପ୍ରଜାପତିର ନାତି ।୧୯୫
ବଡ଼ାଇ ଧନ ତାହାର ବଡ଼ାଇ ସମ୍ପତ୍ତି
ଅନେକ ସୁବିଧାନେ ପାଳଇ ସେହୁ ପୃଥୀ ।୧୯୬
ସେ ଇକ୍ଷ୍ୱାକୁର ମହିମାଂ ଶୁଣ ଧର୍ମରାୟେ
ବଶିଷ୍ଟଂକୁ ଘେନି ରାଜା ଆକାଶ ଗଙ୍ଗାକୂଳେ ସଂକଳ୍ପ କଯେ ।୧୯୭

ଅବିଚ୍ଛନ୍ନେ ଦାନ ଦିଅଇ ଯେ ଯେତେବେଳେ ଯାହା ମାଗି
ରାଜ୍ୟଭାର ସିଂହାସନ ସହିତେ ଦାନ ପରିତ୍ୟାଗୀ ।୧୧୯୮
ଯେହ୍ନେ ସଂକଳ୍ପ କରଇ ତେହ୍ନେ ଦିଯେ ଦାନ
ଦ୍ୱାଦଶ ଚକ୍ରବ୍ରତୀ ରାଯେ କେହି ନୋହିଲେ ସମାନ ।୧୧୯୯
ମଧ୍ୟ ଭୁବନେ ଯେତେ ଦୁଷ୍ଟ ରାକ୍ଷସ ଥିଲେ
ତେଢେ ସମାର୍ଜି ରାଜା ସମସ୍ତ ବିସର୍ଜିଲେ ।୧୨୦୦
ସେ ଇକ୍ଷାକୁ ରାଜ୍ୟେ ଯେତେ ରାକ୍ଷସ ପିଚାଶ
ଦୁଷ୍ଟପଣ ଛାଡ଼ି ସମସ୍ତେ କଲେ ତ୍ରାସ ।୧୨୦୧
ସପତ ଦୀପ ମଧ୍ୟେ ସେ ଯେକାଙ୍ଗ ଚକ୍ରବ୍ରତୀ
କନ୍ଦମୂଳ ଆହାରେ ବ୍ରତଇ ରାଯେ ନିତି ।୧୨୦୨
ରଥଗଜ ପାଦାନ୍ତି ନାହିଁ ତାର ତୁଲେ
ନବଦୀପ ସପତ ସାଗର ଭ୍ରମଇ ଦିନକରେ ଭଲେ ।୧୨୦୩
ସପତ ଦୀପ ପୃଥୀରେ ସେ ଆଗ୍ୟାଂଦିଲା ରାଜା
ଯେତେକ ଅର୍ଜଇ ଓହୋରାଶି ଭୋଗ କରିବ ପରଜା ।୧୨୦୪
ଧନଭଣ୍ଡାର ରାଜାର ଘର ଗ୍ରାମ ନାହିଁ
କନ୍ଦମୂଳ ଆହାରେ ବନେ ରାଜା ଥାଇ ରହି ।୧୨୦୫
ଚାଷେଣ ଯେତେକ ଲୋକେ ଅରଜନ୍ତି କୃଷି
କାହାକଙ୍ଗ କିଛି ନାହିଁ ସୁଖେ ନିଅନ୍ତି ଦୁଇରାଶି ।୧୨୦୬
ପରଜାଂକ ଘର ଯେ ସୁବର୍ଣ୍ଣ ଛାୟେଣୀ
ମୁକୁତା ମାଣିକ୍ୟ ହୀରା ଉପରେ ଖଞ୍ଜାଣୀ ।୧୨୦୭
ଅଳକା ଭୁବନ ଯେହ୍ନେ ଦିଶଇ ଆକାଶେ
ସପତ ଦୀପଯାକ ସୁବର୍ଣ୍ଣ ଘର ଦିଶେ ।୧୨୦୮
ସେ ରାଜାର ଭାରିଯା ନୀରବତୀ ବୋଲି ରାଣୀ
ସତୀ ସତ୍ୟବତୀ ସେ ଲକ୍ଷ୍ମୀ ସରିକ୍ଷେ ଜାଣି ।୧୨୦୯
ସେ ଇକ୍ଷ୍ୱାକୁରର ଭାରିଯା ସମୋଦ୍ରେ ଯାଇ ଚାଲି
ନବଲକ୍ଷ ଯୋଜନ ଅଗାଦ ଜଳେ ନ ତିନ୍ତଇ ପାଦତଳି ।୧୨୧୦
ଯେମନ୍ତେ ଖାର ସମୋଦ୍ରଂ ଚାଲିଯାଇଂ କ୍ଷୀରସିନ୍ଧୁ ପରିଯନ୍ତେ
କ୍ଷୀର ସମୋଦ୍ରଂ ପାଣି ଆଣଇ ସେହୁ ନିତ୍ୟେ ।୧୨୧୧
ଶୁଣ ବାବୁ ଯୁଧେଷ୍ଟି ସେ ରାଜା ଇକ୍ଷ୍ୱାକୁରୁ
ସତ୍ୟଯୁଗେ ନବଲକ୍ଷ ବରଷ ପରିଯନ୍ତେ ରାଜ୍ୟଭୋଗ କରୁ ।୧୨୧୨
ଅନେକ ସମ୍ପଦ ଯେ ହୋଇଲେ ଜନପ୍ରଜା
ପ୍ରଜାଯେ ବୋଇଲେ ଆମ୍ଭର ଆକ୍ଷ୍ୟ ହୋଇଲାକ ତାକୁ ବ୍ରତିଥାଉଂ
ଇକ୍ଷ୍ୱାକୁର ରାଜା ।୧୨୧୩

ସତ୍ୟଯୁଗେ ରାଜା ରାଜ୍ୟ କରଇ ନବଲକ୍ଷ ବରଷ
ପତି ପତ୍ନୀ ଦୁହେଂ ଯେ ନବଯୁବା ବୟସ ।୧୨୧୪
ଆହୋ ଯୁଧେଷ୍ଟି ଯେ ସଂସାରେ ତାହାକୁ ବୋଲନ୍ତି ଧନି ଧନି
ନକ୍ଷତ୍ର ହୋଇ ବସିଲେ ପୁତ୍ର ଭାରିଯାନ୍ତ ଘେନି ।୧୨୧୫
ଧର୍ମବକ ବୋଇଲା ଶୁଣସି ଯୁଧେଷ୍ଟି ରାଯେ
ଧର୍ମଥିଲେ ଚାଲିଆସ ଅଗାଦ ଜଳେ ପାଯେ ।୧୨୧୬
ଚାରି ସମୁଦ୍ର ଜିଣି ସେ ରାଜାର ରାଣୀ ଗଲା ଚାଲି
କ୍ଷାର ନୀର ଶ୍ୱେତ ଜିଣିଯାଇ କ୍ଷୀର ସମୁଦ୍ରକୁ ବୋଲି ।୧୨୧୭
ତୁ ମହା ଧାର୍ମିକ ଅଟୁ ହୋ ମହାରାଯେ
କିମ୍ପାଇଂ ଆସି ନୁଆରିବୁ ସରୋବର ମଧ୍ୟଯାଯେ ।୧୨୧୮
ଆହୋ ଯୁଧେଷ୍ଟି ସମସ୍ତ ଧର୍ମ ତୋର ଜାଣିମା ଯେହିଠାରୁ
ଜଳର ଭିତରେ ତୁ ଯେବେ ଚାଲି ଆସିପାରୁ ।୧୨୧୯
ଶିଉଳୀ ପତ୍ରେ ପତ୍ରେ ଦେବ ଚରଣ ଦେଇ ଦେଇ
ଧର୍ମବକର ସନ୍ନିଧେ ପ୍ରବେଶ ହୋଇଲେ ଯାଇଂ ।୧୨୨୦
ଯୁଧେଷ୍ଟି ଦେବେ ବୋଇଲେ ଶୁଣ ହୋ ଧର୍ମବକ
ପକ୍ଷୀଜନ୍ତୁ ହୋଇ ତୁ ଯେ ଯେଡ଼େକ ଧାର୍ମିକ ।୧୨୨୧
ଯେମନ୍ତ ରୂପ ଧରୁ ତୁ କେବଣ ମହାତମା
ତୁ କି ହରିହର ଇନ୍ଦ୍ର କୋବେର ବେଦବ୍ରହ୍ମା ।୧୨୨୨
ସତ୍ୟବର ଧାର୍ମିକ ଯେ ବାଛା ତୋର ସିଦ୍ଧି
ପକ୍ଷୀମାତ୍ର ହୋଇ କାହିଂ ଯେସନକ ବୁଦ୍ଧି ।୧୨୨୩
ଧର୍ମବକ ବୋଇଲା ହୋ ଶୁଣ ମୋର ବାକ୍ୟ
ତୁହି ମହାଗ୍ୟାଂତା ହୋ ପରମ ଧାର୍ମିକ ।୧୨୨୪
ଶୁକ୍ଳାମ୍ବର ପୁରୁଷ ମୁହିଂ ଧର୍ମ ଯେ ଦେବତା
କୋଇନ୍ତା ବୋଲି କରି କୁନ୍ତ ଭୋଜର ଦୁହିତା ।୧୨୨୫
ଦୃର୍ଭାସାକଇଂ ସେବି ପାଇଲେ ମହାମନ୍ତ୍ର ଜପାମାଳି
ମୋତେ ସୁମରଣା କଲା ଭୋଜରାଜାର ଦୁଲାଳୀ ।୧୨୨୬
ନିରାଲମ୍ବ ପୁରୁଷ ମୁଂ ଯୁଗତେ ନିରାକାର
ମହାମନ୍ତ୍ର ଡରେ ମୁହିଂ ହୋଇଲି ଆକାର ।୧୨୨୭
କୋଇନ୍ତାଂକର ତୁଲେ ମୁହିଂ ବଢ଼ାଇଲି ପୀରତି
ମମ ବୀର୍ଯ୍ୟେ ପୁତ୍ରେକ ହୋଇଲା ଉତପତ୍ତି ।୧୨୨୮
ଯେସନେକ ଚରିତ ମୁଂ କଲଇଂ ବିଚାର
ଶୁଣିଣ ସାନନ୍ଦ ହେଲେ ଯୁଧେଷ୍ଟି ନୃପବର ।୧୨୨୯
ଧର୍ମବକ ଚରଣେ ଯୁଧେଷ୍ଟି ପରିଣାମି
ଅଇଲି ଯେତେବେଳେ ଭେଟ ମୁଂ ପାଇଲି ଦେବସ୍ୱାମୀ ।୧୨୩୦
ମୁହିଂ ଯେ ତବ ନନ୍ଦନ କୋଇନ୍ତାଙ୍କ ଜ୍ୟେଷ୍ଠପୁତ୍ର

ଭୀମ ଅର୍ଜ୍ଜୁନ ନକୁଳ ସହଦେବ ସେ ଆମ୍ଭର ଅଟନ୍ତି
ସାନଭ୍ରାଥ ।୨୩୧
ଧର୍ମବକ ବୋଇଲା ମୁହିଂ ଜାଣଇ ସର୍ବକଥା
ଅରଣ୍ୟେ ଆସିବ ବୋଲି ପାଇଛି ବାରତା ।୨୩୨
ଅବଶ୍ୟ ବନସ୍ତେ ତୁମ୍ଭେ ହୋଇବ ପରବେଶ
ସଞ୍ଚୟେ ଭେଟିବ ତୁମ୍ଭେ ଅନ୍ଧେକ ସରୋବର ପାଶ ।୨୩୩
ତେଣୁ କରି ମୁଂ ଯେ ତୀର୍ଥେ ଅଛି ବସି
ଯେ ତୀର୍ଥ ମହିମାଂ ତୁ ଶୁଣ ହୋ ସୋମବଂଶୀ ।୨୩୪
ବାବୁ ଅଗ୍ୟାନେ ଯେ ତୀର୍ଥେ ଯେ ଜଳ ଅପ୍ୟାନ କରି
ବେନିଚକ୍ଷୁ ଅନ୍ଧ ହୋଇ ଅବଶ୍ୟ ପ୍ରାଣହାରି ।୨୩୫
ଯେବେ ଶରୀରେ ଥିବ ପରମ ଆଇଷ
ଯେ ଜଳ ପିଅନ୍ତେ ମୃତୁ ପାଇବଟି ଧର୍ମଶିଷ ।୨୩୬
ବାବୁ ତୁମ୍ଭର ନିମନ୍ତେ ମୁହିଂ ପଥ ଅଛି ନିରେଖି
ତବ କାର୍ଯ୍ୟ ଅର୍ଥେ ମୁହିଂ ବସିଅଛି ଟାକି ।୨୩୭
ମୁହିଂ ସେ ଧର୍ମଦେବତା ଶୁଣ ହୋ ଯୁଝେଷ୍ଠି
ଗୋପ୍ୟାନ ନିମନ୍ତେ ବାବୁ ବକରୂପ ଗୋଟି ।୨୩୮
ନ ପୁଣ ଜଳ ଯେଥି ପିଇବ କୁମର
କୂଳକୁ ଉଠିଲେ ଡାକ ଦିଅଇ ଅପାର ।୨୩୯
ମୋହୋର ଡାକନ୍ତେ ଡାକ କେହି ନ ଶୁଣନ୍ତି
ପାଣି ପ୍ୟନ୍ତେ ଚକ୍ଷୁଫୁଟି ପ୍ରାଣତ୍ୟାଗ ହୋନ୍ତି ।୨୪୦
ତୋହୋର ଭାଇମାନେ ବୋଲ ନ କଲେ ମୋହୋର
ସୁସଞ୍ଚ ଜଳ ଦେଖିଣ ପିଇଲେ ଅପାର ।୨୪୧
ତହିଂର ଚରିତ ଦେଖିଲୁଟି ବାବୁ ତୁହି
ଯେ ଅନ୍ଧେକ ସରୋବର ଯେମନ୍ତ ଅଟଇ ।୨୪୨
ବାବୁ ଯେ ଜଳକୁ ହାଦେ ଗ୍ରାସ ତୁହି କରୁଥିଲୁ
ତୁ ଗ୍ୟାନୀ ପୁରୁଷ ମୋର ଡାକନ୍ତେ ରହିଲୁ ।୨୪୩
ବହୁତ ଶ୍ରଦ୍ଧା ମୋ ତୋତେ ଦେଖନ୍ତେ
ତୋତେ ଦେଖିବି ବୋଲି ବୃକ୍ଷେ ଥାଇ ନିତ୍ୟେ ।୨୪୪
ମୁହିଂ ସେ ଧର୍ମବକ ତୁ ଜାଣ ହୋ ଯୁଝେଷ୍ଠି
ଧର୍ମ ଆଚାରେ ବାବୁରେ ବଞ୍ଚାଇ ଅଛିଷ୍ଟି ।୨୪୫
ତୋର ଧର୍ମକଥା ବାବୁ ଶୁଣଇ ଅପାର
ପ୍ରତକ୍ଷେ ଦେଖିଲି ପୁତ୍ର ମହିମାଂ ତୋହୋର ।୨୪୬
ବାବୁ ତୋତେ ଭେଟିଲି ମୋ ଜୀବନ ସୁଫଳ
ତୁ ସେ ବଂଶ ଉଦ୍ଧରିବୁ ମୋହୋର କୁମର ।୨୪୭
ପରମାର୍ଥ କଥା ଧର୍ମ କହିଲେ ଅପାର
ପିତାଂକ ଚରଣେ ଯୁଝେଷ୍ଠି କଲେକ ନମସ୍କାର ।୨୪୮
ପାଦେ ପଡ଼ିଣ ଯୁଝେଷ୍ଠି ବୋଲନ୍ତି ନମୋ ନମୋ
ନିସ୍ତରିଲି ନିସ୍ତରିଲି ମୁହିଂ ଭେଟିଲଇଂ ଯେ ପରଂବ୍ରହ୍ମ ।୨୪୯
ପୁଣ ପୁଣ ପ୍ରଣପତ୍ୟ ଧର୍ମବକ ପାଦେ ହୋଇ
ଯେ ସରୋବର କଥା ମୋତେ କହିବାକ ଗୋସାଇଂ ।୨୫୦
ଯୁଝେଷ୍ଠି ଦେବେ ବୋଇଲେ ଶୁଣିମା ପିତାମହ
ଯେ ସରୋବର କଥାତ ବଡ଼ାଇ ସଂନ୍ଦେହ ।୨୫୧
ଯେଥେଂ ପାଣି ପିଅନ୍ତେଣ କିମ୍ପା ଚକ୍ଷୁ ଯାଇ ଫୁଟି
ପ୍ରାଣତ୍ୟାଜ ହୋଇ କିମ୍ପେ ବିସର୍ଜଇ ଆତ୍ମାଗୋଟି ।୨୫୨
ବଦୟନ୍ତି ଦେବ ଧର୍ମେ ବାବୁ ଶୁଣିମା ସାବଧାନେ
ତୋହୋରି ପ୍ରାୟେ ହୋଇ ତ୍ରେତୟାରେ ଶ୍ରୀରାମ ଅଇଲେକ
ବନେ ।୨୫୩
ତାହାଂକର ତୁଳେ ଗଲେ ଲକ୍ଷ୍ମଣ ଦେବୀ ସୀତା
ଜାନକୀଂକି ହରିନେଲା ରାବଣ ଦଇତା ।୨୫୪
ବାରତା ପାଇକରି ତହୁଂ ଗଲେ ରାମଚନ୍ଦ୍ରେ
ବାଳିକି ବଧକରି ବାରାନିଧିରେ ବାନ୍ଧିଲେ ସେତୁବନ୍ଧେ ।୨୫୫
ସେତୁ ବାନ୍ଧି ରାମ ରାବଣରେ ହୋଇଲା ସମର
କୁମ୍ଭକର୍ଣ୍ଣ ବୋଲିକରି ସାନୁଜ ତାହାର ।୨୫୬
ଅଚାର୍ଗଲା ଅସୁର ପ୍ରତାପୀ ମହାବୀରେ
ଶ୍ରୀରାମଚନ୍ଦ୍ରଙ୍କ ତୁଳେ ତାହାର ଅନେକ ସମରେ ।୨୫୭
ପ୍ରଥମେ ଶ୍ରୀରାମଚନ୍ଦ୍ରେ ଛେଦିଲେ ତାର ବେନିଭୁଜ
ଅନେକ ବାନର ସେ ଗିଳିଲା ଦନୁଜ ।୨୫୮
ପୁଣିହିଂ ଶ୍ରୀରାମ ବାବଲ ପୂରୋଇ କୋଦଣ୍ଡ
ତୀଖ ଶରଘେନି ଛେଦିଲେ ତାର ମୁଣ୍ଡ ।୨୫୯
ମୁଣ୍ଡଗୋଟି ତାହାର କଲେକ ବେନିଫାଳ
ବାବଲ ଶରେ କଲେ ବେନିଫାଳ କପୋଳ ।୨୬୦
ପବନ ଶହସ୍ର ଯେ ପେଷିଲେ ରଘୁସାଇଂ
ଖଣ୍ଡେକ ଅନ୍ତରୀକ୍ଷେ ଦିଲେକ ଉଡ଼ାଇ ।୨୬୧
ବାୟବା ଶରଘାତେ କପାଳ ତାର ଫାଟି
ଲଂକା ଦୀପୁଂ ଆସି ପଡ଼ିଲାକ ଯେଥି ଘୋଟି ।୨୬୨
କୁମ୍ଭକର୍ଣ୍ଣ କପାଳ ଯେ ଅଟଇ ଯେହୁ ସରୋବର
ଧର୍ମବକ ବୋଇଲା ବାବୁ ଶୁଣ ହୋ ଯୁଝେଷ୍ଠିର ।୨୬୩
ଅସୁର ଭୋଗ୍ୟ ହୋଇଲା ଯେ ଗଙ୍ଗାଜଳ ପାଣି
କାଳାନଳ ଜ୍ୱଳାନଳ ଯେଥେ ଯେ ପଶନ୍ତି ନ ଜାଣି ।୨୬୪

ବାବୁ କାଳକୂଟ ବିଷ ଅଟଇ ଯେହ୍ନେ ଜଳ
ନ ଜାଣି ଖାଇଲେ ଜଳ ଅବଶ୍ୟ ପୂରଇ ଯେ କାଳ ।୨୬୫
ନୀଳ ଉତପଳ ପରାୟେ ଦେଖ ଯେ ପାଣିରୁ ଦିଶଇ ଜ୍ୟୋତି
ଅସୁର ବ୍ୟତ୍ରେକେ ଆନ ନ ପାରଇ ଜଳ ଭକ୍ଷି ।୨୬୬
ଦେବ ମାନବଂକୁ ଯେ ଜଳ ନ ଯାଇଟି ପାର
ଯେ ଜଳ ପିଇକରି ମୃତୁ ପାଇଲେ ଅପାର ।୨୬୭
ହାଥୀ ଘୋଡ଼ା ବ୍ୟାଘ୍ର ମଇଂଷୀ ଓଟ ଗଧ ଜୀବ
ଯେ ପାଣି ପିଅନ୍ତେ ମୃତୁ ପାଇଲେଟି ସର୍ବ ।୨୬୮
ବାବୁ ପାଞ୍ଚକୋଶ ଦୀର୍ଘେ ଯେଥେ ନିୟଡ଼େ ନାହିଂ ଜଳ
ଶ୍ରମେଣ ଆହାର ଯେହ୍ନେ କରନ୍ତି ବିକଳ ।୨୬୯
ଚକ୍ଷୁଫୁଟି ଯାଇ ଯେ ନିଜ ପ୍ରାଣ ତୁଟି
ପ୍ରାଣ ବିସର୍ଜିଣ ଯେ ପଡ଼ନ୍ତି ମହୀଲୋଟି ।୨୭୦
ବାବୁ, ଗୋ ବ୍ରାହ୍ମଣ ଆଦିକରି ଚାରିଖାନି ଚଉରାଶୀ କୋଟି ଜୀବଜନ୍ତୁ
ଯେଥେ ପାଣି ପିଇଲେ ଅବଶ୍ୟ ପାଇ ମୃତ୍ୟୁ ।୨୭୧
ଯେ ସଂସାର ଜନଂକର ଅବସ୍ଥା ଦୁଖ ଦେଖି
ବକ ରୂପେ ବସିଅଛି ସମସ୍ତ ଉପେକ୍ଷି ।୨୭୨
ଜଳ ଆଧାର ନ କର ବୋଲି ମୁଂ କହଇ ଅବଶ୍ୟ
ବାତା ନ ଶୁଣି ଯେ ପିଅଇ ଆବଶ୍ୟ ଯାନ୍ତି ନାଶ ।୨୭୩
ଯୁଝେଷ୍ଠି ଦେବ ବୋଇଲେ ଯେହି ଜଳ ଅଟେ ବିଷ
ଯେଥୁ ଜଳ ଭକ୍ଷିଲେ ଅବଶ୍ୟ ହୁଅଇ ପ୍ରାଣେ ନାଶ ।୨୭୪
ହତ୍ୟା ବିବାଦୀ ଯେ ଅଟଇ ଯେହ୍ନେ ଜାଣ
ଯେ ଜଳ ପବିତ୍ର କେହ୍ନେ ହୋଇବାକ କାରଣ ।୨୭୫
ଧର୍ମବକ ବୋଇଲେ ଶୁଣ ହୋ ଯୁଝେଷ୍ଠିର
ଯେ ଜଳକୁ କାରଣ କର ତୁହି ପୁତ୍ର ମୋର ।୨୭୬
ତୁ ଧର୍ମ ପୁରୁଷ ତୋହୋର କର ଯେ ଜଳେ ଯହୁଂ ଲାଗି
ଆଜୁଂ ଯେ ମୋକ୍ଷ ହୋଇଲା ଅନେକ ତୀର୍ଥ ପୁଣ୍ୟଭାଗୀ ।୨୭୭
ଆଜହୁଂ ଯେ ତୀର୍ଥ ହୋଇଲାନି ପ୍ରତିକାର
ଯହୁଂ ସେ ଜଳକୁ ଭେଟିଲୁଂ ଯୁଝେଷ୍ଠିର ।୨୭୮
ଭାଇ ଭାଗିଯାନ୍ତ ଘେନି ଯେଥେଂ ସ୍ନାହାନ କର ହୋ ଯୁଝେଷ୍ଠି
ପବିତ୍ର ହୋଇ ଯେ ତାର ଶତଦୋଷ ଯାଉ ମେଣ୍ଟି ।୨୭୯
ଭୀମ ଅର୍ଜୁନ ଯେ ନକୁଳ ସହଦେବ
ସେହି ସ୍ନାହାନ କଲେ ଯେ ଅକାଦ ଜଳଠାବ ।୨୮୦
ଦ୍ରୋପଦୀ ସହିତେ ଜଳେ ପଶିଲେ ଅବଗାହି
ସ୍ନାହାନ କଲେ ତହିଂ ମହାହରଷ ହୋଇ ।୨୮୧
ଆପଣେ ସ୍ନାହାନ ଯେ କଲେ ଦେବ ଧର୍ମେ
ସ୍ନାହାନ ତର୍ପଣ ସେ ସାରିଲେ ନିତ୍ୟକର୍ମେ ।୨୮୨
ବକରୂପ ତେଜି ସେ ବିକାଶିଲେ ତେଜବ୍ରହ୍ମ
ରୂପଗୁଣ ସୁନ୍ଦର ଯେ କି ଦେବା ଉପାମ ।୨୮୩
ଅନେକ ପରମାର୍ଥ ଯେ କହିଲେ ଯୁଝେଷ୍ଠିଂକି
ଯୁଝେଷ୍ଠି ସାନନ୍ଦ ହୋଇଲେ ତାହାଂକ ରୂପ ଦେଖି ।୨୮୪
ଧର୍ମଦେବତାୟେ ଯେ ଶମ୍ଭୁଲିଙ୍ଗେକ ହୋଇ
ସେ କପାଳେଶ୍ୱର ତୀର୍ଥେ ରହିଲେ ମୂର୍ତ୍ତିବନ୍ତ ହୋଇ ।୨୮୫
ମହାଶମ୍ଭୁ ଦେବତା ବିଜୟେ ସମ୍ଭବା
ପୂଜନ୍ତି ଯୁଝେଷ୍ଠି ଦେବେ ନିତ୍ୟେହେଂ କରନ୍ତି ସେବା ।୨୮୬
ଜୟତୁ ଅଭୟେ ନିରଞ୍ଜନ ନିରାକାର
ଜୟତୁ ଶୂନ୍ୟ ସାଧାରଣ କରତାର ।୨୮୭
ଶୁଦ୍ଧ ସଷ୍ଟିକ ପଟଳ ତୁ ଦେବ ହରନାଥ
ଯତସତ ଲୟଭିଗ୍ୟଂ ଭୋଗ୍ୟ ପରମାର୍ଥ ।୨୮୮
ଯଗୁଜନ ମୋହନ ଶୟନ ଜନ କରତା
ନବତନ ଲିଙ୍ଗ ପ୍ରଭୁ ମମ ହୃଦଗତା ।୨୮୯
ନମୋ ନମୋ ଦେବ ନିରାକାର ନିରାଲମ୍ବ ଶୁଦ୍ଧଦେହା
ନୀରାନ୍ତକ ଭୁଜଙ୍ଗ ଶୟନ ଭାବରେହା ।୨୯୦
ନମୋ ଧର୍ମଦେବତା ଧଇର୍ଯ୍ୟ ଗୁଣେ ଗୁଣ
ଜାତ ମଧ ଅନ୍ତେ ତୁହି ସେ ସବୁଂକର ପ୍ରାଣ ।୨୯୧
ନମୋ ନମୋ ପାବକ ହେ ପାଦ ଉର୍ଦ୍ଧେ ପୂଜା
ବିଷାନ୍ତକ ଅନୁଗ୍ରହ ଶାନ୍ତି ଅଇଶୁର୍ଯା ।୨୯୨
ନମୋ ନମୋ ହିରଣ୍ୟଗର୍ଭ ପୁରବାସୀ
ଅଖଣ୍ଡ ବ୍ରହ୍ମାଣ୍ଡଖଣ୍ଡ ମଧେ ଅବ୍ୟୟ ବ୍ରହ୍ମରାଶି ।୨୯୩
ଦିବ୍ୟଲୋଚନ ନାଥ ନମସ୍ତେ ନମସ୍ତେ
ପରଂବ୍ରହ୍ମ ଅବତାର ଜଗତଜନ ମୋକ୍ଷ ଅର୍ଥେ ।୨୯୪
ଶ୍ରୀଧର୍ମଦେବତା ପାଦପଦ୍ମ ରେଣୁଭାବେ
ଶୂଦ୍ରମୁନି ସାରୋଳ ଦାସ ଧର୍ମଲିଙ୍ଗ ଚରଣେ ଯେ ସେବେ ।୨୯୫

**

## ୬୦. ବେଲାବଳୀ ଉପାଖ୍ୟାନ

ବଦୟନ୍ତି ବଇବସୁତ ଶୁଣ ମନୁଶ୍ରୋତା
ଇତି ଶ୍ରୀ ବିଷ୍ଣୁ ପୁରାଣ ଆରଣ୍ୟକ ପର୍ବ କଥା ।୧
ଯୁଝେଷ୍ଠିଂକ ବନବାସ ନବବରଷ ଅନ୍ତରେ
ମହାଧାତୁ ବୋଲି ଯେକଇ ସମୟରେ ।୨

ଭାଦ୍ରବ ମାସ କୃଷ୍ଣପକ୍ଷ ଅମାବଇ ଚନ୍ଦ୍ରବାର
ମଘା ନକ୍ଷତ୍ରକୁ ଭୋଗ୍ୟ ଅଟଇ ସେ ଦିନର ।୩
ଅଶ୍ଳେଷା କକଡ଼ାରେ ଚନ୍ଦ୍ର ଦଶଦଣ୍ଡ ରାତି
ମଘାସିଂହ ସେ ଦିନରେ ଚଳିଲେ ବୃହସ୍ପତି ।୪
ଗଙ୍ଗା ଯମୁନା ସରସ୍ୱତୀ ଶୁକ୍ଳୟରୀ ଗଉରୀ
ପୁଣ୍ୟତୋୟା କାବେରୀ ବଇତରଣୀ ଗୋଦାବରୀ ।୫
ଫଲ୍ଗୁକୀ ସୁବର୍ଣ୍ଣଭଦ୍ରା ପାପ ଯେ ନାଶିନୀ
ମଣିକର୍ଣ୍ଣିକା ପ୍ରୟାଗ ପାତାଳ ବାସିନୀ ।୬
କୃଷ୍ଣଭଦ୍ରା ରୁଦ୍ରଭଦ୍ରା କାଶୀ କଉଶିକ
ଭାବାନୀ ମାଧବୀ ଲକ୍ଷ୍ମୀ ଗୋମତୀ ଜଳାଧିକ ।୭
ଆକାଶ ବାହିନୀ କାଞ୍ଚି ବାରାହୀ ତୁଙ୍ଗଭଦ୍ରା
ତମସା ଗଉତମୀ ଭଇରୋବୀ ଭାନୁଭଦ୍ରା ।୮
ହେମାଞ୍ଚ ହରିପାପ କେଦାର ନେପାଳ ପଶୁପତି
ସଉଦାମିନୀ ମନ୍ଦରବାସିନୀ ଭାଗୀରଥି ।୯
କୃଷ୍ଣବେଣୀ କାମିନୀ କାମାକ୍ଷୀ
ମାତଳୀ ମାତଙ୍ଗୀ ଅଭୟେ ପିଙ୍ଗଳାକ୍ଷୀ ।୧୦
ଦମୟନ୍ତୀ ଇନ୍ଦୁମତୀ ଚନ୍ଦ୍ରଭାଗା ଚିତ୍ରଉତ୍ପଳା
ଶ୍ୱେତଗଙ୍ଗା ସୁରଗଙ୍ଗା ଗୁପତଗଙ୍ଗା ସତ୍ୟ ମେଧା ମେଖଳା ।୧୧
କାଶୀଭଦ୍ରା ହରଉଦାସନୀ ଯେ ଉତ୍ତମ
ପ୍ରାଗବଟ ବାରାଣସୀ ଯେହାଂକର ମୂଳେ ସାଗର ସଂଗମ । ୧୨
ଉତ୍ତର ପଛିମ ମଉଦଧି ଶ୍ୱେତକୁଣ୍ଡ
ରୋହିଣୀ ମହାତରୁ ଗଙ୍ଗା ଚନ୍ଦ୍ରକାନ୍ତି ନାଭିଖଣ୍ଡ ।୧୩
କୋଟିୟେ ତୀର୍ଥ ଘେନି ଯେ କ୍ଷେତ୍ରାଧି ପୁଷ୍କର
ବିଜେ ମେରୁମେଖଳେ ଆକାଶଗଙ୍ଗା ଶିଖର ।୧୪
ସେ ପୁଷ୍କର କୋଟିୟେ ତୀର୍ଥ ଘେନି ଆସୁଅଛି ଭ୍ରମି
ଯହିଁ ପୁଣ୍ୟତୀର୍ଥ ତହିଂରେ ବିଶ୍ରାମି ।୧୫
ବୃହସ୍ପତି ବସିଲେ ଯେ ମଘାସିଂହ ରାଶି
ଗଉତମୀ ତୀର୍ଥେ କୋଟିୟେ ତୀର୍ଥ ଘେନି ପୁଷ୍କର ବିଜେକଲେ ଆସି ।୧୬
ଯହିଂ ପୁଷ୍କର ବିଜେ କରଇ ସେହୁ ହୁଅଇ ମହାତୀର୍ଥ
ତହିଂ ବିଜେ କରନ୍ତି ଯେ ସକଳ ଦଇବତ ।୧୭
ବୃହସ୍ପତି କହିଲେ ଯେ ଅମର ପୁର ସଭା
ପୁଣ୍ୟତୋୟା ପଡ଼ିଲା ଚାଲ ଗଉତମୀକି ଯିବା ।୧୮
ସିଂହମାସ କୃଷ୍ଣପକ୍ଷ ଅମାବଇ ପାହାନ୍ତି
ବେଳ ଜାଣି ସ୍ନାନ କଲେକ ଦେବ ସୁରପତି ।୧୯
ବ୍ରହ୍ମଦଇବତ ଦେବଧର୍ମ ଚନ୍ଦ୍ର ସୂର୍ଯ୍ୟେ
ବିଶ୍ୱେଦେବା ସନକା ସପତମନୁ ଗ୍ରହରାଜେ ।୨୦
ଚାରି ମେଘମାନନ୍ତ ଘେନିଣ ପବନ
ବୃହସ୍ପତିଂକ ବଚନେ କଲେକ ସ୍ନାହାନ ।୨୧
ଦେବଲୋକ ପିତୃଲୋକ ସନକଲୋକ ଆଦିକରି
ନବଦ୍ୱୀପ ସପତସାଗର ସକଳ ବୃନ୍ଦାଅର୍କେ ପୁରୀ ।୨୨
ଗନ୍ଧର୍ବ ଯକ୍ଷ କିନ୍ନର ଯେତେ ନାଗଲୋକେ
ସ୍ନାହାନ ତର୍ପଣ ସାରି ଦିଲେ ପିଣ୍ଡୋଦକେ ।୨୩
ସ୍ନାହାନ ସାରି ଆକାଶକୁ ଗଲେ ବୃନ୍ଦାରକେ
ତୀର୍ଥସ୍ନାନ ଶବଦ ପୂରିଲା ନରଲୋକେ ।୨୪
ପାଟ ଗଣିକମାନେ କହିଲେ ରାଜାଗଣମାନଂକୁ
ସମସ୍ତ ରାଜାମାନେ ଦଣ୍ଡ ପଲାଣିଲେ ଗଉତମୀ ତୀର୍ଥକୁ ।୨୫
ଯେକାଦିନେ ଯେବେ ସେ ତୀର୍ଥେ ସ୍ନାନକରି
ଦ୍ୱାଦଶ ବରଷ ପର୍ଯ୍ୟନ୍ତେ ପାଆନ୍ତି ଭୋଜନ ।୨୬
ଯେ ତୀର୍ଥ ଗଉତମୀ କୂଳେ ଯେ ଦିଅଇ ପିଣ୍ଡଦାନ
ଯେକାଉନ ପୁରୁଷ ପରିଯନ୍ତେ ଦେହରେ ପାତକ ନୁଆରଇ ଆବୋରି ।୨୭
ଯେକାବେଳକେ ପିଣ୍ଡଦାନ ଦିଲେ ସେହୁ ତୀର୍ଥେ
ଆନଶ୍ରାଦ୍ଧ ନ କରିବ ଦ୍ୱାଦଶ ବରଷ ପରିଯନ୍ତେ ।୨୮
ମାତୃଲୋକ ପିତୃଲୋକ ମଇତ୍ରୀ କୁଟୁମ୍ବ ସଂଘାତ ଆଦି ଜନ
ଯେତେଲୋକ ନାମ ଧରି କରନ୍ତି ସ୍ନାହାନ ।୨୯
ତେତେ ଲୋକଂକଇଂ ଅଛି ଗତି ମୁକତି କାରଣ
ଇହଜନ୍ମ ପରଜନ୍ମ କ୍ଷୟେଯାଇ ସକଳ ପାପମାନ ।୩୦
କଥୟନ୍ତି ମହାତମା ଶୁଣ ଭିଗ୍ୟଂଜନେ
ଯେହେନେକ ମହିମାଂ ଉପୁଜିଲା ଶ୍ରୀବିଷ୍ଣୁ ପୁରାଣେ ।୩୧
ସେ ତୀର୍ଥର ମହିମାଂ ଶୁଣିଣ ସର୍ବଯୋଧୀ
ଦଣ୍ଡ ଘେନି ବାହି ଆସନ୍ତି ସକଳ ନୃପନିଧି ।୩୨
ଉତ୍ତରୁ ଯେକଭଣା ଚାଳିଶ ସହସ୍ର ନୃପତି
ପଛିମେ ଦୁଇଭଣା ପାଞ୍ଚସହସ୍ର ନୃପତି ଆସନ୍ତି ।୩୩
ପୂର୍ବଦିଗରୁ ଯେକଭଣା ସାତସହସ୍ର ରାୟେ ଆୟେ
ଦକ୍ଷିଣ ଦିଗରୁ ତିନିସହସ୍ର ରାଜା ଯେ ବିଜୟେ ।୩୪
ପାତାଳସ୍ୱର୍ଗୁଂ ରାଜା ଆୟେ ଅନନ୍ତ ବାସୁକି
ଅଷ୍ଟକୁଳା ନାଗନ୍ତ ଘେନି ଅଇଲେ ଗଉତମୀ ତୀର୍ଥ ଦେଖି ।୩୫

ସାତପଦ୍ମ ପନ୍ଦର ମେବଛ ଯେ ତାର ନାଗବଳ
ଅନନ୍ତଶଙ୍ଖ ପଦ୍ମ ମହାପଦ୍ମ କର୍କୋଟକ ପିଙ୍ଗଳ ।୩୬
କୁଳୀକ ତକ୍ଷକ ଯେ ଘେନିଣ ନାଗବୀରେ
ସମସ୍ତେ ପ୍ରବେଶ ଆସି ଗଉତମୀ ତୀର୍ଥରେ ।୩୭
ସମଦଣ୍ଡ ଘେନିଣ ଯେ ରାଜା ଦ୍ରିଯୋଧନ
ଭୀଷ୍ମ ଦ୍ରୋଣ କୃପ ବିଦୁର ଭୂରିଶ୍ରବା ଶଲ୍ୟ କର୍ଣ୍ଣ ।୩୮
ଅଷ୍ଟାଦଶ କ୍ଷଉଣୀ ସଇନିବଳ ତୁଲେ
ମାହାନ୍ଦ୍ର ବେଳେ ଯାଇଂ ପ୍ରବେଶ ହୋଇଲେ ।୩୯
ନାଗବଳ ଘେନି ତହିଂ ରହିଛି ବାସୁକି
ଦ୍ରିଯୋଧନ ଥାଠ ଯାଇଂ ଭେଟିଲା ତହିଂକି ।୪୦
ଆଗିଆଣି ଥାଠେ ଧୁଶାସନ ମହାବଳୀ
ଆରେ ନାଗେ ଆଡ଼ୋହୋ ବୋଲି ସେ ଳଗାଇଲା କଳି ।୪୧
ଦୁର୍ଜ୍ଜୟେ ଧୁଶାସନ ଯେ ଡାକୁଛନ୍ତି ମାଡ଼ି
ଭୟେ ନାଗବଳେ ପଳାବନ୍ତି ପଥ ଛାଡ଼ି ।୪୨
ନାଗନ୍ତ ହାବୋଡ଼ାଇ ଆସନ୍ତି ବୀର ବେଗେ
ନାଗକୁମାରମାନେ ଯାଉଛନ୍ତି ଆଗେ ।୪୩
ନୀରବନ୍ତ ନିରାୟୁଧ ଯେଙ୍କାପତ୍ର ବିରାଜଭବ
କମଳାଉର କଞ୍ଚଣ ସେ ଅନନ୍ତ ନାଗଦେବ ।୪୪
ଯେ ନାଗ କୁମାରେ ଯେ ଧୁଶାସନଙ୍କଇଂ ଭେଟି
ବୋଇଲେ ମାନବା ରେ କିମ୍ପେ ନାଗନ୍ତ ଆସୁଅଛୁ ପିଟି ।୪୫
ଧାଇଂଲେ କୁମାରେ ଯେ ଆର୍ଦ୍ରାବଳୀ ଶର ଘେନି
ଦେଖିଣ ଘୁଞ୍ଚଲେ ଯେ ମାନବ ସଇନି ।୪୬
ଧୁଶାସନ ଧାଇଂଯାଇଂ ପିଟିଲା ଗଦାବର
ଭାଜ୍ଞିଣ ପଡ଼ିଲା ଯେ କମଳାଉର ନାଗର ଫେର ।୪୭
କମଳାଉର ପଡ଼ନ୍ତେ ଭାଜ୍ଞିଲେ ନାଗମାନେ
ବିରାଜ ନାଗକୁ ଗୋଡ଼ାଇ ପିଟିଲା ଧୁଶାସନେ ।୪୮
ଗାନ୍ଧାରୀ ନନ୍ଦନ ସେ ମହାବଳବନ୍ତା
ନାଗବଳ ସଇନିକି ସେ ନ କରେ ଗଣିତା ।୪୯
ଶୋଷକ ନାମେଣ ଯେ ଯେକଇ କାଳସର୍ପ
ସେ ଆସି ନିରୋଧିଲା ଧୁଶାସନର ଦର୍ପ ।୫୦
ଗାନ୍ଧାରୀନନ୍ଦନ ଗଦାବର ଘେନି ପିଟି
ବାଜନ୍ତେ ମହାନାଗ ପଡ଼ିଲା ମହୀଲୋଟି ।୫୧
ଶୋଷକ ପଡ଼ନ୍ତେ ଯେ ଭାଜ୍ଞିଲେ ନାଗବଳେ
ପଳାବନ୍ତି ନାଗମାନେ ପ୍ରାଣର ବିକଳେ ।୫୨

ନାଗ ମନୁଷ୍ୟ ଯେ ହୋଇଲେ ସର୍ବେ ଗୋଳ
ବନପତଙ୍ଗ ନାଶଗଲେଟି ଲାଗିଲା କାଳଗରଳ ଜାଳ ।୫୩
ମାନବବଳ ସଇନି ପଡ଼ିଲେ ଗଳଗାଜି
ଦେଖିଣ ନାଗବଳେ ପଳାବନ୍ତି ସର୍ବେ ଭାଜି ।୫୪
କର୍ଣ୍ଣ ଶକୁନି ଧୁଶାସନ ଅଶତ୍ତମା
ଦୁର୍ଜୟ ଦୁରାନ୍ତକ ଦୁକର୍ଣ୍ଣ କୃତବର୍ମା ।୫୫
ଯେ ମହାଯୋଦ୍ଧାୟେ ଯେ ଅଟନ୍ତି ବଡ଼ ଦୁଷ୍ଟ
ଆରେ ଆରେ ବୋଲିଣ ଉଠିଲେ ମହାଦୁଷ୍ଟ ।୫୬
ବିଂଶବାଣ ଘେନି ସେ ଆର୍ଦାବଳୀ ଧନୁ
ବିନ୍ଧିଲେ କୋପେଣ ସେ ନାଗେଣୀର ତନୁ ।୫୭
ଗୋଡ଼ାଇ ପିଟଇ ସେ ବୀର ଧୁଶାସନ
ନାଗେଣୀର କୁମରଇଂ ବିନ୍ଧିଲେ କୋପମନ ।୫୮
ନାଗଂକ ବଳ ଭଗ୍ନ ଦେଖିଣ ତକ୍ଷକ
ବାବୁ ବୁଡ଼ିଲାକ ନାଗବଳ କେ ପାର ଆସି ରଖ ।୫୯
ବେଳାବଳୀ ନାଗେଣୀ ସେ ଲୋହିତାକ୍ଷ ନାଗର ଦୋହିତା
ଭୀମସେନ ତାହାକଇଂ ହୋଇଅଛଇ ପ୍ରଦାନିତା ।୬୦
ଶରଧା କରି ସର୍ବେ କଉରବେ ଯେ ଭୀମକୁ ନେଲେ
ବନକ୍ରୀଡ଼ାରେ ଭୀମକୁ କୁତୁହଳେ ବିଷଲଡୁ ଭୁଞ୍ଜାଇଲେ ।୬୧
ସୁପଂକୁ ଅନ୍ନପାଇ ଭୁଞ୍ଜାଇ ମାରୁତି
ଭୋଜନେ ସଂଗ୍ରାମେ ଶୃଙ୍ଗାରେ ସେ ଅଟଇ ଅତ୍ରିପୁତି ।୬୨
କଣକଛ ଆହାର ଷାଠିଏ ପଉଟି ବେଳକୁ
ଯେବିଧି ତିନିଷାଠି ପଉଟି ଭୀମସେନର ହୁଅଇ ଦିନକୁ ।୬୩
କଣ୍ଣୁଯାୟେ ତୁଳକରି ଭୀମସେନ ଗରାସି
ପୁରଞ୍ଜନ ପଣ୍ଡା ଆସି ବିଷଲଡୁ ପରସି ।୬୪
ରୋଷଭରେ ଯହୁଂ ଭୁଞ୍ଜିଲା ପାବେନୀ
ବିଷ ଜଳାରେ କରି ଢଳିଲା ମେଦିନୀ ।୬୫
ଭୀମସେନ ମଲା ଲୋଭେ ଅପାର ଅନ୍ନ ଖାଇ
କେହି ନ ଜାଣୁ ବୋଲି ଯମୁନାରେ ବାନ୍ଧି ମେଲିଲେକ ନେଇ ।୬୬
ମୃତୁପିଣ୍ଡ ଗୋଟି ଦେଖିଲେ ସମସ୍ତ ନାଗେଣୀ
ବେଳାବଳୀ ନାଗେଣୀ ଛାମୁକୁ ବେଗେ ଆଣି ।୬୮
ସୁନ୍ଦର ଦେଖିଣ ସେ ଲୋହିତାକ୍ଷ ନାଗର ଦୁଲାଳୀ
ଅନେକ ଯତନ କରି ଭୀମସେନକଇଂ ପ୍ରତିପାଳି ।୬୯
ଅମୃତ ଲଡୁ ନେଇ ସେ ତାହାକୁ ଖୁଆଇଲା
ବିଷର ଜାଳାକୁ ଛଡ଼ାଇ ଭୀମସେନକୁ ଜୀଆଂଇଲା ।୭୦

ସେ ଜଳ ଅନ୍ଧାର ପୁରେ ନାଗେଣୀ ଖଟଇ ପରିଚର୍ଯ୍ୟ
ଭୀମସେନ ତାର ବଲ୍ଲଭ ନାଗେଣୀ ତାହାର ହୋଇଲା ଭାରିଯା ।୭୧
ଅମୃତ ଲଡୁ ଭକ୍ଷି ଭୀମର ସହସ୍ରେ ଗୁଣ ବଳହୋଇ
ଅନେକ ନାଗବଳ ମାରି ସେ ଜଳ ଅନ୍ଧାର ପୁରୁ ବାହାର ହୁଅଇ ।୭୨
ସେ ବେଳାବଳୀ ନାଗୁଣୀ ସଙ୍ଗେ ଭୀମ କଲାକ ପୀରତି
ବେଳାବଳୀ ନାଗେଣୀ ଯେ ହୋଇଥିଲା ଗର୍ଭବତୀ ।୭୩
ପୁତ୍ର ଯେ ନାଗେଣୀ ଗର୍ଭରୁ ଉପଗତ
ସମ୍ପୂର୍ଣ୍ଣ କଳାଘେନି ପୁତ୍ର ହେଲା ଜାତ ।୭୪
ପୁତ୍ର ଦେଖି ନାଗେଣୀ ଯେ ହରଷ ହୋଇଲା
ବଳୀବେଳାଳ ବୋଲିଣ ସେ ପୁତ୍ରର ନାମ ଦିଲା ।୭୫
ତିରିଶି ବରଷ ଯେ ଅଟଇ ସେ ବେଳାଳ କୁମର
ଯାତ୍ରାଦେଖି ଆସିଥିଲା ନାଗଂକ ସଙ୍ଗତର ।୭୬
ନାଗବଳ ସଇନି ଯହୁଂ ହୋଇଲେ ନିରେଖ
ତକ୍ଷକ ଡାକ ଦିଲାରେ ବାବୁ କେ ପାର ନାଗଲୋକ ରଖ ।୭୭
ଶୁଣି କୋପାନଳ ବେଲାବଳୀର ବଳା
ଗଜରିପୁ ପ୍ରାୟେକ ତାର ତେଜ ଅନର୍ଗଳା ।୭୮
ବାମକରେ ଧଇଲାକ ଧୁଶାସନର ବାଳ
ସିଂହମୂର୍ତ୍ତି ଦେଖିଣ ଥମ୍ଭୀଭୂତ ଗାନ୍ଧାରୀର ବାଳ ।୭୯
ଦକ୍ଷିଣକରେ ମୁଥେ ଉଞ୍ଚାଇ ଧୁଶାସନ ମୁଖେ ମାରି
ଧୁଶାସନ ପଡ଼ିଲା ଯେ ରୋଧିର ଉଦ୍ଗାରି ।୮୦
ଧୁଶାସନକୁ ପକାଇ ଧାମଇଂ କୁମର
ମୁଥେକ ମାଇଲା ନେଇ ଦୁର୍ଜୟ ଉପର ।୮୧
ଗାନ୍ଧାରୀ ନନ୍ଦନ ଯେ ପଡ଼ିଲା ମହୀଲୋଟି
ରାହୁର ତେଜ ପ୍ରାୟେ ବଳୀବେଳାଳ ଯେ ଉଠି ।୮୨
ଶକୁନିର ରଥେ ନେଇ ପିଟିଲା ଗଦାବରେ
ମୂର୍ଚ୍ଛାଗତେ ଶକୁନି ପଡ଼ିଲା ସେହିଠାରେ ।୮୩
ହାଥେ ଧନୁଯେକ ଧରିଣ ବୀରକର୍ଣ୍ଣ
ବିନ୍ଧିଲା ରୋଷେଣ ନାରାଜ ଯେ ରାଧେବ ନନ୍ଦନ ।୮୪
ପରବତେ ପଡ଼ି ଯେହ୍ନେ ଉପୁଡ଼ନ୍ତି ଶରେ
ନାରାଜେ ପଡ଼ି ଚୂର ହୋଉଛନ୍ତି ଯେ ବଳୀବେଳାଳ ଉପରେ ।୮୫
କର୍ଣ୍ଣର ଉପରେ ନେଇ ପିଟିଲା ବୀରକ୍ଷଣା
ଭାଙ୍ଗିଣ କର୍ଣ୍ଣର ରଥ ହୋଇଲା ମସୀଗୁଣ୍ଡା ।୮୬
ରେ ରେ କାର କରିଣ କର୍ଣ୍ଣକୁ ମାଇଲା ବୀର ମୁଥେ
କର୍ଣ୍ଣହିଂ ଲୋଟି ପଡ଼ିଲା ସେ କୁମାର ମୁଥଘାତେ ।୮୭
କର୍ଣ୍ଣର ଅସାଷ୍ଟମେ ଧାଇଂଲାକ ଅଶସ୍ତମା
ତୁଲେଣ ମହାରଥୀ ଶଲ୍ୟ କୃତବର୍ମା ।୮୮
ତିନି ମହାରଥୀଯେ ଯେ ଯେକମୁଖ ହୋଇଂ
ବଳୀବେଳାଳ ଉପରକୁ ବିନ୍ଧିଲେ ନିଠିଆଇ ।୮୯
ଅତି କୋପେଣ ଧାମଇଂ ସେହି ନାଗୁଣୀର ବଳା
ମହାମତ୍ତ ଗଜଜାଣି ସେ ତେଜ ଅନର୍ଗଳା ।୯୦
ଅଶସ୍ତମାର ରଥ ଯେ ଧଇଲା ଆକ୍ରେଷି
କୃପଂକର ରଥେ ନେଇ ପିଟିଲାକ କଷି ।୯୧
ଦୁଇରଥ ଭାଜି ହୋଇଲାକ ଶତେଚୂନା
ଗର୍ଜ୍ଜଇ କୁମାର ସେ ପ୍ରତଗ୍ୟାଂ ମହାଜେନା ।୯୨
ଅଶସ୍ତମା କୃତବର୍ମା ଗଦାୟେ ଘେନି ଉଠି
ବଳୀବେଳାଳ ଉପରେ ଆକ୍ରେଷି ନେଇ ପିଟି ।୯୩
ଦେଖିଣ କୁମାର ଯେ ପାତିଲାକ ଅଙ୍ଗ
ଭାଜିଣ ବେନିଗଦା ହୋଇଲା ଶତେଭଙ୍ଗ ।୯୪
ଗଦାଭଗ୍ନ ଦେଖି ପଳାବନ୍ତି ବେନି
ବଳୀ ବେଳାଳ ଧାଇଂଲା ଯେ ବେନିଗଦା ଘେନି ।୯୫
ଦୁଇରଥୀଂକ ଉପରେ ନେଇ କଲାକ ପ୍ରହାର
ମୂର୍ଚ୍ଛାଗତ ହୋଇଣ ପଡ଼ିଲେ ବେନିବୀର ।୯୬
ବଳୀବେଳାଳର ଗଦାଘାୟେ ମୂର୍ଚ୍ଛାଗତ ଭାରଦ୍ୱାଦଶଂକର ନାତି
ଜୟେ ସିଂଘନାଦ କଲା ଭୀମସେନର ସନ୍ତତି ।୯୭
ଦେଖିଣ ଶଲ୍ୟଂକର ନ ଫୁରଇ କିଛି
ବିରଥୀ ହେଇକରିଣ ସେ ଯାଉଅଛି ଘୁଞ୍ଚି ।୯୮
ରେ ରେ କାର କରି କୁମର ପ୍ରହାରିଲା ପାଦେ
ବଜ୍ରାଘାତ ପ୍ରାୟେ ପଡ଼ିଲା ଶଲ୍ୟଂକର ହୃଦେ ।୯୯
ପଡ଼ିଲେକ ଶଲ୍ୟେ ଯେ ମୁଖୁ ଗଳଇ ଶ୍ରୋଣି
ଭାଜିଲେ ସମଦଣ୍ଡ ବାତଘାତେ କଦଳୀ ବନଜାଣି ।୧୦୦
ଦେଖଇ ବଳୀବେଳାଳ ସମର ସମ୍ମୋଡ଼େ
ଗୋଡ଼ାଇ ପିଟିଲା ସେ ବାଳୁତ ଭାବ ଖେଡ଼େ ।୧୦୧
ଦଣ୍ଡଭଗ୍ନ ଦେଖିଣ ଭୀଷ୍ମ ଦ୍ରୋଣ ବେଗେ ଉଠି
ପଞ୍ଚାଶଲକ୍ଷ ମହାରଥୀ ମୁକୁଟବନ୍ଧା ଯୋଦ୍ଧା ନବକୋଟି ।୧୦୨
ଗହ ଗହ ଶବଦେ ପାଞ୍ଚକ୍ଷଉଣୀ ପାଦାନ୍ତି,
ଯେକ କୁମାରକୁ ବେଢ଼ିଲେ ତିନିମର୍ଭୁଚ ରଥୀ ।୧୦୩
ହାଥେ ବଳୀବେଳାଳ ଧଣିଅଛି ବଜ୍ରଦଣ୍ଡ
କାଳଚକ୍ର ପ୍ରାୟେ ଚନ୍ଦୁଂ ବୁଲାୟେ ପ୍ରଚଣ୍ଡ ।୧୦୪

ନକ୍ଷତ୍ର ମଧରେ ଯେହ୍ନେ ଦିଶଇ ଧୂମକେତୁ
ସେହି ସାରିକ୍ଷେ ଦିଶଇ ନାଗେଣୀର ସୁତୁ ।୧୦୫
ଧାମଇଂ ବଳୀବେଲାଳ ଭୀଷ୍ମ ଦ୍ରୋଣନ୍ତ ଦେଖି
କୃତାନ୍ତକ ବିଜୟେ କଲାକି ସଂଜୀବନୀ ପୁର ଉପେକ୍ଷି ।୧୦୬
ଲୋହିତବର୍ଣ୍ଣ ଗଦା ଧରିଣ ବୁଲାଇ
ଯେତ୍ତେବଡ଼ ଥାଟ ଦେଖିଣ ତାର କିଛିତେ ଭୟନାହିଂ ।୧୦୭
ଦ୍ରୋଣ ବୋଇଲେ ଭୀଷ୍ମେ ଯେ କାହାର ସନ୍ତତି
ପ୍ରତକ୍ଷେ ଦିଶଇ ଯେତ ଭୀମସେନର ମୂରତି ।୧୦୮
ଧାଇଂବା ଚାଲିବା ତାର ରହିବା ଠିଆ ଠାଣି
ପ୍ରତଗ୍ୟାଂ କରୁଅଛି ଭୀମସେନର ସରୂପ ଜାଣି ।୧୦୯
ଭୀଷ୍ମେ ବୋଇଲେ ଯେକି ଅଟଇ ଘଟଉତ୍କଟ
ଭୀମସେନର ବୀର୍ଯ୍ୟଂ ଜାତ ହିଡ଼ିମ୍ବିକୀର ସୁତ ।୧୧୦
ଦ୍ରୋଣେ ବୋଇଲେ ଭୀଷ୍ମେ ଯେମନ୍ତ ନୁହଇ
ଘଟଉତ୍କଟ ଦେଖିଅଛ ରାକ୍ଷସି ଯଗ୍ୟଂସ୍ଥାନେ ରହି ।୧୧୧
ଦତ୍ୟଂକର ମନ୍ଦିରେ ଥାଇ ଯେ ନିଯତ
ସେ କାହୁଂ ମିଳିବଟି ଯେ ନାଗଂକର ସଙ୍ଗତ ।୧୧୨
ଅସୁର ବଂଶରେ ସେ ଜାତ ହୋଇଅଛି ଜାଣ
ତାହାଂକ ସଙ୍ଗତେ ଥାଆନ୍ତି ଅନେକ ଦତ୍ୟଗଣ ।୧୧୩
ଆନ କେହୁ ଅବା ଯେହୁ ପୁରୁଷ ସିହାଣ
ମନୁଷ୍ୟ ଶରୀର ଯେହୁ ନାଗମୁଖ ପୁଣ ।୧୧୪
ଅହିବର ଶିରେ ଦେଖ ସପ୍ତଗୋଟି ଫଣୀ
ନାଗମାନେ ଯେ ଯେହାର ଶିରରେ ଭ୍ରମଣି ।୧୧୫
କାହାର ନନ୍ଦନ ଯେ ବୁଝିବା ତଥ୍ୟ ଜାଣ
ଯେସନେକ ବିଚାର ଯେ କରନ୍ତି ଭୀଷ୍ମ ଦ୍ରୋଣ ।୧୧୬
ଭୀଷ୍ମ ଦ୍ରୋଣ ଦୁହେଂ ଯେହେନେକ ବିଚାରୁଂ ବିଚାରୁଂ
ତିନି ସହସ୍ର ଯୋଦ୍ଧାଂକୁ ମାଇଲା ମହାମେରୁ ।୧୧୭
ଦେଖି ଭୀଷ୍ମ ଦ୍ରୋଣେ କୋପେ ଉଠିଲେ ଗଳଗାଜି
ଦେଖିଣ ତ୍ରାସେ ଯୋଦ୍ଧାଯେ ପଳାଉଛନ୍ତି ଭାଜି ।୧୧୮
ଆରେ ରହ ରହ ବୋଲି କଉରୋବନ୍ତ ହାକି
ଗଜଯୂଥ ରହଇ କି ସିଂଘର ଦର୍ପ ଦେଖି ।୧୧୯
କାଳକୃତାନ୍ତକ ଜାଣି ବେଲାବଳୀ ସୁତ
ମହାମତ୍ତ ନାଗ ଦୁଇ ଧରିଅଛି ବେନି ହାଥ ।୧୨୦
ଦ୍ରୋଣେ ବୋଇଲେ ଗାଙ୍ଗେବ ଦେଖ ହୋ ସାକ୍ଷାତ
ଭୀମସେନ ସରୂପ ଯେହୁ ଅଟଇ ପ୍ରତ୍ୟକ୍ଷତ ।୧୨୧
ବିଚାରୁଂ ବିଚାରୁଂ ଆସଇ ଯୋଜନେକ ପନ୍ଥ କ୍ଷେପି
ଯେକା କ୍ଷଣକର ମଧେ ସେ ଦ୍ରୋଣଂକର ରଥ ବ୍ୟାପି ।୧୨୨
ଭୀଷ୍ମେ ବୋଇଲେ ବିଶ୍ରାମକର ଯେକକ୍ଷଣ
ବିଚାରି ବୁଝ ତୁମ୍ଭେ ପଚାରିଣ ଗୁରୁ ଦ୍ରୋଣ ।୧୨୩
ଯେସନେକ ବିଚାର କରନ୍ତେ ଭୀଷ୍ମ ଦ୍ରୋଣ ବେନିରଥୀ
ଭୀଷ୍ମଂକର ରଥେ ନେଇ କଚାଡିଲା ବେନିହାଥୀ ।୧୨୪
କାର୍ତ୍ତିକେଶ୍ୱର ପ୍ରାୟେ ବିରାଜଇ ବିରବର ଜେନା
ଭାଙ୍ଗିଣ ଭୀଷ୍ମଂକ ରଥ ହୋଇଲା ଶତେ ଚୂନା ।୧୨୫
ସନ୍ନିଧେ ରଥ ଗଜ କିଛିହିଂ ନ ପାଇ
ଦ୍ରୋଣଂକର ରଥରେ ଉଠିଲେ ଭୀଷ୍ମ ବେଗେ ଯାଇଂ ।୧୨୬
ବେନି ରଥୀଯେ ଯେ ବସିଲେ ଯେକରଥେ
ବିନ୍ଧନ୍ତି ନିରାଶରେ ଶର ଅପ୍ରମିତେ ।୧୨୭
ନାଗେଣୀ ପ୍ରସନ୍ନଂ ଯେ ବଜ୍ର ତାର କାଯେ
ଅନନ୍ତନାଗ ସେବିକରି ଅଭଯେ ବର ପାଯେ ।୧୨୮
ବଜ୍ରେ ନିର୍ବାଣ ଅଟଇ ଯେ ତାହାର ଶରୀର
ଦେବ ଶସ୍ତ୍ରମାନ ପଡ଼ି ହୁଅନ୍ତି ଶତେଚୂର ।୧୨୯
ଦ୍ରୋଣେ ମାଇଲେ ଯେ ବଜ୍ରଶକ୍ତି ଧରି
ଶରୀରେ ପଡ଼ି ବଜ୍ର ଶକତି ହୋଇଲାକ ଚୂରି ।୧୩୦
ଅଗ୍ନି ଶହସ୍ରେକ ଯେ ମାଇଲେ ଗାଙ୍ଗବେ
ସେ ମହାଅନଳ ଶର ସଂହରିଲା ତାହାର ଗର୍ଭେ ।୧୩୧
ଦେଖିଣ କିଛି ନ ଫୁରଇ ବେନି ମହାରଥୀ
ଧାଇଂଣ କୁମାର ପ୍ରହାର କଲା ଅମୋହ ଶକତି ।୧୩୨
ଦ୍ରୋଣଂକର ରଥ ଭାଙ୍ଗି ହୋଇଲା ଶତେ ଚୂନା
ବିରଥୀ ହୋଇକରି ବେନିସେହ୍ନା ।୧୩୩
ଅଭେଦ କପଚ ଘେନି ମାଇଲା ବଳୀ ଯେ ବେଲାଳ
ଶୋଣିତ ତାହାଂକ ଶରୀରୁ ବହଇ ଖଳ ଖଳ ।୧୩୪
ପୁଣିହିଂ ଗଦା ଧରି ପିଟଇ ସେ ଅଧର କରି ପୃଷ୍ଟେ
ଭୀଷ୍ମ ଦ୍ରୋଣ-ଦୁହେଂ ଅସାଷ୍ଟମ ହୋଇ ପଡ଼ିଲେ ନିଚେଷ୍ଟେ ।୧୩୫
ଭୀଷ୍ମ ଦ୍ରୋଣ ପଡ଼ିବା ଦେଖିଣ ରାଜା ଦ୍ରିଯୋଧନ
ସତାଣୋଇ ଭାଇ ଘେନି ଯୁଦ୍ଧକୁ ଧାମଇଂ ବହନ ।୧୩୬
ହାଥୀଯେ ହାଥୀଯେ ଆବୋରି ସମସ୍ତ ଭାଇ ଚଢ଼ି
ଶତେପୁର କରି ବଳୀବେଲାଳକଇଂ ବେଢ଼ି ।୧୩୭
ମହା ମହା ଶହସ୍ର ଘେନି କରନ୍ତି ସମର
ଦେବ ଶହସ୍ର ନ ଭେଦଇ କୁମର ଶରୀର ।୧୩୮

ଅମୋହ ଶକତି ଘେନିଣ ଧାଇଂଲା କୁମର
କୋପେଣ ପିଟିଲା ନେଇ ଦ୍ରିଯୋଧନ ହାଥୀର ଉପର ।୧୩୯
ଗଦାବର ପଡ଼ି ହାଥୀ କୁମ୍ଭସ୍ଥଳ ଭାଞ୍ଜି
ପର୍ବତ ସମାନ ହୋଇ ହାଥୀ ପଡ଼ିଲା ଗଳଗାଜି ।୧୪୦
ସାଧୁ ସାଧୁ କୁମର ମହିମାଂ ତୋର ଧନି ଧନି
ସାଧୁ ସାଧୁରେ ତୋହୋର ପିଅର ଜନନୀ ।୧୪୧
ପାଦଗତି ହୋଇଣ ପଳାଇଲା ମାନ ଯେ ଗୋବିନ୍ଦ
ଭୂରିଶ୍ରବା ବାହ୍ଲିକ ସୋମଦତ୍ତ ତିନିହେଂ ଆବୋରିଲେ ଦ୍ୱନ୍ଦ୍ୱ।୧୪୨
ଯେହାଂକ ସଙ୍ଗତେ ଛନ୍ତି ତିନିସହସ୍ର ରଥୀ
ଯେକମୁଖ ହୋଇ କୁମରକୁ ବାଣ ସେ ବିନ୍ଧନ୍ତି ।୧୪୩
ଯେକେଣ ତିନିଯୋଦ୍ଧା ଯେ ଅଟନ୍ତି ମହାବଳୀ
ଆକାଶ ଘୋଟିଲା ତିନିଂକର ବାଣ ଜାଳାବଳୀ ।୧୪୪
ନାରାଜକୁ ନିର୍ଭୟା ସେ ଯେ କୁମର ପଞ୍ଚାଣ
ଗାଲତୂରୀ ଦେଇଣ ସେ ହୋଇଲା ଠିଆଠାଣ ।୧୪୫
କାଳଚକ୍ର ପ୍ରାୟେ ସେ ଭ୍ରମାଇ ବେନିଆଖି
ଗର୍ଜିଣ ଉଠିଲା ସେ ସୋମଦତ୍ତ ଭୂରିଶ୍ରବାଂକଇଂ ଦେଖି ।୧୪୬
ଧୁଶାସନର ବେନିଗଦା ଧରିଥିଲା ହାଥେ
ସେ ଗଦା ପିଟିଲା ନେଇ ଭୂରିଶ୍ରବାଂକର ରଥେ ।୧୪୭
ପର୍ବତ ପ୍ରାୟେକ ଗଦା ପିଟିଲା ରଣଷଣ୍ଡା
ଭୂରିଶ୍ରବା ରଥ ଭାଞ୍ଜି ହୋଇଲା ମସୀଗୁଣ୍ଡା ।୧୪୮
ପୁଣି ଗୋଡ଼ାଇ କୁମର କଲେ ଗଦାଘାତ
ଭୂରିଶ୍ରବା ଯେ ପଡ଼ିଣ ହୋଇଲେ ମୋହଗତ ।୧୪୯
ସୋମଦତ୍ତ ରଥକୁ ଧଇଲା ମହାବଳେ
ବାହ୍ଲିକ ରଥେ ନେଇ ପିଟିଲା ଅଚାର୍ଗଳେ ।୧୫୦
ଭାଜିଣ ରହୁବର ଯେ ହୋଇଲା ଶତେଚୂନା
ତ୍ରାସେଣ ଅସାଷ୍ଟମ ଯେ କୁରୁବଳ ସେନା ।୧୫୧
ଭୂରିଶ୍ରବା ବାହ୍ଲିକ ଯେ ରାୟେ ସୋମଦତ୍ତ
ତିନିହେଂ ପଡ଼ିଲେ ଯେ ହୋଇଣ ମୂର୍ଚ୍ଛାଗତ ।୧୫୨
ମହା ମହା ରଥୀୟେ ଯହୁଂ ସମରେ ପଡ଼ିଲେ
ମାନଗୋବିନ୍ଦ ଦୂରେ ଥାଇଣ ତାହା ସେ ଦେଖିଲେ ।୧୫୩
ଅକ୍ଷିଖର୍ବ ଯୋଦ୍ଧା ଘେନି ଉଠିଲେ ମହାରଥୀ
ବଳୀବେଲାଳକଇଂ ଘୋଟିଲା ମାନଚକ୍ରବ୍ରତୀ ।୧୫୪
ଅବିକ୍ଷଣେ ନାରାଜ ଯେ ପୂରୋଇଣ ବିନ୍ଧି
ଶତେ ସହସ୍ର ବାଣ କୁମାର ଆକ୍ରେଷିଣ ସନ୍ଧି ।୧୫୫
ବଜ୍ର ନ ଭେଦଇଟି ଯାହାର ଶରୀର
ପଡ଼ିଣ ନାରାଜମାନେ ଅଙ୍ଗେ ହୋଉଛନ୍ତି ଚୂର ।୧୫୬
ଗିରିବର ସମାନେ ସେ ଅଛଇ ସର୍ବ ସହି
ବାହାନାଦ କରି ଉଠିଲା ଗାଲତୂରୀ ଦେଇ ।୧୫୭
ରଥର ପରେ ନେଇଣ ଆରେକ ରଥ ପିଟି
ପଡ଼ିଲେ ଯୋଦ୍ଧାୟେ ଯେ ହାଥୀ ଅଶ୍ୱ ପିଠି ଲୋଟି ।୧୫୮
ଭାଞ୍ଜିଲେକ ଶର ଯହୁଂ ନ ଭେଦିଲା ଶରୀର
କୁନ୍ତ ଲାଂକିଆ ଅସିପତ୍ର ପଡ଼ି ସର୍ବ ହୋଉଛନ୍ତି ଚୂର ।୧୫୯
ବଳୀବେଲାଳ ଯାହାକୁଇଂ ପ୍ରହାରଇ ଚାପୋଡ଼େ
ଧୂଳି ହୋଇକରିଣ ପଡ଼ଇ ସେ ସେହିଠାରେ ।୧୬୦
କଉରବ ସଇନି ଯେ ପାଇଲେ ବଡ଼ ଦୁଖ
ପଳାଇଲେ ସଇନି ଯେ ହୋଇଣ ବିମୁଖ ।୧୬୧
ଉବୁରିଣ ଯାଇଥିଲା ଯେକା କୁରୁରାୟେ
ବଳୀବେଲାଳକୁ ଦେଖି କରି ମହାଭୟେ ।୧୬୨
ଥାଠଭଗ୍ନ ଦେଖି ଦୂରୁଂ ମାନଚକ୍ରବ୍ରତୀ
ବିଜୟେ ଦ୍ରିଯୋଧନ ଯେ ଅଶସ୍ତମା ମତ୍ତହାଥୀ ।୧୬୩
ସତୁରୀ ସତୁରୀଭାର ଗଦା ଘେନି ବେନିହାଥେ
ସନ୍ଧ୍ୟା ସମାର୍ଜନା କରି ଧାମଇ ଊର୍ଦ୍ଧ୍ୱଗତେ ।୧୬୪
ହାଥୀ ଉପରେ ଥାଇଣ କୋପଭରେ ଧୃତିରାଷ୍ଟି
ବଳୀବେଲାଳ ଉପରେଣ ଗଦା ନେଇ ପିଟି ।୧୬୫
ଗଦାବର ପଡ଼ନ୍ତେଣ ଧଇଲା କୁମରମଣି
ଆକ୍ରେଷି ବଳୀବେଲାଳ ପାତିଲା କର ବେନି ।୧୬୬
ଦ୍ରିଯୋଧନର ଗଦା ତାହାର କରେ ପଡ଼ି
ସେହି ଗଦାବର ବୀର ଘେନିଲା ଉଛୁଡ଼ି ।୧୬୭
ସେହି ଗଦାବର ଘେନି କୋପେଣ ବୀର ପିଟି
ଘାୟେଣ ମହାନାଗ ଯେ ପଡ଼ିଲା ମହୀଲୋଟି ।୧୬୮
ଅଶ୍ୱେକ ଚଢ଼ିଣ ସେ ଘୁଞ୍ଚିଲା ମହାବୀର
ପଳାଇ ଲୁଚିଲା ଯାଇଂ ରାଜ୍ୟ ବନସ୍ତ ଭିତର ।୧୬୯
ବିହରଇ କୁମରମଣି ଥାଠେଣ ନିଶଂକା
ଅଷ୍ଟାଦଶ କ୍ଷଉଣୀ ବଳ ମଟ୍ଟିଲା ବୀର ଯେକା ।୧୭୦
ତ୍ରେତୟା ଯୁଗେ ଯେସନେ ହନୁମନ୍ତ ମହାବଳୀ
ସେହି ସାରିକ୍ଷେ ବଳୀବେଲାଳ ତେଜ ଦିଶେ ଝଳି ।୧୭୧
ସତ୍ୟଯୁଗେ ଯେହ୍ନେ କେତୁ ଯେ ମଙ୍ଗଳ
ସେହିମତି ପ୍ରାୟେ ଯେ ମହିମାଂ ମହାବଳ ।୧୭୨

ଅସ୍ତ୍ର ଶସ୍ତ୍ରମାନ ତାହାର ଶରୀରେ ନ ଭେଦଇ
ତୀକ୍ଷ୍ଣ ପ୍ରଶୁକୋଠାର ଅସିପତ୍ର ନ କାଟଇ ।୧୭୩
ବଜ୍ରଶକତି ଶରୀରେ ପଡ଼ି ହୋଉଛନ୍ତି ଚୂର
ଦୁସହ ଦୃଭାର ଅମାପତ ବଳ ଯାର ।୧୭୪
ଦେଖିଣ ଡରେ କେହି ନ ରହନ୍ତି ଛାମୁରେ ତାହାର
ମହା ମହା ଯୋଦ୍ଧାମାନେ ପଳାଇଲେ ତେଜିଣ ଧନୁଶର ।୧୭୫
ଦନ୍ତରେ ତିରଣ ଯେ ଗଳାରେ କୁଠାର
ରଥ ଗଜ ଅଶ୍ୱ ତେଜି ଦଶନହ ଭରନ୍ତି ମୁଖର ।୧୭୬
ଅନେକ ବିକଳେ ସେ ନିସତେ ଶରଣ ମାଗି
ନିରାପକ୍ଷ କ୍ଷତ୍ରୀ ସେ ଶରଣ ପରିତ୍ୟାଗୀ ।୧୭୭
ମହା ବାତଘାତେ ଯେସନେକେ ପଡ଼ଇ ପଂକୁଦଳ
ପ୍ରଶୁ ପ୍ରହାରେଣ ଶିର ଛିଡ଼ି ପଡ଼ଇ ଭୂମିତଳ ।୧୭୮
ପଳାଇ ସଇନି ପଶିଲେ ଗହନ ଯେ ବନ
ଯେକାହୋଇ ପଳାଉଛି ରାଜା ଦ୍ରିଯୋଧନ ।୧୭୯
ବଳୀବେଲ୍ଲାଳ ଡାକଇ ରହ ରହ ଭାଇ
ନିସତ ହୋଇଣ ତୁ ଯିବୁ ଆଜ କାହିଁ ।୧୮୦
ଗୋଡ଼ାଇଣ ବେନି ଗଦା ବୁଲାଉଅଛି ହାଥେ
ଅଶ୍ୱରୁ ଡେଇଁ ରାଜା ପଡ଼ିଲା ନିସତେ ।୧୮୧
ତାଡ଼ ତୋଡ଼ର ସରଳ ବାହୁଟି କଂକଣ
ଅନର୍ଘ୍ୟ ମଣି ମୁକୁଟ ଶୋଭିତ ଲଲାଟେଣ ।୧୮୨
ହାର କୁଣ୍ଡଳ ଶୋଭିତ ଶିରେ ସୀମନ୍ତିନୀ
ଦେଖିଣ ବିଚାର ସେ କରଇ କୁମରମଣି ।୧୮୩
ବିଚାରଇ କୁମର ଯେତ ବିଦ୍ୟାଧର ପ୍ରାୟେକ ଦିଶଇ
ଯେହାକଇଂ ପ୍ରାଣେ ହୋ ନ ନାଶିବି ମୁହିଁ ।୧୮୪
ଆକ୍ରେଷି ଡେଇଁ ପଡ଼ିଲା ବଳୀ ଯେ ବେଲ୍ଲାଳ
ଧାତିକାରେ ଧଇଲା ସେ ଦ୍ରିଯୋଧନର ବାଳ ।୧୮୫
ଅସିପତ୍ର ଘେନିଣ ପିଟିଲା ଧୃତିରାଷ୍ଟି
ଭାଂଙ୍ଗିଣ ଅସିପତ୍ର ତାର ଶରୀରେ ନ କାଟି ।୧୮୬
ତିନି ଯୋଜନ ମାଡ଼ି ପଡ଼ିଅଛଇ ସଇନି
ଚଳଇ ବଳୀବେଲ୍ଲାଳ ତହୁଂ ଦ୍ରିଯୋଧନକଇଂ ଘେନି ।୧୮୭
ଶକୁନି କର୍ଣ୍ଣ ଧୁଶାସନ ଆଦିକରି
ଦୁଇ ଭୁଜରେ ଦୁଇ ଦୁଇଜଣଂକର ବାଳ ଅଛି ଧରି ।୧୮୮
ନାଗଫାଶ ବନ୍ଧନେ ଚାରିନ୍ତି ଘେନିଅଛି ବାନ୍ଧି
ଚଳଇ ନିଜ ଭୁବନେ ସେ ଅମାପତ ମହାଯୋଧୀ ।୧୮୯

କର୍ଣ୍ଣ ଧୁଶାସନ ଦ୍ରିଯୋଧନ ଶକୁନି
ଚାରିଂକି ବନ୍ଧନ କରି ଚଳଇ ବୀରମଣି ।୧୯୦
ବେଲ୍ଲାଉଳ ବୋଲିକରି ଯେକଇ ବନସ୍ତେ
ତହିଂର ଭିତରେ ଚଳଇ ନାଗେଣୀର ସୁତେ ।୧୯୧
ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ଗଉତମୀ ତୀର୍ଥକୁ ସେ ପାଣ୍ଡବେ ଆସୁଛନ୍ତି ।୧୯୨
ଆଗେଣ ବାଟ କଡ଼ାଇ ଆସଇ ପାବେନି
ବଳୀବେଲ୍ଲାଳ ଯାଉଅଛି ଯେ ଚାରିହିଂ ଘେନି ।୧୯୩
ଯୁଷ୍ଟେଷ୍ଠି ଦେବେ ଆହାର୍ଣ୍ଣିକ କରୁଛନ୍ତି ଭାନୁମତୀ ନଦୀ ତୀରେ
ଛାମୁରେ ବାରତା ନେଇ ଦିଲାକ ବ୍ରିକୋଦରେ ।୧୯୪
ବଡ଼ାଇ ଅପୂର୍ବ ଦେବ ଶୁଣିମା କଥାଯେ
ବଡ଼ ବଳବନ୍ତା ସେ ଯେ ଯେକଇ ବାଳୁତ ତନୟେ ।୧୯୫
ଦ୍ରିଯୋଧନ ଧୁଶାସନ କର୍ଣ୍ଣ ଯେ ଶକୁନି
ଯେ ଚାରିନ୍ତ ବନ୍ଧନ କରି ଯାଉଅଛି ଘେନି ।୧୯୬
ରଥ ଗଜ ଅଶ୍ୱ ସଇନି କିଛି ନାହିଂ ସଙ୍ଗେ
ପବନହୁଂ ଚଳିଆସଇ ସେହୁ ଅତି ବେଗେ ।୧୯୭
ଯେସନେକ ଶୁଣିଣ ଯୁଷ୍ଟେଷ୍ଠି ଦେବ ଉଠିଲେ ଧାତିକାରେ
ବେଗେଣ ଡେଇଂପଡ଼ିଲେ ସେ ନଦୀର ଭିତରେ ।୧୯୮
ଯୁଗତେ ସିଂହମାସ ଦୁସହ ବରଷାକାଳ
ବଢ଼ିଅଛି ନଦୀଗୋଟା ପୂରିଣ ଅଛଇ ବେନିକୂଳ ।୧୯୯
ଯୁଷ୍ଟେଷ୍ଠିଂଙ୍କ ପଶନ୍ତେ ସେ ହୋଇଲାକ ଥଳ
ଧାଅଂରେ ଭୀମ ଅର୍ଜୁନ ଭାଇନ୍ତ ସମ୍ଭାଳ ।୨୦୦
ଭୀମସେନ ବୋଇଲା ଦେବ ଅନିର୍ଯାପ ଯେହୁ କଥା
ଶତ୍ରୁକୁ ଯେହେନେକ କିମ୍ପା ପାଉଅଛ ବ୍ୟଥା ।୨୦୧
ସ୍ୱାମୀ କେତେ କେତେ କଷ୍ଟ ସେ ନ ଦିଲା ଆମ୍ଭଂକୁ
ଆନ ଯେକ ସିନା ନାଶ କରୁଛି ତାହାଂକୁ ।୨୦୨
ଯୁଷ୍ଟେଷ୍ଠି ଦେବ ବୋଇଲେ ବାବୁରେ ନ ହୋଇ ଯେମନ୍ତ
ସେ ଆମ୍ଭର ସୋଦର ଯେ ଅଟଇ ନିରିତାନ୍ତ ।୨୦୩
କର୍ଣ୍ଣ ଯେ ପଡ଼ିଅଛି ସେହି ଆମ୍ଭର ଜ୍ୟେଷ୍ଠ
ଆମ୍ଭର ଦେଖନ୍ତେ ସେ କିନା ହୋଇବେ ପ୍ରାଣେଭ୍ରଷ୍ଟ ।୨୦୪
ସୋଦର ନୋହି ଯେବେ ଆମ୍ଭର ହୋଇବେ ବଇରି
ଆନର ତହୁଂ ଘେନିମା ପଛେ ତାହାନ୍ତ ଆମ୍ଭେ ସଂହାରି ।୨୦୫
ଦ୍ରିଯୋଧନ ଧୁଶାସନ କର୍ଣ୍ଣ ଶକୁନି ଯେବେ ବଳିରେ ପଡ଼ିଲେ
ଭୀଷ୍ମ ଦ୍ରୋଣ ଆଦି ପ୍ରାଣେ ଛନ୍ତି ଟିକି ଭଲେ ।୨୦୬

ଅଠଣୋଇ ଭାଇ ସଭିହେଁ ହୋଇଲେଣିନା ପ୍ରାଣଭ୍ରଷ୍ଟ
ଦ୍ରିଯୋଧନ ଧୁଃଶାସନ ମଲେ ଅନାସ୍ତ ହୋଇବ ଧୃତରାଷ୍ଟ ।୨୦୭
ବାବୁ ଅନୁବ୍ରତେ ପ୍ରାଣୀକି ରାଗ ନୋହଇ ଭଲ
ସର୍ବଦା ନଦୀ ବାବୁରେ ନ ବହଇ ସମତୁଲ ।୨୦୮
ବିପତ୍ତି ବେଳେ ପ୍ରାଣୀକି ଉଦ୍ଧରିଲେ ଭୀମା
ସେହୁ ସେ ପରମ ପଣ୍ଡିତଟି ବୋଲନ୍ତି ମହାତମା ।୨୦୯
ବାବୁ ଯେଡ଼େକ ସଂକଟୁ ଯେବେ ପାରିବାକ ଉଦ୍ଧରି
କୃତାର୍ଥ ହୋଇବଟି ଜୀବନ ତାହାଂକରି ।୨୧୦
ବାବୁ ମୋହୋର ଶପଥଟିରେ ଭୀମ ଅରଜୁନ
ନକୁଳ ସହଦେବ ଆଦିକରି ଧାଅଂ ରେ ବହନ ।୨୧୧
ବାହାନାଦ କରିଣ ଧାଇଂଲେ ଯୁଧେଷ୍ଟିର କନେଷ୍ଟି
ଧାଡିକାରେ ପାର ହୋଇଲେ ଭାନୁବତୀ ନଦୀଗୋଟି ।୨୧୨
ଆରେ ଆରେ ବୋଲିଣ ଭୀମ ଡାକେ କରେଣ ଗଦା ଘେନି
ଯାନ୍ତେଣ ବଳୀବେଲାଳକୁ ଓଗାଳିଲେ ପାବେନି ।୨୧୩
ଦେଖିଣ ବିଚାର ସେ କରଇ କୁମରମଣି
ଚାରିନ୍ତି ଶାଳବୃକ୍ଷେ ବନ୍ଧନ କଲା ଆଣି ।୨୧୪
କୋପେଣ ବଳୀବେଲାଳ ଉପାଡ଼ିଲା ବେନିବୃକ୍ଷ
ବୁଲାଇ କରି ପିଟିଲା ଆଣି ଭୀମସେନ ଉପରେ ପ୍ରତକ୍ଷ ।୨୧୫
ବେନିବୃକ୍ଷ ପଡ଼ଲା ସେ ଭୀମସେନର ମାଥେ
ଭାଙ୍ଗିଣ ଚୂର ହୋଇଲେ ବେନିବୃକ୍ଷ ତୁରିତେ ।୨୧୬
ଭୀମସେନ ଗଦାନେଇ ବୁଲାଇଣ ରୋଷେ ପିଟି
ବଳୀବେଲାଳ ପାତିଲା ବାମ କରଗୋଟି ।୨୧୭
ଭୀମସେନ ହାଥହୁଂ ଗଦା ଉଛୁଡ଼ି ଘେନିଲା
ସେ ବାଉନଭାର ଗଦା ଘେନି ବଳୀବେଲାଳ ବୁଲାଇଲା ।୨୧୮
ଦେଖିଣ ଥମ୍ଭୀଭୂତ ଭୀମସେନର ନ ପୁରଇ କିଛି
ଯେକା ଗଦାଯେକ ଘେନିଣ ବଳୀ ଯେ ବେଲାଳ
ଭୀମସେନକୁ ପିଟିଲା ସେ କ୍ଷତ୍ରିୟ ଅଚାର୍ଗଳା ।୨୨୦
ପିତାପୁତ୍ରଂକର ଯେ ବଢ଼ିଲା ରଣରଙ୍ଗ
ଗଦାବିଘାତେ ରକତ କର୍ଦ୍ଦନ ହୋଇଲା ବେନିଅଙ୍ଗ ।୨୨୧
ତର୍ଜ୍ଜନ୍ତି ଗର୍ଜନ୍ତି ବଜାବନ୍ତି ଗାଲତୂରୀ
ପୁଣ ପୁଣ ପିଟାପିଟି ହୁଅନ୍ତି ବୃକ୍ଷନ୍ତ ଉପାଡ଼ି ।୨୨୨
ଯେମନ୍ତର ସମୟେ ଧାଇଂଲା ନକୁଳ
ବନ୍ଧନୁଂ ଫେଇଦିଲା ସେ ଧୃତରାଷ୍ଟର ବାଳ ।୨୨୩
ଦ୍ରିଯୋଧନ ଧୁଃଶାସନ କର୍ଣ୍ଣ ଯେ ଶକୁନି
ନାଗପାଶ ଫେଇଦିଲା ଖଗେଶ୍ୱର ତୀକ୍ଷପ୍ରଶୁ ଘେନି ।୨୨୪
ବନ୍ଧନୁ ଫିଟିଲେ କର୍ଣ୍ଣ ଶକୁନି ଧୁଃଶାସନ ଦ୍ରିଯୋଧନ
ପଳାଇ ଚାରିହେଁ ପଶିଲେ ଗହନ ଘୋରବନ ।୨୨୫
ନ ରହନ୍ତି କତିରେ ସେ ପଳାବନ୍ତି ଦୂରହୋଇ
ବନ୍ଧନୁ ଫିଟିଲେ ଯହ୍ନେ ପଶୁଜୀବ ଯାଇଂ ।୨୨୬
ସେହିମତି ହୋଇଣ ପଳାବନ୍ତି ବନସ୍ତକୁ
ଥୋକାୟେ ଦୂରେ ଯେ କର୍ଣ୍ଣ ଚାହିଂଲା ପଛକୁ ।୨୨୭
ଶୁଣ ମଇତ୍ର ମୋର ବଚନ ନିରାଧାର
ଆମ୍ଭନ୍ତ ଗୋଡ଼ାଇ ସେହୁ ନାହିଂ ଯେ ପଛର ।୨୨୮
ପାଣ୍ଡବଂକ ତୁଲେ ସେ ସମର କଲା ରହି
କିମ୍ପାଇଂ ପଳାଇବା ଦେଖିବା ଚାଲ ଯାଇଂ ।୨୨୯
ଭୋ ମିତ୍ର ପାଣ୍ଡବଂକ ତୁଲେ ଦେଖ ବାଳୁତର ଯୁଦ୍ଧ
ବୃକ୍ଷର ଉହାଡ଼େ ଥାଇଂ ଦେଖିବା ଚାଲ ସଧ ।୨୩୦
ପାଣ୍ଡବଂକ ଥାଆନ୍ତେ ଆମ୍ଭଂକୁ କିଛି ଭୟେ ନାହିଂ
କିମ୍ପାଇଂ ପଳାଇବା ନିରେଖି ଭାବ ହୋଇ ।୨୩୧
ରହିଣ ସାଙ୍ଗହୋଇ ଦେଖିଯିବା ଚାଲ ପୁଣ
ଶକୁନି ବୋଇଲା ହୋ ମୋହୋର ବୋଲ ଶୁଣ ।୨୩୨
ଶକୁନି ବୋଇଲା ହୋ ବିପଥ ଅମାର୍ଗ ବନ୍ଧନ ଥିବା ଭୂଇଂ
ଫିଟିଲେ ତହିଂ ବାବୁ ଦଣ୍ଡେହେଂ ନ ରହି ।୨୩୩
ଶକୁନି ବୋଇଲା ହୋ ବାବୁ ଜୟେକଲା ଗଡ଼ଇଂ
ତହିଂ ରହିଲେ ଅବଶ୍ୟ ପ୍ରମାଦ ପଡ଼ଇ ।୨୩୪
ଶକୁନି ବୋଇଲା ହୋ ଜିଣିମା ଜୁଆରେ
କ୍ଷଣେହେଂ ନ ରହି ତହିଂ ଆସିବା ନିଜପୁରେ ।୨୩୫
ଶକୁନି ବୋଇଲା ହୋ ଚଉର୍ଯ୍ୟ କଲାଠାରେ
ବନ୍ଧନ ପଳାଇବ ପଦାର୍ଥ ପଡ଼ିଲେ ହାଥରେ ।୨୩୬
କାର୍ଯ୍ୟ ଯହିଂ ଲଭି ନ ରହିବ କ୍ଷଣେ
ଯେହେନେକ ବାକ୍ୟ ଅଛି ଶାହାସ୍ର ବିଧାନେ ।୨୩୭
ଯେତେ ପରିମାଣି ନ ପାରନ୍ତି ଯେଉଂଣ ଜନ
ଅବଶ୍ୟ ପ୍ରମାଦ ତହିଂ ପଡ଼ି ତତକ୍ଷଣ ।୨୩୮
ଶକୁନି ବୋଇଲା ହୋ ତୀର୍ଥକଲା ଭୂମି
ପିଣ୍ଡଦାନ କରି ତହିଂ କ୍ଷଣକେ ନ ବିଶ୍ରାମି ।୨୩୯
ପଳାବନ୍ତି ଚାରିହେଂ ଯେ ଶକୁନି ମନ୍ତ୍ରୀର ବଚନେ
ଆପଣାର ସଇନି ଯାଇଂ ଭେଟିଲେ ପାଞ୍ଚଦିନେ ।୨୪୦
ଯେତେ ସନ୍ୟ ଶିରଚ୍ଛେଦନ ହୋଇ ପଡ଼ିଥିଲେ
ସେମାନେ ପଡ଼ିଛନ୍ତି ଆଉମାନେ ହସ୍ତିନାକୁ ଗଲେ ।୨୪୧

ବାହୁଡ଼ନ୍ତି ନୃପତିଏ ଯେ ତୀର୍ଥସ୍ନାନ ନ କରି
ପ୍ରବେଶ ହୋଇଲେ ଯାଇଂ ହସ୍ତିନା ନଗ୍ର ପୁରୀ ।୨୪୨
ଦଣ୍ଡଭଗ୍ନ ଦେଖିଣ ପୁରର ସର୍ବବାଳୀ
ପଞ୍ଚୁକଟକ ଯାକେ ପଡ଼ଇ ବୋବାଳି ।୨୪୩
ଯେମନ୍ତର ସମୟେ ଭୀଷ୍ମ ଦ୍ରୋଣ ଯାଇଂ କହିଲେ ଶୁଣ ଧୃତରାଷ୍ଟ
ଶୁଣ ଦେବ କୁରୁପତି ତୋତେ ପଡ଼ିଲା ବହୁତ କଷ୍ଟ ।୨୪୪
ତୀର୍ଥଯାତ୍ରା ଆରମ୍ଭେ ଆମ୍ଭେ ଯାଉଥିଲୁଂ ସଇନି ଘେନି
ନାଗରାଜା ଆସିଥିଲା ନାଗବଳନ୍ତ ଘେନି ।୨୪୫
ଆଗିଆଣି ଥାଟେ ଯେ ଥିଲା ଧୁଶାସନ
ଗୋଡ଼ାଇ ମାଇଲା ସେହୁ ଅନେକ ନାଗବଳ ସଇନ୍ୟ ।୨୪୬
ନାଗଂକର ମେଳେ ଯେ କୁମାରେକ ଥିଲା
ଯେକା କୁମାରକେ ଆମ୍ଭ ସଇନି ବିରୋଧିଲା ।୨୪୭
ଶରୀର ବଜ୍ର ତାହାର ଯୁକତେ ଅଟଇ
ବିନ୍ଧିଲେ ନ ଫୁଟଇ ହାଣିଲେ ନ କାଟଇ ।୨୪୮
ବଡ଼ାଇ ଦୁରାପଦ ଯେ ବାଜିଲା ସମର
ବହୁତ ସଇନି ସେ ମାରିଣ କଲା ଚୂର ।୨୪୯
ଆମ୍ଭେହେଂ ପଡ଼ିଲୁ ଯେ ତାହାର ଗଦାଘାତେ
କୃପ ଅଶସ୍ତମା ଶଲ୍ୟହିଂ ସହିତେ ।୨୫୦
ଦ୍ରିଯୋଧନ ଧୁଶାସନ କର୍ଣ୍ଣ ଯେ ଶକୁନି
ଯେ ଚାରିନ୍ତି ବନ୍ଦୀକରି ସେ ଗଲା ବେଗେ ଘେନି ।୨୫୧
ଆମ୍ଭେମାନେ ସମସ୍ତେ ମୋହେ ପଡ଼ିଥିଲୁ
ରାତ୍ର ଅବଶେଷେ ଆମ୍ଭେ ଚେତନା ପାଇଲୁ ।୨୫୨
ଅସମ୍ଭାଳ ହୋଇ ଆମ୍ଭେ ପଳାଇ ଅଇଲୁ
ରାଜାଂକର ହାନିଲାଭ ନୟନେ ନ ଦେଖିଲୁ ।୨୫୩
କି ଅବା ସେ ନାଶକର କି ଅବା ସେ ଧର୍ମ
ତା଼ର ମୁଖଂ ଉବୁରିବ କରି କେ ସାଂଗ୍ରାମ ।୨୫୪
ବାସଭଗ୍ନ ପକ୍ଷୀ ଯେହ୍ନେ ଆତଂକେ ପଳାଇ
ନିରେଖ ହୋଇ ପଳାଇଲୁଂ ରାଜାଂକୁ ବନ୍ଦୀଦେଇ ।୨୫୫
ଶୁଣିଣ ମୂର୍ଚ୍ଛାଗତ ହୋଇଲା ଅମ୍ବିକାର ସୁତ
ଅନ୍ତେଶ୍ୱରେ ରୋଦନ ପଡ଼ିଲା ବହୁତ ।୨୫୬
ପଞ୍ଚଦିନ ପରିଯନ୍ତେ ରୋବନ୍ତି ଦିଗାମ୍ବରୀ
ଯେସନେକ ସମ ଆସି ପ୍ରବେଶ ଜଣ ଚାରି ।୨୫୭
ଦେଖାଉରେ ବାରତା ଜଣାଇଲେ ଧୃତରାଷ୍ଟ୍ରର ଅଗ୍ରତେ
ଦ୍ରିଯୋଧନ ଧୁଶାସନ କର୍ଣ୍ଣ ଶକୁନି ସହିତେ ।୨୫୮

ଇନ୍ଦ୍ରପ୍ରଶସ୍ତେ ଯେ ପ୍ରବେଶ ଚାରିଜଣ
ନ କର ରୋଦନ ସ୍ଥିର ହୁଅ ନୃପରାଣ ।୨୫୯
ଭୀଷ୍ମ ଦ୍ରୋଣ ଆଦିକରି ଯାଆନ୍ତି ପାଛୋଟି
ଆସ୍ତାନେ ବିଜୟେ ଯାଇଂ କଲାକ ଧୃତରାଷ୍ଟି ।୨୬୦
ଦିଯୋଧନକଇଂ କୋଳକରି ଧଇଲେ ଗାଗବେ
ଯେହେନେକ ଅପାଦୁଂ ତରି ଅଇଲୁ କେଉଣ ବାଗେ ।୨୬୧
ସଭାର ମଧ୍ୟେ ଯେ କହିଲେ ଶକୁନି
ଚାରିନ୍ତି ଆମ୍ଭନ୍ତ ହୋ ଯାଉଥିଲା ସେ ଘେନି ।୨୬୨
ପାଞ୍ଚଶତ କ୍ରୁଶଯାଏ ଘେନିଗଲା ବନେ
ପାଣ୍ଡବେ ଭେଟିଲେ ଆମ୍ଭନ୍ତ ଗହନ ଅରଣ୍ୟେ ।୨୬୩
ଭୀମ ଅରଜୁନ ଯେ ଆସି ପଶିଲେ ସମରେ
ଆମ୍ଭଂକୁ ଖଟାଇଲା ନେଇ ଶାଳବୃକ୍ଷ ତଳେ ।୨୬୪
ଆମ୍ଭନ୍ତ ବାନ୍ଧି ଧାଇଂଲା ସମର କରି
ବଡ଼ ବଳବନ୍ତା ସେ ଧନ୍ୟ ଜୀବନ ତାହାରି ।୨୬୫
ଭୀମ ଅରଜୁନ ତୁଲେ କଲାକ ସମର
ଅନେକ ସମର ସେ ଲାଗିଲା ମହାଘୋର ।୨୬୬
ଯହୁଂ ଭୀମ ଅର୍ଜୁନ କଲେକ ଯାଇ ରଣ
ନକୁଳ ବନ୍ଧନ ଆମ୍ଭର ଫେଡ଼ିଲା ତକ୍ଷଣ ।୨୬୭
ତାହାଂକର ସଙ୍ଗତେ ଲାଗିଅଛି ମହାରଣ
ଆମ୍ଭେ ଯେଣେ ପଳାଇ ଅଇଲୁଂ କେଶବାସ ଅସମ୍ଭାଳେଣା୨୬୮
ଧୃତରାଷ୍ଟ ବୋଇଲେ ସେ ପାଣ୍ଡବେ ଧନି ଧନି
ତୋହୋର ନିମନ୍ତେ ଆପଣେ ଦ୍ୱନ୍ଦ ଘେନି ।୨୬୯
ବିଦୁରେ ବୋଇଲେ ବାବୁ କିମ୍ପାଇଂ ଯେହା କଲୁ
ଜୟେ ଅପ୍ରାଂଜୟେ ପରିଯନ୍ତେ କିମ୍ପାଇଂ ନ ରହିଲୁ ।୨୭୦
ପାଣ୍ଡବେ ଅଟନ୍ତି ଯେ ଜଗୁଜନ ଜିତା
ସ୍ୱର୍ଗ ମର୍ତ୍ତ୍ୟେ ପାତାଳେ ତାଂକୁ ନାହିଂ କେହି ଜିଣନ୍ତା ।୨୭୧
ପାଣ୍ଡବଂକର ଥାଆନ୍ତେ ତେତେ ନାହିଂନା ପରମାଦ
କିମ୍ପାଇଂ ନ ବିଚାରି ନାଶକଲୁ ଯେଡ଼େକ ସମ୍ପଦ ।୨୭୨
ଶକୁନି କହେ ନ ଜାଣ କେହି ତଉଥ
କେବଣ ସୁସ୍ଥ ଆମ୍ଭେ ଦେଇଛୁ ପାଣ୍ଡବନ୍ତ ।୨୭୩
ପାଣ୍ଡବଂକ ଜିଣନ୍ତେ ଯେ ଆମ୍ଭନ୍ତ ନାହିଂ ଯଶ
ପାଣ୍ଡବନ୍ତ ଜିଣିଲେ ସେ ଆମ୍ଭନ୍ତ କରନ୍ତା ନାଶ ।୨୭୪
ଅନେକ ଝିଂଘାସ ଆମ୍ଭେ କରିଛୁଂ ପାଣ୍ଡବଂକୁ
ସମରେ ଗୋଳକରି ନ ପୁଣ ମାରନ୍ତି ଆମ୍ଭଂକୁ ।୨୭୫

ଆମ୍ଭର ଦେହ ଯେ ନ ପତାଇଲା ପାଣ୍ଡବଂକୁ
କେବଣ ଭାବେ ଆମ୍ଭେ ଆବୋରିବୁ ତାଂକୁ ।୧୨୭୬
କଦାଣ୍ଟିତେ ପାଣ୍ଡବଂକର ଆମ୍ଭଂକୁ ନାହିଁ ନା ବିଶ୍ୱାସ
କେବଣ ଭାଗ୍ୟ ସେ ଫେଡ଼ିଲେ ଆମ୍ଭର ଫାସ ।୧୨୭୭
ବନ୍ଧୁନଂ ଫିଟିଲୁ ଯେ ଆମ୍ଭର ସୁକର୍ମେ
ଗତପ୍ରାଣ ଘେନି ଆମ୍ଭେ ଉବୁରିଲୁ ଧର୍ମେ ।୧୨୭୮
ସମ୍ବାଦ ତୁଲକରି ଭେଟାଇଲା ଶକୁନି
ସବୁନ୍ତିହିଂ ରୁଚିଲା ମନ୍ତ୍ରୀର ବୋଲ ବାଣୀ ।୧୨୭୯
ଧନ୍ୟ ଧନ୍ୟ ଶକୁନି ଜୀବନ ତୋର ଧନି ଧନି
ସରୂପ ବୃତ୍ତାନ୍ତ କହିଲୁ ମନ୍ତ୍ରୀ ଚୂଡ଼ାମଣି ।୧୨୮୦
ଯେବେ ତାର ମଲେ ଭଲ ପାଣ୍ଡବେ ମଲେ କାର୍ଯ୍ୟ
ରାଜା ଯେବେ ଅଇଲେ ସେ ଥିର ହେଲା ରାଜ୍ୟ ।୧୨୮୧
ଦ୍ରିଯୋଧନ ବୋଇଲା ହୋ ତୁ ମହାପଣ୍ଡିତ ମନ୍ତ୍ରୀ ଗୁଣନିଧି
ସୋମବଂଶ ରକ୍ଷାକଲା ଯେକା ଶକୁନିର ବୁଦ୍ଧି ।୧୨୮୨
ଅଗସ୍ତି ପୁଚ୍ଛାକଲେ ବଇବସୁତ ମନୁ
ପାଣ୍ଡବେ କେମନ୍ତ କଥା ହୋଇଲା ବଳୀବେଳାଳ ତନୁ ।୧୨୮୩
ଶୁଣିବାକୁ ସୁରସ ଦେଖିବାକୁ ଅପୂର୍ବ
ଦିବ୍ୟରସ ବାକି ମୋତେ କହ ମୁନିଦେବ ।୧୨୮୪
ବଦୟନ୍ତି ଅଗସ୍ତି ଶୁଣିମା ମହାରାୟେ
ଅନେକ ସଂଗ୍ରାମ କଲା ବେଲାବଳୀର ତନୟେ ।୧୨୮୫
ଭୀମସେନ ପ୍ରହାର କଲାକ ଗଦାବର ଘାତେ
ପୁଣି ବଳୀବେଳାଳ ତାହା ଧଇଲା ବାମହାଥେ ।୧୨୮୬
ଆରେ ଆରେ ବୋଲିଣ ଭୀମକୁ ପାଦେକ ପ୍ରହାରି
ହାଥରୁ ବାଆନଭାର ଗଦା ଘେନିଲା ଉଚ୍ଛୁଡ଼ି ।୧୨୮୭
ସେହି ଗଦା ଘେନି ବୀର ଆକ୍ରେଷିଣ ପିଟି
ଭୀମସେନ ଶରୀରେ ପଡ଼ି ରୁଧିର ହୋଇଲାକ ବୃଷ୍ଟି ।୧୨୮୮
ମୋହେଣ ପଡ଼ି ଉଠିଲା ସେ ପବନର ବଳା
ବେନି ହାଥେ ଘେନିଲା ବେନିଗିରି ବଜ୍ରଶିଳା ।୧୨୮୯
ଊର୍ଦ୍ଧ୍ୱଗତେ ଘେନି ପ୍ରହାର କଲାକ ମହାବଳୀ
ବଳୀବେଳାଳ ହୃଦେ ବାଜି ପର୍ବତ ହୋଇଲେକ ଧୂଳି ।୧୨୯୦
ଘାୟେଣ କୋପିତ ସେ ନାଗେଣୀର ବାଳ
ଦୁଇଗଦା ପିଟିଲା ନେଇ ଭୀମସେନର ବକ୍ଷସ୍ଥଳ ।୧୨୯୧
ଗଦାପଡ଼ି ଭୀମସେନ ହୋଇଲା ଅସାଷ୍ଟମେ
ଉତ୍ତାନଶାୟୀ ହୋଇ ପଡ଼ିଲା ବୀର ଭୀମେ ।୧୨୯୨

ଧାମଇଂ କୁମର ହାଣିତେ କରେ ବିଜେକର୍ଣ୍ଣକଟାରୀ ଧରି
ଆରେ ରହ ରହ ବୋଲି ଯାଇଂ ଅର୍ଜୁନ ଆବୋରି ।୧୨୯୩
ଧନୁରେ ଗୁଣ ଟଂକାର କରିଣ ବୀର ଫାଲଗୁନି
ବଳୀବେଳାଳ ଉପରକୁ ବିନ୍ଧିଲା ଶସ୍ତ୍ର ତିନି ।୧୨୯୪
ପୁଣ ପାଞ୍ଚ ନାରାଚ ବିନ୍ଧିଲା ସୁଭଦ୍ରାର ନାହା
ଦେଖି ବଳୀବେଳାଳ ପାତିଲାକ ତାର ହିଆ ।୧୨୯୫
ନିର୍ଘାତ ନାରାଚ ଯେ ହୃଦେ ତାର ପଡ଼ି
ପାଞ୍ଚ ପାଞ୍ଚଖଣ୍ଡ ହୋଇ ପଡ଼ିଲା ନାରାଚ ଛିଡ଼ି ।୧୨୯୬
ପର୍ବତ ଉପରେ ପଡୁଥାଇଂ ବଜ୍ରବାଣ
ଶରୀର ନ କମ୍ପଇ ସେ ସୋହୋଡ଼ ପଞ୍ଚାଣ ।୧୨୯୭
ପୁଣ ସହସ୍ରେ ନାରାଚ ପାଥ କୋପେ ପେଷି
ବଳୀବେଳାଳ ଦେହେ ପଡ଼ି ସର୍ବେ ହୋଇଲେ ଧ୍ୱଂସି ।୧୨୯୮
ଦୁଇ ବାହାକୁ ବିନ୍ଧିଲା ଦୁଇ ସହସ୍ର ଶର
ହୃଦୟକୁ ବିନ୍ଧିଲା ନାରାଚ ଶତେ ଯେ ପନ୍ଦର ।୧୨୯୯
ସହସ୍ରେ ନାରାଚ ସେ ବିନ୍ଧିଲା କଣ୍ଠକୁ
ଦୁଇ ସହସ୍ର ବାଣ ବିନ୍ଧିଲା ଦୁଇ ଯେ ପାଦକୁ ।୧୩୦୦
ମୁଣ୍ଡକୁ ବିନ୍ଧିଲା ତିନି ସହସ୍ର ବାଣ
ଯେକା ଘାନ୍ତିକେ ଯେତେକ ଶହସ୍ର ବୀର କଲାକ ପୟାଣ ।୧୩୦୧
ଗିରବର ପ୍ରାୟେକ ଉଭା ହୋଇଛି ମହାବଳୀ
ଯେଉଂଣ ନାରାଚ ଯହିଂ ପଡ଼ନ୍ତି ସେ ତହିଂ ହେଉଛନ୍ତି ଧୂଳି ।୧୩୦୨
ଦେଖିଣ ବିଷାଦ ଯେ ହୋଇଲା ସର୍ବଶାଚୀ
ମୋହୋର ନାରାଚ ଯେହାର ନୋହିଲାକ କିଛି ।୧୩୦୩
ମନ୍ଦର ଗିରି ଫୁଟଇ ଯାହାର ଶରଘାୟେ
ପର୍ବତୁଂ ଅଟଇ ଯେହାର ଯେ କାୟେ ।୧୩୦୪
ଦ୍ୱାଦଶମୁନା ନାରାଚ ଦ୍ରୋଣଂକର ଦିଲା
ଯେଉଂଣ ନାରାଚେ ତ୍ରେତୟା ଯୁଗେ ଇନ୍ଦ୍ର ନାଶଗଲା ।୧୩୦୫
ସେ ଶର ଅର୍ଜୁନ ବିନ୍ଧିଲା ଆକ୍ରେଷିଣ କରି
ଅଗ୍ନି ବାହାର ହୋଇଲା ବଳୀବେଳାଳ ହୃଦେ ପଡ଼ିକରି ।୧୩୦୬
ସେ ନାରାଚ ଯହୁଂ ହୃଦେ ପଡ଼ି ହୋଇଲାକ ମସିଗୁଣ୍ଡା
ପ୍ରଶଂସଇ ଧନୁର୍ଜୟେ ସାଧୁରେ ପୁରୁଷଷଣ୍ଡା ।୧୩୦୭
କେହେନେକ କ୍ଷଣେ ଜାତକଲା ତୋତେ କେଉଣ ମହାଗ୍ଲାଣୀ
ଯେ ତୋତେ ବୀର୍ଯ୍ୟଦିଲା ସାଧୁ ସେହି ପ୍ରାଣୀ ।୧୩୦୮

କୋପ ସଂହାରି ନୁଆରି ବୀରବର ପାଥ
ପୁଣି ବିନ୍ଧିଲା ସେ ଯେ ପର୍ବତା ଶହସ୍ରାନ୍ତ ।୩୦୯
ଅନେକ ପର୍ବତ ଯେ ଆସୁଛନ୍ତି ଉଡ଼ି
ବଳୀବେଲାଳ ଉପରେ ପଡ଼ି ସର୍ବେ ହୋଇଲେକ ଚୂରି ।୩୧୦
ସମରେ ପାର୍ଥିବ ଯେ ହୋଇଲା ବିମୁଖଇ
ବଳୀବେଲାଳ ବୋଇଲା ବିନ୍ଧ ତୋର ଯେତେକ ଶହସ୍ର
ଅଛଇ ।୩୧୧
ପୁଣ ପୁଣ ପ୍ରତଗ୍ୟାଂ କରଇ ଦୂତୀ ନାରାୟଣ
କୋପେଣ ନାରାଜ ବାସେବି ବିନ୍ଧିଲା ଅଗ୍ନିବାଣ ।୩୧୨
ସ୍ୱର୍ଗ ମଞ୍ଚ ପାତାଳ ଘୋଟିଲା ଅଗ୍ନିବାଣ ତେଜ
ବନସ୍ତ କନ୍ଦରମାନେ ହୋଉଛନ୍ତି ଯେ ଦହିଜ ।୩୧୩
ଦେଖିଣ ବଳୀବେଲାଳ ପାଟିଲାକ ତାହାର ତୁଣ୍ଡ
ଗର୍ବେଣ ସଂହରିଲା ଅଗ୍ନିନାମେ କାଣ୍ଡ ।୩୧୪
ଶରୀରଯାକ ତାହାର ଅମୃତମୟେ କୁଣ୍ଡ
କେବେହେଂ ନାଶ ନୋହିଲା ତାହାର ଯେ ପିଣ୍ଡ ।୩୧୫
ଅନଳ ନାରାଜକୁ କିସ ତାର ଭୟେ
ଦେଖିଣ ଥମ୍ଭୀଭୂତ ହୋଇଲା ଧନୁର୍ଜୟେ ।୩୧୬
ଅନେକ ବିମୁଖ ହୋଇଲା ବୀର ଫାଲଗୁନି
ବଳୀବେଲାଳ ଧାଇଂଲା କାଳଚକ୍ର ଘେନି ।୩୧୭
ମାରନ୍ତେ ଦେଖିଲା ତାହା ବୀର ଫାଲଗୁନି
କାଳଚକ୍ର ଛେଦିଲା ଅର୍ଜୁନ ଅବିଶ୍ରାମ ଚକ୍ର ଘେନି ।୩୧୮
ଅଗ୍ନି ଗଦା ଘେନିଣ ବଳୀବେଲାଳ ଯେ ଭେଦି
ଗାଣ୍ଡିମ ଧନୁ ଗୁଣକୁ ପକାଇଲା ଛେଦି ।୩୧୯
ଅକ୍ଷୟେ ଧନୁ ଯହୁଂ ହୋଇଲା ଗୁଣଛେଦ
ବିଚାରେ ବିବସ ମୋତେ ପଡ଼ିଲା ପରମାଦ ।୩୨୦
ଅର୍ଜୁନ ବୋଇଲା ଯେ ନିଚୟେ ନାଶକାଳ
ଧାତିକାରେ ଧାଇଂ ବଳୀବେଲାଳ ଧଇଲା ଅର୍ଜୁନର ବାଳ।୩୨୧
ବାମକରେ କୁମର ପାଥର କେଶ ଅଛି ଧରି
ଡାହାଣେ ଭୀମସେନର ବାଳ ଧଇଲା କୋପକରି ।୩୨୨
ଦୁହିଂକରି କେଶ ଧରି ନାଗେଣୀର ବାଳେ
ଚଳଇ କୁମର ଯେ ଲେଉଟି ପାତାଳେ ।୩୨୩
ପାତାଳ ଗଙ୍ଗାକୂଳେ ବସାଇ ଦୁହିନ୍ତି
ବିଜେକର୍ଣ୍ଣକଟାର ଘେନି କାଳାନଳ ମୃତ୍ତି ।୩୨୪
ପାତାଳ ବାସିନୀ ବୋଲି ଦେବୀ ଅଛି ତହିଂ
ତାହାଂକୁ ବଳୀ ଦେବ ବସାଇଅଛି ନେଇ ।୩୨୫
ବିଜେକର୍ଣ୍ଣକଟାର ଯେ ଘେନିଅଛି ହାଥ
ବାମ ହାଥରେ ଧରିଅଛି ଦୁହିଂକରି ଗାତ୍ର ।୩୨୬
କଟାରୀ ଉଞ୍ଚାଇ ବୋଲେ ସେ ମହାରଥୀ
ସୁମରରେ ମାନବା ତୋହୋର ମାତା ପିତା ଇଷ୍ଟ ଯେ
ଦେବତା ।୩୨୭
ଲକ୍ଷଣ ଗୁଣ ଦେଖି ବିଚାରଇ ନାଗେଣୀର ତନୟେ
ଯେ ଦୁହେଂ ଦିଶୁଛନ୍ତି ତ ବିଦ୍ୟାଧର ପ୍ରାୟେ ।୩୨୮
ମାରିବି କି ନ ମାରିବି ବିଚାରିଣ ଭାଳି
ଜଳକ୍ରୀଡ଼ା କରି ଯେ ଆସୁଅଛଇ ବେଲାବାଳୀ ।୩୨୯
ପାତାଳୁଂ ବାହାର ହୋଇଲା ନାଗରାଜାର ଦୁହିତ
ନାଗେଣୀବୃନ୍ଦ ଘେନି ଆସଇ ତୋଷଚିତ୍ତ ।୩୩୦
ଗଉତମୀ ତୀର୍ଥକୁ ଆସଇ ଅବଗାହୀ
ଅନେକ ନାରୀବୃନ୍ଦ ଯେ ଅଛନ୍ତି ଗୋଡ଼ାଇ ।୩୩୧
ପାତାଳ ଗଙ୍ଗାକୂଳେ ପୁତ୍ରକୁ ଭେଟିଲା
ପୁତ୍ରକୁ ଦେଖି ଯେ ବେଲାବାଳୀ ଚାହିଂଦିଲା ।୩୩୨
ବେନି ପୁରୁଷ ଦେଖି ସେ ବିଚାରଇ ନାଗବାଳୀ
କିମ୍ପାଇଂ ନନ୍ଦନରେ କାହାର ତୁଳେ କଳି ।୩୩୩
ବେଲାବଳୀ ଦେଖିଲା ଯେ ଭୀମସେନର ମୁଖ
ମୋହୋର ସ୍ୱାମୀର ଯେତ ଦିଶଇ ପ୍ରତକ୍ଷ ।୩୩୪
ସନ୍ନିଧକୁ ଯାଇଂଣ ଯେ ଚିହ୍ନିଲା ନାଗେଣୀ
ରହ ରହ ବାବୁରେ କାହାକଇଂ ଲୋଡୁ ହାଣି ।୩୩୫
ଯେତେ ବୋଲି ଭୀମସେନ ଚରଣେ ନାଗେଣୀ ପରିଣାମି
ମୁହିଂ ତୋହୋର ଅପାଦ ଘେନଇଂ କାହିଂ ଥିଲ
ଦେବସ୍ୱାମୀ ।୩୩୬
ଆରେ ବଳୀବେଲାଳ କେମନ୍ତ ତୋହୋର ଯେହୁକଥା
ସ୍ୱାମୀକଇଂ ଦେଉ ମୋର ଯେତେକ ଶିରଛେଦନ ଅବସ୍ଥା ।୩୩୭
ମୂର୍ଖବୁଦ୍ଧି କୁମରରେ କଲୁ ଯେ ନ ଜାଣି
କେବଣ କାରଣେ ପାମର ରେ ପିତାକୁ ଲୋଡୁ ହାଣି ।୩୩୮
ଆରେ ଆରେ ମୂର୍ଖନନ୍ଦନ ଯେ ତୁ କୁଳ ନାଶନ
ସ୍ୱାମୀଙ୍କି ନାଶ କରିବାକୁ ମୁହିଂ କରିଅଛି ଜନମ ।୩୩୯
ଆରେ ଆରେ ପାମର ପୁତ୍ର ହାଥରୁ କେଶ ଛାଡ଼ ତୁହି
ପିତାର ଚରଣେ ପ୍ରଣାମ କର ତୁହି ଯାଇ ।୩୪୦
ମାତାର ବଚନେ ବଳା ଛାଡ଼ିଲାକ ବାଳ
ଯେ ମୋଢ଼ାମାନେ ମାତା ଗୋ ବଡ଼ାଇ ଚାଣ୍ଡାଳ ।୩୪୧

ବେଲାବାଳୀ ବୋଇଲା ବାବୁରେ ଯେ ତୋହୋର ନିଜ ପିତା
ପିତାର ଚରଣେ ପୁତ୍ର ରେ ହୁଅ ପ୍ରଣମିତା ।୩୪୨
ଶହସ୍ର ବିଘାତେ ମୋହ ଯେ ହୋଇଥିଲା ଭୀମ
ନାଗୁଣୀର ଦ୍ରଶନେ ସେ ହୋଇଲା ସାକ୍ଷମ ।୩୪୩
ଭ୍ରଥା ଦେବର ପୁତ୍ର ଘେନିଣ ଚଳଇ ବେଲାବାଳୀ
ଜଳଅନ୍ଧାରୀ ପୁରେ ବେଗେଣ ଯାଇଂ ମିଳି ।୩୪୪
ଅନେକ ସମ୍ଭରେଣ ସେ ଅମୃତ ଯୋଗାଡ଼
ପରଷଇ ନାଗେଣୀ ଯେ ଅନେକ ସମ୍ଭାର ।୩୪୫
ସ୍ୱାମୀ ଅଗ୍ୟାନେ ପୁତ୍ର ମୋର କଲାକ ବହୁତ ଦୋଷ
ବାଳୁତ କୁମରକୁ ମୋର ନ କରିବାକୁ ରୋଷ ।୩୪୬
ସ୍ୱାମୀ ତୋହୋର ତୁଲେ ରମଣ କାଳ ବୀର୍ଯ୍ୟେ
ତବ ରେତୁଂ ଜାତ ହୋଇଲାକ ଆତ୍ମଜେ ।୩୪୭
ତୁମ୍ଭେ ଯେ ବୋଇଲ ମୋତେ ଯିବାର ବେଳେଣ
ପୁତ୍ର ହୋଇଲେ ଦେବୁଟି ଦୁହିଂକରି ନାମ ।୩୪୮
ତୁମ୍ଭେ ଯେ ମହାବଳୀ ମୁହିଂ ବେଲାବାଳୀ
ବଳୀବେଲାଳ ନାମଗୋଟି ଦିଲି ତୁମ୍ଭର ଆଗ୍ୟାଂ ପ୍ରତିପାଳି ।୩୪୯
ଯେ ତୋହୋର ନନ୍ଦନ ତୁ ଅଟୁ ଯେହୁ ପିତା
ବାଳୁତ ନନ୍ଦନକୁ ନ ଧର ମନେ ବ୍ୟଥା ।୩୫୦
ଭୀମସେନ ପାଦତଳେ ବଳୀବେଲାଳ ପରିଣାମି
ମମ ଦୋଷ ଅପ୍ରାଧ କ୍ଷମା କରିବା ଦେବସ୍ୱାମୀ ।୩୫୧
ମୁହିଂ ତ ଚିହ୍ନି ନୁଆରିଲି ପିତା ମୋହୋର ବୋଲି
ବାଳୁତ ବୁଦ୍ଧିରେ ମୁହିଂ ଅନେକ ଦୋଷ କଲି ।୩୫୨
ସ୍ୱାମୀ ତୁ ଅଟୁ ପିତା ମୋର ନ ଚିହ୍ନିଲୁ ମୋତେ
ଦଇବର ବିପାକେ ହୋଅଇ ଯେସନେକ କୃତ୍ୟେ ।୩୫୩
ନ ଜାଣିଣ ପିତା କଲି କେତେ ଦୋଷ ମୁହିଂ
ପିତା ସେ ପୁତ୍ରର ଦୋଷ କ୍ଷମା ଯେ କରଇ ।୩୫୪
ଧାଇଂ ବଳୀବେଲାଳକୁ କୋଳେ ଧଇଲା ପାବେନି
ମୁଖେ ଚୁମ୍ବନ ଦେଇଣ କରଇ ଭାବ ପୁଣି ।୩୫୫
ତୁ ସେ ମୋହୋର ପୁତ୍ର ମୋତେ ଜିଣିଲୁ ଦୁଲାଳ
ଆନର ହାଥେ ଦୁଷିତ ନୋହିଲୁ ମହୀସ୍ଥଳ ।୩୫୬
ଆନର ଯୁଦ୍ଧେ ଆମ୍ଭେ ନୋହିଲୁ ନା ଦୃଷି
ଅନେକ ଯଶ ଆମ୍ଭେ ରେ ଅରଜିଲୁ ଶିଷି ।୩୫୭
ଆମ୍ଭର ପୁତ୍ର ହୋଇ ଯେବେ ଆମ୍ଭନ୍ତ ଜିଣି
ଆମ୍ଭର ସାଧୁଜୀବନ ସର୍ବ ସିଦ୍ଧବାଣୀ ।୩୫୮
ପିତା ଥାଉଂ ଥାଉଂ ଯେବେ ପୁତ୍ର ହୋଏ ଦକ୍ଷ
ଯେହାଉଂ ପୁଣ୍ୟଧର୍ମ ଆବର କିସ ଓଛ ।୩୫୯
ଅନେକ ଉତ୍ସବ ସେ କଲାକ ନାଗେଣୀ
ବଳୀବେଲାଳ କହଇ ଭୀମସେନକଇଂ ବାଣୀ ।୩୬୦
ସ୍ୱାମୀ ପ୍ରଥମ ଯୁଦ୍ଧେ ଯେହୁ ମୋହୋର ତୁଳେ ଦ୍ୱନ୍ଦି
ଶାଳବୃକ୍ଷରେ ଯାହାଂକୁ ମୁଂ କରିଥିଲି ବନ୍ଦୀ ।୩୬୧
ସେହୁ ଚାରିଜଣ ଯେ ତୁମ୍ଭର କିସ ହୋଇ
ଭୀମସେନ କହଇ ଯେ ପୁତ୍ରର ମୁଖ ଚାହିଂ ।୩୬୨
ବାବୁ ଆଗେ ଯାହାଂକୁ ତୁ କରିଥିଲୁ ରେ ବନ୍ଧନ
ସେ ଆମ୍ଭର ସୋଦର ରେ ମାନଗୋବିନ୍ଦ ରାଜନ ।୩୬୩
ବଳୀବେଲାଳ ବୋଇଲା ଶୁଣିମା ଗୋସାଇଂ
ତାହାନ୍ତ ଯେହୁ ଫେଡ଼ିଲା ସେ ତୁମ୍ଭର କିସ ହୋଇ ।୩୬୪
ଭୀମସେନ ବୋଇଲା ସେ ମୋହୋର ସାନୁଜ
ଯେକା ମାତା ଗର୍ଭୁଂ ଜାତ ଆମ୍ଭେ ଅଟୁ ଯେକାତ୍ମଜ ।୩୬୫
ଜ୍ୟେଷ୍ଠଭ୍ରଥା ଅଟନ୍ତି ଯେ ଧର୍ମ ନୃପସାଇଂ
ତାହାଂକ ଅନୁଜ ଆମ୍ଭେ ଅଟୁ ଚାରିଭାଇ ।୩୬୬
ବାବୁ ଯେ ଆମ୍ଭର କନିଷ୍ଠ ଯେ ଅଟଇ ଅରଜୁନ
ଯେ ଧନୁହୁଳେ ପୃଥୀ ଧଇଲା ନବଦିନ ।୩୬୭
ଆପଣା ପୁରେ ଅନେକ କରାଇଲେ ଉତ୍ସବ
ସନ୍ଧ୍ୟାପାଳୀକି ପ୍ରଦାନ କଲାକ ନାଗଦେବ ।୩୬୮
ଯେହାଂକର ବୀର୍ଯ୍ୟେ ତହୁଂ ନାଗା ଅର୍ଜୁନ ଉପୁଜିଲା
ଯେହିମତି ଯୁଦ୍ଧିକରି ସେ ଆମ୍ଭନ୍ତ ଜିଣିଥିଲା ।୩୬୯
ଆମ୍ଭର କୁଳଗୋତ୍ର ଭାଗ୍ୟ ହୋଇଲା ଅପ୍ରମିତ
ଆମ୍ଭନ୍ତ ଜିଣିଲୁ ରେ ଧନ୍ୟ ତୁ ସୁପୁତ୍ର ।୩୭୦
ସଂକେତ ବାରତା ପାଇ ନାଗେଣୀର ସୁତ
ବଳୀବେଲାଳ ଅର୍ଜୁନର ପାଦେ ହେଲା ପ୍ରଣପତ୍ୟ ।୩୭୧
ଦେଖିଣ ନାଗେଣୀ ଯେ ହୋଇଲା ଉଛତ
ଅର୍ଜୁନ ଶିରେ ଆଣି ଦିଲାକ ଅକ୍ଷତ ।୩୭୨
ଅନେକ ପ୍ରଶଂସା କରି ବୋଇଲେ ଅରଜୁନ
ଆନହାଥେ ପରାଜୟ ନୋହିଛୁଂ ନନ୍ଦନ ।୩୭୩
ଆମ୍ଭର ପୁତ୍ର ଯଦ୍ୟପି ଆମ୍ଭନ୍ତ ଜିଣିଲା
ଯେହାଠାରୁ କିସ ଯଶ ଆଉ ଅଛି ଭଲା ।୩୭୪
ଅନେକ ଉତ୍ସବମାନ କରାଇ ନାଗୁଣୀ
ସ୍ୱମୀର ମସ୍ତକେ ଅର୍ଘ୍ୟ ବନ୍ଦାଇଲା ଆଣି ।୩୭୫
ଭୀମସେନ ବୋଇଲା ରେ ଶୁଣ ବେଲାବଳୀ

ଆମ୍ଭଂକୁ ମେଲାଣି ଦିଅ ଗୋ ବହନ ଯିବୁ ଚଳି ।୩୭୬
ବେଲାବଳୀ ବୋଇଲା ନାଥ ମୁଂ ନୁଆରଇ ଗୁହାଇ
ଭୋ ସ୍ୱାମୀ ସୋଦୋରମାନେ ତୁମ୍ଭର ଥିବେ ବାଟ ଚାହିଁ ।୩୭୭
ବଳୀବେଲାଳକଇଂ ଯେ ଭୀମସେନ ବୋଧି
ବାଳୁତ କୁମର ହୋଇ ଯେ ପ୍ରତଗ୍ୟା ମହାଯୋଧୀ ।୩୭୮
ଚନ୍ଦ୍ରଉଲ୍ଲୋଳ ତେଜି ଆସନ୍ତି ଅନ୍ଧାର ଭୁବନୁଂ
ନାଗେଣୀଂକର ତୁଳେ ସମର୍ପିଲେ ବେଳାବଳୀ ତନୁ ।୩୭୯
ଆମ୍ଭର ଚିରଆଷ୍ୟ ଘେନି ବ୍ରତସି ରେ ବଳା
ତୋହ୍ରୋର ଥିଲେ ଆମ୍ଭର ତେଜ ଅନର୍ଗଳା ।୩୮୦
ନାଗେଣୀର କୋଳେ ପୁତ୍ରକୁ ଦିଲେକ ପାବେନି
ପବନୁଂ ବେଗେ ଚଳିଲେ ଭୀମ ଫାଲଗୁନି ।୩୮୧
ନକୁଳ ସହଦେବ ଗଲେକ ପଳାଇ
ଯୁଝେଷ୍ଟି ଦ୍ରୋପଦୀଂକି କହିଲେ ବେଗେ ଯାଇଂ ।୩୮୨
ଶୁଣ ଦେବ ସାବଧାନେ ଆମ୍ଭର ବଚନ
ତୁମ୍ଭର ବଚନ ପାଳି ଆମ୍ଭେ ଗଲୁଂ ଯେ ଯୁଦ୍ଧେଣ ।୩୮୩
କାହାର ନନ୍ଦନ ସେ ଅଟଇ ବାଳପୋଇ
ମହାବଳବନ୍ତା ସେ ତୁଳାଇତ ନାହିଁ କେହି ।୩୮୪
ଦେବ ସାମାନ୍ୟ ନୁହଇ ତାହାର ଚରିତ
ମାନଗୋବିନ୍ଦକୁ ବାନ୍ଧିନେଲା ସେ ତୁରିତ ।୩୮୫
ଶକୁନି ଧୃଶାସନ କର୍ଣ୍ଣ ସହିତେଣ
ଯେ ଚାରିନ୍ତି ବାନ୍ଧିଥିଲା ନାଗ ଯେ ଫାଶେଣ ।୩୮୬
ଉର୍ଦ୍ଧ୍ୱଗତି କରିଣ ଯେ ଘେନି ଯାଉଥିଲା
ଆମ୍ଭନ୍ତ ଦେଖିଣ ଶାଳବୃକ୍ଷରେ ବାନ୍ଧିଲା ।୩୮୭
ଯେସନେକ ସମୟେ ମିଳିଲୁଂ ଆମ୍ଭେ ଯାଇଂ
ଭୀମସେନ ଠାକୁରେ ସମର କଲେ ତହିଁ ।୩୮୮
ଧାଇଂ ଅଇଲାକ ତହୁଂ ସେ ସିଂଘମୃତ୍ତି ହୋଇ
ଯୁଦ୍ଧକଲା ସେହୁ ଯେ ଅନିର୍ଯ୍ୟାପ ପ୍ରତଗ୍ୟାଂଇଂ ।୩୮୯
ଭୀମ ଅର୍ଜୁନ ତୁଳେ କଲାକ ସମର
ମୁହିଁ ଯେ ଚାରିନ୍ତି ଯାଇ ଫେଡ଼ିଲି ବନ୍ଧନର ।୩୯୦
ଫେଡ଼ିଦିଲା ମାତ୍ରକେ ସେ ଚାରିହେଂ ପଳାଇଲେ
ନେତ୍ରେ ଦେଖିବାକୁ ତାଂକୁ ନାହିଁନା ମଣ୍ଡଳେ ।୩୯୧
ଭୀମସେନ ଠାକୁରେ ସମର କଲେ ରହି
ଅନେକ ମାଲଯୁଦ୍ଧ କଲେକ ତାଂକ ତହିଁ ।୩୯୨
ସହି ନୁଆରି ଅର୍ଜୁନ ଶର ଯେ ସନ୍ଧିଲା
ସବୁ ଶହସ୍ର ଯାକ ସେ ସଂହରଣ କଲା ।୩୯୩
ଅନେକ ସମର ସେ କଲେକ ବେନିଭାଇ
ଧନ୍ୟ ସେ ବାଳୁତ ଜିଣିତେ ହୋଇବ କାହିଁ ।୩୯୪
ସ୍ୱାମୀ ଭୀମ ଅର୍ଜୁନ ଦୁହିନ୍ତି ସେ ସମରେ ଜିଣିଲା
ଅନେକ ଭ୍ରଛନ୍ନା କରି ଧରି ଘେନିଗଲା ।୩୯୫
ଦୁହିଂକର କେଶ ସେ ଧରିଣ ବେନିହାଥେ
ଅନ୍ତରୀକ୍ଷେ ଧରିନେଲା ଦେବ ଜଳଅନ୍ଧାର ଯେ ପଥେ ।୩୯୬
ଯୁଝେଷ୍ଟି ଦେବେ ବୋଇଲେ ହୋୟେ କେବଣ ଚରିତ
ତାହାନ୍ତ ଜିଣିମାକୁ କେ ହୋଇଲା ସାମରଥ ।୩୯୭
ପୃଥୀ ଧରିବାକୁ ଯେ ହୋଇଲା ଭର୍ଜନ
ଯାହାକଇଂ ଅମରପୁରେ ପୂଜାକରଇ ମଘବାନ ।୩୯୮
ରାଜାୟେ କେହି ନୋହନ୍ତି ତାକୁ ସରି ମଧ୍ୟପୁର
ଯାହାର ଧନୁ ଧଇଲେ କମ୍ପନ୍ତି ହରିହର ।୩୯୯
ବିକଳେ ଯୁଝେଷ୍ଟି ଯେ ଭାଳନ୍ତି ପଞ୍ଚମନେ
ଯେମନ୍ତର ସମୟେ ପ୍ରବେଶ ହୋଇଲେ ଆସି ଭୀମ ଅରଜୁନେ ।୪୦୦
ନଦୀକୂଳେ ଯୁଝେଷ୍ଟି ଯେ ସେ ଦୁହିନ୍ତି ଦେଖି
ଧାଡିକାରେ ଉଭା ହୋଇଲେ ଦେବ ଆସନ ଉପେକ୍ଷି ।୪୦୧
ଭୀମ ଅରଜୁନ ଦୁହେଂ କରନ୍ତି ନିଉଛାଳି
ବାବୁ ଅଦଭୁତେ ବନ୍ଧନରେ ପଡ଼ିଲ ମହାବଳୀ ।୪୦୨
ତୁମ୍ଭରି ଅପାଦ ବାବୁ ଘେନଇଂ ରେ ମୁହିଁ
ଦୁଖୀର ଜୀବନ ମୋର ଅଟ ବେନି ଭାଇ ।୪୦୩
କାହାର ବାବୁ ସେ ହୋଇଲା ଯେଡ଼େକ ଶକତା
ମେରୁ ଟାଳିବାକୁ କେ ହୋଇଲା ସାମରଥା ।୪୦୪
ଅର୍ଜୁନ ବୋଇଲା ଦେବ ଶୁଣିମା ସାବଧାନେ
ବଳୀବେଲାଳ ବୋଲଇ ସେ ଭୀମସେନ ଠାକୁରଙ୍କର ନାନୋ।୪୦୫
ସ୍ୱାମୀ ବାଳୁତ ପୁତ୍ର ହୋଇ ସେ ମହାବଳବନ୍ତା
ଯେକାକ୍ଷଣକେ ସେ ତ୍ରଇଲୋକ୍ୟ ଜିଣନ୍ତା ।୪୦୬
ଯୁଝେଷ୍ଟି ଦେବେ ବୋଇଲେ ଭୀମ ଯେ କେବଣ କଥା
ଭୀମସେନ ବୋଇଲେ ସହଦେବ ଜାଣଇଂ ଯେଥିର ବାରତା।୪୦୭
ଜାଣୁଟିକି ସହଦେବ ହୋ ପଚାରିଲେ ଯୁଝେଷ୍ଟି
କେବଣ ବାଗେ ସେ ଭୀମସେନର ପୁତ୍ରଗୋଟି ।୪୦୮
ଜାଣିଣ କିମ୍ଭେ ତୁନି ହୋଇଥାଉ ମନ୍ତ୍ରୀବର
ଆମ୍ଭେର ବିରସେ କିଂପା ହରଷ ତୋହୋର ।୪୦୯
ସହଦେବ ବୋଇଲା ଦେବ ପଚାରିଲେ ମୁଂ କହଇଂ
ଶୁଣିମା ସାବଧାନେ ହୋ ଧର୍ମ ରାଜସାଇଂ ।୪୧୦

ସହଦେବ ବୋଇଲେ ସ୍ୱାମୀ ଶୁଣ ଯେକଦିନେ
ଭୀମସେନକୁ ଶରଧାରେ ଭୁଞ୍ଜାଇ ବସାଇଲେ
କଉରୋବମାନେ ।୪୧୧
ସୁପଂକୁ ଅନ୍ନପାଇ ଭୁଞ୍ଜନ୍ତି କଉତୁକେ
ବିଷଲଡ୍ଡୁ ପରଶିଲେ ଭୋଜନ ଉଦକେ ।୪୧୨
ଭୋଖର ବେଳେ କଉତୁକେ ଭୁଞ୍ଜିଲେକ ଭୀମସେନ
ପଡ଼ିଲେ ଅସାଷମେ ଦେହେ ନାହିଁ ଯେ ଚେତନ ।୪୧୩
ଦେଖିଣ ଉଷତ ଯେ ହୋଇଲେ କୁରୁବଳେ
ନାଗେଣ ଖାଉ ବୋଲି ମେଲିଲେ ଯମୁନାର ଜଳେ ।୪୧୪
ନାଗ ତୋତେ ଖାଉ ବୋଲି ଭସାଇଲେ ଜଳେ
ବେଲାବଳୀ ଆସିଥିଲା ନାଗେଣୀର ମେଳେ ।୪୧୫
ନାଗରାଜଂକର ସେ ଅଟଇ ଦୁହିତ
ଅନେକ ନାଗେଣୀ ଥିଲେ ତାହାଂକ ସଙ୍ଗତ ।୪୧୬
ସୂର୍ଯ୍ୟକନ୍ୟା ନଦୀରେ ଯେ ଭାସନ୍ତି ପାବେନି
ଯେମନ୍ତର ସମୟେ ତାଂକୁ ଦେଖିଲେ ନାଗେଣୀ ।୪୧୭
ଗୁଣବନ୍ତ ପୁରୁଷ ବୋଲି ତାକୁ ନ କଲେ ଯେ ନାଶ
ସମସ୍ତ ନାଗେଣୀମାନେ ମିଳିଲେ ଆସି ପାଶ ।୪୧୮
ମହାବଳୀ ଭୀମସେନକୁ ସେ ନୟନରେ ଦେଖି
ମୋହେ ବଶ ହୋଇଲା ଯେ ବେଲାବଳୀ ସକଳ ଉପେଖି ।୪୧୯
କୋଳାଗ୍ରତ କରି ତାଂକୁ ଧଇଲା ତରୁଣୀ
ଅମୃତ ଦେଇ ଭୀମକୁ ଜୀଆଂଇଲା ପୁଣି ।୪୨୦
ସେ ନାଗେଣୀର ତୁଲେ ଭୀମସେନର ବଢ଼ିଲା ପୀରତି
ଯେହାଂକର ବୀର୍ଯ୍ୟେଂ ଜାତ ତା ତହୁଂ ପୁତ୍ରେକ ଉତପତ୍ତି ।୪୨୧
ଭୀମସେନ ଅଟନ୍ତି ଯେ ମହାବଳବନ୍ତା
ବେଲାବଳୀ ନାମେ ସେ ଯେ ନାଗର ଦୁହିତା ।୪୨୨
ସ୍ୱାମୀ ମହାଧାର୍ମିକ ବିବେକ ସେହୁ ଅଟଇ ନାଗେଣୀ
ପିତାମାତା ଦୁହିଂକରି ନାମ ଦିଲା ଜାଣି ।୪୨୩
ତେଣୁକରି କୁମରର ନାମ ବଳୀ ଯେ ବେଲାଳ
ଶୁଣିଣ ସାନନ୍ଦ ଯେ ହୋଇଲେ ଧର୍ମର ଦୁଲାଳ ।୪୨୪
ମହାବଳବନ୍ତା ଯେ ସେ ଅଟଇ କୁମରମଣି
ତ୍ରଇଲୋକକଇଂ ଅସଂଖ୍ୟ ଯେ ତାହାର କାହାଣୀ ।୪୨୫
ତାହାର ହାଥରେ ପ୍ରାଭବ ପାଇଲେ କଉରୋବେ
ସହଦେବ କହନ୍ତେ ସାନନ୍ଦ ଧର୍ମଦେବେ ।୪୨୬
ଜୟତୁ ଶ୍ରୀରାମ କଉଶିକ ମାନରକ୍ଷୀ
ଦୁଷ୍ଟଦଳ ନିଶୋଧନ ଅଭୟେ ଶ୍ରୀବକ୍ଷି ।୪୨୭
ଯୋଗାରୂଢ଼ ପୁରୁଷ ସ୍ୱାମୀ ହୋଇଲୁ ପତ୍ନୀଭ୍ରଷ୍ଟ
ଭାରିଯା ହରଣ ଦୋଷେ ରାବଣେ କଲୁ ନଷ୍ଟ ।୪୨୮
ଦୃଭାର ପିଶାଚୁଣୀ ତାଡ଼େକୀ ବଳଗଞ୍ଜି
ସୁଗ୍ୟାନ ପୁରୁଷ ନାଥ ଅସୁରବଳ ଭାଞ୍ଜି ।୪୨୯
ଗଉତମ ଋଷିଂକର ପତ୍ନୀକି ନିସ୍ତାରି
ପାଷାଣ ହୋଇଥିଲା ତବ ପାଦ ଲାଗି ତରି ।୪୩୦
ଜୟତୁ ଶ୍ରୀରାମଚନ୍ଦ୍ର କୋଦଣ୍ଡ ଦୀକ୍ଷା ଗୁରୁ
ଜନକ ସ୍ୱୟମ୍ବରେ ଶିବଧନୁ ଭଗ୍ନ କରୁ ।୪୩୧
ଯମଦଗ୍ନି ପୁତ୍ର ପ୍ରଶୁରାମ ଦର୍ପ ଧ୍ୱଂସି
ଜୟ ତୁ ଶ୍ରୀରାମ ଦତ୍ୟବଳ ଯେ ବିନାଶି ।୪୩୨
କଉଶଲ୍ୟାର ନନ୍ଦନ ନାଥ ଭରଥ ଅଗ୍ରଜ
ମୁନିଯାଗ ରକ୍ଷକ ଜୟତୁ ଦେବରାଜ ।୪୩୩
ଜୟତୁ କ୍ଷତ୍ରୀବର କୋଦଣ୍ଡ ଦୀକ୍ଷା ଗୁରୁ
ଭାବଗ୍ରାହୀ ନାଥ ହେ ଜାନକୀ ପ୍ରାଣଗୁରୁ ।୪୩୪
କାଳୀୟଗଞ୍ଜନ ନାଥ କମଳଲୋଚନ ପଦ୍ମନାଭ
ଯୋଗୀଜନ ରଞ୍ଜନ ଧାରଣ କଉସ୍ତୁଭ ।୪୩୫
ବ୍ରହ୍ମାର ନନ୍ଦନ ଯେ ବଶିଷ୍ଠ ଗ୍ୟାନଦାତା
ବେଦମନ୍ତ୍ରୁ ଯାହାର ଉପୁଜିଲେ ସୀତା ।୪୩୬
ପଞ୍ଚୁକୋଟି ରାଜାଂକର ସେ ଗ୍ୟାନ ସୁଗ୍ୟାନଗୋଟି
ଶ୍ରୀରାମ ନାମଗୋଟି ମୋର ହୃଦକୁ ବଜ୍ରଘୋଟି ।୪୩୭
ନମସ୍ତେ ନମସ୍ତେ ନାଥ ଶ୍ରୀପୁରୁଷଂକ ଉତ୍ତମ
ମମ ବକ୍ଷସ୍ଥଳେ ଭାବୁଂ ଶ୍ରୀରାମ ଶ୍ରୀରାମ ।୪୩୮
ପ୍ରାଣ ଅପାନ ବ୍ୟାନ ଉଦାନ ସମାନ ପଞ୍ଚ ଆତ୍ମା
ଶ୍ରୀହଟ୍ଟ ପଟ ବନ୍ଧ ପାଉଂ ମହାତମା ।୪୩୯
ନ ଜାଣଇ ଶାହସ୍ର ନ ଜାଣଇ ଧର୍ମବାଟ
ଶ୍ରୀରାମ ନାମଗୋଟି ମୋହୋର କଣ୍ଠତଟ ।୪୪୦
ବାଳଖିଲ୍ୟା ସ୍ତ୍ରୀ ବୃଦ୍ଧ ବିପ୍ର ଆଦି ହତ୍ୟାମାନ
ଯାହାର ନାମ ଧରନ୍ତେ ସର୍ବହତ୍ୟା ବିମୋଚନ ।୪୪୧
ତ୍ରିଗୁଣ ତିଅଂଳା ନାଥ ସଂସାର ଜନହିତା
ନୀଳେନ୍ଦିବଳ ନୟନ ପ୍ରସନ୍ନେ ବରଦାତା ।୪୪୨
ମୋହୋର ଯେ ଶୁଭବାକ୍ୟ ଶ୍ରୀରାମର ନାମ
ଶୂଦ୍ରମୁନି ସାରୋଳା ଦାସ ଶତେ ସହସ୍ର ଦଣ୍ଡ ପ୍ରଣାମ ।୪୪୩

**

## ୬୧. ସତ୍ୟ ଆମ୍ବ ବିବରଣ

ଶୁଣ ହୋ ମହାରାଜା ବଦୟନ୍ତି ଅଗସ୍ତି
ଯେକମନେ ଶୁଣ ତୁ ମନୁ ମହୀପତି ।୧
ଯହୁଁ ଧର୍ମଦେବ ଯୁଧେଷ୍ଠିଂକି ଚିହ୍ନା ଦିଲେ
ବହୁତ ପ୍ରଶଂସା କରି ବିଜେ କରିଗଲେ ।୨
ପାଣ୍ଡବେ ଯେ ବନବାସେ ହୋଇଲେ ଗୋପ୍ୟାନ
ହସ୍ତିନାୟେ ବିଚାର କରଇ ଦ୍ରିଯୋଧନ ।୩
କର୍ଣ୍ଣ ଶକୁନି ଧୁଶାସନ ସନ୍ନିଧେ ବସାଇ
ଯେକାନ୍ତେ ବିଚାର କରଇ କୁରୁରାଜ ସାଇଂ ।୪
ଆହୋ ପାଣ୍ଡବେ ଆମ୍ଭ ତୁଲେ ସେ ଖେଳିଲେ ପଶାଖେଳ
ଅଦଭୁତେ ପ୍ରତଗ୍ୟାଂ କଲୁ ହୋ ଅପାର ।୫
ପାଣ୍ଡବେ ଯେଥୁଂ ଗଲେ ହୋଇଣ ବନଗାମୀ
ଯେବେ ତ ତାହାଂକର ନାମ ବିଖ୍ୟାତ ନାହିଂ ଭୂମି ।୬
କି ଅବା ମଲେ ସେ ଅନ୍ନଶାସ୍ତି ପାଇ
କେବଣ ଦତ୍ୟ ମୁଖେ ପଡ଼ିଲେକ ସେହି ।୭
ନବ ବରଷ ହୋଇଲାନି ଗଲେ ପଞ୍ଚୁବୀର
ସନ୍ଦେଶ ବାରତା ନ ପାଇଲୁ ତାହାଂକର ।୮
ପ୍ରଥମେ ବେନି ବରଷେ ବାରତା ପାଉଥିଲୁ
ଯେବେ କେଣେ ଗଲେ କିବା ମଲେ କିଛି ତଥ୍ୟ ନ ପାଇଲୁ ।୯
ଶକୁନି ବୋଇଲା ହୋ ଶୁଣ କୁରୁରାୟେ
ଯେକାନ୍ତ ରାଜ୍ୟେ ତୋତେ ମହୀଭୋଗ୍ୟ ହୋୟେ ।୧୦
ପାଣ୍ଡବେ ଥିଲେ ତୋତେ କଣ୍ଟକଭାବ ହୋଇ
ତୁ ପୁଣ୍ୟବନ୍ତ ରାଜା ଭୋଗକର ମହୀ ।୧୧
ଶକୁନି ବଚନେ ବୋଲଇ ଦ୍ରିଯୋଧନ
ଖୋଜି ଲୋଡିବାରୁ ଅଟଇ ବିଦ୍ୟମାନ ।୧୨
ରାଜାର ମୁଖ ଚାହିଂଣ ରାଧେବ ସୁତ କହି
ମୋହୋର ବିଚାରକୁ ତ ଯୋଗାଇଲା ଯେହି ।୧୩
ଉନ୍ନେଷି ଖୋଜି ଯୋଗାଇ ଭୋ ମଇତ୍ର
ପାଣ୍ଡବଂକୁ ବିପତ୍ତି ନାହିଂନା ବନସ୍ତ ।୧୪
ସଦା ସର୍ବଦା ତାଂକୁ ନାରାୟଣ ଦୟେ
ଗୋବିନ୍ଦ ସଦୟେ ତାହାଂକୁ ନାହିଂନା ଅପଚୟେ ।୧୫
କେବଣ ବନେ ସେ ହୋଇଲେ ଗୋପ୍ୟାନ
ଗୁପତେ ତାହାଂକୁ ଆମ୍ଭର ଖୋଜିବା ବିଦ୍ୟମାନ ।୧୬
କର୍ଣ୍ଣର ବଚନ ଶୁଣି ସେ ରାଜା ଦ୍ରିଯୋଧନ
କାହାକୁ ପେଷିବା କେ ଖୋଜିବ ଘୋରବନ ।୧୭
ପାଣ୍ଡବଂକ ଚିହ୍ନବର୍ଣ୍ଣ କେ ଖୋଜିବ ବନେ ପଶି
ଶକୁନି ବଦନ ଚାହିଂ ବୋଲଇ କୁରୁଶିଷି ।୧୮
ମାମୁଂ କେବଣ ଜନକୁହିଂ ପେଷିବା ବିଚାର
ଶକୁନି ବୋଇଲା ଯେ ମୋହୋର ବୋଲକର ।୧୯
ପୁରଞ୍ଜନ ପଣ୍ଡାର ପୁତ୍ର ଗୋଉରମୁଖ ବୋଲି
ତାହାକୁ ପଠିଆଅ ମୋହୋର ବିଚାରେ କହିଲି ।୨୦
ଶକୁନି ବଚନ ଶୁଣିକରି ରାଜା ଦ୍ରିଯୋଧନ
ସନ୍ନିଧକୁ ହକାରିଲେ ପୁରଞ୍ଜନର ନନ୍ଦନ ।୨୧
ଆହୋ ପଣ୍ଡା ଆମ୍ଭେ ଖେଳୁଥିଲୁଂ ପଶାଖେଳ
ଅଦଭୁତେ ପରିଜା କଲୁ ଅତି ଗାଢ଼ ।୨୨
ଯେ ପଶାଖେଳରେ ଅବଶ୍ୟ ଯେହୁ ହାରି
ଦ୍ୱାଦଶ ବରଷ ସେ ହୋଇବ ବନଚାରୀ ।୨୩
ବରଷେ ତେରଦିନ ସେ ହୋଇବେ ଗୋପ୍ୟାନ
ଯେସନେକ କରି ଆମ୍ଭେ କଲୁ ସଂକଳ୍ପ ବିଧାନ ।୨୪
ଅଗ୍ୟାଂତବାସ ଯେବେ ଜାଣିମାକ ଖୋଜି
ପୁଣ ଦ୍ୱାଦଶ ବରଷ ଯିବ ବନବାସ ରାଜ୍ୟ ପରିତ୍ୟାଜି ।୨୫
ଯେହେନ୍ନେକ ପରିଜା କଲୁ ହାରିଲେ ପଣ୍ଡୁ ସୁତ
ଦ୍ୱାଦଶ ବରଷ ଗଲେ ବନେ ହୋଇଲେ ଗୁପତ ।୨୬
ପ୍ରଥମ ବେନି ବରଷ ଜାଣନ୍ତା ହୋଇଥିଲା କଥା
ଯେବେ ନବବରଷ ହୋଇଲାନି ନ ପାଉଂ ବାରତା ।୨୭
ଆବର ତିନିବରଷ ଅଛଇ ବନବାସ
ଯାଅ ହୋ ଗଉରମୁଖ ଖୋଜି ବେଗେ ଆସ ।୨୮
ପୁରଞ୍ଜନ ବ୍ରାହ୍ମଣର ନନ୍ଦନ ବଚନ ବୋଇଲା ପ୍ରକାଶି
ମୁହିଂ ନ ଚିହ୍ନଇ ପାଣ୍ଡବନ୍ତ ଶୁଣ ହୋ କୁରୁଶିଷି ।୨୯
ଦ୍ରିଯୋଧନ ବୋଇଲା ତୁହି ଖୋଜିବୁ ତାହାଂକୁ
ଯେହି ନ ଚିହ୍ନିଲେ ଭଲ ହୋଇବ ଆମ୍ଭଂକୁ ।୩୦
ଯହିଂ ରହିଅଛନ୍ତି ପାଣ୍ଡବ ପଞ୍ଚ ବୀରେ
ଅନେକ ଋଷି ତପୋଧନେ ଥିବେ ସଙ୍ଗତରେ ।୩୧
ସରୂପ ଜାଣିବୁ ତୁ ବିଚାରି ପରିମଳ
ଆଶ୍ୱିନ ମାସରେ ତୁ ମାଗିବୁ ପକ୍ୱଚୂତ ଫଳ ।୩୨
ଖୋଜିଣ ସେ ବନେ ଯଦି ଆମ୍ବ ନ ପାଇବେ
ସତ୍ୟଆମ୍ବ ହୋଇବଟି ବୋଇଲେ ପାଣ୍ଡବେ ।୩୩
ଉତ୍ତରେ ଗଉରମୁଖ ଦକ୍ଷିଣେ ସଉରଭ ବ୍ରାହ୍ମଣ
ପୂର୍ବେଣ କାଶୀପତି, ଭାନୁ ବିପ୍ର ପଛିମେଣ ।୩୪

ଚାରିଦିଗକୁ ଚାରିବିପ୍ର ପଠିଆଇ
ଗୁପତ କହଇ ରାଜା ବିପ୍ରକଙ୍ଗ ରାଇ ।୩୫
ଆହୋ କାହିଁ ରହନ୍ତି ପାଣ୍ଡବେ କାହିଁ କରନ୍ତି ବସା
ଅଗ୍ୟାଂତବାସକୁ ପାଣ୍ଡବେ କାହିଁ କରନ୍ତି ମନୀଷା ।୩୬
ଯହିଁ ତୁମ୍ଭେ ଭେଟ ପାଇବ ତାହାଂକୁ
ଅଦିନେ ଚୂତଫଳ ମାଗିବ ପାଣ୍ଡବଂକୁ ।୩୭
ଅଦିନେ ତୁମ୍ଭନ୍ତ ଯେବେ ଦେବେଟି ସେ ଆମ୍ବ
ଆମ୍ବ ତହିଁ ତାହା ତୁମ୍ଭେ ଘେନିଣ ଆସିବ ।୩୮
ଯେବେ ସେ ତୁମ୍ଭଂକୁ ନ ଦବେ ଚୂତଫଳ
ଝିଂଘାସି ଆସିବ ତାଂକୁ ଭ୍ରଛନା ବୋଲ ।୩୯
ଋଷିଂକର ସଭାୟେ ଭ୍ରଛନା ସେହୁ ପାଇ
ଆତ୍ମାଘାତ ହୋଇ ମରିବେ ପାଞ୍ଚଭାଇ ।୪୦
ଯେସନେକ ତିଆରି କହଇ ଦ୍ରିଯୋଧନ
ଚଳିଲେ ବିପ୍ରବରେ ପାଇଣ ବଚନ ।୪୧
ଖୋଜନ୍ତି ନାନାତୀର୍ଥେ ପଶନ୍ତି ଘୋରବନେ
ଛିଦ୍ରେକ ନ ଛାଡ଼ନ୍ତି ସେ ଖୋଜନ୍ତି ସକଳ ସ୍ଥାନେ ।୪୨
ଗଉରମୁଖ ବୋଲି ସେ ପୁରାଞ୍ଜନ ପଣ୍ଡାର ବଳା
ଚାରିମାସେ ଯାଇ ସେ ପାଣ୍ଡେବନ୍ତ ଠାବକଲା ।୪୩
ପାଣ୍ଡବେ ରହିଛନ୍ତି ଅସ୍କନ୍ଦ ନାମେ ବନେ
ମୁକତ ଗଙ୍ଗା ବହଇ ଯେ ଉତ୍ତର ବାହାନେ ।୪୪
ସେ ଉଉରାଂକୁରେ ଅଛି ରାମଘାଟ ତୀର୍ଥ
ତହିଁ ସେ ପାଣ୍ଡବ ରହିଛନ୍ତି ପଞ୍ଚୁ ଭ୍ରାଥ ।୪୫
ଗୋପ୍ୟାନ ରୂପ ହୋଇଣ ସେ ଗଉରମୁଖ ଦ୍ୱିଜ
ମହାବ୍ରହ୍ମବେତ୍ତା ନିରିଧୂମ ଅଗ୍ନିତେଜ ।୪୬
ଦଣ୍ଡ କମଣ୍ଡଳ କଷା କଉପୀନ କାଛେଟି
ଲଲାଟେ ତାମ୍ରଫେଣା ମଉଳେ ଯେକଜଟି ।୪୭
ଦୁଇକର୍ଣ୍ଣାଞ୍ଚଳେ ଯେ ହିରଣଚକ୍ର ବେନି
ଖଞ୍ଜିତ ହରିଆଳି ଲଲାଟେ ସିମନ୍ତିନୀ ।୪୮
କନ୍ଧେଣ ପବିତ୍ରା ଯେ କଟିରେ ବ୍ୟାଳପୁଞ୍ଜି
ହୃଦେଣ ବଇଷ୍ଣବ ମାଳ କଣ୍ଠୟ ପଦ୍ମ ଖଞ୍ଜି ।୪୯
ହୃଦେଣ ବନ୍ଧନ ଯେ ହିରଣଗର୍ଭ ଲିଙ୍ଗ
ଧାରଣ ବେନିକରେ ଡାକି ଗୟଳ ସିଂଘ ।୫୦
ମହା ଗାରେଡ଼ି ବିଦ୍ୟାୟେ ସର୍ପମାନ ଭୂଷଣ
ଯେହେନ୍ନେକେ ପ୍ରପଞ୍ଚ ରୂପ ସେ ଛଦ୍ମ ବ୍ରାହ୍ମଣ ।୫୧

ଉଉରାଂକୁରେ ସ୍ନାହାନ କରନ୍ତି ରାଜଦେବେ
ମଉନ ବ୍ରତେଣ ତପୋଧନ ଯାଇଂ ବସିଲେ ଆରମ୍ଭେ ।୫୨
ତପୋଧନର ମହା ବଇଷ୍ଣବ ରୂପ ଦେଖି
ଉଠିଲେ ଯୁଧେଷ୍ଟି ଦେବେ ଆହାନ୍ନିକ ଉପେକ୍ଷି ।୫୩
ଶରୀର ଦିଶଇ ତାର ନିର୍ଦ୍ଧୁମ ଅଗ୍ନି ଜାଣି
ତମ୍ଭାର ତକ୍ର ପ୍ରାୟେ ବେନିଲୋଚନ ସୂର୍ଯ୍ୟ ଜିଣି ।୫୪
ଯେସନେକ ସରୂପ ସେ ଅଟଇ ତପନିଷ୍ଠି
ବିନୟଭାବ ହୋଇଣ ବୋଇଲେ ଯୁଧେଷ୍ଟି ।୫୫
ଭୋ ମହାତମା ତୁମ୍ଭେ ଅଟ କେଉଂଣ ଦେଶୀ
ମହରଷି ରାଜରଷି ଦେବରଷି କି ବ୍ରହ୍ମରଷି ।୫୬
ଆଧାର ଅନ୍ନ କିସ କର ହେ ବିପ୍ରଭୋଗୀ
ତପୋଧନ ବୋଇଲା ମୁଂ ଆଧାର ପରିତ୍ୟାଗୀ ।୫୭
ଯୁଧେଷ୍ଟି ଦେବେ ବୋଇଲେ ଶୁଣିମା ଭଗବନ୍ତ
ବିନା ଆଧାରେ ତୁମ୍ଭେ ବ୍ରତ ହେ କେଉଂଣ ମତ ।୫୮
ଧୀରକରି ତପୋଧନ ବୋଇଲା ତୁମ୍ଭେ ସାର ଯା ଆହାନ୍ନିକ
ତୁମ୍ଭେ ଯାଇଣ ଭୋଜନ କର ସର୍ବଲୋକ ।୫୯
ଯୁଧେଷ୍ଟି ବୋଇଲେ ତପୀ ଶୁଣ ମୋ ବଚନ
ଅତିଥି ବସାଇ କେହ୍ନେ କରିବି ଭୋଜନ ।୬୦
ଅତିଥି ବସାଇ ଯେହୁ କରଇ ଭୋଜନ
ତାହାର ବ୍ରତିବାର ଅଟଇ ଅକାରଣ ।୬୧
ଅତିଥି ବସାଇ ଆଗେ ଭୋଜନ ଯେ କଲେ
ଦେବ ପିତୃଲୋକେ ପାଣି ନ ପାବନ୍ତି ଭଲେ ।୬୨
ମୃଗ ହରିଣ ବାହୁଟି ଆଗଣ୍ଡା ଆଦିକରି
ଦାରାକ୍ଷାଫଳମାନତ ନ ପାଇ ଯେଥି ଲୋଡ଼ି ।୬୩
ଶତେ ଯୋଜନ ପରିଯନ୍ତେ ଯେଥେ ନାହିଁ ଘର ଗ୍ରାମ
ପୂର୍ବେ ତେତ୍ରୟା ଯୁଗେ ଯେଥେ ବିଶ୍ରାମ କଲେକ ଶ୍ରୀରାମ ।୬୪
ନାନା ଜୀବଜନ୍ତୁମାନ ଯହୁଂ ନ ପାଇଲେ ଯେଥେଂ ଲୋଡ଼ି
ଫଂକୁଫଳ ନ ପାଇଲେ ବନଜୀବ ଆଦିକରି ।୬୫
କୋପେଣ ଶ୍ରୀରାମ ବୋଇଲେ ଯେ ଅବା ରାବଣର ବନ
ଆମ୍ଭନ୍ତ ଦେଖି ଅବା ଯେ ହୋଇଲେ ଗୋପ୍ୟାନ ।୬୬
କୋପେଣ ଶ୍ରୀରାମ ଯେ ଦିଲେକ ଅଭିଶାପ
ଆରେ ସର୍ବବୃକ୍ଷେ ଅଫଳ ହୋଅ ବୋଲି ବୋଇଲେ ମହାକୋପ ।୬୭
ବନଜୀବ ହୋଇ ଯେଥେଂ ଗୋଟିଯେ ନ ଥାଅ
ମୋହୋର ଶାପେ ତୁମ୍ଭେ ଭସ୍ମହୋଇ ଯାଅ ।୬୮

ଶୁଣ ହୋ ଭଗବନ୍ତ ଶ୍ରୀରାମଂକର ଯେସନେକ ଶାପେ୍ୟ
ବୃକ୍ଷେ ଅଫଳନ୍ତି ବନଜୀବେ ବର୍ଣ୍ଣଚିହ୍ନ ନାହିଁ ପରତକ୍ଷେ ।୬୯
ତପୋଧନ ବୋଇଲା ମୁଂ ନ ଭୁଞ୍ଜଇ ଅନ୍ନ
ଜୀବଘାତ ଦୋଷେ ମାୟେଂସ ନାହିଁ ମୋ ଭୋଜନ ।୭୦
ଅପରଚେ ଫଳ ନ କରଇ ମୁହିଁ ଭୋଜୀ
ଯେକାମାତ୍ର ଫଳକୁ ଚିତ୍ତ ମୋହୋର ନିମଜ୍ଜି ।୭୧
ପଂକୁ ଆମ୍ରଫଳ ଯେବେ ହୋଇବ ଗୋଟାୟେ
ତାହା ପାଇଲେ ଭୋଜନ କରେ ଦେବ ଧର୍ମରାୟେ ।୭୨
ଯୁଝେଷ୍ଠି ଦେବେ ଆଶ୍ରିଜ ହୋଇଲେ ତାହା ଶୁଣି
ଦୁର୍ଲଭ କଥା ଯେ ହୋ ବଞ୍ଚାଇଲୁ ଆଣି ।୭୩
ଶ୍ରୀରାମ ଅଭିଶାପେ ଯେଥି ନ ଫଳନ୍ତି ବୃକ୍ଷେ
ଗଗନ ମେଖଳେ ଯେ ଲାଗିଅଛି ଶିଖେ ।୭୪
ତପୋଧନ ବୋଇଲେ ମୁଂ କ୍ଷୁଧାରେ ବିକଳ
ଅନ୍ୟଫଳ ଭୋଜନ ମୋ ନାହିଁ ସର୍ବକାଳ ।୭୫
ଯୁଝେଷ୍ଠି ବୋଇଲେ ସନ୍ଧ୍ୟା ହୋଇଲାକ ଆସି
ବଡ଼ାଇ କଷଣ ମୋତେ ହୋଇଲା ହୃଷିକେଶି ।୭୬
ଭୀମ ଅରଜୁନ ଯେ ନକୁଳ ସହଦେବ
ଅପାର ଠାବରେ ଫଳ ଲୋଡ଼ନ୍ତି ପାଣ୍ଡେବ ।୭୭
ଲୋଡ଼ନ୍ତେ ଦିବସ ଶେଷ ହୋଇଲା ଯୁଗତେ
ରୟଣୀ ପ୍ରବେଶ ହୋଇଲା ବନେ ବିହଡ଼ନ୍ତେ ।୭୮
ବେନିଶତ ଯୋଜନ ସେ ନ ପାଇଲେ ଲୋଡ଼ି
ତହୁଂ ଚାରି ପାଣ୍ଡବେ ଯେ ଅଇଲେ ବାହୁଡ଼ି ।୭୯
ଯୁଝେଷ୍ଠି ବୋଇଲେ ମୋତେ ହୋଇଲା ପ୍ରମାଦ
କେମନ୍ତେ ପାର ହୋଇବି କହ ହେ ଗୋବିନ୍ଦ ।୮୦
ଗୋବିନ୍ଦ ବୋଇଲେ ସ୍ୱାମୀ ବିଷାଦ କିସ ଅର୍ଥେ
ଭାଦ୍ରମାସେ ଆମ୍ରଫଳ ଥାଇ କି ବନସ୍ତେ ।୮୧
ସ୍ୱାମୀ ଯଦ୍ୟପି ଅଟଇ ଯେହୁ ହିଡ଼ିମ୍ବେକ ବନ
ଯେକାଦଶ ମାସେ ପାଇ ଭାଦ୍ରବେ ନ ପାଇ ଆମ୍ରଚିହ୍ନ ।୮୨
ନ ଥିଲା ଦ୍ରବ୍ୟକୁ ଦେବ ରତ୍ନ ନୋହଇ ସରି
ଅବସନ୍ତେ ବସନ୍ତ ପାଇବା କାହିଁ ଲୋଡ଼ି ।୮୩
ସ୍ୱାମୀ ମହତ ଲୋକଂକୁ ଧର୍ମ କଷଣ ଜାଣ ଯେହି
ଯେଥୁଂ ଉବୁରି ପାରିଲେ ଧାର୍ମିକ ମହତ୍ୱ ଜନ ସେହି ।୮୪
ସ୍ୱାମୀ ଉତପତ୍ତି ପଂକୁ ଫଳୁ ନାହିଁନା ବନସ୍ତେ
ସତ୍ୟେଆମ୍ର ଫଳାଇ ପାରିବ କି ପଞ୍ଚୁ ଭ୍ରାଥେ ।୮୫

ସତ୍ୟଆମ୍ର କେମନ୍ତ ଯୁଝେଷ୍ଠି ପଚାରିଲେ
ଗୋବିନ୍ଦେ ବୋଇଲେ ଆମ୍ବେକ ଫଳିବ ଦେବ ସତ୍ୟ ବଚନ
କହିଲେ ।୮୬
ତୁମ୍ଭେ ପାଞ୍ଚଜଣ ସଙ୍ଗେ ଅଛନ୍ତି ଦ୍ରୋପତୀ
ନିଗୁଡାନ୍ତ ସତ୍ୟ କହିବ ଛାଡ଼ିବ ଯେ ମିଥ୍ୟା ପ୍ରକୃତି ।୮୭
ସତ୍ୟ କହିଲେ ଆମ୍ର ଫଳିବ ବିଦ୍ୟମାନ
ବ୍ୟାସଂକ ମୁଖ ଚାହିଁ କହନ୍ତି ଜନାର୍ଦ୍ଦନ ।୮୮
ଆମ୍ର ମଞ୍ଜି ଗୋଟିୟେ ପ୍ରସନ୍ନେ ଦିଲେ ତପୋଧନ
ଛାମୁରେ ଥୋଇ ଯେ ଗୁହ୍ନିଲେ ପଞ୍ଚୁମନ ।୮୯
ସେ ଚୂତମଞ୍ଜିକି ଯୁଝେଷ୍ଠି ଚାହିଁଲେ ପ୍ରଥମେ
ସତ୍ୟବାକ୍ୟହିଁ ଉଚ୍ଚାରନ୍ତି ଦେବ ଧର୍ମେ ।୯୦
ଶ୍ରୀହରି ବୋଇଲେ କିଞ୍ଚିତ ମିଥ୍ୟା କହିଲେ ନୁହଇ ଚୂତପଂକୁ
ହୃଦଗତେ ତତ୍ତ୍ୱକର ହୋ ସମସ୍ତ ଆତ୍ମାକୁ ।୯୧
ଯୁଝେଷ୍ଠି ଦେବେ ବୋଇଲେ ମମ ପଞ୍ଚଭୂତ ପ୍ରକୃତି
ପ୍ରାଣତ୍ୟାଜ ପରିଯନ୍ତେ ନୁଆସଇ କଦାଶ୍ଚିତେ ଅନୀତି ।୯୨
ଯୁଝେଷ୍ଠି ଦେବେ ବୋଇଲେ ମମ ପଞ୍ଚଆତ୍ମାନେ
ମିଥ୍ୟାବାକ୍ୟ କହି ନୁଆରଇ ମୋହୋର ଯେ ଗ୍ୟାନେ ।୯୩
ଯିସ ଅବା ସନ୍ଦେଶ ପଡ଼ଇ ଆପଣାର ବଶେ
ସତ୍ୟବାକ୍ୟହିଁ ସେ ହୃଦଗତେ ଅଭ୍ୟାସେ ।୯୪
ସର୍ବ ପରିତ୍ୟାଜ ମୋହୋର ସତ୍ୟବାକ୍ୟେ
ରାଗ ମୋହ ହିଂସା ଲୋଭ ନାହିଁ କଷ୍ଟୋର ଅନେକେ ।୯୫
ପୁରେଣ ମିଥ୍ୟା ନାହିଁ ଜୀବରେ ନ କରଇ ଅହନ୍ତା
ଅନୁବ୍ରତେ ହୃଦଗତେ ଧର୍ମହିଁ ସେ ମୋହୋର ଚିନ୍ତା ।୯୬
ଯେବଣ ପ୍ରାଣୀମାନେ ଆନେ ଦୁଖେଣ ହୋଅନ୍ତି ଯତି
ତାହାନ୍ତ ଦେଖିଲେ ମୋହୋର ହୃଦୟ ଆକୁଳ ପଞ୍ଚୁମତି ।୯୭
ଅନେକ ଗଭୀର କଥା ଧର୍ମେ କହିଲେ ଦିବ୍ୟବାଣୀ
ଯେକଳୟ କରି ତପୋଧନ ଶୁଣଇ ହୃଦେ ଗୁଣି ।୯୮
ପୁଣ ଯୁଝେଷ୍ଠି ଦେବ ବୋଇଲେ ମାତା କୋନ୍ତୀ ପିତା ମୋର ଧର୍ମ
ଯେ ଦେବତା
ଯେହାଉଂ ହୃଦଗତେ ମମ ନାହିଁ ଆନ ଚିନ୍ତା ।୯୯
ନିଜ ରାଜ୍ୟ ନିମନ୍ତେ ହୋଇବି ଅବଶ୍ୟ ଦ୍ୱନ୍ଦୀ
ଯେତେ ସତ୍ୟବାକ୍ୟେ ମମ ଧାର୍ମିକ ସତ୍ୟବାଦୀ ।୧୦୦
ଯେମାନ ସତ୍ୟ ଯେବେ ମୋହୋର ହୃଦଗତେ
ହୋଉ ସତ୍ୟଆମ୍ର ସତ୍ୟ ସତ୍ୟ ଯେ ଯୁଗତେ ।୧୦୧

ଆହୋ ଯୁଧିଷ୍ଠି ଦେବଂକର ବାକ୍ୟେ ସରୂପ ସତ୍ୟପଣେ
ମଞ୍ଜି ଭେଦି ଗଜାଯେ ଉଠିଲା ତତକ୍ଷଣେ ।୧୦୨
ମନ୍ଦାର ପୁଷ୍ପ ପ୍ରାୟେକ ପ୍ରତକ୍ଷେ ପତ୍ର ଯେ ବିଘଂସି
ଦେଖିଣ ଆଶ୍ରିଜ ଯେ ହୋଇଲେ ସର୍ବ ଋଷି ।୧୦୩
ବଦୟନ୍ତି କେଶବ ଶୁଣ ହୋ ବ୍ରିକୋଦର
ଯେସନେକେ ସତ୍ୟବାକ୍ୟ କହି ମେଲ ତୋର ।୧୦୪
ଅଳପ କିଞ୍ଚିତ ମାୟା ପ୍ରପଞ୍ଚ ତୋର ଥିଲେ
ବୃକ୍ଷ ଭସ୍ମ ହୋଇବଟି ମିଛ ଯେ କହିଲେ ।୧୦୫
ଭୀମସେନ ବୋଇଲା ଦେବ ମୁଂ କହୁଅଛି ସତ୍ୟ
ଭୋଜନେ ଶୟନେ ଶୃଙ୍ଗାରେ ସାଂଗ୍ରାମେ ମୁହିଂ ଅତ୍ରିପୁତ ।୧୦୬
ଯଦ୍ୟପି ତୁମ୍ଭେ ଠାକୁର ଦେବ ଶିରୀପତି
ଅଭାଇ କଥା କହିଲେ ମୁଂ ଅବଶ୍ୟ ଅପ୍ରୀତି ।୧୦୭
ସ୍ୱାମୀ ଗାନ୍ଧାରୀ ନନ୍ଦନ ଯେ ଧୃତରାଷ୍ଟ୍ରଂକର ଶତେପୁତ୍ର
ଯେକାଯେ ଯେହାନ୍ତ ମାରିବି ଯେ ମୋହୋର ସତ୍ୟ ସତ୍ୟ।୧୦୮
ସ୍ୱାମୀ ଯୁଧିଷ୍ଠି ଅଭିମାନ ଯେ ବିକୋଦର ନାମକୁ
ଯେ ଅବା ଦୂଷଣ କରଇ ମୋର ବାଉନ ଭାର ଗଦାକୁ ।୧୦୯
ଭୂଅଲୋକ ନାଗଲୋକ ସୁରଲୋକ ଆଦି
ଅବଶ୍ୟ ସମରେ ମୁଂ ଶିର ତାହାର ପକାଇବି ଛେଦି ।୧୧୦
ସଦାୟେ ଭଗତି ମୋର ଯୁଧିଷ୍ଠିଂକ ପଦ୍ମପାୟେ
ଯେ ମୋହୋର ସତ୍ୟ ବଚନ କହିଲି ଦେବରାୟେ ।୧୧୧
ଭୀମସେନ କହିଲା ଯହୁଂ ସତ୍ୟବାକ୍ୟ ଦୃଢ଼କରି
ବିସ୍ତାର ହୋଇଲା ଚୂତବୃକ୍ଷ ପଲ୍ଲବିଲା ଡାଳଚାରି ।୧୧୨
ଦେଖିଣ ପରମ ସାନନ୍ଦ ଯେ ହୋଇଲେ ଶିରୀବସ୍ତ
ମହାବିସ୍ତାର ହୋଇ ପଲ୍ଲବିଲା ଚୂତଗଛ ।୧୧୩
ସାନନ୍ଦେ କେଶବ ଯେ ତହୁଂ ବଚନ ପରକାଶି
ତୁ ହୋ ଧନୁର୍ଜୟ ମୋତେ ସରୂପ କହସି ।୧୧୪
ଅର୍ଜୁନ ବୋଇଲେ ଦେବ ମୋହୋର ସତ୍ୟବାଣୀ
ସୁରଲୋକ ନରଲୋକ ଅସୁରଲୋକ ମୁ ସମସ୍ତ ପାରଇ ଜିଣି।୧୧୫
ସର୍ବଦା ଭଗତି ମୋର ଶ୍ରୀ ଜଗନ୍ନାଥଂକ ପାଦଗତେ
କେଶବର ନିନ୍ଦା ମୁଂ ନ ସହଇ କଦାଣ୍ଡିତେ ।୧୧୬
ଗାଣ୍ଡିବ ଧନୁ ମୋହୋର କରେ ଥାଇ ଯେତେବେଳେ
ଯେକାଦଶ ରୁଦ୍ର ଜିଣି ପାରଇ ମୁହିଂ ଅବହେଳେ ।୧୧୭
କେଶବର ନାମକୁ ଗାଣ୍ଡିମ ଧନୁକୁ ଅକ୍ଷୟ ଯେ ତ୍ରୋଣକୁ ଭୋ
ଦେବ ପାଶୁପତ ଶରକୁ

ଯେହୁ ନିନ୍ଦା କରଇ ଅବଶ୍ୟ ମୁହିଂ ନାଶ କରଇ ଯେହାଂକୁ।୧୧୮
ପରସ୍ତିରୀ ମାତା ମୋହୋର ମୁଂ ନ ହରଇ କଦାଚିତେ
ପରଦ୍ରବ୍ୟକୁ ଆଶା ନାହିଂ ମୋହୋର ପଞ୍ଚୁ ଭୂତେ ।୧୧୯
ପରଭୂମି ନ ହରଇ ପରକାର୍ଯ୍ୟେ ଶତ୍ରୁକୁ ନ ନାଶଇ
ସାଂଗ୍ରାମେ ଶତ୍ରୁ ପିଠି ଦିଲେ ଶହସ୍ର ନ ମାରଇ ।୧୨୦
ପରେ ପରମାଦ ନ କରଇ ଅଭାବେ
ଯେ ମୋହୋର ସତ୍ୟ ସତ୍ୟ ଅଟଇ କେଶବ ହାଦେ ।୧୨୧
ଅର୍ଜୁନର ସତ୍ୟ ସତ୍ୟ ଯେସନେକ ଯହୁଂ ବାଣୀ
ବୃକ୍ଷ ପଲ୍ଲବିତ ହୋଇଲା ଫଳ ପୁଷ୍ପ ଜାଣି ।୧୨୨
ନକୁଳ ବଦନ ଚାହିଂ ବୋଇଲେ ମଧୁରିପୁ
ତୁହୋ ସତ୍ୟ ସତ୍ୟ କହ ଯେ ଚୂତଫଳ ଯେବେ ବ୍ୟାପୁ ।୧୨୩
ନକୁଳ ବୋଇଲେ ଦେବ ମମ ସତ୍ୟବାକ୍ୟ
ସୁରକ୍ଷଣ ସୁକୁମାର ମର୍ଯ୍ୟାଦା ବିବେକ ।୧୨୪
ସ୍ୱାମୀ ଯେତେବେଳ ପରିଯନ୍ତେ କୁନ୍ତ ଥାଇ ମୋର ହାଥ
ପୃଥିବୀର ମଧେ ଦେବ ମୁହିଂ ଯେ ଯେକଛତ୍ର ।୧୨୫
ସ୍ୱାମୀ ଚନ୍ଦନ ଚତୁସମ ଅଗର କସ୍ତୁରୀ
ଅନୁବ୍ରତେ ଲେପନ ହେଉଥିବି ଇଛା ଯେ ମୋହୋରି ।୧୨୬
ଆଧାର ମଇଥୁନ ନିଦ୍ରା ନାହିଂ ମୋର ଇଛା
ସୁଖଭୋଗ ପଣହୁଂ ମୋର ଆନେ ନାହିଂ ବାଞ୍ଛା ।୧୨୭
ଯେ ମୋହୋର ଶରଣ ପଶଇ ଦେବହରି
ତାହାର ଛଳେ ଭାଇକି ଉପ୍ରୋଧ ନାହିଂ ମୋହୋରି ।୧୨୮
ପୃଥିବୀ ଆପ ତେଜ ଯେ ବାୟବ୍ୟ ଆକାଶ
ଧ୍ୟାନକୁ ଧାରଣ ଦେବ ମମହୃଦେ ବାସ ।୧୨୯
ସଦାୟେ ଭଗତି ମୋର ଯୁଧିଷ୍ଠିଂକ ପାଦପଦ୍ମେ
ଯେ ମେହୋର ଦୃଢ଼ବାକ୍ୟ କହିଲି ଦେବ ସାଧେଂ ।୧୩୦
ଯେସନେକ ସତ୍ୟ ସତ୍ୟବାକ୍ୟ ଅଟଇ ମୋହୋରି
ତୋହୋର ଅଗ୍ରତେ ମିଥ୍ୟା କହିତେ କି ପାରି ।୧୩୧
ନକୁଳ ସତ୍ୟବାକ୍ୟ ଯହୁଂ ହୋଇଲା ବିସ୍ତାର୍ଣ୍ଣ
ବଦରି ମଞ୍ଜି ପରାୟେ ହୋଇଲା ବିଦ୍ୟମାନ ।୧୩୨
ସହଦେବକୁ ବୋଇଲେ ତୁ ପଣ୍ଡିତଭିଗ୍ୟଂ ସାଚା
ତୁହି ସତ୍ୟ କହି ସତ୍ୟଆମ୍ର ଯେବେ ପଚା ।୧୩୩
ନାରାୟଣଂକ ବଚନେ କହଇ ମନ୍ତ୍ରୀ ସହଦେବ
ଭୂତ ଭବିଷ୍ୟ ବର୍ତ୍ତମାନ ଜାଣଇଂ ମୁହିଂ ସର୍ବ ।୧୩୪
ଦକ୍ଷିଣ କରସ୍ଥଳେ ଅଛଇ ମୋହୋର ସର୍ବଗୁଣ ନିଧି
ତାହାକୁ ଚାହାନ୍ତେଣ ମୋହୋର ସକଳ ହୋୟେ ସିଦ୍ଧି ।୧୩୫

ଯାବତ ଚନ୍ଦ୍ର ଦିବାକର ଆଦିକରି
ଛାତ ଅନ୍ତ କହିବାକୁ କାଳ ଯେ ମୋହୋରି ।୧୩୬
ଜାଣିକରି ନ କହଇ ମୁହିଂ ମହାମନ୍ତ୍ର ପ୍ରାୟେ
ମୋତେ ପଚାରିଲେ ପ୍ରାଣୀଂକି ନ ପଡ଼େ ଅପଚୟେ ।୧୩୭
ସ୍ୱାମୀ ଯେବଣ ମନ୍ତ୍ରେ ଯେବଣ କଥା ହୋଅଇ ପରାପତ
ସେମାନହିଂ ତତ୍ତ୍ୱକରି ମୁଂ ଜାଣଇ ସମସ୍ତ ।୧୩୮
ଶୟଳ ସଂସାର ଦେବ ମମ ହୃଦଗତେ
ନ ପଢ଼ି ପଣ୍ଡିତ ମୁହିଂ ନ ସାଧି ଭିଗ୍ୟଂବନ୍ତେ ।୧୩୯
ମନ୍ତ୍ରୀ ସହଦେବର ବାକ୍ୟ ସମ୍ପାଦେ ସତ୍ୟ ବଚନେ
କହୁ କହୁ ବଡ଼ ଚଞ୍ଚୁ ମଞ୍ଜି ଯେ ହୋଇଲା ବିଦ୍ୟମାନେ ।୧୪୦
ସହଦେବର ବଚନ ଶୁଣି ଚକ୍ରପାଣି
ଦ୍ରୋପଦୀଂକ ବଦନ ଚାହିଂଲେ ଦେବ ପୁଣି ।୧୪୧
ଗୋବିନ୍ଦେ ବୋଇଲେ ତୁମ୍ଭେ ଶୁଣ ଗୋ ପାଞ୍ଚାଳୀ
ପାଣ୍ଡବହୁଂ ଗରୁହଂସୀ ତୁ ଶତେଗୁଣେଣ ଅଗୁଳି ।୧୪୨
ତୁହି ଦେବୀ ସତ୍ୟ କହ ଯେବଣ ତୋହୋର କଥା
ସ୍ତିରୀଂକର ଚରିତ ଯେ ସମସ୍ତ ଅଟଇ ମିଥ୍ୟା ।୧୪୩
ସର୍ବଦାୟେ ଅଶଉଚବନ୍ତ ଯେବଣ ସ୍ତ୍ରୀଜନ
ସ୍ୱାମୀ ଚାଳିଶ ବରଷ ପରିଯନ୍ତେ ସ୍ତିରୀଂକର କିସ ଧର୍ମ ।୧୪୪
ଗୋବିନ୍ଦେ ବୋଇଲେ ଯେ ଯୁଗତେ ଅଟଇ ବିଚାର
ଯଡି ସତୀ ନ ଥିଲେ କି ଗୋ ବ୍ରତଇ ସଂସାର ।୧୪୫
ତୁ ପରମ ମାହେଶ୍ୱରୀ ଗୋ ଅନାଦି ଅପର୍ଣ୍ଣା
ଅଯୋନି ସମ୍ଭୂତା ତୁ ଭାରାଭର ନିବାରିଣୀ ସିନା ।୧୪୬
ଦ୍ରଉପଦୀ ବୋଇଲେ ସ୍ତିରୀଂକର ଯେସନକ ପ୍ରକୃତି
ଶୂରବନ୍ତ ସୁନ୍ଦର ପୁରୁଷ ଦେଖିଲେ ସେ ଅବଶ୍ୟ
ବଳାବନ୍ତି ମତି ।୧୪୭
ଯଦ୍ୟପି ଅବା ଭ୍ରାଥ ପୁତ୍ରହିଂ ଯେବେ ହେଉ
ସୁବେଶ ପୁରୁଷ ଦେଖିଲେ ଚିତ୍ତନେଇ ଥୋଉ ।୧୪୮
ଯୁଗତେ ଯେ ମୋହୋର ଅଟନ୍ତି ପଞ୍ଚୁପତି
ଯେକାମାତ୍ର ଅର୍ଜୁନରେ ମୋହୋର ଅଧିକ ପୀରତି ।୧୪୯
ମୋତେ ଯେ କଉରୋବେ ସଭାତଳେ କଲେ ଅପମାନ
କେଶଧରି କୋପେଣ ମୋତେ ଆଣିଲା ଧୁଶାସନ ।୧୫୦
ଆଣନ୍ତେ ଚରଣ ମୋର ନ ପଡ଼ଇ ତଳ
ଆକ୍ରୋଷି ଝିଂକନ୍ତେ ସେ ଫିଟିଲାକ ମୋହୋର ବାଳ ।୧୫୧
ସେହିଦିନୁ କେଶ ମୋହୋର ନ କଲି ବନ୍ଧନ
ସେ ଧୁଶାସନର ଭୁଜ ଉପାଡ଼ିବେ ଭୀମସେନ ।୧୫୨
ତାହାର ରୁଧିରେ ମୋର କେଶ ପଖାଳିବି
ତେବେ ସେ କେଶ ହରି ମୋହୋର ବନ୍ଧନ କରିବି ।୧୫୩
ମୋହରେଣ ନାଶ ଯିବେ ଧୃତିରାଷ୍ଟ ଶତେପୁତ୍ର
ତେବେ ସେ ପାଣ୍ଡବେ ଭ୍ରଥା ମୋର କହିଲି ସତ୍ୟ ସତ୍ୟ ।୧୫୪
ଯେ ମୋହୋର ଆତ୍ମାର ବିଚାର ବାସୁଦେବ
ସତ୍ୟ ସତ୍ୟ କହିଲି ମୁଂ ମିଥ୍ୟା ନୁହଇ ଦେବ ।୧୫୫
ଶୁଣ ହୋ ଚଇତନ ଯେସନେକ ସତ୍ୟ ଯହୁଂ କହିଲେ ପାଞ୍ଚାଳୀ
ପାଚିଲା ସତ୍ୟଆମ୍ବ ଦେଖିଲେ ବନମାଳୀ ।୧୫୬
ପଞ୍ଚୁପାଣ୍ଡବ ଦ୍ରୋପଦୀଂକ ସତ୍ୟ ବଚନେ
ପାଚିଲା ଚୂତଫଳ ହୋଇଲା କୁଂକୁମ ବର୍ଣ୍ଣେ ।୧୫୭
ସତ୍ୟଆମ୍ବ ପକ ଦେଖିଣ ସାନନ୍ଦ ବନମାଳୀ
ଆପଣେ ନାରାୟେଣ ସତ୍ୟବାକ୍ୟେଣ ଆମ୍ବତୋଳି ।୧୫୮
ଆପଣେ ଗୋଟିୟେକ ଘେନିଲେ ଦେବହରି
ଦ୍ୱିଜ ଆମ୍ବଗୋଟିକୁ ବାସେବି କର ଯେ ପ୍ରସାରି ।୧୫୯
ଡିଜଗୋଟି ନେଇ ଦିଲେ ତପୋଧନକୁ
ଚଉଠେ ଚାରିଗୋଟି ଦିଲେ ପାଣ୍ଡେବଂକୁ ।୧୬୦
ସତ୍ୟଆମ୍ବ କରେ ଘେନିଲେ ତପୋଧନି
ଯୁଝେଷ୍ଟିଂକି ପ୍ରଶଂସନ୍ତି ଜୀବନ ତୋର ଧନି ଧନି ।୧୬୧
ସତ୍ୟେ ଭାଦ୍ରମାସେ ଫଳିଲା ଚୂତଫଳ
ଯେସନେକ ଦ୍ରୁପଦ ମହିମାଂ ନାହିଂନା ରବିତଳ ।୧୬୨
ପରମ କଲ୍ୟାଣ ତୁ ହୁଅ ପଣ୍ଡୁସୁତ
ଯେସନେକ ମନବାଞ୍ଛା ତୋହୋର ହେଉ ପରାପତ ।୧୬୩
ବିନୟ ଭାବ ହୋଇଣ ବୋଲନ୍ତି ଯୁଝେଷ୍ଟି
ଭୁଞ୍ଜିବା ମହାମାୟେ ଯେ ପକ୍ୱ ଫଳଗୋଟି ।୧୬୪
ଯୁଝେଷ୍ଟିଂକି ବୋଇଲେ ସେ ଛଦ୍ମ ତପୋଧନ
ନିତ୍ୟକର୍ମ ସାରି ନଦୀକୂଳେ କରିବୁଂ ଭୋଜନ ।୧୬୫
ଯୁଝେଷ୍ଟି ବୋଇଲେ ବିପ୍ର ଯେ ତୁମ୍ଭ ଇଚ୍ଛା
ଯେ ତ୍ରିପୁତି ହୋଇଲେ ମୋହୋର ପୂର୍ଣ୍ଣ ହୋଅଇ
ମନବାଞ୍ଛା ।୧୬୬
ବହୁତ କଲ୍ୟାଣ କରିଣ ସେ ତପୋଧନ
ପଶିଲେ ମହାତମା ଯେ ଗହନ କାନନ ।୧୬୭
ଯତ୍ନକରି ଥୋଇଲା ସେ ସତ୍ୟଆମ୍ବ ଗୋଟି
ନେଇଣ ଛାମୁରେ ଦେବି ଦେଖୁ କିନା ଧୃତିରାଷ୍ଟି ।୧୬୮
ଚଳଇ ତପୋଧନ ପବନହୁଂ ବେଗେ
କପଟ ବୋଲି ଜାଣିଲେ ନ ପୁଣ ପାଣ୍ଡବେ କରନ୍ତି ରାଗେ ।୧୬୯

ଶ୍ରୀ ବାସୁଦେବ ସେ ସହଦେବକଇଂ ପୁଛି
ଆହୋ ସେ ତପୋଧନ ସଳଖେ ଆମ୍ବ ଘେନି ଯାଉଅଛି ।୧୭୦
କେବଣ ସେ ଦ୍ୱିଜ ଅଟେ ତାକୁ ଚିହ୍ନିଲୁ କି ତୁହି
କରପତ୍ର ଯୋଡ଼ିଣ ମନ୍ତ୍ରୀବର କହି ।୧୭୧
ସହଦେବ ବୋଇଲା ସେ ଯେ ପୁରଞ୍ଜନ ବ୍ରାହ୍ମଣ
ଜଉ ସଜଳସ ଘର ଯେ କପଟେ କଲା ନିରିବାଣ ।୧୭୨
ଜଉର ଘରେ କପଟେ ଆମ୍ଭନ୍ତ କଲାକ ଦହନ
କଉରବ ବଂଶକୁ ସେ ଅଟଇ ଧାରଣ ।୧୭୩
ତାହାର ପୁତ୍ର ଯେ ଗଉରମୁଖ ପଣ୍ଡା
ଯେହାକୁ ରାଇଣ ପେଷିଲା କୁରୁଷଣ୍ଢା ।୧୭୪
ଛଦ୍ମେ ଅଇଲା ଆମ୍ଭନ୍ତ ଖୋଜିବା ନିମନ୍ତେ
ଆମ୍ବ ନ ପାଇଲେ ଶାପ ଦେଇଯାନ୍ତା ଆମ୍ଭଂକୁଇଂ ଯେଥେ।୧୭୫
ଯେବେ ସତ୍ୟଆମ୍ବ ଦ୍ରିଯୋଧନ ଛାମୁରେ ନେଇଣ ଦେବ
ଦେଖିଣ କୁରୁପତି ଚାର ଯେ ବରଗିବ ।୧୭୬
ଯେସନେକ ମାୟାରେ ଦେବ ଯେ ଆସିଥିଲେ ସେହି
ମୋତେ ନ ପଚାରିଲ ଭେଦ ନ ଜାଣିଲ କେହି ।୧୭୭
ଯୁଝେଷ୍ଟିଂକ ଛାମୁରେ କହିଲେ ଚକ୍ରପାଣି
ଭୀମକଇଂ ପଠିଆଇବା କି ସତ୍ୟଆମ୍ବ ପାରଇ ଉଛୁଡ଼ି ଆଣି।୧୭୮
ଯୁଝେଷ୍ଟି ଦେବେ ବୋଇଲେ ହରି ମୁଂ ସତ୍ୟେଣ ଦିଲି ଯାହା
ଧର୍ମ ନାଶଯିବ କେମନ୍ତେ ହରିବଇଂ ତାହା ।୧୭୯
ଯୁଝେଷ୍ଟି ଅଗ୍ରତେ କହିଲେ ଦେବ ଯେ ଶ୍ରୀବସ୍ତି
ସ୍ୱାମୀ ଦ୍ୱାରିକା ଭୁବନକୁ ଯେବେ ମୁଂ ଯାଉଅଛି ।୧୮୦
ଅଗ୍ୟାଂତବାସେ ଦେବ ଗୋପ୍ୟ ହୋଇବାର କାଳେ
ମୋତେ ସୁମରଣା ଦେବ କରିବ ତେତେବେଳେ ।୧୮୧
ଯୁଝେଷ୍ଟି କହିଲେ ହରି ତୋତେ ଲାଗଇ ମୋହ ଚିନ୍ତା
ହୃଦଗତେ ଜାଣିଥିବୁ ସମସ୍ତ ବାରତା ।୧୮୨
ଯେସନେକ କହି କେଶବେ ଚଳିଲେ ବହନେ
ଅନ୍ତରୀକ୍ଷେ ବିଜେ କଲେ ବଇନେତ୍ର ବାହାନେ ।୧୮୩
ଗନ୍ଧର୍ବ ନଦୀକୂଳେ ଯାଉଛି ବିପ୍ରବର
ଆକାଶେ ଯାନ୍ତେ ତାକୁ ଦେଖିଲେ ଚକ୍ରଧର ।୧୮୪
ଗରୁଡ଼େ ବୋଇଲେ ତୁ ଥାଅ ଯେହି ପରବତେ
ଆମ୍ଭେ ସତ୍ୟଆମ୍ବ ହରିବୁଂ ପାଣ୍ଡବଂକ ଅର୍ଥେ ।୧୮୫
ବଇନେତ୍ର ପିଠିରୁ ଉତୁରି ଦେବ ଦଇତାରି
ବ୍ରାହ୍ମଣ ରୂପ ଧରିଣ ସେ ଗଲେ ଆଗସରି ।୧୮୬
ସେ ବ୍ରାହ୍ମଣ ସନ୍ଧ୍ୟା କରୁଅଛି ଗନ୍ଧର୍ବ ନଦୀ ତୀରେ
ଗୋବିନ୍ଦ ପ୍ରବେଶ ଯାଇଂ ବ୍ରାହ୍ମଣ ଛାମୁରେ ।୧୮୭
ବ୍ରାହ୍ମଣ ପଚାରେ ତୁମ୍ଭେ କେଉଂଣ ବେଦୀ ଦ୍ୱିଜ
ଯର୍ଜୁବେଦୀ ବ୍ରାହ୍ମଣ ଆମ୍ଭେ ବୋଇଲେ ଦେବରାଜ ।୧୮୮
ଧୋତି ପିଢ଼ା ଗଡୁ ଥୋଇକରି ନଦୀକୂଳେ
ଗଉର ପଣ୍ଡା ସ୍ୱାହାନ କଲେ ପଶି ଜଳେ ।୧୮୯
ଷଟକର୍ମୀ ବ୍ରାହ୍ମଣ ଯେ କରଇ ତାର କର୍ମ
ସନ୍ଧ୍ୟା ସୁମରଇ ତାର ବେଦ ବିଧି ଧର୍ମ ।୧୯୦
ନିତ୍ୟକର୍ମ ସାରି ବସ୍ତ୍ର ପିନ୍ଧିବାର ବେଳେ
ଆମ୍ବଗୋଟି ଖସିଣ ଯେ ପଡ଼ିଲାକ ତଳେ ।୧୯୧
ଗୋବିନ୍ଦେକ ବୋଇଲେ ପଣ୍ଡା ଯେତ ବଡ଼ାଇ ଅପୂର୍ବ
ଅବସନ୍ତେ ବସନ୍ତ ବରଷାରେ କାହୁଂ ପାଇଲ ଫକୁ ଆମ୍ବ ।୧୯୨
ବ୍ରାହ୍ମଣ ବୋଇଲେ ମୁଂ ଭ୍ରମନ୍ତେ ବନବାସେ
ଅସ୍କନ୍ଦ ବନେ ଭେଟିଲି ପରମ ପୁରୁଷେ ।୧୯୩
ବଡ଼ାଇ ସାମରଥ ସେ ଧାର୍ମିକ ପଞ୍ଚୁଭାଇ
ସତ୍ୟ କହିଣ ସେ ଆମ୍ବ ଉପୁଜାଇ ।୧୯୪
ଗୋବିନ୍ଦେ ବୋଇଲେ ପଣ୍ଡା ଯେତ ବଡ଼ାଇ ଅପୂର୍ବ ପଦାର୍ଥ
ଭୁଂଜିବା ଛାଡ଼ି କେହ୍ନେ କରୁଛ ଗୁପତ ।୧୯୫
ଅପୂର୍ବ ପଦାର୍ଥ ପାଇଲେ ତାହା ବହନ କରି ଭୁଞ୍ଜି
ଅଣଉପ୍ରୋଧ ଅଟଇ ନାଶକରି ପାଞ୍ଜି ।୧୯୬
ପାଇଲେଣ ଖାଇ ଭୁଞ୍ଜିଲେ ହୋଅଇ ହିତ
ବିଳମ୍ବ କରି ରଖିଲେ ତାହା ନୋହଇ ଅପ୍ରାପତ ।୧୯୭
ଗଉରମୁଖ ବୋଇଲା ମୁଂ ଯେହା ନେଉଅଛଇ ଯତନେ
ଅପୂର୍ବ ପଦାର୍ଥ ଯେହା ଦେବି ମାନଗୋବିନ୍ଦ ରାଜନେ ।୧୯୮
କାଲିର ମଧ୍ୟେ ମିଳିବି ଇନ୍ଦ୍ରପ୍ରଶସ୍ତ ସ୍ଥାନେ
ଦେଖିବେ ଚୂତଫଳ ତହିଂ ବିଦୁଜନମାନେ ।୧୯୯
ଦେଖାଇକରି ପାଇବି ଅନେକ ଧନରତ୍ନ
ତେଣୁକରି ଯେହାକୁ ମୁଂ କରିଅଛି ଯତ୍ନ ।୨୦୦
ଗୋବିନ୍ଦେ ବୋଇଲେ ପଣ୍ଡାଯେ ତୁମ୍ଭନ୍ତ କେ କଲା ବାଇ
ଭାଦ୍ରବ ମାସେ ଚୂତଫଳ ପ୍ରାପତ ହୋଇବ କାହିଂ ।୨୦୧
ଭଲ ଅପୂର୍ବ ପଦାର୍ଥ ହୋଇଛି ଦ୍ୱିଜବର
ଦେଖିବା ବୋଲି କର ବଢ଼ାଇଲେ ଚକ୍ରଧର ।୨୦୨
ଦେଖିବା ଦେଖିବା ବୋଲି ତାହାର ଧଇଲେ କରଗୋଟି
ସତ ନୋହେ ପଣ୍ଡାଯେ ମାୟା ପ୍ରପଞ୍ଚ ହେଟି ।୨୦୩

ଦ୍ୱିଜବର ବୋଇଲା ପ୍ରତକ୍ଷେ ଅଟଇ ଯେ ଆମ୍ଭ
କେମନ୍ତେ ନାସ୍ତି ତୁମ୍ଭେ କର ବିପ୍ରବ୍ରହ୍ମ ।୨୦୪
ଗୋବିନ୍ଦେ ବୋଇଲେ ଯେହୁ ଅଦିନେ ଫଳଇ
ମାୟା ବୋଲି ଜାଣିଲି ମୁଂ ଦେବକୂଟ ଯେହି ।୨୦୫
ସତ୍ୟ କହିଲେ କାହିଁ ଆମ୍ଭ ଜାତହୋଇ
ତେଣୁ ମାୟା ବୋଲିକରି କହିଲୁ ଯେଥିକଇଂ ।୨୦୬
ଦ୍ୱିଜବର ବୋଇଲା ବଚନ ଯେବେ ସତ
ସତ୍ୟ କହନ୍ତେ ଯେହାଂକର ଆମ୍ଭ ହୋଯେ ଜାତ ।୨୦୭
ଗୋବିନ୍ଦେ ବୋଇଲେ ଦେଖି ଆମ୍ଭେ କହୁ ସତ
ଶୁଣ ଯେକମନେ ତୁମ୍ଭେ ପଣ୍ଡିତ ମହତ ।୨୦୮
ଆହେ ପଣ୍ଡାଯେ ଆମ୍ଭେ ଦେଖିଲୁଂ ଜଳେ ପଥର ଉପୁଚିଆଇ
ସୋଲଭେଲା ଗୋଟାଯେ ଯେ ଜଳରେ ବୁଡ଼ଇ ।୨୦୯
ପୁରୁଷକୁ ବଳେ ଜିଣିଲା ସ୍ତିରୀମାତ୍ର ହୋଇ
ସ୍ତିରୀବନ୍ଧ୍ୟା ହୋଇଲା ପୁରୁଷ ପ୍ରସବଇ ।୨୧୦
ବୃଷ ଦିଅଇ କ୍ଷୀର ଗାବ ଷଣ୍ଢ ହୋଇ
ଗିରି ଶିଖରେ ଦେଖିଲୁ ପଦ୍ମ ଫୁଟିଣ ଅଛଇ ।୨୧୧
ପଦ୍ମର ବାସନା ନାହିଂ ନାହିଁ ପୁଷ୍ପ ତେଜ
କାଇଂଶ ପୁଷ୍ପକୁ ଚୁମ୍ବୁଅଛି ଭୃଙ୍ଗରାଜ ।୨୧୨
ଆଦିତ୍ୟ ଦେବତା ଉଦେ ହୋଇଲେ ପଛିମେ
ପୂର୍ବେ ଅସ୍ତଗଲେ କାଳ ଅନୁକ୍ରମେ ।୨୧୩
ଅନ୍ଧ ଧାମଇଂ ଯେ ଲଉଡ଼ି ବୁଲାଇ
ଚକ୍ଷୁଥିଲା ପ୍ରାଣୀ ବୁଲଇ ବାଟବଣା ହୋଇ ।୨୧୪
ନିଶାଯେ ଉଦଯେ ହୋଇଲେକ କରତାର
ଦିବସେ ଉଦେ ହୋଇଲେ ଶଶଧର ।୨୧୫
ଯେ ଦେବ ମାୟାଧର ଚକ୍ରକୂଟ ବୁଦ୍ଧି
ଅନେକ ମିଥ୍ୟାବାକ୍ୟେ ସତ୍ୟବାକ୍ୟ ନିରୋଧି ।୨୧୬
ସତ୍ୟେଣ ସତ୍ୟଆମ୍ଭ ଉତପତ୍ତି ହୋଇଥିଲା
ମିଥ୍ୟା କହିଲାରୁ ସେହିଠାରେ ଭସ୍ମଗଲା ।୨୧୭
ବ୍ରାହ୍ମଣ ବୋଇଲା ହୋ ମୋର ସତ୍ୟ ଆମ୍ଭଗୋଟି କାହିଂ
କେଣେ ହରିଲ ପଣ୍ଡାଯେ ଦେଖୁ ଦେଖୁ ନାହିଂ ।୨୧୮
ଗୋବିନ୍ଦେ ବୋଇଲେ ପଣ୍ଡାହେ ନିକଳଂକ ତୁମ୍ଭ ହିୟା
ବୁଝିତ ନୁଆରିଲ ବନଚର ଲୋକଂକର ମାୟା ।୨୧୯
ଦ୍ରିଯୋଧନ ସଭାକଇଂ ଯେବେ ତୁମ୍ଭେ ତାହାନ୍ତ ନିଅନ୍ତ
ଯେହିମତେ କେଣେ ଯାଆନ୍ତ ଅନେକ ଲାଜ ଯେ ପାଆନ୍ତା ୨୨୦
ଯେ ମାୟା ପ୍ରପଞ୍ଚ ଫଳ ପଣ୍ଡାଯେ ନ ଥାଇ ସର୍ବଥା
ହିରଣପୁଟକ ବିଦ୍ୟା ଯେହା ସତ ନୁହେଂ ମିଥ୍ୟା ।୨୨୧
ଯେଉଂଶ ଦେବ ମାୟାଧର ପ୍ରପଞ୍ଚ ନିର୍ବାଣ
ଯେଉଂଶ ଦେବ ଶଯଳ ସଂସାର ବୋଧନ ।୨୨୨
ତ୍ରଇଲୋକ୍ୟ ବୋଧିଲା ଯାହାର ମାୟାଧର ନାମଗୋଟି
ସେ ମାୟାଧର ଚରଣେ ମୋର ପ୍ରଳମ୍ଭ ଶତେକୋଟି ।୨୨୩
ତୁଳସାର ବଲ୍ଲଭ ଶ୍ରୀଚରଣ ମମହୃଦେ
ଶୂଦ୍ରମୁନି ସାରୋଳ ଦାସ ବଦଯନ୍ତି ପରମ ସାନନ୍ଦେ ।୨୨୪

**

## ୬୨. କାର୍ତ୍ତିବାସ ଦୈତ୍ୟ ବଧ, ଚନ୍ଦ୍ରଭାଗା ତୀର୍ଥର ମାହାତ୍ମ୍ୟ ଓ ଅର୍କଦୈତ୍ୟ ବଧ

ପଦ୍ମନାଭ ପର୍ବତେ ଯୁଝେଷ୍ଠି ଦୁଇଦିନ ରହି
ଗୋକର୍ଣ୍ଣିକା ତୀର୍ଥକୁ ଚଳିଲେ ପଞ୍ଚୁ ଭାଇ ।୧
ବିଜୟେ ଧର୍ମସୁତେ ଯେକାମ୍ର ଯେ ବନେ
ବିନ୍ଦୁ ସାଗର ତୀର୍ଥେ କଲେକ ସ୍ନାହାନେ ।୨
କଉଶିକକୁ ଭେଟିଲେ ଯୁଝେଷ୍ଠି ରାଜଦେବେ
ମହାତମାଂକ ଚରଣେ ପ୍ରଣପତ୍ୟ ପଞ୍ଚ ଯେ ପାଣ୍ଡବେ ।୩
ବୋଲନ୍ତି କଉଶିକେ ବାବୁ ଯେହୁ ଅଟେ ମହାତୀର୍ଥ
ବିଜୟେ ମହାତମା ଯେଥି ଯେକାମ୍ଭର ନାଥ ।୪
ଯେ କ୍ଷେତ୍ରର ଆଧିପତି ଯେକାମ୍ଭର ଈଶାନ
ଯେକାମ୍ଭର ତୀର୍ଥ ଯେ ଯେ ଯେକାମ୍ଭର ବନ ।୫
ଯୁଝେଷ୍ଠି ଦେବଂକୁ ବୋଇଲେ ବାବୁ ଯେ ଲିଙ୍ଗରାଜା
ଆଗେ ଅର୍ଘ୍ୟ ଦେଇ ହୋ ଅରଜୁନ ଯେହାନ୍ତ କରିବା ପୂଜା ।୬
କଉଶିକେ ବୋଇଲେ ବାବୁ ଯେକାମ୍ଭର ଈଶ୍ୱରେ ଦେଖ
ଭୁବନେଶ୍ୱର ତୀର୍ଥ ଯେହୁଂ ବରଷ ଦଶଲକ୍ଷ ।୭
ଯେକାମ୍ଭର ସୂକ୍ଷ୍ମେଶ୍ୱର ଯମେଶ୍ୱର ଦେବତା
ଆଦ୍ୟହୁଂ କ୍ଷେତ୍ରର ଯେ ଅଟନ୍ତି କରତା ।୮
ବାଉନ କୋଟି ଲିଙ୍ଗ ଯେହି ସ୍ଥାନରେ ଅଛନ୍ତି
ସମସ୍ତଂକ ଉପରେ ଶ୍ରେଷ୍ଠ ଲିଙ୍ଗ ଯେ ଅଟନ୍ତି ।୯
କହନ୍ତି କଉଶିକ ପଣ୍ଡିତ ମହାଗ୍ୟାଂତା
ଶୁଣ ବାବୁ ମନଦେଇ ଯେକାମ୍ଭର ବନ କଥା ।୧୦
ବାବୁ ଆଦ୍ୟହୁଂ ଅଟଇ ଯେ ହାଦେ ଯେକାମ୍ଭର ବନ
ପୃଥୀକି କୀଳାଯେ ଯମେଶ୍ୱର ଉତ୍ତମ ।୧୧

ପୂର୍ବେ ସୂକ୍ଷ୍ମେଶ୍ୱର କେଦାରେଶ୍ୱର ଉତ୍ତରେ
ମୁକଟେଶ୍ୱର ପଛିମେ ଦକ୍ଷିଣେ ହିରଣେଶ୍ୱର ।୧୨
ଈଶାନ୍ୟେ ରୁଦ୍ରେଶ୍ୱର ବାୟବ୍ୟେ ଉଇରୋବେଶ୍ୱର
ନଇଋତ କୋଣେ ଯେ ତ୍ରିପୁରାନ୍ତେକ ହର ।୧୩
ଚନ୍ଦ୍ରେଶ୍ୱର ଲିଙ୍ଗ ବିଜେ ଅଗ୍ନିକୋଣେ
ଯେ ଅଷ୍ଟକୀଳା ଜମ୍ବୁଦୀପ ପୃଥୀକି ଧାରଣେ ।୧୪
ଅଷ୍ଟ ମହାଲିଙ୍ଗ ଯେ ଅଛନ୍ତି ଦୀପକେ
ଆଉମାନେ ଭଗ୍ନ ହୋଅନ୍ତି ପ୍ରଳୟ ଅନ୍ତକେ ।୧୫
ନବଦୀପ ପୃଥୀକି ଯେ ବାସ୍ତରୀ ଯେ କୀଳା
ଯେଉଥେ ସେ ପୃଥୀକି ଖଟାଇଲା ଭେଳା ।୧୬
ଶଙ୍ଖପଦ୍ମ ମହାପଦ୍ମ କ୍ରକୋଟକ କୁଳିକ ମହାଶ୍ୱେତ ତକ୍ଷକ ଅନନ୍ତ
ଯେ ଅଷ୍ଟକୁଳା ନାଗରେ ରଜ୍ଜୁ ଦଉଡ଼ି ଛନ୍ଦ ସାତ ।୧୭
ବାବୁ କାର୍ତ୍ତି ବାସନ ବୋଲି ଯେହୁ ଅସୁର ବେନି
ଯେକାମ୍ବର ନାଥକଇଂ ଖଟିଲେ ଯୁଗ ତିନି ।୧୮
ଭୋଳେ ବରଦିଲେ ଯେ ଯେକାମ୍ବରଶ୍ୱର ନାଥ
ଆରେ ଆରେ କଳ୍ପେ କଳ୍ପେ ଅମର ହୋଇ ରହିଥାଅ ଯେଥ ।୧୯
ବାବୁ ଯୁଝେଷ୍ଠି କିଛିଦିନ ଅନ୍ତେ ଅମର ଭାଙ୍ଗିଲେ
ସେ ଅମର କଲେ କ୍ରୁର
ବଳେ ହରିନେଲେ ସେହୁ କୁବେର ଭଣ୍ଡାର ।୨୦
ଅନେକ ରାଜଭଣ୍ଡାର ଆଣିଲେ କ୍ରୁରକରି
ସୁବର୍ଣ୍ଣେ ବାନ୍ଧିଲେ ସୁବର୍ଣ୍ଣକୂଟ ଗିରି ।୨୧
ସୁବର୍ଣ୍ଣକୂଟ ପର୍ବତ ବୋଲି ନାମ ଦିଲେ ବେନି
ତାହାଂକର ଭୟେ ଅମର ଛାଡ଼ିଲେ ସସ୍ତ୍ରଯୋନି ।୨୨
ବାବୁ ସଉଦାସ ରାଜାର ଯେ ଅଟନ୍ତି ବେନିପୁତ୍ର
କାର୍ତ୍ତି ବାସନ ବୋଲିଣ ଯେ ବେନି ଯେ ଦଇତ ।୨୩
ଯେ ମହାକ୍ଷେତ୍ର ହୋଇଲା ଅସୁରଭୋଗୀ
ଋଷ ବିପ୍ର ତପୋଧନ ଡରେଣ ସେ ଥାନ ପରିତ୍ୟାଗୀ ।୨୪
ଶୁଣ ହୋ ଯୁଝେଷ୍ଠି ସତ୍ୟଯୁଗ ଯେମନ୍ତେ ବହିଗଲା
ଜନ ମନୁଷ୍ୟ କେହି ଆତଯାତ ଯେ ତୀର୍ଥେ ନୋହିଲା ।୨୫
ଈଶ୍ୱରେ ବିଚାରନ୍ତି ଯେ ଅଟଇ ମହାତୀର୍ଥ
ସଂସାର ଜନ ଯେଥି ହୋଇବେ ମୁକତ ।୨୬
ଅନେକ ଆନନ୍ଦେ ଆସନ୍ତି ବୃନ୍ଦାଅର୍କେ
ଦାନବ ଭୟେ ପଶି ନୁଆରିଲେ କେହି ଦେବଲୋକେ ।୨୭
ମୀନମାସ ଶୁକ୍ଳପକ୍ଷ ଚଉଠି ଚନ୍ଦ୍ରବାର
ପାର୍ବତୀ ସହିତେ ବିଚାରନ୍ତି ଦେବହର ।୨୮
କ୍ରୀତି ବାସନ ଦଇତେ ମରନ୍ତି କେବଣମତେ
ତେବେ ସିନା ମୁକତ ହୋଇବେ ଯେହି ମହାତୀର୍ଥେ ।୨୯
ଈଶ୍ୱରେ ବୋଇଲେ ତୁମ୍ଭେ ଶୁଣ ଗୋ ପାର୍ବତୀ
ତୁମ୍ଭେ ମାରିପାରିବ କି ଅସୁର ଦୁହିନ୍ତି ।୩୦
ପାର୍ବତୀ ବୋଇଲେ ବଢ଼ାଇ ଦୁରାନ୍ତେ ଦଇତ ଅରି
ଉପାୟେ କରିଣ ଅବା ତାହାନ୍ତ ମାରିପାରି ।୩୧
ବ୍ରହ୍ମାଂକୁ ଜିଣିଲେ ସେ ହାରିଲେ ଦେବରାୟେ
ନାରାୟଣ ଚକ୍ରକୁ ଯେହାଂକର ନାହିଂ କିଛି ଭୟେ ।୩୨
ଦୁରାପଦ ବରେକ ତୁମ୍ଭେ ଦିଲ ଦେବରାଜ
ଅଭୟେ ହୋଇ ରହିଲେ ସେ ପାପିଷ୍ଠ ଦନୁଜ ।୩୩
ବିଶ୍ୱନାଥ ସ୍ୱାମୀ ତୁମ୍ଭେ ସମରେ ନୋହିଲ ଯେ ସରି
ବିଶ୍ୱାସଘାତକ କଲେ ତାହାନ୍ତ ପାରିବା ଅବା ମାରି ।୩୪
ତୁମ୍ଭେ ଯେବେ କୋପ ନ କରିବ ଦେବ ମୋତେ
ମୁହିଂ ଅଭିନ୍ନ ଭାରିଯା ହୋଇବି ତାହାଂକର ପ୍ରାୟମତେ ।୩୫
ତେତେ ବାଗେ ସେ ତାହାନ୍ତ ମାରିପାରି
ଶୁଣିଣ ଅନେକ ସାନନ୍ଦ ହୋଇଲେ ଦେବ ତ୍ରିପୁରାରି ।୩୬
ସନ୍ତୋଷେଣ ଆଗ୍ୟାଂ ସେ ଦିଲେ ଦେବରାଜା
ଯେ ମହାତୀର୍ଥ ଗୋ ତୁମ୍ଭେ ଉଦ୍ଧାର କର ଗିରିଜା ।୩୭
ସ୍ୱାମୀର ବଚନ ସେ ଅଲଂଘିତ ମହାସତୀ
ଈଶ୍ୱରନ୍ତ ଉପେକ୍ଷିଣ ସେ ଯେ ଅଇଲେ ପାର୍ବତୀ ।୩୮
ଆହୋ ଚଇତନ ସଂସାର ସାଗର ଯେ ଯେ ନ ଯାଇ କଳଣା
ପାର୍ବତୀଂକର ରୂପ ଯେ ନ ଯାଇ କହଣା ।୩୯
ରମ୍ଭା ମେନକା ଅହଲ୍ୟା ଆଦିକରି
ପାର୍ବତୀଂକ ରୂପକାନ୍ତିକୁ ନୁହନ୍ତି କେହି ସରି ।୪୦
ଅପଟାନ୍ତର ରୂପ ସେ ପରମ ଅନ୍ନପୂର୍ଣ୍ଣା
ପୁରୁଷ ସୃଷ୍ଟିକି ସେ ମୋହଫାଶ ସିନା ।୪୧
ନବସୃଷ୍ଟି ଭିଆଇଲେ ସେ ବେଦବର ସ୍ୱାମୀ
ପାର୍ବତୀଂକ ରୂପ ସେ ଦେବ ନୁଆରିଲେ ଚିହ୍ନି ।୪୨
ବାବୁ ଯେ ମହାତୀର୍ଥ ଉଦ୍ଧାର କରିବା ନିମନ୍ତେ
ପଶିଲେ ଗସୋମଣି ଯେ ଗହନ ବନସ୍ତେ ।୪୩
ସାତ ଶୀତଳ ବୋଲି ଯେବଣ ନଦୀଗୋଟି
ଚିତ୍ର ଉପ୍ଳାଉଂ ସେ ଦକ୍ଷିଣ ବାହିନୀୟେ ଫୁଟି ।୪୪
ଆହୋ ଯୁଝେଷ୍ଠି ପିତୃଲୋକମାନନ୍ତ ଯେ ଅବସାନେ ଦହନ କରି
ସେ ଦହନ ଶୀତଳ ହୋଅଇ ଯେ ନଦୀରେ ସ୍ନାହାନ କରି ।୪୫

ଯେସନେକ ମହିମା ଯେ ସାତ ଶୀତଳ ନଦୀ
ପଞ୍ଚବଟୀ ବନରୁ ସେ ଆସୁଅଛି ଭେଦି ।୪୬
ସେ ନଦୀରେ ସ୍ନାହାନ ସାରିଣ ପାର୍ବତୀ
ଗୋପଲୁଣୀ ରୂପ ସେ ଧଇଲେ ମହାସତୀ ।୪୭
ପାଟ ମଢ଼ିଆଳ ଯେ ଦେବୀ ଆଭରଣ କଲେ ଅଙ୍ଗେ
ଶିରେ ଦଧିନଉତି ଘେନି ଚଳିଲେ ବନମାର୍ଗେ ।୪୮
ଗମନ୍ତେ ଗମନ୍ତେ ଦେବୀ ଚଳନ୍ତି ବନସ୍ତେ
ପ୍ରବେଶ ହୋଇଲେ ଯାଇ ସୁବର୍ଣ୍ଣଚୂଟ ପରବତେ ।୪୯
କୀର୍ତ୍ତି ବାସନ ବୋଲି ବେନି ଯେ ଦଇତେ
ଦୁହେଂ ବସିଅଛନ୍ତି ଯେ ସୁବର୍ଣ୍ଣଚୂଟ ପର୍ବତେ ।୫୦
ଦେଖିଣ ବେନି ଦାନବେ ଯେ ଉଠିଲେ ତଡ଼ତି
ଅପୂର୍ବ କନ୍ୟାଯେ ସେ ରମ୍ଭାଙ୍ଗ ତେଜକାନ୍ତି ।୫୧
ଆମ୍ଭର ଭୟେ ଯେଥେଂ ଜନ ମନୁଷ୍ୟ ଆତଯାତ
ବଢ଼ାଇ ଦୁଲଭ ଯେ ଆମ୍ଭ କର୍ମର ସୁକୃତ ।୫୨
ଧାତିକାରେ ଦାନବେ ପ୍ରବେଶ ଯାଇ ଆଗେ
କାହିଂର ମହାତ୍ମାଣୀ ତୁ ପଶିଲୁ ବନମାର୍ଗେ ।୫୩
ପାର୍ବତୀ ବୋଇଲେ ବାଭିଯେ ମୁହିଂ ଦଧିବିକା ଅଟଇ ଗଉଡ଼ଣୀ
ଯେ ବନମାର୍ଗେ ପଶିଲି ମୁହିଂ ବାଟ ତ ନ ଜାଣି ।୫୪
ବଦଯନ୍ତି କୀର୍ତ୍ତି ବାସନ ଯେ ବେନିଭାଇ
ଆଜକ ଆମ୍ଭନ୍ତ ଗୋ ଦେଉକିନା ଦହି ।୫୫
ଧାନେଣ ତୋହୋର କାର୍ଯ୍ୟ ଧାନ୍ୟେଣ ଅଛି କାର୍ଯ୍ୟ
ଅଷ୍ଟରତ୍ନ ମଧେ ଯାହା ମାଗିବୁ ତା ଦେବୁଂ ଆଜ ।୫୬
ତୋହୋର ଆମ୍ଭର ହୋଇବ ଆଜ ଗୋ ବଢ଼ାଇ ପୀରତି
ଆମ୍ଭର ତହିଂକି ଗୋ ଦହି ଆଣୁଥିବୁ ଟିକି ନିତି ।୫୭
ବୋଇଲ ଗୋପାଳୁଣୀ ତୁମ୍ଭେ ପରମ ପଣ୍ଡିତ
ଧାତିକାରେ ମୁଂ ଦହି ଦେଉଥିବି ନିତ୍ୟପ୍ରତ୍ୟ ।୫୮
ଶାଳପତ୍ର ପାଡ଼ିଣ ବସିଲେ ବୀରବେନି
ଆପଣେ ଗୋସାମଣି ପରଷନ୍ତି ଶଢ଼ାଇ କରେ ଘେନି ।୫୯
ପରିହାସ ଚାଟୁପଟଳ କହୁଛନ୍ତି ବେନିବୀରେ
ଗେଲେଣ ଭୁଞ୍ଜନ୍ତି ସେ ମଦନ ଆତୁରେ ।୬୦
ସ୍ୱୟଂ ଗୋସାମଣି ଯେ ପରଶୁଛନ୍ତି ପାର୍ବତୀ
ଦେଙ୍କଂଣ ନ ସରଇ ସେ ମାୟା ଦଧିର ନଉତି ।୬୧
ଆହୋ ଯୁଝେଷ୍ଟି କ୍ଷୀରୋଦ୍ର ପିଇବାକୁ ସମର୍ଥ ଯେବଣ ବେନିବୀରେ
ଯେକା ଦଧି ନଉତିକ ଯେ ଅଣ୍ଟିଲା ସମ୍ଭରେ ।୬୨
ଖାଆନ୍ତେ ଚାହାନ୍ତି ସେ ପାର୍ବତୀଂକ ଜାନୁସ୍ତନ
ଅନଙ୍ଗ ବିଘାତେ ସେ ହୋଇଲେ ମୋହମାନ ।୬୩
ନିର୍ଜ୍ଜନ ବନ ଗହନ କେହି ନାହିଂ କତି
ହସଇ ପରିହାସ୍ୟେ ସେ ଗୋପାଳୁଣୀ ଜାତି ।୬୪
ବହୁତ ଭୋଜନେ ଆୟୁଷ ହୋଯେ ହାନି
କାମର ଚେଷ୍ଟା ଆବର ଯୁବତୀ ମାନିନୀ ।୬୫
ବୋଲଇ ଗୋପାଳୁଣୀ ମୋତେ ଦେବା ନା ଯିସ ହୋଇ
ବଶା ହୋଇ ପଡ଼ିଲି ମୁଂ ତୁମ୍ଭର ହସ୍ତଇ ।୬୬
ଦଇତ୍ୟେ ବୋଇଲେ ଆମ୍ଭନ୍ତ ବଶକଲୁ ରୂପଗୁଣ ଦେଖାଇ
ପଡ଼ିଲୁ ଆମ୍ଭର ମୁଖେ ଯିବୁ ଆଉ କାହିଂ ।୬୭
ପୋଡ଼ଇ କିନା ଯେ ତୁମ୍ଭ ଗୋପାଳୁଣୀ ଜନ୍ମ
ଯେ ନବ ଯଉବନ ଘେନି ଦେଶେ ଦେଶେ ଭ୍ରମ ।୬୮
ଆଜହୁଂ ତୋର ଜନ୍ମ ଦାରିଦ୍ର୍ୟପଣ କର ତେଜ୍ୟା
ଅନେକ କୁତୂହୋଳେ ଥିବା ଆମର ହୁଅସି ଭାରିଯା ।୬୯
ଆମ୍ଭର ବଚନ ତୁ ଗୋ ମେଣ୍ଟିବୁ ଯଦ୍ୟପି
ମାରିଣ ମାଯେଂସ ତୋର ଭୁଞ୍ଜିବୁ ଅଦ୍ୟାପି ।୭୦
ଅସୁରଂକ ମୁଖରୁ ଦେବୀ ନିରାଶ ବଚନ ଶୁଣି
ରୁବଇ ସୁନ୍ଦରୀ ତହୁଂ ନେତ୍ରୁ ବହି ପାଣି ।୭୧
ଯେହେନ୍ନେକ ଭବିଷ୍ୟ ଯେବେ ଅଛଇକ ମୋତେ
ମୋହୋର ମୃତୁ ଯେବେ ତୁମ୍ଭର ସେ ହାଥେ ।୭୨
କର୍ମ ବୋଲି ସିନା ଆପଣେ ଯାହା ଅର୍ଜି
ଆନକୁ ନ ଦିଶି ଆପଣେ ତାହା ଭୁଞ୍ଜି ।୭୩
ମମ କର୍ମେ ଯେବେ ଅଛଇ ଯେହେନ୍ନେକ ଘଟଣ
କାହାର ବେଳେ ସେ ହୋଇବାକ ମେଣ୍ଟଣେ ।୭୪
ଭକ୍ଷ ମୋର ମାଯେଂସ ଖାଅ ତୁମ୍ଭେ ଭାଜି
ତୁମ୍ଭର ହାଥେ ମୁହିଂ ଯେ ଜନ୍ମ ଯାଇ ସୁଝି ।୭୫
ଅସୁର ବୋଇଲେ ଆମ୍ଭନ୍ତ ତୁ ଗୋ ନିରାଶ କିମ୍ପା କହୁ
ତୋତେ ଯାହା ଭକ୍ଷିବୁ ଆମ୍ଭେ ଜୋଗ କିମ୍ପା ନ ଖାଉଂ ।୭୬
ତୁ ଆମ୍ଭନ୍ତ ରକ୍ଷା ଯେବେ କରସି ଗୋ ମାଯେ
ଦନ୍ତେଣ ତିରଣ ଘେନି ବେନି ପଡ଼ିଲେ ତାର ପାଯେ ।୭୭
ବୁଡ଼ିଲୁ ମଦନ ଜଳେ ଗୋ ତୋହୋରେ ଶରଣ
ରତିରଙ୍ଗ ଦେଇ ଗୋ ରଖସି ପଞ୍ଚ ପ୍ରାଣ ।୭୮
ବୋଲନ୍ତି ଗୋପାଳୁଣୀ ତାହାଂକ ବିନୟ ଦେଖି
ଅଦଭୁତ କାରଣେ ତୁମ୍ଭେ ହୋଇଲ ବଡ଼ ଦୁଖୀ ।୭୯

ତୁମ୍ଭର ବିକଳେ ପଛେ ମୁଁ ଗୃହବାସ କରିବି ତେଜ୍ୟା
ଦୟା ବସିଲା ମୁଁ ତୁମ୍ଭର ହୋଇବି ଭାରିଯା ।୮୦
ମୋହୋର ବ୍ରତେକ ଅଛି ଯେବେ କରିବ ପ୍ରତିଷ୍ଠା
ହୋଇବି ବଲ୍ଲଭୀ ତୁମ୍ଭର ପୂରାଇବି ମନତୁଷ୍ଟା ।୮୧
ଶୁଣିଣ ଦାନବେ ଯେ ହୋଇଲେ ଉଷତ
କହ ଗୋ ମହାତ୍ମାଣୀ ତୁମ୍ଭର କିସ ବ୍ରତ ।୮୨
ସରୂପ ବଚନ ଯେ କହନ୍ତି ଗଉରୀ
କିଞ୍ଚିତ ମାତ୍ର ବ୍ରତ ଯେ ଅଛଇ ମୋହୋରି ।୮୩
ତୁମ୍ଭେ ଦୁହେଁ ମୋତେ ଯେ କାନ୍ଧରେ ବସାଇ
ଯେ ତୀର୍ଥଯାକ ମୋତେ ଆଣିବ ବୁଲାଇ ।୮୪
ଯେତେକ ପ୍ରତିଷ୍ଠା ଯେ ହୋଇବ ମୋହୋର ବ୍ରତ
ଶୁଣି ଅନେକ ହରଷ ଯେ ହୋଇଲେ ବେନିଭ୍ରାଥ ।୮୫
କାମେ ବଶ ହୋଇଣ ସେ ନ ଚେତନ୍ତି କିଛି
ମହାଉଚ୍ଚାଟ ଫାଶ ଦେବୀ ଲଗାଇଣ ଅଛି ।୮୬
ରଜ୍ଜୁ ଲଗାନ୍ତେ ଯେସନେ ଗମନ୍ତି ବଇଲ
କାମବଶେ ନାଶଗଲେ ବେନି ମହାମଲ୍ଲ ।୮୭
ଆହୋ କାର୍ତ୍ତି ବାସନ କାହିଁ ଅଟନ୍ତି ପରମଯୋଗୀ
ଯୁବତୀଂକ ବଶେ ପଡ଼ି ସେ ସମସ୍ତ ପରିତ୍ୟାଗୀ ।୮୮
ବେନି କନ୍ଧ ପାତିଲେ ସେ ବେନି ବୀରମଣି
ବକ୍ଷସ୍ଥଳେ ବେନି ଚରଣ ଦେଇ ଉଠିଲେ ଗୋସାମଣି ।୮୯
ବୁଲାବନ୍ତି କ୍ଷେତ୍ରରେ ସେ ମଧୁର ଗୀତଗାଇ
ହସନ୍ତି ନାଚନ୍ତି ସେ କରେ କରତାଳି ଦେଇ ।୯୦
ଇଶାନ୍ୟ କୋଣ ଡେଇଂ ଆଣିଲେ ଅସୁରେ
ଆସିଣ ପ୍ରବେଶ ହୋଇଲେ ଯେକାମ୍ବରେଶ୍ୱର ଦ୍ୱାରେ ।୯୧
ବରୁଣା ବଳିକା ତହିଁ ଗୋଟିଯେକ ଅଛି
କନ୍ଧରେ ବସାଇ ବୀରେ କଉତୁକେ ନାଚି ।୯୨
ରେ ରେ ଶବଦ କଲେ ଶାକାମ୍ଭେରୀ
ମହାଭୀଷ୍ମ ରୂପ ହୋଇଲେ ଗଗନ ସରି ।୯୩
ମହାଭାରାନ୍ତ ପାଇ ପକାଇ ଲୋଡ଼ନ୍ତି ପାମରେ
ଦୁହିଁକର କେଶ ଦେବୀ ଧରିଲେ ଦୁଇକରେ ।୯୪
ଫୁକାର ଶବଦ କରିଣ ଦେବୀ ଦିଲେ ଚାପି
ହୋଇଲେ ପାତାଳଗାମୀ ସେ ଅସୁର କାମରୂପୀ ।୯୫
ଅସୁର ବୋଇଲେ ଯେତ କପଟ ହୋଇଲା
ଯେ ମାୟାକୂଟ ଆମ୍ଭନ୍ତ ମଣିତ ନ ଗଲା ।୯୬
ପାତାଳକୁ ପଶିଲେନି ବେନିବୀରେ ହୃଦଗତ ପରିଯନ୍ତେ
ଆକ୍ରେଷି ଦରାଣ୍ଡି ଧରି ଲୋଡ଼ନ୍ତି ବେନି ହାଥେ ।୯୭
ଦୁଇଭୁଜେ ଧରିଛନ୍ତି ଦୁହିଁକରି କେଶ
ଆହୁରି ଚତୁର୍ଭୁଜ ହୋଇଲା ପ୍ରକାଶ ।୯୮
ଆକ୍ରେଷି ଗୋସାମଣି ଦୁହିଁକର ଭୁଜ ଧରି
ହୁଂକାର ନାଦକରି ଦେବୀ ଅସୁର ଭୁଜନ୍ତ ଉପାଡ଼ି ।୯୯
ରୋଧିର ମାୟେଂସ କର୍ଦ୍ଦନ ହୋଇ ତୁଷ୍ଟି କରନ୍ତି ଦାନବେ
ମାଗୋ ବୁଡ଼ାଇଲୁ ଶ୍ୱରୀର ଷିରୀ ମାତ୍ର ଭାବେ ।୧୦୦
ଯେବେ ଆମ୍ଭେ ତ ନାଶଗଲୁ ନ ଜାଣିଣ ବେନିଭାଇ
ତୁହି କିଯେଟି ଗୋ ଆମ୍ଭଂକୁ ନ କହୁ କାହିଂପାଇଂ ।୧୦୧
ନାମ କେବଣ ତୋର ଜାଣିଥାଉଂ ହୃଦେ
ବଦୟନ୍ତି ଗୋସାମଣି ମୁହିଁ ପାର୍ବତୀ ଅଟଇ ହାଦେ ।୧୦୨
ଅସୁରେ ବୋଇଲେ ଆମ୍ଭେ ନିସ୍ତରିଲୁ ମହାମାୟେ
କଣକଞ୍ଚ ଦୃଶ୍ୟ ଗୋ ହୋଇଥାଉ ଆମ୍ଭ କାୟେ ।୧୦୩
ଅନେକ ତୀର୍ଥ ଯେ ଯେଥି ହୋଇବ ତହିଂ ଯାତ୍ରା
ଥିଲେହେଂ କିଞ୍ଚିତେ ଯେଥି ହୋଇଥାଉଂ ଭଗତା ।୧୦୪
କଠୋର ଦେଖି ତାହାନ୍ତ ଦୟା କଲେ ଗୋସାମଣି
ମାଗ ରେ ବର ତୁମ୍ଭେ ବୋଇଲେ ଠାକୁରାଣୀ ।୧୦୫
ଅସୁରେ ବୋଇଲେ ମାତା ଗୋ ଯେବେ ହୋଇଅଛୁ ଦୃଶ୍ୟ
ଯେତେକେହେଂ ଥାଉ ଆମ୍ଭନ୍ତ ପ୍ରାଣେ ନ କର ନାଶ ।୧୦୬
ମାଗୋ ଆମ୍ଭେ କାର୍ତ୍ତି ବାସନ ବୋଲି ଯେ ବେନିଭ୍ରାଥ
କାର୍ତ୍ତିବାସନ ବୋଲି ନାମ ହୋଇବ ଯେହୁ ତୀର୍ଥ ।୧୦୭
ପ୍ରସନ୍ନ ହୋଇଣ ଗୋସାମଣି ତାହାନ୍ତ କଲେ ଦୟା
ଯେ ତୀର୍ଥ ହେଉ କାର୍ତ୍ତିବାସନ ବୋଲି ବର ଦିଲେକ ଅଭୟା ।୧୦୮
ବାବୁ ଯେକାମ୍ବର ଦେବ ପାଶେ ଯେ ବେନି ପାଷାଣ
କାର୍ତ୍ତିବାସନ ବୋଲି ଯେହା ତଥ୍ୟକରି ଜାଣ ।୧୦୯
ଆହୋ ଯୁଦ୍ଧେଷ୍ଠି କାର୍ତ୍ତିବାସନ ଯିବା ବୋଲି ଯେ ଆସିବ ଯେ ତୀର୍ଥକୁ
ସେ ପୁଣ୍ୟ ଅଧେ ପ୍ରାପତ ହୋଅଇଟି କାର୍ତ୍ତିବାସନକୁ ।୧୧୦
ଯେ ଦୁହିଂକର ମଧ୍ୟେ ଯେହୁ ଯାଆନ୍ତି ନ ଜାଣି
ଯାବତ ସୁକୃତମାନ ଯେହାନ୍ତ ଦିଅନ୍ତି ଗୋସାମଣି ।୧୧୧
ଅସୁରନ୍ତ ମାରି ଦେବୀ ହୋଇଲେ ମହାଶ୍ରମି
ଅଳସେ ନିଦ୍ରାଗଲେ ଦେବୀ ତୁଛା ଭୂମି ।୧୧୨
କଉଶିକେ ଯୁଦ୍ଧେଷ୍ଠିଂକି ଦେଖାଇଲେ ନେଇ
ବିନ୍ଦୁସାଗର କୂଳେ ଅଛନ୍ତି ଦେବୀ ଶୋଇ ।୧୧୩

କଉଶିକ ମୁନିଂକି ପୁଛାକଲେ ଧର୍ମରାୟେ
କେବଣ ଚରିତ ଯେ ବଡ଼ାଇ ଆଶ୍ରିକ ହୋୟେ ।୧୧୧୪
ଗୋସାମଣିଂକ ପଦତଳେ ଅଛଇ ଲିଙ୍ଗ ଯେ ଗୋଟିୟେ
ପାର୍ବତୀଂକ ଯିବା ଡେରି ଦେଖି ଦେବରାୟେ ।୧୧୧୫
ଗୋସାମଣିଂକି ଲୋଡ଼ିଣ ଅଇଲେ ମହାଦେବେ
ଦେଖିଲେ ପ୍ରାଣେ ନାଶ ହୋଇଛନ୍ତି ଦାନବେ ।୧୧୧୬
ଅନେକ ବ୍ୟାକୁଳେ ଦେବ ହୋଇଣ ବିମୁଖ
ପାର୍ବତୀଂକୁ ନ ଦେଖି ଇଶ୍ୱରେ କଲେ କୋପ ।୧୧୧୭
ଶ୍ରମେ ଧାମନ୍ତି ଦେବ ଲୋଡ଼ନ୍ତି ଚଉକତି
ବିଂଝଗିରି ପର୍ବତେ ଯାଇ ବିଜୟେ କଲେ ଝାତି ।୧୧୧୮
ପାର୍ବତୀ ପାର୍ବତୀ ବୋଲି ଡାକନ୍ତି ଉଚ୍ଚସ୍ୱରେ
ସେ ବିଂଝଗିରି ପର୍ବତ ପାତାଳକୁ ପଶିଲା ରୁଦ୍ର ପାଦଭାରେ।୧୧୧୯
ବାବୁ ଯେଣୁକରି ପାତାଳଗାମୀ ହୋଇଲା ବିଂଝଗିରି ପରବତ
ତେନ୍ୟାୟୁଂ ଉଦେ ହୋଇଲା ବିଂଝଗିରି ତୀର୍ଥ ।୧୧୨୦
ବାବୁ ଲୋଡ଼ନ୍ତେ ଯେଥେ ଆସି ଭେଟିଲେ ଦେବ ଶୂଳପାଣି
ଦେଖିଲେ ଦକ୍ଷିଣକଇଂ ଶୋଇଅଛନ୍ତି ଗୋସାମଣି ।୧୧୨୧
ହା ହା ସଖୀ ବୋଲିଣ ଦେବ ଯେ ସୁଢ଼ଲେ
ଇଶ୍ୱର ସ୍ୱାମୀ ଯେ ବିଜେକଲେ ପାର୍ବତୀଂକ ପାଦତଳେ ।୧୧୨୨
ଶୁଣ ବାବୁ ଯୁଝେଷ୍ଟି ଯେ ଲିଙ୍ଗର ଆଦିକଥା
ଶମ୍ଭୁ ହୋଇ ରହିଲେ ସେ ଇଶ୍ୱର ଦେବତା ।୧୧୨୩

.......

ତହୁଂଣ ପାଣ୍ଡବେ ଚଳିଣ ହାଦେ ଗଲେ
ଭାସ୍କର ତୀର୍ଥେ ଯାଇଂ ପ୍ରବେଶ ହୋଇଲେ ।୧୧୨୪
ଚନ୍ଦ୍ରଭାଗା ଦେବ ଦକ୍ଷିଣ ମହୋଦଧି
ସ୍ନାହାନ କଲେ ତହିଂ ପାଣ୍ଡବ ଗୁଣନିଧି ।୧୧୨୫
ଯୁଝେଷ୍ଟି ଦେବ ତହିଂ ପଚାରିଲେ ବାରତା
କହିବା ମୁନି ହେ ଯେହୁ ଅର୍କତୀର୍ଥର କଥା ।୧୧୨୬
କାହାର ପୁତ୍ର ସେହୁ କଲା କେଉଂଣ ଦୋଷ
କେଉଂଣ ପ୍ରକାରେ ତାକୁ ବିରଞ୍ଚି ନାରାୟଣ କଲେ ନାଶ ।୧୧୨୭
ବଦନ୍ତି ମାରକଣ୍ଡେ ଶୁଣ ହୋ ପଣ୍ଡୁସୁତ
କୃତାନ୍ତକ ଦଇତହୁଂ ଜାତ ଅର୍କ ଯେ ଦଇତ ।୧୧୨୮
ଅମର ବିବାଦେ ଜମ୍ଭୋଦତ୍ୟ ଇନ୍ଦ୍ର କଲା ହତ
ଶିରଗୋଟି ତାର ଛେଦିଲା ସୁରନାଥ ।୧୧୨୯
ଦୁସହ ସମରେ ଜମ୍ଭୁଦତ୍ୟ ଶିର ଛେଦି
ତେଣୁ ସେ ଇନ୍ଦ୍ରନାମ ବହିଲା ଜମ୍ଭୋଭେଦୀ ।୧୧୩୦

ସେ ଜମ୍ଭୁଦତ୍ୟର ପୁତ୍ର ଅଟଇ କୃତକେଶୀ
ହିରଣ୍ୟ ହିରଣାକ୍ଷ ବୋଲି ତାହାର ବେନି ଶିଶି ।୧୩୧
ହିରଣାକ୍ଷର ପୁତ୍ର ମୟ ଯେ ଦାନବ
ସେ ଯେ ନିରୋଧିଲା ଭୁବି ଭୁବନ ସର୍ବ ।୧୩୨
ମୟ ଦାନବର ପୁତ୍ର କାମ କାନ୍ତିମାଳା
ଯେହାର କୁମର ଯେ ହୋଇଲା ବିଡ଼ୋଳା ।୧୩୩
ବିଡ଼ୋଳାର ପୁତ୍ର ଯେ ଅଟଇ ଭାସ୍କର
ଅର୍କ ଦଇତ ବୋଲିଣ ଯେ ପୁତ୍ରେକ ତାହାର ।୧୩୪
ବଡ଼ାଇ ପ୍ରତାପୀ ସେ ଅର୍କ ଦଇତାରି
ରହିଲା ଦଇତ ଯେହି ତୀର୍ଥେକ ଆବୋରି ।୧୩୫
ମନୁବଂଶେ ଜାତ ପଦ୍ମନାଭ ନରପତି
କଣୟବିନ୍ଦୁ ବୋଲି ତାହାର ସନ୍ତତି ।୧୩୬
ବଡ଼ାଇ ପ୍ରତାପୀ ସେ ହୋଇଲାକ ରାଜା
ବଡ଼ ସୁଚିତ୍ତେ ସେ ପାଳଇ ଜନ ପ୍ରଜା ।୧୩୭
ଯେକା ମାଡ଼କେ ଚିନାୟେ ଦ୍ୟନ୍ତି ଚାଷୀ
ସମ୍ବଛର ପରିଯନ୍ତେ ଆୟେ କରନ୍ତି ଦୁଇରାଶି ।୧୩୮
ଭଗ୍ନପାଦ ବେଳେ ରାୟେ ବସିଲାକ ପାଟ
ରାଜ୍ୟଯାକ ଭଗନ ହୋଇଲା ଦରିଦ୍ରବାସୀ ହୋଇଲା ସମରାଷ୍ଟ୍ର।୧୩୯
ସଂସାର ବିକଳ ଦେଖି ବିଚାରଇ ରାଜନ
ପରଜାର ଦୁଖିତେ ରାଜାର କିସ ପୁଣ୍ୟ ।୧୪୦
ବିଚାରଇ ନୃପତି ମୁଂ କରତାକଇଂ କରିବି ସେବା
ରାଜ୍ୟଯାକ ମୋର କଣୟ ବୃଷ୍ଟି କରାଇବା ।୧୪୧
ପୁତ୍ରକଇଂ ରାଜ୍ୟଭାର ସମର୍ପି ମହୀପତ୍ୟେ
ବସିଲା ନିରାଶେ ଚନ୍ଦ୍ରଭାଗା ମହୋଦଧି ଅର୍କତୀର୍ଥେ ।୧୪୨
ନିରାଶେ ବସିଣ ସେବା କରଇ କରତାର
ଯେକା ଆସନେ ବସିଲା ପଞ୍ଚଦଶ ବର୍ଷର ନିରାଧାର ।୧୪୩
ବିଚାରି ଗୁଣଇ ସେ ଅର୍କ ନାମେ ଦଇତ
ମହାତପୀ ହୋଇଲା ଯେହାର ଚରିତ କେମନ୍ତ ।୧୪୪
ନ ପୁଣ ମୋର ପଦ ଘେନିବ ମାଗିଣ ବିରଞ୍ଚି
ରାଜାକୁ ମାରିବ ବୋଲି ହୃଦଗତେ ପାଞ୍ଚି ।୧୪୫
ମକର ମାସ ଶୁକଳପକ୍ଷ ଚଉଠୀର ଦିନ
ଚନ୍ଦ୍ରଭାଗାୟେ ଦେଖିଲା ସ୍ୱାମୀର ବର୍ଣ୍ଣ ଚିହ୍ନ ।୧୪୬
ଅନେକ ସ୍ତୁତି କରି ସେ ହୋଇଲା ପରିଣାମି
ଆକାଶେ ଥାଇ ତାହା ଦେଖିଲେ କରତାର ଦେବସ୍ୱାମୀ ।୧୪୭

ପ୍ରଣପତ୍ୟ ହୋଇଲେ ଯେ ଶୁତିଲା ନରପତି
ଦେଖିକରି ଅର୍କ ଦଇତ ଧାଇଂଲା ତତକ୍ଷଣାନ୍ତି ।୧୪୯
ଲୋହାର ଲଉଡ଼ି ଯେକ ଧରିଅଛି ହାଥେ
ପ୍ରାହାର କରିବି ଆଜ ପାମରର ମାଥେ ।୧୫୦
ଲକ୍ଷେ ଯୋଜନେ ଥାଇଂ ତାହା ଦେଖିଲେ କରତାର
ନୁହଇ ନୁହଇ ବୋଲି ବଢ଼ାଇ ଦିଲେ କର ।୧୫୧
ଅର୍କ ଦଇତ ଦେବ ଧଇଲେକ ଶିର
ଅଦୋଷେ କିମ୍ପେ ତୁ ପ୍ରହାର କରୁରେ ଅସୁର ।୧୫୨
ଅର୍କଦତ୍ୟକୁ ବିରଞ୍ଚ ଧଇଲେ ଆକ୍ରେଷି
ମହାବଳବନ୍ତା ଦତ୍ୟ ସମରେ ନ ଘୁଞ୍ଚ ।୧୫୩
ଅର୍କ ଦଇତର ତୁଲେ ଦେବ କଲେକ ସାଂଗ୍ରାମ
ବଢ଼ିଲା ରଣରଙ୍ଗ ସାଂଗ୍ରାମ ଅବିଶ୍ରାମ ।୧୫୪
ଚଉଠୀ ପଞ୍ଚମୀ ଷଷ୍ଠୀ ଯେହି ଦିନିଦିନ
ମହାଘୋର ସମରେ ହାରିଲା ଯାତୁ ଧାନ ।୧୫୫
ମକର ମାସ ଶୁକଳପକ୍ଷ ସପତମୀ ରାତି
ଅର୍କ ଦଇତକୁ ଦେବ ଧଇଲେ କୋପମୃତ୍ତି ।୧୫୬
ବିରଞ୍ଚ ନାରାୟେଣ ହୋଇଲେ ତେସନ
ଦତ୍ୟର ଭୁଜ ସେହୁ ଧରିଲେ ଆକ୍ରେଷିଣ ।୧୫୭
ଚନ୍ଦ୍ରଭାଗା ତୀରେ ଥିଲେ ଯେ ଚନ୍ଦ୍ରଗିରି ପର୍ବତ
ତହିଂ ନେଇ କଚାଡ଼ିଲେ ଦେବ ଅର୍କ ଯେ ଦଇତ ।୧୫୮
ସେ ଚନ୍ଦ୍ରଚୂଡ଼ ଗିରି ଅସୁର ପଡ଼ି ଚୂରଗଲା
ସେ ଅର୍କ ଦଇତର ଦେହ କିଛିହିଂ ନୋହିଲା ।୧୫୯
ସୂର୍ଯ୍ୟାବ୍ରତେକ ଚକ୍ର ମାଇଲେ ଦେବ ତୋଳି
ଅର୍କଦତ୍ୟର ଦେହେ ପଡ଼ି ଚକ୍ର ହୋଇଲା ଧୂଳି ।୧୬୦
କେଉଣସି ପ୍ରକାରେ ସେ ନାଶ ନୋହିଲା କଉଣୋପ
ମାଡ଼ିଣ ବସିଲେ ଦେବ ହୋଇ ବିଶ୍ୱରୂପ ।୧୬୧
ଅର୍କ ଦଇତକୁ ମାଡ଼ି ବସିଲେ ବକ୍ଷସ୍ଥଳେ
ବିଜୟେ ବିରଞ୍ଚ ନାରାୟେଣ ଚନ୍ଦ୍ରଭାଗା ବାରାନିଧି କୂଳେ ।୧୬୨
ଚଳିଗଲେ ବାରାନିଧି ଅଗ୍ନିକୋଣ ଆଡ଼େ
ଅର୍କ ଦଇତକୁ ମାଡ଼ି ବସିଲେ ମଉଦଧି ପଛିମ କଛାଡ଼େ ।୧୬୩
ପୃଥିବୀର ଅଗ୍ନି କୋଣେ ବିଜୟେ ଜଗତ ଜ୍ୟୋତି
ତେଣୁ ସେ କୋଣାଅର୍କ ତୀର୍ଥ ଜଗତେ ବିଖ୍ୟାତି ।୧୬୪
ସେ କଣୟବିନ୍ଦୁ ରାଜାକୁ ଅର୍କ ପ୍ରସନ୍ନ ହୋଇଲେ
ସାତଘଡ଼ି ପରିଯନ୍ତେ ତାହାର ରାଜ୍ୟେ କଣୟ ବରଷିଲେ ।୧୬୫

ଶୁଣ ଆହୋ ଯୁଦ୍ଧେଷ୍ଠି ବଦୟନ୍ତି ମାରକଣ୍ଡେ
ସେହି କୋଣାଅର୍କ ତୀର୍ଥ ପବିତ୍ର ଭୂଥଖଣ୍ଡେ ।୧୬୬
ମଉଦଧିରେ ସ୍ନାନ କରି ଚନ୍ଦ୍ରଭାଗା ତୀର୍ଥ ଦାହି
ବିରଞ୍ଚ ନାରାୟଣଂକ ବଦନ ଯେବେ ଚାହିଂ ।୧୬୭
ଜୟତୁ ଜୟତୁ କମଳ ଲୋଚନ ପୀତବାସ
କରୁଣାକର ନାଥ ପ୍ରସନ୍ନ ଆଦେଶ ।୧୬୮
ଜୟତୁ ଦିନକର ନାଥ ଗଗନ ଚୂଡ଼ାମଣି
ଭଗତ ଜନମାନଙ୍କୁ ସଦୟା ଦିନମଣି ।୧୬୯
ଅର୍କ ବିଦାରଣ ନାଥ ଭଗତ ଉଦ୍ଧାରି
ସଦୟ ଉଦ୍ଧାରଣ ନାଥ ବ୍ରହ୍ମାଣ୍ଡ ଅଧିକାରୀ ।୧୭୦
ସଂଗ୍ୟାଂର ବଲ୍ଲଭ ତୁ ପ୍ରସନ୍ନ ସଦୟେ
ଯାବତ କାଳକୁ ନାଥ ତୁହି ସେ ବରଦାୟେ ।୧୭୧
ତିମିର ବିଦାରଣେ ନାଥ ତୁ ପ୍ରସନ୍ନ ଅନାଦି
ଦ୍ରଶନେ ସଂସାର ସାଗର ସଂସିଦ୍ଧି ।୧୭୨
ନମୋ ନମୋ କମଳଲୋଚନ କରତାର
ପ୍ରଳୟ କାଳ ବଞ୍ଚାନ୍ତା ତୁହି ସେ ଭାସକର ।୧୭୩
ସଜ୍ଜନ ତାରଣ ନାଥ ତୁ ଯୋଗେଶ୍ୱର ସ୍ୱାମୀ
ତବ ଚରଣ ପଂକଜ ନାଥ ମମ ପରିଣାମି ।୧୭୪
ତ୍ରଇଲୋକ୍ୟ ଦୀପନ ନାଥ ନମସ୍ତେ ନାରାୟଣ
ଯେ ଅଗତି ସଂସାରକୁ ନାଥ ତୁହି ସେ କାରଣ ।୧୭୫
ତବ ପଦ୍ମପାଦେ ଭଗତି ଭାବେ ସେବି
କାଳ ବଞ୍ଚାଇଲା ନାଥ ସାରୋଳା ଦାସ କବି ।୧୭୬
ଶୁଣ ହୋ ଯୋଗେଶ୍ୱର ବଦୟନ୍ତି ବ୍ରହ୍ମବେତ୍ତା
ଯୁଦ୍ଧେଷ୍ଠି ଆରାଧନା କଲେ ବିରଞ୍ଚ ନାରୟେଣ ଦେବତା ।୧୭୭
ମକର ମାସ ମଧ୍ୟେ ମଉଦଧି ଚନ୍ଦ୍ରଭାଗା
ଯେଥେଂ ସ୍ନାହାନ କଲେ ଖଣ୍ଡିବ ରୋଗବାଧା ।୧୭୮
ବାବୁ ଯେ ତୀର୍ଥେ ସ୍ନାନକରି ଯେ ବୁଡ଼ାଇବ ମଥା
କାଳକର ଦୁଷ୍ଟକୃତ ଯେ ଖଣ୍ଡିବ ସର୍ବଥା ।୧୭୯
ମକର ମାସେ ଚନ୍ଦ୍ରଭାଗା ମଉଦଧି ମଧସ୍ଥାନେ
ଯେବଣ ଜନ ଯେଥି ଯେ କରନ୍ତି ପିଣ୍ଡଦାନେ ।୧୮୦
ଦ୍ୱାଦଶ ପୁରୁଷ ଯେ ଯାଆନ୍ତି ଦେବଲୋକେ
ବଂଶେ ଅଗତି ଯେ ନ ଥାଇ ପିତୃ ଗଣଂକେ ।୧୮୧
ଅନ୍ୟ ଶ୍ରାଦ୍ଧ ସରି ନୋହେ ଦ୍ୱାଦଶ ପରିଯନ୍ତେ
ଯେଥେଂ ପିଣ୍ଡ ଦିଲେ ଯେ ତରନ୍ତି ସମସ୍ତେ ।୧୮୨

ବାବୁ ଯେଉଁଥେ ସ୍ଥାହାନ କରି ଯେ ପୂଜନ୍ତି ବିରଞ୍ଚି
ଗଳୁତ କୁଷ୍ଠ ବ୍ୟାଧି ଥିଲେ ପକାଇ ସର୍ବ ପୋଛି ।୧୮୩

**

## ୬୩. ନୀଳଗିରି ପୂର୍ବ ବୃତ୍ତାନ୍ତ

ଯୁଧେଷ୍ଟି ଦେବେ ବୋଇଲେ ଶୁଣିଲି ଯେହୁ କଥା
ଯେବେ ସଞ୍ଚପି କହିବା ମୋତେ ନୀଳଗିରିର ବାରତା ।୧
କେତେ କାଳହୁଁ ଯେଉଁଥେ ସୟଳ ସ୍ଥାପନ
କେମନ୍ତେ ନାରାୟଣ ଯେଉଁଥକୁ କରିବେ ଆଗମନ ।୨
ମାରକଣ୍ଡେ ବୋଇଲେ ହୋ ଅପାର କାଳର କଥା
ଅନେକ ଅବତାରେ ହରି ବିଜୟେ ସର୍ବଥା ।୩
ସତ୍ୟ ତ୍ରେତୟା ଯେ ଦ୍ୱାପର ଯୁଗ କଳି
ଚାରି ଯୁଗରେ ଜାଣ ଯେ ଗଣ୍ଡାଯେକ ବୋଲି ।୪
ଯେକନ୍ତରୀ ଗଣ୍ଡାରେ ଯେ ବୋଲି ଯେକ ମନୁ
ଚଉଦ ମନୁରେ କଳ୍ପେକ ହୁଅଇ ତନୁ ।୫
ନବକଳ୍ପ ଅନ୍ତରେ ପୃଥିବୀ ହୋଅଇ ନାଶ
କ୍ଷୀରୋଦ୍ରହିଁ ରାଜ୍ୟ କରଇ ଯେତେକ ବରଷ ।୬
ଜଳ ଅନ୍ତରେ ପୁଣି ଉତପତି ହୁଅଇ ଶୂନ୍ୟୁଁ
ଅଣାକାର ପୁରୁଷଂକ ବିକାଶଇ ହାଦେ ତନୁ ।୭
ସେ ମହାତମା ନବ ପୁରୁଷକଇଂ କରଇ ଯାଯେ
ମେଘ ପବନ ଅଗ୍ନି ଚନ୍ଦ୍ର ସୂର୍ଯ୍ୟକଇଂ କରଇ ଉପାଯେ ।୮
ଯେ ନବପୁରୁଷ ଜାତ କରଇ ନବସୃଷ୍ଟି
ମେଦାସୁର ମର୍ଦ୍ଦିକରି ଭିଆଇଲେ ପୃଥୀଗୋଟି ।୯
ଯେ ପୃଥୀର ଭାରାଭର ସଞ୍ଚଯେ ଘଟଣା
ଧାରଣା ପୁରୁଷ ଯେହା ସ୍ରଜିଲାକ ବ୍ରହ୍ମା ।୧୦
ପୁଣି ସ୍ରିଜିଲା ସେ ଯେ ବିଷ୍ଣୁ ମହେଶ୍ୱର
ଯେଉଁ ଉପୁଜଇ ଜଙ୍ଗମ ଥାବର ।୧୧
ବ୍ରହ୍ମା ନିଚଳ ହୋଇଲାକ ବ୍ରହ୍ମ ସାଧି
ଇଶ୍ୱର ଯୋଗେ ବସିଲା ଆତ୍ମା ଯେ ନିରୋଧି ।୧୨
ସୁଖଭୋଗ ଇଚ୍ଛାକଲେ ଦେବ ନାରାୟଣ
ସୁଖେ ଜାତ ହୋଇଲେ ମୃତୁ ଲୋକେ ପୁଣ ପୁଣ ।୧୩
ସୁର ପାବକ ବୋଲିଣ ନାମ ସତ୍ୟ ଯେ ଯୁଗର
ସୋହୋଇ ନାମେ ପୃଥିବୀ ବହିଲା ମହାଭାର ।୧୪
ନରାନ୍ତକ ନାମେ ଭୋଗ କରଇ ଯେ ମନୁ
ସ୍ୱାୟମ୍ଭୁବ ବୋଲି ନାମ ବ୍ରହ୍ମାଂକର ସୁନୁ ।୧୫
ବୃଦ୍ଧକ ନାମେଣ ଯେ ତ୍ରେତୟା ଯୁଗ ଭାଷି
ବୃନ୍ଦାଅର୍କ ବୋଲି ଦ୍ୱାପର ଯୁଗ ପରକାଶି ।୧୬
ସେ ଯୁଗେ ନାରାୟଣ କ୍ରୀଡ଼ାରେ ଯୁଗନ୍ତୁଂ
ମଥୁରା ନଗ୍ରେ ଉପୁଜିବେ ଗୋପେ ରସଖେଳ ହେତୁ ।୧୭
ଅହି ଧାରଣ ବୋଲିଣ ଯେକଇ କନ୍ଦର
ଇନ୍ଦ୍ର ବିବାଦେ ହରି ତୋଳି ଧରିବେ ବାମକର ।୧୮
ପରଦାରା ନିମନ୍ତେଣ ଧର୍ମ ତେଜ୍ୟାକରି
କୁଟୁମ୍ବ ଲୋଚାଯେ ଉପୁଜାଇବେ କୋହ ମୋହେ ପଡ଼ି ।୧୯
କାଦମ୍ବରୀ ରସ ଭୋଳେ ମତ୍ତାରଙ୍ଗ ରସଖେଳେ
କୋହ ମୋହେ ବସିବେ ଶିଆଳିଲତା ତଳେ ।୨୦
ତହିଂ ଆସି ବେଦବର ହୋଇଲେ ପ୍ରବେଶ
ଚାରିମୁଖେ ଚାରିବେଦ କରନ୍ତି ଅଭ୍ୟାସ ।୨୧
ହରିଂକି ବୋଇଲେ ଧାତା କୋହବାକ୍ୟ ବାଣୀ
ପୁରାଣ ପୁସ୍ତକ ଫେଡି କହିଲେ ପୁଣି ପୁଣି ।୨୨
କଳୁ ତୁହି ପରଦାରା ଲୋଭ କି କରି ଭୋଳେ
ସେ ପୁରାଣ ପୁସ୍ତକୁଂ କୃଷ୍ଣ ତୁ ବାହାର ହେଲୁ ବଳେ ।୨୩
ଧାତାର ଯେସନକ କଠୋର ବାକ୍ୟ ଶୁଣି
କୋପେ କଂପି ଉଠିଲେ ଦେବ ଚକ୍ରପାଣି ।୨୪
ବୋଇଲେ ତୁ ହୋଇବୁ ଅମର ମୁଂ ମରିବି ଲୋଭ ମୋହେ
ବ୍ରହ୍ମାକଇଂ ବାମପାଦେ ପ୍ରହାରିଲେ କୋହେ ।୨୫
ବ୍ରହ୍ମାଯେ ବୋଇଲେ ମୁଂ ସରୂପ କହିଲି ତୁ ମୋତେ କୋପ କରୁଂ
ସେହି ବାମପାଦେ ନାରାଜ ତୋର ପଡୁ ।୨୬
ମାରକଣ୍ଡେ ବୋଇଲେ ବାବୁ ଶୁଣ ହୋ ଯୁଧେଷ୍ଟି
ପିତାର ଶାପେ ନାରାୟଣ ଚରଣେ କିରାତ ନାରାଜ ଫୁଟି ।୨୭
ଜାରା ନାମେ ଶବର କରିବ ଶରାଘାତ
ଗ୍ୟାଂନ ପାଇ ସେ ପିଣ୍ଡକୁ ପୂଜା କରିବ ନିୟତ ।୨୮
ଯୁଧେଷ୍ଟି ଦେବେ ବୋଇଲେ ଶୁଣିମା ମାରକଣ୍ଡେ
କିରାତ ହୋଇଣ କରି କାହିଂ ଗ୍ୟାଂନ ତାର ଯେତେ ।୨୯
ବିଷ୍ଣୁକଇଂ ବିନ୍ଧିବାକୁ ସେ ହୋଇଲା ଶକତା
ସେହି ପିଣ୍ଡ ପୂଜିବାକୁ ପୁଣ ହୋଇବ ମହାଗ୍ୟାଂତା ।୩୦
ଶୁଣସି ଯୁଧେଷ୍ଟି ଦେବ ବଦୟନ୍ତି ବ୍ରହ୍ମଋଷି
ସୁରପାବକ ନାମେ ସତ୍ୟଯୁଗେ ବ୍ରହ୍ମଶିଷି ।୩୧

ମନୁକର୍ମଣ ବୋଲିଣ ଯେକଇ ସମ୍ବସରେ
ସମାଦେକ ବୋଲି ଯେକ ମାସ ଆଷାଢ଼ରେ ।୩୨
ମିଥୁନ ମାସେ ଯେ ଶୁକଳ ପକ୍ଷ ଚଉଠି
ଅର୍କବାର ମଘା ନକ୍ଷତ୍ରର ବେଳ ନବଘୋଟି ।୩୩
କଉଶିକ ବ୍ରହ୍ମା ତହିଂ ଆସନ୍ତି ଜଳ ହେରି
ନିତ୍ୟକର୍ମ ବିଧାନେ ସେ ଧାତା ଆହାର୍ଣ୍ଣିକ କରି ।୩୪
ବାହୁଡ଼ଇ ବେଦବର ଆହାର୍ଣ୍ଣିକ ସ୍ନାନୁ
ଶବରୁଣୀଯେ ଦେଖିଲେ ଅସକନ୍ଦ ବନ ନିର୍ଜନୁ ।୩୫
ନିରୋପଇ ବେଦବର ଦେଖିଣ ସେ ବରାଙ୍ଗନା
କାମବଶେ ଅଚେତନ ହୋଇଲେ। ମହାତମା ।୩୬
ସେ କିରାତୁଣୀ ନାମ ଅଟଇ ବିଭାଗୀ
ବେଦବର ନାଥ ଯାଇଂ ଆକ୍ରୋଷିଲେ ବେଗି ।୩୭
ନିର୍ଜନ ଦେଖି ଧାତା ଶୃଙ୍ଗାର କଲେ ଇଚ୍ଛା
ଶବରଣୀ ମେଳେ ଧାତା ପୂରାବନ୍ତି ମନବାଞ୍ଛା ।୩୮
କୃତାନ୍ତକ ନାମେଣ ଶବର ତାହାର ପତି
ଭାର୍ଯ୍ୟା ଲୋଡିଣ ସେ ଧାମଇ କୋପମୃତ୍ତି ।୩୯
ଅନୁଷ୍ଟୁକ ପର୍ବତେ ଥାଇ ଦେଖିଲା ଶବର
ହେଠଗାଢ ଶୃଙ୍ଗାର ଦେଖିଣ କୋପଭର ।୪୦
ପ୍ରତକ୍ଷେ ଓହୋଭେଟ ଦେଖିଲା ଶବର
ବିନ୍ଧିଲା ନାରାଜ କୋପେ ମହାବୀର ।୪୧
ରସେଣ ଶୃଙ୍ଗାର ସେ କରନ୍ତେ କଉତୁକେ
କିରାତ ନାରାଜ ଯାଇଂ ପଡିଲା ବାମ ଅଙ୍ଗେକେ ।୪୨
ବାମଅଙ୍ଗେ ପଡ଼ିଣ ଦକ୍ଷିଣ ଅଙ୍ଗ ଫୁଟି
ସେ ମହାଶର ଭେଦି ଭୂମିରେଣ ଯାଇ କଣ୍ଟି ।୪୩
କିରାତ ଶରରେ ସେହି ଧାତା ଶବରୁଣୀ
ଯେକା ପ୍ରହାରକେ ଅଚେତନ ହୋଇଣ ଢଳି ପଡ଼ିଲେ ଧରଣୀ ।୪୪
ତାହା ଦେଖି ବିଚାର କଲେ ଯମ ଦଇବତ
ନୀତିବନ୍ତ ପୁରୁଷ ହୋଇ ଅନୀତି କଲୁ ହେ ଧାତ ।୪୫
ଯେହ୍ନେ ମୋର ପୁରାଣରେ ଅଛଇ ବେଭାର
ତୁ ଯାଇଂ ଜାତ ହୁଅସି ଶବରଣୀ ଉଦର ।୪୬
ନାରାୟଣ ଯେ ତୋତେ ପ୍ରହାର କଲା ବାମପାଦ
ନାରାୟଣ ପାଦେ ତୋର ବାଣ ହୋଉ ଭେଦ ।୪୭
ନାରାୟଣଂକର ଅନେକ ଅଛି ଅପ୍ରାଧ ବିହନ୍ତା
ତୁ ତାହାଂକୁ କିରାତ ରୂପେ ଶରଘାତ କର ଯା ବିଧାତା ।୪୮

ପାଣ୍ଡବଂକ ଅଗ୍ରତେ କହିଲେ ସୁଦେବର ଋଷି
ସେ କଉଶିକ ବ୍ରହ୍ମା ଜାତ ହୋଇଲେ କିରାତ ରୂପେ ଆସି ।୪୯
ଜାରା କିରାତ ରୂପେ ସେ ଶ୍ରୀକୃଷ୍ଣେ ଶରଘାତ କରି
ସେହି ପିଣ୍ଡଗୋଟି ନେଇ ପୂଜାକଲେ ଆଦରି ।୫୦
ତୁ ଯାହା ପୁଚ୍ଛାକଲୁ ଆହେ ଧର୍ମରାଜା
ବୋଇଲା ଶବର କେସନକେ ବିଷ୍ଣୁ ପାଷାଣ କରଇ ପୂଜା ।୫୧
ପୂର୍ବେ ସ୍ରିଜନା ଯାହା କଲେ ଧାତା ମହାତମା
ସେ ଜାରା ଶବର ପ୍ରତକ୍ଷେ କଉଶିକ ବ୍ରହ୍ମା ।୫୨
ବେଳେ ବେଳେ ଶରଘାତ କରଇ ସେ ଯେହିମତେ
ଯେଥେ ପୂଜା ଘେନିଲେନି ଜଗନ୍ନାଥେ
ଚାରିଲକ୍ଷ ବତିଶ ସହସ୍ର ବର୍ଷ ପରିଯନ୍ତେ ।୫୩
ଆଦିହୁଂ ଯେ ବାଲୁଇ ପର୍ବତ ଦଶ ସହସ୍ର ଯୋଜନ
ଯେତେବେଳେ ବିଷ୍ଣୁ ପ୍ରତିମା ବିଜେ କରନ୍ତି ହୁଅଇ ତନୁ କ୍ଷୀଣ ।୫୪
ପୂର୍ବେ ବଟକେଶ୍ୱର ପଛିମେ ରୁଦ୍ରନନ୍ଦୀ
ଉତ୍ତରେ ବଇତରଣୀ ଦକ୍ଷିଣେ ମଉଦଧି ।୫୫
ଦ୍ୱାଦଶ ଯୋଜନ ଯେ ବିଷ୍ଣୁର ପୁରସ୍ଥଳୀ
ବେଳେ ବେଳେ କ୍ରୀଡାରଙ୍ଗ ଯେଥେ କରନ୍ତି ବନମାଳୀ ।୫୬
ଯଦ୍ୟପି କାମନା ହୋ କରିବୁ ଧର୍ମସୁତ
ବିଷ୍ଣୁ ଅଂଶଲୋକେ ଉତପରି ହୁଅନ୍ତି ଜାଣ ଯେଥ ।୫୭
ଯେ ପଞ୍ଚତୀର୍ଥେ ଯେବେ ମକର ସ୍ନାହାନ କରି
ଜୀବନ୍ତେ ମହେଶ୍ୱର ପଦ ମଲେ ବିଷ୍ଣୁପୁରୀ ।୫୮
ମଉଦଧି ଶ୍ୱେତଗଙ୍ଗା ଯେ ରୋହିଣୀର କୁଣ୍ଡ
ଇନ୍ଦ୍ରଦ୍ୟୁମନ ଆବର ଅଛଇ ମାରକଣ୍ଡ ।୫୯
କୋଟିଯେ ତୀର୍ଥକଯେ ଯେହ୍ନେକ ଫଳଶ୍ରୁତି
ଯେକା ମକର ସ୍ନାହାନ କଲେ ସେହି ଫଳ ଯେଥି ।୬୦
ଯଦ୍ୟପି ମାସେକ କରି ନୁଆରିବ ଅଦକ୍ଷ ପଣେ
ଆଦ୍ୟନ୍ତେ ସ୍ନାନ କରିବ ମକର କୁମ୍ଭ ସଂକ୍ରମଣେ ।୬୧
ଯେତେକଇଂ କର୍ମ ଯେବେ କରି ନୁଆରିବୁ
ମକର ମାସେ ବେଳେ ସ୍ନାହାନ କର ବାବୁ ।୬୨
ଆନଙ୍ଗଳେ କୋଟିଯେ ସ୍ନାନ କଲେ ଫଳ ଯେତେ
ଯେଥେ ଯେକଦିନ ସ୍ନାହାନ କଲେ ଫଳଶ୍ରୁତି ତେତେ ।୬୩
ଯେ ତୀର୍ଥରେ ହାଦେ ପଞ୍ଚୁବଟ ଅଛି
ଯେ ନୀଳ କଳ୍ପବଟ ଚାରିଯୁଗେ ଗଛି ।୬୪

ବାବୁ ଶ୍ୱେତ ନାମେଣ ଯେ ସତ୍ୟଯୁଗେ ହାଦେ ମହାରାଜା
ଶ୍ୱେତ ମାଧବ ଦେବପ୍ରତିମା କଲା ସେହୁ ପୂଜା ।୬୫
ଯେ ମାଧବ ଅଗ୍ରତେ ଯେ ହୁଅନ୍ତି ଅବସାନ
ବ୍ରହ୍ମା ଇନ୍ଦ୍ର ପଦକୁ ସେ ହୁଅନ୍ତି ଭାଜନ ।୬୬
ତାକୁ ଦେଖିଣ ତ୍ରାସ ସେ କରଇ ନାଶକର
ସେହି ପ୍ରତିମା ମୂର୍ତ୍ତି ଗୋପ୍ୟ ହୋଇଲା ଯେ ରୋହିଣୀ
କୁଣ୍ଡ ଭିତର ।୬୭
ବାଞ୍ଛାବଟ ଅଛି ବାବୁ ସେହି ଶ୍ୱେତଗଙ୍ଗା କୂଳେ
ପିତା ଅନ୍ତରୀକ୍ଷେ ତାହା ରଚନା କଲେ ବୁଦ୍ଧିବଳେ ।୬୮
ଇନ୍ଦ୍ରଦ୍ୟୁମନ ବୋଲିଣ ଯେ ଯେକଇ ନୃପତି
ସେ ରାଜା ଉଦ୍ଦେଶ କରିବ ତାହା ଦେଖି ହାଦେ ଯେଥି ।୬୯
ଶୁକମୁନି ମୁଖୁଂ ତହୁଂ ପୁରାଣ ବାଣୀ ଶୁଣି
ଜାରା ଶବର ଶରେ ନାଶିବେ ଚକ୍ରପାଣି ।୭୦
ଯେହା ଶୁଣି ପଚାରିଲେ ଧର୍ମ ନୃପବର
ହେ ମୁନି ମାରକଣ୍ଡେ କଳପୀ ଶରୀର ।୭୧
କହିଲ ଯେ ମୁନି ଜାରା ଶବର ଚରିତ
ସେ ସତ୍ୟଯୁଗେ କଉଶିକ ବ୍ରହ୍ମା ଯେ ନିୟତ ।୭୨
ତ୍ରେତା ଯୁଗେ ଯେ ବାଳିସୁତ ଅଙ୍ଗଦର ରୂପେ ଜାତ ହୋଇ
ଦ୍ୱାପର ଯୁଗରେ ଜାତ ଶବରୀ ଉଦରେ ଯାଇଂ ।୭୩
ତିନିଜନ୍ମ ଯାଇ ସେ ଲଭିଲା ନିଜ ଦେହ
ତୋହୋର ମୁଖୁଂ ଶୁଣି ମୁନି ପାଇଲି ଫିଟିଲା ସନ୍ଦେହ ।୭୪
ଗହନ ସନ୍ଦେହ କଥା ଲାଗିଥିଲା ମୋତେ
ତବ ମୁଖୁଂ ଶୁଣି ମୁନି ପାଇଲି ସମ୍ପ୍ରତେ ।୭୫
କହନ୍ତି ଅଗସ୍ତି ଶୁଣ ମୋର ମନୁରାୟେ
ପୁରାଣ ଛନ୍ଦେ କହନ୍ତି ସୁଦେବ ତନୟେ ।୭୬
ଭବିଷ୍ୟ ବର୍ତ୍ତମାନ ଜାଣନ୍ତି ଯେଉଂମୁନି
ତାହାଂକର ମୁଖରୁ ଶୁଣିଣ ମୁହିଂ ଗ୍ୟାଂନି ।୭୭
କହନ୍ତି ମାରକଣ୍ଡେ ଯୁଝେଷ୍ଠି ଅଗ୍ରତେ
ଇନ୍ଦ୍ରଦ୍ୟୁମନ ବୋଲି ଯେକ ରାଜାୟେ ବିଖ୍ୟାତ ।୭୮
ସେ ଯେ ଉଦ୍ଦେଶ୍ୟ କରିଣ ତାର ମତି
ଶୁଣ ତୁମ୍ଭେ ଯେକମନେ ବ୍ୟାଂସକର ନାତି ।୭୯
ଜାରା ଶବର ବାଣରେ ନାଶ ଯିବେ ଚକ୍ରପାଣି
ଆପଣେ ସ୍ୱଦେହ ଛାଡି ଯିବେ ଯଦୁମଣି ।୮୦
ସେ ପିଣ୍ଡ ଅର୍ଜୁନ ନେଇ କରନ୍ତେ ଦହନି
ଆକାଶେ ଧ୍ୱନିୟେକ କରିବେ ପଦ୍ମଯୋନି ।୮୧
ତୁହୋ ନାଶ ସେ ପିଣ୍ଡ ନ କର ଧନୁର୍ଜୟେ
କଳିଯୁଗେ ନାରାୟେଣ ପୂଜାପାଉ ଯେହି କାୟେ ।୮୨
ଅଗ୍ନିରୁ କାଢି ଅର୍ଜୁନ ପକାଇବ ସିନ୍ଧୁଜଳେ
ସେ ପିଣ୍ଡ ଲାଗିବ ଆସି ନୀଳସୁନ୍ଦର ଶୟଳେ ।୮୩
ସେ କିରାତକୁ ପ୍ରସନ୍ନ ହୋଇବେ ଦେବରାଜା
ଜରା ଶବର କରିବ ସେ ପିଣ୍ଡକଇଂ ପୂଜା ।୮୪
ସେ ଜାରା ଶବରକୁ ନାରାୟଣ ଦେବେକ ଆଦେଶ
କାହାକଇଂ ଆମ୍ଭନ୍ତ ଥିବାର ନ କରିବୁ ପ୍ରକାଶ ।୮୫
ତୁ ଯେବେ ମୋତେ ଜାଣନ୍ତା କରିବୁ ଶବର
ସ୍ୱବର୍ଗ ସହିତେ ତୋର ହେବେ ଅପହାର ।୮୬
ଲଳିତ ନାମେ ଶବରୁଣୀ ତାର ଘରଣୀ
ଦୁଇଜଣହୁଂ ଆନ କେହି ତାହା ନ ଜାଣି ।୮୭
ଗୋପ୍ୟାନ କରି ସେ ଯମନିକ ବନମାର୍ଗେ
ପଞ୍ଚଷଠୀ ବରଷ ସେ ପୂଜିଲା କଳିଯୁଗେ ।୮୮
ସୋମବଂଶେ ରାଜା ଯେ ଗାଲମାଧବ ନୃପତି
ସେହି ସେ ସୋମବଂଶେ ଧରାଇବ ଛତ୍ରୀ ।୮୯
ଇନ୍ଦ୍ରଦ୍ୟୁମନ ବୋଲିକରି ତାହାର ସନ୍ତତି
ସେ ରାଜାର ଅଟଇ ଯେ ଯେହୁ କୀର୍ତ୍ତି ।୯୦
ଗୁଣ୍ଡକେରୀ ନାମେ ଯେ ତାହାର ପାଟ ମହାଦେଈ
ଶାକଲ୍ୟ ଦୀପେ ନରେନ୍ଦ୍ର ହାଦେ ସେହି ।୯୧
ଶୁକମୁନି କହିଲେ ସାର୍ଥକ ଯେହୁ କଥା
ବିଷ୍ଣୁର କଳେବର ରାଜା ଲୋଡଇ ସର୍ବଥା ।୯୨
ଗଣ୍ଡ କଉଶିକ ନାମେ ଯେ ବେଦଶ୍ରବଣ
ବସୁକର ମୂଳେ ଯେହୁ ଚାରି ଯେ ବ୍ରାହ୍ମଣ ।୯୩
ଚାରି ଦିଗକଇଂ ଦୂତ ରାଜା ପେଷିଲେ ଗୁ ପତେ
ବୁଲିଲେ ଅନେକ ଦେଶ ତୀର୍ଥ ଯେ ବନସ୍ତେ ।୯୪
ବସୁକର ବୋଲି ଯେକଇ ଦ୍ୱିଜବର
ସେ ଯାଇ ଭେଟିବ ସେ ଗିରି ନୀଳସୁନ୍ଦର ।୯୫
ଇନ୍ଦ୍ରଯାମୁନି କୂଳେ ଦ୍ୱିଜବର ଯାଇଂ ବୁଲି
ଉଭର କଇଛାଡ଼େ ଦେଖଇ ଶବରର ପଲ୍ଲୀ ।୯୬
ତହୁଂ ସେ ଶବର ଗ୍ରାମେ ପ୍ରବେଶ ହୋଇଲେ
ଯେକ ଶବରୁଣୀକି ସେ ଯାଇଂ ପଥରେ ଦେଖିଲେ ।୯୭
ବିଭୋଷିତେ ବ୍ରାହ୍ମଣ କଲ୍ୟାଣ ତାକୁ ବାଞ୍ଛି
କିରାତୁଣୀ ବୋଇଲା ପଣ୍ଡା ହୋ ସ୍ୱାମୀ ମୋର ବନସ୍ତକଇଂ
ଯାଇଅଛି ।୯୮

କିରାତୁଣୀ ରଖାଇ ସେହି ଯେ ବ୍ରାହ୍ମଣ
ହାଣ୍ଡିତଣ୍ଡୁଳ ଦିଲା ପାକ ଯେ ବିଧାନ ।୯୯
ଶଉରୀ ରାନ୍ଧଣା ବିଧି ବ୍ରାହ୍ମଣ କଲାକ ଭିଆଣ
ପାଚିଣ ବ୍ରାହ୍ମଣ କଲା ସ୍ନାହାନ ଭୋଜନ ।୧୦୦
ଶବର ପ୍ରବେଶ ଯେ ମୃଗଭାର ଘେନି
କଲ୍ୟାଣ ବାଞ୍ଛା ତାହାକଙ୍କ କଲେ ଦ୍ୱିଜମଣି ।୧୦୧
ଶବର ବୋଇଲା ପଣ୍ଡା ହେ କାହିଁ ତୁମ୍ଭର ବାସ
ବ୍ରାହ୍ମଣ ବୋଇଲା ଶାକଲ୍ୟ ଦ୍ୱୀପେ ଅଟେ ମୋ ନିବାସ ।୧୦୨
ଭିକ୍ଷା ଆଧାରେ ମୁଁ ବୁଲଇ ତୀର୍ଥବାସୀ
ଧାର୍ମିକ ବୋଲିଣ ତୋତେ ପ୍ରାର୍ଥନା କଲୁ ଆସି ।୧୦୩
ଅନେକ ଭଗତ ଯେ ହୋଇଲା କିରାତ
ସୁସ୍ନେହେ ବ୍ରାହ୍ମଣ ତହିଁ ରହିଲା ମାସ ସାତ ।୧୦୪
ଜାରା ନାମେ କିରାତ ଯେ ବସୁ ନାମେ ଦ୍ୱିଜ
ବେନିନାମ ଯେକତ ମଇତ୍ର ଅଇଶ୍ୱର୍ଯ୍ୟ ।୧୦୫
ବ୍ରାହ୍ମଣ ପଚାରଇ ଶୁଣ ଗୋ ମିତଣୀ
ନିତ୍ୟାପ୍ରତି ମଇତ୍ର କାହିଁ ଅନ୍ନପାଣି ।୧୦୬
ଶବରୁଣୀ ବୋଇଲା ହୋ ଶୁଣିମା ପଣ୍ଡାଯେ
ଗୁପତେ ଅଛି ଆମ୍ଭର ପାଷାଣ ଦେବତାଯେ ।୧୦୭
ବ୍ରାହ୍ମଣ ବୋଇଲେ ମିତଣୀ ତୋତେ କରିବଇଁ କଲ୍ୟାଣ
ଆମ୍ଭ ପାଇଁ ତୁମ୍ଭେ କହିବ ମିତ ଅଗ୍ରତେଣ ।୧୦୮
ସେ ଦେବତାକଙ୍କ ଦ୍ରଶନ କରାଇବେ ନେଇ
ନୋହିଲେ ମିତଣୀ ମୋର ହତ୍ୟାଦୋଷ ତୁମ୍ଭକଙ୍କ ।୧୦୯
ସେ ଶବରଣୀ ବୋଇଲା ଆସୁ ମୋହୋର ନାଥ
ତାହାଂକର ଆଗେ ବିନୋୟୀ କହିବି ବହୁତ ।୧୧୦
ଶବର ଅଇଲା ଯେ ମୃଗଭାର ଘେନି
ଗୃହରେ ପ୍ରବେଶନ୍ତେ ତାହାକଙ୍କ କହିଲା ଶବରୁଣୀ ।୧୧୧
ଦେବତା ଦେଖିଲେ ଶରଧା କରନ୍ତି ତୁମ୍ଭ ମିତ୍ର
ଶୁଣିକରି ଚକିତ ସେ ହୋଇଲା କିରାତ ।୧୧୨
ପଣ୍ଡା ବୋଇଲେ ଦୃଶକରୁ କିନା ପାଷାଣ ଦେବତା
ଶବର ବୋଇଲା ମଇତ୍ର ଯେ ବଡ଼ାଇ ଗୁପତ ଯେ କଥା ।୧୧୩
ଆନକୁ କହି ନୁଆରଇ ଯେ ବଡ଼ାଇ ବିଶ୍ୱାସ
ଯେ କଥାରେ ମଇତ୍ର ହୋ ତୁମ୍ଭେ ନ ଭରସ ।୧୧୪
ଶବରୁଣୀ ବୋଇଲା ଯେ ବ୍ରାହ୍ମଣ ଆମ୍ଭର ଧର୍ମସାଖା
କଷୋର ନ କର ସ୍ୱାମୀ ବ୍ରାହ୍ମଣକଙ୍କ ବହନ ନେଇ ଦେଖା ।୧୧୪
ତୁଳମାସ ଶୁକ୍ଳପକ୍ଷ ଅଷ୍ଟମୀ ଗୁରୁବାର
ଶ୍ରବଣା ନକ୍ଷତ୍ର ଯେ ଭୋଗ୍ୟ ସେ ଦିନର ।୧୧୫
ବାଳବ ନାମେ କରଣ ବୃଦ୍ଧି ନାମେ ଯୋଗ
ସେଦିନ କିରାତ ବ୍ରାହ୍ମଣକଙ୍କ ନିଲା ସଙ୍ଗ ।୧୧୬
ବିପ୍ରର ମୁଖେ ବାନ୍ଧିଲା ଅନ୍ଧ ଯେ ପଟଳ
ନିଅନ୍ତେ ବ୍ରାହ୍ମଣ ଯେ ବୁଣଇ ମାଗିତିଳ ।୧୧୭
ଚନ୍ଦନ ବନିକାୟେ ଅଗ୍ରବୃକ୍ଷ ତଳେ
ଦେଖାଇଲା ପାଷାଣ ଫେଡ଼ିଣ ଅନ୍ଧ ଯେ ପଟଳେ ।୧୧୮
ଦେଖିଣ ଦ୍ୱିଜବର ହୋଇଲା ପରିଣାମି
ବୋଇଲା ଯେଥେ ଆସି ବିଜେ କରିଛୁ ଦେବସ୍ୱାମୀ ।୧୧୯
ବାହୁଡ଼ନ୍ତେ ଅନ୍ଧପଟଳ ବାନ୍ଧଇ କିରାତ
ଆଗରେ କିରାତ ଚଳଇ ପଛେ ଧରିଣ ବିପ୍ର ହାଥ ।୧୨୦
ପ୍ରବେଶ ହୋଇଲା ଶବର ଆପଣା ପଲ୍ଲୀର
କଲ୍ୟାଣ କରିଣ ସେ ବୋଇଲା ଦ୍ୱିଜବର ।୧୨୧
ସାତମାସ ହୋଇଲାନି ମଇତ୍ର ତେଜ୍ୟାକଲି ଗୃହବାସ
ଯେତେ ଦିନ ତୁମ୍ଭ ସଙ୍ଗେ ବଞ୍ଚିଲି ହରଷ ।୧୨୨
ଆମ୍ଭେ ଯାଉଅଛୁଁ ମଇତ୍ର ହୋ ନିଜ ଭୁବନେଣ
କହିଣ ଗମନ କଲା ବସୁକର ବ୍ରାହ୍ମଣ ।୧୨୩
ଆସ୍ତାନେ ବିଜେ କରିଛି ରାଜ ଇନ୍ଦ୍ର ଯେ ଦ୍ୟୁମନ
ବ୍ରାହ୍ମଣ ଭେଟିଲା ବୃଷଭ ଶୁକଳ ଗୁରୁ ପଞ୍ଚମୀର ଦିନ ।୧୨୪
ଶୁଣ ଦେବ ରାଜନ ପ୍ରସନ୍ନ ଦୀକ୍ଷାଗୁରୁ
ମୁହିଁ ଠାବକଲି ଦେବ ତୁହି ଯାହା ଲୋଡ଼ାକରୁ ।୧୨୫
ପଞ୍ଚବିଂଶ ରାଜା ତୁଲେ ଇନ୍ଦ୍ର ଯେ ଦ୍ୟୁମନ
ପ୍ରବେଶ ଯାଇ ଯମନିକ ତୀର୍ଥେ ଅଜମୀଢ ବନ ।୧୨୬
ସେ ବିପ୍ର ନେଇ ଦେଖାଇଲା ଶବର ପଲ୍ଲୀ
ଛାମୁରେ ମିଳି କିରାତ ଅନେକ ବିନୋୟୀ ବୋଲି ।୧୨୭
ବୋଲନ୍ତି ରାଜନ କିରାତ ରେ ଜୀବନ ତୋର ସାଧୁ
ଆମ୍ଭନ୍ତ ନେଇ ଦ୍ରଶନ କରା ଜଗବନ୍ଧୁ ।୧୨୮
କିରାତ ବୋଇଲା ମୁଁ ବନଚର ଜାତି
ମୁଁ କେହ୍ନେ ଜାଣିମି ତୋର ପାଷାଣ ବୋଲି କେବଣ ମୂରତି ।୧୨୯
ଶୁଣିଣ ରାଜନ ମନେ କ୍ରୋଧ ଯେ ସମ୍ପାଦି
କୁଟୁମ୍ବଯାକ ତୋର ଶବରାରେ ଅସିପତ୍ରେ ପକାଇବି ଛେଦି ।୧୩୦
ବ୍ରାହ୍ମଣ ବୋଇଲା ରାଜନ ଶୁଣ ମୋ ଉତ୍ତର
ପଥରେ ସନ୍ତକଗୋଟି ରଖିଅଛି ମୋର ।୧୩୧

ବ୍ରାହ୍ମଣର ସଙ୍ଗତ ତିଳ ଅଛି ଉଠି
କହ୍ନାଇ ନିଅଇ ଦ୍ୱିଜବର ସେହି ବାଟଗୋଟି ।୧୩୨
ଚନ୍ଦନ ବନିକାଯେ ଅଗର ବୃକ୍ଷର ତଳେ
ନାରାୟଣ ଅଦୃଶ୍ୟ ଗଲେ ଗଗନ ମଣ୍ଡଳେ ।୧୩୩
ବ୍ରାହ୍ମଣ ବୋଇଲା ଯେହିଠାବରେ ଥିଲେ ଦେବହରି
ସମସ୍ତ ସଞ୍ଚାମାନ ତହିଁ ଦେଖିଲେ ଦଣ୍ଡଧାରୀ ।୧୩୪
କିରାତକୁ ନୃପତି ବହୁତ କଷ୍ଟୋର କଲେ
ତୋହୋର ଶିର ଛେଦିବଇଁ ରେ ରୟଣୀ ପାହିଲେ ।୧୩୫
କାହିଁ ଗୋପ୍ୟାନ କଲୁ ରେ ନାରାୟଣ ମୂରତି
ଦେଖାଅ ଅନେକ ଧନରତ୍ନ ଦେବୁଁ ହୋଇବୁ ପୀରତି ।୧୩୬
ରାତ୍ରେ ନାରାୟଣ ରାଜାକଇଁ କହିଲେ ବାରତ
ତୁ କଷ୍ଟୋର ନ କର ଆମ୍ଭର ସଖା ଯେ କିରାତ ।୧୩୭
ତୁ ତାହାକଇଁ ଦୁଖ ନ ଦିଅ ହୋ ଇନ୍ଦ୍ରଦ୍ୟୁମନ ରାୟେ
ଅନେକ ପୂଜା ହୋଇଲା ଆମ୍ଭନ୍ତ ଧର୍ମ ସଭାୟେ ।୧୩୮
ରଜନୀ ପ୍ରଭାତେ ଯାଅ ତୁ ବାରାନିଧି କୂଳେ
ଦାରୁଯେକ ହୋଇ ଲାଗିବି ମୁଁ ଶୁଣ ହୋ ମହୀପାଳେ ।୧୩୯
ସପନ ଚେଜି ରାଜା ଉଠିଲା ଧାତିକାରେ
ଆପଣେ ପ୍ରବେଶ ହୋଇଲା ମଉଦଧି କୂଳେ ।୧୪୦
ଦେଖଇ ଦାରୁଯେକ ଦିଶଇ ଲୋହିତ ବର୍ଣ୍ଣ
ଆକ୍ରୋଷି ତୋଳି ତାକୁ ନୁଆରିଲେ ସର୍ବଜନ ।୧୪୧
ଜାରାଶବର ଯେ ବସୁକର ବ୍ରାହ୍ମଣ
ଦୁହେଁ ତୋଳନ୍ତେ ସେ ଦାରୁ ଉଠିଲେ ତତକ୍ଷଣ ।୧୪୨
ବାମେଣ କିରାତ ଯେ ଡାହାଣେ ବିପ୍ରଧରି
ନେଇଣ ଉଭାକଲେ ନୀଳସୁନ୍ଦର ଗିରି ।୧୪୩
ଶୁଣ ହୋ ଯୁଧେଷ୍ଟି ବଦୟନ୍ତି ମାରକଣ୍ଡେ
ସେ ଦାରୁ ପ୍ରତକ୍ଷେ ନାରାୟଣ ପିଣ୍ଡେ ।୧୪୪
ଯେକବିଂଶ ଦଣ୍ଡ ଉର୍ଦ୍ଧ୍ୱ ବିସ୍ତାର ପାଞ୍ଚଦଣ୍ଡ
ବୋଲନ୍ତି ନୃପତି କେହୁ ସ୍ରିଜିବ ଯେହୁ ପିଣ୍ଡ ।୧୪୫
ଯେହେନେକ ବୋଲି ରାଜା ଭାଳଇ ହୃଦଗତେ
ବୃଦ୍ଧ ବିନ୍ଧାଣି ଗୋଟିଏ ମିଳିଲା ଅଦଭୁତେ ।୧୪୬
କୋଠାର ବାରେସି ଯେ ନିହାଣ ଘଟଣା ଘଟଣି
ସେ ବୋଇଲା ଯେହା ମୁଁ ଦେବଇ ନିର୍ବାଣି ।୧୪୭
ପ୍ରସାଦ ଭିତରେ ସେ ପଶିଲା ବିଶ୍ୱକର୍ମା
ଦେବଦାରୁ ଧର ବୋଲି ଆଗ୍ୟାଂ ଦିଲେ ମହାତମା ।୧୪୮

ଲକ୍ଷେକ ବଳ ଘେନି ଧଇଲା ଇନ୍ଦ୍ର ଯେ ଦ୍ୟୁମନ
ଚାଳି ନୁଆରିଲା ସେ ବିଷ୍ଣୁ ଦାରୁବ୍ରହ୍ମ ।୧୪୯
ବୃଦ୍ଧ ବିନ୍ଧାଣି ବୋଇଲା ହୋ ଛାଡ ତୁମ୍ଭେମାନେ
ଜାରାଶବର ବସୁଦ୍ୱିଜ ଆସନ୍ତୁ ଯେହିସ୍ତାନେ ।୧୫୦
ଆଗ୍ୟାଂ ପାଇଣ ଦୁହେଁ ଯାଇଂ ଦାରୁ ଧରିଲେ ଆକ୍ରୋଷି
ଉଠିଣ ମହାଦାରୁ ପ୍ରସାଦେ ଯାଇଂ ବସି ।୧୫୧
ବିନ୍ଧାଣି ଦାରୁ ଦୁହିନ୍ତି ଭରିଲେ ଭିତରେ
ଜାରା ବସୁକର ବ୍ରାହ୍ମଣ ଅଛନ୍ତି ସଙ୍ଗତରେ ।୧୫୨
ଦିବସ ଅର୍ଦ୍ଧ ଆବର ସମ୍ପୂର୍ଣ୍ଣ ଯେ ରାତି
ଯେକା ଦାରୁ ହୋଇଲାକ ତିନିଗୋଟି ମୃତ୍ତି ।୧୫୩
ଗୁପତେ ନିର୍ବାଣ କରୁଅଛି ବିଶ୍ୱକର୍ମା
ନିଜ ନିର୍ବାଣେ ବିନ୍ଧାଣି ପୁରୁଷ ଉତ୍ତମା ।୧୫୪
ଇନ୍ଦ୍ରଦ୍ୟୁମନ ରାୟେ ସେ ଭାଳଇ ବିଷାଦେ
ଦେଉଳେ ନ ଶୁଭିଲା ତ ବିନ୍ଧାଣି ଶବଦେ ।୧୫୫
ସ୍ୱାଭାବେ ଦେଉଳତ ହୋଇଅଛି ମୁଦ
କିଛିହିଁ ନ ଶୁଭଇ ଠୁକୁଠାକ ଶବଦ ।୧୫୬
ବିନ୍ଧାଣି ହୋଇଲେ ତ ବାରେସି ନାଦ ଶୁଭି
ଫେଡସି କପାଟ ହୋ ବଳେ ଦେଖିବା ପ୍ରାଭବି ।୧୫୭
ବୃଦ୍ଧ ବିନ୍ଧାଣି ଅବା ପଡିଣ ସେହୁ ମଲା
ଯେ ମୋହୋର ବିଷ୍ଣୁ ମନ୍ଦିର ତ ନିଷ୍ଫଳ ହୋଇଲା ।୧୫୮
ଯେତେ ବୋଲି ରାଜା ଯାଇଂ ଫେଇଲା କପାଟ
କିରାତ ବ୍ରାହ୍ମଣ ଦୁହନ୍ତି ପାଇଲାକ ଭେଟ ।୧୫୯
ଦେଖିଲା ପ୍ରତକ୍ଷେ ପାଷାଣ ଯେ ହୋଇଛି ତିନିମୃତ୍ତି
କୃଷ୍ଣ ଶୁକଳ ହାରିତ ବିରାଜଇ ଜ୍ୟୋତି ।୧୬୦
ସତ୍ତ୍ୱ ରଜ ତମ ଯେ ତିନିଗୁଣ କାୟେ
କର ଚରଣ ନାହିଁ ଅଙ୍ଗୁଷ୍ଠି ନାହିଂନା ଉପାୟେ ।୨୬୧
ନାସା କର୍ଣ୍ଣ ନୟନ ଲଲାଟ ଯେ ନ ଦିଶଇ ଶିଖା
ମହା ବଉଦ ମୃତ୍ତି ବିକାଶଇ ତିନିଶାଖା ।୧୬୨
ଜାରାଶବର ବୋଇଲା ହୋ ମନ୍ଦକୃତ୍ୟ କଲୁ ରାୟେ
ଆଜକ ଥିଲେ ଦେଖନ୍ତୁ ଜଗନ୍ନାଥଂକ ପଦ୍ମପାୟେ ।୧୬୩
ଦେଖନ୍ତୁ କରସ୍ଥଳ ଅଙ୍ଗୁଷ୍ଠି କର୍ଣ୍ଣ ନାସା ଆଖି
କଳିକାଳ ଜନେ ଯେ ହୋଅନ୍ତେ ବଡ଼ ସୁଖୀ ।୧୬୪
ପଞ୍ଚନଖ ପଞ୍ଚ ଅଙ୍ଗୁଷ୍ଠି ହରିର ବର୍ଣ୍ଣ ଶିଖା
ଆହୁଟ ଦଣ୍ଡ ବିକାଶଇ ହରିର ବକ୍ଷସ୍ଥଳ ରେଖା ।୧୬୫

ସତ୍ତ୍ୱେ କୁଂକୁମ ବର୍ଣ୍ଣ ସେ ବ୍ରହ୍ମାର ମୂରତି
ତମେ ଶୁକଳ ମହତମା ମହାଦେବ ଉତପରି ।୧୬୬
ରଜେ ନାରାୟଣ ସେ କୃଷ୍ଣବର୍ଣ୍ଣ କଳା
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଯେ ତିନି ଯେ ମେଖଳା ।୧୬୭
ବଳଭଦ୍ର ସୋହୋଦ୍ରା କୃଷ୍ଣ ହୋଇଲେ ତିନିରୂପ
ବଉଦ ବାମନ ଯେହା କେ କରୁ ସଂଚେପ ।୧୬୮
ଯେ ରୂପ ସେ କହିଲେ ଦେବସ୍ୱାମୀ
ତିନିମୂର୍ତ୍ତିଂକି ପଞ୍ଚଭୂତେ ଚିନ୍ତି ଆମି ।୧୬୯
ଯେହି ସରୂପେଣ ତିନି ତିନି ମୂର୍ତ୍ତି
ଯେହି ନୀଳଗିରିରେ ବିଜୟେ ଦଶ ସହସ୍ର ଘାନ୍ତି ।୧୭୦
ଶୁଣିଲୁ ଧର୍ମରାଜା ନୀଳସୁନ୍ଦର କଥା
ଇଦଂ ବାକ୍ୟ କଥୟନ୍ତି ମାରକଣ୍ଡ ମୁନି ଯେବଣ ବାରତା ।୧୭୧
ସେ ନୀଳସୁନ୍ଦର ନାଥ ଚରଣେ ମୋର ସେବା
ଯେ ଅନିର୍ଯ୍ୟାପ ସଂସାରୁ ତାରି ମୋତେ ବିଷ୍ଣୁ ଭୁବନ ଦେବା ।୧୭୨
ତିନିଦେବ ରାମକୃଷ୍ଣ ବ୍ରହ୍ମା ପଦ୍ମପାଦେ
କଳିକାଳ ବଞ୍ଚିଲି ଦେବ ତବ ପରସାଦେ ।୧୭୩
ତୁଳସୀର ବଲ୍ଲଭ ଚରଣେ ଡଳାୟେ ମମ ନିତ୍ୟେ
ଶୁଦ୍ରମୁନି ସାରୋଳା ଦାସ ବଦୟନ୍ତି ସଂସାର ଜନ ହିତେ ।୧୭୪
ସନ୍ତତେ ନମଇଂ ମୁଂ ନର୍ମଦା ସରସ୍ୱତୀ
କଳିକାଳ ଧ୍ୱଂସିନୀ ସାରୋଳା ଚଣ୍ଡୀ ମୂର୍ତ୍ତି ।୧୭୫
ଅଶକ୍ୟ ସାଗର ଗୋ ଶ୍ରୀମହାଭାରଥ ମହାବଳୀ
ଗହନ ବନଲତା ମୁଂ ନୁଆରଇ ପରିକଳି ।୧୭୬
ଗଣନ୍ତେ ନ ସରଇ ଯେହ୍ନେ ସାହେର ତଟ ବାଲି
ତହିଂକି ସମାନ ମୁଂ ମହାଭାରଥ କହିଲି ।୧୭୭
ଇଦଂ ପୃଥକ ପୃଥକ ବହୁତ ବହୁତ ଯେ କଥା
ହୃଦଗତେ ବିକଶିଲେ ମୋର କନ୍ଦର ଦୁହିତା ।୧୭୮
ପ୍ରସନ୍ନେ ଅପର୍ଣ୍ଣା ଯେ ସାରୋଳା ଚଣ୍ଡୀଦେବୀ
ସେ ଯାହା କରିବେ ମୁଂ ତାହା ଲେଖନେ ଲେଖିବି ।୧୭୯
ନ ଶୁଣି ନ ଦେଖି କେ ପାରିବ ନିର୍ଯ୍ୟାପି
ଅଥବା ମୂର୍ଖପଣେ ମୁଂ କହିଲି ଅଦ୍ୟାପି ।୧୮୦
ଆହେ ବୁଧଜନମାନେ ଅଟ ମହାଭାଗ୍ୟଂ
ଦେବ ଶାହାସ୍ତ୍ରେ ନିର୍ଜିତ ସର୍ବଗୁଣେ ଗୁଣଗ୍ୟଂ ।୧୮୧
ବିଷ୍ଣୁ ଅଂଶେ ଜାତ ହୋଇଲେ ନୃପତି
ମହେଶ୍ୱର ଅଂଶେ ଜାତ ହୋଇଲେ ହୋଅଇ ଧନପତି ।୧୮୨
ଗନ୍ଧର୍ବ ଅଂଶେ ଜାତ ହୋଇଲେ ହୋଅଇ ନାନା ବାଦ୍ୟ
ଗୀତ ପ୍ରାପତ
ବିଶ୍ୱକର୍ମା ଅଂଶେ ଜାତ ହୋଇଲେ ଘଟଣ ବିଦ୍ୟା
ଉପଗତ ।୧୮୩
ଅଶ୍ୱିନୀ ଅଂଶେ ଜାତ ହୋଇଲେ ଧାତୁବିଦ୍ୟା ଗାରୁଡ଼ି ହୋଅଇ ସାଧି
ଭୋଜେ ଅଂଶେ ଜାତ ହୋଇଲେ ହଟଚମଣ୍ଡ ବିଦ୍ୟା ସାଧି ।୧୮୪
ବିଦ୍ୟାଧର ଅଂଶେ ଜାତ ହୋଇଲେ ତାଣ୍ଡବ ଭରହ ଭାଷି
ଅସୁର ଅଂଶେ ଜାତ ହୋଇଲେ ହୋଅଇ ଭୋଜନେ
ଅସନ୍ତୋଷି ।୧୮୫
ବିନାୟେକ ଅଂଶେ ଜାତ ହୋଇଲେ ଦିଶଇ ଗଜମର୍ମ
କୁବେର ଅଂଶେ ଜାତ ହୋଇଲେ ପ୍ରାପତ ହୋଅଇ ଧନ ।୧୮୬
ବୃହସ୍ପତି ଅଂଶେ ଜାତ ହୋଇଲେ ସପ୍ତାଙ୍ଗ ପାରଇ ସାଧି
ସହଦେବ ଅଂଶେ ଜାତ ହୋଇଲେ ଦିଶଇ ସର୍ବବୁଦ୍ଧି ।୧୮୭
ନକୁଳ ଅଂଶେ ଜାତ ହୋଇଲେ ଅଶ୍ୱବିଦ୍ୟା ସାଧଇ
କୁମାର ଅଂଶେ ଜାତ ହୋଇଲେ ଓଉଷଧ ବୃକ୍ଷ ଦୃଶ୍ୟହୋଇ ।୧୮୮
ଭୃଗୁଅଂଶେ ଜାତ ହୋଇଲେ ଲକ୍ଷଣ ବିଦ୍ୟା ପ୍ରକାଶି
ନଇରତ ଅଂଶେ ଜାତ ହୋଇଲେ ହୋଅଇ ବାଲୁତ ଭାଷି।୧୮୯
ଖଳ୍ୟକାର ଅଂଶେ ଜାତ ହୋଇଲେ ଚଉର୍ଯ୍ୟ କର୍ମ କରଇ ଠାବ
ଶନିଚର ଅଂଶେ ଜାତ ହୋଇଲେ ହୋଅଇ ରୋଗ ଭୋଗ ।୧୯୦
ବାସବ ଅଂଶେ ଜାତ ହୋଇଲେ ହୋଅଇ ମହାଭୋଗୀ
ଗୋରେଖ ଅଂଶେ ଜାତ ହୋଇଲେ ହୁଅଇ ପରମଯୋଗୀ।୧୯୧
ଯମ ଅଂଶେ ଜାତ ହୋଇଲେ ହୋଅଇ ନିର୍ଦ୍ଦୟେ
ଭୀମ ଅଂଶେ ଜାତ ହୋଇଲେ ହୋଅଇ ନିର୍ଭୟେ ।୧୯୨
ପ୍ରହ୍ଲାଦ ଅଂଶେ ଜାତ ହୋଇଲେ ବଇଷ୍ଣବ ହୁଯେ ।୧୯୩
ମୁନି ଅଂଶେ ଜାତ ହୋଇଲେ କାବ୍ୟ ପାରଇ କହି
ନ ପଢ଼ିଣ ବିଦ୍ୟା ଯେ ସାଧନ କଲି ମୁହିଂ ।୧୯୪
ଝଂକଡ ପୁର ବାସୀ ସିଦ୍ଧ ସାରଳା ଯାର ନାମ
ମୋ ମୋତେ ବଞ୍ଚାଇଲା ଧର୍ମ ଅର୍ଥ ମୋକ୍ଷ କାମ ।୧୯୫
ଅନୁବ୍ରତେ ଦାତବ୍ୟ ଯେବଣ ଦେବୀର ପ୍ରକୃତି
ପରଦୁଖ ଦେଖି ନୁଆରଇ ସଦୟେ ଭୂତନେତ୍ରୀ ।୧୯୬
ତାହାକଇଂ ଭଗତ ମୁଂ ହୋଇଲଇଂ ଜନ୍ମେ ଜନ୍ମେ
ବାଳୁତ ରୂପେ ମୋତେ କହଇ ସକଳ ଧର୍ମେ ।୧୯୭
ପ୍ରସନ୍ନେ ଅପର୍ଣ୍ଣା ଗୋ ଅଭୟେ କାତ୍ୟାନୀ
ତାହାର ଆଗ୍ୟାଂୟେ ମୁଂ ସାରୋଳା ଦାସ ମୁନି ।୧୯୮



## ୬୪. ସତ୍ୟଭାମା ଓ ଦ୍ରୌପଦୀଙ୍କ କଥୋପକଥନ

ସେ ଦଣ୍ଡକା ଅରଣ୍ୟ ଯେ ପଛିମ ପ୍ରଶସ୍ତେ
ବିଷ୍ଣୁଭଦ୍ରା ବୋଲି ଯେକଇ ବନସ୍ତେ ।୧
ଗୁଦ୍ରାଙ୍ଗୀ ବୋଲି ଯେକଇ ନଦୀଗୋଟି
ବଟବେଣୀ ଭେଦି ଦକ୍ଷିଣ ଭାଗୁଂ ଫୁଟି ।୨
ଅନିଳକ ବୋଲିଣ ଯେ ଯେକଇ ପରବତେ
ତହିଂର ଉପରେ ବିଜୟ କଲେକ ପଞ୍ଚୁଭ୍ରାଥେ ।୩
ସନ୍ନିଧେ ଅଛନ୍ତି ଦ୍ରୁଉପଦ କୁମାରୀ
ଋଷିମାନେ ସମସ୍ତେ ଜଳକ୍ରୀଡ଼ା କରି ।୪
ବଇଶାଖ ଶୁକଳ ପକ୍ଷ ଦ୍ୱିତୀୟାର ତିଥି
ରୋହିଣୀ ନକ୍ଷତ୍ର ଯେ ବାର ବୃହସ୍ପତି ।୫
ବାଳକ ନାମେ କରଣ ଶୋଭନ ଯେ ଯୋଗ
ବୃଷ ସଂକ୍ରାନ୍ତିକି ସତାଇଶ ଦିନ ଭୋଗ ।୬
ସେ ଦିନ ନାରକା ବଧକରି ବନମାଳୀ
ଆଣିଲେ ଧନରତ୍ନ ଷୋଳ ସହସ୍ର କନ୍ୟା ଅଗୁଳି ।୭
ସତ୍ୟଭାମା ସାରଥି ଜଗନ୍ନାଥଂକର ରଥେ
ଯୁଧେଷ୍ଠିଂକି ଭେଟିଲେ ବିଷ୍ଣୁଭଦ୍ରା ବନସ୍ତେ ।୮
ଆସ୍ତାନ ଦେଖି ହରି ନନ୍ଦିଘୋଷ କଲେ ତେଜ୍ୟା
ଯୁଧେଷ୍ଠିଙ୍କ ଚରଣେ ପ୍ରଳମ୍ଭ ତ ଦେବରାଜା ।୯
ନାରାୟଣଂକୁ ଦେଖି ସାନନ୍ଦ ଧର୍ମସୁତ
ଆସ୍ତାନ ତେଜି ଦେବ କଲେକ କୋଳାଗ୍ରତ ।୧୦
ଆଶ୍ରମବଟ ତଳରେ ବିଜୟେ ଦ୍ରୁଉପଦୀ
ପାଞ୍ଚାଳୀର ସନ୍ନିଧେ ଯାଇଂ ବିଜୟେ ଶକ୍ରାବତୀ ।୧୧
ଦ୍ରୁଉପଦୀ କୋଳାଗ୍ରତ କରନ୍ତି ଯେ ସତ୍ୟଭାମାଂକୁ
କୁଶଳ ବାରତା ଯେ ପଚାରନ୍ତି ତାହାଂକୁ ।୧୨
ସତ୍ୟଭାମାଯେ ବୋଇଲେ ଶୁଣ ଗୋ ମହାଦେବୀ
ସ୍ତିରୀକୁଳେ ଜାତ ହୋଇ ତୁମ୍ଭେ ବଡ଼ାଇ ସାଧବୀ ।୧୩
ଯେ ମହୀମଣ୍ଡଳେ ଗୋ ଜୀବନ ତୋର ଧନୀ
ସର୍ବଗୁଣେ ସୁଲକ୍ଷଣୀ ତୁମେ ପ୍ରତକ୍ଷେ ଅଟ ଯିଗ୍ନସେନୀ ।୧୪
କଥାଯେ ପଚାରିବି ଗୋ ଅଛଇ ମୋର ଇଚ୍ଛା
ଭାବେ କହିବା ଗୋ ତୋତେ କଲଇଂ ମୁଂ ପୁଚ୍ଛା ।୧୫
ଦ୍ରୋପଦୀ ବୋଇଲେ ଗୋ ଯାର ଶ୍ରୀକୃଷ୍ଣ ବଲ୍ଲଭ
କେଉଂଣ କଥାକୁ ତୋତେ ଅବା ହୋଇଛି ଅସମ୍ଭବ ।୧୬
ଅଥବା ମୋହୋର କହନ୍ତେ ଯେବେ ହୋଇବ
ତୋହୋର କାର୍ଯ୍ୟସିଦ୍ଧି
କହିବା ତୋହୋର ଗୋ ଅସଖ୍ୟ କେଉଂଣ ବୁଦ୍ଧି ।୧୭
ପାଞ୍ଚାଳୀର ଅଗ୍ରତେ ପୁଚ୍ଛାକଲେ ଶକ୍ରାବତୀ
ଯେକା ପୁରୁଷକୁ ଆମ୍ଭେ ଲକ୍ଷେକ ଯୁବତୀ ।୧୮
ଯେକକୁ ଆରେକ ଆମ୍ଭେ ରୂପେ ବରାଙ୍ଗନା
ଅନନ୍ତ କୋଟି ବ୍ରହ୍ମାଣ୍ଡକୁ ଆମ୍ଭେ ଅପୂର୍ବ ଅଟୁ ସିନା ।୧୯
ଅନେକ ବିନୋୟୀ ଆମ୍ଭେ ଥାଉଂ ଦିବାରାତି
ଯେତେ କନ୍ୟାରେ ମନାଇଂ ନୁଆରୁ ଯେକ ପତି ।୨୦
ତୋହୋର ଚରିତ କେମନ୍ତ ଅଟଇ ଗୋ ମାଯେ
ଯେକାସ୍ତିରୀ ଗୋ ପଞ୍ଚୁପତିଂକ ଭଜାଯେ ।୨୧
କେଉଣ ମଉଷଧି ମନ୍ତ୍ର ଜାଣୁ ଗୋ ଜଡିଗୁଣ୍ଡି
ଭାବେଣ କହିବା ମୋତେ ତହିଂର ବାକ୍ୟଖଣ୍ଡି ।୨୨
ଯେଉଂଣ ମନ୍ତ୍ରେ ମୁଂ ଗୋ ମୋହିବି ଚକ୍ରପାଣି
ମୋତେ ଯେହା ଭାବେ କହିବା ଗୋ ଗୋସାମଣି ।୨୩
ଅପାର ଅଳଂକାର ଦିଲେକ ସତ୍ୟଭାମା
ବହୁତ ବିନୋୟୀ ବୋଲନ୍ତି ଭୃତ୍ୟପଣେ ଅନୁକ୍ରମା ।୨୪
ଅଥବା ଭାବ ଯେବେ ନୋହିବ ତୋହୋରି
ତୋତେ କିସ ବୋଲିବି ଯିସ କର୍ମ ମୋହୋରି ।୨୫
ବଦୟନ୍ତି ପାଞ୍ଚାଳୀ ଗୋ ଶୁଣ ସତ୍ୟଭାମେ
ପଞ୍ଚୁପତି ପ୍ରାପତ ମୋତେ ପୂର୍ବର କର୍ମ ଅନୁକ୍ରମେ ।୨୬
ନ ଜାଣଇ ମଉଷଧି ନ ଜାଣଇ ମନ୍ତ୍ରଗୁଣ୍ଡି
ନୁହଇ ଗ୍ୟାନ ଦେଇ ମୁଂ ନ ଜାଣଇ ଭଣ୍ଡି ।୨୭
ବ୍ରତମାନେ ବ୍ରତନ୍ତି ମୋହୋର ନିଜ ପତି
ମୁହିଂ ବିଚାରି ଖଟଇ ତାହାଂକର ପ୍ରକୃତି ।୨୮
ନିତ୍ୟ ସାଧ୍ୟ ଅର୍ଥେ ସାଧଇ ନିତ୍ୟକର୍ମ
ଅନୁବ୍ରତେ ମୋତେ ସଦୟେ ଇଚ୍ଛା ଦେବଧର୍ମ ।୨୯
ନବ ଅଇବ୍ରତ ସୂପକାର ବିଧି
ନିତ୍ୟେ ବୁଝାବଇଂ ରାନ୍ଧଣା ପାକସିଦ୍ଧି ।୩୦
ନବଲକ୍ଷ ଖଟିଥାନ୍ତି ଧାଇ ପରିବାରୀ
ସବୁନ୍ତିହିଂ ଚରଚଇ ମୁଂ ନିତ୍ୟକର୍ମ ବେଭାରି ।୩୧
ଅଶ୍ୱଶାଳ ଗଜଶାଳ ସବୁନ୍ତି କରଇ ଚରଚା
ବୁଭୁକ୍ଷିତ ଦେଖିଲେ ସବୁନ୍ତି ଦିଅଇ ସଞ୍ଚା ।୩୨
ଦୁଖୀ ଅଭାଗ୍ୟବନ୍ତ ମୁଂ ନୁଆରଇ ଦେଖି

ଅଥବା ନିରାଶ ନୁଆସଇ ମୋହୋର ବାକି ।୩୩
ମିଥ୍ୟା ବାକ୍ୟ ନଆସଇ ମୋତେ ହାଦେ ଭଲେ
ସମସ୍ୟା ନ ଦିଅଇ ମୁଂ ଅସଜନ ଦେଖିଲେ ।୩୪
ମାତାପିତା ସ୍ୱାମୀ ଗୁରୁ ଅତିଥି ଦେବତା
ଯେହାନ୍ତ ଆରାଧନା କରଇ ନିରିଭ୍ରାନ୍ତା ।୩୫
ତପୋଧନ ଦେଖିଲେ ବସଇ ମୋର ପ୍ରୀତି
ପରଛାୟେ ନୁଆସଇ ଅବିଧି ପରକୃତି ।୩୬
ସ୍ୱାମୀଙ୍କି ଆଦିକରି ଦାସଦାସୀଗଣ ଯାଯେ
ସବୁନ୍ତି ମେହୋର ହୃଦଗତେ ଯେକାଧାୟେ ।୩୭
ସମସ୍ତେ ଜାଣନ୍ତି ଯେ ମୋହୋର ପଞ୍ଚୁପତି
ଉଚ୍ଚ ନୀଚ ମୋର ନାହିଂ ସବୁନ୍ତିହିଂ ଯେକ ଭକ୍ତି ।୩୮
ସଦା ସର୍ବଦାୟେ ବ୍ରତନ୍ତି ଯେଉଂଣ ଜନ
ତାହାଂକୁ ଅଭ୍ୟାଗତ ଧାତା କରିବ କେସନ ।୩୯
ଧାର୍ମିକ ବିବେକ ପଣ୍ଡିତ ସୁଭାଗ୍ୟ
ଧୃତି ଶ୍ରୁତି ଦେଖିଲେ ଜାଣଇଂ ଯେହ୍ନେ ଭିଗ୍ୟଂ ।୪୦
ଦ୍ରୋପତୀ ବୋଇଲେ ଆଗୋ କଲ୍ୟାଣୀ ଶୁଣସି ଶକ୍ରାବତୀ
ମନ୍ତ୍ର ଅଉଷଧିର ଯେସନେକ ରୀତି ।୪୧
ଗ୍ୟାନପୁର ବୋଲିଣ ଯେକର ହାଦେ ନଗ୍ରେ
କର୍ଣ୍ଣକେଶରୀ ବୋଲି ତହିଂର ଯେକ ଶୂଦ୍ରେ ।୪୨
ସେ କର୍ଣ୍ଣକେଶରୀ ମଙ୍ଗଳ ଚଉଠିର ଦିନ
ସାଲୁମତୀ ଭାରିଯାକୁ ସେ ବୋଇଲେ ବଚନ ।୪୩
ମୁହିଂ ତୋତେ ସଂଘାତୁଣୀ ଗୋ ବୋଲଇ ସଦିଭାବେ
କନ୍ୟା ଗୋଟିୟେ ଥୋଇବାକୁ ମୁଂ ଇଚ୍ଛା କରଇ ଯେବେ ।୪୪
ମାସକରେ ଥରେ ତୋର ପାକା ପରସନ
ସପ୍ତଦିନ ରାତ୍ରେ ଆମ୍ଭେ ହେବା ଯେକାସନ ।୪୫
ଶୁଣିଣ ବିରସ ସେ ହୋଇଲା ସାଲୁମତୀ
ଲୋଡଇ ମନ୍ତ୍ର ଅଉଷଧି ରାଉଳଆଣୀ ଚଉକତି ।୪୬
ଅନେକ ଧନଦେଇ ସେ ଫୁଟିବ ମନ୍ତ୍ରକୁ
କଉଣସି ମତେ କାର୍ଯ୍ୟସିଦ୍ଧ ନୋହିଲା ତାହାକୁ ।୪୭
କରଞ୍ଜକ ନାମେଣ ଯେକଇ ପିଚାଶୀ
ଅନେକ ଭଣଇ ସେ ନଗ୍ରେଣ ଆସି ପଶି ।୪୮
ଯେକାନ୍ତେ ରାଇ ତାକୁ ବୋଲଇ ସାଲୁମତୀ
ସୁହାଗ ଅଉଷଧି ଖଣ୍ଡିୟେ ଦେବୁ ମୁଂ ହୋଇବି
ସ୍ୱାମୀରେ ଭଗତି ।୪୯
ଅନେକ ଭଗତି ଭାବେଣ ମୁଂ ହୋଇଲି ପରିଣାମି
ତଥାପି ଆନ ଭାରିଯା କରିତେ ଲୋଡଇ ମୋର ସ୍ୱାମୀ ।୫୦
ସ୍ୱାମୀ ମୋ ଯେମନ୍ତେ ନୁଆଣିମେ ଆନ ଘରଣୀ
ତହିଂକି ମନ୍ତ୍ର ଗୋଟିୟେ ଯେବେ ଦେବୁ ଗୋ ଯେହିକ୍ଷଣି ।୫୧
ମୂଳିକା ଅଉଷଧି ଖଣ୍ଡିୟେ ଦିଲାକ ପିଚାଶୀ
ବୋଇଲା ମଧୁର ତିଉଣେ ଯେହାକଇଂ ବାଟି ଦେସି ।୫୨
କିଛି ଧନ ଘେନିଣ ତହୁଂ ପିଚାଶୁଣୀ ଚଳିଗଲା
ଅର୍କବାର ଦିନେ ତାହା ଭୋଜନ ବେଳେ ପରଶିଲା ।୫୩
ଆଗୋ ସତ୍ୟଭାମା ସ୍ତିରୀଂକର ଯେସନେକ ମନ୍ଦବୁଦ୍ଧି
କାଳେଣ ହୋଇଲା ସେ ବିପାକ ମଉଷଧି ।୫୪
ରୋଦରି ରୋଗ ପ୍ରାୟେକ ବଢ଼ିଲା ତାର ପେଟ
ପ୍ରାଣତ୍ୟାଜ ହୋଇଲା ସେ କାଳର ନିକଟ ।୫୫
ସମୟେକେ ସାଲୁମତୀ ଭାରିଯା ତାର ମଲା
କୃତାନ୍ତକ ଦେବତା ଛାମୁରେ ବିଚାର ହୋଇଲା ।୫୬
ନାଶକର ବୋଇଲେ ଯେ ଅଟଇ ସ୍ୱାମୀଦ୍ରୋହୀ
ଯେ ମୋଢ଼ୀ ପାମେରୀର ହାଦେ ମୁଖହିଂ ନ ଚାହିଂ ।୫୭
ଓଉଷଧି ଦେଇଣ ଯେ ସ୍ୱାମୀକି ନାଶକଲା
ତିଳ ପ୍ରମାଣେ ମାୟେଂସ କାଟ ବୋଇଲା ।୫୮
କୋପେଣ ବୋଇଲା କୃତାନ୍ତେକ ଦଣ୍ଡଧର
ଯେହାର ମାୟେଂସ ନେଇ ତମ୍ୟାଭାଣ୍ଡେ ଭର ।୫୯
ତିନି ବରଷ ପରିଯନ୍ତେ ମାୟେଂସ ତାର ପୋଡି
ଜୀର୍ଣ୍ଣ କୂପେ ପକାଅ ନେଇ ମଣ୍ଡୁକୀ ଜୀବ କରି ।୬୦
ଦ୍ରୋପତୀ ବୋଇଲେ ଗୋ ଶୁଣ ସତ୍ୟଭାମେ
ମଉଷଧି କଲା ପ୍ରକୃତିରୁ ସ୍ତିରୀଂକର ଯେସନେକ ମନ୍ଦକର୍ମେ ।୬୧
ପୁଣ୍ୟ ଅରଜିଲେ ହୋଅଇ ସଉଭାଗ୍ୟବନ୍ତୀ
ଅନୀତି କର୍ମେ ନ ଥିଲେ ସ୍ତିରୀଂକର ସଦଗତି ।୬୨
ମୁହିଂତ ଦେଖିଲି ତୋର ସଉଭାଗ୍ୟବନ୍ତୀ ପଣ
ଅର୍ଦ୍ଧଆତ୍ମା ତୋତେ କରିଛନ୍ତି ନାରାୟଣ ।୬୩
ତୋହୋରେ ଇନ୍ଦ୍ରଦେବତାରେ ସେ ଅପ୍ରୀତି ହୋଇଲେ
ପାରିଜାତକ ତରୁ ହରି ହରିଲେ ତୋର ବୋଲେ ।୬୪
ଗୋସିଂହ ବଧ ଦେବୀ କରାଇଲୁ ଯେକା
ତୋହୋରେ ଯେବେ ସେ ବଧ ଗଲାକ ନାରାକା ।୬୫
ଜାଣିଣ ଖଟିଲେ ସେ ସ୍ୱାମୀର ପ୍ରକୃତି
ତେମନ୍ତେ ହୋଇ ସେ ସ୍ୱାମୀରେ ସଉଭାଗ୍ୟବନ୍ତୀ ।୬୬

ତପେଣ ବ୍ରହ୍ମ ଯେ ହରଷେଣ ଧର୍ମ
କାଳେଣ ପାପତାପେ ହୋଇଲା ଅପକର୍ମ ।୬୭
କୋପେଣ ଶାନ୍ତି ଯେ ଦମ୍ଭେଣ କୃତାର୍ଥୀ
ଭୟେଣ ପ୍ରକୃତି ଯେ ଲୟେଣ ନିଭ୍ରାନ୍ତି ।୬୮
ପୁରୁଷର ବେଭାର ଯେ ଚଉଷଠି କଳା
ଯେଥକୁ ଶୀତଳଭାବ ଗୋ ଅଟନ୍ତି ଅବଳା ।୬୯
ମାଗୋ ଜନ୍ମହୋଇ ପରେ ହୋୟେ ହୃଦର ବଲ୍ଲଭୀ
ପୁତ୍ର ପଉତ୍ରୀ ଉପୁଜିଲେ ସମସ୍ତ ସମ୍ଭବୀ ।୭୦
ତିନିଅକ୍ଷର ଯେ ଅଟଇ ସ୍ତିରୀଂକର ନାମ
ପ୍ରଥମ ଅକ୍ଷରେ ମାଆପଦ ବ୍ରହ୍ମ ।୭୧
ଦୁଇ ଅକ୍ଷରେ ଆଈ, ତିଜ ଅକ୍ଷରେ ପୁଅ
ଯେ ବିଧିରେ ସ୍ତିରୀଂକିଗୋ ଲାଗିଲା ବଡ଼ ସ୍ନେହ ।୭୨
ମାତାପ୍ରାୟେ ପାଳି ଗୋ ଆଈ ପ୍ରାୟେ ସେନେହି
ପୁତ୍ରପ୍ରାୟେ ଭଗତ ହୋଇ ସେବିବଟି ସେହି ।୭୩
ଯେ ବିଧିରେ ମାଇପ ଗୋ ସ୍ତିରୀଂକର ତିନିନାମ
ଯେ ବିଧି ତିନିକର୍ମରୁ ତିରୀଂକର ନାମ ।୭୪
ପତି ଉପଗତେ ଆସନ ପରିତେଜ୍ୟା
ଅତିଅନ୍ତ ପ୍ରୀତିରେ ମଣାଇବ ଶେଯ୍ୟା ।୭୫
ଆଗୋ ସତ୍ୟଭାମା ଯେସନେକ ବେଭାରେ ଖଟିଲେ ସ୍ୱାମୀଂକି
ଆବର ମନ୍ତ୍ର ମଉଷଧିମାନ ଲୋଡିବ କାହିଂକି ।୭୬
ସେ ଯେ ଅର୍ଣ୍ଣପୂର୍ଣ୍ଣା ଅନାଦି ସିଦ୍ଧ ବୁଦ୍ଧି
ସୁବାକ୍ୟ କହିଣ ସତ୍ୟଭାମାଂକୁ ପ୍ରବୋଧି ।୭୭

**

# ବିରାଟ ପର୍ବ

## ୬୫. ପାଣ୍ଡବଙ୍କର ଗୁପ୍ତ ବେଶ ଧାରଣ କରି ରହିବାର ମନ୍ତ୍ରଣା

ବ୍ୟାସ ବାସୁଦେବ ଆଉ ଧଉମ୍ୟ ପୁରୋହିତେ
ପାଣ୍ଡବ ପଞ୍ଚବୀରେ ଯେ ଦ୍ରୋପତୀ ସହିତେ ।୧
ଯେତେକ ରହିଣ ସେ କରନ୍ତି ଭାଳେଣି
ଗହନ ଘୋର ଅଟବ୍ୟା ସେ କେହିତ ନ ଜାଣି ।୨
ମଣିଭଦ୍ରା ବୋଲିଣ ଯେବଣ ନଦୀଗୋଟି
ବହଇ ଉତ୍ତରାୟଣୀ ଗଣ୍ଡୁକୀ ନଦୀ ଫୁଟି ।୩
କରୁଣାକର ବୋଲି ଯେ ଯେକଇ ବଟତଳେ
ବସିଣ ଭାଳନ୍ତି ଯେ ମଣିଭଦ୍ରା ନଦୀକୂଳେ ।୪
ଗୋବିନ୍ଦ ବୋଇଲେ ଯେ ଯୁଧେଷ୍ଠିଙ୍କି ପରିମାଣି
ବିରାଟର ଭୃତ୍ୟ ତୁମ୍ଭେ ନୋହିବଟି ଦେବସ୍ୱାମୀ ।୫
ବିରାଟ ସମାନେ ତୁମ୍ଭେ ବସିବ ସଭାର
ତେବେ ସେ ଭ୍ରାଥେ ଦ୍ରଶନ କରିବେ ଆସ୍ତାନର ।୬
ସ୍ୱାମୀ ତୁମ୍ଭର ଯେ ବିରାଟ ନ ଜାଣଇ ପରକୃତି
ଭାଇଂକର କୋପେ କି ବ୍ରତଇ ମଛପତି ।୭
ଆହେ ଭୀମ ଅରଜୁନ ନକୁଳ ସହଦେବ
ଆମ୍ଭର ବାକ୍ୟ ଶୁଣି ବାବୁ ଚାରି ଯେ ପାଣ୍ଡବ ।୮
ସମସ୍ତେ ତୁମ୍ଭେ ଥିବ ବିରାଟ ରାଜ୍ୟେ ଗୋପ୍ୟ ହୋଇ
ଅନୁବ୍ରତେ ଥିବଟି ଦ୍ରୋପତୀଂକି ଲୟେ ଦେଇ ।୯
ଯେ ଅବା ମସ୍ୟଦେଶେ ଦ୍ରୋପତୀଙ୍କି ବୋଲିବ ଅନୀତି
ଅବଶ୍ୟ ନାଶିବ ତାହା କରିବ ବିନଶ୍ୟତି ।୧୦
ଗୁପତେ ନାଶିବ ତାହା ଜାଣନ୍ତା ନୋହି କେହି
ଜାଣନ୍ତା ହେଉ ପଛେ ତହିଂକି ବିରୋଧ ନାହିଂ ।୧୧
ଅଥବା ଜାଣନ୍ତା କେହି ହୋଇବାକ ଯଦି
ସେ କଥା ମୋତେ ଲାଗିଲା ମୁଂ ହୋଇବି ପ୍ରତିବାଦୀ ।୧୨
ଅଥବା ଯେହାକୁ ପ୍ରକାଶ କରିବ ଯେ ଯଦି
ଚକ୍ରମାରି ତାର ଶିର ପକାଇବି ଛେଦି ।୧୩
ଯୁଧେଷ୍ଠିଙ୍କି ଭ୍ରଛନା ବୋଲିବ ଯେ ଅବା
ତାହା ନାଶ ତୁମ୍ଭେ କରିବଟି ବାବା ।୧୪
ନାରାୟଣଂକ ବଚନ ଶୁଣିଣ ସର୍ବେ କର୍ଣ୍ଣେ
ସାନନ୍ଦ ହୋଇଲେ ଶୁଣି ପାଣ୍ଡବ ପାଞ୍ଚଜଣେ ।୧୫
ବ୍ୟାସେ ବୋଇଲେ ବିରାଟେ କୋପ ନ କରିବୁ ଭୀମ
ଗୋପ୍ୟାନ ହୋଇବୁ ସେ ନୋହିବୁ ଉତକର୍ମ ।୧୬
ଅଗ୍ୟାଂତବାସ ବରଷେ ତେରଦିନ ପରିଯନ୍ତେ
କ୍ଷିଦ୍ରେହେଂ ଜାଣନ୍ତା ନୋହିବ ଥିବଟି ଗୁପତେ ।୧୭
ଯେତେକର ମଧ୍ୟେ ଯେବେ ହୋଇବଟି ଜାଣନ୍ତା
ବାହୁଡ଼ି ବନବାସ ବାର ବରଷ ଯୁଗତା ।୧୮
ଯେ କଥା ଶୁଣି ମଉନ ହୋଇଲେ ଚାରିଜଣ
ଯେଥକୁ ହେ ଜଗନ୍ନାଥେ ଆମ୍ଭେ ତୋହୋର ଶରଣ ।୧୯
ତୁ ଦେବ ଜଗତମୋହନ କରୁଣାମଛଳ
ତୁହି ଯେ ରକ୍ଷା ନାଥ କରିବୁ ସର୍ବକାଳ ।୨୦
ଆମ୍ଭର ଭାରା ଦେବ ନ ସହଇ ମେଦିନୀ
କେମନ୍ତେ ବିରାଟ ସଂହରିବଟି ପ୍ରଭୁପଣ ଘେନି ।୨୧
ଗୋବିନ୍ଦେ ବାକ୍ୟ ଯେ ଦିଅନ୍ତି ଅଥବା
ମାଗୋ ପାଞ୍ଚାଳୀ ତୁ ଶ୍ରୀକୃଷ୍ଣଙ୍କୁ କରିଥିବୁ ସେବା ।୨୨
ମାଗୋ ମହତ ଜନକୁ ଯେ ପଡ଼ଇ ପ୍ରମାଦ
ସହି ପାରିଲେ ପରମ ପଣ୍ଡିତ ହୁଅଇ ଲଭଇ ପରମ ପଦ ।୨୩
ଦ୍ରୋପତୀ ବୋଇଲେ ତୁହୋ ସୟଳ ଚିନ୍ତାମଣି
ତୁ ମାତ୍ର ଲୟେ ନ ଛାଡ଼ିବୁ ଆମ୍ଭନ୍ତ ଚକ୍ରପାଣି ।୨୪
କେତେକ ମାତ୍ର ସେ ଅଗ୍ୟାଂତବାସ ବୋଲି
ତୋହୋର ପ୍ରସାଦେ ହରି ବଞ୍ଚିବୁ ଆମ୍ଭେ କାଲି ।୨୫
ଜନଘୋଷ ବୋଲି ଯେ ଯେକବିଦ୍ୟା ଗୋଟିୟେ
ପାଣ୍ଡବନ୍ତ ପ୍ରସନ୍ନେ ଶିଖାଇଲେ ପ୍ରଭୁ ଦେବରାୟେ ।୨୬
ଯେମନ୍ତ ପ୍ରସନ୍ନେ ତୁମ୍ଭେ ଚିହ୍ନିବ ସବୁନ୍ତି
କେହି ଚିହ୍ନି ନୁଆରିବେ ତୁମ୍ଭ ଚିହ୍ନମୃତ୍ତି ।୨୭
ମନ୍ତ ପରୀକ୍ଷ କରାଇଲେ ଜନାର୍ଦ୍ଦନ
ଯୁଧେଷ୍ଠି ଧବଳ ବର୍ଣ୍ଣ ଦିଶିଲେ ପାଣ୍ଡୁର ବର୍ଣ୍ଣ ।୨୮
ଭୀମସେନ ଶରୀର ଗଉର ବର୍ଣ୍ଣ ଦିଶି
କିଂଶୁକ ପୁଷ୍ୟ ପରାୟେ ତାର ଶରୀର ପ୍ରକାଶି ।୨୯
ଅର୍ଜୁନ ଶ୍ୱରୀର ଯେ ନୀଳଉତ୍ପଳ ପ୍ରାୟେ
ଶୁଦ୍ଧ ସଷ୍ଟିକ ଜାଣି ଦିଶିଲା ଧନୁର୍ଜୟେ ।୩୦
ନକୁଳ ଶ୍ୱରୀର ଯେ ଶୁଦ୍ଧ ସୁବର୍ଣ୍ଣ ବର୍ଣ୍ଣ
ଲୋହିତ ତମ୍ୱା ଜାଣି ଦିଶିଲା ମାଦ୍ରୀର ନନ୍ଦନ ।୩୧
ଢଳିତ ସୁବର୍ଣ୍ଣ ଜାଣି ଦ୍ରୋପତୀର କାୟେ
ଶ୍ୱରୀର ବିକାଶିଲା ଗଉର ବର୍ଣ୍ଣ ପ୍ରାୟେ ।୩୨

ଦେଖ ହୋ ମହାତ୍ମା ନାରାୟଣଂକ ମନ୍ତ୍ରଗୋଟି
ଯେକା ମନ୍ତ୍ରକେ ସବୁରି ବର୍ଣ୍ଣମାନ ଯେ ଲେଉଟି ।୩୩
ଅଦୃଶ୍ୟ ଉଲୁକ ବିଦ୍ୟା ଗୋହନ ମନ୍ତ୍ର ବେନି
ପାଣ୍ଡବନ୍ତ କହିଲେ ଆବର ଢିଘ୍ନସେନି ।୩୪
ଯେସନେକେ ଅନେକ ମତେ ସେ ପାଣ୍ଡବନ୍ତ ତିଆରି
ବ୍ୟାସେ ବୋଇଲେ ଦୁର୍ଗତି ଫିଟିଲା ଯେହାଂକରି ।୩୫
ଯୁଝେଷ୍ଟି ଦେବଂକୁ ଯେ ନାରାୟଣ ବଚନ ପରକାଶି
ଆମ୍ଭେ ବିଜେ କରୁଅଛୁ ଘେନି ବ୍ୟାସ ମହଋଷି ।୩୬
ଅଗ୍ୟାଂତବାସ ତୁମ୍ଭର ନ ଜାଣିମେଟି କେହି
ଯେତେ ବୋଲି ଅନ୍ତରୀକ୍ଷେ ଗଲେ ଦେବ ଗରୁଡ଼ ଆରୋହୀ ।୩୭
ବ୍ୟାସେ ବାସୁଦେବ ବିଜେ ବଇନେତ୍ର ପିଠି
ଶୂନ୍ୟେଣ ରହିଣ ସେ ବେନିୟେ ଦେଖୁଛନ୍ତି ଯେକଦୃଷ୍ଟି ।୩୮
ଯୁଝେଷ୍ଟିଦେବେ ବୋଇଲେ ଆମ୍ଭର ବୋଲ ଶୁଣ
କେବଣ ଠାବେ ଥୋଇବା ପାଞ୍ଚଧନୁ ଦଶଦ୍ରୋଣ ।୩୯
ଅନନ୍ତ କୋଟି ବ୍ରହ୍ମାଣ୍ଡର ଧନ ଅଛି ଲାଗି
କେଉଂଣ ଠାବରେ ଯେହା ଯିବା ପରିତ୍ୟାଗି ।୪୦
ଭୂମିରେ ଥୋଇଲେ ତ ପୃଥୀ ନ ସହିବ
ପୋତିଣ ଥୋଇଲେ ତ ବାସୁକି ହରିନେବ ।୪୧
ପର୍ବତେ ଥୋଇଲେ ତ ନେବେ ବନଚରେ
ଜଳେ ବୁଡ଼ାଇଲେ ତ ନେବେ ଜଳଚରେ ।୪୨
ଗିରିଂକର ରାଜା ଯେ ଅଟଇ ଅଚଳାଚଳ ମେରୁ
ସେ ସହିବନା ଯେ ଶହସ୍ରଂକର ଗରୁ ।୪୩
ମେରୁ ଅଚଳେ ଥୋଇଲେ ହରିବେ ଗନ୍ଧର୍ବେ
ଯେ ବଡ଼ାଇ ସଂକଟ ମୋତେ ପଡ଼ିଲା ବାସୁଦେବେ ।୪୪
ବିଚାରନ୍ତି ଧର୍ମନନ୍ଦନ ଶହସ୍ରଂକ ତେଜ ଚାହିଂ
ଯେ ଶହସ୍ର ଥିଲେ ଆମ୍ଭେ ଗୋପ୍ୟ ହୋଇବାକ କାହିଂ ।୪୫
ଯେ ମହା ଦୁରାପଦ କଥା ହୋ ପୁଛିବା କାହାକୁ
ଆଗହୁଂ ନ ପୁଛିଲାଇଂ ଆମ୍ଭେ ବ୍ୟାସ ବାସୁଦେବଂକୁ ।୪୬
କରପତ୍ର ଯୋଡ଼ିଣ କହନ୍ତି ଧନୁର୍ଜ୍ଜୟେ
ଶହସ୍ର ଥୋଇବାକୁ ମୋହୋର ଅଛଇ ଉପାୟେ ।୪୭
ଯୁଝେଷ୍ଟି ଦେବ ହରଷ ହୋଇଲେ ତାହା ଶୁଣି
ଉପାୟେ ଥିଲେ ବାବୁ ଚିନ୍ତାକର ଯେହିକ୍ଷଣି ।୪୮
ଯୁଝେଷ୍ଟିଂକ ବଚନ ଶୁଣିଣ କିରୀଟୀ
ହାଥରେ ଅର୍ଜୁନ ଯେ ଘେନିଲେ ଖଡ଼ିଗୋଟି ।୪୯

ହରିହର ବେନିଗାର କାଟିଲେ ବିବସ୍ଥ
ଅବଲୋକନେ ଚାହାନ୍ତେ ବାହାର ହୋଇଲା ବେନିବୃକ୍ଷ ।୫୦
ପୂର୍ବ ପଛିମ ହୋଇଣ ଯେ ବେନିମୃତ୍ତି
ଧବଳ ନୀଳବର୍ଣ୍ଣ ଦିଶଇ ବେନିଂକର କାନ୍ତି ।୫୧
ଶମୀ ଶିଂଶୁପା ବୋଲିଣ ବେନିବୃକ୍ଷ ଗରିଷ୍ଠେ
ମଧ୍ୟରେ ବିସ୍ତିର୍ଣ୍ଣ ତାହାର ଅଛଇ ଯେକ କ୍ରୋଟେ ।୫୨
ନବତାଳ ଗଭୀର ଯେ ବିସ୍ତାର ଯେକକାଠି
କୋଶେକ ବିସ୍ତାର ଡାଳ ଆକାଶେଣ ଘୋଟି ।୫୩
ଉତ୍ତର ଦକ୍ଷିଣ ପୂର୍ବ ପଛିମେ ଚଉତାଳ
ବିସ୍ତିର୍ଣ୍ଣ ହୋଇ ସେ ଦିଶଇ ପରିମଳ ।୫୪
ଉପରେ ଡାଳେକ ସେ ପଞ୍ଚତାଳ ଉଚ୍ଛର୍ଗ
ଯୋଜନେକ ଆୟେତନ ବୃକ୍ଷର ପ୍ରତି ଦୀର୍ଘ ।୫୫
ନବତାଳ ପରିଯନ୍ତେ ଡାଳ ନାହିଂ କିଛି
ଯେସନେକ କରି ସେ ବୃକ୍ଷ ସଞ୍ଚିଲା ସର୍ବସାଚୀ ।୫୬
ଯୁଝେଷ୍ଟିଦେବେ ଆଶ୍ରିଯ୍ୟ ହୋଇଲେ ତାହା ଚାହିଂ
ବାବୁ ଯେହେନେକ ସଞ୍ଚିତ ରେ କରିଥିଲୁ କାହିଂ ।୫୭
ବାବୁ ବଡ଼ାଇ ଆଶ୍ରିଯ୍ୟରେ ଅଟଇ ଯେ ବୃକ୍ଷ
ଶୁଣିତେ ଇଛା ମୋହୋର କହ ରେ ବିବସ୍ଥ ।୫୮
ଅର୍ଜୁନ ବୋଇଲେ ସ୍ୱାମୀ ଶୁଣିମା ଧନୁର୍ଜ୍ଜୟେ
ଯେ ବୃକ୍ଷର ଚରିତ୍ର ମୁଂ କହଇ ଉପାୟେ ।୫୯
ତୁଳମାସେ କୃଷ୍ଣପକ୍ଷ ଅମାବଇ ତିଥି
ସ୍ୱାତୀ ନାମରେ ନକ୍ଷତ୍ର ବାର ବୃହସ୍ପତି ।୬୦
ନାଗନାମେ କରଣ ଯେ ଆୟୁଷ୍ମାନ ଯୋଗ
ଈଶ୍ୱରେ ବିଜେକଲେ ହଠକେଶ୍ୱର ସ୍ୱର୍ଗ ।୬୧
ସ୍ୱାମୀ ହିରଣାକ୍ଷ୍ୟ ବୋଲିକରି ଯେକଇ ଅସୁରୀ
ବଇଲୋଚନ ଭଗିନୀ ସେ ଅଟଇ ଦୋଚାରୀ ।୬୨
ସୁବାହୁ ଦଇତର ସେ ଅଟଇ ଭାରିଯା
କେଶବ ରୂପେ ତାହା ବଧିଲେ ଦେବରାଜା ।୬୩
ସୁବାହୁ ବଧ ହୁଅନ୍ତେ ସୁରୀ ହିରଣାକ୍ଷୀ
ପାତାଳପୁରକୁ ପଳାଇଲା ନିଜ ଭୁବନ ଉପେକ୍ଷି ।୬୪
ସେ ହିରଣାକ୍ଷୀ ଗୋପ୍ୟଗଲା ପାତାଳ ସ୍ୱର୍ଗପୁରୀ
ସାଚିବଟ ତଳେ ସେ ମାନିନୀ ରୂପ ଧରି ।୬୫
ବଇଲ ବାହାନେ ସେ ଚଳନ୍ତି ଦେବକାଶୀ
ସାଚିବେଟ ତଳେ ଭେଟିଲେ ଦେବ ଆସି ।୬୬

ପାର୍ବତୀ ସାରିକ୍ଷେ ଯେ ତାହାର ରୂପ ଗୋଟି
ଦେଖିଣ ମଦନେ ବଶ ହୋଇଲେ ଧୂର୍ଜଟୀ ।୬୭
ବୃଷଭୁଂ ଉତୁରିଣ ଦେବ ବିଶ୍ୱବାସୀ
ସେ ହିରଣାକ୍ଷୀକି ଦେଖିଣ ବଚନ ପ୍ରକାଶି ।୬୮
ସଦାନନ୍ଦକଇଂ ଦେଖି ଉଠିଲା ମାନିନୀ
ରୁଦ୍ର ଦେବତାର ପାଦେ ବିନୋୟୀ ଦୟାନୀ ।୬୯
ଶୃଙ୍ଗାରେ ଭୋଳା ସେ ଅଟଇ ପରମ ଯୋଗୀ
କାମ୍ୟେକ ପୁରୁଷ ରତିରଙ୍ଗେ ବଡ଼ଭୋଗୀ ।୭୦
ସନ୍ନିଧେ କେହି ନାହିଂ ଦେଖିଲେ ଯେକାନ୍ତେ
ଆକ୍ରେଷି ଧଇଲେ ତାକୁ ମଦନ ଆରତେ ।୭୧
ରାକ୍ଷସୀର ତୁଲେ ରମଣ ବିଶ୍ୱବାସୀ
ପୁରୁଷ ବଶ ବିଦ୍ୟା ଜାଣଇ ସେ ରାକ୍ଷସୀ ।୭୨
ଅନେକ ରଙ୍ଗ କଉତୁକ ଶୃଙ୍ଗାର ରସମେଳେ
କପିଳାସ ପୁରେ ବିଜେ ନ କଲେ ଦେବ ସୁଢ଼ଳେ ।୭୩
ଅନେକ କାଳ ବାଟ ଚାହାନ୍ତି ଗିରିଜା
ଆରେ ନନ୍ଦିକେଶ୍ୱର ନଇଲେ ତ ଦେବରାଜା ।୭୪
ବାବୁ ଗଙ୍ଗାର ମନ୍ଦିରେ ଅବା ଈଶ୍ୱର ଛନ୍ତି ରହି
ଅନେକ ବିମୁଖ ଦେବୀ ହୋଇଲେ ବାଟ ଚାହିଂ ।୭୫
ମାୟା ମୋହିନୀ ସେ ଅଟଇ ବାରାଙ୍ଗନା
କୃଗ୍ୟାଂନ କୁମନ୍ତ୍ର ସେ ଜାଣଇ ସେ ଅସୁରୀ ଅପର୍ଣ୍ଣା ।୭୬
ପାତାଳ ଭୁବନେ ସେ ରହିଲେ ବିଶ୍ୱବାସ
ପିଚାଶୁଣୀ ସଙ୍ଗତେ ରହିଲେ ଯେକାଦଶ ବରଷ ।୭୭
ଅନେକ ଦୂତ ଯେ ପେଷିଲେ ଶାକାମ୍ଭେରୀ
ସ୍ୱର୍ଗ ମଞ୍ଚ ଭୁବନ ନ ପାଇଲେ ଲୋଡ଼ିକରି ।୭୮
ସ୍ୱାମୀ କକଡ଼ା ମାସ ଶୁକଳ ପଞ୍ଚମୀ ଅଟଇ
ଯେ ଦିନ କଇଳାସେ କୃଷ୍ଣ ସଙ୍ଗେ ଥିଲି ଯାଇ ।୭୯
ଗୋବିନ୍ଦ ପୁଚ୍ଛାକଲେ ଅମଙ୍ଗଳ ଭୁବନ ଦେଖି
ନାରାୟଣ ବଦନ ଚାହିଂ ବୋଇଲେ ଶଶୀମୁଖୀ ।୮୦
ଈଶ୍ୱରେ କାହିଂ ଛନ୍ତି ଦେଖିଲ କି ଜଗନ୍ନାଥେ
କପିଳାସୁଂ ଗଲେନି ଯେକାଦଶ ବରଷ ପରିଯନ୍ତେ ।୮୧
ଗୋବିନ୍ଦ ଚାହିଂଲେ ଯେ ମୋହୋର ବଦନ
ଈଶ୍ୱରଂକ ତଦନ୍ତ କି ଜାଣିଛୁ ଅରଜୁନ ।୮୨
ନାରାୟଣଂକ ବଚନେ ଗାଣ୍ଡିମ ଧନୁ ଧରି
ନାରାଜ ପୂରୋଇଣ ଈଶ୍ୱରଂକୁ ଲୟେ କରି ।୮୩

ମନଭେଦୀ ନାରାଜ ଧନୁରେ ପୂରୋଇଲେ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଦିଶଇ ଚାହିଂଲେ ।୮୪
ନାରାଜ ପୂରୋଇଣ ଚାହିଂଲେ ସର୍ବସାଚୀ
ଦେଖିଲା ରୁଦ୍ରଦେବତାଂକୁ ଘୋଟିଛି ରାକ୍ଷସୀ ।୮୫
ପାର୍ବତୀଂକ ଅଗ୍ରତେ ଯେ ଅର୍ଜୁନ କହିଲା
ମାଗୋ ହିରଣାକ୍ଷୀ ରାକ୍ଷସୀ ତୋ ଈଶ୍ୱରଂକୁ ମୋହିଲା ।୮୬
ସ୍ୱାମୀ ହଠକେଶ୍ୱର ଭୁବନକୁ ଯିବାର ବାଟର
ଅନ୍ଧାର ଭୁବନେକ ଯେ ଅଛଇ ଅଭ୍ୟନ୍ତର ।୮୭
ସେହି ବାଟରେ ଯେ ଯାଆନ୍ତେ ଦେବକାଶୀ
ପାର୍ବତୀ ରୂପ ଧରିଣ ଯେ ମୋହିଲା ରାକ୍ଷସୀ ।୮୮
ଗଉରା ବୋଇଲେ ମୋତେ କର ପ୍ରତିକାର
ଯେସନେକେ ରାକ୍ଷସୀ ମୁଖୁଂ ପାରହୋନ୍ତୁ ଦେବ ହର ।୮୯
ହୃଦଗତେ ଚିନ୍ତଇ ଅର୍ଜୁନ ଶରଭେଦୀ
ଲକ୍ଷେ ଯୋଜନକଇଂ ବୋଲି ଶର ଯେ ସନ୍ଧାଦି ।୯୦
ହିରଣାକ୍ଷୀ ବସିଅଛି ସଦାନନ୍ଦ କୋଳେ
ରଙ୍ଗରସ କୁତୁହୋଳ ପରିହାସ ବେଳେ ।୯୧
ଅର୍ଜୁନ କହିଲେ ମାୟେ ଯେସନେକ ଚରିତ
ଶୁଣିଣ ଉତ୍ତର ଯେ ଦିଅନ୍ତି ଜଗନ୍ମାତ ।୯୨
ବାବୁ ତୁ କ୍ଷତ୍ରୀ ଅଟୁ ବୀର ଧନୁର୍ଜୟେ
ଈଶ୍ୱରଂକ ଆସିବାକୁ କର ତୁ ଉପାୟେ ।୯୩
ଅର୍ଜୁନର ଶର ଭେଦିଲା ଯୋଜନ ଲକ୍ଷ ଲକ୍ଷ
ଶରପଡେ ରାକ୍ଷସୀର ହୃଦପରେ ପ୍ରତକ୍ଷ ।୯୪
ହୃଦଗତେ ପଡ଼ି ନାରାଜ ପିଠି କଟିକି ଗଲା କଣ୍ଟି
ଗର୍ଜିଣ ରାକ୍ଷାସୁଣୀ ଯେ ପଞ୍ଚୁତାଳ ଉଞ୍ଚେ ଉଠି ।୯୫
ଈଶ୍ୱର ଦେଖନ୍ତେ ଯେ ଦହନ ତାର କାୟେ
ଅସ୍ଥି ଚର୍ମ ମାଂସ ନ ରହିଲା ନାରାଜର ଘାୟେ ।୯୬
ଘୋର ଅନ୍ଧକାର ଯେ ହୋଇଥିଲା ଭୁବନ
କପିଳାସ ପୁରେ ଆସି ବିଜୟେ ତ୍ରିଲୋଚନ ।୯୭
ଦେଖିଣ ଆଶ୍ଚର୍ଯ୍ୟ ଯେ ହୋଇଲେ ମହାମାୟେ
ବୋଇଲେ ଫାଲଗୁନି ଧନ୍ୟ ଧନ୍ୟ ତୋର କାୟେ ।୯୮
ଅନେକ ପ୍ରଶଂସା ମୋତେ କଲେ ମହାମାୟୀ
ଅତିହିଂ ଆନନ୍ଦ ହେଲେ ଈଶ୍ୱରଂକୁ ପାଶେ ଚାହିଂ ।୯୯
ଈଶ୍ୱରଂକୁ ଦେଖି ଆମ୍ଭେ ପାଥ ଜଗନ୍ନାଥ
ପାର୍ବତୀଂକ ସହିତେ ଆମ୍ଭେ ଯେ ହୋଇଲୁ ପ୍ରଣପତ୍ୟ ।୧୦୦

ଈଶ୍ୱର କହିଲେ ନାରାୟଣଂକ ଅଗ୍ରତେ
ପାର୍ବତୀ ସାରିକ୍ଷେ ଅସୁରୀ ରୂପ ଦିଶିଲାକ ମୋତେ ।୧୦୧
ସେ ଅନ୍ଧାର ଘୋର ଭୁବନ ଦିଶିଲା କପିଳାସ ସ୍ୱର୍ଗ ଜାଣି
ମୋହୋର ଗ୍ୟାଂନ ନାହିଁ ସେ ପୁରେ ଥିଲା ପିଚାଶୁଣୀ ।୧୦୨
ଭଗତି ମହିଂମା ତାର କହିତେ କି ପାରି
ଶରୀର ବହିଣ କେ ଆସିବାକ ଉବୁରି ।୧୦୩
କାମଦେବ ବୋଲିକରି ଯେଡ଼େକ ବଳବନ୍ତ
ଯେତେକ ଅସାଷ୍ଟମ ସେ କରଇ ଦଣ୍ଡବତ ।୧୦୪
ଈଶ୍ୱରେ ବୋଇଲେ ପାଣ୍ଡବ ଜୀବନ ତୋର ଧନି
ଯେଡ଼େବଡ଼ ଦୁର୍ଗତିରୁ ଅଣିଲୁ ମୋତେ ଘେନି ।୧୦୫
ନାରାଙ୍କର ମହିମା ଦେଖ ହୋ ବନମାଳୀ
ମୋହୋର କୋଳେ ଥାଇଂ ଅସୁରୀ ଗଲା ଜଳି ।୧୦୬
ନାହିଂ ନାହିଂ କ୍ଷତ୍ରୀ ଯେ ତିନି ଭୁବନ ସ୍ୱର୍ଗ
ଗୁଣସାଗର ପାଥ ବୀର ଅଭୟେ ବର ମାଗ ।୧୦୭
ଯେକ ସମସ୍ୟାୟେ ବୋଇଲେ ହରିହର ବେନି
ଯେ ଆମ୍ଭର ସତ୍ୟ ସତ୍ୟ ଦେବୁଂ ଫାଲଗୁନି ।୧୦୮
ପାର୍ବତୀ ବୋଇଲେକ ବର ମାଗ କିନା ପାଥ
ଗୁଣବନ୍ତ ଲୋକଂକର ଭଗତ ବହୁତ ।୧୦୯
ଶୁଣ ହୋ ମନୁରାୟେ ବଦନ୍ତି ଅଗସ୍ତ ମୁନିବର
ହରିହର ଗିରିଜା ଯେକାବେଳେ ଦିଲେ ବର ।୧୧୦
ଅର୍ଜ୍ଜୁନ ବୋଇଲେ ସ୍ୱାମୀ କିସ ବର ମାଗିବି
ପୁଣ ପୁଣ ଜନ୍ମିଣ ତ ନୋହିବି ତ୍ରିଜୀବି ।୧୧୧
ଅର୍ଜ୍ଜୁନ ବୋଇଲା ସ୍ୱାମୀ ଯେମନ୍ତ ବାଞ୍ଛା କରଇ
ହରିହର ଗିରିଜାୟେ ବେଳେକେ ବନ୍ଦଇ ।୧୧୨
ସ୍ୱାମୀ ଅଗ୍ୟାଂତବାସ ବୋଲି ଆମ୍ଭଂକୁ ଧର୍ମର କଷଣ
ଗୋପ୍ୟାନ ହୋଇବୁ ଯାଇଂ ବିରାଟ ରାଜ୍ୟେଣ ।୧୧୩
ହରିହର ପାର୍ବତୀ ତୁମ୍ଭେ ହୋଇବ ବୃକ୍ଷଗୋଟି
ଆମ୍ଭର ଶସ୍ତ୍ରମାନ ଥୋଇବୁ ବୃକ୍ଷକ୍ରୋଟି ।୧୧୪
ଅର୍ଜ୍ଜୁନର ମୁଖୁଂ ଯେସନେକ ବାକ୍ୟ ଶୁଣି
ଡାହାଣ ଭୁଜୁଂ କେଶବ ବାହାର କଲେ ଶ୍ରେଣି ।୧୧୫
ଈଶ୍ୱରଂକର ବିଭୂତି ପାର୍ବତୀଂକର ଜପାମାଳି
ବ୍ରହ୍ମାଂକର କପୋଳ ଭରି ମର୍ଦ୍ଦିଲେ ବନମାଳୀ ।୧୧୬
ସବୁନ୍ତି ସମାଯୁକ୍ତ କରି ନାରାୟଣ ଚକଟି
ବେନିକରେ ବଳି ଦେବ ଭିଆଇଲେ ଖଡ଼ିଗୋଟି ।୧୧୭
ଈଶ୍ୱରେ ବୋଇଲେ ତୋର ଯେତେବେଳେ ପଡ଼ଇ କାର୍ଯ୍ୟ
ଭୂମିରେ ତିନିଗାର କାଟିଲେ ହୋଇବ ସରୋଜ ।୧୧୮
ଅର୍ଜ୍ଜୁନ କହିଲେ ଯେ ଯୁଧେଷ୍ଟିଂକ ଆଗରେ
ଶମୀ ଶିଂଶୁପାୟେ ଯେ ପାର୍ବତୀ ହରିହର ।୧୧୯
ସ୍ୱାମୀ ଶମୀବୃକ୍ଷ ଅର୍ଦ୍ଧଅଂଗ ଯେ ସଦାଶିବର କାୟେ
ଶିଂଶୁପା ଅର୍ଦ୍ଧଅଂଗଟି ବାସୁର ଅଂଶ ସ୍ୱୟେଂ ।୧୨୦
ବିଭୂତି ମେଦିଲେ ଯେ ବ୍ରହ୍ମାର କପୋଳ
ଧାତାର ଚାରି ବଦନ ଯେ ବୃକ୍ଷର ଚାରିଡ଼ାଳ ।୧୨୧
ସ୍ୱାମୀ ମଧ୍ୟେଣ କ୍ରୋଟେକ ଅଛି ପ୍ରତକ୍ଷେ ଗିରିଜା
ଯେହି ସେ ଶମୀବୃକ୍ଷଟି ଜାଣ ଧର୍ମରାଜା ।୧୨୨
ଅର୍ଦ୍ଧଅଙ୍ଗ ଯେବେ ନୋହିବଟି ଯେହାଂକର
ଆନ କେ ସହି ପାରିବଟି ଯେ ଶସ୍ତ୍ରଂକର ଭାର ।୧୨୩
ଶୁଣିଣ ଅର୍ଜ୍ଜୁନକଇଂ ପ୍ରଶଂସା କରନ୍ତି ଯୁଧେଷ୍ଟି
ଯେହେନେକ ସଞ୍ଚିତ କରିଅଛୁ ମୋହୋର ଭାଇଗୋଟି ।୧୨୪
ଅର୍ଜ୍ଜୁନ କହିଲେ ମୁଂ ଡାଳେ ଯାଇଂ ଉଠଇ
ଭୀମସେନ ଠାକୁରେ ବଢ଼ାଇ ଦିଅନ୍ତୁ ଥୋଇବି
କ୍ରୋଟେ ନେଇ ।୧୨୫
ବୃକ୍ଷକୁ କୋଳକରି ବୁଜିଲା ନୟନ
ଡାଳେ ଯାଇଂ ବସିଲେ ମନଭେଦୀ ଅର୍ଜ୍ଜୁନ ।୧୨୬
ନବତାଳ ନବଲକ୍ଷ ଉଚ୍ଛର୍ଗ ଭୀମସେନର କାୟେ
ଶହସ୍ର ବଢ଼ାଇ ଦିଅନ୍ତେ ଥୁଅଇ ଧନୁର୍ଜ୍ଜୟେ ।୧୨୭
ପଞ୍ଚଧନୁ ଦଶଦ୍ରୋଣ ଥୋଇଲା କ୍ରୋଟର ଗର୍ଭଗତେ
ଭୀମସେନର ଗଦାବର ନକୁଳର କୋନ୍ତେ ।୧୨୮
ଅର୍ଜ୍ଜୁନର ଗାଣ୍ଡିମ ଯୁଧେଷ୍ଟିଂକର ଶାୟକ
ସହଦେବଂକର ଖଡ଼ଗ ଫଳା ନେଇ ଥୋଇଲାକ ।୧୨୯
ବୃକ୍ଷରୁ ଓହ୍ଲାଇ ସେ ପାଣ୍ଡବ ଫାଲଗୁନି
ଶମୀବୃକ୍ଷକୁ ସେ ବହୁତ ବିନୋୟୀ ଦୟିନୀ ।୧୩୦
ଜୟତୁ ମହତ ବୃକ୍ଷ ନଗନଭେଦୀ ସ୍ୱାମୀ
ପ୍ରଳୟ ଉଦ୍ଧାରଣ ତୁ କଳପି ମହାବ୍ରହ୍ମି ।୧୩୧
ସଂକେତ ବାଞ୍ଛାବୃକ୍ଷ ମହତ ବୃକ୍ଷଗୋଟି
ଗଗନକୁ ଶିଖା ପାତାଳକୁ ପାଞ୍ଚ ଯୋଜନ କଣ୍ଟି ।୧୩୨
ଅକାମ ପୁରୁଷ ତୁ ଅକାମ ଅର୍ଥଦାତା
ଯେମନ୍ତେ ବାଞ୍ଛା ତୁ ପ୍ରାପତ କରନ୍ତା ।୧୩୩
ଶ୍ରୀ ବାଞ୍ଛାବଟ ତୁ ମହତ ବୃକ୍ଷ ଶମୀ
ଶୂଦ୍ରମୁନି ସାରୋଳା ଦାସ ଶତେ ସହସ୍ର ଦଣ୍ଡ ପରିଣାମି ।୧୩୪

କ୍ରୋଟରେ ଶହସ୍ରମାନ ପଶିଲା ଯେତେବେଳେ
ଆଦିତ୍ୟ ଉଦୟେ ପ୍ରାୟେ ଦିଶଇ ରାତ୍ରକାଳେ ।୧୩୫
ଶୁଣ ହୋ ବଇବସୁତ ମନୁ ଶମୀବୃକ୍ଷର ମହିଂମା
ସେ ବୃକ୍ଷରେ ବସି ନବସୃଷ୍ଟି ଭିଆଇଲା ବେଦବ୍ରହ୍ମା ।୧୩୬
ସାରଥିକଂକ ଖମ୍ଭ ଦ୍ରୋଣ ଧର୍ମକ ଚାରିପକ୍ଷୀ
ମହାଯୋଗ ଭେଦ ସେ ଭେଟିଲେ ତାରାକ୍ଷୀ ।୧୩୭
ଯେ ଚାରିପକ୍ଷୀ ପୁଣ ବୃକ୍ଷର ଡାଳରେ ଥାଆନ୍ତି
ସର୍ବଦା ରାମନାମ ଯେ ସ୍ମରଣ କରନ୍ତି ।୧୩୮
ଯୁଝେଷ୍ଠି ବୋଇଲେ ବାବୁ ଶୁଣ ଫାଲଗୁନ୍ୟ
ଯେକା ଧନୁରେ ଲାଗିଅଛି ବାବୁ ବାଆନ କୋଟି
ଭଣ୍ଡାର ଧନ ।୧୩୯
ଦଇତ ଦାନବ ଦକ୍ଷ କିନ୍ନର ଗନ୍ଧର୍ବେ
ନ ପୁଣ ହରଣ କରନ୍ତି ଯେ ରତ୍ନାକଇଂ ଲୋଭେ ।୧୪୦
ଅଥବା ଦିଗପାଳମାନଂକର ତହିଂକି ଇଛା
ସୁବୁଦ୍ଧି ସୋଦରରେ କେମନ୍ତେ ହୋଇବ ଯେ ରକ୍ଷା ।୧୪୧
ଅର୍ଜୁନ ବୋଇଲା ଯେଥକୁ ଦେବ ନ କର ଚିନ୍ତା
ବଡ଼ ବଳବନ୍ତ ପୁରୁଷେକ ସେ ଅଛଇ ରଖନ୍ତା ।୧୪୨
ସେହି ଖଡ଼ି ଘେନି ଲେଖନ କଲାକ ପିତୁଳୀ
ସେହି ପୁତୁଳୀ ବିଦାରି ବାହାର ହୋଇଲା ପ୍ରଚଣ୍ଡ ବଳୀ ।୧୪୩
କର ଚରଣ ନାହିଂ ଯେ ନାହିଂ ତାର ମୁଣ୍ଡ
ପେଟ ପିଠି ନାହିଂ ଅଂଗ ମେଦ ମୃତୁପିଣ୍ଡ ।୧୪୪
ଯୁଝେଷ୍ଠିଂକି ପ୍ରଣପତ୍ୟ କରି କହଇ ଧନୁର୍ଜୟେ
ଯେ ରକ୍ଷା କରିଥିବଟି ଅଗ୍ୟାଂତବାସ ସରିବା ଯାଏ ।୧୪୫
ଯୁଝେଷ୍ଠି ଦେବେ ହସିଲେ ଭୀମସେନ ମୁଖ ଚାହିଂ
ବାବୁ ଯେଯେନ୍ନେକ ପରପଞ୍ଚ ଦେଖିଲାତ ଆମ୍ଭର ନାହିଂ ।୧୪୬
ଆରେ ମୁହିଂ ଅଟଇ ଧର୍ମପୁରୁଷ ଯଥାର୍ଥ ପ୍ରକୃତି
ହାଥ ସୁଖେ ପଶା ଖେଳି ହରାଇଲି ରାଜ୍ୟ ଯେ ବିଭୂତି ।୧୪୭
ଆରେ ମୋତେ ଖତାଉଣୀ ନିମନ୍ତେ ତୋହୋର ଯେଡ଼େ ଛଟା
ଶହସ୍ରନ୍ତ ରଖିବ କେମନ୍ତେ ଯେ ମୃତୁପିଣ୍ଡ ଗୋଟା ।୧୪୮
ଅର୍ଜୁନ ବୋଇଲା ଦେବ ଶୁଣିମା ଧର୍ମସୁତେ
ସମସ୍ତ ଗୋପ୍ୟାନ କଲା ଯେ ସଂସାର ଜନହିତେ ।୧୪୯
ସ୍ୱାମୀ ଶିର କନ୍ଧ ନାସା ଶ୍ରବଣ ଚାରି ଚରଣ ହୋଇଲେ
ମେରୁ ଟଳିବନା ଯେହାର ହାକ ଦିଲେ ।୧୫୦
ଅର୍ଜୁନ ତ ଲୟେ କରି ଚିନ୍ତିଲା ବକ୍ଷସ୍ଥଳେ
ଧାତିକାରେ ମୃତୁପିଣ୍ଡ ଲାଗିଲାକ ଯାଇଂ ଡାଳେ ।୧୫୧
ଅଦଉଡ଼ିଯେ ଅବନ୍ଧନେ ଲାଗିଲା ତାର କାଯେ
ବୃକ୍ଷର ଉପରେ ବୁଲିଲା ସେ ତମ୍ଭାଚକ୍ର ପ୍ରାୟେ ।୧୫୨
ବଦନ ବିହୁନେ ସେ ଛାଡ଼ିଲା ଘୋର ରଡ଼ି
ଭୂମିରୁ ପର୍ବତ କି ପଡ଼ିଲେ ଉପୁଡ଼ି ।୧୫୩
ଯୁଝେଷ୍ଠି ଭୀମସେନ ନକୁଳ ସହଦେବ
ମୂର୍ଖାଗତ ହୋଇ ପଡ଼ିଲେ ଚାରି ଯେ ପାଣ୍ଡବ ।୧୫୪
ସନକ ବିଶ୍ୱଦେବ ବିଦ୍ୟାଧର ପୁରୁଷେ
ଶୂନ୍ୟେ ବିହନ୍ତା ପୁରୁଷେ ରହି ନୁଆରିଲେ ଆକାଶେ ।୧୫୫
ଯୁଝେଷ୍ଠିଂକି କୋଳକରି ଧଇଲେ ସର୍ବସାଚୀ
ସାଷ୍ଟାମ କରାଇଣ ମୁଖେ ଜଳ ସଞ୍ଚି ।୧୫୬
ଅର୍ଜୁନ ବଚନେ ମୃତୁପିଣ୍ଡ ହୋଇଲାକ ଶାନ୍ତି
ଆଉ ରଡ଼ିଯେ ଦିଲେ ନିଶ୍ଚେ ଛାଡ଼ନ୍ତେ ଜୀବତି ।୧୫୭
ମୁଖେଣ ଅମୃତ ଯହୁଂ ସିଞ୍ଚିଲେ ଅର୍ଜୁନ
ନକୁଳ ସହଦେବ ଯେ ସାଷ୍ଟାମ ଭୀମସେନ ।୧୫୮
ଯୁଝେଷ୍ଠିଦେବେ ପୁଛାକଲେ ଯେତ ବଡ଼ାଇ ଦୁର୍ଲଭ
ଯେ ମୃତୁପିଣ୍ଡ ବାବୁ କେ ଅଟଇ ପୂର୍ବଗର୍ଭ ।୧୫୯
କର ଚରଣ ନାସିକା ରୂପ ନାହିଂ କିଛି
ବଦନ ବିହୁନେ ଯେତ ଘୋରରଡ଼ି ପାଡୁଅଛି ।୧୬୦
ଅର୍ଜୁନ ବୋଇଲେ ସ୍ୱାମୀ ମୁଂ ଯେବଣ ବେଳେ ଗଲି ସ୍ୱର୍ଗେ
ନିର୍ବାତକବଚକୁ ମାଇଲି ମୁହିଂ ବାସବର ରାଗେ ।୧୬୧
ଦେବ ଗନ୍ଧର୍ବ ନାମେ ନୃପତି ବିଶ୍ୱାବସୁ
ଯେହାର ନନ୍ଦନ ନାମ ଅଟଇ କଣୟପ୍ରଶୁ ।୧୬୨
କଣୟପ୍ରଶ୍ନର ନନ୍ଦନ ବିରଞ୍ଚି ଯେ ଧ୍ୱଜ
ବୃଦ୍ଧଶ୍ରବା ବୋଲିଣ ଯେ ଯେହାର ଆତ୍ମଜ ।୧୬୩
ବୃଦ୍ଧଶ୍ରବାର ନନ୍ଦନ ନାମ ଯେ ପ୍ରଚଣ୍ଡବଳୀ
ଯେହାର ଭାରିଯା ନାମ ଅଟଇ ଗନ୍ଧକାଳୀ ।୧୬୪
ଅମରାଧି ନାଥଂକୁଯେ ନେଇ ଯୋଗାଯେ ଚାରୁଗନ୍ଧ
ସୁନ୍ଦର ପଣେ ଯେହାକୁ ବାସବର ବଡ଼ାଇ ସଧ ।୧୬୫
ସ୍ୱାମୀ ନିର୍ବାତକବଚ ଧାଡ଼ିଦିଲା ଯେତେବେଳେ
ଅନେକବାର ବାସବ ହାରିଲେ ତାକୁ ରୋଳେ ।୧୬୬
ଅମରଭୁବନ ଉପେକ୍ଷି ପଳାବନ୍ତି ବିଦ୍ୟାଧରୀ
ନିର୍ବାତକବଚ ବଳେ ଆଣିଲା ତାଂକୁ ହରି ।୧୬୭
ସେ ଗନ୍ଧକାଳୀକି ହରି ନିର୍ବାତକବଚ ନେଲା
ଗନ୍ଧମାଦନ ପର୍ବତେ ନେଇ ଗୁପତେ ଥୋଇଲା ।୧୬୮

ମୁହିଁ ଯେତେବେଳେ ନିର୍ବାତକବଚ ବଧକଲି
ଯେ ଯାହାର ପଦାର୍ଥମାନ ଆଣି ବିଦ୍ୟାଧରନ୍ତ ଦିଲି ।୧୬୯
ସ୍ୱାମୀ ପ୍ରଚଣ୍ଡବଳୀ ଗନ୍ଧର୍ବ ମୋତେ କୋଳକରି ଧରି
ବୋଇଲା ବର ମାଗ ପାଥ ନାଶକଲୁ ମୋ ଦାରା ବଇରି ।୧୭୦
ମୁହିଁ ବୋଇଲି ସ୍ୱାମୀ ଯେବେ ମୋତେ ଦେବୁ ବର
ଅଗ୍ୟାଂତ ବନବସ ବରଷେ ତେରଦିନ ମୋର ଶସ୍ତ୍ରନ୍ତ
ରକ୍ଷାକର ।୧୭୧
ସେ ପ୍ରଚଣ୍ଡବଳୀ ବୋଇଲା ବାବୁ ତୋହୋର କାର୍ଯ୍ୟକାଳେ
ମୃତୁପିଣ୍ଡ ହୋଇ ଲାଗିଥିବ ଶମୀବୃକ୍ଷ ଡାଳେ ।୧୭୨
ତୋହୋର ଉପର ବଂଶେ ମୃଗସେନ ନୃପତି
ପ୍ରଚଣ୍ଡବଳୀ ଗନ୍ଧର୍ବ ମୁଂ ହୋଇଅଛି ଉତପତ୍ତି ।୧୭୩
ଯଦ୍ୟପି ବ୍ରହ୍ମା ବିଷ୍ଣୁ ମହେଶ୍ୱର ସୁରପତି
ମୋହୋର ରଡ଼ିଘାତେ କେହି ନ ଆସିବେ କତି ।୧୭୪
ବିଶ୍ୱାବସୁ ଗନ୍ଧର୍ବର ଯେ ଅଟଇ ପଣନାତି
ବଡ଼ାଇ ଗନ୍ଧର୍ବ ଯେ ଅଟଇ ମହାଛତ୍ରୀ ।୧୭୫
ଅର୍ଜ୍ଜୁନ ବଚନ ଯେ ଶୁଣିଣ ଧର୍ମସୁତେ
ବଡ଼ାଇ ସାନନ୍ଦ ଯେ ହୋଇଲେ ଦେବକୋନ୍ତେ ।୧୭୬
ବାବୁ ବିରାଟ ରାଜ୍ୟେଣ ତ ରହିବ ଗୁପତେ
ଦିନ ହରିବା ଆମ୍ଭେ କେବଣହିଂ ମତେ ।୧୭୭
ଭୀମସେନ ବୋଇଲା ଦେବ ଚିନ୍ତା ନ କର ଆମ୍ଭର କଥାକୁ
ଯେହେନ୍ନେକ ବାଗେ ଆମ୍ଭେ ଭଣ୍ଡିବୁ ବିରାଟକୁ ।୧୭୮
ଯିସ ତିସ କହିଲେ ଆମ୍ଭଂକୁ ନାହିଂ ଦୋଷ
ମିଥ୍ୟାକଥା କହି ଦିନ ବଞ୍ଚିବୁ ଅଗ୍ୟାଂତବାସ ।୧୭୯
ସ୍ୱାମୀ ସତ୍ୟହୁଂ ମିଥ୍ୟା ଯେ ନୁଆସଇ ତୁମ୍ଭର ବାକ୍ୟେ
ଯୁଝେଷ୍ଟି ନାମ କହିଲେ ଜାଣିମେ ସର୍ବଲୋକେ ।୧୮୦
ଯୁଝେଷ୍ଟି ବୋଇଲେ ତୁ ଆମ୍ଭଂତୁ ନ କର ଚିନ୍ତା
ବିରାଟକୁ ସତ୍ୟହୁଂ ଆମ୍ଭେ ନ କହିବୁଂ ମିଥ୍ୟା ।୧୮୧
ଭୀମସେନ ହସିଲା ଯୁଝେଷ୍ଟିଂକ ବଚନେ
ରାତ୍ରେକ ଦିବସେକ ଯେ ଅଟଇ ଲେଖନେ ।୧୮୨
ତିରୀଯେକ ପୁରୁଷଯେକ ପାପେକ ପୁଣ୍ୟେକ
ହାରିବା ଜିଣିମା ହୋ ସତ୍ୟେକ ମିଛେକ ।୧୮୩
ଯେଥିର ମଧ୍ୟରେ କିସ ଅଛଇଟି ଧର୍ମ
ପୂର୍ବର ଲେଖନ ମେଣ୍ଟଣ ନ ଯାଇଟି କର୍ମ ।୧୮୪
ଯୁଝେଷ୍ଟିଦେବ ବୋଇଲେ ଯାହା କହିଲୁରେ ଭାଇ
ଧର୍ମେଣ ଯେବଣ କଥା ଅଛି କହିବି ତୁକୁଇଂ ।୧୮୫
ତୁ ଯେ ବୋଇଲୁ ଭୀମ ରାତ୍ରେକ ଦିବସେକ
ତହିଂର ମଧ୍ୟେ ଅଛଇ ସନ୍ଧ୍ୟା ଅବଶେଷକ ।୧୮୬
ତୁ ଯେ ବୋଇଲୁ ଭୀମ ତିରୀଯେକ ପୁରୁଷଯେକ
ତାହାର ମଧ୍ୟେ ଅଛି ଜନ ନପୁଂସେକ ।୧୮୭
ତୁ ଯେ ବୋଇଲୁ ଭାଇ ପାପେକ ପୁଣ୍ୟେକ
ତହିଂର ମଧ୍ୟରେ ଆବର ଅଛଇ ମଉନେକ ।୧୮୮
ତୁ ଯେ ବୋଇଲୁ ଭୀମ ଚନ୍ଦ୍ରେକ ସୂର୍ଯ୍ୟେକ
ତହିଂର ମଧ୍ୟେ ଅଛି ତାରା ଯେ ଅସଂଖ୍ୟେକ ।୧୮୯
ତୁ ଯେ ବୋଇଲୁ ଭୀମ ସତ୍ୟେକ ମିଛେକ
ତହିଂର ମଧ୍ୟରେ ଅଛଇଟି ସାକ୍ଷଲୋକ ।୧୯୦
ଭୀମସେନ ବୋଇଲା ଯେ ଦୁସହ ସଂକଟ
କେବଣ ଉପାୟେ ହୋଇବ ନାମ ଯେ ପାଲଟ ।୧୯୧
ଯୁଝେଷ୍ଟି ବୋଇଲେ ଆମ୍ଭେ ସଭାପଣ୍ଡା ହୋଇବୁ
ଧର୍ମ ବିଚାରି ଆମ୍ଭେ କୋନ୍ତଭଟ୍ଟ ନାମ ବହିବୁ ।୧୯୨
କୋନ୍ତଭୋଜର ନନ୍ଦିନୀ କୋଇନ୍ତା ମାତା ଆମ୍ଭର ଯୁଗତେ
କୋନ୍ତଭଟ୍ଟ ନାମ ଆମ୍ଭେ ବଞ୍ଚିବୁ ସାକ୍ଷାତେ ।୧୯୩
ଭୀମସେନ ବୋଇଲା ତୁମ୍ଭେ କେବଣ ଗୁଣଗ୍ରାହୀ
ଅର୍ଥକୁ ଗଉରୋବ ଗୁଣକୁ ପୂଜା ପାଇ ।୧୯୪
ସ୍ୱାମୀ ଅର୍ଥକୁହିଂ ହାରିଲୁ ଗୁଣକୁ ହେଳ ଅଟ
ସମାନ୍ୟେ ପୂଜା ତୁମ୍ଭଂକୁ କେମନ୍ତେ କରିବ ବିରାଟ ।୧୯୫
ଯୁଝେଷ୍ଟି ବୋଇଲେ ହୋ ଚାରିହେଂ ତୁମ୍ଭେ ଶୁଣ
ସମାନେ ବସିବା ଆମ୍ଭର ଅଛଇ ଯେକଗୁଣ ।୧୯୬
ପଶା ଖେଳିବୁ ଆମ୍ଭେ ବିରାଟର ତୁଲେ
ତେବେ ସେ ସମାନେ ବସିପାରୁଂ ଭଲେ ।୧୯୭
ଭୀମସେନ ବୋଇଲା ବାବୁ ଉଠ ହୋ ଅର୍ଜ୍ଜୁନ
ବାହୁଡ଼ି ପଶିବା ଚାଲ ଗହନ ଅରଣ୍ୟ ।୧୯୮
ବେଳେ ବେଳେ ଯେହାଂକର ବସିଲା ଦୁର୍ବୁଦ୍ଧି
ଧୃତରାଷ୍ଟ୍ର ପୁଅନ୍ତ ଦିଲେ ଅଚଳାଚଳ ସମ୍ପାଧ୍ଯ ।୧୯୯
ଯେକାବେଳେକ ପଶାୟେ ହାରିଲେ ସମସ୍ତ
ଆତ୍ମା ବିକ୍ରେ ହୋଇଲୁଂ ଭାଇ ଭାରିଯା ସହିତ ।୨୦୦
ସଭାର ତଳେ ନେଇ ବସାଇଲେ ସବୁନ୍ତି
କେଶ ଧରି ବିବସନ କରାଇଲା ଦ୍ରୋପତୀ ।୨୦୧
ଯେକା ପଶାକେ ଯେ ହୋଇଲୁ ଯେତେଦୂର
ଦୁଜେ ପଶା ଖେଳି ହାରିଲୁ ରାଜ୍ୟ ଭଣ୍ଡାର ।୨୦୨

ଯେଉଂ ପଶା ଖେଳରେ ବୁଲୁଥାଇ ବନଘୋର
ପୁଣି ସେ ପଶା ଖେଳିବେ ବିରାଟ ସଙ୍ଗର ।୨୦୩
ଯେଘାନ୍ତି କିସ ହୋଇବଟି ଧନ ଧର୍ମ ହିଂ ତ ନାହିଂ
ପ୍ରାଣଘାତ ହୋଇବା କି ଯେହି ପଶାର ପାଇଂ ।୨୦୪
ଯୁଧିଷ୍ଠି ବୋଇଲେ ତୁ ଶୁଣରେ ପାବେନି
କପଟେ ପଶା ଖେଳାଇ ଆମ୍ଭଂକୁ ହରାଇଲା ଶକୁନି ।୨୦୫
ଉଚିତ ପଶାଖେଳରେ କେ ଅଛି ଆମ୍ଭନ୍ତ ସରି
କଉତୁକ ଉପୁକାଇ ହୋଇବୁ ଅଧିକାରୀ ।୨୦୬
ପଶା ଖେଳେ ଆମ୍ଭେ ଅଟୁ ଜଗୁଜିତା
ଇହଲୋକେ ଆମ୍ଭନ୍ତ କେହି ନାହିଂନା ଜିଣନ୍ତା ।୨୦୭
ଶୁଣିଣ ଭୀମସେନ ମନରେ ବିଷାଦ
ନମସ୍କାର କରିଣ ସେ ଧରଇ ବେନିପାଦ ।୨୦୮
ଯେ ଆମ୍ଭର ବଚନ ଶୁଣସି ଧର୍ମରାୟେ
ପଶା ଛାଡ଼ି ଅଛିକି ଆନ ଯେ ଉପାୟେ ।୨୦୯
ଯୁଧିଷ୍ଠି ବୋଇଲେ କି ଆଉ ଅଛି ଆନ ବୁଦ୍ଧି
ସାମାନ୍ୟେ ବସିବାକୁ ଯେହା ମୁଂ ଅଛି ସାଧି ।୨୧୦
ଆମ୍ଭେ ବସିଲେ ହୋ ରାଜାର ସମାନେ
ମସଦେଶେ ରହିବ ତୁମ୍ଭେ କାହାର ଦରଶନେ ।୨୧୧
ପ୍ରକୃତି ଜାଣି ତୁମ୍ଭେ ଖଟିବ ପରିଚର୍ଯ୍ୟା
ତୁମ୍ଭନ୍ତ ସମାର୍ଜନା କରି କି ପାରିବା ।୨୧୨
ବିରାଟର ତୁଲେ ଆମ୍ଭେ ସଭାରେ ବସିଥିବୁଂ
ଜାଣିଣ ସନମାନ ତୁମ୍ଭନ୍ତ କରାଇବୁଂ ।୨୧୩
ଯୁଧିଷ୍ଠିଂକ ବଚନେ ଫିଟିଲା ମନଭ୍ରାନ୍ତି
ଭୀମସେନ ବଦନ ଚାହିଂ ବଦୟନ୍ତି ଧର୍ମ ନୃପତି ।୨୧୪
ତୋହୋର କଥାକୁ ରେ ଭୀମ ମୋହୋର ବଡ଼ ଚିନ୍ତା
ମଛଦେଶେ କେହି ତୋତେ ନେହିବେ ଅନ୍ନଦାତା ।୨୧୫
ଷାଠିଯେ ପଉଟି ଅନ୍ନ ବେଳକେ ଅତ୍ରିପ୍ରତି
ତିନିବେଳେ ଭୁଞ୍ଜିଲେ ତୋତେ ନଅଣ ତିନିଷାଠି ପଉଟି ।୨୧୬
ଭିକ୍ଷା ମାଗିଲେ ତ ଭିକ୍ଷା ଦିଅନ୍ତା କେହି ନାହିଂ
ସମସ୍ତେ ଭୟ କରନ୍ତି ତୋର ବକ୍ର ନୟନକଇଂ ଚାହିଂ ।୨୧୭
ପଣ୍ଡିତ ଧାର୍ମିକ ନୋହୁ ନ ଜାଣୁ କୂଟ ଛନ୍ଦ
ଯେଣେ ଯାଉ ତେଣେ ଅନୁବ୍ରତେ କରୁ ଦ୍ୱନ୍ଦ ।୨୧୮
ବାବୁ କଣୟପର୍ବତ ଜାଣି ଦିଶଇ ତୋର କାୟେ
ଯେହା ଗୋପ୍ୟ କରିବୁଟି ତୁ କେବଣ ଉପାୟେ ।୨୧୯
ଭୀମସେନ ବୋଇଲା ଦେବ ଅଛଇ ମୋର ବୁଦ୍ଧି
ମୁହିଂ ସୂପକାର ହୋଇବି ଜାଣଇ ଅଗ୍ନି ରାନ୍ଧି ।୨୨୦
ବିରାଟର ରାଜ୍ୟେ ମୁହିଂ ବଲ୍ଲଭ ହୋଇବି
ସୂପକାର ରୂପେଣ ମୁଂ ମସଦେଶରେ ରହିବି ।୨୨୧
ଯୁଧିଷ୍ଠି ଦେବ ବୋଇଲେ ତୁ କିସ ଅବା ରାନ୍ଧିବୁ
ତୁକୁଇ ସେ ଭୋଜନ ହୋଇବ ଆନକୁ କିସ ଦେବୁ ।୨୨୨
ଭୀମସେନ ବୋଇଲା ଦେବ ବିରାଟ ରାଜ୍ୟେଣ
ସବୁ ସୂପକାର ଛଡ଼ାଇ ମୁଂ ହୋଇବି ଯେକଜଣ ।୨୨୩
ଲକ୍ଷେ ସୂପକାରକୁ ପଡ଼ି ହୋଇବାକ ଯେତେ
ସବୁନ୍ତି ଛଡ଼ାଇ ବିରାଟ ଯେ ଯେକା ଦେବ ମୋତେ ।୨୨୪
ଯୁଧିଷ୍ଠି ଦେବ ବୋଇଲେ ରେ କେବଣ ଗୁଣ ତୋହୋର
ରାନ୍ଧଣା ବିଧାନ କେମନ୍ତେ ଜାଣିଲୁ ଆବର ।୨୨୫
ଭୀମସେନ ବୋଇଲା ଦେବ ଜାଣଇ ନିତିପ୍ରତି
ଅମୃତ ଯୋଗାଡ଼ମାନ ଜାଣଇ ନିତିପ୍ରତି ।୨୨୬
ହାଣ୍ଡିରେ ଯୋଗାଡ଼ି ଦେବ ବସାଇଲେ ଚୂଲିରେ
ସୂର୍ଯ୍ୟପାକ ହୋଇବ ଯେକଇ ସମ୍ପାରେ ।୨୨୭
ଯେହେନ୍ନେକ ବିଧାନେ ଦେବ ଜାଣଇ ମୁହିଂ ରାନ୍ଧି
ଯୁଧିଷ୍ଠି ଦେବ ବୋଇଲେ ଯେତ ଗଉରୀ ସଉରୀ
ନଳବିଧି ।୨୨୮
ଯେଡ଼େକ ମହିଂମା ତୋର ଆମ୍ଭଂକୁ ଶୁଣିଲାତ ନାହିଂ
ଯେ ତିନିପ୍ରତି ରାନ୍ଧଣା ବାବୁ ପାଇଲୁ କାହିଂ ।୨୨୯
ଭୀମସେନ କହଇ ଯୋଡ଼ିଣ କରପତ୍ର ବେନି
ଯେ ତିନିପ୍ରତି ରାନ୍ଧଣା ମୋତେ କହିଲୁ ଦୋହରା ଅଗ୍ନି ।୨୩୦
ଯୁଧିଷ୍ଠିଦେବେ କହିଲେ ତୋହର କେବଣ ଭଗତ
ସେବାଗୁଣ ଆମ୍ଭେ ତୋର ଜାଣୁନା ସମସ୍ତ ।୨୩୧
ଯେଣେତେଣେ ଥିଲେ ତୁ ଅଶୁଚିବନ୍ତେ ଆସୁ
ବେନି ଚରଣ ଦେଖାଇଣ ଅଗ୍ନିକି ଆକ୍ରୋଷୁଂ ।୨୩୨
ଯେଡ଼େମାନେ ଭଗତିକି ହୋଇଲେନା ପ୍ରସନ୍ନ
ଥୋକାୟେ ଦିନେ ଅଗ୍ନିରେ ତୁ କରୁ ଆଂଚୋବନ ।୨୩୩
ଆମ୍ଭେ ଅନେକ ବିନୋୟୀ ବହୁତ ପ୍ରକାରେ ଅଗ୍ନିକି କରିଥାଉ ସେବା
ଘୃତ ଆହୁତି ଦେଇ ବିନୋୟୀ ରାତ୍ର ଦିବା ।୨୩୪
ଦେଖି ନୁଆରିଲୁ ଅଗ୍ନି ଦେବତାଂକ ନିଜ ମୂର୍ତ୍ତି
ନିର୍ଦ୍ଦୟା ଅଣାକାର ସେ ଅଟନ୍ତି ବହତି ।୨୩୫
ଭୀମସେନ ବୋଇଲା ଦେବ ଶତଶିଂଗ ପରବତେ
ରାନ୍ଧଣା ପାକ ଦେବ ଭକ୍ଷଣ କରଇ ମୁହିଂ ନିତ୍ୟେ ।୨୩୬

ଅନ୍ନ ମେଞ୍ଜାନ ମୁଂ ଯେ ଭୁଞ୍ଜଇ ଅର୍ଧ ଅର୍ଧ
ପାଞ୍ଚଦିନର ପୁଅ ମୁଂ ଭୋଜନକୁ ଯେତେ ସଧ ।୧୨୩୭
କୋଇନ୍ତାଯେ କହିଲେ ଯେ ପଣ୍ଡୁରାଜାଂକର ପାଶେ
ସ୍ୱାମୀ ମଡ଼ଫୁଲି ଯୋଗାଡ଼ ନ ଥାଇ ଅର୍ଧଶେଷେ ।୧୨୩୮
କେ ଯେହା ଆଧାର କରଇ ଯେ ପଶି ନିତି
ସାତବରଷ ହୋଇଲାନି ଯେହିପରି ପ୍ରତି ।୧୨୩୯
ଶୁଣିଣ ପଣ୍ଡୁ ରାଜା ତବଦ ପ୍ରାୟେ ହୋଇ
ସେ କଥାକୁ ମନରେ ପ୍ରତ୍ୟେ ନ କଲେ ଗୋସାଇଂ ।୧୨୪୦
ଋଷଭମାସ ଶୁକଳ ପୂର୍ଣ୍ଣିମା ଅର୍କବାର
ଅନୁରାଧା ଋକ୍ଷାନ୍ତେ ଜ୍ୟେଷ୍ଠା ପ୍ରହରକର ।୧୨୪୧
ଶ୍ରୀକରେ କୃପାଣେକ ଘେନିଣ ପଣ୍ଡୁମହାରାୟେ
ସେ ଜଗଛନ୍ତି ସ୍ୱାହାନକୁ ଗଲେ କୋଇନ୍ତାୟେ ।୧୨୪୨
ଅନ୍ଧାର ମନ୍ଦିରେ ଯେ ପଣ୍ଡୁରାଜା ଛନ୍ତି ବସି
ଶଯ୍ୟା ଯୁଗତୁଂ ଯେ ଉଠିଣ ମୁହିଂ ଆସି ।୧୨୪୩
ରାନ୍ଧଣାଶାଳେ ପଶି ମୁଂ କରୁଅଛି ଭକ୍ଷ
ସ୍ୱରୂପେ ମହାରାଜା ଦେଖିଲେ ପ୍ରତକ୍ଷ ।୧୨୪୪
କୃପାଣ ବୁଲାଇଣ ସେ ଧାମନ୍ତି ମହାରାୟେ
ଧାଡିକାରେ ପଳାଇଲି ମୁଂ ପିତାଂକରି ଭୟେ ।୧୨୪୫
ଧାମନ୍ତି ସୋମବଂଶୀ କରେ କୃପାଣ ଝୁଣି
ଆରେ ଦୁଷ୍ଟ କୁମର ପକାଇବି ତୋତେ ହାଣି ।୧୨୪୬
ଦେଖିଣ ପଣ୍ଡୁଂକୁ ଧଇଲେ ଦେବୀ କୋଇନ୍ତେ
ରାଗେଣ ଫିଙ୍ଗି ପକାନ୍ତେ ମୁଂ ପଳାଇଲି ତୁରିତେ ।୧୨୪୭
ମୁହିଂ ଆଗେ ପଳାଇ ପଛେ ପଣ୍ଡୁ ଯେ ନୃପତି
ଆଗ୍ନି ଦେବତା ବ୍ରାହ୍ମଣ ସରୂପ ହୋଇପଛେ ଗୋଡ଼ାଇ
ଅଛନ୍ତି ।୧୨୪୮
ସେ ବ୍ରାହ୍ମଣ ପଛକତି ଭୋଜର କୁମାରୀ
ନିସତେ ପଳାଇଲି ବନସ୍ତେ ଯୋଜନ ଶତ ଚାରି ।୧୨୪୯
କ୍ଲେଉଟି ଚାହାନ୍ତେଣ ମୁଂ ପଡ଼ିଲି ମୁହଂ ମାଡ଼ି
ଉପରେ ଖଣ୍ଡା ନେଇ ରାଜା ପିଟିଲେ ମୋହୋରି ।୧୨୫୦
ସେ ବ୍ରାହ୍ମଣ କୋଳକରି ଧଇଲେ ପଣ୍ଡୁଂକୁ
କିଂକେ ନାଶ କରିବୁ ଯେ ବାଳୁତ କୁମରକୁ ।୧୨୫୧
ଛାଡ଼ ଛାଡ଼ ପଣ୍ଡାୟେ ମାରିବି ଯେହୁ ଦୁଷ୍ଟ
ନିତ୍ୟାପ୍ରତି ମଣୋହି ଯୋଗାଡ଼ ଯେ କରଇ ଉଚ୍ଛିଷ୍ଟ ।୧୨୫୨
ବ୍ରାହ୍ମଣ ବୋଇଲେ ତୁ ବାତୁଳ ହୋଇଲୁକି ରାୟେ
ଆତ୍ମଘାତକ ଅପାର ଦୋଷ ଯେ ନାଶକରନ୍ତି ତନୟେ ।୧୨୫୩
ପୁତ୍ରଂକର ଉଚ୍ଛିଷ୍ଟକୁ ଦୋଷ ନ ଲାଗଇ
ଇନ୍ଦୁର ମଞ୍ଜାରୀ ଛୁଇଂଲେ କି ପାକ ପକାଇ ଦେଇ ।୧୨୫୪
ପଣ୍ଡୁରାଜା ବୋଇଲେ ମୋତେ ହୋଇଲାକ ଅଯୋଗ୍ୟ
ଦେବ ପିତ୍ରେ ଦିଅଇ ଯେ ଅଗ୍ରତେ ଅନ୍ନଭୋଗ ।୧୨୫୫
ବ୍ରାହ୍ମଣ ବୋଇଲେ ଯେ ଅଗ୍ୟାଂନ ତନୟେ
ଯେହାଂକର ଦୋଷ ଯେ ନ ଘେନନ୍ତି ଦେବତାୟେ ।୧୨୫୬
ପଣ୍ଡୁ ବୋଇଲେ ଯେବେ ଦେବତାଂକୁ ଦିଲି
ଦୋହରା ଅଗ୍ନିକି ଯେ ଉଚିଷ୍ଟ ପରଶିଲି ।୧୨୫୭
ବ୍ରାହ୍ମଣ ବୋଇଲେ ହୋ ବାଳୁତଂକ ଉଚ୍ଛିଷ୍ଟ
ଦୋହରା ଅଗ୍ନି ଯେ ହୋଅନ୍ତି ତହିଂକି ତୁଷ୍ଟ ।୧୨୫୮
ତୁ ଯେବେ ମନେ ଅପ୍ରତେ କରୁ ମହାବୀରା
ଆମ୍ଭେ ସେ ବଶ୍ୟାନର ଅନଳ ଦୋହରା ।୧୨୫୯
ତୁହି ସେ ଆଜ ସିନା ଦେଖିଲୁ ହୋ ପଣ୍ଡୁ
ସାତ ବରଷ ହୋଇଲାନି ଆମ୍ଭେ ଯେହାର ଉଚ୍ଛିଷ୍ଟ ଭୁଞ୍ଜୁ ।୧୨୬୦
ନିରୁତାନ୍ତ ରୂପ ଯହୁଂ ଧଇଲେ ବହତି
କୋପ ଛାଡ଼ି ପ୍ରଣପତ୍ୟ ହୋଇଲେ ପଣ୍ଡୁ ଯେ ନୃପତି ।୧୨୬୧
ଦୋହରା ବୋଇଲେ ଯେ ତୋହୋର ପୁତ୍ରଗୋଟି
ଭୋଜନେ ଅତ୍ରିପୁତି ଯେହାକୁ ଆଧାର ନ ଅଣ୍ଟି ।୧୨୬୨
ଆମ୍ଭନ୍ତକୁହିଂ ଘୃତ ଯେହ୍ନେ ଭୁଞ୍ଜନ୍ତେ ନ ଅଣ୍ଟେ
କ୍ରୋଟ ଅନଳ ରୂପେ ଥିବୁ ଯେହାର ଗର୍ଭଗତେ ।୧୨୬୩
ଦିବାରାତ୍ରେ ଯେହାର ଅନ୍ନକୁ ହୋଇବ ବଡ଼ସ୍ୱାଗ
ଯେହାର ରାନ୍ଧନ୍ତେ ହୋଇବ ଅମିୟ ରସପାଗ ।୧୨୬୪
ଗଉରୀ ସଉରୀ ନଳବିଧି ନିତିପ୍ରତି
ସ୍ୱାମୀ ପ୍ରସନ୍ନେ ଦିଲେ ମୋତେ ଦୋହରା ବହତି ।୧୨୬୫
ସ୍ୱାମୀ ଯେସନେକ ବିଧାନ ମୁଂ ପାଇଛଇଂ ପୂର୍ବେ
ବିରାଟ ଘରେ ସୂପକାର ହୋଇବି ବଲ୍ଲଭ ନାମ ଯେବେ ।୧୨୬୬
ଯଦ୍ୟପି ଶରଧା କରିବ ମସରାଜ ସାଇଂ
ଅଥବା ମାଲଯୁଦ୍ଧ କରିବି କୁତୂହୋଳେ ମୁହିଂ ।୧୨୬୭
ଗୋସାଇଂ ଆସ୍ତାନେ ତୁମ୍ଭେ ବସିଥିବ ଅନୁବ୍ରତେ
ପରରାଷ୍ଟ ଯୁଦ୍ଧ ପଡ଼ିଲେ ହକରା କରିବାକ ମୋତେ ।୧୨୬୮
ଭୀମସେନର କହନ୍ତେ ଯେ ଫିଟିଲା ମନଭ୍ରାନ୍ତି
ସ୍ୱାମୀ ସନିଧ୍ୟ ହୋଇ ବସିଥିବ ତୁମ୍ଭେ ବିରାଟର କତି ।୧୨୬୯
ଆମ୍ଭେ ଦ୍ରଶନ କରିବୁ ଯେତେବେଳେ
ଭୃତ୍ୟପଣେ ଆସଇ କି ଆମ୍ଭର ସଦାକାଳେ ।୧୨୭୦

ଯେବଣ ବଚନ କହି ଅବା ଆମ୍ଭେ ନୁଆରିବୁ ଆସ୍ଥାନେ
ତୁମ୍ଭେ ପୂରୋଇ କହିବନା ରାଜାର ସନିଧ୍ୟାନେ ।୨୭୨
ଯୁଧେଷ୍ଠି ଚାହିଂଲେ ପୁଣ ଅର୍ଜୁନର ମୁଖ
ତୁ କେହ୍ନେ ଗୋପ୍ୟାନ ବାବୁ ହୋଇବୁରେ ବିବସ୍ତ ।୨୭୨
ଅର୍ଜୁନ ବୋଇଲା ଛାମୁରେ କରପତ୍ର ଯୋଡ଼ି
ବିରାଟ ରାଜ୍ୟେ ମୁଂ ଯେ ହୋଇବି ବୃହନ୍ନାରୀ ।୨୭୩
ରାଣୀହଂସ ପୁରେ ମୁଂ କରାଇବି ନୃତ୍ୟ
ବେଣୁ ବୀଣା ଯନ୍ତ୍ରତାଳ ତାଣ୍ଡବ ଭ୍ରରହ ସଂଗୀତ ।୨୭୪
ପଞ୍ଚବିଂଶ ତାଳ ଖଟଣ ଯେକବିଂଶ ମୁଛନା (ମୂର୍ଚ୍ଛନା)
ଅନନ୍ତ ବିନୋଦ ବୃନ୍ଦାଅର୍କ ମୋହନା ।୨୭୫
ଅର୍ଜୁନ ବଚନ ଶୁଣି ଧର୍ମରାୟେ ବୋଇଲେ
ଅନ୍ତେଶ୍ୱର ପୁରେ କେସନେକେ ପଶିବୁ ପୁରୁଷ ଭାବ ଥିଲେ ।୨୭୬
ଅଣ୍ଡିରମାନେ ନ ପଶନ୍ତି ଅନ୍ତେଶ୍ୱର ପୁରେ
ଗୋଟା ପରିବା ନ ପଶଇ ରାନ୍ଧିବାର ପୁରେ ।୨୭୭
ଅର୍ଜୁନ ବୋଇଲା ମୋର ହୋଇବ ସ୍ତିରୀବେଶ
କାମିନୀ ରୂପେଣ ଖୋଷା ଖୋଷିବି ଦେବ କେଷ ।୨୭୮
ତିରୀବେଶ ଅଳଂକାରେ ପିନ୍ଧିବି ଦେବ ଶାଢ଼ୀ
ବୃହନ୍ନାରୀ ବେଶ ହୋଇବ ମୋହୋରି ।୨୭୯
ଯୁଧେଷ୍ଠି ବୋଇଲେ ତୋତେ ହୋଇବ ଶରଧା
ଆସ୍ଥାନେ ବିରାଟ ନିଚେ କରିବଟି ଶୋଧା ।୨୮୦
ଅର୍ଜୁନ ବୋଇଲା ଦେବ ମୁଂ ନପୁଂସକ ହୋଇବି
ଗୁଣ ଘୃଷ୍ଟ ଫଳିବାର ବେନି ବାହି ପିନ୍ଧିବି ।୨୮୧
ଯୁଧେଷ୍ଠି ଦେବ ବିଷାଦ ଯେ ଅର୍ଜୁନ ବଚନେ
ନପୁଂସକ ଲକ୍ଷଣ ବାବୁ ତୁ ହୋଇବୁ କେସନେ ।୨୮୨
ଯେହେନେକ ଭବିଷ୍ୟ କହିଲୁ କିଂକେ କଥା
ମମ ହୃଦେ ଶୁଣିତେ ଲାଗଇ ବଡ଼ ଚିନ୍ତା ।୨୮୩
ଧୁର୍ତ୍ତ ସିଂହାଣ ଅଟଇ ରାୟେ ମଛ
ଅବଶ୍ୟ ଶୋଧିବ ସେ ଯେ କରିବ ପରୀକ୍ଷ ।୨୮୪
ଅର୍ଜୁନ ବୋଇଲା ଦେବ ନପୁଂସକ ରୂପ
ବରାଟ ଶୋଧାକଲେ ହୋଇବ ସରୂପ ।୨୮୫
ଯୁଧେଷ୍ଠି ପୁଛାକଲେ ଯେହେନେକ ଅଛଇ କି ପୂବେ
ନିଜ ନାମ ଗୋପ୍ୟାନ ତୋର ହୋଇଥିଲାକ କେବେ ।୨୮୬
ଅର୍ଜୁନ ବୋଇଲା ମୁଂ ଯେତେବେଳେ ଗଲାଇ ଅମର ମଣ୍ଡଳେ
ନିର୍ବାତକପଟକଙ୍କ ବଧକଲି ପିତାମହର ଛଳେ ।୨୮୭
ତୋଷେଣ କୋଳେ ମୋତେ ବସାଇ ମଘବାନ
କିରୀଟୀ ନାମ ମୋତେ ଦିଲେ ପାକ ଯେ ଶାସନ ।୨୮୮
ବାସବ ଦେବତାଂକର ଯେତେ ଅଳଂକାର ଭୂଷଣ
ସମସ୍ତ ଅଙ୍ଗେ ମୋର କଲେକ ଆଭରଣ ।୨୮୯
ଦେଖିଣ ମୋହିତ ହୋଇଲେ ସକଳ ଅପକ୍ଷରୀ
ଅନେକ ବେଶ ବେଶନେ ଯେ ତାଣ୍ଡବ ନୃତ୍ୟକରି ।୨୯୦
ବାସବର ପ୍ରିୟବତୀ ଅଟଇ ଉର୍ବଶୀ
ନୃତ୍ୟ ଆରମ୍ଭରେ ମୁଂ ଆସ୍ଥାନେ ଥିଲେ ବସି ।୨୯୧
ସେ ଅପକ୍ଷରୀ ମୋହୋରେ କଲାକ ମାନସୀ
ମୋତେ ଦେଖିଣ ସେ କାମସାଗରେ ଯେ ଭାଷି ।୨୯୨
ମୋହୋର ବଦନ ସେ ଚାହିଂଲା ଯହୁଂ ଆସି
ମୁହିଂ ତାହାର ବଦନ ନ ଚାହିଂଲି ସମ୍ଭାଷି ।୨୯୩
ମୁହିଂ ତାହାର ବଦନ ନ ଚାହିଂଲି ଯହୁଂ ତୋଳି
ବିଚିତ୍ର ନୃତ୍ୟକରି ପଡ଼ିଲା ବାଳୀ ଢଳି ।୨୯୪
କିଞ୍ଚିତ କରିଣ ସେ ଯେ ଚାହିଂଲା ଯେକଦୃଷ୍ଟି
ମଦନଶରେ ବାଳୀ ହୋଇଲା ଆସାଷ୍ଟି ।୨୯୫
ବାସବ ଜାଣିଲେ ଯେ ଉର୍ବଶୀର ପ୍ରକୃତି
ମୋହୋର ଶୟନ ସ୍ଥାନକୁ ପେଶିଲେ ନିଶାରାତି ।୨୯୬
ସ୍ୱାମୀ କପାଟ ପାଡ଼ିଣ ମୁଂ ପଲଂକେ ବସି ଶରମାନ ଗୁଣି
ପ୍ରିୟମ୍ବଦା ଉର୍ବଶୀ ଦ୍ୱାରେ ମିଳିଲେ ବେନି ଯେ ତରୁଣୀ ।୨୯୭
କପାଟ ଫିଟାଅ ବୋଲି ବିନୟେ ବୋଲନ୍ତି ଦ୍ୱାରେ
ରାତ୍ରେକ ମଣାଇ ମୋତେ କହିଲେ ଉତ୍ତରେ ।୨୯୮
ମାତାହୁଂ ଆନ ମୁଂ ଯେ ନ ବୋଲଇ ତାହାରେ
ବିନୋୟୀ ରାତ୍ରେକ ସେ ବସିଲା ମୋର ଦ୍ୱାରେ ।୨୯୯
କପାଟ ନ ଫେଡ଼ିଣ ମୁଂ ନ ଚାହିଂଲି ତାର ମୁଖ
ରୟଣୀ ଶେଷ ହୋଇଲା ସେ ହୋଇଲା ବିମୁଖ ।୩୦୦
କାମ କଷ୍ଟୋରେ ଉର୍ବଶୀ କୋପେ ବିହିଲା ମୋତେ ଶାପ
ମୁହିଂ ଜଗତମୋହିନୀ ରେ ମୋର ଭାଙ୍ଗିଲୁ ସିନା ଦର୍ପ ।୩୦୧
ମୋତେ ଅପ୍ରାପତ ଯେବେ ହୋଇଲୁ ଫାଇଗୁନି
ଆବର ରତିରଙ୍ଗ କରିବୁ କି ଅନ୍ୟ ତିରୀ ଘେନି ।୩୦୨
ମୋତେ ତୁହି ନିରାଶରେ କଲୁ ଅକାରଣେ
ତୋତେ ପ୍ରାପତ ହେଉ ନପୁଂସକ ଲକ୍ଷଣେ ।୩୦୩
ସ୍ୱାମୀ ଇନ୍ଦ୍ର ଦେବତା କୋପକଲେ ତାହା ଶୁଣି

ନିକଳଂକ ପୁତ୍ରେ ମୋର କଳଂକ ଲଗାଇଲୁ ଆଣି ।୩୦୪
ମୁହିଂ ତୋତେ ଯେବେ ଶାପ୍ୟ ଦେବଇଂ ଉର୍ବଶୀ
ପ୍ରଳମ୍ବିତ ହୋଇ ବାଳୀ ବାସବେ ବଚନ ସମ୍ଭାଷି ।୩୦୫
ଉର୍ବଶୀ ବୋଇଲା ମୋରେ କୋପ ନ କର ସୁରନାହା
ମୋର ଶାପ୍ୟ ପରମ ହିତ ହୋଇବ ପରିମାଣି
ବୁଝ ଯେହା ।୩୦୬
ସ୍ୱାମୀ ଅଗ୍ୟାଂତବାସ ଯେ ବରଷେ ତେରଦିନ
ତେତେଦିନ ଯାଏ ନପୁଂସକ ହୋଇବ ଅରଜୁନ ।୩୦୭
ସ୍ୱାମୀ ହିତକାଳୟେ ଯେବେ ମୋତେ ସୁମରଣ
ତେତେବେଳେ ହୋଇବ ଯେ ନପୁଂସକ ଲକ୍ଷଣ ।୩୦୮
ତହିଂର ନିମନ୍ତେ ସେ କରିବ ସୁମରଣ
କାହାରେ ଅନ୍ୟଥା ନୋହଇଟି କପାଳ ଲେଖନ ।୩୦୯
ସ୍ୱାମୀ ସବୁକାଳେ ସମ୍ପଦେ କାହାର ନ ଯାଇଟି ଦିନ
ସଦା ବିପତ୍ତି ଦେବ ନୋହଇ ଲେଖନ ।୩୧୦
ରାତ୍ର ଦିବସ ଯେହ୍ନେ ସମ୍ପଦ ବିପଦ ତେହ୍ନେ
କାହାରିବେଳେ ସେ ଯେ ହୋଇବାକ ଆନେ ।୩୧୧
ଅଣହିତ କାଳେ ଯେ ନ ଥିବ ତାର ତହିଂ
ଶୁଣିଣ ସାନନ୍ଦ ଯେ ହୋଇଲେ ସୁରସାଇଂ ।୩୧୨
ଯୁଝେଷ୍ଠି ଦେବ ପାଦତଳେ ଅର୍ଜୁନ ପରିଣାମି
ଯେଥକଇଂ ଭ୍ରାନ୍ତି ତୁମ୍ଭେ ନ କର ଦେବସ୍ୱାମୀ ।୩୧୩
ଅର୍ଜୁନ ବଚନେ ସେ ହୋଇଲେ ପରମ ଶାନ୍ତି
ସାନନ୍ଦ ଭଜିଣ ଦେବ ହୋଇଲେ ତ୍ରିପୁତି ।୩୧୪
ନକୁଳ ବଦନ ଚାହିଂ ବୋଇଲେ ଯୁଝେଷ୍ଠି
ତୁ କେମନ୍ତ କରି ବଞ୍ଚିବୁରେ ସୁକୁମାର ଭାଇଗୋଟି ।୩୧୫
ବାବୁ ଯେ ମହାଘୋର ଅରଣ୍ୟରେ ତୋତେ ହଂସୁଳୀ ସୁପାତି
ଶତେପଳ ଚନ୍ଦନରେ ଲେପୁଥାଉଂ ନିତି ।୩୧୬
ବାବୁ ବିଦ୍ୟାଧର ପରାୟେ ସୁକୁମାର ତୋର କାୟେ
ମୋ ତହୁ ବ୍ୟତ୍ରେକେ ଆନକୁ କହି ନୁଆରୁ କଥାୟେ ।୩୧୭
ଶୁଦ୍ଧ ସୁବର୍ଣ୍ଣ କୁଂକୁମ ଜାଣି ଶୋଭିତ ତୋର ବର୍ଣ୍ଣ
ଅଗ୍ୟାଂତବାସେ ବାବୁ ବଞ୍ଚିବୁ କେହି ଦିନ ।୩୧୮
ବାବୁ କୋହୁଣି ବିଦ୍ୟାରେ ତୁ ନୋହୁସିରେ କୁଶଳ
କେବଣ ମତେ ଦିନ ବଞ୍ଚିବୁରେ ନକୁଳ ।୩୧୯
ବାବୁ ତୋହୋର କଥାକୁ ମୋହୋର ବଡ଼ ଚିନ୍ତା
ମୋହୋର ଅର୍ଜିଲା କର୍ମ ଭୁଞ୍ଜୁଛ ରେ ଚାରିଭ୍ରାଥା ।୩୨୦
ନକୁଳ ବୋଇଲା ଦେବ ତୁମ୍ଭରେ ମୁହିଂ ସୁଖୀ
ଲଲାଟ ଲେଖନ ଦେବ କାହାର ବେଳେ ହୋଇବ ଉପେଖି
।୩୨୧
ସଦା ସମ୍ପଦେ ପ୍ରାଣୀଂକର ନ ଯାଇଟି ଦିନ
ସଦା ବିପତ୍ତି ଯେ କେବେ ନୋହୋଇ ଲେଖନ ।୩୨୨
ରାତ୍ର ଦିବସ ଯେହ୍ନେ ହୋଅଇ ତେସନ ସମ୍ପତ୍ତି ବିପତ୍ତି ଜାଣ
କାହାର ବେଳେ ଦେବ ହୋଇବ ସେ ଆନ ।୩୨୩
ମୋହୋର କଥାକୁ ଦେବେ କିଛିହିଂ ନ ଭାଳ
ଗ୍ରନ୍ଥିକାର ନାମେ ମୁଂ ଯେ ହୋଇବି ବାଜୀପାଳ ।୩୨୪
ଯୁଝେଷ୍ଠି ପୁଛାକଲେ ଗ୍ରନ୍ଥକାର୍ ବାଜୀପାଳ କାହାକୁ ଯେ ବୋଲି
ଯେ କେମନ୍ତ ଚରିତଟି ମୁଂ ବୁଝିତ ନୁଆରିଲି ।୩୨୫
ନକୁଳ ବୋଇଲା ମୁଂ ପାଗଡ଼ା ବାରୁଆଳ ହୋଇବି
ବିରାଟ ନୃପତିକଇଂ ଅଶ୍ୱ ଲାଗି କରାଇବି ।୩୨୬
ସ୍ୱାମୀ ମୋହୋର ହାଥରେ ଯେବଣ ଅଶ୍ୱ ସାଜି
ଆକାଶ କ୍ଷେପି ପାରନ୍ତି ସେ ହୁଅନ୍ତି ମହାତେଜି ।୩୨୭
ଯୁଝେଷ୍ଠି ଦେବେ ବୋଇଲେ ଆମ୍ଭର ଦେଖିଲା ଶୁଣିଲା ନାହିଂ ପୂର୍ବେ
ଅଶ୍ୱ ଲକ୍ଷଣ ବିଦ୍ୟା ଜାଣିଲୁ କେମନ୍ତ ତୁ ଯେବେ ।୩୨୮
ନକୁଳ ବୋଇଲେ ଦେବ ଶୁଣିମା ସାବଧାନେ
ଜୟନ୍ତି ନାମେ ସତ୍ୟଯୁଗ ବିଦ୍ୟମାନେ ।୩୨୯
ସ୍ୱାମୀ ତୁଳମାସ ଆଦିତ୍ୟ ବିଷ୍ଣୁ ଯେ ପ୍ରଭବ
ବିଛାମାସେ ଅନନ୍ତ ନାମ ଯେ ସମ୍ଭବ ।୩୩୦
ଦିବାକର ଆଦିତ୍ୟ ଯେ ହୋୟେ ଧନୁମାସେ
ସହସ୍ରେ କିରଣ ତେଜ ଯେ ପରକାଶେ ।୩୩୧
ମକର ମାସେ ଆଦିତ୍ୟ ଅରୁଣ ନାମେ ବିଦିତ
ନାରାୟଣ ମୂର୍ତ୍ତି ଉଦେ କୁମ୍ଭମସେ ପ୍ରକାଶିତ ।୩୩୨
ଭାସ୍ୱର ନାମେଣ ଆଦିତ୍ୟ ମୀନମାସେ ପ୍ରକାଶଇ
ଅନନ୍ତ ମୂର୍ତ୍ତି ଦେବ ତେଜ ଅଦୃଶ୍ୟ ଯେ ହୋଇ ।୩୩୩
ମେଷମାସେ ଆଦିତ୍ୟ ଯେ ହୁଅଇ ଉଦିତି
ନିଦାଘ ଆଦିତ୍ୟ ଜ୍ୟେଷ୍ଠମାସେ ତେଜମୂର୍ତ୍ତି ।୩୩୪
ମିଥୁନ ମାସେ ଉଦିତ ତପନ ନାମେଣ ସୂର୍ଯ୍ୟ
କକଡ଼ା ମାସେ ଯେ ଜଳଧର ନାମେ ତେଜ ।୩୩୫
ବନାନଳ ଆଦିତ୍ୟ ସିଂହମାସେ ଉଦେ
ମାର୍ତ୍ତଣ୍ଡ ନାମେ ଆଦିତ୍ୟ କନ୍ୟାମାସେ ଉଦେ ହାଦେ ।୩୩୬
ଦ୍ୱାଦଶ ମାସେ ଯେ ଯେ ଦ୍ୱାଦଶ ଆଦିତ୍ୟ
ନକୁଳ କହଇ ଯେ ଯୁଝେଷ୍ଠିଂକ ଅଗ୍ରତ ।୩୩୭
ସ୍ୱାମୀ ଦକ୍ଷର ନନ୍ଦିନୀ ଯେ ସଂଗ୍ୟାଂ ମହାସତୀ

ବିରଞ୍ଚିନାରାୟଣଙ୍କର ସେ ଅଟେ ପ୍ରିୟବତୀ ।୩୩୮
କୋଟିୟେ କିରଣ ଯେ ବିରଞ୍ଚି ନାରାୟଣ ମୂର୍ତ୍ତି
ସଂଗ୍ୟାଂ ସହି ନୁଆରିଲା ପ୍ରଖର ମହାଜ୍ୟୋତି ।୩୩୯
ସ୍ୱାମୀ ରୂପଜ୍ୟୋତି ଦେଖି ସେ ସଂଗ୍ୟାଂ ଅପୂର୍ଣ୍ଣା
ଶରୀରୁ ଜାତ କଲେ ଛାୟାନାମେ ବରାଙ୍ଗନା ।୩୪୦
ସ୍ୱାମୀର ପ୍ରକୃତିମାନ ସମସ୍ତ ତାକୁ କହି
ସ୍ତମ୍ଭନମୋହନ ବଶ ଉଚ୍ଚାଟନ ଗୁଟିକା ଅଞ୍ଜନ ତାକୁ ସମସ୍ତ ଶିଖାଇ ।୩୪୧
ମୁହିଂ ଗୋପ୍ୟାନ ହେଉଛି ମେରୁକ୍ରୋଟ
ଆରାଧନା ଭଗତି କରି ତୁହି ବିରଞ୍ଚି ନାରାୟଣକଇଂ ଖଟ ।୩୪୨
ଛାୟାକୁ ସମର୍ପଣ ତହୁଂ ସଂଗ୍ୟାଂଗଲା ଗୋପ୍ୟେ
ମେରୁକ୍ରୋଟେ ପଶିଲା ସେ ହୋଇଣ ଅଶ୍ୱରୂପେ ।୩୪୩
ଛାୟା ଖଟିଲା ଯେ ନାରାୟଣ ବିରଞ୍ଚି
ସଂଗ୍ୟାଂହୁଂ ଅଧିକ ଗୁଣେ ଭଗତି ସେହୁ ସଞ୍ଚି ।୩୪୪
ଯେ ବିଧିରେ ସତ୍ୟ ତ୍ରେତା ଦ୍ୱାପର ଯେ କଳି
ଯେକସ୍ତରୀ ଗଣ୍ଡା ଯୁଗ ଖଟିଲା ଅଂଶୁମାଳୀ ।୩୪୫
ଅନେକ ପ୍ରୀତି ଭାବେ ଖଟଇ ରମଣୀ
ବିରଞ୍ଚି ନାରାୟଣ ତାହା ନୁଆରିଲେ ଜାଣି ।୩୪୬
ମନୁସାନନ୍ଦ ବୋଲିଣ ଯେକଇ ସଂବତ୍ସରେ
କୁଣ୍ଡଳ ନାମେଣ କାଳ ଅବଦ ଭୋଗ କରେ ।୩୪୭
କୃତାନ୍ତକ ବୋଲିକରି ଯେକଇ କନ୍ୟାମାସେ
କୃଷ୍ଣପକ୍ଷେ ଯେକାଦଶୀ ସଂକ୍ରାନ୍ତି ଦିବସେ ।୩୪୮
ଉତ୍ତମ ବାର ସେଦିନ ଯେ ମଘାସିଂହ ରାଶି
ବାଳବ ନାମେ କରଣ ଯୋଗ ଯେ ହରଷି ।୩୪୯
ସେହିଦିନ କୃତାନ୍ତକ ଛାୟା ସଙ୍ଗେ କଳି
ଅନେକ ଭର୍ତ୍ସନା କରିଣ ଛାୟା ଦିଲେ ଗାଳି ।୩୫୦
ସହି ନୁଆରି ସେ କୋପକଲେକ ଯମ
ଛାୟାର ଉପରେ ପାଦ ପ୍ରହାର କଲା ତମ ।୩୫୧
କୋପେଣ ଛାୟା ଯେ ଶାପ୍ୟଦିଲେ ହେଲୁଂ
ଯାଆରେ ଯମ ତୋର ବାମ ଚରଣ ଅକ୍ଷୋଭ ହୋଇ ଗଳୁ ।୩୫୨
ଅଥବା ଯେବେ ମୁହିଂ ଅଟଇ ତୋର ମାୟେ
ଗଳୁତ କୋଷ୍ଟ ବ୍ୟାଧି ହେଉ ପ୍ରହାର କଲୁଯେବଣ ପାୟେ ।୩୫୩
ଯେହେନ୍ତେକ ଶାପ୍ୟ ବିହିଲେ ଛାୟା ମହାମାୟେ
ଗଳୁତ କୋଷ୍ଟ ବ୍ୟାଧି ହୋଇଲା ଯମ ଦେବତାଂକର ପାୟେ ।୩୫୪
ନିତ୍ୟକର୍ମ ବିଧି ଯେ ସୟଳ ଜନ ଚିନ୍ତା
ଆପଣା ଭୁବନେ ଆସି ବିଜେ କରଇ ସବିତ ।୩୫୫
ଦେଖିଲେ ଯମର ଚରଣେ ଗଳୁତ କୁଷ୍ଟ
ବାବୁ କାହାର ଶାପ୍ୟରେ ତୋହୋର ଶରୀରେ ହୋଇଲା ଯେତେ କଷ୍ଟ ।୩୫୬
କ୍ରୋଧେ ଗଦ ଗଦ ହୋଇଣ ଯେ ନାଶକର ବୋଇଲା
ମାତାର ଶାପେ ମୋତେ ଯେତେ କଷ୍ଟହେଲା ।୩୫୭
ପୁତ୍ରର ବାକ୍ୟ ଶୁଣି ବିସରିଲେ ଅଂଶୁମାଳୀ
ପୁତ୍ରକୁ ବାଧଇ ନିକି ମାତାଂକର ଗାଳି ।୩୫୮
ସବ୍ୟେ ଅସବ୍ୟେ ପୁତ୍ରେ ମାତାକୁ କରିବେ ଦୋଷ
ମାତାଯେ ରାଗେ ପୁତ୍ରଂକୁ ଶାପ୍ୟ ଦିଅନ୍ତି ଅବଶ୍ୟ ।୩୫୯
ଯେମନ୍ତ ହୋଇ ମାତାଂକର ଶାପ ପଡ଼ିଲେ
ବଂଶ ରହିବ କି ବିରଞ୍ଚି ନାରାୟଣ ବୋଇଲେ ।୩୬୦
ନିଚୟେ ଆମ୍ଭର ଏ ନୋହଇ ବଲ୍ଲଭୀ
ମାୟା କରିଣ ସେ ଆମ୍ଭନ୍ତ ଅଛି ସେବି ।୩୬୧
ଧ୍ୟାନେଣ ଜାଣିଲେ ତାହା ଗଗନ ବିହାରୀ
ବିଚାରି ଜାଣିଲେ ଯେ ପୁତ୍ରଂକର ନୋହେ ଗର୍ଭଧାରୀ ।୩୬୨
ତେଜ ସହି ନୁଆରି ସଂଗ୍ୟାଂ ଆମ୍ଭନ୍ତ କଲାକ ହାଦେ ମାୟା
ଧ୍ୟାନେ ଜାଣିଲେ ସେ ଯେ ଅଟଇ ଦେବୀ ଛାୟା ।୩୬୩
ସଂଗ୍ୟାଂର ଗୋପ୍ୟ ସେ ଜାଣିଲେକ ଦେବ ହୃଦେ
ଛାୟାକୁ ପ୍ରସନ୍ନ ବୋଇଲେ ଦେବ ପରମ ସାନନ୍ଦେ ।୩୬୪
ଯେତେକାଳ ପ୍ରକୃତି ଜାଣି ଖଟିଲୁ ଯେ ତୁହି
ସଂଗ୍ୟାଂ ଦେବୀର ବଲ୍ଲଭ ଯେ ଅଟଇ ହାଦେ ମୁହିଂ ।୩୬୫
ସଂଗ୍ୟାଂକଇଂ ଲୋଡ଼ିବାରେ ଗଲେକ ବିରଞ୍ଚି
ସୁସଞ୍ଚ ତୁରଙ୍ଗମ ହୋଇଲେ ଦେବ ସଞ୍ଚି ।୩୬୬
ହ୍ରେସାରାବ କରିଣ କଲେକ ଶବଦେ
ଅନନ୍ତ କୋଟି ବ୍ରହ୍ମାଣ୍ଡ କମ୍ପିଲା ରଡ଼ିନାଦେ ।୩୬୭
ଯେସନେକେ ଅଶ୍ୱଜାତି ତେସନେକେ ପ୍ରକୃତି
ସଂଗ୍ୟାଂହିଂ ହସିଲେ ବିରହ ଭାବମତି ।୩୬୮
ଶବଦକୁ ଗୋଡ଼ାଇ ଦେବ ପଶିଲେ ମେରୁକ୍ରୋଟେ
ମାଡ଼ି ବସିଲେ ଦେବ ସଂଗ୍ୟାଂଦେବୀର ପୃଷ୍ଟେ ।୩୬୯
ଯେକରାତି ହୋଇଲା ବତିଶ ଦିନ ପରିଯନ୍ତେ

କେହି କାହାକୁ ଓଛ ନୁହନ୍ତି ଯୁଗତେ ।୩୭୦
ଗର୍ଭରେ ଛାଡ଼ିଲେ ଦେବ ଅମୋହ ବିନ୍ଦୁରେତ
ବୀର୍ଯ୍ୟ ପଡ଼ନ୍ତେ ଗର୍ଭରୁ ପୁତ୍ରେକ ହୋଇଲେ ସମ୍ଭୁତ ।୩୭୧
ସେ ବିନ୍ଦୁରୁ ଜାତ ହୋଇଲେ ଅଶ୍ୱିନୀକୁମାର
ଅଶ୍ୱର ମୁଖଗୋଟି ଯେ ମାନବ ଶରୀର ।୩୭୨
ପୁତ୍ରର ବିକ୍ରମ ରୂପ ଦେଖିଣ ଅଂଶୁମାଳୀ
ଅତିହିଂ ଆନନ୍ଦେ ପୁଣ ସଂଗ୍ୟାଂର ପାଶେ ମିଳି ।୩୭୩
ପୁତ୍ରଜନ୍ମ ହେବାରୁ ରହି ନୁଆରିଲା ଯେତେ ରେତ
ଅସମ୍ଭାଳ ହୋଇଣ ସେ ପଡ଼ିଲା ପୃଥୀଗତ ।୩୭୪
ତହିଂରୁ ପୁଣ ପୁତ୍ରେକ ହୋଇଲାକ ଜାତ
ଅଯୋନି ସମ୍ଭୁତ ସେ ନାମଗୋଟି ରେହନ୍ତ ।୩୭୫
ରେହନ୍ତଂକର ଅଶ୍ୱକାୟେ ଦିଗପାଳ ଶିର ଗୋଟି
ଆକାଶ ପୁରୁଷ ହୃଦଗତେ ଅଜପା ଲୟେ ଘୋଟି ।୩୭୬
ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ ଗୁଟିକା ଅଞ୍ଜନ
ଉଲୂକ କୁହୁକ ବିଦ୍ୟା ଯକ୍ଷିନ ଯାଜନ ।୩୭୭
ଧରଣ ଧାରଣ ପର୍ବତ ରସାୟନ ମଉଷଧି
ଅବ୍ୟୟ ପୁରୁଷ ସେ ସ୍ୱୟଂ ସମସ୍ତ ମନ୍ତ୍ର ସାଧି ।୩୭୮
ସ୍ୱାମୀ ପଣ୍ଡୁଂକର ଅବସ୍ଥାରେ ମାଦ୍ରୀ ମୋତେ ଘେନି କୋଳାଗ୍ରତେ
ଅନନ୍ତ ବଇତରଣୀ କୂଳେ ଯେ ଭେଟିଲେ ରେହନ୍ତେ ।୩୭୯
ସ୍ୱାମୀ ଅଶ୍ୱ ଲକ୍ଷଣ ଯେ ସମସ୍ତ ମଉଷଧି
ରେହନ୍ତ ସାରଥି ମୋତେ କହିଲେ ସର୍ବବୁଦ୍ଧି ।୩୮୦
ସେ ପରମ ପୁରୁଷ ମୋତେ ଧରିଣ କୋଳାଗ୍ରତେ
ପଞ୍ଚବିଂଶ ମନ୍ତ୍ର ମୋତେ କହିଲେ ରେହନ୍ତେ ।୩୮୧
ଅଗି ଅରୁକତ ତପନ ସିଦ୍ଧଗୁଣ୍ଡି
ରୁଦ୍ଧିସମ ଧନଧର୍ମ ଆବର ମନ୍ତ୍ରଗୁଣ୍ଡି ।୩୮୨
ସ୍ୱାମୀ ଯେତେକ ବିଦ୍ୟା ଯେବେ ସାଧି ପାରଇ ସବ୍ଧ
ବ୍ୟାଧି ନ ପୀଡ଼ଇ ମୃତ୍ୟୁ ନୋହୋଇ ଅଶ୍ୱ ଯେ ନୋହନ୍ତି
ବୃଦ୍ଧ ।୩୮୩
ଅବଧାନୀ ବୋଲିଣ ଯେ ଯେକ ମନ୍ତ୍ର ଗୋଟିୟେ
ତାହା ପଢ଼ି ସାଜିଲେ ଆକାଶେ କ୍ଷେପନ୍ତି ହୟେ ।୩୮୪
ଅରୁଣ ମନ୍ତ୍ର ବଳି କର୍ମଣ ମନ୍ତ୍ର ବେନି
ଅଶ୍ୱ ରଣେ ସାଜି ଜିଣନ୍ତି ଯେ ପାରନ୍ତି ଚିହ୍ନି ।୩୮୫
ସାମ ତିତ କଙ୍ଗ ନାମେ ଅଛଇ ତିନି ମନ୍ତେ
ଅକାଟ ଅପୁଟ ଯେ ଉଲୂକଣ ହୟେ ଯେତେ ।୩୮୬
ଶୁଣ ଦେବ ମହାରାଜା ବୋଧିତ ଗ୍ୟାଂନଗୁରୁ
ବନର ଅଶ୍ୱେ ଆସି ଖଟିବେ ମୋହୋର ମନ୍ତ୍ର ପଢୁ ।୩୮୭
ପଳିତ ଗଳିତ ଅଶ୍ୱ ମୋହୋରେ ତେଜମୟେ
ଥାଠ ନ ଜିଣିଲେ ଦେବ ନୁଆସନ୍ତି ମୋର ହୟେ ।୩୮୮
ମନ୍ଦାଅର୍କ ବୋଲିଣ ଅଛଇ ବେଦମନ୍ତ୍ର ସଂଗ୍ୟାଂ
ଯେହା ଉଦେଶ୍ୟ କରନ୍ତେ ସବୁନ୍ତି ଅଟଇ ଆଗ୍ୟାଂ ।୩୮୯
ନକୁଳ କହନ୍ତେ ଥମ୍ଭୀଭୂତ ଧର୍ମସୁତେ
ବିପତ୍ତି କାଳକୁ ଧାତା ସଜ୍ଝ ଅଛଇ ନିୟତେ ।୩୯୦
ଯୁଝେଷ୍ଟି ବୋଇଲେ ବାବୁ ଶୁଣସିରେ ବସ
ଅଶ୍ୱ ଗୋଟିୟେ ଡାକନି ରେ ଦେଖିବା ପ୍ରତକ୍ଷ ।୩୯୧
ନୋହିଲେ କି ବିରାଟ ରାଜ୍ୟକୁ ତୋତେ ପାରଇକି ନେଇ
ଜଣେକ ଉଦିତ ହୋଇଲେ ଜାଣିମେ ସବୁଂକୁହିଂ ।୩୯୨
ନକୁଳ ଚାହିଂଲା ଅଶ୍ୱ ଅଂଜନକଇ ଘେନି
ଦେଖିଲା ଅଶ୍ୱଜାତ ବନ ଯୋଜନ ଶତ ତିନି ।୩୯୩
ନକୁଳ ବୋଇଲା ସ୍ୱାମୀ ଶୁଣିମା ସାବଧାନେ
ବାରସ ପର୍ବତ ଦେବ ତିନିଶତ ଯୋଜନେ ।୩୯୪
ତହିଂ ଅଶ୍ୱମାନଂକର ଜନମଥାନ ଭୂମି
କଳା ପାଟଳ ହରିତ ଶ୍ୱେତ କୁଂକୁମ ଶ୍ୟାମରୂପ ସ୍ୱାମୀ ।୩୯୫
କେମନ୍ତ ଅଶ୍ୱ ଗୋଟିୟେ ଆସିବ ଦେବ କତି
ଶ୍ୱେତ ଅଶ୍ୱ ଗୋଟିୟେ ଆସୁ ଦଧିମଙ୍ଗଳ ସୁଗତି ।୩୯୬
ଅଶ୍ୱ ଆଗମ ମନ୍ତେ ବାମାବର୍ତ୍ତେକ ପଢ଼ିଲା କୁମାର
ଅଦଭୂତେ ଅଶ୍ୱେକ ଆସି ମିଳିଲା ଛାମୁର ।୩୯୭
ଧର୍ମଂକର ନନ୍ଦନ ତାହା ଦେଖିଣ ଆଶ୍ରିଜ
ବାବୁ ତୋହୋର ପସନ୍ନେ ପ୍ରାପତ ହୋଇବ ମୋତେ
ରାଜ୍ୟ ।୩୯୮
ବାବୁ ଅଶ୍ୱଂକର ପ୍ରସନ୍ନେ ଶତ୍ରୁକୁ ହୋୟେ ଜିଣି
ଯେବେ ସେ ଉଦିତ ମୋତେ ହୋଇଲା ଦଣ୍ଡପାଣି ।୩୯୯
ଆବର କଉରୋବଂକୁ କିସ ମୋର ଭୟେ
ବେଗକରି ଅଗ୍ୟାଂତବାସ ସାରିବା ଛଡ଼ଜଣେହେ ।୪୦୦
ସହଦେବର ବଦନ ଯେ ଚାହିଂଲେ ଧର୍ମସୁତେ
ତୁହି ସେ ସର୍ବଗ୍ୟଂ ବାବୁ କିସ କହିବାକ ତୋତେ ।୪୦୧
ଆମ୍ଭ ସବୁକୁହିଂ ବାବୁରେ ତୁହି ସେ ବୁଦ୍ଧିଦାତା
ଶୁଣିତେ ଇଚ୍ଛା ମୋର ତୁ କେବଣ ଗୁଣେ ଜିତା ।୪୦୨
ସହଦେବ ବୋଇଲା ଦେବ ଶୁଣ ଧର୍ମରାୟେ
ଗୋପ୍ୟାନ ହେବାକୁ ମୋର ଅଛଇ ଉପାୟେ ।୪୦୩
କହ ବୋଲି ବୋଲନ୍ତି ସେ ଧର୍ମର ନନ୍ଦନ
କରପତ୍ର ଯୋଡ଼ିଣ କହେ ମାଦ୍ରୀର ନନ୍ଦନ ।୪୦୪

......

ମୁହିଂ ଗୋ ଲକ୍ଷଣ ବିଦ୍ୟା ଜାଣଇଂ ସମସ୍ତ
ମୁକୁଇଂ ଶିଖାଇଛନ୍ତି ଦେବ ପଦ୍ମନେତ୍ର ।୪୦୫
ସ୍ୱାମୀ ନାରାୟଣ ପ୍ରସନ୍ନେ ମୁଂ ଗୋ ଲକ୍ଷଣ ବିଦ୍ୟାୟେଣ କିତା
ମସ୍ତଦେଶେ ଗୋଧନ ଦେବ ରଖିବି ଅପ୍ରମିତା ।୪୦୬
ମୋହୋର ନାମ ଧରନ୍ତେ ଗୋଧନ ତରନ୍ତି
ତନ୍ତ୍ରୀପାଳ ନାମ ବହିବି ଗୋପାଳ ମୂରତି ।୪୦୭
ସହଦେବର ବଚନେ ସମତୁଲ ଭେଟି
ଶୁଣିଣ ସାନନ୍ଦ ଯେ ହୋଇଲେ ଯୁଝେଷ୍ଠି ।୪୦୮
ଦ୍ରୋପତିଂକି ପୁଛାକଲେ ତୁମ୍ଭର କିସ ବୁଦ୍ଧି
ଦ୍ରୋପତୀ ବୋଇଲେ ବ୍ୟାସଂକର ବଚନେ ଥିବି ମୁଂ ସୁଦେଷ୍ଣାଂକୁ ଆରାଧି ।୪୦୯
ଚତୁସମ ଯୋଗାଇବି ଯେକଯୋଗ କରି
ଅଲେଖ ତିଳେଖ କରାଇବି ସଂକୋଚନର କୁମାରୀ ।୪୧୦
ଯେମନ୍ତେ ବିରାଟ ନ ଦେଖଇ ନିଜକାୟେ
ଦେଖିଲେ ଇଛା କରିବ ଲଂଘିଲେ ନାଶ ଯାୟେ ।୪୧୧
ଅଥବା ବିରାଟ ହୋଉ କିବା ଆନଜନ ହୋଉ
ତୁମ୍ଭନ୍ତ ଲଂଘିଲେ ନାଶ ଯିବ ଧର୍ମହିଂ ପଛେ ଯାଉ ।୪୧୨
ଯେସନେକ ବାକ୍ୟ ଯହୁଂ କହିଲେ ଯୁଝେଷ୍ଠି ନୃପତି
ପାଞ୍ଚାଳୀ ବୋଇଲେ ମୁଂ ଚିତ୍ତବୃତ୍ତି ଥିବିଟି ନିବର୍ତ୍ତି ।୪୧୩
ତୁମ୍ଭେ ଯେ ଯାହାର ନାମ କରସି ଗୋପନ
ସଇରିନ୍ଧ୍ରୀ ନାମ ମୋହୋର ହୋଇବ ବିଦ୍ୟମାନ ।୪୧୪
ଯୁଝେଷ୍ଠି ଦେବ ଶୁଣିଣ ପୁଛାକଲେ ତହିଂ ବାଣୀ
ମିଥ୍ୟା କହିଲେଟି ନାଶ ଯାନ୍ତି ପ୍ରାଣୀ ।୪୧୫
ଦ୍ରୋପତୀ ବୋଇଲେ ଦେବ ନୁହଇଟି ମିଥ୍ୟା
ସଇରିନ୍ଧ୍ରୀ ନାମହୁଂ ମୋହୋର ନାହିଂ ଆନ ଦୀକ୍ଷା ।୪୧୬
ସଇରିନ୍ଧ୍ରୀ ସଦାରାୟେ ସଦାଦିନ ହରି
ତେନ୍ୟାୟୁଂ କରି ସଇରିନ୍ଧ୍ରୀ ନାମ ହୋଇଲା ମୋହୋରି ।୪୧୭
କାଳ ଅନୁରୂପେ କରିବା ନା ସେବା
ପ୍ରସ୍ତାବ ଅନୁରୂପେ ଯେ ସମସ୍ୟା କରିବା ।୪୧୮
ପବନ ଅନୁରୂପେ ବାରିବା ଅନକୂଳ
ଧର୍ମ ଅନୁରୂପେ ବଞ୍ଚିବା ଦିନକାଳ ।୪୧୯
ଅନୁରୂପ ସାଧ୍ୟେ ଭାଷିବା ନାହିଂକି ବାଣୀ
ପଣ୍ଡିତ ଜନେ ସେ ଯେହା ପରିମାଣି ।୪୨୦
ଶୁଣିଣ ଧର୍ମନନ୍ଦନ ପରମ ସାନନ୍ଦେ
ସବୁଂକରି ମନଭ୍ରାନ୍ତି ଫିଟିଲାକ ହାଦେ ।୪୨୧
ଜୟ ତୁ ଜଗୁମୋହନ ଦେହ ଶିରୀବସ୍ଥ
ତୋହୋର ପ୍ରସନ୍ନେ ମୋର ସର୍ବସିଦ୍ଧ ବାଞ୍ଛ ।୪୨୨
ସ୍ୱାମୀ ନ ଗଲି ତୀର୍ଥ ଯେ ନ କଲି ଧର୍ମମାନ
ଶ୍ରବଣେ ଶୁଣିଲି ଯାହା ଦେଖିଲି ନୟନ ।୪୨୩
ନ ପଢ଼ିଲି ଶାହାସ୍ତ୍ର ମୁଂ ନ ଜାଣିଲି କିଛି
ନୋହିଲି ଭଗତ ମୁହିଂ ଭଗତଜନ ବାଛି ।୪୨୪
କରୁଣାସାଗର ନାଥ ଅଲେଖନ ଚିତ୍ରପଟି
ହୃଦଗତେ ବିଘଂସୁ ସମ ଶ୍ରୀକୃଷ୍ଣ ନାମ ଗୋଟି ।୪୨୫
ଶିବ ଶୁକବ୍ରହ୍ମ ଯେଉଂଣ ପାଦେ ବନ୍ଦେ
ସ୍ତ୍ରିଜିତ ଭାବକର୍ମ ଗୁଣନାଥ ଅନୀତିକି ବାଟ ନଦେ ।୪୨୬
ବଉଦ ରୂପେ ନାରାୟଣ ସୟଳଜନ ଚିନ୍ତା
ବୁଡ଼ନ୍ତା ସିନ୍ଧୁଜଳୁଂ ତୁହି ସେ ଦେବ ଉଦ୍ଧରନ୍ତା ।୪୨୭
ମୂର୍ଖ ଅପଣ୍ଡିତ ମୁହିଂ ନ ଜାଣଇ କିଛି
ଶୂନ୍ୟ ଶବଦ ବାକ୍ୟେ ତୁହି ସେ ସର୍ବସାକ୍ଷୀ ।୪୨୮
ବିଷ୍ଣୁର ଆଶ୍ରା ବ୍ୟତ୍ରେକେ ନ ଜାଣଇ ଆନ
ତୁକୁଇଂ ନାଥ ମୁଂ ମାଗଇ ତୋର ଜପତପ ଧ୍ୟାନ ।୪୨୯
ପ୍ରିୟମ୍ୱଦାର ପ୍ରାଣବଲ୍ଲଭ ତୁଳୁସାର ପ୍ରାଣବନ୍ଧୁ
ଶୂଦ୍ରମୁନି ସାରୋଳା ଦାସ ଶ୍ରୀ ପୁରୁଷୋତ୍ତମ ପାଦେ ବିନ୍ଦୁ ।୪୩୦

**

## ୬୬. ପାଣ୍ଡବଙ୍କର ବିରାଟ ରାଜ୍ୟକୁ ଗମନ

### ଯୁଧିଷ୍ଠିରଙ୍କର ବିରାଟ ସଭାକୁ ଗମନ

କହନ୍ତି ଅଗସ୍ତି ମୁନି ବ୍ରହ୍ମବେତ୍ତା
ଅଷ୍ଟଦଶ ପର୍ବେ ଯେ ବିରାଟ ପର୍ବ କଥା ।୧
ଧର୍ମର ଆଗ୍ୟାଂ ଯେ ଅଲଂଘିତ ଶିରେ
ଅଗ୍ୟାଂତ ବନବାସ ପାଣ୍ଡବଂକ ମଚ୍ଛଦେଶରେ ।୨
କୀଚ୍ଚକେର ଭାରା ଯେ ସହି ନୁଆରଇ ପୃଥୀ
ତାହାର ବଧ ନିମନ୍ତେ ପାଣ୍ଡବଂକୁ ଯେତେ ଶାସ୍ତି ।୩
ଯୁଝେଷ୍ଠି ଦେବେ ବୋଇଲେ ଭୀମ ଯାଅ ବିରାଟ ସଭାକୁ
ବିରାଟ ଚିହ୍ନି ପାରଇ କି ନୁଆରଇ ତୁକୁ ।୪

ଯେବେ ତୋତେ ଚିହ୍ନି ନୁଆରେ ବିରାଟର ନାହା
ଯିବା ବିରାଟ ରାଜ୍ୟକୁ ତୁ ଆଗେ ହୋଇ ଯାଆ ।୫
ଭୀମସେନ ବୋଇଲା ଆଗ ଯେବେ ଯିବି
ବିରାଟ ସଭାରେ ମୁଂ କାହାମୁଖ ଚାହିଁ ସମ୍ବାଦ କହିବି ।୬
ଜାଣି ବିରାଟ ନ କଲେ ଗଉରୋବ
ସ୍ୱାମୀ ଆମ୍ଭର କୋପରେ ସେ ନିଚୟେ ନାଶଯିବ ।୭
ତୁମ୍ଭେ ବସିବ ଯାଇଂ ବିରାଟ ଆସ୍ତାନେ
ସମସ୍ତ ସିଦ୍ଧ ହୋଇବ ତୁମ୍ଭର ଦରଶନେ ।୮
ଭୀମସେନର ବଚନେ ସଜ ହୋଇଲେ ଦେବ କୋନ୍ତେ
ସଭାପଣ୍ଡା ରୂପ ଧଇଲେ ଗୋପ୍ୟାନେ ନିମନ୍ତେ ।୯
ଲମ୍ବିତ ଜୁଡ଼ା ଯେ ତ୍ରିକଚ୍ଛ ବସନ
ତାମ୍ରବସ୍ତ୍ର ପରିହରଣ ବିଭୂତି ଶରୀରେ ଲେପନ ।୧୦
ସଉରୋବ ତମ୍ୟପାତ୍ରୀ କରେଣ ବେଦ ଯେ କରାଣ୍ଡି
ଦ୍ୱାଦଶ ଚିତା ଶ୍ରୀବସ୍ତ ଲାଞ୍ଛନ ବାମକରେ କୁଶବିଡି ।୧୧
ଦେବ ସମାର୍ଜନେ କାଖେ ବିଷ୍ଣୁପୁରାଣ ଯେ ପୋଥି
ବାମେ କାନ୍ଧେଣ ପଇତା ଉତ୍ତୁରୀ ପଡ଼ିଅଛି ।୧୨
ଶ୍ରୀକରେ ପଞ୍ଚମୁଖୀ ରୁଦ୍ରାକ୍ଷ ଡାହାଣ ବ୍ରତେକ
ଚାଲନ୍ତେ ଜଗୁଜନ ମୋହୋଇ ତିନିଲୋକ ।୧୩
ନିରାକାର ପୁରୁଷ ନାଥ ଧର୍ମରାୟେ ଯେ ଯୁଝେଷ୍ଠି
ପବିତ୍ରା ଉତ୍ତରୀ ଯେ ଅଙ୍ଗୁଷ୍ଠିରେ କୁଶଗଣ୍ଠି ।୧୪
ମନୁ ସମ୍ଭାଷଣେ ଯେ ଗୋପ୍ୟାନ ଦୋହୋରା
ଅଜପା ଗାୟତିରୀ ପବିତ୍ର ବ୍ରହ୍ମସୋରା ।୧୫
ଯେହେନ୍ନେକ ହୋଇଣ ବ୍ରାହ୍ମଣ ଦିବ୍ୟବେଶ
ପଣ୍ଡୁର ନନ୍ଦନ ଯେ ଗମଇ ମଚ୍ଛଦେଶ ।୧୬
ପଣ୍ଡିତ ରୂପଗୋଟି ଧଇଲେ ଧର୍ମବାଳ
ସୁମରନ୍ତି ଦଧିବାବନ ସର୍ବ ଯେ ମଙ୍ଗଳ ।୧୭
ପଛିମ ମୂରତି ହୋଇଲେ ବାଞ୍ଚାବଟର ତଳେ
ସୁମରନ୍ତି ବାକ୍ୟଦେବୀ ଶ୍ରୀ ସର୍ବ ସାରୋଳେ ।୧୮
ଧନୁମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଗୁରୁବାର
ପୁନର୍ବସୁ ନକ୍ଷତ୍ର ଅଟଇ ସେ ଦିନର ।୧୯
ତଇତିଳ ନାମେ କରଣ ଇନ୍ଦ୍ରନାମେ ଯୋଗ
ତାରଚନ୍ଦ୍ର ବେଳେଣ ରୋହିଣୀ ଘରେ ଭୋଗ ।୨୦
ବିଜୟେ ଧର୍ମନନ୍ଦନ ଶୁଭଯୋଗ ଘେନି
ଲଳିତ ପାଦଗତି ଜଳେ ହଂସ ଜାଣି ।୨୧
ଧର୍ମ ନନ୍ଦନ ଚାଲନ୍ତେ ପୃଥିବୀ ଶୋହଇ
ମତ୍ତଗଜ ଲୀଳା ତ୍ରଇଲୋକ୍ୟ ଜନ ମୋହଇ ।୨୨
ଦ୍ରହସିତ ବଦନେ ପକ୍ୱବିମ୍ବ ଅଧର ପରକାଶ
ମଚ୍ଛଦେଶେ ଯାଇ ହୋଇଲେ ପରବେଶ ।୨୩
ନଗ୍ରେ ଚାଲନ୍ତେଣ ଦେଖନ୍ତି ପୁରଜନେ
ଅମରାଧି ନାଥ କି ବିଜୟେ କଲେ ମଘବାନେ ।୨୪
କେବଣ ଦେଶୀ ଯେ ଆସି ମଧ୍ୟପୁରେ ପଶି
ମନୁଷ୍ୟ ଅବତାର ତ ସରୂପ ନ ଦିଶି ।୨୫
ସମ୍ଭର୍ବେ ଆସ୍ତାନେ ବିଜୟେ ମଚ୍ଛପତି
ବାମଦେବ ପୁରୋହିତ ଯାଚକେଶ୍ୱର ମନ୍ତ୍ରୀ ।୨୬
ବତିଶଲକ୍ଷ ଯୋଦ୍ଧା ତିନିଶତ ପାରିଦଣ୍ଡ
ଖଟନ୍ତି ଆସ୍ତାନ ତଳେ ଯେ ଯାହା ଭୂଅଖଣ୍ଡ ।୨୭
ଲକ୍ଷେକ ପାଟଛତ୍ର ଯେ ବେନିଲକ୍ଷ ଉଦଣ୍ଡ
ଚାରିଲକ୍ଷ ଆଲମ୍ୱ ତିନିଲକ୍ଷ ଚାମର ପ୍ରଚଣ୍ଡ ।୨୮
ସାତକ୍ଷଉଣୀ ବଳ ଯେ ଅଛନ୍ତି ପଟୋଆରୀ
ତିନି ଅହିବ୍ରତ ବୀରତୂର ବାଦ୍ୟନାଦ ପୁରି ।୨୯
ଲକ୍ଷେକ ଶଙ୍ଖ ଯେ ପୂରଇ ଆସ୍ତାନର ତଳେ
ପାଣ୍ଡବ ସୁନ୍ଦର ଯାଇଂ ବିଜୟେ ଧର୍ମବାଳେ ।୩୦
ଦ୍ୱାରେଣ ଉଭା ଯେ ହୋଇଲେ ଯୁଝେଷ୍ଠି
ଆସ୍ତାନର ଲୋକେ ଯେ ହୋଇଲ ଯେକଦୃଷ୍ଟି ।୩୧
ଭୟେଣ ଦ୍ୱାର ଯେ ଛାଡିଲେ ଦ୍ୱାରପାଳ
ବିରାଟ ବୋଇଲେ ଯେ କେବଣ ଦିଗପାଳ ।୩୨
ଯଶୋବନ୍ତୀପୁର ତେଜି କି ବିଜେକଲେ ବେଦବ୍ରହ୍ମା
ଅଲେକ ବୋଧନ କି ଯେ ଗୁଣସାଗର ମହାତମା ।୩୩
ଅଳକାର ନାଥ କି ଯେ ଅଟଇ କୁବେର
ଅମରାଧି ନାଥ କି ଯେ ବିଜେ ସୁରେଶ୍ୱର ।୩୪
କି ଅବା ଈଶ୍ୱରେ ଯେ କପିଳାସବାସୀ
ବାହାନ ଅଭାବେଣ କି ପାଦେ ଗମିଆସି ।୩୫
ବିରାଟର ଅଗ୍ରତେ ଯେ ମନ୍ତ୍ରୀବର ପ୍ରକାଶଇ
ମୃଦ୍ଧନା ଅଭିଷେକୀ ପ୍ରାୟେକ ଦିଶଇ ।୩୬
ମୃଦ୍ଧନା ଅଭିଷେକୀ ହୋଇ ପାଦେଣ ନ ଚାଲି
ରାଜ୍ୟଭ୍ରଷ୍ଟ ରାଜାପ୍ରାୟ ବିଚାର ମୁହିଁ କଲି ।୩୭
ଆକୁଞ୍ଚିତ କେଶ ଯେ ମକରନ୍ଦ ବର୍ଣ୍ଣ
ରସାଣିଲା କଣୟ ପ୍ରାୟେକ ଲଲାଟ ଘଟଣ ।୩୮
ନୀଳାରେଖ ପ୍ରାୟେ ତଥିରେ ରୋମାବଳୀ
ହିରଣ୍ୟ ଉପରେ ଯେ ନୀଳାରେଖ ଝଳି ।୩୯

ଖଗବର ଚଞ୍ଚୁଜାଣି ନାସା କଟି କଣୟ ମେଖଳା
ଗୁଞ୍ଜଫଳ ଜାଣି ଚଳନ୍ତି ବେନିଡୋଳା ।୧୪୦
ପଂକୁବିମ୍ବ ପ୍ରାୟେକ ଦିଶଇ ଅଧର
ଡାଳିମ୍ବ ବୀଜ ଜାଣି ଦଶନ ଶୋଭାକର ।୧୪୧
ଘଟଣ ହୀରା ପ୍ରାୟେକ ଶୋହେ ଗଣ୍ଡସ୍ଥଳ
ବିସ୍ତାର ବକ୍ଷସ୍ଥଳ ଉଚ୍ଛର୍ଗ ବୃଷାଳ ।୧୪୨
କୁଞ୍ଜର ହାଥ ଜାଣି ବେନିବାହା ଦିଶି
ଚମ୍ପେକ କଢ଼ି ଜାଣି ଅଙ୍ଗୁଳି ବିକାଶି ।୧୪୩
ଶୁଦ୍ଧ ସଷ୍ଟ ନ ଜାଣି ଦିଶଇ ଦଶନହ
କୁଂକୁମ ବର୍ଣ୍ଣ ଜାଣି ସୁବଳିତ ଦେହ ।୧୪୪
ପୃଥୁଳ ପ୍ରାୟେକ ବପୁ ଶୋଭା ଦିଶଇ ଯେ କୁଚ୍ଛୀ
ଗଭୀର ନାଭିକୁନ୍ଦ ଘଟଣ ଜାଣି ଗଛି ।୧୪୫
ଉଲଟ ରାମ କଦଳୀ ଜାଣି ଶୋହଇ ବେନିଜାନୁ
ସଂକୀର୍ଣ୍ଣ ମଝା ଯେ ଅଳପ ଢଳଇ ତନୁ ।୧୪୬
ଅୟେଂକା ପୁଷ୍ପ ପ୍ରାୟେକ ପାଦ ତଳିପାର କାନ୍ତି
ଘଟଣ ପୋୟେଲା ଜାଣି ଅଙ୍ଗୁଷ୍ଠି ବିରାଜନ୍ତି ।୧୪୭
ତରାଟ ପାଖୁଡ଼ା ପ୍ରାୟେକ ଦିଶଇ ଲଖରେହ
ମାନବଜନ୍ମ ପ୍ରାୟେକ ନୋହୋଇ ଯେହାଂକର ଦେହ ।୧୪୮
ଆସ୍ଥାନ ଯାକେ ସମସ୍ତେ ତହିଂ କଲେ ମହାଭୟେ
ଉପରେ ଉଠିଲେ ଯାଇଂ ତପୋଧନ ପ୍ରାୟେ ।୧୪୯
ମନ୍ତ୍ରୀ ବୋଇଲେ ଦେବ ଉଠ ଉଠ ହୋ ବିରାଟ
ଆଜ ତୁ ପାଇଅଛୁ ମହାତ୍ମା ପୁରୁଷର ଭେଟ ।୧୫୦
ଦେବ ବିପ୍ର ତପୋଧନ ଦେଖିଲେ କରି ପୂଜା
ମନ୍ତ୍ରୀବର ବଚନେ ଯେ ଉଠିଲା ମଚ୍ଛରାଜା ।୧୫୧
ଭୟେଣ ମହାରାଜା ଉଭା ଆସ୍ଥାନ ଛାଡ଼ି
ବିରାଟର ଆସ୍ଥାନେ ବସିଲେ ରାୟେ ମାଡ଼ି ।୧୫୨
ଆସ୍ଥାନରେ ବସନ୍ତେ ନିରଞ୍ଜନର ସାରିଛ
ଦେଖିଣ ପ୍ରଳମ୍ବ ଯେ ହୋଇଲେ ରାୟେ ମଚ୍ଛ ।୧୫୩
ସମସ୍ତେ ପ୍ରଣପତ୍ୟ ହୋଇଲେ ଯୁଝେଷ୍ଟିଂକ ପାଦତଳେ
ସମସ୍ୟା ନ ଫିଟଇ ଚାହାନ୍ତି ବେନିଡୋଳେ ।୧୫୪
ସମସ୍ତେ ମଉନବ୍ରତ କାହାର ନ ଫୁରଇ ବାଣୀ
ମସ୍ତକେ ହାଥଦେଇ ଭୃତ୍ୟର ଭୃତ୍ୟ ଜାଣି ।୧୫୫
ମନ୍ତ୍ରୀବର ବୋଇଲା ଦେବ ସମସ୍ୟା କର ରାୟେ
ବିରାଟ ବୋଇଲା ମୋତେ ଲାଗୁଛି ବଡ଼ ଭୟେ ।୧୫୬
ଭୋ ମନ୍ତ୍ରୀ ତୁ ତାହାଂକୁ କହ ତୁଷ୍ଟିବାଣୀ
କିସ ଉତ୍ତର କହନ୍ତି ତୋହୋର ବଚନ ଶୁଣି ।୧୫୭
ମନ୍ତ୍ରୀ ବୋଇଲା ତୁମେ ରାଜ୍ୟର ଅଧିକାରୀ
ସେମାନେ କି ସମସ୍ୟା ଦେଇତ ଆମ୍ଭେ ପାରି ।୧୫୮
ବେନିକର ଯୋଡ଼ି ଛାମୁରେ କହଇ ବିରାଟ
ଗୋସାଇଂ କେବଣ ଭୁବନର ଠାକୁର ତୁମେ ଅଟ ।୧୫୯
କେବଣ ଦିଗପାଳ କେବଣ କୁଳଜାୟେ
କେବଣ ରାଷ୍ଟ୍ର କେ ଅଟଇ ପିୟର ମାୟେ ।୧୬୦
ବଦୟନ୍ତି ଧର୍ମସୁତେ ଶୁଣ ଭୋ ମଚ୍ଛପତି
ପଚ୍ଛିମ ସଉରାଷ୍ଟ୍ର କୁଞ୍ଜଗଳ ଚକ୍ରବତୀ ।୧୬୧
ବଇରାଷ୍ଟ୍ର ଗୋତ୍ର ଧର୍ମଦାସ ପଣ୍ଡାୟେ ଆମ୍ଭ ପିତା
ଭୋଜର ନନ୍ଦନୀ ମାହେଶ୍ୱରୀ ଆମ୍ଭର ଯେ ମାତା ।୧୬୨
ବେଦ ଶାହସ୍ରେ ନିର୍ଜିତା ସୁବାକ୍ୟ ସୁଧର୍ମ
ଜନରଞ୍ଜନ ଭାବକୁ କୋନ୍ତପଣ୍ଡା ଆମ୍ଭ ନାମ ।୧୬୩
ହସ୍ତିନା ଠାକୁର ଦେବ ଯେ ଯୁଝେଷ୍ଟି ନୃପତି
କଉତୁକେ ପଶାଖେଳ ଖେଳାଇଲା ମାନଚକ୍ରବ୍ରତୀ ।୧୬୪
ପଶାଖେଳେ ଯହିଂ ହାରିଲେ ରାଜ୍ୟଭାର
ଦ୍ୱାଦଶ ବରଷ ଯେ ସେ ବୁଲିଲେ ବନଘୋର ।୧୬୫
ଆମ୍ଭେ ସେ ଯୁଝେଷ୍ଟିଙ୍କର ସଭାପଣ୍ଡା ହୋଉ
ଧର୍ମ ବିଚାରନ୍ତେ ଆମ୍ଭେ ଯେକଆତ୍ମା ସେହୁ ।୧୬୬
ଯେକଭୂତ ହୋଇ ଆମ୍ଭେ ଯେ ନିରଞ୍ଜନ ଦେବ ଖଟୁଂ
ଯେ ସେ ଯୁଝେଷ୍ଟି ସେ ପ୍ରତକ୍ଷ ଆମ୍ଭେ ଅଟୁଂ ।୧୬୭
ଯେହେର୍ଣ୍ଣେକ ମହାତ୍ମା ସେ କରନ୍ତି ଆମ୍ଭକୁ ଦୟେ
ସେ ଯୁଝେଷ୍ଟି ଦେବଂକର ଆମ୍ଭର ଅଟଇ ଯେକକାୟେ ।୧୬୮
ଆହୋ ବିରାଟ ପଞ୍ଚୁବଟୀ ହାଦେ ପାଣ୍ଡବେ ରହିଥିଲେ
ତୋହୋର ରାଜ୍ୟକୁ ଯେ ଯୁଝେଷ୍ଟି ଯେହିକ୍ଷଣି ଅଇଲେ ।୧୬୯
ତାହାଂକର ଅଇଲା ଶବଦେଣ କରି
ଆମ୍ଭେ ଯୁଝେଷ୍ଟି ଦେବଂକୁ ଆସିଅଛୁ ଲୋଡ଼ି ।୧୭୦
ସାଧୁ ସାଧୁ ମହିମାଂ ସେ ଧର୍ମରାୟେ ସୁତ
ସତ କହି ପାଣ୍ଡବେ ହୋଉଛନ୍ତି ଗୁପତ ।୧୭୧
ଯଦ୍ୟପି ବିଧାତା ଆହୋ ବିହିଲାକ ଶାସ୍ତି
କଦାଣ୍ଟିତେ ମିଥ୍ୟା ନୁଆସଇ ପ୍ରକୃତି ।୧୭୨
ବିରାଟ ବୋଇଲେ କୋନ୍ତ ମୋହୋର ଯେତେକ ପୁଣ୍ୟ କାହିଂ
ବଂଶ ମୋହୋର ମୁକତ ହୋଇବନା ଯୁଝେଷ୍ଟିଂକ ପାଦପଦ୍ମ ଚାହିଂ ।୧୭୩
ରାଜୁସୀ ଯାଗ ସେ କଲେ ଯେବଣ କାଳେ
ତୁମ୍ଭେ ଥିଲଟିକି ମହାତ୍ମା ସେ ସଭାତଳେ ।୧୭୪

ଆହୋ ବିରାଟ ତୁ ଦେଖି ନୁଆରିଲୁ ଆମ୍ଭର ବର୍ଣ୍ଣଚିହ୍ନ
ଯୁଧିଷ୍ଠିର ଆମ୍ଭର ନାହିଁ ଭିନ୍ନା ଭିନ୍ନ ।୭୫
ବିରାଟ ବୋଇଲା ମୁଁ ପାଞ୍ଚ ଉତ୍ତର ଶତେଭାର ସୁବର୍ଣ୍ଣ ଘେନିଗଲି
ଷୋଳଦିନ ପରିଯନ୍ତେ ଦେଖି ନୁଆରିଲି ।୭୬
ସାତକ୍ଷଉଣୀ ବଳ ଘେନି ଭୁଞ୍ଜୁଥାଇ ଛତ୍ରଶାଳେ
କେହି ଜାଣନ୍ତା ନାହିଁ ସେ ସଭାର ତଳେ ।୭୭
ଦିନେକ ଜଣାଇଲି ଭୀମସେନ ଠାକୁରଂକୁ
ଗଣ୍ଡସ୍ଥଳେ ହାଥଦେଇ ସେ ଅନ୍ତରୀକ୍ଷେ ଘେନିଗଲେ ମୁକୁଂ ।୭୮
ଯେହେର୍ଣ୍ଣେକ ଅନ୍ତରୀକ୍ଷେ ନେଲେ ମୋତେ ବୀର ଭୀମସେନ
ଶରୀରେ ଜୀବନ ରହିଲା ମୁଁ ବ୍ରତିଲି ଧର୍ମେଣ ।୭୯
ଗଳଥା ଦେଇ ମୋତେ ପକାଇଲେ ଛାମୁରେ
ଉଠ ଉଠ ବିରାଟ ବୋଲି ଠାରି ଦିଲେକ ସେ କରେ ।୮୦
ବଜ୍ରାମୁଦି ଗୋଟିଥିଲା ଯୁଧିଷ୍ଠିର ଦେବଂକ ଅଙ୍ଗୁଷ୍ଠି
ବିଜୁଳି ତେଜ ପ୍ରାୟେକ ଦିଶିଲା ମମ ଦୃଷ୍ଟି ।୮୧
ଆବର ଦେଖିଲି ମୁହିଁ ବାମ ତଳିପାର କାନ୍ତି
ଇଦଂବାକ୍ୟେ ମୋହୋର ଫିଟିଲା ମନଭ୍ରାନ୍ତି ।୮୨
ମୋହୋର ଛାର ପାମର ଚର୍ମ ନୟନ ବେନିଆଖି
ଯୁଧିଷ୍ଠିର ଦେବଂକ ଶ୍ରୀଚରଣ କାହିଁ ପାରିବି ଆଉ ଦେଖି ।୮୩
ପୂର୍ବଜନ୍ମ ଯେବେ କରିଥାଆନ୍ତି ତୀର୍ଥକୋଟି
ତେବେ ସିନା ମୋହୋର ରାଜ୍ୟକୁ ଆସନ୍ତେ ଯୁଧିଷ୍ଠିର ।୮୪
ଯେତେ ପରମ ଭାଗ୍ୟ କରିବ ମୋହୋର ରାଜ୍ୟ
ଯେ ମୋହୋର ରାଜ୍ୟେ ପଡ଼ିବ କି ଯୁଧିଷ୍ଠିର ଦେବଂକ
ପଦରଜ ।୮୫
ମୋହୋର ରାଜ୍ୟକୁ କିଏ ଯେବେ ପାରିବ ତାଂକୁ ଆଣି
ଅଷ୍ଟରତ୍ନ ଭଣ୍ଡାର ବଧାଇ ଦେବି ଯେହିକ୍ଷଣି ।୮୬
କୋନ୍ତେ ବୋଇଲେ ନ ଭାଳ ରାୟେ ଦେଖାଇବା ତୋତେ
ଆମ୍ଭେ ଯେବେ ଅଇଲୁ ସେ ଆସିବେ ଦିନାକେତେ ଅନ୍ତେ ।୮୭
ତୁ ମହା ଧାର୍ମିକ ହୋ ଅଟୁ ବିବେକ ଗୁଣବନ୍ତ
ଅତି ଅପୁଣ୍ୟେତା ଆମ୍ଭେ ଯେ ତୋତେ ହୋଇଲୁ ପରାପତ ।୮୮
ଯତସତ ଦେବତା ବ୍ରାହ୍ମଣେ ଆରାଧନ୍ତା
ତୁହି ସେ ପଣ୍ଡିତ ଗ୍ୟାନବନ୍ତ ଶିରୀବନ୍ତ ସ୍ୱଭାଗ୍ୟବନ୍ତା ।୮୯
ବନ୍ଧୁମଙ୍ଗଳ ପ୍ରୀତିମଙ୍ଗଳ ଗୁଣମଙ୍ଗଳ ଧୃତିମଙ୍ଗଳ
ବାଚାମଙ୍ଗଳ ଦୟାମଙ୍ଗଳ ବୁଦ୍ଧିମଙ୍ଗଳ ବାଞ୍ଛାମଙ୍ଗଳ ଭଗତମଙ୍ଗଳ ।୯୦
ତୁ ସେ ମହପତି ଅଟୁ ମହାବଳା
ସରୂପ ଦିଶଇ ତୋର ପ୍ରତକ୍ଷେ ବିଷ୍ଣୁକଳା ।୯୧
ଶିବ ନିନ୍ଦାକଲେ ହୁଅଇ କୋଷ୍ଠବ୍ୟାଧି
ବିଷ୍ଣୁ ନିନ୍ଦାକଲେ ନର୍କେଣ ସମାଦି ।୯୨
ବ୍ରହ୍ମା ନିନ୍ଦାକଲେ ବଂଶ ହୋୟେ ହାନି
ଗୁରୁ ନିନ୍ଦାକଲେ ହୋଅଇ ମୂର୍ଖ ପଣ୍ଡିତେ ଅବଗ୍ୟାନୀ ।୯୩
ବ୍ରାହ୍ମଣ ନିନ୍ଦାକଲେ ଆୟୁଷ ହୋୟେ ହାନି
ଲକ୍ଷ୍ମୀଂକି ନିନ୍ଦାକଲେ ଦାରିଦ୍ର ହୋୟେ ପ୍ରାଣୀ ।୯୪
ପୃଥ୍ୱୀ ନିନ୍ଦାକଲେ ହୋୟେ ଅନ୍ନଶାସ୍ତି
ପିତାମାତା ନିନ୍ଦାକଲେ ପଡଇ ଦୁରୁଗତି ।୯୫
ଦେବ ନିନ୍ଦାକଲେ ଦିନ ନ ଯାଇ ଭଲେ
ଜନ୍ମକାଳ ହୁଅଇ ଶାସ୍ତ୍ର ନିନ୍ଦାକଲେ ।୯୬
ଆଦିତ୍ୟ ନିନ୍ଦାକଲେ ଛେଦନ ହୋଅଇ କନ୍ଧ
ଅକ୍ଷର ନିନ୍ଦାକଲେ ହୋଅଇ ଜାତି ଅନ୍ଧ ।୯୭
ତୀର୍ଥ ନିନ୍ଦାକଲେ ଚାଣ୍ଡାଳେ ଉତପତ୍ତି
ଜାତି ନିନ୍ଦାକଲେ ଅନେକ ହୋୟେ ଶାସ୍ତି ।୯୮
ଜଳ ନିନ୍ଦାକଲେ ହୋଅଇ ଗର୍ଭରୋଗୀ
ଅଗ୍ନି ନିନ୍ଦାକଲେ ହୁଅଇ ଦୁଖଭୋଗୀ ।୯୯
ସୁସ୍ତିରୀ ନିନ୍ଦାକଲେ ନଶିଲେ ଗୃହବାସ
ବହୁଜନ ନିନ୍ଦନ୍ତେ ଯେ ତୁଟଇ ଆୟିଷ ।୧୦୦
ମନ୍ତ୍ରୀକି ନିନ୍ଦାକଲେ ନାଶଯାଇ ହେତୁ
ଶହସ୍ର ନିନ୍ଦାକଲେ ପଡଇ ଅପମୃତ୍ୟୁ ।୧୦୧
ଭୋଜନ ନିନ୍ଦାକଲେ ଅନ୍ନ ଯେ ନ ମିଳି
ଗୃହ ନିନ୍ଦାକଲେ ହୋଅଇ ପଥଚାରି ।୧୦୨
ଆତ୍ମା ନିନ୍ଦାକଲେ ହୋଅଇ ମହାଦୁଖୀ
ପରସ୍ତିରୀ ନିନ୍ଦା କଲେ ଜନ୍ମେ ଜନ୍ମେ ଦୁଖୀ ।୧୦୩
ରାଜାସଭା ନିନ୍ଦାକଲେ ହୋଅଇ କ୍ଳେଶଭୋଗୀ
ବାଳୁତ ନିନ୍ଦାକଲେ ହୁଅଇ ବିଯୋଗୀ ।୧୦୪
ରାଜା ନିନ୍ଦାକଲେ ହୋଅଇ ଶିରଚ୍ଛେଦ
ଜପତପ ନିନ୍ଦା କଲେ ହୋଅଇ ଶିରଚ୍ଛେଦ ।୧୦୫
ଗ୍ରହ ନିନ୍ଦାକଲେ ନୋହଇ ସନ୍ତାନ
ଦେବୀ ନିନ୍ଦାକଲେ ଅବଶ୍ୟ ଶିର ହୋଇଅ ଛେଦନ ।୧୦୬
ବୃଦ୍ଧ ନିନ୍ଦାକଲେ ଯେ ହୁଅଇ ଦୀର୍ଘ ରୋଗୀ
ବାତୁଳ ହୁଅଇ ଯେ ନିନ୍ଦିଲେ ପୁଣଯୋଗୀ ।୧୦୭
ସୁଜନ ନିନ୍ଦାକଲେ ହୁଅଇ ଦେଶାନ୍ତରୀ
ବୁଭୁକ୍ଷିତେ ନିନ୍ଦାକଲେ ହୁଅଇ ଭିକାରୀ ।୧୦୮
କୁବେର ନିନ୍ଦାକଲେ ନମିଳେ ରତନ
ପ୍ରତଗ୍ୟାଂ ନିନ୍ଦାକଲେ ବପୁ ହୁୟେ କ୍ଷୀଣ ।୧୦୯

ଗୋରୁ ନିନ୍ଦା କଲେ ଶୂକର ହୋଇ ହୋଯେ ଜାତ
ଯୋନି ନିନ୍ଦାକଲେ ମୁଖେ କରାନ୍ତି ରେତ ।୧୧୦
ଭଲ ନିନ୍ଦାକଲେ ସୁଖୀ ନୁହନ୍ତି କଦାଣ୍ଟିତେ
ରତ୍ନ ନିନ୍ଦାକଲେ ଦୁଖ ପାଇ ଅପ୍ରମିତେ ।୧୧୧
ଗୁରୁଜନ ବାକ୍ୟ ନିନ୍ଦାକଲେ ସୁକୃତ ହୋଯେ ହତ
ପୁଣ୍ୟ ନିନ୍ଦାକଲେ ଅମୋକ୍ଷ ହୋଯେ ପ୍ରେତ ।୧୧୨
ମୂରୁଖ ହୁଅଇ ସୁଜନବାକ୍ୟ ନିନ୍ଦାକଲେ
ଶୂଦ୍ରମୁନି ସାରୋଳା ଦାସ ପୁରାଣେ ବୋଇଲେ ।୧୧୩

■■

## ଯୁଧିଷ୍ଠିରଙ୍କର ଶାଢ଼ୀ ଗ୍ରହଣ

ଆହୋ ଚଇତନ୍ୟ ବଚନ ସାର୍ଥୁକ ଯହୁଁ ଶୁଣିଣ ବିରାଟ
ବୋଇଲେ କୋନ୍ତେ ତୁମ୍ଭେ ବଡ଼ାଇ ଧାର୍ମିକ ଅଟ ।୧
କୋନ୍ତେ ତୁମ୍ଭେ କେବଣ ପୁରାଣେ ଶକତା କେବଣ ଗୁଣେ ବକତା
ଧର୍ମ ବିଚାରେ ଆମ୍ଭେ ବସୁଂ ଯେ ସର୍ବଥା ।୨
ରାଜାର ସମାନେ ବସି ଆମ୍ଭେ ସଭାଯେ ବିଚାରୁଂ
ରାଜାର ଶରଧା ହୋଇଲେ ପଶାକ୍ରୀଡ଼ା କରୁଂ ।୩
ବିରାଟ ବୋଇଲେ ତୁମ୍ଭେ ଆମ୍ଭ ସଭାପଣ୍ଡା
ତୁମର ଅନଗୃହ ହୋଇଲେ କରିବଇଂ ପଶାକ୍ରୀଡ଼ା ।୪
କୋନ୍ତେ ବୋଇଲେ ବିରାଟ ତୁ ପଶାଯେ ଯାହା ହାରି
ତତକ୍ଷଣେ ଦେବୁଟି ଯାହା ପୀଡ଼କରି ।୫
ଶୁଣ ହୋ ରାଜନ ପ୍ରତଗ୍ୟାଂ ଯୁଝେଷ୍ଟିଂକର
ଆପଣେ ନ ହାରିବେ ବୋଲି ବୋଲନ୍ତି ସଭାର ।୬
ସତ୍ୟ ସରୂପ କରି ସେ କହୁଛନ୍ତି ବାଣୀ
ତଦ୍ୟାପି ବିରାଟ ଯେ ନୁଆରିଲା ହାଦେ ଜାଣି ।୭
ଯାଚକେଶ୍ବର ମନ୍ତ୍ରୀ ବୋଇଲେ ଶୁଣ ହୋ ମହାରାଜା
ଠାକୁର ସମାନେ ଲୋକଂକୁ ବହୁତ ନ ବଜା ।୮
ଠାକୁର ସମାନେ ଯେ ଅଟନ୍ତି ଆମ୍ଭର
ଯୁଝେଷ୍ଟି ସମାନେ ଆମ୍ଭେ ଆର୍ଧନା କରିବୁଂ ପୟର ।୯
ମନ୍ତ୍ରୀବର ବଚନେ ସେ ସାନନ୍ଦ ଦଣ୍ଡଧାରୀ
ଆପଣାର ଶ୍ରୀ ହାଥରେ ବିରାଟ ଘେନିଲାକ ଶାଢ଼ୀ ।୧୦
ଯୁଝେଷ୍ଟିକର ରାଜ୍ୟରେ ତୁମ୍ଭେ ଯେମନ୍ତ ହୋଇଥିଲ
ଯେ ମୋହୋର ରାଜ୍ୟେ ତୁମ୍ଭେ ସଭାପଣ୍ଡା ହୋଇଲ ।୧୧
ବିରାଟ ଯେ ଯାଚଇ ଶାଢ଼ୀ ଘେନି ହାଥେ
ମୋହୋର ରାଜ୍ୟେ ଅଧିକାରୀ ହୋଇଲ ଶାଢ଼ୀ ଘେନ କୋନ୍ତେ ।୧୨
ଧର୍ମର ନନ୍ଦନ ଯେ ବିରାଟ ଶାଢ଼ୀ ଦେଖି
ବୋଇଲେ ଭୋ ପରମାନନ୍ଦ ପୁରୁଷ ତୁ ଯେଥକୁ ହୋଅ ସାକ୍ଷୀ ।୧୩
ମୁହିଂ ଯେବେ ଶାଢ଼ୀ ଘେନିବି ତଳହାଥେ
କୋପ କରିବ ଶାଢ଼ୀ ନ ବାନ୍ଧିଲେ ମାଥେ ।୧୪
ଅଥବା କୋପ ଯେବେ ମୋତେ କରିବ ବିରାଟ
ବିଚାରି ଜାଣିମ ତୁମ୍ଭେ ଯୁଝେଷ୍ଟି ଦେବ ନିଚେ ଅଟ ।୧୫
ମୁଂ ଯେହାର ଶାଢ଼ୀ ତଳ ହାଥରେ ଘେନିଲେ
ଭୃତ୍ୟପଣ ହୋଇବନା ଶାଢ଼ୀ ମଥାରେ ବାନ୍ଧିଲେ ।୧୬
ଶାଢ଼ୀ ମଥାରେ ନ ବାନ୍ଧିଲେ ହୋଇବି ଜାଣନ୍ତା
ପ୍ରସନ୍ନେ ନାରାୟଣ ମୋତେ ଯେ କଷଣୁଂ ପାରି ଯେ କରନ୍ତା ।୧୭
ଦୁସହ କଷଣେ ଯହୁଂ କୋନ୍ତେ କଲେ ଚିନ୍ତା
ନାରାୟଣ ବିଜେ କଲେ ବିରାଟ ହୃଦଗତା ।୧୮
ଧାତିକାରେ ବିରାଟ ଯେ ହାଥ କାଢିଆଣି
କୋନ୍ତେ ମୁଂ ତୁମ୍ଭକୁ ଶାଢ଼ୀ ଯାଚିଲି ନ ଜାଣି ।୧୯
ଯୁଝେଷ୍ଟି ଦେବ ସମାନେ ଯାହାକୁ କରିବି ପୂଜାସେବା
ଉପର ହାଥେ ଶାଢ଼ୀ କେମନ୍ତେ ଦେବି ଅବା ୨୦
ଠାକୁରଂକ ଅଧିକାର ଯାହାର ମସଦେଶେ
ତୁମ୍ଭର ଶାଢ଼ୀ ଦେବା ମୋତେ ବିହିତ ଯେ ଆସେ ।୨୧
ମୁହିଂ ଛାର ଯୁଝେଷ୍ଟିଂକି ଦେଖିବି ଆଉ କାହିଂ
ଯୁଝେଷ୍ଟିଂକ ସମାନେ ତୁମ୍ଭେ ଅଟ ହୋ ଗୋସାଇଂ ।୨୨
ଛାମୁରେ ବିରାଟ ଥୋଇଲାକ ନେଇଂ ଶାଢ଼ୀ
ଆଜହୁଂ ଗୋସାଇଂ ତୁମ୍ଭେ ଆସ୍ଥାନେ ଅଧିକାରୀ ।୨୩
ନାରାୟଣ ସୁମରି କୋନ୍ତେ ଆଭରଣ କଲେ ବସନ
ଶ୍ରୀହସ୍ତେ ନେଇ ଆପଣେ ଥୋଇଲେ ସନ୍ନିଧାନ ।୨୪
ଜୟତୁ ନାରାୟଣ କେଶବ ମୂରତି
ଯୋଗୀଜନ ହୃଦୟ ନାଥ ତୁହି ସେ ଆଧିପତି ।୨୫
ଶ୍ରମାତ ପ୍ରସନ୍ନେ ଶ୍ରୀ ପୁରୁଷୋତ୍ତମ ଚରଣେ
ଶୂଦ୍ରମୁନି ସାରୋଳା ଦାସ ସଂଗତି ବିଷ୍ଣୁ ପୁରାଣେ ।୨୬
ବଦୟନ୍ତି ଅଗସ୍ତି ଶୁଣ ଯେ ମହୀଧର
ଅପୂର୍ବକଥା ଶୁଣ ହାଦେ ଯୁଝେଷ୍ଟି ଦେବଂକର ।୨୭
ସଭାପଣ୍ଡାପଣେ ସେ ପଶାକ୍ରୀଡ଼ା ରସେ
ବସିଲେ ଧର୍ମନନ୍ଦନ ମଚ୍ଛାଧିପର ପାଶେ ।୨୮
ଅନେକ ସାନନ୍ଦ ସେ ବିନୟ ଭଗତିମାନେ
ପୂଜା ପାଇଁ ବସିଲେ ସେ ବିରାଟେ ଆସ୍ଥାନେ ।୨୯
କୋନ୍ତେ ବୋଇଲେ ଶୁଣିମା ମଚ୍ଛ ଦଣ୍ଡଧାରୀ
ତତକ୍ଷଣେ ଦେଇଟି ପଶାଯେ ଯାହା ହାରି ।୩୦

ବିରାଟ ବୋଇଲେ ଯେ ଅଟଇ ଯୁଗତ
ମୋହୋର ଦେବାର ଅଟଇ ହାଦେ ତଥ୍ୟ ।୩୧
ଶ୍ରୀ ବାସୁଦେବ ବାକ୍ୟ ଦେବୀର ପ୍ରସାଦେ
ବିଜୟେ ଧର୍ମନନ୍ଦନ ପଶାର ବିନୋଦେ ।୨
ଶ୍ରୀକରେ ଖଡ଼ି ଘେନିଣ ଧର୍ମରାଜ ଯେ ଯୁଝେଷ୍ଟି
ଦକ୍ଷଣକଇ ଶିରକରି କାଟିଲେକ ପଶାକୋଷ୍ଟି ।୩୩
ବେନି ଅକ୍ଷରେ ଯେ ଭେଦିଲେ ନାମଗୋଟି
ତ୍ରିୟକଳ୍ପ କରିଣ ଯେ ଦ୍ୱାଦଶ କୋଠି କାଟି ।୩୪
ଯେକା ଘାନ୍ତିକେ ଯେ ପଶାକୋଠା କାଟନ୍ତି
ଅଶ୍ୱମେଧ ଯଗ୍ୟଂର ଫଳ କପିଳା ଦାନ ଫଳ ଶ୍ରୁତି ।୩୫
ଦେଖିଣ ସାନନ୍ଦ ଯେ ହୋଇଲେ ରାୟେ ମସ୍ତେ
ବିରାଟ ନୃପତି କୋନ୍ତ ପଣ୍ଡାୟେ ବସିଲେ ପ୍ରତିକଛେ ।୩୬
ଯେକ ଆସ୍ତାନେ ବିଜୟେ କଲେ ରାୟେ ବେନି
ଅମର ତେଜି କି ବିଜୟେ ସମ୍ପ୍ରଯୋନି ।୩୭

■ ■

## ଭୀମଙ୍କର ବିରାଟ ସଭାରେ ପ୍ରବେଶ

ଆହୋ ଚଇତନ ଯେମନ୍ତ ସମୟେ ଯେ ପାଞ୍ଚଘଡ଼ି ଦିନକର
ବିରାଟ ଭୁବନକୁ ଆସଇ ବ୍ରିକୋଦର ।୧
ଖାଂକର କେଶ ଊର୍ଦ୍ଧ୍ୱ ଲମ୍ବିତ ଜୁଡ଼ାଗୋଟି
ଶ୍ରୀବସ୍ତ୍ର ଲାଞ୍ଛନା ହୃଦେ ଶରୀରେ ଚିତା ଦ୍ୱାଦଶ ଫୁଟି ।୨
ବାମକନ୍ଧେ ଯଗ୍ୟଂ ପବିତ୍ର ଉତରୀ ବେଦ ଯେ କରାଣ୍ଡି
ତ୍ରିକଚ୍ଛ ବସନ ଯେ ଅଣ୍ଟାରେ କୁଶବିଡ଼ି ।୩
ବିକ୍ରମସିଂଘ ଯେହ୍ନେ ସୁସଞ୍ଚ ସର୍ବଦେହା
ହିରଣ୍ୟ ପର୍ବତେ ଯେହ୍ନେ ଜଳଧର ମେହା ।୪
କନ୍ଧେଣ ଉପୁରାଣ ବସ୍ତ୍ରଗୋଟି କଳା
ଗିରିବର ଗମଇ କି ତେଜେଣ ଅନର୍ଗଳା ।୫
ବିଜେକର୍ଣ୍ଣକଟାରୀ କରେଣ ରାନ୍ଧଣା ଯୋଗାଡ଼ଧାରୀ
ଗଜକଇଂ ଆକ୍ରଷଣ ଯେହ୍ନେ ବିକ୍ରମ କେଶରୀ ।୬
ମହା ସମ୍ଭର୍ବେଣ ଆସ୍ତାନେ ଯେ ବିଜୟେ ବିରାଟ
ଭୀମସେନ ପ୍ରବେଶ ହୋଇଲେ ନିକଟ ।୭
ଦେଖିଣ ଚକିତ ଯେ ବିରାଟ ସଭାଜନେ
ଦେଖାଇରେ ବାରତା ଜଣାଇଲେ ବିରାଟ ଆସ୍ତାନେ ।୮
ଅବଧାନ ମହାରାୟେ କେବଣ ଦିଗପାଳେ
ଆକାଶ ତେଜିଣ କି ବିଜୟେ ଯେ ମଞ୍ଚ ମଣ୍ଡଳେ ।୯
ଆସ୍ତାନେ ଥାଇଣ ବିରାଟ ଚାହିଂଲା ଲେଉଟି
ମହାତେଜ ଦେଖି ସର୍ବେ ବୁଜିଲେ ବେନି ଚକ୍ଷୁଗୋଟି ।୧୦
କି ଅବା ଅନଳ ଦେବତା ଅଇଲେ ବ୍ରାହ୍ମଣ ସରୂପ
ମମ ଧର୍ମ ବିଡିତେ ସରୂପ ହୋଇ ଗୋପ୍ୟ ।୧୧
ବିରାଟ ବୋଇଲା ହୋ ଦେଖ ଦେଖ କୋନ୍ତଭଟେ
ଯେସନକ ରୂପ ପୁରୁଷ ଦେଖିଛ କି ଯେ ମଧ୍ୟଜଗତେ ।୧୨
ଦେଖିଣ ସଇନି ଯେ ହୋଇଲେ ବେନିଭାଗ
ପାଣ୍ଡବ ସୋହୋଡ ଯାଇଂ ଆସ୍ତାନେ ବିଜେ ବେଗ ।୧୩
ଦୂର ଦୂର ହୋଇଣ ଅମନାତ୍ୟ ଗଣେ ଗଲେ ଘୁଞ୍ଚି
ତ୍ରାସେଣ ସମାସ୍ୟା ଯେ ନ ଦିଅନ୍ତି କେହି କିଛି ।୧୪
ଯୁଝେଷ୍ଟି ଦେବ କିଞ୍ଚିତ ଅବଲୋକନ ଆଖି
ଭୀମସେନ ପ୍ରଣପତ୍ୟ କୋନ୍ତଂକ ମୁଖ ଦେଖି ।୧୫
ମାରୁତି ପ୍ରାଣପତ୍ୟ ବିରାଟର ଆସ୍ତାନର ତଳେ
ଯୁଝେଷ୍ଟି ଦେବେ ତାହା ଦେଖିଲେ ବେନିଡୋଳେ ।୧୬
ଅନେକ କ୍ରୋଧ ରାୟେ ଭୀମସେନର ପ୍ରଳମ୍ବ ଦେଖି
ଜ୍ୱଳିତ କିମ୍ବା ନ ଗଲାରେ ଯେ ମୋହୋର ବେନିଆଖି ।୧୭
ଛତ୍ରୀବର ସୋହୋଡ଼ରେ ସାଂଗ୍ରାମେ ଜଗୁଜିତା
ଯାହାର ଭୟେ ନାଶଗଲେ ବକ ହିଡିମ୍ବକ କୁମ୍ଭିରୀ
କିନ୍ନରୀ ଯେ ଚାରିଦଇତା ।୧୮
ବାବୁ ଲକ୍ଷେକ ନୃପତି ଯାହାର ଚରଣେ ବନ୍ଦେ
ଈଶ୍ୱରେ କପିଳାସ ଭୋଗ ଯାହାର ପରସାଦେ ।୧୯
ବାବୁରେ ଦ୍ୱାରିକା ରକ୍ଷାପାଳକ କଉରବ ଦର୍ପଗଞ୍ଜା
ବିଷଜଳଡୁ ପାର କରନ୍ତା ନାଗୁଣୀଂକ ମନରଞ୍ଜା ।୨୦
କାହ୍ନୁ ସଂକ୍ରିଷେଣ ଯାହାର ପ୍ରାଣବନ୍ଧୁ
ଯେ ଭୁବି ଭୁବନ ମଧେ ମହିମାଂ ତୋର ସାଧୁ ।୨୧
ବାବୁ କେଉଂଣ ପୁଣ୍ୟ ମସରାଜା କରିଥିଲା ପୂର୍ବେ
ତାହାର ଆସ୍ତାନ ତଳେ ମିଳିଲୁ ଆସି ଯେବେ ।୨୨
ଯେ ମୋହୋର ଶରୀର ହୋଅଇ କିନା ଦହିଜ
ଯେ ତୋହୋର କଷ୍ଟ ବାବୁରେ ଦେଖିଲଇଂ ମୁହିଂ ନିଲଜ୍ଜ ।୨୩
ହାଥର ସୁଖରେ ବାବୁ ମୁଂ ଯେ ଖେଳିଲାଇ ପଶା
ପଞ୍ଚୁକଟକ ହାରି ଯେବେ ଭୃତ୍ୟପଣକୁ କଲି ଆଶା ।୨୪
ତ୍ରଇଲୋକ୍ୟେ ଜିଣିତେ ସାମରଥ ମୋର ଭାଇ
କାହିଂର ନିମନ୍ତେ ବାବୁରେ ଯେତେ କଷ୍ଟ ପାଇ ।୨୫
ବଚନେ ଦରିଦ୍ର ହୋଇ ମୁଂ କାର୍ଯ୍ୟେନାଶ କଲି
କଉରୋବନ୍ତ ମାର ବୋଲି କିଂପେ ନ ବୋଇଲି ।୨୬

ଦ୍ରୋପତୀ କେଶ ଆକ୍ରଷଣ କରିବାର ବେଳେ
ମୋତେ ଆଗ୍ୟାଂ ମାଗିଲୁ ତୁ ଭାଇ ଦୁସହ କଟାଳେ ।୧୨୭
କିଞ୍ଚିତ କରି ଯେବେ ଆଗ୍ୟାଂ ମୁହିଂ ଦ୍ୟନ୍ତି
ଭୀଷ୍ମ ଦ୍ରୋଣ ଆଦିକରି ମାରନ୍ତୁ ସବୁନ୍ତି ।୧୨୮
ଫୁଟି କହି ନୁଆରିନ୍ତି ହୃଦୟ ବିକଳେ
ବ୍ରିକୋଦର ପ୍ରଣପତ୍ୟ ଆସ୍ତାନର ତଳେ ।୧୨୯
ବିରାଟ ବୋଇଲେ ଆହୋ ଶୁଣ ଦ୍ୱିଜବର
ଉଠିଣ କହ କେବଣ ଆଧ୍ୟାନ ତୋହୋର ।୩୦
ବିରାଟ ବଚନେଣ ଭୀମସେନ ନ ଉଠି
ମନେ ବିଚାରନ୍ତି ଯେ ଧର୍ମରାଜ ଯୁଝେଷ୍ଟି ।୩୧
ଆମ୍ଭର ତହୁଂ ସେ ଯେ ଆଗ୍ୟାଂ ନ ପାଇଲେ
କିଂପେ ଉଠିବ ଯେହୁ ବିରାଟର ବୋଲେ ।୩୨
କୋନ୍ତେ ବୋଇଲେ ଉଠ ଉଠ ହୋ ଦ୍ୱିଜବର
ଠାକୁରଂକର ଆଗ୍ୟାଂ ହୋଇଲା କାର୍ଯ୍ୟ କହସି ତୋହୋର ।୩୩
ବିରାଟର ବଚନରେ ଭୀମ ପ୍ରଣପତ୍ୟେ ଥିଲା
କୋନ୍ତଂକର ବଚନ ଶୁଣି ଧାଡିକାରେ ଉଠିଲା ।୩୪
ବିରାଟର କଡିକି ଅଂଗସାର ଦେଇ
ମସ୍ତକେ ହାଥେ ଦିଲା କୋନ୍ତଂକର ମୁଖ ଚାହିଂ ।୩୫
ବିରାଟ ବୋଇଲେ ତୁ ଶୁଣିମା ବ୍ରାହ୍ମଣ
ଆଜି ଶାସନ ତୋହୋର କେବଣ ରାଜ୍ୟେଣ ।୩୬
କେବଣ ବେଦବିଦ୍ୟା କେବଣ କୁଳଶୀଳ
ମୁହିଂ ତୋତେ ମଣଇ ପ୍ରତକ୍ଷେ ଦିଗପାଳ ।୩୭
ଅନେକ ବିନୋୟ ତୁ ମୋତେ କଥା କହୁ
ମୁହିଂ ତୋତେ ବିଚାରଇ ତୁ ମାନବଜନ୍ମ ନୋହୁ ।୩୮
କୋନ୍ତେ ବୋଇଲେ ତୁ ଶୁଣ ହୋ ଦ୍ୱିଜବର
ତୋହୋର କଥାମାନ କହସି ଠାକୁରଂକ ଛାମୁର ।୩୯
ଶୁଣ ହୋ ମଛପତି ବଦୟନ୍ତି ବଲ୍ଲଭ
ପଛିମ ସଉରାଷ୍ଟ୍ର ଜାଣୁକି ମଛଦେବ ।୪୦
ଗଙ୍ଗା ଯମୁନା ଯେ ବେନି ନଦୀଂକର ମଧେ
କୁଞ୍ଜଗଳ ଦେଶ ବୋଲି କ୍ଷେତ୍ର ଅଟଇ ସାଧେ ।୪୧
ଇନ୍ଦ୍ରପ୍ରଶସ୍ତ ଯମପ୍ରଶସ୍ତ ଜଇନ୍ତା ହସ୍ତିନା ବାରୁଣା
ସେ ରାଜ୍ୟରେ ଯୁଝେଷ୍ଟି ଦେବଂକ ସାନୁଜ ପାଣ୍ଡବ
ଭୀମସେନା ।୪୨
ତନିଷାଠି ପଉଟି ଅନ୍ନ ଭୁଞ୍ଜିଲେ ଅତ୍ରିଗୁଡି
ମୁହିଂ ତାଂକର ଅଟଇ ବଲ୍ଲବ ବଶ୍ୟାବୃତ୍ତି ।୪୩
ବିରାଟ ପୁଛାକଲା ବଲ୍ଲବ ବୃତ୍ତିଟି କେମନ୍ତ
କୋନ୍ତେ ବୋଇଲେ ହୋ ବିରାଟ ଶୁଣ ସୂପକାର ବୃତ୍ତ ।୪୪
ଶୁଣ ହୋ ମଛାଧିପତି ବଦୟନ୍ତି ବୀର ଭୀମ
ରାନ୍ଧଣା ବିଧାନ ଜାଣଇ ସୂପକାର ବଲ୍ଲଭ ମୋର ନାମ ।୪୫
କାର୍ଯ୍ୟ ପଡ଼ିଲେ ମୁଂ ମାଲଯୁଦ୍ଧ ଜାଣଇ
ସରୂପ କଥା ମୁହିଂ କହଇ ତୁମ୍ଭକଇଂ ।୪୬
ହାତର ସୁଖେ ଯୁଝେଷ୍ଟି ପଶା ଯେ ଖେଳିଲେ
ରାଜ୍ୟଭାର ସିଂହାସନ ହାରିଣ ସେ ବନବାସ କଲେ ।୪୭
ଯୁଝେଷ୍ଟି ଠାକୁରେ ତୋହୋର ରାଜ୍ୟକୁ ଅଇଲେ ବୋଲି
ବାରତା ପାଇ ମୁଂ ଶବଦକୁ ଗୋଡ଼ାଇ ଅଇଲି ।୪୮
ବିରାଟ ବୋଇଲା ହୋ ବାତୁଳ ହୋଇଲୁ ଦିଜବର
ଯୁଝେଷ୍ଟି ଦେବ ନାମ ଧଇଲୁ ତୁ ସେ ତ୍ରଇଲୋକ୍ୟ ଈଶ୍ୱର ।୪୯
ପାଞ୍ଚ ଉଭର ଶତେ ରଥ ମୁଂ ସୁବର୍ଣ୍ଣ ଘେନିଗଲି
ଷୋହଳ ଦିନ ପରିଯନ୍ତେ ଦ୍ରଶନ ନ ପାଇଲି ।୫୦
ଭାଇ ତାଂକର ବ୍ରିକୋଦର ମୋ କନ୍ଧରେ ହାଥ ଦେଇ
ସେ ସ୍ୱାମୀ ଚରଣତଳେ ପକାଇଲେ ନେଇ ।୫୧
ଅଶ୍ୱମେଧ ଯାଗ କରିଥିଲେ ପୂର୍ବେ
ଯୁଝେଷ୍ଟି ଦେବଂକ ଶ୍ରୀଚରଣ ଦେଖିବଇଂ ଯେବେ ।୫୨
ବିରାଟ ବୋଇଲେ କୋନ୍ତେ ମୁଂ ପଚାରଇ ତୁମ୍ଭଙ୍କୁ
ତୁମ୍ଭେ ଚିହ୍ନଟିକି ଯେ ବଲ୍ଲବ ସୂପକାରକୁ ।୫୩
କୋନ୍ତେ ବୋଇଲେ ତୁମ୍ଭେ ଶୁଣ ରାୟେ ମଛେ
ଯେ ସେ ବଲ୍ଲଭ ସେ ଭୀମସେନ ପ୍ରତଛେ ।୫୪
ଯେଦେହେର୍ଣ୍ଣେକ କରି ଯେହାକୁ ସଦୟେ କରଇ ଯେ ଭୀମା
ଯେ ଦିଜ ଅଟଇ ହୋ ଭୀମସେନର ପଞ୍ଚୁ ଆତମା ।୫୫
ବିରାଟ ବୋଇଲେ ଯେ ଯେବେ ଭୀମସେନ ଠାକୁରଂକର ସୁପକାର
ମୋହୋବେଳେ ଆର୍ଦ୍ଦୋଳିକି ମୁହିଂ ପାରିବି କି ଯେହାର ।୫୬
ଗୁହ ବୋଲି ବୋଇଲେ ଭଗତି ହୋଇ ପାରିବିକି ତୋତେ
ଯାଅ ବୋଲି ବୋଇଲେ କୋପ କରିବାକ ମୋତେ ।୫୭
କୋନ୍ତେ ବୋଇଲେ ରାଜା ତୁ ଭୟ ନ କର କିଛି
ସରୂପ ବୁଝିବା ହୋ ଥାଉ ଅନ୍ନ ବାଚି ।୫୮
ବଲ୍ଲବ ବୋଇଲେ ତୁହୋ ଶୁଣସି ମଛାଧି
ଯେକେଣ ସ୍ୱପକାରକେ ରାନ୍ଧଣା ମୁଂ ସମସ୍ତ କରିବି ସିଦ୍ଧି ।୫୯
ସାତ କ୍ଷଉଣୀ ବଳ ଘେନି ଭୁଞ୍ଜି ବସିବୁ ତୋହର ତୁଲେ
ଛଡ଼ରସେ ଯୋଗାଡ଼ କରି ତ୍ରିପୁତି କରି ପାରଇ ମୋହୋର
ବୋଲେ ।୬୦

ଯେସନେକ କଥା ଯହୁଁ କହିଲାକ ଦ୍ୱିଜେ
ଶୁଣିଣ ସମସ୍ତ ସଭା ଯେ ହୋଇଲେ ଆଶ୍ରିଜେ ।୬୧
ଲକ୍ଷେକ ସୂପକାର ରାନ୍ଧଣା ମୋହୋର ଯେ ପୁରେ
ଯୋଦ୍ଧା ଅମନାତ୍ୟମାନେ ବସନ୍ତି ମୋହୋରି ସଙ୍ଗତରେ ।୬୨
ଯେତେ ସଇନିଂକି ଅନ୍ନ କେ ପାରିବ ଅଣ୍ଟୋଇ
ଦୁସହ ପ୍ରତଗ୍ୟାଂ ଦ୍ୱିଜ ହାଦେ କହିଲୁ ଯେ ତୁହି ।୬୩
ଭୀମସେନ ବୋଇଲା ଶୁଣସି ରାୟେ ମଚ୍ଛ
ସରୂପ ନୃପତି ତୁ ଦେଖ ହୋ ପ୍ରତଚ୍ଛ ।୬୪
ପୁରୁଂ ବାହାର କର ତୋ ଲକ୍ଷେ ସୁପକାରଂକୁ
ତାହାଂକର ପଡିମାତ୍ର ଦେବୁସି ରାୟେ ମୁକୁ ।୬୫
ସୁବର୍ଣ୍ଣର କୁଣ୍ଡହିଂ ମାତ୍ର ଥିବ ରୋଷୁଅ ଘର ପାଶେ
ତହିଂ ଭିତରେ ଢାଳିବଇଂ ଭାତରସେ ।୬୬
ଆବର ମହିମାଂ ଯେକ ଶୁଣସି ମୋହୋର
ରାଜ୍ୟଯାକ ସଙ୍ଗେ ଘେନି ଭୁଞ୍ଜିବୁ ତୋହୋର ।୬୭
ଆହୁରି କଥାଯେ ମୋର ଶୁଣସି ହୋ ନୃପରାଣ
କିଛି କିଛି ଜାଣଇ ମୁଂ ମାଲ ଯେ ବିନ୍ଧାଣ ।୬୮
ଶୁଣିଣ ସାନନ୍ଦ ଯେ ମସ ଅଧିକାରୀ
ଶ୍ରୀକରେ ବିରାଟ ଯେ ଘେନିଲା ଆପଣେ ଶାଢ଼ୀ ।୬୯
ଘେନ ହୋ ବିପ୍ର ବୋଲି ରାଜା ଯାଚଇ ଆସ୍ତାନେ
ତାହା ଦେଖି ଶରୀର କମ୍ପଇ ଭୀମସେନେ ।୭୦
ଭୀମସେନର ମନ ଯେ ଜାଣିଲେ ଯୁଧେଷ୍ଟି
ହୃଦଗତେ ଚିନ୍ତିଲେ ଯେ କେଶବ ନାମଗୋଟି ।୭୧
ବିରାଟର ଶାଢ଼ୀ ଯେତ ନ ଘେନିମ ତଳହାଥେ
ପ୍ରଣମ୍ୟ ନୋହିବ ଯେ ନ ବାନ୍ଧିବ ଶାଢ଼ୀ ମାଥେ ।୭୨
ରାଗେଣ ଶରୀର ଯେ କମ୍ପଇ ମାରୁତି
ନପୁଣ ବିରାଟକୁ ଚାପୋଡେ ମାରଇ ଧାତି ।୭୩
ମୁଂ ଯେହାର ରାଜ୍ୟକୁ ଅଇଲି ଦୁର୍ଗତି ବଞ୍ଚିବି ବୋଲି
ଅନ୍ତେ ବିରାଟକୁ ମୁଂ ସଂପୋଡ଼େ ନାଶକଲି ।୭୪
ଦୁସହ କଷଣ୍ଟୁଂ ହରି ମୋତେ କରିବାକ ପାର
ବିଚାରିଣ ହାଥ ଯେ କାଢ଼ିଲା ମସେଶ୍ୱର ।୭୫
ସେ ଶାଢ଼ୀ ଥୋଇଲା ନେଇ କୋନ୍ତଂକ ଅଗ୍ରତେ
ପଣ୍ଡାୟେ ତୁମ୍ଭର ଶାଢ଼ୀ ସେ ଦେବାର ଯୋଗାଇ ବିହିତେ ।୭୬
ଯୁଧେଷ୍ଟିଂକ ସମାନେ ତୁମ୍ଭଂକୁ ମୁଂ କରଇ ସେବା
ଯେ ବଲ୍ଲବ ସୂପକାରକୁ ତୁମ୍ଭେ ଶାଢ଼ୀ ଦେବା ।୭୭
ଶ୍ରୀ ଜଗନ୍ନାଥଂକୁ ସୁମରଣା କରି ହୃଦଗତେ
ତୋହୋରେ ପ୍ରତିକାର ଅଛଇ ସେ ଦେବ ମୋତେ ।୭୮

ବିରାଟର ବଚନେ ଆପଣେ ଶାଢ଼ୀ ଘେନିଣ ଦିଲେ ଧର୍ମନାନେ
ଦେଖିଣ ସାନନ୍ଦେ ଯେ ହୋଇଲେ ଭୀମସେନେ ।୭୯
ମାଥେଣ ଶାଢ଼ୀ ବାନ୍ଧି ହୋଇଲେ ପ୍ରଣପତ୍ୟ
ଉଠ ଉଠ ଦ୍ୱିଜବର ବୋଲି ବୋଇଲେ ଧର୍ମସୁତ ।୮୦
ଧର୍ମ ଧର୍ମ ସୁମରି ଯେ ପାଣ୍ଡବର ବାଳ
ପାଣ୍ଡବ ସୁନ୍ଦର ଯେ ପ୍ରବେଶ ରୋଷୁଅର ଶାଳ ।୮୧
ଦେଖିଣ ତ୍ରିପୁତି ଯେ ସକଳ ସୂପକାର
ରୋଷଶାଳ ଛାଡି ସମସ୍ତେ ହୋଇଲେ ବାହାର ।୮୨
ଆପଣେ ବ୍ରିକୋଦର ପଶିଲା ରୋଷୁଅ ଘରେ
ଚୁଲ୍ଲୀୟେ ପାଡିଲା ଭୀମ ମହା ସମ୍ବର୍ବରେ ।୮୩
ଶତେପଖା କରିଣ ଚୁଲ୍ଲୀୟେ ପାଡିଲା
ସହସ୍ରେ ବଖରା ଯେ ସେହିମତି ସମ୍ପାଦିଲା ।୮୪
ଯେସନେକ ଉପାୟ କରିଣ ସେ ମସାଧିପର ରାଜ୍ୟେ
ରାନ୍ଧଣା ବିଧାନ ସେ କରଇ ବୀର ସଜେ ।୮୫
କଞ୍ଚା ବାରୁନ୍ତ ନେଇଣ ସେ ପକାଇବ ଚୁଲ୍ଲୀ
ଦୋହରା ପ୍ରସନ୍ନେ ଜଳ ଜଳ ହାଦେ ବୋଲି ।୮୬
ଅକଟା ଅବଟା ଯୋଗାଡ଼ଇ ଯେକପାଗେ
ଲବଣ ବେସର ଯେ ଭରଇ ଯେକଯୋଗେ ।୮୭
ଦୋହରା ପ୍ରସନ୍ନେ ଅମୃତ ପାକ ସଞ୍ଚା
ଯେତେକ ଜାଳ ଦିଅଇ ସମସ୍ତ କାଠ କଞ୍ଚା ।୮୮
ଦେଖିଣ ଆଶ୍ରିଜ ଯେ ହୋଇଲେ ସର୍ବଜନେ
ଦେଶାଉରେ ବାରତା କହିଲେ ରାଜାର ଆସ୍ତାନେ ।୮୯
ଶୁଣ ଦେବ ରାଜାଧି ରାଜେଶ୍ୱର ମସ ଆଧିପତି
ବଡ଼ାଇ ଆଶ୍ରିଜ୍ୟ ଦେବ ବ୍ରାହ୍ମଣର ଗତି ।୯୦
ପରିବା ଅକଟା ଦେବ ସୋରିଷ ଅବଟା
ଚୁଲ୍ଲୀରେ ଭରଇ ନେଇ କଞ୍ଚା ଦାରୁଗୋଟା ।୯୧
ଯୋଗାଡି ବସାଇଣ ଓହ୍ଲାଇ ଅତି ବେଗେ
ବିଚାରି ବୁଝିବା ଯେ କେମନ୍ତ ହୋୟେ ପାଗେ ।୯୨
ବିରାଟ ଚାହିଂଲେ ଯେ କୋନ୍ତଂକ ବଦନ
କେମନ୍ତେ ବିଚାର କଲ ପଣ୍ଡାୟେ ରାନ୍ଧଣା ବିଧାନ ।୯୩
ମୋହୋର ବିଚାରକୁ ତ ନ ଯୋଗାଇ ଯେସନ
ଅକଟା ଅବଟା କାହିଂ କରନ୍ତି ଭୋଜନ ।୯୪
କୋନ୍ତେ ବୋଇଲେ ତୁ ଅଟୁ ମହାଭିଗ୍ୟଂ
ଗୁଣବନ୍ତ ଧାର୍ମିକ ଲକ୍ଷ୍ଣଣବନ୍ତ ସର୍ବଗ୍ୟଂ ।୯୫

ଆଜିହୁଂ ଯେହା ଆମ୍ଭେ ବିଚାରିଅଛୁ ରାୟେ
ସେ ବ୍ରାହ୍ମଣ ନ ଦିଶଇ ସୂପକାର ପ୍ରାୟେ ।୯୬
ତୁହି ମହାରାଜା ହୋ ଗୁଣବନ୍ତ ମହାପ୍ରଭୁ
ତୋହୋର ଅବଧାନ କଥା ଭାଙ୍ଗିବୁ ଆମ୍ଭେ କାହୁଂ ।୯୭
କୋନ୍ତଂକର ବଚନେ ଯେ ବୋଇଲେ ରାୟେ ମସ
ଯେହିକ୍ଷଣି ମୁଣୋହିର କାଳେ କଥା ବୁଝିବା ପ୍ରତିଛ ।୯୮
ତୁମ୍ଭେ ଯେ ମୁଣୋହି କରିବ ଆମ୍ଭର ତୁଲେ
ଆମ୍ଭେ ଯେ ସୂପକାର କରିଛୁଂ ତୁମ୍ଭରହିଂ ବୋଲେ ।୯୯
ଯେମନ୍ତର ସମୟେ ରୋଷୁଅ ଘରୁ ଅଇଲେ ଚାରଗଣ
ଦେବ ସୂପକାର ବୋଇଲେ ପାକ ହୋଇଲା ସମ୍ପୂର୍ଣ୍ଣ ।୧୦୦୦
ମଧ୍ୟାହ୍ନ ଆଦିତ୍ୟ ଆସି ହୋଇଲା ସୂର୍ଯ୍ୟବେଳା
ଆହାର୍ଣ୍ଣିକ ସାରନ୍ତୁ ରାୟେ ନ କରିଣ ହେଳା ।୧୦୦୧
ବେଗ ବେଗ ବିଜେକର ମୁଣୋହି ମଣ୍ଡୋପକୁ
ସୂର୍ଯ୍ୟବେଳେ ମୁଣୋହି କଲେ ଆହାର ହୋୟେ ପଂକୁ ।୧୦୦୨
ଅନ୍ନ ଜାର୍ଣ୍ଣ ନୋହଇ ଯେ ସୋମର ବେଳ ପଡ଼ିଲେ
ମନ୍ଦାଗ୍ନି ହୋଅଇ ଦେବ ବେଳ ବାରି ନୁଆରିଲେ ।୧୦୦୩
ସୂର୍ଯ୍ୟବେଳେ ଭୋଜନ ଯେ ଚନ୍ଦ୍ରବେଳେ ରତି
ଯେସନେକ ବେଭାର ଦେବ ଅଛଇ ଶାହାସ୍ତ୍ର ସଂଗତି ।୧୦୦୪
ସୂପକାର ବଚନ ଦେବ ସାବଧାନେ ଶୁଣି
ହୃଦୟ ବିଘଂସିଲା ବିରାଟ ବଲ୍ଲବ ବାକ୍ୟ ଶୁଣି ।୧୦୦୫
ବିରାଟ ବୋଇଲେ କୋନ୍ତେ ପଣ୍ଡିତ ଅଟଇ ସେ ବ୍ରାହ୍ମଣ
କାନ୍ତେ ବୋଇଲେ ହୋ ମସାଧିପ ବ୍ରାହ୍ମଣ ଭୀମର ପ୍ରାକ୍ରମ ।୧୦୦୬
ସୂପକାର ବାରତା ପାଇଣ ମସରାୟେ
ମାଜଣା ସାରିଣ ରାୟେ ସ୍ନାନକଇଂ ବିଜୟେ ।୧୦୦୭
ଆହର୍ଣ୍ଣିକ ସାରିଣ କୋନ୍ତ ଯେ ପଣ୍ଡିତେ
ବିଜୟେ ବିରାଟେଶ୍ୱର ମୁଣୋହିର ନିମନ୍ତେ ।୧୦୦୮
ତୁଲେଣ ଅଛନ୍ତି ଯୋଦ୍ଧାଗଣ ଅମାନତ୍ୟ
ଅନେକ ଅଛନ୍ତି ସନ୍ୟ ପଇଦଲ୍ୟ ଭୃତ୍ୟ ।୧୦୦୯
ଅଶ୍ୱସେନା ରାଉତ ମାହୁନ୍ତ ପାଦାନ୍ତି
ଯେ ଯାହାର ସଙ୍ଗତେ ଅଛନ୍ତି ପନ୍ତି ପନ୍ତି ।୧୦୧୦
ଚଉବିଂଶ ଲକ୍ଷ ଯେ ମୁକୁଟବନ୍ଧା ଯୋଦ୍ଧାମାନେ
ସମ୍ଭର୍ବେ ବସିଲେ ରାୟେ ମୁଣୋହି ଅସ୍ଥାନେ ।୧୦୧୧
ଶୁଣ ହୋ ମହେଶ୍ୱର ବଦୟନ୍ତି ବଲ୍ଲବ
ରାଜ୍ୟଭାର ସମ୍ପଦ ତୋର ଯେ ବଡ଼ାଇ ଦୁର୍ଲ୍ଲଭ ।୧୦୧୨
ମୁହିଂ ଜାଣିଲି ରାୟେ ତ ବଡ଼ାଇ ବିବାଦୀ
ପରରାଷ୍ଟ୍ର ମାଡି ତୁ ହୋଇଲୁ ବଡ଼ ଦ୍ୱନ୍ଦ୍ୱୀ ।୧୦୧୩

ଅମନାତ୍ୟ ପ୍ରୋହିତେ ଯୋଦ୍ଧା ଯେ ସହିତେ
ସମାନ ଭାବ କଲେ କାରଣ ହୋଇବ ତୋତେ ।୧୧୪
ସମସ୍ତ ସଇନି ତୋହୋର ହୋ ବସନ୍ତୁ ଛତ୍ରେଶାଳେ
ଯେଥିର ଚରିତ ତୁ ଶୁଣ ମସଶ୍ୱରେ ।୧୧୫
ସଙ୍ଗତେ ଭୁଞ୍ଜି ବସିଲେ ବଡ଼ିମା ପାଇ ଥାଠ
ସଂଗ୍ରାମକାଳେ କାରଣ କରେଟି ବିରାଟ ।୧୧୬
ସାନନ୍ଦ ମହାରାଜା ବଲ୍ଲଭର ବଚନେ
ଦଣ୍ଡ ଘେନି ମୁଣୋହିରେ ବିଜୟେ ରାଜନେ ।୧୧୭
ବିପୁଳ ଭୁବନେ ଯେ ବିଜୟେ ବିରାଟ
ତହିଂର ନିକଟେ ଯାଇ ବସିଲେ କୋନ୍ତଭଟ୍ଟ ।୧୧୮
ସାତକ୍ଷଉଣୀ ବଳ ଘେନି ଯେ ବିରାଟେଶ୍ୱର ବସି
ପାଞ୍ଚଲକ୍ଷ ସୂପକାର ଘେନି ଭୀମ ଯେ ପରଶି ।୧୧୯
ଗଉରୀ ସଉରୀ ନଳ ବିଧି ଯେ ରାନ୍ଧଣା
ନିତି ପ୍ରତି ମେଞ୍ଜଣ ପରଶଇ ଭୀମସେନା ।୧୨୦
ଦେବ ରାନ୍ଧଣା ପରା ପାଇବେ ସେ କାହିଂ
ବିରାଟ ପ୍ରଶଂସଇ ବଲ୍ଲଭ କଇଂ ଚାହିଂ ।୧୨୧
ଅଦଭୁତେ ପୁରୁଷ ତୁ ବିଜେକଲୁ କାହୁଂ
କେଉଂଣ ଦିଗପାଳ ତୁ ମନୁଷ୍ୟଜନ୍ମ ନୋହୁଂ ।୧୨୨
କୋନ୍ତଭଟ୍ଟେ ବୋଇଲେ ତୁହୋ ଶୁଣସି ମସପତି
ଅନ୍ତେ ଜାଣୁ ସିନା ଯେହାଂକର ଗୁଣ ଯେ ପ୍ରକୃତି ।୧୨୩
ଅମୃତ ରସ ଯୋଗାଡ଼ ଭୁଞ୍ଜିଣ ସଇନି
ସମସ୍ତେ ପ୍ରଶଂସନ୍ତି ବ୍ରାହ୍ମଣ ତୋର ଧନି ଧନି ।୧୨୪
ଆଂଚୋବନ ସାରିଣ ଯେ ରାଜ ବିଜୟେ ଆସ୍ଥାନେ
ରାନ୍ଧଣା ବିଧାନକୁ ପ୍ରଶଂସନ୍ତି ସର୍ବଜନେ ।୧୨୫
କଉତୁକେ ତିରୀଜନେ ମାଗନ୍ତି ମେଞ୍ଜନ
ଜନରଞ୍ଜନ ନିମେନ୍ତ ଦିଅଇ ପବନ ନନ୍ଦନ ।୧୨୬
ଅନେକ ସ୍ତିରୀମାନେ ଦିଅନ୍ତି ପରିବା
ତୁମ୍ଭେ ପଣ୍ଡାୟେ ରନ୍ଧନ କରି କଣକଳପେ ଆମ୍ଭନ୍ତ ଦେବା ।୧୨୭
ରାଜାହୁଂ ଭିକ୍ଷାଶୀ ପରିଯନ୍ତେ ଯେକଦୃଷ୍ଟି
ଅବିଚ୍ଛନ୍ନେ ଦିଅଇ ଯାହାକୁ ଯେତେ ଅଣ୍ଟି ।୧୨୮
ସମସ୍ତେ ବୋଲନ୍ତି ବିରାଟ ରାଜ୍ୟ ତୋର ହୋଇଲା ସିଦ୍ଧି
ଦେବରାନ୍ଧଣା ପାକ ଗଉରୀ ସଉରୀ ନଳବିଧି ।୧୨୯
ଛତ୍ରୀବୃତ୍ତି ଛାଡି ଉପୁଜାଇଲା ଧଉର୍ଯ୍ୟ ପଣଇ
ଗୁଣ ଉପୁଜାଇଲେ ଉପୁଜଇ ବହୁତ କାରଣ ।୧୩୦

ଶୁଣ ହୋ ମନୁରାୟେ ତୁ ମହାତମା ପୁରୁଷ
ଭୀମସେନ ଗୋପ୍ୟାନ କଥା କହନ୍ତେଣ ନ ଯାଇ ଶେଷ ।୧୩୧

■ ■

## ଅର୍ଜ୍ଜୁନଙ୍କର ବିରାଟ ସଭାରେ ପ୍ରବେଶ

ଯେଥୁ ଅନନ୍ତରେ ଗମଇ ସର୍ବସାଚୀ
କବେରୀ ଭାର ବେଲାଉଳ ଖୋଷାୟେକ ସଞ୍ଚି ।୧
ଶିରରେ ସୀମନ୍ତନୀ ମୁକୁତାର ଜାଲି
ଲଲାଟରେ ମଥାମଣି କର୍ଣ୍ଣେ କାପ ଯେ ବେଣ୍ଟୁଲୀ ।୨
ଆକାଶର ମଣି କି ସେ ବେନିକରେ ସୁବର୍ଣ୍ଣର ଚୁଡ଼ି
ଗଳାରେ ରତ୍ନମାଳୀ ଦଶ ଅବତାର ଚାପସରି ।୩
ପାଦରେ ନେପୁର ସ୍ତିରୀବେଶ ଅଞ୍ଚଳ
ହୃଦୟରେ କାଞ୍ଚଳୀ ମୁକୁତା ରତ୍ନମାଳ ।୪
ତିରୀବେଶ ଅଞ୍ଚଳ ଚାଲନ୍ତେ ଶୋହୋଇ
ମଧୁରିପୁ ବଲ୍ଲବ ରୂପେ ତ୍ରଇଲୋକ ମୋହଇ ।୫
କିଞ୍ଚିତ ବକ୍ର ନୟନେ ଚଳଇ ହେଲୁ ହେଲୁ
ଚଳଇ ଯୋଗେଶ୍ୱରୀ କି ବେଣୀଭଦ୍ରା ନଦୀ କୂଳୁଂ ।୬
ସଂସାର ଜନ ମୋହିଲା ସେ ପୁରୁଷ ତିରୀ ବେଶ
ମଚ୍ଛରାଜ୍ୟେ ଧନୁର୍ଜ୍ଜୟେ ହୋଇଲା ପ୍ରବେଶ ।୭
ଦେଖିଣ ମୋହଗଲେ ଯେ ସମସ୍ତ ଜନମାନେ
କିୟେ ରମ୍ଭା ତେଜିଲା କି ଆକାଶ ଭୁବନେ ।୮
କିୟେ ତେଜି ଅଇଲା କି ସାବିତ୍ରୀ ମେନକା
ଭଲେଣ କେହି ନାହିଁ ଗବନ କିଂକେ ଯେକା ।୯
ବିରାଟ ଆସ୍ଥାନ ସନ୍ନିଧେଣ ଯାଇଂ ଧନୁର୍ଜ୍ଜୟେ ଭେଟି
ଦେଖନ୍ତେ ନ ଅଣ୍ଟଇ ସେ ସବୁରି ଯେକ ଦୃଷ୍ଟି ।୧୦
ସମ୍ପର୍ବ ଆସ୍ଥାନେ ବିଜୟେ ମହୀପାଳେ
ବାସବର ନନ୍ଦନ ଯାଇ ବିଜୟେ ଆସ୍ଥାନର ତଳେ ।୧୧
ତ୍ରଇଲୋକ ମୋହିନୀ ତାର ରୂପ ଗୁଣ ଦେଖି
ଭୟେଣ ବେନିଭାଗଜନେ ଆସ୍ଥାନ ଉପେଖି ।୧୨
ବିରାଟେ ପଚାରଇ କୋନ୍ତେ ଯେତ ବଡ଼ାଇ ଅପୂର୍ବ
ଆକାଶ ବାହିନୀ କି ଯେହାର ସରୂପ ଦେଖିବ ।୧୩
ଯୁଝେଷ୍ଟି ବିଚାରନ୍ତି ଅର୍ଜ୍ଜୁନ ମୁଖ ଚାହିଁ
ଆରେ ନିଲ୍ଲଜ ଆତ୍ମା ମୋର କିଂପେ ଅଛୁ ରହି ।୧୪
ବାବୁ ଦୁଇବାହେ ମହାଭାରା ପୃଥୀ ଧଇଲୁ ଧନୁହୁଳେ
ସୁଭଦ୍ରା ଛଳେ ଦ୍ୱାରିକାୟେ ଜିଣିଲୁ କୃଷ୍ଣ କାମପାଳେ ।୧୫
ପାଞ୍ଚାଳ ଦେଶରେ ବାବୁ ରାଧାଚକ୍ର ବିନ୍ଧି
ପାଞ୍ଚାଳୀ ହରଣେ ତୁ ଜିଣିଲୁ ସର୍ବ ଯୋଧୀ ।୧୬
ଶରେ ସାଗର ବିନ୍ଧିଲୁ ହନୁମନ୍ତ ବିବାଦେ
ଗୋସିଂହ ଭୟେ ଦ୍ୱାରକା ରକ୍ଷାଗଲା ତୋହୋର ପରସାଦେ ।୧୭
ବାବୁରେ ଅରଣ୍ୟେ ଗମନ୍ତେ ଜିଣିଲୁ ତୁ ଅଙ୍ଗାରପନ୍ନଙ୍ଗ
ଶହସ୍ର ବିଘାତେ ବିକୋଟିଲୁ ତାହାର ଯେ ଅଙ୍ଗ ।୧୮
ବାବୁ ଅଗ୍ନି ଦେବତାର ଖଣ୍ଡିଲୁ ତୁ ଲୁଦୁବୁଦୁ ବ୍ୟାଧି
ବାସବକଇଂ ଜିଣି ଖାଣ୍ଡବ ବନୁଂ ଦେଲୁ ମଉଷଧି ।୧୯
କିରାତ ରୂପେଣ ତୁ ଅରଣ୍ୟେ ହର ଜିଣି
ଭୟେଣ ପ୍ରସନ୍ନ ତୋତେ ହୋଇଲେ ଶୂଳପାଣି ।୨୦
ପଶୁପତ୍ର ଅକ୍ଷୟ ତ୍ରୋଣ ବର ତୋତେ ଦିଲେ
ହର ପାର୍ବତୀ ତୋତେ ଯେ ପ୍ରସନ୍ନ ହୋଇଲେ ।୨୧
ସ୍ୱର୍ଗମଞ୍ଚ ପାତାଳ ତିନି ଲୋକରେ ବଳବନ୍ତା
ଯେଥକୁ ଭାର୍ଜନ ତୋତେ କଲାକ ବିଧାତା ।୨୨
ମୁହିଂ ତୁମ୍ଭକୁ ନାଶକଲି ହାଥର କୁତୂହୋଳେ
ତୋରପରା ଭାଇ ଆସି ଉଭାରିଲୁ ବିରାଟର ସଭାତଳେ ।୨୩
ଯେ ତୋହୋର ପ୍ରାକର୍ମ ହୀନକାର୍ଯ୍ୟ ଦେଖି
ଫୁଟି କିମ୍ବା ନ ଗଲାରେ ମୋହୋର ବେନିଆଖି ।୨୪
ଫୁଟିଣ ନ କହନ୍ତି କୋନ୍ତେ ବିଚାରନ୍ତି ମନେ ମନେ ଗୁଣି
ଶରୀର ବିସର୍ଜନ ହୋଉକିନା ଯେହିକ୍ଷଣି ।୨୫
ସଭାତଳେ ଯାଇଂ ଅର୍ଜ୍ଜୁନ ହୋଇଲାକ ଉଭା
ଅମର ଭୁବନ ଜିଣି ଦିଶିଲାକ ଅତି ଶୋଭା ।୨୬
ବାମଅଙ୍ଗ ସାର ଦେଇ ବିରାଟ କତିକି
ପ୍ରଣପତ୍ୟ ଫାଲଗୁନୀ କୋନ୍ତଂକ ମୁଖ ଦେଖି ।୨୭
ବିରାଟ ବୋଇଲା ତହିଂ ଜିତ ମହାପ୍ରସାଦେ
ଅମନାତ୍ୟେ ବୋଇଲେ ଉଠ ଆଗ୍ୟାଂ ହୋଇଲାକ ହାଦେ ।୨୮
ସ୍ୱଇଛାୟେ ଗୋପ୍ୟ ସେ କାର୍ଯ୍ୟର ନିମନ୍ତେ
ସ୍ତିରୀବେଶ ଅଳଂକାର ବେନିବାହୀ ହାଥେ ।୨୯
ସାଷ୍ଟାଙ୍ଗେ ପଡ଼ି ଯେ ଅଛନ୍ତି ସେହୁ ଭୂମିଗତେ
ବିରାଟର ବଚନେ ସେ ଉଠିବ କେମନ୍ତେ ।୩୦
ହୃଦଗତେ ବିଚାରନ୍ତି ଦେବ ଯେ ଯୁଝେଷ୍ଟି
ଆମ୍ଭର ଆଗ୍ୟାଂ ନ ପାଇଲେ ସେ ନ ଉଠଇ କିରାଟୀ ।୩୧
କୋନ୍ତେ ବୋଇଲେ ତୁ ଗୋ ଶୁଣସି ମହାତ୍ମାଣୀ

ଠାକୁରଂକ ଆଗ୍ୟାଂ ହେଲା ଉଠ ଯେହିକ୍ଷଣି ।୩୨
ବିରାଟର ବଚନେ ଯେ ସେ ତୁନି ହୋଇଥିଲା
ଯୁଦ୍ଧେଷ୍ଟିଂକ ବଚନେ ସେ ଧାଡିକାରେ ଉଠିଲା ।୩୩
ବିରାଟ ବୋଇଲା ତୁ ଶୁଣସି ଗୋ ସୁନ୍ଦେରୀ
କେବଣ ଭୁବନେ ଥାନ ଗୋ ତୋହୋରି ।୩୪
କେ ତୋହୋର ମାତାପିତା କେ ତୋହୋର ପ୍ରଭୁ
କାହୁଂ ଅଇଲୁ ତୁ ଗୋ କାହାର କୁଳବଧୂ ।୩୫
ମୋହିନୀ ରୂପ ଧରି ପଶିଲୁ ମୋର ରାଜ୍ୟେ
କିମ୍ପୂତ ତୋର ସମ୍ବାଦ କହ କିସ ତୋର କାର୍ଯ୍ୟେ ।୩୬
ସୁଶୀତଳ ବାଣୀ ଯେ କହଇ ସର୍ବସାଚୀ
ଅପାର କାର୍ଯ୍ୟ ମୋହୋର ବିଚାରେ ନାହିଂ କିଛି ।୩୭
ପଶ୍ଚିମ ସଉରାଷ୍ଟ୍ରେ ହସ୍ତିନା ନଗ୍ରପୁରୀ
ଯୁଦ୍ଧେଷ୍ଟି ଦେବ ଠାକୁର ତାହିଂର ଅଧିକାରୀ ।୩୮
ଭୀମସେନ ଠାକୁରେ ତାହାଂକ ସାନୁଜ
ତାହାଂକର କନିଷ୍ଟ ଯେ ବାସବ ତନୁଜ ।୩୯
ସେ ଅର୍ଜୁନକୁ ଦେବ ତୁହି ଚିହ୍ନ ପାରୁ କି ବିରାଟଇ
ମୁହିଂ ତାଂକର ବେଶ କାରେଣୀ ଅଟଇ ।୪୦
ପଶାରେ ରାଜ୍ୟଭାର ହାରିଲେ ଯୁଦ୍ଧେଷ୍ଟି ଦେବେ ଯହୁଂ
ହସ୍ତିନା ନଗ୍ରକୁ ଆଉର ଯିବୁ ଆମ୍ଭେ କାହୁଂ ।୪୧
ଯୁଦ୍ଧେଷ୍ଟି ଦେବ ଠାକୁର ତୁମ୍ଭ ରାଜ୍ୟକୁ ଅଇଲେ ବୋଲି
ସେ ଶବଦକଇଂ ମୁଂ ଯେ ଗୋଡ଼ାଇ ଅଇଲି ।୪୨
ମୋହୋର ନାମ ସଂକେତ ଅଟଇ ବୃହନ୍ନାରୀ
କନ୍ୟାଂକର ଅନ୍ତପୁରେ ମୁଂ ଥାଇ ନୃତଗୀତ କରି ।୪୩
ବିରାଟ ବୋଇଲା ତୋର ସ୍ତିରୀବେଶ ଶୁଦ୍ଧକାଯେ
ମମହୃଦେ ବିଚାରଇ ତୁ ଗୋ ଦିଶୁ ପୁରୁଷ ଲକ୍ଷଣ ପ୍ରାୟେ ।୪୪
ବୋଲଇ ବୃହନ୍ନାରୀ ଶୁଣସି ମହେଶ୍ୱର
ସ୍ତିରୀ ପୁରୁଷ ଲକ୍ଷଣୁ ମୁଂ ଅଟଇ ବାହାର ।୪୫
ବିରାଟ ବୋଇଲେ କୋନ୍ତେ ଯେ ଅଟଇ କିସ ରୂପ
ବଡ଼ାଇ ଦୁରାପଦ ଯେ କହିଲା ମହାଗୋପ୍ୟ ।୪୬
ଯାହା ସେ ଲେଖନ କଲା ପ୍ରଜାପତି
ଚନ୍ଦ୍ରେକ ସୂର୍ଯ୍ୟେକ ଯେ ସ୍ରିଜିଲା ଦିବାରାତି ।୪୭
ସ୍ତିରୀଯେକ ପୁରୁଷ ଯେକ ପାପେକ ପୁଣ୍ୟେକ
ଯେଥୁଂ ବାହାର ସେ ବୃହନ୍ନାରୀ ସରୂପେକ ।୪୮
କୋନ୍ତେ ବୋଇଲେ ସେ ଥିବ ଅନ୍ତପୁରେ
ଅହନିଶି ମେଳହୋଇ ସେ ସ୍ତିରୀଙ୍କ ସଙ୍ଗତରେ ।୪୯
ଯେବେ ମହାରାଜା କଲୁ ମନେ ବାଧା
ବିଶ୍ୱାସଗଲା ଲୋକ ଘେନି କରାଅ ବେଗେ ଶୋଧା ।୫୦
ଯାଚକେଶ୍ୱର ମନ୍ତ୍ରୀ ବୋଇଲା ଅନ୍ତବାଡ ପଡୁ
ଉତ୍ତରକୁମର ଯାଇ ଆପଣେ ଶୋଧା କରୁ ।୫୧
ସରୂପ ବୁଝିବାନା ପରୀକ୍ଷୁଂ ଉଠୁରିଲେ
ତେବେ ସେ ଅନ୍ତପୁରେ ଥିବ ନପୁଂସକ ହୋଇଲେ ।୫୨
ଅନ୍ତବାଡ ଭିତରେ ପଶିଲା ବୃହନ୍ନାରୀ
ବିରାଟ ନନ୍ଦନ ଉତ୍ତର କୁମାର ପରୀକ୍ଷ ସେ କରି ।୫୩
ବିଧାତାର ନିର୍ବାର ଉର୍ବଶୀର ଶାପ୍ୟ
ତେଣୁ ସେ ପାଥର ଉପସ୍ଥ ଗଲା ଗୋପ୍ୟ ।୫୪
ବିବସ୍ତ୍ର କରିଣ ଦେଖନ୍ତି ବର୍ଣ୍ଣଚିହ୍ନ
ସରୂପ ଦେଖିଲା ନାହିଂ ସ୍ତିରୀ ପୁରୁଷ ଲକ୍ଷଣ ।୫୫
ଆସ୍ଥାନେ ଉତ୍ତର କୁମର କହଇ ସରୂପ
ସ୍ତିରୀ ଲକ୍ଷଣ ନାହିଂ ପୁରୁଷ ଲକ୍ଷଣ ଗଲା ଗୋପ୍ୟ ।୫୬
ବିରାଟ ବୋଇଲେ କୋନ୍ତେ ସାଧୁ ମୋ ଜୀବନ
ମହତଂକ ପ୍ରସନ୍ନେ ଜନେ ଲଭନ୍ତି ପୁଣ୍ୟମାନ ।୫୭
ପ୍ରଥମେ ଯେ ବୋଇଲା ଯୁଦ୍ଧେଷ୍ଟି ଅଇଲେ ବୋଲି
ସେ ଶବଦଗୋଟି ଶୁଭିଲା ମୁଂ ତେଣୁ ନିସ୍ତରିଲି ।୫୮
କୋନ୍ତେ ବୋଇଲେ ରାୟେ ନ କହୁ ଆମ୍ଭେ ମିଥ୍ୟା
ପୁଣି ଅବଦେ ପରିଯନ୍ତେ ଦେଖିବୁ ତୁ ଯଥା ।୫୯
ମହତଂକ ବାଚା ଯେବେ ହୋଇବାକ ଆନ
ଆବର ଚନ୍ଦ୍ରସୂର୍ଯ୍ୟ କିଂପେ ଶୂନ୍ୟେ କରିବେ ଗବନ ।୬୦
ବଚନେ ବୋଧଗଲା ମଚ୍ଛ ଅଧିକାରୀ
ତୁ ମୋହୋର ଉତ୍ତାର ବାଳୀକି ନୃତ୍ୟ କରାଅ ବୃହନାରୀ ।୬୧
ଅର୍ଜୁନ ଠାକୁରଂକୁ ଦେଖିବି ମୁଂ ଆଉ କାହିଂ
ସଂସାର ଅନ୍ଧପଟଳ ଫିଟଇ ତାହାଂକ ମୁଖ ଚାହିଂ ।୬୨
ଯାଚକେଶ୍ୱର ମନ୍ତ୍ରୀ ବୋଇଲା ତୁ ଶୁଣିମା ମହାରାଜା
ଧାର୍ମିକ ଲୋକନ୍ତ ବହୁତ ନ ବଜା ।୬୩
ମନ୍ତ୍ରୀର ବଚନ ଶୁଣିଣ ସେ ଧାର୍ମିକ ଦଣ୍ଡଧାରୀ
ଆପଣାର ଶ୍ରୀକରେ ବିରାଟ ଘେନିଲାକ ଦିବ୍ୟଶାଢ଼ୀ ।୬୪
ଘେନିସି ବୃହନାରୀ ବୋଲି ଶ୍ରୀକରେ ରାୟେ ତୋଳି
ହେଠ ବଦନେ ଅର୍ଜୁନ ସୁମରଇ ବନମାଳୀ ।୬୫
ଯେହାର ଶାଢ଼ୀ ଯେ ମୁଂ ଘେନିଲେ ଚଳହାଥେ
ଭୃତ୍ୟପଣ ହୋଇବ ସିନା ଶାଢ଼ୀ ବାନ୍ଧିଲେ ମାଥେ ।୬୬
ତିନିହୁଂ ଚାରି ମୋତେ ଦିଅନ୍ତା ନାହିଂ ଶାଢ଼ୀ
ଇନ୍ଦ୍ର ଗୋବିନ୍ଦ ଆବର ଯୁଦ୍ଧେଷ୍ଟି ଦଣ୍ଡଧାରୀ ।୬୭
କହୁଂ କହୁଂ ଅରଜୁନ ଅଧର ପୁଷ୍ଟ କଲା

ଆଜ ତୋହୋର ଛିରୀ ସମ୍ପଦ ସରଇ ବିରାଟେ ବୋଇଲା ।୬୮
ଅର୍ଜୁନର କୋପ ଦେଖି ଜାଣିଲେ ଯୁଧେଷ୍ଟି
ହୃଦେ ସୁମରଣା କଲେ ନାରାୟଣ ନାମଗୋଟି ।୬୯
ହରି ସେ ତୋହୋର ବୋଲେ ଅଇଲି ବିରାଟ ରାଜ୍ୟକୁ
ଯେ ଧର୍ମ କଷଣୁଂ ହରି ହେ ପାରି କରିବା ମୃକୁ ।୭୦
ହରିର ମାୟାରେ ଯେ ଚେତିଲା ମହପତି
ଶାଢ଼ୀଦେବା ହାଥ କାଢି ଆଣିଲା ତତକ୍ଷଣାନ୍ତି ।୭୧
ବିରାଟ ବୋଇଲା କୋନ୍ତେ ମୁଂ ନ ଜାଣି କଲି ଅନୀତି
ମହରାଜ୍ୟଯାକ ମୁଂ ସମର୍ପିଲଇଂ ତୁମନ୍ତି ।୭୨
ତୁମ୍ଭେ ଶାଢ଼ୀଦେବା ହୋଉ ଯେ ବୃହନ୍ନାରୀ କି
କନ୍ୟାପୁରେ ଯାଉ ଯେ ଉତ୍ତରା ତହିଂକି ।୭୩
କୋନ୍ତେ ଶାଢ଼ୀଦିଲେ ଅର୍ଜୁନକୁ ସାନନ୍ଦେ
ଶ୍ରୀହସ୍ତେ ଶାଢ଼ୀ ଅର୍ଜୁନ ମଥାରେ ବାନ୍ଧିଲେ ହାଦେ ।୭୪
ଆସ୍ଥାନର ମଧେ ଶାଢ଼ୀ ବୀର ଘେନି
ନାପଟା ମନ୍ଦିରକୁ ଚଳଇ ଫାଲଗୁନି ।୭୫
ଉତ୍ତରାର ମୂଳେ ଯେ କନ୍ୟାଗୋଟି ଚାରି
ନୃତ୍ୟ ଆରମ୍ଭ ନେଇ ସେ ପାତିଲେ ଅନ୍ତପୁରୀ ।୭୬
ଯୁଧେଷ୍ଟି ସଭାପଣ୍ଡା ବିରାଟକୁ ଘେନି ଖେଳାବନ୍ତି ପଶା
ଭୀମସେନ ସୂପକାର ଅର୍ଜୁନ ଅମାନୁଷା ।୭୭
ଅର୍ଜୁନ ବେଶକାର ବୃହନ୍ନାରୀ ରୂପେ
ଜାଣନ୍ତା ନୋହିଲେ ଯେ ତିନିହେଂ ରହିଲେ ଯେ ଗୋପ୍ୟେ ।୭୮

■■

## ଦ୍ରୌପଦୀଙ୍କର ବିରାଟ ଭବନରେ ପ୍ରବେଶ

ଯେଥୁ ଅନନ୍ତରେ ଶୁଣିମା ଦିବ୍ୟରସ
ପାଞ୍ଚାଳୀ କହଇ ସେ ସହଦେବର ପାଶ ।୧
ଶୁଣସି ସହଦେବ କି ବୁଦ୍ଧି କରିବା
କେଉଂଣ ଉପାୟେ ଆମ୍ଭେ ମହଦେଶେ ଯିବା ।୨
ସହଦେବ ବୋଇଲା ଶୁଣ ଗୋ ବିଘ୍ନସେନୀ
ଦଧିବାମନ ଅନକୂଳ ଶୁଭଲଗ୍ନ ଘେନି ।୩
ଆସ୍ଥାନର ମଧେ ଯେ ରହିଲେ ଦେବଧର୍ମେ
ରୋଷୁଅଶାଳ ଆବୋରି ରହିଲେ ଭୀମସେନେ ।୪
ଅନ୍ତପୁର ଭିତରେ ରହିଲେ ସର୍ବସାଚୀ
ଚଳ ତୁ ଅନ୍ତପୁରେ ଗୋ ସୁଦେଷ୍ଣା ଯହିଂ ଅଛି ।୫
ସର୍ବମଙ୍ଗଳ ଯୋଗ ଅମୃତ ବିଧାନ
ବିଜେ ଅନ୍ନପୂର୍ଣ୍ଣା ମାହେଶ୍ୱରୀ ଯେ ସୁମରି ଭଗବାନ ।୬
କଷା ବସନ ପରିହରଣ ଅଳଂକାର ବିହୁନା
ଶ୍ରୀକରେ ବେନିବାହୀ ଦେବୀ ମୁକୁଳ କେଶ ସିନା ।୭
ଗମନ୍ତେ ତ୍ରଇଲୋକ ମୋହଇ ପାଞ୍ଚାଳୀ
ନବର ପଶ୍ଚିମ ଦ୍ୱାରେଣ ଯାଇଂ ମିଳି ।୮
ମଉନ ବିକାରେ ଯେ କାହାକୁ ବଚନ ନ ବୋଲଇ ସତୀ
ଧାଇ ମୁଦୁସୁଲୀମାନେ ଆସି ମିଳିଲେ ତତତି ।୯
ନାଗରୀ ଚତୁରୀଯେ ପ୍ରକାଶନ୍ତି ଚାଟୁବାଣୀ
କାହୁଂ ସେ ଆସିଅଛୁ କହ ଗୋ ମହାତ୍ମାଣୀ ।୧୦
ଶ୍ରୀକୃଷ୍ଣା ମହାଦେଈଂକି କହନ୍ତି ସଦିଭାବେ
ସତ୍ୟ ବଚନ ଆମ୍ଭର ଶୁଣସି ଗୋ ମାୟେ ଯେବେ ।୧୧
ଶୁଣସି ଗୋ ମହାଦେଈ ପବିତ୍ର ଅପର୍ଣ୍ଣା
କନ୍ୟାଯେ ଦ୍ୱାରେ ଉଭା ରୂପେ ବରଙ୍ଗନା ।୧୨
କଥା ନ କହଇ ଗୋ ମଉନବ୍ରତ ଜାଣି
ଭାବିନୀ କଲ୍ୟାଣୀ ଗୋ ଅହିଅ ସୁଲକ୍ଷଣୀ ।୧୩
କପିଳାସ ତେଜିଣ କି ବିଜେ କଲେ ଦେବୀ ଉମା
କି ସେ ଶଚୀଦେବୀ ଅଟଇ ଇନ୍ଦ୍ରଂକର ବାମା ।୧୪
କି ଅବା ପଦ୍ମବନ ତେଜି ଅଇଲେ କମଳିନୀ
କି ଅବା ରତିଦେବୀ କାମର ଘରଣୀ ।୧୫
ତିରୀଂକର ମଧେଣ ଗୋ ସୁନ୍ଦରୀ ଅଟଇ ରମ୍ଭା
ଗଉତମଂକର ପତ୍ନୀ ଅହଲ୍ୟା ଅଟେ ଅବା ।୧୬
ସଂପୋତେ କଷଣ ଗୋ ପଡ଼ିଲା ଆସି ତୋତେ
ଦେଖିଲେ ବିରାଟ ଗୋ ମୂର୍ଚ୍ଛିବ କେମନ୍ତେ ।୧୭
ଜଗୁଜନ ମୋହିନୀ ସେ ଗୋ ତିରୀ ରତ୍ନକାନ୍ତି
ଜାତି ପଦ୍ମିନୀ ସେ ରୂପେ ରୂପବନ୍ତୀ ଗୁଣବନ୍ତୀ ।୧୮
ବିଚାରି ଠାକୁରାଣୀ ଗୋ ବୁଝିବା ପରିମାଣି
ନିଚୟେ ତୋହୋର ଗୋ ସେ ହୋଇବ ସପତଣୀ ।୧୯
କେ ବୋଲଇ ତାହାକୁ ନେମା କେଶ ଧରି
କଟକ ବାହାରେ ତାକୁ ଛାଡିବା ତେଙ୍ଗୁରି ।୨୦
କେ ବୋଲଇ କୁରୁଳି କରି ପିଟିବା ମୁଖେ ଦେଇ ବିଣ୍ଡା
କେ ବୋଲଇ ହାଣିମା କି କରେ ଧରି ଖଣ୍ଡା ।୨୧
ଶ୍ରୀକୃଷ୍ଣାଯେ ବୋଇଲେ ଯେମନ୍ତ କିମ୍ପେ ବୋଲ
ମହତ ଲୋକ ହୋଇଥିବ ନ କର ଘଞ୍ଚାଳ ।୨୨
କଷଣ ନିମନ୍ତେ ମର୍ତ୍ତ୍ୟେ ଆସିଥାନ୍ତି ଦେବସ୍ତିରୀ
ଘଞ୍ଚାଳ କଲେ ଗୋ ଅବଶ୍ୟ ହାଦେ ମରି ।୨୩

ତାହାର ତହିଁକି ଗୋ ଯାଅ ଯେହିକ୍ଷଣି
ମୋହୋର ଛାମୁକୁ ଗୋ ଘେନିଆସ ବେଗେ ପୁଣି ।୨୪
ମହାଦେଈର ବଚନେ ମୃଦୁସୁଲୀ ଗଲେ ଝାଟି
ଯାଇଣ ଛାମୁରେ ଯେ ବିନୋୟୀ କହନ୍ତି ।୨୫
ତୁକୁହିଂ ଆଗ୍ୟାଂ ଗୋ ଦିଲେକ ଠାକୁରାଣୀ
ଛାମୁକୁ ବହନ ହୋଇ ଆସିବା ମହାଦ୍ମାଣୀ ।୨୬
ଶ୍ରୀହରି ସୁମରି ଚଳଇ ପାଞ୍ଚାଳୀ ଯେ ବିରାଟ ଅନ୍ତପୁରେ
ଦେଖିଣ ଶ୍ରୀକୃଷ୍ଣା ଆସନ ତେଜିଲେ ଧାଡିକାରେ ।୨୭
ପାଞ୍ଚାଳୀ ପଶନ୍ତେ ପୁର ଦିଶିଲାକ ଶୋଭା
ଶ୍ରୀକୃଷ୍ଣା ବିଚାରନ୍ତି ଯେତ ପ୍ରତକ୍ଷେ ଅଟଇ ରମ୍ଭା ।୨୮
ଅମରାଧି ନାଥ କେହ୍ନେ ତେଜିଲା ଆଖଣ୍ଡଳୀ
କେ ଅବା କେବଣ ଦ୍ରୋହେ ପତିତ ଭୂଅତଳି ।୨୯
ଯେମନ୍ତ ବିଚାର ଯେ କରନ୍ତି ମହାଦେଈ
କିଅବା ସାବିତ୍ରୀ ସତ୍ୟବନ୍ତେ ତେଜି ଅଇଲେକ ଯେହି ।୩୦
କି ଅବା ମେନକା ଦୋହିତା ଯେହୁ ଶକୁନ୍ତଳା
ସର୍ବଲକ୍ଷଣ ବେଶ କିଂପେ କେଶ ଯେ ମୁକୁଳା ।୩୧
ଶ୍ରିୟା ନାମେଣ ଶ୍ରୀକୃଷ୍ଣାଂକ ବିଶ୍ୱାସୀ ମୁଦୁସୁଲୀ
ଆଲୋ ବହନ ସମସ୍ୟା କର ବଚନ କିସ ବୋଲି ।୩୨
ମୁଦୁସୁଲୀ ବୋଇଲା ଗୋ ମସଦେଶର ଠାକୁରାଣୀ
ସମସ୍ୟା ପଚାରେ ପ୍ରତିଉତ୍ତର ପଡ଼ଇ ଦୃଢ଼ବାଣୀ ।୩୩
ଧୂର୍ତ୍ତ ବାତୁଳୀ ଆମ୍ଭେ ଚତୁରୀ ମୁଦୁସୁଲୀ
ଅଶୁଦ୍ଧ ବାକ୍ୟ ଆମ୍ଭେ ସର୍ବଦାଯେ ବୋଲି ।୩୪
ମାଯେ ସମାନ ସାଦୃଶେ ହାଦେ ବଚନ କହିବା
ପ୍ରସ୍ତାପ ସାଦୃଶ୍ୟେଣ ପ୍ରତିସମସ୍ୟାହିଂ ଦେବା ।୩୫
ସେବା ଅନରୂପେ କରିବା ମନବାଞ୍ଛା
କ୍ଷୁଧା ଅନରୂପେ ଭୁକତ କରଇ ଇଚ୍ଛା ।୩୬
ଶକତି ସାଦୃଶ୍ୟେନ କରିବା କର୍ମେଣ
ଧନ ଅନରୂପେ ଧର୍ମ କରିବା ଘଟଣ ।୩୭
ପରାକ୍ରମ ଅନରୂପେ ହୋଇବାକ ବୃଦ୍ଧୀ
ସମାନ ଅନରୂପେ ହୋଇବାକ ବାଦୀ ।୩୮
ମନ୍ତ୍ର ଅନରୂପେ ବିପ୍ରେ ଘେନିବାକ ଦାନ
ଦେବତା ଅନରୂପେ ପ୍ରାସାଦ ବିଦ୍ୟମାନ ।୩୯
ସମାନ ସାଦୃଶ୍ୟେଣ କରିବାକ ଦେବୀ କୋପ
ଯେମାନ ହେଜି ନୁଆରିଲେ ଖଣ୍ଡଣ ହୋଯେ ତପ ।୪୦
ବାବୁ ଅନରୂପେ ଯେ କରିବା ଗଉରୋବ

ଯେତେ ଠାବକୁ ଚଗଚା କରନ୍ତି ପଣ୍ଡିତ ଯେ ଭାବ ।୪୧
ତୁ ଯେ ଧାର୍ମିକ ବିବେକ ପଣ୍ଡିତ କୁଳଶୀଳ
ତୋ ତହୁଂ ଗରୁହଂସୀ ତାହାର ଦିଶଇ ବାକ୍ୟବଳ ।୪୨
ଶ୍ରିୟାର ବୋଧ ବଚନେ ଯେ ବଦୟନ୍ତି ଶ୍ରୀକୃଷ୍ଣା
କେବଣ ଦେଶୁଂ ଗବନ କଲୁ କହ ଗୋ ସତୃଷ୍ଣା ।୪୩
କେ ତୋହୋର ବଲ୍ଲଭ କେ ତୋହୋର ପିଅର ମାଯେ
ଗୃହବାସ କାହିଁ ଗୋ କେବଣ କୁଳେ ଜାତହୋଯେ ।୪୪
ଶୁଣ ଗୋ ବଇରାଷ୍ଟ ପୁର ଭୁବନ ମଣ୍ଡଣି
ବଚନ ପ୍ରକାଶନ୍ତେ ଶୁଭଇ ମଧୁର ରସବାଣୀ ।୪୫
ବିନୟ ଭଗତେଣ ହୋଇ ସେ କୃତାଞ୍ଜଳି
ଗୁଚିର ବଚନ ଦେବୀ କହଇ ପାଞ୍ଚାଳୀ ।୪୬
ମାଗୋ ପଛିମ ସଉରାଷ୍ଟେ ଯେ ନଦୀ ବହଇ ଯମୁନା
ସେ ନଦୀତଟେ ଯମପ୍ରଶସ୍ତ ଇନ୍ଦ୍ରପ୍ରଶସ୍ତ ଜଇନ୍ତ ବାରୁଣା ହସ୍ତିନା।୪୭
ବଡ଼ାଇ ପ୍ରମୋଦ ସ୍ଥାନ ଯେ କୁଞ୍ଜଗଳ ବାରସ୍ୱତୀ
ଯୁଧେଷ୍ଠି ମହାରାଜା ତହିଂର ଚକ୍ରବ୍ରତୀ ।୪୮
ଭୀମ ଅର୍ଜ୍ଜୁନ ଯେ ନକୁଳ ସହଦେବ
ସୋମବଂଶକଇଂ ଉଦ୍ଧାରଣ ପଞ୍ଚ ଯେ ପାଣ୍ଡବ ।୪୯
ତାହାଂକର ମନୋହାରୀ ଅଟନ୍ତି ଦ୍ରୋପଦୀ
ଦ୍ରୋପତ ରାଜାର ସେ ଅଟଇ ଦୋହିତୀ ।୫୦
ନୋହଇ ଦ୍ରୋପଦୀ ମୁଂ ଅଟଇ ତାଂକ ଦାସୀ
ଯେ ସତ୍ୟବାକ୍ୟ ଗୋ କହିଲୁ ପରକାଶି ।୫୧
ଶ୍ରୀକୃଷ୍ଣା ବୋଇଲେ ଗୋ କହିଲୁ ସିନା ଭଲବାକ୍ୟ
ବଡ଼ାଇ ଦୁଲଭ କଥା ଯେ ଶୁଭେତ ତ୍ରଇଲୋକ୍ୟ ।୫୨
ଆଜ୍ଜଦିନର କଥା ସୁଫଳ ଗୋ ପୁଣ୍ୟ ଅପ୍ରମିତା
ପରମାନନ୍ଦ ପୁରୁଷଂକର ପଡ଼ିଲା ଆଜ ଚିନ୍ତା ।୫୩
ଆଗୋ ଦ୍ରୁପଦ ରାଜାଂକର ଦୋହିତା ଦ୍ରୋପଦୀ
ଯେକସ୍ତିରୀଂକି ଗୋ ଅଟନ୍ତି ପଞ୍ଚପତି ।୫୪
କିମ୍ଭୂତ ମାୟା ଯେ ଗୋ ଶୁଣୁଅଛୁ ବାଣୀ
ସରୂପେ ସତ୍ୟ କି ଯେହା କହିବା ଦୃଢ଼ବାଣୀ ।୫୫
ଶ୍ରୀକୃଷ୍ଣା ଦେବୀ ଯେ ସର୍ବଗ୍ୟଂ ସର୍ବଜାଣ
କଥା ଅନରୂପେ ବାକ୍ୟ କରନ୍ତି ପ୍ରକାଶ ପୁଣ ।୫୬
ଅନେକ ରାଜ୍ୟେ ଯେ ପଡଇ ଯେହୁ କଥା
ଆମ୍ଭେ ବିଚାରୁ ସତ ଯେ ନୋହଇ ସର୍ବଥା ।୫୭
ଶ୍ରୀକୃଷ୍ଣା ବୋଇଲେ ଗୋ ବସ ବସ ମାଯେ
ବଡ଼ାଇ ଦୁରାପଦ ଲାଗିଲା ସନ୍ଦେହ କଥାଯେ ।୫୮

ଶ୍ରୀକୃଷ୍ଣାର ବଚନେ ବସିଲେ ଦ୍ରୋପଦର ବାଳୀ
କହନ୍ତି କୋକିଳ ବଚନ ଶୁଦ୍ଧଶାଳୀ ।୫୯
ତୁ ଯେ ପୁଚ୍ଛାକଲୁ ରାଣୀ ଗୋ ପାଣ୍ଡବ ପାଞ୍ଚଂକର କଥା
ପାଞ୍ଚ ପତିଂକର ଭାରିଜା ଦ୍ରୋପଦ ଦୁହିତା ।୬୦
ପଞ୍ଚୁ ପାଣ୍ଡବଂକର ଯେକଇ ଭାରିଜା ଦ୍ରୌପଦୀ
ପାଞ୍ଚେହେଂ ରମଣ କରନ୍ତି ତାହାନ୍ତ ନିତି ।୬୧
ଶ୍ରୀକୃଷ୍ଣା ବୋଇଲେ ଗୋ ସ୍ତିରୀ ମାତ୍ର ଭଳି
ଯେକାଇଂ କେମନ୍ତେ ସହଇ ପାଞ୍ଚଂକ ଅର୍ଦ୍ଦୋଳି ।୬୨
ସଇରିନ୍ଧ୍ରୀ ବୋଇଲେ ଗୋ ସେହୁ ପ୍ରତକ୍ଷେ ଜିଘ୍ନସେନୀ
ନିତ୍ୟେହେଂ ପରୀକ୍ଷ ସେ କରଇ ବହନି ।୬୩
ଧନ୍ୟ ସେ ସ୍ତିରୀ ଅଟଇ ସତୀ ବିଳାସୁଣୀ ।୬୪
ମୁହିଂ ସେ ଦ୍ରୌପଦୀଂକର ଅଟଇ ନିଜ ଦାସୀ
ତାହାଂକର ସମାନ ମୋତେ ଅଭିନ୍ନ ନ କରନ୍ତି ଶୁଭ୍ରକେଶୀ ।୬୫
ସକଳ ସନ୍ଦେଶମାନ ସେ କହନ୍ତି ମୋହୋର ଆଗେ ପୁଣ
ତାହା ତୋତେ କହିବା ତୁ ଯେକମନେ ଶୁଣ ।୬୬
ଯୁଝେଷ୍ଟିଂକର ତହିଂକି ସେ ଗମଇ ଯେଉଂଣ ଦିନ
କ୍ରୀଡ଼ାରଙ୍ଗ ସାରି ସେ ପଶଇ ହୁତାଶନ ।୬୭
ସେ କାୟା ଦହନ ଯାଇ ପୁଣ ହୋଅଇ ଆନ କାୟେ
ଆରେକ ଦିନ ଭୀମସେନକୁ ଦ୍ୟନ୍ତି କାୟେ ।୬୮
ବ୍ରିକୋଦର ତୁଲେ ଯହୁଂ ସରଇ ପୀରତି
ଦୋହରା ଅନଳେ ପୁଣି ପଶଇ ମହାସତୀ ।୬୯
ସେ ଅନଳେ ଦହନ କରଇ ସେହୁ କାୟେ
ନବତନ ଶରୀର ଘେନି ପୁଣ ସମର୍ପଇ ପାର୍ଥବ ଧନୁର୍ଜୟେ ।୭୦
ନକୁଳ ସହଦେବଂକୁ ଯେହି ପ୍ରତି ପ୍ରତି
ପଞ୍ଚଦିନେ ଅନଳେ ଦହନ ହୁଅଇ ପଞ୍ଚୁଘାନ୍ତି ।୭୧
ଅନ୍ୟ ସ୍ତିରୀମାନଂକୁ ଜଳ ଯେହ୍ନେ ସ୍ନାହାନ
ଅଗ୍ନି ସଂଯୋଗେଣ ସେ ବଞ୍ଚୁଥାଇ ଦିନ ।୭୨
ଯେକର ଉଚ୍ଛିଷ୍ଟ ସେ ଆରେକକୁ ନ ଦିଅଇ
ପଞ୍ଚଇ ପୁରୁଷ ହାଦେ ସେ ଯେକଇ ଆତ୍ମା ତାହାଂକରି ଦେହୀ ।୭୩
କହନ୍ତେ ଶ୍ରୀକୃଷ୍ଣା ଯେ ବୁଝିଲେ ମହାଗରୁ
ଅସଂକ୍ଷେପ ବଚନ ତୋହୋର କେହୁ ପ୍ରତେକରୁ ।୭୪
ସଇରିନ୍ଧ୍ରୀ ବୋଇଲେ ଗୋ ସନ୍ନିଧେ ତାହାଙ୍କଇଂ ଖଟି ସେବା
ପଞ୍ଚଭୂତ ଆତ୍ମା ମୁଂ ତାହାଂକ ପ୍ରିୟଭାବା ।୭୫
ଯେସନେକ ଅଭିନ୍ନ କରି ସେ ଦେଖଇ ମୁକୁଳଂ
ସେ ଯେହ୍ନେ ଦ୍ରୋପଦୀ ପ୍ରତକ୍ଷେ ଅଟେ ମୁହିଂ ।୭୬
ସନ୍ନିଧେ ଖଟଣି ସେବା ନାମ ମୋର ସଇରିନ୍ଧ୍ରୀ
ଅଲେଖ ତିଳେଖ କରଇ ଚତୁସମ ଲାଗି ।୭୭
ସ୍ୱାମୀର ଅଧମ ପଣେ ପଶାକ୍ରୀଡ଼ା ହୋତେ
ରାଜ୍ୟଭାର ସଂପଦ ସେ ହାରିଲେ ସଂପୋଢ଼େ ।୭୮
ବଚନ ଅଲଂଘିତେ ହୋଇଲେ ବନଗାମୀ
ଶବଦେକ ଶୁଭିଲା ତୁମ୍ଭ ରାଜ୍ୟକଇଂ ଅଇଲେ ଯୁଝେଷ୍ଟି
ଦେବସ୍ୱାମୀ ।୭୯
ମୁହିଂ ବିଚାରିଲି ଦ୍ରୌପଦୀ ଯିବେନାହିଂ କି ବିରାଟ ରାଜ୍ୟକୁ
ଗୋଡ଼ାଇ ଅଇଲି ମାଗୋ ଅନିବାରଣ ଶବଦକୁ ।୮୦
ମାଗୋ ଦେଖିଲି ବିବେକ ଧାର୍ମିକ ତୋହୋରକ ଇଚ୍ଛା
ସେ ନିମନ୍ତେ ତୋର ରାଜ୍ୟେ ରହିତେ କଲି ଇଚ୍ଛା ।୮୧
ମାଗୋ ତୁହି ଶ୍ରୀକୃଷ୍ଣା ଗ୍ୟାନବନ୍ତ ଦେହୀ
ଶୁଣି ଅହୁନା ତୋହୋର କଥା ସଙ୍ଗତହିଂ ।୮୨
ଶ୍ରୀକୃଷ୍ଣା ବୋଇଲେ ଯେବେ ମୋହୋର ଭାଗ୍ୟ ଥିବ
ତୁମ୍ଭେ ମୋହୋର ଭୁବନେ ସମୟେକେ ରହିବ ।୮୩
ମୋହୋର ଛାର ପାମରୀ ଦ୍ରୌପଦୀଂକି ଦେଖିବଇ କାହିଂ
ଖଣ୍ଡଇ କିନା ଦୁରାପଦ ମୁଂ ତୁମ୍ଭର ମୁଖ ଚାହିଂ ।୮୪
ମାଗୋ କଥା ପୁଚ୍ଛିବି ତୋତେ ମୁଂ ହୋଇବ କଟାଳ
ସର୍ବଗୁଣେ ସାଧବୀ ମାଗୋ ମୁକୁଳ କିଂପେ କାଳ ।୮୫
ସଇରିନ୍ଧ୍ରୀ ବୋଇଲେ ମୋହୋର ଦିଅରେ କଲି କଳି
ଭ୍ରଛନା ବୋଲି ମୁହିଂ ତାହାରେ ବହୁତ ଦିଲି ଗାଳି ।୮୬
ସହି ନୁଆରିଲ ସେହି ମୂରୁଖ ଚାଣ୍ଡାଳ
ଆକ୍ରେଷିଣ ବାମଭୁଜେ ଧଇଲା ମୋର ବାଳ ।୮୭
ତେଣୁକରି କେଶ ମୋର ହୋଇଲା ମୁକୁଳି
ରାଗେଣ ନ ବାନ୍ଧିଲି ମୋହୋର କଇଛା ଅଙ୍ଗୁଳି ।୮୮
ଶ୍ରୀକୃଷ୍ଣା ବୋଇଲେ ତୋର କେଶ ଯେ ମୁକୁଳିତ
ବନ୍ଧନ ନ କଲେ ପୁଣ ହୋଇବ କେମନ୍ତ ।୮୯
ସଦିଭାବ ହୋଇ ଶୁଣ କହଇ ମୁଂ ତାହା
ମୋହୋର ସ୍ୱାମୀ ହାଥେ ଉପୁଡ଼ାଇବି ବେନି ତାର ବାହା ।୯୦
ତାହାର ଭୁଜ ଶୋଣିତେ ପଖାଳିବି ମୋହୋର କେଶ
ତେବେ ସେ ବନ୍ଧନ କରିବି ମୋହୋର ସତ୍ୟ ବଚନ
ପ୍ରକାଶ ।୯୧
ଶୁଣିଣ ଶ୍ରୀକୃଷ୍ଣାର ଯେ କଣ୍ଟିଲା ଲଲାଟ ପାଟି
ବୋଇଲା ସ୍ତିରୀମାତ୍ର ହୋଇ ଯେତେ କଇଛା ଜଗଜେଠୀ ।୯୨

ଶ୍ରୀକୃଷ୍ଣା ବୋଇଲେ ଯେ ମୋହୋର ରାଜ୍ୟେ ସମଯେକ ରହିଲେ
ତୋତେ ପୁଣ ଭଗତି କରି ନୋହଇ ମୋହୋର ବଳେ ।୯୩
ସୋଦର ଦିଅରଂକ ଯାହାର ଯେତେକ କଇଛା
ନପୁଣ ଭାଇନ୍ତ ମୋହୋର କରି ନୁଆରଇ ରକ୍ଷା ।୯୪
ସଇରିନ୍ଧ୍ରୀ ବୋଇଲେ ଗୋ ଯେ ସେ ଠାକୁରାଣୀ
ଦ୍ରୌପତୀ ଶ୍ରୀକୃଷ୍ଣା ତୁମ୍ଭେ ହୋ ଯେକଆତ୍ମା ଜାଣି ।୯୫
ଯେ ସେ ସେବକ ଗୋ ସେ ସବୁକରି ଅଟଇ ଭୃତ୍ୟ
ଠାକୁରାଣୀ ପଦ ମାଗୋ ବଡ଼ାଇ ମହତ ।୯୬
ଅଲେଖ ତିଳେଖ ବେଶ ଭୂଷଣ ଗୋ କରାଉଥିବି ନିତି
ଚତୁସମ ଲାଗି ତୁମ୍ଭଙ୍କୁ କରିବା ଯଥାପ୍ରୀତି ।୯୭
ଯେକାମାତ୍ର କଥା ତୋତେ ମାଗଇ ମାଯେଶ୍ୱରୀ
କିଞ୍ଚିତ କଥା ଯେ ସେ ଅଭ୍ୟର୍ଥନା ମୋହୋରି ।୯୮
ପାଦ ପାଳଟା ଉଚ୍ଛିଷ୍ଟ ଗୋ ନ ଛୁଆଁଇବୁ ମାଯେ
ଭ୍ରଛନା ବୋଲ ନ ବୋଲିବୁ ଅଳପ କଥାଯେ ।୯୯
ସାମାନ୍ୟେଣ ନ ପେଷିବୁ ଅଦୋଷେ ନ କରିବୁ ତେଜ୍ୟା
ପୁରୁଷେ ନ ପେଷିବୁ ନ ଛୁଆଁଇବୁ ମୋତେ ଶେଯ୍ୟା ।୧୦୦
ଯେ ଛଡ଼ଗୋଟି କଥା ମାଗୋ କରିଥିବ ଦୃଢ଼
ଅନେକ ଧର୍ମ ଉପୁଜିବ ବଚନ ମୋର ଗାଢ଼ ।୧୦୧
ଶ୍ରୀକୃଷ୍ଣା ବୋଇଲେ ଗୋ ମୋହୋର ବିଚିତ୍ର ପୁରେ ଥିବା
ତୁମ୍ଭର ଭ୍ରଥା ଅଛନ୍ତି କାହିଂ ଗୋ ମୋତେ ତା କହିବା ।୧୦୨
ସଇରିନ୍ଧ୍ରୀ ବୋଇଲେ ମାଗୋ ମୁହିଂ ଯେଥି ଥିଲେ
ଦେଖୁ ସିନା ସ୍ୱାମୀଂକି ମୋହୋର ତୋହୋର ଇଛା କଲେ।୧୦୩
ଶ୍ରୀକୃଷ୍ଣା ବିଚାରନ୍ତି ହୃଦଗତେ ପୂର୍ବର କଥା
ପୂର୍ବେ ମୋତେ ଯାହା କହିଛନ୍ତି ମୋର ମାତା ।୧୦୪
ପାଣ୍ଡବେ ଗୋପ୍ୟରୂପେ ମିଳିବେ ଯେହୁ ପୁରୀ
ନିଚଯେ ଦେଖିବୁ ତୁ ଦ୍ରୋପଦ କୁମାରୀ ।୧୦୫
ଅଥବା ସେ ହୋଇବ ବୋଲି ହୃଦଗତେ ବିଚାରି
ନପୁଣ ହୁଅଇ ନିକି ଯେ ଦ୍ରୋପଦ କୁମାରୀ ।୧୦୬
ଶ୍ରୀକୃଷ୍ଣା ବୋଇଲା ଗୋ ଥାଅ ନିତ୍ୟକର୍ମେ
ଯେତେକାଳେ ଉଦିତ ହୋଅଇ ତୋର ଧର୍ମେ ।୧୦୭
ଶ୍ରୀକରେ ଶ୍ରୀକୃଷ୍ଣା ଯେ ଘେନିଲେ ଦିବ୍ୟଶାଢ଼ୀ
ଘେନସି ମାତା ଗୋ ବୋଲି ଉର୍ଦ୍ଧ୍ୱଭୁଜ କରି ଧରି ।୧୦୮
ଶ୍ରୀକୃଷ୍ଣା ଶାଢ଼ୀ ଯେ ଯାଚନ୍ତି ଉପର ହାଥେ
ହେଠମାଥେ ଦ୍ରୋପତୀ ଯେ ସୁମରଇ ଜଗନ୍ନାଥେ ।୧୦୯
ଯେ ଦେବ ଉପର ହାଥେ ମୁଂ ଘେନିମି ତଳ ହାଥେ
ନ ପୁଣ କୋପ କରିବ ଶାଢ଼ୀ ନ ବାନ୍ଧିଲେ ମାଥେ ।୧୧୦
ତଳ ହାଥେ ଶାଢ଼ୀ ଘେନି ବାନ୍ଧିଲେ ଶିରେଣ
ନିଚଯେ ଯେହାର ମୁଂ ହୋଇବି ଭୃତ୍ୟପଣ ।୧୧୧
ଭୋ ହରି ଶାଢ଼ୀ ଘେନି ପୁଣ ଶିରେ ନ ବାନ୍ଧିଲେ
ନ ପୁଣ ଜାଣଇ ଯେ ବିନୋୟୀ ନୋହିଲେ ।୧୧୨
ହରି ତୁହି ସେ ଜାଣୁନା ହୋ ଯେଥିର ଚରିତ
ମୁହିଂ ଆଶ୍ରିତ ତୋହୋର ପାଣ୍ଡବେ ସିନା ତୋର ଭୃତ୍ୟ ।୧୧୩
ତୋହୋର ବଚନେ ସିନା ଅଇଲି ବିରାଟ ରାଜ୍ୟକୁ
ତୁହି ଯେ ଧର୍ମ କଷଣୁଂ ପାରି କରସି ଦେବ ମୁକୁ ।୧୧୪
ପୁରୁଷ ଉତ୍ତମ ତୁ ଲେଖ ଚିତ୍ରପଟି
ଶ୍ରୀକୃଷ୍ଣାର ହୃଦ ବିକାଶୁ ଧର୍ମବାଟ ଗୋଟି ।୧୧୫
ତୁଳସୀର ବଲ୍ଲଭ ଚରଣେ ଅନୁବ୍ରତେ
ଶୂଦ୍ରମୁନି ସାରୋଳ ଦାସ ନମନ୍ତି ଶତେ ଶତେ ।୧୧୬
ହରିନାମ ଯହୁଂ ହୃଦଗତେ କଲେ ଲଯେ
ଶ୍ରୀକୃଷ୍ଣା ହୃଦଗତେ ଯେ ନାରାୟଣ ବିଜଯେ ।୧୧୭
ବିଚାରେ ଶ୍ରୀକୃଷ୍ଣା ଯେତ ଦ୍ରୋପଦୀ ସମାନ
ମୋର ଶାଢ଼ୀ ଦେବା ଯାକୁ ନୋହଇ ବିଧାନ ।୧୧୮
ଶାଢ଼ୀ କରେ ତୋଳିଥିଲା ବିରାଟର ରାଣୀ
କରସ୍ଥଳୁଂ ବେଗେ କାଢି ଥୋଇଲା ଅବନୀ ।୧୧୯
ଆଗୋ ସଇରିନ୍ଧ୍ରୀ ଅଟୁ ତୁମ୍ଭେ ମୋହୋର ରାଜ୍ୟେ ଗଉରୋବୀ
ମୁହିଂ କେମନ୍ତେ ତୁମ୍ଭଂକୁ ଶାଢ଼ୀ ଉପର ହାଥେ ଦେବି ।୧୨୦
ଛାମୁରେ ଶାଢ଼ୀ ନେଇ ଥୋଇଲାକ ମସ୍ତ ରାଜରାଣୀ
ନାରାୟଣ ସୁମରିଣ ଘେନସି ମହାତ୍ମାଣୀ ।୧୨୧
ଶ୍ରୀହରିଂକି ଲଯେ କରି ଶାଢ଼ୀ ସେ ଘେନିଲେ
ବିରାଟର ଅନ୍ତେଶ୍ୱରେ ସଇରିନ୍ଧ୍ରୀ ହୋଇଣ ରହିଲେ ।୧୨୨
ଲୋକିତ କର୍ମେଣ ଯେ ଶ୍ରୀକୃଷ୍ଣା ମହାଦେଈ
ବାଚା ବନ୍ଧନ କରି ଭୃତ୍ୟଗଣ କରାବନ୍ତି ସେହି ।୧୨୩
ଯାଅ ଯା ବୋଲି ବୋଇଲେ ମୋତେ କରିବ ତ କୋପ
ମୋ ଭ୍ରାଥେ ବ୍ରତିବେ କି ଦେଖି ଯେହାର ସରୂପ ।୧୨୪
ଯେହେନ୍ନେକ ଯୋଗ ଅଛି ମୋର ହାଦେ ପୂର୍ବେ
ଅବଶ୍ୟ ଭୁଞ୍ଜିବି ଯାହା ଅଜଅଛି କର୍ମେ ଯେବେ ।୧୨୫
କଥା ଗୋପ୍ୟାନ କଲେ ଆପଣା କୁଳ ତୁଟଇ
ଉଦିତ କଲେ ମୂର୍ଦ୍ଧନା ଫାଟି ପ୍ରାଣଯାଇ ।୧୨୬
କର୍ମ ଆଦରଣା କରି ରହିଲେ ଶ୍ରୀକୃଷ୍ଣା ମହାଦେବୀ
ରହିଲେ ସଇରିନ୍ଧ୍ରୀ ଯେ ଶ୍ରୀକୃଷ୍ଣାଂକୁ ସେବି ।୧୨୭

ଅଲେଖ ତିଳେକ ଯେ କରନ୍ତି ଚତୁସମ
ଗୋପ୍ୟେଣ ଥାଆନ୍ତି ଅନେଶ୍ୱର ନୋହନ୍ତି ଉତକର୍ମ ।୧୨୮

**

## ୬୭. ବିରାଟ ରାଜ୍ୟରେ ଚନ୍ଦନ ଯାତ୍ରା ଉତ୍ସବ ପ୍ରବର୍ତ୍ତନ

ବଇବସୁତ ମନୁ ଯେ ପୁଚ୍ଛାକଲେ ଅଗସ୍ତି
ଅନ୍ନପୁଷ୍ଟେ ଶରୀର ଯେ ବଢ଼ିଲା ମାରୁତି ।୧।
ବ୍ୟାଘ୍ର ମାଳ ବଧକଲାକ ସମରେ
ଆବର କି ଯୁଦ୍ଧ ହୋଇଲା ବିରାଟ ରାଜ୍ୟରେ ।୨।
ଶୁଣ ହୋ ବଇବସୁତ ମନୁ ବଦୟନ୍ତି ବ୍ରହ୍ମଋଷି
କୀଞ୍ଚେକ ବଧକଲା ଭୀମ ବିରାଟ ରାଜ୍ୟେ ପଶି ।୩।
ଶୁଣିଣ ଆଶ୍ଚର୍ଯ୍ୟ ହୋଇଲେ ବଇବସୁତ ମନୁ
ଶତେସିଂଘର ପ୍ରାକର୍ମ ସଂକୋଚନର ତନୁ ।୪।
ଯେକା ସିଂଘର ବଳ ଅଟଇ ବୀର ଭୀମ
କେସନେକ କୀଞ୍ଚେକକୁ ସେ ମାଗିଲା ସାଂଗ୍ରାମ ।୫।
ବଢ଼ାଇ ଦୁରାପଦ ଯେ ଶୁଣିତେ ମୋହୋର ଇଚ୍ଛା
ସଞ୍ଚପି କହିବା ମୋତେ ପୂରୋଇବା ମନୋବାଞ୍ଛା ।୬।
ଅଗସ୍ତି ବୋଇଲେ ପାଣ୍ଡବେ ରହିଲେ ବିରାଟେ ଗୁପତେ
ଅଗ୍ୟାଂତେ ପଶିଲେ ସେ ଧନୁମାସର ଅନ୍ତେ ।୭।
ବଇଶାଖ ପ୍ରବେଶେ ସେ ପଚାରିଲେ କୋନ୍ତେ
ବସନ୍ତ ଉଚ୍ଛବ ବୋଲି ଆକାଶର ଯାତେ ।୮।
ମୃତୁ ମଣ୍ଡଳରେ ଯେ ବସନ୍ତ ଉଚ୍ଛବ ଯାତ୍ରା
ଦ୍ରଶନେ ମୋକ୍ଷଗତି ସେ ରାଜ୍ୟକୁ ପବିତ୍ରା ।୯।
ଆହୋ ବିରାଟ ଯେବଣ ରାଜ୍ୟରେ ରଙ୍ଗସଭା ନାହିଂ
ଯାତ୍ରା ଉଚ୍ଛବ ଯେବଣ ରାଜ୍ୟରେ ନ ଥାଇ ।୧୦।
ଯେବଣ ରାଜ୍ୟରେ ହୋ ନାହିଂ ଯାଗଯଗ୍ୟଂ
ନିଚୟ ସେ ରାଜ୍ୟଜାଣ ଅସୁରେଣ ଭୋଗ୍ୟ ।୧୧।
କୋନ୍ତେ ବୋଇଲେ ଯେ ତେହୋର ମହାରାଜ୍ୟେ
ବସନ୍ତ ଉଚ୍ଛବ ଯାତ୍ରା ଅଛି ଟିକି ମହାରାଜେ ।୧୨।
ବିରାଟ ବୋଇଲା ଯାହା ପୁଚ୍ଛାକଲ କୋନ୍ତେ
ମୁହିଂ ନ ଜାଣଇ ବସନ୍ତ ଉଚ୍ଛବ ଯାତ୍ରାବିଧି ଯେ କେମନ୍ତେ ।୧୩।
ମୁହିଂ ବନସ୍ତପତି କୁଜନ ଜନେ ସଙ୍ଗୀ
ଗୋପାଳ ବୃତ୍ତିହୁଂ ମୁହିଂ ନ ଜାଣଇ ଆନ ଭଙ୍ଗୀ ।୧୪।
ସୁଜନ ଜନ ସଙ୍ଗ ମୁଂ ପାଇଲି ଯେତେକାଳେ
ତୁମ୍ଭେ ଥାଇ ଯାତ୍ରା ଆରୋପଣ କର କଥା ରହୁ ଚିରକାଳେ ।୧୫।
କୋନ୍ତେ ବୋଇଲେ ତୁମ୍ଭେ ଶୁଣସି ମହାରାଜ
ଲକ୍ଷେକ ମାଢ଼ ସୁବର୍ଣ୍ଣ ହୋଇବ ତୋର ବ୍ୟାଜ ।୧୬।
ବିରାଟ ବୋଇଲା କୋନ୍ତର ବାକ୍ୟ ସରାଗୁଂ
ତହିଂକି କିଛି ବିଚାର ନ କର ବେନିଲକ୍ଷ ମାଢ଼ ଲାଗୁଂ ।୧୭।
ଭଣ୍ଡାର ନାୟେକ ରାଇ ଆଗ୍ୟାଂ ଅବଧାରୀ
କୋନ୍ତକୁ ସମର୍ପ ମୋର ଲକ୍ଷେ ଭଣ୍ଡାର ଆଦିକରି ।୧୮।
ଭଣ୍ଡାର ଫେଇଦିଲା ଯେ ବିରାଟର ବଚନେ
କୋନ୍ତେ ବିଜେକଲେ ଭଣ୍ଡାର ଆସ୍ଥାନେ ।୧୯।
ବିଶ୍ୱକର୍ମା କଣୟ ଘଟଣା ବିନ୍ଧାଣି
ଅହିବ୍ରତେକ ମାଢ଼ରତ୍ନ ତାହା ଛାମୁରେ ଦିଲେ ଆଣି ।୨୦।
ଆହୋ ବିଶ୍ୱକର୍ମା ଆହୁଟଦଣ୍ଡ ଯେ ହୋଇବ ପଂକଜ
ଶଙ୍ଖଚକ୍ର ଗଦା ଯେ ଶାରଙ୍ଗ ଚତୁର୍ଭୁଜ ।୨୧।
ଅମୂଲ୍ୟ ରତ୍ନମଣି ମୁକୁଟ ଯେ ହୋଇବ ଲଲାଟେ
ଚକ୍ରଧର ଦେବତା ବହନ କର ଘଟେ ।୨୨।
ଲାଗିଲେ ବିଶ୍ୱକର୍ମା ବହୁତ ବିନ୍ଧାଣି
ଶ୍ରୀ ନାରାୟଣ ଦେବତା ବହନ ନିରିବାଣି ।୨୩।
ପୁଣି ପାଞ୍ଚ ଅହିବ୍ରତକ ମାଢ଼ ଦିଲେକ ରତନ
ଶୁଦ୍ଧ ସୁବର୍ଣ୍ଣରେ ଯେ ନିର୍ବାଣ ବିମାନ ।୨୪।
ଅହିବ୍ରତେକ ମାଢ଼ ସୁବର୍ଣ୍ଣ ଉଦଣ୍ଡ ଆଲମ୍ୱ ପାଞ୍ଚଲାଖୀ
ଉଚ୍ଛବ ନବର ଯେ ନଦୀତୀରେ ତାହା ରଖି ।୨୫।
ବହଇ ଉତ୍ତରବାହିନୀ ନଦୀ କୃଷ୍ଣବେଣୀ
ତହିଂର ତୀରେ ଉଚ୍ଛବ ନବର ନିରିବାଣି ।୨୬।
ଅହିବ୍ରତେକ ନାବ ରତ୍ନେଣ ଘଟଣ କରି
ଫଳନ୍ତ କଦଳୀ ଆମ୍ବ ନଡ଼ିକାଳ ବୃକ୍ଷନ୍ତ ନେଇ ଆରୋପଣ କରି ।୨୭।
ନାବର ଭିତରେ ରତ୍ନ ନିର୍ବାଣ ଜଗତି
ଯେସନେକେ ସାରିକ୍ଷ ଭୁବନ ବାରସ୍ୱତୀ ।୨୮।
ରତ୍ନର କାନଫୁଲ ରତ୍ନବଳା କଂକଣ ନିଯୋଗୀ
ଦିବାରାତ୍ରେ ଅବକାଶ ନାହିଁ ଲାଗିଲେ ବେଗ ବେଗି ।୨୯।
ଜଳନ୍ତି ଦିହୁଡି ଲକ୍ଷେକ ବିନ୍ଧାଣିଂକ ଆଗେ
ଗଢ଼ନ୍ତି ରୂପକାରେ ଲାଗିଛନ୍ତି ଅତି ବେଗେ ।୩୦।
ଆମ୍ଭର ଦେଖି ବିରାଟର ବଢାଇ ଶରଧା
ରାତ୍ର ଦିବସେ ଦେଖି ଉପେକ୍ଷା କଲା ନିଦ୍ରା କ୍ଷୁଧା ।୩୧।

ସମରାଜ୍ୟେ ଲୋକେ ସମସ୍ତରେ ଦେଖନ୍ତି
ଆହାର ନିଦ୍ରା ମଇଥୁନ ତିନିହିଂ ଉପେଖନ୍ତି ।୩୨।
ଯେକୋଇଣ ଦିନେ ନିର୍ବାଣ ସର୍ବ କର୍ମ
ବିରାଟ ବୋଇଲା କୋନ୍ତେ ପ୍ରତକ୍ଷେ ତୁମ୍ଭେ ଧର୍ମ ।୩୩।
କୋନ୍ତେ ବୋଇଲେ ବିରାଟ ଯେ କଥା ଅଟଇ ଯୁଗତ
ଧର୍ମଦାସ ପଣ୍ଡାଙ୍କର ଅଟୁ ଆମ୍ଭେ ସୁତ ।୩୪।
ସମସ୍ତ ଯୁଗେ ଆମ୍ଭେ ଠାକୁରଂକ ବରଗି
ସର୍ବ ସୁବିଧାନେ ଆମ୍ଭେ ଅଟୁ ପରମଯୋଗୀ ।୩୫।
ସମରାଜ୍ୟ ଲୋକେ ଯେ ଅତିୟ ସୁବେଶ
ମଣ୍ଡନ୍ତି ନଗ୍ରପୁର ଭୁବନ ଚଉପାଶ ।୩୬।
ବଇଶାଖ ଶୁକଳପକ୍ଷ ତୃତୀୟା ଚନ୍ଦ୍ରବାର
ରୋହିଣୀ ନକ୍ଷତ୍ରକୁ ଭୋଗ୍ୟ ସେ ଦିନର ।୩୭।
ବାଣିଜ୍ୟ ନାମେ କରଣ ସୁକର୍ମ ନାମେ ଯୋଗ
ବସନ୍ତ ଉଛବ ଯାତ୍ରା ବିଧାନ ଆରମ୍ଭ ।୩୮।
ଦିବ୍ୟ ବିମାନେ ଶ୍ରୀ ଚକ୍ରଧର ସ୍ୱାମୀ କରାଇଲେ ବିଜେ
ବୀରତୂର ଟମକ ନିଶାଣ ଢୋଲ ବାଜେ ।୩୯।
ଭେରୀ ମୃଦଙ୍ଗ ଦମାଲୁ ମର୍ଦ୍ଦଳ ବୀରବାଦ୍ୟ
ବିଜିଘୋଷ କାହାଳୀ ମହୁରୀ ଶଙ୍ଖନାଦ ।୪୦।
ତାଳ ପଡ଼ି ପହପଟ ବାଜଇ ପଖାଉଜ
ଚାଲୁଥାନ୍ତି ଫଟିକାରେ କେତେ ହୋଇ ସଜ ।୪୧।
ଡାକି କୁଣ୍ଡଳୀ ଯେ ଅଧାଟି ବୀଣାଯନ୍ତ୍ର
ଅନେକ ପସରା ବିକ୍ରେ ଦାଣ୍ଡହାଟ ସମସ୍ତ ।୪୨।
ଅନେକ ପସରା ସଜାଡ଼ିଣ ଦାଣ୍ଡେ ଚଳିଯାନ୍ତେ
ବହୁତ ଜନଗହଳି ହୋଇଲାକ ପଛେ ।୪୩।
କୃଷ୍ଣବେଣୀ ନଦୀତୀରେ ଉସ୍ଛବ ନବର
ତହିଂ ନେଇ ବିଜେ କରାଇଲେ ଦେବ ଦାମୋଦର ।୪୪।
ହାଥୀ ଦଣ୍ଡ ରଥ ଅଶ୍ୱ ବଡ଼ାଇ ଗହଳ
ଆଦିତ୍ୟ ଅଦୃଶ୍ୟ ହୋଇଲେ ଉଡ଼ନ୍ତେ ପାଟଛତ୍ର ମାଳ ।୪୫।
ଉଡ଼ଇ ଗଗନେ ଯେ ପଦରଜ ଧୂଳି
ଆକାଶେ ଅଦୃଶ୍ୟ ଯେ ହୋଇଲେ ଅଂଶୁମାଳୀ ।୪୬।
ନଦୀତୀରେ ଯାଇଣ ଆରମ୍ଭିଲେ ଥାଠ
କୁତକଇଂ ବହୁତ ପ୍ରଶଂସା ଯେ କରଇ ବିରାଟ ।୪୭।
କୋନ୍ତେ ବଂଶେ ବଂଶେ ମୋର ଅନେକ ପୁରୁଷ ଗଲା
ଯେତେକ ସମ୍ପଦ ଯାତ୍ରା ମୋର ନାହିଂ ନ ଦେଖିଲା ।୪୮।

କୋନ୍ତେ ବୋଇଲେ ବିରାଟେ ଅନେକ ପୂଣ୍ୟ କରିଥିଲେ
ବହୁତ ପୁଣ୍ୟ ଉପୁଜଇ ଧର୍ମ ଉଦିତ ହୋଇଲେ ।୪୯।
ବିଜୟେ ପ୍ରତିମା ନେଇ ବସାଇଲେ ନାବେ
ସମସ୍ତ ସମ୍ପଦ ଘେନି ବିଜୟେ ରାଜଦେବେ ।୫୦।
ଅନେକ ସମସ୍ତରେ ସେ କାଁଞେକ ସେନାପତି
ନାଉକା ବିମାନେ ବସି ଜଳକ୍ରୀଡ଼ା କରନ୍ତି ।୫୧।
ପବନହୁଂ ବେଗେ ନାବ ବାହାନ୍ତି କୁତୂହୋଳେ
ମାଗୁଛନ୍ତି ପିଚିକା ପକିର ନୀରଜଳେ ।୫୨।
କରନ୍ତି ନୃତ୍ୟଗୀତ ଯେ ଗଣିକାଗଣମାନେ
ବିଜୟେ ମଛେଶ୍ୱର ଯେ ନାଉକା ବିମାନେ ।୫୩।
ବିରାଟ ପୁଛାକଲା ଶୁଣିମା ଠାକୁର ଦେବକୋନ୍ତେ
ମହାଦେଇମାନେ ବିଜେ କରିବେ କି ଯାତ୍ରା ଦେଖିବା ନିମନ୍ତେ।୫୪।
କୋନ୍ତେ ବୋଇଲେ ହୋ ବିଭାମଙ୍ଗଳ ଉସ୍ଛବେ
ଯାତ୍ରା ସ୍ଥାନକୁ କିମ୍ପେ ନ ଆସିବେ ଯେବେ ।୫୫।
ଶୁଣିଣ ବିରାଟେଶ୍ୱର ମୁଦୁସୁଲୀ ହକାରି
ଉସ୍ଛବ ନବରକୁ ରାଣୀ ଆସନ୍ତୁ ବିଜେକରି ।୫୬।
ରାଜାର ବଚନେ ସେ ଚତୁରୀ ସିହାଣୀ
ଧାଇଁଯାଇ କହିଲେ ଯାତ୍ରାକୁ ବିଜେ କରିବା ଠାକୁରାଣୀ ।୫୭।
ଶୁଣିଣ ମହାଦେଈ ଯେ ସଇରିନ୍ଧ୍ରୀକି ହକାରି
ଆସ ଆସ ମାୟେ ଗୋ ଯିବା ଯାତ୍ରା ଦେଖିକରି ।୫୮।
ସଇରିନ୍ଧ୍ରୀ ବିଚାରନ୍ତି ମୁଂ ଯିବି ଯେହାଂକର ତୁଲେ
ଦେଖିବି ସ୍ୱାମୀଂକି ମୋର ଅଛନ୍ତି କିନ୍ଦ ଭଲେ ।୫୯।
ମହାଦେଈଂକର ବାକ୍ୟେ ଅନେକ ଶ୍ରାଗକରି
ଶ୍ରୀକୃଷ୍ଣାଂକ ତୁଲେ ସଜ ହୋଇଲେ ସଇନ୍ଧୀରି ।୬୦।
କନେକର ହାନ୍ଦୋଳରେ ବିଜେ କଲେ ପାଟରାଣୀ
ପାଶେଣ ବସାଇଛନ୍ତି ପାଣ୍ଡବ ଘରଣୀ ।୬୧।
ଆଗ ପଛ ଓଗାଳ ମହାଦେଈଙ୍କର ଯାନ୍ତେ
ଅନେକ ପାଟଛତ୍ର ଉଡ଼ନ୍ତି ଗଗନ ପଥଗତେ ।୬୨।
ବାଜଇ ବିଜିଘୋଷ ମର୍ଦ୍ଦଳ କଂସାଳ କାହାଳୀ
କଉତୁକେ ବିହଡ଼ନ୍ତି ତୁଲେଣ ସର୍ବବାଳୀ ।୬୩।
ନଦୀର ତୀରେ ଯାଇଂ ବିଜୟେ ମହାଦେଈ
ସନ୍ନିଧେ ସଇରିନ୍ଧ୍ରୀ ଅଛନ୍ତି ଉଭାହୋଇ ।୬୪।



## ୬୮. କୀଚକ ଉପାଖ୍ୟାନ

### ସୈରିନ୍ଧ୍ରୀ ଦର୍ଶନେ କୀଚକର ଦୂତ ପ୍ରେରଣ

ଯାତ୍ରାକଙ୍କ ଉଦବେଗ ଗମନ୍ତେ ଜିସ୍ନସେନୀ
ସର୍ବଜନ ରଞ୍ଜନୀ ମରୁଳ ଗମନୀ ।୧
ସମସ୍ତ ଅବଲୋକନ ସଇରିନ୍ଧ୍ରୀକି ଦେଇ ଆଖି
ନାବେଣ ଥାଇ କୀଞ୍ଚେକ ଯେ ତାହାଂଇ ନିରେଖି ।୨
ଦଇବେ ଆଦିତ୍ୟ ଅସ୍ତ ପ୍ରବେଶ ହେଲା ନିଶି
ଦିହୁଡ଼ି କତିରେ ସଇରିନ୍ଧ୍ରୀର ତେଜ ଯେ ବିକାଶି ।୩
କୀଞ୍ଚକ ପଚାରଇ ରାଇଣ ମୁଦୁସୁଳୀ
ଆଲୋ ବଡ଼ାଇ ଉପାଧି ଯେତ ଅନ୍ତେଶ୍ୱର ପୁରେ
ଦେଖିଲି ।୪
ରାଣୀଂକ କତିରେ ଯେ ହୋଇଅଛି ଉଭା
କୋଟିଯେ ଗୁଣେ ଶ୍ରୀକୃଷ୍ଣାଂହୁଂ ଦିଶଇ ଅତି ଶୋଭା ।୫
କେବଣ ରାଜା ବିରାଟକୁ ଅବା ଦିଲା ବନ୍ଦୀ
ମୋତେ ନ କହି ବିରାଟ କେମନ୍ତେ ସମ୍ପାଦି ।୬
ଆଲୋ ତଦନ୍ତ କରି ତାହା ପଚାରିଆସ ଜାଣି
କେବଣ ରାଜାର ସେ ଅଟଇ ଦୁଲଣୀ ।୭
କୀଞ୍ଚେକର ବଚନେ ସେ ଚଳିଲେ ମୁଦୁସୁଳୀ
ଶ୍ରୀକୃଷ୍ଣାଂକ ସନ୍ନିଧେ ଯାଇ ହୋଇଲେ ପୋଇଲୀ ।୮
ଅନ୍ତେଶ୍ୱର ପୁରେ ମୁଦୁସୁଳୀକି ପଚାରି
ଆଗୋ କେବଣ ରାଜାର ଯେ ଅଟଇ କୁମାରୀ ।୯
ଦାସୀକର ଅଗ୍ରତେ କହିଲେ ମୁଦୁସୁଳୀ
କିମ୍ଭୂତ ମାୟା ଯେହା ଜାଣିତ ନୁଆରିଲି ।୧୦
କେବଣ ଦେଶରୁ ଯେ ଅଇଲା ଅଦଭୁତେ
ତାହାର ପତିଭ୍ରଥା ନାହିଂ ଛଡ଼ମାସ ପରିଯନ୍ତେ ।୧୧
କୁଳମୂଳ ନାହିଂ ଯେହାର ଯେ ଅଟଇ ଦେଶାନ୍ତରୀ
ଠାକୁରାଣୀଂକି ଅଲେଖ ତିଳଖ କରଇ ନାମ ଯେହାର
ସଇନ୍ଧୀରି ।୧୨
ଯେମନ୍ତ ଶୁଣିଣ ସେ ଗଲେ ଦାସୀଗଣମାନେ
ବାରତା କହିଲେ ଯାଇଂ କୀଞ୍ଚେକ ସନ୍ନିଧାନେ ।୧୩
ସ୍ୱାମୀ କେବଣ ଦେଶର ସେ ଅଟଇ ଦେଶାନ୍ତରୀ
ପିତା ମାତା ଭ୍ରଥା କେହି ନାହିଂ ଯେ ତାହାରି ।୧୪
ପତିଭ୍ରଥା ନାହିଂ ତାର ସନ୍ନିଧେ ଖଟି ସେବା
ଅଲେଖ ତିଳେଖ କରଇ ମହାଦେଈଂକର ବାନ୍ଧବା ।୧୫
ଶୁଣିଣ କୀଞ୍ଚେକ ଯେ ମଦନେ ବିରହିତା
ନାନାଦି ରସମାନ କଲାକ ବିଷପିତା ।୧୬
କରୁଣା ନାମେଣ ଯେ କୀଞ୍ଚେକର ମୃଦୁସୁଳୀ
ଅନେକ ଅଳଂକାର ଦେଇ ବିଶ୍ୱାସ କଥା ବୋଲି ।୧୭
ଲଲାଟ ବନ୍ଧନୀ ଯେ ଶିରେ ସୀମନ୍ତିନୀ
ମୁକୁତା ଜାଲି ହରିଆଳୀ ରେଖ ଘେନି ।୧୮
ଲଲାଟ ପାଟିକି ଯେ କର୍ଣ୍ଣାଞ୍ଚଳ ଶୋଭା
ହୃଦୟେ ଭୂଷଣ ଯେ କଣୟ ସୁରଙ୍ଗ ପ୍ରଭା ।୧୯
ବଳୟା ଚାପସରି ଦଶ ଅବତାର ମାଳା
ସୁବର୍ଣ୍ଣର ବେନିଚୁଡ଼ୀ କଟିକି ମେଖଳା ।୨୦
ବିଦମୁଦି କଂକଣ ଅଷ୍ଟରତ୍ନ ପାଣିଦ୍ରବ୍ୟ
ରୁଣ୍ଟୁଝୁଣିତ ନେପୂର ବେନି ଚରଣେ ଆରମ୍ଭ ।୨୧
ଦାସୀନେତ ସିନ୍ଧୁଆ ଝୀନ ଯେ ପତନୀ
ଦାସୀନ୍ତ ତିଆରଇ ବୀର ଯେମାନନ୍ତ କରେ ଘେନି ।୨୨
ଯେମାନତ ଘେନିକରି ଯିବୁ ଲୋ ଯେହିକ୍ଷଣି
ସଇରିନ୍ଧ୍ରୀକି ନେଇ ସମସ୍ତ କର ଆଭରଣି ।୨୩
କଣୟ ହାନ୍ଦୋଳାରେ ବିଜୟେ କରାଇ
ମୋହୋର ଭୁବନକୁ ନିଅ ସମସ୍ତ କଥା କହି ।୨୪
କୀଞ୍ଚେକ ବୋଇଲା ମୋହୋର ଶତେକ ଘରଣୀ
ସବୁଂକରି ଉପରେ ସେ ହୋଇବ ଠାକୁରାଣୀ ।୨୫
ମୁହିଂ ତାହାର ଭୃତ୍ୟର ଭୃତ୍ୟ ଦାସର ଯେ ଦାସ
ଦ୍ରଶନ ମାତ୍ରକେ ମୋର ଲାଗଲା ମୁହାଂସ ।୨୬
ମଛଦେଶେ ମଘଦେଶେ ହୋଇବ କାରେଣୀ
ବିରାଟ ରାଜ୍ୟରେ ସେ ହୋଇବ ଠାକୁରାଣୀ ।୨୭
ମୁହିଂ ଅଳଂଘିତ ହୋଇଥିବି ତାହାର ବଚନୁ
ମୁହିଂ ମହାଛତ୍ରୀ ସଇରିନ୍ଧ୍ରୀ ମୋହୋର ବିନତି ଘେନୁ ।୨୮
ମୁହିଂ ମହାଛତ୍ରୀ ସାଂଗ୍ରାମେ ଜଗୁଜିତା
ସଇରିନ୍ଧ୍ରୀ ନୟନ ବାଣେ ମୋହୋର ଶରୀର
ଅଶକତା ।୨୯
ଦେଖିଣ ଜାଣିଲଇ ସେ ମହତ ସାଧବୀ
ଶରଣ ରକ୍ଷଣ ଯେ ଭଗତଜନ ଭାବି ।୩୦
ମୁହିଂ ତାହାରେ ଶରଣ ସେ ରକ୍ଷା ମୋତେ କରୁ
ମୟାଣ ପୟାଣରୁ ସେ ମୋତେ ବେଳେକ ଉଦ୍ଧରୁ ।୩୧
ସର୍ବମଙ୍ଗଳା ସୁମରି କର ଲୋ ଗବନ
ଯେହିବାଟେ ପୁରକୁ ମୋହୋର ଆଣଲୋ ବହନ ।୩୨

ଅନେକ ଧନରତ୍ନ କୀଞ୍ଚେକ ଦିଲା ପୋଇଲାକି
ଆଲୋ କଣୟ ସାହାନ କରାଇବି ଭେଟାଇଲେ
ସଇରିନ୍ଧ୍ରୀକି ।୩୩
ଅନେକ ଉଷତେଣ ଯହୁଁ ଗଲେକ ଚତୁରୀ
ଉଛବ ନବରୁ ଯାଇ ପଶିଲେ ଅନ୍ତପୁରୀ ।୩୪
ସଇରିନ୍ଧ୍ରୀକି ହକରାଇଲେ ଯେକାନ୍ତ ଠାବକରି
ବସ ବସ ମହାତ୍ମାଣୀ ଗୋ ଦୁରିତ ଅପହରି ।୩୫
ଯେକା ଜଣକେ ମାଗୋ ହୋଇଲୁ ଲକ୍ଷପୋଷୀ
ଯେ ମଚ୍ଛଦେଶ ମଘଦେଶ ସୁଖେଣ ହାଦେ ଭୋଗକର ଆସି । ୩୬
ମାଗୋ ସ୍ତିରୀଂକର ତିନିଦଶା ଯେ କ୍ଷଣକେ ଲେଉଟଇ
ଆଜହୁଁ ମହାତ୍ମାଣୀ ଗୋ ତୋର ଫିଟିଲା କଷଇ ।୩୭
ସ୍ତିରୀଜନ୍ମ ମଧେ ଗୋ ଜୀବନ ତୋର ସାଧୁ
ସଂକୋଚନ ରାଜାର ତୁ ହୋଇବୁ କୁଳବଧୂ ।୩୮
ପୂର୍ବ ଜନ୍ମରେ ଗୋ ଅର୍ଜିଥିଲୁ ସୁଫଳ
ଯେବେ ଆସି ତୋହୋର ଗୋ ହୋଇଲା ଭାଗ୍ୟକାଳ ।୩୯
ଦାସୀପଣେ ସେବାକରି ପାଉଥିଲୁ ଦୁଖ
ରାଜ୍ୟର କାରେଣୀ ହୋଇ ପାଇବୁ ତୁହି ସୁଖ ।୪୦
ଶୁଣି ଦ୍ରୋପତୀର ଯେ ଉଡିଲାକ ଦେହୀ
ବିଚାରିଲା ପ୍ରମାଦ ଚିନ୍ତିଲା ଆଣି ମୋତେ ବିହି ।୪୧
ରାଜ୍ୟଭାର ତେଜି କଲୁ କନ୍ଦମୂଳ ଗ୍ରାସ
ଭୃତ୍ୟପଣେ ଖଟାଇଲୁ ଜୀବନେ ପ୍ରତିଆଶ ।୪୨
ଯେଥିରେ ପ୍ରମାଦ ଧାତା କରୁଅଛି କଷ୍ଟି
ହୃଦଗତେ ସୁମରିଲେ ଶ୍ରୀ ନାରାୟଣ ନାମଗୋଟି ।୪୩
ସଇରିନ୍ଧ୍ରୀ ବୋଇଲେ ତୁ କି ହୋଇଲୁ ବାଇ
ପୂର୍ବେଣ ଯାହା ଅର୍ଜି ଯେବେ ସେ ତାହା ପାଇ ।୪୪
ହୋଇ ହୋଇ ମହାତ୍ମାଣୀ ଗୋ ପୂର୍ବର ତପ
କାଞ୍ଚକର ଦ୍ରଶନେ ଗୋ ଖଣ୍ଡିବୁ ତୋହୋର ସର୍ବ ପାପ ।୪୫
ବସନ୍ତ ଉଷବ ଯାତ୍ରା ଭିଆଇଲେ କୋନ୍ତ ଯେ ପଣ୍ଡାୟେ
ତୋହୋର ସୁକର୍ମ ଗୋ ହାଥରେ ବରଦାୟେ ।୪୬
ମାଗୋ ସଂକୋଚନ ରାଜାର କୁଳେ ଉତପତ୍ତି
କ୍ୟୋତିପୁର ନଗ୍ରର ଅଟଇ ଚକ୍ରବ୍ରତୀ ।୪୭
ତ୍ରିଗର୍ତ୍ତ କରାଢ କାଳନଉମି ଦର୍ପଭଞ୍ଜା
ସୁରବର ସୁନ୍ଦର ସେ ମୟାଣ ଦର୍ପଗଞ୍ଜା ।୪୮
ମା ଗୋ ମଘଦେଶ ମଚ୍ଛଦେଶର ସେ ଆଧିପତି
ଶତେ ସିଂଘର ପ୍ରାକର୍ମ ପୃଥୀକି ଯେକଛତ୍ରୀ ।୪୯
ମାଗୋ ବିରାଟ ନିରିମାଖୀ ଅଟଇ ଜନ୍ମକାଳେ
ଯେ ଦୁଇଦେଶ ଭୋଗ୍ୟ କରଇ ସେ କୀଞ୍ଚେକ ବାହୁବଳେ ।୫୦
ଆବର ମହିମାଂ ଦେଖ ସହୋଦ୍ର ଶତେ ଭ୍ରାଥ
ସମରେ ଜିଣିପାରନ୍ତି ସେ ତିନି ଯେ ଜଗତ ।୫୧
ମାଗୋ ଶ୍ରୀକୃଷ୍ଣାଂକ ସନ୍ନିଧେ ତୋହୋର ରୂପ ଦେଖି
କେବଣ ଭାବେ ଭଜିଲା ତୁମ୍ଭକଇଂ ତାହାର ପାପ ଆଖି ।୫୨
ଆମ୍ଭନ୍ତ ରାଇ ବରଗିଲା ହୋଇଲା ବହୁତ ଅଭ୍ୟର୍ଥୀ
ଆଜହୁଁ ଖଣ୍ଡଣ ଗଲା ଗୋ ତୋହୋର ଦୁର୍ଗତି ।୫୩
ମାଗୋ ସୁସ୍ଥ ଶରୀର ପ୍ରାପତ ଅଦଭୁତେ ନ ଗଞ୍ଜି
କୀଞ୍ଚେକର ପ୍ରସାଦେ ଗୋ ଅନେକ ଭୋଗ ଭୁଞ୍ଜି ।୫୪
ଯେ ଅଳଂକାରମାନ ଗୋ କର ଆଭରଣି
କୀଞ୍ଚେକର ଭବନକୁ ଗୋ ଚାଲ ଯିବା ଯେହିକ୍ଷଣି ।୫୫
ଅନେକ ଚାଟୁ ବଚନେ କହିଲା ଯହୁଁ କଥା
ଶରୀର କମ୍ପାଇ ଦେବୀ ରାଗେଣ ହଲାଇଲେ ମଥା ।୫୬
ଆଲୋ ସ୍ତିରୀକୁଳେ ଉପୁଜି ତୁମ୍ଭେ ଅଟସି ଚାଣ୍ଡାଳୀ
ପରେ ପରିତେଜ୍ୟା ଖଟ ତିନିଯୋଳି ।୫୭
ପୂର୍ବର ପାପେ ଆଲୋ ପରେ ପରାର୍ଥନା
ଯାହା ଅରଜିବ ଯେବେ କଳନ୍ତର ଭୋଗ ସିନା ।୫୮
ପୁଣ ଜନ୍ମ ଲଭି ଅଖଡେଣ ବେଗେ ପାପେ ପଶ
ଭୃତ୍ୟେ ସ୍ୱଭାବେଣ ପୁଣି ପରେଣ ପରବେଶ ।୫୯
ଦୁଷ୍ଟର ବାକ୍ୟେ ଆସଲୋ ସଜ୍ଜନ ତହିଂକି
ଯେଘାନ୍ତି ଜନମ ଲୋ ତୁମ୍ଭେ ହୁଅ ମହାନର୍କୀ ।୬୦
ଚାଣ୍ଡାଳ ଘରେ ଯାଇ ଜନ୍ମହୁଅ କର୍ମେ
ଉଛିଷ୍ଟ ଭକ୍ଷକର ଲୋ ଯେଥିର ଯେ ଅନୁକର୍ମେ ।୬୧
ଛାର ପାମେରୀ ଲୋ ଦୂଷିତ ଜାତିହୀନ
ସ୍ତିରୀକୁଳେ ତୁମ୍ଭନ୍ତ ଲୋକେ କରିବ ଲେଖନ ।୬୨
ପୋଡୁ ପୋଡୁ ବଦନ ଲୋ ନପାଅ କିଂପେ ଲଜ୍ଜା
ଯାଅ ତୁମ୍ଭେ ଜନ୍ମେ ଜନ୍ମେ ପରଦାରେଣୀ ହୋଇ
ନିଜ ସ୍ୱାମୀଂକି କର ତେଜ୍ୟା ।୬୩
ଯେବଣ ପୁରୁଷ ତୁମ୍ଭକୁ ଲୋ ହୋଇବ ବିଭାଯୋଗ
ସ୍ତିରୀକୁଳେ ଦୂଷିତ ତୁମ୍ଭନ୍ତ ଆନେ କରୁ ଭୋଗ୍ୟ ।୬୪
ଦୁରାପଦ ବଚନ ଶୁଣିଣ ଗଲେକ ପରିବାରୀ
କୀଞ୍ଚକର ଅଗ୍ରତେ ସେ କହନ୍ତି ବିନୟ କରି ।୬୫

ସ୍ୱାମୀ ଅନେକ ପ୍ରାର୍ଥନା କରି କହିଲୁ ତାଂକୁ ବାଣୀ
ପାଷାଣ ତରଳି ପାରଇ ଆମ୍ଭର ବାକ୍ୟ ଶୁଣି ।୬୬
ସ୍ୱାମୀ ସ୍ତିରୀକୁଳେ ଜନମି ସେ ବଡ଼ାଇ ଦୁରାପାତି
କିଂପାଇ ଆନେ ତାହାକୁ ସ୍ରିଜିଅଛି ବସି ପ୍ରଜାପତି ।୬୭
ଜଗୁଜନ ମୋହିନୀ ରୂପ ଧରି ସେ ପରଣେ ଭୃତ୍ୟକାରୀ
ସଜ୍ଜନ ଲୋକଂକର ନାମ ହୁଅଇ କି ସଇନ୍ଧୀରି ।୬୮
ସ୍ୱାମୀ ଯେତେକ ଅଳଂକାରମାନ ଛାମୁରେ ଦିଲୁ ନେଇ
ସମସ୍ତ ଫିଙ୍ଗିଦିଲା ସେ ପାଦେଣ ପେଲାଇ ।୬୯
ଶୁଣିଲା କୀଚ୍ଚକ ଯହୁଂ ସଇରିନ୍ଧ୍ରୀ ନାସ୍ତିକଥା
ପରଦାରା ସୁଚରିତ ତାକୁ ଲାଗିଲା ବଡ଼ ବ୍ୟଥା ।୭୦
ଦୁଗୁଣ ଶ୍ରାଗ ତାହାର ବଢ଼ିଲା କ୍ଷଣେ କ୍ଷଣେ
ପୁରୁଷ ବିରହିତା କାମ ବିନ୍ଧିଲା ପଞ୍ଚବାଣେ ।୭୧
ନିରାଶ ବଚନ ଶୁଣି ସେ ଗଳିତ ମଉହାରା
ଅସାକ୍ଷମ ହୋଇଣ ପଡ଼ିଲା କୀଞ୍ଚେକ ମହାବୀରା ।୭୨
ଠାବ ଠାବରେ କୀଞ୍ଚେକ ପଡିଣ ମୋହଯାଇ
ଚିଉଛନ୍ନ ହୋଇଲା ମଦନେ ବିରହ ବାଇ ।୭୩
ସ୍ୱେଦ ଗଳଇ ଯେ ରୋମମୂଳେ ଜାଣି
ନ ରୋଚଇ କ୍ରୁପୁର କସ୍ତୁରୀ ଅନ୍ନପାଣି ।୭୪
ଆହା ସଇରିନ୍ଧ୍ରୀରେ ତୁ ମୋହୋର ପଞ୍ଚଭୂତ
ତୋହୋର ନିରାଶ ବଚନ ଶୁଣି ଦିଗୁଣ ବିରହିତ ।୭୫
କୋଳେ ଧରିଣ ଦାସୀ ମୁଖେଣ ପାଣି ସିଞ୍ଚି
ସାଷ୍ଟାମ ନିମନ୍ତେଣ ତାକୁ ଆଲଟ ଧରି ବିଞ୍ଚି ।୭୬
ସଚେତ ହୋଇଣ ବସିଲା ସଂକୋଚନର ବଳା
ଆଗୋ ସଇରିନ୍ଧ୍ରୀ ତୁ ପଞ୍ଚୁଭୂତ କଳା ।୭୭
ଶରୀର ଅଚେତନ ମୋହୋର ତୋହୋର ଅଭାବେ
ଲୁଳୁ ମୋହୋର କାୟା ସଇରିନ୍ଧ୍ରୀ ନିଜ ଠାବେ ।୭୮
ଯେ ତୋହୋର ଚରଣ କମଳ ପାଦକାନ୍ତି
ଦର୍ଶନହେ ଶରୀର ମୋହୋର ପକାଅ ବିକୋଟି ।୭୯
କୀଞ୍ଚକ ବୋଇଲା ଲୋ ସେ କାହାକଇଂ ଥାଇ ସେବି
ଦାସୀ ବୋଇଲା ତୁମ୍ଭର ଜ୍ୟେଷ୍ଠଭଗ୍ନୀ ସେ ଶ୍ରୀକୃଷ୍ଣା
　　　　　　　　　　　　　　ମହାଦେବୀ ।୮୦
କୀଞ୍ଚେକ ବୋଇଲା ଯେ ରତ୍ନମାନ ନେଇ ଶ୍ରୀକୃଷ୍ଣାଛାମୁରେଣ ଦିଅ
ମୋହୋର ଅବସ୍ଥାମାନ ନାନୀଂକ ଆଗେ ଯାଇଂ କହ ।୮୧
ବୁଡ଼ିଲା ଛତ୍ରୀପଣ ମୁଂ ସମସ୍ତ କଲି ତେଜ୍ୟା
ଅନଙ୍ଗ ଅସାକ୍ଷମେ ବୁଡ଼ିଲି ଉପେକ୍ଷିଲି ସର୍ବଲଜ୍ଜା ।୮୨
ଆଲୋ ମୋହୋର ଅବସ୍ତାତ ଯାଉଛୁ ସର୍ବ ଦେଖି
ସମସ୍ତ କହିବୁ ଗୋ ଭୟ ସଂକୋଚ ଉପେକ୍ଷି ।୮୩
ଅଭ୍ୟର୍ଥୀ କରିଣ ଲୋ ବୋଲିବ ତୁମ୍ଭେ ଯାଇ
ସଇରିନ୍ଧ୍ରୀକି ଦିଅନ୍ତୁ ମୋହୋର ପୁରକୁ ପଠିଆଇ ।୮୪
ମୋହୋର ଜୀଇଂବାରେ ଯେବେ ଅଛି ତାହାଂକର ଆଶ
ସଇରିନ୍ଧ୍ରୀକି ଭେଟ ସେ କରାଇବେ ମୋର ପାଶ ।୮୫
ଅଥବା ଓପ୍ରୋଧେ ଯେବେ ନ ପାରିବେ ତାକୁ ବୋଲି
ମୁହିଂ ବଳାତ୍କାରେ ଅନ୍ତେଶ୍ୱରଂ ଆଣିବି ଯାଇଂ କାଲି ।୮୬

■■

## ସୁଦେଷ୍ଣା ସୈରିନ୍ଧ୍ରୀଙ୍କୁ କୀଚକ ନିକଟକୁ ପ୍ରେରଣ ଓ ସୈରିନ୍ଧ୍ରୀଙ୍କର ସୂର୍ଯ୍ୟଙ୍କୁ ପ୍ରାର୍ଥନା

ଚଳିଗଲେ ମୁଦୁସୁଲୀ କୀଚକର ଆଗ୍ୟାଂ ଘେନି
ଦିନକର ଯାତ୍ରା ସାରିଣ ବାହୁଡନ୍ତି ସଇନି ।୧
ଦେବନବରେ ନାରାୟଣଂକୁ କଲେକ ବିଜୟେ
ନିଜ ଆସ୍ଥାନେ ବିଜୟେ କଲେ ବିରାଟ ମହାରାୟେ ।୨
ସ୍ନାହାନ ଭୋଜନ ସେ ସାରିଲେ ନିତ୍ୟକର୍ମେ
ଶୟନ ମନ୍ଦିରେ ଯାଇଂ ବିଜୟେ ଧର୍ମେ ।୩
ରୟଣୀ ପ୍ରଭାତେ ଯେ ପଞ୍ଚମୀ ଦିବସ
କରୁଣା ମୁଦୁସୁଲୀ ଯାଇ ପ୍ରବେଶ ଶ୍ରୀକୃଷ୍ଣାର ପାଶ ।୪
ଅନେକ ଅଳଂକାର ଯୋଗାଡ ନେଇଣ ଦିଲେ ଛାମୁ
କୀଞ୍ଚେକ ମୁଦୁସୁଲୀ ଛାମୁରେ ପରିଣାମୁଂ ।୫
ଝାଳେ ତ୍ରିପଣ୍ଡ ଯେ କେଶବାସ ଅସମ୍ଭାଳି
ଦେଖିଣ ଶ୍ରୀକୃଷ୍ଣା ବୋଇଲେ ଲୋ କେମନ୍ତ ଜଞ୍ଜାଳୀ ।୬
କରୁଣା ମୁଦୁସୁଲୀକି ପୃଚ୍ଛନ୍ତି ମହାଦେଈ
ଆଲୋ ଉପାଧି ଅଳଂକାର କିମ୍ପେ କୀଞ୍ଚକ ମୋତେ ଦେଇ ।୭
ମା ଗୋ ତୁମ୍ଭର ସୋଦର ଗୋ ଅନେକ ରତ୍ନ ଧ୍ୱଂସି
ତୁମ୍ଭେ ଭୋଗ୍ୟ କରିବ ନାହିଂକି ଅମୂଲ୍ୟ ରତ୍ନରାଶି ।୮
ଆଲୋ ଦାସୀ ମୋହୋର ମାତାପିତା ଅଛନ୍ତି ନା କୁଶଳ
କ୍ଷମେ ବୃତିଛନ୍ତି ନା କୁଟୁମ୍ବ ସକଳ ।୯
କୀଞ୍ଚେକର ମୂଳେ ମୋହୋର ଶତେଗୋଟି ଭ୍ରାଥ
କୁଶଳେ ବୃତିଛନ୍ତି ଟିକି ଯେମାନ୍ତେ ସମସ୍ତ ।୧୦

କହଇ ଚତୁରୀ ସେ ଅଭୟେ କୂଟବାଣୀ
ସମସ୍ତେ କୁଶଳେ ଗୋ ଅଛନ୍ତି ଠାକୁରାଣୀ ।୧୧
ଯେକା କୀଚକକୁ ଗୋ ଆବୋରିଲା କିସ ବ୍ୟାଧି
ସମରାଜ୍ୟ ଲୋକେ ଲୋଡି ନ ପାଇଲୁ ମଉଷଧି ।୧୨
ମାଗୋ ଅନ୍ନ ନ ରୁଚଇ ତାମ୍ବୋଳଇ ବିଷପିତା
ପଲଂକ ତେଜିଣ ଗୋ ଭୂମିରେ ସୁପିତା ।୧୩
ପିନ୍ଧିଲା ବସନ ଗୋ ପକାଇ ପାଲଟି
ଲଲାଟେ କର ତାଡିଣ ଗୋ ଭୂମିରେ ଦିଅଇ ଘୋଡ଼ାଲୋଟି ।୧୪
ଅଶ୍ରୁଜଳ ଢଳିତ ଗୋ ବେନି ଯେ ଲୋଚନ
ଗତପ୍ରାଣ ପ୍ରାୟେ ଦିଶେ ତାହାର ବଦନ ।୧୫
ମାଗୋ ରାତ୍ରରେ ନାହିଁ ନିଦ୍ରା ଦିବସେ ନାହିଁ କ୍ଷୁଧା
କେବଣ ରୋଗ ଆସି କଲାନି ବଡ଼ ବାଧା ।୧୬
ବାରଣ ନ ଗଲା ଗୋ ଯେହେନେକ ଚରିତ
ଶୁଣିଣ ମହାଦେଈ ଯେ ବଡ଼ାଇ ଆରତ ।୧୭
ଧର୍ମ ଧର୍ମ ସୁମରଇ ସେ ବିରାଟର ନାରୀ
ଆଲୋ ରାଜାଂକ ଛାମୁରେ କହ ବଦ୍ୟ ଆଣନ୍ତୁ ଲୋଡି ।୧୮
ଅନେକ ଧନରତ୍ନ ଲୋ ନିଅ ମୋର ତହୁଂ
ବେଗେ ବଦ୍ୟ ଲୋଡିଆଣ ପାଇବ ଯହୁଂ ତହୁଂ ।୧୯
କହୁଂ କହୁଂ ଶ୍ରୀକୃଷ୍ଣା ଯେ ପଡ଼ିଗଲେ ମୂର୍ଛା
ଆଲୋ ବୁଦ୍ଧି କରନି ମୋହୋର ଯେମନ୍ତ ଭାଇ ହୋୟେ ରକ୍ଷା ।୨୦
ମୁଦ୍ରସୁଳୀ ବୋଇଲେ ମାଗୋ ତରସ୍ତ ନୋହ ମାୟେ
ଅନେକ ବୈଦ୍ୟ ଆଣି କରାଇଲେଣି ଉପାୟେ ।୨୧
କେବେହେଂ ନ ତୁଟଇ ସେ ଅନଙ୍ଗ ମହାବ୍ୟାଧି
ଭଲ ହୋଇବାକୁ ତୁମ୍ଭର ତହିଂ ଅଛଇ ମଉଷଧି ।୨୨
ଶ୍ରୀକୃଷ୍ଣା ବୋଇଲେ ତାହା ପାଇବଇ କାହୁଂ
କେବଣ ମଉଷଧିଟି ମୋତେ କିମ୍ପା ନ କହୁ ।୨୩
ଗୋସାମଣି ଗୋ ସଇରିନ୍ଧ୍ରୀ ବୋଲି ଯେ ଅଛି ତୁମ୍ଭ ତହିଂ
ତାହାର ଗଲେ ରକ୍ଷା ହୋଇବ ତୁମ୍ଭ ଭାଇ ।୨୪
ନାନା ମନ୍ତ୍ରମାନ ସେ ଜାଣଇ ମଉଷଧି
ଯେହାର ଅଙ୍ଗ ଲାଗନ୍ତେ ତାହାର କ୍ଷୟେ ହୋଇବ ବ୍ୟାଧି ।୨୫
ଶୁଣିଣ ଶ୍ରୀକୃଷ୍ଣା ଯେ ସାକ୍ଷାମ ହୋଇଲେ
ସଇରିନ୍ଧ୍ରୀର ସନ୍ନିଧିକୁ ଆପଣେ ବିଜେ କଲେ ।୨୬
ଅନ୍ତେଶ୍ୱର ଗମ୍ଭୀରେ ସେ ଥିଲେ ମହାସ୍ୱତୀ
ଧାଡିକାରେ ଦେବୀ ଉଠି ଅଇଲେ ତଡତି ।୨୭

ଶ୍ରୀକୃଷ୍ଣାର ସନ୍ନିଧେ ଆସି ସଇରିନ୍ଧ୍ରୀ ହୋଇଲେକ ଉଭା
ବାଳଅର୍କ ପ୍ରାୟେକ ଦିଶନ୍ତି ଦେବୀ ଶୋଭା ।୨୮
ଶ୍ରୀକୃଷ୍ଣା ବୋଇଲେ ଗୋ ପୁଛଇ ତୋତେ ବାକି
ମନ୍ତ୍ର ମଉଷଧି ମାଗୋ ଜାଣୁ କି ବ୍ୟାଧିକି ।୨୯
ମାଗୋ କୀଚକ ମୋହୋର ଯେ ସହୋଦର ଭ୍ରାଥ
ତାହାର ବାହୁବଳେ ଗୋ ସମସ୍ତ ରାଜ୍ୟ ମୋହୋର ସୁସ୍ଥ ।୩୦
ଚତୁର୍ଦ୍ଦିଗ ରାଜାଂକର ଯେଗୋ ଅଟଇ ରାଜ୍ୟଭୂମି
ଯେଥି ରାଜ୍ୟ କରୁଥିଲା କାଳ ଯେ ନଉମି ।୩୧
ମଘଦେଶ ରାଜା ଯେ ଅଟଇ ତ୍ରିଗର୍ତ୍ତ
ସେ ଦୁହିନ୍ତି ଜିଣିଣ ମାଗୋ ରାଜ୍ୟ କରଇ ଯେଥ ।୩୨
ମାଗୋ କୀଚକର ଦର୍ପେ ସିନା ରାଜ୍ୟ ଯେ ମୋହୋର
ତାହାକୁ ଅପଚୟେ ପଡ଼ିଲେ ରାଜ୍ୟ ମୋ ହୋଇବ ଛାରଖାର ।୩୩
ଯେବେ ମହାତ୍ମାଣୀ ଗୋ ଜାଣୁ ଜଡ଼ିଗୁଣ୍ଡି
ବେଳେକ ଦାନ ଦିଅ ଗୋ ମୋହୋର ସୋଦର ବ୍ୟାଧିଖଣ୍ଡି ।୩୪
ଶୁଣ ଗୋ ମହାଦେଈ ବଦୟନ୍ତି ସଇରିନ୍ଧ୍ରୀ
ମୁହିଂ କେହ୍ନେ ଜାଣିମି ଗୋ ମନ୍ତ୍ର ମଉଷଧି ।୩୫
ତୁଗୋ ଗ୍ୟାନବନ୍ତ ବିଗ୍ୟଂବନ୍ତ ଶ୍ରୀବନ୍ତ ପୟୋଧି
ତୋତେ ଯେକି ଗୁପତ ଚତୁରୀଂକ କୂଟବୁଦ୍ଧି ।୩୬
ମାଗୋ ମୋତେ ଦେଖିକରି ତୋ ଭାଇ କୀଚକ କଲା ଇଚ୍ଛା
କୂଟ ବୁଦ୍ଧିମାନ ଯେତେକ କହୁଛନ୍ତି ଯେ ସର୍ବ ମିଥ୍ୟା ।୩୭
ସଇରିନ୍ଧ୍ରୀଂକ ମୁଖୁଂ ଯେହେନେକ ବାକ୍ୟ ଶୁଣି
ଥମ୍ଭୀଭୂତ ହୋଇଣ ବସିଲେ ବିରାଟ ପାଟରାଣୀ ।୩୮
ସଞ୍ଚୟେ ଭାଇର ମୋର ଶିରୀ ହୋଇଲା ଚ୍ୟୁତ
ନୋହିଲେ ଭ୍ରାଥ ହୋଇ ଭୟେଣୀଠାକୁ ପାଠାୟେ କି ଦୂତ ? ।୩୯
ଯେତେବେଳେ ନାଶନ୍ତି କାଳ ହୁଅଇ ପୁରୁଷା
ଅର୍ଥ ତେଜି ବିଅର୍ଥକୁ ବଳାଇ ମନୀଷା ।୪୦
ଯେତେ ପରିବାରୀ ଥିଲେ ଅନ୍ତେଶ୍ୱର ପୁରେ
ବହୁମତେ କଟାଳି ସେ କହିଲେ ଛାମୁରେ ।୪୧
ତୁ ଛାର ପାମରୀ ଲୋ ଭିଖାରୀ ଦେଶାନ୍ତରୀ
ମାତା ସହୋଦ୍ର ଲୋ କେ ଅଟେ ତୋହୋରି ।୪୨
କୀଚକ ସେ ମନ୍ଦବାଇ ଅସାକ୍ଷମ ପୁରୁଷଇ
ଅକୁଳୀଣ ନାରୀ ତହିଂ ବୀର୍ଯ୍ୟ ଢାଳିତ ନ ଯୋଗାଇ ।୪୩

ଦାସୀଙ୍କର ଅଙ୍ଗେ ଯେ ସମାର୍ଜନୀ ବାତ
ଯେତେକ ଲାଗିଲେ ଆଷ୍ୟଶିରୀ ହୋୟେ ହତ ।୪୪
ଶ୍ରୀକୃଷ୍ଣା ବୋଇଲେ ଗୋ ଅନେକ ରତ୍ନ ଦେବା
ଭଲ ସୁଲକ୍ଷଣୀ କରି ଗୋ ବିଭା କରାଇବା ।୪୫
ମାଗୋ ବଢ଼ ଲାକ ରୋଗ ଯେ ସ୍ରାଗିଲାକ ଯୋଗ
ଉଛୁଳିଲା ନଦୀ ଅବଶ୍ୟ କରଇ ଯେ ଭୋଗ୍ୟ ।୪୬
ବିସ୍ମୟେ ମହାଦେଈ ଚିନ୍ତଇ ହୃଦଗତେ
ବିରାଟ ଶିରୀ ସମ୍ପଦ ସେ ନାଶଯିବାକ ଯେମନ୍ତେ ।୪୭
ଆବର ଜୀବନ୍ତେ କି ବ୍ରତଇ ମୋର ଭାଇ
ଯାହା ସେ ଅରଜିଲା ଅବଶ୍ୟ ତାହା ସେହୁ ପାଇ ।୪୮
ଶ୍ରୀକୃଷ୍ଣାୟେ ବୋଲନ୍ତି ଯେ ଅଟଇ ମହାସତୀ
ବଚନ ବାକ୍ୟେ ବୁଝିବାନା କେବଣ ପ୍ରକୃତି ।୪୯
ମାଗୋ ସଇରିନ୍ଧ୍ରୀ ତୋତେ କଥାୟ ପୁଚ୍ଛିବି ପ୍ରିୟଭାବେ
ଅଥବା ଭଲ ନୋହିଲେ ନ କହିବୁ ବଇରାଗେ ।୫୦
ସଇରିନ୍ଧ୍ରୀ ବୋଇଲେ ତୋତେ ଯାହା ଅଛି ମାଗି
ସମସ୍ତ ବୋଲିବୁ ମୋତେ ତେତେକ ପରିତ୍ୟାଗୀ ।୫୧
ପାଦପାଲଟା ନ ଛୁଆଂଇବୁ ଉଚ୍ଛିଷ୍ଟ ନ ଛୁଆଂଇବୁ
ପୁରୁଷେ ନ ପେଷିବୁ ଭ୍ରଛନା ନ ବୋଲିବୁ ।୫୨
ଆବର ତୁ ଯାହା ଗୋ ବୋଲିବୁ ତଥ୍ୟବାଣୀ
ମୁହିଂ ତାହା କରିବିନା ଗୋ ବିଚାର କର ରାଣୀ ।୫୩
ଶ୍ରୀକୃଷ୍ଣା ମଉନ ହୋଇଲେ ଦୃଢ଼ବାକ୍ୟ ଦେଖି
ଥମ୍ବୀଭୂତ ହୋଇଲେ ସେ ନୁଆସଇ ବାକି ।୫୪
ରାଗେଣ ମୁଦୁସୁଲୀ ଯେ ବୋଲଇ କରୁଣା
ତୋହୋ ଛାର ପାମେରୀ ଠାକୁରାଣୀକି କହୁ ଜିଣା ।୫୫
କୀଞ୍ଚକ ବୋଲିକରି ସେ ଯେବଣ ମହାରଥୀ
ଶତେ ସିଂଘର ପ୍ରକ୍ରମ ଜାଣି ଦୂତୀ ଯମ ଦେବତା ।୫୬
ମହୀଦାସ ପର୍ବତ ଯେ ଭାଙ୍ଗିଣ କଲା ଚୂନା
ଯେ ମହୀସ୍ଥଳ ମଧରେ କେଶରୀ ଦର୍ପ ସିନା ।୫୭
ଅନଙ୍ଗ ପଟାନ୍ତରେ ସେ ଗୁଣେଣ ଗୁଣନିଧି
ବୃହସ୍ପତି ସାରିକ୍ଷେ ଯାହାର ପ୍ରସରଇ ବୁଦ୍ଧି ।୫୮
କୁବେର ସମାନେଣ ଧନେଣ ଗଣିତା
ଈଶ୍ୱର ସମାନେଣ ଅଟଇ ବଳବନ୍ତା ।୫୯
ତାହାର ଭାରିଯା ତୁ ହୋଇବୁ ଯେତେବେଳେ
ଦଶା ତୋର ନେଉଟିଲା କର୍ମର ସୁଫଳେ ।୬୦
କେବଣ ଜନ୍ମେ ପ୍ରୟାଗେ ପଡ଼ିଲାକ ଅସ୍ଥି
ତେଣୁକରି ଭଜିଲା ତୋତେ କୀଞ୍ଚକ ସେନାପତି ।୬୧
ଶ୍ରୀକୃଷ୍ଣା ସହିତେ ଖଟିବେ ତୋହୋର ପାଦତଳେ
ଚରଣେ ଲକ୍ଷ୍ମୀ ତୁ ବୋଲାଉଛୁ କର୍ମର ଅବଳେ ।୬୨
ଛନ୍ଦେ ବିନୋଦ ତୁ କରିବୁ ରଙ୍ଗରତି
ଲକ୍ଷ୍ମୀ ଆସି ଆଉଜି ବସିଲାଣି ତୋର କତି ।୬୩
ମାଗୋ କୀଞ୍ଚକ ଯେବେ ତୋତେ ହରିବ ନିଷ୍ଠୟେ
ରକ୍ଷାକରି ପାରିବେ କି ତୋତେ ଦେବତାୟେ ।୬୪
ଯେହିକ୍ଷଣି ଆମ୍ଭତହୁଂ ବାରତା ତଥ୍ୟ ଶୁଣି
କେଶ ଧରି କୀଞ୍ଚକ ତୋତେ ଗୋ ନେମଟି ତତକ୍ଷଣି ।୬୫
ସଇରିନ୍ଧ୍ରୀ ବୋଇଲେ ଶୁଣ ଗୋ କରୁଣା ମୁଦୁସୁଲୀ
ମହତଂକର ବାକ୍ୟେ ଲୋ ସମାସ୍ୟାୟେ ଜାଣିଲି ।୬୬
ଆଗୋ ସମୁଦ୍ର ହୋଇ ଯେବେ ଲଂଘିବାକ ମହୀ
ସଚରାଚର ମଧ୍ୟେ ବ୍ରତିବେକ ଆର କେହି ।୬୭
ପୃଥିବୀ ଆପଣେ ଯେବେ ହୋଇବ ଶସ୍ୟହାନି
ସକଳ ଜୀବଜନ୍ତୁ କି ବ୍ରତିବେ ମେଦିନୀ ।୬୮
ମାଗୋ ଇନ୍ଦ୍ରଦେବତା ଯେବେ ନ କରିବାକ ବୃଷ୍ଟି
ଆବର ରକ୍ଷା କାହିଂ ହୋଇବ ନବସୃଷ୍ଟି ।୬୯
ଅନୀତି ଅବିଧି ଯେବେ କରିବାକ ରାଜା
କାହାର ଆଗେ ଗୁହାରି କରିବେ ଜନପ୍ରଜା ।୭୦
ପ୍ରସବିଲା ପୁତ୍ର ଯେବେ ମାତା କରିବାକ ଭକ୍ଷ
ସେ ବାଳୁତ ଆବର କେହ୍ନେ ହୋଇବାକ ରକ୍ଷ ।୭୧
ଆଗୋ ସ୍ୱାମୀ ନ ସହିଲେ ସେବକ କାହିଂ ବ୍ରତି
ତପୋଧନେ ବ୍ରତନ୍ତି କି ରାଜାର ଅନୀତି ।୭୨
ମାଗୋ ସ୍ୱାମୀ ହୋଇ ଯେବେ ସେ ସେବକେଣ ହୋୟେ ରାଗୀ
ସହସ୍ରେ ଅରଜିଲେ ସେ ସେବା ପରିତ୍ୟାଗୀ ।୭୩
ମୁହିଂ ତୋହୋର ରାଜ୍ୟରୁ ଯାଉଅଛି ଗୋ ମାୟେ
ମୋହୋର ଯେଥେ ଥିଲେ ପଡ଼ିବ ଗୋ ବହୁତ ଅପଚୟେ ।୭୪
ଶୁଣି ଶ୍ରୀକୃଷ୍ଣାୟେ ବୋଇଲେ ଯେହାର ଯେଥୁଂ ଗଲେ
ପୁର ମୋହୋର ଦହିଜ ହୋଇବ ଯେହାର ପିଠିଦିଲେ ।୭୫
କୋଳକରି ଶ୍ରୀକୃଷ୍ଣାୟେ ବସାଇଲେ କତି
ମାଗୋ ବେଳେକ କ୍ଷମା କରିବା ମୁଂ ହୋଇଲି ଅନୀତି ।୭୬
ଶୁଣି ପ୍ରତିଉତ୍ତର ଦିଲା ମୁଦୁସୁଲୀ
ରାଗେଣ ଅପାର ଭ୍ରଛନା ଯେ ବୋଲନ୍ତି ପୋଇଲୀ ।୭୭

ମେଦମେଦା ମାୟେଂସେଣ ଗୋ ଶରୀର କଲା କାୟା
କାମସାଗର ପୂରୋଇ ଘଟଣ କଲା କାୟା ।୭୮
ବୃହସ୍ପତିଂକର ଭାରିଯା ଯେ ତାରା ମହାସତୀ
ଚନ୍ଦ୍ରଦେବତାଂକର ତୁଲେ ସେ ବଢ଼ାଇଲେ ପୀରତି ।୭୯
ଶ୍ରୀରାମଚନ୍ଦ୍ରର ଭାରିଯା ଗୋ ଅଟଇ ଦେବୀ ସୀତା
ତାହାକଇଂ ପୁଣି ହରିନେଲା ଗୋ ରାବଣ ଦଇତା ।୮୦
ମାଗୋ ଗଉତମ ଋଷିଂକର ଭାରିଯା ନାମ ତା ଅହିଲା
ପରଦାରାୟେଣ ଚନ୍ଦ୍ରସୂର୍ଯ୍ୟେ ରମଣ ଦିଲା ।୮୧
ଚନ୍ଦ୍ରନଉମୀଂକର ଭାରିଯା ଶକୁନ୍ତଳା ମହାସତୀ
ତାହାଂକୁ ହରିଲାଟି ରବି ମହାଜ୍ୟୋତି ।୮୨
ଗୋପସ୍ତିରୀମାନେ ଯେ ଅଟନ୍ତି ମହାସତୀ
ସେ ପୁଣି କାଳେ ଗୋ କରାଇଲେ କୃଷ୍ଣେ ରତି ।୮୩
ମାଗୋ ପାଣ୍ଡବଂକର ଭାରିଯା ଯେ ଦ୍ରୋପତର ଦୁହିତା
ତାହାଂକର ପ୍ରାପତ ପୁଣି ହୋଇଲେ ପଞ୍ଚଭ୍ରଥା ।୮୪
ଆଗୋ ଦିବିଭୁବିରେ ଯେତେକ ହୋଇଲେକ ଜନ୍ମ
ପରଦାରା ସ୍ତିରୀଂକର ପୁଣି ଲଲାଟ ଲେଖନ ।୮୫
ସଇରିନ୍ଧ୍ରୀ ବୋଇଲେ ଯେ ଯେ ନୋହୋଇ ଯୁଗତ
ଯଦି ସତୀ ନ ଥିବେ ଗୋ ସଂସାର ରହିବ କେମନ୍ତ ।୮୬
ଚନ୍ଦ୍ର ଯେ ହରିଲା ତାରା ମହାସତୀ
ବୃହସ୍ପତିଙ୍କର ଶାପ୍ୟେ ରାହୁ ଗ୍ରାସିଲା ତାର ମୂରି ।୮୭
ଇନ୍ଦ୍ର ଯେ ହରିଲେ ଗଉତମଂକର ପତ୍ନୀ
ଋଷିଂକର ଶାପ୍ୟେ ସେ ହୋଇଲା ସହସ୍ର ଯୋନି ।୮୮
ସୀତାହରଣ ଦୋଷେ ରାବଣ ନାଶଗଲା
ସୁଗ୍ରୀ ଭାରିଯା ହରି ବାଳୀ ପ୍ରାଣଦିଲା ।୮୯
ଶକୁନ୍ତଳା ହରଣେ ନାଶଗଲା ସ୍ୱୟଂଭୁବ ମନୁ
ତିରଣ ପ୍ରମାଣେ କୃତାନ୍ତକ କାଟିଲାକେ ତନୁ ।୯୦
ମାଗୋ ବିରାଟ ରାଜ୍ୟେ ମୁହିଂ ହୋଇଅଛି ବଡ଼ଦୁଖୀ
ସଦା ସର୍ବଦା ଯେଥେ ମୁଂ ନୁହଇଂ ନିରିମାଖୀ ।୯୧
ପାଞ୍ଚଜଣ ଅଛନ୍ତି ଗୋ ମୋତେ ଆବୋରିବାକୁ
ଯେ ମୋତେ ବଢ଼ଇ ଅବଶ୍ୟ ମାରନ୍ତି ତାହାକୁ ।୯୨
ଶୁଣିଣ ଶ୍ରୀକୃଷ୍ଣା ଯେ ମଉନାବ୍ରତ ହୋଇଲେ
ସମସ୍ୟା ନ ଦେଇଣ ଉଠି ବାହୁଡିଣ ତହୁଂ ଗଲେ ।୯୩
ସନ୍ନିଧକୁ ହକାରିଲେ କରୁଣା ମୃଦୁସୁଲୀ
ଆଗୋ କରୁଣା ତୁ ଶୁଣିଲୁନା ମୁଂ ଯେତେ ବାଗେ ବୋଇଲି ।୯୪
ସାମାନ୍ୟ ନୁହଇଂ ସେ ଅଟଇ ବଡ଼ଜଣ
ସାମାନ୍ୟ ହୋଇ କେ ଉପେକ୍ଷା କରଇ ହିରଣ୍ୟ ।୯୫
ସାମାନ୍ୟ ମାତ୍ର କି ଠାକୁରାଣୀଙ୍କ ବୋଲ ଭାଙ୍ଗି
ବାକ୍ୟ ଶୁଣିଲୁ ନା ପ୍ରତ୍ୟକ୍ଷେ ସେ ପରମ ଯୋଗୀ ।୯୬
କୀଞ୍ଚେକକୁ କହିବ ସେ ଦେଖୁ ଦାସୀଚେଡ଼ି
ତାହା ଦେହ ଲାଗିଲେ ଆଇଷ୍ୟ ଶିରୀ ଯାୟେ ଛାଡ଼ି ।୯୭
ଯେମାନେ କହିଲେ ବୋଧନ ମାନିବ ଅବା
ଉପାୟେ କରି ସଇରିନ୍ଧ୍ରୀକି କୀଞ୍ଚେକ ପୁରକୁ ପେଷିଦେବା ।୯୮
ଥିର ହୋଇ ରହିଥାଉ ସେ ଦିନା ପାଞ୍ଚସାତେ
ଯେକଥା ମାନ ପାସୋର ହୋଇଯିବା ପରିଯନ୍ତେ ।୯୯
ବଚନ ବୋଧପାଇ ଗଲେକ ମୃଦୁସୁଲୀ
କୀଞ୍ଚକର ପୁରକୁ ଯେ ଚଳିଲେ ପୋଇଲୀ ।୧୦୦
କୀଞ୍ଚକ ହରଷ ଯେ ଦୂତୀର ବିଳମ୍ବ ଦେଖି
ରହିଲେଣି ଯେବେ ଘେନି ଆସିବେ ସଇରିନ୍ଧ୍ରୀକି ।୧୦୧
ନିଚୟେ ପ୍ରପାତ ମୋତେ ହୋଇବାକ କାମନିଧି
ଦୂତୀର ବିଳମ୍ବେ ଯେ ସମସ୍ତ କାର୍ଯ୍ୟ ସିଦ୍ଧି ।୧୦୨
ଆପଣେ ବେଶ ବେଶନ ହୋଅଇ କୀଞ୍ଚେକ ସେନାପତି
ଯେମନ୍ତ ସମୟେଣ ଦୂତୀମାନେ ମିଳନ୍ତି ।୧୦୩
ଯାତ୍ରାସାରି ରାଜା ବିଜୟେ ନିଜପୁରେ
କୀଞ୍ଚକ ପଚାରଇ ହକାରି ଛାମୁରେ ।୧୦୪
କେମନ୍ତ ବାରତ ଲୋ କେବଣ ସୁବିଧାନ କାର୍ଯ୍ୟ
ବଦୟନ୍ତି ସିହାଣୀ ଯେ କହିତେ ବଡ଼ଲାଜ ।୧୦୫
ଶୁଣି ଦେବ ପଣ୍ଡିତ କ୍ଷତ୍ରିୟ ଚୂଡ଼ାମଣି
ଶ୍ରୀକୃଷ୍ଣା ବିମୁଖ ହୋଇଲେ ତୁମ୍ଭର କଥା ଶୁଣି ।୧୦୬
ବୋଇଲେ ଯେହ୍ନେ ପଣ୍ଡିତ ସହୋଦ୍ର ମୋହୋରି
ବେଟୀ ଚେଟୀ ସମାର୍ଜନୀ ବାତ ଲାଗନ୍ତେ ହୁଅଇ ହତଶିରୀ ।୧୦୭
ମୋହୋର ରାଜ୍ୟେ ଯେ ଖଟଇ ଭୃତ୍ୟପଣେ
ଲେଞ୍ଚେ ବଶ୍ୟ କିଂକେ ହୋଇବ ଅକାରଣେ ।୧୦୮
ଅପରଚେ ଅଙ୍ଗଭୋଗ ଦେଇ ନ ଯୋଗାଇ
ଶିରୀହୀନ ହୃଦେ ଆୟୁଷ କ୍ଷୟେ ଯାଇ ।୧୦୯
ସ୍ୱାମୀ ତୋହୋର ବଚନେ ଯହୁଂ କହିଲୁ ଅବସ୍ଥା
ବହୁତ ବିକଳ ଯେ ହୋଇଲେ ଜଗତମାତା ।୧୧୦
ବୋଇଲେ ଯେତେ ଧନ ଲାଗଇ ନେଉ ସେ ଭଣ୍ଡାରୁ
ଆହୁରି ଶତେକନ୍ୟା ସେ ବିରାଟ ବିଭା କରୁ ।୧୧୧

କୀଚକ ବୋଇଲା ଲୋ ବଢ଼ିଲା ନଦୀ ବରଷିଲା ଜଳଦ
ମନମଥ କାମ ଲହରୀ ପଡ଼ିଲା ପରମାଦ ।୧୧୨
କୀଚକ ବୋଇଲା ଲୋ ନ ପାରଇ ତାକୁ ମୁଛି
ଉନ୍ମତ୍ତ କାମବାଣେ ନ ଜାଣେ ମୁହିଁ କିଛି ।୧୧୩
କାହାରି ବେଳେ ଗୁହାଇ ନୁହଇଁ କଦାଚିତେ
ଯେ ଶରୀର ତୁଟୁ ମୋହୋର ସଇରିନ୍ଧ୍ରୀ ନିମନ୍ତେ ।୧୧୪
କଣ୍ଠାଗତ ପ୍ରାଣ ଶରୀରୁ କଲା ତେଜ୍ୟା
ଅଶକତ ପ୍ରାଣୀଂକର ହୋ କିସ ଅଛଇ ଲଜ୍ୟା ।୧୧୫
କରପତ୍ର ଯୋଡିଣ ସେ କହଇ ମୁଦୁସୁଳୀ
ସ୍ୱାମୀ ଅସଂଗତେ ପୁଣି ମହାଦେଈକି ଘେନିଗଲି ।୧୧୬
ବହୁତ ସଂକୋଚ ତାହାକୁ କରନ୍ତି ଠାକୁରାଣୀ
ବିକାଶି କରି ତାକୁ କହି ନୁଆରନ୍ତି ବାଣୀ ।୧୧୭
ଆମ୍ଭର ବଚନ କରି ତାକୁ ବହୁତ କହିଲେ ମଣାଇଂ
ସ୍ତିରୀକୁଳେ ପାମେରୀ ଦେବ ତା ତହୁଂ ଆନ ନାହିଂ ।୧୧୮
ଯେତେ ଅଳଂକାରମାନେ ଛାମୁରେ ତାର ନେଇ ଦିଲି
ଅମୂଲ୍ୟ ରତ୍ନମାନନ୍ତ ସେ ପାଦେଣ ଦେଲା ପେଲି ।୧୧୯
ସ୍ୱାମୀ କି ସରୂପଗୁଣ ମୁଂ ବର୍ଣ୍ଣିବି ତାହାର
ହିରଣ୍ୟ ନ ଗଛଇ ତାହାର ଚରଣର ।୧୨୦
ହୀରାହୁଂ ଅଧିକ ତାହାର ପାଦତଳି
ମରକତ ନ ଗଛଇ ତାହାର ଚରଣ ଅଙ୍ଗୁଳି ।୧୨୧
ଯେ ଅଷ୍ଟରତ୍ନମାନ ଯେ ଥୋଇଲୁ ତାରକତି
ରତ୍ନହୁଂ ଅଧିକ ଦେବ ଅଟଇ ତାହାର ଜ୍ୟୋତି ।୧୨୨
ଦେବସ୍ତିରୀ ନାୟେକା ସେ ମଧ୍ୟପୁରର ନୁହଇ
ରମ୍ଭା ଉର୍ବଶୀହୁଂ ଅଧିକ ରୂପ ଅମର ଭୁବନ ମୋହଇ ।୧୨୩
ସ୍ୱାମୀ ତାହାର ଛାମୁରେ ଦାସୀ ପ୍ରାୟେ ଦିଶନ୍ତି ଶ୍ରୀକୃଷ୍ଣା
ଶୁଣିଣ କୀଞ୍ଚକର ବଢ଼ିଲା ଯେ ଦୁଗୁଣ ତୃଷ୍ଣା ।୧୨୪
ସ୍ୱାମୀ କିଞ୍ଚିତ କରିଣ ଯେବେ କହିବ ଦିବ୍ୟବାଣୀ
ପିକଜନ୍ତୁ ଦୂରେ ଯାଇ ତାହାର ବାକ୍ୟ ଶୁଣି ।୧୨୫
ଅପାର ଗୁଣ ଯହୁଂ ଦେବ କହିଲା ବିଶେଷି
କୀଚକ ଢ଼ଳିପଡ଼ିଲା ମୋହବନ୍ଧ ଫାଶୀ ।୧୨୬
କୀଚକ ଯହୁଂ ବଢ଼ିଲା ମଦନ ଉଦବେଗ
ଆଲୋ ଯାଇଣ ଜଣାଅ ବେଗେ ଠାକୁରାଣୀଂକର ଆଗ ।୧୨୭
ସେ ମୋହୋର ଠାକୁରାଣୀ ସେ ମୋତେ ରକ୍ଷା କରନ୍ତୁ
ଉପାୟେ କରି ମୋ ପୁରକୁ ସଇରିନ୍ଧ୍ରୀକୁ ପେଷିଦ୍ୟନ୍ତୁ ।୧୨୮
ଶୁଣିଣ ମୁଦୁସୁଳୀ ଚଳିଗଲେ କୀଞ୍ଚକର ବଚନେ
ସନ୍ଦେଶ କହିଲେ ଯାଇ ରାଣୀଂକ ସନ୍ନିଧାନେ ।୧୨୯
ଗୋସାମଣିୟେ କୀଞ୍ଚକରେ କାର୍ଯ୍ୟ କି ସଇରିନ୍ଧ୍ରୀରେ କାର୍ଯ୍ୟ
ସଇରିନ୍ଧ୍ରୀକି ନଦିଲେ କୀଚକ ହେଉଛି ପ୍ରାଣତ୍ୟାଜ ।୧୩୦
ଶ୍ରୀକୃଷ୍ଣା ବୋଇଲେ ଲୋ କୀଚକ ନାହିଂନା ଜୀବନ୍ତେ
ନ ଗଲେହେଂ ନ ବ୍ରତଇ ଗଲେହେଂ ନ ବ୍ରତଇ କଦାଚିତେ ।୧୩୧
ଯେହ୍ନେ ସେ ଅରଜିଲା ଭୋଗ୍ୟକରୁ ତାର କର୍ମ
ଯେଥକୁ ବୋଲି ସେ ଯେ ହୋଇଅଛି ଜନ୍ମ ।୧୩୨
ଲେଉଟି କହ ଯାଇଂ ଲୋ ସମ୍ଭାଳିଥାଉ ତାର କାୟେ
ଦିନା ଚାରି ପାଞ୍ଚ ଉତ୍ତାରେ ସଇରିନ୍ଧ୍ରୀକି ପେଷଇ ସିନା କରିଣ
ଉପାୟେ ।୧୩୩
ଚଳିଲେ ଚତୁରୀ ଯେ ଦୂତ ପରିଯୋଗେ
ଯାଇଂଣ ଜଣାଇଲେ ପୁଣ କୀଚକର ଆଗେ ।୧୩୪
ଦିନା ଚାରି ପାଞ୍ଚ ଉତ୍ତାରେ ଯେ ପେଷିବେ ମହାଦେଈ
କ୍ଷୁଧା ଆତୁରେ କି ବେନିହାଥେ ଅନ୍ନ ଖାଇ ।୧୩୫
ଅଥବା ଯଦ୍ୟପି ସେ ନୁଆରିବେ ପେଷି
କେଶ ଧରି ଆଣିମା ତାହାକୁ ଅନ୍ତେଶ୍ୱର ପୁରେ ପଶି ।୧୩୬
ଯାତ୍ରା ସମାପତ ସେ ଯେକବିଂଶ ଦିବସେ
ମୁରାଟ ସାରିଣ ରାଜା ରହିଲେ ହରଷେ ।୧୩୭
ଅନେକ ନିଯୋଗୀମାନନ୍ତ ଦିଲା ଶାଢ଼ୀ
କୋଚକୁ ବୋଇଲା ମୋ ରାଜ୍ୟେ ତୁମ୍ଭେ ଠାକୁର ଅଧିକାରୀ ।୧୩୮
ବଇଶାଖର ଅନ୍ତେ ଯେ ଋଷଭ ପରବେଶ
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଯେ ଚଉଠିର ଦିବସ ।୧୩୯
ଭୂମିବାର ମୂଳା ନକ୍ଷତ୍ର ଅଟଇ ସେ ଦିନର
କୀଞ୍ଚକର ନିମନ୍ତେ ସଇରିନ୍ଧ୍ରୀର ଅଭିସାର ।୧୪୦
ମନେ ସ୍ମରି ଶ୍ରୀକୃଷ୍ଣାୟେ ଲେଖ ଅବଧାରି
ସଂଚିତ ତାଳପତ୍ର ଲେଖନ କରେ ଧରି ।୧୪୧
ତାଳପତ୍ର ଘେନିଣ ଲେଖନ୍ତି ମହାସତୀ
ଶ୍ରୀକୃଷ୍ଣାର କୀଞ୍ଚକକୁ ତ୍ରିସନ୍ଧ୍ୟାରେ କଲ୍ୟାଣ ନିତି ।୧୪୨
ବାବୁ ତୁ ଯେ ଉପୁଜିଲୁ ସଂକୋଚନର ରାଜାର ଘରେ
ଶରଧାୟେ ବଶିଷ୍ଠେ ତୋତେ ଧଇଲେ କୋଡ଼ରେ ।୧୪୩
ତୋକ୍ଷେଣ ମହାତ୍ମା ତୋତେ କଲ୍ୟାଣ କଲେ ବାଞ୍ଛା
ଶତେ ସିଂଘର ବଳ ତୋର ହୋଉରେ ବାଳବଛା ।୧୪୪
ତୁ ଯେ କାନ୍ଦିଣ ହଲାଇଲୁ ବେନିପାଦ
ତୋହୋର ବାମଚରଣ ବାଜିଲା ଯେ ବଶିଷ୍ଠଙ୍କ ହୃଦ ।୧୪୫

ମୁନିଂକ ମୁଖରୁ ରୁଧିର ବାହାର ହୋଇ ଫୁଟି
ଉତ୍ତାନଶାହୀ ହୋଇ ଯେ ପଡ଼ିଲେ ତପନିଷ୍ଠି ।୧୪୬
କୋପେଣ ଶାପ୍ୟ ତୋତେ ଦିଲେକ ତପୋବନ୍ତ
ଶତେ ସିଂଘର ପ୍ରାକ୍ରମ ତୋର ଯେକା ସିଂଘକେ ହୋଉ ହତ ।୧୪୭
ସଇରିନ୍ଧ୍ରୀ ବୋଲଇ ମୁହିଁ ଗନ୍ଧର୍ବଂକ ବଲ୍ଲଭୀ ହାଦେ
ସିଂଘେକ ପ୍ରାକ୍ରମ ତୋତେ ଅଛିଟି ପ୍ରମାଦେ ।୧୪୮
ସଇରିନ୍ଧ୍ରୀ ଯାଉଅଛି ଯେ ତୋହୋର ପୁର
ଅନେକ ବିନୟ ଭଗତି ହୋଅ ଯେହାର ପୟର ।୧୪୯
ଯେ ମହାତ୍ମାଣୀ ତୋତେ କରନ୍ତୁ ସଦୟେ
ଆରୋଗ୍ୟ ଅକ୍ଳେଶ ହୋଇବ ତୋହୋର କାୟେ ।୧୫୦
ଯେ ମୋହୋର ବୋଲ ମେଣ୍ଟି ଯେବେ ସଇରିନ୍ଧ୍ରୀକି ହରିବୁ
ତୁ ଶତେସିଂଘ ପ୍ରାକ୍ରମ ଯେକା ସିଂଘକେ ନାଶଯିବୁ ।୧୫୧
ପ୍ରତକ୍ଷେ ଗୁରୁପତ୍ନୀ ଯେ ଅଟଇ ଗଉରୋବୀ
ଗଉରୋବୀ ସ୍ତିରୀ ହରିଲେ ଆପଣେ ପରାଭବି ।୧୫୨
ମୋହୋର ଶପତ ତୋତେ ଠାକୁରଂକ ଆନ
ଯାଇଂଣ ସଇରିନ୍ଧ୍ରୀଟି ବାହୁଡ଼ି ଆସିବ ଯେହିକ୍ଷଣ ।୧୫୩
ବାବୁ ପଞ୍ଚଗନ୍ଧର୍ବଂକର ଭାରିଯା ଯେହା ନାମ ସଇରିନ୍ଧ୍ରୀ
ଯେହାର ଅଙ୍ଗ ଛୁଇଂଲେ ଜୀବନ ଯେଥେ ନ ରହଇ
କାହାରି ।୧୫୪
ଯେବେ ଜୀବନକୁ ଅଛି ତୋହୋର ଆଶ
ଦୂରେ ଥାଇ ପ୍ରଳମ୍ଯ କରିବୁ ନ ଯିବୁ ଯେହାର ପାଶ ।୧୫୫
ବାବୁ ମସଦେଶେ ମଘଦେଶେ ତୁହି ସେ ଅଧିକାରୀ
ଯେତେକ ସ୍ୱାମୀ ହୋଇ କିଞ୍ଚିତେ ନୋହସି ଅପହାରୀ ।୧୫୬
ବାବୁ ତୁହିତ ପଣ୍ଡିତ ଅଟୁ ମହାଭିଗ୍ୟଂ
ଛତ୍ରୀବର ସୋହୋଡ ସୁନ୍ଦର ଅଟୁ ତୁ ସର୍ବଗ୍ୟଂ । ୧୫୭
ଚନ୍ଦନ ମୁଦ ଦେଇ ମୁଦିଲେ ଶତଶ୍ରୀଯା
ସଇରିନ୍ଧ୍ରୀ ସନ୍ନିଧେ ଯାଇଂ ବିଜୟେ ରାଜପ୍ରିୟା ।୧୫୮
ଦ୍ରହସିତ ବାକ୍ୟେ ଦେବୀ ବଢ଼ାଇ ହରଷେ
ଶ୍ରକୃଷାୟେ ସଇରିନ୍ଧ୍ରୀକି ହକାରିଲେ ପାଶେ ।୧୫୯
ମାଗୋ ତୁ ମୋହୋର ପଞ୍ଚଭୂତ ଆତ୍ମାର ବିଶ୍ୱାସୀ
ବିଶ୍ୱାସ ଠାବକୁ ଗୋ ଖଳଲୋକନ୍ତ ନ ପେଷି ।୧୬୦
ମାଗୋ ନଗର ସ୍ତରୀମାନେ ଯେ ଅଟନ୍ତି ଚତୁରୀ
ବିଶ୍ୱାସ କଥାମାନ ଗୋ ନୁଆରନ୍ତି ଗର୍ଭକରି ।୧୬୧
ମାଗୋ ତୋହୋର କରେ ଦେଉଅଛି ବିଶ୍ୱାସ ଲେଖାଗୋଟି
କୀଚ୍ଚକ ଅନ୍ତେଶ୍ୱରେ ଦେଇ ଆସିବୁ ଲେଉଟି ।୧୬୨
କୀଚ୍ଚକର ଭାରିଯା ନାମ ଅଟଇ ରାଧିକା
ତାହାର ହାଥେ ନେଇ ଲେଖାଗୋଟି ଦେଖା ।୧୬୩
କୀଚ୍ଚକକୁ ଦିଅ ଯେହା ଗୁପତେଣ ବୋଲ
ଧାତିକାରେ ଆସିବୁଟି ବହନ ହୋଇ ଚଳ ।୧୬୪
ଘେନ ବୋଲି ମହାଦେଈ ଯାଚିଲେ ଉପର ହାଥେ
ସଇରିନ୍ଧ୍ରୀ ବିଚାରନ୍ତି ଯେହା ମେଣ୍ଟିବି କେମନ୍ତେ ।୧୬୫
ଲୋକିତ କର୍ମକୁ ମୁହିଂ ଭୃତ୍ୟ ପ୍ରାୟେକ ଦିଶି
ନ ଗଲେ ଚିତ୍ତ ଅନ୍ତର ଧରିବଟି ବିରାଟ ପାଟବଂଶୀ ।୧୬୬
ସ୍ୱାମୀର ବଚନ ସେ ସେବକ କାହିଂ ମେଣ୍ଟି
କେତେ ଭାଙ୍ଗିବି ମୁଂ ଯେହାର ବାକ୍ୟଗୋଟି ।୧୬୭
ବିଚାରିଣ ଦେବୀ ଯେ କରଣେ ଲେଖ ଘେନି
ଧର୍ମ ଧର୍ମ ସୁମରନ୍ତି ସେ ପାଞ୍ଚାଳୀ ଜିଗ୍ନସେନୀ ।୧୬୮
ନଗଲେ କୋପ ମୋତେ କରିବ ମହାଦେଈ
ଗଲେଣ କୀଚ୍ଚେକ ବଳାତ୍କାରେ ହରିବ ମୁକୁଇଂ ।୧୬୯
ତୁ ଦେବ ପରମାନନ୍ଦ ପ୍ରସନ୍ନ ପରମ ଯୋଗୀ
ସର୍ବ ବଳବନ୍ତ ପୁରୁଷ ତୁ ଦୃଭାରନ୍ତ ପରିତ୍ୟାଗୀ ।୧୭୦
ଜୟତୁ ନାରାୟଣ ଭଗତମଛଳା
ଯେ ମହା କଷଣ୍ଟଂ ମୋତେ ଉଦ୍ଧାର କର ଦେବକୀର ବଳା ।୧୭୧
ଯେମନ୍ତେ ପାମର ମୋର ନ ଛୁଅଂଇ ଅଙ୍ଗ
ତୁହି ଯେହାବିଚାର କର ହେ ଶିରୀରଙ୍ଗ ।୧୭୨
ଲେଖଦେଇ ଶ୍ରକୃଷା ଚଳିଲେ ନିଜପୁରେ
ଚଳିଲେ ସଇରିନ୍ଧ୍ରୀ ଯେ ଅନ୍ତପୁର ବାହାରେ ।୧୭୩
ନଗ୍ର ପୂର୍ବଭାଗେ ସେ କୀଚ୍ଚେକ ଭୁବନ
ଚଳନ୍ତି ସଇରିନ୍ଧ୍ରୀ ଯେ ଈଶାନକୁ କରିଣ ବନ୍ଦନ ।୧୭୪
ପବନ ଗତି ହୋଇ ଚଳନ୍ତି ପାଞ୍ଚାଳୀ
ଦେଖିଲେ ଆକାଶେ ଉଦୟେ ଅଂଶୁମାଳୀ ।୧୭୫
ଚଳଇ ଜିଗ୍ନସେନୀ ଜାଣିଣ ନିରିମାଖୀ
କରଇ ବିନୟେ ସେ ଆଦିତ୍ୟ ଦେବତାକଇ ଦେଖି ।୧୭୬
ଜୟତୁ କଗତାର ସ୍ୱାମୀ ଛାୟାଦେବୀର ପ୍ରାଣପତି
ତିମିରି ବିଦାରଣ ନାଥ ଫେଡିବା ଦୁର୍ଗତି ।୧୭୭
ଯେକ ଚକକେ ଯାହାର ସପତ ଅଶ୍ୱ ଯୋଚି
କରୁଣାମଛଳ ନାଥ ଜୟତୁ ବିରଞ୍ଚି ।୧୭୮
ସ୍ୱାମୀ ପ୍ରସନ୍ନ ନାରାୟଣ ପ୍ରଭୁ ଜୟତୁ ମାରତଣ୍ଡ
ଅଶିଲକ୍ଷ ଜୁଣ ଯାହାର ବିକାଶଇ ଅକ୍ଷଦଣ୍ଡ ।୧୭୯

କୋଟିଯେ ଧାର ଚକେ ସପତ ଅଶ୍ୱ ଯୋଚି
ଦିବସେ ଉଦୟେ ନାଥ ନିଶାକାଳେ ଲୁଚି ।୧୮୦
ସ୍ୱାମୀ ଅର୍କ ବିଦାରିଲୁ କଣୟବିନ୍ଦୁର ଭଗତେ
ଆକ୍ରେଷି ମାଡିବସିଲୁ ଦେବ ଚନ୍ଦ୍ରଭାଗା ତୀର୍ଥେ ।୧୮୧
ସ୍ୱାମୀ ଜମ୍ବୁଦୀପ ଭ୍ରଥଖଣ୍ଡ ପୃଥିବୀ ଈଶାନ ଅଗ୍ନିକୋଣେ
ତେଣୁ ସେ କୋଣାର୍କ ନାମ ବିରଞ୍ଚି ନାରାୟଣେ ।୧୮୨
ସ୍ୱାମୀ ସଂଗମ୍ୟାର ବଲ୍ଲଭ ତୁ ଅନନ୍ତ ମହେଶ୍ୱର
ତୁହି ସେ ଦିବ୍ୟଚକ୍ଷୁ ପୁରୁଷ ଅଣାକାର ।୧୮୩
ସ୍ୱାମୀ ଚନ୍ଦ୍ର ଭାଗା ଦକ୍ଷିଣେ ମଉଦଧି ଉତ୍ତରଭାଗେ
ମହାଯୋଗେ ବସିଲୁ ନାଥ ଚିନ୍ତିଲୁ ଶୂନ୍ୟମାର୍ଗେ ।୧୮୪
ଲକ୍ଷେକ କୁସୁମ ଦେବ ନିତ୍ୟେ ଯେକବର୍ଣ୍ଣ ପାଟୋଳି
ମର୍କତ ଲିଙ୍ଗେ ଦେଇ ପୂଜିଲୁ ତିନିଓଳି ।୧୮୫
ସ୍ୱାମୀ ଯେକଳୟେ ଆସନ ନବକୋଟି ସହସ୍ର ବରଷ
ଧାୟେଣ ଚିନ୍ତିଲୁ ଦେବ ଅଣାକାର ପୁରୁଷ ।୧୮୬
ଦୁସହ ତପ ଦେଖି ପୁରୁଷ ଅଣାକାର
ପୁଷ୍ପେକ ହରି ଊଣା ହୋଇଲା ଲକ୍ଷେକର ।୧୮୭
ମନେ ବିସ୍ମରିଲୁ ଯେ ଚିନ୍ତିଲୁ ଦେବରାଜ
କେ ଯେଥଂ ପୁଷ୍ପେକ ଊଣାକଲା ଆଜ ।୧୮୮
ମୁହିଂ ଯେବେ ଉଠିଣ ଯିବି ପୁଷ୍ପ ଆଣି
ଖଣ୍ଡ ଚ ଲୟେ ମୋହୋର ହୋଇବ ଯେହିକ୍ଷଣି ।୧୮୯
ସଂକଳ୍ପ ସମାପତ କରିବି କେମନ୍ତେ
ଦକ୍ଷିଣ ଚକ୍ଷୁ ତାଡିଲୁ ସ୍ୱାମୀ ପୁଷ୍ପର ନିମନ୍ତେ ।୧୯୦
ଦକ୍ଷିଣଭାଗ କରେ ଘେନିଣ ନିଜ ତୋଳ
ଲିଙ୍ଗର ଉପରେଣ ନେଇ ଚଢ଼ାଇଲୁ କମଳ ।୧୯୧
ସେହି ଲିଙ୍ଗ ବିଦାରିଣ ଦେଖିଲୁ ସରୂପ
ତହୁଂ ତୋତେ ଦୃଶ୍ୟମାନ ହୋଇଲା ଅଣାକାର ରୂପ ।୧୯୨
ଯୁଗାନ୍ତେକ ପୁରୁଷ ତୋତେ ହୋଇଲା ପ୍ରସନ୍ନ
କମଳ ଆକାର ପୁଣି ଦିଶିଲା ଲୋଚନ ।୧୯୩
ତୁ ଦେବ କମଳଲୋଚନ କରତାର
ଅଦଭୁତ ନାଥ ମୋତେ କରିବାକ ପାର ।୧୯୪
ସ୍ୱାମୀ ରିଷିତ ସତ୍ୟଯୁଗେ ମୋହୋର ନାମଟି କେତୁକା
ଚଉଦ ବ୍ରହ୍ମା ହତ୍ୟାକଲା ରହିଲା ଶୂଦ୍ରେକ ଯେକା ।୧୯୫
ସେ ଆଦି ଧବଳୀ କି ଶରଣ ଯହୁଂ ମାଗି
ଭଗତ ନିମନ୍ତେ ସେ ସରୂପ ପରିତ୍ୟାଗି ।୧୯୬
ଅଥବା ବିନୟ ତୁ ହୋଇଲୁ ଯେବେ ମୋତେ
ଶରଣ ରକ୍ଷଣ ମୁଂ ନ କରିବି କେମନ୍ତେ ।୧୯୭
ଧବଳୀର ବଚନେ ମୁଂ ରକ୍ଷାକଲି ତାହା
ଇଦଂଭୂତ ଜନେ ମୁଂ ଭକ୍ଷିବି ତାର ବାହା ।୧୯୮
ସ୍ୱାମୀ ଦ୍ୱିଜ ଅବତାରେ ମୁଂ ପାର୍ବତୀ ଯେକବଳା
ରୁଦ୍ରବାକ୍ୟ ହୁଡିଲି ମୋତେ ଶାପ୍ୟ ଦିଲେ କପିଳା ।୧୯୯
ତାହାଂକର ବାକ୍ୟେ ମୋତେ ହୋଇଲା ପଞ୍ଚୁପତି
ପଦ୍ମେକ ବର୍ଷ ବସିଲି ମୁଂ ଯେକବଳା ପାର୍ବତୀ ।୨୦୦
ସ୍ୱାମୀ ଯେକବର୍ଣ୍ଣ ପାଟଳିବସ୍ତ୍ର ପଞ୍ଚାଉନ କୋଟି ନେଲୁ
ତବ ପୁତ୍ର ଶନିଶ୍ଚରକୁ କନ୍ୟା ପ୍ରଦାନ କରାଇଲୁ ।୨୦୧
ସ୍ୱାମୀ କଉରୋବ ସଭାତଳେ ଦୁଶାସନ କେଶ ଆକ୍ରଷଣ ବେଳେ
ଛପନକୋଟି ବସ୍ତ୍ର ଦିଲୁ ମୋତେ ଆତଙ୍କର କାଳେ ।୨୦୨
ସ୍ୱାମୀ ପରମାନନ୍ଦ ସତ୍ୟଯୁଗେ କଳପୀ ନାମେ ନାରାୟଣ
ତୋତେ ହରି ନେଇଥିଲା ଯେ କଉଶିକ ନାମେ ରାବଣ ।୨୦୩
ଆପଣା ରମ୍ୟସ୍ଥାନ ମନ୍ଦିରେ ଥୋଇଥିଲା
ଅନୁବ୍ରତେ ଲଂକା ଭୁବନ ତାହାର ଦିବସ ପ୍ରାୟେକ ଦିଶିଲା ।୨୦୪
ନବଖଣ୍ଡ ପୃଥୀ ସବୁ ହୋଇଥିଲା ସର୍ବରାତି
ତବହିତେ ମନୁଷ୍ୟ ରୂପେ ମୁଂ ହୋଇଲି ଉତପତି ।୨୦୫
ମୋତେ ସେ ରାବଣ ଯେ ଘେନିଗଲା ହରି
ବିଷାଦ ନାମରେ ରାମଚନ୍ଦ୍ର ହୋଇଲେ ଦ୍ୱନ୍ଦ୍ୱକାରୀ ।୨୦୬
ତଦଅର୍ଥେ ରାବଣକୁ ବଧ କଲେ ମମ ପ୍ରହୁ
ଦିନକର ଜ୍ୟୋତି ପୁଣ ବିକାଶିଲା ତହୁଂ ।୨୦୭
ସ୍ୱାମୀ ତୁହି ମୋତେ ମୁହିଂ ତୋତେ ଅନେକ ବାର ଜନ୍ମି
ଯେ କଷଣୁଂ ଉଦ୍ଧର ମୋତେ କମଳାର ସ୍ୱାମୀ ।୨୦୮
ସ୍ୱାମୀ ଦବନଦକ୍ଷ ତୋତେ ହରିନେଲା ଯେତେବେଳେ
ମହାଖଳା ପାତି ତୋତେ ଥୋଇଲା କମଣ୍ଡଳେ ।୨୦୯
ବସୁଧା ରୂପେଣ ମୁଂ ଥିଲି ଅବତରି
ତହୁଂ ଆଣିଲି ତୋତେ କମଣ୍ଡଳ ବିଦାରି ।୨୧୦
ସ୍ୱାମୀ ମୋତେ ସଂକଟ ଯେ ପଡ଼ିଲା ଯେତେବେଳେ
ତୁହି ସେ ବିଚାର ନାଥ ଅନାଦି ଦିବ୍ୟତୋଳେ ।୨୧୧
ସ୍ୱାମୀ ଇନ୍ଦ୍ରନାଶ ଗଲା ଯେ ଦ୍ୱଷ୍ଟାର ବିବାଦେ
ପଞ୍ଚମୃତ୍ତି ହୋଇଲେ ସ୍ୱାମୀ ତୋହୋର ପ୍ରସାଦେ ।୨୧୨
କର୍ମର ବିପାକେ ସ୍ୱାମୀ ପଡ଼ିଲା ଅପଚୟେ
ଅଗ୍ୟାଂତେ ପଶିଲୁ ଆସି ଗୋପ୍ୟାନ କରି କାୟେ ।୨୧୩
ସ୍ୱାମୀ ସଇରିନ୍ଧ୍ରୀ ରୂପେଣ ମୁହିଂ ରହିଲାଇଂ ଯେଥି
ଅଗ୍ୟାଂତବାସ ନିମନ୍ତେ ଶ୍ରୀକୃଷ୍ଣାର ବଶ୍ୟବୃତ୍ତି ।୨୧୪

କୀଚକର ତହିଂକି ମୋତେ ପେଶିଲେ ଧର୍ମ ଲଘି
କେହି ମୋତେ ସାଖା ନାହିଂ ନୋହିଲାକ ଆନ ସଙ୍ଗୀ ।୨୧୫
ଅବଶ୍ୟ ପାମର ନ ଚିହ୍ନିବ ମୋହୋର ବର୍ଣ୍ଣ
ବଳାତ୍କାରେ ହରିବ ଯେବେ ସଂସାରକୁ ରହିବ ଲେଖନ ।୨୧୬
ଅଥବା କୀଚକ ମୋତେ ହରିବାକ ବଳେ
ମୁହିଂ କି ବ୍ରତିବି ନାଥ କ୍ଷଣେହେଂ ତେତେବେଳେ ।୨୧୭
ମମ ପ୍ରାଣତ୍ୟାଜ ପାରିବୁଟି ମୁଛି
ପୂର୍ବଭାବେ ଯେବେ ତୋହୋର ମୋହୋରେ
କାର୍ଯ୍ୟ ଅଛ ।୨୧୮
ତୁ ଦେବ ଭଗତମସ୍ଥଳ ଅନାଦି
ତୁ ଦେବ ସତ୍ୟବାକ୍ୟ ଧୃତ ଅନୁସିଦ୍ଧି ।୨୧୯
ତୁ ଦେବ ସଂକଟ କାଳକୁ ଉଦ୍ଧାରନ୍ତା
ତୁ ଦେବ ସଂସାର ଜନଂକୁ ଅଟୁ ହିତା ।୨୨୦
ତୁ ଦେବ ଜପମନ୍ତ୍ର ଧ୍ୟାନ ଗ୍ୟାନସିଦ୍ଧି
ତୁ ଦେବ କୃପାନିଧି କରୁଣା ବାରାଧି ।୨୨୧
ତୁ ଦେବ ଯଶୋବନ୍ତୀ ବଲ୍ଲଭ ଦିନମଣି
ତୁ ଦେବ ଶୟଳ ଜନ ଗ୍ୟାନ ପରିଣାମି ।୨୨୨
ତୁ ଦେବ ଶୟଳ ଜନ ସୋଦର ପଦ୍ମନାଭ
ତୁ ଦେବ ଶରଣ ଉଦ୍ଧାରଣ ଆଦିଦେବ ।୨୨୩
ତୁ ଦେବ ଯୋଗ ଧାରଣ ପଣ୍ଡିତ ବ୍ରହ୍ମରକ୍ଷା
ତୁ ଦେବ ସକଳ ଜନର ପୂରାଅ ମନବାଞ୍ଛା ।୨୨୪
ତୁ ଦେବ ବିନାଶନ ସିଂହିକା ସୁତ ରାହୁ
ତୁ ଦେବ ମହିମାଂ ଧାରଣ ବିଶ୍ୱବାହୁ ।୨୨୫
ତୁ ଦେବ ପ୍ରଳୟ ମହାପ୍ରଳୟ ଉଭାରି
ପରେଣ ପରମାନନ୍ଦ ପରଲୋକ ହିତକାରୀ ।୨୨୬
ତୁ ଦେବ ଜଗୁଜୀବନ ନାଥ ପ୍ରାଣଗୁରୁ
ତୁ ଦେବ କୃପାଜଳ ଶୟଳ ଉଦ୍ଧାରୁ ।୨୨୭
ତୁ ଦେବ ଯତି ସତୀ ସରୂପେଣ ପରକ୍ଷା
ତୁ ଦେବ ସେବା ଜାଣି ପୂରାଅ ମନବାଞ୍ଛା ।୨୨୮
ତୁ ଦେବ ଶରଦ ହେମନ୍ତ ଶିଶିର ବସନ୍ତ ଗ୍ରୀଷମ ବରଷା
ତୁ ଦେବ ଷଡରତୁ ବାଞ୍ଛିତ ମନୀଷା ।୨୨୯
ତୁ ଦେବ ମମ ଦୁଖେଣ ସଦା ହୋଉ ଦୁଖୀ
ଯେ ଦୁସ୍ତର କଷଣରୁ ପାରିକର କିନା ରଖି ।୨୩୦
ମମ ଚିନ୍ତାକର ନାଥ ଭଗତ ମସ୍ଥଳା
ଅରୁଣ ସୋଦର ନାଥ ଅନନ୍ତ କୋଟି କଳା ।୨୩୧
ଉଦୟେ ମାରତଣ୍ଡ ଚରଣେ ଶରଣ ନିତ୍ୟେ
ଶୂଦ୍ରମୁନି ସାରୋଳା ଦାସ ବିନୟ ଅନୁବ୍ରତେ ।୨୩୨

■ ■

## ଛାୟାମାୟା ସାହାଯ୍ୟରେ ଦ୍ରୌପଦୀଙ୍କର ଗମନ ଓ କୀଚକର ଲାଞ୍ଛନା

ଦ୍ରୋପତୀ ବିନୟ ଦେଖିଣ କମଳ ଲୋଚନ
ମହାଭୟ ଉପୁଜିଲା ସେ ଜଗତ ଧାରଣ ।୧
ଛାୟା ମାୟା ବେନି ଦେବୀନ୍ତ ସେ ସନ୍ନିଧେ ହକାରି
ମଞ୍ଚପୁରକଇଂ ଯିବ ଥିବ ସଇରିନ୍ଧ୍ରୀକି ଆବୋରି ।୨
କୀଞ୍ଚକର ଭୁବନକୁ ଯେ ଯାଉଅଛି ଜିଘ୍ନସେନୀ
ବହନ କରି ତାକୁ ଆସ ତୁମ୍ଭେ ଘେନି ।୩
ସ୍ୱାମୀର ବଚନେ ଯେ ଛାୟାମାୟା ବେନିମୂର୍ତ୍ତି
ଦୁହେଂ ପ୍ରବେଶ ହୋଇଲେ ପାଞ୍ଚାଳୀର କତି ।୪
ଦେଖିଣ ମାହେଶ୍ୱରୀ ବେନି ଯେ ଦେବତୀ
ସାନନ୍ଦେଣ ଜିଘ୍ନସେନୀ ବିକ୍ରମ ପାଦଗତି ।୫
କୀଞ୍ଚକର ନବର ସନ୍ନିଧେଣ ଯାଇଂ ପାଇ
ବିଶ୍ୱାସ ମୁଦୁସୁଲୀ କୀଞ୍ଚକକୁ ଜଣାଇ ।୬
କୀଞ୍ଚକ ବିଜେ କରିଅଛି ଛନ୍ଦ ଶାଳା ମନ୍ଦିରେ
ବିନୟେ ମୁଦୁସୁଲୀ ଯାଇ କହିଲେ ଛାମୁରେ ।୭
ସଇରିନ୍ଧ୍ରୀ ଆଗତ ଦେବ ଆମ୍ଭର ଭୁବନେ
ଧାତିକାରେ କୀଞ୍ଚକ ଯେ ଉଠିଲା ତୋଷମନେ ।୮
ତାରା ଅଭିଳାଷେ ଚନ୍ଦ୍ର ଦିଶଇ ଯେସନେ
କୀଚକ ସାନନ୍ଦ ଯେନ୍ହେ ମଳୟ ପ୍ରସନ୍ନେ ।୯
ତତକ୍ଷଣେ ବେଶ ଯେ ହୋଇଲା ବୀରମଣି
ଦିବ୍ୟ ସିଂହାସନେ ସେ ବସିଲା ସିଂଘଠାଣି ।୧୦
ଅନେକ ରତ୍ନ ସେ ଆଭରଣ ଶରୀରେ
ମୃଗନାର କସ୍ତୁରୀ ଯେ ଲେପନ ଧାତିକାରେ ।୧୧
ବେଳ ପାଞ୍ଚଦଣ୍ଡ ଯେ ଦିନକର ପ୍ରକାଶ
କୀଞ୍ଚକର ମନ୍ଦିରେ ଯାଇ ସଇରିନ୍ଧ୍ରୀ ପ୍ରବେଶ ।୧୨

ନିଧନେ ଧନ ପ୍ରାପତ ଯେହ୍ନେ ଅନ୍ଧକୁ ଚକ୍ଷୁଦାନ
ମୃତ୍ୟୁପ୍ରାଣୀ ଯେସନେ ଅମୃତ ପାନେ ପାଇଲା ଜୀବନ ।୧୧୩
ଅନ୍ଧାର ମନ୍ଦିର ଯେସନେ ଦିଶେ ଆଲୋମୟେ
ଅନେକ ଉତସଲ୍ୟ କୀଚକର କାୟେ ।୧୧୪
ଅନେକ ଆଲଟ ଯେ ଚାମରନ୍ତ ଢାଳି
ଖଟନ୍ତି ଲକ୍ଷେକ ଯେ ବିଳାସୁଣୀ ବାଳୀ ।୧୧୫
ନିର୍ମଳ ଶରୀର ତାର ସଇରିନ୍ଧ୍ରୀ ରୂପ ଦେଖି
ରେ ରେ ପ୍ରାଣବଲ୍ଲଭୀ ମୋତେ ଉଦ୍ଧର ଶଶୀମୁଖୀ ।୧୧୬
ଶରଦ ପଉର୍ଣ୍ଣମୀ ଚନ୍ଦ୍ରମା ଜାଣି ତୋହୋର ମୁଖଗୋଟି
ଦରିଦ୍ର ଭୁବନେ ତୁ ଗୋ କଲୁ କଣୟ ବୃଷ୍ଟି ।୧୧୭
ତୋହୋର ଇଚ୍ଛା ମୋତେ ଅଛିନି ରେ ସଂଘାତ
ମୁହିଂ ସେ ମନ୍ଦକଲି ଅନମିତେ ପେଶିଲି ଯେ ଦୂତ ।୧୧୮
ପରେ ବୋଲାଇଣ ମୁଂ ଯେ କାର୍ଯ୍ୟନାଶ କଲି
ମମ ଇଚ୍ଛାୟେ ତୋତେ କିଂପେ ହକାରି ନ ବୋଇଲି ।୧୧୯
ମୋହୋର ମନ୍ଦପଣେ କଲୁ ତୁ ମୋତେ କୋପ
ଭୁଜେ ବନ୍ଧନ କରି ମୋତେ ସାରସି ତୁ ପରିତାପ ।୧୨୦
ଅନେକ ଚାଟୁ ବଚନେ କୀଚକ ବୁଝାଇ
ତାପଇ ବିଷ ଲହରୀ ସଇରିନ୍ଧ୍ରୀ ଅଙ୍ଗେ ଯାଇ ।୧୨୧
ଯେକଲୟେ କରିଣ କୀଚକ କରଇ ଦୃଷ୍ଟି
ଛାମୁରେ ସଇରିନ୍ଧ୍ରୀ ଥୋଇଲେ ସୁପାତ୍ର ଲେଖାଗୋଟି ।୧୨୨
ତହିଂର ଉପରେ ଥୋଇଲେ ଚତୁସମ ଗୋଟିୟେ
ଧାତିକାରେ ଲେଉଟିଲେ ପାଇଣ ମହାଭୟେ ।୧୨୩
ଆସନ୍ତେ କୀଚକ ସେ ଉଠଇ ତତତି
କାହିଂକି ଯାଉଅଛୁ ଗୋ ନିର୍ଦ୍ଦୟା ଭାବମତି ।୧୨୪
ରହ ରହ କାହିଂକି ଯାଉ ଅନେକ ବିନୟ ବୋଲି
ଅନ୍ତରୀକ୍ଷେ ଦେବଦୂତୀୟେ ତାହାକୁ ପକାଇଲେ ପେଲି ।୧୨୫
ଅସାଷ୍ଟମେ କୀଚକ ଯେ ପଡ଼ିଲା ମୁଖମାଡି
ଶରୀରୁ ପଞ୍ଚୁଆତ୍ମା କି ଗଲା ତାର ଛାଡି ।୧୨୬
ପୁଣିହିଂ ମହାବୀର ଉଠଇ ସାଷ୍ଟାମେ
ସଇରିନ୍ଧ୍ରୀକି ଆକ୍ରୋଷଇ ମଦନ ମତିଭ୍ରମେ ।୧୨୭
ସଇରିନ୍ଧ୍ରୀ ସିଞ୍ଚାଡିଲେ ବାମକର ଘାତେ
ପୁଣିହିଂ କୀଚକ ଯେ ପଡିଲା ମୋହଗତେ ।୧୨୮
ପୁଣିହିଂ କୀଚକ ଯେ ମୋହତେଜି ଉଠି
ଆରେ ପ୍ରାଣବନ୍ଧୁ ବୋଲି ଧଇଲା ଲେଉଟି ।୧୨୯
ପୁଣିହିଂ ଦରାଣ୍ଡନ୍ତେ ଯେ ଧଇଲା ଅଞ୍ଚଳ
ଭିଡିଣ କୀଚକ ଯେ କରଇ ତାକୁ କୋଳ ।୧୩୦
ବେଢ଼ିଣ ଓଗାଳନ୍ତେ ସମସ୍ତ ମୃଦୁସୁଲୀ
ଆଲୋ ଶରୀର ନ ଛୁଅଂ ମୋର ସଇରିନ୍ଧ୍ରୀ ଦେବୀ ବୋଲି ।୧୩୧
କୀଚକ ଅସାଷ୍ଟମେ ଅଇଲେ ସର୍ବବାଳୀ
ରାଗେଣ ପେଲିଦିଲେକ ପାଞ୍ଚାଳ ରାଜାର ଦୁଲାଳୀ ।୧୩୨
ଶ୍ରୀଭୁଜର ବାତ ଯାଇଂ ଲାଗିଲା ତା ହୃଦରେ
ନିଚେଷ୍ଟ ହୋଇଣ ପଡ଼ିଲେ ସର୍ବେ ଧୂରେ ।୧୩୩
ଲୋଭେଣ କୀଚକ ଯେ ନ ଛାଡଇ ଅଞ୍ଚଳ
ସଇରିନ୍ଧ୍ରୀ ଗାଢ଼େ ଆସନ୍ତେ ପଡଇ ସେ ଭୂମିତଳ ।୧୩୪
କ୍ଷଣେ କ୍ଷଣେ କୀଚକ ଯେ ପଡଇ ମୁହଂ ମାଡି
ଶରୀରୁଂ ରୋଧିର ବହଇ ନାସିକା ମୁଖ ଛିଡି ।୧୩୫
ରୋଧିରେ ବିଲେପନ ହୋୟେ ତାର ଅଙ୍ଗ
ମନ୍ଦାର କୁସୁମ ଜାଣି ଦିଶଇ ସୁରଙ୍ଗ ।୧୩୬
ପୁରୁଂ ବାହାର ସେ ଯେ ହୋଇଲା ସଇରିନ୍ଧ୍ରୀ
କୀଚକ ସଇରିନ୍ଧ୍ରୀର ଅଞ୍ଚଳ ଅଛି ଧରି ।୧୩୭
ସଇରିନ୍ଧ୍ରୀର ବାମ ଦକ୍ଷିଣେ ଲାଗିଛନ୍ତି ଛାୟା ମାୟା ବେନି
ଆସ୍ଥାନର ତଳକୁ ବୋଲି ତାଂକୁ ଗଲେ ଘେନି ।୧୩୮
ପୁଣ ପୁଣ ଅଞ୍ଚଳ ଧରନ୍ତେ ଆସଇ ଦେବୀ ପେଲି
ଗୋଡ଼ାଇଣ ବଚନ ସେ ପୁଣ ପୁଣ ବୋଲି ।୧୩୯
ସଇରିନ୍ଧ୍ରୀ ବୋଇଲେ ଯେ ରାଜ୍ୟେ ଯେମନ୍ତ ବିଚାର
ବଳେଣ ନାରୀକି କେ ହରଇ ବଳାତ୍କାର ।୧୪୦
ଉଲ୍ଲୋଳ ନୟନ ତାର ସୁନ୍ଦର ବଦନ
ଶରଦକାଳେ ଯେହ୍ନେ ନିର୍ମଳ ଦିଶଇ ଚନ୍ଦ୍ର ।୧୪୧
ଲୋୟେଣ ବ୍ୟାପିତ ତାହାର ନୀଳେନ୍ଦୀ ନୀଳ ଆଖି
ଯୁଝେଷ୍ଟି ହେଠମାଥ ହୋଇଲେ ତାହା ଦେଖି ।୧୪୨
ପଶାଖେଳେ ହସ୍ତୀନାୟେ ହୋଇଲା ଯେମନ୍ତ
ସେହି ସାଦୃଶେ ହୋଇଲା ଯେବେ ମଚ୍ଛ ଭୁବନନ୍ତ ।୧୪୩
କ୍ଷଣ ଯେସନେକେ ଗୋଡ଼ାଇ ଥାଇ ଗାଇ
ପଛେଣ କୀଚକ ସେ ଆସ୍ଥାନେଣ ପାଇ ।୧୪୪
ସଭାରେ କୀଚକ ଯେ ନ ମଣିଲା ଲଜ୍ଜା
ନିର୍ଲ୍ଲଜ ଶରୀର ତାହାର ସମସ୍ତ କଲା ତେଜ୍ୟା ।୧୪୫
ନିଶତ କାଳକୁ ଯେବେ ହୋୟେ ଜାଣ ପ୍ରାଣୀ
ଅଥବା ଅର୍ଥ ଅନର୍ଥ ଯେକପ୍ରାୟେ ଜାଣି ।୧୪୬

ବିରାଟର ଆସ୍ଥାନ ପୂରିତ ଗହଳ
ରୋଦନ କରଇ ସଇରିନ୍ଧ୍ରୀ ଆସ୍ଥାନର ତଳ ।୪୭
ସମସ୍ତେ ଚକିତ ଯେ ହୋଇଲେ ତାହା ଦେଖି
ଜଗୁଜନ ମୋହିନୀ ସେ ଶରଦ ଚନ୍ଦ୍ରମୁଖୀ ।୪୮
ଆସ୍ଥାନେ ବସିଅଛନ୍ତି ବିରାଟ କୋନ୍ତଭଟ୍ଟେ
ପଶାକ୍ରୀଡ଼ା ଖେଳନ୍ତି ସେ ଅତି ମନତୁଷ୍ଟେ ।୪୯
କୀଚକର ଅବସ୍ଥା ଦେଖିଣ ମଚ୍ଛନାହା
ଅଧର ପୁଷ୍ଟ କରି ସେ ଲଲାଟେ ତାଡଇ ବେନିବାହା ।୫୦
ଦ୍ରୋପତୀ ଅଞ୍ଚଳ କୀଚେକ ଧରିଅଛି କରେ
ବିକଳେ ପାଞ୍ଚାଳୀ ଯେ ରୋବଇ ଉଚ୍ଚସ୍ୱରେ ।୫୧
ସଇରିନ୍ଧ୍ରୀ ବୋଇଲେ ରାୟେ ଶୁଣିମା ମଚ୍ଛପତି
ତୋହୋର ରାଜ୍ୟେ ମୋତେ ହୋଇଲା ଅନୀତି ।୫୨
କାହାର ତହିଂ ଅବା କେ ସେବା ନ କରଇ
ପ୍ରଭୁପଣ ହୋଇଲେ କି ବଳତ୍କାର କରଇ ।୫୩
ରାଜାଂକର ଧର୍ମରାଜ୍ୟେ ଜାଣିମା କେମନ୍ତେ
ଅନାସ୍ତକଇଂ ସଦୟା ଯେବେ ଉପୁଜଇ ଅନୁବ୍ରତେ ।୫୪
ପରଜା ତପୋଧନ ଅନାସ୍ତ ନିରିମାଖୀ
ଶରଣ ସମ୍ପଦ ରାଜ୍ୟ ରାଜାହିଂ ସେ ରଖି ।୫୫
ମହାକ୍ରୋଧ ଅବସ୍ଥା ହୋଇ ସଇରିନ୍ଧ୍ରୀ ଯେ ପୁଛି
କୀଚେକ ଯେ ମୋତେ ବଳାତ୍କାରେ ହରୁଅଛି ।୫୬
ବିରାଟ କୋପକଲା ସଇରିନ୍ଧ୍ରୀ ବାକ୍ୟ ଶୁଣି
ଦେଖା ମୋଢ଼ୀ ଦୋଚାରୁଣୀ ପ୍ରକୃତି ଓଚ୍ଛବାଣୀ ।୫୭
ଯେ ମୋହୋର ଭାରିଯାର ଅଟଇ ଭୃତ୍ୟଦାସୀ
ଅଗ୍ୟାଂନେ କୀଚକ ଯେହା ଛାରକଇଂ କିଂପେ ରସି ।୫୮
ଯାହାର ବାହୁବଳେ ମଚ୍ଛଦେଶ ମଘଦେଶ ବେନିରାଜ୍ୟ
ତାହାର ବଲ୍ଲଭୀ ହୋଇଲେ ଭୁଞ୍ଜିବୁ ଅଇଶ୍ୱର୍ଯ୍ୟ ।୫୯
ଲେଞ୍ଚେ ପ୍ରୀତି ହୋଇଲେ ଆପଣେ ହୋୟେ ହୀନ
ଅମାର୍ଗେଣ ପଶିଲେ ବପୁ ହୋଇବାକ କ୍ଷୀଣ ।୬୦
କହୁଂ କହୁଂ କୋପିତ ଯେ ମଚ୍ଛ ଅଧିକାରୀ
ରାଗେ ବୋଇଲା କୀଚେକ ସଇରିନ୍ଧ୍ରୀକି ନିଅ ବାଳ ଧରି ।୬୧
ନିରାଧାର ବଚନେ ସାନନ୍ଦ ତାହାର ମତି
ସଇରିନ୍ଧ୍ରୀ ଭୁଜ ଧରି ଉଚ୍ଛୁଡଇ କୀଚେକ ସେନାପତି ।୬୨
ରାଜାର ହରଣ କଲେ କି ବ୍ରତଇ ଆର କେହି
କେବଣ ସ୍ୱାମୀ ଲୋ ଅଛଇ ତୋର କାହିଂ ।୬୩
କୀଚକ ଉଚ୍ଛୁଡନ୍ତେ ନ ଚଳଇ ସଇରିନ୍ଧ୍ରୀ
ଯେସନେକେ ନିଶଙ୍କେ ରହଇ ମେରୁଗିରି ।୬୪
ନିଅରେ କୀଚକ ବୋଲା ବିରାଟ ପୁଣ ପୁଛି
ହୋଇଲା ତୋହୋର ଭାରିଯା କେ ତାହାକଇଂ ରଖି ।୬୫
ବିରାଟର ବଚନେ କୀଚେକ ଉଚ୍ଛୁଡାଇ ତାର କର
ଯେସନେକେ ନିକମ୍ପ କଣୟ ଗିରିବର ।୬୬
ସଇରିନ୍ଧ୍ରୀର ଅବସ୍ଥା ଦେଖିଣ କୋନ୍ତଭଟ୍ଟେ
ଧର୍ମ ଧର୍ମ ସୁମରି ବସିଲେ ବଦନ ହେଠେ ।୬୭
ଭୋ କୃଷ୍ଣ ପ୍ରତିକାର କରସି ବାସୁଦେବ
ଯେହିକ୍ଷଣି ବିରାଟର ସମ୍ପଦ ନାଶଯିବ ।୬୮
ଭୋ ଦେବ ନାରାୟଣ ପାରିକର ବଇଦେହୀ ସାଇଂ
ଭ୍ରାଥମାନେ ମୋହୋର ଯେହା ନ ଦେଖନ୍ତୁ କେହି ।୬୯
ଭୀମ ଅର୍ଜୁନ ଦେଖିଲେ ନାଶଯିବ ବିରାଟ
ନିମିଷେକ ବଧ କରିବେ ଯେହାର ସମରାଷ୍ଟ୍ର ।୭୦
ମୁହିଂ ଦୁର୍ଗତି ବଞ୍ଚିଅଛି ଯେହାର ପୁରେ ଥାଇ
କୀଚେକର ଦୋଷେ ତ ନାଶଗଲା ଯେହି ।୭୧
କୋନ୍ତେ ବୋଇଲେ ବିରାଟ ଯେକଥା ନ ଯୋଗାଇବାକୁ
ତୁ ଯେ ଦଣ୍ଡଧାରୀ ଅନୀତି ନିବର୍ତ୍ତ କରିବୁ ସବୁ ।୭୨
ଆହୋ ବିରାଟ କ୍ଷୀରୋଦ୍ର ଲଂଘିଲେ କି ପୃଥୀ ହୋୟେ ରକ୍ଷା
ଶିବ ସମ୍ପଦ ନ ପାଇଲେ କି ପୂରୋଇ ମନୋବାଞ୍ଛା ।୭୩
ଷଣ୍ଢ ପ୍ରହାର କଲେ କି ବ୍ରତଇ ହାଦେ ଗାବ
ଧର୍ମ ଲଂଘିଲେ ସଚରାଚର ବ୍ରତଇ କେବଣ ବାଗ ।୭୪
ବିରାଟ ବୋଇଲେ କୋନ୍ତେ ଅନୀତି କି ଯେ କଥା
କେବଣ ଭାଗ୍ୟ ଯେହାର ଠାକୁରଂକର ହୋଇବ ବନିତା ।୭୫
ପ୍ରୟାଗେ ଝାସି ସେ ଯାହା କରିବ ମନବାଞ୍ଛା
କୀଚକ ପ୍ରସନ୍ନେ ପ୍ରାପତ ହୋଇବ ଯେହାର ଇଚ୍ଛା ।୭୬
ଘୃତ ଭୋଜନ ପାଇଲେ କି ତେଜ୍ୟା କରନ୍ତି ବହନି
ଭାରା ନିବାରଣ ହୋଇଲେ କି ବିସରଇ ମେଦିନୀ ।୭୭
ପ୍ରାପତ ନିଧି କେ ପୁଣ ପେଲାଇବ ପାଦେ
ବିପୁଳ ଭୋଗ ଭୁଞ୍ଜିବ ସଇରିନ୍ଧ୍ରୀ କୀଚକର ପରସାଦେ ।୭୮
ବିରାଟେ ବୋଇଲେ କୋନ୍ତେ ଅତି ପୁଣ୍ୟ କଲେ ସୁନ୍ଦର
ହୁଅନ୍ତି ଯୁବତୀ
ଅତି ପୁଣ୍ୟେଣ ସୁନ୍ଦର ପୁରୁଷ ପାବନ୍ତି ।୭୯
ଅତିହିଂ ପୁଣ୍ୟେଣ ସେ ହୋଅନ୍ତି ଅହିସୁଲକ୍ଷଣୀ
ଅତି ପୁଣ୍ୟେ ସେ ଧନ ସନ୍ତାନ ହୁଅନ୍ତି ପୁଣି ।୮୦

ଯେ ଯେ ସୃଷ୍ଟିରୀ ପାଇଲା ସୁପୁରୁଷ
ପ୍ରଜାପତିର ଲେଖନ ପ୍ରାପତ ହୋଇଲା ଅବଶ୍ୟ ।୮୧
ତିରୀଂକର ତିନିଦଶା କ୍ଷଣେକେ ଲେଉଟଇ
କୀଚକ ସଇରିନ୍ଧ୍ରୀ ହୋଇଲା ଯେତେକାଳ ଭେଟଇ ।୮୨
ଗୋବିନ୍ଦ ନାମଗୋଟି ଧରି ମଉନବ୍ରତ କୋନ୍ତେ
ଭୋ ଦଇବ ବିହିଲୁ ଆଣି ଯେତେଦୂର ପରିଯନ୍ତେ ।୮୩
ମହା ଅନଳ ବିଦାରି ଜାତ ଯେବଣ ଜିଷ୍ଣୁସେନୀ
ଯେତେଦୂର ପରିଯନ୍ତେ ତାହାକୁ କଲା ହାନିମାନି ।୮୪
ସଇରିନ୍ଧ୍ରୀ ବୋଇଲେ କ୍ଷଣେ ଅବଧାରୀବା କୋନ୍ତେ
ସଭାରେ ନ୍ୟାୟ ବିଚାରେ ତୁମ୍ଭନ୍ତ ପ୍ରଶଂସନ୍ତି ଜଗତେ ।୮୫
ବିରାଟ ରାଜ୍ୟରେ ଗୋସାଇଂ ମୁଂ ଅଟଇ ନିରିମାକ୍ଷୀ
ମୁହିଂ ଅନାସ୍ଥୁଣୀ ମୋହୋର ପାଇଂ କ୍ଷଣକେ ହୁଅ ସାକ୍ଷୀ ।୮୬
ଧର୍ମ ବିଚାରଣା ତୁମ୍ଭେ ସମସ୍ତ ଠାବେ କହ
ମୁହିଂ ଦୁଖୀ ପାଇଂ କିଂପେ କଥାଯେ ନ କହ ।୮୭
ଧର୍ମକଇଂ ତଳଯେ ଯେ କରିବାକ କ୍ଷଣେ
ତୁମ୍ଭେ ଥାଉଂ ହରିବ ମୋତେ କୀଚକ ମହରାଣେ ।୮୮
ଯୁଝେଷ୍ଟିଂକ ସମାନେ ତୁମ୍ଭଂକୁ ବିରାଟ କରଇ ସେବା
କୀଚକର ହରଣୁ ଗୋସାଇଂ ମୋତେ ପାରି କରିଦେବା ।୮୯
ବହୁତ ବିନୟେ ସଇରିନ୍ଧ୍ରୀ ଅନେକ ତୁଷ୍ଟି ବୋଲି
କୋନ୍ତଂକର ମୁଖ ଚାହିଂ ଶୁତିଲା ଗଡ଼ଘାଲି ।୯୦
କୋନ୍ତେ ବୋଇଲେ ତୁ ଶୁଣସି ସଇରିନ୍ଧ୍ରୀ
ରାଜା ହରିଲାର ତୁ କାହାକୁ କରିବୁ ଗୁହାରି ।୯୧
ତୋହୋର କୃତେଣ ତୁ ଯେ ଅନେକ ସହିଲୁ
କର ତୋହୋର କାର୍ଯ୍ୟ ଆମ୍ଭେ ପ୍ରତକ୍ଷେ ଦେଖିଲୁ ।୯୨
ସଇରିନ୍ଧ୍ରୀ ବୋଇଲେ ଗୋସାଇଂ ମୁଂ ନୋହୋଇ ଅନାସ୍ଥୁଣୀ
ମୋତେ ରଖିବାକୁ ଅଛନ୍ତି ଚନ୍ଦ୍ରସୂର୍ଯ୍ୟ ବେନି ।୯୩
ପଞ୍ଚ ଗନ୍ଧର୍ବେ ଅଟନ୍ତି ମୋର ନିଜ ପତି
ମୋହୋର ଅଭିମାନ କ୍ଷଣେହେଂ ନ ସହନ୍ତି ।୯୪
ନ ପୋଷନ୍ତି ନ ନାଶନ୍ତି ନ ସହନ୍ତି ପରହରଣ
ଯେ ମୋତେ ହରିବ ଅବଶ୍ୟ ଘେନିବେ ତାର ପ୍ରାଣ ।୯୫
ସଇରିନ୍ଧ୍ରୀର ବଚନେ କୋନ୍ତଭଟେ ଯେ ବୋଇଲେ
ସେ ପଞ୍ଚ ଗନ୍ଧର୍ବେ ତୋର ଜୀଉଂ ଜୀଉଂ ମଲେ ।୯୬
ସଇରିନ୍ଧ୍ରୀ ବୋଇଲେ ସେ ଦେଖିଲା ବେଳେ ନିନା
କୋନ୍ତେ ବୋଇଲେ ସେ ତୋତେ ରକ୍ଷା କରନ୍ତୁ କିନା ।୯୭
ବିରାଟ ବୋଇଲେ ଶତେ ସିଂଘର ଯାହାର ପରାକ୍ରମ
ଯାହାର ନାମ ଧରିଲେ କାଳଦଣ୍ଡ ଛାଡଇ ଯେ ଯମ ।୮୯
ଗନ୍ଧର୍ବେ ତୋହୋର ଛାର ଲୋ କେତେକ ମାତ୍ର ବାଇ
କୀଚ୍ଚେକକୁ ବଳ ଯେ ଅଛନ୍ତି ଶତେ ଭାଇ ।୯୯
ସଇରିନ୍ଧ୍ରୀ ବୋଇଲେ ରାୟେ ଶୁଣିମା ମଚ୍ଛପତି
ପୁରୁଷ ମରାଇ ମୋତେ ନ ଦେବ ଅପଛାତି ।୧୦୦
ବିରାଟ ବୋଇଲେ ମୋତେ ଯେମାନ ନ ଡରା
ତହିଂକି ଡରଇ କି କୀଚ୍ଚେକ ମହାବୀରା ।୧୦୧
ସଇରିନ୍ଧ୍ରୀ ବୋଇଲେ ତୁମ୍ଭେ ଶୁଣିମା ସଭାଜନେ
ଉର୍ଦ୍ଧ୍ୱକଇଂ ସାକ୍ଷୀ କରଇ ଦେବୀ ବିକ୍ରମ ବଚନେ ।୧୦୨
କଷା ବସନ ପରିହରଣେ ତାର ନ ଦିଶଇ ଅଙ୍ଗ
ସାକ୍ଷୀ କରନ୍ତେ ତହିଂ ଦିଶିଲା ଅଷ୍ଟାଙ୍ଗ ।୧୦୩
ଦେଖିଣ ଚକିତ ହୋଇଲେ ସଭାଜନ
ବୋଇଲେ ସାଧୁ ସାଧୁ କୀଚକ ରେ ଜୀବନ ତୋର
ଧନ୍ୟ ।୧୦୪
ପୁଣି ସାକ୍ଷୀ କରନ୍ତେଣ ଦିଶିଲା ବେନିଭୁଜ
ମୃଣାଳ ନାଳ ସହିତେ ଯେହ୍ନେ ଦିଶଇ ସୁରଙ୍ଗ ପଂକଜ ।୧୦୫
ଦେଖିଣ ମୂର୍ଚ୍ଛାଗଲେ ସର୍ବଜନେ ଚାହିଁ
ଯେହେନ୍ନେକ ସୁଲକ୍ଷଣୀ ଦେଖିଲାତ ଆମ୍ଭର ନାହିଂ ।୧୦୬
ଯେହେନ୍ନେକ କରିଣ ସେ ସ୍ରିଜିଲା ବିଧାତା
ଜଗୁଜନ ମୋହିନୀ ତୋତେ ପ୍ରାପତ ବନିତା ।୧୦୭
ତ୍ରଇଲୋକ୍ୟ ମୋହିତେ ସାମରଥ ଯେବଣ ବାଳୀ
ଯେତେକାଳେ ମିଳିଲା ତୋହୋର ମନର ହିଆଳୀ ।୧୦୮
ନବସୃଷ୍ଟିର ଚିନ୍ତା ଛାଡିଣ ପ୍ରଜାପତି
ତୋତେ ସେ ସ୍ରିଜିଲା ଅଛି ଅମୂଲ୍ୟ ରତ୍ନକାନ୍ତି ।୧୦୯
ସଇରିନ୍ଧ୍ରୀର କର ଧରିଣ ଯେ କୀଚ୍ଚେକ ବୋଇଲା
ଆସ୍ଥାନକୁ ଅଇଲୁ ତୋତେ ବିରାଟ କି ରକ୍ଷାକଲା ।୧୧୦
ବିରାଟ ବୋଇଲା ଆୟି ନ ଭାଳ ଆନ କିଛି
ବିପୁଳ ଭୋଗ ଭୁଞ୍ଜ ଭଜିଲା ତୋତେ ଲକ୍ଷ୍ମୀ ।୧୧୧
ଚଳଇ କୀଚକ ଯେ ସଇରିନ୍ଧ୍ରୀ କର ଧରି
ବଡ଼ଇ ସିହାଣୀ ତୁ ଅଟୁ ଗୋ ଚତୁରୀ ।୧୧୨
ରେ ପ୍ରାଣ ବଲ୍ଲଭୀ ମୋହୋର ପୁରକୁ ଯିବା ଆସ
ଅନେକ ପ୍ରକାରେ ରଙ୍ଗରସ କରିବା ଅଭିଳାଷ ।୧୧୩
ସଇରିନ୍ଧ୍ରୀ ବୋଇଲେ ହୋ ଶୁଣ ବୀରମଣି
ଆଜକ ମୂଢ ମୋତେ ପ୍ରସର ହୋଉ ରାୟେଣୀ ।୧୧୪

ବରଷେ ପରିଯନ୍ତେ ମୋହୋର ନାହିଂ ପୁରୁଷର ମେଳା
କେଶବାସ ମଳିଣ ଯେ କାଯେ ମୋ ଅପଖଳା ।୧୧୫
କୀଞ୍ଚକ ବୋଇଲା ଯିବା ଗୋ ମୋହୋର ପୁରକୁ
ସହସ୍ରେ ମୁଦୁସୁଲୀ ମାଜଣା କରିବେ ଜାଣ ତୁକୁ ।୧୧୬
ସଇରିନ୍ଧ୍ରୀ ବୋଇଲେ ମୁଂ ହୋଇଛି ପାକାସ୍ୱତୀ
ଆଜକୁ ହୋଇବ ସର୍ବେ ଚାରି ଦିବସ ଚାରି ରାତି ।୧୧୭
ସତ୍ୟଯୁଗେ ଚାରି ଦିବସ ରଜ ମୁକତକାରୀ
ତ୍ରେତୟାଯୁଗେ ପାଞ୍ଚ ଦିବସେ ରଜ ମୁକତ ହୋଅଇ ନାରୀ ।୧୧୮
ଦ୍ୱାପର କଳିଯୁଗେ ଚାରିଦିବସ ପରିଯନ୍ତେ
ରଜ ମୁକତ ହୋଅଇ କହିଲେ ଅଗସ୍ତି ତପୋବନ୍ତେ ।୧୧୯
ଆହୋ କୀଞ୍ଚକ ଅଶୁଦ୍ଧ ହୋଅନ୍ତି ଯେବଣ କାମନାରୀ
ପ୍ରଥମ ଦିନ ଛୁଇଂଲେ ଚାଣ୍ଡାଳ ଛୁଇଂଲା ଦୋଷସରି ।୧୨୦
ଯେତେ ବସ୍ତ୍ରେ ଛୁଇଂଲେ ତେତେ ବସ୍ତ୍ରେ ସ୍ନାହାନ ଯେବେ କରି
ତେବେ ସେ ଶରୀରୁଂ ପାତକ ଖଣ୍ଡଇ ତାହାରି ।୧୨୧
ଦୁତୀୟ ଦିବସେ ସେ ଛୁଅଂନ୍ତି ଅଶୁଦ୍ଧ ନାରୀ
ଛୁଇଂଲେ ଅବଶ୍ୟ ସେ ବ୍ରହ୍ମହତ୍ୟା ଦୋଷସରି ।୧୨୨
ସୁବର୍ଣ୍ଣ ଦାନଦିଲେ ତହିଂର ପାପ ତୁଟେ
ନୋହିଲେ ମହାବ୍ୟାଧି ଶରୀରେ ତାର ଘୋଟେ ।୧୨୩
ଅଶୁଦ୍ଧ ଯୁବତୀ ଯେ ଛୁଅଂନ୍ତି ତୃତୀୟ ଦିବସେ
ଲିଂଗଭଗ୍ନ ଦୋଷ ଯେ ଲଭନ୍ତି ସେ ପୁରୁଷେ ।୧୨୪
ଗଙ୍ଗାରେ ସ୍ନାହାନ କଲେ ତୁଟେ ସେ ପାତକ
ନୋହିଲେ ମହାରୋଗ ଘୋଟଇ ଦେହଯାକ ।୧୨୫
ଚତୁର୍ଥ ଦିନ ଯେ ଛୁଅଂତି ଅଶୁଦ୍ଧ ଯୁବତୀ
ଗୋହତ୍ୟା ସ୍ତିରୀହତ୍ୟା ସୁରାପାନ ହୁଅନ୍ତି ବିଶୁଳିପତି ।୧୨୬
ପଞ୍ଚ ମହାପାତକ ଯେ ଚତୁର୍ଥ ଦିନେ ଛୁଇଂଲେ
ପଞ୍ଚମ ଦିବସେ ଶୁଦ୍ଧ ହୋଅଇ ଅଗସ୍ତି ବୋଇଲେ ।୧୨୭
ସଇରିନ୍ଧ୍ରୀ ବୋଇଲେ ତୁ ଯେ ବଳାତ୍କାରେ ବୀର ଛୁଇଂଲୁ
ଆଜ ମୋତେ
ଶିରୀ ଆୟୁ ତୁଟିଲା ତୋହେର ଜୀବଥିବା ପରିଯନ୍ତେ ।୧୨୮
କ୍ଷୁଧାଯେ ପ୍ରାଣୀ ଯେବେ ହେଅନ୍ତି ଆରତ
ନାହିଂତ ଦେଖନ୍ତା ବୀର ବେନିହାଥେ ଭୁକତ ।୧୨୯
ଆହୋ କୀଞ୍ଚକ ବ୍ରାହ୍ମଣ ହୋଇ ଯେବେ ଜଳକୁ ଭୟେକରି
ଛତ୍ରୀ ହୋଇ ଯେବେ ସମରକଇଂ ଡରି ।୧୩୦
ବଦ୍ୟହୋଇ ଯେବେ ଆପଣେ ହୋଇ ରୋଗୀ
ଶରୀର ଗଳିତ ହୋଅଇ ଯେବେ କେଶପଚା ଯୋଗୀ ।୧୩୧
ଦେବତା ହୋଇ ଯେବେ ଅତିହିଂ ହୋୟେ କୋପୀ
ଅତୀୟ ଉତକର୍ମେ ନାଶଯାନ୍ତି ବହୁରୂପୀ ।୧୩୨
ଦୁରାପଦ ଶାଖାଯେ ନାଶଯାନ୍ତି ବୃକ୍ଷେ
ଅସାଧୁ ସଙ୍ଗକଲେ ମହତେ ନାଶଯାନ୍ତି ପ୍ରତକ୍ଷେ
ଅଧର୍ମକର୍ମେ ଯେ ପ୍ରଳୟ ଗଲେ ରକ୍ଷଭକ୍ଷେ ।୧୩୩
ଅତିହିଂ କୃପଣେ ହୋ ନାଶ ଯାଆନ୍ତି ସାଧୁ
ଅତିହିଂ ପ୍ରିୟଭାବେ ନାଶଯାନ୍ତି କୂଳବଧୂ ।୧୩୪
ପୁରୁଷ ହୋଇଣ ଯେବେ ହୋଅଇ ଅବିଚାରୀ
ଯେମାନ୍ତେ ନ ବ୍ରତନ୍ତି ସାରୋକାଦାସ ବିଚାରି ।୧୩୫
ସଇରିନ୍ଧ୍ରୀ କହିଲେ ଯେ କୀଞ୍ଚକର ଅଗ୍ରତେ
ପଣ୍ଡିତ ଲୋକେ ନାଶଯାଆନ୍ତି ଯେହିମତେ ।୧୩୬
ବୃକ୍ଷର ଫଳ ଯେବେ ପ୍ରାପତ ହୁଅଇ କରେ
କିସ ବିଳମ୍ବ ହୋ ତାହା ଭୁଞ୍ଜିବାରେ ।୧୩୭
ଯୁଗତେ କାଲି ମୋହୋର ଶୁଦ୍ଧ ସ୍ନାହାନ ପାଳି
ବେଶ ବେଶନ ହୋଇ ମୁଂ ଆସିବି କାଲି ପ୍ରାନ୍ତଓଳି ।୧୩୮
ଭାବେଣ ଭଣ୍ଡିଲା ସେ ଅଭୟେ ଅପର୍ଣ୍ଣା
ସଇରିନ୍ଧ୍ରୀ ବଚନ ତାକୁ ମୋହବନ୍ଧ ସିନା ।୧୩୯
କୀଞ୍ଚେକ ବିଚାରଇ ହୃଦଗତେ ପୁଣି
ସଞ୍ଚଯେ ନାଗରୀ ଯେ ଧୂର୍ତ୍ତ ବଡ଼ ସିହାଣୀ ।୧୪୦
କୀଞ୍ଚେକ ବୋଇଲା ମୋତେ ଅଛିକିନି ତୋହୋର ଇଚ୍ଛା
କେବଣ ଅଭିମାନେ ମୋତେ କଲୁ ଯେତେକ ଇଚ୍ଛା ।୧୪୧
ସଇରିନ୍ଧ୍ରୀ ବୋଇଲେ ହୋ ତୋହୋର ମୋହୋର ଚୋରି
ଶୃଙ୍ଗାରରେ
ଲଜ୍ଜା ଦୂଷତ ହୋ ଉପୁଜିବ ସଂସାରେ ।୧୪୨
ଆହୋ କୀଞ୍ଚେକ ପଞ୍ଚଗନ୍ଧର୍ବେ ଅଛନ୍ତି ଯେ ମୋହୋର ନିଜ ପତି
ସେହି ମୋତେ ଆଶ କରିଥିବେ ନା ଯୁଗତି ।୧୪୩
ଆସ୍ତାନେ ରାଜ୍ୟର ପରିମୁଖେ ହୋଇଲା ଯହୁଂ ଆଗ୍ୟାଂ
ଗନ୍ଧର୍ବେ ମୋତେ ନିରାଶ ହୋଇବେ ଶୁଣିଣ ପ୍ରତଗ୍ୟାଂ ।୧୪୪
ଆସ୍ତାନେ ବସି ଯହୁଂ ଆଗ୍ୟାଂ ଦିଲେ ରାଜା
କାଲିହୁଂ ତୋହୋର ମୁଂ ହୋଇବି ଭାରିଯା ।୧୪୫
କୀଞ୍ଚେକ ବୋଇଲା ତୁ ଯେ ପଣ୍ଡିତ ସୁଗ୍ୟାନୀ
ଆସିବୁଟି ସଂଗାତ କାଲି ପ୍ରକାଶ ରୟଣୀ ।୧୪୬
ଚଳନ୍ତି ସଇରିନ୍ଧ୍ରୀ ନିଜ ଯେ ଭୁବନେ

କୀଚକ ପ୍ରବେଶ ହୋଇଲା ଆପଣା ଶୟନ ସ୍ଥାନେ ।୧୪୭
ରାତ୍ର ପ୍ରବେଶ ଯହୁଂ ହୋଇଲା ପାଞ୍ଚଘଡ଼ି
ଶ୍ରୀକୃଷ୍ଣା ଅନ୍ତପୁରକୁ ଯେ ନ ଗଲେ ସଇରିନ୍ଧ୍ରୀ ।୧୪୮
ଶ୍ରୀକୃଷ୍ଣା ବିଚାରନ୍ତି ସଇରିନ୍ଧ୍ରୀ ଯେ କୀଚକ ପୁରକୁ ଗଲା
ଚାଣ୍ଡାଳ ଭାଇ ମୋର ତାକୁ ଛାଡିତ ନ ଦିଲା ।୧୪୯
ଆଜର ରାତି ଯେବେ ଯାଉଟି ମୋତେ ଭଲେ
କର୍ମର ସୁଫଳ ମୋର ପ୍ରମାଦ ନ ପଡ଼ିଲେ ।୧୫୦
ଭୋ ଧର୍ମ ଦେବତା ମୋତେ କରିବାକ ରକ୍ଷା
ସର୍ବ ଶୁଭ ବିଧାନେ ମୋର ପୂରାଅ ମନବାଞ୍ଛା ।୧୫୧
ଯେଣେ ଆତଙ୍କ ପାଇଣ ଯେ ଦ୍ରୁପଦର ନନ୍ଦନୀ
ଜଗନ୍ନାଥ ନାମଗୋଟି ହୃଦେ ଚିନ୍ତିଲେ ଜିଷ୍ଣୁସେନୀ ।୧୫୨
ନବର ସିଂଘଦ୍ୱାର କଳଛାଡ ପାଚେରୀ ଭିତରେ
କୋନ୍ତେ ଶୟନ କରିଅଛନ୍ତି ନିଅବକାଶ ମନ୍ଦିରେ ।୧୫୩
ଚଳନ୍ତି ସଇରିନ୍ଧ୍ରୀ କୋନ୍ତଂକ ଶୟନ ଠାବକୁ
ସୁମରନ୍ତି ଭଗବାନ ଉଦ୍ଧରିଧର ମୁକୁ ।୧୫୪
ତୁ ସେ ଭଗବାନ ଭୂତ ଭବିଷ ଗ୍ୟାଂତା
ଆପଣେ ଜାଣତ ଦେବ ମୋହୋର ଅବସ୍ଥା ।୧୫୫
ତବ ଯାତ୍ରା ଦେଖନ୍ତେ ହୋଇଲି ମୁହିଂ ଦୁଖୀ
ଆପାଦ କଷଣୁଂ ମୋତେ ଉଦ୍ଧର ପଦ୍ମଆଖି ।୧୫୬
ଯେ ମୋହୋର ଅବସ୍ଥା କହିବି ସ୍ୱାମୀଂକର ଅଗ୍ରତେ
ନିଶାଯେ କେହି ଦେବ ନ ଦେଖନ୍ତୁ ମୋତେ ।୧୫୭
ଯେବଣ ଉଲୁକ ବିଦ୍ୟା ବ୍ୟାସେ ଦେଇଛନ୍ତି
ତାହା ଅଭ୍ୟାସି ଦେବୀ ଚଳଇ ନିଶାରାତି ।୧୫୮
ଜୟତୁ ନାରାୟଣ ରାଜୀବ ଲୋଚନ
ଜଗୁଜନ ସୋଦର ନାଥ ମୁଂ ତୋହୋର ଶରଣ ।୧୫୯
ଯୁଗାନ୍ତକ ନାଥ ତୁ ସ୍ୱୟଂ ପରମଯୋଗୀ
ଦଣ୍ଡଛତ୍ର ସାଧନ ପ୍ରସନ୍ନେ ମହାଭୋଗୀ ।୧୬୦
କୀଚକର ବଳାତ୍‌କାରୁ ମୋତେ ଉଦ୍ଧରିଧର ଚକ୍ରପାଣି
ଅଥବା ଶିରକମଳ ପକାଇବି ହାଣି ।୧୬୧
ତୁଳସୀର ବଲ୍ଲଭ ଉଦ୍ଧରିଧର ମୋତେ
ଶୂଦ୍ରମୁନି ସାରୋଳା ଦାସ ପ୍ରଣପତ୍ୟ ନାରାୟଣ ପାଦଗତେ ।୧୬୨

■■

## ପଞ୍ଚପାଣ୍ଡବଙ୍କ ନିକଟରେ ଦ୍ରୌପଦୀଙ୍କ କୀଚକ ମୃତ୍ୟୁର ଗୁପ୍ତ ପରାମର୍ଶ

ବ୍ୟାସେ କହିଛନ୍ତି ସେ ଯେ ପାଦୁକା ମନ୍ତ୍ରଗୋଟି
ଯେକା ପାଦକରେ ଯାଇଂଣ କୋନ୍ତଂକ ପୁରେ ଭେଟି ।୧
ନିଜ ମନ୍ଦିରେଣ ଯେ ଶୟନ ଧର୍ମସୁତେ
ନିଦ୍ରା ଘୁମିତ ନେତ୍ରେ ଶୁତିଲେ ନିଚିନ୍ତେ ।୨
କଷା ବସନ ପରିହରଣ କଷାବସନ ପାଡି
ଶିର ସୀମସ୍ଥାନେ ଦେଇଛନ୍ତି ଅକଳିତ ପଶାସାରି ।୩
ନିର୍ଦ୍ଧୁମ ଅଗ୍ନି ଜାଣି ବିକଶିତ କାୟେ
ଦେଖିଣ ସଇରିନ୍ଧ୍ରୀ ଯେ ଲଲାଟେ କରଦିୟେ ।୪
ସ୍ୱାମୀ ରାଜାଧି ରାଜ୍ୟେଶ୍ୱର କଇଛା ଜଗଜେଠି
ଯେହି ମହୀମଣ୍ଡଳେ ବିକାଶଇ ଯାହାର ନାମଗୋଟି ।୫
ସ୍ୱାମୀ ଲକ୍ଷେ ନୃପତି ଯାହାର ଚରଣ ତଳେ ନିତ୍ୟେ ବନ୍ଦେ
ନାରାୟଣ ବିନୋପଇ ଯାହାର ପଦ୍ମପାଦେ ।୬
ନାଗରାଜା ଅନନ୍ତ ତ୍ରଇଲୋକେଶ୍ୱର ସ୍ୱାମୀ
ଧର୍ମବଳେ ମୋକ୍ଷ ଯାହାର ନଘୋଷ ସ୍ୱର୍ଗଗାମୀ ।୭
ସ୍ୱାମୀ ଗୋରୁଚୋରୀ କରିଣ ଯେ ଅନିଳକ ବସୁ
ତିନିଯୁଗ ଅନ୍ଧ ସେ ତବ ଦରଶନେ ଚକ୍ଷୁ ଦିଶୁ ।୮
ସ୍ୱାମୀ ଅହିଂସା ଅପାପୀ ଅଜାତଶତ୍ରୁ ହେଟି
କର ନେଉଟାନ୍ତେ ଯାହାର ନେଉଟଇ ନବସୃଷ୍ଟି ।୯
ସ୍ୱାମୀ ତୋହୋର ଚରଣ ରେଣୁ ଶିରେ ଘେନି
ଶରୀର ନିକଳଂକ ହୋଇଲେ ନିଷାଦର ପୁତ୍ରତିନି ।୧୦
ସ୍ୱାମୀ ହାଥର ସୁଖରେ ଯେ ଖେଳିଲ ତୁମ୍ଭେ ପଶା
ସର୍ବ ସମ୍ପଦ ଦେଇ କାହାର ମନୀଷା ।୧୧
ବିଳାପ କରିଣ ଦେବୀ ସେ ସୁମରଇ ବିଧାତା
ତୋହୋର ସେ କଲା ହୋ ଯେସନ ସିରିଜିତା ।୧୨
କର୍ମର ଘଟଣ ଯେ ଫଳଇ ଅବଶ୍ୟ
ବଞ୍ଚିତ ନୁଆରିଲେ ଯେବଣ ଧର୍ମଶିଷ ।୧୩
ନାରାୟଣ ପଦ୍ମପାଦେ ସେବଇ ଯାହାକୁ
କାଳେଣ ଶାସ୍ତି ପୁଣ ବିହିଲା ତାହାକୁ ।୧୪
ପୁଣ ପୁଣ ନିରୋପି ଯେ କାରୁଣ୍ୟ କରଇ ପାଞ୍ଚାଳୀ
ଚାହିଁଲେ କୁନ୍ତଭଙ୍ଗେ ନୟନ ନିରୋଳି ।୧୫
ସଇରିନ୍ଧ୍ରୀ ପ୍ରଣପତ୍ୟ କୋନ୍ତଂକର ପଦ୍ମପାଦେ
ସଧୀର କରି ବଚନ ଦେଉଛନ୍ତି ହାଦେ ।୧୬

କିସଅର୍ଥେ ବିଜେକଲୁ ଗୋ ମୋ ପୁରକୁ ନିଶାକାଳେ
ବିରାଟର କଟୁଆଳେ ଗୋ ଭ୍ରମନ୍ତି ଯେତେବେଳେ ।୧୧୭
ଦେଖିଲେ ବୋଲିବେ ଗୋ କୋଳନ୍ତେ ବଡ଼ ମନ୍ଦକୃତ୍ୟ କଲେ
କାହାର କୁଳବଧୂ ଝିଅନ୍ତ ହରିଣ ଆଣିଲେ ।୧୧୮
ବାରତା ପାଇବେ ସେ ମତ୍ସ୍ୟଦେଶ ଆଧିପତି
ତୋହୋରେ ଆମ୍ଭନ୍ତ ହୋଇବ ବହୁତ ଅପଖ୍ୟାତି ।୧୧୯
କୀଚକର ବଳବନ୍ତକାର ଗୋ ଅଇଲୁ ସିନା କହି
ପ୍ରତକ୍ଷେ ବେନିତୋଳେ ଦେଖିଲୁ ଆମ୍ଭେ ଥାଇ ।୧୨୦
ବଳବୀର୍ଯ୍ୟ ବୁଡ଼ାଇ ଆମ୍ଭେ ହୋଇଲୁ ଭୃତ୍ୟକାରୀ
ଆମ୍ଭର ବଳେ ତୋତେ କି ହୋଅଇ ରକ୍ଷାକରି ।୧୨୧
ସଇରିନ୍ଧ୍ରୀ ବୋଇଲେ ତୁମ୍ଭେ କହିଲ ଆସ୍ଥାନେ
ଆନବାକ୍ୟ କହିଲେ ଜାଣିମେନା ସଭାଜନେ ।୧୨୨
କାଳେ ବୋଲିବ ନା କୀଚକକୁ ତୋହୋର ଇଚ୍ଛା
ଯତନେ ସଭାକୁ ସେ କରିଗଲୁ ପୁଚ୍ଛା ।୧୨୩
ଯେସନେକ ବିଚାର କରନ୍ତି ପଞ୍ଚୁବୀରେ
ତେଣୁକରି ଦେବ ଅଇଲି ମୁହିଂ ତୁମର ସନିଧ୍ୟରେ ।୧୨୪
କୋଳନ୍ତେ ବୋଇଲେ ଆମ୍ଭେ ସଭାରେ କହିଲୁଂ ଯେବଣ କଥା
ସେ ଆମ୍ଭର ବାକ୍ୟଗୋଟି କି ହୋଇବ ଅନ୍ୟସ୍ତା ।୧୨୫
ଶତେସିଂଘର ବଳ ଯାହାର ପ୍ରାକର୍ମ
ଆମ୍ଭର ବଳେ ତାହା ତୁଲେ କରିନୋହେ ସାଂଗ୍ରାମ ।୧୨୬
ଛାଡିଲୁ ବଳବୀର୍ଯ୍ୟ ଉପେକ୍ଷିଲୁ ସର୍ବଲଜ୍ଜା
ଅଥାନ୍ତର ହୋଇ ତୁ କୀଚକର ହୋଇବୁ ଭାରିଯା ।୧୨୭
ବାଚା ବିଚଳିତ ସେ ଯେବଣ ପୁରୁଷା
ଜୀବନ ନ ରହଇଟି ବିଅର୍ଥକୁ ଯାଇ ମନୁଷ୍ୟା ।୧୨୮
କୋଳନ୍ତେ ବୋଇଲେ ଯେଥେ ତୁଗୋ କ୍ଷଣେହେଂ ନ ରହ
ପାରିଲେ ଭୀମାର ଆଗେ ତୁ ଗୋ ଯେ କଥାମାନ କହ ।୧୨୯
ସେ ତୋତେ ଦୟାକଲେ ରକ୍ଷା କରିତ ପାରି
ଆଗୋ ବଲ୍ଲଭ ଯେ ଗୋପ୍ୟେ ତାହାକଇଂ ମାରି ।୧୩୦
ବ୍ୟାଘ୍ର ମାଲ ମାଇଲା ଦେଖିଲୁ ପ୍ରାକ୍ରମ
ଯାଇଂଣ କହ ତୋତେ ରକ୍ଷାକରୁ ଗୋ ଭୀମ ।୧୩୧
ଆହୋ ଚଇତନ କୋନ୍ତଂକର ତହୁ ନିରାଧାର ବାକ୍ୟ ଶୁଣି
ନିରାଶେ ଗବନ କରଇ ଦେବୀ ଦେଢ଼ ପ୍ରହର ରୟଣୀ ।୧୩୨
ନାରାୟଣ ସୁମରିଣ ଯେ ଦେବୀ ହୃଦଗତେ
ଚିନ୍ତାଯେ ଆରତ ଯେ ଦ୍ରୋପଦର ଦୁହିତେ ।୧୩୩

ନବର ପଚ୍ଛିମଦ୍ୱାରେ ସେ ନାଟପୋ ମନ୍ଦିର
ସଇରିନ୍ଧ୍ରୀ ପ୍ରବେଶ ଯାଇଂ ବୃହନ୍ନାରୀ କତିର ।୧୩୪
ଦିବ୍ୟ ପଲଂକରେ ଶେଯ ଶେଯାଇ ସୁପାତି
ମାଣିକ୍ୟର ଦୀପମାନ ଜଳଇ ଚଉକତି ।୧୩୫
ଆନନ୍ଦା ଉତ୍ତାର କାନ୍ତିନୀ ବିଂଝ୍ୟବାଳୀ
ଦୁଇକତିରେ ଚାରିକନ୍ୟା ମଧରେ ବୃହନ୍ନାରୀ ।୧୩୬
ନଇଂପଡ଼ି ସଇରିନ୍ଧ୍ରୀ ଯେ ବଦନ ନିରେଖି
ବାବୁ କୋଟି ବୃହନ୍ନାରୀ ଶରଦ ଚନ୍ଦ୍ରମୁଖୀ ।୧୩୭
ବାରଣ ନ ଗଲା ମୋତେ ତୋହୋର ମୁଖଗୋଟି
ଯେହେନ୍ନେକ ରୂପ ତୋତେ ଶୋହିଲା କିରୀଟୀ ।୧୩୮
ବିଚାରି ଶ୍ରୀକରେ ଦେବୀ ଘେନିଲେ ଦୀପାବଳୀ
ଅର୍ଜୁନ ବଦନ ଦେବୀ ଚାହିଂଲେ ନିରୋଳି ।୧୩୯
ମୁହିଂ ତୋହୋର ଆପଦ ଘେନିଯାଇଂ କିନା ପାଥ
ଯେ ରୂପଗୋଟି ତୋତେ ଶୋହିଲା ପ୍ରାଣନାଥ ।୧୪୦
ସଧୀର ହୋଇ ଯେ ଉଠଇ ସର୍ବସାଚୀ
ପାଞ୍ଚାଳୀ ମୁଖ ଚାହିଂ କରଇ ପାଥ ବାଚି ।୧୪୧
ଆଗ୍ୟାଂତବାସ ନିକଟ ହୋଇଲା କିଗୋ ଦିନ
ଠାକୁରଂକର ଆଗ୍ୟାଂ କି ହୋଇଲା ଉଦିତ ବିଦ୍ୟମାନ ।୧୪୨
ସଇରିନ୍ଧ୍ରୀ ବୋଇଲେ ତୁମ୍ଭେ ଶୁଣିମା ଫାଲଗୁନି
ଅରୁଣ ଉଲ୍ଲୋଳ ଜାଣି ନୟନୁଂ ନୀର ବହୁଅଛି ପୁଣି ।୧୪୩
ବାବୁ ଯେ ମୋହୋର ବାକ୍ୟଗୋଟି ଶୁଣ ଧନୁର୍ଜୟେ
କୋଟିୟେ ରଷି ଘେନି ଯଗ୍ୟଂ କଲେ ଦ୍ରୋପଦେଶ୍ୱର ରାୟେ ।୧୪୪
ବ୍ରାହ୍ମଣ ଯେ ରଷି ବେଦବ୍ୟାସ ମହାତମା
ମହା ଅନଳ ବିଦାରି ସେ ଜାତକଲେ ଯେକ ବାମା ।୧୪୫
ଯାଗରୁ ଜାତହୋଇ ନାମ ମୋ ଜିଘ୍ନସେନୀ
ଦୁଜେ ସ୍ୱୟେମ୍ବର କଲେ ତାତ ଲକ୍ଷେକ ନୃପତି ଘେନି ।୧୪୬
ମହାଲାଖ ରାଧାଚକ୍ର ତୁମ୍ଭେ ବିନ୍ଧିଲ ଯେ ପାଥ
ଲକ୍ଷେକ ରାଜାର ତୁଲେ ତୁମ୍ଭେ କଲ ଯେ ଅନର୍ଥ ।୧୪୭
ସବୁରି ଦର୍ପ ଧ୍ୱଂସି ଆଣିଲ ପାଥ ମୋତେ
ନଟକାର ବୃତ୍ତେ ବିଭା ହୋଇଲା ପଞ୍ଚୁଭ୍ରାଥେ ।୧୪୮
ଯେକାଯେ ସହିଲି ମୁଂ ପାଞ୍ଚଂକରି ଆର୍ଦ୍ଧୋଳି
ତଥାପିହିଂ ଉବୁରି ନ ପାରିଲି ମୋହୋଭଳି ।୧୪୯
ବାବୁ କନ୍ଦମୂଳ ଆହାରେ କାଳେକ ବନେ ଦୁଖୀ
କେଶ ଆକ୍ରଷଣ କଲା ସଭାରେ ଧୁଶାସନ
ମୋତେ ସମସ୍ତେହିଂ ଦେଖି ।୧୫୦

ବାବୁ ଚାହା ସହି ମୁଂ ଆଦରିଲି କର୍ମ
କାହାକୁ କହିବି ମୁହିଂ ଯେହେନ୍ନେକ କ୍ଷଣେ
ହୋଇଲଇଂ ଜନ୍ମ ।୫୧
ଆହୋ ବାବୁ ସଂକୋଚନର ନନ୍ଦନ ଯେ ବିରାଟର ଶଳା
ଶ୍ରୀକୃଷ୍ଣାର ସହୋଦ୍ର ସେ କୀଚ୍ଚକ ମହାବଳା ।୫୨
ସୁରାପାତ୍ର ଲେଖଗୋଟି ଦେଇ ମୋତେ ତାହାର
ତହିଂକି ପଠିଆଇଲେ ଶ୍ରୀକୃଷ୍ଣା
ଦେଖିଣ ପାମର ମୋତେ କଲାକ କାମତୃଷ୍ଣା ।୫୩
ଅନ୍ତେଶ୍ୱର ପୁରେ ଚାଣ୍ଡାଳ ମୋତେ ଧଇଲା ଆସି ବଳେ
ରାଗେଣ ଯାଇ ମୁଂ ହୋଇଲି ବିରାଟର ସଭାତଳେ ।୫୪
ବିରାଟେ କୋନ୍ତେ ବସିଅଛନ୍ତି ଆସ୍ଥାନେ
ଅନେକ ପାରିଦଣ୍ଡ ଯେ ବହୁତ ରାଜାମାନେ ।୫୫
ଦେଖିଣ କୋପେ ବୋଇଲେ ମଚ୍ଛ ଅଧିକାରୀ
ନିଅରେ କୀଚ୍ଚକ ଯେ ସଇରିନ୍ଧ୍ରୀ ବାଳ ଧରି ।୫୬
କହୁଂ କହୁଂ କ୍ରୋଧ ଯେ ବଢ଼ଇ ଜିଷ୍ଣୁସେନୀ
ଅର୍ଜ୍ଜୁନ ପୋଛଇ ତାହା ଝୀନବସ୍ତ୍ର ଘେନି ।୫୭
ବାବୁ ବିରାଟର ବଚନେ ମୁଂ ପୁଛାକଲି କୋନ୍ତଂକୁ
ସେ ବୋଇଲେ ଅଙ୍ଗଭୋଗ ଦିଅ ଯା କୀଚ୍ଚକକୁ ।୫୮
ଅନାସ୍ତର ବାନ୍ଧବ ନାଥ ଅଟୁ ପାର୍ଥ ତୁହି
ତୁ କିସ ବୋଲିବୁ ନାଥ ଅଇଲି ତୋତେ କହି ।୫୯
ବୃହନ୍ନାରୀ ବୋଇଲେ କୋନ୍ତେ ସଭାରେ କହିଲେ ଯାହା
ପାଷାଣର ରେଖ କେ ଅନ୍ୟସ୍ତା କରୁ ତାହା ।୬୦
ଆମ୍ଭେ ଯେବେ ତାହାଂକର ବଳେ ଭାଂଗ ବଚନ
ଆନେ ସମ୍ପଦ ଦେଇ କିଂପେ ବୁଲନ୍ତୁ ଘୋରବଣ ।୬୧
ପଶାଯେଣ ସମସ୍ତ ସମ୍ପଦ ହାରିଅଛନ୍ତି ଯେ ସେହି
ସଭାରେ ଆନଭାଷା ପାରିବେକି କହି ।୬୨
ସେ ଆମ୍ଭର ଠାକୁର ଯେ ଅଟନ୍ତି ଯୁଧିଷ୍ଠିର
ତାହାଂକର ବଚନଗୋଟି ଆମ୍ଭର ନିରାଧାର ହେଟି ।୬୩
ଆମ୍ଭେ ଯେବେ ତାହାଂକର ବଚନ ମେଣ୍ଟନ୍ତୁ
ପଶାକାଳେ ସଭାତଳେ କିଂପାଇଂ ବସନ୍ତୁ ।୬୪
ଆମ୍ଭନ୍ତ ସଭାତଳେ ନେଇ ବସାଇ ଭ୍ରୁଛନା ବୋଲନ୍ତି
କେଶ ଧରି ତୋତେ ନେଇ ବିବସନ କରନ୍ତି ।୬୫
ଆଗ୍ୟାଂ ମାଗୁଅଛୁ ଗୋସାଇଂ ଥିରକରି କହ ବାଣୀ
ଶତେ ଭ୍ରାଥ କଉରୋବ ଆଦିକରି ମାରିବୁଂ ଯେହିକ୍ଷଣି ।୬୬
ମାର ବୋଲି ଆଗ୍ୟା ଯେ ସେ ନ ଦିଲେ କଦାଚିତେ
ସହିଲୁ ଅନେକ ଅବସ୍ତା ତାହାଂକ ନିମନ୍ତେ ।୬୭
ରାଜାର ଯେମନ୍ତ ଆଗ୍ୟାଂ ସେବକର କିସ ଲଜ୍ଜା
ମୁହିଂ ବୋଲୁଅଛି କୀଚ୍ଚକର ହୁଅ ଯା ଭାରିଯା ।୬୮
ସଇରିନ୍ଧ୍ରୀ ବୋଇଲେ ତୁମ୍ଭର ଜୀବନ ହୋଉ ଧିକ
ପଞ୍ଚଛତ୍ରୀ ତୁମ୍ଭେ ତୁମ୍ଭ ଭାରିଯା ମୁହିଂ ଯେକ ।୬୯
ମୋତେ ଆନକଇଂ ଦେଇ ହସ୍ତିନା ଯିବାକ କେମନ୍ତେ
କାହାର ମୁଖ ଚାହିଂବଟି ପୁରୁଷ ଜୀବନ୍ତେ ।୭୦
ଛାଡ଼ିଲ ଲୋକଲଜ୍ଜା ହୋଇଲ ନଟକାର ବୃତ୍ତିପ୍ରାୟେ
ପୁରୁଷ ଲକ୍ଷଣୁଂ ବାହାର ହୋଇଲ ଧନୁର୍ଜ୍ଜୟେ ।୭୧
ଯେମନ୍ତେ ଗୋଳକୁଣ୍ଡା ତୁମ୍ଭନ୍ତ ବୋଲନ୍ତି କଉରୋବେ
ରାଜ୍ୟ ସଧାଇବ କେମନ୍ତେ ଭାରିଯା ଅଭାବେ ।୭୨
ଅର୍ଜ୍ଜୁନ ବୋଇଲା ମୋତେ ନ ଝିଂଘାସ ସଂଘାତୁଣୀ
ଠାକୁର ଆଗ୍ୟାଂ ହୋଇଲାକି ମୁଂ ମାରିବି ଯେହିକ୍ଷଣି ।୭୩
ସଇରିନ୍ଧ୍ରୀ ବୋଇଲେ ମୋତେ କହିଲେକ କୋନ୍ତେ
ବୋଇଲେ ବଲ୍ଲଭକୁ କହଯାଇଂ ମାରୁ ସେ ଗୁପତେ ।୭୪
ଅର୍ଜ୍ଜୁନ ବୋଇଲେ ଗୋ ଚଳ ଯା ମହାତ୍ମାଣୀ
ଆବର ଝିଂଘାସ ମୋତେ ନ କହ କଟୁବାଣୀ ।୭୫
ଅର୍ଜ୍ଜୁନର ବଚନେ ସେ ଚଳିଲେ ଜିଷ୍ଣୁସେନୀ
ସଂପୂର୍ଣ୍ଣ ଅର୍ଦ୍ଧ ସେ ଯେ ହୋଇଅଛି ରୟେଣୀ ।୭୬
ଚଳଇ ଦ୍ରୋପତୀ ଯେ ନାରାୟଣ ସୁମରି
ଯେ ଦୁସହ କଷଣୁ ନାଥ କରିବାକ ମୋତେ ପାରି ।୭୭
ଉତ୍ତର ଦ୍ୱାରରେ ଯେ ଅଛଇ ଅଶ୍ୱଶାଳ
ଖଟନ୍ତି ପାଞ୍ଚଲକ୍ଷ ପ୍ରତାପୀ ବାଜୀପାଳ ।୭୮
ନକୁଳ କୁମାର ତହିଂ ଗ୍ରନ୍ଥିକାର ରୂପ
ପାଟଅଶ୍ୱ ଜଗିଛି ସେ ଥାନପାଳ ସରୂପ ।୭୯
ଉଆଳି ତିରଣ ପରେ ପାଡିଣ ଶଯ୍ୟାଗୋଟି
ନିଦ୍ରାରେ ଅସାଷ୍ଟମ ନକୁଳକୁ ଭେଟି ।୮୦
ବାଖର ଗୋଟିଏ ତହିଂ ଦେଇଣ ସୀମସ୍ଥାନ
ନିଦ୍ରାରେ ଅଚେତନ ସେ କୁମାର ପଞ୍ଚାଣ ।୮୧
ଯାମଳାର ପିଛ ଯେ ବାଉଳି ଛନ୍ଦେ ଛାଟ
ବାଗବନ୍ଧା ବନ୍ଧନ ପରିହରଣ ବଳେବାଟ ।୮୨
ଯେସନେକ ସରୂପେ ସେ ନକୁଳ ଶୋଇଅଛି
ଦେଖିଣ ସଇରିନ୍ଧ୍ରୀକି ଯେ ନ ଫୁରଇ କିଛି ।୮୩

ଆହୋ ନକୁଳ ତୁମ୍ଭେ ଛତ୍ରୀବର ଶ୍ରେଷ୍ଠ
କୁମାର ମୁଖେ ଯାହାକୁ ଆକାଶେ ଅଛି ପାଟ ।୮୪
ପୃଥୀ ଧରିବାକୁ ତୁମ୍ଭେ ସାମରଥ କୋନ୍ତମୁନେ
ଯେ କଷ୍ଟ ଅବସ୍ଥା ନାଥ ସହିଲୁ କେସନେ ।୮୫
ଶରୀରେ ଯେବେ ତୋହୋର ବସଇ ମାଛି ଗୋଟିଯେ
ଶତେପଳ ଚନ୍ଦନ ଲେପନ ହୋଅଇ ତୋର କାଯେ ।୮୬
ବାବୁ ରତ୍ନଖଟ ଉପରେ ସୁପାତି ଶେଜ ତୁଳୀ
ପୁଷ୍ପ ପାଖୁଡ଼ା ଉପରେ କ୍ରୂପୂରର ଧୂଳି ।୮୭
ବାବୁ ଆଲଟ ଚାମର ଧଣି ଲକ୍ଷେକ ବିଳାସୁଣୀ
ତଦ୍ୟାପି ନିଦ୍ରା ତୋତେ ନ ମାଡଇ ରୟଣୀ ।୮୮
ଯେତେ ସୁଖ ଭୋଗ କାହାକୁ ବାବୁ ଦିଲୁ
ଯେ ଛାର ତିରଣ ଉପରେ କେମନ୍ତେ ଶୋଇଲୁ ।୮୯
କାନ୍ଦନ୍ତେ ସୁନ୍ଦରୀ ଯେ ବହଇ ଅଶ୍ରୁଜଳ
ଚେତନା ପାଇଣ ଧାତିକାରେ ଉଠିଲା ନକୁଳ ।୯୦
ଦେଖଇ ପାଞ୍ଚାଳୀର ଦିବ୍ୟ ବଦନଗୋଟି
ଅନ୍ଧାର ମନ୍ଦିରେ ଯେହ୍ନେ କଣୟ ହୋଯେ ବୃଷ୍ଟି ।୯୧
ସଇରିନ୍ଧ୍ରୀ ବଦନ ଚାହିଁ କୁମାର ବୋଇଲା
ଅଗ୍ୟାଂତବାସ ସରିଲାକି ବୋଲି ଉଷତ ହୋଇଲା ।୯୨
ବୋଲଇ କୁମାର ମୁଂଗୋ ପୁଛା କରଇ ତୋତେ
ତୁ ଦେବୀ ବିଜେକଲୁ ମୋତେ ଦେଖିବା ନିମନ୍ତେ ।୯୩
ବେନି ଲୋଚନୁ ଦେବୀର ଅଶ୍ରୁଜଳ ଗଳି
ନକୁଳ ବଦନ ଚାହିଁ ପ୍ରତିଉତ୍ତର ଦିଅଇ ପାଞ୍ଚାଳୀ ।୯୪
ବାବୁ ତୋହୋର ତହିଂକି ମୁଂ ଅଇଲି ନିଶାକାଳେ
କୀଚ୍ଚକ ପାମର ମୋତେ ହରିତେ ଲୋଡଇ ବଳେ ।୯୫
ଆସ୍ତାନେ ଆଗ୍ୟାଂଦିଲେ ବିରାଟ ସହିତେ
ପାରିଦଣ୍ଡ ଆଦି କରିଥିଲେ ସମସ୍ତ ଅମନାତ୍ୟେ ।୯୬
ଉପାଯେ କରିଣ ମୁଁ ଯେ ଅଇଲି ଆଜ ରାତି
ପ୍ରଭାତେ ତା ପୁରେ ନେମ ମୋତେ କୀଚ୍ଚକ ସେନାପତି ।୯୭
ନକୁଳ ବୋଇଲେ ଯେ ଠାକୁରେ ଆସ୍ତାନେ ବସିଥିଲେ
ତୋହୋର ଅବସ୍ଥା ଦେଖି ସେ କିସ ବା ବୋଇଲେ ।୯୮
କୋନ୍ତେ ବୋଇଲେ କୀଚ୍ଚକକୁ ପ୍ରାକ୍ରମେ କେ ସରି
ଯାଅ ଯା ତାହାର ଭାରିଯା ହୋଅ ଗୋ ସଇନ୍ଧ୍ରୀରି ।୯୯
ନକୁଳ ବୋଇଲା ଠାକୁରଂକ ଗୋ ଯେହ୍ନେ ଆଗ୍ୟାଂ
ସେବକ ମାତ୍ରକ ଆମ୍ଭେ କେସନେକେ କରିବୁ ଅବଗ୍ୟାଂ ।୧୦୦

ଯାଅ ଯା ସଇରିନ୍ଧ୍ରୀ ଆମ୍ଭେ ଥାଇ କିସ କଲୁ
ସଞ୍ଚଯେ କୀଚ୍ଚକର ତୁ ଭାରିଯା ହୋଇଲୁ ।୧୦୧
ଯେସନେକ ବଚନ ଯେ ଶୁଣିଣ ପାଞ୍ଚାଳୀ
ରାଗେଣ ନକୁଳକୁ ଦିଅନ୍ତି ଦେବୀ ଗାଳି ।୧୦୨
ଧିକ ଧିକ ହୋଉ ତୁମ୍ଭର ଛତ୍ରୀବୃତ୍ତି ଜୀବତି
ସଂସାରେ ବୋଲନ୍ତି ପଞ୍ଚ ପାଣ୍ଡବଂକର ଯେକା
ଭାରିଯା ଦ୍ରୋପତୀ ।୧୦୩
ନଟକାର ବୃତ୍ତିପ୍ରାଯେ ହୋଇଲା ତୁମ୍ଭର ପ୍ରକୃତି
କ୍ଷତ୍ରୀପଣ ଛାଡି ବ୍ରତହେତୁ ପରେ ଦିଅଇ ନିଜର ଯୁବତୀ ।୧୦୪
ନକୁଳ ବୋଇଲା ଗୋ ଶୁଣସି ପ୍ରାଣସଖୀ
ଗଲୁନିକି ଭୀମସେନ ଠାକୁରଂକ ତହିଂକି ।୧୦୫
ସଇରିନ୍ଧ୍ରୀ ବୋଇଲେ ମୁଂ ନିହାଇ ଯାଇଂ ରୋଷେ
କୋନ୍ତେ ଆଗ୍ୟାଂଦିଲେ ଯାଅ ବଲ୍ଲଭର ପାଶେ ।୧୦୬
ଗ୍ରନ୍ଥିକାର ବୋଇଲା ସଖୀ ଆଉ ଆମ୍ଭନ୍ତ କିଂପେ ଝିଂଘାସୁ
ଅନମିତେ ଆମ୍ଭରେ ଯେ ଦେଖି ଆସୁ ।୧୦୭
ଶତେ ସିଂଘର ପରାକ୍ରମ ଯାହାର ବଳ
ଯେ ରୂପେ ତାହାକୁ କିସ କରିବୁ ବୋଇଲେ ବାଜୀପାଳ ।୧୦୮
ମୋତେ ଯେବେ ଆଗ୍ୟାଂ ଦେଇଅଛନ୍ତି ଠାକୁରେ
ଅଥବା ମାରିବି ଚାଲ ଯିବା ତାହାର ପୁରେ ।୧୦୯
ସଇରିନ୍ଧ୍ରୀ ବୋଇଲେ ବାବୁ ତୋହୋରେ ନୋହୋଇ କିଛି
ଅଗ୍ୟାଂତ ବନବାସ ଆବର ବେନିମାସ ପାଞ୍ଚ ଦିବସ ଅଛି ।୧୧୦
ପାରିବୁ କି ବଧକରି ଗୁପତେ ତାହାକୁ
ବଲ୍ଲଭେ ନାସ୍ତିକଲେ ମୁଂ କହଇ ସିନା ତୁମ୍ଭଂକୁ ।୧୧୧
କୁମାର ପ୍ରତଗ୍ୟାଂ ଶୁଣି ସାନନ୍ଦ ପାଞ୍ଚାଳୀ
ରାତ୍ର ଅଢୋଇ ପ୍ରହରେ ସହଦେବ ପୁରେ ଚଳି ।୧୧୨
ନବର ଦକ୍ଷିଣ ଦ୍ୱାର ମଇନ୍ଦାଣ ନିକଟେ
ତହିଂର ସନ୍ନିଧେ ଯେ ସୁରଭୀ ଗୋଗୋଷ୍ଟେ ।୧୧୩
ଦୁହାଂଳ ଦୁଇପଦ୍ମ ଅଛି ଯେକାଗୋଷ୍ଟେ ଗାଇ
ନବଲକ୍ଷ ଗୋପାଳ ଯେକା ଗୋଗୋଷ୍ଟେ ଛନ୍ତି ଶୋଇ ।୧୧୪
ଗୋଷ୍ଟ ମଧ୍ୟସ୍ଥଳେ ଯେ ବସ୍ଥାଂକର କୁଣ୍ଡଳୀ
ତିନିବୃନ୍ଦ ବସ୍ଥା ତୁଳେ ଯେକା ସହଦେବ କରଇ କେଳି ।୧୧୫
ବେଢ଼ିତ ଗଡ଼ ଆକାରେ ଯେ ପାଞ୍ଚ ପରାୟୁଧ କୀଳା
ମଧରେ ବସିଅଛନ୍ତି ମଦନା ଦେବୀର ବଳା ।୧୧୬
ଗୋଷ୍ଟର ଭିତରେ ଦେବୀ ପଶିଲେ ଧାତିକାରେ
ସଇରିନ୍ଧ୍ରୀ ପ୍ରବେଶ ହେଲେ ତନ୍ତୀପାଳ ଗୋପାଳ
ସନ୍ନିଧରେ ।୧୧୭

ସହଦେବ ବୋଇଲେ ସଖୀ ତୁ ଆସିବୁ ଆଜ ବୋଲି
ଯେ ନିଶାଯାକ ମୁଁ ଯେ ଉଜାଗରେ ବସିଲି ।୧୧୮
ପାଞ୍ଚାଳୀ ବୋଇଲେ ମୁଁ ଯେ କିସ କହିବି ତୋତେ କଥା
କୀଚକ କଲା ମୋତେ ଯେତେକ ଅବସ୍ଥା ।୧୧୯
ତନ୍ତ୍ରୀପାଳ ବୋଇଲା ପାମର କଷ୍ଟ ଦେଉଅଛି ତୋତେ
ଅଗ୍ୟାଂତ ବନବାସ ଆମ୍ଭର ଯେକା କୀଚକ ବଧ
ନିମନ୍ତେ ।୧୨୦
କୀଚକର ଭାରା ଯହୁଁ ନ ସହିଲା ପୃଥୀ
ଦେବସଭାୟେ ଗୁହାରି କଲାକ ବସୁମତୀ ।୧୨୧
ବସୁଧାର ନିମନ୍ତେ କରି ଚିନ୍ତିଲେ ଦେବ ପିତା
ଅଗ୍ୟାଂତବାସ ଆମ୍ଭନ୍ତ ଆଗ୍ୟାଂଦିଲେ ଧାତା ।୧୨୨
ଯାହା ସେ ନିରିମିଚ କଲାକ ପ୍ରଜାପତି
ସଇରିନ୍ଧ୍ରୀ ନିମନ୍ତେ ମରିବ କୀଚକ ସେନାପତି ।୧୨୩
ଚଳ ଗୋ ମାହେଶ୍ୱରୀ ନ ରହନି ଗୋ ଯେଥେ
କୀଚକ ବଧଯିବ ତୋ ଭୀମସେନ ଠାକୁରଂକ ହାଥେ ।୧୨୪
ଆବର ଚରିତ ଗୋ ଶୁଣସି ଭବିଷ
ଶତେକ ସୋହୋଦ୍ର ଗୋ ସମସ୍ତେ ଯିବେ ନାଶ ।୧୨୫
ଆଗୋ ବାରୁଣାବନ୍ତେ ଭୀମସେନ ଯାହା ମାନିଛନ୍ତି ଅନଳ
ଦେବତାଂକୁ
ସେ ବ୍ରହ୍ମସ୍ୱ ଶୁଝିବେ ଦେଇ ଶତେଭାଇ କୀଚକକୁ ।୧୨୬
କୀଚକ ନାଶଯିବ ଧୃତିରାଷ୍ଟ୍ର ବଂଶହିଂ ହେବେ ଧ୍ୱଂସି
ଭାରା ନିବାରଣୀ ଗୋ ବହନ ହୋଇ ଯାସି ।୧୨୭
ଛତ୍ରୀ ଅଚାର୍ଗଳ ସେ ସୋହୋଡ଼ ପଞ୍ଚାଶ
ଝିଂଘାସି ବୋଇଲେ କରିବେଟି ତୋହୋରେ କାରଣ ।୧୨୮
ଚଳ ଚଳ ମହାସତୀ ଗୋ ସର୍ବଶୁଭ ଅନକୂଳେ
ହୃଦଗତେ ସୁମର ଦେବୀ ଶ୍ରୀ ସର୍ବ ମଙ୍ଗଳେ ।୧୨୯
ସସିଦ୍ଧ ମାତାଙ୍ଗୀ ଯେ ଅନୁଗ୍ରହ ତୋତେ କରୁ
ପୃଥୀ ଭାରାଭର ଉଶ୍ୱାସ ହୋଉ କୀଚକ ବେଗେ ମରୁ ।୧୩୦
ଆବର କଥାୟେ ମୋହୋଠାରୁ ମାହେଶ୍ୱରୀ ଶୁଣ
କାଲି କୀଚକର ନିଚେ ହୋଇବ ମରଣ ।୧୩୧
ଶତେସିଂଘ ପ୍ରାକ୍ରମ ଅଟଇ ତାହାର
ତୋହୋର କର ଛୁଇଂଲାକି ଯିବ ଯମପୁର ।୧୩୨
ସହଦେବ ବଚନେ ଚଳଇ ଦେବୀ ଯେ ଦ୍ରୋପତୀ
ରୋଷୁଅ ଘରେ ପ୍ରବେଶ ହୋଇ ଚଉବିଂଶ ଦଣ୍ଡ ରାତି ।୧୩୩
ଆହୋ ଚଇତନ କୋଶେକ ବିସ୍ତାର ଯେବଣ ରୋଷୁଅଶାଳ
ଭୀମସେନଂକ ନିଶ୍ୱାସଘାତେ ଆକାଶକୁ ଉଡଇ ଚାଳ ।୧୩୪
ବାହୁଡ଼ି ସଞ୍ଚା ଉପରେ ବସଇ ଚାଳ ନିଶ୍ୱାସ ସଂଘରନ୍ତେ
ଦେଖିଣ ସାନନ୍ଦ ହୋଇଲେ ସେ ଯେ ଦ୍ରୋପଦର
ଦୋହିତେ ।୧୩୫
ବିଚାରି ବୋଇଲେ ସାଧୁ ସାଧୁ ଜୀବନ ତୋହୋର ଭୀମ
ତୋହୋର ତହିଂ ଅଛଇ ଛତ୍ରିୟ ବଳ ପରାକ୍ରମ ।୧୩୬
ଅନାସ୍ତ ତରୁଣୀ ମୋତେ ସାଖୀ ହୋଅ ବାବୁ
ଆତ୍ମାର ଠାକୁର ତୁହି ସେ ମୋହୋର ସବୁ ।୧୩୭
ଦେଖିଲେ କବାଟ ଯେ ଯନ୍ତର କିଳଣି
ସଇରିନ୍ଧ୍ରୀ କର ଲାଗନ୍ତେ ଫିଟିଲା ତତକ୍ଷଣି ।୧୩୮
ଭିତରେ ଶୋଇଅଛି ପାଣ୍ଡବ ମହାବଳୀ
ସନ୍ନିଧରେ ପ୍ରବେଶ ହୋଇଲେ ଦ୍ରୋପଦର ଦୁଲାଳୀ ।୧୩୯
ପାଷାଣ ଶଯ୍ୟାକରି ଶୋଇଛି ବଲ୍ଲଭ
ଦେଖିଲା ପାଞ୍ଚାଳୀ ଯେ ସକଳ ସୁଲଭ ।୧୪୦
କଣୟ ପର୍ବତେ ଯେହ୍ନେ ଜଳଧର ମେଘ ଚଢ଼ି
ତେସନେକେ ତାର ଦେହ କଳାରେଖା ଜଡ଼ି ।୧୪୧
ବାଉଂଳି ନିଷ୍କମାଳି ବିଜେ କର୍ଣ୍ଣକଟାରି
ଶୟନ ଥାନେ ତାହା ଭୀମ ସାମସ୍ଥାନ କରି ।୧୪୨
ବଲ୍ଲଭ ସନ୍ନିଧେ ସେ ବସିଣ ଜିଷ୍ଣୁସେନୀ
ଅରୁଣ ଉଲ୍ଲୋଳ ପ୍ରାୟେ ଦିଶଇ ଚକ୍ଷୁବେନି ।୧୪୩
ତୋଳଇ ପାଞ୍ଚାଳୀ ଆହୋ ଉଠକିନା ଭୀମା
କିସ ଅର୍ଥେ ଯେତେ ନିଦ୍ରା ଯାଉ ମହାତମା ।୧୪୪
ବ୍ରାହ୍ମଣ ଯୁବାସ୍ତିରୀ ରାଜାର ନିଯୋଗୀ
ସାଧନ ଯୋଗେ ସେ ନିଦ୍ରା ପରିତ୍ୟାଗୀ ।୧୪୫
ଆହୋ ଛତ୍ରୀ ହୋଇ ତୋହୋର କିଂପେ ଯେତେ ନିଦ୍ରା
ତେଜ ହୋ ସୂପକାର ତୋହୋର ଯୋଗମୁଦ୍ରା ।୧୪୬
ଅପାର କରିଣ ତାକୁ ତୋଳଇ ଦ୍ରୋପତୀ
ନିଦ୍ରା ନ ଭାଙ୍ଗିଲା ସୂପକାର ସେନାପତି ।୧୪୭
ଯୁଗତେଣ ଛତ୍ରୀ ସେ ବିଶେଷେ ରାଜାର ନିଯୋଗୀ
କିମର୍ଥେ ତୋହୋର ହୋୟେ ଯେତେକ ନିଦ୍ରାଭୋଗୀ ।୧୪୮
ଭୁଜ ଧରି ତୋଳନ୍ତେ ନିଦ୍ରା ତାହାର ନ ଭାଙ୍ଗି
ରୟଣୀର ଅନ୍ତେ ଅରୁଣ ଘୋର ତେଜି ।୧୪୯
ରୟଣୀ ପାହାନ୍ତି ଦେଖି ଦ୍ରୋପତୀ ବିକଳ
ବେନି ଲୋଚନୁ ଦେବୀର ବହେ ଅଶ୍ରୁଜଳ ।୧୫୦

ଲୁଅ ଜଳ ପଡନ୍ତେଣ ଭୀମସେନ ଉଠଇ ଚେତି
ଦ୍ରୋପଦୀର କେଶ ବୀର ଧଇଲା ତତକ୍ଷଣାନ୍ତି ।୧୫୧
ଶ୍ରୀକରେ ବିଜେକର୍ଣ୍ଣକଟାର ବେଗେ ଘେନି
କେ ତୁ ପିଚାଶୁଣୀ ରାକ୍ଷସୀ ଡାଂକେଣୀ ।୧୫୨
ଆଲୋ ଲୋ ଡାଂକେଣୀ ତୋର ଯେତେକ ଭରସା
ଇଷ୍ଟ ଦେବତା ସୁମର ଛେଦିବଇଂ ତୋର ନାସା ।୧୫୩
ସଇରିନ୍ଧ୍ରୀ ବୋଇଲେ ହୋ ଛାଡ ଛାଡ ସୁପକାର
ମୁହିଂ ସେ ଦ୍ରୋପଦୀ ହୋ ବଲ୍ଲଭୀ ତୁମ୍ଭର ।୧୫୪
ପାଣ୍ଡବ ସୁନ୍ଦର ଯେ ଛାଡିଲା ତାର ବାଳ
ବ୍ରହସିତ ବଦନେ ଆଣି ବସାଇଲା କୋଳ ।୧୫୫
ମୁଖରେ ଚୁମ୍ବନ ଦେଇ ବୋଲଇ ପାବେନି
ମୁହିଂ ତୋର ଆପାଦରେ ଘେନଇ ଜିଘ୍ନସେନୀ ।୧୫୬
ଯେକସ୍ତିରୀ ହୋଇ ସହୁ ପଞ୍ଚଭ୍ରଥାଂକ ଆର୍ଦ୍ଧୋଳି
କାମ ଅସାଷ୍ଟମେ ନୁଆରିଲୁ ସମ୍ଭାଳି ।୧୫୭
ଯେ ସ୍ତିରୀ ଦେହ ବହି ତୁ ସହିବୁ ଅବା କେତେ
ଦୁରାପଦ ସହିଲୁନି ଦଶମାସ ପରିଯନ୍ତେ ।୧୫୮
କାମ ଅସାଷ୍ଟମେ ଯେ ଧର୍ମ ପରିତ୍ୟାଗୀ
ସହି ନୁଆରି ମୋତେ ଅଇଲୁ କି ଶୃଙ୍ଗାର ମାଗି ।୧୫୯
ଅଇଲୁ ଯେବେ ତୁ ନ ଜାଣିଲୁ ବେଳକାଳ
ରାତ୍ର ନିକଟ ହୋଇଲାନି ପ୍ରାନ୍ତବେଳ ।୧୬୦
ରାତ୍ର ବେନିଦଣ୍ଡ ଯେ ଅଛଇ ଅବକାଶ
ଭୋଜନ ଶୟନ ନିଦ୍ରା ମଇଥୁନ ନାହିଂନା ପରିହାସ ।୧୬୧
କଳିହିଂ ନ କରିବ ଯେ ଶାଆସ୍ତ୍ର ନ ପଢ଼ିବା
ସମସ୍ୟାହିଂ ନ ଦେବା ମଉନବ୍ରତ ହୋଇଥିବା ।୧୬୨
ସନ୍ଧ୍ୟାକାଳେ ଶାସ୍ତ୍ର ପଢ଼ିଲେ ମୂର୍ଖ ହୋନ୍ତି ଆନ ଜନ୍ମେ
ଶ୍ରୁତିରେ ରୋଗୀ ହୋଇ ଦାରିଦ୍ର ହୋଅନ୍ତି ଭୋଜନ କର୍ମେ ।୧୬୩
ଶୃଙ୍ଗାର କଲେ ଜନ୍ମେ ଜନ୍ମେ ନ ପାଇ ରତି
ଜନ୍ମହୁଂ ରୋଗୀ ହୁଅଇ ଜନମିଲେ ସନ୍ତତି ।୧୬୪
ଚାରିଦଣ୍ଡ ଉଭାରେ ସେ ପ୍ରହରେକ ରାତି
ତେବେ ସେ ସୂର୍ଯ୍ୟବେଳେ ଭୁକତ ଯୁଗତି ।୧୬୫
ସଖୀ ସୂର୍ଯ୍ୟବେଳେ ଭୋଜନ କଲେ ଆହାର ହୋଇ ପଂକୁ
ଦଶଦଣ୍ଡେ ଉଚ୍ଚାଟ ଲାଗଇ ସେ କାମଦେବଂକୁ ।୧୬୬
ମୟାଣ ପୟାଣ କରଇ ପଞ୍ଚଘଡ଼ି ରାତି
ଚନ୍ଦ୍ରବେଳେ କାମର ଯେକଯୋଗ ପୀରତି ।୧୬୭
ଦଶଦଣ୍ଡୁଂ ଚଉଦଦଣ୍ଡ ପର୍ଯ୍ୟନ୍ତେ ଶୃଙ୍ଗାର କରିବ ଇଚ୍ଛା
ନାନା କଉତୁକେ ପୂରୋଇ ମନୋବାଞ୍ଛା ।୧୬୮
ଶରୀରକୁ ସୁଆର୍ଥ ଯେ ସନ୍ତାନ ବିବୃଦ୍ଧି
ଆଇଷ ଶିରୀ ଶୁଭକାର୍ଯ୍ୟ ହୋଅଇ ପ୍ରସିଦ୍ଧି ।୧୬୯
ଷୋଳଦଣ୍ଡ ଯେବେ ହୋଅଇ ଅର୍ଦ୍ଧରାତ୍ରି
ଆକାଶ କ୍ଷେପଣୀ ଯେ ଦେବୀ ଭ୍ରମଇ ଚଉକତି ।୧୭୦
ଅଷ୍ଟାଦଶ ଦଣ୍ଡରୁ ଯେ କୋଡିଯେକ ଦଣ୍ଡ
ଯେଥେ ଶୃଙ୍ଗାର କଲେ ଉପୁଜଇ ବିଖଣ୍ଡ ।୧୭୧
ବାଇଶ ଚଉବିଂଶ ହାଦେ ଛବିଶ ଯେ ଦଣ୍ଡର
ଯୋଗବେଳେ ଅନଙ୍ଗ ବିଶ୍ରାମଇ ତରୁଘର ।୧୭୨
ଚନ୍ଦ୍ର ତେଜ୍ୟାକରି ଯେବେ ସୂର୍ଯ୍ୟେ କରଇ ସଙ୍ଗ
ଶୃଙ୍ଗାର କଲେ ଯେଥି ବ୍ରହ୍ମହତ୍ୟା ଦୋଷ ଲିଙ୍ଗଭଙ୍ଗ ।୧୭୩
ରାତ୍ର ନବଘଡ଼ିରୁ ଯେଣିକି ଶୃଙ୍ଗାର ଯେ କଲେ
ଟସକର ରୋଗୀ ଭିକ୍ଷାସୀ ହୁଅନ୍ତି ଗୋ ସନ୍ତାନ ଉପୁଜିଲେ ।୧୭୪
ଦୋହିତା ଉପୁଜିଲେ ଗୋ ହୋଅଇ ଦୋଚାରୀ
ଜନ୍ମହୁଂ ରୋଗୀ ହୋଅଇ ସନ୍ତାନ ନୋହୋଇ ତାହାରି ।୧୭୫
ସଖି ଅଢ଼ାଇ ପହର ରାତି କାମଯୋଗ ବେଳେ
ତହିଂ ଭୋଗ୍ୟକଲେ ସ୍ତିରୀ ପୁଂସେ ନାଶନ୍ତି ଅଳ୍ପକାଳେ ।୧୭୬
ବଲ୍ଲଭ ବୋଇଲେ ତୁ ସକଳ ଗ୍ୟାଂତା ସମସ୍ତ ପରିତ୍ୟାଗୀ
ବେଳ ନ ଜାଣି ଅଇଲୁ ମୋତେ ଶୃଙ୍ଗାର ଯେ ମାଗି ।୧୭୭
ଦ୍ରୋପଦୀ ବୋଇଲେ ସ୍ୱାମୀ ତୁମ୍ଭେ ଅଟ ଯେ ମୂରୁଖ
ଅପଣ୍ଡିତ ଅବିବେକ ଅଟୁ ସଦାରେକ ।୧୭୮
ଯଥା ଅନରୂପେ ତଥା ବାକ୍ୟ ଭାଷି
ବାଇକି ତୁ ହୋଇଲୁ ତୋତେ ମୁଂ ଶୃଙ୍ଗାର ମାଗିଆସି ।୧୭୯
ଅଗ୍ୟାଂତବାସ ଆବର ଯେ ସତୁରି ଦିବସ ଅଛି
ବଲ୍ଲଭ ବୋଇଲା ସଖୀ ତୋତେ କଥାଯେ କହିବାକୁ ଅଛି ।୧୮୦
ମୋହୋର ବଳବାର୍ଯ୍ୟ ବିରାଟେଶ୍ୱର ଦେଖି
ସଦା ସଂପ୍ରତେ ମୋତେ କରଇ ଶଶୀମୁଖୀ ।୧୮୧
ତୋତେ ଦେଖିଲେ ବାରତା କହିବେ ରାଜାକୁ
ବିରାଟେ ଅପ୍ରତେ ଗୋ କରିବେ ସଖୀ ମୁକୁ ।୧୮୨
ବୋଲିବେ ବଲ୍ଲଭ ଯେ ମନ୍ଦକୃତ୍ୟ କଲା
କାହାର ବହୂଝିଅକୁ ଗୁପତେ ହରିଲା ।୧୮୩
ସଇରିନ୍ଧ୍ରୀ ବୋଇଲେ ତୁମ୍ଭେ ବଡ଼ାଇ ମୂରୁଖ
ତୁମ୍ଭ କର ଧରି ମୁଂ ଯେ ହୋଇଲି ନିରେଖ ।୧୮୪

ବିରାଟର ଶଳା ଯେ କୀଚକ ମହାବୀର
ସେ ମୋତେ ହରିଣ ଲୋଡ଼ଇ ବଳାତ୍କାର ।୧୮୫
ବିରାଟ ସହିତେ ହୋ ଆସ୍ଥାନେ ବସିଥିଲେ
କୋନ୍ତେ ଆଦିକରି ମୋତେ କୀଚକକୁ ସମର୍ପିଲେ ।୧୮୬
ବଲ୍ଲଭ ବୋଇଲା ତୋତେ ଯେବେ ସମର୍ପିଲେ କୋନ୍ତେ
ଆମ୍ଭର ବେଳେ କିସକରି ହୋଅଇ ଯୁଗତେ ।୧୮୭
ତୁହି ଯେବେ କୀଚକକୁ ଇଚ୍ଛା ଜାଣ କଲୁ
ତେନ୍ୟାୟୁ ସଭାକୁ ତୁ କଢ଼ାଇ ଘେନିଗଲୁ ।୧୮୮
ସଭାରେ କଥା କହି ନୁଆରିବେ ଅନୀତି
ନିଚୟେ ହୋଇଲୁ ତୁ କୀଚକର ପ୍ରିୟବତୀ ।୧୮୯
ସଇରିନ୍ଧ୍ରୀ ବୋଇଲେ ତୁମ୍ଭର ଜୀବନ ଯାଉ ଧିକ
ରାଜ୍ୟଭାର ତେଜିଣ ଯେ ମାଗିଲ ତୁମ୍ଭେ ଭିଖ ।୧୯୦
ଯେକାସ୍ତିରୀକି ତୁମ୍ଭେ ହୋଇଲ ପଞ୍ଚପତି
ପଞ୍ଚଭ୍ରାଥ ଥାଉଂ ଯେ ମୋହୋର ଯେତେକ ଶାସ୍ତି ।୧୯୧
ସିଂଘ ବୋଲିକରିଣ ଯେ ମୁଂ ବରିଲି ତୁମ୍ଭଂକୁ
ଶ୍ରିକାଳ ଯୂଥେ ଯାତକଲେ କୋଇନ୍ତା ତୁମ୍ଭଂକୁ ।୧୯୨
ତୁମ୍ଭର ଜୀବନ୍ତେ ମୁଂ ହୋଇବି ଆନର ଭାରିଯା
ନିଲ୍ଲଜ ଆତ୍ମା ତୁମ୍ଭର ହୋଇକିନା ପରିତେଜ୍ୟା ।୧୯୩
କାଳେବର ଗଦା ତୁହୋ ଧରୁ ବେନିହାଥେ
ସେହି ତୋହୋର ଧିକତ ହୋଉକିନା ଯୁଗତେ ।୧୯୪
ବ୍ରିକୋଦର ନାମ କିମ୍ପେ ତୁ ଅନମିତେ ବହୁ
ନିଲ୍ଲଜ ଜୀବନ ତୋହୋର ଗ୍ରିଧ୍ରନୀ ମାଂସ ଖାଉ ।୧୯୫
ରାଜ୍ୟଭାର ସିଂଘାସନ ସମସ୍ତ ଦିଲଣି ଆନକୁ
ଯେକା ଭାରିଯାୟେ ଯେବେ ଦେବ କୀଚକକୁ ।୧୯୬
ହସ୍ତିନା ସଭାରେ ବସି ଚାହିଂବ କାହା ମୁଖ
ମାନହୀନେ ବ୍ରତିବାରୁଂ ମରଣ ବଡ଼ସୁଖ ।୧୯୭
ସଇରିନ୍ଧ୍ରୀ ମୁଖୁଂ ଯେସନେକ ଝିଂଘାସ ବାକ୍ୟ ଶୁଣି
କୋପେଣ ଗର୍ଜଇ ପାଣ୍ଡବ କାଳସର୍ପ ଜାଣି ।୧୯୮
ଯେତେ ଝିଂଘାସି ଗୋ କହିଲୁ ତୋର ତୁଣ୍ଡେ
ସ୍ତିରୀଲିଙ୍ଗ ନୋହିଲ୍ଲେ କାଟନ୍ତି ତୋର ମୁଣ୍ଡେ ।୧୯୯
ଭୀମସେନ ବୋଇଲା ଆନ କିସ ଆଗ୍ୟାଂ ଦେଇଛନ୍ତି ଠାକୁରେ
ସରୂପ କରିଣ ସଖୀ କହ ମୋହୋର ଛାମୁରେ ।୨୦୦
ବୋଲନ୍ତି ଦ୍ରୋପତୀ ଶୁଣସି ବଲ୍ଲଭ
ତୋହୋର ଆଗରେ ମୁଂ କହୁଅଛି ସୁଲଭ ।୨୦୧

ବୋଲଇ ଭୀମସେନ କହିତେ ଯେବେ ପାରୁ
ଅନମିତେ ଝିଂଘାସ କିମ୍ପେ ମୋତେ କରୁ ।୨୦୨
ଦ୍ରୋପତୀ ବୋଇଲେ ତୁ ଶୁଣସି ବ୍ରିକୋଦର
ଠାକୁରଂକ ଆଗ୍ୟାଂ ହୋଇଛି ଗୁପତେ ତାକୁ ମାର ।୨୦୩
ଭୀମସେନ ଉଷତ ହୋଇଲା ଯେସନକ ବାକ୍ୟ ଶୁଣି
ମାରିବି କୀଚକ ସଖୀ ଆଜର ରୟଣୀ ।୨୦୪
ହର ଇନ୍ଦ୍ର ବ୍ରହ୍ମା ରକ୍ଷା କରଇ ଯେବେ ତାହା
ମୋଡ଼ିବି ମୁଣ୍ଡ କୀଚକର ଉପାଡ଼ିବି ବେନିବାହା ।୨୦୫
ଆଗୋ ସଇରିନ୍ଧ୍ରୀ ଉଚ୍ଛବ ନବରେକ ଯେ ଅଛି ନଦୀର କୂଳେ
ତହିଂକି କଢ଼ାଇଣ ନେମୁଟି ନିଶାକାଳେ ।୨୦୬
ତାହାକୁ ପଠିଆଇ ତୁ ଆପଣେ ନ ଯିବୁ
ପ୍ରତେ ଉପୁଜାଇ ନିଜପୁରେ ଥିବୁ ।୨୦୭
ଯେବେ କୀଚ୍ଚକେଇ ମୁଂ ନ ମାରଇ ଆଜ
ବେନିପାଦେ ଦ୍ରୋହ ମୁଂ କରଇ ଦେବରାଜ ।୨୦୮
ଗୁରୁ ପିତା ମାତାଂକର ଚରଣେ ଦ୍ରୋହ ମୁଂ କରଇ
କରତାର ଥାଳେ ମୁଂ ବିଷ ନେଇ ଭରଇ ।୨୦୯
ଭୀମସେନ ଯେ ପ୍ରତଗ୍ୟାଂ କରଇ ଅପ୍ରମିତ
ଯେ ତୋହୋର ଦେହ ମୁଂରେ ଛୁଉଂଛି ସଂଗାତ ।୨୧୦
ଆଜ ଯେବେ କୀଚ୍ଚକକୁ ମୁହିଂ ନ ମାରଇ
ଗୋ ଶାସନ ଭୂମି ହରିଲାର ଦୋଷ ମୁଂ କରଇ ।୨୧୧
ଯଦ୍ୟପି ସେ କୀଚ୍ଚକକୁ ନ ମାରଇ ରଣେ
ବିଧବା ସ୍ତିରୀ ହରଣ ଦୋଷ ମୁଂ ଲଭଇ ଯେଣେ ।୨୧୨
ମିଥ୍ୟା ଅପବାଦ ଦୋଷ ମୁଂ ଲଭଇ କୋଟି କୋଟି
ଶୁଣିଣ ପାଞ୍ଚାଳୀର ଯେ ମନଭ୍ରାନ୍ତି ଗଲାକ ହାଦେ ତୁଟି ।୨୧୩
ଅରୁଣ ପ୍ରକାଶନ୍ତେ ଯେହ୍ନେ ସାନନ୍ଦ ହୋଅଇ ଭୁବି
ତେତେହେନେକ ସାନନ୍ଦ ହୋଇଲେ ମହାଦେବୀ ।୨୧୪
ପ୍ରଶଂସା କରଇ ଦେବୀ ଭୀମସେନ ମୁଖ ଚାହିଂ
ଯେ ତୋହୋର ଆପାଦ ଘେନିଯାଇ ମୁହିଂ ।୨୧୫
ବାବୁ ଲାଖ ଅବା ବିନ୍ଧିଲା ପାଣ୍ଡବ ଅରଜୁନ
ସମର ସମ୍ପାଦିଣ ଜିଣିଲୁ ରାଜାଗଣମାନ ।୨୧୬
ତୁହି ସେ ସମରେ ଯେ ଜିଣି ମୋତେ ଆଣି
ତେବେ ସେ ଦ୍ରୋପତୀ ପାଣ୍ଡବଂକର ଘରଣୀ ।୨୧୭
ରୟଣୀ ନିକଟ ହୋଇଲା ବାବୁ ଯାଉଅଛି ଭୀମ
ଉଚ୍ଛବ ନବରକୁ ଯିବୁଟି ଛତ୍ରୀବର ଉତ୍ତମ ।୨୧୮

ସାନନ୍ଦେ ବାହାର ଯେ ହୋଇଲେ ଦ୍ରୋପଦୀ
ଅନ୍ତପୁରେ ପ୍ରବେଶ ଯେ ପ୍ରସର ହୋଇଲାକ ରାତି ।୨୧୯

■■

## ଭୀମ କର୍ତ୍ତୃକ କୀଚକ ବଧ

ନିତ୍ୟକର୍ମ ବିଧାନ ଯେ ସାରିଣ ପାଞ୍ଚାଳକୁମାରୀ
ସ୍ନାହାନ ଶଉଚବନ୍ତ ସମସ୍ତ ଦେବୀ ସାରି ।୧
ଚନ୍ଦ୍ରସମ ଗୋଟିଏ ସମ୍ପାଦ ଦେବୀ କଲେ
କୀଅଁକ ମନ୍ଦିରକୁ ବୋଲି ଚଳିଣ ଦେବୀ ଗଲେ ।୨
ସ୍ନାହାନ ସାରି ବୀର ନାନା ବେଶ ବେଶନେ
ବିଜୟେ କୀଅଁକ ଯେ କଣୟ ସିଂଘାସନେ ।୩
ସହସ୍ରେ ଚାମର ଧରି ସେ ଅନେକ ପରିବାରୀ
ସହସ୍ରେ ଆଲଟ ଧରି ସେ ଅଛନ୍ତି ଉଭାରି ।୪
କଣୟମୟେ ଭୁବନ ଯେ ବାରସ୍ୱତୀ ପୁର ଜିଣି
ସନ୍ନିଧେ ପ୍ରବେଶ ଦେବୀ ପାଣ୍ଡବଂକ ଘରଣୀ ।୫
ଆସ ଆସ ସଂଘାତ ଲୋ ପ୍ରାଣର ସମାନ
ତବ ଲୟେ ମୋହୋର ନିମଜ୍ଜିଲା ପଞ୍ଚମନ ।୬
ତୋହୋର ଇଚ୍ଛା ମୋତେ ଅଛି ସଂଗାତୁଣୀ
ମୁହିଂ ସେ କାର୍ଯ୍ୟ ନାଶକଲି ଯେ ନ ଜାଣି ।୭
ଛାମୁରେ ସଇରିନ୍ଧ୍ରୀ ଥୋଇଲା ଗନ୍ଧପାତ୍ର
କୀଅଁକ ବୋଇଲା ମୋର କୋଳେ ବସ ଗୋ ସଂଗାତ ।୮
ସଇରିନ୍ଧ୍ରୀ ବୋଇଲେ ମୋତେ ଅପ୍ରତେ ତୁ କରୁ ବୋଲି
ରାଣୀଂକର ତହିଂକି ନ ଯାଇ ମୁଂ ଧାତିକାରେ ଅଇଲି ।୯
ନାସିକାରେ କର ଦେଇ ହସଇ କୀଅଁକ ସେନାପତି
ସ୍ୱାମୀକି ସେବା କରିଣ ସେବକେ କିସ ଭାତି ।୧୦
ଆହୋ ସଇରିନ୍ଧ୍ରୀ ବିରାଟ ଶ୍ରୀକୃଷ୍ଣା ମନ୍ତ୍ରୀ ଯେ ପ୍ରୋହିତେ
ଆଜହୁଂ ଭୃତ୍ୟପଣେ ପରିତେଜ୍ୟା ଖଟିଥିବେ ତୋତେ ।୧୧
ସଇରିନ୍ଧ୍ରୀ ବୋଇଲା ଶ୍ରୀକୃଷ୍ଣାହିଂ ସେ ମୋର ସବୁ
ତାହାର ପ୍ରସାଦେ ସିନା ମୋତେ ତୁ ପାଇବୁ ।୧୨
ଶ୍ରୀକୃଷ୍ଣାଂକୁ ଅଲେଖ ତିଳେକ କରାଇ ଯେ ମୁହିଂ
ବେଳ ମଧମାନେ ଆସଇ ସିନା ତୋର ତହିଂ ।୧୩
ଉଚ୍ଛବ ନବର ହୋ ଯତନ କରିଥାଅ ମହାବୀର
ତହିଂ ସେ ତୋହୋର ମୋହୋର ସୁରତି ସମ୍ଭାର ।୧୪
କୀଅଁକ ହସିଲା ଯେ ସଇରିନ୍ଧ୍ରୀର ବୋଲେ
ତ୍ରିପୁତି କରାଇ ଦେବୀ ବହନ ବାହୁଡ଼ି ଅଇଲେ ।୧୫
କୀଅଁକ ବିଚାରଇ ସଇରିନ୍ଧ୍ରୀ ବଡ଼ ଧୃତି
ଯେହାର ସଙ୍ଗେ ଶୃଙ୍ଗାର କଲେ ହୋଇବ ବଡ଼ାଇ ସୁରତି ।୧୬
ଚାରଦୂତ ବରଗି ସେ ଉଚ୍ଛବ ନବର
ବେଗ ବେଗ ମଣ୍ଡନ୍ତି ଲାଗିଣ ଭୃତ୍ୟକାର ।୧୭
ଅଲେଖ ମନ୍ଦିରେ ସଇରିନ୍ଧ୍ରୀ ବିଜୟେ ତତତି
ଲାଜେଣ ଶ୍ରୀକୃଷ୍ଣା ଯେ ନୁଆସନ୍ତି ତାହାର କତି ।୧୮
ଶ୍ରୀକୃଷ୍ଣାଂକ ସନ୍ନିଧେଣ ଯାଇଂ ମିଳିଲେ ସଇରନ୍ଧୀରି
ନିତ୍ୟକର୍ମ ବିଧାନେ ଅଲେଖ ତିଳେକ ଦେବୀ କରି ।୧୯
ଶ୍ରୀକୃଷ୍ଣାଏ ପଚାରନ୍ତି ମାଗୋ ଲେଖ ଗୋଟିଏ ଯେ ନେଲ
ତ୍ରିଗର୍ଭ ବାହୁଅଛି ବୋଲି କିମ୍ପେ ମୁଖାଗ୍ରତେ ନ କହିଲି ।୨୦
ସଇରିନ୍ଧ୍ରୀ ବୋଇଲେ ଗୋ ମୁଂ କହିଲିନି ସମସ୍ତ
ବଧୀର ପ୍ରାୟେ ସିନା ଅଟଇ ତୋହୋର ଭ୍ରାଥ ।୨୧
ଶୁଣି ମହାଦେଈ ଯେ ନ ଦେଲେ ସମ୍ଭାଷି
ଥମ୍ଭୀଭୂତ ପ୍ରାୟେ ହୋଇଣ ଦେବୀ ବସି ।୨୨
ଅଲେଖ ସାରି ଦେବୀ ଚନ୍ଦ୍ରସମ କଲେ ଲାଗି
ରାନ୍ଧଣା ମନ୍ଦିରେ ପୁଣ ବିଜେ ଯାଇଂ ବେଗି ।୨୩
ଆପଣେ ରାନ୍ଧଣା ସେ କରନ୍ତି ପ୍ରତିଦିନ
ସ୍ନାହାନ ସାରିଣ ଦେବୀ କରନ୍ତି ଭୋଜନ ।୨୪
ଆଞ୍ଚୋବନ ସାରି ଚନ୍ଦ୍ରସମ ଘେନି ସୁବର୍ଣ୍ଣର ପାତ୍ରେ
କୀଅଁକର ନଗରକୁ ଚଳିଲେ ତୁରିତେ ।୨୫
ଅଡ଼ାଇ ପହର ଯେ ଦିନକର ଜ୍ୟୋତି
କୀଅଁକର ମନ୍ଦିରେ ଯାଇ ବିଜୟେ ମହାସତୀ ।୨୬
କୀଅଁକର ଛାମୁରେ ଚାରେ କହିଲେ ବେଗେ ଯାଇଂ
ସଇରିନ୍ଧ୍ରୀ ଅଇଲେ ଯେ ଶୁଣିମା ଗୋସାଇଂ ।୨୭
ଶୁଣିଣ ସାନନ୍ଦ ଯେ କୀଅଁକ ମହାରଥୀ
ଶରୀର ହୋଇଛି ଖୀନ ତାର ନବମ ଅବସ୍ଥା ।୨୮
ସଇରିନ୍ଧ୍ରୀ ଆଗତ ଶୁଣି ପଶିଲାକ ପ୍ରାଣ
ଧାତିକାରେ ଉଠିଣ ବସିଲା କୀଅଁକ ମହାରାଣ ।୨୯
ଯେସନ ସମୟେ ସଇରିନ୍ଧ୍ରୀ ପ୍ରବେଶ ଯାଇଂ କୀଅଁକର କତି
ଆସ ଆସ ସଂଗାତ ବୋଲି ହାକର କୀଅଁକ ସେନାପତି ।୩୦
ଚନ୍ଦ୍ରସମ ଖୋରାଏ ଛାମୁରେଣ ନେଇ ଥୋଇ
ଉଭା ହୋଇଲେ ଦେବୀ କୀଅଁକକୁ ବିନୋୟୀ ।୩୧

ଆସ ଆସ ସଂଗାତ ଗୋ ବସ ମୋର କଟି
ରୋହିଣୀ ଦ୍ରଶନେ ଯେହ୍ନେ ସାନନ୍ଦ ନିଶାପତି ।୧୩୨
ଚୁମ୍ବଇ ବଦନ.ତୋର ଯେ ଅଧର ପାନ କରି
କାମକ୍ରୋଧ ଜ୍ଜଳଢଂ ମୋତେ କର ଗୋ ବେଗେ ପାରି ।୧୩୩
ତୁ ମୋତେ ଅଭିଳାଷ ନ ଦେବୁ କି ସଖୀ
ଅନଙ୍ଗ ଶରଘାତେ ମୁଂ ହେଉଛି ବଡ଼ଦୁଖୀ ।୧୩୪
ସଇରିନ୍ଧ୍ରୀ ବୋଇଲେ ହୋ ମଧ୍ୟସ୍ଥାନେ ଦିନକର
ଯେତେବେଳେ ଯୁଗତ କି ମିଳଇ ଶୃଙ୍ଗାର ।୧୩୫
ଆଦିତ୍ୟ ମଧ୍ୟସ୍ଥାନେ ଯେବଣ ପୁରୁଷ ରତିରଙ୍ଗ ଖେଦ
ଅବଶ୍ୟ ସେ ପୁରୁଷ ହୁଅନ୍ତି ଶିରଛେଦ ।୧୩୬
ସ୍ତିରୀହୋଇ ଯେବେ ସେ କରାବଇ ରତି
ତଦ ଦୋଷେ ନାସା ଛେଦନ ହୁଅଇ ଯୁବତୀ ।୧୩୭
ସୂର୍ଯ୍ୟ ବେଳେ କାମର ଯେ ନାହିଂ ମେଳଭାବ
ଚନ୍ଦ୍ରକଳା ଘେନି ସେ ଚଳଇ କାମଦେବ ।୧୩୮
ଯେବଣ ପୁରୁଷ ରତି କରନ୍ତି ଦିବସେ
ଅଳପ ଆୟୁ ହୋଇ ପୁରୁଷେ ନାଶଯାନ୍ତି ଅବଶ୍ୟେ ।୧୩୯
ଆହୋ କୀଚ୍ଚକ ମୁଂ ଶ୍ରୀକୃଷ୍ଣାଂକୁ ଅଲେଖ ତିଳକ କରାଇ
ଯେଥକୁ ଆସିବାକୁ ମୋତେ ବେଳ ହୋଇବ କାହିଂ ।୧୪୦
ଉଛବ ନବରକୁ ମୁଂ ଯେ ଯିବଇ ସେହିବାଟେ
ତୁହି ଯେହିବାଟେ ଯିବୁଟି ଆବର ନାହିଂ ନାହିଂ ଭେଟେ ।୧୪୧
କୀଚ୍ଚକ ବୋଇଲା ମୋତେ ଲହରୀ କାମଜ୍ଜଳ
ଆରେ ପ୍ରାଣବନ୍ଧୁ ମୋତେ କରୁକିନା କୋଳ ।୧୪୨
ସଇରିନ୍ଧ୍ରୀ ବୋଇଲେ ମୋହୋର ଶରୀର ଛୁଇଂଲେ
ରସ ପତନ ହୋଇବ ମୋହୋର କାୟେ ଲାଗିଲେ ।୧୪୩
ରତ ପତନ ହୋଇଲେ ଶୃଙ୍ଗାରେ କିସ ସୁଖ
ଦେଖିଣ ଭ୍ରଷ୍ଟଗଲା ହୋଇଲା ବିମୁଖ ।୧୪୪
ଯେତେବେଳେ ତୋହୋର ମୋହୋର ହୋଇବ ଭେଟାଭେଟି
ଅସଂକ୍ଷେପ ଶୃଙ୍ଗାର ହୋଇବ ମନତୁଷ୍ଟି ।୧୪୫
ପ୍ରଥମ ଶୃଙ୍ଗାରେ ହୋଇ ଲଜ୍ଜା ଘୋରକରି
ଦିବସେ ରତିରଙ୍ଗ କରିତ କି ପାରି ।୧୪୬
ନିଅବକାଶେ ଭୋଜନ ନିର୍ଜନେ ଶୃଙ୍ଗାର
ପଣ୍ଡିତ ଲୋକେ ଯେହା କରନ୍ତି ବିଚାର ।୧୪୭
ଯାତ୍ରା ସରିଲା ଯେ ଉଛବ ନବର ହୋଇ ତୁଚ୍ଛା
ନିଗମସ୍ଥାନେ ତୋହୋର ମୋହୋର ପୂରିବ ମନବାଞ୍ଛା ।୧୪୮
କୀଚ୍ଚକ ହସିଲା ସଇରିନ୍ଧ୍ରୀ ବାଣୀ ଶୁଣି
ଜ୍ବର ଅବସ୍ଥାୟେ ଯେହ୍ନେ ନ ରୁଚଇ ଅନ୍ନପାଣି ।୧୪୯
ଯହୁଂ ସଇରିନ୍ଧ୍ରୀ ବାହୁଡ଼ିଲେ କୀଚ୍ଚକକୁ ପ୍ରୀତିବଚନ କହି
ଅନ୍ତେଶ୍ଵର ପୁରେ ଦେବୀ ରହିଲେ ଗୋପ୍ୟହୋଇ ।୧୫୦
କୀଚ୍ଚକ ବେଶ ବେଶନ ହୋଅଇ କ୍ଷଣେ କ୍ଷଣେ
ସଇରିନ୍ଧ୍ରୀ ସୁମରନ୍ତେ ଆକୁଳ ପଞ୍ଚପ୍ରାଣେ ।୧୫୧
ଆଦିତ୍ୟ ଅସ୍ତ ହୋଇବ କେତେବେଳେ
ପୁଣ ପୁଣ ଦୃଷ୍ଟି କରଇ ଆକାଶ ମଣ୍ଡଳେ ।୧୫୨
ବେନି ପ୍ରହର ବେଳ କମଳ ଲୋଚନ ଦିବାକର
ଅର୍ଘ୍ୟେକ ଘେନି କୀଚ୍ଚକ ନବରୁ ବାହାର ।୧୫୩
ପଛିମ ମୂରତି ଯେ ସ୍ଵାମୀ ଦିନମଣି
କୀଚ୍ଚକ ପ୍ରାଣପତ୍ୟ କରଇ ସ୍ତୁତିବାଣୀ ।୧୫୪
ଜୟତୁ ଭାସ୍କର ଗଗନ ଲିଙ୍ଗ ଆଦି
ଯୋଗୀଜନ ଚିନ୍ତାମଣି ତଳୟେ ସମ୍ପାଦି ।୧୫୫
ଜୟ ଜୟତୁ ତିମିରି ବିଦାରଣ ମାରତଣ୍ଡ
ଶୃଙ୍ଗାର ସମ୍ପାଦିଣ ନାଥ ତ୍ରିପୁତି କର ପିଣ୍ଡ ।୧୫୬
ସ୍ଵାମୀ ତୁ ଯେ ହରିଲୁ ଗଉତମଂକର ପତ୍ନୀ
ତୋହୋର ଗୃହଭଗ୍ନ ହୋଇଲେ ଗଉତମ ମହାମୁନି ।୧୫୭
ସ୍ଵାମୀ ଯେମନ୍ତ ଅଟଇନା ପରଦାରା ଅବସ୍ଥା
ତୁ ଦେବ ଆପଣେ ଯେ କରତା ବିହନ୍ତା ।୧୫୮
ସ୍ଵାମୀ ସଇରିନ୍ଧ୍ରୀ ନିମନ୍ତେଣ ମୋହୋର ବିକୋଡଇ ପଞ୍ଚଆତ୍ମା
ବେଗ ହୋଇ ଅସ୍ତ ହୋଉକିନା ମହାତମା ।୧୫୯
ସଇରିନ୍ଧ୍ରୀ ତୁଲେ ମୁଂ ଯେ କରିବି ରତିରଙ୍ଗ
ମେରୁ ପ୍ରତିକ୍ଷଣ କରିବା ଦେବ ବେଗ ।୧୬୦
ସଂଗ୍ୟାର ବଲ୍ଲଭ ତଲୟେ ମମ ହୃଦେ
ଯମଦଣ୍ଡୁ ବଞ୍ଚିବି ନାଥ ତବ ପରସାଦେ ।୧୬୧
ଦିବସେ ଦିବାକର ଯାହାର ନାମଗୋଟି
ଶୂଦ୍ରମୁନି ସାରୋଳା ଦାସ ତବ ଚରଣ ତଳେ ଲୋଟି ।୧୬୨
ଦିନକର ନାଥଂକୁ ବହୁତ ବିନୟ କରି
ନିଜ ମନ୍ଦିରେ ପୁଣି ଗମଇ ବାହୁଡ଼ି ।୧୬୩
ଚତୁଦଶ ଘଡ଼ି ଦିନକର ନାଥ ଗମୀ
ପୁଣ ପୁଣ ଆନ ବେଶ କୀଚ୍ଚକ ମତିଭ୍ରମି ।୧୬୪
ସୁଶୀତଳ ଜଳେ ପଖାଳଇ ତାହାର କାୟେ

ମୃଗଲାଭ କସ୍ତୁରୀ କ୍ଷଣେ କ୍ଷଣେ ଲେପନ ହୋୟେ କାୟେ ।୬୫
କ୍ଷଣେ କ୍ଷଣେ ଚନ୍ଦ୍ରସମ କ୍ଷଣକେ ଆନରାଭା
ଆନ ଆନ ଅଳଂକାର ଆଭରଣେ ହୋଇ ବୀର ପ୍ରଭା ।୬୬
ପୁଣ ପୁଣ ବାହାର ହୋଅଇ କରେଣ ଅର୍ଘ୍ୟେକ ସେ ଘେନି
ସ୍ୱାମୀ କମଳକର ବହନ ହୋଉକିନା ରୟଣୀ ।୬୭
ତୁ ଦେବ ବିହନ୍ତା ପୁରୁଷ ଆଦି ଅନାଦି ଭାନୁ
ପୁରୁଷଂକର ବିରହ କଷ୍ଟ ପ୍ରତକ୍ଷେ ତୁହି ଜାଣୁ ।୬୮
ସଂଗ୍ୟାର ନିମନ୍ତେ ଦେବ ବସିଲୁ ଯାଇ କୁନ୍ଦେ
ଅନେଶ୍ୱତ କରିଣ କଲୁ ଦେବ ଛେଦେ ।୬୯
ଜ୍ୟୋତିଲିଙ୍ଗ ନାମ ବହିଲୁ ଦେବ ତୁହି
ଶତେ ସହସ୍ର କିରଣ ଶରୀରେ ଦେବେ ବହି ।୭୦
ଗଗନ ଆଧିନାଥ ନମସ୍ତେ ନମସ୍ତେ
ମମ ପ୍ରାଣରକ୍ଷ ହୋଉ ବହନ ହୋଇବା ଅସ୍ତେ ।୭୧
ପୁଣି ଯାଇ ପ୍ରବେଶ ହୋଇଲା ନିଜପୁରୀ
ନେଉଟି ପୁଣ ବାହୁଡ଼ି ଆସଇ ସଇନ୍ଧୀରି ।୭୨
ଛନ୍ନ ଛନ୍ନ ମନ ଅଚେତ ଚିତ୍ତ ଭାବୁଂ
କ୍ଷଣେ କ୍ଷଣେ ବେଶ ବେଶନ କାଢି ପକାୟେ ସବୁ ।୭୩
ପୁଣି ବିଚାରଇ ସଇରିନ୍ଧ୍ରୀ ଅଇଲେ
ଦେଖି ଦୃଷିବ ମୋତେ ଶରୀରେ ଅଳଂକାର ନ ଥିଲେ ।୭୪
ପୁଣ ପୁଣ ଆନ ବେଶ ହୋଅଇ କ୍ଷଣେ କ୍ଷଣେ
ପୁରୁ ବାହାର ହୋଇ ଚାହଂଇ ଗଗନେ ।୭୫
ପଞ୍ଚଦଶ ଘଡ଼ି ରବି ବିଜୟେ ଅଂଶୁମାଳୀ
ରାଗେଣ କୀଞ୍ଚକ ସ୍ୱାମୀକି ଦିଲା ଗାଳି ।୭୬
ତୁହୋ ଦିନକର ନାଥ ଅଟୁସି ବଡ଼ ଦୋଷୀ
କିମ୍ପା ଆନେ ତୋତେ ଶାପ ଦିଲେ ଗଉତମ ମହରଷି ।୭୭
ପ୍ରଳମ୍ୟା ବିବାଦେ ତୋତେ ଗିଳିଲା ସୁବାହୁ
ଜାତି ଜାଣିଣ ତୋତେ ଗରାସଇ ଯେ ରାହୁ ।୭୮
ଅହିଲାକୁ ହରିଲୁ ତୁ ଅତି ଭଣ୍ଡପଣେ
ଗଉତମ ଶାପ୍ୟ ତୋତେ ଦିଲେ ସେ କାରଣେ ।୭୯
ଚନ୍ଦ୍ରଭାଗା ଅର୍କତୀର୍ଥେ ହୋଉ ତୁ କୋଣାଅର୍କ ମୂରତି
ଭାସ୍କର ପୁରାଣେ ତୁ ହୋଉଥାଉ ତ୍ରିପୁତି ।୮୦
ମକର ମାସ ଶୁକଳ ପକ୍ଷ ସଂକ୍ରମଣ ସପତମୀ
ମିଳନ୍ତି ବହୁତ ଜନେ ଭଗତି ଚିତ୍ତେ ସ୍ୱାମୀ ।୮୧
ପଞ୍ଚବିଂଶ ସହସ୍ର ଭଣ୍ଡ ପୁରାଣ ଗ୍ରନ୍ଥ
ତୋହୋର ଛାମୁରେ ସେ ହୋଇଥାଇ ଉକତ ।୮୨
ଯେସନେକ ବେଭାର ଅଟଇ ତୋହୋର କଥା
ଆକାଶର ମାର୍ଗେ ତୁ ଯେ ଅଧର୍ମ ଦେବତା ।୮୩
ଭାରିଯାର ନିମନ୍ତେ ତୁ କ୍ଷୀନ୍ନକଲୁ କାୟା
ଭଗତ ଜନମାନଂକୁ ତୋହୋର ନ ବସଇ ଦୟା ।୮୪
ହାଥ ପାଇବା ଯାୟେ ଥାଆନ୍ତୁ ଯେବେ କତି
ରାଗ ଶାନ୍ତି ହୁଅନ୍ତା ଦିଅନ୍ତି ତୋତେ ଶାସ୍ତି ।୮୫
ଦିନକର ନାଥ ଯହୁଂ ମେରୁ ଅସ୍ତଗଲା
ବାହୁଡ଼ି କୀଞ୍ଚକ୍ ନିଜ ପୁରେ ପ୍ରବେଶିଲା ।୮୬
ପୁଣ ଆନ ବେଶ ବେଶନ କୀଞ୍ଚକ ସେନାପତି
ସଇରିନ୍ଧ୍ରୀ ବ୍ୟତିରେକ ତାହାର ଆନେ ନାହିଂ ମତି ।୮୭
ଯେଥୁ ଅନନ୍ତରେ ଯେ ପାଣ୍ଡବ ସୂପକାର
ବେଳଥାଉଂ ସାରିଲା ସେ ରାନ୍ଧଣା ଯୋଗାଡ଼ ।୮୮
ସୁଶୀତଳ ଜଳରେ ପଖାଳିଲା ତାର କାୟେ
କୀଞ୍ଚକ ବିହୁନେ ତାହାର ଆନ ନାହିଂ ଲୟେ ।୮୯
ବଲ୍ଲଭ ବୋଇଲା ବ୍ରାହ୍ମଣମାନନ୍ତ ସେ ରାଇ
ଶରୀରକୁ ମୋର ବଡ଼ ଆଳସ ଲାଗଇ ।୯୦
ରାନ୍ଧଣା ବିଧାନ ହୋ ସରିଲା ମୋହୋରି
ମୁଣୋହି କରାଅ ଯେବେ ମଛଦଣ୍ଡଧାରୀ ।୯୧
ରାଜାକୁ ମୁଣୋହି ଯେବେ କରାଇବ ଯୁଗତି
ଯେବେ ସଂଖୋଳା ମୋତେ କରଇ ମଛପତି ।୯୨
ଶରୀରକୁ ଅସୁସ୍ଥ କହିବ ମୋର ଜାଣି
ଯେମନ୍ତ ବୋଇଲା ସେ ପାଣ୍ଡବ ବୀରମଣି ।୯୩
ରାନ୍ଧଣା ଯୋଗାଡ଼ ଯେ ବାହାର ପୁରେ ଥୋଇ
ଆପଣା ରାନ୍ଧଣା ଯେ ରୋଷୁଅରେ ଚଳାଇ ।୯୪
ବେଳେକ ମୁଣୋହି କରିଥିଲେ ନୃପବର
ପଖାଳ ମୁଣୋହି ଯେ ବେଗକରି କର ।୯୫
ଆପଣେ ମୁଣୋହିଂ ସେ କଲା ବୀର ତହିଂ
କୀଞ୍ଚକ ବିନୁ ତାହାର ଆନେ ଚିତ୍ତ ନାହିଂ ।୯୬
ରାଜାକୁ ପଖାଳ ମୁଣୋହିଂ ଯେ କରାଇ ବୀରମଣି
ପହରକ ଉଭାରେ ଯେ ପାଞ୍ଚଘଡି ରୟେଣୀ ।୯୭
ନଦୀର ତୀରେ ଯାଇ ପବନ ତନୟେ
ସୁଶୀତଳ ଜଳେ ପଖାଳିଲା ନିଜ କାୟେ ।୯୮
ସୁମରଇ ପାବେନି ପିତା ଯେ ପବନ

ମରୁତ ଦେବତା ଆସି ମିଳିଲେ ବହନ ସନ୍ନିଧାନ ।୯୯
ପ୍ରଣପତ୍ୟ ହୋଇ ସେ ବୋଲଇ ବୀରମଣି
ନାଟପା ମନ୍ଦିରେ ତୁମ୍ଭେ ଯାଅ ଯେହିକ୍ଷଣି ।୧୦୦
ଅର୍ଜ୍ଜୁନର ତହୁଂ ସେ କାଞ୍ଚଲୀ ସଜ ଆଣ
ସ୍ତ୍ରୀବେଶେ ମାରିବି ଯାଇଁ କୀଚ଼କ ମହାରାଣ ।୧୦୧
ପବନ ବୋଇଲା ଆଣିଦେବି ଯେହିକ୍ଷଣି
ପୃଥକି ଭାରା ସେ ମୂଢ଼ ମାର ବୀରମଣି ।୧୦୨
ନାଟପା ମନ୍ଦିରେ ଯାଇ ବିଜୟେ ସମୀର
ଉର୍ବଶୀର ତେଜକାନ୍ତି ଅର୍ଜ୍ଜୁନ ଶରୀର ।୧୦୩
ଶିରରେ ସିମନ୍ତିନୀ ସେ ମୁକୁତାର ଜାଲି
ନେତର ସୁସଞ୍ଜ ସେ ରତ୍ନର କାଞ୍ଚଲୀ ।୧୦୪
ଅର୍ଜ୍ଜୁନର ତହୁଂ ତାହା ସେ ଆଣିଲା ପବନ
ବେଗେ ଆଭରଣ ଯେ ଭୀମସେନ ଶରୀରେଣ ।୧୦୫
ସ୍ତ୍ରୀରୀବେଶ ଅଳଂକାର ହୋଇଣ ବଲ୍ଲଭ
ବ୍ରହ୍ମାଲୋକର ମଧ୍ୟେ ଯାହାର ମହିମାଂ ଦୁଲଭ ।୧୦୬
କବେରୀ ଭାର ଖୋଷା ଖୋଷଣ ପଞ୍ଚାଳ
ପ୍ରବନ୍ଧ କୁନ୍ଦ ଫଗୁଆ ଭରିଲା କାଞ୍ଚଲୀ ବକ୍ଷସ୍ଥଳ ।୧୦୭
ଚନ୍ଦନ କର୍ପୂର ଚନ୍ଦ୍ରସମ ମୃଗନାଭ କସ୍ତୁରୀ
ଗନ୍ଧରସ କୁଆଦ ସମସ୍ତ ଶରୀରେ ଲେପନ କରି ।୧୦୮
ଚିକୁର ବକ୍ର ଚାହାଂଣୀ ଗଭାରେ ଖଞ୍ଜିଲା ସେବତୀ
ପବନ ଦେବତା ଆଣି ପାଦେ ଖଞ୍ଜିଲା ତଡତି ।୧୦୯
ଚମ୍ପକ ବକୁଳ ମଲ୍ଲୀ ଯାତୀ ଯୂଥୀ ସେବତୀ
ସମସ୍ତ କୁସୁମ ଘେନି ଖୋଷା ସାଜୋଆନ୍ତି ।୧୧୦
ଶିରରେ ମୁକୁତାର ଜାଲି ଶୋହେ ଲଲାଟ ପାଟି
କର୍ଣ୍ଣେଣ ଗନ୍ଧର୍ବ ତଡକୀ ହୃଦେ କଣୟ ମାଳଗୋଟି ।୧୧୧
ଭୁଜେଣ ଶୋଭିତ ଯେ କଣୟ ରତ୍ନଚୁଡ଼ି
ପାଦରେ ନୂପର ରୁଣଝୁଣ ଝୁଣ୍ଟିଆ ଡାକପାଡି ।୧୧୨
ଝୀନବସନ ପରିହରଣ ପାଣ୍ଡବ ସୁନ୍ଦର
ଋଷଭ ମାସ ଶୁକ୍ଳପକ୍ଷ ଦଶମୀ ତିଥିର ।୧୧୩
ଅର୍କବାର ସେ ଦିନ ଯେ ନକ୍ଷତ୍ର ନାମ ହସ୍ତା
ରାତ୍ର ପାଞ୍ଚ ଘଡ଼ିରେ ଚଳଇ ପାଣ୍ଡବ ବଳବନ୍ତା ।୧୧୪
ଉତ୍ସବ ନବରେ ସେ ପ୍ରବେଶ ନିଶାକାଳେ
ରୂପ ଦେଖି ଭୟେ ଦ୍ୱାର ଛାଡିଲେ ଦ୍ୱାରପାଳେ ।୧୧୫
ଶୟନ ମନ୍ଦିରେ ସେ ପ୍ରବେଶ ବଲ୍ଲଭ
ଦେଖଇ ପରିମଳ ପୁର ଅତୀୟ ସୁଲଭ ।୧୧୬
ଜଳନ୍ତି ଦୀପାବଳୀ ଯେ ମନ୍ଦିର ଚଉକତି
ଭୀମସେନ ନ ଦେଖିଲା କୀଚ଼କ ସେନାପତି ।୧୧୭
ବିଚାରଇ ସୂପକାର ସେ ନୁଆସି ଆସିକରି ଗଲା
ଯେ ମୋହୋର ଆସିବାର ଅବା ବିଳମ୍ବ ହୋଇଲା ।୧୧୮
ଦିବ୍ୟ ପଲଂକେ ପଡ଼ିଛି ଶେଯ ଯେ ସୁପାତି
ଶରଧେ ଶୁତିଲା ତହିଂ ପାଣ୍ଡବ ଭୋଳମତି ।୧୧୯
ଜଳନ୍ତା ଦୀପାବଳୀ ଯେ ସମସ୍ତ ନିବାଇଁ
ନିଚିନ୍ତେଣ ଭୀମସେନ ଯେ ଶୋଅଇ ନିଦ୍ରାଯାଇ ।୧୨୦
ଦ୍ୱାରେ ପଶନ୍ତେଣ ଲିହିଅଛି ଭୀମସେନ
ଯେସନେକ ଲଂଘନ୍ତେ ତୋର ପୂରିବ ଜୀବନ ।୧୨୧
ଯେଥୁ ଅନନ୍ତରେ ରାତ୍ର ଦ୍ୱାଦଶ ଦଣ୍ଡର
କାଳବେଳା ହୋଇଅଛି ଗମନ ଶନିଶ୍ଚର ।୧୨୨
ଅନେକ ବେଶ ବେଶନ କୀଚ଼କ ସେନାପତି
ପୁରୁ ବାହାର ହୋଇଲା ଦେଢ଼ ପହର ରାତି ।୧୨୩
ଆଲଟ ଚାମର ଯେ ଢାଳନ୍ତି ଯୁବତୀ
ଅନେକ ହୁଳା ସେ ଲାଗିଲା ଚଉକତି ।୧୨୪
ମଦନ ଆରତେ କୀଚ଼କ ବାହାର ହୋଇଲା
ପ୍ରଥମେ ପାଦ ବଢ଼ାନ୍ତେ କୀଚ଼କ ଆପଣେ ଛିଂକିଲା ।୧୨୫
କାମର ବିଭୋଳେ ସେ ନ ମଣଇ କିଛି
ମଧୁର ଲୁବୁଧେ ଯେହ୍ନେ ପଡଇ କୀଟମାଛି ।୧୨୬
ନବରୁ ବାହାର ହୁଅନ୍ତେ କୀଚ଼କ ପଛିମ ମୂରତି
ଫେରୁଧରି ଉଭା ଉତଙ୍ଗ ଦେଇ ମହାଛତ୍ରୀ ।୧୨୭
ବାଟ ଛାଡିଣ ବୀର ଗମଇ ରତିଆଶେ
ବଇଲ ବନ୍ଧନ ଯେହ୍ନ ଗମଇ ସନ୍ତୋଷେ ।୧୨୮
ଆଗରେ ଝିଂକନ୍ତି ଯେ ବିଧବା ବନିତା
ଅଦଭୁତେ ଉଲୁକ ଡାକ ଦିଅଇ ଅପ୍ରମିତା ।୧୨୯
ଛାମୁରେ ବିକଟାଳେ ସେ ରୁବନ୍ତି ଭେରଣ୍ଡା
ଭୁଜରୁ ଝଡି ପଡ଼ିଲା ତାର ଝମକାନ୍ତେ ଖଣ୍ଡା ।୧୩୦
ଆଣ୍ଟୁରେ ପଡିଣ ତାହାର ବହଇ ରୁଧିର
ରଣ ମାତଙ୍ଗ ଜାଣି ସେ କାମେଣ ଆତୁର ।୧୩୧
ବାମ ନୟନ ତାର ଘନ ଘନ ଫୁରି
ପଛେଣ ରହି ଶ୍ୱାନେ ଦିଅନ୍ତି ବିକଟାଳ ରଡି ।୧୩୨
ଛାମୁରେ କହିଲା ଆସି ପ୍ରିୟମ୍ବଦା ମୃଦୁସୁଲୀ

ସ୍ୱାମୀ ବଡ଼ାଇ ଅଶୁଭ ମୁହିଁ ସଂକୁନ୍ୟ ଦେଖିଲି ।୧୩୩
ସ୍ୱାମୀ ଯେମନ୍ତ ଅନକୂଳେ ଯେ ପଥବାହି ଯାଇଂ
ଗଲେ ବାହୁଡ଼ି ନୁଆସଇ ଆବର ଜୀବନ ନ ପାଇ ।୧୩୪
ସ୍ୱାମୀ ଆବର କଥାଯେକ ଶୁଣିମା ମହାଛତ୍ରୀ
ଦ୍ରୁପଦ ସପନ ଗୋଟାଯେ ଦେଖିଲଇଂ ଆଜ ରାତି ।୧୩୫
ସ୍ୱାମୀ ଯାଉଂ ଯାଉଂ ପଡ଼ିଲ ତୁମ୍ଭେ ଗମ୍ଭୀର ଅଗାଦେ
ଅସ୍ଥିମାଳା ଗୋଟାଯେକ ଲୁଳେ ତୁମ୍ଭ ହୃଦେ ।୧୩୬
ସ୍ୱାମୀ ହାତରୁଂ ବେନିଚୁଡ଼ି ତୁଟାଇ ଠାକୁରାଣୀ
ତୁମ୍ଭର ଶିରେ ତାହା ନିବେଶିଲେ ଆଣି ।୧୩୭
ସେ ଜୀର୍ଣ୍ଣକୂପରୁ କାଢି ଆଣିଲା ଯେକବୀରେ
ଅସ୍ଥି ମାଯେଂସ ଲୋଚାକରି ତୁମ୍ଭଂକୁ ଚାପିଲା କାଖରେ ।୧୩୮
ସ୍ୱାମୀ କୁଟୁମ୍ବଯାକ ତୁମ୍ଭର ଯେକନାବେ ଯାନ୍ତେ ବସି
ମଝନଦୀରେ ନାବ ଭାସି ସର୍ବେ ହୋଇଲେକ ଧ୍ୱଂସି ।୧୩୯
ଅନେକ ବିପତ୍ତି ବୋଲି ଯେ କହିଲା ପ୍ରିୟମ୍ବଦା
ରୋଷେ କୀଚକ ଶୁଣି ବୁଲାଇଲା ବେନିଗଦା ।୧୪୦
ବୁଲାବନ୍ତେ ଗଦା ଯେ କପାଳେ ତାହାର ବାଜି
ଲଲାଟ ପାଟିରୁ ବାହାର ରୁଧିର ଗଳଗାଜି ।୧୪୧
କୀଚକ ବିମୁଖେ ଗଦା ଯେ ହାଥରୁ ପକାଇଲା
ମୃଦୁସୁଲୀ ବହୁତ ତିଆରି କହିଲା ।୧୪୨
ତାହାର ବଚନ ସେ କେବେହେଂ ନ ଶୁଣଇ
ବଧିର ଆଗରେ କମ୍ବୁ ଶବଦ କି ବାଇ ।୧୪୩
ଯେତେବେଳେ ପ୍ରାଣ ଛାଡି ଲୋଡଇ ନିଜ ଦେହୀ
ପୁତ୍ର ବଧୂ ଭାରିଯା ମୁହାଂସ ଛାଡେ ସେହି ।୧୪୪
ଅନ୍ଧ ପଟଳ ଯେହ୍ନେ ଲାଗଇ ସନ୍ଦେହ
ବନ୍ଧୁ ସହୋଦ୍ର ଦେଖିଲେ ଆବର ନ ବଢ଼ାନ୍ତି ସେ ମୋହ ।୧୪୫
ଯେତେ ଉତପାତ ଅପ୍ରମାଣ ହୃଦେ
କିଛିହିଂ ନ ଜାଣଇ ସେ ମଦନ ବିଷାଦେ ।୧୪୬
ଯେତେକ ବିପଦ କଥା ସେ ପ୍ରିୟମ୍ବଦା କହଇ
ଯେମାନ କିଛିହିଂ ସେ ମନରେ ନ ଘେନଇ ।୧୪୭
ଯେସନେକ ବେଳେ ବାଆ ଯେ ବହିଲା ଅଦ୍‌ଭୁତେ
ବିହୁଡ଼ି ହୁଳାମାନେ ଯେ ଲିଭିଲେ ସମସ୍ତେ ।୧୪୮
ଅନ୍ଧାର ମନ୍ଦିରେ ଯେ ବିଜୟେ ବୀରଚାପେ
ପୁର ଚଉକତି ଦରାଣ୍ଡଇ ବୀର ଦର୍ପେ ।୧୪୯
ସଇରିନ୍ଧ୍ରୀ ସଇରିନ୍ଧ୍ରୀ କୋମଳେ ଦିଅଇ ହାକ
ରେ ପ୍ରାଣ ବଲ୍ଲଭୀ ମୋହୋର ପଞ୍ଚୁପ୍ରାଣ ରଖ ।୧୫୦
ବଚନ ସମସ୍ୟା ନ ପାଇ କୀଚକ ବୋଇଲା
ନିହାଇ ଆସଇ କି ଆସିଣ ବାହୁଡ଼ିଣ ଗଲା ।୧୫୧
ଦ୍ୱାରପାଳେ ବୋଇଲେ ଆମ୍ଭେ ସମସ୍ତେ ଦେଖିଲୁ ପ୍ରତକ୍ଷେ
ଠାକୁରାଣୀଂକି ଦେଖି ଆମ୍ଭେ ହୋଇଲୁ ଅନ୍ତର୍ଗତେ ।୧୫୨
ଦୃଢ଼କରି କୀଚକ ଦରାଣ୍ଡଇ ବେନିହାଥେ
ନିଜ ଭୁଜ ପଡ଼ିଲା ଯାଇଂ ଭୀମସେନର ଗାତ୍ରେ ।୧୫୩
ଦରିଦ୍ର ହାଥେ ଯେହ୍ନେ ପଡ଼ିଲାକ ନିଧି
ତେସନେକେ କୀଚକକୁ ପ୍ରାପତ ସମ୍ବୃଦ୍ଧି ।୧୫୪
ଆଶ୍ୱାସି ଶିରେ ନେଇ ଦିଲା ଦକ୍ଷିଣ କର
ଆକୋଂଚିତ କବେରୀ ଯେ ସୁସଞ୍ଚ ଖୋପା ଚିକୁର ।୧୫୫
ଆରେ ସଖି ତୁ ମୋହୋର ପଞ୍ଚୁପ୍ରାଣ ସମ
ଯେ ପ୍ରବନ୍ଧ ଖୋପା ଯେ ତୋର ଘେନିଯାଇ ଆପାଦ ମମ ।୧୫୬
ଯେ ଗଣ୍ଡସ୍ଥଳ କପାଳ ତୋର ରସାଣିଲା ସୁବର୍ଣ୍ଣ ଜାଣି
ତହିଂର ଆପାଦ ମୁଂ ଘେନଇ ସଂଘାତୁଣୀ ।୧୫୭
ଆରକ୍ତ ଅବଲୋକନ ତୋହୋର ଚକ୍ଷୁ ବେନି
ତହିଂର ଆପାଦ ସଖିରେ ମୁଂ ଯାଇକିନା ଘେନି ।୧୫୮
ଅତୁଚିତ ତିଳଫୁଲ ଦିଶଇ ତୋହୋର ନାସା
ତହିଂର ନିଉଛାଣି ମୁଂ ଯାଇକିନା ମନୀଷା ।୧୫୯
ପଂକୁ ବିମ୍ବଫଳ ଜାଣି ତୋହୋର ଅଧର
ତହିଂର ଆପାଦ ଯେ ପଡୁମମ ଶିର ।୧୬୦
ପାଚିଲା ଡାଳିମ୍ବ ବୀଜ ଜାଣି ତୋହୋର ଦଶନ
ତହିଂର ଆପାଦ ମୁଂ ଘେନି ଯାଇଂ କିନା ପୁଣ ।୧୬୧
ସଞ୍ଚ ପୋଯେଲା ଜାଣି ତୋହୋର ରସନା
ତହିଂରେ ନିଉଛାଣି ଯିବିରେ ବରାଙ୍ଗନା ।୧୬୨
ଲୁଳିତ କଣୟ କାପ ଶ୍ରବଣ ଗଣ୍ଡସ୍ଥଳ
ତହିଂର ଆପାଦ ମୋର ପଡୁ ବକ୍ଷସ୍ଥଳ ।୧୬୩
ଅଣ୍ଡିର କୋକିଳ ଜାଣି ତୋ ବାଣୀ ସୁସ୍ୱର
ତହିଂରେ ନିଉଛାଣି ପଡୁ ମୋହୋର ମାଥର ।୧୬୪
ଘଟଣ କୁନ୍ଦ ଜାଣି ତୋହେର ସ୍ଥଳଗଣ୍ଡା
ସୁସ୍ୱର କର୍ଣ୍ଣଗୋଟି ତୋହୋର ଯାଇ ପରିମୁଣ୍ଡା ।୧୬୫
କମଳ ମୃଣାଳ ଜାଣି ତୋହୋର ବେନିବାହା
ତହିଂର ଆପାଦ ପଡୁ ଯେ ମୋହୋର କାୟା ।୧୬୬

କନକ ଚମ୍ପକ ଢାଉପାଖୁଡ଼ା ପ୍ରାୟେ ଅଙ୍ଗୁଳି ନଖ
ମୁହିଂ ତହିଂରେ ନିଉଛଣା ଯାଇରେ ନିରେଖି ।୧୧୬୭
ଆରମ୍ଭ ବକ୍ଷସ୍ଥଳ ସୁବର୍ତ୍ତୁଳ ସ୍ତନପାଖୁ
ତହିଂର ଆପାଦମାନ ପଡ଼ୁ ମମଚକ୍ଷୁ ।୧୧୬୮
ଘଟଣା କୁମ୍ଭପ୍ରାୟେ ତୋହୋର ବେନି କୁଚ ଯୁଗଳ
ତହିଂର ଆପଦ ମୋର ପଡ଼ୁ ବକ୍ଷସ୍ଥଳ ।୧୧୬୯
ସଂକୀର୍ଣ୍ଣ ମଝା ଯେ କୃପଣର ଦାନ ଜାଣି
ତହିଂର ନିଉଛାଣି ଘେନଇରେ ସଂଘାତୁଣୀ ।୧୧୭୦
ସୁଲଳିତ ଜାଣିଣ ତୋହୋର କୋମଳ ପିଠି
ଯେଥିର ଆପାଦ ପଡଇ କିନା ମୋର ଦୃଷ୍ଟି ।୧୧୭୧
ଆରମ୍ଭ ବିସ୍ତାର ସଖି ତୋହୋର ବେନିଜାନୁ
ତହିଂର ନିଉଛଣା ପଡଇ କିନା ମୋହୋର କୁରୁଶାନୁ ।୧୧୭୨
ସୁଲଳିତ ଲୀଳା ତୋର ଚାଲନ୍ତେ ସିଂଘଗତି
ତହିଂର ନିଉଛୁଣା ମୁଂ ଯାଇକିନା ନିତି ।୧୧୭୩
ଭ୍ରମର ପୋକ ଜାଣି ତୋହୋର ହୃଦୟ ରୋମାବଳୀ
ତହିଂର ନିଉଛୁଣା ଯାଇଂ ନିତିଓଳି ।୧୧୭୪
ରକତ କୁମୁଦ ପ୍ରାୟେ ପାଦ ତଳିର ରେଖି
ତହିଂର ନିଉଛୁଣା ମୁଂ ଯାଇ କିନା ସଖୀ ।୧୧୭୫
ପୟରେ ଅଙ୍ଗୁଳି ତୋହୋର ସୁଘଟିତ ପୋୟେଳା
ଯେଥିର ଚିହ୍ନ ମୋହୋର ବସୁ ବକ୍ଷସ୍ଥଳା ।୧୧୭୬
ଅନେକ ଚାଟୁ ବଚନ କୀଞ୍ଚକ ବାଉନି
ପୁରୁଷ ବିରହିତା ନବମ ଅବସ୍ଥା ଅଛି ଘେନି ।୧୧୭୭
ପୁଣ ପୁଣ ବୋଲଇ ସଖୀ ମୁହିଂ ବଡ଼ ଦୋଷୀ
ଅପାର ବିଳମ୍ବ କଲି ଦେଢ଼ ପହର ହେଲା ନିଶି ।୧୧୭୮
ତହିଂକି କୋପ ମୋତେ ହୋଇଲା କି ତୋହୋର ମନ
ନିଜ ଭୁଜ ଘେନି ମୋତେ କରସି ଗୋ ବନ୍ଧନ ।୧୧୭୯
ନଖ ଦନ୍ତଘାତେ ବିକୋତ ମୋହୋର ଦେହ
ନୟନ ବାଣ ବିନ୍ଧ ମୋର ବଢ଼ୁ ଯେ ସେନେହ ।୧୧୮୦
ସଖି ରତିବନ୍ଧେ ପାଡିଣ ବକ୍ଷସ୍ଥଳେ ମୋହୋର ବସ
ହୃଦଖଣ୍ଡ ବିଦାର ପୂରୁ ତୋହୋର ଆକ୍ରୋଷ ।୧୧୮୧
ପୁରୁଷ ଦର୍ପ ଭଞ୍ଜନୀ କି ସାଧୁ ଯୋ ଗମୁଦ୍ରା
ବିରହିତା ବାମା ହୋଇ କିମର୍ଥେ ଯେତେ ନିଦ୍ରା ।୧୧୮୨
ଅନେକ ଚାଟୁ ବଚନ କହଇ ମଦନ ଆଗତେ
ଆବୋରି ଶୁତିଲା ଥନ ଆଉଂସି ବାମହାଥେ ।୧୧୮୩

ଉପରେ ନଦିଲା ନେଇ ବାମ ପାଦଗୋଟି
ଦକ୍ଷିଣ ହାଥେ ଫେଡଇ ନୀବିବନ୍ଧ ଗୋଟି ।୧୧୮୪
କଦଳୀ ଫଳ ପ୍ରାୟେ ଲାଗିଲା ତାର ହାଥେ
କୀଞ୍ଚକ ବୋଇଲା ଯେତ ସ୍ତିରୀ ନୋହୋଇ ଯୁଗତେ ।୧୧୮୫
ଯୋନିମାର୍ଗେ ହାଥ ଦିଅନ୍ତେ ପୁରୁଷ ଲକ୍ଷଣ ଅଛି
ସଇରିନ୍ଧ୍ରୀ ନୁହଇ ବୋଲି ସେ ମନେ ବିଚାରୁଛି ।୧୧୮୬
କଦଳୀ ପତ୍ର ଜାଣି କମ୍ପଇ ତାର ଅଙ୍ଗ
ଗର୍ଜନ୍ ନାଦ କରି ଯେହ୍ନେ ଉଠଇ ନରସିଂଘ ।୧୧୮୭
କୀଞ୍ଚକ ମଉନବ୍ରତ ହୋଇଛି ମତିଭ୍ରମେ
କିଛିହିଂ ନ ଜାଣଇ ସେ କାମର ଅସାଷମେ ।୧୧୮୮
ଶୁଣ ହୋ ଚଇତନ କାମର ଅବସ୍ଥା ଯେହେନ୍ତେ
କୀଞ୍ଚକ ବାରି ନୁଆରିଲା ସ୍ତିରୀ ପୁରୁଷ ଅଙ୍ଗ କେହ୍ନେ ।୧୧୮୯
ଭୀମସେନ କୀଞ୍ଚକେକୁ ପାଡିଲା ଆକ୍ରୋଷି
ଲେଉଟାଇ କୀଞ୍ଚକ ଯେ ଭୀମକୁ ମାଡିବସି ।୧୧୯୦
ହୃଦୟେଣ ବସି ମୁଖେ ଭିଡି ଦିଅଇ ଚୁମ୍ବନ
ବିଚାରି ବୁଝିଲା ଯେତ ବଡ଼ାଇ ଆରମ୍ଭିଲା ମାନ ।୧୧୯୧
ଶତଶୃଙ୍ଗ ଶାପ୍ୟ ଯେ ଦେଇଛି କାଳକାଳେ
ତଦଦୋଷେ ଭୀମସେନ ପଡ଼ିଅଛି ତଳେ ।୧୧୯୨
ପୁଣ ପୁଣ କୀଞ୍ଚକ ଚୁମ୍ବନ ଦିଅଇ ଯେ ମୁଖେ
ଶରୀର ବୁଡ଼ିଲା ତାହାର କାମରସେ ଦୁଖେ ।୧୧୯୩
ଶତଶୃଙ୍ଗ ପର୍ବତକୁ ଭୀମ କଲା ସୁମରଣ
ବ୍ରିକୋଦର ମୂରତି ଭୀମ ବିକାଶିଲା ତତକ୍ଷଣ ।୧୧୯୪
ଥମ୍ଭୁ ନରସିଂଘ ଦେଖି ଯେହ୍ନେ ହରିଣ୍ୟକଶିପୁ
ଆକ୍ରୁଷଣେ ବଢ଼ିଲା ଯେହ୍ନେ ନବ ସହସ୍ର ଯୋଜନ ବପୁ ।୧୧୯୫
ତେସନେକ ପରାୟେ ଯେ ସୂପକାର ବଲ୍ଲଭ
ଗୁପତ ପ୍ରତଗ୍ୟାଂ ସେ କରଇ ଦେବଂକୁ ଦୁର୍ଲଭ ।୧୧୯୬
ଧାଡିକାରେ କୀଞ୍ଚକକୁ ପାଡିଲା କୋପାନଳେ
ରେ ରେ କାର କରି ମାଡିବସିଲା ବକ୍ଷସ୍ଥଳେ ।୧୧୯୭
ଅଧର ପୁଷ୍ଟ କରି ଚାପଇ ବୀର ଦନ୍ତ
ମହାମତ୍ତ ଗଜପ୍ରାୟେ କରଇ ସିଦ୍ଧାନ୍ତ ।୧୧୯୮
ରେ ରେ ମାନବରେ ଯେତେକ ତୋହୋର ଦର୍ପ
ହୀନଜନ ହୋଇ ରେ ବୋଲାଉ ଯେତେ ଚାପ ।୧୧୯୯
ଆରେ ଆରେ ମାନବା ଭାରିଯା ମୋହୋର ହରୁ
କିଞ୍ଚିତ ପ୍ରାକ୍ରମେ ତୁ ଟାଳିତେ ଲୋଡ଼ୁ ମେରୁ ।୧୨୦୦

ଆରେ ଆରେ ମାନବା ତୁ ଯେତେକ ଭରସୁ
ଦେଖୁଂ ଦେଖୁଂ ଅନଳ ଭିତରେ କେହ୍ନେ ପଶୁ ।୨୦୧
ରେ ରେ ମାନବା ସରିଲା ତୋହୋର ଜୀବ
କେ ତୋତେ ରକ୍ଷାକରୁ ବିଧାତା ଇନ୍ଦ୍ର ଶିବ ।୨୦୨
ରେ ରେ ମାନବା ନ ଜାଣୁ ପଞ୍ଚ ଗନ୍ଧର୍ବ ଅଛନ୍ତି ବୋଲି
ଶୁଣିକରି ବଣା ହୋଇଲୁ ସଇରିନ୍ଧ୍ରୀ କହିଲା ତୋତେ କାଲି ।୨୦୩
ରେ ରେ ମାନବା ସୁମର ତୋହୋର ମାତାପିତା
ରେ ରେ ମାନବା ସୁମର ତୋହୋର ଇଷ୍ଟ ଯେ ଦେବତା ।୨୦୪
ଆରେ ଆରେ ମାନବା ପୂରିଲା ତୋହୋର ମନବାଞ୍ଛା
ଆୟୁଷ ପୂରିଲା ଯେବେ ତୋତେ କେହୁ କରୁ ରକ୍ଷା ।୨୦୫
ଆରେ ଆରେ ମାନବା ଜୀବନ ଶେଷକାଳେ
ସଞ୍ଚୟେ ବସିବୁ ଆଜ ସଞ୍ଜୀବନୀ ମଣ୍ଡଳେ ।୨୦୬
ରେ ରେ ମାନବା ନାଶକର ପାଞ୍ଜି ପୋଛିଲା ତୋହୋରେ ।୨୦୭
ରେ ରେ ମାନବା କେ ପାରେ ଆଜ ତୋତେ ରଖୁ
ତିରଣ ପ୍ରମାଣେ ଆଜ ବିକୋଡିବି ତୋର ବୁକୁ ।୨୦୮
ରେ ରେ କୀଚ୍ଛକ ପାମର ତୋହୋର ଯେତିକି ହୀନବୁଦ୍ଧି
ସଞ୍ଚୟେ ବୁଡ଼ାଇଲୁ ଆଜ ବିରାଟ ସମୃଦ୍ଧି ।୨୦୯
ପୁଣ ପୁଣ ପ୍ରତଗ୍ୟଂ କରଇ ପାଣ୍ଡବ ବଳିଷ୍ଠ
ବେନିପାଟି ଚାପିଣ ଅଧର କଲା ପୃଷ୍ଟ ।୨୧୦
ନରସିଂଘ ଅବତାର ପ୍ରାୟେ ଦିଶଇ ତାହାର କାୟେ
ବେନିଚକ୍ଷୁ ବୁଲାଇଲା କାଳଚକ୍ର ପ୍ରାୟେ ।୨୧୧
ବକ୍ଷସ୍ଥଳେ ପାଦଦେଇ ଭାଙ୍ଗିଲା ତାର ବୁକୁ
ଜାନୁର ଭିତରେ ନେଇ ଚାପିଲା ଶିରକୁ ।୨୧୨
ରଟମଟ ଶବଦ ଶୁଭିଲା ମହାଘୋର
ଚତୁରୀ ସ୍ତିରୀମାନେ ଯେ କରନ୍ତି ବିଚାର ।୨୧୩
ବୋଇଲେ ସଇରିନ୍ଧ୍ରୀ ସାମାନ୍ୟ ନୁହଂଇ ସଖୀ
ଯେତେ ଶୃଙ୍ଗାର କେମନ୍ତେ ସହିବ ଶଶୀମୁଖୀ ।୨୧୪
ଶତେଶିଂଘର ପ୍ରାକ୍ରମ କୀଚ୍ଛକ ମହାରାଣ
ସଇରିନ୍ଧ୍ରୀ ମାତ୍ରକ କାହିଂ ତହିଂକି ସହମାନ ।୨୧୫
ଅନେକ ଉପହାସ ଦୃଷିତ ବୋଲାବୋଲି
ନିଶି ଅର୍ଦ୍ଧମାନେ ଯେ ଯାହା ପୁରକୁ ଚଳିଲେ ପୋଇଲୀ ।୨୧୬
କୀଚ୍ଛକକୁ ଧରିଣ ସେ ପାଣ୍ଡବ ବୀରମଣି
ବେନିଜାନୁ ଭିତରେ ଶିର ଚାପିଲାକ ଆଣି ।୨୧୭
ହୃଦୟ ବିଦାରିଣ ବେନି ଚରଣ ଭରି
ଭୁଜ ଛନ୍ଦିଣ ସେ ପିଠିକତିକି ସଞ୍ଚାକରି ।୨୧୮
ମୁଣ୍ଡ ମୋଡିଣ ସେ ପ୍ରହାର କଲା ମୁଥେ
ମଳଦ୍ୱାର ଭିତରେ ଯେ ପଶିଲା ଚାପନ୍ତେ ।୨୧୯
ମୁଣ୍ଡ କଟି କର ଜାନୁ ସମସ୍ତ କଲା ଲୋଚା
କୁଷ୍ମାଣ୍ଡ ଫଳ ଜାଣି ମେଦିଲା ଯେକସଞ୍ଚା ।୨୨୦
ଚାଳ ଉରା ଉପରେ ଥୋଇଲା ତାହା ନେଇ
ବିକ୍ରମ ରୂପ ଧରି ସେ ବଲ୍ଲଭ ଆସଇ ।୨୨୧
ଯେହା ଶୁଣି ଅଗସ୍ତିଂକି ବଇବସୁତ ମନୁ ପୁଛାକଲା
ଶତସିଂଘ ପ୍ରାକର୍ମ କୀଚ୍ଛକର କିସ ଯେ ହୋଇଲା ।୨୨୨
ଶୁଣ ହୋ ମନୁ ପୁରୁଷ ବଦୟନ୍ତି ବ୍ରହ୍ମବେତ୍ତା
ଶତସିଘଂ ପରାକ୍ରମ ବଳେ ସେ ଶକତା ।୨୨୩
ସଇରିନ୍ଧ୍ରୀ ଶରୀର ସେ ଛୁଇଂଲା ଯେତେବେଳେ
ଶିରୀ ଆୟୁ ତୁଟିଗଲା ପୁଣି ଆବୋରିଲା ଆସି କାଳେ ।୨୨୪
ନିଜ ବଳବୀର୍ଯ୍ୟ ତୁଟିଲା ଯେ ହୋଇଲା ବପୁକ୍ଷୀଣ
ଯେକ ସିଂଘ ବଳେ ନାଶ ବିଧାତା ଲେଖନ ।୨୨୫
ବଶିଷ୍ଠଙ୍କ ଶାପେ ନାଶ କୀଚ୍ଛକ ସେନାପତି
ଭୀମସେନ ବାହାର ହୋଇଲା ତେରଘଡ଼ି ରାତି ।୨୨୬
କାଢିଲା ତିରୀବେଶ ହୋଇଲା ସୂପକାର
ରାତ୍ରଥାଉଂ ପଶିଲା ସେ ରାନ୍ଧଣା ବିଧାନର ।୨୨୭

**

## ୬୯.ବୃହନ୍ନାରୀକୁ ସାରଥି କରି ଉତ୍ତରର ଯୁଦ୍ଧଯାତ୍ରା

ବିରାଟର ନନ୍ଦନ ଯେ ବିଜୟେ ଆସ୍ଥାନେ
ସନ୍ନିଧ୍ୟେ ଉଭାରି ଅଛନ୍ତି ପାଦାନ୍ତି ସଇନିମାନେ ।୧।
ଝାଳ ରୁଧିର ତ୍ରିପଣ୍ଡ ତନ୍ତୀପାଳ ଗୋପାଳର କାୟେ
ଶରୀରଦିଶଇ ତାର ପାଟଳି ପୁଷ୍ପ ପ୍ରାୟେ ।୨।
ଛାମୁରେ ତନ୍ତୀପାଳ କରଇ ଗୁହାରି
ସୁରବର ସୁନ୍ଦର ସୋହଡ଼ କୁମାରମଣି ହୋଇବ ଅବଧାରୀ ।୩।
କୁଞ୍ଜଗଳ ଦେଶ ରାଜା ମାନଚକ୍ରବ୍ରତୀ
ଗୋଧନ ପଲ ହରି ସେ ନେଉଛି ଆଜ ରାତି ।୪।
ଅନେକ ଗୋଳ ସମର ସେ କଲେ ଆମ୍ଭର ତୁଲେ
ଅନେକ ସନ୍ୟ ମାଇଲୁ ତଦ୍ୟାପି ନ ଘୁଞ୍ଚିଲେ ।୫।

ଗୋପାଳ ଅଭିମୁଖେ ଯେସନେକ ବାକ୍ୟ ଶୁଣି
ଅଧର ପୁଷ୍ଟ କରି ଉଠିଲା ଶିରଝୁଣି ।୬।
କଦଳୀ ପତ୍ର ଜାଣି କମ୍ପଇ ତାର ଅଙ୍ଗ
ହିରଣ୍ୟ ଦେଖି ଯେହ୍ନେ ଗର୍ଜଇ ନରସିଂଘ ।୭।
ବାହାସ୍ଫୋଟ ଦେଇ ମାଡିପଡ଼ିଲା ବେନିଜାନୁ
ତାମ୍ରବର୍ଣ୍ଣ ପ୍ରାୟେ ଦିଶଇ ତାହାର ତନୁ ।୮।
ଯଷ୍ଟି ବିଘୋଟେ ଯେହ୍ନେ ଗର୍ଜଇ କାଳସର୍ପ
ମୋହୋ ଗୋଧନ ପଲ ହରିବାକୁ କାହାର ଯେତେ ଦର୍ପ ।୯।
କାଳଚକ୍ର ଜାଣି ବୁଲାଇ ବେନିଡ଼ୋଳା
କେ ରେ ଭାଙ୍ଗଇ ସେ ଯମର ଅରଗଳା ।୧୦।
କିସ ଅର୍ଥେ ଦ୍ରିଯୋଧନର ଯେତେକ ଉପେକ୍ଷା
ନ ଜାଣଇ କି ଉତ୍ତର କୁମର କରଇ କଟକ ରକ୍ଷା ।୧୧।
ପୁଣ ପୁଣ ବିସରି ବିଚାରଇ ହୃଦଗତେ
ସାରଥି ଜଣେକରି ନେମି କାହାକୁ ମୋର ରଥେ ।୧୨।
ପିତାର ଅବିବେକ ପଣ ଦେଖ ହୋ ତନ୍ତୀପାଳ
ରାଜ୍ୟଯାକ ତୁଚ୍ଛାକରି ଘେନିଗଲେ ସର୍ବବଳ ।୧୩।
ଗୋକୁଳ କୁଳକୁ ତୁ ମୁଂ ଯେ ରାଜ୍ୟକୁ କାରେଣି
ଅନ୍ତେଶ୍ୱର ପୁରେ ଚରଚା କରଇ ବୃହନ୍ନାରୀ ପୁଣି ।୧୪।
ସଇରିନ୍ଧ୍ରୀକି ଲାଗଇ ତ ଆମ୍ଭ ସବୁଂକରି କଥା
ଯାଅ ଲୋ ମୁଦୁସୁଲୀ ଭିତରେ କର ଯା ବାରତା ।୧୫।
ବୋଲ ଗୋଧନ ପଲ ହରି ନେଉଛି କୁରୁପତି
ସଇରିନ୍ଧ୍ରୀ ଠାକୁରାଣୀ ଯେଥକୁ କିସ ଆଗ୍ୟାଂ ଦିଅନ୍ତି ।୧୬।
ଚଳିଣ ମୁଦୁସୁଲୀ ଗଲା ଅତିବେଗେ
ବାରତା ଜଣାଇଲା ଯାଇଂ ଶ୍ରୀକୃଷ୍ଣାଂକର ଆଗେ ।୧୭।
ଶ୍ରୀକୃଷ୍ଣା ପ୍ରବେଶ ଯେ ସଇରିନ୍ଧ୍ରୀର କତି
ଭୋ ଦେବୀ ଗୋଧନ ପଲ ହରି ନେଉଛି କୁରୁପତି ।୧୮।
ଶ୍ରୀକୃଷ୍ଣା ସଇରିନ୍ଧ୍ରୀ ବିକେ ପଛିମ ଯେ ଦ୍ୱାରେ
ଉତ୍ତର କୁମର ଯାଇଂ ପ୍ରଣପତ୍ୟ ପୟରେ ।୧୯।
ତନ୍ତୀପାଳ କହିଲା ଯେ ଗୋଧନ ହରଣ କଥା
ସଅପି କହିଲେ ସେ ସମସ୍ତ ବାରତା ।୨୦।
ଉତ୍ତର କୁମର ବୋଇଲା ଗୋପାଳ ମାତ୍ରକେ ତାହାର ବଳ ଭାଞ୍ଜଇ
ମୋହୋର ଗଲେ ତାହାନ୍ତ ପ୍ରାଣ ପାଆନ୍ତା ନାହିଂ ।୨୧।
ମୁହିଂ ହୀନକାର୍ଯ୍ୟ ହୋଇଲି ପିତାର ଅବିବେକ ପଣେ
ବାହୁକ କରି ଛାଡ଼ି ନ ଗଲେ ଜଣେ ।୨୨।
ଧନୁଗୁଣ ଟଙ୍କାରି ଉଠିଲା ଶିରଝୁଣି
ଅଧରେ ଦନ୍ତ ସେ ଚାପଇ ପୁଣ ପୁଣି ।୨୩।
ଦଇବ ସୁମରି ସେ ଲଲାଟେ ତାଡ଼ଇ ହାଥ
ଯେକା ଯିବି କେମନ୍ତେ କେ ବାହିବ ମୋର ରଥ ।୨୪।
ସହଦେବର ବଦନ ଚାହିଂଲେ ସଇରିନ୍ଧ୍ରୀ
ଅର୍ଜୁନ ଠାକୁରେ ଯାଆନ୍ତୁ ବୋଲି ସହଦେବଂ ଦିଲେ ଠାରି ।୨୫।
ସଇରିନ୍ଧ୍ରୀ ବୋଇଲେ ତୁ ଯେବେ ଲୋଡୁ ହୋ ସାରଥି
ଜଣେ ଅଛି ସାରଥି ତୁହି ପାରିବୁ କି ଅଭ୍ୟର୍ଥୀ ।୨୬।
ଉତ୍ତର କୁମର ବୋଇଲା ସମୟେ ଯେବେ ବାହିବ ମୋର ରଥ
ରାଜ୍ୟକୁ ଠାକୁର ମୋହୋର ସେହି ଯଥାର୍ଥ ।୨୭।
ଅଭ୍ୟର୍ଥୀ କିମ୍ପେ ବୋଲିବି ଚରଣେ କରିବି ଦଇନି
ପୂଜା କରିବି ତାକୁ ଲକ୍ଷେକ ସୁବର୍ଣ୍ଣ ଘେନି ।୨୮।
ସଇରିନ୍ଧ୍ରୀ ବୋଇଲେ ବୃହନ୍ନାରୀକୁ ଆଣ ତୁ ହକରାଇ
ବଡ଼ାଇ ସୁସଞ୍ଚେ ସେ ତୋର ରଥ ନେମଟି ବାହି ।୨୯।
ଶୁଣି ବିସରିଲା ସେ ବିରାଟର ତ୍ନୁ
ବେନିକରେ ଛୁଇଂଲା ସେ ଆପଣା ଶ୍ରବଣୁ ।୩୦।
ଉତ୍ତର ବୋଇଲା ତୁ ଯେ ପରେ ଭୃତ୍ୟପଣେ ଖଟୁ
ଆପଣାର ଅନରୂପେ ବଚନ ପ୍ରକଟୁ ।୩୧।
ବେଟୀଚେଟୀ ଛାରଂକର ଅଟଇ କିସ ବୁଦ୍ଧି
ଅହର୍ନିଶି କେଶ ବିଲଗ୍ନ କାର୍ଯ୍ୟହିଂ ଅସିଦ୍ଧି ।୩୨।
ଲେଞ୍ଚସ୍ତିରୀ ଲେଞ୍ଚ ପୁରୁଷ ନପୁଂସକ ହୀନଜାତି
ତାହା ଛାରକୁ କେମନ୍ତେ କରିବି ସାରଥି ।୩୩।
ଯାତ୍ରାଯୋଗେ ଅଯାତ୍ରିକ ଲୋକକୁ ଦେଖିଲେ
ଦିନକର ସୁକୃତ ହରଇ ତାହାର ମୁଖ ଚାହିଂଲେ ।୩୪।
ସ୍ତିରୀଲିଂଙ୍ଗ ସ୍ୱରୂପେ ସେ ବସିବ ମୋର ରଥେ
ଦେଖୁଂ ଦେଖୁଂ ଅଯାତ୍ରିକ ଅପୁଂସେକ ଲୋକ ମୁଂ ନେମଇ
କେମନ୍ତେ ।୩୫।
ଶ୍ରୀକୃଷ୍ଣା ବୋଇଲେ ତୁ ମୂର୍ଖରେ ତନୁଜ
ଗାନ୍ଧର୍ବୀଂକ ବଚନ କଦାଚିତେ ନ ଭାଞ୍ଜ ।୩୬।
ଆରେ କୀଞ୍ଚେକ ନାଶଗଲା ଯାହାର କିଞ୍ଚିତ କୋପେ
ତ୍ରିଗର୍ତ୍ତର ବନ୍ଧନରୁ ଯେ ଉଦ୍ଧାରିଲେ ତୋହୋର ବାପେ ।୩୭।
ମହା ବ୍ରହ୍ମବାକ୍ୟ ଯେ ଯେବଣି ମହାତ୍ମାଣୀ
ଯେହାଂକର ଆଗ୍ୟାଂ ବାବୁ ଥିବୁରେ ପରିମାଣି ।୩୮।
ଉତ୍ତର ବୋଇଲା ତନ୍ତୀପାଳ ତୁ ଯେ ଥିଲୁ ସହେଦେବଂକ ତହିଂ

ତୋହୋର ଦେଖନ୍ତେ ବୃହନ୍ନାରୀ ଅଛିଟିକି ରଥ ବାହି ।୩୯।
ଗୋପାଳ ବୋଇଲା ଯାହା ମୁଂ ଦେଖିଅଛଇ ଯୁଗତେ
ଗବନ କାଳେ ବସିଥାଯେ ନନ୍ଦିଘୋଷ ରଥେ ।୪୦।
ଯେହାର ବାହିଲେ ସେ ଚଳଇ ନନ୍ଦିଘୋଷ
ଯହିଂକି ଯିବ ତହିଂ ହୋଅଇ କାର୍ଯ୍ୟଯଶ ।୪୧।
ଆହୋ ଉତ୍ତର ଯେହେନେକ କରି ସେ ମହାତମା କରଇ ସଦଯେ
ଯେ ସେ ବୃହନ୍ନାରୀ ପ୍ରତକ୍ଷେ ଧୁନର୍ଜୟେ ।୪୨।
ଯେହେନେକ କରି ସେ ଯେହାକୁ ନିର୍ଭାକଲା ମହାତ୍ମା
ଯେ ସେ ବୃହନାରୀ ସେ ପ୍ରତକ୍ଷେ ଅର୍ଜୁନର ପଞ୍ଚୁଆତ୍ମା ।୪୩।
ବୃହନାରୀ ଅର୍ଜ୍ଜୁନ ହୋ ନୁହନ୍ତି ଭିନ୍ନାଭିନ୍ନ
ସେ ଯେବେ ଯାଇ ତୋହୋର କାର୍ଯ୍ୟ ସୁବିଧାନ ।୪୪।
ସଇରିନ୍ଧ୍ରୀଂକ ବଚନେ ସେ ଉପହାସ୍ୟ କରୁଥିଲା
ତନ୍ତ୍ରୀପାଳ ବଚନେ ସେ ସନମତ କଲା ।୪୫।
ଯାଅ ହୋ ତନ୍ତ୍ରୀପାଳ ନାଟପା ମନ୍ଦିରେ
ବୃହନ୍ନାରୀକି ଘେନିଆସ ମୋହୋର ଛାମୁରେ ।୪୬।
ଧାମଇ ସହଦେବ ନଉଡି ବୁଲାଇ
ସୁଖେ ବିହଡ଼ନ୍ତି ସେ ରାଜ୍ୟରେ କେହି ନାହିଂ ।୪୭।
ନାଟପା ମନ୍ଦିରେ ଯାଇ ଗୋପାଳ ପରିଣାମି
ଉତ୍ତର କୁମର ଆଗ୍ୟାଂଯେ ଆସିବ ଯେହିକ୍ଷଣି ।୪୮।
ବୃହନ୍ନାରୀ ବୋଇଲା ମୁଂ ଉତ୍ତର କୁମରର ନୁହଇଂ ବଶ୍ୟବୃତ୍ତ
ତାହାର ଆଗାଂକୁ ମୋହୋର କିମ୍ପେ ସନମତ ।୪୯।
ଶୁଣିଣ ବୋଇଲା ସେ ଗୋପାଳ ଚୂଡ଼ାମଣି
ପ୍ରଥମେ ଆଗ୍ୟାଂଦିଲେ ସଇରିନ୍ଧ୍ରୀ ଠାକୁରାଣୀ ।୫୦।
ଉତ୍ତର କୁମର ବଚନେ ଉପହାସ୍ୟ କରୁଥିଲା
ସଇରିନ୍ଧ୍ରୀଂକ ବଚନେ ସେ ବାହାର ହୋଇଲା ।୫୧।
ଆଗେଣ ସହଦେବ ପଛେଣ ଫାଲଗୁନି
ପଚାରନ୍ତେ ସହଦେବ କହଇ ତୂନି ତୂନି ।୫୨।
ଦିଯୋଧନ ବେଢ଼ିଲା ଗୋଧନ ପଲ ଆସି
ମୁହିଂ ସମର କରି ତାହାର ଅନେକ ବଳ ନାଶି ।୫୩।
ନ ଭାଙ୍ଗି ଦ୍ୱନ୍ଦ ସେ କଲେ ପୁଣ ପୁଣ
ଆମ୍ଭର ଥାଆନ୍ତେ ଗୋଧନ କି ହୋଇବ ହରଣ ।୫୪।
ଉତ୍ତର କୁମରକୁ ଘେନିଣ ତୁମ୍ଭେ ଯିବା
କଉରୋବ ବଳ ଜିଣି ଗୋଧନ ଆଣିବା ।୫୫।
ସହଦେବର ବଚନେ ଅର୍ଜ୍ଜୁନ ବାକ୍ୟ ପୁଚ୍ଛି
ଅଗ୍ୟାଂତ ବାସ ଲେଖନ୍ତେ ବାବୁ କେତେଦିନ ଅଛି ।୫୬।
କରପତ୍ର ଯୋଡ଼ିଣ ସେ ସହଦେବ ବୋଇଲା
ତିନିଶ ସତାବନ ଦିନ ସମ୍ପୂର୍ଣ୍ଣ ହୋଇଲା ।୫୭।
ଆବର ତିନି ଦିବସ ହୋଇବ ଲେଖନ୍ତେ
ଆଉର କିସ ଦୋଷ ହୋଇବ ଜାଣନ୍ତେ ।୫୮।
ସହଦେବ ବୋଇଲା ସ୍ୱାମୀ ଶୁଣିମା ଧନୁର୍ଜୟେ
ବରଷକେ ଦଶଦିନ ବଢ଼ଇ ତହିଂକି ନାହିଂ ଭଯେ ।୫୯।
ଗମନ୍ତେ କହନ୍ତେ ଛାମୁରେଣ ଯାଇଂ ଭେଟି
ଦେଖିଣ ହେଠମାଥ ହୋଇ ବଇରାଟି ।୬୦।
ଉତ୍ତର ବିଚାରଇ କବେରୀ ଭାର ଖୋଷା କରେଣ ବେନିବାହୀ
ସ୍ତିରୀବେଶ ଅଳଂକାର ମୂରତି ଗୁଣଗ୍ରାହୀ ।୬୧।
ପ୍ରଥମେ ଉପହାସ ଉପୁଜିବନା ମୋତେ
କେମନ୍ତେ ନପୁଂସକେ ବସିବନା ରଥେ ।୬୨।
ପ୍ରଭାତେ ବଦନ ଚାହାନ୍ତେ ଯେହାର
ଶତେ ବ୍ରାହ୍ମଣ ଭୋଜନ ଦିଲେ ସେ ଦୋଷ ଯାଇପାର ।୬୩।
ପୁଣ ବୋଇଲା ଦେଖି କରିବା ସମ୍ଭାଷ
କିସ ଉତ୍ତର କହଇ କେତେମାନ ସାହସ ।୬୪।
ଭରସା ନ କଲେ ଯେହାକୁ ମୁଂ ନେମଇ କେମନ୍ତେ
ଦେଖିତେ ଅନ୍ୟାକାର ଆବର ସ୍ତିରୀହତ୍ୟା ଦୋଷ ମୋତେ ।୬୫।
ଉତ୍ତର କୁମର ବୋଇଲା ଆହୋ ବୃହନ୍ନାରୀ
ମାନଗୋବିନ୍ଦ ରାଜା ନେଉଅଛି ମୋର ଗୋଧନ ପଲ ହରି ।୬୬।
କଳପି ରାଜ୍ୟକୁ ଦଣ୍ଡ ଚଢ଼ି ଗଲେକ ବିରାଟେ
ବଲ୍ଲଭ ସହିତେ ସେ ଗଲେ କୋନ୍ତ ଭଟେ ।୬୭।
ମଘଦେଶ ମଛଦେଶ ରକ୍ଷାପାଳକ ମୁହିଂ ଯେକା
ସାରଥି ପଣକୁ ମୋତେ କେହି ନାହିଂ ସାଖା ।୬୮।
ଲାଖ ମାତ୍ର ହୋଇ ବାହି ପାରିବୁ କି ମୋର ରଥ
ମାରି ଭଗନସ୍ତ କରିବି କଉରୋବନ୍ତ ।୬୯।
ଯେକା ଯେକାକେ ମୁହିଂ କରିପାରଇ ଯୁଦ୍ଧ
ସାରଥି ଜଣେ ନ ଥିଲେ କିସ ହୋଇବାକ ସାଧ୍ୟ ।୭୦।
ବୃହନ୍ନାରୀ ବୋଇଲା ମୁଂ କହଇ କିନା ତୋତେ
ଯେତେ ବଡ଼ ଧାର୍ମିକ ତୁ ବାତୁଳ ହୋଇଲୁ କେମନ୍ତେ ।୭୧।
ଆହୋ ଦଧିମଙ୍ଗଳ ଅନକୂଳ ସାଂଗ୍ରାମକୁ ସଞ୍ଜ
ନପୁଂସେକ ଦେଖନ୍ତେଣ ତୋତେ ତ୍ରଇଲୋକ୍ୟେ ବାଛି ।୭୨।
ଯାତ୍ରାବେଳେ ଦେଖିଲେ ହୋ ଅଯାତ୍ରିକ ଜନ

କାର୍ଯ୍ୟକୁ ଅଯାତ୍ରା ହୋ ଅନକୂଳକୁ ହୋଏେ ହୀନ ।୭୩।
ଅମଙ୍ଗଳ ବାକ୍ୟ ଯହୁଁ କରିଲା ଫାଲଗୁନି
ବିରାଟ ନନ୍ଦନ ଶୁଣି ହୋଇଲାକ ତୁନି ।୭୪।
ସଇରିନ୍ଧ୍ରୀ ବୋଇଲେ ରାଜ୍ୟେ ନାହିଂନା ବିରାଟେ
ଯେମନ୍ତର ସମୟେ ଯେ ପଡ଼ିଲା ପରଥାଠେ ।୭୫।
ବିରାଟର ସମ୍ପଦ ଯେ ନେଉଅଛି ହରି
ଯାହାର ଅନ୍ନ ଭୁଞ୍ଜି ତାହାର କାର୍ଯ୍ୟକରି ।୭୬।
ଆପଣାର ପରାକ୍ରମ ଥାଉଂ ହୋଇଲେ ହୀନବୀର୍ଯ୍ୟ
ଆରଇନ୍ତେ ପରକୁ ଖଟନ୍ତି ଯେ ହାନି ହୋଏେ ତେଜ ।୭୭।
ଅପଚୟବେଳେ ଯେବେ ପ୍ରାଣୀଂକି ହୋଏେ ସାହା
ମହେଶ୍ୱର ସମାନେ ଦେଖିବାନା ତାହା ।୭୮।
ଆହୋ ବୃହନ୍ନାରୀ ତୁ ତ ପ୍ରତକ୍ଷେ ଅଟୁ ଅର୍ଜୁନର ପଞ୍ଚୁଆତ୍ମା
ଉତ୍ତର କୁମାରେ ଦୟାକର ହୋ ମହାତମା ।୭୯।
ଉତ୍ତର ବଚନେ ନାସ୍ତି କରୁଥିଲା ପାର୍ଥ
ସଇରିନ୍ଧ୍ରୀଂକ ବଚନେ ସେ କଲାକ ସନମତ ।୮୦।
ତତକ୍ଷଣେ ପତିବେଶ ହୋଇଲା କିରୀଟୀ
ତତକ୍ଷଣେ ମଣ୍ଡିଲା ସେ ଉତ୍ତର କୁମାର ରଥଗୋଟି ।୮୧।
ସଷ୍ଟିକର ସ୍ତମ୍ଭ ଯେ ମାରାଗ ମଣ୍ଡଣି
ଶତେ ଶତେ ପୋୟେଲା ହୀରା ପାବଚ୍ଛେ ଖଞ୍ଜାଣି ।୮୨।
ମର୍କତର ତୁଲେ ସେ ମାଣିକ୍ୟ ପୁଞ୍ଜି ପୁଞ୍ଜି
ଗଜ ମୁକୁତାର ତୁଲେ ପାଟଡ଼ୋର ଖଞ୍ଜି ।୮୩।
ପଞ୍ଚ ଦହନ ହିରଣ୍ୟେ ରଥର ଚାରିକାଣ୍ଡ
ନୀଳା ମାଗରା ଯେ ମଣ୍ଡିଲା ରଥଦଣ୍ଡ ।୮୪।
ଉପରେ କଣୟର କଳସ ନିରିବାଣି
ତହିଂର ଉପରେ ଯେ ଅଷ୍ଟ ରତନର ଖଞ୍ଜାଣି ।୮୫।
ଦଧିବାମନ ଲେଖନ ଆଳମ୍ବ ଶତ ଶତ
ରଥର ଚାରିକୋଣେ ଉଡ଼ନ୍ତି ଚାରିନେତ ।୮୬।
ଡାଳିମ୍ବ ବସନ୍ତ ଯେ ପାଟାଙ୍ଗ ପେଣ୍ଡି ଓଳି
ଉପରେ ଉଡ଼ନ୍ତି ଯେ ମୁକୁତାର ଫୁଲି ।୮୭।
ଲମ୍ବନ୍ତି ଗଜମୁକୁତାମାନେ ଚଉସରା
ଲମ୍ବନ୍ତି ହୀରା ମାଣିକ୍ୟ କେରା କେରା ।୮୮।
ସପତ ସୂର୍ଯ୍ୟ ଉଦୟ ପରଯେଣ ଜାଣି
ତହିଂର ସଙ୍ଗେ ଗୁଅ ମାରଗ ଖଞ୍ଜାଣି ।୮୯।
ଅହିବ୍ରତେ ଅଧାଚନ୍ଦ୍ର ଦର୍ପଣ ରଥେ ଅଛି ମଣ୍ଡି
ତହିଂର ଉପରେ ଝାଲିମିଲି ହୀରାଖଣ୍ଡି ।୯୦।
ଡାଳିମ୍ବ ଚାମର ଗୋଟିଏେ ଶ୍ୱେତ ଚାମର ଗୋଟିଏେ
ରଥର ଚାରିପାଖେ ଲମ୍ବନ୍ତି ଶୟେ ଶୟେ ।୯୧।
ହୀରାନୀଳା ପୋୟେଲା ମୁକୁତାର ତ୍ରୋଣାମାଳା
କେରି କେରି ଲମ୍ବନ୍ତି ରଥର ଚଉପାଶେ ମେଖଳା ।୯୨।
ଦେବାଙ୍ଗ ବସନ ନେତ ପତନୀ ନୀଳରଙ୍ଗ ପାଟ
ଘନ କାଙ୍ଗୁଲା କରିଣ ରଥରେ ମଣ୍ଡିଲେ ଚାରିତଟ ।୯୩।
ମଲ୍ଲୀ ମାଳତୀ ଯାଈ କୁଈ ଚମ୍ପା ରଙ୍ଗଣୀ ରେଖ ରେଖ
ସୁଗନ୍ଧ ପୁଷ୍ପମାନ ଲମ୍ବନ୍ତି ଚଉପାଖ ।୯୪।
ଗନ୍ଧ ଚନ୍ଦନ ଯେ କର୍ପୂର କସ୍ତୁରୀ
ଠାବ ଠାବ କିଯେ ରଥରେ ଲେପନ କରି ।୯୫।
ରଥଯାକ ମଣ୍ଡିଲା ହୀରା ମାଣିକ୍ୟମୟେ
ସରୂପ ଦିଶିଲା ସେ ଆଦିତ୍ୟ ରଥ ପ୍ରାୟେ ।୯୬।
ଅନ୍ଧାର ନିଶାକାଳେ ଯେବେ ଚଳୁଥିବ ସେ ରଥ
ଦିବସ ପ୍ରାୟେ ଦିଶିବ ଚଳନ୍ତେ ଯୋଜନ ସାତ ।୯୭।
ରଥତଳ ଚକ ଯେ କଣୟ ପିତୁଳୀ
ଆକର୍ଷଣ ସିଂଘ କଲେ କି ଗବନ ପବନହୁଂ ଉଗୁଳି ।୯୮।
ନିମିଷକେ ମହୀ ଲଂଘିବ କି ଶୋଷିବ ବାରାନିଧି
ସପତ ଦୀପ ଲଂଘିବ କି ସପତ ପୟୋଧି ।୯୯।
ଯେସନକ ଘଟଣ ସେ ରଥ କଣୟ ଚାରି ସାହା
ରଥରେ ଆପଣେ ଖଞ୍ଜିଲା ସୁଭଦ୍ରାର ନାହା ।୧୦୦।
କଣୟ କୁନ୍ଦଝରା ନୀଳା ରେଖ ରେଖ
ଅଷ୍ଟରତ୍ନେ ବାକୁଳି ସେ ହୟଂକର ପାଖ ।୧୦୧।
ବିଶାଶତେ ପାବଚ୍ଛ ପତି ହୀରା କମ
ମର୍କତ ନୀଳା ସେ ଗୋଟି ଗୋଟି ଚଉସମ ।୧୦୨।
ରଙ୍ଗପାଟ ଦଉଡ଼ି ଡାଳିମ୍ବପାଟ ଝୁମ୍ପା
ଛନ୍ଦିଲା କ୍ଷୁଦ୍ର ମୋତି ବଳିତ ସର୍ବରୂପା ।୧୦୩।
ଯେବଣ ରଥ ମଣ୍ଡି ଅଛି ଦୂତୀ ବାସୁଦେବ
ଲେଖନ୍ତେ ପ୍ରାନ୍ତକରି କେହୁ ସେ କହିବ ।୧୦୪।
ପଞ୍ଚଷଠି ରାଜାର ଭଣ୍ଡାର ଯେବଣ ଅମୂଲ୍ୟ ଧନ
ଯେକା ରଥକେ ତାହା ମଣ୍ଡିଲେ ବୀର ଫାଲଗୁନ୍ୟ ।୧୦୫।
ଚୋଖାର ତୁରଙ୍ଗମ ଶ୍ୱେତ ଚାରି ବାଜୀ
ପବନହୁଂ ବେଗ ହାଦେ ବାରାସ ମହାତେଜି ।୧୦୬।
ହୀରା ନୀଳା ବଇଡୁର୍ଯ୍ୟ ପୋୟେଲୀ ମର୍କତ

ମୁକୁତା ମଣି ମାଣିକ୍ୟ ଗୁଛିଲା ବାଖର ଅପ୍ରମିତ ।୧୦୭।
ପାଟର ବନ୍ଧନ ତହିଁ ଅଷ୍ଟରତ୍ନେଣ ଖଞ୍ଜି
ଖଞ୍ଜାଣି କଡ଼ିଆଳ ମାଣିକ୍ୟ ପୁଞ୍ଜି ପୁଞ୍ଜି ।୧୦୮।
ଅଷ୍ଟ ରତନେ ସେ ମଣ୍ଡିଲା ଚାରିହୟେ
ସୂଚୀମୁନେ ନ ଦିଶଇ ଅଶ୍ୱଂକର କାୟେ ।୧୦୯।
ମଣ୍ଡଣି କଣୟ ଯେ ଖଞ୍ଜିତ ବିମାନ
ନାରାଜ ନ ଫୁଟିବାକୁ ହୋଇଛି ବଜ୍ରସେହ୍ନ ।୧୧୦।
ଶଙ୍ଖ ଶାର୍ଦ୍ଦୂଳ ଚିହ୍ନ ଶଙ୍ଖଚିଲ ପକ୍ଷୀ
ଦ୍ରୋଣଂକର ଭିତରେ ଥୋଇଲା ନାରାଜ ପାଞ୍ଚଲକ୍ଷି ।୧୧୧।
ଗଦା ଶକତି ଯେ ମୁଦୁଗର ଯାଠି
କୋନ୍ତ ଅସିପତ୍ର ଯେ ଭୁଷଣ୍ଡି ଶରଗୋଟି ।୧୧୨।
ରକ୍ଷମୁନା ତୀଖମୁନା କଂକମୁନା ପଞ୍ଚୁ ରେଖା
ଗିରିବର ଫୁଟନ୍ତି ପଡ଼ନ୍ତେ ତାର ଶିଖା ।୧୧୩।
ଫାଶି ପରଶୁ ଗୁରୁଜ ବଜ୍ରଶର
ଅଧାଚକ୍ର ପଶୁପତ୍ର ଆବର ବାବଲ ତୀଖଶର ।୧୧୪।
ଲାଞ୍ଜା ଦଡବଡ଼ି ଯେ ଡାହାଣେ ବଡ଼ ଭୁଷା
ନବନିଶି କୁନ୍ତ ଯେ ଆବର ଅଂକୁଶା ।୧୧୫।
ରଥର ଉପରେ ନେଇ ଥୋଇଲା ଫାଲଗୁନି
ରଥ ଚଳାନ୍ତେଣ ଶୁଭିଲା ଘୋର ଧ୍ୱନି ।୧୧୬।
ଆକାଶ ଦେଖାଇ ସେ ଖେପାଇ ଚାରିହୟେ
ପୁଣି ଭୂମିକି ଦେଖାଇଲା ଯେ ଶେଣାପକ୍ଷୀ ପ୍ରାୟେ ।୧୧୭।
ଆକାଶୁ ଅଶ୍ୱ ଯେ ପଡୁଛନ୍ତି ଖସି
କିୟେ ଅଙ୍ଗାରପନ୍ନଙ୍ଗ ବିଜେକଲେ ଆସି ।୧୧୮।
ଗଗନୁଂ ଖସାଇ ରଥ ଆଣିଲାକ ବେଗେ
ଧାଡିକାରେ ଟେକିଲା ନେଇ ଉତ୍ତର କୁମର ଆଗେ ।୧୧୯।
ତରତରେ ଅଶ୍ୱ ସେ ଯେ ନ ରହୁଛନ୍ତି ଭୂମି
ଯାଅ ଯାଅ ବୋଇଲେ ଯେ କ୍ଷେପିବେ ଆକାଶ ଭୁବନ
ତିନି ।୧୨୦।
ଫୁଫୁକାର ତୁରଙ୍ଗମେ ଯେ ତେଜେ ଅନର୍ଗଳା
ଦେଖିଣ ଆଶ୍ରିଜ ଯେ ଶ୍ରୀକୃଷ୍ଣାର ବଳା ।୧୨୧।
ଉତ୍ତର କୁମର ବୋଇଲା ତୁମ୍ଭେ ଅଇଲ ଯେ କାହୁଂ
କେବଣ ମହାତମା ଗୋପ୍ୟାନ ତୁ ନପୁଂସେକ ନୋହୁ ।୧୨୨।
ମାନବ ମାତ୍ରକେ କେହି ଯେହୁ ରଥ ପାରେ ସାଜି
ନାହିଁ ନୋହିବ ନଥିବ ଯେ ତ୍ରିଭୁବନ ମଝି ।୧୨୩।
ନପୁଂସକ ବୋଲିଣ ଯାହା ମୁଁ ନିନ୍ଦିଲଇ ତୋତେ
ତହିଂକି ଅନୁଗ୍ରହ ଦାନ ଦେବାକ ହାଦେ ମୋତେ ।୧୨୪।
ବୀରବେଶେ ଅଳଂକାର ହୋଇଲା ଉତ୍ତର କୁମର
ରତ୍ନମଣି ମୁକୁଟ ସୀମନ୍ତିନୀ ଲଲାଟର ।୧୨୫।
ମୁକୁତା ମଣି ମାଣିକ୍ୟ ହୀରା ଚଉସରି ରେଖା
ଖଞ୍ଜିତ ରତ୍ନଜାଲି ଯେ ଯାହାର ଶିଖା ।୧୨୬।
ବେନି କର୍ଣ୍ଣେ କର୍ଣ୍ଣାଞ୍ଚଳ ତଡ଼କାଗୁ ଦୋସରି
କଣ୍ଠତଟେ ଚଉସରାମାଳ ଚାପସରି ।୧୨୭।
ନିଆଳିରେ ପୁଣ ବିରାଜନ୍ତି ଶିକୁଳି
ହୃଦରେ ପଦକ ଯେ ଭୂଷଣମାନ ପ୍ରଜ୍ୱଳି ।୧୨୮।
ତାଡ ତୋଡ଼ର ଯେ ବାହୁଟି ସରଳ
ବିଦମୁଦି କଂକଣ ମୁକୁତା ମାଳ ମାଳ ।୧୨୯।
କଟିରେ ରତ୍ନ ଖେଳା କଣୟ ଘାଗୁଡ଼ି
ନେପୂର ଘଟଣ ଯେ ହୀରା କମେଣ କଡ଼ି ।୧୩୦।
ଦାସୀନେତରେ ମକୁତା ଖଞ୍ଜିତ ମେଖଳି
ସୁବର୍ଣ୍ଣର ସୀନ୍ଥିନୀ ଶିରେ କଣ୍ଠେ ଜାତି ପୁଷ୍ପମାଳୀ ।୧୩୧।
ବାମେ ଦକ୍ଷିଣେ ଯେ ବେନିଦ୍ରୋଣ ଖସି
ଦଧିବାବନ ସୁମରିଣ ରଥରେ ଯାଇ ବସି ।୧୩୨।
ଯାତ୍ରାର ମଙ୍ଗଳେ ଯେ କୟେବାର କରି
ଲକ୍ଷେ ବିପ୍ର ମିଳିଲେ ଯେ ବେଦ ଧ୍ୱନି ଉଚ୍ଚାରି ।୧୩୩।
ସୁଲଭ ସୁଲକ୍ଷଣୀୟେ ଅର୍ଘ୍ୟ ଦିଲେ ତୋଳି
ମାଣିକ୍ୟର ଦୀପ ଘେନି ଦ୍ୟନ୍ତି ହୁଳହୁଳି ।୧୩୪।
ସ୍ତ୍ରୀକରେ ବୃହନ୍ନାରୀ କୋମଳ ପାଟ ରଜ୍ଜୁ
ଆକାଶେ ଧ୍ୱନି ଶୁଭିଲା ଅର୍ଜୁନର ରଥ ସାଜୁ ।୧୩୫।
ଶ୍ରୀକୃଷ୍ଣା ବୋଇଲେ ମାଗୋ ଶୁଣ ସଇରିନ୍ଧିରୀ
ପୁତ୍ରକଙ୍କ ଅର୍ଘ୍ୟ ଦେବା ଗୋ ଶୁଭ ଅବଧାରି ।୧୩୬।
ଶ୍ରୀକୃଷ୍ଣା ସଇରିନ୍ଧ୍ରୀ କରେ ଅର୍ଘ୍ୟ ଘେନି
ପ୍ରଥମେ ବନ୍ଦାଇଲେ ସାରଥି ଫାଲଗୁନି ।୧୩୭।
ଦୁଜେଣ ବନ୍ଦାଇଲେ ଉତ୍ତର କୁମରକୁ
ଧର୍ମ ଆଶ୍ରେକରି ବାବୁ ଜୟେ ହେଉ ଯେ ତୁମ୍ଭଂକୁ ।୧୩୮।
ଶ୍ରୀକୃଷ୍ଣା ବୋଇଲେ ବୃହନ୍ନାରୀ କଥାୟେ ମାଗଇ
ଯେ ମୋହୋର ପୁଅ କଥା ତୋତେ ସେ ଲାଗଇ ।୧୩୯।
ଶ୍ରୀକୃଷ୍ଣା ବୋଇଲେ ବାବୁ ସଇରିନ୍ଧ୍ରୀଂକି ହୁଅ ପ୍ରଳମ୍ବିତ
ଯେହାଙ୍କର କଲ୍ୟାଣେ ତୋତେ ସର୍ବଶୁଭ ହୋଉ ପ୍ରାପତ ।୧୪୦।

ଉତ୍ତର କୁମର ସଇରିନ୍ଧ୍ରୀ ଶ୍ରୀକୃଷ୍ଣା ଚରଣ ତଳେ ସେବି
ପରମ ଅଇଶ୍ୱର୍ଯ୍ୟ ତୋତେ ପ୍ରାପତ ହୋଉ ବୋଇଲେ
ଗାନ୍ଧର୍ବୀ ।୧୪୧।
ଶତ୍ରୁ ମାରିକରି ଉଭା ହୁଅସି ରେ ବଳା
ବୃହନ୍ନାରୀ ସଦୟେ ତୋତେ ସାଧୁ ଅନର୍ଗଳା ।୧୪୨।
ଉତ୍ତର କୁମାର ବୋଇଲା ସାଧୁ ସାଧୁ ବୃହନ୍ନାରୀ
ଦିନେକେ କେତେ ଦୂର ରଥକୁ ବାହିପାରି ।୧୪୩।
ବୃହନ୍ନାରୀ ବୋଲେ ତୁ ଯେ ମୋତେ କଲୁ ପୁଚ୍ଛା
ଯେହିକ୍ଷଣି ରଥ ବାହିପାରଇ ହୋ ଯହିଁକି ତୋହୋର
ଇଚ୍ଛା ।୧୪୪।
ସ୍ୱର୍ଗ ମଞ୍ଚ ପାତାଳ ଯେ ସୁତଳ ତଳାତଳ
ନିତଳ ଭୂତଳ ଯେ ରସାତଳ ଅତିତଳ ।୧୪୫।
ନିର୍ଭୟେ ହୋଇ ଯେବେ ଆଗ୍ୟାଂ ଦେବୁ ମୁକୁ
ଘଡ଼ିକ ଭିତରେ ମୁଂ ରଥ ବାହିପାରେ ଚଉଦ ଭୁବନକୁ ।୧୪୬।
ଜମ୍ବୁଦୀପ କ୍ରାଉଞ୍ଚ ଦ୍ୱୀପ ରତ୍ନଦ୍ୱୀପ ଶ୍ୱେତଦ୍ୱୀପ
ଚନ୍ଦ୍ରଦ୍ୱୀପ ପଦ୍ମଦ୍ୱୀପ କୁଶଦ୍ୱୀପ ଶାକଲ୍ୟ ଦ୍ୱୀପ ରମ୍ୟେକ
ଦ୍ୱୀପ ।୧୪୭।
କ୍ଷାର ସମୁଦ୍ର ଇକ୍ଷୁ ସମୁଦ୍ର ସୁରା ସମୁଦ୍ର ସର୍ପି ସମୁଦ୍ର ଧବଳାଙ୍ଗୀ
ଦଧି ସମୁଦ୍ର ଦୁଗ୍ଧ ସମୁଦ୍ର ମହାଜଳ ସମୁଦ୍ର ସଉଭାଗୀ ।୧୪୮।
ବାକୀ ସମୁଦ୍ର ଅନ୍ତରେ ବାସ ସେ ସମୁଦ୍ରର
ଯେ ବିଧାନେ ଅଛଇ ଯେ ନବଦ୍ୱୀପ ସପତ ସାଗର ।୧୪୯।
ଯହିଁକି ଇଚ୍ଛା ତୁ କରିବୁ ବିରାଟି
କ୍ଷଣକର ମଧ୍ୟେ ମୁଂ ଯେ ସେ ପୁରେ ପାରଇ ଭେଟି ।୧୫୦।
ଆହୋ ଅର୍ଜ୍ଜୁନର ପ୍ରତଗ୍ୟାଂମାନ ମୁଂ କହଇ ସମସ୍ତ
ସମରେ ନ ଜିଣିଲେ ମୁଂ ନ ବାହୁଡ଼ାଇ ରଥ ।୧୫୧।
ଉତ୍ତର କୁମର ହସିଲା ବୃହନ୍ନାରୀ କରେ କରତାଳି ଦେଇ
ଯେତେକାଳେ ମନଇଛାୟେ ସାରଥି ପାଇଲଇ ମୁହିଂ ।୧୫୨।
ଯେହ୍ନେକ ରଥୀ ତୁହି ତେହ୍ନେକ ସାରଥି
ଆଉର କି ସମରେ ଜିଣିମ କୁରୁପତି ।୧୫୩।
ଅର୍ଜ୍ଜୁନ ବୋଇଲା ହୋ ବ୍ରହ୍ମା ବିଷ୍ଣୁ ମହେଶ୍ୱର କୁବେର
ଚନ୍ଦ୍ର ସୂର୍ଯ୍ୟ ମେଘ ମରୁତ ପର୍ବତ ନିଶାଚର ।୧୫୪।
ଯାହାର ଆଗକୁ ବୋଲି ଆଗ୍ୟାଂଦେବୁ ମୁକୁ
ଯେହିକ୍ଷଣି ଛାମୁରେ ଭେଟାଇ ପାରଇ ତାକୁ ।୧୫୫।
ଉତ୍ତର ବୋଇଲା ତାହାନ୍ତ ଜାଣିମାନା ପଛେ
ମାନଗୋବିନ୍ଦ କୋଟି ଗୋଧନ ହରଇ ପ୍ରତକ୍ଷେ ।୧୫୬।
କଉରୋବନ୍ତ ଜିଣିଣ ଯେ ଆଣିମା ଗୋରୁପଲ
ଅର୍ଜ୍ଜୁନ ବୋଇଲା ପାଣ୍ଡବଂକର ଅଟଇ ସେ ସଲ ।୧୫୭।
ମକର ଶୁକଳ ପକ୍ଷ ତ୍ରୟୋଦଶୀ ଶନିବାର
ପୁନର୍ବସୁ ଋକ୍ଷ ଭୋଗ ହେଲା ସେ ଦିନର ।୧୫୮।
ପ୍ରୀତିନାମେ ଯୋଗ ପୁଣି କଉଳବ କରଣ
ମାଘ ସଂକ୍ରାନ୍ତିକୁ ଭୋଗ ସପ୍ତବିଂଶ ଦିନ ।୧୫୯।
ଦ୍ୱାଦଶ ଦଣ୍ଡ ଅଟଇ ଭୋଗ ଚନ୍ଦ୍ର କଳା
ଦେଢ଼ ପ୍ରହରେ ପ୍ରବେଶ ବୃହସ୍ପତି ବେଳା ।୧୬୦।
ବାମେଣ ପବନ ବହଇ ମଳୟା
ଚଳଇ ରଥ ଯେ ଇଶାନ୍ୟ କୋଣିୟା ।୧୬୧।
ନଇରତ କୋଣେ ଯୋଗ୍ନୀ ଯେ ନାରାୟଣୀ ମୂରତି
ମଗର ବାହାନେ ସେ ଚଳଇ ଦେବୀ ଧାତି ।୧୬୨।
ରଥ ଚଳନ୍ତେ ସେ ବୋଇଲା ଉତ୍ତରା ବାଳୀ
ଛତ୍ରୀବର ଶିରୀଭୂଷା ଆଣିମୁଂଟି ବୃହନ୍ନାରୀ ।୧୬୩।
କନ୍ୟାଂକର ତୁଳେ ମୁଂ ଖେଳିବାର ବେଳେ
କୁଣ୍ଡାଇ ବିଡା ମୁଂ କରିବି କୁତୂହୋଳେ ।୧୬୪।
ରଥରୁ ନେତ ପାଟାଙ୍ଗ ଆଣିବୁଟି ଛିନାଇ
ଗୋଧନ ପଲ ଆଣିମୁଟି ତୋତେ କୋନ୍ତଂକର ଦ୍ୱାହି ।୧୬୫।
ଶୁଣିଣ ସାନନ୍ଦ ଯେ ବ୍ୟାସଂକର ନାତି
ମଙ୍ଗଳ ଭାଷିଲେ ଯେ ଅହିଅ ଯୁବତୀ ।୧୬୬।
ଉତ୍ତରା ବୋଇଲା ସମସ୍ତ ଲାଗଇ ବୃହନ୍ନାରୀ
ଦ୍ରିଯୋଧନକଇଂ ଜିଣି ଗୋଧନ ଆଣ ଭାଇକି ମୋହର
ତାରି ।୧୬୭
ବାହଇ ତୁରିତେ ପାଣ୍ଡବ ଶୁଭ ଅନକୂଳେ
ଯେସେନେକେ ହଂସଯୂଥ କ୍ରୀଡ଼ନ୍ତି ମହାଜଳେ ।୧୬୮।
ଧବଳ କମଳ ସେ ଅଟନ୍ତି ଚାରିହୟେ
ଖେପନ୍ତି ଆକାଶେ ଦିଶନ୍ତି ସେ ଶେଣାପକ୍ଷୀ ପ୍ରାୟେ ।୧୬୯।
ଭିରାତ ବିବାଦେ ଯେହ୍ନେ ଖେପନ୍ତି ହରିଣ
କ୍ଷୁଦ୍ର ଘଣ୍ଟି ଘାଗୁଡ଼ି ଯେ ବାଜଇ ରୁଣ ଝୁଣ ।୧୭୦।
ତିନି ଯୋଜନ ଅନ୍ତରେ ରହିଛି କୁରୁସାଗର ବଳ
ଲକ୍ଷେପୁର କରି ବେଢ଼ିଛି ଗୋଧନ ପଲ ।୧୭୧।
ରଯଣୀ ପ୍ରଭାତେ ସେ ଯେ ଗୋଧନ ପଲ ନେମନ୍ତ ଅଡ଼ାଇ
ଅଡ଼ାବନ୍ତେ ବିହଡ଼ନ୍ତି ସେ ଅଭୟେ ଦୁଷ୍ଟ ଗାଈ ।୧୭୨।
ରଥ ଗମନ୍ତେ ସେ ବିଚାରଇ କିରୀଟୀ
ହୃଦଗତେ ସୁମରଇ ସେ ପୁରୁଷୋତ୍ତମ ନାମଗୋଟି ।୧୭୩।

ଜୟତୁ ଜୟ କେଶବ କେଶୀ ଦର୍ପଗଞ୍ଜା
ଶ୍ରୀରାମ ଅବତାରେ ତାଡ଼କୀ ଦର୍ପଭଞ୍ଜା ।୧୭୪।
ଦକ୍ଷିଣ ବାରାନିଧି ମହୋଦଧିର ଉତ୍ତର କୂଳେ
ବିଜେ ଜଗତ ମୋହୋନ କଳ୍ପବଟ ତଳେ ।୧୭୫।
ଅଢ଼ାଇ ତାଳ ଆୟତନେ ଅଣଦହନ ଭୂମି ଅଛି
ତଦ ନିମନ୍ତେ ରାମ ନିର୍ମଳ ଭୂଇଂ ବାଛି ।୧୭୬।
ମଳୟ ପବନ ବସନ୍ତ ତାପ ନାଶକର ବିଧି
ସକୁଟୁମ୍ବ ଘେନି ଦେଖ ଖଟଇ ଜଳଧି ।୧୭୭।
ବାମେ ମାରକଣ୍ଡ ଯେ ଡାହାଣେ ଯମେଶ୍ୱର
ପରମାନନ୍ଦ ପୁରୁଷ ଆସନ ଯୋଗ ସିଦ୍ଧେଶ୍ୱର ।୧୭୮।
ମହା ବଡଦ ରୂପ କଳିକାଳ ଧ୍ୱଂସି
ଦୁରାପଦ ପାତକ ଯାହାର ଦ୍ରଶନେ ବିନାଶି ।୧୭୯।
ଅଣାକାର ସୋହୋଦ୍ର ଯାହାର ଡାହାଣେ ରାମଚନ୍ଦ୍ରେ
ଦୋଷ ଉପେକ୍ଷି ସାନନ୍ଦେ ପିତାମହ ସଉଭଦ୍ରେ ।୧୮୦।
ସ୍ୱାମୀ ଅଭୟେ ବାରାନିଧି ପ୍ରତକ୍ଷେ ଦିଅ ମୋତେ ବୁଦ୍ଧି
ବିଚିତ୍ର ମହାଭାରଥ ଯେ ଅମୂଲ୍ୟ ବାରାନିଧି ।୧୮୧।
ଶୁଣ ଆହୋ ଚଇତନ ମହାଭାରଥ ଯେ ସଂସାର ଜନ ହିତା
ଜନ୍ମେ ଜନ୍ମେ ଭାବଇ ମୁଂ ନାରାୟଣ ସଂଗତା ।୧୮୨।
ଧବଳ କମଳ କୁଂକୁମ ନୀଳ ଉତ୍ପଳ ବର୍ଣ୍ଣଗୋଟି
ମମହୃଦେ ବିଘଂସୁ ସୁରଭି ପଦ୍ମ ଫୁଟି ।୧୮୩।
ତୁଳସୀର ବଲ୍ଲଭ ପ୍ରିୟବତୀର ପ୍ରାଣନାହା
ଶୂଦ୍ରମୁନି ସାରୋଳ ଦାସ ହୃଦଗତେ ଭାବଇ ତାହା ।୧୮୪।
ଅଗସ୍ତି ନାମେଣ ସେ ଯେବଣ ମହରଷି
ପବିତ୍ର ବାଲଖିଲ୍ୟା ସେ ପିତାମହର ଶିଷି ।୧୮୫।
ଅନାଗତ ପୁରୁଷ ଅବ୍ୟକତ ଅସଞ୍ଚା
ନିରାକାର ପୁରୁଷ ତୁ ଅନନ୍ତ କାଳ ବଞ୍ଚା ।୧୮୬।
ପରମ ଯୋଗେଶ୍ୱର ମହାଭିଜ୍ଞ ଅଟଇ
ଯେକାଳୟେ ଯାହାର ମନୁକଳ୍ପ ତୁଟଇ ।୧୮୭।
ଦିବା ରାତ୍ର ଅପରଚେକ ଯେବଣ ମହରଷି
ସେ ମୁନିଂକର ତଳୟେ ମୁଂ ହୃଦଗତେ ଭାଷି ।୧୮୮।
ସେ ବ୍ରହ୍ମବେତ୍ତା ମହରଷି ଅଗସ୍ତିଂକର ପାଦତଳେ
ବାରାନିଧି ଗଣ୍ଡୂଷ କଲେ ଯେ ଖେଡ଼ର କୁତୂହୋଳେ ।୧୮୯।
ଜନ୍ମେ ଜନ୍ମେ ଦାସ ମୁଂ ସେ ମୁନିଂକ ଚରଣେ
ଶୂଦ୍ରମୁନି ସାରୋଳ ଦାସ ହୃଦେ ଭାବନ୍ତି ଅନୁକ୍ଷଣେ ।୧୯୦।

**

## ୭୦. ବିରାଟ ସିଂହାସନେ ଯୁଦ୍ଧେଷ୍ଟିଙ୍କ ଉପବେଶନ ଶୁଣି ବିରାଟର କୋପ ଓ ଉତ୍ତର କର୍ତ୍ତୃକ ପରିଚୟ ପ୍ରଦାନ

ଯୁଦ୍ଧେଷ୍ଟିଦେବେ ବୋଇଲେ ଶୁଣସି ସହଦେବ
ଅଭିଷେକ ହୋଇ ପୃଥୀରେ ଦେଇ ନ ଯୋଗାଇ ପାଦ ।୧।
ଯାନ ବାହାନ ତ ଆମ୍ଭର ନାହିଂ କିଛି
ଭୀମସେନ ବୋଇଲା ଦେବ ବୁଦ୍ଧିୟେ ମୋହୋର ଅଛି ।୨।
ସମସ୍ତେହେଂ ବିଜେ କରିବା ଯେ ମୋହୋର ଅଙ୍ଗେ
ବିରାଟ ରାଜ୍ୟେ ଯାଇଂ ପଶିବା ଆମ୍ଭେ ବେଗେ ।୩।
ଅଭିଷେକ ବିଧାନ ହୋଇଥିଲେ ଯେବଣ ମତେ
ଯୁଦ୍ଧେଷ୍ଟିଦେବ ବିଜେ କଲେ ଭୀମସେନର ମାଥେ ।୪।
ଦିବ୍ୟ ଅବତାର ଯେ ହୋଇଣ ପାଞ୍ଚାଳୀ
ଯୁଦ୍ଧେଷ୍ଟି ଦେବଂକ କୋଳେ ବିଜେ ଦ୍ରୋପଦ ରାଜାଂକ ଦୁଲାଳୀ।୫।
ଛିରୋଦ୍ର ମନ୍ଥନେ ଯେହ୍ନେ ଲକ୍ଷ୍ମୀ ନାରାୟଣ
ଗମନ୍ତି ବଇକୁଣ୍ଠେ ଖଗବର ଆରୋହିଣ ।୬।
ଧନୁ ତ୍ରୋଣ ଭାର ଘେନି ଦିବ୍ୟ ଅଳଂକାର
ଘେନିଣ ସକଳେ ସେ ପାଣ୍ଡବ ପଞ୍ଚୁବୀର ।୭।
କରେଣ କୋଦଣ୍ଡ ସେ ତ୍ରୋଣିଭାର ଘେନି
ଭୀମସେନ ଡାହାଣ ପଖାୟେ ବିଜୟେ ଫାଲ୍‌ଗୁନି ।୮।
ଦିବ୍ୟ ଅବତାର ସେ ନକୁଳ କୁମାର
ଧବଳ ଛତ୍ର ଘେନିଣ ବିଜୟେ ଭୀମସେନ ବାମ ଯେ ପାଖର।୯।
ଧନୁଶର ଭାରଥି ଦିବ୍ୟ ଅବତାର କରେଣ ମନ୍ତ୍ର ପୋଥି
ଭୀମସେନ ବାମ ପଖାୟେ ସହଦେବ ମହାମନ୍ତ୍ରୀ ।୧୦।
ଅନେକ ଭୂଷଣ ଯେ ସବୁଂକରି କାୟେ
ଦିବ୍ୟ ଅବତାର ସେ ଦିଶନ୍ତି ଦିଗପାଳ ପ୍ରାୟେ ।୧୧।
ମେରୁ ଆସନେ ଯେହ୍ନେ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଅସକନ୍ଦ ଦେବତା ତୁଲେ ଯେହ୍ନେ ବିଜୟେ ବୈଶ୍ୱାନର ।୧୨।
ଶରଦ ଆଦିତ୍ୟ ପ୍ରାୟେ ତେଜେଣ ବିକାଶି
ବେଳ ବେଳିଦଣ୍ଡ ମଧ୍ୟେ ଯାଇଂ ମସଦେଶେ ପଶି ।୧୩।
କଣୟ ଗିରି ଜାଣି ଭୀମସେନ ଚାଲନ୍ତେ ଶୋହଇ
ପାଞ୍ଚାଳୀ ଅର୍ଜୁନ ରୂପ ଜଗୁଜନ ମୋହଇ ।୧୪।
ଦେଖିଣ ବିଷାଦ ଯେ ହୋଇଲେ ପୁରଜନେ
ଯେସନେକ ବିଧାନ ଯେ ହୋଇଲେ କେସନେ ।୧୫।

ମୂର୍ଖଲୋକେ ବୋଲନ୍ତି ଯେତ ସଭାପଣ୍ଡା କୋନ୍ତଭଟ୍ଟ
ଦିଗପାଳ ପ୍ରାୟେ ତ ଦିଶନ୍ତି ଅତି ଶ୍ରେଷ୍ଠ ।୧୬।
କେ ବୋଲଇ ଶତେ କୀଚକକୁ ଖାଇଲା ସଇରିନ୍ଧ୍ରୀ
କୋନ୍ତଭଟ୍ଟ ତୁଲେ ଯେହୁ ଦିଶେ ଅଭିଷେକୀ ।୧୭।
କେ ବୋଲଇ ଉତ୍ତରା କୁମାରୀ ଯେ କରାଉଥିଲା ନୃତ୍ୟ
ନପୁଂସକ ରୂପ ଛାଡ଼ି ଯେତ ଇନ୍ଦ୍ରସ୍ୱରୂପ ସଂଜାତ ।୧୮।
କି ଅବା ନାରାୟଣ ଦେବତା ଚକ୍ରପାଣି
ଯେହାକର ଚରିତ ଯେ ନୁଆରିଲୁ ଜାଣି ।୧୯।
କେହୁ ଯେହାର ଯେ ନ ଚାହୁଁଥିଲା ମୁଖ
ଦିବ୍ୟ ଅବତାର ଯେତ କନ୍ଦର୍ପ ସ୍ୱରୂପ ।୨୦।
କେ ବୋଲଇ ଠାକୁରଂକୁ ଯେ ଅଶ୍ୱ କରାଉଥିଲା ଲାଗି
ସେ ଗ୍ରନ୍ଥିକାର ବାଜିପାଳ ସୁନ୍ଦର ମହାଭୋଗୀ ।୨୧।
ଶରୀରେ ଆଭରଣ ଯେ କଣଯ ଅମୂଲ୍ୟ
ଲକ୍ଷ୍ମୀର ଭଣ୍ଡାର ତହିଂକି ନୋହଇ ସମତୁଲ ।୨୨।
କେ ବୋଲଇ ତନ୍ତୀପାଳ ଗୋପାଳ ରୂପ ଦେଖ
ଆକାଶ ତେଜିଣ କି ବିଜୟେ ତ୍ରିଅମ୍ବକ ।୨୩।
ମନ୍ତ୍ରୀର ବିଧାନ ତ କରେଣ ମନ୍ତ୍ରପୋଥି
ଦଣ୍ଡଛତ୍ର କରେ ଧରି ଯେତ ଅଭିଷେକୀ ପ୍ରାୟେକ ଦିଶନ୍ତି ।୨୪।
କେ ବୋଲଇ ଯେତ ରାନ୍ଧି ଦେଉଥିଲା ବଲ୍ଲବ
ଦେଖ ଯେ ଯେହାର ହୋ ମହିଂମା ଦୁଲଭ ।୨୫।
ଯେହାଂକର ଚରିତ ତ ନ ପାରିଲୁ ଜାଣି
ଦିଗପାଳ ପୁରୁଷ ଯେ ଗଗନ ଚୂଡ଼ାମଣି ।୨୬।
ଯେକା ଦେହକେ ଯେ ପାଞ୍ଚଗୋଟି ଦେଖି
ହସନ୍ତି କଉତୁକେ ଯେ ଲଜାନ୍ତ ଉପେଖି ।୨୭।
ମୁଣ୍ଡେ କାନ୍ଧେ କାଖେ ହସ୍ତେ ସେ ବହଇ
ଯେକକୁ ଆରେକ ସେ ରୋଷଭରେ କହି ।୨୮।
କେହୁ ହସନ୍ତି କେହୁ ପାଡ଼ନ୍ତି କୁରୁଳି
କେହୁ ମଙ୍ଗଳ ଧ୍ୱନି କରନ୍ତି ଦିଅନ୍ତି ହୁଳହୁଳି ।୨୯।
ମୂର୍ଖଲୋକେ ବୋଲନ୍ତି କେମନ୍ତ ଯେ ବାଇ
ଯେମନ୍ତ ପ୍ରପଞ୍ଚେ ଯେ ବୁଲନ୍ତି କିସପାଇଂ ।୩୦।
ଦେଖିଣ ବିଚାରନ୍ତି ରାଜ୍ୟର ଗଣିତ ଭିଜ୍ଞଲୋକେ
ଯେ ରାଜ୍ୟରେ ପଶିଯେତ ମୂର୍ଦ୍ଧନା ଅଭିଷେକେ ।୩୧।
କେ ବୋଲଇ ବିରାଟ ଯେ କଲା ମନ୍ଦକୃତ୍ୟ
ଅତିଅନ୍ତ ବିଶ୍ୱାସେ ଯେ ପୋଷିଲା ଯେହାନ୍ତ ।୩୨।
କୀଚକ ନାଶଗଲା ରାଜ୍ୟତ ଅଣରେଖ
କଳିରେ ବିରାଟକୁ ରାଜ୍ୟ ମାଡ଼ି ବସିବେ ପ୍ରତ୍ୟକ୍ଷ ।୩୩।
କରେଣ ଅର୍ଘ୍ୟ ଘେନି ସୁଲଭ କାମିନୀ
ଦେବ ବିଜେ କଲା ପ୍ରାୟେ ଦିଅନ୍ତି ହୁଳହୁଳି ଧ୍ୱନି ।୩୪।
ମାହେନ୍ଦ୍ର ଯୋଗେ ସେ ଯେ ଶୁଭ ଅନୁକୂଳେ
ଆସ୍ଥାନ ମାଡ଼ି ବସିଲେ ପ୍ରତିଗ୍ୟାଂ ମହାବଳେ ।୩୫।
କଣୟ ସିଂହାସନେ ଯେ ବିଜୟେ ଧର୍ମଶିଷି
କୋଳେଣ ପାଞ୍ଚାଳୀ ଘେନି ଆସ୍ଥାନେ ଛନ୍ତି ବସି ।୩୬।
ପାବଚ୍ଛକର ତଳେ ସହଦେବ ମହାମନ୍ତ୍ରୀ
ଭୂତ ଭବିଷ୍ୟ ଜାଣଇ ସେ କରେଣ ମନ୍ତ୍ରପୋଥି ।୩୭।
ଆରେକ ପାବଚ୍ଛତଳେ ବିଜୟ ଫାଲଗୁନି
ବାମକରେ ଗାଣ୍ଡିମ ଡାହାଣ କରେ ଖଡ୍ଗ ଘେନି ।୩୮।
ଆବର ପାବଚ୍ଛ ତଳେ ନକୁଳ କୁମାର
ନବନିଶି କୋନ୍ତ ଘେନି ସମାର୍ଜଇ ବାଜିପାଳ ।୩୯।
ବାଆନ ବାଆନ ଭାର ଗଦା ଘେନିଣ ବେନିକରେ
ଭୀମସେନ ଆବୋରି ଯେ ବସିଛନ୍ତି ସିଂହଦ୍ୱାରେ ।୪୦।
କାଳଚକ୍ର ପ୍ରାୟେକ ଭ୍ରମଇ ବେନିଡ଼ୋଳା
ଯମ ଦେବତା ପ୍ରାୟେକ ଦିଶଇ ଅନର୍ଗଳା ।୪୧।
ମୂର୍ତ୍ତିକି ଚାହିଂ କେହି ନୁଆରନ୍ତି ଡରେ
ଭୟେ ସର୍ବଲୋକେ ଯେ ଅନାବନ୍ତି ଧୂରେ ।୪୨।
ଦେବାର୍ଚ୍ଚନ ମନ୍ଦିରେ ଯେ ବିଜୟେ ବିରାଟ
ଚାରଗଣେ ଜଣାଇଲେ ରାଜ୍ୟ ତୋହୋର କୋନ୍ତଭଟ୍ଟ ।୪୩।
ଯେବେଣ ସଇରିନ୍ଧ୍ରୀ ମୋଢ଼ୀ ହେତୁ କୀଚକ ନାଶଗଲା
ଅଭିଷେକ ହୋଇଣ ସେ କୋନ୍ତଭଟ୍ଟ କୋଳରେ ବସିଲା ।୪୪।
ଅଭିଷେକ ଯୋଗାଡ଼ ଦେବେ ସେ ପାଇଲେ ଅବା କାହିଂ
ସେ ରତ୍ନମାଳମାନ ମଧ୍ୟପୁରେ ଦେଖିଲା ଆମ୍ଭର ନାହିଂ ।୪୫।
ସ୍ୱାମୀ ଦିବ୍ୟ ଅବତାର ସେ ଯେ ତନ୍ତୀପାଳ ଗୋପାଳ
ମନ୍ତ୍ରୀପଣେ ପୋଥିଯେ ଘେନି କହଇ ଭୂତ ଭବିଷ୍ୟ ସକଳ ।୪୬।
କନକ ଦଣ୍ଡ ଛତ୍ର ଧବଳ ବୀରଛତ୍ର କରେ ଘେନି
ଧନୁତ୍ରୋଣ ଭାରଥି ବାଜିପାଳ ବୃହନ୍ନାରୀ ।୪୭।
ଦ୍ୱାର ଆବୋରି ଦେବ ରହିଛି ବଲବ
ତ୍ରୈଲୋକ୍ୟ ମୂରତି ତାର ଅଟଇ ଦୁଲଭ ।୪୮।
ତାହାଂକର ଗୁପତ ଦେବ ନୁଆରିଲୁ ଜାଣି
ଦିଗପାଳ ପୁରୁଷ ସେ ଗଗନ ଚୂଡ଼ାମଣି ।୪୯।

ଡଗର ମୁଖୁଂ ଯେସନ ବାରତା ଶୁଣିଣ ବିରାଟ
କରେ ଅସିପତ୍ର ଧରି ଅଧର କଲା ପୁଷ୍ଟ ।୫୦।
ଧାମଗିଂ ମସାଧିପ କରେ ଘେନି ଖଣ୍ଡା
ଯେମନ୍ତ ଦର୍ପ କିମ୍ପେ ବହିଲ କୋନ୍ତଚଣ୍ଡା ।୫୧।
ଆଜ ତାହାର ମୁଣ୍ଡ ମୁଂ ପକାଇବି ହାଣି
କୋଳକରି ଧଇଲା ଶ୍ରୀକୃଷ୍ଣା ପାଟରାଣୀ ।୫୨।
ସ୍ୱାମୀ ରହ ରହ ବୋଲି ସେ ଶ୍ରୀକୃଷ୍ଣାଯେ ବୋଲି
ରାଗେଣ ବିରାଟେଶ୍ୱର ଶ୍ରୀକୃଷ୍ଣାଂକୁ ଦିଲେ ପେଲି ।୫୩।
ଅନ୍ତପୁରୁଂ ରାଜା ଯେ ହୁଅନ୍ତେଣ ବାହାର
ପିତାର ଭୁଜ ଧରିଲା ଉତ୍ତର କୁମର ।୫୪।
ରହ ରହ କୋପ ସଂହର ରାଯେ ମସ
ଅନାଦି ପୁରୁଷଂକୁ ତୁ ଭେଟିଲୁ ପ୍ରତ୍ୟକ୍ଷ ।୫୫।
ବିରାଟ ବୋଇଲାରେ ଖଡ଼ଗ ଛାଡ଼ ବାବୁ
ବିଚକ୍ଷଣ ପୁତ୍ର ବୋଲି ତୋତେ ସମର୍ପିଲି ସବୁ ।୫୬।
ବାବୁ ଅଦଭୁତେ କାହୁଂ ଆସି ପଶିଲେ ଭୃତ୍ୟପଣେ
ମୋହର ସମ୍ପଧି ମାଡ଼ି ବସିଲେ ଅକାରଣେ ।୫୭।
ଅତିହିଂ ଆଶ୍ୱାସ କରି ପୋଷିଲାଇଂ ଶ୍ୱାନ
ଅନ୍ତେ ସେ ମୋହୋର ମୁଖେ ଦିଲାକ ଚୁମ୍ବନ ।୫୮।
ବାବୁ ଯେବେ ଜାଣିଲି କୋନ୍ତଭଟ ବଡ଼ ଲଘୁ
କିମ୍ପାଇଂ ସହି ନୁଆରିଲି ନପୁଂସକ ଲଘୁ ।୫୯।
ଅତିହିଂ ରାଗେ ସିନା ମାଇଲି ପଶାକାଠି
ବାଜିଣ ଫିଟିଲା ତାହାର ଲଲାଟ ଯେ ପାଟି ।୬୦।
ଯେତେ ପାମରକୁ ତୁ କିଂପେ ସମାର୍ଜନୀ କଲୁ
ଚାଣ୍ଡାଳ ପୁତ୍ରରେ ତାହା ଛାରକୁ ମୋତେ ପ୍ରଳମ୍ବ କରାଇଲୁ ।୬୧।
ତେତେ ବେଳହୁଂ ମୋତେ ଦେଖିଲାନି ତେଜ
ତେଣୁକରି ମାଡ଼ିବସିଲା ସେ ମୋହୋର ରାଜ୍ୟ ।୬୨।
ବାବୁ ଭୀଷ୍ମ ଦ୍ରୋଣ ଜିଣିମାକୁ ତୁ ହୋଇଲୁ ସାମରଥୀ
କେମନ୍ତେ ସହିଅଛୁ ପୁତ୍ର ଯେଡ଼େକ ମନ୍ଦକଥା ।୬୩।
ଉତ୍ତର କୁମର ବୋଇଲା ପିତା ଦଣ୍ଡେକ ଥିର ହୋଇ ବସ
ଶ୍ରୀଭୁଜୁଂ କୃପାଣ ଥୋଇ ଥିର କର ନିଶ୍ୱାସ ।୬୪।
ସାବଧାନ ହୋଇ ତୁମ୍ଭେ କ୍ଷଣେ ଶୁଣ ମୋର ବାଚା
ସମ୍ପଦ ହରିବାକୁ କି ପ୍ରତଗ୍ୟାଂ ତୋର ସାଚା ।୬୫।
ସ୍ୱାମୀ ସାବଧାନେ ଶୁଣ ହୋ ସେ କୋନ୍ତଂକ ମହିମା
ଯେ ମହୀମଣ୍ଡଳେ ସେ ପୁରୁଷ ଉତ୍ତମା ।୬୬।
ସ୍ୱାମୀ ରାଜସୂିଯାଗ ସେ ଯେ ଆରେପଣ କଲା
ଚାରିଉଣା ଲକ୍ଷେ ରାଜା ଯାହାର ଚରଣେ ସେବିଲା ।୬୭।
ସ୍ୱାମୀ ତ୍ରୈଲୋକ୍ୟ ଠାକୁର ସେ ଦେବ ମଧୁହାରୀ
ଯାହାର ଯଗ୍ୟଂଶାଳେ ସେ ଅନନ୍ତ ପଢ଼ିହାରୀ ।୬୮।
ସ୍ୱାମୀ ଦେଖିଲୁଟିକି ଲକ୍ଷେ ରାଜା ସମ୍ମୁଖେ ନାରାୟଣ
ଯାହାର ପାଦ ଆର୍ଧନା କରନ୍ତି ପ୍ରତିକ୍ଷଣ ।୬୯।
ପାତାଳ ପୁର ସେ ଅନନ୍ତ ନାଗରାଜା
ଯେବଣ ସ୍ୱାମୀ ପାଦେ କଲାକ ପାଦପୂଜା ।୭୦।
ପାଞ୍ଚ ଉତ୍ତର ଶତେରଥ ପାଣିଦ୍ରବ୍ୟ ଘେନିଗଲୁଂ
ସାତକ୍ଷଉଣୀ ବଳ ଘେନି ଛତ୍ରଶାଳେ ଅନ୍ନ ଭୁଞ୍ଜିଲୁ ।୭୧।
ଅନୁବ୍ରତେ ବୋବି ଯେ ପାତୁଥିଲା ପଶ୍ଚିମଦ୍ୱାରେ
କେହି ଜାଣନ୍ତା ନୋହିଲା ଯେ ସ୍ୱାମୀଙ୍କ ଛାମୁରେ ।୭୨।
ଭାଇ ତାହାଂକର ତୋହର ଗଣ୍ଡସ୍ଥଳେ ଦେଇ ହାଥ
ତାହାଂକର ପାଦତଳେ ତୋତେ କରାଇଲେ ପ୍ରଣିପତ୍ୟ ।୭୩।
ଉଠ ବୋଲି ସ୍ୱାମୀ ଚାଳି ଦେଲେ ପଞ୍ଚଲହ
ବହମୁଦି ଦେଖିବାକୁ ନୋହିଲୁ ତୁ ରହ ।୭୪।
ଭୋ ପିତା ହାଥର ସୁଖେ ସେ ଖେଳିଲେକ ପଶା
ସହୋଦ୍ରେ ସମ୍ପଦ ଦେଇ ଅରଣ୍ୟେ କଲେ ବସା ।୭୫।
ଅଜାତଶତ୍ରୁ ଯେବଣ ଧର୍ମରାଯେ ଯୁଝେଷ୍ଟି
କର ନେଉଟାଇଲେ ଉଠେ ନବସୃଷ୍ଟି ।୭୬।
ସ୍ୱାମୀ ଅଗ୍ୟାଂତବାସ ତାଂକ ଗୋପ୍ୟାନ ନିମନ୍ତେ
ସତ୍ୟେଣ ନାମ ସେ ଯେ ବୋଲାଇଲେକ କୋନ୍ତେ ।୭୭।
କୋଇନ୍ତା ଦେବୀଂକର ଯେ ଅଟନ୍ତି ଜ୍ୟେଷ୍ଟବହ
କୋନ୍ତଭଟ ନାମ ବହିଲେ ନ କହିଲେ ମିଛ ।୭୮।
ସ୍ୱାମୀ ପାଣ୍ଡବାସୁରକୁ ଯେ ବଧକଲେ ରଣେ
ପାଣ୍ଡବ ନାମ ସେ ଯେ ବହିଲେ ପାଞ୍ଚଜଣେ ।୭୯।
ବିଷଲଡୁ ଖାଇ ଯେ ପାରକଲା ପ୍ରତକ୍ଷେ
ନାଗୁଣୀ ବଳ ଜିଣିଲା ସେ ପବନର ବଞ୍ଚେ ।୮୦।
ଯଦୁର ଘରୁ ଉବୁରିଲେ ପୋଡ଼ିଲା ନିଶାକାଳେ
କୁମ୍ଭୀରୀ ନାମେ ଦାନବ ଯେ ନିପାତିଲେ ଜଳେ ।୮୧।
ମଧୁବନ ତୋଟାରେ କିନ୍ନରୀ ନାମେ କଉଣୋପ
ବିନା ଯୁଦ୍ଧରେ ଯେ ହରିଲେ ତାହାର ଦର୍ପ ।୮୨।
ବକ ହିଡ଼ିମ୍ବିକା ମାରି ଯେ ଯେକଚକ୍ରା ନଗ୍ର ରଖି
ହିଡ଼ମ୍ବିକୀ ପ୍ରଦାନେ ଯାହାର ପ୍ରତଗ୍ୟାଂ ରହିଅଛି ।୮୩।

ଓତାଧି ଶିବପୁରେ ସେ ଚାଣ୍ଡାଳ ବଳ ଧ୍ୱଂସି
କୁମ୍ଭେକ ନିବାରିଲେ ନିରସ୍ତକ ବନେ ପଶି ।୮୪।
ଗୁପତ ନିମନ୍ତେ ସେ ବଲ୍ଲଭ ସୂପକାର
ବ୍ରାଘ ମାଲ ମାଇଲା ଯେ କଉତୁକ ସମର ।୮୫।
ସ୍ୱାମୀ ପାଞ୍ଚାଳ ଦୁହିତା ସଇନ୍ଧ୍ରୀ ବାକ୍ୟ କରି
ଶତେ ମାତୁଳ ମୋର କୀଚ୍ଚକ ରଣେ ମାରି ।୮୬।
ଯେ ତୋତେ ପାରକଲା ତ୍ରିଗର୍ତ୍ତର ବନ୍ଧନୁ
ବଲ୍ଲଭ ସୂପକାର ସେ ଯେ ପବନର ତନୁ ।୮୭।
ଶୁଣି ପିତାମହ ପ୍ରତଗ୍ୟାଂ କିରିଟୀ
ପର ଦୁଃଖେ କାତର ସେ କଇଛା ଢଗଜେଠୀ ।୮୮।
ସ୍ୱାମୀ ଉତ୍ତର ଦିଗ ବିଜେ କଲାକ ଯେ ସାଧି
ଜିଣିଲାକ ଚାଳିଶ ସହସ୍ର ମହାଯୋଧୀ ।୮୯।
ଲିହି ପୋଛନ୍ତେ ଯେବଣ ପ୍ରାଣ କରଇ ନଷ୍ଟ
ସମରେ ଜିଣିଲା ସେହୁ ନୃପତି ଯମାଗୋଷ୍ଟ ।୯୦।
ପୁଣି ହିଂ ଦିଗବିଜେ ତାତ କଲାକ ପାତାଳେ
ସପତ ଦ୍ୱୀପା ପୃଥିବୀ ସେ ଧଇଲା ଧନୁହୁଳେ ।୯୧।
ଦେଖିଣ ସାନନ୍ଦ ଯେ ହୋଇଲେ ନାଗରାଜା
ଦୁହିତା ଦେଇଣ ଯେବଣ ସ୍ୱାମୀକି କଲା ପୂଜା ।୯୨।
ପାଞ୍ଚାଳ ଦେଶେଣ ଯେହୁ ମହାଲକ୍ଷ ବିନ୍ଧି
ବ୍ରାହ୍ମ ରୂପେଣ ସେ ଜିଣିଲେ ସର୍ବ ଯୋଧୀ ।୯୩।
ବସନ୍ତ ଉତ୍ସବେ ଯେ ହରି ଆଣିଲେ ସଉଭଦ୍ରେ
ଅନେକ ଦ୍ୱନ୍ଦକରି ଯେ ହାରିଲେ ରାମଚନ୍ଦ୍ରେ ।୯୪।
ଶ୍ରୀକୃଷ୍ଣକଇଂ ଭୟକରି ପଳାଇଲା ଶତଧନୁ
ଶରଣ ପଶିଲା ସେ ପିତା ଅଭିମନ୍ୟୁ ।୯୫।
ଅନେକ ସମର ସେ କଲେକ ଚକ୍ରଧାରୀ
ନାରାୟେଣ ଜିଣିଲା ସେ ସମରେ କକ୍ଷାକରି ।୯୬।
ଖାଣ୍ଡବ ବନ ଦହନେ ସେ ଜିଣିଲା ଅକାଶ
ଅଗ୍ନି ଦେବତାକୁ ତାରିଲେ ସେ ବ୍ୟାଧି ଗଲା ନାଶ ।୯୭।
ଅନେକ ସମର ସେ କଲାକ ଜମ୍ଭଭେଦୀ
ଇନ୍ଦ୍ର ଜିଣି ଅଗ୍ନି ଦେବତାର ହରିଲାକ ବ୍ୟାଧି ।୯୮।
ନିର୍ବାତ କପଚକୁ ସେ ମାଇଲା ଆକାଶେ
ଅନେକ ପୂଜଂ ପାଇଲା ଅମର ସ୍ୱର୍ଗବାସେ ।୯୯
କିରିଟ ମୁକୁଟ ଇନ୍ଦ୍ର ବାନ୍ଧିଲେକ ଶିରେ
କିରୀଟୀ ନାମ ପାଇଲା ଅମର ସ୍ୱର୍ଗପୁରେ ।୧୦୦।
ସ୍ୱାମୀ କିରାତ ରୂପେଣ ସେ ହରଂକୁ ଯେ ଜିଣି
ଭୟେଣ ପ୍ରସନ୍ନ ଯେ ହୋଇଲେ ଶୂଳପାଣି ।୧୦୧।
ସାନନ୍ଦେ ବର ସେ ଦିଲେକ ଦେବହର
ଅକ୍ଷୟେ ତ୍ରୋଣ ପାଶୁପତ୍ର ଅସ୍ତ୍ର ଦିଲେ ପାଥର ।୧୦୨।
ହନୁମନ୍ତର ତୁଲେଣ ସେ ହୋଇଲା ବିବାଦୀ
ଶରେ ଶରେ ସାଗରେ ସେହୁ ସେତୁବନ୍ଧ ବାନ୍ଧି ।୧୦୩।
ରାଧାଚକ୍ର ବିନ୍ଧିଲାକ ଦେଖିଲୁ ମହିଂମା
ଲକ୍ଷେ ରାଜା ଦେଖି ଲଂଘି ନ ପାରିଲେ ଯାହାର ସୀମା ।୧୦୪।
ମେରୁଶୂଳ ବଧ କଲେ ଯେହୁ ହରିହର ଛଳେ
ଶରଣ ପଞ୍ଜର ସ୍ୱାମୀ ସେ ଅଟନ୍ତି ସର୍ବକାଳେ ।୧୦୫।
ଗୋପ୍ୟାନ ନିମନ୍ତେ ସେ ନପୁଂସକ ରୂପ ଧରି
ଉର୍ବଶୀର ଶାପେ ସେ ଦିନ ପାର କରି ।୧୦୬।
ଗୋଧନ ହରଣେ ମୁଂ ତାହାନ୍ତ ଗଲି ଘେନି
ସମୁଦ୍ର ପ୍ରାୟେ ମଣିଲି ମୁଂ କଉରୋବ ସଇନି ।୧୦୭।
ଭୟେଣ ପଳାଇ ମୁଂ ରଥ କଲି ତେଜ୍ୟା
ମୁକୁ ନିର୍ଭୟ କରି ବୋଇଲା ତୁ ସାରଥି ହୋଇଥାଅ ଯା ।୧୦୮।
ମୁହିଂ ସେ ସାରଥି ଆପଣେ ହୋଇଲେ ରଥୀ
ଦେବେ ସେ ଅଗୋଚର ଦେଖିଲେ ତାହାଂକର ମୂର୍ତ୍ତି ।୧୦୯।
ଅଠାର କ୍ଷଉଣୀ ବଳକୁ ସେ ପାଥ ରଥୀ ଯେକା
ଜିଣିଲେ ଭୀଷ୍ମ ଦ୍ରୋଣ ସେ ମନେ ନାହିଂ ଶଂକା ।୧୧୦।
ମନଭେଦୀ ନାରାଜକୁ ବିନ୍ଧିଲେ ସେ ଘେନି
ତେର ଯୋଜନ ମାଡି ପଡ଼ିଲେ ସେ ଯେ ଅଷ୍ଟାଦଶ କ୍ଷଉଣୀ ସଇନି।୧୧୧।
ରଥୀ ମହାରଥୀଯେ ପଡ଼ିଲେ ମହାଦୁଖେ
ଶ୍ରୀଭୂଷା ମଣି ମୁକୁଟମାଳ ତାତ ଆଣିଲି ମୁହିଂ ସୁଖେ ।୧୧୨।
ମରଣକୁ ଇଚ୍ଛା ଯେବେ କରିଅଛୁ ତାତ
କାହାକଇଂ କୋପ ଯେ କରୁଅଛୁ ମତ୍ସନାଥ ।୧୧୩।
ଯେକା ଯୋଦ୍ଧାକେ ତାତ ଜିଣିଲେ ସ୍ୱର୍ଗ ତିନି
ବୃହନ୍ନାରୀ ବୋଲି ଯାହା ସେ ପ୍ରତ୍ୟକ୍ଷେ ଫାଲଗୁନି ।୧୧୪।
ମାଦ୍ରୀର ନନ୍ଦନ ନକୁଳ କୁମାର ଯାହାକୁ ବୋଲୁ
ରାଜସୂୟ ଯଜ୍ଞରେ ଯାହାର ମହିମା ଦେଖିଲୁ ।୧୧୫।
ଅତୀୟ ସୁକୁମାର ଅଟଇ ତାହାର ଅଙ୍ଗ
ଲକ୍ଷେ ରାଜା ମଧରେ ଯେ ବୋଲାଇ ଭୁଜଙ୍ଗ ।୧୧୬।
କୋନ୍ତମୁନେ ପୃଥୀ ଯେ ଧରିବାକୁ ସାମରଥା
କୁମାର ମୁଖେ ଯାକୁ ଆକାଶେ ପାଟ ଯଥା ।୧୧୭।

ଦକ୍ଷିଣଦିଗ ରାଜାନ୍ତ ସେ ସାଧିଲାକ ଅବହେଳେ
ଚକ୍ରପର ଧ୍ୱଂସିଲା ସେ ତାହାର ବୁଦ୍ଧିବଳେ ।୧୧୮।
ଗ୍ରନ୍ଥିକାର ମତେ ଥାନପାଳ ସରୂପେ
ଅସାଧ୍ୟକୁ ସାଧ୍ୟକଲା ଯାହାର ମନ୍ତ ମହାଦର୍ପେ ।୧୧୯।
ନ ବୁଝି ଅନମିତେ ତାହାକୁ କୋପକରୁ
ଭୋ ତାତ ଜୀଉଂ ଜୀଉଂ ମରଣକୁ କିଂପେ ଇଚ୍ଛାକରି ଲୋଡ଼ୁ ।୧୨୦।
ମନ୍ତ୍ରୀଚୂଡ଼ାମଣି ସହଦେବ ଯାହାକଇଂ ବୋଲି
ମନ୍ତ୍ରେଣ ସାଧିଲା ସେ ପୃଥୁନା ଗୋରୁପଲ୍ଲି ।୧୨୧।
ପୂର୍ବଦିଗ ରାଜାନ୍ତ ସେ ସାଧିଲାକ ହେଳେ
ସାତ ସହସ୍ର ରାଜା ସେ ଖଟିଲେ ଯାହାର ପାଦତଳେ ।୧୨୨।
ଯେବେ ଅଷ୍ଟାଦଶ କ୍ଷଉଣୀମାନ ଗୋବିନ୍ଦର ତୁଲେ
ପ୍ରଥମ ସମରେ ଆସି ଗୋଧନ ବେଢ଼ିଲେ ।୧୨୩।
ଯେକା ଗୋପାଳକେ ବହୁତ ସମର ସେ ହାଦେକଲା
ମାନଗୋବିନ୍ଦ ଦର୍ପ ଚୂରି ସେ ଗୋଧନ ଛଡ଼ାଇ ଆଣିଲା ।୧୨୪।
ଯେକା ଯେକା ଜଣକେ ତାତ ଅପାର ମହିଂମା
ଦେବଦାନବେ ଲଂଘି ନୁଆରନ୍ତି ଯାହାର ସୀମା ।୧୨୫।
ଅଗ୍ୟାନେ ଯେ କୋପ ଜାତ କରୁ ପିତାମହ
ସିଂହର ଛାମୁରେ ଶ୍ରିକାଳ କାହିଂ ରହ ।୧୨୬।
ଅନାଦି ଅପର୍ଣ୍ଣା ସେ ଦ୍ରୋପଦ ଦୁଲାଳୀ
ସଇରିନ୍ଧ୍ରୀ ରୂପେ ସେ ସତ୍ୟବ୍ରତ ପ୍ରତିପାଳି ।୧୨୭।
ଯେ ମହୀଭାରା ସେ ଅଟଇ ନିବାରିଣୀ
ପ୍ରତକ୍ଷେ ଅନ୍ନପୂର୍ଣ୍ଣା ସେ ସ୍ତିରୀକୂଳ ଶିରୋମଣି ।୧୨୮।
କଉରୋବ ବଳ କ୍ଷୟନ୍ତା ସେ ଦ୍ରୋପଦ ଅବଳା
ମେଦିନୀଭାରା ନିମନ୍ତେ ଯାହାର କେଶଟି ମୁକୁଳା ।୧୨୯।
କୀଞ୍ଚକର ମୂଳେ ଯାହାର ଶତେ ସହୋଦ୍ର ନାଶି
ଗୋପ୍ୟେ ରହିଲେ ସେ ସମସ୍ତ ଦୁର୍ଧ୍ୱଂସି ।୧୩୦।
ଉତ୍ତର କୁମାର ଯହୁଂ ଯେମନ୍ତ କଲା ପୁଚ୍ଛା
ଖଡ଼ଗ ଛାଡ଼ି ବିରାଟ ପଡ଼ିଲାକ ମୂର୍ଚ୍ଛା ।୧୩୧।
କୋଳକରି ବିରାଟକୁ ଧଇଲା କୁମରମଣି
ମୁଖେ ଉତ୍ତର କୁମାର ସିଞ୍ଚିଲାକ ନେଇ ପାଣି ।୧୩୨।
ସାଷ୍ଟାମ ହୋଇଣ ସେ ବସିଲା ମସପତି
ବାବୁ କିମ୍ପେଇ ରହିଲା ରେ ମୋହୋର ଜୀବତି ।୧୩୩।
ମୁହିଂ ମୁର୍ଖପଣେ ଯେହାଂକୁ ନୁଆରିଲି ଜାଣି
ମୋହର ପୁରେ ରହିଲେ ଠାକୁର ଠାକୁରାଣୀ ।୧୩୪।
ସ୍ୱାମୀତ୍ୱ ପଣେ ମୁହିଂ ଅନେକ ତୁକାର ବୋଇଲି
ଆବର ଶ୍ରୀଖଣ୍ଡ କପାଳକୁ ପଶାକାଠି ଘାତକଲି ।୧୩୫।
ବାବୁ ଯେତେକ ଭ୍ରଚ୍ଛନାରେ ବୋଲିଅଛି ମୁହିଂ
ଭୀମସେନ ଠାକୁରେ ମୋତେ ସହିବେ କିସ ପାଇଂ ।୧୩୬।
ଜଗବନ୍ଦନ ନାଥ ମୋହର ପୁରେ ବିଜେକଲେ
ସେବା କରିବାକୁ ମୋତେ ବିଧାତା ନ ଦିଲେ ।୧୩୭।
କେବଣ ବାଗେ ନନ୍ଦନ ରେ ଚାହିଂବି ତାଂକ ମୁଖ
ଯେହିକ୍ଷଣି ଶିର ମୋର ଛେଦିବେ ବିବସ୍ତ ।୧୩୮।
ଭୀମସେନ ଠାକୁରେ ଅଛନ୍ତି ଦୁଆର ଆବୋରି
ଯାହାର କୋପକୁ ତ୍ରୈଲୋକ୍ୟ ଭୟେ କରି ।୧୩୯।
ଉତ୍ତର ବୋଇଲା ତାତ ନୋହଇ ଯେମନ୍ତ
ଅଜାତଶତ୍ରୁ ଅଟନ୍ତି ସେ ପରମ ପଣ୍ଡିତ ମହତ ।୧୪୦।
ତାହାଂକର ଚିତ୍ତେ ଯେବେ କୋପ ତୋତେ ଥାନ୍ତା
କୀଞ୍ଚକର ବଧକାଳେ କେ ତୋତେ ରଖନ୍ତା ।୧୪୧।
ତାହାଂକର ମନେ ଯେବେ ତୋତେ ଥାନ୍ତା କିଛି କିନ୍ତୁ
ତ୍ରିଗର୍ତ୍ତ ବନ୍ଦୀରୁ ମୁକତ ହୋଇ ତୁ କେମନ୍ତେ ଆସନ୍ତୁ ।୧୪୨।
ତାହାଂକର କୋପ ଯେବେ ଥାଆନ୍ତା ବିରାଟ
ପଶାକାଠି ମାଇଲୁ ଯେ କୋନ୍ତଂକ ଲଲାଟ ।୧୪୩।
ଭୂମିରେ ପଡ଼ନ୍ତା ଯେବେ ତାହାଂକର ରୁଧିର ଫୁଟି
ତୋହୋର ରାଜ୍ୟରେ ସେ ହୁଅନ୍ତା ଅନାବୃଷ୍ଟି ।୧୪୪।
ତାହାଂକର ଯେବେ କୋପ ଥାଆନ୍ତା ହେ ତୋତେ ତାତ
ମୋହୋର ତୁଲେ କିଂପେ ପଶି ନ ଦିଲେ ସେ ପାଥ ।୧୪୫।
ଯୁଝିଷ୍ଟିଂକର ରୋଧିର ସେ ଯେବେ ଦେଖନ୍ତା ସେ ଘାୟେ
କ୍ଷଣେହେଂ ସମ୍ପଦ ତୋହୋର ଗୋ ଥାନ୍ତା କି ଧନୁର୍ଜ୍ଜୟେ ।୧୪୬।
ଅହନିଶି ଅଣକୋପିତ କୋପ ଯାହାର ନାହିଂ
ତାହାଂକୁ ମନଭ୍ରାନ୍ତି ଦେଖିବୁ ତାତ କାହିଂ ।୧୪୭।
ବିରାଟ ଅଗ୍ରତେ ସେ ଉତ୍ତର ଯେମନ୍ତ ବୋଇଲେ
ପର୍ବତ ଚୂର ହୋଅଇ କି ନାଥ ଟେଳା ଯେ ମାଇଲେ ।୧୪୮।
ସମୁଦ୍ର ପୋତି ହୋଅଇ କି ପକାଇଲେ ବାଲି
ଯଷ୍ଟି ପିଟିଲେ କି ଭାଙ୍ଗଇ ଲୁହାର ଲଉଡ଼ି ।୧୪୯।
ଯଦ୍ୟପି ଉଡ଼ଙ୍ଗବଳ ହୋଇବେ ଅପ୍ରମିତ
ସେ କି ତ୍ରୈଲୋକ୍ୟ ବ୍ରତିବେ କୋପିଲେ ବୈନେତ୍ର ।୧୫୦।
ଯଦ୍ୟପି ପ୍ରତାପୀ ହୋଇବେ ଗଜ ଯୂଥ
କେଶରୀ ଧର୍ଷୀ ସେ ପାରଇ ତାହାନ୍ତ ।୧୫୧।

ପୃଥୀର ଠାକୁର ଅଟନ୍ତି ରାୟେ ଶିରୋମଣି
ଯାହାର ପାଦପୂଜା କରନ୍ତି ଚକ୍ରପାଣି ।୧୫୨।
ଉଠ ଉଠ ତାତ ତୁ ଯେ ଛାଡ ମନେ ଭ୍ରାନ୍ତି
ମହତ ଦର୍ଶନେ ତାତ ପାଇବୁ ପରମଗତି ।୧୫୩।
ମକର ମାସ ଶୁକଳପକ୍ଷ ପଞ୍ଚମୀ ଚନ୍ଦ୍ରବାର
ଅଶ୍ୱିନୀ ନକ୍ଷତ୍ର ଯେ ଭୋଗ୍ୟ ସେ ଦିନର ।୧୫୪।
ଶଶୀ ଅଶ୍ୱିନୀ ନକ୍ଷତ୍ରକୁ ଅମୃତ ଯୋଗ ଯେ ଅଟଇ
ଉତ୍ତରାଷାଢ଼ା ଧନୁ ଯେ ରାୟେ ବିରାଟଇ ।୧୫୫।
ଅଶ୍ୱିନୀ ନକ୍ଷତ୍ର ଉତ୍ତରାଷାଢ଼ା ନକ୍ଷତ୍ର ଅଟଇ ମୈତ୍ର ତାର
ମୀନ ଲଗ୍ନ ବୋଲା ଯେ ନବଖଣ୍ଡ ଭିତର ।୧୫୬।
ସୋମର ଚାରିଦଣ୍ଡ ଶନିଚର ଦଣ୍ଡ ଚାରି
ବୃହସ୍ପତି ବେଳାରେ ଉଠିଲା ଦଣ୍ଡଧାରୀ ।୧୫୭।
ଉତ୍ତର କୁମାର ବଚନେ ଛାଡ଼ିଲା ଭୟମାନ
ମାରୁ କି ତାରୁ ଅବା ଯାଇଂ କରିବା ଦରଶନ ।୧୫୮।
ଜୀବନ ଯେବେ ପାଇବାଟି ହୋଇବା ବିଦ୍ୟମାନ
ବୋଲିବେ ପାଣ୍ଡବେ ବିରାଟେ ନେଲେ ଦିନ ।୧୫୯।
ଅଥବା ବ୍ରିକୋଦର କୋପେ କରିବେ ପ୍ରାଣଘାତ
ଇହଲୋକେ ଗତି ମୁକତି ମଲେ ବୈକୁଣ୍ଠ ହୋଇବ ପ୍ରାପତ ।୧୬୦।
ଯେତେ ସୁଲଭ ବାବୁ ଛାଡ଼ିତ କି ପାରି
ଯେହା ବିଚାରି ଗଳାରେ ବିରାଟ ଲମ୍ବାଇଲା କୋଠାରୀ ।୧୬୧।
ଦନ୍ତରେ ତିରଣ ଦଶନହ ଭରି ଅଧରେ
ଶ୍ରୀକୃଷ୍ଣ ମହାଦେଈ ଉତ୍ତର କୁମାର ସଙ୍ଗତରେ ।୧୬୨।
ତ୍ରାହି ତ୍ରାହି ବୋଲି ଫୁକାରଇ ମହୀଧିପ
ଦେଖିଲାକ ମାରୁତି ଦ୍ୱାରେଣ ମହାକୋପ ।୧୬୩।
ମହାଭୟେ ଉପୁଜିଲା ବିରାଟେଶ୍ୱର ଦେଖି
କାଳଚକ୍ର ପ୍ରାୟେ ଭୀମ ବୁଲାଇ ବେନି ଆଖି ।୧୬୪।
ବିରାଟ ବୋଇଲା ଉତ୍ତର ନ ରହି ମୋର ପ୍ରାଣ
ସଞ୍ଚୟେ ଶରୀର ମୋହୋର ବିସର୍ଜିବ ଯେହିକ୍ଷଣ ।୧୬୫।
ବିରାଟ ଶ୍ରୀକୃଷ୍ଣା କୁମାର ବିରାଟୀ
ଦୂରୁହୁଂ ଭୀମସେନର ଛାମୁରେ ପ୍ରଣିପତ୍ୟେ ଲୋଟି ।୧୬୬।
ପାୟେ ଯାଇଂ ବିରାଟ କରଇ ନିଉଛାଳି
ଝାଳେଣ ତ୍ରିପଣ୍ଡ ଭୂମିରେ ପଡ଼ି ଶରୀର ଯେ ଧୂଳି ।୧୬୭।
ଥୋକାୟେ ଧୂରେ ତିନିହେଂ ଅଛନ୍ତି ପରିଣାମି
ଦଶଦୋଷ ଅପ୍ରାଧ କ୍ଷମା କରିବା ଦେବ ସ୍ୱାମୀ ।୧୬୮।

ମୁହିଂ ଅଗ୍ୟାନୀ ମୂର୍ଖ ବଡ଼ ଦୋଷୀ
ଠାକୁରଂକ ଛାମୁରେ ମୁଂ ଆସ୍ଥାନ ମାଡ଼ି ବସି ।୧୬୯।
ସ୍ୱାମୀ ତୁମ୍ଭେ ଉଭା ହୋଇଲ ମୋହର ଆସ୍ତାନର ତଳେ
ତତ୍ର ଦୋଷ ମୋହୋର ନ ଧରିବାକ ଯେ ବେଳେ ।୧୭୦।
ସ୍ୱାମୀ ଅଥବା ସମୁଦ୍ର ଯେବେ ଲଂଘିବାକ ମହୀ
ପୃଥୀ ମାତ୍ରକେ ପାରିବେ କେ ରହି ।୧୭୧।
ସ୍ୱାମୀ ଜଳବୃଷ୍ଟି ନ କରଇ ଯେବେ ମଘବା ପୃଥ୍ୱିଗତେ
ସଚରାଚର ମେଦିନୀ ବ୍ରତିବେ କେମନ୍ତେ ।୧୭୨।
ସ୍ୱାମୀ ଅଗ୍ନି ବରଷିବ ଯେବେ ଆଦିତ୍ୟ ଦେବତାୟେ
ସଚରାଚର ବ୍ରତିବ କେଉଂଣ ଉପାୟେ ।୧୭୩।
ଦଶନହ ମୁଖେ ଭରି ଅନେକ ବିନୟ ଯେ ବୋଲି
ଗତ ସହସ୍ରଦଣ୍ଡ ପ୍ରଣପତ୍ରେ ଗୁଡିଲା ଗଡ଼ଘାଲି ।୧୭୪।
ଦେଖିଣ ବ୍ରିକୋଦର ଦ୍ରହସିତ ମୂରତି
ମନଭ୍ରାନ୍ତି ଛାଡ଼ିଲା ନିର୍ଭୟେ ମସପତି ।୧୭୫।
ଅଦ୍ୟାପି ହୃଦଗତେ ବିକୃତ ନ ଥାଇ ଯାହାକୁ
ଦେଖିଲେ ଦ୍ରହସିତ ବଦନେ ତାହାକୁ ।୧୭୬।
ବିରାଟ ଦେଖିଲା ଯହୁଂ ଦ୍ରହସିତ ବଦନଗୋଟି
ଛାମୁରେ ମତ୍ସ୍ୟେସ୍ୱର ରହିଲା ପରମେଷ୍ଟି ।୧୭୭।
ଭୀମସେନ ବୋଇଲା ବିରାଟ ତୁ ଦ୍ୱାରେ ଥାଅ ରହି
ଠାକୁରଂକ ଆଜ୍ଞା ହୋଇଲେ ଭିତରକୁ ଛାଡିପାରଇ ମୁହିଂ ।୧୭୮।
ଯେମନ୍ତର ସମୟେ ଅର୍ଜୁନ ଚାହିଂଲା ଯେ ଆସ୍ତାନ ତଳେ ଥାଇ
ଦେଖିଲାକ ବିରାଟ ଦ୍ୱାରେ ଅଛି ରହି ।୧୭୯।
ଅର୍ଜୁନ ବୋଇଲା ସ୍ୱାମୀ ବିରାଟ ଅଛି ଦ୍ୱାରେ
ଭିତରକୁ ପଶି ନୁଆରି ଭୀମସେନ ଠାକୁରଂକ ଡରେ ।୧୮୦।
ଯୁଝେଷ୍ଟି ଦେବ ବୋଇଲେ କହ ଯାଇଂ ଭୀମସେନକୁ
ଦ୍ୱାର ଛାଡ଼ି ଦେଉ ବିରାଟ ରାଜାଂକୁ ।୧୮୧।
ଯେତେ ଲୋକନ୍ତ ଘେନି ସେ ଆସଇ ବିରାଟ
ମୁଖେ ଦ୍ରଶନ କରୁ ସେ ନିଷେଧ ନ କର ବାଟ ।୧୮୨।
ଅର୍ଜୁନ ବିଜେ କଲେ ଦିବ୍ୟ ଅବତାରେ
ଗାଣ୍ଡିମ ଧନୁ ବାବଲ ନାରାଚ ଅଛି କରେ ।୧୮୩।
କିରଟୀ ମୁକୁଟ ଯେ ଅଷ୍ଟରତ୍ନ ବାହୁଟି
ଦୁତି କୃଷ୍ଣ ଅବତାର ସେ ପ୍ରତ୍ୟକ୍ଷେ କିରଟୀ ।୧୮୪।
ଉତ୍ତର ବୋଇଲା ସ୍ୱାମୀ ବିଜୟେ ଫାଲ୍‌ଗୁନି
ପ୍ରଳମ୍ବ କଲେ ବିରାଟ ପୁତ୍ର ଭାରିଯାନ୍ତ ଘେନି ।୧୮୫।

ଅର୍ଜ୍ଜୁନ ବୋଇଲା ହୋ ବିରାଟ ଉଠ ଉଠ ରାୟେ
ଆସ ଆସ ସ୍ୱାମୀଙ୍କର ଅଭିଷେକ ଦେଖି ପାତକ କର କ୍ଷୟେ ।୧୮୬।
ବିରାଟ ବୋଇଲା ସ୍ୱାମୀ କରଇ ମୁହିଂ ଭୀତି
ଅପାର ଦ୍ରୋହ ମୁଂ କଲଇ ଅତି ଅଜ୍ଞାନ ମୂଢ଼ମତି ।୧୮୭।
ଅର୍ଜ୍ଜୁନ ବୋଇଲା ସେ ସ୍ୱାମୀ କ୍ଷମା ଯେ ସାଗର
ଶତ୍ରୁହିଂ କୋପ ନ ବସଇ ଯାହାର ହୃଦୟର ।୧୮୮।
ଭୀମସେନ ବୋଇଲା ତୁ ଯାଅ ଯା ମସପତି
ବାମଦେବ ପୁରୋହିତେ ଯାଚେକେଶ୍ୱର ମନ୍ତ୍ରୀ ।୧୮୯।
ଅର୍ଜ୍ଜୁନ ବୋଇଲା ଯେ ବିରାଟ ମୁଖ ଚାହିଂ
ସ୍ୱାମୀଂକର ଚିତ୍ତେ ଯେ ତୋତେ ଆନ ବିକୃତ ନାହିଂ ।୧୯୦।
ଆସ ଆସ ବିରାଟ ହୋ ଦ୍ରଶନ ବେଗେ କର
ଅନେକ ଜନ୍ମର ତୋ ଦୁଷ୍କୃତମାନ ହର ।୧୯୧।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଯମ କୁବେର ସହିତେ
ଯାହାର ଅଭିଷେକ ଦେଖିଲେ ନିଶ୍ଚିନ୍ତେ ।୧୯୨।
ଦ୍ରଶନେ ପ୍ରସନ୍ନ ପ୍ରସନ୍ନେ ପାପ ମୋକ୍ଷ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ପ୍ରତକ୍ଷ ।୧୯୩।
ବିରାଟ ଶ୍ରୀକୃଷ୍ଣା ଉତ୍ତର କୁମାର ଆବର ମନ୍ତ ଅମନାତ୍ୟେ
ଘେନିଣ ଚଳଇ ସେ ବାସବର ସୁତେ ।୧୯୪।
ଦେଖିଲେ ଆସ୍ତାନେଣ ବିଜୟେ ଦେବଧର୍ମେ
ଯଶୋବନ୍ତାପୁର ତେଜି କି ବିଜୟେ କଲେ ବ୍ରହ୍ମେ ।୧୯୫।
ଶ୍ରୀଚରଣ ଦେଖି ସେ ବିରାଟ ମହୀପାଳ
ଶତେ ସହସ୍ରବାର ଦଣ୍ଡ ପ୍ରଳମ୍ବ ଆସ୍ତାନର ତଳ ।୧୯୬।
ସ୍ୱାମୀ ସାଧୁ ମୋହୋର ପୂର୍ବ ଜନ୍ମ ଧର୍ମ କର୍ମ
ପ୍ରସନ୍ନ ନିରାକାର ମମରାଜ୍ୟେ ବିଜୟେ ଦେବଧର୍ମ ।୧୯୭।
ସ୍ୱାମୀ ଯେ ମୋହୋର ରାଜ୍ୟେ ବସନ୍ତି ଯେତେ ଜନ
ତାହାଂକର ଜୀବନ ସାଧୁ ସେ ଯେ ଦେଖିଲେ ନୟନ ।୧୯୮।
ଅପାର ଦୋଷ ସ୍ୱାମୀ କଲାଇଂ ମୁହିଂ ମନ୍ଦ
ଚିହ୍ନି ନୁଆରି ଦେବ ଚିନ୍ତିଲି ପରମାଦ ।୧୯୯।
ତୁକାର ବଚନ ମୁଂ ବୋଇଲି ସ୍ୱାମୀପଣେ
ଅନେକ ଭ୍ରଛନା ମୁଂ ବୋଇଲି ଆପଣେ ।୨୦୦।
ସ୍ୱାମୀ ତ୍ରିଗର୍ତ୍ତ ପୟାଣ କାଳେ ବୋଇଲି ମୁଂ ଦଣ୍ଡ ଯେ ସାଜନ୍ତେ
ଆନ ରାଜ୍ୟକୁ ମନ୍ତ୍ରୀପଣେ ଯୋଗାଅ ବୋଇଲି ହୋ କାନ୍ତେ ।୨୦୧।
ସହଦେବ ପ୍ରତିବାଚ ବିରାଟ ବଚନକୁ
ଯେଥକୁ ଭୀମସେନ ଠାକୁରେ ଘୁଞ୍ଚିଲେ ତ୍ରିଗର୍ତ୍ତ ବାନ୍ଧିନେଲା
ତୁକ ।୨୦୨।

ବିରାଟ ବୋଇଲେ ତିଳେକ ଖଞ୍ଜଣି ଯେବଣ ଲଲାଟ ପାଟ୍ଟି
ରାଗେଣ ପ୍ରହାର ମୁଂ କଲଇଂ ପଶାକାଠି ।୨୦୩।
ସ୍ୱାମୀ ଅଗ୍ୟାଂନ ପଣେ ମୁଂ ନ କହିଲି କାହା
ମୋ ତହୁଂ ସଂସାରେ ଦେବ ଆନ ନାହିଂଟି ଦୋରେହା ।୨୦୪।
କିଂକର ହୋଇ ବିରାଟ ଯେ ବହୁତ ବିନୟ ବୋଲି
ସାଷ୍ଟାଙ୍ଗେ ମସପତି ଯେ ଶୁତିଲା ଗଡ଼ଘାଲି ।୨୦୫।
ସ୍ୱାମୀ ଅନେକ ଅପ୍ରାଧ କଲାଇଂ ମୁହିଂ ଦୋଷ
ତାହା ଉପେକ୍ଷା କରିବା ନିରାଲମ୍ବ ପୁରୁଷ ।୨୦୬।
ପାୟେ ଆସି ବିରାଟ ଯେ କରଇ ନିଉଛାଳି
ଶରୀରୁ ତ୍ରିପଣ୍ଡ ଯେ ମହାଶ୍ରମ ଗଳି ।୨୦୭।
ଧୂଳି ଝାଳେଣ ଯେ କର୍ଦ୍ଦନ ତାର କାୟେ
ଆନନ୍ଦେ ଅଶ୍ରୁଜଳ ଗଳଇ ମସରାୟେ ।୨୦୮।
ମଥାରେ ବେନି ହାଥ ଦେଇଣ ମସପତି
କହଇ ବିରାଟେଶ୍ୱର ବିନୟ ଭଗତି ।୨୦୯।
ତୁ ଦେବ ନିରଞ୍ଜନ ଆତ୍ମା ଅବତାର
ତ୍ରୈଲୋକ୍ୟ ଚିନ୍ତାମଣି ପ୍ରକୃତି ଯାହାର ।୨୧୦।
ତୁ ଦେବ ଅଜାତ ଶତ୍ରୁ ପର ଦୁଖେ ଚିନ୍ତା
ତୁ ଦେବ ଅବ୍ୟଗତ ଭୂତ ଭବିଷ୍ୟତ ଗ୍ୟାଂତା ।୨୧୧।
ତୁ ଦେବ ଯୋଗେଶ୍ୱର ପରମ ବ୍ରହ୍ମ ଅବତାର
ତୁ ଦେବ ଖଣ୍ଡିବୁ ନାଥ ଅଶେଷ ମହୀଭାର ।୨୧୨।
ସ୍ୱାମୀ ସୌଭଦ୍ର ନାମେ ବ୍ରହ୍ମା ବୈକୁଣ୍ଠ ଭୁବନ ତେଜି
ଯେ ମୃତ୍ୟୁ ମଣ୍ଡଳେ ନାମ ତୋହୋର ସେ ଭଜି ।୨୧୩।
ତ୍ରିଜଗତ ଅଳଂକାର ଯାହାର ନାମଗୋଟି
ପଟାନ୍ତର ବାକ୍ୟେ ଶୁଭଇ ଧର୍ମ ଯେ ଯୁଝେଷ୍ଟି ।୨୧୪।
ସ୍ୱାମୀ ପୃଥୀ ଆପ ତେଜ ବାୟିବ ଆକାଶ
ଯେ ପଞ୍ଚଧାତୁ ତୋହୋର ଗର୍ଭରେ କଲେ ବାସ ।୨୧୫।
ସ୍ୱାମୀ ପ୍ରାଣ ଅପାନ ବ୍ୟାନ ସମାନ ଉଦାନ ପଞ୍ଚଆତ୍ମା
ଧାତୁବାଦ ପୁରୁଷ ତୁ ସାଧିଲୁ ସର୍ବ ମହାତମା ।୨୧୬।
ତୁହି ସେ ବଞ୍ଚିଲୁ ନାଥ କାଳ କାମ ନିଦ୍ରା
ପରଯୋଗୀ ପୁରୁଷ ତି ସାଧିଲୁ ସର୍ବ ମୁଦ୍ରା ।୨୧୭।
ସ୍ୱାମୀ ପାପ ଆତ୍ମା ତେଜିଲୁ ଟେକିଲୁ ଅଙ୍ଗପାଙ୍ଗୀ
ଚଉଧର୍ମ ପୁରୁଷ ତୁ ଅବ୍ୟୟ ପରମ ଯୋଗୀ ।୨୧୮।
ସ୍ୱାମୀ ପାପଆତ୍ମା ଜିଣିମାକୁ ଯେଉଂଣ ପୁରୁଷଂକ ଇଚ୍ଛା
ତେଣୁ କରି ଶ୍ରୀମୁଖେ ନ ଫୁରିଲାକ ମିଥ୍ୟା ।୨୧୯।

ସତ ରଜ ତମ ଆଶ୍ରିତ ଯେ ତିନି
ସତେ ବିଷ୍ଣୁ ରଜେ ବ୍ରହ୍ମା ତମେ ରୁଦ୍ରନାମ ଘେନି ।୧୨୨୦।
ସତବାକ୍ୟ ଅନ୍ତର ନୋହିଲା କଦାଚିତେ
ନାରାୟଣ ବିନୋପି ଲୋଟିଲେ ତହିଂର ନିମନ୍ତେ ।୧୨୨୧।
ସ୍ୱାମୀ କାଳ ବର୍ତ୍ତମାନ ଜାଣି ଚିନ୍ତିଣ ଦେବ ବର୍ତ୍ତୁ
ତେଣୁ ବ୍ୟାପିଲୁ ସ୍ୱାମୀ ନାରାୟଣ ହୃଦଗତୁଂ ।୧୨୨୨।
ସ୍ୱାମୀ ଯୋଗ ପବନ ତପନ ତାପନ ଆଧ୍ୟାନ ଅଧ୍ୟାପନ
ଯେ ନବ ପୁରୁଷ ଦେବ ତୋହୋର ଅଟଇ ଅଭିନ୍ନ ।୧୨୨୩।
ସ୍ୱାମୀ କାଳ ଉଚିତ ଜାଣନ୍ତା ଯେବଣ ମହାତମା
ତାହା ପ୍ରାନ୍ତକରି ନୁଆରିଲା ବେଦବ୍ରହ୍ମା ।୧୨୨୪।
ସ୍ୱାମୀ ସ୍ୱର୍ଗ ମଞ୍ଚ ପାତାଳ ସୁତଳ ରସାତଳ
ଅତିତଳ ନିତଳ ଯେ ମହାତଳ ।୧୨୨୫।
ସ୍ୱାମୀ ଯେତେକ ତଳ ମଧେ ଯେ ଭୁବନ ସଉନିଧି ।
ତହିଂ ତୋହୋର ଭୁବନ ଅଟଇ ଦେବବିଧି ।୧୨୨୬।
ଯହୁଂ ଗୁହାରି ତୋତେ କଲାକ ପଦ୍ମଯୋନି
ଯେ ମୃତ୍ୟୁମଣ୍ଡଳେ ଉତପତ୍ତି ତୁ ମାନବ ଶରୀର ଘେନି ।୧୨୨୭।
ଉତପତ୍ତି ପ୍ରଳୟ ଯାହାର ପ୍ରତ୍ୟକ୍ଷେଣ ସଞ୍ଚା
ମହୀ ଉଦ୍ଧାରଣ ପୁରୁଷ ତୁ ଅନନ୍ତ କାଳ ବଞ୍ଚା ।୧୨୨୮।
ସ୍ୱାମୀ ଯାବତ ଯେ ପୃଥୀ ଚନ୍ଦ୍ର ଦିବାକର ଆଦି
ତବ ନାମ ଗୋଟି ସ୍ୱାମୀ ଉଦିତ ଦିବି ଭୁବି ।୧୨୨୯।
ସ୍ୱାମୀ ଅନିଳେକ ନାମେ ବସୁଥିଲେ ଅନ୍ଧ ହୋଇ
ଦିବ୍ୟ ଚକ୍ଷୁ ପାଇଲା ସେ ତୋତେ ଦ୍ରଶନ ପାଇ ।୧୨୩୦।
ମହାସର୍ପ ହୋଇଥିଲେ ନରେନ୍ଦ୍ର ନ ଘୋଷ
ତୁ ମହାପ୍ରଭୁ ଖଣ୍ଡିଲୁ ତାହାଂକର ଦୋଷ ।୧୨୩୧।
ଧର୍ମବକ ମୋକ୍ଷ ପାଇଲା ତୋହୋରେ
ହରିଣ କପଟ ବଧକଲା ଅଣ ଉପୁଗାରେ ।୧୨୩୨।
ତ୍ରୈଲୋକ୍ୟ ବନ୍ଦନ ଯାହାର ନାମଗୋଟି
କର ନେଉଟାନ୍ତେ ନେଉଟଇ ନବସୃଷ୍ଟି ।୧୨୩୩।
ତୁ ଦେବ ଯୋଗୀଜନଂକର ହୃଦୟ ଯେ ରଞ୍ଜି
ପାପୀ ପୁରୁଷଂକର କାଳ ଦର୍ପ ଗଞ୍ଜି ।୧୨୩୪।
ପରମ ନିରାକାର ପ୍ରତକ୍ଷେ ଦେବଧର୍ମ
ଦଶ ଦୋଷ ଅପ୍ରାଧ କରିବା ଦେବ କ୍ଷମ ।୧୨୩୫।
ଅପାର ମହିମାଂ ଯାହାର ନ ସରଇ କହନ୍ତେ
ଗୁଣ ସାଗର ନାଥ ତୁ ତ୍ରାହି କରିବା ମୋତେ ।୧୨୩୬।
ଶ୍ରୀଧର୍ମ ନନ୍ଦନ ଯୁଝେଷ୍ଠି ଚରଣ କମଳେ
ଶୂଦ୍ରମୁନି ସାରୋଳ ଦାସ ପ୍ରଣପତ୍ୟ ସର୍ବକାଳେ ।୧୨୩୭।

**

## ୭୧. ଅଭିମନ୍ୟୁର ଉତ୍ତରା ସହିତ ବିବାହ

ବିଜୟେ ଆସ୍ଥାନେ ଧର୍ମ ଯେ ନୃପତି
ଶ୍ରୀ ବଳରାମ ବିଜେ ଧର୍ମ ଯୁଝେଷ୍ଠିଙ୍କ କତି ।୧
ଯୁଝେଷ୍ଠି ବଳରାମଂକ ଛାମୁରେ ବିଜୟେ ଦେବହରି
ମସ୍ତକେ ହସ୍ତଦେଇ ଅଛନ୍ତି ପୁରସରି ।୨
ବିରାଟ ଦ୍ରୋପଦ ଶିବରାଜା ଆସ୍ଥାନର ତଳେ
ବିରାଟ ପ୍ରତିବାକ୍ୟ କହଇ ମଧ୍ୟକାଳେ ।୩
ବେଳେ ମୁହିଂ ସ୍ୱାମୀଂକି ସେବା କରିବି ସନ୍ନିଧାନୁ
ସ୍ୱାମୀ ଉତ୍ତରାକୁ ପ୍ରଦାନ କରିବି ଅଭିମନ୍ୟୁ ।୪
ଗୋବିନ୍ଦେ ବୋଇଲେ ହୋ ତୋହୋର ଯେହ୍ନେ ଭାଗ୍ୟ
ତୋହୋର ଆମ୍ଭର ପୂର୍ବେ ଅଛଇ ଯେସନେକ ବନ୍ଧୁ ଯୋଗ ।୫
କର ଯାଗଂ ଉଛବ ହୋ ବିଭାର ବିଧାନେ
ଚଳଇ ବିରାଟ ଯେ ସାନନ୍ଦ ତୋଷମନେ ।୬
ଛାୟା ମଣ୍ଡୋପ ଯେ ନିର୍ବାଣିଲେ ନୃପମଣି
ପାଞ୍ଚକୋଶ ଆୟତନ ଛାୟା ମଣ୍ଡୋପେ ପରିମାଣି ।୭
ଶୁଦ୍ଧ ସଞ୍ଚିକ ସ୍ତମ୍ଭ ଯେ କଣୟ ଛାୟେଣି
ତଥିର ଉପରେ ପନ୍ତି ପନ୍ତି ମକୁତା ରତ୍ନମଣି ।୮
ପାଞ୍ଚ ଅହିବ୍ରତେକ ଖମ୍ବ ସଭାୟେଣ ରଞ୍ଜି
ଶତେ ଶତେ ପନ୍ତି ହୀରା ମାଣିକ୍ୟ ତହିଂ ସିଞ୍ଚି ।୯
ମାରାଗର ଶେଣୀ ମର୍କତର କୋଣକାଣ୍ଡ
କଣୟ ପତ୍ରେ ଛାୟେଣୀ ଯେହ୍ନେ ଦିଶଇ ମାରତଣ୍ଡ ।୧୦
କନକର ରୁଅ ପଟା ନୀଳା ରତ୍ନେ ଶୋଭା
ଜଳଧର ମେଘେ ଯେହ୍ନେ ବିଜୁଳିର ପ୍ରଭା ।୧୧
ମର୍କତର ପଦ୍ମ ଯେ କେଶର ବଇଡୂର୍ଯ୍ୟ
ପାଖୁଡ଼ା ନୀଳା ମୁକୁତା ଫେରରେ ବିରାଜ ।୧୨
ହସ୍ତୀଦନ୍ତ କମତଳେଣ ପାଣି ପାଟି
ତହିଂର ଉପରେ ଯେ କଣୟ ରସାଣ ପତ୍ର ଘଟି ।୧୩
ଅନେକ ଧନ ଭଣ୍ଡାର ଯେ ଧ୍ୱଂସିଲା ବିରାଟଇ
ବିପୁଳ ଭୁବନ ଜାଣି ସଭାଗୋଟି ଘଟଇ ।୧୪

ଚାରିଖଣ୍ଡ ଭିତରେ ଯେ ନନ୍ଦବ୍ରତେକଗୋଟି
ଯେ ବିଧିରେ ନବଶତ ପାଟିଆ ତିନିକୋଟି ।୧୧୫
ପାଣି ପାଟିଆ ତଳେ କଣୟର ବେଣ୍ଟୁଳି
ହୀରା ନୀଳା ବଇଡୁର୍ଯ୍ୟ ମାଣିକ୍ୟ ଖଟୁଳି ।୧୧୬
କୋଟିକେ ସୁବର୍ଣ୍ଣ କଳସ ଗୋଟିଯେ ବସଇ
ସେ କଳସ ଗୋଟିକେ ଲକ୍ଷେମାଢ଼ ସୁବର୍ଣ୍ଣ କୋଷଇ ।୧୧୭
ସେ କଳସ ଉପରେ ନେତ ପତାଙ୍ଗ ଗୋଟିଯେ
ଦେବ ବିଳାସ ପତନୀ ଆଳମ୍ବ ଷାଠିଯେ ।୧୧୮
ଯେସନେକ କରିଣ ସଞ୍ଚିତ କଲା ବିରାଟେ
ଅଳକାପୁର ଜାଣି କୁବେରର ଘଟେ ।୧୧୯
ତଳେ ସଷ୍ଟିକର ପୀଢ଼ କନକବନ୍ଧ ବିଳା
ପାବନ୍ଥେ ବିରାଜନ୍ତି ମାଣିକ୍ୟ ଝରା ପୋୟେଳା ।୧୨୦
ଛାୟାମଣ୍ଡୋପ ଘଟିତ ଯେସନେକ ବିଧି
କି ଅବା ରତନ ଯେ ଲାଗିଲା ପଞ୍ଚୁ ନିଧି ।୧୨୧
ପୋୟେଳାର ବନ୍ଦେ ଯେ ମୁକୁତା ଚଉସରା
ଲମ୍ବନ୍ତି ନିରନ୍ତରେ ମାଣିକ୍ୟର ଝରା ।୧୨୨
ଯେସନେକ ସୁସଞ୍ଚେ ଯେ ସଭା ନିରିବାଣି
ଦେଖିଣ ପ୍ରଶଂସା କଲେ ଦେବ ଚକ୍ରପାଣି ।୧୨୩
ଚତୁର୍ଦ୍ଦିଗ ରାଜାନ୍ତ ନିମନ୍ତ୍ରିଲା ମସ୍ତପତି
ଉତ୍ତରା ବିଭା ବୋଲି ଜଗତେ ଦେଶାନ୍ତରେ କହନ୍ତି ।୧୨୪
ନଇଷେଧ ଦେଶର ନୃପତି ଭୁବି ଯେ ବାହାନ
ଦଣ୍ଡ ସାଜି ଅଇଲା ସେ ତୁଲେ ବହୁତ ଧନ ।୧୨୫
କଞ୍ଚଣ ଦେଶର ରାଜା ଯେ ଉଦମାଳି
ବଡ଼ାଇ ସମ୍ଭରେ ସେ ରାଜା ଅଇଲାକ ଚଳି ।୧୨୬
ବ୍ରହ୍ମପୁର ରାଜା ନାମ ଅଟଇ କେତନ
ଦଣ୍ଡ ଘେନି ଅଇଲା ସେ ତୁଲେଣ ଲକ୍ଷେଭାର ଧନ ।୧୨୭
ଭାନୁପୁର ରାଜା ନାମ କର୍ଣ୍ଣ ଯେ କେଶରୀ
ସମଦଣ୍ଡ ଘେନି ସମ୍ଭର୍ବେ ଅଇଲା ପାଣିଦ୍ରବ୍ୟ ରଥ ଚାରି
ଭାରି ।୧୨୮
ମଧୁପୁର ରାଜା ଯେ ଜୀମୂତ ବାହାନ
ଅତୁଟ ଅବନ୍ଧ୍ୟା ଆଣିଲା ସେ ଚାରିଲକ୍ଷ ଗୋଧନ ।୧୨୯
ପାଣି ମଣ୍ଡଳର ରାଜା ପଦ୍ମ ଯେ କେଶରୀ
ଅନେକ ସମ୍ଭର୍ବେ ସେ ଅଇଲା ଦଣ୍ଡଧାରୀ ।୧୩୦
ବେଦପୁରର ରାଜା ନାମ ଯେ ଧର୍ମଦାସ
ବହୁତ ଆଣିଲା ସେହୁ ପାଣିଦ୍ରବ୍ୟ ରତ୍ନକୋଷ ।୧୩୧

ଚୋଳ ମଣ୍ଡଳର ରାଜା ନାମ ହରିନାଥ
ସଙ୍ଗେ ଆଣିଲା ସେ ପାଣିଦ୍ରବ୍ୟ ସାତ ରଥ ।୧୩୨
ବିଜୟ ନଗ୍ରର ରାଜା ଯେ ଋତୁପର୍ଣ୍ଣ
ଚାରିଲକ୍ଷ ଶ୍ୱେତଅଶ୍ୱ ଆଣିଲା ରାଜନ ।୧୩୩
ଉଦୟ ଦେଶର ରାଜା କଉତୁକ ସେନ
ବଡ଼ାଇ ସମ୍ଭରେ ସେ ଅଇଲାକ ରାଜନ ।୧୩୪
ମହୀନ୍ଦ୍ର ମଣ୍ଡଳର ଯେ ଧନାଧିପି ରାଜା
ସହସ୍ରେକ ମତ୍ତହସ୍ତୀ ଦନ୍ତା ମହାତେଜା ।୧୩୫
ରଣପୁର ନଗ୍ର ରାଜା ନାମ ଦୀକ୍ଷାପତି
ବହୁତ ସୈନ୍ୟ ଘେନି ସେ ଅଇଲା ତଡ଼ତି ।୧୩୬
ଯେନାବଳୀ ନଗ୍ରେ ସେ ବିଶିକେଶନ ରାଜା
ଲକ୍ଷେ ରଥ ସୁବର୍ଣ୍ଣର ଘେନି କଲା ପାଦପୂଜା ।୧୩୭
ଯୁଧେଷ୍ଠି ବୋଇଲେ ଶୁଣିମା ବିରାଟ
ହସ୍ତିନାକୁ ଦୂତ ପଠିଆଣ ଆସନ୍ତୁ ଧୃତରାଷ୍ଟ୍ର ।୧୩୮
ଭୀଷ୍ମ ଦ୍ରୋଣ ଶଲ୍ୟ ଭୁରିଶ୍ରବା ବିଦୁରେ
କର୍ଣ୍ଣ ଶକୁନି ବାଲ୍ହିକ ତୁଲେ ଆସନ୍ତୁ କୁରୁବୀରେ ।୧୩୯
ଆପଣେ ଲେଖନ କଲେ ଶ୍ରୀହସ୍ତେ ପତ୍ରକଗୋଟି
ଯେହା ନେଇ ଦେବୁ ତୁ ରାଜା ଧୃତରାଷ୍ଟି ।୧୪୦
ବଡ଼ାଇ ସମ୍ଭର୍ବେ ସେ ଆସନ୍ତି କୁରୁପତି
ଯୋଗେଣ ବିଭା ହୋଇବ ତାହାଂକର ନାତି ।୧୪୧
ଯୁଧେଷ୍ଠି ଦେବଂକର ବିନୋତ୍ର ବିରାଟର ଅକ୍ଷତ
ଘେନିଣ ଚଳିଲେ ସେ ବାମଦେବ ପ୍ରୋହିତ ।୧୪୨
ସହସ୍ରେ ଯୋଦ୍ଧା ଯେ ପ୍ରୋହିତଂକ ତୁଲେ
ବାରୁଣାବନ୍ତେ ଯାଇଂ ପାଞ୍ଚଦିନେ ମିଳିଲେ ।୧୪୩
ଗୋଧନ ହରଣୁଂ ସେ ଯେ ପଳାଇ ଅଇଲା କୁରୁପତି
ଧୃତରାଷ୍ଟ୍ର ଦେଖିଲେ ଯେ ସବୁଂକରି ଶାସ୍ତି ।୧୪୪
ଇନ୍ଦ୍ରପ୍ରଶସ୍ତେ ବିଜୟେ ଗାନ୍ଧାରୀର ସୁତ
ଅକ୍ଷତ ଘେନି ଯାଇଂ ପ୍ରବେଶ ବାମଦେବ ପ୍ରୋହିତ ।୧୪୫
ମସ୍ତଦେଶର ବାରତା ବୋଲି ଯାଇଂ ଡଗର ଜଣାଇଂ
ଆସ୍ତାନୁ ଆଗ୍ୟାଂ ଦିଲା ଆସନ୍ତୁ ବେଗ ହୋଇ ।୧୪୬
କିମ୍ପୁତ କାରଣ ଯେ ପଚାରି କୁରୁପତି
ବିନୟ ଉତ୍ତର ଦିଲେକ ନେଇ ବାମଦେବ ଧାଟି ।୧୪୭
ଧୃତରାଷ୍ଟ୍ରଂକୁ ଯୁଧେଷ୍ଠି ଦେବଂକର ନମସ୍କାର
ଶତେସହସ୍ର ଦଣ୍ଡ ପ୍ରଣମ୍ୟ ଶତେବାର ।୧୪୮

ଓହୋକୁଳ କୁଶଳ ବାରତା ଜଣାଇଂ
ଆରୋଗ୍ୟ କ୍ଷେମେଣ ଆମ୍ଭେ ଅଛୁଂ ପାଞ୍ଚଭାଇ ।୪୯
ଅଭିମନ୍ୟୁକୁ ବିଭା ଦବ ବିରାଟ କୁମାରୀ
ତୁମ୍ଭେ ସେ ଯେଥକୁ ଯେ ଅଟ ଅଧିକାରୀ ।୫୦
ତୁମ୍ଭେ ମୋହୋର ପିତୃତା ଥିବନା ଉତ୍ସବର କାଳେ
ଯେମନ୍ତ ବୋଲି ଲେଖ ଦେଇଛନ୍ତି ଯୁଧିଷ୍ଠି ମହୀପାଳେ ।୫୧
ଅଭିମନ୍ୟୁ ବିଭା ଯହୁଂ ଶୁଣିଲେ ଶୁଭକଥା
କର୍ଣ୍ଣ ଶକୁନି ଧୁଶାସନ ପାଇଲେ ବଡ଼ ବ୍ୟଥାତୁ ।୫୨
ଶୁଣିଣ ସାନନ୍ଦ ଯେ ହୋଇଲେ ଧୃତରାଷ୍ଟ୍ର
ସଞ୍ଜୟକୁ ଆଗ୍ୟାଂ ଦିଲେ ସାଜ ବେଗେ ଥାଠ ।୫୩
ପାଣ୍ଡବେ ଉଦିତ ଯେ ଅଭିମନ୍ୟୁର ବିଭା
ସାଜହୁଅ ଭୀଷ୍ମ ଦ୍ରୋଣେ ବହନ ହୋଇ ଯିବା ।୫୪
ଭୀଷ୍ମ ଦ୍ରୋଣେ ବୋଇଲେ ଶୁଣ କୁରୁପତି
ଅଭିମନ୍ୟୁ ବିଭା ମତ୍ସଦେଶେ ଯିବା କି ତଡ଼ତି ।୫୫
ମାନଗୋବିନ୍ଦ ବୋଇଲା ଯାଅ ହୋ ତୁମ୍ଭେ ତାତ
ସମର ଶ୍ରମେ ଅଇଲୁ ଆମ୍ଭର ଅବସ୍ଥା ବହୁତ ।୫୬
ନାସ୍ତି ବୋଲି କରି ରାଜା ପଶିଲା ଅନ୍ତପୁରେ
ଯୋଦ୍ଧାଯେ ସଜ ହୋଇ ଆଉ ନୁଆରନ୍ତି ଡରେ ।୫୭
ଧୃତରାଷ୍ଟ ବିଦୁର ସଞ୍ଜୟେ ଭୁରିଶ୍ରବା
ଯେତେକ ଘେନି ବିଜୟେ ବ୍ୟାସଂକର ସମ୍ଭବା ।୫୮
ଦଶ ସହସ୍ର ରଥ ବତିଶ ସହସ୍ର ହସ୍ତୀ
ଲକ୍ଷେକ ତୁରଙ୍ଗମ ତିନି ପରାୟୁଧ ପାଦାନ୍ତି ।୫୯
ଯେତେକ ସନ୍ୟ ଘେନି ଯେ ଅମ୍ୱିକାର ସୁତ
ଭୀଷ୍ମ ଦ୍ରୋଣେ ଘେନି ରାଜା ଭାଳି ଯେକାନ୍ତ ।୬୦
ତୁମ୍ଭେ ଯାଇ କହ ଯା ଦ୍ରିଯୋଧନର ଆଗେ
କାର୍ଯ୍ୟକୁ ମାନବଣା ନୋହୁ ଆତ୍ମରାଗେ ।୬୧
ଅଗ୍ୟାଂନେ ସମର ଅବା କଲେ ଅପରତେ
ସୋଦ୍ରିମାପଣେ କି ଅଛି ଅଭ୍ୟନ୍ତର ବାଟ୍ୟେ ।୬୨
ସମଦଣ୍ଡ ଘେନି ଚାଲ ଯିବାକ ଆରମ୍ଭେ
ଅଭିମନ୍ୟୁକୁ ବିଭା ଯାଇଂ କରିବା ସମ୍ବର୍ବେ ।୬୩
ଯଦୁବଂଶେ ଜାତ ରାମ କୃଷ୍ଣଂକ ଭଣଜା
ସମଦଣ୍ଡ ସମ୍ବରେ ଘେନି ଦ୍ୱାରକାଇଂ ଗଲେନି ଦେବରାଜା ।୬୪
ଭୀଷ୍ମେ ଜଣାଇଲେ ଯାଇଂ ମାନ ଚକ୍ରବର୍ତ୍ତୀ
ବାବୁ ସହୋଦ୍ରେ ଅଭାବ ତୁ ନୋହନା ଅପ୍ରୀତି ।୬୫
ଚାଲ ମତ୍ସଦେଶେ ବିଭା କରିବା ଅଭିମନ୍ୟୁ
ଶୁଣିଣ ପ୍ରତିବାଚ କହଇ କୁରୁସାନୁ ।୬୬
ଭୀଷ୍ମ ଦ୍ରୋଣ ଘେନିଣ ବେଗେ ଯାଉ ତାତ
ମୋତେ ଯିବାକୁ ଆଉ ନ ବୋଲ ବହୁତ ।୬୭
ରାଜାର ଆଗ୍ୟାଂଯେ ସେ ଚଳଇ ଧୃତରାଷ୍ଟ୍ର
ଭୀଷ୍ମ ଦ୍ରୋଣ ତୁଲେ ଘେନିଣ ଯେ ଥାଠ ।୬୮
ବାମଦେବ ପ୍ରୋହିତେ ଅଛନ୍ତି ଯେ ପାଶେ
ଶୁଭ ଯୋଗେ ଧୃତିରାଷ୍ଟ୍ର ଚଳିଲେ ମତ୍ସଦେଶେ ।୬୯

.....

ସମସ୍ତେ ପ୍ରଶଂସା କଲେ ବିରାଟ ସାଧୁ ସାଧୁ
ଅନାଦି ପୁରୁଷକୁ ତୁ ପାଇଲୁ ଯେବେ ବନ୍ଧୁ ।୭୦
ଯେକା ଦୋହିତା ଗୋଟି କୁଳ ଉଦ୍ଧାରିଣୀ
ସୋମବଂଶର ହୋଉ ସେ ଓହୋକୁଳର ମଣ୍ଡଣି ।୭୧
କୁମ୍ଭମାସ କୃଷ୍ଣପକ୍ଷ ପଞ୍ଚମୀର ଦିନ
ଚନ୍ଦ୍ରବାର ହସ୍ତା ନକ୍ଷତ୍ର ଯେ ବିଦ୍ୟମାନ ।୭୨
ବାଣିଜ୍ୟ ନାମେ କରଣ ଶୁଭ ନାମେ ଯୋଗ
ତାରଚନ୍ଦ୍ର ବେଳା ଯେ ରୋହିଣୀ ଘରେ ଭୋଗ ।୭୩
ବିଭାର ଅନୁକୂଳ ଧଇଲେ ପୁରୋହିତେ
ବାରତା ପାଇ ବିଜେକଲେ ବ୍ୟାସ ତପୋବନ୍ତେ ।୭୪
ଲକ୍ଷେକ ବ୍ରାହ୍ମଣ ଘେନି ଧୌମ୍ୟ ପୁରୋହିତେ
ମତ୍ସଦେଶେ ପ୍ରବେଶ ଆସି ହୋଇଲେ ତୁରିତେ ।୭୫
ବେନି ଲକ୍ଷ ବ୍ରାହ୍ମଣ ଘେନିଣ ମାରକଣ୍ଡ ବ୍ରହ୍ମବେତ୍ତା
ଆସିଣ ପ୍ରବେଶ ହୋଇଲେ ଭାର୍ଗବ ମହାଗ୍ୟାଂତା ।୭୬
ତିନି ଅହିବ୍ରତେକ ସେ ଘେନିଣ ବ୍ରହ୍ମର୍ଷି
ଆସି ପ୍ରବେଶ ହୋଇଲେ ଶାୟନ୍ତନୁ ମହରଷି ।୭୭
ଅହିବ୍ରତେକ ବ୍ରାହ୍ମଣ ଘେନିଣ ଉଦାଳେକ ପ୍ରୋହିତେ
ମତ୍ସଦେଶେ ପ୍ରବେଶ ଆସି ହୋଇଲେ ତୁରିତେ ।୭୮
ଯଦୁରଷି କଣ୍ଠୁରଷି ପାରେଶ୍ୱର ରଷି
ଅଭିମନ୍ୟୁ ବିଭା ଶୁଣି ପ୍ରବେଶ ହୋଇଲେକ ଆସି ।୭୯
ସନକ ସନାତନ ସନନ୍ତ ଯେ ମନୁ ବିଭାଣ୍ଡକ
ଅଗସ୍ତି ଜନକ ସୁମନ୍ତକ ବିଶ୍ୱାମିତ୍ର ପୌଲସ୍ତି ଅନେକ ।୮୦
ଯେମନ୍ତେ ଅଠାଶୀ ସହସ୍ର ଅଇଲେ ମହରଷି
ବିଭା ଉତ୍ସବକାଳେ ସମସ୍ତେ ପ୍ରବେଶ ହୋଇଲେକ ଆସି ।୮୧
ଅନେକମତେ ନୃପତି ଦେଖି କଲେ ପାଦପୂଜା
ବସି ଋଷିମାନେ ସମସ୍ତେ ବିପ୍ର ଦ୍ୱିଜା ।୮୨

ଧୃତରାଷ୍ଟ୍ର ପ୍ରବେଶ ହୋଇଲେ ମସ୍ତଦେଶେ
ବିନୟ ଭାବେ ଖଟନ୍ତି ଯୁଧେଷ୍ଠି ତାଙ୍କ ପାଶେ ।୮୩
ଅନେକ ପ୍ରଶଂସା ଯେ କଲେକ କଉରୋବେ
ଯୁଧେଷ୍ଠି ବିନୋଇ ଭୀଷ୍ମ ଦ୍ରୋଣଂକର ପାଦେ ।୮୪
ଅନେକ କୁଶଳ ଯେ ବାରତା ପଚାରି
ସମସ୍ତ କ୍ଷେମ ବୋଇଲେ ତହିଂ ଦଣ୍ଡଧାରୀ ।୮୫
ବନସ୍ତେ ପଡ଼ିଲା ଯେତେକ କଷ୍ଟମାନ
ପ୍ରସ୍ତାପ ବାକ୍ୟେ ତାହା କହିଲେ ଧର୍ମନାନ ।୮୬
ଅନେକ ସାନନ୍ଦ ଯେ ହୋଇଲେ ଧୃତରାଷ୍ଟ୍ରେ
ଅନେକ କଲ୍ୟାଣ କଲେକ ତୁଷ୍ଟଚିତ୍ତେ ।୮୭
ବିନୟେ ପୁଚ୍ଛାକଲେ ଧର୍ମଂକ ନନ୍ଦନ
ଭୋ ତାତ ଦୟା ମୋତେ କିମ୍ପା ଛାଡ଼ିଲା ଦ୍ରିଯୋଧନ ।୮୮
ସେ ମୋହୋର ସୋଦର ମୁଂ ତାକୁ କଲାଇ କେବଣ ଦୋଷ
ପୁତ୍ର ବିଭା ଶୁଣି ସେ କିମ୍ପେ ନୋହିଲା ହରଷ ।୮୯
ଯୁଧେଷ୍ଠିଂକ ଅଗ୍ରତେ କହିଲେ ଧୃତରାଷ୍ଟ୍ର
ତୁ ଅବା କି ନ ଜାଣୁ ସେ ସମସ୍ତ ବଡ଼ ଦୁଷ୍ଟ ।୯୦
ଯୁଧେଷ୍ଠି ବୋଇଲେ ତାତ ଦୁଷ୍ଟ ଯେ ହୋଇଲେ
ସମୟ ସେ ବ୍ରତଇ ନା ଅସଜ୍ଜନ ହୋଇଲେ ।୯୧
ମହା ମହା ଦୁଷ୍ଟ ତ ତାତ ଥିଲେ ଯେହି ଭୂମି
କଂସ କେଶୀ ଅଘା ପ୍ରଳମ୍ବା କଦମ୍ବା ଅମ୍ବା କାଳ ଯେ ନଉମି ।୯୨
ଜାରା ନାରକା କାଳ ଯବନ ବାଣା ବଜ୍ରନାଭ
ପାଣ୍ଡବାସୁର ନିର୍ବାତ କପଚ ଯେମାନେ ପାଇଲେ ପରାଭବ ।୯୩
ଯେମାନେ ସଭିଯେଂ ନାଶ ଗଲେକ ନାହିଂକି ତାତ
ଅତି ଦୁଷ୍ଟପଣ ବସୁଧା ନ ସହଇ ବହୁତ ।୯୪

ବଦୟନ୍ତି ଅଗସ୍ତି ଯେ ବୈବସ୍ୱତ ମନୁ
ସାଉକାର ବରଣ ଯେ ହେଉଛି ଅଭିମନ୍ୟୁ ।୯୫
ଛାୟାମଣ୍ଡପ ଯେ ଅନେକ ସମ୍ଭରେ
ରାଜାଗଣମାନେ ବସିଅଛନ୍ତି ସଭାରେ ନିରନ୍ତରେ ।୯୬
ଯଦୁବଂଶନ୍ତ ଘେନିଣ ବିଜୟେ ରାମକୃଷ୍ଣେ
ପାଣ୍ଡବ ସମେତେ ଯେ ବସିଲେ ଧୃତରାଷ୍ଟେ ।୯୭
ମଧ୍ୟେଣ ବେଦିଯେକ ଯେ ଅଛଇ ଆରମ୍ଭିଲା
ଉପରେ ଚନ୍ଦ୍ରାତପ ଅଛଇ ଖଞ୍ଜିଲା ।୯୮
କଣୟ ଛାମୁଣ୍ଡିଆ ଯେ ସଷ୍ଟିକର ପୀଢ଼
ମୁକୁତାର ଖୁଅଝାଲି ଅଛଇ ତଥିର ଉପର ।୯୯

ରୂପାର ପାବଛ ଯେ କଣୟ ଢାଂକୁଣି
ହାଥେଣ ଖଞ୍ଜିଲା ସେ ଯେ ମାରାଗ ଶୁଦ୍ଧ ମଣି ।୧୦୦
ସେ ସଭା ମଧେ ଯେ ବିଜୟେ ଯୁଧେଷ୍ଠିଦେବ ଆଦି
ପାଞ୍ଚଲକ୍ଷ ରତ୍ନ ଖଞ୍ଜିତ କଣୟ ଦିବ୍ୟ ବେଦୀ ।୧୦୧
ତଥି ତଳେ ବସିଛନ୍ତି ନନ୍ଦ ଉପନନ୍ଦ ଉଗ୍ରସେନ ବସୁଦେବ
ରାମକୃଷ୍ଣ ଆଦିକରି ପାଞ୍ଚୁ ଯେ ପାଣ୍ଡବ ।୧୦୨
ସେ ବେଦୀର ଉପରେ ଯେ ଋଷିମାନନ୍ତ ଘେନି
ବସିଲେ ଶୁଭଯୋଗେ ବ୍ୟାସ ବଶିଷ୍ଠ ମହାମୁନି ।୧୦୩
ଦ୍ରୋପଦ ଶିଖଣ୍ଡୀ ଧୃଷ୍ଟଦ୍ୟୁମନନ୍ତି ଘେନି
ପାଞ୍ଚାଳ କୁମରନ୍ତ ସେ କୋଳେ ଛନ୍ତି ଘେନି ।୧୦୪
ଅଭିମନ୍ୟୁ ବିଜୟେ ଯେ ଜଗନ୍ନାଥଂକର କୋଳେ
ମଧ୍ୟେଣ ବସିଲେ ବେଢ଼ି ସକଳ ନୃପବରେ ।୧୦୫
ପୂର୍ବେଣ ବିରାଟ ଯେ ପଶ୍ଚିମେ କିରୀଟୀ
ସନ୍ନିଧେ ଅର୍ଘ୍ୟ ଆଣି ଦିଅଇ ବିରାଟି ।୧୦୬
ବିରାଟ ରାଜା ତଥି ବିନୟଭାବ ହୋଇ
ସଭାରେ ଉଭା ହୋଇଲା ମସ୍ତକେ ହସ୍ତଦେଇ ।୧୦୭
ସମସ୍ତ ନୃପଋଷି ମୋତେ ଆଗ୍ୟାଂ ଦେବା
ସର୍ବ ଶୁଭେ ଦୁହିତାକୁ କରାଇବି ବିଭା ।୧୦୮
ହେଉ ହେଉ ବୋଲିଣ ଯେ ସର୍ବେ ଆଗ୍ୟାଂ ଦିଲେ
ଶୁଣିଣ ବିରାଟ ଯେ ସନ୍ତୋଷ ହୋଇଲେ ।୧୦୯
କୁଶହସ୍ତ ହୋଇଣ ଯେ ଶ୍ରୀକୃଷ୍ଣାର ସାଇଂ
ବରଣ ବେଦୀ ମଧେ ସେ ବିଜେ କଲେ ଯାଇଂ ।୧୧୦
ଧୌମ୍ୟ ପୁରୋହିତେ ଯେ ପଢ଼ିଲେ ହରଷେ ବେଦଧ୍ୱନି
ଦେଶକାଳ ମହାବାକ୍ୟ କରନ୍ତି ସର୍ବମୁନି ।୧୧୧
ଶଶୀଧର ଗୋତ୍ର ଯେ ଦେବ ଅରଜୁନ
କଉଶିକ ଗୋତ୍ର ଯେ ବିରାଟ ରାଜନ ।୧୧୨
ଓହୋକୁଳ ଗୋତ୍ର ପଢ଼ନ୍ତି ପ୍ରୋହିତେ
ଦେବପୂଜା ବିଧିମାନ ଯେସନ ଯୁଗତେ ।୧୧୩
ପ୍ରୋହିତେ ବୋଇଲେ ହୋ ଜଳତିଳ ଭର
ବରଣ ବିଧିରେ ଦେଶକାଳ ବାକ୍ୟକୁ ଉଚାର ।୧୧୪
ଦେଶକାଳ ବାକ୍ୟ ଯେ କରାଇଲେ ପ୍ରୋହିତେ
ଶଙ୍ଖ ମହୁରୀ ଯେ ପୁରଇ ସୁଲଳିତେ ।୧୧୫
ଦୁର୍ବା ଅକ୍ଷତ ଘେନି ବିରାଟ ମହାରାଜା
ପ୍ରୋହିତେ ବାକ୍ୟ ପଢ଼ନ୍ତି କଲେ ପଞ୍ଚୁ ଦେବତା ପୂଜା ।୧୧୬

ବିଭାର ବିଧାନ ଯେ ବସିଲେ ବିଚାରି
ପ୍ରୋହିତେ ବୋଇଲେ ହୋ ବିରାଟ ଦଣ୍ଡଧାରୀ ।୧୧୭
ସଭାର ମଧ୍ୟକୁ ତୋହୋର ଆଣସି କୁମାରୀ
ରାଜାର ଆଗ୍ୟାଂୟେ ଯେ ଚଳିଲେ ପରିବାରୀ ।୧୧୮
ଅନ୍ତପୁରୁ ବାହାର ହୁଅନ୍ତେ ଉତ୍ତାର ବାଳୀ
ଶୁଭ ଯୋଗେ କାମିନୀୟେ ଦିଅନ୍ତି ହୁଳହୁଳି ।୧୧୯
ସଭାରେ ସୁନ୍ଦରୀ ଆସି ହୋଇଲାକ ଉଭା
ସତୀ ସାବିତ୍ରୀ ଯେନ୍‌ହେ ଦିଶଇ ତେନ୍‌ହେ ଶୋଭା ।୧୨୦
ହାର ନିଆଳୀ ଯେ ମୁକୁତା ସରି ଭରି
ତ୍ରିଭୁବନେ ଅନୁଗମ ଯେ ବିରାଟ କୁମାରୀ ।୧୨୧
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଗ୍ରହକାରୀ
ନଟ ଭାଟମାନେ ଯେ କୟେବାର କରି ।୧୨୨
ନାରୀଗଣମାନେ ମଙ୍ଗଳ ଗୀତ ଗାବନ୍ତି
ବ୍ରାହ୍ମଣଗଣେ ଯେ ବେଦଧ୍ୱନି ଉଚ୍ଚାରନ୍ତି ।୧୨୩
ଶଙ୍ଖ ମହୁରୀ ଯେ ବିବିଧ ତୂର ବାଦ୍ୟ
ବାଜଣା ବାଜୁଅଛି ଯେ ପଞ୍ଚମ ଶବଦ ।୧୨୪
ଆଶିଷ ଘେନିଣ ସେ ଧୌମ୍ୟ ପୁରୋହିତେ
ନେଇଣ ସମର୍ପିଲେ ଯେ କନ୍ୟାର ନିଜେ ମାଥେ ।୧୨୫
ଚନ୍ଦନ ଚତୁସମ କାୟେ ଲେପନ କରି
ଦିବ୍ୟ ଅଳଂକାର ଭୂଷଣ ଶରୀରେଣ ଭରି ।୧୨୬
ଯେମନ୍ତ ବିଧାନେ ଯେ ବାଞ୍ଛା କଲ୍ୟାଣ ଘେନି
ଅନ୍ତପୁରେ ଯାଇ ବିଜେ ବିରାଟ ନନ୍ଦିନୀ ।୧୨୭
ପ୍ରୋହିତେ ବୋଇଲେ ହୋ ବର ଆସୁ ଯେବେ
ଚଳନ୍ତି ଡଗର ଯେ ଅଭିମନ୍ୟୁ ଠାବେ ।୧୨୮
ଅର୍ଜୁନ କୁମାର ଯେ ଦିବ୍ୟ ବେଶ ହୋଇ
ବେଦୀର ମଧ୍ୟେ ବିଜେ କରାଇଲେ ନେଇ ।୧୨୯
କି ଅବା ଦିଶଇ ଅଳକାର ପତି
କି ଅବା ଅଇରାବ୍ରତ ତେଜି ଆସଇ ସୁରପତି ।୧୩୦
କି ଅବା ରତି ତେଜ୍ୟା କରି ଅଇଲା ଅନଙ୍ଗ
ଯେସନେକ ଦିଶୁଅଛି ଯେ ଅଭିମନ୍ୟୁ ଦିବ୍ୟ ଅଙ୍ଗ ।୧୩୧
ହାର ନିଆଳୀ ପଦକ ତାଡ଼ ଯେ ତୋଡ଼ର
ଅନେକ ରତ୍ନ ଆଭରଣ ତାହାର ଶରୀର ।୧୩୨
ଗୁରୁ ଦେବତାଂକୁ ନମସ୍କାର କରି
ବିଜେକଲା କୁମର ଦଧି ମଂଗଳ ସୁମରି ।୧୩୩
ଅଭିମନ୍ୟୁ ପୂର୍ବମୁଖେ ବିରାଟ ପଶ୍ଚିମ ମୁଖେ
ପାଦ ଶଉଚ କଲା ପ୍ରୋହିତଂକର ବାକ୍ୟେ ।୧୩୪
ପଇଡ଼ ପାଣି ପୟରେ ପଞ୍ଚାମୃତ ବିଧି
ପାଦ ଶଉଚ କରାଇଲେ ସେ ଯେନ୍‌ହେକ ପୂଜାବିଧି ।୧୩୫
ପାଦରଜ ଉଦକ ଯେ ବିରାଟେଶ୍ୱର ରାଜା
ମଥାରେ ଧରିଲା ସେ କରିଣ ଦିବ୍ୟ ପୂଜା ।୧୩୬
ଶ୍ରୀକରେ ପାଣି ଘେନି ଉତ୍ତର କୁମାର
ଗନ୍ଦୁମୁଖେ ଗଡ଼ାଇଦିଲା ଅଭିମନ୍ୟୁର ପୟର ।୧୩୭
ପୟର ପୂଜା ସାରିଣ ଘେନିଲା ସୁସଞ୍ଚ ଦିବ୍ୟ ଗଭା
ଅଭିମନ୍ୟୁ ଗଳାରେ ଲମ୍ବାଇଲା ବିରାଟେଶ୍ୱର ରାଜା ।୧୩୮
ସମସ୍ତ ବ୍ରାହ୍ମଣ ଯେ କଲେକ ବେଦଧ୍ୱନି
ପ୍ରୋହିତ ଅଭିମୁଖେ ସମସ୍ତ ମହାମୁନି ।୧୩୯
ଚନ୍ଦନ ଚତୁସମ ଲେପନ କାୟେ କରି
ଅଭିମନ୍ୟୁ ମୁଖେ ନେଇ ସାଉକାର କରି ।୧୪୦
ବେଦିବରଣ ବାକ୍ୟ ଗୋଟିୟେ ଉଚ୍ଚାରଣ କଲେ
ବସ୍ତ୍ର ଶ୍ରୀଫଳ ଗୁବକ ଯେ ଅଭିମନ୍ୟୁ ହସ୍ତେ ଦିଲେ ।୧୪୧
ବାଟିଲା କୁଂକୁମ ଯେ ଅଛଇ ଅପାର
ଚନ୍ଦନ ଚତୁସମ ଯେ ତଥିର ସଂଗର ।୧୪୨
ଥୋକାୟେକ କାଢ଼ି ସେ ଥୋଇଲେ ଯତ୍ନକରି
ଦେବାଦେବୀମାନନ୍ତ ଦିଲେ ଉପଚାର ପୂଜାରେ ଭରି ।୧୪୩
ନବତନ ବସନ ଯେ ଝୀନ ମଢ଼ିଆଳ
ପ୍ରୋହିତ ମନ୍ତ୍ରୀ ଦିଲେ ତାହା ପିନ୍ଧିଲେ ଅର୍ଜୁନର ବାଳ ।୧୪୪
ଝୀନ ବସନ ଗୋଟିୟେକ କରେ ଋଷି ଘେନି
ମନ୍ତ୍ରୀ ପିନ୍ଧାଇଲେ ନେଇ ବିରାଟର ନନ୍ଦିନୀ ।୧୪୫
ପ୍ରୋହିତେ ବୋଇଲେ ହୋ ଶୁଣ ମହସାଇଂ
ସଭାକଇଂ ଆଣ ହୋ ତୋହୋର ତନଇ ।୧୪୬
କୁମର କୁମାରୀ ଯେ ବସିଲେ ଯେକସ୍ଥାନେ
ମଙ୍ଗଳ ହୁଳହୁଳି ଉଚ୍ଛୁଳିଲା ଗଗନେ ।୧୪୭
କରନ୍ତି ମଙ୍ଗଳ ଯେ ବିବିଧ ବିଧାନେ
କନ୍ୟାକୁ କନ୍ଧଭୂଷଣ ଯେ କରନ୍ତି ସନ୍ନିଧ୍ୟାନେ ।୧୪୮
କୁଂକୁମ ଲେପନ ଯେ କରନ୍ତି କୁମାରୀ
ବିରାଟ କୁଂକୁମ ନେଇ ଲିପିଲେ ହଳଧାରୀ ।୧୪୯
ଗୁଆ ଶ୍ରୀଫଳ ଯେ ବିଲୋହିଣ ସାରି
ଅନ୍ତପୁରକୁ ଗଲା ସେ ବିରାଟ କୁମାରୀ ।୧୫୦
ଶ୍ରୀ ଜଗନ୍ନାଥେ ଯେ ଯଦୁବଂଶ ଘେନି
ବିରାଟକୁ କୁଂକୁମ ଲେପନ କରନ୍ତି ଆଣି ।୧୫୧

ଭୀଷ୍ମ ଧୃତିରାଷ୍ଟ୍ର ବିଦୁର ସଞ୍ଜୟେ ପାଞ୍ଚାଳ ଦେଶ ରାୟେ
ପାଞ୍ଚପାଣ୍ଡବ ଯେ ସମସ୍ତ ରାଜା କୁଂକୁମମୟେ ।୧୫୨
କୁଂକୁମ ଲେପନ ଯେ ହୋଇଛନ୍ତି ଅପ୍ରମିତ
ଯେକ ଆରକେ ପରିହାସ ଲାଗିଲା ବହୁତ ।୧୫୩
ଲାଗିଲା ପରିହାସ ହୋଇଲା ମହାଗୋଳ
ବାବୁ ଧନ୍ୟଧନ୍ୟ ପୁଣି ସେ ବିରାଟ ମହୀପାଳ ।୧୫୪
ଦେବତାମାନେ ଯହିଂ କରୁଛନ୍ତି କ୍ରୀଡ଼ା
ଚନ୍ଦନ ପରିହାସ୍ୟେ ନେଇ ତହିଂ ଦିଲେ ଛଡ଼ା ।୧୫୫
ଅଭିମନ୍ୟୁ ବିଭାକାଳେ ମସ୍ଥଦେଶେ ପନ୍ଦର ସହସ୍ର ନୃପତି
ଯେତେ ରାଜା ସମ୍ଭରେ ମିଳିଲେ ଘର ବରଜାତି ।୧୫୬
ରଥ ଗଜ ଅଶ୍ୱ ପାଦାନ୍ତି ଅନେକ
ଗହଳେ ଅନ୍ତ ନୋହଇ ରାଜାଂକର ଲୋକ ।୧୫୭
କୁଂକୁମ ଲେପନ ସବୁ ପୁରୁଷ ଯେ ସ୍ତିରୀ
ରାଜା ପାତ୍ର ଯୋଦ୍ଧା ଅମନାତ୍ୟ ବାଦ୍ୟକାର ଆଦିକରି ।୧୫୮
କୁଂକୁମ ଲେପନ ସାରି ତିଳ ଅୟେଂଳା ମରଦି
ସମସ୍ତେ କଉତୁକେ ପଶିଲେ ବେଣୀଭଦ୍ରା ନଦୀ ।୧୫୯
ନଦୀଗୋଟିଯାକ ବହଇ କୁଂକୁମମୟେ
ପଞ୍ଚଦଶ ଯୋଜନ ପାଣି ଅଖାଇଦ ହୋୟେ ।୧୬୦
ସ୍ନାହାନ ସାରିଣ ଯେ ଆସନ୍ତି ଦେବରାଜେ
ବିଚିତ୍ର ଦେବ ନବରେ ଦେବ ମୁଣୋହିରେ ବିଜେ ।୧୬୧
ସୁବର୍ଣ୍ଣ ପଇଳମ ସବୁଂକୁହିଂ ଦେଇ
ସୁସଙ୍ଗେ ସମ୍ପାଦ ଅଛି ମସ୍ଥଦେଶ ସାଇଂ ।୧୬୨
ପରଶନ୍ତି ବ୍ରାହ୍ମଣେ ଭିଜ୍ଞ ବେଦଚାରୀ
ନିଜ ମନ୍ଦିରେ ମୁଣୋହିରେ ବିଜୟେ କଲେ ରାମହରି ।୧୬୩
ପରଶନ୍ତି ବ୍ରାହ୍ମଣେ ଅମିୟ ରସପାନ
ସୁଖେଣ ଭୋଜନ କରନ୍ତି ବଳଦେବ ଜନାର୍ଦ୍ଦନ ।୧୬୪
ଭୋଜନର ସମ୍ପଦ କହିତେ କି ପାରି
ଯହିଂରେ ସେ ନାୟକ ଯେ ଅଟନ୍ତି ଦେବହରି ।୧୬୫
ଦୁହାଂଣ ଦୁଇପଦ୍ମ ଯାହାର ଅଛନ୍ତି ଧେନୁଗାଇ
ନିତି ପାଞ୍ଚଲକ୍ଷ ଭାର ଯାହାର ଦୁଧ ଦହି ।୧୬୬
ତିନିଲକ୍ଷ ଭାର ଯାହାର ହୋଇ ଘୃତ
ତାହାଂକର ଭୋଜନ ଅବା କେ କରିବ ଅନ୍ତ ।୧୬୭
ଯାହର ଉପୁଜିଅଛି ଅମୃତ ଳକ୍ଷେଭାର
ମାନବ ଜନଂକୁ ସେ ଅସଂଖ୍ୟ ଅଗୋଚର ।୧୬୮
ଯେସନେକ ମହିମା ଯେ ମସ୍ଥଦେଶ ପୁରୀ
ତାହାକୁ ଭୋଜନେ ଯେ କେହୁ ଜଳିପାରି ।୧୬୯
ଯାହାର ଯେତେକ ଇଚ୍ଛା ସେ ଭୁଞ୍ଜନ୍ତି ସମସ୍ତେ
ଜନେ ଯେ ପ୍ରଶଂସା କରନ୍ତି ଅପ୍ରମିତେ ।୧୭୦
ପିଠାର ବର୍ଣ୍ଣମାନ କେ କରୁ ହାଦେ ଲେଖା
କେଉଂଣ ଅପୂର୍ବ ତାହାଂକୁ ଯେ ଶ୍ରୀକୃଷ୍ଣ ଯାହାଂକୁ ସାଖା ।୧୭୧
ଭୋଜନ ଶେଷେଣ ସେ କଲେକ ଆଞ୍ଚୋବନ
ଉଠିବାକୁ ଶକତି ନାହିଂନା ଭାର୍ଜନ ।୧୭୨
ଆଚୋଂବନ ସାରିଣ କ୍ରପୂର ତାମ୍ବୁଳ ଭୁଞ୍ଜି
ଚନ୍ଦନ କୁସୁମ ଘେନି ଥୋକାୟେ କେଶ ରଞ୍ଜି ।୧୭୩
ଭୋଜନ ସାରିଣ ସେ କଲେ ସନ୍ଧ୍ୟା ଅବକାଶେ
ସୀଉକାର ବରଣ ପେଷିଲେ ଅତି ହରଷେ ।୧୭୪
ଯେସନେକ ସନମାନେ ରାଜାଂକୁ ଦିଲେକ କୁଂକୁମ
ତହୁଂ ଅଧିକ କରି ଦିଲେକ ଚଉସମ ।୧୭୫
ତାମ୍ବୁଳ କର୍ପୂର ଦିଲେକ ଜଣେ ଜଣେ
କୁସୁମ ଭୂଷଣ ସେ ହେଲେକ ସକଳ ରାଜାଗଣେ ।୧୭୬
ଯେତେକ ବସିଅଛନ୍ତି ଯଦୁବଂଶ ଭୋ଼ଜବଂଶ କୃଷ୍ଣବଂଶ
ଜଣକେ ଲକ୍ଷେ ମାଢ଼ ଦିଲେକ ରତ୍ନକୋଷ ।୧୭୭
ସମସ୍ତ ରାଜାଂକୁ ଯେ ଅଳଂକାର ଯେ ବିଧି
କି ଅବା ପ୍ରାପତ ହୋଇଛି ବାରାନିଧି ।୧୭୮
ବିରାଟ ଅର୍ଜୁନର ସମ୍ବନ୍ଧ ବାକ୍ୟମାନ
ଉଭୟେ ଅନୁମତେ କୋଳ ସମ୍ଭାଷଣ ।୧୭୯
ବରଣ ବିଧିମାନ ସାରିଲେ ସମ୍ଭରେ
ଅଭିମନ୍ୟୁ ବସାଇଲେ ଅର୍ଜୁନ କୋଳରେ ।୧୮୦
ସୀଉକାର ବରଣ ଯେ ସାରିଣ ମହୀପତ୍ୟେ
ବୋଇଲା ଯେ ମୋହୋର ସତ୍ୟ ସତ୍ୟ ତ୍ରୟବାର ସତ୍ୟ ।୧୮୧
ଶ୍ରୀକରେ ଅର୍ଘ୍ୟ ଘେନିଣ ଅହିଗ୍ୟଂ ସର୍ବବାଳୀ
ମଙ୍ଗଳ ଗୀତ ଗାଇଣ ଦିଅନ୍ତି ହୁଳହୁଳି ।୧୮୨
ଗାବନ୍ତି ଗୀତ ଯେ ମିଳି ସର୍ବଗଣିକ ପ୍ରିୟା
ଅଭିମନ୍ୟୁଂକ ଉତ୍ତରା କରାଇବା ବିହା ।୧୮୩
ବିଭାବରଣକୁ ଯେ ସାରିଲେ ପ୍ରୋହିତେ
ଯେ ସେ ପୂର୍ବବିଧି ସମସ୍ତ ଶାହାସ୍ତ୍ର ଯୁଗତେ ।୧୮୪
ସୀଉକାର କରିଣ ସେ ଗଲେ ବରକନ୍ୟା
ରାତ୍ର ଅର୍ଦ୍ଧକୁ ସେ ମିଳିଲେ ସମସ୍ତ ବାରାଙ୍ଗନା ।୧୮୫
ଅନେକ ନୃତ୍ୟ ଗୀତ କହି ତ କି ପାରି
ରଜନୀ ପାହିଲା ତହିଂ କଉତୁକ କରି ।୧୮୬

ବଦୟନ୍ତି ଅଗସ୍ତି ଶୁଣ ମନୁ ରାଜନ
ଛାୟା ମଣ୍ଡପଗୋଟି ପଞ୍ଚକୋଶ ଆୟେତନ ।୧୮୭
ଯୁଝେଷ୍ଟିଂକ କୋଳେ ଯେ ବିଜୟ ଫାଲଗୁନୀ
ଅର୍ଜ୍ଜୁନ ବସିଅଛି ଯେ ଅଭିମନ୍ୟୁକୁ କୋଳେ ଘେନି ।୧୮୮
ଶୁଭ ଅବଧାନେ ପୂର୍ବ ନିଜ ମୂର୍ତ୍ତି
ପଛିମ ମୂରତି ଯେ ବୈରାଷ୍ଟ ନୃପତିର ସନ୍ତତି ।୧୮୯
କନକ ଆଞ୍ଜୋଳି ଦଧିବାମନ ସୁମରି
ପିତାର କୋଳେ ବିଜୟେ କଲାକ ଉତ୍ତରାକୁମାରୀ ।୧୯୦
ମଧ୍ୟେଣ ବ୍ରାହ୍ମଣ ଯେ ଧୌମ୍ୟ ପୁରୋହିତେ
ଉଦ୍ଧାଳେକ ବାମଦେବ ସୁମନ୍ତେ ଗାର୍ଗବ ସହିତେ ।୧୯୧
ଯେ ବିଧି ଦେଶକାଳ ବାକ୍ୟ ସେ ଉଚ୍ଚାରି
ସତ୍ୟ ସତ୍ୟ ତ୍ରୟବାର ବାକ୍ୟ ସାଉକାରି ।୧୯୨
ଚନ୍ଦ୍ରଦୈବତର ଗୋତ୍ରେ ବର ଫାଲଗୁନି
ମହାବାକ୍ୟ ପଦ ଉଚ୍ଚାରନ୍ତି ପୁରୁଷ ତିନି ।୧୯୩
ଇଦଂ ବାକ୍ୟେ ପିତାମହ ତିନି ଯେ ପୁରୁଷ
ବିଚିତ୍ରବୀର୍ଯ୍ୟ ପଣ୍ଡୁ ଅର୍ଜ୍ଜୁନ ନାମ ଘୋଷ ।୧୯୪
ଅସ୍ମତ୍ ପିତୃ ପିତାମହ ପ୍ରପିତାମହ
କନ୍ୟାର ତିନିପୁରୁଷ ନାମ ଯେବେ କହ ।୧୯୫
ମୁଦ୍ରା ଆସନ ପାଡ଼ି ବିଜୟେ ବିରାଟେ
କୋଳେ ଉତ୍ତରା ବାଳୀ ବିଜୟେ ଶୋହଇ ଜଗୁରାଷ୍ଟ୍ରେ ।୧୯୬
ଶଙ୍ଖ ଶ୍ୱେତ ଉତ୍ତର ସନ୍ନିଧେ ପୁତ୍ର ତିନି
ବିଭା ସଂଯୋଗ କଲେ ବ୍ୟାସ ମହାମୁନି ।୧୯୭
ବୃଦ୍ଧ ଭାର୍ଗବ ଗୋତ୍ର ରାୟେ ମହେଶ୍ୱର
ଦେଶକାଳ ମହାବାକ୍ୟେ ଉଚ୍ଚାରନ୍ତି ମୁନୀଶ୍ୱର ।୧୯୮
ଅସ୍ମତ ପିତାମହ ପ୍ରପିତାମହ ବୃଦ୍ଧ ପ୍ରପିତାମହ
ଯେବଂ ବିଧାନ କନ୍ୟାର ତିନି ପୁରୁଷ ନାମ କହ ।୧୯୯
ଚନ୍ଦ୍ର ଦୈବତ ଗୋତ୍ରସ୍ୟ
ଅର୍ଜ୍ଜୁନ ନାମ ପୁତ୍ରସ୍ୟ ।୨୦୦
ବୃଦ୍ଧ ଭାର୍ଗବ ଗୋତ୍ରସ୍ୟ ବିରାଟ ଦେବ ପୁତ୍ରୀ
ଯେହି ବାକ୍ୟେଣ ତିନି ପୁରୁଷ ନାମ ଧରି ।୨୦୧
ପ୍ରୋହିତେ ମହାବାକ୍ୟ ନାମ ଯେ ଉଚ୍ଚାରି
ଇଦଂ ବାକ୍ୟ ସେ ଯେ ତ୍ରିବାର ପୂରଣ କରି ।୨୦୨
ତେଷଠୀ ଅପର୍ଣ୍ଣାଙ୍କର ନାମ ଅବଧାରି
ଦେଖିଣ ସାନନ୍ଦ ଯେ ହୁଅନ୍ତି ନରନାରୀ ।୨୦୩
ଅଖଣ୍ଡିତ ମନ୍ତ୍ରେ ଦୁବ ଚଉଷଠୀ
ମହାମନ୍ତ୍ର ଅବଧାନେ ପାଡ଼ନ୍ତି ଗଣ୍ଠି ମୁଠି ।୨୦୪
ଆଇଷ୍ୟ ମନ୍ତ୍ରେ କନ୍ୟାକୁ ଘେନିଣ ପୁରୋହିତେ
ବରହସ୍ତ ଉପରେ କନ୍ୟାର କରପତ୍ରେ ।୨୦୫
ଶଙ୍ଖ ମହୁରୀ ଯେ ବାଜଇ ଭେରୀ ତୁରୀ ଘୋରନାଦେ
ବ୍ରାହ୍ମଣମାନେ ଉଚ୍ଚାରନ୍ତି ବେଦ ଯେ ଶବଦେ ।୨୦୬
ହୁଳହୁଳି ଜୟ ଜୟ ଶବଦ କଲେକ କାମିନୀ
ଶୁଭବାଞ୍ଛା ପଢ଼ିଲେ ସୁମନ୍ତ ମହାମୁନୀ ।୨୦୭
ଆପେଣ ଅପଛରୀୟେ ନୃତ୍ୟ ଗୀତ ଆରମ୍ଭି
ମର୍ଦ୍ଦଳ କଂସାଳ ବାଜଇ ଘୋର ଯେ ଦୁନ୍ଦୁଭି ।୨୦୮
ବରକନ୍ୟାଂକର କର ଧରି ମଧ୍ୟଗତେ
କୁଶ ବନ୍ଧନ କଲେ ଯେ ଧୌମ୍ୟ ପୁରୋହିତେ ।୨୦୯
ବର ହସ୍ତ ଉପରେ କନ୍ୟା ହସ୍ତଗତେ
ହସ୍ତବନ୍ଧନ କଲେ ଯେ ଶାହାସ୍ର ସଙ୍ଗତେ ।୨୧୦
ପ୍ରୋହିତେ ବୋଇଲେ ହୋ ବିରାଟେଶ୍ୱର ରାଜା
ଯଉତୁକ ବେଳ ହୋଇଲା କର ବିଭାର ପୂଜା ।୨୧୧
ତାହାଣବ୍ରତେକ ଶଙ୍ଖେ ଜଳ ତିଳ ଭରି
ଦିଅଇ ଯଉତୁକ ସେ ବିରାଟ ଦଣ୍ଡଧାରୀ ।୨୧୨
କନ୍ୟାର ପରିବାରୀ ଯେ ସହସ୍ରେକ ଦାସୀ
ଲକ୍ଷେକ ଧେନୁ ଗାଇ ଧବଳ କମଳ ଆଶ୍ୱାସୀ ।୨୧୩
ଲକ୍ଷେକ ଭାର ସୁବର୍ଣ୍ଣ ପଇଲମ ଯୋଗାଡ଼ ରତ୍ନ
ଉପାଧି ଶତେ ରଥ ଦିଲା ଯଉତୁକ ଯତ୍ନ ।୨୧୪
ଲକ୍ଷେକ ରଥୀ ଯୋଦ୍ଧା ଦିଲାକ ଆଦିକରି
ବେନିଲକ୍ଷ ଶ୍ୱେତହସ୍ତୀ ଶ୍ୱେତଅଶ୍ୱ ଲକ୍ଷ ଚାରି ।୨୧୫
ଆଲମ୍ୱ ଉଦଣ୍ଡ ଯେ ଛତ୍ର ପାଞ୍ଚଲକ୍ଷୀ
ଚାରିଲକ୍ଷ ଚାମର ଯେ ଦିଲାକ ସେ ବାଛି ।୨୧୬
ବୀରତୂର ବିଜିଘୋଷ ଟମକ ନିଶାଣ
ବୀର ଢୋଲ ମୃଦଙ୍ଗ କାହାଳି ଯେ ପାଞ୍ଚ ଲକ୍ଷ ପୁଣ ।୨୧୭
ଘଣ୍ଟ ମର୍ଦ୍ଦଳ ବୀର କାହାଳୀ ମହୁରୀ
ଯେମାନ ଚାରିଲକ୍ଷ ଚାରି ସହସ୍ର ଦିଲାକ ଅଗୁଳି ।୨୧୮
ପଞ୍ଚ ପରାୟୁଧ ଦିଲା ପାଦାନ୍ତି ସଇନି
ପଞ୍ଚପାରିଦଣ୍ଡ ଦିଲା ଛାଡ଼ିଲାକ ପାଣି ଘେନି ।୨୧୯
ଅନେକ ଦେଶର ଯେ ଥିଲେ ମହୀପତ୍ୟେ
ଚାରି ଭଣ୍ଡାର ଧନ ଦିଲାକ ଅପ୍ରମିତେ ।୨୨୦

ଅଶ୍ୱ ଗଜ ଦଣ୍ଡଛତ୍ର କହିତ କେହୁ ପାରି
ଅସଂଖ୍ୟ ଅଗୋଚର ଦିଲା ଯଉତୁକ ବିଧିକରି ।୨୨୧
ବିରାଟ ଭାରିଯା ଯେ ଶ୍ରୀକୃଷ୍ଣା ମହାଦେଈ
ଅନେକ ଯଉତୁକ ଦିଲେ ହରଷ ମନ ହୋଇ ।୨୨୨
ବିରାଟ ପୁତ୍ର ଯେ ଶଙ୍ଖ ଶ୍ୱେତ ଉତ୍ତର
ଯେମାନେ ଯଉତୁକ ଦିଲେ ଅପାର ଅପାର ।୨୨୩
ଯଉତୁକ ଶେଷେଣ ବୋଇଲେ ଧୌମ୍ୟ ଗୁରୁ
କନ୍ୟା ସାତଗୋଟି ଯେ ଆଣସି ଅନ୍ତପୁରୁଂ ।୨୨୪
ବର କନ୍ୟାର ହାତ ଫେଡ଼ନ୍ତୁ ସେ ଆସି
ସଂକୁଚ ମନେ କନ୍ୟାମାନେ ଆସନ୍ତି ହସି ହସି ।୨୨୫
ଛାୟା ମଣ୍ଡୋପ ତଳେ ମିଳିଲେ କାମ୍ୟନାରୀ
ବର କନ୍ୟାଂକର ହସ୍ତ ଫେଡ଼ିଲେ ଶୁଭେଣ ସେ କରି ।୨୨୬
କରପତ୍ର ଛାଡ଼ିଣ ଉଠିଲା ଉତ୍ତରା ବାଳୀ
ବର ସନ୍ନିଧ୍ୟେ କନ୍ୟାକଇଂ ବସାଇଲେ ତୋଳି ।୨୨୭
ନବତନ ଝୀନବସ୍ତ୍ର ଦିଲେକ ବଧାଇ
ଅନେକ ଧନରତ୍ନ ଭିକ୍ଷୁକଜନେ ଦେଇ ।୨୨୮
ନବତନ ବସ୍ତ୍ର ପିନ୍ଧି ବେଶ ବେଶନ ହୋଇ
ବରକନ୍ୟା ବସିଲେ ଯେକ ଆସନେ ଯାଇଂ ।୨୨୯
କୁମର କୁମାରୀ ଯେକଇ ଆସ୍ଥାନେ
ବିରାଟ ପ୍ରଣପତ୍ୟ ଅର୍ଜୁନ ସନ୍ନିଧ୍ୟାନେ ।୨୩୦
ବିଷ୍ଣୁ ମାତୁଳ ଯାହାର ଲକ୍ଷ୍ମୀ ଯାହାର ମାଈ
ମୁଂ ତାକୁ ଯଉତୁକ ଦେବାକୁ କିସ ଭାଜନ ହୋଇବଇଂ ।୨୩୧
ଯେ ମହୀମଣ୍ଡଳେ ଯେ ଠାକୁର ସୋମବଂଶୀ
ଦୁହିତାଯେ ଦେଇ ମୁଁ ଶରଣ ଅଛି ପଶି ।୨୩୨
ଯେ ହୋଇବ ସ୍ୱାମୀ ଦଣ୍ଡ ଦୋଷ ମୋହୋର ଥିଲା ହାଦେ ପୂର୍ବେ
ଦୋହିତା ଗୋଟି ଯେ ଦେଇ ମୁଂ ନିଭ୍ରାନ୍ତି ହୋଇଲି ଯେବେ ।୨୩୩
ଦୋହିତା ଗୋଟିଯେ ଦେଇଣ ମୁଂ ହୋଉଛି ସମର୍ପି
ସମୁଦ୍ର ଆଶ୍ରିତ ମୁଂ କଲ୍ୟାଇଂ ଅଦ୍ୟାପି ।୨୩୪
ଅନେକ ବିନୋୟୀ ସେ ମସ୍ତାଧୀପ ସ୍ୱାମୀ
ଯୁଝେଷ୍ଟିଂକ ଚରଣ ତଳେ ସହସ୍ରେ ଦଣ୍ଡ ପରିଣାମି ।୨୩୫
ଯୁଝେଷ୍ଟି ବୋଇଲେ ଉଠ ଉଠ ହୋ ମହାତମା
ତୁ ମୋହୋର ଅଭେଦ ଯେ ଅଟୁ ପଞ୍ଚଭୂତ ଆତ୍ମା ।୨୩୬
ଅର୍ଜୁନର ବଦନ ଯେ ଚାହିଂଲେ ଯୁଝେଷ୍ଟି
ବିରାଟକୁ ଅର୍ଜୁନ ଯେ କୋଳକଲା ଉଠି ।୨୩୭
କନ୍ୟାକଇଂ ସମର୍ପଇ ସେ ଗଲେ ମସ୍ୟରାଯେ
ପ୍ରୋହିତେ ଲାଜାହୋମ କରାବନ୍ତି ଉପାଯେ ।୨୩୮
ଶାକିଗୁଆ ଅଖଣ୍ଡିତ ପଞ୍ଚଗୋଟି ଘେନି
ବରକନ୍ୟାଙ୍କ ଲୁଗାରେ ବନ୍ଧନ କଲେ ଆଣି ।୨୩୯
ଗଣ୍ଠିଓଳା ଯୁଗତେଣ ହୋଇଲେ ବରକନ୍ୟା
ବସିଲେ ବରବେଶେ ତାହାଙ୍କ ଜୀବନ ଧନ୍ୟା ଧନ୍ୟା ।୨୪୦
ବାତ ଅନଳ ନାମେଣ ଯେବଣ ହୁତ
ସ୍ୱାହା ସ୍ୱଧା ମନ୍ତ୍ରେ ଯେ କଲେକ ଉପଗତ ।୨୪୧
ଇଦଂବାକ୍ୟେ ପୁରୋହିତେ ଆରାଧିଲେ ବିଭାବିଧି ଯେ ବହତି
ଗୁଆଘିଅ ମାଘୀତିଳେ ଦିଲେକ ଆହୁତି ।୨୪୨
ସ୍ୱାହା ସ୍ୱଧା ମନ୍ତ୍ରେଣ ଯେ କଲେକ ଅବଧାନ
ଅଗ୍ନି ଦେବତାଂକର ନୋହିଲା ଉଦ୍ୟାନ ।୨୪୩
ମାରକଣ୍ଡ ବୋଇଲେ ହୋ ଧୌମ୍ୟ ପୁରୋହିତେ
ଅଗ୍ନିର ଶିଖା ତ ନ ଦିଶିଲା ଲୋହିତେ ।୨୪୪
ତୋହୋର ପ୍ରାୟେ ବ୍ରାହ୍ମଣ ଦିଲୁ ଯେ ଆହୁତି
ବାରି ତ ନୁଆରିଲୁ ଅଗ୍ନି ଦେବତାଂକ ମୂର୍ତ୍ତି ।୨୪୫
ଆହୋ ଜାତ ଅନଳ ବୋଲି ଯେଉଂଣ ବଶ୍ୱାନର
ତିନିବଦନ ପନ୍ଦର ଲୋଚନ ତାହାଂକର ।୨୪୬
ଦ୍ୱାଦଶ କପାଳ ଚତୁର୍ବିଂଶ ଯେ ଶ୍ରବଣ
ନାଭି ଗଣ୍ଡସ୍ଥଳ ଚତୁର୍ଦ୍ଦଶ ବକ୍ଷସ୍ଥଳ ପୁଣ ।୨୪୭
ପଞ୍ଚବିଂଶ ଉହର୍ଗ ତିନି ନାସିକା ପଞ୍ଚକୁକ୍ଷି
ତ୍ରିଶାଖା ଆକର୍ଷଣ ସହସ୍ରେ ପିଙ୍ଗଳାକ୍ଷି ।୨୪୮
ଯେକଇ ବଦନ ହୋ ଚତୁର ଅନଳ ମୂରତି
ତିନି ବଦନ ଦ୍ୱାଦଶ ରୂପ ଯେ ବହତି ।୨୪୯
ଚତୁର୍ଦ୍ଦଶ ଓଷ୍ଟ ଦ୍ୱାଦଶ ଯେ ଜିହ୍ୱା
ଯେକ ଚରଣ ତିନି ପିଠି ଶତେ ଊର୍ଦ୍ଧ୍ୱପ୍ରଭା ।୨୫୦
କପାଳେ ଆହୁତି ଯେ ପଡ଼ଇ ବହନି
ସର୍ବ ଶୁଭ ହୋଇ ସେ ବରକନ୍ୟାଯେ ବ୍ରତନ୍ତି ପୁଣି ।୨୫୧
ଆହୁତି ପଡ଼ଇ ଯେବେ ଅଗ୍ନିଂକର ଆଖି
କନ୍ୟାକଇଂ ବରକ୍ଷେ ନ ପାରଇ ଦେଖି ।୨୫୨
ଯେବେ ଆହୁତି ପଡ଼ଇ ଅଗ୍ନିଂକର ନାସିକା
ସର୍ବେପୁତ୍ର ଗୋଟିଯେ ଉପୁଜଇ ତାହାର ଯେକା ।୨୫୩
ଅଗ୍ନିର କର୍ଣ୍ଣେ ଯେବେ ଆହୁତି ପଡ଼ିବ
ସନ୍ତାନ ଉପୁଜିଲେ ସେ କର୍ଣ୍ଣ ବଧିର ହୋଇବ ।୨୫୪
ଗଣ୍ଡସ୍ଥଳ ମଧେ ଯେବେ ପଡ଼ଇ ଆହୁତି
ବର ଉପରେ କନ୍ୟା ଯେ ହୋଇବ ହତ୍ୟାଟି ।୨୫୫
ଆହୁତି ପଡ଼ଇ ଯେବେ ଅଗ୍ନିଂକ ହୃଦେ
ବର କନ୍ୟାଂକର ଉପୁଜଇ ବଡ଼ାଇ ସୁହୃଦେ ।୨୫୬

ଅହିଓ ସୁଲକ୍ଷଣୀ ହୁଅଇ ସୌଭାଗ୍ୟବନ୍ତୀ
ପୁତ୍ର ଉପୁଜିବ ଦୋହିତା ବହୁତ ଉପୁଜନତି ।୧୨୫୭
ଆହୁତି ପଡ଼ଇ ଯେବେ ବଶ୍ୟାନର କନ୍ଧେ
କନ୍ୟା ବିଧବା ହୁଅଇ ତୁଟଇ କାମ ସଧେ ।୧୨୫୮
ବାମ ଭୁଜେ ଯେବେ ପଡ଼ିବ ଆହୁତି
ପର ଦାରେଣୀ ସେ କନ୍ୟା ହୁଅଇ କରେ ବେଶ୍ୟାବୃତ୍ତି ।୧୨୫୯
ଡାହାଣ ଭୁଜେ ଯେବେ ଆହୁତି ପଡ଼ିବ
ସୁନ୍ଦର କନ୍ୟା ହୋଇଲେ ବର ଘେନି ଘର କରିବ ।୧୨୬୦
ଯେବେ ଆହୁତି ପଡ଼ିବ ଅଗ୍ନିଂକର କୁକ୍ଷି
ପୁତ୍ର ଦୋହିତା ଉପୁଜିବ ଅନ୍ତେ ହୋଇବ ବଡ଼ ସୁଖୀ ।୧୨୬୧
ଅଗ୍ନିଂକ ପିଠିରେ ଯେବେ ପଡ଼ିବ ଆହୁତି
ବରଷକେ ବିଧବା ହୋଇବ ସେ ଯୁବତୀ ।୧୨୬୨
ଆହୁତି ପଡିବ ଯେବେ ଅଗ୍ନିଂକ ମେଖଳେ
ଅପାର ଦୁହିତା ହୋଇବେ କର୍ମର ଅବଳେ ।୧୨୬୩
ଜାନୁର ମଧ୍ୟେ ଯେବେ ପଡ଼ିବ ଆହୁତି
ବର କନ୍ୟାଂକର ହୋଅଇ ଅପାର ପୀରତି ।୧୨୬୪
ପୁତ୍ର ଦୋହିତା ନୋହିବ ଜୀବ ଥିବା ଯାଏ
ଅପୁତ୍ରିକ ହୋଇଣ ମରିବେ ବାପମାଏ ।୧୨୬୫
ପାଦେ ପଡ଼ିବ ଯେବେ ଅଗ୍ନିଂକର ଆହୁତି ଭାଗ
ଦେଶାନ୍ତରୀ ହୋଇ ବୁଲିବେ ହୋଇବ ଭିକ୍ଷା ଯୋଗ ।୧୨୬୬
ଅପାର ଉତପତ୍ତି ହୋଇବେ ପୁତ୍ରବାଳୀ
କର୍ମେ ଦରିଦ୍ର ହୋଇବେ ସେ ନୁଆରିବ ସମ୍ଭାଳି ।୧୨୬୭
ଆପଣା ଶକତି କ୍ରମେ ନ ପାରିବ ପୋଷି
କ୍ରୟ ବିକ୍ରୟ କରି ଆପଣା ପେଟ ପୋଷି ।୧୨୬୮
ଶୁଣ ହୋ ପୁରୋହିତେ ବଦୟନ୍ତି ମାରକଣ୍ଡେ
ଆହୁତି ପଡ଼ିଲା ହୋ ଅଗ୍ନି ଦେବତାଂକ ମୁଣ୍ଡେ ।୧୨୬୯
ମହାମନ୍ତ ବାକ୍ୟେ ପ୍ରକ୍ଷେପିଲେ ତାଲୁ
ଅଭୋଗ୍ୟ ହୋଇବ କନ୍ୟା ସନ୍ତାନ ହୋଇବେ ହେଳ ।୧୨୭୦
ବଡ଼ାଇ ଦୁରାପଦେ ରହିବ ତାର ବଂଶ
କନ୍ୟାକଇଂ ଭୋଗ ସର୍ବେ ହୋଇ ତେରମାସ ।୧୨୭୧
ଜନ୍ମ କର୍ମ ଆଧ୍ୟାନ ବେନାସିକ ନାଡ଼ି
କର୍ମ ନାଡ଼ିରେ ଯେବେ ପୂର୍ଣ୍ଣ ଅଭ୍ୟାସ କରି ।୧୨୭୨
ମାରକଣ୍ଡେ କହିଲେ ଆଗତ ଗ୍ରନ୍ଥଖଣ୍ଡି
କର୍ମେ ଲାଗି କହିଲେ ଯେ କନ୍ୟା ହୋଇବ ପେଟରାଣ୍ଡି ।୧୨୭୩
ବ୍ୟାସେ ବୋଇଲେ ମାରକଣ୍ଡ ସ୍ୱରୂପ ଆମ୍ଭେ କହୁଂ
ଚଉଦ ବରଷ ଯେ ନାଶଯିବେ ଯେହାର ପ୍ରଭୁ ।୧୨୭୪
ମାରକଣ୍ଡେ ବୋଇଲେ ବ୍ୟାସେ ଯେହା ନ କର ଉଦିତ
ପାଣ୍ଡବ କୁଳେ ବ୍ୟଥା ଉପୁଜିବ ବହୁତ ।୧୨୭୫
ଅଗ୍ନିଂକି ପ୍ରତିକ୍ଷଣ ତହିଂ କଲେକ ବରକନ୍ୟା
କରେଣ ଗଣ୍ଡୁଷ କଲେ ଘୃତ ଯେ ପାରଣା ।୧୨୭୬
ଅଗ୍ନି ଦେବତାଂକୁ ଯେ ବହୁତ ଶୀତଳ ଦ୍ରବ୍ୟମାନ
ବର କନ୍ୟା ବେନିଯେ ଯେ କଲେକ ଆଞ୍ଚୋବନ ।୧୨୭୭
ଉତ୍ତର କୁମାର ଅଗ୍ନି ଶୀତଳ ପରଖି
ପୁରାଣ ସଂଘତାରେ ଯେହ୍ନେ ବେଭାର ଅଛି ।୧୨୭୮
ଯେ ବୁଧଜନେ ଯେ ବିଭାବିଧି କ୍ରମେଣ
ପଞ୍ଚଭୂତ କରି ଲୟେ କରି ଦେଖ ଅଗ୍ନିର ବାରଣ ।୧୨୭୯
ଜାତ ଅନଳ ଅଗ୍ନି ଯେ ଅଟଇ ସପତ ଜିହ୍ୱା
ଅଗ୍ନିର ବର୍ଣ୍ଣ ଜାଣି ଆହୁତି ଦେଉଥିବା ।୧୨୮୦
କନ୍ୟାଗୋଟି ହୋଇବାକ ଅହିଓ ସୁଲକ୍ଷଣୀ
ପୁତ୍ର ଦୁହିତା ଉପୁଜିବ ଅନଙ୍ଗ ରମ୍ଭା ଜାଣି ।୧୨୮୧
ଧନ ବସ୍ତ୍ର ପାଇବ ପଣ୍ଡିତ ହୋଇବ ଯୁଗତେ
ରୋଗ ଆପଦ ଉତପତ୍ତି ନୋହିବ କଦାଚିତେ ।୧୨୮୨
ଯେମନ୍ତ ଯାଗ୍ୟଂ କଲେ ଯେ ମନୁଷ୍ୟ ହୋଇବ ସୁଖୀ
ଅଗ୍ନିଂକର ବର୍ଣ୍ଣ ଚିହ୍ନ ଜାଣି ଆହୁତି ଦେବ ଦେଖି ।୧୨୮୩
ଓଷ୍ଟର ମଧ୍ୟେ ଯେବେ ଆହୁତି ପଡ଼ିବ
ଯେଥିର ଫଳଶ୍ରୁତି ଅଧେକ ହୋଇବ ।୧୨୮୪
ଜନ୍ମର ପ୍ରତିଷ୍ଠା ହୋଇବାକୁ ବିଭାଯୋଗ
ଯେହା ବିଚାରି ଅଗ୍ନିକି ଦେବ ହବିର୍ଭାଗ ।୧୨୮୫
ଚିତ୍ତ ବିଚଳିତ ଯେବେ ଆହୂତି ଦେବାବେଳେ
ସେ ଦୋଷର କାରେଣି ବ୍ରାହ୍ମଣ ବରକନ୍ୟା ଦୁଖ ପାଇଲେ।୧୨୮୬
ଯେସନେକ ବିଧାନ ବିଭାର ଚରିତ
ଯେହା ବିଚାରିଣ କାର୍ଯ୍ୟ କରନ୍ତି ପଣ୍ଡିତ ।୧୨୮୭
ବିଭାବିଧି ସାରିଣ ଯେ ଅଗ୍ନିର କ୍ରମେଣ
ଆରୋଗ୍ୟ ଆଶିଷ ବାଞ୍ଛିଲେ ସକଳ ବ୍ରାହ୍ମଣ ।୧୨୮୮
ଶୁଭ ଅବଧାନେ ଚଳିଲେ ବରକନ୍ୟା
ରାତ୍ର ପାଇଲା ସେ ସାରିଲେ ଭୋଜନ ।୧୨୮୯
ଭୁଞ୍ଜନ୍ତି ଘର ବର ଜାତି ଯେ ସମସ୍ତ
ଅନେକ ବିଧାନେ ଭୋଜନ ଦିଅଇ ମସ୍ତନାଥ ।୧୨୯୦
ରାମକୃଷ୍ଣ ଘେନି କରି ଧୃତରାଷ୍ଟ୍ର ରାୟେ
ପଞ୍ଚ ପାଣ୍ଡବନ୍ତ ଘେନି ଭୋଜନ ସର୍ବ କୟେ ।୧୨୯୧
ଆଂଚୋବନ ସାରି ସେ କ୍ରପୂର ତାମ୍ବୁଳ ଭୁଞ୍ଜନ୍ତି ଜନେ
ଅନେକ ଅକ୍ଷତ ଦିଲେ ବିରାଟ ରାଜନେ ।୧୨୯୨

ଶୁଣ ହୋ ବୈବସ୍ୱତ ମନୁ ବଦୟନ୍ତି ଅଗସ୍ତି
ବନ୍ଦାଇଣ ବରକନ୍ୟା ସେ ଅନ୍ତପୁରେ ନିଅନ୍ତି ।୨୯୩
ଭୂମିରେ ଲିହିଣ ମଣ୍ଡନ୍ତି ପରିହାସେ
ଜୁଆ ଖେଳାବନ୍ତି ଆଣି ମନର ହରଷେ ।୨୯୪
ସୁବର୍ଣ୍ଣର କଉଡ଼ି ଯେ ରୂପାର ବେଦୀ ବେନି
ଜୁଆ ଖେଳାବନ୍ତି ମିଳି ସକଳ କାମିନୀ ।୨୯୫
ବର ଦିଅଇ ଯେ କନ୍ୟାର ହାଥେ ତୋଳି
ନଗ୍ର ନରନାରୀମାନେ ସମସ୍ତେ ହେଂ ମିଳି ।୨୯୬
ପୁଣ ପୁଣ ଲେଉଟାଇ ପାଡ଼ନ୍ତି ଅନୁମତେ
ଖେଦ ଅନୁସରି ପୁଣ ଧରନ୍ତି ହୃଦଗତେ ।୨୯୭
ପୁଣ ତୁଷ୍ଟ ଚିତ୍ତେ ପାଡ଼ନ୍ତି ବେନିମତି
ଢମାଳି ଗୀତ ଗାବନ୍ତି ଅନେକ ଯୁବତୀ ।୨୯୮
ହରଷେଣ ଜୁଆ ଖେଳାନ୍ତି ବିରାଟ କୁମାରୀ
ଦେଖିଣ ହରଷ ହୋଇଲେ ସମସ୍ତ ନରନାରୀ ।୨୯୯
ଦୁର୍ବା ଅକ୍ଷତ ଶିରେ ଦିଲେକ ବରକନ୍ୟା ବେନି
ଭିତର ପୁରକୁ ବରକନ୍ୟା ନେଲେକ କାମିନୀ ।୩୦୦
ବିରାଟର ଭାରିଯା ଶ୍ରୀକୃଷ୍ଣା ମହାଦେଈ
ଯେକ ଆସନେ ବରକନ୍ୟାକୁ ଭୁଞ୍ଜାଇ ।୩୦୧
ଷଡ଼ରସ ଭୋଜନ ପରଖନ୍ତି ଆଣି ଆଗ
ଶରୀର ପୁଷ୍ଟକରି ଭୁଞ୍ଜିଲେ ଅତି ବେଗ ।୩୦୨
ଭୁଞ୍ଜିଣ ତ୍ରିପୁତି ଯେ ହୋଇଲେ ବରକନ୍ୟା ବେନି
ଦିବ୍ୟ ଅବତାର ସେ ଦିଶନ୍ତି ଯୁବା ବୟସ ଘେନି ।୩୦୩
ଆଞ୍ଚୋବନ ସାରିଣ କ୍ରପୂର ତାମ୍ବୁଳ ଭୁଞ୍ଜି
ରାତ୍ରି ଦେଢ଼ ପ୍ରହର ଶୟନ ସ୍ଥାନେ ରଞ୍ଜି ।୩୦୪
ଉତ୍ତରାକୁ ଘେନିଣ ରାମକୃଷ୍ଣଂକର ଭଣଜା
ବହୁତ ମଙ୍ଗଳ ଆରୋପଣେ ବିଜେ ମହୁଶଯ୍ୟା ।୩୦୫
ଗଣିକାଗଣମାନେ ଦ୍ୱାରେ ହାଦେ ମିଳି
ଶୟନ ଗୀତ ଗାଇ ଦିଅନ୍ତି ହୁଳହୁଳି ।୩୦୬
ପଡ଼ିଲା କବାଟ ସେ ଘୁଞ୍ଚିଲେ ଯୁବତୀ
କୁମାର କୁମାରୀଂକର ବହୁତ ପୀରତି ।୩୦୭
ନଖ ଦନ୍ତଘାତ ଚୁମ୍ବନ ପରିହାସ
ଯେକକୁ ଆରେକ ବଢ଼ିଲା ନାନା ରତିରସ ।୩୦୮
ଉଦାମ ଶୃଙ୍ଗାର ହୋଇଲା ବେନିଜନ
କେହି ନ ଜାଣନ୍ତି ନଖଦନ୍ତ ପାଦଚିହ୍ନ ।୩୦୯
ବିବିଧ ଶୃଙ୍ଗାରେ ଯେ ପାହିଲା ରୟେଣୀ
ସ୍ନାହାନକୁ ଆରମ୍ଭ ସେ ବରକନ୍ୟା ବେନି ।୩୧୦
ବିଭାର ଦୁତୀୟ ଦିନ ହୋଇଲେ ବନ୍ଦାପନା
ତୃତୀୟ ଦିବସ ଉତ୍ସବ ହୋଇଲା ପ୍ରସନ୍ନା ।୩୧୧
ଇନ୍ଦ୍ରାୟେଣୀ ଶାହାସ୍ର ଯେ ପଢ଼ନ୍ତି ପୁରୋହିତେ
ବରକନ୍ୟା ଆରୋଗ୍ୟ ହୋଇବେ ଯେମନ୍ତେ ।୩୧୨
ଚତୁର୍ଥ ଦିବସେ ଯେ ନଗ୍ର ଉତ୍ସବକରି
ସହସ୍ରେ ଦିଜବର ଚତୁର୍ବେଦ ଦ୍ୱାରେ ପଢି ।୩୧୩
ବହୁତ ଉତ୍ସବେ ସେ ପ୍ରସର ହୋଇଲାକ ରାତି
କୁମାର କୁମାରୀ ଛାୟା ମଣ୍ଡୋପେ ବସନ୍ତି ।୩୧୪

ସମସ୍ତ ଦିବସ ଅନ୍ତରେ ଅଷ୍ଟ ମଙ୍ଗଳା ସାରି
ଅନେକ ଉତ୍ସବ କଲା ବିରାଟ ଦଣ୍ଡଧାରୀ ।୩୧୫
କୁମ୍ଭମାସ ଶୁକ୍ଳପକ୍ଷ ତୃତୀୟା ଶୁକ୍ରବାର
ଉତ୍ତର ଭୋଦୋ ନକ୍ଷତ୍ର ଅଟଇ ସେ ଦିନର ।୩୧୬
ଚନ୍ଦ୍ର ଉତ୍ସବ ବନ୍ଦାପନା ହୋଇଲା ସେ ଦିନର
ନଗ୍ର ନରନାରୀମାନେ ମିଳିଲେ ସମ୍ଭ୍ରେ ।୩୧୭
ରାତ୍ର ବେନି ଘଡି ଉତ୍ତାରେ ଚନ୍ଦ୍ର ବନ୍ଦାପନା
ପ୍ରୋହିତେ ବାକ୍ୟ କଲେ ବେଦ ଯେ ଆଧ୍ୟାନା ।୩୧୮
ନାରୀଗଣମାନେ ଯେ ଦିଅନ୍ତି ହୁଳହୁଳି
ମଙ୍ଗଳ ଗୀତ ଗାବନ୍ତି କାମିନୀଗଣ ମିଳି ।୩୧୯
ଶଙ୍ଖ ମହୁରୀ ଯେ ଶୁଭଇ ବାଦ୍ୟ ଧ୍ୱନି
ବନ୍ଦାପନା ବେଦୀ ଆଣିଲେ ବରକନ୍ୟା ବେନି ।୩୨୦
ଅଭିମନ୍ୟୁ କୁମର ଯେ ଦିବ୍ୟ ବେଶ ହୋଇ
ଉତ୍ତରା ବାଳୀ ଯେ ତିନି ଭୁବନ ମୋହଇ ।୩୨୧
ବରକନ୍ୟାଯେ ଲୋଳ ମୁକୁଟ ଯୁଗତେ
ଯେସନକ ବେଭାର ଅଛି ଶାହାସ୍ର ସଙ୍ଗତେ ।୩୨୨
ଆଶିଷ୍ୟ ବାକ୍ୟେ ବାଞ୍ଛାକଲେ ଯେ ଶୁଭଗତେ
ନାରୀମାନେ ବନ୍ଦାବନ୍ତି ଯେ ଯାହାର ମତେ ।୩୨୩
ଧନବସ୍ତ୍ର ଶ୍ରୀଫଳ ଅନେକ ବିଲୋହନ୍ତି
ହରଷେ ଦିଅଇ ଯେ ବିରାଟ ନୃପତି ।୩୨୪
ବରକନ୍ୟାଂକୁ ସେ ଦୁର୍ବା ଅକ୍ଷତ ଦେଇ
ଶ୍ରୀକୃଷ୍ଣା ମହାଦେଈ ଅର୍ଘ୍ୟ ଘେନି ବନ୍ଦାଇ ।୩୨୫
ପିଠାପଣା ଖଣ୍ଡଖିରସା ନାନା ଦ୍ରବ୍ୟ ଭୁଞ୍ଜି
ନିଦ୍ରା ଅଳସେଣ ଶେଯ୍ୟାଯେ ମନରଞ୍ଜି ।୩୨୬
ଯେମନ୍ତେଣ ଗଲା ସେ କେତେହେଂକ ଦିବସ
ମସ୍ତଦେଶେ ଅଛନ୍ତି ଯୁଝେଷ୍ଟି ଦେବ ମନର ହରଷ ।୩୨୭



# ଉଦ୍‌ଯୋଗ ପର୍ବ

## ୭୨. ପାଣ୍ଡବଙ୍କ ଇନ୍ଦ୍ରପ୍ରସ୍ଥେ ପ୍ରବେଶ, ଧୃତରାଷ୍ଟ୍ର ସଞ୍ଜୟ ସଂବାଦ ଓ ଧୌମ୍ୟ ପୁରୋହିତଙ୍କର ଦୂତପଣେ ହସ୍ତିନା ଗମନ

ଶୁଣ ହୋ ଚଇତନ ଶ୍ରୀ ମହାଭାରଥ ଉଦିଯୋଗ ପର୍ବ କଥା
ଯାହା ହେତୁ କରିପାରିଲେ ସଭାଯେ ହୋଇବ ବକତା ।୧।
ଯେବଣ ଗ୍ରନ୍ଥ ଶୁଣିଲେ ଅଧାର୍ମିକହିଂ ହୋଯେ ଭିଗ୍ୟଂ
ଯାହା ଶୁଣିଲେଟି ପ୍ରାଣୀ ହୁଅନ୍ତି ସର୍ବଗ୍ୟଂ ।୨।
ଉଦିଯୋଗ ପର୍ବ କଥା ହୃଦଗତେ ଲୟେ କଲେ
ଶାହାସ୍ରକୁ ଜିତା ହୋଇ ଯେହା ଉନ୍ମେଷି ପାରିଲେ ।୩।
ଉଦିଯୋଗ ପଢ଼ିଲେ ଦୃଶ ହୋଅଇ ବୁଦ୍ଧି
ଉଦିଯୋଗ ପଢ଼ିଲେ ପ୍ରପାପତ ହୋଅଇ ରଦ୍ଧି ସିଦ୍ଧି ।୪।
ଉଦିଯୋଗ ବୋଲିଣ ଯେବଣ ଗ୍ରନ୍ଥ ପର୍ବ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ଯେଥୁଂ ସର୍ବ ।୫।
ଚଉବର୍ଗ ସମ୍ପଦ ଯେ ପ୍ରାପତ ବ୍ରହ୍ମଗ୍ୟାଂନ
ଆୟୁଷ୍ୟ ଧନ ସନ୍ତାନ ହୋଇବ ବର୍ଦ୍ଧମାନ ।୬।
ଯାହା ସେ ସ୍ରିଜନା କଲେକ ଅଗସ୍ତି
ମୁହିଂ ତାହା ବଖାଇଲି ବିଚିତ୍ର ଶୁଦ୍ଧି ପୋଥି ।୭।
ଉଦିଯୋଗ ପର୍ବ ଶୁଣିମା ନରେ ବାଣୀ
ସୁବୁଦ୍ଧି ପଣ୍ଡିତ ସୁଗ୍ୟଂ ହୋଇବ ଯେହା ଶୁଣି ।୮।
ବଇବସୁତ ମନୁ ପୁଚ୍ଛାକଲେ ଅଗସ୍ତି
ଯେଥୁ ଅନନ୍ତରେ ହୋଇଲା ଯିସ ରୀତି ।୯।
ଶୁଭଯୋଗେ ପାଣ୍ଡବେ ବାହାର ମସ୍ୟଦେଶୁଂ
ଆକାଶେ ମଙ୍ଗଳ ଧ୍ୱନି ଶୁଭଇ ପାଣ୍ଡବଂକର ଆସୁଂ ।୧୦।
ବିରାଟ ଆଗିଆଣି ସମଦଣ୍ଡ ଘେନି
ପିଛେଣ ପଞ୍ଚାଣ କୁମାରନ୍ତ ଘେନି ଶ୍ରୀଖଣ୍ଡୀ ଭ୍ରାଥ ବେନି ।୧୧।
ଶ୍ରୀକୃଷ୍ଣା ଦ୍ରୌପତୀ ଯେ କୋଳ ସମ୍ଭାଷଣେ
ପାଞ୍ଚାଳୀକି ପ୍ରବୋଧିଲେ ବହୁତ ସନମାନେ ।୧୨।
ଗୋପାଳୀ ନଦୀକୂଳେ ବିରାଟ ପ୍ରବୋଧି
ଅନେକ ବିନୋୟୀ ହୋଇଲେ ବିରାଟ ଯଥାବିଧି ।୧୩।
ଯୁଝେଷ୍ଟି ଦେବେ ଯେ ପ୍ରବୋଧି ବଚନ ପ୍ରକାଶି
ବାହୁତ ବିରାଟ ତୁ ପରମ କଲ୍ୟାଣ ହୋଅସି ।୧୪।
ବିରାଟ ପ୍ରଣପତ୍ୟ ଯେ ଯୁଝେଷ୍ଟିଂକ ପଦ୍ମପାଯେ
ମୁହିଂ ଯାଇଂ କିନା ସ୍ୱାମୀ ଇନ୍ଦ୍ରପ୍ରଶସ୍ତ ଯାଯେ ।୧୫।
ଯୁଝେଷ୍ଟି ବୋଇଲେ ହୋ ଦଣ୍ଡ ଘେନିଗଲେ
ମାନଗୋବିନ୍ଦ କୋପ କରିବନା ପରଥାଠ ଦେଖିଲେ ।୧୬।
ସହୋଦ୍ରଂକ ନିମନ୍ତେ କାଳକ ବୁଲିଲି ଘୋର ବନେ
ଆବର କିମ୍ପେ ଧର୍ମ ଲଂଘିବି ଅଳପ ଯେ ଦିନେ ।୧୭।
ଶାନ୍ତି ସମାର୍ଜନେ ଆମ୍ଭେ ନ କରିବା କଳି
ଅଷ୍ଟ ଅବଧାନେ ଯେ ଶତ୍ରୁକୁ ସମ୍ଭାଳି ।୧୮।
ବିରାଟ ଶ୍ରୀଖଣ୍ଡୀ ଯେ ବାହୁଡ଼ିଲେ ସନ୍ୟ ଘେନି
ତହୁଂ ସେ ପାଣ୍ଡବେ ଚଳିଲେ ଦିବସ ରଜନୀ ।୧୯।
ପଞ୍ଚତିରିଶ ଦିବସେ ପ୍ରବେଶ ଇନ୍ଦ୍ରପ୍ରଶସ୍ତେ
ନଗ୍ର ଭିତରେ ଯାଇ ରହିଲେ ପଞ୍ଚ ଭ୍ରାଥେ ।୨୦।
ଭୀମସେନ ବୋଇଲା ଦେବ ଯିବାନା ଆସ୍ଥାନକୁ
ଦେଖିବା ନାହିଂକି ଦ୍ରିଯୋଧନ ଧୁଶାସନ ଭୀଷ୍ମ ଦ୍ରୋଣ କର୍ଣ୍ଣଂକୁ ।୨୧।
ଯୁଝେଷ୍ଟି ଦେବେ ବୋଇଲେ ଜାଣିମା ତଦନ୍ତ
ବାରତା ପାଇ ମାନଗୋବିନ୍ଦ ନିଅଇ କିନା ଆମ୍ଭନ୍ତ ।୨୨।
ବିଜୟେ ମାନଗୋବିନ୍ଦ ସମ୍ଭର୍ବ ଆସ୍ଥାନେ
ବାରତା ଜଣାଇଲେ ଯାଇଂ ଦେଶାଉରମାନେ ।୨୩।
ସ୍ୱାମୀ ପାଣ୍ଡବ ଆଗତ ବୋଲି ଜଣାଇଲେ ହରଷେ
ଇନ୍ଦ୍ରପ୍ରଶସ୍ତ ରାଜ୍ୟେ ଆସି ହୋଇଲେ ପରବେଶେ ।୨୪।
ଚାରଗଣ ମୁଖଂ ଯେସନକ ବାକ୍ୟ ଶୁଣି
ଶକୁନି ପ୍ରତିବାକ୍ୟ ଦିଅଇ ହାଦେ ପୁଣି ।୨୫।
ପାଣ୍ଡବେ ଯେବେ ପ୍ରବେଶ ହୋଇଲେ ଇନ୍ଦ୍ରପ୍ରଶସ୍ତେ
ରଥ ଗଜ ଅଶ୍ୱ ପାଦାନ୍ତି ଅଛନ୍ତି ସଙ୍ଗେ କେତେ ।୨୬।
ଡଗର ପ୍ରତିବାକ୍ୟ ଦେବ ସାବଧାନ ଭବତୁ
ବିରାଟ ଦଣ୍ଡ ଘେନି ବାହୁଡ଼ି ଗଲା ଧର୍ମପଥୁଂ ।୨୭।
ପାଣ୍ଡବ ପାଞ୍ଚଜଣ କୁମାର ଅଭିମନ୍ୟୁ
ପାଞ୍ଚାଳ କୁମାର ତୁଳେ ବାଳୁତ ଯେ ତନୁ ।୨୮।
ଦ୍ରୌପତୀ ସୁଭଦ୍ରା ଯେ ଆବର ଉତ୍ତରାବାଳୀ
ଯେତେକ ତୁଲେ ଦେଖିଲୁ ଆନ ନାହିଂ ଅଗୁଳି ।୨୯।
ସଞ୍ଜୟେ କହିଲେ ଧୃତରାଷ୍ଟ୍ରଂକ ଆଗରେ
ପାଣ୍ଡବେ ପ୍ରବେଶ ହୋଇଲେ ଇନ୍ଦ୍ରପ୍ରଶସ୍ତ ନବରେ ।୩୦।
ଧୃତରାଷ୍ଟ ବୋଇଲେ ହୋ କରିବା କେମନ୍ତ

ଭୋ ଦଈବ ପୁରୁଷ ମୋତେ ହୋଇବା ଉପଗତ ।୩୧।
ଦ୍ରିଯୋଧନ କଣ୍ଠେ ବିଜେକରୁ କିନା ସରସ୍ୱତୀ
ପାଣ୍ଡବେ କୌରବେ ଯେହ୍ନେ ହୋଅନ୍ତି ପୀରତି ।୩୨।
ସଞ୍ଜୟେ ବୋଇଲେ ରଜା ନ କର ବିଳାପ
ଧର୍ମ ଅବଶେଷେ ଆସି ବର୍ଦ୍ଧିତ ହୋଇଲା କି ପାପ ।୩୩।
ଯୁଧେଷ୍ଟି ହୃଦଗତେ ନାହିଂନା ଅନୀତି
ସର୍ବେ ମନ୍ଦ ଅଟନ୍ତି ନା ତୋହୋର ସନ୍ତତି ।୩୪।
ଯୁଧେଷ୍ଟି ହୃଦଗତେ ଯେବେ ଭାବିବ ଅନୀତି
ଆବର କୁରୁ ପାଣ୍ଡବେ କାହିଂ ଲୋଡୁ ପୀରତି ।୩୫।
ଧୃତରାଷ୍ଟ୍ର ବୋଲନ୍ତି ଶୁଣ ହୋ ସଞ୍ଜୟେ
ମନୁକାଳ ବଞ୍ଚାଇଲେ ବଶିଷ୍ଟଂକ ଶତପୋୟେ ।୩୬।
ବିଶ୍ୱାବସୁ ଗନ୍ଧର୍ବେ ଯେ ପୂର୍ବେ ବସିଥିଲେ ସ୍ୱର୍ଗେ
ଭୁବିଗତ ହୋଇଲେ ସେ ଦୃଭାସାଂକ ରାଗେ ।୩୭।
ମହୀତଳେ ରାଜ୍ୟ ସେ କଲେକ ଯେକମନୁ
କାଳେ ଉତପତ୍ତି ହୋଇଲେ ଶତେ ଅଷ୍ଟଉତ୍ତର ତନୁ ।୩୮।
ଗତ ଶାପ୍ୟ ପାଇଂ ସେ ଦୃଭାସାଂକୁ ତପ କଲେ
ପିତାକଇଂ ଘେନିଣ ସେ ସ୍ୱର୍ଗରେ ବସିଲେ ।୩୯।
ଭୋ ସଞ୍ଜୟେ ଯେସନେକ ପାତକ କଲଇ ମୁହିଂ କାହୁଂ
ଅନମିତେ କୋପକଲି ବିଦୁର ପରମାର୍ଥ କହୁଂ କହୁଂ ।୪୦।
ସାଧୁ ସାଧୁ ବିଦୁର ହୋ ତୋହୋର ଜୀବତି
ବୋଇଲୁ କୁଟୁମ୍ବ ବର୍ଦ୍ଧିତେ ତୋତେ ଶୋକ ଅପ୍ରମିତି ।୪୧।
ଶୁଣିଣ କୋପେ ମୁଂ ତୋତେ ପ୍ରହାର କଲଇଂ ପାଦେ
ଯେତେ ବଡ଼ ବଂଶ ମୋର ବୁଡ଼ିଲା ମାନଗୋବିନ୍ଦ ପରସାଦେ ।୪୨।
ସଞ୍ଜୟେ ବୋଇଲା ରାୟେ ବିସ୍ତାର ନ କରନି ଯେହୁ କଥା
ଅପାଦ ଚିନ୍ତିଲେ ମଙ୍ଗଳ ନୋହଇ ସର୍ବସ୍ତା ।୪୩।
ଆପଣେ ଯାହା ଅର୍ଜି ତାହା କର୍ମ ବୋଲି
ଅନୀତି ସଂସାରେ ଯେହା ପ୍ରତକ୍ଷେ ଦେଖିଲି ।୪୪।
ଆହୋ ବଇବସୁତ ମନୁ ପାଣ୍ଡବେ ବିଜେ କରିଅଛନ୍ତି ଇନ୍ଦ୍ରପ୍ରଶସ୍ତେ
ଲକ୍ଷେ ଦ୍ୱିଜ ଘେନିଣ ବିଜେ ଧଉମ୍ୟ ପୁରୋହିତେ ।୪୫।
ଧର୍ମର ନନ୍ଦନ ଯେ ମହାଗୁରୁ ଦେଖି
ଉଠିଲେ ପାଣ୍ଡବେ ବେଗେଂ ଆସ୍ତାନ ଉପେକ୍ଷି ।୪୬।
ପାଦାର୍ଘ୍ୟ ଦେଇଣ ଯେ ଚରଣେ କଲେ ଦିବ୍ୟପୂଜା
ସମସ୍ତ କୁଶଳ ଯେ ପୁଚ୍ଛନ୍ତି ଧର୍ମରାଜା ।୪୭।
କନକ ଉତୁରୀ ପଇତା ଦିଲେକ ନେଇ କନ୍ଧେ
ଯୁଧେଷ୍ଟି ବୋଇଲେ ଦୁର୍ଗତି ବଞ୍ଚିଲୁ ତୋହୋର ପ୍ରସାଦେ ।୪୮।
କନକ ଆସନ ଦିଲେକ ଧର୍ମରାୟେ
ସମସ୍ତ କୁଶଳ ପଚାରନ୍ତି ଧଉମ୍ୟ ଯେ ପଣ୍ଡାୟେ ।୪୯।
ଧଉମ୍ୟ ପୁରୋହିତେ ବୋଇଲେ ପୁଛୁଂ ଆମ୍ଭେ ତୁକୁ
ଭାଇନ୍ତ ଘେନି ଯିବୁନା ହସ୍ତିନା ସଭାକୁ ।୫୦।
ଯୁଧେଷ୍ଟି ଦେବେ ବୋଇଲେ ଯେ କଥା ନ ମିଳଇ ଯୁଗତେ
ମୁହିଂ ଅନେକ ଦୁର୍ଗତି ବଞ୍ଚିଲି ବନସ୍ତେ ।୫୧।
ସେ ମୋହୋର ସୋଦର କରିବା ମୋତେ ଚିନ୍ତା
ବାରତା ପାଇ ମାନଗୋବିନ୍ଦ ଯେବେ ଆମ୍ଭ ନିଅନ୍ତା ।୫୨।
ତେବେ ସେ ଜାଣନ୍ତି ନା ତାହାର ନିକଳଂକ ହିୟା
ପାପ ବୁଦ୍ଧି ଆଚରଣ କଲାକ କୁରୁନାହା ।୫୩।
ଅପୋଷକ ସୋଦର ଅଭଗତ ବାଳ
ଅନାଚାରୀ ଭାରିଯା ପାପକ୍ଷୟ କାଳ ।୫୪।
ଅଭାବୀ ମଇତ୍ର କଳହକାରୀ ସୂପକାର
ବିବାଦୀ ବଇରି ଭୂମି ଅସହର ।୫୫।
କାଳରୁଦ୍ର ଦେବତା ତୀର୍ଥ ଅସୁରଭୋଗୀ
ପଣ୍ଡିତ ଲୋକେ ଯେହା ଦୂରହୁଂ ପରିତ୍ୟାଗି ।୫୬।
ପୁରୋହିତେ ବୋଇଲେ ପଣ୍ଡୁ ଧୃତରାଷ୍ଟ
ଯେକ ପିତାଉଂ ଜନମ ସୋଦର ତୁମ୍ଭେ ବେନି ଅଟ ।୫୭।
ନୀର କ୍ଷୀର ଯେହ୍ନେ ହୋଅଇ ଯେ ଅଭେଦ
ପରମେଷ୍ଟି ପାରିଲେ ଯେହା ହୋଇ ନା ପରମାଦ ।୫୮।
ବିଶେଷେ କନିଷ୍ଠ ସେ ଆବର ବୟସେ ମତ୍ତଗର୍ବ
ତାହାର ଯେତେକ ଦୋଷ ଉପେକ୍ଷା କରିବାକୁ ସର୍ବ ।୫୯।
ଯୁଧେଷ୍ଟି ବୋଇଲେ ତାତ ସେ ସହୋଦ୍ର ପୋଡୁ ପୋଡୁ
ଭୁଞ୍ଜାଇ ବସାଇ ଭୀମାକୁ ଖୁଆଇଲେ ବିଷଲଡୁ ।୬୦।
ଭୋଜନ ଶେଷେ ବିଷ ଘାରିଲା ଯେତେବେଳେ
ରାତ୍ରକାଳେ ବାନ୍ଧିକରି ମେଲିଲେ ଅଗାଦ ଜଳେ ।୬୧।
ଜଦୁର ଘରେ ଭିଆଇଲେ ବାରୁଣାବନ୍ତେ କୂଟେ
ଜଉ ସଜଳସ ଗୁଆଘୃତ ଆବର ଛଣପଟେ ।୬୨।
ନିଶାକାଳେ ପୁଣି ସେ ଦିଲେକ ଘରପୋଡ଼ି
ଧର୍ମର ବଳେ ସିନା ଗଲୁ ତହୁଂ ସେ ଉବୁରି ।୬୩।
ପୁଣି କପଟ ପାଶାୟେ ଭିଆଇଲେ ମହାମନ୍ତ୍ରୀ ଶକୁନି
କୂଟ ଉପାୟେ କରି ସେ ମୋହୋର ସମସ୍ତ ରାଜ୍ୟଭାର ଘେନି ।୬୪।
ଆପଣେ ଆସ୍ତାନେ ବସି ଆମ୍ଭନ୍ତ ବସାଇଲେ ସଭାତଳେ
ଧୁଶାସନ ଧରିଅଛି ଦ୍ରୌପଦୀର ବାଳେ ।୬୫।

ଆବର ଧରିଣ ବିବସନ କଲେ ସତୀ
ଧର୍ମର ବଳେ ସେ ଉବୁରିଲା ଦ୍ରୌପଦୀ ।୬୬।
ଘୋଷଯାତ୍ରା କାଳେ ଯେ କଇମେକ ନାମେ ବନେ
ଅତିହିଂ ଝିଂଘାସ ସହି ନୁଆରିଲେ ଦେବଗଣେ ।୬୭।
ଚିତ୍ରସେନ ଗନ୍ଧର୍ବ ଦ୍ରିଯୋଧନକୁ ବାନ୍ଧିନେଲା ରାଗେ
ସେ ଗନ୍ଧର୍ବକୁ ଜିଣିଲା ଅର୍ଜୁନ ରଣରଙ୍ଗେ ।୬୮।
ପଞ୍ଚାଳ କଟକେ ଯାଇଂ କଲେକ ଯେବଣହିଂ କଥା
ତୁମ୍ଭେ କି ପାଇ ଅଛନା ତହିଂର ବାରତା ।୬୯।
ବନସ୍ଥୁଂ ଦ୍ରୌପଦୀଂକି ହରି ନେଉଥିଲା ବେଳେ
କେତେହେଂ ଦୁରାପଦ ଯେ ସହିବା ସର୍ବକାଳେ ।୭୦।
ବିପରି ପଡ଼ଇ ସେ ଧର୍ମକଥା କହୁଂ କହୁଂ
ବେଦ ଶାହାସ୍ତ୍ର ଆବର ସତ ହୋଇଅଛି କାହୁଂ ।୭୧।
ରାଜକୁଳେ ଜାତ ହୋଇ ମୋହୋର ଯେହେନେକ ଅବସ୍ତା
କୁରୁ ପାଣ୍ଡବେ ପୀରତି ଆଉ ନୋହିବ ସର୍ବସ୍ତା ।୭୨।
ଆଦିତ୍ୟ ଦେବତା ଯେବେ ପଛିମେ ହୋଇ ଉଦେ
ପୂର୍ବେ ଅସ୍ତ ଯେବେ ନୋହିବେ ଅବଦେ ।୭୩।
ଚନ୍ଦ୍ର ନଷ୍ଟ ଯେବେ ହୋଇବେ ପଉର୍ଣ୍ଣମୀ
ଜଳ ପ୍ରଳୟ ଯେବେ ନାଶିବ ସର୍ବଭୂମି ।୭୪।
ଧାତୁବାଦ ପୁରୁଷ ଯେବେ ନ କରିବେକ ବୃଷ୍ଟି
ପର୍ବତ ଉପରେ ଯେବେ ନଳିନୀଦଳ ଫୁଟି ।୭୫।
ଜଳ ଭିତରେ ଯେବେ ଉପୁଚିଆଇବ ଶିଳ
ସୋଲ ଭେଳା ଯେବେ ବୁଡ଼ିବାକ ଜଳ ।୭୬।
ସ୍ତୀରୀ ହୋଇବ ପୁରୁଷ ଦିବସ ହୋଇବ ରାତି
ଜଳ ଯେବେ ତପତ ହୋଇବ ଶୀତଳ ହୋଇବ ବହ୍ନି ।୭୭।
ଆହୋ ପ୍ରୋହିତେ ହଟକର୍ମ ପୁରାଣେ ଯେହା ଅଷ୍ଟାବକ୍ର ମୁନି କହି
ଯେତେ ବାଗେ ହୋଇଲେ ଯୁଝେଷ୍ଟି ଦେବ ଯେହା କି ସହଇ ।୭୮।
ମୋହୋର ବେଳେ ଯେବେ ଯେହା ମୁଂ ସହି ପାରଇ
ନିରଞ୍ଜନ ଦେବତା ଥାଇରେ ବିଷ ମୁଂ ଭରଇ ।୭୯।
ଶିବଦ୍ରୋହ କରଇ ଅଲଂଘିତ ନିୟମ
ନିଚୟେ ସଂକଳ୍ପ ମୋହୋର ହୋଇଲା ସଂଗ୍ରାମ ।୮୦।
ପୁରୋହିତେ ବୋଇଲେ କାଳଭ୍ରଷ୍ଟ ହୋଇଲା
ସହଦେବ ବୋଇଲେ ପ୍ରୋହିତେ କଳି ପ୍ରବର୍ତ୍ତିଲା ।୮୧।
ଯୁଝେଷ୍ଟି ଦେବେ ବୋଇଲେ ଶୁଣିମା ପ୍ରୋହିତେ
ହସ୍ତିନା ଯିବ ତୁମ୍ଭେ ଆମ୍ଭର ନିମନ୍ତେ ।୮୨।
ସମ୍ପଦ ମୋର ମାଡ଼ି ବସିଲା କୁରୁପତି
ଅବିଚାର ପୁରୁଷେ ମୋତେ କରାଇଲେ ଅପ୍ରୀତି ।୮୩।
ଧୃତିରାଷ୍ଟ ଅଗ୍ରତେ କହିବ ତୁମ୍ଭେ ଯାଇଂ
ଇନ୍ଦ୍ରପ୍ରଶସ୍ତ ରାଜ୍ୟ ଖଣ୍ଡି ମୋତେ ଦେଉ କୁରୁସାଇଂ ।୮୪।
ତୁମ୍ଭେ ତ ପୁରୋହିତେ ମୋର ବଂଶର ପରମ ଗୁରୁ
ମଣାଇଂ କହିବ ମୋତେ ଧୃତରାଷ୍ଟ୍ର ଦୟାକରୁ ।୮୫।
ପୁରୋହିତେ ବୋଇଲେ ଆମ୍ଭେ ଯିବୁଂ ତୋହୋର ବୋଲେ
କିସ ଉତ୍ତର କରିବୁଂ ଆମ୍ଭେ ମାନଗୋବିନ୍ଦ ନାସ୍ତିକଲେ ।୮୬।
ଯୁଝେଷ୍ଟି ବୋଇଲେ ତୁମ୍ଭେ କରିବଟି କିସ
ସେ ନାସ୍ତି ବୋଇଲେ ତୁମ୍ଭେ ବାହୁଡ଼ିଣ ଆସ ।୮୭।
ବିଜେ କର୍ଣ୍ଣ କୁଣ୍ଡଳ ମେରୁଶୃଙ୍ଗ ଦିଲା ମୁକୁ
ଯେ ଅପୂର୍ବ ପଦାର୍ଥ ନେଇ ଦିଅ ଧୃତରାଷ୍ଟ୍ରଂକୁ ।୮୮।
ଯୁଝେଷ୍ଟି ଦେବଂକ ନିରାଧାର ବାକ୍ୟ ଶୁଣି
ଚଳିଲେ ପୁରୋହିତେ ଯେ ଦୂତକାର ଜାଣି ।୮୯।
ତୁଳେଣ ଘେନିଲେ ତାଂକର ଲକ୍ଷେକ ବାଳଶିଷି
ହସ୍ତିନା ରାଜ୍ୟେ ପୁରୋହିତେ ପ୍ରବେଶ ହୋଇଲେ ଆସି ।୯୦।
ଦ୍ରିଯୋଧନ ବିଜେ କରିଛି ଯମ ଯେ ପ୍ରଶସ୍ତେ
କର୍ଣ୍ଣ ଶଂକୁନି ଧୁଶାସନ ଶଲ୍ୟ ଯେ ସହିତେ ।୯୧।
ପୁରୋହିତେ ପ୍ରବେଶ ଯାଇଂ ହୋଇଲେ ସନ୍ନିଧାନେ
ଦୂରୁଂ ଦେଖି ଶଂକୁନି କହିଲା ବିଦ୍ୟମାନେ ।୯୨।
ବୋଇଲା ଧଉମ୍ୟ ପୁରୋହିତେ ଆସୁଛନ୍ତି ଯହିଂକି
କେ କେମନ୍ତ ଯେହା ଯେ ବିଚାରନି ଦେଖି ।୯୩।
କର୍ଣ୍ଣ ବୋଇଲା ତୁ ସେ ପଣ୍ଡିତ ମହାଗ୍ୟାଂତା
ଶୂରବନ୍ତ ପୁରୁଷ ତୁ ଭୂତ ଭବିଷ୍ୟ ଜାଣନ୍ତା ।୯୪।
କର୍ଣ୍ଣ ବୋଇଲା ତୁ ସେ ମନ୍ତ୍ରୀ ଚୂଡ଼ାମଣି
ମାନଗୋବିନ୍ଦେ ତୁ ସମ୍ପଦ ଭୋଗ୍ୟ କରାଇଲୁ ଆଣି ।୯୫।
ପାଣ୍ଡବଂକ ଦର୍ପ ମର୍ଦ୍ଦିଲୁ ତୋହୋର ବୁଦ୍ଧିବଳେ
ପଞ୍ଚୁରାଜ୍ୟ ଭୋଗ୍ୟ କରାଇଲୁ କୁତୂହୋଳେ ।୯୬।
ଆହୋ ଅଗୋଚର ଗୋଚର ତୁ ଭବିଷ୍ୟତ ଗ୍ୟାଂତା
ଅଦୃଶ୍ୟ ଦୃଶ୍ୟହିଂ ସେ କଥା ବିଚାରନ୍ତା ।୯୭।
ଶଂକୁନି ବୋଇଲା ତୁ ବୁଝ ଉପନେସି
ଦୂତକାର ପଣେ ଯେହାନ୍ତ ଯୁଝେଷ୍ଟି ଦିଲେ ପେଷି ।୯୮।
ଯେହିକଥା ପ୍ରମାଣ ହୋଇବନା ଯୁଗତେ
ଏଥେ ପୁଣ ଆସିଅଛନ୍ତି ଗ୍ରାମ ମାଗିବା ନିମନ୍ତେ ।୯୯।

ଯେସନେକ କହିଲା ଶଂକୁନି ଭୂତ ଭବିଷ୍ୟ ସନ୍ଦେଶ
ଧଉମ୍ୟ ପୁରୋହିତ ଆସି ଯେ ହୋଇଲେ ପ୍ରବେଶ ।୧୦୦।
ଆସନ ସମାର୍ଜନ ଯେ କଲାକୁ କୁରୁରାଯେ
ଅତି ଆନନ୍ଦେ ପ୍ରଳମ୍ଭ ସକଳ ସନ୍ଦେହେ ।୧୦୧।
କୁଶଳ ବାରତା ଯେ ପୁଛାକଲେ ଧଉମ୍ୟେ
ଆରୋଗ୍ୟ ନିରାପଦ ହୋଇ ବ୍ରତିଅଛନା ସର୍ବକ୍ଷମେ ।୧୦୨।
ସମସ୍ତ କୁଶଳ ବୋଲି ଯେ ବୋଇଲେ କଉରବେ
ତୁମ୍ଭେ ଯେବେ ଗବନ କଲ କେଉଂଣ ପରସ୍ତାବେ ।୧୦୩।
ଧଉମ୍ୟ ପୁରୋହିତେ ବୋଇଲେ ତୁମ୍ଭେ ଶୁଣିମା ଧାର୍ମିକ ଧୃତିରାଷ୍ଟି
ବନବାସ ଦୁର୍ଗତିରୁ ପାରହୋଇ ଯେବେ ଅଇଲେ ଯୁଝେଷ୍ଟି ।୧୦୪।
ଆହୋ ବାହାର ନଗ୍ରରେ ଆସି ରହିଛନ୍ତି ଇନ୍ଦ୍ର ଯେ ପ୍ରଶସ୍ତେ
ତୋହୋର ତାହାନ୍ତ ଶଂଖୋଳିବା ଯୋଗାଇ ଯୁଗତେ ।୧୦୫।
ବାବୁ ତୋହୋର ରାଜ୍ୟ ଦେଶ ନୋହିବ କି ଇନ୍ଦ୍ର ଯେ ପ୍ରଶସ୍ତ
ନଗ୍ର ଭ୍ରମଣି କରିଗଲେ ପାଣ୍ଡବେ ହୋଇବେ ଉଷତ ।୧୦୬।
ବାବୁ ଅମୃତ ବିଷ ଥାଇଟି ଯେହି ଜିଭ୍ୟା
ସଦବୁଦ୍ଧି ଥାଉଂ ଥାଉଂ ଅସଦ ବୁଦ୍ଧି କେମନ୍ତେ ଦେବା ।୧୦୭।
ବାବୁ ଧର୍ମେ ଆଶ୍ରେ କରିଥିଲେ ହୋ ମାନଗୋବିନ୍ଦ
କଦାଚିତ୍ତେ ପ୍ରାଣୀଂକିଟି ନ ପଡ଼ଇ ପ୍ରମାଦ ।୧୦୮।
ବାବୁ ସହୋଦ୍ର ସମ୍ଭାଳିଲେ ବହୁତ ହୋଅଇ ଧର୍ମ
ସମସ୍ତ କାଳକୁ କଥା ଥାଇଟି ସତ୍ୟଧର୍ମ ।୧୦୯।
ଉଠ ବାବୁ ଇନ୍ଦ୍ରପ୍ରଶସ୍ତକୁ ବେଗେ ଯିବା
ଗଉରୋବ କରି ପାଣ୍ଡବନ୍ତ ଘେନିଣ ଆସିବା ।୧୧୦।
ବୁବୁ କୁଳରେ ପୁତ୍ରେକ ଉପୁଜିଲେ ବଂଶ କରଇଟି ରକ୍ଷା
ଇହଲୋକେ ପରଲୋକେ ପୂରଇ ମନବାଞ୍ଛା ।୧୧୧।
ବାବୁ ବୋଇଲେ ଯେ ତୁମ୍ଭେ ଆମ୍ଭର ପରମ ଗୁରୁ
ଧର୍ମକୁ ପ୍ରାପତ ହୋଇବୁ ନା ତୁ ଯେବେ ଅନ୍ତର ନ ଧରୁ ।୧୧୨।
ଦ୍ରିଯୋଧନ ବୋଇଲା ପଣ୍ଡାଯେ ରହ ରହ
ପାଇଲୁ ପ୍ରସ୍ତାବ ତୁମ୍ଭେ କିଛିହିଂ ନ କହ ।୧୧୩।
ତୁମ୍ଭନ୍ତ ପେଷିଲା ଯେ ଯହିଂର ନିମନ୍ତେ
ତାହା ନିର୍ଯ୍ୟାପ କରି କିମ୍ପେ ନ କହଟି ମୋତେ ।୧୧୪।
ପୁରୋହିତେ ବୋଇଲେ ତୁମ୍ଭେ ସର୍ବଗୁଣ ଲକ୍ଷଣ
ପରମନ ଜାଣନ୍ତା ତୁମ୍ଭେ ଅତି ବିଚକ୍ଷଣ ।୧୧୫।
ଯେବେ ତାହାନ୍ତ ତୁ ନଗଲୁ ପାଛୋଟି
ଆପଣା କର୍ମକୁ ସନ୍ତାପିଲା ସେ ଯୁଝେଷ୍ଟି ।୧୧୬।
ଅପାର ପୁରସରି ବୋଇଲା ଆମ୍ଭଙ୍କୁ
ଇନ୍ଦ୍ରପ୍ରଶସ୍ତ ପଡ଼ାଖଣ୍ଡି ଦେବ କି ତାହାକୁ ।୧୧୭।
ଯେକ ପତାକେ ସେ ଥାନ୍ତୁ ସକଳ ପ୍ରାଣୀ
ଦ୍ରିଯୋଧନର ମୁକୁଟ କମ୍ପିଲା ତାହା ଶୁଣି ।୧୧୮।
ଆହୋ ପୁରୋହିତେ ତୁମ୍ଭେ କୁଳର ବ୍ରାହ୍ମଣ
ଯେସନ ବାକ୍ୟ କହିବା ତୁମ୍ଭର କେବଣ କାରଣ ।୧୧୯।
ଯେସନେକ ତମ ବସିଲା ମୋର ବକ୍ଷସ୍ଥଳେ
ଆନ ହୋଇଲେ କି ପ୍ରାଣ ଥାଆନ୍ତା ଯେତେବେଳେ ।୧୨୦।
ତୁମ୍ଭେ ଯେ ପୁରୋହିତେ ଦେଖିବା ଅର୍ଥେ ଗଲ
ଓହୋକୁଳ ଅର୍ଥ ତୁମ୍ଭେ ମନାସିବାନା ଭଲ ।୧୨୧।
ପୁରୋହିତେ ବୋଇଲେ ବାବୁ ଯେ ସେ ଭଲ ବିଚାର
ଶୂରବନ୍ତ ଗୁଣବନ୍ତ ଜୀବନ ତୋହୋର ସାର ।୧୨୨।
ବେନି ସୋଦରେ ତୁମ୍ଭେ ଆମ୍ଭର ବୋଲ କଲେ
ବଂଶ ଉଦିତ ହୋଇବ ଦିନ ଯିବ ଭଲେ ।୧୨୩।
ମାନଗୋବିନ୍ଦ ବୋଇଲା ମହତଂକର ବାକ୍ୟ
ସମସ୍ୟାଯେ ଜାଣିଲୁନି ଯେସନେକ ବିବେକ ।୧୨୪।
ଯେକ ପତା ଖଣ୍ଡିଯେ ପାଇଲେ ଯୁଝେଷ୍ଟି
ସକଳ କଥା କୁଶଳ ହୋନ୍ତା ପୁରନ୍ତା ମନତୁଷ୍ଟି ।୧୨୫।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ସମକଛେ
ଆମ୍ଭର ଶୁଭବାକ୍ୟ ସୁମରିବାନା ପଛେ ।୧୨୬।
ଯେତେ ବୋଲି ପୁରୋହିତେ ଓହ୍ଲାଇଲେ ଆସ୍ଥାନୁ
ନାସିକାଯେ ହାଥ ଦେଇ ହସନ୍ତି କୁରୁତନୁ ।୧୨୭।
ଲଜ୍ଜାଭର ହୋଇଣେ ସେ ଚଳିଲେ ପୁରୋହିତେ
ଯାଇଣ ପ୍ରବେଶ ହୋଇଲେ ଇନ୍ଦ୍ର ଯେ ପ୍ରଶସ୍ତେ ।୧୨୮।
ମନରେ ବିରସ ଯେ ହରଷଭାବ ତାଂକ ନାହିଂ
ଯୁଝେଷ୍ଟି ଦେବେ ଜାଣିଲେ ହୃଦରେଣ ଲାଇ ।୧୨୯।
ମନର ବିରସ ଦେଖି ପଚାରନ୍ତି ମହାରାଜେ
ସୁବିଧାନେ ପ୍ରସନ୍ନଗତ ନ ଦିଶି ମୋହୋର କାର୍ଯ୍ୟେ ।୧୩୦।
ମନର ବିରସେ ସେ ବଦନ୍ତି ଦେବ ଧଉମ୍ୟେ
ଯେହ୍ନେ ପ୍ରାପତ ହୋଯେ ଯେ ଯାହାର କର୍ମେ ।୧୩୧।
ଦ୍ୱନ୍ଦେଣ ବଢ଼ିଲା ହୋ ଯାହାର ପ୍ରକୃତି
ସଦା ଗଛଇ କି ତାହାର ମନ ଶାନ୍ତି ।୧୩୨।
ସମସ୍ତ ସଞ୍ଚପି ଯେ କହନ୍ତି ଦେବ ଧଉମ୍ୟେ
କଉରୋବ ପାଣ୍ଡବଂକ କଥା ନୁହଇ ନା ସାମ୍ୟେ ।୧୩୩।

ଦ୍ୱନ୍ଦକୁ ଇଚ୍ଛା ଯେବେ ତୋହୋର ହାଦେ ଅଛି
ଅଷ୍ଟାଙ୍ଗମତେ ଆର ନୋହୋଇବା କିଛି ।୧୩୪।
ଆହୋ ତୁ ଯେବେ ସହିବୁ ବାବୁ ତେବେ ସେ ରହଇ ତୋର ବଂଶ
ତୋହୋର ନ ସହିଲେ ଓହୋକୁଳ ଯିବ ନାଶ ।୧୩୫।
ଯୁଧେଷ୍ଠି ଦେବ ବୋଇଲେ ଯେ ମୋର ଯେକାଦଶ ବରଷ
ପଣ୍ଡୁ ମହାରାୟେ ଯେ ହୋଇଲେ ପ୍ରାଣେ ନାଶ ।୧୩୬।
ଉଣେଇଶ ବରଷ ମୋତେ ଗୁହାଇଲେ ଜତୁଘରେ
ଚହୁଂଣ ଉବୁରିଲୁ ପଞ୍ଚବିଂଶ ବରଷରେ ।୧୩୭।
ପଞ୍ଚବିଂଶ ବରଷରେ ହୋଇଲୁ ବନବାସୀ
ପାଞ୍ଚାଳୀକୁ ଲଭିଲୁ ମହଲାଖ ନାଶି ।୧୩୮।
ତହିଂର ଉତ୍ତାରେ ଯେ ଅଇଲୁ ରାଜ୍ୟକୁ
ପୁଣି ପଶିତ ନ ଦିଲେ ଆମ୍ଭଂକୁ ହସ୍ତିନା ଭୁବନକୁ ।୧୩୯।
ସମୟେକ ରହିଲୁଂ ଆମ୍ଭେ ବାରୁଣାବନ୍ତ ନଗ୍ରରେ
କପଟପାଶ ଭିଆଇଲେ ଘେନିଲେ ରାଜ୍ୟଭାରେ ।୧୪୦।
ପୁଣିହିଂ ଦ୍ୱାଦଶ ବରଷ ବୁଲିଲୁ ଘୋରବନେ
ବରଷେ ତେରଦିନ ଯେ ରହିଲୁ ଗୋପ୍ୟାନେ ।୧୪୧।
ଆହୋ ପୁରୋହିତେ କେତେହେଂ ଦୁଖ ସହିବୁ ସଭାବେ
ପଞ୍ଚସ୍ତୋରୀ ବରଷ ହୋଇଲାନି ବୟସ ମୋତେ ଯେବେ।୧୪୨।
ରାଜାର କୁଳେ ଆମ୍ଭେ ହୋଇଲୁ ଜାୟେ
ଅନର୍ଥ ଦିଶୁଅଛି ଗୁରୁ ମହାଭୟେ ।୧୪୩।
ତୁମ୍ଭେ ମୋତେ ସାଖି ହୋଇଥିବାକ ଦେବ ଧଉମ୍ୟେ
ନିଚୟ ବ୍ରତ ମୋର ହୋଇଲା ସଂଗ୍ରାମେ ।୧୪୪।
ଯେସନକ ବାକ୍ୟେ କହନ୍ତେ ଧର୍ମରାୟେ
ମେରୁ ଓହାତେ ସୂର୍ଯ୍ୟେ କାଳ ହୋୟେ ।୧୪୫।
ସନ୍ଧ୍ୟାକଇଂ ବିଜୟେ କଲେକ ଦେବଧର୍ମେ
ଯେ ଯାହାର ଅନୁରୂପେ ପଶିଲେ ନିଜକର୍ମେ ।୧୪୬।

✱✱

## ୭୩. ଶ୍ରୀକୃଷ୍ଣଙ୍କର ଦୈତ୍ୟ ଓ ବଳିରାଜାର ଉପାଖ୍ୟାନ

ଶୁଣନ୍ତେ ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପ୍ତହୋଇ ସର୍ବ
ଜନହିତେ ମୁଂ ବଖାଣିଲି ଉଦିଯୋଗ ପର୍ବ ।୧
ଦୁଧ ମଧୁ ଶାକର ମିଶ୍ରିତ ପିବନ୍ତେ ଯେହ୍ନେ ରସ
ତହିଂକି ତର୍ଲ୍ଲଭ୍ୟ ନରେ ହୃଦଗତେ ଅଭ୍ୟାସ ।୨
ଯାହା ସେ କହିଲେ ବିଦୁର ମହାତମା
ଧୃତରାଷ୍ଟ୍ରେ ବୋଇଲେ ସାଧୁ ସାଧୁ ତୋ ମହିମାଂ ।୩
ମୁହିଂ ହାଦେ ଜଗନ୍ନାଥଂକୁ ସର୍ବଦା ହୋଇଥାଉ ଭଗତି
କୁପୁତ୍ର ଉପୁଜାଇ ମୁଂ ପାଇଲି ଅଗତି ।୪
ଯେତ ପଣ୍ଡିତ ନାମେ ବିଚାରି ଜାଣେ ସଙ୍ଗତି ସର୍ବ
ସୁରସିଦ୍ଧ ମୁନି ଯେ ଚିନ୍ତନ୍ତି ବାସୁଦେବ ।୫
ସନ୍ନିଧେ ଧୃତିରାଷ୍ଟେ ଶ୍ରୀହରି ଚରଣେ ପରିଣାମି
ଅନୁଗ୍ରହ ନାଥ ସେ ଜାଣଇ ସର୍ବ ସ୍ୱାମୀ ।୬
କୋଟିୟେ ମହିମାଂ ଯାହାର ପ୍ରଳୟାନ୍ତ ଯୋଗଧ୍ୟାନ
କେ ତାହା ଲୟେ କରି ମଣାଇବ ଜନ ।୭
ଧୃତିରାଷ୍ଟ ବୋଇଲେ ତୁ ସର୍ବ ସୋଦର ହରି
କିମର୍ଥେ ନାରାୟଣ ବିଜୟେ ମମ ପୁରୀ ।୮
ଇଦଂବାକ୍ୟ ଯେ ଶ୍ରୀବାସୁଦେବ କଥୋପି
ଯେବେଣ ଅର୍ଥେ ପିତାମହ ଗବନ ଅଦ୍ୟାପି ।୯
ଯୁଧେଷ୍ଠି ଦେବ ଆଦି ତୋହୋର ଅଟନ୍ତି ପଞ୍ଚୁପୁତ୍ର
ଅରଣ୍ୟେ କଷ୍ଟ ସେ ପାଇଲେନି ବହୁତ ।୧୦
କନ୍ଦମୂଳ ଭକ୍ଷିଣ ସେ ମାଗିଲେ କଣଭିକ୍ଷା
ଛତ୍ରୀକୁଳେ ଜନ୍ମ ହୋଇ ଭିକ୍ଷା କଲେ ଦୀକ୍ଷା ।୧୧
ଯାବତ ତୀର୍ଥ ଯେ ଦେଶାନ୍ତର ବୁଲି
ଭିକ୍ଷା ମାଗି ବଞ୍ଚିଲେ ସେ ଧୃତିରାଷ୍ଟ ପୁତ୍ର ବୋଲି ।୧୨
ଯେହା ତୁ ବିଚାର ନକରୁ କିଂପାଇଂ କୁରୁରାଜ
ମୋହୋର ବିଚାରେ ତୋତେ ହୋଇ ବଡ଼ ଲାଜ ।୧୩
ରାଜ ଅଭିଷେକ ସେ ହୋଇଲେ ବିରାଟେ
ବାରୁଣାବନ୍ତେ ଆସି ରହିଲେ ନିକଟେ ।୧୪
ଯହିଂ ସେ ଜନମି ତହିଂ ସେ ଯେ ଭୂମି
ସବ୍ୟହୋଉ କି ଅସବ୍ୟ ହୋଉ ଯାହାର ଯଉଂ ଭୂମି ।୧୫
ଶ୍ରୀବାସୁଦେବ ବଚନେ ଧୃତିରାଷ୍ଟ ପରମ ଶାନ୍ତି
ତୋହୋର ବଚନେ ମୋର ଫିଟିଲା ମନଭ୍ରାନ୍ତି ।୧୬
ଦଧିବାବନ ସୁମରି କାର୍ଯ୍ୟକରି ଅନୁବ୍ରତ
ତୁ ତାହାନ୍ତ ସମାର୍ଜନା କରିଆସ ତାତ ।୧୭
ସନ୍ନିଧେ ବସାଇ କରସି ନିବର୍ତ୍ତ
ପଡ଼ା ପାଞ୍ଚଖଣ୍ଡ ସେ ଦେଉ ନରନାଥ ।୧୮
ଧୃତିରାଷ୍ଟ୍ର ବୋଇଲେ ତୁମ୍ଭେ ଶୁଣିମା ଦେବହରି
ମୁଂ ତାହାନ୍ତ ନୁଆରଇ ସମାଧାନ କରି ।୧୯
ଯୁଧେଷ୍ଠିରଂକ ଚିତ୍ତ ହୋଇଲାନି ବିଚଳିତ
ତାହାନ୍ତ ଆବର କେ କରିବ ସନ୍ଧିଗତ ।୨୦

ପୁଣ ପୁଣ ଧୃତିରାଷ୍ଟ୍ର ବଚନ ନିବର୍ତ୍ତି
ଅପାର ଅନ୍ତର କଥା ହୋଇବ କି ପ୍ରୀତି ।୧୨୧
ଗୋବିନ୍ଦେ ବୋଇଲେ ତାତ ସେ ନଥାନ୍ତି ସନ୍ନିଧାନେ
ଦୂରେହେଂ ଥାଇଣ ସେ ବାସେ କରନ୍ତି ପଞ୍ଚୁଜନେ ।୧୨୨
ଅରଣ୍ୟେ ଥିଲେ ପୁଣ ତାହାଂକର ତୋତେ ଚିନ୍ତା
ତୁହି ସେ ହୋଇଲୁ ତାହାଂକର ଈଶ୍ୱର ଦେବତା ।୧୨୩
ଭାଗ୍ୟବନ୍ତ ପୁରୁଷେ ଯେହ୍ନେ ଈଶ୍ୱରେ ନ ଦେଖିଲେ
ପାଣ୍ଡବେ ନ ବ୍ରତନ୍ତି ତେହ୍ନେ ତୋତେ ଆର୍ଥନା ନ କଲେ ।୧୨୪
ତୋହୋର ପୋଷିବା ଯେବେ ତାହାଂକୁ ଯୋଗାଇ
ପଡ଼ା ପାଞ୍ଚଖଣ୍ଡ ହାଦେ ଦେବୁ ଯେ ତାହାଂକୁଇ ।୧୨୫
ଲକ୍ଷେ ଯୋଜନରେ ତୁହି ସେ ଅଟୁ ଅଧିକାରୀ
କିଞ୍ଚିତ କରି ପଡ଼ା ପାଞ୍ଚଖଣ୍ଡି ଦିଅ ସେ କୋଣକେ ଥାନ୍ତୁ ପଡ଼ି।୧୨୬
ଧୃତିରାଷ୍ଟ୍ରେ ବୋଇଲେ ଯେ ବେଭାର ଯୁଗତେ
ଯେ ତୋହୋର ବିଚାର କି ଯୁଝେଷ୍ଟି ବୋଇଲା ତୋତେ ।୧୨୭
ତୁ ଯେବେ ବିଚାର ଯେହା କଲୁ ହୋ ଦେବରାୟେ
ସେହି ବାଗେ ଥିବେ ସେ ପଣ୍ଡୁର ପାଞ୍ଚପୋୟେ ।୧୨୮
ସନ୍ନିଧେଣ ଥିଲେ ସେ ନୋହଇ ପୀରତି
ପଡ଼ା ପାଞ୍ଚଖଣ୍ଡି ମାଗ ହୋ ଶ୍ରୀପତି ।୧୨୯
ଧୃତିରାଷ୍ଟ ବୋଇଲେ ହରି ସଭାକଇଂ ବିଜେକର
ଶାନ୍ତିପ୍ରାୟେ କରି କହ ଦ୍ରିଯୋଧନର ଆଗର ।୧୩୦
ହରି ତୋହୋର ମଧ୍ୟସ୍ଥପଣେ ମୁହିଂ ନିସ୍ତରିଲି ନିସ୍ତରିଲି
ସାନନ୍ଦ ଭଜିଣ ପରମଗତି ଯେ ଲଭିଲି ।୧୩୧
ଗାନ୍ଧାରୀ ବୋଇଲା ଶୁଣ ହୋ ବାସୁଦେବ
କଉତୁକ ଉପୁଜାଇ କଥା କରିବ ପ୍ରସ୍ତାବ ।୧୩୨
ଯଦି ଓହୋକୁଳ ଆସି ଅଛୁନି କରି ରକ୍ଷା
ଯଦି ତୋର ସୋମବଂଶ ଉଦିତ କରିବାକୁ ବାଞ୍ଛା ।୧୩୩
ସମରାଜ୍ୟଗୋଟି ଅଛି ମାନଚକ୍ରବ୍ରତୀ
ବଡ଼ ଗ୍ରାମ ମାଗିଲେ ହରି ଉପୁଜିବଟି ଅପ୍ରୀତି ।୧୩୪
ତୁହିତ ଜଗତମୋହନ ସ୍ୱାମୀ ସଂସାରହିଁ ପାରୁ ଭଣ୍ଡି
କଣକଚ୍ଛ କରି ମାଗ ପଡ଼ା ପାଞ୍ଚଖଣ୍ଡି ।୧୩୫
ହରି ଆବର କଥାଏ ତୋତେ ମୁଂ କହଇ ବିନୟ ଭାବେ
ସଭାରେ ପଡ଼ା ଦୁଇଖଣ୍ଡି ଆହୋ ମାଗ ହୋ ବାସୁଦେବେ ।୧୩୬
ପଡ଼ା ବେନିଖଣ୍ଡ ପାଇଲେ କରି ପାରିନା ସର୍ବ ବୁଦ୍ଧି
ପୁଣି ଅବନ୍ଦେକ ପଡ଼ାୟେ ମାଗୁ କିନା ଗୋବିନ୍ଦି ।୧୩୭
ଗୋବିନ୍ଦେ ବୋଇଲେ ମାଗୋ ତୁ ତିନି ଭୁବନକୁ ଅନାଦି ଅପର୍ଣ୍ଣା
ଯେ ତୋହୋର ଆଗ୍ୟାଂ ମୋତେ ପାଷାଣ ଗାର ସିନା ।୧୩୮
ଯୁଝେଷ୍ଟି ଭୀମା ହାଦେ ତ୍ରିପୁତି ହୋଇଥିଲେ
ଆଉମାନେ ଶାନ୍ତି ହୋଇବେଟି ମୋହୋର ବୋଲେ ।୧୩୯
ଗାନ୍ଧାରୀ ବୋଇଲେ ତୁ ଶୁଣ ଗୁଣସାଗର ଦେବରାଜ
ମୂର୍ଖନ୍ତ ସମାଦି ନାଥ ଘେନିମାକ କାର୍ଯ୍ୟ ।୧୪୦
ଗାନ୍ଧାରୀ ଧୃତିରାଷ୍ଟ୍ର ଯେ ବିନୋୟୀ ବାସୁଦେବଂକ ପୟରେ
ଦଣ୍ଡ ପ୍ରଲମ୍ବିତ ହୋଇଲେ ସଂଜୟେ ବିଦୁରେ ।୧୪୧
ସ୍ୱାମୀ ଯେବେ ବିବାଦ ପଡ଼ିଲା ବେନିକୁଳେ
ତୁ ଯେହା ସମାର୍ଜନା କରିବୁ ନା ଯେତେବେଳେ ।୧୪୨
ସବୁନ୍ତି ସମାଦି ଯେ ଦେବାଧି ଦେବରାଜେ
ହସ୍ତିନା ସଭାକଇଂ ନାରାୟଣ କଲେ ବିଜେ ।୧୪୩
ମହା ସମ୍ଭର୍ବେ ଆସ୍ଥାନେ ବିଜେ ମାନଚକ୍ରବ୍ରତୀ
ଭୀଷ୍ମ ଦ୍ରୋଣ ଭୂରିସର୍ବା ଶଲ୍ୟ ବାଲ୍‌ହୀକ ମହାରଥୀ ।୧୪୪
ସୋମଦତ୍ତ କର୍ଣ୍ଣ ବିକର୍ଣ୍ଣ ଅଶତ୍ଥମା ଜଦ୍ୟରଥ
ବିଦୁର କୃତବର୍ମା ଅଳମ୍ବୁଷ ଆବର ସୁରଥ ।୧୪୫
ଆସ୍ଥାନେ ରାଜା ସନ୍ନିଧେ ବିଜୟେ ଶକୁନି
ରାଜ୍ୟ ସମାର୍ଜଇ ଭୂତ ଭବିଷ୍ୟ ପୋଥି ଘେନି ।୧୪୬
ଶତେପଦ୍ମ ମୁକୁଟ ବନ୍ଧା ଯୋଦ୍ଧା ଅଛନ୍ତି ପଟୋଆରୀ
ନବଶତ ପାରିଦଣ୍ଡ ରାଜାକୁ ଅଛନ୍ତି ଉଭାରି ।୧୪୭
ବିଜୟେ ବୀରତୁର ନବଲକ୍ଷ ସାଜି
ବିହଡନ୍ତି ରାଉତେ ଯେ ପବନ୍ନୁ ବେଗତେଜି ।୧୪୮
ଲକ୍ଷେକ ପାଟଛତ୍ର ଉଭାରନ୍ତି ବେନିପାଖେ
ବେନିଲକ୍ଷ ଆଳମ୍ବ ଉଦଣ୍ଡ ବେନିଲକ୍ଷେ ।୧୪୯
ପାଞ୍ଚଲକ୍ଷ ଯେକଲକ୍ଷି ବିମଳମାନ ଲକ୍ଷେ
ସୁର ଇନ୍ଦ୍ର ପ୍ରାୟେକ ରାଜା ବିଜୟେ ପ୍ରତକ୍ଷେ ।୧୫୦
ମଜୁର ଝାଳି ଛତ୍ର ପାଞ୍ଚ ଅହିବ୍ରତ
ବିଳମ୍ବ ପାଟଛତ୍ର କେ ପାରିବ ଲେଖିତ ।୧୫୧
ଲକ୍ଷେକ ଆଳଟ ଯେ ଆଗରେ ପଡଇ
ସୁବର୍ଣ୍ଣବନ୍ଧା ଶଙ୍ଖ ଲକ୍ଷେକ ଫୁରଇ ।୧୫୨
ଢୋଲ ଟମକ ଦମାଲୁ ନିଶାଣ ମହୁରୀ ନାଦେ
ଯେତେକ ବାଦ୍ୟ ଯେ ବାଜନ୍ତି ସମସ୍ତ ଭେରୀ ବାଦ୍ୟେ ।୧୫୩
ଯେକାଦଶ କ୍ଷଉଣୀ ସଇନି ଅଛନ୍ତି ପଟୋଆରୀ
ଦମା ଦୁନ୍ଦୁଭି ମହୁରୀ କାହାଳୀ ବାଜଇ ଲକ୍ଷଚାରି ।୧୫୪
ଧୃଶାସନ ଦୁର୍ଜୟ ଦୁରନ୍ତ ଦୁରାକର୍ଣ୍ଣ
ଦୁର୍ବୀଳ ଦୁକର୍ଣ୍ଣ ଦୁଭାର୍ଷ ଦୁରାଶନ ଦୁର୍ଜନ ।୧୫୫

ଦୁର୍ମଚି ଦୁର୍ବିନ୍ଦ ଦୁର୍ଦଣ୍ଡ ଦୁର୍ଭାବ ଦୁର୍ମନ
ଦୁରାନନ ଦୁରାମ ଦୁର୍ମଦ ଦୁର୍ଭାନୁ ଦୁଷଣ ।୫୬
ଦୁରାନ୍ତକ ଦୁର୍ଦ୍ଧଷ ଦୁଷନ୍ତେକ ଦୁଷ୍ଟଂକ
ଦୁରାୟନ ଦୁର୍ମର୍ଷଣ ଦୁର୍ଦ୍ଧଂସ ଦୁରକ୍ଷକ ।୫୭
ଯେ ବିଧିରେ ମାନଗୋବିନ୍ଦର ଶତେଭ୍ରାଥ ହୋଯେ
ଦୃଷ୍ଟାସାଂକ ମନ୍ତେ ଜାତ ଦୁର୍ନାମ ଅଟନ୍ତି ସଭିହେଂ ।୫୮
କରେଣ ଗଦା ମୁଦ୍‌ଗର ଶକ୍ତି କୁନ୍ତ ଜାଠି କାତି
ବିଜ୍ଜେକର୍ଣ୍ଣକଟାରୀ ଭାଲ ଲାଂକିଆ ଝଲକନ୍ତି ।୫୯
କୁଠାର ତୋମର ଖଡଗ ପୁଣି ତୀକ୍ଷମୁନା
ଗୁରୁଜ ଶାବେଲୀ କୃପାଣ ବଜ୍ରସେନହା ।୬୦
ବାଜୀ ବାରଣ ଆସ୍ଥାନ ତଳେଣ ଆବୋରି
କରନ୍ତି ନିଶୋଧନ କରେଣ ଶସ୍ତ୍ର ଧରି ।୬୧
ନିରସ୍ତକ ଆସ୍ଥାନେ ସମ୍ଭର୍ବେ ବିଜୟେ କଉରୋବେ
ବିଦୁର ସଞ୍ଜୟ ମଧ୍ୟେଣ ବିଜୟେ ବାସୁଦେବେ ।୬୨
ଶିରରେ ଲମ୍ବିତ ଜୁଡ଼ ଯେ ତ୍ରିକଛ ବସନ
ଶ୍ରୀକରେଣ ଦ୍ୱାଦଶଚିତ କୃଶବଟୁ ଶ୍ରୀବସ୍ତଲାଞ୍ଛନ ।୬୩
ନବଗୁଣ ପଇତା ଯେ ସୁସଞ୍ଚ ଉତ୍ତୁରୀ
କଣ୍ଠେଣ ତୁଳସୀମାଳ କରେଣ ଜପାମାଳୀ ।୬୪
ଜଳଧର ମେଘେ ଯେହ୍ନେ ଝଟକଇ ଚପଳା
ଦରହସିତ ବଦନ ସ୍ୱାମୀର ବିରାଜିତ ଦଶନମାଳା ।୬୫
କଣ୍ଠରେ ଶୋଭାବନ ଦିଶଇ ବନମାଳା
ଶୁଦ୍ଧ ଝୀନ ବସନ କଟିତଟେ ମେଖଳା ।୬୬
ଶୁଦ୍ଧ ଝଳିତ ହୀରା ଦଶନହ ଜ୍ୟୋତି ବିକାଶି
ଚାଲନ୍ତେଣ ସଂହଠାଣି ଦିଶଇ ଭୂମିକି ଆକ୍ରୋଷି ।୬୭
ବଶିଷ୍ଠ ବିଶ୍ୱାମିତ୍ର ବାମଦେବ ମାରକଣ୍ଡ
ବ୍ୟାସ ବାଲମୀକ ଭାରଦ୍ୱା ଦଶ ଉତଂକ ବିଭାଣ୍ଡ ।୬୮
ଯେକାଂକର ମୂଳେ ବାଳଖିଲା ଲକ୍ଷେ
କୋଶଳ ଅନ୍ତରେ କଉରବଂକୁ ସ୍ୱାମୀ ଦିଶିଲେ ଶ୍ରୀବସେ ।୬୯
ବାରଣ ଉପରେ ଥାଇ ଯେ ଦେଖିଲା ଧୁଶାସନ
ସଭାକଇଂ ଆସୁଅଛନ୍ତି ନନ୍ଦସୁତ ଯେ କାନହ ।୭୦
ଆସ୍ଥାନେ ଥାଇଣ ଯେ ଦେଖିଲା ରାଜା ଧୃତିରାଷ୍ଟି
ସମସ୍ତ ସେନାମାନେ କଲେ ଯେକଦୃଷ୍ଟି ।୭୧
ଭୀଷ୍ମେ ବୋଇଲେ ଆଜ ଆମ୍ଭର ଜୀବନ ବଡ଼ ଧନ୍ୟ ଧନ୍ୟ
ପ୍ରତକ୍ଷେ ଦେଖିବା ଆମ୍ଭେ ଶ୍ରୀନାରାୟଣଂକ ବଦନ ।୭୨
ଯେ ଦ୍ୱାପରଯୁଗ ଲୋକଙ୍କ ଜୀବନ ଧନି ଧନି
ଶ୍ରୀଜଗନ୍ନାଥେ ବୁଲୁଛନ୍ତି ମାନବ ଦେହ ଘେନି ।୭୩
ଶତ୍ରୁ ହୋଉ କି ଅବା ମିତ୍ର ପୁଣ ହୋଉ
ଶରୀର ବିସର୍ଜିବା ନାରାୟଣ ମୁଖ ଚାହୁଂ ଚାହୁଂ ।୭୪
ସାଧୁ ଯେ ପାଣ୍ଡବଂକ କୁଳ ଧନି ଧନି
ସାଧୁ ଯେ ସୋମବଂଶ ଆଜ କଉରୋବ ସଇନି ।୭୫
ବ୍ରହ୍ମଲୟେ କରିଣ ଚିନ୍ତନ୍ତି ଯାହାଂକୁ
ଶତ୍ରୁପଣ କରି ଆମ୍ଭେ ଦେଖୁଅଛୁଂ ତାହାଂକୁ ।୭୬
ଯେ ପୁଣ ଆମ୍ଭର ଜୀବନ ଧନ୍ୟ ଧନ୍ୟ
ଚକ୍ର ମାରି ଶିର ଛେଦଇ କି ଜନାର୍ଦ୍ଦନ ।୭୭
ଶରୀର ତେବେ ଯେ ନାରଣଂକ ମୁଖ ଚାହିଂ
ଗଙ୍ଗାଗୟା ଆଦି ତୀର୍ଥ କଲେ କିସ ହୋଇ ? ।୭୮
କଉରୋବ ସଭାରେ ଯେ ସୁଫଳ ଜୀବନ ଆଜ
ଆସ୍ଥାନେ ପଡ଼ିବ ଆଜ ବାସୁଦେବଂକ ପାଦରଜ ।୭୯
ଶକୁନି ବୋଇଲା ଶୁଣିମା କଉରୋବ ରାଯେ
ମୁଂ ଯେହା ବୁଝଇ ପାଣ୍ଡବଂକ ଦୂତ ପ୍ରାଯେ ।୮୦
ଦ୍ରୋଣେ ବୋଇଲେ ଯେହା କହିତ କି ପାରି
ଅନାଦି ପୁରୁଷ ନାଥ ଯେ କାହାର ଦୂତକାରୀ ।୮୧
ଦ୍ରିଯୋଧନ ବୋଇଲେ ଆସନ୍ତୁ ନାରାୟଣ
ସବ୍ୟ କି ଅସବ୍ୟ କଥା ବୁଝିବା ଯେହିକ୍ଷଣ ।୮୨
ଶକୁନି ବୋଇଲେ ଯେ ନନ୍ଦ ମହାଖୁଡ଼ର ପୁତ୍ର
ଯୁଗତେ ଯଶୋବନ୍ତୀ ଗୋପାଳୁଣୀ ଗର୍ଭରୁ ସମ୍ଭୂତ ।୮୩
ଦୁରାନ୍ତକ ପାତକ ଯେ ଅରଜିଲା ବାଳକାଳେ
ପ୍ରୋହିଣୀକି ମାଇଲା ଯେ କ୍ଷୀରପାନବେଳେ ।୮୪
ଷଣ୍ଢାକୁ ମାଇଲା ଯେ ଗୋଗୋଷ୍ଠେଣ ପଶି
ଗୋହତ୍ୟା ସ୍ତିରୀହତ୍ୟା ଅଛି ଯେହାର ଶରୀରେଣ ବସି ।୮୫
ଭୀଷ୍ମେ ବୋଇଲେ ତୁ ବୋଇଲୁ ନ ଜାଣି
ଶରୀର କମ୍ପଇ ଆମ୍ଭର ତବ ବୋଲ ଶୁଣି ।୮୬
ନାନା ପାତକ ଯେ କରନ୍ତି ଅଗିଆନେ
ସମସ୍ତ ପାତକ ଖଣ୍ଡଇ ଶ୍ରୀନାରାୟଣ ଦରଶନେ ।୮୭
ଯେ ଯିସ ପାତକ କରିଥାଇ ଜନ୍ମେ ଜନ୍ମେ
ସମସ୍ତ ଖଣ୍ଡଇ ହୋ ଶ୍ରୀ ନାରାୟଣ ଦରଶନେ ।୮୮
ଶକୁନି ବୋଇଲା ତୁମ୍ଭେ ଶୁଣ ଗୁରୁ ଦ୍ରୋଣ
ଗୋହତ୍ୟା ଦୋଷ ମୋହୋର ତହୁଂ ସାବଧାନେ ଶୁଣ ।୮୯

ବିଷ୍ଣୁଗର୍ଭ ବୋଲିକରି ଯେକଇ ସତ୍ୟଯୁଗେ
ସୋମେକ ନାମେ ଈଶ୍ୱର ବସ୍‌ଇ ହଟକେଶ୍ୱର ସ୍ୱର୍ଗେ ।୯୦
ମିଥୁନମାସ ଶୁକଳପକ୍ଷ ଦଶମୀର ତିଥି
ଶଉରିବାର ସେହିଦିନ ନକ୍ଷତ୍ର ଭୋଗ୍ୟ ସ୍ୱାତୀ ।୯୧
କରେଣ କୁଠାର ଘେନିଣ ସୋମକ ଧୂର୍ଜଟି
ପୁଣ୍ୟତୋୟା ତୀର୍ଥରୁ ସେ କୁଶ ବିଡ଼ିୟେ କାଟି ।୯୨
ଗଙ୍ଗାର ତୀରେ ଈଶ୍ୱରେ ଥୋଇଲେ କୁଶବିଡ଼ି
ଗୋମାତା କପିଳା ତାହା ଭକ୍ଷିଲା ଆଧାର କରି ।୯୩
ସେ ରୁଦ୍ର ଧୂର୍ଜଟି ଯେ ଧାଇଂଲେ ଅତି ବେଗେ
ଗୋମାତା କପିଳାକୁ ପ୍ରହାର କଲେ ରାଗେ ।୯୪
ଗୋମାତାଂକ ଶିର ଛିଡ଼ିଲା ଈଶ୍ୱରଂକ ପ୍ରହାରେ
ସେ ମୁଣ୍ଡଗୋଟି ଲାଗିଲା ଈଶ୍ୱରଂକ କରେ ।୯୫
ଅନେକ ତୀର୍ଥ କରି ହର ନୁଆରିଲେ ପାପଧ୍ୱଂସି
ଆକାଶ ବ୍ରହ୍ମାଣ୍ଡେ ହରି ନୁଅରିଲେ ପଶି ।୯୬
ଅଲୋପ୍ୟ ପାତକ ଯେ ଗୋହତ୍ୟାର ଦୋଷ
ଈଶ୍ୱରେ ଅପୂଜ୍ୟ ହୋଇଲେ ତିନି ଭୁବନ ଆକାଶ ।୯୭
ତହୁଂ ଭଇରୋବ ରୂପ ସେ ହୋଇଲେ ପ୍ରଚଣ୍ଡ
ଅଦ୍ୟାପି ଈଶ୍ୱର ହାଥେ ଅଛଇ ଗୋମୁଣ୍ଡ ।୯୮
ଶକୁନି ଯେହା କହିଲା ଯେ କଉରୋବ ସଭାର
ଈଶ୍ୱର ଦେବତାଂକ ଗୋହତ୍ୟା ଦୋଷ ନଗଲାକ ପାର ।୯୯
ତାଂକହୁଂ ଶ୍ରେଷ୍ଠ କି ନନ୍ଦ ଗଉଡ଼ ପୁଅ କାନ୍ହା
ଗୋହତ୍ୟା ଦୋଷ ବସିଲା ଯେହାର ଶରୀରେଣ ।୧୦୦
ଗୋହତ୍ୟା ସ୍ତିରୀହତ୍ୟା ଦୋଷ ଅଛଇଟି ଯେହା ଅଂଗେ
ଯେ ରାଜସଭାରେ ବସିବ ସେ କେବଣ ଯେ ବାଗେ ।୧୦୧
ବଢ଼ିଲା ଗୋପାଳଂକ ମେଳେ କାଦମ୍ବରୀ ରସଖେଡ଼େ
ଗଉରୋବ ସ୍ତିରୀଂକି ଯେ ରମିଲା ରଙ୍ଗଖେଡ଼େ ।୧୦୨
ଜନ୍ମେଣ ଅଜାତିକ ଆବର ଦୋଷକାରୀ
କୁଜନେ ଗୋଷ୍ଠୀ ହୋଇଲେ ନର୍କଗତି ସରି ।୧୦୩
କୁଳକ୍ଷୟେ ମନ୍ତ୍ରୀ ଯହୁଂ କହିଲା କୃଟବୁଦ୍ଧି
ଦୁଷ୍ଟ ଯୋଦ୍ଧାମାନେ ତହିଁ ଆସ୍ତାନ ନିରୋଧି ।୧୦୪
ବାଟ ଆବୋରିଣ ତହିଂ ବସିଲା ଧୁଶାସନ
ଅନେକ ଯେ ତହିଂ ଯୋଦ୍ଧା ପୂରିତ ଗହନ ।୧୦୫
ଆସ୍ତାନକୁ ବିଜୟ କରନ୍ତେ ଦେବହରି
ବେଳ ଉଦୟେ ଆସି ହୋଇଲା ଦଣ୍ଡ ଚାରି ।୧୦୬
ବିଜେକଲେ ବାସୁଦେବ ଆସ୍ତାନର ତଳେ
କାହାକଇଂ ବାଚା ନ ଶୁଭଇ ସଭାର ଗହଳେ ।୧୦୭
ତେର ପାବଛେ ଯେ ସଭାକଇଂ ବାଟଗୋଟି
ପାଞ୍ଚ ପାବଛ ପରିଯନ୍ତେ କେଶବ ଗଲେ ଉଠି ।୧୦୮
ଦ୍ରୋଣେ ବୋଇଲେ ହୋ ରାଜା ମାନଚକ୍ରବ୍ରତୀ
ସଭାର ତଳେ ବିଜେ କଲେ ଦେବ ଶିରୀପତି ।୧୦୯
ଯେବଣ ସଭାୟେ ହାଦେ ନାରାୟଣେ ନ ବରି
ନିଚୟେ ଜାଣିମା ସେ ସଭା ପିଚାଶ ସଭା ସରି ।୧୧୦
ଶକୁନି ବୋଇଲା ହୋ ଶୁଣିମା ଗୁରୁ ଦ୍ରୋଣ
କୁଣ୍ଡୀନଗ୍ରୀ ରାଜା ଯେ ଭୀଷ୍ମେକ ମହାରାଣ ।୧୧୧
ତାହାର ନନ୍ଦିନୀ ନାମ ଯେ ଅଟଇ ରୁକ୍ମିଣୀ
ସୟମ୍ବର କଲା ସେ ଲକ୍ଷେ ରାଜାନ୍ତ ବରିଆଣି ।୧୧୨
ଜାରାସନ୍ଧର ମୂଳେ ଯେ ଅନେକ ଦେଶର ରାୟେ
ଛୟାଣୋଇ ସହସ୍ର ରାଜା ଯେ ବସିଲେ ସଭାୟେ ।୧୧୩
ରୁକ୍ମିଣୀ ସୟମ୍ବର ଯେ ହୋଇଛି ସେହିଦିନ
ବଇଶାଖ ଶୁକଳପକ୍ଷ ଦୁତୀୟାର ଦିନ
ସୟମ୍ବର ହୋଇଥିଲା ପୂର୍ଣ୍ଣ ତିନିଦିନ ।୧୧୪
ଯେ ବିଧିରେ ଅନେକ ରାଜାୟେ ଯେ ବସିଲେ ମହାଦୁଷ୍ଟେ
ରୋହିଣୀ ଦୃତୀୟାଦିନ ବିଜୟ କଲେ ରାମକୃଷ୍ଣେ ।୧୧୫
ବାସ୍ତରୀ ପାବଛ ଯେ ସଭାର ଉଞ୍ଚସ୍ଥଳୀ
ବାଉନ ପାବଛତଳେ ବିଜୟେ କୃଷ୍ଣହଳୀ ।୧୧୬
ସଉନନ୍ଦ ମୂଷଳ ଯେ ସମର୍ଥକ ହଳ
ମହା ଭୀଷ୍ମରୂପେ ଯେ ବିଜୟେ କାମପାଳ ।୧୧୭
ଶଙ୍ଖ ଚକ୍ର ଗଦା ସାରଙ୍ଗ ଧନୁ ହାଥେ
ବଇନେତ୍ର ପିଠିରେ ହରି ରାମ ତାଳଧ୍ୱଜ ରଥେ ।୧୧୮
ଜାରାସନ୍ଧ ବୋଇଲା ଯେ କରିଣ କୋପାନଳ ଦୃଷ୍ଟି
ସଭା ଉପରକୁ ଗଉଡ଼କୁ ନ ଦିଅରେ ଉଠି ।୧୧୯
ନନ୍ଦ ଗଉଡ଼ର ପୁତ୍ର ଅଟନ୍ତି ଯେ ବେନି
ନାନା ପାତକ ଦୋଷ ଯେ ଅଛନ୍ତି ଶରୀରେଣ ଘେନି ।୧୨୦
ଆମ୍ଭେ ରାଜବଂଶିକ ଅଛୁଂ ସମସ୍ତେ ହେଂ ବସି
ଯେ ସଭାୟେ ଗଉଡ଼େ କେନ୍‌ହେ ବସିବେଟି ଆସି ।୧୨୧
ଯେହେନେକ ବିଚାରନ୍ତେ ଅସ୍ତଗଲା ବେଳ
ଲାଜେଣ ବାହୁଡ଼ିଲେ ଯେ କୃଷ୍ଣ କାମପାଳ ।୧୨୨
ଶକୁନି ବୋଇଲା ଯେହେନେକ ଭିଆଣ ଅଛି ପୂର୍ବେ
କେ ତାହା ଅନ୍ୟେସ୍ଥା କରିବାକ ଯେବେ ।୧୨୩

ମାନଗୋବିନ୍ଦେ ବୋଇଲେ ଯେହେନେକ ପୂର୍ବେ ଯେବେ ଅଛି
ଯେବେ କେମନ୍ତେ ଯେ ସଭାଯେ ବସିବେ ଶ୍ରୀବସି ।୧୨୪
ଭୀଷ୍ମେ ବୋଇଲେ ବାବୁ ଯେହେନେକ ଅଛଇ ଯୁଗତେ
ଆଦିପ୍ରାନ୍ତ କରି ଶକୁନି ନ କହିଲା ତୋତେ ।୧୨୫
ସଭାରେ ଜାରାସନ୍ଧ ଅନୀତି କହୁଂ କହୁଂ
ସଭାରୁ ରାମକୃଷ୍ଣ ବେନିଭାଇ ଉଠିଗଲେ ତହୁଂ ।୧୨୬
ବିଜୟେ ରାମକୃଷ୍ଣ ମହବାତ ପର୍ବତେ
ସନ୍ନିଧେ ହକାରିଲେ ସେ ବାହାନ ବଇନେତ୍ରେ ।୧୨୭
ତୁ ଯେହିକ୍ଷଣି ହାଦେ ଯାଅସି ଖଗେଶ୍ୱର
ବହନ ହୋଇ ଭୀଷ୍ମ ରାଜାଂକର ସଭାଭଗ୍ନ କର ।୧୨୮
ଆଗ୍ୟାଂ ପରମାଣେ ସେ ବିନତାର ବଳା
ପ୍ରଚଣ୍ଡ ପବନ ଜାଣି ତେଜ ଅନର୍ଗଳା ।୧୨୯
ବେନିପକ୍ଷ ଚାଳିଣ ସେ ଗଲାକ ମହାବାତେ
ଉଡ଼ିଲେ ରାଜାଯେ ଅଶ୍ୱ ଗଜର ରଥ ସହିତେ ।୧୩୦
କେ ସହସ୍ର ଯୋଜନେ କେ ବେନି ସହସ୍ର ଯୋଜନେ
ଯାଇ ପଡ଼ି
ଆସ୍ତାନ ନବର ଯେ ଭାଙ୍ଗିଲା ଚୂର୍ଣ୍ଣ କରି ।୧୩୧
ରାଗେଣ ରାମକୃଷ୍ଣ ଦୁହେଂ ଯେ ସଭାକୁ ନ ଗଲେ
ଯେକା ବାହାନକେ ସେ ଯେତେକ କୃତ୍ୟ କଲେ ।୧୩୨
ଯେକଥା ତଦନ୍ତକରି ବୁଝ ପରିମାଣ
ଦୁଷ୍ଟ ଦର୍ପ ଭାଙ୍ଗନ୍ତାଟି ଯେହି ନାରାୟଣ ।୧୩୩
ବାବୁ ଜାରାସନ୍ଧ ରାଜା ଯେ ହୋଇଲା ଅପ୍ରୀତି
ଯୁଗଭୋଗୀ ରାଜା ହୋଇ ସେ ଅଳପ କାଳ ବ୍ରତୀ ।୧୩୪
ଚକ୍ରକୂଟ ମାୟାଧର ଯେ ସମସ୍ତ ପରିମାଣଇଂ
ଯେ ଯେତେମାନଂକୁ ଭାର୍ଜନ ସେ ସମସ୍ତ ଜାଣଇଂ ।୧୩୫
ଭୀଷ୍ମେ ବୋଇଲେ ବାବୁ ଆଗ୍ୟାଂଦିଅ ମାନଚକ୍ରବ୍ରତୀ
ସଭାରେ ବିଜେ କରନ୍ତୁ ଆସି ଦେବ ଶିରୀପତି ।୧୩୬
ଗାଙ୍ଗବଂକ ବଚନେ ମାନଗୋବିନ୍ଦ ହୋଯେ ତୂନୀ
ଶୁଣି ପ୍ରତିବାକ୍ୟ କଲା ମନ୍ତ୍ରୀ ଯେ ଶକୁନି ।୧୩୭
ତୁ ଯେ ଅନିର୍ଯାପ କଥା କହିଲୁ ଗାଙ୍ଗବେ
କେବଣ ରାଜାର ପୁତ୍ର ଅଟନ୍ତି ବାସୁଦେବେ ।୧୩୮
ସେ ଅଜାତିକ ଗୋପାଳ ପୁଅ ତୁ ଅପୁତ୍ରିକ ଅଟୁ
ଅନରୂପ ସାଧେ ତୁ ବଚନ ପ୍ରକଟୁ ।୧୩୯
ପୁତ୍ର ଦୁହିତା ଯେ ବେଭାରେ ତୋର ନାହିଂ
ପ୍ରଭାତେ ତୋହୋରି ବଦନ ଚାହିଂତେ ନ ଯୋଗାଇ ।୧୪୦
ତୁ ଯେ ଯେ ସଭାରେ ବସିଅଛୁ ଆରମ୍ଭେ
କୁଳବୃଦ୍ଧ ବୋଲି ତୋତେ ଉପେକ୍ଷା କଲୁ ଆମ୍ଭେ ।୧୪୧
କହୁଂ କହୁଂ ବହୁତ ଝିଂଘାସିଲା ଶକୁନି
ଜାଣିଣ ତା ଗାଙ୍ଗବେ ଲାଜେ ହୋଇଲେକ ତୂନୀ ।୧୪୨
ଦଶପାବଚ୍ଛ ପର୍ଯ୍ୟନ୍ତେ ଦେବ ଗଲେ ଉଠି
ଦୁଷ୍ଟ ଯୋଦ୍ଧାମାନେ ଦେଇ ବସିଛନ୍ତି ପିଠି ।୧୪୩
ତେର ପାବଚ୍ଛ ତଳେ ପୂରି ବସିଛନ୍ତି ଋଷିମାନେ
ବିଦୁର ସଞ୍ଜୟେ ଯେ ଅଛନ୍ତି ସନ୍ନିଧାନେ ।୧୪୪
ବିଦୁରେ ବୋଇଲେ ତୁ ମହାମନ୍ତ୍ରୀ ସଞ୍ଜୟେ
ମୋହୋର ଚିତ୍ତରେ ତ ବସିଲା ମହାଭୟେ ।୧୪୫
ସଞ୍ଜୟେ ବୋଇଲେ ନାରାୟଣ ଅପମାନ ପାଇ ଗଲେ
କଉରୋବେ ନାଶଯିବେ ଅଭଗତି ହୋଇଲେ ।୧୪୬
କଳିକାଳ ମନ୍ତ୍ରୀ ଯେ ଶକୁନି ମହାରାଜ
ଅଷ୍ଟ ଅବଧାନେ କରିବ ସେ ପିତୃକାର୍ଯ୍ୟ ।୧୪୭
ଆହୋ ଚଇତନ ତିନି ପାବଚ୍ଛତଳେ ଯେ ନାରାୟଣ ଉଭା
ଦେଖ ହୋ ସାର୍ଥୁକପଣ କଉରୋବ ସଭା ।୧୪୮
କୋଟିଯେ ସିଂଘର ପ୍ରାକ୍ରମ ବହଇ ଯେବଣ କଂସ
ବାଳୁତ ରୂପ ଦେଖିଣ ସେ ହୋଇଲାକ ଧ୍ୱଂସ ।୧୪୯
ସଞ୍ଜୟେ ବୋଇଲେ କଉରୋବ କୁଳ ଧନି ଧନି
ସାଧୁ ତୁମ୍ଭର ପିଅର ସାଧୁ ତୁମ୍ଭର ଜନନୀ ।୧୫୦
ସଞ୍ଜୟେ ବୋଇଲେ ହରି କେତେ ସହିପାରୁ
କିମର୍ଥେ ଯେହାନ୍ତ ନାଥ କୋପ ତୁ ସଂହରୁ ।୧୫୧
ଗୋବିନ୍ଦେ ବୋଇଲେ ମୋର ଠାକୁର ଯୁଝେଷ୍ଠି
ତାହାଂକର ସହୋଦ୍ର ଭ୍ରାଥ ଅଟଇ ଧୃତିରାଷ୍ଟି ।୧୫୨
ଭୀଷ୍ମେ ପିତାମହ ଦ୍ରୋଣେ ତାହାଂକର ଗୁରୁ
ତଦଅର୍ଥେ ଯେହାନ୍ତ ଆମ୍ଭେ କୋପ ଯେ ସଂହାରୁ ।୧୫୩
ଆହୋ ସଞ୍ଜୟେ ଯେତେ ଲୋକମାନେ ମୋତେ କରିଛନ୍ତି ପିଠି
ଯେମାନେ ସମସ୍ତେ ମୋତେ ଦୁଜେଣ ଯୁଝେଷ୍ଠି ।୧୫୪
କଉରୋବ ସଭାରେ ହାଦେ ହରି ଯେମନ୍ତ ବିଚାର କରନ୍ତେ
ବେଳ ସାତଘଡ଼ି ଆସି ହୋଇଲାନି ଯୁଗତେ ।୧୫୫
ଝାଳେଣ ତ୍ରିପଣ୍ଡ ଯେ ଦେବାଧି ଦେବରାଜେ
ସବୁ ସହୁଛନ୍ତି ସେ ଯୁଝେଷ୍ଠି ଦେବକଂର କାର୍ଯ୍ୟେ ।୧୫୬
ଦ୍ରୋଣେ ବୋଇଲେ ତୁ ଶୁଣ ରାଜାଧି ରାଜେଶ୍ୱର

ଜଗବନ୍ଦନ ପୁରୁଷଂକୁ ତୁ ଝିଂଘାସ ନ କର ।୧୫୭
ରୋମମୂଳେ ଯାହାରଟି ବସଇ ବ୍ରହ୍ମାଣ୍ଡ
ଉଦରେ ଯାହାର ବିଶ୍ରାମ ମହୀ ନବଖଣ୍ଡ ।୧୫୮
ସେ ହରି ଉଭା ହୋଇ ଅଛନ୍ତି ତୋର ସଭାତଳେ
କାହାରି ଶିର କମଳ ନାହିଂଟି ସ୍କନ୍ଧମୂଳେ ।୧୫୯
ବାବୁ ପନ୍ନଗା ନାରାୟଣ ତୁ କଇଛା ଜଗଜେଠୀ
ତୋତେ ଶୋହଇ କି ଯେସନେକ ଅରଷ୍ଟି ।୧୬୦
ସଭାକୁ ଉଠନ୍ତୁ ହରି ବସନ୍ତୁ ଆସ୍ତାନେ
କରିବା ପାଦ୍ୟଅର୍ଘ୍ୟପୂଜା ଯେ ଯାହା ବିଧାନେ ।୧୬୧
ଶକୁନି ବୋଇଲା ଦ୍ରୋଣ ତୁମ୍ଭେ ଅଟ ଭିକ୍ଷାବାସୀ
ଯେକା ଭାରିଯା ଗୋଟିକି ତୁମ୍ଭେ ନୁଆରିଲ ପୋଷି ।୧୬୨
ସପତ ମାସର ସେହୁ ହୋଇଥିଲା ଗର୍ଭବତୀ
ବ୍ୟାଧି ଆବୋରନ୍ତେ ଯେ ହୋଇଲା ଅଶକତି ।୧୬୩
ନହେଣ ବିଦାରଣ କଲ ତାହାର ଯେ ବୁକୁ
ଉଣ୍ଡୁଡି କାଢିଲ ତୁମ୍ଭେ ପେଟର ପୁଅକୁ ।୧୬୪
ତୁମ୍ଭର ମନ୍ଦ ବୁଦ୍ଧିରେ ପୁତ୍ରର ମାତା ନାଶ ଗଲା
ତେଣୁ ସେ ପୁତ୍ରର ନାମ ଅଶତ୍ଥମା ହୋଇଲା ।୧୬୫
ତିରୀହତ୍ୟା ଦୋଷ ତୋର ଶରୀରେ ରହିଅଛି
ବିଦ୍ୟାଗୁରୁ ବୋଲି ତୋତେ ଆମ୍ଭେ ନ ବୋଲୁ ହୋ କିଛି ।୧୬୬
ଆପଣେ ପାତକୀ ତୁ ପରେଣ କହୁ କଥା
ଅନରୂପ ସାଧ ତୁ ବର୍ଣ୍ଣନା କରୁ ଯଥା ।୧୬୭
ଯଥାଗୋଷ୍ଟି ତଥା ବାକ୍ୟହିଁ ସେ କହି
ଯିସ ତିସ ସଭା ପ୍ରାୟେ ବୁଝିଲୁ କି ତୁହି ।୧୬୮
ପନ୍ନଗା ନାରାୟଣଟି ଯେ ରାଜା ମାନଗୋବିନ୍ଦ
ଲକ୍ଷେରାଜା ମଉଡ଼ମଣି ଯେ ଜମ୍ବୁଦୀପ ଚନ୍ଦ୍ର ।୧୬୯
ଆହୋ ଦ୍ରୋଣ କୋଟିତୀର୍ଥ ଘେନିଣ ଜଳାଧି ପୁଷ୍କର
ଅଭିଷେକ କରିଅଛି ଯେବଣ ରାଜା ଶିର ।୧୭୦
ଭୀଷ୍ମେ ବୋଇଲେ ତୁ ଯାହା ବୋଇଲୁ ନ ବିଚାରି
ପୁଷ୍କର ଅଭିଷେକ ନୋହିଲେ ହୋଅଇ କି ଦଣ୍ଡଧାରୀ ।୧୭୧
ଆହୋ ଶକୁନି ପୁଷ୍କର ଅଭିଷେକ ଯାହାର ଶିର ହାଦେ
କୋଟି ତୀର୍ଥ ଘେନି ପୁଷ୍କର ଅବିଷେକ କରଇ ଯେହି
ନାରାୟଣ ପଦ୍ମପାଦେ ।୧୭୨
ବିଷ୍ଣୁ ପାଦପଦ୍ମରୁ ଗଙ୍ଗା ଆସୁଅଛି ବହି
ଦେବଋଷି ରାଜଋଷି ନିତ୍ୟେ ସ୍ନାନ କରୁଛନ୍ତି ତହିଂ ।୧୭୩

ବିଷ୍ଣୁ ପାଦୁକା ନାମ ବହଇ ଧବଳାଙ୍ଗୀ
ତେଣୁ ସେ ମୋକ୍ଷକଇଂ କାରଣ ସେ ପାଇଲେ ସଉଭାଗୀ ।୧୭୪
ସେ ଗଙ୍ଗାକଇଂ ଶିବ ଧଇଲେକ ଶିରେ
ତେଣୁ ସ୍ୱାମୀ ନାମ ବହିଲେ ଗଙ୍ଗାଧରେ ।୧୭୫
ଅପାରୁଂ ଅପାର ଯେ ଗୋବିନ୍ଦର ମହିମାଂ
ଅପାରୁ ଅପାର ଯେ ଯେହାଂକ ଗାରିମା ।୧୭୬
ସୁବୁଦ୍ଧି ମନ୍ତ୍ରୀ ହୋଇ ନଜାଣୁ ତୁ କିଛି
ବିଷ୍ଣୁ ଅଂଶେ ଜାତ ନୋହିଲେ ନୃପତି କାହିଂ ଅଛି ।୧୭୭
କୁବେର ଅଂଶେ ଜାତ ନୋହିଲେ ସାଧବ ଅଛି କାହିଂ
ଈଶ୍ୱର କଳା ନ ଥିଲେ ବ୍ରହ୍ମଗ୍ୟାନ ସାଧି କି ପାରଇ ।୧୭୮
ଗନ୍ଧର୍ବ କଳା ନ ଥିଲେ ବୀଣାବିଦ୍ୟା ହୋଇଅଇ ସାଧି
ମୁନି ଅଂଶେ ଜାତ ନୋହିଲେ ଶାହାସ୍ତ୍ର ପାରଇ କି ଛନ୍ଦି ।୧୭୯
କାମଦେବର କଳା ନ ଥିଲେ କି ହୋଅଇ ରୂପବନ୍ତ
ହନୁମନ୍ତ କଳା ନଥିଲେ କି ହୋଅଇ ବଳବନ୍ତ ।୧୮୦
ତୁହି ସେ ମନ୍ତ୍ରୀବର କଉରୋବ ଇଷ୍ଟ ବନ୍ଧୁ
ସୁବୁଦ୍ଧି ମନ୍ତ୍ରୀ ହୋଇ ଶ୍ରୀଜଗନ୍ନାଥଂକୁ କିମ୍ପେ ନିନ୍ଦୁ ।୧୮୧
ଶକୁନି ବୋଇଲା ଦେବତାହିଂ ହୋଇଲେ
ସଭାରେ ଗଣିତା କି ତାକୁ ହତ୍ୟାଦୋଷ ଥିଲେ ।୧୮୨
ତୀର୍ଥ ହୋଇ ଯେବେ ହୋଇବ ଦୋଷକାରୀ
ବ୍ରାହ୍ମଣ ହୋଇ ଯେବେ ହୋଇବ ଅନ୍ୟାଚାରୀ ।୧୮୩
ଅନୀତି ବ୍ରାହ୍ମଣକୁ ଯେ ନ ଜାଣି କରନ୍ତି ମାନୀ
ଆପଣା ଅକ୍ଷ୍ୟକ୍ଷୟେ ସନ୍ତାନ ହୋୟେ ହାନି ।୧୮୪
କ୍ଷତ୍ରିୟ ହୋଇ ଯେବେ ସାଂଗ୍ରାମେ ଦିୟେ ପିଠି
ଯେତେ କଥା ମୋହୋର ହୋ ମନକୁ ନ ଘଟି ।୧୮୫
ଯେସନେକ ବିଚାର ସେ କରନ୍ତେ କଉରୋବେ
ତିନି ପାବଚ୍ଛ ତଳେ ଉଭା ବାସୁଦେବେ ।୧୮୬
ଘ୍ରମଜଳ ଗଳିତ ସ୍ୱାମୀ ଦେବାଧି ଦେବରାଜେ
ସମସ୍ତ ସହୁଅଛନ୍ତି ଯୁଝେଷ୍ଠି ଦେବଂକର କାର୍ଯ୍ୟେ ।୧୮୭
ବିଦୁରେ ବୋଇଲେ ତୁ ଜଗତ ଜନ ପ୍ରହୁ
ଅତିହିଂ ଝିଂଘାସ ତୁ କଉରୋବଂକର କେତେ ସହୁ ।୧୮୮
ଅବଶ୍ୟ ପ୍ରାଣତ୍ୟାଜ ହୋଇବେ କଉରୋବେ
ଚକ୍ରେଣ ପ୍ରହାର କରୁ କିନା ଯେହି ପରସ୍ତାବେ ।୧୮୯
ଗୋବିନ୍ଦେ ବୋଇଲେ ତୁମ୍ଭେ ଶୁଣ ହୋ ବିଦୁର
ଯୁଝେଷ୍ଠି ଦେବଂକର ଯେ ସଭିୟେଂ ସୋଦର ।୧୯୦

ମଧ୍ୟପାତ୍ର ଦୂତପଣେ ଆସିଅଛି ମୁହିଂ
ଯେହାନ୍ତ କେମନ୍ତେ ନାଶ କରିବି ହୋ ସ୍ୱାମିଂକ
ଆଗ୍ୟାଂ ନାହିଂ ।୧୧୯୧
ଶୁଣିଣ ବିଦୁର ଚହିଂ ହୋଇଲେ ମଉନ
ଉଭା ହୋଇ ରହିଛନ୍ତି ପ୍ରଭୁ ଭଗବାନ ।୧୧୯୨
ଆସ୍ତାନକଇଂ ଉଠିଲା ଯେ ଅମ୍ବୁବତୀର ସୁତ
ଦ୍ରିଯୋଧନ ଛାମୁରେ କହଇ ବିନୟ ଯୁଗତ ।୧୧୯୩
ବାବୁ ତୁ ଯେ ଜମ୍ବୁଦ୍ୱୀପ ପୃଥୀକି ଧାରଣା
ଦିବ୍ୟଚକ୍ଷୁ ଥାଉଂ ଥାଉଂ କିମ୍ପେ ହୋଉଅଛୁ ବଣା ।୧୧୯୪
ଶ୍ରୀହରି ବିଜୟେ କରନ୍ତୁ ସଭାର ଉପରେ
ଦେବରଷି ରାଜରଷି ଅଛନ୍ତି ସଙ୍ଗତରେ ।୧୧୯୫
ଚତୁର୍ଦ୍ଦିଶ ଘଡ଼ି ଆସି ହୋଇଲାଣି ବେଳ
କିମ୍ଭୂତ ଚରିତ ରାଜା ତୋହୋର ଯେତେ ହେଳ ।୧୧୯୬
ଆଗ୍ୟାଂଦିଅ ଆସ୍ତାନକୁ ବିଜେ କରନ୍ତୁ ଶ୍ରୀହରି
ବାକ୍ୟ ଶୁଣି ପଛେ ଅନରୂପେ ସିଦ୍ଧାନ୍ତ ଯେ କରି ।୧୧୯୭
ବିଦୁର ବାକ୍ୟେ ଶାନ୍ତି ମାନଚକ୍ରବ୍ରତୀ
ବୋଇଲା ଆସ୍ତାନରେ ବିଜେ କରନ୍ତୁ ଶ୍ରୀପତି ।୧୧୯୮
ବାସବର ଆଗ୍ୟାଂଯେ ଯେସନେ ଚଳଇ ମାତଳି
ସ୍ୱପନ ସୁଲଭ ପ୍ରାୟେ ମଣିଲେ ବନମାଳୀ ।୧୧୯୯
ଧୁଃଶାସନ ଦୁର୍ଜ୍ଜୟେ ଯେ ଛାଡିଦିଲେ ପନ୍ଥ
ଆସ୍ତାନେ ବିଜୟେ ଯାଇଂ କଲେ ଜଗନ୍ନାଥ ।୧୨୦୦
ଭୀଷ୍ମ ଦ୍ରୋଣ କର୍ଣ୍ଣ ଭୂରିଶ୍ରବା ଯେ ଶକୁନି
ବାଲ୍‌ହୀକ ସୋମଦତ୍ତ ଅଶତ୍ତମା କୃପ କୃତବର୍ମା ଶଲ୍ୟ କରନ୍ତି
ଦୟିନି ।୧୨୦୧
ଆସ୍ତାନେ ବସିଅଛି ସେ ରାଜା ଧୃତିରାଷ୍ଟି
ନାହିଂ ତାହାର ମାନ୍ୟ ସେ ସଭାରୁ ନ ଉଠି ।୧୨୦୨
ରାଜାର ଶ୍ରବଣେ ଲାଗି କହିଲା ମନ୍ତ୍ରୀ ଯେ ଶକୁନି
ରାଜ୍ୟ ମାଗିବା ନିମନ୍ତେ ଆସିଅଛନ୍ତି ଯେ ପାଣ୍ଡବଂକ
ଆଗ୍ୟାଂ ଘେନି ।୧୨୦୩
ଦ୍ରିଯୋଧନ ବୋଇଲା ପ୍ରତିବାକ୍ୟ ଦିଅ ମନ୍ତ୍ରୀ
ଶକୁନି ବୋଇଲା ତୁମ୍ଭର କହିବା ଯୁଗତି ।୧୨୦୪
ସେ ସେ ଜଗନ୍ନାଥ ତୁ ଅଟୁ ମହୀଧର
ବେନି ବାକ୍ୟ ସମସରି ହୋଇବ ତୁମ୍ଭର ତାଂକର ।୧୨୦୫
ଦୁଇ କାଖରେ ଦେବ ବେନି ହାଥ ଲାଇ
ସଭାର ମଧରେ ଦେବ ଅଛନ୍ତି ଉଭାହୋଇ ।୧୨୦୬
ବସ ବୋଲି ନ ବୋଇଲା ରାଜା ମାନଗୋବିନ୍ଦ
ହୃଦେ ଯାହାର କଳଂକ ଥାଇ ସେ କହଇ କି ମଧୁର ଶବଦ ।୧୨୦୭
ଦ୍ରିଯୋଧନ ବୋଇଲା ହୋ ଶୁଣସି ନାରାୟଣ
କିମର୍ଥେ ମମପୁରକୁ କଲୁ ତୁ ପୟାଣ ।୧୨୦୮
କି ମୋତେ ଅନୁଗ୍ରହ ଦେଖିବାର ନିମନ୍ତେ
ଅଥବା କେବଣ କଥା କାର୍ଯ୍ୟର ସଙ୍ଗତେ ।୧୨୦୯
ବଡ଼ାଇ ହରଷ ମୁହିଂ ହୋଇଲି ଆଜର ଦିନ
ସମୟେ ଦୃଷ୍ଟିପାତ ନାହିଂ ଜନାର୍ଦ୍ଦନ ।୧୨୧୦
ଦେବତା ବ୍ରାହ୍ମଣ ଆବର ପିତୃକାର୍ଯ୍ୟେ
ଯେହିକଥା ବଡ଼ାଇ ସୁଲଭ ଆପଣେ ଜାଣୁ ଦେବରାଜେ ।୧୨୧୧
ସ୍ୱାମୀ ଦ୍ୱାପରଯୁଗ ଲୋକଂକର ବଡ଼ ପୁଣ୍ୟ
ଯାହା ଶ୍ରବଣେ ଶୁଣି ତାହା ଦେଖିଲି ଜନାର୍ଦ୍ଦନ ।୧୨୧୨
ସ୍ୱାମୀ ରାଗ ମୋହ ହିଂସା ଅହଂକାର ଅପବାଦେ
ମାୟା ମୋହେ ପଡ଼ି ନାଥ ବଣା ହୋଇଲଇଂ ହାଦେ ।୧୨୧୩
ପରମାନନ୍ଦ ପୁରୁଷ ତୁ ଆମ୍ଭର ସଙ୍ଗେ ଖେଳୁ
ସାମାନ୍ୟ ଜନ ପ୍ରାୟେ ବୁଝି ନାଥ କଲି ତୋତେ
ହେଳୁ ହେଳୁ ।୧୨୧୪
ସ୍ୱାମୀ ତୁମ୍ଭର ବାଳ ଚରିତ ଶୁଣୁଥାଉଂ ଭଲେ
ଗୋପପୁରେ ଖେଳୁଥାଉ ଗୋପାଳଂକ ମେଳେ ।୧୨୧୫
ବହାନ୍ତ ନ ପାଇ ନନ୍ଦ ଲୋଡିଣ ଯାଇ ବାଟେ
ଚୂଳଗୋଟି ଧରି ନନ୍ଦ ମାଇଲାକ ଡିନ୍ଥୁଳି ଛାଟେ ।୧୨୧୬
ହରି ଗୋପାଳ ପୁଅଂକର ମେଳେ ଖେଡ଼ଇ କୁତୂହୋଳେ
ଚାପୋଡେକ ପ୍ରହାର ସେ କଲାକ ବକ୍ଷସ୍ଥଳେ ।୧୨୧୭
ପଳାଇ ଯାଆନ୍ତେ ନାଥ ପୁଣ ଭୂମିରେ ପଡ଼ିଲୁ ହାବୁଡ଼ି
ଡେଇଂଗଲା ଗୋପାଳ ତୋହୋର ଶିରରେ ପାଦ ପଡ଼ି ।୧୨୧୮
କୁତୂହୋଳ ପୁରୁଷ ନାଥ ତୁ ସହିଲୁ ନାହିଂକି ତାହା
ମହତ ଆଶ୍ରିତେ ଦୋଷ ନ ଧରିଲୁ ଚଉବାହା ।୧୨୧୯
ହରି ତୁ ରାଧାର ତୁଲେ ଶୃଙ୍ଗାର କୁତୂହୋଳେ
ବିପରୀତ ଶୃଙ୍ଗାର ମାଧବୀଲତା ତଳେ ।୧୨୨୦
ଯେମନ୍ତ ସମୟେ ଯାଇଂ ଭେଟିଲା ଗୁଆଳ
ଧାଇଂଯାଇଂ ଧଇଲା ସେ ଦୁହିଂକର ବାଳ ।୧୨୨୧
ରାଧାମାଧବ ତୁମ୍ଭେ ହୋଇଥିଲ ଉଲଗ୍ନ ଶହୀ
ଉପରେ ରାଧିକା ଯେ ତଳେ ଥିଲୁ ତୁହି ।୧୨୨୨

ତୁ ପୁଣି ବିଶ୍ୱରୂପ ବିକାଶିଲୁ ଦେବହରି
ପେଲି ପକାଇଲୁ ଚନ୍ଦ୍ରସେଣା ଭୁଜ ଧରି ।୨୨୩
ସହସ୍ର ଯୁଣେ ଯାଇଂ ପଡ଼ିଲା ଚନ୍ଦ୍ରସେଣା
ପାଞ୍ଚମାସ ବୁଲୁଥିଲା ପଥ ନ ଜାଣି ବଣା ।୨୨୪
ହରି ଯେସନେକ ଚରିତ ଶୁଣୁଥାଇ କର୍ଣ୍ଣେ
ସମ୍ପ୍ରତେ ନ କଲୁ ଦେବ ନ ଦେଖି ନୟନେ ।୨୨୫
ଗୋବିନ୍ଦେ କହିଲେ ତୁ ବୋଇଲୁ ଯେତେମାନ
ଅନ୍ତର ନୁହଇ ଯେକଥା ସରୂପ ବିଧାନ ।୨୨୬
ଦ୍ରିଯୋଧନ ବୋଇଲା ତାଂକ ଦୋଷ ନ ଘେନିଲୁ ଯେନ୍‌ହେ
ମୁହିଂ ହାଦେ ତୋହୋର ଅଟକ ନା ତେନ୍‌ହେ ।୨୨୭
ଯଦ୍ୟପି ଦୋଷ ମୁହିଂ ତୋତେ କରିବି ଅନନ୍ତ
ବାଳକାଳେ ଯେନ୍‌ହେ ଖେଳ ଖେଳୁଥାଇଂ ଅନୁବ୍ରତ ।୨୨୮
ଯିସ ତିସ ଦୋଷ ଅବା ମୋହୋର କରିବୁ ଉପେକ୍ଷା
କୋପ ଛାଡି ଜଗନ୍ନାଥ କରିବ ମୋତେ ରକ୍ଷା ।୨୨୯
ଗୋବିନ୍ଦେ ବୋଇଲେ ତୁମ୍ଭେ ଆମ୍ଭର ଭ୍ରାଥମାନେ
ତୁମ୍ଭନ୍ତ କୋପ ମୁହିଂ କରିବି କେସନେ ।୨୩୦
ଦ୍ରିଯୋଧନ ବୋଇଲା ଯେବେ ସୋଦ୍ରିମାପଣ ଇଛି
ମୋହୋର ପୁରେ ମୁଣୋହିଂ କରିବା ଶ୍ରୀବସି ।୨୩୧
ପବିତ୍ର ବ୍ରାହ୍ମଣ ସେ ଭାରଦ୍ୱାଦଶଂକର ନାତି
ଅଶସ୍ତମା ଜାଣଇ ଗଉରୀ ଶଉରୀ ନଳବିଧି ତିନି ପ୍ରତି ।୨୩୨
ଗୋବିନ୍ଦେ ବୋଇଲେ ଯେ ହତ୍ୟା ବିବାଦୀ ଶସ୍ତ୍ରଧାରୀ
ତାହାନ୍ତ ବ୍ରାହ୍ମଣ ହୋ କେମନ୍ତେ ନାମ ଧରି ।୨୩୩
ଭୋଜନେ ଅର୍ଚ୍ଚନା ମୋତେ କଲୁ ହୋ କୁରୁରାଜ
ଆମ୍ଭେ ଯେବଣ ନିମନ୍ତେ ଅଇଲୁ କେମନ୍ତ ସେ କାର୍ଯ୍ୟ ।୨୩୪
ଦ୍ରିଯୋଧନ ବୋଇଲା ହରି କେବଣ ସନ୍ଦେହ
ବିଚାରି ନାରାୟଣ ସନ୍ଦେଶ ମୋତେ କହ ।୨୩୫
ଗୋବିନ୍ଦେ ବୋଇଲେ ତୁ ଶୁଣ ହୋ କୁଞ୍ଜଗଳ ଅଧିକାରୀ
ଯୁଝେଷ୍ଠି ଦେବ ଠାକୁରେ ଅଟନ୍ତି ତୋହୋରି ।୨୩୬
ତାହାଂକର ପିତା ଯେ ପାଣ୍ଡୁ ରାଜା ଥିଲେ
ଧୃତିରାଷ୍ଟେ ରାଜ୍ୟ ଦେଇ ବନବାସ ଗଲେ ।୨୩୭
ଶତସିଂହ ପର୍ବତେ ଯେ ମହାଘୋର କନ୍ଦରେ
ଶୀତ ଖରା ବର୍ଷା ବଞ୍ଚିଲେ ମହାଘୋରେ ।୨୩୮
କନ୍ଦମୂଳ ଖାଇ ସେ ଦତ୍ୟ ଦାନବନ୍ତ ନାଶି
ଯେ ପଞ୍ଚୁ ରାଜ୍ୟେ ତୋ ପିତା ରକ୍ଷା କରଇ ଦିବା ନିଶି ।୨୩୯
ଅନ୍ଧପଟଳ ବାନ୍ଧି ବସିଲେ ଗାନ୍ଧାରୀ
କୋଇନ୍ତାୟେ ପାଳିଲେ ତୁମ୍ଭନ୍ତ ଅତି ଯତ୍ନ କରି ।୨୪୦
ଯେବେହେଂ ସେ ତୋତେ ନିଜ ରାଜ୍ୟେ ଥାପି
ବୁଲନ୍ତି ବନଗାମୀ ହୋଇ ପାଣ୍ଡବେ ଅଦ୍ୟାପି ।୨୪୧
ବହୁତ ଦୁଖ ସେ ପାଇଲେ ଘୋରବନେ
ଅଗ୍ୟାଂତବାସେ ସେ ଯେ ବିରାଟେ ନେଲେ ଦିନ ।୨୪୨
ଯେବେ ଉଦିତ ହୋଇଲେ ଇନ୍ଦ୍ର ଯେ ପ୍ରଶସ୍ତେ
ସୋଦର ପ୍ରତିପାଳିବା ନ ଯୋଗାଇ କି ତୋତେ ।୨୪୩
ମୋତେ ହକାରିଣ ବୋଇଲେ ଧର୍ମ ଯେ ଯୁଝେଷ୍ଠି
ଧୃତରାଷ୍ଟ୍ରଂକୁ ହରି ମାଗ ପଡ଼ା ପାଞ୍ଚଗୋଟି ।୨୪୪
କିଞ୍ଚିତ କରି ପଡ଼ା ପାଞ୍ଚଖଣ୍ଡି ଦିଲେ
କୋଣକେ ପଡ଼ିଥାଇ ମୁଂ ଭାଂଇକି ଘେନି ଭଲେ ।୨୪୫
ଦ୍ରିଯୋଧନ ତୁଲେ ମୋର ପ୍ରୀତିଭାବ ବୃଦ୍ଧି
ଧୃତିରାଷ୍ଟ ଚରଣେ ମୁଂ ଥାଇ କିନା ଆରାଧି ।୨୪୬
ଆହୋ ମାନଗୋବିନ୍ଦ ତୁ ମହୀଧର ରୂପେ ଜନ୍ମ
ସୋଦରନ୍ତ ନ ସମ୍ଭାଳିଲେ ତୋର କିସ ଧର୍ମ ।୨୪୭
ବାବୁ ଯୁଗତେ ସେ ତୋତେ ଅଟନ୍ତି ଉପଗାରୀ
ଅପାର ସଂକଟୁ ତୋତେ କରିଛନ୍ତି ପାରି ।୨୪୮
କଲା ଉପୁଗାରମାନ ନ ମାନନ୍ତି ଯେବଣ ଜନ
ସଞ୍ଚୟେ ସେହୁ ପ୍ରାଣୀ ନରକେ ପତନ ।୨୪୯
ଗୋବିନ୍ଦେ ବୋଇଲେ ଦ୍ରିଯୋଧନ ଆଗର
ଯେ ତୋର ସଭାଗୋଟି ବାବରପୁରୀ ବିଚାର ।୨୫୦
ଭୀଷ୍ମେ ବୋଇଲେ ଦେବ ଶୁଣିମା ନାରାୟଣ
ବାବରପୁରୀ କଥା କେବଣ ପ୍ରକାରେଣ ।୨୫୧
ସେ କଥା ବିସ୍ତାରିଣ କହିବା ଦେବରାୟେ
ଆସ୍ତାନେ ତୁମ୍ଭେମାନେ ଶୁଣିମା ସଭିହେଂ ।୨୫୨
ଆସ୍ତାନେ ଶ୍ରୋଭା ଯେ ସମସ୍ତେ ଛନ୍ତି ହୋଇ
ବିସ୍ତାରିଣ କହୁଛନ୍ତି ଯଦୁକୁଳ ସାଇଂ ।୨୫୩
ପଛିମ ସଉରାଷ୍ଟ କୁରଳ ବୋଲି ଦେଶ
ବାବରପୁରୀ ବୋଲି କଟକ ପ୍ରକାଶ ।୨୫୪
ଭଣ୍ଡେଶ୍ୱର ବୋଲିଣ ଅଟେ ତହିଂର ରାଜା
ବାଇଭଣ୍ଡ ବୋଲି ମନ୍ତ୍ରୀ ରାଜାକୁ କରେ ପୂଜା ।୨୫୫
ଦେବତା ଅଛଇ ତହିଂ ଅଣ୍ଡିଆ କ୍ଷେତ୍ରପାଳ
ଲଙ୍ଗଳା ଦେବତା ସେ କେଶ ତା ମୁକୁଳା ।୨୫୬

ସେ ନଗ୍ର ଆୟେତନ ତିନିଶ ଯୋଜନ ଖଳା
ତିରୀ ପୁରୁଷ  ସମସ୍ତେ ଅଟନ୍ତି ସେ ଦେଶେ ଲଙ୍ଗଳା ।୨୫୭
ଭଣ୍ଡଶାସ୍ତ୍ରମାନ ସର୍ବେ କରନ୍ତି ଅଭ୍ୟାସ
ମିଥ୍ୟା ବିନା ସତ୍ୟକଥା ନାହିଁ ପରକାଶ ।୨୫୮
ମିଥ୍ୟା କଥା ଯେ କହଇ ତାକୁ ଦ୍ୟନ୍ତି ଶାଢ଼ୀ
ସତ୍ୟ କହେ ଯେଉଁ ପ୍ରାଣୀ ତାହାକୁ ପ୍ରାଣେ ମାରି ।୨୫୯
ଭଣ୍ଡଭାଷା ଭକତେ ଯେ ମିଛ କହ ଯତ
ଭଣ୍ଡାରୁ ଧନ ତାକୁ ଦିଅନ୍ତି ବହୁତ ।୨୬୦
ଦେବତା ବ୍ରାହ୍ମଣ ଯେବେ ସେ ଜନମାନ ଦେଖି
ଭୂମିରେ ପାଡି ତାହାର ଉପରେ ବସନ୍ତି ।୨୬୧
ସେ ନଗ୍ର ଲୋକଂକର ଯେମନ୍ତ ବିଚାର
ହେତୁକରି ଶୁଣ ତୁମେ ଗଙ୍ଗାର କୁମର ।୨୬୨
ଶିରେ ବସନ ବାନ୍ଧନ୍ତି କଟିରେ କିଛି ନାହିଁ
ତିରୀ ପୁରୁଷେ ଚାଲନ୍ତି ଉପସ୍ଥ ଯୋନି ଦେଖାଇ ।୨୬୩
ରାଜା ମନ୍ତ୍ରୀ ପାତ୍ର କିୟେ ବାରଣ ନ ଯାଇ
ପରଜାୟେ ବସନ୍ତି ରାଜାର ପାଶେ ଯାଇଂ ।୨୬୪
ଯାହାର ମନକୁ ଯୋଗାୟେ ଯେବଣହିଁ ନାରୀ
ଭୃଥା ଦେଖି ନ ବୋଲନ୍ତି ନିୟନ୍ତି ତାଂକୁ ଧରି ।୨୬୫
ୟେକର ମୁଖଗୋଟି ଆରେକ ଜଣ ଚାହିଁ
ସେହିଠାରେ ଶୃଙ୍ଗାର ଭାବ କରନ୍ତି ଲଜ୍ଜାଭାବ ନାହିଁ ।୨୬୬
ୟେକର ଯୁବତୀକି ଆରେକ ପୁରୁଷ ନିଅଇ
କାର୍ଯ୍ୟ ଲଭିସାରି ତାକୁ ଛାଡିଣ ଦିଅଇ ।୨୬୭
କେ କାହାର ବାପ ଭାଇ କେ କାହାର ପୁଅ
ମାନିତୀ ଗଉରୋବୀ ଖୁଡ଼େଇ ଦେଠେଇ ଝିଅ ।୨୬୮
ଯେ ଯାହାର ମନସୁଖେ ଶୃଙ୍ଗାର କରାନ୍ତି
ହାରି ଗୁହାରି ନାହିଁ ତହିଁକେ ନ ଶୁଣନ୍ତି ।୨୬୯
ୟେମନ୍ତେ ସେ ରାଜ୍ୟରେ ବଡ଼ାଇ ସମ୍ପଦ
ଅଖଳ ରାଜା ସେହୁ ନାହିଁ କଳି ଦ୍ୱନ୍ଦ୍ୱ ।୨୭୦
ଯେ ଯାହା ଅରଜଇ ସୁଖେ କରଇ ଭୋଗ
ନିଷ୍କର ଅଟଇ ସେ ଦେଶ ରାଜାକୁ ନ ଦିଅନ୍ତି ସଞ୍ଜାଭାଗ ।୨୭୧
ୟେମନ୍ତେ ରାଜ୍ୟ ଅଟେ ବାବରା ନଗ୍ରପୁରୀ
ଯେ ଯାହାର ଜଣେ ଜଣେ ମାନିତୀ ଗଉରୋବୀ ନ ବିଚାରି ।୨୭୨
ୟେମନ୍ତେ ଯେ ରାଜ୍ୟ ଅକଣ୍ଟେକ ହୋଇଥିଲା
ଅଦଭୁତେ ମାୟା ତହିଁ ଦଇବେ କୃତ୍ୟ ହେଲା ।୨୭୩
ଡାକେକ ଶୁଭିଲା ତହିଁ କୋକୁଆ ଭୟ ବୋଲି
ପ୍ରହରେ ବେଳ ଥାଉଂ ସେ ଦାଣ୍ଡେ ନୁଆରନ୍ତି ଚାଲି ।୨୭୪
ବେନିଘଡି ବେଳଯାୟେ ପଡଇ କବାଟ
ପ୍ରଭାତେ ବେନିଘଡି ନ ଚାଲନ୍ତି ବାଟ ।୨୭୫
ବୋଲୁଥାନ୍ତି କୋକୁଆ କେହି ତାକୁ ନ ଦେଖି
କେ ବୋଲଇ କୋକୁଆର ସାତଗୋଟା ଆଖି ।୨୭୬
ଧରିବା ମାତ୍ରେ ଗିଳଇ ଖଣ୍ଡିୟେ ନ ପକାଇ
ୟେମନ୍ତେ ସେ ନଗ୍ରେ ବଡ଼ ଭୟ ପାଇ ।୨୭୭
କେ ବୋଲଇ ୟେହିକ୍ଷଣି ମୁଂ ଦେଖିଲଇଂ ବେନିଗୋଟା
ଆକାଶେ ପୂରିଅଛି ସରୂପ ତାର ମୋଟା ।୨୭୮
ପୋୟେମାନେ କାନ୍ଦିଲେ ଡରାନ୍ତି ବାପ ମାୟେ
କୋକୁଆ କଥା ଶୁଣି ପାନ୍ତି ବଡ଼ ଭୟେ ।୨୭୯
ୟେମନ୍ତେ ଦିନେ ତହିଂ ଗୋଳେକ ଉପୁଜିଲା
ମରାମରି ହୋଇ ତହିଂ ଅନେକ ଲୋକ ମଲା ।୨୮୦
ନାନାଦି ଅନର୍ଥ ଯେ ଦଇବ ବଳେ ହେଲା
ଉପଦର୍ପ ଉତପାତ ପ୍ରବେଶ ହୋଇଲା ।୨୮୧
ଅଦଭୁତେ ଅରିଷ୍ଟି ହୋଇଲା ଉତପାତ
ବିପ୍ର ଚଣ୍ଡାଳେ ତହିଂ ହୋଇଲେ ୟେକତ୍ର ।୨୮୨
ଆପଣେ ଆପଣେ ମଲେ ଶତ୍ରୁ ନାହିଂ ଉପଗତ
ବାବରା ନଗ୍ରପୁରୀର ୟେହେନ୍ନେକ ଚରିତ ।୨୮୩
ଦେବ ଦାନବେ ନଥିଲା ତହିଂ ଶଂକା କିଛି
ସେହିମତି ପ୍ରାପେକ ଯେହି ଆସ୍ଥାନ ହୋଇଅଛି ।୨୮୪
ଆନମିତେ ୟେ ଆସ୍ଥାନ ଅଟଇ ଅବିଧି
ହତକାଳେ ପ୍ରାଣୀଂକି ଦିଶଇ ବିପରୀତ ବୁଦ୍ଧି ।୨୮୫
ଶୁଣ ହୋ ଗାଙ୍ଗବେ ବୋଇଲେ ନାରାୟଣ
ଦ୍ରିଯୋଧନର ଚରିତ ୟେମନ୍ତ ଭିଆଣ ।୨୮୬
ଶୁଣିଣ କୁରୁପତି କ୍ରୋଧଭର ହୋଇ
କିମ୍ପାଇଂ ଆସିଅଛ କହ ଯଦୁସାଇଂ ।୨୮୭
ମାନଗୋବିନ୍ଦ ବଚନେ ବୋଲନ୍ତି ନାରାୟଣ
ସୋଦର ଅଟନ୍ତି ତୁମ୍ଭର ପାଣ୍ଡବ ପାଞ୍ଚଜଣ ।୨୮୮
ଆହୋ ମାନଗୋବିନ୍ଦ ପଢ଼ା ପାଞ୍ଚଖଣ୍ଡ ତୁ ଦିଅ ପାଣ୍ଡବଂକୁ
ଲକ୍ଷ୍ମୀ ଶାନ୍ତି ଚିର ପ୍ରାପତ ହୋଇ ତୁକୁ ।୨୮୯
ଦ୍ରିଯୋଧନ ବୋଇଲା ହରି ଆଜକ ୟେଥେ ରହ
ଅସ୍ଥାନ ବେଳେ ୟେକଥାମାନ ମୋତେ କହ ।୨୯୦
ନାଡିଘଡିୟା ଜଣାଇଲା ଆସି ଆସ୍ଥାନର ତଳ
ସୂର୍ଯ୍ୟବେଳ ପ୍ରକାଶ ହୋଇଲା ଆସି ୟେତେବେଳ ।୨୯୧

ସ୍ୱାମୀ ସୂର୍ଯ୍ୟବେଳେ ମଣୋହି କଲେ ଆଧାର ହୋଇ ପଂକୁ
ଚନ୍ଦ୍ରବେଳେ ନ ଯୋଗାଇ ଭୋଜନ କରିବାକୁ ।୧୯୨
ଦ୍ରିଯୋଧନ ବୋଇଲା ଶୁଣିମା ଜନାର୍ଦ୍ଦନ
ଆହାର୍ଣ୍ଣିକ ସାରି ଯେଥି କରିବା ଭୋଜନ ।୧୯୩
ଗୋବିନ୍ଦେ ବୋଇଲେ ଆମ୍ଭେ ଯାଉଅଛୁଂ ବିଦୁର ଭୁବନକୁ
ତହିଂ ସେ ଭୋଜନ ବିଧି ହୋଇଛି ଆମ୍ଭଂକୁ ।୨୯୪
ସରାଗୀ ବିଦୁରକୁ ଯହୁଂ କହିଲେ ବନମାଳୀ
ଶୁଣିଣ ମାନଗୋବିନ୍ଦ କୋପେଣ ପ୍ରଜ୍ୱଳି ।୨୯୫
ହରି ହେ ଶକୁନି କହିଲାନି ତୋହୋରି କଥାମାନ
ସେ ମହାମନ୍ତ୍ରୀର ବଚନ କେ କରିବ ଆନ ।୨୯୬
କଂଳକ ବୁଡିଲୁ ହରି ଗଉଡଂକ ମେଳେ
ସେ ପ୍ରକୃତି ତୁ ନ ଛାଡିଲୁ ଯେତେବେଳେ ।୨୯୭
ଶୂଦ୍ରକସେନ ବୋଲି ଯେକଇ ଶୂଦ୍ରଜାତି
ତାହାର ଦୁହିତା ନାମ ଅଟେ ଅମ୍ବୁବତୀ ।୨୯୮
ପାରେଶ୍ୱର ନନ୍ଦନ ତାହାର ତୁଳେଣ ପୀରତି
ବ୍ରାହ୍ମଣ ବୀର୍ଯ୍ୟେ ଶୂଦ୍ରେଣୀ ଗର୍ଭେଣ ବିଦୁର ଉତପତ୍ତି ।୨୯୯
ପ୍ରତକ୍ଷେ ନର ଚାଣ୍ଡାଳ ବୋଲିଟି ତାହାକୁ
ସୋଗେଣ ପାଣ୍ଡୁ ଯେ ଅଭିନ୍ନ କଲେ ବିଦୁରକୁ ।୩୦୦
ବ୍ରାହ୍ମଣ ହୋଇ ଯେବେ ଶୂଦ୍ରେ କରଇ ପ୍ରତିଗ୍ରହ
ସଞ୍ଚୟେ ସେ ବ୍ରାହ୍ମଣର ନରକେ ହୋୟେ ଦେହ ।୩୦୧
ବ୍ରାହ୍ମଣ ହୋଇ ଯେବେ ଶୂଦ୍ର ଘରେ ଭୁଞ୍ଜି
ନାଶକର ଦଣ୍ଡେ ଯେ ଅବଶ୍ୟ ହୋଅଇ ଗଞ୍ଜି ।୩୦୨
ବ୍ରାହ୍ମଣ ହୋଇ ଯେବେ ଶୂଦ୍ରେଣୀରେ ବୀର୍ଯ୍ୟ ଢାଳଇ
ରଉରୋବ ନରକେ ସେ ପଡଇ ଚିର କାଳଇଂ ।୩୦୩
ବ୍ରାହ୍ମଣ ହୋଇ ଯେବେ ଶୂଦ୍ରକଇଂ କରଇ ସେବା
କୃମିପୋକ ହୋଇ ସେ ପଡଇ ରଉରୋବା ।୩୦୪
ବ୍ରାହ୍ମଣ ହୋଇ ଯେବେ ହରଇ ପରବିତ୍ତ
କୋଟିଯେ ଜନ୍ମେ ନର୍କେ ଥାଇ ନୋହଇ ମୁକତ ।୩୦୫
ତୁ ଯେ ହରି ଜନ୍ମିଲୁ ଯଦୁ ଋଷିର ବଂଶେ
ଶୂଦ୍ର ଅନ୍ନକୁ କେନ୍‌ହେ ବଢ଼ାଇଲୁ ପ୍ରୀତିଆଶେ ।୩୦୬
ବିଚାରେ ପ୍ରୀତି ସେ ହୋଇ ନୁଆସଇ ଯୁଗତେ
ଅନ୍ୟ ଜାତି ଅନ୍ନ ତୁ ଭୁଞ୍ଜିବୁ କେମନ୍ତେ ।୩୦୭
ଅନେକ ଝିଂଘାସ ଯହୁଂ କଲାକ ଧୃତିରାଷ୍ଟ୍ରି
ଧିକ୍‌କାର କରି ରାଜା ଆସ୍ତାନୁଂ ଗଲେ ଉଠି ।୩୦୮

ମାନଗୋବିନ୍ଦେ ବିଜୟେ କଲେ ଯାଇଂ ନିଜପୁରେ
ବହୁତ ଯୋଗାଡ଼ ହୋଇଅଛି ଯେ ସମ୍ଭାରେ ।୩୦୯
ବହୁତ ଅଗାଦ ଯେ ଯମୁନା ନଦୀଗୋଟି
ଅବଗାହି ସ୍ନାହାନ ତହିଂ କରଇ ଧୃତିରାଷ୍ଟି ।୩୧୦
ନିତ୍ୟକର୍ମ ସାରି ତହିଂ ମାନଗୋବିନ୍ଦ ରାୟେ
ଦେବାର୍ଚ୍ଚନ ସାରିଣ ମୁଣୋହିରେ ବିଜୟେ ।୩୧୧
ଅମୃତ ରସ ଯୋଗାଡ଼ ଷଡରସ ଭୋଗୀ
ମୁଣୋହି ସାରିଣ ରାଜା ଅନେକ ରତ୍ନଲାଗି ।୩୧୨
ଅଞ୍ଚୋବନ ସାରି ରାଜା କ୍ରପୂର ତାମ୍ବୁଳନ୍ତ ଭୁଞ୍ଜି
ନିଅବକାଶେ ରାଜା ଷିରୀରସେ ଭଜି ।୩୧୩
ଅନେକ କୁସୁମ ସୁପଞ୍ଚ କସ୍ତୁରୀ ଗନ୍ଧ ଲେପି
ଦେବାଙ୍ଗ ବସନମାନ ଅଙ୍ଗେଣ ପରିଧାପି ।୩୧୪
ବାହାର ଅବକାଶ ରାଜା ଚନ୍ଦ୍ରଶାଳା ଭୁବନେ
ଜାଣିଣ ଦ୍ରଶନ କଲେ ମାହାରୀ ଖଟଣିମାନେ ।୩୧୫
ଖଟନ୍ତି ବିଳାଶୁଣୀୟେ ଭରହର ନାୟେକା
ତାଣ୍ଡେବ ଆରୋପଣେ ବିଚିତ୍ର ଶାୟିକା ।୩୧୬
ଯେଥୁ ଅନନ୍ତରେ ଶୁଣ ହୋ ଚଇତନ
ଗୋବିନ୍ଦେ ବିଜୟେ ଯେ କରିଥିଲେ ଆସ୍ତାନେଣ ।୩୧୭
ରାଜା ବିଜେକଲେ ଦେଖି ଆସ୍ତାନ ମଉଳି
ଋଷିଗଣେ ତାହିଂଣ ବଦୟନ୍ତି ବନମାଳୀ ।୩୧୮
ଅନ୍ତପୁରେ ରାଜା ହୋଇଲେଣି ଅବକାଶ
ଚାଲ ଆମ୍ଭେ ଯିବା ହୋ ବିଦୁରର ବାସ ।୩୧୯
ଯେତେକ ବୋଲିଣ ଯେ ଚଳନ୍ତି ଦାମୋଦର
ନାରାୟଣ ବିଜେକଲେ ଯାଇଂ ବିଦୁରର ପୁର ।୩୨୦
ଆହାନିକ ସାରିଣ ଯେ ଋଷିଗଣ ମେଳେ
ଅନେକ କଉତୁକ ହୋଇଲା ଗଙ୍ଗାନଦୀ କୂଳେ ।୩୨୧
ଅନେକ ଭଗତିଭାବେ ଖଟଇ ବିଦୁର
ମୁଣୋହି ମନ୍ଦିରେ ଯାଇଂ ବିଜୟେ ଦାମୋଦର ।୩୨୨
ଖଣ୍ଡଖିରୀ ଶାକର ଯେ ଅଧାମ କ୍ରପୂର ବାସପଣା
ଅମୃତପାନି କଦଳୀ ପଇଡ ଗଙ୍ଗବାଣ ଅଗଣା ।୩୨୩
କେଶର ସିଙ୍ଗଡ଼ା ଗୁଡ଼ାୟେ ଯେ ନାରାୟଣ ଭୋଗି
ଶୀତଳ ଦ୍ରବ୍ୟ ଯେ ହେଲେ କୁତୁହୋଳେ ଲାଗି ।୩୨୪
ନଟୀକାଳ ତାଳସଜ ଖଜୁରୀ ଛେନା ଯେ ଯେଣ୍ଡୁରୀ
ଖଣ୍ଡରସ ଚକୁଳୀ ଦଧିଦୁଧ ସରପୁଳି ।୩୨୫

ବିଦୁର ଭଗତି ହୋଇଲାଟି ଯେବଣ ବାଗେ
ଅମର ପଦଦେଇ କେଶବ ଲୋଡନ୍ତି ଅନୁରାଗେ ।୩୨୬
ଅମ୍ବିକାତୀର ନନ୍ଦନ ଯେ ଜାଣଇ ସକଳ ବୁଦ୍ଧି
ଋଷିମାନଙ୍କର ଭୋଜନ ଯେତେନେକ ବିଧି ।୩୨୭
ପ୍ରସନ୍ନେ ଅଭୟେବର ଦିଲେକ ସର୍ବଋଷି
କଲ୍ୟାଣ କରି ବୋଲନ୍ତି ବିଦୁର ତୁ ବଇକୁଣ୍ଠ ଭୁବନ ପାଅସି ।୩୨୮
ଛାମୁରେ ବିଦୁର ଯେ କହନ୍ତି କରପତ୍ର ଯୋଡି
ତ୍ରଇଲୋକ୍ୟର ନାଥ ତୁ ବ୍ରହ୍ମାଣ୍ଡ ଅଧିକାରୀ ।୩୨୯
ସ୍ୱାମୀ ମଧପାତ୍ରପଣେ ଅଇଲୁ କାର୍ଯ୍ୟ ନୋହିଲାକ କିଛି
ବାହୁଡ଼ି ଯୁଝେଷ୍ଟି ଦେବଂକୁ ଜଣାଅ ଶ୍ରୀବଛି ।୩୩୦
ଗୋବିନ୍ଦେ ବୋଇଲେ ନଜାଣି ତୁ କହିଲୁ ମନ୍ଦକଥା
ଯେ ସେ ଯୁଝେଷ୍ଟି ସେ ମୋତେ ନିରଞ୍ଜନ ଦେବତା ।୩୩୧
ତାହାର ଆଗ୍ୟାଂଯେ ମୁଂ ଅଇଲି ଦୂତକାରୀ
କାର୍ଯ୍ୟସିଦ୍ଧି ନୋହିଲେ କି ପାରିବି ବାହୁଡ଼ି ।୩୩୨
ବିଦୁର ବୋଇଲେ ସ୍ୱାମୀ ହୋଇଲ ଦୂତପଣ
କୃଷ୍ଣହୁଂ ଦୂତ କେ ଅଛଇ ଆନଜଣ ।୩୩୩
ସ୍ୱାମୀ ପଞ୍ଚଗ୍ରାମ ମାଗୁ ଯୁଝେଷ୍ଟି ଦେବଂକର ବାକ୍ୟେ
ତ୍ରିପୁତି ହୋଇବେ କି ସେ ଯେଙ୍କଇ ଗ୍ରାମକେ ।୩୩୪
ସର୍ବଥା ମାନଗୋବିନ୍ଦ ପାଣ୍ଡବଂକୁ ନ ଦିଅଇ କିଛି
ଯେ ଘେନିକରି ପଞ୍ଚଗ୍ରାମ ପାରିବ କି ମୂରୁଛି ।୩୩୫
ଅଥବା ଅଭର୍ଥୀ କରି ମାଗିବି ପଞ୍ଚଗ୍ରାମ
ଯେତେକେ ତ୍ରିପୁତି ଭଜିବୁ କି ଶ୍ରୀପୁରୁଷୋତ୍ତମ ।୩୩୬
ଗୋବିନ୍ଦେ ବୋଇଲେ ଯେ ସେ ପଞ୍ଚ ପାଣ୍ଡବେ
ଯେକୁଯେକ ବଳବନ୍ତା ଅଟନ୍ତି ମହାହବେ ।୩୩୭
ପାଞ୍ଚେହେଂ ବୋଇଲେ ମୋତେ ପଞ୍ଚଗ୍ରାମ ମାଗି
କାହାର ବଚନ ମୁଂ ପାରିବି ପରିତ୍ୟାଗୀ ।୩୩୮
ପାଇଲେ ପଞ୍ଚଗ୍ରାମ ମାଗିବି ନୋହିଲେ ନୋହୁ କିଛି
ପୁଣି ପାଣ୍ଡବେ ଯାଆନ୍ତୁ ବନକୁ ରାଜ୍ୟ ମୁଛି ।୩୩୯
ଯେଥୁ ଅନନ୍ତରେ ହୋ ଶୁଣିବା ଚଇତନ
ଭୀଷ୍ମ ଦ୍ରୋଣ ମିଳିଲେ ଯାଇଂ ମାନଗୋବିନ୍ଦ ସନ୍ନିଧ୍ୟେଣ ।୩୪୦
ପ୍ରସ୍ତାବ ବାକ୍ୟେଣ ଯେ ବଦୟନ୍ତି ଗାଙ୍ଗବ
ମଧ୍ୟସ୍ଥପଣେ ଯେ ଆସିଅଛନ୍ତି ବାସୁଦେବ ।୩୪୧
ନାରାୟଣଂକ ତୁଲ୍ୟ ସର୍ବଋଷି ଛନ୍ତି ସାକ୍ଷୀ
ଯୁଝେଷ୍ଟିଂକ ଆଗ୍ୟାଂଯେ ହରି ପଞ୍ଚଗ୍ରାମ ମାଗୁଅଛି ।୩୪୨
ଶୁଣିଣ ପ୍ରତିବାକ୍ୟ ଦିଲା ମାନଚକ୍ରବ୍ରତୀ
ପଡ଼ା ଦୁଇଖଣ୍ଡି ଦେଇ ହରିଂକି କରିବା ତ୍ରିପୁତି ।୩୪୩
ଶୁଣିଣ ତୁଷ୍ଟ ହୋଇଲେ ଭୀଷ୍ମ ଦ୍ରୋଣ ବେନି
ପ୍ରତିବାକ୍ୟ ଦିଲାକ ତହିଂ ମନ୍ତ୍ରୀବର ଶକୁନି ।୩୪୪
ଆହେ ଭୀଷ୍ମେ ଦ୍ରୋଣେ ତୁମ୍ଭେ ଯେ ଜଗନ୍ନାଥଂକୁ ପଡ଼ା
ଦୁଇଖଣ୍ଡି ଦେବାକଲ
ଯେ କଥା ମୋହ ମନକୁତ ନୁଆସଇ ଭଲ ।୩୪୫
ଯଦ୍ୟପି ପଞ୍ଚଗ୍ରାମ ନ ପାବନ୍ତି ଶିରୀବସି
ତେବେ ସେ ନାରାୟଣ ନୁହନ୍ତି ତ୍ରିପୁତି ।୩୪୬
ଯଦ୍ୟପି ଯେକ ଗ୍ରାମକଇଂ ଦେବାର କରିବ
ଯେକା ଗ୍ରାମକେ ହରି ସେ ସଚରାଚର ପୃଥିବୀ ଘେନିବ ।୩୪୭
ଶୁଣ ହୋ କୁରୁପତି ଯେହି ନାରାୟଣ କଥା
ସତ୍ୟଯୁଗେ ବଳିରାଜା ଦାନେଣ ଶକତା ।୩୪୮
ବୃନ୍ଦାଅର୍କ ଜିଣିଣ ସେ ହୋଇଲା ଯେକଜଣ
ଦେବତାନ୍ତ ଜିଣି ସେ ଇନ୍ଦ୍ର ହୋଇଲା ସ୍ୱର୍ଗେଣ ।୩୪୯
ପାତାଳେ ଜିଣିଲା ସେ ନାଗଲୋକମାନନ୍ତ
ମଞ୍ଚପୁରେ ଜିଣିଲା ସେ ସକଳ ଛତ୍ରୀନ୍ତ ।୩୫୦
ତିନିପୁରେ ରାଜା ସେ ବଳି ଯେ ନୃପତି
ତାହାକୁ ପାତାଳୀ କଲାଟି ଯେହି ପରମଜ୍ୟୋତି ।୩୫୧
ସପତ ଦ୍ୱୀପା ପୃଥୀ ଘୋଟିଲାଟି ଯେହାର ପାଦ
ତିନିପାଦ ଦିଅନ୍ତେ ତାକୁ କଲାଟି ପରମାଦ ।୩୫୨
ମାୟାଯେ ନିରୋଧିଲା ତାହାର ତିନିଭୁବନ ଘେନି
ମାୟାଧର ପୁରୁଷ ସେ ମାୟା ନିଶୋଧନି ।୩୫୩
ଦ୍ରିଯୋଧନ ବୋଇଲା ସେ ବଳି ତିନିଭୁବନ ରାଜା
କହ ମାମୁଂ ଭାଞ୍ଜିଲା କେମନ୍ତ ସେ ଯେହାର ପରିଜା ।୩୫୪
ଶୁଣ ହେ କୁରୁପତି ଆଦି ଅନ୍ତ ମଧବାଣୀ
ସତ୍ୟଯୁଗ କଥା ତୋତେ କହଇ ବଖାଣି ।୩୫୫
ମୁନିମାନଂକ ମୁଖୁଂ ଅଛଇଂ ମୁହିଂ ଶୁଣି
ତେଣୁ କରି ପୂର୍ବକଥା କହଇ ସର୍ବବାଣୀ ।୩୫୬
ଦେବତାଂକ ସହିତେ ସେ ଜିଣିଲା ବଳି ଇନ୍ଦ୍ର
ଛଡ଼ାଇ ଇନ୍ଦ୍ରପଦ ସେ ହୋଇଲା ନରେନ୍ଦ୍ର ।୩୫୭
ବୃନ୍ଦାଅର୍କ ନାମେ ଯେ ରଞ୍ଚିଲା ଯେକ ଯାଗ
ଦେବଲୋକେ ଆସିଣ ଯେ ପଡ଼ିବେ ହରିବି ଭାଗ ।୩୫୮
ଦେବତାନ୍ତ ନାଶି ସେ ସ୍ୱର୍ଗେ ହୋଇବାକ ଇନ୍ଦ୍ର

ବସିବ ଅମରେ ସେ ଘେନିଣ ସମ୍ପଦ ।୩୫୯
ନାରଦ କହନ୍ତେ ସେ ଅଇଲା ବେଦବରଇ
କ୍ଷୀରୋଦ୍ର ଭିତରେ ନାରାୟଣଂକୁ ଲୟେ କରଇ ।୩୬୦
ବଳିର ଅନୀତି ଦେଖ ହୋ ଜଳଶାହୀ
ବୃନ୍ଦାଅର୍କ ଝିଂଘାସିଣ ବଳିଯାଗ କଲା ତହିଂ ।୩୬୧
ତବ ହେତୁ ଜାତ ବୋଲି ନ ବୋଲୁଂ ଆମ୍ଭେ କିଛି
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଅସୁର ଭୋଗ୍ୟ ହୋଇଅଛି ।୩୬୨
ଆଦି ସିଂହିକାର ତହୁଂ ଉପୁଜିଲା ରାହୁ
ରାହୁର ନନ୍ଦନ ଯେ ଉପୁଜିଲା ବୀରବାହୁ ।୩୬୩
ବୀରବାହୁର ନନ୍ଦନ ଅଟଇ ଜମ୍ଭୁଦତ୍ୟ
ବଜ୍ରକପଚ ବୋଲିଣ ତାହାର ନିଜ ସୁତ ।୩୬୪
ବ୍ରଜ୍ରକପଚର ସୁତ ଯେ ହିରଣ୍ୟ ହିରିଣାକ୍ଷ
ପ୍ରହଲାଦ ବୋଲିକରି ତାହାର ନିଜ ବଂଶ ।୩୬୫
ପ୍ରହଲାଦର ସୁତ ଯେ ବଇଲୋଚନ ରାୟେ
ମାଳତୀର ଗର୍ଭରେ ବଳିକି ଉପୁଜାୟେ
ମାଳତୀ ରୂପେଣ ହରି ବଇଲୋଚନ କଲେ କ୍ଷୟେ ।୩୬୬
ମାୟାଧର ପ୍ରଭୁ ତୁମ୍ଭେ ସବୁଂକରି ଚିନ୍ତା
ଅସୁରଂକର ଭୟରୁ ଦେବ ତୁହି ସେ ଉଦ୍ଧାରନ୍ତା ।୩୬୭
ବଳିକି ବିନାଶିବାକୁ ତୁ କରସି ଦେବ ବୁଦ୍ଧି
ତହୁଂ ବାବନ ରୂପ ଧରିଲେ କରୁଣା ବାରାଧି ।୩୬୮
ଅତି ଖୂର୍ପ ରୂପ ହୋଇଲେ ବାସୁଦେବେ
ବାଆନ ଅଙ୍ଗୁଳି ଉସର୍ଗ ବିକାଶିଲା କାୟା ସର୍ବେ ।୩୬୯
ଆହୋ ଭୀଷ୍ମ କାନ୍ଧେଣ ଛତା ଯେ ହାଥରେ ବେଦ ପୋଥି
ଦଣ୍ଡ କମଣ୍ଡଳ କରେ ତାମ୍ରବର୍ଣ୍ଣ ମୂରତି ।୩୭୦
ନବଗୁଣ ପଇତା ବାମ କନ୍ଧେଣ ଉତ୍ତୁରୀ
କଣ୍ଠେଣ ତୁଳସୀମାଳ ହାଥେ ଜପାମାଳୀ ।୩୭୧
କାଖେ ବେଦ କରାଣ୍ଡି ଯେ ପିନ୍ଧି କଷା ବସନ
କଟିରେ ପୁଣ୍ଡରୀକ ଚର୍ମ ନିବିଡ଼ ବକ୍ର ଛଉଂରୀ ପୁଣ ।୩୭୨
ତ୍ରିବେଣୀ ସ୍ରୋହାପାତ୍ର ପ୍ରୋକ୍ଷଣୀ କଉପୁନି ବ୍ରହ୍ମସାଧି
ତମ୍ବାପାତ୍ରୀ ଗଡୁ ପୀଢ଼ା ଯେନ୍‌ହେ ବ୍ରହ୍ମାଙ୍କର ବିଧି ।୩୭୩
ଯଜନ ଯାଜନ ଅଧୟନ ଅଧାପନ ଦାନ ପ୍ରତିଗ୍ରହ ଆଦି
ଷଟ୍‌କର୍ମ ବିଦ୍ୟା
ଗୋପ୍ୟାନେ ଦୋହୋରା ଶ୍ରବଣେ ଭୂଷଣ ଯେ ମୁଦ୍ରା ।୩୭୪
ଶରୀରେ ଶୋଭାବନ ଯେ ଦ୍ୱାଦଶ ଚିତାଗୋଟି
ସମାଦି ମଉନେ ଯେ ବାଳୁତ କାୟେ ସେଟି ।୩୭୫
ଅନନ୍ତ ଶରୀର ଦଧିବାମନ ମୂରତି
ଯେକ କରେଣ ଖଣନ୍ତି ଆରେକ କରେ ବେଦ ପୋଥି ।୩୭୬
ମକର ମାସ ଶୁକଳପକ୍ଷ ପଞ୍ଚମୀର ତିଥି ଦିନ
ଭୃଗୁବାର ନକ୍ଷତ୍ର ଯେ ଉତ୍ତରାଫାଲଗୁନ ।୩୭୭
ବିଷ୍କୁମ୍ଭ ନାମେ ଯୋଗ ବିଷ୍ଟି ନାମେ କରଣ
ବାବନ ପ୍ରବେଶ ଯାଇଂ ବଳିରାଜା ଦ୍ୱାରେଣ ।୩୭୮
ବଳି ଦ୍ୱାରେ ଛନ୍ତି ଅଶିସସ୍ର ମାଳେ ବସି
ବାବନ ରୂପ ଦେଖି ନାସିକାୟେ ହାଥ ଦେଇ ହସି ।୩୭୯
କର ଚରଣେ ଜାନୁ ଅଙ୍ଗୁଷ୍ଠ ଯେ ବିଂଶ
ଗଜମୁଖ କପାଳ ଅଙ୍ଗୁଳା ଦ୍ୱାଦଶ ।୩୮୦
ବାବନ ରୂପ ବିକାଶି ବାଆନ ଅଙ୍ଗୁଳ ଦିଶଇ
ଦେଖିଣ ସର୍ବଜନେ ହାସକଲେ ତହିଂ ।୩୮୧
ସୁବାହୁ ମାଲ ଯେ ମାପିଲା ତିରିଶ ନାଡ଼େକ ଘେନି
ପାଦ ଦ୍ୱାଦଶ ଆଙ୍ଗୁଳ ବାଆନ ଆଙ୍ଗୁଳ କାୟେ ପୁଣି ।୩୮୨
ହଠକର୍ମୀ ମାଳେ ମିଳି କହନ୍ତି ବିତଣ୍ଡା
କେବଣ ଦେଶର ହୋ ବିପ୍ର ବାବନ ପଣ୍ଡା ।୩୮୩
କୁଶ ହାଥେ ତଣ୍ଡୁଳ ଘେନି ସହସ୍ର ଶୀର୍ଷା କାଣ୍ଡି
ଅଣ୍ଡିରା କୋକିଳ ଜାଣି ଆକ୍ରୋଷି ଦେବ ପଢ଼ି ।୩୮୪
ବାଭିୟେ ମୁହିଂ ତୁମ୍ଭନ୍ତ ନ ଚିହ୍ନଇ ତୁମ୍ଭେ କଲ୍ୟାଣ ହୁଅ
ବଳି ରାଜାର ଛାମୁରେ ଯାଇଂ ବାରତା ବେଗେ କହ ।୩୮୫
ବୋଲ ଅଭ୍ୟାଗତ ଦ୍ୱିଜବର ବହୁତ ବିଦେଶୀ
ବିଭୋଷିତ ହୋଇଣ ସେ ଅପାର ଧୂରୁଂ ଆସି ।୩୮୬
ଆକ୍ଷ୍ୟ ଆରୋଗ୍ୟ ବାବୁ ହୋଉ ଯେ ତୁମ୍ଭଂକୁ
ରାଜାଂକୁ ଦ୍ରଶନ ନେଇ କରାଅ ଆମ୍ଭଂକୁ ।୩୮୭
ମାଳେ ବୋଇଲେ ପଣ୍ଡାୟେ ଆସ୍ତାନ ଗହଳ
ପୂର୍ଣ୍ଣଆହୁତି ହୋଉଛି ମହାଦାନ ବେଳ ।୩୮୮
ମହା ମହା ବେଦୀ ବିପ୍ରେ ନୁଆରନ୍ତି ପଶି
ତୋତେ ଛାମୁକୁ ନେଲେ ପାଇବୁ ଉପହାସି ।୩୮୯
କେହି ନ ଶୁଣିଲେ ଯହୁଂ ବାବନର କଥା
କିଂଭୁତ ପ୍ରାୟେ ମଣିଲେ ସେ ନାରାୟଣ ଦେବତା ।୩୯୦
ସିଂହଦ୍ୱାରେ ଥାଇ ବାବନ ଯେ କଲେ ଦେବଧ୍ୱନି
ଗହ ଗହ ଶବଦେ ଯେ ପୂରିଲା ମେଦିନୀ ।୩୯୧
ଢୋଲ ଦମା ଟମକ ନିଶାଣ ଭେରି ବାଦ୍ୟ

ସମସ୍ତ ବୁଡ଼ିଲା ବାବନର ବେଦନାଦ ।୧୩୯୨
ଶ୍ରବଣେ ପଶନ୍ତେ ଯେ ଡଲୟେ କଲା ବଳି
କିମ୍ଭୂତ ଶବଦେ ଯେ କମ୍ପିଲା ମହୀଆଳି ।୧୩୯୩
ରାଜାର ଅଗ୍ରତେ ଯାଇଂ ଜଣାଇଲେ ମୁନେହିଂ
ସ୍ୱାମୀ ଯେକ ବ୍ରାହ୍ମଣେଟି ଖୁର୍ପିରୂପ ଦେହୀ ।୧୩୯୪
ବେଦ ଆଧାନ କରି ରହିଅଛି ସିଂହଦ୍ୱାରେ
ବ୍ରହ୍ମାଣ୍ଡ କମ୍ପୁଅଛି ତାହାର ବେଦର ଡଂକାରରେ ।୧୩୯୫
ବ୍ରହସିତ ଭାବେ ଯେ ନରୀନ୍ଦ୍ର କୁତୂହୋଳୀ
ଆଣରେ ଦ୍ୱିଜବର ବୋଲି ଆଗ୍ୟାଂଦିଲେ ତୋଳି ।୧୩୯୬
ମୁନେହିଂ ବୋଇଲେ ଆଗ୍ୟାଂ ହୋଇଲା ଆସ ହୋ ବ୍ରାହ୍ମଣ
ରାଜାର ଆଗ୍ୟାଂ ପାଇଣ ଭିତରେ ପଶିଲେ ତତକ୍ଷଣ ।୧୩୯୭
ଚଳଇ ବାବନ ବିପ୍ର ସଞ୍ଚ ସଞ୍ଚ ପାଦଗତି
ଦୂରୁଂ ଦେଖିଲା ବଳିରାୟେ ବାବନ ମୂରତି ।୧୩୯୮
ବୟସ ଅଳ୍ପ ସାମାନ୍ୟ କ୍ଷୀଣ କାୟା
ବଡ଼ାଇ ଅଗୋଚର ମଣଇତ ଯେ ବ୍ରାହ୍ମଣର ମାୟା ।୧୩୯୯
ଦେଖିଣ ଉପହାସ୍ୟ କଲେ ଦାନବ ବଳେ
ବିଜୟେ ବାବନ ଯାଇଂ ବଳିରାଜାର ଯାଗଶାଳେ ।୧୪୦୦
ଆହୋ ଚଇତନ ଇଦ୍ୟବାକ୍ୟ ବଳିରାଜାର ସମ୍ବାଦେ
ଅପୂର୍ବ ବ୍ରାହ୍ମଣ ଯେତ ବାଳୁତ ବୟସ ହାଦେ ।୧୪୦୧
କୁଶହାଥ ହୋଇଣ ଯେ ଦେବ ଦଇତାରି
ଅଖଣ୍ଡିତ ତଣ୍ଡୁଳ ଘେନି ଆଶିଷ୍ୟ କରନ୍ତି କର ପ୍ରସାରି ।୧୪୦୨
ଆହୋ ଚଇତନ ପ୍ରଥମ ଆଶିଷ୍ୟ ଯେ ମହାମନ୍ତ ବାଦୀ
ପଚାରନ୍ତି ରାଜା ପଣ୍ଡାୟେ ତୁମ୍ଭେ କେଉଂଣ ବେଦୀ ।୧୪୦୩
କେବଣ କୁଳଗୋତ୍ର କେବଣ କୁଳେ ଜାୟେ
କେବଣ ଦେଶ ଜାତ କେ ତୁମ୍ଭର ବାପ ମାୟେ ।୧୪୦୪
ନାମ ସଂକେତ କିସ ତୁମ୍ଭେ କେବଣ ମନ୍ତବେଦୀ
କିସ ଅର୍ଥେ ବିଭୋକ୍ଷିତ କହସି ବାକ୍ୟସିଦ୍ଧି ।୧୪୦୫
ବୟସ ଅଳପ ବାଳୁତ ବୁଦ୍ଧିଭାବ
ବେଦ ଅଧାନ ଶବଦେ କମ୍ପଇ ଭୂଅସର୍ବ ।୧୪୦୬
ବାବନ ସମ୍ବାଦ କରଇ ଅମୃତ ରସବାଣୀ
ଉତକଳ ଦେଶେ ନଦୀ ବହଇ ବଇତରଣୀ ।୧୪୦୭
ବାରାହି ବୋଲିକରି ଅଟଇ ଯେକଇ ଶାସନେ
ମନୋହର ନଗ୍ର ଚଇତନ ପାଟଣା ସନ୍ନିଧାନେ ।୧୪୦୮
ତହିଂର ଶାସନୀ ଆମ୍ଭେ ମହାଜନ ପାଣିଗ୍ରାହୀ
ନିରଞ୍ଜନ ଧର୍ମ ଦାସ ପଣ୍ଡାଂକର ପୁତ୍ର ଆମ୍ଭେ ତିନିଭାଇ ।୧୪୦୯
ମାତାଂକର ନାମ ଆମ୍ଭର ଅଟଇ ଅନନ୍ତାୟୀ
ବ୍ରହ୍ମଦାସ ପଣ୍ଡା ଆମ୍ଭର ନିଜ ଭାଇ ।
ସନାନନ୍ଦ ଦାସ ଆମ୍ଭର ଦୁଜ ଭାଇ ହୋଇ ।୧୪୧୦
ନିରାକୁଳ ବଂଶୀ ଆମ୍ଭେ ଜଳଧର ଗୋତ୍ରୀ
ନାମ ଆମ୍ଭର ବାବନ ପଣ୍ଡା ଶୂନ୍ୟ ସାଧନ ମୂରତି ।୧୪୧୧
ଯାଗ ଯଗ୍ୟାଂ ପ୍ରତିଷ୍ଠା ଉଚ୍ଛବ କର୍ମମାନ
ଧାର୍ମିକ ଦେଖିଲେ ଆମ୍ଭେ ଆସୁ ଶୁଦ୍ଧସ୍ଥାନ ।୧୪୧୨
ସାଧୁ ସାଧୁ ମହାରାଜା ଦାବନ କୁଳଗୋତ୍ରୀ
ବଡ଼ାଇ ମହିମାଂ ତୋହୋର ଦେଖିଲୁ ଯେହି ପୃଥୀ ।୧୪୧୩
ଦାନେଶ ଶୂରବନ୍ତା ତୁ ମାନେଣ ମହାବଳି
ମହାଯଗ୍ୟାଂ ଆରୋପଣ କଲୁ ମହୀଆଳି ।୧୪୧୪
ଅନେକ ଦ୍ୱିଜବରେ କହିଲେ ତୋ ମହିମା
ବିଚାରି ଜାଣିଲୁ ତୁ ପ୍ରତକ୍ଷେ ମହାତମା ।୧୪୧୫
ପ୍ରତକ୍ଷେ ଶୁଣିଲୁ ତୁ ଅବିଛନ୍ନେ ଦାନ ଦେଉଅଛୁ
ମୁହିଂ ଦରିଦ୍ର ବ୍ରାହ୍ମଣ ମୋତେ ଦାନ ଦେବା କିଛୁ ।୧୪୧୬
ମାଗ ହୋ ଦ୍ୱିଜବର ଯେ ତୋହୋର ମତି
ଯେତେ ମାନକୁ ଭାର୍ଜନ ଯହିଂକି ଶକତି ।୧୪୧୭
ବଳିରାଜା ବୋଇଲା ଯେ ବାବନର ଆଗ
ପୂର୍ଣ୍ଣ ଆହୁତି ଦେବି ସମାପତ ହୋଉ ଯାଗ ।୧୪୧୮
ଅମର ବିନାଶନେ ମୋହୋର ଆହୁତି
ଅଇରାବତ ଘେନି ଆସି ପଡିବ ସୁରପତି ।୧୪୧୯
ଅନୁଷ୍ଟୁକ କଣ୍ଟୁ ମହରଷି ଅଟନ୍ତି ଯାଗନିକ
ଆହୁତିର ସାଧ୍ୟେ ପ୍ରାପତ ହୋଇବ ବାଞ୍ଛିକ ।୧୪୨୦
ବଳିର ବଚନେ ବାବନ ବେଦଭଣି
ବ୍ରହ୍ମାଣ୍ଡ ଝଡି କି ପଡ଼ିଲା ଧରଣୀ ।୧୪୨୧
ରହ ରହ ବ୍ରାହ୍ମଣ ବୋଲି ଯେ ବୋଲଇ ବଳିରାୟେ
ଯେ ତୋହୋର ବେଦଧ୍ୱନି ଶୁଣି କମ୍ପଇ ମୋର କାୟେ ।୧୪୨୨
ଲକ୍ଷେକ ବରଷ ହୋଇଲା ମୁହିଂ ଦେଉଅଛି ଦାନ
କାହାକଇଂ ନ ଦେଖିଲି ବିପ୍ର ତୋହୋର ସମାନ ।୧୪୨୩
ମାଗ ହୋ ବ୍ରାହ୍ମଣ ଯେବଣ ତୋହୋର ମନବାଞ୍ଛା
ଯେତେବେଳେ ପୂର୍ଣ୍ଣ ହୋଅଇ ତୋହୋର ମନୀଷା ।୧୪୨୪
ବାବନ ତାହାଣାବ୍ରତେକ ଶଙ୍ଖେ ଭରିଲା ଜଳତିଳ
ଆପଣେ ତୋଳିଦିଲା ରାଜା ବାବନ କରସ୍ଥଳ ।୧୪୨୫

ତଳହାଥ କରିଣ ଯେ ପାତିଲା ବାବନ
ଉପର ହାଥ କରି ବଳି ଦେଉଅଛି ଦାନ ।୪୨୬
ବଳି ବୋଇଲା ବାବନ ଯେତେକ ତୋତେ ଅଣ୍ଟଇ
ଯାବତ ବଂଶକୁ ତୋହୋର ଦରିଦ୍ର ଯେସନେ ଫିଟଇ ।୪୨୭
ବାବନ ପ୍ରତିବାକ୍ୟ ଶୁଣିମା ମହାରାଜ
ଧନ ସମ୍ପଦେ ମୋହୋର ନାହିଁ କିଛି କାର୍ଯ୍ୟ ।୪୨୮
ବାବନ ସାକ୍ଷୀ କରଇ ଦଶ ଦିଗପାଳଂକୁ
ଆବର ସାକ୍ଷୀ କରଇ ଅସ୍ଥୁକାର ପୁରୁଷଂକୁ ।୪୨୯
ବାବନ ସାକ୍ଷୀ କରଇ ଚନ୍ଦ୍ରସୂର୍ଯ୍ୟ ଦେବତାଂକୁ
ବାବନ ସାକ୍ଷୀ କରଇ ଚାରି ଯେ ମେଘଂକୁ ।୪୩୦
ବାବନ ସାକ୍ଷୀ କରଇ ଯେ ଚାରିଯୁଗଂକୁ
ବାବନ ସାକ୍ଷୀ କରଇ ଚାରି ଯେ ଦିଗକୁ ।୪୩୧
ଉପର ହାଥକରି ଦାନ ଦେଉଅଛି ବଳି
ସାମାନ୍ୟ ଦାନ ମାଗଇ ନ ମାଗଇ ଅଗୁଳି ।୪୩୨
ଦାନ ଦିଅନ୍ତେଣ ତହିଁ ଶୁକ୍ରମନ୍ତ୍ରୀ ବଚନ ବୋଇଲା
ରହ ରହ ବୋଲି ଶଙ୍ଖ ଉଛୁଡ଼ି ଧଇଲା ।୪୩୩
ରହ ରହ ମହାରାଜା ତୁ କାହାକୁ ଦେଉଅଛୁ ଦାନ
ସାମାନ୍ୟ ପ୍ରାୟେ ମଣିଲୁ କି ଯେ ପ୍ରଚଣ୍ଡ ବାବନ ।୪୩୪
ଅସଂଖ୍ୟ ସମ୍ପଦ ତୋହୋର ହାଦେ ଦେଖି ହରି
ପ୍ରତକ୍ଷେ ନାରାୟଣ ସେ ବାବ୍‌ନ ରୂପ ଧରି ।୪୩୫
ଦେବଂକୁ ଅଗୋଚର ଯହୁଁ ତୋହୋର ସମ୍ପଦ
ଗୋପ୍ୟାନେ କେଶବ ତୋତେ ଚିନ୍ତୁଛି ପରମାଦ ।୪୩୬
ବଳିବୋଇଲା ତୁତ ଭୃଗୁକୁଳ ଜାୟେ
କେବଣ ଲକ୍ଷଣେ ଜାତ ତୋତେ କଲେ ପିତାମାୟେ ।୪୩୭
କିଞ୍ଚିତ ଦାନ ଦେବାକୁ ମୁଂ କରଇ ଇଛା
ଶ୍ରୀବାସୁଦେବେ ପ୍ରାପତ କରିତେ ମନବାଞ୍ଛା ।୪୩୮
ପୁରୋହିତ ଅଭିମୁଖେ ବଳି ବଚନ ପଚାରି
ପ୍ରତକ୍ଷେ ନାରାୟଣ ବାବନ ଅବତରି ।୪୩୯
ଯେହାଉଂ ଆନ କିସ ମୁଂ ପାଇବି ସୁଲଭ
ସମସ୍ତ ସମ୍ପଦ ମୋର ପଛେ ଘେନୁ ପଦ୍ମନାଭ ।୪୪୦
ଶୁକ୍ର ବୋଇଲା ଅର୍ଜିଲୁ ଯେତେକ ସମ୍ବଧ୍
ହେଲେଣ ବଢ଼ାଉଅଛୁ ଯେବେ ଚକ୍ରକୂଟ ବୁଦ୍ଧି ।୪୪୧
ବଳି ବୋଇଲା ହେ ଶୁକ୍ର ନୁହଇ ଯେମନ୍ତ
ଅନେକ ପୁଣ୍ୟେ ଦାନ ଦେବି ବାମନର ହାଥ ।୪୪୨
ଧର୍ମ ଅର୍ଥ କାମ ମୋକ୍ଷ ଚାରିବର୍ଗ
ଆଜ ସେ ପ୍ରାପତ ମୋତେ ହୋଇଲାକ ସର୍ବ ।୪୪୩
ବଳେଣ ଶୁକ୍ରମନ୍ତ୍ରୀ ଯେ ବଳି ରାଜାର ହାତ ଧରି
ଦାନ ଦିଅନ୍ତେ ଶଙ୍ଖ ଘେନିଲା ଉଛୁଡ଼ି ।୪୪୪
ଦେଖିଣ କୋପାନଳ ବାବନ ମୂରତି
ରାଗେ ବାମକରେ ପେଲିଦିଲେ ଯେ ଶିରୀପତି ।୪୪୫
ଆହୋ ଚଇତନ ବାବନର କରେ ଯେ କୁଶବଟୁ ଥିଲା
ଯେ କୁଶର ଅଗ୍ର ଲାଗି ଶୁକ୍ରର ଚକ୍ଷୁ ମିଳାଇଲା ।୪୪୬
ଫୁଟିଣ ଶୋଣିତ ଯେ ବହଇ ଅବିଚ୍ଛନ୍ନ
ବଳି ବୋଇଲା ଶୁକ୍ର ତୋହୋର ଦୋଷେ ତୁ
ପାଇଲୁ ଅଭିମାନ ।୪୪୭
ଦିଅନ୍ତା ବାରିଲୁ ଯେ ନଗଲା ତୋତେ ପାରି
ପ୍ରତକ୍ଷେ ଫଳିଲା ତୋତେ ନଗଲା ଉବୁରି ।୪୪୮
ମାଗ ହୋ ବ୍ରାହ୍ମଣ ତୋତେ ଦେବଇଟି ଦାନ
ତଳହାଥ କରିଣ ତାହା ପାତିଲା ବାବନ ।୪୪୯
ଶଙ୍ଖେ ଜଳତିଳ ଲାଇ ବଳି ଦିଲା ବାବନର ହାଥେ
ବ୍ରାହ୍ମଣ ବୋଇଲା ପୃଥୀ ତିନିପାଦ ଦାନ ଦେବୁ ମୋତେ ।୪୫୦
ଯେତେକ ବିସ୍ତାର ମୋହୋର ଚରଣ ତଳିପାର କାନ୍ତି
ମାଗନ୍ତେ ଯେତେକ ହୋଇବ ତେତେକ ଦେବୁ ପୃଥୀ ।୪୫୧
ଶୁଣିଣ ଆଶ୍ରିଜ ଯେ ଧୂମ୍ରଲୋଚନର ପଣନାତି
ସର୍ବେଣ ଯେତେକ ମାଗିଲୁ ମୋତେ ବାବନ ମୂରତି ।୪୫୨
ପାଞ୍ଚ ଆଙ୍ଗୁଳ ତୋହୋର ବିସ୍ତାର ପାଦଗୋଟି
ଯେଥିରେ ତିନିପାଦ କାହିଂକି ତୋର ଅଣ୍ଟି ।୪୫୩
ବ୍ରାହ୍ମଣ ବୋଇଲା ମୁଂ କିଞ୍ଚିତ ମନ୍ତ୍ରବାଦୀ
ବହୁତ ଦାନ ଘେନିମାର ନୋହୋଇ ପରସିଦ୍ଧି ।୪୫୪
ଅଳପ ମନ୍ତ୍ରେ ଯେବଣ ଦ୍ୱିଜ ବହୁତ ଦାନ ମାଗି
ନାଶକର ଦଣ୍ଡେ ହ୍ୱନ୍ତି ସେହୁ ନର୍କଭୋଗୀ ।୪୫୫
ବଳି ବୋଇଲା ତିନିପାଦ ଭୂମିରେ କିସ ହୋଇବ ବାସ୍ତୁ
ତୋଟା ଖଣ୍ଡିଯେତ ନ ଥିଲେ କେମନ୍ତେ ବ୍ରତ ହେତୁ ।୪୫୬
ବ୍ରାହ୍ମଣ ବୋଇଲା ମୁଂ ନୋହୋଇ ବଡ଼ ଲୋଭି
ଅଧିକ ନ ମାଗଇ ତୋତେ ତିନିପାଦ ମାଗଇ ଭୁବି ।୪୫୭
ମୋହୋର ପରାୟେ ଦାନୀ ତୋତେ ଦେଇଛି ଦାନ
ମୋହୋର ଦାତ୍ରିକ ପଣକୁ ତୁ ନୋହିଲୁ ଭାର୍ଜନ ।୪୫୮
ତିନିପାଦ ଭୂମି ଦେବା ତୁଙ୍ଗଭଦ୍ରା ନଦୀକୂଳ

ଯେତେ କହି ରାଜା ବାବନ କରେ ଛାଡିଲାକ ଜଳ
ଦେଖୁଂ ଦେଖୁଂ ବାବନ ମୂରତି ହୋଇଲା ହେଳୁଂହେଳ ।୪୫୯
ବିସ୍ତାର କରେ ବାବନ ଯେ ବାମପାଦ ତଳିପା ଗୋଟି
ଯେକା ପାଦକେ ନବଦୀପ ସପତ ସାଗର ଗଲା ଘୋଟି ।୪୬୦
ଦେଖିଣ ଆଶ୍ଚିର୍ଜ ଯେ ହୋଇଲା ମହାରାଜା ବଳି
ଶୁକ୍ରମୁନି କଥା ବିଚାରି ହୃଦଗତେ ଭାଳି ।୪୬୧
ସାଧୁ ସାଧୁ ଶୁକ୍ରମନ୍ତ୍ରୀ କହିଲୁ ମୋତେ ଯାହା
କାଳେଣ ଫଳିଲା ଆସି ମୋତେ ମୁଂ ନ ଚେତିଲି ତାହା ।୪୬୨
ମୋର ଦିହ ଅର୍ଥେତ ଶୁକ୍ରର ନାଶଗଲା
ଯେହି ବାବନ କୂଟବୁଦ୍ଧି ମୋତେ ଗୋଚର ନ ଗଲା ।୪୬୩
ବାବନ ବୋଇଲା ବଳି ଦେବୁ ନା ଆରେକ ପାଦେ
ବଳି ବୋଇଲା ବିପ୍ରବର ଆକାଶ ଦିଲି ମୁଂ ହାଦେ ।୪୬୪
ଯେକ ପାଦେ ଭୂମି ଆରେକ ପାଦେ ଆକାଶ
କୋଟିଯେ ବ୍ରାହ୍ମଣଯାକ ଘୋଟିଲେ ହୃଷିକେଶ ।୪୬୫
ବାବନ ବୋଇଲା ବଳି ଆରେକ ପାଦ ଦିଅସି
ସଂକଳ୍ପ କରି ଦାନ ଦିଲେ ଧର୍ମହୋଯେ ନାଶି ।୪୬୬
ବଳି ବୋଇଲା ମୁଂ ପାରିବି ଆରେକ ପାଦଦେଇ
ମୁହିଂ ଅବା ପାରିବି ତୋହୋର ଆରେକ ପାଦ କାହିଂ ।୪୬୭
ଶୁଣି ହୁଂକାର ଶବଦ କଲେ ଦେବରାଯେ
ନାଭିକମଳ ଭିତରୁ ସ୍ୱାମୀ ଆରେକ ପାଦ ଉପୁଜାଯେ ।୪୬୮
ବଳି ବୋଇଲା ଦୁଇପାଦେ ଘୋଟିଲା ଦୁଇ ଯେ ଜଗତ
ଆରେକ ପାଦଭୂମି ତୋତେ କାହୁଂ ଦେବଇଂ ଜଗଭୂତ ।୪୬୯
ବାବନ ବୋଇଲେ ତୁ ଯେ ଦାନେଣ ଶୂରବଳି
ସତ୍ୟଭଗ୍ନ ହୋଇବୁ କେସନେ ତୋହୋର ପରା ଭଳି ।୪୭୦
ସଂକଳ୍ପକରି ଦାନ ନ ଦେଲେ ବଡ଼ ଦୋଷ
ଗତ ଧର୍ମ ନାଶଯାଇ ନର୍କେଣ ହୋଯେ ବାସ ।୪୭୧
ଶୁଣିଣ ମଥା ଯେ ପୋତିଲା ରାୟେ ବଳି
କମଳ ପାଦ ମାଥେ ଲଦିଲେକ ବନମାଳୀ ।୪୭୨
ମେରୁକୁ ତତୁଲ୍ୟ ବଳିର ଯେବଣ କାୟେ
କିଞ୍ଚିତେ ରାସାଂଗତ ହୋଇଲେ ମହାରାୟେ ।୪୭୩
ଇନ୍ଦଂବାକ୍ୟ ଶକୁନି ଯେ ସଭରେଣ ଭାଷା
କନ୍‌ହାଇ ବୋଲି ତୁମ୍ଭେ କରକି ଯେହାକୁ ଭରସା ।୪୭୪
ବାବନ ଅବତାର ହୋଇଲାଟି ଯେହି
ତିନିପାଦେ ଘୋଟିଲା ଯେ ତିନିଜଗତ ମହୀ ।୪୭୫
ତିନିପାଦ ମାଗନ୍ତେ ବଳି ନୁଆରିଲା ତରି
ତୁମ୍ଭେ କେମନ୍ତ ତାହାକୁ ପଞ୍ଚଗ୍ରାମ ଦେବାକରି ।୪୭୬
ପଞ୍ଚଗ୍ରାମ ଛାଡି ଯେବେ ଯେକ ଗ୍ରାମ ଦେବ
ଯେକା ଗ୍ରାମକେ ହରି ସଚରାଚର ଯେ ଘୋଟିବ ।୪୭୭
ଯେସନେକ କରି ହରି ପଡ଼ାଯେକ ମାଗିବ
ବିଶ୍ରାମ କରିତ ତୁମ୍ଭଂକୁ ଠାବହିଂ ନ ଥିବ ।୪୭୮
ଯେହାଉଂ ଅନ୍ତର ଯେବେ ହୋଇବ ମୋ କଥା
ମନ୍ତ୍ରୀପଣ ସଭାରେ ମୁଂ ନ କରିବି ସର୍ବଥା ।୪୭୯
ଆହୋ କଉରୋବେ ଚକ୍ରକୂଟ ବୁଦ୍ଧିରେ ତୁମ୍ଭର କିସ ବିଶ୍ୱାସ
ଯେତେ ବଡ଼ ରାଜାକୁ ତୁମ୍ଭେ କରିଲତ ନାଶ ।୪୮୦

**

## ୭୪. ପାଣ୍ଡବଙ୍କୁ ଦୁଇଟି ପଡ଼ା ଦେବାପାଇଁ ଦୁର୍ଯ୍ୟୋଧନର ଇଚ୍ଛା ଓ ବାବନାଭୂତ ବିବରଣୀ

ଭୀଷ୍ମ ବୋଇଲେ ସେ ବଳି ଦାନ ଦିଲା
ପରମ ଗତି ପାଇ ସେ ପାତାଳେ ଇନ୍ଦ୍ର ହୋଇଲା ।୧
ଆକାଶେ ଇନ୍ଦ୍ର ସେ ହୋଇବ ସମୟେ
ଯେହେନେକ ସମ୍ପଦ ତାକୁ ଦିଲେକ ଦେବରାୟେ ।୨
ଶକୁନି ବୋଇଲା ମୁଂ କହଇ ସେ ହରିର କଥା
ଶୁଣ ହୋ ଗାଙ୍ଗେବେ ପୂର୍ବର ଯେହେଁନେକ ବାରତା ।୩
ଜମ୍ବୁଦୀପ ଭରଥଖଣ୍ଡ ଓଡରାଷ୍ଟ୍ର ମଣ୍ଡଳେ
ବ୍ରହ୍ମାର କୁଶସ୍ଥଳୀ ବଇତରଣୀ ନଦୀକୂଳେ ।୪
ବେଦପୁର ବୋଲି କରି ଯେକଇ ଶାସନ
ଅହିବ୍ରତେ ଶତେଘର ବସନ୍ତି ମହାଜନ ।୫
ସେ ନଗ୍ରେ ଦ୍ୱିଜଜାତି ଅଷ୍ଟଗୋଟି ବାଳୀ
ବାଳୁତ କୁତୂହୋଳେ ସେ ଧୂଳିଖେଳ ଖେଳି ।୬
ଯେସନେକ ସମୟେ କପିଳାସ ସ୍ୱର୍ଗବାସୀ
ବୃଷଭ ଆରୋହିଣ ଶଂକର ଗିରିଜା ବିଜେକଲେ ଆସି ।୭
ଶୂନ୍ୟେଣ ଥାଇଣ ଯେ ଦେଖିଲେ ବିଶ୍ୱନାଥ
ପାର୍ବତୀଂକି ପୁଚ୍ଛିଲେ ଯେତ ବଡ଼ାଇ କୁତୂହୋଳ ସଂଘାତ ।୮
ପାର୍ବତୀ ବୋଇଲେ ସେ ବାଳୁତ କାଳର ଖେଳ
କୁମାରୀ ସାଧନା ଯେହା ରାନ୍ଧଣା ବାଢଣା କୁଢ଼ କୁଢ଼ ।୯
ପିତାର ଘରେ ଆମ୍ଭେ ଥିଲୁଂ ବାଳକାଳେ
ଧୂଳି ଖେଳ ଖେଳୁଂ ଆମ୍ଭେ ସାନ କୁମାରୀଂକ ମେଳେ ।୧୦
ଈଶ୍ୱରେ ବୋଇଲେ ପାର୍ବତୀ ଦେବୀଂକ ଆଗେ ହସି

ସେ ଯେବେ ଗୃହବାସୀ ତହିଁକି କି ନ ଯାଇ ଭିକ୍ଷାଶୀ ।୧୧
ପାର୍ବତୀ ବୋଇଲେ ସ୍ୱାମୀ ତୁମ୍ଭେ ଜନ୍ମହୁଂତ ବାଇ
ସଜ୍ଜନ ବାକ୍ୟ କି ସର୍ବଦାୟେ ତହିଂ ଥାଇ ।୧୨
ଧୂଳିଘର ଧୂଳିଭାତ ଧୂଳିର ତିଉଣ ଖେଳାଖେଳି
ତହିଂ ପ୍ରାର୍ଥନା କଲେ କିସ ପାଇବ ଭିକାରୀ ।୧୩
ଈଶ୍ୱରେ ବୋଇଲେ ତୁମ୍ଭେ ରହ ଅନ୍ତରୀକ୍ଷ
ମୁହିଂ ଯାଇ ମାଗଇଂ ତହିଂ କୁଆଂଳୀ ରୂପେ ଭିଖ ।୧୪
ପାର୍ବତୀ ବୋଇଲେ ତୁମ୍ଭଂକୁ ଦେଖି ଭୟ ଯେ କରିବେ
ବିଭତ୍ସ ରୂପ ଦେଖିଲେ ଭୟେ ପଳାଇବେ ।୧୫
ଗିରିଜାକୁ ଗୁହାଇଣ ଦେବ ବିଶ୍ୱବାସୀ
ବାଳୁତ ରୂପ ଧରି କୁଆଂଳୀ ରୂପ ପରକାଶି ।୧୬
ଯେକଇ ବଦନ ଦେବ ଶିରେଣ ସୀତାଂଶୁ
ବହଇ ଧବଳାଙ୍ଗୀ ତ୍ରିବେଣୀ ଆକାଶୁ ।୧୭
ଛଦ୍ମେଣ କୁଆଂଳୀ ରୂପ ଧଇଲେ ଦେବ ତ୍ରିୟମ୍ୱେକ
କଣ୍ଠରେ ଅସ୍ଥିମାଳ ଲମ୍ୱିତ ହୃଦୟେକ ।୧୮
ଶୁଦ୍ଧ ସ୍ଫଟିକର ମୁଦ୍ରା ଲମ୍ୱଇ ବେନିକର୍ଣ୍ଣେ
ଜଗୁଜନ ମୋହନ ପୁରୁଷ ହରଷ ବଦନେ ।୧୯
ଡାକି ଡମ୍ବରୁ ଯେ ଡିବି ଡିବି ବାଜି
କ୍ଷୁଦ୍ର ଘଣ୍ଟି ଘାଗୁଡ଼ି କଟିମେଖଳା ସାଜି ।୨୦
ଅନନ୍ତ ଉତ୍ତୁଙ୍ଗ ଯେ ଶ୍ରୀଭୁଜେ ବାହୁଟି
ନେତର କର୍ପଟି ସ୍ୱାମୀର ହୃଦରେ ଚିରିକୁଟି ।୨୧
ଭୁଜେଣ ଯାମଳା ଲାଉ କରେଣ ତ୍ରିଦଣ୍ଡ
ଝଲକନ୍ତି ଚଉକତି ତିଳକ ଶଶୀଖଣ୍ଡ ।୨୨
ଯେସନେକ ସରୂପ ସ୍ୱାମୀ ବାଳୁତ କୁଆଂଳୀ
କୁମାରୀଂକ ସଙ୍ଗେ ରଙ୍ଗରସେ କୁତେହଳୀ ।୨୩
ଡିବି ଡିବି ଡମ୍ବରୁ ସୁସଞ୍ଚ ସୁସ୍ୱରେଣ ବାଇ
କୁମାରୀଂକ ଖେଳଘରେ ହର ମିଳିଲେକ ଯାଇଂ ।୨୪
ଦେଖିଣ ହସିଲେ ଯେ ବାଳୁତ କୁମାରୀ
ମିଛି ମିଛିକା ଘରକୁ ଗୋ ସଖି ହାଦେ ସତିକା ଭିକାରୀ ।୨୫
ଧୂଳିର ଭାତ ଧୂଳିର ତିଉଣ ଗୋ ସଂଘାତ
କିସ ଭିକ୍ଷା ଦେବା ଗୋ କୁଆଂଳୀର ପାତ୍ର ।୨୬
ସୁସଞ୍ଚ କରିଣ ଯେ ପରୋଇଲେ ଧୂଳି
ସଦାନନ୍ଦ ପାତ୍ରେ ସେ ନେଇଣ ଦିଲେ ତୋଳି ।୨୭
ହରଷ ସାନନ୍ଦେ ଦିଲେ ଧୂଳି ଆଠମୁଠି
ଦେଖିଣ ସାନନ୍ଦ ଯେ ଦେବ ହୋଇଲେ ଧୂର୍ଜଟି ।୨୮
ଈଶ୍ୱରେ ପ୍ରଶଂସା କରନ୍ତି ଧନ୍ୟ ତୁମ୍ଭର ସତ
ବାଳୁତ କୁମାରୀ ହୋଇ ଯେତେକ ନିରିଭୀତ ।୨୯
ସାନନ୍ଦେ ପ୍ରସନ୍ନେ ହୋଇଲେ ସଦାନନ୍ଦ
ପ୍ରସନ୍ନେ ବର ଦିଲେ ହୋଇଣ ସାନନ୍ଦ ।୩୦
ସତରେ ମୋର ପାଦେ ଦିଲ ରେଣୁ ଭିକ୍ଷା
ସରୂପେ ଈଶାନ୍ୟ ନାଥ ପୂରୋଇବେ ମନବାଞ୍ଛା ।୩୧
କୋଟିୟେ କଳ୍ପ ଆୟୁଷ୍ୟ ଘେନି ତୁମ୍ଭେ ବସ ଅମର ସ୍ୱର୍ଗେ
ଯୁବା ବୟସ ହୋଇଥାଅ ଅନନ୍ତ କୋଟିଯୁଗେ ।୩୨
ରମ୍ଭା ଉରୁବଶୀ ମେନକା ଚିତ୍ରରେଖା
କାମସେଣୀ ମୋହିନୀ ମଦନିକା ଅମ୍ୱିକା ।୩୩
କଳ୍ପଭୋଗ କର ତୁମ୍ଭେ ଅଷ୍ଟ ଅପଚ୍ଛରୀ
ଯେହିରୂପେ ମୋହ ତୁମ୍ଭେ ଅମର ସ୍ୱର୍ଗପୁରୀ ।୩୪
କୋଟିୟେ ଇନ୍ଦ୍ର ଯେବେ ଅମରେ ନାଶଯିବ
ଯୁବା ବୟସ ତୁମ୍ଭର ଯେ ଅତୁଟ ହୋଇଥିବ ।୩୫
ଶୁଣ ହୋ ଗାଙ୍ଗେବ କହଇ ଶକୁନି
ସଦାଶିବର ପ୍ରସନ୍ନେ ଅଛୟେ ସ୍ୱର୍ଗ ଘେନି ।୩୬
ବଳିରାଜାର ଭାରିଯା ନାମ ହାରାବତୀ
ଅର୍ଘ୍ୟ ଘେନି ଉଭାହେଲା ସେ ବାବନର ଜତି ।୩୭
ବୋଇଲା ବାବନ ତୁ ତ୍ରଇଲୋକ୍ୟନାଥ ବୋଲାଉ
ଜଗତ ଜନ ଠାକୁର ତୋହୋର ପାତ୍ର ଧିକଯାଉ ।୩୮
ସଦାଶିବର ପାତ୍ର ମହିମାଂ ଶୁଣ ହୋ ବାବନ
ରେଣୁ ଭିକ୍ଷା ଦେଇ ପାଇଲେ ସେ ଅମର ଭୁବନ ।୩୯
ମୋହୋର ସ୍ୱାମୀ ତୋତେ ତ୍ରଇଲୋକ୍ୟ ଦାନଦିଲା
ସମ୍ପଦ ନାଶଗଲା ସେତ କାରଣ ନ ପାଇଲା ।୪୦
ଧିକ୍ ଧିକ ବାବନ ତୋହୋର ପାତ୍ରଗୋଟି
ମୋହୋର ସ୍ୱାମୀ ନାଶଗଲା ତୋହୋର ପ୍ରାୟେ ପ୍ରଭୁଭେଟି ।୪୧
ହେ ତ୍ରଇଲୋକ୍ୟ ଜନେ ମୁଂ ତୁମ୍ଭରେ କରଇ ସାକ୍ଷୀ
ନାରାୟଣ ପାତ୍ରେ ଦାନଭିକ୍ଷା ନ ଦେବାଟି କିଛି ।୪୨
ଈଶ୍ୱର ପାତ୍ରହିଂ ସେ ପରମ ମଉଷଧି
କଣକଟେ ଦାନ ଦିଲେ ବହୁତ କାର୍ଯ୍ୟ ସିଦ୍ଧି ।୪୩
ଶୁଣ ହୋ ଗାଙ୍ଗବେ ପୂର୍ବର ଯେହେନକ ବାଣୀ
ଦେଇଣ ତ୍ରିପୁଟି କେ କରିବ ଚକ୍ରପାଣି ।୪୪
ଦାନମାନ ଭଗତେ ଯେ ନ ଘେନନ୍ତି ସେବା
ଦେଇଣ ତ୍ରିପୁଟି କେ କରିବ ତାହାକଇଂ ଅବା ।୪୫
ସପତ ବ୍ରାହ୍ମଣ୍ଡ ଯେବେ ଦେବ ତାହାର ହାଥେ

ଶାନ୍ତି ନ ଭଜିବ ତ୍ରିପୁତି ନୋହିବ ସେ କଦାଚିତେ ।୪୬
ଶାହାସ୍ର ସଙ୍ଗତେ ଯାହା କହିଲା ଶକୁନି
ଭୀଷ୍ମ ଦ୍ରୋଣ ଭୂରିସର୍ବାଯେ ଶୁଣି ହୋଇଲେକ ତୁନୀ ।୪୭
ଆସ୍ଥାନୁଂ ଉଠିଣ ଗଲେ ଭୀଷ୍ମ ଦ୍ରୋଣେ
ଅଶସ୍ତମା କୃପ ଆଚାର୍ଯେ୍ୟ ଚଳିଲେ ତତକ୍ଷଣେ ।୪୮
ଶଲ୍ୟ ଶକୁନି ଯେ କର୍ଣ୍ଣ ସହିତେ
ଯେ ଯାହା ଭୁବନେ ଗଲେ ଭୋଜନ ନିମନ୍ତେ ।୪୯
ଚନ୍ଦ୍ରଶାଳା ପୁରେ ବିଜୟେ ସୋମରାଷ୍ଟ୍ରେ
ସଞ୍ଜୟେ ବିଦୁର ଗାନ୍ଧାରୀ ଆବର ଧୃତିରାଷ୍ଟ୍ରେ ।୫୦
ପ୍ରବେଶ ହୋଇଲେ ମାନଗୋବିନ୍ଦ ସନ୍ନିଧାନେ
ଦେଖିଣ ପୂଜାକଲା ନୃପତି ଦ୍ରିଯୋଧନେ ।୫୧
ଶୁଣ ବାବୁ ଦ୍ରିଯୋଧନ ମାନଚକ୍ରବ୍ରତୀ
ଲକ୍ଷେ ରାଜା ମଉଡ଼ମଣି ମହୀମଣ୍ଡଳେ ଆଧିପତି ।୫୨
ପନ୍ନଗା ନାରାୟଣ ତୁ ମାନବେ ଅବତାର
ଭାରା ନିବାରଣେ ତୁ ରଖିଲୁ ସଂସାର ।୫୩
ସୋମବଂଶେ ଥିଲେ ଯେତେକ ମହାରାଜା
ତୋହୋର ପରାୟେ କେହି ନ ପାଇଲେ ପୂଜା ।୫୪
ବାବୁ ପାଣ୍ଡବେ ତୋହୋର ସୋଦର ପଞ୍ଚୁଭ୍ରାଥ
ତୋହୋ ପ୍ରାୟେ ଭ୍ରାଥ ଥାଉଂ କିସେ ହୋଇବେ ଅନାସ୍ତ ।୫୫
ପାଣ୍ଡବେ ପାଞ୍ଚହେଂ ଅଟନ୍ତି ପଞ୍ଚୁ ଯେ ଅଗିନି
କୃଷ୍ଣ ତହିଂକି ସାଖା ଯେ ପବନର ରୂପ ଘେନି ।୫୬
ବାବୁ ମାନଗୋବିନ୍ଦ ପବନ ଅଗ୍ନି ଯେ ଯେକତ୍ ହୋଇଲେ
ମହା ଅରଣ୍ୟ ଦହଇ ଯେହାଂକର ଯେକତ୍ ବହିଲେ ।୫୭
ତୁ ଯେହା ବିଚାର କରିବୁ ନାହିଂକି ଜାଣି
ପାଣ୍ଡବନ୍ତ ସଂପକ୍ଷଟି ଦେବ ଚକ୍ରପାଣି ।୫୮
ଅନେକ ବାଗେ କୋପ ଯେ କଲେ ପାଣ୍ଡବଂକୁ ବଳରାମେ
କଦାଚିତେ ତାଂକୁ ସରି ନୋହିଲେଟି ସାଂଗ୍ରାମେ ।୫୯
ଆହୋ ଦ୍ୱାରିକାୟେ ଅରଜୁନ ଯେବଣ କୃତ୍ୟକଲା
ରାମକୃଷ୍ଣ ଭୟେଣୀ ସୁଭଦ୍ରାକଇଂ ହରିଲା ।୬୦
ସାତବଂଶ ଯାଦବ ଘେନି ରାମ କଲେ ଅନେକ ରୋଳ
ସାଂଗ୍ରାମେ ହାରିଲେଟି କୃଷ୍ଣ କାମପାଳ ।୬୧
ଧୃତରାଷ୍ଟେ କହିଲେ ଯହୁଂ ପାଣ୍ଡବଂକର ଅନେକ ମହିମାଂ
ପାଣ୍ଡବାସୁରକୁ ମାରି ରଖିଲା ଆମ୍ଭର ସୀମା ।୬୨
ରାଧାଚକ୍ର ବିନ୍ଧିଲେଟି ଲକ୍ଷେ ରାଜା ପରିମୁଖେ
ଗୋଧନ ହରଣେ ତୋତେ ଜିଣିଲେ ପ୍ରତକ୍ଷେ ।୬୩
ଖାଣ୍ଡବ ବନ ଦହି ଜିଣିଲା ଇନ୍ଦ୍ରକୁ
ଲକ୍ଷେ ରାଜାନ୍ତ ଜିଣି ଆଣିଲେଟି ରାଜୁସିଯାଗକୁ ।୬୪
ତ୍ରଇଲୋକ୍ୟ ଠାକୁର ସେ ଯେବଣ ଅଧିକାର
ଦୁଷ୍ଟମନ୍ତ୍ରୀ ବୁଦ୍ଧିରେ ତୁ ଯେ କଥା ନ ବିଚାର ।୬୫
ଧୃତିରାଷ୍ଟ ବୋଇଲେ ମୁଂ ଜାଣିଲି ତୋହୋର ହିଆ
ସମସ୍ତ ବୁଡ଼ିଲା ପାଣ୍ଡବଂକୁ ଜଗନ୍ନାଥ ସାହା ।୬୬
ସୋଦର ଛାଡି ହରି ପାଣ୍ଡବଂକ ନିମନ୍ତେ
ଯାଦବନ୍ତ ଗଞ୍ଜାଇଲେ ହରି ପାଣ୍ଡବଂକ ହାଥେ ।୬୭
ଯେବଣ ଶତ୍ରୁକୁ ଅବା ଜିଣିତ ନୁଆରି
ପଛେଣ ନାଶଇ ତା ଉପାୟେ ବୁଦ୍ଧିକରି ।୬୮
ସନ୍ନିଧକୁ ହକରାଇ ଆଣି ଗୁହାଇବା ତାହାଂକୁ
ପଡ଼ା ଦୁଇଖଣ୍ଡି ଦେବା ତାହାଂକ ବ୍ରତିବା ନିମନ୍ତକୁ ।୬୯
ବାବୁ ପଣ୍ଡିତ ବୃତ୍ତି କରି ରାଗ କର ତେଜ୍ୟା
ବେଭାରେ ସୋଦର ସେ ତୋହୋର ଯେଥକୁ କିସ ଲଜ୍ଜା ।୭୦
ବଦୟନ୍ତି ଗାଙ୍ଗବେ ଯେ ଶାୟନ୍ତନୁର ବଂଶି
ଲାଭ ଅଲାଭ ଯେଥିରେ ବେନି କାର୍ଯ୍ୟ ଅଛି ।୭୧
ବାବୁ ପରମେଶି ପରିମାଣି ବୁଝିବା ଯେବେ ସୋଦରେ ଅଛି କାର୍ଯ୍ୟ
ଯୁଗତେ ପାଣ୍ଡବଂକର ହୋଇବ ଅଧରାଜ୍ୟ ।୭୨
ଅଥବା ନିରାଶ କରିବାକୁ ଯେବେ ତୋର ବୁଦ୍ଧି
କାହାକୁ ଯାଚିଦେବା ଅର୍ଜିଲାର ସମ୍ପଧି ।୭୩
ନିରାଶ ହୋଇ ଯେଥୁ ନ ଯାଆନ୍ତୁ ନାରାୟଣ
ଆରମ୍ଭେ ସମର ତୁ ନକର ଆରୋପଣ ।୭୪
ଦ୍ରିଯୋଧନ ବୋଇଲା ତୁମ୍ଭେ ଅଟ ମହାରଥା
ନିରୁତାନ୍ତ ବେଳକୁ ତୁମ୍ଭେ ଲାଘବେ କହ କଥା ।୭୫
ଯାଅ ଯାଅ ତୁମ୍ଭେମାନେ ଯେ ଯାହା ଆଶ୍ରମେ
କିମ୍ପାଇଂ ନିରାଶ କରିବା ଶ୍ରୀପୁରୁଷ ଉତ୍ତମେ ।୭୬
ପାଣ୍ଡବନ୍ତ ଗ୍ରାମ ଦିଲେ ସାଂଗ୍ରାମେ ନୋହିବ କଦାଚିତେ
ସମସ୍ତେ ହୋଇ ବୋଇଲେ ଜଗନ୍ନାଥ ତ୍ରିପୁତି ହୁଅନ୍ତି
ଯେମନ୍ତେ ।୭୭
ବାରୁଣାବନ୍ତ ରାଜ୍ୟ ଉତ୍ତର ଦିଗ ଆଡ଼େ
ପଡ଼ା ଦୁଇଖଣ୍ଡ ଦେବା ମେଖଳା ନଦୀ କଛାଡ଼େ ।୭୮
ଭୀଷ୍ମ ଦ୍ରୋଣେ ବୋଇଲେ ବାବୁ ଜୀବନ ତୋର ସାଧୁ ସାଧୁ
କୋଟିକଳ୍ପ ଆୟୁଷ୍ୟ ପାଇବୁ ଶିରୀ ନ ଛାଡ଼ିବ ତୋର କନ୍ଧୁଂ ।୭୯
ସଂସାର ତରିଲା ତୋହୋର ଅମିୟ ବଚନ ଗୋଟି
ଓହୋକୁଳର ଅନ୍ଧପଟଳ ଯେକା ବାଇକେ ଗଲା ଫିଟି ।୮୦

ସଂସାର ଜିଣିଲେ ହରି ଜଗନ୍ନାଥପଣେ
ତୁ ଯେବେ ଜଗନ୍ନାଥଂକଇଂ ଜିଣିଲୁ ଅମିୟ ବୟାଣେ ।୮୧
ଅନେକ ସାନନ୍ଦେଣ ଗଲେ ସର୍ବ ଯୋଧୀ
ସରିଲା ସମର ସେ ହୋଇଲା କଥା ସନ୍ଧି ।୮୨
ଛାଡିଲେ ଉଚ୍ଚବାଚ ସମସ୍ତେ ହୋଇଲେ ଶାନ୍ତି
ଧର୍ମ ଉଦିତ ହୋଇଲା କୁରୁ ପାଣ୍ଡବେ ହୋଇଲେକ ପ୍ରୀତି ।୮୩
ଜୟତୁ ଧର୍ମ ଦେବତା ଉଦିତ ସର୍ବସିଦ୍ଧି
ଜୟତୁ ଧର୍ମଦେବତା ସାତୁକ୍ୟ ପୟୋଧି ।୮୪
ନିରାଲମ୍ବ ପୁରୁଷ ନିର୍ମଳ ନିରାକାର
କର୍ମଣ ପୁରୁଷ ଧର୍ମହିଂ ସେ କରଇ ପାର ।୮୫
ଅମାୟା ଅନନ୍ତ ଅଦୃଶ୍ୟ ସର୍ବଚିନ୍ତା
ଦୁଖୀଜନ ଉଦ୍ଧାରଣ ନାଥ ତୁହି ଯେ ଗତିମୁକତି ଦିଅନ୍ତା ।୮୬
ନମାମି ନାରାୟଣ ନୟନ ବିରାଜି
ଯୋଗୀଜନ ଚିନ୍ତାମଣି ହୃଦଗତେ ସର୍ବ ଭଜି ।୮୭
ଅସଙ୍ଗତ ସଙ୍ଗତ କରନ୍ତା ଦେବସ୍ୱାମୀ
ନିରାକୁଳ ନିରାଲମ୍ବ ନିରାଲକ୍ଷ ଅନ୍ତର୍ଯ୍ୟାମୀ ।୮୮
ଭାବଗ୍ରାହୀ ଜଗନ୍ନାଥ ତୁ ଭଗତମଛଳା
ତ୍ରିଭୁବନ ମଣ୍ଡଳେ ନାଥ ତୁ ଶୁଦ୍ଧ ଯେ ନିଷ୍କଳା ।୮୯
ଅନୁବ୍ରତେ ଚିନ୍ତା ନାଥ ପର ଦୁଖେ ଦୁଖୀ
କିଞ୍ଚିତ ସଦୟେ ନାଥ ତୋହୋର କାଳ ନ ଗଛି ।୯୦
ଯାବତ ଜୀବନ ତାବତ ଧର୍ମ ଘୋଟି
କିଞ୍ଚିତ ଦରଶନେ କୋଟିଜନ୍ମର କଷ୍ଟ ଫିଟି ।୯୧
ଯେ ଭବ ସାୟେର ନାଥ ଦେଖୁ ଦେଖୁ ହାଦେ ଧନ୍ଦା
ହୃଦଗତେ ଗ୍ୟାନ ଥାଉଂ ଅଦଉଡିୟେ ବନ୍ଧା ।୯୨
ଶ୍ରୀଜଗନ୍ନାଥ ପଦ୍ମପାଦେତ ଆରାଧି
ନିରାଳମ୍ବ ଭୂମିକି ବଳାଇଲି ବୁଦ୍ଧି ।୯୩
ଶ୍ରୀ ଧର୍ମ ଦେବତା ଚରଣେ ଲୟେ ଘେନି
ବଦୟନ୍ତି ସାରୋଳ ଦାସ ଗ୍ରନ୍ଥିକ ଶୂଦ୍ରମୁନି ।୯୪
ଆହୋ ଚଇତନ ଧର୍ମ ଉଦିତ ହୋଇଲା କୁଞ୍ଜଗଳ ଦେଶ ସ୍ୱର୍ଗେ
ସୁରକ୍ଷା ଗଲା କୁରୁପାଣ୍ଡବଂକର ଯେକ ଯୋଗେ ।୯୫
ସେହିଦିନ ରାତ୍ରେ ଅର୍ଦ୍ଧେଣ ରୟଣୀ
ରାଜାଂକୁ ଦ୍ରଶନ କଲା ମନ୍ତ୍ରୀ ଯେ ଶକୁନି ।୯୬
ଦ୍ରିଯୋଧନ ଯେକାନ୍ତେ ଶକୁନିର ତୁଲେ
ବୋଲେ ଭୋ ମାତୁଳ କୃଷ୍ଣ ଯେ ଯେଥକୁ ଦୂତପଣେ
ଅଇଲେ ।୯୭
ଜଗତ କାରଣ ପୁରୁଷ ଯହୁଂ ଆପଣେ ମଧପାତ୍ର
ଅନନ୍ତ କୋଟି ବ୍ରାହ୍ମଣ୍ଡ ଯାହାର ଗର୍ଭଗତ ।୯୮
ବହୁତର ବଚନ ମାମୁଂ ମୁଂ ନୁଆରିଲି ମେଣ୍ଟି
ଶ୍ରୀକୃଷ୍ଣର ବଚନେ ଦେବା ପଡ଼ା ଦୁଇଗୋଟି ।୯୯
ଯାବତ ଜୀବଂକୁ ଜଗନ୍ନାଥହିଂ ସେ ମୂଳ
ଯେହାନ୍ତ ତ୍ରିପୁଟି କଲେ ଅପାଦ ମେଣ୍ଟିବା ସକଳ ।୧୦୦
ଶକୁନି ବୋଇଲା ତୁ ବାବୁ ସକଳ ଜନ ଚିନ୍ତା
ସବୁଂକରି ଭାରାଭରାତୁହି ସେ ସହନ୍ତା ।୧୦୧
ଭୀଷ୍ମେ ଦ୍ରୋଣେ ବସନ୍ତି ଆସ୍ତାନେ ତୋହୋର ଗୁରୁ ପରମ ଗୁରୁ
ତାହାଂକର ଆଗ୍ୟାଂ କେ ଅନ୍ୟସ୍ଥା କରିପାରୁ ।୧୦୨
ସେ ବଡ଼ ପଣ୍ଡିତ କ୍ଷତ୍ରିୟ ବଳବନ୍ତା
ତାହାଂକର ଆଗ୍ୟାଂ ଯେଥେ କେହୁ ଭ୍ରଷ୍ଟ ଯେ କରନ୍ତା ।୧୦୩
କର୍ଣ୍ଣ ଧୁଶାସନ ଦୁର୍ଜୟେ ଶଲ୍ୟେ କୃପେ
ସମସ୍ତେ ପ୍ରବେଶ ଯାଇଂ ରାଜାର ସମୀପେ ।୧୦୪
ଶକୁନି ବୋଇଲା ଯେବେ ଯୋଗାଇ ସବୁରି ମନକୁ
ଯେକା ଜଣକେ କି ସାମରଥ ବହୁତ ବଚନ ମେଣ୍ଟିବାକୁ ।୧୦୫
ଯେ ମୋହୋର ବଚନ ଶୁଣିଥା ଧୃତିରାଷ୍ଟ୍ର
ଗୋବିନ୍ଦକଇଂ ଯେବେ ଦେଇଲୋତୁ ପଡ଼ା ବେନିଗୋଟି ।୧୦୬
ଦାନେଣ ଅତ୍ରିପୁତ୍ରି ଯେ ମାନେଣ ଅତ୍ରିପୁତି
ଭଗତେ ଅତ୍ରିପୁତି ଯେ ଗ୍ୟାନେଣ ଅତ୍ରିପୁତି ।୧୦୭
ବଳିରାଜାକୁ ଦାନ ମାଗିଲା ତିନିପାଦ କ୍ଷିତି
ତ୍ରଇଲୋକ୍ୟ ଘୋଟିଲା ବାବନର ବିଶ୍ୱମୂର୍ତ୍ତି ।୧୦୮
ବାବନର କାୟା ଯେ ବାଆନ ଅଙ୍ଗୁଷ୍ଠି
ସାତ ସାତ ଆଙ୍ଗୁଳି ବାବନର ଦୁଇପାଦ ଗୋଟି ।୧୦୯
ଯେଣେ ତିନିପାଦ ଭୂମି ମାଗିଲା ବାବନ
ଉପହାସ୍ୟ କରି ବଳି ବାବନକୁ ଦିଲା ଭୂମି ଦାନ ।୧୧୦
ଯେକା ପାଦକେ ଘୋଟିଲା ନବଦ୍ୱୀପା ସପତ ସାଗର ସୃଷ୍ଟି
ବ୍ରହ୍ମାଣ୍ଡ ଘୋଟିଲା ଯେ ଆରେକ ପାଦଗୋଟି ।୧୧୧
ଦୁଇପାଦେ ବାବନ ବ୍ରହ୍ମାଣ୍ଡ ଘୋଟିଲା,
ତଦ୍ୟାପି ବାବନ ଯେ ଶାନ୍ତି ନ ଭଜିଲା ।୧୧୨
ତୁ ଯେବେ ବେନିପଡ଼ା ଦେଇଲୋତୁ ନାରାୟଣ ଅଗ୍ରତେ
ଯେକା ପଡ଼ାକେ ଘୋଟିବ ନବଦ୍ୱୀପ ସପତ ସାଗର
ପରିଯନ୍ତେ । ୧୧୩
ବାବୁ ସଭାୟେଣ ବସି ହରି ଗ୍ରାମ ମାଗିବ ଯେତେବେଳେ
ସମସ୍ତେ ଶୁଣିମେ ସିନା ସତ୍ୟ ବାଇକର ବେଳେ ।୧୧୪
ବିପତ୍ତିକି ଦ୍ରିଯୋଧନ ଯେବେ ତୋହୋର ଅଛି ଇଛା

ପାଣ୍ଡବଂକୁ ଗ୍ରାମ ଦେବାକୁ କରିବୁ ମନବାଞ୍ଛା ।୧୧୫
କୁଟୁମ୍ବ ରକ୍ଷା ଯେବେ କରିବୁ ସମ୍ପଦେ
ଶିରୀ ଭୁଞ୍ଜିବୁ ପାଣ୍ଡବନ୍ତ ରାଇଜ ସୂଚିମୁନେ ନ ଦେ ।୧୧୬
ଶୂନ୍ୟକଇଂ କିରଣ କରନ୍ତି ସେହି ପାଞ୍ଚଭାଇ
ଗ୍ରାମ ସୀମା ଦିଲେ ତୋର ପ୍ରାଣ ଯେ ପାଇତ ନାହିଂ ।୧୧୭
ଦ୍ରିଯୋଧନ ବୋଇଲା ହରି ନିରାଶ ହୋଇଗଲେ
ବୃତି ପାରିବାଟିକି ବାସୁଦେବର କୋପକଲେ ।୧୧୮
ଶକୁନି ବୋଇଲା ନାରାୟଣ ଅଟନ୍ତି ଯେକା
ଅସଂଖ୍ୟ କୁରୁସାଗର କାହାକଇଂ ଶଂକା ।୧୧୯
ଅନୀତି ବ୍ରାହ୍ମଣ ଯେ ଲାଘବ ମଧପାତ୍ର
ଲୋଭି ଭିକ୍ଷାବାସୀ ଖଳଭାବ ମଇତ୍ର ।୧୨୦
ଦୋଚାରୀ ଭାରିଯା ଯେ ଦୁର୍ଗତି ଚିନ୍ତାପୁତ୍ର
ଶାହାସ୍ତ୍ରେ ଦୋଷ ନାହିଂ ବଧକଲେ ଯେହାନ୍ତ ।୧୨୧
ମଧପାତ୍ରପଣ ଯେବେ ଅଟଇ ଯୁଗତେ
ଯେତେ ଦେବା ତେତେକେ ତ୍ରିପୁତି ହୋଇବେ
କି ଜଗନ୍ନାଥେ ।୧୨୨
ଦୂଇ ପଡ଼ାକେ ଯେବେ ତ୍ରିପୁତି ହୋଇବ ବାସୁଦେବ
ଓହୋକୁଳ ରକ୍ଷା ହୋଇବ ପ୍ରମାଦ ନ ପଡ଼ିବ ।୧୨୩
ଅତ୍ରିପୁତି ହୋଇଲେ ଆମ୍ଭେ ସମସ୍ତେ ଯେକ ହୋଇଣ ଥିବା
ସେହି ସଭାତଳେ ଶ୍ରୀକୃଷ୍ଣକୁ ମାରି ପକାଇବା ।୧୨୪
ଯେହାକୁ ବଧକଲେ ପାଣ୍ଡବେ ହୋଇବେ ଅନାସ୍ତ
ଯେହି ସେ ନାରଖାରମାନ ଭିଆଇ ସମସ୍ତ ।୧୨୫
ଶକୁନିର ମୁଖୁଂ ଯେସନେକ ବାକ୍ୟ ଶୁଣି
ଦ୍ରିଯୋଧନ ରାଜା ଉତସଲ୍ୟ ମତି ପୁଣି ।୧୨୬
ତୃତୀୟ ପ୍ରହର ସମ୍ପୂର୍ଣ୍ଣ ହୋଇଲାକ ନିଶି
ଛିଦ୍ରକଥା କହି ଶକୁନି ନିଜ ପୁରକଇଂ ଆସି ।୧୨୭
କର୍ଣ୍ଣ ଧୃଶାସନ ଦୁର୍ଜୟ ସହିତେ
ଆସ୍ତାନୁଂ ଉଠିଗଲେ ସମସ୍ତ ଅମନାତ୍ୟେ ।୧୨୮
ଶୟନ ମନ୍ଦିରେ ବିଜେ ମାନଚକ୍ରବ୍ରତୀ
ଅର୍ଘ୍ୟ ଘେନି ଛାମୁରେ ମିଳିଲା ଭାନୁମତୀ ।୧୨୯
ଶଯ୍ୟା ଯୁଗତେଣ ଅର୍ଘ୍ୟ ବନ୍ଦାପନା
ବିନୟ ଭାବେ ମହାସତୀ ବୋଲଇ ବୟଣା ।୧୩୦
ସ୍ୱାମୀ ଗୋବିନ୍ଦେ ଅଇଲେ ଯେ ଯୁଧେଷ୍ଟିକ ଆଗ୍ୟାଂ ଘେନି
ତୁଳେଣ ଅଛନ୍ତି ଯେ ସମସ୍ତ ମହାମୁନି ।୧୩୧
ସଭାରେ କିସ ଉତ୍ତର କଲେ ପୁରୁଷଉତ୍ତମ
ପାଣ୍ଡବଂକ ନିମନ୍ତେ ହରି ମାଗନ୍ତି ପଞ୍ଚଗ୍ରାମ ।୧୩୨
ଯୁଗତେଣ ସୋଦର ସେ ଆମ୍ଭର ଅଟନ୍ତି ଜ୍ୟେଷ୍ଠ
ଶ୍ରୀମନ୍ତ ଶୂରବନ୍ତ ଗୁଣବନ୍ତ ପୁଣି ପ୍ରାକର୍ମେ ବଳିଷ୍ଠ ।୧୩୩
ଗୋବିନ୍ଦେ ମଧପାତ୍ରପଣେ କେବଣ ଅଭାଗି
ଯୁଗତେଣ ଭାଇଂକ ଭାଗ ଚାରିଯୁଗେ ହାଦେ ଲାଗି ।୧୩୪
ଯଦ୍ୟପି ପଞ୍ଚଗ୍ରାମ ମାଗନ୍ତି ଜଗନ୍ନାଥେ
ସ୍ୱାମୀ ପଡା ତିନିଖଣ୍ଡ ଦେବା ବାସୁଦେବଂକ ଅଗ୍ରତେ ।୧୩୫
ସ୍ୱାମୀ ଗୋବିନ୍ଦେ ତ୍ରିପୁତି ହୋଇଲେ ପାଣ୍ଡବେ କିସ ଅର୍ଥୀ
ସମସ୍ତେହେଂ ଭଗତି ହୋଇ ବୋଲିବା ଅଭ୍ୟର୍ଥୀ ।୧୩୬
ଭଗତ ମହଳ ସେ ଅଟନ୍ତି ବାସୁଦେବ
ତାହାଂକର ତ୍ରିପୁତି ହୋଇଲେ ଆମ୍ଭର ଅପାଦ ନାଶଯିବ ।୧୩୭
ଦ୍ରିଯୋଧନ ବୋଇଲା ଶୁଣ ଗୋ ଭାନୁବତୀ
ଭୀଷ୍ମ ଦ୍ରୋଣ ଆଦିକରି କହିଲେ ଯେହିମତି ।୧୩୮
ମୁହିଂ ହୃଦଗତେ ଗୋ ବିଚାରୁଥିଲି ଯେହା
ଶକୁନିର ବିଚାରକଇଂ ଯେ ନ ଯୋଗାଇଲାକ ତାହା ।୧୩୯
ବୋଇଲା ପାଣ୍ଡବଂକୁ ଗ୍ରାମ ଦିଲେ ହୋଇବଟି ପ୍ରମାଦଇ
ସାଂଗ୍ରାମ ହୋଉ ପଛେ ସୂଚିମୁନେ ନ ଦେ ଭୂଇଂ ।୧୪୦
ଭାନୁବତୀ ବୋଇଲା ସ୍ୱାମୀ ବହୁତ କଲା କୃତ୍ୟ
ଯେକା ଜଣକେ ଭୁଞ୍ଜିଲେ ପଡଇ ପ୍ରମାଦ ବହୁତ ।୧୪୧
ଶୁଣ ସାବଧାନେ ସ୍ୱାମୀ କହଇ ପୂର୍ବର କଥା
ହଠକର୍ମ ପୁରାଣେ ଯାହା ହୋଇଛି ସଂଗୀତା ।୧୪୨
ତୁଙ୍ଗଭଦ୍ରା ନଦୀକୂଳେ ଗ୍ୟାନପୁର ବୋଲି ନଗ୍ରେ
ମଲେଣ ମୋକ୍ଷ ନାହିଂ ସେ ଅମୋଧ ଭୂମି ହାଦେ ।୧୪୩
ଯେତେକ ଲୋକ ତହିଂ ହୋଅନ୍ତି ପ୍ରାଣେ ହତ
ଆକାଶେ ପଶିତେ ନୁଆରି ସମସ୍ତେ ହୁଅନ୍ତି ପ୍ରେତ ।୧୪୪
ଯେମନ୍ତେ ଯେ ନଦୀକୂଳେ ସମସ୍ତ ପ୍ରେତେ ହୁଅନ୍ତି ଗୁଣ୍ଡ
ଅତିଅନ୍ତ ନିର୍ଭୟେ ସେ ଅତି ପରଚଣ୍ଡ ।୧୪୫
ପଛିମ ସୋମରାଷ୍ଟ୍ରେ ଶୂଦ୍ରେକ ବୋଲି ରାଉଳ
ସେ ଯାଇଂ ବିଶ୍ରାମିଲା ତୁଙ୍ଗଭଦ୍ରା ନଦୀକୂଳ ।୧୪୬
ବଡ଼ାଇ ନିର୍ମଳତ ପରିମଳ ସେହୁ ଗ୍ରାମ
ଗ୍ୟାନପୁର ନଗ୍ରେ ରହିଲା ସେ କରିଣ ଆଶ୍ରମ ।୧୪୭
ଗୁଣବନ୍ତ ପୁରୁଷ ଦେଖି ତାଂକୁ ସମସ୍ତେ କଲେ ପୂଜା
ଭାରିଯା ଗୋଟିଯେ ତାର ଯେକଇ ଆତ୍ମଜା ।୧୪୮
ଦିନେକ ଶୂଦ୍ରକ ରାଉଳ ପ୍ରକୃତି ଶଂକାଯେଣ ଗଲା
ଧବଳୀ ପର୍ବତ ତଳେ ଗୋରଡ଼ା ଯେକ ଦେଖିଲା ।୧୪୯
ଗ୍ରାମଲୋକମାନନ୍ତ ସେ ମାଗିଲାକ ଭୂମି

ମାଘିତିଳ ଖଣ୍ଡିଯେ ବୁଣିମାକ ଆମି ।୧୫୦
ଗ୍ରାମଲୋକ ବୋଇଲେ ତହିଂ ସମସ୍ତ ଭୂତଂକର ମେଳି
ଦୃଭାର ପ୍ରେତଂକର ସଙ୍ଗେ କେ ହୋଇବ ବାଗୁଆଳି ।୧୫୧
ସେ ରାଉଳ ବୋଇଲେ ମୁଂ ମହାଜାଲ ପାତିଲେ
ଯେକା ଘାନ୍ତିକେ ସମସ୍ତ ଭୂତ ବାନ୍ଧିପାରଇ
ମୋହୋର ବେଳେ ।୧୫୨
ଲଙ୍ଗଳ ଚାରିଗୋଟି ଯେ ଯୋଗାଇଣ ଘେନିଗଲା
କୃଷିକାରୀମାନନ୍ତ ଲଗାଇ ସେ ବାହୁଡ଼ି ଅଇଲା ।୧୫୩
ସେ ପ୍ରେତମାନେ ସମସ୍ତେ ମେଳି ହୋଇ
ସେ କୃଷିକାରୀମାନନ୍ତ ଲାଗିଲେ ସର୍ବେ ଯାଇଂ ।୧୫୪
ହଳନ୍ତ ଛାଡିଣ ସେ କେଶବାସ ଅସମ୍ଭାଳେ
ଅନ୍ତରାଳ ହୁଅନ୍ତି ସେ ଭୂତଂଙ୍କ କୁତୂହୋଳେ ।୧୫୫
ବଳଦେ ପଳାଇଲେ ଲଙ୍ଗଳ ଜୁଆଳି ଭାଞ୍ଜି
ଡିଅନ୍ତି କିରିଷାଣେ ନାଚନ୍ତି ଗଳଗାଜି ।୧୫୬
ଅନ୍ନ ଘେରି ଶୂଦ୍ରକ ରାଉଳ ଗଲାକ ଅତିବେଗେ
ଦେଖିଲା ବଳଦେ ପଳାଇ ଯାଉଅଛନ୍ତି ଆଗେ ।୧୫୭
କିରିଷାଣେ ନାଚନ୍ତି ପାଡୁଛନ୍ତି ବୋବି
ମହା ରାଉଳ ବୋଇଲା କୃଷି ଉପୁଜଇ କି ଯେ ଭୂବି ।୧୫୮
ମହା ରାଉଳ ମହାମୁଦ୍ରା ପାତିଲା ବହନ
ଆହୋ ସ୍ୱାମୀ ସେ ସମସ୍ତ ଭୂତମାନନ୍ତ ସେ କଲାକ
ବନ୍ଧନ ।୧୫୯
ବିକଳେ ଭୂତମାନେ ଲୋଟନ୍ତି ତାର ପାଯେ
ଯେତେକାଳେ ଗୋସାଇଂ ଆମ୍ଭନ୍ତ ପଡ଼ିଲା ଅପଚଯେ ।୧୬୦
ମହା ରାଉଳ ବୋଇଲା ସେ କିଳିବି ତୁମ୍ଭଂକୁ
ନୋହିଲେ ଷାଠିଯେ ପଉଟି ତିଳ ଦେବ କିରେ ମୁକୁ ।୧୬୧
ବନ୍ଧନ ଡରେ ସେ ସମସ୍ତେ ହୋଇ କଲେ
ଅଇଣ୍ଠା ଚଣ୍ଡକୁ ସେ ଲଗାଇଦେଇ ଗଲେ ।୧୬୨
ବାହୁଡ଼ିଣ ମହା ରାଉଳ ନିଜ ପୁରକୁ ଗଲା
କୃଷିକାରମାନନ୍ତ ବୋଧି ତ୍ରିପୁତି କରାଇଲା ।୧୬୩
ବାବନାଭୂତ ବୋଲି ସେ ଭୂତଂକର ରାଜା
ମହା ପ୍ରଚଣ୍ଡ ସେ ଚଣ୍ଡମାନଂକର ଦୁଜା ।୧୬୪
ସେ ନ ଥିଲା ସେ ଦିନ ପ୍ରବେଶ ହୋଇଲା ଆସି
ବୋଇଲା କ୍ରୀଡ଼ାଭୂମି କେ ରେ ଆମ୍ଭର ଚଷି ।୧୬୫
ଭୂତେ ବୋଇଲେ ସେ ଶୂଦ୍ରେକ ନାମେ ଯେକଇ ରାଉଳ
ସେ ଯେହା ଚଷାଇ ବୁଣାଇବ ମାଘିତିଳ ।୧୬୬
ଆମ୍ଭେ ନିରୋଧିଲୁ ତାହାର କିରିଷାଣ ମାନଂକୁ
ମହାଜାଲ ପାତି ସେ ଧଇଲା ଆମ୍ଭଂକୁ ।୧୬୭
ଷାଠିଯେ ପଉଟି ତିଳ ଦେବୁ ଅଇଣ୍ଠା ଚଣ୍ଡଂକୁ ଲଗା
କ୍ଷଣକେ ନ ଛାଡଇ ସେ ମାଗଇ ଅତି ବେଗା ।୧୬୮
ବାବନାଭୂତ ଚଳିଲା ତାହାଂକର ବୋଲ ଶୁଣି
ମୁହିଂ ଦଣ୍ଡେ ନ ଥିଲା ଯାକେ ଯେତ୍ତେକ କୃତ୍ୟକଲା ଆଣି।୧୬୯
ମୁହିଂ ତୁମ୍ଭର ଠାକୁର ଅଟଇ ମହାପ୍ରଭୁ
ଷାଠିଯେ ପଉଟି ତିଳରେ ଦେବ ତୁମ୍ଭେ କାହୁଂ ।୧୭୦
ଯେବେ ସତ୍ତିଯେ ଆସ ମୋହୋରେ ତୁଲେ
ଖୁରୀ ଖପର ମଣ୍ଡା ଆମ୍ଭେ ଖାଇବା ହୋଇଲେ ।୧୭୧
ଭୂତେ ବୋଇଲେ ଗୋସାଇଂ ଆମ୍ଭର ତେଣେ କିସ କାର୍ଯ୍ୟ
ତିଳ ଛଡାଇ ପାରିଲେ ଦେବ ବହୁତ କାର୍ଯ୍ୟ ।୧୭୨
ଶୁଣ ହୋ ମହାରାଜା ସେ ବାବନାଭୂତ ତହୁଂ ଗଲା ବେଗି
ସେ ମହାରାଉଳର ଯେକାପୁତ୍ର ଗୋଟିକି ଯାଇଂ ଲାଗି ।୧୭୩
ଭୂତର ଚେରେଷ୍ଟା ସେ ମହାରାଉଳ ଜାଣିଲା
ମହାଜାଲ ପାତିଣ ବାବନାଭୂତକୁ ଧଇଲା ।୧୭୪
ଲୁହାର କଣ୍ଟା ଘେନି ସେ କିଳିଲା ବେଳକୁ
ସେ ବାବନାଭୂତ ବୋଇଲା ଗୋସାଇଂ ରକ୍ଷାକର ମୁକୁ ।୧୭୫
ସେ ମହାରାଉଳ ବୋଇଲା ଛାଡିବି ଯେବେ ତୁକୁ
ତିନିଷାଠି ପଉଟି ତିଳ ଦେବୁ କିନା ମୁକୁଂ ।୧୭୬
ବାବନାଭୂତ ବୋଇଲା ଅପଛାତି ହୋଇବ ସିନା ମୋହୋର ବଡ଼ାଇ
ପାଣିରେ ପକାଇ ଦେବି ଶଙ୍ଖବର୍ଣ୍ଣ କରି ଛଡ଼ାଇ
ଅଇଣ୍ଠା ଚଣ୍ଡକୁ ସେ ଅଇଲା ଲଗା ଦେଇ ।୧୭୭
ଗ୍ରାମେ ଗ୍ରାମେ ପଶି ଭୂତେ ଖସାନ୍ତି ଝାଡିଲେ
ଷାଠିଯେ ପଉଟି ତିଳ ନେଇ ଶୂଦ୍ରେକ ରାଉଳକୁ ଦିଲେ ।୧୭୮
ମାନଗୋବିନ୍ଦର ଆଗେ ଯେହା ଭାନୁବତୀ କହିଲେ
ସ୍ୱାମୀ କାଳେ ଯେମନ୍ତ ହୋଇବଟି ବହୁତର ବୋଲ
ମେଣ୍ଟିଲେ ।୧୭୯
ବହୁତର ବୋଲ ମେଣ୍ଟି ଯେ ଯେକର ବୋଲ ଘେନି
କାଳେ ବାବନାଭୂତ ପ୍ରାଯେ ହୋଇବଟି ତୋହୋ ମନ୍ତ୍ରୀ
ଶକୁନି ।୧୮୦
ମାନଗୋବିନ୍ଦ ବୋଇଲା ଗୋ ଶୁଣସି ଭାନୁମତୀ
ଜନ୍ମେ ଜନ୍ମେ ପ୍ରାପତ ହୋଉ ମତେ ଶକୁନି ପ୍ରାଯେ ମନ୍ତ୍ରୀ।୧୮୧
ପଞ୍ଚୁରାଜ୍ୟ ଭୋଗକଲି ମୁଂ ତାହାର ପରସାଦେ
ଅନେକ ଦତ୍ୟ ଦାନବ ମୁହିଂ ଜିଣିଲି ଅପ୍ରମାଦେ ।୧୮୨
ଭୀମାକୁ ବିଷଲଡୁ ଖୁଆଇଲି ଯେକା ଶକୁନିର ବୁଦ୍ଧି

ପଶାଖେଳାର ପାଣ୍ଡବଂକର ମୁଂ ଘେନିଲି ସମ୍ପଧ୍ ।୧୮୩
ବାରୁଣାବନ୍ତେ ଘରେକ ଭିଆଇଲା କୂଟ କପଟେ
ଜଉ ସଜଳସ ଗୁଆଘୃତ ଛଣପଟେ ।୧୮୪
ମୋହୋର ଶତ୍ରୁ ବିନାଶିବାକୁ ତାହାର ଯେତେକ ହିୟା
ମୋହୋର ପ୍ରାଣଥିବା ଯାକେ କେସନେକେ ଭାଙ୍ଗି
ପାରଇ ତାହା ।୧୮୫
ଭାନୁବତୀ ବୋଇଲା ସ୍ୱାମୀ ମୃତୁକାଳେ ପ୍ରାଣୀ
ଯେଣେ ନଶିବ ତେଣେ ରୁଚଇ ଅମୃତ ରସବାଣୀ ।୧୮୬
ସ୍ୱାମୀ ଶକୁନିର ପିତୃଲୋକନ୍ତ ପଥର ଘରେ ଭରି
ତୁମ୍ଭେ ତାହାର ବଂଶ ଅକାରଣେ ଅଛ ମାରି ।୧୮୭
କୂଟ କପଟ ମନ୍ତ୍ରୀ ସେ ଜାଣଇ ସର୍ବସାଧି
ତୁମ୍ଭର ବଂଶ ନାଶ କରାଇବାକୁ ତାର ଅଛି ବୁଦ୍ଧି ।୧୮୮
ସ୍ୱାମୀ ତୁମ୍ଭର ପ୍ରାକ୍ରମ ଅଛିତ ସେ ହେତୁ କରି
କେବଣ ବେଳେ ତୁମ୍ଭେ ପାଣ୍ଡବନ୍ତ ନୋହିବ ସମସରି ।୧୮୯
ବିଷଲଡୁ ଭକ୍ଷି ଭୀମସେନ ପାରକଲା
ନାଗେଣୀବଳ ଧ୍ୱଂସି ଅନେକ ବିଦ୍ୟାନ୍ତ ପାଇଲା ।୧୯୦
ଜଉର ଘରୁ ଉଭୁରି କିମ୍ମିରୀ ଦତ୍ୟମାରି
ମଧୁବନ ତୋଟାରେ କିନ୍ନରୀ ଦତ୍ୟ ସଂହାରି ।୧୯୧
ହିଡିମ୍ବେକ ବଧକଲା ହିଡିମ୍ବେକ ବନେ ପଶି
ଯେକଚକ୍ରୀ ନଗ୍ରେ ବକାସୁରକୁ ବିନାଶି ।୧୯୨
ଅଙ୍ଗାରପନ୍ନଙ୍ଗ ଗନ୍ଧର୍ବକଇଂ ଯେ ଜିଣିଲା ଫାଲଗୁନି
ଚଣ୍ଡାଳ ବନ ମାରି ସେ ଯେକଚକ୍ରୀ ନଗ୍ର ଘେନି ।୧୯୩
ପାଞ୍ଚାଳ ଦେଶକୁ ଗଲେ ଯେ ବ୍ରାହ୍ମଣ ରୂପ ଧରି
ମହାଲାଖ ବିନ୍ଧିଲା ଅର୍ଜୁନ ତଳକୁ ମୁଷ୍ଟିକରି ।୧୯୪
ଲକ୍ଷେକ ନୃପତି ଯେ ହୋଇଥିଲେ ସର୍ବେ ମିଳି
ରାଧାଚକ୍ର ବିନ୍ଧିଲା ପାଥ ଲଭିଲା ପାଞ୍ଚାଳୀ ।୧୯୫
ଅନେକ ନୃପତି ଘେନି ତୁମ୍ଭେ କଲ ଯେ ସମର
ସନ୍ୟ ନାଶଗଲା ଅନେକ ହୋଇଲେ ଅପହାର ।୧୯୬
ଇନ୍ଦ୍ର ଦେବତାଯେ ଅର୍ଜୁନ ହୋଇଲା ବିବାଦୀ
ଖାଣ୍ଡବ ବନ ଦହନେ ଅଗ୍ନି ଦେବତାର ଖଂଡିଲା ଲୁଦୁବୁଦୁ
ବ୍ୟାଧି ।୧୯୭
ନିର୍ବାତ କପଚ ମାରି ସ୍ୱର୍ଗ କଲା ରକ୍ଷା
ଇନ୍ଦ୍ର ଦେବତାର ପୂରୋଇଲା ମନବାଞ୍ଛା
ଶରେ ସାଗର ବାନ୍ଧି ହନୁମନ୍ତ ସଙ୍ଗେ କଲା କକ୍ଷା ।୧୯୮
ଘୋଷଯାତ୍ରା କାଳେ ଚିତ୍ରସେନ ତୁମ୍ଭଂକୁ ନେଉଥିଲା ହରି
ତହୁଂ ଫାଲଗୁନି ଆଣିଲା ଯେ ବନ୍ଦୀ ମୁକଳ କରି ।୧୯୯
ପାଣ୍ଡବାସୁର ତୁମ୍ଭନ୍ତ ଜିଣିଲା ଯେତେବେଳେ
ସେ ଦଇତ ମାରି ତୁମ୍ଭନ୍ତ ଉଦ୍ଧାରିଲା ସେ ହେଳେ ।୨୦୦
ସ୍ୱାମୀ ଗୋଧନ ହରଣେ ତ ଜାଣ ସର୍ବକଥା
କେ ଅବା ନଥିଲେ ତହିଂ ସମସ୍ତେ ମହାରଥା ।୨୦୧
ଧର୍ମ ଅଳଂଘିତ ସେ କଇଛା ଜଗଜେଠୀ
ଚିରାଞ୍ଚନ କଥା ସେ ଗୁହାଇଲା କିରୀଟୀ ।୨୦୨
ସ୍ୱାମୀ କଲା ଉପୁଗାର ନ ମାନନ୍ତି ଯେବଣ ଜନ
ଜୀବନ୍ତେ ଅସାର୍ଥୁକ ମଲେଣ ନରକେ ପତନ ।୨୦୩
ଦୁର୍ବୁଦ୍ଧି କହନ୍ତି ତୋତେ କର୍ଣ୍ଣ ଧୁଶାସନ ଶକୁନି ଶଲ୍ୟ
ଯେହାଂକର ବୋଲେ ଥିଲେ କାଳେ ନୋହିବଟି କିଛି ଭଲ
ଗାନ୍ଧାରସେନ ପୁତ୍ର ଅଛି ଯେ କୁଳ ଶଲ ।୨୦୪
ଭାନୁବତୀ କହନ୍ତେ ଯେ ପ୍ରସର ହୋଇଲା ରୟଣୀ
ସ୍ନାହାନ ମନ୍ଦିରେ ଯାଇଂ ବିଜୟେ କୁରୁମଣି ।୨୦୫
ନିତ୍ୟକର୍ମ ସାରିଣ କଲା ଦେବପିତୃ ପୂଜା
ଦିବ୍ୟ ଅଳଂକାର ବେଶ ହୋଇଲା କୁରୁରାଜା ।୨୦୬
ଅମନାତ୍ୟମାନେ ଯାଇଂ କଲେକ ଦ୍ରଶନ
ସରସ୍ୱତୀ ନଦୀ ତୀରେ ଯମପ୍ରଶସ୍ତ ସ୍ଥାନ ।୨୦୭
ବିଜୟେ ସମ୍ଭର୍ବରେ ସମସ୍ତ ସେନାମାନେ
ପଟୁଆର ପଡ଼ି ଅଛଇ ଯେ ଗହନେ ।୨୦୮
ଆସ୍ଥାନରେ ବିଜେ ମାନଚକ୍ରବ୍ରତୀ
ପାରିଦଣ୍ଡମାନେ ଯାଇଂ ଦ୍ରଶନ କରନ୍ତି ।୨୦୯

**

## ୭୫. କୁରୁକ୍ଷେତ୍ରରେ ଶୁଭସ୍ତମ୍ଭ ସ୍ଥାପନ, ତହିଂ ମଧ୍ୟସ୍ଥ ପୁରୁଷ ଏବଂ ପୂର୍ଣ୍ଣ ପ୍ରଳୟ ଓ ଦେବନାଶନ ବଟ ପ୍ରଭୃତିର ବିବରଣ :

ଶୁଣ ହୋ ଚଇତନ ବଦୟନ୍ତି ମହାମନୁ
ଶ୍ରୀବିଷ୍ଣୁ ପୁରାଣକୁ ଶୁଣିମା ମନ ଧ୍ୟାନୁଂ ।୧
କେଶବ ଯାହା କଲେ ଉଦିଯୋଗ ପର୍ବେ
କୂଟ କପଟେ ମହୀଭାରା ଉଶ୍ୱାସିବେ ବାସୁଦେବେ ।୨
ଯଥାର୍ଥେ ସମର କଲେ ପାଣ୍ଡବେ କାହିଂ କଉରୋବଂକୁ ସରି
ସହସ୍ରେ ପାଣ୍ଡବେ ହୋଇଲେ ଭୀଷ୍ମ ଦ୍ରୋଣଂକୁ ଜିଣିତ ନୁଆରି ।୩
ଯେହି ଠାବରୁ ବେନିଭାଗ ହୋଇଲା ବୋଇଲେ ଦେବହରି

ବାମପାଦ ଅଙ୍ଗୁଷ୍ଠ ନହେଣ ଦିଲେ ଦେବ ଚିରି ।୪
ଆହୋ ଶ୍ରୀ ନାରାୟଣ ଯାହା ନହେଣ ଚିରିଦିଲେ
କୁରୁକ୍ଷେତ୍ର ମଣ୍ଡଳେ ନଦୀ ଗୋଟିଯେ ବୁହାଇଲେ ।୫
ପାଞ୍ଚତାଳ ବିସ୍ତାର ଗଭୀର ସାତତାଳ
ରୁଧିର ନଦୀ ହୋଇଲା ଶୁଣ ହୋ ମହୀପାଳ ।୬
ଯେହା ଶୁଣି ପୁଛାକଲେ ବଇବସ୍ୱତ ମନୁ
ସାଂଗ୍ରାମର ବାରତା ମୋତେ କହିବାକୁ ଗ୍ୟାନୁଂ ।୭
କହନ୍ତି ମହାରଷି ମନୁରାଜାର ଆଗ
କୁରୁକ୍ଷେତ୍ର ମଣ୍ଡଳ ହୋଇଲା ବେନିଭାଗ ।୮
ପୁର୍ବେଣ ପାଣ୍ଡବେ ଯେ ପଚ୍ଛିମେ କଉରୋବେ
ଓହୋକୁଳ ହକାରି ବଦନ୍ତି ବାସୁଦେବେ ।୯
ବେନିଭାଗ କରିଣ ଯେ ବାଣ୍ଟିଲେ କୁରୁକ୍ଷେତ୍ର
ଶୁଭ ଖମ୍ଭେକ ପୋତ ଯେଥେଂ କରିଣ ମଧ୍ୟପାତ୍ର ।୧୦
ଶକୁନି ବୋଇଲା ଯେ ଶ୍ରୀକୃଷ୍ଣଂକ ଅଗ୍ରତେ
ଶୁଭଖମ୍ଭ ଚିହ୍ନ ନ ଥିଲେ ଭୂମି ବାରିବା କେମନ୍ତେ ।୧୧
ମାନଗୋବିନ୍ଦ ବୋଇଲା ଯାଗାଇ ଯେହୁ କଥା
ଶ୍ରୀ ବାସୁଦେବଂକର କଥା କେ କରିବ ଅନ୍ୟଥା ।୧୨
ମାନଗୋବିନ୍ଦ ବୋଇଲା ବାସୁଦେବ ମୁଖ ଚାହିଁ
ସେ ଶୁଭଖମ୍ଭ ଅଣାଅ ଅଛଇଂ କେଉଂଠାଇଂ ।୧୩
ଗୋବିନ୍ଦେ ବୋଇଲେ ଖମ୍ଭ ନାହିଂଟି ନିକଟେ
ଗୋକୁଳ ପର୍ବତେ ଅଛି ପଞ୍ଚବିଂଶ ଯୋଜନ ବାଟେ ।୧୪
ତହିଂକି ଲୋକ ପଠିଆଇ ଘେନିଣ ବେଗେ ଆସ
ଦେବତା ନିର୍ବାଣ ସେ ହୋଇଛି ଅବିନାଶ ।୧୫
ଦ୍ରିଯୋଧନ ବୋଇଲା ଯେବେ ନିର୍ବାଣ ହୋଇଅଛି
କେ ତାହା ଆଣିବ ବେଗେ କହ ଦେବ ବାଛି ।୧୬
ରାଜାର ବଚନେ ଯେ ଗୋବିନ୍ଦେ ଆଗ୍ୟାଂ ଦିଲେ
ପ୍ରଥମେ ଅଠାଶି ସହସ୍ର ମାଲେ ଗଲେ ।୧୭
ପିମ୍ପୁଡ଼ି ଭେଳା ପ୍ରାଯେ ଲାଗିଣ ବୃକ୍ଷର
ରୋମେହେଂ ଉପାଡ଼ି ଯେ ନୋହିଲା ତାହାଂକର ।୧୮
କାହାର ମୁଖରୁ ଯେ ବାହାର ରୁଧିର
ପ୍ରାଣତ୍ୟାଜ ହୋଇଣ କେ ପଡ଼ିଲା ଭୂମିର ।୧୯
କାହାକୁ ଦିଶିଲାକ ଉଲ୍କାପାତ ପ୍ରାଯେ
କେ ଉପାଡ଼ି ନୁଆରି ପଳାଇଲା ମହାଭଯେ ।୨୦
ଦେଶାଉରମାନେ ବାରତା ଘେନି ଆସି

ଗୋବିନ୍ଦଂକ ଛାମୁରେ ଜଣାନ୍ତି ନିବେଶି ।୨୧
ସ୍ୱାମୀ ତବ ଆଗ୍ୟାଂ ପ୍ରମାଣେ ଯେ ଅନେକ ମାଲ ଗଲେ
ବୃକ୍ଷ ପାଡ଼ିବାକୁ ବହୁତ ପ୍ରତଗ୍ୟାଂ ଯେ କଲେ ।୨୨
ଅଚଳ ମେରୁ ସେ ଗୋପ୍ୟାନ ହୋଇଅଛି
ସେ ମାଲଂକ ବଳେ ଦେବ କାର୍ଯ୍ୟ ନୋହେ କିଛି ।୨୩
ମାନଗୋବିନ୍ଦ ବୋଇଲା ହରି ହୋଇବ କେମନ୍ତ
ନୋହିଲେ ସମସ୍ତେ ଯିବାକ ଜଗନ୍ନାଥ ।୨୪
ଗୋବିନ୍ଦେ ବୋଇଲେ ଯେହା ନୋହଇ ଯୁଗତି
ପାଉ୍ରୁଶେ ହକାରିଲେ ସହଦେବ ଶକୁନି ବେନି ମନ୍ତ୍ରୀ ।୨୫
ବେନିକୁଳକୁ ତୁମ୍ଭେ ପଣ୍ଡିତ ମନ୍ତ୍ରୀବର
କାହାର ବଳେ ସେ ଆସିବ ବୃକ୍ଷବର ।୨୬
ଶକୁନି ବୋଇଲା ଦେବ ଭୀମସେନ ଯାଉ
ସହଦେବ ବୋଇଲା ଦେବ ଧୁଶାସନ ସଙ୍ଗେ ଥାଉ ।୨୭
ଯେ ଦୁଇ ବୀର ଗଲେ ବୃକ୍ଷ ଆସିବ ଦେବହରି
ନୋହିଲେ କାହାର ବଳେ ଆଣିତ ନୁଆରି ।୨୮
ଗୋବିନ୍ଦେ ଆଗ୍ୟାଂ ଦିଲେ ଭୀମ ଧୁଶାସନକୁ ରାଇ
ବହନ ଖମ୍ଭ ତୁମ୍ଭେ ଘେନିଆସ ଯାଇ ।୨୯
ଶକୁନି ବୋଇଲା ସ୍ୱାମୀ ମଙ୍ଗଳ ଯୋଗାଡ଼ ଘେନି
ତୁଳେଣି ଯାଇଥାନ୍ତୁ ଖର୍ବେକ ସଇନି ।୩୦
ଦେବଯାତ୍ରା ପ୍ରାଯେ କରି ଖମ୍ଭ ଘେନିଆସ
କେବଣ ବୃକ୍ଷ ସେ ପୂର୍ବେ ପାଉ ପଉରୁଷ ।୩୧
ଯେସନ ସମ୍ଭର୍ବ ଘେନି ଭୀମ ଧୁଶା ଗଲେ
ମାଳା ଚନ୍ଦନ ଦେଇ ସେ ବୃକ୍ଷକଇଂ ନିମନ୍ତଣ କଲେ ।୩୨
ଗୋକୁଳ ପବତେ ସେ ଚନ୍ଦନ ବୃକ୍ଷ ଥାଇ
ବହୁତ ତୋଷ ହୋଇଲା ପାଣ୍ଡବ କଉରୋବ ପୂଜା ପାଇ ।୩୩
ଦ୍ରୋଣେ ଛେଦିଲେ ଯାହା ବିଦ୍ୟା ପରୀକ୍ଷା ନିମନ୍ତେ
ଗୋବିନ୍ଦେ କହିଲେ ତାହା ଭୀମ ଧୁଶାସନର ଅଗ୍ରତେ ।୩୪
ସେହି ବୃକ୍ଷ ତହୁଂ ଆଣ ଅକ୍ଷତ ପର୍ବତରୁ
ତୁଳେଣ ଅଠାଶି ସହସ୍ର ବଳ ହନ୍ତକାରୁ ।୩୫
ବାସୁଦେବ ଆଗ୍ୟାଂରେ ଯେ ଅକ୍ଷତେ ଚଳି
ଧରିଣ ବୃକ୍ଷକଇଂ ଉପାଡ଼ନ୍ତି ମହାବଳୀ ।୩୬
ବୃକ୍ଷ ଉପାଡ଼ନ୍ତେ ଯେ ଶୁଭିଲାକ ଶବଦ
ଆକାଶେ ଦେବଗଣ ଯେ ହୋଇଲେ ତବଦ ।୩୭
କନ୍ଦରେ କମ୍ପିଲେ ଯେ ମନ୍ଦର ଟଳ ମଳ

ପବନ ନ ବହଇ ଥମ୍ଭୀଭୂତ ସିନ୍ଧୁଜଳ ।୩୮
ସତ୍ୟଯୁଗେ ଯେହ୍ନେ ଦେବ ଅସୁର ବେନିବଳ
ମନ୍ଦର ଉପାଡ଼ନ୍ତେ ଯେହ୍ନେ ଶୁଭେ ଗୋଳ ।୩୯
ସେହି ସାଦୃଶେ ହୁଅନ୍ତି କୁରୁ ପାଣ୍ଡବେ ବେନି
ପର୍ବତ ଉପରୁ ବୃକ୍ଷନ୍ତ ଆସନ୍ତି ସେ ଘେନି ।୪୦
ସହସ୍ରେକ ଶଙ୍ଖ ଚାମୁରେଣ ପୁରି
ବୀରତୁର ବିଜିଘୋଷ ସହସ୍ରେକ ବୀର କାହାଳୀ ।୪୧
ସହସ୍ରେ ପାଟଛତ୍ର ସହସ୍ରେ ଚାମର
ସହସ୍ରେକ ଅଶୁଆର ସହସ୍ରେକ ନେତ ଯେ ଉଲୋଳ ।୪୨
ସହସ୍ରେକ ଉଦଣ୍ଡ ସହସ୍ରେକ ଯେକଲକ୍ଷୀ
ସହସ୍ରେକ ବିମଳ ସହସ୍ରେକ ମୟୂର ଝାଲି ପଛୀ ।୪୩
ଯେକଲକ୍ଷୀ ପାଞ୍ଚଲକ୍ଷୀ ସହସ୍ରେକ ଦାଉଣ୍ଡି
ଅଷ୍ଟରତ୍ନ ପାଣିଦ୍ରବ୍ୟ ଶରୀରଯାକ ମଣ୍ଡି ।୪୪
ସହସ୍ରେକ ସାଙ୍ଗି ଯେ ଲାଗନ୍ତି ମହାବୀରା
ଛାମୁରେ ନୃତ୍ୟଗୀତ କରନ୍ତି ଯେ ସହସ୍ରେ ଅପଛରା ।୪୫
ଆଗ ପଛ ପଟୁଆର ଶୁଭଖମ୍ବ ଆସନ୍ତେ
ଦେଖିଣ ଆକାଶେ ସାନନ୍ଦ ହୋନ୍ତି ସମସ୍ତ ଦଇବତେ ।୪୬
ଧୃଶାସନ ବୋଇଲା ବୃକ୍ଷ କେଉଂଣ ଠାବେ ଥୋଇବା
ହୃଦ ବ୍ୟଥାକଲା କେବଣ ଠାବେ ଓହ୍ଲାଇବା ।୪୭
ଭୀମସେନ ବିଚାରଇ ମନେ ମନେ ହୃଦେ
ଯେ ମୋଢ଼ା ବଡ଼ ମନ୍ଦ ଗଲେଣ ଯାଉ ରୋଗେ ।୪୮
ଅଣକେ ପିତ ନିର୍ଦ୍ଦୟା ଅଟଇ ବୃକୋଦର
ଶରଣ ନ ରଖଇ ସେ କରଇ ଅପହାର ।୪୯
ଜନ୍ତୁରେ ଦୟା ଯହୁଂ ନ ବସଇ ତାହାର
ଧୃଶାସନ ମଲେ ଭଲ ହୋଇତ ମୋହୋର ।୫୦
ପୁଣି ବିଚାର-ବୋଇଲା ମଲେ ଭଲ ନାହିଁ
ଦ୍ରୋପଦୀର କେଶ ମୁକତି ହୋଇବ ଯେହାର ତହିଁ ।୫୧
ଧୃଶାସନ ଯଦ୍ୟପି ମରିବ ଯେହିଠାରୁ
ଦ୍ରୋପଦୀର କୋପ କେ ସହିତେ ପାରୁ ।୫୨
ଧୃଶାସନ ଭୀମ ଦୁହେଂ ଆସନ୍ତି ବେଗ ହୋଇ
ପ୍ରବେଶ ହୋଇଲେ ଯାଇଂ କୁରୁକ୍ଷେତ୍ର ମଣ୍ଡଳଇ ।୫୩
ଯୁଜତେ ଭୀଷ୍ମରୂପ ଧରିଛି ପାବେନି
ଯେକା ନିଶ୍ୱାସକେ ମିଳିଲେ କୁରୁକ୍ଷେତ୍ର ଭୂମି ।୫୪
ପୃଥିବୀ ଉତସଲ୍ୟ ହୋଇଲା ଆନନ୍ଦ ମତି
ବାସୁଦେବଂକ ଅଗ୍ରତେ ତାହା କଲେ ନେଇ ଧାତି ।୫୫
ଭୀମସେନକୁ ବୋଇଲେ ଆସି ପ୍ରବେଶ ହୋଇଲା ନିଶି
ତୁମ୍ଭର ଉଛୁର ଦେଖି ଆମ୍ଭେ ବିକଳ ହୋଉଅଛୁଂ ବସି ।୫୬
ଭୀମସେନ ବୋଇଲା ହରି ସତେହେଂ ହୋଇବାକୁ ଗୋଳ
ତେବେ ସେ ଗାନ୍ଧାରୀ ପୁଅନ୍ତ ମୁଂ କରିବଇଂ ରୋଳ ।୫୭
ସ୍ୱାମୀ ଯେମନ୍ତ ହୋଇ ଯେବେ ମହାଭାରଥ ହୋଇବ
ଆମ୍ଭ ପାଞ୍ଚ ଭାଇନ୍ତ କେ ପୁଣ ଆବୋରିବ ।୫୮
ଶୁଣିଣ ଟହ ଟହ ହସିଲେ ମହାପ୍ରଭୁ
ଅଦ୍ୟାପି ଦୁଷ୍ଟପଣ ନ ଛାଡୁ ତୁରେ ବାବୁ ।୫୯
ଶ୍ରୀଜଗନ୍ନାଥେ ଭୀମସେନକଇଂ ଯେକାନ୍ତେ ହକାରି
କାହାରି ଆଗେ ନ କହିବୁ ମନେ ଥିବୁ ଧରି ।୬୦
ଯେହା ଶୁଣି ଭୀମସେନ କାହାକୁ ନ କହି
ମନ ଦୁଖକରି ସେ ବଡ଼ ବ୍ୟଥା ପାଇ ।୬୧
ଯୁଝେଷ୍ଟି ଦେବେ ବୋଇଲେ ଭୀମ କେବଣହିଂ କଥା
ଭୀମସେନ ବୋଇଲା ଦେବ ଦୁସ୍ତର ବାରତା ।୬୨
ସ୍ୱାମୀ କୁରୁକ୍ଷେତ୍ର ମଣ୍ଡଳେ ଯେ ଶୁଭଖମ୍ବ ପୋତାଇବ
ଦୁଇ ଭାଇଂକର ବଂଶ ତହିଂ ନାଶଯିବ ।୬୩
ଯୁଝେଷ୍ଟି ବୋଇଲେ ରେ ଯେଡ଼େ ତୋର ଶଂକା
ଯେତେକ ନିସ୍ତରିଲି ପରମାନନ୍ଦ ମୋତେ ସାଖା ।୬୪
ଯୁଝେଷ୍ଟି ଦେବେ ବୋଇଲେ ବାବୁରେ ଯେହି ଛାର କଥା
ପୁଣ୍ୟ ଥିଲା ପ୍ରାଣୀଂକି ପ୍ରମାଦ ପଡ଼ଇ ସର୍ବଥା ।୬୫
ଆହୋ ଧୃଶାସନ ତହୁଂ ଗଲା ବେଗ ହୋଇ
ଦ୍ରିଯୋଧନ ଆଗରେ କହିଲା ବେଗେ ଯାଇଂ ।୬୬
ଗୋସାଇଂ ଭୀମକୁ ମୋତେ ଯେ ପେଷିଲେ ଦେବହରି
ଅଗ୍ରବୃକ୍ଷ ବାସୁଦେବ ଛାମୁରେ ଆଣିକରି ।୬୭
ଭୀଷ୍ମ ରୂପର ଧରିଣ ଦୁହେଂ ଘେନିଣ ଅଇଲୁ
କୁରୁକ୍ଷେତ୍ର ମଣ୍ଡଳେ ନେଇଣ ଥୋଇଲୁ ।୬୮
କେବଣ ଉପାୟେ କରିବେ ନ ଜାଣଇଂ ମୁହିଂ
ଯେହା ତୁମ୍ଭେ ଜାଣିଣ ଥାଅ ସର୍ବଭାଇ ।୬୯
ଦ୍ରିଯୋଧନ ବୋଇଲା ର ମୋ ତହୁଂ ଅଛି କେ ବଡ଼ଜଣ
ମୁହିଂତ ଅଟଇ ରେ ପନ୍ନଗା ନାରାୟଣ ।୭୦
ଯେତେ ବୋଲିଣ ସେ କୁରୁବଳ ପାଶୋରିଲେ
ଶ୍ରୀଜଗନ୍ନାଥେ ଖଳ ଦୁର୍ବଳକଇଂ ଯହୁଂ ରାଇଣ ପେଷିଲେ ।୭୧
କୁରୁକ୍ଷେତ୍ର ମଣ୍ଡଳେ ଦୁହେଂ ଥିବ ଉଭା ହୋଇ

ଆହେ ଖଳ ଦୁର୍ବଳ ତୁମ୍ଭେ ବେଗେ ଯାଇ ।୭୨
ବଡ଼ାଇ ଭାରା ପାଉଅଛି ବସୁନ୍ଧରା
ଯେ ମୋହୋର ବେଳେ ସହି ନୁଆରଇ ଅନର୍ଗଳା ।୭୩
ଯେମନ୍ତ ଶୁଣିଣ ଯେ ସେ ଖଳ ଦୁର୍ବଳେ
ପ୍ରବେଶ ହୋଇଲେ ଯାଇଂଣ କୁରୁକ୍ଷେତ୍ର ମଣ୍ଡଳେ ।୭୪
ସମସ୍ତଂକର ଗର୍ଭେ ପଶିଲେ ଯାଇଂ ଦୁହେଂ
ଯେକୁଯେକ ଆନମୃତ୍ତି ହୋଇଲେ ସଭିଯେଂ ।୭୫
ସମସ୍ତେ ଦୁଷ୍ଟ ହୋଇଲେ ତାହାଂକର ପଶନ୍ତେ
ଦିନୁଦିନ କହୁଥାନ୍ତି ଆନୁଆନ ମତେ ।୭୬
ସଂଘାତ ମଇତ୍ରକୁ କହନ୍ତି ଆନୁଆନ
ଯେକକୁ ଆରେକ ହୋଅନ୍ତି ଅଭିନ୍ନ ।୭୭
ସୋହୋଦ୍ରେ ସୋହୋଦ୍ରେ ହୋଇଲେ ଅଇରିତା
ଉପାୟେ ନାଶ କରୁଅଛନ୍ତି ବିଧାତା ।୭୮
ମନେ ମନେଣ ସେ ହୋଉଅଛନ୍ତି ଆନନ୍ଦ
ଆପଣେ ଆପଣେ ହୋଉଅଛନ୍ତି ପରମାଦ ।୭୯
ଶ୍ରୀଜଗନ୍ନୋଥେ ସୁମରଣା କଲେକ ବ୍ୟାସଂକୁ
ବେଗେ ଆସ ତୁମ୍ଭେ ହୋ କୁରୁକ୍ଷେତ୍ର ମଣ୍ଡଳକୁ ।୮୦
ଯେତେକ ବଚନେ ସେ ବ୍ୟାସ ତପୋନିଷ୍ଠି
ପ୍ରବେଶ ହୋଇଲେ ଆସି ଶ୍ରୀଜଗନ୍ନାଥଂକର କତି ।୮୧
ବ୍ୟାସେ ବୋଇଲେ କିସ କାର୍ଯ୍ୟ ଶ୍ରୀପୁରୁଷୋତ୍ତମ
ମୋତେ ଯେ ସୁମରିଲୁ ଦେବ ନାରାୟଣ ।୮୨
ଜଗନ୍ନାଥେ ବୋଇଲେ ତୁମ୍ଭେ ଅଷ୍ଟଋଷି ଥାଇଂ
ମଞ୍ଚେ ଶୁଭସ୍ତମ୍ଭ ତୁମ୍ଭେ ପୋତାଇବ ନେଇଂ ।୮୩
ଋଷିଶୃଙ୍ଗ ନାରଦ ବିଭାଣ୍ଡକ ଦୃଭାସା
ମାରକଣ୍ଡେ ବ୍ୟାସେ ଅଗସ୍ତି ବିଶ୍ୱାମିତ୍ରା ।୮୪
ଯେହାକଂର ମୂଳେ ଯେ ଅନେକ ଋଷିମାନେ
ସେ ଆସି ପ୍ରବେଶ ଯେ ହୋଇଲେ ବହନେ ।୮୫
ସନ୍ଧା ନିତ୍ୟକର୍ମ ସାରି ଶୁଭଖୁମ୍ବ ପ୍ରତିଷ୍ଠାୟେ ପଶି
ଶ୍ରୀଜଗନ୍ନାଥେ ଆପଣେ ହୋଇଲେ ସମ୍ମାକ୍ଷି ।୮୬
ଶ୍ରୀଜଗନ୍ନାଥେ ବୋଇଲେ ଭୀମ ଦୁଶାସନକୁ
ଶୁଭଖମ୍ବ ଘେନିଆସ ଗୁଳାବାଣ୍ଟ ଥାନକୁ ।୮୭
ଦୁଇଭାଇ ଭାଷ୍କୁରୂପ ଧରିଣ ଆକ୍ରୋଷି
ପବନ୍ନୁଂ ଆପାତେ ଥମ୍ବ ଘେନି ବେଗେ ଆସି ।୮୮
ବ୍ୟାସେ ବୋଇଲେ ଶୁଭ ଅନକୂଳ ହୋଇଲା ରେ ବାବା
ଥମ୍ବକୁ ଅଷ୍ଟରତ୍ନେ ବେଗେ ନିବାଡ଼ିବା ।୮୯
ବ୍ରହ୍ମଜାତି ହୀରା ଶୁଦ୍ଧ ସୁବର୍ଣ୍ଣ ସଙ୍ଗେ ପୋୟେଳା
ମାଣିକ୍ୟ ବଇଡୁର୍ଯ୍ୟ ମର୍କତମଣି ନୀଳା ।୯୦
ଲୋହିତ ବର୍ଣ୍ଣ ଜାଣି ଦିଶଇ ତାର କାୟେ
ଦେଖିଣ ବୃକ୍ଷକୁ ପ୍ରଶଂସା କରନ୍ତି ଦେବରାୟେ ।୯୧
ଅମୃତ ବେଳ ଯେ ଶୁଭଯୋଗ ବିଚାରି
ତିଥିବାର ନକ୍ଷତ୍ର କହିଲେ ଗ୍ରହକାରୀ ।୯୨
ଯେମନ୍ତର ସମୟେ ଦେବକୀର ବାଳ
ଦେଖିଲେ ପକ୍ଷୀୟେ ଗୃହକୁ କରଇ ଅନକୂଳ ।୯୩
ଗ୍ୟାଂନକୋଶ ନାମେଣ ଚଢ଼ାଇ ଭରତିଆ
ତିରଣ ଡାଳେକ ଘେନି ସେ ହୋଇଅଛି ଠିଆ ।୯୪
ଭୂମିରେ ଘର କରଇ ଭରତିଆ ପକ୍ଷୀ
ସେ ଭରତିଆ ଅନକୂଳ ଲକ୍ଷିଲେ ଶ୍ରୀବସ୍ଥି ।୯୫
ଆପଣେ ଶ୍ରିକରେ ଯେ ଘେନିଣ ବାସୁଦେବ
କୁରୁକ୍ଷେତ୍ର ମଧ୍ୟରେ ପୋତିଲେ ଶୁଭଖମ୍ବ ।୯୬
ପାଞ୍ଚତାଳ ଉସ୍ୱର୍ଗ ନବତାଳ ପୋତା
ତିନିତାଳ ମୋଟା ଅଟଇ ଶିଖା ତା ।୯୭
ଯେସନେକ ମେରୁଗିରି ପୃଥୀକି ଆକ୍ରୋଷି
ତେସନେକେ ପଟାନ୍ତର ଶୁଭଖମ୍ବ ଦିଶି ।୯୮
ପୃଥୀରେ ଯେସନେକ ମେରୁକିଳା ବସିଥିଲା
ତହୁଂ ଅଧିକ ହୋଇ ଶୁଭଖମ୍ବ ବିକାଶିଲା ।୯୯
ଦେଖିଣ ଅନେକ ପ୍ରଶଂସା କଲେ ସମସ୍ତ କଉରୋବେ
ବୋଇଲେ ସମର ଭୂମି ପ୍ରାୟେକ ଦିଶିଲାକ ଯେବେ ।୧୦୦
ସେହି ବୃକ୍ଷର ଗର୍ଭରେ ପୁରୁଷେକ ଥିଲା
ଶ୍ରୀନାରାୟଣଂକ ଦ୍ରଶନେ ସେ ମୁକତ ହୋଇଗଲା ।୧୦୧
ସାର ବଇକୁଣ୍ଠପୁରେ ଯାଇଣ ବିଶ୍ରାମି
ଦ୍ରଶନ କଲା ଯାଇଂ ନିରାକାର ଦେବସ୍ୱାମୀ ।୧୦୨
ଯେ ବଚନ ଶୁଣି ଯେ ବିଳଂକ ଅଧିପତି
ଛଡ଼ଅର୍ଘ୍ୟେ ପୂଜା କଲାକ ପଣ୍ଡିତ ଅଗସ୍ତି ।୧୦୩
ଭୋ ଅଗସ୍ତି ନାରାୟଣେ ଯେ ଶୁଭଖମ୍ବ ପୋତି
ତହୁଂ ପୁରୁଷେକ ହୋଇଲା ଉତପତ୍ତି ।୧୦୪
କେବଣ ମହାତ୍ମା ସେ କେବଣ ଶାପେ ଥିଲା
କୁରୁକ୍ଷେତ୍ର ମଣ୍ଡଳରେ କେସନେ ମୁକ୍ତ ହୋଇଗଲା ।୧୦୫
ଯେଥିର ଚରିତ ମହାତ୍ମା ବିଶେଷି ମୋତେ କହ

ଶୁଣିଣ ମନଭ୍ରାନ୍ତି ଫିଟୁ ମୋ ସନ୍ଦେହ ।୧୦୬
ଅଗସ୍ତି ବୋଇଲେ ଶୁଣ ଅନେକ କାଳର କଥା
ମନୁ ସାନନ୍ଦ ବୋଲିଣ ଯେ ସତ୍ୟଯୁଗର ବାରତା ।୧୦୭
ପୃଥୀଜଳ ପ୍ରଳୟ ହୋଇଲା ଯେତେବେଳେ
ସମସ୍ତେ ନାଶଗଲେ ଯେ ମୃତୁ ମଣ୍ଡଳେ ।୧୦୮
ପୃଥିବୀ ଆପ ତେଜ ବାୟବ୍ୟ ଆକାଶ
ସେ ପିତାମହ ଶରୀରେ ସମସ୍ତେ ପରବେଶ ।୧୦୯
ସେ ବ୍ରହ୍ମଜଳ ପ୍ରଳୟ କରିଣ ଭଗବନ୍ତେ
ମରୁଳ ପିଠିରେ ବସି ଉଠିଲେ ବଉଦକଳ୍ପ ପରିଯନ୍ତେ ।୧୧୦
ଆହାର ମଇଥୁନ ନିଦ୍ରା ନାହିଁ ତାର କିଛି
ଚଉଦକଳ୍ପ ପରିଯନ୍ତେ ମରୁଳ ଶୂନ୍ୟେ ଉଡୁଅଛି ।୧୧୧
ଉଡ଼ନ୍ତେଣ ମରୁଳ ଚାହିଂଲା ଲେଉଟି
ଧାତା ଜାଣିଲେ ସେ ବାହାନଗୋଟି ମୋହୋର ଫୁଟି ।୧୧୨
ସେ ବ୍ରହ୍ମା ଧ୍ୟାୟେକଲେ ହୃଦେ ବିଷ୍ଣୁ ଦେବତାଂକୁ
ସୁମରନ୍ତେ ନାରାୟଣ ଭେଟିଲେ ପିତାମହଂକୁ ।୧୧୩
ବ୍ରହ୍ମା ବୋଇଲେ ଦେବ ହୋଇଲା ଜଳଗ୍ରଳେ
ଚଉଦକଳ୍ପ ପରିଯନ୍ତେ ମୁଂ ଉଡ଼ିଲି ଶୂନ୍ୟ ମଣ୍ଡଳେ ।୧୧୪
ଦେଖିଣ ବିଚାର ଯେ କଲେକ ପଦ୍ମନାଭ
ସେ ବ୍ରହ୍ମ ପୁରୁଷଂକୁ ଗର୍ଭେ ଦିଲେ ଠାବ ।୧୧୫
ବ୍ରହ୍ମ ପ୍ରଳୟ ଯେ କରିଣ ଅନନ୍ତେ
ଗରୁଡ଼ ପିଠିରେ ରହିଲେ ସତର କଳ୍ପ ପରିଯନ୍ତେ ।୧୧୬
ତିନିପୁର ମଧ୍ୟେ ଆବର ନାହିଂ କିଛି
ପୃଥିବୀଯାକ ସବୁ ଜଳେ ପ୍ରଳୟ ହୋଇଅଛି ।୧୧୭
ସତରକଳ୍ପ ପରିଯନ୍ତେ ଗରୁଡ଼ ଶୂନ୍ୟେ ଉଡୁଥିଲା
ଉଡ଼ନ୍ତେଣ ଖଗବର ଲେଉଟି ଚାହିଂଲା ।୧୧୮
ନାରାୟଣ ଜାଣିଲେ ଆସନ୍ତ ଖଗେବର ନୁଆରଇ ବହି
ରୁଦ୍ରର ସନ୍ନିଧ୍ୟେ ବିଜୟେ ଭାବଗ୍ରାହୀ ।୧୧୯
ରୁଦ୍ରର ସନ୍ନିଧ୍ୟେ ଯହୁଂ ବିଜୟେ ଅଚ୍ୟୁତ
ଗରୁଡ଼ ନାରାୟଣକଇଂ ଗର୍ଭେ ସଂହରିଲେ ବିଶ୍ୱନାଥ ।୧୨୦
ବିଷ୍ଣୁ ପ୍ରଳୟ କରିଣ ଦେବ ବିଶ୍ୱବାସୀ
ଅଠାଇଶ କଳ୍ପ ପରିଯନ୍ତେ ବୁଲିଲେ ସେ ବୃଷଭ ପିଠିରେଣ
ବସି ।୧୨୧
ସେ ରୁଦ୍ର ଦେବତା ହାଦେ ଭରା ସହି ନୁଆରିଲା
ବାହାନ ଅଶକତେ ସେ ଧର୍ମଦେବତାକଇଂ ସୁମରିଲା ।୧୨୨

ଧର୍ମଦେବତା ପ୍ରବେଶ ଆସି ରୁଦ୍ର ଦେବତାର ପାଶ
କେବଣ ନିମନ୍ତେ ମୋତେ ସୁମରିଲା ବିଶ୍ୱବ୍ୟାସ ।୧୨୩
ଧର୍ମଦେବତାଂକ ଆଗରେ ରୁଦ୍ର ଦେବତା କହିଲା
ମୋହୋର ଦେଖନ୍ତେ ବ୍ରହ୍ମା ବିଷ୍ଣୁ ପ୍ରଳୟ ହୋଇଲା ।୧୨୪
ଅଠାଇଶକଳ୍ପ ପରିଯନ୍ତେ ମୁଂ ବସି ଭ୍ରମିଲି ବୃଷଭର ପିଠି
ଯେତେ ବୋଲି ଧର୍ମକଇଂ ବଦୟନ୍ତି ଧୂର୍ଜଟି ।୧୨୫
ରୁଦ୍ର ପ୍ରଳୟ ବୋଲି ଜାଣିଲେ ଧର୍ମଦେବ
ଯେତେ ବିଚାରି ରୁଦ୍ରଦେବକଇଂ ଗର୍ଭେ ଦିଲେ ଠାବ ।୧୨୬
ଧର୍ମଦେବତାର ଉଦରେ ଯେ ବିଜୟେ ଶୂଳପାଣି
ରୁଦ୍ର ପ୍ରଳୟ ହୋଇଲା ନାଶଗଲା ଯେ ଧରଣୀ ।୧୨୭
ରୁଦ୍ରଦେବତାକଇଂ ଗର୍ଭରେଣ ଲାଇ
ଚଉତିରିଶ କଳ୍ପ ପରିଯନ୍ତେ ବଞ୍ଚିଲେ ଧର୍ମରେହିଂ ।୧୨୮
ସେ ଧର୍ମପୁରୁଷହିଂ ସହିତ ନୁଆରିଲେ
ଠୂଳ ପୁରୁଷକଇଂ ସେ ସୁମରଣା କଲେ ।୧୨୯
ଠୂଳ ପୁରୁଷ ଆସି ପୁଛାକଲା ଧର୍ମ ଦେବତାଂକୁ
କେବଣ କାରଣେ ଧର୍ମ ଚିନ୍ତା କଲ ମୁକୁ ।୧୩୦
ଠୂଳର ଚରଣେ ଧର୍ମଦେବତା ପରିଣାମି
ମୋତେ ଅସକ୍ୟ ହୋଇଲା ତୁ ବିଚାରକର ଦେବସ୍ୱାମୀ ।୧୩୧
ସେ ଧର୍ମ ପୁରୁଷକଇଂ ଗର୍ଭରେ ଠାବଦିଲା
ଗର୍ଭରେ ଭରି ସେ ଷାଠିଯେକଳ୍ପ ବଞ୍ଚିଲା ।୧୩୨
ସେହୁ ଠୂଳ ପୁରୁଷ ଭାରା ସହି ନୁଆରିଲେ
ନିରଞ୍ଜନ ଦେବତାଂକୁ ସୁମରଣ କଲେ ।୧୩୩
ସେ ନିରଞ୍ଜନ ଉଦରେ ଠୂଳ ପୁରୁଷ ପଶିଲା
ସତୁରୀ କଳ୍ପ ପରିଯନ୍ତେ ଶୂନ୍ୟରେ ଉଡ଼ିଲା ।୧୩୪
ସେ ନିରଞ୍ଜନ ପୁରୁଷ ଯେ ସହି ନୁଆରିଲା
ନିରାଲମ୍ବ ପୁରୁଷକୁ ସୁମରଣା କଲା ।୧୩୫
ନିରଞ୍ଜନ ଯହୁଂ ଧ୍ୟାୟେକଲା ନିରାଲମ୍ବ ପୁରୁଷକୁ
ଶୂନ୍ୟେଣ ଶବଦ ସ୍ୱାମୀ ଦିଲେକ ତାହାକୁ ।୧୩୬
ବଚନ ଶୁଭଇ ସ୍ୱାମୀର ନ ଦିଶଇ ଶରୀର
ଅଶ୍ରୁତି ଅମୃତ୍ତି ତାର ନାହିଂନା ଆକାର ।୧୩୭
ନିରଞ୍ଜନ କହଇ ଦେବ ଜନ୍ତୁ ପ୍ରଳୟ ହୋଇଲା
ତଦ ଅନ୍ତରେ ସେ ହାଦେ ବ୍ରହ୍ମ ପ୍ରଳୟ ଗଲା ।୧୩୮
ତଦ ଅନ୍ତରେ ହୋୟେ ବିଷ୍ଣୁର ଯେ ପ୍ରାଳେ
ସୁରାସୁର ନାଶଗଲେ ଆକାଶ ମଣ୍ଡଳେ ।୧୩୯

ମହେଶ୍ୱରେ ପ୍ରଳେଗଲେ ଧର୍ମହିଂ ପ୍ରଳେଗଲା
ଠୂଳ ପ୍ରଳେ ଯେ ଷାଠିଯେ କଳପ ହୋଇଲା ।୧୪୦
ଯେବେ ଦେବ ନିରଞ୍ଜନ ପ୍ରଳେ ହୋଉଅଛି
ତୁ ଦେବ ସମ୍ଭାଳଣ ମୋତେ କର ଦେବ ଶିରୀବଚ୍ଛି ।୧୪୧
ସତୁରୀକଳ୍ପ ବଞ୍ଚି ସେ ଦେବ ନିରଞ୍ଜନ
ନିରାଳମ୍ବ ଦେବ ପୁରୁଷେ ସେ ହୋଇଲେ ଲୀନ ।୧୪୨
ଶୁଣ ହୋ ମନୁ ପୁରୁଷ ମହାପ୍ରଳେ ହୋଇଲା
ନରଲୋକ ବ୍ରହ୍ମଲୋକ ବିଷ୍ଣୁଲୋକ ନାଶଗଲା ।୧୪୩
ଶିବଲୋକ ଧର୍ମଲୋକ ଦେବଲୋକ ଠୂଳଲୋକ
ନାଗଲୋକ ନିରଞ୍ଜନ ଲୋକ ନାଶଗଲେ ଯେ ଅନେକ ।୧୪୪
ମରୁଳ ଗରୁଡ଼ ଆବର ବୃଷଭ
ମହା ପ୍ରଳୟ ଗର୍ଭେ ଭରିଲେ ଆଦିଦେବ ।୧୪୫
ସେ ଅଣାକାର ପୁରୁଷ ଅନନ୍ତ କୋଟିକଳ୍ପ ପରିଯନ୍ତେ
ସମସ୍ତ ଗର୍ଭେ ଭରି ରହିଅଛନ୍ତି ନିଚିନ୍ତେ ।୧୪୬
ନାହିଂ ରାତ୍ର ନାହିଂ ତାହାଂକୁ ଦିବସ
ଆଦି ଅନ୍ତ ମଧ୍ୟ ନାହିଂ ସନ୍ଧ୍ୟା ଅବକାଶ ।୧୪୭
ଯୁଗ ମନୁକଳ୍ପ ସେ ନ ଜାଣଇ କିଛି
ଆହାର ମଇଥୁନ ନିଦ୍ରା ନ ଜାଣଇ କିଛି ।୧୪୮
ଜଳ ସ୍ଥଳ ଅନଳ ଯାହାର କିଛି ନାହିଂ
ଯେକମାତ୍ର ସେ ପୁରୁଷ ହାଦେ ଅଛି ରହି ।୧୪୯
ଅଣାକାର ପୁରୁଷ ଶୂନ୍ୟ ଭୁବନେକ ରଞ୍ଚି
ଅଲେଖ ଲେଖନ କରି ବିଚିତ୍ର ପୁରେକ ସଞ୍ଚି ।୧୫୦
ନିର୍ମଳ ଭୁବନ ସେ ଅତୀୟ ପରିମଳ ଅଲେଖ ପୁର
ସତୁରୀଲକ୍ଷ ଯୋଜନ ବିସ୍ତାର ତହିଂର ।୧୫୧
ଲକ୍ଷେ ଲକ୍ଷେ ଯୋଜନ ବିସ୍ତାର ତହିଂର ଚାରିଦ୍ୱାର
ବିଂଶଲକ୍ଷ ଯୋଜନ ପାଚେରୀ କମଳ ଶିର ।୧୫୨
ସୁବର୍ଣ୍ଣର ପାବଚ୍ଛ ଯେ କାଞ୍ଚନର ପୀଢ଼
ମର୍କତ ଖଞ୍ଜିଲା ଅଛଇ ଚାରିବେଢ଼ ।୧୫୩
ମାରାଗର ଶ୍ରେଣୀ ତହଂ ନୀଳାର କୋଣକାଣ୍ଡ
ଉଦେଗିରି ପର୍ବତେ ଯେହ୍ନେ ଦିଶଇ ମାରତଣ୍ଡ ।୧୫୪
ତେସନ ସାରିକ୍ଷ ଅନ୍ତରିକ୍ଷେ ଚାଳ ଦିଶି
ସ୍ୱୟେଂ ନିର୍ବାଣ ତାହା କଲେକ ବ୍ରହ୍ମରାଶି ।୧୫୫
ସଷ୍ଟିକର ଖମ୍ବ ଯେ ବଇଡୁର୍ଯ୍ୟର ଭରା
ଅଷ୍ଟରତ୍ନେ ଖଞ୍ଜିଣ ମଣ୍ଡିତ ସର୍ବ ପିଢ଼ା ।୧୫୬

ହୀରାର ପଦ୍ମ ଯେ ମୁକୁତା ଖଞ୍ଜା ପାଖୁଡ଼ା
ପୋୟେଳାର କେଶର ଯେ ମାଣିକ୍ୟର ଝରା ।୧୫୭
ଆପଣେ ଯେ ଶୂନ୍ୟ ସ୍ୱାମୀ ଭୁବନହିଂ ଶୂନ୍ୟେଣ ଖଞ୍ଜି
ନବସାଗର ଆଦିତ୍ୟ ପ୍ରଭା ତେଜ ଗଞ୍ଜି ।୧୫୮
ସେହି ଅଲେଖ ଭୂଇଂ ସ୍ୱାମୀର ଆଶ୍ରମ
ସଉନିଧି ବଇକୁଣ୍ଠ ଅଟଇ ତାହାର ନାମ ।୧୫୯
ସେଠା ସିଂଘଦ୍ୱାର ଯେ ବତିଶ ଯୋଜନ ସ୍ଥଳୀ
ଯେକାଦଶ ଯୋଜନ ଓସାର ବେନିକୋଶ ଉଗୁଳି ।୧୬୦
ସେ ଦ୍ୱାରେ ଦ୍ୱାରପାଳ ଜୟ ବିଜୟ ବେନି
ଲକ୍ଷେ ଲକ୍ଷେ ଭାର ଗଦାନ୍ତ କରେ ଘେନି ।୧୬୧
ସେ ବଇକୁଣ୍ଠ ବେଢ଼ିଅଛି ମହାପଦ୍ମ ନାଗ
ନବଲକ୍ଷ ଯୋଜନ ତାର ଫେଣୁର ଉଚ୍ଛର୍ଗ ।୧୬୨
ନାଶାର ପବନ ତାର ମହା ବିଷଜ୍ୱାଳା
ଆଠକୋଟି ସୂର୍ଯ୍ୟର ତେଜ ତାହାର ବେନିଡ଼ୋଳା ।୧୬୩
କୁମ୍ଭେକ ନାମେ ତହିଂ ଗରୁଡ଼େକ ଅଛି
ଚାରି ଚାରି ଯୋଜନ ତାହାର ବେନିଡ଼େଣା ଅଛି ।୧୬୪
ଶଙ୍ଖେ ଶଙ୍ଖେ ଯୋଜନ ତାହାର ବେନିଗୋଡ଼
ବେନିଶଙ୍ଖ ଯୋଜନ ଯେ ତାହାର ଲାଉଡ଼ ।୧୬୫
ପିଠିର ମୋଟ ଅଟଇ ତାହାର ଶଙ୍ଖ ଦଶ
ଦେବନାଶନ ବୃକ୍ଷ ଉପରେ ତାହାର ଯେ ବାସ ।୧୬୬
ସେ ଦ୍ୱାରେ ଅଛଇ ଯେ ଦେବନାଶନ ବଟ
ବେନିଲକ୍ଷ ଯୋଜନ ଉଚ୍ଛର୍ଗ ଲକ୍ଷେ ଯୋଜନ ମୋଟ ।୧୬୭
ସେ ବୃକ୍ଷର ନାମ ଅଟଇ ଦେବନାଶନ
ବିଷ୍ଣୁନାଥ ଶରୀରେ ଅଟଇ ତାହାର ସ୍ଥାନ ।୧୬୮
ଅଣାକାର ବିଷ୍ଣୁବିଜୟେ ସେହି ସ୍ଥାନେ
ତହୁଂ ସେ ଦଶ ଅବତାର ବସଇ ବିଷ୍ଣୁ ନାମେ ।୧୬୯
ମଛ କୂର୍ମ ବରେହା ନରସିଂହ ବାବନ
ପ୍ରଶୁଧର ଶ୍ରୀରାମ କାହ୍ନୁ ସଂକ୍ରିଷେଣ ।୧୭୦
ବଉଧ କଲଂକୀ ଯେ ଦଶ ଅବତାର
ସେ ସ୍ୱାମୀର ଶରୀରୁଂ ଯେ ହୋଅନ୍ତି ବାହାର ।୧୭୧
ଭୋଗ ସରିଲେ ଶରୀରେ ପୁଣି ହୋଅନ୍ତି ଲୀନ
ପୁଣିହିଂ ଆଗ୍ୟାଂ ଦିଲେ ହୋଅନ୍ତି ଉତପନ୍ନ ।୧୭୨
ସମସ୍ତ ଗର୍ଭେ ସଂହରି ବସିଲେ ବିଶ୍ୱବାସୀ
ଅନନ୍ତ କଳ୍ପ ପର୍ଯ୍ୟନ୍ତ ଶୂନ୍ୟେ ଛନ୍ତି ବସି ।୧୭୩

ପୃଥ୍ୱୀ ଆପ ତେଜ ବାୟିବ୍ୟ ଆକାଶ
ଜଳ ସ୍ଥଳ ଅନଳ ସମସ୍ତ ଗଲା ନାଶ ।୧୭୪
ନାହିଂ ମେଘ ନାହିଂ ଯୋଗ ପବନ ନାହିଂ ଚନ୍ଦ୍ର ସୂର୍ଯ୍ୟ
ନାହିଂ ବ୍ରହ୍ମ ନାହିଂ ରୁଦ୍ର ନାହିଂ ବିଷ୍ଣୁ ନାହିଂ ସୁରରାଜ ।୧୭୫
ନାହିଂ ମର୍ତ୍ତ ନାହିଂ ସ୍ୱର୍ଗ ନାହିଂନା ପାତାଳ
ନାହିଂ ତପତ ନାହିଂ ଶୀତଳ ନାହିଂ ଦିଗପାଳ ।୧୭୬
ନର ନାଗ ଯକ୍ଷ ଅମର କିନ୍ନରହିଂ ନାହିଂ
ଯେକାମାତ୍ରକେ ସେ ପୁରୁଷେ ଅଛି ରହି ।୧୭୭
କେତେକାଳ ପରେ ସେ ହାଇଯେ ମାଇଲା
ସେ ହାଇ ଭିତରୁ ପବନ ବାହାର ହୋଇଲା ।୧୭୮
ସେ ପବନ ତହୁଂ ଯୋଗ ପୁରୁଷ ଅବତାର
ସେ ଯୋଗ ପୁରୁଷ ତହୁଂ ନିର୍ଗୁଣ ବାହାର ।୧୭୯
ନିର୍ଗୁଣ ତହୁଂ ନିରଞ୍ଜନ ପୁରୁଷ ହୋୟେ ଜାତ
ନିରଞ୍ଜନ ତହୁଂ ଠୂଳ ପୁରୁଷ ସମ୍ଭୁତ ।୧୮୦
ସେ ଠୂଳ ତହୁଂ ଧର୍ମ ଜାତ ଯେ ହୋଇଲା
ସେ ଧର୍ମର ତହୁଂ ତିନିପୁତ୍ର ଉପୁଜିଲା ।୧୮୧
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନିଂକର ନାମ
ତାହାନ୍ତ ରାଜଣ ଆଗ୍ୟାଦିଲେ ଦେବଧର୍ମ ।୧୮୨
ବ୍ରହ୍ମାଂକୁ ବୋଇଲେ ତୁ ସୃଷ୍ଟି ଜାତକର
ବିଷ୍ଣୁଂକୁ ବୋଇଲେ ତୁ ଦାନବନ୍ତ ମାର ।୧୮୩
ଈଶ୍ୱରଂକୁ ବୋଇଲେ ତୁ ସାଧ ଯୋଗଗ୍ୟାଂନ
ଯେତେ ବୋଲି ମହାତମା ହୋଇଲେ ଅନ୍ତର୍ଦ୍ଧାନ ।୧୮୪
ସେ ବ୍ରହ୍ମାର କପାଳୁଂ କପିଳା ହେଲା ଜାତ
ସେ କପିଳାର ତହୁଂ ଜାତ ହେଲେ ବେଦସାତ ।୧୮୫
ଆୟୁର ଜ୍ୟୋତି ଧନୁର ଶୁଷୁମ୍ନା
ଅଜପା ଗାୟତ୍ରୀ ସାବିତ୍ରୀ ସପତ ଶାଖା ଉତପନ୍ନା ।୧୮୬
ସପତ ବେଦରୁ ଯେ ସମସ୍ତ ଅବତାର
ନବଖଣ୍ଡ ମେଦିନୀ ଯେ ସପତ ସାଗର ।୧୮୭
ଜଳ ସ୍ଥଳ ଅନଳ ତପନ ତାପନ
ଚନ୍ଦ୍ରସୂର୍ଯ୍ୟ ଆବର ଗ୍ରହ ଦିଗପାଳମାନ ।୧୮୮
ସେ ବ୍ରହ୍ମାର ଦକ୍ଷିଣ ଅଙ୍ଗୁଷ୍ଠିରୁ ପୁରୁଷେ ହୋଇଲେକ ଜାତ
ଦକ୍ଷ ନାମ ତାହାର ଦିଲେକ ବିଧାତ ।୧୮୯
ସେ ଦକ୍ଷର ହୋଇଲାକ ଷାଠିଯେ ଦୁହିତା
ଦିଗପାଳମାନନ୍ତ ସେ କଲେକ ପରିଣିତା ।୧୯୦
ସେ କନ୍ୟାଂକର ତହୁଂ ସମସ୍ତେ ହୋଇଲେକ ଜାତ
ଅଷ୍ଟକୁଳା ନାଗେ ଆଠଲକ୍ଷ ପରବତ ।୧୯୧
ଦେବ ଦାନବ ଯେ ମାନବ ଅବତାର
ସୁର ନର ନାଗ ଗନ୍ଧର୍ବ କିନ୍ନର ବିଦ୍ୟାଧର ଅମର ।୧୯୨
ବନ କନ୍ଦର ଲତା ନାନା ବୃକ୍ଷମାନ
ଗ୍ରହଗଣମୂଳେ ମେଘମାଳ ଉତପନ ।୧୯୩
ଚାରିଖାନି ଚଉରାଶି ଲକ୍ଷ ଜୀବଜନ୍ତୁ
ଯେ ଯାହା ଅନୁକର୍ମେ ସେ ସ୍ରିଜନ ବ୍ରତ ହେତୁ ।୧୯୪
ଯେହିମତି ଆତକାତ କରଇ ଯେବଣ ମହାତ୍ମା
ସେ ସାର ବଇକୁଣ୍ଠ ଦ୍ୱାରେ ଉଭା ରୁଦ୍ରପାଳ ନାମେ ବ୍ରହ୍ମା ।୧୯୫
ଭିତରକୁ ଯାଇତେ ଦ୍ୱାରପାଳେ ନ ଦିଲେ ଯେ ପଶି
ବାହୁଡ଼ିଣ ବ୍ରହ୍ମା ସେ ଦେବନାଶନ ବୃକ୍ଷତଳେ ବସି ।୧୯୬
ଦେବନାଶନ ବୃକ୍ଷତଳେ ବସିଲେ ବେଦପତି
ସମୟେକେ ପିତାମହ ମନେ କଲେ ଭ୍ରାନ୍ତି ।୧୯୭
ବ୍ରହ୍ମାମାନେ ଯେତେକ ଆସନ୍ତି ଦ୍ରଶନ କରି
ସେ ବୃକ୍ଷର ତଳେ ଅଛନ୍ତି ଯେ କୋଟି କୋଟି ହୋଇ ମରି ।୧୯୮
ଦେବତାମାନେ ଯେତେକ ଆସନ୍ତି ଦ୍ରଶନ କରି
ସେ ବୃକ୍ଷର ତଳୁଂ କେହି ନୁଆରନ୍ତି ଉବୁରି ।୧୯୯
ଶୁଣ ହୋ ମନୁପୁରୁଷ ବଦୟନ୍ତି ବ୍ରହ୍ମବେତ୍ତା
ସେ ବୃକ୍ଷର ତଳକୁ ଗଲେ ଛାଡ଼ଇ ମନୁ ସର୍ବଚିନ୍ତା ।୨୦୦
ମହାସୁସ୍ଥ ପାଇଣ ସେ ରହନ୍ତି ଅପାରକାଳ
ସେ ବୃକ୍ଷର ତଳେ ପ୍ରାଣତ୍ୟାଜ ହୁଅନ୍ତି ସକଳ ।୨୦୧
ସେ ରୁଦ୍ରପାଳ ବ୍ରହ୍ମା ଯହୁଂ ଭିତରକୁ ନ ଗଲା
ମହାସୁସ୍ଥ ପାଇଣ ସେ ବୃକ୍ଷ ତଳେଣ ରହିଲା ।୨୦୨
ଶତେକଛ ପରିଯନ୍ତେ ସେ ବୃକ୍ଷତଳେ ବସି
କାଳ ଅବସାନେ ସେ ପ୍ରାଣତ୍ୟାଜ ହୋଉଅଛି ।୨୦୩
ଗଗନଚାରୀ ନାମେଣ ଯେକଇ ନାରଦ
ସେ ଆସି ପ୍ରବେଶ ହୋଇଲା ପିତାମହର ସନିଧ୍ୟ ।୨୦୪
ପିତାଂକର ପ୍ରାଣତ୍ୟାଜ ହୋଇବାର ବେଳେ
ନାରଦେ ବୋଇଲେ ଆସି ଜୀବନ ଶେଷକାଳେ ।୨୦୫
ଭୋ ପିତା ତୁମ୍ଭେତ ଯେବେ ନୁଆରିଲ ଜାଣି
ସେ ବୃକ୍ଷର ତଳେ ବସିଲୁ ନ ଜାଣି ।୨୦୬
ଯେତେକ ଲୋକେ ଆସନ୍ତି ଯେ ବୃକ୍ଷ ତଳକୁ
କେହି ନ ବ୍ରତନ୍ତି ବୋଲି ନାରଦେ କହିଲେ ପିତାମହଂକୁ ।୨୦୭

ମୋତେ ରାଇଣ ଆଗ୍ୟାଂ ଦିଲେକ ଚକ୍ରପାଣି
ମୁହିଂ ହାଦେ ଆସିଅଛି ବ୍ରହ୍ମାମାନଂକର ଶିରନ୍ତ ଗଣି ।୨୦୮
ଶତାଉନ କୋଟି ହୋଇଲା ବ୍ରାହ୍ମଂକର ଶିର ଅସ୍ଥି
ଆଉର ଅସ୍ଥିମାନ ଗଲାନି ନିବୃତ୍ତି ।୨୦୯
ଶତବଦନ ବ୍ରହ୍ମା ଯେ ଶ୍ୱେତବ୍ରହ୍ମା କୁଶକେତୁ ବ୍ରହ୍ମା ପୁଣି
ସୋମପାଳ ଚନ୍ଦ୍ରକ ସନକ ବ୍ରହ୍ମା ପଦ୍ମଯୋନି ।୨୧୦
ହୃଦେକ ଶୂଦ୍ରେକ ବ୍ରହ୍ମା ଆବର ମନ୍ଦପାଳ
ଅବଳାସ୍ତମ୍ଭ ବ୍ରହ୍ମା ବ୍ରହ୍ମା ରୁଦ୍ରପାଳ ।୨୧୧
ଯେସନେକ ଅନେକ ବ୍ରହ୍ମା ପାଇଲେନି ମରଣ
ଶ୍ରିବସ୍ତ ନାମେ କରଣ ଯେହା ପାଞ୍ଜିରେ କରଇ ଲେଖନ ।୨୧୨
ଚତୃମୁଖ ଅଷ୍ଟମୁଖ ଶତମୁଖ ସହସ୍ରେକ ମୁଖ
ଅହିବ୍ରତେକ ମୁଖ ଲକ୍ଷେକ କୋଟିଯେକ ମୁଖ ।୨୧୩
ଯେକମାନଂକର ଅସ୍ଥିମାନ ଗଲାନି ନିର୍ଯ୍ୟାପି
ଗଗନଚାରୀ ନାରଦ କହିଲେ ସଞ୍ଚପି ।୨୧୪
ବ୍ରହ୍ମା ବିଷ୍ଣୁ ମହେଶ୍ୱର ରୁଦ୍ରଦେବ
ଯମ କୁବେର ପନ ନାଶ ଯାନ୍ତି ସର୍ବ ।୨୧୫
ବାରିତ ନୁଆରିଲି ମୁଂ ଯେମାନଙ୍କର ଶିର
ନାରଦ କହନ୍ତି ସେ ରୁଦ୍ରମାଳ ବ୍ରହ୍ମାଂକ ଆଗର ।୨୧୬
ନାରଦ ବଚନେ ସେ କୋପିତ ବେଦପତି
ଯେ ପ୍ରାଣ ହରଣ ତରୁ କିମ୍ପେ ରହିଅଛି ଯେଥି ।୨୧୭
ଯେ ସାର ବଇକୁଣ୍ଠର ଯେ କେସନେକ କଥା
ଆରେ ରେ ତରୁ ତୁ ଯେ ବିଷ୍ଣୁଦ୍ୱାରେ ନ ଥା ।୨୧୮
ଶାପ ପାଇଣ ଯେ ଭୟେକଲା ବୃକ୍ଷ ଦେବନାଶ
କରପତ୍ର ଯୋଡ଼ିଣ ଉଭା ପିତାମହର ପାଶ ।୨୧୯
ଅଳପ ଦୋଷକଇଂ ବହୁତ କଲ କୋହ
ଶାପକଇଂ ଅନୁଗ୍ରହ ମୋତେ ମୁକତି ବାଟ କହ ।୨୨୦
ବ୍ରହ୍ମାଯେ ବୋଇଲେ ତୁ ଅଟୁ ଦେବନାଶନ ବୃକ୍ଷ
ଶ୍ରୀବିଷ୍ଣୁର ଦ୍ୱାରେ ଥାଇ ତୁ କିମ୍ପେ ଯେଡ଼େକ ନିରାପକ୍ଷ ।୨୨୧
ତୋହୋର ତଳେ ଯେ ନାଶଗଲେ ଦେବତାଯେ
ମୃତୁ ମଣ୍ଡଳେ ଯାଇଂତୁ ଥିବୁ ନା ସମୟେ ।୨୨୨
ପ୍ରାଣତ୍ୟାଜ ବେଳେ ବ୍ରହ୍ମାଯେ ବୋଇଲେକ ରୋଷେ
ମୁକତ ହୋଇବୁ ତୁ ଛତିଶ ଲକ୍ଷ ବରଷେ ।୨୨୩
ସତ୍ୟଯୁଗ ସତର ଲକ୍ଷ ଅଠାଇଶି ସହସ୍ର ବରଷ
ତ୍ରେତୟା ଯୁଗ ବାରଲକ୍ଷ ଛୟାଣୋଇ ସହସ୍ର ବରଷ ।୨୨୪
ଯେତେତେକେଣ ତ୍ରେତୟା ଯୁଗ ହୋଇବାକ ଶେଷ
ଯେ ଅନ୍ତେ ଦ୍ୱାପର ଯୁଗ ଆଠଲକ୍ଷ ଚଉଷଠି ସହସ୍ର ବରଷା ।୨୨୫
ତଦ ଅନ୍ତରେ ହୋଇବ ଅନୁଭବ ନାମେଣ ଦ୍ୱାପର ଯୁଗ
ଦେବ ଗୋଲଖ ନାମେ ଇନ୍ଦ୍ର ବସିବାକ ସ୍ୱର୍ଗ ।୨୨୬
ସେ ଦ୍ୱାପର ଯୁଗ ଆଠଲକ୍ଷ ଚଉଷଠି ସହସ୍ର ବରଷର ଅନ୍ତେ
ବଇବସ୍ୱତ ମନୁ ଭୋଗ ହୋଇବ ଲେଖନ୍ତେ ।୨୨୭
କୁମ୍ଭେକ ନାମେଣ ବ୍ରହ୍ମା କୃତ୍ତିକ ନାମେ ଯମ
ବିରୁଥ ନାମେଣ କାଳ ପାଳେକ ନାମେ ଧର୍ମ ।୨୨୮
ସମୀରଣ ନାମେ ପବନ ସୋହି ନାମେ କ୍ଷିତି
ସହସ୍ରେ ମୁଖ ବାସୁକି ବହଇ ମଧ୍ୟପୃଥୀ ।୨୨୯
ସୋମକ ନାମେ ରୁଦ୍ର ଡଗର ନାମ ନାରଦ
ଭାନୁ ନାମେଣ ଆଦିତ୍ୟ କାମ୍ୟକ ନାମେ ଚନ୍ଦ୍ର ।୨୩୦
ସେ ଯୁଗେଣ ବିଷ୍ଣୁ ଯେ ଶୁକ୍ଳାମ୍ବର ଅବତାର
କୁନ୍ଦ କୁପୂର ଜାଣି ନାରାୟଣ ଶରୀର ।୨୩୧
ସେ ଦ୍ୱାପର ଯୁଗେ ତୁ ଅଗ୍ରବୃକ୍ଷେକ ହୋଇବୁ
ବାରୁଣାବନ୍ତେ କୁଣ୍ଡଳା ପର୍ବତରେ ଥିବୁ ।୨୩୨
ଦ୍ୱଷ୍ଟା ଋଷିର ଶାପେ ଇନ୍ଦ୍ର ହୋଇବ ଯେ ଭସ୍ମ
ପାଞ୍ଚ ମୂରତି ଧରି ପାଣ୍ଡବେ ପାଞ୍ଚେହେଂ ହୋଇବେ ଜନମ ।୨୩୩
ଯୁଧିଷ୍ଠି ଭୀମ ଅର୍ଜୁନ ନକୁଳ ସହଦେବ
ପନ୍ନଗା ବିଷ୍ଣୁ ଅଂଶେ ଶତେକ କଉରୋବ ।୨୩୪
ପ୍ରଶୁରାମ ପ୍ରସନ୍ନେଣ ଦ୍ରୋଣଗୁରୁ ସିଦ୍ଧା
ଛଡ଼ ଉଭର ଶତେ ତାଇଂକି ସେ ଶିଖାଇବେ ଧନୁର୍ବିଦ୍ୟା ।୨୩୫
କୁରୁ ପାଣ୍ଡବେ ବିଦ୍ୟା ପରୀକ୍ଷା ନିମନ୍ତେ
ସେ ବନେ ଦ୍ରୋଣଗୁରୁ ଦେଖିବାକ ତୋତେ ।୨୩୬
ତୁ ଯେ ଅନମିତେ ଦେବତାଂକର ପ୍ରାଣ ହରୁ
ତୋତେ ଅନମିତେ ନାରାଜେ ଦ୍ରୋଣଗୁରୁ ଛେଦନ କରୁ ।୨୩୭
ତୋହୋର ମୂଳେ ଯେତେ ଦେବତାଂକ ପଡ଼ିଲା ଅସ୍ଥିକୁଢ଼
ମୃତୁ ମଣ୍ଡଳେ ତୁ ରୁଧିର ନଦୀରେ ବୁଡ଼ି ମର ।୨୩୮
ସେ ଦ୍ୱାପର ଯୁଗ ଆଠଲକ୍ଷ ବରଷ ସଂପର୍ଣ୍ଣେ
ମୁକତ ହୋଇ ଆସିବୁ ତେତେକର ଦିନେ ।୨୩୯
ପାଣ୍ଡବେ କଉରୋବେ ହୋଇବେ ଅନ୍ୟୋଅନ୍ୟେ
ନାରାୟଣ ପାଣ୍ଡବ କୁରୁକ୍ଷେତ୍ର ମଣ୍ଡଳ ଦ୍ରଶନେ ।୨୪୦
ଇନ୍ଦ୍ରପ୍ରଶସ୍ତେ ଯମପ୍ରଶସ୍ତ ହସ୍ତିନା ଜଇନ୍ତା ବାରୁଣା ମଧ୍ୟଲାଗେ
ସେ କୁରୁକ୍ଷେତ୍ର ସମରଭୂମି ବାଣ୍ଟିବେ ବେନିଭାଗେ ।୨୪୧

ଗୋବିନ୍ଦ ଆଗ୍ୟାଂ ପ୍ରମାଣେ ଭୀମ ଧୃଶାସନ ବେନି
କୁଣ୍ଡଳା ନାମେ ପର୍ବତୁଂ ତୋତେ ସେହୁ ଯିବେ ଘେନି ।୨୪୨
ଶ୍ରୀକରେ ନାରାୟଣ ତୋତେ ପୋତିବେ ମଧ୍ୟସ୍ଥାନେ
ପାଇବୁ ପରମଗତି ବସିବୁ ନିଜ ସ୍ଥାନେ ।୨୪୩
ରୁଧିର ନଦୀରେ ତୋର ବୁଡ଼ିବ ନିଜ ଶାଖା ଶିଖ
ମଞ୍ଚେ ଚିରାଞ୍ଜନ ହୋଇ ରହିବୁ ରକତ ଚନ୍ଦନ ବୃକ୍ଷ ।୨୪୪
ଶୁଣ ହୋ ମନୁ ପୁରୁଷ ବଦୟନ୍ତି ବ୍ରହ୍ମବେତ୍ତା
ତୁ ଯେ ପୁଚ୍ଛାକଲୁ ଶୁଭସ୍ତମ୍ଭର ବାରତା ।୨୪୫
ବ୍ରହ୍ମାଂକର ଶାପେ ସେ ମଧ୍ୟପୁରେ ଥିଲା
ନାରାୟଣଂକ ଦ୍ରଶନେ ସେ ମୁକତି ହୋଇଗଲା ।୨୪୬
ଜୟତୁ ନିରାଲମ୍ବ ନିରାକର ମୂରତି
ଜୟତୁ ନିରାଲମ୍ବ ନାଥ ଶୂନ୍ୟେଣ ଉତପତ୍ତି ।୨୪୭
ଜୟତୁ ନିରାଲମ୍ବ ଶୂନ୍ୟ ଭୂବନ ବ୍ୟାପି
ଜୟତୁ ନିରାଲମ୍ବ ନାଥ ଅରୂପ ସ୍ୱରୂପୀ ।୨୪୮
ଜୟତୁ ନିରାଲମ୍ବ ନାଥ ଠୂଳ ଶୂନ୍ୟବାସୀ
ଜୟତୁ ନିରାଲମ୍ବ ନାଥ ଯୋଗ ବ୍ରହ୍ମରାଶି ।୨୪୯
ଜୟତୁ ନିରାଲମ୍ବ ଆସନ ଯାହାର ଶୂନ୍ୟ
ଜୟତୁ ନିରାଲମ୍ବ ନ ଜାଣଇଂ ତୋହୋର ବର୍ଣ୍ଣ ଚିହ୍ନ ।୨୫୦
ଜୟତୁ ନିରାଲମ୍ବ ଅମୃତ ଯାହାର ସଞ୍ଚା
ଜୟତୁ ନିରାଲମ୍ବ ନାଥ ଅନନ୍ତ କାଳ ବଞ୍ଚା ।୨୫୧
ଜୟତୁ ନିରାଲମ୍ବ ସୟଳ ଜନ ଚିନ୍ତା
ଜୟତୁ ନିରାଲମ୍ବ ନାଥ ବିହି ଯେ ବିଧାତା ।୨୫୨
ଜୟତୁ ନିରାଲମ୍ବ ସୟଳ ଜନ ପ୍ରହୁ
ଜୟତୁ ନିରାଲମ୍ବ କେହି ନ ଜାଣେ ଉପୁତ୍ତି ହେଲୁ କାହୁଂ ।୨୫୩
ସ୍ତମ୍ଭନ ମୋହୋନ ନାଥ ବଶ ଉଚ୍ଚାଟନ
ଗୁଟିକା ଅଞ୍ଜନ ନାଥ ଧରଣ ଧାରଣ ।୨୫୪
ଚଉଷଠି ବନ୍ଧ ଯେ ବିଶାଶତେ ମୁଦ୍ରା
ତୁହି ସେ ଜିଣିଲୁ ନାଥ କାଳକାମ ନିଦ୍ରା ।୨୫୫
ଛେଦ ଭେଦ ଗ୍ୟାଂନ ବିଗ୍ୟାଂନ ଖେଚଡ଼ା
କାଳ ମହାକାଳ ବୀର ଡାକେଣୀ ପିଚାଶୁଣୀ ଚାମଡ଼ା ।୨୫୬
ମନ ପ୍ରକୃତିର ଯେମାନ ଯାହାର ଜାତ
କ୍ଷେମା ସାଗର ନାଥ ସହିଲୁ ସମସ୍ତ ।୨୫୭
ପାଦ ପାତାଳେ ଆକାଶେ ଯାହାର ଶିର
ଦିଗାଙ୍ଗ ମୃଦ୍ଧନା ଯାହାର ଉଦରଟି ମଧ୍ୟପୁର ।୨୫୮
ରେଖବର୍ଣ୍ଣ ବିବର୍ଜିତ ଯେବଣ ସ୍ୱାମୀ କଳା
ଶୂନ୍ୟକୁ ଶବଦ କଲା ତୋତେ ନାଥ ନାହିଂ ନ ଦେଖିଲା ।୨୫୯
ଆଦି ଅନ୍ତ ମଧ୍ୟ ସ୍ୱାମୀ ନାହିଂ ଯାହାର ମୃତ୍ୟୁ
ରୋଗ ଶୋକ ବିବର୍ଜିତ ଯାହାର ନିଜ ହେତୁ ।୨୬୦
ଦେବ ବର୍ଣ୍ଣ ଚିହ୍ନ ଯେ ନ ପାଇଲେ ଦେଖି
ଶୂନ୍ୟ ଶବଦକୁ ପାରିବ କେ ଲେଖି ।୨୬୧
ରୂପ ଗୁଣ ସରୂପ ନାଥ ତୋର ନ ଜାଣନ୍ତି କେହି
ତେଣୁ ସେ ଅଣାକାର ନାମ ହାଦେ ବହି ।୨୬୨
ସପତ ପାତାଳ ଶିର ବଇକୁଣ୍ଠ ପୁର
ତୋହୋ ତହୁଂ ନାଥ ସେ ଦଶ ଅବତାର ।୨୬୩
ତମୁଂ ଅଗ୍ନିଜାତ କୋପୁଂ ଯାହାର ଯମ
ଚକ୍ଷୁରୁ ଚନ୍ଦ୍ର ସୂର୍ଯ୍ୟ ଦୟାରୁ ଜାତ ଦେବ ଧର୍ମ ।୨୬୪
ନାସାଉଂ ପବନ ସେ ହୋଇଲା ଉତପନ
ଶରୀର ରୋମୁଂ ଯାହାର ନକ୍ଷତ୍ରଗଣମାନ ।୨୬୫
ଯେକେଣ ଅନେକ ସ୍ୱାମୀ ତୁ ଅନେକ ରୂପ ଧରୁ
ଜାତ ଅନ୍ତ କରିଣ ନାଥ ଗର୍ଭରେ ସଂହାରୁ ।୨୬୬
ସ୍ୱାମୀ ତୁ ସେ ପିତା ମାତା ତୁହି ସେ ବ୍ରହ୍ମ ହେତୁ
ତୁ ସେ ଦିନ ଦଣ୍ଡବେଳା ଭୋଗ ଛଡ଼ଋତୁ ।୨୬୭
ତୁହି ସେ ପୃଥୀ ଆପ ତେଜ ବାଇବ ଆକାଶ
ତୁହି ସେ ସର୍ବଗ୍ୟାଂ ନାଥ ମହତ ପୁରୁଷ ।୨୬୮
ଚାରିଖାନି ଚଉରାଶି ଲକ୍ଷ ଜୀବଜନ୍ତୁ ସମାଦି
ଥାବର ଜଙ୍ଗମ କୀଟ ପତଙ୍ଗ ଯେ ଆଦି ।୨୬୯
କାଷ୍ଟ ପାଷାଣ ଯେ ଆବର ମୃତ୍ତିକା
ସବୁରି ହୃଦରେ ନାଥ ତୁହି ସେ ବିଜେ ଯେକା ।୨୭୦
ଶୂନ୍ୟେଣ ଥାଉ ନାଥ ଶୂନ୍ୟେଣ ଆସୁ ଯାଉ
ଅବିକାର ପୁରୁଷ ତୁ କାହାକଇଂ ଦୃଶ ନୋହୁ ।୨୭୧
ଜୟ ତୁ ନିରାଲମ୍ବ ବଇକୁଣ୍ଠପୁର ବାସୀ
ପଶିଲି ଶରଣ ନାଥ ତବପୁରେ ଠାବ ଦେସି ।୨୭୨
ଶ୍ରୀବାସୁଦେବ ନିରାକାର ନିରାଲମ୍ବ ପୁରୁଷ
ପାଦତଳେ ଶରଣ ପଶିଲି ରଖ ବିଶ୍ୱବାସ ।୨୭୩
ଶ୍ରୀ ନିରାଲମ୍ବ ନାଥ ଚରଣାରବିନ୍ଦେ ସେବି
ବଦୟନ୍ତି ଶୂଦ୍ରମୁନି ସାରୋଳ ଦାସ କବି ।୨୭୪

**

## ୭୬. ରାଜାମାନଙ୍କୁ ଯୁଦ୍ଧ ନିମନ୍ତେ ଆମନ୍ତ୍ରଣ

ଯେହୁ ଶୁଣି ପୁଚ୍ଛାକଲେ ବଇବସୁତ ମନୁ
ସାବଧାନେ ଶୁଣ ତୁମ୍ଭେ କୁମ୍ଭ ଋଷିଂକର ତନୁ ।୧
ବଦୟନ୍ତି ଯୋଗେଶ୍ୱର ଧାର୍ମିକ ମହାବ୍ରହ୍ମ
ଭାରଥ ଉଦିଯୋଗେ ହରି କଲେ କେଉଂଣ କର୍ମ ।୨
ଆଶ୍ୱିନ ଶୁକଳପକ୍ଷ ଦଶମୀର ଦିନ
ପଣ୍ଡିତବାର ଶ୍ରବଣା ଅଟେ ବିଦ୍ୟମାନ ।୩
ଅଗସ୍ତି ବୋଇଲେ ତୁ ଶୁଣିମା ମହାବଳା
ସେଦିନ କୁରୁକ୍ଷେତ୍ର ମଣ୍ଡଳେ ହୋଇଲାକ ଗୋଳା ।୪
ପୂର୍ବେଣ ପାଣ୍ଡବେ ଯେ ପଚ୍ଛିମେ କଉରୋବେ
ଦ୍ରିଯୋଧନକଇଂ ପୁଚ୍ଛାକଲେ ଯୁଝେଷ୍ଟି ରାଜ ଦେବେ ।୫
ବାବୁ ନିଚୟେଂ ସମର ହୋଇଲା ତୁମ୍ଭର ଆମ୍ଭର
ତୁମ୍ଭେ ଶତେଭାଇ ଆମ୍ଭେ ପାଞ୍ଚଭାଇ କରିବା ସମର ଘୋର ।୬
ତୁମ୍ଭର ଆମ୍ଭର ସିନା ହୋଇଲା ଅଭାବ
କିମ୍ପେ ନାଶ କରାଇବା ଆଉର ବନ୍ଧୁବର୍ଗ ।୭
ଯେ ଅବା ମହତ ଅଟନ୍ତି ପୁଣ୍ୟଜନ
କୁଟୁମ୍ବ ପୋଷନ୍ତେ ତାହାଂକର ସୁବିଧାନ ।୮
ରାଗ ମୋହ ଅହଂକାର ହିଂସା ଅପବାଦେ
କୁଟୁମ୍ବ ଲୋକ ନାଶ କରିବା କିଂକେ ହାଦେ ।୯
ରାଜ୍ୟଭାର ସିଂଘାସନ ଧନ ଭଣ୍ଡାର ନିମନ୍ତେ
ଆମ୍ଭେ ନାଶଯିବା ସୋଦର ନାଶଯିବେ କେମନ୍ତେ ।୧୦
ଦ୍ରିଯୋଧନ ବୋଇଲା ଯେ ନୋହଇ ଯୁଗତ
ସୋଦ୍ରିମା ବନ୍ଧୁପଣ ଜାଣିମା କେମନ୍ତ ।୧୧
ବିଭା ବିବାଦେ ରାଜଦ୍ୱାର ଶମଶାନେ
ଯେତେକରେ ସମକ୍ଷ ହୋଇଲେ ଜାଣିବା ଗୁଣେ ।୧୨
ଦୁଇକୁଳ ଆଡୁ ଆମ୍ଭେ ବରଗିବା ଦୂତ
ସବୁକୁହିଂ କହୁଥିବେ କୁରୁପାଣ୍ଡବଂକ ଯୁଦ୍ଧର ବାରତ ।୧୩
ଯେ ଯାହାର ସମ୍ପକ୍ଷ ଆସନ୍ତୁ ସନ୍ୟ ଘେନି
କାହାର କତି ମିଳଇ କେତେକ ସଇନି ।୧୪
ମାନଗୋବିନ୍ଦ ଶାଢ଼ି ଦିଲା ଶଇଳ ଶକୁନି
ଜଦ୍ୟରଥ ବିକର୍ଣ୍ଣ ଯେ ଚାରିନ୍ତି ଘେନି ।୧୫
ତୁମ୍ଭେ ପାଣ୍ଡବେ ହେ ଦିଅ ଦୂତ ଜଣ ଚାରି
ରାଜାମାନନ୍ତ ଆଣନ୍ତୁ ସେ ନିମନ୍ତ୍ରଣ କରି ।୧୬
ଯୁଝେଷ୍ଟି ଦେବେ ବୋଇଲେ ନାହିଂ ମୋହୋର ଦୂତ
ଶଇଳ ଶକୁନି ବୋଲକୁ ଆମ୍ଭର ସନମତ ।୧୭
ଯୁଝେଷ୍ଟି ବୋଇଲେ ତୁମ୍ଭେ ଯାଅ ଧର୍ମକୁ ସୁମରି
ଶୁଭ ଅନକୂଳେ ଚଳ ମଙ୍ଗଳ ସିଉକାରୀ ।୧୮
ପଚ୍ଛିମରେ ଶଇଳ ହାଦେ ଉତ୍ତରେ ବିକର୍ଣ୍ଣ
ଦକ୍ଷିଣେ ଶକୁନି ପୂର୍ବେ ସିନ୍ଧୁଦେଶ ରାଜନ ।୧୯
ଦ୍ରିଯୋଧନ ବୋଇଲା ତୁମ୍ଭକଇଂ ନିରଞ୍ଜନ ଦେବତାଂକ ଆନ
କୁରୁ ପାଣ୍ଡବ ସମର ବୋଲି ନିମନ୍ତ୍ରଣ କର ରାଜାମାନ ।୨୦
ଯେ ଯାହାର ପକ୍ଷେ ମିଳଇ ପ୍ରିୟଭାବ
ଇଚ୍ଛାଯେ ରାଜାମାନେ ମିଳିବେ ଯେ ଯାହାର ଠାବ ।୨୧
ଆଗ୍ୟାଂ ପ୍ରମାଣେ ଚଳିଗଲେ ଚାରିଦୂତେ
ପାଦାନ୍ତି ନାହାନ୍ତି ତୁଳେ ଦଶ ସହସ୍ର ରଥେ ।୨୨
ସମସ୍ତ ରାଇଜେ ସେ ପଶନ୍ତି ଥାଠ ଘେନି
କୁରୁ ପାଣ୍ଡବେ ଯୁଦ୍ଧ ବୋଲି ଶୁଭୁଅଛି ଧ୍ୱନି ।୨୩
ଗୁଆ ତଣ୍ଡୁଳ ଦେଇ ବୋଲନ୍ତି ଯେ ଯାହାର ପୀରତି
ଥାଠ ସନ୍ୟ ଘେନିଯିବ ତାହାଂକର କତି ।୨୪
ପୂର୍ବେଣ ଜୟନ୍ତିକା ଯୁଝେଷ୍ଟି ଦେବଂକ ଭାଗ
ପଚ୍ଛିମେ ହସ୍ତିନା ଦ୍ରିଯୋଧନେ ଲାଗ ।୨୫
ପୂର୍ବଦିଗ ଭୁଥଖଣ୍ଡର ଦଧିମଙ୍ଗଳ ବୋଲି ରାଜା
ତିନିକ୍ଷଉଣୀ ବଳ ଘେନି ଯୁଝେଷ୍ଟିଂକି କଲା ପୂଜା ।୨୬
ନିର୍ଝରଦେଶର ରାଜା ନାମ ଗଣପତି
ପାଞ୍ଚ କ୍ଷଉଣୀ ବଳ ଘେନି ଯୁଝେଷ୍ଟି ଦେବଂକର କତି ।୨୭
ମଘ ଦେଶର ରାଜା ଅଟଇ ତ୍ରିଗତ
ସାତକ୍ଷଉଣୀ ବଳ ଘେନି ଦ୍ରିଯୋଧନର ସଙ୍ଗତ ।୨୮
ନିରଞ୍ଜନ ଦେଶ ରାଜା ଅଟଇ ବୀରବାହୁ
ନବ କ୍ଷଉଣୀ ବଳ ଘେନି ହସ୍ତିନାରେ ପ୍ରବେଶ ସେହୁ ।୨୯
ମାନଭଙ୍ଗ ଦେଶର ରାଜା ମାନ ଅରଜୁନ
ବେନି କ୍ଷଉଣୀ ବଳ ଘେନି ଯୁଝେଷ୍ଟିଂକି କଲାକ ଦ୍ରଶନ ।୩୦
ରଣଭଙ୍ଗ ଦେଶର ରାଜା ଶମ୍ଭୁରାଣ
ଦଶ କ୍ଷଉଣୀ ବଳ ଘେନି ଯେ ହସ୍ତିନାକୁ ପୟାଣ ।୩୧
ତତଙ୍ଗ ଦେଶର ରାଜା କେତୁ ନାମେ ନୃପତି
ନବକ୍ଷଉଣୀ ବଳ ଘେନି ସେ ଦ୍ରିଯୋଧନର କତି ।୩୨
ଅରବିନ୍ଦ ଦେଶ ରାଜା ଯେ କର୍ଣ୍ଣକେଶୀ
ଯେକାଶଦ କ୍ଷଉଣୀ ବଳ ଘେନି ଦ୍ରିଯୋଧନ ଆଡ଼େ ପଶି ।୩୩
ପଚ୍ଛିମ ସୋମରାଷ୍ଟ୍ର ରାଜା ଭୀମେକ ଚକ୍ରବ୍ରତୀ

ତିନି କ୍ଷଉଣୀ ବଳଘେନି ଯୁଝେଷ୍ଟିଂକ କତି ।୩୪
ବାଣପୁର ରାଜା ଅଟେ ଚଉହସ୍ତ ମଲ୍ଲ
ସାତ ପରାୟୁଧ ରଥ ଯେକାଦଶ କ୍ଷଉଣୀ ବଳ ।୩୫
ଯେତେକ ସନ୍ୟ ଘେନିଣ ନୃପବର
ବେଗେଣ ମିଳିଲା ଯୁଝେଷ୍ଟିଂକ ଛାମୁର ।୩୬
ବିରଜା ମଣ୍ଡଳାଧି ରାଜା କଇଛା ଜଗଜ୍ଜେଠୀ
ସେ ରାଜା ଦ୍ରଶନ କଲା ରାଜା ଧୃତିରାଷ୍ଟି ।୩୭
ପଦ୍ମଦଳ ଦେଶ ରାଜା ପଦ୍ମ ଯେ କେଶରୀ
ପାଞ୍ଚ କ୍ଷଉଣୀ ବଳ ଘେନି ସେ ଦ୍ରିଯୋଧନକୁ ଦ୍ରଶନ କରି ।୩୮
ବେଲୁର ଦେଶର ରାଜା ନାମ ମନ୍ଦପାଳ
ହସ୍ତିନାପୁରେ ପ୍ରବେଶ ହେଲା ଘେନି ସାତକ୍ଷଉଣୀ ବଳ ।୩୯
ଚଉଧର୍ମ ପର୍ବତ ତଳେ ନଗ୍ର ଉଜାଣକାନ୍ତି
ତହିଁର ନୃପତି ଯେ ଶମ୍ଭୁଶୂଳ ଚକ୍ରବ୍ରତୀ ।୪୦
ତେର କ୍ଷଉଣୀ ବଳ ଯେ ଅଛଇ ତାର ତୁଲେ
ତିନିଶତ ପାରିଦଣ୍ଡ ଘେନି ହସ୍ତିନାକୁ ଗଲେ ।୪୧
ଜାରାସନ୍ଧ ପୁତ୍ର ସହଦେବ ଜୟଦେବ ଭାଇ ବେନି
ଯୁଝେଷ୍ଟିଂକି ଭେଟିଲେ ସାତ କ୍ଷଉଣୀ ବଳ ଘେନି ।୪୨
କାଉଂରୀ ଦେଶର ରାଜା ନାମ କାମପାଳ
ହସ୍ତିନା ପ୍ରବେଶ ତୁଲେ ଦଶ କ୍ଷଉଣୀ ବଳ ।୪୩
କରଞ୍ଜ ଦେଶର ରାଜା କମଳାକର ନୃପମଣି
ଦ୍ରିଯୋଧନକୁ ଦ୍ରଶନ କରି ଆଠ କ୍ଷଉଣୀ ସନ୍ୟ ଘେନି ।୪୪
ମାଳବ ଦେଶର ରାଜା ନାମ କୃତବର୍ମା
ତାହାର ହାଥୀ ନାମ ଅଟଇ ଅଶସ୍ତମା ।୪୫
ନବ କ୍ଷଉଣୀ ବଳେ ସମଦଣ୍ଡ ସେ ସାଜଇ
ଦ୍ରିଯୋଧନ ରାଜାକୁ ଦ୍ରଶନ କଲା ଯାଇଂ ।୪୬
କାଶୀ ଦେଶର ରାଜା ଅଟଇ କାଶୀଶ୍ୱର
ପରାୟୁଧ ବଳ ଘେନି ଦ୍ରଶନ କଲା ଯୁଝେଷ୍ଟିଙ୍କ ପୟର ।୪୭
ଦକ୍ଷିଣ କୋଶଳ ରାଜା ଭୂମନୁ ଚକ୍ରବ୍ରତୀ
ତାହାର ଦୁହିତା ନାମ ଅଟେ ଭାନୁମତୀ ।୪୮
ଦ୍ରିଯୋଧନ ରାଜାର ସେ ଅଟଇ ଶ୍ୱଶୁରାନ୍ତ
ଦକ୍ଷିଣ ରାଜାନ୍ତ ଘେନି ଅଇଲା ସମସ୍ତ ।୪୯
ଅଷ୍ଟାଦଶ କ୍ଷଉଣୀ ବଳ ନବଶତ ପାରିଦଣ୍ଡ
ଦ୍ରିଯୋଧନେ ଦେଖାକଲା ଘେନିଣ ଭୂଅଖଣ୍ଡ ।୫୦
କୁଶ ମଣ୍ଡଳ ରାଜା ନାମ ଯେ ସୁବାହୁ

ଆଠ କ୍ଷଉଣୀ ବଳ ଘେନି ଜୟନ୍ତିନାକୁ ଗଲା ସେହୁ ।୫୧
ବଙ୍ଗ ଦେଶର ରାଜା କାମଦେବ ନୃପତି
ପାଞ୍ଚ କ୍ଷଉଣୀ ସନ୍ୟ ଘେନି ପ୍ରବେଶିଲା ଦ୍ରିଯୋଧନ କତି ।୫୨
ମାଧୁର୍ଯ୍ୟସେନ ବୋଲି ତଇଲଙ୍ଗ ଦେଶ ରାଜା
ନବସାଗର ସନ୍ୟ ଘେନି ଦ୍ରିଯୋଧନକଇଂ କଲା ପୂଜା ।୫୩
ଖାଞ୍ଜଣ ଦେଶର ବୀରସେନ ବୋଲି ରାଜା
ଆଠ କ୍ଷଉଣୀ ବଳ ଘେନି ଦ୍ରିଯୋଧନକଇଂ କଲା ପୂଜା ।୫୪
ତିଉଡ଼ି ଦେଶର ରାଜା ତ୍ରିଅମ୍ବେକଶ୍ବର
ପାଞ୍ଚ ମେବଛ ବଳ ଘେନି ପ୍ରବେଶ ଯୁଝେଷ୍ଟିଙ୍କ ଛାମୁର ।୫୫
ମଳୟ ଦେଶର ବୀରବର ମଳୟସେନ ରାୟେ
ନବଲକ୍ଷ ସନ୍ୟ ଘେନି ଯୁଝେଷ୍ଟିଙ୍କ ପାୟେ ସମ୍ଭାୟେ ।୫୬
ବଳରାମ ବୋଲିକରି କରବୀର ଦେଶର ରାଜା
ବାଇଶିଲକ୍ଷ ବଳ ଘେନି ଯୁଝେଷ୍ଟିଂକି କଲା ପୂଜା ।୫୭
ମହାରାଷ୍ଟ ଦେଶର ରାଜା ସୟମ୍ବର ନୃପତି
ନବ କ୍ଷଉଣୀ ବଳ ଘେନି କଉରୋବଂକର କତି ।୫୮
ଭୋଟଦେଶର ରାଜା ଗୋପାଳବର୍ମ ବୋଲି
ଦଶ ସାଗର ବଳ ଘେନି ହସ୍ତିନାକୁ ଚଳି ।୫୯
ମନ୍ଦର ଦେଶର ରାଜା ରୁଦ୍ରଭୋଜ ନୃପତି
ପଞ୍ଚମର୍ଭୂତ ସନ୍ୟ ଘେନି ଯୁଝେଷ୍ଟିଙ୍କ କତି ।୬୦
ବଙ୍ଗାଳଦେଶର ରାଜା ଯେ ଧର୍ମସେନ
ସାତ ପାରାୟୁଧ ସନ୍ୟ ଘେନି ଦ୍ରଶନ କଲା ଦ୍ରିଯୋଧନ ।୬୧
ବେଲାଳ ଦେଶର ରାଜା ନାମ ବରୁଣସେନ ନୃପତି
ସାତ କ୍ଷଉଣୀ ବଳ ଘେନି ସେ ମାନଗୋବିନ୍ଦର କତି ।୬୨
କ୍ଷାର ଦେଶର ରାଜା ନଳ ଯେ ନୃପତି
ଯୁଝେଷ୍ଟିଂକ ଦ୍ରଶନ ସେ ସଙ୍ଗେ ଛଡ଼ କ୍ଷଉଣୀ ସନ୍ୟ ଘେତି ।୬୩
କ୍ଷୀର ଦେଶର ରାଜା ରାଘବ ନୃପତି
ଯେକା କ୍ଷଉଣୀ ବଳ ଘେନି ପ୍ରବେଶ ଦ୍ରିଯୋଧନକତି ।୬୪
ଗୁଜ୍ଜର ଦେଶର ରାଜା ନାମ ଧର୍ମପାଳି
ସାତ କ୍ଷଉଣୀବଳ ଘେନି ସେ ହସ୍ତିନାରେ ମିଳି ।୬୫
ସଉରାଷ୍ଟ ଦେଶର ରାଜା ଶାର୍ଦ୍ଦୂଳ ନରପତି
ସାତ କ୍ଷଉଣୀ ବଳ ଘେନି ସେ ହସ୍ତିନାକୁ ଚାଲିଲାକ ଧାତି ।୬୬
କଉଶିକ ଦେଶର ରାଜା କର୍ଣ୍ଣ ଯେ କେଶରୀ
ତିନି କ୍ଷଉଣୀ ବଳ ଘେନି କୁରୁରାୟେକୁ ମିଳି ।୬୭
କର୍ଣ୍ଣକୂଟ ଦେଶର ରାଜା ନାମ ରତ୍ନମାଳୀ

ବେନିକ୍ଷଉଣୀ ବଳ ଘେନି ହସ୍ତିନାକୁ ଚଳି ।୬୮
କନାଉଜ ଦେଶର ରାଜା ନାମ ରଣମଲ୍ଲ
ଯୁଝେଷ୍ଟି ଦେବଂକୁ ଦ୍ରଶନ କଲା ସଙ୍ଗେ ସାତକ୍ଷଉଣୀ ବଳ ।୬୯
ଛତ୍ର ଦେଶର ରାଜା ନାମ ଚନ୍ଦ୍ରନେମି
ପାଞ୍ଚ ସହସ୍ର ଯୋଦ୍ଧା ଘେନି ଯୁଝେଷ୍ଟିଂକି ପରିଣାମି ।୭୦
ବିଛତ୍ର ଦେଶର ରାଜା କର୍ଣ୍ଣନଉମି
ତିନିମର୍ଭୂତ ଯୋଦ୍ଧାଘେନି ଭେଟିଲା ଯୁଝେଷ୍ଟିଂକି ପୁଣି ।୭୧
ଗାନ୍ଧାର ଦେଶର ରାଜା ନାମ ତା ଶକୁନି
ଦ୍ରିଯୋଧନକୁ ଖଟଇ ସେ ଦ୍ୱାଦଶ କ୍ଷଉଣୀ ବଳ ଘେନି ।୭୨
ପାରିଜାତ ଦେଶର ରାଜା ନାମ ନିରାକୁଳ
ଯୁଝେଷ୍ଟିଂକି ଦ୍ରଶନ କଲା ସଙ୍ଗେ ତିନିପଦ୍ମ ବଳ ।୭୩
କୁବୁଜ ଦେଶର ରାଜା ନନ୍ଦକ ଚୂଡ଼ାମଣି
ହସ୍ତିନାରେ ପ୍ରବେଶ ସେ ଆଠ କ୍ଷଉଣୀବଳ ଘେନି ।୭୪
କର୍ଣ୍ଣାଟ ଦେଶର ରାଜା ନାମ ଯେ ବିକର୍ଣ୍ଣ
ପାଞ୍ଚମର୍ଭୂତ ସନ୍ୟ ଘେନି ଧର୍ମରାୟେଂକୁ କଲା ଦରଶନ ।୭୫
ଯମନିକ ଦେଶର ରାଜା ଅସୁର ରଣକେଶୀ
ତେର କ୍ଷଉଣୀ ବଳ ଘେନି ସେ ହସ୍ତିନାକୁ ଆସି ।୭୬
ଭୋପାଳ ଦେଶର ରାଜା ନାମ ହନୁମନ୍ତ
ଯୁଝେଷ୍ଟିଂକି ଦ୍ରଶନ କଲା ତୁଲେ ପଦ୍ମେକ ତାର ରଥ ।୭୭
ବାରସ୍ୱତୀ ଦେଶର ରାଜା ନାମ ମହେଶ୍ୱର
ତିନିବୃନ୍ଦ ସନ୍ୟ ଘେନି ସେ ଯୁଝେଷ୍ଟିଂକ କତିର ।୭୮
ବୃନ୍ଦାଅର୍କ ଦେଶର ରାଜା ନାମ କୁରୁତାର୍ଥ
ଦଶ କ୍ଷଉଣୀ ବଳ ଘେନି ଦ୍ରଶନ କଲା କଉରୋବନ୍ତ ।୭୯
ନୀଳସେନ ବୋଲିଣ ବୃନ୍ଦାବନ ଦେଶର ରାଜା
ଦୁଇ କ୍ଷଉଣୀ ବଳ ଘେନି ଧର୍ମରାୟେଂକୁ କଲା ପୂଜା ।୮୦
ଶାଖାପୁର ଦେଶର ଯେ ଇନ୍ଦୁ ନାଭ ରାଜ
ପାଞ୍ଚକାଠି ସନ୍ୟ ଘେନି ଦ୍ରଶନକଲା କୁରୁରାଜ ।୮୧
ଭାଖାମଣ୍ଡଳର ଯେ ନୃପତି ପଦ୍ମନାଭ
ବାଇଶିକୋଟି ସନ୍ୟ ଘେନି ଦ୍ରଶନ କଲା ଧର୍ମଦେବ ।୮୨
ପାର୍ବତୀ ଦେଶର ରାଜା ବିରପାଳଇ
ପାଞ୍ଚକୋଟି ବଳ ଘେନି ଦ୍ରଶନ କଲା କରୁ ନରବଇ ।୮୩
ଜ୍ୟୋତିପୁର ରାଜା ବଇଧୃତି ସେନ
ପାଞ୍ଚ କ୍ଷଉଣୀ ବଳ ଘେନି ଯୁଝେଷ୍ଟିକି କଲାକ ଦରଶନ ।୮୪
ଅଙ୍ଗଦେଶର ରାଜା ଅଟଇ ଦୃବିନ୍ଦ

ପଞ୍ଚଦଶ କ୍ଷଉଣୀ ବଳ ଘେନି ସେ ଦ୍ରଶନ କଲା ମାନଗୋବିନ୍ଦା ।୮୫
ଚୋରଦେଶର ରାଜା ନାମ ନରବଳି
ନବକ୍ଷଉଣୀବଳ ଘେନି ହସ୍ତିନାକୁ ଚଳି ।୮୬
ଚୋରଗଙ୍ଗ ରାଜା ତାର ଓଡ଼ିଶା ରାଜଧାନୀ
ଦ୍ରିଯୋଧନକୁ ଦ୍ରଶନକଲା ସଙ୍ଗେ ପାଞ୍ଚକ୍ଷଉଣୀବଳ ଘେନି ।୮୭
ଜେନାବଳୀ ରାଜ୍ୟର ରାଜା ଅନଳେ ବାହୁ ବୋଲି
ନବ କ୍ଷଉଣୀ ବଳ ଘେନି ସେ ହସ୍ତିନାକୁ ଚଳି ।୮୮
ପାଞ୍ଚକ୍ଷଉଣୀ ବଳ ଘେନି ଖରରାଷ୍ଟି ରଜା
ମାନଗୋବିନ୍ଦକୁ ଦ୍ରଶନ କରି କଲା ପାଦ ପୂଜା ।୮୯
କାମପୁର ଦେଶର ବସନ୍ତମଲ୍ଲ ରାଜନ ନାମ
ତିନିସାଗର ସନ୍ୟ ତୁଲେ ଯୁଝେଷ୍ଟିଂକି କଲାକ ଦ୍ରଶନ ।୯୦
ମନ୍ଦରପୁର ରାଜା ନାମ ସାମଧ୍ୱଜ
ସାତ କ୍ଷଉଣୀ ବଳ ଘେନି ସେ ଦ୍ରଶନକଲା କୁରୁରାଜ ।୯୧
ରଣପୁରର ରାଜା ନାମ ବିରୂପାକ୍ଷ
କ୍ଷଉଣୀଯେ ବଳ ଘେନି ଜଇନ୍ତାରେ ପରବେଶ ।୯୨
ଆନନ୍ଦପୁର ରାଜା ଋତୁପାଳ ନାମ
ତିନିମର୍ଭୂତ ବଳ ଘେନି ଯୁଝେଷ୍ଟିଂକ ସନ୍ନିଧାନ ।୯୩
ନାରାୟଣପୁର ରାଜା ନାମ ବିକ୍ରମ କେଶରୀ
ଯୁଝେଷ୍ଟିଂକି ଦ୍ରଶନ କଲା ସଙ୍ଗେ ପଟୋଆରୀ ।୯୪
ହିଡ଼ିମ୍ବେକ ବନର ରାଜା ଘଟଉତ୍କଟ ନୃପତି
ସାତ ପରାଯୁଧ ସନ୍ୟ ଘେନି ଯୁଝେଷ୍ଟିଂକର କତି ।୯୫
ଶିବପୁରର ରାଜା ନାମ ମହୋଦର
ଲକ୍ଷେକ ଯୋଧା ଘେନି ସେ ଯୁଝେଷ୍ଟିଂକ କତିର ।୯୬
ସୁବର୍ଣ୍ଣପୁରର ରାଜା ନାମ ଯୋଗେଶ୍ୱର
ମାନଗୋବିନ୍ଦଂକୁ ଦ୍ରଶନ କଲା ଘେନି ତିନି ସାଗର ।୯୭
ଚନ୍ଦ୍ରପୁର ଦେଶର ରାଜା ନାମ କଳିକାଳ
ଦ୍ରିଯୋଧନକୁ ସାହାପକ୍ଷ ତୁଲେ ପାଞ୍ଚକ୍ଷଉଣୀ ବଳ ।୯୮
ଦ୍ରୋପଦ ନୃପତି ପଞ୍ଚାଳ ଦେଶର ରାଜା
ଧୃଷ୍ଟଦ୍ୟୁମ୍ନ ଶ୍ରୀଖଣ୍ଡୀକି ଘେନି ଯୁଝେଷ୍ଟିଂକି କଲା ପୂଜା ।୯୯
ସିନ୍ଧୁ ଦେଶର ରାଜା ନାମ ଜଦ୍ୟରଥ
ମାନଗୋବିନ୍ଦଂକୁ ଦ୍ରଶନ କଲା ତୁଲେ ଦଶ ସହସ୍ର ରଥ ।୧୦୦
ମସ୍ଥଦେଶର ରାଜା ନାମ ଅଟଇ ବିରାଟ
ଶଙ୍ଖଶ୍ୱେତ ଉଉର ଘେନି ଦ୍ରଶନ କଲା ଭୀମସେନ ଜ୍ୟେଷ୍ଠ ।୧୦୧
ଶବର ନୃପତି ନାମ ଅଟଇ ଅଜର

ଯେକାଦଶ ସହସ୍ର ଘେନି ମିଳିଲା ହସ୍ତିନାର ।୧୦୨

ନୀଳେନ୍ଦୀ ଦେଶର ରାଜା ନାମ ଦାମୋଦର

ସାଗରେକ ଯୋଦ୍ଧା ଘେନି ଖଟଇ ଯୁଝେଷ୍ଠିଂକ ପୟର ।୧୦୩

ବେଦପୁର ଦେଶର ରାଜା ଅରୁଣପଦ୍ମସେନ

ମାନଗୋବିନ୍ଦକଙ୍କଂ ଦ୍ରଶନ କଲା ତୁଲେ ସାତକ୍ଷଉଣୀ ସନ୍ୟ ।୧୦୪

ଫୁଲସେନ ବୋଲି ଯେକଚକ୍ର ଦେଶର ରାଜା

ନବସାଗର ସନ୍ୟ ଘେନି ପାଣ୍ଡବଂକୁ ଇଚ୍ଛା କଲା ପୂଜା ।୧୦୫

ଇଚ୍ଛାପୁର ରାଜା ଦୀକ୍ଷାଦ ନୃପତି

ନବସାଗର ସନ୍ୟ ଘେନି ସେ ମାନଗୋବିନ୍ଦର କତି ।୧୦୬

ଅନ୍ତରୀଛ ଦେଶର ରାଜା ନରସିଂଘ ସେନ

ପଞ୍ଚଦଶ ସନ୍ୟ ଘେନି ସେ ପାଣ୍ଡବଂକୁ କଲାକ ଦରଶନ ।୧୦୭

କରବୀର ଦେଶର ରାଜା ନାମ ମାରକଣ୍ଡ

ଦ୍ରିଯୋଧନକଙ୍କଂ ଦ୍ରଶନ କଲା ନବଲକ୍ଷ ପାରିଦଣ୍ଡ ।୧୦୮

ଚନ୍ଦ୍ରହାଣ ଦେଶର ରାଜା ବୀରବର ବାସୁଦେବ

ସାତପଦ୍ମ ଅଶ୍ୱ ଘେନି ଦ୍ରଶନ କଲା କଉରୋବ ।୧୦୯

ମରୁତ ଦେଶର ରାଜା ନାମ ଶିବପାଳ

ଅଶ୍ୱ ନବ କ୍ଷଉଣୀ ବଳ ଘେନି ସେବା ଯୁଝେଷ୍ଠି ମହାପାଳ ।୧୧୦

ନଇଷଧ ଦେଶର ରାଜା ନଳରାୟେ

ତିନିଲକ୍ଷ ଶ୍ୱେତଅଶ୍ୱ ଘେନି ଯୁଝେଷ୍ଠିଂକ ପାଶେ ହୁଯେ ।୧୧୧

ଚେଦି ଦେଶର ବିଶିକେଶନ ନାମେ ରାଜା

ସାତକ୍ଷୁରୀ ବଳ ଘେନି ଦ୍ରିଯୋଧନକଙ୍କଂ କଲା ପୂଜା ।୧୧୨

ଜ୍ୟୋତିଷପୁରର ରାଜା ନାମ କଳିଙ୍ଗସେନ

ପାଞ୍ଚ କ୍ଷଉଣୀ ବଳ ତୁଲେ ଘେନି ଭେଟିଲା ଦ୍ରିଯୋଧନ ।୧୧୩

ଧର୍ମମଣ୍ଡଳ ବୋଲି ଯେକଇ ନଗ୍ରଦେଶ

ତହିଂର ରାଜା ବ୍ରହ୍ମକୁଣ୍ଡଳ ପାଞ୍ଚକ୍ଷଉଣୀ ବଳ ଘେନି

ହସ୍ତିନା ପରବେଶ ।୧୧୪

ସିଂହଦ୍ର ଦେଶର ରାଜା ଦୃମଦସେନ

ହସ୍ତିନାରେ ପ୍ରବେଶ ତୁଲେ ଅଠର ଲକ୍ଷ ସନ୍ୟ ।୧୧୫

ମାଳିଞ୍ଚ ଦେଶ ବୋଲି ମନ୍ଦର ପର୍ବତର ତଳେ

ଦ୍ରିଯୋଧନକଙ୍କଂ ଦ୍ରଶନକଲା ନୃପତି ଭୋପାଳେ ।୧୧୬

ବ୍ରହ୍ମ କ୍ଷତ୍ରିୟ ବଇଶ୍ୟ ଶୂଦ୍ର ଚାରିଜାତି

ଦତ୍ୟ ଦାନବ ପିଚାଶ ଅସୁର ନୃପତି ।୧୧୭

ଭୋଧ କନ୍ଧ ଗଉଡ଼ ତେଲଙ୍ଗ ମହାରାଷ୍ଟ୍ର

ତିହୁଡ଼ି ପାଟବଂଶୀ ବସନ୍ତ ମରହଟ୍ଟି ।୧୧୮

ଶୁଣ ଆହୋ ଚଇତନ ମନୁ ଯେ ବଦୟନ୍ତି

ଯେ ବିଧି ଅଷ୍ଟାଦଶ ବଂଶର ନୃପତି ।୧୧୯

ସାତ ସାତ ଗୋତ୍ର ଚଉଦଦେଶ ପରିବନ୍ଧ

ପୂର୍ବ ପଛିମ ଉତ୍ତର ଦକ୍ଷିଣ କଳିଙ୍ଗ ବନ୍ଧ ।୧୨୦

ଉଡ଼ଙ୍ଗଗଉଡ଼ ତିହୁଡ଼ି ମାଳବ କାଞ୍ଚନ କର୍ଣ୍ଣାଟ

କର୍ଣ୍ଣାଟ ତଇଲଙ୍ଗ ଆବର ମଲ୍ହାର ଗାଜନ ।୧୨୧

ଚୀର ବୀର ମହାବୀର ଭୋଟ ଯେ ମନ୍ଦାର

ଖିର ଖାଂକର ମାଳବ ଓଡ଼ରାଷ୍ଟ ଗୁଜ୍ଜର ।୧୨୨

କନ୍ଧାଣ ପାରିଜାତକ ନେପାଳ ବାରସ୍ୱତୀ

ଭାନ୍ଦା ଅରବିନ୍ଦ ଯେ ତାହ୍ଳ ଚୋଡ଼ ଇତି ।୧୨୩

ଯେତେକ ରାଜ୍ୟର ମଧେ ଯମର ନିର୍ବାଣ ଲକ୍ଷେକ ନୃପତି

ଯେ ଯାହାର ବଳ ଘେନି କୁରୁ ପାଣ୍ଡବଂକର କତି ।୧୨୪

ପଚ୍ଛିମେ ପଞ୍ଚାଶ ସହସ୍ର ରାଜା ଦୁଇଉଣା ଯୁଗତେ

ଦକ୍ଷିଣେ ସାତ ସହସ୍ର ରାଜା ଯେକଉଣା ସଙ୍ଗତେ ।୧୨୫

ଯେକଉଣା ଚାଳିଶ ସହସ୍ର ରାଜା ଯେ ଉତ୍ତରେ

ତିନିସ୍ରହସ୍ର ରାଜା ପୂର୍ବ ଯେ ଦିଗରେ ।୧୨୬

ଯେ ବିଧିରେ ଚାରିଉଣା ଲକ୍ଷେ ରାଜାମାନେ

କୁରୁ ପାଣ୍ଡବଂକୁ ଯେ ସଂପକ୍ଷ ହୋଇଲେ ସସନ୍ୟେ ।୧୨୭

ପଚ୍ଛିମ କୋଶଳୁଂ ରାଜା ନଇଲା ନୃଗସେନ

ଉତ୍ତରୁ ଯମାପୃଷ୍ଟ ଯେ ନକଲା ଗବନ ।୧୨୮

କପିଳସେନ ରାଜା ନଇଲା ପୂର୍ବ ଦିଶୁଂ

ଦକ୍ଷିଣୁଂ ନଇଲା ଉତ୍ପନ୍ନ ସୂର୍ଯ୍ୟବଂଶୁ ।୧୨୯

ଆଦିହୁଂ ଚାରିଉଣା ନଇଲେ ଚାରିରାୟେ

ଆଠଉଣା ଲକ୍ଷେରାଜା ଭାରଥ ଯୁଦ୍ଧେ ଥାୟେ ।୧୩୦

ଯେ ଯାହାର ବନ୍ଧୁ ପଣ ଥିଲା ଗୁଣି ହୃଦେ

ବିଚାରିଣ ସଂପକ୍ଷ ହୋଇଲେ ସେ ଯାଇଂ ଯୁଦ୍ଧେ ।୧୩୧

ଇନ୍ଦ୍ର ପ୍ରଶସ୍ତ ଯମପ୍ରଶସ୍ତ ବାରୁଣୀ ଜଇନ୍ତା

ହସ୍ତିନା ମାଡ଼ି ରହିଲେ ସନ୍ୟ ଅଗଣନ୍ତା ।୧୩୨

ଦେବଂକୁ ଦୁର୍ଲ୍ଲଭ ମନୁଷ୍ୟେ ଯେ ଅଗୋଚର

ଲେଖନ୍ତେ ଅନ୍ତ କରିବା ସାମରଥ କାହାର ।୧୩୩

କୃପାଜଳ ନନ୍ଦିନୀ ଯେ ଦେବୀ ଶତଶ୍ରୀୟା

କମଳମାଳ ହୋଇ ଗୋ ବିଘଂସୁ ମମହିୟା ।୧୩୪

ଜଙ୍ଘେରପୁର ପାଟଣା ନାମ କନକା ଯେ ବତୀ

ଚନ୍ଦ୍ରଭାଗା ଅର୍କତୀର୍ଥ ଅପୋଡ଼ା ଯେ ପୃଥୀ ।୧୩୫

ଗୁପତେ ପ୍ରବେଶ ଯେ କିରାତ ରାଜା କ୍ଷିତି
ନାମେ ସଂକେତ ସାଧ ସାରୋଳ ଚଣ୍ଡୀ ମୂର୍ତ୍ତି ।୧୩୬
ନବକୋଟି ମୁଦ୍ରା ଯେବଣ ଦେବୀର ସିଦ୍ଧି
ସୁଗ୍ୟାଂନୀ ମାହେଶ୍ୱରୀ ଶୟନ ଜନ ବୋଧି ।୧୩୭
କୋଟିଯେ ତୀର୍ଥକୁ ଘେନି କ୍ଷେତ୍ରାଧି ପୁଷ୍କର
ଅନୁବ୍ରତେ ସଙ୍ଗମ ଯେ ଦେବୀର ପୟର ।୧୩୮
ପରଲୋକ ବାନ୍ଧବୀ ଅଭୟେ କାଳରାତ୍ରି
କିଞ୍ଚିତ ଭଗତେ ଗୋ ଅଭୟବର ଦାତ୍ରୀ ।୧୩୯
ମୋହୋର କିସ ବୁଦ୍ଧି ଗୋ ଲେଖନ କରିବାକୁ
ମହା ଲୋକେଶ୍ୱରୀ କିଛିହିଂ ଦିଲେ ମୁକୁ ।୧୪୦
ନୀଳେନ୍ଦୀ ପୁଷ୍ୟ ପ୍ରାୟେକ ଯାହାର ମୁଖଗୋଟି
ନୀଳକଳ୍ପବଟ ତଳେ ପାଇଲି ତା ଭେଟି ।୧୪୧
କୃପାଜଳ ନନ୍ଦିନୀର ଦାସର ମୁଁ ଦାସ
ଶୂଦ୍ରମୁନି ସାରୋଳ ଦାସ ଜନ୍ମେ ଜନେମ ଅଭ୍ୟାସ ।୧୪୨

**

## ୭୭. ମହାକ୍ଷତ୍ରୀମାନଙ୍କର ବଳାବଳ ଓ ଯୁଦ୍ଧର ନିୟମ

ଅଗସ୍ତିଂକୁ କହୁଛନ୍ତି ମନୁ ନୃପନାଥ
ହେ ମୁନି କୃତାର୍ଥ କଲ ଶୁଣାଇ ଭାରଥ ।୧
ଆଉ କେଉଂ କଥା ଅଛି କରନ୍ତି ପ୍ରକାଶ
ତାହା ଶୁଣିବାକୁ ମୋର ବଳଇ ମାନସ ।୨
ଅଗସ୍ତି ମୁନି କହନ୍ତି ଆହେ ମୁନିବର
ଯାହା ମୁଂ କହୁଛି ଶୁଣ ମତି କରି ସ୍ଥିର ।୩
ସମସ୍ତ ନୃପତି ଘେନି ରାଜା ଦ୍ରିଯୋଧନ
ସଭାରେ ବିଜୟେ କରି ବୋଲଇ ବଚନ ।୪
ଆହେ ନରପତିଗଣ ଶୁଣ ମୋର ଗୀର
ତୁମ୍ଭମାନଂକ ବଳରେ କରିବି ସମର ।୫
ପାଞ୍ଚ ପାଣ୍ଡବେ ଅଟନ୍ତି ଅତନ୍ୟ ଦୁର୍ଦ୍ଧର୍ଷ
ସେମାନଂକୁ ମାରି ରଖ ମହୀତଳେ ଯଶ ।୬
ତେବେ ଯାଇଂ ଅଭିମାନ ରହିବ ମୋହୋର
ଶୁଣ ରାଜାମାନେ ତହୁଂ କରିଲେ ଉତ୍ତର ।୭
ଶୁଣିମା ହେଉ ଭୋ ଦେବ ନୃପ ଚୂଡ଼ାମଣି
ପାଣ୍ଡବମାନେ ସ୍ୱଭାବେ ବୀରଂକ ଅଗ୍ରଣୀ ।୮
ପୁଣି ଶ୍ରୀକୃଷ୍ଣ ତାଂକର ଅଟନ୍ତି ସହାୟ
ଯେମନ୍ତ ସ୍ଥଳେ କରିବ କିଯେ ପରାଜୟ ।୯
ତୁମ୍ଭ ଅଭିମାନ ଘେନି କରିବୁଂ ସମର
ଯେ ରଣ ମହାଯୋଗରେ ତେଜିବୁଂ ଶରୀର ।୧୦
ନନ୍ଦିଘୋଷ ରଥେ କୃଷ୍ଣ କରି ଦରଶନ
ଯୁଦ୍ଧେ ପଡ଼ି ମୋକ୍ଷଧାମେ କରିବୁଂ ଗମନ ।୧୧
ତାହା ଶୁଣି କୁରୁପତି ବିଜେ ଭୀଷ୍ମ ତହିଂ
ବୋଇଲା ପାଣ୍ଡବ ସଙ୍ଗେ ଯୁଦ୍ଧ କରିବଇଂ ।୧୨
ବଡ଼ ବଡ଼ ରାଜାମାନେ ଘେନି ନିଜ ସନ୍ୟ
ଆମ୍ଭ ସପକ୍ଷରେ ଆସି ଦିଲେ ଯୋଗଦାନ ।୧୩
ଆମ୍ଭ ସନ୍ୟମାନେ ପୁଣି ବଳେ ବଳୀୟାର
ଅଳ୍ପମାତ୍ର ସନ୍ୟ ଛନ୍ତି ଯୁଝେଷ୍ଟିରଂକର ।୧୪
ହୋ ଗାଙ୍ଗେୟ ରଣେ ତାଂକୁ କରିବାନା ହତ
ଯେ ସକଳ କଥା କହ କରି ମୋତେ ସତ ।୧୫
ଯେପରି ଶୁଣି ଗାଙ୍ଗେୟ ବୋଇଲେ ବଚନ
ଶୁଣ ମାନ ଚକ୍ରବ୍ରତୀ ରାଜା ଦ୍ରିଯୋଧନ ।୧୬
ମେଳହେଲେ ଯେତେ ସନ୍ୟ ଆସି ଯେ ଥାନରେ
ସମର ହୋଇବ ଯେବେ ବିନା ଉପ୍ରୋଧରେ ।୧୭
ତେବେ ତିନିଦିନ ଅର୍ଦ୍ଧ ଦିବସ ସମୟେ
ଭୂରିସର୍ବା ଯୁଝି ପେଷିଦେବେ ଯମାଳୟେ ।୧୮
ଉପ୍ରୋଧ ନ କରି କୃତବର୍ମା କଲେ ଯୁଦ୍ଧ
ତିନିଦିନେ ସମସ୍ତଂକୁ କରିଦେବେ ବଧ ।୧୯
ଶଲ୍ୟ ମହାରଥୀ ବେନି ଦିବସରେ ଜାଣ
ଯୁଦ୍ଧକରି ସମସ୍ତଂକ ଘେନିବେ ପରାଣ ।୨୦
ବୀର ଅଶ୍ୱସ୍ତମା ଦ୍ରୋଣ ଗୁରୁଂକର ସୁତ
ଯେକଦିନେ କରିଦେବେ ସମସ୍ତଂକୁ ହତ ।୨୧
କର୍ଣ୍ଣ ଯେବେ ନିଓପ୍ରୋଧେ କରିବ ସମର
ତିନି ପ୍ରହରେ ସେ ପେଷିଦେବ ଯମପୁର ।୨୨
ନିଓପ୍ରୋଧେ ଦ୍ରୋଣଗୁରୁ ପଶିଲେ ସମରେ
ଅବଶେଷ ନ ରହିବେ ଦୁଇ ଯେ ପ୍ରହରେ ।୨୩
ମୁହିଂ ଯେବେ ଧନୁ ଧରି ସମର କରିବି
ଯେକ ପ୍ରହର ମଧ୍ୟରେ ସର୍ବ ବିନାଶିବି ।୨୪
ଉପ୍ରୋଧ ନ କରି ପାର୍ଥ ଧରିଣ ଗାଣ୍ଡିବ
ରଣକଲେ ମୁହୂର୍ତ୍ତକେ ସର୍ବ ନାଶଯିବ ।୨୫

ଭୀଷ୍ମଙ୍କ ବଚନୁ ଶୁଣି ରାଜା ଦ୍ରିଯୋଧନ
ବୋଇଲା ସକଳେ ଶ୍ରେଷ୍ଠ ହୋଇଲା ଅର୍ଜୁନ ।୧୨୬
ଦ୍ରୋଣଙ୍କର ଶିଷ୍ୟ ହୋଇ ଦ୍ରୋଣଙ୍କୁ ଜିଣିଲା
ଆଉ କେଉଁପରି ଯୁଦ୍ଧେ ଜୟୀହେବି ଭଲା ।୧୨୭
ପୁଣି ଭୀଷ୍ମଦେବ ତହୁଁ କରିଲେ ଉତ୍ତର
ରଣ କଲେ କମ୍ପେ ମୋର ମୁଷ୍ଟି ଆଉ କର ।୧୨୮
ଦ୍ରୋଣ କର୍ଣ୍ଣଙ୍କର ହିୟା ହୁୟେ ଦକ ଦକ
ଯେହି ପ୍ରକାରେ ଅଟନ୍ତି ଧନୁଷ୍କ ଯେତେକ ।୧୨୯
କେବଳ ଅର୍ଜୁନ ଅଟେ ନିଷ୍କମ୍ପ ଶରୀର
ଅବ୍ୟର୍ଥ ଶର ସନ୍ଧାନ ଅଟଇ ତେଣୁ ତାର ।୧୩୦
ସତୁରି ସହସ୍ର ବଳ କାହା ଧନୁ ଜାଣ
ଅଶି ନଉ ପଞ୍ଚାଶୋଇ ପରିଯନ୍ତେ ପରମାଣ ।୧୩୧
ଯେତେକ ବଳରେ ଧନୁ ଅଟେ ସେହୁ ସେନାଙ୍କର
ମାତ୍ର ଲକ୍ଷେକ ବଳ ଅଟଇ ଗାଣ୍ଡିବ ଧନୁର ।୧୩୨
ତେଣୁ କରି ସଂଗ୍ରାମେ ସେହୁ ଅଟଇ ଅଜେୟ
ତାହା ପ୍ରତକ୍ଷ କରିଛି ଆହ କୁରୁରାୟ ।୧୩୩
ବୋଲଇ ଦ୍ରୋଣଗୁରୁଂକ ଶିଷ ଅଟଇ ଅରଜୁନ
ସେ କଥାକଇଂ କିୟେ ଅବା କରିବାକ ଆନ ।୧୩୪
ତାହାହେଲେ କିସ ହ୍ୱନ୍ତା ଆହେ ନୃପବର
ଈଶ୍ୱରକଇଂ ଜିଣିଲା ସେହୁ କରିଣ ସମର ।୧୩୫
ତହୁଂ ଦେବେଦେବ ହରି ହୋଇଣ ତୋଷମନ
ପାଶୁପତ୍ର ଅସ୍ତ୍ର ତାହାକଇଂ କରିଲେ ପ୍ରଦାନ ।୧୩୬
ପୁଣ ଖାଣ୍ଡବ ବନକୁ ଯେ କାଳେ ଦହ୍ୟକଲେ
ସେ କାଳେ ଇନ୍ଦ୍ରାଦି ଦେବେ ପୁଣ ସକଳେ ହାରିଲେ ।୧୩୭
ତହୁଂଣ ଇନ୍ଦ୍ରାଦି ଦେବତାୟେ ହୋଇଣ ୟେକତ୍ର
ପ୍ରଦାନ କରିଲେ ତହାକୁଇଂ ନାନା ଦେବ ଶସ୍ତ୍ର ।୧୩୮
ସୁଭଦ୍ରା ହରଣକାଳେ ତୁମେ ଦେଖିଛ ତ ପୁଣ
ବଳରାମ ହାରିଗଲେ ତାର ସଙ୍ଗତେ କରି ରଣ ।୧୩୯
ଶତଧନୁ ଭୟେଣ ଯେକାଳେ ତାର ଶରଣ ପଶିଲା
ତାହାଛଳେ ହରି ଅର୍ଜୁନଂକ ସାଂଗ୍ରାମ ହୋଇଲା ।୧୪୦
ନିଜେ ଦେବ ନାରାୟଣ ତହିଂ ହେଲେ ପରାଜୟ
ଗୋଧନ ହରଣ କାଳେ ତୁମେ ଦେଖିଛତ ରାୟ ।୧୪୧
ମନଭେଦୀ ଶରବର ସେ ପେଷିଲେ ସେକ୍ଷଣି
ମୁହୂର୍ତ୍ତକେ ସର୍ବ ସଇନି ଲୁଟିଲେ ଧରଣୀ ।୧୪୨

ୟେ ସମସ୍ତ ବଚନ ଶୁଣିଣ ଯେ ରାଜା ଦ୍ରିଯୋଧନ
ବୋଇଲା ସମର ଆଉ ହେବ ଯେ କେସନ ।୧୪୩
ଅର୍ଜୁନକଇଂ କିୟେ ଅବା କରିପାରେ ଜୟ
ଶୁଣିଣ ଭୀଷ୍ମଦେବ ବୋଲୁଛନ୍ତି ଅଛି ତା ଉପାୟେ ।୧୪୪
ୟେହୁ ଭାରଥ ସାଂଗ୍ରାମେ ଆମେ ନିୟମ କରିବା
ଦେବତା ଦିଅନ୍ତା ଶର ଯେ କେହୁ ନ ମାରିବା ।୧୪୫
ଯେ ଅସ୍ତ୍ର ଶିକ୍ଷା ହୋଇଛି ଗୁରୁଙ୍କ ମୁଖରେ
ସେ ସକଳ ଅସ୍ତ୍ରଶସ୍ତ୍ର ପିରୋଗ ହୋଇବ ସମରେ ।୧୪୬
ଶକୁନି ମନ୍ତ୍ରୀଂକର ୟେବେ ପେଷ ହେ ରାଜନ
ଡକାଇଆଣ ପାଣ୍ଡବମାନନ୍ତ ୟେ ଥାନ ।୧୪୭
ମଣାଇ କହିବା ତାହାଂକୁ ନାନାଦି ପ୍ରକାରେ
ସର୍ବେ ଆମ୍ଭେ ନିୟମ କରିବା ଥାଇଣ ୟେଠାବରେ ।୧୪୮
ଦ୍ରିଯୋଧନ ଆଗ୍ୟାଂକଲେ ଶକୁନିକୁ ଚାହିଂ
ପାଣ୍ଡବମାନନ୍ତ ଡାକିଆଣ ତୁମ୍ଭେ ଜଇନ୍ତାକୁ ଯାଇଂ ।୧୪୯
ଶୁଣିଣ ଶକୁନି ସଚୀବ କରିଲେ ଗମନ
ଜଇନ୍ତା ନଗ୍ରେ ପାଣ୍ଡବନ୍ତ ଦିଲେ ଦରଶନ ।୧୫୦
ଶକୁନି ବୋଲନ୍ତି ଧର୍ମ ବଦନକଇଂ ଚାହିଂ
ହସ୍ତିନାକଇଂ ଚାଲ ୟେବେ ତୁମ୍ଭେ ପାଞ୍ଚଭାଇ ।୧୫୧
ସେ ଥାନରେ ପଢ଼ିବ ଯେ ଯୁଦ୍ଧର ନିୟମ ସକଳ
ତେନ୍ୟାୟୁଂ ପଠାଇଲେ ମତେ କୁରୁ ମହୀପାଳ ।୧୫୨
ତାହା ଶୁଣି ବ୍ରିକୋଦର ବୋଇଲା ବଚନ
ୟେଠାକୁ ନଅଇଲେ କିମ୍ପେ କଉରବ ରାଜନ ।୧୫୩
ଆମ୍ଭେମାନେ ଯିବୁ କିମ୍ପେ ଆଗ୍ୟାଂବହ ପ୍ରାୟେ ହୋଇ
ୟେକଥା ଆମ୍ଭନ୍ତ ବଡ଼ ଦୂଷଣତ ଅଟଇ ।୧୫୪
ଶୁଣି ଶକୁନି ମନ୍ତ୍ରୀ ବୋଇଲା ଶୁଣ ଆହେ ବାତସୁତ
ତୁ ଯାହା କହିଲୁ ତାହା ଅଟଇନା ଯୁଗତ ।୧୫୫
ସେ ସଭାୟେ ଅଛନ୍ତି ନାନା ଦେଶର ମହୀପାଳ
ନାନାଦି ଯୁକ୍ତିରେ ସର୍ବ ହୋଇବ ନିର୍ମଳ ।୧୫୬
ସେ ସଭାକଇଂ ଗଲେ କିମ୍ପେ ହୋଇବ ଅପମାନ
କାଳେ ତୁମ୍ଭକଇଂ ପ୍ରାପତ ହୋଇବ ସେହିସ୍ଥାନ ।୧୫୭
ୟେଣୁ କହେ ଚାଲ ସର୍ବେ ହସ୍ତିନା ନଗରେ
ଶୁଣି ପଞ୍ଚଭ୍ରାଥେ ଗଲେ ଶ୍ରୀକୃଷ୍ଣଂକ ସଙ୍ଗତରେ ।୧୫୮
ମାନଗୋବିନ୍ଦର ନିକଟେ ହୋଇଲେ ପ୍ରବେଶ
ୟେକଥାନେ ବସିଲେ ହୋଇଣ ହସ ହସ ।୧୫୯

ଯୁଝେଷ୍ଟି ପଚାରିଲେ ଶୁଣ ହୋ ସହଦେବ
କେଉଂଣ ଦିନେ ସାଂଗ୍ରାମ କରିବା ଆରମ୍ଭ ।୬୦
ଶୁଣିଣ ସହଦେବ ତହୁଂ ବୋଇଲେ ବଚନ
ମାଘ ଦ୍ୱିତୀୟା ମଙ୍ଗଳବାର କାଲି ଦିନ ।୬୧
କାଲିତ ଉତ୍ତମ ଦିନ ଅଟଇ ଜାଣ ନୃପବର
ଆରମ୍ଭ କରନ୍ତୁ ଯେବେ ମହାଭାରଥ ସମର ।୬୨
ଯେକଥା ଶୁଣିଣ ସଭିଏଂ କଲେକ ସନମତ
ମାନଗୋବିନ୍ଦ ବୋଇଲେ ଶୁଣ ହୋ ଧର୍ମସୁତ ।୬୩
ଭାଇ ଭାଇରେତ ଆମ୍ଭେମାନେ କରୁଛେଂ ସାଂଗ୍ରାମ
ସଭିଏଂ ଯେକମନରେ କର ହୋ ନିୟମ ।୬୪
କାହାରି ମନରେ କିଛି ହିଂସା କପଟ ନଧର
ଯେହା ହେଉଅଛି ଧର୍ମ ମହାଭାରଥ ସମର ।୬୫
ଯେଥକଇଂ ସାକ୍ଷୀ ହୋଇଥିବେ ପ୍ରହ୍ଲୁ ଦେବ ନାରାୟଣ
ଧର୍ମ ପ୍ରମାଣରେ ହୋଇବ ଶେଷରେ ହାରଜିଣ ।୬୬
ଦେବ ଶହସ୍ରମାନନ୍ତ ଯେ ସମରେ କେହି ନ ପେଷିବ
ମନଭେଦୀ ଶହସ୍ର ନ ମାରିବେ ମଧ୍ୟମ ପାଣ୍ଡବ ।୬୭
ଗୁରୁଂକ ମୁଖରେ ଯେଉଂ ଅସ୍ତ୍ର ଶିକ୍ଷା ଅଛି ହୋଇ
ପ୍ରୟୋଗ କରିବ ତାହା ରଣମଧ୍ୟେ ଥାଇ ।୬୮
ସାଂଗ୍ରାମ କାଳେ ଯାହାକଇଂ ଯେ ପାରିବ ମାରି
ଯୁଦ୍ଧ ରହିଲେ ବୁଝିବ ନିଜ ମଇତ୍ର ପରି ।୬୯
ହାସ ପରିହାସ ଖେଳା କରିବାକ ସେକାଳେ
କୁଟିଳତା ନ କରିବ କେହି ଅନ୍ତରାଳେ ।୭୦
ପୁଣି ଶହସ୍ର ଧରି ଯେବେ କରିବ ସମର
ମହାଶତ୍ରୁ ବୋଲି ମନେ କରିବ ବିଚାର ।୭୧

ଯେ ସକଳ କଥା ଶୁଣି ସର୍ବେ ନିୟମ କରିଲେ
ସମସ୍ତଂକ ସାକ୍ଷୀ ସରୂପେ ଶ୍ରୀହରି ରହିଲେ ।୭୨
ଯେ ସକଳ ନିୟମ ଅଟଇ ଆମ୍ଭର ପ୍ରମାଣ
ଯେହାକୁ ଲଂଘିବ ଯେହୁ ପାଇବ ବହୁତ ଦୂଷଣ ।୭୩
ଭୀଷ୍ମେ ବୋଇଲେ ଶୁଣିମା ହୋଉ ବାସୁଦେବ
ଯେ କାଳରେ ନନ୍ଦିଘୋଷେ ବିଜୟେ କରିଥିବ ।୭୪
ସାରଥି ହୋଇଣ ଥିବ ଅର୍ଜୁନ ରଥରେ
ପ୍ରତଗ୍ୟାଂ କରିଛ ଶହସ୍ର ନ ଧରିବ କରେ ।୭୫
ଆହେ ଭକତ ମସଳ ପ୍ରଭୁ କରୁଣା ସାଗର
ମୁଂ ତୁମ୍ଭ ଦାସର ଦାସ ଜାଣ ଅଟଇ କିଂକର ।୭୬
ସେ ପ୍ରତଗ୍ୟାଂ ନ ରହିବ ନିଶ୍ଚୟ ମୁହିଂ ଜାଣେ
ମୋ ଯୋଗୁଂ ଧରିବ ଶହସ୍ର ସମର ପ୍ରାଙ୍ଗଣେ ।୭୭
ଭୋ ଦେବ ପୃଥିବୀର ଭାରା ଉଶ୍ୱାସିବା ପାଇଂ
ଥିବ ଦୁଇ ପକ୍ଷ ସାକ୍ଷୀ ସରୂପରେ ରହି ।୭୮
ତୁମ୍ଭ ଶ୍ରୀମୁଖ ଚାହିଂଣ ସାଂଗ୍ରାମେ ପଡ଼ିବୁଂ
କୋଟି ଜନମର ପାତେକ ଅକ୍ଳେଶେ ନାଶିବୁଂ ।୭୯
ଯେମନ୍ତ ବିଚାରିଣ ସଭିଏଂ ସଭାରୁ ଉଠିଲେ
ଯେ ଯାହା ମନ୍ଦିରକଇଂ ପୁଣ ଗବନ କରିଲେ ।୮୦
ପଞ୍ଚୁ ପାଣ୍ଡବେ ପ୍ରବେଶିଲେ ଜଇନ୍ତା ନଗରେ
ଯୁଦ୍ଧର ଆୟୋଜନ କଲେ ନାନାଦି ପ୍ରକାରେ ।୮୧
ଶ୍ରୀକୃଷ୍ଣଂକ ପାଦପଦ୍ମେ ସଦା ରଖିଣ ମାନସ
ଉଦିଯୋଗ ପର୍ବ ଲେଖଇ ଶ୍ରୀ ସାରୋଳ ଦାସ ।୮୨

■■

# ଭୀଷ୍ମ ପର୍ବ

## ୭୮. ଗଣେଶଙ୍କ ବନ୍ଦନା

ଜୟ ତୁ ଦଧିମଙ୍ଗଳ ଜୟ ବିଘ୍ନରାଜ
ଦ୍ରଶନେ ମୁକତି ଯେ ପ୍ରସନ୍ନେ କରୁ ସିଦ୍ଧ ସର୍ବ କାର୍ଯ୍ୟ ।୧
ସଂସିଦ୍ଧ ପୁରୁଷ ତୁ ସର୍ବଦା ରସେ ଭୋଳ
ମୁହିଂ ତୋତେ ଭେଟିଲି ଶେତଗଙ୍ଗାର କୂଳ ।୨
ଆଦି ଅବତାରେ ଶୁଦ୍ରକ ନାମେ ବ୍ରହ୍ମା
ଅନେକ କାଳ ବଞ୍ଚାଇଲା ଯେବଣ ମହାତମା ।୩
ଭରହରଷ ନାୟକ ନୃତ୍ୟରସେ ଭୋଳା
ମହାରସେ ରସିକ ନାଥ ତାଣ୍ଡବ ନୃତ୍ୟକଳା ।୪
ସିତ ପୀତ କୁଂକୁମ ଯାର ଶିରରେ ସିତାଂଶୁ
ଦିନକର ତେଜ ହରଇ ଯାହାର ଶ୍ରୀଭୁଜେ ତୀଖପରଶୁ ।୫
ଯୋଗାନନ୍ଦ ପୁରୁଷ ତୁ ବଳେ ମହାମେରୁ
ତୁ ଯାକୁ ପ୍ରସନ୍ନ ଗତ ଆଗତ ତାକୁ ସ୍ବରୁ ।୬
ସ୍ୱାମୀ କାର୍ତ୍ତିକ ପ୍ରହାର ଯେ କଲେ ବାମ ପାଦଘାତେ
ଦକ୍ଷିଣ ଦନ୍ତ ଭଗ୍ନଗଲା ଅନୁଜର କୋପ ଚିତ୍ତେ ।୭
ସେ ଭଗ୍ନଦନ୍ତ ପଡ଼ିଲା ଯହୁଂ ପୃଥିବୀ ଉପରେ
ରାସାଙ୍ଗତ ହୋଉଅଛି ପୃଥୀ ସେ ଭଗ୍ନଦନ୍ତ ଭରେ ।୮
ଯହୁଂ ସେ ବଡ଼ ଆରତ ହୋଇଲା ଧରଣୀ
ବସୁଧା ରାସାଙ୍ଗତେ ତୁଣ୍ଡିକଲେ ଶୂଳପାଣି ।୯
ସଚରାଚର ପୃଥିବୀକି ଉଦ୍ଧର ପର୍ଶୁପାଣି
ବାମ ଭୁଜେ ସଂହରଣ ନାଥ କଲୁ ତାହା ଆଣି ।୧୦
କୋପେ ଶାପ୍ୟ ତାକୁ ଦିଲୁ ଯେ ତୁରିତେ
ଗଳୁତ କୁଷ୍ଠ ବ୍ୟାଧି ତାକୁ ହେଲା ତାର ପାଦେ ।୧୧
ଦ୍ରୋହକର୍ମ କଲା ନ ଗଲା ତାକୁ ପାର
ରକ୍ତ ମାଂସେ ପୂତି ଗନ୍ଧ ବହଇ ରୁଧିର ।୧୨
ହର ପାର୍ବତୀ ବୋଇଲେ ଦୋଷ କଲୁ କ୍ଷମା
ତା କଷ୍ଟ ଦେଖି ଦୟାକଲ ଯେ ମହାତ୍ମା ।୧୩
କୋପ ଶାନ୍ତି ଯେଣୁ ନୁଆରିଲା ତୋହୋର
ଗଳୁତ କୁଷ୍ଠବ୍ୟାଧି ହୋଇଲା କାର୍ତ୍ତିକର ।୧୪
ତବ କର ଲାଗନ୍ତେ ହୋଇଲାକ ରକ୍ଷା
ଆପାଦ ଶାନ୍ତି କରି ରୁହାଇଲୁ କକ୍ଷା ।୧୫
ଅମୃତ ଭୋଜନେ ତୋ ଶରୀର ତ୍ରିପୁଟି
ଅଭୟେ ପୁରୁଷ ତୁ ଗଜାନନ ମୂର୍ତ୍ତି ।୧୬
ରଣ ଝଣ ଶବଦ ତୋ ଚରଣେ ନୂପୁର
ଚଳିଲାକ ମେଦିନୀ ତୋହୋର ପାଦ ଭାର ।୧୭
ଅଙ୍ଗ ରକ୍ତ ବର୍ଣ୍ଣ ସହିଷ୍ଣୁ ଯେ ମେରୁ
ବ୍ରହ୍ମାଣ୍ଡ କମ୍ପଇ ବାଜନ୍ତେ ଯାହାର ଡମ୍ବରୁ ।୧୮
କିକିଘୋଷ ଶବ୍ଦ ତାଳ ଯେ କଂସାଳି
ଝଟକେ ମୋହିଲୁ ତୁହି ଦେବ ଯେ କପାଳୀ ।୧୯
ମେରୁ ତୁଲ୍ୟ ମଉଳି ଆରକ୍ତ ବର୍ଣ୍ଣ ଆଖି
ଅପଛରା ବୃନ୍ଦ ଭଜିଲେ ତୋହୋର ତାଣ୍ଡବ ନୃତ୍ୟ ଦେଖି ।୨୦
ଶ୍ରୀଭୁଜେ ସରଗୁଣା ତାଳ ଯେ ଅଧାଟି
ସୁସ୍ୱରେ ଗୀତରସେ ଆରମ୍ଭ ନୃତ୍ୟ ହେଟି ।୨୧
ରାଗ ରାଜା ମାଳବ ଲଳିତ ବସନ୍ତ ଭଇରୋବି
ମାଳଶ୍ରୀ ନାରାୟଣୀ ଗଉରୀ ମଙ୍ଗଳବରାଡି
ମାଳବ ଗଉଡି ରଙ୍ଗେ ଭାବି ।୨୨
ନାଗବଲ୍ଲୀ କର୍ଣ୍ଣାଟୀ ଗୁଜ୍ଜରୀ ଭୂପାଳ
ମହ୍ଲାର ଅମର ରଙ୍ଗେଣ ହିନ୍ଦୋଳ ।୨୩
ଯାମଳା ତୋଡି ବିଭାସ ବିଚିତ୍ର ଦେଷୀ ବଙ୍ଗଳାଶ୍ରୀ
ରାଗ ରାଜା ଧନାଶ୍ରୀ ଦେଷୀ ଦେଶାକ୍ଷ ଚିନ୍ତା ମିଶି ।୨୪
ଗୁଜ୍ଜରୀ ମହ୍ଲାର କଲ୍ୟାଣୀ ପଟହମଞ୍ଜରୀ
କାଶୀ କନଡ଼ା କୌଶିକ ଆଭିରୀ ଗୁଣ୍ଡକେରୀ ।୨୫
କେଦାର ବସନ୍ତବରାଡି ମଧୁକେରୀ ତୋଡି
ବଙ୍ଗାଳ ଚୋଖି ଆବର ପଞ୍ଚମବରାଡି ।୨୬
ବିସ୍ତୁର ଗାୟେଣୀ ଶତେ କନ୍ୟାଂକର ମୂଳେ
ଖଟନ୍ତି ବିଳାସୁଣୀ ନୃତ୍ୟ ରଙ୍ଗରସ ଭୋଳେ ।୨୭
ଗୁଣସାଗର ନାଥ ଭୋଳେଣ ମହାପ୍ରଭୁ
ଅସଂଖ୍ୟ ମହିମା ସଂକ୍ଷେପି ହେବ କାହୁଂ ।୨୮
ଯାହାର ନୃତ୍ୟକୁ ଅବଧାରୀ ବୃନ୍ଦାଅର୍କେ
ମୋହିଲୁ ସଦାନନ୍ଦ ସ୍ୱାମୀ ଭଜିଲେ ନାଗଲୋକେ ।୨୯
ଅନନ୍ତ ନାଗ ଇନ୍ଦ୍ରନାଥ ମେଖଳା ଶୋଭା କଟି
ନାଶିଲୁ ସର୍ବ ପାପ ହୃଦଗତେ ଘୋଷିଣ ତବ ନାମ ଗୋଟି ।୩୦
ଶ୍ରୀ ବିଘ୍ନରାଜଂକ ଚରଣ ସେବା ମୋହୋର ହୃଦେ
ବଞ୍ଚିଲି କୃତାନ୍ତର ଭୟରୁ ନାଥ ତୋହୋର ପରସାଦେ ।୩୧
ମନ୍ମଥ ସୁନ୍ଦର ନୀଳେନ୍ଦୀ ଯାର ବର୍ଣ୍ଣ
ଦ୍ରଶନେ ହରଇ ସକଳ ବିଘ୍ନମାନ ।୩୨

**

## ୭୯. ଶିବ ଓ ବିଷ୍ଣୁଙ୍କର ସ୍ତବ

ଜୟ ଜୟ ନାଥ କାମେନୀ ମୋହନ ମାନସିକ
ବିଘସିତ କମଳ ବିରାଜଇ ଯାହାର ପାଦ ପଂକଜ ।୧
ଯୋଗେ ଯୋଗେଶ୍ୱର ତୁ ପ୍ରସନ୍ନେ ପରମ ରୂପ
ହେଲେ ନିବାରିଲୁ କୃତାନ୍ତକ ଦର୍ପ ।୨
ପଣ୍ଡିତଜନଂକର ହୃଦେ ତୁ କମଳ ପୁଷ୍ପମାଳି
ସୁରସିଦ୍ଧ ମୁନି ମେଳେ ଶୋଭିତ କପାଳୀ ।୩
ତୁ ଦେବ ସୟଳ ଜୀବର ଚିନ୍ତାମଣି
ତୋ ପାଦ ପଂକଜେ ଭଜନ୍ତି ଶାର୍ଙ୍ଗପାଣି ।୪
ବିରଞ୍ଚି ବଲ୍ଲଭ ପରମ ଯୋଗେଶ୍ୱର
ମମ ମୋର ରହୁ ତୋ ଚରଣ କମଳ ।୫
ଅକାମ ଅକାଳ ଅମୋହ ଜଳ ଫାଶୀ
ଯେଥୁଂ ଉଦ୍ଧରି ମୋତେ ମୁକ୍ତି ପଥ ଦେସି ।୬
ଅପଣ୍ଡିତ ମୂର୍ଖ ମୁଂ ନୁହଇ ବଡ଼ ଗ୍ୟାଂତା
ଶ୍ରୀ ପୁରୁଷୋତ୍ତମ ନାମ ମୁଂ ଧ୍ୟାନେଣ ଭଗତା ।୭
କାଳିନ୍ଦୀ କମଳ ପ୍ରାୟେ ବକଚ ମୁଖ ଗୋଟି
ଇହଜନ୍ମ ଭାବେ ମୁଂ ପାଇବିକି ଭେଟି ।୮
ଭାରଥୀର ବଲ୍ଲଭ କମଳାର ପ୍ରାଣବନ୍ଧୁ
ସଂସାର ଅନ୍ଧକାରେ ତୁମ୍ଭେ ଅଟ ଇନ୍ଦୁ ।୯
ଦଇବକୀ ନନ୍ଦନ ଯଶୋଦା ପ୍ରତିପାଳି
ଅଷ୍ଟମଲ୍ଲ ନିଶୋଧନ ନାମ ତୋ ବନମାଳୀ ।୧୦
ବାମ କରେ କମ୍ବୁ ଦକ୍ଷିଣେ ସୁଦ୍ରିଶେନ
ନର୍କୁଂ ତାରଣ ନାଥ ତୋ ଜନାର୍ଦ୍ଦନ ।୧୧
ଯମନିକ ତୀର୍ଥେ ଭେଟିଲି ମୁଂ ତୋତେ
ସଦୟେ ତୁ ନାଥ ଅନୁଗ୍ରହ କର ମୋତେ ।୧୨
କଂସ କେଶୀ ନିଶୋଧନ କାଳଦମନ ନାରକା
ଯାମଳା ଅର୍ଜୁନ ଶକଟା ଷଣ୍ଢ ମାଇଲୁ ଦେବ ବକା ।୧୩
ଅନାଦି ଯୋଗାଦି ଯେ ସମସ୍ତ ଅସଞ୍ଚା
କଉମୋଦୀକର ନାଥ କୃତାନ୍ତେକ ଦର୍ପ ଗଞ୍ଜା ।୧୪
ଜଗତ ଜନ ରକ୍ଷଣେ ଜଗନ୍ନାଥ ଯାହାର ନାମ
ପରମ ଯୋଗେଶ୍ୱର ତୁ ପୁରୁଷଂକ ଉତ୍ତମ ।୧୫
ଅନୀତି ସଂସାର ନାଥ ନ ଗଲା ମୋତେ ଥଳ
ଶ୍ରୀପୁରୁଷୋତ୍ତମ ନାମ ଗୋଟି ମୋ ହୃଦେ କମଳ ମାଳ ।୧୬
ତୁଳସାର ବଲ୍ଲଭ ନାଥ ଚରଣେ ମୁହିଂ ନିତ୍ୟେ ସେବି
ବଦୟନ୍ତି ଶୁଦ୍ରମୁନି ସାରୋଳା ଦାସ କବି ।୧୭

**

## ୮୦. ଶାରଳାଙ୍କ ବନ୍ଦନା

କୃପାଜଳ ରଷିଂକର କୋଳେଣ ଉତପତି
ସତ୍ୟଯୁଗେ ନାମ ଯାର ନର୍ମଦା ସରସ୍ୱତୀ ।୧
କଳିକାଳ ଧଂସିନୀ ଗୋ ଜଙ୍ଘେରପୁର ବାସୀ
ଜନ୍ମେ ଜନ୍ମେ ତବ ଚରଣେ ମୁହିଂ ଯେ ଅଭ୍ୟାସି ।୨
ଯମଦଗ୍ନିର ନନ୍ଦନ ପ୍ରଶୁରାମ ତୋତେ ପୂଜି
ସତ୍ୟ ଯୁଗେ ପୂଜିଲା ତୋତେ ଅଜପତି ମହାରାଜି ।୩
ପର ଦୁଖେ କାତର ଗୋ ଅନୁବ୍ରତେ ମଉଭୋଳି
ସଂସାର କଉତୁକେ ତୁ ବାଳୁତ ରୂପେ ଖେଳି ।୪
ନାହିଂ ନୋହିଂଲା ନୋହିବ ଦାନୀ ଯେ ଚାରି ଯୁଗେ
ଦାରିଦ୍ରନାଶିନୀ ବର ଦେଉ ଗୋ ତିନି ସ୍ୱର୍ଗେ ।୫
ତିଳ ଅର୍ଦ୍ଧେ ତବ ନାମ କହିଲି ମୋହୋର ଗ୍ୟାନେ
ଖଣ୍ଡିବି ଦୁଷ୍ଟକୃତ ମା ଗୋ ତୁମ୍ଭର ପରସନ୍ନେ ।୬
ତବ ପାଦ ଉଦକ ଅବିଷେକ ମୋର ମାଥେ
ତେଣୁ କରି ଭଜିଲି ମୁଂ ମମ କାର୍ଯ୍ୟ ଅର୍ଥେ ।୭
ଆଦି ମଧ୍ୟ ଅବସାନ ଯାହାରଟି ନାହିଂ
ମୁଂ ତୋତେ ପାଇଲି ଗୋ ଜନ୍ମେ ଜନ୍ମେ ଧାହି . ।୮
ଶ୍ରୀ ଚଣ୍ଡୀ ସାରୋଳାଂକର ଶ୍ରୀ ଚରଣେ ଦଇନି
ମୂକତିକି ଇଛିଲା ସାରୋଳା ଦାସ ମୁନି ।୯

**

## ୮୧. ଦୁର୍ଯ୍ୟୋଧନ ଭୀଷ୍ମଙ୍କୁ ସେନାପତି ପଦେ ବରଣ କରିବା

ଯେଥୁ ଅନନ୍ତରେ ରାଜା ବଇବସ୍ତୁତ ମନୁ
ପାଦାର୍ଘ୍ୟେଣ ପୂଜିଲା ବ୍ରହ୍ମବେତ୍ତା ତନୁ ।୧
ସାଧୁ ମହାତମା ସେ ପଣ୍ଡିତ ଅଗସ୍ତି
ମହା ବ୍ରହ୍ମବେତ୍ତା ଶୂନ୍ୟେଣ ଉତପତି ।୨
ଅପାର ମହିଂମା ଦେଖିଲି ପୟୋଧି
ଯେ ମୋହଜଳ ସାଗରୁ ତରିବାକୁ ମୋର ବୁଦ୍ଧି ।୩
ଯେ ମହାଭାରଥ ପ୍ରଥମ ଯୁଦ୍ଧ ମଧ୍ୟେ
କେ ସେନାପତି ହେଲେ କହିବାକ ସାଧ୍ୟେ ।୪
ଯେହା ବିସ୍ତାରି ମୋତେ କହିବା ଅଗସ୍ତି ହେ
ଲଭିବି ପରମ ଗତି ଶୁଣି ପୁରାଣ ସନ୍ଦେହେ ।୫

ଅଗସ୍ତି ବୋଇଲେ ରାଜା ଶୁଣିମା ସାବଧାନେ
ସମରକଇଂ ଇଚ୍ଛା କଲା ରାଜା ଦ୍ରିଯୋଧନ ।୬
ମକର ଶୁକଳ ପକ୍ଷ ଚଉଠି ଗୁରୁବାର
ଉତ୍ତର ଭୋଦୋ ନକ୍ଷତ୍ର ଭୋଗ ସେ ଦିନର ।୭
ବିଷ୍ଟି ନାମେ କରଣ ସିଦ୍ଧି ନାମେ ଯୋଗ
ମିଥୁନ ରାଶିରେ ବୃହସ୍ପତି କରେ ଭୋଗ ।୮
ବିଜୟେ ମାନଗୋବିନ୍ଦ ଯେ ଇନ୍ଦ୍ରପ୍ରସ୍ଥ ଆସ୍ତାନେ
ସମ୍ପର୍ବେ ବସିଅଛନ୍ତି ସର୍ବ ସେନାପତିମାନେ ।୯
ଭୀଷ୍ମ ଦ୍ରୋଣ କର୍ଣ୍ଣ ଭୂରିଶର୍ବା ଶଇଲ
କୃପ ଅଶସ୍ତମା ସୋମଦତ୍ତ ବାହ୍ଲିକ ମହାମଲ୍ଲ ।୧୦
ଧୃଶାସନ ଶକୁନି ଯେ ଜୟଦ୍ରଥ ସହିତେ
ମହୀରେଣ ରଣଜିତା ଦ୍ୱାଦଶ ସେନାପତ୍ୟେ ।୧୧
ମହା ମହା ଶକତା ଯେ ଦ୍ୱାଦଶ ସେନାପତି
ସମରେ ପଶିଲେ ଯାହାକୁ ଯମ କରେ ଭୀତି ।୧୨
ଭୀଷ୍ମେ ଅଛନ୍ତି ସେ ଯେ ପୃଥୀ ଭେଦି
ପୃଥୀରେ ଥିଲେ ଅଦୃଷ୍ଟିକି ଅବଶ୍ୟ ପାରନ୍ତି ସେ ଛେଦି ।୧୩
ଶଲ୍ୟ ମହାରାଣ ଅଟନ୍ତି ଶବଦ ଭେଦି
ଶବଦକୁ ଭେଦି ସେ ପାରନ୍ତି ଶିର ଛେଦି ।୧୪
ସୁନ୍ଦର ସୁକୁମାର ଭାରୋଇ ମଲ୍ଲ କର୍ଣ୍ଣ
ଦୃଷ୍ଟିଭେଦି ତାର ନାରାଚ ନୋହେ ଶୂନ୍ୟ ।୧୫
ଭୂରିସର୍ବା ବୋଲି ଅଟନ୍ତି ନାମ ଭେଦି
ନାମ ଜାଣି ବିନ୍ଧିଲେ ପାରଇ ଶିର ଛେଦି ।୧୬
ଅସଂଖ୍ୟ ଅଗୋଚର ଦ୍ରୋଣଂକର ମହିମା
ବ୍ରହ୍ମାଣ୍ଡ ଭେଦି ପାରନ୍ତି ସେ କ୍ଷତ୍ରିୟ ମହାତମା ।୧୭
ଦିଗ ଭେଦି ପୁଣ ପାରଇ ସୋମଦତ୍ତେ
ଯେକା ନାରାଚକେ ବ୍ୟାପି ପାରଇ ଜଗତେ ।୧୮
ଦ୍ରୋଣଂକର ନନ୍ଦନ ଅଟନ୍ତି ଅଶସ୍ତମା
ତ୍ରଇଲୋକ୍ୟ ଭେଦି ପାରେ ସେ କ୍ଷତ୍ରିୟ ମହାତମା ।୧୯
ବାହ୍ଲିକ ବୋଲି ଯେ କ୍ଷତ୍ରିୟ ମହାରଥୀ
ମେଘମାଳେ ଲୁଚିଥିଲେ ଭେଦୀ ସେ ପାରନ୍ତି ।୨୦
କୃପାଚାର୍ଯ୍ୟଂକ ମହିମା ଅତି ଅଗୋଚର
ଧନୁ ଧଇଲେ କମ୍ପନ୍ତି ନାଗ ସୁରାସୁର ।୨୧
ଧୃଶାସନ ଗଗନ ଭେଦି ଦୃଦକ୍ଷ ପାତାଳ ଭେଦି
କ୍ଷତ୍ରିଂକର ମଧ୍ୟେ ଅଟନ୍ତି ମହାଯୋଧି ।୨୨
ଯେ ଯୋଦ୍ଧାମାନନ୍ତ ସମସ୍ତ ବସାଇ
ଉଭା କୁରୁନାଥ ଯେ କରଇ ଅର୍ଘ୍ୟ ଲାଇ ।୨୩
ମୁକୁଟ ଗୋଟିଏ ଜୟମାଳା ଯେ ଗୋଟିଏ
ଅର୍ଘ୍ୟଥାଳୀ ଗୋଟିଏ ଯେ ଖଡ଼ଗ ଗୋଟାଏ ।୨୪
ସୁବର୍ଣ୍ଣ ପାତ୍ରେ ଯେ ପୂରୋଇ ଯେମାନ
ଉଭା କୁରୁନାଥ ସଭା ମଧ୍ୟସ୍ଥାନ ।୨୫
ଷାଠିଏ ସହସ୍ର ଦେଶର ଅଛନ୍ତି ଦଣ୍ଡଧାରୀ
ଯେହାଂକର ପାତ୍ରେ ଅମନାତ୍ୟ ଯୋଦ୍ଧା ଆଦିକରି ।୨୬
ଯେସନ ସମୟେ ଆସ୍ତାନ ନିଚଳ ଶୁଭ ବେଳେ
ମାନଗୋବିନ୍ଦ ଅର୍ଘ୍ୟ ଖଡ଼ଗ ଥୋଇଲାକ ତଳେ ।୨୭
ବେଳେ ତୁମ୍ଭେ ଅନେକ ଦେଶର ରଥୀ ମହାରଥୀ
ଅନେକ ଦେଶର ବସିଅଛି ଅଷ୍ଟାଦଶ ବଂଶ ନୃପତି ।୨୮
ସ୍ୱାମୀ କେ କେବଣ ବିଦ୍ୟାରେ ଅଟେ ଯେ ନିର୍ଜିତ
ମୁଂ ନ ଜାଣଇ କେ ଅଟେ କେତେ ବଳବନ୍ତ ।୨୯
କାହାର କେତେ ବିଦ୍ୟା ମୁହିଂ ଯେ ନ ଜାଣଇଂ
ତୁମ୍ଭନ୍ତ ବରି ମୁଂ ଯେ ଆଣିଲି ଗୋସାଇଂ ।୩୦
କରିବା କାରଣ ତୁମ୍ଭେ ସମସ୍ତ ମହାରାଜା
ମୋହୋର ଅଭିମାନ କରିବା ତୁମ୍ଭେ ତେଜ୍ୟା ।୩୧
ମାନେ ମାନଗୋବିନ୍ଦ ନାମ ବହି ପାଣ୍ଡବେ ବିବାଦୀ
ଛତ୍ରୀବୃତ୍ତେ ତାଂକୁ ମୁଁ ନ ପାରିଲି ସାଧି ।୩୨
ନ ଦିଲଇଂ ସୀମାଭାଗ ନୋହିଲି ତାଂକୁ ପ୍ରୀତି
ସୋଦ୍ରିମା ପଣ ଗଲା କାଲି ଅପକୀର୍ତ୍ତି ।୩୩
ନିଚୟେ ବିବାଦେ ଯଦି ମୋହୋର ବଢ଼ିଲା ମନୀଷା
ମୋହୋର ଦର୍ପ ନାହିଂ ମୁଂ ତୁମ୍ଭର ବାହାକୁ କରିଅଛି ଆଶା ।୩୪
ଅନେକ ବୁଝାଇ କହିଲେ ଜଗନ୍ନାଥେ ମୋତେ ଭେଟି
ତାହାନ୍ତ ପ୍ରୀତି ନୋହିଲି ବଳରାମଂକ ପଦ୍ମପାଦେ ଥାଇ ଖଟି ।୩୫
ଯେତେମାନେ ପାଣ୍ଡବେ ଯେ ଅଟନ୍ତି ବଳବନ୍ତା
ଚତୁର୍ଦ୍ଦିଗେ ଚମକ ପଡଇ ଖ୍ୟାତ ତାହାଂକର ବାରତା ।୩୬
କାଳେବର ଗଦା ଯେ ବହଇ ବୀର ଭୀମ
ହାତେ ଶହସ୍ର ଧଇଲେ ଦଶ ଯୋଜନେ ତ୍ରାସଇ ଦେଖି ଯମ ।୩୭
ଯେ ଜମ୍ବୋଦ୍ୱୀପରେ ତୁମ୍ଭେ ଅଟ ନରନାହା
ପଞ୍ଚାଳ ଦେଶେ ଦ୍ରୋପତୀ ସୟମ୍ବରେ
କଲେ ଯାହାଯାହା ତୁମ୍ଭେ ଦେଖିଅଛ ତାହା ।୩୮
ଅର୍ଜ୍ଜୁନର ମହିଂମା ଜାଣ ତ ପ୍ରତକ୍ଷେ
ମହାଲାଖ ରାଧାଚକ୍ର ବିନ୍ଧିଲା ବୀର ପାଥେ ।୩୯

ନକୁଳର କରେ ଥିଲେ ନବନିଶି କୋନ୍ତ
ମୁନେ ବସାଇ ପୃଥୀ କରଇ ହେଳେ ଛତ୍ର ।୪୦
ସହଦେବ ମନ୍ତ୍ରୀପଣ ତ ସମସ୍ତେ ଅଛ ଜାଣି
ଭୂତ ଭବିଷ୍ୟତ କହେ ମନ୍ତ୍ରୀ ଚୂଡ଼ାମଣି ।୪୧
କିସ ମହିମା କହିବି ସେ ରାଜୁସି ଯାଗ କାଳେ
ଦିଗ ବିଜେ କରି ସେ କାହାକୁ ନ ଗଞ୍ଜିଲେ ହେଳେ ।୪୨
ଆବର ପ୍ରାଣୁଂ ଅଧିକ ତାଂକୁ ଦେଖନ୍ତି ବାସୁଦେବ
ତେଣୁ କରି ଜଗହିତା ଅଟନ୍ତି ପାଣ୍ଡବ ।୪୩
ଆଉମାନଂକରେ ନାହିଂନା ପିରୋଜନ
କେ ଯେଥେ ସାମର୍ଥ ଅଛି ଜିଣିମାକୁ ହରି ଯେ ଅର୍ଜୁନ ।୪୪
ନ ଜାଣେ ବଳ ବିଦ୍ୟା କାହାକୁ ନ ଚିହ୍ନଇ
ମମ କାର୍ଯ୍ୟ ଅର୍ଥେ ତୁମ୍ଭଙ୍କୁ ବିନୋୟୀ ବୋଲଇଂ ।୪୫
କେ ସାମରଥ ଅଛି ଜିଣିମାକୁ ହରି ଅର୍ଜୁନକୁ
ଯେ ଖଡଗ ଗୋଟି ଉପର ହାଥ କରି ତୋଳି ଦିଅ ମୁକୁ ।୪୬
ମୁଂ ତଳହାଥ କରି ଘେନିମଇଂ ଦାନ
ତାହାର ବାହାକୁ ଆଶ୍ରେ କରିବି ମୁଂ ସର୍ବଦା ଯେ ଦିନ ।୪୭
ମହାଭାରା ବଚନ ଯହୁଂ କହିଲା ମାନ ଯେ ଗୋବିନ୍ଦ
ସମସ୍ତ ରାଜା ଶୁଣି ହୋଇଲେ ତବଦ ।୪୮
ମନେ ବିଚାରନ୍ତି କାହାର ଅଛି ଯେତେ ବିଦ୍ୟା
ହରି ଅରଜୁନ ଜିଣିମାକୁ କେହୁ ଅଛି ଯୋଧା ।୪୯
ଦ୍ରିଯୋଧନର ଯେସନେକ ନିରାଧାର ବାକ୍ୟ ଶୁଣି
ସମସ୍ତେ ଆକାଶକୁ ଚାହାଂନ୍ତି ପ୍ରେତ ପୁରୁଷ ଜାଣି ।୫୦
ମାଳବ ଦେଶର ରାଜା ଯେହୁ କୃତବର୍ମା
ତାହାର ହାଥୀର ନାମ ଅଟଇ ଅଶସ୍ତମା ।୫୧
ସେ ରାଜା ବୋଇଲା ଶୁଣ ହୋ ଦ୍ରିଯୋଧନ
ପାଣ୍ଡବନ୍ତ ଜିଣିମାକୁ ଯେଥେ ଜଣେହେଂ ନାହିଂନା ଭାର୍ଜନ ।୫୨
ଯେତେକ ନୃପତି ତୁ ନିମନ୍ତ୍ରି ଅଛୁ ଆଣି
ସମସ୍ତେ ନ ପାରନ୍ତି ଯେକା ସହଦେବନ୍ତ ଜିଣି ।୫୩
ତୁ ଅବା ବୋଲିବୁ ବଳ ବୀର୍ଯ୍ୟ ଯେବେ ହୀନ
କିମ୍ଭୂତ କାରଣେ ଯେଥକୁ କଲ ଆଗମନ ।୫୪
ଶ୍ରୀକୃଷ୍ଣ ସାରଥି ପାର୍ଥର ନନ୍ଦିଘୋଷ ରଥେ
ସମସ୍ତେ ଅଇଲୁ ଆମ୍ଭେ କୃଷ୍ଣନ୍ତ ଦେଖିବା ନିମନ୍ତେ ।୫୫
ପାଣ୍ଡବନ୍ତ ଜିଣି କି ତୋତେ ଆମ୍ଭେ ରାଜ୍ୟ ଦେବୁଂ
ଯେ କଥା କଦାଚିତେ ନୋହଇଟି ବାବୁ ।୫୬
ବହୁତ ଛାଗଳ ହୋଇବେ ଯେବେ ମେଳି
ଯେକା ବ୍ରାଘ ଆଗକୁ ସେ ଭରସି ନୁଆରି ।୫୭
ବହୁତ ବାଘ ଯେବେ ହୋଇବେକ ଗୁଣ୍ଡ
ସିଂଘକୁ ଦେଖିଲେ ନ ଚଳଇ ତାହାଂକର ପିଣ୍ଡ ।୫୮
ଆମ୍ଭର ବେଳେ କରି ନ ପାରୁଂ ତୋତେ ରକ୍ଷା
ହରି ଅର୍ଜୁନ ହାଥେ ଭାରଥ ଯୁଦ୍ଧେ ଅଛି ସବୁରି ମୃତୁ ବାଞ୍ଛା ।୫୯
ଯୁଝିବୁଂ ପଡିବୁ ଆମ୍ଭେ ଯେ ମହାଭାରଥ ସମରେ
ଶଙ୍ଖ ଚକ୍ର ଦେଖି ଲଭିବୁଂ କୃଷ୍ଣର ଅଙ୍ଗରେ ।୬୦
ଆହୋ ଦ୍ରିଯୋଧନ ମେରୁ ଟାଳିବାକୁ କେ ଅଟଇ ସାମରଥା
ସେହୁ ସେ ହୋଇବ ନା ପାଣ୍ଡବନ୍ତ ଜିଣନ୍ତା ।୬୧
ଆମ୍ଭର ବାହାକୁ ଯେବେ ନିଚୟେ ତୋର ଆଶ
ଯେ ସମରରୁ ସୁସ୍ଥ ତୋତେ ହୋଇବ ବନବାସ ।୬୨
ସମସ୍ତ ରାଜାଯେ ବୋଇଲେ କୃତବର୍ମାଯେ ସାଧୁ ସାଧୁ
ନିରାଶିଣ କହିଲା ଯେ ଛାଡିଣ ଉପ୍ରୋଧୁଂ ।୬୩
ସବୁରି ବିଚାରେ ଯୋଗାଇଲା କଥା ଗୋଟି
କୃତବର୍ମା ଯାହା କହିଲେ ଆମ୍ଭର ସନମତ ହେଟି ।୬୪
ରାଜାୟେ ବୋଇଲେ ପାଣ୍ଡବଂକର ଆଶ୍ରେ ବଡ଼ ମେରୁ
ଖିନ୍ନ ମେରୁମାନନ୍ତ ତୁ କିମ୍ପାଇଂ ଆଶ୍ରେ କରୁ ।୬୫
ରାଜାଂକ ବଚନେ ଯେ ବିରସ ଧୃତିରାଷ୍ଟି
ତାହା ଜାଣି ଆସ୍ତାନରୁ ଗଙ୍ଗାଂକ ନନ୍ଦନ ଭୀଷ୍ମ ଦେବେ ଉଠି ।୬୬
କରେଣ ଗାଙ୍ଗେବ ଘେନିଲେ ଭୂମିରୁ ତୋଳିଣ ଖଡ଼ଗ
ଘେନ ହୋ ମାନଗୋବିନ୍ଦ ଯାହା ଇଚ୍ଛା ମାଗ ।୬୭
ମାନଗୋବିନ୍ଦ ବୋଇଲା ଚିନ୍ତିଲି ଯାହା ହୃଦେ
ପାଇଲି ପରମଗତି ଭୀଷ୍ମଂକ ପରସାଦେ ।୬୮
ମହା ସଂକଳ୍ପ କରି ଭୀଷ୍ମ ମହାବଳୀ
ସତ୍ୟ ସତ୍ୟ ବାକ୍ୟେ ଯେ ଖଡଗ ଦିଲେ ତୋଳି ।୬୯
ତଳ ହାଥେ ଘେନିଲା ତା ମାନଚକ୍ରବ୍ରତୀ
ହରି ଅର୍ଜୁନ ମାରିଣ ମୋତେ ଦେବୁ ଯେ ଦୁହିଂନ୍ତି ।୭୦
ଭୀଷ୍ମେ ବୋଇଲେ ଆଝୁଂ ଅକଣ୍ଟକେ କର ରାଜ୍ୟ
ଗୁଞ୍ଜଗଳ ଦେଶେ ରାଜ ଅଇଶ୍ୱର୍ଯ୍ୟ ଭୁଞ୍ଜ ।୭୧
ମାରିବଇଂ ସମରେଣ ହରି ଅର୍ଜୁନ ବେନି
କଉରୋବ ବଳେ ଶୁଭେ ସାଧୁ ସାଧୁ ଧ୍ୱନି ।୭୨
ଦ୍ରିଯୋଧନ ବୋଇଲା ତୁହି ସେ ମୋର ଗୁରୁ
ଇନ୍ଦ୍ର ଶଠକା କରେଟି ଯାହାର ଧନୁ ଧରୁ ।୭୩

ତୁହି ଯେ ପିତାମହ ଗୁରୁ ପରମ ଗୁରୁ ଉପର ବଂଶେ
କାହ୍ନେ ପାଣ୍ଡବନ୍ତ ନ ପୁଣ ଉପ୍ରୋଧ କରୁ ବଶେ ।୭୪
ଅସଂଖ୍ୟ ମହିମା ତୋର ଅଟେ ବାହୁବଳ
ଯେସନେକ ସିନ୍ଧୁ ନ ଲଙ୍ଘଇ କୂଳ ।୭୫
କ୍ଷୀରୋଦ ଲଙ୍ଘିଲେ କୂଳ ରହିବଟି କାହିଂ
ଭୀଷ୍ମଂକ ଶର ପେଷିଲେ ଦେବ ଦାନବେ ନ ବ୍ରତଇ ।୭୬
ବହୁତ ପୁରସରି କହିଲା କୁରୁପତି
ଭୀଷ୍ମଂକ ଶିରେ ମୁକୁଟ ବାନ୍ଧିଲା ତତକ୍ଷଣାନ୍ତି ।୭୭
ପାଞ୍ଚକୋଟି ରତ୍ନ ଘେନିଣ ଶ୍ରୀହସ୍ତେ
କଣୟ ବୃଷ୍ଟି କଲେ ଭୀଷ୍ମଂକର ମାଥେ ।୭୮
ତାତ ତୋହର ବାହୁଟି ଜଗଦଳା
ଶିରେ ସୀମଛିନୀ ହୃଦରେ ରତ୍ନମାଳା ।୭୯
ବିଦ ମୁଦି କଂକଣ ହାଥକୁ ସରଳ
ପାଦେଶ ନୂପୁର ଦଶଅବତାର ବକ୍ଷସ୍ଥଳ ।୮୦
ପାଞ୍ଚ ବୃନ୍ଦ ରଥ ଯେ ମେବଛେକ ହାଥୀ
ବେନି ବୃନ୍ଦ ତୁରଙ୍ଗମ ଯେ ତିନି ସାଗର ପାଦାନ୍ତି ।୮୧
ଲକ୍ଷେକ ପାଟଛତ୍ର ବେନି ଲକ୍ଷ ଆଲମ୍ବ
ପାଞ୍ଚ ଲକ୍ଷ ପଞ୍ଚୁ ଲକ୍ଷୀ ଅଶ୍ବଆରୀ ଯେକ ସଙ୍ଗ ।୮୨
ବୀର ତୂର ଟମକ ଢୋଲ ଦମାଲୁ ଦାଉଣ୍ଡି
ପଞ୍ଚାଶ କୋଟି ରତ୍ନ ନେଇ ଭୀଷ୍ମଂକ ରଥ ମଣ୍ଡି ।୮୩
ଅନେକ ଅଳଂକାର କଲା ରାଜା ମାନଗୋବିନ୍ଦ
ଅମରାଧିନାଥ କି ବିଜୟେ ଅସକନ୍ଦ ।୮୪
ଦେବଂକୁ ଦୁଲଭ ଯେ ଭୀଷ୍ମଂକର ସମ୍ମୁଧି
ବହୁତ ବିନୋୟୀ କହଇ ରାଜା ମାନଗୋବିନ୍ଦ ।୮୫
ଭୀଷ୍ମଂକର ଅଗ୍ରତେ ଯେ ଅନେକ ବାଦ୍ୟ ବାଜେ
ଆସ୍ଥାନୁ ଓହ୍ଲାଇ ରାଜା ଭୀଷ୍ମଂକ ଛାମୁରେଣ ବିଜେ ।୮୬
ଭୀଷ୍ମଂକର ସମ୍ମୁଧି ଦେଖିଲେ ରାଜାମାନେ
ଅଶସ୍ତମା ସହି ନ ପାରି ବୋଇଲେ କୋପମନେ ।୮୭
ଆହୋ ତୋହୋର ପ୍ରାୟେ ରାଜା ହୋଇଣ ମାନଗୋବିନ୍ଦ
ସମସ୍ତ ଶୁଭ କଥା ଯେଠାରୁଂ କଲୁ ମନ୍ଦ ।୮୮
ଶୁଭ ଯାତ୍ରା ଯୋଗେ ତୁ ଅଯାତ୍ରିକକୁ ବରିଲୁ
ଭୀଷ୍ମଂକ ଶିରରେ କିମ୍ପେ ମୁକୁଟ ବାନ୍ଧିଲୁ ।୮୯
ମଞ୍ଚେ ଜାତ ହୋଇ ପୁତ୍ର ପତ୍ନୀ ଯାହାର ନାହିଂ
ପ୍ରଭାତ କାଳରେ ଯେହାର ବଦନ ନ ଚାହିଂ ।୯୦
ପ୍ରଥମେ ମୁକୁଟ କିମ୍ପେ ବାନ୍ଧିଲୁ ଭୀଷ୍ମଂକୁ
ଅନୁକୂଳ ଭଗ୍ନ ରାଜା ହୋଇଲାନି ତୁକୁ ।୯୧
ମରଣକୁ ଆଶ କଲା ଯେ ଅପୁତ୍ରିକ ଦୋଷେ ।
ରଣ ଯଗ୍ୟଂ କରି ଯେବେ ସାଂଗ୍ରାମେ ଦେବ ଝାସେ ।୯୨
ଯାତ୍ରା ଯୋଗେ ଅପୁତ୍ରିକର ଚାହିଂବ ଯେବେ ମୁଖ
କାର୍ଯ୍ୟ ବିଅର୍ଥ ଅବଶ୍ୟ ପାଇବଟି ଦୁଖ ।୯୩
ଶୁଣି ପ୍ରତିବାଚ ଦିଅଇ ମାନ ଯେ ଗୋବିନ୍ଦ
ଆହୋ ଅଶସ୍ତମା ତୁ ବାଳୁତ କାଳୁ ମନ୍ଦ ।୯୪
ଶାୟନ୍ତନୁ ନନ୍ଦନ ଯେ ଗଙ୍ଗାର ତନୟେ
ଇଛା ମୃତୁ ଯାହାର ଜନ୍ମେଣ ଅଭୟେ ।୯୫
ତାହାକୁ ନିନ୍ଦା କିମ୍ପେ କରୁଅଛୁ ଦ୍ରୋଣୀ
ବ୍ରାହ୍ମଣ ହୋଇଣ ତୁ ଅହମତ ମନ୍ଦ ପ୍ରାଣୀ ।୯୬
ତ୍ରଇଲୋକ୍ୟ ମଧ୍ୟେ ପଡଇ ଯାହାର କଥା
ପ୍ରଶୁରାମଂକୁ ଜିଣିମାକୁ ଯେହୁ ସାମରଥା ।୯୭
ନିଚୟେ କରି ଯେହୁ ଯେବେ କରିବେ ସାଂଗ୍ରାମ
କାଳଦଣ୍ଡ ତେଜ୍ୟା କରି ତ୍ରାସିବେଟି ଦେବ ଯମ ।୯୮
ଦ୍ରୋଣେ ବୋଇଲେ ଅଶସ୍ତମା ନ ଜାଣୁ ତୁ କିଛି
ଯେବେ ମାନଗୋବିନ୍ଦର ନିଚଳ ହେଲା ଲଛି ।୯୯
ଭୀଷ୍ମେ ସେନାପତି ହୋଇଲେ ଯେତେବେଳେ
ଯେବେ ସେ ମାନଗୋବିନ୍ଦ ରାଜ୍ୟ କରିବ ନିଚଳେ ।୧୦୦
ଶୁଣ ହୋ କଉରୋବେ ବୋଲନ୍ତି ଭୂରିଶର୍ବା
ନ ପାରିଲେ କି ପ୍ରତଗ୍ୟାଂ କରନ୍ତେ ଭୀଷ୍ମଦେବା ।୧୦୧
ଜଗନ୍ନାଥଂକୁ ଜିଣିମାରୁ ଭରସା ଯାହାର ଅଛି
ସେହୁ ଭାରଥ ସମରକୁ ପାରଇ ନା ଗଛି ।୧୦୨
ଯେଉଂଶ ଦିନ ସଭାରେ କୃଷ୍ଣ ହୋଇଲେ ବିଶ୍ୱମୂରତି
ସେ ଦିନୁଂ ଆମ୍ଭର ମନେ ବସିଲା ବଡ଼ ଭୀତି ।୧୦୩
ପାଣ୍ଡବଂକ ସଖା ଯେ ତ୍ରଇଲୋକ୍ୟ ନାରାୟଣ
ଶ୍ରୀହରିର ହାଥେ ଯେ ଭାରଥ ନିବାରଣ ।୧୦୪
ନୃସିଂଘ ମୂରତି ଧଇଲେ ଯେତେବେଳେ
ଦେଖିଣ ତ୍ରାସ କଲେ ଶୂନ୍ୟେଣ ଦିଗପାଳେ ।୧୦୫

**

## ୮୨. କୌରବ ପାଣ୍ଡବଙ୍କର ଯୁଦ୍ଧ ସଜ୍ଜା

ମକର କୃଷ୍ଣ ଦ୍ୱିତୀୟା ବାର ବୃହସ୍ପତି
ଅଶ୍ଳେଷା ନକ୍ଷତ୍ର ସେହି ଦିନର ପାହାନ୍ତି ।୧
ବାଣିଜ୍ୟ ନାମେ କରଣ ସଉଭାଗ୍ୟ ନାମେ ଯୋଗ
ମକର ସଂକରାନ୍ତିକି ତିନିଦିନ ଭୋଗ ।୨
ଭ୍ରମନ୍ତି କାତ୍ୟାୟିନୀ ମହାଲକ୍ଷ୍ମୀ ମୂର୍ତ୍ତି
ମକର ବାହାନେ ଯୋଗ୍ମୀ ଉତ୍ତରରେ ସ୍ଥିତି ।୩
ତାରବାର ଯୋଗ ତିଥି ନକ୍ଷତ୍ର କରଣ
ସମସ୍ତ ସିଦ୍ଧ ବୋଲି କହିଲେକ ପୁଣ ।୪
ବାମଦେବ ପଣ୍ଡିତେ କହିଲେ ସପତମେ
ଯେକାଦଶ ବୃହସ୍ପତି ପୁଷ୍ୟା କକଡ଼ା ଅନୁକ୍ରମେ ।୫
ଯୋଗ୍ମୀ ଚକ୍ର ଖଡ଼ି ପାତିଲେ ପ୍ରୋହିତେ
ଅଷ୍ଟ କୋଣେ ଚାରି ଦିଗେ ଚଳନ୍ତି ଯେମନ୍ତେ ।୬
ପ୍ରତୀପ ନବମୀ ମାହେଶ୍ୱରୀ ପୂର୍ବେଣ ପଳାଣି
ହଂସ ପିଠିରେ ଯେ ଚଳଇ ବ୍ରହ୍ମାୟେଣୀ ।୭
ଦୂତୀୟା ଦଶମୀ ଯୋଗ୍ମୀ ଉତ୍ତର ଭାଗେ
ଚଳଇ ମାହେଶ୍ୱରୀ ବୃଷଭ ଚଢ଼ି ବେଗେ ।୮
ତୃତୀୟା ଯେକାଦଶୀ ଅଗ୍ନି କୋଣେ ଉଦେ
ଚଳଇ କଉମାରୀ ମୟୂର ବାହାନେ ହାଦେ ।୯
ଚତୁର୍ଥୀ ଦ୍ୱାଦଶୀ ନଇରତେ ନାରାୟେଣୀ
ଖଗେଶ୍ୱର ବାହାନେ ଚଳଇ ହାଦେ ପୁଣି ।୧୦
ପଞ୍ଚମୀ ତ୍ରୟୋଦଶୀରେ ଚଳଇ ଦକ୍ଷିଣେ
ମହିଷ ବାହାନେ ବାରାହୀ କରଇ ପୟାଣେ ।୧୧
ଷଷ୍ଠୀ ଚତୁର୍ଦ୍ଦଶୀରେ ଚଳଇ ପଛିମେ
ଇନ୍ଦ୍ରାୟେଣୀ ଗମଇ ମହାନାଗର ବାହାନେ ।୧୨
ସପତମୀ ପୂର୍ଣ୍ଣିମାରେ ବାୟବ୍ୟେ ଚାମୁଣ୍ଡା
ମୃତୁପିଣ୍ଡ ବାହାନେ ଚଳଇ କରେ ଧରି ଖପର ଖଣ୍ଡା ।୧୩
ଅଷ୍ଟମୀ ଅମାବଇ ଯେ ବିଜୟେ ଈଶାନ୍ୟେ
ଚଳଇ ମହାଲକ୍ଷ୍ମୀ ମଗର ବାହାନେ ।୧୪
ଯେ ବିଧି ଅଷ୍ଟ କୋଣେ ଷୋଳହ ଘଡ଼ି ବେଳା
ଚତୁର୍ଥ ଦଣ୍ଡେ ଚଳଇ ଦେବୀ ଶ୍ରୀ ସର୍ବ ଯେ ମଙ୍ଗଳା ।୧୫
ପ୍ରହରକ ମଧ୍ୟରେ ଭ୍ରମଇ ସେ ଦେବୀ ମହୀ
ଅଷ୍ଟ ପହଣ ବଢ଼ାବଇ ପୁଣିହିଂ ହାଦେ ରହି ।୧୬
ଯେମନ୍ତେ ଯୋଗ୍ମୀ ମୁଖେ ପଡଇ ଯେଉଂଜନ
ଆୟୁଷ୍ୟ ଶିରୀ ତୁଟଇ ସର୍ବ କାର୍ଯ୍ୟ ହୁଅଇ ନିଧାନ ।୧୭
ସାତବାର ଯୋଗ୍ମୀ ଚକ୍ର ଯେ ପାତିଲେ ବାମଦେବ
ରବିବାରେ ଉଦେ ପୂର୍ବଦିଗ ଭାଗ ।୧୮
ଶଉରି ବାରେ ଦେବୀ ବାୟବ୍ୟ କୋଣେ ରହଇ
ପଣ୍ଡିତ ବାରରେ ଅଈଶାନ୍ୟ କୋଣରେ ଚଳଇ ।୧୯
ବୃହସ୍ପତି ବାରେ ଯୋଗ୍ମୀ ଦକ୍ଷିଣ ଦିଗେ ଥିତି
ଚନ୍ଦ୍ରବାରେ ଦେବୀ ଯେ ଉତ୍ତରେ ରହନ୍ତି ।୨୦
ମଗର ବାହାନେ ଯେ ମହାଲକ୍ଷ୍ମୀ ମୂର୍ତ୍ତି
ଦେବୀର ବଦନ ଯେ ନିର୍ମଳ ଚନ୍ଦ୍ର ଜ୍ୟୋତି ।୨୧
ମଙ୍ଗଳବାରେ ଦେବୀ ଯେ ପଶ୍ଚିମ ଦିଗେ ଚଳି
ଭୃଗୁବାରେଣ ଯୋଗିନୀ ପୂର୍ବ ଦିଗେ ଚଳି ।୨୨
ପ୍ରତୀପ ଗୁରୁବାରେ ପୂର୍ବ ଦିଗେ ଉଦେ
ତୂମ୍ଭନ୍ତ ଚାରିଦଣ୍ଡ ଉତ୍ତାରୁ ଶୁଭ ହେବ ହାଦେ ।୨୩
ବେନିଘଡି ଉତ୍ତାରୁ ଚଳିବ ତୋ ରଥ
ସକଳ କାର୍ଯ୍ୟ ତୋତେ ହୋଇବ ପ୍ରାପତ ।୨୪
ଦଧିବାବନ ସୁମରିଣ ଶୁଭ ଅନକୂଳେ
ଉଠିଲେ କଉରୋବ ବଳ ଶୁଭ ଯେ ମଙ୍ଗଳେ ।୨୫
ଚଳିଲେ ସର୍ବ ବୀରେ ଯେ ଯାହା ଭୁବନେ
ନିତ୍ୟ କର୍ମ ସାରି ରାଜା ଭୁଞ୍ଜିଲେ ଅମିୟ ଭୋଜନେ ।୨୬
ମଣ୍ଡନ୍ତି ରହୁବର ନିଘୋଡ଼ ମୟେମତ୍ତା
ଗଜ ଅଶ୍ୱ ସୁଲକ୍ଷଣମାନ ସଜାଡନ୍ତି ମହାରଥା ।୨୭
ତୋଳନ୍ତି ଧନୁ ଯେ ମାଜନ୍ତି ଧନୁଗୁଣ
ନାରାଜ ତୀକ୍ଷମୁନା ଆୟତନ କରନ୍ତି ଦ୍ରୋଣ ।୨୮
ବାଜନ୍ତି ବୀର ତୂର ଯେ ଅତିଅ କୁତୂହଳେ
ନିଶାଣର ଘାୟେ ଯେ କୁରୁମ ଉଚ୍ଛୁଳେ ।୨୯
ସକଳ ଯୋଦ୍ଧାଂକର ଘରେଣ ଉତ୍ସବ
ଯେ ଯାହାର ମତେ ସଜ ଅତିଅ ସମ୍ଭର୍ବ ।୩୦
ଚିହ୍ନ ଚିରାଳ ରଥେ ଯେ ଉଡନ୍ତି ଗମନ ମାର୍ଗେ
ରଥଂକର ଶିଖାୟେ ଗଗନ ମାର୍ଗେ ଲାଗେ ।୩୧
ସୁବର୍ଣ୍ଣର ରଥେ ଯେ ଶାର୍ଦ୍ଦୋଳା ଚର୍ମ ଛାଇ
କେଶରୀ ଧ୍ୱଜ ବାନା ରଥ ଉପରେ ଉଡଇ ।୩୨
ଦଧିବାମନ ସୁମରି ମହାମନ୍ତ୍ର ଅପରାଜିତା
ନରସିଂଘ କବଚ ମନ୍ତ୍ର ସହସ୍ର ନାମ ଭଣିତା ।୩୩

ଇନ୍ଦ୍ରାୟଣୀ ଯୋଗିନୀ ଯେ ସହସ୍ରନାମ ପଠନା
ଅନେକ ବେଦମନ୍ତ୍ର ସାଧନ୍ତି ଅପର୍ଣ୍ଣା ।୩୪
ଦଧିବାମନ ଚିନ୍ତା କରୁଥାନ୍ତି ନିତ୍ୟେ
ପଢନ୍ତି ବ୍ରାହ୍ମଣେ ଆପାଦ ଶାନ୍ତି ଅର୍ଥେ ।୩୫
ଯେସନେକ ସମୟେ ଗୁପତେଣ ମୁନେହି
ବାରୁଣାବନ୍ତେ ଯାଇଂ ପାଣ୍ଡବଂକର ଅଗ୍ରତେ କହି ।୩୬
ସ୍ୱାମୀ ଆସନ ସମାର୍ଜନ କଲେ କଉରୋବେ
ପ୍ରଥମେ ସେନାପତି ହୋଇଲେ ଗାଙ୍ଗବେ ।୩୭
ଦ୍ରୋଣ କର୍ଣ୍ଣ ଶଲ୍ୟ କୃପାଚାର୍ଯ୍ୟ ଭୂରି
ସୋମଦତ୍ତ ବାହ୍ଲିକ ଯଦ୍ୟରଥ କେଶରୀ ।୩୮
ଯେତେକ ରଥୀ ମୂଳେ ଅନେକ ମହାଯୋଧୀ
ଯେକା ମାତ୍ର ଅଶସ୍ତମାକୁ ମୁକୁଟ ନ ବାନ୍ଧି ।୩୯
ଯୁଝେଷ୍ଠିର ବୋଇଲେ ଯେଡ଼େ ବଡ଼ ଛତ୍ରୀ
କି ଅର୍ଥେ ବରଣ ତାକୁ ନ କଲା କୁରୁପତି ।୪୦
ସହଦେବ ବୋଇଲା ଦେବ ଅଶସ୍ତମା ମନ୍ଦ କୃତ୍ୟ କଲା
ଛତ୍ରୀ ହୋଇ ତ୍ରିଜୀବି ବର ସେ ମାଗିଲା ।୪୧
ମାନଗୋବିନ୍ଦ ରାଜା ସେ ଅଟଇ ମହାଭିଗ୍ୟଂ
ଶୂରବନ୍ତ ପଣ୍ଡିତ ସେ ଅଟଇ ସର୍ବଗ୍ୟଂ ।୪୨
ମରଣକୁ ନିସତ ହୋଇଣ ଯେଉଣ ଯୋଧୀ
ତେଣୁ ସେ ମାନଗୋବିନ୍ଦ ଅଶସ୍ତମାକୁ ମୁକୁଟ ନ ବାନ୍ଧି ।୪୩
ସହଦେବ ବାକ୍ୟ ଶୁଣି ସେ ମଧୁରିପୁ
ଜୟଶଙ୍ଖ ଧ୍ୱନି କଲେ ଜଗତ ଆଧିପୁ ।୪୪
ଗୋବିନ୍ଦେ ବୋଇଲେ ତୁମ୍ଭେ ଶୁଣ ଧର୍ମରାଯେ
ଯେ ପଞ୍ଚୁରାଜ୍ୟ ପ୍ରାପତ ତୋତେ ହୋଇଲା ନିଚୟେ ।୪୫
ତ୍ରିଜୀବି ଅଶସ୍ତମା ଅଟଇ ଅମର ଯୋଧୀ
ବଜ୍ରସେହ୍ନା ଶରୀର ତା ଶହସ୍ର ନ ଭେଦୀ ।୪୬
ସ୍ୱାମୀ ସଞ୍ଚୟେ ନିଶୋଧନ ତାକୁ କଲାକ ସରସ୍ୱତୀ
ଅଶସ୍ତମାକୁ ଆବରଣ କଲା ଯେ କୁରୁପତି ।୪୭
ସେନାପତି କରି ଯେବେ ଅଶସ୍ତମାକୁ ମୁକୁଟ ବାନ୍ଧନ୍ତା
ବଡ଼ାଇ ଦୁରାପଦ ଦେବ ଆମ୍ଭନ୍ତ ପଡନ୍ତା ।୪୮
ତୁଳ ମାସ ଅନ୍ତେ ଯେ ମଗୁଶିର ଶୁକଳ୍ପ ପୂର୍ଣ୍ଣମୀ
ସେ ଦିନ ପାଣ୍ଡବେ ଯେ ଛାଡିଲେ ବାରୁଣାବନ୍ତ ଭୂମି ।୪୯
ମାଘମାସ କୃଷ୍ଣ ପକ୍ଷ ଭୃଗୁବାର ଦିନ
ଉତ୍ତରା ଫାଲଗୁନି ଗତେ ହସ୍ତା ଭୋଗ ଜାଣ ।୫୦
କୃଷ୍ଣପକ୍ଷ ଭୃଗୁବାର ଉତ୍ତରା ଫାଲଗୁନି ପଡ଼ିଲେ
ଅମୃତ ଯୋଗରେ କାର୍ଯ୍ୟ ସିଦ୍ଧି ହୁୟେ ଭଲେ ।୫୧
ତିଥି ବାର ନକ୍ଷତ୍ର ଯୋଗ କରଣ ବାରି
ବିଜୟେ ପାଣ୍ଡବେ ଯେ ଜୟନ୍ତା ନାମେ ପୁରୀ ।୫୨
ଯମୁନା ନଦୀ ବହଇ ଉତ୍ତର ବାହେନୀ
ବିଜୟେ ଧର୍ମନନ୍ଦନ ଶୁଭ ଅନକୂଳ ଘେନି ।୫୩
ବିରାଟ ଦ୍ରୁପଦ ଧୃଷ୍ଟ ଯେ ଦ୍ୟୁମନେ
ଶିଖଣ୍ଡୀ ସହିତେ ପଣ୍ଡୁର ପଞ୍ଚୁନାନେ ।୫୪
ବରାଟର ନନ୍ଦନ ଯେ ଶଙ୍ଖ ଶ୍ୱେତ ଉତ୍ତର
ପ୍ରଶୁରାମ ସାରିଷେ ସେ ଅଟନ୍ତି ଧନୁର୍ଦ୍ଧର ।୫୫
ଅର୍ଜୁନର ନନ୍ଦନ ଯେ କୁମାର ଅଭିମନ୍ୟୁ
ବାଳୁତ ଯୋଦ୍ଧା ଯେ ଅଟନ୍ତି ଛଡ଼ ତନୁ ।୫୬
କିରୀଟୀ ମୁକୁଟ ଶ୍ରୀକୃଷ୍ଣ ଘେନିଣ ଶ୍ରୀହସ୍ତେ
ମୁକୁଟ ବାନ୍ଧିଲେ ନେଇଣ ଅର୍ଜୁନର ମାଥେ ।୫୭
ଅମର ମଣ୍ଡଳେ ଯେ ନିବାତକପଚ ବଧକାଳେ
ଜୟେମାଳା କିରୀଟୀ ଅର୍ଜୁନକୁ ଦିଲେ ଆଖଣ୍ଡଳେ ।୫୮
ଦୁତୀୟ ପିନାକ ଅକ୍ଷୟେ ତ୍ରୋଣ ବେନି
କେଶବ ଖଞ୍ଜିଲେ ଯେ ଶ୍ରୀକରେ ତାହା ଘେନି ।୫୯
ପାତାଳୁଂ ମନଭେଦୀ ଶର ଦିଲେକ ବହତି
ଶ୍ରୀଭୁଜେ ଧଇଲେ ତାହା ବିଚିତ୍ରବାର୍ଯ୍ୟର ନାତି ।୬୦
ପାଶୁପତ୍ର ଶର ବନେ ଦିଲେକ ବିଶ୍ୱବାସୀ
ଯେଉଣ ଶର ଘେନି ହର ଅନ୍ଧେକ ତ୍ରିପୁର ବିନାଶି ।୬୧
ବ୍ରହ୍ମ ଶକତି ଶୂଳ ଯେ ଶକତି ବଜ୍ର ଯେ ଶକତି
ଅମୋହ ଶକତି ବାରୁଣା ଶକତି ଯେ ସୂର୍ଯ୍ୟାବ୍ରତେକ ଜ୍ୟୋତି।୬୨
ବଇଷବୀ ଚକ୍ର ଯେ ଗିରିଜାର ଦିଲା
ସେ ଚକ୍ର ଘେନି ଅର୍ଜୁନ ଅନେକ ଦଇତ ମାଇଲା ।୬୩
ସୂର୍ଯ୍ୟାବ୍ରତେକ ଚକ୍ର ନୀଳ ଚକ୍ର ଆବର ଚକ୍ର ସୁଦ୍ରିଶେଣ
ଶ୍ରୀଭୁଜେ ଧରି ରଥେ ଥୋଇଲେ ଭଗବାନ ।୬୪
ଅନେକ ବେଶ ବେଶନ ଯେ ହୋଇଣ ଫାଲଗୁନି
ଦିବ୍ୟ ଅବତାର କଲେକ ହରି, ଅର୍ଜୁନକୁ ଅନେକ
ରତ୍ନମାଳାନ୍ତ ଘେନି ।୬୫
ଅନନ୍ତ କୋଟି ବ୍ରହ୍ମାଣ୍ଡର ଠାକୁର ଚକ୍ରପାଣି
ଅମୂଲ୍ୟ ରତ୍ନମାନ ନନ୍ଦିଘୋଷେ ଆପଣେ ମଣ୍ଡିଲେକ ଆଣି ।୬୬
କଣାୟ ଝଲକ ପତର ହୀରା ମାଣିକ୍ୟ ରତ୍ନ ଖଞ୍ଜି

ମଧ୍ୟରେ ଗଜ ମୁକୁତା ଯେ ଶୋଭିତ ପୁଞ୍ଜି ପୁଞ୍ଜି ।୬୭
ଯେବଣ ରତ୍ନମାନେ ଶୂନ୍ୟେ ପୂରିତ ତୁଲେ ନୁହନ୍ତି ଭାରି
ବାଛିଣ ଖଞ୍ଜିଲେ ଯେ ପ୍ରଭୁ ଦେବ ହରି ।୬୮
ବିଶାଶତେ ପନିହୀରା ରଥରେ ପାବଛେ
ତରୁଣ ଅର୍କ ଜାଣି ଯେ ଲୁଲଇ ଚଉକଛେ ।୬୯
ଲୋହିତ ବର୍ଣ୍ଣ ପୁଷ୍ୟ ଜାଣି ଗଜଗିରି ପାଟସୂତା
ତଥିର ଉପରେ ନେଇ ଖଞ୍ଜିଲେ ଗଜ ଯେ ମୁକୁତା ।୭୦
ତଥି ଉପରେ ଶୋହେ ମାଣିକ୍ୟର ଝରା
ରଥ ଚାରିପାଖ ଚାରିଲକ୍ଷ ମାରାଗ ଚଉସରା ।୭୧
ନିର୍ମଳ ମେଘେ ଯେହ୍ନେ ନକ୍ଷତ୍ର ବିରାଜେ
ଅଷ୍ଟରତ୍ନେ ମଣ୍ଡଣି ନନ୍ଦିଘୋଷ ରଥ ସାଜେ ।୭୨
କହନ୍ତେ ନ ସରଇ ସେ ନନ୍ଦିଘୋଷ ରଥର ମହିଂମା
ଭାରା ନିବାରଣେ ଯେହା ସଞ୍ଚିଲେ ବେଦବ୍ରହ୍ମା ।୭୩
ପୃଥିବୀ ପ୍ରଳୟ କାଳେ ସେ ରଥ ନ ତୁଟଇ
ଶହସ୍ର ବିଘାତ କଲେ ସେ ରଥ ନ ଫାଟଇ ।୭୪
ଅନଳେ ସେ ରଥ ନୋହଇ ନା ଦହିଜ
ସମର କାଳେ ତହିଂ ନ ଲାଗେ ଶକତିର ତେଜ ।୭୫
ମହାଭାରଥ ଯୁଦ୍ଧ ସରଇ ଯେତେବେଳେ
ପ୍ରଜାପତି ତାହା ନେଇ ସଂହରଇ ପାତାଳେ ।୭୬
ଚନ୍ଦ୍ରେକ ଗଲେ ପୁଣ ହୋଏେ ମହା ଯେ ଭାରଥ
ପୁଣ ଆସି ଉପଗତ ହୁଅଇ ସେହୁ ରଥ ।୭୭
ଅନନ୍ତ କୋଟି ବ୍ରହ୍ମାଣ୍ଡ ଗଲାନି ଯେଥେ ବହି
ଭାରା ନିବାରଣ ଅର୍ଥେ ସେ ରଥ ଥାଇ ରହି ।୭୮
ଦେବଦତ୍ତ ଶଙ୍ଖ ନୀଳଚକ୍ର ମନଭେଦୀ ଶର ଅମୋହ ଶକତି
ସେ ରଥ ଭିତରେ ତାହା ଥୋଇଣ ଥାଇ ପ୍ରଜାପତି ।୭୯
ହନୁମତକୁ ହକାରି ଆଗ୍ୟାଂ ଦିଲେକ ଦେବରାଜେ
ତୁ ଯାଇଂ ବିଜେକର ଭାରଥ ଯୁଦ୍ଧେ ନନ୍ଦିଘୋଷ ରଥ ଧ୍ୱଜେ।୮୦
ନାରାୟଣଂକ ବଚନେ ବିଚାରଇ ପାବେନି
ନାରାୟଣ ଉତପତ୍ତି ହୋଇଲେ ମାନବ ଦେହ ଘେନି ।୮୧
କୁଟୁମ୍ବ ସମ୍ମୋହେ ପଡ଼ି ମଉଭୋଳ ହେଲେ
ତ୍ରେତୟା ଯୁଗର କଥା ସମସ୍ତ ପାଶୋରିଲେ ।୮୨
ଶୁଣ ବଇବସ୍ୱତ ମନୁ ବଦୟନ୍ତି ଅଗସ୍ତି
ହନୁମନ୍ତ ଯାହା ବିଚାରିଲା ପୂର୍ବର ସଙ୍ଗତି ।୮୩
ତ୍ରେତୟା ଯୁଗରେ ସମର କଲେ ନାରାୟଣ
ମହା ସାଂଗ୍ରାମେ ହୋଇଲା ଶ୍ରୀରାମ ରାବଣ ।୮୪
ସେତୁବନ୍ଧ ବାନ୍ଧିଲେ ଯେ ଅଗାଦ ସାଗର
ବତିଶ ଯୁଣ ଓସାର ଉସର୍ଗ ଯୁଣ ବାର ।୮୫
ଶତେ ଚଉବିଂଶ ଯୋଜନ ଯେ ଲଂକା ଯାଏ
ବେନି ବଳ ଥାଠ ଉଭାରିଲେ ଯେ ଯୁଦ୍ଧର ସମୟେ ।୮୬
ଚତୁର୍ଥ ଦିବସର ଅନ୍ତେ କୁମ୍ଭକର୍ଣ୍ଣର ବିବାଦେ
ହନୁମନ୍ତ ରାଗେଣ ଧାପେ ଉଠିଲା ସେତୁବନ୍ଧେ ।୮୭
ବେନି ସଇନି ଥିଲେ ବନ୍ଧର ଉପରେ ଉଠି
ତେତେଡ଼େ ବଡ଼ ମହାବନ୍ଧ ପଡୁଛି ଲେଉଟି ।୮୮
ପୂର୍ବ ଆଡୁ ଲେଉଟିଲା ପଛିମ ଆଡକୁ
ଶ୍ରୀରାମଚନ୍ଦ୍ର ଚାହିଂଲେ ହନୁମନ୍ତର ମୁଖକୁ ।୮୯
ବାବୁ ତୋର ବିଶ୍ୱରୂପକୁ ନ ସହଇ ଯେ ବନ୍ଧ
ସମସ୍ତେ ପଡ଼ିବାଟି ଅଗାଦ ସିନ୍ଧୁ ମଧ୍ୟ ।୯୦
ସ୍ୱାମୀଂକର ବଚନେ ହନୁମନ୍ତ ହୋଇଲାକ ଶାନ୍ତି
ବାହୁଡ଼ି ବନ୍ଧରୁ ଉତୁରିଲା ତତକ୍ଷଣାନ୍ତି ।୯୧
ସାମାନ୍ୟ ରୂପ ଧରି ରହିଲା ହନୁମନ୍ତ
ତେବେ ସେ ରାମଚନ୍ଦ୍ର ହୋଇଲେ ତୋଷ ଚିତ୍ତ ।୯୨
ଯେ ସର୍ବ କଥାମାନ ମନେ ଭାଳଇ ହନୁମନ୍ତ
ଯେ କିସ ସହିବ ମାତ୍ର ମୋତେ କାଠ ନନ୍ଦିଘୋଷ ରଥ ।୯୩
ହନୁମନ୍ତର ଭାଳନ୍ତେଣ ସହଦେବ ହସି
ସହଦେବ ହସନ୍ତେ ଜାଣିଲେ ହୃଷିକେଶୀ ।୯୪
ସହଦେବ ହସନ୍ତେ ହନୁମନ୍ତ ମହାକୋପୀ
କଷଣ ନିମନ୍ତେ ଶରୀର ମହାକୋପୀ ବିଶ୍ୱବ୍ୟାପି ।୯୫
ସହଦେବ ବୋଇଲେ ସ୍ୱାମୀ ତୁହି ସେ ବିହନ୍ତା
ତୁହି ସେ ସମସ୍ତ କଷଣୁଂ ଉଦ୍ଧରନ୍ତା ।୯୬
ଅଶକ୍ୟ ଅଥବା ତୋତେ ପଡ଼ିବ ଯେତେବେଳେ
ବ୍ରହ୍ମାଣ୍ଡ ନାଶଯିବ ପଡ଼ିବ ରାସାତଳେ ।୯୭
ସହଦେବର ବଚନେ ପ୍ରଭୁଂକ ଲାଗିଲା ମନେ ଚିନ୍ତା
ଧ୍ୟାନେ ସୁମରିଲେ ଦେବ ଦିଗପାଳ ଦେବତା ।୯୮
ନାରାୟଣ ସୁମରନ୍ତେ ସମସ୍ତେ ହୋଇଲେ ଦୃଶ୍ୟ
ବିନୟ ଭାବ ହୋଇଣ ସେ ସମସ୍ତେ ମିଳିଲେ
ଶ୍ରୀକୃଷ୍ଣଂକ ପାଶ ।୯୯
ଶ୍ରୀହରି ବୋଇଲେ ଯେ ମହାଭାରଥ ସମରେ
ମୋତେ ଆଗ୍ୟାଂ ଦେଇଛନ୍ତି ବ୍ରହ୍ମା ଶ୍ରୀମୁଖରେ ।୧୦୦

ଯେତେବେଳେ ପର୍ଯ୍ୟନ୍ତେ ମୋର ଥିଲା ଶଙ୍କ୍ୟ ହୋଇ
ତେତେବେଳ ପର୍ଯ୍ୟନ୍ତେ କାହାକୁ ନ କହିଲି ମୁହିଂ ।୧୦୧
ଯେବେ ଅଗୋଚର ମୋତେ ହୋଇଲାକ ଯୁଦ୍ଧ
ଯେବେ ସମସ୍ତେ କୁତୂହୋଳ ଦେଖିବା ରଣ ମଧ ।୧୦୨
ଦିଗପାଳେ ବୋଇଲେ ହରି ଯେ ତୋହୋର ଆଗ୍ୟାଂ
କାହାର ବଳେ କେ କରିବ ତାହା ଯେ ଅବଗ୍ୟାଂ ।୧୦୩
କେଶବ ବୋଇଲେ ତୁମ୍ଭେ କାଳ ଅନଳ ବହତି
ରଥର ଅଗ୍ନିକୋଣେ ଥିବଟି ଦିବାରାତି ।୧୦୪
ରୁଦ୍ର ଦେବତାନ୍ତ ବୋଇଲେ ଥିବଟି ଈଶାନ କୋଣ କାଣ୍ଡେ
ବିଜେକର ଦେବ ନ ଛାଡ଼ିବ ଦଣ୍ଡେ ।୧୦୫
ଆଗ୍ୟାଂ ଦିଲେ ହରି ପ୍ରଚଣ୍ଡ ପବନକୁ
ତୁ ଯାଇଂ ବିଜେ କରିବୁ ବୟବ୍ୟ କୋଣ କାଣ୍ଡକୁ ।୧୦୬
କୁବେର ପୁରୁଷକୁ ରାଇ ଆଗ୍ୟାଂ ଦିଲେ ନାରାୟଣ
ତୁମ୍ଭେ ସ୍ତମ୍ଭ ହୋଇବଟି ଉତ୍ତର କାଣ୍ଡ କୋଣ ।୧୦୭
ନଇରତ ନୃପତି ଦିଗପାଳ ଦେବ ଆଦି
ନଇରତ କୋଣେ ସେହୁ ଥୟେକ ସମାଦି ।୧୦୮
ରତ୍ନାକର ଦେବତା ବାରାନିଧି ବରୁଣ
ବାରାନିଧି ଘେନିଥିବ ତୁମ୍ଭେ ପଛିମ ଯେ କୋଣ ।୧୦୯
ଇନ୍ଦ୍ର ଦେବତାନ୍ତ ବୋଇଲେ ତୁମ୍ଭେ ଥିବ ପୂର୍ବକାଣ୍ଡ କୋଣ
ଯମ ଦେବତାନ୍ତ ବୋଇଲେ ତୁମ୍ଭେ ଥିବ ଦକ୍ଷିଣ କାଣ୍ଡେଣ।୧୧୦
ରଥର ଚାରିକୋଣ ଥମ୍ଭ ଚାରିକାଣ୍ଡ
ଅଷ୍ଟଦିଗପାଳେ ଆବୋରିଲେ ଉପର ପୀଢ଼ ଖଣ୍ଡ ।୧୧୧
ଆବର୍ତ୍ତକ ସମ୍ୱର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଯେ ଚାରି ମେଘନ୍ତ ରାଜ ଆଗ୍ୟା ଦିଲେ ଦାମୋଦର ।୧୧୨
ତୁମ୍ଭେ ଚାରି ମେଘେ ହୁଅ ଚାରି ପୀଢ଼ା
ସମସ୍ତେ ସହିବଟି ହନୁମନ୍ତର ଭାରା ।୧୧୩
ନାରାୟଣ ବଚନେ ସମସ୍ତ ଦିଗପାଳେ
ଯେ ଯାହାର ଅନରୂପେ ବସିଲେ ସକଳେ ।୧୧୪
ଉତ୍ତର ଦକ୍ଷିଣ ଯେ ପୂର୍ବ ପଛିମ ଦିଗ ଚାରି
ଯେ ଚାରି ଦିଗେ ହୋଇଲେ ରଥ ଚାରି ଚୂଳି ।୧୧୫
ସତ୍ୟ ତ୍ରେତୟା ଦ୍ୱାପର ଆବର ଯୁଗ କଳି
ଯେ ଚାରି ଯୁଗେ ହୋଇଲେ ରଥର ଅଖ ନଳି ।୧୧୬
ଦିଗପାଳମାନନ୍ତ ରଥରେ ଦେଖିଲେକ ଯହୁଂ
ହନୁମନ୍ତର ବିଶ୍ୱରୂପକୁ ଭୟେ ଆର କାହୁଂ ।୧୧୭

ଶ୍ରୀହରି ଆଗ୍ୟାଂ ଦିଲେ ଶୁଣ ବାବୁ ହନୁ
ନନ୍ଦିଘୋଷ ରଥେ ବିଜେକର ଅଞ୍ଜନାର ତନୁ ।୧୧୮
ପବନର ନନ୍ଦନ ଯେ କଇଛା ଜଗଜେଠୀ
ବିଶ୍ୱରୂପ ଧରି ଯାଇଂ ନନ୍ଦିଘୋଷ ରଥେ ଉଠି ।୧୧୯
ଗଳାରେ ବନମାଳା ତାର ଲକ୍ଷେକ ପର୍ବତ
ମହାବିଶ୍ୱରୂପେ ଆସି ରଥେ ଘୋଟିଲା ହନୁମତ ।୧୨୦
ହନୁମନ୍ତ ମହାଭାରାୟେ ରଥ ଯେ ପଶିଲା ପାତାଳକୁ
ଗୋବିନ୍ଦ ଆଗ୍ୟାଂ ଯେ ଦିଲେ ଭୀମସେନକୁ ।୧୨୧
ବେନି ଭୁଜେ ରଥ ଧର ହୋ ଭୀମସେନ
ହନୁମନ୍ତର ଭାରା ନ ସହିବ ନନ୍ଦିଘୋଷ ଯାନ ।୧୨୨
କରପତ୍ର ଯୋଡ଼ିଣ ଯେ ଭୀମସେନ ବୋଲଇ
ଯେ ରଥେ ହନୁମନ୍ତ ବିଜେ କରିଛଇ ।୧୨୩
ଯେହାର ବଜ୍ର କାଛୋଟାରୁ ସୂତା ନାଡ଼େ ପଡ଼ି
ତୋଳି ନ ପାରିଲି ଯେ ପଡ଼ିଲି ମୁଂହ ମାଡ଼ି ।୧୨୪
ରଥର ଧ୍ୱଜେ ଯେବେ ବିଜୟେ ମହାମେରୁ
କେମନ୍ତେ ଧରିବି ରଥ ତିନି ଭୁବନରୁ ଗରୁ ।୧୨୫
ଗୋବିନ୍ଦ ବୋଇଲେ ଭୀମ ରଥ ଧ୍ୱଜ ତୋଳ
ଆମ୍ଭେ ତୋର ଦେହରେ ହୋଇବୁ ମହାବଳ ।୧୨୬
ନନ୍ଦିଘୋଷ ରଥ ତୁ ସମ୍ଭାଳ ବ୍ରିକୋଦର
ଜଗନ୍ନାଥଂକ ବଚନେ ଭୀମ ବସାଇଲା ଭୁଜର ଉପର ।୧୨୭
ନୃସିଂଘ ମୂରତି ଭୀମସେନ ଅବତରି
ନନ୍ଦିଘୋଷ ରଥ ତୋଳଇ ବେନି ଭୁଜେ ଧରି ।୧୨୮
ବେନି ଭୁଜ ଉପରେ ବସାଇଲା ଷୋଳ ଚକ
ଭୂମିରୁ ଛଡ଼ାଇ ଧଇଲା ବେନି ଦଣ୍ଡ ପର୍ଯ୍ୟନ୍ତେକ ।୧୨୯
ବେନି ଦଣ୍ଡ ପର୍ଯ୍ୟନ୍ତେ ଧଇଲା ମହାବଳୀ
ଶାନ୍ତି ମୂର୍ତ୍ତି ହୋଇଣ ହନୁମତ ମନେ ଭାଳି ।୧୩୦
ବ୍ରହ୍ମାଣ୍ଡ କମ୍ପଇ ଯେ ଯାହାର ବିଶ୍ୱରୂପେ
ଯେ ନନ୍ଦିଘୋଷ ନ ଲସିଲା ମୋହୋର ପରତାପେ ।୧୩୧
ବୋଲଇ ହନୁମନ୍ତ ପାଣ୍ଡବ ତୁମ୍ଭର ଜୀବନ ସାଧୁ ସାଧୁ
କେତେ ଜନ୍ମ ଖଟି ମନାଇଲ ଜଗବନ୍ଧୁ ।୧୩୨
ଯେତେକ ସଦୟ ଅଛି ଶ୍ରୀକୃଷ୍ଣଂକର ଯାହାକୁ ହୃଦପଦ୍ମେ
ପାଇଲି ପରମଗତି ଶ୍ରୀ ଜଗନ୍ନାଥଂକ ପରସାଦେ ।୧୩୩
ଯେବେ ସେ ଜାଣିଲି ମାନଗୋବିନ୍ଦ ବଡ଼ ମୂର୍ଖ
ମନ୍ତ୍ରୀହିଂ ନାହିଁ ତାହାର ଯେତେକ ଅବିବେକ ।୧୩୪

ନାରାୟଣଂକ ଅଭେଦ ଚିତ୍ତଟି ଯାହାଂକୁ
କଉରୋବେ ମନ୍ଦ କିମ୍ପେ ଚିନ୍ତନ୍ତି ତାହାଂକୁ ।୧୩୫
ଯଦ୍ୟପି ଇନ୍ଦ୍ର ଚନ୍ଦ୍ର କୁବେର ନ ଥାଆନ୍ତେ ରଥେ
ହନୁ ବିଶ୍ୱରୂପ ଯେ ସହନ୍ତେ କେମନ୍ତେ ।୧୩୬
ଯେ ରଥେ ବିଜୟେ ଦେବ ତେତିଶ କୋଟି
ତେଣୁ ରକ୍ଷାଗଲା ନନ୍ଦିଘୋଷ ରଥ ଗୋଟି ।୧୩୭
ହନୁ ବିଚାରଇ ଯେହା ଜାଣିବା ତଦନ୍ତ
କେବଣ ଅଶ୍ୱ ପ୍ରାକ୍ରମେ ଚଳିବ ଯେ ରଥ ।୧୩୮
ଯେତେ ଭାଳି ହନୁମାନ ଖୁର୍ପ ରୂପ ଧରି
ରଥ ଧ୍ୱଜ ନିକଟେ ବସିଲା ଲଂକାର ଅରି ।୧୩୯
ଦିବ୍ୟ ବେଶ ଅଳଂକାର ହୋଇଣ ଫାଲଗୁନି
ରୂପେଣ ମୋହିଲା ସେ ବ୍ରହ୍ମାଣ୍ଡ ଖଣ୍ଡ ତିନି ।୧୪୦
ବାମ ଡାହାଣେ କଷିଲା ଅକ୍ଷୟେ ତ୍ରୋଣ ବେନି
ପୂର୍ବେ ଯାହା ଦେଇଛନ୍ତି ଈଶ୍ୱର ଭବାନୀ ।୧୪୧
ଗୋଟିୟେ କାଢ଼ିଲେ ନାରାଜ ସହସ୍ରେ ଗୁଣରେ ପୂର୍ଣ୍ଣ ହୋଇ
ଦିବାରାତ୍ରି ବିନ୍ଧନ୍ତେ କିଛି ନ ସରଇ ।୧୪୨
ଯଦ୍ୟପି ସହସ୍ରେ ବର୍ଷ ହୋଇବ ସାଂଗ୍ରାମ
ତେବେହେଂ ନ ସରଇ ଅକ୍ଷୟେ ତ୍ରୋଣ ନାମ ।୧୪୩
ଇନ୍ଦ୍ର ଦେବତା ଦିଲେ ମୁକୁଟ କିରୀଟୀ
ମାଧବ ଖଞ୍ଜିଲେ ନେଇ ଅର୍ଜୁନର ଲଲାଟ ପାଟି ।୧୪୪
ଦିବ୍ୟ ଅବତାର ରୂପ ହୋଇଣ ଫାଲଗୁନି
ରୂପେଣ ମୋହଇ ପାର୍ଥ ବ୍ରହ୍ମାଣ୍ଡ ଖଣ୍ଡ ତିନି ।୧୪୫
ଅନେକ ବୀର ବେଶେ ବିରାଟର ସୁତ
ବିଜୟ ମୁକୁଟ ବାନ୍ଧିଲେ ଶ୍ୱେତର ଯେ ମାଥ ।୧୪୬
ଅମରନାଥ ପ୍ରାୟେ ଦିଶଇ ଶିଖଣ୍ଡୀ
କୁଶମଣ୍ଡଳ ରଥ ଯେ ଅନେକ ରତ୍ନେ ମଣ୍ଡି ।୧୪୭
ଧୃଷ୍ଟଦ୍ୟୁମନେ ଦିଶନ୍ତି ରୁଦ୍ରର ତେଜ ଜାଣି
ପଞ୍ଚାଶ ସହସ୍ର ବଳ ଧନୁ ଧରିଣ ନିଜ ପାଣି ।୧୪୮
ଶଙ୍ଖ ନାମେ କୁମର ସେ ବିରାଟର ଶିଷି
କାର୍ତ୍ତିକେଶ୍ୱର ପ୍ରାୟେ ତାହାର ତେଜ ଯେ ବିକାଶି ।୧୪୯
ଦଧିବାବନ ଅନକୂଳେ ଭାଷନ୍ତି ବିବୁଜନେ
ଡାକନ୍ତି ଚଣ୍ଡପୁତ୍ରେ କୟେବାର ବିଧାନେ ।୧୫୦
ସୁଲଭ କାମିନୀ ଯେ ଘେନିଣ କରେ ଅର୍ଘ୍ୟଥାଳୀ
ଦଧିବାବନ ସୁମରି ସେ ଦିଅନ୍ତି ହୁଳହୁଳି ।୧୫୧
ମାହେନ୍ଦ୍ରର ଲଗ୍ନ ବେଳେ ଶୁଭ ଅନକୂଳେ
ପ୍ରଣପତ୍ୟ ଅର୍ଜୁନ ଯୁଝେଷ୍ଟି ପାଦତଳେ ।୧୫୨
ବହୁତ ସାନନ୍ଦ ଯୁଝେଷ୍ଟି, ହରି ଅର୍ଜୁନଂକୁ ଦେଖି
ଆନନ୍ଦେ ଅଶ୍ରୁଜଳ ବହଇ ବେନି ଆଖି ।୧୫୩
ଜୟ ତୁ ମାଧବ ଯେ ସର୍ବ କାର୍ଯ୍ୟ ସିଦ୍ଧି
ଜୟ ତୁ ମାଧବ ଯେ ପ୍ରସନ୍ନେ ବାରାନିଧି ।୧୫୪
ଜୟ ତୁ ମାଧବ ସର୍ବ ଯେ ଶୁଭ ଅନକୂଳେ
ଜୟ ତୁ ମାଧବ ଦଇତ ବଧ କଲୁ କୁତୂହୋଳେ ।୧୫୫
ଜୟ ତୁ ମାଧବ ଅଗାଧ ଦୁଖଭଞ୍ଜା
ଜୟ ତୁ ମାଧବ ଦୁରାନ୍ତକ ବଳଗଞ୍ଜା ।୧୫୬
ଜୟ ତୁ ମାଧବ ଅବ୍ୟୟେ ଚକ୍ରପାଣି
ଜୟ ତୁ ମାଧବ ସର୍ବ ଚିନ୍ତାମଣି ।୧୫୭
ଜୟ ତୁ ମାଧବ କଇନ୍ଥା ଜଗଜ୍ଜେଠୀ
ଜୟ ତୁ ମାଧବ ସୁଲଭ ତବ ନାମ ଗୋଟି ।
ଜୟ ତୁ ମାଧବ ଦ୍ରଶନେ ସର୍ବ ଦୁଖ ଫିଟି ।୧୫୮
ଜୟ ତୁ ମାଧବ ଯେ ଅତୁଟ ମନବାଞ୍ଛା
ଜୟ ତୁ ମାଧବ ବ୍ରହ୍ମା ସୃଷ୍ଟି କରୁ ରକ୍ଷା ।୧୫୯
ଜୟ ତୁ ମାଧବ ଯେ ଦୁଷ୍କୃତ ହରନ୍ତା
ଜୟ ତୁ ମାଧବ ଯେ ସକଳ ସୃଷ୍ଟି ରଞ୍ଜନ୍ତା ।୧୬୦

**

## ୮୩. କୁରୁ ପାଣ୍ଡବ ସୈନ୍ୟ ସହ ସମର କ୍ଷେତ୍ର ପ୍ରବେଶ

ଯୁଝେଷ୍ଟିଦେବେ ମାଧବ ନାମ କଲେକ ତଲୟେ
ମନୁ ଭ୍ରାନ୍ତି ଫିଟିଲା ସେ ହୋଇଲେ ନିର୍ଭୟେ ।୧
କୃତ କୃତ ହୋଇଣ ବୋଲନ୍ତି ଧର୍ମନାନେ
ମନୁ ଭ୍ରାନ୍ତି ଫିଟିଲା ତୋହୋର ପ୍ରସନ୍ନେ ।୨
ଶ୍ରୀହରିଂକି ବିନୋପି ଯେ ବୋଲନ୍ତି ଦେବ ଧର୍ମ
ତୁ ଦେବ ଜଗନ୍ନାଥ ପୁରୁଷଂକ ଉତ୍ତମ ।୩
ଛତ୍ରୀଧର୍ମ ଦେବ ଦୁର୍ଭାର ଯେ କଷ୍ଟ
ତୋତେ ପାଇଲି ଦେବ ମୋର ଫିଟିଲା ସଂକଟ ।୪
ଅକ୍ଳେଶି ପୁରୁଷ ତୁ ଅବ୍ୟୟେ ଅକ୍ଷୟେ
କଉତୁକେ ରଙ୍ଗୀ ଅବତାର ଜନ୍ମ ତୋର ହୋୟେ ।୫
ସ୍ୱାମୀ ଯାବତ ଜୀବଂକୁ ଜଗନ୍ନାଥହିଂ ସେ ମୂଳ
ଜୀବ ଜନ୍ତୁ ଆର୍ଧନେ ନାଥ ସଞ୍ଚିତ ସୟଳ ।୬

ସମରେ ଜିଣିମି କି ମୁଂ ଭୀଷ୍ମ ଦ୍ରୋଣ ଅଶତ୍ଥମାକୁ
ମହତ ପୁରୁଷ ହରି ମୁଂ ଯେ ଆଶ୍ରେ କଲି ତୁକୁ ।୭
ଦ୍ୱନ୍ଦକୁ ଭୟେ କରି ଘୁଞ୍ଚିଲା ଯେତେ କାଳ
ଧର୍ମକୁ ଜିଣି ଦୁଃଖ ସହିଲି ସକଳ ।୮
ହରି ମୋହୋର କର୍ମ ବିପାକ କାଳ ଯେ ନୋହିଲେ
ଗୁରୁ ସୋଦରମାନେ ମୋତେ କିମ୍ପେ ଉପେକ୍ଷିଲେ ।୯
ମୁଂ ଯେ ସର୍ବଦା ଆଶ୍ରେ କରିଥାଇ ତୋତେ
ତବ ପ୍ରସାଦେ ଜିଣିମି ଗାନ୍ଧାରୀ ଶତେ ପୁତ୍ରେ ।୧୦
ଜଗତେ ବୋଲନ୍ତି ଯେ ପାଣ୍ଡବେ ବଳବନ୍ତା
ତବ ପ୍ରସାଦେ ମୁହିଂ ଶ୍ରୀବନ୍ତ ଶୂରବନ୍ତା ।୧୧
ତୁ ସେ ଶିରୀ ଆଇକ୍ଷ ଦେଉଛୁ ଶ୍ରୀହରି
ନୋହିଲେ କି ପାଣ୍ଡବେ ଦ୍ରିଯୋଧନକୁ ଜିଣିପାରି ।୧୨
ଶତେ ଭାଇ ତାର ଅଟନ୍ତି ଧନୁର୍ଦ୍ଧର
ଲକ୍ଷେ ରାଜା ଖଟନ୍ତି ପୟରେ ଯାହାର ।୧୩
ସଖା ସଙ୍ଗ ନାହିଂ ମୋର ଚାରି ଭାଇ ବିନୁଂ
କି ବୁଦ୍ଧି କରିବି ହରି କହସି ବଚନୁଂ ।୧୪
ଯୁଧେଷ୍ଟିଂକର ମୁଖରୁ ହରି ଯେସନକ ବାକ୍ୟ ଶୁଣି
ସାନନ୍ଦେ ମଧୁରିପୁ ବୋଲନ୍ତି ମୃଦୁବାଣୀ ।୧୫
ସ୍ୱାମୀ ଯଦ୍ୟପି ଭୀଷ୍ମ ଦ୍ରୋଣ କର୍ଣ୍ଣ ବଳବନ୍ତା
ସମରେ ଅଶତ୍ଥମାକୁ କେ ଅଛି ଜିଣନ୍ତା ।୧୬
ସ୍ୱାମୀ ଅର୍ଜ୍ଜୁନ ନିପାତ କରିବ ସର୍ବଯୋଧୀ
ତାକୁ ଅସାଧ୍ୟ ହେଲେ ମୁହିଂ ପେଷିଣ ଚକ୍ରେ ଛେଦୀ ।୧୭
ଅର୍ଜ୍ଜୁନହିଂ ମାରିବ ଶରହିଂ ମନଭେଦି
କୁରୁ ଥାଠ ମନ୍ଥନ କରିବି ମୋର ବୁଦ୍ଧି ।୧୮
ଯେସନ ବିଚାରନ୍ତେ ସ୍ତିରୀଯେକ ଛିଂକିଲା
ଶୁଭ ମଙ୍ଗଳ ବୋଲି ଶୁକସାରୀଯେ ଡାକ ଦିଲା ।୧୯
ବାମେଣ ଯୋଗ୍ନୀ ଅଗ୍ନି କୋଣେ ସ୍ଥିତି
ଇଶାନେ ଉଦୟେ ଯେ ମହାଲକ୍ଷ୍ମୀ ମୂରତି ।୨୦
ସ୍ତ୍ରିୟା ନାମେଣ ଯେ ଯେକଇଂ ଗୁଆଳୁଣୀ
ଆଘେଣ ଡାକିଲା ସେ ଦଧିଭାଣ୍ଡ ଘେନି ।୨୧
ଯମୁନାରୁ ଡେଇଂ ପଡ଼ିଲା ଯେକ ରୋହି ମତ୍ସ୍ୟ
ଛାମୁରେ ପଡ଼ିଲା ଯେ ଦେଖିଲେ ପ୍ରତକ୍ଷ ।୨୨
ଶଙ୍ଖଚିଲ ରାବଇ ଯେ ପଛିମ ମୂରତି
ଉଦ୍ଧାଳେକ ପକ୍ଷୀ ଡାକିଲା ରମ୍ଭା ବୃକ୍ଷେ ସ୍ଥିତି ।୨୩
ସର୍ବ ଅନୁକୂଳେ ହନୁ ଆଗେ ଦେଇ ଦୃଷ୍ଟି
ଅଦଭୁତେ ଆକାଶୁ ହେଲା ପୁଷ୍ପ ବୃଷ୍ଟି ।୨୪
ବିରୂପାକ୍ଷେ ଦିଲେ ଯେବଣ ଅନୁକୂଳ କାଠି
ତାହା ମାପନ୍ତେ ଯେ ପଞ୍ଚଦଶ ଅଙ୍ଗୁଷ୍ଟି ।୨୫
କହିଲେ ପୁରୋହିତେ ଅମୃତ ଲଗ୍ନବେଳା
ରୋହିଣୀ ଘରେ ଚାରି ଯୋଗେ ବିରାଜଇ ଚନ୍ଦ୍ରକଳା ।୨୬
କ୍ଷୀର ସିନ୍ଧୁ ଭେଦି ଉଦୟେ ଦିନକର
ମଙ୍ଗଳ ଧ୍ୱନି ଶୁଭିଲା ଯେ ଗଗନ ଭିତର ।୨୭
ବ୍ରାହ୍ମଣେକ ରୂପ ଧରି ବଶ୍ୟାନର ଦେବତା
ଅଦଭୁତେ ଆସିଣ ପଢନ୍ତି ଚଣ୍ଡୀ ଅପରାଜିତା ।୨୮
ଅର୍ଜ୍ଜୁନ ପ୍ରଣପତ୍ୟ ସେ ବ୍ରାହ୍ମଣଂକୁ ଦେଖି
କଲ୍ୟାଣ ବାଞ୍ଛା କରନ୍ତି ପିଙ୍ଗଳାକ୍ଷୀ ବିବସିକି ।୨୯
ଯେ ମୋ ଶରୀର ବାବୁ ହୋଇଲା ତୃପତି
ଯେ ପଞ୍ଚୁ କଟକେ ହୋଅ ଯେକାଙ୍ଗ ଚକ୍ରବ୍ରତୀ ।୩୦
ଯେତେ ଶହସ୍ର ଦେଲି ମୁଂ ଖାଣ୍ଡବ ବନ ଦହନର କାଳେ
ସେମାନେ ପ୍ରାପତ ତୋତେ ହୋଅନ୍ତୁ ଯେତେବେଳେ ।୩୧
ଅନେକ ନିଚଳ ବାଞ୍ଛା କରନ୍ତି ବଶ୍ୟାନରେ
କେ ତାହା ଅନ୍ତ କରି କହିବ ଯେ ତିନି ପୁରେ ।୩୨
ସୁବର୍ଣ୍ଣର ଦୀପରେ ଗୁଆଘୃତ ପୂରୋଇ
ଅଙ୍ଗୁଷ୍ଟ ପ୍ରମାଣେ ନେତର ବଳିତା ଜଳଇ ।୩୩
ଚଉବିଂଶ ଅଙ୍ଗୁଳି ଯେ ବହ୍ନିର ଶିଖା
ନିଚଳ ହୋଇଣ ବିକାଶିଲା ଯହୁଂ ଯେକ ରେଖା ।୩୪
ଥିର ଲଗ୍ନରେ ଯେ ପାର୍ଥ ଯାତ୍ରା ଯୋଗ କରି
ବିଜୟେ ଫାଲଗୁନି ଦଧିବାମନ ସୁମରି ।୩୫
ବାମେଣ ଯୁଧେଷ୍ଟି ଦେବ ଡାହାଣେ ଜଗନ୍ନାଥ
ଆଗେ ଧୃଷ୍ଟଦ୍ୟୁମନ ଯେ ପଛେ ବିରାଟ ଦ୍ରୁପଦ ।୩୬
ଅମୃତ ଯୋଗ ବେଳେ ମାହେନ୍ଦ୍ର ବେଳା ଘେନି
ନନ୍ଦିଘୋଷ ରଥେ ଯାଇଂ ବିଜୟେ ଫାଲଗୁନି ।୩୭
ଉଡାନ୍ତି ଦାସୀନେତ ଦଧିବାମନ ପାତାଙ୍ଗେ
ବିପୁଳ ପୁଲକ ଆଲମ୍ବ ଉଡଇ ଶୂନ୍ୟମାର୍ଗେ ।୩୮
ଯେଉଁଣ ସ୍ୱାମୀକି ଲୟ କରଇ ପଦ୍ମଯୋନି
ସେ ସ୍ୱାମୀ ଅର୍ଜ୍ଜୁନର ରଥେ ବସି କଲେ ଶଙ୍ଖ ଧ୍ୱନି ।୩୯
ଯେମନ୍ତର ସମୟେ ଦ୍ରୁପଦର ଦୁଲାକୀ
ଶ୍ରୀଭୁଜେ ପାଞ୍ଚାଳୀ ଯେ ଘେନିଣ ଅର୍ଘ୍ୟଥାଳୀ ।୪୦

ତ୍ରଇଲୋକ୍ୟ ମୋହିନୀ ଯେ ଦ୍ରୁପଦର ବାଳା
ପରିହରଣ ଦେବାଙ୍କ ବସନ କେଶ ଯେ ମୁକୁଳା ।୪୧
ପାଞ୍ଚାଳୀକି ଦେଖି ପ୍ରତିଉତ୍ତର ଦ୍ୟନ୍ତି ନାରାୟଣ
ମା ଗୋ ସ୍ତିରୀ ଲିଙ୍ଗ ମାତ୍ରକେ ତୋହୋର ଯେତେକ କକ୍ଷାପଣ।୪୨
ଯେତେକ ଶୁଭଯୋଗ ସର୍ବମଙ୍ଗଳା ଯାତ୍ରା ଅନୁକୂଳେ
ମହାଭାରଥ ସମର ହେବ ଗୋ ସର୍ବମଙ୍ଗଳେ ।୪୩
ସକଳ ସୁବିଧାନ ସୁଖେଣ ଶୁଭ ହାଦେ କର ବାଞ୍ଛା
ଯେତେବେଳେ କେଶ ମୁକୁଳ ତୋର ଯେତେ ବଡ଼ କକ୍ଷା ।୪୪
କେଶବ ବୋଇଲେ ଯେତେବେଳେ କେଶ ବନ୍ଧନ କର ମାଯେ
ସ୍ୱାମୀ ତୋର ସମରକୁ ଶୁଭେ କରନ୍ତୁ ବିଜୟେ ।୪୫
ତୁ ପାଞ୍ଚାଳ ଦେଶ ମଣ୍ଡଣି ଆଗୋ ଯୁଝେଷ୍ଟି ପାଟବଂଶୀ
ନିକଳଂକ ନିର୍ଦ୍ଦୋଷୀ ତୁ ପାଣ୍ଡବଂକୁ ଶତେଗୁଣେ ଗରୁହଂସୀ ।୪୬
ଅନେକ ପୁରସରି ଯହୁଂ କହିଲେ ହୃଷୀକେଶୀ
କାନ୍ଦିଣ ବଇକୁଲ୍ୟ ଦେବୀ କ୍ରୋଧଭରେ ଭାଷି ।୪୭
କଦଳୀ ପତ୍ର ପ୍ରାୟେ କମ୍ପଇ ତାର ତନୁ
ମୁକ୍ତା ପ୍ରାୟେ ଅଶ୍ରୁଜଳ ବହଇ ନୟନୁ ।୪୮
ଯା ଦେଖି ବଦନ୍ତି ଶ୍ରୀକୃଷ୍ଣ ମା ଗୋ କିମର୍ଥେ ପାଞ୍ଚାଳୀ
ଆନନ୍ଦେ ଅଶ୍ରୁଜଳ କି ବିଷାଦେ ଲୋ ଅଗୁଳି ।୪୯
ପୁଣ ପୁଣ ନାରାୟଣ ବଦୟନ୍ତି ଅତି ସଧେ
ପ୍ରତିଉତ୍ତର ଦେଇ ନ ପାରଇ ସତୀ ଅତି କ୍ରୋଧେ ।୫୦
କ୍ରୋଧ ସମ୍ଭାଳିଣ ସେ ବୋଲଇ ଯିଜ୍ଞସେନୀ
ଯେକ ଆତ୍ମା ଅଟ ତୁମ୍ଭେ କୃଷ୍ଣ ଫାଲଗୁନି ।୫୧
ମୁଂ ତୋତେ କିସ କହିବି ତୁମ୍ଭେ ଅଟତ ସର୍ବଗ୍ୟଂ
ପଣ୍ଡିତ ଧାର୍ମିକ ତୁମ୍ଭେ ଅଟ ବିବେକ ଶିରୋମଣି ମହାଭିଗ୍ୟଂ ।୫୨
ଆପଣେ ଜାଣୁନା ହରି କପଟପଶା କାଳେ
ମୋତେ ଉଲଗ୍ନ କରି ପାଣ୍ଡବଂକୁ ବସାଇଲେ ସଭାତଳେ ।୫୩
ମୋର କେଶ ଧରି ଆଣିଲା ମୂର୍ଖ ଧୁଶା
ସେ ଦିନୁଂ ହରି ମୋର ଜୀବନେ ନାହିଂ ଆଶା ।୫୪
କେଶ ମୁକୁଳା ବୋଲି ଦୋଷ ବାଛୁ ମୋତେ
ହୀନ ଜୀବନ ମୋର ଧୁଶାସନ ଜୀଇଥିବା ପରିଯନ୍ତେ ।୫୫
ଭୀମସେନ ପ୍ରତଗ୍ୟାଂ କଲେକ ସଭାତଳେ
ଧୁଶାସନ ବେନିଭୁଜ ଉପାଡିବି ବୋଲି କର ମାଇଲେ
ବକ୍ଷସ୍ଥଳେ ।୫୬
ତାହାର ପ୍ରତଗ୍ୟାଂକୁ ମୁଂ କରିଅଛି ଆଶ
ଯେତେକାଳ ପର୍ଯ୍ୟନ୍ତେ ମୁଂ ହୋଇଲି ନିରାଶ ।୫୭
ବାବୁ ଅର୍ଜ୍ଜୁନ ତୁ ଭାରୋଇମଲ୍ଲ କଇଛା ଜଗଜେଠୀ
ତ୍ରଇଲୋକ୍ୟ ବିଦିତ ତୋହୋର ନାମ ଗୋଟି ।୫୮
ସର୍ବ କାର୍ଯ୍ୟ ସିଦ୍ଧି ତାର ହୋଉ ଧନୁର୍ଜୟେ
ରଣଯାଗ ମଧ୍ୟେ ତୋତେ ନୋହୁ ଅପ୍ରାଜୟେ ।୫୯
ଶତ୍ରୁ ଦର୍ପ ମର୍ଦ୍ଦଣ ପୂରାଅ ମନୋବାଞ୍ଛା
ଆପଦ ଖଣ୍ଡଣୀ ଦୁର୍ଗା କରନ୍ତୁ ତୋତେ ରକ୍ଷା ।୬୦
ଅନେକ ଶୁଭ ବାଞ୍ଛା କରିଣ ଯିଜ୍ଞସେନୀ
ଶିରେ ଅର୍ଘ୍ୟ ବନ୍ଦାଇଲେ କୃଷ୍ଣଂକୁ ଦୁର୍ବା ଅକ୍ଷତ ଘେନି ।୬୧
ଦୁଜେଣ ବନ୍ଦାଇଲେ ଅର୍ଜ୍ଜୁନର ମାଥେ
ପାଣ୍ଡବନ୍ତ ରକ୍ଷଣ ତୁ ସ୍ୱାମୀ କରସି ଜଗନ୍ନାଥେ ।୬୨
ଦଧିବାମନ ସୁମରି ତୁ ସମରେ ପଶିବୁ
କେଶର କର୍ଷଣ କଥା ପୁଣ ପାସୋରୁଚି ରେ ବାବୁ ।୬୩
ଦୁଜେଣ ବିଜୟେ ଦେବୀ ନନ୍ଦର ଦୁଲଣୀୟ
ଶିରେ ଅର୍ଘ୍ୟ ବନ୍ଦାବନ୍ତି ଜଗନ୍ନାଥର ଭୟେଣୀ ।୬୪
ସର୍ବ ଶୁଭ ବାଞ୍ଛା ମଙ୍ଗଳ ଧ୍ୱନି ବାଣୀ
ଜୟେ ଜୟେ ବାଣୀ ଭାଷନ୍ତି ସର୍ବ ସୁଲକ୍ଷଣୀ କାମେନି ।୬୫
ଦିଗପାଳମାନନ୍ତ ଘେନି ହରି ବିଜେ ନନ୍ଦିଘୋଷ ରଥେ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାର ବସିଛି ଗର୍ଭଗତେ ।୬୬
ଦେଖିଲେ ବିଶ୍ୱରୂପେ ହନୁମନ୍ତ ବସିଅଛଇ ରଥ ଧ୍ୱଜେ
ସାଧୁ ସାଧୁ ପାଣ୍ଡବ ତୁମ୍ଭର ଜୀବନ ଗ୍ରାହିଜେ ।୬୭
କେତେ ଜନ୍ମ ଖଟି ମନାଇଲ ଦେବରାୟେ
କେବଣ ତପେ ହରି ତୁମ୍ଭଂକୁ ଯେତେକ ସଦୟେ ।୬୮
ଯେ ଶ୍ରୀହରିର ଗର୍ଭେ ଅଶେଷ କୋଟି ବ୍ରହ୍ମାଣ୍ଡ
ରଥରେ ବସାଇଛି ମହୀ ନବଖଣ୍ଡ ।୬୯
ମେରୁହୁଂ ଅଧିକ ନନ୍ଦିଘୋଷ ରଥର ଆୟତନ
କେବଣ ବାରାଶ୍ୱ ଚାଳିବେ ଜୀବନ ତାଂକ ଧନ୍ୟ ।୭୦
କେବଣ ଅଶ୍ୱ ଚାଳିବେ ଦେଖିବାଟି ଆଜ
ଜାଣିମା ନା କେମନ୍ତେ ଭିଆଇଛନ୍ତି ଦେବରାଜ ।୭୧
ମହା ବିଶ୍ୱରୂପ ଧରିଣ ପାବେନି
ଗାଢ଼େଣ ମାଡ଼ି ବସିଲା ସେ ବିଷ୍ଣୁର ତେଜ ଘେନି ।୭୨
ହନୁମନ୍ତ ବିଚାରନ୍ତେ ଜାଣିଲେ ଦେବ ହରି
ନୀଳ ବଇକୁଣ୍ଠକୁ ଧ୍ୟାୟେ ଲୟେ କରି ।୭୩
ଶଙ୍ଖ ଶ୍ୱେତ ଗୋକ୍ଷୀର ଆବର କାମପାଳ
ସେ ଚାରି ଅଶ୍ୱେ ଆସି ଭେଟିଲେ ତତକାଳ ।୭୪

ପ୍ରଳୟ ଭଉରେଣ ସେ ଅଟନ୍ତି ହୟେବର ଚାରି
ଦିବାରାତ୍ର ନ ଜାଣନ୍ତି ସେ କାଳ କାମ ଅପହରି ।୭୫
ଅଗ୍ନିରେ ନ ପୋଡ଼ନ୍ତି ଜଳରେ ନ ବୁଡ଼ନ୍ତି
ମହା ପ୍ରଳୟ ହୋଇଲେ ସେ ହଂସରୂପେ ବିହଡ଼ନ୍ତି ।୭୬
କୋଟି କୋଟି ଯୁଗେ କଛ କଛ ପ୍ରସରଇ
ତେବେ ସେ ଚାରି ବାରାସ ନିଶ୍ୱାସେକ ଛାଡ଼ଇ ।୭୭
ଯେତେବେଳେ ପୃଥୀ ପ୍ରଳୟ ହୋଇଯାଇ
ତେବେ ସେ ଚାରିଅଶ୍ୱଂକୁ ଦିବସେକ ହୋଇ ।୭୮
ବ୍ରହ୍ମ ଶକତି ରୁଦ୍ର ଶକତି ଅମୋହ ଶକତି ବଜ୍ର ଶକତି
ଅକ୍ଷୟେ ତ୍ରୋଣ ପାଶୁପତ୍ର ଶର ଖଡ଼ଗ କୋନ୍ତ କାତି ।୭୯
ବାବଲ ଶର ଅଧାଚନ୍ଦ୍ର ଶର ବଜ୍ର ବାଣ ସୂଚି
ନୀଳଚକ୍ର ବଇଷବୀଚକ୍ର ରୁଦ୍ରଚକ୍ର କାଳସୂଚି ।୮୦
ନୀଳବାଣ ବଜ୍ରବାଣ ନାରାୟଣ ଶର
ଯେ ଶର ନ ଭେଦଇ ତାହାଂକର ଶରୀର ।୮୧
ବ୍ରହ୍ମାଂକୁ ଦିବସେକ ହୋଇଲେ ତାହାଂକୁ ଦିବସେ
ଧାତା ନିଦ୍ରାଗଲେ ତାହାଂକର ନିଦ୍ରା ଆସେ ।୮୨
ଯାବତଚନ୍ଦ୍ର ଦିବାକରେ ଯେ ଥାଆନ୍ତି ସେମାନେ ସମସ୍ତେ
ସେ ଚାରି ଅଶ୍ୱଂକଇ ଶ୍ରୀପତି ଯୋଚିଲେ ନେଇ ନନ୍ଦିଘୋଷ
ରଥେ ।୮୩

ଶ୍ରୀକରେ ଅର୍ଘ୍ୟଥାଳୀ ଘେନିଣ ସଉଭଦ୍ରେ
ବନ୍ଦାଇଲେ ପାର୍ଥଙ୍କୁ ଯେ ପରମ ସାନନ୍ଦେ ।୮୪
ସର୍ବ ସୁବିଧାନେ ଯେ ସର୍ବ ଶୁଭ ମଙ୍ଗଳେ
ଆପଦ ମେଣ୍ଟଣି ଦୁର୍ଗା ତୋତେ ରଖନ୍ତୁ ସର୍ବ କାଳେ ।୮୫
ଅନେକ ମଙ୍ଗଳ ଯେ କଲେକ ଶଙ୍ଖ ଧ୍ୱନି
ରଥେ ବିଜେକଲେ ଦେବ ଅର୍ଜୁନକଇଂ ଘେନି ।୮୬
ସେ ଅଶ୍ୱଂକର ମହିମା ଶୁଣ ହୋ ଚଇତନ
ଗଗନେ ଉଡ଼ନ୍ତି ଅଶ୍ୱେ ଯେହ୍ନେ ପୁଷ୍ପେକ ବିବାନ ।୮୭
କଳାମେଘେ ଯେହ୍ନେ ଉଡ଼ନ୍ତି ବିକପନ୍ତି
ତେସନ ସରୂପ ଅଶ୍ୱଂକର ଜ୍ୟୋତି ।୮୮
କୁରୁ ପାଣ୍ଡବ ବଳ ସାଗର ପ୍ରକାଶ
ତହିଂକି ଅଶ୍ୱେ ଯେ ଅଟନ୍ତି ଗୁରୁହଂସ ।୮୯
କୁରୁଥାଠ ବଳକୁ ରଥ ସୁନ୍ଦର ଶୋହିଲା
ଶ୍ରୀକୃଷ୍ଣ ସାରଥି ଯେ ଜଗତ ଜନ ମୋହିଲା ।୯୦

ପବନହୁଂ ବେଗେ ସେ ଅଶ୍ୱେ ଶୂନ୍ୟମାର୍ଗେ ହାଦେ ଗମି
ଧାତିକାରେ ଭେଟିଲେ ରଣଯାଗ ଭୂମି ।୯୧
ଅନେକ ସମ୍ଭର୍ବେ ଯେ ପୂରିଛନ୍ତି କୁରୁବଳ ସଇନି
ସିନ୍ଧୁଘୋଷ ଜାଣି ଶୁଭଇ ଶଙ୍ଖ ଧ୍ୱନି ।୯୨
ଉତ୍ତର ଦିଗରେ ଯେ ଚାଳିଶ ସହସ୍ର ନୃପତି
ରଥ ଗଜ ଅଶ୍ୱ ଯେ ଅସଂଖ୍ୟ ପାଦାନ୍ତି ।୯୩
ପଶ୍ଚିମ ଦିଗର ଯେ ପଞ୍ଚାଶ ସସ୍ର ରାଜା
ପ୍ରତଗ୍ୟାଂ କରି ଆରମ୍ଭେ ସେ ବଜାନ୍ତି ଘୋର ବୀରବାଜା ।୯୪
ପୂର୍ବ ଦିଗରେ ଯେ ତିନି ସହସ୍ର ଦଣ୍ଡଧାରୀ
ଥାଠ ସଇନି ଘେନି ଯେ ସମସ୍ତେ ଉଭାରି ।୯୫
ଦକ୍ଷିଣ ଦିଗର ସେ ସାତ ସହସ୍ର ରାୟେ
ଥାଠ ସଇନି ଘେନି ଯେ ସମରକୁ ଆୟେ ।୯୬
ସମସ୍ତ ରାଜାମାନେ ଅଟନ୍ତି କୋନ୍ତକାର
ଢେଳ ଚକ୍ର କାତି ଖଡ଼ଗ ବହନ୍ତି ବେନି କର ।୯୭
ଘେନନ୍ତି କମାଣ ଯେ ଶର ବେନି ପାଣି
ଖଡ଼ଗ ବିରାଜନ୍ତି କରତାର କିରଣ ଜାଣି ।୯୮
ଉତ୍ତର ଦିଗ ରାଜାମାନେ ତୀର କମାୟେଣମାନ ସାଜି
ପ୍ରତଗ୍ୟାଂ କରି ଯୁଦ୍ଧକୁ ଧାମନ୍ତି ଚଢ଼ିଣ ରଥ ଗଜ ବାଜି ।୯୯
ପଶ୍ଚିମ ଦିଗ ରାଜାମାନେ ଯେ ବଳବନ୍ତ
ତ୍ରୋଣ ଶର ଧନୁ କରେ ଘେନି ଧାମନ୍ତି ଚଢ଼ିଣ ଅଶ୍ୱନ୍ତ ।୧୦୦
ପୂର୍ବଦିଗ ରାଜାମାନେ ଅଟନ୍ତି ମହାବୀରା
ଶରୀର ନିକମ୍ପ ସେ ସାଂଗ୍ରମେଣ ଧୀରା ।୧୦୧
ଆକାଶ ଉଛୁଳଇ ଚମକେ ରଣଭୂବି
ମିଳିଲେ ଯୁଦ୍ଧ ଭୂମିରେ ଚାରିଭୂଷଣ୍ଡ ଅଷ୍ଟ ଭଇରୋବୀ ।୧୦୨
ନବକୋଟି କାତ୍ୟାନୀ ଯେ ଚଉଷଠୀ ଯୋଗ୍ନୀ
ବାଉନ କୋଟି ଚାମୁଣ୍ଡା ଯେ କ୍ଷେତ୍ର ପାଳନ୍ତ ଘେନି ।୧୦୩
ଚାମଡ଼ା ପିଚାଶ ପ୍ରେତ ଭୂତଂକ ସହିତେ
ମିଳିଲେ ସମସ୍ତେ ଯେ କୁରୁକ୍ଷେତ୍ର ଭୂମିଗତେ ।୧୦୪
କଉରୋବଂକ ଆଡ଼େ ସତାଣୋଇ ସହସ୍ର ରାଜା
ଜାଣିଣ ମାନଗୋବିନ୍ଦ ସମସ୍ତଂକୁ କଲା ପୂଜା ।୧୦୫
ଚାରି ଜଣା ତିନି ସହସ୍ର ଯେ ନୃପତି
ଯେତେ ରାଜା ହୋଇଲେ ପାଣ୍ଡବଂକର କତି ।୧୦୬
ଜୟତାରେ ପାଣ୍ଡବେ ହସ୍ତିନାରେ କୁରୁପତି
ଯେମନ୍ତର ସମୟେ ମିଳିଲା କଳିଙ୍ଗସେନ ନୃପତି ।୧୦୭

ନବ ଲକ୍ଷ ଗୁଞ୍ଜର ତାର ଷଉଣୀଯେ ପାଦାନ୍ତି
ଅଇରାବ୍ରତ ସମାନେ ସେ ଦିଶନ୍ତି ତେଜ ମୂର୍ତ୍ତି ।୧୦୮
ଦେବ ଇନ୍ଦ୍ର ସମାନେ କଳିଙ୍ଗସେନ ଦିଶଇ ଯେ ଶୋଭା
ଅଙ୍ଗ ବଳ ଘେନିଣ ସେ ମଧ୍ୟଥାଠେ ଉଭା ।୧୦୯
ଭୁଜେ ବୀର ନେତ ବାନ୍ଧିଣ ଶ୍ୱେତ ହାଥୀ ଚଢ଼ି
ସୁବର୍ଣ୍ଣ ଶତେ ଶତେ ଭାର ବେନି ଗଦା ଧରି ।୧୧୦
ଆହୋ କୁରୁପାଣ୍ଡବେ ତୁମ୍ଭେ ବେନି ଚକ୍ରବତୀ
ଗଯେବଣ ବଳ ଉଛ ମୁଂ ହୋଇବା ତାର କତି ।୧୧୧
କଉରୋବେ ସମସ୍ୟା ନ ଦିଲେ ତାକୁ କେହି
ବେନି ବଳ ମଧ୍ୟେ କଳିଙ୍ଗସେନ ଅଛି ରହି ।୧୧୨
ପାଣ୍ଡବସୁନ୍ଦର ଭୀମସେନ ଯେ ପରିତାପ
ଦୁଇ ବଳ ମଧ୍ୟେରେ ସେ ଆମ୍ଭର ବଳ ଚାପ ।୧୧୩
ତାହା ଦେଖି ବିମୁଖ ଯେ ପାଇଲେ ନାରାୟଣ
ଆରେ ଭୀମସେନ ସର୍ବଦା କାଳେ ତୋର ଦୁଷ୍ଟ ପଣ ।୧୧୪
କ୍ଷଣକେ ମାତ୍ରେ ଯେବେ ହୋଇଥାନ୍ତୁ ତୁନି
କଳିଙ୍ଗସେନ ଆମ୍ଭ କତିକି ଆସନ୍ତା ନବ ଲକ୍ଷ ଗୁଞ୍ଜର
ହାଦେ ଘେନି ।୧୧୫
କୁବେର ସାରିକ୍ଷେ ସେ ଅଟଇ ମହାରାଜା
ଯୁଝେଷ୍ଟି ଦେବଂକୁ ଆସି କରନ୍ତା ପାଦପୂଜା ।୧୧୬
ନାରାୟଣଂକ ବଚନେ ଯେ ବୋଲନ୍ତି ଯୁଝେଷ୍ଟି
ଆଦିହୁଂ ଜାଣଇ ମୁଂ ଭୀମାର ପ୍ରକୃତି ମନ୍ଦ ଗୋଟି ।୧୧୭
ଯେହାରେ ଚିତ୍ତେ ଅନ୍ତର ମୋତେ କଲେକ ଧୃତିରାଷ୍ଟ
ବାଲୁତ କାଳହୁଂ ଯେ ଅଟେ ବଡ଼ ଦୁଷ୍ଟ ।୧୧୮
ସାନ ବେଳରେ ଭୀମ ଆଖଡ଼ାଶାଳେ ପଶି
ବେନି ଗଦା ବୁଲାଇ ଯେ ଭୂମିକି ଆକ୍ରୋଷି ।୧୧୯
ବୋଲଇ କାହିଂ ସଂଘରଣ କରିବି ମୋର ଗଦା
ପର୍ବତେ ପିଟନ୍ତେ ଭାଜି ହୋଇବ ସର୍ବ ପଦା ।୧୨୦
ପୃଥିବୀରେ ଗଦା ମୁହିଂ ପିଟିବଇଂ ଯେବେ
ବସୁନ୍ଧରା ରାସାଂଗତ ହୋଇବାକ ତେବେ ।୧୨୧
ଦେବେ ଦାନବେ ନୁଆରନ୍ତି ଯେହା ସହି
ଧୃତିରାଷ୍ଟ ଶତେ ପୁତ୍ରଂକ ନିମନ୍ତେ ଅଛଇ ଗଦା ବହି ।୧୨୨
ଯେତେ ବୋଲି ବେନି ଗଦା ହସ୍ତେ ସଂଘରଇ
ଯେହି ବାରତା ଯାଇଂ ଡଗରେ ଧୃତିରାଷ୍ଟ ଆଗେ କହି ।୧୨୩
ଯେହାର ଦୁଷ୍ଟପଣେ ଦ୍ରିଯୋଧନ ଛାଡ଼ିଲା ମୋତେ ଯୋଗ
ରାଜ୍ୟରୁ ବାହାର କରିଦେଲା ମୋତେ ବନ ମାର୍ଗ ।୧୨୪
ଭୀମାକୁ ମାରିବେ ବୋଲି ଅନେକ କଲେ ପଞ୍ଚା
ବିଷଲଡୁ ଖୁଆଇ ମାଣ୍ଡିତ କଲେ ବାନ୍ଧା ।୧୨୫
ଜତୁ ଘର ଭିଆଇଲେ ଯେକା ଭୀମାର ପ୍ରସାଦୁଂ
ଧର୍ମେଣ ତରିଲୁ ତେତେକ ପ୍ରସାଦୁଂ ।୧୨୬
ଯେକା ଭୀମାକୁ ଯେବେ କୁମ୍ଭିରୀ ଦତ୍ୟ ଖାଆନ୍ତା
ଯେତେକ ଦ୍ୱନ୍ଦ ହରି କଦାଚିତେ ନୋହନ୍ତା ।୧୨୭
ଯୁଧିଷ୍ଟିଂକ ମୁଖରୁ ଭୀମ ଯେସନେକ ବାକ୍ୟ ଶୁଣି
ରାଗେଣ ଭୀମସେନ ଯେ ଉଠିଲା ଶିର ଝୁଣି ।୧୨୮
ଭୀମସେନ ବୋଇଲା ତୁମ୍ଭେ ଶୁଣ ଦେବରାଯେ
କଳିଙ୍ଗସେନ ଛାରକୁ କିମ୍ପାଇ ଯେତେକ କର ଭଯେ ।୧୨୯
କଳିଙ୍ଗସେନ ରାଜା ଥିବଟି ଯେଉଣ ଦ୍ୱାରେ
ସେ ଦ୍ୱାର ହୋଉ ପଛେ ମୋହୋର ଭାଗରେ ।୧୩୦
ଗୋବିନ୍ଦେ ବୋଇଲେ ନବ ଲକ୍ଷ କୁଞ୍ଜର ଯାର ତୁଲେ
ନବ ଲକ୍ଷ ସଇନି ଅଟନ୍ତି ଅଙ୍ଗବଳେ ।୧୩୧
ଭୀମସେନ ବୋଇଲା ହରି ତୁ ଯେବେ ମୋତେ ସାଖୀ ହୋଇଥିବୁ
କଳିଙ୍ଗସେନ ତୁଲେ ଯୁଦ୍ଧ ମୋ ଦେଖିବୁ ।୧୩୨
ଶରରେ ନ ବିନ୍ଧିବି ଖଡ଼ଗେ ନ ଛେଦିବି
ବଡ଼ବାନଳେ ନେଇ ସମସ୍ତ ପକାଇବି ।୧୩୩
ବାଉନ ବାଉନ ଭାର ଗଦା ବୁଲାଇ ବେନି କରେ
ନବ ଲକ୍ଷ କୁଞ୍ଜର ସନ୍ୟ ଉଡ଼ିବେ ମହା ଶୂନ୍ୟରେ ।୧୩୪
ବଡ଼ବାନଳ ଭିତରେ ପଡ଼ିବେ ସର୍ବେ ଉଡ଼ି
ସମସ୍ତେ ମରିବେ ପ୍ରଭୁ ଅଗାଦ ଜଳେ ବୁଡ଼ି ।୧୩୫
ଯେସନେକ ଚରିତ ଯେବେ ନ ପାରଇ କରି
ତୋହୋର ଶ୍ରୀଚରଣ ଛୁଅଂଇ ଦେବ ହରି ।୧୩୬
ବ୍ରିକୋଦର ମୁଖରୁ ଦୁସହ ବାକ୍ୟ ଶୁଣି
ସାଧୁ ସାଧୁ ଭୀମ ବୋଲି ହରି କଲେକ ଶଙ୍ଖ ଧ୍ୱନି ।୧୩୭
ଅନେକ ସାନନ୍ଦେଣ ଦେବ ମଧୁରିପୁ
କେଶରୀ ତେଜ ଜାଣି ଦେଖିଲେ ଭୀମ ବପୁ ।୧୩୮
ବେନି ଥାଠ ଉଭାରି ଅଛନ୍ତି ରଣ ଭୂମି
ପୁଛଇ ମାନଗୋବିନ୍ଦ ଭୀଷ୍ମ ମହାଗ୍ୟାନୀ ।୧୩୯
ଭୋ ପିତାମହ ଦେଖ କୁରୁ ପାଣ୍ଡବ ସଇନି
କେହି ଜିଣିମାକୁ ସାମରଥ ଯେହା ଅଛଇ ମେଦନୀ ।୧୪୦
ବଦଯନ୍ତି ଗାଙ୍ଗବେ ଶୁଣ କୁରୁରାଣ
ତିନି ଦିନେ ଜିଣି ପାରନ୍ତି ଗୁରୁ ଦ୍ରୋଣ ।୧୪୧

ଯେ ବେନି ଥାଠ ଯେବେ ଦେଖିବ ବୀରକର୍ଣ୍ଣ
ସମରେ ନାଶ କରି ପାରଇ ପାଞ୍ଚ ଦିନ ।୧୪୨
ଯେ ବେନି ବଳ ଯେବେ ଦେଖଇ ବୀର ଶଲ୍ୟ
ସାତ ଦିନେ ଜିଣିପାରଇ ମହାମଲ୍ଲ ।୧୪୩
ଯେ ବେନି ବଳ ଯେବେ ଦେଖିବେଟି କୃପେ
ନବ ଦିନେ ଭାଙ୍ଗି ପାରନ୍ତି ସବୁଂକରି ଦର୍ପେ ।୧୪୪
ନିଚୟେ ହୋଇ ଯେବେ ହୋଇବୁଂ ଆମ୍ଭେ ରଥୀ
ଦିବସେକ ନିପାତ ମୁଂ କରିବି ସବୁନ୍ତି ।୧୪୫
ଯେ ବେନି ବଳେ ଅଶତ୍ତମା ହୋଇବେ ଯେବେ ରଥୀ
ନିମିଷେକ ନିସଂଶୟେ ମାରି ପାରଇ ସବୁନ୍ତି ।୧୪୬
ଯେ ବେନି ଥାଠ ଯେବେ ଦେଖିବ ଅର୍ଜୁନ
ଅର୍ଦ୍ଧ ନିମିଷକେ ସେ ସବୁ କରିପାରଇ ନିଶୋଧନ ।୧୪୭
ଭୀମ ଗଦା ଯେବେ ଧରିବ ବେନି ବଳେ
ଘଡ଼ିକ ମଧ୍ୟେ ନାଶ ଯେ କରିପାରଇ ସକଳେ ।୧୪୮
ଅଶୀ ସହସ ବଳ ଧନୁ ଯେ ବହଇ ଯୁଝେଷ୍ଟି
ଦିନକେ ମାରି ପାରନ୍ତି କରିଣ ଶର ବୃଷ୍ଟି ।୧୪୯
ନକୁଳ କୁନ୍ତମୁନେ ପୃଥୀ ଧରଇ ଛତ୍ର କରି
ଯେ ବେନି ଥାଠ ମାରି ପାରଇ ତିନି ଦିନ ସରି କରି ।୧୫୦
ଖଡ଼ଗ ଫଳା ଧରି ସେ ସହଦେବ ମନ୍ତ୍ରୀବର
ପହଡ଼କେ ବେନି ବଳ କରି ପାରଇ ସଂହାର ।୧୫୧
ଶୁଣିଣ ଆଶ୍ରିଯ ଯେ ମାନଚକ୍ରବ୍ରତୀ
ହୃଦଗତେ କୁରୁନାଥ ବଢ଼ାଇ ବିଷାଦ ମତି ।୧୫୨
ଭୀଷ୍ମେ ବୋଇଲେ ଆମ୍ଭେ ଶହସ୍ର ଧରନ୍ତେ
ନାରାଚ ଧରନ୍ତେ କମ୍ପଇ ଆମ୍ଭ ମାଥେ ।୧୫୩
ଧନୁ ଧରନ୍ତେଣ ଦ୍ରୋଣ ଅଶତ୍ତମା
ପିତା ପୁତ୍ରଂକର ଭୁଜ କମ୍ପଇ ହୃଦ କମ୍ପଇ କୃପବ୍ରହ୍ମା ।୧୫୪
ଶଲ୍ୟଂକର ଶରୀର କମ୍ପଇ ଜାନୁ କମ୍ପଇ କର୍ଣ୍ଣ
ଧନୁ ଧରନ୍ତେ ନିଷ୍କମ୍ପ ଯେକା ବୀର ଅରଜୁନ ।୧୫୫
ନିଷ୍କମ ଯୋଦ୍ଧା ସେ ଯେ ଅଟଇ ପାଣ୍ଡବ ସର୍ବସାଚୀ
ତିନି ତ୍ରଇଲୋକ୍ୟେ ତାକୁ ନାହିଂ କିଛି ବାଚି ।୧୫୬
ଦ୍ରିଯୋଧନ ଆତଂକ ଯେ ଭୀଷ୍ମଂକ ବାକ୍ୟ ଶୁଣି
ବଢ଼ାଇ ଦୁରାପଦ କଥା ତ କହିଲ ନ ଜାଣି ।୧୫୭
କୁରୁପତିର ଆତଂକ ସେ ଜାଣିଲେ ଗାଙ୍ଗବେ
ବଡ଼ ଆରମ୍ଭେ ପ୍ରତଗ୍ୟାଂ ସେ କଲେ ମତ୍ତ ଗର୍ବେ ।୧୫୮
ଶୁଣ ଦ୍ରିଯୋଧନ ଆମ୍ଭର ଦୃଢ଼ ବାକ୍ୟ
ଭୀଷ୍ମ ଦ୍ରୋଣ ଛତ୍ରୀପଣ ଯେ ଦେବଂକୁ ଅଶକ୍ୟ ।୧୫୯
ନିଚୟ ଆଗ୍ୟାଂ ଯେବେ ଦେବୁ କୁରୁପତି
ପାଣ୍ଡବ ମାତ୍ରକଇଂ କିସ ଅମ୍ଭର ଯେ ଭୀତି ।୧୬୦
ସକଳ ମାରିବି ମୁହିଂ ଦଶ ଦିନର ସାଂଗ୍ରାମେ
ପାଣ୍ଡବନ୍ତ କେମନ୍ତେ ରଖିବେ ପୁରୁଷଉତ୍ତମେ ।୧୬୧

**

## ୮୪. ଅର୍ଜୁନର ଯୁଦ୍ଧ କରିବାର ଅନିଚ୍ଛା ଓ ଶ୍ରୀକୃଷ୍ଣଙ୍କର ଉପଦେଶ

ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ମହାଭାରଥ ଯୁଦ୍ଧର ଯିସ ଯିସ ରୀତି ।୧
ପୂର୍ବେଣ ପାଣ୍ଡବେ ଯେ ପଛିମେ କଉରୋବେ
ମହା ସମ୍ଭର୍ବେ ସେନାପତି ହୋଇଲେ ଗାଙ୍ଗବେ ।୨
ନିର୍ଦ୍ଧୂମ ଅଗ୍ନି ଜାଣି ଯେ ଭୀଷ୍ମଂକର ମୂର୍ତ୍ତି
ଭୟେଣ ପାଣ୍ଡବ ବଳ ରହି ନୁଆରିଲେ କତି ।୩
ଅର୍ଜୁନ ମୁଖକୁ ଚାହିଂ ବୋଲନ୍ତି ଶ୍ରୀବତ୍ସି
ଭୀଷ୍ମଂକର ତୁଲେ ସ୍ମର କରସି ବିବସ୍ତି ।୪
ଯେହ୍ନେ ତୋହୋର ପ୍ରତଗ୍ୟାଂ ବଳବନ୍ତ ପଣ
ଯେଣେ ସମ୍ପଦ ପ୍ରାପତ ତୋତେ ହୋଇବ ଆଜ ରଣ ।୫
ବୋଲଇ ଅର୍ଜୁନ ଯେ କରପତ୍ର ଯୋଡି
କଉରୋବେ ମୋତେ ଶହସ୍ର ବିନ୍ଧନ୍ତୁ ଆଗ ବଢ଼ି ।୬
ଅଛନ୍ତି ଉଭାରି ଯେ ସମସ୍ତ ସେନାପତି
କେ ଆଗେ ଧର୍ମ ଲଂଘି ଶହସ୍ର ବିନ୍ଧିବ ଦେଖ ହୋ ଶିରୀପତି ।୭
କଉରୋବେ ଆଗ ବିନ୍ଧନ୍ତୁ କିନା ଲଂଘି ଧର୍ମ
ପଛେ ନାରାଚ ମୁଂ ବିନ୍ଧିବି ଶ୍ରୀପୁରୁଷଉତ୍ତମ ।୮
ଗୋବିନ୍ଦେ ବୋଇଲେ ହୋ ଧର୍ମ ପାଳୁ କାହିଂ
ଅଧର୍ମ ଆଚରଣ କଲାକ କୁରୁସାଇଂ ।୯
ସୋଦରେ ଭାଗ ସେ ଯେ ନ ଦିଲା କୁରୁପତି
ଯେ ମହାଭାରତକୁ ତୁମ୍ଭେ ସିନା ରଥୀ ।୧୦
ସମସ୍ତ ରାଜ୍ୟଭାର ସେ ମାଡିଣ ବସିଲା
କିଛିତ କରି ମାଗିଲେ ପଡା ପାଞ୍ଚଖଣ୍ଡି ଯେ ନ ଦିଲା ।୧୧
ସମସ୍ତ ଗ୍ରାସିଲା ସେ ଗାନ୍ଧାରୀର ବତ୍ସ
ତୁ କେସନେ ଧର୍ମ ହୋ ପାଳୁଛୁ ବିବସ୍ତ ।୧୨

ଗୋବିନ୍ଦେ ବୋଇଲେ ତୁମ୍ଭକଇଁ ଭାଗ ନ ଦିଲା କୁରୁପତି
ଯେ ମହାଭାରଥେ ତୁମ୍ଭେ ଅଟ ଦ୍ୱନ୍ଦଅର୍ଥୀ ।୧୩
ଘେନିଲେ ରାଜ୍ୟଭାର ବସିଲେ ସର୍ବ ଇଚ୍ଛା
ଭାଗ ନ ପାଇ ତୁମ୍ଭେ ସେ ସମରକୁ କରିବା ମନବାଞ୍ଛା ।୧୪
ତୁ ହୋ ଅର୍ଜୁନ ଯେବେ ଶହସ୍ର ବିନ୍ଧ ଆଗେ
ଜାଳାବଳୀ ଶର ଭୀଷ୍ମଂକୁ ମାର ବେଗେ ।୧୫
ଅର୍ଜୁନ ବୋଇଲେ ଶୁଣିମା ଦଇତାରି
ବଡ଼ାଇ ଦୁରାପଦ ମୋତେ ହୋଇଲା ଦେବ ହରି ।୧୬
ନାରାଜ ପୂରୋଇ ବିନ୍ଧିବି ମୁଂ କାହାକଇଁ
ପ୍ରାଣର ସାଖା ମୋର ଅଟନ୍ତି ସର୍ବେ ଯେହି ।୧୭
ପ୍ରଥମେ ଭୀଷ୍ମ ଯେ ଅଛନ୍ତି ଶସ୍ତ୍ର ଧରି
ବୃଦ୍ଧ ପିତାମହ ସେ ଯେ ଅଟନ୍ତି ଆମ୍ଭରି ।୧୮
ତାହାଂକର ପାରୁଶେ ଦେଖ ଭାରଦ୍ୱାଦଶଂକର ସୁତ
ବାଳକାଳୁଂ ସ୍ନେହ କରି ସେ ପାଳିଲେ ଆମ୍ଭନ୍ତ ।୧୯
ପୁତ୍ର ଅଶସ୍ତମାରୁ ମୋତେ ଅଧିକ ଦେଖନ୍ତି ଦ୍ରୋଣ ଗୁରୁ
କ୍ଷଣେହେଂ ଭୂମିରେ ମୋତେ ନ ବସାନ୍ତି କୋଳରୁ ।୨୦
ବିଶେଷେ ପ୍ରଶୁରାମ ବିଦ୍ୟା ଶିଖାଇଲେ ମୁକୁ
ମୁଂ କେମନ୍ତେ ଶହସ୍ର ହୋ ବିନ୍ଧିବି ତାହାଂକୁ ।୨୧
ପୁଣି ତାହାଂକ ସନ୍ନିଧେ ଅଛନ୍ତି କୃପବ୍ରହ୍ମା
ବେଦ ମନ୍ତ୍ରେ ନିର୍ଜିତ ସେ ଦ୍ୱିଜବର ମହାତମା । ୨୨
ଶ୍ରୀବତ୍ସ ଲକ୍ଷଣ ବିରାଜଇ ତାହାଂକର ହୃଦେ
ତାଂକୁ ଶର କେହ୍ନେ ବିନ୍ଧିବି ମୁହିଁ ହାଦେ ।୨୩
ମହାଭାରଥ ଯୁଦ୍ଧେ ସେ ଅଟନ୍ତି ମହାବ୍ରହ୍ମା
ତାହାଂକର ଭଗ୍ନିଜା ପାଶେ ଅଛନ୍ତି ଅଶସ୍ତମା ।୨୪
ଅଭେଦ ସୋଦର ସେ ମୋ ପ୍ରାଣର ପଞ୍ଚଭୂତ
ତାହାନ୍ତ କେମନ୍ତେ ନାରାଜ ବିନ୍ଧିବି ଜଗନ୍ନାଥ ।୨୫
ତାହାଂକ ସନ୍ନିଧେ ଦେଖ ରାୟେଗୁରୁ ଶଇଲ୍ୟ
ଆମ୍ଭର ମାତୃକୁଳ ହୋଇ ନ କଲେ କିଛି ଭଲ ।୨୬
ମାଦ୍ରୀର ସୋଦର ସେ ପଣ୍ଡୁରାଜାର ଯେ ଶଳା
ନକୁଳ ସହଦେବଂକର ସେ ଅଟନ୍ତି ମଉଳା ।୨୭
ବହୁତ ସ୍ନେହ ସେ କରନ୍ତି ଦେବ ମୋତେ
ମୁହିଁ ତାହାନ୍ତ ନାରାଜ ବିନ୍ଧିବି କେମନ୍ତେ ।୨୮
ଅର୍ଜୁନର ବିରସ ଦେଖି ବଦୟନ୍ତି ନାରାୟଣ
ମାନଗୋବିନ୍ଦର ମଇତ୍ର ଯେ ମହାବଳୀ କର୍ଣ୍ଣ ।୨୯
ଯେହାକଇଁ ନାରାଜ ବିନ୍ଧୁକନା ପାର୍ଥ
ଯେ କର୍ଣ୍ଣର ତହୁଂ ମୁଳୁଂ ଜାତ ହୋଇଲା ଅନର୍ଥ ।୩୦
ଅର୍ଜୁନ ବୋଇଲା ତୁ ଶୁଣ ଦେବ ହରି
ତୁମ୍ଭେ ତ ଜାଣ କୋଇନ୍ତାଂକ ଗର୍ଭରୁ କର୍ଣ୍ଣ ଅବତରି ।୩୧
ଜ୍ୟେଷ୍ଠଭାଇ ମୋର ଅଟଇ ପିତାର ସମାନେ
ତାହାନ୍ତ ନାରାଜ ମୁଂ ବିନ୍ଧିବି କେସନେ ।୩୨
ଅର୍ଥ ପାଇଣ ଯେ ସହୋଦ୍ରେ କରେ ତେଜ୍ୟା
ରଉରବ ନର୍କେ ତାକୁ ଠାବ ଦିଅଇ ଜନ୍ତୁରାଜା ।୩୩
ଗୋବିନ୍ଦେ ବୋଇଲେ ଶୁଣ ବୀରବର ପାର୍ଥ
ଶକୁନିର ତୁଲେ ମୂଳ ସେ ହୋଇଲା ଅନର୍ଥ ।୩୪
ଓହୋକୁଳକୁ ବିବାଦ କରାଇଲା ଶକୁନି
ପ୍ରଥମ ଯୁଦ୍ଧେ ଯେହାକୁ ମାରସି ଫାଲଗୁନି ।୩୫
ଯେକା ଶକୁନି ଯେ ସମରେ ନାଶଗଲେ
କୁରୁ ପାଣ୍ଡବ ଅଭେଦ ହୋଇଥିବ ଭଲେ ।୩୬
ଅର୍ଜୁନ ବୋଇଲେ ଦେବ ତୁ ସର୍ବକଥା ଜାଣୁଂ
ଶୟଳ ଜନ ଚିନ୍ତାମଣି ସକଳ ପରିମାଣୁଂ ।୩୭
ଶକୁନି କୂଟବୁଦ୍ଧି ଦେବ କହୁଥାଇ ଯେତେ
ମାନଗୋବିନ୍ଦକୁ ନାଶ କରିବେ ସେ ଆମ୍ଭର ହିତ ଅର୍ଥେ ।୩୮
ଦ୍ରିଯୋଧନ ନାଶକଲା ତାହାର ବଂଶ ପଥର ଘରେ ଭରି
ଯେକାମାତ୍ର ଶକୁନି ତହୁଂ ଅଇଲା ଉବୁରି ।୩୯
ଅର୍ଜୁନ ବୋଇଲେ ଦ୍ରିଯୋଧନର ବଂଶ ନାଶ କରିବା ନିମନ୍ତେ
ଓହୋକୁଳ ଅଇରିତା ଯେ କଲାଟି ଯୁଗତେ ।୪୦
ଆନରେ ବଧ ସେ ନୋହନ୍ତି କଉରୋବେ
ଭୂତ ଭବିଷ୍ୟ ଗ୍ୟାଂତା ସେ ଅଟଇ ଜାଣ ବାସୁଦେବେ ।୪୧
ଶକୁନିକି ଯେବେ ନ ମାରୁ ସର୍ବସାଚୀ
ମାନଗୋବିନ୍ଦ ତୁମ୍ଭର ସମ୍ପଦ ହରୁଅଛି ।୪୨
ଆହୋ ଆକାଶଗାମୀ କରି ବାହିବି କି ତୋର ରଥ
ଭେଟାଇବି ମାନଗୋବିନ୍ଦକୁ ସମର କର ବୀର ପାଥ ।୪୩
ସମ୍ଭରେଣ ରହିଅଛି ଘେନିଣ ଶତେଭ୍ରାଥ
ତାହାନ୍ତ ସମରେ ଜିଣି ସମ୍ପଦ ଭୋଗକର ପାଥ ।୪୪
ଅର୍ଜୁନ ବୋଇଲା ଦେବ ପଣ୍ଡୁ ଧୃତିରାଷ୍ଟ
ଯେକ ପିତାରୁ ଜାତ ସେ ଅଭିନ୍ନ କନିଷ୍ଟ ଶ୍ରେଷ୍ଟ ।୪୫
ତାହାଂକ ପୁତ୍ର ଆମ୍ଭେ କୁରୁ ପାଣ୍ଡବ ବେନି
କାହିଁର ନିମନ୍ତେ ଭୋ ଦେବ ଆମ୍ଭେ ହୋଇବୁ ଅନ୍ୟୋଅନି।୪୬

ଅର୍ଜ୍ଜୁନ ବୋଇଲା ମୁଂ ଯେଉଣ ନାରାଚ ଘେନିଅଛି ହାଥେ
ବିନ୍ଧିଲେ ବ୍ରତିବ କେ ଯେ ତିନି ଜଗତେ ।୧୪୭
ହରି ନାରାଚ ପୂରୋଇ ମୁଂ ଚାହିଂବି ଯାହାର ମୁଖ
ଅବାନ୍ଧବ ହୋଇ ଅବା କେ ମୋହୋର ଅଛି ଦେଖ ।୧୪୮
କିସ ହେବ ମୋହୋର ଅର୍ଥେ ସହୋଦ୍ରନ୍ତ ନାଶ କରାଇ
ଯେ ରାଜ୍ୟଭାରେ ମୋର କାର୍ଯ୍ୟ ନ ଯୋଗାଇ ।୧୪୯
ଯେହାନ୍ତ ମାରିବି ଯେ ରାଜ୍ୟର ନିମନ୍ତେ
କେଉଣ ସମ୍ପଦ ଯେ ପ୍ରାପତ ହୋଇବାକ ମୋତେ ।୧୫୦
ନୟନୁଂ ଅଶ୍ରୁଜଳ ବହଇ ଅର୍ଜ୍ଜୁନର
ଜଗନ୍ନାଥଂକ ମୁଖ ଚାହିଂ ବୋଲଇ ଉତ୍ତର ।୧୫୧
ତୁ ଦେବ ଜଗନ୍ନାଥ ବିଚାର କର ମନେ
ବଡ଼ାଇ ସୁସ୍ଥେ ଦେବ ବୁଲୁଥିଲୁଂ ବନେ ।୧୫୨
ଅନେକ ତୀର୍ଥ କଲୁ ପିତୃକାର୍ଯ୍ୟ ଅର୍ଥେ
ନିଦ୍ୱନ୍ଦେ ଥିଲୁ ଋଷିମାନଂକ ସଙ୍ଗତେ ।୧୫୩
ଅନେକ ଦତ୍ୟମାରି ଉଶ୍ୱାସିଲୁ ମହୀଭାରା
ପ୍ରସନ୍ନେ ପରମ ମଉଷଧି କହିଲେ ଅଙ୍ଗିରା ।୧୫୪
କନ୍ଦମୁଳ ବନ ତୋହୋଳ ଦାରାକ୍ଷଫଳ ଭକ୍ଷି
ଥିଲୁଂ ନିଚିନ୍ତେ ବନେ ଦେବ ନ ଜାଣୁଂ ଯେ ଆମ୍ଭେ କିଛି ।୧୫୫
ଅଛ ଅଛ କରିଣ ଯେ ମାଗୁଥିଲୁ ଭିକ୍ଷା
ନ ଜାଣୁଂ ଦୁଖ ସୁଖ ବନ୍ଧୁ ଯେ ଯାହାର ଇଚ୍ଛା ।୧୫୬
ବାହୁଡ଼ିଣ ଯିବୁ ହରି ନାନା ତୀର୍ଥ ବନ୍ଦି
ଯେକ ସାହୋଦ୍ର କିମ୍ପେ ହୋଇବୁ ଦ୍ୱନ୍ଦବାଦୀ ।୧୫୭
ନୋହୁ ନା ରାଜ୍ୟଭାର ନୋହୁ ଯେ ସଂଗ୍ରାମ
ଯେତେ ଦ୍ୱନ୍ଦ ମୋତେ ନ କରାଅ ପୁରୁଷଂକ ଉତ୍ତମ ।୧୫୮
ଅର୍ଜ୍ଜୁନର ମୁଖରୁଂ ଯେସନେକ ବାକ୍ୟ ଶୁଣି
ଥମ୍ଭୀଭୂତ ଜାଣି ରହିଲେ ଦେବ ଚକ୍ରପାଣି ।୧୫୯
ନିରୁତାନ୍ତ ବେଳକୁତ ଯେ ସୋଦରିମା ପଣ ଘେନି
ମାୟା ମୋହେ ବଶ୍ୟ ଗଲାକ ବୀର ଫାଲଗୁନି ।୧୬୦
ଯେ ମୋହ ଛାଡି କରି ଯେ ସମରେ ପଶଇ କେଉଣ ବାଗେ
କୂଟେଣ ମନାଇବା ବୋଲି ମନେ ବିଚାରନ୍ତି ଶ୍ରୀରଙ୍ଗେ ।୧୬୧
ନେଉଟିଣ ରଥ ଯେ ବାହାନ୍ତି ଦେବ ହରି
ଯୁଝେଷ୍ଟିଂକ ଛାମୁରେ ଯାଇଂ ପ୍ରଣପତ୍ୟ କରି ।୧୬୨
ଯୁଝେଷ୍ଟି ପଚାରନ୍ତି ହରି ସମର ନ କରି ହଟି ଆଇଲତ ବେଗେ
ଅର୍ଜ୍ଜୁନ ଚରିତମାନ କହିଲେ ଦେବ ଯୁଝେଷ୍ଟିକଂର ଆଗେ ।୧୬୩

ସ୍ୱାମୀ ତୋହୋର ହୃଦରେ ବିଚାରୁ କେମନ୍ତେ
ସମରକଇଂ ବିସରିଲା ଭାଇ ତୋର ପାର୍ଥେ ।୧୬୪
ଯୁଝେଷ୍ଟି ଦେବେ ବୋଇଲେ ଶୁଣିମା ବାସୁଦେବ
ବଡ଼ାଇ ଦୁରାପଦ କଥାତ ବହୁତ ସମର ଅସମ୍ଭବ ।୧୬୫
ଗତ କଥାମାନ ପାସୋରି ଯେବେ ହୋଇଲୁ ନିରାଶ
ବଡ଼ ଦୁଲଭ ହୋଇବନା ସୋଦରଂକ ବିନାଶ ।୧୬୬
ଭୀମସେନ ବୋଇଲା ଶୁଣିମା ଶ୍ରୀପତି
ସୋଦରିମା ପଣ ଦ୍ରିଯୋଧନ ଆମ୍ଭନ୍ତ ସଦା ଚିନ୍ତି ।୧୬୭
ବାଳକାଳେ ନେଲେ ମୋତେ ଖେଡର ନିମିତ୍ତକୁ
ରୋଷେଇ ଶ୍ରମ ଦେବ କରାଇଲେ ମୁକୁ ।୧୬୮
ଖେଳର ଶ୍ରମ ମୋତେ ହୋଇଥିଲା ବଡ଼ ବାଧା
ମହାଶ୍ରମ ପାଇଲି ଲାଗିଲା ବଡ଼ କ୍ଷୁଧା ।୧୬୯
କପଟେ ବିଷଲଡୁ ମୋତେ ଖୁଆଇଲେ ସେହି
ବଡ଼ ସାନ କରି ବେନି ଠାବେ ଛନ୍ତି ଥୋଇ ।୧୭୦
କ୍ଷୁଧାର ଆଗତେ ଆବୋରିଲି ବଡ଼ କୁଢେ
ଆହାର କଲି ମୁଂ କ୍ଷୁଧାର ଅତି ଗାଢ଼େ ।୧୭୧
କାଳେ ଘାରିଲା ସେ ବିଷଲଡୁ ମାନ
ଭୋଜନ ଅନ୍ତେ ମୁଂ ହୋଇଲି ଅଚେତନ ।୧୭୨
ଅସାଷ୍ଟମ ଦେଖି ମେଲିଲେ ମୋତେ ନେଇ ଜଳେ
ନାଗେଣୀମାନେ ରକ୍ଷା କଲେ ମୋର ପୁଣ୍ୟ ବଳେ ।୧୭୩
ପୁଣିହିଂ ଭିଆଇଲେ ଜଉଶାଳ ପୁର
ଯତନେ ଗୁହାଇଲେ ଆମ୍ଭନ୍ତ ବାରୁଣାବନ୍ତର ।୧୭୪
ନିଦ୍ରାରେ ଅଚେତନ ହୋଇଥିଲି ମୁହିଂ
ପୁରଂଜନ ପଣ୍ଡା ହାଥେ ଲଗାଇ ଦିଲେ ଜୁଇ ।୧୭୫
ତହିଂ ଉତୁରିଲୁ ହରି ତୋହୋର ପୁଣ୍ୟବଳେ
ଆରେକ ଗୁଣ ତାର କହଇ ମୁଂ ଭଲେ ।୧୭୬
ଯେତେବେଳେ ପାଣ୍ଡୁବାସୁର ଦ୍ରିଯୋଧନକଇଂ ନେଲା
ଯେହି ଯୁଝେଷ୍ଟିଂକ ଅଙ୍ଗରେ ଦୟା ଯେ ବସିଲା ।୧୭୭
ଦାନବ ମାରି ତାକୁ ଆଣିଲୁ ଛଡ଼ାଇ
ଆମ୍ଭର ଉପକାରୀ ଅଟଇ କୁରୁସାଇଂ ।୧୭୮
କପଟ ପଶା ରୀତି ଜାଣିଛତ ସମସ୍ତେ
ଦ୍ରୋପଦୀଂକି ଅପମାନ ଝିଂଘାସମାନ କଲେ ଯେତେ ।୧୭୯
କାହାର ବେଳେ ସହି ହୁଅଇ ଦେହ ବହି
ଆମ୍ଭର ଆଗେ ଦ୍ରୋପଦୀଂକି ଉଲଗ୍ନ କଲେ ନେଇ ।୧୮୦

ଆମ୍ଭନ୍ତ ବସାଇଲେ ଆସ୍ଥାନର ତଳେ
ଯେମାନ ସମସ୍ତ ତ ଦେଖୁଛ ବେନି ଡୋଳେ ।୮୧
ପଶାରେ ଘେନିଲେ ସେ ରାଜ୍ୟ ସିଂଘାସନ
ଦ୍ୱାଦଶ ବରଷ ଆମ୍ଭେ ଗଲୁଂ ଘୋରବନ ।୮୨
ବନକୁ ଗଲାବେଳେ ପାମର ଧୁଶାସନ
ସମସ୍ତ ଛଡ଼ାଇନେଲା ଆମ୍ଭ ଆୟେ ଅଳଂକାରମାନ ।୮୩
ଆମ୍ଭେ ନିରାଶ ହୋଇ ପଶିଲୁ ଘୋର ବନ
ସମ୍ପଦ ଦେଖାଇ ଗଲା କାମ୍ୟେକ ନାମେ ବନ ।୮୪
ତହିଂରେ ଯେତେ ପୁଣ କଷଣ ପଡ଼ିଲା
ଅର୍ଜୁନର ପ୍ରସାଦେ ଜୀବନ ପାଇଲା ।୮୫
ହରି କହନ୍ତେ ନ ସରଇ ସେ ବନର ବେବସ୍ଥା
କାହା ଆଗରେ କହିବି ଯେ କଷଣ ଦିଲା ଧାତା ।୮୬
କାନ୍ଧରେ ଚକ୍ର ଭାର ହରିଗୋବିନ୍ଦର ମୁଣି
କରେଣ ତମ୍ବା ପାତ୍ର, ପୁସ୍ତକ, ଭିକ୍ଷା ପ୍ରାର୍ଥନା ଯେ ନ ଜାଣି ।୮୭
ଅଖାଇଜ ଖାଇଜ କରି ଉପବାସେ ବଞ୍ଚିଲାଉଂ ଦିନ
ବିରାଟ ରାଜ୍ୟେ ନପୁଂସକ ହୋଇଥିଲା ଯେ ଅର୍ଜୁନ ।୮୮
ଛତ୍ରୀ ବୃତ୍ତି ଛାଡି ହୀନ ବୃତ୍ତି ହୋଇଲୁଂ ବିବାଦେ
ସମସ୍ତ ବୁଡ଼ାଇଲୁ ଯେକା କଉରୋବଂକ ପରସାଦେ ।୮୯
ଆଦ୍ୟହୁଂ ଯୁଦ୍ଧେ ନିସତ ଅଟେ ସର୍ବସାଚୀ
ଶ୍ରୀ ସମ୍ପଦ ପରକୁ ଦେଇ ବନ୍ଧୁପଣ ରଖୁଅଛି ।୯୦
ମୋତେହେଂ ଆଗ୍ୟାଂ କି ଦେବୁ ତୁ ଶ୍ରୀହରି
କରିବି ସମର ଯେ ଭୀଷ୍ମ ଦ୍ରୋଣଂକଇଂ ମାରି ।୯୧
ଗୋବିନ୍ଦ ବୋଇଲେ ତୁ ଶୁଣ ବ୍ରିକୋଦର
ପ୍ରଥମ ଯୁଦ୍ଧ ହୋଉ ଧୁଶାସନର ଉପର ।୯୨
ଆହୋ ନାରାୟଣଂକ ବଚନେ ସେ କାଳଦଣ୍ଡ ପାଣି
ଅଧରେ ଦନ୍ତ ଚାପି ଉଠିଲା ରାଗେଣ ଶିର ଝୁଣି ।୯୩
ତମ୍ବା ଚକ୍ର ପ୍ରାୟେ ସେ ବୁଲାଇ ବେନି ଡୋଳା
ଭୀଷ୍ମ ରୂପ ବିକାଶିଲା ଗଗନ ମଣ୍ଡଳା ।୯୪
ବ୍ରହ୍ମାଣ୍ଡେ ଘୋଟି ଉସର୍ଗ ତାହାର କାୟା ଆକାଶେ ଲାଗିଲା ମୁଧୂନା
କାଳଯମ ସାରିଷେ ଜାଣି ଦିଶଇ ଭୀମସେନ ଜେନା ।୯୫
ନନ୍ଦିଘୋଷ ରଥ ପଛେଣ ଯେ କାଳଦଣ୍ଡଧାରୀ
ଦେଖୁଣ କଉରୋବେ ରଥନ୍ତ ଅପସରି ।୯୬
ରଥ ଗଜ ଅଶ୍ୱ ଭାଙ୍ଗି ପଳାନ୍ତି ସଇନି ଲେଉଟି
ରଥୀ ସାରଥି ଯୋଦ୍ଧାମାନେ ବୁଜିଲେ ସର୍ବେ ଦୃଷ୍ଟି ।୯୭
ଯୁଝେଷ୍ଟି ଦେବ ବୋଇଲେ ରେ ରହ ରହ ଭୀମା
ଧୃତିରାଷ୍ଟ୍ରଂକୁ ଦେଖନ୍ତେ ତାର ଦୋଷ କରିବା ଯେ କ୍ଷମା ।୯୮
ବଦନ୍ତି ସୁବାକ୍ୟେ ସେ ଯୁଝେଷ୍ଟି ଦେବ ଧର୍ମେ
ସଂସାରକୁ ସାକ୍ଷୀ କରି ପଶିବା ସଂଗ୍ରାମେ ।୯୯
ବନସ୍ତେ ବୁଲି ବୁଲି ଅନେକ କଷ୍ଟ ହାଦେ ସହିଲି
ଧୃତିରାଷ୍ଟ୍ରକଇଂ ଦେଖନ୍ତେ ସମସ୍ତ କଥା ପାସୋରିଲି ।୧୦୦
ବାରୁଣାବନ୍ତେ ଆସି ହୋଇଲୁ ପ୍ରଥମେ
ମଧ୍ୟସ୍ଥ ହୋଇ ଦୂତପଣେ ଗଲେ ଦେବ ମୁନି ଧଉମ୍ୟେ ।୧୦୧
ତାହାଂକ ବଚନ ସେ କଲା ଉପହାସେ
ଧଉମ୍ୟ ପୁରୋହିତଂକୁ ତହିଂ କଲା ଅନେକ ଯେ ରୋଷେ ।୧୦୨
ଦୁଜେଣ ମଧ୍ୟ ପାତ୍ର ଯେ ହୋଇଲେ ବିଦୁରେ
ସେ ଲଜ୍ଜା ପାଇଲେ ଯେ କଉରୋବ ସଭାରେ ।୧୦୩
ତିଜେଣ ମଧ୍ୟସ୍ଥ ତୁ ଆପଣେ ଜନାର୍ଦ୍ଦନ
ଜଗତବଲ୍ଲଭ ନାଥ ପାଇଲୁ ଅପମାନ ।୧୦୪
ତୋର ଅପମାନେ ହରି ସମର କଲଇଂ ଇଚ୍ଛା
ମାରିବି କଉରୋବ ବଳ ଆଜ କେ କରୁ ତାଂକୁ ରକ୍ଷା ।୧୦୫
ସ୍ୱାମୀ ଲକ୍ଷେକ ନୃପତି ବିଜେ ଓହୋବଳେ
ସବୁନ୍ତି ହିଂ ବୁଝି ମୁଂ ଆସିବି ଯେତେବେଳେ ।୧୦୬
ମାନଗୋବିନ୍ଦ ସୋଦର ନୋହୋଇ କି ଆମ୍ଭର ଯୁଗତେ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଭୂରିସର୍ବା ଆବର ସୋମଦତ୍ତେ ।୧୦୭
ବିଜେ କରିଛନ୍ତି ଚାରିଦିଗର ରାୟେ
ମଧ୍ୟରେ ଦ୍ରିଯୋଧନ ଯେ ଆରୋହି ହାଥୀୟେ ।୧୦୮
ମୁହିଂ ଆପଣେ ଯିବି ମାନଗୋବିନ୍ଦ ତହିଂକି
ପଡ଼ା ପାଞ୍ଚଖଣ୍ଡି ତାଂକୁ ମାଗଇଂ କିନା ଦେଖି ।୧୦୯
ଅଭ୍ୟର୍ଥୀଲା ପ୍ରାୟେ କରି ମାଗିବଇଂ ପଞ୍ଚଗ୍ରାମ
ଗ୍ରାମ ନ ଦିଲେ ନିଚୟେ ହୋଇବ ସାଂଗ୍ରାମ ।୧୧୦
ଗୋବିନ୍ଦ ବୋଇଲେ ସ୍ୱାମୀ ନୋହୋଇଟି ଯେମନ୍ତ
ନ ପୁଣ ମାନଗୋବିନ୍ଦ ପ୍ରମାଦ ଚିନ୍ତଇ ତୁମ୍ଭନ୍ତ ।୧୧୧
ଭୀମ ବୋଇଲା ଦ୍ରିଯୋଧନ ପାଶେ ଗଲେ
ଚକ୍ଳିଣ ଗଦାବର ପିଟିବ ଅନ୍ତରାଳେ ।୧୧୨
ଭୀମ ଅର୍ଜୁନ ନକୁଳ ସହଦେବ ବୋଲନ୍ତି ଯୋଡି ବେନି ପାଣି ।
ପ୍ରମାଦ ପଡ଼ିବଟି ନ ଯାଅ ନୃପମଣି ।୧୧୩
ବିରାଟ ଦ୍ରୁପଦ ଧୃଷ୍ଟ ଯେ ଦ୍ୟୁମନ
କାହାରି ବୋଲ ନ କଲେ ଧର୍ମଂକ ନନ୍ଦନ ।୧୧୪

ସମସ୍ତଂକ ବୋଲ ଯୁଝେଷ୍ଠି ଦେବ ମେଣ୍ଡି
ଆପଣେ ବିଜେ କଲେ ଧର୍ମରାୟେ ଯୁଝେଷ୍ଠି ।୧୧୫
ଶ୍ୱେତ ହାଥୀ ରଥ ଅଶ୍ୱ ସକଳ କରି ତେଜ୍ୟା
ଶ୍ରୀଭୁଜେ ରତ୍ନମାଳା ଘେନି ପାଦେ ଗମନ୍ତି ଧର୍ମରାଜା ।୧୧୬

**

## ୮୫. କୌରବ ସୈନ୍ୟମଧକୁ ଯୁଧିଷ୍ଠି ଦେବଙ୍କର ଯୁଦ୍ଧ ବିରତି ପାଇଁ ଗମନ

ପାଣ୍ଡବ ବଳ ତେଜି ପଛିମ ମୂରତି
ଧୀରେ ଧୀରେ ଚଳନ୍ତି ଯୁଝେଷ୍ଠି ମହୀପତି ।୧
ଯୁଝେଷ୍ଠି ଦେବଂକର ଗବନ ହାଦେ ଦେଖି
ଭୀଷ୍ମ ଦ୍ରୋଣ ଭୂରିସର୍ବାୟେ ରଥନ୍ତ ଉପେକ୍ଷି ।୨
ଛାଡିଲେ ଛତ୍ରୀବୃନ୍ଦ ଶହସ୍ର କଲେ ତେଜ୍ୟା
ଦେଖିଣ ବିରସ ଯେ ହୋଇଲା କୁରୁରାଜା ।୩
ଭୀଷ୍ମଂକର ଛାମୁରେ ପୁଛଇ ଶକୁନି
କିମର୍ଥେ ବିଶହସ୍ର ହୋଇଲେ ସେନାପତି ତିନି ।୪
ଶକୁନି ଅଗ୍ରତେ କହନ୍ତି ଭୂରିସର୍ବା
କାହାର ତୁଳେ ରହି ଆମ୍ଭେ ସାଂଗ୍ରାମ କରିବା ।୫
ଆରମ୍ଭଇ ହୋଇଲା ନୋହିଲା କାର୍ଯ୍ୟ କିଛି
ସନ୍ଧି କରିବା ନିମନ୍ତେ ଯୁଝେଷ୍ଠି ଆସୁଅଛି ।୬
ସକଳ ରାଜାମାନେ ସୁମରନ୍ତି କରତାର
ଭୋ ଧର୍ମଦେବତା ଯେ କଷଣୁଂ କର ପାର ।୭
ସମସ୍ତ ଚିନ୍ତାମଣି ପ୍ରସନ୍ନ ଶୁଦ୍ଧବେଳା
ବଡ଼ବା ଅନଳ ଭିତରେ ସ୍ୱାମୀ ଯାହାର ନାମ ଭେଳା ।୮
ସ୍ୱାମୀ ସଙ୍ଗତ ଅସଙ୍ଗତକୁ ତୁହି ସେ କରତା
ନିରାକୁଳ ପୁରୁଷ ହୋଇ ସକଳ ଜନ ଚିନ୍ତା ।୯
ଅନୁଗ୍ରହ ନାଥ ମାହେନ୍ଦ୍ର ଯୋଗବେଳେ
ବିବାଦ ଧଂସନ କର ଗୋ ସର୍ବମଙ୍ଗଳେ ।୧୦
ନିରଞ୍ଜନ ପୁରୁଷ ତୁ ଶୂନ୍ୟେ ଶବଦ ପୂରି
ଶୟଳେ ଅଦୃଶ୍ୟ ଶବଦକୁ ଯାଉ ଭାବି କରି ।୧୧
ଜଳଦ ମେଦୁର ଶୁଦ୍ଧ ସଞ୍ଚିକ ଯାହାର କାୟା
ଅଖିଳ ପୁରୁଷନାଥ ଅଲୋଭୀ ଅମାୟା ।୧୨
ଲୋଭ ମୋହ ସଂସାରକୁ ତୁ ନାଶକର ଦଣ୍ଡା
ମଳୟ ଅନିଳନାଥ ହାଥେଣ ତୋର ଖଣ୍ଡା ।୧୩
ସର୍ବୁଂକରି ବଚନ ଯେ ଯୁଝେଷ୍ଠି ଦେବ ମେଣ୍ଡି
ଆପଣେ ବିଜେକଲେ ଯେ ଧର୍ମରାୟେ ଯୁଝେଷ୍ଠି ।୧୪
ନିର୍ମଳ ପୁରୁଷଂକୁ ମନ ଧ୍ୟାନରେ ତଳୟେ
ଶୂଦ୍ରମୁନି ସାରୋଳାଦାସଂକୁ ଫେଡ ଯମଭୟେ ।୧୫
ସମସ୍ତ ଯୋଦ୍ଧାୟେ ସୁମରନ୍ତି ଧର୍ମ ଧର୍ମ
ନ ପଡୁ ପ୍ରମାଦ ଯେଥେଂ ନୋହୁ ଯେ ସାଂଗ୍ରାମ ।୧୬
ଶକୁନି କହିଲା ମାନଗୋବିନ୍ଦ ଅଗ୍ରତେ
ଯୁଝେଷ୍ଠି ଅଇଲେ ଶରଣ ପଶିବା ନିମନ୍ତେ ।୧୭
ଶୁଣିଣ ହରଷ ଯେ ମାନଗୋବିନ୍ଦ ଚକ୍ରବ୍ରତୀ
ଶରଣ ପଶି ଯେବେ ମାଗିବ ମୋତେ ପୃଥୀ ।୧୮
ଯୁଝେଷ୍ଠି ମାଗିବ ମୋତେ ଯେବେ ଭୁଜତଳେ ଗଳି
ଅର୍ଜିଲା ସମୃଦ୍ଧି ଦେବି ଯେ ପଞ୍ଚ ମହୀସ୍ଥଳୀ ।୧୯
ସୁଖେଣ ଯୁଝେଷ୍ଠି ଭୋଗକରୁ ଓହୋବଳ ରାଶି
ଭାଇନ୍ତ ଘେନି ପଛେ ମୁଂ ହୋଇବି ବନବାସୀ ।୨୦
ଦନ୍ତରେ ତିରଣ ଗଳାରେ କୋଠାର ବାନ୍ଧି କରି
ମାଗିଲେ ଦେବି ପଞ୍ଚକଟକ ସତ୍ୟ ସତ୍ୟ ମୋହୋରି ।୨୧
ବାଜିଲା ଢୋଲ ଦମା ଟମକ ନିଶାଣ ମହୁରୀ ଯେ ଭେରୀ
ସମସ୍ତ ତବଦ ହୋଇଲା ଦୁନ୍ଦୁଭି ଆଦି କରି ।୨୨
ଓହୋବଳ ସନ୍ୟ ଥାଠ ତବଦ ହୋଇଅଛି
ମଧୁଭାଣ୍ଡେ ଯେହ୍ନେ ପଡଇ କୀଟ ମାଛି ।୨୩
ଚାଲନ୍ତେ ଧର୍ମ ନନ୍ଦନ ବିକ୍ରମସିଂଘ ଠାଣି
ଜଗୁଜନ ମୋହନ କନ୍ଦର୍ପ ଷୋଳକଳା ଜାଣି ।୨୪
ଶ୍ରୀଭୁଜେ ଜୟ ମାଳା ଘେନିଣ ଯୁଝେଷ୍ଠି
ପ୍ରଥମେ ମହାରଥୀ ଭୀଷ୍ମଂକୁ ଯାଇଂ ଭେଟି ।୨୫
ଗଂଗାଂକ ନନ୍ଦନଂକୁ ପାଦ୍ୟ ଅର୍ଘ ଦେଇ
ଯୁଝେଷ୍ଠି ପଣପତ୍ୟ କଲେକ ବିନୋୟୀ ।୨୬
ଭୀଷ୍ମେ ବୋଇଲେ ତୋର ମନୋବାଞ୍ଛା ସିଦ୍ଧ ହୋଉ
ଆମ୍ଭର ଆଷ୍ୟ ଘେନି ବ୍ରତ ଶତ୍ରୁ କ୍ଷୟେ ଯାଉ ।୨୭
ହସ୍ତିନା ଜଇନ୍ତା ଇନ୍ଦ୍ରପ୍ରଶସ୍ତ ଯମପ୍ରଶସ୍ତ ବାରୁଣାବନ୍ତ
ଯେ ପଞ୍ଚ କଟକେ ହୁଅ ତୁ ଯେକ ଛତ୍ର ।୨୮
ଭୀଷ୍ମଂକ ମୁଖରୁ ଯେସନକ ବାକ୍ୟ ଶୁଣି
ଧର୍ମସୁତ କହନ୍ତି ଯେ ପ୍ରତିବାକ୍ୟ ବାଣୀ ।୨୯
ଦିନକରନାଥ ଯେବେ ଉଇଂବ ପଛିମେ
ସମୁଦ୍ର ମହୀ ଯେବେ ଲଂଘିବ ଉତକର୍ମେ ।୩୦

ଗଙ୍ଗାର ଭିତରେ ଯେବେ ପାଷାଣ ହୋଇବ ଭେଳା
ପର୍ବତ ଉପରେ ଯେବେ ଫୁଟିବ କମଳା ।୩୧
କଳିଯୁଗ ସତ୍ୟଯୁଗ ଯେବେ ଭେଟ ଯେ ହୋଇବ
ତଥାପି ବଚନ ମହତଂକ ନ ଟଳିବ ।୩୨
ଭୋ ଦେବ ବୋଇଲ ପଞ୍ଚୁକଟକେ ହୁଅ ଯେକ ଛତ୍ରୀ
ତୋହୋର ବଚନ ନାଥ ମୋତେ ନୋହିବ ଅନୀତି ।୩୩
ଯେ ମୋହୋର ଶତ୍ରୁ ତ ଅଟଇ କୁରୁପତି
ତାହାକୁ ଆବୋରି ତୁ ହୋଇଲୁ ପ୍ରଥମେ ସେନାପତି ।୩୪
ପ୍ରଶୁରାମ ଜିଣିମାକୁ ସମରଥ ଅଟୁ ତୁ
ଯେ ମୃତୁମଣ୍ଡଳେ ତ ତୋହୋର ଇଚ୍ଛାମୃତୁ ।୩୫
ଯେ ସମର ମଧ୍ୟେ ଯେବେ ନ ପଶିବୁ ପିତା
ତେବେ ରାଜ୍ୟ କରି ହୋଇବି ଶତ୍ରୁଜିତା ।୩୬
ବଦନ୍ତି ଗାଙ୍ଗେବେ ହୋ ନୋହଇ କଦାଚିତେ
ଯେତେବେଳେ ଦ୍ରିଯୋଧନକୁ ଛାଡିବି କେମନ୍ତେ ।୩୭
ଯେ ମୋର ବାହୁକୁ ସେ କରିଅଛି ଆଶ
ଯେତେବେଳେ ଛାଡିଲେ ଯେ ଧର୍ମ ଯିବ ନାଶ ।୩୮
ଯୁଝେଷ୍ଟି ବୋଇଲେ ତୁ ତ ନ ଛାଡିବୁ ଦ୍ରିଯୋଧନକୁ
ମୁହିଂତ ସାମରଥ ତୋତେ ନୋହଇ ଜିଣିମାକୁ ।୩୯
କେମନ୍ତେ ରାଜ୍ୟ ମୋତେ ହୋଇବ ପରାପତ
ତୋତେ କେମନ୍ତେ ଜିଣିମି ପିତା ସରୂପ କହତ ।୪୦
ଯୁଝେଷ୍ଟିଂକ ବଚନେ ବଦନ୍ତି ଗାଙ୍ଗେବ
ଆମ୍ଭର କଲ୍ୟାଣ କି ଅନ୍ୟଥା ହୋଇବ ।୪୧
ଆମ୍ଭେ ଯେ ମୁକୁଟ ବାନ୍ଧି ହୋଇବୁ ସେନାପତି
ଦଶଦିନ ପରିଯନ୍ତେ ଆମ୍ଭେ ହୋଇବୁ ଯେକ ଛତ୍ରୀ ।୪୨
ଦିନକେ ମାରିବୁ ଆମ୍ଭେ ଦଶସହସ୍ର ରଥୀ ଯୋଧୀ
ଦଶଦିନ ପରିଯନ୍ତେ ରକ୍ଷାକର ତୋର ଥିଲେ ବୁଦ୍ଧି ।୪୩
ଦଶଦିନ ଅନ୍ତରେ ଶ୍ରୀଖଣ୍ଡିକି ଆଗ କରି
ତାକୁ ଦେଖିଲା ମାତ୍ରକେ ଶହସ୍ର ଛାଡିବୁଂ ସତ୍ୟ ସତ୍ୟ
ମୋହୋରି ।୪୪
ଦଶଦିନ ସମରେ ରକ୍ଷାହିଂ ହୋଇଲେ
ଜିଣନ୍ତା ନାହିଂ ତୁକୁ ଯେ ତିନି ଶୟଳେ ।୪୫
ଭୀଷ୍ମଂକ ଦୃଢ଼ବାକ୍ୟ ଶୁଣିଣ ଧର୍ମରାୟେ
ସାନନ୍ଦ ଚିତ୍ତେଣ ତହୁଂ କରନ୍ତି ବିଜୟେ ।୪୬
ତାହାଂକ ଡାହାଣ ପାରୁଶେ ଅଛନ୍ତି ଭୂରିସର୍ବା
ତାହାଂକୁ ନମସ୍କାର କରନ୍ତି ଯୁଝେଷ୍ଟି ଧର୍ମଦେବା ।୪୭
ତାହାଂକୁ ପାଦାର୍ଘ ଦେଇ ଶତେକ ଦଣ୍ଡ ପରିମାଣି
ପରମ କଲ୍ୟାଣ ବାଞ୍ଛନ୍ତି ଯେ କଉରୋବକୁଳ ସ୍ୱାମୀ ।୪୮
ବାବୁ ବାଞ୍ଛା ସିଦ୍ଧ ହୋଉ ଆମ୍ଭର ଆଷ୍ୟ ଘେନି ବ୍ରତ
ଶତ୍ରୁ ମାରି ଯେ ପଞ୍ଚୁକଟକେ ହୋଅ ଯେକଛତ୍ର ।୪୯
ଯୁଝେଷ୍ଟି ବୋଇଲେ ତୁ ଅଟୁ ଅକାଗୁରୁ
ଇନ୍ଦ୍ର ଶଂକା କରଇ ଯାହାର ଧନୁ ଧରୁ ଧରୁ ।୫୦
କଉରୋବକୁଳକୁ ତୁ ସମରେ କରୁ ରକ୍ଷା
ତୋତେ ନ ଜିଣିଲେ କେମନ୍ତେ ମୋର ପୂରିବ ମନୋବାଞ୍ଛା ।୫୧
ସ୍ୱାମ ତୋହୋର ସହୋଦ୍ର ଭ୍ରାଥ ଅଟନ୍ତି ଶାୟେନ୍ତନୁ
ସ୍ୱର୍ଗେ ଭାଗ୍ୟବର ଦିଲେ ତୋତେ ଆଦ୍ରାବଳୀ ଧନୁ ।୫୨
ତ୍ରଇଲୋକ୍ୟ କମ୍ପଇ ନାଥ ତୋହୋର କୋପ କଲେ
ତୋତେ ବିନାଶ କରିତ ହୋଇବ କାହାର ବେଳେ ।୫୩
ମୋତେ ସାଖୀ ନୋହିବୁ କୁରୁପତିକି ନ ଛାଡିବୁ
କେମନ୍ତେ ପଞ୍ଚୁ କଟକେ ରାଜା ତୁ କରାଇବୁ ।୫୪
ଭୂରିସର୍ବାୟେ ବୋଇଲେ ଭୀଷ୍ମଂକର ଯେ ଦଶଦିନ ସମରେ
ଯେ ଯୁଦ୍ଧେ ସମର ନାହିଂ ନା ଆମ୍ଭରେ ।୫୫
ତୋହୋର ନିମନ୍ତେ ଭୀଷ୍ମେ କରିବେ ଶରଶଯ୍ୟା
ତଦନ୍ତେ ସେନାପତି ହୋଇବେ ଭାରଦ୍ୱାଦଶଂକ ଆଦ୍ଧ୍ନା ।୫୬
ଦ୍ରୋଣଂକ ପ୍ରଥମ ଯୁଦ୍ଧରେ ପଡ଼ିବେ ଅନେକ ରାୟେ
ଦୁକେ ଶକଟ ଭୂୟେ ପଡ଼ିବ ସିନ୍ଧୁରାଜାର ତନୟେ ।୫୭
ସେ ଶକଟ ଭୂୟେ ଆମ୍ଭେ ଯେ ଚତୁର୍ଥ ଦ୍ୱାରେ ଥିବୁ
ସାତୁକୀ ହାଥେ ଆମ୍ଭେ ଶିର ଛେଦନ ହୋଇବୁଂ ।୫୮
ଭୂରିସର୍ବାଂକ ମୁଖୁଂ ଯେସନେକ ବାକ୍ୟ ଶୁଣି
ଯୁଝେଷ୍ଟିଂକ ଲୋଚନୁଂ ବହଇ ଅଶ୍ରୁଜଳ ପୁଣି ପୁଣି ।୫୯
ଭୂରିସର୍ବାୟେ ଯୁଝେଷ୍ଟିଂକି ଧଇଲେ କୋଳ କରି
କ୍ରୋଧ ଛାଡ ବାବୁ ତୁ ଯୁଝେଷ୍ଟି ଦଣ୍ଡଧାରୀ ।୬୦
ବାବୁ ଆକାଶର ଭୋଗ ସରଇ ଯେତେବେଳେ
ମନୁଷ୍ୟ ହୋଇ ଜନ୍ମ ହୋଅଇ ସେ ଯେ ମୃତୁ ମଣ୍ଡଳେ ।୬୧
ରାଗ ମୋହ କ୍ରୋଧ ହିଂସା ଅପବାଦ ଅହଂକାର କରି
କୁଟୁମ୍ବ ପୋଷଣ କରି ସର୍ବ ଧର୍ମ ଅପହରି ।୬୨
ଯେ ମୃତୁ ମଣ୍ଡଳେ ଜାତ ହୋଇଲେ ଅବଶ୍ୟ ହାଦେ ମରି
ପୁଣ୍ୟେଣ ବ୍ରତିଲୁ ଆମ୍ଭେ ବରଷ ସସ୍ର ଚାରି ।୬୩
ଅବଶ୍ୟ ମୃତୁ ଆମ୍ଭେ ଲଭିଲୁ ଯୁଗତେ
ଅତି ଭାଗ୍ୟେ ସେ ଭାରତ ଯୁଦ୍ଧେ ମୃତୁହିଂ ପ୍ରାପତେ ।୬୪

ହନୁମନ୍ତ ଗରୁଡ଼ଧ୍ୱଜ କପିକେତନ ଚିହ୍ନ
ନନ୍ଦିଘୋଷ ରଥରେ ଶ୍ରୀ ଜଗନ୍ନାଥଂକର ଦେଖିବା ବଦନ ।୧୬୫
ବଡ଼ାଇ ପବିତ୍ର ସେ ଯେ କୁରୁକ୍ଷେତ୍ର ଭୂମି
ଯେ ସ୍ଥାନେ ମୃତ୍ୟୁ ହୋଇଲେ ହୋଇବୁ ସ୍ୱର୍ଗଗାମୀ ।୧୬୬
ପୁଷ୍ପେକ ଚଢ଼ିଣ ଲଭିବା ଦେବ ସ୍ଥାନେ
ମୋକ୍ଷ ହେବା ଦେଖି ଶ୍ରୀଜଗନ୍ନାଥଂକ ଶ୍ରୀମୁଖ ଦରଶନେ ।୧୬୭
ଭୂରିସର୍ବାୟେ ବୋଇଲେ ତୁ ଅବଶ୍ୟ ଆମ୍ଭନ୍ତ ବଧିବୁ
ଯେହାଉଂ ସୁଲଭ କାହୁଂ ପାଇବୁ କିରେ ବାବୁ ।୧୬୮
ଭୂରିସର୍ବାଂକ ଠାରୁ ଯେସନେକ ଦୃଢ଼ ବାକ୍ୟ ଶୁଣି
ତହୁଂ ଚଳିଗଲେ ଯୁଝେଷ୍ଟି ଦେବ ନୃପମଣି ।୧୬୯
ବିନାଶ କାଳେ ଦେଖ ନାଶନ୍ତ ବୁଦ୍ଧି ମୋର
ରାଜ୍ୟ ଛାର ପାଇଂତ ହୋଇବ ସମର ।୧୭୦
ମନେ ବିଚାରନ୍ତି କର୍ମେ ମୋ ଯାହା ଅଛି
ବିଧାତା ଆଣି ତାହା ମୋତେ ବଳେ ଘଟାଉଅଛି ।୧୭୧
ଭୋ ବିଧାତା ପୁରୁଷ ମୁଂ ଲଗଇଂ ତୋ ପୟରେ
ଥରେ ବସତୁ ହୋ ମାନଗୋବିନ୍ଦ କଣ୍ଠରେ ।୧୭୨
କଣକକ୍ଷେ ଦେଉ ପଡ଼ା ଯେ ଖଣ୍ଡିୟେ
ନୋହୁ ନୋହୁ ଯୁଦ୍ଧ ବଂଶ ହେବ କ୍ଷୟେ ।୧୭୩
ମାନଗୋବିନ୍ଦକୁ ମାଗିବି ମୁଂ ଗ୍ରାମ
ନ କରିବ ନାସ୍ତିଟି ବୋଲନ୍ତି ଧର୍ମ, ଧର୍ମ ।୧୭୪
ଯେମନ୍ତ ବିଚାରନ୍ତେ ଭେଟିଲେ ରାୟେଗୁରୁ ଶଲ୍ୟ
ବିଜୟେ ଭାରତ ଯୁଦ୍ଧରେ ଭାରୋଇ ମହାମଲ୍ଲ ।୧୭୫
ସାକଲ୍ୟ ମଣ୍ଡଳର ସେ ଅଟନ୍ତି ଅଧିପତି
ତାହାଂକ ଚରଣେ ପୂଜା କଲେ ଧର୍ମରାୟେ ନୃପତି ।୧୭୬
ଶଲ୍ୟେ ବୋଇଲେ ରେ ବାବୁ ପରମ କଲ୍ୟାଣ ହୋଉ
ପଞ୍ଚୁ କଟକେ ରାଜା ହୁଅ ସବୁ ଶତ୍ରୁ କ୍ଷୟେ ଯାଉ ।୧୭୭
ଶଲ୍ୟଂକ ବଚନେ ବୋଲନ୍ତି ଯୁଝେଷ୍ଟିଦେବ ଧାଡିକାରେ ଉଠି
ତୋତେ କେମନ୍ତେ ଜିଣିମି ମୁଂ କ୍ଷତ୍ରିୟ ଜଗଜେଠୀ ।୧୭୮
ତୁ ପୁଣ ଅଟୁ ମୋର ସହୋଦ୍ର ମଉଳା
ମାଦ୍ରୀଂକର ଭ୍ରାଥ ପଞ୍ଚୁଂକର ଶଳା ।୧୭୯
ଭୋ ମାତୁଳ କ୍ଷତ୍ରିୟ ବଳବନ୍ତ ତୋତେ ନାହିଂ ସମସରି,
ତୋହୋର ଧନୁ ଧଇଲେ ତ୍ରାସ କରନ୍ତି ଦେବ ହରି ।୧୮୦
ଇଶ୍ୱର କୁବେର ସୁରପତି ତୋତେ ସରି ନୋହନ୍ତି ହାଦେ ଯୁଦ୍ଧେ
ମୁହିଂ କେମନ୍ତେ ତୋତେ ଜିଣିମି ରଣ ମଧ୍ୟେ ।୧୮୧
ଯେ କଉରବ ବଳକୁ ମୁଂ ଯେ ବୁଝଇ ଛାଗଳ ପଲ
ତୁ ସେ ରକ୍ଷ ପାଳେକ ରାୟେ ଗୁରୁ ଶଲ୍ୟ ।୧୮୨
ମୁହିଂ ସେ ସିଂଘ କଉରବେ ଅଟନ୍ତି ଅଜାଯୂଥ
ତୁ ଯେ ରକ୍ଷାପାଳକ ହୋଇ ରହିଅଛୁ ଯେଥ ।୧୮୩
ତୁ ମୋହୋର ମାତୁଳ ମୁଂ ତୋର ଭଗ୍ନିଜା
ମୋହୋର ଥାଠେ ଯେବେ ଯିବା ଚାଲ ଦେବରାଜା ।୧୮୪
ମୋହୋର ଥାଠେ ଯେବେ ହୋଅ ତୁମ୍ଭେ ରାଜା
ପାଞ୍ଚ ଭାଇ ଆମ୍ଭେ ତୋତେ କରିବୁ ପାଦପୂଜା ।୧୮୫
ଶଲ୍ୟେ ବୋଇଲେ ବାବୁରେ ନୋହଇ ଯେମନ୍ତ
ଯେ ଅସମୟ କାଳେ ପ୍ରାଣୀଂକି ଛାଡିବା ନୋହଇ ବିହିତ ।୧୮୬
ମୁଂ ଯେବେ କୁରୁପତିକି ଛାଡିବଇଂ ଯେତେବେଳେ
ଧର୍ମ ରଚ୍ଛିବ କି ଯେ ମହୀ ମଣ୍ଡଳେ ।୧୮୭
ଶଲ୍ୟେ ବାଇଲେ ବାବୁ ନ କର କିଛି ଚିନ୍ତା
ଆମ୍ଭେ କହୁଅଛୁଂ ଶୁଣ ଆଦି ଅନ୍ତର ବାରତା ।୧୮୮
ଖେଳୁଥିଲୁଂ ହୁଡ କରି ବାଲୁତ କୁତୂହୋଳେ
ମହାତୀର୍ଥ ଯେ ଚିତ୍ରୋତ୍ପଳା ନଦୀର କୂଳେ ।୧୮୯
ଫିମ୍ପି ମାରନ୍ତେ ସେ ନଦୀ ହୋୟେ ପାରି
ଫିମ୍ପି ଫୁଟଇ ଯେ ତ୍ରିଶାଖା ନାମେ ଗିରି ।୧୯୦
ଯେସନ ସାଧନ ମୋର ବାଲୁତ କାଳହୁଂ
ଅନୁଷ୍ଟୁପ୍ ବୋଲି ଋଷିଯେକ ମହାପ୍ରଭୁ ।୧୯୧
ସେ ତ୍ରିଶାଖା ପର୍ବତର ଉପର କଇଛାଡେ
ଅନୁଷ୍ଟୁପ ଋଷି ତପ କରନ୍ତି ଅତି ଗାଢ଼େ ବୃକ୍ଷମୂଳେ
ସଂପୋଡେ ।୧୯୨
ଫିମ୍ପି ମାଇଲି ନଦୀ ଦକ୍ଷିଣ ଆଡୁ ଉତ୍ତର କୂଳକଇଂ
ଗିରି ଫୁଟି ଋଷିର ଦେହେ ନିକିଳିଲା ଯାଇଂ ।୧୯୩
ଉତ୍ତାନଶାୟୀ ହୋଇଣ ପଡ଼ିଲେ ବ୍ରହ୍ମଚାରୀ
ଋଷିଂକର ଦେହୁ ରୁଧିର ବହେ ନଦୀ ଯାୟେ ପୂରି ।୧୯୪
ଦେଖିଣ ଆଶ୍ରିଯେ ଡେଇଂ ଗଲି ସେ ନଦୀ ଗୋଟି
ଋଷିଂକ ଦେହରୁ ଯେ ରୁଧିର ବହେ ଫୁଟି ।୧୯୫
ଅନେକ ବଇକୁଲ୍ୟ ମୁଂ ହୋଇଲି ତାହା ଚାହିଂ
ଋଷି ବୋଇଲେ ବାବୁ ମୋହୋର ବର୍ତ୍ତି ନାହିଂ ।୧୯୬
ମୁହିଂ ଯେ ବୋଇଲି ସ୍ୱାମୀ ମୁଂ ବ୍ରହ୍ମହତ୍ୟା ଦୋଷୀ
ଯେଥକୁ ଭୋ ମୁନି ମୋତେ କାରଣ କହସି ।୧୯୭
ଅନୁଷ୍ଟୁପ୍ ବୋଇଲେ ଭାରଥ ଯୁଦ୍ଧର ସମରେ

ତୁହି ସେନାପତି ହୋଇବୁ କଉରବ ଥାଠରେ ।୯୮
ଅଷ୍ଟାଦଶ ଦିନ ଯେ ହୋଇବ ମହାଯୁଦ୍ଧ
ଯୁଝେଷ୍ଟିକ କୋପନ୍ତେ ତୁ ନାଶିବୁ ରଣମଧ ।୯୯
ବ୍ରହ୍ମହତ୍ୟା ଦୋଷ ତୋର ଯେଣୁ ଯିବ ପାର
ଯେ ନ୍ୟାୟୁଂ କରି ଭାରଥ ଯୁଦ୍ଧେ ମୋତେ ଅଛିଟି
ପ୍ରତିକାର ।୧୦୦
ତୁ ଯେହା କିଛି ବିଚାର ନ କର ମହୀପାଳେ
ମୋହୋର କାର୍ଯ୍ୟେ ମୁହିଂ ପଶିଲି ମହାରୋଳେ ।୧୦୧
ସମରେ ମୁହିଂ ଯେ ନାଶ ଯିବଇଂ ତୋହୋର ଯୋଗେ
ବ୍ରହ୍ମହତ୍ୟା ଦୋଷ ପାରି କରି ବସିବଇଂ ଅମର ସ୍ୱର୍ଗେ ।୧୦୨
ଶଲ୍ୟେ ବୋଇଲେ ମୋହୋର କଥାକୁ ନ ଭାଳ ଯୁଝେଷ୍ଟି
କାହାରି କାର୍ଯ୍ୟ ନୋହଇ ଯେ ମୋହୋର କାର୍ଯ୍ୟ ହେଟି ।୧୦୩
ଯୁଝେଷ୍ଟି ପରମ ସାନନ୍ଦ ଶଲ୍ୟଂକ ବଚନେ
ତହୁଂ ଯାଇଂ ବିଜେ କଲେ ଦ୍ରୋଣଂକ ସନ୍ନିଧାନେ ।୧୦୪
ଭାରଦ୍ୱାଦଶଂକ ନନ୍ଦନ କଇଛା ଜଗଜ୍ଜେଠୀ
ପାଦାର୍ଘ ଦେଇଣ ପ୍ରଣମିତ କରନ୍ତି ଦ୍ରୋଣଂକୁ ଯୁଝେଷ୍ଟି ।୧୦୫
ଦ୍ରୋଣେ ବୋଇଲେ ତୋତେ ପରମ କଲ୍ୟାଣ ହୋଉ
ବିଦ୍ୟାଲାଭ ହୋଉ ତୋର ଶତ୍ରୁ କ୍ଷୟେ ଯାଉ ।୧୦୬
ମୁଂ ଯେ ଗୁରୁ ଆମ୍ଭର ଆଇଷ ଘେନି ବ୍ରତ
ଶତ୍ରୁ ମାରି ପଞ୍ଚୁକଟକେ ଧରାଅ ଦଣ୍ଡଛତ୍ର ।୧୦୭
ଯୁଝେଷ୍ଟି ବୋଇଲେ ତୁମ୍ଭେ ମୋହୋର ପରମ ଗୁରୁ
ଯେସନେକ କଲ୍ୟାଣ ଯେବେ ଅଇଲା ତୁମ୍ଭର ଶ୍ରୀମୁଖରୁଂ ।୧୦୮
ତୋତେ ଜିଣିମାକୁ ଆମ୍ଭେ ନୋହୁ ସାମରଥ
ତୋହୋର ବିଦ୍ୟାରେ ସିନା ଆମ୍ଭେ ବୋଲାଇ ବଳବନ୍ତ ।୧୦୯
ତୁତ ଆବୋରିଲୁ ଯେବେ କଉରବମାନଂକୁ
ତୋତେ ଜିଣିଲେ ସିନା ପ୍ରାପତ ରାଜ୍ୟ ମୁକୁ ।୧୧୦
ତୁମ୍ଭନ୍ତ କେମନ୍ତେ ହୋ ଜିଣିମି ଗୁରୁ ଦ୍ରୋଣ
ତେବେ ସେ ପ୍ରାପତ ହୋଇବ ତୁମ୍ଭର କଲ୍ୟାଣ ।୧୧୧
ଦ୍ରୋଣେ ବୋଇଲେ ମୋହୋର ହାଥେ ଶହସ୍ର ଥିଲେ
ଜିଣନ୍ତା ନାହିଂ ବ୍ରହ୍ମା ଈଶ୍ୱର ହୋଇଲେ ।୧୧୨
ମୋତେ ଶହସ୍ର ଛଡ଼ାଇ କେହି ଯେବେ ପାରି
ତେବେ ସେ ଆତ୍ମା ମୋହୋର ହୋଇବ ଅପହାରି ।୧୧୩
ଯୁଝେଷ୍ଟି ବୋଇଲେ ତୁ ଦଣ୍ଡେ ନ ଛାଡିବୁ ଧନୁଶର
ଦିବାରାତ୍ରେ ଧନୁ ଥାଇ ତୁମ୍ଭର ହାଥର ।୧୧୪
ଦ୍ରୋଣେ ବୋଇଲେ ରମଣ ସ୍ନାନ ଭୋଜନର ବେଳେ
କରେ ଶହସ୍ର ମୋ ନ ଥାଇ ଯେ ତିନି କର୍ମକାଳେ ।୧୧୫
ପୁତ୍ର ଅଶସ୍ତମା ଭୁଜେ ବୀର ନେତ ବାନ୍ଧଇ
ସେ ପୁତ୍ର ହତବୋଲି ଶୁଣିଲେ ଶସ୍ତ୍ର ମୁଂ ଛାଡଇ ।୧୧୬
ତୁ ମୋତେ ଯେବେ ମାରିପାରିବୁ ଯେହେନେକ ଚାରିବେଳେ
ନୋହିଲେ ମୋହୋର ମୃତ୍ୟୁ ନାହିଂଟି କହିଲି ଧର୍ମବାଳେ ।୧୧୭
ରମଣବେଳେ ମାଇଲେ ଲିଙ୍ଗଭଗ୍ନ ଦୋଷ
ତିରଣ ପ୍ରମାଣେ ଯମ କାଟଇ ତାର ମାଂସ ।୧୧୮
ସ୍ନାହାନର ବେଳେ ଯେବେ ମାରିବ ବ୍ରାହ୍ମଣ
କୋଟିଯେ ଯୁଗ ଥିବ ସେ ରଉରବ ନର୍କେଣ ।୧୧୯
ଭୋଜନର ବେଳେ ଯେବେ ମାରିବ ନିରାଶି
ବ୍ରହ୍ମହତ୍ୟା ପାତେକୀ ଯେ ହୋଇବ ମହାଦୋଷୀ ।୧୨୦
ବାବୁ ଅଶସ୍ତମା ତ୍ରିଜୀବୀ ସେ ନ ମରେ କେବେହେଂ
ନାହିଂଟି ଜିଣନ୍ତା ମୋତେ କହିଲି ସନ୍ଦେହେ ।୧୨୧
ଯୁଝେଷ୍ଟିର ହରଷ ପାଇଣ ମୃତ୍ୟୁଭେଦ
ଅଶସ୍ତମା ହତେ ଦ୍ରୋଣଂକୁ ପଡ଼ିବ ପ୍ରମାଦ ।୧୨୨
ଯେହା ଶୁଣି ଯୁଝେଷ୍ଟିର ତହୁଂ ଚଳିଗଲେ
ଅଶସ୍ତମା ପାଶେ ଯାଇଂ ପ୍ରବେଶ ହୋଇଲେ ।୧୨୩
ଅଶସ୍ତମା ଚରଣେ ଯେ ଯୁଝେଷ୍ଟି ପରିଣାମି
ଅନେକ କଲ୍ୟାଣ କଲେ ମହରଷି ଦେବ ସ୍ୱାମୀ ।୧୨୪
ଅଶସ୍ତମା ବୋଇଲେ ଆୟୁଷ ବର୍ଦ୍ଧିତ ଯେ ହୋଉ
ଶତ୍ରୁ ମାରି ରାଜ୍ୟକର ତୋତେ ଜିଣନ୍ତା କେହି ନୋହୁ ।୧୨୫
ବାବୁ ଶତ୍ରୁ ମାରି ପଞ୍ଚୁକଟକେ ହୋଅ ତୁମ୍ଭେ ରାଜା
ପୃଥୀରେ ଶ୍ରେଷ୍ଠ ହୋଅ ତୁ ମହତ ବିଡ଼ୋଜା ।୧୨୬
ଯୁଝେଷ୍ଟି ବୋଇଲେ ଯେବେ ଅନୁଗ୍ରହ କଲୁ ମୋତେ
ଯେ କୁରୁ ସାଗରେ ତୋତେ ମୁଂ ଜିଣିମି କେମନ୍ତେ ।୧୨୭
କଳ୍ପିକୟା ଯୋଦ୍ଧା ଅଟୁ ତୁ କ୍ଷତ୍ରିୟ ତ୍ରିଜୀବୀ
ତୋତେ ନ ଜିଣିଲେ କେହ୍ନେ ରାଜ୍ୟ ମୁଂ ପାଇବି ।୧୨୮
ଅଶସ୍ତାମା ବୋଇଲେ ଜଗନ୍ନାଥେ ଯାର ସଖା
ଜାଣି କୁରୁପତିକି ହରି କଲେଣି ନିରେଖା ।୧୨୯
ମୋତେ କୁରୁପତି ଯେବେ କରନ୍ତା ସେନାପତି
ଯେତେବେଳ ପରିଯନ୍ତେ ଥାଆନ୍ତ କି ବ୍ରତି ।୧୩୦
ଦ୍ରିଯୋଧନ ବୋଇଲା ତୁ ମରଣକୁ ଭୟେ କଲୁ
ଛତ୍ରୀ ହୋଇ ନିସତେ ତ୍ରିଜୀବୀ ବର ଯେ ମାଗିଲୁ ।୧୩୧

କରଛାବନ୍ତ ରାଜା ସେ ମାନ ଯେ ଗୋବିନ୍ଦ
ମୋତେ ସେନାପତି ସେ ନ କଲା ଦୁଷ୍ଟ ମନ୍ଦ ।୧୩୨
ବାବୁ ଥିଲେ ଥିଲି ଗଲେ ଗଲି ଯେ ମୋହୋର ଇଚ୍ଛା
ପଞ୍ଚୁକଟକ ଭୋଗକରି ତୋର ପୂରୁ ମନୋବାଞ୍ଛା ।୧୩୩
ଅଶ୍ୱତ୍ଥମାଂକ ପାଶେ ଅଛନ୍ତି କୃପାଚାର୍ଯ୍ୟେ
ତାହାନ୍ତ ପ୍ରଣପତ୍ୟ ଯୁଝେଷ୍ଟି ରାଜ ଦେବେ ।୧୩୪
କୃପେ କଲ୍ୟାଣ କଲେ ପୂରୁଂ ତୋ ମନୋବାଞ୍ଛା
ଶତ୍ରୁ ମାରି ଯେ ପଞ୍ଚୁ କଟକ ଶୁଭେ କର ରକ୍ଷା ।୧୩୫
ଯୁଝେଷ୍ଟି ବୋଇଲେ ତୁମ୍ଭେ ସୁଗ୍ୟଂ ବ୍ରାହ୍ମଣ ହୋଇ
ସମରେ ପଶିଲ କିମ୍ପେ ଶ୍ରୀବତ୍ସ ଚିହ୍ନ ବହି ।୧୩୬
ବିଶେଷେ ଦ୍ରୋଣଂକ ଶଳା ତୁମ୍ଭେ ଆମ୍ଭର ମଉଳା
ଚାରି ବେଦ ଛଡ଼ ଶାସ୍ତ୍ରେ ମଣ୍ଡେଣ ଅଚର୍ଗଳା ।୧୩୭
ଶସ୍ତ୍ର ଧରି ସମରେ ପଶିଲେ ଯେଣେ ହେବ ବଡ଼ ଦୋଷ
ତୁମ୍ଭନ୍ତ ନାଶ କଲେ ଅପାର ଅପଯଶ ।୧୩୮
କୃପେ ବୋଇଲେ ବାବୁ ତୁମ୍ଭେ ଯେ ବ୍ରାହ୍ମଣ
ବ୍ୟାସଂକର ନାତି ତୁମ୍ଭେ ଅଟ ଯେ ଆପଣ ।୧୩୯
ସୋମବଂଶ ତୁମ୍ଭର ଅଟନ୍ତି ରାଜଋଷି
ବ୍ରାହ୍ମଣ ହୋଇ ତୁମ୍ଭେ ସାଂଗ୍ରାମେ କିମ୍ପେ ପଶି ।୧୪୦
ଆଦି ଛତ୍ରୀ ବ୍ରାହ୍ମଣ ଯେ ଅଟନ୍ତି ଦେବ ପ୍ରଶୁରାମେ
ଯେକବିଂଶ ବାର ଛତ୍ରୀଂକି ମାଇଲେ ସାଂଗ୍ରାମେ ।୧୪୧
ଚାରି ଦିଗର ଛତ୍ରୀ ମାରି ହୋଇଲେ ମହାରାଜା
ଧର୍ମ ବଳେଣ ସେହୁ ଯେ ପାଳିଲେ ଜନ ପ୍ରଜା ।୧୪୨
ଯେସନେକ ବଚନ କହିଲେ ବ୍ରହ୍ମ କୃପେ
ଆମ୍ଭନ୍ତ ଚିନ୍ତା ନ କର ତୁମ୍ଭେ ଯୁଝେଷ୍ଟି ଦେବ ନୃପେ ।୧୪୩
ସମର ଭୂମି ବାବୁ ରେ ଅଟଇ ଯଗ୍ୟଂ ସ୍ଥାନ
ଯେଥକୁ ଆଚାର୍ଯ୍ୟ ଆମ୍ଭେ ବ୍ରହ୍ମା ବିଦ୍ୟମାନ ।୧୪୪
ଯେଥକଇଂ ଚିନ୍ତା ନ କର ହୋ ଧର୍ମ ରାୟେ
ପ୍ରାଣୀ ନାଶ ଯାଆନ୍ତି କି ଧୋଣ୍ଡୋଅ ସର୍ପ ଘାୟେ ।୧୪୫
କୃପକୁ ତେଜ୍ୟା କରି ଚଳନ୍ତି ଯୁଝେଷ୍ଟି ।
କରେଣ ଅର୍ଘ୍ୟ ଘେନି କର୍ଣ୍ଣକୁ ଯାଇଂ ଭେଟି ।୧୪୬
ପାଦାର୍ଘ୍ୟ ଦେଇଣ ଯେ ବିନୟ ଭଗତି
କର୍ଣ୍ଣ ରାଜା କଲ୍ୟାଣ କଲା ଯଥା ଯେ ସୁଗତି ।୧୪୭
ଧନ ଗୋଧନ ସୁତ ଆୟୁଷ୍ୟ ବର୍ଦ୍ଧିତ ଯେ ହୋଉ
ପଞ୍ଚୁ କଟକେ ଛତ୍ର ଧରାଅ ଶତ୍ରୁ କ୍ଷୟେ ଯାଉ ।୧୪୮
ବଦୟନ୍ତି ଧର୍ମ ନନ୍ଦନ ମହାଗ୍ୟାଂତା
କୋଇନ୍ତାଂକର ଯେ ଜ୍ୟେଷ୍ଠ ତନୟେ ତୁ ଆମ୍ଭର
ସମ ପିତା ।୧୪୯
ଆମ୍ଭର ଥାଠକୁ ଆସି ବିଜେକର ଦେବସ୍ୱାମୀ
ପଞ୍ଚଭ୍ରାଥ ଥିବୁଂ ତୋର ଚରଣେ ପରିଣାମି ।୧୫୦
ଆମ୍ଭର ଥାଠରେ ତୁ ହୋଅସି ଦେବ ରାଜା
ଲକ୍ଷେକ ନୃପତି ତୁମ୍ଭନ୍ତ କରିବେ ପାଦ ପୂଜା ।୧୫୧
ଶ୍ରୀହରି ସମାନେ ଭୋଗକର ଯେ ସମ୍ପଦ
କଉରୋବ ବଳେ ଥିଲେ ତୁମ୍ଭନ୍ତ ପଡ଼ିବ ପରମାଦ ।୧୫୨
କର୍ଣ୍ଣ ବୋଇଲା ମୁଂ ଜାଣଇଂନି ଯେମାନ
ସର୍ବଦାକାଳେ କଉରୋବେ ତୋତେ ନୁହଂନ୍ତି ସମାନ ।୧୫୩
ବାବୁ ରାଧେବ ପ୍ରତିପାଳିଲା ମୋତେ ଅଗ୍ୟାଂନ ବାଳକାଳେ
ମାନଗୋବିନ୍ଦ ମଇତ୍ର ମୋର ହୋଇଲା ଶିଶୁକାଳେ ।୧୫୪
ବାବୁ ରେ ନ ଜାଣଇ ପିତା ଯେ ନ ଜାଣଇଂ ମାତା
ଦ୍ରିଯୋଧନ ରାଜା ମୋର ଇଷ୍ଟ ଯେ ଦେବତା ।୧୫୫
ଭୀଷ୍ମ ଦ୍ରୋଣ ଭୂରିସର୍ବା ଯେ ଅଛନ୍ତି ଯଦ୍ୟପି
ମୋହୋର ବାହାକୁ ଆଶ କରିଛି ସେ ଅଦ୍ୟାପି ।୧୫୬
ଶୁଣି କିସ କହିବେ ମୋତେ ନୃପତି ସମସ୍ତ
ସମର ବେଳେ କର୍ଣ୍ଣ ଯେ ହୋଇଲା ନିସତ ।୧୫୭
ଆଦ୍ୟହୁଂ ଆଶ କରି ଅଛି ସେ ମୋର ବାହାକୁ
ଧର୍ମହିଂ ଗଳିବ କି ଉପେକ୍ଷା କଲେ ତାକୁ ।୧୫୮
ବ୍ରାହ୍ମଣ ହୋଇଣ ଯେବେ ଜଳକୁ କରଇ ଭୟେ
ସ୍ତିରୀ ହୋଇ ଯେବେ ଅଗ୍ନିରେ ନ ସମର୍ପଇ କାୟେ ।୧୫୯
ଛତ୍ରୀ ହୋଇଣ ଯେବେ ସାଂଗ୍ରାମକୁ ଭୟେ କରି
ଯେତେକ ଲୋକ ଅମୋକ୍ଷ ହୁଅନ୍ତି ଯେ ନ ପାନ୍ତି ସ୍ୱର୍ଗପୁରୀ।୧୬୦
ଯେହା ଶୁଣି ଯୁଝେଷ୍ଟି ସ୍ତୁତି କଲେ ଆକାଶକୁ ଦେଖି
ଚନ୍ଦ୍ର ସୂର୍ଯ୍ୟ ଦଶ ଦିଗପାଳେ ହୋଇବା ମୋତେ ସାକ୍ଷୀ ।୧୬୧
ସହୋଦ୍ର ଛାଡି ସମରେ ପଶିଲା ବୀର କର୍ଣ୍ଣ
ଧର୍ମ ତେଜ୍ୟା କଲା ଯେହାର ବୁଡ଼ିଲା ଯହୁଂ ଗ୍ୟାଂନ ।୧୬୨
ଯେହୁଂ ନିରାଶ କଲା ବୀର କର୍ଣ୍ଣ ସେନାପତି
ବିଜେ ଧର୍ମନନ୍ଦନ ଯାଇଂ ଦ୍ରିଯୋଧନ କତି ।୧୬୩
ଧୃତିରାଷ୍ଟ୍ର ଶତେପୁତ୍ର ଘେନି ବିଜେ ମନ୍ତ୍ରୀ ଯେ ଶକୁନି
ଯୁଝେଷ୍ଟି ବିଜୟେ ଯାଇଂ ଯେମନ୍ତର ସମୟେ କରେ
ଜୟେମାଳା ଘେନି ।୧୬୪

ପିତା ଧୃତିରାଷ୍ଟ୍ରଂକ ସନ୍ନିଧେ ଦେଇଣ ପାଦ ଅର୍ଘ୍ୟ
ବିନୟ ଭାବ ହୋଇଣ ପିତାଂକର ପଡ଼ିଲେ ପାଦଲାଗ ।୧୬୫
ପରମ କଲ୍ୟାଣ ଯେ ବାଞ୍ଛନ୍ତି ଧୃତିରାଷ୍ଟ୍ର
କଲ୍ୟାଣ ହୋଅ ମନୋବାଞ୍ଛା ହୋଉ ପରାପତ ।୧୬୬
ବଦୟନ୍ତି ଯୁଝେଷ୍ଠି ଶୁଣ ଦେବ ପିତା
ମୁହିଂ ତୋହୋର ନନ୍ଦନ ସର୍ବଦା ଭଗତା ।୧୬୭
ଅନେକ ଦଇତ ତାତ ମାଇଲୁ ଘୋର ବନେ
ଦୁର୍ଗତି ବଞ୍ଚିଲୁ ଯେ ତୋହୋର ପରସନେ ।୧୬୮
ଅତିଅନ୍ତ କଷ୍ଟ ମୁଂ ଯେ ପାଇଲି ମସ୍ତଦେଶେ
ଅଗ୍ୟାଂତ ବନବାସ ସାରି ଅଇଲୁଂ ତୋର ପାଶେ ।୧୬୯
ଯେ ତୋର ନନ୍ଦନ ମାନ ଯେ ଗୋବିନ୍ଦ
ସୋଦରନ୍ତ ନ ସମ୍ଭାଳି ଭିଆଇଛି ଦ୍ୱନ୍ଦ୍ୱ ।୧୭୦
ଇନ୍ଦ୍ରପ୍ରସ୍ତ ଯମପ୍ରସ୍ତ ହସ୍ତିନା ଜଇନ୍ତା ବାରୁଣା
ଯେ ପଞ୍ଚ ରାଜ୍ୟ ତାତ ଜମ୍ବୁଦ୍ୱୀପକୁ ଧାରଣା ।୧୭୧
ଯେଥୁଂ ମାଗିଲି ମୁଂ ପଞ୍ଚଖଣ୍ଡି ପଡା
ନିରାଶ କଲା ମୋତେ ସେ ମାନଗୋବିନ୍ଦ ମହାବୀରା ।୧୭୨
ଧଉମ୍ୟ ପୁରୋହିତେ ଯେ ଶ୍ରୀହରି ବିଦୁରେ ସଞ୍ଜୟେ
ମଧପାତ୍ର ଯେମାନନ୍ତ ମୁଂ କଲି ଦେବରାୟେ ।୧୭୩
ଯେମାନଂକ ବୋଲ ମେଣ୍ଟିଲା ମାନ ଯେ ଗୋବିନ୍ଦ
ଧର୍ମ ତେଜିଣ ସେ ଇଚ୍ଛିଲାକ ଦ୍ୱନ୍ଦ ।୧୭୪
ଭୋ ତାତ ନିଚୟେ ସୋମବଂଶକୁ ଛାଡିଲାକ ଧର୍ମ
ପ୍ରାନ୍ତ କାଳକୁ ଆସିଣ ହୋଇଲା ସାଂଗ୍ରାମ ।୧୭୫
ବଂଶ ନାଶ କଥାକୁ ପଶିଲୁ ଦେବ ତାତ
ତୋହୋର ଥାଆନ୍ତେ ଆମ୍ଭେ ଭିଆଇଲୁ ଯେଡ଼େକ ଅନର୍ଥ ।୧୭୬
ଯୁଝେଷ୍ଠି ବୋଇଲେ ତାତ ଯେବେହେଂ କହନି ବୁଦ୍ଧି
ପ୍ରମାଦ ନ ପଡୁ ତାତ କଥାୟେ କର ସନ୍ଧି ।୧୭୭
ଯୁଝେଷ୍ଠିଂକ ବଚନେ ଧୃତିରାଷ୍ଟ୍ର କିଛିହିଂ ବଚନ ନ ଭାଷି
ତହୁଂ ଦ୍ରିଯୋଧନ ଆପଣେ ବଚନ ପ୍ରକାଶି ।୧୭୮
ଆହୋ ଯୁଝେଷ୍ଠି ଆଦ୍ୟହୁଂ କିମ୍ପେ ନ ସମର୍ପିଲୁ ଦୁଇ ରାଶି
ବହୁତ ଧର୍ମ ନାଶ କଲୁ ମନ୍ଦ କୃତ୍ୟନ୍ତ ଅଭ୍ୟାସି ।୧୭୯
ବହୁତ ତୀର୍ଥ ବୁଲିଲୁ ଋଷିମାନଂକର ସଙ୍ଗେ
ଅସମ୍ଭାଳ କରି ମନ୍ଦ ଚିନ୍ତିଲୁ ଅତି ବେଗେ
ବର୍ଦ୍ଧୁତ ଧର୍ମ ନାଶ କରିଛୁ କିଞ୍ଚିତ ବଇରାଗେ ।୧୮୦
ରାଗ ସଂଗ୍ରହଣ କିଂକେ ନ କଲୁ ବାବୁ
ବ୍ରହ୍ମଚାଣ୍ଡାଳ କି ଯେକବ୍ ମଣୁ ସବୁ ।୧୮୧
ଅନେକ ତିଆରିଲୁ ସେମାନଂକର ତୁଲେ
ଧର୍ମ ପ୍ରତିପାଳିଲୁ ପଶିଲୁ ଶତ୍ରୁ ମେଳେ ।୧୮୨
ଯେବେ ଦୁଷ୍ଟଂକର ସଙ୍ଗେ ହୋଇଲୁ ଆସି ପ୍ରୀତି
ଟସକର ତୁଲେ କି ସାଧୁଂକର ଶୁଦ୍ଧ ମତି ।୧୮୩
ଯୁଝେଷ୍ଠି ଦେବେ ବୋଇଲେ ଶୁଣ ବାବୁ ମାନଚକ୍ରବ୍ରତୀ
ତୁ ମୋହୋର ସୋଦର ମୁଂ ତୋତେ ହୋଇଲି ଅର୍ଭ୍ୟର୍ଥୀ ।୧୮୪
ପଡ଼ା ପାଞ୍ଚଖଣ୍ଡି ମୋତେ ଦିଅ ହୋ କୁରୁପତି
ଲୋଧ କନ୍ଧ ମହ୍ଲର ଶବର ପଛକେ ହୋଉ କତି ।୧୮୫
ଆହୋ ମାନଗୋବିନ୍ଦ କିଞ୍ଚିତ କରି ପଡ଼ା ପାଞ୍ଚଖଣ୍ଡି ପାଇଲେ
ତୋହୋର ମୋହୋର ଭାଇନ୍ତ ପ୍ରୀତିରେ ଦିନ ଯିବ ଭଲେ ।୧୮୬
କୁରୁପତି ବୋଲଇ ହୋ ମୋତେ ତୁ ନ ବୋଲ ଯେମାନ
ବିନା ଯୁଦ୍ଧେ ତୋତେ ମୁଂ ନ ଦିଅଇ ଯେକ ଗ୍ରାମ ।୧୮୭
ପୁଣ ମାନଗୋବିନ୍ଦକୁ ବଚନ ପ୍ରକାଶନ୍ତି କୋନ୍ତେ
ପଡ଼ା ଚାରିଖଣ୍ଡି ବାବୁ ଦେଉ କିନା ମୋତେ ।୧୮୮
ବଦନ୍ତି ମାନଗୋବିନ୍ଦ ଶୁଣ ହେ ଯୁଝେଷ୍ଠି
ସାଂଗ୍ରାମ ନୋହିଲେ ନ ଦିଅଇ ଯେକ ଗ୍ରାମ ଗୋଟି ।୧୮୯
ପୁଣ ପୁଣ ଯୁଝେଷ୍ଠି ଦେବ ବହୁତ କାର୍ପୁର୍ଣ୍ୟରେ ବଚନ ପ୍ରକାଶି
ବାବୁ ତୋହୋର ମୋହୋର ଦ୍ୱନ୍ଦ ନୋହୁ ପଡ଼ା
ତିନିଖଣ୍ଡ ଦେସି ।୧୯୦
ତୋତେ ଅପ୍ରାଞ୍ଜୟେ ମୋତେ ହୋଇବ ବଡ଼ ବ୍ୟଥା
ମୋତେ ଅପ୍ରାଞ୍ଜୟେ ତୋତେ ଅଯଶ ସର୍ବଥା ।୧୯୧
ଦ୍ରିଯୋଧନ ବୋଇଲା ଯେ ସମର ନୋହିଲେ
ସୂଚି ମୁନେ ପୃଥୀ ଦେଇ ନୋହଇ ମୋର ବୋଲେ ।୧୯୨
ଯୁଝେଷ୍ଠି ବୋଇଲେ ମୁହିଂ ପୃଥୀକି ଧାରଣ
ଯେ ପୃଥୀଯାକ ମୁହିଂ କରଇ ରକ୍ଷଣ ।୧୯୩
ଦ୍ରିଯୋଧନ ବୋଇଲା ଯେ ସମର ନୋହିଲେ
ଗ୍ରାମରୁ ଅର୍ଦ୍ଧେକ ନେଇ ନୁଆରୁ ମୋହୋରନ ବୋଇଲେ ।୧୯୪
ଯୁଝେଷ୍ଠି ବୋଇଲେ ତୁ ସୋଦର ମୋର ହାଦେ
ପ୍ରାର୍ଥନା ନିମନ୍ତେ ପଡ଼ା ଖଣ୍ଡେ ମୋତେ ଦେ ଦେ ।୧୯୫
ମାନଗୋବିନ୍ଦ ବୋଇଲା ହୋ ସମର ନ କଲେ
ସୂଚିମୁନେ ଦେଇ ନୋହଇ ତୋହୋର ବୋଲେ ।୧୯୬

ଯୁଧିଷ୍ଠିର ଦେବ ପୁଣ ବଚନ ପ୍ରକାଶି
ସୋଦର ନିମନ୍ତେ ମୋତେ ପଡ଼ା ଖଣ୍ଡିଯେ ଦେସି ।୧୯୭
ମାନଗୋବିନ୍ଦ ବୋଇଲା ସୂଚି ମୁନର ଅର୍ଦ୍ଧ ଯେତେ
ସମର ନ କଲେ ମୁଂ ନ ଦିଅଇ କଦାଚିତେ ।୧୯୮
ଯୁଧିଷ୍ଠିର ବୋଇଲେ କୁଟୁମ୍ବ ରଖିବାକୁ ଯେବେ ବୁଦ୍ଧି
ଉଚ୍ଚବାଚ ହୋଇଲା ଯେବେ କଥା ହୋଉ ସାଧି ।୧୯୯
ଦ୍ରିଯୋଧନ ବୋଇଲା ସମରକୁ ଯଦି ହୋଇଲୁ ନିସତ
ଦନ୍ତରେ ତିରଣ ଘେନି ଶରଣ ପଶ ପଞ୍ଚଭ୍ରାଥ ।୨୦୦
ତେବେ ଯେ ପଞ୍ଚ କଟକେ ହୋଅସି ଆଧିପତି
ଶତେଭାଇ ଘେନି ବନସ୍ତେ ପଶିବି ଯେ ମୋହୋର
ସତ୍ୟି ସତ୍ୟି ।୨୦୧
ତୁ ମଧୁ ପିଙ୍ଗଳ କର୍କଶ ଅଟୁ ମନ୍ଦ ଜାତି
କୁଳକ୍ଷୟେ ମନ୍ତ୍ରୀ ତୁଲେ ବଢ଼ାଇଲୁ ପ୍ରୀତି ।୨୦୨
ମାନଗୋବିନ୍ଦ ବୋଇଲା ଶୁଣସି ଯୁଧିଷ୍ଠିର
ବାଚା ଦୃଢ଼ ମୋର ମୁଂ କଇଛା ଜଗତ୍ଜେଠୀ ।୨୦୩
ଆହୋ ନାରାୟଣ ମଧ୍ୟପାତ୍ର ହୋଇ ଅଇଲେ ଯେତେବେଳେ
ଦୃଢ଼ ବାକ୍ୟ କରି ମୁଂ କହିଲି ସଭାସ୍ଥଳେ ।୨୦୪
ଯୁଦ୍ଧ ବିନା ପୃଥୀ ନ ଦିଯେ ସୂଚି ଭେଦେ ।
ତହିଂକି ସାକ୍ଷୀ ହୋଇଅଛନ୍ତି ଗୋବିନ୍ଦେ ।୨୦୫
ଯୁଧିଷ୍ଠିର ଦେବେ ଶୁଣି ବଚନ ପରକାଶି
ସମରକଇଂ ଯେ ଇଚ୍ଛାକଲୁ ଧର୍ମକଇଂ ନାଶି ।୨୦୬
ଦ୍ରିଯୋଧନ ବୋଇଲା ତୁ ଜିଣିମୁଂ ଯେବେ ମୋତେ
ଯେକଛତ୍ରୀ ହୋଇବୁ ତୁ ଯେ ପଞ୍ଚ ପ୍ରଶସ୍ତେ ।୨୦୭
ମୁଂ ଯେବେ ତୁମ୍ଭର ପଞ୍ଚ ଭାଇନ୍ତ ପାରଇ ମାରି
ତେବେ ପଞ୍ଚ କଟକେ ହୋଇବି ଅଧିକାରୀ ।୨୦୮
ଯୁଧିଷ୍ଠିର ଦେବେ ବୋଇଲେ ଯେବେ ଯେ ତୋହୋର ସତ
ସନ୍ୟ ସେନାମାନନ୍ତ ବାହାର କରି ଦିଅ ସମସ୍ତ ।୨୦୯
ତୋହୋର ମୋହୋର ଯେବେ ହୋଇବା ବିବାଦୀ
ଅଦୋଷୀ ଲୋକନ୍ତ କିମ୍ପେ ସମରେ ହାଦେ ଛେଦି ।୨୧୦
ତୁମ୍ଭେ ଶତେ ଭ୍ରାଥ ଉଭାର କୁରୁପତି
ଆମ୍ଭେ ଯେ ପଞ୍ଚଭାଇ ହେଉ ଯେକମୂର୍ତ୍ତି ।୨୧୧
ଆବର ବନ୍ଧୁ ଲୋକନ୍ତ ନାଶିବା କିସ ଅର୍ଥେ
ଯେତେ ଲୋକ ନାଶଂଗତ ହୋଇବେ କେମନ୍ତେ ।୨୧୨
ତୋହୋର ମୋହୋର ଯେବେ ଜିଣିମା ସାଂଗ୍ରାମେ
ଜାଣିମା ପାପ ପୁଣ୍ୟ କାହାର ଉଦିତ ଧର୍ମେ ।୨୧୩
ଦ୍ରିଯୋଧନ ବୋଇଲା ହୋ ନୋହଇଟି ଯେମନ୍ତ
ଥାଠ ସନ୍ୟ ନ ଥିଲେ ଯୁଦ୍ଧ ନୋହଇ ବିହିତ ।୨୧୪
ମାନଗୋବିନ୍ଦ ତହୁଂ ଯୁଧିଷ୍ଠିର ଯେସନେକ ବାକ୍ୟ ଶୁଣି
ଉଠିଲେ ଆସ୍ଥାନ ତେଜି ଯେ ଧର୍ମ ନୃପମଣି ।୨୧୫
ଆମ୍ଭେ କୁରୁକ୍ଷେତ୍ର ମଧ୍ୟେ ଅଛୁଂ ଯେତେ ଯୋଧୀ
ମୁଂ କଥାଯେ ପୁଚ୍ଛିବି କହିବା ହୋଉ ମୋତେ ବୁଦ୍ଧି ।୨୧୬
ଯେକ ପିତା ଯେକ ମାତାଉଂ ଜାତ ପଣ୍ଡୁ ଧୃତିରାଷ୍ଟ୍ରେ
ତାହାଂକର ନନ୍ଦନ ଆମ୍ଭେ ଅଭିନ୍ନ ଯେକ ଚାଟେ ।୨୧୭
ଯୁଗତେ ଭାଗ ମୋତେ ଯୋଗାଇ ପଞ୍ଚସ୍ଥଳୀ
ନ ଦେଇ ମାନଗୋବିନ୍ଦ ମୋତେ ଆରମ୍ଭିଲା କଳି ।୨୧୮
ଅନେକ ଯୋଦ୍ଧାଯେ ଯେ ପଡ଼ିବେ ଯେହୁ ଯୁଦ୍ଧେ
ବ୍ରାହ୍ମଣ ଆଦି କରି ପଡ଼ିବେଟି ରଣ ମଧ୍ୟେ ।୨୧୯
ଦୋଷୀ ଅଦୋଷୀ ଯେ ଅନେକ ନାଶଯିବ
ଯେ ହତ୍ୟା ଦୋଷ ପୁଣ କାହାକୁ ଲାଗିବ ।୨୨୦
କଉରୋବ ଥାଠରେ ଶୁଭିଲାକ ଶଂଖ ଧ୍ୱନି
ସହୋଦ୍ର ଭାଇଂକି ଭାଗ ନ ଦିଲା କୁରୁମଣି ।୨୨୧
ଆହୋ ଧର୍ମ ନନ୍ଦନ ଯେ ଦୋଷ ନାହିଂଟି ତୁମ୍ଭଂକୁ
ସଂସାର ଜିଣିଲୁ ତୁ ଧର୍ମ ଆଶ୍ରିତକୁ ।୨୨୨
ଆକାଶରୁ ବାଣୀ ଯେ କଲେକ ଦେବଲୋକେ
ସାଧୁ ସାଧୁ ଯୁଧିଷ୍ଠିର ବୋଲି ପ୍ରଶଂସା କଲେ ବୃନ୍ଦାଅର୍କେ ।୨୨୩
କଉରୋବ ଥାଠେ ଯୁଧିଷ୍ଠିର ଯେ ଟେକିଲେ ବେନି ଭୁଜ
ଅଛ ତୁମ୍ଭେ ଯେ ସମସ୍ତ ଦେଶର ମହାରାଜ ।୨୨୪
ଦ୍ରିଯୋଧନ ରାଜା ଯେ ଉପେକ୍ଷା କଲା ଧର୍ମ
ମୋତେ ଭାଗ ନ ଦେଇ ଇଚ୍ଛିଲା ସାଂଗ୍ରାମ ।୨୨୫
ବେନି ଥାଠରେ ମୋତେ ନ ପଡୁ ମନ୍ଦ ବାଚି
ଅପବାଦ ମୋତେ ନ ଦେବା କେହି କିଛି ।୨୨୬
ଦ୍ରିଯୋଧନ ଥାଠେ ନ ଥାଅ ଯାର ଜୀବନକୁ ଅଛି ଆଶ
ଧର୍ମ ଆଶ୍ରେ କରି ମୋ ବାହୁ ତଳେ ଶରଣ ଆସି ପଶ ।୨୨୭
ଧର୍ମ ଆଶ୍ରେ କର ଜୀବନକୁ ଅଛି ଯାହାର କାର୍ଯ୍ୟ
ଯେତେ ବୋଲି ଯୁଧିଷ୍ଠିର ଟେକିଲେ ବେନି ଭୁଜ ।୨୨୮



## ୮୬. ଭୀଷ୍ମଙ୍କର ଦ୍ୱିତୀୟ ଦିନ ଯୁଦ୍ଧ ଓ ପାଣ୍ଡବଙ୍କର ଦଶ ସହସ୍ର ଯୋଦ୍ଧାଙ୍କ ପତନ

ସାଜରେ ସାଜରେ ବୋଲି ଶୁଭଇ ବେନି ଥାଠ
ମଣ୍ଡନ୍ତି ରଥ ଗଜ ଅଶ୍ୱ ଯେ ମୁରାଟ ।୧
ବାଜନ୍ତି ବିଜିଘୋଷ ଟମକ ନିଶାଣ
ଗଜ ଅଶ୍ୱଂକର ଗର୍ଜନ ଘଡ଼ଘଡ଼ି ବକ୍ରବାଣ ।୨
ବୀର ଦାଉଣ୍ଡି ବୀର ମର୍ଦ୍ଦଳ ଦମାଲୁ ବୀର କାହାଳି
ଧାଅଂରେ ସାଜରେ ବୋଲି ଡାକନ୍ତି ନାଦ ତୋଳି ।୩
ରହିଲେ ଯୋଦ୍ଧାମାନେ ଯେ ଯାହାର ଲାଗେ
ରଥ ଗଜ ସଇନି ହୋଇଲେ ବେନି ଭାଗେ ।୪
ଆବୋରି ରହିଲେ ବଳ ଯେ ଯାହାର କତି
ପୂର୍ବେଣ ପାଣ୍ଡବେ ପଛିମେ କୁରୁପତି ।୫
କୃଷ୍ଣବର୍ଣ୍ଣ ଚିତ୍ରିତ ଯେ ମହାମତ୍ତ ନାଗ
ଦିବ୍ୟ ଅବତାର ହୋଇ ମାନଗୋବିନ୍ଦ ପିଠିଭାଗ ।୬
ଉଭାରିଲେ ପାଟଛତ୍ର ଆଲମ୍ୱ ପଞ୍ଚୁଲକ୍ଷୀ
ତାରକା ବଧ କାଳେ ଯେହ୍ନେ କାର୍ତ୍ତିକେଶ୍ୱର ଦେଖି ।୭
ଡାହାଣେ ଧୁଶାସନ ବାମେଣ ଜଦ୍ୟରଥ
ଆଗେଣ ସିନ୍ଧୁ ଦେଶ ବଳ ଯେ ଦଶ ସହସ୍ର ରଥ ।୮
ପଛେ ଅଳମ୍ୱୁଷ ଦଇତର ଥାଠ ଯେ ପଲାଣି
ବାମେ ବାଜି ମହାବାଜି ଯେ ଯେକାଦଶ କ୍ଷଉଣୀ ।୯
ମହା ସମ୍ପର୍ବେ ଥାଠ ଘେନିଣ ରାଜା ଧୃତିରାଷ୍ଟି
ବିଜେ ଗୁଞ୍ଜଗଳ ଅଧିପ ଈଶାନ୍ୟେ ଦେଇ ଦୃଷ୍ଟି ।୧୦
ବିରୁପାକ୍ଷ ସଇନି ଯେ ଅକଳିତ କାଠି
ମହା ଅନୁକୂଳେ ବିଜେ ଧର୍ମରାୟେ ଯୁଝେଷ୍ଟି ।୧୧
ଯୁଝେଷ୍ଟିଂକ ବାମେ ଦ୍ରୁପଦ ଡାହାଣେ ବିରାଟ
ନିର୍ଝର ଦେଶର ରାଜା ଗଣପତି ଆଗିଆଣି ଥାଠ ।୧୨
ସମସ୍ତେ ଦୂରେ ଥାଇ ଦେଖନ୍ତି ଯେ ହନୁମନ୍ତର ମୁଖ
ଦଧିବାମନ ସୁମରି ଦଧି ମଛ ଶଙ୍ଖ ଚକ୍ର ଶିରୀବସ୍ତ ।୧୩
କଣୟେ ନିରିବାଣ ସେ ଶ୍ୱେତ ନାଗର ପିଠି
ଆରୋହଣ କରିଛନ୍ତି ଧର୍ମରାଜ ଯୁଝେଷ୍ଟି ।୧୪
ଅଗସ୍ତିମୁନି ବକତା ବଇବସୁତ ମନୁ ଶ୍ରୋତା
ପିଣ୍ଡ ପ୍ରାଣ ଯେକଦ୍ ହୋଇବାରେ ମନ ହୋଉଛି ବକତା ।୧୫
ଚଇତନ ବୋଲଇ ମନ କରିଥାଅ ହେତୁ
ଭୀଷ୍ମଂକର ଦୁତୀୟ ଦିନ ଶୁଣ ସାଂଗ୍ରାମର ତତ୍ତ୍ୱ ।୧୬
ଦିବ୍ୟ ଅବତାର ଗାଙ୍ଗବ ମହାରଥୀ
ମକର ମାସ ଶୁକଳ ପକ୍ଷ ଦୁତୀୟାର ତିଥି ।୧୭
ପଣ୍ଡିତ ବାର ଅଟଇ ଯେ ଯୁଗତି
ଶାୟନ୍ତନୁର ନନ୍ଦନ ନିଦାଘ ଅର୍କମୂର୍ତ୍ତି ।୧୮
ନିର୍ଦ୍ଧୂମ ଅଗ୍ନି ଜାଣି ବିରାଜଇ ତାହାଂକର କାୟେ
ବେନି ଲୋଚନ ଭ୍ରମଇ କାଳ ଚକ୍ର ପ୍ରାୟେ ।୧୯
ସହସ୍ରାର୍ଜ୍ଜୁନର ପ୍ରାୟେକ ତେଜ ବିକାଶି
ଉଭୟ ବଳ ସଇନି ଯେକା ଭୀଷ୍ମେହିଂ ସେ ଆକ୍ରୋଷି ।୨୦
ଦେଖିଣ ପ୍ରଶଂସା କରଇ ରାଜା ମାନଚକ୍ରବ୍ରତୀ
ବାସବର ପ୍ରାୟେ ଦିଶଇ ଭୀଷ୍ମଂକର ମୂର୍ତ୍ତି ।୨୧
ନିଚୟେ ଗାଙ୍ଗେବ ଆଜି ଫେଡିବେ ଦୁର୍ଗତି
ପାଣ୍ଡବ ବଳ ନିଚେ ଆଜ ଦହିବ ସବୁନ୍ତି ।୨୨
ପନ୍ନଗା ନାରାୟଣ ଘେନିଣ ରତ୍ନମାଳା
ଆପଣେ ଲମ୍ୱାଇଲେ ନଇ ଭୀଷ୍ମକଂର ଗଳା ।୨୩
ଯେ ମହୀ ମଣ୍ଡଳେ ତୁହି ଯେକା ରଥୀ ହାଦେ
ଲଭିବି ପଞ୍ଚୁରାଜ୍ୟ ତୋହୋର ପରସାଦେ ।୨୪
ଶୁଭ ମଙ୍ଗଳ ଅନୁକୂଳ ଘେନି ଚଳି ବେଗେ ଯାସି
ପଞ୍ଚୁ କୋଟି ତୁରଙ୍ଗମ ଚୋଖାଇ ସଙ୍ଗେ ନେସି ।୨୫
ଗଙ୍ଗାର ନନ୍ଦନ ରଥେ ନୀଳଦ ସାରଥି
ଶାୟନ୍ତନୁର ନନ୍ଦନ ଜଗୁଜିତା ମହାଛତ୍ରୀ ।୨୬
ଚୋଖାର ତୁରଙ୍ଗମ ହରିତ କାଳ ମେଘା
ପବନ୍ନଂ ଚଞ୍ଚଳ ସେ ଚଳନ୍ତି ଅତି ବେଗଂବେଗା ।୨୭
ଅଣୀ ସହସ୍ର ବଳ ଶ୍ରୀକରେ କଣୟ ରତ୍ନ ଧନୁ
ଅନିର୍ବାରଣ ବିଦ୍ୟା ଯାହାକୁ ଶିଖାଇଲେ ଶାୟନ୍ତନୁ ।୨୮
ବେନି କୋଟି ନାରାଜ ପୂରୋଇ ବେନି ତ୍ରୋଣେ
ଶ୍ୱେତ କେଶରୀ ଧ୍ୱଜ ଉଡଇ ଗଗନେ ।୨୯
ଦିନକର ନାଥ ରଥ ପ୍ରାୟେ ଖେପଇ ଆକାଶୁଂ
ନନ୍ଦିଘୋଷ ରଥ ଭେଟିଲା ଭୀଷ୍ମଦେବ ଆସୁ ।୩୦
ଦେଖିଣ ଗାଙ୍ଗେବ ଧଇଲେ ଅଜଗ ଧନୁ ହାଥେ
ବୋଇଲେ କାଲିର ପ୍ରାୟେ ଆଜି ନୋହୋଇ କାହିଂ
ଆସୁ ପାଥେ ।୩୧
ଦୁର୍ଦ୍ଧଷ ଶରଣ ଯେ ପଶିଲାକ କାଲି
ସମର ସନ୍ଧି ପ୍ରାୟେ ମଣି ମୁଂ ଉପ୍ରୋଧ ଯୁଦ୍ଧ କଲି ।୩୨
ଅର୍ଜୁନ ବୋଇଲେ ତାତ କାଲି ତୋହୋରେ ଉପ୍ରୋଧ
ନିଚୟ ସମ୍ପଦ ତାତ ଆଜ ବୁଡ଼ାଇଲୁ ରଣ ମଧ୍ୟ ।୩୩

ଦ୍ରିଯୋଧନ ଅଶସ୍ତମା ଦ୍ରୋଣ କର୍ଣ୍ଣର ଦେଖନ୍ତେ
ଗାନ୍ଧାରୀ ନନ୍ଦନଂକୁ ଆଜ କେ ପାରିବ ରଖିତେ ।୩୪
ଅର୍ଜୁନର ଯେସନ ବଚନେ ଶାୟନ୍ତନୁର ସୁତ
କମ୍ପାଇ ଅର୍ଜୁନର ଆକ୍ରୋଷିଲେ ରଥ ।୩୫
ଯେସନେ ରାହୁ ଆକ୍ରେଷଇ ଶଶାଂକେ
ପାର୍ଥକୁ ଘୋଟିଲେ କ୍ଷତ୍ରିୟ ରଣରଂକେ ।୩୬
କୋପେଣ ନାରାଚ ସେ ପୂରୋଇଣ ଧନୁ
ସହସ୍ରେ ନାରାଚ ପୂରୋଇଣ ବିନ୍ଧିଲେ ଶାୟନ୍ତନୁର ତନୁ ।୩୭
ପୁଣ ନାରାଚ ଯେ ପୂରୋଇ ଅହିବ୍ରତେ
ବିନ୍ଧିଲେ ନାରାଚ ଯହିଂ ଅଛନ୍ତି କୃଷ୍ଣ ପାଥେ ।୩୮
ପୁଣ ଛତ ଦଶ ନାରାଚ ବିନ୍ଧିଲେ ଆକ୍ରେଷି
ନନ୍ଦିଘୋଷ ରଥ ଉପରେ ଶର ସେ ବରଷି ।୩୯
ହରି ଅର୍ଜୁନ ଶଂକିଲେ ଯେ ଭୀଷ୍ମଂକର ବାଣ ଦେଖି
ଆଦିତ୍ୟ ଲୁଚିଲେ ଯେ ଗଗନ ଉପେକ୍ଷି ।୪୦
ଅନିର୍ବାରଣ ଶର ଯେ ବିନ୍ଧିଲେ ବୀର ପାଥ
ଯେକା ଘାନ୍ତିକେ ବିନ୍ଧିଲେ ନାରାଚ ଅହିବ୍ରତେ ।୪୧
ଭୀଷ୍ମଂକର ନାରାଚନ୍ତି ଛେଦିଲା ଫାଲଗୁନି
ଦେଖିଣ ଗାଙ୍ଗବେ ଧାଇଂଲେ ଦିବ୍ୟ ଶସ୍ତ୍ର ଘେନି ।୪୨
ପଞ୍ଚମୁନା ନାରାଚ ପୂରୋଇଲେ ବେନି ଶତ
ଅଶ୍ୱଂକର ଉପରକୁ ବିନ୍ଧିଲେ ମହାମତ୍ତ ।୪୩
ତ୍ରଇଲୋକ୍ୟେ ଅସଂଖ୍ୟ ତ ସେ ଭୀଷ୍ମଂକର ମହିଂମା
ବୀରବର ସୁନ୍ଦର ସୋହତ ସେ କ୍ଷତ୍ରିୟ ଉତ୍ତମା ।୪୪
ରଥେକ ଆରୋହିଣ ବୀର ଭୀମସେନ
ନଇରତ ନାମେ ସାରଥି ରଥ ବାହଇ ଶୂନ୍ୟେ ଘନ ଘନ ।୪୫
କଉରୋବ ଥାଠରେ ଯାଇଂ ପଶିଲା ବୀରମଣି
ବିନ୍ଧଇ ନାରାଚ ଯେ ବରଷା ଋତୁ ଜାଣି ।୪୬
କୋଟିଯେ କାମ ଜିଣି ଭୀମସେନ ରୂପ ବର୍ଣ୍ଣ
ଭୀମସେନର କଳେବର ଶୋଭା ଯେ ଲଘଂଇ ସୁବର୍ଣ୍ଣ ।୪୭
ଚିତ୍ର ପ୍ରତିମା ଜାଣି ସେ ଭୀମସେନ ରୂପ ପରକାଶି
ଧନୁ ଗୁଣେ ନାରାଚ ଭୀମସେନ ପାଞ୍ଚଶତ ଧରି କଷି ।୪୮
ଲୋହସାର ଧନୁରେ ଲୋହାର ଗୁଣ ଖଞ୍ଜି
ରଥେ ଅଷ୍ଟରତ୍ନ ମାଣିକ୍ୟ ପୁଞ୍ଜି ପୁଞ୍ଜି ।୪୯
ଧନୁର କୋଣେ ଝଳକନ୍ତି ରତ୍ନମଣି
ଜଳଧର ମେଘେ ଯେହ୍ନେ ବିଜୁଳି ତେଜ ଜାଣି ।୫୦
ତୀକ୍ଷମୁନା ନାରାଚେ କଂକପକ୍ଷୀ ରଞ୍ଜି
ଝଳକନ୍ତି ନାରାଚେ ଦିବାକର ତେଜ ଗଞ୍ଜି ।୫୧
ଆରେ ଆରେ ବୋଲିଣ ଯେ ହାକଇ ମାରୁତି
ଛାମୁରେ ଭେଟନ୍ତା ନାହିଂ ନାହିଂ କେହି ରଥୀ ।୫୨
ଅନିର୍ଯାପ ବାଣ ସେ ଯେ ବିନ୍ଧଇ ମାରୁତି
ବଳାବନ୍ତି ସଇନ୍ୟ କେହି ନ ରହନ୍ତି କତି ।୫୩
ନଳେକ ପ୍ରମାଣେ ଯାର ଲୋହଶର ଅଟଇ
ବିନ୍ଧନ୍ତେଣ ହାଥୀ ଯୋଦ୍ଧା ଜଡିତ ହୋଇ ଫୁଟଇ ।୫୪
ଆରଣ ଲାଗନ୍ତେ ଯେ କ୍ଷେପନ୍ତି ମଯେମତ୍ତା
ଧାମଇଂ ବିକ୍ରୋଦର ଅପ୍ରମିତ ବଳବନ୍ତା ।୫୫
ଥାଠ ଭଗ୍ନ ଦେଖିଣ ଧାଇଂଲା ସୋମଦତ୍ତ
ଭୀମର ଆଗରେ ଟେକିଲାକ ନେଇ ରଥ ।୫୬
ତିନି ଶତ ନାରାଚ ପୂରୋଇ ମହାରଥୀ
ଭୀମସେନ ଉପରକୁ ବିନ୍ଧିଲେକ ଝାତି ।୫୭
ନାରାଚକୁ ନାରାଚ ପଡ଼ିତାଳ କରନ୍ତି ଦୁହେଂ ମହାରଥୀ
ଝଣ ଝଣାନ୍ତି ନାରାଚ ତାହାରି ଅଗ୍ନି ଜ୍ୟୋତି କାନ୍ତି ।୫୮
ରଥ ତେଜ୍ୟା କରିଣ ବୀର ଭୀମସେନ
ଗଦାବର ବୁଲାଇ ସେ ଧାମଇଂ କୋପ ମନ ।୫୯
ରାଗେଣ ନାରାଚ ବିନ୍ଧଇ ସୋମଦତ୍ତ
ପଡ଼ିଲା ନାରାଚ ଭୀମସେନ ହୃଦଗତ ।୬୦
ଲୋହଶର ପ୍ରାୟେକ ଯାହାର ରୋମାବଳୀ
ନାରାଚ ସେ ଦେହେ କି ପାରନ୍ତି ଯେ ଗଳି ।୬୧
ଭାଙ୍ଗିଣ ଚୂନା ଯେ ହୋଇଲା ସର୍ବଶର
ଧାଇଂଣ ସୋମଦତ୍ତ ରଥେ ପିଟିଲା ଗଦାବର ।୬୨
ପର୍ବତ ସମାନେ ଯାର ବାଉନ ବାଉନ ଭାର ଗଦା
ପିଟନ୍ତେ କଉରୋବ ସଇନ ସର୍ବ କଲା ପଦା ।୬୩
ସୋମଦତ୍ତ ରାଜାର ରଥରେ ଗଦାବର ପଡ଼ି
ଭାଙ୍ଗିଣ ରହୁବର ହୋଇଲାକ ଶତେ ଚୂରି ।୬୪
ଅଶ୍ୱ ସାରଥି ରଥ ଆଦି କରି
ସମସ୍ତ ଚୂର ଗଲା ରଥୀ ଗଲାକ ଅପସରି ।୬୫
ଲୋହାର ଗଦା ଯେକ ଧଇଲା ସୋମଦତ୍ତେ
ଧାତିକାରେ ପିଟିଲା ନେଇ ସେ ଭୀମସେନର ଗାତ୍ରେ ।୬୬
ଦେଖିଣ ପାବେନି ଯେ ପାତିଲା ବାମଅଙ୍ଗ
ବ୍ରିକୋଦର ଅଙ୍ଗେ ପଡ଼ି ଗଦାବର ହୋଇଲାକ ଭଙ୍ଗ ।୬୭

ଗଦା ପକାଇଣ ସେ ହୋଇଲା ଶୂନ୍ୟ ହାଥ
ସମରେ ଘୁଞ୍ଚିଣ ସେ ହୋଇଲା ନିସତ ।୬୮
ପଛେ ଗୋଡ଼ାଇଣ ସେ କାଳଦଣ୍ଡ ପାଣି
ରହ ରହ ସୋମଦତ୍ତ ହାକଇ ଉଚ୍ଚେ ବାଣୀ ।୬୯
ପଳାଇ ସୋମଦତ୍ତ ନ ଚାହେଁ ଲେଉଟି
କି ଅବା ନାଶକର ଜନ୍ତୁକୁ ଅଛି ଘୋଟି ।୭୦
ସୋମଦତ୍ତଙ୍କ କଟାଳ ଦେଖିଣ କୃପାଚାର୍ଯ୍ୟେ
ଭୀମସେନକୁ ବିନ୍ଧିଲେ ସହସ୍ରେ ନାରାଚେ ।୭୧
ନାରାଚ ପଡ଼ନ୍ତେଣ ଯେ ଗର୍ଜଇ ପାବେନି
କୃପଂକ ଉପରକୁ ଧାମଇଂ ଗଦା ଘେନି ।୭୨
ଗଜଯୂଥ ଦେଖି ଯେହ୍ନେ ଧାମଇଂ କେଶରୀ
କୃପଂକ ଉପରକୁ ପିଟିଲା ଗଦାବର ଘେନି କରି ।୭୩
କୃପକଂର ରଥରେ ଆକ୍ରେଷିଣ ପିଟି
ବଜ୍ର ବିଘାତେଣ କୃପଂକ ରଥ ଗଲା ଫାଟି ।୭୪
ବିଚିତ୍ର ଗତି କରି ଡେଇଂ ପଡ଼ିଲେ କୃପ ଯହୁଂ
ସାରଥିର ମୁଣ୍ଡ ବେଗେ ମୋଡିଲା ଭୀମସେନ ତହୁଂ ।୭୫
ରଣ ରଙ୍ଗ ଧନ୍ଦୋଳ କରଇ ଘୋଟଇ ଘୋର ରୂପେ
କାଳାନଳ ରୂପ ଦେଖି ଭାଙ୍ଗିଲେ ସର୍ବ ଦର୍ପେ ।୭୬
ପବନ ନନ୍ଦନ ସମରେ ଅବିରୋଧୀ
ଯାବତେ ବେଢ଼ିଲେ କଉରୋବ ଲକ୍ଷେ ଯୋଧୀ ।୭୭
କେ ଶତେ କେ ସହସ୍ରେ କେ କୋଟିଯେ ବାଣ ଧରି
ଭୀମସେନକୁ ବିନ୍ଧିଲେ ଆକର୍ଣ୍ଣ ସରି କରି ।୭୮
ସମର ଘୋର ଅନ୍ଧାର ଦେଖିଣ ଦୁର୍ଦ୍ଦଷ
ଭୀମସେନର ତୁଲେ ପ୍ରାକର୍ମ ସମକକ୍ଷ ।୭୯
ଚଉଷଠି ଚଉଷଠି ଭାର ଲେଖେଂ ଘେନି ଗଦା ଦୁଇ କରେ
ରଣରଙ୍ଗ ମଚ୍ଚିଲା ଯେକା ଥାଠର ଭିତରେ ।୮୦
ଦୁର୍ଦ୍ଦଷକୁ ଦେଖିଣ ସଇନ ହୋଇଲେ ବେନି ଭାଗ
ବିଜୟେ ଦୁର୍ଦ୍ଦଷ ଯାଇଂ ଭୀମସେନର ଆଗ ।୮୧
ଭୀମ ଦୁର୍ଦ୍ଦଷ ଦୁହେଂ ଯେ ହୋଇଲେ ବେନି ସଖା
କଉରୋବ ସଇନିଂକୁ ସେ ନ କରନ୍ତି ଲେଖା ।୮୨
ଲକ୍ଷେ ବଳ ଘେନି ସେ ଅଳମ୍ବୁଷ ରାକ୍ଷସ
ସବୁରି ବ୍ୟାଘ୍ର ବାହାନ ଉର୍ଦ୍ଧ୍ୱ ଖାଂକର କେଶ ।୮୩
ବ୍ୟାଘ୍ରଚର୍ମ ସେନେହେ ଯେ ଟୋପର କାନ୍ଥେଟି
ବାମ କରେ ମୂଷଳ ଡାହାଣ କରେ ଯାଠି ।୮୪
କଳିଙ୍ଗସେନ ପ୍ରାୟେ ତାକୁ ମଣିଲା ମାରୁତି
ଦୁର୍ଦ୍ଦଷକୁ ପଛ କରି ଧାଇଂଲାକ ଧାତି
ମହା ଭୟାଂକାର ସେ କାଳାନଳ ମୃତି ।୮୫
ବେନି ଅହିବ୍ରତ ଯୋଦ୍ଧା ଘେନି ଧାମଇଂ ଧୃଶାସନ
ଦୁର୍ଦ୍ଦଷର ଛାମୁରେ ଆସି ମିଳିଲା ବହନ ।୮୬
ବିକର୍ଣ୍ଣ ସାରଥି ଧୃଶାସନକୁ ପୁଛଇ
ଦେଖ ତୋହୋର ସହୋଦର ଦୁର୍ଦ୍ଦଷଟି ଯେହି ।୮୭
ସହସ୍ରେକ ଯୋଦ୍ଧା ପାଡିଲାନି ଆଜର ଯୁଦ୍ଧେ
ରକ୍ତ ମାଂସେ କର୍ଦ୍ଦନ ହୋଇ କବନ୍ଧ ନାଚନ୍ତି ରଣମଧ୍ୟେ ।୮୮
ଧୃଶାସନ ବୋଇଲା ସୁଫଳ ଆଜର ଦିନ
ଦୁର୍ଦ୍ଦଷକୁ ମାରି ଆଜ ଫେଡ଼ିବି ଦ୍ରିଯୋଧନର ଅଭିମାନ ।୮୯
ଶରଣ ପଶିବାର କାରଣ ପାଉ ମୋର ଭାଇ
ଜୀବନ୍ତେ ଧରିବଟି ପ୍ରାଣେ ନ ମାରିବ କେହି ।୯୦
ଧୃଶାସନ ତିଆରନ୍ତେ ଦୁର୍ଦ୍ଦଷ କୁମର ଉଠି
ଯୋଦ୍ଧାମାନଂକ ଉପରେ ପ୍ରହାର କଲା ଯାଠି ।୯୧
ବଜ୍ର ମୁଦୁଗର ଯେ ଆବର କରେଣ ଗଦାବଳୀ
ଗିରିବର ସାରିଷେ ଯେ ପ୍ରହାର କରଇ ତୋଳି ।୯୨
ରାହୁ ଦେଖିଲେ ଯେହ୍ନେ ପଳାବନ୍ତି ବୃନ୍ଦାଅର୍କେ
ନ ରହନ୍ତି ଯୋଦ୍ଧାୟେ ଯେ ଶତ ସହସ୍ରକେ ।୯୩
ରେ ରେ କାର କରିଣ ଦୁର୍ଦ୍ଦଷ ବୀର ବେଗେ ଉଠି
ବଜ୍ର ମୁଦୁଗର ନେଇଣ ଧୃଶାସନ ରଥେ ପିଟି ।୯୪
ଦୁର୍ଦ୍ଦଷର ଘାୟେ ପଡ଼ିଲା ରଥ ଭାଙ୍ଗି
ଗାନ୍ଧାରୀ ନନ୍ଦନ କୋପେ ଧାମଇଂ ଗଳଗାଜି ।୯୫
ଡାହାଣ ଭୁଜେ ଅନ୍ତରୀକ୍ଷେ ଧଇଲାକ ରଥ
ଆରେକ ରଥେ ନେଇ ପିଟିଲା ତୁରିତ ।୯୬
ରଥକୁ ରଥ ବାଜି ଉଠିଲା ଅନଳ
ପ୍ରତକ୍ଷେ ପ୍ରଚଣ୍ଡ କି ସେ ଗାନ୍ଧାରୀର ବାଳ ।୯୭
ନିଦାଘ ଆଦିତ୍ୟ ଜାଣି ଦୁର୍ଦ୍ଦଷର ମୃତି
ବେନି ଦଣ୍ଡେ ନାଶ କଲା ବେନି ଶତ ରଥୀ ।୯୮
ଶୁଣ ହୋ ଚଇତନ ଧର୍ମବଳର କଥା
ପାଣ୍ଡବ ଆଶ୍ରେକେ ଦୁର୍ଦ୍ଦଷ ଯେତେକ ବଳବନ୍ତା ।୯୯
ବହୁତ ସମରକୁ ସେ ନ କରଇ ଶଂକା
ରାମାୟଣ ଯୁଦ୍ଧେ ଯେହ୍ନେ ହନୁ ବିଧଂସିଲା ଲଂକା ।୧୦୦
ବେଢ଼ିଣ ଯୋଦ୍ଧାୟେ ପ୍ରହାର କରନ୍ତି ତା ଅଙ୍ଗ

ଶହସ୍ରେ ଉପୁଡନ୍ତି ଗଦାୟେ ହୋଅନ୍ତି ଯେ ଭଙ୍ଗ ।୧୦୧
ଦୁର୍ଦ୍ଧର୍ଷ ପ୍ରହାର କେହି ନୁଆରନ୍ତି ମେଣ୍ଟି
ଯେକା ପ୍ରହାରକେ ରଥ ଗଜ ଅଶ୍ୱ ପଡନ୍ତି ମହୀଲୋଟି ।୧୦୨
ସମରେ ଯୋଦ୍ଧାୟେ ସେ ପାଇଲେ ବିମୁଖ
ପଳାବନ୍ତି ଅପସରି କେହି ନ ଟେକନ୍ତି ମୁଖ ।୧୦୩
ସଇନି ବିଅର୍ଥ ଦେଖିଣ ବୀର ଧୃଶାସନ
ପାଞ୍ଚ ରଥୀ ତୁଲେ ଆସି ମିଳିଲା ଦୁର୍ଦ୍ଧର୍ଷର ସନ୍ନିଧାନ ।୧୦୪
ପାଦ ଗତି ଦୁର୍ଦ୍ଧର୍ଷର ରଥେ କୁମାର ଧୃଶା
ଆରେ ବାବୁ କେବଣ ଅଭାବେ ହୋଇଲୁ ଯେତେକ
ନିରାଶା ।୧୦୫

ଗୋଳକୁଣ୍ଡା ପାଣ୍ଡବେ ଅଟନ୍ତି ଜାର ଜାତକା
ବିଶେଷେ ହୀନ ଭିକ୍ଷାବାସୀ ସେ ବ୍ରହ୍ମହତ୍ୟା ପାତକା ।୧୦୬
କଳ୍ପତରୁ ତେଜିରେ ଭଜିଲୁ ଯେରଣ୍ଡ
ପାଣ୍ଡବଂକ ଦେଖନ୍ତେ ଆଜ କାଟିବି ତୋର ମୁଣ୍ଡ ।୧୦୭
ଗାନ୍ଧାରୀ ନନ୍ଦନ ବଚନ କହଇ ବିକଟି
ସ୍ୱାମୀ ଧୃଶାସନ ତୁମ୍ଭେ ସଭିହେଂ ଆଜ ଯମ ଭେଟି ।୧୦୮
ସ୍ୱାମୀ ମରିବାର ଲୋକେ ଯେ କହନ୍ତି ଦୁଷ୍ଟ ବାଣୀ
ପ୍ରାଣ ଯାନ୍ତେ ଯେହ୍ନେ ରୁବଇ ଦୁର୍ବଳ ପ୍ରାଣୀ ।୧୦୯
ସ୍ୱାମୀ ପାଣ୍ଡବ ପଞ୍ଚାଳ ଯେ ଜଗନ୍ନାଥେ ଥିଲେ
ମୋତେ ଜିଣନ୍ତା କେ ହୁଅଇ ତୁମ୍ଭର ଯେ ବୋଲେ ।୧୧୦
ସ୍ୱାମୀ ତୁମ୍ଭେ ଲକ୍ଷେ ରାଜା ମୁହିଂ ଯେକା ଜଣେ
ଯେ ପାର ମୋର ତୁଲେ କର କିନା ରଣେ ।୧୧୧
ସ୍ୱାମୀ ଧୃଶାସନ ତୋର ପ୍ରତଗ୍ୟାଂ ବୀରଧୂ
ଦେଖଇ କିନା ପ୍ରତଗ୍ୟାଂ ଶର କିମ୍ପେ ନ ବିନ୍ଧୁ ।୧୧୨
ଶୁଣିଣ ଧୃଶାସନ ଗର୍ଜଇ ବଡ଼ ରାଗେ
ଜାଳାବନ୍ତୀ ନାରାଜ ବିନ୍ଧିଲା ଅତି ବେଗେ ।୧୧୩
ଧୃଶାସନ ନାରାଜ ପଡନ୍ତେ ଦୁର୍ଦ୍ଧର୍ଷ କାମ ରୂପୀ
ଗଦାବର ବୁଲାଇ ନେଇ ଧୃଶାସନ ରଥେ ଖେପୀ ।୧୧୪
ଭାଙ୍ଗିଣ ରହୁବର ହୋଇଲା ଶତେ ଚୂନା
ଭୂମିରେ ପଡ଼ିଲା କୁମାର ଧୃଶାସନ ଜେନା ।୧୧୫
ଗଦାବର ଘାତେ ଧୃଶାସନ ପଡ଼ିଲାକ ମୂର୍ଚ୍ଛା
ତତକ୍ଷଣେ ଦୁର୍ଦ୍ଧର୍ଷ କରଇ ତାକୁ ପୁଚ୍ଛା ।୧୧୬
ଉଠ ଉଠ ସ୍ୱାମୀ ବୋଲି ଦୁର୍ଦ୍ଧର୍ଷ କୋଳ କରି
ଦୁର୍ଜୟକୁ ବୋଇଲା ରେ ଯେହାକୁ ଘେନିଯାଅ ଅପସରି ।୧୧୭

ସାଷ୍ଟମ ହୋଇଣ ଯେ ଉଠିଲା ଧୃଶାସନ
ଦୁର୍ଦ୍ଧର୍ଷ ବୋଇଲା ସ୍ୱାମୀ ସମର ଯାକେ ତୁମ୍ଭର ଯେସନେକ
ବିଧାନ ।୧୧୮

ଭୀଷ୍ମ ଦ୍ରୋଣ କର୍ଣ୍ଣ ଯେ ପ୍ରତଗ୍ୟାଂ ବହୁତ କରିଥିଲେ
ଅପଚୟେ କାଳକୁ କେହି ରଖି ନୁଆରିଲେ ।୧୧୯
ଦୁର୍ଦ୍ଧର୍ଷ ବୋଇଲା ସ୍ୱାମୀ ତୁମ୍ଭନ୍ତ ମାଗୁଅଛି ଯେତେ
ଆବର ବେଳେ ସମରେ ନ ପଶିବୁଟି କଦାଚିରେ ।୧୨୦
ସ୍ୱାମୀ ଦ୍ରୋପଦୀଂକି ଝିଂଘାସ ଯେ କଲୁ ତୁ ସଭା ତଳେ
ଭୀମସେନ ଠାକୁରେ ତାହା ଲିହିଛନ୍ତି ବକ୍ଷସ୍ଥଳେ ।୧୨୧
ତେର ବରଷ ସତାଣୋଇ ଦିନ ଗଲା
କଇଛାବନ୍ତୀ ସତୀ ସେ କେଶ ନ ବାନ୍ଧିଲା ।୧୨୨
ଯେ ତୋହୋର ଦକ୍ଷିଣ ଭୁଜ ଓପାଡିବେ ସମରେ
ସେ ରୁଧିର ନିଉଡିବେ ପାଞ୍ଚାଳୀ ଶିରରେ ।୧୨୩
ତେବେ ସେ କେଶ ବାନ୍ଧିବେ ସତୀ ଯେ ଅପର୍ଣ୍ଣା
ପ୍ରତଗ୍ୟାଂ ଅପାରଟି ପାଣ୍ଡବ ଭୀମସେନା ।୧୨୪
ଭୀମସେନ ଠାକୁରେ କରୁଅଛନ୍ତି ଅଳମ୍ବୁଷ ତୁଲେ ଯୁଦ୍ଧ
ଯେହିକ୍ଷଣି ଧାଇଂବେ ସେ ମୋତେ ନ ଦେଖି ରଣ ମଧ୍ୟ ।୧୨୫
ଦିନା କେତେ ବ୍ରତିଥାଅ କିନା ହୋ ଧୃଶାସନ
ନ ରହନି ସମରେ ପଳା ଯା ବହନ ।୧୨୬
ସାଷ୍ଟାମ ହୋଇ ଧୃଶାସନ ବସିଲା ଯାଇଂ ରଥେ
ବାହୁଡ଼ଇ କଉରୋବ ବିମନ ହୋଇ ସମରେ ବିଅର୍ଥେ ।୧୨୭
ଧୃଶାସନ ବିମନ ଦେଖି ଦୁର୍ମୁଖ ଦୁରାକର୍ଣ୍ଣ
ବେନି ଲକ୍ଷ ଯୋଦ୍ଧା ଘେନି ଧାଇଂଲେ ବହନ ।୧୨୮
ମାର ମାର ବୋଲିଣ ଯେ ପାଡନ୍ତି ଘୋର ବୋବି
ପାଦଭରେ ହେଳ ଯେ ଘେନଇଂ ମହୀ ଦେବୀ ।୧୨୯
ଧୃଶାସନକୁ ଆବୋରିଲେ ବେନି ବୀରେ ଆସି
ଦୁର୍ଦ୍ଧର୍ଷକୁ ନାରାଜ ବିନ୍ଧିଲେ ଆକ୍ରେଷି ।୧୩୦
ଶୁଣ ହୋ ମନୁରାୟେ ପଚାରଇ ଚଇତନ
ଅଳମ୍ବୁଷା ତୁଲେ ସମର କରଇ ଭୀମସେନ ।୧୩୧
ସମରେ ଭୀମସେନ ପ୍ରତଗ୍ୟାଂ ଗରୁ ରୋଷ
ଯେକା ବ୍ୟାଘ୍ର ଯେହ୍ନେ ଛାଗଳ ପଲ କରେ ଧ୍ୱସଂ ।୧୩୨
କଉରୋବ ବଳ ଥାଠେ ଭୀମ ପ୍ରହାର କରନ୍ତେ
ଅଳମ୍ବୁଷା ଓଗାଳିଲା ଆସି ତିନି ଅହିବ୍ରତ ଘେନି ରଥେ ।୧୩୩
ଯେକା ରଥକେ ଯାଚିଅଛି ଅଷ୍ଟ ବ୍ୟାଘ୍ର

ଦେଖିଣ ସାନନ୍ଦ ସେ ପାଣ୍ଡବ ବ୍ରିକୋଦର ।୧୩୪
ରଣ ରଙ୍ଗେ ବ୍ରିକୋଦର ଦୁସହ ଅଭୟା
କଣୟ ଗିରି ସାରିଷେ ବିକାଶିଲା ତାର କାୟା ।୧୩୫
ଚନ୍ଦ୍ରକିରଣ ଜାଣି ବେନି କରେ ଯାର ଗଦା
ଯମ ଦେବତାକୁ ଯେ ଜିଣନ୍ତେ ସାମରଥା ସଦା ।୧୩୬
ବକପଲ ଦେଖିଣ ଯେହ୍ନେ ଧାମଇ ଶାମଳ ପକ୍ଷୀ
ଧାମଇଂ ବ୍ରିକୋଦର ଦୁରାନ୍ତକେ ବଳ ଦେଖି ।୧୩୭
ଭୀମସେନକଇଂ ଦେଖି ଅସୁର ବଳ ଥାଠ
ଶତେପୁର କରି ବେଢ଼ିଲେ ମହାଘୋଟ ।୧୩୮
ଲୁହାର ଗଦା ଶତେ ଶତେ ଭାର ଘେନିଣ ଯେ ହାଥେ
ଗିରିବର ସାଦ୍ରିଶେ ସେ ଦିଶନ୍ତି ଦୁରାନ୍ତେ ।୧୩୯
ଯେକା ପାଣ୍ଡବକଇଂ ତିନି ଅହିବ୍ରତ ଯୋଧୀ
କେହୁ ଶତେ କେହୁ ସହସ୍ରେ ନାରାଜ ଅବିକ୍ଷଣେ ବିନ୍ଧି ।୧୪୦
କକଡ଼ା ମାସରେ ଯେସନେ କରଇ ଜଳ ବୃଷ୍ଟି
ଆକାଶେ ଅନ୍ଧାର ହୋଇଲେ ଦିନକର ତେଜ ଘୋଟି ।୧୪୧
ଅସୁରଂକର ପ୍ରହାର ଦେଖିଣ ବୀର ଭୀମ
ବେଲୁଂବେଳ ଅଧର କମ୍ପାଇ ଗରୁତମ ।୧୪୨
ଗଦା ମୁଦ୍ଗର ଗୁରୁଜ କୋନ୍ତ ଯାଠି
ଆରେ ଆରେ ବୋଲି ଯେକ ମୁଖ ହୋଇ ଉଠି ।୧୪୩
ଯେକା ଭୀମସେନକଇଂ ବେଢ଼ିଲେ ଅହିବ୍ରତେ କୋନ୍ତକାର
ବ୍ରିକୋଦର ଉପରେ ଆସି କଲେକ ପ୍ରହାର ।୧୪୪
ଦେଖିଣ ମାରୁତି ଯେ ବାମ ଅଙ୍ଗ ପାତି
ପଡିଣ ଚୂର ଗଲା ଗଦା ମୁଦ୍ଗର ଶକତି ।୧୪୫
ଗୁରୁଜ କୋନ୍ତ ନାରାଜ ଛେଲ ମୁଦ୍ଗର
ସମସ୍ତ ପଡିଣ ଚୂରଗଲା ଭୀମସେନ ଉପର ।୧୪୬
ଗର୍ଜିଣ ଯୋଦ୍ଧାୟେ ମାରନ୍ତି କୋନ୍ତ ଯାଠି
ପଡ଼ି ଉପୁଡଇ ତାହାର ଶରୀରେ ତିଳେହେଂ ନ ଫୁଟି ।୧୪୭
ଲେଉଟିଣ ଧାମଇଂ ସେ ପାଣ୍ଡବ ସୁନ୍ଦର
ଗଦା ପ୍ରହାର କଲା ଅସୁରଂକ ଉପର ।୧୪୮
ଯେକ ପ୍ରହାରକେ କେହି ନୁଆରନ୍ତି ମେଣ୍ଟି
ରଥୀ ଯୋଦ୍ଧା ସାରଥି ସର୍ବେ ଗୁଣ୍ଡା ହୋଇ ଉଠି ।୧୪୯
ରକତେ ବିଲେପନ ଭୀମସେନର ଅଙ୍ଗ
ହିରଣ୍ୟ ବିଦାରଣ କାଳେ ଯେସନେ ନରସିଂଘ ।୧୫୦
ଅସୁରେ ତ୍ରାସିଲେ ଭୀମସେନର ଭୀଷ୍ମରୂପ ଦେଖି
ପଳାବନ୍ତି ବିମୁଖେ ସେ ସମର ଉପେକ୍ଷି ।୧୫୧
ରଥ ଗଜ ଅଶ୍ୱ ତେଜି କେଶ ବାସ ଅସମ୍ଭାଳେ
ଭାଜିଲେ ସଇନେ ଯେ ହୋଇଣ ବିକଳେ ।୧୫୨
ଭାଙ୍ଗିଲେ ସଇନି କେହି ନ ଚାହିଂଲେ ଲେଉଟି
କାଳେବର ଗଦା ଘେନି ବୀର ଆକ୍ରେଷିଣ ପିଟି ।୧୫୩
ସଇନର ବିଅର୍ଥ ଦେଖିଣ ଅଳମ୍ବୁଷ
ପାଞ୍ଚ ଶତ ଯୋଦ୍ଧା ଘେନି ଧାଇଂଲା ରାକ୍ଷସ ।୧୫୪
ଦନ୍ତବକ୍ର ସୁବକ୍ର ଅଳାୟୁଧ ତିନି ପୁତ୍ର
ଯେକେ ଯେକେ ଜିଣି ପାରନ୍ତି ଇନ୍ଦ୍ର ଚନ୍ଦ୍ର ଦେବତାନ୍ତ ।୧୫୫
କୁଠାର ଆୟୁଧ ଯେ ଧରିଛନ୍ତି କରେ
ଧାତିକାରେ ପିଟିଲେ ନେଇ ଭୀମସେନର ଉପରେ ।୧୫୬
ଦେଖିଣ ମାରୁତି ଅସୁର ବିଘାତ
ଆକ୍ରେଷି ଧଇଲାକ ଅଳାୟୁଧ ରଥ ।୧୫୭
ଅନ୍ତରୀକ୍ଷ ମାର୍ଗେ ବୁଲାଇ ତାର ରଥ ଦଣ୍ଡ
ଅଳମ୍ବୁଷା ଉପରେ ପ୍ରହାର କଲା ରଥ ହୋଇଲା
ବେନି ଖଣ୍ଡ ।୧୫୮
ଅଳମ୍ବୁଷା ଅଳାୟୁଧ ଦୁହେଂ ପାଦଗତି
ଭୀମସେନ ଉପରେ ନେଇ ପିଟିଲେ ଲୁହାର ଶକତି ।୧୫୯
ବାମ ଅଙ୍ଗ ପାତିଲା ସେ ବୀର ଭୀମସେନ
ଭାଙ୍ଗିଣ ଶକତି ଯେ ହୋଇଲାକ ସର୍ବଚୂର୍ଣ୍ଣ ।୧୬୦
ବିଶହସ୍ତ ହୋଇଲେ ସେ ପିତା ପୁତ୍ର ବେନି
ଗଜଗାଜି ଗଦା ପ୍ରହାର କଲାକ ପାବେନି ।୧୬୧
ଆହୋ ଚଇତନ ଦନ୍ତବକ୍ର ବୋଲି କରି ଅଳମ୍ବୁଷର ଜ୍ୟେଷ୍ଠ ପୁତ୍ର
ଗଦା ବିଘାତେ ସେ ଉଡିଲା ଗଗନ ପଥ ।୧୬୨
ପୁଣି ପ୍ରହାର କଲା ଭୀମସେନ ଗଦା ତୋଳି
ଅଳୋୟୁଧର ଶରୀରେ ପଡ଼ି ରକତେ କର୍ଦ୍ଦନ ରୋମାବଳି ।୧୬୩
ପଳାବଇ ଅଳମ୍ବୁଷା ଦୁଇ ପୁତ୍ରନ୍ତ ଘେନି
ଗୋଡାଇ ଭୀମସେନ ମାଇଲା ଅନେକ ସଇନି ।୧୬୪
ଦଣ୍ଡ ଭଗ୍ନ କରିଣ ବାହୁଡଇ ବ୍ରିକୋଦର
ଲେଉଟି ମିଳିଲା ଯାଇଂ ଦୁର୍ଦ୍ଧର୍ଷ ସଙ୍ଗତର ।୧୬୫
ଦୁର୍ଦ୍ଧର୍ଷ ଭୀମସେନ ବେନି ଯେକ ସଙ୍ଗ
କେତୁ ମଙ୍ଗଳ ପ୍ରାୟେ ଦିଶନ୍ତି ରଣ ରଙ୍ଗ ।୧୬୬
ଶଲ୍ୟ ସୋମଦତ୍ତ କର୍ଣ୍ଣ ଅଶ୍ୱସ୍ତମା କୃପ
କୋଣକେ ଆଉଜିଲେ ଦୁହିଂକର ଦେଖି ଘୋର ରୂପ ।୧୬୭
ଅସନମାନ ଯୋଧାୟେ ପୀରତି ସୁହୃଦେ ନାହିଂ
ଶରଣ ବୋଇଲେ ଭୀମ ଦୁଗୁଣେ ମାରଇ ।୧୬୮

ଅଧର୍ମ ପଣ ଦେଖି ଯୋଧାଯେ ଆଡ଼େ ହୋଇଗଲେ
ଛାମୁରେ ରହିବାକୁ କେହି ଭରସା ନ କଲେ ।୧୬୯
ଭୀମସେନ ଦୁର୍ଦ୍ଦକ୍ଷ ଦୁହେଁ ଆସନ୍ତି ବାହୁଡ଼ି
ଯେ ମୁଖେ ପଡନ୍ତି ଜଣେ ସେ ନ ଯାନ୍ତି ଉବୁରି ।୧୭୦
ରଣରଙ୍ଗ ଧନ୍ଦୋଳ ସମରେ ବଳବନ୍ତେ
ନନ୍ଦିଘୋଷ ରଥ ଦିଶିଲା ଦୁହିଁଙ୍କରି ଲେଉଟି ଆସନ୍ତେ ।୧୭୧
ଭୁରିସର୍ବାଂକ ଛାମୁରେ ଉଭା ହୋଇ ଅଛନ୍ତି ଯୁଝେଷ୍ଣି
ଭୀମସେନ ଦୁର୍ଦ୍ଦକ୍ଷ ଦୁହେଁ ଯାଇ ତାଂକୁ ଭେଟି ।୧୭୨
ଗାନ୍ଧାରୀ ନନ୍ଦନ ଯୁଝେଷ୍ଣିଂକି କଲା ପୂଜା
ଭୂରିଶର୍ବାଂକ ତୁଲେ ସମର ଆବୋରିଲା ଦୁର୍ଦ୍ଦକ୍ଷା ।୧୭୩
ଯେସନେକେ ରାହୁ ଚନ୍ଦ୍ରଦେବତାନ୍ତ ଆକ୍ରେଷି
ଶାୟନ୍ତନୁର ନନ୍ଦନ ଦୁର୍ଦ୍ଦକ୍ଷକୁ ଦେଖି ବହୁତ ପ୍ରଶଂସି ।୧୭୪
ସାଧୁ ସାଧୁ ଦୁର୍ଦ୍ଦକ୍ଷରେ ତୋହୋର ପିତାମାତା
ଧୃତିରାଷ୍ଟ କୁଳକୁ ତୁହି ସେ ପାଣି ଦ୍ୟନ୍ତା ।୧୭୫
ଅନେକ ପ୍ରଶଂସା କଲେ ଭୀଷ୍ମେ ଦୁର୍ଦ୍ଦକ୍ଷକୁ ଦେଖି
ବିନ୍ଧିଲେ ନାରାଜ ଯେ କଉରୋବନ୍ତ ଉପେକ୍ଷି ।୧୭୬
ଦୁର୍ଦ୍ଦକ୍ଷ ମେଣ୍ଟିଲା ଭୂରିଶର୍ବାଂକ ନାରାଜ ପଡନ୍ତେ
ପୁଣିହିଂ ବିନ୍ଧିଲେ ଲୋହ ନାରାଜ ଯେ ଶତେ ।୧୭୭
ଗାନ୍ଧାରୀ ନନ୍ଦନ ଯେ ବୁଲାଇ ଗଦା ବେନି
ନାରାଜ ବଞ୍ଚାଇଲା ସେ ବିଚିତ୍ର ଗତି ଘେନି ।୧୭୮
ଅନେକ ସମର କଲେ ଭୂରିଶର୍ବା ଗାଂଗବେ
ଦୁର୍ଦ୍ଦକ୍ଷକୁ ଜିଣି ନୁଆରିଲେ ବହୁତ ସମରେ ଯେବେ ।୧୭୯
ବିନ୍ଧିଣ ବିମୁଖ ଯହୁଁ ହୋଇଲେ କୁରୁରାଜା ସୁତ
ସହସ୍ରଶିରା ସହସ୍ରେକ ବିନ୍ଧିଲେ ମହା ବଳବନ୍ତ ।୧୮୦
ଯେସନେକ ବିମ୍ବରେ ଗୋପ ହୁଅନ୍ତି ସର୍ପେ
ରୋମେ ରୋମେ ଗଳିଲେ ଶୋଷିଲେ କୁମାରର ଦର୍ପେ ।୧୮୧
ରଣେ ଅସାଷ୍ଟାମ ଯେ ଗାନ୍ଧାରୀର ବଳା
କୁରୁନାଥର ନନ୍ଦନ ଦେଖି ତେଜ ଅନର୍ଗଳା ।୧୮୨
ରଥରୁ ତେଣିଂ ପଡ଼ିଲେ ଭୂରି ଯେ ଶର୍ବାଯେ
ଆକ୍ରେଷି ଧଇଲେ ଯାଇଂ ଗାନ୍ଧାରୀ ତନଯେ ।୧୮୩
ଦୁର୍ଦ୍ଦକ୍ଷକୁ ତୋଳି ନେଇ ବସାଇଲେ ରଥେ
ବଂଶ ଦ୍ରୋହ ଲାଗିବ ସେ ମାରିବଇଂ କେମନ୍ତେ ।୧୮୪
ରଥରେ ପକାବନ୍ତେ ଦେଖିଲେ ଯୁଝେଷ୍ଣି
ଆରେ ଆରେ ଦୁର୍ଦ୍ଦକ୍ଷ ମୋର ପ୍ରାଣର ଭାଇ ଗୋଟି ।୧୮୫
ଯୁଝେଷ୍ଣି ଡାକି ଦିଲେ ଆରେ ଧାଉଂକିନା ଭୀମ
ଦୁର୍ଦ୍ଦକ୍ଷ ବନ୍ଦୀ ଗଲା ଆମ୍ଭର କିସ ଧର୍ମ ।୧୮୬
ସେହି ସେ ସୋଦର ହାଦେ ଜୀବନ ଦାନ ଦିଲା ମୁକୁ
ଆରେ ମୋହୋର ଦେଖନ୍ତେ ଧରି ନେଉଅଛି ଦୁର୍ଦ୍ଦକ୍ଷକୁ ।୧୮୭
ପାଣ୍ଡବଂକ ଥାଠେ ଶୁଣିଲା ଘୋର ଧ୍ୱନି
ଭୂରିଶର୍ବାନ୍ତ ମାର ବୋଲି ଧାଇଂଲେ ସଇନି ।୧୮୮
ସ୍ୱାମୀର ଆଗ୍ୟାଂଯେ ଯେ ନିବେଶିତ ଶିର
ରଣ ଧନ୍ଦୋଳ ପାଣ୍ଡବ ସେ ଧାଇଂଲା ବ୍ରିକୋଦର ।୧୮୯
ଭୀମସେନର ତୁଲେ ଯେ କୁମାର ଶ୍ରୀଖଣ୍ଡୀ
କୁବେର ସାରିଷେ ସେ ଶ୍ରୀଖଣ୍ଡୀର ରଥ ମଣ୍ଡି ।୧୯୦
ପାଣ୍ଡବ ବଳ ଯହୁଁ ବେଢ଼ିଲେ ରଣ ଘୋଟି
ଦୁର୍ଦ୍ଦକ୍ଷକୁ ଭୂରିଶର୍ବାଯେ ଘେନି ଯାଉଛନ୍ତି ଲେଉଟି ।୧୯୧
ରଣେ ସୋହୋତ ସୁନ୍ଦର ବ୍ରିକୋଦର ଥାଠ ମହାନ ଜେନା
ଭୂରିଶର୍ବାଂକର ପଛକଟି ବିଜୟେ ବୀର ଭୀମସେନ ।୧୯୨
ରେ ରେ କାର ଶବଦ କରି ବୀର ପାଣ୍ଡବ ପଞ୍ଚାଣ
ଭୂରିଶର୍ବାଂକର ରଥେ ପିଟିଲା ଗିରିବର ଚୂଡଣ ।୧୯୩
ଅନମିତେ ଗିରିବର ଯହୁଁ ପିଟିଲା ପରଚଣ୍ଡା
ଭୂରିଶର୍ବାଂକର ରଥ ଭାଙ୍ଗି ହୋଇଲା ମସୀଗୁଣ୍ଡା ।୧୯୪
ରଥ ଭାଙ୍ଗି ଗଦା ପଡ଼ିଲା ଭୂରିଶର୍ବାଂକ ଉପରେ
ଅସାଷମ ହୋଇଣ ସେ ପଡ଼ିଲେ ଭୂମିରେ ।୧୯୫
ପୁଣି ସଚେତ ହୋଇ ଭୂରିଶର୍ବାଯେ ଆରୋହିଲେ ମଉନାଗ
ଥାଠ ଭିତରେ ଯାଇଂ ପଶିଲେ ଅତି ବେଗ ।୧୯୬
ତହୁଂଣ ଦୁର୍ଦ୍ଦକ୍ଷକୁ ରଥରେ ବସାଇ ଶ୍ରୀଖଣ୍ଡୀ
ଶ୍ରୀଭୁଜେ କୁମାର ଚକ୍ର କାଢି ଯେ ଭୂଷଣ୍ଡୀ ।୧୯୭
ଭୀମ ଦୁର୍ଦ୍ଦକ୍ଷ ଯେ ଶ୍ରୀଖଣ୍ଡୀ ତିନି ଯୋଧୀ
ଅର୍ଜୁନ ସନ୍ନିଧେ ଆସି ଶ୍ରୀକୃଷ୍ଣଂକ ପାଦ ବନ୍ଦି ।୧୯୮
ଆହୋ ଚଇତନ ଭୀଷ୍ମଂକର ତୁଲେ ଅର୍ଜୁନ କରଇ ଯୁଦ୍ଧ
ଆକାଶ ଘୋଟିଲା ଯେ ଦୁହିଁଙ୍କର ଶରବନ୍ଧ ।୧୯୯
ଶହସ୍ର ଧାରା ବୃଷ୍ଟି ଗହଳ ଧନ୍ଦୋଳ ଜାଣି
ଦିଗ ଅମ୍ବର ନ ଦିଶଇ ଘୋଟିଲାକ ରୟଣୀ ।୨୦୦
ଶହସ୍ର ଶହସ୍ରକେ ପଡ଼ି ହୋଉଛନ୍ତି ପଡ଼ିତାଳ
ଉଠଇ ବହ୍ନି ଜାଣି ବଡ଼ବା ଅନଳ ।୨୦୧
ଲାଘବ ଶରେଣ ଅନେକ ବାଣ ବିନ୍ଧି
ନାରାଜେ ନାରାଜେ ପଡ଼ିତାଳେ ହୁଅନ୍ତି ଛନ୍ଦାଛନ୍ଦି ।୨୦୨

ଓଛ ନାରାଜେ ଯହୁଂ ନୁଆରିଲେ ଜିଣି
ଶତେଧାରା ଶହସ୍ରେକ ବିନ୍ଧିଲେ ଭୀଷ୍ମେ ବେଗେ ଟାଣି ।୨୦୩
ବିଶ୍ୱାମଇତ୍ର ମନ୍ତ୍ରେଣ ନାରାଜ ଆଦ୍ରାବଳୀ
କତାନ୍ତକ ଅନଳ ପ୍ରାୟେ ଶର ହାଦେ ଜଳି ।୨୦୪
ଆକ୍ରେଷି ଗାଙ୍ଗବେ ନାରାଜ ବିନ୍ଧିଲେକ ପାର୍ଥିବେ
ଦେବ ଶହସ୍ର ବିନ୍ଧିଲେଟି ଭୀଷ୍ମେ ସମ୍ଭାଳ ବୋଇଲେ
ବାସୁଦେବେ ।୨୦୫
ନାରାୟଣଂକ ବଚନେ ପାଥ ତିମ୍ଭୁର ଶର ଘେନି
ଭୀଷ୍ମଂକର ନାରାଜନ୍ତ ଯେ ଛେଦିଲେ ଫାଲଗୁନି ।୨୦୬
ପୁଣ ଗାଙ୍ଗବେ ଯେ କୁହୁକା ଶର ପେଷି
ଘୋଟିଲାକ କୁହୁଡ଼ି ଯେ ଆକାଶ ନ ଦିଶି ।୨୦୭
ଅର୍ଜୁନର ଅଗ୍ରତେ ଯେ ଗୋବିନ୍ଦେ ବୋଇଲେ
ଦେଖ ହୋ ଗାଙ୍ଗବେ ଯେ ଆଜ କପଟ ଯୁଦ୍ଧ କଲେ ।୨୦୮
ନାରାୟଣଂକ ବଚନେ ଦ୍ରହସିତ ସର୍ବସାଚୀ
ସୂର୍ଯ୍ୟାବ୍ରତେକ ନାରାଜ ଅର୍ଜୁନ ଆମଞ୍ଚି ।୨୦୯
ଆଦିତ୍ୟଂକର ତେଜ ଯହୁଂ ଆକାଶେଣ ଘୋଟି
କୁହୁଡିତ ଦ୍ରୋଛନା ଯେ ଗଲାକ ହାଦେ ଫାଟି ।୨୧୦
ପୁଣିହିଂ ଗାଙ୍ଗବେ ଯେ ପନ୍ନଗା ଶର ପେଷି
ଗର୍ଜିଣ ପନଙ୍ଗ ଯେ ଫେରୁ ଟେକି ଆସି ।୨୧୧
ସର୍ପନ୍ତ ଦେଖିଣ ଯେ ଅର୍ଜୁନ ମହାବଳୀ
ଖଗବର ନାରାଜ ବିନ୍ଧିଲା ବୀର ପାଥ ତୋଳି ।୨୧୨
ସମରେ ତେଜ ଯହୁଂ ବିକାଶିଲା ବଇନେତ୍ର
ଦେଖିଣ ପନ୍ନଗେ ଯେ ହୋଇଲେ ମୃତୁଗତ ।୨୧୩
ବାଣ ଜ୍ୱାଳାବଳୀ ଜାଣି ବରଷାର କାଳ
ତିସିରା ପହର ଆସି ହୋଇଲାକ ବେଳ ।୨୧୪
ଦିନକର ସମର ସମ୍ଭର୍ବର କାଳେ
ପଛିମେ ତେଜ ବିକାଶିଲେ ଆଦିତ୍ୟ ଦିଗପାଳେ ।୨୧୫
ଦିନକର ସମର ସରି ଆରେକ ଦିନ ଛଉବିଂଶ ଦଣ୍ଡ
ରଣରଙ୍ଗେ ତେଜ ଦୁର୍ଗୁଣ ଯେ ଆକାଶେ ମାରତଣ୍ଡ ।୨୧୬
ପାଣ୍ଡବନ୍ତ ପିଠି ଖରା ଦିନର ଅଧ ପରିଯନ୍ତେ
ଲାଗିଲା ମୁଖ ଖରା ତେଜ ପଛିମକୁ ଲେଉଟନ୍ତେ ।୨୧୭
ଅବିକ୍ଷଣେ ବାମ ହୋ ବିନ୍ଧନ୍ତେଣ ବେନି
ଝାଳେଣ ତ୍ରିପଣ୍ଡ ଯେ ହୋଇଲା ଫାଲଗୁନି ।୨୧୮
ଆଦ୍ୟତ୍ୟଂକର ତେଜ ଶହସ୍ର ଜ୍ୱାଳାବଳୀ
ଅର୍ଜୁନର କପାଳୁଂ ଶ୍ରମ ଝାଳ ଗଳି ।୨୧୯

ଚାରି ଅଶ୍ୱଂକୁ ଯେ ଚାରି ଶତେ ବାଣ
ଅର୍ଜୁନ ଉପରକୁ ବିନ୍ଧିଲେ ଭୀଷ୍ମ ମହାରାଣ ।୨୨୦
ନନ୍ଦିଘୋଷ ରଥ ଧ୍ୱଜେ ବିଜୟେ ହନୁମନ୍ତ
ତହିଂକି ସହସ୍ରେ ବାଣ ବିନ୍ଧିଲେ ଗଙ୍ଗାସୁତ ।୨୨୧
ରଥ ଚାରି ଖମ୍ଭକୁ ଚାରି ସହସ୍ର ଶର
ବେନି ଶହସ୍ର ବିନ୍ଧିଲେ ଯେ ଅର୍ଜୁନ ଉପର ।୨୨୨
ଲେଉଟିଣ ପାଥକୁ ପ୍ରତିବାକ୍ୟ ଦିଅନ୍ତି ବନମାଳୀ
ଅସମ୍ଭାଳ ହେଲା ବାବୁ ପାରିବୁଟି କି ସମ୍ଭାଳି ।୨୨୩
ସବୁଂକୁହିଂ ଉପ୍ରୋଧ ଛାଡିଲା ଶାୟନ୍ତନି
ବେଗେଣ ପାଗୁ ଯେବେ ନିବାର କର ହେ ଫାଲଗୁନି ।୨୨୪
ଝାଳେଣ ଗଳିତ ଯେ ପଡ଼ିଲା ବେନି ଆଖି
ଅବଲୋକନେ ଚାହିଂ ସେ ନୁଆରଇ ଦେଖି ।୨୨୫
ଅର୍ଜୁନ ବୋଇଲା ନାଥ କିମ୍ପାଇ କର ଭୀତି
ଯେହିକ୍ଷଣି ଭୀଷ୍ମଂକର ନାରାଜ କାଟିବି ବିକୋଟି ।୨୨୬
ଅପାର ତିରଣ ଯେବେ ହୋଇବ ଯେକ ରାଶି
କିଂଚିତ ଅନଳେ ତାହା ପାରଇଟି ଧ୍ୱଂସି ।୨୨୭
ଅହିବ୍ରତେକ ନାରାଜ ଅର୍ଜୁନ ବିନ୍ଧିଲା
କଷଣି ଅଙ୍ଗୁଷ୍ଠିରେ ଲଲାଟ ପୋଛିଦିଲା ।୨୨୮
ଯେତେକ ଛିଦ୍ର ପାଇ ଭୀଷ୍ମେ ଶର ସନ୍ଧି
ଧାତିକାରେ ପାଡିଲେ ସେ ଦଶ ସହସ୍ର ଯୋଧୀ ।୨୨୯
ସାଂଗ୍ରାମ ରହୁ ବୋଲି କଲେକ ଶଙ୍ଖ ଧ୍ୱନି
ଜୟ କରି ବାହୁଡ଼ିଲେ କଉରୋବ ସଇନି ।୨୩୦
ଅର୍ଜୁନ ବିନୋୟୀ କରି ପୁଛଇ ଶ୍ରୀକୃଷ୍ଣେ
ଜୟ ଶଙ୍ଖ ଶବଦ କରି ବାହୁଡ଼ିଲେ କୁରୁ ସଇନ୍ୟେ ।୨୩୧
ଗୋବିନ୍ଦେ ବୋଇଲେ ବାମ ଡାହାଣେ ଚାହଂ ପାଥ
ଭୀଷ୍ମେ ପାଡିଲେ ତୋହୋର ଦଶ ସହସ୍ର ରଥ ।୨୩୨
ରଥରୁ ବାହାର ହୋଇ ଚାହଇଂ କିରୀଟୀ
ରଥ ଗଜ ଅଶ୍ୱ ଯୋଦ୍ଧାୟେ ବେନି ଖଣ୍ଡ ହୋଇ ପଡ଼ିଛନ୍ତି
ମହୀଲୋଟି ।୨୩୩
ନାରାୟଣ ମୁଖ ଚାହିଂ ଅର୍ଜୁନ କଲା ପୁଛା
ନିଚୟେଂ ପାଣ୍ଡବ ବଳ ଦେବ ନୁହନ୍ତି ଆଉ ରକ୍ଷା ।୨୩୪
ଲଲାଟୁଂ ଘର୍ମ ଯହୁଂ ପଶିଲା ନୟନେ
ଅହିବ୍ରତେକ ଶର ପେଷିଲେ ଲଲାଟ ପୋଛୁଂ ବହନେ ।୨୩୫
ଯେତେକ ଛିଦ୍ର ମୋହୋର ଭୀଷ୍ମଦେବ ପାଇଲା
ଦଶ ସହସ୍ର ଯୋଦ୍ଧା ପାଡି ବେଗେ ଗଲା ।୨୩୬

ଯେତେକ ଦ୍ୱନ୍ଦ ହରି ଆରମ୍ଭିଲୁ ଅନମିତେ
ଆମ୍ଭର ରକ୍ଷା ହରି କରିବୁ କେମନ୍ତେ ।୧୨୩୭
କଉରୋବ ସଇନି ଯେ ଅନେକ ଆନନ୍ଦେ
ହସ୍ତିନାରେ ଯାଇଂ ପଶନ୍ତି ଅନେକ ସାନନ୍ଦେ ।୧୨୩୮
ଯଶ କଳସ ପାତାଙ୍ଗ ବୀରେ ଉଡାଇଲେ ରଥେ
ପ୍ରତର୍ଘ୍ୟାଂ ସାର୍ଥକ କଲେ ଶାୟନ୍ତନୁ ସୁତେ ।୧୨୩୯
ବିଷାଦ ପାଣ୍ଡବ ବଳ ସଇନି ସମସ୍ତେ
ପାଦାନ୍ତି ରଥୀ ଯୋଦ୍ଧା ରାଜାର ସହିତେ ।୧୨୪୦
ବିକଳ ଫାଲଗୁନି ଯୋଦ୍ଧାଂକର କଷ୍ଟ ଦେଖି
ଅରୁଣ ଉଲ୍ଲୋଳ ଜାଣି ବହଇ ବେନି ଆଖି ।୧୨୪୧
ଅର୍ଜୁନ ବୋଇଲା ହରି ମରଣ ନୋହିଲା ଯେହାଂକର ଆଗେ
ମୋହୋର ପାଇଂ ପଡ଼ିଲେ ଯେହା ମୁଂ ଦେଖିବି କେଉଂ
ବାଗେ ।୧୨୪୨
ମନ୍ଦର ଦେଶର ରାଜା ଭୀମ ଚକ୍ରବ୍ରତୀ
ସେ ରାଜାର ତୁଳେ ପଡ଼ିଲେ ଦଶ ସସ୍ର ରଥୀ ।୧୨୪୩
ଯୋଜନେକ ଆୟତନେ ପଡ଼ିଲେ ପାଦାନ୍ତି
ରୋବନ୍ତ ଫାଲଗୁନି ଦେଖିଣ ତାହାଂକର ଶାସ୍ତି ।୧୨୪୪
ଅନେକ ବଇକୁଳ୍ୟ ଯେ ହୋଇଲେ ଧନୁର୍ଜୟେ
ଆବର ଜୀବନ ମୋର କିସ ଯେ ଉପାୟେ ।୧୨୪୫
ଜୀବନ୍ତୁ ମରଣ ଯେ ଅଟଇ ବଡ଼ ସୁଖ
ଜଇନ୍ତା କଟକେ ଯାଇଂ ଚାହିଂମା କାହା ମୁଖ ।୧୨୪୬
ଜଗତେ ଶୁଭିଲା ପାଣ୍ଡବେ ଜଗୁଜିତା
ରାଜୁସୀ ଯାଗେ ଦେଖିଲେ ସମ୍ପଦ ବଳବନ୍ତା ।୧୨୪୭
ସେହି ସମ୍ପଦ ପ୍ରାୟେ ବୁଝି ଅଇଲେ ଆଶ କରି
ଯୁଦ୍ଧେ ପଡ଼ିଲେ ଆଜ ଅଦୋଷେ ହୋଇଲେ ଅପହାରୀ ।୧୨୪୮
ଆମ୍ଭର ନିମନ୍ତେ ଅଇଲେ ସମର କରିବେ
ବନ୍ଧୁତା ଲକ୍ଷଣ ଥିବ ଶତ୍ରୁନ୍ତ ମାରିବେ ।୧୨୪୯
ଅନେକ ବଇକୁଳ୍ୟ ହୋଇ ରୋବନ୍ତ ବୀର ପାଥ
ଅର୍ଜୁନକୁ ସମ୍ଭୋଧନ୍ତି ପ୍ରଭୁ ଜଗନ୍ନାଥ ।୧୨୫୦
ଆହୋ ରାଗ ସହି ନୁଆରିଣ ଆରମ୍ଭିଲୁ ଯୁଦ୍ଧ
ଯେତେବେଳକୁ ତୁ କାହିଂ କରୁ କ୍ରୋଧ ।୧୨୫୧
ସମ୍ପଦ ବିପଦ ଯେ ଆପଣାର କଲା କର୍ମ
ଜିଣି କି ହାରି କି ଯେ ଛତ୍ରୀଂକର ଧର୍ମ ।୧୨୫୨
ଓପ୍ରୋଧ ଯୋଦ୍ଧାମାନେ ପଡ଼ିଲେ ପୁଣ ଆଜ
ସାଂଗ୍ରାମେ ପ୍ରମାଦ ଭୂମି ଆପଣେ ହୋଇ ପ୍ରାଣତ୍ୟାଜ ।୧୨୫୩
ଜାତ ହେଲେ ଦେବତା ହୋଇଲେ ଅବଶ୍ୟ ହୋଇ ମୃତୁ
ଅବିଚାରେ ଯମ ନାଶ ନ କରଇ ଜନ୍ତୁଜନ୍ତୁ ।୧୨୫୪
ମହା ଯାଗଥାନ ଯେ ଅନଳେ ପୁଣ୍ୟେ ପାଇ
ଯେ ମହାଭାରଥ ଯୁଦ୍ଧେ ପଡ଼ିଲେ ବଇକୁଣ୍ଠେ ଠାବ ହୋଇ ।୧୨୫୫
ଆକାଶକୁ ତଲ୍ଲେକର ତୋର ଯେତେ ସଇନ ପଡ଼ିଲେ
ଶ୍ରୀକୃଷ୍ଣଂକ ବଚନେ ପାର୍ଥ ଶୂନ୍ୟକୁ ଚାହିଂଲେ ।୧୨୫୬
ଦେଖିଲେ ସମରେ ପଡ଼ିଲେ ଯେତେ ଯୋଦ୍ଧାମାନେ
ସମସ୍ତେ ଆରୋହୀ ଅଛନ୍ତି ପୁଷ୍ପେକ ବିମାନେ ।୧୨୫୭
ଅନେକ ରତ୍ନ ଯେ ଶରୀରେଣ ହୋଇଛନ୍ତି ମଣ୍ଡି
ଆଗେ ବୀରତୂର କଂସାଳ ମର୍ଦ୍ଦଳ ବାଜଇ ଦାଉଂଣ୍ଡି ।୧୨୫୮
ଅନେକ ପାଟଛତ୍ର ହୋଇଛି ପୁଷ୍ପ ବୃଷ୍ଟି
ଓହୋବଳ ଯେତେକ ପଡ଼ିଲେ ଦେଖିଲା କିରୀଟୀ ।୧୨୫୯
ଅର୍ଜୁନ ପ୍ରଣପତ୍ୟ ଶ୍ରୀବାସୁଦେବଂକ ଚରଣ ତଳେ
ବିଷାଦ କ୍ରୋଧ ପାର୍ଥ ଛାଡ଼ିଲା ତେତେବେଳେ ।୧୨୬୦
ତୁ ଦେବ ଶଙ୍ଖଚକ୍ର ଧାରଣ ମଧୁହାରୀ
ସୟଳ ଜନ ଚିନ୍ତାମଣି ଦୁଖୀ ଜନ ନିସ୍ତାରୀ ।୧୨୬୧
ଯେ ତୋହୋର ଶ୍ରୀମୁଖ ଗୋଟି ଦେଖିଣ ଅଦ୍ୟାପି
ପାବନ୍ତି ପରମ ଗତି ତରନ୍ତି ସର୍ବପାପୀ ।୧୨୬୨
ଚାଣ୍ଡାଳ ତମ ଯେ ଥିଲେ ବାଦ୍ୟକାର
ସବୁନ୍ତି ଦେଖିଲି ମୁହିଂ ଅକ୍ଷୟେ ସ୍ୱର୍ଗପୁର ।୧୨୬୩
ସାର୍ଥକ ଜୀବନ ମୋର ମୁଂ ଦେଖିଲି ଶ୍ରୀପତି
ଜୀଇବାଉଂ ମରଣ ଯେ ସାଧୁ ପରମ ଗତି ।୧୨୬୪
ଅର୍ଜୁନ ଅନେକ ଯେ କ୍ରୋଧ କରୁଥିଲା
ଜଗୁଜନ ମୋହନ ନାଥ ତା ମନୁ ଭ୍ରାନ୍ତି ଚଡ଼ାଇଲା ।୧୨୬୫
ଜୟ ତୁ ହୃଷୀକେଶ ଜଗତ ଜନ ଚିନ୍ତା
ଜୟ ତୁ ଯୋଗେଶ୍ୱର ନାଥ ପରମ ଗତି ଦ୍ୟନ୍ତା ।୧୨୬୬
ଶ୍ୱେତ ପୀତ କୁଂକୁମ ବର୍ଣ୍ଣେ ତିନି ମୂର୍ତ୍ତି
ମହା ନରକ ଉଦ୍ଧାରଣ ପ୍ରସନ୍ନେ ପରମ ଗତି ।୧୨୬୭
ସର୍ବଜନ ଚିନ୍ତାମଣି ଚିନ୍ତଇ ମମ ହୃଦେ
ଯମଦଣ୍ଡ ଖଣ୍ଡଣ ନାଥ ତୋହୋର ପ୍ରସାଦେ ।୧୨୬୮
ସ୍ୱାମୀ ଅସଂଖ୍ୟ ମହାଭାରଥ ଯେ ମୁନିଜନ ବାକ୍ୟେ
ଦେବେ ଅଗୋଚର ଯାହା ସଞ୍ଚିତ କାହାର ଶକ୍ୟେ ।୧୨୬୯
ଶ୍ରୀକୃଷ୍ଣ ପ୍ରସନ୍ନେ ମୋତେ ବର ଦିଲେ ଅଭୟେ ପିଙ୍ଗଳାକ୍ଷୀ
ଗିରିଜାର ପ୍ରସନ୍ନେ ମୁଂ ଲେଖନ କରୁଅଛି ।୧୨୭୦
ନୋହୋଇ ପଣ୍ଡିତ ମୁଂ ନ ପଢ଼ିଲି ବାଳକାଳେ
ହୃଦଗତେ ବିଶ୍ରାମିଲେ ମୋର ଶ୍ରୀଚଣ୍ଡୀ ସାରୋଳେ ।୧୨୭୧

ନ ପଢ଼ି ପଣ୍ଡିତ ମୁହିଂ ବିଦା ଶାସ୍ତ୍ର ପ୍ରାପତ ଅଦଭୁତେ
ଶୂଦ୍ରମୁନି ସାରୋଳା ଦାସ ଶ୍ରୀଚଣ୍ଡୀ ହୃଦେ ଚିନ୍ତେ ।୨୭୨

**

## ୮୭. ଷଷ୍ଠଦିନ ଯୁଦ୍ଧରେ ଭୀଷ୍ମଙ୍କର ଅମୋଘଶକ୍ତି ପ୍ରେରଣ ଓ ଶ୍ରୀକୃଷ୍ଣଙ୍କର ଚକ୍ର ଦ୍ୱାରା ତାହା ଛେଦନ ଏବଂ ବଳରାମଙ୍କ ତୀର୍ଥ ଭ୍ରମଣ

ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ଯୁଦ୍ଧକୁ ଛଡ଼ ଦିବସ କଥାର ସଙ୍ଗତି ।୧
କଉରବ ପାଣ୍ଡବଂକ ବଢ଼ାଇ ମୁରାଟ
ସମ୍ବରେ ଉଭାରିଲେ ଓହୋବଳ ଥାଠ ।୨
ବଢ଼ିଲା ରଣରଙ୍ଗ ଭୀଷ୍ମ ଯେ ଅର୍ଜୁନ
ପରିଘ ଶହସ୍ରମାନ ଘେନି ବିନ୍ଧିଲେ ଅବିଛିନ୍ନ ।୩
ଶ୍ୱେତର ପ୍ରାନ୍ତେ ସେ ନୃପତି ବିରାଟ
ଶଙ୍ଖ ଉତ୍ତରକଇଂ ଘେନି ଉଭାରିଲେ ଥାଠ ।୪
ପଞ୍ଚାଳ ସଇନି ଘେନି ଦ୍ରୁପଦ ମହୀପାଳ
ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମନ ଘେନି ବେନି ବାଳ ।୫
ଜାରାସନ୍ଧର ନନ୍ଦନ ମଘ ଦେଶର ନୃପତି
ତେଇଶି କ୍ଷଉଣୀ ବଳ ତୁଲେ ଅଶୀମର୍ଭୁତ ହାଥୀ ।୬
ଗଜ ଯୋଦ୍ଧା ତୁଲେଣ ପଚିଶ ପାରାଯୁଧ
କଳିଙ୍ଗସେନ ତୁଲେ ଲାଗିଲା ମହାଯୁଦ୍ଧ ।୭
ଉଦେମଣ୍ଡଳ ରାଜା ଭାନୁମଣ୍ଡଳ ନୃପତି
ନିର୍ଝର ଦେଶ ରାଜା ନାମ ଗଣପତି ।୮
ଯେହାର ତୁଲେ କଲେ ଅନେକ ସମର
କୃତବର୍ମାର ତୁଲେ ନୃପତି କାମେଶ୍ୱର ।୯
ପଞ୍ଚାଣ ଦେଶର ରାଜା ଅନଙ୍ଗ ନୃପତି
ତାହାର ତୁଲେ ଯୁଦ୍ଧ କଲେ ଭୀମ ଚକ୍ରବ୍ରତୀ ।୧୦
ମହ୍ଲାର ଦେଶର ଯେ ଅନେକ ନୃପତି
ତାହାର ତୁଲେ ସମର ପଣ୍ଡୁରାଜାର ନାତି ।୧୧
ହିଡ଼ିମ୍ବିକୀର ନନ୍ଦନ ଘଟ ଯେ ଉତ୍କଟ
ଅଳମ୍ବୁଷାର ତୁଲେ ସମର ମୁରାଟ ।୧୨
ଅଳାୟୁଧ ଅଞ୍ଜନପ୍ରଭାର ସମର
ଲେଖନ୍ତେ ନ ସରଇ ସେ କହନ୍ତେ ଅଗୋଚର ।୧୩
ସମରେ ପ୍ରବେଶ ଯେ ପାଣ୍ଡବ ବୀର ଭୀମ
କାଳଦଣ୍ଡ ଘେନି ଯେହ୍ନେ ଆକ୍ରେଷଇ ଯମ ।୧୪
ବାଉନ ବାଉନ ଭାର ଘେନିଣ ଗଦା ହାଥେ
ସମରେ କେ ପଶିବ ବ୍ରିକୋଦର ଦେଖନ୍ତେ ।୧୫
ଯେତେକ ଯୋଦ୍ଧାୟେ ପଡ଼ନ୍ତି ତାର ମୁଖେ
ଦେଖନ୍ତି ଯମଦଣ୍ଡ ସେ ମରନ୍ତି ପ୍ରତକ୍ଷେ ।୧୬
ଦ୍ରୋଣ ମହାରଥୀ ଭାରଦ୍ୱାଦଶଂକର ସୁତ
ତାହାଂକର ତୁଲେ ସମର କରନ୍ତି ଦ୍ରୋପତ ।୧୭
ଧୃଷ୍ଟଦ୍ୟୁମନ ଯେ ଅଶତ୍ତମା ତୁଲେ
ସମର ସମ୍ବର୍ବେ ସେ ଆକାଶ ଘୋଟିଲେ ।୧୮
ଭୀଷ୍ମଂକର ସମର କହିତେ କେ ପାରି
ରୋମେକ ଅର୍ଜୁନକଇଂ ଶତେ ବାଣ ମାରି ।୧୯
ପଣ୍ଡୁର ନନ୍ଦନ ସେ କଇଛା ଜଗଜ୍ଜେଠୀ
ବାଣ ବିନ୍ଧୁଅଛି ଭୀଷ୍ମଂକୁ ଶରେ ଶରେ ଘୋଟି ।୨୦
ଅନେକ ସମର ବଢ଼ିଲା ମହାରୋଳ
ଦିନକର ଅର୍ଦ୍ଧ ଆସି ହୋଇଲାକ ବେଳ ।୨୧
ମକର ମାସ ଅନନ୍ତ ନାମେ ଆଦିତ୍ୟର ମହାଜ୍ୟୋତି
ଅନଳ କିରଣ ଜାଣି ନାରାଜଂକ ତେଜ କାନ୍ତି ।୨୨
ଶରେ ଶରେ ପରିତାଳ ହୁଅନ୍ତେଣ ବେନି
ଶିଶିର ବୃଷ୍ଟି ଜାଣି ଝଳକଇ ବହନି ।୨୩
ସମରେ ବିମୁଖ ହୋଇ ସେ କୁରୁଦେବ ନାତି
ତ୍ରୋଣରୁ କାଢ଼ିଲେ ଗାଙ୍ଗେବ ଅନିର୍ଯାପ ଶକତି ।୨୪
ତ୍ରୋଣୁ କାଢ଼ିଲା ବେଳେ ଶହସ୍ର ଯେକଇଂ ମୂରତି
ହାଥରେ ଘେନନ୍ତେ ହୋଇଲା ବିଂଶ ମୂର୍ତ୍ତି ଶକ୍ତି ।୨୫
ଧନୁ ଗୁଣରେ ଶକତି ବସାଇଲେ ଯେତେବେଳେ
ପଞ୍ଚାଶ ମୂର୍ତ୍ତି ଶକତି ଆସି ହୋଇଲା ତେତେବେଳେ ।୨୬
ଆକ୍ରେଷି ଗାଙ୍ଗବେ ଉଛୁଡ଼ନ୍ତେ ମହାରେଖା
ଧନୁଗୁଣେ ପୂରୋଇ ଉଛୁଡ଼ନ୍ତେ ହୋଇଲା ପଞ୍ଚସ୍ତୋରୀ ଶାଖା ।୨୭
ଆକ୍ରେଷି ଛାଡ଼ନ୍ତେ ସେ ହୋଇଲେ ମହା ଭୀଷ୍ମମୂର୍ତ୍ତି
ଧନୁରୁ ବାହାରନ୍ତେ ହୋଇଲା ଶତେକ ଶକତି ।୨୮
ଯଦ୍ୟପି ଦେବତାହିଂ ହୋଉ କି ଅସୁରହିଂ ହୋଉ
ଯେ ଶକତି ବଞ୍ଚାଇବାକୁ ସାମରଥ ଅଛି କେହୁ ।୨୯
ଶତେ କୋଟି ନିଦାଘ ଆଦିତ୍ୟ ଜ୍ୟୋତି ଜାଣି
ତ୍ରାସେଣ ଘୁଞ୍ଚିଲେ ସେ ଆକାଶେ ଦିନମଣି ।୩୦

ଦେଖ ହୋ ମହିମାଂ ଯେ ଭୀଷ୍ମ ଗଙ୍ଗାର ତନୟେ
ତ୍ରିପୁରାନ୍ତକ ପରାୟେ ଭୀଷ୍ମଂକର କାୟେ ।୩୧
ଯେତେବେଳେ ବାହାର ହୋଇଲା ଅନିର୍ଯାପ ଶକତି
ଯେକା ଶହସ୍ର ହୋଇଛି କୋଟିଯେ କିରଣର ଜ୍ୟୋତି ।୩୨
ଦେଖିଣ ଘୁଞ୍ଚିଲେ ସେ କଉରୋବ ସଇନି
ଛଡ଼ ଯୋଜନେ ମାନଗୋବିନ୍ଦ ରହିଲା ସଇନି ଘେନି ।୩୩
ପାଣ୍ଡବ ବଳ ସଇନି ପଳାଇଲେ ଘୁଞ୍ଚି
ଯେକା ମାତ୍ର ଭାରୋଇ ମଲ୍ଲ ଅର୍ଜୁନ ରହି ଅଛି ।୩୪
ଛଡ଼ ଯୋଜନ ମାଡ଼ି ପଳାଇଲେ ସର୍ବ ବଳ
ବେନି ରଥ ମାତ୍ର ରହିଅଛଇ ଅଚଳ ।୩୫
ଗୋବିନ୍ଦେ ବୋଇଲେ ବାବୁ ଶୁଣ ଫାଲଗୁନି
ସଂସାର ଦହନ ଶର ବିନ୍ଧିଲେ ଭୀଷ୍ମ ଘେନି ।୩୬
ପାଣ୍ଡବ ବଳ ତୋର ନ ବ୍ରତିବେ କେହି
ଯେହିକ୍ଷଣି ସଂସାର ହୋଇବ ହାଦେ ଦହି ।୩୭
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଆଦି କରି
ଆଜର ଯୁଦ୍ଧରେ ସର୍ବେ ହୋଇବେ ଅପହାରି ।୩୮
ଯେଥକୁ ପ୍ରତିଶସ୍ତ୍ର ଅଛିଟି କି ପାଥ
ସମସ୍ୟା ନ ଦେଇ ପାଥ ହୋଇଲା ମଉନ ବ୍ରତ ।୩୯
ଅର୍ଜୁନର ଅଶକ୍ୟ ଯହୁଂ ଜାଣିଲେ ଦେବରାଜ
ଯେହିକ୍ଷଣି ନନ୍ଦିଘୋଷ ହୋଇବ ଦହିଜ ।୪୦
ହୃଦଗତେ ଚିନ୍ତିଲେ ଦେବ ନାରାୟଣ
ଧାତିକାରେ ପ୍ରବେଶ ହୋଇଲା ଆସି ଚକ୍ର ସୁଦ୍ରିଶେଣ ।୪୧
ଧ୍ୟାନେଣ ଆଗ୍ୟାଂ ତାକୁ ଦିଲେ ଚକ୍ରପାଣି
ଭୀଷ୍ମଂକର ଶତେ ଶର ଶକତି ପକାଅ ବେଗେ ହାଣି ।୪୨
ଅର୍ଜୁନଂକୁ ଅଗୋଚର ନୋହିଲା ଯୁଗତେ
ନନ୍ଦିଘୋଷ ରଥ ଧ୍ୱଜେ ଥାଇ ତାହା ଦେଖିଲେ ହନୁମନ୍ତେ ।୪୩
ହନୁମନ୍ତ ପ୍ରଶଂସଇ ପାଣ୍ଡବେ ଜୀବନ ତୁମ୍ଭ ଧନି ଧନି
ପ୍ରାଣହୁଂ ଅଧିକ କରି ନାରାୟଣ ତୁମ୍ଭନ୍ତ ଅଛନ୍ତି ଘେନି ।୪୪
ଅଦୃଶ୍ୟେଣ ଚକ୍ର ପଡ଼ିଲା ଶୂନ୍ୟଗତି
ଦହନ ହୋଇଲା ଶତେ ଶର ଶକତି ।୪୫
ମାରିଣ ଚକ୍ର ଯେ ଯହୁଂ ଗଲା ଅନ୍ତର୍ଦ୍ଧାନେ
ଦେଖିଣ ଗାଙ୍ଗେୟ ହାଥରୁ ଯେ ଛାଡ଼ିଲେ ଧନୁ ଦ୍ରୋଣେ ।୪୬
ରଥ ଘୁଞ୍ଚାଇ ଭୀଷ୍ମେ ଦ୍ରିଯୋଧନେ ଭେଟି
ପାଣ୍ଡବେ ଶରଣ ଯାଇ ପଶ ହେ ଧୃତିରାଷ୍ଟି ।୪୭
ଯଦ୍ୟପି ଶରଣ ନ ପଶିବୁ ଅବା
ରାଜ୍ୟ ଛାଡ଼ି ପଳାଇ ଜୀବନ ରଖ ତୋର ବାବା ।୪୮
ମାନଗୋବିନ୍ଦ ବୋଇଲା କିମ୍ପୁତ କାରଣ କଥା
ପ୍ରସ୍ତାବ ବାକ୍ୟ କହ ବୁଝିବା ସର୍ବଥା ।୪୯
ଶୁଣିଣ ଗାଙ୍ଗେବେ କହନ୍ତେ ସମ୍ବାଦେ
ପାଣ୍ଡବ ବଳ ଦହିଜ କରିବି ବୋଲି ଅନିର୍ଯାପ ଶରେକ
ପେଷିଲୁ ହାଦେ ।୫୦
ବ୍ରହ୍ମା ରୁଦ୍ର ଇନ୍ଦ୍ର କୁବେର ଯମ ଆଦି ପବନ
ସେ ଶର କାହାର ବଳେ ନୁହଂଇ ନିଶୋଧନ ।୫୧
ପ୍ରଥମେ ଦହନ୍ତା ସେ ନନ୍ଦିଘୋଷ ରଥ
ଚାରି ଅଶ୍ୱ ହନୁମନ୍ତ ଆବର କୃଷ୍ଣ ପାଥ ।୫୨
ତଦନ୍ତେ ଦହନ୍ତା ପାଣ୍ଡବ ସଇନି
ଯୁଷ୍ଟେଷ୍ଟି ଆଦି ଚାରି ଭାଇଂକ ପ୍ରାଣ ଘେନି ।୫୩
ଅର୍ଜୁନର ବଳେ ସେ ଶକତି ନୋହେ ନିବାରଣ
ଚକ୍ର ଘେନିଣ ତାହା ଛେଦିଲେ ନାରାୟଣ ।୫୪
ଶ୍ରୀକୃଷ୍ଣ ଯେବେ ଶହସ୍ର ଧରି ପଶିଲେ ସମରେ
କିସ ସମର କରିବୁ ତୁ ପାଣ୍ଡବଂକ ସଙ୍ଗରେ ।୫୫
ଅନନ୍ତ କୋଟି ଅବତାରେ ସେ ଯେ ଅସୁର ନିଶୋଧନ
ତାହାର ତୁଲେ ସମର ତୁମ୍ଭର କିସ ପିରୋଜନ ।୫୬
ଶୁଣିଣ ବିରସ ଯେ ରାଜା ମାନଚକ୍ରବ୍ରତୀ
ବଳରାମକଇଂ ସୁମରଣା କଲାକ ତଡ଼ତି ।୫୭
ଆସନ କମ୍ପନ୍ତେ ତାହା ଜାଣିଲେ ମୁଷଳୀ
ଧାତିକାରେ ବିଜୟେ କଲେ କୁରୁକ୍ଷେତ୍ରେ ଦେବ ହଳୀ ।୫୮
କଉରୋବେ ପ୍ରଣପତ୍ୟ ହେଲେ ବଳରାମକଇଂ ଦେଖି
ସମସ୍ତ ଯୋଦ୍ଧାୟେ ଯାନ ବାହାନ ଉପେକ୍ଷି ।୫୯
କାମପାଳ ଚରଣେ ସମସ୍ତେ ପରିଣାମି
ତୋହୋର ଶରଣେ ଆମ୍ଭେ ପାଣ୍ଡବ ଦ୍ୱନ୍ଦେ ସ୍ୱାମୀ ।୬୦
କୃଷ୍ଣ ଯେ ତୋହୋର ଛୁଇଂଲେ ପାଦ ବେନି
ବୋଇଲେ ଭାରଥ ଯୁଦ୍ଧେ ଶହସ୍ର ନ ଧରିବି ସ୍ୱାମୀ ।୬୧
ବୋଇଲେ ଯେ ଜଗତ ଦୋଷ ଖଣ୍ଡଣ ନିମନ୍ତେ
ଓହୋବଳ ଥାଠେ ପାତ୍ରପଣେ ଥିବି ନନ୍ଦିଘୋଷ ରଥେ ।୬୨
ବୋଇଲେ ସାଂଗ୍ରାମେ ଯେବେ ଶହସ୍ର ମୁଂ ଧରଇ
ଜନ୍ମେ ଜନ୍ମେ ତୋର ପାଦପଦ୍ମରେ ହାରଇଂ ।୬୩
ସେ କଥାମାନ ହରି ସକଳ କଲେ ତେଜ୍ୟା
ଆପଣେ ଚକ୍ର ଧରି ସମରେ ପଶିଲେ ଦେବରାଜା ।୬୪

ଭୋ ଦେବ ପାଣ୍ଡବନ୍ତ ହକାରି ଆଣ ତୁ ଆପଣ
କୃଷ୍ଣଂକୁ ପଞ୍ଚରାଜ୍ୟ ମୁହିଂ କରିବି ସମର୍ପଣ ।୧୬୫
ସହସ୍ରେ ପାଣ୍ଡବେ ହେଲେ ନାହିଂ ନା ମୋର ଭୀତି
କିମର୍ଥେ ଜଗନ୍ନାଥେ ମୁଂ ହୋଇବି ଅପ୍ରୀତି ।୧୬୬
ତୁ ଯେ ଗଦାଗୁରୁ ମୋର ମସ୍ତକେ ହାଥ ଦିଲୁ
କାଳେ କାମପାଳ ମୋତେ ରଖି ତ ନୁଆରିଲୁ ।୧୬୭
ଶ୍ରୀକୃଷ୍ଣ ଆଶ୍ରକେ ମୋହୋର ପଞ୍ଚୁରାଜ୍ୟ ଯେ ନେଲେ ପଞ୍ଚୁଭ୍ରାଥ
ଭୋ ରାମ ତୋତେ ଆଶ୍ରେ କରି ମୁଂ ହୋଇଲି ଅନାସ୍ତ ।୧୬୮
ସମସ୍ତ କଉରୋବେ ମୁଖେ ହାଥ ଭରି ତ୍ରାହି ତ୍ରାହି ବୋଲି
ଅନାସ୍ତକୁ ଶରଣ ଦିଅ ବୋଲି ଶୁତିଲେ ଗଡ଼ଘାଲି ।୧୬୯
କଉରୋବମାନନ୍ତ ଅନାସ୍ତ ଦୁଖ ଦେଖି
ରକତ କୁମୁଦ ପ୍ରାୟେ ବିରାଜଇ ରାମର ବେନି ଆଖି ।୧୭୦
ଡାହାଣ ମୂଷଳ ବାମେ ବଜ୍ରଲଙ୍ଗଳ
ମହା ଯୋଗେଶ୍ୱର ନାଥ ସେ କାଦମ୍ୱରୀ ପାନେ ମତି ଯାର
ଭୋଳ ।୧୭୧
ମେରୁ ତୁଲ୍ୟ ମଉଳି ଯେ ଶୋଭିତ ସପ୍ତଫେଣୀ
କୋପେଣ ଗର୍ଜି ଧାମନ୍ତି ରାମ କୃତାନ୍ତେକ ଜାଣି ।୧୭୨
ଭୟେଣ ଶୂନ୍ୟଭୁବନ ତେଜିଲେ ଦେବଲୋକେ
ତ୍ରାସେଣ କମ୍ପିଲେ ଯେ ସକଳ ବୃନ୍ଦାଅର୍କେ ।୧୭୩
କାଳଚକ୍ର ଜାଣିଣ ଭ୍ରମଇ ବେନି ତୋଳ
ଆପଣେ ସମରେ ଦେବ ବିଜୟ କାମପାଳ ।୧୭୪
ମହା ପ୍ରତାପେ ସ୍ୱାମୀ ହାକନ୍ତି ବଳଦେବେ
ଆରେ ଆରେ କୃଷ୍ଣ ଆରେ ଆରେ ରେ ପାଣ୍ଡବେ ।୧୭୫
ଯେସନେ ନିର୍ଘାତ ଖସି ପଡ଼ଇ ଆକାଶୁଂ
ପୃଥିବୀ କମ୍ପଇ ବଳଦେବଂକର ଆସୁଂ ଆସୁଂ ।୧୭୬
ରଥ ଧ୍ୱଜେ ଥାଇଣ ହନୁମନ୍ତ ବୋଇଲା
ସମ୍ଭାଳ ଅର୍ଜୁନରେ ବଳରାମେ ବିଜେ କଲା ।୧୭୭
ଗୋବିନ୍ଦେ ଦେଖିଲେ ନନ୍ଦିଘୋଷ ରଥେ ଥାଇଂ
ହଳ ମୂଷଳ ଘେନି ରାମ ଆସୁଛନ୍ତି ଧାଇଂ ।୧୭୮
ଗୋବିନ୍ଦ ମୁଖ ଚାହିଂ ବୋଲଇ ବ୍ରିକୋଦର
ସ୍ୱାମୀ କେବଣ ଚରିତ ଯେ ସମରେ ପଶିଲେ ନୀଳାମ୍ୱର ।୧୭୯
ଗଦା ବୁଲାଇଣ ସମରେ ପଶିଲେ କାଳଦଣ୍ଡ ପାଣି
ଗର୍ଜଇ ପାଣ୍ଡବ କେଶରୀ ଦର୍ପ ଜାଣି ।୧୮୦
ଶତ୍ରୁକୁ ସଂପକ୍ଷ ଯେ ତାକୁ ମୋର କିସ ଭୟେ ।
ରାମର ମୂର୍ତ୍ତି ଦେଖି କୋପିତ ଧନଞ୍ଜୟେ ।୧୮୧
ନାରାୟଣୀ ଶର ଧରିଣ ଫାଲଗୁନି
ଆଗଭରେ ରହିଲା ଧନୁ ଟଂକାର ଜାଣି ।୧୮୨
ହିଡ଼ିମ୍ୱିକୀ ନନ୍ଦନ ଘଟଉତ୍କଟ ମହାବଳୀ
ଧାମନ୍ତି ଅସୁରେ ଯେ କରେ ଶାଳ ଶିଳ ତୋଳି ।୧୮୩
ରଥରୁ ଡେଇଂଣ ଯେ ପଡ଼ିଲେ ଜଗନ୍ନାଥେ
ଭୀମସେନକୁ କୋଳାଗ୍ରତ କଲେ ବେନି ହାଥେ ।୧୮୪
ଛାଡ଼ କ୍ରୋଧ ବ୍ରିକୋଦର ରାମଂକୁ କ୍ରୋଧ କରିତେ ନୋହଇଂ
ନୀଳାମ୍ୱରେ ବିବାଦୀ ଆମ୍ଭନ୍ତ ନ ଯୋଗାଇ ।୧୮୫
ମୋହୋର ଶପଥଟି ତୁମ୍ଭେ କେହି ଯେ ନ ବଢ଼
ରଥ ଯାନବାହାନନ୍ତ ତେଜି ସମସ୍ତେ ଶହସ୍ର ଛାଡ଼ ।୧୮୬
କୋଟି କୋଟି ସିଂଘର ଯାହାର ପରାକ୍ରମ
ତାହାଂକର ତୁଲେ ଆମ୍ଭର କିସ ଯେ ସାଂଗ୍ରାମ ।୧୮୭
ଆମ୍ଭର ବଳେ କି ଦ୍ୱନ୍ଦ ବଳରାମଂକର ତୁଲେ
ହସ୍ତିନା ହଳମୁନେ ତାଡ଼ିଲେ ତାହାଂକର ବାହୁବଳେ ।୧୮୮
ଯେଉଂ ଦେବ ଗଙ୍ଗା ଅବତାରେ କୁତୂହୋଳି
ଜଗୁଜନ ମୋହନ ନାଥ ନାମ ବନମାଳୀ ।୧୮୯
ସମସ୍ତ ବୋଧକଲେ ଜଗମୋହନ ରୂପେଣ
ଶାନ୍ତି କରାଇ ବିଜେକଲେ ଦେବ ନାରାୟଣ ।୧୯୦
ଭୀମ ଅର୍ଜୁନ ଯେ ଛାଡ଼ିଲେ ସର୍ବେ ଶର
ବିଶହସ୍ରହୋଇ ପ୍ରଲମ୍ୱ କଲେ ଦେବ ଦାମୋଦର ।୧୯୧
ପୁଣ ପୁଣ ପ୍ରଲମ୍ୱ ନାରାୟଣ ପାଣ୍ଡବନ୍ତ ଘେନି
ନିଉଛାଳି କରି ଦେବ ବିନୟେ ଦଇନି ।୧୯୨
ଦେଖିଣ କାମପାଳ ବଚନ ପ୍ରକାଶି
ହଳ ମୂଷଳ ବୁଲାଇଂ କୋପେଣ ରାମ ତ୍ରାସି ।୧୯୩
ମଥାୟେ ବେନି କର ଦିଲେ ଦେବ ତୋଳି
ବିନୟ ଭାବ ଘେନି ପୁଛନ୍ତି ବନମାଳୀ ।୧୯୪
ଗୋବିନ୍ଦେ ବୋଇଲେ ପୁଣ ପୁଣ ପରିଣାମି
ଅନମିତେ କୋପ କାହାକଇଂ କରୁ ଦେବସ୍ୱାମୀ ।୧୯୫
ତୁ ଦେବ ଭଗତ ମସଳ ଯୁଗପତି
ଦୋଷ ଅନରୂପେ ବିଚାରି ବିହିବାନା ଶାସ୍ତି ।୧୯୬
ବଦୟନ୍ତି କାମପାଳେ ଶୁଣ ହୋ ବାସୁଦେବେ
ତୁ କିମ୍ପା ଶହସ୍ର ଧଇଲୁ କୁରୁକ୍ଷେତ୍ର ଭୂମି ଠାବେ ।୧୯୭

ଆଜ ମୁହିଂ କରିବି ହରି ପାଣ୍ଡବେ ଶରବୃଷ୍ଟି
କଉରୋବନ୍ତ ଫେଡ଼ିବି ମୁହିଂ ପରମ ଅରଷ୍ଟି ।୯୮
ଦ୍ୱାରିକାୟେ ତୁ ଯେ ନିୟମ କଲୁ ମୋତେ ଛୁଇଂ
ବୋଇଲୁ ସାଂଗ୍ରାମେ ଶହସ୍ର ନ ଧରଇ ।୯୯
ଯତେବେଳେ କିମ୍ପାଇଂ ସାଂଗ୍ରାମ କଲୁ ଶହସ୍ର ଧରି
ଭୀଷ୍ମଂକୁ ଶହସ୍ର କଲୁ ପାଣ୍ଡବନ୍ତ ଆବୋରି ।୧୦୦
ଗୋବିନ୍ଦେ ବୋଇଲେ ଦେବ ବିଚାରି କୋପକର
ଭୀଷ୍ମଂକର ତୁଲେ ମୁଂ ନ କଲି ସମର ।୧୦୧
ତୁ ଦେବ ଅପରତେ କଲୁ ମୋତେ ଅବା
ନିଚୟେ କରି ଯେବେ କଉରୋବନ୍ତ ପଚାରିବା ।୧୦୨
ମୁହିଂ ଦ୍ୱାରିକା ପୁରେ ନିୟମ କଲି ଯାହା
ସତ୍ୟ ଲଂଘିଲେ ମୁଂ ହୋଇବି ଦୋରେହା ।୧୦୩
ପାଣ୍ଡବନ୍ତ ତୋର କୋପ କେବଣହିଂ ଅର୍ଥେ
ବଜ୍ର ମୂଷଳ ଘେନି ଦେବ ଶିରଛେଦ ମୋତେ ।୧୦୪
ଯେତେ ବୋଲି ହରି ରାମ ଚରଣେ ଦଇନି
ତହୁଂ ବାହୁଡ଼ି ବିଜେ ନୀଳାମ୍ବର କୃଷ୍ଣ ପାଣ୍ଡବନ୍ତ ଘେନି ।୧୦୫
ଦ୍ରୋଣେ ବିଜେ କରିଅଛନ୍ତି ରଥ ଚଢ଼ି
ଛାମୁରେ କାମପାଳ ଦ୍ରୋଣଂକୁ ପଚାରି ।୧୦୬
ଆହୋ ଦ୍ରୋଣେ ଭୀଷ୍ମଂକ ତୁଲେ ସମର କଲେ ଦେଖିଲାକ ହରି
ତୁ ଦେଖିଲୁ କି ହୋ ଗୁରୁ କହ ସତ୍ୟ କରି ।୧୦୭
ବଳରାମଂକ ଆଗେ କହନ୍ତି ଗୁରୁ ଦ୍ରୋଣେ
ମୁହିଂ ନ ଦେଖିଲି ସମର କଲେ ନାରାୟଣେ ।୧୦୮
ଆହୋ କର୍ଣ୍ଣ ତୁ ଯେ ଥିଲୁ ସମରେ ଆଗିଆଣି
ଦେଖିଲୁ କି ସମର କଲେ ଚକ୍ରପାଣି ।୧୦୯
କର୍ଣ୍ଣ ବୋଇଲା କେମନ୍ତେ କହିବି ଅନମିତେ
ମୁହିଂ ନ ଦେଖିଲି ଶହସ୍ର ନାରାୟଣଂକର ହାଥେ ।୧୧୦
ତହୁଂ କୃପ ଅଶସ୍ତମା ଶଲ୍ୟଂକୁ ପଚାରିଲେ
ସୋମଦତ୍ତ ଭୂରିଶର୍ବା ଧୃଶାସନକୁହିଂ ପୁଛାକଲେ ।୧୧୧
ବଳରାମଂକ ଅଗ୍ରତେ କହିଲେ ସଭିଯେଂ
ବାସୁଦେବଂକ କରେ ଶହସ୍ର ନ ଦେଖିଲୁ କେବେହେଂ ।୧୧୨
ଦ୍ରିଯୋଧନ ଅଗ୍ରତେ ପଚାରନ୍ତି ବଳରାମ
ତୁହି ଦେଖିଲୁକି କୃଷ୍ଣ କଲା ଯେ ସାଂଗ୍ରାମ ।୧୧୩
ବଳରାମଂକ ମୁଖ ଚାହିଂ ବୋଲଇ ମାନଗୋବିନ୍ଦ
ମୁହିଂଯେକ ଦୃଷ୍ଟି କରି ଚାହିଂଥାଇ କୃଷ୍ଣର ନାହିଂ ଦ୍ୱନ୍ଦ ।୧୧୪
ଆମ୍ଭେହେଂ ଦେଖିଲୁ କେବେହେଂ ନାରାୟଣ ସମର ନ କଲା
ଅନମିତେ କେ କହିବ ମାନଗୋବିନ୍ଦ ବୋଇଲା ।୧୧୫
ଯେ ମହାଭାରଥ ଯୁଦ୍ଧେ କେ କହିବ ମିଥ୍ୟା ବାଚା
ଗ୍ୟାନ ଥାଉଂ ଥାଉଂ ନରକକୁ କେ କରୁ ଦେବ ବାଞ୍ଛା ।୧୧୬
ଭୋ ଦେବ ନୀଳାମ୍ବର ଦ୍ରୋହ କଲଇଂ ମୁହିଂ ତୋତେ
କୃଷ୍ଣ ହାଥେ ଶହସ୍ର ମୁଂ ନ ଦେଖିଲି ଛଡ଼ ଦିବସ
ପରିଯନ୍ତେ ।୧୧୭
ଶୁଣିଣ ବିସ୍ମୟେ ଯେ ହୋଇଲେ ହଳାୟୁଧ
ଆହୋ ଭୀଷ୍ମ ତୁ ଦେଖିଲୁ କି ଶସ୍ତ୍ର ଧରି କେଶବ କଲା
ଯୁଦ୍ଧ ।୧୧୮
ଭୀଷ୍ମେ ବୋଇଲେ ତୁ ଦେବ ବିହନ୍ତା ବିଧାତା
ତୋହୋ ଛାମୁରେ ଦେବ କେ କହିବ ମିଥ୍ୟା ।୧୧୯
ଅନିର୍ଯାପ ବାଣ ମୁଂ ଆକ୍ରେଷି ବିନ୍ଧିଲି
କୃଷ୍ଣ ଯୁଦ୍ଧ କରିବା ମୁଂ ନୟନେ ନ ଦେଖିଲି ।୧୨୦
ଭୋ ଦେବ ଯେଉଂଣ ଶକତି ମୁଂ ମାଇଲଇଂ ଅର୍ଜୁନକୁ
ବ୍ରହ୍ମା ଇନ୍ଦ୍ର ରୁଦ୍ର କେହି ସାମରଥ ନୋହି ତାହା
ନିବାରିବାକୁ ।୧୨୧
ଶ୍ରୀକୃଷ୍ଣ ବିତ୍ରକେ କେହି ତାହା ନୁଆରନ୍ତି ନାଶି
ସୁଦ୍ରିଶେନ ଚକ୍ରେଣ ସେ ଶହସ୍ରତ ହୁଅଇ ବିଧ୍ୱଂସି ।୧୨୨
ଶୁଣିଣ ବଳଦେବ କୋପେଣ ପରଜଳି
ଭୀଷ୍ମଂକର ମୁଖ କୋପେ ଚାହିଂଲେ ଦେବ ହଳୀ ।୧୨୩
ମାନବ ଯୁଦ୍ଧେ ଦେବ ଶହସ୍ର କିମ୍ପେ ତୁ ବିନ୍ଧିଲୁ ବଳେ ବଳୀ
ଯେତେ ବୋଲି ବଳଦେବ ଭୀଷ୍ମଂକୁ ପକାଇଲେ ପେଲି ।
ଆରବେଳେ ଯେମାନ ଅକର୍ମ କେବେହେଂ ନକରିବୁ
ଭୀଷ୍ମ ମହାବଳୀ ।୧୨୪
ରାଗେଣ ପରଖର ଦେବଂକର ବହଇ ନିଶ୍ୱାସ
ଆକ୍ରେଷି କାମପଳ ଧଇଲେ ଭୀଷ୍ମଂକର କେଶ ।୧୨୫
ବୁଲାଇ କାମପାଳ ପିଟନ୍ତେ ନେଇ ହଳେ
ଧାଡିକାରେ ଗୋବିନ୍ଦେ ଧଇଲେ ତାଂକୁ କୋଳେ ।୧୨୬
ସ୍ୱାମୀ ତ୍ରଇଲୋକ୍ୟର ନାଥ ବ୍ରହ୍ମାଣ୍ଡ ଶିରୋମଣି
ଭୀଷ୍ମଂକୁ ଅନମିତେ କୋପ କେହ୍ନେ କରୁ ଦେବସ୍ୱାମୀ ।୧୨୭
ଦେଖୁଂ ଦେଖୁଂ ଅପୁତ୍ରିକ ଅଜାତିକ ମହା ପାପୀ
ତୋହୋର ହାଥେ ମଲେ ମୁକତି ହୋଇବ ଅଦ୍ୟାପି ।୧୨୮
ଯେ ଛାରକଇଂ କିମ୍ପେ କୋପ କର କାମପାଳ

ଆପଣେ ଶ୍ରୀକରେ ଛଡ଼ାଇ ଦିଲା ଭୀଷ୍ମଂକର ବାଳ ।୧୨୯
ଦିଯୋଧନ ସୁମରିଲା ତୋହୋରେ ଯେ ବେଳେ
ସମରେ ସୋଦରନ୍ତ ଯେ ନ ମାଗଲି ଭଲେ ।୧୩୦
ଭୀଷ୍ମଂକୁ ତେଜ୍ୟା କରି ରାମ କୃଷ୍ଣ ବେନି
ତୁଲେଣ ପାଣ୍ଡବ ଯେ ଭୀମ ଫାଲଗୁନି ।୧୩୧
ମାନଗୋବିନ୍ଦ ଅଗ୍ରତେ ବଦୟନ୍ତି ଦେବ ହଳୀ
ଯେକଇଂ ସୋଦରେ ତୁମ୍ଭେ ନ କରିବା ଦ୍ୱନ୍ଦ କଳି ।୧୩୨
କୁରୁ ପାଣ୍ଡବେ ଯେବେ କରାଉଂ ଯେକ ଭେଟ
ଦୁଇ ଖଣ୍ଡ ପଡ଼ା ଦିଅ ଯୁଝେଷ୍ଟି ହୋଉ ତୁଷ୍ଟ ।୧୩୩
ତୁ ତ ପଞ୍ଚୁ କଟକେ ଲକ୍ଷେ ଯୋଜନେ ଅଟୁ ଆଧିପତି
ହସି କରି ପଡ଼ା ଦୁଇଖଣ୍ଡ ଦେଇ ଯୁଝେଷ୍ଟିଂକି କରାଅ
ତ୍ରିପୁଟି ।୧୩୪
ବଳରାମଂକ ବଚନେ ବୋଲନ୍ତି କଉରୋବେ
ତୋହୋର ବାହାକୁ ଆଶ୍ରେ କଲି ବୁଝିଲୁକି ବଳଦେବେ ।୧୩୫
ମଧ୍ୟସ୍ଥ ପଣେ କି ମୁଂ ସୁମରଣା କଲି ତୋତେ
ଯେତେକ ହୀନବୀର୍ଯ୍ୟ ମଣିଲୁ କି ମୋତେ ।୧୩୬
ଶଙ୍ଖ ଧ୍ୱନି ଶବଦ କରି କଉରୋବେ ଲେଉଟି
ହସ୍ତିନା ପୁରେ ରାଜା ବିଜୟେ ଧୃତିରାଷ୍ଟି ।୧୩୭
ଶ୍ରୀକୃଷ୍ଣ ଅର୍ଜୁନ ଯେ ଦେବ ବଳରାମେ
ଇନ୍ଦ୍ରପ୍ରଶସ୍ଥେ ବିଜେ କଲେ ପୁରୁଷ ଉତ୍ତମେ ।୧୩୮
ବଳରାମେ ବୋଇଲେ ଶୁଣ ତୁ ଅଚ୍ୟୁତ
ମହାଭାରଥ ଯୁଦ୍ଧ କର ସମାପତ ।୧୩୯
ପାଣ୍ଡବେ ରକ୍ଷା ଗଲେନି ନା ତୋହୋର ବୁଦ୍ଧି
ନିଚୟେ ନାଶିବୁ ତୁ କଉରୋବ ସମ୍ପ୍ରଧି ।୧୪୦
ଭୀଷ୍ମେ ଯେବଣ ଶର କଲେକ ଆଧ୍ୟାନ
ତୋହୋର ବିତ୍ରକେ କେ ନିବାରିବ ଆନ ।୧୪୧
ପାଣ୍ଡବନ୍ତ କଷଣ ପଡ଼ିବ ଯେତେବେଳେ
ତୁ ପୁଣି ଶହସ୍ର ଧରି ବିନ୍ଧିବୁ ଅବହେଳେ ।୧୪୨
ମୋତେ ସୁମରୁଥିବ ମାନ ଯେ ଗୋବିନ୍ଦ
ତୋହୋର ମୋହୋର ପୁଣ ହେଉଥିବ ଦ୍ୱନ୍ଦ ।୧୪୩
ସମ୍ଭାଳ ଯେ ସମସ୍ତ ସମର୍ପିଲି ତୁକୁ
ମୁଂ ଯାଉଅଛି ମହାଭାରଥ ଯୁଦ୍ଧ ସରିବା ପରିଯନ୍ତେ
ପ୍ରାଗ ଯେ ତୀର୍ଥକୁ ।୧୪୪
କହିଣ ଚଳନ୍ତି ଯେ ରେବତୀ ରମଣ
ସମସ୍ତ ତେଜ୍ୟା କରିଣ ଗଲେ ପ୍ରୟାଗ ତୀର୍ଥେଣ ।୧୪୫
ଜୟ ତୁ କାମପାଳ ରେବତୀ ପ୍ରାଣନାହା
ସୁରସିଦ୍ଧ ମୁନିମାନେ ବନ୍ଦନ୍ତି ଚରଣେ ଯାହା ।୧୪୬
ପରମାନନ୍ଦ ପୁରୁଷ ନାଥ ଅଭୟେ ପରମ ଯୋଗୀ
କଉରୋବ ବିବାଦେ ତୁ ହସ୍ତିନାପୁର ଭାଙ୍ଗି ।୧୪୭
ଅମ୍ବା କଦମ୍ବା ଦାନବ ହାଦେ ତିନି
ଯେହାନ୍ତ ମାରିଣ ଦେବ ଉଦ୍ଧରିଲୁ ମେଦିନୀ ।୧୪୮
ଶୁଦ୍ଧ ସଷ୍ଟିକ ଶରୀର ମଉଳି ସପତ ଫେଣି
ଗର୍ଜନ୍ତି ଉତ୍‌ଙ୍ଗେ ଯେ ପବନ ଦର୍ପ ଜାଣି ।୧୪୯
ଶ୍ରୀଭୁଜେ ବଜ୍ର ମୂଷଳ ବାମେ ବଜ୍ରଲାଙ୍ଗଳ
କାଦମ୍ବରୀ ପାନେ ସ୍ୱାମୀ ସର୍ବଦା ମତି ଭୋଳ ।୧୫୦
ବିରାଜନ୍ତି ଚନ୍ଦ୍ରଚୂଡ଼ ମୁକୁଟ କୁଣ୍ଡଳୀ
ଛତ୍ରଦଶ ଲୋଚନ ବିରାଜନ୍ତି ଦେବ ହଳୀ ।୧୫୧
ତ୍ରଇଲୋକ୍ୟେଶ୍ୱର ପୁରୁଷ ତୁ ଅଜପା ମନ୍ତ୍ର ସିଦ୍ଧି
ଅବଧୂତ ମୁଦ୍ରା ମାତାଙ୍ଗୀ ରୂପେଣ ନିରୋଧି ।୧୫୨
ସ୍ୱାମୀ ପରମ ପୁରୁଷ ତୁ ଯେ ସାଧିଲୁ ଉଜାଣି
ଟେକି ଛନ୍ଦିଲୁ ଯେ ଅପର୍ଣ୍ଣା ମୂଳେ ଆଣି ।୧୫୩
କାମିନୀ କନ୍ଦର୍ପ ନାଥ ଅଭୟେ ମେଖଳା
ପ୍ରଳୟ ଉଦ୍ଧାରଣ ନାଥ ପ୍ରସନ୍ନ ଧବଳା ।୧୫୪
ଯୋଗେଶ୍ୱର ପୁରୁଷ ନାଥ ତୁ ସୟଳ ଜନ ଚିନ୍ତା
କୃତକର୍ମା ଭାବେ ତୁ ବିହନ୍ତା ବିଧାତା ।୧୫୫
କୋଟିୟେ ତୀର୍ଥକଇଂ ଯେବଣ ସ୍ୱାମୀ ମୂଳ
କୋଟିୟେ ତୀର୍ଥ ଘେନି ପୁଷ୍କର ସଙ୍ଗମ ଯାହାର ପାଦତଳ ।୧୫୬
ମୁହିଂ ଦୀନ ଦୁଖୀ ଯେ ଅଟଇ ସାରୋଳା ଦାସ
ଶ୍ରୀବଳରାମ ଚରଣ କମଳେ ଭକତି ବଢ଼ାଇ ମୋର ଆଶା ।୧୫୭
ରୋହିଣୀ ନନ୍ଦନଂକ ପାଦପଦ୍ମ ସେବି
ବଦୟନ୍ତି ଶୂଦ୍ରମୁନି ସାରୋଳା ଦାସ କବି ।୧୫୮

**

## ୮୮. ଭୀଷ୍ମଙ୍କର ଶରଶଯ୍ୟା

ବଇବସୁତ ମନୁ ପୁଚ୍ଛା କଲେକ ଅଗସ୍ତି
ଭୀଷ୍ମେ ଯେ ମୃତୁଭେଦ କହିଲେ ମକର ଶୁକଳ ପକ୍ଷ
ନବମୀ ପାହାନ୍ତି ।୧

ସଞ୍ଜୟେ କହିଲେ ହୋ ଶୁଣ ରାଜା ଧୃତିରାଷ୍ଟ
ଭୀଷ୍ମଂକର ମୃତ୍ୟୁ ଯେବେ ହୋଇଲା ନିକଟ ।୨
ଭୀଷ୍ମଂକର ଦୋଷ ନାହିଁ ପୁତ୍ର ତୋର କଲା ମନ୍ଦ
ଅର୍ଜୁନେ ଅନର୍ଘ ମୁକୁଟ ଦିଲା ନ ଜାଣି କୂଟଛନ୍ଦ ।୩
ସେ ମୁକୁଟ ଶିରେ ବାନ୍ଧିଣ ଗଲା ଧନୁର୍ଜୟେ
ଦିଅଂଘର ଭିତରେ ଯାଇଂ ଭୀଷ୍ମନ୍ତ କଲାକ ବିନୟେ ।୪
ଅନେକ ରତ୍ନ ଅଳଂକାର ଅର୍ଜୁନ କାୟେ ମଣ୍ଡି
ପ୍ରଳମ୍ଭିତ ହୋଇ ଶୁତିଲା ବାହାର ଯେଉଣ୍ଡି ।୫
ମୁକୁଟ ଦେଖି ଭୀଷ୍ମେ ମାନଗୋବିନ୍ଦ ପ୍ରାୟେ ମଣି
ଦ୍ୱାର କାଛେ ଲାଗିଣ ଛିଂକିଲେ ଦେବ ଚକ୍ରପାଣି ।୬
ଭୀଷ୍ମେ ବୋଇଲେ ଆମ୍ଭର ଆଷ୍ୟ ଘେନିବ୍ରତ
ଶତ୍ରୁ ମାରି ପଞ୍ଚୁ କଟକେ ହୁଅ ଯେକଛତ୍ର ।୭
ସଞ୍ଚୟେ ଜାଣିଲେ ଭୀଷ୍ମେ ପାଣ୍ଡବଂକର 'କା'ଟି
ଭେଦ କହି ବୋଇଲେ ତୋତେ ପ୍ରାପତ ହୋଉ ସୃଷ୍ଟି ।୮
ଆହୋ ଧୃତିରାଷ୍ଟ ଆଜର ସମରେ ଶ୍ରୀଖଣ୍ଡି ହୋଇବ ରଥୀ
ତାହାକଇଂ ଦେଖି ଭୀଷ୍ମେ ଶହସ୍ର ଛାଡିବେ ହୋଇବେ ବିରଥୀ ।୯
ଭୀଷ୍ମେ ନାଶ ଗଲେଟି ସମର ସରିଲା
ହୋଇଲୁ ବିଅର୍ଥୀ କାର୍ଯ୍ୟ ତୋହୋର ନିଷ୍ଫଳ ହୋଇଲା ।୧୦
ଯେମନ୍ତେ ମକର ଶୁକ୍ଳ ଦଶମୀର ଦିନ
ବୃହସ୍ପତିବାର କୃତ୍ତିକା ନକ୍ଷତ୍ର ଉତ୍ତାରେ ରୋହିଣୀ ନକ୍ଷତ୍ର
ବିଦ୍ୟମାନ ।୧୧
ସେ ଦିନ ଛେନି ଥାଠେ ରହିଛନ୍ତି ସରସ୍ୱତୀ ନଦୀ କୂଳେ
ପ୍ରଭାତରେ ସଜ ଯେ ହୋଇଲେ ବେନି ବଳେ ।୧୨
କୁଳର ପିତାମହ ଭୀଷ୍ମଂକର ମୃତ୍ୟୁଭେଦ ନିୟତ
ଗ୍ୟାନୀଜନ ପ୍ରସନ୍ନକଇଂ କୃଷ୍ଣ ମାୟା ଯେ ମୋହିଲେକ ଚିତ୍ତ ।୧୩
ଭୋ ଧୃତିରାଷ୍ଟ୍ର ଆଜର ଯୁଦ୍ଧେ ଶ୍ରୀଖଣ୍ଡୀଂକି ଆଗ କରି
ରଣ ଗୋଳ ହୋଇବ କହିତ କି ପାରି ।୧୪
ଶର ସନ୍ଧାନ କରି କ୍ଷୟ ଯିବେ ଶାୟନ୍ତନି
ତେଣୁ ସେ ଜିଣିମେ ପାଣ୍ଡବ ବଳ ସଇନି ।୧୫
ଶ୍ରୀଖଣ୍ଡୀର ହେତୁ ଯେ ଭୀଷ୍ମ ଆଜ ଯେ ପଡ଼ିବେ
ଇଚ୍ଛାମୃତ୍ୟୁ ଗାଙ୍ଗେବ ଶରଶଯ୍ୟା କରିବେ ।୧୬
ଭୀଷ୍ମ ନାଶଗଲେ ସଂଗ୍ରାମ ତ ସରିଲା
ହୋଇଲୁ ଅପୁତ୍ରିକ ପାରାଶର ଯାହା ବୋଇଲା ।୧୭
ଶୁଣ ହୋ ମନୁରାୟେ ବଦୟନ୍ତି ଅଗସ୍ତି ମହାମୁନ୍ୟ
ଶ୍ରୀ ମହାଭାରଥ ଭୀଷ୍ମ ସମର ଦଶଦିନ ।୧୮

ବୃହସ୍ପତିବାର ରୋହିଣୀ ନକ୍ଷତ୍ର ସମ୍ପୂର୍ଣ୍ଣେ
ଦୁଇ ଥାଠ ନିଦ୍ରା ତେଜି ଉଠିଲେ ବହନେ ।୧୯
ନିତ୍ୟକର୍ମ ସାରିଣ ରାଜା ଦ୍ରିଯୋଧନ
ମଣି ମୁକୁଟ ନେଇ ଥୋଇଲା ସନ୍ନିଧେ ଅରଜୁନ ।୨୦
ପ୍ରସନ୍ନ ବଦନେ କୁରୁଇନ୍ଦ୍ର ନ ବୋଇଲେ କିଛି
ତେଣେ ବାହୁଡ଼ି ନନ୍ଦିଘୋଷେ ବିଜୟେ ସର୍ବସାଚୀ ।୨୧
ପୂର୍ବେ ପାଣ୍ଡବେ ପଛିମେ କଉରୋବେ ପଟୋଆରି ଲାଗିଲେ
ବେନି ବଳ
ଅନେକ ଦାନ ଦିଲେ ଭୀଷ୍ମେ ସର୍ବମଙ୍ଗଳ ।୨୨
ମହା ସମ୍ବୃଧରେ ବିଜୟେ ଶାୟନ୍ତନି
ପଛିଆଣି ହୋଇ ଚଳିଲା ରାଜା କୁରୁମଣି ।୨୩
ଦ୍ରୋଣେ କୃପେ କର୍ଣ୍ଣ ଶଲ୍ୟ ଯଦ୍ୟରଥ
ଶକୁନି ଧୃଶାସନର ତୁଳେ ମାନଗୋବିନ୍ଦର ଅନେଶ୍ୱତ ଭ୍ରାଥ ।୨୪
ରଥ ଗଜ ଅଶ୍ୱ ପିଠିରେ ଯୋଦ୍ଧାୟେ ବିଜେ କରି
ହାଥେ ଧନୁ ଧରି ଯେକମୁଖ ହୋଇଲେ ଯାଇଂ କରି ।୨୫
ରଥ ଗଜ ଅଶ୍ୱନ୍ତ ଯେ ସାଜିଲେ ସମଦଣ୍ଡ
ଘୋର ବାଦ୍ୟ ଶବଦ କମ୍ପଇ ଭୂଅଖଣ୍ଡ ।୨୬
ଆକାଶୁଂ ବିଜେ କଲେ ଦେବ ଡଗର ମହାମୁନି
ବେଦମନ୍ତ୍ର ପୋଥି କରେ ବୀଣାଦଣ୍ଡ ଘେନି ।୨୭
ନାରଦଂକୁ ଦେଖିଣ ବିନୟ କଲେ ଆନନ୍ଦେ କୁରୁରାଜା
ଦ୍ରୋଣ କର୍ଣ୍ଣ ଶଲ୍ୟ କୃପେ ସମସ୍ତେ ନାରଦଂକୁ କଲେ ପୂଜା ।୨୮
ନବମୀର ଦିନ ଶେଷେ ସମର ବିରସେ
ଭୀଷ୍ମଂକ ପ୍ରଳମ୍ଭିତ ନାହିଁ ସେ ନାରଦଂକ ପାଶେ ।୨୯
ନାରଦ ହସିଲେ ଭୀଷ୍ମଂକର ମୁଖ ଚାହିଁ
ଶେଷକାଳେ ପ୍ରାଣୀଂକି ଯେ କଥା ଗୋଚର ହୋଇବ କାହିଁ ।୩୦
ତୁ ଯେହା ଜାଣୁଚି କି ହୋ ରାଜା ମାନଗୋବିନ୍ଦ
ଆଜର ସମରେ ଭୀଷ୍ମଂକୁଟି ପଡ଼ିବ ପରମାଦ ।୩୧
ଯେହାଂକ କୁରୁପତି ଆଶା କର ତେଜ୍ୟା
ଭୀଷ୍ମଂକୁ ବୋଲ ହେ ତୁ ଆଜ ସମରକୁ ନ ଯା ।୩୨
ଭାରତ ଯୁଦ୍ଧ ଦେଖୁ ସମୟେ ଥାଉ ବ୍ରତି
କୁଳର ଶ୍ରେଷ୍ଠ ଅଟନ୍ତି ତାଂକର ଥିବାହିଂ ସେ ଯୁଗତି ।୩୩
ଯେତେ କହି ନାରଦ ହୋଇଲେ ଅନ୍ତର୍ଦ୍ଧାନ
ଭୀଷ୍ମଂକ ଆଗେ ଯାଇଂ କହଇ ଦ୍ରିଯୋଧନ ।୩୪
ଭୋ ଭୀଷ୍ମ ଅମଙ୍ଗଳ ତ ମୋତେ ଦିଶଇ ବଡ଼ ମନ୍ଦ
ତୁମ୍ଭନ୍ତ ପ୍ରମାଦ ପଡ଼ିବ ବୋଲି ଆଜ ବୋଇଲେ ନାରଦ ।୩୫

ବଦୟନ୍ତି ଗାଙ୍ଗବେ ବାବୁ ତୁମ୍ଭେ ହୋ ଗଣିତା
କାହାର ବେଳେ ମେଣ୍ଟଣ ଯେ ହୋଇ କର୍ମର ଘଟିତା ।୧୩୬
ମାତା ରଜ ପିତା ବୀର୍ଯ୍ୟେ ସଙ୍ଗମ ଯେତେବେଳେ
ବିହନ୍ତା ପୁରୁଷେ ଲେଖନ ତାହା କରନ୍ତି କପାଳେ ।୧୩୭
ଜୟଶଙ୍ଖ ବାଦ୍ୟ କରିଣ ଗାଙ୍ଗବେ
ରଥରେ ବସିଲେ ଯାଇଂ ସୁମରି ବିଘ୍ନରାଜ ମାଧବେ ।୧୩୮
ମନ୍ମଥ ସାରଥି ଯେ ବାହଇ ତୁରଙ୍ଗ
ଚଳନ୍ତି ରଥୀ ଯୋଦ୍ଧାଯେ ଅତି ବେଗୁଂ ବେଗ ।୧୩୯
ଅଇଶାନ୍ୟେ ପାଣ୍ଡବେ ଯେ ପଛିମେ କଉରୋବେ
ନନ୍ଦିଘୋଷ ରଥ ଯେ ସାଜିଲେ ବାସୁଦେବେ ।୧୪୦
ଗୋବିନ୍ଦେ ବୋଇଲେ ତୁ ହୋ ଶୁଣ ଫାଲଗୁନି
ଶ୍ରୀଖଣ୍ଡିକି ସେନାପତି କରି ବେଗେ ଆସ ଘେନି ।୧୪୧
ଅର୍ଜୁନ ବୋଇଲେ ଭୋ ଦେବ ଭୀଷ୍ମଙ୍କର କହନ୍ତେ
ନପୁଂସକ ଶ୍ରୀଖଣ୍ଡିକୁ ମୁକୁଟ ବାନ୍ଧିବା କେମନ୍ତେ ।୧୪୨
ସ୍ୱାମୀ ଯାତ୍ରା ଯୋଗେ ଅଯାତ୍ରିକ ଲୋକନ୍ତ କେବେହେଂ ନ ବରି
କାଳେ ପ୍ରମାଦ ପଡଇ ଶୁଣିମା ଦେବ ହରି ।୧୪୩
ଯାତ୍ରାକାଳେ ଯେବେ ଚାହିଂଯାଇଂ ଅପୁତ୍ରିକ ମୁଖ
ହାରଇ ସାଂଗ୍ରାମେ ଯେ ପାଇ ବହୁତ ଦୁଖ ।୧୪୪
ଯାତ୍ରାକାଳେ ଯେବେ ଯୋଗୀଂକି ଦେଖିଲେ
କାର୍ଯ୍ୟ ନାଶ ଯାଇଟି ବରେହା ଋଷି କହିଲେ ।୧୪୫
ଯାତ୍ରାକାଳେ ଯେବେ ଚାହିଂବ ନଟ ମୁଖ
ଅବଶ୍ୟ କାର୍ଯ୍ୟହାନି ହୋଅଇ ପଦ୍ମମୁଖ ।୧୪୬
ଯାତ୍ରାକାଳେ ଯେ ଦେଖିବ ବିଧବା ହାଦେ ନାରୀ
ଅବଶ୍ୟ ବିଘ୍ନ ପଡଇ ବୁଝିବା ଦେବ ହରି ।୧୪୭
ଯାତ୍ରାକାଳେ ଯେବେ ଦେଖିବ କେଶ ମୁକୁଳ
ଅବଶ୍ୟ କାର୍ଯ୍ୟ ନୋହଇ ଶୁଣ ଦେବକୀର ବାଳ ।୧୪୮
ଯାତ୍ରାକାଳେ ଯେବେ ଛିଂକନ୍ତି ପୁତ୍ର ଆଇ
ପ୍ରମାଦ ପଡଇ ଦେବ ମେଣ୍ଟଣ ନ ଯାଇ ।୧୪୯
ଯାତ୍ରାକାଳେ ଯେବେ ରୋଦନ କରନ୍ତି ନାରୀଗଣ
ଅବଶ୍ୟ ମୃତୁ ହୋଅଇ ନ ଯାଇ ମେଣ୍ଟଣ ।୧୫୦
ଯାତ୍ରାକାଳେ ଯେବେ ମଞ୍ଜାରୀକି ଦେଖି
ଅବଶ୍ୟ ପ୍ରମାଦ ପଡଇ ନ ଯାଇ ଉପେକ୍ଷି ।୧୫୧
ଯାତ୍ରାକାଳେ ଯେବେ ଧରିବ ତଇଳର ନାମ
ଅବଶ୍ୟ ନାଶଯାଇ ଯେ ଗମନ୍ତେ ସାଂଗ୍ରାମ ।୧୫୨
କପାସିଆର ନାମ ଧରନ୍ତେ ନିରୋଧ
ଯେ କଥାମାନ ମୁନି କରିଛନ୍ତି ବିରୋଧ ।୧୫୩

ଅଥବା ଜିଣୁ କି ରଣେ ହାରିଲେହିଂ ହାରି
ନିସତ ପକ୍ଷ ମୋତେ ନ ବୋଲ ମୁରାରି ।୧୫୪
ଯେ ଯେତେ କଥାମାନ କହିଲି ବିଚାରି
ଯେମାନକେ ବିଘ୍ନ ପଡଇ ଶୁଣିମା ଦେବ ହରି ।୧୫୫
ସ୍ୱାମୀ ନିସତ ହୋଇ କାର୍ଯ୍ୟ କରନ୍ତି ଯେ ତେଜ୍ୟା
ତାହାଂକର ଜୀବନ ଅସାର୍ଥିକ ଦେବରାଜା ।୧୫୬
ସ୍ୱାମୀ କୂଟ କପଟେ ଯେ କରନ୍ତି ସାଂଗ୍ରାମ
ଛତ୍ରୀ କୁଳକୁ ଦୂଷଣ ବୁଡ଼ଇ ସର୍ବ ଧର୍ମ ।୧୫୭
ଅନେକ ମଣାଇ କରି କହନ୍ତି ଶ୍ରୀପତି
ତଥାପି ସନମତ ନ କଲା ବିଚିତ୍ରବୀର୍ଯ୍ୟ ନାତି ।୧୫୮
ସହଦେବକଇଂ ଠାରିଦିଲେ ବସୁଦେବର ବାଳେ
ମୁକୁଟ ବାନ୍ଧ ତୁ ନେଇ ଶ୍ରୀଖଣ୍ଡିର କପାଳେ ।୧୫୯
ଭୀଷ୍ମ ଅର୍ଜୁନ ଯେଣେ ସମର ମହାଘୋର
ତେଣେ ସେନାପତି କଲେ ଶ୍ରୀଖଣ୍ଡିକୁ ଯୁଧେଷ୍ଠି ଠାକୁର ।୧୬୦
ଅନେକ ଅଳଂକାର ଭୂଷଣ ତାର କାୟେ
ଖେଚରୀ ବିବାନ ସାରିକ୍ଷେ ରଥ ଯେ ଗୋଟାଯେ ।୧୬୧
କୃଷ୍ଣ ମେଘ ସାଦ୍ରିଶେ ତାର ଚାରି ବାଜୀ ତାଜି
ବୃନ୍ଦାଅର୍କ ଭୁବନକୁ କ୍ଷେପନ୍ତି ଗଳଗାଜି ।୧୬୨
ସାତୁକୀ ସାରଥି ଯେ ଶ୍ରୀଖଣ୍ଡିର ରଥେ
ବାହଇ ସେ ତୁରଂଗମ ପବନ ଆପାତେ ।୧୬୩
ସୂର୍ଯ୍ୟ ମଣ୍ଡଳ ସାରିକ୍ଷେ ଶ୍ରୀଖଣ୍ଡି ରଥ ଚଳି
ଆସନ୍ତେଣ ରହୁବର ଶଲ୍ୟେ ଯାଇଂ ଓଗାଳି ।୧୬୪
ସମରେ ଅଭୟେ ସେ ଶ୍ରୀଖଣ୍ଡୀ ମହାଯୋଧୀ
ଛତ୍ରୀବର ସୋହୋଡ ସେ ତୁଳାକର୍ଣ୍ଣ ବିଦ୍ୟା ସାଧି ।୧୬୫
ପର୍ବତ ନିକିଳଇ ଯାହାର ନାରାଜ ବିନ୍ଧନ୍ତେ
କେ ତାହା ସହିବ ହୋ ମାନବ ଜନ୍ମ ମାତ୍ରେ ।୧୬୬
ବହୁତ ସମର ସେ କଲେ ରାୟେଗୁରୁ ଶଲ୍ୟ
ଭାରଥ ଯୁଦ୍ଧେ ସେ ଅଟନ୍ତି ମହାମଲ୍ଲ ।୧୬୭
ନିର୍ଘାତ ପ୍ରାୟେକ ଯେ ଶୁଭଇ ଗୁଣଦାନ
ଓହୋକୁଳ ବୁଡ଼ିଲା ଯେ ବାଦ୍ୟର ଶବଦ ।୧୬୮
ଭୀଷ୍ମେ ସମର କରନ୍ତି ଅର୍ଜୁନର ତୁଲେ
ଆକାଶ ଅନ୍ଧକାର ହୋଉଅଛି ଭୀଷ୍ମଂକର ଶର ବିନ୍ଧିଲେ ।୧୬୯
ଯେକାବେଳେ ଶତେ ଶତେ ନାରାଜ ଭୀଷ୍ମେ କୋପେ ବିନ୍ଧି
ପ୍ରତିଶରେ ଅରଜୁନ ପକାଇଲା ତାହା ଛେଦି ।୧୭୦
ଦିଗମ୍ୱରେ କମ୍ପନ୍ତି ଭୀଷ୍ମଂକର ଶହସ୍ର ଗହନେ
ଆକାଶେ କମ୍ପନ୍ତି ସମସ୍ତ ବୃନ୍ଦାଅର୍କମାନେ ।୧୭୧

ଗହଳ ଧନ୍ଦୋଳ ଯେ ଗଗନଅନ୍ଧକାର
ଆକାଶେ ରଶ୍ମି ବୁଡ଼ିଲେ ଯେ ଦେବ କରତାଳ ।୭୨
ଯେସନେ ଅନଳ ଦହଇ ତିରଣ ରାଶି
ଅର୍ଜୁନ ଶହସ୍ତ୍ରମାନ ଭୀଷ୍ମ ଯେ ଝିଂଘାସି ।୭୩
ଅତିରେକ ବାଣ ଯେ ବିନ୍ଧନ୍ତି ଅନିର୍ଯାପେ
ଆବର ଯୋଦ୍ଧା କେ ରହିବ ଭୀଷ୍ମଂକର ପରତାପେ ।୭୪
କୋପେଣ ଗାଙ୍ଗବେ ଯେ ସମରେ ବିମୁଖ
ପୀଡିତ ମହାକ୍ଷୁଧା ଶରୀରେ ମହାଦୁଖ ।୭୫
ଶରୀର ଅସାଷମେ ଗଙ୍ଗାର ନନ୍ଦନ ମହାକୋପେ
ଗୁଦ୍ରା ଶରେକ ଭୀଷ୍ମେ ବିନ୍ଧିଲେ ଗରୁତାପେ ।୭୬
ବିକଟ ଦନ୍ତ ଯେ ବିକରାଳ ଘୋର ରୂପେ
ବିଜ୍ଜେକର୍ଣ୍ଣକଟାର ଚରଣେ ଗଗନ କ୍ଷେପେ ।୭୭
ବିରାଜଇ ଶହସ୍ତ୍ର ଯେ ଶୁଦ୍ଧ ସଷ୍ଟିକ ତେଜ ଜାଣି
ଜଳେ ଦିଶନ୍ତି ଯେହ୍ନେ ଶୁଦ୍ଧ ଅର୍କମଣି ।୭୮
ମହାଭାରା କମ୍ପିଲା ସେ ନାରାଜ ଆସନ୍ତେ
ଯୋଦ୍ଧାଯେ ଅନ୍ତର ହୋଇଲେ ଲୁଚିଲେ ହାଦେ ରଥେ ।୭୯
ଶ୍ରୀକୃଷ୍ଣ ଚାହିଂଲେ ଯେ ଅର୍ଜୁନର ମୁଖ
ଭଇରବା ଶହସ୍ତ୍ର ଭୀଷ୍ମକଲା ବାବୁ ଅର୍ଜୁନ ଯେହା ରଖ ।୮୦
ତୁ ଯେବେ ଶହସ୍ତ୍ର ସମ୍ଭାଳି ନୁଆରିବୁ ରେ ବୀର ପାଥ
ହନୁମତକଙ୍କ ବୋଲିବା ସେ ଗୋପ୍ୟାନ କରୁ ରଥ ।୮୧
ନାରାୟଣ ବଚନେ ଯେ ବୀର ଫାଲଗୁନି
ଆସ୍ତି ନାସ୍ତି ନ କହି ସେ ହୋଇଲାକ ତୁନି ।୮୨
ଗୋବିନ୍ଦେ ବୋଇଲେ ବାବୁ ସମ୍ଭାଳ ବୀର ହନୁ କପି
ଭଇରବା ଶହସ୍ତ୍ରେ ନିକି ସମସ୍ତେ ହୋଇ ତାପି ।୮୩
ପୃଥୀ ଘୋଟିଲା ଯେ ମହାରୁଦ୍ର ତେଜ
ଯେହିକ୍ଷଣି ଆମ୍ଭେ ନାଶଯିବା ସଚରାଚର ହୋଇବ ଦହିଜ ।୮୪
ଯେଥକଇଂ ପ୍ରତିକଲ୍ପ ଶହସ୍ତ୍ର ନ ଜାଣଇ ସର୍ବସାଚୀ
ତୋହୋର ବୁଦ୍ଧି ବଳରେ ବାବୁ ପାରିବା ଯେଥୁ
ବେଳେ ବଞ୍ଚି ।୮୫
ଯେହା ଶୁଣି ଅଞ୍ଜନା ତନୟେ ବିଶ୍ୱରୂପେ ବ୍ୟାପି
ଧ୍ୱଜେ ଥାଇ ନନ୍ଦିଘୋଷ ରଥ ପାତାଳକୁ ଚାପି ।୮୬
କଣୟ ଗିରି ସମାନେ ଯେବଣ ନନ୍ଦିଘୋଷ
ହନୁମତ ଚାପନ୍ତେ ସେ ହୋଇଲା ଅଦୃଶ୍ୟ ।୮୭
ହାବୋଡ ନ ପାଇ ସେ ଗୁଦ୍ରଶର କାଶୀ
ଶୂନ୍ୟ ହୋଇ ଲଙ୍କାଯେ ଗଲା କପିଳାସବାସୀ ।୮୮
ଧାତିକାରେ ତୋଳିଲା ହନୁ ରଥ ବସାଇଣ ଅଙ୍ଗୁଷ୍ଠି
ପାତାଳ ଭୁବନୁଂ ନନ୍ଦିଘୋଷ ରଥ ଉଠି ।୮୯
ଗୁଦ୍ରଶର ପେଷି ଭୀଷ୍ମେ ହୋଇଛନ୍ତି ନିଚିନ୍ତ
ଶହସ୍ତ୍ରକୁ ତଲଯେ କରି ନିରୋପନ୍ତି ପାଣ୍ଡବନ୍ତ ।୯୦
ଭାଳନ୍ତି ଭୀଷ୍ମେ ଭଲା କ୍ଷିଦ୍ର କହିଲି ଅର୍ଜୁନକୁ ଆଜ ରାତି
ଯେ ଶହସ୍ତ୍ର ବିଘାତେ ପାଣ୍ଡବେ କି ପାଇବେ ଜୀବତି ।୯୧
ଯେକ ଲୟେ କରି ଭୀଷ୍ମେ ନିଚଳ ବେନି ଆଖି
କୃଷ୍ଣର ଦର୍ପେ ପାଣ୍ଡବନ୍ତ କି ହୋଇବ ଆଜ ରଖି ।୯୨
ଯେମନ୍ତ ସମୟରେ ଅର୍ଜୁନ ଧାତିକାରେ
ବିନ୍ଧିଲା ବାସେବି ଯେ ଗନ୍ଧର୍ବା ତୀକ୍ଷ ଶରେ ।୯୩
ପଡନ୍ତେ ଭୀଷ୍ମ ରଥ ହୟ ହୋଇଲେକ ସର୍ବଚୂନା
ଧନୁ ଦ୍ରୋଣ ଛେଦିଣ ସେ ଭେଦିଲା ଭୀଷ୍ମଂକର ବକ୍ରସ୍ନେହା ।୯୪
ରଥଭଗ୍ନ ହୋଅନ୍ତେ ଭୀଷ୍ମେ ହୋଇଲେ ଉତ୍ତାନଶାହୀ
ଅସାଷମ ଅଚେତ ମୋହେ ଭୀଷ୍ମେ ପଡ଼ିଲେକ ମହୀ ।୯୫
ହାବୋଡା ଶରେ ଯହୁଂ ପଡ଼ିଲେ ଗାଙ୍ଗବ
କ୍ଷଣେକେ ମୋହ ତେଜି ପାଇଲେ ସେ ଜୀବ ।୯୬
ପୁଣ ଆନ ରଥେକ ଯୋଚି ଆଣିଲା ସାରଥି
ଧାତିକାରେ ରଥେ ବିଜୟେ ଭୀଷ୍ମ ମହାରଥୀ ।୯୭
ଧାତିକାରେ ଉଠିଣ ଭୀଷ୍ମେ ବେନି କରେ ଧଇଲେ ଭୂଷଣ୍ଡୀ
ଦେଖିଲେ ଚୋଖାର ତୁରଙ୍ଗମ ଚଢ଼ି ଆଗ ହୋଇଛି ଶ୍ରୀଖଣ୍ଡି ।୯୮
ପୁଣିହିଂ ଭୀଷ୍ମେ ଯେ ବିଚାରିଲେ ମନ
ଯାତ୍ରାବେଳେ ଅଇଲୁ କେଉଣ ଲକ୍ଷଣ ।୯୯
ଯାତ୍ରାକାଳେ ଅଯାତ୍ରିକ ଲୋକନ୍ତ ଦେଖିଲେ
ଧର୍ମନାଶ ଯାଇଟି ଅନକୂଳ ଆରମ୍ଭିଲେ ।୧୦୦
ଅଥବା ବଞ୍ଚିତ ଯେଉଣ ଜନ ଯେହା
ଯମ ଦେବତା ବିନୁ ତାକୁ ଆନ ନାହିଂ ସାହା ।୧୦୧
ତ୍ରିକଣ୍ଟକ ଶର ହାଦେ ଭୀଷ୍ମଂକୁ ବିନ୍ଧିଲା ଶ୍ରୀଖଣ୍ଡି
ମଦନ ଆରତେ ଭୀଷ୍ମଂକ ସେ ଶରୀର ତ୍ରିପଣ୍ଡି ।୧୦୨
ମଦନେ ଘାରି ହୋଇଲା ଯେ ଭୀଷ୍ମକଂର ବପୁ
ଅମ୍ବା ସୁନ୍ଦରୀ ଶ୍ରୀଖଣ୍ଡି ତହିଂକି ଯେ ରିପୁ ।୧୦୩
କସ୍ତୂରୀ ରେଖ ଜାଣି ଭୀଷ୍ମକଂର ରୋମାବଳି
ଶ୍ରୀଖଣ୍ଡିର ନାରାଜ ଘାତେ ଶରୀରୁ ମହାରେତ ଗଳି ।୧୦୪
ନୟନ ନାସିକା କର୍ଣ୍ଣ ତୁଣ୍ଡ ଫୁଟି
ବରଷିଲା ନବଦ୍ୱାର ଛାଡିଲା ସର୍ବଘାଟି ।୧୦୫
ଜନଜନ୍ତୁ ବିଘାତେ ଯେହ୍ନେ ହୋଇ ସର୍ପ
ଅବିଚ୍ଛନ୍ନେ ମହାରସ ଗଳନ୍ତେ ଭାଙ୍ଗିଲା ଭୀଷ୍ମଂକର ଦର୍ପ ।୧୦୬

କୁକ୍ଷି ହୃଦପଞ୍ଜର କର ଚରଣ ଅଙ୍ଗୁଷ୍ଠି
ଇଅଂଳା, ପିଅଂଳା, ଶିଶୁମୁନା ଯେ ସମସ୍ତ ଦ୍ୱାର ଫୁଟି ।୧୦୭
ପୀଡିଲା ଅନଙ୍ଗ ଯେ ମାଡିଲା ଚନ୍ଦ୍ରକଳା
ତୁଟିଲା ବଳ ଦର୍ପ ହୋଇଲେ ଭେଓଳା ।୧୦୮
ଯେସନେକେ ଶରୀର ରମଇ ରତି ରସେ
ଭୀଷ୍ମଂକର ଶରୀର ହୋଇଲା ତେସନ ସାଦୃଶେ ।୧୦୯
ଶରୀରକୁ ପ୍ରାଭବଇ ଲୋଡ଼େ ରେତ ଗଳିଲେ
ସଭାବେ ସରସେ ଯେ ଗମଇ ଚଞ୍ଚଳେ ।୧୧୦
ନଉ ସହସ୍ର ବରଷ ଯେବଣ ଅଟଳ ବିନ୍ଦୁ
ଅମ୍ଭାର ଦ୍ରଶନ ମାତ୍ରକେ ତୁଟିଲା ସର୍ବବିନ୍ଦୁ ।୧୧୧
ଭୀଷ୍ମଂକର ଅସାଷମେ ଭାଜିଲେ ସର୍ବ ସଇନି
ସମର ରହୁ ବୋଲି ଯେ ଶୁଭିଲା ଘୋର ଧ୍ୱନି ।୧୧୨
ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ଯଷ୍ଟି ଖଣ୍ଡି ହରାଇ ଅନ୍ଧ ଯେସନେକେ ବର୍ତ୍ତି ।୧୧୩
କଉରୋବ ବଳର ଯେ ଭାଙ୍ଗିଲା ମୁରାଟ
ବିଧବା ଆତ୍ମା ପରା ଯେ ହୋଇଲେ କୁରୁଥାଠ ।୧୧୪
ଧାମନ୍ତି କଉରୋବେ ଯେ ଭୀଷ୍ମଂକ ସନ୍ନିଧାନେ
ଦେଖିଲେ ଗାଙ୍ଗବେ ଯେ ବିରସ ବିଦ୍ୟମାନେ ।୧୧୫
ଭୀଷ୍ମଂକର ଅବସ୍ଥା ଯେ ଦେଖିଣ ଧୃତିରାଷ୍ଟି
ଦକ୍ଷିଣ ହାଥ ନେଇ ଦିଲାକ ଲଲାଟ ପାଟି ।୧୧୬
ଭୋ ପିତା ଯମଦଗ୍ନି ନନ୍ଦନ ପର୍ଶୁରାମେ
ଯାହାକଙ୍କଂ ଭାଜିଲେ ଦୁସହ ସଂଗ୍ରାମେ ।୧୧୭
ଯାହାର ଧନୁ ଧରନ୍ତେ କମ୍ପଇ ଅସକନ୍ଦ
ତୋତେ କିସ ବୋଲିବି ହୋ କର୍ମ ମୋର ମନ୍ଦ ।୧୧୮
ଆଦିହୁଁ ଭୋ ପିତା ଯେବେ କହିଥାନ୍ତୁ ମୋତେ ଯେହା
ପାଣ୍ଡବେ ବିବାଦୀ ନୁହନ୍ତି ତୋହୋର ଅସାହା ।୧୧୯
ଭୀଷ୍ମଂକୁ କୋଳେ ଧରି ସେ ମାନଚକ୍ରବ୍ରତୀ
କର୍ଣ୍ଣ ଶଲ୍ୟ ଦ୍ରୋଣ ଶକୁନି ଧୁଶାସନ ସମସ୍ତେ ରୋବନ୍ତି ।୧୨୦
ସଞ୍ଜୟେ ବିଦୁର ତୁଳେ ବିଜୟେ ଧୃତିରାଷ୍ଟ
ଯେ ସମୟେ ପୁଅନ୍ତ ମୋର ଦିଲୁ ଯେତେ କଷ୍ଟ ।୧୨୧
ତୁ ଯେହା ସଞ୍ଚୟେ କରି କିମ୍ପେ ନ କହିଲୁ ଆଗହୁଁ
ଭବିଷ୍ୟ ଗ୍ୟାଂତା ନୋହଇ ଜାଣିବି ବା କାହୁଁ ।୧୨୨
ବୋଇଲୁ ଯେ ସମରେ କୃଷ୍ଣ ଅର୍ଜୁନନ୍ତ ମାରି
ପଞ୍ଚୁରାଜ୍ୟେ ତୋତେ ଯେକାଙ୍ଗେ କରିବି ଅଧିକାରୀ ।୧୨୩

ମୁହିଂ ତୋହୋର ବଚନକୁ ଯେ ଆଶ କଲି ପିତା
ମହତଂକ ବଚନ ଯେବେ ହୋଇଲା ଅନ୍ୟସ୍ଥା ।୧୨୪
ସ୍ୱାମୀ କଉରୋବେ ବଂଶକୁ ତୁ ପ୍ରାଣର ମଉଷଧି
କେବେହେଂ ନ ଛାଡିଲା ମୋର ଗଲୁତ କୁଷ୍ଟବ୍ୟାଧି ।୧୨୫
ଭୂରିସର୍ବାୟେ କୋଳ କରି ଧରିଲେ ଭୀଷ୍ମଂକୁ
ହୃଦରେ ଭୁଜ ଦେଇ ଯେ ଆବୋରିଲେ ତାହାଂକୁ ।୧୨୬
ଯେସନେକ ଚରିତ ଆଗହୁଂ ଯେବେ ଜାଣୁ
ଯେହୁ କୁରୁ ସାଗରେ କିମ୍ପେ ଯେହା ଆଦ୍ୟହୁଂ ନ ବଖାଣୁ ।୧୨୭
ଦ୍ରୋପଦର ନନ୍ଦନ ଶ୍ରୀଖଣ୍ଡି ଯେବେ ତୋତେ ଯେତେ ରିପୁ
ତିରଣ ପରାୟେ କରି କାଟନ୍ତି ତାର ବପୁ ।୧୨୮
ଭୂରିସର୍ବାୟେ ବୋଇଲେ ହୋ ତବ କର୍ତ୍ତବ୍ୟ ଯେତେକ ହୋଇଲା
ଶଶାର ପ୍ରାକ୍ରମେ ଯେବେ ସିଂଘ ନାଶଗଲା ।୧୨୯
ଯେବେହେଂ ଆଗ୍ୟାଂ ଦେସି ସମରେ ମାରିବି ଶ୍ରୀଖଣ୍ଡି
ତିରଣ ପ୍ରମାଣେ ମାୟେଂସ କାଟିବି ଖଣ୍ଡି ଖଣ୍ଡି ।୧୩୦
କହୁଂ କହୁଂ ଭୂରିସର୍ବାୟେ ହୋଇଲେ ମହାକ୍ରୋଧି
ଦିଗ ଅନ୍ଧାର ହୋଇଲାତ ନ ଫୁରକ ବୁଦ୍ଧି ।୧୩୧
ଯେତେକ ଆରମ୍ଭ ପାତିଲୁ କିମ୍ପେ ଆଣି
ବୃକ୍ଷକୁ ଉଠାଇଣ ଯେବେ କାଟିଲୁ ନିଶୁଣୀ ।୧୩୨
ଭୀଷ୍ମେ ବୋଇଲେ ସେ ଅଟଇ ସ୍ତିରୀଜନ
ତାହାକୁ କେମନ୍ତେ ନାଶ କରିବି ସାଂଗ୍ରାମ ।୧୩୩
ମୋହୋର ଦର୍ପେ ନାଶ ନ ଯାଇ ଶ୍ରୀଖଣ୍ଡି
ସମସ୍ତ ସଞ୍ଚିଲା ହରି ପାଣ୍ଡବ କୁଳ ମଣ୍ଡି ।୧୩୪
ଭୀଷ୍ମେ ବୋଇଲେ ଆମ୍ଭେ ନାଶଗଲୁଂ ଶ୍ରୀଖଣ୍ଡିର ସମଗୁଂ
ଧୃଷ୍ଟଦ୍ୟୁମନ ହାଥେ ନାଶଯିବେ ଦ୍ରୋଣଗୁରୁ ।୧୩୫
ଭୀମସେନ ନିପାତିବ ଧୃତିରାଷ୍ଟର ଶତେକ ତନୟେ
କର୍ଣ୍ଣ ନାଶ ଯିବେଟି ଅର୍ଜୁନର ଶର ଘାୟେ ।୧୩୬
ଯୁଝେଷ୍ଠିର ସମରେ ନାଶଯିବେ ରାୟେଗୁରୁ ଶଲ୍ୟେ
ଶଂକୁନି ନାଶଯିବ ସହଦେବ କୋପାନଳେ ।୧୩୭
କୃପ ଅଶସ୍ତମା ତ ସମରେ ଅବରଣି
ଭୂରିସର୍ବା ବାହ୍ଲିକ ସୋମଦତ୍ତ ଯେହାନ୍ତ କେ ବା ଗଣି ।୧୩୮
ବାବୁ ମାନଗୋବିନ୍ଦ ତୁ ଯେବେହେଂ କର ବୁଦ୍ଧି
ବାସୁଦେବନ୍ତ ଘେନି ତୁ ଯେବେ କଥାକର ସନ୍ଧି ।୧୩୯
ଆହୋ ଦ୍ରିଯୋଧନ ପିତା ଶାୟନ୍ତନୁ ମୋର ମାତା ହାଦେ ଜାହ୍ନବୀ
ଇଚ୍ଛାୟେ ମୃତୁ ମୋହୋର ବାଞ୍ଛାୟେ ତ୍ରିଜୀବୀ ।୧୪୦

ମୋତେ ଜିଣିମାକୁ ପାଣ୍ଡବଂକର କିସ ବୁଦ୍ଧି
ଆବର ପ୍ରାପତ କାହିଂ ତୋତେ ହୋଇବାକ ରାଜ୍ୟବିଧି ।୧୪୧
ପୁଣ ବଦୟନ୍ତି ଗାଙ୍ଗେବ ଯେ ଶୁଣ ମାନଗୋବିନ୍ଦ
ପାଣ୍ଡବଂକର ତୁଲେ ତୁମ୍ଭେ ନ କର ଦ୍ୱନ୍ଦ୍ୱ ବାଦ ।୧୪୨
ଛାଡିମେଲ ତୋହୋର ଲୋଭ ମୋହ ଆତ୍ମାରାଗ
ଯୁଗତେ ସୋଦର ସେ ପାଣ୍ଡବେ ଅଛି ଭାଗ ।୧୪୩
ମାନଗୋବିନ୍ଦ ବୋଇଲା ତାତ ଯେ ନୋହଇ ଯୁଗତେ
ଯେକ ସୀମା ନ ଦିଅଇଂ ଶରୀରେ ପ୍ରାଣ ଥିବା ପରିଯନ୍ତେ ।୧୪୪
ଶୁଣିଣ ମଉନବ୍ରତ ଯେ ହୋଇଲେ ଗାଙ୍ଗେବ
ପ୍ରତଗ୍ୟାଂ କରି ପ୍ରତିବାକ୍ୟ ଯେ ଦିଲାକ ରାଧେବ ।୧୪୫
କର୍ଣ୍ଣ ବୋଇଲା ଭୀଷ୍ମେ କହିଲ ଯେଉଣ ବାଣୀ
ଶରୀର କମ୍ପଇ ମୋହୋର ତୁମ୍ଭର ବାକ୍ୟ ଶୁଣି ।୧୪୬
ବଢ଼ିଲୁ କଉରୋବ ଥାଠେ ପାଣ୍ଡବେ ତୋର ପ୍ରୀତି
ମୃତୁଭେଦ କହିଲୁ ତୁ ପାଣ୍ଡବନ୍ତ ପରିଦିନ ରାତି ।୧୪୭
ରାଜ୍ୟ ବୁଡ଼ାଇବାକୁ କଲୁ ତୁ ଦ୍ରିଯୋଧନକୁ
ତୁ ଯେବେ ଧର୍ମ ଛାଡିଲୁ ଧର୍ମ ହାଦେ ନ ଛାଡଇ ଯେହାକୁ ।୧୪୮
ତୋତେ ଆଶକରି ଆମ୍ଭେ ଅପସରି ଥିଲୁଂ
ଅନେକ ସଇନି ସେନାନ୍ତ ତୁହି ସେ ନାଶ କରାଇଲୁ ।୧୪୯
ଆହୋ ଭୀଷ୍ମ ଲାଘବ ଯୁଦ୍ଧ ସରିଲା ଆଜହୁଂ
ଯେବେ ସେ ମାନଗୋବିନ୍ଦ ପଞ୍ଚ କଟକେ ହୋଇବ
ମହାପ୍ରଭୁ ।୧୫୦
କର୍ଣ୍ଣ ଦ୍ରୋଣ ଅଶତ୍ତମା ଶଲ୍ୟ କୃପ ଥାନ୍ତେ
ତୁ ସେ ନ ଦେଖିବୁ ପାଣ୍ଡବେ ବ୍ରତନ୍ତି କେମନ୍ତେ ।୧୫୧
ଭୀଷ୍ମେ ବୋଇଲେ ଆମ୍ଭେ ଛାଡନ୍ତୁ ଶରୀର
ଆଉର ଅଷ୍ଟ ଦିବସ ରହି ଦେଖିବୁଂ ସମର ।୧୫୨
ଭୀଷ୍ମେ ବୋଇଲେ ବାବୁ ତୁ ଶୁଣ କୁରୁରାଜା
ଯେଠାବ ଗୋଟିରେ ମୋତେ କର ଶରଶଯ୍ୟା ।୧୫୩
ଆଗ୍ୟାଂ ପ୍ରମାଣରେ ସେ ମାନଚକ୍ରବ୍ରତୀ
ସୁସଞ୍ଚ ଶେଜ୍ୟା ଦିଲାକ ତୁଳାର ସୁପାତି ।୧୫୪
ଭୀଷ୍ମଂକୁ ଶୟନ କରାଇଲେ କର ତୋଳି ଧରି
ମହାରସ ଝରନ୍ତେ ଶରୀର ହୋଇଲା ଜଡ଼ି ।୧୫୫
ଭୀଷ୍ମଂକୁ ଶୁଆଇ କଉରୋବେ ଗଲେ ନିଜ ଥାନେ
ରାତ୍ର ଅର୍ଦ୍ଧେ ପ୍ରାଣ୍ଡବନ୍ତ ଘେନି ବିଜେ ଜନାର୍ଦ୍ଦନେ ।୧୫୬
ମକର ମାସ ଶୁକଳ ପକ୍ଷ ଦଶମୀର ରାତି
ପାଣ୍ଡବେ ଭେଟିଲେ ଯାଇଂ ଭୀଷ୍ମ ମହାରଥୀ ।୧୫୭
ଦେଖିଲେ ଭୀଷ୍ମଂକର ନବମ ଅବସ୍ତା
ଯୁଝେଷ୍ଠି କୋଳ କରି ବୋଇଲେ ଯେହା ସେ କଲୁ ପିତା ।୧୫୮
କୁଟୁମ୍ବ ଲୋକନ୍ତ କରାଇଲୁ ଯେଡ଼େ ଶାସ୍ତି
କେଉଣ ଯଶ ଅର୍ଜିବଟି ରାଜା କୁରୁପତି ।୧୫୯
ଭୀଷ୍ମେ ବୋଇଲେ ହରି ତୋତେ ପ୍ରଳମ୍ଭ କରିବାକୁ
କର ଚରଣ ନ ଚଳଇ ଗୋଚର ନାହିଂ ମୁକୁ ।୧୬୦
ଭୀଷ୍ମଂକର ଅବସ୍ତା ଦେଖି ପ୍ରସନ୍ନ ହୋଇଲେ ଶ୍ରୀପତି
ବର ମାଗ ଗାଙ୍ଗେବ ତ୍ରିବାର ମୋର ସତ୍ୟି ।୧୬୧
ତୁ ମହାରଥୀ ଯେହି ମହୀ ମଣ୍ଡଳର ମଧ୍ୟେ
କେ ତୋତେ ଜିଣିବାକୁ ସାମରଥ ହୋଇବାକ ଯୁଦ୍ଧେ ।୧୬୨
ମୋହୋର ବଚନେଣ ପାଣ୍ଡବଂକର ହିତେ
ଯେହେନେକ ଅବସ୍ତା ତୋତେ ଦଇବ ଘଟସୂତ୍ରେ ।୧୬୩
ମାଗ ହୋ ଭୀଷ୍ମ ତୋତେ ଚିରାନ୍ତନ ଯେଉଂଣ କଥା
ତୁହି ସେ ମାଗନ୍ତା ଯେ ମୁହିଂ ସେ ଦିଅନ୍ତା ।୧୬୪
ଭୀଷ୍ମେ ବୋଇଲେ ଦେବ ମୋର ଗ୍ୟାନେ ନାହିଂ ଆନ ପାପ
ଅପୁତ୍ରିକ ଦୋଷ ଲକ୍ଷଣ ମୋର ଖଣ୍ଡିବାକ ତାପ ।୧୬୫
ସ୍ୱାମୀ ରଣଯାଗ କରି ମରନ୍ତି ଯେବେ ଦେଖିଣ ତୋର ମୁଖ
ସର୍ବ ପାପ ଖଣ୍ଡନ୍ତି ପାବନ୍ତି ବଇକୁଣ୍ଠେ ବଡ଼ ସୁଖ ।୧୬୬
ସେହି ମହାଯାଗ ତ ମୋତେ ନୋହିଲା ପ୍ରାପତ
ଅପୁତ୍ରିକ ଦୋଷୁଂ ପାର ମୋତେ କର ହୋ ଜଗନ୍ନାଥ ।୧୬୭
ଯେ ଯେ ସ୍ୱାମୀ ବ୍ରତରାଜା ଅଟେ ପୁଣ୍ୟ ଯେକାଦଶୀ
ଯେଥେ ପ୍ରାଣ ବିସର୍ଜିଲେ ମୁକତି ହୁଅନ୍ତି ଋଷୀକେଶି ।୧୬୮
ହରି ଅନେକ ଝିଂଘାସ ଯେ କର୍ଣ୍ଣ କଲା ମୋତେ
ଶରୀର ରଖିଲି ଶ୍ରୀ ମହାଭାରଥ ସମର ସରିବା ପରିଯନ୍ତେ ।୧୬୯
ଗୋବିନ୍ଦେ ବୋଇଲେ ମୋହୋର ଭଗତେ ବ୍ରତନ୍ତି ଯେବଣ ଜନେ
ସେ ତୋର ଧର୍ମପୁତ୍ରେ ହୁଅନ୍ତି ଯେକଥା ମୋର
ଦୃଢ଼ ବଚନେ ।୧୭୦
ଇଦଂ ପ୍ରତିବାକ୍ୟ ଯେ ବଦୟନ୍ତି ଦେବ ଋଷିକେଶି
ଯେ ମୋତେ ଭଗତ ସେ ତୋହୋର ଅଟନ୍ତି ଶିଷି ।୧୭୧
ମକର ମାସ ଶୁକଳ ପକ୍ଷ ଅଷ୍ଟମୀର ତିଥି
ଭୀଷ୍ମ ଅଷ୍ଟମୀ ନାମ ଯେ ତୋହୋର ଦିବାରାତି ।୧୭୨
ମମ ଭଗତେ ଯେବଣ ନରେ ଚିତ୍ତ ଶୁଦ୍ଧ
ସେ ଭୀଷ୍ମର ନାମେ ଗୋତ୍ର ଧରି ଦେଉଥିବେ ଶ୍ରାଦ୍ଧ ।୧୭୩
କେଶବ ବୋଇଲେ ଭୀଷ୍ମେ ପ୍ରୟାଗେ ଶ୍ରାଦ୍ଧ କଲେ ଯେତେ ଫଳଶ୍ରୁତି
ସେ ପୁଣ୍ୟ ଲଭନ୍ତୁ ଜନେ ଯେ ତୋତେ ହୋଇବେ ଭଗତି ।୧୭୪
ଆହୋ ଭୀଷ୍ମ ମକର ମାସ ଶୁକଳ ପକ୍ଷ ଯେ ଦଶମୀ
ଯେ ବ୍ରତଧର୍ମ ତୋତେ ଦିଲୁ ଯେ ସ୍ୱାମୀ ଆମି ।୧୭୫
ଭୀଷ୍ମ ବୋଇଲେ ହରି ଯେ ବ୍ରତଧର୍ମ ମୋର ବୋଲି ବୋଇଲେ
କେହି ନ କରିବେ ଯେହା ମୋହୋର ବ୍ରତ ହୋଇଲେ ।୧୭୬

ଗୋବିନ୍ଦେ ବୋଇଲେ ମୋର ବ୍ରତରାଜକୁ ସଂକଳ୍ପ ଯେବଣ ଜନ
ପ୍ରଥମେ ଯେ ବ୍ରତ କଲେ ସେ ପାଳିବେ ଜନେ ଆନ ।୧୭୭
ଯେ ଭୀଷ୍ମ ଦଶମୀ ଯେବେ କରିବେ ପ୍ରଥମେ
ତେବେ ସେ ପ୍ରାପତ ତାକୁ ଯେକାଦଶୀ ଧର୍ମେ ।୧୭୮
ଆଜହୁଂ ଭୀଷ୍ମ ଅଷ୍ଟମୀ, ଭୀଷ୍ମନବମୀ, ଭୀଷ୍ମଦଶମୀ,
ଭୀଷ୍ମଯେକାଦଶୀ, ଭୀଷ୍ମ ଦ୍ୱାଦଶୀ,
ଯେ ପଞ୍ଚୁଧର୍ମ ଦିଲି ତୋତେ ବଦୟନ୍ତି ଋଷୀକେଶି ।୧୭୯
ଆହୋ ଭୀଷ୍ମ ଚଉବିଂଶ ଯେକାଦଶୀକି ଯେହୁ
ଯେକାଦଶୀହିଂ ମୂଳ
ତୋହୋର ନାମ ସଂକେତେ ଯେହା ପାଳନ୍ତୁ ସକଳ ।୧୮୦
ତୁ ସେ ଛତ୍ରୀବୃତ୍ତି ତେଜିଲୁ ମୋର କାର୍ଯ୍ୟ ଅର୍ଥେ
ସଚରାଚର ଧର୍ମପୁତ୍ର ହୋଇ ମୁକତି କରିବେ
ହାଦେ ତୋତେ ।୧୮୧
ଭୀଷ୍ମେ ବୋଇଲେ ଦେବ ଲଭିଲି ମୁଂ ପରମ ଗତି
ନିଚଯେଂ ଚିରନ୍ତନ ଧର୍ମ ମୋତେ ଯାଚି ଦିଲୁ
ହୋ ଶିରୀପତି ।୧୮୨
ଭୀଷ୍ମେ ବୋଇଲେ ହରି ପାଣ୍ଡବେ ମୋର ପୁତ୍ର
ପାଇଲେ ସଂପଦ ଯେବେ ଅରଜିଲେ ପରମ ଅର୍ଥ ।୧୮୩
ଭୀଷ୍ମେ ବୋଇଲେ ଦେବ ଶୁଣ ମୋ ବଚନ
ଯେ ମହାଭାରଥ ଦେଖିଲେ ଛାଡିବି ଜୀବନ ।୧୮୪
ଆବର ଆଜ୍ଞା ମୋତେ ଦେବାକ ଭଗବାନ
ପାଣ୍ଡବନ୍ତ ଘେନି ମୋତେ ଅପୋଡା ଭୂମିରେ କରାଇବୁ
ଦହନ ।୧୮୫
ଯେବେ ଯେମନ୍ତ ଆଗ୍ୟାଂ ମୋତେ ଦେବା ଦେବାଧିଦେବ ରାଜା
ଅର୍ଜ୍ଜୁନକୁ ବୋଲ ମୋତେ କରାଉ ଶରଶଯ୍ୟା ।୧୮୬
ଯେ ଶରଶଯ୍ୟା ତଳେ ବହିବ ରକତ ସାତତାଳ
ଅର୍ଜ୍ଜୁନ ଶରଶଯ୍ୟାରେ ଥାଇ ମୁଂ ଦେଖିବି ସମର ।୧୮୭
ବାଣ ଜାଳାବଳୀରେ ହେବ ଶରୀର କ୍ଷିନ୍ନ ମୋର
ଯେଥକୁ ଅର୍ଜ୍ଜୁନ ମୋତେ ଦେବ ଜଳଧାର ।୧୮୮
ଅନେକ ମୃତୁପିଣ୍ଡେ ଯେ ବହିବ ରକତ ନଦୀ
ଯୋଗିନୀ ବଳ ପ୍ରେତ ପିଶାଚୀଯେ ଯେଥି ଥିବେ
ସମସ୍ତେ ସମ୍ପାଦି ।୧୮୯
ବାବୁ ସୁପାତି ଶଯ୍ୟାଯେ ଶୁଆଇଲେ ମାଡିବ ବଡ଼ ନିଦ୍ରା
ରାକ୍ଷାସୁଣୀ ପିଶାଚୁଣୀମାନେ ଭ୍ରମଣେ ଭାଙ୍ଗିବେ ମୋହୋର
ମୁଦ୍ରା ।୧୯୦
ବାବୁ ଯେ ନିଶାଚରୀମାନେ ମୋତେ ନ ପୀଡନ୍ତି ଯେମନ୍ତେ
ତହିଂକି ଚିନ୍ତା କରି ଶରଶଯ୍ୟା ଗୋଟିଯେ କରିଦିଅ ନିଦ୍ରା
ଯେହ୍ନେ ନ ମାଡିବ ମୋତେ ।୧୯୧
ଆହୋ ଚଇତନ ଭୀଷ୍ମଂକର ମନ ଯେ ଜାଣିଲେ ପାର୍ଥ ମନ ଭେଦି
ଭୀଷ୍ମକଇଂ ଶରଶଯ୍ୟା ଗୋଟିଯେ ସଜାଡିଲେ
ଶରେ ଶର ଛନ୍ଦି ।୧୯୨
ପୃଥୀର ତଳେ ଶର ଷଡତାଳ ଭେଦନ୍ତି
ଉପରକୁ ତିନିତାଳ ଉଚ୍ଛର୍ଗେ ଛନ୍ଦାଛନ୍ଦି ହୋଅନ୍ତି ।୧୯୩
ଶିରକୁ ସିମସ୍ଥାନ ଯେ ଭୁଜକୁ ଆବୋରିଣ
ସିମସ୍ଥାନକୁ ଲକ୍ଷେଶର ଗଣ୍ଡସ୍ଥଳକୁ ଅଶିସହସ୍ର ବାଣ ।୧୯୪
ବେନି ଲକ୍ଷ ନାରାଜ ବେନି ଯେ ଭୁଜକୁ
ପଞ୍ଚକୋଟି ନାରାଜ ଯେ ବକ୍ଷସ୍ଥଳକୁ ।୧୯୫
ବେନି ପାଦକୁ ଯେ ବେନି ମର୍ଭୂତେକ ଶର
ମହାଶୂନ୍ୟେ ଥାଇ ଆବୋରି ରହିଲା ନ ପଡ଼ିଲା ତଳ ।୧୯୬
ଭୀଷ୍ମେ ଯେ ଶରଶଯ୍ୟାକୁ କଲେକ ମନୀଷା
ଶୂନ୍ୟରେ ରହିଲା ଭୀଷ୍ମଂକ ଶରୀର ନାରାଜ ଭରସା ।୧୯୭
ମହାକାୟ ଶରୀର ସବୁ ନାରାଜରେ ଛନ୍ଦି
ଚଳି ତ ନୁଆରଇ ଶରେଣ ଶର ବାନ୍ଧି ।୧୯୮
ନିଚଳ ହୋଇ ଭୀଷ୍ମେ ରହିଲେ ଯେହିରୂପେ ଅଷ୍ଟରାତ୍ର
ଶରଶଯ୍ୟାରେ ଭୀଷ୍ମେ ଯେ ପାଇଲେ ସୁଆର୍ଥ ।୧୯୯
ଭୀଷ୍ମେ ବୋଇଲେ ସାଧୁ ସାଧୁରେ ଫାଲଗୁନି
ପର ମନ ଜାଣନ୍ତା ମହିମା ତୋର ଧନି ।୨୦୦
ପରମନ ଜାଣଇ ଯେ ସେ କରଇ ପରମାର୍ଥ
ପରଲୋକ ଚିନ୍ତା ପର ଲୋକ କାର୍ଯ୍ୟ ହିତ ।୨୦୧
ମମ ଆଷ୍ୟ ଘେନି ତୁ ବ୍ରତରେ ସର୍ବସାଚୀ
ଚିରଆୟିଷ ହୋଉ ତୋତେ ଚିରାନ୍ତ-ନ ହୋଇ ଲଛୀ ।୨୦୨
ପରମ କଲ୍ୟାଣ ହୋଉ ତୋର ପୂରୁ ମନବାଞ୍ଛା
ପଞ୍ଚୁକଟକେ ଭୋଗକର ରହୁ ତୋର କକ୍ଷା ।୨୦୩
ବର ଦେଇଣ ଗାଙ୍ଗେବ ଯେ ଅନେକ ତ୍ରିପୁତି
କୁରୁ ପାଣ୍ଡବେ ରଣଭୂମି ଆବୋରି ରହିଲେ ଭୀଷ୍ମଂକର କତି ।୨୦୪
ଶରଜାଳାଯେ ଭୀଷ୍ମଂକ ଶରୀର କଲା ଜାଳା
ମାନଗୋବିନ୍ଦନ୍ତ ଜଳ ମାଗିଲେ ଭୀଷ୍ମ ମହାବଳା ।୨୦୫
ଲକ୍ଷେଭୋର ପାଣି ନିଉଡାଇଲେ କୁରୁବୀର
କଦାଚିତେ ଜାଳା ଶାନ୍ତି ନୋହିଲା ଭୀଷ୍ମଂକର ଶରୀର ।୨୦୬
ଅର୍ଜ୍ଜୁନକୁ ବୋଇଲେ ବାବୁ ଆମ୍ଭନ୍ତ ଜଳ ଦେସି
ମେଘାଶର ଘେନି ପାର୍ଥ ଆକାଶ ଗଙ୍ଗାକଇଂ ପେଶି ।୨୦୭

**

# ଦ୍ରୋଣ ପର୍ବ

## ୮୯. ଗର୍ଭସ୍ଥ ଅଭିମନ୍ୟୁର ଚକ୍ରବ୍ୟୂହ ଭେଦ ଶ୍ରବଣ ଓ ସେନାପତିତ୍ୱରେ ବରଣ

ଅଗସ୍ତିଂକ ଅଗ୍ରତେ ପୁଛାକଲେ ବଇବସ୍ତୁତ ମନୁ
ଜାଳନ୍ଧର ଭୂଅର କଥା ଶୁଣିଲୁ ବିଧାନୁ ।୧
ଦ୍ରୋଣ ଯେ ଚକ୍ରଭୂଅ କପଟ କୂଟ କଲେ
ଅର୍ଜୁନ ନ ଥିଲେ ଯୁଝେଷ୍ଟିଂକି ଧରିନେବେ ବୋଲି ବୋଇଲେ।୨
ଚକ୍ରଭୂଅ କଥା ମୋତେ କହିବା ବିଶେଷି
କୋଟିଯେ ଜନ୍ମର ପାପ ଧଂସିବି ଶାହାସ୍ର ଉପନେଶି ।୩
ବଦୟନ୍ତି ଅଗସ୍ତି ମୁନି ଶୁଣ ହୋ ମହାରାଜ
ଶୁଣିଣ ମହାଭାରତ ପାପ କର ଦହିଜ ।୪
ଯେଥୁ ଅନନ୍ତରେ ଶୁଣ ଶ୍ରୀ ମହାଭାରଥ
ଦେଶାଉରେ ଜଣାଇଲେ ଯାଇ ପାଣ୍ଡବଂକ ଅଗ୍ରତ ।୫
ଆହୋ ସ୍ୱାମୀ ଭୀଷ୍ମଦେବ ଯେ ଶରଶଯ୍ୟା କଲେ ଯହୁଂ ରଣେ
କାଲି ସେନାପତିତ୍ୱ କଲେକ ଗୁରୁ ଦ୍ରୋଣେ ।୬
ଭିଆଇଲେ ସେ ଚକ୍ର ଯେ ଆକାର
ସେ ଚକ୍ରଭୂଅ ଭେଦିବାକୁ ଶକ୍ୟ ଯେ କାହାର ।୭
ଡଗର ମୁଖୁଂ ଯେ ଯେସନେକ ବାକ୍ୟ ଶୁଣି
ଭାଳନ୍ତି ଚାରି ପାଣ୍ଡବେ ଯେ ବସିଣ ରୟଣୀ ।୮
ଶ୍ରୀ ଯୁଝେଷ୍ଟି ଦେବେ ବୋଇଲେ ତୁ ଶୁଣରେ ଭୀମସେନ
ଚକ୍ରଭୂଅ ବୋଲି ତୁ ଜାଣୁଟି କେସନ ।୯
ଭୀମସେନ ବୋଇଲେ ତୁମ୍ଭେ ଶୁଣ ଆହୋ ଧର୍ମରାୟେ
ସେ ଭୂଅ ଭେଦିବାକୁ ସାମର୍ଥ ସିନା ଧନୁର୍ଜୟେ ।୧୦
ଦେବ ଦାନବେ ମାନବେ ଗୋଚର ହାଦେ ନାହିଂ
ଚକ୍ରଭୂଅ ବୋଲି ମୋର ଶୁଣିଲାତ ନାହିଂ ।୧୧
ଶୁଣିଣ ଧର୍ମରାୟେ ପୁଛନ୍ତି ବାରତା
ନକୁଳ ଜାଣୁ କିରେ ତୁ ଚକ୍ରଭୂଅର ବାରତା ।୧୨
ନକୁଳ ବୋଇଲ ସ୍ୱାମୀ ଦେଖିଲା ନାହିଂ ନୟନେ
ନ ପଢ଼ିଲି ସେ ବିଦ୍ୟା ନ ଶୁଣିଲଇଂ କର୍ଣ୍ଣେ ।୧୩
ପୁଣ ଧର୍ମରାୟେ ପୁଛନ୍ତି ସହଦେବ
ତୁମ୍ଭେ ଜାଣନି କିହୋ ସେ ଚକ୍ରଭୂଅର ସମ୍ଭବ ।୧୪
ସହଦେବ ବୋଇଲେ ଶୁଣିମା ଧର୍ମରାୟେ
ମୁହିଂ ନ ଜାଣଇଂ ପ୍ରହୁ ଚକ୍ରଭୂଅର ଉପାୟେ ।୧୫
ଯେସନେକ ବିଚାର କରନ୍ତେ ଚାରିଭ୍ରାଥ
ସନ୍ନିଧ୍ୟେ ପ୍ରବେଶ ହୋଇଲା ଆସି ଅର୍ଜୁନର ସୁତ ।୧୬
ଛାମୁରେ ଶତସହସ୍ର ଦଣ୍ଡ ପରିଣାମି
କିମ୍ପୁତ କାରଣେ ବିଷାଦେ ଭାଳୁଛ ଦେବସ୍ୱାମୀ ।୧୭
ଯୁଝେଷ୍ଟି କୋଳକରି ଧଇଲେ ଅଭିମନ୍ୟୁ
ଶୁଣରେ ନନ୍ଦନ ତୁ ସୋହୋଦ୍ରାର ତନୁ ।୧୮
ଶୁଣରେ କୁମରମଣି ଯୁଦ୍ଧର ଆଗମନ
ବିଷମ ଯୁଦ୍ଧ ଛନ୍ଦ କି କହିବି ପୁଣ ।୧୯
ଚକ୍ରଭୂଅ ଯେକ ପାତିଛନ୍ତି ଗୁରୁଦ୍ରୋଣ ତହିଂ
ତାହା ଭେଦିବାକୁ କେହି ନ ଜାଣଇଂ ।୨୦
ଅଭିମନ୍ୟୁ ବୋଇଲା ଶୁଣିମା ଧର୍ମରାୟେ
ମୋତେ ମୁକୁଟ ବାନ୍ଧି କର ହୋ ଯୋଦ୍ଧାୟେ ।୨୧
ମୁହିଂ ଆଜ ଚକ୍ରଭୂଅ ଭେଦିବଇଂ ରଣେ
ତୁମ୍ଭେ ମୋହୋର ତୁଳେ ଥିବଟି ଚାରିଜଣେ ।୨୨
କୁମାର ବଚନେ ଯେ ଧର୍ମରାୟେ ହସି
ଚଉଦ ବରଷ ଅଗ୍ୟାନ ତୁ ବାଳଶିଷି ।୨୩
ଆମ୍ଭେ ସେନାପତି କେହ୍ନେ କରିବୁଟି ତୋତେ
ଭୂଅଭେଦ କଥା ତୁ ଜାଣିଲୁ କେମନ୍ତେ ।୨୪
ସୋମବଂଶର ତୁ କୁଳର ମଣ୍ଡଣୀ ଧନ ମୋର
ତୁମ୍ଭଂକୁ ଚକ୍ରଭୂଅ କଥା କାହୁଂ ସେ ଗୋଚର ।୨୫
ଯୁଝେଷ୍ଟି ଦେବଂକର ନିଷ୍ଠୁର ବାକ୍ୟ ଶୁଣି
ଶୁଣ ଦେବ ଧର୍ମରାୟେ ମୋହୋର ହାଦେ ବାଣୀ
କହଇ କରଯୋଡ଼ି କୁମର ଚୂଡ଼ାମଣି ।୨୬
ସ୍ୱାମୀ ମାତାର ଗର୍ଭକାଳେ ମକର ଶୁକଳ ତ୍ରୟୋଦଶୀ
ଅର୍କବାର ପୁନର୍ବସୁ ନକ୍ଷତ୍ର ମିଥୁନ ଯେ ରାଶି ।୨୭
ତଇତିଳ ନାମେ କରଣ ଆୟୁଷ୍ମାନ୍ ନାମେ ଯୋଗ
ସେ ଦିନ ପିତାମାତା ହେଉଥିଲେ କଥା ପ୍ରସଙ୍ଗ ।୨୮
ମୁହିଂ ସପ୍ତମାସ ମାତା ଗର୍ଭବାସୀ
ମାତା ପଚାରିଲେ ସ୍ୱାମୀ କଥା ଗୋଟିୟେ କହସି ।୨୯
ମାତାର ବଚନେ ପିତା କହନ୍ତି ଧର୍ମସ୍ୱରୂପ କଥା
ଅଙ୍ଗେ ନିର୍ଭାଇ ଅଛନ୍ତି ଯେଉଂ ଯେଉଂ କଥା ।୩୦
ସୋହୋଦ୍ରା ବୋଇଲେ ସ୍ୱାମୀ କଥାୟେ ଶୁଣ ତଥ୍ୟ
ଆପଣେ ଯାହା ଅଂଗେ ନିର୍ଭାଇ ଶିଖି ସେ କଥାର ଅଟଇ ତତ୍ତ୍ୱ ।୩୧
ମହାଭାରଥ ଯେ ହୋଇବ ସମର
ଯେଥିରେ ଚରିତ ହେବ କେବଣ ପ୍ରକାର ।୩୨

ଶୁଣ ଗୋ ସୁଭଦ୍ରେ ତୁମ୍ଭେ କହନ୍ତି ଫାଲଗୁନି
ଅଷ୍ଟାଦଶ ପ୍ରକାରେ ଯେ ଭୁଅ ପ୍ରବର୍ତ୍ତିନୀ ।୩୩
ଶକଟଭୂଅ ପଦ୍ମଭୂଅ କେଶର ଭୂଅ ସୂଚୀଭେଦଭୂଅ
ଜାଳନ୍ଧର ଭୂଅ ଚକ୍ରଭୂଅ ଆଦ୍ରାବଳୀ କୁଣ୍ଡଳୀ ଯେ ଭୂଅ ।୩୪
ଉଲୁକ ଭୂଅ ଯେ ଶହସ୍ରଭେଦି ଭୂଅ
ଗଗନଭେଦି ଭୂଅ ଘୋର ଅନ୍ଧାର ଯେ ଭୂଅ ।୩୫
ମାନଭଙ୍ଗ ଭୂଅ ଭାଲୁକ ଭୂଅ ବରେହା ଯେ ଭୂଅ
ଶଲ୍ୟଭୂଅ ତ୍ରିବଳି ଆବର ସାଗର ଯେ ଭୂଅ ।୩୬
ଅଷ୍ଟାଦଶ ଭୂଅ ଯେ ଯେସନ ପ୍ରକାରେ
ଯେ ଯେମନ୍ତେ ଭେଦ ହୋଇ କହିବା ତୋହୋର ଠାବେ ।୩୭
ସମସ୍ତ କହିଲେ ଯେ ମାତାଂକ ସମକକ୍ଷେ
ଚକ୍ରଭୂଅର ବାରତା କହିଲେ ସର୍ବପଛେ ।୩୮
ପିତା କହନ୍ତେଣ ଶୁଣନ୍ତି ମୋର ମାଯେ
ମୁହିଂ ଗର୍ଭେ ଥାଇ ତାହା ଶୁଣିଲି ଧର୍ମରାଯେ ।୩୯
ତୃତୀୟ ପହର ଯେ ହୋଇଲାକ ରାତି
ମାଯେ ନିଦ୍ରାଗଲେ ନିଶି ହୋଇଲା ପାହାନ୍ତି ।୪୦
ମାତାଂକର ନିଦ୍ରାଯେ ମୁଂ ହୋଇଲି ଅସାକ୍ଷମ
ବାହୁଡ଼ାବେଳ ଭୂଅକୁ କଲି ମତିଭ୍ରମ ।୪୧
ଯଦ୍ୟପି ଅମରଗଣ ତୁଲେ ହର ବ୍ରହ୍ମା ଘେନି
ଭୂଅ ଭେଦିବାର ବେଳେ ଜିଣି ପାରଇ ସସ୍ରଯୋନି ।୪୨
ବାହୁଡ଼ିଣ କେମନ୍ତେ ଆସିବି ନ ଜାଣଇ ବୁଦ୍ଧି
ତହିଂର ବାରତା ନ କହିଲେ ପିତା ସର୍ବଗୁଣନିଧି ।୪୩
ମନେ ବିଚାରିଲେ ଯୁଝେଷ୍ଟି ଧର୍ମନାହା
ଗର୍ଭେ ଥାଇ ଜାଣିଲା ଯେ ଅଟଇ ବିଷ୍ଣୁଦେହା ।୪୪
ଧନ୍ୟରେ କିରିଟୀ ତୁ ପାଇଲୁ କୁମର
ଭୀଷ୍ମ ଦ୍ରୋଣ ତହୁଂ ଯେ ଅଟଇ ବଳୀୟାର ।୪୫
ମାତା ଗର୍ଭ କଥା ଯେଡ଼େକ ସାହସ
ଯେଡ଼େ ଯେଡ଼େ ବଚନ ଶୁଣି ରଖିଥିଲୁ ଉଦ୍ଦେଶ୍ୟ ।୪୬
ଯୁଝେଷ୍ଟିଂକ ବଚନେ ବୋଇଲେ ଅଭିମନ୍ୟୁ
ଆଗ୍ୟାଂ ହେଉ ତାତ ନଭାଳ କିଛି ମନୁ ।୪୭
ରଣେ ଚକ୍ରଭୂଅ ମାତ୍ର ପାରଇ ମୁଂ ଭେଦି
କିପରି ବହୁଡ଼ିବି ମୁଂ କହ ମୋତେ ବୁଦ୍ଧି ।୪୮
ଅଭିମନ୍ୟୁ ମୁଖରୁ ଯେସନ ବାକ୍ୟ ଶୁଣି
ବ୍ରିକୋଦର ଧାଡିକାରେ ଉଠିଲା ଶିର ଝୁଣି ।୪୯
ଭୀମସେନ ବୋଇଲା ବାବୁ ନ ଭାଳ ତୁ ତାହା
ତେର କ୍ଷଉଣୀ ବଳ ଘେନି ମୁଂ ତୋତେ ହୋଇଥିବି ସାହା ।୫୦
ଭାଞ୍ଜିବୁ ଭୂଅଦ୍ୱାର ଜିଣିମୁଂ ଦ୍ରୋଣ କର୍ଣ୍ଣ
ଶଲ୍ୟ ବାଲ୍ହିକ ସୋମଦତ୍ତ ଦ୍ରିଯୋଧନ ଧୃଶାସନ ।୫୧
ଆମ୍ଭେ ଚାରିଭ୍ରାଥେ ଥିବୁଂ ତୋହୋର ପଛେ
ଅଗ୍ରତେ ଭୂଅ ତୁ ଭେଦିବୁ ପ୍ରତକ୍ଷେ ।୫୨
ଯେଡ଼େ କେଡ଼େ ଗୁରୁଟାଣ ସେ କଉରୋବ କଇଛା
ସରିଲା କୁରୁବଳ ଆଜ କେ କରୁ ଆସି ରକ୍ଷା ।୫୩
ବାହୁଡ଼ି ଆସିବାକୁ କରୁଛଉ ବାବୁ ଶଂକା
ଯେଥକୁ କିଛି ଶୋଚନା ନ କର କୁମର ଯେକା ।୫୪
ବାହୁଡ଼ି ଆସିବା ବେଳକୁ ଆସିବେ କୃଷ୍ଣ ପାଥ
ମାରିବା କଉରୋବ ବଳ ହୋଇବେ ଅନାସ୍ତ ।୫୫
ଅଭିମନ୍ୟୁ ବୋଇଲା ଦେବ ନ କର କିଛି ଚିନ୍ତା
ଅର୍ଜୁନ ଆସିବା ଯାଯେ ମୁହିଂ ପାଣ୍ଡବ ବଳ ରଖନ୍ତା ।୫୬
ଯୁଝେଷ୍ଟି ବୋଇଲେ ବାବୁ ସତ୍ୟ ତୁ ପାଳିବୁ
ଆମ୍ଭନ୍ତ ଛାଡ଼ିଣ ଭିତରେ ନ ପଶିବୁ ।୫୭
ପ୍ରଥମ ଦୁଆରେ ସର୍ବେ ଯୁଝୁଥିବା ରହି
ଅର୍ଜୁନ ଆସିବା ଯାଯେ ହେଳ ବୁଝି ତୁହି ।୫୮
ମାରିବି କଉରୋବ ବଳ ଦେଖ ତୁମ୍ଭେ ପୁଣି
କୁମାର ମୁଖୁଂ ଯେ ଯେସନ ବାକ୍ୟ ଶୁଣି
ସାଜିଲେ ପାଣ୍ଡବ ସନ୍ୟ ଯେକାଦଶ କ୍ଷଉଣୀ ।୫୯
ତିନିକୋଟି ରଥ ଯେ ପାଞ୍ଚକୋଟି ହାଥୀ
ନବକୋଟି ତୁରଙ୍ଗମ ନବକ୍ଷଉଣୀ ପାଦାନ୍ତି ।୬୦
ସତ୍ୟଯୁଗର ସାଖା ଯେ କେତନ ସାରଥୀ
ଧବଳୀ ନାମେ ରଥ ମଣ୍ଡିଲା ତତକ୍ଷଣାନ୍ତି ।୬୧
ଯୁଝେଷ୍ଟି ଭୀମସେନ ନକୁଳ ସହଦେବ
ଯେହାନ୍ତ ସମାର୍ଜିଣ କହନ୍ତି ଦୁତୀୟ ପାର୍ଥିବ ।୬୨
ସାରଥୀକି ବୋଇଲା ସାଜ ମୋହୋର ରହୁବର
ଆଗ୍ୟାଂ ପ୍ରମାଣେ ଚଳଇ ସେ ବିଶ୍ୱାବସୁର କୁମର ।୬୩
ସଷ୍ଟିକର ଚକ ସଷ୍ଟିକର ଚାରିଖମ୍ବ
ସଷ୍ଟିକର ଚାରିପୀଢ଼ା ସଷ୍ଟିକର କଳଶ ଆରମ୍ଭ ।୬୪
ହୀରାର ପାବଛ ଯେ ତଥିର ଉପରେ
ମଧ୍ୟାହ୍ନ ଆଦିତ୍ୟ ଜାଣି ତେଜ ପରଖରେ ।୬୫
ଶତେ ଶତେ ସରି ଶୁକଳ ପାଟସୂତା
ତଥିରେ ଗୁନ୍ଥା ଅଛି ଗଜର ମୁକୁତା ।୬୬

ସଷ୍ଟିକର କଳଶ ଉପରେ ଲମ୍ବଇ ଚଉସରା
ଝଲକନ୍ତି ଚଉକତି ମାଣିକ୍ୟର ଝରା ।୬୭
ତଥିର ଉପରେ ଯେ ଶ୍ୱେତ ଚାମର ମଣ୍ଡି
ମର୍କତ ହୀରାନୀଳା ଖଞ୍ଜାଣୀ ରଥ ଖଣ୍ଡି ।୬୮
ସନ୍ନିଧ୍ୟେ ଲମ୍ବନ୍ତି ଝୀନ ପତନୀ ଶ୍ୱେତ ଶାଢ଼ୀ
ପାଟ ରଜ୍ଜୁମାନ ଯେ ତଥିର ଦଉଡ଼ି ।୬୯
ଧବଳ ଶଙ୍ଖ ଶ୍ୱେତ ଗୋକ୍ଷୀର ଚାରିହୟେ
ଯେସନେକେ ମିଥୁନ ମାସେ ବକପଂକ୍ତି ପ୍ରାୟେ ।୭୦
ଶଙ୍ଖ ଶ୍ୱେତ ପଦ୍ମ ଯେ ଗୋକ୍ଷୀର ଚାରିବର୍ଣ୍ଣ
ସାଞ୍ଜୁ ଦେଇ ରଥେ ନେଇ ଯୋଚିଲା କେତନ ।୭୧
ରଥ ଧବଳ ଅଶ୍ୱ ରତ୍ନ ଧବଳ ଧବଳ ଚାମର ଧବଳ ଓଳି
ସେ ରଥର ନାମ ଯେ ଅଟଇ ଧବଳୀ ।୭୨
ଆଦି ଅବତାର ସେ ସୋମବଂଶର କୁଳେ
ଆଦି ନାମ ଅଭିମନ୍ୟୁର ଅଟଇ ସେ ଭଲେ ।୭୩
ସତ୍ୟଯୁଗେ ସାରଥୀ ନାମ ତାର କେତନ
ଧବଳୀ ରଥ ମଣ୍ଡିଣ ସେ କରଇ ଆଗମନ ।୭୪
ଦାରୁକ ଦାରୁକୀ ମାତଳି ଅରୁଣ
ଚନ୍ଦ୍ରଧ୍ୱଜ ସୁମନ୍ତେକ କେତନ ନାରାୟଣ ।୭୫
ଯେ ଅଷ୍ଟ ସାରଥୀ ଯୁଗେ ଯୁଗେ ତ୍ରିଜୀବୀ
ଯେହାକଂର ରଥ ବାହିଲେ ଚଳଇ ମଧ୍ୟ ପାତାଳ ଆକାଶ ଭୁବି ।୭୬
ଯଦ୍ୟପି ରଥୀମାନେ ଲୀନ ହୋଇବେ କାଳ ଅବସାନେ
ଯୁଗେ ଯୁଗେ ତ୍ରିଜୀବୀ ଯେହୁ ସାରଥୀମାନେ ।୭୭
ରଥହିଁ ଅକ୍ଷୟେ ସାରଥୀହିଁ ଅକ୍ଷୟେ
ରଥୀମାନେ ଉତପତ୍ତି ହୋଇଲେ ସାରଥୀଯେ ହୋଅନ୍ତି ସମୟେ ।୭୮
ଆଦିତ୍ୟଂକ ସାରଥୀ ଅରୁଣ ଇନ୍ଦ୍ର ସାରଥୀ ମାତଳି
କାମଦେବ ସାରଥୀ ଚନ୍ଦ୍ରଧ୍ୱଜ ଅର୍ଜୁନ ରଥେ ସାରଥୀ ଦେବ ବନମାଳୀ ।୭୯
ଦଶରଥ ରଥେ ସାରଥୀ ସୁମନ୍ତକ ଅଭିମନ୍ୟୁ ରଥେ କେତନ
ବଳରାମ ରଥେ ସାରଥୀ ଦାରୁକି ଦାରୁକ ସାରଥୀ ଜନାର୍ଦ୍ଦନ ।୮୦
ମୁଂ କିସ କହିବି ଯେ ସାରଥୀମାନଂକ ମହିମାଂ
ଲେଖନ୍ତେ ଅନ୍ତ ହୋଇ କି ଯେହାଂକର ବଡ଼ିମା ।୮୧
ଧବଳୀ ରଥ ଚଢ଼ି ସେ ବିଶ୍ୱାବସୁଂକର ତନୁ
ଛାମୁରେ ଉଭାରିଲା କୁମାର ଅଭିମନ୍ୟୁ ।୮୨
ଲକ୍ଷେକ ବ୍ରାହ୍ମଣ ମିଳି କରନ୍ତି ବେଦଧ୍ୱନି
ସଜ ହୋଇଲା କୁମର ଶୁଭ ଅନୁକୂଳ ଘେନି ।୮୩
ତାରକା ଯୁଦ୍ଧେ ଯେହ୍ନେ କାର୍ତ୍ତିକେଶ୍ୱର ଦିଶି
ତେସନେ ଅଭିମନ୍ୟୁର ତେଜ ପରକାଶି ।୮୪
ଦିବ୍ୟ ବେଶ ଅଳଂକାର ଯେ ସୋହୋଦ୍ରାର ବଳା
ଅନଂଗ ଅବତାର ସେ କୃଷ୍ଣବର୍ଣ୍ଣ କଳା ।୮୫
ବଇରାଷ୍ଟର ବଲ୍ଲଭ ସେ ଗୁଣସାଗର ବନ୍ଧୁ
ପାଣ୍ଡବକୁଳ ରକ୍ଷଣେ ମହିମାଂ ଯାର ସାଧୁ ।୮୬
ନଉସହସ୍ର ବଳ ଧନୁ କରେଣ ଆଦ୍ରାବଳୀ
ଦୁଇପଟେ ଅଣିପଦ୍ମ ହୀରା ଝଳି ।୮୭
ପିତାମହ ସ୍ରିଜିଲେ ଯେବଣ ଧନୁ ଆଦି
ଭାରା ନିବାରଣେ ତାହା ଦିଲେକ ଜମ୍ଭୋଭେଦୀ ।୮୮
ଆଦିସୃଷ୍ଟି ସମ୍ଭବ କାଳେ ଦିଶନ୍ତି ଯେହ୍ନେ ନିରଞ୍ଜନ
ତେସନ ସାରିକ୍ଷେ ଦିଶଇ ଅଭିମନ୍ୟୁ ।୮୯
ଦିବ୍ୟ ଅବତାର ଧରି ବିଜୟ କଲେ ରଥେ
ଅଶ୍ୱନ୍ତ ମଣ୍ଡି କେତନ ବସିଲା ସଙ୍ଗତେ ।୯୦
ବାମେ ବ୍ରିକୋଦର ଡାହାଣେ ନକୁଳ
ପଛେ ସହଦେବ ଯୁଝେଷ୍ଟି ତୁଲେ ସର୍ବବଳ ।୯୧
ପାଞ୍ଚଲକ୍ଷ ଯୋଦ୍ଧା ଘେନିଣ ମହାଥାଠେ
ଆଗିଆଣି ହୋଇଛନ୍ତି ଦ୍ରୁପଦ ବିରାଟେ ।୯୨
ବାଜନ୍ତି ବୀରତୂର ଟମକ ନିଶାଣ
ଚଳନ୍ତେଣ ଥାଠ ସେ ଭେଟିଲେ ଗୁରୁଦ୍ରୋଣ ।୯୩

**

## ୯୦. ଅଭିମନ୍ୟୁର ଯୁଦ୍ଧ ଓ ଅଭିମନ୍ୟୁ ବଧ

ଯେଥୁ ଅନନ୍ତରେ ଜାଳନ୍ଧର ଭୂଅ କଥା
ମୁନେହି ଦିଲେ ନେଇ ପାଣ୍ଡବନ୍ତ ବାରତା ।୧
ସ୍ୱାମୀ ଅବଧାରି ଶୁଣିମା ଯୁଝେଷ୍ଟି ରାଜଦେବ
ଜାଳନ୍ଧର ପଞ୍ଚଦ୍ୱାର ଜୟ କଲେନି ପାର୍ଥିବ ।୨
ସ୍ୱାମୀ ଚଉରାଶି ଲକ୍ଷ ଯେ ମେଳକ୍ଷ ଯୋଦ୍ଧା ଥିଲେ
ପାଞ୍ଚଦ୍ୱାରେ ଦେବ ଚଉବନ ଲକ୍ଷ ଯୋଦ୍ଧା ପଡ଼ିଲେ ।୩
ସ୍ୱାମୀ କାଲି ଦିବସ ରାତ୍ରେ ବିଚିତ୍ର ସାଂଗ୍ରାମ
ରାତ୍ର ଦିବସ ନ ଜାଣିଲୁଂ କ୍ଷଣେ ନାହିଂ ବିଶ୍ରାମ ।୪
ସ୍ୱାମୀ ନାରାୟଣୀ ତୁଲେ ସମରେ ଯେସନେକ ରକ୍ତବୀର୍ଯ୍ୟ
ମାରନ୍ତେ ନ ସରନ୍ତି ସେ ଦୃଭାର ଦନୁଜ ।୫

ତାହାଂକର ରୁଧିର ଦେବ ପଡନ୍ତେଣ କ୍ଷିତି
ମନ୍ଦାକେ ଶତେ ଦନୁଜ ହୋଅନ୍ତି ଉତପତ୍ତି ।୬
ସ୍ୱାମୀ ଯେବେହେଂ ହୋଇଲାନି ଆସି ଦେଢ଼ପ୍ରହର ବେଳା
ଆଉର ପାଞ୍ଚଘଡି ସମର କରିଥାଅ ହେଳା ।୭
ଜାଳନ୍ଧର ଭୂଅ ଭେଦି ଆସିବେ ଯେହୁ କତି
ଚକ୍ରଭୂଅ ଭେଦି ଆଜି ଦିଶିମା ସବୁନ୍ତି ।୮
ତାହା ଶୁଣି ପାଣ୍ଡବେ ସାନନ୍ଦ ମନ ଚିତ୍ତେ
ବାହୁଡିଣ ଅଭିମନ୍ୟୁ ଆସିବ କେମନ୍ତେ ।୯
ଶୁଣ ହୋ ଚଇତନ ସେ ଜାଳନ୍ଧର ଭୂଅର ସାଂଗ୍ରାମ
ଦୁରାପଦ ସାଂଗ୍ରାମ ହୋଇଲା ଅବିଶ୍ରାମ ।୧୦
ନବ ଦୁଆର ଅନ୍ତରେ ସେ ସମର ଅପ୍ରମିତା
ଅସମ୍ଭବ ସଇନି ସେ ନ ଯାଇ ଗଣିତା ।୧୧
ବାହାନ୍ତି ତୁରଙ୍ଗମ ସେ ଦେବକୀର ବଳା
ରୁଧିର ବିଲୋପନ ଶରୀର ନୀଳା କଳା ।୧୨
ରଥ ଧୁଆଇଂ ଅର୍ଜ୍ଜୁନ ଭିତରେଣ ପଶି
ପାଞ୍ଚଲକ୍ଷ ଯୋଦ୍ଧା ତହିଂ ଓଗାଳିଲେ ଆସି ।୧୩
ଓଟ ଗଧ ଶ୍ରିକାଳ ଯେ ଭାଲୁଂକ ବାହାନେ
ଶାର୍ଦ୍ଦୂଳ ପିଠିରେ କେହୁ ବଳୟା ଆସନେ ।୧୪
କୋଦାଳ ଆୟୁଧ ଯେ କୁଠାର ପରଶୁ
ଭୟାଂକର ରୂପ ଦେଖି ସମରେ କେହୁ ଭରସୁ ।୧୫
କଡ଼ା ମର୍ଦ୍ଦଳ ଯେ ବିଜିଘୋଷ ବୀର ଦାଉଣ୍ଡି
କିଳି କିଳା ନାଦେ ଯେ ମତୁଆଳ ନାଟଖଣ୍ଡି ।୧୬
ପିବନ୍ତି ମଦିରା ସେ ମହୁମାଂସ ଭୋଜା
ଗୋରୁ ଅଶ୍ୱ ମନିଷ ଭକ୍ଷନ୍ତି ସେ କିଛିହିଂ ନ କରନ୍ତି ତେଜ୍ୟା ।୧୭
ମରଣ କାଅଣ କେହୁ ନ ଜାଣନ୍ତି ଭଲେ
ଜାବତେ ଉଠନ୍ତି ଦଶବିଂଶ ପଡ଼ିଲେ ।୧୮
ଧର୍ମ କେ ଅଧର୍ମ କେ ନ ଜାଣନ୍ତି ବେନି
ଯେକା ଯୋଦ୍ଧାକୁ ବିନ୍ଧିଲେ ଯୋଦ୍ଧାଲକ୍ଷ ତିନି ।୧୯
ଧର ଧର ମାର ମାର ପଡୁଅଛି ବୋବି
ପାଦଭରେ ହେଳ ଯେ ଘେନଇ ପୃଥୀଦେବୀ ।୨୦
ଯେକର ପଡନ୍ତେ ଶତେକ ଅବତରଇ
କିଳିକିଳା ଶବଦ ଶୁଭଇ ସେ ମାଇଲେ ନ ସରଇ ।୨୧
ଅର୍ଜ୍ଜୁନ ବୋଇଲେ ମୋହୋର ଆଗେ କାକ ଦିଅଇ ରାବ
ମୋହୋର ପଞ୍ଚଭୂତ ଆତ୍ମା କିମ୍ପେ ବଇକୁଲ୍ୟ ବାସୁଦେବ ।୨୨
ସମରେ ଅପ୍ରାଞ୍ଜୟେ କି ହୋଇବ ମୋତେ ଆଜ
ଯେ ଜାଳନ୍ଧର ତ କପଟ ପ୍ରାୟେ ମୋତେ ଦିଶଇ ଦେବରାଜ ।୨୩

ଶ୍ରୀକୃଷ୍ଣ ବୋଲନ୍ତି ପାଥ ରୁଧିର ମାଂସେସ ଗହନେ
ତେଣୁ ଉତସଲ୍ୟେ ରାବଦିଅନ୍ତି ଉତପାତ ପକ୍ଷୀ ଜୀବଗଣେ ।୨୪
ବାହାନ୍ତି ତୁରଙ୍ଗମ ଦେବ ଗହନ ଅତିବେଗେ
ନ ବ୍ରତନ୍ତି ଯୋଦ୍ଧାୟେ ଯେ ପଡନ୍ତି ପାଥ ଆଗେ ।୨୫
ଶୁଣ ହୋ ଚଇତନ ଶ୍ରୀହରି କୂଟ କପଟ
ମାରନ୍ତେ ନ ସରଇ ମେଳେଚ୍ଛ ସଇନି ସେ ଅକାଟ ଅଟୁଟ ।୨୬
ହୃଦଗତେ ବିଚାରନ୍ତି ଦେବ ମଧୁହାରୀ
ଅଭିମନ୍ୟୁ ତେଣେ ନ ପଡ଼ିଲେ ଜାଳନ୍ଧର ଭୂଅଟି
ଯେଣେ ନ ସରି ।୨୭
ଆହୋ ଚଇତନ ମାୟାଧର ଅଟନ୍ତି ସେ ଜଗତ ଗୋସାଇଂ
ମହାଖେଳା ପାତିଛନ୍ତି ହରି ଅର୍ଜ୍ଜୁନକୁ ଗୋଚର ଯେ ନାହିଂ ।୨୮
ଯେସନେକ ସମର ଯେ କରନ୍ତେଣ ରୋଳ
ସିନ୍ଧୁମନ୍ଥନ ପ୍ରାୟେ ଶୁଭଇ ଚହଳ ।୨୯
ବଇବସୁତ ମନୁ ପୁଚ୍ଛାକଲେ ଅଗସ୍ତିଂକି
ଅଭିମନ୍ୟୁ ଗଲା ଯେ କର୍ଣ୍ଣର ତହିଂକି ।୩୦
ଯୁଝେଷ୍ଠି ଭୀମ ନକୁଳ ସହଦେବ
ଯେ ଚାରିନ୍ତିହିଂ ଓଗାଳିଲେ ସିନ୍ଧୁରାଜଦେବ ।୩୧
ସେ ତ ନ ଛାଡିଲା ଯେତ ନୁଆରିଲେ ଜିଣି
ଯାହକଇଂ ଆଗ୍ୟାଂ ଦେଇଛନ୍ତି ଶୂଳପାଣି ।୩୨
ଯେକା ରଥକେ ଭୂୟେ ପଶିଲା କୁମାର ଅଭିମନ୍ୟୁ
କେମନ୍ତେ ଯୁଦ୍ଧ ହୋଇଲା ମୋତେ କହିବା କୁମ୍ଭରଷି ତନୁ ।୩୩
ବଦୟନ୍ତି ଅଗସ୍ତି ଯେ ମହାବ୍ରହ୍ମବେତ୍ତା
ଶୁଣ ହୋ ମହାରାଜା ଅଭିମନ୍ୟୁ ଯୁଦ୍ଧ କଥା ।୩୪
ସନ୍ୟର ସମ୍ମୁଖେ ଅଭିମନ୍ୟୁ ରଥ ଚଳି
ଚନ୍ଦ୍ରକିରଣ ପ୍ରାୟେକ ଦିଶଇ ରଥ ଯେ ଧବଳୀ ।୩୫
ଦୁରାପଦ ଚକ୍ରଭୂଅ ସେ ଅଭେଦ ଯାହା ବୋଲି
ଉଲଟ ଭେଦ ନ ଜାଣଇ ସେ ଚାପେ ରଥ ପେଲି ।୩୬
ରଣରଂଗ ଧନ୍ଦୋଳ ସେ ରଥ ଯେ ଚଳନ୍ତେ
ଅର୍ଜ୍ଜୁନ ପରାୟେ ବୁଝି ସେ ଯୋଦ୍ଧାୟେ ଅପସରନ୍ତେ ।୩୭
ପଳାବନ୍ତେ ସଇନି ଯେ ଗୋଡାନ୍ତି ଅଭିମନ୍ୟୁ
ତୀକ୍ଷଣ ମୁନା ଶରେ ଯେ ଛେଦଇ ସର୍ବ ଧନୁ ।୩୮
ପୁଣ ଜାଣିଲେ ଯେ ନୋହଇ ଫାଲଗୁନି
ବିନ୍ଧନ୍ତି ଲକ୍ଷେ ଯୋଦ୍ଧାୟେ ଯେକ ମୁଖେ ନାରାଜନ୍ତି ଘେନି ।୩୯
ବେନିକୋଟି ରଥ ଯେ ପାଞ୍ଚକୋଟି ହାଥୀ
ନବକୋଟି ତୁରଙ୍ଗମ ତିନିସାଗର ପାଦାନ୍ତି ।୪୦

ଯେତେକ ସନ୍ୟ ଆସି ବେଢ଼ିଲେକ ରଥ
ମନ୍ଦର ସମାନେ ରହିଅଛି ଅର୍ଜୁନର ସୁତ ।୪୧
ଅଭିମନ୍ୟୁ ହାକଇ ଶୁଣ ହୋ କେତନ
ସମ୍ଭାଳି ଥାଅ ଅଶ୍ୱ ନ ପୁଣ କ୍ଷେପନ୍ତି ଗଗନ ।୪୨
ସାରଥି ବୋଇଲା ଯେତ ଅଟଇ ଅଗମ୍ୟ ରଣ
ଯେଥି ଗମିବୁ କିମ୍ପେ ତୁ ଯେକା ବାଳୁତ ନନ୍ଦନ ।୪୩
ଅଭିମନ୍ୟୁ ବୋଇଲା ତାତ ଚିନ୍ତା କିମ୍ପେ କରୁ
ଯେ ଛାର ସନ୍ୟଂକୁ ମୁଂ ଯେ ନିବାରିବି ଧୂରୁଂ ।୪୪
ସୋହୋଦ୍ରା ନନ୍ଦନ ଯେ ସାଂଗ୍ରାମେ ଜଗୁଜିତା
ନ ଜାଣୁକି ମହାରଥ ଅର୍ଜୁନ ମୋର ପିତା ।୪୫
ତୁ ଯେ ବୋଇଲୁ ହୋ ଯେ ଅଗମ୍ୟ ଘୋରବନ
ଯେ ବନ ଦହନେ ମୋ ନାରାଜ ହୁତାଶନ ।୪୬
ଦେଖ ମୋହୋର ପ୍ରତଗ୍ୟାଂ କରିବା ରଣଭଂଗ
ଯେକା ନାରାଜକେ ଦହିବି ସବୁଂକରି ଅଂଗ ।୪୭
କତୁରୀ ନାରାଜ ଯେ ବିନ୍ଧିଲା ଅଭିମନ୍ୟୁ
ଯେକା ନାରାଜକେ ଛିଡ଼ିଲା ସବୁଂକରି ତନୁ ।୪୮
ହାବୋଡା ନାରାଜ ଯେ ବିନ୍ଧିଲା ତିନିକୋଟି
ଯୋଦ୍ଧାଂକ ରଥ ଗଜ ପଡ଼ିଲେ ମହୀଲୋଟି ।୪୯
ଭାଂଜିଣ ରଥମାନ ହୋଇଲା ମସିଗୁଣ୍ଡା
ବିହତଇ ଅଭିମନ୍ୟୁ ପାଣ୍ଡବ ରଣଷଣ୍ଡା ।୫୦
ଯେକମୁଖ ହୋଇଣ ରହିଲେ ସର୍ବଯୋଧୀ
ଆକର୍ଣ୍ଣ ପୂରୋଇ ସେ ସମରେ ଶରବିନ୍ଧି ।୫୧
ଅବିକ୍ଷଣେ ବାଣ ପଡନ୍ତେଣ ରଥେ
ଲକ୍ଷେ ନାରାଜ ଅଭିମନ୍ୟୁ ବିନ୍ଧଇ ମୁଷ୍ଟିଗତେ ।୫୨
ଯେକା ଶରେଣ ଯେ ପଡନ୍ତି ହାଥୀ ରଥୀ
ଗଜ ଯୋଦ୍ଧାଯେ ପଡନ୍ତେ ଲୋଟନ୍ତି ପାଦାତି ।୫୩
ଯମନିକ ଜାଳାନିକ ବୋଲି ମହାରାୟେ
ନବଲକ୍ଷ ଯୋଦ୍ଧା ଘେନି ସେ ସମରକଇଂ ଆୟେ ।୫୪
ନବଲକ୍ଷ ଯୋଦ୍ଧା ସେ ସବୁରି ହାଥେ ଧନୁ
ଶତେପୂର କରି ବେଢ଼ିଲେ ଅଭିମନ୍ୟୁ ।୫୫
ପଞ୍ଚଶିଖା ନାରାଜ ବଳରାମଂକର ଦିଲା
ଦ୍ରୋଣରୁ ଅଭିମନ୍ୟୁ ତାହା ବେଗେ ବାଛିଣ କାଢିଲା ।୫୬
କରେଣ ସେ ନାରାଜ ଘେନି ସୋହୋଦ୍ରାର ତନୁ
ନାରାଜ ପୂରୋଇଲା ସେ ନଉସହସ୍ର ବଳ ଧନୁ ।୫୭
ହାଥରେ ଧରିଣ ମନ୍ତ୍ର ଡାକିଲେ ହୋଇଲା ସହସ୍ର ଶିଖାମୁନା
ଧନୁରେ ବସାଇ ଓଟାରନ୍ତେ ହୋଇଲେ ଲକ୍ଷେ ମୁନା ।୫୮
ନବଲକ୍ଷ ଯୋଦ୍ଧାଂକୁ ଯେ ନବଲକ୍ଷ ବାଣ
ବିନ୍ଧନ୍ତେଣ ଛଇଛାଡ଼େ ଫୁଟିଲେ ରାଜାଗଣ ।୫୯
ନବଲକ୍ଷ ଯୋଦ୍ଧା ଯେ ପଡ଼ିଲେ ସର୍ବେ ଢଳି
ତାଂକ ଉପରେ ଚଳାଇ ନେଲା ସେ ସାରଥି ରଥ
ଯେ ଧବଳୀ ।୬୦
ରଣରଙ୍ଗ କରିଣ ସହସ୍ରେକ ରଥୀ ତିନିସହସ୍ର ହାଥୀ
ପାଞ୍ଚସହସ୍ର ଅଶ୍ୱ ତିନିସାଗର ପାଦାନ୍ତି ।୬୧
ଯେତେକ ମାରିଣ ସେ ଚଳଇ ଅଭିମନ୍ୟୁ
ତିଜଦ୍ୱାରେ ଅଛି କର୍ଣ୍ଣ ଆଦିତ୍ୟର ତନୁ ।୬୨
କ୍ଷତ୍ରୀବର ସୋହୋଡ଼ ସେ ଭାରୋଇମଲ୍ଲ କର୍ଣ୍ଣ
ଇନ୍ଦ୍ର ଗୋବିନ୍ଦଂକୁ ଯେ ସମରେ ସମାନ ।୬୩
ତାହାର ଛାମୁରେ ଯାଇ ପ୍ରବେଶ ଅଭିମନ୍ୟୁ
ଅର୍ଜୁନ ପ୍ରାୟେ ମଣିଲା ସେ ଆଦିତ୍ୟର ତନୁ ।୬୪
ପୁଣି ବିଚାରଇ ସେ ନୁହଇ ଅରଜୁନ
ନନ୍ଦିଘୋଷ କୃଷ୍ଣ ସାରଥି ନାହିଂ, ନାହିଂ କପିକେତନ
ଧ୍ୱଜ ଚିନ୍ହ ।୬୫
ବିଚାରଇ ଭାରୋଇମଲ୍ଲ ଧବଳୀରଥ ଦେଖି
କରତାର ବିଜୟେ କଲେ କି ଶୂନ୍ୟଭୁବନ ଉପେକ୍ଷି ।୬୬
ପୁଣ ପୁଣ ନିରୋପଇ ସେ କର୍ଣ୍ଣ ମହାରଥୀ
ସନିଧେ ଦେଖିଲା ସେ ଅଭିମନ୍ୟୁର ମୂରତି ।୬୭
ଦେଖିଣ ବିଚାରଇ ସେ ଛତ୍ରୀବର ଶ୍ରେଷ୍ଟ
ବୋଇଲେ ସେ ବାଳୁତ ଅଭିମନ୍ୟୁ ଯେଡ଼େ କିମ୍ପେ ଦୁଷ୍ଟ ।୬୮
ଯେ ମହାଭାରଥରେ ଅସଂଖ୍ୟ ସମର
ଗୋ ବ୍ରାହ୍ମଣ ହୋଇଲେ ଶିରଚ୍ଛେଦନ ଯେ ଭୂମିର ।୬୯
ଅଣ ଉପ୍ରୋଧୀ ଯୋଦ୍ଧାମାନେ ଛନ୍ତି ଯେ ସମରେ
ତୋତେ କେହ୍ନେ ସମରେ ପେଷିଲେରେ ପାମରେ ।୭୦
ବାଳୁତ ବୃଦ୍ଧ ତରୁଣ ଯେ ସମ ଯେକରାଶି
ଅବଶ୍ୟ ପ୍ରାଣ ନାଶି ସମରେ ଯେହୁ ପଶି ।୭୧
ଯେତେ ବଡ଼ ସମରେ ପଶି ତୁ ହୋଇଲୁ ନିଶଂକା
ଅଶିସହସ୍ର ଯୋଦ୍ଧାକୁ ତୁ ବାଳୁତ ପୁଅ ଯେକା ।୭୨
ଭୀମ ଅର୍ଜୁନ ନକୁଳ ସହଦେବ ଯୁଦ୍ଧେଷ୍ଟି
ଯେମାନେ ଜୀବିତେ ନାହାନ୍ତି କି ତୁ ଯେକାପୁତ୍ର ଗୋଟି ।୭୩

କେବଣ ଅଭିମାନ ପାଇଲୁସି ରେ ବାଳ
ବିଛଦୋଇ ସାଂଗ୍ରାମେ କିମ୍ପେ ପଶିଲୁରେ ଚାଣ୍ଡାଳ ।୭୪
କେନେ୍ହେ ଗୋବିନ୍ଦ ରେ ତୁମ୍ଭନ୍ତ ସଂପକ୍ଷ
ଥାଠ ସନ୍ୟ ଆଦିକରି କେହି ନାହାନ୍ତି ତୋର ପକ୍ଷ ।୭୫
ଖେଳନ୍ତା ହସନ୍ତା ତୁରେ ଅଟୁ ବାଳୁତ ହାଦେ ପୁଅ
କିମ୍ପୂତେ ଚାଣ୍ଡାଳେରେ ତୋତେ ହୋଇଲେ ନିର୍ମୋହ ।୭୬
ପ୍ରଥମ ଦ୍ୱାର ରଖନ୍ତି ଯେ ରାୟେ ଗୁରୁ ଦ୍ରୋଣେ
ଯେ ମହୀମଣ୍ଡଳେ କେ ତାହାନ୍ତ ଜିଣୁ ରଣେ ।୭୭
ସେ ଦ୍ୱାର ଜିଣି ତୁ ଅଇଲୁ କେମନ୍ତେ
ବାଳୁତ ପୁତ୍ର ବୋଲି ଅବା ଛାଡିଦିଲେ ତୋତେ ।୭୮
ଦୁଜଦ୍ୱାରେ ଥିଲେ ସିନ୍ଧୁରାଜା ନୃପତି
ଦେବ ଦାନବେ ଯାର ନାମେ କରନ୍ତି ଭୀତି ।୭୯
ଈଶ୍ୱରଂକୁ ସେବି ସେ ପାଇଲା ପିନାକ ନାମେ ଧନୁ
ତାହାନ୍ତ ଜିଣି କେମନ୍ତେ ଅଇଲୁରେ ଅଭିମନ୍ୟୁ ।୮୦
ସେ ମହାଯୋଦ୍ଧା ସେ ସଦା ଧର୍ମେଣ ବ୍ରତି
ବାଳୁତ ପୁତ୍ର ବୋଲିଣ ଅବା ତୋତେ ଛାଡିଲେ ତଥି ।୮୧
ସମରେ ବାଳୁତ ପୁତ୍ର ମାରିତେ ନ ଯୋଗାଇ
ତେଣୁ ଉପେକ୍ଷା କରି ଛାଡିଦିଲେ ରେ ତୁକୁହି ।୮୨
ଅଗ୍ୟାନ ମତ୍ତଗର୍ବେ ସମରେ ଆସି ପଶ
ହାରିଲେ ଅକାରଣ ଜିଣିଲେ ଅପଯଶ ।୮୩
ଆରେ କ୍ଷଣକରେ ମୃତୁ ଅଛି ପାଣ୍ଡବ ପଞ୍ଚାଳକୁ
ଯେକୋଇର ବଳାଗୋଟି ତୁ ପାଣ୍ଡବ ବଂଶକୁ ।୮୪
ବାବୁ ତୋହୋର ସଂକଳ୍ପ କୁରେ ସବୁଂକରି ଆଶ
କିମ୍ପୂତ ବଇରାଗରେ ତୁ ସମରେ ଦିଲୁ ଝାସ ।୮୫
ବାବୁ କଉରୋବ ବଂଶକୁ ଲକ୍ଷ୍ମଣକୁମର ପାଣ୍ଡବ ବଂଶକୁ ତୁ ଅଭିମନ୍ୟୁ
ଯେତେ ବଡ଼ ବଂଶକୁ ସର୍ବେ ତୁମ୍ଭେ ବାଳୁତ ବେନି ତନୁ ।୮୬
ଛାଡିମେଲ ବଇରାଗ ବାହୁଡସିରେ ବାଳ
ଶଲ୍ୟ କୃପ ଭୂରିସର୍ବା ଦେଖିଲେ ଯିବୁ ଯମଆଳ ।୮୭
ବାବୁ ପିତା ହୋଇଣ ଯେବେ ଅର୍ଜଇ ବିବାଦ
କିସ ତାହାର ଜୀବନ କିସ ତାର ସମ୍ପଦ ।୮୮
ଯେବଣ ପ୍ରାଣୀ ହାଦେ ବିବାଦେଣ ପଶିଲା
ଜୀବନ ଥାଉଂ ଥାଉଂ ଜାଣ ସେହୁ ହାଦେ ମଲା ।୮୯
ବାବୁ ଅଜମୁକ୍ଷ ବୋଲିଣ ଯେବଣ ରାକ୍ଷସ
ଦେଖିଲେ ନିମିଷେକ ମଧରେ ଭକ୍ଷିବ ତୋହୋର ମାୟେଂସା ।୯୦
ତୁଳେଣ ସାଖା ନାହିଁ ବାବୁ କେହୁ ତୋତେ ଆଜ ରଖୁ
ଜଳନ୍ତା ବନାନଳରେ ବାବୁ ପଶିଲୁ ଦେଖୁଂ ଦେଖୁଂ ।୯୧
ମୁହିଂ ତୋହୋର ଆପାଦ ଘେନି ଯାଇଂ କିନାରେ ବାଳ
ତୋହୋର ଅବସ୍ଥା କେନ୍ହେ ଦେଖିବିରେ ଚାଣ୍ଡାଳ ।୯୨
ଆରେ ସମରେ ଯେହୁ ପଶଇ ଅବଶ୍ୟ ତାକୁ ମାରି
ଧର୍ମ ଅଧର୍ମ ଯେ ଦୁଇ ନ ବିଚାରି ।୯୩
ମତ୍ତଗର୍ବେ ପଶି ରେ ହରାଇଲୁ ସର୍ବକାର୍ଯ୍ୟ
ବାହୁଡ଼ି ଯାଅ ବାବୁରେ ନ ଭାଳ କିଛି ଲାଜ ।୯୪
ପିତାମାତାର ଛାମୁରେ ପୁତ୍ରକଇଂ ଝିଂଘାସ
କେମନ୍ତେ ଦେଖିବି ବଳାରେ ତୋହୋର ପ୍ରାଣନାଶ ।୯୫
ବାସୁଦେବ ଯୁଝେଷ୍ଟି ଭୀମ ଅର୍ଜୁନ ନକୁଳ ସହଦେବ
ସେ ଯେଥୁଂ ପଳାବନ୍ତି ରକ୍ଷାକରି ଜୀବ ।୯୬
ଆଜ ଯଦି ସେ ଆସନ୍ତେ ଯେତେଧୂର ପରିଯନ୍ତେ
ସବୁଂକରି ଶିର ଛେଦନ୍ତି ତୋହୋର ଦେଖନ୍ତେ ।୯୭
ଆହୋ ଚଇତନ ଗୁରୁଜନ ଝିଂଘାସ ଶୁଣି କୋପିତ ଅଭିମନ୍ୟୁ
ଗୁଣ ଟଂକାର ଶବଦେ ସେ ଆଧାନ କଲା ଧନୁ ।୯୮
କୋପେଣ ପ୍ରତିବାକ୍ୟ କହଇ ଅଭିମନ୍ୟୁ
ମିଛେହେଂ କେତେ ଦର୍ପ କହ ହୋ ଆଦିତ୍ୟର ତନୁ ।୯୯
ଭୀଷ୍ମେ ତୁମ୍ଭର ଅନେକ ପ୍ରତଗ୍ୟାଂ କରୁଥିଲେ
ରଣଯାଗ ନ କରି ସେହୁ ଶର ଶେଯ୍ୟାଯେ ଶୁତିଲେ ।୧୦୦
ଯେବେହେଂ ଦ୍ରୋଣ ତୁମ୍ଭର ବାନ୍ଧିଲେ ମୁକୁଟ
ତାହାଂକର ଦେଖନ୍ତେ ମୁଂ ମାଇଲି ସର୍ବଥାଠ ।୧୦୧
ଦ୍ୱାର ଛାଡି ଗୁରୁ ଯେବେ ନ ଯାନ୍ତେ ଆଡୋ ହୋଇ
ଶିରଛେଦି ଆଣନ୍ତି ନା ଦେଖନ୍ତୁ ସ୍ୱାମୀ ତୁହି ।୧୦୨
ବୋଇଲେ ଜଦ୍ୟରଥକଇଂ ଯେ ଈଶ୍ୱରେ ଦିଲେ ଧନୁ
ତାହାର ଥାଠ ମଣ୍ଟିଲାଟି ଯେହି ବାଳୁତ ଅଭିମନ୍ୟୁ ।୧୦୩
ଯେବେଟି ହୋ ତାତ କର୍ଣ୍ଣ ତୁମ୍ଭର ଦେଖନ୍ତେ
ନବସହସ୍ର ରାଜା ମୁଂ ମାଇଲି ଯେକ ରଥେ ।୧୦୪
ଅର୍ଜୁନଂକୁ ନ ଦେଖି ତୁମ୍ଭେ ମତ୍ତଗର୍ବ କହ
କେଉଣ କାଳେ ଅର୍ଜୁନଂକ ଛାମୁରେ ତୁମ୍ଭେ ରହ ।୧୦୫
ପଞ୍ଚାଳ ଦେଶରେ ଯେ ଦ୍ରୋପତୀ ସୟମ୍ବରେ
ଧନୁ ଆମଣ୍ଡନ କରି ନୁଆରିଲ ପଟାର ଉପରେ ।୧୦୬
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ କୃପାଚାର୍ଯ୍ୟ ଭୂରି
ଲାଜପାଇ ସଭାରେ ବସିଲ ଲାଖ ବିନ୍ଧିତ ନୁଆରି ।୧୦୭
ପିତା ମୋହୋର ଅର୍ଜୁନ ମହାଲାଖ ବିନ୍ଧିଲେ ଯେତେବେଳେ
ପର ଶିରୀ ଦେଖି ନୁଆରି ପାତିଲ ମହାଗୋଳେ ।୧୦୮
ଲକ୍ଷେକ ନୃପତି ହୋଇ ଯୁଝିଲ ଯେକମୁଖେ
କେବେଣ ଅବସ୍ଥା ତୁମ୍ଭନ୍ତ ନ ଦିଲାଟି ପାଣ୍ଡବ ବିବକ୍ଷେ ।୧୦୯

ଭୀମସେନ ଠାକୁରେ ତୁମ୍ଭନ୍ତ ଦିଲେ ରଥରୁ ପକାଇ
ପ୍ରାଣେ ନ ମାରିଣ ଯେ ତୁମ୍ଭନ୍ତ ଗଲ ଡେଙ୍ଗ ।୧୧୧୦
ଘୋଷଯାତ୍ରାକାଳେ ଗଲ କାମ୍ୟକ ଯେ ବନେ
ସମ୍ପଧି ଦେଖାଇଗଲ ପାଣ୍ଡବଂକ ସନ୍ନିଧାନେ ।୧୧୧୧
ଯେକା ରଥକେଣ ଚଢ଼ି ଅଇଲା ଚିତ୍ରରଥ ବିଦ୍ୟାଧର
ରାଜାର କେଶ ଧରିଣ ସେ ବାନ୍ଧିନେଲା ରଥର ।୧୧୧୨
ରାଜାଂକ ମଇତ୍ର ହୋଇ ଭଣ୍ଡି ସର୍ବ ଖାଅ
ଆପଦ ପଡ଼ିଲାବେଳେ ରାଜଂକୁ ଛାଡିଣ ପଳାଅ ।୧୧୧୩
ସୋଦରେ ବିବାଦୀ ଯେ ହୋଇଲେ ପାର୍ଥବୀର
ଚିତ୍ରସେନ ତୁଲେ କଲେ ସମର ମହାଘୋର ।୧୧୧୪
ଚିତ୍ରସେନ ଗନ୍ଧର୍ବକଇଂ ଅର୍ଜୁନ କୋପ କଲା
ଭୟେ ଦ୍ରିଯୋଧନଙ୍କୁ ବିଦ୍ୟାଧର ଲକ୍ଷେ ଯୋଜନ୍ନୁଂ ଛାଡିଦିଲା ।୧୧୧୫
ଶରେ ଶରପନ୍ଥ ବାନ୍ଧିଲେ ମୋର ପିତା ଫାଲଗୁନି
ଯୁଝେଷ୍ଠିଂକ ପାଦତଳେ ପଡ଼ିଲେ ଦ୍ରିଯୋଧନ ନିଜ
କାୟା ଘେନି ।୧୧୧୬
ନିଲଜ ଆତ୍ମା ଘେନି ଯେତେକାଳ ଅଛି ବ୍ରତି
ତୁମ୍ଭେ ଉବୁରିଣ ହେ ତାହାଂକୁ ବେଳେ ବେଳେ ଦିଅ ଶାସ୍ତି ।୧୧୧୭
ସୋହୋଦ୍ରା ବିଭା ହୋଇ ଗଲ ଯେ ବଳରାମଂକ ବୋଲେ
ଯେକା ଅର୍ଜୁନ ତୁମ୍ଭନ୍ତକି ଅବସ୍ଥା ନ କଲେ ।୧୧୧୮
ବିରାଟ ରାଜ୍ୟକୁ ଗଲ ଯେ ଗୋଧନ ହରଣେ
ସବୁରି ପ୍ରାଣ ହରିଲା ଯେକା ଅର୍ଜୁନର ରଣେ ।୧୧୧୯
ଶହସ୍ରନ୍ତ ଡିଆରି ବୋଇଲା ଯେହାଂକର ପ୍ରାଣ ଯେ ନ ଘେନ
କ୍ଷତ୍ରୀପଣ ଭାଙ୍ଗିକଲେ ବାଦ୍ୟକାର ବିଧାନ ।୧୧୨୦
ଶିର ନ କାଟି ନେଲେ ମୁକୁଟ ଶ୍ରୀଭୂଷା
ନିଲଜ ଆତ୍ମା ଘେନି ଜୀବନକୁ ତୁମ୍ଭର ଭରସା ।୧୧୨୧
ଚନ୍ଦ୍ରାବତୀକି ହରିଲା ଯେ ଶାମ୍ବକୁମର
ତାହାପାଇଂ କେତେ ତୁମ୍ଭେ ନ କଲ ସମର ।୧୧୨୨
ଯେକା ଅର୍ଜୁନ ଯେ ଆବୋରିଲେ କୁମର ଶାମ୍ବ
ଭୀଷ୍ମ ଦ୍ରୋଣ ଭୂରିସର୍ବା ଶଲ୍ୟ କେତେ ନ କଲେ ସାଂଗ୍ରାମ ।୧୧୨୩
ମାରିଣ ପାଣ୍ଡବେ ସମସ୍ତଂକୁ କଲେ ଖଣ୍ଡ ଖଣ୍ଡ
ଛେଡ଼ନ୍ତ ରଖିଣ ମୁଣ୍ଡିଲେ ତୁମ୍ଭର ସବୁଂକରି ମୁଣ୍ଡ ।୧୧୨୪
ନୀଳେନ୍ଦ୍ରୀ ହରଣେ ତୁମ୍ଭର ଯେତେକ ଅବସ୍ଥା
କହନ୍ତେ ନ ସରଇ ତୁମ୍ଭର ମନୁଷ୍ୟପଣ କଥା ।୧୧୨୫
ଆହୋ ତୁ ହୋ ପିତା ମୋତେ କେମନ୍ତେ ବୋଇଲୁ ସାନ
ମୋହୋର ପିଅର ନୁହନ୍ତି କି ସେ ପାଣ୍ଡବ ଅର୍ଜୁନ ।୧୧୨୬

ହରି ବଳରାମେ ମୋହୋର ସୋହୋଦ୍ର ମଉଳା
ଶରଦପୂର୍ଣ୍ଣମୀ ଚନ୍ଦ୍ରେ କାହିଂ ଦେଖୁ କଳା ।୧୧୨୭
କୃଷ୍ଣ ଅର୍ଜୁନଂକର ସମାନେ ଯେ ମୋହବଳ
ମୋହୋର ହାଥେ ନିଧନ ଯେ କଉରୋବ ସକଳ ।୧୧୨୮
ଆହୋ କର୍ଣ୍ଣ କ୍ଷତ୍ରୀ ହୋଇ ହାଦେ ଗୁଣ ବିଦ୍ୟାଥିଲେ
କେ ତାହା ସାନ କରିବ ସମରେ ପଶିଲେ ।୧୧୨୯
କିଞ୍ଚିତ ଅଗ୍ନି ହାତେ ସଂସାର ଦହି ପାରଇ
ବିଷର ସୂଚୀମୁନେ କି ପ୍ରାଣୀ ନ ହାରଇ ।୧୧୩୦
ଶ୍ରୀ ବାସୁଦେବ ସାନ ଜନ୍ମି ଦେବକୀର କୋଳେ
ଅଷ୍ଟମଲ୍ଲ ବିଧ୍ୱଂସିଲେ ଖେଡ଼ର କୁତୋହୋଳେ ।୧୧୩୧
ଗରୁଡ଼ ଯେ ଯେକା ଜଣକେ ଅବତାର
ନାଗବଳ ନିସୂଦନ କଲାଟି ମହୀଭାର ।୧୧୩୨
ଆହୋ କର୍ଣ୍ଣ ହାଦେ ମୁହିଂ ଗରୁଡ଼ ତୁମ୍ଭେ ସମସ୍ତେ ଅହି
କେ ଆଜ ଶସ୍ତ୍ର ଧରିବ ମୋହୋର ଆଗେ ରହି ।୧୧୩୩
ଆହୋ କର୍ଣ୍ଣ ଅପାର ଇନ୍ଦୂର ଯେ ହୋଅନ୍ତି ପଲପଲ
ସେ ରହି ଯୁଦ୍ଧ କରିବେ କି ମଞ୍ଜାରୀର ତୁଲ ।୧୧୩୪
ତୁମ୍ଭେ ଇନ୍ଦୂର ପଲ ମୁଁ ଅଟଇ ମଞ୍ଜାରୀ
ପାଦେ ମର୍ଦ୍ଦିହୋଇ ଯେନ୍‌ହେ ଅନେକ ପିମ୍ପୁଡ଼ି ।୧୧୩୫
ଆହୋ କର୍ଣ୍ଣ ତୁମ୍ଭେ ଯେ ବୋଇଲ କୁରୁସାଗର ବଳ ଯେହି
ଅଗସ୍ତିଂକର ଗଣ୍ଡୁଷେ ସାଗର କାହିଂ ରହି ।୧୧୩୬
ସମସ୍ତେହେଂ ତୁମ୍ଭେ ସାହେର ମୁଂ ଯେ ଅଟଇ ଅଗସ୍ତି
ନିମିଷକେ ମୁଂ ଗଣ୍ଡୂଷ କରିବି ସବୁନ୍ତି ।୧୧୩୭
ଆହୋ କର୍ଣ୍ଣ ତୁମ୍ଭେ ଯେ ବୋଇଲ ଯେ କୁରୁସାଗର ସନ୍ୟବନ
ପ୍ରାଣତ୍ୟାଜ ବହନି ମୁଁ ସମସ୍ତ କରିବି ଦହନ ।୧୧୩୮
ତୁମ୍ଭେ ହୋ କର୍ଣ୍ଣ ସଂଚୟେ ହରାଇଲ ବୁଦ୍ଧି
କୋଇନ୍ତାଂକର ବଚନ ମେଣ୍ଟିଲ ଯେବେ ହରାଇଲ
ସକଳ ସମ୍ପଧି ।୧୧୩୯
ଯେତେବେଳେ ହୋଇଥାନ୍ତ ପାଣ୍ଡବଂକର ଶ୍ରେଷ୍ଠ
ଲକ୍ଷେ ରାଜାଂକ ଶିରୋମଣି ହୁଅନ୍ତା ତୁମ୍ଭର ପାଟ ।୧୧୪୦
ଭୀଷ୍ମେତ ପଡ଼ିଲେ ନିକଟେ ହୋଇଲେନି ଦ୍ରୋଣେ
ମୋତେ ବାଟ ନ ଛାଡ଼ିଲେ ତୁମ୍ଭର ଜୀବନ କ୍ଷଣେ ।୧୧୪୧
ତୁମ୍ଭେ ମୋହୋର ଜ୍ୟେଷ୍ଠ ତାତ ବୋଲିଣ ମୁହିଂ ଯେ ଶୁଣିଲି
ଗୁରୁର ଗୁରୁ ବୋଲି ଯେତେ ବେଳ ପ୍ରାଣଦାନ ଦିଲି ।୧୧୪୨
ଆହୋ କର୍ଣ୍ଣ ଯଦ୍ୟପି ପର୍ବତେ ଅଟନ୍ତି ଅତୁଟଇ
ବଜ୍ର ପ୍ରହାରେ ପୁଣ ସବୁଂକରି କାୟା ଫୁଟଇ ।୧୧୪୩

ଆହୋ କର୍ଣ୍ଣ ତୁମ୍ଭେ ମୋତେ ସାନ ଯେ ନ ବୋଲ
ଛତ୍ରୀପଣକୁ ମୁଁ ତୋତେ ଅଟଇ ମେରୁ ସମତୁଲ ।୧୪୪
ଅଭିମନ୍ୟୁର ବଚନେ କୋପିଲେ ରାଧେବ
ବାହାନାଦ କରିଣ ସେ ଆମଣ୍ଟିଲା ଚାବ ।୧୪୫
ଆକ୍ରେଷିଣ ଚାହିଁଲା ପୁଣ ନାରାଜ ଧନୁରେ ପୂରୋଇ
ବୋଇଲା ତୋତେ ମାରନ୍ତେଣର ଯଶ ପଉରଷ
ମୋତେ ନାହିଁ ।୧୪୬
କୋପେଣ ରାଧେବ ଯେ କଲା ନାରାଜ ବୃଷ୍ଟି
ଯେକାଘାନ୍ତିକେ ବିନ୍ଧିଲା ନାରାଜ ଚଉଷଠି ।୧୪୭
ଲୋହାର ପଞ୍ଚୁଶର ବିନ୍ଧଇ ଅଭିମନ୍ୟୁ
ସମସ୍ତ ନାରାଜ ଛେଦିଲା ସେ ସୋହୋଦ୍ରାର ତନୁ ।୧୪୮
ଘାୟେଣ କର୍ଣ୍ଣ ଯେ କୋପେଣ ପ୍ରଜ୍ଜଳି
କୋପେଣ ବିନ୍ଧିଲା ସେ ନାରାଜ ଆଦ୍ରାବଳୀ ।୧୪୯
ପଞ୍ଚଦଶ ନାରାଜ ପୂରୋଇଣ ବିନ୍ଧିଲା କୁମର
କର୍ଣ୍ଣର ନାରାଜମାନ ସେ କଲାକ ନାରଖାର ।୧୫୦
ପୁଣିହିଁ ରାଧେବ ଯେ ନାରାଜ ପୂରୋଇ
ସହସ୍ରେ ନାରାଜ ବିନ୍ଧିଲା ଯେ ରୋଷ ବହି ।୧୫୧
ଦେଖଇ ଅଭିମନ୍ୟୁ ନାରାଜ ଆସନ୍ତେ
ସମସ୍ତ ଶସ୍ତ୍ରମାନ ଛେଦିଲା ତୁରିତେ ।୧୫୨
ଆହୋ ଲାଘବ ଯୁଦ୍ଧେଣ ସେ ରାଧେବ ପ୍ରଜ୍ଜ୍ୱଳିତ
ମହାକୋପେ ଶର ବିନ୍ଧିଲା ଆଦିତ୍ୟର ସୁତ ।୧୫୩
ଅନ୍ଧକାର ଘୋର ଶର ବିନ୍ଧିଲା କର୍ଣ୍ଣ ମହାବଳୀ
ଚଉଦିଗ ଘୋଟିଲା ଦିଗ ନୁଆରିଲେ ବାରି ।୧୫୪
କିରଣ ଅର୍କ ଶର ଯେ ମାଇଲା କୁମର
କର୍ଣ୍ଣର ଅନ୍ଧାର ଶର ସେ କଲାକ ନାରଖାର ।୧୫୫
ସେ ଶର ବିଅର୍ଥ ଦେଖି କର୍ଣ୍ଣ ମହାରଥା
ପରିଘ ନାରାଜେକ ସେ ବିନ୍ଧିଲା ବଳବନ୍ତା ।୧୫୬
କୋପେଣ ଅଭିମନ୍ୟୁ ଯେ ବିନ୍ଧଇ ତୀକ୍ଷମୁନା
ନାରାଜ ଛେଦି କର୍ଣ୍ଣର ଭେଦିଲା ବଜ୍ରସେହ୍ନା ।୧୫୭
ଯେସନେକେ ବିମ୍ବରେ ପଳାଇ ପଶଇ ସର୍ପ
ସେହି ସାରିକ୍ଷେ ନାରାଜ ବିଘାତେଣ ଭାଙ୍ଗି ହରିଲା
କର୍ଣ୍ଣର ଦର୍ପ ।୧୫୮
ସାଷାମ ହୋଇଣ କର୍ଣ୍ଣ ପୁଣ ଧନୁ ଧରି
ଦଶ ବିଂଶ ନାରାଜ ବିନ୍ଧିଲା କୋପକରି ।୧୫୯

ପଞ୍ଚଦଶ ନାରାଜ ବିନ୍ଧିଲା ଅଭିମନ୍ୟୁ
ତତକ୍ଷଣେ କର୍ଣ୍ଣର ସେ ଛେଦିଲାକ ଧନୁ ।୧୬୦
ପୁଣ ଶତେ ନାରାଜ ପୂରୋଇ ପ୍ରହାରି
ହୟ ସାରଥି ସହିତେ ରଥ ଛେଦିଲା ତାହାରି ।୧୬୧
ବିରଥୀ ହୋଇଣ ସେ ରାଧେବର ସୁତ
ପାଦଗତି କରିଣ ଆରୋହିଲା ମୟେମତ୍ତ ।୧୬୨
ବାଣ ଜାଳାବଳି ବିନ୍ଧିଲା ରୋଷଭରେ
ସହସ୍ରେ ନାରାଜ ପେଷଇ ଅଭିମନ୍ୟୁର ଉପରେ ।୧୬୩
ସୋହୋଦ୍ରାର ନନ୍ଦନ ଯେ ଶର ଆସନ୍ତେଣ ଜାଣି
କର୍ଣ୍ଣର ସହସ୍ରେ ଶର ଧୂରହୁଁ ବେଗେ ପକାଇଲା ହାଣି ।୧୬୪
ହାବୋଡ଼ା ଶରେକ ଯେ ବିନ୍ଧିଲା ଅଭିମନ୍ୟୁ
ଗଜ ସହିତେ ଉତ୍ତାନଶାହୀ ଦିନକର ତନୁ ।୧୬୫
ରୁଧିରେ ଜର ଜର କର୍ଣ୍ଣ ପଡ଼ିଣ ମୋହ ଯାଇ
ଦେଖିଣ ଅଭିମନ୍ୟୁ ଜୟଶଂଖ ବଜାଇ ।୧୬୬
ଆକାଶେ ବ୍ୟାପିଲା ଯେ ଅଭିମନ୍ୟୁ ଶଂଖ ଧ୍ୱନି
ଜାଳନ୍ଧର ବ୍ୟୂହେ ଥାଇ ତାହା ଶୁଣିଲେ ଚକ୍ରପାଣି ।୧୬୭
ହୃଦଗତେ ଚିନ୍ତି ତାହା ଜାଣିଲେ ଦେବାଧି ଦେବରାଜ
ସମରେ ଅଭିମନ୍ୟୁ ନିହାଇ ହୋଅଇ ପ୍ରାଣତ୍ୟାଜ ।୧୬୮
ଶରୀରୁ ଭୟ ନ ଛାଡ଼ି ଦେବ ଯେ ଅଚ୍ୟୁତ
ପାଞ୍ଚଜନ୍ୟ ଶଂଖନାଦ କରନ୍ତି ଅନନ୍ତ ।୧୬୯
ବାହାନ୍ତି ତୁରଙ୍ଗମ ଦେବ ଦଇତ୍ୟାରି
ଜାଳନ୍ଧର କୂଟ କପଟ କହିତ କି ପାରି ।୧୭୦
ମହାଖଳା ବିଦ୍ୟାନ୍ତ ହରି ଦେଖାନ୍ତି ଉପାୟେ
ତହିଁକି ଗ୍ୟାନ ନାହିଁ ଅବିଶ୍ରାମେ ସମର କରଇ
ଧନୁର୍ଜୟେ ।୧୭୧
କର୍ଣ୍ଣକୁ ବିରଥୀ ଦେଖି ସୋହୋଦ୍ରାର ବଳା
ବାହଇ କେତନ ସାରଥି ରଥ ଯେ ଧବଳା ।୧୭୨
ଅଚେତନ କର୍ଣ୍ଣ ଯେ ଅଛି ମୋହଯାଇ
ଆକାଶେ ସାରଥି ରଥ ନେଲାକ ଉଡ଼ାଇ ।୧୭୩
ତିନିଦ୍ୱାର ଦିଶିଣ ଗଲାକ ତାର ରଥ
ଚତୁର୍ଥ ଦ୍ୱାରେ ମିଳିଲା ଯାଇ ଅର୍ଜୁନର ସୁତ ।୧୭୪
ରଥ ଗଜ ଅଶ୍ୱ ବଡ଼ାଇ ଗହଳ
ପୂର୍ବେ ଯେସନେକେ ସିନ୍ଧୁ ମନ୍ଥନ ଚହଳ ।୧୭୫
ପଞ୍ଚାଶ କୋଟି ଯୋଦ୍ଧା ତୁଲେ ରାୟେଗୁରୁ ଶଲ୍ୟ
ଦ୍ୱାର ନିରୋଧିଲା ସେ ଭାରୋଇ ମହାମଲ୍ଲ ।୧୭୬

ଦେଖିଣ ଅଭିମନ୍ୟୁର ଯେ ନ ପୂରଇ କିଛି
ଯେକାମାତ୍ର ସାରଥି ସଖା ହୋଇଅଛି ।୧୭୭
ଦେଖିଲେ ଦ୍ୱାରେ ଯେ ପଞ୍ଚାଶ କୋଟି ରଥୀ
ବିନ୍ଧିଲେ ନାରାଚ ଅବିଚ୍ଛିନ୍ନେ ଯେକମୃଭି ।୧୭୮
ବରଷାକାଳେ ଯେହ୍ନେ ବରଷଇ ନୀର
ମହାବାତେ ଉଡ଼ି ପଡ଼ନ୍ତି ସର୍ବଶର ।୧୭୯
ନାରାଚ ବୃଷ୍ଟି ଦେଖିଣ ସେ କୁମାର ଅଭିମନ୍ୟୁ
ସାରଥିକି ବୁଝାଇ କରେ ଧରିଲାକ ଧନୁ ।୧୮୦
ଧନୁରେ ଆର୍ଦ୍ରାବଳୀ ନାରାଚ ପୂରୋଇ
ସନ୍ୟଂକର ଉପରକୁ ବିନ୍ଧିଲା ପରିଘାଇ ।୧୮୧
ସାରଥିକି ବୋଇଲା ହୋ ସମ୍ଭାଳସି ରଥ
ଦୁସହ ସମର ତ ହୋଇଲା ଅପ୍ରମିତ ।୧୮୨
ସାରଥି ବୋଇଲା ଯେତ ଅଗୋଚର ଥାଠ
ଦିବସେ ଅନ୍ଧକାର ତ ନ ଦିଶଇ ବାଟ ।୧୮୩
ସମ୍ଭାଳିଣ ସମର କର ହୋ ବାଳଛତ୍ରୀ
ନଉଚେତ ରଥ ମୁଂ ବାହଇ ଗଗନ ଗତି ।୧୮୪
ଅଭିମନ୍ୟୁ ବୋଇଲା ଯେତ ନୋହଇ ଯୁଗତ
ଛତ୍ରୀପୁତ୍ର ହୋଇ କେହ୍ନେ ହୋଇବି ନିସତ ।୧୮୫
ଅଶ୍ୱନ୍ତ ସମ୍ଭାଳି ଯେବେ ରଥ ମୋର ବାହା
ମୁହିଂ ମହାଛତ୍ରୀ ତୁ ନ ବୋଲ ମୋତେ ଯେହା ।୧୮୬
ଅଭିମନ୍ୟୁ ନିଷ୍ଠୁର ବଚନ ଶୁଣିଣ କେତନ ସାରଥି
ବାହାଇ ତୁରଙ୍ଗମ ଯେହ୍ନେ ଆକାଶେ ସୁରପତି ।୧୮୭
କୃପ ଆଚାର୍ଯ୍ୟ ତହିଂ ଶଲ୍ୟଂକୁ ପଚାରି
ବଡ଼ାଇ ଅପୂର୍ବତ ଦେଖିଲୁଂ ସମରକାରୀ ।୧୮୮
ଇନ୍ଦ୍ର ଗୋବିନ୍ଦ କି କୁବେର ଚିତ୍ରସେନ
ଆକାଶୁ ଖସଇ କି ପୁଷ୍ୟକ ବିମାନ ।୧୮୯
ଶୁଦ୍ଧ ସଷ୍ଟିକ ଧବଳ ରଚିର ଚାରିହୟେ
ବଡ଼ାଇ ଅଗୋଚର କରତାର ଦେବ ପ୍ରାୟେ ।୧୯୦
ଶଲ୍ୟେ ବୋଇନ୍ତି ଯେ ନୋହନ୍ତି ଦିଗପାଳେ
ତାହାଂକର କିସ ଅର୍ଥ ଯେ କୁରୁକ୍ଷେତ୍ର ମଣ୍ଡଳେ ।୧୯୧
କୃଷ୍ଣ ଅର୍ଜୁନହୁଂ ଯେ ନୋହଇନା ଆନ
ନନ୍ଦିଘୋଷ ନୁହଇ ନାହିଂ କପି ଯେ କେତନ ।୧୯୨
ଯେସନେକେ ବିଚାରନ୍ତେ ସେ ରଥ ବେଗେ ଚଳି
ସନ୍ନିଧେ ପ୍ରବେଶ ହୋଇଲା ରଥ ଯେ ଧବଳୀ ।୧୯୩
ଶ୍ରୀକରେ ଧନୁଯେ ଅଛି ଯେ ନଉସହସ୍ରବଳ
ଗୁଣ ଟଂକାର ନାଦେ କମ୍ପଇ ଯେ ଗଗନମଣ୍ଡଳ ।୧୯୪
ନାରାଚ ବିନ୍ଧଇ ସେ ଅଣଉପୁରୋଧୀ
ପର୍ବତ ନିକିଳଇ ଯାହାର ଶର ବିନ୍ଧି ।୧୯୫
ହୟ ସାରଥି ରଥୀ ପାଦାନ୍ତି ସହିତେ
ଯେକ ଜଡ଼ିତ ହୋଇ ଫୁଟଇନା ନାରାଚ ପଡ଼ନ୍ତେ ।୧୯୬
ଯୋଦ୍ଧାୟେ ଅନେକ ନାରାଚ ବିନ୍ଧନ୍ତି ତାହାଂକୁ
ନାରାଚ ନ ଲାଗନ୍ତି ସେ ଧବଳୀ ରଥକୁ ।୧୯୭

ଜୟେଶଂଖ ବଜାଇ ଅଭିମନ୍ୟୁ କୁମର
ଧବଳୀ ରଥ ବାହି ପଶିଲା ଭିତର ।୧୯୮
ନାରାଚ କୋଟି କୋଟି ସଇନି ସଂଘାରନ୍ତି
ଭୂଅଭେଦି ଦଶଦ୍ୱାରେ ପ୍ରବେଶ ବାଳଛତ୍ରୀ ।୧୯୯
ଦଶମଦ୍ୱାରର କଥା କହିବା ହାଦେ ଶୁଣ
ଦ୍ରିଯୋଧନ ରାଜା ତୁଲେ ଛନ୍ତି ଦଶସହସ୍ର ରାଜନ ।୨୦୦
ଦଶସହସ୍ର ରଥୀ ବତିଶ ଖର୍ବ ହାଥୀ
ପାଞ୍ଚପଦ୍ମ ମୁକୁଟବନ୍ଧା ଦଶସହସ୍ର ସେନାପତି ।୨୦୧
ପାଦାନ୍ତି ନବକ୍ଷଉଣୀ ଶକୁନି ସଞ୍ଚୟେ
ଲକ୍ଷଣକୁମାର ତୁଲେ ନବସସ୍ତ୍ରରାୟେ ।୨୦୩
ଦଶମଦ୍ୱାରରେ ସମସ୍ତ ରଥୀ ଗୁନ୍ଧି
ଅବିକାର ମୟେମତ୍ତା ଆରମ୍ଭ ସର୍ବଯୋଧୀ ।୨୦୪
ଧୁଶାସନ ଦୁର୍ଜୟେ ଯେ ଅଳାୟୁଧ ରାକ୍ଷସ
ସିନ୍ଧୁମତୁନ ପ୍ରାୟେ ଶୁଭଇ ଧନୁ ଗୁଣ ଘୋଷ ।୨୦୫
ଯଦ୍ୟପି କଉରୋବେ ସେ ମହା ମହାମଲ୍ଲ
ଶାର୍ଦ୍ଦୂଳ ଛାମୁରେ କି ରହଇ ଛାଗପଲ ।୨୦୬
ଦଶସହସ୍ର ରାଜଂକର ଯେତେକ ସଇନି
ଯେକା ନାରାଚକେ ପାରଇ ଜୀବନ ଘେନି ।୨୦୭
ଯେକାଯୋଦ୍ଧାକୁ ବେଢ଼ିଛନ୍ତି ଦଶସହସ୍ର ରାୟେ
ବିନ୍ଧନ୍ତି ନାରାଚ ସେ କେଶରୀ ଯୂଥପ୍ରାୟେ ।୨୦୮
ଅବିକ୍ଷଣେ ବାଣ ବିନ୍ଧଇ ବୀର ଅଭିମନ୍ୟୁ
ଫଳାଖଡ଼ଗ ଆଡ଼ଣ ଛେଦିଲା ସବୁଂକରି ଧନୁ ।୨୦୯
ବିନ୍ଧନ୍ତେ ଶୂନ୍ୟ ନ ଯାଇ ସେ ଅଭିମନ୍ୟୁର ବାଣ
ରଥଗଜଂକ ଉପରେ ପଡ଼ଇ ନାରାଚ ଅପ୍ରମାଣ ।୨୧୦
ଗଜଯୋଦ୍ଧାଂକ ଉପରେ ତୀକ୍ଷମୁନା ପଡ଼ି
ପର୍ବତଖଣ୍ଡ ପ୍ରାୟେ ପଡୁଛନ୍ତି ଝଡ଼ି ।୨୧୧

ଅଶ୍ୱଂକର ମୁଣ୍ଡ ଯେ କଳେବର ସହିତେ
ପାଦାନ୍ତିବଳ ମାଡ଼ି ପଡ଼ନ୍ତି ଅପ୍ରମିତେ ।୨୧୨
ତହିଂର ଉପରେ ଗୁଧ୍ରର ମହାଖଳା
ପଳାବନ୍ତି ଗଜ ଅଶ୍ୱେ ଯେ ହୋଇଣ ମୁକୁଳା ।୨୧୩
ଅଭିମନ୍ୟୁ ସମର ମହିମାଂ ଯେ ଦେବଂକୁ ଅଗୋଚର
ଖେଳନ୍ତା ବାଳୁତ ତନୁ ଚଉଦ ବରଷର ।୨୧୪
ବିଶାଶତେ ପଦ୍ମଯୋଦ୍ଧା ବାସ୍ତରୀ କ୍ଷଉଣୀବଳ
ଯେକା ରଥୀକେ ସମସ୍ତଂକ କଲାକ ଧନ୍ଦୋଳ ।୨୧୫
ରଥ ଗଜ ଅଶ୍ୱ ସବୁଂକରି କାୟେ ଭେଦି
ଯେକା ରଥୀକେ ଶତେ ଶତେ ବାଣ ବିନ୍ଧି ।୨୧୬
ସେନ୍ହା ଫୁଟି ନାରାଜେ ଭେଦନ୍ତି ରୋମେ ରୋମେ
ବେନିଖଣ୍ଡ ହୋଇ ଛଡ଼ିପଡ଼ି ଲୋଟନ୍ତି ସାଂଗ୍ରାମେ ।୨୧୭
ଅନିର୍ଯ୍ୟାପ ସମରେ ଯେ ସମସ୍ତ ହତହୋୟେ
ଅଶକତ ହୋଇଣ ପଡ଼ିଲେ ସର୍ବରାୟେ ।୨୧୮
ସେନ୍ହା ମଣି ମୁକୁଟ ବାହୁଟି ଜଗଦଳା
ରକତନଦୀ ଉପରେ ସମସ୍ତେ ହୋଇଲେକ ଭେଳା ।୨୧୯
ଆହୋ ଚଉତନ ନବସହସ୍ର ରାଜା ତିନିସହସ୍ର ପାରିଦଣ୍ଡ
ଘଡ଼ିକ ସମରେ ଅଭିମନ୍ୟୁ କାଟିଲା ଯେତେ ମୁଣ୍ଡ ।୨୨୦
ସଇନି ପଳାବନ୍ତି ଯେନ୍ହେ ବାସଭଗ୍ନ ପକ୍ଷୀ
ଅଶକତ ସମରେ ସଭିୟେଂ ହୋଇଲେ ନିରିମାଖୀ ।୨୨୧
ଅକାଳ ଅକାମ ଅନିର୍ଯ୍ୟାପ ରଣ
କଉରବ ଥାଠକୁ କେହି ନୋହିଲା ଆବରଣ ।୪୧୩
ରଣଭଗ୍ନ ଦେଖିଣ ଶକୁନି ଧୃଶାସନ
ଦୁର୍ଜୟେ ଦୁର୍ମୁଖ, ଦୁରାପଦ ଦୁରାକର୍ଣ୍ଣ ।୪୧୪
ଦୁର୍ମନ ଦୁରାନ୍ତକ ଦୁକର୍ଣ୍ଣ ଦୁର୍ବାଳ ଦୁର୍ବିନ୍ଦ
ଦୁଷଣ ଦୁର୍ନାଳ ଦୁର୍ବାଳ ଦୁରାନନ୍ଦ ।୪୧୫
ରାଜାର ସହୋଦର ଯେ ଅଠାଶୋଇ ଭାଇ
ଭଗ୍ନବଳ ଘେନିଣ ଅଭିମନ୍ୟୁକୁ ବେଢ଼ିଲେ ସର୍ବେ ଯାଇଂ ।୪୧୬
ବତିଶ ମେବକ୍ଷ ଯେହାଂକର ତୁଲେ ଯୋଧୀ
ଦଶବିଂଶ ତିରିଶ ଶର ସମସ୍ତେ ବେଢ଼ି ବିନ୍ଧି ।୪୧୭
ଦଣ୍ଡ ଦେଖି ଉଷତ ହୋଅଇ ବୀରମଣି
ବିନ୍ଧଇ ନାରାଜ ସେ ଖେଳନ୍ତା ସିଂଘ ଜାଣି ।୪୧୮
ମହାବାତେ ଯେହ୍ନେ ପଡ଼ଇ ପଂକୁ ଫଳ
କନ୍ଧୁ ଛିଡ଼ି ମଉଳି ଯେ ଲୋଟନ୍ତି ମହୀତଳ ।୪୧୯

କାହାର ଭୁଜ ଛିଡ଼ି କାହାର କଳେବର ଲୋଟି
ମୁଣ୍ଡାବୃକ୍ଷ ପ୍ରାୟେ ନାଚନ୍ତି କବନ୍ଧ କୋଟି କୋଟି ।୪୨୦
ଆକାଶେ ପ୍ରଶଂସା କରନ୍ତି ଧନ୍ୟରେ ଅଭିମନ୍ୟୁ
ଯେକାୟେ ଭାରା ନିବାରିଲୁ ବାଳୁତ ଅଟୁ ତନୁ ।୪୨୧
ଆକାଶୁଂ ଅଇଲେ ଯେ ବିହନ୍ତା ପୁରୁଷେ
ସେ ଆସି ଶୂନ୍ୟେ ଲାଗିଲେ ଅଭିମନ୍ୟୁର ପାଶେ ।୪୨୨
ସେ ଯେ ଅଭିମନ୍ୟୁ ନିକଳଂକ ଛତ୍ରୀ
ତାହାର କ୍ଷତ୍ରୀପଣକୁ କରନ୍ତି ସର୍ବେ ଭୀତି ।୪୨୩
ଚକିତେ ମନ ଛନ୍ନ ଆକୁଳ ପଞ୍ଚଭୂତ
ବିହନ୍ତା ପୁରୁଷମାନେ ବିହିଲେ ଯେମନ୍ତ ।୪୨୪
ଆହୋ ବଇବସ୍ତୁତ ମନୁ ସେ ପୁଛିଲେ ଅଗସ୍ତିଂକି
ବିହନ୍ତା ପୁରୁଷେ କିମ୍ପେ ଅଇଲେ ଅଭିମନ୍ୟୁର କତିକି ।୪୨୫
ଶୁଣ ହୋ ମନୁପୁରୁଷ ବଦୟନ୍ତି ବ୍ରହ୍ମବେତ୍ତା
କହନ୍ତେଣ ଅସଂଖ୍ୟ ଅନ୍ତ ନ ଯାଇ ସର୍ବଥା ।୪୨୬
କବନ୍ଧ ବୋଲିକରି ଦତ୍ୟ ଥିଲା ସତ୍ୟଯୁଗେ
ସେ ପୁଣ ନାଶଗଲା ପ୍ରଜାପତିର ଆଗେ ।୪୨୭
ଉଦେକବନ୍ଧ ବୋଲି ତାହାର ଯେକପୁତ୍ରେ
ଆକାଶ ମନ୍ଥନ ସେ କଲାକ ଦଇତେ ।୪୨୮
ଅଭିମନ୍ୟୁ ସତ୍ୟଯୁଗେ ଆଦିନାମ ଅଟଇ
ଦେବତାଂକର ବାକ୍ୟେ ସେ ମାରଇ ଦ୍ରପିଷ୍ଟଇ ।୪୨୯
ସେ ଆଦି ଅବତାରେ ମାତା ଯେହାର ଭଇରୋବୀ ଉଗ୍ରତାରା
ମାୟେ ପୋୟେ ହୋଇ ସେ ନିବାରନ୍ତି ମହୀଭାରା ।୪୩୦
ଯେହାର ମାତା ଜନମ ହୋଇ ନନ୍ଦମହାଖୁଡ଼ ଘରେ
କଂସ କଚାଡ଼ିଲା ନେଇ ଘଟଣ ଶିଳା ଉପରେ ।୪୩୧
ଯେ ମାତା ପୁତ୍ରଂକୁ ଗୋବିନ୍ଦେ ଆଣିଲେ ସତ୍ୟ ମଣାଇଂ
ତୁମ୍ଭେ ଦୁହେଂ ମୃତୁପୁରେ ଉପୁଜିବ ମୋହୋର ପାଇଂ ।୪୩୨
ଆଦିକି ବୋଇଲେ ତୁ ସୋହୋଦ୍ରା ଗର୍ଭେ ଜନମ ହୋଇବୁ
ଚଉଦବରଷ ତୁ ମୋହୋର ତହିଂ ଥିବୁ ।୪୩୩
ସେ ଆଦି ବୋଇଲେ ମୁଂ ସ୍ୱର୍ଗରକ୍ଷା କରଇ
ଯେଥୁଂ ଆନଭୂଇଂରେ ମୁଂ ରହି ନୁଆରଇ ।୪୩୪
ତୋହୋର ବଚନ ମୁଂ ନ ଭାଙ୍ଗିବାର ଅର୍ଥେ
ଚଉଦ ବରଷହୁଂ ଅଧିକ ମୁଂ ନ ରହଇଟି ପୃଥୀଗତେ ।୪୩୫
ଚଉଦ ବରଷୁଂ ଦିନେକ ଅଧିକ ହୋଇଲେ
ପିତାକୁ ମାରିଆସିବିଟି ଆଦିନାଥ ବୋଇଲେ ।୪୩୬

ତୁହି ଯଦ୍ୟପିହିଂ ଗୁହାଇ ଲୋଡ଼ିବୁ ମୋତେ
ସେହି ରଣଭୂଇଂରେ ମାରିବିଟି ତୋତେ ପିତାର ସହିତେ ।୨୨୨
ଯେହା ଯେବେ ଦୃଢ଼ବ୍ରତ କରିପାରିବୁ ଅନନ୍ତ
ଆମ୍ଭ ମାଆ ପୁଅକୁ ନିଅ ମଧଭୁବନଗତ ।୨୨୩
କେଶବ ବୋଇଲେ ମୁଂ ଯେଉଂଣ ଦିନେ ହୋଇବି ଜାତ
ସେଦିନ ବେଳ ତିନିଦଣ୍ଡରେ ମଧେ ସ୍ୱର୍ଗକୁ ଆସିବ
ତୋର ମାତ ।୨୨୪
ସେ ଯେ ଭାଇରୋବୀ ଉଗ୍ରତାରା ନାରାୟଣଂକ ବଚନେ
ଯଶୋଦାଂକ ଗର୍ଭେ ଉପୁଜିଲା ନନ୍ଦ ଗୋପଭୁବନେ
ଶ୍ରୀକୃଷ୍ଣ ଜାତ ହୋଇବେ ମଥୁରାରେ ବସୁଦେବଂକ ନନ୍ଦନେ ।୨୨୫
କଂସର ଡରେ ବସୁଦେବ ନେମ ପୁତ୍ରକୁ ପାଲଟାଇ
ଆପଣା ପୁତ୍ର ଦେଇ କୁମାରୀ ଆଣିଲା ସେହି ।୨୨୬
ପୁତ୍ର ଜାତ ଶୁଣିଣ ଧାଇଂଲା କଂସାସୁର
ସେ ଦୁହିତାକୁ କଚାଡ଼ିଲା ଘଟଣ ଶିଳାର ଉପର ।୨୨୭
ତତକ୍ଷଣେ ସ୍ୱର୍ଗକଇଂ ଗଲା ଭଇରୋବୀ
ଆକାଶେ ବିଜେ ଯାଇଂ କଲେକ ମହାଦେବୀ ।୨୨୮
କପଟକୂଟ କଲେ ହରି ଜାଳନ୍ଧରେ ଅଭିମନ୍ୟୁର ଭୟେ
ଡରେଣ ଆଡ଼ିଆଇ ନେଲେ ଧନୁର୍ଜୟେ ।୨୨୯
ଅଭିମନ୍ୟୁ ସମରେ ପଡ଼ିବା ପରିଯନ୍ତେ
ଅର୍ଜୁନକୁ ଭାରଥ ଯୁଦ୍ଧେ ଉଭାକରି ନୁଆରିଲେ ଜଗନ୍ନାଥେ।୨୩୦
ଅର୍ଜୁନ ରଣେ ଥିଲେ ନ ପଡ଼ଇ ଅଭିମନ୍ୟୁ
ସେଦିନ ସମରେ ନ ପଡ଼ିଲେ ମାରିବ ସେ କୃଷ୍ଣ ଫାଲଗୁନି ।୨୩୧
କବନ୍ଧ ରାକ୍ଷସର ଉଦେକବନ୍ଧ ନାମେ ଦତ୍ୟ
ସେ ଆସିଣ ଚଉଦ ବରଷ ଆକାଶ କଲାକ ଭଗନସ୍ତ ।୨୩୨
ସେ ଉଦେକବନ୍ଧର ଡରେ ଦେବ ପୁରୁନ୍ଦର
ଆସ୍ଥାନେ ବସି ନୁଆରିଲେ ଅମର ସଭାର ।୨୩୩
ଦେବରାଜା ଆସ୍ଥାନେ ବସନ୍ତେ ଅନିର୍ଯ୍ୟାପ ହୋଇଲା
କେବଣ ଦିଗେ ମେଘ ପାଳି ନ ପାଳିଲା ।୨୩୪
ବ୍ରହ୍ମାଯେ ବୋଇଲେ ଇନ୍ଦ୍ରକୁ ଆଦି ସ୍ୱର୍ଗକୁ ନଇଲେ
ଉଦେକବନ୍ଧ ନାଶଯିବ କାହାର ବଳେ ।୨୩୫
ତେଣୁକରି ଇନ୍ଦ୍ର ପେଷିଲା ଯେ ବିହନ୍ତା ପୁରୁଷକୁ
ସମରେ ନାଶ ତୁମ୍ଭେ କରାଅ ଅଭିମନ୍ୟୁକୁ ।୨୩୬
ବିହନ୍ତା ପୁରୁଷମାନେ ବୋଇଲେ ସାରଥି କେତନକୁ
ସ୍ୱର୍ଗକଇଂ ପଠିଆଅ ତୁ ବେଗେ ଅଭିମନ୍ୟୁକୁ ।୨୩୭
ନୋହିଲେ ଉଦେକବନ୍ଧ ଯେ ସ୍ୱର୍ଗନାଶ କରିବ
ଅଭିମନ୍ୟୁ ନାଶଗଲେ ସେ ଉଦେକବନ୍ଧ ନାଶଯିବ ।୨୩୮
ଭାରଥ ଯୁଦ୍ଧେ ଅଭିମନ୍ୟୁ ଥିବ ଯେତେଦିନ ପରିଯନ୍ତେ
ଅର୍ଜୁନକୁ ଉଭାକରି ନୁଆରିବେ ଜଗନ୍ନାଥେ ।୨୩୯
ଯେ ଭାରଥ ଯୁଦ୍ଧେ ଉପ୍ରୋଧ ନ ଛାଡ଼ିବ ବୀରପାଥ
କଉରୋବଂକ ସଂଗେ ଅଭିମନ୍ୟୁ ଯୁଦ୍ଧ କରି
ବୁଡିବା ପର୍ଯ୍ୟନ୍ତ ।୨୪୦
କଉରୋବନ୍ତ ସୋଦ୍ରିମାପଣ ପାଳିଛି ଫାଲଗୁନି
ପୁତ୍ରକଷ୍ଟେ ମାରିବ ସେ ସକଳ କଉରବ ବଳ ସଇନି ।୨୪୧
ଉଦେକବନ୍ଧ ନାଶଯିବ କୃଷ୍ଣ ଅର୍ଜୁନ ହୋଇବ
କଉରୋବେ ମରି ପୃଥୀଭାରା ଉଶ୍ୱାସ ହୋଇବ ।୨୪୨
ଯେସନେକ ସଞ୍ଚିତ ଯେ କଲେ ଦେବଲୋକେ
ମହୀଭାରା ନିବାରିଲା କୁମାର ଅଭିମନ୍ୟୁ ଯେବେ ।୨୪୩
ଆହୋ ବିହନ୍ତା ପୁରୁଷେ ଯହୁଂ କଲେ କୂଟକପଟ
ନାରାଜ ବିନ୍ଧନ୍ତେ ହୋଇଲା ଅକାଟ ଅପୁଟ ।୨୪୪
ପାଞ୍ଚଖର୍ବ ଯୋଦ୍ଧା ଘେନି ଲକ୍ଷ୍ମଣ କୁମାର
ଅଳାୟୁଧ ଧୁଶାସନ ଅଛନ୍ତି ସଙ୍ଗତର ।୨୪୫
ଯେତେକ ସନ୍ୟ ଘେନିଣ ସେ ଭାନୁମତୀର ବଳା
ମହାମତ୍ତନାଗ ପ୍ରାୟେକ ତାହାର ତେଜ ଅନର୍ଗଳା ।୨୪୬
ସୋହେଦ୍ରାର ନନ୍ଦନ ଯେ ପ୍ରତଗ୍ୟାଂ ବଳବନ୍ତା
ତ୍ରଇଲୋକ୍ୟେ ଯେକ ହୋଇଲେ ନାହିଂ ତାକୁ ଜିଣାନ୍ତା ।୨୪୭
ଭୂଅ ଜୟେ କରିଲା ସେ ଦଶଦ୍ୱାର ଭେଦି
ତିନିସାଗର ଯୋଦ୍ଧା ବୀର ପକାଇଲା ଛେଦି ।୨୪୮
ଦଶ ସହସ୍ର ରାଜା ସାତ ମର୍ଭୁତ ରଥୀ
ତେର ସହସ୍ର ପାରିଦଣ୍ଡ ନବକ୍ଷଉଣୀ ପାଦାନ୍ତି ।୨୪୯
ଯେତେକ ସନ୍ୟ ନାଶକଲା ଚକ୍ରଭୂଯେ
ଆମାନୁଷ କୃତ୍ୟକଲା ଯେ ବାଳୁତ ତନୟେ ।୨୫୦
ଅମାପତ ସନ୍ୟ ହତ ହେବାର ସେ ଦେଖି
ଅଶସ୍ତମା ଓଗାଳିଲେ ଗଉରୋବ ଉପେକ୍ଷି ।୨୫୨
ଭାରଦ୍ୱାଦଶଂକର ନାତି ସମରେ ବଳବନ୍ତା
ମହାଭାରଥ ଯୁଦ୍ଧେ ତାହା ଛାମୁରେ କେ ମିଳନ୍ତା ।୨୫୩
ବିନ୍ଧଇ ଶର ଯେ କୋପରେ ଆର୍ଜୁନି
କିଞ୍ଚିତ ଶରେ ତାହା ଅଶସ୍ତମା ହାଣି ।୨୫୪
ପୁଣ ପଞ୍ଚତିରିଶ ପୂରୋଇଣ ବାଣ
ସଦ୍ୱରେ ବିନ୍ଧିଲା ଯେ ସୋହୋଦ୍ରାନନ୍ଦନ ।୨୫୫

ନାରାଜ ଆସନ୍ତେ ଦେଖଇ ତା ଦ୍ରୋଣି
ପ୍ରତିଶର କରି ବେଗେ ତାହା ହାଣି ।୨୫୬
ଦୁହେଁ ସମର ଯେ ନୋହନ୍ତି କେହି ଓଛ
ଅଭିମନ୍ୟୁର ପିତା ଯେ ଅଟନ୍ତି ବିବଛ ।୨୫୭
ଅଶତ୍ତମାର ପିତା ଅଟନ୍ତି ଦ୍ରୋଣଗୁରୁ
ତାହାଂକର ଛାମୁରେ କେ ରହିଲା ଧନୁ ଧରୁ ।୨୫୮
ଅସଂଖ୍ୟ ଶର ଯେ ବିନ୍ଧନ୍ତି ବେନି ରଥୀ
ଶର ଗହଳେ ନ ଦିଶଇ ଗଗନ ପୃଥୀ ।୨୫୯
ଅଶତ୍ତମା ନାରାଜ ପୂରୋଇଣ ବିନ୍ଧି
ଅଭିମନ୍ୟୁ ତାହା କିଞ୍ଚିତ ଶରେ ଛେଦି ।୨୬୦
ଯେମନ୍ତ ସମୟେ ବାଣ ବିନ୍ଧିଲା ଅଶତ୍ତମା
ତୋଷେ ଗଉରୀବାଣ ଦେଇଥିଲେ ଉମା ।୨୬୧
ମହାକାଳ ବାଣେ  ତାହା ଛେଦିଲା ଅଭିମନୁ
କୋପେ ଅଶତ୍ତମା ବିନ୍ଧିଲା ନାରାଜ ଅଭିମନୁ ।୨୬୨
ନାରାଜ ଆସନ୍ତେ ଦେଖିଲା ବାସବିର ସୁତ
ମହାଘୋର ବାଣେ ତାହା ଛେଦିଲା ତୁରିତ ।୨୬୩
ସମରେ ପଡ଼ିତାଳ ହୋଇଲେ ବାଣ ବେନି
ନିର୍ଧୂମ ଅଗ୍ନି ଜାଣି ଉଠିଲା ବହନି ।୨୬୪
ପୁଣ ବାଣ ବିନ୍ଧିଣ ସେ ଦ୍ରୋଣର ସନ୍ତତି
ବିଂଝମାଳ ଶର ସତୁରି ପେଷନ୍ତି ।୨୬୫
ପଡନ୍ତି ପଥରେ ସମରେ ଦୁର୍ମୁଖ
ଦେଖିଣ ଅଭିମନ୍ୟୁ ସମରେ ବିମୁଖ ।୨୬୬
ବଜ୍ରମୁନା ଶର ପେଷିଲା ଅଭିମନୁ
ବିଂଝମାଳ ଶର ଛେଦିଲା ସୋହୋଦ୍ରାର ତନୁ ।୨୬୭
ଦେଖିଣ ଅଶତ୍ତମା ପେଷଇ ଅନ୍ଧତ୍‌କାର ବାଣ
ଦିନକର ଶରେ ତାହା ଛେଦିଲା କୁମାର ପଞ୍ଚାଣ ।୨୬୮
କୋପେଣ ଅଶତ୍ତମା ଅଗ୍ନିଶର ପେଷି
ମେହାଶରେ ତାହା ଅଭିମନୁ ନାଶି ।୨୬୯
ଯେମନ୍ତେଣ ସମର କରନ୍ତେଣ ବେନିବଳ
ଆଦିତ୍ୟ ତେଜ ନ ଦିଶଇ ଗଗନ ମଣ୍ଡଳ ।୨୭୦
ଯେମନ୍ତେଣ ସମର କରନ୍ତେ ବେନିଘଡ଼ି
ପୃଥୀ ପୂରିଣ ଶୁଭଇ କାଣ୍ଡଂକର ରଡ଼ି ।୨୭୧
ମହାଅନଳ ବାଣ ବିନ୍ଧିଲେକ ଦ୍ରୋଣି
ମେଘାଶରେ ତାହା ନିବାରଣ କଲା କୁମରମଣି ।୨୭୩

ନାଗପାଶ ନାରାଜ ବସାଇଲା ଧନୁ
କୋପେଣ ବିନ୍ଧିଲା ସେ ଦ୍ରୋଣଂକର ତନୁ ।୨୭୪
ଗରୁଡ଼ାଶର ବିନ୍ଧିଲା ଅର୍ଜୁନ ସନ୍ତତି
ଦେଖିଣ ସର୍ପେ ଯେ ସତ୍ୱରେ ପଳାବନ୍ତି ।୨୭୫
ଯେସନେକ ସମର ଲାଗିଲା ନିରନ୍ତର
ପ୍ରତିକଛ ଶରମାନ ବିନ୍ଧିଲେ ଅପାର ।୨୭୬
ଆଧାନ ସଂଧାନ ମଣିତ ନ ଯାଇ
ସମରେ ବେନିବୀରେ ସମାନ ଅଟଇ ।୨୭୭
ଅଶତ୍ତମା ପ୍ରଶଂସା କରନ୍ତି ସାଧୁରେ ଅଭିମନ୍ୟୁ
ବାଳେକ ହୋଇ ତୁ ଶହସ୍ର ବଡ଼ ଚିହ୍ନୁ ।୨୭୮
ତୁହି ଧନୁର୍ଦ୍ଧର ଭାରତ ଯୁଦ୍ଧରେ
ଆନ ରଥୀ କେ ମିଳିବ ତୋହୋର ଛାମୁରେ ।୨୭୯
ବହୁତ ସାଧନା ତୋର ଅଛି ବାଳବନ୍ଛି
ଯେଡ଼େ ଧନୁର୍ଦ୍ଧର ତୁ ଶଂକା ନାହିଂ କିଛି ।୨୮୦
ଜଦ୍ୟରଥ, କର୍ଣ୍ଣ, ଦ୍ରୋଣ, କୃପ, ଶଲ୍ୟ
ଭୂରିସର୍ବା ଯେମାନେ ଯେ ଅଟନ୍ତି ମହାମଲ୍ଲ ।୨୮୧
ପଞ୍ଚାଶ ସହସ୍ର ରାଜା ପାରିଦଣ୍ଡମାନ
ଯେକାହୋଇ ହରିଲୁ ତୁ ସର୍ବଦର୍ପଗୁଣ ।୨୮୨
ତୁହୋ ମହାବୀର ସୋହୋଡ଼ ବଳବନ୍ତା
ଛେଲ ଚକ୍ର ନାରାଜ କୋନ୍ତ ଗୁରୁଯନ୍ତା ।୨୮୩
ଯେ ଯେ କଉରୋବବଳ ଅଟନ୍ତି ସାହେର
ଯେହାକୁ ମନ୍ଥନ କଲୁ ହୋଇ ତୁ ମନ୍ଦର ।୨୮୪
ଯେ ଯେ କଉରୋବେ ଅଟନ୍ତି ଶ୍ରୀକାଳ
ଯେଥକୁ ସିଂଘ ତୁମ୍ଭେ ବିବଛର ବାଳ ।୨୮୫
ତୋହୋର ପରାହୋଇ ପଞ୍ଚରଥୀ ଥିଲେ
କଉରୋବ ବଳ ଆଜ ଯାନ୍ତେ କିରେ ଭଲେ ।୨୮୬
ଅଭିମନ୍ୟୁ ବୋଇଲେ ଯେବେ ସମର କର ତାତ
ଆଜ କଉରୋବ ବଳ ମୁଂ କରିବି ନିପାତ ।୨୮୭
ଯେତେ ବୋଲି ଅହିବ୍ରତେ ଶର ଯେ ବରଷି
ଅଶତ୍ତମାର ରଥ ଘୋଟିଲାକ ଆସି ।୨୮୮
ମହାବଳବନ୍ତା ସେ କଇଛା ଜଗଜେଠୀ
ଅଶତ୍ତମା ପଞ୍ଚଦଶ ବାଣେ ତାହା ସବୁ କାଟି ।୨୮୯
ପୁଣ କୋପେଣ ବିନ୍ଧିଲା ଯେ ବାସବର ନାତି
ଅଶତ୍ତମା ଉପରକୁ ଅମୋହ ଶକତି ।୨୯୦

ଅଶ୍ୱତ୍ଥମା ଯେ ତାହା ଦେଖିଲାକ ଧୂରୁ
ସପଟ ସୂର୍ଯ୍ୟ ଚକ୍ର କାଢିଲା ଦ୍ରୋଣରୁ ।୨୯୧
ଭୟେ ପଳାଇଗଲେ କଉରୋବ ବଳ ସଇନି
ଅଶ୍ୱତ୍ଥମା ରଖବୋଲି ଶୁଭିଲା ମୁଖଧ୍ୱନି ।୨୯୨
ପଞ୍ଚଯୋଜନ ପରିଯନ୍ତେ ଥାଠ ପଳାଇଲେ
ଯେକା ତହିଁ ଧବଳୀରଥ ରହିଲା ସେ ଭଲେ ।୨୯୩
ଶୂନ୍ୟରେ ବୃନ୍ଦାରକେ ପାଇଲେକ ବଥା
ବଡ଼ାଇ ଦୁରାପଦ ଯେ ଅଶ୍ୱତ୍ଥମା ଅଭିମନ୍ୟୁ ବେନି
ରଥୀର ଯୁଦ୍ଧ କଥା ।୨୯୪
ଅମୋହ ଶକତି ଅଭିମନ୍ୟୁ ବିନ୍ଧିଲାକ ପୁଣ
ବେନି ଭେଟ ହୁଅନ୍ତେ ବାଜିଲେ ରଣଝଣ ।୨୯୫
ସମର କରିଣ ସେ ଦୁହେଁ ହେଲେ ଭଂଗ
କ୍ଷତ୍ରୀବୃରେ ସମ୍ପୂର୍ଣ୍ଣ ସେ ଅଟନ୍ତି ବେନି ଅଂଗ ।୨୯୬
ବେଳେ ବେଳେ ସେ ସମର କରନ୍ତି ରୋଷବହି
ଦିଗପାଳମାନେ ଶୂନ୍ୟେ ନୁଆରିଲେ ରହି ।୨୯୭
ବଦନ୍ତି ଅଗସ୍ତି ଶୁଣ ବଇବସ୍ୱତ ମନୁ ରାଜା
ସମର ଦେଖି ଦ୍ରିଯୋଧନ ପାଇଲା ବଡ଼ ଲଜ୍ଜା ।୨୯୮
ଶୁଣ ହୋ ଚଇତନ ଅଭିମନ୍ୟୁର ଯୁଦ୍ଧ କଥା
ଦୁଇ ପ୍ରହର ଯେ ଯୁଦ୍ଧର ବେବସ୍ଥା ।୨୯୯
ସଦାନନ୍ଦ ଶସ୍ତ୍ର ଯେ ବଳରାମେ ଦେଇଥିଲେ
ସେ ଶହସ୍ର ଅଭିମନ୍ୟୁ ମନେ ସୁମରିଲେ ।୨୩୦
ଧାନେ କରିଣ ଯେ ମନେ ସୁମରନ୍ତେ
ହାଥେ ମିଳିଲା ସେ ଆସି ଶୂନ୍ୟପଥେ ।୨୩୧
ଅଭିମନ୍ୟୁ ସେ ଶରକୁ ଅନେକ ତିଆରି
ଅଶସ୍ତମାର ରଥ ସାରଥି ଆସ ବେଗେ ମାରି ।୨୩୨
ପବନରୁ ବେଗେ ସେ ଶର ଚଳିଗଲା
ଅଶସ୍ତମାର ରଥ ଉପରେ ପଡ଼ିଲା ।୨୩୩
ପତତ୍ରେଣ ବାଣ ଅଶସ୍ତମା ରଥ ଭାଙ୍ଗି
ପୁଣହିଁ ଅଶସ୍ତମା ଧାଇଂଲା ଗଜଗାଜି ।୨୩୪
ମହାମତ୍ତ ନାଗେକ ଆରୋହିଲା ବେଗେ
ତହୁଁ ମିଳିଲା ଅଶସ୍ତମା ଅଭିମନ୍ୟୁର ଆଗେ ।୨୩୫
ବୋଇଲନ୍ତି ବଚନ-ଯେ ଦ୍ରୋଣଂକର ସୁତ
ସମ୍ପାଇରେ ଅଭିମନ୍ୟୁ ତୁ ଆମ୍ଭର ଯେ ପୁତ୍ର ।୨୩୬
ବଜ୍ରମୁନା ତୀଖ ନାରାଚ ପୂରୋଇ
ଅଭିମନ୍ୟୁ ଉପରକୁ ମାଇଲା ବେଗେ ଧାଇଂ ।୨୩୭
ଦେଖିଣ ଆନନ୍ଦ ଯେ ସୋହୋଦ୍ରା ନନ୍ଦନ
ପ୍ରଚଣ୍ଡ ବଜ୍ରବାଣେ ତାହା କଲେକ ଛେଦନ ।୨୩୮
ଯେସନେକ ଯୁଦ୍ଧ ଯେ କରନ୍ତେ ବେନିବୀର
ଆକାଶରେ ଅଦୃଶ୍ୟ ହୋଇଲେ କରତାର ।୨୩୯
କୋପେଣ ବ୍ରହ୍ମଶର ଅଭିମନ୍ୟୁ ପେଷି
ଅଶସ୍ତମା ଅଂଗେ ପଡି ହାଥୀ ଯେ ବିନାଶି ।୨୪୦
ଘାୟେଣ ମୋହଗତ ଦ୍ରୋଣଂକର ସୁତ
ଅଶସ୍ତମା ଶରୀର ଯେ ହୋଇଲା ଅଚେତ ।୨୪୧
କେତନ ସାରଥି ଧବଳୀ ରଥ ଯେ ବାହିଲା
ଭୂଅକୁ ଭେଦିଣ ଯେ ଭିତରେ ପଶିଲା ।୨୪୨
ଦେଖଇ ଅଭିମନ୍ୟୁ ଭୂଅର ବେବସ୍ଥା
ହାଥୀ ରଥୀ ଅଶ୍ୱ କେ କରିବ ଗଣିତା ।୨୪୩
ଅନେକ ଦେଶର ଅଛନ୍ତି ସେ ବହୁତ ଯେ ରାଜା
ଅନେକ ରାଜା ତହିଁ ଯେ କଲେଣି ପ୍ରାଣତ୍ୟଜା ।୨୪୪
ଅବିଛନ୍ନେ ବାଣ ଯେ ମାରଇ ଅଭିମନ୍ୟୁ
ରଣେ ଛେଦିଲା ସେ ଅନେକ ଛତ୍ରୀଂକର ଧନୁ ।୨୪୫
ଅନେକ ରଥୀ ଯେ ପାଦାନ୍ତି କ୍ଷୟେକଲା
ଅସଂଖ୍ୟ ସଇନି ଯେ କଳନା ନ ଗଲା ।୨୪୬
ଅସଂଖ୍ୟ ସଇନି ଯେ କଲେକ ନାରଖାର
ମାନଗୋବିନ୍ଦ ବୋଇଲା ହୋ ଉପେକ୍ଷ ସମର ।୨୪୭
ଜଦ୍ୟରଥ, କର୍ଣ୍ଣ, ଶଲ୍ୟ କୃପ ଦ୍ରୋଣ
ଭୂରିସର୍ବା, ବାଲହିକ ପଞ୍ଚତିରିଶ ସହସ୍ର ନୃପରାଣ ।୨୪୮
ଯେତେକ ଯୋଦ୍ଧା କି ପଡ଼ିଲେ ମୋହୋର ରଣେ
ନୋହିଲେ କି ଭୂଅଭେଦି ଅଇଲା ଯେକା ଜଣେ ।୨୪୯
ମହାବାତେ ଯେସନେ ଲୋଟନ୍ତି ରମ୍ଭାବନ
ପାଞ୍ଚଯୋଜନ ମାଡି ପଡ଼ିଲେ ସଇନ ।୨୫୦
ଦେଖିଣ ବିସରଇ ସେ ମାନଗୋବିନ୍ଦ ରାୟେ
ମୋତେ ବେଢ଼ିଲା ଆସି ଲଂକା ଗଡର ବାୟେ ।୨୫୧
ସୈନ୍ୟବଳ ଚାହିଁ ରାଜା ମାନଗୋବିନ୍ଦ
ଭୋ ଦଇବ ବୋଲିକରି କପାଳେ କର ଧ୍ୱନ୍ଦ ।୨୫୨
କୃଷ୍ଣ ଅର୍ଜୁନ ନାହିଁ ଭୀମ ନକୁଳ ସହଦେବ
ଯେକା ବାଳୁତ କୃତ ମୋତେ ବଡ଼ାଇ ଅସମ୍ଭବ ।୨୫୩
କହୁଁ କହୁଁ ମହାକ୍ରୋଧ ବସିଲା କୁରୁରାଣ
ମାରରେ ବେଢ଼ିଯେ କୁମାର ପଞ୍ଚାଣ ।୨୫୪

ଧର୍ମ ଅଧର୍ମକୁ ନ ବିଚାରିଲେ କିଛି
ଥାଠଯାକ ନିମନ୍ତିଲା କିସ ଧର୍ମ ଅଛି ।୧୨୫୫
ରାଜାରମ୍‌ଖୁଂ ଶୁଣିଲେ ଯହୁଁ ଅନିର୍ଯ୍ୟାପ ବାଣୀ
ତିନିଲକ୍ଷ ଯୋଦ୍ଧା କୁନ୍ତ ପ୍ରହାର କଲେ ଆଣି ।୧୨୫୬
ଦୁର୍ଜୟ ଦୁର୍ମନ ଧୃଶାସନର ପଛକତି
ରଥେ ପ୍ରହାର କଲେ କୁନ୍ତ ପରିଘ ଶକତି ।୧୨୫୭
ଅଳୟୁଷ ଅଳାୟୁଧ ଦେଖିଲେ ବେନିରାଣ
ମାୟାଶର ଭେଦି ତାର ଛେଦିଲେ ବେନିଦ୍ରୋଣ ।୧୨୫୮
ଧାମଗ ଶର ପୂରୋଇ ସେ ମନ୍ତ୍ରୀ ଯେ ଶଂକୁନି
ଧନୁ ନାରାଜ ଗୁଣ ଛେଦିଲେ ବେଗେ ତିନି ।୧୨୫୯
ନିଶହସ୍ର ହୋଇଲା ଯହୁଁ ସୋହୋଦ୍ରାର ସୁତ
ଖଡଗ ଫଡି ଧରି ସେ ରଥୁଂ ଡେଇଂ ପଡ଼ିଲା ତୁରିତ ।୧୨୬୦
ବିକ୍ରମ ସିଂଘ ଜାଣି ସେ କରଇ ପାଦଗତି
ଅସିପତ୍ର ଘେନିଣ ଛେଦିଲା ଶତେ ଶତେ ରଥୀ ।୧୨୬୧
କପଟକୂଟକରି ତାକୁ ବେଢ଼ିଲେ କୁରୁରାୟେ
ଅଧର୍ମ ଯୁଦ୍ଧକରି ବେଢ଼ିଲେ ବାଳୁତ ତନୟେ ।୧୨୬୨
ଖଡ଼ଗ କୁନ୍ତ କରବାଳ ପରିଘ ଗୁରୁଜ ଜାଠି
ପହଡନ୍ତି ରାଉତେ ଯେ ଯାବଡେଣ ଉଠି ।୧୨୬୩
ଖଡଗ ଫଳା ଘେନିଣ ସେ ସାରଥି ରଥୀବେନି
ପାଦଗତି କରି ଯୁଦ୍ଧେ ପାଡିଲେ ରାଉତ ଶତ ତିନି ।୧୨୬୪
ପାଞ୍ଚଲକ୍ଷ ଯୋଦ୍ଧା ଯେକମୁଖ ହୋଇ
ବେଢ଼ିଛନ୍ତି ନିରନ୍ତରେ ନ ଦିଶଇ ରଣଭୂଇଂ ।୧୨୬୫
ଆହୋ ଗୁରୁଜ ବୁଲାଇ ଯେ ପିଟିଲା ଦୁର୍ମନୁ
ପିଟନ୍ତେ ଫଳା ଯେ ଆଡିଲା କୁମାର ଅଭିମନ୍ୟୁ ।୧୨୬୬
ଗୁରୁଜ ପଡିଣ ଯେ ହୋଇଲା ମସିଗୁଣ୍ଡା
ଦକ୍ଷିଣ କରେ ଧରିଅଛି ନବନିଶି ଖଣ୍ଡା ।୧୨୬୭
ବୁଲାଇ ପିଟିଲା ସେ ଦୁର୍ମନ ଉପରେ
ଅସିପତ୍ର ଭଗ୍ନକଲା ପଡି ଗୁରୁଜ ଉପରେ ।୧୨୬୮
କଷ୍ଟୋର ଯୁଦ୍ଧ ଦେଖିକରି ଛାଡିଲା ସାରଥି
ସମରେ ଶୂନ୍ୟ ହାଥ ହୋଇଲା ପଣ୍ଡୁରାଜାର ନାତି ।୧୨୭୦
ବେନିମୁଖ ଉଞ୍ଚାଇଣ କଲା ମାଲ ବିନ୍ଧାଣ
ପଛକତି ଧାଇଂଲା ସେ ଧୃଶାସନ ରାଣ ।୧୨୭୧
ଆକ୍ରୋଷିଣ ଗଦା ନେଇ ପିଟିଲା ଶିରେଣ
ଅସାଷ୍ଟମ ହୋଇଲା ସେ କୁମାର ପଞ୍ଚାଣ ।୧୨୭୨

ପୁଣ ଆରେକ ବେଳ ଗଦା ପ୍ରହାର କଲା ତୋଳି
ଅସ୍ଥି ଚର୍ମ ମାୟେଂସ ସବୁ ହୋଇଲାକ ଧୂଳି ।୧୨୭୩
ଜୟଶଙ୍ଖ ଶବଦ ଯେ କଲେ କୁରୁବଳ
ରଣ ଜୟ କରି ବାହୁଡିଲା ସେ ଗାନ୍ଧାରୀ ଦୁଲାଳ ।୧୨୭୪
ଶୂନ୍ୟେ ଥାଇ ସମର ଦେଖୁଥିଲେ ବୃନ୍ଦାରକେ
ଧିକ ଧିକ ମାନଗୋବିନ୍ଦ ବୋଲି ବୋଇଲେ
ଦେବଲୋକେ ।୧୨୭୫
ଇନ୍ଦ୍ରେ ଆଗ୍ୟାଂ ଦିଲେ ଯେ ମାତଳିକି ରାଇ
ଆଦିକି ଆଣ ଯା ହୋ ପୁଷ୍ପେକ ରଥରେ ବସାଇ ।୧୨୭୬
ଚଳଇ ସାରଥି ଯେ ଦେବଯାନ ଘେନି
ସୁସ୍ୱର ଶବଦେ ବାଜେ ଦୁନ୍ଦୁଭି ଶଙ୍ଖଧ୍ୱନି ।୧୨୭୭
ଉଭାରିଲେ ପାଟଛତ୍ର କଣୟ ପୁଷ୍ପବୃଷ୍ଟି
ଅମର ଆସ୍ଥାନେ ଯାଇ ସୁରେଶ୍ୱରକଇଂ ଭେଟି ।୧୨୭୮
ଅନେକ ସାନନ୍ଦ ହୋଇଲେ ଦେବ ସୁରପତି
କୋଳେ ବସାଇ ଅନେକ ଉଛବ କରନ୍ତି ।୧୨୭୯
ଇନ୍ଦ୍ରେ ବୋଇଲେ ତୁହି ଯେ ଅମରପୁରକୁ ଯେକାଜଣେ
ଦିବ୍ୟ ଅବତାର ହୋଇ ଯାଅ ଯା କବନ୍ଧ ମାରଣେ ।୧୨୮୦
କବନ୍ଧ ନାଶକଲା ମୋର ଯେହି ଅମର ଭୁବନ
ତୋର ହାଥେ ସେ ନିଚେଂ ଅସୁର ହୋଇବ ନିଧନ ।୧୨୮୧
ଇନ୍ଦ୍ର ବୋଇଲେ ମହୀଭାର ଉଶ୍ୱାସ କଲୁ ବସୁଧା ନିମନ୍ତେ
କବନ୍ଧ ମାର ଯେବେ ମମ କାର୍ଯ୍ୟଅର୍ଥେ ।୧୨୮୨
ଆଦି ବୋଇଲା ମୋର କେତନ ସାରଥି ରଥ ଯେ ଧବଳୀ
ଯେହାନ୍ତ ଆଣି ମୋତେ ଦେବାକ ଆଖଣ୍ଡଳି ।୧୨୮୩
ଶତେବାର ଅବତାର ମୁହିଂ ମହୀଭାର ନିମନ୍ତେ
କନ୍ହା ଅବତାରେ କୃଷ୍ଣ ଘେନିଗଲେ ମୋତେ ।୧୨୮୪
ତ୍ରିଜୀବୀ ସାରଥି ମୋର ରଥ ହୟେ ଚାରି
ତେବେ ସେ ଦାନବବଳ ମୁଂ ପାରଇ ସଂହାରି ।୧୨୮୫
ଇନ୍ଦ୍ର ବୋଇଲେ କେତନ ଯିବାନା ରଥ ଘେନି
ବାରତା କହିବ ଯାଇଂ କୃଷ୍ଣ ଫାଲଗୁନି ।୧୨୮୬
ସନ୍ଦେଶ କହିଣ ସେ ଆସିବ ଲେଉଟି
ତୋତେ ଯାଇଣ ସେ ଆକାଶରେ ଭେଟି ।୧୨୮୭
ଯେହିକ୍ଷଣି ଆସିଣ ମିଳିବ ତୋର ଆଗ
ସଜହୋଇ ଯାଇଂ ତୁ ଅସୁର ମାର ବେଗ ।୧୨୮୮
ଆଦି ବୋଇଲେ ସେ ରଥ ସାରଥି ଅଇଲେ କରିବି ସିନା ଯୁଦ୍ଧ
ଯେକା ନିମିଷକେ ମଧେ ମାରିବି ଉଦେକବନ୍ଧ ।୧୨୮୯

ଯହୁଂ ସେ ପ୍ରତଗ୍ୟା କଲା ବାଳୁତ ତନୟେ
ଅମର ସୁରନାଥ ହୋଇଲା ନିର୍ଭୟେ ।୨୯୦
ଶୁଣ ହୋ ଚଇତନ ମନୁୟେ ପରକାଶି
ଆଦିତ୍ୟ ପ୍ରବେଶ ଆସି ପଛିମର ଦିଶି ।୨୯୧
ଶୂନ୍ୟରଥ ଘେନିଣ ଚଳଇ ସାରଥି
ବିଜୟେ କେତନ ଯାଇ ଚାରି ଭାଇଂକରକତି ।୨୯୨
ଯୁଧେଷ୍ଟି ଭୀମ ନକୁଳ ମନ୍ତ୍ରୀ ସହଦେବ
ସାରଥିଂକି ପଚାରନ୍ତି ସମର ପ୍ରସ୍ତାବ ।୨୯୩
ଆତ୍ମା ବିସର୍ଜନ ସେ ସାରଥି ମୁଖ ଚାହିଂ
ତୁ ଯେକା ଅଇଲୁ ବାବୁ ଆମ୍ଭର ଅଭିମନ୍ୟୁ କାହିଂ ।୨୯୪
ସାରଥି ବୋଇଲେ ଦେବ ଶୁଣିମା ଧର୍ମରାୟେ
ସମରେ ପଡ଼ିଲା ତୋର ବାଳୁତ ତନୟେ ।୨୯୫
ଶୋକେଶ ଗଦଗଦ ହୋଇକରି ନୁଆରନ୍ତି ପୁଚ୍ଛା
ଶୁଣି ଚାରିପାଣ୍ଡବେ ଯେ ପଡ଼ିଗଲେ ମୂର୍ଚ୍ଛା ।୨୯୬
ସହଦେବ ବୋଇଲେ ହୋ ଶୁଣିମା ମହୀପତ୍ୟେ
କ୍ରୋଧ ସଂହର ଦେବ ଯିବା ଇନ୍ଦ୍ର ପ୍ରସ୍ତେ ।୨୯୭
ଶୋକଭରେ ଉଠିଲେ ଯେ ପାଣ୍ଡବ ଚାରିଭାଇ
କ୍ରୋଧ ଅଶକତ ସେ ନୁଆରନ୍ତି ଯାଇ ।୨୯୮
ଅନେକ ଗୁଣ ସୁମରି ଯେ ବାଉନିଣ କାନ୍ଦି
ଛତ୍ରୀବୃନ୍ଦ ଛାଡିଣ କେଶବାସ ଯେ ନ ବାନ୍ଧି ।୨୯୯

**

## ୯୧. ସଞ୍ଜୟ ଧୃତରାଷ୍ଟ୍ରଙ୍କର କଥୋପକଥନ ଓ ଅର୍ଜ୍ଜୁନର ଅଶୁଭ ଦର୍ଶନ

ଆହୋ ତେଣେ ଜୟଶଂଖ ଧ୍ୱନି କରିଣ ହସ୍ତିନା ପଶନ୍ତି କୁରୁଥାଠ
ସଞ୍ଜୟେ ହକାରିଣ ପୁଚ୍ଛଇ ଧତିରାଷ୍ଟ୍ର ।୧
ଆହୋ ବଡ଼ାଇ ଉତ୍ସବତ ଆମ୍ଭର ସଇନି
ଜୟେଶଂଖ ମଣ୍ଡଳ ତ ଶୁଭଇ ଘୋର ଧ୍ୱନି ।୨
ଶତୃଜିତ ପାତାଙ୍ଗ ଉଡଇ ସବୁଂକରି ରଥର ଉପରେ
ଭୀମ ପଡ଼ିଲା କି ଆହୋ ଆଜର ସମରେ ।୩
ତେଣୁକରି ଉତ୍ସବ ସେ ହୋଇକିନା ଆମ୍ଭର ଥାଠ
ଭୀମ କ୍ଷୟେଗଲେ ନିଚଇ ମୋହୋର ପଞ୍ଚୁରାଷ୍ଟ ।୪
ଜଦ୍ୟରଥ ଯେ ସେବା କରିଥିଲା ଦେବ କାଶୀ
ଅର୍ଜ୍ଜୁନ ନ ଥିଲେ ଚାରିପାଣ୍ଡବନ୍ତ ପାରଇ ସେ ନାଶି ।୫
ଜାଳନ୍ଧର ଭୂଅକୁ ହରି ଘେନିଗଲେ ଅର୍ଜ୍ଜୁନକୁ
ନିଚୟେ ଜଦ୍ୟରଥ ନାଶ କଲାଟି ଚାରି ପାଣ୍ଡବଂକୁ ।୬
ଜଦ୍ୟରଥ ନାୟେଂ ଶୁଭୁଛିକି ଜୟେ ଜୟେ ବାଣୀ
ସାଧୁ ପୁଣ୍ୟବନ୍ତୀ ମୋହୋର ଦୁଃଶିଳା ଦୁଲଣୀ ।୭
ଯେମନ୍ତ ଶୁଭଯୋଗେ ଜଦ୍ୟରଥକଇଂ ମୁଂ ଦିଲାଇଂ କୁମାରୀ
କାଳେ ମୋତେ ହୋଇଲା ସେ ପରମ ହିତକାରୀ ।୮
ସଞ୍ଜୟେ ବୋଇଲେ ଶୁଣ ହୋ ବିଚିତ୍ରବୀର୍ଯ୍ୟର ସନ୍ତତି
ଚକ୍ରଭୂଅ ଭିଆଇଲେ ସେ ଦ୍ରୋଣ ସେନାପତି ।୯
ଅର୍ଜ୍ଜୁନକୁ ଘେନି ହରି ଗଲେ ଭୂଅ ଜାଳନ୍ଧରେ
ଅଭିମନ୍ୟୁ ସେନାପତି ହୋଇଲା ଆଜର ସମରେ ।୧୦
ପ୍ରଥମ ଦୁଆରେ ଜିଣିଲା ସେ ଗୁରୁଦ୍ରୋଣଂକୁ
ଚାରିପାଣ୍ଡବେ ଅଭିମନ୍ୟୁ ପଶିଲେ ହୋ ଭିତରକୁ ।୧୧
ଦୁଜ ଦୁଆରେ ସିନ୍ଧୁରାଜା ଜଦ୍ୟରଥ ଥିଲା
ଇଶ୍ୱର ବର ପ୍ରସାଦେ ସେ ଚାରି ପାଣ୍ଡବନ୍ତ ଓଗାଳିଲା ।୧୨
ଦୁଜ ଦ୍ୱାର ଜିଣି ଯେକା ଗଲା ଅଭିମନ୍ୟୁ
ରଥ ନାମ ଧବଳୀ ସାରଥି ନାମ କେତନୁ ।୧୩
ଶଙ୍ଖଶ୍ୱେତପଦ୍ମ ମହାପଦ୍ମ ହୟେ ଚାରି
କର୍ଣ୍ଣର ତୁଳେ ହୋଇଲା ଅନେକ ଦ୍ୱନ୍ଦକାରୀ ।୧୪
କର୍ଣ୍ଣକଇଂ ଜିଣିଲା ସେ ତିଜଦ୍ୱାରେ ପଶି
ଶଲ୍ୟଂକୁ ଜିଣିଲା ସେ ଚତୁର୍ଥଦ୍ୱାରେ ଆସି ।୧୫
ଭୂରିସର୍ବାଂକୁ ଜିଣିଲା ପଞ୍ଚମ ଦୁଆରେ
କୃପଂକୁ ଷଷ୍ଟେ ଜିଣିଲା ବାଳୁତ କୁମରେ ।୧୬
ସପ୍ତମେ ଅଶତ୍ତମା ଜିଣିଲାକ ତମେ
ଅଷ୍ଟମେ ସୋମଦତ୍ତ ଜିଣିଲା ସାଂଗ୍ରାମେ ।୧୭
ନବମେ କଉରୋବନ୍ତ ଜିଣିଲା କୁମର
ଅନେକ ହାଥୀ ରଥୀ ପଡ଼ିଲେ ସମରେ ।୧୮
ନବମଦ୍ୱାର ଜିଣି ଚକ୍ରଭୂଅ ଗଲା ଭେଦି
ନାରାଜେ କୋଟି କୋଟି ପାଦାନ୍ତି ଯୋଦ୍ଧା ଛେଦି ।୧୯
ଦଶସହସ୍ର ରାଜା ଅଶି ସହସ୍ର ରଥୀ
ଗଜଅଶ୍ୱ ଯୋଦ୍ଧା ତିନିସାଗର ପାଞ୍ଚପଦ୍ମ ପାଦାନ୍ତି ।୨୦
ଛତ୍ତାର ବାଦ୍ୟକାର ପଡ଼ିଲେ ପାଞ୍ଚକୋଟି
ଯେକା ଯେତେକ ଧଂସିଲା ସେ ବାଳୁତ ପୁଅଗୋଟି ।୨୧
ଜିଣିତ ନୁଆରିଲେ ସେ ଯୁଗତ ସମରେ
କପଟ ଯୁଦ୍ଧକରି ବେଢ଼ି ମାଇଲେ ବାଳୁତ କୁମରେ ।୨୨

ସମସ୍ତେ ବେଢ଼ି ଭୀମାକୁ ପାରନ୍ତେ ଯେବେ ମାରି
ନିଚୟେ ପଞ୍ଚୁରାଜ୍ୟେ ହୋ ହୋଅନ୍ତାନା ଅଧିକାରୀ ।୨୩
ସଞ୍ଜୟେ ବୋଇଲା ରାଜା ଶୁଣିବା ଧୃତିରାଷ୍ଟ
ଅଭିମନ୍ୟୁ ନିଧନେ ତୋତେ ହୋଇବ ପୁତ୍ରକଷ୍ଟ ।୨୪
ଅନେକବାର ଜିଣଇଂ ଅର୍ଜୁନ ତୋହୋର ପୁତ୍ରଂକୁ
ପ୍ରାଣେ ନ ମାରଇ ଯେକା ସେ ଉପ୍ରୋଧ କରଇ ତୁମ୍ଭଂକୁ ।୨୫
ମୋହଶରେ ବିନ୍ଧଇ ଯେ ପ୍ରାଣେ ନ ମାରଇ ପାଥ
ବୋଲଇ ଯେହାଂକର ମଲେ ଅନ୍ଧ ପିତାଗୋଟି ହୋଇବ
ଅନାଥ ।୨୬
ଯେତେକ ଉପ୍ରୋଧ ତୋହୋର ପୁଅଂକୁ ଥିଲା ଧୃତିରାଷ୍ଟ
ଯେବେ ଦେଖିବୁନା ହୋ ତୋହୋର ପୁତ୍ରକଷ୍ଟ ।୨୭
ଯେବେ ମୋହ ଛାଡିବ ପାଥ ପୁତ୍ରର ନିଧନେ
ଆମ୍ଭୁଂ ଅପୁତ୍ରିକ ହୋଇଲୁଟି ଜାଣିଥା ତୋର ମନେ ।୨୮
ସଞ୍ଜୟେ ବୋଇଲା ମୋହୋର ବିଚାରକୁ ନ ଯୋଗାଇ ଯେ ଉତ୍ସବ
ମୋତେ ଦିଶୁଅଛି ସବୁ ଯେ ବିଚ୍ଛେଦ ସ୍ୱଭାବ ।୨୯
ସଞ୍ଜୟେ ମୁଖରୁ ଶୁଣି ନିରାପକ୍ଷ ବାରତ
ବାଳୁତ ପୁତ୍ରକୁ ମାରି ମୋର ପୋୟେ ମନରେ
ଯେତେ଼କ ଉଷତ ।୩୦
ଅଭିମନ୍ୟୁ ନିପାତେ ମୋହୋର କୁଳହିଂ ବୁଡ଼ିଲା
ଲକ୍ଷଣକୁମାର ବ୍ରତଇ କିରେ ଧୃତିରାଷ୍ଟ ବୋଇଲା ।୩୧
ଅଭିମନ୍ୟୁ ନିଧନ ବୋଲି ଶୁଭିଲା ହସ୍ତିନାରେ
ରୋବନ୍ତି ତିରୀଗଣେ ମିଳି ଅନ୍ତେଶ୍ୱର ପୁରେ ।୩୨
ବିବିଧ ବିଳାପ ସେ କରନ୍ତି ତିରୀଗଣେ
ରୂପ ବାଉବନ୍ତି ରୋବନ୍ତି କି ସମୁଦ୍ର ଘୋଷଣେ ।୩୩
ଧୃତିରାଷ୍ଟ୍ର ବିଷାଦ କରିଲା ତାହା ଶୁଣି
ହୃଦଗତେ ବିଚାର ସେ କରଇ ପୁଣ ପୁଣି ।୩୪
ହସ୍ତିନା ରାଜ୍ୟର ଯେସନେକ ବାରତା
ଶୁଣିମା ସାବଧାନେ ଯେବେ ପାଣ୍ଡବଂକ କଥା ।୩୫
ବିଷାଦ ଆତ୍ମା ହୋଇ ଗଲେକ ଚାରିଭାଇ
ଇନ୍ଦ୍ରପ୍ରଶସ୍ତେ ପ୍ରବେଶ ହୋଇଲେ ବେଗେ ଯାଇଂ ।୩୬
ବଦୟନ୍ତି ଅଗସ୍ତି ଶୁଣ ବଇବସ୍ତୁତ ମନୁ
ଜାଳନ୍ଧର ଭୂଅ ତେଣେ ଭେଦିଲେ କୃଷ୍ଣ ଫାଲଗୁନ୍ୟୁ ।୩୭
ଅଭିମନ୍ୟୁ ନିପାତ ଜାଣିଲେ ଧ୍ୟାନେଣ ଦେବହରି
ଜାଳନ୍ଧର ଭୂଅ ତକ୍ଷଣେ ଘଡ଼ିକେ ସଂହାରି ।୩୮
ତିନିଶତ ରାଜନ ନବସାଗର ଯୋଧୀ
ପାଞ୍ଚକ୍ଷଉଣୀ ବଳ ଯେକା ଅର୍ଜୁନ ବିନ୍ଧି ।୩୯
ଅର୍ଜୁନକଇଂ ହରି ଯେ ମାୟା କରିଥିଲେ
ଗକତବୀର୍ଯ୍ୟେ ପ୍ରାୟେ ସନ୍ୟ ମାରନ୍ତେ ନ ସରିଲେ ।୪୦
ଅଭିମନ୍ୟୁ ନିଧନ ଗଲା ଯେତେବେଳେ
ଜାଳନ୍ଧର ଭୂଅହିଂ ଯେଣେ ସରିଲା ଅବହେଳେ ।୪୧
ଜୟତୁ ଯୋଗେଶ୍ୱର ଜଗତ ସୋଦର ନାହା
ମାୟଧର ପୁରୁଷ ନ ଜାଣଇ ଅବା କାହା ୪୨
ନିର୍ମଳ ଜଳେ ଯେନ୍‌ହେ ବିହତନ୍ତି ହଂସପନ୍ତି
ହୃଦଗତେ ବିଘଂସୁ ମୋର ଶ୍ରୀକୃଷ୍ଣ ଶୁଦ୍ଧ ଜ୍ୟୋତି ।୪୩
ବୁଡ଼ିଲା ସକଳ ଧର୍ମ ଅକାରଣ ମୋହଲାଗି
ବାକ୍ୟଦେବୀର ଭଣ୍ଡାର ବିଧ୍ୱଂସିଲି ମୋହୋର ଭାଗୀ ।୪୪
ଅକାଦ ସାଗର ସଂସାର ଯେ ମୋହଜଳ ଫାଶି
ଜଗବନ୍ଦନ ନାଥ ମୋତେ ତବ ଭୁବନ ଦିଅସି ।୪୫
ଅତିମାୟାରେ ମାୟାଧର ସେ ଯାହାର ନାମ
ଶ୍ରୀକୃଷ୍ଣ ଚରଣେ ମୋହୋର ଶତସହସ୍ର ଦଣ୍ଡ ପରିଣାମ ।୪୬
ସ୍ୱାମୀ ଅଭାବ ସଂସାର ମୁଂ ଦେଖିଲି ଅନୀତି
ଜୀବ ହୋଉ କି ଅଜୀବ ହୋଉ ତୋହୋରେ ପରମଗତି ।୪୭
ସଦୟେ ଧାରଣ ନାଥ ସୟଳ ଜନଚିନ୍ତା
ନାଶକର ଦଣ୍ଡରୁ ନାଥ ତୁହି ସେ ଉଦ୍ଧରନ୍ତା ।୪୮
ଯଦ୍ୟପି ଭଜିଲି ନାଥ ମନ ବଚନ କର୍ଣ୍ଣବ୍ୟେ
ଯେ ନିରାପେକ୍ଷ ଦ୍ୱନ୍ଦ୍ୱରୁ ମୋତେ ପାରିକରିବା ବାସୁଦେବେ ।୪୯
ନ ଦେଖିଲି ନ ପଢ଼ିଲି ନ ଶୁଣିଲି ନ ଭାବିଲି ମନ୍‌ହୃଦେ
କିଞ୍ଚିତ ଭାବକୁ ମୁଂ ଯେ ପାଇଲି ଶବଦେ ।୫୦
ହୃଦୟକୁ ଅଳଂକାର ମୋର ଶ୍ରୀକୃଷ୍ଣ ନାମଗୋଟି
ତବ ପଦ୍ମପାଦେ ମୋର ଶିର କମଳ ଲୋଟି ।୫୧
ନୀଳ ଉତ୍ପଳ ଜିଣି ଯେ ବଣ କନ୍ଦର
ମନୁକାଳ ବଞ୍ଚାଇଲେ ନାଥ ତହିଂର ଉପର ।୫୨
ସୟଳ ଜନ ଚିନ୍ତାମଣି ପୁରୁଷଂକ ଉତ୍ତମ
ହୃଦଗତେ ଭାବୁଥାଇ ମୋହୋର ଶ୍ରୀରାମ ଶ୍ରୀକୃଷ୍ଣ ନାମ ।୫୩
ତୁଳସୀର ବଲ୍ଲଭ ଶ୍ରୀଚରଣ ହୃଦଗତେ ମମ ଧ୍ୟାନ
ଶୁଦ୍ରମୁନି ସାରୋଳା ଦାସ ପ୍ରଣପତ୍ୟ ପ୍ରତିଦିନ ।୫୪
ବଦୟନ୍ତି ଅଗସ୍ତି ଶୁଣ ବଇବସ୍ତୁତ ମନୁ
ସାତ୍ୟକୀକି ଚାହିଂ ଆଗ୍ୟାଂ ଦିଲେ ଧର୍ମଂକର ତନୁ ।୫୫

ତୁ ମୋହୋର ବଚନ ଶୁଣସି ହାଦେ ବାବୁ
ଜାଳନ୍ଧର ଭୂଅଯାଯେ ଯେହିକ୍ଷଣି ଯିବୁ ।୧୫୬
ଦୁରାପଦ ସମର ତେଣେ କରଇ ଅରଜୁନ
ଯେଣେ ନିଧନ ହୋଇଲେ କମାର ଅଭିମନ୍ୟୁ ।୧୫୭
ନ ପୁଣ ବାଗତା ତହିଂ ପାଇ ଫାଲଗୁନି
ପୁତ୍ରକଷ୍ଟେ ପ୍ରାଣ ପୁଣ ନ ଆସଇ ଘେନି ।୧୫୮
ପୁତ୍ର ବିନାଶ ବୋଲି ଯେମନ୍ତେ ନଜାଣୁ କିରୀଟୀ
ନ ପୁଣ ଇନ୍ଦ୍ର ପ୍ରଶସ୍ତକୁ ନଆସଇ ଲେଉଟି ।୧୫୯
ଭୋ ଧର୍ମଦେବତା କେହି ନ କହୁ ଅର୍ଜୁନ ଆଗରେ
ସେହି ବାଟେ ନପୁଣ ପାଥ ପଶଇ ସମରେ ।୧୬୦
କହୁଂ କହୁଂ କ୍ରୋଧିତ ସେ ଧର୍ମ ମହୀପତି
ହା ହା ନନ୍ଦନ ବୋଲି ପଡ଼ି ମୋହଯାନ୍ତି କ୍ଷିତି ।୧୬୧
ତୁ ମୋହୋର ନନ୍ଦନରେ ପ୍ରାଣର ପଞ୍ଚଭୂତ
କୁଳର ମଣ୍ଡନ ମୋର ଅନାଥର ନାଥ ।୧୬୨
ସୋମବଂଶକୁ ଉଦ୍ଧାରଣ ଅଟୁ ତୁରେ ବତ୍ସା
ବୁଡ଼ିଲାକ ବଂଶ ମୋହୋର କେ କରିବ ରକ୍ଷା ।୧୬୩
ପୁଣ ପୁଣ ନରନାଥ ପଡନ୍ତି ମହୀଲୋଟି
କେ ମୋହୋର ନିବାଇଲା କୁଳର ଦୀପଗୋଟି ।୧୬୪
ଯୁଧେଷ୍ଠିଂକି କୋଳକରି ରୋବଇ ଭୀମସେନ
କେବଣକତି ଛାଡିଗଲୁ ରେ ବାଳୁତ କୁମର ଅଭିମନ୍ୟ ।୧୬୫
ବୀରବର ସୁନ୍ଦର ତୁ କଇଛା ଜଗଜେଠୀ
ପୃଥୀକି ଅଳଂକାର ରେ ତୋହୋର ନାମଗୋଟି ।୧୬୬
ନିର୍ଲଜ୍ଜ ଆତ୍ମା ବାବୁରେ ବ୍ରତିବାର କିସଅର୍ଥ
ଅବଶ୍ୟ ପ୍ରାଣ ବିସର୍ଜିବି ମୁଂ ଖାଇବଇଂ ବିଷ ।୧୬୭
ପୋଡୁ ପୋଡୁ ଆତ୍ମା ମୋହୋର ଯେହିକ୍ଷଣି ଯାଉ
ଭାଇର ଆସିବା ଯାଏ ପ୍ରାଣ ମୋ ଶରୀରେ ନଥାଉ ।୧୬୮
ତେଲିକ ପୁଅ ମୋର ନାଶଗଲା ମୋହୋର ଦେଖନ୍ତେ
କିସ ବୋଲି ଅର୍ଜୁନ ଆସି ବୋଲିବଟି ମୋତେ ।୧୬୯
ରୋବନ୍ତି ଭୀମସେନ ଭୂମିରେଣ ପଡି
ଜଳୁ ଯେ ଶରୀର ବୋଲଇ ପାଷାଣେ ଶିର କୋଡି ।୧୭୦
ଯୁଗ ଅନ୍ତକାଳ ଆସି ହୋଇଲା ମୁକୁଇ
ତୋତେ ମରାଇ ବାବୁରେ ବ୍ରତିଅଛି ମୁହିଂ ।୧୭୧
ଭୋ ଦଇବ ପୁରୁଷ ମୋର ଜଳୁ ବେନି ଆଖି
ମୁହିଂ ନିର୍ଲଜ୍ଜ ରହିଲି ତୋହୋର ବିନାଶ ଦେଖି ।୧୭୨

କିସ ଶବଦ ଶୁଭିବ ଯେ ସାଂସାରିକା ଧର୍ମେ
ପାଣ୍ଡବେ ଥାଆନ୍ତେ ଅଭିମନ୍ୟୁ ପଡ଼ିଲା ସାଂଗ୍ରାମେ ।୧୭୩
ସଂସାରେ ଅପଖ୍ୟାତି କାପୁରୁଷ ବୋଲି ଗଣି
କରତେ କାଟି ମୁଣ୍ଡ ପ୍ରାଣ ବିସର୍ଜିବି ଯେହିକ୍ଷଣି ।୧୭୪
କିଂପାଇଂ ରହିବୁ ରେ ଯେ ନିର୍ଲଜ୍ଜ ପଞ୍ଚଭୂତ ଆତ୍ମା
ଶରୀରଂ ଛାଡି ବେଗେ ଯାଅସି ହୋ ମହାତମା ।୧୭୫
ଓହୋକୁଳକୁ ମୋହୋର ତୁ ଯେକଇ ପୁତ୍ରଗୋଟି
କେମନ୍ତେ ପ୍ରାଣ ଧରିବ ଶୁଣିଲେ ମୋ ଭାଇ କିରଟୀ ।୧୭୬
ନକୁଳର କ୍ରୋଧ ଯେ କହିତ କି ପାରି
ପାଷାଣ ଉପରେ ନେଇ ନିଜ ଉର ଶିର ତାଡି ।୧୭୭
ହା ହା ନନ୍ଦନରେ କୁଳର ଶ୍ରେଷ୍ଠସାର
ଆମ୍ଭନ୍ତ ଛାଡି ଆଗ ହୋଇଲ ଅପହାର ।୧୭୮
ବାବୁ ଆମ୍ଭେ ତୋତେ ଘେନିଗଲୁ ମୁକୁଟ ଯୋଦ୍ଧାପଣେ
ତୋତେ ସେ ଦେଇ ଆମ୍ଭେ ଅଇଲୁ ଚାରିଜଣେ ।୧୭୯
ବାବୁ କିସ କାରଣରେ ଆଉ ଜୀବନ ଆମ୍ଭର
ବାଳୁତ ପୁତ୍ର ମରାଇ ଆମ୍ଭେ ବ୍ରତିଲୁ ପାମର ।୧୮୦
ଜନମୁଖ ଚାହିଂ କେସନେ ବ୍ରତିବୁଂ ନିର୍ଲଜ୍ଜ
ଛତ୍ରୀକୁଳେ ଦୂଷଣ ଆମ୍ଭନ୍ତ ବଡ଼ଲାଜ ।୧୮୧
କ୍ରୋଧେ ବଇଲୁର ଯେନ୍‌ହେ ପଡଇ ବଜ୍ରଘାତ
ଗତ ଆତ୍ମା ପ୍ରାୟେ ଭୂମିରେ ପଡିତ ।୧୮୨
ସହଦେବ କୋଳକରି ଧରିଛି ଯୁଧେଷ୍ଠିକି
ଆବର କୁଳଦୀପ ପାଇବି କାହିଂ ଦେଖି ।୧୮୩
ବାହାରେଣ ସାଷ୍ଟମ ଯେ ଭିତରେଣ ବଡ଼ ବଥା
ଧରଣୀ ପାଂଟୁଅଛି ଯୁଧେଷ୍ଠିଂକ ବ୍ୟଥା ।୧୮୪
ଅନମିତେ ଦ୍ୱନ୍ଦ୍ୱରେ ପଶିଲୁ ରାଜ୍ୟଭାର ପୋଡୁ ପୋଡୁ
ପୁତ୍ରକଷ୍ଟ ପାର ହୋଇବା ପଞ୍ଚପ୍ରାଣ ଛାଡୁ ।୧୮୫
ଦହଇ କ୍ରୋଟାନଳ ପଞ୍ଚଭୂତ ଆତ୍ମା
ଲୋକିତେ ସାଷ୍ଟମ ସେ ମହାରାଜା ମହାତମା ।୧୮୬
ଅଭିମନ୍ୟୁ ସମରେ ପଡିଲା ଯେତେବେଳେ
ଶୂନ୍ୟ ଭୁବନ ତେଜିଣ ଗଲେ ଦଶଦିଗ ପାଳେ ।୧୮୭
ଆଦିତ୍ୟ ଅସ୍ତଗଲା ଛଡଦଣ୍ଡ ଥାଉଂ ଦିବସ
ମେଦିନୀ ଦଳଦଳିତ ଅନ୍ଧାର ଘୋର ଦଶଦିଶ ।୧୮୮
ଆକାଶୁଂ ଖସି କି ପଡ଼ିଲେ ରତିପତି
ଯୁଗାନ୍ତକ କାଳପ୍ରାୟେ ଦିଶଇ ନବଦୀପା ପୃଥୀ ।୧୮୯

ସୋମବଂଶ ଉଦ୍ଧାରଣ ଯେବଣ ପୁତ୍ରଗୋଟି
ତାହାର ନିଧନେ କରି ଲେଉଟିଲା ନବସୃଷ୍ଟି ।୯୦
ପୃଥିବୀ ଦୀପ ପ୍ରାୟେ ପୁତ୍ର ଯହୁଂ ନାଶଗଲା
ଉଲ୍ଲୁକାପାତ ଜାଣି ଚଉଦିଗେ ଦିଶିଲା ।୯୧
ଦିଗ ଅନ୍ଧାର ଦେଖି ପୁଚ୍ଛଇ ଫାଲଗୁନି
ଚକ୍ରାବ୍ରତେକ ହୋଇ ବୁଲାଇ ଭୁବନ ତିନି ।୯୨
ସ୍ୱାମୀ ଆଜ ଯେ ମକରମାସ ଶୁକଳ ତ୍ରୟୋଦଶ ତିଥି
ନିଜ ରୂପ ଧରିତ ନ ଦିଶିଲା ନିଶାପତି ।୯୩
ଆଦିତ୍ୟ ଦେବତା ଅସ୍ତଗଲା ବେଳ ଥାଉଂ
ଯେହେର୍ଣ୍ଣେକ ଅନିର୍ଯାପ ବିକାଶିଲା ଦେବ କାହୁଂ ।୯୪
ଗୋବିନ୍ଦେ ବୋଇଲେ ପାଥ ସାଂଗ୍ରାମ ଗହନେ
ରେଣୁ ଉଡନ୍ତେଣ ଗଗନେ ନ ଦିଶିଲେ ଦିଗପାଳେ ।୯୫
ଅନେକ ବ୍ରାହ୍ମଣ ଚାଣ୍ଡାଳ ଯେକଯୋଗେ ରଣେ ମରି
ପାପ ବାଧା ବସଇ ଧର୍ମଯୁଦ୍ଧ ଯହୁଂ ସରି ।୯୬
ତହିଂ ନିମନ୍ତେ ଯେମାନେ ଦିଶନ୍ତି ଅନାବୃଷ୍ଟି
ସମର ବୋଲିକରି ଯେହୁ ଉରମ ଅରଷ୍ଟି ।୯୭
ଛାଡିଲା ମନଭ୍ରାନ୍ତି ସୋହୋଦ୍ରାର ନାହା
ହରି କୁରୁକ୍ଷେତ୍ର ମଣ୍ଡଳକୁ ମୋର ରଥ ବାହା ।୯୮
ଅର୍ଜୁନର ବଚନେ ସେ ଦେବ ମଧୁହାରୀ
ରଣଭୂମିରେ ପ୍ରବେଶ ଯେ ରାତ୍ର ଦଣ୍ଡଚାରି ।୯୯
ଦେଖନ୍ତି ରଥ, ଗଜ, ଅଶ୍ୱ, ପାଦାନ୍ତିଂକର ପିଣ୍ଡ
ଛିଦ୍ରପ୍ରାୟେ ହୋଇ ଛିଡି ପଡ଼ିଛନ୍ତି ଖଣ୍ଡ ଖଣ୍ଡ ।୧୦୦
ପଞ୍ଚଯୋଜନ ପରିଯନ୍ତେ କର୍ଦ୍ଦନ ରକତ ମାୟେଂସ
ବିହରନ୍ତି ନିଶାଚରେ ପ୍ରେତ ଯେ ପିଚାଶ ।୧୦୧
ବାଘ୍ର ଭାଲୁକ ଶ୍ରୀକାଳ କାଳ ଶାଗୁଣା ଉଲୁକ
କିଳିକିଳା ଶବଦ ଯେ ହୁଅନ୍ତି ଉସୁକ ।୧୦୨
ଚାମଣ୍ଡା ଚାରିକା ଯେ ଡାକିଣୀ ଭଇରୋବୀ
ଯୋଗିନୀ କଂକାଳୀ ବେତାଳୀ ରୁଣ୍ଡ ସର୍ବଦେବୀ ।୧୦୩
କେଶ ମୁକୁଳ ବିବସନ ବିକଟ ବିକରାଳୀ
ମେଦ ମେଦା ମାଂସେ କେଳି କୁତୁହୋଳୀ ।୧୦୪
ମେଦିନୀ ଦଲ ଦଲିତ ଲହ ଲହ ଜିହ୍ୱା ମତୁଆଳୀ
ଖେପନ୍ତି ନାଚନ୍ତି ଗାବନ୍ତି ଦ୍ୟନ୍ତି ହୁଳହୁଳି ।୧୦୫
ଦେଖିଣ ସାନନ୍ଦ ଯେ ପାର୍ଥିବ ଧନଞ୍ଜୟେ
ଭୀମସେନ ଠାକୁରଂକର ଯେସନେକ ଉପାୟେ ।୧୦୬
ଅର୍ଜୁନ ବୋଲଇ ସ୍ୱାମୀ ଶୁଣିମା ଯଦୁକୁଳ ନାହା
ପଚାରିବା ସମରେ କେ ମାଇଲା କାହା କାହା ।୧୦୭
ବାହୁଡ଼ାଇ ରଥ ବାହିଲେ ଦେବସ୍ୱାମୀ
କୃଷ୍ଣ ଅର୍ଜୁନ ଦୁହେଂ ଛାଡିଲେ ରଣ ଭୂମି ।୧୦୮
ଆସନ୍ତେ କୃଷ୍ଣଂକୁ ପୁଚ୍ଛଇ ଧନୁର୍ଜୟେ
ବାମ ନୟନେ ମୋର ଫୁଂରଇ ଦେବରାୟେ ।୧୦୯
ହୃଦୟ ବିଷାଦ ମୋର ବଇକୁଳ୍ୟ ପଞ୍ଚଭୂତ
ମଙ୍ଗଳତ ନ ଦିଶଇ ମୋତେ ଯେ ତିନି ଜଗତ ।୧୧୦
ବାମେଣ ଶବଦ କରଇ ଉଲୁକ ପକ୍ଷୀ
ଆଗେଣ ବିକରାଳ ବୋବି ଦିଅଇ ଜମ୍ବୁକୀ ।୧୧୧
ଅଦଭୂତେ ନୟନୁ ମୋ ବହଇ ଅଶ୍ରୁବାରି
କ୍ରୋଧେଣ ଗାଣ୍ଡିମ ଧନୁ ମୁଂ ନୁଆରଇ ଧରି ।୧୧୨
ପ୍ରମାଦ ଦିଶଇ ମୋତେ ବ୍ୟାକୁଳେ ପଞ୍ଚଆତ୍ମା
କେବଣ ମାୟା ଭିଆଣ କରିଛ ହୋ ମହାତମା ।୧୧୩
ଚାରିଭାଇ ମୋର ପଡ଼ିଲେ କି ରଣେ
ଚକ୍ରଭୂଅ କୂଟ କପଟ କି କଲେ ଗୁରୁଦ୍ରୋଣେ ।୧୧୪
ହରି ଶୁଖିଲା କାଷ୍ଠ ତାଳ ଉପରେ ବସିକରି କାକ
ବିକଟାଳ କରିତ ଆଗେ ଦିଅଇ ଘୋର ଡାକ ।୧୧୫
ଗୋବିନ୍ଦେ ବୋଇଲେ ପାଥ ଦ୍ୱନ୍ଦ୍ୱରେ ପଶିଲେ
ଯଶ ଅପଯଶ ଥାଇକି ତୋହୋର ବୋଲେ ।୧୧୬
ଗୋବିନ୍ଦେ ବୋଇଲେ ଯଦ୍ୟପି ଆସନ୍ତି ବ୍ରହ୍ମା ରୁଦ୍ର ଇନ୍ଦ୍ର
ତୋହୋର ଭାଇଂକି ନାହିଂ କେବେହେଂ ପ୍ରମାଦ ।୧୧୭
ଉତ୍ପାତ କାଳ ଯେତେବେଳେ ହୋଇଥାଇ ପାଥ
ମନ୍ଦକଥାମାନ ହେଉଥାଇଂ ଯେ ବହୁତ ।୧୧୮
ଅପାର ଅଶୁଭ ଦେଖନ୍ତି ଫାଲଗୁନି
କୂଟେ ବଞ୍ଚାଇ ଆସନ୍ତି ଶ୍ରୀକୃଷ୍ଣ ଯେ ଘେନି ।୧୧୯
ସାତୁକୀ ଡାକଦିଲା ମହାବାତ ପର୍ବତରେ ଉଠ
ପଣ୍ଡବଂକୁ ବିଯୋଗ ଦେବ ଆସ ବେଗେ ଲେଉଟି ।୧୨୦
ସାତୁକୀ ଶ୍ରୀକୃଷ୍ଣ କଇଂ ସଂକେତ ଦେଇଗଲା
ଅଗ୍ୟାନେ ଅର୍ଜୁନ ତାହା ଯେ ମଣିତ ନ ଗଲା ।୧୨୧
ଇନ୍ଦ୍ରପ୍ରଶସ୍ତେ ଯାଇଣ ପ୍ରବେଶ ଯେ ହୋଇଲେ ତତକ୍ଷଣ
ଦେଖିଲେ ଭୁବନ ଯେ ଦିଶଇ ଅମଙ୍ଗଳଣ ।୧୨୨
ସ୍ତିରୀୟେ ବିଧବା ଯେନହେ ଭ୍ରଥାର ବିହୁନେ
ସେହି ସାରିକ୍ଷେ ଦିଶନ୍ତି ରାଜ୍ୟ ସର୍ବଜନେ ।୧୨୩

ଯେତେକ ଜନ ସେ ଦେଖଇ ସର୍ବସାଚୀ
ଉଷତ ଉଲ୍ଲାସ ଯେ କାହାରି ନାହିଁ କିଛି ।୧୨୪

**

## ୯୨. କୃଷ୍ଣଙ୍କ ସହିତ ପାଣ୍ଡବଙ୍କ ମନ୍ତଣା ଓ ଜୟଦ୍ରଥ ବଧାର୍ଥ ଅର୍ଜୁନର ପ୍ରତିଜ୍ଞା

ଶୁଣ ବଇବସୁତ ମନୁ ବଦନ୍ତି ଅଗସ୍ତି
ସୋହୋଦ୍ରା ଉତ୍ତରାର କ୍ରୋଧ ପ୍ରଭୁ କରାଇଲେ ଶାନ୍ତି ।୧
ପୁଣ ପାଣ୍ଡବଂକ ସନ୍ନିଧ୍ୟେଣ ହରି ବସି
ବୋଇଲେ ରୟଣୀ ଅର୍ଦ୍ଧ ଯେ ହୋଇଲାକ ଆସି ।୨
ରାଜ୍ୟର ନିମନ୍ତେ ଅର୍ଜିଲେ ବିବାଦ
କିସ ତୁମ୍ଭର ଜୀବନ କିସ ତୁମ୍ଭର ସମ୍ପଦ ।୩
ଦ୍ୱନ୍ଦରେ ପଶିଲେ ଅବା ପୁତ୍ର ସହୋଦ୍ର କାହିଁ
କେ ପଡ଼ିଲା କେ ମଲା ଶୋକ ଯେଥି କାହିଁ ପାଇଁ ।୪
କ୍ଷଣେ କ୍ଷଣେ ପ୍ରମାଦ ସନ୍ନିଧ୍ୟେଣ ବଇରି
ରାତ୍ର ପାହାନ୍ତେ ପୁଣ ଯିବାନା ସମର କରି ।୫
ତୁ ଅବା ସାଂଗ୍ରାମକୁ ନ ଯିବୁ ପୁତ୍ରକ୍ରୋଧେ
କଉରୋବ ଆବର କି ଛାଡ଼ିବାକ ଯୁଦ୍ଧେ ।୬
ଶତ୍ରୁର ଚାରଗଣେ ଥାନ୍ତି ଯେ ଗୁପତେ
ସେ ଯାଇ ବାରତା କହିବେ ମାନଗୋବିନ୍ଦ ଅଗ୍ରତେ ।୭
କ୍ରୋଧଜଳେ ପାଣ୍ଡବେ ହୋଇଛନ୍ତି ଭାସି
ଦଣ୍ଡ ଘେନି କଟକେ ନ ପୁଣ ବେଢ଼ନ୍ତି ସେ ଆସି ।୮
ସେ ତୋହୋର ପୁତ୍ରକୁ ବଧ କଲେ ରଣେ
ତହିଂକି ବିଚାର କରିବେ ନାରାୟଣେ ।୯
ତହିଂକି ଉପାୟ କରିବନା ବୁଦ୍ଧି
ଶତ୍ରୁକୁ ଜିଣିଲେ ସେ ସକଳ କାର୍ଯ୍ୟସିଦ୍ଧି ।୧୦
ଲୋଡ଼ିଲେ ତ ପାଇନାହିଁ କୁମାର ଅଭିମନ୍ୟୁ
ସମସ୍ତେ ଉଠ ଚାଲ କରିବା ସ୍ନାହାନୁ ।୧୧
ଅର୍ଜୁନ ବୋଇଲେ ହରି ସ୍ନାହା ମୋର ଲୋଡ଼ା ନାହିଁ
ଜଦ୍ୟରଥ ମାରିବା ପରିଯନ୍ତେ ଭୋଜନ ମୋର ନାହିଁ ।୧୨
ମୋହୋର ନିୟମ ଅଲଂଘିତ ଦାମୋଦର
କାଳି ସଂଗ୍ରାମ ମୋହୋର ଜଦ୍ୟରଥର ଉପର ।୧୩
ତାହାର ଯୋଗୁ ପଡ଼ିଲା ମୋହୋର ଅଭିମନ୍ୟୁ
ତରଣ ପ୍ରମାଣେ ମୁଂ କାଟିବି ତାର ତନୁ ।୧୪
ବନେ ପାଞ୍ଚାଳିକି ମୋର ହରିଲା ଅଯୁଗତେର
ତାହା ମୁଂ ଉପେକ୍ଷା କଲଇଂ ଭଗ୍ନୀର ନିମନ୍ତେ ।୧୫
ମୁହିଂ ତାହାକୁ ବନ୍ଧୁପଣେ ପାଳିଲି ଶିରଛେଦନ ଠାରୁ ଧରି
ପୁତ୍ର ମୋହୋର ନାଶଗଲା ତାହାର ହେତୁ କରି ।୧୬
ମୁଂ ଯେବେ ତାହାକୁ ନ ମାରଇ କାଳି
କିସ ମୋର କ୍ଷତ୍ରୀପଣ ମୁଂ କିସ ଦଶନାମକୁ ବହିଲି ।୧୭
ନ ଚଢ଼ିବି ନନ୍ଦିଘୋଷ ନ ବହିବି ଗାଣ୍ଡିବ ଧନୁ
ଶେଷେ କପଟେ ନାଶ କରାଇଲା ଅଭିମନ୍ୟୁ ।୧୮
ବିଜେ କପିକେତନ ବାନା ବାସୁଦେବ ସାରଥୀ ସେ ରଥେ
ପୁତ୍ର ମୋହୋର ହତଗଲା ଯେତେ ବଳ ଥାଆନ୍ତେ ।୧୯
ଭାରତେ ଭାରୋଇମଲୁ ମୋହୋର ବୀରଧୂ
ଜଦ୍ୟରଥ ବଞ୍ଚିଥିଲେ ସମସ୍ତ ମୋହୋର ଅସାଧୁ ।୨୦
ପଛିମେ ଉଦୟ ଯେବେ ହୋଇବେ ଦିନକର
ନଳିନୀ ବିଘଂସିବ ଯେବେ କନ୍ଦର ଉପର ।୨୧
ଯଦ୍ୟପି ଆବୋରିବେ ବ୍ରହ୍ମା ଇନ୍ଦ୍ର କୋବେର ହର
ଅବଶ୍ୟ ଜଦ୍ୟରଥ ମାରିବଇ ସତ୍ୟ ସତ୍ୟ ମୋହୋର ।୨୨
ଅକୀର୍ତ୍ତି କ୍ରମେଣ ବ୍ରତନ୍ତି ଯେବଣ ଜନ
ଦେବ ବିପ୍ର ନିରାଶ ଯାହାର କ୍ରିୟାହୀନ ।୨୩
ଯେବଣ ଜନ ବ୍ରତନ୍ତି ସର୍ବଦା ଅଭାବେ
ଦେବତା ଦ୍ରବ୍ୟ ହରଣ କରନ୍ତି ଯେହୁ ଲୋଭେ ।୨୪
ଶକ୍ୟ ପ୍ରମାଣେ ଯେ ନ ଦିଅନ୍ତି ଦାନ
ଗ୍ରହଣ ବେଳେ ଅବା ଭଞ୍ଜନ୍ତି ଯେହୁ ଅନ୍ନ ।୨୫
କୁଜନ ଜନ ତୁଲେ ଯାହାର ଯେ ଗୋଷ୍ଠୀ
ଯୋଗ୍ୟମାନ ହୋଇ ଯେ ଅନମିତେ ଜଷ୍ଟି ।୨୬
ତାର ଅବସ୍ଥା ଦେଖି ଯେ ନକରନ୍ତି ଦୟେ
ସ୍ୱାମୀ ଗୁରୁଲୋକନ୍ତ ଦେଖି ଯେ ନୋହନ୍ତି ନିର୍ଭୟେ ।୨୭
ମୁହିଂ ଗଣିତା ଯେ ହୋଇବି ଯେତେ ଲୋକେ
ଯେବେ ଜଦ୍ୟରଥକୁ ନ ମାରଇ ପୁତ୍ରଶୋକେ ।୨୮
ହରିହର ପାଷାଣ ନ ଦେଖି ଯେ କରନ୍ତି ଭୋଜନ
ବିଶ୍ୱାସ ଅପଘାତ କରନ୍ତି ଯେବଣକ ଜନ ।୨୯
ଧନବନ୍ତ ହୋଇଣ ପରଅନ୍ନକୁ ଯାହାର ଆଶା
ପରଦ୍ରବ୍ୟ ହରଣେ ଯାହାରର ମନୀଷା ।୩୦
ଦାତବ୍ୟ ଲୋକନ୍ତି ଯେ ବାରନ୍ତି ଦେବାର କାଳେ
ପାରସ୍ତିରୀ ପରଦ୍ରବ୍ୟ ହରନ୍ତି ଯେ ବଳେ ।୩୧

ଆପଣାର କର୍ମେ ନରେ ହୋଅନ୍ତି ଯେ ଭୋଗୀ
ବିପରି ନ ଜାଣି ଯେ ପରେ ବଇରାଗୀ ।୧୩୨
ଗୋ ପଛ ଭୂମିରେ କରନ୍ତି ଯେ କୃଷି
ଧନାଢ୍ୟ ହୋଇଣ ଯେ କୁସ୍ଥାନରେ ବସି ।୧୩୩
ଯଦ୍ୟପି ଜଦ୍ୟରଥ ମୁଂ ନ ମାରଇ ସମରେ
ମୁହିଂ ଗଣିତା ହୋଇବି ଯେହାଂକ ସଂଗରେ ।୧୩୪
ବିଭାହିତା ସ୍ତିରୀ ଯେ କରନ୍ତି ପରିତେଜ୍ୟା
ଆପଣାର ଜୀବନ୍ତେ ପରେ ରତି ଯେବଣ ଭାରିଯା ।୧୩୫
ପୋଷିଲାର ଜନ୍ତୁଂକୁ ଯେ କରନ୍ତି ପ୍ରାଣଘାତ
ସୁଭୋଜନ ଦେଇଣ ଯେ କରନ୍ତି ଅସୁଆର୍ଥ ।୧୩୬
ଚଉଠୀ ସପ୍ତମୀ ଦଶମୀ ଅମାବାସ୍ୟା ଯେକାଦଶୀ
ଯେ ପଞ୍ଚୁଦିନେ ଯେ ଭୁଞ୍ଜନ୍ତି ଆମିଷି ।୧୩୭
ଗ୍ରହପୀଡ଼ାକାଳେ ଯେ ନ କରନ୍ତି ପୂଜା
ଶରୀରେ ଗ୍ୟାନଥାଉଂ ଯେ ନ କରନ୍ତି କୁଶଶଯ୍ୟା ।୧୩୮
ଯେ ଲୋକମାନଂକର ଯେତେ ମହାପାତକ
ଯେତେକ ଲଂଘଇ କାଲି ନ ଛେଦିବି ଯଦି ଜଦ୍ୟରଥର
ବେକ ।୧୩୯
ଯେକା ସୂର୍ଯ୍ୟକେ ବେନିବେଳ ଭୁଞ୍ଜଇ
ଯେବଣ ଜନ ଲେଞ୍ଚରେ ବୀର୍ଯ୍ୟ ତା ଡାଳଇ ।୧୪୦
ଧନ ଘେନିଣ ଯେ ବିକନ୍ତି ସ୍ତିରୀଲିଙ୍ଗ
ଲେଞ୍ଚ ଲୋକନ୍ତି ଯେ କରନ୍ତି ସୁସଂଗ ।୧୪୧
କର୍ମହୀନେଣ ଯେବଣ ଜନ ବ୍ରତି
ଯେବଣ ବିପ୍ର ଅଧିକାର ଘେନି ପ୍ରମାଦ ଅରଜନ୍ତି ।୧୪୨
ବ୍ରାହ୍ମଣ ହୋଇ ଯେବେ ହୋଅନ୍ତି ବିବାଦୀ
ମଉଗର୍ବ ଭାବେ ଯେ ଦେବ ବିପ୍ର ନ ଆରାଧି ।୧୪୩
ଧନଲୋଭେ ସଭାରେ କହନ୍ତି ଯେ ମିଥ୍ୟା
ଦାନ ଘେନିଣ ଯେବଣ ବ୍ରାହ୍ମଣ ବ୍ରତନ୍ତି ସର୍ବଥା ।୧୪୪
ଯେତେ ଲୋକଂକର ତୁଲେ ମୁଂ ହୋଇବି ଯେକଜଣେ
ଯଦ୍ୟପି ଜଦ୍ୟରଥ ମୁଂ ନ ମାରଇ କାଲି ରଣେ ।୧୪୫
କଲା କୀରତି ଯେ ବିକନ୍ତି ପୁନରପି
ଗୋ ଶାସ୍ତ ହରିଣ ଯେ ଦେବ ବିପ୍ରନ୍ତ ନ ଥାପି ।୧୪୬
ଗଉରୋବ ତିରୀଂକି ଯେ କରନ୍ତି ରତିଆଶା
ପର ସମ୍ପଦ ହରଣେ ଯାହାର ମନୀଷା ।୧୪୭
ଅସଜ୍ଜନ ଲୋକଂକ ତୁଲେ ଯେ ହୁଅନ୍ତି ଦ୍ୱନ୍ଦୀ
ଅନିର୍ଯାପ କରିଣ ଯେ ପ୍ରାଣୀଂକି କରଇ ବନ୍ଦୀ ।୧୪୮
ପିତାମାତାକଇଂ ଯେ ନ କରନ୍ତି ଆରାଧ
ପଣ୍ଡିତ ଲୋକକଇଂ ଯେ କରନ୍ତି ବିରୋଧ ।୧୪୯
ଶାହାସ୍ତ୍ର ଶୁଣିଣ ଯେ ନିନ୍ଦନ୍ତି ଧର୍ମକଥା
ଯେ ଲୋକଂକର ତୁଲେ ମୁଂ ବ୍ରତଇ ସର୍ବଥା ।୧୫୦
ଆଶା ଦେଖାଇ ଯେ କରନ୍ତି ନିଆଶା
ପରଧର୍ମ ଭାଙ୍ଗିବାକୁ ଯାହାର ମନୀଷା ।୧୫୧
ସର୍ବଦା ଲେଖିବା ମୋତେ ଯେତେ ଲୋକଂକର ତୁଲେ
ଆଦିତ୍ୟ ଅସ୍ତଯାକେ ଜଦ୍ୟରଥ ନ ମାଇଲେ ।୧୫୨
କ୍ରିୟା ଭ୍ରଷ୍ଟେଣ ବ୍ରତନ୍ତି ଯେବଣ ନରେ
ଅତିଥି ମାଗିଲେ ଭିକ୍ଷା ନ ପାବନ୍ତି ଯାହା ଘରେ ।୧୫୩
ପଞ୍ଚପର୍ବରେ ଯେହୁ ଭୁଞ୍ଜନ୍ତି ଆମିଷ
ଦିବସେ ଇଚ୍ଛା ଯେ କରନ୍ତି ରତିରସ ।୧୫୪
ବ୍ରତ ଉପବାସେ ଯେ କରନ୍ତି ମଇଥୁନ
ଯେକଇ ବସ୍ତ୍ରକେ ଯେ କରନ୍ତି ସ୍ନାହାନ ।୧୫୫
ଯେପଣ ଜନେ ଛୁଅନ୍ତି ପାକାପରଶ ତିରୀ
ପରଶିରୀ ସମ୍ପଦ ଯେ ଦେଖିତ ନୁଆରି ।୧୫୬
ମିଥ୍ୟା କହିଣ ଯେ ରଞ୍ଜନ୍ତି ପରମନ
ଚିତ୍ତ ଅଶୁଦ୍ଧେ ଯେ ଜନେ ଦିଅନ୍ତି ଦାନ ।୧୫୭
ଯେତେ ଲୋକଂକର ସଂଗତେ ବସଇ
ଯେବେ ଜଦ୍ୟରଥେ କାଲି ନ ମାରଇ ।୧୫୮
ଧନ ଘେନିଣ ଯେ ବିକନ୍ତି ମାଘିତିଳ
ବେଲ କାଠେ ଯୋଚିଣ ଯେ ଷଣ୍ଡଂକୁ କରଇ ହଳ ।୧୫୯
ପଞ୍ଚାଶ ଦିବସ ଯେ ପିଆନ୍ତି ବସ୍ତା
ଶରଣ ପଶିଲେ ଯେବଣ ଜନେ ନ କରନ୍ତି ରକ୍ଷା ।୧୬୦
ସମ୍ପଦକାଳେ ଯେ କୁଟୁମ୍ବ ନ ପୋଷନ୍ତି
ଅଦତ୍ତାପିଣ୍ଡ ହୋଇ ସର୍ବଦାଯେ ବ୍ରତନ୍ତି ।୧୬୧
ବିଷ୍ଣୁବାସର ଶିବରାତ୍ରି ଜନ୍ମ ରବି ଚନ୍ଦ୍ର ଗ୍ରହଣ ଗ୍ରାସେ
ଯେବଣ ଜନ ଅନ୍ନ ଭୁଞ୍ଜନ୍ତି ଉଆଂସେ ।୧୬୨
ସମରେ ପଶିଣ ଯେବଣ କ୍ଷତ୍ରୀ ହୋଅନ୍ତି ନିସରି
ବ୍ରାହ୍ମଣ ହୋଇଣ ଯେବେ ଶୀତକୁ କରଇ ଭୀତି ।୧୬୩
ତିରୀ ହୋଇଣ ଯେବେ ଅଗ୍ନିକି ହାଦେ ଡରି
ସେ ପାପୀ ଜନଂକ ସଂଗେ ଅଟଇ ମୁଂ ସରି ।୧୬୪

ଯେବଣ ଜନେ ଯେ କରନ୍ତି ଗୋରୁହତ୍ୟା
ବ୍ରାହ୍ମଣନ୍ତ ମାରି ଯେ ଭାଙ୍ଗନ୍ତି ଦେବତା ।୬୫
ସ୍ତିରୀଲିଙ୍ଗ ପଶୁନ୍ତ ଯେହୁ ନାଶ କରି
ଆତ୍ମଘାତୀ ହୋଇଣ ଯେବଣ ଜନ ମରି ।୬୬
ମାତାଭଗ୍ନୀ ହରଣ କରନ୍ତି ଯେଉଂଣ ପ୍ରାଣୀ
ସ୍ୱଦାରା ଉପେକ୍ଷି ଯେ ହରନ୍ତି ପରର ରମଣୀ ।୬୭
ଆତ୍ମା ସୁଆର୍ଥେ ବ୍ରତନ୍ତି ଯେବଣ ଲୋକେ
ଆପଣାର ଜାତି ଯେ ଲୁଚାବନ୍ତି ଥୋକେ ।୬୮
ବିଧବା ବ୍ରାହ୍ମଣୀ ଯେ ହରନ୍ତି ଋତୁକାଳେ
ସେ ଲୋକେ ଗଣିତା ମୁଂ ଯେବେ ନ ମାରଇ ସିନ୍ଧୁ
ମହୀପାଳେ ।୬୯
ଧନ ଘେନିଣ ଯେ ବିକନ୍ତି ଆପଣା ଗୃହବାସ
ପ୍ରୀତି ଉପୁଜାଇ ଯେ କରନ୍ତି ଅବିଶ୍ୱାସ ।୭୦
ପରେ ଚାଟୁ କହି ଯେ ହରୁଥାନ୍ତି ଦିନ
ବଡଶୀ ଥୋପ ପକାଇ ଯେ ଜଳରେ ମାରନ୍ତି ମୀନ ।୭୧
ଯେବଣ ଜନେ ନ କରନ୍ତି ବାରବ୍ରତ ଓଷା
କନ୍ୟା ତୁଳେ ପିତୃନ୍ତ ଯେ କରନ୍ତି ନିଆଶା ।୭୨
ବ୍ରାହ୍ମଣ କ୍ଷତ୍ରୀ ବଇଶ୍ୟ ଯେ ଶୂଦ୍ର ଚାରିଜାତି
ଯେଥି ଜାତହୋଇ ଯେ ମଦିରା ପାନ କରନ୍ତି ।୭୩
ତୀର୍ଥ କାଳେ ଯାହାର ନ ବୁଡ଼ଇ ମଥା
ପରକୁ ନିନ୍ଦି ଯେ କହଇ ଆତ୍ମବଡ଼ିମା କଥା ।୭୪
ଖଣା ଖୋଳିଣ ଯେ କଣ୍ଟା ପକାବନ୍ତି ବାଟେ
ଅନ୍ନ ଭୁଞ୍ଜାଇଣ ବିଷ ଦିଅନ୍ତି କପଟେ ।୭୫
ମୋତେ ଗଣିତା କର ଯେତେ ଲୋକଂକର ତୁଳେ
ଯଦ୍ୟପି ଜଦ୍ୟରଥ ମୁଂ ନ ମାରଇ କାଳି ଦେଖିଲେ ।୭୬
ଅପୂର୍ବ ପଦାର୍ଥ ପାଇ ଯେ କୁଟୁମ୍ବଲୋକନ୍ତ ବଞ୍ଚି
ଶ୍ରଦ୍ଧାୟେ ଶ୍ରାଦ୍ଧ ଯେ ନ କରନ୍ତି ସଞ୍ଚି ।୭୭
ଅହନ୍ତା କରି ଦହନ୍ତି ଯେ ପରଗୃହବାସ
ଯଦି ଭଗବନ୍ତ ଜନେ ଯେ କରନ୍ତି ହିଂସାସ ।୭୮
ତୁଳେଣ କଣ୍ଟକରି ନ ଯାଆନ୍ତି ଯେବଣ ଜନ
ପରର ନିଦ୍ରା ଯେହୁ କରନ୍ତି ଭଞ୍ଜନ ।୭୯
ଶୂକର ମାଂସ ଯେ ଭୁଞ୍ଜନ୍ତି ସୁଜାତି
ଯେବଣ ଜନେ ବ୍ରତନ୍ତି ଅଭାବ ଅପ୍ରୀତି ।୮୦
ଯେତେ ଲୋକଂକର ସଂଗରେ ମୋତେ ଗଣ
କାଲି ସିନ୍ଧୁରାଜାକୁ ଯେବେ ନ ମାରଇ ରଣ ।୮୧
ଗୋବିନ୍ଦେ ବୋଇଲେ ହୋ ଅପାର ପାତକ ଅଛି
କେତେ ସଞ୍ଚପି ହୋ କହିବୁ ସର୍ବସାଚୀ ।୮୨
ଯେ ମୃତୁମଣ୍ଡଳେ ଯେ ଜାତ ହୋଇକରି
କେ ଯେହା ସଞ୍ଚପି ଯିବାକ ଉବୁରି ।୮୩
ଅର୍ଜୁନ ବୋଇଲା ହରି ତ୍ରିବାର ମୋର ସତ୍ୟ
କାଲି ଯେବେ ନ ମାରଇ ମୁଂ ଦୃଶିଳାର ପତି ।୮୪
ରବିଉଦେ ଅସ୍ତେ ଯେ ଛାମୁରେ ବସନ୍ତି ବାଡି
ସେ ଦୋଷେ ପତିତ ମୁଂ ହୋଇବି ଚକ୍ରଧାରୀ ।୮୫
ନିରଞ୍ଜନ ଥାଳେ ବିଷ ମୁଂ ଭରଇ
ଶ୍ରୀକୃଷ୍ଣ ଯୁଦ୍ଧେଷ୍ଠିଂକ ପଦ୍ମପାଦରେ ହାରଇ ।୮୬
ଆପଣା ଭାରିଯା ପାକାପରଶ ଶ୍ରୋଣି
ପିତୃଲୋକେ ତର୍ପଣ କରଇ ତାହା ଆଣି ଚକ୍ରପାଣି ।୮୭
ଆହେ ଚନ୍ଦ୍ରସୂର୍ଯ୍ୟ ଦଶଦିଗପାଳେ
ଚାରିଦିଗେ ଚାରିମେଘେ ଯେ ମହୀମଣ୍ଡଳେ ।୮୮
ଶୂନ୍ୟ ପୁରୁଷମାନେ ଯେ ବିହନ୍ତା ବିଶ୍ୱଦେବା
ମୋହୋର ସାଂଗ୍ରାମକୁ ସର୍ବେ ସାକ୍ଷୀ ହୋଇଥିବା ।୮୯
ମୁହିଂ ଯଦି ଜଦ୍ୟରଥକୁ ନ ମାରିଇ କାଲି
ଅଗ୍ନିରେ ଦେହ ଝାସିବି ଯେହେର୍ଣ୍ଣେକ ବ୍ରତକଲି ।୯୦
ତୁ ହରି ଯେକା ମୋତେ ନ ଛାଡିବୁ ସାହା
ବ୍ରହ୍ମାଣ୍ଡ ଭିତରେ ମୁଂ ନ ଗଣଇ କାହା ।୯୧
ଅର୍ଜୁନର ଦୁସହ ପ୍ରତଗ୍ୟାଂ ବାକ୍ୟ ଶୁଣି
ହସିଣ ବଚନ ଯେ ବଦନ୍ତି ଚକ୍ରପାଣି ।୯୨
ଗୋବିନ୍ଦେ ବୋଇଲେ ଦୁରାପଦ ପ୍ରତଗ୍ୟାଂତ କଲୁ ଧନଞ୍ଜୟେ
ତୋହୋର ଦୃଢ଼ବ୍ରତ ଶୁଣି ଲାଗିଲା ମୋର ଭୟେ ।୯୩
ଭାରଦ୍ୱାଦଶଂକର ନନ୍ଦନ ଯେ ଦ୍ରୋଣ ମହାଗୁରୁ
ସେ ସେନାପତି ହୋଇଲେ ଦଶଦିନ ଉତ୍ତାରୁ ।୯୪
ପ୍ରଶୁରାମଂକ ବିଦ୍ୟାୟେ ସେ ଅସଂଖ୍ୟ ବଳବନ୍ତା
ତାହାକଂର ମନ୍ତ୍ର ଶହସ୍ରେ ତୁମ୍ଭେ ଯେ ଶକତା ।୯୫
ତାହାକଂର ନନ୍ଦନ ଯେ ଅଟଇ ଅଶସ୍ତମା
ତ୍ରିଜୀବୀ ଯୋଦ୍ଧା ସେ ତାହାକୁ ତ୍ରାସ କରଇ ବେଦବ୍ରହ୍ମା ।୯୬
ବାଲକାଳେ ନାରାଜେ ଯେ ବିନ୍ଧିଲା ଅନିଳ ପର୍ବତେ
ପଞ୍ଚଯୁଣ ଗିରି ଫୁଟିଲା ଯାହାର ଶରଘାତେ ।୯୭

କୃପ ଆଚାର୍ଯ୍ୟେ ଯେ ଦ୍ରୋଣଂକର ଶଳା
କୃପୀକଂର ଜ୍ୟେଷ୍ଠଭ୍ରାଥ ଅଶତ୍ଥମାର ମଉଳା ।୯୮
ଯାହାର ଧନୁ ଧଇଲେ କମ୍ପଇ ଅସକନ୍ଦ
ଭୟେଣ ବିଦ୍ୟା ତାକୁ ଶିଖାଇଲେ ସଦାନନ୍ଦ ।୯୯
ମାଦ୍ରୀଂକର ଜ୍ୟେଷ୍ଠଭ୍ରାତ ମହାରଥୀ ଶଲ୍ୟ
ରଣରାହୁ ଧନ୍ଦୋଳ ସେ ଭାରତେ ଭାରୋଇମଲ୍ଲ ।୧୦୦
ହାଥେ ଧନୁ ଧଇଲେ ମୁହିଂ କରଇ ଭୟେ
ଶଲ୍ୟଂକ ଛାମୁକୁ ମୁଂ ଯାଇ ନୁଆରଇ ପାୟେ ।୧୦୧
ତୁମ୍ଭର ସୋଦର ସେ ରାଧେୟ ବୀର କର୍ଣ୍ଣ
ଡରେ ବସୁଧା ଲାଞ୍ଚ ଦିଅଇ ଶତେ ଭାର ସୁବର୍ଣ୍ଣ ।୧୦୨
ପୃଥୀରେ ଆଣ୍ଠହୋଇ ପାଦ ପଡ଼ିଲେ ଶ୍ରୋଣିତ ବହଇ
ଭାରଥେ ଭାରୋଇମଲ୍ଲ ତା ଛାମୁରେ କେହୁ ରହି ।୧୦୩
ଛତ୍ରୀଗୁରୁ ମନ୍ତ୍ରଗୁରୁ ଦେବଗୁରୁ ବିଦ୍ୟାଗୁରୁ
ଶହସ୍ର ଶାହାସ୍ର ଗୁରୁ କୋଦଣ୍ଡ ଦୀକ୍ଷାଗୁରୁ ।୧୦୪
ସୋମବଂଶ ମଣ୍ଡନ ପିତାମହ ଆଦିଦେବା
ଶାୟେନ୍ତନୁଂକର ସୋଦର ମହାରଥୀ ଭୂରିସର୍ବା ।୧୦୫
ଅଳମ୍ଭୁଷ ଅଳାୟୁଧ ତ୍ରିଅମ୍ଭେକ ବୀର ତିନି
ଯେହାଂକର ଧନୁ ଧରନ୍ତେ ଯେ କମ୍ପଇ ମେଦିନୀ ।୧୦୬
ଭୂତ ଭବିଷ୍ୟ ଗ୍ୟାଂତା ମହାମନ୍ତ୍ରୀ ଯେ ଶଂକୁନି
ଦିବ୍ୟ ଚକ୍ଷୁରେ ଚାହିଂଲେ ତାକୁ ଦିଶଇ ବ୍ରାହ୍ମାଣ୍ଡଖଣ୍ଡ ତିନି ।୧୦୭
ମାନଗୋବିନ୍ଦ ୟେକଛତ୍ରୀ ଯାହାର ବୁଦ୍ଧିବଳେ
ତୁମ୍ଭର ସମ୍ପଦ ସେ ହରିଲାକ ବଳେ ।୧୦୮
ବୀରବର ବୀର ଯେ ନିର୍ଜ୍ଜର ରାଜା ଭୂଅମନୁ
ନବସହସ୍ର ରାଜାତୁଲେ ସମରେ ଆଗିଆଣୁ ।୧୦୯
ଗତ ଆଗତ କଥା କହନ୍ତି ମନ୍ତ୍ରୀ ଯେ ସଞ୍ଜୟେ
କଳିଙ୍ଗସେନା ରାଜା ଚକ୍ରବତୀ ଜାଣଇ ବହୁତ ଉପାୟେ ।୧୧୦
ଶତସୋଦର ତୁଲେ ମାନ ଚକ୍ରବ୍ରତୀ
ୟେକ ୟେକ ଭ୍ରାଥର ତୁଲେ ମର୍ତ୍ତ୍ୟତେ ରଥୀ ହାଥୀ ।୧୧୧
ରଣେ ଅନିର୍ବାରଣ ତିନିସାଗର ମୁକୁଟବନ୍ଧା ଯୋଦ୍ଧା
ତିନିସାଗର ଯୋଦ୍ଧା ଅଛି ବୀରବର ଶୋଧା ।୧୧୨
ଆହୋ ଅର୍ଜ୍ଜୁନ ଦୃଶିଳାର ବଲ୍ଲଭ ସେ ଯେ ଅଟଇ ଜଦ୍ୟରଥ
ନବକ୍ଷଉଣୀ ଯୋଦ୍ଧା ତୁଲେ ଦଶସହସ୍ର ରଥ ।୧୧୩
ଈଶ୍ୱରେ ସେବା କରି ମାଗିଅଛି ବର
ପିନାକ ସମାନେ ଧନୁୟେକ ଅଛି ତାର କର ।୧୧୪
ଆହୋ ଅର୍ଜ୍ଜୁନ ତାର ପ୍ରତଗ୍ୟାଂ ପ୍ରତକ୍ଷେ ତ ଜାଣୁ
ଅନମିତେ କେତେ ପହିଜ ବଖାଣୁ ।୧୧୫
ମରଣଭେଦ କହି ଅବା ଭୀଷ୍ମ ନାଶଗଲା
ତୁମ୍ଭର ଛଳେ ମୋହୋର ବଚନେ ସେ ଯେ ଶରଶଯ୍ୟା କଲା ।୧୧୬
ତୋହୋର ବଚନ ଶୁଣି ମୋହୋର ନ ଫୁରଇ କିଛି
କେସନେକେ ଜଦ୍ୟରଥ ମାରିବୁ ସର୍ବସାଚୀ ।୧୧୭
ଶ୍ରୀକୃଷ୍ଣଂକର ବଚନ ଶୁଣି ବୋଲଇ ବିବଚ୍ଛ
ତୁ ମାତ୍ର ହରି ମୋତେ ହୋଇଥିବୁ ସଂପକ୍ଷ ।୧୧୮
କେ କାହାକୁ ରକ୍ଷା କରି ପାରିବ ତ୍ରଇଲୋକେ
କାଲି ଜଦ୍ୟରଥକୁ ମୁଂ ମାରିବଇଂ ୟେକେ ।୧୧୯
ଆଦିତ୍ୟ ଉଦୟରୁ ଅସ୍ତ ପରିଯନ୍ତେ
ଯେବେ ନ ମାରିବି ଜଦ୍ୟରଥେ ଅଗ୍ନିରେ ପଶିବି ଯେ ମୋହୋର ସତ୍ୟେ ସତ୍ୟେ ।୧୨୦
ବ୍ରହ୍ମା ରୁଦ୍ର କୋବେର ଯମ ପବନ ଇନ୍ଦ୍ରେ
ୟେମାନେ ରଖିଲେ ମାରିବି ଜଦ୍ୟରଥ ହରି ହେ ତୁମ୍ଭର ପରସାଦେ ।୧୨୧
ପାଥର ମୁଖରୁ ୟେସନେକ ବାକ୍ୟ ଶୁଣି
ଭୁଜେ ଭିଡ଼ି ପାଥକୁ କୋଳକଲେ ଚକ୍ରପାଣି ।୧୨୨
ତୁ ମୋହୋର ପ୍ରାଣର ଅଭିନ୍ନ ଫାଲଗୁନି
ଜଦ୍ୟରଥକୁ କାଲି କେ ରଖନ୍ତା ନାହିଂ ଭୁବନ ତିନି ।୧୨୩
ଗୋବିନ୍ଦେ ବୋଇଲେ ଯଦ୍ୟପି ଠାବ ନ କରିପାରିବୁ ଫାଲଗୁନେ
ଚକ୍ରେ ମାରିବି କାଲି ମୋର ଭଣଜାର ଅଭିମାନେ ।୧୨୪

✱✱

## ୯୩. ଜୟଦ୍ରଥ ବଧ

ଶୁଣ ହୋ ଚଇତନ ମହାଭାରଥ ସମର
ଲେଖନ୍ତେ ଅନ୍ତ କେ କରିବ ଅଗାଦ ସାଗର ।୧
ସମର ସମ୍ପର୍ବ ଯେ ନ ସରଇ କହନ୍ତେ
ରାଜାମାନେ ଶରବୃଷ୍ଟି କଲେ ଅର୍ଜ୍ଜୁନ ଦେଖନ୍ତେ ।୨
ଅନେଶ୍ୱତ ସୋଦରନ୍ତ ଘେନିଣ କୁରୁରାଣ
ଅର୍ଜ୍ଜୁନର ଆଗେ ଆସି ହୋଇଲେ ଆପଣ ।୩

ନବଲକ୍ଷ ଗୁଞ୍ଜର ସହସ୍ର ରାଜା ତୁଲେ
ଅଣିମର୍ଭୁତ ଯୋଦ୍ଧା ଆସି ଭୀମସେନଙ୍କଙ୍କ ବେଢ଼ିଲେ ।୪
କେ ଶତେ ଦୁଇଶତ ଚାରିଶତ ଶହସ୍ର ଅହିବ୍ରତେ
ବେଢ଼ିଣ ବିନ୍ଧନ୍ତି ନାରାଜ ନନ୍ଦିଘୋଷ ରଥେ ।୫
ଭୀମସେନର ଶରୀର ଅଟଇ ବଜ୍ରଅଙ୍ଗ
ସମସ୍ତ ଶହସ୍ରମାନ ପଡ଼ିଣ ହୁଅନ୍ତି ଯେ ଭଙ୍ଗ ।୬
ଯେସନେକେ ଗିରିବରେ କ୍ଷୁଦ୍ର ପଥରେ ପଡ଼ି ହୋନ୍ତି ଚୂନା
ଯୋଦ୍ଧାଂକର ଶହସ୍ରକୁ ଭୀମ ନ କରଇ ଗଣନା ।୭
ନାରାଜ ବିନ୍ଧନ୍ତେ ସବେ ରଣେଣ ବିମୁଖ
କରେ ଧନୁ ଧରିବାକୁ ପାବନ୍ତି ମହାଦୁଖ ।୮
ରଥ ଛାଡ଼ି ବ୍ରିକୋଦର ଡେଇଂ ପଡ଼ିଲାକ ବେଗ
ଛାଗଳପଲ ଦେଖି ଯେନ୍‌ହେ ଧାମଇଂ ମତ୍ତବ୍ରାଘ ।୯
ବାଆନ ବାଆନ ଭାର ବେନିହାଥେ ଗଦା
ପିଟନ୍ତେ କଉରୋବବଳ ସମସ୍ତ କଲା ପଦା ।୧୦
ସାତ୍ୟକିର ସମର କହିତ କି ପାରି
ଯାହାର ଜ୍ୟେଷ୍ଠ ସୋଦର ଅଟନ୍ତି ଦେବହରି ।୧୧
ଯୋଦ୍ଧାଂକୁ ବିନ୍ଧିଲା ସେ ବାଣ ଜାଳାବାଳୀ
ଆକାଶେ ଅଦୃଶ୍ୟ ହୋଇଲେ ଅଂଶୁମାଳୀ ।୧୨
ଯେକା ନାରାଜରେ ଅନେକ ରାଜା ଫୁଟି
ବାତଘାତେ ଯେସନ ପଂକୁଫଳ ଲୋଟି ।୧୩
ନିର୍ଜ୍ଜୀବ ହୋଇଣ ଯେ ପଡ଼ିଲେ ସର୍ବ ଥାଠ
ମୃତୁପିଣ୍ଡ ଲୋଟନ୍ତେ ଗହଳେ ନ ଦିଶିଲା ବାଟ ।୧୪
ତାହାଣେ ବ୍ରିକୋଦର ବାମେଣ ସାତ୍ୟକି
ଇନ୍ଦ୍ର କୁବେର ବୀଜେ କଲେ ଶ୍ରୀକୃଷ୍ଣର ତହିଁକି ।୧୫
ଖଡ଼ଗ କୋନ୍ତ କୋଠାର ଶହସ୍ରନ୍ତ ପରିତାଳ
ଉଠିଲା ଗଗନେ କି ଜାଣି ଦାବାନଳ ।୧୬
ଅର୍ଦ୍ଧ ଆକାଶ ପରିଯନ୍ତେ ହୋଇଛି ଶର ବୃଷ୍ଟି
ଅବସାନ କାଳ ବେଳହୋଇ ଚତୁର୍ଦ୍ଦଶ ଘଟି ।୧୭
ଗହନବନ ଜାଣି କଉରୋବ ବଳ ସନ୍ୟ
ଦେଖି ନୁଆରିଲେ ଜଦ୍ୟରଥର ବର୍ଣ୍ଣ ଚିହ୍ନ ।୧୮
ନନ୍ଦିଘୋଷ ରଥେ ଅଛି ଧ୍ୱଜରେ ହନୁମନ୍ତ
ଗୋବିନ୍ଦ ବୋଇଲେ କିହୋ ତୋତେ ଦିଶୁଛି କି ଜଦ୍ୟରଥ ।୧୯
ହନୁମନ୍ତ ବୋଇଲା ଦେବ ଗୋପ୍ୟାନ ହୋଇଅଛି
ସୂଚୀଭୂଅ ଭେଦ ମୋତେ ନ ଦିଶଇ କିଛି ।୨୦
ଦୁରାପଦ ଭୂଅ ଦେବ ବଢ଼ାଇ ଉପାୟେ
ପ୍ରତଗ୍ୟାଂ ନିଷ୍ଫଳ ତ ହୋଇଲା ଧନୁର୍ଜୟେ ।୨୧
ତୁ ଦେବ ଚକ୍ରରେ ସବୁନ୍ତି ପାରୁ ମାରି
ତେବେ ଅବା କଉରୋବ ହୋଅଇ ସଂହାରି ।୨୨
ଗୋବିନ୍ଦେ ବୋଇଲେ ମୁଂ ରାମ ପାଦ ଧରି କରିଛି ନିୟମ
ଦେଖିଲ ଭୀଷ୍ମପର୍ବେ କେମନ୍ତ କଲେ ବଳରାମ ।୨୩
ଯେହିକ୍ଷଣି ସମସ୍ତ ମୁଂ ଅନ୍ତକରି ପାରଇ
କେବଳ ରାମ କୋପକଇଂ ମୁଂ ସର୍ବଦା ଡରଇ ।୨୪
ହନୁମାନ ବୋଇଲା ଦେବ ବିଚାର ତୋର ମନେ
ଅର୍ଜ୍ଜୁନ ଦହନ ହୋଇବଟି ବେଳ ଅବସାନେ ।୨୫
ହନୁମନ୍ତ ବୋଇଲା ଦେବ ତୋହୋର ମୋହୋର ସଂପକ୍ଷେ
ପାଣ୍ଡବେ ଗଲେ ନାଶ
ଆବର ଜୀବନେ ଆମ୍ଭର ପିରୋଜନ କିସ ।୨୬
ତୁ ଦେବ ଅନନ୍ତ ଅବତାର ଯେ ଚକ୍ରପାଣି
ସୟଳ ଅନ୍ତ କରନ୍ତା ତୁ ସମସ୍ତ ପରିମାଣି ।୨୭
ହନୁମନ୍ତର ବଚନେ ସେ ଦେବ ଶିରୀରଙ୍ଗି
ରଞ୍ଜିଲେ ଉପାୟେକ ଭୀଷ୍ମକୂଟଭାଙ୍ଗି ।୨୮
ଅର୍ଜ୍ଜୁନକୁ ଗୋଚର ନାହିଂ କାଳଚକ୍ରକୁ ଆଗ୍ୟାଂ ଦିଲେ ଦେବହରି
ବୋଇଲେ ଆଦିତ୍ୟ ଦେବତାକୁ ଉହାଡ଼ ଦଣ୍ଡ ଚାରି ।୨୯
ନାରାୟଣ ଆଗ୍ୟାଂୟେ କାଳଚକ୍ର ବେଗେ
ଆଦିତ୍ୟ ରଶ୍ମି ବୁଡ଼ାଇଲା ଶୂନ୍ୟମାର୍ଗେ ।୩୦
ମଧ୍ୟପୁରଯାକ ଯେ ଅନ୍ଧାର ଦିଶିଲା
ସୟଳଜନେ ଦେଖିଲେ ଆଦିତ୍ୟ ଅସ୍ତଗଲା ।୩୧
କଉରୋବ ଥାଠେ ଯେ ଶୁଭିଲା ଜୟେ ଜୟେ
ସମର ରହୁ ବୋଲି ଆଗ୍ୟାଂ ଦିଲା କୁରୁରାୟେ ।୩୨
ଦିବସ ଅନ୍ତ ଯହୁଂ ହୋଇଲା ରୟଣୀ
ପ୍ରତଗ୍ୟାଂ ନିଷ୍ଫଳ ତ ହୋଇଲା ଫାଲଗୁନି ।୩୩
ଶହସ୍ରନ୍ତ ତେଜ୍ୟାକଲେ ସମସ୍ତ ଯେ କ୍ଷେତ୍ରୀ
ଶରୀର ପ୍ରକ୍ଷାଳନେ ଗଂଗାୟେ ପଶନ୍ତି ।୩୪
ପ୍ରତଗ୍ୟାଂ ନିଷ୍ଫଳ ଯହୁଂ ହୋଇଲା ସର୍ବସାଚୀ
କର୍ଣ୍ଣ କୃପ ଶଲ୍ୟ ସମସ୍ତେ ହୋଇଲେ ପୁଛାପୁଛି ।୩୫
ଅନେଶତ ଭ୍ରାତା ଘେନି ରାଜା ଦ୍ରିଯୋଧନ
ସଞ୍ଜୟେ ଶକୁନି ପ୍ରବେଶ ପାଥର ସନ୍ନିଧ୍ୟାନ ।୩୬
ଅର୍ଜ୍ଜୁନର ମୁଖ ଚାହିଂ ରାଜା ମାନଗୋବିନ୍ଦ

ହା ହା ଅର୍ଜୁନ ବୋଲି କପାଳେ କର ଧିନ୍ଦ ।୩୭
ଆରେ ଦ୍ରୋଣଂକର ମହିଂମା ତୁହିତ ଭଲେ ଜାଣୁ
ମିଛେହେଂ ପାଥ କିଂପେ ପହିଜ ବଖାଣୁ ।୩୮
ଜଦ୍ୟରଥ ଛାରକୁ ତୁ କଲୁ ଯେଡ଼େ ପ୍ରତଗ୍ୟାଂ
ଶ୍ରୀକୃଷ୍ଣଂକ ବଚନ ତୁ କଲୁ ଯେ ଅବଗ୍ୟାଂ ।୩୯
ମାନଗୋବିନ୍ଦ ବୋଲଇ ତୋହୋର ପ୍ରାୟେ କ୍ଷେତ୍ରୀ
ମରିବୁ ବିନାଯୁଦ୍ଧେ
କୃଷ୍ଣ ଯୁଧେଷ୍ଠି ଭୀମ ନକୁଳ ସହଦେବ ବଞ୍ଚନ୍ତି କି
ତୋହୋର କ୍ରୋଧେ ।୪୦
ଅର୍ଜୁନ ବୋଇଲା ଦେବ ଶୁଣିମା ଦାମୋଦର
ପ୍ରତଗ୍ୟାଂ ନିଷ୍ଫଳ ତ ହୋଇଲା ମୋହୋର ।୪୧
ଚିତା ଆରୋପଣ କର ଯେହ୍ନେ ମୋହୋର ବ୍ରତ
ପଶିବି ହୁତାଶନେ ଯେ ମୋହୋର ସତ୍ୟ ସତ୍ୟ ।୪୨
ପାଥର ବଚନେ ବୋଲନ୍ତି ଦେବହରି
ଜଦ୍ୟରଥକୁ ମାର ବାବୁ ରାତ୍ରଯୁଦ୍ଧ କରି ।୪୩
ସପତମ ଶାହାସ୍ରେ ଲେଖନ କଲା ପ୍ରଜାପତି
ଦିବସ ଯାହାର ଅଟଇ ତାହାର ସିନା ରାତି ।୪୪
ରାତ୍ର ଦିବସ ଜାଣ ଅଟଇ ନା ଯେକା
ଚାରିଯୁଗକଇଂ ଯେହେନେକ ପ୍ରମାଣ ସେ ଲେଖା ।୪୫
ରାତ୍ର ସମରେ ଯେବେ ଜଦ୍ୟରଥକଇଂ ବଧକରି ନୁଆରି
କରିବୁ ଅନଳେ ଝାସ କେ ତୋତେ ନିବାରି ।୪୬
ଶ୍ରୀକୃଷ୍ଣ ବୋଇଲେ ହୋ ଶହସ୍ର ଘେନ ସମର କର ପାଥ
ଥାଠ ନିବର୍ତ୍ତ କଲେ ଆମ୍ଭେ ଲୋଡ଼ିବା ଜଦ୍ୟରଥ ।୪୭
ଭୀମସେନ ବୋଇଲେ ଶୁଣିମା ମାନଚକ୍ରବ୍ରତୀ
ସନ୍ୟ ଘେନି ସଜ ହୁଅ ସମର କରିବା ରାତି ।୪୮
ମାନଗୋବିନ୍ଦ ବୋଇଲା ଶୁଣ ସର୍ବସାଚୀ
କ୍ଷତ୍ରୀବୃତ୍ତକୁ ପ୍ରତଗ୍ୟାଂ ତୋହୋର ଯେହ୍ନେ ଅଛି ।୪୯
କ୍ଷତ୍ରୀହୋଇ ଯେବେ ନ ପାଳିବାକ ନିଜ ଧର୍ମ
ବ୍ରାହ୍ମଣ ହୋଇ ଯେବେ ନ ସାଧିବ ବ୍ରହ୍ମକର୍ମ ।୫୦
ଯୋଗୀହୋଇ ଯେବେ ଯୋଗ ସେ ନ ସାଧି
ମନ୍ତ୍ରୀ ହୋଇ ଯେବେ ନ କହିବ ସଦବୁଦ୍ଧି ।୫୧
ପଣ୍ଡିତହୋଇ ଯେବେ ଛାଡ଼ିବ ଧର୍ମବାଟ
ତିରୀହୋଇ ଯେବେ ପର ଦାରରେ ପଇଠ ।୫୨
ରାଜାହୋଇ ଯେବେ ଲଂଘଇ ପରଜାନ୍ତ
ସ୍ୱର୍ଗରେ ଠାବ ନାହିଂଟି ଯେତେ ଜଣ ଯେ ଲୋକନ୍ତ ।୫୩
ତୁ ଯେ ପ୍ରତଗ୍ୟାଂ କଲୁ ଅଦିତ୍ୟ ଅସ୍ତଯାକେ ଯଦି ନ ମାରଇ ଜଦ୍ୟରଥ
ସେହିରଣ ଭୂମିରେ ଅଗ୍ନିଜାଳି ମରିବି ଯେ ମୋହୋର ସତ୍ୟ ।୫୪
ସମର କରନ୍ତେ ଯେବେ ଆଦିତ୍ୟ ଅସ୍ତଗଲା
ଯେହେନେକେ ପ୍ରତଗ୍ୟାଂ ତୋହୋର ନିଷ୍ଫଳ ହୋଇଲା ।୫୫
କ୍ଷତ୍ରୀଂକର ବଚନ ଯେ ପାଷାଣ ରେହା ଜାଣି
ଯେହା ପାଳିବାକୁ ସାମରଥ କେଉଂଣ ପ୍ରାଣୀ ।୫୬
କ୍ଷତ୍ରୀ ହୋଇ ଯେବେ ପ୍ରତଗ୍ୟାଂ ଲଂଘିବ
ଇନ୍ଦ୍ର ଦେବତା ଯେବେ ମଧ୍ୟେପୁର ନ ପାଳିବ ।୫୭
ପୃଥୀଯାକ ଯେବେ ଲଂଘିବକ ସିନ୍ଧୁ
ରାଜା ହୋଇଣ ଯେବେଟି ହୋଇବ ଅସାଧୁ ।୫୮
ମାତାପିତାକୁ ଯେବେ ନ ଆରାଧିବେ ସୁତ
ସଜ୍ଜନ ଜନ ହୋଇ ଯେବେ ଦେବତା ବ୍ରାହ୍ମଣେ ନୋହିବ
ଭଗତ ।୫୯
ଅଗ୍ନି ଦେବତା ଯେବେ ଲଂଘିବେ ଗୃହବାସ
ସମ୍ପଦ ଥାଉଂ ଯେବେ ପିତୃଂକୁ କରଇ ନିରାଶ ।୬୦
ତିରୀ ହୋଇ ଯେବେ ନୋହିବ ପତିରେ ଭଗତା
ଧନବନ୍ତ ହୋଇ ଯେବେ ଅତିଥେ ନୋହିବେ ସେ ଦାତା ।୬୧
ଯେତେକ ଯେବେଟି ଲଂଘିବେ ସଂସାର
ବେଦ ଶାହାସ୍ର ମିଥ୍ୟା ତ ହୋଇଲା ଦାମୋଦର ।୬୨
ମାନଗୋବିନ୍ଦର ବୋଲେ ଯେ ବୋଲଇ ଫାଲଗୁନି
କେ ଯେହା ଲଂଘିବ ହୋ ଜାତ ହୋଇଣ ମେଦିନୀ ।୬୩
ପ୍ରତଗ୍ୟାଂ ନିଷ୍ଫଳ କରିତ କି ପାରି
କେ ଯେଥି ଅମର ହୋଇବେ ବସୁନ୍ଧରୀ ।୬୪
ତୁ ସେ ମୋହୋର ସୋଦର ପ୍ରଶଂସଇ ଫାଲଗୁନି
ଚିତା ଆରୋପଣ କର ପଶିବଇଂ ଅଗ୍ନି ।୬୫
କୃଷ୍ଣ ଭୀମ ସାତୁକି କ୍ରୋଧ ହାଦେ ଅବସ୍ଥା
ଅର୍ଜୁନ ବୋଇଲେ କେହି ମୋତେ ନୋହିଲେ ଅଗ୍ନିଦ୍ୟନ୍ତା ।୬୬
ମୃତ୍ୟୁକାଳେ କାଷ୍ଠ ଅଗ୍ନି ଯେହୁ ନୁହନ୍ତି ସଖା
କୁଟୁମ୍ବ ମଧ୍ୟରେ ତାକୁ ନ କରିବଟି ଲେଖା ।୬୭
ମାନଗୋବିନ୍ଦ ବୋଇଲା ଭାଇମାନନ୍ତ ରାଇ
ବନରୁ ଅଗରୁକାଠ ଆଣ ଯାଇଂ ବହି ।୬୮
ଶୁଣି ଧୃଶାସନ ଦୁର୍କର୍ଣ୍ଣ ଦୁଜୟେ ଦୁରାନ୍ତ
କାଠ କୁଢ଼ାଇଲେ ଆଣି ଯେସନେ ଉଚ୍ଚ ପରବତ ।୬୯
ମାନଗୋବିନ୍ଦ ନେଇ ଆରୋପିଲା ବହନି
ବଇକୁଳ୍ୟେ ହୋଇ ଧାମନ୍ତି ସକଳ କଉରୋବ ସଇନି ।୭୦

ଭାରଥେ ଭାରୋଇମଲ୍ଲ ଶରଣ ପଞ୍ଜର ବୀରଧୂ
ତ୍ରଇଲୋକ୍ୟର ମଧ୍ୟେ ଅର୍ଜୁନର ମହିଂମା ସାଧୁ ସାଧୁ ।୭୧
ଅନେକ ଅଗର ଚନ୍ଦନକାଠ ଗୁଆଘୃତ ଘେନି
ବେଢ଼ିଣ ପକାବନ୍ତି ଯେ କୁରୁବଳ ସଇନି ।୭୨
ଶକୁନି ବୋଇଲା ସୂଚୀଭୂଅରୁ ବାହାର ହୋଉ ସିନ୍ଧୁରାୟେ
ଅଗ୍ନିରେ ଦହନ ଯେ ହାଦେ ହୋଉଛି ଧନୁର୍ଜୟେ ।୭୩
ଯେ ଜନମେ ଚାହିଂଥାଅ ଅର୍ଜୁନର ମୁଖ
ଜଗୁଜନ ସୋଦର ସେ ଅଟଇ ବିବସ୍ତ ।୭୪
ସଞ୍ଜାୟେ ଶକୁନି ଧୃତିରାଷ୍ଟ୍ରିଂକର ତୁଲେ
ଦଶ ସହସ୍ର ରଥୀ ଘେନି ସିନ୍ଧୁରାଜା ବାହାର ହୋଇଲେ ।୭୫
ଅନେକ ସମ୍ବରେ ଯେ ସିନ୍ଧୁ ଆଧିପତି
ଗୋବିନ୍ଦେ ଦେଖିଲେ ଜଦ୍ୟରଥର ମୂରତି ।୭୬
ଜଦ୍ୟରଥ ବୋଇଲା ହୋ ଶୁଣ ଫାଲଗୁନି
ଅଦଭୁତେ ମରଣ ତୁ ଯେ ଅଇଲୁ କାହୁଂ ଘେନି ।୭୭
ତୋହୋର ବଇରି ଅଟନ୍ତି ଧୃତିରାଷ୍ଟର ପୋୟେ
ଆମ୍ଭନ୍ତ ମାରିଲୋଡୁ ତୁ କେବଣ ଭରସାୟେ ।୭୮
ଧର୍ମ ଛାଡ଼ିଣ ଯେ ଅଧର୍ମକଇଂ କଲୁ ଆଶା
କାଳେ ବିହନ୍ତା ପୁରୁଷେ ତୁମ୍ଭନ୍ତ କଲେକ ନିରାଶା ।୭୯
କେତେକାଳ ବ୍ରତିବ ବୋଲି ଅତି ଉତକର୍ମେ
କାଳେ ଆଣି ଶାସ୍ତି ତୋତେ ବିହିଲାକ ଯମେ ।୮୦
ଦୁର୍ଜନନ୍ତ ଭୟେକରି ସଜନନ୍ତ ଲୋଡ଼ ମାରି
ମରରେ ପାଣ୍ଡବେ ଅକାଳଚକ୍ର ପଡ଼ି ।୮୧
ଶକୁନି ବୋଇଲା କୃଷ୍ଣ ପରା ସାରଥି ରଥେ ଥାଉଂ ଥାଉଂ
ଶକଟ ଭୂଅ ଭେଦି ନୁଆରିଲ କିମ୍ପେ କେହୁ ।୮୨
ଅଖ ଚକ ବାଟେ ଯେବେ ଭେଦନ୍ତ ପ୍ରଥମେ
ପାଞ୍ଚଘଡ଼ିର ମଧ୍ୟେ ଜଦ୍ୟରଥକଇଂ ଭେଟନ୍ତ ସାଂଗ୍ରାମେ ।୮୩
ଆପଣେ ନ ଜାଣିଲୁ ନୁଆରିଲୁ ଭୂଅ ଭେଦି
ନଶନ୍ତ କାଳକୁ ତୁମ୍ଭର ବିପରୀତ ବୁଦ୍ଧି ।୮୪
ଶକୁନି ବୋଇଲା ପ୍ରତଗ୍ୟାଂ କଲୁ ଅତି ଉତକର୍ମପଣେ
ଦିବାରାତ୍ର ବୋଲି କିମ୍ପେ ନ ବୋଇଲୁ ରଣେ ।୮୫
ଆଦ୍ୟହୁଂ ଜଦ୍ୟରଥ ତୁମ୍ଭନ୍ତ ଅଟଇ ଉରସଲ
ଯେହାର ବେଳେ ତୁମ୍ଭନ୍ତ ନୋହିଲା କିଛି ଭଲ ।୮୬
ଭୀମସେନ ବୋଇଲା ତୁ ଶହସ୍ର ଘେନ ପାଥ
ଓହୋସନ୍ଧ୍ୟାୟେ ନିଚୟେ ମାରିବା ଜଦ୍ୟରଥ ।୮୭
ନୋହିଲେ ମୋତେ ଆଗ୍ୟାଂ ଦେସି ଫାଲଗୁନି
ମୁହିଂ ଯେହାକଇଂ ପିଟଇ କାଳେବର ଗଦା ଘେନି ।୮୮
ଅର୍ଜୁନ ବୋଇଲା ସ୍ୱାମୀ ହୋଇବା କି ତ୍ରିଜୀବୀ
ଧର୍ମ ଲଘିଣ କଥା ଗୁହାଇବା କି ପୃଥିବୀ ।୮୯
ଦିନକର ମଧ୍ୟେ ପାରନ୍ତି ଯେବେ ମାରି
ରଣେ ଜୟେ ସାଧୁ ସାଧୁ ହୁଅନ୍ତା ମୋହୋରି ।୯୦
ଆଉ କ୍ଷଣେ ଯେବେ ଆଦିତ୍ୟ ଦେବତା ଥାନ୍ତେ ରହି
ମାରନ୍ତି ଜଦ୍ୟରଥକଇଂ ରଖନ୍ତା କେହି ନାହିଂ ।୯୧
ଅର୍ଜୁନର ପ୍ରତଗ୍ୟାଂ ଶୁଣିଣ ନାରାୟଣ
କାଳଚକ୍ର ହରି କାଢ଼ିନେଲେ ତତକ୍ଷଣ ।୯୨
ପଶ୍ଚିମ ଦିଗେ ବିକାଶିଲେ ଦେବ ମାରତଣ୍ଡ
ଦେଖିଲେ ବେଳ ଅଛଇ ଆଉ ତିନିଦଣ୍ଡ ।୯୩
ଦେଖିଣ ସମସ୍ତ ଯୋଦ୍ଧାୟେ ହୋଇଲେ ଆଶ୍ରିଜ
ଅର୍ଜୁନ ମୁଖ ଚାହିଂ ହସିଲେ ଦେବରାଜ ।୯୪
ଶକୁନି ଚାହିଂଲା ଜଗନ୍ନାଥଂକ ଶ୍ରୀମୁଖ
କୂଟ କପଟ ନାଥ ଯେହା ଭିଆଇଲୁ କି ଶ୍ରୀବସ୍ତ ।୯୫
ଗୋବିନ୍ଦେ ବୋଇଲେ ଶକୁନି ଜାଣିଲୁ ଆମ୍ଭର ସତ୍ୟ
ଶହସ୍ର ଗହଳେ ଅଦୃଶ୍ୟ ହୋଇଥିଲେ ଆଦିତ୍ୟ ।୯୬
ଆବର ବିଶେଷ ଚରଣ ରେଣୁ ଧୂଳି
ତେଣୁକରି ଅଦୃଶ୍ୟ ହୋଇଲେ ଅଂଶୁମାଳୀ ।୯୭
ସାଂଗ୍ରାମ ରହନ୍ତେ ଧୂଳି ବିଶ୍ରାମିଲା ଯେତେବେଳେ
ଦିନକର ତେଜ ବିକାଶିଲା ଗଗନ ମଣ୍ଡଳେ ।୯୮
ଗଦାବର ଧରି ଯେ ଗର୍ଜଇ ବୀର ଭୀମସେନ
ଭୟେ ଭାଂଜି ପଳାଇଲେ କଉରୋବ ସଇନ ।୯୯
ଗୋବିନ୍ଦେ ବୋଇଲେ ତୁହୋ ଶହସ୍ର ଧର ପାଥ
ଦଶ ଶହସ୍ର ଯୋଦ୍ଧା ତୁଲେ ରହିଅଛଇ ଜଦ୍ୟରଥ ।୧୦୦
ମାନଗୋବିନ୍ଦ ବୋଇଲା ଯେ କପଟ କୂଟ କଥା
ଧର୍ମକୁ ଲଂଘିବାର ତୁମ୍ଭର ହୋଇଲା ସର୍ବଥା ।୧୦୧
ଚାରିଯୁଗେ ସତ୍ୟ ଧର୍ମହିଂ ଯେ ପରିଚାର
ଧର୍ମକଇଂ ଲଘିଲେ ପ୍ରାଣୀଂକି ନାହିଂଟି ପ୍ରତିକାର ।୧୦୨
ମୁହିଂ ଯେ ପ୍ରତଗ୍ୟାଂ କଲି ଋଷିମାନନ୍ତ ବସାଇ
ବିନା ଯୁଦ୍ଧେ ପାଣ୍ଡବନ୍ତ ଭୂମି ତିଳାର୍ଦ୍ଧେ ନ ଦିଅଇଂ ।୧୦୩
ଭୀଷ୍ମ ନାଶଗଲା ଭୂରିସର୍ବାହିଂ ପଡ଼ିଲା
ଅନେକ ସନ୍ୟ ସଖା ପଡ଼ିଲେ ଭାଇ ଦୁର୍ଦ୍ଧକ୍ଷ ଛାଡ଼ିଗଲା ।୧୦୪

ଯଦ୍ୟପି ସମରେ ମୋର ପଡ଼ିବେ ଅଠାଣୋଇ ଭ୍ରାଥ
ତଦ୍ୟପି ସୂଚୀମୁନେ ଭୂମି ପାଣ୍ଡବନ୍ତ ନ କରଇ ସନମତ ।୧୦୫
ଗୋବିନ୍ଦେ ବୋଇଲେ ତୋହୋର ମହିଂମା ଅଟଇ ଧନି
କେବଣ ପୁଣ୍ୟକ୍ଷଣେ ତୋତେ ଜାତ କଲାକ ଜନନୀ ।୧୦୬
ଆହୋ ମାନଗୋବିନ୍ଦ ନିମନ୍ତ୍ରଣ କରି ଭୀମକୁ ନେଲ ଯେ ଭୁଞ୍ଜାଇ
ପୁରଞ୍ଜନ ପଣ୍ଡା ହାଥେ ବିଷଲଡୁ ପରସାଇ ।୧୦୭
ଭୁଞ୍ଜିଣ ବ୍ରିକୋଦର ଯହୁଂ ହୋଇଲା ଅସାଷ୍ଟମ
ନାଗୁଣୀ ଖାଉ ବୋଲି ଜଳେ ମେଲିଦିଲ ଭୀମ ।୧୦୮
ଘୋଷଯାତ୍ରା ବେଳେ ଗଲ ପାଣ୍ଡବନ୍ତ ଭଣ୍ଡି
ମୁହିଂ ତୁମ୍ଭର ଜାଣିଅଛିନି କାଳକ ଧର୍ମଖଣ୍ଡି ।୧୦୯
ଜତୁର ଘରେକ ଯେ ଭିଆଇଲ ଧର୍ମବାଟେ
ଜଉ ସର୍ଜ୍ଜଳସ ଗୁଆଘୃତ ଛଣପଟେ ।୧୧୦
ନିଦ୍ରାକାଳେ ପାଣ୍ଡବେ ମରନ୍ତୁ ବୋଲି ଦେଲ ପୋଡ଼ି
ପ୍ରାଣ ପାଇଲେ ସୁରନଦୀରେ ଯାଇଂ ପଡ଼ି ।୧୧୧
ଆହୋ ମାନଗୋବିନ୍ଦ ନିମନ୍ତ୍ରଣ କରି ଯେ ଗାନ୍ଧାରସେନକୁ ଆଣିଲୁ
ପଥର ଘରେ ମୁଦି ଯେ ତାର କୁଟୁମ୍ବ ବନ୍ଦୀକଲୁ ।୧୧୨
ଶୟେ ପଞ୍ଚାଣୋଇ ତାର ବନ୍ଧୁ କୁଟୁମ୍ବ ସହିତେ
ଅନ୍ନ ନ ଦେଇ ମାଇଲୁ ତୋତେ ଧର୍ମ ସହିବ କେମନ୍ତେ ।୧୧୩
ଧର୍ମେ ବ୍ରତିଲା ଯେ କେଉଂଣ ବାଗେ ଶକୁନି
ଧର୍ମବନ୍ତ ପୁରୁଷ ତୁମ୍ଭେ କର୍ଣ୍ଣ ଧୁଶାସନ ତିନି ।୧୧୪
ଚକ୍ର ଭିତରେ ନ କଲ କେଉଂଣ କୃତ୍ୟ
ଅଭିମନ୍ୟୁକୁ ବେଢ଼ି ମାଇଲ ଦଶମର୍ଭୁତ ରଥ ।୧୧୫
କେ ରଥ ଭାଙ୍ଗିଲରେ କେ ମାରିଲ ଚାରିହୟେ
ଧୁଶାସନକଇଂ ରାଜ ତୁ ପଠିଆଇଲ ହୋ ରାୟେ ।୧୧୬
ଧାଇଂଣ ଧୁଶାସନ ଗଦାୟେଣ ପିଠିକଟି ପିଟି
ଅସାଷ୍ଟମେ କୁମର ଯେ ପଡ଼ିଲା ମହୀଲୋଟି ।୧୧୭
ଉତ୍ତାନ ହୋଇ କୁମର ପଡ଼ିଲା ଯେତେବେଳେ
ଧୁଶାସନ ଗଦା ନେଇ ପୁଣ ପିଟିଲା ତେତେବେଳେ ।୧୧୮
ଶତେଖଣ୍ଡ ହୋଇଣ ଭାଜିଲା ଅଭିମନ୍ୟୁର ବୁକୁ
କେତେ ଧର୍ମମାନ ମୁଂ କହିବି ତୁମ୍ଭଂକୁ ।୧୧୯
ଅପାର ଧର୍ମ ତୁମ୍ଭର କହିଲେ ନ ସରଇ
ପୁତ୍ର କଷ୍ଟ ଶୁଣି ଅର୍ଜ୍ଜୁନ କରେ ଗାଣ୍ଡିମ ଧନୁ ଧରଇ ।୧୨୦
ପାଥର ଧନୁ ଧରନ୍ତେ ଭୀମସେନ ରାଗେ ଉଠି
ଅଧରେ ଦନ୍ତ ଚାପି ନୟନ ଭ୍ରୁକୁଟି ।୧୨୧
ବେନିଗଦା ବୁଲାଇ ଆକ୍ରେଷି ଶିର ଝୁଣି
କଣୟଗିରି ଜାଣି ଉର୍ଦ୍ଧେ ଟେକଇ ବେନିପାଣି ।୧୨୨
ବେନି ନୟନ ଭ୍ରମଇ କାଳଚକ୍ର ପ୍ରାୟେ
କୃତାନ୍ତକ ରୂପ ଦେଖି ଭାଙ୍ଗିଲେ ସର୍ବରାୟେ ।୧୨୩
ଦଶସହସ୍ର ରଥୀ ଘେନି ନୃପତି ଜଦ୍ୟରଥ
ଭୟେ ପଳାଇଲା ସେ ଦୃଶିଳାର ନାଥ ।୧୨୪
ଦ୍ରିଯୋଧନ ବୋଇଲା ବେଳ ଅଛି ଯେକ ଘଡ଼ି
ପଳାଇଣ ପ୍ରାଣରକ୍ଷା କର ଯା ଯେତେ ଧୂର ପାରି ।୧୨୫
ସନ୍ୟ ସଖା ତେଜ୍ୟା କରିଣ ଅସମ୍ଭାଳେ ସିନ୍ଧୁରାୟେ
ରଥ ଗଜ ଅଶ୍ୱ ତେଜି ପଳାବଇ ପ୍ରାୟେ ।୧୨୬
ଛିନ୍ନଛତ୍ର ହୋଇ ପଳାୟେ ରାୟେ ସିନ୍ଧୁ
କେଶ ବାସ ଅସମ୍ଭାଳ କେହୁ ଅବା ବାନ୍ଧୁ ।୧୨୭
ଭୀମ ସାତ୍ୟକି ଯେ ଗୋଡ଼ାଇ ବଳ ଧଂସି
ବେନି ଯୋଦ୍ଧାୟେ ଶତସହସ୍ର ରଥୀକି ଆକ୍ରେଷି ।୧୨୮
ନନ୍ଦିଘୋଷ ତେଜ୍ୟାକରି କୃଷ୍ଣ ଫାଲଗୁନି
ଗୋଡ଼ାବନ୍ତି ଜଦ୍ୟରଥକୁ ଶ୍ରୀକରେ ଶସ୍ତ୍ରଘେନି ।୧୨୯
ଇନ୍ଦ୍ର ପ୍ରଶସ୍ତ ନାମେ ଯେକଇ ପରବତ
ତହିଂର ତଳେ ଓଗାଳିଲେ ଯାଇଂ ସିନ୍ଧୁରାୟେ ଜଦ୍ୟରଥ ।୧୩୦
ଅର୍ଜ୍ଜୁନ ଡାକ ଦିଅଇ ରହ ରହ ସିନ୍ଧୁ ଆଧିପତି
ମୃତୁକାଳେ ନିସତ ହୋଇଲେ ରହଇ କି ଜୀବତି ।୧୩୧
ଭଗ୍ନୀର ବଲ୍ଲଭ ହୋଇ ତୁ ପଶିଲୁ ସମରେ
ବଂଶକଇଂ ଦ୍ରୋହ ଚିନ୍ତିଲୁ ରେ ବାଳୁତ ଅପହାରେ ।୧୩୨
ଆହୋ ଚଇତନ ଅର୍ଜ୍ଜୁନ ଶହସ୍ର ଛାଡ଼ିଲା ଯେତେବେଳେ
ଚିତା ଆରୋପଣ କଲେ ଯମୁନା ନଦୀକୂଳେ ।୧୩୩
ଧାତିକାରେ ଧାଇଣଂ ଯେ ଗଲେକ ମୁନେହି
ଯୁଝେଷ୍ଟି ଅଗ୍ରତେ ଅସୁଲଭ ବାରତା କହି ।୧୩୪
ସ୍ୱାମୀ ସମର କରନ୍ତେଣ ଆଦିତ୍ୟ ଅସ୍ତ ଗଲା
ସାଂଗ୍ରାମ ରହିଲା ଅର୍ଜ୍ଜୁନ ଶହସ୍ରନ୍ତ ଛାଡ଼ିଲା ।୧୩୫
କଉରୋବବଳ ଆସି ଆରୋପିଲେ ବହନି
ଅନଳେ ଝାସିବ ତୋର ସୋଦର ଫାଲଗୁନି ।୧୩୬
ଧର୍ମର ନନ୍ଦନ ଶୁଣି ପାଇଲେ ବଡ଼ କଷ୍ଟି
ନକୁଳ ସହଦେବ ଶ୍ରୀଖଣ୍ଡି ଧୃଷ୍ଟଦ୍ୟୁମନ ଘେନି ଧାମନ୍ତି
ଯୁଝେଷ୍ଟି ।୧୩୭
ଦ୍ରୁପଦ ଶଂଖ ଉତର ଘଟଉତ୍କଟ ବିରାଟ
ଧାମନ୍ତି ପଛେ ଯେ ପାଣ୍ଡବବଳ ଥାଟ ।୧୩୮

ସିନ୍ଧୁରାଜାର ତୁଲେ ଯେ ସମର କରଇ କିରୀଟୀ
ଇନ୍ଦ୍ରପ୍ରଶସ୍ତ ତଳେ ଅର୍ଜୁନଙ୍କୁ ଯାଇଂ ଭେଟି ।୧୩୯
ଯୁଦ୍ଧେଷ୍ଟି ସୁଲଭ ସରୂପ ଦେଖିଣ କୃଷ୍ଣ ପାଥ
ଅନେକ ସାନନ୍ଦେଣ ହୋଅନ୍ତି କୃତ କୃତ ।୧୪୦
ଗୋଡ଼ାଇ ଭେଟିଲେ ଯାଇଂ କଉରୋବବଳ
ଓହୋବଳ ସଇନି ହୋଇଲା ମହାଗୋଳ ।୧୪୧
ଅଧାଚନ୍ଦ୍ର ବାଣ ଯେ ଘେନିଣ କିରୀଟୀ
ଜଦ୍ୟରଥ ଧନୁଶର ପକାଇଲା କାଟି ।୧୪୨
ଧନୁ ଶସ୍ତ୍ର ନାହିଂ ଜଦ୍ୟରଥ ହୋଇଅଛି ଉଭା
ବିଦ୍ୟାଧର ପ୍ରାୟେକ ଦିଶଇ ଅତି ଶୋଭା ।୧୪୩
ଜଦ୍ୟରଥ ବୋଇଲା ତୁ ଶୁଣ ଧନୁର୍ଜୟେ
ଶରଣ ପଞ୍ଜର ବାନା ତୋହୋର କୃଷ୍ଣର ଭରସାୟେ ।୧୪୪
ଆହୋ ଅର୍ଜୁନ ବିରଥୀ ହୋଇଲେ ତୁ ନ ମାରୁ ବଇରି
ବିଶହସ୍ତ ହୋଇଲେ ତୋହୋର ହୃଦେ ଦୟା ଧରି ।୧୪୫
ପିଠି ଦେଖନ୍ତେ ନ ମାରୁ ଅଂଗୁଷ୍ଟି ଭରି ମୁଖ
ବିରସ ଭାବ ଯେ ଶତ୍ରୁତାକୁ ନ ପାରୁ ତୋହୋର ନାମଟି
ବିବସ୍ତ ।୧୪୬
ତୋହୋର ଜୀବଦାତା ହୋଇ ମୁଂ ଥାଇ ଦେହ ଘେନି
ଆଜହୁଂ ତୁମ୍ଭର ଭୃତ୍ୟ ମୁଂ ଜାଣ ଫାଲଗୁନି ।୧୪୭
ଆହୋ ଧନୁର୍ଜୟେ ଦ୍ରୋପତୀ ହରଣେ ମୋତେ କଲ ସାତବେଣ୍ଟି
ବେଳେ ବେଳେ ମୁହିଂ ତୁମ୍ଭର ଭୃତ୍ୟର ଭୃତ୍ୟ ସେଟି ।୧୪୮
ମସ୍ତକେ ହାଥ ଦେଇ ବୋଲଇ ମୋତେ ଉଦ୍ଧର ଧର ପାଥ
ଶୁଣି ବିଷାଦେ ପାଥ ହୋଇଲା ଥମ୍ଭୀଭୂତ ।୧୪୯
ଅର୍ଜୁନ ବୋଇଲା ହରି କାହିଂର ନିମନ୍ତେ କଲୁ ଆମ୍ଭେ ଦ୍ୱନ୍ଦ
ଯେହାନ୍ତ ନାଶକରି କିସ ଆମ୍ଭର ସମ୍ପଦ ।୧୫୦
ଆପଣାର ସମ୍ପଦ ନିମନ୍ତେ ଯେ ନାଶନ୍ତି ବନ୍ଧୁଜନ
ପରଲୋକେ ଅବଶ୍ୟ ହୁଅନ୍ତି ସେ ନରକେ ପତନ ।୧୫୧
ଗୋବିନ୍ଦେ ବୋଇଲେ ତୁ ପର ଉପକାରୀ
ଶରଣ ରକ୍ଷାକରି ହୋ ଆପଣା ପ୍ରାଣ ହାରି ।୧୫୨
ଆଦିହୁଂ ନିସତ ଯେ ତୁକି ନଜାଣୁ ବୀର ପାଥ
ଉପାୟେ କରି ଆଦିତ୍ୟ ଯେ କରାଉଛି ଅସ୍ତ ।୧୫୩
ତୁ ଯାଇଂ ଅଗ୍ନିରେଣ ପଶିବୁ ଯେତେବେଳେ
ପାଣ୍ଡବଂକ ଚିହ୍ନ ବର୍ଣ୍ଣ ନ ଥୋଇବ ଭଲେ ।୧୫୪
ପୁତ୍ର ଶତ୍ରୁ ଯେହାକଇଂ କ୍ଷଣେହେଂ ନ ଥୋଇ
ଯେହାକୁ ନ ମାଇଲେ ନରକ ଗତି ଦୋଷ ପାଇ ।୧୫୫

ଆଉର କ୍ଷଣକେ ତୋତେ ପଡ଼ିବ ପରମାଦ
କିମ୍ପୁତେ ମଉନ ତୁ ହୋଇଲୁ ବେଗେଣ ଶିର ଛେଦ ।୧୫୬
ତୋହୋର ପ୍ରତଗ୍ୟାଂ ନିମନ୍ତେ ମୁଂ ରଖିଅଛି ଯେହା
ଯେହିକ୍ଷଣି ବ୍ରିକୋଦର ବିଦାରିବ ଯେହାର ହିୟା ।୧୫୭
ସାତ୍ୟକି ଦୁଷ୍ଟଦ୍ୟୁମନ ଶ୍ରୀଖଣ୍ଡି ଆସନ୍ତି ଗଳଗାଜି
ଯେହିକ୍ଷଣି ମାଂସ ଯେହାର ପକାଇବେ ପିଞ୍ଜି ।୧୫୮
ସମରେ ବଧ କରାଇଲା ଯେ ମୋହୋର ଭଗ୍ନିକା
ଚକ୍ରେ ଛେଦିବଇଂ ମୁଂ ତୁ ଅବଶ୍ୟ କଲେ ତେଜ୍ୟା ।୧୫୯
ମାୟାଧର ପୁରୁଷ ହୃଦଗତେ ବ୍ୟାପି
ଅପାର ମର୍ମବାକ୍ୟ କହି ଅର୍ଜୁନଙ୍କୁ କରାଇଲେ କୋପୀ ।୧୬୦
ଶୁଣିଣ ଅର୍ଜୁନ ଯେ କରେ ଧନୁ ଘେନି
ଶର ବସାନ୍ତେ ଯେ କମ୍ପିଲା ଭୁବନ ତିନି ।୧୬୧
ନିରାପକ୍ଷ ବାଣ ଯେ ଅଇଲାକ ଘୋଟି
କନ୍ଧରେ ପଡ଼ିଣ ଶିର ବେଗେ ପକାଇଲା କାଟି ।୧୬୨
କାନ୍ଧର ମୁଣ୍ଡ ଯେ ଛିଡ଼ି ପଡ଼ିଲାକ ଛିଟି
ଧାତିକାରେ କାନ୍ଧରେ ଯାଇଂ ଲାଗିଲା ତତକ୍ଷଣାନ୍ତି ।୧୬୩
ରୋଷେଣ ଜଦ୍ୟରଥ ଧାମଇଂ ଗଳଗାଜି
କରେ କୃପାଣେକ ବୁଲାଇ ମହାତେଜି ।୧୬୪
ପୁଣ ଖୁପ ନାରାଜେ ପାଥ ବିନ୍ଧିଲାକ ଟାଣି
ଧାତିକାରେ ଶିରଗୋଟି ପକାଇଲା ହାଣି ।୧୬୫
ଛିଡ଼ିଣ ଶିର ଯେ ନାଚଇ କୋବନ୍ଧ
ବାହୁଡ଼ି ଶିର ଲାଗିଲା ଜଦ୍ୟରଥର କନ୍ଧ ।୧୬୬
ପୁଣିହିଂ ଆରେକ ବେଳେ ବିନ୍ଧଇ ଯେହିମତେ
କାଟି ପକାଇଲା ମୁଣ୍ଡ ପାଞ୍ଚବେଳ ପରିଯନ୍ତେ ।୧୬୭
ଦେଖିଣ ନାରାଜ ନ ଧଇଲା ସର୍ବସାଚୀ
କେବଣ ପ୍ରସ୍ତାବେ ଯେହାକୁ ଯେତ୍ତେକ ବର ସଞ୍ଚି ।୧୬୮
ସହଦେବ ବଦନ ଚାହିଂଣ ଜନାର୍ଦ୍ଦନ
କହସି ମନ୍ତ୍ରୀବର ଯେହାର କେବଣ ବିଧାନ ।୧୬୯
ସହଦେବ ବୋଇଲା ଦେବ ଶୁଣିମା ଚକ୍ରପାଣି
ଯେଥିରେ ତଦନ୍ତ ଦେବ ଅଛଇ ମୁହିଂ ଜାଣି ।୧୭୦
ସ୍ୱାମୀ ଦ୍ରୋପତୀ ହରଣ ଯେ କଲା ଯେତେବେଳେ
ମାଡ଼ି ବସିଲା ବ୍ରିକୋଦର ଯେହାର ବକ୍ଷସ୍ଥଳେ ।୧୭୧
ମୁଣ୍ଡ ମୋଡ଼ନ୍ତେଣ ରୁହାଇଲେ ଦେବ ଧର୍ମେ
ଦୃଶିଲାର ନିମନ୍ତେ ଯେହାରେ ବେଳେ ସଘରିଲେ ତମେ ।୧୭୨

ମୁଣ୍ଡ ମୋଡ଼ନ୍ତେଣ ଧଇଲେ ଯୁଝେଷ୍ଟି
ରାଗେ ପାଥ ଯେହାକଇଂ କଲେକ ସାତବେଣ୍ଟି ।୧୭୩
ଭୀମସେନ ତାହାକୁ ଗଳାଉ ଦିଲେ ଜାନୁ ତଳେ
ବୋଇଲେ ପାଣ୍ଡବଂକର ଭୃତ୍ୟ ବୋଲାଇବୁ ସର୍ବକାଳେ ।୧୭୪
ଅଭିମାନ କରି ଯେ ନ ଗଲା ସିନ୍ଧୁ ଦେଶ
ତପେଣ ବସିଲା ଯାଇ ସେହୁ କପିଳାସ ।୧୭୫
ନିରାଶ ହୋଇ ଚିନ୍ତା କଲାକ ବିଶ୍ୱବାସ
ଯେକଲଯେ କରି ତପ କଲା ଚଉବିଂଶ ବରଷ ।୧୭୬
ପ୍ରସନ୍ନେ ବିଜୟେ କଲେକ କପାଳୀ
ବର ମାଗ ବର ମାଗ ବୋଲି ବୋଲନ୍ତି ଯେ ଶୂଳୀ ।୧୭୭
ଜଦ୍ୟରଥ ବୋଇଲା ପ୍ରସନ୍ନ ହୋଇଲ ଯେବେ
ସମରେ ସରି ମୋତେ ନୋହିବେ ପାଣ୍ଡବେ ।୧୭୮
ଈଶ୍ୱରେ ସେବା କଲେ ଯେବଣ ଫଳଶ୍ରୁତି
କୃଷ୍ଣ ଅର୍ଜୁନେ ମୁହିଂ ଜିଣିମି ଦୁହିଂନ୍ତି ।୧୭୯
ସଦାଶିବେ ବୋଇଲେ ରେ ଦୁସହ କଲୁ ବାଞ୍ଛା
ପାଣ୍ଡବେ ଅଇରି ପକ୍ଷ ହୋଇଲୁ ତୁ ମୋହୋରେ ନୋହୁ
ରକ୍ଷା ।୧୮୦
ଜଦ୍ୟରଥ କଇଂ ପୁଣ ବୋଇଲେ ପଶୁପତି
ଶ୍ରୀକୃଷ୍ଣ ଅର୍ଜୁନେ ଛାଡ଼ି ଜିଣିମୁଂ ସବୁନ୍ତି ।୧୮୧
ସମରେ ଜିଣିମୁଂ ତୁ ଯୁଝେଷ୍ଟି ଭୀମସେନ ନକୁଳ ସହଦେବଂକୁ
ପ୍ରିୟଭାବେ ଭଗତ ତୁ ହୋଇଥିବୁଟି ପାଥକୁ ।୧୮୨
ହରିହର ବ୍ରହ୍ମା ଇନ୍ଦ୍ର ସୂର୍ଯ୍ୟ କୁବେର ସହିତେ
କାହାରି ହାଥେ ଶିରଛେଦ ନୋହିବଟି ତୋତେ ।୧୮୩
ଚାରି ଦିଗପାଳେ ଯେବେ ହୋଅନ୍ତି ଯେକଜଣ
ତାହାର ହାଥେ ଶିରଛେଦ ହୋଇବ ନିଚେ ଜାଣ ।୧୮୪
ଜଦ୍ୟରଥ ବୋଇଲା ଯେବେ ଦେବ ହୋଇଲୁ ପ୍ରସନ୍ନ
ଛିଡ଼ନ୍ତେ ମୁଣ୍ଡ ମୋର ଲାଗିବ ପୁଣ ପୁଣ ।୧୮୫
ଈଶ୍ୱରେ ବୋଇଲେ ନିଚେ ଲାଗିବ ତୋର ଶିର
ଛିଡ଼ି ମୁଣ୍ଡ ଯେବେ ପଡ଼ିବ ଭୂମିର ।୧୮୬
ପିତା ତପ କରଇ ଉତ୍ରାଂକୁର ତୀରେ
ତହାର ତପ କରୁଥିବା ପରିଯନ୍ତେ ମୁଣ୍ଡ ତୋର ଲାଗୁଥିବ
କନ୍ଧରେ ।୧୮୭
ଜଦ୍ୟରଥ ବୋଇଲା ମୋତେ ଦେବ କହିଥିବୁ ସାଧ୍ୟ
ଜାଣିଥିବି ନା ମୁଂ କେମନ୍ତେ ହୋଇବଇଂ ବଧ ।୧୮୮

ଶୁଣି ପ୍ରତିବାକ୍ୟ ଯେ ଦିଅନ୍ତି ଧୂର୍ଜଟି
ଯେ ତୋତେ ମୃତ୍ୟୁଭେଦ ହାଦେ ସେ ପାଣ୍ଡବ କିରୀଟୀ ।୧୮୯
ରଥ ଗଜ ଅଶ୍ୱ ସେ ଚଢ଼ିଣ ନ ଥିବ
ପାଦଗତି ସମରେ ସେ ତୋ ସଙ୍ଗେ କରିବ ।୧୯୦
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଚାରିହେଂ ହୋଇଥିବେ ମନୁଷ୍ୟ ଅବତାର
ସେହି ରୂପେ ତୋହୋର ସଙ୍ଗେ କରିବେ ସମର ।୧୯୧
ରାତ୍ରିହିଂ ନୋହିବ ଦିବସହିଂ ନୋହିବ
ପିନାକୀ ସମାନେ ଧନୁ ତାହାର କରେ ଥିବ ।୧୯୨
ମୋହୋର ପାଶୁପାତ୍ର ଶରେ ଛିଡ଼ିବ ତୋର ଶିର
ଅନ୍ତରୀକ୍ଷେ ମୁଣ୍ଡ ଯାଇଂ ପଡ଼ିବ ତୋହୋର ପିତାର ହାଥର।୧୯୩
ନୟନ ବୁଜିଣ ଯେ ପ୍ରସାରିଥିବ କର
ଅଦଭୂତେ ମୁଣ୍ଡ ଯାଇଂ ପଡ଼ିବ ପିତାର ହାଥର ।୧୯୪
ଭସ୍ମ ହୋଉ ବୋଲି ମୁଣ୍ଡ ପକାଇବ ଭୂମିଗତେ
ଦହନ ହୋଇବ ମୁଣ୍ଡ ଯେ ମୃତୁଭେଦ ତୋତେ ।୧୯୫
ସହଦେବ ବୋଇଲା ଶ୍ରୀଜଗନ୍ନାଥଂକର ପାଶ
ଯେତେ ବାଗେ ଜଦ୍ୟରଥ ହୋଇବ ପ୍ରାଣେ ନାଶ ।୧୯୬
ଆଦିହୁଂ ଅର୍ଜୁନ ଯେତେବେଳେ ସଞ୍ଚାର ହୋଇଲା
ବ୍ରହ୍ମାର ମୁଣ୍ଡ ନେଇଣ ବିଷ୍ଣୁ ଗୁଧିର ଦିଲା ।୧୯୭
ଈଶ୍ୱର ବିଭୂତି ଦେଇ ଭିଆଇଲେ ପିତୁଳି
ବାସବର ଆତ୍ମା ଦେଇ ଅର୍ଜୁନକୁ ତୋଳି ।୧୯୮
ଯେ ବିଧି ଚାରି ଦିଗପାଳେ ଅର୍ଜୁନ ଯେକକାୟେ
ଶିବଧନୁ ତ ଦେଇଅଛନ୍ତି ଦେବରାୟେ ।୧୯୯
ପାଶୁପାତ୍ର ନାରାଜ ଈଶ୍ୱର ଛନ୍ତି ଦେଇ
ସନ୍ଧ୍ୟାକାଳ ଆସି ତ ହେଲା ରଣଭୂଇଂ ।୨୦୦
ସହଦେବର ବଚନେ ସାନନ୍ଦ ଜଗନ୍ନାଥ
ଗାଣ୍ଡିମେ ପାଶୁପାତ୍ର ପୂରୋଇଲା ପାଥ ।୨୦୧
ଆକ୍ଷେପି ପାଶୁପାତ୍ର ନାରାଜ ବିନ୍ଧିଲା କିରୀଟୀ
ଅନ୍ତରୀକ୍ଷେ କାଟିଲା ଜଦ୍ୟରଥ ମୁଣ୍ଡଗୋଟି ।୨୦୨
ଉଡ଼ାଇଣ ମୁଣ୍ଡନେଲା ପବନାସ୍ତ୍ର ଘାତେ
ଅନ୍ତରୀକ୍ଷେ ପଡ଼ିଲା ଯାଇଂ ମୁଣ୍ଡ ସୁରଥର ହାଥେ ।୨୦୩
ନୟନ ବୁଜିଣ ସେ ପ୍ରସାରିଥିଲା କର
ଅନ୍ତରୀକ୍ଷେ ପଡ଼ିଲା ମୁଣ୍ଡ ସୁରଥ ହାଥର ।୨୦୪
ଭସ୍ମ ହୋଉ ବୋଲିଣ ଛାଡ଼ିଲା କୃତାଞ୍ଜଳି
ତେଜ ଅନଳ ଜାଣି ମୁଣ୍ଡ ଉଠିଲାକ ଜଳି ।୨୦୫

ଜୟଦ୍ରଥ ପଡ଼ନ୍ତେ ପାଣ୍ଡବେ ଜୟେ ଜୟେ
ପାଞ୍ଚଜନ୍ୟ ଶଂଖ ଶବଦ କଲେକ ଦେବରାୟେ ।୨୦୬
କୁରୁବଳ ସଇନି ଦେଖି ହୋଇଲେ ବିସ୍ମୟେ
କ୍ରୋଧ ଅବସ୍ଥା ଯେ ହୋଇଲେ କୁରୁରାୟେ ।୨୦୭

**

## ୯୪. ଭୀମସେନ ଅଶ୍ୱତଥାମା ରଥ ଫିଙ୍ଗିଦେବା, ଅଶ୍ୱତଥାମା ହସ୍ତୀର ନିଧନ ଓ ତାହାର ବଂଶାବଳୀ

ଶୁଣ ବଇବସ୍ୱତ ମନୁ ବଦୟନ୍ତି ଅଗସ୍ତି
ଘଟଉତ୍କଟ ବଧ ହୋଇଲା ଅଡ଼ାଇ ପ୍ରହର ରାତି ।୧
ପୁତ୍ରର ନିଧନେ ସେ ଭୀମସେନ କ୍ରୋଧେ
ନିପ୍ରୋହି ହୋଇଣ ବୀର ପଶିଲାକ ଯୁଦ୍ଧେ ।୨
ମହାବାତ ଘାତେ ଯେନ୍ହେ ବୃକ୍ଷନ୍ତ ଲୋଟଇଂ
ଗଦାବର ବୁଲାଇ ଭୀମସେନ କୋପେଣ ପିଟଇ ।୩
ଅପାର ସଇନି ଯେ ପଡ଼ିଲେ ରଣରଂଗ
ରୋଧିରେଣ ବିଲେପନ ସବୁଂକରି ଅଂଗ ।୪
ସନ୍ୟ ପଡନ୍ତେଣ ଭୀମ ଦୁଗୁଣ ବଳିଷ୍ଠ
ଭୀମସେନ ଅଶସ୍ତମାଂକର ଯେ ହୋଇଲାକ ଭେଟ ।୫
ପ୍ରତଗ୍ୟାଂ କରିଣ କୋପେ ବୋଇଲେ ଅଶସ୍ତମା
ଆଜ ତୋହୋର କାଳ ପୂରିଲା ରେ ଭୀମା ।୬
ଯେତେକ ବୋଲିଣ ଅଶସ୍ତମା କୋପେ ପରଚଣ୍ଡ
ଗୁଣ ଟଂକାର କରିଣ ସେ ଧଇଲା କୋଦଣ୍ଡ ।୭
ଲୁହାର ପଞ୍ଚ ନାରାଜ ପୂରୋଇ ତୀକ୍ଷମୁନା
ବିନ୍ଧିଲା କୋପେଣ ସେ ଅଶସ୍ତମା ନ ଯାଇ ଗଣନା ।୮
ଲୁହାର ଧନୁଯେକ ଧରିଣ ବୀର ବ୍ରିକୋଦର
କଂକପତ୍ରୀ ନାରାଜ ଯେ ଲୁହାର ପଞ୍ଚଶର ।୯
ବିନ୍ଧଇ ବ୍ରିକୋଦର ଯେ ଅଶସ୍ତମା ଉପର
ରଣେ ନିର୍ଭୟେ ସେ ଦ୍ରୋଣଂକର କୁମର ।୧୦
ଶରେ ଶରେ ପଡ଼ି ତାଳ ହୁଅନ୍ତେଣ ବେନି
ରଣଝଣ ବାଜନ୍ତେଣ ଉଠିଲାକ ବହ୍ନି ।୧୧
କେହି କାହାକଇଂ ସମରେ ନୋହନ୍ତି ଯେ ଓଛ
ଯୁଝନ୍ତେ ବେନିବୀର ଅଟନ୍ତି ସମକଛ ।୧୨
ପୁଣ ବିଂଶବାଣ ଯେ ପୂରୋଇଣ ଦ୍ରୋଣି
ବିନ୍ଧନ୍ତେ ନାରାଜ ବ୍ରିକୋଦର ତାହା ହାଣି ।୧୩
ଯେସନେକେ ମେଘ ପ୍ରଳୟ କାଳେ ଉଠି
ସେହିମତି ପ୍ରାୟେ ଯେ ହୋଇଲା ଶରବୃଷ୍ଟି ।୧୪
ପଞ୍ଚଷଠୀ ନାରାଜ ଯେ ପୂରୋଇଣ ଗୁରୁସୁତ
ଯେସନେକେ ଆକାଶୁଂ ପଡଇ ନୀରପାତ ।୧୫
ଭୀମସେନ ରଥ ଶତେଖଣ୍ଡେ ହୋଇ ଭାଜି
ପାଦଗତି କରି ବ୍ରିକୋଦର ଧାମଇଂ ଗଳଗାଜି ।୧୬
ଅଶସ୍ତମା ମାଇଲାକ ନାରାଜ ଶତ ତିନି
ଗଦାବର ବୁଲାଇଣ ଧାମଇଂ ପାବନି ।୧୭
ଗିରିବର ପ୍ରାୟେକ ଦିଶିଲା ଭୀମର ବାମ ଅଙ୍ଗ
ତିନିଶତ ନାରାଜ ପଡି ହୋଇଲା ସର୍ବଭଙ୍ଗ ୧୮
ପୁଣିହିଂ ନାରାଜ ଦ୍ରୋଣି ବିନ୍ଧିଲା ନବଶତ
ରୋମେ ରୋମେ ଗଳିଲା ଆସି ସେ ପବନର ସୁତା ୧୯
ଯେସନେକେ ସର୍ପମାନେ ପଶନ୍ତି ବିମ୍ବରେ
ରୋଧିର ବୃଷ୍ଟି ହୋଇଲା ଭୀମସେନର ଶରୀରେ ।୨୦
ତ୍ରିପଣ୍ଡ ଗଳଇ ଯେ ବ୍ରିକୋଦରର କାୟେ
କୋପେଣ ଗର୍ଜଇ ଭୀମ କାଳସର୍ପ ପ୍ରାୟେ ।୨୧
ବ୍ରିକୋଦର ମୂରତି ଯେ ଧଇଲା ପାବେନି
ଶୂନ୍ୟପୁରେ ଘୋଟିଲାକ କମ୍ପିଲା ବ୍ରହ୍ମାଣ୍ଡ ଖଣ୍ଡ ତିନି ।୨୨
ରେ ରେ କାର କରିଣ ସେ କୋପେଣ ପ୍ରଚଣ୍ଡ
ବେଗେଣ ଧଇଲା ଯାଇଠ ଅଶସ୍ତମାର ରଥ ଦଣ୍ଡ ।୨୩
ଶରୀର କମ୍ପଇ ତାର କଦଳୀ ପତ୍ର ପ୍ରାୟେ
ଅଶସ୍ତମାର ରଥ ବୁଲାଇଲା ପବନ ତନୟେ ।୨୪
ଯେସନେକେ ବାଳ ପୋୟେ ଫିଙ୍ଗିଦ୍ୟନ୍ତି ଟେଳା
ଅଶସ୍ତମାର ରଥ ଧରି ଫିଙ୍ଗିଦିଲା ପବନର ବଳା ।୨୫
ଶ୍ରୀ ମହାଭାରଥ କିଣି ବାରୁଣାହନ୍ତ ବନସ୍ତେ
ଯମୁନା ନଦୀ କିଣି ପଡ଼ିଲା ବତିଶ ଯୋଜନ ଅନ୍ତେ ।୨୬
ରଥ ଅଖ ଚକ ଭାଂଗି ଅଶ୍ୱେ ହୋଇଲେ ଚୂରି
ସାରଥି ସହିତେଣ ହୋଇଲେ ସର୍ବ ଧୂଳି ।୨୭
କର ଚରଣ ଭଗ୍ନ ହୋଇଲାକ ଅଶସ୍ତମା
ରୋଧିରେ ବିଲେପନ ହୋଇଲା ମହାତମା ।୨୮
କର୍ଣ୍ଣ ନାଶିକାରୁ ବହଇ ଘନ ଶ୍ରୋଣି
ଗତ ଆତ୍ମା ପ୍ରାୟେ ହୋଇ ପଡ଼ିଅଛି ଦ୍ରୋଣି ।୨୯
ମାଳବ ଦେଶର ରାଜା ଅଟଇ କୃତବର୍ମା
ତାହାର ହାଥୀ ନାମ ଅଟଇ ଅଶସ୍ତମା ।୩୦
ପାଞ୍ଚଲକ୍ଷ ଯୋଦ୍ଧା ଘେନିଣ କୃତବର୍ମା
କୋପାନଳ ବେଳେ ଛାମୁରେ ପଡ଼ିଲା ମହାତମା ।୩୧

ଅଶସ୍ତମା ନାମେ ମହାନାଗେ ଚଢ଼ି
ବହୁତ ସନ୍ୟ ଘେନି ବ୍ରିକୋଦରକଙ୍କ ବେଢ଼ି ।୩୨
ଭୀମସେନେ ଆକ୍ରେଷି ବଜ୍ର ସେନ୍ହା ପିଟି
ସମସ୍ତ ସନ୍ୟକଙ୍କ ଯେବା ଭୀମସେନ ଘୋଟି ।୩୩
ପରିଘ କୋନ୍ତ ଅସିପତ୍ର କରବାଳ
ବିଜୁଳି ତେଜ ପ୍ରାୟେକ ଲାଂକିଆ ଝଲମଲ ।୩୪
ପାଞ୍ଚଲକ୍ଷ ଯୋଦ୍ଧା ଯେକମୁଖ ହୋଇ ଉଠି
ଭୀମସେନକଙ୍କ ମାଇଲେ ନବନିଶି ଯାଠି ।୩୫
କୋପେଣ ବ୍ରିକୋଦର ଯେ ବାମ ଅଙ୍ଗ ପାତି
ପଡ଼ିଣ ଚୂର ଗଲେ ମୁଦୁଗର ଯାଠି ଶକତି ।୩୬
ବାମ ଅଙ୍ଗ ଆବୋରି ଯେ ଚଳଇ ମାରୁତି
ମାଳବ ଦେଶ ସଇନି ମାଇଲା ବିକୋଡି ।୩୭
ରଥେ ରଥ ପିଟି କଚାଡଇ ଗଜେ ଗଜ
ଦୁଇ ଦୁଇ ଅଶ୍ୱ ଧରି ସେ ପିଟଇ ମହାତେଜ ।୩୮
ଅସ୍ତ୍ର ଶସ୍ତ୍ର କରନ୍ତେ ସେ ନ କରନ୍ତି ଭୟେ
ସମରେ ଅନିବାରଣ ସେ ରଣେଣ ଅଜୟେ ।୩୯
ରଣେଣ ବିମୁଖ ଯେ ପାଇଲେ ସଇନି
ଶରଣ ଫୁକାରନ୍ତି ଦନ୍ତେ ତିରଣ ଘେନି ।୪୦
ନିର୍ଭୟେ ନିରାପକ୍ଷ ଯାହାର ଅଟଇ ବାନା
ଶରଣ ବୋଇଲେ ଗୋଡାଇ ଦୁଗୁଣ ପିଟଇ ଭୀମସେନା ।୪୧
ତିନି ଲକ୍ଷ ଯୋଦ୍ଧା ପଡ଼ିଲେ ରଥ ଗଜ ଅଶ୍ୱ ପାଦାନ୍ତି
ବେନି ଯୋଜନ ପରିଯନ୍ତେ ପୟେଡ ପଡ଼ିଲା ସବୁନ୍ତି ।୪୨
ସଇନି ନିଶେଷ ଯେ ଦେଖିଣ କୃତବର୍ମା
ଆଗେଣ ଟେକିଲା ନେଇ ମହାନାଗ ଅଶ୍ୱତ୍ଥାମା ।୪୩
ତିନିଯୋଜନ ଉଚ୍ଚର୍ଗ ସେ ଅଶ୍ୱତ୍ଥାମା ହାଥୀ
ତାହା ଚଢ଼ି ନାରାଜ ବରଷଇ ମାଳବ ଚକ୍ରବ୍ରତୀ ।୪୪
ବଇବସୁତ ମନୁ ପୁଛାକଲେ ଅଗସ୍ତି ବ୍ରହ୍ମବେତ୍ତା
ବଡ଼ାଇ ଅଗୋଚର ଯେ ଅଶ୍ୱତ୍ଥାମା ନାଗର କଥା ।୪୫
କାହୁଁ ଆଣିଲା ଯେ କେହୁ ତାହା ଧରି
ସାଧୁ ସେ ମାଳବ ରାଜା କେମନ୍ତେ ତାହା ଚଢ଼ି ।୪୬
ବଦୟନ୍ତି ଅଗସ୍ତି ଶୁଣ ବଇବସୁତ ମନୁ
ଅଶ୍ୱତ୍ଥାମା ନାଗର କଥା କହନ୍ତି ବ୍ରହ୍ମତନୁ ।୪୭
ସିନ୍ଧୁ ମନ୍ଥନୁ ଜାତ ଅଇରାବ୍ରତ ହାଥୀ
ବଇରାବତ ନାମେଣ ଯେ ଯେହାର ସନ୍ତତି ।୪୮
ବଇରାବତ ନନ୍ଦନ ମହାନାଦ ମେହନାଦ
ଯେହାର ନନ୍ଦନ ଯେ ମଦନଉନ୍ମାଦ ।୪୯
ଉନ୍ମାଦର ନନ୍ଦନ ଯେ ମହାବାତ ହାଥୀ
ଉଦେମେର କରୀବର ଯେହାର ସନ୍ତତି ।୫୦
ଉଦେମେରୁ ନନ୍ଦନ ଗିରିବକ୍ର ହସ୍ତ
ତାହାର ନନ୍ଦନ ଯେ ଗଜ ପୁଷ୍ୟଦନ୍ତ ।୫୧
ଗଣପତିର ଶିରୟେ ପୁଷ୍ୟଦନ୍ତ ଦନ୍ତାର ମୁଣ୍ଡ
ଭୀମେକ ମାରି ଯେହା କଲା ବେନିଖଣ୍ଡ ।୫୨
ପୁଷ୍ୟଦନ୍ତର ନନ୍ଦନ ଗଜ ଅମୃତାକ୍ଷ
ଯେହାର ନନ୍ଦନ ଯେ ଗଜ ସିନ୍ଧୁବକ୍ଷ ।୫୩
ସିନ୍ଧୁବକ୍ଷର ନନ୍ଦନ ଗିରିଜା ଉତ୍ତମା
ଗିରିଜାର ନନ୍ଦନ ସେ ଅଟଇ ଅଶ୍ୱତ୍ଥାମା ।୫୪
ଅଶତ୍ଥାମାର ନନ୍ଦନ ସୁହସ୍ତା ନାମେ ହାଥୀ
ଭାରଥ ଯୁଦ୍ଧେ ମୁଂ ଯେହାନ୍ତ ଦେଖିଲି ଦୁହିନ୍ତି ।୫୫
ଭାଷ୍କରୂପ ଧଇଲେ ଯେ ପୃଥୀକି ହୋଅନ୍ତି ସରି
ମହାରୂପ ଧଇଲେ ଯେତ ତୁଲ୍ୟ ମେରୁଗିରି ।୫୬
ଉପର ବଂଶର ମହିମାଂ ପ୍ରତକ୍ଷେ ଆମ୍ଭେ ଜାଣୁଂ
ତେର କୋଶ ଲମ୍ବ ଯେହା କିଂକେ ପରିମାଣୁ ।୫୭
ଭାରଥ ସମର ଭୂମି ଦ୍ୱାଦଶ ଯୋଜନସ୍ଥଳୀ
ଥୋରହସ୍ତେ ଯେ ଜୁମ୍ବଦୀପ ପୃଥୀ ପାରନ୍ତି ତୋଳି ।୫୮

**

## ୯୫. ଦ୍ରୋଣ ବଧ

ଯେହା ଶୁଣି ତ୍ରିପୁତି ସେ ବଇବସୁତ ମନୁ
ଅଶ୍ୱତ୍ଥମା ହାଥୀ ଯୁଦ୍ଧ କଥା ମୋତେ କହିବା ତପୋଧନୁ ।୧
ବଦୟନ୍ତି ଅଗସ୍ତି ଶୁଣ ହୋ ବିଳଂକା ଦେଶ ଆଧି
ସେ ଅଶ୍ୱତ୍ଥମା ହାଥୀ ଛାମୁକୁ ଯେବା ଭୀମସେନ ଯୋଧୀ ।୨
ଅଶ୍ୱତ୍ଥମା ହାଥୀ ମନ୍ଦର ଗିରି ପ୍ରାୟେ
ଦୁତୀ ମନ୍ଦର ଗିରି ଜାଣି ସେ ଭୀମସେନର କାୟେ ।୩
ବିକ୍ରୋଦର ରୂପ ଯେ ଭୀମସେନ ପ୍ରକାଶି
ଅଶ୍ୱତ୍ଥାମା ନାଗକଙ୍କ ଭୀମସେନ ଆକ୍ରେଷି ।୪
ବାଆନ ବାଆନ ଭାର ଗଦା ବେନି ହାଥେ
ବ୍ରହ୍ମାଣ୍ଡ କମ୍ପନ୍ତି ବ୍ରିକୋଦର ଅଧର ଚାପନ୍ତେ ।୫
ବେନିଗଦା ଧରିଣ ସେ ବ୍ରିକୋଦର ଭୀମେ
ଅଶ୍ୱତ୍ଥାମା ନାଗର କୁମ୍ଭସ୍ଥଳେ ପ୍ରହାର କଲା ତମେ ।୬
ଶତେଖଣ୍ଡ ହୋଇ ହାଥୀର କୁମ୍ଭସ୍ଥଳ ଭାଂଜି
ଘାୟେଣ ମତ୍ତନାଗ ପଡ଼ିଲା ଗଳଗାଜି ।୭
ରଣ ଭୂମିରେ ପଡ଼ିଲା ଅନେକ ସନ୍ୟ ମାତି

ଆକାଶ ଉଛୁଳିଲା ସେ ଭୀମସେନର ସିଂଘରଡି ।୮
ଭୋ ରାଜନ ରହିଣ ସମର ଦେଖୁଥିଲେ ଯେ ତ୍ରିଦଶେ
ଅଶ୍ୱତ୍ଥାମା ହତ ବୋଲି ଶୁଭିଲାକ ଆକାଶେ ।୯
ଥାଠ ଯାକରେ ଶୁଭିଲା ଯହୁଁ ଯେସନେକ ଶବଦ
ଅଶ୍ୱତ୍ଥାମା ହତ ବୋଲି ଶୁଭଇ ଘୋର ନାଦ ।୧୦
ଦୁସହ ସମର ଯେ କରନ୍ତି ଦ୍ରୋଣଗୁରୁ
ଅଗ୍ନିର ଛାମୁରେ କେ ଅବା ଉଭାହୋଇ ପାରୁ ।୧୧
କାଶୀ ଦେଶର ରାଜା କାଶୀଶ୍ୱର ନୃପତି
କୃଷ୍ଣବର୍ଣ୍ଣ ପ୍ରାୟେ ତାର ପଞ୍ଚ ଅହିବ୍ରତ ହାଥୀ ।୧୨
ଦ୍ରୋଣଂକ ଆଗରେ ସେ ମିଳିଲା ନିଶାକାଳେ
ଦୁସହ ପ୍ରତଗ୍ୟାଂ ଦ୍ରୋଣଂକର ଆକ୍ରମଣ ବେଳେ ।୧୩
ଧାମନ୍ତି ଦ୍ରୋଣ ଯେ କାଶୀଶ୍ୱର ରାଜା ଦେଖି
ବିନ୍ଧନ୍ତି ନାରାଚ ଗୁରୁ ଉପ୍ରୋଧ ଉପେକ୍ଷି ।୧୪
ଯେସନେକ ବାତ ବିଘାତେ ପଡଇ ପଂକୁ ଫଳ
ଛିଡ଼ି ଯୋଦ୍ଧାଂକର ଶିରକମଳ ପଡୁଅଛି ତଳ ।୧୫
ଲକ୍ଷେକୋଟି ନାରାଚ ବିନ୍ଧନ୍ତି ଗୁରୁ ଯୁଦ୍ଧେ
ପଡନ୍ତି କଳେବର ନାଚନ୍ତି କବନ୍ଧେ ।୧୬
ଦ୍ରୋଣଂକର ବିଘାତେ କାଶୀଶ୍ୱର ସଇନି
ଘଡ଼ିକେ ପଡ଼ିଲେ ଯୋଦ୍ଧା ଲକ୍ଷତିନି ।୧୭
ବାୟିବା ଶହସ୍ରେକ ଯେ ମାଇଲେ କୋପେ ଦ୍ରୋଣଗୁରୁ
ଶର ହାବୋଡନ୍ତେ କାଶୀଶ୍ୱର ପଡ଼ିଲା ଗଜର ଉପରୁ ।୧୮
ଉତ୍ତାନଶାହୀ ହୋଇ ପଡ଼ିଲାକ କ୍ଷିତି
ନବନିଶି କୋନ୍ତ ମାଇଲେ ଦ୍ରୋଣ ସେନାପତି ।୧୯
ହୃଦେ ପଡ଼ି ଶର ପିଠି କଟିକି ଫୁଟି
ବିନ୍ଧେକର୍ଣ୍ଣକଟାର ଘେନି ଶିର କମଳ କାଟି ।୨୦
ପଞ୍ଚ ଅହିବ୍ରତ ଯୋଦ୍ଧାଂକର ତୁଲେ
ଦ୍ରୋଣଂକର ବିଘାତେ କରି କାଶୀଶ୍ୱର ପଡ଼ିଲେ ।୨୧
ଭୋଟ ଦେଶର ରାଜା ନାମ ମନସିଜ
ଦ୍ରୋଣଂକର ଶରେ ପଡ଼ିଲେ ନବଶତ ରାଜ ।୨୨
କଉଶିକ ଦେଶରରାଜା ନାମ କୁଳୁପାକ୍ଷ
ତିନି ସହସ୍ର ଯୋଦ୍ଧା ତୁଲେ ଦ୍ରୋଣ କାଟିଲେ ତାର ବକ୍ଷ ।୨୩
କନାଉଜ ଦେଶର ରାଜା ନାମ ଶତମନୁ
ତିରଣ ପ୍ରମାଣେ ଦ୍ରୋଣ କାଟିଲେ ତାହାର ତନୁ ।୨୪
ବିରାଜ ଦେଶର ରାଜା ଜଳଦମାଳି
ତିନିଶତ ଯୋଦ୍ଧା ତୁଲେ ସେ ରାଜା ହୋଇଲା ପନ୍ଥାଳି ।୨୫
ସତ୍ୟଯୁଗେ ପ୍ରଶୁରାମ ଯେନ୍ହେ କଲେକ ନିକ୍ଷତ୍ର
ପ୍ରଶୁ କୋଠାର ଘେନି ଛେଦିଲେ ସମସ୍ତ ରାଜାନ୍ତ ।୨୬
ଯେସନେକେ ପଛାଜନ୍ତୁ ଖେଦି ନିଅନ୍ତି ଶେଣା
ଭାରଥ ଯୁଦ୍ଧେ ତେସନେ ଅଟନ୍ତି ଜଗୁଜିଣା ।୨୭
ରଥ ଗଜ ଅଶ୍ୱ ଯେ ବାହାନ ନାହିଂ କିଛି
ଧନୁ ନାହିଂ ଡ୍ରୋଣ ନାହିଂ କରେ କୃପାଣେକ ଅଛି ।୨୮
ତ୍ରିକଛ ବସନେକ ପିନ୍ଧି ବିକ୍ରମ ସିଂହ ଠାଣି
ବ୍ରାହ୍ମଣ ହୋଉ କିବା ଶୂଦ୍ରହିଂ ହୋଉ ପଡ଼ିଲେ ଆଗେ ହାଣି ।୨୯
ପଞ୍ଚଶତ ରାଜା ନବଶତ ପାରିଦଣ୍ଡ
ତିନି ଘଡିର ମଧ୍ୟେ ଦ୍ରୋଣ କାଟିଲେ ଯେତେ ମୁଣ୍ଡ ।୩୦
ସଇନି ପଡନ୍ତେଣ ଦେଖଇ ମାରୁତି
ଦ୍ରୋଣଂକ ଛାମୁରେ ଆସି ମିଳିଲାକ ଧାତି ।୩୧
ରଥେକ ଆରୋହି ଯୁଦ୍ଧ କରଇ ନକୁଳ
କର୍ଣ୍ଣର ଛାମୁରେ ଶହସ୍ର ଧରି ବିଜୟେ ମହାବଳ ।୩୨
ରାଧେବର ନନ୍ଦନ ଯେ ବୁଲାଇ ପରିଘେ
ନକୁଳର ରଥେ ପ୍ରହାର କଲା ଅତି ରାଗେ ।୩୩
କର୍ଣ୍ଣର ପରିଘ ବିଘାତେ ନକୁଳ ରଥ ଭାଜି
କୋନ୍ତ ଘେନି ନକୁଳ ଧାମଇଂ ଗଳଗାଜି ।୩୪
ପ୍ରହାର କଲା ନେଇ କର୍ଣ୍ଣ ରଥେ କୋନ୍ତେ
ଘାନ୍ତିକେ ଫୁଟିଲା ରଥ ଅଶ୍ୱ ସାରଥି ସହିତେ ।୩୫
ପାଦଗତି ହୋଇ ଧାମଇଂ ଆଦିତ୍ୟର ବଳା
ଯେସନେକେ ମତ୍ତ ଗଜ ଧାମଇଂ ମୁକୁଳା ।୩୬
କୋନ୍ତ ବୁଲାଇଣ ନକୁଳ କୁମାର ପ୍ରହାରି
ଆରେ ରହ ରହ ବୋଲି କର୍ଣ୍ଣ ବାମ କରେ କୋନ୍ତ ଧରି ।୩୭
କୋନ୍ତ ଧରନ୍ତେଣ ଶୂନ୍ୟ ହାଥ ହୋଇଲା ନକୁଳ
ଆକ୍ରେଷି ଧଇଲା କର୍ଣ୍ଣ ନକୁଳର ବାଳ ।୩୮
କାଳଚକ୍ର ପ୍ରାୟେ ସେ ବୁଲାଇ ବେନି ଡୋଳା
ବାମକରେ ନକୁଳର କେଶ ଡାହାଣ କରେ କରବାଳ ।୩୯
ଅଧରେ ଦନ୍ତ ଚାପି କରେ ଖରେ ଖଡଗ ଘେନି ଝୁଣି
ରେ ରେ ପାଣ୍ଡବା ତୋର ଶିର ଛେଦିବି ଯେହିକ୍ଷଣି ।୪୦
ପଡ଼ିଲୁ ନକୁଳରେ ହୋଇଲୁ ନିରିମାଖି
ଯେତେ ଲୋକଂକର ମଧ୍ୟେ କେ ଆଜ ତୋତେ ରଖି ।୪୧
ଯେମନ୍ତ ସମୟେ ଯେ କୁମାର ଦୁର୍ଦ୍ଦକ୍ଷ

ଲୋହସାର ଗଦା ବେନି ଘେନିଆସି ମିଳିଲା କର୍ଣ୍ଣ ପଛ ।୪୨
ଗଦା ବୁଲାଇଣ ସେ ଗାନ୍ଧାରୀର ବାଳ
କର୍ଣ୍ଣର ଉପରେ ପ୍ରହାର କଲା ସେ କ୍ଷତ୍ରିୟ ଅଚାର୍ଗଳ ।୪୩
ରାଧେବର ନନ୍ଦନ ପଡ଼ି ଗଲା ମୂର୍ଚ୍ଛା
ମାଦ୍ରୀର ନନ୍ଦନ ନକୁଳକୁ ଦୁର୍ଦ୍ଦକ୍ଷ କଲା ରକ୍ଷା ।୪୪
କର୍ଣ୍ଣର ଅସାକ୍ଷମ ଦେଖି ବୀର ଶଲ୍ୟ
ଧାଡିକାରେ ଆରୋହିଲା ଭାରଥକୁଳ ମଲ୍ଲ ।୪୫
ନକୁଳ ଦୁର୍ଦ୍ଦକ୍ଷ କର୍ଣ୍ଣକୁ ଥିଲେ ଘୋଟି
ଶଲ୍ୟକଇଂ ଦେଖିଣ ସେ ରହିଲେ ପାଲଟି ।୪୬
ଶଲ୍ୟଂକର ତୁଳେ ଦୁର୍ଦ୍ଦକ୍ଷର ସମର
ବିନ୍ଧନ୍ତେ ଅନିବାରଣ ଅତୁଳାଇତ ବେନି ବୀର ।୪୭
ମୋହ ଛାଡି ଉଠିଲା କର୍ଣ୍ଣ ମହାରଥୀ
ବେଗେ ଆରୋହିଲାକ ମୟେମତ୍ତ ହାଥୀ ।୪୮
ଧନୁରେ ନାରାଜ ପୂରୋଇଣ ବୀର କର୍ଣ୍ଣ
ଆସନ୍ତେ ଭେଟିଲା ସେ ଧୃଷ୍ଟ ଯେ ଦ୍ୟୁମନ ।୪୯
କର୍ଣ୍ଣ ବୋଇଲା ଯେ ଧୃଷ୍ଟଦ୍ୟୁମନ ମୁଖ ଚାହିଁ
ତୁ ଯୁଦ୍ଧ କରୁଅଛୁ ରେ ପିତା ତୋର କାହିଁ ।୫୦
ବୋଲଇ ପାଞ୍ଚାଳେଶ୍ୱର ଶୁଣ ହୋ ରାଧେବ
ଯୁଝେଷ୍ଟିଂକ ସଙ୍ଗେ ସିନା ପିତା ମୋହୋର ଥିବ ।୫୧
ଧୃଷ୍ଟଦ୍ୟୁମନ ବଚନେ ରାଧେବ ବୋଇଲା
ଦ୍ରୁପଦର ଶିରଚ୍ଛେଦ ଯେ ପାଞ୍ଚଘଡ଼ି ହୋଇଲା ।୫୨
ଭାରଦ୍ୱାଦଶଂକ ନନ୍ଦନ ଦ୍ରୋଣ ମହାରଥୀ
ସେ ତୋହୋର ପିତାଂକୁ ଯେ ସମରେ ନିପାତି ।୫୩
ଶୁଣି ଧୃଷ୍ଟଦ୍ୟୁମନ ନାରାଜ କୋପେ ବିନ୍ଧି
କର୍ଣ୍ଣର ଗଜ ବାହାନ ପକାଇଲା ଛେଦି ।୫୪
ବିରଥୀ ହୋଇଣ ଯେ ମହାରଥୀ କର୍ଣ୍ଣ
ଆଡ଼େ ହୋଇଗଲେ ସେ ଦେଖନ୍ତି ଧୃଷ୍ଟ ଯେ ଦ୍ୟୁମନ ।୫୫
ସମର କରନ୍ତେ ତିସିରା ପ୍ରହର ଯେ ରାତି
କୁହୁଡ଼ି ବିଘାତେ କରି ଅନ୍ଧାର ଘୋର ପୃଥୀ ।୫୬
ଯୁଗତେ ମକର ମାସ ଅଟଇ ହିମଋତୁ
କର ଚରଣ କମ୍ପଇ ଶହସ୍ର ପଡ଼ଇ ହାଥୁଁ ।୫୭
ସନ୍ୟଂକର ଆକୁଳ ଦେଖିଣ ଫାଲଗୁନି
ଶଲ୍ୟଂକୁ ବିନ୍ଧିଲା ପାଥ ଅଗ୍ନିବାଣ ଘେନି ।୫୮
ପ୍ରଜ୍ୱଳିତ ବହନି ବହଇ ଦାବାନଳ
ଛାଡିଲାକ ଶୀତ ବୀରଂକର ଫିଟିଲା ବିକଳ ।୫୯
ଅଗ୍ନିର ତେଜେ କରି ସାକ୍ଷମ ସର୍ବଯୋଧୀ
ଧନୁତ୍ରୋଣ ଘେନି ପାରିଲେ ସର୍ବେ ଶସ୍ତ୍ର ବିନ୍ଧି ।୬୦
ସେହ୍ଣାନ୍ତ କାଢିଣ ଯେ ରଥନ୍ତ କଲେ ତେଜ୍ୟା
ଅଗ୍ନିକି ଆବୋରିଣ ବସିଲେ ସର୍ବ ରାଜା ।୬୧
ଓହୋବଳ ଥାଠେ ଯେ ଶୁଭଇ ଧନି ଧନି
ସବୁରି ଆଷ୍ୟ ଘେନିଣ ବ୍ରତ ହୋ ଫାଲଗୁନି ।୬୨
ଯେ ମହାକଷ୍ଟ ଯେ ଜାଣିଲୁ ପର  ମନ
ଶତ୍ରୁ ମାରିଣ ସୁଖ ଭୁଞ୍ଜ ହୋଅ ପଞ୍ଚୁକଟକେ ରାଜନ ।୬୩
ଜନ ମୁଖେ ସାଧୁ ଶବଦ ଶୁଣି ଶଂଖ ଶବଦ କଲେକ ଶ୍ରୀବତ୍ସି
ଶ୍ରୀକୃଷ୍ଣ ବୋଇଲେ କ୍ଷଣେକ ଜୀବନ ତୋହୋର ସାଧୁ ହେ ସର୍ବସାଚୀ ।୬୪
ଅଗ୍ନି ତେଜ ଲାଗନ୍ତେ ସନ୍ୟେ ଯେ ନିଦ୍ରାରେ ଶରୀର ଅଳସ
ଅସାକ୍ଷମ ପ୍ରାୟେ ସମରେ ଅପଯଶ ।୬୫
ପିତା ହତଗତ ପାଇଣ ବାରତା
ଦ୍ରୋଣକଇଂ ଭେଟିଲେ ଦ୍ରୋପଦ ବେନିସୁତ ।୬୬
ଧୃଷ୍ଟଦ୍ୟୁମନ ବୋଇଲେ ଶୁଣ ହୋ ଦ୍ରୋଣଗୁରୁ
ଧର୍ମ ତୋତେ କିମ୍ପେ ଛାଡିଲୁ ତୁ ମଇତ୍ର ଦ୍ରୋହ କଲୁ ।୬୭
ଅପାର ବେଳେ ତୋତେ ମୁଂ ସମରେ ଛାଡିଲି
ପିତାର ମଇତ୍ର ଯେ ଅନ୍ନଦାତା ଗୁରୁ ବୋଲି ।୬୮
ଯେବେ ସେ ଶୁଣିଲି ଯେ କହିଲା ମୋତେ କର୍ଣ୍ଣ
ଆଜ ମୋହୋର ହାଥେ ହୋଇଲା ତୋହୋର ଜୀବନ ।୬୯
ଯେବେ ମୁଂ ସମରେ ଆଜ ନ ମାରଇ ତୁକୁ
ବାହୁଡ଼ି ଯିବିକି ଆଉ ପଞ୍ଚାଳ ଦେଶକୁ ।୭୦
ଦ୍ରୋଣେ ଦ୍ୟୁମନରେ ସମରେ ରୋଳ ବଢ଼ି
ନିରାପକ୍ଷ ସମର କେହୁ ନୋହିଲେ ଛଡ଼ାଛଡ଼ି ।୭୧
ରଥୀ ଯୋଦ୍ଧାଯେ ଯେ ରଥରେ ନିଦ୍ରା ଯାଇ
ସାରଥୀ ହୟେମାନେହେଂ ରଥରେ ଘୁମାଇ ।୭୨
ଗଜର କୁମ୍ଭସ୍ଥଳେ ଶୁଅନ୍ତି ଶସ୍ତ୍ର ଧରି
କେହୁ ତଳେ ପଡୁଛନ୍ତି ଘୁମାଇଣ କରି ।୭୩
ଅଶ୍ୱଂକର ଉପରେ ନିଦ୍ରା ଯାଆନ୍ତି ରାଉତେ
ମୃତୁପିଣ୍ଡ ସୀମସ୍ଥାନ କରିଣ ଶୁଅନ୍ତି ପାଦାନ୍ତି ସମସ୍ତେ ।୭୪
ସତ୍ୟବର ବୋଲିଣ ଯେ ଉଜାଣି ଦେଶର ରାୟେ
ସେ ରାଜା ନାଶଗଲା ଶଲ୍ୟଂକର ଶର ଘାୟେ ।୭୫

ନନ୍ଦଗୁତ ଦେଶର ରାଜା ଶିବ ଯେ ନୃପତି
ତାହାଂକଙ୍କ ବଧ କଲା ଶକୁନି ମହାମନ୍ତ୍ରୀ ।୭୬

ଉଡଙ୍ଗ ଦେଶର ଯେ ନିର୍ମଳେଶ୍ୱର ରାୟେ
ତାହାକଙ୍କ ବଧ କଲା ବିରାଟ ତନୟେ ।୭୭

ବଂଗ ଦେଶର ରାଜା ନର ଯେ କେଶରୀ
ତାହାକଙ୍କ ବଧକଲା ଶ୍ରୀଖଣ୍ଡୀ ଦଣ୍ଡଧାରୀ ।୭୮

ତିହୁଡ଼ି ଦେଶର ରାଜା ମଙ୍ଗଳ ଯେ ସେନ
ତାହାକଙ୍କ ବଧ କଲା ରାଧେୟ ସୁତ କର୍ଣ୍ଣ ।୭୯

ବିରଥୀ ବୋଲି କରି ବୀର ଦେଶର ନୃପତି
ତାହାକଙ୍କ ବଧ କଲା ସହଦେବ ମନ୍ତ୍ରୀ ।୮୦

କାଉଂରୀ ଦେଶର ରାଜା ନାମ କାମପାଳ
ତାହାକଙ୍କ ବଧ କଲା କୁମାର ନକୁଳ ।୮୧

ବଙ୍ଗାଳ ଦେଶର ରାଜା ଭୀମେକ ଚକ୍ରବ୍ରତୀ
ତାହାକଙ୍କ ବଧ କଲା ଧୃଶାସନ ମହାଛତ୍ରୀ ।୮୨

କୁଞ୍ଜଗଳ ଦେଶର ରାଜା ନାମ ଚନ୍ଦ୍ରଚୂଡ଼
ତାହାକଙ୍କ ବଧ କଲା ଉତ୍ତର କୁମାର ।୮୩

ଖଡଦପୁରର ରାଜା ନାମ ଅନୁପାମ
ସେ ରାଜା ପଡ଼ିଲା ଯେ ଶ୍ରୀଖଣ୍ଡୀର ସାଂଗ୍ରାମ ।୮୪

ଇନ୍ଦ୍ରଧ୍ୱଜ ବୋଲିଣ ରାଜା ସଉରାଷ୍ଟ
ଭୀମ[illegible]ନର ମୁଖରେ ପଡ଼ିଲା ତାହା ଥାଠ ।୮୫

ନଗ୍ରପୁରର ରାଜା ଶତ ଯେ ନଉମି
ଉତ୍ତର କୁମର ସଙ୍ଗେ ପଡ଼ିଲା ସେ ରଣଭୂମି ।୮୬

ଯମୁନାପୁରର ରାଜା ନାମ ସଉଦାସ
ଶ୍ରୀଖଣ୍ଡୀର ସମରେ ସେ ହୋଇଲା ପ୍ରାଣେ ନାଶ ।୮୭

ପାଶିମଣ୍ଡଳର ରାଜା ନାମ ରଣଭକ୍ଷ
ତାହାକଙ୍କ ବଧକଲା ରଣେଣ ଦୁର୍ଦ୍ଦକ୍ଷ ।୮୮

କୁଶମଣ୍ଡଳର ରାଜା ନାମ ଜମ୍ବୁକେଶୀ
ନକୁଳ ହାଥରେ ସେ ହୋଇଲା ବିନାଶି ।୮୯

ବୀରବର ଚକ୍ରବ୍ରତୀ କାମିନୀ ପୁର ରାୟେ
ତାହାକଙ୍କ ବଧକଲା ବୀର ଧନୁର୍ଜୟେ ।୯୦

ଦୁରାନ୍ତେକ ନଗ୍ର ରାଜା ନାମ ସୁରସେନ
ତାହାକଙ୍କ ବଧ କଲା ପାଣ୍ଡବ ଭୀମସେନ ।୯୧

ତାହାଙ୍କ ଦେଶର ରାଜା ଚକ୍ରମାଳି
ସାତ୍ୟକିର ଶରଘାତେ ହୋଇଲେ ମହୀଆଳି ।୯୨

ଚୀର ଦେଶରରାଜା ଯେ ଶ୍ରୀମନ୍ତ ଚକ୍ରବ୍ରତୀ
ଦୁର୍ଜୟର ସମରେ ସେ ପଡ଼ିଲା ନୃପତି ।୯୩

ଜ୍ୱାଳାନଳ ଦେଶର ରାଜା ଅନଙ୍ଗସେନ
ତାହାକଙ୍କ ବଧ କଲେ ଧୃଷ୍ଟ ଯେ ଦ୍ୟୁମନ ।୯୪

ଖାଞ୍ଜଣ ଦେଶର ରାଜା ଯେ ଭୁଜଙ୍ଗ
ସମରେ ବ୍ରିକୋଦର ବିଦାରିଲା ତାର ଅଙ୍ଗ ।୯୫

ଜେନାବଳୀ ପାଟଣାର ବଜ୍ରସିଂହ ରାୟେ
ସମରେ ନାଶ ତାକୁ କଲେ ପାଣ୍ଡବ ଧନୁର୍ଜୟେ ।୯୬

ତାହାକୁ ବଧକଲା ସାତ୍ୟକି ମହାଛତ୍ରୀ ।୯୭

ବିଜୟାନଗ୍ରର ରାଜା ନାମ ଋତୁପର୍ଣ୍ଣ
ସମରେ ତାହାକଙ୍କ ବଧକଲା ବୀର ଧୃଶାସନ ।୯୮

କଞ୍ଚଣ ଦେଶର ରାଜା ନାମ ବଳରାମ
ତାହାକଙ୍କ ବଧ କଲା ସମରେ ବୀର ଭୀମ ।୯୯

ମଗଧ ଦେଶର ରାଜା ସହଦେବ ଜାରାସନ୍ଧ ସୁତ
ସେ ରାଜା ବଧଗଲା ଶଲ୍ୟଂକ ହାଥ ।୧୦୦

ବେଦି ଦେଶର ରାଜା ରକ୍ମଣ ମହାବଳୀ
ସମରେ ସହଦେବ ତାହାକଙ୍କ ପକାଇଲା ଦଳି ।୧୦୧

ମଲ୍ହାର ଦେଶର ରାଜା ନାମ ହରିହର
ସେ ରାଜା ବଧଗଲା ଦୂରାନ୍ତେକ ସମର ।୧୦୨

କଉଣିକ ଦେଶର ରାଜା ଇଚ୍ଛାନନ୍ଦ
ସେ ରାଜା ବଧଗଲା ବ୍ରିକୋଦରେ କରି ଦ୍ୱନ୍ଦ ।୧୦୩

ଶବରୀ ଦେଶର ରାଜା ଶବରୀ ନାରାୟଣ
ତାହାକଲଂ ବଧକଲା ଧୃଶାସନ ରାଣ ।୧୦୪

ସଞ୍ଜୟେ କହିଲା ହୋ ଶୁଣ ଧୃତିରାଷ୍ଟ
ରାତ୍ର ଯୁଦ୍ଧେ ପଡ଼ିଲେ ତୋହୋର ଯେତେ ଥାଠ ।୧୦୫

ଶୁଣ ବଇବସ୍ୱତ ମନୁ ବଦୟନ୍ତି ଅଗସ୍ତି
ସମର କରନ୍ତେଣ ଯେ ହୋଇଲା ପାହାନ୍ତି ।୧୦୬

ନିଦ୍ରାୟେଣ ଶବଦ ଯେ ନ ଶୁଭଇ କିଛି
ସମର ରହୁ ରହୁ ବୋଲି ବୋଇଲେ ସବ୍ୟସାଚୀ ।୧୦୭

ବିଶ୍ୱଦେବାୟେ ଉଦୟେ ହୋଇଲେ ପାହାନ୍ତି
ଇଶାନ୍ୟ ଭାଗୁଂ ବିକାଶିଲା ନକ୍ଷତ୍ର ପାଞ୍ଚମୂର୍ତ୍ତି ।୧୦୮

ଡାକନ୍ତି ତାମ୍ରଚୂଡ଼ ଯେ ଚକୁଆ ଚକୋଇ ଅଭ୍ୟାସେ
ଶୁଭଇ ଶଂଖଧ୍ୱନି ରଜନୀ ଅବଶେଷେ ।୧୦୯

ଅଶସ୍ତମା ହତ ବୋଲି ଶୁଭଇ ଶବଦେ

ଉନ୍ମେଷିଣ ଚଉକତି ଦ୍ରୋଣେ ଚାହାନ୍ତି ବିଷାଦେ ।୧୧୦
ସମର ମଣ୍ଡଳେ ଗୁରୁଦେବ ଥାଠଯାକ ବୁଲି
ବିଚାରନ୍ତି ଗୁରୁ ମୁଂ ଅଶତ୍ତମାକୁ ରାତ୍ର ଅଧହୁଂ ନ ଦେଖିଲି ।୧୧୧
ସେ ପୁତ୍ର ବଧ କରିବାକୁ କେ ଭାରଥ ଯୁଦ୍ଧେ ସମ
ଚକ୍ରକୂଟେ ନାଶ କଲେକ ଅବା ଶ୍ରୀ ପୁରୁଷୋତ୍ତମ ।୧୧୨
ତହିଂକି ଭ୍ରାନ୍ତି ମୋହୋର ଅଛଇ ଯେ ଅଙ୍ଗ
ମୃତୁପିଣ୍ଡମାନ ଗୁରୁ ଯେ କରନ୍ତି ସଂକ୍ଷେପ ।୧୧୩
ଲୋଡି ନ ପାଇଲେ ଯେ ଅଶତ୍ତମାର ବର୍ଣ୍ଣ ଚିନ୍ହ
ଅଶତ୍ତମା ହତ ବୋଲି ଶୁଭିଲା ଗଗନ ।୧୧୪
କର୍ଣ୍ଣର ଅଗ୍ରତେ ଯାଇ ପଚାରନ୍ତି ଦ୍ରୋଣଗୁରୁ
ଅଶତ୍ତମା କେଣେ ଗଲା ତୋହୋର ସଂଗରୁ ।୧୧୫
କର୍ଣ୍ଣ ବୋଇଲା ଗୁରୁ କହିବା କେନ୍ହେ ମିଥ୍ୟା
ରାତ୍ର ନବଘଡ଼ି ଠାରେ ଅଶତ୍ତମା ହୋଇଲା ନାଶଂଗତା ।୧୧୬
ସମର ରହଇ ବୋଲି ନ କହିଲି ତୁମ୍ଭ ଆଗେ
ରଥ ଭଗ୍ନେ ଅଶତ୍ତମା ଥିଲା ମୋର ସଂଗେ ।୧୧୭
ପୁଣ ପୁଣ ପଚାରିଲେ ଗୁରୁ ଶଲ୍ୟ ମହାରାଜା
ଅଶତ୍ତମାର ଚରିତ କେମନ୍ତ କହ ଦ୍ୱିଜା ।୧୧୮
ଦ୍ରୋଣଂକର ଅଗ୍ରତେ କହିଲେ ଯେ ରାୟେ ଶଲ୍ୟ
ପୁତ୍ରର ବାରତା ଆବର କାହିଂ ଅଛି ଭଲ ।୧୧୯
କ୍ରୋଧେଣ ଦ୍ରୋଣେ ପଚାରନ୍ତି ସବୁନ୍ତି ହିଂ
କେ ଅବା ଅଶତ୍ତମାକୁ ମୋର ଦେଖିଅଛି କାହିଂ ।୧୨୦
ଦ୍ରୋଣେ ପୁଛା କଲେ ଶୁଣ ଶକୁନି ମହାମନ୍ତ୍ରୀ
ଅଶତ୍ତମାକୁ ଦେଖିଲ କି ସେ ଗଲା କେଉଂଣ କତି ।୧୨୧
ଦ୍ରୋଣଂକର ଅଗ୍ରତେ ନିରାଶେ କହିଲା ଶକୁନି
ଅଶତ୍ତମା ନାଶଗଲା ଗୁରୁ ହେ ରାତ୍ର ପ୍ରହର ତିନି ।୧୨୨
ଆବର ଅଶତ୍ତମା ପାଇବୁ କାହିଂ ଦେଖି
ଯେକ ପୁତ୍ରଗୋଟି ପଡ଼ିଲା ତୁ ହୋଇଲୁ ନିରିମାଖି ।୧୨୩
କୁଳକ୍ଷୟେ ମନ୍ତ୍ରୀ ଯହୁଂ ଝିଂଘାସି କହିଲା
ଅଶତ୍ତମା ପ୍ରାୟ କୁମର ନାଶଗଲା ତୋର ଦେହ କେମନ୍ତ
ସହିଲା ।୧୨୪
ସମର ରହନ୍ତେ କୃଷ୍ଣ ଅରଜୁନ ବେନି
ଯୁଢେଷ୍ଟିଂକ ଅଗ୍ରତେ ତୋଷ ମନେ ମିଳିଲେ ବହନି ।୧୨୫
ଯୁଢେଷ୍ଟି ପୁଛାକଲେ ଶୁଣ ସହଦେବ
କେ କେ ଆମ୍ଭର ସମରେ ହୋଇଲେ ମୃତୁଶବ ।୧୨୬
ଯୁଢେଷ୍ଟିଂକ ଛାମୁରେ ସହଦେବ କହିଲା
ଦ୍ରୋଣଂକର ସମରେ ଦ୍ରୋପଦ ନାଶଗଲା ।୧୨୭
କର୍ଣ୍ଣ ମାଇଲାକ ମଚ୍ଛଦେଶର ଥାଠ
ପାଞ୍ଚକ୍ଷଉଣୀ ବଳ ତୁଲେ ପଡ଼ିଲା ବିରାଟ ।୧୨୮
ଅଳମ୍ବୁଷ ସମରେ ଘଟୁକା ଗଲା ବଧ
କର୍ଣ୍ଣର ଶକତି ଘାତେ ଘଟଉତ୍କଚ ବିରୋଧ ।୧୨୯
ରଥ ଗଜ ଯୋଦ୍ଧା ଅଶ୍ୱ କେହୁ କରିବ ଅନ୍ତ
ରାତ୍ର ଯୁଦ୍ଧେ ପଡ଼ିଲେ ସାତ ମର୍ଭୁତ ରଥ ।୧୩୦
ସାତଲକ୍ଷ ତିନି ସହସ୍ର ଉଗୁଳି
ରଥ ଯୋଦ୍ଧାୟେ ଯେତେ ପଡ଼ିଲେ ମହୀଆଳି ।୧୩୧
ଗଜ ଯୋଦ୍ଧା ପଡ଼ିଲେ ଦେବ ତିନି ଯେ ମେବଛ
ପାଞ୍ଚ ଅହିବ୍ରତ ନବସହସ୍ର ସାତଲକ୍ଷ ।୧୩୨
ଅଶ୍ୱ ଯୋଦ୍ଧା ପାଞ୍ଚବୃନ୍ଦ ତିନି ଯେ ମର୍ଭୂତ
ପାଦାନ୍ତି ବଳ ସଇନି କେ କରିବ ତଦନ୍ତ ।୧୩୩
ଯୁଢେଷ୍ଟି ଦେବଂକ ଅଗ୍ରତେ ଯେ କହିଲା ସହଦେବ ମହାମନ୍ତ୍ରୀ
ରାତ୍ର ଯୁଦ୍ଧେ ପଡ଼ିଲେ ଅଠରଶତ ଶତାବନ ନୃପତି ।୧୩୪
ପୁଣ ପୁଣ ପୁଛା କଲେ ଯେ ଧର୍ମ ମହୀପାଳ
ମାନଗୋବିନ୍ଦ ରାଜାର ଆଡ଼େ ବାବୁ ପଡ଼ିଲେ
କେତେ ବଳ ।୧୩୫
ସହଦେବ ବୋଇଲା ମାନଗୋବିନ୍ଦ ଶଶୁର ଯେ ଅଟଇ ଭୂମନୁ
ଶିଖଣ୍ଡୀ ବିଦାରିଲା ଭାନୁମତୀ ପିତାର ତନୁ ।୧୩୬
ରାଜାର ମଇତ୍ର ଯେ ଅଳମ୍ବୁଷ ନାଶଗଲା
ଅଳମ୍ବୁଷର ନନ୍ଦନ ଅଳାୟୁଧହିଂ ପଡ଼ିଲା ।୧୩୭
ମାଳବ ଦେଶର ରାଜା ଯେ ପଡ଼ିଲା ଅଶତ୍ତାମା ।୧୩୮
ଦ୍ରୋଣ ପୁତ୍ର ଅଶତ୍ତାମାହିଂ ନାଶଗଲା କୃତବର୍ମାର ତୁଲେ
ତାହା ଶୁଣି ଯୁଢେଷ୍ଟି ଦେବହିଂ ପଚାରିଲେ ।୧୩୯
ଯୁଢେଷ୍ଟି ପଚାରିଲେ କହରେ ସହଦେବ
ଅଶତ୍ତମାକୁ କେ ବଧକଲା ଯେତେ ପ୍ରାକର୍ମ
କାହାର ଯେବ ।୧୪୦
ସହଦେବ ବୋଇଲେ ଭୀମସେନ ଠାକୁରେ
ରଥ ଦଣ୍ଡ ଘେନି ଫିଙ୍ଗିଦେଲେ ବହୁତ ଦୂରେ ।୧୪୧
ସରସ୍ୱତୀ ନଦୀ ତୀରେ ବାରୁଣାବନ୍ତ ବନ
ଭାରତ ଭୂମିକି ସେ ବତିଶ ଯୋଜନ ।୧୪୨
ରଥ ଘେନି ଉଡି ପଡ଼ିଲା ଅଶତ୍ତମା

ଯେତେ ଦୂରେ ପଡ଼ିଣ ସେ ନାଶ ଗଲାକ ମହାତ୍ମା ।୧୪୩
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ଧର୍ମସୁତ
ଦ୍ରୋଣେ ପଚାରି ତୁମ୍ଭଂକୁ ଆସିବେ ପୁତ୍ର ଅର୍ଥ ।୧୪୪
ଅଶତ୍ଥମା ହତ ବୋଲି କହିବ ତୁମ୍ଭେ ବାଣୀ
ଦ୍ରୋଣେ ପ୍ରାଣତ୍ୟାଜ ହୋଇବେ ଅଶତ୍ଥମା ହତ ଶୁଣି ।୧୪୫
ଶୁଣ ହୋ କେଶବ ବଦୟନ୍ତି ଯୁଝେଷ୍ଟି
କେମନ୍ତେ ମିଥ୍ୟା କହିବୁ ଆମ୍ଭେ ନ ଦେଖିଲୁ ଦୃଷ୍ଟି ।୧୪୬
ଦ୍ରୋଣଂକର ଅଗ୍ରତେ କହିବା କିମ୍ଭେ ମିଥ୍ୟା
ସେ ଆମ୍ଭର ପରମ ଗୁରୁ ବିଦ୍ୟା ଦାନ କରତା ।୧୪୭
ଈଶ୍ବର ଦେବତା ଛାମୁରେ ମିଥ୍ୟା ଯେ କହିଲେ
ଗଳିତ କୁଷ୍ଠବ୍ୟାଧି ହୋଅଇ ଧର୍ମ ନନ୍ଦନ ବୋଇଲେ ।୧୪୮
ମାତା ପିତାଂକ ଛାମୁରେ କହନ୍ତି ଯେ ମିଥ୍ୟା
ନିଚୟେ ସେ ଜନଂକର ବଂଶ ନୋହି ରକ୍ଷା ।୧୪୯
ଗୁରୁଂକ ଛାମୁରେ ମିଥ୍ୟା କହଇ ଯେ ଜନ
ଇହଲୋକେ ରୋଗୀ ହୋଅନ୍ତି ମଲେ ନରକେ ପତନ ।୧୫୦
ଧର୍ମ ନନ୍ଦନ ମୁଖୁଂ ଯେସନ ବାକ୍ୟ ଶୁଣି
ପ୍ରଣପତ୍ୟ ହୋଇ ବୋଲନ୍ତି ଚକ୍ରପାଣି ।୧୫୧
ଉପାୟେ କରି ଶତ୍ରୁକୁ କରିବାକ ବଧ
ଧର୍ମ ବର୍ଦ୍ଧିତ ହୋଇବ ସକଳ କାର୍ଯ୍ୟ ହୋଇବାକ ସିଦ୍ଧ ।୧୫୨
ଶ୍ରୀ ନାରାୟଣଂକ ବଚନେ ବଦୟନ୍ତି କୌନ୍ତେ
ମୋହୋର ବେଳେ ମିଥ୍ୟା କହି ନୋହଇ କଦାଣ୍ଡିତେ ।୧୫୩
ପ୍ରାପତ ପଛେ ମୋତେ ନୋହୁ ରାଜ୍ୟଭାର
ମୋହୋର ବେଳେ ମିଥ୍ୟା କହି ନୋହୋଇ
ଦ୍ରୋଣଂକ ଆଗର ।୧୫୪
ଶ୍ରୀକୃଷ୍ଣ ବୋଇଲେ ତହୁଂ ଶୁଣ ଧର୍ମରାୟେ
ଅଶତ୍ଥମା ହାଥୀ ହତ ଶୁଣିଛ ତ ନିଚୟ ।୧୫୫
ନର କି ଗୁଞ୍ଜର ଅଶତ୍ଥମାର ମରଣ
କରିବ ଧୀରେ ଗୁଞ୍ଜର ଶବ୍ଦ ଉଚ୍ଚାରଣ ।୧୫୬
ଅନେକ ବାଗେଣ ତିଆରିଲେ ଚକ୍ରପାଣି
ଯୁଝେଷ୍ଟି ଦେବେ ସମସ୍ୟା ନ ଦିଲେ ତାହା ଶୁଣି ।୧୫୭
କ୍ରୋଧ ଅବସ୍ଥା ଯେ ହୋଇଣ ଦ୍ରୋଣ ଗୁରୁ
ମାନଗୋବିନ୍ଦ ଛାମୁରେ ପ୍ରବେଶ ହୋଇଲେ କ୍ରୋଧ
କରୁ କରୁ ।୧୫୮
ବାବୁ କୁରୁକୁଳ ମଣ୍ଡଣ ରାଜା ମାନଚକ୍ରବ୍ରତୀ
ଅଶତ୍ଥମା ଚରିତ ତୁ ଶୁଣିଲୁ କେବଣ ଗତି ।୧୫୯
ଦ୍ରିଯୋଧନ ବୋଇଲା ମୁଂ ଥିଲାଇଂ ରଣ ମଧ୍ୟେ
ସଞ୍ଚୟେ ଅଶତ୍ଥାମା ନାଶଗଲା ଭୀମସେନ ଯୁଦ୍ଧେ ।୧୬୦
ଧନୁ ତ୍ରୋଣ ପକାଇ ଦ୍ରୋଣେ ହସ୍ତେଣ ଖଡଗେକ ଘେନି
ଅରୁଣ ଉଲ୍କୋକ ପ୍ରାୟେ ଦିଶଇ ଚକ୍ଷୁ ବେନି ।୧୬୧
ଧର୍ମ ନନ୍ଦନ ଛାମୁରେ ପ୍ରବେଶ ଗୁରୁ ଦ୍ରୋଣେ
ପ୍ରଣପତ୍ୟ ହୋଇ ଶୁତିଲେ ପାଣ୍ଡବ ପାଞ୍ଚକଣେ ।୧୬୨
ଦ୍ରୋଣେ ବୋଇଲେ ତୁମ୍ଭନ୍ତ ବିଦ୍ୟା ପ୍ରାପତ ହୋଉ ଉଠ ତୁମ୍ଭେ ପୁତ୍ର
ମୋହୋର ଆଷ୍ୟ ଘେନି ବ୍ରତ ପଞ୍ଚୁକଟକେ ହୋଅ
ଯେକଛତ୍ର ।୧୬୩
ବାବୁ ତୁହି ସମରେ ଥିଲୁ ରେ ଯୁଝେଷ୍ଟି
ଅଶତ୍ଥମାଂକ ହତ ବାରତା ଦୁସହ ଅରିଷ୍ଟି ।୧୬୪
ଯେ ମହାଭାରତ ଯୁଦ୍ଧେ କେ ବଧ କଲା ତାହା
ସରୂପ କହ ବାବୁ ସମରେ ଦେଖିଲୁ ତୁ ଯାହା ।୧୬୫
ଯୁଝେଷ୍ଟି ଦେବେ ବୋଇଲେ ଶୁଣ ଗୁରୁ ତାତ
ନର କି ଗୁଞ୍ଜର ଯେ ଅଶତ୍ଥମା ହତ ।୧୬୬
ମୂର୍ଚ୍ଛାଗତ ହୋଇ ହାଥରୁ ଛାଡିଲେ କୃପାଣ
ପଡିଣ ଅସାଷ୍ଟମ ଯେହୋଇଲେ ଗୁରୁ ଦ୍ରୋଣ ।୧୬୭
ଧୃଷ୍ଟଦ୍ୟୁମନ ଯେ ଥିଲେ ଖଡଗ ଘେନିଣ ଦ୍ରୋଣଂକ ପଛକତି
ନୟନ ଠାରିଣ ଦିଲେ ଦେବ ଯେ ଶ୍ରୀପତି ।୧୬୮
ପିତା ଶତ୍ରୁ ତୋହୋର ଅଟନ୍ତି ଗୁରୁ ଦ୍ରୋଣ
କିସ ଚାହୁଂ ଖଡଗ ଘେନିଣ ବେଗେ ଯେହାକଇଂ ହାଣ ।୧୬୯
ଶ୍ରୀକୃଷ୍ଣର ବଚନେ ଧୃଷ୍ଟ ଯେ ଦ୍ୟୁମନ
ଦ୍ରୋଣଂକର ବକ୍ଷସ୍ଥଳେ ଖଡଗ ଘେନି ହାଣିଲା ବହନ ।୧୭୦
ବେନି ଖଣ୍ଡ ହୋଇ ଛିଡି ପଡ଼ିଲା ତାହାଂକର କାୟେ
ଅଗ୍ନିଯେକ ଉଠିଲା ଆକାଶକୁ ବ୍ରହ୍ମାଣ୍ଡ ଦହନ ପ୍ରାୟେ ।୧୭୧
ରଥ ସଜ କରି ତେଣେ ଆସଇ ଅଶତ୍ଥମା
ଯମୁନା କୂଳେ ବାରତା ଦିଲେକ କୃପବ୍ରହ୍ମା ।୧୭୨



# କର୍ଣ୍ଣ ପର୍ବ

## ୯୬. କର୍ଣ୍ଣାର୍ଜ୍ଜୁନ ଯୁଦ୍ଧ ଓ ଶ୍ରୀକୃଷ୍ଣଙ୍କ ଗର୍ଭମଧ୍ୟେ ଅର୍ଜ୍ଜୁନର ବ୍ରହ୍ମାଣ୍ଡ ସନ୍ଦର୍ଶନ

ଶୁଣ ବଇବସ୍ୱତ ମନୁ ବଦନ୍ତି ଅଗସ୍ତି
ପୂର୍ବଦିଗେ ବିକାଶିଲା ଦିନକର ଜ୍ୟୋତି ।୧
ନନ୍ଦିଘୋଷ ରଥେ ଯେ ବିଜୟେ ଫାଲଗୁନି
ନାରାୟଣ ସାରଥି ହୋଇ କଲେ ଶଙ୍ଖଧ୍ୱନି ।୨
ସେଦିନ ଦ୍ରୋପଦୀର ଶୁଦ୍ଧସ୍ନାହାନ ଭୀମସେନ ଶୟନ ପାଳି
ଅଗ୍ନିରେ ପଶି ଦ୍ରୋପଦୀ ଶରୀର ପଖାଳି ।୩
ଶ୍ରୀକରେ ଅର୍ଘ୍ୟ ଘେନିଣ ଉଭା ହୋଇଲେ ଜିଗ୍ନସେନୀ
ଶ୍ରୀକୃଷ୍ଣ ଛାମୁରେ ବିଜୟେ କଣୟ ରତ୍ନଥାଳୀ ଘେନି ।୪
ଦ୍ରୋପଦୀ ଅର୍ଘ୍ୟ ଦିଅନ୍ତେ ବଦନ୍ତି ଦେବରାଜ
ଭୀମସେନକଇଂ ଅର୍ଘ୍ୟ ଦିଅ ଗୋ ଆନରେ କିସ କାର୍ଯ୍ୟ ।୫
ସଂଚୟେ ଧୁଶାସନ ଆଜି ସମରେ ପଡ଼ିବ
ଯେ ତୋହୋର ପ୍ରତଗ୍ୟାଂ ସାଚାକରି ମାନ ଉଦ୍ଧରିବ ।୬
ଦ୍ରୋପଦୀ ବୋଇଲେ ସ୍ୱାମୀ ତୁ କଇଛା ଜଗଜେଠୀ
ଯେ ଭରହର ଭାରଥେ ନାଥ ତବ ନାମଗୋଟି ।୭
ସୁଲଭ ନିରୋପଣେ ଦେଖିଲି ନାଥ ତୋତେ
ତୁହି ସେ ଜଗତ ନାଥ ପାରି କରିବୁନା ମୋତେ ।୮
ଆଜ ଯେବେ ନ ଉପାଡ଼ିବୁ ଧୁଶାସନର ଭୂଜ
ତୋହୋର ମୁଖ ନ ଚାହିଂବି ଅଗ୍ନିରେ ହୋଇବି ଦହିଜ ।୯
ଆଜ ଧୁଶାସନକୁ ତୁ ନ ମାରିବୁ ଯେବେ
ସଂଚୟେ ବିଷ ଖାଇ ମରିବି ସତ୍ୟ ସତ୍ୟ ଯେବେ ।୧୦
ଆବର ଚାରିଂକରେ ମୋର ପ୍ରିଓଜନ କିସ
ତୋହୋର ବାହାକୁ ଆଜ ମୁଂ କରିଅଛଇଂ ଆଶ ।୧୧
ଯାଅ ବାବୁ ଆଜ ରଣେ ତୋତେ ଧର୍ମ ଦେବତା ହେଉ ସାହା
ଯେମନ୍ତେ ଧୁଶାସନର ଆଜ ଉପୁଡ଼ଇ ବେନି ବାହା ।୧୨
ଭୀମସେନ ବୋଇଲା ଗୋ ଆଜ ଦିନ ଷୋଳଦଣ୍ଡର ମଧ୍ୟେ
ଅବଶ୍ୟ ଧୁଶାସନକଇଂ ପାଡିବି ରଣମଧ୍ୟେ ।୧୩
ଧାତିକାରେ ହୋଇ ଆସିବ ବୀର ସହଦେବ
ତାହାର ଅଇଲେ ତୁମ୍ଭେ ବହନ ହୋଇ ଯିବ ।୧୪
ସୁଲଭ ବଚନ ତୋହୋର ମୋତେ ହୋଉ ପରାପତ
ଅର୍ଘ୍ୟ ଘେନି ବ୍ରିକୋଦର ବିଜେକଲା ରଥ ।୧୫
କୁମ୍ଭମାସ କୃଷ୍ଣପକ୍ଷ ଦୁତୀୟା ଚନ୍ଦ୍ରବାର
ଉତ୍ତରା ଫାଲଗୁନି ନକ୍ଷତ୍ର ଭୋଗ୍ୟ ସେ ଦିନର ।୧୬
ତଇତିଳ ନାମେ କରଣ ଯେ ଧୃତି ନାମେ ଯୋଗ
କୁମ୍ଭ ସଂକରାନ୍ତିକି ଦିବସେକ ଭୋଗ ।୧୭
ଉଦୟଗିରି ବିକାଶି ବିଜୟେ ମାରତଣ୍ଡ
ଚନ୍ଦ୍ରକୁ ଭୋଗ କୁମ୍ଭଲଗ୍ନ ପ୍ରଥମ ଚାରିଦଣ୍ଡ ।୧୮
ପ୍ରଥମ ଚାରିଦଣ୍ଡେ ଯାଇଂ ସମର ଭୂମି ଘୋଟି
ଛଡ଼ଦଣ୍ଡ କାଳ ବେଳାୟେ ହୋଇଲେ ଭେଟାଭେଟି ।୧୯
କର୍ଣ୍ଣ ଅର୍ଜୁନ ଦୁହେଂ ହୋଇଲେ ଯେକମୁଖ
କର୍ଣ୍ଣର ସାରଥି ଶଲ୍ୟ ପାର୍ଥର ସାରଥି ଶ୍ରୀବଛ ।୨୦
ଆହୋ କର୍ଣ୍ଣର କରେ ଯେ ସତୁରୀ ସହସ୍ର ବଳ ଧନୁ
ସହସ୍ର ନାରାଜ ପୂରୋଇଛି ରାଧେବର ତନୁ ।୨୧
ତାହା ଦେଖି ଅର୍ଜ୍ଜୁନ ଯେ ଗରୁକୋପ କଲା
ବାବଲ ପେଷି ତାକୁ କାଟି ପକାଇଲା ।୨୨
ଆଦିତ୍ୟର ନନ୍ଦନ ଯେ ବଚନ ପରକାଶି
ବାଳୁତ ପୁତ୍ରନ୍ତ ମାରିଲ ରେ ତୁମ୍ଭେ ବଡ଼ ଦୋଷୀ ।୨୩
ଅର୍ଜ୍ଜୁନ ବୋଇଲେ ହେ କର୍ଣ୍ଣ ନିର୍ଦ୍ଦୋଷୀ ତୁମ୍ଭେ ଅଟ
ଧର୍ମ ଆଚର ତୁମ୍ଭର ନାହିଂନା କପଟ ।୨୪
ଅର୍ଜ୍ଜୁନ ବୋଇଲା ରେ ଚଉଦ ବରଷର କୁମର ଅଭିମନ୍ୟୁ
ଆପଣେ ଥାଇ ମରାଇଲୁ ସେ ବାଳୁତ ମୋର ତନୁ ।୨୫
ପଣ୍ଡୁ ଧୃତିରାଷ୍ଟ ବିଦୁର ଯେକଇ ସୋଦର
ଯେକପିତା ଦୁଇ ମାତାଉଂ ଜାତ ଭିନ୍ନାଭିନ୍ନ ନାହିଂ ଯେଥିର ।୨୬
ଅନେକ କାଳ ଯେ ହୋଇଥିଲେ ଯେକଆତ୍ମା
ତୁ ଯେତେବେଳେ ଆସି ବିଜେକଲୁ ହେ ମହାତମା ।୨୭
ଓହୋକୁଳେ ପଶି ଭିଆଇଲୁ ଦ୍ୱନ୍ଦ
ତୋହୋର ପ୍ରସାଦେ ହୋଇଲୁ ଯେଡେକ ପ୍ରମାଦ ।୨୮
ଆହୋ କର୍ଣ୍ଣ ଓହୋକୁଳକୁ ତୁହି ସେ ବୁଡ଼ାଇଲୁ
କଉରୋବ ବଂଶ ତୁ ସଂପୋଡେ ନାଶକଲୁ ।୨୯
କର୍ଣ୍ଣ ବୋଇଲା ବାବୁ ସମର ଦେଖ ଆଜ
ପାଣ୍ଡବ ବଳ କେହ୍ନେ ରଖଇ ଦେବରାଜ ।୩୦
ପଚାରୁ ପଚାରୁ ସେ ମହାବଳୀ କର୍ଣ୍ଣ
ତିମ୍ବୁରୁ ଶତେବାଣ ବିନ୍ଧିଲା ରାଧେବର ନାନ ।୩୧
ଆକାଶ କମ୍ପିଲା ସେ ନାରାଜ ଆସନ୍ତେ
ଯେସନେକେ ଆକାଶୁଂ ପଡ଼ଇ ନିରିଘାତେ ।୩୨

ବାରୁଣା ଶହସ୍ତ୍ରେକ ବିନ୍ଧିଲା ସର୍ବସାଚୀ
ତିମ୍ବୁର ନାରାଚ ଛେଦି କର୍ଣ୍ଣର ରଥ ଗଲା ଶତେଭେଡ଼ା ଘୁଞ୍ଚି ।୩୩
ପୁଣ ଧାଡିକାରେ ଶଲ୍ୟ ରଥ ଟେକିଲା ଆଣି ପାଥ ଛାମୁଂ
କର୍ଣ୍ଣ ପ୍ରଶଂସଇ ଧନ୍ୟ ସାରଥିପଣ ତୋହୋର ମାମୁଂ ।୩୪
କର୍ଣ୍ଣର ଶର ପୂରାବନ୍ତେ ବଜ୍ରଶର ବିନ୍ଧିଲା ଧନୁର୍ଜ୍ଜୟେ
ପୁଣିହିଂ କର୍ଣ୍ଣ ରଥ ଘୁଞ୍ଚିଗଲା ଶତେଭେଡା ଯାଏ ।୩୫
ପୁଣ ସାରଥି ରଥ ଟେକିଲା ଆଣି ବେଗେ
ଚକ୍ଷୁ ପିଛାଡିବା ମାତ୍ରକେ ହୋଇଲା ନନ୍ଦିଘୋଷ ଆଗେ ।୩୬
ଅର୍ଜ୍ଜୁନ ନାରାଚ ଯେ ପେଷନ୍ତେ ଯେହିମତେ
ପୁଣି ଘୁଞ୍ଚିଗଲା ରଥ ସେ ନାରାଚ ବିଘାତେ ।୩୭
କର୍ଣ୍ଣ ବୋଇଲା ମାମୁଂ ରଥ କିଂପା କରୁ ହେଳ
ମୋର ରଥ ଘୁଞ୍ଚିଯାଇ କିମ୍ପାଇଂ ନ ସମ୍ଭାଳ ।୩୮
ଶଲ୍ୟ ବୋଇଲେ ହୋ ନ ଘୁଞ୍ଚିଲେ ତୋର ରଥ
ଚାରି ଅଶ୍ୱକୁ ଛେଦନ୍ତା ନିଶ୍ଚେ ବୀର ପାଥ ।୩୯
ଶୁଣିଣ କର୍ଣ୍ଣବୀର ସମରେ ଗରୁଶଙ୍କ
କୋପେଣ ବିନ୍ଧିଲା ସେ ଯେ ନାରାଚ ପରିଘ ।୪୦
ପ୍ରଚଣ୍ଡ ପବନ ଜାଣି ନାରାଚ ଆସୁଅଛି
ନନ୍ଦିଘୋଷ ରଥ ଗଲା ସାତଭେଡ଼ା ଘୁଞ୍ଚି ।୪୧
ସାଧୁ କର୍ଣ୍ଣ ବୋଲି ଶୁଭିଲା ଆକାଶରେ ବାଣୀ
ନନ୍ଦିଘୋଷେ ଥାଇଂ ସାଧୁ ବୋଇଲେ ଚକ୍ରପାଣି ।୪୨
ସାଧୁ କର୍ଣ୍ଣ ବୋଲି ଯହୁଂ ଶ୍ରୀହରି କଲେ ଶଙ୍ଖଧ୍ୱନି
ହାଥରୁ ଧନୁ ଶହସ୍ର ପକାଇଲା ବୀର ଫାଲଗୁନି ।୪୩
ଗୁଣଘୋଷ ନ ଶୁଭନ୍ତେ ଶ୍ରୀକୃଷ୍ଣ ଚାହିଂଲେ ଲେଉଟି
କୃଷ୍ଣ ବୋଇଲେ କର୍ଣ୍ଣଦର୍ପେ ଥମ୍ଭୀଭୂତ ହୋଇଲୁ କି କିରଟୀ ।୪୪
ତୋହୋର ଶରୀରେ ବିରସ ଦେଖିଣ ରାଧେବ
ଯେହିକ୍ଷଣି ପାଣ୍ଡବ ବଳ ସମସ୍ତ ଧ୍ୱଂସ କରିଯିବ ।୪୫
ଅର୍ଜ୍ଜୁନ ବୋଇଲା ଦେବ ଶୁଣିମା ଜଗନ୍ନାଥେ
କର୍ଣ୍ଣର ରଥ ଘୁଞ୍ଚାଇଲି ଶତେଭେଡ଼ା ସାତବାର ପରିଯନ୍ତେ ।୪୬
ଅନେକ ବେଳ ଗଲାଣି କର୍ଣ୍ଣରଥ ଘୁଞ୍ଚି
ସାଧୁ ସାଧୁ ମୋତେ ତ ନ ବୋଇଲ ଶ୍ରୀବତ୍ସି ।୪୭
ଯେକାବେଳକେ ରଥ ମୋ ଘୁଞ୍ଚିଲା ସାତଭେଡ଼ା
ସାଧୁ କର୍ଣ୍ଣ ବୋଲିଣ ଶୁଭିଲା ସ୍ୱର୍ଗଧାରା ।୪୮
ଯେମନ୍ତ ବିଚାର ଅବା କଲେକ ଦେବତାଏ
ସାଧୁ କର୍ଣ୍ଣ ବୋଲିଣ କଲେ ଜୟେ ଜୟେ ।୪୯
ଶତ୍ରୁକୁ ଜୟେଧ୍ୱନି କଲ ତ ନାରାୟଣ
ଯେ ମୋହୋର ଦେହରେ କି ରହିବ ପଞ୍ଚପ୍ରାଣ ।୫୦
ଅର୍ଜ୍ଜୁନର ବଚନ ଶୁଣି ବୋଲନ୍ତି ଚକ୍ରପାଣି
ଦେବତାଙ୍କୁ କୋପ ତୁହୋ କଲୁ ତ ନଜାଣି ।୫୧
ମୋତେ ହୋ ବାବୁ ଅର୍ଜ୍ଜୁନର କରସି କୋପ
ଯେ ଭାରଥ ଯୁଦ୍ଧେ ଅଗୋଚର ମୋତେ କର୍ଣ୍ଣଦର୍ପ ।୫୨
ତୁହି ଯେହା ତଦନ୍ତ କରି ନୁଆରୁ ଧନୁର୍ଜ୍ଜୟେ
କର୍ଣ୍ଣର ରଥ ହାଦେ ଶିମୁଳି ତୁଳା ପ୍ରାୟେ ।୫୩
ମନ୍ଦରହୁଂ ଗରୁହଂସ ଯେ ତୋହୋର ରଥଗୋଟି
ଚଉଦ ଶଂଖ ଦଧିମୁଖ ବଳ ଘେନିଣ ହନୁମନ୍ତ ଯେବଣ
ରଥଧ୍ୱଜେ ଅଛି ଉଠି ।୫୪
ଦେଖ ହୋ ଫାଲଗୁନି ନନ୍ଦିଘୋଷ ରଥ ଚାରିପାଢ଼ ବିସ୍ତାର
ଆବର୍ତ୍ତେକ ସମ୍ବର୍ତ୍ତେକ ଦ୍ରୋଣମେଘ ଯେ ପୁଷ୍କର ।୫୫
ରଥର ଦକ୍ଷିଣ କୋଣେଦେଖ ହୋ ଫାଲଗୁନି
ସେ ସ୍ତମ୍ଭେ ବସିଅଛନ୍ତି ବଶ୍ୟାନର ବହନି ।୫୬
ଇଶାନ୍ୟ କୋଣେ ଦେଖ ହୋ ଅର୍ଜ୍ଜୁନ
ସେ ସ୍ତମ୍ଭେ ରହିଅଛନ୍ତି ଈଶ୍ୱର ଦେବତା ଜାଣ ।୫୭
ରଥର ବାଇବ୍ୟ କୋଣେ ଦେଖ ହୋ ସର୍ବସାଚୀ
ପବନ ଦେବତା ସେ ସ୍ତମ୍ଭରେ ବିଜେ କରିଅଛି ।୫୮
ଦେଖ ହୋ ଅର୍ଜ୍ଜୁନ ରଥର ନଇରତ କୋଣେ
ସେ ସ୍ତମ୍ଭେ ରହିଛନ୍ତି ନଇରତ ବରୁଣେ ।୫୯
ସତ୍ୟ ତ୍ରେତୟା ଦ୍ୱାପର କଳିଯୁଗ ଚାରି
ହୋଇ ଅଛନ୍ତି ଯେ ଯେହୁ ରଥର ଜୁଆଳି ।୬୦
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଚାରିକୋଣ
ଅଶ୍ୱ ଯୋଚା ଦଉଡ଼ି ଯେ ହୋଇଛନ୍ତି ଜାଣ ।୬୧
ବିହନ୍ତା ପୁରୁଷେ ସନେକ ବିଶ୍ୱଦେବା
ଯେମାନେ ତୋର ରଥେ ବାକୁଳି ହୋଇଛନ୍ତିରେ ବାବା ।୬୨
ଶଂଖପଦ୍ମ ମହାପଦ୍ମ କର୍କୋଟକ, ଅନନ୍ତ, କୁଳିକ,
ବାସୁକୀ ତକ୍ଷକ
ବନ୍ଧନ ଦଉଡ଼ି ଯେ ହୋଇଅଛନ୍ତି ଦେଖ ।୬୩
ପ୍ରଳୟ ଉଦ୍ଧାରଣ ଯେବଣ ଚାରିହୟେ
ଯେ ରଥକୁ ଘୁଞ୍ଚାଇଲା ସେ କି ଧନ୍ୟ ନୋହେ ।୬୪
ପାଥ ବୋଇଲେ ଧନ୍ୟ ବୋଇଲ ହେ ନାରାୟଣ
ଯେହା ଶୁଣି କିମ୍ପା ଦେହେ ରହିଛି ମୋ ପ୍ରାଣ ।୬୫

ଦେଖ ହୋ ଅର୍ଜୁନ ବୋଲି ବିସ୍ତାରିଲେ ତୁଣ୍ଡ
ଦେଖିଲା ଅର୍ଜୁନ ନାରାୟଣ ଗର୍ଭେ ଅଶେଷ ବ୍ରହ୍ମାଣ୍ଡ ।୬୬
କାହିଁ ନଦୀ କାହିଁ ଗିରି କାହିଁ ବନ ଘୋର
ଯେ ସକଳ ଦେଖି ପାର୍ଥ ହୋଇଲା କାତର ।୬୭
ହିମବନ୍ତ ମନ୍ଦର ଯେ ଶତଶୃଙ୍ଗ ମେରୁ
ବିଚାରଇ ପାର୍ଥ ତାର ରଥ କେଡ଼େ ଗରୁ ।୬୮
ସପତ ସାଗର ସପତ ବ୍ରହ୍ମାଣ୍ଡ ସପତଦୀପା ମହୀ
ଭାରଥ ଯୁଦ୍ଧ ରାମାୟଣ ଯୁଦ୍ଧ ଲାଗିଅଛି ତହିଁ ।୬୯
ରାମ ରାବଣର ଯେ ହେଉଅଛି ସମର
ଦୁର୍ଗାର ତୁଳେ ମୟେଂଷାର ସମର ମହାଘୋର ।୭୦
ଦଶଅବତାର ଯେ ନାରାୟଣ ମୂର୍ତ୍ତି
କୃଷ୍ଣର ଗର୍ଭେ ଅର୍ଜୁନ ଯେ ଦେଖିଲା ସବୁନ୍ତି ।୭୧
ଯେସନେକ ସରୂପ ଯେ ଦେଖଇ ସର୍ବସାଟୀ
ଦେଖିଣ ଭାରୋଇ ମଲ୍ଲର ନ ଫୁରଇ କିଛି ।୭୨
ରଥରୁ ଉତୁରିଲା ଯେ ବିଚିତ୍ରବୀର୍ଯ୍ୟର ନାତି
କୃଷ୍ଣର ପାଦତଳେ ପ୍ରଣପତ୍ୟ ତତକ୍ଷଣାନ୍ତି ।୭୩
ଅର୍ଜୁନ ବୋଇଲେ ହରି ଅଗୋଚର ତୋର ମାୟା
ଯେବେ ସେ ଜାଣିଲି ହରି ପାଣ୍ଡବ କୂଳକୁ ତୋର
ଯେଡ଼େ ଦୟା ।୭୪
ଗୋବିନ୍ଦକୁ ସମାର୍ଜି ଧନୁ ଧଇଲେ କିରଟୀ
କର୍ଣ୍ଣ ଯୁଝେଷ୍ଟିଙ୍କର ହୋଇଲା ଭେଟାଭେଟି ।୭୫

**

## ୯୭. ଦୁଃଶାସନ ବଧ ଓ ଦ୍ରୌପଦୀଙ୍କର ବେଣୀ ବନ୍ଧନ

ଆହୋ ଚଇତନ ଶ୍ରୀହରି କଲେ ପଞ୍ଚଜନ୍ୟ ଶଙ୍ଖଶବଦ
ଶତଶିଂଗ ଶତଶିଂଗ ବୋଲି ଉଚ୍ଚେ କଲେ ସେହୁ ନାଦ ।୧
ତଳେ ପଡ଼ିଥିଲାକ ସେ ପାଣ୍ଡେବ ପଞ୍ଚାଣେ
ଶ୍ରୀକୃଷ୍ଣଂକ ଶଙ୍ଖଧ୍ୱନି ତାର ସମ୍ଭାଇଲା ଶ୍ରବଣେ ।୨
ଶତଶିଂଗ ପର୍ବତକୁ ସୁମରଣା କଲା ଭୀମ
ଯେକ ଉତ୍ତର ଶତେ ସିଂଘର ହୋଇଲା ପ୍ରାକର୍ମ ।୩
ବ୍ରିକୋଦର ରୂପ ଧରି ଲେଉଟାଇ ମାଡି ବସି
ନୟନ ଛଟକେ ଭୀମା ମାଡି ବସିଲା ଆକ୍ରେଷି ।୪
ଆହୋ ଚଇତନ ମାୟାଧର ପୁରୁଷର ମାୟା କୂଟବୁଦ୍ଧି
ତେଣୁକରି ଚେତନା କରାଇଲେ ଜଗନିଧି ।୫
ମହା ଭୀଷ୍ମରୂପ ଧଇଲା ବୀର ଭୀମେ
ସାତ ଯୋଜନ କାୟା କଲାକ ଅତିତମେ ।୬
ବ୍ରିକୋଦର ମୂରତି ଧଇଲା ଭୀମାବୀର
କହିବାକୁ ଅସଂକ୍ଷେପ ମହିମା ଯାହାର ।୭
ଗୋଚର ନ ଗଲା ଓହୋବଳ ଥାଠକୁ
ମାଡିବସି ବ୍ରିକୋଦର ମୁଥେ ମାଇଲା ବୁକୁକୁ ।୮
ମନ୍ଦର ମାଡି ବସିଲା ଯେହ୍ନେ ହିମଗିରି ପର୍ବତ
ସେହି ସାଦୃଶେ ମାଡି ବସିଲା ପବନର ସୁତ ।୯
ସେହିପରି ବିକାଶଇ ଭୀମସେନର କାୟେ
ଗର୍ଜଇ ବ୍ରିକୋଦର ବିକ୍ରମ ସିଂଘ ପ୍ରାୟେ ।୧୦
ରଣରଙ୍ଗ ହାନ୍ଦୋଳ ସେ ଅଚାର୍ଗଳ ବୀର ଭୀମା
ତ୍ରଇଲୋକ୍ୟେ ଅସଂକ୍ଷେପ ବ୍ରିକୋଦର ମହିଂମା ।୧୧
ଯେକ ଉତ୍ତର ଶତେ ସିଂଘର ଯାହାକ ପ୍ରାକର୍ମ
କୃତାନ୍ତେକ ରୂପ ଧରିକି ବିଜେକଲା ଭୀମ ।୧୨
ନୟନ ତରାଟି ଯେ ଚାପଇ ଦନ୍ତପାଟି
କି ଅବା ଗିରିବରେ ପଡୁଅଛନ୍ତି ଲୋଟି ।୧୩
କାଳଚକ୍ର ପ୍ରାୟେକ ବୁଲଇ ବେନିଡୋଳ
ଓହୋବଳ ଥାଠକୁ ଚାହିଁ ବୁଲାଇ ଚକ୍ଷୁ ଅନ୍ତରାଳ ।୧୪
କହ କହ ନାଦକରି ଅଧରେ ଦନ୍ତଚାପି
ରେ ରେ କାର ଶବଦ କରି ଗର୍ଜଇ କାମରୂପୀ ।୧୫
ବାମକରେ ବ୍ରିକୋଦର ମାଡି ବସିଅଛି ତଣ୍ଟି
ଆକାଶମାର୍ଗକଇଂ ଟେକିଅଛି ବଜ୍ରମୁଠି ।୧୬
ଯେକପାଦ କଟିମେଖଳେ ଆରେକ ପାଦ ହୃଦେ
ପୁଣ ପୁଣ ପ୍ରତିଗ୍ୟାଂ କରଇ ବାହାନାଦେ ।୧୭
ଗର୍ଜଇ ତର୍ଜଇ ଯେ ମାରଇ ବାହାସ୍ଫୋଟ
କ୍ଷଣକେ ଉଠଇ କ୍ଷଣକେ କରଇ ତରାଟ ।୧୮
ମହାବିକ୍ରମ କରି ଉଲ୍ଲସଇ ରୋମାବଳୀ
ପଡ଼ିଅଛି ଧୁଶାସନ ନୁଆରଇ ଚଳି ।୧୯
ବକ୍ଷସ୍ଥଳ ଚାପଇ ଦକ୍ଷିଣ ପାଦ ପୃଷ୍ଟେ
ଅବିଛନ୍ନେ ଶ୍ରୋଣି ବହଇ ମୁଖବାଟେ ।୨୦
ଆରେ ଆରେ ପାମର ମୂର୍ଖ କଉରୋବ
ଆତ୍ମାରାଗୀ ହୋଇଲେ ପାଇଲ ପ୍ରାଭବ ।୨୧
ଶତେ ପୁତ୍ରରେ ଜାତ କଲାକ ଗାନ୍ଧାରୀ
ପ୍ରଜାପତିର ନିର୍ବାଣ ମୋହୋର ହାତେ ମରି ।୨୨

ଭଲା ଉବୁରି ରେ ପଳାଇଲୁ କାଲି
ଆଜ ସେ ମୁହିଂରେ ତୋତେ ଦେଖିତେ ପାଇଲି ।୧୨୩
ଯେତେବେଳକୁ ଆଷ୍ୟରେ ଅଛଇ ନିର୍ବାଣ କରି
କେ ତାହା ପୁଣ ପୁଣ ଆନ କରିପାରି ।୧୨୪
ନିମିଷେକେ ଆଷ୍ୟ ଥିଲେ କେ ନାହିଂରେ ଲଂଘନ୍ତା
କାଳିକ ଆୟୁଷ ତୋତେ ରେ ବଞ୍ଚାଇଲା ବିଧାତା ।୧୨୫
ଆଜ ଧୃଶାସନରେ ପଡ଼ିଲୁ ମୋହୋର ମୁଖ
ଆଜ ସେ ପାରଗଲାରେ ଦ୍ରୋପତୀର ଦୁଖ ।୧୨୬
ଆରେ ଆରେ କଉରୋବରେ ମହିଂମା ତୋର ଧନି
କେ ଆଜ ତୋତେ ରକ୍ଷା କରିପାରଇ ମେଦିନୀ ।୧୨୭
ସଞ୍ଚୟେ ଧୃଶାସନ ରେ ହୋଇଲୁ ନିରେଖୁ
କରଇ ବୀର ପ୍ରତଗ୍ୟାଂ ରେ କେହୁ ତୋତେ ଆଜ ରଖୁ ।୧୨୮
ତୋହୋର ପଡ଼ିଲେ ରେ ବୁଡ଼ିଲା ସମ୍ପଦ
ଆଝୁଂ ନିରିମାଖୀ ହୋଇଲାରେ ରାଜା ମାନଗୋବିନ୍ଦ ।୧୨୯
ଆକାଶେ ଥାଇଣ ଯେ ଦେଖନ୍ତି ବୃନ୍ଦାଅର୍କେ
ପାରନ୍ତୁ ଯେବେ ତୋତେ ରଖନ୍ତୁ ଦେବଲୋକେ ।୧୩୦
ଅମରାଧି ନାଥ ବିଜୟେ ଅସକନ୍ଦେ
ତୁହି ପାରିଲେ ରକ୍ଷାକର ହୋ ଦେବ ଇନ୍ଦ୍ରେ ।୧୩୧
ଜନ୍ତୁନାଶନ ତୁ ଅଟୁ ହୋ କୃତାନ୍ତ
ତୁହି ପାରିଲେ ରକ୍ଷାକର ଧୃଶାସନ ହୋଇଲା ଅନାସ୍ତ ।୧୩୨
ଆବର ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମା ରୁଦ୍ର ଆଦିକରି
ସମରେ ମିଳନ୍ତୁ କେ ଆସି କରେଣ ଶସ୍ତ୍ର ଧରି ।୧୩୩
କାଳଚକ୍ର ପ୍ରାୟେକ ବୁଲାୟେ ବେନି ଆଖି
ତ୍ରିଭୁବନ ଲୋକେ ତ୍ରାସିଲେ ତାହା ଦେଖି ।୧୩୪
ଆରେ ଆରେ ଧୃଶାସନ କେହି ରଖି ନୁଆରିଲେ ତୁକୁ
ପୁଣି କୋପେ ଚାହିଂଲା ଭୀମ ପାତାଳ ଭୁବନକୁ ।୧୩୫
ଶଙ୍ଖ ଶ୍ୱେତପଦ୍ମ କର୍କୋଟକ କୁଳିକ
ବାସୁକୀ ଅନନ୍ତ ତକ୍ଷକ କେ ପାର ଧୃଶାସନକୁ ଆସି ରଖ ।୧୩୬
ପ୍ରତଗ୍ୟାଂ କରି କହିଲା ଅଷ୍ଟକୁଳା ନାଗନ୍ତ
ହେ ଅଷ୍ଟକୁଳା ନାଗେ ତୁମ୍ଭେ ଅଟ ବଳବନ୍ତ ।୧୩୭
ତୁମ୍ଭେମାନେ ଯେ ପୃଥୀକି ଶିରେଣ ବହିଅଛ
କରୁଛି ପ୍ରତଗ୍ୟାଂ ତୁମ୍ଭେମାନେ ପାରିଲେ କେହି ରଖ ।୧୩୮
ଭୀମସେନ ଚାହାନ୍ତେ କମ୍ପଇ ଦେବୀ ମହୀ
ନାଗଲୋକ ତ୍ରାସିଲେ ବ୍ରିକୋଦୋର ରୂପ ଚାହିଂ ।୧୩୯

ଆରେ ଆରେ କଉରୋବେ କର୍ଣ୍ଣ ଶଲ୍ୟ ଶକୁନି
ମାନଗୋବିନ୍ଦ ଅଛି ଯେ ସମଦଣ୍ଡ ଘେନି ।୧୪୦
ବାଳୁତ କାଳୁଂ ତୁମ୍ଭେ ହୋଇଅଛ ସଖା
ତୁମ୍ଭେ ରଥୀମାନେ ଥାଆନ୍ତେ ଧୃଶାସନ ହୋଇଲା ନିରେଖା ।୧୪୧
କେ ପାର ଧୃଶାସନକୁ ଜୀବନ ଦାନ ଦେଇ ରଖ
ଯେତେକ ସୋଦର ଥାଉଂ କିଂପେ ଧୃଶାସନ
ହୋଇଲା ନିରେଖ ।୧୪୨
ଭୀମସେନ ବୋଇଲା କର୍ଣ୍ଣ ତୁ ପରା ଭାରଥେ ଭାରୋଇ ମଲ୍ଲ
ଛତ୍ରୀ କୃତାନ୍ତେକ ତୁମ୍ଭେ ପରା ରାୟେଗୁରୁ ଶଲ୍ୟ ।୧୪୩
ମାନଗୋବିନ୍ଦକୁ ରେ ଭଣ୍ଡି ଖାଉଥିଲ
ଅପଚୟ କାଳକୁ କେହୁ ସଂପକ୍ଷ ଯେ ନୋହିଲ ।୧୪୪
ଅସମୟ କାଳକୁ ତ ସଖା କେହି ନୋହ
ସଭାରେ ବସିଣ ସମସ୍ତେ ଟାଣ କହୁଥାଅ ।୧୪୫
ପଚ୍ଛିମକୁ ଚାହିଂଲା ବୀର ନୟନ କଟାଛୀ
କଉରବ ସନ୍ୟ ସବୁ ପଳାଇଲେ ଘୁଞ୍ଚି ।୧୪୬
ଆରେ ଆରେ ଧୃଶାସନ କେହି ରଖି ନୁଆରିଲେ ତୁକୁ
ନେଉଟି ଚାହିଂଲା ପୁଣ ଆପଣା ଥାଠକୁ ।୧୪୭
ଆରେରେ ପାଣ୍ଡବେ ତୁମ୍ଭେ ଯୁଝେଷ୍ଟି ଧୃଷ୍ଟ ଯେ ଦୃମନେ
କପିକେତନ ଆଦିକରି ଯେତେକ ଅଛ ସଇନ୍ୟେ ।୧୪୮
ପାରୁ ଯେବେ ତୁ ରକ୍ଷା କର ହେ ଛତ୍ରୀବର ଅର୍ଜୁନ
ତୁହି ପାରିଲେ ରକ୍ଷାକର ହୋ ଜନାର୍ଦ୍ଦନ ।୧୪୯
ଶ୍ରୀକୃଷ୍ଣର ନାମ ଧରି ଡାକଇ ପୁଣପୁଣି
ଶରୀର କମ୍ପଇ ଅର୍ଜୁନର ଭୀମସେନର ବଚନ ଶୁଣି ।୧୫୦
ଶ୍ରୀକରେ ପାର୍ଥ ଯେ ଧରିଣ ଗାଣ୍ଡିମ
ପାଶୁପତ୍ର ଶର ଘେନି କଲାକ ଆଧାନ ।୧୫୧
କୋଳକରି ଧଇଲେ ଯେ ଦେବ ଚକ୍ରପାଣି
ଅର୍ଜୁନ ବୋଇଲା ଦେବ ଭୀମର ମୁଣ୍ଡ ମୁଂ ପକାଇବି ହାଣି ।୧୫୨
ଅନମିତେ ପ୍ରତଗ୍ୟାଂ କଲା ହାଦେ ଯେତେ
ଦେବତା ସହିତ ଆବର ଧିକାରିଲା ମୋତେ ।୧୫୩
ପୁଣ ପୁଣ ପ୍ରତଗ୍ୟାଂ କଲା ଦେବେ ଯେ ଯୁଝେଷ୍ଟି
ତାହାହିଂ ସହିଲି ଦେବ ଅତି ଉତକର୍ମ ବାକି ।୧୫୪
ସ୍ୱାମୀ ତୋହୋର ଗର୍ଭେ ଦେଖିଲି ମହୀ ନବଖଣ୍ଡ
ନବଦୀପ ସପତ ସାଗର ସପତ ବ୍ରହ୍ମାଣ୍ଡ ।୧୫୫
କେ ତୋତେ ସମାନ ଅଛି ବ୍ରହ୍ମାଣ୍ଡ ଖଣ୍ଡ ତିନି
ତୋତେହେଂ ପ୍ରତଗ୍ୟାଂ କଲା ସେ ପାମର ଅଗ୍ୟାଂନୀ ।୧୫୬

ଛାଡ ଛାଡ କେଶବ ପକାଇବି ଭୀମସେନର ମୁଣ୍ଡ କାଟି
ଛଡ଼ାଇଦେବି ପଳାଇଯାଉ ସେ ଧୃତରାଷ୍ଟି ।୫୭
ସମସ୍ତ ପ୍ରତଗ୍ୟାଂ ମୁଂ ସହିଲି ବାସୁଦେବ
ତୋହୋର ପ୍ରତଗ୍ୟାଂ ନାଥ କାହାର ବେଳେ ସୁହାଯିବ ।୫୮
ଶ୍ରୀଭୁଜେ ଅର୍ଜ୍ଜୁନଙ୍କୁ କୋଳେ କରି ଧରି
ହାଥରୁ ଘେନିଲେ ଦେବ ଧନୁ ଶହସ୍ର ଉଛୁଡି ।୫୯
କାହାକୁ କୋପ ତୁ ଯେ କରୁ ଫାଲଗୁନି
ଯାହାର ନାମେ କମ୍ପଇ ବ୍ରହ୍ମାଣ୍ଡ ଖଣ୍ଡ ତିନି ।୬୦
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଲୋକପାଳ ଆଦିକରି
ଭୀମସେନ ଭୟେ ସର୍ବେ ଗଲେ ଅପସରି ।୬୧
ଭୂବୀ ଧାରଣ ହୋ ଅଟନ୍ତି ଅଷ୍ଟକୁଳା ନାଗେ
ସେହି ରହି ନୁଆଗିଲେ ଭୀମସେନର ଆଗେ ।୬୨
କର୍ଣ୍ଣ ଶଲ୍ୟ ଶକୁନି ଦ୍ରିଯୋଧନ ଗଲେ ଘୁଞ୍ଚି
ତୁ କିସ ପ୍ରତଗ୍ୟାଂ କରୁଛୁ ହୋ ସର୍ବସାଚୀ ।୬୩
ଦୁସହ ପ୍ରତଗ୍ୟାଂ କରଇ ଯେ ଭୀମ ରଣେ
ଭୀଷ୍ମରୂପ ପ୍ରକାଶିଛି ଶତ୍ରୁ ନିବାରଣେ ।୬୪
ମଉଗର୍ବେ କହିଲୁ ହୋ ତୋହୋର ନାହିଂନା ହେତୁ
ଭୂଶିରୀ ସମ୍ପଦ ବୁଡ଼ାଇଣ ତୁହି ଆଶ୍ରେକରୁ ମୃତୁ ।
ଅପାର ଝିଂଘାସ କରୁଛି ମରଦିବ ଶତ୍ରୁ ।୬୫
ପେଟ ଛାଡି ତୁ ଯେ ପିଠିକୁ କୋଳକରି
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଆମ୍ଭେ ସମସ୍ତେହେଂ ଡରି ।୬୬
ତୋହୋର ମୋହୋର ବେଳେ ତାହାକୁ କିସ କରି
ଯେହିକ୍ଷଣି ତାହାରି ଆଗେ କେହି ନୋହିବ ଉଭାରି ।୬୭
ତ୍ରଇଲୋକ୍ୟେ ତାହାକୁ କେହି ଜିଣିବାକୁ ସାଂଗ୍ରାମେ
ବ୍ରିକୋଦର ମୂରତି ଧରିଅଛି ଭୀମରାଣେ ।୬୮
ଦେଖ ଦେଖ ଅର୍ଜ୍ଜୁନ ବୋଲି କୋଳକରି ଧରି
ନରସିଂଘ ରୂପେ ଭୀମସେନ ଅଛଇ ଅବତରି ।୬୯
ସରୂପ ଦେଖାଇଲେ ଦେବାଧି ଦେବରାୟେ
ଦେଖି ଧନୁର୍ଜ୍ଜୟକୁ ଲାଗିଲା ବଡ଼ ଭୟେ ।୭୦
ବିକଟ ଦୃଷ୍ଟି ତାର ବିକରାଳ ମୁଖ
ଦେଖିକରି ବେନିଚକ୍ଷୁ ବୁଜିଲା ବିବସ୍ତ ।୭୧
ହୃଦଗତେ ସୁମରଇ ନରସିଂଘ ନିଜ କାୟେ
ପଛକଟି ଥାଇ ସେ ଦେଖାଇ ଦିଲେ ଦେବକୀ ତନୟେ ।୭୨
ହୃଦରେ ବିଚାରଇ ସେ ଅର୍ଜ୍ଜୁନ ବୀରବର
ଆକାଶ ମାର୍ଗକଇଂ ଶିର ଲାଗିଛି ଭୀମର ।୭୩

ତ୍ରାସେଣ ପାଥ ଯାଇ ନନ୍ଦିଘୋଷ ରଥେ ଉଠି
ଦେବଦତ୍ତ ଶଙ୍ଖ ବାଇଲାକ ପାଣ୍ଡବ କିରୀଟୀ ।୭୪
ଭୀମସେନ ବୋଇଲେ ରେ ଧୁଶାସନ ହୋଇଲୁ ନିରେଖା
ଇଷ୍ଟଦେବତା ସୁମରରେ ତୋର କେହି ନୋହିଲେତ ସାଖା ।୭୫
ସହଦେବ ମୁଖେ ଚାହିଂ ବୋଲଇ ଭୀମ ମହାରାଣ
ବାବୁ ଦ୍ରୋପତୀକଇଂ ଘେନିରେ ଆସଟି ଯେହିକ୍ଷଣି ।୭୬
ସ୍ୱାମୀର ଆଗ୍ୟାଂପାଇ ଚଳଇ ମହାମନ୍ତ୍ରୀ
ପୁଷ୍ପେକ ବିମାନ ଘେନି ମିଳିଲା ବାରୁଣାବନ୍ତ କତି ।୭୭
ଚାତକ ପଛୀ ଜାଣି ସେ ଦ୍ରୋପଦ ଦୁଲାଳୀ
ଭୀମସେନକଇଂ ବାଟ ଚାହିଂଅଛି ଶ୍ରୀକରେ ଘେନିଣ
ଅର୍ଘ୍ୟଥାଳୀ ।୭୮
ଯେମନ୍ତର ସମୟେ ଯାଇଂ ସହଦେବ ହୋଇଲା ପରବେଶ
ଦ୍ରୋପତୀ କେଶ ମୁକଳ ଦେଖିଣ ମନରେ ହସ ହସ ।୭୯
ସହଦେବ ଯହୁଂ ସେ ବିଜୟେ କଲା ଯେକା
ଦେଖିଣ ଜିଗ୍ନସେନୀକି ମନରେ ଗୁରୁ ଶଂକା ।୮୦
ଦ୍ରହାସ ହୋଇ ବୋଇଲେ ଯହୁଂ ସହଦେବ ମନ୍ତ୍ରୀ
ହୃଦରେ ସାନନ୍ଦ ଦେବୀ ଛାଡିଲେ ମନଭ୍ରାନ୍ତି ।୮୧
ଆସ ଆସ ଦେବୀ ଗୋ ବିମାନେ ବିଜେକର
କେଶ ମୁକୁଳିତ କଷ୍ଟ ଆଜ ଯିବ ତୋର ପାର ।୮୨
ପଞ୍ଚଦଶ ବରଷ ଗୋ ପଞ୍ଚସ୍ତରୀ ଦିନ
ଯେବେ ତୋତେ ସେ ଅନୁରାଗ କଲେକ ଭୀମସେନ ।୮୩
ଅନେକ ସାନନ୍ଦ ଦେବୀ ଦ୍ରୋପଦ ଦୁଲାଳୀ
ପୁଷ୍ପ୍ୟକ ଆରୋହିଲା ପଦ୍ମରେଖା ବାଳୀ ।୮୪
ଯାଆନ୍ତେ ପଚାରଇ ଦେବୀ ସଂଗ୍ରାମ ବାରତା
ମନ୍ତ୍ରୀ ଚୂଡ଼ାମଣି କହଇ ସର୍ବକଥା ।୮୫
ଆଗେ ଧୁଶାସନ ଯେ ପାଡିଲା ଭୀମସେନ ଠାକୁରଂକୁ
କଉରୋବେ ଉଷତ, କଷ୍ଟ ଲାଗିଲା ଆମ୍ଭଂକୁ ।୮୬
ଦୁସହ ପ୍ରତଗ୍ୟାଂ ଯେ କଲାକ ମହାବଳେ
ବ୍ରିକୋଦର ମୂରତି ଧରି ଠାକୁରେ ପାଡିଲେ ତାକୁ ତଳେ ।୮୭
ଲେଉଟାଇ ତଳେ ପକାଇ ମାଡିବସିଲେ ଧୁଶାକୁ
କୋପେଣ ଗଦାବର ପିଟିଲେ ତାହାକୁ ।୮୮
ତ୍ରଇଲୋକ୍ୟର ମଧ୍ୟେ ଯେ ଦୁସହ ପ୍ରତଗ୍ୟାଂ
ମୋତେ ରାଜକରି ଭୀମସେନ ଠାକୁରେ କଲେ ଆଗ୍ୟାଂ ।୮୯
ଯେପରି କହନ୍ତେ ରଣମଣ୍ଡଳେ ପରବେଶ
ବ୍ରିକୋଦର ମୂରତି ଦେଖି ଦେବୀ କଲେ ତ୍ରାସ ।୯୦

ରଥରେ ଥାଇ ଦ୍ରୋପଦୀ ଦେବୀ ପରିଣାମି
ଯେହି ଅବତାର ମଧ୍ୟେ ଭୀମସେନଙ୍କ ମୋହୋର ସ୍ୱାମୀ ।୯୧
ତୋହୋର ଅପାଦ ଯେ ପଡୁ ମୋହୋର ମାଥ
ଯେମନ୍ତେ କହୁଂ କହୁଂ ପାଶରେ ମିଳିଲେ ତୁରିତ ।୯୨
ରଣଭୂମି ମଧ୍ୟେ ଦେବୀ ବିବାନୁଂ ଉତୁରି
ଭୀମସେନ କଡିକି ଯାଇ ନୂଆରେ ଭୟକରି ।୯୩
ଦଇବେ ତିନିତାଳ ଉଚ୍ଛର୍ଗ ଧୃଶାସନର କାୟେ
ତହିଂର ଉପରେ ବସିଅଛି ପବନ ତନୟେ ।୯୪
ମନ୍ଦର ମାଡି ଯେହ୍ନେ ବସିଛି ହେମବନ୍ତ
ବସିଛି ଧୃଶାସନ ଉପରେ ଭୀମ ସାତତାଳ ଉଚ୍ଚ ।୯୫
ଭାଳଇ ପାଞ୍ଚାଳୀ ଭୀମସେନ ନୋହଇ ଯେହୁ
ଶଶାଧରକୁ ଆକର୍ଷି ଯେହ୍ନେ ବସିଅଛି ରାହୁ ।୯୬
ଭୀମସେନ ଡାକ ଦିଅଇ ଶୁଣରେ ସହଦେବ
ଦ୍ରୋପଦୀକି ଘେନିଆସ ମୋହୋର ଯେ ଠାବ ।୯୭
ତଳୟେ କରି ଦେଖ ମୋହୋର ଭାଇର ମୁଖଗୋଟି
ଗୁଣବନ୍ତ ପୁରୁଷ ଯେ ଅଟଇ ଧୃତରାଷ୍ଟି ।୯୮
ହାଥ ଧରି ଦ୍ରୋପଦୀର ମନ୍ତ୍ରୀ ଚୂଡ଼ାମଣି
ବ୍ରିକୋଦର ସନ୍ନିଧ୍ୟେ ଦ୍ରୋପଦୀକି ବେଗେ କଲା ଆଣି ।୯୯
ବୋଲଇ ଭୀମସେନ ଗୋ ତଳୟେ କରି ଚିହ୍ନ
କପଟପାଶା କାଳେ ଯେହାର ନାମଟିକି ଧୃଶାସନ ।୧୦୦
କେତେକେତେ ଗୁଣ ଯେ ଗୋ କରିଅଛି ତୋତେ
ଉପୁଗାରୀ ପୁରୁଷ ପଡ଼ି ନଥିଲା ଯେତେକାଳ ପରିଯନ୍ତେ ।୧୦୧
ଭୀମସେନ ବୋଇଲାରେ ଧୃଶାସନ ପାପିଷ୍ଟ
ପାଞ୍ଚାଳ ଅଧିପତି ବ୍ରାହ୍ମଣକୁଳ ଶ୍ରେଷ୍ଟ ।୧୦୨
ଆବରହିଂ ବିଶେଷେ ସେ କୋଟିୟେ ଋଷି ଘେନି
ଅନଳ ବିଦାରି ଜାତ ହୋଇଲେ ଜିଗ୍ନସେନୀ ।୧୦୩
ତୁ ଛାର ପାମର ରେ ଧଇଲୁ ତାର କେଶ
ସଭାର ତଳେ ତାକୁ ନେଇ କଲୁରେ ବିବସ୍ତ୍ର ।୧୦୪
ଅନେକ ଭର୍ତ୍ସନା କଲୁ ସତୀକି ଯେ ଆଣି
ଆକ୍ରେଷି କେଶ ତାର ଧଇଲୁ ତୁରେ ଝୁଣି ।୧୦୫
ପଞ୍ଚଦଶ ବରଷ ପଞ୍ଚସ୍ତରୀ ଦିନର କୋପ
ଯେତେକାଳେ ପଡ଼ିଲା ତୋତେରେ ମହାସତୀର ଶାପ ।୧୦୬
ଆଜରେ ଧୃଶାସନ ଉପାଡ଼ିବି ତୋର ଭୁଜ
ପାଞ୍ଚାଳୀର ଶିରେ ନିଉଡ଼ାଇବି ତୋର ରୁଧିର ସରୁଜ ।୧୦୭
ଦଶ ନହେ ବିଦାରିବି ତୋହୋର ବକ୍ଷସ୍ଥଳ
ରୁଧିର ପାନ କରିବି ରେ ଦେଖନ୍ତୁ ସକଳ ।୧୦୮
ରେ ରେ କଉରୋବା ତୁ ପଡ଼ିଲୁ ରଣମଝି
ରେ ରେ କଉରୋବା ଯମ ପୋଛିଲା ତୋର ପାଞ୍ଜି ।୧୦୯
ରେ ରେ କଉରୋବା ଆଜ ପୂରିଲା ତୋର କାଳ
ରେ ରେ କଉରୋବା ସରିଲା ତୋର ଆୟୁର ବଳ ।୧୧୦
ରେ ରେ କଉରୋବା ସୁମର ତୋ ଇଷ୍ଟ ଯେ ଦେବତା
ରେ ରେ କଉରୋବା ସୁମର ତୋର ମାତାପିତା ।୧୧୧
ରେ ରେ କଉରୋବା ଜୀବନ ତୋର ଧନ୍ୟ ଧନ୍ୟ
ରେ ରେ କଉରୋବା ଆଜହୁଂ ବୁଡ଼ିଲା ତୋର
ଧୃଶାସନ ନାମ ।୧୧୨
ରେ ରେ କଉରୋବା ବୁଦ୍ଧି ତୋହୋର ହୀନ
ରେ ରେ କଉରୋବା ଡାକ ତୋତେ ରକ୍ଷାକରୁ ଆସି
ଦ୍ରିଯୋଧନ ।୧୧୩
ରେ ରେ କଉରୋବା ତୁ ହୋଇଲୁ ନିରେଖା
ରେ ରେ କଉରୋବା ତୋର ନୋହିବେ କେହି ସଖା ।୧୧୪
ରେ ରେ କଉରୋବା ଅରଜିଲୁ ମହାପାପ
ରେ ରେ କଉରୋବା ଡାକ ତୋତେ ରକ୍ଷାକରୁ
ଧୃତରାଷ୍ଟ ବାପ ।୧୧୫
ମହାକୋପେ ଭୀମସେନ ରେରେକାର କରି
ଦ୍ରୋପଦୀକି ବୋଇଲେ ଆଜ ମାନ ଫେଡ଼ିବି ତୋହୋରି ।୧୧୬
ଦ୍ରୋପଦୀ ବୋଇଲେ ସ୍ୱାମୀ ପଶିଲି ଅନ୍ତପୁରେ
ଭୟକରି ଦନ୍ତରେ ଧଇଲଇଂ ତିରଣ ନାଡ଼େ ।୧୧୭
ବିକଳେ ବୋଇଲି ମୋତେ ନ ଛୁଅଂ କୁମରମଣି
ପୁରୁଷ ଛୁଇଂତେ ନ ଯୋଗାଇ ମୁଂ ହୋଇଛି ସ୍ତିରୀଧର୍ମିଣୀ ।୧୧୮
ନିର୍ଦ୍ଦୟା ନିରାପକ୍ଷୟେ ଅଟଇ ଚାଣ୍ଡାଳ
ଅନ୍ତେଶ୍ୱର ପୁରେ ପଶି ଧଇଲା ମୋହର ବାଳ ।୧୧୯
ଅନ୍ତରୀକ୍ଷ କରି ମୋତେ ଆଣିଲା ମହାବଳେ
ଆଣନ୍ତେ ଚରଣ ମୋର ନ ପଡ଼ଇ ତଳେ ।୧୨୦
ସଭାତଳେ ଆଣି ମୋତେ କଲାକ ବିବସନ
ସଭାରେ ଦେଖିଲେ ମୋତେ ଗୁରୁ ଗୁରୁଜନ ।୧୨୧
ଆହୋ ଚଇତନ ଦ୍ରୋପଦୀଂକ ମୁଖରୁ ଯେସନକ ବାକ୍ୟ ଶୁଣି
ଗର୍ଜ୍ଜଣ ଉଠିଲା ଭୀମ ଶତସିଂଘ ଜାଣି ।୧୨୨
ଅଧରେ ଦନ୍ତଚାପି ବୀର କୋପେଣ ଗର୍ଜ୍ଜଇ
ଆକ୍ରେଷି ଧଇଲା ଧୃଶାସନର ଦକ୍ଷିଣ ଭୁଜକଇ ।୧୨୩

ଦକ୍ଷିଣ ପଞ୍ଜରାରେ ସେ ପ୍ରହାର କଲା ପାଦେ
ଓପାଡ଼ିଲା ଦକ୍ଷିଣ କର କରିଣ ମହାନାଦେ ।୧୨୪
ଶୁଣ ହୋ ବଇବସ୍ୱତ ମନୁ ବଦୟନ୍ତି ଅଗସ୍ତି
ଭୁଜ ଉପାଡ଼ନ୍ତେ ନିର୍ଘାତ ଶବଦ ଯେ ପୃଥ୍ୱୀ ।୧୨୫
କି ଅବା ଉପୁଡ଼ିଣ ପଡ଼ିଲା ହିମବନ୍ତ
କି ଅବା ଗଗନୁ ପଡ଼ିଲାକ ନିରିଘାତ ।୧୨୬
ତେସନ ସାରିକ୍ଷେ ଯେ ଶୁଭିଲା ମଞ୍ଚପୁରେ
ରୋଧିର ନିଉଡ଼ିଲା ନେଇ ଦ୍ରୋପଦୀର ଶିରେ ।୧୨୭
ବୁଲାଇଣ ସେ ଭୁଜ ଆକାଶକୁ ଦିଲା ଫିଙ୍ଗି
ଅନ୍ତରୀକ୍ଷେ ଶେଣାପକ୍ଷୀ ଧଇଲା ତାହା ବେଗି ।୧୨୮
ଧୁଶାସନ ଭୁଜ ଯେ ଜାଣିଣ ହେମଗିରି
ଅନ୍ତରୀକ୍ଷେ ଶେଣାପକ୍ଷୀ ନେଲା ତାହା ଧରି ।୧୨୯
ବୃଷ୍ଟି ହୋଇଲା କି ଲକ୍ଷେକୁମ୍ଭ ନୀର
ରୁଧିର ବୃଷ୍ଟି ହେଉଛି ଦ୍ରୋପଦୀର ଶିର ।୧୩୦
ଲଲାଟେ ଫୁଟିଣ ଯେ ନାସିକା ବାଟେ ଗଳି
ସେ ରୁଧିର ଆପ୍ୟାନ କଲା ଦେବୀ ଯେ ପାଞ୍ଚାଳୀ ।୧୩୧
ପୁଣି ବାମଭୁଜ ଉପାଡ଼ିଲା ମହାବଳେ
ଯେହି ଭୁଜେ ଯୁଝେଷ୍ଟିଂକି ବସାଇଲୁ ସଭାତଳେ ।୧୩୨
ସେ ଭୁଜ ଉପାଡ଼ିଣ ଶୂନ୍ୟେଣ ଫିଙ୍ଗିଦିଲା
ତାହା ପୁଣି ଶେଣାପକ୍ଷୀ ଚରଣେ ଧଇଲା ।୧୩୩
ପୁଣ ପୁଣ କୋପ ତାର ଯହୁଂ ନୋହିଲାକ ଶାନ୍ତି
ଦଶ ନହେ ବକ୍ଷସ୍ଥଳ ବିଦାରିଲା ତତକ୍ଷଣାନ୍ତି ।୧୩୪
କାଳାନ୍ତକ ପୁରୁଷ ସେ ନରସିଂଘ କଳା
କୋପରେ ବିକୋଦର ଯେ ରୋଧିର ପାନକଲା ।୧୩୫
ଆହୋ ଚଇତନ ପ୍ରତଗ୍ୟାଂ ସାଚ୍ଚା ତାହାର ଦେଖିଣ ପାଞ୍ଚାଳୀ
ଅନେକ ସାନନ୍ଦ ହୋଇଲେ ଦ୍ରୋପଦ ଦୁଲାଳୀ ।୧୩୬
ଯମୁନା ଜଳରେ ପଶି ପଖାଳିଲେ କେଶ
ସ୍ନାହାନ ସାରିଣ ଦେବୀ ପିନ୍ଧିଲେ ଝୀନବାସ ।୧୩୭

ଧୁଶାସନ ବଧ ଅନ୍ତରେଣ ଯିସ କଥା
ମାନଗୋବିନ୍ଦ ଲଭିଲେ କେମନ୍ତ ଅବସ୍ଥା ।୧୩୮
ଶକୁନି ବୋଇଲା ତୁ ହୋ ଶୁଣସି ରାଧେବ
ତୋହୋର ପ୍ରତଗ୍ୟାଂଯେ ହୋଇଲା ଯେସନକ ପରାଭବ ।୧୩୯
ସମରେଣ ଯହୁଂ ନାଶଗଲେ ମହାରଥୀ ଭୀଷ୍ମ ଦ୍ରୋଣ
ଆବର ସମର ହୋ କେଉଂଣ କାରଣ ।୧୪୦
ସବୁରି ବଚନ ମେଣ୍ଟି କରାଇଲୁ ମୁରାଟ
ପ୍ରତଗ୍ୟାଂ କରି ମାଥେ ବାନ୍ଧିଲୁ ଆଣି ପାଟ ।୧୪୧
ପ୍ରଥମ ଦିନରେ ତୁ ହୋ ହୋଇଲୁ ସେନାପତି
ସତାଣୋଇ ଭାଇ ଯେ ପଡ଼ିଲେକ ଯେକଘାନ୍ତି ।୧୪୨
ଆରଦିନ ସମରେ ଧୁଶାସନ ନାଶଗଲା
କିସ ବୁଦ୍ଧି କରିବା ଯେବେ ଦ୍ରିଯୋଧନ ନିରେଖ ହୋଇଲା ।୧୪୩
ଯେବେ ହୋ ବୀରବର୍ଣ୍ଣ କହ କରିବା କିସ ବୁଦ୍ଧି
ରାଜାକୁ ଘେନି ଶରଣ ପଶିବା କାର୍ଯ୍ୟ ହୋଇ ସିଦ୍ଧି ।୧୪୪
କର୍ଣ୍ଣ ବୋଇଲା ଯେତେବେଳେ ତୁ ଯେକା କିଂପେ କହୁ
ପାଣ୍ଡବେ ମାନଗୋବିନ୍ଦେ ଯେବେ ପ୍ରୀତି ହେବ କାହୁଂ ।୧୪୫
କରିବା ସମର ଯେ ନୋହିବାନା ନିସତ
ସଭିହେଂ ରଣଯଗ୍ୟାଂକୁ କରିବା ସନମତ ।୧୪୬
ଶଲ୍ୟକୁ ବୋଇଲେ ମାମୁଂ ବେଗେ ବାହ ରଥ
ବେଗେଣ ସମର ମୁଂ କରିବି ବୀର ପାଥ ।୧୪୭
ଯେମନ୍ତ ବଚନ ଶୁଣି ଶଲ୍ୟ ଆଗକଲା ରଥ
ଅର୍ଜୁନ ଛାମୁରେ ନେଇ ଟେକିଲା ତୁରିତ ।୧୪୮
ବାହଇ ତୁରଙ୍ଗମ ସେ ରାୟେଗୁରୁ ଶଲ୍ୟ
ନନ୍ଦିଘୋଷ ଛାମୁରେ ବିଜୟେ ଭାରୋଇ ମହାମଲ୍ଲ ।୧୪୯
ଆହୋ ଚଇତନ କର୍ଣ୍ଣ ଅର୍ଜୁନ ଯେ ସମର କରନ୍ତେ
ଆଦିତ୍ୟ ଦେବତାଯେ ଯେ ହୋଇଲେକ ଅସ୍ତେ ।୧୫୦
ମହାଘୋର ସମର ହୋଇଲା ନିଶାରାତି
ବଢ଼ିଲା ରଣରଙ୍ଗ କେବେହେଂ ନୋହିଲାକ ଶାନ୍ତି ।୧୫୧
ଶକୁନିର ତୁଲେ ସମର କରଇ ଧୃଷ୍ଟ ଯେ ଦ୍ୟୁମନ
ନାରାଜ ପ୍ରହାର କରଇ ସେ ଗାନ୍ଧାର ନନ୍ଦନ ।୧୫୨
ନକୁଳର ତୁଲେ ସମର କରଇ ଦ୍ୟୁମନସେନ
ନକୁଳର ଯୁଦ୍ଧ ଯେ ଅତୀୟ ଅପ୍ରମାଣ ।୧୫୩
କୁନ୍ତେକ ପ୍ରହାର ସେ କଲାକ ନକୁଳ
ଦ୍ୟୁମନସେନ ରାଜାର ଫୁଟିଲା ବକ୍ଷସ୍ଥଳ ।୧୫୪
ଦ୍ୟୁମନସେନ ରାଜା ପଡ଼ନ୍ତେ ଭାଙ୍ଗିଲେ ସଇନି
ସହସ୍ରେକ ଯୋଦ୍ଧା ମାଇଲା ନକୁଳ କୁନ୍ତ ଘେନି ।୧୫୫
ଯେମନ୍ତେ ସମର ହୋଅନ୍ତେ ମହାଗୋଳ
କର୍ଣ୍ଣଯାଇ ଭେଟିଲାକ କୁମାର ନକୁଳ ।୧୫୬
ହାବୋଡ଼ା ଶରେକ କର୍ଣ୍ଣ କଲାକ ଆଧାନ
ନକୁଳର ରଥ ଯେ ହୋଇଲା ହାଦେ ଭଗ୍ନ ।୧୫୭

ବିରଥୀ ହୋଇଲା ସେ ଆଦିତ୍ୟର ନାତି
କୁନ୍ତ ଘେନି କର୍ଣ୍ଣକୁ ପ୍ରହାର କଲା ଝାଡି ।୧୫୮
କୁନ୍ତଘାତେ କର୍ଣ୍ଣ ମହାମଲ୍ଲ କୋପେଣ ରଥୁଂ ଡେଇଂପଡ଼ି
ନକୁଳ ହାତରୁ କୁନ୍ତ ନେଲାକ ଉଛୁଡ଼ି ।୧୫୯
ବେନିଖଣ୍ଡ କରି କୁନ୍ତ ପକାଇଲା ଭାଙ୍ଗି
ଖଣ୍ଡାଯେକ ଧରି କର୍ଣ୍ଣ ଧାମଇଂ ଗଳଗାଜି ।୧୬୦
ଶୂନ୍ୟହାଥ ଦେଖିଣ ସେ ରାଧେବ ଦୂଲାଳ
ଧାଇଂ ଯାଇଂ କର୍ଣ୍ଣ ଯେ ଧଇଲା ନକୁଳର ବାଳ ।୧୬୧
ଅନ୍ତରୀକ୍ଷ ମାର୍ଗେ ତାର କେଶ ଧରି ଝୁଣି
ଆରେ ଆରେ ପାଣ୍ଡବା ତୋର ଶିର ଛେଦିବି ଯେହିକ୍ଷଣି ।୧୬୨
ଇଷ୍ଟ ଦେବତା ତୋର ସୁମରରେ ନକୁଳ
ଖଡ଼ଗ ମୁନ ନେଇ ବସାଇଲା ବକ୍ଷସ୍ଥଳ ।୧୬୩
ନକୁଳ ସୁମରଇ କୋଇନ୍ତା ଦେବୀ ମାଯେ
ତାହା ଶୁଣି କର୍ଣ୍ଣକୁ ଲାଗିଲା ମହାଭୟେ ।୧୬୪
ମାତାକଇଂ ସତ୍ୟ ମୁଂ ଯେ କରିଅଛି ପୂର୍ବେ
ସତ୍ୟ ଲଂଘି କେସନେକେ ମାରିବଇଂ ଯେବେ ।୧୬୫
ପୂର୍ବର କଥା ରାଧେବ ମନରେ ସୁମରି
ନକୁଳର କେଶ ସେ ଛାଡ଼ିଲା ବେଗକରି ।୧୬୬
ବେଳକେ ନକୁଳରେ ତୋର ରଖିଲାଇଂ ପ୍ରାଣ
ଆବର ବେଳେ ତୁହିଟିରେ ନ ପଶିବୁ ରଣ ।୧୬୭
ଅପାର ଝିଂଘାସି କର୍ଣ୍ଣ ଦିଲା ତାକୁ ଛାଡ଼ି
ପଳାଇ ନକୁଳ ଯେ ରଣରଙ୍ଗେ ହାରି ।୧୬୮
ଯହିଂ ବିଜେ କରିଅଛନ୍ତି କୃଷ୍ଣ ପାଥ
ଛାମୁରେ ନକୁଳ କ୍ରୋଧ କଲାକ ବହୁତ ।୧୬୯
ଅର୍ଜୁନ ବୋଇଲା ପ୍ରଥମେ ଭୀମସେନକୁ ଝିଂଘାସି
ଦୁର୍ଜେଣ କର୍ଣ୍ଣ ଯୁଝେଷ୍ଟି ଦେବଂକର ବଳ ଦର୍ପ ଧ୍ୱଂସି ।୧୭୦
ତିଜେ ତୋତେ ଝିଂଘାସି କଲାକ ଅପମାନ
ହାରିବା ଜିଣିବା ଯେ କ୍ଷତ୍ରୀଂକର ସିନା ଧର୍ମ ।୧୭୧
ତୁ ହୋ ନକୁଳ କ୍ରୋଧ କରୁ କିସ ଯେ ନିମନ୍ତେ
ଆମ୍ଭେ ଅପମାନ ପାଇଲାଇଂ ଆମ୍ଭର ସୋଦରର ହାଥେ ।୧୭୨
ଆନ ତ ବାବୁ ଆମ୍ଭନ୍ତ ନ କଲା ଅଭିମାନ
ରଯଣୀ ପାହିଲେ ସେ ଜାଣିମା କେମନ୍ତେ କରଇଟି କର୍ଣ୍ଣ ।୧୭୩
ସମର କରନ୍ତେ ପଡ଼ିଲେ ଯୋଦ୍ଧା ଯୁଦ୍ଧେ
ଅବିଶ୍ରାମ ସଂଗ୍ରାମ ହୋଇଲା ନିଶି ଅର୍ଦ୍ଧେ ।୧୭୪
ସମରେ ନିକ୍ଷତ ବଡ଼ ହୋଇଲେଣି ସକଳ ସଇନି
କୁହୁଡ଼ି କାକରେ ଶହସ୍ରନ୍ତ ନୁଆରନ୍ତି ଘେନି ।୧୭୫
ସନ୍ୟଂକର ଅଶକତ ଦେଖିଣ ମହାପ୍ରଭୁ
ଅର୍ଜୁନକୁ କହିଲେ ହୋ ଆଜ ସମର ରହୁ ରହୁ ।୧୭୬
ଅର୍ଜୁନ ଶହସ୍ର ଛାଡ଼ିଣ ଦିଲାକ ଜୟଶଙ୍ଖ ଧ୍ୱନି
ଓହୋବଳ ସମର ରହିଲା ଅର୍ଜୁନର ଶଙ୍ଖ ଶବଦ ଶୁଣି ।୧୭୭

**

## ୯୮. କର୍ଣ୍ଣ ବଧ

ନନ୍ଦିଘୋଷ ରଥ ବାହାନ୍ତି ଦେବହରି
କର୍ଣ୍ଣର ଛାମୁରେ ନେଇ ରଥ ଯେ ଉଭାରି ।୧
ନନ୍ଦିଘୋଷ ରଥ ଦେଖି କୋହାବଇ କର୍ଣ୍ଣ
ସତୁରି ସହସ୍ରବଳ ଧନୁ କଲାକ ଆଧାନ ।୨
ଲୁହାର ଶର ଶଙ୍ଖଚିଲ ପକ୍ଷୀ ଛନ୍ଦି
ସହସ୍ରେ ନାରାଜ ପୂରୋଇ କର୍ଣ୍ଣ ବିନ୍ଧି ।୩
ଅର୍ଜୁନ ନିବାରିଲା ଲାଘେବ ଶର ଘେନି
ପୁଣି କର୍ଣ୍ଣ ନାରାଜ ବିନ୍ଧିଲା ହାଦେ ସସ୍ର ତିନି ।୪
ଶହସ୍ରେ ନିବାରଇ ସେ ବିଚିତ୍ରବୀର୍ଯ୍ୟର ନାତି
କର୍ଣ୍ଣର ସହସ୍ରମାନ ପକାଇଲା ବିକୋତି ।୫
କୁହୁକ ନାରାଜ ଯେ ବିନ୍ଧିଲା ବୀର କର୍ଣ୍ଣ
ଅନ୍ଧାରମୟେ ଦିଶିଲା ତ୍ରିଭୁବନ ଶୂନ୍ୟ ।୬
ଦଶଦିଗର ମଧ୍ୟ ଯେ ନ ଦିଶଇ କିଛି
ସୂର୍ଯ୍ୟାବ୍ରତେକ ଶର ସେ ବିନ୍ଧିଲା ସର୍ବସାଚୀ ।୭
ଆଦିତ୍ୟର ରଶ୍ମି ଯହୁଂ ସେ ବିକାଶି
ଫିଟିଲାକ କୁହୁକ ବାହୁଡ଼ି ସର୍ବଦିଶି ।୮
ପୁଣ ଅହିବ୍ରତେ ପୂରୋଇଣ ବାଣ
ପ୍ରଥମେ ଭେଦିଲା ସେ ସାରଥି ନାରାୟଣ ।୯
ପୁଣ ପେଷିଲା ଯେ ନାରାଜ ସହସ୍ର ଚାରି
ଚାରି ଅଶ୍ୱକଇଂ ଭେଦିଲା ସେ ମହାନାଦ କରି ।୧୦
ଆବର ସହସ୍ରେକ ପୂରୋଇଣ ବାଣ
କପିକେତନ ଧ୍ୱଜକୁ ପେଷିଲା ରୋଷେଣ ।୧୧
ଚାରି ସହସ୍ର ନାରାଜ ରଥ ଚାରି ଖମ୍ଭକୁ
ସହସ୍ରେକ ବିନ୍ଧିଲା ରଥ ଭିତରକୁ ।୧୨
ଅର୍ଜୁନ ଉପରକୁ ବେନି ଅହିବ୍ରତ
ଯେକା ଘାନ୍ତିକେ ପେଷଇ କର୍ଣ୍ଣ ସାମରଥ ।୧୩

ନାରାଜ ଦେଖିଣ ସେ କେଶବ ହୋଇଲେ ଆଶ୍ରିଯ
ହେଳେ ନିବାରିଲା ତାହା ବାସବ ଆତ୍ମଜ ।୧୪
ଅହିବ୍ରତେକ ନାରାଜ ଛେଦିଲା କପି ଯେ କେତନ
ଅଶ୍ୱଂକ ଉପରେ ପଡ଼ି ଚୂରଗଲେ ଶହସ୍ରମାନ ।୧୫
ରଥର ଉପରେ ଯେ ପଡ଼ିଲା ଯେତେକ ଶର
ସମସ୍ତ ଛେଦିଲା ସେ ବାସବ କୁମର ।୧୬
ପଞ୍ଚତିରିଶ ବାଣ ଅର୍ଜୁନେଣ ପୁଣ ମାରି
ପଡ଼ନ୍ତେ ନିର୍ଘାତ ଶବଦ ଜାଣି କରି ।୧୭
କର୍ଣ୍ଣ ବିନ୍ଧିଲା ପୁଣି ନାରାଜ ଚଉଷଠୀ
ଅର୍ଜୁନର ଶହସ୍ରନ୍ତ ପକାଇଲା ସବୁ କାଟି ।୧୮
ପର୍ବତା ଶହସ୍ରେକ ବିନ୍ଧିଲା ରାଧେବ
ବିନ୍ଧିଲା ଶହସ୍ର ଯହିଂ ଅର୍ଜୁନ ମାଧବ ।୧୯
ଆସନ୍ତେ ପଥେ ଯେ ଉଡ଼ିଣ ଆକାଶେ
ଗର୍ଜନ ନାଦ କରି ଆସନ୍ତି ଚଉପାଶେ ।୨୦
ବଜ୍ର ଶହସ୍ରେକ ଘେନି ବିନ୍ଧିଲା ଧନୁର୍ଜୟେ
ଭାଜିଣ ପଥରେ ଯେ ହୋଇଲେ ଗୁଣ୍ଡାମୟେ ।୨୧
ଅଗ୍ନିମୁନା ବାଣେକ ଯେ ବିନ୍ଧିଲା ଭାରୋଇ ମଲ୍ଲ
ଶୂନ୍ୟଭୁବନ ମଞ୍ଚଭବନ ହୋଇଲା ଯେକତୁଲ ।୨୨
ଉଭୟ ବଳ ସଇନି ପକାଇଲେ ଘୁଞ୍ଚି
ପବନା ଶହସ୍ରେକ ଯେ ବିନ୍ଧିଲା ସର୍ବସାଚୀ ।୨୩
ପବନ ବିଘାତେ ଅନଳ ତେଜ ଉଠି
ବାହୁଡ଼ି କଉରୋବ ଥାଠେ ହୋଇଲା ଅଗ୍ନି ବୃଷ୍ଟି ।୨୪
ଛିଡ଼ିକି ଅଗ୍ନିବାଣ ପଡ଼ଇ ଚଉକତି
କଉରୋବ ଥାଠ ଘୁଞ୍ଚିଲେ ଅଶ୍ୱଗତ ରଥୀ ।୨୫
ମେଘା ଶରେକ ଯେ ବିନ୍ଧିଲା ବୀର କର୍ଣ୍ଣ
ଆପଣା ଶର ଜଳେ ନିବାରିଲା ବହନ ।୨୬
ରାଧେବର ନନ୍ଦନ କୋପେ ଅତି ରାଗେ
ଅବିଚ୍ଛନ୍ନେ ନାରାଜ ବିନ୍ଧଇ ଅତି ବେଗେ ।୨୭
ହାଥର ବେଗତ ଦେଖିତ ନୁଆରି
ନାରାଜ ବିଘାତେ ଯେ ଗଗନ ଅନ୍ଧାରି ।୨୮
ଅନିର୍ବାରଣ ଶର ଯେ ବିନ୍ଧଇ ରାଧବେ
ଅନେକ ସନ୍ୟବଳଇ କରଇ ପ୍ରଭାବ ।୨୯
ବାତ ବିଘାତେ ଯେହ୍ନେ ପକ୍ୱଫଳ ଲୋଟି
କନ୍ଧୁ ଛିଡ଼ି ତଳେ ପଡ଼େ ଶିର କୋଟି କୋଟି ।୩୦
ଅସଂଖ୍ୟେପ ସମର ହୋଇଲା ମହାଯୁଦ୍ଧ
ଖେଚର ଭୂଚର ହୋଇ ନାଚନ୍ତି କବନ୍ଧ ।୩୧
ହାଥକୁ ହାତ ଶରକୁ ଶର ଘେନି
ନିରାପକ୍ଷ ହୋଇ ଯୁଦ୍ଧ କରଇ ଫାଲଗୁନି ।୩୨
ସମର ସମ୍ପର୍ବେ ଲାଗିଲା ମହାଗୋଳ
ଜୀବନ ଉପେଖି ବୀରେ ପଶିଲେ ମହାରୋଳ ।୩୩
ଯେସନେହେ ତିଳ ବୁଣି କୃଷିକାରୀ
ପଡ଼ନ୍ତି ପାଦାନ୍ତିବଳ ସଞ୍ଚପି କେହୁ ପାରି ।୩୪
ରଥୀ ଯୋଦ୍ଧାମାନେ ଯେ ହୋଇଲେ ଯେକମୁଖ
ଅଶିଲକ୍ଷ ଯୋଦ୍ଧା ହୋଇ ଭେଟିଲେ ବିବସ୍ଥ ।୩୫
ବହୁତ ବଳ ଚଞ୍ଚଳ କୁରୁସାଗର ଯୋଧୀ
ଯେକମୁଖ ହୋଇଣ ପାଣ୍ଡବ ବଳ ବିନ୍ଧି ।୩୬
ଯାବତ ଥାଠ ଦେଖିଣ ଧୃଷ୍ଟ ଯେ ଦ୍ୟୁମନେ
ଲବ ଲକ୍ଷ ଯୋଦ୍ଧା ଘେନି ଉଠିଲେ ଯେକମନେ ।୩୭
ମର୍ଭୁତେକ ଯୋଦ୍ଧା ଘେନି କୁରୁପତି
ଆପଣେ ଭେଟିଲେ ସେ ରାଜା ମାନଚକ୍ରବ୍ରତୀ ।୩୮
ରାଜାର ଭୀଷ୍ମମୂର୍ତ୍ତି ଦେଖି କୁମାର ନକୁଳ
ଗଜଯୋଦ୍ଧା ତୁଳେ ଯେହାର ତିନି ଲକ୍ଷ ମତ୍ତବଳ ।୩୯
ସବୁଂକରି କରେ ଯେ ନବନିଶି କୋନ୍ତ ଯାଠି
ମାନଗୋବିନ୍ଦ ଛାମୁରେ ନକୁଳ ଯେକମୁଖେ ଉଠି ।୪୦
ପାଞ୍ଚଲକ୍ଷ ରହୁବର ତୁଳେଣ ସଇନି
ପାଦାନ୍ତି ବଳ ତୁଳେଣ ମର୍ଭୁତେକ ତିନି ।୪୧
ଯେତେକ ଯୋଦ୍ଧା ଘେନିକରି ମନ୍ତ୍ରୀ ଚୂଡ଼ାମଣି
ପାଣ୍ଡବଂକ ଉପରକୁ ଥାଠ ଯେ ପଳାଣି ।୪୨
କୋନ୍ତ ଖଡ଼ଗ ଗୁରୁଜ ମୁନା ଲାଂକିଆ ମୂଷଳ ଯାଠି
ଦଣ୍ଡ ଘେନି ଶଂକୁନି ଯେ ଭେଟିଲା ଯୁଝେଷ୍ଟି ।୪୩
ଶ୍ୱେତ ହାଥୀଯେ ଚଢ଼ିଣ ଧର୍ମର ନନ୍ଦନ
ଶ୍ରୀଭୁଜେ ଧନୁଯେକ ଧରିଣ କୋପମନ ।୪୪
ଶଂକୁନି ବୋଇଲା ରାଜା ରହ ରହ ଯୁଝେଷ୍ଟି
ଯେକାଙ୍ଗ ରାଜ୍ୟ ଆଜ ପାଇଲା ଧୃତିରାଷ୍ଟି ।୪୫
ରେରେକାର ଶବଦେଣ ମହାଗୋଳ ତୋଳି
ରଥରେ ଥାଇଣ ଯେ ତାହା ଦେଖିଲେ ବନମାଳୀ ।୪୬
ନନ୍ଦିଘୋଷ ବାମପାଖେ ଅଛଇ ସହଦେବ
ଆହୋ ସହଦେବ ଶଂକୁନି ଯୁଝେଷ୍ଟିଂକି ବହୁତ କଟାଳିବ ।୪୭
ନାରାୟଣଂକ ବଚନେ ସହଦେବ ଅତିବେଗ
ଛାଗଳ ପଲ ଦେଖି ଯେହ୍ନେ ଧାମଇଂ ମତ୍ତ ବ୍ୟାଘ୍ର ।୪୮

ଯୁଝେଷ୍ଟିଂକି ପଛକରି ମନ୍ତ୍ରୀ ଚୂଡ଼ାମଣି
ଶକୁନିର ଆଗେ ନେଇ ରଥ କଲା ପୁଣି ।୪୯
ଅନିର୍ଯ୍ୟାପ ହୋଇ ଯେ ଉଠିଲା ମହାରଣ
ସଂଶୟ କାଳକୁ ଆବର କିସ ବନ୍ଧୁପଣ ।୫୦
ବଳୟ କଂକଣ ଯେ ମୁଦ୍ରିକା ରତ୍ନମୟେ
ହାଥୀ ଅଶ୍ୱ ମାଡ଼ି ଯେ ପଡ଼ୁଛନ୍ତି ଅପ୍ରମୟେ ।୫୧
ଧନୁ ଆଧାନ ସନ୍ଧାନ ପ୍ରଳୟ ମେଘ ଜାଣି
ବାଣ ଜାଳାବଳୀ ଯେହ୍ନେ ବରଷନ୍ତି ପାଣି ।୫୨
ଅଶ୍ୱ ପାଦାନ୍ତି ବଳ ଗଜ ମୟେମତ୍ତା
ମଡ଼ାମଡ଼ି ହୋଇ ପଡ଼ନ୍ତି ନ ଯାନ୍ତି ଗଣିତା ।୫୩
ଭୋ ରାଜନ ଦେବଂକୁ ଦୁର୍ଲଭ ଯେ କର୍ଣ୍ଣର ସମର
ରୋମେକ ଶତ ନାରାଚ ଯେ ପେଷଇ ଖରତର ।୫୪
ଯେସନେକେ ସମର କରନ୍ତେ ମହାଆଳୀ
ଦିନକର ଅର୍ଦ୍ଧ ଆସି ହୋଅଇ ଅଂଶୁମାଳୀ ।୫୫
ଯାହା ସେ ଶାପ ଦିଲା ଶୋଷକ କାଳସର୍ପ
କର୍ଣ୍ଣକୁ ପ୍ରାଭବ ଦେଖ ତହିଂର ଅନୁରୂପ ।୫୬
ରାଧେବ ସମର ଯେ କରନ୍ତେ ଅତିବେଗେ
ଧାତିକାରେ ରଥ ତାର ବସିଲା ଭୂମି ଭାଗେ ।୫୭
ରହିଲେ ତୁରଙ୍ଗମ ଅଚଳ ଗିରି ଜାଣି
ନନ୍ଦିଘୋଷ ରଥ ଆଣି ଟେକିଲେ ଚକ୍ରପାଣି ।୫୮
କର୍ଣ୍ଣ ବୋଇଲେ ତୁ ଶୁଣରେ ବାବୁ ପାଥ
ସମର କ୍ଷଣେକ ବିଶ୍ରାମକର ମୁଂ ଟୋଳଇ ମୋର ରଥ ।୫୯
ତୁ ଯେ କ୍ଷତ୍ରୀକୁଳେ ବହୁ ଶରଣ ପଞ୍ଜର ବାନା
ବିରଥୀ ଯୋଦ୍ଧାକୁ ଶର ନକରୁ ଆଧାନା ।୬୦
ଆହୋ ଅର୍ଜ୍ଜୁନ ସମର ଚରିତ ଅଛନା ଯେମନ୍ତ
ଯାହା ସେ ଲିଖନ କଲା ପ୍ରଜାପତି ଦଇବତ· ।୬୧
କେଶ ମୁକ୍ତକ ହୋଇଲେ ନ ମାରି ତାକୁ ରଣେ
ବିଶହସ୍ତ ହୋଇଲେ ନ ମାରି ଧର୍ମ ଅଛି ଯେଣେ ।୬୨
କେଶ ମୁକୁଳେ ଯେ ବସ୍ତ୍ର ଅସମ୍ଭାଳେ
ଶହସ୍ତ୍ର ଛାଡ଼ି ଯେ କର ଦିଅନ୍ତି କପାଳେ ।୬୩
ଦନ୍ତେ ତିରଣ ଯେ କୋଠାର ଗଳାୟେ
ଯାନ ଛାଡ଼ି ମୁଖେ ଯେ ଭଣନ୍ତି ଦଶନହେ ।୬୪
ଶରଣ ବୋଇଲେ ନ ମାରି କିରୀଟୀ ବୋଲି ଛାଡ଼ି
ପିଠି ଦିଲା ଶତ୍ରୁକୁ ସମରେ ନ ମାରି ।୬୫
ବାବୁ ଯେବଣ ଶତ୍ରୁ ଶସ୍ତ୍ର ଛାଡ଼ି ନିସତ ହୁଅନ୍ତି ରଣେ
କାତର ଯୋଦ୍ଧାନ୍ତ ମାରିବା କିମ୍ପୁତ କାରଣେ ।୬୬
ତୁ ଯେ କ୍ଷତ୍ରୀକୁଳେ ଅଟୁ ମହାବୁଦ୍ଧି
ଭରହର ଭାରଥ ଯେତି ରଣ ଯାଗ ଭୂମି ।୬୭
କିଂଚିତ ପାତକେ ଯେ ଅଳପ ହୋୟେ ଦୋଷ
କିଞ୍ଚିତ ଧର୍ମେ ହୋୟେ ବାଇକୁଣ୍ଠ ବାସ ।୬୮
ତୁ ଗୁଣବନ୍ତ ପଣ୍ଡିତ ଧାର୍ମିକ ସର୍ବସାଚୀ
ଉଭୟ କୁଳ ସାଂଗ୍ରାମକୁହିଂ ହରି ହନୁମନ୍ତ ସାକ୍ଷୀ ।୬୯
କର୍ଣ୍ଣ ବୋଇଲା କ୍ଷଣକେ ତୁ ବିଶ୍ରାମ କରସି ପାଥ
ବେନି ଦଣ୍ଡ ଉତ୍ତାରେ ଉଠିବ ମୋର ରଥ ।୭୦
କର୍ଣ୍ଣର ମୁଖରୁ ଯହୁଂ ବିନୟ ବଚନ ଶୁଣି
ଅର୍ଜ୍ଜୁନ ଥମ୍ଭୀଭୂତ ହୋଇଲା ତତକ୍ଷଣି ।୭୧
ଗୋବିନ୍ଦେ ବୋଇଲେ ହୋ ବିନ୍ଧସି ବେଗେ ବାଣ
କର୍ଣ୍ଣର ଶିରକମଳ ତୁ କାଟି ପକାଅ ଯେହିକ୍ଷଣ ।୭୨
ଅର୍ଜ୍ଜୁନ ବୋଇଲା ସ୍ୱାମୀ ଯେ ହୋଇଛି ବିରଥୀ
ଧର୍ମ ବିଚାରକୁ ଯେ ନ ଯୋଗାଇ ଯୁଗତି ।୭୩
ରଥ ଉଠିବ ଯେବେ ବେନି ଦଣ୍ଡର ମଧ୍ୟେ
ଯେଡ଼େ ବଡ଼ ରଥୀକି କିଂକେ ମାରିବା ବିନା ଯୁଦ୍ଧେ ।୭୪
ଗୋବିନ୍ଦ ବୋଇଲେ ବାବୁ ଶୁଣସି ରାଧେବ
ଧର୍ମ ଆଚାରେ ତୁମ୍ଭେ ବଞ୍ଚନା କାଳ ସର୍ବ ।୭୫
ଆହୋ କର୍ଣ୍ଣ ତୁମ୍ଭର ଧାର୍ମିକପଣ ପୋଡୁ ପୋଡୁ
ଭୀମକୁ ଭୁଞ୍ଜାଇ ବସାଇ ପରସିଲ ବିଷଲଡୁ ।୭୬
ବିଷରେ ଅସାଷ୍ଟମ ହୋଇଲା ଯେତେବେଳେ
ନାଗେଣୀ ଖାଉ ବୋଲି ବାନ୍ଧି ମେଲିଲ ଅଗାଦ ଜଳେ ।୭୭
ଯାବତ କାଳେ ତୁମ୍ଭେ ଚଳ ଧର୍ମବାଟେ
ଘରେକ ଭିଆଇଲ ଜଉ, ସଜଳସ, ଗୁଆ, ଘୃତ ଛଣପଟେ ।୭୮
ଅନେକ ଯତ୍ନେ ତହିଂ ପାଣ୍ଡବନ୍ତ ରୁହାଇ
ପୁରଞ୍ଜନ ପଣ୍ଡା ହାଥେ ଲଗାଇଲ ଜୁଇ ।୭୯
ବିକଳେ ବିମ୍ବରେ ସେ ପଳାଇଲେ ଗଳି
କାଳେକ ବ୍ରତ ତୁମ୍ଭେ ଧର୍ମ ପ୍ରତିପାଳି ।୮୦
ଆହୋ କର୍ଣ୍ଣ ବନସ୍ତେ ବୁଲନ୍ତେ ପାଣ୍ଡବ ପାଞ୍ଚଭାଇ
ଧର୍ମର ବଳେ କନ୍ୟାୟେ ପ୍ରାପତ ହେଲା ତହିଂ ।୮୧
ତୁମ୍ଭେ ତ ଯାଇଥିଲ ଲାଖ ବିନ୍ଧିବାକୁ
କେତେ ଦୁଖ ନ ଦିଲଟି ଯେହି ପାଣ୍ଡବଂକୁ ।୮୨
ତହୁଂ ଯେ ଉଦିତ ହୋଇଲେ ପାଞ୍ଚଭାଇ
କୂଟଭାଷା କହିଣ ସଭାରେ ନ ଦିଲ ବସାଇ ।୮୩

ସଭାରେ ବସିକରି ଭିଆଇଲ କପଟ ପାଶା
ରାଜ୍ୟଭାର ଘେନିଲ ତୁମ୍ଭେ ସେ ହୋଇଲେ ନିଆଶା ।୮୪
ସଭାତଳେ ବସାଇଲ ପଞ୍ଚ ଯେ ଭ୍ରାଥଂକୁ
ଅନେକ ଭୁଛନାମାନ କରାଇଲ ନା ଯେହାଂକୁ ।୮୫
ଦ୍ରୋପତୀର କେଶ ଧରି ଆଣିଲା ଧୁଶାସନ
ସଭାତଳେ ଆଣିଣ କଲାକ ବିବସନ ।୮୬
ସମସ୍ତେହେଂ ସଧ କଲ ଦେଖିବାକୁ ଜାନୁ ଯଉବନ
କେତେ ଧର୍ମ ନୁହଇ ଯେ ଧର୍ମକୃତମାନ ।୮୭
ଆହୋ କର୍ଣ୍ଣ ତୁମ୍ଭର ସବୁ କଥା ସେ ଶୋହଇ
ଯେମାନ ଯେ କଲ ତୁମ୍ଭର କେବଣ ଧର୍ମ ହୋଅଇ ।୮୮
ଆରେ ଚଉଦ ବରଷର ପୁଅ ବାଳୁତ ଯେ ତନୁ
ନ ଜାଣି ସମରେ ତ ପଶିଲା ଅଭିମନ୍ୟୁ ।୮୯
ଅନେକ ସଇନି ଯେ ମାଇଲା ଯହୁଂ ରୋଳେ
ବେଢ଼ି ମାର ବୋଲିଣ ଯେ ସମସ୍ତେ କଲ ଗୋଳେ ।୯୦
ଯେକା ପୁଅକୁ ବେଢ଼ିଲ ମର୍ଭୁତେକ ଯୋଧୀ
ବେଢ଼ିଣ ମାଇଲ ତୁମ୍ଭେ ତୁମ୍ଭର ଧର୍ମ ଯେଡ଼େ ବିଧି ।୯୧
ଶ୍ରୀକୃଷ୍ଣ କୋପ ଜାତ ଅଭିମନ୍ୟୁ କଥା କହୁଂ କହୁଂ
ଅର୍ଜ୍ଜୁନକଇଂ କୋପ କରାଇଲେ ମହାପ୍ରଭୁ ।୯୨
କ୍ଷଣକଇଂ ରକ୍ଷା ଯେହାକୁ ନ କର ବୀର ପାଥ
ବଇକୁଲ୍ୟ ଉପୁଜାଇଲେ ଅର୍ଜ୍ଜୁନକୁ ପ୍ରଭୁ ଜଗନ୍ନାଥ ।୯୩
ବେନି ଦଣ୍ଡର ମଧ୍ୟେ ତୋଳିବ ଯେହୁ ରଥ
ସେ ରଥ ଉଠିଲେ ତ୍ରିଲୋକ୍ୟେ କେହି ନାହିଂଟି ସାମରଥ ।୯୪
କୃଷ୍ଣର ବଚନେ ବୋଇଲେ ବାସବର ତନୁ
ନିସତ ନୁହ କର୍ଣ୍ଣ ହୋ କରେ ଘେନି ଧନୁ ।୯୫
ଆତ୍ମା ବଇକୁଲ୍ୟ ମୋର ହୋଉଛି ପୁତ୍ର କ୍ରୋଧେ
ଅବଶ୍ୟ ନାଶ ତୋତେ କରିବି ବିନା ଯୁଦ୍ଧେ ।୯୬
ଧନୁ ଆଧାନ ସନ୍ଧାନ କଲାକ ସର୍ବସାଚୀ
ଦେଖିଣ କର୍ଣ୍ଣକଇଂ ଯେ ନ ପୁଂରଇ କିଛି ।୯୭
ଶଲ୍ୟେ ବୋଇଲେ ହୋ ସମର କର ବୀର କର୍ଣ୍ଣ
ନିସତ ହୋଇଲେ ତୋତେ ନ ରଖଇଟି ଅର୍ଜ୍ଜୁନ ।୯୮
ଶଇଲ୍ୟ ସାରଥିର ବଚନେଣ କରି
ଧନୁ ଆଧାନ କରି ନାରାଚ କୋପେ ଧରି ।୯୯
ଆରମ୍ଭେ ଯଦ୍ୟପି ସେ ବିନ୍ଧିଲା ରାଧେବ
ନନ୍ଦିଘୋଷ ଉପରକୁ କି ନାରାଚ ପାଇବ ।୧୦୦
ନନ୍ଦିଘୋଷ ରଥ ଥାଇ ସହସ୍ରତାଳ ଉଚ୍ଚା
କିସ ଶହସ୍ର ବିନ୍ଧିବ କର୍ଣ୍ଣ ପାଦଗତି ହୋଇ ମଞ୍ଚା ।୧୦୧
ଅନେକ ନାରାଚ କର୍ଣ୍ଣ ଆକ୍ରେଷିଣ ବିନ୍ଧି
ଲାଘେବ ଶହସ୍ରେ ଯେ ଅର୍ଜ୍ଜୁନ ତାହା ଛେଦୀ ।୧୦୨
ଶ୍ରୀଜଗନ୍ନାଥେ ବୋଇଲେ ଚାହିଂଣ ଅର୍ଜ୍ଜୁନକୁ
ଅନେକ ଝିଂଘାସ କଲା କର୍ଣ୍ଣ ଶୋଷକ କାଳ ସର୍ପକୁ ।୧୦୩
କୋପେଣ ଶାପ ସେ ଦିଲାକ ମହାରାଗେ
ବେଳ ଅର୍ଦ୍ଧେ ରଥ ତୋର ବସି ଭୂବୀଭାଗେ ।୧୦୪
ବେନି ଘଡ଼ିର ମଧ୍ୟେ ଯେବେ ପାରିବୁ ରଥ ତୋଳି
ଜିଣନ୍ତା ନୋହୁ ତୋତେ ବ୍ରହ୍ମା ଇନ୍ଦ୍ର ରୁଦ୍ର ଭଳି ।୧୦୫
ବାବୁ ଦୁଇ ଦଣ୍ଡକୁ ଦଣ୍ଡେ ହୋଇଲାନି ଶେଷ
ଆଉର ଦଣ୍ଡକେ ରଥ ଘୋଟିବ ଆକାଶ ।୧୦୬
ପୁଣ ସାଂଗ୍ରାମ ଯେବେ କରଇଟି ରଥ ଚଢ଼ି
କର୍ଣ୍ଣକଇଂ ସମାନେ ଯେ ନୋହିବେ ତିନିପୁରୀ ।୧୦୭
ଶୁଣିଣ କୋପାନଳ ଯେ ବିଚିତ୍ର ବୀର୍ଯ୍ୟର ନାତି
ଅଧାଚନ୍ଦ୍ର ନାରାଚ ଯେ ପାଥ ପେଷିଲା ତତକ୍ଷଣାନ୍ତି ।୧୦୮
ଶହସ୍ର ବିଘାତେ କର୍ଣ୍ଣର ଛିଡ଼ିଲାକ ହାଦେ ମୁଣ୍ଡ
ଗିରିବର ଜାଣି ଉଭା ହୋଇଅଛି ପିଣ୍ଡ ।୧୦୯
ପୁଣ କନ୍ଧରୁ ମୁଣ୍ଡେକ ଯେ ହୋଇଲା ଉତପତ୍ତି
କର୍ଣ୍ଣର ଶରୀର ଯେ ପ୍ରଭାତ ସୂର୍ଯ୍ୟ ଜ୍ୟୋତି ।୧୧୦
କରେ ଧଇଲା କର୍ଣ୍ଣ ସୂର୍ଯ୍ୟାବ୍ରତେକ ଶକତି ।୧୧୧
ଅର୍ଜ୍ଜୁନ ପେଷିଲାକ ଯେ ପାଶୁପତ୍ର ଶର
ଯେଉଂଣ ନାରାଚେ ତ୍ରିପୁର ଦହିଲେ ଦେବ ହର ।୧୧୨
ସେ ଶର ଆକ୍ରେଷିଣ କୋପେଣ ବୀର ଛାଡ଼ି
କର୍ଣ୍ଣର ମୁଣ୍ଡ ଛିଡ଼ି ଭୂମିରେଣ ପଡ଼ି ।୧୧୩
ବଜ୍ରଗିରି ଆକାରେ ରହିଛି କର୍ଣ୍ଣ ପିଣ୍ଡ
ପୁଣି ଜାତ ହୋଇଲା ଆର ଯେକ ମୁଣ୍ଡ ।୧୧୪
ଅର୍ଜ୍ଜୁନ ବୋଇଲା ହରି ଯେତ ବଡ଼ାଇ ଦୁଲଭ
ପୁଣ ପୁଣ ମୁଣ୍ଡ ଉପୁଜଇ କେଉଂଣ ଭାବ ।୧୧୫
ଶୁଣିଣ ସହଦେବକୁ ପଚାରିଲେ ବାସୁଦେବ
କେବଣ ଚରିତ ଯେ କହନି ସହଦେବ ।୧୧୬
ସହଦେବ ବୋଇଲା ଯେ ଆଦିତ୍ୟ ବୀର୍ଯ୍ୟେ ଜାତ
ଅମୃତ କୁଣ୍ଡଳ ବଜ୍ରଛଉରୀ ଅଭେଦ କପଚ ଦିଲେ
ଦିନକର ନାଥ ।୧୧୭
ଅଭେଦ କରି ସଞ୍ଚିଲେ ଗଗନ ବିହାରୀ
ଶରୀରେ ଲେପିଲେ ଯେହାର ବଜ୍ର ଯେ ଛଉରୀ ।୧୧୮

ବ୍ରହ୍ମଶର ବାବଲ ଶର ଆବର ପାଶୁପତ୍ର
ଯେମାନ ନ ଭେଦିବ ଯେ ତାହାର ନିଜ ଗାତ୍ର ।୧୧୯
ଅମୃତ କୁଣ୍ଡଳ ଆଦିତ୍ୟ ଚାପିଲେ ତାର ଶ୍ରବଣେ
କର୍ଣ୍ଣ ବୀରର ଦେବ ମୃତ୍ୟୁ ନାହିଁ ଯେଣେ ।୧୨୦
ଆଦିତ୍ୟ ରଶ୍ମି ଲାଗି ଅମୃତ ଝରିବ କୁଣ୍ଡଳେ
ଗର୍ଭେଣ ପଶିବ ଯେ ଝରିଣ ଗଣ୍ଡସ୍ଥଳେ ।୧୨୧
ସହସ୍ରେ ନାଗର ସେ ବଳ ପାଇ ଉଠି
ପୁଣି ଧନୁ ଧରି ସେ ଜିଣିବ ନବ ସୃଷ୍ଟି ।୧୨୨
ତାଲୁରେ ଅଛି ଯେ ଅଭେଦ କପଟ ମଣି
ସୁଦ୍ରିଶେନ ନୀଳଚକ୍ରେ ନୋହିବ ଯେ ହାଣି ।୧୨୩
ଯେହା ଜାଣି ପାଣ୍ଡବେ ଉଦିଯୋଗ ପର୍ବେ
ବକ୍ର ଛଉରୀ ଅମୃତ କୁଣ୍ଡଳ ଆଣିଲେ ବାସବେ ।୧୨୪
ସ୍ୱାମୀ ଜାଣି ତା ବିରଞ୍ଚି ନାରାୟଣ ବୋଇଲେ କେମନ୍ତ କରିବି
ଯେବେ ମୋର ପୁତ୍ରଙ୍କଙ୍କ ଅମର କରିଣ ବଞ୍ଚାଇବି ।୧୨୫
ଆଦିତ୍ୟ ଦେବତା ବିଜେ କଲେ ସେହି ରାତି
ପ୍ରକଟ ଲିଙ୍ଗେକ ବକ୍ଷସ୍ଥଳେ ଚାପିଲେ ଦିନକର ଜ୍ୟୋତି ।୧୨୬
ସ୍ୱାମୀ ଯେମନ୍ତ ସଞ୍ଚିତ କଲା ଗଗନ ଶୂନ୍ୟବାସୀ
ନାନା ଶସ୍ତ୍ର ପଡ଼ିଲେ ଶ୍ୱରୀରେ ହୋଅନ୍ତି ସର୍ବେ ନାଶି ।୧୨୭
ସହଦେବ କହିଲା ପ୍ରକଟ ଲିଙ୍ଗେକ ଅଛି ଯେହାର ହୃଦେ
ତେଣୁ ସେ କର୍ଣ୍ଣ ବଧ ନୁହଇ ଦେବ ହାଦେ ।୧୨୮
ସହଦେବ ବୋଇଲା ଯେ ପ୍ରକଟ ଲିଙ୍ଗ ଯେବେ ଜଳି
ତେବେ ସେ କର୍ଣ୍ଣ ଦେବ ପଡ଼ିବ ମହୀଆଳୀ ।୧୨୯
ଗୋବିନ୍ଦେ ବୋଇଲେ ସେ ଲିଙ୍ଗ ଦହନ କରିବା କେମନ୍ତେ
ସହଦେବ ବୋଇଲା ଦେବ ଶୁଣିମା ଜଗନ୍ନାଥେ ।୧୩୦
ବାବଲ ଶର ପାଶୁପତ୍ର ନୀଳଚକ୍ର ତିନି
ଯେକା ଘାନ୍ତିକେ ଯେହା ଯେବେ ବିନ୍ଧିବେ ଫାଲଗୁନି ।୧୩୧
ନାଭିକି ବିନ୍ଧିବେ ଯେବେ ପାଶୁପତ୍ର ଶର
ବାବଲ ଶର ଯେବେ ପଡ଼ିବ ହୃଦୟର ।୧୩୨
ନୀଳଚକ୍ର ପଡ଼ିବ ଯେବେ କର୍ଣ୍ଣବୀର କନ୍ଧେ
ତିନିଖଣ୍ଡ ହୋଇ ପଡ଼ିବ କର୍ଣ୍ଣ ରଣ ମଧ୍ୟେ ।୧୩୩
ତେବେ ସେ କର୍ଣ୍ଣବୀର ଜୀବନ ହାରିବ
ଶ୍ରୀକୃଷ୍ଣ ଅଗ୍ରତେ ଯେହା କହିଲା ସହଦେବ ।୧୩୪
ସହଦେବ ବଚନେ ଯେ ଉଷତ ଫାଲଗୁନି
ଶ୍ରୀଭୁଜେ ଘେନିଲା ବାବଲ ଶର ପାଶୁପତ୍ର ବେନି ।୧୩୫
ପାତାଳ ଭୁବନେ ନୀଳଚକ୍ର ଯାଇଂ ଅଛି
ତାହାଙ୍କଙ୍କ ସୁମରିଲେ ପାଣ୍ଡବ ବିବଛି ।୧୩୬
ପାତାଳ ଭୁବନୁ ଯେ ଆସିଲା ନୀଳ ବାଣ
ତିନିକି ଗାଣ୍ଡିମ ଧନୁରେ ପୂରୋଇ ଅର୍ଜୁନ ।୧୩୭
ଆକର୍ଣ୍ଣ ଓଟାରି ଗୁଣ ଦିଅନ୍ତେ ସର୍ବସାଚୀ
କର୍ଣ୍ଣ ମୁଖକୁ ଚାହିଁ ହୁଙ୍କୁଡ଼ଇ ଆମଞ୍ଚି ।୧୩୮
କୋଦଣ୍ଡୁ ସାରିକ୍ଷେ ପୂରୋଇଲେ ତିନି ବାଣ
ଆକ୍ରୋଷି ବିନ୍ଧିଲେ ତାହା ପାଣ୍ଡବ ପଞ୍ଚାଣ ।୧୩୯
ଆକର୍ଣ୍ଣ ଓଟାରି ଗୁଣ ଦିଅନ୍ତେଣ ଛାଡ଼ି
ଗଲେ ଯେ ତିନି ବାଣ କରିଣ ଘୋର ରଡ଼ି ।୧୪୦
ପାଶୁପତ୍ର ଶର ଯାଇଂ ପଡ଼ିଲା ନାଭିର
ବକ୍ଷସ୍ଥଳେ ପଡ଼ିଲା ବାବଲ ମହାଶର ।୧୪୧
ଶହସ୍ର କିରଣ ନୀଳଚକ୍ର କଣ୍ଠେ ଯାଇଂ ପଡ଼ି
କର୍ଣ୍ଣର ମୁଣ୍ଡ ଯେ ପଡ଼ିଲାକ ଛିଡ଼ି ।୧୪୨
ଯେକପର୍ବତ ଯେହ୍ନେ ହୋଇ ତିନିଖଣ୍ଡ
ତିନିଖଣ୍ଡ ହୋଇ ପଡ଼ିଲା କର୍ଣ୍ଣପିଣ୍ଡ ।୧୪୩
କର୍ଣ୍ଣର ମୁଣ୍ଡ ଛିଡ଼ିଲା ମଲେ ଅମୃତଲିଙ୍ଗ ମହାତ୍ମା
ଅଗ୍ନିତେଜ ଶିଖେ ଗଲା ସମ୍ଭାଳିଲେ ଆଦିତ୍ୟ ଦେବତା ।୧୪୪
ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ଭାରଥ ଯୁଦ୍ଧ ହୋଇଲା ମକର ଶୁକଳ ଦୁତୀୟାର ତିଥି ।୧୪୫
ପଣ୍ଡିତବାର ଶତଭିଷା ନକ୍ଷତ୍ର ଯେ ଭୋଗ
ବାୟବ୍ୟ ନାମେ କରଣ ଅତିଗଣ୍ଡ ନାମେ ଯୋଗ ।୧୪୬
ଭୀଷ୍ମେ ଦଶ ଦିବସ ଦ୍ରୋଣେ ପାଞ୍ଚ ଯେ ଦିବସ
ଦୁଇଦିନ ଅର୍ଦ୍ଧେ ସମର କଲାକ ସୂର୍ଯ୍ୟ ଶିଷ୍ୟ ।୧୪୭
ସତର ଦିନ ଦୁଇ ପ୍ରହର ହୋଇଲା ଯେବେ
କୁମ୍ଭମାସ କୃଷ୍ଣପକ୍ଷ ଚଉଠି ସେଦିନ ହାଦେ ।୧୪୮
ଶଉରିବାର ହସ୍ତା ନକ୍ଷତ୍ର ଯମ ଘଣ୍ଟ ଯୋଗେ
କର୍ଣ୍ଣ ବଧ ଗଲା ମାନଗୋବିନ୍ଦର ଆଗେ ।୧୪୯
କର୍ଣ୍ଣ ପଡ଼ିଲା ତହିଁ ବେଳ ଦୁଇ ଯେ ପ୍ରହର
ଆକାଶରେ ଅନ୍ଧାର ହୋଇଲେ କରତାର ।୧୫୦
ଆକାଶୁଂ ଉତୁରି ଦେବ ବିରଞ୍ଚି ନାରାୟଣ
କର୍ଣ୍ଣକଙ୍କ ଦେଖିଣ କ୍ରୋଧ କଲେ ଅନ୍ତରେଣ ।୧୫୧
ହା ହା ପୁତ୍ର ବୋଲି ଯେ ଗଗନ ବେହାରୀ
କ୍ରୋଧ ଅବସ୍ଥା ଯେ କର୍ଣ୍ଣ ନାମ ଧରି ।୧୫୨
ବାବୁରେ ନିତ୍ୟକର୍ମ ସାରି ଉଭା ହୋଇଲେ ତୁ ପୃଥ୍ୱୀ
ଚାଲନ୍ତେ ପାଦଭାର ସହି ନୁଆରଇ ଧରତୀ ।୧୫୩

ବାବୁ ଚାପେ ଚରଣ ଖେପିଲେ ମହୀସ୍ଥଳୀ
ବସୁଧାର ମୁଖରୁ ଯେ ରୁଧିର ନିକିଳି ।୧୫୪
ଥିରିକରି ଚରଣ ବଢ଼ାଇବା ନିମନ୍ତେ
ଡରେ ବସୁଧା ଶତେଭାର କଣୟ ଲାଞ୍ଚ ଦିଅଇ ନିତ୍ୟେ ।୧୫୫
ବାବୁ ଶତେଭାର ସୁବର୍ଣ୍ଣ ନିତ୍ୟେ ତୁ ଦେଉ ଦାନ
ଦାନେ ମାନେ ଶୂରବନ୍ତ ତୁ ଅଟୁ ହୋ ମହାବଳୀ କର୍ଣ୍ଣ ।୧୫୬
ବାବୁ ଭାରଥେ ଭାରୋଇ ମଲ୍ଲ ତୋହୋର ବିରଧୂ
କବଚ କୁଣ୍ଡଳ ଦାନେ ଲଛୀ ଛାଡ଼ିଲା ତୋହୋର କନ୍ଧୁ ।୧୫୭
ସମସ୍ତ ଦାନ ଦେଇ ତୁ ଆଶ୍ରେ କଲୁ କାଳସର୍ପେ
ସେହି ଉତଙ୍ଗ କାଳେ ହରିଲା ତୋହୋର ଦର୍ପେ ।୧୫୮
ଅନେକ କ୍ରୋଧ କଲେ ଯେ ବିରଞ୍ଚି ନାରାୟଣ
ମାନଗୋବିନ୍ଦ ଆସି ମିଳିଲା ସନ୍ନିଧ୍ୟେଣ ।୧୫୯
ହା ହା ମଇତ୍ର ବୋଲି ମତ୍ତ ହାଥୀ କଲା ତେଜ୍ୟା
ମୃତୁପିଣ୍ଡ କୋଳ କରି ଧଇଲା ମାନଗୋବିନ୍ଦ ରାଜା ।୧୬୦
ହା ହା ମଇତ୍ର ମୋର ଯେ କ୍ଷତ୍ରୀକୁଳେ ବଳବନ୍ତା
ଦାନେ ଖାଣ୍ଡେ ଶୂରବନ୍ତ କ୍ଷତ୍ରିୟ ସକତା ବକତା ।୧୬୧
ଦାନେ ଶୂରବୀର ଯେ ମାନେ ଶୂରବୀର
କପଟ ଦାନୀ କର୍ଣ୍ଣ ବୋଲି ଶୁଭଇ ତିନିପୁର ।୧୬୨
ଶ୍ରୀକୃଷ୍ଣ କପଟରେ ବ୍ରାହ୍ମଣ ରୂପ ଧରି
ତୋଷିଲୁ ବାସୁଦେବଂକୁ ବିଶିକେସନ ପୁତ୍ରକଇଂ ମାରି ।୧୬୩
ଖଣ୍ଡ ଖଣ୍ଡ କରି କାଟିଲ ପୁତ୍ରର ମାଂସେଂସ
ସଞ୍ଚିଲୁ ମେଞ୍ଜନ ପୁତ୍ରକୁ ଦିଲୁ ଗ୍ରାସ ।୧୬୪
ଭୁଞ୍ଜିଣ ତ୍ରିପୁତି ଯେ ହୋଇଲେ ଜଗନ୍ନାଥେ
ତୋହୋର ସତ୍ୟବ୍ରତ ଦେଖି ଜୀଅଂାଇଲେ ତୋହୋର
ପୁତ୍ରେ ।୧୬୫
ଦାନେ ଶୂରବନ୍ତ ବୋଲି ନାମ ଦିଲେ ତୋତେ
ତୁ ଯେବେ ଅନାସ୍ଥ କରି ଛାଡ଼ିଗଲୁ ମୋତେ ।୧୬୬
ମଇତ୍ର ପ୍ରତଗ୍ୟାଂ କଲୁ ଯେ ପାଣ୍ଡବନ୍ତ ମାରିବୁ ବୋଲି
ତୋହୋର ବାହାକୁ ମୁଂ ଆଦିହୁଂ ଆଶ୍ରେ କଲି ।୧୬୭
ସମୋଦ୍ର ପ୍ରାୟେ ମୁହିଂ କରିଥିଲି ଆଶ
ଅନ୍ତେ ମଇତ୍ର ମୁକୁହିଂ କଲୁ ଯେ ନିରାଶ ।୧୬୮
ପୃଥୀ ନ ସହଇ ମଇତ୍ର ତୋହୋର ଚାଲନ୍ତେ
ପାଣି ଦ୍ରବ୍ୟ ଶତେଭାର ଲାଞ୍ଚ ଦିଅଇ ଯେ ନିତ୍ୟେ ।୧୬୯
ତେତେକ ମଇତ୍ର ଦାନକୁ ନ ଅଣ୍ଟଇ ତୋତେ
କାଳେଣ ମଇତ୍ର ତୁ ନିରାଶ କଲୁ ମୋତେ ।୧୭୦

ଭୋ ମଇତ୍ର କାହାର ଆଗରେ କହିବି ମୋହୋର କଷ୍ଟ
ଯେକା ଜଣକେ ବୁଡ଼ାଇଲୁ ଯେ ମୋହୋର ରାଷ୍ଟ୍ର ।୧୭୧
ଶରଣ ଉଦ୍ଧାରଣ ମଇତ୍ର ଦୟା ସାଗର ବିରଧୂ
କପଟ ଦାନୀ ବୋଲି ତ୍ରଇଲୋକ୍ୟେ ତୋତେ ସାଧୁ ସାଧୁ ।୧୭୨
ଜଗତେ ସୁନ୍ଦର ତୋହୋର କର୍ଣ୍ଣବୀର ନାମଗୋଟି
ଭାରଥେ ଭାରୋଇ ମଲ୍ଲ ତୁ କଇଛା ଜଗଜ୍ଜେଠି ।୧୭୩
କେ ମହୀ ଉପାଡ଼ିଣ ଧଇଲାକ ମେରୁ
କେହୁ ତୋଳି ପାରିଲାକ ବ୍ରହ୍ମାଣ୍ଡ ଖଣ୍ଡ ଗରୁ ।୧୭୪
କପଟ କୁଣ୍ଡଳ ଦାନ ଇନ୍ଦ୍ରକଇଂ ଦିଲୁ ମିତ୍ର
ସମସ୍ତ ଦେଇ ମଇତ୍ର ହୋଇଲୁ ନିଚିନ୍ତ ।୧୭୫
ଭୋ ମଇତ୍ର ମହୀଭାର ଉଦ୍ଧାରଣ ତୁ ପରମାନନ୍ଦ ଯୋଗୀ
ଲକ୍ଷେ ରାଜା ମଉଡ଼ମଣି ଯେକଛତ୍ର ମହୀଭୋଗୀ ।୧୭୬
ତ୍ରଇଲୋକ୍ୟ ଜିଣିମାକୁ ଯେକା ସାମରଥ ଅଟୁ ରଣେ
ବଳବୀର୍ଯ୍ୟେ ହାରିଲୁ ମୋହୋର ମନ୍ଦପଣେ ।୧୭୭
ମଇତ୍ର ଭୀଷ୍ମ ଦ୍ରୋଣେ ନାଶଗଲେ ମୁଂ ନ ପାଇଲି କିଛି ବ୍ୟଥା
ଜାଣଇ ମିତ୍ର ତୋହୋର ପ୍ରାକ୍ରମ ଶକତା ।୧୭୮
ମଇତ୍ର ବିପାକ କର୍ମ ଯେ ମୋହୋର ପୋତୁ ପୋତୁ
ତୋହୋର ଗୁଣ ସୁମରି ମୋହୋର ପ୍ରାଣ ଛାଡୁ ।୧୭୯
ମଇତ୍ର ଛତ୍ରୀଗୁରୁ ଦେବଗୁରୁ ମିତ୍ରଗୁରୁ ଆବର ବେଦଗୁରୁ
ଗୁରୁ ଗୁରୁ ପରମଗୁରୁ ତୁ ମାନ ଯେ ଉଦ୍ଧାରୁ ।୧୮୦
ମଇତ୍ର ଭାନୁମତୀ ସୟେମ୍ବରେ ନ କଲୁ ତୁ କାହା
ସମରେ ଜିଣିଲୁ ଅଠର ସହସ୍ର ନରନାହା ।୧୮୧
ମଇତ୍ର ଆଂକୋଚିତ କେଶ କପାଳ ଯେକ ଖଣ୍ଡ
ଅବଲୋବନ ନୟନ ଜଗତ ଦର୍ପ ଷଣ୍ଢ ।୧୮୨
ମଇତ୍ର ପହରକ ମଧ୍ୟେ ଜିଣିଲୁ ସମସ୍ତ ମହୀପତି
ମୋତେ ଆଣିଦିଲୁ ଯେ ସାଧବୀ ଭାନୁମତୀ ।୧୮୩
ଅନେକ ଭଗତି ମଇତ୍ର ତୁ ଦେବତା ବ୍ରାହ୍ମଣେ
ନିଧନ ହୋଇଲୁ ତୁ ମୋହୋର କର୍ମ ମନ୍ଦପଣେ ।୧୮୪
ମୁହିଂ ଯେ ମଇତ୍ର ତୋତେ ଦାନ ମାଗୁଅଛି
ରଣଯାଗ ବିନୁ ମୋତେ ନୋହୁ ଆନ କିଛି ।୧୮୫
ଭୋ ମଇତ୍ର ମୋତେ ଅନ୍ଧାର ଦିଶିଲା ଦଶଦିଶ
ତୋହୋର ମଉନବ୍ରତେ ବୁଡ଼ିଲା ଧୃତିରାଷ୍ଟ୍ରର ବଂଶ ।୧୮୬
ମଇତ୍ର ମୋହୋର ଯେ ମୁଖ ମଳିଣ କ୍ଷଣେହେଂ ନ ସହୁ
ଯେହେନ୍ନେକ କ୍ରୋଧେ କିଂକେ କଥା ତ ନ କହୁ ।୧୮୭
ଅଭୟେ ପୁରୁଷ ତୁ ବାଚାୟେ କହ ମୋତେ ଫିଟୁ

ଶଲ୍ୟ ରଥ ସାଜି ଅଇଲେଣି ତୁ କିଂପେ ନ ଉଠୁ ।୧୮୮
ମୃତୁପିଣ୍ଡ ଧରି ରାଜା ଲଗାଇଲା ହୃଦେ
ଭୂମିରେ ପଡ଼ଇ ରାଜା ମାନ ଯେ ଗୋବିନ୍ଦେ ।୧୮୯
ପରଦୁଖେ କାତର ମଇତ୍ର ତୋହୋର ନାମ ଗୋଟି
ମୋହୋର ଦୁଖ ଦେଖି କିଂପେ ନ ଚାହୁଂ ନେଉଟି ।୧୯୦
ଅନ୍ଧର ଲଉଡ଼ି ତୁ ଲୁଚିଲୁ କାହିଂ ମିତ
ଜଗୁଜନ ସୋଦର ତୁ ଅନାଥର ନାଥ ।୧୯୧
ଅନେକ କ୍ରୋଧ କଲାକ ମାନ ଯେ ଗୋବିନ୍ଦ
ମୃତପିଣ୍ଡ ଛାଡ଼ି ରାଜା କପାଳେ କର ଧିନ୍ଦ ।୧୯୨
ମଇତ୍ର ଯେଡ଼େକ ନିର୍ଦ୍ଦୟା ବୋଲି ଜାଣନ୍ତି ଯେତେ ତୋତେ
ପାଣ୍ଡବେ ବିବାଦୀ ମୁଂ ହୁଅନ୍ତି କିସ ଅର୍ଥେ ।୧୯୩
ଅନେକ କ୍ରୋଦ ସେ ତହିଂ କରନ୍ତେ କୁରୁପତି
ନ ସରଇ କ୍ରୋଧ ଆସି ଅଢ଼ାଇ ପ୍ରହର ରାତି ।୧୯୪
ସମସ୍ତେ ରହିଲେ ଯେ ସେହି ରଣଭୂଇଂ
ଦିଗାମ୍ବର ହୋଇ ବିକଳେ ରୋବଇ କୁରୁନାଥ ସାଇଂ ।୧୯୫
ପାଣ୍ଡବ ବଳ ସମସ୍ତେହେଂ ହୋଅନ୍ତି ହରଷ
ଉଛବ କରାଇଲେ ଯେ ଦେବ ଧର୍ମଶିଷ ।୧୯୬
ଦିଯୋଧନ ବୋଇଲା ମାତୁଳ ଶଇଲ୍ୟ
ପ୍ରାଣର ମିତ କର୍ଣ୍ଣ ଥିଲା ତୋହୋର ଯେ ତୁଲ ।୧୯୭
ତୋହୋର ପରା ସାରଥି ଥାଉଂ କର୍ଣ୍ଣ ନାଶ ଗଲା
ତୁମ୍ଭର ଦେଖନ୍ତେ ମୋହୋର ସମ୍ପଦ ବୁଡ଼ିଲା ।୧୯୮
ମୋତେ ଯେକଛତ୍ର ରାଜ୍ୟ ଦେବ ବୋଲି ଯେ ବୋଇଲ
ବିପାକ କର୍ମକୁ ମୋର ସମସ୍ତେ ତୁନି ଯେ ହୋଇଲ ।୧୯୯
ରାଜାର ବଚନେ ଯେ ଶଲ୍ୟ ମହାରଥୀ
ଆଜ ମୋତେ ମୁକୁଟ ବାନ୍ଧ ହୋ ନୃପତି ।୨୦୦
ସଙ୍ଗେ ସଖା ମୋର ଥାଆନ୍ତୁ ସେ ଶକୁନି
ଆଜ ନାଶ କରିବି ମୁଂ କୃଷ୍ଣ ଫାଲଗୁନି ।୨୦୧
ଶଲ୍ୟର ବଚନେ ଯେ ଧୃତିରାଷ୍ଟ ତାଟ
ଶଲ୍ୟର ଶିରେ ରାଜା ବାନ୍ଧିଲା ମୁକୁଟ ।୨୦୨
ଅନେକ କଣୟ ଭୂଷଣ କଲା କାୟେ
ଦିଶିଲେ ଶଲ୍ୟ ଯେ କାର୍ତିକେଶ୍ୱର ପ୍ରାୟେ ।୨୦୩
ପାଞ୍ଚଲକ୍ଷ ରଥୀ ଯେ ଦଶଲକ୍ଷ ହାଥୀ
ବିଂଶଲକ୍ଷ ଅଶ୍ୱ ନବକ୍ଷଉଣୀ ପାଦାନ୍ତି ।୨୦୪
ଦୁରଶ ବାସ୍ତରୀ କ୍ଷଉଣୀ ମାନଗୋବିନ୍ଦର ବଳ
ନବକ୍ଷଉଣୀ ମାତ୍ର ଅଛି ପଡ଼ିଲେଣି ସକଳ ।୨୦୫
ପଦ୍ମେକ ରଥୀ ଥିଲେ ପଡ଼ିଲେନି ସମସ୍ତ
ସର୍ବେ ଅଛି ସଖା ପାଞ୍ଚଲକ୍ଷ ରଥ ।୨୦୬
ନବପଦ୍ମ ଗଜ ଯୋଦ୍ଧା ଆଦି ଯେ ଭିଆଣେ
ଦଶଲକ୍ଷ ଗଜ ଯୋଦ୍ଧା ଅଛି ପଡ଼ିଲେଣି ସବୁ ରଣେ ।୨୦୭
ଅଶିପଦ୍ମ ବାଜୀ ଯୋଦ୍ଧା ସମର ବେଳେ ଥିଲା
ସମସ୍ତେ ପଡ଼ିଲେ କୋଡ଼ିଯେ ଲକ୍ଷ ବାଜୀ ଯୋଦ୍ଧା ରହିଲା।୨୦୮
ସେ ସନ୍ୟ ଘେନିଣ ଯେ ଶଲ୍ୟ ମହାରଥୀ
ସମର ଶେଷକାଳେ ସେ ହୋଇଲେ ସେନାପତି ।୨୦୯
ଯେସନେକ ବାରଣ ଯହୁଂ ପାଇଲେ ପାଣ୍ଡବେ
ସମରେ ସଜ ହୋଇଲେ ଅର୍ଜୁନ ବାସୁଦେବେ ।୨୧୦
ଭୀମ ନକୁଳ ମୂଳେ ସହଦେବ ଦୁର୍ଦ୍ଧକ୍ଷ
ଧୃଷ୍ଟଦ୍ୟୁମନ ତୁଲେ ବଳ ନବଲକ୍ଷ ।୨୧୧
ଯେତେକ ସଇନି ଯେ ଘେନିଣ ପଞ୍ଚୁବୀରେ
ବିଜେ କଲେ ଧର୍ମରାଜା ସାଂଗ୍ରାମ ଭୂମିରେ ।୨୧୨
ଦେଖିଲେ ପଚ୍ଛିମ ଭାଗେ ଶଲ୍ୟ ଦିବ୍ୟମୂର୍ତ୍ତି
ଶଂକୁନିର ତୁଲେ ଅଛି ନବ ସହସ୍ର ରଥୀ ।୨୧୩
ଶଲ୍ୟଂକ ଛାମୁରେ ନେଇ ନନ୍ଦିଘୋଷ ରଥ
ଶଂକୁନିର ଆଗେ ମିଳିଲା ମଦନା ଦେବୀର ସୁତ ।୨୧୪
ସହଦେବ ବୋଇଲା ମାମୁଂ କେମନ୍ତେ ତୋର ବୁଦ୍ଧି
ତବ ପିତୃ କାର୍ଯ୍ୟ ତ ହୋଇଲା ସବୁ ସିଦ୍ଧି ।୨୧୫
ଯେବେ ରାଜ୍ୟକୁ ତୋର ଯାଅ ଯା ଅପସରି
ସୁଖେଣ ରାଜ୍ୟ କର ଯାଇ ଗାନ୍ଧାର ଅଧିକାରୀ ।୨୧୬
ମୁକୁଟ ବାନ୍ଧିବା ଦେଖି ମୁଂ ହୋଇଲି ବିଷାଦ
ଅବଶେଷ କାଳେ ଅବଶ୍ୟଟି ହୋଅଇ ପରମାଦ ।୨୧୭
ଶଂକୁନି ବୋଇଲା ବାବୁ ଶୁଣ ହେ ସହଦେବ
ଆଦିହୁଂ ମୁଂ ତୋତେ କହି ନାହିଂକି ପ୍ରିୟଭାବ ।୨୧୮
ମୋର ପିତା ଗାନ୍ଧାରସେନ ଯେହାକୁ ନ କଲା କିଛି ଦୋଷ
ଅଦଭୁତେ ପଥର ଘରେ ଭରି ନାଶକଲା ମୋର ବଂଶ ।୨୧୯
ଶୟେ ଶତାଣୋଇଂ ଜଣ ପଶିଲେ ପଥର ଘରେ
ଶୟେ ଛୟାଣୋଇ ଜଣ ମଲେଟି ସେହିଠାରେ ।୨୨୦
କୂଟେଣ ଯେକ ମୁହିଂ ପରାଣ ପାଇଲି
ସେହି ରାଗେ କରି ମୁଂ ଯେହାର ବଂଶ ମରାଇଲି ।୨୨୧
ମୁହିଂ ସେ ପଶାଖେଳ କରାଇଲି କପଟ ଯେ କୂଟେ
ମୁହିଂ ସେ ଘରେକ ଭିଆଇଲି ଜଉ ସଜଳସ ଗୁଆଘୃତ
ଛଣପଟେ ।୨୨୨

ମୁହିଂ ସେ ଭୀମସେନକୁ ଖୁଆଇଲି ବିଷଲଡୁ
ମୋହୋର ବୁଦ୍ଧି ବଳେ କୁରୁପାଣ୍ଡବ ସୋହୋଦ୍ର
ପ୍ରାଣ ଛାଡୁ ।୧୨୨୩
ବାବୁ ମୁହିଂ ସେ ସମରେ ମରାଇଲି ଅଭିମନ୍ୟୁ
ପିତାର ବଚନେ ନିଦ୍ରୋହୀ ହୋଇଲି ଚିହ୍ନୁ ଚିହ୍ନୁ ।୧୨୨୪
ବାବୁ ସହଦେବରେ ଯେତେକ ପାତେକ ଅରଜିଲା ଅଛି ମୁହିଂ
କେତେ ସନ୍ୟ ପଡ଼ିଲେନି ଯେ କୁରୁକ୍ଷେତ୍ର ଭୂଇଂ ।୧୨୨୫
ବ୍ରହ୍ମ କ୍ଷତ୍ରିୟ ବଶ୍ୟ ଶୂଦ୍ର ଦତ୍ୟ ଦାନବ ରାକ୍ଷସ
ସନ୍ୟ ସାଖା ଘେନି ପଡ଼ିଲେ ଅଷ୍ଟାଦଶ ବଂଶ ।୧୨୨୬
ଯେତେକ ଯୋଦ୍ଧା ବାବୁରେ ପଡ଼ିଲେ ମୋହୋର ହେତୁ
ଅପସରି ଗଲେ କେମନ୍ତେ ପାର ହେବି ନରକ ପନ୍ଥୁ ।୧୨୨୭
ବାବୁ ଅନେକ ପାତକ କେହି ବଂଶରେ କରିଥିଲେ
ସମସ୍ତ କ୍ଷୟେ ଯାଇ ଅନ୍ନଛତ୍ର ଯାଗ କଲେ ।୧୨୨୮
ବାବୁ ଯେନେକ ପାତକ ଯେବେ କରିଥିବ ବଂଶ
ସମସ୍ତ ତ୍ୟାଜ କରି ଯେବେ ପ୍ରାଣ ଦେଇ ଝାସ ।୧୨୨୯
ବାବୁ ବଂଶରେ ଯେବେ ପାତକ ହୋଇ ଅବଧି
ଯେକ ଚିତେ ଯେ ବ୍ରହ୍ମଗ୍ୟାଂନ ପାରଇ ସାଧି ।୧୨୩୦
ଅଥବା ସମରେ ଯେବେ ଦେଇ ପାରଇ ଝାସ
ତେବେ ସେ ପାର ଯାଇ ନାନା ପାତକର ଦୋଷ ।୧୨୩୧
ଅନେକ ଦୋଷୀ ହୋଇଲି ହତ୍ୟାଯେ ବିବାଦୀ
ଆବର ଶରୀର ଅର୍ଥେ ବ୍ରତିବାକ କିସ ବୁଦ୍ଧି ।୧୨୩୨
ବାବୁ ଅଷ୍ଟାଦଶ ଦିବସର ମଧ୍ୟେ ମୋହର ସମର ଭାଗ
ମାରିବି ତୁମ୍ଭନ୍ତ ଆଜ କରିବି ରଣ ଯାଗ ।୧୨୩୩
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭିତ ସାରଥି ଦେବରାଜ
ନନ୍ଦିଘୋଷ ରଥେ ଯେ କପି କେତନ ଧ୍ୱଜ ।୧୨୩୪
ସମରେ ପଡ଼ିବା ଯେମନ୍ତ ରୂପ ଦେଖି
ବଇକୁଣ୍ଠବାସୀ ହେବା ଅନେକ ପାତକ ଉପେଖି ।୧୨୩୫
ବାବୁ ଯେବଣ ଦିନ୍ନୁଂ କୁରୁ ପାଣ୍ଡବ ପଶିଲେକ ରଣେ
ପୁଷ୍ପକ ବିମାନ ଘେନି ରହିଛନ୍ତି ଦେବଗଣେ ।୧୨୩୬
ବାବୁ ତାରାକ୍ଷୀ ପକ୍ଷୀ ଯେ ଭୀଷ୍ମଂକ ଶରେ ପଡ଼ିଲା
ନକ୍ଷତ୍ର ରୂପ ହୋଇ ସ୍ୱର୍ଗେଣ ବସିଲା ।୧୨୩୭
ବାବୁ ତହିଂର ଅନ୍ତେ ଯେ ପଡ଼ିଲା ଅମ୍ବିକା ନାମେ ଚାଣ୍ଡାଳ
ସେ ନକ୍ଷତ୍ର ହୋଇ ବସିଲା ଦିବି ଯେ ମଣ୍ଡଳ ।୧୨୩୮
ଜୀବନକୁ ନିଆସିଲି ମୁଂ ଶୁଣସି ସହଦେବ
ଅବଶ୍ୟ କରିବା ରୁଣ କାହିଂ ପାଇବା ଯେଡ଼େକ ସୁଲଭ ।୧୨୩୯
ଜୟତୁ ଜୟ ଭାରତ କୁଳ ମଣ୍ଡନ ଶ୍ରୀପୁରୁଷୋତ୍ତମ
ଜଗ ବନ୍ଦନ ନାଥ ମଣି ଜୟତୁ ଶ୍ରୀରାମ ।୧୨୪୦
ସ୍ୱାମୀ ଦୁରାନ୍ତକ ପାତକ ଦର୍ଶନେ ତୋର ଦୁଖ ଖଣ୍ଡି
ଭାରା ନିବାରଣ ନିମନ୍ତେ ଭାରଥ ଯୁଦ୍ଧ ମଣ୍ଡି ।୧୨୪୧
ପୃଥୀ ଆପ ତେଜ ବାୟବା ଆକାଶ
ପଞ୍ଚୁଧାତୁ ମଧ୍ୟେ ତୁ ଧାତୁବାଦ ପୁରୁଷ ।୧୨୪୨
ଯୋଗେଣ ଯୋଗେଶ୍ୱର ନାଥ ପରମାନନ୍ଦ ଯୋଗୀ
ବିବୁଧ ଜନର ନାଥ ଯୁଗାନ୍ତକ କାଳ ଭୋଗୀ ।୧୨୪୩
ଯାବତ କାଳେ ଅନନ୍ତ କୋଟି ଜୀବ ଦାତା
ସମସ୍ତ ଅଶକତ ନାଥ ସମସ୍ତ ଯେକ କରନ୍ତା ।୧୨୪୪
ଜମ୍ୱୋଦ୍ୱୀପ ଭ୍ରଥଖଣ୍ଡ ଦକ୍ଷିଣ ଓଡରାଷ୍ଟ୍ରେ
ନୀଳସୁନ୍ଦର ଗିରି ଦକ୍ଷିଣ ବାରାନିଧି ଉତ୍ତର ତଟେ ।୧୨୪୫
କୋଟିଯେ ତୀର୍ଥ ଘେନି କଳ୍ପବଟ ଛାୟା
କଳିକାଳ ବିଧଂସନ ନୀଳ ଉତ୍ପଳ ଯାର କାୟା ।୧୨୪୬
ସ୍ୱାମୀ ଶ୍ୱେତ ପୀତ କୁଂକୁମ ବିକସିତ ତିନିରୂପ
ସଂସାର ସାଗର ତାରଣକୁ ଧରିଲ ବଉଦ୍ଧ ରୂପ ।୧୨୪୭
କଉତୁକ ସମର କହିଲୁ ଯେ ଭାରଥେ
ଚକ୍ରକୂଟ ପୃଥୀଭାର ଉଶ୍ୱାସର ଅର୍ଥେ ।୧୨୪୮
ସ୍ୱାମୀ ଧୀରଜନ ମାନଂକର ହୃଦୟ କମଳ ମାଳୀ
ବିଘଂସିତ କମଳ ତୋର ନାମ ବନମାଳୀ ।୧୨୪୯
ଦୁଷ୍ଟଜନ ନିବାରଣ ସ୍ୱାମୀ ଧୀରଜ ବକ୍ଷସ୍ଥଳେ
ତବ ପାଦପଦ୍ମେ ମୁଂ ନମଇଂ ସର୍ବକାଳେ ।୧୨୫୦
ସ୍ୱାମୀ ଇହଲୋକେ ପରଲୋକେ ମଇତ୍ରବଧ ଦେଖି
ଯାବତ ଅନ୍ତର ନାଥ ତୁହି ସେ ସର୍ବସାକ୍ଷୀ ।୧୨୫୧
ସ୍ୱାମୀ ଶ୍ରୀ ମହାଭାରଥ ଇକ୍ଷୁଦଣ୍ଡର ମଧ୍ୟବୋଲି
ତବ ଆଶ୍ରେ ଧ୍ୟାନ କରି ପଦ କିଛି ବଖାଇଲି ।୧୨୫୨
ତ୍ରଇଲୋକ୍ୟେ ଅସମ୍ଭବ ଅଗୋଚର ଯାହାର କଥା
ମୁଂ ତାହା ସଂପେ କରି କହିବାକୁ କିସ ସାମରଥା ।୧୨୫୩
ଅନାଦି ମାହେଶ୍ୱରୀ ଶ୍ରୀ ସାରୋଳା ଚଣ୍ଡୀ ଦେବୀ
ଜନ୍ମେ ଜନ୍ମେ ଅଭ୍ୟାସଇ ମୁଂ ତାହାର ଚରଣେ ସେବି ।୧୨୫୪
କୃପାଜଳ ନନ୍ଦିନୀ ନର୍ମଦା ସରସ୍ୱତୀ
ଯମଦଗ୍ନିର ନନ୍ଦନ ଗୁଧିରେ କଲାକ ତ୍ରିପୁତି ।୧୨୫୫
ଯମ୍ବୁଦ୍ୱୀପ ସାର ଭୂଇଂ ମହୋଦଧିର ଇଶାନ୍ୟ କୋଣ ଆଡ଼େ
କନକାବତୀ ପାଟଣା ଚନ୍ଦ୍ରଭାଗା ନଦୀ କଇଛାଡ଼େ ।୧୨୫୬
ବିଜୟେ ପରମ ସାନନ୍ଦେ ପ୍ରସନ୍ନେ ହିଙ୍ଗୁଳା
ତ୍ରୟଲୋକେ ବରଦାତା ଶ୍ରୀ ସର୍ବ ମଙ୍ଗଳା ।୧୨୫୭
ଶ୍ରୀ ଚଣ୍ଡୀ ସାରୋଳା ପାଦେ ଜନ୍ମେ ଜନ୍ମେ ମୁହିଂ ସେବି
ମୁହିଂ ତାଂକ ଚରଣେ ସାରୋଳ ଦାସ କବି ।୧୨୫୮

■■

## ଗଦାପର୍ବ

### ୯୯. ଗୋଳଯୁଦ୍ଧ, ଯୋଗିନୀଗଣଙ୍କର ପ୍ରବେଶ ଦୁର୍ଯ୍ୟୋଧନର ରକ୍ତ ନଦୀ ସନ୍ତରଣ ଓ ଭୀଷ୍ମଙ୍କ ସହିତ ମନ୍ତ୍ରଣା

ବଦୟନ୍ତି ଅଗସ୍ତି ଶୁଣ ବଇବସୁତ ମନୁ ବିଳଂକ ଦେଶ ରାଜା
ଶେଷ ଗଦା ସଂଗ୍ରାମ କଥା କହିବା ବ୍ରହ୍ମଦ୍ୱିଜା ।୧
କୃପ ପଡ଼ିଲା ଉତ୍ତାରେ ସମର ମହାଗୋଳ
ପର ଅପର ବୋଲି ବାରଣ ନ ଗଲା କୁରୁପାଣ୍ଡବ ବେନି ବଳ ।୨
ଭୀମସେନ ଦୁରୁଦକ୍ଷ ଧୃଷ୍ଟ ଯେ ଦ୍ୟୁମନ
ସହଦେବ ସାତ୍ୟକି ଯେ ନକୁଳ ଅରଜୁନ ।୩
ଯେତେକ ଯୋଦ୍ଧା ଅଛନ୍ତି ପାଣ୍ଡବଂକର କତି
ପାଞ୍ଚଅହିତ୍ରତ ରଥ ବେନିଲକ୍ଷ ହାଥୀ ।୪
ନବଲକ୍ଷ ତୁରଙ୍ଗମ ତିନିକ୍ଷଉଣୀ ପାଦାନ୍ତି
ସମରେ ସଖା ନାହିଁ ରାୟେ କୁରୁପତି ।୫
ଲକ୍ଷଣ କୁମାର ତୁଳେ ରାୟେ ଧୃତିରାଷ୍ଟି
ସ୍ୱହସ୍ତା ନାମେ ହାଥୀ ଆବୋରି ସମରକଇଂ କଲା ଦୃଷ୍ଟି ।୬
ଯେକାନ୍ତେ ରାଇଲା ରାଜା ଲକ୍ଷଣ କୁମାର
ସମର ଛାଡ଼ି ପଳା ଯା ମନୋହର ବନସ୍ତର ।୭
ମାନଗୋବିନ୍ଦ ଚରଣେ ଲକ୍ଷଣ ପରିଣାମି
ସବୁନ୍ତି ମରାଇ କିଂପେ ନିସତ ହୋଇଲେ ସ୍ୱାମୀ ।୮
ବେନିଲକ୍ଷ ପାଦାନ୍ତି ବଳ ଅଛନ୍ତି ଆମ୍ଭର
ଯେତେକ ଘେନି ଦେଖି କରିବା ସମର ।୯
ନିଶାକାଳ ଆସି ହୋଇଲା ରୟେଣୀ
ପିତାପୁତ୍ର ହୋଇ ଦେଖି ଆବୋରିବା ସଇନି ।୧୦
ପାଦାନ୍ତି ସୈନ୍ୟ ଆମ୍ଭର ଯେ ହୋଇଲେ ନିରୀମାକ୍ଷୀ
ରଥୀ ଗୋଟିୟେ ନାହାନ୍ତି ପାଣ୍ଡବେ ଗୋଡ଼ାଇ ମାରନ୍ତି ।୧୧
ମଧ୍ୟ ପାତ୍ରପଣେ ଯେ ଅଇଲେ ଦେବହରି
ଜଣେ ଜଣେକେ କେତେ ଅବା ନ ବୋଇଲେ ପୁରସରି ।୧୨
ବହୁତ ଯାହା ଭଜି ତାହା ମେଣ୍ଟିଲ ଯେକାଜଣେ
କେତେକାଳ ପର୍ଯ୍ୟନ୍ତେ ମେଣ୍ଟାଇବ ମରଣେ ।୧୩
ଆପଣେ ଯାହା ଅର୍ଜି ତାହା କର୍ମ ସିନା ବୋଲି
ଆଜ ନିସତ ହୋଇଲେ ଅବଶ୍ୟ ମରିବଟି କାଲି ।୧୪
ମାନଗୋବିନ୍ଦ ବୋଇଲେ ତାହା ମନେ ନ ଭାବ ବସା
ଯେକା ତୋହୋର ବ୍ରତିଥିଲେ ବଂଶ ହୋଇବ ରକ୍ଷା ।୧୫
ଅପାର ପ୍ରବୋଧନା ରାଜା ମାନଗୋବିନ୍ଦ ଯେ ବୋଲି
ରଥରୁ ଓହ୍ଲାଇ ପୁତ୍ର ରେ ପଳା ଯା ବେଗେ ଚାଲି ।୧୬
ବାବୁରେ ମୁହିଁ ଯେ ନାଶକଲି ଗାନ୍ଧାରସେନା ବଂଶ
ଶତ୍ରୁ ବିବାଦୀ ନୁହଇ ଅନମିତେ କଲାଇ ତାଂକୁ ନାଶ ।୧୭
ଯେକା ଜଣେ ଶକୁନି ଯେ ଉବୁରିଣ ଥିଲା
ଉପାୟେ କରିଣ ସେ ମୋର ବଂଶ ମରାଇଲା ।୧୮
ବାବୁ ତୋହୋର ବ୍ରତି କରିବୁ ପିତୃକାର୍ଯ୍ୟ
ଯେକା ଜଣେ ଥିଲେ ତୁ ପାଇବୁ ଅଇଶ୍ୱର୍ଯ୍ୟ ଅଧିରାଜ୍ୟ ।୧୯
ପିତାର ବଚନେ ସେ ଅଗ୍ୟାଂନ ବାଳଶିଷି
ବାହାନ ତେଜ୍ୟାକରି ପଳାଇ ସେ ଗୋଳଭିତରେଣ ପଶି ।୨୦
ସମ୍ପୂର୍ଣ୍ଣ ତିନିପ୍ରହର ହୋଇଅଛି ରାତି
ପଳାଇଲା ଲକ୍ଷ୍ମଣ କୁମାର ଉତ୍ତରକଇଂ ମୂର୍ତ୍ତି ।୨୧
ନିସତ ହୋଇ ଯାଆନ୍ତେ ସମର ଉପେଖି
ପଳାବନ୍ତେ ଧୃଷ୍ଟଦ୍ୟୁମନ ତାହାକଇଂ ଦେଖି ।୨୨
ଧୃଷ୍ଟଦ୍ୟୁମନ ମୂଳେ ସାତ୍ୟକି ବେନି ଯୋଧି
କଉରବଳ ସଇନି ଆସୁଛନ୍ତି ଖେଦି ।୨୩
ଅନିର୍ଯ୍ୟାପ ଯୁଦ୍ଧେ ପଡ଼ନ୍ତି ଅନେକ ମହାରଥା
ସେନାପତି ବିହୁନେ କେହି ନୋହିଲେ ଆବୋରନ୍ତା ।୨୪
ପଳାବନ୍ତି ସଇନି କେହି ନ ରହନ୍ତି ଆଗ
ପାଣ୍ଡବ ବଳ ସଇନି ସମସ୍ତେ ହୋଇଲେ ମତ୍ତବ୍ୟାଘ୍ର ।୨୫
ଉତ୍ତର ଆଡ଼େ ଥିଲେ ସାତ୍ୟକି ଧୃଷ୍ଟ ଯେ ଦ୍ୟୁମନେ
ପଛିମେ ଦୁର୍ଦକ୍ଷ ଯେ ଆବର ଭୀମସେନେ ।୨୬
ନନ୍ଦିଘୋଷ ରଥ ଯେ ପୂର୍ବଆଡ଼େ ଘୋଟି
ଦେଖିଲେ କୁରୁବଳ କଲେକ ଶରବୃଷ୍ଟି ।୨୭
ଲକ୍ଷଣ କୁମାର ଯେ ପଳାଇ ନୁଆରିଲା
ଧୃଷ୍ଟଦ୍ୟୁମନ ଛାମୁରେ ଯାଇଂଣ ପଡ଼ିଲା ।୨୮
ଯୁଗତେ ତିନିପହର ହୋଇଛି ଅନ୍ଧାର ରୟଣୀ
ଭୟେଣ ଯାନ ବାହାନ ତେଜି ପଳାଉଛନ୍ତି କୁରୁବଳ ସଇନି ।୨୯
ଧୃଷ୍ଟଦ୍ୟୁମନ ମାରି ଆସନ୍ତେଣ ବଳ
ରଥୀ ପାଦାନ୍ତି ଯେ ହୋଇଛନ୍ତି ସର୍ବେ ମହାଗୋଳ ।୩୦
ଭୀମସେନ ଧୃଷ୍ଟଦ୍ୟୁମନ ପିଟୁଛନ୍ତି ସନ୍ୟବଳ
ଚଉକତି ବେଢ଼ିଣ ଯେ ମାରନ୍ତି ଅଚାର୍ଗଳ ।୩୧

ସେହି ସନ୍ୟଗହଳ ମଧ୍ୟେ ଯେ ଲକ୍ଷ୍ମଣ କୁମାର ଥିଲା
ପିଟନ୍ତେଣ ଗଦା ତାହାର ଶିରରେ ପଡ଼ିଲା ।୩୨
ଘାୟେଣ ବିଅର୍ଥ ହୋଇଲା ଭାନୁମତୀର ବଳା
ତାହାର ସଙ୍ଗତେ ପଡ଼ିଲା ସନ୍ୟ ତିନିସହସ୍ର ଅଚାର୍ଗଳା ।୩୩
ଭୀମସେନ ପ୍ରତଗ୍ୟାଂ କହିତ କି ପାରି
ବେନିଭୁଜେ ଦରାଣ୍ଡି ସମସ୍ତେ କଚାଡ଼ି ।୩୪
ପାଦଘାତେ ସଇନି ମର୍ଦ୍ଦାଇ ଗୁଣ୍ଡାକରି
ଗଦାଘାତେ ବୀର ନିରନ୍ତରେ ଅନେକ ସନ୍ୟ ମାରି ।୩୫
ମହାମତ୍ତ ହାଥୀ ଧରି ବୁଲାଇ ବେନି କରେ
ଆକ୍ରେଷି ତାହା ପ୍ରହାର କରନ୍ତି ରଥ ଗଜଂକ ଉପରେ ।୩୬
ଯେସନେକେ ତରୁବର ମହାବାତେ ଲୋଟି
ଗୁଧୀରେ ମାୟେଂସେ ପୃଥ୍ୱୀ କର୍ଦ୍ଦନ ହୋଇ ଉଠି ।୩୭
ନକୁଳ ସହଦେବ ଯେ ଅଛନ୍ତି ଦକ୍ଷିଣେ
କରେଣ ଖଡ଼୍‌ଗ କୋନ୍ତ ଘେନି ମାରନ୍ତି ଯେ ରଣେ ।୩୮
ନକୁଳ ଯେ ପ୍ରହାର କରଇ ତୀଖ କୋନ୍ତ
ଛତ୍ର ପରାୟେ କରି ଧରଇ ଯୋଦ୍ଧାମାନନ୍ତ ।୩୯
ଅସିପତ୍ର ଘେନିଣ ଯେ ମନ୍ତ୍ରୀ ଚୂଡ଼ାମଣି
ଅବିଶ୍ରାମ କରି ସେ ଆସନ୍ତି ସମସ୍ତ ହାଣି ।୪୦
ଅର୍ଜୁନ ବିନ୍ଧଇ ଯେ ତୀକ୍ଷମୁନା ବାଣ
ଶତେ ଶତେ ଛେଦଇ ସେ ଯେକା ପ୍ରହାରେଣ ।୪୧
ଗଜେକ ଆରୋହିଣ ଧର୍ମରାୟେ ଯୁଝେଷି
ଖଡ଼କେ ପ୍ରହାର କଲେ ଯୋଦ୍ଧା ବେନିକୋଟି ।୪୨
ଶେଷ ଗଦାୟେ ଆସି ହୋଇଲା ଗୋଳରଣ
ପର ଆପଣା ବୋଲି ନ ଯାଇ ବାରଣ ।୪୩
ମତ୍ତହାଥୀୟେ ଚଢ଼ି ରାଜା ମାନଚକ୍ରବର୍ତ୍ତୀ
କୁନ୍ତେଣ ପ୍ରହାର କଲା ତିନି ଅହିବ୍ରତ ହାଥୀ ।୪୪
ଦୂରେଣ ଥାଇ ତାହା ଦେଖିଲା ପାଣ୍ଡବ ବୀର ଭୀମା
ଆରେ ଆରେ ମାନଗୋବିନ୍ଦ ଦେଖିବି ତୋହୋର ଗାରିମା ।୪୫
ଆହୋ ଚଇତନ ଗଦା ବୁଲାଇଣ ବ୍ରିକୋଦର ଉଠି
ରାଜାର ହାଥୀ ଉପରେ କୋପେଣ ଗଦା ନେଇ ପିଟି ।୪୬
ଗର୍ଜିଣ ମହାନାଗ ପଡ଼ିଲା ଯହୁଂ ଢଳି
ସେହି ହାଥୀର ତଳେ ମାନଗୋବିନ୍ଦ ଗଲା ଗଳି ।୪୭
ଗଜ ଘଣ୍ଟ ଥିଲା ଯେ ସେହି ହାଥୀର ଗଳାରେ
ଦ୍ରିଯୋଧନ ରାଜା ପଶିଲା ସେ ଘଣ୍ଟର ଭିତରେ ।୪୮

ସେ ଘଣ୍ଟ ଉପରେ ମତ୍ତନାଗ ପଡ଼ିଲାକ ମାଡ଼ି
ଅଶ୍ୱ ସଇନି ପାଦାନ୍ତି ତହିଂ ଉପରେଣ ପଡ଼ି ।୪୯
ଯେସନେକେ କଦଳୀବନ ଯେକାଜଣକେ ଛେଦଇ
ରକତେ କର୍ଦ୍ଦନ ହୋଇ ଉଠିଲା ଦେବୀ ମହୀ ।୫୦
ତହିଂର ଉପରେ ଯେ ବହିଲା ରକତନଈ
ଯେସନେକେ ସପତସିନ୍ଧୁ ସପତଦିଗେ ଭେଦଇ ।୫୧
ଆହୋ ଚଇତନ ଉତ୍ତରଆଡ଼େ ଧୃଷ୍ଟଦ୍ୟୁମନ ସାତ୍ୟକି
ପଛିମ ଆଡ଼େ ଦୁର୍ଦ୍ଧଷ ଭୀମସେନ ଦୁହେଂ ଡାକି ।୫୨
ପୂର୍ବଆଡ଼େ ସମର କରନ୍ତି କୃଷ୍ଣ ପାଥ
ଦକ୍ଷିଣେ ନକୁଳ ସହଦେବ ବେନିଭ୍ରାଥ ।୫୩
ଯେସନେକେ ମଣ୍ଡଳ ହୋଇ ବେଢ଼ଇ କୁଣ୍ଡଳୀ
ମାରି ଲୋଟାକଲେ ଆବର ଛାମୁରେ ଯେହୁ ମିଳି ।୫୪
ରାତ୍ର ହୋଇଲାନି ଆସି ତୃତୀୟ ପ୍ରହର
ସମସ୍ତେ ଶେଷ ହୋଇଲେ ଯେ ଗଦାଯୁଦ୍ଧର ।୫୫
ସମର ଅନିର୍ବାରଣ ଅନ୍ତ ନ ଯାଇ ଯୁଦ୍ଧ
ଶେଷ ଗଦା ସମରେ ନାଚିଲେ ଲକ୍ଷେକ କବନ୍ଧ ।୫୬
ରକତନଦୀ ବହିଲା ପଞ୍ଚବିଂଶ ଯୁଣ ଦୀର୍ଘ
ନବତାଳ ଗଭୀର ଯେ ସାତତାଳ ଉଛର୍ଗ ।୫୭
ରଥମାନେ ଉପୁଚିଆଇଲେ କି ଜାଣି ବୋଇତ
ଗଜ ଅଶ୍ୱମାନ ତହିଂ ଯେ ନାବ ଭେଳା ସଂଜାତ ।୫୮
ଯେ ବିଧି ସମରେ ପାଣ୍ଡବେ ଯେ ସମସ୍ତ କଲେ ନାଶ
କୁରୁବଳ ସଇନି ଆଉ କିଛି ନ ରହିଲା ଲେଶ ।୫୯
ଦୁଇଶ ବାଆସ୍ତୋରି କ୍ଷେଉଣୀ ମାନଗୋବିନ୍ଦର ଥାଠ
ଅଶୀମର୍ଭୁତ ରଥୀ ଅତିହିଂ ମୁରାଟ ।୬୦
ବିଶାଶତେ ପଦ୍ମ ଗଜଯୋଦ୍ଧା ମାହୁନ୍ତହିଂ
ସହସ୍ରେ ସାଗର ଅଶ୍ୱବଳ ପଡ଼ିଲେକ ତହିଂ ।୬୧
ସତାଣୋଇ ସହସ୍ର ପୁଣି ବଳ ଯେ ପାଦାନ୍ତି
ଅଷ୍ଟାଦଶ ଦିବସ ସମରେ ଯେହା ପାଣ୍ଡବେ ବିକୋଟି ।୬୨
ପାଣ୍ଡବଂକ କଟିରେ ବାସ୍ତୋରୀ କ୍ଷଉଣୀବଳ
ସର୍ବେ ଦୁଇ କ୍ଷଉଣୀ ରହିଲେ ଆଉ ପଡ଼ିଲେ ସକଳ ।୬୩
ଅଶୀଲକ୍ଷ ଯୋଦ୍ଧା ଥିଲେ ପାଣ୍ଡବଂକର କଟି
ସତୁରୀ ନବଲକ୍ଷ ଯୋଦ୍ଧା ପଡ଼ିଲେ ଲକ୍ଷେକମାତ୍ର ବ୍ରତୀ ।୬୪
ପଞ୍ଚମରର୍ଭୁତ ଯେ ଅଶ୍ୱଯୋଦ୍ଧାମାନ
ଲକ୍ଷେ ତିନିସହସ୍ର ଯୋଦ୍ଧା ରହିଲେ ପଡ଼ିଲେ ଆଉ ଜାଣ ।୬୫

ଗଜ ଯୋଦ୍ଧାମାନ ପାଣ୍ଡବଂକର ପଞ୍ଚ ଯେ ମେବଛ
ସମସ୍ତ ପଡ଼ିଲେ ରହିଲେ ପାଞ୍ଚଲକ୍ଷ ।୬୬
ଚାରି ଜଣ। ତିନିସହସ୍ର ଯୋଦ୍ଧା ଥିଲେ ପାଣ୍ଡବଂକର କତି
ସମସ୍ତେ ପଡ଼ିଲେ ଯେକା ଧୃଷ୍ଟଦ୍ୟୁମନ ବର୍ତ୍ତି ।୬୭
ଦୁଇ କ୍ଷଉଣୀ ସନ୍ୟ ଘେନି ଶରଣ ପଶିଲା ଦୁର୍ଦକ୍ଷ
ତାହାର ସନ୍ୟମାତ୍ରକ ହୋଇଅଛି ରକ୍ଷ ।୬୮
ଯହୁଂ ନିଶବଦ ହୋଇଲା ରଣରଙ୍ଗଭୂଇଂ
ବେଢ଼ିଣ ଲୋଡ଼ନ୍ତି ଚଉକତି ଜଣେହେଂ କେହି
ଜୀଇଂଲା ନାହିଂ ।୬୯
ବାହୁଡ଼ନ୍ତି ପାଣ୍ଡବେ ଯେ କରିଣ ଜୟଶଙ୍ଖ ଧ୍ବନି
ମହାଗୋଳ ଶବଦ ଯେ ଶୁଭଇ ସ୍ୱର୍ଗ ତିନି ।୭୦
ଚେରଘଡ଼ି ପ୍ରବେଶ ହୋଇଲା ଆସି ନିଶି
ରଣ ଜୟେ କରି ପାଣ୍ଡବେ ଇନ୍ଦ୍ରପ୍ରଶସ୍ତେ ଯାଇ ପଶି ।୭୧
ଯେମନ୍ତର ସମୟେ ବିଜୟେ କଲେ ସର୍ବଯୋଗ୍ନୀ
ଚଉଷଠୀକୋଟି ଯୋଗ୍ନୀ ନବକୋଟି କାନ୍ତ୍ୟାୟେନୀ ।୭୨
ରୁଦ୍ରାୟେଣୀ ମୂର୍ତ୍ତି ନବକୋଟି ଭଇରୋବୀ
ବ୍ରହ୍ମାୟେଣୀ ମୂର୍ତ୍ତି ତିନିମର୍ଭୁତ ଯେ ଦେବୀ ।୭୩
ପାଞ୍ଚଲକ୍ଷ ମୂର୍ତ୍ତି ଯେ ଅଟନ୍ତି ଇନ୍ଦ୍ରାୟଣୀ
ଚଉଦଲକ୍ଷ ରୂପ ହୋଇଲେ ନାରାୟେଣୀ ।୭୪
ବେନିଲକ୍ଷ ଡାକେଣୀ ପଞ୍ଚଲକ୍ଷ ଶ୍ରୋଣେହା
ବୃନ୍ଦେକ ପିଚାଶୁଣୀ ଖର୍ବେକ ରୂପ ବରେହା ।୭୫
ନବଲକ୍ଷ ମୂର୍ତ୍ତି ଯେ ଦେବୀ ଚାମୁଣ୍ଡା
ମୃତ୍ୟୁପିଣ୍ଡ ଆବୋରିଣ କରେ ଖପର ଖଣ୍ଡା ।୭୬
କଂକାଳୀ ମୂର୍ତ୍ତି ଯେ ନବକୋଟି ଦେବୀ
ବେତାଳୀ ମୂରତି ଯେ ପଦ୍ମେକ ସମ୍ବର୍ବି ।୭୭
ଅନନ୍ତୀ ବିଜୟା ସେ ତାରେଣୀ ତ୍ରିପୁରା
ରକ୍ଷେଣୀ ଭକ୍ଷେଣୀ ଅମ୍ବିକା ଚାଚିକା ଉଗ୍ରତାରା ।୭୮
ମର୍ଦ୍ଦଳ ଘୁମୁରା ଯେ ବିଜିଘୋଷ ଦାଉଣ୍ଡି
ଅଷ୍ଟବକ୍ରହୋଇଣ ନାଚନ୍ତି ଖେମଟା ନାଟ ଖଣ୍ଡି ।୭୯
ଡାକନ୍ତି ଡାକେଶ୍ୱରୀ ଯେ ଶବଦ କିଳିକିଳି
ଭକ୍ଷନ୍ତି ମେଦ ମେଦା ଯେ ଦିଅନ୍ତି ହୁଳହୁଳି ।୮୦
ସମସ୍ତ ଦେବୀମାନେ ବାରୁଣାବନ୍ତେ ରୁଣ୍ଡ
ଦଶନହ ଚାପନ୍ତେ କମ୍ପଇ ବ୍ରହ୍ମାଣ୍ଡ ।୮୧
ଆହୋ ଚଇତନ ଯହୁଂ ନିଶବଦ ହୋଇଲା କୁରୁକ୍ଷେତ୍ର ଭୂଇଂ
ଘଣ୍ଟତଲୁ ବାହାର ହୋଇଲା ମାନଗୋବିନ୍ଦାଇ ।୮୨
ଉଭା ମାନଗୋବିନ୍ଦ ରକ୍ତନଦୀ ପୂର୍ବଆଡ଼େ
ଭାରଥ ଶୁଭ ଥମ୍ଭରେ ଉଠଇ ଉପରେ ।୮୩
ରକତନଦୀକି ଚାହିଂଣ ରଜା ମାନ ଯେ ଗୋବିନ୍ଦ
ଚଉକତି ଚାହିଂ ରାଜା କପୋଳେ କର ଧ୍ୱନ୍ଦ ।୮୪
ଭୋ ଦଇବ ଯେଡ଼େବଡ଼ ସମ୍ପଦ ମୁଂ ଅର୍ଜ୍ଜିଲି ପୂର୍ବ ପୁଣ୍ୟବଳେ
ଅଳପେ ବୁଡ଼ାଇଲି ମୁଂ କର୍ମର ଅବଳେ ।୮୫
ଶୁଭ ଥମ୍ଭେ ଉଠି ସନ୍ତାପ କରଇ ଯେ ରାଜା କୁରୁରାୟେ
ଦେଖିଲା ଧୁଶାସନ ଭାସି ଆସୁଅଛି ସୁୟେ ।୮୬
କୋଳକରି ଧଇଲା ଯେ ମାନଚକ୍ରବ୍ରତୀ
ବାବୁ ଧୁଶାସନରେ ପୃଥୀକି ଯେକ ଛତ୍ରୀ ।୮୭
ବାବୁରେ ଧୁଶାସନ ଗୁଣବନ୍ତ ଶୂରବନ୍ତ ବିବେକ ଧାର୍ମିକ
ଛତ୍ରିୟ ମଣ୍ଡଳେ ତୋର ନାମ ଧରି ଯେକ ।୮୮
ବାବୁ ଦ୍ରୋପତୀର କେଶ ଧରି ଆଣିଲୁ ଅବନୀଳେ
ବିବସନ କଲୁ ଆଣି ମହାସଭା ତଳେ ।୮୯
ବାବୁ ମଣି ହରଣେ ନିଷାଦପୁର ଭାଞ୍ଜି
କେଶୀ ଦାନବର ତୁ ବଳଦର୍ପ ଗଞ୍ଜି ।୯୦
ବାବୁ ବେନିଭୁଜ ନାହିଂରେ ତୋହୋର ଶରୀରେ
ଦ୍ରୋପତୀର ନିମନ୍ତେ ରେ ଓପାଡ଼ିଲା ବ୍ରିକୋଦରେ ।୯୧
ହାଥରୁ କଂକଣ ଯେ ତୋହୋର ପଡ଼ିଲାକ ଭୂମିରେ
ଶତ ଶତ ହାଥୀ ଗଳିଗଲେ ତଥିର ଭିତରେ ।୯୨
ବାବୁ ଶତ୍ରୁ ମାନମର୍ଦ୍ଦନ ଯାହାର ବାନାଟି ବୀରଧ୍ୱଜ
ବାରରାଷ୍ଟ୍ର ଛତିଶମଣ୍ଡଳେ ମହିମା ତୋହୋର ସାଧୁ ।୯୩
ବାବୁ କ୍ଷଣେହେଂ ନ ସହୁ ରେ ମୋହୋର ଅଭିମାନ
ରଣମନ୍ଥନ ପଦ ତୋହୋର ଧୁଶାସନ ।୯୪
ତିନିଭୁବନେ ବିକଶିତ ତୋହୋର ଯେ ତେଜ
ରତିରଙ୍ଗେ ନାଗର ତୁ କାମେନୀ ମନସିଜ ।୯୫
ବାବୁ ଯେତେ ଗୁଣ ପ୍ରତଗ୍ୟାଂ ଥୋଇଲୁ ତୋହୋର ରେ କାହିଂ
ଯେ ରକତ ନଦୀରେ ଆସୁଅଛୁ ହୋଇଣ ଉତ୍ତାନଶାୟୀ ।୯୬
ବାବୁ ଆବର ଜୀବନରେ ମୋହୋର କିସ କାର୍ଯ୍ୟ
ତୁମ୍ଭନ୍ତ ମରାଇ ମୁରେ ବ୍ରତିଅଛି ନିର୍ଲଜ ।୯୭
ବାବୁ ଆକାଶେ ଖେପୁଅଛି ରକତ ନଦୀ ଲହରୀ
ଯେ ରକତ ନଦୀରୁ ମୁଂ କେମନ୍ତ ହୋଇବିଟି ପାରି ।୯୮
ବାବୁ ଗୁଣ ତୋର କହିବାକୁ ରାତ୍ର ଆଉ ନାହିଂ

ଯେ ରକତ ନଦୀରୁ ଭାଇ ନେବୁକି ପାରିଆଇ ।୯୯
ଭେଳା କରିଣ ପଡ଼ିଲା ସେ ଧୁଶାସନର ଉପରେ
ଅଚେଷ୍ଟେ ବୁଡ଼ିଲା ରାଜା ତିନିତାଳ ଗଭୀରେ ।୧୦୦୦
ଛାଡ଼ିଲା ଧୁଶାସନକୁ କୂଳରେ ଥାଇ ଚାହିଁ
ଉପୁଚିଆଇ ଆସୁଅଛନ୍ତି ସତାଣୋଇ ଭାଇ ।୧୦୦୧
ସବୁନ୍ତିହିଁ ଘାନ୍ତିଯେ ଧରଇ କୋଳକରି
ରୋଧିର ନଦୀରେ ମେଲିଦେଇ ଗୁଣନ୍ତ ସୁମରି ।୧୦୦୨
ବାବୁ ବୀରବର ପ୍ରତଗ୍ୟାଂରେ ତୁମ୍ଭର ସର୍ବଦା
ନାଶକର ଦର୍ପଗଞ୍ଜରେ ତୁମ୍ଭର କରେ ଥାନ୍ତେ ଗଦା ।୧୦୦୩
ବାବୁ ତୁମ୍ଭେ ବଡ଼ ଗୁଣବନ୍ତ ମୁଂ ଅଟଇ ଅପରାଧୀ
ଯେ ରକତ ନଦୀ ପାର ହୋଇବାକୁ କହ କିସ ବୁଦ୍ଧି ।୧୦୦୪
ବାବୁ ତୁମ୍ଭ ଗୁଣ କହିବାକୁ ନାହିଁ ମୋତେ ଦିନ
ପୁଣି ଦେଖିଲା ଉପୁଚିଆଇ ଆସୁଅଛି ବୀର କର୍ଣ୍ଣ ।୧୦୦୫
ରୋଧିର ନଦୀରେ ତାର ତେଜ ଯେ ବିକାଶି
ବାଳ ଅର୍କ ପ୍ରାୟେକ ତାହାର ଶରୀର ଦିଶି ।୧୦୦୬
କୋଳକରି ଧଇଲା ତାହା କୁରୁବଇ ନାଥ
ହା ହା ମଇତ୍ର ମୋହୋର ପ୍ରାଣର ପଞ୍ଚଭୂତ ।୧୦୦୭
କୋଇନ୍ତାଂକର ଜ୍ୟେଷ୍ଟପୁତ୍ର ଅଟୁ ତୁ ଯୁଗତେ
ସୋଦରନ୍ତ ଛାଡ଼ିଣ ମଇତ୍ର ଆଶ୍ରେକଲୁ ମୋତେ ।୧୦୦୮
କୋଇନ୍ତାଂକର ବୋଲ ନ କଲୁ ବୀରମଣି
ଆଦ୍ୟେ କଳପି କରି ତୋତେ ସଞ୍ଚିଲେ ଦୀନମଣି ।୧୦୦୯
ଅମୃତ କୁଣ୍ଡଳ ବଜ୍ର କପଚ ଅଭେଦ ଛଉରୀ
ଦିନକର ନାଥ ତୋତେ ଯେହେନେକେ ସଞ୍ଚିତ କରି ।୧୦୧୦
ଯାହାର ପାଦଭାରା ନ ସହଇ ମେଦିନୀ
ନିତ୍ୟାପତି ପୂଜା କରଇ ତୋତେ ଶତେଭାର
ସୁବର୍ଣ୍ଣ ଘେନି ।୧୦୧୧
ଗାଢ଼େ ଚରଣ ପଡ଼ନ୍ତେ ମୁଖରୁ ବହଇ ଶ୍ରୋଣି
ଚରଣ ଭାରା ତୋର ନ ସହଇ ଧରଣୀ ।୧୦୧୨
ଶତେଭାର ରତ୍ନ ଯେ ଦାନ ଦେଉ ନୀତି
ଦୁଖୀଜନ ଦେଖିଣ ସେ ବ୍ୟାକୁଳ ତୋର ମତି ।୧୦୧୩
ବ୍ରାହ୍ମଣ ରୂପ ଧରି ତୋତେ ମାଗିଲେ ଆଖଣ୍ଡଳ
ଅଭେଦ ଛଉରୀ ଦିଲୁ କପଚ କୁଣ୍ଡଳ ।୧୦୧୪
ଗୋବିନ୍ଦେ ପ୍ରାର୍ଥନା କଲେ ବ୍ରାହ୍ମଣ ରୂପ ଧରି
ଭୋଜନେ ତ୍ରିପୁତି କଲୁ ପୁତ୍ର ବିଶିକେଶନକୁ ମାରି ।୧୦୧୫
ମଇତ୍ର ଅନେକ ଦାନ କଲୁ ଯେ ବୁଡ଼ାଇଲୁ ସଂପ୍ରଧି
ମୋହୋର ବ୍ରତିବାକୁ ଯେବେ କରୁ କିନା ବୁଦ୍ଧି ।୧୦୧୬
ଅନେକ କାଳ ମଇତ୍ର ସମ୍ଭାଳିଲୁ ମୋତେ
ଯେବେ ରକତ ନଦୀରୁ ପାର ହୋଇବି କେମନ୍ତେ ।୧୦୧୭
ମଇତ୍ର ଦାନେ ଶୂରବନ୍ତ ଖାଣ୍ଡେଣ ଶୂରବନ୍ତା
ନବଦ୍ୱୀପ ସପତ ସାଗରେ ପଡ଼ଇ ତୋହୋର ଯେ କଥା ।୧୦୧୮
ଅପାର ଗୁଣ ତୋହୋର କହିତେ ନାହିଁ ବେଳ
ରୟଣୀ ପାଇଲେ ନ ବ୍ରତଇ ଜାଣିଲେ ପବନ ଦୁଲାଳ ।୧୦୧୯
କୋଳକରି କର୍ଣ୍ଣର ଉପରେ ପଡ଼ଇ ମାଡ଼ି
ରକତ ନଦୀରେ କର୍ଣ୍ଣ ପଡ଼ିଲାକ ବୁଡ଼ି ।୧୦୨୦
ଛାଡ଼ଇ ମାନଗୋବିନ୍ଦ ଚଳଇ ତଡାବେଗେ
ଦ୍ରୋଣଂକର ପିଣ୍ଡ ଆସୁ ଦେଖିଲାକ ଆଗେ ।୧୦୨୧
ଆହା ଗୁରୁ ବୋଲି ଯେ ରୋବଇ କୁରୁପତି
ତୋହୋର ବିଦ୍ୟାଯେ ଆମ୍ଭେ ହୋଇଲୁ ଯେତେ ଛତ୍ରୀ ।୧୦୨୨
ପ୍ରଶୁରାମକଇଂ ତୋଷି ପାଇଲୁ ପ୍ରତିଗ୍ରହ
ଇନ୍ଦ୍ରଦେବତା ତୋତେ ସମରେ ନୋହେ ରହ ।୧୦୨୩
ଅପାର ସେନେହ ଯେ କର ଅର୍ଜୁନକୁ
କାଳେଣ ପ୍ରାଭବ ସେ କଲାଟି ଗୁରୁ ତୁକୁ ।୧୦୨୪
ଭରଦ୍ୱାଦଶଂକ ନନ୍ଦନ ଯେ ଉତ୍ତମ ବ୍ରାହ୍ମଣ
ଚାରିବେଦେ ନିରିଜିତ ଯାଗ ଯଗ୍ୟଂ ବରଣ ।୧୦୨୫
ଆବର ବିଶେଷ ଅଟନ୍ତି ବିଦ୍ୟାଗୁରୁ
ବ୍ରହ୍ମା ଶଂକା କରଇ ଦେବ ଯୋଗର ମନ୍ତ ପଢୁ ।୧୦୨୬
ଯେତେବଡ଼ ବ୍ରହ୍ମଗୁରୁ ବାପକୁ ମାଇଲେ ପାଣ୍ଡବେ
ଧର୍ମ ବର୍ଜ୍ଜୁତ ହୋଇଲେ କାଳ ଅବଦି ଯେବେ ।୧୦୨୭
ଗୁରୁ ହେ ପାଣ୍ଡବନ୍ତ ମାରିବୁ ବୋଲି ଅଶୀସହସ୍ର ବଳ ଧନୁ ବହୁ
ନିର୍ଦ୍ଦୟା ହୋଇଣ ତୁ କିଂପା ମୋତେ କଥା ନ କହୁ ।୧୦୨୮
ଅପାର ଯେ ଗୁଣ ତୁମ୍ଭର ମୋତେ କହିବାକୁ ବେଳ ନାହିଁ
ରାତ୍ର ପାଇଲେ ପାଣ୍ଡବେ ଜାଣିଲେ ନ ବ୍ରତଇ ମୁହିଁ ।୧୦୨୯
ଅପାର ପ୍ରାର୍ଥନା ସେ କୋଳେ ଧରି ବୋଲି
ରକତ ନଦୀରେ ତାହାନ୍ତ ଦିଲା ହାଦେ ପେଲି ।୧୦୩୦
କୋଳ କରି ମାନଗୋବିନ୍ଦ ପଡ଼ିଲାକ ମାଡି
ତିନିତାଳ ଗଭୀରେ ପଡ଼ିଲେ ଗୁରୁ ବୁଡ଼ି ।୧୦୩୧
ବାହୁଡ଼ି ମାନଗୋବିନ୍ଦ ପଡ଼ିଲାକ ଡେଇଂ
ଆଶ୍ରିଜ କୁରୁନାଥ ଶୋଣିତ ନଦୀକି ଚାହିଁ ।୧୦୩୨

କ୍ରୋଧକରି ମାନଗୋବିନ୍ଦ ଚଳଇ ମାନ ଘେନି
ଦେଖଇ ଉପୁଚିଆଇ ଆସଇ ମନ୍ତ୍ରୀବର ଶକୁନି । ।୧୩୩
କୋଳକରି ଧଇଲା ସେ ମାନଚକ୍ରବ୍ରତୀ
ହା ହା ମାତୁଳ ତୁ ଭୂତ ଭବିଷ୍ୟ ଗ୍ୟାଂତା ମନ୍ତ୍ରୀ ।୧୩୪
ପାଣ୍ଡବନ୍ତ ନାଶ କରିତେ କଲୁ ଯେବଣ ବୁଦ୍ଧି
କାଳେ କାର୍ଯ୍ୟ ତୋହୋର ନୋହିଲାକ ସିଦ୍ଧି ।୧୩୫
ଭୋଜନକାଳେ ବିଷଲଡୁ ଖୁଆଇଲୁ ଭୀମକୁ
ବାନ୍ଧି ଜଳେ ମେଲିଦେଲୁ ନାଗୁଣୀ ଖାଇବାକୁ ।୧୩୬
କେତେ ସ୍ନେହ ମାମୁ କରିଥିଲୁ ମୋତେ
ଯେବେ ଯେ ସଂକଟୁ ପାର ହୋଇବି କେମନ୍ତେ ।୧୩୭
ପୁଣ ଜତୁ ଘରେକ ଯେ ଭିଆଇଲୁ କୂଟେ
କଉ ସଜଳସ ଆବର ଗୁଆଘୃତ ଛଣପଟେ ।୧୩୮
ସଙ୍ଗେଣ ବରଗିଲୁ ତୁ ପୁରୋଚନ ପଣ୍ଡାକୁ
ଘର ପୋଡ଼ିଦିଲା ସେ ପାଣ୍ଡବେ ନାଶନକୁ ।୧୩୯
କେଉଂଣ ପୁଣ୍ୟବଳେ ତହୁଂ ଉତୁରିଣ ଗଲେ
ଯେତେବଡ଼ ପ୍ରମାଦରୁ ବଞ୍ଚିଣ ପ୍ରାଣ ସେ ପାଇଲେ ।୧୪୦
କପଟ ପଶାଯେ ମାମୁଂ ଭିଆଇଲୁ ବୁଦ୍ଧିବଳେ
ପାଣ୍ଡବନ୍ତ ବସାଇଲୁ ମୋହୋର ଆସ୍ଥାନର ତଳେ ।୧୪୧
ରାଜ୍ୟଭାର ସମସ୍ତ ଘେନାଇଲୁ କୂଟବୁଦ୍ଧି କରି
ସଭାତଳକୁ ଅଣାଇଲୁ ଦ୍ରୋପତୀ କେଶ ଧରି ।୧୪୨
ବିବସନ କରାଇଲୁ ମାମୁଂ ଆମ୍ଭର ଦେଖନ୍ତେ
ତୋହୋର ଗୁଣ ମାମୁଂ ପାଶୋରିବି କେମନ୍ତେ ।୧୪୩
ଯେବେ ବୁଦ୍ଧି ଯେକ ମାମୁଂ କହ କିନା ମୋତେ
ରୋଧିର ନଦୀରୁ ପାର ହୋଇବି କେମନ୍ତେ ।୧୪୪
ଅପାର ଗୁଣ ତୋହୋର କହିତେ ବେଳନାହିଂ
ରାତ୍ର ପାଇଲେ ମୋତେ ମାରିବେ ପାଞ୍ଚଭାଇ ।୧୪୫
ଶକୁନି ଉପରେ ରାୟେ ପଡ଼ିଲାକ ମାଡ଼ି
ପାଞ୍ଚତାଳ ଗଭୀରେ ଶକୁନି ଗଲା ବୁଡ଼ି ।୧୪୬
ଅକାଦ ରୋଧିରେ ରାୟେ ବୁଡ଼ିଣ ପଡ଼ିଲା
ବାହାର ହୋଇ ରାଜା ଦଇବ ସୁମରିଲା ।୧୪୭
ରୋବଇ ମାନଗୋବିନ୍ଦ ଦଶଦିଗ ଅନ୍ଧାର
କେସନେକେ ରୁଧିର ନଦୀକୁ ହୋଇବଇଂ ପାର ।୧୪୮
ମହାଶୋକ ଅବସ୍ଥା ପାଇଣ ହୋଇ ମହାଦୁଖୀ
ପୁରୁଷେକ ଭାସି ଆସଇ ମାନଗୋବିନ୍ଦ ହାଦେ ଦେଖି ।୧୪୯
ରୟେଣୀ କାଳେ ଦିଶଇ ଚନ୍ଦ୍ରମା ଉଦେ ପ୍ରାୟେ
ତାଡ଼ ତୋଡ଼ର ବାହୁଟି କଂକଣ ନାନା ଅଳଂକାର
ତାର କାୟେ ।୧୫୦
ଅପୂର୍ବ ପୁରୁଷେକ ସେ ଦେଖିଲା ଯହୁଂ ଆଗେ
ଛାଡ଼ିକରି ନୃପତି ପୁଣ ଉଠିଲା କୂଳେ ବେଗେ ।୧୫୧
ତାହାକଇଂ ଆକ୍ରେଷି ଧଇଲା ନୃପବର
ତବଦେ ରହିଲା ସେ ରକତ ନଦୀ ଉପର ।୧୫୨
କେବଣ ମହାତମା ସେ ବଡ଼ାଇ ବିଚକ୍ଷଣ
ଯେ ଅବା ମୋତେ କରି ପାରଇ କାରଣ ।୧୫୩
କୋଳକରି ଧଇଲା ତାକୁ ମାନଚକ୍ରବ୍ରତୀ
ଉପରେ ଥୋଇଲା ନେଇ ଗଦାବର ଦୁହିନ୍ତି ।୧୫୪
ସତୁରି ସତୁରି ଭାର ବେନି ଗଦା ଗରୁ
ସହିଲା ସେ ମୃତପିଣ୍ଡ ଭାରା ମହାମେରୁ ।୧୫୫
ଆପଣେ ରାଜା ଯେ ପଡ଼ଇ ତହିଂ ପରେ ମାଡ଼ି
ସୋଲଭେଳା ଜାଣି ଭାସଇ ରକତ ନଦୀରେ ନ ବୁଡ଼ି ।୧୫୬
ପିଠିରେ ବସିଣ ରାଜା ବାହଇ ବେନି ହାଥେ
ବେନି ଘଡ଼ିରେ ଗଲା ସେ ଯୋଜନେ ପରିଯନ୍ତେ ।୧୫୭
ଆପଣା ଭୂମିର ଯେ ପଚ୍ଛିମ ଦିବା ଭାଗେ
ପାରିହୋଇ ମୃତପିଣ୍ଡୁଂ ଉତୁରିଲା ବେଗେ ।୧୫୮
ଦ୍ରୋଣ କର୍ଣ୍ଣ ଶଲ୍ୟ ଶକୁନି ଧୃଶାସନ ଭୂରିସର୍ବା
ତୋହୋର ପ୍ରାୟେ କେହି ନୋହିଲେରେ ବାବା ।୧୫୯
କେହି ମୋତେ ରକତ ନଦୀରୁ ନ କଲେକ ପାରି
ମରି କେବଣ ମହାତମା ତୁ ହୋଇଲୁ ଉପୁଗାରି ।୧୬୦
ଲେଉଟାଇ ବଦନ ଚାହଂଇ କୁରୁରାଣ
ନିରୋପି ଚାହିଂଲା ଯେ ମୋ କୁମାର ଲକ୍ଷଣ ।୧୬୧
ଆହା ମୋର ପୁତ୍ର ବୋଲି ରାୟେ ଲଗାଇଣ ହୃଦେ
ଅସାଷ୍ଟମେ ରୋବଇ ରାଜା ମାନ ଯେ ଗୋବିନ୍ଦେ ।୧୬୨
ବାବୁରେ ପଳା ଯା ବୋଲିଣ ବୋଇଲି ମୁଂହି ତୋତେ
ପ୍ରମାଦ ଭୂମିରେ ପୁତ୍ରରେ ପଡ଼ିଲୁ କେମନ୍ତେ ।୧୬୩
ଆରେ ଆରେ ମୋର ଲକ୍ଷଣ କଇଛା ଜଗଜ୍ଜେଠୀ
ତ୍ରଇଲୋକ୍ୟେ ବନ୍ଦନା ନାଥ ତୋହୋର ନାମ ଗୋଟି ।୧୬୪
ଅତିଅନ୍ତ ଲକ୍ଷଣରେ ତୋହୋର ବତିଶ ଗୁଣ
ଶୟେଳ ଜନ ଚିନ୍ତିଲେ ତୁ ସର୍ବ ଗୁଣେ ଲକ୍ଷଣ ।୧୬୫
ବାବୁ ଅବିଛନ୍ନେ ମୂର୍ତ୍ତି ଦିଶୁ ଯେ ବାଳଅର୍କ ପ୍ରାୟେ

କଣୟ ତେଜରୁ ଅଧିକ ଦିଶଇ ତୋର କାୟେ ।୧୬୬
ଅନ୍ଧର ନଉଡ଼ି ପୁତ୍ରରେ ଅନାସ୍ତ ମୋତେ କଲୁ
ଗଭୀର ସମୋଦ୍ରେ ମୋର ଭେଳା ବୁଡ଼ାଇଲୁ ।୧୬୭
ଅତିଅନ୍ତ ଗହନରେ ତୋହୋର ଆସନ
ସଦା ଆନନ୍ଦରେ ବାପ ତୋହୋର ବଚନ ।୧୬୮
ବାବୁ ରାଜ୍ୟରେ ସାଧୁ ସାଧୁ ତୋତେ କରନ୍ତି ପରଜା
ବାଟିକରେ ମାଡ଼େକ ତୁ ଭିଆଇଲୁ ସଞ୍ଜା ।୧୬୯
ଦେବ ବିପ୍ର ଭକତିରେ ଅହର୍ନିଶି ଚିନ୍ତା
ଅନାଥ ନାଥ ପୁତ୍ରରେ ଅହର୍ନିଶି ଦାନଦ୍ୟନ୍ତା ।୧୭୦
ଦାନେ ଶୂରବନ୍ତ ପୁତ୍ରରେ ଭଣ୍ଡାଉ ବଇରି
ନାଶକର ଗର୍ବ ଭାଙ୍ଗୁ ପୁତ୍ରରେ ଅତିଦାନ କରି ।୧୭୧
ଶତେ ଭାର ଭଣ୍ଡାର ଦାନ ଦେଉ ଯେ ନିତ୍ୟେ
ସମସ୍ତ ଗୁରୁବିପ୍ର ମିଳନ୍ତି ବାବୁରେ ରଜନୀ ପ୍ରଭାତେ ।୧୭୨
ଦାତବ୍ୟ ପୁରୁଷ ତୁରେ ଦିବାରାତ୍ର ନ ଜାଣୁ
କୃପଣ ଲୋକଙ୍କର ବଚନ ତୁ ନ ଶୁଣୁ ।୧୭୩
ଦଇତ ଦାନବ ମାରି ରେ ତୁ ତପୀଜନନ୍ତ ରଖୁ
ଲୋକେ ବଇକୁଣ୍ଠ୍ୟରେ ପୁତ୍ର ତୁନି ହୋଇ କିମ୍ପା ଅଛୁ ।୧୭୪
କଉରୋବ ବଳକୁ ତୁରେ ଦୁତୀୟ ଚନ୍ଦ୍ରଗୋଟି
ତୋହୋର ବିହୁନେ ପୁତ୍ର ମୋତେ ଅନ୍ଧାର ନବସୃଷ୍ଟି ।୧୭୫
ବାବୁ ସାଂଗ୍ରାମର ସାଧନରେ ତୁ ଅତୁଳାଇତ ମଲ୍ଲ
ଧାନୁକି ଚୂଡ଼ାମଣି ପାଣ୍ଡବଂକ ଉରଶଲ ।୧୭୬
ଆସ ଆସ ବାବୁ ମନ୍ଦିରକୁ ଯିବାରେ ତନୟେ
ଅର୍ଘ୍ୟ ଘେନି ବାଟ ଚାହୁଂଥିବେ ତୋହୋର ଭାନୁମତୀ
ମାୟେ ।୧୭୭
ବାବୁ ମାୟେ ପୋୟେ ତୁମ୍ଭେ ଅନେକ କଲ ଯେ ଦଇନି
ବୋଇଲ ବାସୁଦେବ ଯେଥୁଂ ନ ଯାନ୍ତୁ ଅପମାନ ଘେନି ।୧୭୮
ବୋଇଲ ପଡ଼ା ପାଞ୍ଚଖଣ୍ଡି ଯେ ମାଗୁଛନ୍ତି ଶିରୀପତି
ପଡ଼ା ଦୁଇଖଣ୍ଡି ଦେଇ ପ୍ରବୋଧିବା ଅଭ୍ୟର୍ଥୀ ।୧୭୯
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଶକୁନି ଦେଖନ୍ତେ
ବିନାଯୁଦ୍ଧେ ସୂଚୀମୁନେ ବୋଇଲି ରାଜ୍ୟ ନ ଦିଅଇ
କଦାଷ୍ଟିତେ ।୧୮୦
ତହିଂର ପ୍ରତିଫଳ ଯେବେ ପାଇଲି ରେ ବାବୁ
ଯେଡ଼େ ବଡ଼ ସମ୍ପଦ ମୁଂ ବୁଡ଼ାଇଲି ସବୁ ।୧୮୧
ଯେବେ ପୁତ୍ରରେ କରିବା ତୋର ବୋଲ
ଅର୍ଦ୍ଧରାଜ୍ୟ ପାଣ୍ଡବନ୍ତ ଦେବି ତୁ ଉଠି ଆସ ମୋହର ତୁଲ ।୧୮୨
ବାବୁ ସମ୍ପୂର୍ଣ୍ଣ ଚନ୍ଦ୍ରମାରେ ତୋହୋର ବଦନଇ
ଅପାଦରେ ବାବୁ ଘେନି ଯାଇକିନା ମୁହିଂ ।୧୮୩
ଆରେ ବାବୁ ପନିର ଚନ୍ଦନ ମଳୟ ବସନ୍ତ କସ୍ତୁରୀ ଯେ ଦାୟେ
ରକତେ କର୍ଦ୍ଦନ ଯେବେ ତୋହୋର ହୋଇଲାକ କାୟେ ।୧୮୪
ବାବୁ ମଣି ମାଣିକ୍ୟରେ ହୃଦୟ ତୋର ଢଳି
ମୁଣ୍ଡମାନଂକରେ ପୁତ୍ରରେ ହୋଇଲୁ ତୁ ମେଳି ।୧୮୫
ବାବୁ ନବସହସ୍ର ରାଜା ତୋତେ ଖଟନ୍ତି ଆସ୍ଥାନେ
ଯେବେ ବେଢ଼ିବେ ତୋତେ ଭୂତ ପ୍ରେତ ପିଚାଶଗଣେ ।୧୮୬
ବାବୁ ହୃଦେ ତୋତେ ଧରିଣ ଯେ ରାଜା ଧୃତିରାଷ୍ଟ୍ର
ତୋହୋର ମୁଖ ଦେଖନ୍ତେ ପାସୋରନ୍ତେ ଅନେଶ୍ୱତ ପୁତ୍ରଙ୍କର କଷ୍ଟ
।୧୮୭
ବାବୁରେ ହୃଦୟେ ଧରିଛି ତୋହୋର ମୃତ୍ୟୁପୁଣ୍ଡଗୋଟି
ଯେ ମୋହୋର ଶରୀର ନ ଯାଇ କିମ୍ପା ଫାଟି ।୧୮୮
ବାବୁ ସଦୟେ ସାଧାରଣ ତୁ ଦୁଖୀଜନ ଉଦ୍ଧାରଣ
ଶରଣ ରକ୍ଷଣ ତୁ ଅକାରଣ କଇଂ କାରଣ ।୧୮୯
ଯେତେକ ଦୟାଧର୍ମ ଥାଇ ତୋର ଚିତ୍ତେ
ସେ ଧର୍ମ ଦେବତା ଯେବେ ଛାଡ଼ିଲା କେମନ୍ତେ ।୧୯୦
ବାବୁ ଯେକା ବେଳକେ ତୋତେ କିଂପା ନ କଲେକ ରକ୍ଷା
ଅନେକ ଦେବତା ବ୍ରାହ୍ମଣେ ଭଗତି ହେଉ ମନବାଞ୍ଛା ।୧୯୧
ଯେତେକ ଗୁଣ ଯେ ଅଛି ତୋହୋର ଶରୀର
ଗୁଣ ଗୁଣିବାକୁ ବେଳ ନାହିଂ ତ ମୋହୋର ।୧୯୨
ବାବୁ ତୋତେ ଘେନି କ୍ରୋଧ କରୁ ରୟଣୀ ପାହିଲେ
ମୁହିଂ ନାଶଯିବି ରେ ପାଣ୍ଡବେ ଜାଣିଲେ ।୧୯୩
ଗଦା ଘେନି କରେ ରାଜା ଭୂମିରେ ଦିଲା ଗାରେ
ସାତତାଳ ଗମ୍ଭୀର ଯେ ହୋଇଲା ବେନିତାଳ ବିସ୍ତାରେ ।୧୯୪
ପିନ୍ଧିବାର ବସ୍ତ୍ର ଅର୍ଦ୍ଧେକ ଚିରିଲା ରାଜନ
ସୁସଞ୍ଚ କରିଣ ତାହା ପାଡ଼ିଲା ତଳେଣ ।୧୯୫
ଲକ୍ଷଣ କୁମାରକୁ ରାଜା ଶୁଆଇଲା ତହିଂ
ଉଚ୍ଚ ସ୍ୱରେ ରୋଦନ କରଇ ସମ୍ପୂର୍ଣ୍ଣ ଚନ୍ଦ୍ରମା ମୁଖ ଚାହିଂ ।୧୯୬
ହଂସୁଳୀ ତୁଳୀରେ ପୁତ୍ର ଶୋଇଥାଉ ତେବେ
ଯେଥକୁ ଯୋଗ୍ୟ ବାବୁ ହୋଇଲୁ ତୁହି ଯେବେ ।୧୯୭
କେହୁ ମୁଣ୍ଡେ ପେଲି ମେରୁ ଟାଳିଲା ରେ ବାପ
ହୃଦେ ଆଭରଣ କେହୁ କଲା କାଳସର୍ପ ।୧୯୮

ବାବୁ ସୋମ ବଂଶକୁ ତୁ ମୋର ଯେକା ପୁତ୍ରଗୋଟି
ସବୁ ବୁଡ଼ାଇଲୁ ରେ କାଟିଲୁ ମୋର ତଣ୍ଡି । ୧୧୯୯
ବାବୁ ଯେ ଜନ୍ମେ କାହିଁ ମୁହିଁ ଚାହଁଇ ତୋର ମୁଖ
ତୁ ମୋତେ ସମସ୍ୟା ନଦିଲୁରେ ପୁତ୍ର ହୋଇଲୁ ନିରେଖ । ୧୨୦୦
ବାବୁ ନେତ ପାଟ ପାତନୀ ନାନା ପୁଷ୍ପ ଶୋଭା ଗଭାଭାଗ
ରକତେ କର୍ଦ୍ଦନ ରେ ହୋଇଲା ତୋହୋର ଅଙ୍ଗ । ୧୨୦୧
ବାବୁ ବାରସ୍ୱତୀ ଭୁବନ ପ୍ରାୟେ ତୋର ପୁରଗୋଟି
ତାହା ଉପେଖ ପୁତ୍ରରେ ଭୂମିରେଣ ଅଛୁ ଲୋଟି । ୧୨୦୨
ବାବୁ ମୃଗନାଭ କସ୍ତୁରୀରେ ଯୁଆଦ କର୍ପୁର ମିଶା
ମୁହିଁ ରାଢ଼ ତୋତେ ରେ କଲି ମାଟି ମିଶା । ୧୨୦୩
ବାବୁ ଅତିଅନ୍ତ ସୁକୁମାର ତୁରେ କୁମାର ଲକ୍ଷଣ
ବରଷେ ବାହୁନିଲେ ନ ସରଇ ତୋହୋର ଯେତେ ଗୁଣ । ୧୨୦୪
ବାବୁ ନବସୃଷ୍ଟି ରଚନା ଛାଡ଼ିଣ ପ୍ରଜାପତି
କେତେକାଳ ବସି ରେ ସ୍ରିଜିଲା ତୋର ମୂର୍ତ୍ତି । ୧୨୦୫
ବାବୁରେ ମୋହୋର ପରା ପିତା ତୋହୋରେ ନୋହୁ ନୋହୁ
ତୋହୋର ପ୍ରାୟେ ପୁତ୍ର ମୋତେ ଜନ୍ମେ ଜନ୍ମେ ଥାଉ । ୧୨୦୬
ଅପାର କ୍ରୋଧ କରଇ ରାଜା ଧୃତିରାଷ୍ଟ୍ରି
ଲକ୍ଷଣ କୁମାର ଉପରେ ନେଇ ପକାଇଲା ମାଟି । ୧୨୦୭
ମୃତ୍ୟୁପିଣ୍ଡ ଉପରେ ଲୁଚାୟେ ମୃତିକା ପକାଇଲା ଫିଙ୍ଗି
ତହୁଁ ମାନଗୋବିନ୍ଦ ଚଳଇ ବେଗି ବେଗି । ୧୨୦୮
ସତୁରି ସତୁରି ଭାର ଗଦା ବେନି ହାଥେ
ବିଜୟେ ମାନଗୋବିନ୍ଦ ଭୀଷ୍ମଂକ ଅଗ୍ରତେ । ୧୨୦୯
ଦ୍ରିଯୋଧନକଇଂ ଚାହିଁ ପଚାରନ୍ତି ଗାଙ୍ଗବେ
ଯେକା କିମ୍ପେ ରାତ୍ରକାଳେ ଅଇଲୁ ହୋ ରାୟେ ଦେବେ । ୧୨୧୦
କର୍ଣ୍ଣ ଶଲ୍ୟ ଶକୁନି କୃପ ଯେ ଆଚାର୍ଯ୍ୟେ
ଥାଠ ସଇନି କିଂପା ନାହିଁ ଯେକା କଲୁ ବିଜେ । ୧୨୧୧
ମୂର୍ଚ୍ଛାଗତ ହୋଇ ମାନଗୋବିନ୍ଦ ବୋଇଲା
ଭୋ ସ୍ୱାମୀ ଗାଙ୍ଗବେ ମୋହୋର ମୁଣ୍ଡ ଯେ ପୋଡ଼ିଲା । ୧୨୧୨
ଲକ୍ଷଣକୁମାର ଆଦିକରି ସମସ୍ତ ମରାଇଲି
ଅନ୍ଧାରକାଳେ ରୋଧିର ନଦୀରେ ବୁଡ଼ିଲି । ୧୨୧୩
ରଣ ଜୟେ କରିଣ ଯହୁଁ ଗଲେକ ପାଣ୍ଡବେ
ଯେକା ଉବୁରି ଅଇଲି ଶୁଣିମା ଗାଙ୍ଗବେ । ୧୨୧୪
ଭୋ ଭୀଷ୍ମଦେବ ମୁହିଁ ଯେବେ ତୁମ୍ଭରେ ଶରଣ
ମୋତେ ରକ୍ଷା କରି ପାରିଲେ ହୋଇବ କାରଣ । ୧୨୧୫
ମୋତେ ରକ୍ଷା କରି ପାରିଲେ ହୋଇବ ବଡ଼ କାର୍ଯ୍ୟ
ଯେ ପଞ୍ଚରାଜ୍ୟ ପୁଣି ପୁଣି ହୋଇବ ଧରଣୀ ଅଇଶ୍ୱର୍ଯ୍ୟ । ୧୨୧୬
ଭୀଷ୍ମେ ବୋଇଲେ ବାବୁ ନିସତ ହୋଇଲୁ
ରଣଯଗ୍ୟଂ କରିବୁ ବୋଲି ପାଣ୍ଡବନ୍ତ ସୀମାୟେ ନ ଦିଲୁ । ୧୨୧୭
ଭୀଷ୍ମେ ବୋଇଲେ ନିସତ ହୋଇଲେ ପାରିବୁଟିକି ବ୍ରତି
କ୍ଷଣକେ ଆୟିଷ ଅଛି ବଞ୍ଚାଇଲା ପ୍ରଜାପତି । ୧୨୧୮
ଦିନ ବେଳେ ଅବା ଆଉ ହୋଇ ତୁ କରିବୁ ପ୍ରାଣ ରକ୍ଷା
ତୋତେ ନ ମାଇଲେ ପାଣ୍ଡବଂକର ନ ରହଇ କଇଛା । ୧୨୧୯
ପଳାଇ ପଶନ୍ତୁ ଅବା ଗଗନ ମଣ୍ଡଳେ
ଅର୍ଜୁନର ପିତା ଯେ ଅଟଇ ଆଖଣ୍ଡଳେ । ୧୨୨୦
ପଳାଇ ପଶନ୍ତୁ ଅବା ପାତାଳ ଭୁବନର
ଅନନ୍ତ ନାଗରାଜା ଅର୍ଜୁନ ଶ୍ୱଶୁର । ୧୨୨୧
ଅର୍ଜୁନର ଶଳା ଯେ ଅଷ୍ଟକୁଳା ନାଗେ
ପଶିବାକୁ କ୍ଷମତ ନୋହିବୁ ପାତାଳ ସ୍ୱର୍ଗେ । ୧୨୨୨
ମଞ୍ଚପୁର ରାଜାୟେ ମଳେଚି ତୋହୋର ସମସ୍ତେ
ସବୁଂକରି ଶତ୍ରୁ ତୁ ତୋତେ ନ ସହନ୍ତି ସକଳ ଜଗତେ । ୧୨୨୩
ଆବର ବିଶେଷ ପବନ ଭୀମସେନର ପିତା
ଯେ ତ୍ରଇଲୋକ୍ୟେ ହାଦେ ତୋତେ କେହି ନାହିଂଟି
ରଖନ୍ତା । ୧୨୨୪
ବଡ଼ ଗୁପତ ଥାନ ଅଛି କହିବା ତୋତେ ବାବୁ
ତହିଂ ପଶି ପାରିଲେ ତୁ ବ୍ରତିହିଂ ପାରିବୁ । ୧୨୨୫
ସେ ସରୋବରକଇଂ ରକ୍ଷାପାଳକ ଦୁର୍ଭାସା ମହରଷି
ତାହାନ୍ତ ଆଗ୍ୟାଂ ମାଗି ତୁ ଭିତରେ ପଶସି । ୧୨୨୬
ପଳାଇ ଯା ନିକଟ ହୋଇଲାଣି ଆସି ରାତି
ଯେହିକ୍ଷଣି ପାଣ୍ଡବେ ଆସି ଲୋଡ଼ିବେ ସବୁନ୍ତି । ୧୨୨୭

......

ପଳାୟେ ମାନଗୋବିନ୍ଦ ପବନୁ ଆପାତେ
ସତୁରି ସତୁରି ଭାର ବେନି ଗଦା ଅଛି ଦୁଇହାଥେ । ୧୨୨୮
ଚଇତନ ନାମେ ବନେ ନଦୀ ଯେ କୃପାଙ୍ଗୀ
ଶୁଦ୍ଧ ସଷ୍ଟିକ ପର୍ବତ ନାମ ଯେ ସୋମାଙ୍ଗୀ । ୧୨୨୯
ହସ୍ତିନା ରାଜ୍ୟକୁ ସେ ଉତ୍ତର ପଛିମ କୋଣେ
ମାନଗୋବିନ୍ଦ ପ୍ରବେଶ ଯାଇ ବିଶାସତେ ଯୂଣେ । ୧୨୩୦
ଶୁଦ୍ଧ ସଷ୍ଟିକ ପର୍ବତେ ବିଜୟେ ଦୁର୍ଭାସ୍ୟା
ମହା ଅଭୟ ପୁରୁଷ ସେ ଅଟଇ ନିରାଶା । ୧୨୩୧

ଭଗନସ୍ତ ହୋଇ ରାୟେ ରୋଧିର ସର୍ବକାୟେ
ପ୍ରଣପତ୍ୟ ହୋଇ ଛାମୁରେ ବହୁତ ବିନୟେ ।୨୩୨
ଦୁର୍ବାସ୍ୟାୟେ ବୋଇଲେ ଯେ ସୋମବଂଶର ବିକଳେ
ଶତେ ପୁତ୍ର ଜାତ କଲୁ ଆମ୍ଭ ମନ୍ତ୍ରବଳେ ।୨୩୩
ସମସ୍ତ ମରାଇଲୁ ଆପଣାର ଦୋଷପଣେ
ଭ୍ରାଥ ପୁତ୍ର ବନ୍ଧୁବର୍ଗରେ ମରାଇ ବ୍ରତିଲୁ ଯେକାଜଣେ ।୨୩୪
କୃଷ୍ଣ ମୁଖ ଚାହିଂରେ ନ ଦିଲୁ ରଣେ ଝାସ
ସବୁନି ମରାଇଲୁ ଯେକା ଜୀବନରୁ କଲୁ ଆଶ ।୨୩୫
ମାନଗୋବିନ୍ଦ ବୋଇଲା ମୋହୋର ତୋତେ ଭରସା
ଶରଣ ପଶିଲି ତୋହୋର ତହିଂ ମୋତେ ରକ୍ଷାକର ଦୁର୍ଭାସ୍ୟା ।୨୩୬
ଦର୍ଭାସ୍ୟା ବୋଇଲେ ଅଇଲୁ ନା କୁରୁପତି
ବଡ଼ ନିରାପକ୍ଷ ପାଣ୍ଡବେ ତୁ ପାରିବୁଟିକି ବ୍ରତି ।୨୩୭
ରୁଦ୍ରପ୍ରଭା ବୋଲିକରି ଯେକଇ ସତ୍ୟଯୁଗେ
ବ୍ୟାସେ କପିଳାସୁଂ ଆଣିଲେ ଲିଙ୍ଗ ମଧ୍ୟ ସ୍ୱର୍ଗେ ।୨୩୮
କହନ୍ତେ ନ ସରଇ ଯେ ଲିଙ୍ଗର ମହିମା
ପଛଘୁଞ୍ଚା ଦେଇଣ ଯେଥେ ପଶ ହୋ ମହାତମା ।୨୩୯
ହଂସୁଳୀ ତୂଳୀ ଅଛି ଶେଯ ଯେ ସୁପାତି
ତଥିର ଉପରେ ପହୁଡ଼ ଯା ତୁ ମାନଚକ୍ରବ୍ରତୀ ।୨୪୦

✱✱

## ୧୦୦. ବ୍ୟାସ ସରୋବରରେ ଦୁର୍ଯ୍ୟୋଧନ ପ୍ରବେଶ

ଯେଥୁ ଅନନ୍ତରେ ଯେ ବିଳଂକ ଦେଶ ରାଜା
ଅଗସ୍ତିଂକ ପଦ୍ମପାଦେ କଲେ ଦିବ୍ୟ ପୂଜା ।୧
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
କଣୟ ବୃଷ୍ଟି କଲା ରାଜା ଅଗସ୍ତିଂକ ପାଦ ।୨
ଶୁଣିବି ଗଦାପର୍ବ ମୁଂ ତବ ପରସାଦେ
ତରିବି ଭବଜଳଧି ନ ପଡ଼ି ବିଷାଦେ ।୩
କିସ ଦେଇ ଭଗତି କରିବି ପାଦତଳେ
ସମୁଦ୍ର ଗଣ୍ଡୁଷ କଲ ଖେଡ଼ର କୋତୁହଳେ ।୪
ଶତେ ସହସ୍ର ଦଣ୍ଡ ବିନୟ କଲାକ ଯୁଗତେ
ବ୍ୟାସ ସରୋବରେ ମୁନି ହେ ମାନଗୋବିନ୍ଦ ପଶିଲା କେମନ୍ତେ
ଯେଥିର ତଦନ୍ତ ମୋତେ କହିବା ତପୋବନ୍ତେ ।୫
ବଦୟନ୍ତି ଅଗସ୍ତି ଯେ ପଣ୍ଡିତ ମହାଗୁରୁ
ଶୁଣ ହୋ ମହାତମା ତୁ ଯାହା ପୁଛାକଲୁ ।୬
ମାନଗୋବିନ୍ଦ ଅବସ୍ଥା ଦେଖି ବଦୟନ୍ତି ଦୁର୍ଭାସ୍ୟା
ବନ୍ଧୁ ସୋଦରନ୍ତ ମରାଇ ଜୀବନକୁ କଲୁ ଆଶା ।୭
ପଛଘୁଞ୍ଚା ଦେଇ ପଶ ଯା ମାନଚକ୍ରବ୍ରତୀ
ଅତିମାନେ ବୁଡ଼ାଇଲୁ ଯେତେକ ବିଭୁତି ।୮
ହେମମୟ ସୁପାତି ଅଛି ହଂସୁଲି ତୁଳୀର ଉପରେ
ତହିଂର ଉପରେ ରାଜା ଶୋଇଥାଅସି ନିଶ୍ଚିନ୍ତରେ ।୯
ଦୁର୍ଭାସାୟେ ବୋଇଲେ ଆମ୍ଭେ ତୋତେ ଲୁଚାଇଲୁ ଗୁପତେ
ପାଣ୍ଡବନ୍ତ ଅଗୋଚର କିସ ସହଦେବ ଥାଆନ୍ତେ ।୧୦
ଲୋଡ଼ି ନ ପାଇଲେ ଯେଥକୁ ଆସିବେ ପାଣ୍ଡବେ
ଯେଥେ ପଶିବାକୁ କ୍ଷମ ନୁହନ୍ତି ବାସୁଦେବେ ।୧୧
ଆହୋ ଚଇତନ ଯଦ୍ୟପି ବ୍ରହ୍ମ ଇନ୍ଦ୍ର ରୁଦ୍ର ଚନ୍ଦ୍ର ସୂର୍ଯ୍ୟ
ବଳାତ୍କାରେ ଯେଥେ ପଶିଲେ ସର୍ବେ ହୋଇବେ ଦହିଜ ।୧୨
ଭୀମର ତିନିରଡ଼ି ସିଂଘନାଦ ସହିବୁ ଯେକା ମାତର
ଭିତରୁ ବାହାର ନୋହିବୁ ତୁ ନୁହସି କାତର ।୧୩
ତିନିରଡ଼ି ସହି ଯେବେ ବାହାର ନୋହିବୁ କୁରୁପତି
ଯେ ପଞ୍ଚୁ କଟକରେ ପୁଣ ହୋଇବୁ ଯେକାଙ୍ଗ ଚକ୍ରବ୍ରତୀ ।୧୪
ଦୁର୍ଭାସ୍ୟାଂକ ବଚନେ ଯେ ବୋଲଇ ଦଣ୍ଡଧାରୀ
ଯେତେମାନେ ପାରଇ ସହିବି ତାର ରଡ଼ି ।୧୫
ଅପାର ପ୍ରତଗ୍ୟାଂ ଯେ ଦୁର୍ଭାସ୍ୟାଂକ ଆଗେ ବୋଲି
ପଛଘୁଞ୍ଚା ଦେଇ ବୀର ବ୍ୟାସ ସରୋବରେ ପଶିଲା ପେଲି ।୧୬
ଆହୋ ଚଇତନ ପଞ୍ଚଷଠୀ ସହସ୍ର ଯୋଜନ ଅଗାଦ ଗଭୀର
ମାନଗୋବିନ୍ଦ ପଶିଲା ଯାଇଂ ସେ ବ୍ୟାସ ସରୋବର ।୧୭
ରସାତ୍ତଳ ଭିତରେ ଅଛଇ ଯେ ଅନ୍ତରୀକ୍ଷ ଭୁବନ
ଦିବାରାତ୍ରି ନାହିଂ ତହିଂ ଚନ୍ଦ୍ର ସୂର୍ଯ୍ୟଂକ ଗବନ ।୧୮
ସହସ୍ର ଯୋଜନ ତଳେ ତହିଂ ଲିଙ୍ଗ ବ୍ୟାସେଶ୍ୱର
ଅନନ୍ତ ନାଗେକ ଅଛଇ ସେ ଲିଙ୍ଗର ଉପର ।୧୯
ଜଳର ଭିତରେ ଅହିବ୍ରତେ ଯୋଜନ ତାର ଫେରୁ
ତହିଂର ଭିତରେ ଅନ୍ତରୀକ୍ଷ ଭୁବନେକ ବିସ୍ତାରୁ ।୨୦
ସେ ଅନ୍ତରୀକ୍ଷ ପୁରେ ପଡ଼ିଅଛି ହଂସୁଲୀ ତୁଳୀ ସୁପାତୀ
ତହିଂର ଉପରେ ଶୁତିଲା ଯେ ମାନଚକ୍ରବ୍ରତୀ ।୨୧
କ୍ଷୀର ସମୋଦ୍ର ଭିତରେ ଯେମନ୍ତ ନାରାୟଣଂକ ଅନନ୍ତ ଶେଯ୍ୟା
ଦକ୍ଷିଣକଇଂ ସୀମସ୍ତାନ ଦେଇ ଶୁତିଲା କୁରୁରାଜା ।୨୨
ଉପରେ ନେତର ଯେ ଚନ୍ଦ୍ରାତପ ଟାଣି
ବରଷନ୍ତି କର୍ପୂର ଧୂଳି ଅମୀୟରସ ଜାଣି ।୨୩

ଅଷ୍ଟାଦଶ ଦିବସ ସଂଗ୍ରାମ ଅନୁବ୍ରତେ
ମହା ଅସାଷମେ ନିଦ୍ରା ଯେ ଘାରିଲା ରଜାଂକର ବେନିନେତ୍ରେ।୧୨୪
ବ୍ୟାସ ସରୋବରରେ ପଶି ରାଜା ପାଶୋରିଲା ସର୍ବକଷ୍ଟ
ସେ ପନ୍ନଙ୍ଗା ନାରାୟଣ ଯେ ନିଦେଶ ତହିଁ ଅଚେଷ୍ଟ ।୧୨୫
ଆହୋ ଚଇତନ ଯେମନ୍ତର ସମୟେ ତହିଁ ଭେଟିଲେ ମହାଲକ୍ଷ୍ମୀ
ଦେଖିଲେ ନିଦ୍ରାୟେ ଅଚେଷ୍ଟ ହୋଇଅଛି କୁରୁକୁଳ ବଂଶୀ ।୧୨୬
ଦିଯୋଧନ ରାଜାକୁ ଜାନୁ ସୀମସ୍ଥାନେ ଦେଇ କମଳେ
ବହଇ କୃତାନ୍ତକ ଅଶ୍ରୁଜଳ ବିକଳେ ବେନିଡ଼ୋଳେ ।୧୨୭
ରାଜାର ଉରେ ଯାଇ ପଡ଼ିଲାକ ଲୋୟେ
ଧାତିକାରେ ଚିଆଇଂ ବସିଲା ଉଠି ଧୃତିରାଷ୍ଟ୍ରର ତନୟେ ।୧୨୮
ନୟନ ମଳିନ ରାଜା ବଦନ ତାର ଦେଖି
କାହୁଂ ଗବନ କଲୁ ଗୋ ଶରଦ ଚନ୍ଦ୍ରମୁଖୀ ।୧୨୯
ରାଜ୍ୟଭାର ସୋଦର ହରାଇ ମୁଂ ହୋଇଲି ହତପାଟ
ପ୍ରାଣ ଭୟେ ଲୁଚିଅଛି ଯେତେକ ମୋର କଷ୍ଟ ।୧୩୦
କେ ତୋହୋର ପିତାମାତା ଗୋ ତୁ କାହାର ଦୋହିତା
କୋ ତୋହୋର ବଲ୍ଲଭ ମାଗୋ ନିଜ ପ୍ରାଣହିତା ।୧୩୧
ହତଶିରୀ ଲୋକକୁ ତୁ କିଂପାଇ ଆସି ବନ୍ଧୁ
ତ୍ରଇଲୋକ୍ୟ ମୋହିନୀ ତୁ କିମର୍ଥରେ କାନ୍ଦୁ ।୧୩୨
ବଦୟନ୍ତି କମଳିଣୀ ଅନାଦି ମହାଲକ୍ଷ୍ମୀ
ମୁହିଂ ସେ ଶ୍ରୀହରିର ବଲ୍ଲଭୀ ମହାତମୀ ।୧୩୩
ତୁ ଯେତେବେଳେ ରୋଧିର ନଦୀରେ ପଡ଼ିଲୁ ବୁଡ଼ି
ମୁହିଂ ତୋହୋର କଣ୍ଠରୁ ହାଦେ ଗଲି ଛାଡ଼ି ।୧୩୪
ବୁଲିଲି ସ୍ୱର୍ଗ ମଞ୍ଚ ପାତାଳ ନବଦ୍ୱୀପା ପୃଥ୍ୱୀ
ତୋହୋର ପରାୟେ ଲକ୍ଷଣବନ୍ତ ପୁରୁଷ ନ ଦେଖିଲି କେହୁଣସି କତି ।୧୩୫
ବାବୁ ଅନେକ କାଳରୁ ତୋହୋର କଣ୍ଠେ ଅଛି ପାଦଦେଇ
ତୋହୋର ଅଭାବେ ମୁଂ ବସିବି କାହିଂ ଯାଇ ।୧୩୬
ତେଣୁ କରି ଶରୀର ମୋର ବଡ଼ାଇ ବଇକୁଳ୍ୟ
ବେନି ଲୋଚନ ମୋର ବହଇ ଅଶ୍ରୁଜଳ ।୧୩୭
ଦିଯୋଧନ ବୋଇଲା ମାଗୋ ତୋର ଯେବେ ଯେଡ଼େକ ସଦୟେ
ତ୍ରଇଲୋକ୍ୟେ ଆଉ ମୋତେ ଅଛଇ କି ଅପଚୟେ ।୧୩୮
ଲକ୍ଷ୍ମୀ ବୋଇଲେ ତୁ ଯେବେ ପନ୍ନଙ୍ଗା ନାରାୟଣ
ତୋତେ ଜିଣିବାକୁ କେ ସାମରଥ ଅଛି ପୁଣ ।୧୩୯
ଯେକା ଯେ ଚକ୍ରକୂଟ କଲେ ନାରାୟଣ
ତୋତେ ଜିଆଂଇବାକୁ କେ ପୃଥ୍ୱୀରେ ଅଛଇ ଆନ ।୧୪୦
ତୋତେ ଜିଣି ପାରନ୍ତେ କି ହେଲେ ସହସ୍ରେ ପାଣ୍ଡବେ
ଯେକା ସମସ୍ତ ନାଶ କରାଇଲେ ଶ୍ରୀ ବାସୁଦେବେ ।୧୪୧
ମାନଗୋବିନ୍ଦ ବୋଇଲା ମାଗୋ ତୋହୋର ଅଛି ଯେବେ ସଦୟେ
ମୋହୋର ବ୍ରତିବା ନିମନ୍ତେ କରସି ଉପାୟେ ।୧୪୨
ଲକ୍ଷ୍ମୀ ବୋଇଲେ ପାଣ୍ଡବନ୍ତ ଘେନି ଯେ ଆସିବେ ଋଷିକେଶୀ
ତାହାଂକର ବଳେ ଯେଥକୁ ନୁଆରିବେଟି ପଶି ।୧୪୩
ଭୀମସେନର ଯେବେ ତୁ ସହିପାରିବୁ ତିନିଗୋଟି ଋଡ଼ି
ବାହୁଡ଼ି ଯେକାଙ୍ଗେ ଭୋଗ କରିବୁ ମହୀଆଳୀ ।୧୪୪
ମାନଗୋବିନ୍ଦ ବୋଇଲେ ମାଗୋ ଶତେ ଋଡ଼ି ସହିବି
ବ୍ୟାସ ସରୋବରୁ କିଂପେ ବାହାର ହୋଇବି ।୧୪୫
କମଳିଣୀ ବୋଇଲେ ବାବୁ ତିନି ଋଡ଼ି ସହିଲେ ଅର୍ଦ୍ଧୋଳି
ଯେହିଠାରେ ଭୀମସେନ ପୋଡ଼ି ମରିବଟି ଅଗ୍ନି ଜାଳି ।୧୪୬
ଯେହା ଶୁଣିଣ ସାନନ୍ଦ ସେ ରାଜା ମାନଗୋବିନ୍ଦ
ଲକ୍ଷ୍ମୀ ଦେବୀ ଶରୀର ଆଉଂସି ବୋଇଲେ ବାବୁ ଯାଅସିରେ ନିଦ ।୧୪୭
ଆହୋ ଚଇତନ ଯେସନେକେ ବଶ୍ୟାବୃତ୍ତି ଖଟନ୍ତି ଯେବଣ ଭାରିଯା
ତେସନେକେ କମଳିଣୀ ମାନଗୋବିନ୍ଦ ରାଜାଂକୁ ଖଟନ୍ତି ପରିଚର୍ଯ୍ୟା ।୧୪୮
ଜାନୁରେ ସୀମସ୍ଥାନ ଦେଇ ବାରାନିଧିର ଦୁଲାଳୀ
ବାମକରେ କପାଳ ଆଉଂସନ୍ତି ଡାହାଣ କରେ ଚାମର ଢାଳି ।୧୪୯
ନିଦ୍ରାରେ ଅଚେଷ୍ଟ ଯେ ମାନଚକ୍ରବର୍ତ୍ତୀ
ମହାସୁସ୍ଥ ପାଇଣ ସେ ଶୁତିଲା ନିଭ୍ରାନ୍ତି ।୧୫୦
ବଦୟନ୍ତି ଅଗସ୍ତି ଶୁଣିମା ବିଳଂକ ନୃପତି
ଯେଥୁ ଅନନ୍ତରେ କଥା ଯିସ ଦିବ୍ୟରୀତି ।୧୫୧
ଆହୋ ଚଇତନ ରଣଜୟ କରିଣ ଗଲେ ଯେ ପାଣ୍ଡବେ
ଇନ୍ଦ୍ରପ୍ରଶସ୍ତେ ବିଜେ କଲେ ବହୁତ ସମ୍ଭର୍ବେ ।୧୫୨
ବାଜନ୍ତି ବୀରତୂର ଶତ୍ରୁଜିତ ଶଙ୍ଖଧ୍ୱନି
ଅର୍ଘ୍ୟ ଘେନି ଦ୍ୱାରେ ଉଭା ହୋଇନ୍ତା ଜିଜ୍ଞସେନୀ ।୧୫୩
ଗୋବିନ୍ଦ ବୋଇଲେ ଶୁଣ କୋନ୍ତଭୋଜର ଦୁଲାଳୀ
ବିଦୁର ଘରେ ଯାହା କରିଥିଲି ସତ୍ୟ ପ୍ରତିପାଳି ।୧୫୪
ସୁମରି ଅଛଟି କିଗୋ ସେବେଳର ବୋଲ
ଯେବେ ଯେକାଙ୍ଗ ରାଜ୍ୟ ହୋଇଲାନି ସକଳ ।୧୫୫
ଭୀଷ୍ମ କଲେ ଶରଶଯ୍ୟା ଦ୍ରୋଣେ ନାଶଗଲେ

କର୍ଣ୍ଣ ଶିରଚ୍ଛେଦ ହୋଇଲା ଶଲ୍ୟ ଦହିଜ ହୋଇଲେ ।୫୬
ଅଠଶୋଇ ଭାଇ ଯେ ଧୁଶାସନର ମୂଳେ
ସମଦଣ୍ଡ ଘେନିଣ ଯେ ପଡ଼ିଲେ ସକଳେ ।୫୭
କୋଇନ୍ତାଯେ ବୋଇଲେ ହରି ଯେ ବଡ଼ାଇ ଦୁଲଭ
ତୋହୋର ପ୍ରସାଦେ ଦେବ ଯେବେ ସୁଲଭ ହୋଇଲା
ବାସୁଦେବ ।୫୮
ସମରେ ବଧ କଲା କେହୁ ରାଜା ମାନଗୋବିନ୍ଦ
ତାହାର ଶିରେ ମୁଂ ଅର୍ଘ୍ୟ ଦେବି ଧ୍ୱନ୍ଦ ।୫୯
ଯେକର ମୁଖକୁ ଆରେକ ଯେ ଚୁହାଂଚୁହିଂ
ମାନଗୋବିନ୍ଦ ବଧ ଗଲା ବୋଲି ସେ ଜାଣି ନୁଆରନ୍ତି
କେହି ।୬୦
କରପତ୍ର ଯୋଡ଼ିଣ ସେ କହଇ ବ୍ରିକୋଦର
ଅନିର୍ଯ୍ୟାପ ହୋଇଲା ମାଗୋ ଆଜର ସମର ।୬୧
ନବ ଅହିବ୍ରତ ହାଥୀ ବେନି ଅହିବ୍ରତ ରଥୀ
ପାଞ୍ଚଲକ୍ଷ ଅଶ୍ୱ ଯୋଦ୍ଧା ଅସଙ୍ଖେପ ପାଦାନ୍ତି ।୬୨
ଆଦିତ୍ୟ ଅସ୍ତ ହୁଅନ୍ତେ ମୁଂ ଯେତକ ମାଇଲି
ତଦନ୍ତ ଜାଣି ନୁଆରିଲି ମାନଗୋବିନ୍ଦ କେ ବୋଲି ।୬୩
କୋଇନ୍ତାଯେ ବୋଇଲେ ତୁ ମାଇଲୁ ଅନର୍ଯ୍ୟାପ ଯୋଧୀ
ମୂର୍ଖ ପାମର ସିନାରେ ତୋର କିସ ବୁଦ୍ଧି ।୬୪
ଯେତେ ବୋଲି କୋଇନ୍ତାଯେ ଅର୍ଜୁନ ମୁଖ ଚାହିଂ
ବୋଇଲେ ଦୁର୍ଯ୍ୟୋଧନକୁ ମାଇଲୁ କିରେ ତୁହି ।୬୫
ଧାର୍ମିକ ବିବେକ ଗୁଣବନ୍ତ ପଣ୍ଡିତ
ତୁ ମାଇଲୁ କିରେ ଗାନ୍ଧାରୀର ଜ୍ୟେଷ୍ଠ ସୁତ ।୬୬
କରପତ୍ର ଯୋଡ଼ିଣ ଯେ ବୋଲଇ ସବ୍ୟସାଚୀ
ଅନିର୍ଯ୍ୟାପ ସମର ମାଗୋ ମୁଂ ନ ଜାଣିଲି କିଛି ।୬୭
ଶୁଣ ଗୋ ସାବଧାନେ କୁନ୍ତଭୋଜର ଦୋହିତୀ
ମୁଂ ମାଇଲି ଆଜ ଗୋ ପାଞ୍ଚ ଅହିବ୍ରତ ରଥୀ ।୬୮
ଗଜ ଯୋଦ୍ଧା ମାଇଲି ଗୋ ପାଞ୍ଚ ଅହିବ୍ରତ ବେନି ପରାୟଧେ
ପଞ୍ଚସାଗର ଅଶ୍ୱ ଯୋଦ୍ଧା ମାଇଲି ଆଜି ଯୁଦ୍ଧେ ।୬୯
କେ ତାହା ଚିହ୍ନିଲା ଗୋ ନୃପତି ଯେଟି ବୋଲି
ମାନଗୋବିନ୍ଦ ରାଜାକୁ ସମ୍ମୁଖେ ନ ମାଇଲି ।୭୦
ଶୁଣିକରି କୋଇନ୍ତାଂକର କମ୍ପିଲା କପାଳ
ବାବୁ କେମନ୍ତ କରିଛୁରେ କହ ତୁ ନକୁଳ ।୭୧
ମାଦ୍ରୀର ନନ୍ଦନ ଯେ କହଇ କରପତ୍ର ଯୋଡ଼ି
ମୁହିଂ ମାଇଲି ମାଗୋ ରଥୀ ସହସ୍ର ଚାରି ।୭୨
ତିନି ଅହିବ୍ରତ ଗଜ ଯୋଦ୍ଧା ମାଇଲି ଗୋ ମାଯେ
ପାଞ୍ଚ ଅହିବ୍ରତ ଯୋଦ୍ଧା ମାଇଲଇଂ ହଯେ ରାଯେ ।୭୩
ଅସମ୍ଭବ ପଡ଼ିଲେ ଗୋ ପାଦାନ୍ତି ସଇନି
ଦିଯୋଧନ ବୋଲି ମାଗୋ ନୁଆରିଲି ଚିହ୍ନି ।୭୪
କୋଇନ୍ତାଯେ ବୋଇଲେର ତୁ ମୋହୋର ସର୍ବଗ୍ୟଂ ପଣ୍ଡିତ
ତୁ ମାଇଲୁ କିରେ ସହଦେବ ଗାନ୍ଧାରୀର ଜ୍ୟେଷ୍ଠପୁତ୍ର ।୭୫
ସହଦେବ ବୋଇଲା ଗୋ ଶୁଣିମା ମାହେଶ୍ୱରୀ
ମୁହିଂ ମାଇଲି ମାଗୋ ଯୋଦ୍ଧା ସହସ୍ର ଚାରି ।୭୬
ଲକ୍ଷେକ ମାଇଲି ମାଗୋ ଗଜ ଯୋଦ୍ଧାମାନ
ବେନି ଲକ୍ଷ ଅଶ୍ୱ ଯୋଦ୍ଧା ମୁଂ କଲଇଂ ନିଧନ ।୭୭
କ୍ଷଉଣୀଯେ ପାଦାନ୍ତି ମାଗୋ ମାଇଲଇଂ ରଣେ
ମାନଗୋବିନ୍ଦ ପଡ଼ିଲା ବୋଲି କେମନ୍ତେ କହିବି ଅକାରଣେ ।୭୮
ବାବୁ ଅସଂଚେପ ଯୁଦ୍ଧ ତୁହି କଲୁରେ ଯୁଝେଷ୍ଟି
ସମରେ ମାଇଲୁ ତୁ କି ଅବା ଧୃତିରାଷ୍ଟି ।୭୯
ଯୁଝେଷ୍ଟି ବୋଇଲେ ମୋହୋର ସମର ଅସଂଖ୍ୟହିଂ
ସହସ୍ରେକ ରଥୀ ରଣେ ମାଇଲଇଂ ମୁହିଂ ।୮୦
ପାଞ୍ଚ ସହସ୍ର ଗଜ ଯୋଦ୍ଧା ସମରେ ମାଇଲି
ଅହିବ୍ରତେକ ଅଶ୍ୱଯୋଦ୍ଧା ରଣରଙ୍ଗେ ବିନାଶିଲି ।୮୧
ଲକ୍ଷେକ ପାଦାନ୍ତି ମୁଂ କିଞ୍ଚେ କଲି ବଧ
ଚିହ୍ନି ନୁଆରିଲି କେ ତହିଂ ରାଜା ମାନଗୋବିନ୍ଦ ।୮୨
କୋଇନ୍ତାଯେ ବୋଲି ହରି ମୁହିଂ ତୋହୋର ଆଶ୍ରେ ବ୍ରତି
ତୁ ଯେହା ଜାଣୁ କିହୋ ଦେବ ଶିରୀପତି ।୮୩
ଗୋବିନ୍ଦେ ବୋଇଲେ ମାଗୋ ଆଜ ଅଗୋଚର ଯୁଦ୍ଧ
ଶତେସହସ୍ର ରଥୀ ଆଜ ସଂଗ୍ରାମେ କଲୁ ବଧ ।୮୪
ଗଜଯୋଦ୍ଧା ଅଶ୍ୱଯୋଦ୍ଧା ଗୋ କେ ପାରିବ ଗଣି
ପାଦାନ୍ତି ବଳର ଗୋ ତଦନ୍ତ ନ ଜାଣି ।୮୫
କେ ତାହା ଜାଣିଲା ଗୋ ମାନଗୋବିନ୍ଦ ମଲା ବୋଲି
ମୁହିଂ ତାହା ତଦନ୍ତ କରି ଆଜ ଜାଣି ନୁଆରିଲି ।୮୬
ଶୁଣିଣ କୋପେ ଅଧର କମ୍ପାଇଲେ ଭୋଜର ଦୁଲାଳୀ
ଧାତିକାରେ ହାଥରୁ ପକାଇଲେ ଅର୍ଘ୍ୟଥାଳୀ ।୮୭
କୋଇନ୍ତାଯେ ବୋଇଲେ ହରି ମୁଂ ତୋହୋର ଆଗରେ ଯାହା
ବୋଇଲି
ମହତଂକ ଆର୍ଦୋଳି କରି ମୁଂ ଶ୍ରିକାଳ ଜାତକଲି ।୮୮
ଯେ ମୋହୋର ପେଟ ଯେହିକ୍ଷଣି ପୋଡୁ ପୋଡୁ

ଯେ ନିର୍ଲଜ ଆତ୍ମା ମୋର ଶରୀରୁ ବେଗେ ଛାଡୁ ।୮୯
ଆରେ ରେ ପାଣ୍ଡବେ ଧିକ ହୋଉ ତୁମ୍ଭର ଗାରିମା
ତୁ କେମନ୍ତେ କରି ଯେମାନରେ ପାଶୋରିଲୁ ଭୀମା ।୯୦
ଭୁଞ୍ଜାଇ ବସାଇ ରେ ଖୁଆଇଲେ ବିଷଲଡୁ
ତୁ କେମନ୍ତେ ପାଶୋରିଲୁ ରେ ଜୀବନ ତୋର ପୋଡୁ ।୯୧
ବିଷ ଚରିଲା ତୁରେ ହୋଇଲୁ ଅଚେତନ
ବାନ୍ଧି ଅକାଦ ଜଳେ ତୋତେ ମେଲି ଦୁର୍ଯୋଧନ ।୯୨
ନାଗେଣୀ ଖାଉ ବୋଲି ପକାଇଲେ ଜଳେ
ତହୁଁ ଉବୁରିଲୁ ତୁରେ ମୋହୋର ପୁଣ୍ୟବଳେ ।୯୩
କପଟପାଶା ଖେଳାଇ କଲେ ଯେତେ ଶାସ୍ତି
ଗଳଥା ଦେଇଣ ସଭାରେ ବସାଇଲେ ସବୁନ୍ତି ।୯୪
ଗାନ୍ଧାରୀର ଶତେପୁତ୍ର ମାରିବୁ ବୋଲି ପ୍ରତଗ୍ୟାଂ ତୁହି କଲୁ
ଶ୍ରିକାଳଯୁଥ ମାରିଣ ସିଂଘ ଦେଖି ପଳାଇ ଅଇଲୁ ।୯୫
ନିଗୁତାନ୍ତ ବଇରିକି ତୁ କିଂପେ ଛାଡ଼ିଦିଲୁ ରଣେ
ମଧ୍ୟସ୍ଥ ଲୋକନ୍ତ କିଂପେ ତୁ ମାଇଲୁ ଅକାରଣେ ।୯୬
ଧିକ ଧିକ ମୁହିଂ ଯେ ତୁମ୍ଭର ଗର୍ଭଧାରୀ
ଧିକ ଧିକ ହୋଉ ମୁହିଂ ତୁମ୍ଭନ୍ତ ରେ ଜାତକଲି ।୯୭
ଧିକ ଧିକ ଭୀମାରେ ତୋର ବଳବୀର୍ଯ୍ୟପଣ
ଧିକ ଧିକ ହୋଉ ତୋର ବୃକୋଦର ପଣ ଜାଣ ।୯୮
ଧିକ ହୋଉ ତୋହୋର କାଳେବର ବେନି ଗଦା
ଧିକ ହୋଉ ତୋହୋର ବିକ୍ରମ ସିଂଘ ସର୍ବଦା ।୯୯
ଧିକ ହୋଉ ତୋହୋର ଜୀବନ ରେ ବୀର ଫାଲଗୁନି
ଧିକ ହୋଉ ତୋହୋର ରେ ଦଶନାମ ଘେନି ।୧୦୦୦
ଧିକ ଧିକ ହୋଉ ତୋହୋର ରେ ଧର୍ମରାଯେ ଯୁଝେଷ୍ଟି
ପାଶୋରିଲ କିକି ବନସ୍ତରେ ପାଇଲ ଯେତେ କଷ୍ଟି ।୧୦୦୧
କନ୍ଦମୂଳ ଭକ୍ଷି ରେ ଅଖାଇଜ ଦ୍ରବ୍ୟ ଖାଇ
ମାନଗୋବିନ୍ଦ ପ୍ରସାଦେ ଯେହେନେକ ଦୁଖପାଇ ।୧୦୦୨
କେତେ ଦୁଖ ପାଇଲ ରେ ଓଡ଼ାଧି ଶିବପୁରେ
ସମସ୍ତେ ଭିକ୍ଷାପାତ୍ର ଘେନି ରେ ବୁଲିଲ ଦ୍ୱାରେ ଦ୍ୱାରେ ।୧୦୦୩
ଯେହି ଭୀମା କନ୍ଧରେ ଥାଇ ଚକ୍ରଭାର ଗୋଟିଯେ
ପାଞ୍ଚଜଣ ମାଗିଲେ ରେ ତିନିମାଣ ତଣ୍ଡୁଳପାୟେ ।୧୦୦୪
ତିନିମାଣଯେ ସରି ଅର୍ଦ୍ଧେ ଦିଅଇ ଭୀମାକୁ
ଅର୍ଦ୍ଧେକ ବାଣ୍ଟି ଦିଅଇ ଯେ ଚାରି ପୁଅଂକୁ ।୧୦୦୫
ତହିଂରୁ ଯିସ ଥାଇ ଆବର ପେଜ ଫୁଟି
ସେ ପେଜ ଖାଇଣ ମୁଂ ନିତିପ୍ରତି ବ୍ରତିଲିଟି ।୧୦୦୬
ବିକଳେ ବିଚାରି ଭୀମାକୁ ବକଦତ୍ୟକୁ ଦିଲି
ଯାକୁ ବକଦତ୍ୟ ଖାଉ ଯେ ଚାରିଂକି ପୋଷିବି ବୋଲି ।୧୦୦୭
ଆରେ ଭୀମା ବକଦତ୍ୟ ଗିଳିଥାନ୍ତା ଯେବେ ତୋତେ
ମୁଂ ଅବସ୍ଥା ଜାଣରେ କିମ୍ପା ପାଆନ୍ତି ଯେତେ ।୧୦୦୮
ତୋତେ ଯେବେ ଆମ୍ଭେ ଆଶ୍ରାକଲୁ ଦେବହରି
ତୋହୋର ଦର୍ପେ ସିନା ଯେବେ ଦ୍ୱନ୍ଦ ଯେ ଆମ୍ଭରି ।୧୦୦୯
ଯେ ମୋଢ଼ା ପାମର ଯେବେ ହୋଇଲେ ହୀନମତି
ତୁ କିଂପେ ଯେତେ ହେଳ କଲୁ ହୋ ଶିରୀପତି ।୧୦୧୦
ଶଙ୍ଖ ଚକ୍ର ଗଦା ପଦ୍ମ କରେଣ ଘେନିଥାଉ
ସମସ୍ତ କୃତମାନ ହରି ତୋହୋର ଧିକ ଧିକ ଯାଉ ।୧୦୧୧
ଜଗନ୍ନାଥ ନାମ ତୋର ଜଗତ ବାନ୍ଧବପଣ
ସେହି ତୋହାର ଧିକ ହୋଉ ହେ ନାରାୟେଣ ।୧୦୧୨
କୋଇନ୍ତାଂକ ମୁଖରୁ ଯେସନକ ନିପ୍ରୋହୀ ବାକ୍ୟ ଶୁଣି
ଭୀମସେନ ଅଧର କମ୍ପିଲା ଶୁଣି ନାରାୟଣ ଧିଙ୍ଗାସ ବାଣୀ ।୧୦୧୩
ଅଧର ପୁଷ୍ଟ କରି ବୃକୋଦର କହଇ
ତୋହୋର ବୋଲେ ଗୋ ପାଷାଣ ଝଡ଼ଇ ।୧୦୧୪
କର ଉଞ୍ଚାଣ ମାରିତେ ଲୋଡ଼ଇ ଭୀମ
କୋଳକରି ଧଇଲେ ତାକୁ ଶ୍ରୀପୁରୁଷୋତ୍ତମ ।୧୦୧୫
ଗୋବିନ୍ଦେ ବୋଇଲେ ଭୀମା କାହାକୁ କୋପକରି
ଗୁରୁ ମହାଗୁରୁ ଯେ ଅଟନ୍ତି ଗର୍ଭଧାରୀ ।୧୦୧୬
ଭୀମସେନ ବୋଇଲା ଦେବ ତୋତେ ଯେ ଝିଙ୍ଗାସି
ଯେହିକ୍ଷଣି ଦୁର୍ଯୋଧନକୁ ସାଂଗ୍ରାମ ଭୂଇଂ ଲୋଡ଼ିବଇଂ ପଶି ।୧୦୧୭
ମୃତୁପିଣ୍ଡ ଲେଉଟାଇ ଯେବେ ନ ପାରିବି ରଣଭୂମି
ତ୍ରଇଲୋକ୍ୟେ ପଶିଲେ ଆଜି ମାରିବି ସବୁ ଭ୍ରମି ।୧୦୧୮
ଉଦେ ଅସ୍ତ ମଧ୍ୟେ ଯେବେ ନ ମାରଇ ଆଜ
ସେହି ରଣଭୂମିରେ ନିଷ୍ଟେ ଅନଳେ ହୋଇବି ଦହିଜ ।୧୦୧୯
ହରିହର ବ୍ରହ୍ମା ପାରିଲେ ହୋ ଆଜ ରଖ
ମାନଗୋବିନ୍ଦକୁ ନ ମାଇଲେ ହରି ନ ଚାହିଂବି ତୋର ମୁଖ ।୧୦୨୦
ନିରଞ୍ଜନ ଥାଳେ ଯେ ବିଷ ମୁଂ ଭରଇ
କୃଷ୍ଣ ଯୁଝେଷ୍ଟିଂକର ପାଦପଦ୍ମେ ମୁଂ ହାରଇ ।୧୦୨୧
ଯେତେକ ପାପେ ମୁଂ ହୋଅଇ ଅଧିକାରୀ

ଆଦିତ୍ୟ ଅସ୍ତ ପରିଯନ୍ତେ ଯେବେ ଦ୍ରିଯୋଧନ ନ ମାରି ।୧୨୨
ମାତୃହରଣ କରନ୍ତି ଯେବଣହିଂ ଜନ
ନାନା ହତ୍ୟା କରନ୍ତି ସେ କରନ୍ତି ସୁରାପାନ ।୧୨୩
ଯେତେକ ଦୋଷ ପାଇବି ମୁଂ ଦ୍ରିଯୋଧନକୁ ନ ମାଇଲେ
ଯେତେ ବୋଲି ରୋଷ ବହିଲା ବ୍ରିକୋଦରେ ।୧୨୪
ଯେତେ ବୋଲି ବାହାର ଯେ ହୋଇଲେ ପଞ୍ଚୁବୀରେ
ସାତୁକି ଧୃଷ୍ଟଦ୍ୟୁମନ ଦୁର୍ଦ୍ଧକ୍ଷ ଅଛନ୍ତି ସଙ୍ଗରେ ।୧୨୫
ଲକ୍ଷେକ ରଥ ସଙ୍ଗେ ବେନିଲକ୍ଷ ହାଥୀ
ପାଞ୍ଚଲକ୍ଷ ଅଶ୍ୱ ଯେ କ୍ଷଉଣୀଯେ ପାଦାନ୍ତି ।୧୨୬
ପାଣ୍ଡବଂକ ତୁଲେ ଛନ୍ତି ଯେତେକ ସଇନି
ରଣଭୂମିରେ ପ୍ରବେଶ ନିକଟ ରଯେଣୀ ।୧୨୭
ଦୂରେ ଥାଇ ଶୁଣିଲେ ସେ ଦେବୀଂକର କିଳିକିଳା ନାଦ
ପାଣ୍ଡବ ଥାଠେ ଶୁଭିଲା ପଞ୍ଚୁଜନ୍ୟ ଶଙ୍ଖର ଶବଦ ।୧୨୮
ରଟରଟ ମଟମଟ ଦନ୍ତ ପାଟି ଶୁଭୁଅଛି ଯେଣେ
ଯେସନେକେ ଗଗନୁ ପଡ଼ଇ ବଜ୍ରବାଣେ ।୧୨୯
ଜମ୍ବୁପଟଳ ମେଘ ଯେହ୍ନେ ଦିଶନ୍ତି ବୃଷାଳେ
ରୋଧିର ମାୟେଂସେ ଦେବୀମାନେ କରନ୍ତି କୁତୁହୋଳେ ।୧୩୦
ଫୁକାରନ୍ତି ଶବଦ ଯେ ଶୁଭଇ ଗୁରୁଘୋର
ସଇନି ବଳମାନେ ଯାଇଂ ରହିଲେକ ଦୂର ।୧୩୧
ଡିବିଡିବି ଡମ୍ବରୁ ବାଜଇ ଯେ ଘନଘୋର ଡାକି
ଲହଲହ ଜିହ୍ୱାରେ ରେ ରେ କାର ହାକି ।୧୩୨
ମେଦ ମେଦା ମାୟେଂସ ଯେ କରନ୍ତି ଦେବୀ ଭକ୍ଷ
ଉଲଗ୍ନଶାୟୀ ହୋଇଣ ନାଚନ୍ତି ପ୍ରତକ୍ଷ୍ୟ ।୧୩୩
କେ ତୁଣ୍ଡ ବିସ୍ତାରିଣ ପିବନ୍ତି ଯେ ଶ୍ରୋଣୀ
କେ ମୁଣ୍ଡମାଳମାନ ହୃଦରେ ଭୂଷଣି ।୧୩୪
ବଜାବନ୍ତି ଘୁମୁରା ଯେ ବିଜିଘୋଷ ଦାଉଣ୍ଡି
ମଭାରସେ ନାଚନ୍ତି ଯେ ଖେମଟା ନାଟଖଣ୍ଡି ।୧୩୫
ଆକାଶେ ଓଷ୍ଠ କାହାର ଭୂମିରେଣ ପାଟି
ଯେକା ଗ୍ରାସକେ ଗିଳନ୍ତି ଯେ ମୃତ୍ୟୁପିଣ୍ଡଗୋଟି ।୧୩୬
ନାଚନ୍ତି ଗାବନ୍ତି ଖାବନ୍ତି ରଣରଙ୍ଗ ରସେ
କେହି ମୃତ୍ୟୁପିଣ୍ଡ ଫିଙ୍ଗି ଦିଅନ୍ତି ଆକାଶେ ।୧୩୭
ଉପରକୁ ଫିଙ୍ଗି ଦିଅନ୍ତି ତଳେ ତୁଣ୍ଡ ପାଟି
ଅନନ୍ତ ବିଜୟା କାଳିକା କେତୁକା କାଳରାତ୍ରି ।୧୩୮
ବିକଟ ଅବଲୋକନେ ସେ ମଉରସେ ଭୋଳି
କହ କହ ହାସ୍ୟେ ମଙ୍ଗଳ ଧ୍ୱନି ତୋଳି ।୧୩୯
ପ୍ରେତ ଭୂତ ପିଚାଶ ବେତାଳ ମହାଖଳା
ଶୂଦ୍ରମୁନି ସାରୋଳ ଦାସ ସେବଇ ସର୍ବ ଯେ ମଙ୍ଗଳା ।୧୪୦

**

## ୧୦୧. ପାଣ୍ଡବମାନଙ୍କର ଦୁର୍ଯ୍ୟୋଧନକୁ ଅନ୍ୱେଷଣ

ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ପାଣ୍ଡେବନ୍ତ ଦେଖି ଦେବୀମାନେ ଅନ୍ତର୍ଦ୍ଧାନ ଗତି ।୧
ସମସ୍ତେ ହୋଇଥିଲେ ଯେ ଉଲଗ୍ନଶାୟୀ
ଶ୍ରୀକୃଷ୍ଣଂକୁ ଦେଖି ଶୂନ୍ୟେ ରହିଲେ ମହାମାୟୀ ।୨
ଅନକେ ବିହୁଡ଼ି ହୁଲା ପାଣ୍ଡବେ କରେ ଘେନି
ରକତ ନଦୀ ଭିତରେ ଯାଇଂ ପଶିଲେ ସଇନି ।୩
ମୃତୁପିଣ୍ଡମାନନ୍ତ ତୋଳି ପକାବନ୍ତି ଫିଙ୍ଗି
ଜଣକଇଂ ନ ଛାଡ଼ନ୍ତି ଧାମନ୍ତି ଯେ ବେଗି ବେଗି ।୪
ରାତ୍ର ପ୍ରହର ଥାଉଂ ଯେ ଲୋଡ଼ନ୍ତି ମୃତୁପିଣ୍ଡ
ଦିନକର ବେଳ ଆସି ହୋଇଲା ପାଞ୍ଚଦଣ୍ଡ ।୫
ମାନଗୋବିନ୍ଦ ରାଜାକୁ ନ ପାଇଲେ ଲୋଡ଼ି
ଭୀଷ୍ମଂକର ଛାମୁରେ ମିଳିଲେ ଦଣ୍ଡ ଚଢ଼ି ।୬
ପାଣ୍ଡବେ ପାଞ୍ଚେହେଂ ଚରଣେ ପରିଣାମି
ମାନଗୋବିନ୍ଦ କେଣେ ଗଲା ଦେଖିଲ ଦେବସ୍ୱାମୀ ।୭
ଅନେକ ବିନୋୟୀ ପଚାରନ୍ତି ଯେ ପାଣ୍ଡବେ
ମଉନବ୍ରତ ପ୍ରାୟେକ ହୋଇଲେ ଗାଙ୍ଗବେ ।୮
ଗୋବିନ୍ଦେ ବୋଇଲେ ହୋ ଜାଣିଲୁଂ ତଦନ୍ତ
ଯେହାଂକର ଗ୍ୟାନେ ମାନଗୋବିନ୍ଦ ହୋଇଲା ଗୁପତ ।୯
ଯୁଦ୍ଧେଷ୍ଟି ବୋଇଲେ ସ୍ୱାମୀ ତୋହୋର ଅନେକ ସୁଦୟା ମୋତେ
ଶହସ୍ର ଛାଡ଼ିଲ ତୁମ୍ଭେ ଆମ୍ଭର ନିମନ୍ତେ ।୧୦
ବୋଇଲ ଶତ୍ରୁ ମାରି ପଞ୍ଚୁକଟକେ ହୁଅ ଯେକଛତ୍ରୀ
ମହତଂକର ବଚନ ହୋଇ କି ଅନୀତି ।୧୧
ଯାହାକୁ ଥାପି କାହାକୁ ଯେ ନ ନାଶି କଦାଚିତେ
ଯେତେବେଳେ ଦୁସହ ସଂକଟ ପଡ଼ିଅଛି ମୋତେ ।୧୨
ଭୀମସେନ ପ୍ରତଗ୍ୟାଂ ଯେ କରିଛି ଗରିଷ୍ଠ
ଆଜ ଦ୍ରିଯୋଧନ ନ ମାଇଲେ ଅଗ୍ନିରେ ହୋଇବ ପଇଠ ।୧୩
ଯେତ୍ଡ଼େକ କଷ୍ଟୋର ଆସି ପଡ଼ିଲା ଅଛି ମୁକୁ
କହିବା ମାନଗୋବିନ୍ଦ ଗଲା କେଉଂଣ ଠାବକୁ ।୧୪

ଅନେକ ବିନୋୟିଭାବ ପାଣ୍ଡବେ ଋଷିକେଶୀ
ତଦ୍ୟପି ଗାଙ୍ଗବେ ଯେ ନ ଦିଲେ ସମ୍ଭାଷି ।୧୫
ଭୀଷ୍ମଙ୍କର ନିଷ୍ଠୁର ଦେଖି ବଦୟନ୍ତି ଶ୍ରୀବତ୍ସି
ନିଶ୍ଚେ ଜାଣିଲୁ ତଦନ୍ତ ଯେବେ ମାନଗୋବିନ୍ଦ ଯେ ବ୍ରତିଅଛି ।୧୬
ସହଦେବ ବଦନ ଚାହିଁ ବଦୟନ୍ତି ଚକ୍ରପାଣି
ଦ୍ରିଯୋଧନ ଚରିତ କେମନ୍ତ ହୋଇଲା କହ ମନ୍ତ୍ରୀ ଚୂଡ଼ାମଣି ।୧୭
ତାହା ଶୁଣି ସହଦେବ କରକୁ ଚାହିଁଲେ
ଶିରେ କର ଦେଇଣ ସେ ବଚନ ବୋଇଲେ ।୧୮
ସହଦେବ ବୋଇଲା ସ୍ୱାମୀ ଶୁଣିବା ଜଗନ୍ନାଥେ
ସମର ଶେଷ ଦେଖି ଭୟ କଲା କୁରୁନାଥେ ।୧୯
ସୁହସ୍ତା ହାଥୀ ଉପରେ ଉଠିଣ ମହାବୀର
ମାନଗୋବିନ୍ଦ ରାଜା ଯେ ପଶିଲା ସମର ।୨୦
ସଂଗ୍ରାମ ଭୂମିରେ ତାହା ଦେଖିଲା ଭୀମସେନ
ଗଦାୟେ ପ୍ରହାର ଯେ କଲାକ ବହନ ।୨୧
ଗଦାଘାତେ ନୃପତି ପଡ଼ିଲା ଭୂମିତଳ
ସେ ହାଥୀର ତଳେ ପଡ଼ିଲା ଧୃତରାଷ୍ଟ୍ରର ବାଳ ।୨୨
ସୁହସ୍ତା ହାଥୀର ଯେ ଘଣ୍ଟର ଭିତରେ
ମାନଗୋବିନ୍ଦ ଗୋପ୍ୟ ହୋଇଲା ଯେ ପଡ଼ିଲା ଉପରେ ।୨୩
ତହିଁର ଉପରେ ପଡ଼ିଲା ଯେ ଗଜମର
ତହିଁର ଉପରେ ପଡ଼ିଲା କେତେ ପୁଣ ଅଶ୍ୱନ୍ତ ।୨୪
ତହିଁର ଉପରେ ପଡ଼ିଲା ଅନେକ ସଇନି
ତହିଁର ଉପରେ ବହିଲା ରୁଧିର ତାଳ ତିନି ।୨୫
ନିରସ୍ତକ ହୋଇଲା ଯହୁଁ ରଣଭୂମିର ମଧ୍ୟେ
ମାନଗୋବିନ୍ଦ ବାହାର ହୋଇଲା ରାତ୍ର ସତରଦଣ୍ଡ ଅର୍ଦ୍ଧେ ।୨୬
ମୃତୁପିଣ୍ଡ ମାନନ୍ତ ସମସ୍ତ ଧଇଲା
କେହି ତାହାକୁ ରୁଧିର ନଦୀରୁ ପାର କରନ୍ତା ନୋହିଲା ।୨୭
ଲକ୍ଷଣ କୁମରର ଉପରେଣ ପଡ଼ି
ମାନଗୋବିନ୍ଦ ରୁଧିର ନଦୀରୁ ହୋଇଲାକ ପାରି ।୨୮
ଗଦା ଘେନି ଭୂମିରେ ଗାରେକ ଚିରିଲା
ସାତତାଳ ଗଭୀରେ ସେ ଲକ୍ଷଣ କୁମରକୁ ପୋତିଲା ।୨୯
ରାତ୍ର ତିନିପ୍ରହର ସେ ହୋଇଲା ଭୀଷ୍ମଙ୍କର କତି
ଜୀବଦାନ ମାଗିଲା ସେ ଅନେକ ଅଭ୍ୟର୍ଥୀ ।୩୦
ଗାଙ୍ଗବେ ବୋଇଲେ ଯେବେ ଜୀବନକୁ କଲୁ ଆଶ
ବ୍ୟାସ ସରୋବର ଭିତରେଣ ପୁତ୍ର ବହନ ଯାଇଁ ପଶ ।୩୧
ଭୀଷ୍ମଙ୍କର ବଚନେ ସେ ଅନ୍ତରୀକ୍ଷେ ଧାଇଁଯାଇ
ହସ୍ତିନା ରାଜ୍ୟରେ ପ୍ରବେଶ ହୋଇଲାକ ବେଗେ କୁରୁସାଇଁ ।୩୨
ଅପାର ବଇକୁଲ୍ୟ ହୋଇଲା ଦେଖିଣ ଧୃତରାଷ୍ଟ
ବୋଇଲା ତୋହୋର ପ୍ରସାଦେ ବାବୁ ସିନା ଲଭିଲି ଯେତେ କଷ୍ଟ ।୩୩
ଧୃତରାଷ୍ଟ ବୋଇଲା ବାପ ନ ରହନି ଯେଥେ
ବ୍ୟାସ ସରୋବରେ ଯାଇଁ ତୁ ପଶରେ ଦୁଷ୍ଟପୁତ୍ରେ ।୩୪
ପିୟରର ବଚନେ ପଳାଇଲା କୁରୁବୀର
ମାନଗୋବିନ୍ଦ ଯାଇଂଣ ମିଳିଲା ଦୁର୍ଭାସାଂକ ଛାମୁର ।୩୫
ଅନେକ ବିନୋୟୀ ଦୁର୍ଭାସାଂକୁ ଶରଣ ମାଗି
ଦୁର୍ଭାସାୟେ ବୋଇଲେ ବ୍ୟାସ ସରୋବରେ ଯେଥେ ପଶ ଯାଇଁ ବେଗି
ନିଶ୍ଚିନ୍ତ ହୋଇ ତହିଁ ରହିଲେ କରିବୁ ରାଜ୍ୟ ଭୋଗୀ ।୩୬
ଋଷିଂକ ଶରଣେ ପଶିଲା ବ୍ୟାସ ସରୋବରେ
ଅଗାଦ ଜଳ ଦ୍ୱାଦଶ ଯୋଜନ ଗଭୀରେ ।୩୭
ଅନ୍ତର୍ଦ୍ଧାନ ଭୁବନ ତହିଁ ବିଶ୍ୱନାଥ ଥିଲେ ସନ୍ଥ
ସୁପାତି ଶେଯରେ ରାଜା ମାନଗୋବିନ୍ଦ ଶୋଇଅଛି ।୩୮
ଉପରେ ଛତ୍ର ହୋୟେ ଶୋଷକ କାଳସର୍ପ
ନିଦ୍ରାରେ ଅଚେତନ ହୋଇଅଛି କୁରୁନୃପ ।୩୯
ଜାନୁ ସୀମସ୍ଥାନ ଦେଇଅଛନ୍ତି କମଳିଣୀ
ବାମକରେ ଶିର ଆଉଂଷନ୍ତି ଡାହାଣ କରେ ଢାଳନ୍ତି ବିଞ୍ଚଣୀ ।୪୦
ମନ୍ତ୍ରୀ ଚୂଡ଼ାମଣି ଯହୁଁ କହିଲାକ ଯେମନ୍ତ ବାଣୀ
ଭୀଷ୍ମଦେବେ ଆଶ୍ରିଜ ହୋଇଲେ ତାହା ଶୁଣି ।୪୧
ଯେହା ଶୁଣି ଧାମନ୍ତି ପାଣ୍ଡବେ ଯେ ପବନହୁଁ ବେଗି ବେଗି
ଆରେ ଆରେ ମାନଗୋବିନ୍ଦ ବୋଲି ପାଡ଼ନ୍ତି ଘୋର ବୋବି ।୪୨
ବେଳ ହୋଇଲାଣି ଆସି ଦେଢ଼ ଯେ ପ୍ରହର
ବିଶାଶତେ ଯୋଜନ ଧାଇଁଲେ ଖରତର ।୪୩
ପ୍ରବେଶ ହୋଇଲେ ଯାଇଁ ବ୍ୟାସ ସରୋବର ତୀରେ
ଦେଖିଲେ ଲେଉଟ ଚରଣ ପଡ଼ିଛି ବାଲିରେ ।୪୪
ନକୁଳ ବୋଇଲା ସ୍ୱାମୀ ଯେଥେ ପଶିଥିଲା
ଦମ୍ଭ ସହି ନୁଆରି ବାହାର ହୋଇଗଲା ।୪୫
ଦୁର୍ଭାସା ଋଷିଂକ ଚରଣେ ପାଣ୍ଡବେ ପରିଣାମି
ଦ୍ରିଯୋଧନ କେଣେ ଗଲା କହିବା ଦେବସ୍ୱାମୀ ।୪୬
ଦୁର୍ଭାସା ସମସ୍ୟା ନ ଦିଲେ ଯହୁଁ ବାଣୀ
ବସିଛନ୍ତି ମହାତମା ମଉନବ୍ରତ ଜାଣି ।୪୭

ଧାମନ୍ତି ପାଣ୍ଡବେ ଯେ ଲୋଡ଼ନ୍ତି ଘୋରବନେ
ହାକନ୍ତି କେଣେ ପଶିଅଛୁ ରେ ରାଜା ଦ୍ରିଯୋଧନେ ।୪୮
ବନ ଗିରି କନ୍ଦରେ ସେ ଲୋଡ଼ନ୍ତି ଚଉକତି
ଦେଖି ନ ପାଇଲେ ସେ ରାଜା ମାନଚକ୍ରବ୍ରତୀ ।୪୯
ବଧପା ନାମେଣ ଯେକଇ ଯେ ବ୍ୟାଧ
ତାଳି ଆବରଣ ସେ ଜୀବନ୍ତ ବିରୋଧ ।୫୦
ବାମକରେ ଅଠା ଡାହାଣ କରେ ନଳକାଠି
ପକ୍ଷୀନ୍ତ ନିରୋପଇ ସେ ଯେକଲଯେ କରି ଦୃଷ୍ଟି ।୫୧
ତାହାକୁ ଦେଖି ପଚାରିଲା ଧୃଷ୍ଟ ଯେ ଦ୍ୟୁମନ
ଆହୋ ବେଣ୍ଟକାର କିସ ତୋହୋର ଆଧ୍ୟାନ ।୫୨
ସେ ବେଣ୍ଟକାର ବୋଇଲା ମୁଂ ଭୀମସେନ ଠାକୁରଂକ ନିଯୋଗୀ
ଚକୁଆ ପକ୍ଷୀରୁ ମୁଂ ଦୁଇପୁଞ୍ଜି ନିତ୍ୟେ କରଇ ଲାଗି ।୫୩
କାଲି ଯେ ନେଲି ଚକୁଆ ଆଠଗୋଟା ଧରି
ମଢ଼ଫୁଲି ନିଯୋଗକୁ ଦେଲି ବେଳ ସାତଘଡ଼ି ।୫୪
ଭୀମସେନ ଠାକୁରେ ବହୁତ ପ୍ରତଗ୍ୟାଂ କଲେ
ମୁଣୋହି ମୋହୋର ନାହିଂ ମାନଗୋବିନ୍ଦେ ନ ମାଇଲେ ।୫୫
ତେଣୁକରି ମୁଣୋହି ଯେ ନୋହିଲାକ କାଲି
କାଠ ପେଡ଼ା ଭିତରେ ଚକୁଆ ଆଠଗୋଟା ଭରିଲି ।୫୬
ଯହୁଂ ପ୍ରବେଶ ହୋଇଲା ମହା ନିଶାଭାଗ ରାତି
ସେ ଚକୋୟା ସୁମରିଲେ ଦେବ ଦାଶରଥି ।୫୭
ସ୍ୱାମୀ ଆମ୍ଭେ ଥିଲୁ ଅଳକା ନଦୀ ତୀର
ସେକାଳେ ସୀତୟା ହରି ନେଲା ତୋହୋର ଲଂକେଶ୍ୱରେ ।୫୮
ଭୋ ସ୍ୱାମୀ ବ୍ୟାକୁଳ ହୋଇ ଯେ ପୁଛିଲା ଆମ୍ଭଂକୁ
ସୀତାୟାକୁ କେ ହରିନେଲା ଦେଖିଲୁ କିରେ ତାହାକୁ ।୫୯
ଅପାର ବେଳ ପରିଯନ୍ତେ ଆମ୍ଭନ୍ତ କଲ ପୁଚ୍ଛା
ଆମ୍ଭେ ବୋଇଲୁ କେ ଜାଣଇ କେଣେ ଗଲା ତୋର ସୀତା ଆମ୍ଭେ
ଥାଉଂ ଆପଣା ସ୍ୱଇଚ୍ଛା ।୬୦
ଶୁଣିଣ ଆମ୍ଭଂକୁ କୋପ କଲେକ ଶ୍ରୀରାମଚନ୍ଦ୍ର
ପକ୍ଷୀ ହୋଇ ତୁମ୍ଭେରେ ଅଟ ଯେଡ଼େ ନିର୍ଦ୍ଦୟା ମନ୍ଦ ।୬୧
ଜାଣିଲେ କହିବ ନ ଜାଣିଲେ ହୋଇବ ତୁନି
ଝିଙ୍ଗାସି ପ୍ରାୟେ ମୋତେ କହିଲ ତ ବେନି ।୬୨
ମୁହିଂ ବୁଲୁଅଛି ଯେ ପତ୍ନୀଭ୍ରଷ୍ଟ ହୋଇ
ତୁମ୍ଭନ୍ତ ହୋଉ ରେ ମୋହୋର କଷ୍ଟଇଂ ।୬୩
ଦିବସ କାଳେ ତୁମ୍ଭରରେ ଯେକଯୋଗ ହୋଉ
ରାତ୍ରେ ଯେକସଙ୍ଗ ହୋଇଲେ ତୁମ୍ଭର ମୁର୍ଦ୍ଧନା ଫାଟି ପ୍ରାଣ ଯାଉ ।୬୪
ସ୍ୱାମୀ ତୁମ୍ଭର ଶାପ୍ୟତ ନୋହିଲା ଆମ୍ଭରେ
ପତିପତ୍ନୀ ଆଠଗୋଟା ପଶିଲୁଂ ଯେକଠାବରେ ।୬୫
ତ୍ରେତୟା ଯୁଗର ଶାପ୍ୟ ଯହୁଂ ପକ୍ଷୀମାନେ ସୁମରି
ବେନିଫାଳ ହୋଇ ଫାଟିଗଲା କାଠ ଯେ ପେଟାରି ।୬୬
ଉଠିଣ ପଳାଇଗଲେ ଚକୋୟା ଚକୋଇ
ଆଶ୍ରିଯ ହୋଇଲି ଚାହିଂ ତହିଂ ନାହିଂ କେହି ।୬୭
ଭୀମସେନ ଠାକୁରେ ଆଁକ ମାରିବେ ଦ୍ରିଯୋଧନ
ମୋଣୋହି ଠାବକୁ ସେ ହୋଇବ ମୁଖ୍ୟ ମେଞ୍ଚନ ।୬୮
ତେଣୁକରି ସ୍ୱାମୀ ମୁଂ ବୁଲଇ ଅନ୍ତରାଳେ
ଲୋଡ଼ଇ ନଦୀକୂଳେ ବନସ୍ତେ ଡାଳେ ଡାଳେ ।୬୯
ଧୃଷ୍ଟଦ୍ୟୁମନେ ବୋଇଲେ ତୁ ନୋହସି କାତର
ଦ୍ରିଯୋଧନ ରାଜାକଇଂ ଲୋଡ଼ିଛି ବ୍ରିକୋଦର ।୭୦
ମାନଗୋବିନ୍ଦ ରାଜା ଗଲା କେଉଂଣକତି
ଦେଖିଲୁ କି ବ୍ୟାଧ ରେ ଦ୍ରିଯୋଧନ ନୃପତି ।୭୧
ସେ ବ୍ୟାଧ ବୋଇଲା ମୁଂ ଘେନିଣ ଅଠାକାଠି
ପକ୍ଷୀ ଗୋଟିକି ନଳ ବଢ଼ାଇ ତହିଂକି କରି ଯେକଦୃଷ୍ଟି ।୭୨
ମାନଗୋବିନ୍ଦ ବୋଲି କେ ସ୍ୱାମୀ ନ ଜାଣଇ ମୁହିଂ
ବୀରେକ ପଶିଲା ଯେଥେ ପଛଘୁଞ୍ଚା ଦେଇ ।୭୩
ବାଳଅର୍କ ପ୍ରାୟେକ ମୁକୁଟେକ ଅଛି ତାର ମାଥେ
ଗିରିବର ସାରିକ୍ଷେ ବେନି ଗଦା ଅଛି ହାଥେ ।୭୪
ଝୀନ ବସ୍ତ୍ରେକ ସେ ଅଛଇ ହାଦେ ପିନ୍ଧି
ସଙ୍ଗେଣ ଆନ କେହି ନାହିଂ ତାର ଯୋଧୀ ।୭୫
ରୋଧିରେ ତ୍ରିପଣ୍ଡ ଯେ ଶରୀର ମହାଶ୍ରମୀ
ବ୍ୟାସ ସରୋବରେ ପଛଘୁଞ୍ଚା ଦେଇ ପଶିଲା ଦେବସ୍ୱାମୀ ।୭୬
ଶୁଣିଣ ସାନନ୍ଦେ ଚଳିଲେ ସେ ଧୃଷ୍ଟଦ୍ୟୁମନେ
ତକ୍ଷଣେ କହିଲେ ଯାଇଂ ପାଣ୍ଡବଂକ ସନ୍ନିଧ୍ୟାନେ ।୭୭
କାଳଚକ୍ର ପ୍ରାୟେକ ଭୀମସେନ ବୁଲାଇ ବେନିଆଖି
ରାଗେଣ ପ୍ରତିଉତ୍ତର ଦିଅଇ ଦୁର୍ଭାସା ଋଷିଂକି ।୭୮
ମାନଗୋବିନ୍ଦ ରାଜାକୁ ବୁଦ୍ଧି ଦେଲୁ କିହୋ ଯତୀ
ପଛଘୁଞ୍ଚା ଦେଇଣ ପଶିଲା କୁରୁପତି ।୭୯
ଦଉନି କରି ପଚାରିଲୁ ନ କହିଲ ଆମ୍ଭଂକୁ
ରକ୍ଷା କଲନିକି ଯେବେ ମାନଗୋବିନ୍ଦ ରାଜାକୁ ।୮୦
ଆରେରେ କଉରୋବା ବୋଲି ଡାକଇ ହାକଇ
ବ୍ରିକୋଦର ତେଙ୍ଗଂ ପଶିବାକୁ ବ୍ୟାସ ସରୋବର ଭିତରଇ ।୮୧

କୋଳକରି ଧଇଲେ ତାକୁ ଦେବ ଚକ୍ରପାଣି
ଅଗ୍ୟାଂନୀ ବ୍ରିକୋଦର ହୋ ତୁ ଅଟୁ ମନ୍ଦପ୍ରାଣୀ ।୮୨
ଆହୋ ଭୀମସେନ ବେଦବ୍ୟାସର ଯେ ଅଟଇ ଓଡ଼ପା
ଶରଣ ସାଧାରଣ ସେ ତୋହୋର ଯେତେ ଦର୍ପ କିଂପା ।୮୩
ଶରଣ ପଶିଲେ ସେ ଅବଶ୍ୟ ସମ୍ଭାଳି
ବଳାତ୍କାରେ ପଶିଲେ ଯେଥେ କ୍ଷଣିକେ ଯାଏ ଜଳି ।୮୪

**

## ୧୦୨. ଭୀମ ଦୁର୍ଯ୍ୟୋଧନ ସଂଗ୍ରାମ

### ବ୍ୟାସ ସରୋବର ବିବରଣୀ

.....

ମଧୁପ୍ରଭାବ ନାମେ ସତ୍ୟଯୁଗେ ମହା ପ୍ରଳୟବେଳେ
ବ୍ୟାସେ ପଶିଲେଟି ନାରାୟଣ ବକ୍ଷସ୍ଥଳେ ।୧
ଗର୍ଭେ ପଶିଣ ମୁନି ଦେଖିଲେ ବିଶ୍ୱଗର୍ଭ
ତେଣୁକରି ବ୍ୟାସ ସରୋବର କଲା ଠାବ ।୨
ତେଣୁକରି ବ୍ୟାସେ ଯେ ହୋଇଲେ ମହାଗ୍ୟାଂନୀ
ବିଷ୍ଣୁ ମହିଂମା କହିବାକୁ ଶକତା ହୋଇଲେ ମୁନି ।୩
ପୃଥିବୀ ହୋଇଲା ପତ୍ର ବ୍ୟାସେ ହୋଇଲେ କବିତ୍ୱ ବଚନ
ବିଶ୍ୱମୁଖ ଗଣପତିଙ୍କର ସହସ୍ରେ ଛତିଶ ବଦନ ।୪
ସେ ବିଶ୍ୱମୁଖ ଗଣପତି ହୋଇଲେ କରଣେ
ବ୍ୟାସେ କବି ହୋଇ ଯେ କହନ୍ତି ଆପଣେ ।୫
ଆହାର ନିଦ୍ରା ନାହିଂ ନାହିଂନା ମଇଥିନୁ
ଯେକ ଆସନେ ଯେକ ଲୟେ ଯେକଦ୍ୱେ ବସିଲେ ସାତ ମନୁ।୬
ଯେମନ୍ତେ ସମ୍ପାଦିଲେ ଷାଠିଯେ ଲକ୍ଷ ବିଷ୍ଣୁ ପୁରାଣ
ଅଷ୍ଟାଦଶ ଭାଗ କରି କଲାକ ଘଟଣ ।୭
ଯେ ବିଧି ଅଷ୍ଟାଦଶ ପୁରାଣ ଷାଠିଯେ ଲକ୍ଷ ଆଦି
ବିଷ୍ଣୁ ପୁରାଣ ମାର୍କଣ୍ଡ ପୁରାଣ ସମ୍ପାଦି ।୮
ଶିବ ପୁରାଣ ନାରଦ ପୁରାଣହିଂ ଉଚ୍ଚାରି
ଯେ ବିଧିରେ ଅଷ୍ଟାଦଶ ପୁରାଣ ଯୋଗେଶ୍ୱର କରି ।୯
ସାତମନୁ ବସିଲେ ସେ ସମସ୍ତ କରି ତେଜ୍ୟା
ଯେ ଓଡ଼ପା ଭିତରେ ପଶି ବ୍ୟାସେ କଲେ ଅନନ୍ତଶେଯ୍ୟା ।୧୦
ଆହାର ନିଦ୍ରା ମଇଥୁନ ନାହିଂ ସାତମନୁ
ନିଷ୍ଟେ ନିଦ୍ରାଗଲା ଯେ ଓଡ଼ପା ଜଳ ସ୍ନାନୁ ।୧୧
ନିଷ୍ଟେ ମହାତ୍ମା ପଶିଲେକ ଅଗାଦ ଜଳେ
ଅଳସେ ମହାମୁନି ନିଦ୍ରା ଯୋଗବଳେ ।୧୨
ଦକ୍ଷର ମୁଣ୍ଡ ମୋଡ଼ି ଦେବ ଯେ ସୁଢ଼ଳେ
ଯେ ଓଡ଼ପା ଭିତରେ ଡେଇଂ ପଡ଼ିଲେ ଶରୀର ମହାଜ୍ୱାଳେ ।୧୩
ଈଶ୍ୱର ପଶନ୍ତେ ସମସ୍ତ ମନ୍ଥନ ହୋଇଲାକ ଜଳ
ଚେତିଲେ ବେଦବ୍ୟାସ ମୁନି ଭାଜିଲା ଯୋଗବଳ ।୧୪
ଉଠିଣ ଚଉକତି ଚାହାନ୍ତେ ସେ ବ୍ୟାସ ମହାଯତି
ସନ୍ନିଧ୍ୟେ ପ୍ରବେଶ ହୋଇଲେ ଦେବ କାଶୀପତି ।୧୫
ଦେଖିଣ ବ୍ୟାସ ମୁନି କଲେକ ବହୁତ ପୂଜା
ଶରୀର ଶୀତଳ ହୋଇଲା ଦେବରାଜା ।୧୬
ଶାପ ବିହିଲେ ଦକ୍ଷ ପ୍ରଜାପତିର ପତ୍ନୀ
ଯେ ଓଡ଼ପା ଭିତରେ ଅଣ୍ଡପୂଜା ଦେବ ଘେନି ।୧୭
ଲିଙ୍ଗ ରୂପେ ଯେଥି ବିଜେ କଲେକ ଧୂର୍ଜଟି
ମହାଲୟେ କରି ପୂଜିଲେ ବ୍ୟାସ ତପୋନିଷ୍ଠି ।୧୮
ସହଦେବ ବୋଇଲେ ସ୍ୱାମୀ ଯେଥେ ପଶିଲେ ପଳାଇ
ଶରୀର ଶୀତଳ ହୋଇଲା ଶୋଇଲେ ମହାସୁଖ ପାଇ ।୧୯
ଈଶ୍ୱରେ ବୋଇଲେ ଯେବେ ଆମ୍ଭର ପ୍ରସନ୍ନ
ଅନାସ୍ତ ହୋଇଣ ଯେଥେ ଯେବେ ପଶିବେ ଦୁଖୀଜନ ।୨୦
ଶରଣ ପଶିଲେ ଥିବ ଶିବପୁର ଠାବ
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ବଳେ ଯେଥେ ନ ପଶିବ ।୨୧
ଯେ ଅବା ବଳବନ୍ତ ପଣେ ଲୋଡ଼ଇ ଯେଥେ ପଶି
ଶରୀର ଦହିଜ ହୋଇବ ବୋଲନ୍ତି ଦେବ କାଶୀ ।୨୨
ଶରୀର ଜାଳାଯେ ଯେଥି ପଶିଲେ ଈଶ୍ୱର
ସ୍ୱାମୀ ବ୍ୟାସେ ପୂଜିଲାକୁ ଯେ ନାମ ଓଡ଼ପା ବ୍ୟାସ
ସରୋବର ।୨୩

■■

### ସିଂହରଡି ବିବରଣୀ

ଗୋବିନ୍ଦେ ବୋଇଲେ ପଶି ନୁଆଇବା ଭିତରକୁ
ଆନ ବୁଦ୍ଧି ଅଛିକି ହୋ ମାନଗୋବିନ୍ଦ ବାହାର ହୋଇବାକୁ ।୨୪
ଅର୍ଜୁନ ବୋଇଲା ସ୍ୱାମୀ ଶୁଣିବା ଦେବରାଜ
ବ୍ୟାସ ସରୋବରଇଂ ମୁଂ ପେଷିବି ନାରାଜ ।୨୫
ଭାରଥ ଯୁଦ୍ଧେ ନ ପେଶିଲି ନାରାଜ ମନଭେଦୀ
ଯେହାକୁ ପେଶିବି କି ସେ ମାନଗୋବିନ୍ଦକୁ ଆସୁ ଛେଦୀ ।୨୬

ଭୀମସେନ ବୋଇଲା ମୁଂ ପ୍ରତଗ୍ୟାଂ କଲି ମାତାଂକ ଛାମୁରେ
ମୁହିଂ ସେ ମାନଗୋବିନ୍ଦ ରାଜାକୁ ମାରିବି ସମରେ ।୨୭
ବାଚା ବିଚଳିତ ହୁଅନ୍ତି ଯେବେଣ ପୁରୁଷ
ଗ୍ୟାଂନ ଥାଉ ଥାଉ କେ ନରକକୁ କରିବ ପ୍ରତିଆଶ ।୨୮
ଗୋବିନ୍ଦେ ବୋଲନ୍ତି ହୋ ଶୁଣିମା ସହଦେବ
ଦ୍ରିଯୋଧନ ରାଜା ଯେ କେମନ୍ତେଟି ବାହାର ହୋଇବ ।୨୯
ସହଦେବ ବୋଇଲା ବୁଦ୍ଧିଯେ ଦେବ ଅଛି
ମାନଗୋବିନ୍ଦ ରାଜାକଇଂ ନିହାଇ ଛାଡ଼ଇଟି ଲଛୀ ।୩୦
ଭୀମସେନ ଠାକୁରେ ସୁମରନ୍ତୁ ସଦାନନ୍ଦ
ପ୍ରସନ୍ନ ନାଥଂକୁ ସେ ମାଗନ୍ତୁ ସିଂହନାଦ ।୩୧
ସିଂହନାଦ ତିନିରଡ଼ି ଭୀମସେନ ଦ୍ୟନ୍ତୁ
ଶୁଣି ମାନଗୋବିନ୍ଦ ରାଜା ବାହାର ହୋଅନ୍ତୁ ।୩୨
ଗୋବିନ୍ଦେ ବୋଇଲେ ସେ ଥାଇ ରୁଦ୍ରଂକର ହାଥେ
କିମ୍ପେ ଦେବେ ସିଂହନାଦ ସଦାଶିବ ବିନା ଯେ ଭଗତେ ।୩୩
ଭଗବାନଂକ ଅଗ୍ରତେ ସହଦେବ ବାଚୀ
ପୂର୍ବେ ଭୀମସେନ ଈଶ୍ୱରଂକୁ କାରଣ କରିଅଛି ।୩୪

......

ସହଦେବ ବୋଇଲା ସ୍ୱାମୀ ଶୁଣିମା ଜଗନ୍ନାଥ
ଈଶ୍ୱରଂକୁ ସିଂଘନାଦ ମାଗନ୍ତୁ ପବନର ସୁତ ।୩୫
ଗୋବିନ୍ଦ ବୋଇଲେ ଯେବେ ଯେମନ୍ତ ଅଛି ଭୀମ
ବୁଦ୍ଧି ହରାଇ କିଂପେ କଲୁ ତୁ ମତିଭ୍ରମ ।୩୬
ଯେବେ ବହନ ତୁ ବିଶ୍ୱନାଥଂକୁ ସିଂଘନାଦ ମାଗ
ରଡ଼ିର ନାଦେ ମାନଗୋବିନ୍ଦ ବାହାର ହୋଉ ବେଗ ।୩୭
ଧ୍ୟାନେଣ ଚିନ୍ତିଲା ସେ ପାଣ୍ଡବ ସୁନ୍ଦର
ଆସନ କମ୍ପିଲା ଯେ ଦେବ ଶୂଳଧର ।୩୮
ଧ୍ୟାନେଣ ଜାଣିଲେ ସେ ଦେବ ପଶୁପତି
ଈଶ୍ୱରେ ବୋଇଲେ ଦେବୀ ଶୁଣ ଗୋ ପାର୍ବତୀ ।୩୯
ଆମ୍ଭନ୍ତ ସିଂଘନାଦ ମାଗୁଅଛି ବୀର ଭୀମା
ତୁମ୍ଭ ବିଚାରକୁ କିସ ଯୋଗାଇ ଗୋ ଉମା ।୪୦
ପାର୍ବତୀ ବୋଇଲେ ଭୀମସେନ ଆମ୍ଭ ଉପୁଗାରି
ବେଳେ ବେଳେ ପାଣ୍ଡବେ ଆମ୍ଭ କପିଳାସକଇଂ ଉଦ୍ଧରି
ସତ୍ୟମନାଇଛି ଦେବ ଯେ ତ୍ରିପୁରାରି ।୪୧
ପାର୍ବତୀ ବୋଇଲେ ସିଂଘନାଦ ଦିଅସି ବହନ
ପାଣ୍ଡବଂକ ହେତୁ ତୁମ୍ଭେ ବ୍ରତିଅଛି ତ୍ରିଲୋଚନ ।୪୨
ସଂକଟ କାଳେ ତୁମ୍ଭନ୍ତ ଉଦ୍ଧାରନ୍ତି ପୁଣ
ଦିଅସି ସିଂଘନାଦ ପ୍ରସନ୍ନ ବଦନେଣ ।୪୩
ଘନ ଘନ ଆସନ କମ୍ପଇ ସଦାନନ୍ଦ
ଚିରିକୁଟିରୁ କାଢ଼ି ଦିଲେ ସେ ସିଂଘନାଦ ।୪୪
ଈଶ୍ୱରେ ବୋଇଲେ ତୁ ବହନ ହୋଇ ଯିବୁ
ତିନିଘାନ୍ତି ମାତ୍ରକେ ଶବଦ ଭୀମସେନକୁ ସହିବୁ ।୪୫
ସିଂଘନାଦ ଆସନ୍ତେ ପ୍ରସର ପବନ
ଶବଦେ କମ୍ପୁଅଛି ମୃତ୍ୟୁ ଯେ ଭବନ ।୪୬
କାଳାନଳ ଜାଣି ବିକାଶଇ ସିଂଘନାଦ ଜ୍ୟୋତି
ଆଦିତ୍ୟହୁଂ ଶତେଗୁଣ ତେଜ ବିକାଶନ୍ତି ।୪୭
ଅନ୍ତରୀକ୍ଷେ ଆସି ପ୍ରବେଶ ହୋଇଲା ବ୍ୟାସ ସରୋବର ତୀରେ
ପାଣ୍ଡବ ସୁନ୍ଦର ଭୀମ ଧଇଲା ତାହା କରେ ।୪୮
ଆରେ ଆରେ ନିସତ କିମ୍ପା ହୋଉ ମାନଗୋବିନ୍ଦ
କରେ ଧରି ପାଣ୍ଡବ ତାହା ଚୁମ୍ବିଲା ସିଂଘନାଦ ।୪୯
ଆକ୍ରେଷିଣ ସିଂଘନାଦ ଭୀମସେନ ଗାଢ଼େ କଲେ ବାଦ୍ୟ
ମହୀମଣ୍ଡଳ କମ୍ପିଲା ପ୍ରଥମ ଶବଦ ।୫୦
ନଳିନୀ ପତ୍ରରେ ଯେହ୍ନେ ପଡ଼ନ୍ତେଣ ପାଣି
ପୃଥିବୀ ଦଳଦଳିତ କମ୍ପଇ ମେଦିନୀ ।୫୧
ସଞ୍ଚା ଛାଡ଼ିକରି ଯେ ବୁଲନ୍ତି ମନ୍ଦର
ମାନଗୋବିନ୍ଦ ନିଦ୍ରାଭାଙ୍ଗି ଉଠି ବସିଲା ଧାତିକାର ।୫୨
ପୁଣ ଆରେକ ରଡ଼ିଯେ ଦିଲା ବୀର ଭୀମ
ଛଡ଼ଲକ୍ଷ ଯୋଜନ ଆକାଶେ କମ୍ପିଲା ବୀର ଯମ ।୫୩
ପାତାଳେ ଅନନ୍ତ ନାଗର କମ୍ପିଲାକ ଫେରୁ
ନବଦ୍ୱୀପ ସପତ ସାଗର କମ୍ପିଲା ଟଳମଳ ହୋଇଲାକ ମେରୁ।୫୪
ଆଦିତ୍ୟ ଭୂଅମଣ୍ଡଳ ଧ୍ରୁବମଣ୍ଡଳ ଅମର ମଣ୍ଡଳ
ଆକାଶେ ଲାଗିଲା ଉଛୁଳିଲା ସିନ୍ଧୁଜଳ ।୫୫
ରେ ରେକାର କରି ରାଜା ଧୃତିରାଷ୍ଟି
ବଛସ୍ଥଳେ ମାରି ବାହାସ୍ଫୋଟ ଗର୍ଜିଣ ବେଗେ ଉଠି ।୫୬
ମହାଗହନ ନିଶ୍ୱାସ ବୁଲାଇ ବେନି ଡୋଳା
ବେନିଭୁଜେ ଆକ୍ରୋଷି ଧଇଲେ କମଳା ।୫୭
ଆରେ ଆରେ ଦ୍ରିଯୋଧନ ଅପାର ପ୍ରତଗ୍ୟାଂ ଯେ କଲୁ ବାବୁ
ବୋଇଲୁ ଯେ ଭୀମର ସାତରଡ଼ି ସହିବୁ ।୫୮
ମାନଗୋବିନ୍ଦ ରାଜା କମଳା ଭୁଜଦଣ୍ଡ ଦିଲା ପେଲି
ଅଧର ପୁଷ୍ଟ କରି ପଳା ଯା ବୋଲି ବୋଲି ।୫୯

ମହାଲକ୍ଷ୍ମୀ ବୋଇଲେ ସେ ପଳାଉ ଅଛିନି ମୁହିଂ
ତୋହୋର ଭର୍ତ୍ସନା ବୋଲିବାକୁ ଥିଲି ତ ବାଟ ଚାହିଂ ।୬୦
ଲକ୍ଷ୍ମୀ ବୋଇଲେ ଆବର ରଡ଼ିଯେ ଯେବେ ସହିବୁ ପାମର
ଯେ ରଡ଼ି ସହିଲେ ଦୂରେ ହୋଇବୁ ଅକ୍ଷୟର ।୬୧
ଯେତେ ବୋଲି ତତକ୍ଷଣେ ଛାଡ଼ିଲେ ମହାଲକ୍ଷ୍ମୀ
କଦଳୀ ପତ୍ର ପ୍ରାୟେ କମ୍ପଇ ମହାତମୀ ।୬୨
ସତୁରୀ ସତୁରୀ ଭାର ଗଦା ଘେନି କରସ୍ଥଳେ
କ୍ଷେପଇ ମାନଗୋବିନ୍ଦ ଯେ ଚିତ୍ତ ଅନ୍ତରାଳେ ।୬୩
ଈଶ୍ୱରେ ବୋଇଲେ ଶୁଣ ଗୋ ପାର୍ବତୀ
କପିଳାସ କନ୍ଦରେ ରହି ନୁଆରିବା ଯେ ଘାନ୍ତି ।୬୪
ଈଶ୍ୱରେ ବୋଇଲେ ମୁହିଂ ସେ ମନ୍ଦକୃତ୍ୟ କଲି
ତରେ ସେ ଭୀମସେନକୁ ସିଂଘନାଦ ଦେଲି ।୬୫
ଶୁଣିମା ବଇବସୁତ ମନୁ ବଦୟନ୍ତି ଅଗସ୍ତି
ପୁଣି ରତିଯେକ ଦିଲା ହୋଇଲା ତିନିଘାନ୍ତି ।୬୬
ସ୍ୱର୍ଗ ମଞ୍ଚ ପାତାଳ ନିତଳ ସୁତଳ ଅତିତଳ
ରସାତଳ ମହାତଳ ତଳାତଳ ଭୂତଳ ।୬୭
ଯେତେ ଭୁବନ ଯେ ଦଲଦଲିତେ କମ୍ପି
ଆକାଶ ସପତଲକ୍ଷ ବ୍ରହ୍ମାଣ୍ଡ ଭୁବନ ବ୍ୟାପି ।୬୮
ପାଣିରୁ ଡିଆଇଂ ସୁଖାରେ ପଡ଼ିଲେ ଜଳଚରେ
ସଞ୍ଚାମାନ ଛାଡ଼ି ବୁଲନ୍ତି ସମସ୍ତ କନ୍ଦର ।୬୯
ମେରୁ କ୍ରୋଟ ଭିତରେ ରହିଲେ ବୃନ୍ଦାଅର୍କେ
ଅସାକ୍ଷାମ ହୋଇଣ ପଡ଼ିଲେ ଦେବଲୋକେ ।୭୦
ବିହନ୍ତା ପୁରୁଷ ଯେ ସନକ ବିଶ୍ୱଦେବା
ପବନ ବିଘାତେ ଯେହ୍ନେ ଢଳି ପଡ଼ଇ ରମ୍ଭା ।୭୧
ଚାରିଖାନି ଚଉରାଶି ଲକ୍ଷ ଜୀବଜନ୍ତୁ
ସମସ୍ତେ ମୂର୍ଚ୍ଛାଗତ ନାହିଂ କାହାର ହେତୁ ।୭୨
ଦ୍ରିଯୋଧନ ମୁଥେକ ମାରି ଜଳବକ୍ର କବାଟ ପକାଇଲା ଭାଙ୍ଗି
ଆରେ ଆରେ ପାଣ୍ଡା ବୋଲି ବିଶସତେ ଯୋଜନ୍ନଂ ବାହାର
ଗଳଗାଜି ।୭୩
ଦେବ ଋଷିମାନେ ଯେ ପୁରାଣ ପଢୁଥିଲେ ଆକାଶେ
ଅସାକ୍ଷମ ହୋଇଣ ବିଷ୍ଣୁ ପୁରାଣ ପୋଥି ପକାଇଲେ
ଦେବବ୍ୟାସେ ।୭୪
ବିଷ୍ଣୁ ପୁରାଣ ରାଜା ମାର୍କଣ୍ଡ ପୁରାଣ ପାତର
ଶିବ ପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର ।୭୫
ଯେ ଚାରି ପୁରାଣ ପଡ଼ିଲେ ଆସି ଭୀମସେନ ଉପର
କି ଅବା କମଳା ବିଜେ କଲେ ଭୀମସେନ କନ୍ଧର ।୭୬
କୁମ୍ଭମାସ କୃଷ୍ଣପକ୍ଷ ପଞ୍ଚମୀ ଚନ୍ଦ୍ରବାର
ଚିତ୍ରା ନାମେ ନକ୍ଷତ୍ର ଯେ ଅଟଇ ସେ ଦିନର ।୭୭
ଶୂଳ ନାମେ ଯୋଗ ତଇତିଳ କରଣ
ଦିନକର ଅର୍ଦ୍ଧ ମଙ୍ଗଳ ବେଳ ଜାଣ ।୭୮
ବେଳ ଅର୍ଦ୍ଧମାନ ହୋଯେ ଦ୍ୱିତୀୟ ପହରେ
ମହାକୋପ କରିଣ ଆସଇ କୁରୁବୀରେ ।୭୯
ମାନଗୋବିନ୍ଦ ବାହାର ସେ ବ୍ୟାସ ସରୋବରୁ
ଆସରେ ପାଣ୍ଡବେ ସେ କୃଷ୍ଣ ଆସି ବେଗେ ପାରୁ ।୮୦
ଜଣକୁ ଜଣ ସିନା ସାଂଗ୍ରାମହିଂ ଉଚିତ
ଅଧର୍ମ ଯୁଦ୍ଧ କଲେ ନୋହିବଟି ବିହିତ ।୮୧
ଅଧର୍ମ ଯୁଦ୍ଧ ନ କରି କରିବା ଧର୍ମ ଯୁଦ୍ଧ
ରାଜାରେ ରାଜାରେ ସେ ଧର୍ମଯୁଦ୍ଧ ସଧ ।୮୨
ଧର୍ମଯୁଦ୍ଧ ଯେବେ କରିବ ପାଞ୍ଚଭାଇ
ଯେବେ ସେ ଜାଣମା ଯେହାଂକର ହୃଦେ ଧର୍ମ ବିଜେ କରିଣ
ଅଛଇ ।୮୩
ବଦୟନ୍ତି କେଶବ ଯେ ଶୁଣ କୁରୁବଇ
ତୁମ୍ଭେ ସେ ଧର୍ମ ଯୁଦ୍ଧ କର ପାଣ୍ଡବଂକର ଧର୍ମ କାହିଂ ।୮୪
ଅର୍ଜୁନର ନନ୍ଦନ କୁମର ଅଭିମନ୍ୟୁ
ବେଢ଼ିଣ ମାରିଲେ ଅନେକ ରଥୀ ତୋହୋର ସେ ଗ୍ୟାଂନୁ ।୮୫
ଶରୀର ସମ୍ଭାଳିଣ କହ କୁରୁପତି
ତୋହୋର ଯାହାକଇଂ ଇଚ୍ଛା ନାମ ଧରି ରାଅ
ତୋହୋର କତି ।୮୬
ମାନଗୋବିନ୍ଦ ବୋଇଲା ଆମ୍ଭର ସଂକଳ୍ପ ସମର ଇଚ୍ଛା
ରଥୀ କି ରଥୀ ଗଜକୁ ଗଜ ଅଶ୍ୱକୁ ଅଶ୍ୱ ସମକକ୍ଷା ।୮୭
ରାଜାକୁ ରାଜା ମନ୍ତ୍ରୀକି ମନ୍ତ୍ରୀ ପାତ୍ରକୁ ପାତ ପାଦାନ୍ତିକି ପାଦାନ୍ତି
ମୋହୋର ତୁଲେ ସମର କରୁ ତୁମ୍ଭର ନୃପତି ।୮୮
ଦ୍ରିଯୋଧନ ବୋଇଲା ଯେ ବିଧି କଲେ ସଂଗ୍ରାମର ଧର୍ମ
ଅପାର ଧର୍ମ ତୁମ୍ଭର ତହୁଂ ବଦୟନ୍ତି ଶ୍ରୀପୁରୁଷୋତ୍ତମ ।୮୯
ଦୁଃଶାସନ ମାଇଲା କୁମର ଅଭିମନ୍ୟୁ
କର୍ଣ୍ଣ ମାଇଲା ଯେ ଘଟଉତ୍କଟ ଭୀମସେନର ତନୁ ।୯୦
ଭୀଷ୍ମେ ନାଶ କଲେ ଶଙ୍ଖ ବିରାଟ ସାନପୁଅକୁ
ଦ୍ରୋଣେ ମାଇଲେ ଯେ ଶ୍ୱେତ କୁମାରକୁ ।୯୧

ଚାରିପାଦେ ତୁମ୍ଭର ରହି ଅଛଇ ବଡ଼ ଧର୍ମ
ଆମ୍ଭର ଥାଠ ରାଜା ଯେ ଅଟଇ ବୀର ଭୀମ ।୯୨
ଦ୍ରିଯୋଧନ ବୋଇଲା ହରି ତୁମ୍ଭେ ଓହୋକୁଳକୁ ମଧ୍ୟସ୍ତ
ଧର୍ମକଇଂ ଲଂଘିଣ କିଂପେ କହୁ ପାପ ଅର୍ଥ ।୯୩
ମୁହିଂ ଯେ ଆଦିହୁଂ କପଟ କୁଟ କଥା କଲି
ତେରପଦ୍ମ ଯୋଦ୍ଧା ମରାଇ ମୁଂ ଯେକାଯେ ବ୍ରତିଲି ।୯୪
ଶତେପୁତ୍ର ପାତ ହୋଇଲେ ଗାନ୍ଧାରୀର ତନଯେ
ପାଞ୍ଚପୁତ୍ରେ କିମ୍ପା ସେ କୋଇନ୍ତଂକର ହୋଇଲେ ଉଦଯେ ।୯୫
ହରି ଆଦିହୁଂ ଆଶ୍ରେ କଲେ ଧର୍ମ ଯେ ପାଣ୍ଡବେ
ଷେଷ କାଳେ ପାଣ୍ଡବେ କି ଛାଡ଼ିବେ ଧର୍ମ ଯେବେ ।୯୬
ତୁମ୍ଭର ଥାଟରେ ଯେବେ ରାଜା ଅଟଇ ହୋ ଭୀମ
ରାଜାକୁ ହାଦେ କରିବେ ନାହିଂକି ସମସ୍ତେ ପରିଣାମ ।୯୭
ଭୀମାର ଚରଣ ତଳେ ତୁମ୍ଭେ ହୋଇବ ପରିଣାମି
ଆଜହଂ ପଞ୍ଚୁକଟକେ ହୋଉ ରାଜା ସ୍ୱାମୀ ।୯୮
ଯେଥୁ ଅନନ୍ତରେ କଥା ଯେକ ଶୁଣ ବଇବସୁତମନୁ
ତହୁଂ ଆପଣେ ଶ୍ରୀକୃଷ୍ଣ ଉଠିଲେକ ଆସ୍ତାନୁଂ ।୯୯
ଭୀମସେନ ମୁଣ୍ଡରେ ସେ ବାନ୍ଧିଲେକ ପାଟ
ତ୍ରିଶାଖା ଶ୍ୱେତଦୁବ ଶୁକଳ ପୁଷ୍ପମାଳ ଯେ ମୁକୁଟ ।୧୦୦
ଉତୁରୀ ପଇତା ହରି ମନ୍ଦିର ଚିତା କପାଳେ
ଆପଣେ ପ୍ରଣମିତ ହୋଇ ଶୁତିଲେ ବନମାଳେ ।୧୦୧
ମାନଗୋବିନ୍ଦ ବଚନେ ଦେବ ବନମାଳୀ
ଭୀମର ଚରଣ ତଳେ ଶୁତିଲେ ଗଡ଼ଘାଳି ।୧୦୨
ଶ୍ରୀକୃଷ୍ଣଂକର ଛାମୁରେ କଲେ ପ୍ରଣମ୍ୟ ଯୁଝେଷ୍ଠି
ଯୁଝେଷ୍ଠିଂକ ଚରଣ ତଳେ ଶୁତିଲେ କିରୀଟୀ ।୧୦୩
ନକୁଳ ସହଦେବ ପଡ଼ିଲେ ଅର୍ଜୁନ ପାଦତଳେ
ଦୃଷ୍ଟଦ୍ୟୁମନ ଆଦି କରି ପ୍ରଣମ୍ୟ ସକଳେ ।୧୦୪
ଦେଖିଣ ଆଶ୍ରିଜ ଯେ ସେ ମାନଗୋବିନ୍ଦ
ଆସ ଆସ ଭୀମାରେ ସମରେ ହୋଇଲୁ ନରେନ୍ଦ୍ର ।୧୦୫

■■

## ଭୀମ ଦୁର୍ଯ୍ୟୋଧନ ଗଦାଯୁଦ୍ଧ

ବଦଯନ୍ତି ଅଗସ୍ତି ତୁହୋ ଶୁଣିମା ମହାରାଯେ
ଗର୍ଜଇ ମାନଗୋବିନ୍ଦ କଳାସର୍ପ ପ୍ରାଯେ ।୧
ସତୁରି ସତୁରି ଭାର ଗଦା ବେନିକରେ
ଉଠିଣ ଅଇଲା କି ସେ ପର୍ବତ ମନ୍ଦରେ ।୨
ବାଉନ ବାଉନ ଭାର ଗଦା ଭୀମସେନ କରେ
ବୁଲାବନ୍ତି ବେନି ଗଦା ପବନହୁଂ ଖରେ ।୩
ଭୀମସେନ ବୋଇଲା ତିଳଅର୍ଦ୍ଧେ ନ ଦିଲୁ ଯେ ଭୂମି
ଯେବେ କିମ୍ପା ନିସତ ହୋଇଲୁ ଦେବସ୍ୱାମୀ ।୪
ସତୁରି ସତୁରି ଭାର ବେନି ଗଦା ବୁଲାଇ ଦ୍ରିଯୋଧନ
ବେନି ହାଥେ
ସମ୍ଭାଳ ସମ୍ଭାଳ ବୋଲି ପିଟିଲା ଭୀମସେନର ମାଥେ ।୫
ଦେଖିଣ ମାରୁତି ଯେ ପାତିଲା ବାମ ଅଙ୍ଗ ◂
ଅଙ୍ଗେ ପଡ଼ିଣ ଗଦାବର ହୋଇଲାକ ଭଙ୍ଗ ।୬
ଆରେକ ଗଦାଯେ ଯେ ପ୍ରହାର କଲା ଆଣି
ଭୀମସେନ ବାମଅଙ୍ଗ ପାତିଲାକ ପୁଣି ।୭
ପୁଣିହିଂ ବାମ ଅଙ୍ଗେ ପଡ଼ିଲା ଗଦାବର
ଆରେକ ଗଦା ବାଜି ହୋଇଲା ଶତେଚୂର ।୮
ସତୁରି ସତୁରି ଭାର ଗଦା ଭୀମସେନ ଅଙ୍ଗେ ଭାଜି ଭାଜି
ପୁଣ ଉଂଚାଇ ରାଜା ଧାମଇଂ ଗଳଗାଜି ।୯
ବାଉନ ବାଉନ ଭାର ଗଦା ବୁଲାଇ ବୀର ଭୀମେ
ମାନଗୋବିନ୍ଦ ଉପରକୁ ସେ ପ୍ରହାର କଲା ଅତି ତମେ ।୧୦
ଗଦା ପଡ଼ନ୍ତେ ମାନଗୋବିନ୍ଦ ପାତିଲା ବକ୍ଷସ୍ଥଳ
ଭାଙ୍ଗିଣ ଗଦାବେନି ହୋଇଲା ଶତେଚୂର ।୧୧
ପୁଣ ଆରେକ ଗଦାଯେ ପ୍ରହାର କଲାକ ତୋଳି
ଭାଂଜିଲା ଗଦାବର ହୋଇଲା ମସି ଧୂଳି ।୧୨
ମାନଗୋବିନ୍ଦ ରାଜା ଯେ ପ୍ରହାର କଲା ମୁଥେ
ଆକାଶୁଂ ଯେସନେକ ପଡ଼ଇ ନିରିଘାତେ ।୧୩
ଭୀମସେନହିଂ ପ୍ରହାର କଲାକ ଭୁଜଦଣ୍ଡେ
ଅଗ୍ନି ଝଲକି ପଡ଼ିଲା କି ଦ୍ରିଯୋଧନର ମୁଣ୍ଡେ ।୧୪
ହାବୋଡ଼ା ହାବୋଡ଼ି ହୋଇ ସେ ହୋଅନ୍ତି ପେଲାପେଲି
ଅଧରେ ଦାନ୍ତ ଚାପି କଟୁବଚନ ବୋଲାବୋଲି ।୧୫
ରେ ରେ ଶବଦେ ଚାହାନ୍ତି କାଳାନଳ ଚକ୍ରଡ଼ୋଳେ
ମାରନ୍ତି ବଜ୍ରମୁଥ ଆକ୍ରେଷି କପାଳେ ।୧୬
ଭୁଜେଣ ଭୁଜ ସେ ହୋଅନ୍ତି ଛନ୍ଦାଛନ୍ଦି
ପାଦେଣ ପାଦ ଛନ୍ଦି ଦୃଢ଼ କରି ବାନ୍ଧି ।୧୭
ଭୀମକୁ ହାବୁଡ଼ାଇ ସେ ପକାଇଲା କୁରୁନାଥେ
ରେ ରେ ଭୀମ ବୋଲି ମାଡ଼ିବସିଲା ହୃଦଗତେ ।୧୮
ମାନଗୋବିନ୍ଦ ମାଡ଼ି ବସି ପ୍ରତଗ୍ୟାଂ କଲା ଅପାର
ରେ ରେ ପାଣ୍ଡବା ଆଜ ଆଷ୍ୟ ପୂରିଲା ତୋହୋର ।୧୯

କେପେ ଲେଉଟାଇଲା ତାକୁ ବୀର ବ୍ରିକୋଦର
ମାନଗୋବିନ୍ଦଙ୍କୁ ମାଡ଼ି ବସିଲା ହୃଦୟର ।୧୨୦
କାଳଚକ୍ର ଜାଣି ଭୀମ ବୁଲାଇ ବେନିଡ଼ୋଳ
ରେ ରେ ମାନଗୋବିନ୍ଦ ନିର୍ମାଖୀ ହୋଇଲୁ ପୂରିଲା ତୋର କାଳ ।୧୨୧
ପୁଣ ପୁଣ ପହିଜ କରଇ ଅବହେଳେ
ପୁଣ ମାନଗୋବିନ୍ଦ ଭୀମସେନଙ୍କୁ ମାଡ଼ି ବସିଲାକ ତଳେ ।୧୨୨
ନୟନ ଛଟକେ ଧାତିକାରେ ଲେଉଟାଇ
କେ ତଳେ ପଡ଼ଇ କେ ଉପରେ ଉଠଇ ।୧୨୩
ବେନିବୀରେ କେହି ସମରେ ନୋହନ୍ତି ଊଛ
କେଶବାସ ଅସମ୍ଭାଳ ବିକରାଳ ମୁଖ ।୧୨୪
ହାକନ୍ତି ଡାକନ୍ତି ସେ ଦିଅନ୍ତି ଘୋରରଡ଼ି
ମେରୁଗିରି ଶୃଙ୍ଗ କି ପଡ଼ିଲାକ ଝଡ଼ି ।୧୨୫
ଚାପନ୍ତି ଗଣ୍ଡସ୍ଥଳ କରନ୍ତି ପହିଜ
ନିର୍ଧୂମ ଅଗ୍ନି ଜାଣି ବିରାଜଇ ତେଜ ।୧୨୬
ବାହାନାଦ କରିଣ ଚାପନ୍ତି କପାଳେ
ଝଣ ଝଣାନ୍ତି ହୋଇ ଅଗ୍ନି ଉଠଇ ମହାଜାଳେ ।୧୨୭
ଲେଉଟ ପାଉଟ ହୋଇ ଉଠନ୍ତି କ୍ଷଣେକ୍ଷଣ
ମୁଖଘାତ ଶବଦେ କମ୍ପନ୍ତି ସୁରଗଣ ।୧୨୮
ପର୍ବତ ପରାୟେ ହୋଇ ପଡ଼ନ୍ତି ବେନିବୀରେ
ଡିଙ୍ଗର ବୃକ୍ଷ ପର୍ବତମାକେ ହୋଉଛନ୍ତି ଚୂରେ ।୧୨୯
ରଟ ରଟ ମଟ ମଟ ବାଜନ୍ତି ବେନିପାଟ
ଚାପନ୍ତେ ଅସ୍ଥି ଚର୍ମ ଯାଉଥାଇ ଫାଟି ।୧୩୦
ବେନିଂକ ପ୍ରହାରେ ଗଳିତ ମହାଘୃମ
ଝରଝର ରୁଧିର ଫୁଟିଣ ରୋମେ ରୋମ ।୧୩୧
ମୁଥ ପ୍ରହାରନ୍ତେ ନାକରୁ ବହଇ ରକତ
ଦେହେଂ ଦେହେଂ ଜଡ଼ିତ ହୋଇ ଦିଶିଲେ ୟେକଗାତ୍ର ।୧୩୨
ସତ୍ୟଯୁଗେ ଯେସନେକେ କେତୁ ଯେ ମଙ୍ଗଳ
ତେସନେକ ସଂଜାତ ଦିଶନ୍ତି ବେନିବୀର ।୧୩୩
ଗିରିବର କନ୍ଦର ଯେ ହୋଉଛନ୍ତି ଧୂଳି
ଆକାଶେଣ ଅଦୃଶ ହୋଇଲେ ଅଂଶୁମାଳୀ ।୧୩୪
ଶତଶୃଙ୍ଗ ପର୍ବତକୁ ସୁମରଣା କଲା ପବନର ବଛା
ଭୋ ଶତଶୃଙ୍ଗ ତୁ ମୋତେ କର ରକ୍ଷା
ୟେକ ଉତ୍ତର ଶତସିଂଘର ପ୍ରାକର୍ମ ହୋଇଲା ପ୍ରତକ୍ଷା ।୧୩୫
ଦେବଂକୁ ଦୁଲଭ ମାନଗୋବିନ୍ଦର ପ୍ରାକର୍ମ
ବୃନ୍ଦାଅର୍କେ କମ୍ପିଲେ ସମର ଅବିଶ୍ରାମ ।୧୩୬
ପଞ୍ଚଦଶ ଯୋଜନ ଯେ ବଢ଼ଧବ ନାମେ ବନ
ଭାଜିଣ ଗୁଣ୍ଡାମୟେ ହୋଇଲା ଗିରିବର ବୃକ୍ଷମାନ ।୧୩୭
ସମରେ ନିର୍ଭୟ ଯେ ନୃପତି ଧୃତିରାଷ୍ଟ
ଅଶକତ ହୋଇ ଭୀମସେନ ସାଂଗ୍ରାମରେ ଫୁଟି ।୧୩୮
ନହେଣ ଖଣ୍ଡଖଣ୍ଡ ସେ ହୋଇଲା ବେନିକାୟେ
ରୁଧିର ବହଇ ଯେ ଖଣ୍ଡଗିରି ପ୍ରାୟେ ।୧୩୯
ଅର୍ଜୁନ ବୋଇଲେ ହରି ସମରେ ଶ୍ରମ ଭୀମ
ବିଚାରି ବୁଦ୍ଧି କର କିନା ଶ୍ରୀ ପୁରୁଷ ଉତ୍ତମ ।୧୪୦
ହରି ଯଦ୍ୟପି ଆମ୍ଭନ୍ତ ତୁ ହୋଇଅଛୁ ସାହି
ଭୀମସେନ ନିଧନେ ଆମ୍ଭର ବ୍ରତିନାହିଁ କେହି ।୧୪୧
ଗୋବିନ୍ଦେ ବୋଇଲେ ଆହୋ ଶୁଣସି ସହଦେବ
ସମରେ ବିଅର୍ଥ ତ ନୋହିଲା କଉରୋବ ।୧୪୨
ସହଦେବ ବୋଇଲା ସ୍ୱାମୀ ମାନଗୋବିନ୍ଦର ଜନ୍ମକାଳେ
ଧୃତିରାଷ୍ଟ ନେଇ ଦିଲା ଦୁର୍ବାସାଙ୍କ କୋଳେ ।୧୪୩
କୋଳେ ଧରି ଦୁର୍ଭାସାୟେ ବୋଇଲେ ଜୀବନ
ତୋହୋର ସାଧୁ ସାଧୁ
କୋଟିୟେ ପାଦେ ଲକ୍ଷୀ ନ ଛାଡ଼ୁ ତୋହୋର କନ୍ଧୁ ।୧୪୪
ଦୁର୍ଭାସାୟେ ପାତିଲେକ ମହା ପ୍ରତୋଷ ବହନି
ମହାମନ୍ତ୍ରେ ସେକିଲେ ଦୁର୍ଭାସା ମହାମୁନି ।୧୪୫
ଆପଣେ ଦୁର୍ଭାସାୟେ ଶ୍ରୀକରେ ସେକିଲେ
ଶରୀର ଯାକ ତୋହୋର ବଜ୍ରହେଉ ବୋଲିଣ ବୋଇଲେ ।୧୪୬
ସମସ୍ତ ସେକିଲେ ସେ ଦୁର୍ଭାସା ତପୋବନ୍ତ
ମଳଦ୍ୱାରକୁ ତାଂକର ନଗଲାକ ହାଥ ।୧୪୭
ସେକୁ ସେକୁ ଅଗ୍ନି ଲାଗିଲା ମହାଜାଳ
କାନ୍ଦନ୍ତେ ଦୁର୍ଭାସାଂକର ଜାନୁରେ ମଳ ଯେ ପଡ଼ିଲା ।୧୪୮
ମଳ ଦେଖିଣ ଶାପ୍ୟ ଦିଲେକ ତପୋନିଷ୍ଠି
ପ୍ରାକର୍ମ ଶରୀରୁ ତୋର ଯାଉ ମଳଦ୍ୱାର ଫାଟି ।୧୪୯
ପାଶୁପତ୍ର କାବଲ ଅସିପତ୍ରେ ନୋହିବୁ ଛେଦ
ଯେହି ମଳଦ୍ୱାରେ ତୋହୋର ହେଉ ମୃତୁଭେଦ ।୧୫୦
ୟେହେନେକ ବୋଲି ଦୁର୍ଭାସାୟେ ବୋଲିଛନ୍ତି ପୂର୍ବେ
ଭୀମସେନ ଠାକୁର ଯୁଝନ୍ତି କିନା ୟେବେ ।୧୫୧
ସହଦେବ ବଚନେ ହସିଲେ ବନମାଳୀ
ଗୋବିନ୍ଦ ହସନ୍ତେଣ କମ୍ପଲା ମହୀଆଳୀ ।୧୫୨

ଦ୍ରିଯୋଧନ ଚାହିଂଲା ଯେ ବାସୁଦେବଂକର ମୁଖ
ଯେ ମୋହୋର ମୃତ୍ୟୁଭେଦ ଜାଣଇଂ ପ୍ରତକ୍ଷ ।୫୩
ଯେହିକ୍ଷଣି ମୃତୁଭେଦ କହିବ ନାରାୟଣ
ମାଲବନ୍ଧ ଛାଡ଼ି ଗଦା ଧଇଲା କୁରୁରାଣ ।୫୪
ଚକ୍ରାବର୍ତ୍ତ କରିଣ ସେ ଗଦା ବୁଲାଇଲା
ଅଣଚାଶ ବାତ ପ୍ରାୟେ ପବନ ବହିଲା ।୫୫
ମହାବାତଘାତେ ଯେ ପର୍ବତ କଂପିଲା
ଗଦା ପବନ ଘାୟେ ଭୀମସେନ ଉଡ଼ିଗଲା ।୫୬
ଖାର ସମୋଦ୍ର ଜିଣି କ୍ଷୀର ସମୋଦ୍ର ଭିତରେ
ଭୀମସେନ ପଡ଼ିଲାକ ଯାଇଂଣ ଗମ୍ଭୀରେ ।୫୭
ପଡ଼ିଣ ଆସଷମ ପବନର ବଳା
ଦେଖିଣ ସିନ୍ଧୁରାଜା ଭୟେଣ ଘୁଞ୍ଚିଗଲା ।୫୮
ଶୁଣ ହୋ ଚଇତନ ହାଦେ ଦ୍ରିଯୋଧନର ଯେସନେକ ମହିମା
ଗଦାବର ପବନଘାତେ ଉଡ଼ିଗଲା ବୀର ଭୀମା ।୫୯
ଯେସନେକ ସମୟେ ସମର ଭୂମିକି ଚାହିଂଲେ ଦାମୋଦର
ଦେଖିଲେ ସମରେ ତ ନାହିଂ ବ୍ରିକୋଦର ।୬୦

* * * * * *

ବ୍ରିକୋଦର ନ ଦେଖିଣ ବିକଳ ଯୁଝେଷ୍ଠି
ହା ହା ଭୀମସେନରେ ମୋର ପ୍ରାଣର ସଖା ଭାଇଗୋଟି ।୬୧
ବାବୁ ସରିଲା ଯୁଦ୍ଧରେ ତ ତୁ କଥା ଗୁହାଇଲୁ
ଭୀମସେନ ନାମ ତ ତୁ ଯେବେ ବୁଡ଼ାଇଲୁ ।୬୨
ବାବୁ ଦ୍ରିଯୋଧନ ମାରିବୁ ବୋଲି ପ୍ରତଗ୍ୟାଂ କରିଥିଲୁ
ଅନାସ୍ତି କରିଣ ଯେବେ କେଉଂକତି ଗଲୁ ।୬୩
ବାବୁ ତୋହୋର ବିହୁନେ ବ୍ରତିବା ମୋର ନାହିଂ
ବାବୁ କାହାର ବଦନରେ ଚାହିଂବି ଆଉ ମୁହିଂ ।୬୪
ବାବୁ ଅନାଥର ବାନ୍ଧବରେ ମୋହୋର ଭାଇଗୋଟି
କି ବୋଲିବେ ରେ ମାୟେ ଦେବୀ କୋନ୍ତୀ ।୬୫
ବାବୁ ତୁହି ନାଶଗଲୁ ଯେବେ ବିନା ସମରେ
ଦ୍ରିଯୋଧନକୁ ରାଜ୍ୟ ଯେ ହୋଇଲା ବେଭାରେ ।୬୬
ପୋଡୁ ପୋଡୁ ରାଜ୍ୟଭାରରେ ମୋହୋର କିସ ଅର୍ଥ
ରାଜ୍ୟସୁଖ ମୋତେ ନୋହିବ ହୋଇବ ବନବାସ ଅର୍ଥ ।୬୭
ମିଛେହେଂ ଦ୍ୱନ୍ଦ ମୁଂ ଆବୋରିଲି କିସପାଇଂ
ତୋହୋର ପ୍ରାୟେ ଭ୍ରାଥ ରେ ପାଇବଇଂ କାହିଂ ।୬୮
ଅନେକ କ୍ରୋଧ କରନ୍ତି ଧର୍ମର ନନ୍ଦନ
ମୋହୋର ଜୀଇଂବାର କିସ ପ୍ରୟୋଜନ ।୬୯
କିସ କରିବି ମୁଂ ଯେଥେ ପୁଣ ଥାଇ
ଚାରିଭାଇ ଆମ୍ଭେ ବନସ୍ତେ ବିହଡ଼ଇ ।୭୦
ଯୁଝେଷ୍ଠିଂକର କ୍ରୋଧ ଦେଖି ଅର୍ଜ୍ଜୁନ ଗାଣ୍ଡିମ ଧନୁ ପକାଇ
ଅନେକ କ୍ରୋଧ କରଇ ସୁଭଦ୍ରା ଦେବୀର ସାଇଂ ।୭୧
ହା ହା ଭାଇ ମୋର ତୁ ମହା ବଳବନ୍ତା
ଶତଶିଂଗ ପ୍ରସାଦେ କେହି ନାହିଂ ଜିଣନ୍ତା ।୭୨
ଭୋ ଶତଶିଙ୍ଗ ପର୍ବତ ତୋତେ ଆଶ୍ରାକଲା ମୋହୋର ଭାଇ
ମାତଂକର ବଚନ ତ ହୋଇଲା ଅନାସ୍ତଇଂ ।୭୩
କି ବୁଦ୍ଧି କରିବୁ ହାଦେ କାହିଂ ଯିବୁ ଯେବେ
ଯେ ନିଲ୍ଲଜ ଆତ୍ମା ରହିଛି କିଂପେ ଦେହେ ଭବେ ।୭୪
ଭୋ କୃଷ୍ଣ ତୋତେ ଆଶ୍ରେ କରି ପାଣ୍ଡବେ ହୋଇଲୁ ନିରିମାଖି
କେଣେ ଗଲା ଆମ୍ଭର ସୁନ୍ଦର ଭାଇଗୋଟି ।୭୫
ଆମ୍ଭଂକୁ ବେଳେକତେ ରଖି ନୁଆରିଲୁ
ନିଲ୍ଲଜ ଶରୀର ମୋହୋର ଯେହା କେ ସହିପାରୁ ।୭୬
ଅର୍ଜ୍ଜୁନର କ୍ରୋଧ ଦେଖି ଶ୍ରୀକୃଷ୍ଣ ଲୋଚନୁ ବହେ ପାଣି
ଲୋତେକ ଧାରା ବହଇ କି ଶ୍ରାବଣ ବୃଷ୍ଟି ଜାଣି ।୭୭
ହା ହା ବ୍ରିକୋଦର ରେ ପାଣ୍ଡବ ଶ୍ରେଷ୍ଠ ମଣି
କେଣେ ଗଲୁ କେଣେ ପଶିଲୁ ବ୍ରିକୋଦର ପୁଣି ।୭୮
ଅଦଭୁତ ହୋଇରେ କେଣିକି ତୁ ଗଲୁ
ଭାଇନ୍ତ ଛାଡ଼ି ତୁହି କେଣେହେଂ ରହିଲୁ ।୭୯
ଶ୍ରୀକୃଷ୍ଣଂକର କ୍ରୋଧ ଦେଖିଣ ନକୁଳ
ହୃଦୟେ ଅତ୍ୟନ୍ତ ଯେ ହୋଇଣ ଆକୁଳ ।୮୦
ଚକ୍ଷୁରୁ ଲୁଅ ବହଇ ଯେ ଶରୀର ଅଭାବ
ସମସ୍ତଂକରି କ୍ରୋଧ ଦେଖିଣ ସହଦେବ ।୮୧
ବୋଇଲେ ତୁମ୍ଭେ ଭୋଳ ହୋଇଲ ହୋ ବାସୁଦେବ
ଯେମାନଂକୁ ଅଗୋଚର ହୋଇଲା ହୋଇଲେ ଅଧଉର୍ଯ୍ୟଭାବ
ତୁହି କେମନ୍ତେ ଶୋକକରୁ ତୋତେ ନାହିଂକି ଗୋଚର ବାସୁଦେବ ।୮୨
କ୍ରୋଧ ଶାନ୍ତିକର ସମସ୍ତେ କହଇ ମୁହିଂ ବାଣୀ
କହଇ ପୂର୍ବର କଥା ଶୁଣ ଯୁଝେଷ୍ଠି ନୃପମଣି ।୮୩
ବାଳକାଳେ ଶତଶୃଙ୍ଗ ପର୍ବତ ଶାପ୍ୟ ଦିଲା
ତେଣୁକରି ବ୍ରିକୋଦର ପ୍ରଥମ ଯୁଦ୍ଧରେ ହାରିଲା ।୮୪
ଶୁଣ ହୋ ଶ୍ରୀକୃଷ୍ଣ କହଇ ମୁହିଂ ତଥ୍ୟ

ଅସାଷ୍ଟମେ ପଡ଼ିଅଛି ପବନର ବତ୍ସ . ।୮୫
ଯେବେ କଥାଯେକ ଶୁଣିମା ବାସୁଦେବ
ଗରୁଡ଼କୁ ସୁମରଣା କରିବା ହୋଉ ଦେବ ।୮୬
ଅମର ମଉଷଧି ଅଛି ସ୍ୱର୍ଗ ପଥେ
ମଉଷଧି ପାଇଲେ ଚେତନା ପାଇବେ ପବନର ବତ୍ସେ ।୮୭
ଶୁଣିଣ ହରଷ ଯେ ଦେବ ଜଗନ୍ନାଥ
ବଇନେତ୍ରକୁ ସୁମରଣା କଲେକ ଶିରୀବତ୍ସ ।୮୮
ରମ୍ୟକ ଦ୍ୱୀପରେ ଯେ ପକ୍ଷୀରାଜ ଥିଲା
କୃଷ୍ଣଂକର ଧ୍ୟାନରେ ତା ଆସନ ଟଳିଲା ।୮୯
ଯେକା ନିମିଷକେ ସହସ୍ର ଯୋଜନେ ଆସି ମିଳି
ଆସିଣ ସାଷ୍ଟାଙ୍ଗେ ସେ ଦଣ୍ଡବତ କରି ।୯୦
ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ଲେଉଟି ଦ୍ରିଯୋଧନ ବ୍ୟାସ ସରୋବରେ ପଶଇ ଝଟି ।୯୧
ସହଦେବ କହିଲା କୃଷ୍ଣ ଯୁଝେଷ୍ଟିଂକ ଆଗେ
ଯେଣେ ପ୍ରମାଦ ପଡ଼ିଲାଟି ଶୁଣିମା କୃଷ୍ଣଚନ୍ଦ୍ରେ ।୯୨
ଲେଉଟି କଉରୋବ ବ୍ୟାସ ସରୋବରକୁ ଝାଡି ଯେ ପଶି
ଭୀମସେନ ଠାକୁର ଆସିବାଯାଏ ଯେହାକୁ ଭଲେ ଓଗାଳସି ।୯୩
ଲେଉଟି ପଶିଲେ ସ୍ୱର୍ଗ ମଞ୍ଚ ପାତାଳରେ
ଜିଣନ୍ତା ନୋହିବଟି କେହି ତିନିଭୁବନରେ ।୯୪
ଶୁଣିଣ ବାସୁଦେବ ଚାହିଂଲେ ଅର୍ଜୁନର ମୁଖ
କଉରୋବା କେଣେ ଗଲା ଦେଖ ହୋ ବିବତ୍ସ ।୯୫
ଶରୀର କମ୍ପାଇଣ ଧାମଇଂ ଫାଲଗୁନି
କଉରବାକୁ ଓଗାଳଇ ଗାଣ୍ଡିମ ଧନୁ ଘେନି ।୯୬
ଦ୍ରିଯୋଧନ ବୋଇଲା ଶୁଣରେ ଫାଲଗୁନି
ତୋହୋର ମୋହୋର ତ ଅଭାବ ନାହିଂ ପୁଣି ।୯୭
ଭୀମସେନ ସମର ଇଛିବ ମୋର ତୁଲେ
କିମ୍ଭୁତ କାରଣେ ମୋତେ ଝିଂଘାସୁ ଯେତେବେଳେ ।୯୮
ଗଦାବର ଘାତେ ତୋତେ କରିବଇଂ ଚୂନା
ଶୁଣିଣ କୋପକଲା ବାସବର ଜେନା ।୯୯
ତିମିରି ଶହସ୍ରେକ ଯେ ମାଇଲା ଯେକାବେଳେ
ନାରାଜ ପଡ଼ି ଭସ୍ମହେଲା ତାହାର ଗଦାବରେ ।୧୦୦
ଶୁଣିଣ ମନୁ ପୁରୁଷ କହଇ କରଯୋଡ଼ି
ଭୀମସେନର ଚରିତ ମୋତେ କହ ଦୃଢ଼କରି ।୧୦୧
କହରେ ଅଗସ୍ତି ମୋତେ ଗୋଚର ନ ଗଲା
ଅଗାଦ ଗମ୍ଭୀରେ ପଡ଼ି ଭୀମସେନ ମୋହଗଲା ।୧୦୨
କେମନ୍ତେ ସେ ପ୍ରାଣ ପାଇଲା ଭୋ ମୁନି
କହ ଯେକମନେ ଶୁଣିମା ହେ ମହାଗ୍ୟାନି ।୧୦୩
ସହଦେବ କହିଲା ଯେଥିର ଭେଦ ଅର୍ଥ
ଗରୁଡ଼କଇଂ ସୁମରଣା କଲେକ ପଦ୍ମନେତ୍ର ।୧୦୪
ପ୍ରବେଶ ହୁଅନ୍ତେ ତଂକୁ କହନ୍ତି ମାଧବ
ଗଦା ପବନଘାତେ ସମୋଦ୍ରେ ମାରୁତି ପଡ଼ି ହୋଇଅଛି ଯେ ମୋହ ।୧୦୫
ଅମର ସ୍ୱର୍ଗରୁ ଅମୃତ ବହନ ଆଣସି
ଦ୍ରିଯୋଧନର ସମରେ ଭୀମସେନ ଅଚେଷ୍ଟ ହୋଇଅଛି ।୧୦୬
ଗଦାବର ଘାତେ ସେ ଯେ ସମୋଦ୍ରେ ପଡ଼ିଲା
ପାଣ୍ଡବ କୁଳକୁ ସେ ଦୂଷିତ ହୋଇଲା ।୧୦୭
ନାରାୟଣଂକ ବଚନେ ଚଳଇ ବଇନେତ୍ର
ଅମର ସ୍ୱର୍ଗରେ ଯାଇଂ ପ୍ରବେଶ ତୁରିତ ।୧୦୮
ହା ହା ହୁ ହୁ ଗନ୍ଧର୍ବ ଯେ ତିନିକୋଟି ରକ୍ଷା
ଗରୁଡ଼କୁ ଓଗାଳିଲେ କରିଣ ବଡ଼ କକ୍ଷା ।୧୦୯
କୋପେଣ ଗରୁଡ଼ ଯେ ମାଇଲା ପକ୍ଷୀଘାତେ
ଉଡ଼ିଲେ ଗନ୍ଧର୍ବେ ଯେ ପବନ୍ନଂ ଆପାତେ ।୧୧୦
ପଶିଲା ଗରୁଡ଼ ଯେ ଅମୃତକୁଣ୍ଡ ସ୍ଥାନେ
ଗଛୁରେ ଅମୃତ ପୂରୋଇଲା ବିଦ୍ୟମାନେ ।୧୧୧
ଘେନିଣ ଅମୃତ ସେ ଚଳଇ ବହନେ
ଯାଇଣ ପ୍ରବେଶ ଗରୁଡ଼ ଭୀମସେନ ସନ୍ନିଧ୍ୟାନେ ।୧୧୨
ଅମୃତ ବୃଷ୍ଟି ଯେ କଲାକ ଖଗରାୟେ
ସାଷ୍ଟାମେ ବସିଲା ଯେ ପବନ ତନୟେ ।୧୧୩
ବଦୟନ୍ତି କେଶବ ଯେ ଶୁଣ ହୋ ଭୀମସେନ
କେବଣ କାରଣେ ତୁ ହୋଇଲୁ ଅଚେତନ ।୧୧୪
ହରି ଯେତେବେଳେ ତୁମ୍ଭେ କରତାଳି ମାରି
ତେଣିକି ଦୃଷ୍ଟି ଦେବ ହୋଇଲା ମୋହୋରି ।୧୧୫
ଯେତେକ ଛିଦ୍ର ସେ ପାଇଲା କୁରୁବୀର
ମଳ ବିନ୍ଧାଣ ଛାଡ଼ି ସେହୁ ହୋଇଲା ବାହାର ।୧୧୬
ଗଦା ଧରିଣ ସେ ବୁଲାଇଲା କଉରୋବ
ଗଦାବର ପବନେ ମୁଂ ଉଡ଼ିଲି ବାସୁଦେବ ।୧୧୭
ସ୍ୱାମୀ ଅଚେତନ ହୋଇଣ ପଡ଼ିଲି ମୁଂ ଯେଥେଂ
ବହନ ହୋଇ ଚାଲ ଯିବା ହୋ ଜଗନ୍ନାଥେ ।୧୧୮

ବାହୁଡ଼ି ପଶଇନି କି ଦ୍ରିଯୋଧନ ବ୍ୟାସ ସରୋବରେ
ମାରି ନ ପାରିବି ଦେବ ବାହୁଡ଼ି ପଶିଲେ ।୧୧୯
ଯେତେକ ବଚନେ ଭୀମସେନଙ୍କଇଂ ଘେନି ଦେବ ବିଜୟେ ଗରୁଡ଼ ପିଠିରେଣ
ଚଳିଲେ ଗୋବିନ୍ଦେ ଯେ ହୋଇଣ ବହନ ।୧୨୦
ଯୁଧେଷ୍ଟିଂକ ଛାମୁରେ ବିଜୟେ ଦେବହରି
ଦେଖିଣ ଭୀମସେନଙ୍କୁ ଯୁଧେଷ୍ଟି କୋଳକରି ଧରି ।୧୨୧
ଅନେକ ପୁରସରି ଯେ କହନ୍ତି ଯୁଧେଷ୍ଟି
କାହିଂ ଥିଲୁ ବାବୁରେ ମୋର ଅନ୍ଧର ଲଉଡ଼ିଗୋଟି ।୧୨୨

**

## ୧୦୩. ଦୁର୍ଯ୍ୟୋଧନ ଉରୁ ଭଙ୍ଗ, ବଳରାମଙ୍କ ପ୍ରବେଶ, ପାଣ୍ଡବଙ୍କର ଗର୍ବମୋଚନ, ଯୁଧିଷ୍ଠିରଙ୍କର ଶୋକ ଓ ଦ୍ୱାରକା ଗମନ

ବଦୟନ୍ତି ଶ୍ରୀହରି ଶୁଣ ହୋ କାଳେବର
ଦ୍ରିଯୋଧନ ପଶୁଅଛି ବ୍ୟାସ ସରୋବର ଭିତର ।୧
ଶୁଣିଣ ଭୀମସେନ କୋପେ ଦିଅଇ ଘୋର ରଡ଼ି
ଆରେ ଆରେ ଦ୍ରିଯୋଧନ ତୁ କିଂକେ ଯାଉଛୁ ବାହୁଡ଼ି ।୨
ରଡି ଶୁଣି ବାହୁଡ଼ିଲା ମାନଚକ୍ରବ୍ରତୀ
ଭୀମସେନ ଛାମୁରେ ମିଳିଲା କୋପମୂର୍ତ୍ତି ।୩
ସତୁରି ସତୁରି ଭାର ଗଦା ଘେନିଣ ଦ୍ରିଯୋଧନ
ବାଉନ ବାଉନ ଭାର ଗଦା ଘେନିଣ ଭୀମସେନ ।୪
କାଳଚକ୍ର ପ୍ରାୟେକ ଭ୍ରମଇ ବେନି ଡୋଳ
ଆଜରେ ଦ୍ରିଯୋଧନ ପୂରିଲା ତୋହୋର କାଳ ।୫
ଯେତେ ବୋଲି ମାରୁତି ଯେ ଗଦାୟେ ପ୍ରହାର କଲା
ଦେଖିଣ ଦ୍ରିଯୋଧନ ଗଦାବର ସେ ପାତିଲା ।୬
ଅନେକ ସମର ସେ କଲେକ ଯେ ବେନି
ରଡ଼ି ଶବଦେ ଯେ କମ୍ପିଲେ ସସ୍ତ୍ରଯୋନି ।୭
କେହି କାହାକଇଂ ଯେ ନୋହନ୍ତିନା ଓଛ
ଦେଖିଣ ମହାକୋପଭର ପାଣ୍ଡବ ବିବଛ ।୮
ନାରାଜ ମାରି ଛେଦିବି ଯେହାର ଯେ ଶିର
ନୋହଇ ନୋହଇ ବୋଲିଣ ଯେ ବୋଲନ୍ତି ଦାମୋଦର ।୯
କୋଇନ୍ତାଂକ ଛାମୁରେ ପ୍ରତଗ୍ୟାଂ କରିଛି ଭୀମସେନ
ସେହି ସେ ମାରିବେଟି ରାଜା ଦ୍ରିଯୋଧନୀ ।୧୦
ଯେହା ଶୁଣି ମଉନବ୍ରତ ହୋଇଲା ଫାଲଗୁନି
ଭୀମ ଦ୍ରିଯୋଧନ ସମରେ ଅନ୍ୟୋଅନ୍ୟି ।୧୧
ସତୁରି ସତୁରି ଭାର ଗଦା ପ୍ରହାର କଲା ତୋଳି
ଦେଖିଣ ଭୀମସେନ ହସଇ କୁତୂହୋଳି ।୧୨
ପୁଣିହିଂ ଗଦାବର ପିଟିଲା ଦ୍ରିଯୋଧନ
ଦେଖିଣ ଭୀମସେନ ବକ୍ଷସ୍ଥଳ ପାତିଲା ବହନ ।୧୩
ଅପସରି ଭୀମସେନ ଗଦାୟେ କଲାକ ପ୍ରହାର
ଅଗ୍ନି ଝଲକି ପଡ଼ିଲାକ ଦ୍ରିଯୋଧନର ଉପର ।୧୪
ଅନେକ ସମର ହୋଇଲାକ ଅନ୍ୟୋଅନ୍ୟି
କେହି କାହାକୁହିଂ ଭଗ୍ନ ନୁହନ୍ତି ନା ପୁଣି ।୧୫
ସମରେ ବିମୁଖ ଯେ ହୋଇଲା କୁରୁପତି
ସାଧୁ ସାଧୁ ଭୀମାରେ ତୋହୋର ଜୀବତି ।୧୬
ଆହୋ ଚଇତନ ଅମର ସ୍ୱର୍ଗ ତେଜ୍ୟାକରି ସମସ୍ତ ସୁରଗଣ
ଭୀମ ଦ୍ରିଯୋଧନର ସମର ଦେଖନ୍ତି ଅନ୍ତରୀକ୍ଷେଣ ।୧୭
ଦେବ ଲୋକଂକ ତୁଲେ ଯେ ନାରଦେ ଥିଲେ ଆସି
କୁତୂହୋଳ ଦେଖିବା ବୋଲି ବୋଲନ୍ତି ମହରଷି ।୧୮
ମନପବନ ରଥ ଚଢ଼ି ଦେଖିଣ ତପୋଧନ
ପ୍ରବେଶ ହୋଇଲେ ଆସି ମର୍ତ୍ତ୍ୟଭୁବନେଣ ।୧୯
ବଳରାମଂକ ତହିଂକି ଯିବା ଧାତିକାରେ
ତପ କରୁଛନ୍ତି ସେ ପ୍ରୟାଗ ତୀର୍ଥରେ ।୨୦
ନ କହିଲେ କୋପ ସେ କରିବେ ହଳଧର
ମନପବନ ଚଢ଼ିଣ ସେ ହୋଇଲେ ବାହାର ।୨୧
ପ୍ରୟାଗ ତୀର୍ଥେଣ ସେ ବିଜୟେ କଲେ ଆସି
ଦେଖିଣ ମହରଷିଂକି ପୁଚ୍ଛାକଲେ ରୋହିଣୀର ଶିଷି ।୨୨
ସମସ୍ତ କୁଶଳଟିକି ପୁଚ୍ଛନ୍ତି ବାରତ
କୁରୁକ୍ଷେତ୍ର ଭୂଇଂ ନାରଦେ ହୋ ହୋଇଛି କେମନ୍ତ ।୨୩
କହନ୍ତି ନାରଦେ ଶୁଣ ହୋ ବଳରାମ
ସମସ୍ତେ ପଡ଼ିଲେ କଉରୋବବଳେ ଓହୋବଳ ସାଂଗ୍ରାମ ।୨୪
ଯେକା ଦ୍ରିଯୋଧନ ଥିଲା ମାତ୍ର ବ୍ରତି
ସମରେ ସେହୁ ହାଦେ ହୋଉଛି ନିପାତି ।୨୫
ଭୀମ ଦ୍ରିଯୋଧନର ସମର ବାରୁଘୋର
ତେଣେ ଦ୍ରିଯୋଧନ ଯେ ହୋଇଲାନି ଅପହାର ।୨୬
ଯେହା ଶୁଣି କୋପ ଯେ ବଢ଼ିଲା କାମପାଳ

ଆରେ ଆରେ ପାଣ୍ଡବେ ପୂରିଲା ତୁମ୍ଭର କାଳ ।୧୨୭
ସ୍ୱାମୀ ସମସ୍ତ ମରାଇଣ ଆପଣେ ପଳାଇଲା
ବ୍ୟାସ ସରୋବରରେ ଯାଇଂ ଭୟେଣ ପଶିଲା ।୧୨୮
ତଥାପି ଗୋଡ଼ାଇଣ ଲୋଡ଼ନ୍ତି ପାଣ୍ଡବେ
ବ୍ୟାସ ସରୋବରେଣ ଯେ ଠାବ କଲେ ଯେବେ ।୧୨୯
ମୁହିଂ ଦେଖିଲି ବାହାର ହୋଇଲା କୁରୁବୀର
ଅନେକ ସମର କରୁଅଛି ମହାଘୋର ।୧୩୦
ସ୍ୱାମୀ ତୋତେ ସେବାକରି ସେ ହୋଇଲା ନିରିମାଖି
ସମସ୍ତ ମରାଇ ଆପେ ହୋଉନାହିଂ ରଖି ।୧୩୧
ପାଣ୍ଡବେ ଆଶ୍ରେ ଯେ କଲେ ବାସୁଦେବେ
ରାଜ୍ୟଭାର ଘେନିଲେ ସମସ୍ତ ଜିଣି ଯେବେ ।୧୩୨
ପାରିଲେ ରକ୍ଷା କରସି ରେବତୀ ରମଣ
ଦ୍ରିଯୋଧନକଇଂ ରଖିଲେ ଅଛିଟି କାରଣ ।୧୩୩
ଶୁଣିଣ ମହାକୋପ ଯେ କଲେକ ହଳପତି
ଆଜ ପାଣ୍ଡବନ୍ତ କରିବି ବିନଶ୍ୟତି ।୧୩୪
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆବର ଚନ୍ଦ୍ରସୂର୍ଯ୍ୟେ
ଧନପତି କୋବେର ଆବର ଦେବଇନ୍ଦ୍ରେ ।୧୩୫
ସଞ୍ଚଯେ ନାଶ ଆଜ ସେ ପାଣ୍ଡବ ପଞ୍ଚଭ୍ରାଥେ
ହରି ସହିତେ ଆଜ କରିବି ନିପାତେ ।୧୩୬
ଯେତେ ବୋଲିଣ ରାଗେ ଉଠିଲେ ହଳପତି
ବଜ୍ରାଙ୍ଗ ହଳମୂଷଳ ଧରି ହୋଇଲେ କୋପମୂର୍ତ୍ତି ।୧୩୭
ବଳରାମ କୋପ ଦେଖି ବଦୟନ୍ତି ନାରଦେ
ସଞ୍ଚଯେ ପାଣ୍ଡବନ୍ତେ ପଡ଼ିଲା ପ୍ରମାଦେ ।୧୩୮
ବିଷ୍ଣୁ ସହିତେ ଆଜ ନ ବ୍ରତନ୍ତି କେହି
କୋପେ ଯେ ବଳରାମେ ଆସୁଛନ୍ତି ବେଗେ ବାହି ।୧୩୯
ଅନ୍ତରୀକ୍ଷ ମାର୍ଗେ ଯେ ଚଳିଲେ ନାରଦେ
ଯାଇଂଣ ପ୍ରବେଶ ହୋଇଲେ ଶ୍ରୀ ପୁରୁଷୋତ୍ତମ ସନ୍ନିଧ୍ୟେ ।୧୪୦
ଦେଖିଣ ନାରଦେ ପଚାରିଲେ ଦେବରାଜା
କାହିଂଥିଲ ମୁନି ହେ ବ୍ରହ୍ମାଂକ ତନୁଜା ।୧୪୧
ବଦୟନ୍ତି ନାରଦେ ତୁମ୍ଭେ ଶୁଣସି ଦେବହରି
ବଳରାମେ ଆସୁଛନ୍ତି ମହାକୋପ କରି ।୧୪୨
ପାରିଲେ ପାଣ୍ଡବନ୍ତ ରକ୍ଷା କର ଆଜ
ନୋହିଲେ ପାଣ୍ଡବେ ଆଜ ହୋଇବେ ପ୍ରାଣତ୍ୟାଜ ।୧୪୩
ଦ୍ରିଯୋଧନର ନିମନ୍ତେ ଆସନ୍ତି ହଳପାଣି
ଶୁଣିଣ ଚିନ୍ତା ଯେ ବସିଲା ଚକ୍ରପାଣି ।୧୪୪
ଶୁଣ ହୋ ଚଇତନ ବଳରାମଙ୍କ ମହିଂମା
କୋଟିୟେ ସିଂଘର ବଳ ଯେବଣ ମହାତମା ।୧୪୫
ରଡିନାଦେ କମ୍ପୁଅଛି ସପତ ବ୍ରହ୍ମାଣ୍ଡ
ଦେଖିଣ କେଶବ ଯେ ହୋଇଲେ ବିଷାଦ ।୧୪୬
ମହା କୋପମୂର୍ତ୍ତି ହୋଇଣ ବଳରାମ
ଯାଇଂଣ ପ୍ରବେଶ ହୋଇଲେ ଯହିଂ ପୁରୁଷଉତ୍ତମ ।୧୪୭
ଦେଖିଣ ମାନଗୋବିନ୍ଦ ରାଜା ନ ଟେକିଲା ଶିର
ଲାଜେଣ ମଥା ଯେ ପୋତିଲେ ହଳଧର ।୧୪୮
ଦେଖିଣ ଶ୍ରୀକୃଷ୍ଣ ଶତ ସହସ୍ର ଦଣ୍ଡ ପ୍ରଲମ୍ବିତ
ବାଞ୍ଛା ସିଦ୍ଧ ହେଉ ବୋଲି ବୋଇଲେ ହଳହାଥ ।୧୪୯
ପଞ୍ଚୁ ପାଣ୍ଡବେ ବଳରାମଂକର ଚରଣେ ଯେ ଲୋଟି
ଦେଖିଣ ବଳରାମେ ସାମାନ୍ୟ କଲେ ଦୃଷ୍ଟି ।୧୫୦
ବଦୟନ୍ତି କେଶବ ତୁମ୍ଭେ ଶୁଣ ହଳଧର
କାହିଂକି କୋପ ଯେତେ ହୋଇଲା ତୁମ୍ଭର ।୧୫୧
ସ୍ୱାମୀ ପାଣ୍ଡବେ ଯେ ଅଟନ୍ତି ଆମ୍ଭର ଭୃତ୍ୟାଧି
କାହା ଛାରକୁ ତୁମ୍ଭେ ଯେଡ଼େକ କୋପବୁଦ୍ଧି ।୧୫୨
ଅନେକ ବିନୟ ଭାବେ ବଦୟନ୍ତି ଯୁଢେଷ୍ଟି
ଜୟ ତୁ ବଳରାମ ସ୍ୱାମୀ ଅନନ୍ତ ସିଦ୍ଧମୂର୍ତ୍ତି ।୧୫୩
ଜୟ ତୁ ବଳରାମ ତ୍ରଇଲୋକ୍ୟ ଚିନ୍ତାମଣି
ଜୟ ତୁ ବଳରାମ ଅଭୟ ହଳପାଣି ।୧୫୪
ଜୟ ତୁ ବଳରାମ ରେବତୀ ରମଣ
ଜୟ ତୁ ବଳରାମ ଶରଣ ରକ୍ଷଣ ।୧୫୫
ଜୟ ତୁ ବଳରାମ ଶିରେ ସପ୍ତଫେଣୀ
ଜୟ ତୁ ବଳରାମ କର୍ଣ୍ଣେ କୁଣ୍ଡଳ ମଣି ।୧୫୬
ଜୟ ତୁ ବଳରାମ ପୁରୁଷ ମହାବ୍ରହ୍ମ
ଜୟ ତୁ ବଳରାମ ଅସୁର ନିଶୋଧନି ।୧୫୭
ଜୟ ତୁ ବଳରାମ ଉଦ୍ଧର ଶରଣ
ଜୟ ତୁ ବଳରାମ ଯୋଗୀଜନଂକ କାରଣ ।୧୫୮
ଜୟ ତୁ ବଳରାମ ପରମାନନ୍ଦ ଅଟୁ ଦେବସ୍ୱାମୀ
ଜୟ ତୁ ବଳରାମ ଜଗତେ ଅଟୁ ଦାନୀ ।୧୫୯
ଜୟ ତୁ ବଳରାମ ମୁଂ ଶରଣ ଗଲି ତୋତେ
ଜୟ ତୁ ବଳରାମ ଉଦ୍ଧରସି ମୋତେ ।୧୬୦
ଜୟ ତୁ ବଳରାମ ଅନାଥର ନାଥ

ଜୟ ତୁ ବଳରାମ ସଉନନ୍ଦ ହାଥ ।୬୧
ଜୟ ତୁ ବଳରାମ ଉଦ୍ଧରି ଧରସି ମୁକୁ
ଜନ୍ମେ ଜନ୍ମେ ସେବଇ ମୁଂ ତୁମ୍ଭ ପଦ୍ମ ପାଦକୁ ।୬୨
ଜୟତୁ ବଳରାମ ପୁରୁଷଂକ ଉତ୍ତମା
ଯାହାର ପଦ୍ମପାଦେ ନିତ୍ୟେ ଧାୟେ କରଇ ବ୍ରହ୍ମା ।୬୩
ମାନବ ଜନ୍ମ ହୋଇ ତୋର ମହିଂମା କିସ ସଅପି କହିବି
ଅକଳିତ ସମୋଦ୍ର ଯେ କିସ ଯେ କଳିବି ।୬୪
ଶ୍ରୀ ବଳରାମ ଦେବଂକ ଚରଣେ ଦଇନି
ବଦୟନ୍ତି ସାରୋଳ ଦାସ ଗ୍ରନ୍ଥିକି ଶୂଦ୍ରମୁନି ।୬୫
ଆହେ ଚଇତନ ଯେସନେକ ତୁଷ୍ଟି ଯହୁଂ କଲେକ ଯୁଝେଷ୍ଟି
ଶାନ୍ତି ଭଜିଲେକ ଯେ ଦେବ ହଳପତି ।୬୬
ବଦୟନ୍ତି ବଳରାମେ ଶୁଣ ହେ ପାଣ୍ଡବେ
ନିଶ୍ଚୟେ ପଞ୍ଚୁରାଜ ହୋଇଲା ତୁମ୍ଭର ଯେବେ ।୬୭
ଆରେ ଦ୍ରିଯୋଧନ ନମସ୍କାର କରିଥାନ୍ତୁ ଯେବେ ଆଜ
ନିଶ୍ଚୟେ ପାଣ୍ଡବନ୍ତ ମାରି ସେ ରାଜ ଦିଅନ୍ତି ପାଆନ୍ତୁ
ଶୁଭକାର୍ଯ୍ୟ ।୬୮
ଯଦ୍ୟପି ପରିଘାନ୍ତା ଦେବା ବାସୁଦେବ
ଅବଶ୍ୟ ତାହାକୁ ମୁଂ କରନ୍ତି ପରାଭବ ।୬୯
ଲଜ୍ଜା ପାଇଲେ ଯେ ନୀଳାମ୍ବର ଦେବ ହଳ
ସୁଖରେ ପାଣ୍ଡବେ କର ଯା ତୁମ୍ଭେ ରୋଳ ।୭୦
ବାହୁଡ଼ିଣ ବଳରାମେ ଗଲେକ ପ୍ରୟାଗ ତୀର୍ଥେ
ଦେଖିଣ ଦ୍ରିଯୋଧନ କଲା ହେଠ ମାଥେ ।୭୧
ବାହାସ୍ଫୋଟ ଦେଇଣ ଉଠିଲା ବ୍ରିକୋଦର
ବାଆନ ବାଆନ ଭାର ଗଦା ଯେ ଧଇଲା ତାର କର ।୭୨
କୋପେଣ ନିଶ୍ୱାସ ସେ ଛାଡ଼ଇ ଘନଘନ
ଚନ୍ଦ୍ରକୁ ରାହୁ ଯେହ୍ନେ ଘୋଟଇ ଗଗନେଣ ।୭୩
ଦୁଇବୀରେ ପୁଣ ଆକ୍ରୋଷି ଘୋଟଇ ସାଂଗ୍ରାମ
କାଳେବର ଗଦା ହାଦେ ପ୍ରହାର କଲା ଭୀମ ।୭୪
ଦେଖିଣ ଦ୍ରିଯୋଧନ ପାତିଲାକ ହୃଦ
ଅଗ୍ନି ଝଳକଇ ଯେହ୍ନେ ଗିରି କନ୍ଦର ମଧ ।୭୫
ମାନଗୋବିନ୍ଦ ଗଦା ପିଟିଲା ରୋଷଭର
ଦେଖିଣ ବାମଅଙ୍ଗ ପାତିଲା ବ୍ରିକୋଦର ।୭୬
ପୁଣି ଗଦାବର ପିଟିଲାକ ତୋଳି
ଧାଇଂଣ ବ୍ରିକୋଦର ସମରେ କରଇ ଯେ କେଳି ।୭୭
ଗଦାୟେ ଗଦାୟେ ପରିତାଳ କରନ୍ତେଣ ବେନି
ବେନିଜନ ସମର ହୋଇଲା ଅନ୍ୟୋଅନି୍ୟ ।୭୮

.......

ଗୋବିନ୍ଦେ ଠାରନ୍ତେ ଜାଣିଲା ମାନ ଯେ ଗୋବିନ୍ଦ
ଭୀମକୁ ଛିଞ୍ଚାଡ଼ି ପକାଇଲା କରିଣ ସିଂଘନାଦ ।୮୫
ଆକାଶେ ଉଡ଼ି ପଡ଼ିଲା ପବନର ବତ୍ସ
ମନରେ ବିରସ ତହୁଂ ହୋଇଲେ ଶ୍ରୀବତ୍ସ ।୮୬
ପାଣ୍ଡବଂକ ଉପରକୁ ଧାମଇଂ ସାହାସୀ
ମାୟା ଭୀମକଇଂ କୃଷ୍ଣ ବେଗେ ଦିଲେ ପେଷି ।୮୭
ମାୟାଭୀମେକ ଯେ ହୋଇଲା ଦ୍ରିଯୋଧନ ଆଗ
ଦେଖିଣ ମୁଥେ ପ୍ରହାରିଲା ଦ୍ରିଯୋଧନ ବେଗ ।୮୮
ସେ ଘାତେ ମାୟା ଭୀମ ପଡ଼ିଲା ମୁହଂ ମାଡ଼ି
ବାୟୁ ସୁମରି ଭୀମ ପୁଣି ଅଇଲାକ ଉଡ଼ି ।୮୯
ଶତଶୃଙ୍ଗ ପର୍ବତକୁ ସୁମରିଲା ବ୍ରିକୋଦର
ଶତସିଂଘ ପ୍ରାକ୍ରମ ବସିଲା ଯାଇଂ ଭୀମସେନ ଅଙ୍ଗର ।୯୦
ଯେକସିଂଘର ପ୍ରାକ୍ରମ ଭୀମର ହୋଇଥିଲା
ଶତଶୃଙ୍ଗ ସୁମରନ୍ତେ ଶତେସିଂଘର ପ୍ରାକର୍ମ ହୋଇଲା ।୯୧
ଯେକ ଉତ୍ତର ଶତସିଂଘର ହୋଇଲା ପ୍ରାକ୍ରମ
ମାନଗୋବିନ୍ଦକୁ ଉର୍ଦ୍ଧ୍ୱଗତି ଧଇଲାକ ବୀର ଭୀମ ।୯୨
ପୃଥିବୀକି ମୁଣ୍ଡ ହୋଇଲା ଆକାଶକୁ କଲା କଟୀ
ବେନି ଜାନୁ ବିରୋଳି ହୋଇଲା ଧୃତିରାଷ୍ଟି ।୯୩
ଗୋବିନ୍ଦ ଠାରନ୍ତେ ପୁଣ ଜାଣିଲା ମାରୁତି
ବିଚିତ୍ର ସମରେ ସେ ହୋଇଲା ଉର୍ଦ୍ଧ୍ୱଗତି ।୯୪
ପାଣ୍ଡବ ସୁନ୍ଦର ଯେ ଧଇଲା ବେନି ଜାନୁ
ରାଗେ ଚାପିଣ ଧଇଲା ତାହାର ତନୁ ।୯୫
କଉମୋଦକୀ ଗଦା ଯେ ସୁମରିଲେ ଶିରୀବତ୍ସ
ଭୀମସେନ କରେ ଯାଇଂ ହୋଇଲା ପ୍ରତ୍ୟକ୍ଷ ।୯୬
ଗଦାବର ବୁଲାଇଣ ଭୀମସେନ ଉଠି
ଶିରକଇଂ ଦେଖାଇଣ ଜାନୁରେଣ ପିଟି ।୯୭
ପୁଣ ଭୀମସେନ ସେ ଧଇଲା ବେନିଜାନୁ
ଲାଭି ପରିଯନ୍ତେ ଚିରିଲା ତାହାର ତନୁ ।୯୮
ଯେସନେକେ ଗଙ୍ଗା ଯମୁନା ସରସ୍ୱତୀ ତିନିଧାର ଫୁଟି
ଆକାଶ ଉଛୁଳିଲା ରୁଧିର ହୋଉଅଛି ବୃଷ୍ଟି ।୯୯
ପଡ଼ିଲା ମାନଗୋବିନ୍ଦ ହୋଇଣ ଅସାକ୍ଷମ

କପୋଳେ ରକତ ଚିତା ଘେନିଲା ବୀର ଭୀମ ।୧୦୦
ବାମପାଦ ଘେନି ମର୍ଦ୍ଦିଲା ଅନର୍ଘ ମଣିମୁକୁଟ ଗୋଟି
ଅଧରେ ଦନ୍ତ ଚାପି ରକତ କୋମଦ ଦୃଷ୍ଟି ।୧୦୧
ପୁଣ ଆକ୍ରେଷି ଭୀମ ମୋଡ଼ିତେ ଲୋଡ଼ଇ ମୁଣ୍ଡ
ଯୁଝେଷ୍ଟିଦେବେ ଯାଇଂ ଧଇଲେ ଭୀମସେନର ଭୁଜଦଣ୍ଡ ।୧୦୨
ଭୀମକଇଂ ପେଲି ଯେ ପକାଇଲେ ଯୁଝେଷ୍ଟି
କୋଳକରି ଯୁଝେଷ୍ଟି ଯେ ଧଇଲେ ଧୃତିରାଷ୍ଟି ।୧୦୩
ଭୀମସେନ ବୋଇଲା ଦେବ ଛାଡ଼ଛାଡ଼ ବିଦାରଇଂ ଯେହାର ବୁକୁ
କେତେ ଅବସ୍ଥା ଯେ ଦେଇଅଛି ଯେ ଆମ୍ଭଂକୁ ।୧୦୪
ଯୁଝେଷ୍ଟି ବୋଇଲେ ମୋହୋର ତୋତେ ଶପଥଟି ରେ ଭୀମ
ସରିଲା କଥାକୁ ରେ କିଂପେ କରୁ ତମ ।୧୦୫
ଯେତେ ବୋଲି ଯୁଝେଷ୍ଟି କୋଳକରି ଧଇଲେ ମାନଗୋବିନ୍ଦ
ବଦନ ଚାହିଂ ରାୟେ କାପାଳେ ମାରି କର ଧ୍ୱନ୍ଦ ।୧୦୬
ଲୋଥ ସେ ଝର ଝର ବହଇ ବେନି ତୋଳେ
ରୋବନ୍ତି ଯୁଝେଷ୍ଟିଦେବେ କ୍ରୋଧ ଅସମ୍ଭାଳେ ।୧୦୭
ବାବୁ ଅତି ମାନେଣ ମାନ ତୋର ମାନଗୋବିନ୍ଦପଣେ
ଯେଡ଼େବଡ଼ ସମ୍ପଦ ବୁଡ଼ାଇଲୁ ଅକାରଣେ ।୧୦୮
ବାବୁ କାଳକ ସମ୍ପଧି ଦିଲଇଂ ମୁହିଂ ତୋତେ
ତୋହୋର ଅବସ୍ଥାରେ ନ ଦେଖିବାର ନିମନ୍ତେ ।୧୦୯
ରାଜ୍ୟ ଛାଡ଼ି ବନେ ବନେ ବୁଲିଲୁଂ ଅନୁବ୍ରତେ
ତେବେହେଂ ଦୟା ତୋର ରେ ନ ବସିଲା ଚିତ୍ତେ ।୧୧୦
ଠାବେ ଠାବେ ବଳବୀର୍ଯ ଦେଖିଲୁ କ୍ଷତ୍ରୀଂକର
ତାହାଂକର ତୁଲେ କିଂପେ ଆରମ୍ଭିଲୁ ସମର ।୧୧୧
ବାବୁରେ ଯେଉଂମାନେ ତୋତେ କୁମନ୍ତ ଶିଖାଇଲେ
ଅସମୟ କାଳେ କେହିତ ତୋତେ ସାହାପକ୍ଷ ନୋହିଲେ ।୧୧୨
ଦ୍ରୋପଦୀ ସ୍ୱୟମ୍ବରେ କାମକ ନାମେ ବନେ
ବିରାଟ ନିପ୍ରୋଧେ ସବୁନ୍ତି ଧ୍ୱଂସିଲା ଅର୍ଜ୍ଜୁନ ଗୋଧନ ହରଣେ ।୧୧୩
ବାବୁ ଅନେକ ଅବସ୍ଥା ରେ ପାଇଲୁ ଠାବେ ଠାବେ
ତାହା ଦେଖି ନ ବୁଝିଲୁରେ ନୃପତି କଉରୋବେ ।୧୧୪
ଶରେ ଶରେ ସାଗରେ ସେତୁବନ୍ଧ ବାନ୍ଧି
ତ୍ରେତୟା ଯୁଗର ଛତ୍ରୀ ହନୁମନ୍ତର ଦର୍ପ ଗଞ୍ଜି ।୧୧୫
ଧନୁହୁଳେ ଧଇଲା ପାଥ ନବଦ୍ୱୀପା ପୃଥ୍ୱୀ
ତାହା ଦେଖି କିଂପେ ରେ ନ ବୁଝିଲୁ ଦୁଷ୍ଟ ମନ୍ଦମତି ।୧୧୬
କିରାତରୂପେ ଇଶ୍ୱରଂକୁ ଜିଣିଲା କିରାଟୀବନେ
ଅକ୍ଷୟେ ଦ୍ରୋଣ ପାଶୁପତ୍ର ଦିଲେକ ତ୍ରିଲୋଚନେ ।୧୧୭
ନିର୍ବାତ କପଚ ଭୟେ ପଳାଇଲେ ସୁରରାୟେ
ଚାରିଯୁଗର ଅମର ତାକୁ ମାଇଲା ଧନୁର୍ଜ୍ଜୟେ ।୧୧୮
ବାବୁରେ ଦ୍ୱାରିକାୟେ ପଶି ହରଣ କଲା ସୁଭଦ୍ରା ମହାସ୍ୱତୀ
ରାମକୃଷ୍ଣ ସଂଗତେ ସେ ହୋଇଲା ଅପ୍ରୀତି ।୧୧୯
ଅଗ୍ନି ଦେବତାୟେ ହୋଇଲା ଲୁଦୁବୁଦୁ ବ୍ୟାଧି
ଖାଣ୍ଡବବନ ଦହନ କରି ଅଗ୍ନିକି ଦିଲା ମଉଷଧି ।୧୨୦
ଭୀମାର ମହିମାଂରେ ନ ସରଇ କହନ୍ତେ
ଯମ ଆସନ ଛାଡ଼ଇ ଯାହାର ଗଦା ଧରନ୍ତେ ।୧୨୧
ବାବୁ ସହଦେବ ବୋଲିଣ ଯେବଣ ମୋହୋର ସାନ ଭ୍ରାଥ
ଯେକସରି ଦୋସରି ପରିଯନ୍ତେ ଜାଣଇଂ ମୃତ୍ୟୁଭେଦ
ସମସ୍ତ ।୧୨୨
କୋଟିୟେ ଯୁଗର ବାରତା ଗତ ଆଗତ ଜାଣଇଂ
ଯାହାର ସଂପକ୍ଷ ସେ ନାରାୟଣ ଅଛଇ ।୧୨୩
ତାହାଂକର ତୁଲେ ତୋର କିସ ଯେ ସାଂଗ୍ରାମ
ମାନଗୋବିନ୍ଦପଣେ ହରାଇଲୁ ସର୍ବଧର୍ମ
କହିଲେ ନ ସରଇ ତୁମ୍ଭର ଯେତେକ ଅଧର୍ମ ।୧୨୪
ମୁହିଂ ଯେ ପ୍ରବେଶ ହୋଇଲି ବାରୁଣାବନ୍ତେ
ମଧ୍ୟସ୍ଥପଣେ ଗଲେ ଧଉମ୍ୟ ପୁରୋହିତେ ।୧୨୫
ସବୁଂକୁହିଂ ଅଭ୍ୟର୍ଥ ହୋଇ ବୋଇଲ ଦୃଢ଼ବାଣୀ
ଉପହାସ୍ୟ କଲୁ ଯେ ଶକୁନି ବୋଲ ଶୁଣି ।୧୨୬
ପୁଣିହିଂ ତୁମ୍ଭର ଗ୍ୟାଂନ ପାଇବା ନିମନ୍ତେ
ଆପଣେ ଶ୍ରୀକୃଷ୍ଣ ଗଲେ ଯେ ହୋଇ ମଧ୍ୟପାତ୍ରେ ।୧୨୭
ସେ ଶ୍ରୀହରିଂକି ସମସ୍ତେ ଉପହାସ୍ୟ କଲ
ଆବର ଦୁର୍ବୁଦ୍ଧିପଣେ ତାହାନ୍ତ ମାରିତେ ଲୋଡ଼ିଲ ।୧୨୮
ସଭାର ତଳେ ଥାଇ କୃଷ୍ଣଂକୁ ଅପମାନି
ତୁମ୍ଭନ୍ତ ଛାଡ଼ି କୃଷ୍ଣ ଅଇଲେ ଲକ୍ଷ୍ମୀ ଘେନି ।୧୨୯
ବାବୁ ମୁହିଂ ତୋତେ ବୋଇଲି ଯେ ଲକ୍ଷେରାଜା ଥାଇଂ
ପଡ଼ା ଖଣ୍ଡିୟେ ମୋତେ ଦେବୁ ହୋ କୁରୁସାଇଂ ।୧୩୦
ଅନେକ ବିନୋୟୀ ଯେ ଧଇଲି ତୋର ହାଥ
ସମରକୁ ଇଚ୍ଛାକଲୁ ନ କଲୁ ସନମତ ।୧୩୧
ଯେବେ ମୁହିଂ ତୋତେ ରେ ବୋଲୁଅଛି ଭାଇ
ହସ୍ତିନା ରାଜ୍ୟରେ ତୋତେ ବସାଇବି ନେଇ ।୧୩୨
ବଇଠା ରାଜ୍ୟରେ ତୋତେ ହୋଇଥାଉ ବାବୁ
ଦଇତ ଦାନବନ୍ତ ମାରି ତୋତେ ରାଜ୍ୟ ଦେଉଥିବୁ ।୧୩୩
ଭୀମସେନ ହସିଲା ଯୁଝେଷ୍ଟିଂକ ବାକ୍ୟ ଶୁଣି
ତୁମ୍ଭର ବଚନେ ରାଜ୍ୟରେ ବସିବନା ଯେହିକ୍ଷଣି ।୧୩୪
ଭୀମ ବୋଇଲା ବାପ ଅନ୍ଧ ପୁଅ ଭଗ୍ନଜାନୁ

ଦୁହେଂ ରାଜ୍ୟ କରିବେ ନା ଯେ ତୁମ୍ଭର ଗ୍ୟାଂନୁ ।୧୩୫
ଗୋବିନ୍ଦେ ବୋଇଲେ ତୁ କିଛି ନ ଜାଣୁ ଭୀମସେନ
ପୋଡ଼ିଲା ଘା ଉପରେ ସେ ଦେଉଅଛୁ ଚୂନ ।୧୩୬
ଯୁଝେଷ୍ଟି ଦେବେ ବୋଇଲେ ସେ ଶୁଣିମା ଜଗନ୍ନାଥେ
ଧୃତିରାଷ୍ଟ ଅନ୍ଧ ସିନା ଅଟଇ ଯୁଗତେ ।୧୩୭
ପଣ୍ଡୁରାଜା ଯେ ଧୃତିରାଷ୍ଟଂକୁ ଦେଇଥିଲେ କୋଟିଲକ୍ଷ୍ମୀ
କାଳକ ବୁଲିଲେ ଶତଶୃଙ୍ଗ ପର୍ବତଭୂମି ।୧୩୮
ଦଇତ ଦାନବନ୍ତ ମାରିଣ ଦିଗବିଜେ
ଧୃତିରାଷ୍ଟଂକୁ ଭୋଗାଭୋଗ ଯେ କରାନ୍ତି ପଞ୍ଚୁରାଜ୍ୟେ ।୧୩୯
ଯେବେ ମୁଂ ଯେହାଂକୁ ପଞ୍ଚୁରାଜ୍ୟ ଭୋଗ ଦେବି
ଭାଇନ୍ତ ଘେନି ମୁହିଂ ବନସ୍ତେ ଭ୍ରମୁଥିବି ।୧୪୦
ମୋହର ସତ୍ୟ ସତ୍ୟ ଅଟଇ ଦୃଢ଼ବାକ୍ୟ
ଦିଅସି ଆଗ୍ୟାଂ ମୋତେ ହେ ଶୁଦ୍ଧ ବିବେକ ।୧୪୧
ଭୀମସେନ ବୋଇଲା ଦେବ ଶୁଣିମା ଶ୍ରୀବସି
ଯେ ବୋଲ ଶୁଣି କିମ୍ପା ଯେହାର ପ୍ରାଣ ରହିଅଛି ।୧୪୨
ଦ୍ରିଯୋଧନ ବୋଇଲା ରେ ସାଧୁ ସାଧୁ ଭୀମା
ଶରୀରୁଂ ବାହାର କିଂପେ ନୋହଇ ନିର୍ଲ୍ଲଜ ପଞ୍ଚୁଆତ୍ମା ।୧୪୩
କ୍ଷଣକେ ଜୀଇଂବାର ନୋହଇ ମୋର ଭଲା
ବାମପାଦେ ଭୀମା ମୋର ମୁକୁଟ ମର୍ଦ୍ଦିଲା ।୧୪୪
ଗୋବିନ୍ଦେ ବୋଇଲେ ସ୍ୱାମୀ ବହନ ଯିବା ଆସ
ବିଳମ୍ବ ଦେଖି କୋନ୍ତା ନ ପୁଣ ହୋନ୍ତି ପ୍ରାଣେ ନାଶ ।୧୪୫
ମାନଗୋବିନ୍ଦ ରାଜାକଇଂ କଲେ କୋମଳପତ୍ର ଶଯ୍ୟା
ତଥିର ଉପରେ ଶୁଆଇଲେ ନୃପତି କୁରୁରାଜା ।୧୪୬
ଯୁଝେଷ୍ଟିଦେବେ ବୋଇଲେ ରେ ଶୁଣ ତୁ ଦୁର୍ଦ୍ଧଷ
ଆସୁଅଛି ଅନ୍ଧାର ତୁ ମାନଗୋବିନ୍ଦକଇଂ ରଖ ।୧୪୭
ଦୁର୍ଦ୍ଧକ୍ଷର ତୁଲେ ଶତେରଥୀ ବେନିଶତ ହାଥୀ
ପାଞ୍ଚଶତ ଅଶ୍ୱ ସାତ ସହସ୍ର ପାଦାନ୍ତି ।୧୪୮
ଯେତେକ ସଇନି ଯେ ଦିଲେ ଦୁର୍ଦ୍ଧକ୍ଷର ସଙ୍ଗେ
ରଣ ଜୟ କରିଣ ଯେ ଆସନ୍ତି ସୁରଙ୍ଗେ ।୧୪୯
ରଣଭୂମି ଜଇନ୍ତାକୁ ଅଟଇ ଯୁଣ ଚାରି
କହୁଂ କହୁଂ ପ୍ରବେଶ ହୁଅନ୍ତି ଦେବହରି ।୧୫୦
ଯୁଝେଷ୍ଟି ଭୀମାର୍ଜୁନ ନକୁଳ ସହଦେବ
ଆପଣେ ଘେନିଣ ସଙ୍ଗେ ଚଳିଲେ ମାଧବ ।୧୫୧
ଜଇନ୍ତା ନଗ୍ରରେ ଆସି ହୋଇଲେ ପ୍ରବେଶ
ଶତ୍ରୁଜୟ କରି ମନେଣ ଅତ୍ୟନ୍ତ ହରଷ ।୧୫୨
ଅର୍ଘ୍ୟ ଘେନିଣ କୋନ୍ତଭୋଜର ଦୁଲାଳୀ
ଆବର ଘେନାଇ ଶତେ ରତ୍ନ ଦୀପାବଳୀ ।୧୫୩
ଶ୍ରୀହରିଂକ ଆଗରେ ଆସି ମିଳିଲେ ତକ୍ଷଣ
ଶ୍ରୀକୃଷ୍ଣଂକ ମୁଖ ଚାହିଂ ବୋଲନ୍ତି ବଚନ ।୧୫୪
ଦ୍ରିଯୋଧନ ରାଜାକୁ କେ ନାଶିଲା ସମରେ
ଅର୍ଘ୍ୟ ବନ୍ଦାପନା ମୁହିଂ କରିବି ତା ଶିରେ ।୧୫୫
ଦେବତା ରାକ୍ଷସ ଅବା ଚାଣ୍ଡାଳହିଂ ହୋଉ
ଅବଶ୍ୟ ଅର୍ଘ୍ୟ ତା'ଶିରେ ଦେବି ମହାବାହୁ ।୧୫୬
ଯଦ୍ୟପି ଦ୍ରିଯୋଧନ ନ ମରି ଜୀଇଂଅଛି
ତେବେ ମୋର ପ୍ରାଣ ନ ରଖିବି ହୋ ଶ୍ରୀବସି ।୧୫୭
କୁନ୍ତୀଂକ ନିଷ୍ଠୁର ବାଣୀ ଶୁଣିଣ ଶ୍ରୀହରି
କୋମଳ ବଚନ ସେ କହନ୍ତି ଧୀର କରି ।୧୫୮
ଶୁଣ ଶୁଣ ମାତା ଆଗୋ ମୋହର ବଚନ
ଦ୍ରିଯୋଧନକଇଂ ରଣେ ମାଇଲା ଭୀମସେନ ।୧୫୯
ଧନ୍ୟ ଧନ୍ୟ ମାତା ଗୋ ଜାତକଲୁ ପଞ୍ଚୁପୁତ୍ର
ଯେହାଂକରେ ମହୀଭାରା ହୋଇଲା ନିପାତ ।୧୬୦
ଅର୍ଘ୍ୟ ଯେବେ ଦିଅ ନେଇ ଭୀମସେନ ଶିରେ
ଶୁଣିଣ କୋଇନ୍ତା ଦେବୀ ଆନନ୍ଦ ମନରେ ।୧୬୧
ଅଙ୍ଗ ପୁଲକଇ ଯେ ପ୍ରଫୁଲ୍ଲିତ ବଦନ
ସ୍ନେହଭରେ ଡାକନ୍ତି ଆସରେ ବାବୁ ଭୀମ ।୧୬୨
ମାଗୁତି ଯାଇଂଣ ନମିଲା ମାତାଂକ ପୟରେ
ଅର୍ଘ୍ୟ ଦିଲେ କୁନ୍ତୀଦେବୀ ବ୍ରିକୋଦର ଶିରେ ।୧୬୩
ସାଧୁ ସାଧୁ ପୁତ୍ର ତୁ ମୋ ବୋଲି ବୋଇଲେ କୋଇନ୍ତା
ମାତାର ବଚନେ ସନ୍ତୁଷ୍ଟ ସେ ଭୀମ ବଳବନ୍ତା ।୧୬୪
ଗୋବିନ୍ଦଂକ ମୁଖ ଚାହିଂ ବୋଲଇ ଭୀମସେନ
ମୋହୋଠାରୁ ଅଧିକ କେ ନାହିଂ ତ୍ରିଭୁବନ ।୧୬୫
ମୁହିଂ ସେ ଶତ୍ରୁକୁ ଯେକା କଲାଇଂ ବିନାଶ
ମୋହୋର ହାଥେ ମଲେ ଗାନ୍ଧାରୀ ଶତେ ଶିଷ ।୧୬୬
ସମରେ ବେନିଗଦା ନ ଧରିଥିଲେ ମୁହିଂ
ଚାରିଭାଇ ଶତ୍ରୁଠାରୁ ଜୀଇନ୍ତେ ବା କାହିଂ ।୧୬୭
ତାହା ଶୁଣି ଅର୍ଜୁନ ଯେ ବୋଲନ୍ତି ବଚନ
ମୋହୋର ବାଣୀ ଶୁଣିମା ଦେବ ଜନାର୍ଦ୍ଦନ ।୧୬୮
ବାଳକାଳେ ବିଦ୍ୟା ପରୀକ୍ଷାର ବେଳେ ଦ୍ରୋଣ
କୁଣ୍ଡଳ ପର୍ବତକୁ ସେ କରନ୍ତି ଗବନ ।୧୬୯
ତାର ଉଚ୍ଚଶୃଙ୍ଗେ ଯେକ ସ୍ତମ୍ଭ ପୋତିକରି
ଖଡ଼ିକାଯେ ତାର ପରେ ପୋତିଲେ ବିଚାରି ।୧୭୦
ଖଡ଼ିକା ଉପରେ ଯେକ ଗରଗଡ଼ ରଖି

ତା' ଉପରେ ଶୃଙ୍ଗଧାନ ବସାଇଲେ ଯୋଖି ।୧୭୧
ତହିଂର ଉପରେ ଯେକ ସୋରିଷ ଥୋଇଲେ
ଆଖଡ଼ା ସ୍ଥାନରେ ଆସି ଗୁରୁ ପ୍ରବେଶିଲେ ।୧୭୨
ଦ୍ରିଯୋଧନ ଶତେ ଭ୍ରାତ ଆମ୍ଭେ ପାଞ୍ଚଭାଇ
ସମସ୍ତଂକ କରେ ଦ୍ରୋଣ ଧନୁଶସ୍ତ୍ର ଦେଇ ।୧୭୩
ପିଚ୍ଛିଲେ କି ଦେଖୁଅଛ କହ ମୋର ଆଗ
ଶୁଣି ଦ୍ରିଯୋଧନ ଧନୁଶର ଧରି ବେଗ ।୧୭୪
ପର୍ବତ ସ୍ତମ୍ଭ ଖଡ଼ିକା ଯାଏ ସେ କହିଲା
ଆଉ ମୋତେ କିଛି ଦିଶୁନାହିଂ ସେ ବୋଇଲା ।୧୭୫
ଯେପରି ସର୍ବେ ଅନାଇ ଅନାଇ କହିଲେ
ଖଡ଼ିକା ଗରଗଡ଼ଠାରୁ କେହି ନ ବଳିଲେ ।୧୭୬
ମୋହୋର ହାଥରେ ଗୁରୁ ଦେଇ ଧନୁଦ୍ରୋଣ
ପୁଚ୍ଛିଲେ କି ଦେଖୁଅଛୁ କହରେ ଅରଜୁନ ।୧୭୭
ଗୁରୁଂକ ବଚନେ ଧନୁଶର ମୁଂ ଧଇଲି
ସେ ସ୍ଥାନରୁ ଚାରିଯୁଣ ପର୍ବତ ବୋଇଲି ।୧୭୮
ତାପରେ ସ୍ତମ୍ଭେକ ପୁଣି ପୋତା ହୋଇଅଛି
ଖଡ଼ିକା ଗରଗଡ଼ ଧାନଶୃଙ୍ଗହିଂ ଦିଶୁଛି ।୧୭୯
ଧାନର ଉପରେ ବସିଅଛଇ ସୋରିଷ
ଯେହା ମୁଂ କହନ୍ତେ ଗୁରୁ ହୋଇଲେ ହରଷ ।୧୮୦
ସାନନ୍ଦେଣ ବୋଇଲେ ବାବୁ ପେଷ ବେଗେ ଶର
ସମସ୍ତେହେଂ ରହିବେ ସୋରିଷ ହୋଇବ ବେନିଫାଳ ।୧୮୧
ଗୁରୁଂକ ଆଜ୍ଞାଯେ ମୁହିଂ ଶର ଯେ ବିନ୍ଧିଲି
ସୋରିଷ ଗୋଟିକ ଶରେଣ ବେନିଫାଳ କଲି ।୧୮୨
ଦେଖି ମୋତେ ତହୁଂ ପ୍ରଶଂସିଲେ ଗୁରୁ ଦ୍ରୋଣେ
ବୋଇଲେ ତୋ ସମକକ୍ଷ ରବିତଳେ ନାହିଂ ଜଣେ ।୧୮୩
ଯେମନ୍ତ କ୍ଷତ୍ରିୟ ମୁହିଂ ବାଲୁତର କାଳେ
କିରାତ ରୂପେଣ ହରଂକୁ ମୁଂ ଜିଣିଲଇଂ ଅବହେଳେ ।୧୮୪
ତରିକରି ହର ମୋତେ ପାଶୁପତ୍ର ଶର ସମର୍ପିଲେ
ଉମାଂକଠାରୁ ଅକ୍ଷୟେଦ୍ରୋଣ ସେ ଦିଆଇଲେ ।୧୮୫
ଖାଣ୍ଡବବନ ଦହି ତୋଷିଲଇଂ ବୈଶ୍ୟାନର
ତେଣୁ ମୋତେ ଦିଲେ ସେ ସକଳ ଦେବଶର ।୧୮୬
ସେକାଳେ ରଣେ ମୋତେ ହାରିଲେ ଶଚୀସାଇଂ
ଆଉ ଛାରମାନଂକୁ ମୁଂ ରଣେ ନ ଗଣଇ ।୧୮୭
ଗାଣ୍ଡିମ ଧନୁ ମନଭେଦୀ ଶର ଧରିଥିଲେ ମୁହିଂ
ଭାରଥ ଯୁଦ୍ଧେ ଜିଣନ୍ତା ମୋତେ ହାଦେ କେ ଅଛଇ ।୧୮୮
ସପତ ରଥୀଯେ ମୋହୋର ଶରକଇଂ ଦେଖିଣ ଡରନ୍ତି
ମୋହୋର ହେତୁ କୁରୁବଳେ ବୋଇଲେ ବିନଶ୍ୟତି ।୧୮୯
ଅର୍ଜୁନର ବଚନ ଶୁଣିଣ କମ୍ପିଲା ନକୁଳ
ଧାଡିକାରେ ଯାଇଂଣ ପ୍ରଣମିଲା ସେ ଶ୍ରୀକୃଷ୍ଣ ପାଦତଳ ।୧୯୦
ବୋଲେ ହେ ଦେବରାଜ ବାରେ ଶୁଣିମା ହୋଉ ମୋ ବଚନ
କେତେ ଟାଣ କରିଣ ଯେ କହିଲେ ଅରଜୁନ ।୧୯୧
ମୁହିଂ ଯେବେ କୋନ୍ତ ଧରି ନ ଥାନ୍ତି ଦେବରାୟେ
ତ୍ରଇଲୋକ୍ୟ ମଧ୍ୟେ କେ ଜିଣି ପାରନ୍ତା କୁରୁଥାଠ
ଅପ୍ରମୟେ ।୧୯୨
ଯୁଝେଷ୍ଟିଦେବ ଠାକୁରଂକର ଯେ ଧର୍ମଯାଗ କାଳେ
କୁନ୍ତମନେ ଧରିଥିଲି ପୃଥ୍ୱୀକି ପାତାଳେ ।୧୯୩
ମୋହୋର ବୀରପଣ ଦେଖିଣ ଶତ୍ରୁମାନେ ଗଲେ କ୍ଷୟେ
ନକୁଳ ବଚନ ଶୁଣିଣ କମ୍ପିଲା ସହଦେବର କାୟେ ।୧୯୪
ଶ୍ରୀକୃଷ୍ଣ ମୁଖ ଚାହିଂ କହଇ ସହଦେବ
ଯେ ମୋହୋର ବଚନ ବାରେ ଶୁଣିମା ହୋଉ
ଶ୍ରୀବାସୁଦେବ ।୧୯୫
ମୁଂ ଯେବେ ବିଚାର ଦେଇ ନ ଥାନ୍ତି ଯେହାଂକୁ
ତେବେ କେମନ୍ତ କରି ଯେ ଜିଣିଥାଆନ୍ତେ କୌରବଂକୁ ।୧୯୬
ଦ୍ରିଯୋଧନ ମୃତୁଭେଦ ନ କହିଥିଲେ ମୁହିଂ
କିପରି ଜିଣନ୍ତେ ଯେମାନେ ଯେହା ବୁଝି ବିଚାର
ଭାବଗ୍ରାହୀ ।୧୯୭
ଯୁଝେଷ୍ଟିଦେବେ ବୋଇଲେ ଯେ ସବୁକଥା ଅଟେ ମିଛ
ଆମ୍ଭର ବଚନ ଯେବେ ଶୁଣସି ଶିରୀବତ୍ସ ।୧୯୮
ନ କହୁଂ ଯେ ଆମ୍ଭେ ନ ଜାଣୁ କୂଟ ଯେ କପଟ
ସର୍ବକାଳେ ଆମ୍ଭେ ଜିଣିଥାଉଂ ଧର୍ମବାଟ ।୧୯୯
ପାପେ ପ୍ରାଣୀ କ୍ଷୟେ ହୋନ୍ତି ଧର୍ମେ ଥିଲେ ଜୟ
ଧର୍ମ ଥିଲା ପ୍ରାଣୀକି ନ ପଡ଼େ ଅପଚୟ ।୨୦୦
ଧର୍ମରେ ଥିବାରୁ ଆମ୍ଭେ ରଣେ ହେଲୁ ଜୟ
ଆମ୍ଭର ଯେ କଥା ସତ୍ୟ ଅଟଇ ନିଶ୍ଚୟ ।୨୦୧
ଯେସନ ବାଣୀ ଶୁଣି ଦ୍ରୋପତୀ ଯେ ବୋଲନ୍ତି ବଚନ
ଯେଣୁ ମହାସତୀ ମୁହିଂ ତେଣୁ ତାହା ସର୍ବ ଜାଣ ।୨୦୨
ମୋହୋର ହେତୁ ବିନାଶ ହୋଇଲେ କୁରୁବଂଶ
ଯେହା ଶୁଣି ସୁଭଦ୍ରା ଯେ ପ୍ରକାଶନ୍ତି ଭାଷ ।୨୦୩
ସବୁ ଅଟେ ମିଛ କହିବା ତୁମ୍ଭ ସଭିଙ୍କର ବାଣୀ
ମୁହିଂ ଯେ ହାଦେ ଅଟଇ ଶ୍ରୀହରିଂକ ଭଗେଣୀ ।୨୦୪
ଅଭିମନ୍ୟୁ ଅଟଇ ଯେ ମୋହୋର ନନ୍ଦନ
ତାହାକଇଂ କଉରୋବେ ଯେଣୁ କଲେକ ନିଧନ ।୨୦୫

ଯେହିଛଳେ ଗୋବିନ୍ଦେ ନାଶିଲେ କୁରୁବଳ
ସମସ୍ତ ଶୁଣିଣ କୁନ୍ତୀଦେବୀ ବୋଇଲେ ମୋହୋର
ବୃଦ୍ଧକାଳ ।୧୨୦୬
ଯେଣୁକରି ଅତିଅନ୍ତ କଷ୍ଟ ମୁଂ ପାଇଲି
ନିରନ୍ତରେ ଧର୍ମକଇଂ ମୁଂ ସବୁ ଜଣାଉ ଯେ ଥିଲି ।୧୨୦୭
ତେଣୁକରି କଉରୋବେ ଯେବେ ହୋଇଲେ ନିଧନ
ଯେ ମୋହୋର ସତ୍ୟବାକି ଅଟଇ ନାରାୟଣ ।୧୨୦୮
ଯେହିପରି ସମସ୍ତେ ଯେ ହୋଅନ୍ତେ କୁହାକୋହି
କାହାର ବଚନ କାହାରି ମନକୁ ନ ଆସଇ ।୧୨୦୯
ଯେ ଯାହାର ଟାଣ ରଖି କହନ୍ତି ବଚନ
ଉଚ୍ଚବାଚ ହୋଇଣ ଆପେ ଆରମ୍ଭିଲେ ରଣ ।୧୨୧୦
ଭାଇରେ ଭାଇରେ ଯହୁଂ ଦ୍ୱନ୍ଦ ଆରମ୍ଭିଲେ
ଦେଖିଣ ଶ୍ରୀହରି ତାଂକୁ ସାନ୍ତ୍ୱନା ଯେ କଲେ ।୧୨୧୧
ସମସ୍ତେ ଶ୍ରୀକୃଷ୍ଣଂକୁ ତହୁଂ ବୋଲନ୍ତି ବଚନ
ଯେଥିରେ କେ ବଡ଼ କେହୁ ଅଟ କହ ସାନ ।୧୨୧୨
ହରି ବୋଇଲେ ତୁମ୍ଭେ ନ କରସି ଦ୍ୱନ୍ଦରୋଳ
କହିବା କଥାଯେ ମାତ୍ର ଅଛଇ କେବଳ ।୧୨୧୩
ଯେ କଉଣସି କଥାଯେ ଯେ ଅନର୍ଥ ଉପୁଜଇ
ଶ୍ରେଷ୍ଠ ଲୋକନ୍ତ ପୁଛିଲେ ସେ କଥା ତୁଟିଯାଇ ।୧୨୧୪
ଶୁଣ ତୁମ୍ଭେମାନେ ଯେବେ ମୋହୋର ବଚନ
ଯେ ସନ୍ଦେହ ଫେଡ଼ିବାକୁ ଜଣେ ଅଛି ଜାଣ ।୧୨୧୫
ସହଦେବ ମୁଖକୁ ଅନାଇ ଦେବରାୟେ
ବୋଇଲେ ସମସ୍ତେ ଆସ ଯିବା ଶୁଭସ୍ତମ୍ଭ ଯାଏ ।୧୨୧୬
ତାହାକଇଂ ପୁଛିବା ସେ କହିବ ଯେ କଥା
ତେବେ ସିନା ଜାଣିମା ସେ ତହିଂର ବ୍ୟବସ୍ଥା ।୧୨୧୭
ତାହା ଶୁଣିଣ ପାଣ୍ଡବେ ଯେ ହୋଇଲେ ହରଷ
ଶ୍ରୀକୃଷ୍ଣ ତୁଲେ ଗଲେ ସର୍ବେ ଶୁଭସ୍ତମ୍ଭ ପାଶ ।୧୨୧୮
ଆପଣେ ଶ୍ରୀହରି ତହୁଂ ପଚାରନ୍ତି ବାଣୀ
ରଣେ କି କି ଦେଖିଅଛୁ କହ ବୀରମଣି ।୧୨୧୯
ଆମ୍ଭର ଯେହି କଥାରେ ଯେ ହୋଇଛି ସନ୍ଦେହ
କେ କେତେ ସଇନି ମାଇଲା ସତ୍ୟକରି କହ ।୧୨୨୦
ପଞ୍ଚୁପାଣ୍ଡବେ ଯେ ବାଦ କରନ୍ତି ଯେକେ ଯେକେ
ଯେ ସମୟେ ରଣକରି ଜିଣିଲେ ଯେ କେ କେ ।୧୨୨୧
ଯେକଥା ସଞ୍ଚପି ସବୁ କହ ଆରେ ବାବୁ
ତୋହୋର ବାକ୍ୟେ ସକଳେ ତ୍ରିପୁତି ହୋଇବୁ ।୧୨୨୨
ଶ୍ରୀକୃଷ୍ଣଂକ ମୁଖରୁ ଯେସନେକ ବାଣୀ ଶୁଣି ସେହୁ
ବୋଇଲେ ସାବଧାନେ ଶୁଣିମା ମହାବାହୁ ।୧୨୨୩
ତୁମ୍ଭର ଅନଗ୍ରହେ ମୁଂ ଦିବ୍ୟଲୋଚନ ପାଇଲି
ଅଠର ଦିବସ ପରିଯନ୍ତେ ମୁଂ ସମର ଦେଖିଲି ।୧୨୨୪
ପାଣ୍ଡବେ କଉରୋବେ ଯେ ଆରମ୍ଭିଲେ ରଣ
ଅନୁବ୍ରତେ କହୁଥାନ୍ତି ସମସ୍ତେ ପ୍ରତଗ୍ୟାଂ କରିଣ ।୧୨୨୫
କେ କାହାକଇଂ ମାରିଲା ତାହା ଜାଣି ନୁଆରିଲି
ମାତ୍ର ଯେକକଥା ଦିବ୍ୟ ନୟନେ ଦେଖିଲି ।୧୨୨୬
ପାଣ୍ଡବଂକ ଥାଠୁଂ ଚକ୍ରେ ହୁଅଇ ବାହାର
କୋଟିୟେ ସୂର୍ଯ୍ୟ ଜିଣି ତେଜ ଅଟଇ ତାହାର ।୧୨୨୭
କଉରୋବ ସଇନିକି ସେ କରଇ ଦହନ
ସେ ସନ୍ୟରୁ ଚକ୍ର ପୁଣ ହୁଅଇ ଉତପନ୍ନ ।୧୨୨୮
ପାଣ୍ଡବଂକ ସଇନିକି ସେ କରଇ ଛେଦନ
ଯେଥିରୁ ଆନ ମୁଂ ଦେଖିନାହିଂ ଭଗବାନ ।୧୨୨୯
ଅଠରଦିନ ଯାଏ ମୁଂ ଦେଖିଲଇଂ ଯେହିପରି
କିଂପାଇଂ ପାଣ୍ଡବେ ଯେ ହୁଅନ୍ତି ଅନର୍ଥକାରୀ ।୧୨୩୦
ଯେସନେକ ବାକ୍ୟ ଶୁଣି ସମସ୍ତେ ହୋଇଲେ ମଉନ
ମହାକୋପ କରିଣ ଯେ ଉଠିଲା ଭୀମସେନ ।୧୨୩୧
ଅଧରେଣ ଦନ୍ତ ଚାପି ହୋଇ କମ୍ପମାନ
ମୋର ବାର୍ଯ୍ୟେ ଜାତ ହୋଇଲୁ ରେ ଯେଡ଼େକ ଅଗ୍ୟାଂନ।୧୨୩୨
ସମସ୍ତଂକ ନିନ୍ଦା ଯାହା କରିବାର କଲୁ
ମୋହୋର ପ୍ରତଗ୍ୟାଂ ଯାହା ତିଳେହେଂ ନ ରଖିଲୁ ।୧୨୩୩
ଧିକ ଧିକ ଜୀବନ ତୋହୋର ତୁ ଅଟୁ ମନ୍ଦମତି
ପୁଣ ପୁଣ କମ୍ପମାନ ହୋଅଇ ମାରୁତି ।୧୨୩୪
ନିର୍ଘାତ ସମାନେ ଘୋର ରଡ଼ିଯେ ଛାଡ଼ିଲା
ବଜ୍ରସମ କରିଣ ଯେ ଚାପୋଡ଼େ ପ୍ରହାରିଲା ।୧୨୩୫
ଛାଡ଼ିଲା ସେ ନିଜ ପ୍ରାଣ ପଶିଲା ଶ୍ରୀହରିର ଅଙ୍ଗେ
ପାଣ୍ଡବଂକୁ ସଙ୍ଗେ ନେଇ ବିଜୟେ ଶ୍ରୀରଙ୍ଗେ ।୧୨୩୬
ମାୟାଧର ପ୍ରଭୁ ମାୟା କଲେକ ରଞ୍ଜନା
ପାଣ୍ଡବଂକ ଗର୍ବମାନ କରିଦିଲେ ଚୂନା ।୧୨୩୭
ସେ ବେଲାବାଳୀର ପ୍ରାଣ ନିଜ ଅଙ୍ଗେ କଲେ ଲୀନ
ନାନା ପ୍ରକାରେ ଲୀଳା କରନ୍ତି ସେ ଦେବ ଜନାର୍ଦ୍ଦନ ।୧୨୩୮
ଚକ୍ରକୂଟ ଉପାୟେ ସେ ନାଶିଲେ କୁରୁବଂଶ
ଆପଣେ ମାରିବାର ପାଣ୍ଡବଂକୁ ହେଲା ଦୃଶ୍ୟ ।୧୨୩୯
ଶ୍ରୀକୃଷ୍ଣ ବୋଇଲେ ହାୟ ହାୟ ଭୀମ ତୁ କି କଲୁ
ବେଲାଳେ ଜୀଆଇଂ ଥାନ୍ତୁ ମନେ ଭାଳିଥିଲୁ ।୧୨୪୦
କପଟ କରିଣ ହରି ଯେ ଯେମନ୍ତ କହିଲେ

ଶୁଣିକରି ସମସ୍ତେ ଯେ ବିରସ ଭାବ ହେଲେ ।୨୪୧
ମାୟାଧର ପ୍ରଭୁଙ୍କର କେ ମାୟା ବୁଝିବ
ଯେହିରୂପେ ଭାଙ୍ଗିଲେ ପ୍ରଭୁ ପାଣ୍ଡବଂକର ଗର୍ବ ।୨୪୨
ଶୁଣ ବଇବସୁତ ମନୁ ଯେଥୁ ଅନନ୍ତରେ
ପଞ୍ଚୁପାଣ୍ଡବଂକୁ ଘେନିଣ ଶ୍ରୀହରି ସଙ୍ଗତରେ ।୨୪୩
ରଣ ଜୟ ପାତାଙ୍ଗ ଯେ ଉଡ଼ାନ୍ତି ସର୍ବପୁରେ
ସ୍ନାହାନ ଦେବାର୍ଚ୍ଚନ ସାରନ୍ତି ଯେ ଯାହା ବେଭାରେ ।୨୪୪
ଗୋବିନ୍ଦେ ବୋଇଲେ ଦେବ ଦ୍ୱାରିକା ପୁରକୁ ଚାଲ ଯିବା
ବଳରାମ ଦେବଂକୁ ଯାଇଂ ଦ୍ରଶନ କରିବା ।୨୪୫
ଯେଥିର ତଦନ୍ତ କରିବା ଦେବସ୍ୱାମୀ
ପଞ୍ଚରାତ୍ର ରହି ନୁଆରି ରଣ ଜୟେକଲା ଭୂମି ।୨୪୬
ପଞ୍ଚାଳ କୁମରନ୍ତ ଯେ ଶୁଆଇଲେ ଭିତରେ
ଧୃଷ୍ଟଦ୍ୟୁମନକଙ୍କଂ ଯେ ଗୁହାଇଲେ ଦୁଆରେ ।୨୪୭
ଗୋବିନ୍ଦେ ବୋଇଲେ ଶୁଣ ପଞ୍ଚାଳେଶ୍ୱର ରାୟେ
ପାଣ୍ଡବନ୍ତ ଘେନି ଆମ୍ଭେ ଯାଉଛୁଂ ଦ୍ୱାରିକାପୁର ଯାୟେ ।୨୪୮
ପାଞ୍ଚାଳ କୁମାର ଅଛନ୍ତି ତୁମ୍ଭର ଭଗ୍ନିଜା
ଯେହାନ୍ତ ଯତନ କରି ସମ୍ଭାଳ ଯେ ପଞ୍ଚୁକଟକେ
ହ୍ୱନ୍ତୁ ରାଜା ।୨୪୯
ଦୁଇକ୍ଷଉଣୀ ବଳ ଗୁହାଇ ଜଗାଇଲେ ଗଡ ଦ୍ୱାରେ
ଭଇରୋବୀ ପିତୁଳା ଯେକ ଥାପିଲେ ବାଟରେ ।୨୫୦
ପାଣ୍ଡବ ପାଞ୍ଚଭାଇ କୋଇନ୍ତା ସୁଭଦ୍ରା ଦ୍ରୌପଦୀ ଉତ୍ତରା ଆଦିକରି
ଯେହାନ୍ତ ଘେନି ସଜ ହୋଇଲେ ଦେବହରି ।୨୫୧
ସାତ୍ୟକୀ ସହିତେ ବିଜେ ନନ୍ଦିଘୋଷ ରଥେ
ଦ୍ୱାରିକାକୁ ବିଜୟେ ଯେ କଲେ ଶ୍ରୀଜଗନ୍ନାଥେ ।୨୫୨
ଉଗ୍ରସେନ ରାୟେ ବିଜେ କଲେ ଯେହା ଶୁଣି
ସାତବଂଶ ଯାଦବ ଘେନି ଆସ୍ତାନେ ବିଜୟେ ଚକ୍ରପାଣି ।୨୫୩
ଦ୍ୱାରିକାୟେ ଉତ୍ସବ କରନ୍ତି ଦେବହରି
ପାଣ୍ଡବନ୍ତ ଉଭା କରାନ୍ତି ଦୁଷ୍ଟନ୍ତ ସଂହାରି ।୨୫୪
ଅନେକ ପ୍ରାର୍ଥନା ବଦୟନ୍ତି ଯାଦବେ
ସୟଳ ଭଗତ ଉଦ୍ଧାରନ୍ତା ତୁହି ସେ ବାସୁଦେବେ ।୨୫୫
ଦୁଖୀଜନ ଉଦ୍ଧାରନ୍ତା ତୁହି ସେ ଜଗବନ୍ଧୁ
ଶରଣ ରକ୍ଷଣ ନାଥ ଅଭୟେ ସତ୍ୟସିନ୍ଧୁ ।୨୫୬
ସୟଳଜନ ଉଦ୍ଧାରଣ ନାଥ ଭଗତ ମହଳ
ଭାରାଭର ନିବାରଣ ଉଦ୍ଧାରଣ ସୟଳ ।୨୫୭
ତୁ ଦେବ ଶ୍ରୀରଙ୍ଗ ସଂସାର ଜନ ରଖନ୍ତା
ତୁ ଦେବ ନରକ ଘୋରୁ ଉଦ୍ଧାରନ୍ତା ।୨୫୮
ତୁ ଦେବ ଜଗତ ତାରଣ ସାଧନ ପରମଯୋଗୀ
ତୁ ଦେବ ଜଗତବଂଧୁ ତୁହି ସେ ଭୋଗାଭୋଗୀ ।୨୫୯
ତୁ ଦେବ ଜଳଥଳ ତୁହି ଦେବ ଅନଳ
ତୁ ଦେବ ଆକାଶ ଭୁବନ ମଧ୍ୟସ୍ୱର୍ଗ ପାତାଳ ।୨୬୦
ତୁ ଦେବ ସୁତଳ ରାସାନ୍ତଳ ତୁ ଦେବ ସୟଳ ଅନନ୍ତ
ତୁ ଦେବ ରୂପଗୁଣ ଥାପନ୍ତା ଅନନ୍ତଭୂତ ।୨୬୧
ତୁ ଦେବ ରାତ୍ରି ଯେ ତୁହି ଦେବ ଅଟୁ ଦିବା
ତୁ ଦେବ ବ୍ରହ୍ମା ଯେ ତୁ ଦେବ ସଦାଶିବା ।୨୬୨
ତୁ ଦେବ ଆପ ତୁହି ଦେବ ତେଜ
ତୁ ଦେବ ବାଇବ ଆକାଶ ତୁହି ଅଟୁ ଦେବରାଜ ।୨୬୩
ତୁ ଦେବ ଯାବତ ଜୀବଂକର ଶ୍ରେଷ୍ଠ ଆଦିମୂଳ
ତୁ ଦେବ ଧର୍ମ ଅର୍ଥ କାମ ମୋକ୍ଷ ସୟଳ ।୨୬୪
ତୁ ଦେବ ନିରଞ୍ଜନ ନିରାକୁଳ ଠୁଳସୂକ୍ଷ୍ମ ଘଞ୍ଚ
ତୁ ଦେବ ଆବର ଜଙ୍ଗମ କୀଟ ପତଙ୍ଗ ସର୍ବସଞ୍ଚ ।୨୬୫
ତୁ ଦେବ ସର୍ବ ବିନୋଦେ କଉତୁକେ କୁତୂହୋଳି
ବର୍ଣ୍ଣ ସୁବର୍ଣ୍ଣ ଯେସନେକ କରୁ ନାମ ତୋ ବନମାଳୀ ।୨୬୬
ଯେ ଭବସଂସାରେ ଦେବ ଜୀବ ପାଣିଫୋଟା
ଶବଦକୁ ଗୋଡ଼ାଇ ଅଇଲା ଲାଗିଲା ପକ୍ଷୀଧରା ଅଠା ।୨୬୭
ହିଂସା ଅପବାଦ ସବୁ ଜଞ୍ଜାଳର ରସେ
ଲାଗିଲା ମାୟାମୋହ ନାଶକର ଫାଶେ ।୨୬୮
ଦେଖୁ ଦେଖୁ ଅନ୍ଧକାର ଯେ ମାୟା ପଟଳେ
ସଂଗତକୁ ସାହାପକ୍ଷ କେହି ନୋହିଲା ଅନ୍ତକାଳେ ।୨୬୯
ଭାବିଲେ ସଂପକ୍ଷଟି ନାରାୟଣ ନାମଗୋଟି
ଯେହି ସେ ତାରଣ କାରଣକୁ କଣ୍ଠିଗୋଟି ।୨୭୦
ଅନିତ୍ୟ ସଂସାର ଯେ ଲାଗିଲା ମହାପୀଡ଼ା
ତବ ଆଶ୍ରେକେ ଥାଇ ନାଥ ଅନ୍ୟ ଭୁବନ ନ କରା ।୨୭୧
ତୁଳସୀର ବଲ୍ଲଭ ହୃଦଗତେ ଭାବି
ବାକ୍ୟଦେବୀ ଭଣ୍ଡାର ବୟେକଲା ସାରୋଳା ଦାସ କବି ।୨୭୨



## କାଇଂଶିକା ପର୍ବ

### ୧୦୪. ଅଶ୍ୱତ୍‌ଥାମା କର୍ତ୍ତୃକ ଦ୍ରୌପଦୀ ପାଞ୍ଚପୁତ୍ରଙ୍କ ଶିରଚ୍ଛେଦନ ଓ ଦୁର୍ଯ୍ୟୋଧନର ଦେହତ୍ୟାଗ ।

ଶୁଣ ହୋ ମନୁରାୟେ ବଦୟନ୍ତି ବ୍ରହ୍ମସୁତ
ଦ୍ୱାରିକାୟେ ପାଣ୍ଡବେ ଯେ ରହିଲେ ନିଚିନ୍ତ ।୧।
ଦ୍ରିଯୋଧନକୁ ଭୀମ ଯେତେବେଳେ ସମରେ ନିପାତି
ନିଯୋଗୀମାନେ ନିଯୋଗ ଘେନିଣ ଧାମନ୍ତି ।୨।
ଭୀମସେନର ଯେ ବେନିଦିନ ମୁଣୋହିଂ ନାହିଂ
ବ୍ୟାଧ ତାଟକା ହୋଇଲା କାଠପେଡ଼ାରେ ଚକୁଆ
ଚକୋଇ ତ ନାହିଂ ।୩।
ଯେମନ୍ତ ବୋଲି ବ୍ୟାଧ ମନରେ ଭାଳଇ
ମତଫୁଲିକି ଲୋଡ଼ିଲେ ଯେ କିସ ଦେବି ମୁହିଂ ।୪।
ଧାଇଂଲା ଭୀମ ମତଫୁଲ ଘରକୁ ଯୁଗତେ
ଆରେ ବ୍ୟାଧ ପକ୍ଷୀ ଆଣ ବୋଲି ଡାକଇ କୋପଚିତ୍ତେ ।୫।
ବାତୁଳ ହୋଇଣ ବ୍ୟାଧ ସେ ବୋଲାଇ
କାଠପେଡ଼ା ଫାଟି ଚକୁଆ ଚକୋଇ ଉଡ଼ିଯାଇ ।୬।
ପୁଣ ଘରଦ୍ୱାର ସେ ତେଜି ଧାମଇଂ ଘୋର ବନେ
କାଠପେଡ଼ା ଫାଟିଲା ବୋଲଇ ବଚନେ ।୭।
ଅକାରଣ ହୋଇ ସେ ବୁଲାଇ ମହାତମା
ତୁଙ୍ଗଭଦ୍ରା ନଦୀ ତୀରେ ଭେଟିଲେ ଅଶସ୍ତମା ।୮।
କିହୋ ବେଣ୍ଟକାର ତୁ ହୋ ଭୀମର ନିଯୋଗୀ
ବନ ଭିତରେ କିମ୍ପେ ତୁ ବୁଲୁ ବେଗି ବେଗି ।୯।
ବାତୁଳ ଭାବ ହୋଇଣ ସେ ବ୍ୟାଧ ଯେ ବୋଇଲା
କି ବୋଲ ଗୋସାଇଂ ହୋ ଚଢ଼ାଇ କାଠପେଡ଼ା ଫାଟିଗଲା ।୧୦।
ବାତୁଳ ଭାବ ହୋଇ ସେ କହଇ ଛନ ଛନ
କାଠପେଡ଼ା ଫାଟିଗଲା ବୋଲି ବୋଲଇ ଘନ ଘନ ।୧୧।
ଭୀମସେନ ଠାକୁରେ ଯେ ପ୍ରତଗ୍ୟାଂ କଲେ କାଲି
ଦ୍ରିଯୋଧନକୁ ନ ମାଇଲେ ମୁଣୋହିଂ ନାହିଂ ବୋଲି ।୧୨।
ଭୀମସେନ ମୁଣୋହିଂ ନ କଲେ ସେ କାଲି
ଚକୁଆ ଚକୋଇ କାଠପେଡ଼ା ଭିତରେ ଦୁଇପୁଞ୍ଜି ଥୋଇଥିଲି ।୧୩।
କାଠପେଡ଼ା ଗୋଟି ତ ହୋଇଲା ଦୁଇଫାଳ
କପାଳ ଫାଟିଲା ବୋଲି କହଇ ବାତୁଳ ।୧୪।
ଭୀମସେନ ଠାକୁରେ ମାଇଲେ ମାନଗୋବିନ୍ଦ ରାଜାଂକୁ
ନିଯୋଗ କରିବେ ଦେବ ମୁଣୋହିଂ ଠାବକୁ ।୧୫।
ବେଣ୍ଟକାର ବଚନେ ଅଶସ୍ତମାୟେ ବୋଇଲେ
ସେ ପକ୍ଷୀ ଯେକଠାବ ନୋହନ୍ତି ଶ୍ରୀରାମଂକ ଶାପରେ ।୧୬।
ରାତ୍ରେ ପତିପତ୍ନୀ ସେ ନୋହନ୍ତି ଯେକସଙ୍ଗ
ତୁ ନଷ୍ଟ କିମ୍ପାଇଂ ତାକୁ କଲୁ ଯେକଯୋଗ ।୧୭।
ଶ୍ରୀରାମ ଠାକୁରଂକର ଶାପବାକ୍ୟ ବଳେ
କାଠପେଡ଼ା ଫାଟିଲା ପଳାଇଲେ ଗଗନ ମଣ୍ଡଳେ ।୧୮।
ଶାପର ଚରିତ ଅଶସ୍ତମା କହିଲେ ବ୍ୟବସ୍ଥା
ସତ୍ୟ କରି କହ ତୁ ଦ୍ରିଯୋଧନର ବାରତା ।୧୯।
ଅଶସ୍ତମା ବୋଇଲେ ନୟନରେ ଦେଖିଲୁକି ସମର
ବ୍ୟାଧ ବୋଇଲା ମାନଗୋବିନ୍ଦ ପଡ଼ିଅଛି ବ୍ୟାସ
ସରୋବର ତୀର ।୨୦।
ସମରେ ମାଇଲେ ତାଂକୁ ଠାକୁର ଭୀମସେନ
ପ୍ରାଣ ନ ଯାଇଣ ସେ ପଡ଼ିଛି ଦ୍ରିଯୋଧନ ରାଜନ ।୨୧।
ତହୁଂ କୋପେ ଅଶସ୍ତମା ଆସଇ ବେଗ ହୋଇ
ଚଞ୍ଚଳ ବିଜୁଳି ଜାଣି ମଞ୍ଚ ଭୁବନେ ଗମଇଂ ।୨୨।
ଅନ୍ଧାର ବେଳେ ଆସି ସଇନ ସେ ହାବୋଡ଼ି
ଦେଖିଲା ଦ୍ରିଯୋଧନ ରାଜା ତହିଂ ଅଛି ପଡ଼ି ।୨୩।
ଜାନୁରେ ସୀମସ୍ଥାନ ଦେଇଅଛଇ ଦୃଦକ୍ଷ
ମାନଗୋବିନ୍ଦ ବୋଇଲା ତୁମ୍ଭନ୍ତ ଆଶ୍ରେ କରି ମୁଂ ହୋଇଲି
ନିରେଖ ।୨୪।
ଅଶସ୍ତମା ବୋଇଲା ମୁଂକି ନ ବୋଇଲି ତୋତେ
ସେନାପତି କରିଣ ମୁକୁଟ ବାନ୍ଧସି ହାଦେ ମୋତେ ।୨୫।
ମୋର ବଚନେ ଉପହାସ୍ୟ କରି ତୁ କୋପିଲୁ କୁରୁବୀର
ପାଣ୍ଡବଂକର ମୃତୁଭେଦ ଥିଲା ମୋହୋର ହାଥର ।୨୬।
ଯେତେ ବଡ଼ ପଣ ଯେ ହରାଇଲୁ ଅକାର୍ଯ୍ୟେ
ମୁହିଂ ତୋହୋର ଅବସ୍ଥା ଦେଖିବାକୁ ଅଇଲି ନିଲଜେ ।୨୭।
ଯେବେହେଂ ମୁକୁଟ ବାନ୍ଧସି ରାଜା ମୋତେ
ମାରିବି ପାଣ୍ଡବନ୍ତ ଭସ୍ମ ଅଂକୁରାଇବି ତୋତେ ।୨୮।
ଦ୍ରିଯୋଧନ ବୋଇଲା ହୋ ବହିଗଲା ପାଣି
ବନ୍ଧ ବାନ୍ଧି ନୁଆରିଲେ ତ ବେଳକାଳ ଜାଣି ।୨୯।
ଆଦିହୁଂ ଯେବେ ମୁଂ ନ ପାଳନ୍ତି ସତ୍ୟବ୍ରତ
ସରିଲା ବେଳକୁ ଆଉ କାହିଂକି ନିସତ ।୩୦।

ମାନଗୋବିନ୍ଦ ବୋଇଲା ଯେବେ ମୁଂ କରିବି ସେନାପତି
ରଥ ଗଜ ଅଶ୍ୱ ନାହିଂ ନାହିଂନା ପାଦାନ୍ତି ।୩୧।
ତାତ ତୋହ୍ୱର ଯେ ନାହିଂ ସରଳ ଜଗଦଳା
ମଣି ମାଣିକ୍ୟ ନାହିଂ ମୁକୁଟ କର୍ଣ୍ଣାଞ୍ଚଳା ।୩୨।
ଯେତେବେଳେ ଯେମାନନ୍ତ ମୁଂ ପାଇବଇଂ କାହିଂ
ଶ୍ରୀଲକ୍ଷ୍ମୀ ବୁଡ଼ାଇଲି କାହିଂ କିଛି ନାହିଂ ।୩୩।
ଅଶତ୍ତମାଯେ ବୋଇଲେ ତୁ କର ସନମତେ
କାର୍ଯ୍ୟ କଲେ ପଛେ ସେମାନ ଭୂଷଣ କର ମୋତେ ।୩୪।
ଯେ ବଚନ ଶୁଣି ରାଜା ଦୃଦକ୍ଷକୁ ଚାହିଂଲା
ଶୁଆଂଳ ଲତାଯେ ଅଶତ୍ତମା ଶିରରେ ବାନ୍ଧିଲା ।୩୫।
ଦୁକେ ଶ୍ୱେତ ଦୁବ ଲୋଚାୟେଂ ଦିଲେ ଶିରେ
ଚଳିଲେ ଅଶତ୍ତମା ସେନପତି ତ୍ରିଧାର ଶସ୍ତ୍ର ଧରି କରେ ।୩୬।
ସମ୍ପୂର୍ଣ୍ଣ ନିଶି ଅର୍ଦ୍ଧ ହୋଇଅଛି ରାତି
ନବର ସିଂଘଦ୍ୱାରେ ଯାଇଂ ମିଳିଲା ମହାଛତ୍ରୀ ଝାତି ।୩୭।
ଦ୍ୱାରେ ଦେଖିଲା ବୀର ଭଇରୋବୀ ପ୍ରତିମା
ତାହାର ତୁଲେ ବେନିଘଡ଼ି ସମର କଲା ଅଶତ୍ତମା ।୩୮।
ସେ ଭଇରୋବୀ ପ୍ରତିମାକୁ ବୀର ଜିଣି ନୁଆରିଲା
କାନ୍ଥ ଭାଙ୍ଗି ଅଶତ୍ତମା ଭିତରେ ପଶିଲା ।୩୯।
ନିଦ୍ରା ନ ଥିଲା ଅଷ୍ଟାଦଶ ଦିବସ ପରିଯନ୍ତେ
ସେଦିନ ଶୋଇଛନ୍ତି ଭିତରେ ନିଚିନ୍ତେ ।୪୦।
ଅଜାଣତେ ଭିତରେ ପଶିଲା ଯାଇ ଦ୍ରୋଣୀ
ଦୁଇ କ୍ଷଉଣୀ ବଳ ସବୁ ପକାଇଲା ହାଣି ।୪୧।
ଦ୍ୱାରେ ଶୋଇଥିଲେ ସେ ଧୃଷ୍ଟ ଯେ ଦ୍ୟୁମନ
କେଶ ଧରି ତାହାକଇଂ କଲାକ ଛେଦନ ।୪୨।
ତହୁଂ ଯାଇଂ ପଶିଲା ଅଶତ୍ତମା ଚନ୍ଦ୍ରଶାଳାପୁରେ
ପାଞ୍ଚାଳୀ କୁମରେ ଶୋଇଛନ୍ତି ପଲ୍ୟଂକ ଉପରେ ।୪୩।
ଚନ୍ଦ୍ରକେଶରୀ ବୋଲି ଯୁଦେଷ୍ଟିଂକ ପ୍ରଥମ ପୁତ୍ର
ବୀରକେଶରୀ ବୋଲି ଭୀମସେନର ସୁତ ।୪୪।
ନରକେଶରୀ ବୋଲି ଅର୍ଜୁନର ସୁତ
ମହାକେଶରୀ ବୋଲି ନକୁଳ ତହୁଂ ଜାତ ।୪୫।
ତ୍ରଇଲୋକ୍ୟକେଶରୀ ବୋଲି ସହଦେବଂକର ସୁତ
ଯେ ବିଧି ପାଞ୍ଚାଳୀଂକର ପାଞ୍ଚକୁମାର ଖ୍ୟାତ ।୪୬।
ମହାନିଶା କାଳେ ଯାଇଂ ଅଶତ୍ତମା ଭେଟି
ଯେକା ପ୍ରହାରକେ ପାଞ୍ଚଂକରି ମୁଣ୍ଡକାଟି ।୪୭।
ଧନୁରେ ଭାର କରି ପାଞ୍ଚ ମୁଣ୍ଡ ଘେନି
ବାହୁଡ଼ଇ ଅଶତ୍ତମା ରାତ୍ର ପ୍ରହର ତିନି ।୪୮।
ମନେ ଅନେକ ସାନନ୍ଦେ ଗମଇ ପବନ ବେଗେ ଦ୍ରୋଣୀ
ବ୍ୟାସ ସରୋବର ତୀରେ ପ୍ରବେଶ ବିକ୍ରମ ସିଂଘଠାଣି ।୪୯।
ରଜନୀ ଶେଷେ ପାହାନ୍ତି ହୋଇଲାକ ଆସି
ପ୍ରଭାତ ସନ୍ଧ୍ୟାକାଳେ ଅଛ ଅଛ ଦିଶି ।୫୦।
ଦୃଦକ୍ଷ ହୋଇଲା ସ୍ୱାମୀ ଶୁଣିମା ଦଣ୍ଡଧାରୀ
ଅଶତ୍ତମା ପାଣ୍ଡବଂକ ମୁଣ୍ଡଛେଦି ଆଣଇ ଭାର କରି ।୫୧।
ନୟନ ଫେଡ଼ି ରାଜା ଚାହିଂଲା ମାନଗୋବିନ୍ଦ
ପାଣ୍ଡବନ୍ତ ପ୍ରାୟେ ବୁଝି ମନେଣ ସାନନ୍ଦ ।୫୨।
ସାଧୁ ସାଧୁ ଅଶତ୍ତମା ବୋଲି ମାନଗୋବିନ୍ଦ ପ୍ରଶଂସି
ତୋତେ ସେନାପତି ନ କରି ଅଗାଦ ସମୋଦ୍ରେ ଗଲି ଭାସି ।୫୩।
ହରାଇ କରି ପଛେ ଶିଖିଲି ମୁଂ ବୁଦ୍ଧି
ପାଦେଣ ଟାଳିଲି ମୁଂ ଯେଡ଼େକ ସଂପ୍ରଧି ।୫୪।
ବାଳୁତ କାଳହୁଂ ଯାହାକୁ ପାଇଲଇଂ ସାଖି
ଚିହ୍ନି ନୁଆରିଲି ମୁଂ ତାକୁ ହୋଇଲି ନିରିମାଖି ।୫୫।
ଅନେକ ଉତସଲ୍ୟ ଦେଖିଣ ଧୃତିରାଷ୍ଟି
ଛାମୁରେ ନେଇ ପକାଇଲା ପାଞ୍ଚଂକରି ମୁଣ୍ଡଗୋଟି ।୫୬।
ବୋଲଇ ଅଶତ୍ତମା ଶୁଣ ହୋ ଦ୍ରିଯୋଧନ
ପିତାର ଶତ୍ରୁ ଯେଟି ଧୃଷ୍ଟ ଯେ ଦ୍ୟୁମନ ।୫୭।
ଦେଖିଣ ସାନନ୍ଦ ହୋଇଲେ ଦ୍ରିଯୋଧନ ରାୟେ
ବୋଇଲେ ବେଗେ ଦଣ୍ଡଛତ୍ର ଧର ତୁ ରାଜାୟେ ।୫୮।
ଦେଖିଣ ବୋଇଲା ଚିହ୍ନି ଯେ କୁମାର ଦୃଦକ୍ଷ
ପାଣ୍ଡବେ ନୋହନ୍ତି ଯେ ଦ୍ରୋପଦୀ ପାଞ୍ଚବସ୍ତ ।୫୯।
ରଜନୀ ପ୍ରଭାତରେ ଦେଖିଲା ଧୃତରାଷ୍ଟି
ପାଞ୍ଚାଳୀ କୁମରଂକର ଶିର ପାଞ୍ଚଗୋଟି ।୬୦।
ମୂର୍ଚ୍ଛାଗତ ହୋଇଲା ଦେଖି ମାନଗୋବିନ୍ଦ
ହା ହା ଦଇବ ବୋଲି କପୋଳେ କର ଧ୍ୱନ୍ଦ ।୬୧।
ଆହେ ଅଶତ୍ତମା ଆଦିହୁଂ ଅଟୁ ନଷ୍ଟ
ତୋହୋର ପ୍ରକୃତି ଜାଣି ମୁଂ ନ ବାନ୍ଧିଲି ମୁକୁଟ ।୬୨।
ସମର ଶେଷକାଳେ ମୋତେ ଯେ କଲୁ ଯେହା
ବାଳୁତ ବଧ ଦୋଷେ କଲୁରେ ପାମର ଦୋରେହା ।୬୩।
ଅଭିମନ୍ୟୁ ମଲା ଘଟଉତ୍କଚ ନାଶଗଲା
ଲକ୍ଷ୍ମଣକୁମାର ହିଂ ପଡ଼ିଲା ବଂଶହିଂ ସରିଲା ।୬୪।

ଯେହାନ୍ତ ରଖିଲି ମୁଂ ବଂଶରକ୍ଷାର ନିମନ୍ତେ
ଗତ ଆଗତ ବୁଡ଼ିଲା ଯେ ତୋହୋର କୃତ୍ୟେ ।୬୫।
ଭୋ ଦଇବ ସନ୍ତାନ କଳପତରୁଂ ଯେ ବୋଲ ବୋଲି
ଅଶସ୍ତମା ପ୍ରସନ୍ନେ ଗତ ଆଗତ ଦୁଇକୁଳ ବୁଡ଼ାଇଲି ।୬୬।
ତୋହୋର ମୁଖ ପୁଣ ମୁଂ ନ ଚାହିଂ ରେ ଦୋରେହା
ବଂଶ ନିଅଂଶ କଲୁରେ ମୋହୋର ମୁଖ ତୁ ନ ଚାହାଂ ।୬୭।
ପଞ୍ଚଭୂତ ଆତ୍ମା କିମ୍ପେ ଅଛି ହୋ ନିର୍ଲଜ
ଯେ ପଞ୍ଚୁ ପୁଅଂକ ଅବସ୍ଥା ଦେଖି କିମ୍ପେ ନୁହଇ ଦହିଜ ।୬୮।
ପାଞ୍ଚକରି ମୁଣ୍ଡ ଦିଅ ମୋହୋରି କୋଳାଗ୍ରତେ
କୋଳ କରି ଧରି ମୁଂ ହୋଇବି କିନା ମୁକତେ ।୬୯।
ଦ୍ରିଯୋଧନ ବାକ୍ୟ ଶୁଣି ଦୃଦକ୍ଷ ସତ୍ୱର
ରାଜା କୋଳେ ଦିଲା ନେଇ ପଞ୍ଚବଞ୍ଚ ଶିର ।୭୦।
ପାଞ୍ଚଂକରି ମୁଣ୍ଡ କୋଳେ ଦେଖିଣ ଧୃତିରାଷ୍ଟ୍ରି
ପ୍ରାଣ ବିସର୍ଜିଲା ମୁଧୁନା ଗଲା ଫାଟି ।୭୧।
ଲଜ୍ଜା ପାଇ ବନସ୍ତେ ପଶିଲା ଅଶସ୍ତମା
ତୁଙ୍ଗଭଦ୍ରା ନଦୀକୂଳେ ଭେଟିଲେ କୃପବ୍ରହ୍ମା ।୭୨।
ଅଶସ୍ତମା କହିଲେ ଯେ ସକଳ ବାରତ
ପାଣ୍ଡବନ୍ତ ବୋଲି ମାଇଲି ପାଞ୍ଚାଳୀ ପାଞ୍ଚପୁଅନ୍ତ ।୭୩।

**

## ୧୦୫. ପାଣ୍ଡବ ବଧାର୍ଥ ଅଶ୍ୱତ୍ଥାମାର କାଇଁଶିକା ଶର ପ୍ରୟୋଗ

ବଇବସ୍ୱତ ମନୁ ପୁଛା କଲେ ଅଗସ୍ତିଂକି
କୃଷ୍ଣ ଭଣି ଅଇଲେ କୃପ ଅଶସ୍ତମା ଦୁହିଂକି ।୧।
ଯେହାନ୍ତ ଲୋଡ଼ିଲେ ଟିକି ରଜନୀ ପ୍ରଭାତେ
ଯେହା ସଞ୍ଚପିଣ କହିବା ମୁନି ମୋତେ ।୨।
ବସନ କୁଣ୍ଡଳ ରତ୍ନମାଳ ପାଦ୍ୟ ଅର୍ଘ୍ୟ ଆସନେ
ଗନ୍ଧ ପୁଷ୍ପ ତାମ୍ବୋଳ ଚତୁସମ ଲେପନେ ।୩।
ସାଷ୍ଟାଙ୍ଗେ ପ୍ରଣପତ୍ୟ ଚରଣ ତଳେ ସହସ୍ରେ ଦଣ୍ଡ
କହିବା ମୁନି ମୋତେ ଅଇଷିକ ପର୍ବଖଣ୍ଡ ।୪।
ଶୁଣ ବଇବସ୍ୱତ ମନୁ ବଦନ୍ତି ବ୍ରହ୍ମବେତ୍ତା
କୋଟିଯେ କୋଟିଯେ କଳ୍ପ ଯେବଣ ମୁନି ଗ୍ୟାଂତା ।୫।
ବାଳୁତକାଳେ ମୁନି ଖେଳଇ କୁତୂହୋଳେ
ଯେକା ଚଳୁକେ କ୍ଷୀରୋଦ୍ର ଗଣ୍ଡୂଷ କଲେ ବଳେ ।୬।
ସେ ମହାପ୍ରଳୟ କାଳେ ବିଷ୍ଣୁର ଗର୍ଭରେ ପଶଇ
ଜାତ ଅନ୍ତ ମଧେ ସେ ସମସ୍ତ ଭୂତ ଭବିଷ୍ୟ ଗ୍ୟାଂତା
ଅବ୍ୟକତଇ ।୭।
ସେ ମୁନିର ମହିମା ନ ସରଇ କହନ୍ତେ
ନମଇ ମାହେଶ୍ୱରୀ ସଦୟ କର ମୋତେ ।୮।
ପ୍ରତକ୍ଷେ ହିଙ୍ଗୁଳା ଜଙ୍ଖେରପୁରବାସୀ
କଳିକାଳ ଧଂସିନୀ ମାଗୋ ଭଗତ ଜନ ତୋଷି ।୯।
ନ ପଢ଼ି ପଣ୍ଡିତ ମୁଂ ସିଦ୍ଧ ସାରୋଳା ପ୍ରସନ୍ନେ
ଜନ୍ମରୁ ମୁରୁଖ ମୁଂ ଖଣ୍ଡିଲି ତବ ଦରଶନେ ।୧୦।
ତେଣୁ କରି ଲେଖନ୍ତେ ମୋତେ ହୋଇଲାକ ଦୃଶ
ତାହାଂକ ପ୍ରସାଦେ ମୁଂ କହଇ ଦିବ୍ୟରସ ।୧୧।
ସେ ମୁନିର ଆଗ୍ୟାଂଯେ ମୁଂ ତଲଯେ କରି ଘେନି
ତୁଳସାବଲ୍ଲଭ ଚରଣେ ଆଶ ସାରୋଳ ଦାସ ଶୂଦ୍ରମୁନି ।୧୨।
ବଇବସ୍ୱତ ମନୁ ହୋଇଅଛନ୍ତି ଶ୍ରୋତା
ମହାପଣ୍ଡିତ ବ୍ରହ୍ମବେତ୍ତା ଅଗସ୍ତି ସ୍ୱୟେଂ ବକତା ।୧୩।
ଯେ ଶ୍ରୀ ମହାଭାରଥ କର ରାଜା ହେତୁ
ବନ୍ଧନ ଫିଟଇ ମୃତୁ ଫିଟଇ ଶୁଣିଲେ ପୁରାଣ ତତ୍ତ୍ୱ ।୧୪।
ଯେବଣ ଶାହାସ୍ର ଶୁଣନ୍ତେ ରୋଗ ନ ପୀଡ଼ଇ
ଜରା ମୃତୁ ଖଣ୍ଡଇ ଆବର ପୁତ୍ରଶୋକ ନ ଲାଗଇ ।୧୫।
ଧର୍ମ ଅର୍ଥ କାମ ମୋକ୍ଷ ମିଳେ ଚଉବର୍ଗ
ଯମଦଣ୍ଡ ବଞ୍ଚାଇ ସେ ବସଇ ଅକ୍ଷୟ ସ୍ୱର୍ଗ ।୧୬।
ଆୟୁଷ ଧନ ସମ୍ପଦ ମୋକ୍ଷ କାରଣ ଯେ ଅଛି
ବିଷ୍ଣୁଲୋକେ ବସିବ ହୃଦଗତେ ଯାହା ବାଞ୍ଛି ।୧୭।
ଆହୋ ଚଇତନ୍ୟ କୃପ ଅଶସ୍ତମା ଭୟେଣ ଅନନ୍ତ
ଦ୍ୱାରକା ପୁରୁଂ ବାହାର କରି ନୁଆରନ୍ତି ପାଣ୍ଡବନ୍ତ ।୧୮।
ତେଣୁ ସେ କପଟ କଲେ ଯେ ଦେବ ଦଇତାରି
ତାହାଂକର ଧନୁ ଶହସ୍ର ଆଣିଲେ ଚୋରି କରି ।୧୯।
ରଜନୀ ପ୍ରଭାତେ କୃପାଚାର୍ଯ୍ୟ ଅଶସ୍ତମା
ପର୍ବତେ ଉଠି ଡାକ ଦ୍ୟନ୍ତି କେଣେ ଗଲ ହୋ ମହାତମା ।୨୦।
ରଜନୀ ପ୍ରଭାତରେ ଲୋଡ଼ନ୍ତି ଚଉକତି
ନ ପୁଣ ବିପ୍ରକୁ ବ୍ୟାଘ୍ର ଭାଲୁଂକ ନାଶ କରିଥାନ୍ତି ।୨୧।
ପ୍ରେତ ଭୂତ ଦଇତ ଯେ ଦାନବ ରାକ୍ଷସ
ନ ପୁଣ ବ୍ରହ୍ମଣ ଗୋଟିକି ପାଇ ହାଦେ କଲେ ନାଶ ।୨୨।

ଅପାର ଗହନେ ଯହୁଂ ନ ପାଇଲେ ଲୋଡ଼ି
କପାଳଲୋଚନ ତୀର୍ଥେ ଆସିଲେ ବାହୁଡ଼ି ।୨୩।
ଓଡ଼ପାର ତୁଠେ ଲୋଡ଼ନ୍ତି ଉପନେସି
ଅପାର ପାଦ ସଞ୍ଚା ଅଛି କେ ଅବା ଥିଲା ଯେଥେ ପଶି ।୨୪।
ପୁଣ ଦେଖିଲେ ବାହୁଡ଼ ପାଦ ଅଛି ପଡ଼ି
ବିଘଂସିତ ପଦ୍ମଚିହ୍ନ ଅଛି ତହିଂ ଜଡ଼ି ।୨୫।
କେବଣ ରାଜା ଯେଥି ଭିତରେ ଥିଲା ପଶି
ଆମ୍ଭ ଶହସ୍ରମାନନ୍ତ କେ ଘେନିଗଲା ଆସି ।୨୬।
ଧ୍ୟାନ କରି ତାହା ଜାଣିଲେ କୃପ ଯେ ଆଚାର୍ଯ୍ୟ
କପଟେ ଧନୁ ଶସ୍ତ୍ର ହରିଲେ ଦେବରାଜ ।୨୭।
ସମାଦି ଜାଣିଲେ ଅଶସ୍ତମା ବଡ଼ ଦୋଷୀ
ଅଗ୍ୟାନ ବାଳପୁଅନ୍ତ ଅନମିତେ ନାଶି ।୨୮।
କୃପାଚାର୍ଯ୍ୟେ ବୋଇଲେ ଶୁଣ ହୋ ଅଶସ୍ତମା
ପାଞ୍ଚାଳୀ କୁମର ନାଶକଲୁ ହୋ ମହାତମା ।୨୯।
ତେଣୁ କରି ଶ୍ରୀକୃଷ୍ଣଂକୁ ଲାଗିଲା ବଡ଼ ଭୟେ
ଜଗବନ୍ଦନ ନାଥ ରଞ୍ଚିଲେ ଉପାୟେ ।୩୦।
ଆମ୍ଭର ତୁଲେ ଥିଲେ ସେ ବିପ୍ର ରୂପ ଧରି
କପାଳେଶ୍ବର ତୀର୍ଥରୁ ନେଲେ ଶହସ୍ର ଚୋରି କରି ।୩୧।
ଧ୍ୟାନେ ଜାଣିଣ ଯହୁଂ କହିଲେ କୃପବ୍ରହ୍ମା
ରାଗେଣ ଅଧର କାମୋଡ଼ିଲା ଅଶସ୍ତମା ।୩୨।
ଯେହେନେକ କୃତ୍ୟ ଯେବେ କଲାକ ଦେବରାଜ
କେବଣ ମତେ ପାଣ୍ଡବନ୍ତ ସେ ରକ୍ଷା କରିବଇ ଆଜ ।୩୩।
ମାରିବି ପାଣ୍ଡବନ୍ତ ଶ୍ରୀକୃଷ୍ଣ ସହିତେ
ଦ୍ୱାରିକା ପୁର ଆଜ କରିବି ଭଗନସ୍ତେ ।୩୪।
କୃପ ଆଚାର୍ଯ୍ୟେ ବୋଇଲେ ଶୁଣ ଅଶସ୍ତମା
ଶ୍ରୀକୃଷ୍ଣର ତୁଲେ ତୋର କିସ ଯେତେକ ଗାରିମା ।୩୫।
ଅଶସ୍ତମା ବୋଇଲେ ଶୁଣ ମାମୁଂ କୃପ
ଶ୍ରୀକୃଷ୍ଣେ ଆଶ୍ରେ କରି ପାଣ୍ଡବଂକର ଯେତେ ଦର୍ପ ।୩୬।
ଅନେକ ପ୍ରତସ୍ୟାଂ ଯେ କରଇ ମହାଛତ୍ରୀ
କୃପେ ବୋଇଲେ କିସ ଘେନି କୃଷ୍ଣର ତୁଲେ ଯେଡ଼େକ
ଅପ୍ରୀତି ।୩୭।
ହାଥେ ନାହିଂ ତୋର ସହସ୍ର ଆୟୁଧ
କିସ ଘେନି କୃଷ୍ଣ ପାଣ୍ଡବ ତୁଲେ କରିବୁ ତୁ ଯୁଦ୍ଧ ।୩୮।
କୃପଂକର ବଚନେ ଭାରଦ୍ୱାଦଶଂକ ନାତି
କାଇଂଶ ବୃକ୍ଷ ଗୋଟିଏ ଓପାଡ଼ିଲେ ତତକ୍ଷଣାନ୍ତି ।୩୯।
ପବନ ଆଗତ ପ୍ରାୟେ କମ୍ପଇ ତାର କାୟେ
ଆକ୍ରୋଷି ଉପାଡ଼ନ୍ତି କାଇଂଶ ଗୋଟାୟେ ।୪୦।
ନହେ ଚିରିଣ ତାହା ବେନିଫାଳ କରି
ବଡ଼ଫାଳ ଗୋଟିଯେ ଧନୁ କରି ଧରି ।୪୧।
ସାନଫାଳ କୁର ଅନ୍ତ ଯେ ଛିଣାଇ
ଯତନ କରି ମୋଡ଼ି ଗୁଣ କରି ଚଢ଼ାଇ ।୪୨।
ନାରାଚ କଲା ତହିଂ କାଇଂଶ ଅଗ୍ରଗୋଟି
ସେ ଧନୁରେ ବସାନ୍ତେ ତେଜ ଅଗ୍ନିପ୍ରାୟେ ଘୋଟି ।୪୩।
ମହା ବ୍ରହ୍ମମନ୍ତ୍ର ପଢ଼ିଣ ମହାବଳୀ
ଓଟାରନ୍ତେ ଧନୁ ତେଜ ଘୋଟିଲା ଅଂଶୁମାଳୀ ।୪୪।
ଅଶସ୍ତମା ବୋଇଲା ହୋ ଯିବୁ ତୁ ବ୍ରହ୍ମଶର
ଯେହିକ୍ଷଣି ଶିରଚ୍ଛେଦନ କର ପାଣ୍ଡବ ପାଞ୍ଚବୀର ।୪୫।
ତାହାନ୍ତ ଯେବେ ଆବୋରଇ ଚକ୍ରଧାରୀ
ତାହାକୁ ସହିତେ ପକାଇବୁ ମାରି ।୪୬।
ପୁଣି ବୋଇଲା ଯାଦବ ହରିର ସାତବଂଶ
ସବୁନ୍ତି ଛେଦିପକା ନ ଥାଉ ତାଂକ ଲେଶ ।୪୭।
ଅନେକ ତିଆରି ସେ ପେଷିଲେ ମହାମନ୍ତ୍ର ବଳେ
ଚଳିଲା ନାରାଚ ଯେ ଗଗନ ମଣ୍ଡଳେ ।୪୮।
ଯେକା ନିମିଷକେ ଦ୍ୱାରିକା ପୁର ଭେଟି
ଗମଇ ଅନ୍ତରୀକ୍ଷେ ଆକାଶ ମଣ୍ଡଳେ ଘୋଟି ।୪୯।
ଆହୋ ଚଇତନ ଯେସନେ ଉଲକୁପାତ ଦିଶଇ ଆକାଶୁଂ
ନବଦ୍ୱୀପ ସପତସାଗର ଖଳବଳ ହୋଉଅଛି କାଇଂଶିକା
ଶର ଆସୁଂ ।୫୦।
ଶୂନ୍ୟଭେଦି ଯେହ୍ନେ ଆସଇ ପୁଣ ପୁଣ
ତିନିଭୁବନ ଘୋଟି ଆସୁଅଛି ଅଶସ୍ତମାର ବାଣ ।୫୧।
ପବନ ଫାଦିଲା ଆଦିତ୍ୟ ତେଜ ଜ୍ୟୋତି
ଦ୍ୱାରିକା ଲୋକମାନେ ଖଳବଳ ତ ହୋଉଛନ୍ତି ।୫୨।
ଭୋ କୃଷ୍ଣ ରଖ ବୋଲି ଅଦଭୁତେ ଶୂନ୍ୟେ ଶୁଭଇ ବାଣୀ
ଆଉଟି ହୋଉଅଛି ସପତସିନ୍ଧୁ ପାଣି ।୫୩।
ଶ୍ରୀକୃଷ୍ଣ ପଚାରିଲେ ଆହୋ ଶୁଣ ସହଦେବ
ଯୁଗ ଅନ୍ତକାଳ ପ୍ରାୟେ ଦିଶଇ ଅସମ୍ଭବ ।୫୪।
ସହଦେବ ବୋଇଲେ ଶୁଣିମା ମଧୁରିପୁ
ତେ ଦେବ ସଂସାର ଶୟଳ ଆଧିପୁ ।୫୫।

କୃପ ଅଶତ୍ଥମାର ଯହୁଂ ହରିଲୁ ଧନୁ ଦ୍ରୋଣ
ତେଣୁ କୋପେ ଅଶତ୍ଥମା ପେଷିଲା କାଇଂଶିକା ବ୍ରହ୍ମବାଣ ।୫୬।
ଅଶତ୍ଥମାର ମନ୍ତ୍ରେ ସେ ବ୍ରହ୍ମଶର ଅଟଇ
ପଡ଼ିଲେ ଅବଶ୍ୟ ଦେବ ମେରୁଗିରି ତୁଟଇ ।୫୭।
ଯଦ୍ୟପି ତୋ ଦ୍ୱାରିକାରେ ପଡ଼ିବ ଯେହିକ୍ଷଣି
ଛପନକୋଟି ଯାଦବ ସାତବଂଶେ ନିମିଷକେ ଯିବ ହାଣି ।୫୮।
ଶୁଣିଣ କୋପାନଳ ଦେବ ଯେ ଶ୍ରୀବଚ୍ଛ
ଯେହାକୁ କିସ ଶର ପେଶିବା ସମକଚ୍ଛ ।୫୯।
ଶ୍ରୀକରେ କୋଦଣ୍ଡ ଯେ ଧରିଣ ଦେବହରି
ଅଶତ୍ଥମାର ଶରକୁ ଶ୍ରୀକୃଷ୍ଣ ପ୍ରତିକଚ୍ଛ ଶର ମାରି ।୬୦।
ପର୍ବତା ଶହସ୍ରେକ ପେଷିଲେ ବନମାଳୀ
କାଇଂଶିକା ଶର ତେଜେ ଶ୍ରକୃଷ୍ଣଂକର ଶର ଗଲା ଜଳି ।୬୧।
ଲକ୍ଷେକ ପର୍ବତ ଯହୁଂ ହୋଇଲାକ ଭସ୍ମ
ଦେଖିଣ ବିସ୍ମୟେ ଯୋ ହୋଇଲେ ଶ୍ରୀପୁରୁଷୋତ୍ତମ ।୬୨।
ଲକ୍ଷେକ ଯୋଜନେ ଯେ କାଇଂଶିକା ଶସ୍ତ୍ର ଥିଲା
ଅଶୀସସ୍ର ଯୋଜନରେ ଆସିଣ ହୋଇଲା ।୬୩।
କୋପେଣ କେଶବ ନିର୍ଘାତ ବାଣ ପେଷି
କାଇଂଶିକା ଶରଘାତେ ହୋଇଲା ଭସ୍ମରାଶି ।୬୪।
ପୁଣି ପେଷିଲେ ସ୍ୱାମୀ ସହସ୍ରଧାରା ଶକତି
କାଇଂଶିକା ଶରେ ପଡ଼ି ହୋଇଲା ଭସ୍ମଗତି ।୬୫।
ଅଶୀସହସ୍ର ଯୋଜନେ କଇଂଶିକା ଶର ଥିଲା
ଷାଠିଯେ ସହସ୍ର ଯୋଜନେ ଆସିଣ ମିଳିଲା ।୬୬।
ପୁଣି ପେଷିଲେ ଦେବ ଅମୋଘ ଶକତି
କାଇଂଶିକା ଶର ଉପରେ ପଡ଼ି ଦହିଜ ହେଲା ତତକ୍ଷଣାନ୍ତି ।୬୭।
ପୁଣ ନାରାୟଣ ଯେ ବିନ୍ଧିଲେ ତୀକ୍ଷମୁନା
କାଇଂଶିକା ଶରେ ପଡ଼ି ହୋଇଲାକ ଚୂନା ।୬୮।
ଷାଠିଯେ ସହସ୍ର ଯୋଜନେ କାଇଂଶିକା ଶର ଥିଲା
ପୁଣି ଚାଳିଶ ସହସ୍ର ଯୋଜନେ ବିକାଶିଲା ।୬୯।
ଚାଳିଶ ସହସ୍ର ଯୋଜନେ କାଇଂଶିକା ରହିଲା
ମହା କ୍ରୋଧଭରେ ତାର ତେଜ ଯେ ଅଟର୍ଗଳା ।୭୦।
କୋପେ କେଶବ ବିନ୍ଧିଲେ ତେଜାନଳ ବାଣ
କାଇଂଶିକା ଶରରେ ପଡ଼ି ଲିଭିଲା ତକ୍ଷଣ ।୭୧।
ଚାଳିଶ ସହସ୍ର ଯୋଜନେ କାଇଂଶିକା ଶର ଥିଲା
କୋଡ଼ିଯେ ସହସ୍ର ଯୋଜନେ ଆସିଣ ହୋଇଲା ।୭୨।
ବଜ୍ରାବଳୀ ଗଦା ଯେ ଛେଳ ଚକ୍ରକାନ୍ତି
କାଂଇଶିକା ଶରକୁ ଯେ ମାଇଲେ ଶ୍ରୀପତି ।୭୩।
ପଡ଼ିଣ ଗଦା ଚକ୍ର ଯେ ଧୂଳି ହୋଇଗଲା
ମହାତେଜ ହୋଇଣ ଯେ କାଇଂଶିକା ଶର ଉଠିଲା ।୭୪।
କୋଡ଼ିଯେ ସହସ୍ର ଯୋଜନେ କାଇଂଶିକା ଶର ଥିଲା
ଦଶସହସ୍ର ଯୋଜନେ ଆସିଣ ହୋଇଲା ।୭୫।
ଆହୋ ଚଇତନ ତୃଣକାଷ୍ଠ ବୃକ୍ଷ ଯେ ଅନେକ ଥିଲା ମହୀସ୍ଥଳି
ଶହସ୍ର ଅଗ୍ନି ତେଜରେ ସମସ୍ତ ଗଲେ ଜଳି ।୭୬।
ସହଦେବ ବୋଇଲେ ସ୍ୱାମୀ ନ ଘୁଞ୍ଚଇ ବାଣ
ଦ୍ୱାରିକା ଦହନ ତୋର ହୋଇବ ଯେହିକ୍ଷଣ ।୭୭।
ଅପାଲଟକ ବାଣ ଅଟଇ କାଇଂଶିକା
ସମସ୍ତ ଦହନ କରିବ ରହି ନୁଆରିବ ଦ୍ୱାରିକା ।୭୮।
ଅଶତ୍ଥମା ବୋଇଲେ ପଞ୍ଚୁପାଣ୍ଡବ ବାସୁଦେବ ସହିତେ
ଦ୍ୱାରିକା ସାତବଂଶ ଛେଦି ପକାଅ କୋପଚିତ୍ତେ ।୭୯।
ଆମ୍ଭନ୍ତ ରକ୍ଷା ଯେବେ କରିବୁ ନାରାୟଣ
ବିଚାର କର କାହାକୁ ଦେବା ଯେକଜଣ ।୮୦।
ଲକ୍ଷେକ ଯୋଜନେ ସେ ଯେ ବାଣ ରହିଲା
ତୋର ଶହସ୍ର ବିନ୍ଧନ୍ତେ ଦଶ ସହସ୍ରେ ରହିଥିଲା ।୮୧।
ଶଯଳ ଚିନ୍ତାମଣି ତୁ ଜାଣୁ ଯେ କାଇଂଶିକା
ରହିଛି ଆକାଶେଣ ବିଚାର ଯେ ଯେକା ।୮୨।
ତୁ ଦେବ ଜଗୁଜୀବନ ଚକ୍ରକୂଟ ବୁଦ୍ଧି
ତୋହୋର ବୋଲେ ସେ ଜଣେକେ ହୋଅଇ ପ୍ରବୋଧି ।୮୩।
ପାଣ୍ଡବେ ଭିତରୁ ସେ ଜଣେକ ପ୍ରଭୁ ଦେଇ
ସେ ବ୍ରହ୍ମଶରକୁ ଯେ କହିବା ବିନୋୟୀ ।୮୪।
ଗୋବିନ୍ଦେ ବୋଇଲେ ହୋ ତୁମ୍ଭେ ପାଞ୍ଚେହେଂ ମୋହୋର ଆତ୍ମା
କାହାକୁ ବିଚାରି ହୋ ଦେବାକ ମହାତମା ।୮୫।
ସହଦେବ ବୋଇଲେ ହରି ତୋହୋର ଯେ ବିଚାର
ଯେହିକ୍ଷଣି ବିଳମ୍ବ ନ କରିବା ଦାମୋଦର ।୮୬।
ଜଣେ ଦିଲେ ଯେବେ ସକଳ ହୋଇବ ରକ୍ଷା
ଯେହାଉଂ ହରି ଆଉ କିସ କରୁ ପୃଚ୍ଛା ।୮୭।
ଅଶତ୍ଥମା ପେଷିଲାଟି ଯେ ଲୋକନାମ ଧରି
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ଦିବାକର ରଖିତ ନୁଆରି ।୮୮।
ଗୋବିନ୍ଦ ବୋଇଲେ ଯେ କାହାକୁ ଯେଥେ ଦେବି
କାଇଂଶିକା ଶରକୁ ଦେଖି ନାରାୟଣ ଶର ପେଷିବି ।୮୯।

ଯେତେକ ବୋଲିଣ ଦେବ ଜନାର୍ଦ୍ଦନ
ନାରାୟଣ ଶହସ୍ର ଦେବ ପେଷିଲେ ତତକ୍ଷଣ ।୯୦।
କାଇଂଶିକା ଶର ତୁଲେ ନାରାୟଣ ଶର ଭେଟି
ବେନିଶର ଉତ୍ତସରେ ବ୍ରହ୍ମାଣ୍ଡ ଯାକ ଘୋଟି ।୯୧।
ବିହନ୍ତା ପୁରୁଷ ସେ କହେ ଚତୁରାନନ
ମୃତୁମଣ୍ଡଳ ତୋର ଯେହିକ୍ଷଣି ହୋଇବ ଦହନ ।୯୨।
ଅଶସ୍ତମା ପେଷିଛି କାଇଂଶିକା ନାରାଚ
ନାରାୟଣ ସହସ୍ର ପେଷିଲେ ଦେବରାଜ ।୯୩।
ଦୁଇ ସହସ୍ର ଭେଟି ହୋଇଲେ ପଡ଼ିତାଳ
ଯେହିକ୍ଷଣି ଦହନ ହୋଇବ ମୃତୁମଣ୍ଡଳ ।୯୪।
କାଇଂଶିକା ଶର ପେଷିଲେ ଦ୍ରୋଣଂକର ତନୁ
ସମସ୍ତ ଭୁବନ ଘୋଟିଲା ସେ ଶର ଆଧାନୁଂ ।୯୫।
ମନ୍ତ୍ରେଣ ହୋଇଲା ସେ ଦେବ ବ୍ରହ୍ମଶର
ନାରାୟଣ ଶହସ୍ରୁଂ ଅଧିକ ତେଜ ତାହାର ।୯୬।
କାଇଂଶିକା ଶର ପ୍ରତକ୍ଷେ ଅଟଇ ଦେବବ୍ରହ୍ମା
ନାରାୟଣ ଶର ପ୍ରତକ୍ଷେ ଅଟଇ ସେ ବିଷ୍ଣୁ ମହାତମା ।୯୭।
ଆହୋ ମହାତମା ବ୍ରହ୍ମଶର ବିଷ୍ଣୁଶର ଦୁହେଂ ହୋଇଲେ ଯେକମୁଖ
ଶାନ୍ତି ନ ଭଜନ୍ତି ସେ ଦୁହେଂ ଅଟନ୍ତି ମହାତୀକ୍ଷ ।୯୮।
ବିହନ୍ତା ପୁରୁଷଂକର ବଚନେ ଅଇଲେ ବେଦପତି
ମରାଳ ବାହାନେ ଦେବ ବିଜେକଲେ ତତକ୍ଷଣାନ୍ତି ।୯୯।
ବାମେ ଗରୁବଦନ ଡାହାଣେ ଦେବ ଧାତା
ଆଗେ ବ୍ରହ୍ମ ବଦନ ପଛେ ବିରଞ୍ଚି ଦେବତା ।୧୦୦।
ବ୍ରହ୍ମାଂକ ବଦନେ ଥାଇ ଋଷି ବେଦଗତି
ଡାହାଣେ ଧାତା ବଦନେ ଯଜୁର୍ବେଦ ଉଚ୍ଚାରନ୍ତି ।୧୦୧।
ବାମେ ଗୁରୁ ବଦନେ ଧନୁର୍ବେଦ ସଞ୍ଚ
ଶିଶୁମୁନା ବେଦ ଭାଷଇ ମନେଣ ବିରଞ୍ଚ ।୧୦୨।
ଯେ ବିଧିରେ ଚତୁର୍ବଦନେ ବେଦପତି
କାଇଂଶିକା ଶରକୁ ତୁଷ୍ଟି କରଇ ଅପ୍ରମିତି ।୧୦୩।
ତୁମ୍ଭେ ଯେ ବ୍ରହ୍ମଶର ଅଦଭୁତେ ଆୟେ
ଅଣାକାର ବ୍ରହ୍ମ ତୁମ୍ଭେ ଅବ୍ୟୟେ ଅକ୍ଷୟେ ।୧୦୪।
ଅନାଦି ପୁତ୍ର ସେ ଯେ ଭରଦ୍ୱାଜଙ୍କର ନାତି
ରାଗେ କାଇଂଶିକା ଶର ପେଷି ହୋଇଲା ଉଗ୍ରମୂର୍ତ୍ତି ।୧୦୫।
ଅନିର୍ବାରଣ ଶର ତାର ନିବାରଣ ନାହିଂ
ତାର ପ୍ରତିକକ୍ଷା ଶର ନ ଜାଣନ୍ତି କେହିଂ ।୧୦୬।

ଶ୍ରୀକୃଷ୍ଣ ପେଷିଲେ ତୋତେ ଯେ ଅନିର୍ଯ୍ୟାପ ବାଣ
ତାଂକର ଶହସ୍ର ଘାତେ ନୋହିଲୁ ନିବାରଣ ।୧୦୭।
କାଇଂଶିକା ଶର ତେଜ ଅଟଇ ଅଦ୍ୟାପି
ବ୍ରହ୍ମାୟେ ତାହାନ୍ତ ଅଜପାୟେ ଜପି ।୧୦୮।
ପଞ୍ଚାଉନ ସହସ୍ର ଜପିଲେ ଅଜପା କାଳେ
ଶୁଣି ଶାନ୍ତି ହୋଇଲେ ଧାତାର ମନ୍ତ୍ରବଳେ ।୧୦୯।
ବାଚା ଫିଟାଇଣ ସେ କହଇ କାଇଂଶିକା
କୁମ୍ଭତେ ବେଦବର ମୋତେ କିମ୍ପାଇ ଜଗୁ ଯେକା ।୧୧୦।
ଧାତା ବୋଇଲେ ତୁ ଛାଡ଼ କ୍ରୋଧମତି
ତେଜ ଗୋପ୍ୟାନ କର ଭଜିମେଳ ଶାନ୍ତି ।୧୧୧।
ବୋଲଇ କାଇଂଶିକା ମୋହୋର କିସ ଦୋଷ ଅଛି
ଦ୍ରୋଣଂକର ନନ୍ଦନ ଅଶସ୍ତମା ମୋତେ ଯେ ପେଷିଛି ।୧୧୨।
ପଞ୍ଚୁପାଣ୍ଡବ ବାସୁଦେବ ସାତବଂଶ ସହିତେ
ଦ୍ୱାରିକା ନାଶକର ବୋଲି ବୋଇଲା ଅଶସ୍ତମା ମୋତେ ।୧୧୩।
ବ୍ରହ୍ମା ବୋଇଲେ ସେ ପେଷିଲା ଅତିରାଗେ
ସେମାନେ ନାଶ ନ ଯାନ୍ତି କେହୁଣସି ଯୋଗେ ।୧୧୪।
ପାଣ୍ଡବ ପାଞ୍ଚଭାଇ ଶ୍ରୀକୃଷ୍ଣ ଆଦିକରି
ଭାରାଭର ନିବାରିବା ନିମନ୍ତେ ଅଛନ୍ତି ମାନବେ ଅବତରି ।୧୧୫।
ଦ୍ୱାରିକାର ଲୋକ ଅଟନ୍ତି ଅଦୋଷୀ
ତୁ ହୋ ବ୍ରହ୍ମଶର କେମନ୍ତେ ତାହାନ୍ତ ଯିବୁ ନାଶି ।୧୧୬।
ବହୁତ ବିନୋୟୀ ଯେ ବୋଇଲେ ପଦ୍ମଯୋନି
ଯାଅ ଯାଅ ବାହୁଡ଼ି ତୁ ମୋହୋର ବୋଲ ଘେନି ।୧୧୭।
କାଇଂଶିକା ଶର ବୋଲଇ ପଞ୍ଚୁ ପାଣ୍ଡବନ୍ତ ଛାଡ଼ିଲି ଯେବେ ଯେଣେ
ପାଣ୍ଡବ ସମାନ କରି ଦେବାକ ମୋତେ ଜଣେ ।୧୧୮।
ଧାତା ବୋଇଲେ ବିରାଟର ଝିଅ ଉତ୍ତରୀ
ଅଭିମନ୍ୟୁ ଭାରିଯା ଯେ ହୋଇଛି ଗର୍ଭଧାରୀ ।୧୧୯।
ତାହାର ଗର୍ଭେଣ ଅଛି ଯେବଣ ଯେ ବଳା
ତାହା ଛେଦନ କରି ତୁ ବହନ ହୋଇ ପଳା ।୧୨୦।
ଧାତା ସ୍ତୁତି କଲେ ପୁଣ ନାରାୟଣ ଶରକୁ
ତୁ ବେଗେ ବାହୁଡ଼ି ଯାଅ ଯେ ବଇକୁଣ୍ଠ ଭୁବନକୁ ।୧୨୧।
ନମଇ ନାରାୟଣ ଯେ ଅଣାକାର ମୂରତି
ସକଳ ଭୁବନରେ ତୋର ବିକାଶଇ ଜ୍ୟୋତି ।୧୨୨।
ନମଇଂ ନାରାୟଣ ପରମ ଦୟାଳୁ
ଚଉଦ ଭୁବନ ଲୋକନ୍ତ ତୁହି ସେ ପ୍ରତିପାଳୁ ।୧୨୩।

ନମଇଂ ନାରାୟଣ ଚଉଦ ଭୁବନ ଅଧିପତି
ତୁହି ସଞ୍ଜିଅଛୁ ନାଥ କେମନ୍ତେ କରିବୁ ବିନଶ୍ୟତି ।୧୨୪।
ନମସ୍ତେ ନାରାୟଣ ଯେ ଶରଣ ପଞ୍ଜର
ନମଇଂ ନାରାୟଣ ଯେ କୋପ ଶାନ୍ତିକର ।୧୨୫।
ବହୁତ ବିନୋୟୀ କହିଲେ ନାରାୟଣ ଶରକୁ
ସନ୍ତୋଷ ହୋଇଣ ସେ କହିଲେ ବିଧାତାକୁ ।୧୨୬।
ବାହୁଡ଼ି ଯିବୁ ଆମ୍ଭେ ବଇକୁଣ୍ଠ ଭୁବନକୁ
କାଇଂଶିକା ଶରକୁ ତୁମ୍ଭେ ବାହୁଡ଼ାଇ ନିଅ ନିଜ ପୁରକୁ ।୧୨୭।
ପିତାର ବଚନେ ସେ ପଶିଲା ପାତାଳେ
କାଇଂଶିକା ପଶିଲା ଯେ ଉତ୍ତରା ଶିର ସ୍ଥଳେ ।୧୨୮।
ଆହୋ ଚଇତନ ତାଳୁର ବାଟେ ଅଛି ବ୍ରହ୍ମଦ୍ୱାର
ସେ ଦ୍ୱାର ଭେଦିଲା ଅଶସ୍ତମା କାଇଂଶିକା ଶର ।୧୨୯।
ତାଳୁରେ ପଶି ଗର୍ଭେ ପଶି ଫୁଟି
ଗର୍ଭେ ଦେଖିଲା ସେ ଯେ ବାଳୁତ ପୁତ୍ର ଗୋଟି ।୧୩୦।
ସେ ବାଳକର ତାଳୁରେ ଶର ଗଳି
ଅଷ୍ଟାଙ୍ଗ ଭେଦିଣ ପାଦେଣ ନିକିଳି ।୧୩୧।
ବାଣ ପଶିଲା ସେ ଶୂନ୍ୟ ଭୁବନରେ
ମୂର୍ଚ୍ଛାଗତ ହୋଇ ଉତ୍ତରା ପଡ଼ିଲା ଅସାଷ୍ଟମରେ ।୧୩୨।
ଆହୋ ଚଇତନ ସାତମାସ ସାତଦିନର ଅଟଇ ସନ୍ତତି
ଅଶସ୍ତମାର ଶର ପଡ଼ି ହୋଇଲା ବିନଶ୍ୟତି ।୧୩୩।
ଦ୍ରୋପଦୀ କୋଇନ୍ତା ସୋହୋଦ୍ରା ଥିଲେ ଶୋଇ
ଦେଖିଲେ ଉତ୍ତରା ଶରୀରେ ପ୍ରାଣ ନାହିଁ ।୧୩୪।
କୋଇନ୍ତା ସୋହୋଦ୍ରା ଉଠିଲେ ତଡ଼ତି
ଦେଖିଲେ ଉତ୍ତରା ତହିଁ ନାହିଁତ ଜୀବତି ।୧୩୫।
ସୋହୋଦ୍ରା ବୋଲନ୍ତି ଉଠ କିନା ମାୟେ
ସମସ୍ୟା ନ ପାଇ ସେ ଧରନ୍ତି ନାଟିକାୟେ ।୧୩୬।
ଅଚେତନ ଦେଖି ତାକୁ ଧରିଛନ୍ତି କୋଳ କରି
ପବନ ଫାନ୍ଦଇ ଦେଖିଣ ବିସରି ।୧୩୭।
ମୁଖେ ନେଇଣ ଯେ ଶିତଳ ଜଳ ସିଞ୍ଚି
କାନ ଫୁକିଣ ଆଳଟେଣ ବିଞ୍ଚି ।୧୩୮।
ଦେଖିଲେ ମୃତଶବ ହୋଇଛି ଉତ୍ତରା ବାଳୀ
ଅଦଭୁତେ ଶବଦ ପଡ଼ିଲା ବୋବାଳି ।୧୩୯।
ଅନ୍ତେଶ୍ୱର ଭିତରେ ଉଚ୍ଚସ୍ୱରେ କ୍ରୋଧବାଣୀ
ଦେବକୀ ଯଶୋଦା ବିଜେକଲେ ତାହା ଶୁଣି ।୧୪୦।
ଗହଳ ଚହଳ ଅତି କ୍ରୋଧ କଥା
ଦ୍ୱାରିକା ଭୁବନରେ ଯେ ଫୁଟିଲା ବାରତା ।୧୪୧।
ସୋହଦ୍ରା ଦେବୀର ଅନେକ ରୋଦନ ଶୁଣି
ବିଜେ କଲେ ଜମ୍ବୁବତୀ ସତ୍ୟଭାମା ରୁକ୍ମିଣୀ ।୧୪୨।
ଅମିୟ ବଚନେ ଯେ ସୁନ୍ଦର ମୁଖଗୋଟି
ସୁନ୍ଦର ବଦନ ଆରକ୍ତ ବିମ୍ବାଧର ଓଷ୍ଠୀ ।୧୪୩।
ଅନେକ ଶାନ୍ତି କରି ଯେ ଫୁଙ୍କିଲେ ଦେବୀମାନେ
କିଞ୍ଚିତେ ପବନ ବହଇ ନାସାରେଣେ ।୧୪୪।
ରୁକ୍ମିଣୀ ବୋଇଲେ ଗୋ କଲୁ ଆଇ କିସ
ବୃଷ୍ଣି ବଂଶକୁ ଯେ କଥା ଅଟଇ ଭବିଷ୍ୟ ।୧୪୫।
ଶ୍ରୀକୃଷ୍ଣର ବଲ୍ଲଭୀ ଯାଇଂ କୋଳ ସେ କରନ୍ତେ
ଅସାଷ୍ଟମ ଉତ୍ତରା ପାଇଲା ଜୀବିତେ ।୧୪୬।
ଅସାଷ୍ଟମ ହୋଇ ଚାହଇଂ ଯେ ନୟନ ଚାଳି
ପବନ ଫାନ୍ଦିଲା ସେ ଉତ୍ତରା ନାମେ ବାଳୀ ।୧୪୭।
କୁମାରୀ ସାଷ୍ଟମେ ଯେ ବହିଲା ରକ୍ତଧାର
ନିଜସ୍ଥାନ ଛାଡ଼ିଲା ଗର୍ଭର କୁମାର ।୧୪୮।
ଗର୍ଭରୁ ପଡ଼ିଲା ତାର ଯେବଣ ବାଳୁତ ପୁତ୍ରଗୋଟି
ଶିରର ଶୋଣିତ ଚରଣ ଦେଇ ଫୁଟି ।୧୪୯।
ଆହୋ ଚଇତନ କୁମ୍ଭମାସ କୃଷ୍ଣପକ୍ଷ ପଞ୍ଚମୀ ଗୁରୁବାର
ସ୍ୱାତୀ ନକ୍ଷତ୍ର ଯେ ଭୋଗ ସେ ଦିନର ।୧୫୦।
ତତ୍ତୁଲ୍ୟ ନାମେ କରଣ ଧ୍ରୁବ ନାମେ ଯୋଗ
ନବମେ ଚନ୍ଦ୍ର ପଞ୍ଚମେ ରାହୁ ଭୋଗ ।୧୫୧।
ପ୍ରଥମ ଚାରିଦଣ୍ଡ ଯେ ଗୁରୁଂକଇ ବେଳା
କୁମ୍ଭ ଲଗ୍ନେ ଜାତ ଯେ ଅଭିମନ୍ୟୁ ବଳା ।୧୫୨।
ସପ୍ତମେ ଶୁଭସ୍ଥାନେ ପାପଗ୍ରହ ନାହିଁ ସର୍ବଶୁଭ
ମୃତପିଣ୍ଡ ପଡ଼ିଲା ଶରୀରେ ନାହିଁ ଜୀବ ।୧୫୩।
ପବନ ଫାନ୍ଦଇ ଯେ ଚକ୍ଷୁ ନ ଚଳଇ
ହସ୍ତ ପାଦ ନିଶ୍ଚଳେ ଯେ ପଡ଼ିଣ ଅଛଇ ।୧୫୪।
ଦେବକୀ ଯଶୋଦାରେ ନିରେଖିଣ ଚାହିଁ
ବୋଇଲେ ଯେ ପୁତ୍ରଗୋଟିର ତ ଶରୀରେ ପ୍ରାଣ ନାହିଁ ।୧୫୫।
ପୁତ୍ରର ମୃତପିଣ୍ଡ ଦେଖିଣ ଉତ୍ତରା ଯେ ବାଳୀ
ଆରେ ଆରେ ନନ୍ଦନ ବୋଲି ଦିଲାକ ବୋବାଳି ।୧୫୬।
ବାବୁ ସୁଜାଣି ସୁଠାଣି ପୂର୍ଣ୍ଣମୀ ଚାନ୍ଦଗୋଟି
କାଳିନ୍ଦୀ ସରୋବରେ ଯେହ୍ନେ ପଦ୍ମ ଫୁଟି ।୧୫୭।

ଲୀଳାରେ ଖଞ୍ଜଣୀ ଚିକୁରେ କବରୀ
ତହିଂର ଅପାଦରେ ପଡୁନା ମୋହୋର ଉପରି ।୧୫୮।
ବାବୁ ଝଳି ତ ରତ୍ନ ପ୍ରାୟେ ତୋହୋର ଲଲାଟ ପାଟି
ତହିଂର ଅପାଦରେ ପଡୁୟେ ମୋହୋର ଦୃଷ୍ଟି • ।୧୫୯।
ବାବୁ ଚଞ୍ଚଳ ଆକୃତି ଲୋଚନ ତୋର ବେନି
ତହିଂର ଅପାଦ ମୁଂ ଯାଇଂ କିନା ଘେନି ।୧୬୦।
ମୋହୋର କଷ୍ଟ ଦେଖି ନ ଚାହୁଂ ନୟନେ ତୁହି କିନା
ତୋହୋର ଦୃଷ୍ଟିପାତେ ଶରୀର ମୋହୋର ଥିବ ସିନା ।୧୬୧।
ଗରୁଡ଼ ଉପମା ବାବୁ ତୋହୋର ନାସିକା
ତହିଂର ପରିମୁଣ୍ଡା ଯାଇଂ କିନା ଯେକା ।୧୬୨।
ବାବୁ ଶୁଦ୍ଧ ଘଟଣ ଜାଣି ତୋହୋର କର୍ଣ୍ଣହିଂ
ତହିଂର ଅପାଦରେ ମୁହିଂ ଘେନି ଯାଇଂ ।୧୬୩।
ଅମୂଲ୍ୟ ଅତୁଳାଇତ ତୋହୋର ବେନି ଓଷ୍ଠ
ରଙ୍ଗ କୁସୁମ ଜାଣି ଚହଟଇ ଚଉପାଶ ।୧୬୪।
ଦ୍ରୁହସିତ ହୋଇ କହୁ କିନା କଥା
ତୋହୋର ଆପଦରେ ପଡୁ ମୋହୋର ମଥା ।୧୬୫।
ବାବୁ ଅନେକ ଅବସ୍ଥାରେ ରୋଦନ କରଇ ବାଣୀ
ତୋହୋର ନିଉଂଛୁଣା ଯାଇଂ କିନା ଯେହିକ୍ଷଣି ।୧୬୬।
ଅତିଅନ୍ତ ସୁଘଟଣ ଅଟଇ ଗଣ୍ଡସ୍ଥଳ
ତହିଂର ଆପଦ ପଡୁ ମୋହୋର କପୋଳ ।୧୬୭।
ଗଜ ମସ୍ତକ ଜାଣି ତୋହୋର ବେନି କନ୍ଧ
ନୀଳରେଖ ରୋମାବଳୀ ବଇଡୂର୍ଯ୍ୟ ତାକୁ ବୋଧ ।୧୬୮।
କରୀକର ପ୍ରାୟେ ଅଟଇ ତୋହୋର ବାହୁ
ପଦ୍ମଫୁଲ ନୟନ ଗୋଟି କିମ୍ପା ଯେ ନ ଚାହୁଂ ।୧୬୯।
ଶତଦଳ ପ୍ରାୟେ ତୋହୋର ପାପୁଲି
କନକ ଚମ୍ପା କଢ଼ି ଜାଣିଣ ଆଙ୍ଗୁଳି ।୧୭୦।
ଯେତେକ ଲକ୍ଷଣ ବାବୁ ପାଇବଇଂ କାହିଂ
ଯେଡ଼େ ଶ୍ରୀବନ୍ତ ପୁତ୍ରଗୋଟି ଜୀବନ୍ତେ ତ ନାହିଂ ।୧୭୧।
ବାବୁ ବେନିଭୁଜେ ଧରି ରେ ଭିଡ଼ି ମୋହୋର ହିୟା
ହୃଦେ ଲୁଚୁ ମୋର କମଳମାଳ ରେହା ।୧୭୨।
ସୁଘଟଣ ଚଉରଂସ ତୋହୋର ବକ୍ଷସ୍ଥଳ
ତହିଂର ଅପାଦରେ ପଡୁ ମୋହୋର କପାଳ ।୧୭୩।
ବାବୁ ପୁରୁଣୀ ପତ୍ର ପ୍ରାୟେ ତୋହୋର ପେଟଗୋଟି
ମୁଂ ତହିଂର ଘେନଇଂରେ ଅପାଦଗୋଟି ।୧୭୪।
ହେମ ଝଳିତ ତୋହୋର ହୃଦୟ ଯେ ଗୋଟି
ଅତିଅନ୍ତ ଶୀତଳରେ ତୋହୋର କଟିଗୋଟି ।୧୭୫।
ପ୍ରବୋଧ କପୋଳ ରେ ତୋହୋର ବେନି ଜାନୁ
ତହିଂର ଅପାଦ ରେ ମଥାରେ ମୋର ଘେନୁ ।୧୭୬।
ବାବୁ ବାଳୁତ ଚଞ୍ଚଳ ରେ ଆଦିତ୍ୟାଞ୍ଚଳଗୋଟି
ସ୍ଫଟିକ ପୋୟେଲା ଜାଣି ତୋହୋର ଅଙ୍ଗୁଷ୍ଠି ।୧୭୭।
ବାବୁ ବିରାଜ ବଧୁକ ପ୍ରାୟେ ତୋହୋର ଓଷ୍ଠଗୋଟି
ଯେ ତୋହୋର ଦେଖିଲି ମୁହିଂ ରେ ବଡ଼ କଷ୍ଟି ।୧୭୮।
ବାବୁ ଚରଣ ହଲାଇ ରେ କିମ୍ପାଇ ନ କାନ୍ଦୁ
ଦୁଖୀର ସଂଘାତ ରେ ମୋହୋର ପ୍ରାଣବନ୍ଧୁ ।୧୭୯।
ବାବୁ ଅଭୟେ ସୋମବଂଶ ବୋଲି ରେ ଆଶ କଲି
ଦଇବର ଯୋଗରେ ତୋତେ ମୁଁ ପାଇଲି ।୧୮୦।
କେବଣ ଗୁରୁଜନର ପଡ଼ିଲାନା ମୋତେ ଶାପ
ଅଶତ୍ଥମା ଶର ତୋତେ ପେଟରେ ନାଶିଲା ରେ ବାପ ।୧୮୧।
ଅଷ୍ଟମାସ ପରିଯନ୍ତେ ଧଇଲି ତୋତେ ଗର୍ଭେ
କୋଳରେ ଧରିତେ ତୋତେ ନୁଆରିଲି ଯେବେ ।୧୮୨।
ଆହୋ ଚଇତନ ଉତ୍ତରାର କ୍ରୋଧ କହିତ କି ପାରି
ସୋମବଂଶ କୁଳଦୀପର ଯେ ଗର୍ଭଧାରୀ ।୧୮୩।
ପୁତ୍ରକଇଂ କୋଳେ ଧରିଣ ସଉଭଦ୍ରା
ବୋଇଲେ କିମର୍ଥେ ପୁତ୍ର ରେ ଭଗ୍ନକଲୁ ମୁଦ୍ରା ।୧୮୪।
ଉତ୍ତରାକଇଂ କୋଳେ ଯେ ଧଇଲେ ରୁକ୍ମିଣୀ
ମାଗୋ ମସ୍ଥଦେଶର କନ୍ୟା ସୋମବଂଶ କୁଳର ମଣ୍ଡଣୀ ।୧୮୫।
ଅଭୁତେ ମରଣ ମାଗୋ କାହୁଂ ଅଇଲାକ ଯେଥ
କେବଣ ଦଇବ ତୋତେ ବିହିଲା ଯେଡ଼େ କୃତ୍ୟ ।୧୮୬।
ପୁତ୍ରମୁଖ ଦେଖିଣ ଯେ ଶ୍ରୀକୃଷ୍ଣର ଭଗ୍ନୀ
ଜନ୍ମ ହୋଇଲୁ ପୁତ୍ର ତୁରେ ମୃତୁକୁ ସଙ୍ଗେ ଘେନି ।୧୮୭।
ସୋମବଂଶ ମଣ୍ଡନ ରେ ଅନାସ୍ଥାର ବଳା
ଉଭୟ କୁଳକୁ ବାବୁ ଲଗାଇଲୁ କଳା ।୧୮୮।
ବାବୁ ତୋହୋର ଠାରୁ ବଂଶ ବୁଡ଼ିଲା ରେ ବାଳବଛି
କେଉଣ ପାତକରୁ ମୋତେ ଛାଡ଼ିଲା ରେ ଲଛୀ ।୧୮୯।
ବାବୁ ଶତେ ଚନ୍ଦ୍ର ବଦନର ଯାଇଂ ମୁଂ ନିଉଂଛୁଣା
ଉଭୟ କୁଳର ବାବୁରେ ଅଟୁ ତୁ ଦୁଲଣା ।୧୯୦।
ଦଶଦିଶ ଅନ୍ଧାର କଲୁରେ ମୋତେ ବଳା
ଅଗାଦ ସମୋଦ୍ରେ ମୋର ବୁଡ଼ାଇଲୁ ଭେଳା ।୧୯୧।

କେବଣ ପାତକ ମୁଁ ଯେ କରିଅଛି ପୂର୍ବେ
ଅଶ୍ୱସ୍ତମା ଶର କିମ୍ପେ ପଶିଲା ତୋର ଗର୍ଭେ ।୧୯୨।
ବାବୁ ସୋମବଂଶ ରକ୍ଷାଫଳକ ଗଲୁ କାହିଂକି
ମୁଖେ ମୁଖ ଲଗାଇ କ୍ରୋଧେ ଗରୁ ଡାକି ।୧୯୩।
ବାବୁ କେବଣ ଗୁରୁଜନ ଯେ ଶାପ ମୋତେ ଦିଲା
ତେଣୁ ସେ ନନ୍ଦନ ମୋର ପ୍ରାଣତ୍ୟାଜ ହୋଇଲା ।୧୯୪।
ସୋହୋଦ୍ରା ରୁକ୍ମିଣୀ ସତ୍ୟଭାମା ଜମ୍ବୋବତୀ
କାଳିନ୍ଦୀ ସତ୍ୟା ଲକ୍ଷ୍ମଣାଦି ସମସ୍ତେ ରୋବନ୍ତି ।୧୯୫।
ଆରେ ମୋର ଦୁଖୀର ସଙ୍ଖାଳି ଅନାଥର ବନ୍ଧୁ
ମଉନବ୍ରତେ ଶୁତିଲୁ ତୁ କିମ୍ପାଇଂ ନ କାନ୍ଦୁ ।୧୯୬।
ଅକାଳେ କିପାଇଂ ବାବୁରେ କଲୁ ମୃତ୍ୟୁଶଯ୍ୟା
ମନକଷ୍ଟ ଦେଖି ପୁତ୍ର ରେ କରିବୁନା ନିଦ୍ରା ତେଜ୍ୟା ।୧୯୭।
ବାଳୁତ ପୁତ୍ର ହୋଇ ତୁ ଯେଡ଼େକ ନିର୍ଦ୍ଦୟା
କାହାର ମୁଖ ନ ଚାହୁଂରେ ପାଷାଣ ତୋର ହିୟା ।୧୯୮।
ମୁଖେ ମୁଖ ଲଗାଇ କର୍ଣ୍ଣରେ ଦିଅନ୍ତି ଯେ ଫୁଙ୍କି
ବାବୁ ସୋମବଂଶ ତେଜ୍ୟା କରି ଗଲୁରେ କାହିଂକି ।୧୯୯।
ରସାଣିଲା ପତ୍ର ପ୍ରାୟେ ତୋ ଲଲାଟ ପାଟି
ତରଳ ତରଙ୍ଗ ପ୍ରାୟେ ତୋହୋର ଚକ୍ଷୁ ବେନିଗୋଟି ।୧୨୦୦।
ପଂକୁ ବିମ୍ବଫଳ ଜାଣି ତୋହୋର ଓଷ୍ଠ ବେନି
ଯେ ତୋର ଅପାଦ ଯାଇଂକିନା ମୁହିଂ ଘେନି ।୧୨୦୧।
ବାବୁ ରୋଦନ ଶୁଭନ୍ତା ତୋର ଅଣ୍ଡିର କୋକିଳ ଜାଣି
ଦ୍ୱାରିକା ଉଛବ ହୋଉ ତୋହୋର ରୋଦନ ଶୁଣି ।୧୨୦୨।
ବିସ୍ତାର ବକ୍ଷସ୍ଥଳ କଟି ବିକ୍ରମ କେଶରୀ
ବାବୁ ବାହାନାଦ ଦେଇ ପୁତ୍ର ଉଠ ମୂର୍ତ୍ତିବନ୍ତ ହୋଇକରି ।୧୨୦୩।
ଶଯଳ ଜନ ତାରଣ ଅଟନ୍ତି ଯୁଧେଷ୍ଠି
ତାହାଂକର ପୁଣ୍ୟ ଘେନି ପୁତ୍ର ଚାହୁଂକିନା ଦୃଷ୍ଟି ।୧୨୦୪।
ଯେକଆତ୍ମା ଅଛେଦ ଯେ ଶ୍ରୀକୃଷ୍ଣ ଫାଲଗୁନି
ତାହାଂକ ଆୟିଷ ଘେନି ପୁତ୍ର ହୋଇଲୁ କିମ୍ପେ ତୁନି ।୧୨୦୫।
ପଦ୍ମନାଡ଼ ଜିଣି ତୋର ଭୁଜ ଦୁଇଗୋଟି
ଚମ୍ପକ କଢ଼ି ଜାଣି ତୋହୋର ଅଙ୍ଗୁଷ୍ଠି ।୧୨୦୬।
ଅତି ଅଲୋକିତ ଶୋଭାବନ କାୟେ
ଆମ୍ବର ଅବସ୍ଥା ଦେଖି କିମ୍ପାଇ ନ ବସଇ ତୋର ଦୟେ ।୧୨୦୭।
ଓଲଟ-କଦଳୀ ଜାଣି ଦିଶଇ ତୋହୋର ବେନି ଜାନୁ
ନୀଳାରେଖ ରୋମାବଳୀ ଶୋଭିତ ତୋର ତନୁ ।୧୨୦୮।

ମୃତପିଣ୍ଡ ପୁତ୍ରଗୋଟି ତୁ ମୋହୁଛୁ ଜଗତ
ରାଢ଼ ଦେବତା ଯମ, ତୋତେ ନେବାକୁ ବଳିଲା କେହ୍ନେ ଚିତ୍ତ ।୧୨୦୯।
ରୁକ୍ମିଣୀ ସୋହୋଦ୍ରାଂକ ଶୁଣି ଅନେକ ଶୋକବାଣୀ
ତହିଂ ବିଜୟେ କଲେ ଦେବ ଚକ୍ରପାଣି ।୧୨୧୦।
ଖଣ୍ଡେ ଦୂରୁଂ ସେହୋଦ୍ରା ଶ୍ରୀକୃଷ୍ଣଂକୁ ଦେଖି
ବଜ୍ରାଘାତ ଜାଣି ପଡ଼ିଲା ଶଶିମୁଖୀ ।୧୨୧୧।
ସୋହୋଦ୍ରା ମୂର୍ଚ୍ଛାଗତ ଶ୍ରୀକୃଷ୍ଣର ଆଗେ
ତୋହୋର ବୋଲେ ମୁଁ ନ ଧଇଲି ପୁତ୍ରଶୋଗେ ।୧୨୧୨।
ହରି ତୋହୋର କଥାଯେ ଯେବେ ଜାଣିଲି ଯେତେ କୂଟୀ
କପଟ ଯୁଦ୍ଧେ ମରାଇଲୁ ଚଉଦ ବରଷ ପୁତ୍ରଗୋଟି ।୧୨୧୩।
କେଉଂ ଦୋଷ କଲି ମୁଁ ତୋତେ ହୋ ଶ୍ରୀପତି
ଯେବେ କିମ୍ପେ କପଟରେ ମରାଇଲୁ ମୋହୋର ନାତିଗୋଟି ।୧୨୧୪।
ଶ୍ରୀକୃଷ୍ଣ ବୋଇଲେ ମାଗୋ ରହ ରହ ସୋହୋଦ୍ରା
ମୃତୁଗତ ନୋହୋଇ ପୁତ୍ର ଅସାଷ୍ଟମ ନିଦ୍ରା ।୧୨୧୫।
ସଦା ମଙ୍ଗଳ ଯେ ଯେ ମୋହୋର ପୁରୀ
ଆନନ୍ଦ ଛାଡ଼ି କିମ୍ପାଇଂ ଅନମିତେ କ୍ରୋଧ କରି ।୧୨୧୬।
ସୋହୋଦ୍ରା ପ୍ରଣପତ୍ୟ କୃଷ୍ଣ ପଦ୍ମପାଦେ
ଯାବତ ଅବସ୍ଥା ହରି ତୋହୋର ପରସାଦେ ।୧୨୧୭।
ମୁହିଂ ଯେ କାହାରି ବୋଲ ନ କଲି
କକ୍ଷାବରୀ ହୋଇ ଲଜ୍ଜା ଉପେକ୍ଷିଲି ।୧୨୧୮।
ମୁହିଂ କାହିଂ ଅର୍ଜ୍ଜୁନ କାହିଂ ମୋତେ ଯେକଠାବେ କଲୁ
ମଧ୍ୟେ ଯଦୁବଂଶ ଅନେକ ଗଞ୍ଜାଇଲୁ ।୧୨୧୯।
ଆଗହୁଂ ତ ଭାଙ୍ଗିଥିଲେ ବଳଦେବ ଯେହା
ବଂଶିକ ବୋଲି ଅର୍ଜ୍ଜୁନକୁ ମୋତେ କଲେ ବେହା ।୧୨୨୦।
ହରି ଅର୍ଜ୍ଜୁନର ଓପ୍ରୋଧେ ନ ବୋଇଲୁ ମୋତେ କିଛି
ବିଶ୍ୱାସଘାତକୀ ମୋତେ କରାଇଲୁ ଶ୍ରୀବହ୍ନି ।୧୨୨୧।
ସଂସାର କାରଣ ହେଉଛନ୍ତି ତୋହୋର ପରସାଦେ
ପାଣ୍ଡବନ୍ତ ବିହିଲୁ ଯେଡ଼େକ ପରମାଦେ ।୧୨୨୨।
ହରି ଶତଧନୁ ବିବାଦେ ଅର୍ଜ୍ଜୁନ ତୋତେ ଜିଣି
ତେଣୁ ହୃଦରେ କୂଟ ଧଇଲୁ କି ପୁଣି ।୧୨୨୩।
ହରି ସତ୍ୟଭାମା ପେଷି ମୋତେ କଲୁ ଯେତେ ଯୋଗ
ତୋହୋର ସାହାରେ ପାଣ୍ଡବନ୍ତ ଯେଡ଼େକ ବିଯୋଗ ।୧୨୨୪।
ହରି ବୋଇଲୁ ଯେ ସୋମବଂଶରେ ଉପୁଜିଲେ ପୁତ୍ରେଗୋଟି
ସେହି ସେ ଧାରଣ ହୋଇବ ନା ନବସୃଷ୍ଟି ।୧୨୨୫।

ଅର୍ଜୁନ ପ୍ରଦାନ କରାଇଲୁ ଯେସନେକ ଭାଳି
ଯେବେ କି ଚାହା ତୁ ପାସୋରିଲୁ ବନମାଳୀ ।୨୨୬।
ହରି ସଂସାରେ ବୋଲନ୍ତି ଯେ ପାଣ୍ଡବେ ବିଷ୍ଣୁ ଆଶ୍ରୟରେ
ଉଭୟ କାଳଙ୍କୁ ନାଶକଲୁ ହୋ ଅବିଚାରେ ।୨୨୭।
ଅତି ନିଷ୍ଠୁର ତୁ ତୋହୋର କିସ ବହେଣୀ ଭଣଜା
ହୃଦରେ ହିଂସା ଧରି ବୋଲାଉ ଦେବରାଜା ।୨୨୮।
ଯଶୋଦା ଦେବୀଂକର ମୁହିଂ ଯେ ଦୋହିତା
ଉତ୍ତରା ମୋହୋର କୁଳବଧୂ ଘେନିଲୁ ତାହାର ହତ୍ୟା ।୨୨୯।
ଯେବେ ପାଇଲୁ ହରି ହୋ ବାଳୁତ ହତ୍ୟା ଦୋଷ
ଇହଲୋକେ ଅପଖ୍ୟାତି ପରଲୋକେ ଅପଯଶ ।୨୩୦।
କାଳେ ଜାଣିଲି ତୋର ଅର୍ଜୁନଙ୍କୁ ଅଭାବ
କେଉଂଣ ଦ୍ରୋହ କଲେ ତୋତେ ପଞ୍ଚଇଂ ପାଣ୍ଡବ ।୨୩୧।
କଉରବ ବଂଶ ହରି ନାଶକଲୁ କୂଟେ
ପାଣ୍ଡବଂକ ବଂଶ ଯେବେ ମରାଇଲୁ କପଟେ ।୨୩୨।
ଶ୍ରୀକୃଷ୍ଣ ବୋଇଲେ ମାଗୋ ନ ବୋଲ ମୋତେ ଯେହା
ଶୁଣିଲେ କୋପ ମୋତେ କରିବେ ତୋର ନାହା ।୨୩୩।
ସୋହୋଦ୍ରା ବୋଇଲେ ହରି ପାଣ୍ଡବନ୍ତ ଯେବେ ତୋର ଭୟେ
ସୋମବଂଶ ବୁଡ଼ିଲା ହରି କିସ ତୋହୋର ଉପାୟେ ।୨୩୪।
ସୋହୋଦ୍ରା ବଚନ ଶୁଣି ଶ୍ରୀକୃଷ୍ଣ ବୋଇଲେ
ଯେ ଯାହାର ବଂଶ ତାର ପାତକେ ନାଶଗଲେ ।୨୩୫।
ସୋହୋଦ୍ରା ବୋଇଲେ ହରି ତୋର ନାମ ଜଗତ ତାରଣ
ତେଣୁକରି ପାଣ୍ଡବେ ତୋହୋରେ ପଶିଲେ ଶରଣ ।୨୩୬।
ହରି ସୁଦ୍ରିଶେନ ଚକ୍ର ଯେ ସହସ୍ରେକ ଧାର
ଦିବାରାତ୍ରେ ବୁଲୁଥାଇ ଦ୍ୱାରାବତୀ ପୁର ।୨୩୭।
ମାଛି ଡିରଣ ପଡ଼ିଲେ ଯେ ସହସ୍ରେକ ଖଣ୍ଡ
ତେଣୁ ଯେ ଭୁବନେ ନ ପଶଇ ଯମରାଜାର କାଳଦଣ୍ଡ ।୨୩୮।
ନିରୋଗ ପୁର ଯେ ହରି କାହାର ନାହିଂ ଯେଥି ମୃତୁ
ନାତିଗୋଟି ନାଶକଲୁ କହ କେଉଂ ହେତୁ ।୨୩୯।
ଅନନ୍ତକୋଟି ବ୍ରହ୍ମାଣ୍ଡେ ତୁ ଅଟୁ ଅଧିକାରୀ
ତୋ ବିନା ଆଗ୍ୟାଂରେ ଯମ ପାରଇ କି ହରି ।୨୪୦।
ହରି ଚଉଦ ବରଷର ପୁତ୍ର ଅଭିମନ୍ୟୁ
ରଣଭୂଅ କରାଇ ମାଇଲୁ ମୋର ତନୁ ।୨୪୧।
ହରି ସମସ୍ତେ କାରେଣି ହେଲେ ଦ୍ୱାରିକାର ଜନ
ମୁହିଂ ସେ କେବଣ ପାପ କଲିଟି ହାଦେ ପୁଣ ।୨୪୨।

ସବୁ ସ୍ତିରୀମାନେ ଯେଥି ଅହେଓ ସୁଲକ୍ଷଣୀ
ହୀନସ୍ତିରୀ ସଙ୍ଗତେ ମୁଂ ହୋଇଲି ତ ଗଣି ।୨୪୩।
ହରି ପୁତ୍ର ପୁତ୍ରୀଠାରେ ନାହିଂ ମୋହୋର ଯେ ଆଶ
ନାତି ଗୋଟିକି ଆଶ କରିଥିଲି ସେ ହୋଇଲା ବିନାଶ ।୨୪୪।
ବିଜେକର୍ଣ୍ଣକଟାର ଘେନିଣ ସଉଭଦ୍ରେ
ବେଳେ କୋଠାର ବସାନ୍ତେ ଧଇଲେ କୃଷ୍ଣଚନ୍ଦ୍ରେ ।୨୪୫।
ଶ୍ରୀକୃଷ୍ଣ ବୋଇଲେ ମାଗୋ ଛାଡ଼ସି କ୍ରୋଧବାଣୀ
ଗର୍ଭରୁ ମୃତ ଜାତ କେ ଜୀଆଇଂ ଦେବ ପୁଣି ।୨୪୬।
ସୋହୋଦ୍ରା ବୋଇଲେ ହରି ତୋହୋର ଯେବେ ପାଣ୍ଡବନ୍ତ ନିକଳଂକ
କିଞ୍ଚିତ ପ୍ରସାଦେ ତୋହୋରେ ଜୀବଇଂ ବାଳକ ।୨୪୭।
କିଞ୍ଚିତେ କରି ଯେବେ ତୁମ୍ଭେ ଦେବ ଅମୃତ ଯେ ଦୃଷ୍ଟି
ଯେହିକ୍ଷଣି ଜୀଇଂବ ହରି ବାଳୁତ ପୁତ୍ରଗୋଟି ।୨୪୮।
ଆଦିହୁଂ ଯେ ବୋଲ ସୋମବଂଶର ପୁତ୍ରଗୋଟି
ତୁମ୍ଭେ ଦୟା କରିବ ଯଦି ସୋମବଂଶର ଚାରିଯୁଗେ ଥିବଟି।୨୪୯।
ଯେହେନେକ କରି କରାଇଲୁ ତୁ ନିରାଶ
ବାଚା ବିଚଳିତ ଯେବେ କରୁଛୁ ପୀତବାସ ।୨୫୦।
ସୋହୋଦ୍ରା ବିକଳ ଦେଖି ଶ୍ୟଳ ଜନ ଭାଷି
ଯେବେ ପାଣ୍ଡବନ୍ତ ନିର୍ମୋହ ହୋଇଲେ ହୃଷିକେଶୀ ।୨୫୧।
ତୁ ଦେବ ଜଗତ କାରଣ ଜନାର୍ଦ୍ଦନ
ତୁହି ସୃଷ୍ଟି କରତା ତୁହି ସେ ଜଗତ ଜୀବନ ।୨୫୨।
ଯଦି ଅସ୍ଥି ମାୟେଂସ ଯାଇ ପଡ଼ଇ ହାତେ ଲୋଟି
ଅମୃତ ଦୃଷ୍ଟିରେ ଚାହିଂଲେ ଜୀଅଂଇ ପୁତ୍ରଗୋଟି ।୨୫୩।
ଆହୋ ଚଇତନ ବାରତା ପାଇଲେ ଦ୍ରୋପଦୀ କୋଇନ୍ତୀ
ସେ ଯାଇଂ ପ୍ରବେଶ ହୋଇଲେ ସୋହୋଦ୍ରାର କତି ।୨୫୪।
ଆହୋ ଚଇତନ କୋନ୍ତା ଦ୍ରୋପଦୀ ଯଶୋଦା ଦେବୀଂକ କ୍ରୋଧବାଣୀ
ପର୍ବତୁଂ ପାଷାଣ ଝଡ଼ିବ ତାହାଂକ ରୋଦନ ଶୁଣି ।୨୫୫।
ଯୁଝେଷ୍ଟି ଭୀମ ଅର୍ଜୁନ ନକୁଳ ସହଦେବ
ତହିଂ ପ୍ରବେଶିଲେ ଯାଇ ପଞ୍ଚୁ ଯେ ପାଣ୍ଡବ ।୨୫୬।
ଯାଇଂ ଦେଖିଲେ ପୁତ୍ର ପ୍ରାଣତ୍ୟାଗ କୁଳବଧୂ
ପାଣ୍ଡବେ ମୂର୍ଚ୍ଛାଗତ ଯେ ସୋହୋଦ୍ରା କାନ୍ଦୁ କାନ୍ଦୁ ।୨୫୭।
ଯୁଝେଷ୍ଟି ଭୀମ ଅର୍ଜୁନ ସହଦେବ ନକୁଳ
ସବୁଂକରି ନୟନୁ ବହେ ଅଶ୍ରୁଜଳ ।୨୫୮।
ଯୁଝେଷ୍ଟି ବୋଇଲେ ଦଇବ ତୋହୋର ଯେହେନେକ ଗତି
ଧର୍ମେ ଆଶ୍ରେ କରି ମୁଂ ନ ଦେଖିଲି ପୁତ୍ର ନାତି ।୨୫୯।

ହରି ସୋଦରନ୍ତ ନାଶକଲୁଂ ରାଜ୍ୟଭାର ନିମନ୍ତେ
ଆମ୍ଭର ବଂଶ ବୁଡ଼ିଲା ହରି ଜୀବନ କିସ ଅର୍ଥେ ।୧୨୬୦।
ଯୁଧେଷ୍ଟି ଦେବ ବୋଇଲେ ତୁମ୍ଭେ ଶୁଣ ନାରାୟଣ
ଜନ୍ମେ ଜନ୍ମେ ଆମ୍ଭେ ତୋହୋରେ ଶରଣ ।୧୨୬୧।
ହରି ଦୟାସାଗର ତୁ ଯେ ଭକତବତ୍ସଳ
ତୋହୋର ଆଶ୍ରେକେ ହରି ଆମ୍ଭର ବଳଦର୍ପ ସର୍ବକାଳ ।୧୨୬୨।
ହରି କେଉଣ ଅଭିଗତେ ହେଲୁ ତୁ ନିର୍ଦ୍ଦୟେ
ତେଣୁ ସେ ଆମ୍ଭର ଯେ ବଂଶ ଗଲା କ୍ଷୟେ ।୧୨୬୩।
ଅର୍ଜୁନ ବୋଇଲେ ଆମ୍ଭନ୍ତ ଘେନିଅଇଲୁ ରକ୍ଷାକରିବୁ ବୋଲି
ତୋତେ ଆଶ୍ରେ କରି ହରି ବଂଶନାଶ କଲି ।୧୨୬୪।
ମୃତପିଣ୍ଡ ଗୋଟି କୋଳେ ଧଇଲେ କୋଇନ୍ତୀ
ବଦନ ନିରୋପି ବାହୁନନ୍ତି ଦ୍ରୋପତୀ ।୧୨୬୫।
ଦେବକୀ ଯଶୋଦା ଯେ ଅନେକ କ୍ରୋଧ କରି
ନନ୍ଦ ଉପନନ୍ଦ ଉଗ୍ରସେନ ଆଦି କରି ।୧୨୬୬।
କୃଷ୍ଣର ବତିଶ ସହସ୍ର ନାରୀ ଅଷ୍ଟ ପାଟବଂଶୀ
ମହାକ୍ରୋଧଭରେ ଯେ ବେଢ଼ିଲେ ସର୍ବେ ଆସି ।୧୨୬୭।
ସମସ୍ତେ ବିଚାର କରନ୍ତି ମନେ ମନେ ଗୁଣି
କେବଣ ବିଚାରି ଯେହା କଲେ ଚକ୍ରପାଣି ।୧୨୬୮।
ଯେବଣ ଭୁବନରେ ନାହିଂ ଜରା ରୋଗ ବ୍ୟାଧି
ଯେତେକାଳେ ଯମ ଯେଥି କିମ୍ଭେ କଲାକ ଅବିଧି ।୧୨୬୯।
ସମସ୍ତେ ରୋଦନ ଯେ କରନ୍ତି ବିକଳେ
ଦ୍ୱାରିକା ପୁର ଛାଡ଼ିବା ହୋ ବିପତ୍ତି ପଡ଼ିଲା ଯେତେକାଳେ।୧୨୭୦।
ବହୁତ କୁଟୁମ୍ବ ଯହୁଂ ଦ୍ୱାରିକାରେ ବ୍ୟୁହ
ତେଣୁ କରି ହରି ଦ୍ୱାରିକାକୁ ଛାଡ଼ିଲୁ ସେନେହ ।୧୨୭୧।
କି ଅବା କେବଣ ମାୟା କଲେ ପୁରୁଷୋତ୍ତମ
ପୂରାଅ ମହତ ବାଚା ଉଦିତ ହୋଉ ଧର୍ମ ।୧୨୭୨।
କେ ବୋଲଇ କୃଷ୍ଣର କୋପ ଅଛଇ ପାଣ୍ଡବନ୍ତକୁ
କେ ବୋଲଇ ମାୟାଧର ମାୟା କରିଅଛି ମନ ବିଡ଼ିବାକୁ।୧୨୭୩।
କେ ବୋଲଇ କୃଷ୍ଣର ଅର୍ଜୁନକୁ ଅଛି କୋପ
ଶତଧନୁ ରଖି ହରିଲା ଯେ ନାରାୟଣ ଦର୍ପ ।୧୨୭୪।
କେ ବୋଲଇ ଅର୍ଜୁନ ସୋହୋଦ୍ରାକୁ ହରିନେବାର ବେଳେ
ବହୁତ ଅପମାନ ତହିଂ ପାଇଲେ କାମପାଳେ ।୧୨୭୫।
ଶ୍ରୀକୃଷ୍ଣର ନାମେ ସମସ୍ତେ ଦିଲେ ଅପଛାତି
ଯେ ମାୟାକୃତଯାକ ଯେ ଅଟଇ ଶ୍ରୀପତି ।୧୨୭୬।

ସେ ରାଗ ଖଣ୍ଡିକ ହରି ଧରିଅଛି ହୃଦେ
ତେଣୁକରି ପୁତ୍ର ମୃତୁଗତ ହାଦେ ।୧୨୭୭।
ଅନେକ କାଳର ଭୁବନ ଦ୍ୱାରବତୀ
ଗୋବିନ୍ଦଂକ ନାମେ ସମସ୍ତେ ଦିଲେ ଅପଛାତି ।୧୨୭୮।
ସୋହୋଦ୍ରା ବୋଇଲେ ହରି ସାବଧାନେ ଶୁଣ
ତୋହୋର କଲା କୃତ ପୁଣ ନୋହଇ ସେ ଆନ ।୧୨୭୯।
ନନ୍ଦ ବସୁଦେବ ଉଗ୍ରସେନ ଯାଦବ
ସବୁରି କ୍ରୋଧ ବଇକୁଳ୍ୟ ଦେଖନ୍ତି ବାସୁଦେବ ।୧୨୮୦।
ସକଳ ଜନ କ୍ରୋଧ ଦେଖି ଅର୍ଜୁନ ବୋଇଲା
କୁରୁ ପାଣ୍ଡବ ଯୁଦ୍ଧେ ଅନେକ ସଇନ ମଲା ।୧୨୮୧।
ଘଟଉତ୍କଚ ପଡ଼ିଲା ମଲା ଅଭିମନ୍ୟୁ
ଲକ୍ଷ୍ମଣ କୁମାର ପଡ଼ିଲା ପାଞ୍ଚାଳୀର ପାଞ୍ଚତନୁ ।୧୨୮୨।
ଯେ ପୁତ୍ରର ପ୍ରାଣତ୍ୟାଜ ହୋଇଲା ଯେତେବେଳେ
ରବିତଳେ ବୁଡ଼ିଲା ସୋମବଂଶ ଇହକାଳେ ।୧୨୮୩।
ସ୍ୱାମୀ ଉଭୟ କୁଳକୁ ଯେ ପଡ଼ିଲା କଷଣ
ଯେ କଷଣୁଂ ରଖନ୍ତା ତୁହି ସେ ନାରାୟଣ ।୧୨୮୪।
ଅର୍ଜୁନ ବୋଇଲା ସ୍ୱାମୀ ବାଚାୟେକ ଫିଟୁ
ନିଦ୍ରାଗତ ପ୍ରାୟେକ ହୋଇ ବାଳୁତ ପୁତ୍ର ଉଠୁ ।୧୨୮୫।
ଯୁଧେଷ୍ଟି ଦେବ ବୋଇଲେ ହରି ଅଗୋଚର ନୁହେଂ ତୋତେ
ରକ୍ଷା କରିବୁ ବୋଲି ଯେ ଦ୍ୱାରିକାକୁ ଆଣିଲୁ ମୋତେ ।୧୨୮୬।
ଆନ ଠାବେ ଯେବେ ହୋଅନ୍ତାନା ମୃତୁ
ଜନ ମୁଖେ କିମ୍ପ ଅପଛାତି ଶ୍ରୀକୃଷ୍ଣ ପାଆନ୍ତୁ ।୧୨୮୭।
ତୋ ଅଶକ୍ୟ ଯେବେ ହୋଇଲାକ ହରି
ଆବର ପାଣ୍ଡବନ୍ତ ପାଇବୁ କାହିଂ ଲୋଡ଼ି ।୧୨୮୮।
ଯୁଧେଷ୍ଟି ଦେବ ବୋଇଲେ କର ଚିତା ଆରୋପଣ
ପୁତ୍ର ଘେନି ଆମ୍ଭେ ଦହନ ହୋଇବୁଂ ପାଞ୍ଚଜଣ ।୧୨୮୯।
ଛାଡ଼ିଲୁ ରାଜ୍ୟଭାର ହୋଇଲୁଂ ନିରାଶ
ନିକଟ ନୋହଇ ସମୋଦ୍ର ନୋହିଲେ ଦିଅନ୍ତୁ ଝାସ ।୧୨୯୦।
ସ୍ୱାମୀ ପନ୍ନଗ ଭକ୍ଷଣେ ଗରେଡିଆ ମୁଖ ଚାହିଂ
ତେସନେକେ ପ୍ରାୟ ଦେବ ହୋଇଅଛୁ ତୁହି ।୧୨୯୧
ସ୍ୱାମୀ ଶୟଳ ସଂସାରେ ସମସ୍ତେ ହେଂ ହୋଇବେ ମୃତୁ
ଯେବେ ତୋହୋର ଆଗ୍ୟାଂରେ ବାଳୁତ ପୁଅ ବଂଚୁ ।୧୨୯୨।
ଯେଥକୁ ଯେବେ ଚିନ୍ତା ନ କରିବୁ ଦେବରାଜ
ଆମ୍ଭର ବଂଶ ବୁଡ଼ିଲେ ତୁମ୍ଭନ୍ତ ହୋଇବ ଲାଜ ।୧୨୯୩।

ଆମ୍ଭେ ଯେବେ ଇନ୍ଦ୍ରପ୍ରଶସ୍ତେ ରହିଥାଆନ୍ତୁ
ପାପହିଂ ହୋଉ କି ପୁଣ୍ୟହିଂ ହୋଉ କର୍ମ ବୋଲି ଆଦରନ୍ତୁ।୨୯୪।
ଭଗ୍ନିଙ୍କାର ପୁତ୍ର ତୋର ଗର୍ଭୁଂ ମୃତୁ ଜାତ
ସଂସାରେ ଅପଛାତି ତୋତେ ଯେ ବହୁତ ।୨୯୫।
ତାରଣ କର ନାଥ ଅନ୍ଧ ପଟଳ ଫିଟୁ
ଅମୃତ ଦୃଷ୍ଟିରେ ଚାହିଂ ପୁତ୍ର ମୋ ଜୀଇଂ ଉଠୁ ।୨୯୬।
ଯୁଝେଷ୍ଟି ଦେବ ବଇକୁଳ ଦେଖିଣ ଜଗନ୍ନାଥେ
ବଦନ ହେଠମାଥ ଦେବ ଦୃଷ୍ଟି ଅନୁମତେ ।୨୯୭।
ଅର୍ଜୁନ ବୋଇଲେ ସ୍ୱାମୀ ଛାଡ଼ିମେଲ ମୋହୋର ରାଗ ଦୋଷ
ଅନୁଗ୍ରହ ନାଥ ରକ୍ଷାକର ମୋର ବଂଶ ।୨୯୮।

**

## ୧୦୬. ଶ୍ରୀକୃଷ୍ଣଙ୍କ ଦ୍ୱାରା ପରୀକ୍ଷିତଙ୍କ ଜୀବଦାନ

ଶ୍ରୀକୃଷ୍ଣ ବଦନ ଚାହିଂ ଦେବକୀ ବୋଇଲେ
ହରି ତୋହୋର ନାୟେ ଯେ ସମସ୍ତେ ଅପଛାତି ଦିଲେ ।୧।
ବାବୁ ଯେ ବାଳୁତ ବ୍ରତିବାକୁ ଅଛି ଯେବେ ବୁଦ୍ଧି
ଶୂନ୍ୟେ ବୃଷ୍ଟି ହୋଉ ଅମର ମଉଷଧି ।୨।
ଆପଣା କୋଳେ ଲାଇ ଚାହାଂ ଅମୃତ ଦୃଷ୍ଟି
ସଂସାରେ ଧନି ହୋଉ କୁମର ବସୁ ଉଠି ।୩।
ମାତାଂକ ବଚନେ ସନ୍ତୋଷେ ଦେବସ୍ୱାମୀ
ବିଚାରିଲେ କେଶବ, ମୋତେ ଅପଛାତି ଦିଲେ ଆଣି ।୪।
ଯୁଝେଷ୍ଟି ବଇକୁଳ୍ୟ ଦେଖିଣ ଦେବହରି
ମୃତପିଣ୍ଡ ଗୋଟିକୁ ଯେ କୋଳ କରି ଧରି ।୫।
ଆପଣେ କେଶବ ତୋଳି ଧଇଲେକ କୋଳେ
ଅଧର ଆଉଂଷୁଛନ୍ତି ଦେବକୀର ବାଳେ ।୬।
ଶୁଣ ବଇବସ୍ୱତ ମନୁ ବଦନ୍ତି ଅଗସ୍ତି
ସମସ୍ତଂକ ବଚନେ କୃଷ୍ଣ ହୋଇଲେ ପରମ ଶାନ୍ତି ।୭।
କୋଳରେ ଧଇଲେ ପ୍ରଭୁ ମୃତୁପିଣ୍ଡ ଗୋଟି
ଶରୀର ଆଶ୍ୱାସନା କରି ଚାହିଂଲେ ଅମୃତ ଦୃଷ୍ଟି ।୮।
ବଦନ ଦିଶଇ ତାର ନିର୍ମଳ ଚନ୍ଦ୍ର ଜାଣି
ଯେକଇଯେ କରି ଚାହିଂଲେ ଦେବ ଚକ୍ରପାଣି ।୯।
ସୁମରନ୍ତି ଦଧିବାବନ ଅଣାକାର
ଯେବେ ମୃତୁ ମଣ୍ଡଳେ ମୋର ମନୁଷ୍ୟ ଅବତାର ।୧୦।
ଯେବେ ମୁହିଂ ବିପ୍ରରେ ଭଗତି ନାମକର୍ମେ
ମୋର ନିତି କର୍ମେ ଥାଇ ଭାଷଇ ଯେବେ ଧର୍ମେ ।୧୧।
ପର ଉପୁଗାର ଯେବେ ମୁହିଂ କରଇ ଚିତ୍ତେ
ପରଦାରା ପର ଉପହାସ ନାହିଂ ଯେ ଯୁଗତେ ।୧୨।
ବେଦମନ୍ତ୍ର ଶାସ୍ତ୍ରେ ଯେବେ ଆନନ୍ଦିତ କର୍ମେ
ଯେବେ ମୋତେ ଧୀରଜନ ଭଗତି କରି ମର୍ମେ ।୧୩।
ମୁହିଂ ଯେବେ ଗୋବର୍ଦ୍ଧନ ଧରଇ ସର୍ବକାଳେ
ଯେବେ ଗୋବର୍ଦ୍ଧନଧାରୀ ନାହିଂଟି ଶୟନେ ।୧୪।
ଯେବେ ତ୍ରଇଲୋକ୍ୟ ଆତଯାତ କରଇ ମହୀଭାର
ତେଣୁକରି ନାମଗୋଟି ଯେବେ ମହୀଧର ।୧୫।
ଯେବେ ମୁହିଂ ନରେ ନାରାୟଣ ମମ ନାମ
ଯେବେ ମୋର ବ୍ରାହ୍ମଣେ ଆନନ୍ଦିତ ମନ ।୧୬।
ଯେବେ ମୁହିଂ ନିରାକାରେ ରାତ୍ର ଦିବସ ଭଜଇ
ମମ କର୍ମେ ଯେବେ ପରେ ନିରାଶ ନ କରଇ ।୧୭।
ମୁହିଂ ଯେବେ ହିଂସା ପରେ ନ କରଇ
ଯେବେ ବେଦ ମନ୍ତ୍ର ଶାହାସ୍ତ୍ରେ ଆନନ୍ଦିତ ଅଟଇ ।୧୮।
ଯେବେ ମୁଂ ନିନ୍ଦଇ ପାପୀଲୋକ ମନ୍ଦକର୍ମ ଗତି
ଯେବେ ମୁହିଂ ଧୀରଜନ ପଣ୍ଡିତେ ଭଗତି ।୧୯।
ଜପୀ ତପୋଧନେ ଆନନ୍ଦିତ ମନ
ସାବଧାନ ସୁଗ୍ୟାନେ ନ ପଶନ୍ତି ଯେବଣ ଜନ ।୨୦।
ତାହାଂକୁ ହୃଦେ ଯେବେ ଅଛିଟି ମମଗ୍ୟାନ
ପ୍ରାତକାଳେ ସ୍ନାହାନ କରନ୍ତି ଯେବଣ ଜନ ।୨୧।
ତାହାଂକର ହିତେ ଥୋଇ ଯେବେ ବସି
ଯେବଣ ଜନ ହୋଅନ୍ତି ତୀର୍ଥବାସୀ ।୨୨।
ସେ ଲୋକ ମୋହୋର ହୃଦରେ ପଶନ୍ତି
ମୁକତ ଗତି ଅର୍ଥେ ଯେବେ ହୁଅନ୍ତି ପଥଶ୍ରାନ୍ତି ।୨୩।
ତାହାନ୍ତ ଯେବେ ସୁଲଭ ଥାଇଟି ମୋର ମନେ
ହରି ଉପବାସ କରନ୍ତି ଯେବଣ ଜନେ ।୨୪।
ଅନୁବ୍ରତେ ଚିନ୍ତା ଯେ କରଇ ମମଗ୍ୟାନେ
ସେ ଲୋକ ଯେବେ ମୋ ପଞ୍ଚଆତ୍ମାନେ ।୨୫।
ବିବାଦ କର୍ମେ ନ ଲଙ୍ଘନ୍ତି ସୀମା
ବେନି ବାଦେ ଯେହ୍ନେ ନୋହଇ ଆଗଳିମା ।୨୬।
ମେଢ଼ ମଣ୍ଡୋପ ପୁଷ୍କରିଣୀ ଯେହୁ ଦିଅନ୍ତି
ସେ ଲୋକଂଙ୍କଠାରେ ଯେବେ ଥାଇ ଚିତ୍ତ ବୃତ୍ତି ।୨୭।

ବ୍ରାହ୍ମଣ ହୋଇ ତି ଶୂଦ୍ର ହୋଉ ଅବା
ଭିକ୍ଷୁକ ହୋଉ ଯେବେ ମୋରଠାରେ ସେବା ।୨୮।
ଦୁଷ୍ଟ ଜନନ୍ତ ଦେଖି ଯେବେ କରଇଂ ଭୟେ
ଧର୍ମ ଶାହାସ୍ତ୍ର ପଣ୍ଡିତଜନନ୍ତ ଯେବେ କରଇ ସଦୟେ ।୨୯।
ସତୀ ପ୍ରସଙ୍ଗେ ଯେବେ ମମ ପ୍ରକୃତି
ଗଜ ମୁଖେ ଯେବେ ଚଳଇ ପୃଥୀ ।୩୦।
ହୃଦରେ ଚିନ୍ତା ମୋହୋର ପ୍ରତିଲୋକନ୍ତ ନିତି ।୩୧।
ଅବଦକେ ଯେବଣ ଲୋକେ କରନ୍ତି ବାସ୍ତରି ଉପବାସ
ସେ ଲୋକନ୍ତ ଦେଖିଲେ ମନେ ପାଉଥାଇ ପ୍ରାସ ।୩୨।
ମମ ନାମ ସଂକେତ ଯେହୁ କରଇ ଚିନ୍ତା
ଆହାର ମଇଥୁନ ନିଦ୍ରା ନାହିଂ ସେ କରନ୍ତା ।୩୩।
ଜନନ୍ତ ଆଦରଣେ ଯେବେ ଜନାର୍ଦ୍ଦନ ନାମ
ପୁରୁଷମାନନ୍ତ ପାରକରଇ ପୁରୁଷୋତ୍ତମ ମୋର ନାମ ।୩୪।
ନରକ ତାରଣ ମୋର ନାରାୟଣ ନାମ
ପରମାଦୁଂ ତାରଇ ଯେବଣ କୃଷ୍ଣ ନାମ ।୩୫।
ପରଂକୁ ଶିରୀଦେଇ ଯେବେ ଶ୍ରୀରାମ ମୋର ନାମ
ପର ଦୁଖେ କରେ ମୁଂ ପରକୁ ପରସନ୍ନ ।୩୬।
ପର ଦୁଖ ଯେବେ ମୁଂ ନୁଆରଇ ଦେଖି
ସଦୟେ ଚିନ୍ତା ମୁହିଂ କରଇ ନିରିମାଖୀ ।୩୭।
କରମେ ଯେବଣ ଜନେ ହୁଅଇ ଆବନ୍ଧ
ମୁହିଂ ବିଶ୍ରାମଇ ଯେ ତାହାଂକର କନ୍ଧ ।୩୮।
ନିମର୍ଯ୍ୟାଦାରେ ଯେବେ ନ ଛାଡ଼ଇ କ୍ଷଣେ
ଅଛବ ଲୋକଂକର ତୁଳେ ମୁଂ ଥାଇ ତେଣେ ।୩୯।
ଜଗତ ଉଦ୍ଧାରି ଜଗନ୍ନାଥ ମୋର ନାମ
ମୁହିଂ ପାଳଇ ଯେବେ ସକଳ ଲୋକଧର୍ମ ।୪୦।
ମୁହିଂ ଯେବେ ଅଟଇ ଜଗତ ଜନ ବନ୍ଧୁ
ଭଗବାନ ନାମ ମୋର ପ୍ରଳୟ ତାରଣ ସିନ୍ଧୁ ।୪୧।
କୀର୍ତ୍ତି କରମ କରଇ ଯେବେ ଅକାର୍ତ୍ତି ଜନେ
ଯେତେ କଥାରେ ଥାଇ ଯେବେ ମୋର ମନେ ।୪୨।
ମୁହିଂ ଯେବେ ଗୋଧନ ତାରଇ ସର୍ବକାଳେ
ଗୋବର୍ଦ୍ଧନ ନାମ ମୋର ଅଟଇ ଶୟଳେ ।୪୩।
ମୁହିଂ ଯେବେ ଆତଯାତ କରଇ ସମସ୍ତ ମହୀର
ତେଣୁକରି ନାମ ମୋର ଅଟଇ ମହୀଧର ।୪୪।
ସାଧୁୟେ ମନେ ଯେବେ ଚିନ୍ତନ୍ତି ସର୍ବକାଳେ
ତେଣୁ ମାଧବେ ନାମ ମୋର ବିଦିତ ଶୟଳେ ।୪୫।
ମୁହିଂ ଯେବେ ସଂସାର ଜନ ଚିନ୍ତାୟେ ଥାଇଟି
ତେଣୁ ମୁଂ ବହଇ ସୁଦ୍ରିଶେନ ଚକ୍ରଗୋଟି ।୪୬।
ଚକ୍ରଧର ନାମ ଯେବେ ମୋହୋର ସତ
ଲେଉଟି ଜୀବନ ପଶୁ ଜୀଉଂ ଯେ ବାଳୁତ ।୪୭।
ଆହୋ ଚଇତନ ପୁତ୍ର କୋଳେ ଧରି ଦିଅନ୍ତି ଚୁମ୍ବନ
ଅମୃତ କରିଣ ଯେ ଚାହାନ୍ତି ନୟନ ।୪୮।
ହେ ପିତାମହ ବିଚାର ତୁମ୍ଭେ ଯେହା
ବଂଶ ବୁଡ଼ିଲା ସଂସାରେ ରଖିବୁ ତୁ କାହା ।୪୯।
ମୁହିଂ ଯେବେ ତୋହୋର ବଚନେ ପ୍ରଜାପତି
ଦିଗପାଳ ହୋଇ ଯେବେ ମୁଂ ମାନବେ ଉତପତ୍ତି ।୫୦।
ମୁଂ ଯେବେ ଉତପତ୍ତି ଭାରା ନିବାରଣେ
ଜନ୍ମେ ଜନ୍ମେ ଜାତ ହୋଇ ନର ନାରାୟଣେ ।୫୧।
ଯେବେ ମୁହିଂ ମଚ୍ଛ କୂର୍ମ ବରେହା ଅବତାର
ନୃସିଂଘ ବାମନ ପ୍ରଶୁରାମ ଆବର କୋଦଣ୍ଡଧର ।୫୨।
ଯେବେ ମୁଂ ଅବତାର ଅବନୀର ଛଳେ
ଯେବେ ମୋ ଦଶ ଅବତାର ସର୍ବକାଳେ ।୫୩।
ଯେବେ ମୋହୋର ପିତା ଭଗତି ସର୍ବଦାୟେ
ଅଣାକାର ନାଥକୁ ଯେବେ ମୋହୋର ଥାୟେ ଧ୍ୟାୟେ ।୫୪।
ମୁହିଂ ଯେବେ ସକଳ ଦେବଂକର ମୁଖ୍ୟପାନ
ଯୋଗୀଜନଂକର ମୁଂ ଧ୍ୟାନରେ ଦରଶନ ।୫୫।
ଯେବେ ମୋ ଦେବ ବ୍ରାହ୍ମଣେ ଅଛଇ ଭଗତି
ଯେବେ ସଂସାର ଜନନ୍ତ, ପାଳଇ ମୁଂ ନିତି ।୫୬।
ଯେବେ ମୁଂ ପୃଥାକି ଅନୁବ୍ରତେ କରେ ଚିନ୍ତା
ଯେବେ ମୁଂ ଭଗତ ଜନନ୍ତ ଉଦ୍ଧାରନ୍ତା ।୫୭।
ଜପ ମନ୍ତ ଧର୍ମେତ ବ୍ରତନ୍ତି ଯେତେ ପ୍ରାଣୀ
ଯେବେ ମୁହିଂ ତାହାଂକର ଅପାଦ ଯେ ଖଣ୍ଡଇ ବେଳ ଜାଣି।୫୮।
ଯେବେ ମୁଂ ଥାଇଟି ଜନ୍ତୁ ହୃଦଗତେ
ପରଦୁଖେ କାତର ମୁଂ ସର୍ବଦା ଯେବେ ନିତ୍ୟେ ।୫୯।
ଯେବେ ମୁଂ ରକ୍ଷ ଭକ୍ଷକୁ ମାଇଲି ଧର୍ମ ଯୁଦ୍ଧେ
ହେତି ପ୍ରହେତି ନାଶିଲି ପିତାମହର କ୍ରୋଧେ ।୬୦।
ଆକାଶ ମନ୍ଥିଲେ ଯେବେ ମାଳୀ ଯେ ସୁମାଳୀ
ମୁହିଂ ତାହାନ୍ତେ ବଧ କରି ଉଦ୍ଧରିଲି ମହୀସ୍ଥଳୀ ।୬୧।
ଜଗୁଜନ ସୋଦର ଯେବେ ଜଗନ୍ନାଥ ମୋର ନାମ

ଧର୍ମ ଅର୍ଥ କାମ ମୋକ୍ଷ ଯେବେ ଦିଅଇ ଚତୁର୍ବର୍ଗ ଧର୍ମ ।୬୨।
ପୃଥୀ ଉଦ୍ଧାରଣ ନିମନ୍ତେ ଯେବେ ଧରଣୀ ଧରଇ ମୁହିଂ
ଶୟଳ ଜନ ନିମନ୍ତେ ଯେବେ ଭାରାଭର ବହି ।୬୩।
ପୃଥୀ ଆପ ତେଜ ବାୟବ ଆକାଶ
ଯେ ପଞ୍ଚ ଧାତୁକୁ ଯେବେ ମୋହୋର ପ୍ରକାଶ ।୬୪।
ଜନ୍ମେ ଜନ୍ମେ ଯେବେ ଦୁର୍ଜନ ଲୋକଂକ ଗର୍ବଗଞ୍ଜା
ଭଗତ ଜନ ମଙ୍ଗଳ ମୁଂ ଯେବେ ଦେବାଧି ଦେବାରାଜା ।୬୫।
ମୁହିଂ ଯେବେ ନିକଳଂକ ଯେକାଦଶବେଦୀ
ମମ ଅର୍ଥେ ଭଗତରେ ଯେବେ କାର୍ଯ୍ୟ ଅଟଇ ସିଦ୍ଧି ।୬୬।
ଯେବେ ମୁହିଂ ଯେକ ମାତା ହେପ ପିତାୟେ ଜାତ
ଯେବେ ମୁହିଂ ମାତା ପିତାୟେ ଗୁରୁଜନରେ ଭଗତ ।୬୭।
ନର୍କୁଂ ଉଦ୍ଧାରଣ ଯେବେ ଅଟଇ ନାରାୟଣ
ଅନାସ୍ତ ଜନଂକର ଯେବେ ଭଗତି କାରଣ ।୬୮।
ଅଥବା ଯେ ଯାହାର ବ୍ରତ ଧର୍ମେ ବ୍ରତନ୍ତି ଯେତେ ପ୍ରାଣୀ
ତାହାଂକର ଚିନ୍ତା ଘେନି ମୋ ନାମ ଚିନ୍ତାମଣି ।୬୯।
ଯେବେ ମୁହିଂ ପିତାମହ ବିକଳେ ଶଙ୍ଖାସୁର ଦର୍ପଗଞ୍ଜି
ଅବନୀ ତଳେ ଯେବେ ହିରଣ୍ୟ ହିରଣ୍ୟାକ୍ଷ୍ୟପକାଇଲି ପିଞ୍ଜି ।୭୦।
ମୁହିଂ ଯେବେ ପାତାଳେ ଚାପିଲଇଂ ବଳି
ଜଗୁଜନ ମୋହନ ନାମ ମୋର ଯେବେ ବନମାଳୀ ।୭୧।
ଯେବେ ମୁଂ ପ୍ରଶୁରାମ ରୂପେ ଦୁର୍ଭାର ବଳ ଗଞ୍ଜି
ଜାନକୀ ହରଣେ ଯେବେ ବିଶ୍ରବାସୁତ ପିଞ୍ଜି ।୭୨।
ମୁଂ ଯେବେ ରଙ୍ଗା ଅବତାର ହୋଇଲି ମେଦିନୀ
ଅଷ୍ଟମଲ୍ଲ ମୂଳେ କଂସର ପ୍ରାଣ ଘେନି ।୭୩।
ଯେବେ ମୋତେ ଯୋଗୀଜନ ମୁନି କରନ୍ତି ଧ୍ୟାୟେ
ବଇକୁଣ୍ଠେ ଠାବ ଦିଅଇ ସଦା ଯେ ବିନୟେ ।୭୪।
ଯେବେ ମୋତେ ଭଗତି ଯୁଝେଷ୍ଠି ମହାତମା
ଯେବେ ପାଣ୍ଡବେ ମୋହୋର ଅଟନ୍ତି ପଞ୍ଚଆତ୍ମା ।୭୫।
ଯେବେ ମୋହୋର ପାଣ୍ଡବନ୍ତ ଅଟଇ ନିକଳଂକ
ଅର୍ଜୁନ ମନ ଆତ୍ମା ଅଟଇ ଯେବେ ମୋର ଯେକ ।୭୬।
ଯେବେ ମୁହିଂ ନିକଳଂକ ବିଭେ ପ୍ରଦାନ କରାଇଲି ସୋହୋଦ୍ରାକୁ
ନିକଳଂକେ ସେବା ଯେବେ ବଳଦେବ ଠାକୁରଂକୁ ।୭୭।
ଶ୍ରୀବନ୍ତ ଲୋକନ୍ତ ଯେବେ ମୋହୋର ହୃଦେ ସୋହୋଦର ଅଛି
ତେଣୁ କରି ନାମ ମୋର ଅଟଇ ଶ୍ରୀବଚ୍ଛି ।୭୮।
ଜନଜନ୍ତୁ ଗଣନରୁ ଯେବେ ନ ଗୁଚଇ ଆନ
ତେଣୁ କରି ନାମ ମୋର ଅଟଇ ଭଗବାନ ।୭୯।
ଯଦି ମୁହିଂ ତୁଳସୀ ବହଇ ମମ ହୃଦେ
ଯଦି ମୁହିଂ ବଳିକି ମାଗିଲି ନବଦ୍ୱୀପା ପୃଥୀ ସପ୍ତ ପାତାଳ ଯେକପାଦେ ।୮୦।
ଯେବେ ମୋହୋର ଭୁବନକୁ ନାହିଂଟି ଅପାଦ
ଭଗତ ଜନଂକୁ ଯେ ଧଂସଇ ତାହାକୁ ହୃଦରେ ବିଷାଦ ।୮୧।
ଯେବେ ଯେମାନ ହାଦେ ଅଟଇ ସତ୍ୟ ସତ୍ୟ
ଯେଥକୁ ସାକ୍ଷ୍ୟ ମୁଂ କଲଇ ବିହନ୍ତା ପୁରୁଷନ୍ତ ।୮୨।
ଭୋ ଦଶଦିଗପାଳ ତୁମ୍ଭେ ସମସ୍ତେ ହୋଅ ସାକ୍ଷୀ
ପରଦୁଖେ ମୁହିଂ ଯେ ସର୍ବଦା ଦୀନଦୁଖୀ ।୮୩।
ସର୍ବଦା ପ୍ରାଣୀ ହିଂସା ନ କରେ ମମ ହୃଦେ
ତାହା ମୁଂ ନ ସହଇ କଥାର ପ୍ରସ୍ତାପେ ।୮୪।
ଭାରଥ ଯୁଦ୍ଧ ହିଂ ମୋର ପାଣ୍ଡବଂକ ହିତେ
ବ୍ରହ୍ମ ଛତ୍ରୀ ବଇଶ୍ୟ ଶୂଦ୍ର ବଧ ଯେହାଂକର ଅର୍ଥେ ।୮୫।
ଯେବେ ସେ ଯେମାନ ମୋହୋର ଅଟଇ ସତ୍ୟ ସତ୍ୟ
ମମ ଆଷ୍ୟ ଘେନିକରି ବ୍ରତୁ ଯେ ବାଳୁତ ।୮୬।
ଶୁଣ ଆହୋ ଚଇତନ କୃଷ୍ଣର ଯେସନ ବାକ୍ୟ ଶୁଣି
ଜୀବଦାନ ପାଇଲା କୁମର ଚୂଡ଼ାମଣି ।୮୭।
ଜୀବନ୍ୟାସ କରି ତାକୁ ଚାହିଂଲେ ଅମୃତ ଯେ ଦୃଷ୍ଟି
କାୟା ମୋଡ଼ି ଦେଇ ପୁତ୍ର ତତକ୍ଷଣେ କାନ୍ଦି ଉଠି ।୮୮।
ନୟନ ନିରୋପି ଯେ ଚାହିଂଲାକ ବାଳ
କର ଚରଣ ହଲାଇ ଯେ ତୋଳଇ ବକ୍ଷସ୍ଥଳ ।୮୯।
ଦେଖିଣ ଚକିତ ହୋଇଲେ ସର୍ବଲୋକ
ଆତ୍ମା ବିଘଂସିତ ଛାଡ଼ିଲେ ସର୍ବଶୋକ ।୯୦।
ପୁତ୍ରଗୋଟି କୋଳେ ବସାଇ ଜଗତଜନ ବନ୍ଧୁ
ତ୍ରଇଲୋକ୍ୟ ଶୁଭିଲା କୃଷ୍ଣ ମହିମା ସାଧୁ ସାଧୁ ।୯୧।
ସାଧୁ ସାଧୁ ଧ୍ୱନି ଉଠିଲା ସର୍ବମୁଖେ
ହରଷ ଧ୍ୱନି ଉଠିଲା ପାରଗଲା ସର୍ବଦୁଖେ ।୯୨।
ଆହୋ ଦେଖିଣ ସାନନ୍ଦ ହୋଇଲେ ସଉଭଦ୍ରେ
କୁମର ଦେଖିବା ନିମନ୍ତେ ବିଜୟେ ଶ୍ରୀରାମଚନ୍ଦ୍ରେ ।୯୩।
ବଳଦେବ ବୋଲନ୍ତି ଶ୍ରୀକୃଷ୍ଣର ଅଗୋଚର ମାୟା
ଜଗବନ୍ଦନ ନାଥ ଯେ କଲେକ ସୁଦୟା ।୯୪।
ମୃତୁପିଣ୍ଡ ବ୍ରତିଲା ସେ ସୋମବଂଶ ହେବ ମୋକ୍ଷ
ପରୀକ୍ଷାରୁ ଉତୁରିଲା ଯେହାର ନାମ ଯେ ପରୀକ୍ଷ ।୯୫।

ଆହୋ ଅନେକ ପରୀକ୍ଷ ଯହୁଂ କହିଲେ ଶ୍ରୀବତ୍ସ
ସେ ପୁତ୍ରର ହରି, ନାମ ଦିଲେକ ପରୀକ୍ଷ ।୯୬।
ବୃତି ଉଠିଲା ସେ ଯେ ଅର୍ଜ୍ଜୁନର ନାତି
ନୟନ ଦୃଷ୍ଟିକରି ଚାହିଂଲେ ଶ୍ରୀପତି ।୯୭।
ପୁତ୍ରର ନିଧନ ଯେ ଉତ୍ତରା ମୋହ ଯାଇଥିଲା
ପୁନରପି ଜୀବ ତାର ନେଉଟି ନ ପଶିଲା ।୯୮।
ବ୍ରହ୍ମଶର ଘାୟେ ସେ ଯେ ହୋଇଲା ଅଚେତ
ତେଣୁ କରି ପ୍ରାଣ ତାର ହୋଇଲା ନିହତ ।୯୯।
ଗଙ୍ଗାନଦୀ କୂଳେ ଜୁଇ ଆରୋପଣ କଲେ ପଞ୍ଚୁବୀରେ
ମୁଖ ଅଗ୍ନି ଦିଲେ ସେ ପରୀକ୍ଷ କୁମରେ ।୧୦୦।
ବାହୁଡ଼ି ପ୍ରବେଶ ହୋଇଲେ ଦ୍ୱାରାବତୀ ପୁରେ
ଅର୍ଜ୍ଜୁନର କ୍ରୋଧ କହିଲେ ନ ସରେ ।୧୦୧।
ବଧୂ ବଧୂ ବୋଲି ସୋହୋଦ୍ରା କୋନ୍ତା ଦ୍ରୋପଦୀ ରୋଦନ
ପ୍ରବୋଧ କରନ୍ତି ଯେ ପ୍ରଭୁ ଭଗବାନ ।୧୦୨।
ପୁତ୍ରକୁ ଦେଖି ପ୍ରବୋଧ ହୋଇଲେ ଯୁଝେଷ୍ଟି
ସାଧୁ ସାଧୁ ବାସୁଦେବ ତବ ନାମ ଗୋଟି ।୧୦୩।
ଶୟଳ ଜନ ଚିନ୍ତାମଣି ପୁରୁଷଂକ ଉତ୍ତମ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାହାର ଉଦରେ ବିଶ୍ରାମ ।୧୦୪।
ଭୂତ ଭବିଷ୍ୟ ବ୍ରତମାନ ସମସ୍ତ ତୁ ଜାଣି
ଉପାୟେ ଭାରାଭର ତୁ ନାଶିଲୁ ଚକ୍ରପାଣି ।୧୦୫।
ଯଦୁବଂଶ ଶିରୋମଣି ତୁ ଦୁଖୀଜନଂକର ଚିନ୍ତା
ପରମ ଆନନ୍ଦ ସ୍ୱାମୀ ତୁ ଦୁରିତ ଦହନ୍ତା ।୧୦୬।
ଗଙ୍ଗା ଗୟା ଗୋଦାବରୀ ଗଣ୍ଡୁକୀ ବଇତରଣୀ
ତୋର ନାମଗୋଟି ସକଳ ତୀର୍ଥେଣ ଚିନ୍ତାମଣି ।୧୦୭।
ଦିବା ନିଶି ସାଧୁଜନେ ତୋର ନାମକୁ କରନ୍ତି ଲୟେ
ପରମ ଗତି ଦେଇ ଯେ ତୋତେ କରଇ ଧ୍ୟାୟେ ।୧୦୮।
ଶ୍ରୀବାସୁଦେବଂକର ଚରଣେ ଦଇନି
ବନ୍ଦୟନ୍ତି ସାରୋଳା ଚଣ୍ଡୀଦାସ ଶୂଦ୍ର ମୁନି ।୧୦୯
ଜୟ ତୁ ଜଗବନ୍ଦନ ଜୟ ତୁ ପୀତବାସ
ଜଗତ ଜନ ତାରଣ ଜୟ ହୃଷୀକେଶ ।୧୧୦।
ଜୟ ତୁ ମାଧବ ଯମ ଦର୍ପ ଗଞ୍ଜା
ଜୟ ତୁ ମାଧବ ପ୍ରସନ୍ନେ ଦେବାଧି ଦେବରାଜା ।୧୧୧।
ଜୟ ତୁ ମାଧବ ପୁରୁଷଂକର ଉତ୍ତମ
ଜୟ ତୁ ମାଧବ ପ୍ରସନ୍ନ ପରବ୍ରହ୍ମ ।୧୧୨।
ଜୟ ତୁ ମାଧବ ହୋ ଶରଣ ଉଦ୍ଧାରି
ଜୟ ତୁ ମାଧବ ସଦୟ ଦଇତାରି ।୧୧୩।
ଜୟ ତୁ ମାଧବ ଶରଣ ରକ୍ଷଣ
ଜୟ ତୁ ମାଧବ ଜଗତ କାରଣ ।୧୧୪।
ଜୟ ତୁ ମାଧବ ମଧୁକଇଟଭ ଦର୍ପ ଗଞ୍ଜା
ଜୟ ତୁ ମାଧବ କୃତାନ୍ତେକ ବଳଭଞ୍ଜା ।୧୧୫।
ଜୟ ତୁ ମାଧବ ତ୍ରଇଲୋକ୍ୟର ଅଧିପତି
ଜୟ ତୁ ମାଧବ ହୋ ଦଧିବାବନ ମୂରତି ।୧୧୬।
ଜୟ ତୁ ମାଧବ ଯାବତ ଜନ ଜୀବଦାତା
ଜୟ ତୁ ମାଧବ ହୋ ଜଗତଜନ ଉଦ୍ଧାରନ୍ତା ।୧୧୭।
ଜୟ ତୁ ମାଧବ ଯୋଗୀ ପରମ ଯୋଗୀ
ଜୟ ତୁ ମାଧବ ହୋ ସକଳ ଜନ ଭୋଗୀ ।୧୧୮।
ଜୟତୁ ମାଧବ ଅନନ୍ତ ନାମ ଗୋଟି
ଶୂଦ୍ରମୁନି ସାରୋଳା ଦାସ ତବ ଚରଣେ ଲୋଟି ।୧୧୯।



# ଶାନ୍ତି ପର୍ବ

## ୧୦୭. ପାଣ୍ଡବଙ୍କର ଭୀଷ୍ମଙ୍କ ନିକଟକୁ ଗମନ ଓ ନୀତିବାକ୍ୟ ଶ୍ରବଣ :

ଯେଥୁ ଅନନ୍ତରେ ବଇବସୁତ ମନୁ ରାଜା
ଅଗସ୍ତିଂକ ପାଦତଳେ କଲେକ ଦିବ୍ୟ ପୂଜା ।୧।
ଭୋ ମୁନି ଅଗସ୍ତି ତୁମ୍ଭେ ଅଟ ବ୍ରହ୍ମବେତ୍ତା
କହିବା ସାବଧାନେ ଶାନ୍ତିପର୍ବର ବାରତା ।୨।
ଯେଥୁ ଉତ୍ତାରେ କିସ ହୋଇଲା ବ୍ରହ୍ମପତି
ତବ ମୁଖୁଂ ଶୁଣି ମୁହିଂ ହୋଇବି ମୁକୁତି ।୩।
ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ଶ୍ରୀକୃଷ୍ଣ ସହିତେ ପାଣ୍ଡବ ପାଞ୍ଚମୂର୍ତ୍ତି ।୪।
ଯେଥୁ ଅନନ୍ତରେ ବଦୟନ୍ତି ଜନାର୍ଦ୍ଦନ
ଅବିଷେକ ସଞ୍ଜା ଦେବ କରିବା ବିଧାନ ।୫।
ବଦୟନ୍ତି ଯୁଝେଷ୍ଠି ଶୁଣିମା ଦେବହରି
ଭୀଷ୍ମଂକୁ କହିଲେ ସେ ରାଜ୍ୟ କରି ପାରି ।୬।
ତହୁଂ ଯୁଝେଷ୍ଠି ଭୀଷ୍ମଂକ ତହିଂକି କରନ୍ତି ଗବନ
ସନ୍ୟ ସାଖା ନାହିଂ ତୁଲେଣ ସାତଜଣ ।୭।
ଯହିଂ ଭୀଷ୍ମେ କରିଛନ୍ତି ଶରଶଯ୍ୟା
ସନ୍ନିଧ୍ୟେ ପ୍ରଜମ୍ପିତ ହୋଇଲେ ଦେବରାଜା ।୮।
ଚକ୍ଷୁ ବୁଜିଣ ଯେ ଥିଲେ ଦେବବ୍ରତ
ଯୁଝେଷ୍ଠିଙ୍କି ଦେଖି ବିକାଶିଲେ ବେନିନେତ୍ର ।୯।
ଭୀଷ୍ମଦେବ ଚାହିଂଲେ ଯୁଝେଷ୍ଠିଂକ ମୁଖ
ନିକଣ୍ଟକ ରାଜ୍ୟକର ଯେବେ ତୋହୋର ସୁଖ ।୧୦।
କିମ୍ପା ହୋ ଧର୍ମରାଜ ଅଇଲୁ ମୋର ପାଶ
ବଦୟନ୍ତି ପାଣ୍ଡବ ଶୁଣ କୁରୁକୁଳ ମୁଖ୍ୟ ଯେ ପୁରୁଷ ।୧୧।
ଆମ୍ଭର ହିତେ ତୁମ୍ଭେ ତେଜିଲ ଜୀବନ
ସମ୍ମୁଖେ ଯୁଝିଲେ ତୋତେ କେହୁ ଜିଣିମ ରଣ ।୧୨।
ଆମ୍ଭନ୍ତ ତୁମ୍ଭର ଦୟା ସର୍ବଦା ଗାଙ୍ଗେବ
ପ୍ରଥମ ଦିନ ଯାହା ପ୍ରକାଶିଲ ସଦିଭାବ ।୧୩।
ବୋଇଲ ଯେ ଶତ୍ରୁ ମାରି ପଞ୍ଚୁକଟକେ ହୁଅ ନରନାଥ
ମହତ୍ତ୍ଵଂକ ବଚନ କି ହୋଇବ ଅନ୍ୟକୃତ ।୧୪।
ଯେ ବଚନ ଶୁଣି ଆଗ୍ୟାଂ ଦିଲେ ଗଙ୍ଗାସୁତ
ନିକଣ୍ଟକେ ରାଜ୍ୟ ତୁମ୍ଭେ କର ଧର୍ମସୁତ ।୧୫।
ଶ୍ରୀକୃଷ୍ଣ ବଚନେ ତୋତେ କିଛି ଭୟେ ନାହିଂ
ଧୃତିରାଷ୍ଟ ପୁତ୍ରେ ଯେବେ ହୋଇଲେ ନିଧନହିଂ ।୧୬।
ରାଜ୍ୟକର ଯେବେ ବାବୁ ଧର୍ମ ପ୍ରତିପାଳି
ଅଧର୍ମ କ୍ଷଣହେଂ ନ ସହିବଟି ମହାଆଳୀ ।୧୭।
ପରଜା ପାଳିବୁ କେହି ନୋହିବେଟି ଦୁଖୀ
ପ୍ରଜାଂକ ରକ୍ଷଣେ ସିନା ରାଜା ହୋଯେ ସୁଖୀ ।୧୮।
ନ୍ୟାୟେ ପ୍ରଜାନ୍ତ ପାଳିଲେ ଇନ୍ଦ୍ରକରେ ବୃଷ୍ଟି
ରାଜ୍ୟ ପ୍ରତିପାଳିଲେ ପରଜାଂକୁ ପଡ଼ଇ ଅରିଷ୍ଟି ।୧୯।
ପ୍ରଜା ପ୍ରତିପାଳନଟି ରାଜାର ସର୍ବବିଧି
ପରଜା ଅତୁଟ ହୋଇଲେ ରାଜାକୁ ହୋଅଇ ସକଳ ସିଦ୍ଧି ।୨୦।
ରାଜ୍ୟ ଦଣ୍ଡ ବରଗିବୁ ଧାର୍ମିକ ଲୋକ ଦେଖି
ତେବେ ସେ ଜନ ପରଜା ହୋଇବେ ବଡ଼ ସୁଖୀ ।୨୧।
ଚାର ବରଗି ଦେଖିବୁ ବିଧି ଯେ ଅବିଧି
ଦଣ୍ଡ ଅବିଧି କଲେ ତୁ ପକାଇବୁଟି ଛେଦୀ ।୨୨।
ଅନୀତି ବ୍ୟାପାରେ ଦଣ୍ଡିଲେ ଯେ ନାହିଂ ଦୋଷ
ଦୋଷ ଜାଣିଣ ଶାସ୍ତି ଦେବୁ ତୁ ପଣ୍ଡୁଶିଷ ।୨୩।
କୋଡ଼ିଯେ ହାଥ ତୁହି କରିବୁ ନଳ କାଠି
ପଞ୍ଚବିଂଶ ନଳରେ ମାଣେକ ପ୍ରକଟି
ବିଂଶ ମାଣରେ ଯେ କରିବୁ ଯେକବାଟି ।୨୪।
ବାଟିକେ ଚିନାୟେ କରି ଘେନିଥିବୁ ସଞ୍ଜା
ଆମ୍ଭର ଆୟୁଷ ଘେନି ବ୍ରତିଥିବୁ ରାଜା ।୨୫।
ଠାବେ ଠାବେ ରାଜା ଯେ କରିବୁ କଳକୀର୍ତ୍ତି
ଇନ୍ଦ୍ର ବୃଷ୍ଟି ନ କଲେ କ୍ଷେତ ଯେହ୍ନେ ବ୍ରତୀ ।୨୬।
ଅଳପ ଦୋଷକୁ ବାବୁ ନ କରିବୁ ରୋଷ
ନିରେଖ ଜନଂକୁ ଦେବୁ ପ୍ରାସାଦ ଗୃହବାସ ।୨୭।
ବ୍ରାହ୍ମଣେ ଦାନ ଦେବୁ ନ କରି କପଟ
ଶିବଆଳେ ଗୋଦୋହନ କରିବୁ ଧର୍ମଚାଟ ।୨୮।
ନଦୀମାନଙ୍କରେ ଶଙ୍ଖ ଆବର ନାବ ଥିବ
ଶୀତକାଳେ ଦକ୍ଷିଣ ମେଲା ତୋଳାଇବ ।୨୯।
ଅନଳ ଦାନ ତହିଂ ଦେବ ଠାବେ ଠାବେ
ପଥଶ୍ରାନ୍ତ ଜନେ ଯେହ୍ନେ କ୍ଲେଶ ନ ପାଇବେ ।୩୦।
ଗ୍ରୀଷ୍ମକାଳେ ଦେବୁଟି ପାଣିପଣା ଦାନ
ଛତା ପାଣ୍ଡୋଇ ଶୀତଳ ସଞ୍ଜା ନାନା ବସ୍ତ୍ରମାନ ।୩୧।
ପଥଶ୍ରାନ୍ତ ଲୋକେ ଯେବେ ସୁସ୍ଥହିଂ ପାଇବେ
ନୃପତିମାନଙ୍କୁ ସେ କଲ୍ୟାଣ ବାଞ୍ଛିବେ ।୩୨।

ତାହାଂକର ସନ୍ତୋଷରେ ରାଜାର ଶୁଭକାର୍ଯ୍ୟ
ଯେହା ବିଚାରି କାର୍ଯ୍ୟ କରିବୁ ଧର୍ମରାଜ ।୩୩।
ପ୍ରଜା ମୁଖେ ଯେବେକେ ଉପୁଜଇ ସାଧୁ ଧ୍ୱନି
ଯମ ତାହାକୁ ଦଣ୍ଡି ନୁଆରଇ କାଳପାଶ ଘେନି ।୩୪।
ଭାଇନ୍ତ ପେଷିବୁଟି ରାଜ୍ୟ ପରିକଳି
ଡଗର ମୁଖୁଂ ବାରତା ଶୁଣି ମୁଂ ତିନିଓଳି ।୩୫।
ମଢ଼ଫୁଲି ନିଯୋଗ ବିଶ୍ୱାସ ଲୋକ ହାଥେ ଦେବୁ
ସେ ଲୋକକୁ ଅଧିକାର ନ ଦେବୁ ନ ଦଣ୍ଡିବୁ ।୩୬।
ଧନ ଚଉର୍ଯ୍ୟ ଦାରା ଅନ୍ୟାୟେ ଦଣ୍ଡତିନି
ଅପ୍ରାଧି ଜନେ କ୍ଷମା କରିବୁ ବୋଲନ୍ତି ଶାୟନ୍ତନୀ ।୩୭।
ପାଞ୍ଚ ବରଷ ଘୋଡ଼ା ପଞ୍ଚାଶ ବରଷର ରାଉତ
ପଚିଶ ବରଷର ପାଦାନ୍ତି ସତର ବରଷ ଗଜମତ୍ତ ।୩୮।
ସତର ବରଷର ଯେବେ ହୋଇଥିବ ଗଜ
ବଳିଷ୍ଠ ମାହୁନ୍ତ ତାକୁ କରୁଥିବ ସଜ ।୩୯।
ଅଶ୍ୱଗଜ ପାଦାନ୍ତି ନିରତେ ସାଜିଥିବୁ
ବେଳା ଅନୁସାରେ ଅବକାଶ ଯେ କରିବୁ ।୪୦।
କଟୁଆଳେ ଅନୁବ୍ରତେ ଦେଉଥିବ ତେଜ
ପରରାଷ୍ଟ୍ରେ ନିଅଳସ ହୋଇଥିବ ମହାରାଜ ।୪୧।
ପଣ୍ଡିତର ମୁଖୁଂ ଶୁଣୁଥିବୁ ପୁରାଣ ଯେ ପୋଥା
ସ୍ତିରୀଲିଙ୍ଗେ ବିଶ୍ୱାସ ନଯିବୁ ସର୍ବଥା ।୪୨।
ଅସୁର ଭୋଗ ତୀର୍ଥେ ନ ବୁଡ଼ାଇବ କାୟେ
ଭଣ୍ଡାରେ ନିପ୍ରୋହି ତୁ ହୋଇଥିବୁ ମହାରାୟେ ।୪୩।
ବଳବନ୍ତ ସାମନ୍ତଂକୁ ପ୍ରସାଦହିଂ ଦେବୁ
ଅନ୍ଧାରୀ ବିଜେକାଳେ କାହାକଁଂ ବିଶ୍ୱାସ ନ ଯିବୁ ।୪୪।
ପାରିଧିରେ ଯୋଗୀ ତୁହି ହୋଇଥିବୁ ରାଜା
ଦେବ ବିପ୍ରେ ନିତ୍ୟେହେଂ କରାଉଥିବୁ ପାଦପୂଜା ।୪୫।
ଧାର୍ମିକେ କରାଉଥିବୁ ବ୍ରତରାଜ ଯେକାଦଶୀ
ବିଦେଶୀ ଲୋକନ୍ତ କଟକେ ନ ଦେବୁଟି ପଶି ।୪୬।
ଯେ ଯାହା ଅନରୂପେ ବ୍ରତିବେ ସକଳ ବର୍ଗ
ବିଭା ସଂଦାରାୟେ ହୋଇଥିବୁଟି ପ୍ରସଙ୍ଗ ।୪୭।
ଯାଗ ଯଗ୍ୟଂ ପ୍ରସଙ୍ଗେ ଯେ ଦେଉଥିବୁ ଆହୁତି
ଦଣ୍ଡ ବିହିବୁ ଯେ ଉପଗତ ଶତ୍ରୁ ପ୍ରତି ।୪୮।
ଦୁଷ୍ଟ ଦାନବନ୍ତ ଯେ କରାଉଥିବୁ ନାଶ
ତହିଂକି ନୃପତିକି କିଛିହିଂ ନାହିଂ ଦୋଷ ।୪୯।
ଗୁରୁଜନମାନଂକୁ କରୁଥିବୁଟି କାରଣ
ପରଦାରା ପରଧନ ନ କରିବୁ ହରଣ ।୫୦।
ମନ୍ତ୍ରୀବର ଗୋଚରେ ସମର୍ପିଥିବୁ ରାଜ୍ୟ
ଅଧିକାରୀ ଲୋକନ୍ତ କରିଥିବୁ ତେଜ ।୫୧।
କୃଷିକାରୀ ଲୋକନ୍ତ ଯେ ନ ଦଣ୍ଡିବୁ ଧନ
ଅନେକ ବସାଇବୁ ଗୋଶାଳା ବ୍ରାହ୍ମଣ ଶାସନ ।୫୨।
ବର୍ଦ୍ଧିତ କରାଇବୁ ଗୋରସ ରସମାନ
ଗୋଚର ନିମନ୍ତେ ବାବୁ ଛାଡ଼ିଦେବୁ ବହୁସ୍ଥାନ ।୫୩।
ତୀର୍ଥସ୍ଥାନମାନଙ୍କେ ଅନ୍ନଛତ୍ର ଦେଉଥିବୁ ନୃପତି
ଅସହଣ ଭୂମିରେ ଥୋଇବୁ ସେନାପତି ।୫୪।
ଗଜ ଅଶ୍ୱ ନିମନ୍ତେ ଦେଉଥିବୁ ଧନ
ଗୋପାଳେ ବିଶୋଇବାକୁ ଥୋଇଥିବୁ ସ୍ଥାନ ।୫୫।
ଗୁଣ ଅନୁକ୍ରମେ କରୁଥିବୁ ପୂଜା
କବିକୃତ ଜନଂକୁ କୃପଣ ନୋହିବୁଟି ମହାରାଜା ।୫୬।
ଯେ ବିଧିରେ ଅନେକ କହିଲେ ଭୀଷ୍ମ ରାଜବିଧିମାନ
ଶ୍ରୀକୃଷ୍ଣ ଯୁଦ୍ଧେଷ୍ଟିଂକର ଚାହିଂଲେ ବଦନ ।୫୭।
ଭୀଷ୍ମେ ବୋଇଲେ ଭୋ କୃଷ୍ଣ ମୁଂ ତୋହୋରେ ଶରଣ
ଯେତେ କହି ଗାଙ୍ଗବେ ଛାଡ଼ିଲେ ନିଜ ପ୍ରାଣ ।୫୮।
ପୁଷ୍ପେକ ବିବାନେ ବସାଇ ନେଲେ ବିଷ୍ଣୁ ଗଣେ
ବଇକୁଣ୍ଠେ ପାଇଲେ ସେ କୃଷ୍ଣର ଦ୍ରଶନେ ।୫୯।
ଜୟତୁ ଜଗନ୍ନାଥ ଜଗତ ଚିନ୍ତାମଣି
ସର୍ବଭୂତେ ଜଗନ୍ନାଥ ସକଳ ଗୁଣମଣି ।୬୦।
ମହୀ ଭାରାଭର ନାଶ କରାଇଲୁ କୃତେ
ଜଗତ ବନ୍ଧୁ ନାଥ ପ୍ରସାଦ ପାଇବି ବଇକୁଣ୍ଠେ ।୬୧।
ନମାମି ଶ୍ରୀ ନାରାୟଣ ଶଙ୍ଖଚକ୍ର ଧାରଣ
ଜନ୍ମେ ଜନ୍ମେ ଅଭ୍ୟାସିଲି ଶ୍ରୀକୃଷ୍ଣ ଚରଣ ।୬୨।
ଯାବତ ଜୀବ ଅଛି ତାବତହିଂ ହରି
ଭଗତ ଜନ ଉଦ୍ଧାରଣ ନାଥ, ନାମ ନରହରି ।୬୩।
ସଦାଶିରୀ ଦେଇଣ ଯେ ନାମ ଶିରୀବତ୍ସ
ଶତ୍ରୁପଣେ ଯେ ଚିନ୍ତିଲା ସେ ହୋଇଲାକ ମୋକ୍ଷ ।୬୪।
ଯେତେ ଜନମାନେ ପଡ଼ିଲେ ଯେ ରଣଭୂମି
ଶତ୍ରୁ ମିତ୍ର ହୋଉ ବା ସମସ୍ତେ ସ୍ୱର୍ଗଗାମୀ ।୬୫।
ଆହେ ଚଇତନ ରୋଧିର ମାୟେଂସ କର୍ଦ୍ଦମ ଦ୍ୱାଦଶ ଯୋଜନ ଭୂମି
ବ୍ରାହ୍ମଣ ହୋଉ କି ଚାଣ୍ଡାଳ ହେଉ ମୃତୁପିଣ୍ଡେ ନ ବସିଲେ
କୃମି ।୬୬।

ତ୍ରଇଲୋକକୁ କାରେଣୀ ଶ୍ରୀକୃଷ୍ଣ ନାମଗୋଟି
ମମ ହୃଦେ ମାଳା ଗଣ୍ଡସ୍ଥଳେ ହେଉ କଣ୍ଠି ।୬୭।
ସଦା ଆଲିଙ୍ଗନ ନ କରଇ ଶତଶ୍ରିୟା
କମଳ ମାଳେକ ହୋଇ ବିଘଂସୁ ମୋର ହିୟା ।୬୮।
ପ୍ରାଣ ଅପାନ ବ୍ୟାନ ଉଦାନ ସମାନ ପଞ୍ଚଆତ୍ମା
କୃଷ୍ଣହୁଂ ଆନନ୍ଦନ ନ ଭାବୁଂ ମମ ଆତ୍ମା ।୬୯।
ପ୍ରହ୍ଲାଦ ବିଭୀଷେଣ ଅକ୍ରୁର ବଳି ଦକ୍ଷ
ଭଗତି ମନାଇ ବିଷ୍ଣୁଲୋକେ ବସିଲେ ପ୍ରତକ୍ଷ ।୭୦।
ରକ୍ଷ ଭକ୍ଷ ହେତି ପ୍ରହେତି ମାଳି ଯେ ସୁମାଳି
ହିରଣ ହିରଣାକ୍ଷ ମଧୁ କଇଟଭ ମହାବଳୀ ।୭୧।
ରାବଣ କୁମ୍ଭକର୍ଣ୍ଣ ଦନ୍ତବକ୍ର ଶିଶୁପାଳ
ଯେମାନେ ଶ୍ରୀକୃଷ୍ଣଂକୁ ମାରି ଲୋଡ଼ନ୍ତି ସର୍ବକାଳ ।୭୨।
ବିଷ୍ଣୁର କଥାମାନ ସମସ୍ତେ କରନ୍ତି ତେଜ୍ୟା
କରନ୍ତି ଝିଂଘାସନ୍ତି ହର୍ତି ଭାରିକା ।୭୩।
କୃଷ୍ଣଂକୁ ମାରିବେ ବୋଲି କରିଥାଆନ୍ତି ଲୟେ
ତେଣୁକରି ସମସ୍ତେ ହୋଇଲେ ବିଷ୍ଣୁ ମୟେ ।୭୪।
ଶ୍ରୀ ବାସୁଦେବଂକର ଚରଣ କମଳେ
ବଦୟନ୍ତି ସାରଳା ଦାସ ତୁଳସୀମାଳା ମମ ବକ୍ଷସ୍ଥଳେ ଲୁଲୋ।୭୫।

**

## ୧୦୮. ଯୁଧିଷ୍ଠିରଂକର ରାଜ୍ୟାଭିଷେକ

ଯେଥୁ ଅନନ୍ତରେ ଯେ ବଦୟନ୍ତି ଜନାର୍ଦ୍ଦନ
ଅଭିଷେକ ଯୋଗାଡ଼ ଯେବେ କରିବା ବିଧାନ ।୧।
ବିଦୁର ସହିତେଣ ଅଇଲେ ନିଜ ପୁରୀ
ଅଭିଷେକ ଆୟୋଜନ ନିମିଷେକେ ଯୋଗାଡ଼ କରି ।୨।
ମେଷମାସ ଶୁକ୍ଳପକ୍ଷ ତୃତୀୟା ଯେ ତିଥି
ରୋହିଣୀ ନକ୍ଷତ୍ର ଆଉ ବାର ବୃହସ୍ପତି ।୩।
ବ୍ୟାସଦେବଂକୁ ସ୍ମରଣ କଲେକ ଯୁଝେଷ୍ଠି
ଷାଠିସସ୍ର ଶିଷ୍ୟ ଘେନି ବିଜେ ତପୋନିଷ୍ଠି ।୪।
ଧର୍ମ ପ୍ରୋହିତଂକ ତୁଲେ ଲକ୍ଷେକ ବ୍ରାହ୍ମଣ
ବଶିଷ୍ଠ ମାରକଣ୍ଡ ତୁଲେ ଅଇଲେ ମୁନିଗଣ ।୫।
ସୁଦେବ ସହିତେ ଅଇଲେ ଅଶୀସସ୍ର ଶିଷି
ନବଲକ୍ଷ ବାଳଖିଳା ଘେନି ଅଇଲେ ଅଗସ୍ତି ମହାରଷି ।୬।
କୋଟିୟେକ ଯତି ଘେନିଣ ଅଇଲେ ଦୃଭାସା
ଲକ୍ଷେକ ଶିଷ୍ୟ ଘେନି ଅଇଲେ ପାରେଶ୍ୱର ପୁରୁଷା ।୭।
ଅହି ବ୍ରତେକ ଶିଷ୍ୟ ଘେନିଣ ଅଇଲେ ଉଦ୍ଦାଳକ
ଲକ୍ଷେକ ଶିଷ୍ୟ ଘେନିଣ ବିଜୟେ ବିଭାଣ୍ଡକ ।୮।
ନବ ସହସ୍ର ଶିଷ୍ୟ ଘେନି ବିଶ୍ୱାମିତ୍ର ଅଇଲେ
ସହସ୍ରେକ ଚେଲା ଘେନି ସୁମନ୍ତ ବିଜେକଲେ ।୯।
ଅହିବ୍ରତେକ ଶିଷ୍ୟ ଘେନି ବିଜେ ମାରକଣ୍ଡ ରଷି
ରଷ୍ୟଶୃଙ୍ଗ ତୁଲେ ବିଜେ ନବ ସହସ୍ର ବାଳଶିଷି ।୧୦।
ଲକ୍ଷେକ ଶିଷ୍ୟ ଘେନି ଅଷ୍ଟାବକ୍ର ତପୋବନ୍ତ
ପଞ୍ଚ ଅହିବ୍ରତ ତୁଲେ ବିଜେକଲେ ପଉଲସ୍ତ୍ୟ ।୧୧।
ନବ ସହସ୍ର ଶିଷ୍ୟ ଘେନି ବିଜୟେ ଲୋମଶ
ଅର୍ବୁଦେକ ଶିଷ୍ୟ ଘେନି କଣ୍ୱ ପରବେଶ ।୧୨।
ବେନିଲକ୍ଷ ଶିଷ୍ୟ ଘେନି ବିଜୟେ ଅଜପା
ଲକ୍ଷେକ ଶିଷ୍ୟ ଘେନି ବିଜୟେ ସତ୍ୟପା ।୧୩।
ଲକ୍ଷେକ ବ୍ରାହ୍ମଣ ଘେନି ଅତ୍ରି ମହାମୁନି
ଗର୍ଗ ପାଞ୍ଚ ଅହିବ୍ରତ ଶିଷ୍ୟ ତୁଲେ ଘେନି ।୧୪।
ସୁଦେବ ବାମଦେବ ରଷି ଯେ କଞ୍ଚଣ
ଯେହାଂକର ତୁଲେ ତିନିଲକ୍ଷ ଯେ ବ୍ରାହ୍ମଣ ।୧୫।
ଅରୁଣ ତେଜ ଯେ ଅନଙ୍ଗ ସଦାଶିବ
ପାଞ୍ଚଲକ୍ଷ ବ୍ରାହ୍ମଣ ଘେନି ବିଜେକଲେ ବାମଦେବ ।୧୬।
ଆହୋ ଚଇତନ ଯେତେ ରଷି ଥିଲେ ଆରଣ୍ୟକ କାଳେ
ସମସ୍ତେ ଅଇଲେ ଯେ ଯୁଝେଷ୍ଠି ପାଟ ଅଭିଷେକ କାଳେ ।୧୭।
କକ୍ଷା କଉପୁନୀ ହାଥେ ଦଣ୍ଡ କମଣ୍ଡଳ ଜପାମାଳୀ
ଭସ୍ମ ଲେପନ କେ ଗୋପୀ ବୃନ୍ଦାବନ ଚିତା ଯେ ଶାମଳି ।୧୮।
ତ୍ରିକଚ୍ଛ ବସନ ଶୋହେ କାଖେ ବେଦ ଯେ କରାଣ୍ଡି
ପୋଥି ଛତା ପବିତ୍ର ଉତ୍ତରୀ ହାଥେଣ କୁଶବିଡି ।୧୯।
ଦେବରଷି ରାଜରଷି ଆସିଣ ମିଳିଲେ
ଅଭିଷେକ ବିଧାନ ସମସ୍ତେହେଂ କଲେ
ପାଞ୍ଚେ ଅଭିଷେକ କରି ଯୁଝେଷ୍ଠିଂକି ବନ୍ଦାଇଲେ ।୨୦।
ଶଙ୍ଖ ଶବଦେ ଯେ କଲେ ନାନା ମଙ୍ଗଳ ଧ୍ୱନି
ଶ୍ରୀକୃଷ୍ଣ ଚରଣେ ଶରଣ ପଶଇ ସାରୋଳା ଦାସ ମୁନି ।୨୧।
ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି ମହାମୁନି
ଯୁଝେଷ୍ଠି ଅଭିଷେକ ପାପ ନାଶନ ଯେ ଧ୍ୱନି ।୨୨।
ବନ୍ଦାପନା ବିଧି ସାରି ଦେବ ଧର୍ମରାୟେ
ଦିବ୍ୟ ବେଶ ହୋଇଣ ଆସ୍ଥାନେ ବିଜେକୟେ ।୨୩।
ଗଳାୟେ ରୁଦ୍ରାକ୍ଷମାଳ ତୁଳସୀ କଣ୍ଠହାରା
କରେ କୁଶବଟୁ ତମ୍ୟପାତ୍ରୀ ଶୋହେ ଗୋପ୍ୟାନ ଦୋହୋରା ।୨୪।

ନିର୍ଧୂମ ଅଗ୍ନି ଜାଣି ବିରାଜଇ କାୟେ
କର ପ୍ରସାରି ବେଦ ଆଧ୍ୟାନ ଋଷି କୟେ ।୨୫।
କଣୟ ଉତ୍ତୁରୀ ଯେ କଣୟ ପଇତା
ଯୁଷ୍ଟେଷ୍ଟିଂକି ଆଭରଣେ କଲେକ ଭୂଷିତା ।୨୬।
ଋକ ଯଜୁ ସାମ ଅଥର୍ବ ବେଦ ଚାରି
ଅଜପା ଗାୟତ୍ରୀ ମହାମନ୍ତ୍ରେ କଲ୍ୟାଣ ଉଚ୍ଚାରି ।୨୭।
ଗହ ଗହ ଧ୍ୱନି ଶୁଣିଣ ଧୃତିରାଷ୍ଟ
ଆତ୍ମା ବଇକୁଲ୍ୟ ତା ଶରୀର ମହାକଷ୍ଟ ।୨୮।
ଭୋ ଦଇବ ପୁରୁଷ ଯେହା ତୁ ମୋତେ କଲୁ
ଚିତ୍ରପଟ ପ୍ରାୟେକ ଦେଖାଇ ହରି ନେଲୁ ।୨୯।
ଗାନ୍ଧାରୀ ବୋଇଲେ ସ୍ୱାମୀ ଶୁଣ ଧୃତିରାଷ୍ଟ
ଯେତେକାଳ ବ୍ରତିବା ଯେହିମତି କଷ୍ଟ ।୩୦।
ସାଗର ସଙ୍ଗମେ ପଶି ଝାସ ଦେବା ନିଜ ପ୍ରାଣ
ଅଭିଷେକ ସରିଲେ ଆମ୍ଭେ ଯାଇ ସିନା ପୁଣ ।୩୧।
ଯେହ୍ନେ ସେ ରାଜାଂକର ଅଭିଷେକ ବିଧାନ
ବିଦୁର ସମ୍ପାଦି ଅଛି ସକଳ ସଞ୍ଚାମାନ ।୩୨।
ଶ୍ୱେତହାତୀ ଶ୍ୱେତଅଶ୍ୱ ଶ୍ୱେତ ଚାମରନ୍ତ
ଶ୍ୱେତ ଛତ୍ର ଶ୍ୱେତ ଆଲଟ ଶ୍ୱେତ ବର୍ଣ୍ଣ ନେତ ।୩୩।
ଶ୍ୱେତ ବର୍ଣ୍ଣ ବସ୍ତ୍ର ଶ୍ୱେତ ବର୍ଣ୍ଣ ଯେ କଳସ
ଶ୍ୱେତ ଶ୍ରୀଫଳ ଶ୍ୱେତଗୁଆ ଅକ୍ଷତ ଯେ ପ୍ରକାଶ ।୩୪।
ଶ୍ୱେତଦୀପ ଲକ୍ଷେ ଗୁଆଘୃତେ ଭରି
ଶ୍ୱେତନେତ ବଳିତା ଶ୍ୱେତରୁଖା ଶତେକରି ।୩୫।
ଶ୍ୱେତ ସୁଗନ୍ଧ ଚନ୍ଦନ ଶ୍ୱେତପୁଷ୍ପ ସାରିଷେ
ଶ୍ୱେତଦୂର୍ବା ଶ୍ୱେତପୁଷ୍ପ ଲକ୍ଷେ ଲକ୍ଷେ ।୩୬।
ଶ୍ୱେତ ପାରୁଆ ଶ୍ୱେତଗୁଞ୍ଜ ଶ୍ୱେ· ବାୟସା ଶ୍ୱେତ ଶଙ୍ଖଚିଲ
ଶ୍ୱେତ ସଷ୍ଟିକର ସିଂଘାସନ କଣୟ ସମତୁଲ ।୩୭।
ଶ୍ୱେତମୃଗ ଶ୍ୱେତଗଣ୍ଡା ଶ୍ୱେତବର୍ଣ୍ଣ ଗାଈ
ଶ୍ୱେତବର୍ଣ୍ଣ ଶତେଲକ୍ଷ ଷଣ୍ଢ ସନ୍ନିଧ୍ୟେ ତୁଲାଇ ।୩୮।
ଶ୍ୱେତ ଛଞ୍ଚାଣ ଶ୍ୱେତପାରା ଶ୍ୱେତ ଶୁକସାରୀ
ଶ୍ୱେତବର୍ଣ୍ଣ କଦଳୀ ତରୁ ଦ୍ୱାରେଣ ରୋପିକରି ।୩୯।
ଶ୍ୱେତବର୍ଣ୍ଣ ସଉରଭ ପାତ୍ରରେ ଲକ୍ଷେକ ପ୍ରୋକ୍ଷଣୀ ସୁରା
ଅଶ୍ୱମେଧ ଗୁଆଘୃତେ ଆହୁତି ଲକ୍ଷେକ ଦୋହୋରା ।୪୦।
ବେଦମନ୍ତ୍ରେ ନିର୍ଜିତ ଯେ ପବିତ୍ର ବ୍ରାହ୍ମଣ
ଚାରିବେଦରୁ ଲକ୍ଷେ ଲକ୍ଷେକ ବ୍ରାହ୍ମଣ ବରଣ ।୪୧।
ପ୍ରାଣତ୍ୟାଜ ବଶ୍ୟାନର କାଳାନଳ ବହନି ପିଙ୍ଗଳ ଜ୍ୱାଳ
ଜାତ ଅନଳ ବଡ଼ବାନଳ କ୍ରୋଟ ଅନଳ ବନ ଅନଳ ।୪୨।
ଭୋଗ ଅନଳ ଯୋଗ ଅନଳ କ୍ରୋଧ ଅନଳ ବହତି
ବ୍ରହ୍ମଅଗ୍ନି ରୁଦ୍ରଅଗ୍ନି ଭାସ୍ୱର ତେଜକାନ୍ତି ।୪୩।
ଯେହାଂକର ମୂଳେ ଚଉବିଂଶ ଅନଳେ
ବିଜୟେ ଯୁଗାନ୍ତେକ ଯୁଷ୍ଟେଷ୍ଟିଂକ ଅଭିଷେକ କାଳେ ।୪୪।
ଆଚାର୍ଯ୍ୟ ବରଣ ମାରକଣ୍ଡେ ବ୍ରହ୍ମା ବରଣ ଶୁକେ
ସନକ ବିଶ୍ୱଦେବ ବିଭାଣ୍ଡକ କଉଶିକେ ।୪୫।
ଚାରିଦ୍ୱାରେ ବରଣ ଯେ ଚାରିଗୋଟି ଋଷି
ଅଜପା ମନ୍ତ୍ରେଣ ଜପନ୍ତି ପାଞ୍ଚଲକ୍ଷ ଶିଷି ବସି ।୪୬।
ଯାଗେଣ ଯାଗନିକ ପାରେଶ୍ୱର ସୁଦେବ ଅଗସ୍ତି
ବଶିଷ୍ଠ ପଉଲସ୍ତି ବିଶ୍ୱାମିତ୍ର ଭୃଗୁପତି ।୪୭।
ଶ୍ରୀରାମ ମୁଦ୍ରା ଯେ ଶାଳଗ୍ରାମ ଶୀଳା
ଲକ୍ଷ୍ମୀ ନାରାୟଣ ରୁଦ୍ର କୃଷ୍ଣ ଯେ ପିଙ୍ଗଳା ।୪୮।
ମୀନରୂପ କନକର ଲକ୍ଷେକ ପ୍ରତିମା
ଲକ୍ଷେ କୂର୍ମରୂପ ଲକ୍ଷେକ ବରେହ୍ନା ପ୍ରତିମା ।୪୯।
ଥମ୍ଭନ ନରସିଂଘ ଜାତ ନରସିଂଘ
ବିଦାରଣ ନରସିଂଘ ଜଟ ନରସିଂଘ ଯୋଗ ନରସିଂଘ ।୫୦।
ରୂପ ନରସିଂଘ କାମ୍ୟକ ନରସିଂଘ
ପ୍ରହରାଜ ନରସିଂଘ ଲକ୍ଷ୍ମୀ ନରସିଂଘ ।୫୧।
ଯୋଜକ ନରସିଂଘ ପଦ୍ମ ନରସିଂଘ
ଅବିଷେକ ନରସିଂଘ ଜପ ନରସିଂଘ ପ୍ରତିମା ଲକ୍ଷେ ନରସିଂଘ।୫୨।
ବାମନ ପ୍ରତିମା ଲକ୍ଷେକ ପ୍ରଶୁରାମ ପ୍ରତିମା ଲକ୍ଷେ
ଶ୍ରୀରାମ ପ୍ରତିମା ହଳଧର କଲ୍‌କୀ ପ୍ରତିମା ଅସଂଖ୍ୟେ ।୫୩।
ସଦାଶିବ ବାମଦେବ ପ୍ରତିମା ଲକ୍ଷେକ ବାଣ ଲିଙ୍ଗ
ତ୍ରିଶାଖା ବେଲପତ୍ରୀ ଲିଙ୍ଗ ଗୋଟିକେ ଲକ୍ଷେକ ସଂଯୋଗ ।୫୪।
ଯେକା ଲିଙ୍ଗକେ ଲକ୍ଷେ ଲକ୍ଷେ ଦୁହାଂଳ ଯେ ଗାଈ
ଦଶ ଅବତାରେ ତୁଳସୀମାଳ ଲକ୍ଷେକ ଆଭରଣ କରାଇ ।୫୫।
ସହସ୍ରେକ ଭୁଜ ହୋୟେ ଲକ୍ଷେକ ଦୁର୍ଗା ଯେ ପ୍ରତିମା
ଚତୁର୍ମୁଖ ହୋଇ ଲକ୍ଷେକ ବ୍ରହ୍ମା ଯେ ଉତ୍ତମା ।୫୬।
ଲକ୍ଷେକ ପ୍ରତିମା ସର୍ବ ମଙ୍ଗଳା ଯେ ପିତୁଳି
ଲକ୍ଷେକ ପ୍ରତିମା ଲକ୍ଷ୍ମୀ ଅବତାର ଧବଳୀ ।୫୭।
ବାର ଆଦିତ୍ୟ ଷୋଳ ଚନ୍ଦ୍ରମା ପବନ ଅଣଚାଷ
ନବ ଗ୍ରହଂକ ମୂଳେ ଯେ ଦିଗପାଳ ଦଶ ।୫୮।
ଶଂଖ ଶ୍ୱେତ ପଦ୍ମ ମହାପଦ୍ମ କର୍କୋଟକ ତକ୍ଷକ କୁଳିକ ମୂଳେ ଅନନ୍ତ
ଅଷ୍ଟ ରତ୍ନରେ ନିର୍ବାଣ ଯେ ଅଷ୍ଟକୁଳା ନାଗାନ୍ତ ।୫୯।
ଲକ୍ଷେକ ପ୍ରତିମା କଲେ ଗ୍ରାମ ଯେ ଦେବତୀ
ଯମ କାଳ ବିକାଳ ଚିତ୍ର ଯେ ଗୁପତି ।୬୦।

ସୁବର୍ଣ୍ଣର ଶିର ନଖ ମୁଖ ଚାରି ଚରଣ କରି
ଲକ୍ଷେକ ଆସନ କୃଷ୍ଣାଜିନ ଯେ ଛଉଂରୀ ପାତି ।୬୧।
ତାହାଣ ବ୍ରତେକ ଶଂଖ ଲକ୍ଷେକ ସୁବର୍ଣ୍ଣ ବନ୍ଧା ପୁରି
ଯେକମୁଖୀ ରୁଦ୍ରାକ୍ଷ ଲକ୍ଷେକ ମାଳ କରି ।୬୨।
ଲକ୍ଷେକ ଘର ଯେ ସୁବର୍ଣ୍ଣର ଛାୟେଣୀ
ସୁବର୍ଣ୍ଣର କଳସ ନେତ ପାତାଙ୍ଗ ନିରିବାଣି ।୬୩।
ବହୁବିଧ ତାଣ୍ଡବ ମଧୁର ସଙ୍ଗୀତା
ଦ୍ୱାରେଣ ଗୀତ ଗାବନ୍ତି ଲକ୍ଷେକ ବନିତା ।୬୪।
ମୃଦଙ୍ଗ ତାଳ କଂସାଳ ମହୁରୀ ବ୍ରହ୍ମବେଣୀ
ସରଗୁଣା ଅଧାଟି ମର୍ଦ୍ଦଳ ଗଣପତି ବୀଣାଯନ୍ତ୍ର ସଙ୍ଗୀତ
ଗାୟେଣୀ ।୬୫।
ଗ୍ରହଯୋଗେ ମଙ୍ଗଳ କରନ୍ତି ଗ୍ରହପୁତ୍ରେ
ଶୁଭ ଅନକୂଳ ଧଇଲେ ମାହାନ୍ଦ୍ର ଯୋଗ ଯେତେ ।୬୬।
କୋଟିୟେ ତୀର୍ଥ ଘେନି କ୍ଷେତ୍ରାଧି ପୁଷ୍କର
ତୀର୍ଥପତିମାନେ ସମସ୍ତ ସଙ୍ଗତର ।୬୭।
ସିଂଘାସନ ପରେ କଣୟ ଆସନ
ତହିଂର ଉପରେ ନେତର ବସନ ଯେ ମାନ ।୬୮।
ତହିଂର ମାହାନ୍ଦ୍ର ଯୋଗର କମଳି
ଶାଳଗ୍ରାମ ଶିଳା ଲକ୍ଷେ ଅଷ୍ଟରତ୍ନ ତହିଂ ତୋଳି ।୬୯।
କୋଟିୟେ ରତ୍ନ ଶରୀରେ ଆଭରଣ କରି
ତହିଂର ଉପରେ କୃଷ୍ଣାଜିନ ମୃଗର ଛଉଂରୀ ।୭୦।
ସେ ଶାଳଗ୍ରାମମାନଂକୁ କରିଣ କୋଟିୟେ ପୂଜା
ଦେବାଧି ଦେବୀମାନଂକୁ ଅନେକ ବଳିଭୋଜା ।୭୧।
ଅନେକ ଗୋ ଦୋହନ ଶିବଆଳେ କରି
କୋଟିୟେ ମାଣିକ୍ୟ ମୁକୁଟ ଶିରେ ଧର୍ମରାୟେ ଭରି ।୭୨।
ସୁବର୍ଣ୍ଣର ଉଖୁରୀ ପବିତ୍ରା ଘେନିଣ ପରମ ଯୋଗୀ
ଯୁଝେଷ୍ଠି ଦେବଂକୁ ନେଇ ବ୍ୟାସେ କରାଇ ଲାଗି ।୭୩।
ଶ୍ରୀଭୁଜେ ଦିଲେ ନେଇ ବଇଜୟନ୍ତୀ ମାଳା
ଶ୍ରୀକୃଷ୍ଣେ ଆଭରଣେ କଲେ ନେଇ ଯୁଝେଷ୍ଠିଂକ ଗଳା ।୭୪।
ଅମୃତ ଯୋଗାଡ଼ ଘେନି ମାହାନ୍ଦ୍ର ଅନକୂଳେ
ରାଜକର୍ମ ଧର୍ମ ସମସ୍ତ ମଙ୍ଗଳ ଯେତେବେଳେ ।୭୫।
କୋଟିୟେ ତୀର୍ଥ ଘେନି କ୍ଷେତ୍ରାଧି ପୁଷ୍କର
ବିଜୟେ ପାଞ୍ଚାଳୀ ଯାଇଂ ଯୁଝେଷ୍ଠିଦେବଂକ କୋଳର ।୭୬।
ଡାହାଣେ ବିଜୟେ ବ୍ରିକୋଦର ବାମେଣ ଫାଲଗୁନି
ପଛେଣ ନକୁଳ ଯେ କଣୟ ଦଣ୍ଡ ଘେନି ।୭୭।
ଆଗେଣ ଉଭା ସହଦେବ କାଖେ ମହାମନ୍ତ୍ର ପୋଥି
ରତ୍ନ ଆଭରଣ କଲେ ଆଣି ଶ୍ରୀକୃଷ୍ଣ ପଞ୍ଚମୁର୍ତ୍ତି ।୭୮।
ଲକ୍ଷେକ ଧବଳଛତ୍ର ଉଡ଼ନ୍ତି ଅଗ୍ରତେ
ନେତର ଆଲମ୍ୱ ଫରହର ଉଡ଼ଇ ଅହିବ୍ରତେ ।୭୯।
ଯେକଲକ୍ଷୀ ତ୍ରୟେଲକ୍ଷୀ ଆବର ପଞ୍ଚଲକ୍ଷୀ
ଯେମାନ ଲକ୍ଷେ ଲକ୍ଷେ ମୟୂର ଝାଲି ପକ୍ଷୀ ।୮୦।
ଉଦାଳେକ ପକ୍ଷୀ ଲକ୍ଷେକ ଉଡ଼ାଇ
ଯେମନ୍ତେ ଅଭିଷେକ ବିଧାନ କରାଇ ।୮୧।
ମଙ୍ଗଳ ହୁଳହୁଳି ଦିଅନ୍ତି ଗଣିକା
ଆଗେ ଲକ୍ଷେ ନାଚନ୍ତି ବିଦ୍ୟାଧରୀ ନାୟିକା ।୮୨।
ଦିବ୍ୟ ଅବତାର ଯେ କରନ୍ତି ଗୋବିନ୍ଦ
ଅଇରାବ୍ରତ ଆରୋହୀ କଣୟ ବୃଷ୍ଟି ତହିଂ କରଇ ଦେବଇନ୍ଦ୍ର।୮୩।
ମୁକୁତା କଳସରେ କୋଟିୟେ ତୀର୍ଥ ପାଣି
ଯୁଝେଷ୍ଠିଂକ ଶିରେ ପୁଷ୍କର ଅଭିଷେକ କଲା ଆଣି ।୮୪।
ଅମୃତ ବୃଷ୍ଟି କରନ୍ତି ତହିଂ ଯେ ମେଘମାଳା
ଡାକନ୍ତି ଚଣ୍ଡପୁତ୍ରେ ଶୁଭଲଗ୍ନ ବେଳା ।୮୫।
ଶୁଣ ହୋ ରାଜନ କୋଟିୟେ ତୀର୍ଥେ ଜଳ ଘେନି ସମସ୍ତ ମହରଷି
ପାଦାଅର୍ଘ୍ୟ ଦେଇ ପୂଜା କରନ୍ତି ସର୍ବେ ଆସି ।୮୬।
ଶତେପଳ ପଞ୍ଚାମୃତେ ହୃଦେ ପାଦପୂଜା
ରାଜ ଅଭିଷେକେ ବସିଲେ ଧର୍ମରାଜା ।୮୭।
ବାଜନ୍ତି ବୀରତୂର ଟମକ ନିଶାଣ ଦାଉଣ୍ଡି
ବୀର ମର୍ଦ୍ଦଳ ବିକିଘୋଷ ଘଣ୍ଟନାଦେ କମ୍ପଇ ମହୀଖଣ୍ଡି ।୮୮।
ଯେସନେକ ବିଧାନେ ଅଭିଷେକ ସାରି
ପାଟହାଥୀ ଉପରେ ଧର୍ମରାଜା ବିଜେକରି ।୮୯।
ଅଶ୍ୱନ୍ତ ଆରୋହିଣ ପାଣ୍ଡବ ଚାରିଭାଇ
ଖଗବର ବାହାନେ ବିଜେ ନାରାୟଣ ସାଇଂ ।୯୦।
ଜୟତୁ ଜୟ ପରମାନନ୍ଦ ବାସୁଦେବ
ଖଣ୍ଡଣ ମଣ୍ଡଣ ନାଥ କରନ୍ତା ଦେବ ସର୍ବ ।୯୧।
ମାନଗୋବିନ୍ଦ ଚାପି ପାଣ୍ଡବନ୍ତ ଥାପି
ଜଗତ ଜନ ବାନ୍ଧବ ନାଥ ଅଟୁ ବିଶ୍ୱରୂପୀ ।୯୨।
ଧର୍ମ ନନ୍ଦନଂକର ଅଭିଷେକ କାଳେ
ବିନୟ ଭାବ ଇଚ୍ଛିଲି ତୁମ୍ଭର ପାଦତଳେ ।୯୩।
ନୁହଇ ପଣ୍ଡିତ ମୁଂ ନ ଜାଣଇ ଶାସ୍ତ୍ରବିଧି
ନିରଞ୍ଜନ ବୋଧନରେ କିସ ମୋର ବୁଦ୍ଧି ।୯୪।

ଯାହା ସେ ଆଗ୍ୟାଂଦିଲେ କୃପାଜଳ ନନ୍ଦିନୀ
ତାହା ମୁଂ ବଖାଣିଲି ହୃଦେଣ ସତ୍ ଘେନି ।୯୯୫
ଜନ୍ମେ ଜନ୍ମେ ଭଗତି ମୁଂ ଝଂଖେର ପୁର ବାସୀ
ଶ୍ରୀକୃଷ୍ଣ ବଚନେ ସାରୋଳା ଦାସ ଶଯଳ ଜନ ତୋଷି ।୯୯୬
ଯେଥୁ ଅନନ୍ତରେ ବଇବସୁତ ମନୁ ଯେ ପ୍ରକାଶି
କୋଟିଯେ ବଂଶ ଘେନି ତରିଲି ହୋ ଅଗସ୍ତି ମହରଷି
ଯେଥୁଂ ଉଭାରେ କିସ କଲେ ଧର୍ମଶିଷି ।୯୯୭
ଅଗସ୍ତି ବୋଇଲେ ଯୁଝେଷ୍ଟି ପ୍ରତକ୍ଷେ ନିରଞ୍ଜନ
ଯାହାର ପୟରେ ଆରାଧନା କରନ୍ତି ଜନାର୍ଦ୍ଦନ ।୯୯୮
ତାହାର ଅଭିଷେକ ଯେ ଶୁଣନ୍ତି ଶ୍ରବଣେ
ପାବନ୍ତି ବଇକୁଣ୍ଠ ନ ଦଣ୍ଡନ୍ତି ଯମଗଣେ ।୯୯୯
ଯେକଲଯେ କରି ଶ୍ରବଣେ ଶୁଣନ୍ତି ଗାବନ୍ତି ଯେତେ ଲୋକ
ଜରାବ୍ୟାଧି ନାହିଂ ଅଙ୍ଗେ ନ ବସିବାକ ଶୋକ ।୧୦୦୦
ଆଷ୍ୟ ଧନଧାନ୍ୟ ପୁତ୍ର ଯେ ଯାହା ମନେ ଇଚ୍ଛି
ଅବଶ୍ୟ ପ୍ରାପତ ହୁଯେ ମନେ ଯାହା ବାଞ୍ଛି ।୧୦୦୧
ଗୋ କୋଟି ଦାନ ଦିଲେ କୋଟିଯେ ତୀର୍ଥ କଲେ
ପର୍ବତ ସରି କଣୟମାନ ଦାନ ଦିଲେ ।୧୦୦୨
ଅନ୍ନ ବସ୍ତ୍ର ଜଳଭୂମି ଦାନ କରିବ ବିପୁଳ
କେହି ତୁଲ୍ୟ ନୁହନ୍ତି ଭାରଥ ଶ୍ରବଣ ପୁଣ୍ୟଫଳ ।୧୦୦୩
ହେ ବୁଧଜନେ ଶ୍ରୀକୃଷ୍ଣେ ଭଗତି ବଇକୁଣ୍ଠେ ଯାହାର ଇଚ୍ଛା
ଧର୍ମରାଜା ଅବିଷେକ ଶୁଣି କରନ୍ତି ଯେ ଯାହା ମନେବାଞ୍ଛା।୧୦୦୪
ଧର୍ମ ଅର୍ଥ କାମମୋକ୍ଷ ପ୍ରାପତ ହୋଇବ ଚତୁର୍ବର୍ଗ
ଯାହା ଶୁଣନ୍ତେ ପାଇ ଅକ୍ଷଯେ ମହାସର୍ଗେ ।୧୦୦୫
ଶରୀରେ ନ ପୀଡ଼ଇ କାଳ କାମ ନିଦ୍ରା
କ୍ଷେତ୍ର ଧର୍ମଅର୍ଥ ପ୍ରାପତ ସର୍ବସିଦ୍ଧା ।୧୦୦୬
ଧର୍ମରାଜା ଅଭିଷେକ ବିଧାନ ଶୁଣନ୍ତେ
ବସିବ ବିଷ୍ଣୁ ଭଗତଂକ ସହ ଇନ୍ଦର ସଂଗତେ ।୧୦୦୭
ସୁଜନେ ଶ୍ରୀରାମ ନାମ ହୃଦପଦ୍ମେ ଧର
ବଦ୍ଦୟନ୍ତି ସାରୋଳା ଦାସ ହରିଧ୍ୱନି କର ।୧୦୦୮
ବଇବସୁତ ମନୁଯେ ପୁଚ୍ଛାକଲେ ଅଗସ୍ତି
ଯେତେ ଅବିଷେକ କାଳେ ନାହିଂ ହାଥୀ ଯେ ପାଦାନ୍ତି ।୧୦୦୯
ଅଗସ୍ତି ବୋଇଲେ ଶ୍ରୀକୃଷ୍ଣଂକର ଲକ୍ଷେ ଷାଠିଯେ ସହସ୍ର
ଅଣିଯେ ନନ୍ଦନ
ଯେମାନେ ଆରୋହିଛନ୍ତି ଯେ ଯାହାର ଯାନ ଯେ ବାହାନା ୧୧୦
ଦିବ୍ୟ ଅବତାର ନାନା ଶହସ୍ରନ୍ତ ଘେନି
ବିହଡ଼ନ୍ତି ବୀରେ ନାନାରଙ୍ଗେ ଆଗପଛେ ସାତବଂଶ ସଇନି ।୧୧୧

ଯଦୁ ବଂଶ ବୀରମାନେ ଦିଶନ୍ତି କାମଦେବ ପ୍ରାୟେ
ଆଉ ସମସ୍ତେ ଦିଶୁଛନ୍ତି ଯେ ବୃନ୍ଦାରକ ପ୍ରାୟେ ।୧୧୨
ବିଦ୍ୟାଧର ତୁଲେ ଯେହ୍ନେ ବିଜୟେ ଅସ୍କନ୍ଦ
ତେସନ ସାରିଷେ ଦିଶନ୍ତି ଯୁଝେଷ୍ଟି ନରଇନ୍ଦ୍ର ।୧୧୩
ଦେବରଷି ରାଜରଷି ବ୍ରହ୍ମରଷି ଶ୍ରୀକୃଷ୍ଣ ସହିତେ
ଭ୍ରମନ୍ତି ଲୀଳାୟେ ସେ ପଞ୍ଚ ଯେ ପ୍ରଶସ୍ତେ ।୧୧୪
ଆଲଟ ଚାମର ଧରି କୃଷ୍ଣର ସୁତମାନେ
ଉଭାରନ୍ତି ଘୋଟିଣ ଯୋଜନେ ଯୋଜନେ ।୧୧୫
ମହା ସମ୍ଭର୍ବେଶ ଯେ ପଞ୍ଚୁରାଜ୍ୟେ ଫେରି
ଦ୍ରଶନ କଲେ ଆସି ଧୃତରାଷ୍ଟ ଗାନ୍ଧାରୀ ।୧୧୬
ଅନେକ ଆନନ୍ଦ ଯେ ହୋଇଲେ ଅନ୍ଧରାୟେ
ଯେହି ରୂପେ ସ୍ୱର୍ଗ ପ୍ରାପତ ତୋତେ ହୋୟେ ।୧୧୭
ସାନନ୍ଦ ଯୁଝେଷ୍ଟି ଧୃତିରାଷ୍ଟ ବାକ୍ୟ ଶୁଣି
ଶ୍ରୀକୃଷ୍ଣ ସାନନ୍ଦେ କଲେ ପାଞ୍ଚଜନ୍ୟ ଶଂଖଧ୍ୱନି ।୧୧୮
କଲ୍ୟାଣ ବାଞ୍ଛିଲେ ଯେ ସକଳ ମହରଷି
ଯେ ଯାହାର ଆଶ୍ରମେ ପ୍ରବେଶ ହେଲେ ଆସି ।୧୧୯
ରାଜ୍ୟେ ଯେକଛତ୍ର ହୋଇଲେ ଯୁଝେଷ୍ଟି
ଶ୍ରୀକୃଷ୍ଣ ନାଥଂକ ମନ ହୋଇଲା ମହାତୁଷ୍ଟି ।୧୨୦
କଥୟନ୍ତି ଶ୍ରୀକୃଷ୍ଣ ଯେ ଯୁଝେଷ୍ଟିଙ୍କ ଆଗେ
ଦ୍ୱାରିକା ଭୁବନକଇଂ ଯିବୁଂ ଆମ୍ଭେ ବେଗେ ।୧୨୧
ଧର୍ମେଣ ରାଜ୍ୟ ତୁମ୍ଭେ ପ୍ରତିପାଳି ଥିବ
ପ୍ରଜାଂକୁ ସୁଖୀ କରାଇ ରାଜ୍ୟଭୋଗ ଭୁଞ୍ଜିବ ।୧୨୨
ଯେତେକ ତିଆରି ପୁତ୍ରନ୍ତ ଘେନିଣ ମଧୁହାରୀ
ଯେଉଂ ଦେବ ତ୍ରଇଲୋକ୍ୟେ ଅଟନ୍ତି ମନୋହାରୀ ।୧୨୩
ଯୁଝେଷ୍ଟିଂକି ତିଆରିଣ ଶ୍ରୀକୃଷ୍ଣ ଗଲେ ବେଗେ
ଦ୍ୱାରିକାରେ ପ୍ରବେଶ ହୋଇଲେ ଶ୍ରୀରଙ୍ଗେ ।୧୨୪
ବଳରାମଂକ ଛାମୁରେ କହିଲେ ସର୍ବ କଥା
କୁରୁ ପାଣ୍ଡବ ଯୁଦ୍ଧର ଯେବଣ ବ୍ୟବସ୍ଥା ।୧୨୫
ଯେସନେକ ବୃତ୍ତାନ୍ତ ଯହୁଂ ସଞ୍ଚପି ସକଳ କହିଲେ
ଶୁଣି ବଳଦେବ ମନେ ତ୍ରିପୁତି ହୋଇଲେ ।୧୨୬
ଶ୍ରୀଭଗବାନଂକର ଦାସର ମୁଂ ଦାସ
ବଦ୍ଦୟନ୍ତି ଶୁଦ୍ରମୁନି କବି ସାରୋଳ ଦାସ ।୧୨୭
ଶ୍ରୀ ମହାଭାରଥ କଥା ଅମୃତ ରସବାଣୀ
କର୍ଣ୍ଣରେ ପିବନ୍ତେ ନରେ ଅମୃତପାନ ଜାଣି ।୧୨୮



## ଆଶ୍ରମିକ ପର୍ବ

### ୧୦୯. କୁନ୍ତୀ, ଗାନ୍ଧାରୀ ସହ ଧୃତରାଷ୍ଟ୍ର, ସଞ୍ଜୟ ଓ ବିଦୁରଙ୍କର ବାନପ୍ରସ୍ଥାଶ୍ରମେ ଗମନ ଓ ତୀର୍ଥଯାତ୍ରା ବର୍ଣ୍ଣନା :

ଅଗସ୍ତିଂକି ପୁଚ୍ଛାକଲେ ବଇବସୁତ ମନୁ
ଧୃତିରାଷ୍ଟ ଗାନ୍ଧାରୀ ମିଳିଲେ କେବଣ ବନୁଂ ।୧
କଥଯନ୍ତି ମୁନି ପଣ୍ଡିତ ବାଳଖିଳା
ଶୁଣ ମହାରାଜା ଧାର୍ମିକ ମତିଭୋଳା ।୨
କାର୍ତ୍ତିକ ମାସ ଶୁକଳ ପକ୍ଷ ଗୁରୁବାର
କୃତ୍ତିକା ଅନ୍ତେ ରୋହିଣୀ ଭୋଗ ଦଣ୍ଡ ତେର ।୩
ବାଳବ ନାମେ କରଣ ଶିବ ନାମେ ଯୋଗ
ତିରିଶ ଦିନ ଯେ ତୁଳା ସଂକ୍ରାନ୍ତିକି ଭୋଗ ।୪
ବେଳ ଚାରିଦଣ୍ଡ ଯାଯେ ବୃହସ୍ପତି ବେଳା
ବାନପ୍ରସ୍ଥକୁ ଗମିଲା ଅମ୍ବିକାର ବଳା ।୫
ଶୁଣ ହୋ ରାଜନ ଅନ୍ଧ ଅନ୍ଧୁଣୀ ଯେ ନ ଚିହ୍ନନ୍ତି କିଛି
ଯେବଣ ବୃକ୍ଷ ଶରୀରେ ଲାଗଇ ତାହାର ପତ୍ର ଭକ୍ଷି ।୬
ଆହୋ ଚଇତନ ଯେବଣ ଫଳ ଲାଗି ତିହିଂ ଫଳ ଭୋଗୀ
ଦାରକ୍ଷ ଫଳ ଭୋଗୀହୋଇ କୋଚିଲା ଫଳଟି ନ ଲାଗି ।୭
ଆପଣେ ଯାହା ଅରଜି ଭୁଞ୍ଜିବ ଅବଶ୍ୟ
କଲା କୃତ୍ୟ ଭୁଞ୍ଜିସିନା ଆନର କିସ ଦୋଷ ।୮
ଧୃତିରାଷ୍ଟର ଗ୍ୟାଂନୁ କରି ଯୁଝେଷ୍ଟି ଯାନ୍ତି ବନ
ଅନ୍ତକାଳକୁ ନ ଗଲଟି ଯେ ଯାହା ଅର୍ଜନ ।୯
ତପସ୍ୱୀ ଶରୀର ଧରିଣ ରାଜ୍ୟରୁ ବାହାର ହୋଇଲେ
ତମସା ନଦୀ ଉତ୍ତର କୂଳେ କୂଳେ ଗଲେ
ଅନେକ ଦେଶ ଗିରି କନ୍ଦରେ ବୁଲିଲେ ।୧୦
କନ୍ଦମୂଳ କୋମଳ ପତ୍ର ଭକ୍ଷି ନିଅନ୍ତି ଯେ ଦିନ
ଦିବସେ ପବନ କରନ୍ତି ରାତ୍ରେ କୋମଳ ପତ୍ରେ କରନ୍ତି ଶଯନ।୧୧
ଯେମନ୍ତେ ପାଞ୍ଚମାସ ପାଞ୍ଚ ଦିବସ ଗଲେ ଚାଲି
ପ୍ରବେଶ ହୋଇଲେ ଯାଇଂ ଗୟାତୀର୍ଥ ବୋଲି ।୧୨
ବହଇ ଶୋଣଭଦ୍ରା ପାତାଳ ବାହିନୀ
ତହିଂ ସ୍ନାହାନ ସାରି ଫଲ୍ଗୁକୀ ବିଜଯେ ଘେନି ।୧୩
ବ୍ରହ୍ମାର ନନ୍ଦିନୀ ଫଲ୍ଗୁକା ତହିଂ ସାକ୍ଷୀ
ବନ୍ଧୁ ସହୋଦ୍ର କୁଟୁମ୍ବ ଯାଇ ତହିଂ ଦେଖି ।୧୪
ସେ ତୀର୍ଥର ଦେବତାଂକୁ କଲେ ଦରଶନ
ବ୍ରାହ୍ମଣଂକ ହାଥରେ ଥୋକାଯେ ଦିଲେ ଦାନ ।୧୫
ଯେ ମହାତୀର୍ଥେ ଯେ ରାମଘାଟ କୁଣ୍ଡ
ସୋମଗୋତ୍ର ନିମନ୍ତେ ଦିଲେକ ବାଲିପିଣ୍ଡ ।୧୬
ଭୀଷ୍ମ ଭୂରିସର୍ବା ବାଲହୀଂକ ସୋମଦତ୍ତେ
ଶଲ୍ୟ କର୍ଣ୍ଣ ଶକୁନି ମମ ଶତପୁତ୍ର ସହିତେ ।୧୭
ବିରାଟ ଦ୍ରୋପଦ ଅଭିମନ୍ୟୁ କୋନ୍ତଭୋଜ
ଯେମାନଂକ ମୂଳେ ଯେତେ ସୋଦର ବନ୍ଧୁ ଯେ ଆତ୍ମଜ ।୧୮
ଉଭୟ ବଳେ ପଡ଼ିଲେ ଯେତେକ ସଇନି
ସବୁନ୍ତି ହିଂ ଧୃତିରାଷ୍ଟ ଦିଲେ ବାଲିପିଣ୍ଡ ଘେନି ।୧୯
ଧୃତିରାଷ୍ଟ ଦିଅନ୍ତେଣ ପାତିଲେ କରସ୍ଥଳ
ବାଲିପିଣ୍ଡ ଭକ୍ଷି ମୋକ୍ଷ ହୋଇଲେ ସକଳ ।୨୦
ଗୟାରେ ଶ୍ରାଦ୍ଧକଲେ ଉପର ବଂଶେ ଯେତେ ଲୋକ
ସମସ୍ତେ ମୋକ୍ଷଗତି ପାଇ ମୁକତି ହୋଇଲେକ ।୨୧
କଲେ ପିତୃକାର୍ଯ୍ୟ ତହିଂ ବିଦୁର ସଞ୍ଜୟେ
ଗାନ୍ଧାରୀ ସହିତେ ଶ୍ରାଦ୍ଧ କରନ୍ତି କୋଇନ୍ତାଯେ ।୨୨
ସତ୍ୟବାକ୍ୟ ଉଚ୍ଚାରି ଗଦାଧର ପରସନେ
ତିନିଦିନ ରହିଲେ ପୂରକ ତୀର୍ଥସ୍ଥାନେ ।୨୩
ବିଛା ଧନୁ ବେନିମାସ ପୁଣ ତହିଂ ଯାନ୍ତେ
ପ୍ରାଗତୀର୍ଥେ ପ୍ରବେଶ ହୋଇଲେ ଗମନ୍ତେ ।୨୪
ଗଙ୍ଗା ଯମୁନା ସରସ୍ୱତୀ ବହଇ ତିନିଧାର
ସ୍ନାହାନ କଲେ ଯାଇଂ ସେ ସଙ୍ଗମ ତୀର୍ଥର ।୨୫
ତହିଂରେ ଯଥାବିଧି ପିଣ୍ଡଦାନ ଦିଲେ
ମାଧବ ଦ୍ରଶନେ ମକର ମାସକ ବଞ୍ଚିଲେ ।୨୬
କଳପି ରାଜାଯେ ତହିଂ ବୋଇଲାକ ଆସି
ଆହୋ ଧୃତିରାଷ୍ଟ ରାଜା ତୁ ଅଟ ପୁଣ୍ୟରାଶି ।୨୭
ଯେ କାଯା ମୃତ୍ତିପିଣ୍ଡ ସେ ଅଟଇ ନକର ଯେହା ଇଚ୍ଛା
ତୀର୍ଥ ସେବା ଯେବେ ତୁମ୍ଭେ କର ମନବାଞ୍ଛା ।୨୮
ପୂର୍ବେ ବଇବସୁତ ମନୁ ରାଜାଯେ ହୋଇଥିଲା
ରାଜଭୋଗ ଛାଡ଼ିଣ ତୀର୍ଥସେବା କଲା ।୨୯
ଭାରଥ ଭାଗୀରଥୀ ପୁରରବା ଯାତି ନୃପତି
ତୀର୍ଥସେବା କରିଣ ଆସି ସମସ୍ତେ ହୋଇଲେ ତ୍ରିପୁତି ।୩୦

ରାଜଭୋଗ କଲେ ନାନା ପାତକ ଆପଦ ଅଛଇ
ଅଇଶ୍ବର୍ଯ୍ୟପଣେ ବାବୁ ଧର୍ମ ନ ଗଛଇ ।୩୧
ତୀର୍ଥଯାତ୍ରା ବିନା ସେ ପାପକୁ ଆନ ଧର୍ମ ନାହିଁ
ତୀର୍ଥଦ୍ରଶନେ କୃତାର୍ଥ କର ନିଜ ଦେହୀ ।୩୨
ତହୁଁ ଧୃତିରାଷ୍ଟ ଯେ ଆନ ବନେ ଗଲେ
ନାରଦ ମୁନିଂକି ନାରଦ ପର୍ବତେ ଦେଖିଲେ ।୩୩
ଧୃତିରାଷ୍ଟ ଗାନ୍ଧାରୀ ଯେ ପାଣ୍ଡବ ଜନନୀ
ସଞ୍ଜୟ ବିଦୁର କଲେ ନାରଦ ଚରଣେ ଦଇନି ।୩୪
ଅନେକ କଲ୍ୟାଣ କଲେକ ମହରଷି
ଧୃତିରାଷ୍ଟ ରାଜାଂକୁ ବହୁତ ପ୍ରଶଂସି ।୩୫
ନାରଦେ ବୋଇଲେ ଭଲ କୃତ୍ୟହିଁ ସେ କଲୁ
ତୁ ଯେ ଧୃତିରାଷ୍ଟ ତପେଣ ବନକୁ ଅଇଲୁ ।୩୬
ସ୍ୱର୍ଗେ ପଣ୍ଡୁକୁ ଦେଖିଲୁ ତୋହୋର ଭାଇ
ତୋହୋର ଯିବାକୁ ସେ ଅଛି ବାଟ ଚାହିଁ ।୩୭
ଅଶଉଚ କର୍ମେ ସ୍ୱର୍ଗେ ଠାବ ନାହିଁ
ଦିଲା ଅଛଇ ଅର୍ଗଳି ସ୍ୱର୍ଗେ ପଶିତେ କ୍ଷମ ନାହିଁ ।୩୮
ପୁତ୍ର ପଉତ୍ର ଭାରିଯା ନୋହଇଟି କାହାରି
ଦେଖୁଁ ଦେଖୁଁ ତୋହୋର ସମସ୍ତ ଅପହରି ।୩୯
ଯେ ମୃତୁ ମଣ୍ଡଳେ ତୁ କିସ ଭୋଗ କଲୁ
ଲୋଭ ମୋହ ଶୋକେଣ ପଡ଼ି ବୁଡ଼ିମଲୁ ।୪୦
ପଞ୍ଚଇନ୍ଦ୍ରିୟ ଅଟଇ ଭୋଗକାରୀ
ଯେଣେ ସେ ସଂସାରେ ଅଗ୍ୟାଂନେ ଅପହାରି ।୪୧
ମନେକରି ଯେବେ ହାଦେ ଯେହା ନିବାରି
ତେବେ ସେ ମୋହଜଲୁଂ ହୋଇବାକ ପାରି ।୪୨
ଅନେକ ଗ୍ୟାଂନ ଯେ କହିଲେ ହାଦେ ଦେବରଷି
ଯେମନ୍ତେଣ ବ୍ୟାସେ ପ୍ରବେଶ ହୋଇଲେକ ଆସି ।୪୩
ବ୍ୟାସଂକୁ ଦେଖିଣ ପ୍ରଣପତ୍ୟ ଧୃତିରାଷ୍ଟ
ଭୋ ପିତା ତୋହୋର ଥାଆନ୍ତେ ମୋହୋର ଯେଡ଼େ କଷ୍ଟ ।୪୪
ବ୍ୟାସେ ବୋଇଲେ ବାବୁ ତୁ ଭଲ କୃତ୍ୟ କଲୁ
ଗୃହବାସ ତେଜି ବନବାସକୁ ଅଇଲୁ ।୪୫
କ୍ଷତ୍ରୀଂକର ସାଂଗ୍ରାମେ ମୃତୁହିଁ ସେ ଗତି
ଅନ୍ୟେ ମୃତୁ ଲଭିଲେ ପାଆନ୍ତି ନର୍କଗତି ।୪୬
ଜନ୍ମହୁଁ ଯେଣୁଟି ତୋହୋର ଚକ୍ଷୁ ନାହିଁ
ତୁହୋ ଗଣଯଗ୍ୟଂ ପାଇବୁ ଆର କାହିଁ ।୪୭
ଚିନ୍ତା ଉପେକ୍ଷି ଯେବେ ଥାଅ ବନବାସେ
ଯେତେ କହିଂଣ ତହୁଂ ଯେ ଗଲେ ବେଦବ୍ୟାସେ ।୪୮
ନାରଦ ପୂର୍ବତୁଂ ଯେ ଗଲେ ପଞ୍ଚୁଜଣେ
ଗଙ୍ଗାକୂଳେ ଯାଇଂ ରହିଲେ ଗହନ ବିପୁନେ ।୪୯
ନାନା ବିପିନେ ତହିଂ ଅଛି ତରୁମାଳ
ହାନ୍ଦୋଳନ୍ତି ପବନେ ଲତା ପଂକୁ ଫଳ ।୫୦
ବକୁଳ ମାଧବୀ ନାଗେଶ୍ୱର ଯୋଗ
ରଜନୀଯେ ଭ୍ରସଳେ ଚୁମ୍ବନ୍ତି ପରାଗ ।୫୧
ରାବନ୍ତି କୋକିଳେ ଯେ ବସନ୍ତର ବାଣୀ
ଶୁଣନ୍ତେ ଶୋକ ଯେ ଉପେକ୍ଷିଲେ ପଞ୍ଚୁପ୍ରାଣୀ ।୫୨
ବହୁତ ବନଜୀବ କ୍ରୀଡ଼ନ୍ତି ସେ ବନେ
କରିବର ମୃଗ ହୟେ ବାଉଟିଆ ଜୀବମାନେ ।୫୩
ବିବିଧ କାନନୁଂ ପାଇଣ ସେ ବନପୂଜା
ଆଶ୍ରମ ସୁଲଭେ ରହିଲେ କୁରୁରାଜା ।୫୪
ଗଙ୍ଗାର ପନ୍ତାରେ ସେ ପର୍ଣ୍ଣକୁଟୀ କଲେ
ଫଳମୂଳ କନ୍ଦ ଆହାରେ ଦିନ ନେଲେ ।୫୫
ସ୍ନାହାନ ତର୍ପଣ ନିତ୍ୟକର୍ମ ପୂଜା ସାରି
ତହୁଂ ଉତ୍ତାରେ ଯେ ଆହାର ସଞ୍ଚାକରି ।୫୬
ନାରଦ ପର୍ବତୁଂ ଯେ ଗଲେ ବ୍ୟାସରଷି
ଇନ୍ଦ୍ରପ୍ରଶସ୍ତରେ ପ୍ରବେଶ ହୋଇଲେକ ଆସି ।୫୭
ଆସ୍ତାନେ ଦେଖିଲେ ଯୁଝେଷ୍ଟି ପୂରିତ ଗହଳ
ବ୍ୟାସଂକୁ ଦେଖିଣ ଯେ ଉଠିଲେ ସକଳ ।୫୮
ସମସ୍ତ କୁଟୁମ୍ବ ଘେନିଣ ଯୁଝେଷ୍ଟି ଦେବରାଜା
ବ୍ୟାସଂକର ପଦ୍ମପାଦେ କଲେ ଦିବ୍ୟପୂଜା ।୫୯
ବ୍ୟାସେ ବୋଇଲେ ବାବୁ ଶୁଣ ରାଯେ ଯୁଝେଷ୍ଟି
ଗଙ୍ଗାକୂଳେ ଦେଖିଲୁ ତୋହୋର ଦେଢ଼ୁତା ଧୃତରାଷ୍ଟି ।୬୦
ଗାନ୍ଧାରୀ କୋଇନ୍ତା ବିଦୁର ଗାଲବ୍ୟର ସୁତ
ଯୁଝେଷ୍ଟି ବୋଇଲେ ମୋତେ ତାଂକୁ ଦେଖା ନେଇ ତାତ ।୬୧



# ଅଶ୍ୱମେଧ ପର୍ବ

## ୧୧୦. ଯୁଧେଷ୍ଠିଙ୍କର ଅଶ୍ୱମେଧ ଯାଗ

ଯେଥୁ ଅନନ୍ତରେ ଯୁଧେଷ୍ଠି ଯାଗ ଯେ ଆରୋପି
ସୁମରନ୍ତେ ମିଳିଲେ ଆସି ସକଳ ମହରଷି ତପୀ ।୧
ବଶିଷ୍ଠ ବିଶ୍ୱାମିତ୍ର ବାମଦେବ ସୁମନ୍ତକ
ଚାରିଦ୍ୱାରେ ବରଣ ଯେ ହୋଇଲେ ଯାଗନିକ ।୨
ସତୁରୀ ସହସ୍ର ଶିଷ୍ୟନ୍ତ ଘେନିଣ ମାରକଣ୍ଡେ
ଆସିଣ ନିର୍ମାଣନ୍ତି ବସି ଯାଗକୁଣ୍ଡେ ।୩
ଦୃଭାସାଂକ ତୁଳେ ଯେ ନଉସହସ୍ର ଚେଲା
ଦୁତୀ ଈଶ୍ୱର ମହାତ୍ମା ଯାଗେଣ ବିଜେକଲା ।୪
ବାଉଶି ସହସ୍ର ଚେଲା ଘେନିଣ ମହରଷି
ଅଗସ୍ତି ଜୟେମୁନି ଶୁକମୁନି ସୁମନ୍ତକ ବ୍ରହ୍ମପତି ।୫
ପଉଲସ୍ତି ଧଉମ୍ୟ ପୁରୋହିତେ ବିଭାଣ୍ଡକ ଋଷିଶୃଙ୍ଗ
ବଉସମାୟନ ମୂଳେ
ସମସ୍ତେ ବିଜେକଲେ ଆସି ଯୁଧେଷ୍ଠିଂକ ଯାଗଶାଳେ ।୬
ବ୍ୟାସଂକୁ ସୁମରଣା କଲେକ ଧର୍ମସୁତେ
ଜାଣିଣ ବ୍ୟାସେ ଚଳନ୍ତି ଇନ୍ଦ୍ର ଯେ ପ୍ରଶସ୍ତେ ।୭
ସମସ୍ତ ବେଳେ ମୋତେ ସୁମରଇ ଯୁଧେଷ୍ଠି
ଧାତିକାରେ ବିଜେକଲେ ଆସି ତପୋନିଷ୍ଠି ।୮
ଷାଠିଯେ ସହସ୍ର ଶିଷ୍ୟନ୍ତ ଘେନିଣ ବ୍ୟାସ ତୁଳେ
ଇନ୍ଦ୍ରପ୍ରଶସ୍ତେଣ ଯାଇଂ ପ୍ରବେଶ ହୋଇଲେ ।୯
ପିତାମହଙ୍କଙ୍କ ଦେଖି ରାଜା ଛାଡ଼ିଲେ ଆସନ
ଶତେ ସହସ୍ର ଦଣ୍ଡ ପ୍ରଳମ୍ବିତ ହୋଇଲେ ପଣ୍ଡୁର ନନ୍ଦନ ।୧୦
ବ୍ୟାସେ ଯୁଧେଷ୍ଠିଙ୍କ ଆଣି ବସାଇଲେ କୋଳେ
ସମସ୍ତ ବାରତା ପୁଚ୍ଛନ୍ତି ସେ କୁଶଳେ ।୧୧
ଯୁଧେଷ୍ଠି ନିବେଦିଲେ ବ୍ୟାସଂକର ପଦ୍ମପାଦେ
ଅଶ୍ୱମେଧ ଯାଗ କରିବି ସ୍ୱାମୀ ମୁଂ ତୁମ୍ଭର ପରସାଦେ ।୧୨
ବ୍ୟାସେ ବୋଇଲେ ଯେ ତୋହୋର ପୂର୍ବର ସଞ୍ଚିତ କର୍ମ
ଅଶ୍ୱମେଧ ଯାଗରୁ ଆଉ ନାହିଂନା ବଡ଼ ଧର୍ମ ।୧୩
ରାଜୁସି ଯାଗ କଲୁ ଯେ ତୋହୋର ପୁଣ୍ୟବଳେ
ହତ୍ୟା ବିମୋଚନ କରି ପଣ୍ଡୁ ବସିଲେ ସ୍ୱର୍ଗଆଳେ ।୧୪
ବ୍ୟାସେ ବୋଇଲେ ବାବୁ ଶୁଣସି ଯୁଧେଷ୍ଠି
ଅଶ୍ୱିନୀକୁମାରଂକୁ ମାଗ କୁବଳୟା ଅଶ୍ୱଗୋଟି ।୧୫
ଧର୍ମର ନନ୍ଦନ ଯେ ଚିନ୍ତିଲେ ମନଧ୍ୟାନେ
ଆସନେ କମ୍ପନ୍ତେ ଅଇଲେ ମଧ୍ୟ ଯେ ଭୁବନେ ।୧୬
ଅଶ୍ୱିନୀ କୁମାରେ ପୁଣି କରନ୍ତି ସାଧୁ ସାଧୁ
ତୁମ୍ଭେ ମହାରାଜା ଯେ ତ୍ରଇଲୋକ୍ୟ ପ୍ରାଣବନ୍ଧୁ ।୧୭
ଯାଗଂକର ମଧ୍ୟେ ଅଶ୍ୱମେଧ ଅଟେ ଶ୍ରେଷ୍ଠ
ଗ୍ୟାନର ମଧ୍ୟେ ଯେହ୍ନେ ବ୍ରହ୍ମଗ୍ୟାନ ଅଟଇ ଗରିଷ୍ଠ ।୧୮
ଯେ ଦୁଇକଥାରୁ ଶ୍ରେଷ୍ଠ ନାହିଂ ଆଉ ତ୍ରଇଲୋକେ
ଯେ ଯାଗ କଲେ ଅବଶ୍ୟ ବସଇ ବ୍ରହ୍ମାଅର୍କେ ।୧୯
ଧର୍ମ ଅର୍ଥ କାମ ମୋକ୍ଷ ଅଟଇ ଚାରିନଦୀ
ଯେ ଚାରିହେଂ ସଙ୍ଗମଟି ମହାଯାଗ ଅଶ୍ୱମେଧି ।୨୦
କୁବଳୟା ନାମେ ଅଶ୍ୱ ଦିଲେ ଅଶ୍ୱିନୀ କୁମାରେ
ପଞ୍ଚଧାତୁ ଜାଣଇଂ ଯେ ବିଧି ଗ୍ୟାନର ମାର୍ଗରେ ।୨୧
ପାର୍ବତୀର ନନ୍ଦନ ସେ କାମଦେବ କ୍ଷେତ୍ରପାଳ
ତାହାନ୍ତ ଦେବତାଯେ ନେଲେ ଗଗନ ମଣ୍ଡଳ ।୨୨
ତୁ ହୋ ଯାବତ କାଳେ ଗଗନକୁ କରୁ ରକ୍ଷା
ତେଣୁ ସେ ଦେବତାଂକୁ ନାହିଂ ଯେ ଉପେକ୍ଷା ।୨୩
ବାସବର ବଚନେ ସେ ଗଉରୀର ପୁତ୍ର
ଆକାଶରେ ନିଶାମଣି କ୍ଷଣେ କଲେ ସମ୍ମତ ।୨୪
ବାସବ ଦେବତାଂକର ଅଗ୍ୟାଂଅବଧାରୀ
ମର୍ତ୍ତ୍ୟକୁ ଅଇଲେ ସେ ସଂସାର ଅଧିକାରୀ ।୨୫
ଅନନ୍ତ କୋଟି ଭୁବନ ମଣ୍ଡଳ ଆକାଶ
ଯେକା ଗମିବାକୁ ଦେବ ଯେ ଚୋଖାର ବାରୁଣ ।୨୬
ଇନ୍ଦ୍ର ବୋଇଲେ ନାରଦଂକୁ ସେ ହକାରି
କ୍ଷେତ୍ରପାଳ ଘେନିଯାଅ ଗଗନ ବେହାରୀ ।୨୭
ଗଗନ ପନ୍ନଙ୍ଗୀ ଗଜ ମେଘନାଦ
କାଳେବର ଭୋଟ ସର୍ବ ପ୍ରହଲାଦ ।୨୮
ଅଷ୍ଟଅଶ୍ୱେ ଅଛନ୍ତି ଯେ ଆଦିତ୍ୟର ରଥେ
ତହୁଂ ଅଶ୍ୱେକ ଦେଉ କାମଦେବ କ୍ଷେତ୍ରପାଳ ଭ୍ରମିବା
ପରିଯନ୍ତେ ।୨୯
ଯହୁଂ ସେ ଆଗ୍ୟାଂ ଦିଲେକ ଦେବ ଇନ୍ଦ୍ରେ
କାମଦେବ କ୍ଷେତ୍ରପାଳକଙ୍କଂ ଘେନି ଚଳିଲେ ନାରଦେ ।୩୦
ବିଜୟେ ଭାସ୍କର ଯେ ମଧ୍ୟରେ ଆସ୍ତାନେ
କାମଦେବକଙ୍କଂ ଘେନି ବିଜୟେ ନାରଦ ମହାମୁନ୍ୟେ ।୩୧

ଶୁଣ ହୋ ଦିନକର ବଦୟନ୍ତି କଳହପ୍ରିୟା
ଇନ୍ଦ୍ର ଦେବତା ମୋତେ ଆଗ୍ୟାଂ ଦିଲେ ଯାହା ।୩୨
କାମଦେବ କ୍ଷେତ୍ରପାଳ ଗଉରୀର ବାଳ
ବାସବର ଆଗ୍ୟାଂଯେ ଆକାଶ କଟୁଆଳ ।୩୩
ତୋହୋର ତହୁଂ ଯେହାକୁ ଅଶ୍ୱଯେକ ଦେବୁ
ଆକାଶ ବୁଲିଲା ଉତ୍ତାରୁ ଘେନିକରି ଯିବୁ ।୩୪
ଆଦିତ୍ୟ ବୋଇଲେ ଦେବରାଜାର ଯେବେ ଆଗ୍ୟାଂ
କେମନ୍ତେ ବ୍ରହ୍ମାପୁତ୍ର ହୋ କରିବା ଅବଗ୍ୟାଂ ।୩୫
ବାବୁ କ୍ଷେତ୍ରପାଳ ମୁଂ ତୋତେ ଅଶ୍ୱ ଦେବି
ମୁହିଂ ଦିଗ ଭ୍ରମଇ ସେ କେତେବେଳେ ପାଇବି ।୩୬
ବିନୟ ଭାବେ ବୋଇଲେ କାମଦେବ କ୍ଷେତ୍ରପାଳ
ଯେତେବେଳେ ଭ୍ରମଇଂ ଆକାଶମଣ୍ଡଳ ।୩୭
ବୁଲୁ ବୁଲୁ ତୋର ଅଶ୍ୱକୁ କଲେ ତେଜ୍ୟା
ସୁଖେ ଘେନିଆସିବୁ ଦେବଙ୍କଇଂ ରାଜା ।୩୮
ଯେହେନେକ ବିଷୟ ମୋର ବ୍ରତ
ଯେତେକେ ତୋହୋର ଅଟଇ ଉଚିତ ।୩୯
ଭୂରିଶ୍ରବା ବୋଲିଣ ଯେବଣ ବାରାଶ
ନିମିଷକେ ଭ୍ରମିପାରଇ କୋଟିଯେ ଆକାଶ ।୪୦
ସେ ଅଶ୍ୱ ଫେରାଇଲା କ୍ଷେତ୍ରପାଳ ମହାଗ୍ୟାନୀ
ଭୂରିଶ୍ରବା ଅଶ୍ୱକଇଂ ଗଲାକ ତହୁଂ ଘେନି ।୪୧
ରଥର ଡାହାଣେ ଯୋଚା ହୁଅଇ ଅନୁକ୍ଷଣେ
ତେଣୁ ସେ ଦିନକର ନାଥ ଯେ ବରନ୍ତି ପ୍ରତିକ୍ଷଣେ ।୪୨
ଡାହାଣେ ଅଶ୍ୱ ତିନି ବାମେ ଯେ ଅଶ୍ୱ ଚାରି
କ୍ଷେତ୍ରପାଳକଇଂ ଅଶ୍ୱକ ଦିଲେ ଗଗନ ବିହାରୀ ।୪୩
ଶୁଣ ହୋ ଯୁଧେଷ୍ଠି ବୋଲନ୍ତି ଅଶ୍ୱିନୀ
କ୍ଷେତ୍ରପାଳକୁ ସେ ଅଶ୍ୱକୁ ଗଲାକ ତହୁଂ ଘେନି ।୪୪
ସେହି ଅଶ୍ୱ ପିଠିରେ ବସିଲା କ୍ଷେତ୍ରପାଳ
ଦିବାରାତ୍ରେ ନ ଛାଡ଼ଇ କ୍ଷେତ୍ର କାମପାଳ ।୪୫
ଅଶ୍ୱ ପିଠିରେ କରଇ ଭୋଜନ ଶୟନ
ଅଶ୍ୱ ପିଠିରେ ସ୍ନାହାନ ସେ ଯେ କରଇ ଗବନ ।୪୬
ଯହୁଂ ସେ କ୍ଷେତ୍ରପାଳ ନି ଛାଡ଼ିଲା ହୟ
ଆଦିତ୍ୟ ମାଗିଲେ ହୋଇ ଅନେକ ବିନୟ ।୪୭
ଅଶ୍ୱମେଧ ଯାଗ ଯେଣୁ ସେ ଅଟଇ ଯେ ଶ୍ରେଷ୍ଠ
ତାହାକଇଂ ନ ଦେଖିଲେ ଭୀମ ହୋୟେ ଯେ ଅନିଷ୍ଟ ।୪୮

ତୁ ଯେ ଅଶ୍ୱ ବାବୁ ଆଣିଲୁ ବେଗେ ମାଗି
ମୁହିଂ ତୋତେ ଦିଲି କଳପ ପରିତ୍ୟାଗି ।୪୯
କ୍ଷେତ୍ରପାଳ ବୋଇଲା ଓହ୍ଲାଇବି ଯେତେବେଳେ
ଭୂମିଗତେ ମୁହିଂ ଭ୍ରମିବି ରବିତଳେ ।୫୦
ଯେମନ୍ତେ କ୍ଷେତ୍ରପାଳ ଓହ୍ଲାଇଲା ସେ ପିଠିରୁ
ଅନୁବ୍ରତେ ବିଜେ ଭ୍ରମଣି କରୁ କରୁ ।୫୧
ମାଗିନେଇ ଯହୁଂ ନ ଦିଲାକ ଯାଚି
ସାତଅଶ୍ୱେ ତହୁଂ ବିଜୟେ ବିରଞ୍ଚି ।୫୨
ବାବୁ ଯୁଧେଷ୍ଠି ଚନ୍ଦ୍ର ଯେକ ଗଲା
ଲିତାଯେ କ୍ଷେତ୍ରପାଳ ଅଶ୍ୱକଇଂ ନ ଛାଡ଼ିଲା ।୫୩
ସାତଅଶ୍ୱ ଘେନି ସେ ଯେ ବିରଞ୍ଚି ନାରାୟଣ
ତେଣୁ ପିତାୟେ କଲେ ଉତ୍ତରାୟଣ ଦକ୍ଷିଣାୟନ ।୫୪
ଛାଡ଼ମାସ ବାମେଣ ତେଣୁ ଚାରିହୟେ
ପୁଣ ଛଡ଼ମାସ ଚାରିହୟେ ଡାହାଣେ ଯୋଚୟେ ।୫୫
ମୋତେ ଦିନେକ ରାଇ ବୋଇଲେ କମଳଲୋଚନ
କୁବଳୟା ଅଶ୍ୱ ତୋର ଦେବୁ କି ନନ୍ଦନ ।୫୬
ମୁହିଂ ତାହା ନାସ୍ତିକଲି ପିତାର କହନ୍ତେ
ଯେମନ୍ତ କଥାମାନ କହୁଣ ଥିଲି ତୋତେ ।୫୭
କାହାରି ବଚନେ ମୁଂ ନ ଦିଲିତ ହୟେ
ତୋତେ କେମନ୍ତେ ଦେବିଟି ଯେବେ ଧନୁର୍ଜୟେ ।୫୮
କେବେହେଂ ବାରାଶତୁ ନ ଛାଡ଼ିବୁ କ୍ଷଣେ
ନ ପୁଣ ଅଶ୍ୱ ଯେ ନିଅନ୍ତି ବିରଞ୍ଚି ନାରାୟଣେ ।୫୯
ଅନେକ କହିଂଣ କୁବଳୟା ଅଶ୍ୱକଇଂ ଦିଲେ
ପାଣ୍ଡବନ୍ତ ଅଶ୍ୱିନୀ କୁମାର ପ୍ରସନ୍ନ ହୋଇଲେ ।୬୦
ଅଶ୍ୱ ଘେନି ପାଣ୍ଡବେ ଯେ ଆରମ୍ଭିଲେ ଯାଗ
ଅନକୂଳ କଲେ ସେ ପିତାର ଅନୁରାଗ ।୬୧
ପବନ୍ନୁଂ ବେଗେ ଗମଇଂ ସେ ତୋଖାର ତୁରଙ୍ଗ
କହ୍ଲାନ୍ତେ ନ ମରଇ ସେ ଅମର ଯୁଗ ଯୁଗ ।୬୨
ବ୍ୟାସେ ବୋଇଲେ ତୁତ ତ୍ରଇଲୋକ୍ୟ ଯେକ ଦେବ
ଅନନ୍ତ କୋଟି ବ୍ରହ୍ମାଣ୍ଡେ ତୋତେ କେଉଂଣ ଅସମ୍ଭବ ।୬୩
ଅଶ୍ୱିନୀ କୁମାରେ ତ ଅଟନ୍ତି ତୁମ ପିତା
ପରମେଷ୍ଠି ଆଦିକରି କେ ଅଛି ତୁମ୍ଭର ବଚନ ମେଣ୍ଟାନ୍ତା ।୬୪
ଯେ ଅଶ୍ୱର ତୁଲେ ଯେ ବରଗିବୁ କାହା
ଯେ ଦେବଅଶ୍ୱକୁ ପରିମାଣି ଥିବି ତାହା ।୬୫

ବ୍ୟାସେ ବୋଇଲେ ଯେ ଅଶ୍ୱନ୍ତ ଚଳାଇଂ
ଦ୍ରୁଲେଣ ଯାଆନ୍ତୁ ନକୁଳ ସହଦେବ ବେନିଭାଇ ।୬୬
ଯୁଷ୍ଟେଷ୍ଟି ଦେବେ ବୋଇଲେ ଶୁଣ ମହରଷି
ମୋହୋର ବେଳେ ଯେହାନ୍ତ ନ ପାରଇ ପେଷି ।୬୭
ଅଛନ୍ତି ଦଇତ ଦାନବ ଅନେକ ରାକ୍ଷସ
ଆଧାର ଲୋଭେ ଯେହାନ୍ତ କରିବେ ପ୍ରାଣନାଶ ।୬୮
ଯେ ଅଶ୍ୱ ଚଳାଇ ପଛେ ଯାଉ ଫାଲଗୁନି
ଆସୁ ରାଜାମାନନ୍ତ ଯେ ନିମନ୍ତ୍ରଣ କରି ଘେନି ।୬୯
ଯେତେ ବୋଲିଣ ତହୁଂ ରାଇଲେ କିରୀଟୀ
ଅନେକ ଡିଆରିଣ ବୋଇଲେ ତପୋନିଷ୍ଠି ।୭୦
ତୁ ବାବୁ ଯିବୁ ଯେ ଅଶ୍ୱ ଘେନିଣ ଆନ ଥାନେ
ନିମନ୍ତ୍ରଣ କର ତୁ ଆସନ୍ତୁ ରାଜାଗଣେ ।୭୧
ସମସ୍ତ ନୃପତିଯେ ପଡ଼ିଲେ ରଣମଧେ
କ୍ଷମା ପୋଯେ ସିନା ଅଛନ୍ତି ମହୀମଧ୍ୟେ ।୭୨
ଯେମନ୍ତ ଭଗତି ସେ ହୋଅନ୍ତି ବାଳୁତ ରାଜାଯେ
ଅନ୍ତରେ ତାହାନ୍ତ ନ କରାଇବୁ ଭଯେ ।୭୩
ବିଭାମଙ୍ଗଳ ଉତ୍ସବ ଯାତ୍ରାକାଳ ହୋଯେ ଯେତେବେଳେ
ଅପ୍ରୀତି ଜନକଇଂ ସୋଦ୍ରିମାପଣ ହୋଇବ ତେତେବେଳେ ।୭୪
ତେବେ ସେ କାର୍ଯ୍ୟ ଧର୍ମ ସୋଦ୍ରିମା ପଣ ରହଇ
ପଣ୍ଡିତ ଜନ ସିନା କାର୍ଯ୍ୟକାଳେ ସହଇ ।୭୫
ଯାଅସି ତୁମ୍ଭେ ଧନୁର୍ଜଯେ ହଉ ସୁକଲ୍ୟାଣ
ସୁବିଧାନ କରି ରାଜାମାନ୍ତ ବରିଆଣ ।୭୬
ଆମ୍ଭେ ରହିଥିବୁଟି ବାବୁ ଯେକାମ୍ର କାନନେ
ତହିଂ ପୁଣି ତୋତେ ଭେଟିବୁ ଫାଲଗୁନ୍ୟେ ।୭୭
ଯେସନେକ ସମଯେ ଦୃଭାସା ମହରଷି
ଅର୍ଜୁନ ସନ୍ନିଧ୍ୟେ ପ୍ରବେଶ ହୋଇଲେକ ଆସି ।୭୮
ଅର୍ଜୁନକୁ ବୋଇଲେ ତୁ ଦିଗବିଜେ କରୁଛୁ
ଆମ୍ଭେ ତୋତେ ପ୍ରପାତ କରାଇବା ଦିବ୍ୟ ଚକ୍ଷୁ ।୭୯
ଶତେ ଯୋଜନେ ଥାଇଂ ଚାହିଁଲେ ଫାଲଗୁନି
ବାରିତ ହୋଇବ ତୋତେ ରାଜାଂକ ସଇନି ।୮୦
ଯେହିଠାରୁ ଯାଅ ତୁହି ଯେକାମ୍ର କାନନେ
ସେ ସ୍ଥାନରୁ ଫଳଯେକ ଆଣ ତୁ ବହନେ ।୮୧
ଧୂରେଣ ଥାଇ ସମସ୍ତ ଦେଖିବୁ ସର୍ବସାଚୀ
ଯେ ଫଳ ଇଛା ତାହାକୁ ଆଣିବୁ ତୁ ବାଛି ।୮୨
ଯେହା ଶୁଣି ଅରଜୁନ ଗଲା ତତକ୍ଷଣି
କାନନରୁ ଯେକ ଗୋଟି ଫଳ ତହୁଂ ଆଣି ।୮୩
ଦୃଭାସାଂକ ହାଥେ ସେହି ଫଳଗୋଟି ଦିଲେ
ଦୃଭାସା ଋଷି ସେହି ଫଳ ଗୋଟିକ ମନ୍ତ୍ରିଲେ ।୮୪
ଅର୍ଜୁନ ଧରନ୍ତେ ଫଳ ଶିବଦୂତୀ ମିଳି
ଦିବ୍ୟଚକ୍ଷୁ ଦିଲେ ତାଂକୁ ହୋଇ କୁତୂହଳୀ ।୮୫
ଅର୍ଜୁନକୁ କହିଲେ ତୁ ଶୁଣ ଫାଲଗୁନି
ଶତେ ଯୋଜନେ ତୁ ଦେଖିପାରିବୁ ସଇନି ।୮୬
ଯେତେବୋଲି ତହୁଂ ଚଳିଗଲେ ଶିବଦୂତୀ
ଚଳଇ ଦିଗ୍‌ବିଜେ କରି ବିଚିତ୍ରବୀର୍ଯ୍ୟର ନାତି ।୮୭
ଶ୍ରୀଭୁଜେ ଗାଣ୍ଡିମ ଅଛଇ ତ୍ରୋଣ କଷି
ଅନେକ ରତ୍ନ ମଣ୍ଡିଲେ ବାରାସ ତାଦୃଶି ।୮୮
ନାନା ବର୍ଣ୍ଣେଣ ଯେ ଚାମର ମଣ୍ଡିତ ବହୁତ
ତଥିର ମଧରେ ଯେ ମୁକୁତା ବନ୍ଧା ନେତ ।୮୯
ଯେସନେକ ଅଶ୍ୱ ମଣ୍ଡି ଚଳାଇଣ ଆଗେ
ଚଳଇ ଯୁଗଧର ପବନହୁଂ ବେଗେ ।୯୦
ସାଂକୁଚି ବଟ ତଳେ ଡିଆରନ୍ତି ବ୍ୟାସେ
ଲକ୍ଷେ ରାଜା ଆଣିବୁଟି ତୁଳା ବିଛା ଧନୁ ତିନିମାସେ ।୯୧
ମକର ମାସର ମଧେ ହୋଇବ ଆହୁତି
ଯାଆ ଯାଆ ବୋଲି ଆଗ୍ୟାଂ ଦିଲେ ବ୍ୟାସ ମହାଯତି ।୯୨
ପ୍ରଥମରେ ପ୍ରବେଶ ଯାଇଂ ପଛିମ ସୋମନାଥେ
ରୁଦ୍ର ଗଙ୍ଗାରେ ସ୍ନାହାନ ସାରିଣ ବୀର ପାଥେ ।୯୩
ଦେଖଇ ଯୋଗେଶ୍ୱର ପ୍ରଥମେ ସୋମକାୟା
କାରଣ ନାଥ ମୋତେ କରସି ସଦୟା ।୯୪
ଅଭଯେ ନିରାକାର ତୁ ପରମବ୍ରହ୍ମ ଯୋଗୀ
କିଞ୍ଚିତ ଦୋଷେ ନାଥ ମୟାଣ ଦର୍ପ ଭାଙ୍ଗି ।୯୫
ତୁ ଦେବ ଯୋଗେଶ୍ୱର ପରମାନନ୍ଦ ବନ୍ଧୁ
ସଂସାର ଅନ୍ଧକାରକୁ ତୁହି ସେ ଉଦେ ଇନ୍ଦୁ ।୯୬
ସ୍ୱାମୀ ଚତୁର୍ଥ ଯୁଗ ଯାହାକୁ ସହସ୍ରେ ବରଷ
ବ୍ରହ୍ମା ଦେବତାକୁ ହୋଅଇ ଯେକଇ ଦିବସ ।୯୭
ଯେ ଦିନ ବ୍ରହ୍ମାଂକର ଶତେକ ବରଷେ
ନାରାୟଣ ଦେବତାଂକୁ ହୋଅଇ ଦଣ୍ଡ ଦଶେ ।୯୮
ସେହି ଦିନ ନାରାୟଣଂକୁ ହୋଅଇ ଅବଦେ
ତୋତେ ହୋଯେ ସ୍ୱାମୀ ସର୍ବେ ନିମିଷ ଯେ ଅର୍ଦ୍ଧେ ।୯୯

ତୋତେ ଯେବେ ସ୍ରହସ ବରଷ ଦେବ ହୋଯେ
ସଚରାଚର ଯାକ ହୋଇବ ପ୍ରଳୟେ ।୧୦୦
ସ୍ୱାମୀ ବିରୂପାକ୍ଷ ରୂପ ଧରୁ ସଂସାର ତାରଣ ଅର୍ଥେ
ଇନ୍ଦଂଭୂତ ନାଥ ଚିନ୍ତିବାକ ତୋତେ ।୧୦୧
ଯେ ତୋହୋର ବର୍ଣ୍ଣ ଚିହ୍ନ ନ ଚିହ୍ନନ୍ତି କେହି
ତେଣୁ କୁଳ ଗୋତ୍ରରେ ନିର୍ମଳ ମାର୍ଗ ସେହି ।୧୦୨
ମୁଂ ଯେହାର ତଦନ୍ତ ନ ଜାଣଇ ସର୍ବସିଦ୍ଧି
କିଞ୍ଚିତ ଦାନକୁ ତୋହୋର ନ ଅଣାଇ ବାରାନିଧି ।୧୦୩
ସମସ୍ତ ପରକୁ ଦେଇ ଆପଣେ ଇଚ୍ଛିଲ ଲାଙ୍ଗଟା
ଯତନେ ବିବସନଶାହୀ ସେ ଲଲାଟେ ପିଙ୍ଗଳ ଜଟା ।୧୦୪
ତୁ ଦେବ ପରମାନନ୍ଦ ପୁରୁଷଂକ ଉତ୍ତମ
ଜନ୍ମ ଅଭ୍ୟାସଇ ତବ ଚରଣେ ଶରଣ ମମ ।୧୦୫
ଅନୁଭବ ସାଧନ ନାଥ ତ୍ରିଲୋକର ଜୀବ
ବଦୟନ୍ତି ସାରୋଳ ଦାସ ମହାଦେବ ଚରଣେ ସେବ ।୧୦୬

✱✱

## ୧୧୧. ଅଶ୍ୱ ସହିତ ଅର୍ଜୁନର ଚତୁର୍ଦ୍ଦିଗ ଭ୍ରମଣ ଏବଂ ବଭ୍ରୁବାହନ ସହ ଯୁଦ୍ଧ

ଶୁଣ ବଇବସ୍ୱତ ମନୁ ବଦୟନ୍ତି ଅଗସ୍ତି
ଅର୍ଜୁନର ବିନୟ ଦେଖି ବିଜୟେ ପଶୁପତି ।୧
ବଇଲ ଆସନେ ଯେ ବିଜୟେ କାପାଳୀ
ପ୍ରଳମ୍ବିତ ଦୂତିକୃଷ୍ଣ ପାଦେ କୃତାଞ୍ଜଳୀ ।୨
ବଦୟନ୍ତି ଯୋଗେଶ୍ୱର ଶୁଣସି ବାସବି
ଅଶ୍ୱମେଧ ଯାଗ କି ତୁମ୍ଭେ ଅଛ ହୋ ଆରମ୍ଭି ।୩
ଅଶ୍ୱ ଲକ୍ଷଣ ଦେଖି ଆମ୍ଭେ ବିଚାର ଯେ କଲୁ
ତଦ ନିମନ୍ତେ ତୋତେ ଦେଖିତେ ଅଇଲୁ ।୪
ସ୍ୱାମୀ ପ୍ରସନ୍ନେ ଆଗ୍ୟାଂ ମୋତେ ଦିଅସି ବିଶ୍ୱବାସୀ
ଯା ଯା ବୋଲି ଆଗ୍ୟାଂ ଦିଲେକ ଦେବ କାଶୀ ।୫
ଅଲୋପ୍ୟ ଧର୍ମକଇଂ ଆହୋ ଇଚ୍ଛା କଲ ତୁମ୍ଭେ
ମହା ଯାଗଶାଳକଇଂ ବିଜେ କରୁ ସିନା ଆମ୍ଭେ ।୬
ରାଜାନ୍ତ ନାଶ କଲ ମହାଭାରତର ଯୁଦ୍ଧେ
ଧର୍ମ ନାଶ ଯାଇଚି ବାଳୁତ କୁମାରଂକ ବଧେ ।୭
ଯଦ୍ୟପି ଦୁଷ୍ଟ ହୋଇଲେ ବାଳୁତ କୁମାରେ
ଯେହାଂକର ଦୋଷ ତୁ ନ ଧରସି ଶରୀରେ ।୮
ଯେତେ ବୋଲି ବିଜେକଲେ ଯହୁଂ ଦେବ ବିଶ୍ୱନାଥ
ତହୁଁ ଅଶ୍ୱ ଚଳାଇ ପାଥ ଚଳଇ ପଛିମ ପ୍ରଶସ୍ତ ।୯
ଆକାଶର ଅଶ୍ୱ ସେ ଭୂତ ଭବିଷ୍ୟତ ଗ୍ୟାଂତା
ଅଶ୍ୱ ହୋଇ ଜାଣଇ ସେ ଅନନ୍ତ କୋଟି ଯୁଗର ବାରତା ।୧୦
ସେ ଅଶ୍ୱ ପଶିଲା ଯାଇଂ ପଦ୍ମଦଳ ଦେଶେ
ଚନ୍ଦ୍ର କିରଣ ଜାଣି ଦିଶଇ ବାରାସେ ।୧୧
ଦେବ ଭଣ୍ଡାର ସୁବର୍ଣ୍ଣ ଭୂଷଣ ତାର ଅଙ୍ଗେ
ଚକିତ ଚାଲିବାର ତା ବଡ଼ାଇ ସୁରଙ୍ଗେ ।୧୨
ଜନମୋହନ ଯେ ଚଉରାଶି ଲକ୍ଷଣ
ଦେଖିଣ ପ୍ରଜାଜନମାନେ ହୋଇଲେ ତୋଷମାନ ।୧୩
ରାଜାର ଆଗେ ଯାଇଂ କହିଲେ ଦେଶାଉରେ
ବଡ଼ାଇ ସୁଲକ୍ଷଣ ଅଶ୍ୱେକ ପଶିଲା ଆମ୍ଭର ରାଜ୍ୟରେ ।୧୪
ଅପାର ରତ୍ନ ଦେବ ଅଛଇ ଖଞ୍ଜିଲା
ଶୁଣି କର୍ଣ୍ଣକେଶରୀ ରାଜା ଆପଣେ ବିଜେକଲା ।୧୫
ଅଶ୍ୱ ଦେଖି ରାଜାର ବସିଲାକ ଲୋଭ ଆଗେ
ମନ୍ତ୍ରୀ ଅମନାତ୍ୟନ୍ତ ଘେନି ଅଶ୍ୱକୁ ଧରାଇଲା ବେଗେ ।୧୬
ଅଶ୍ୱ ପ୍ରତିବାକ୍ୟ ଦେବ ଛାଡ଼ ଛାଡ଼ ମୋତେ
ମୁହିଂ ଦେବଅଶ୍ୱ ତୁହି ମୋତେ ଧରିନେବୁ କେମନ୍ତେ ।୧୭
କୁମାର ଦେବତାର ମୁଂ ଅଟଇ ଯେ ବାଜୀ
ପାଣ୍ଡବ ଅର୍ଜୁନ ମୋତେ ଆଣିଅଛି ସାଜି ।୧୮
ଅଶ୍ୱର ମୁଖୁଂ ଯହୁଂ ଶୁଣିଲା ଯେସନ ସୁଲଭ
ଭାଳଇ ନର ଇନ୍ଦ୍ର ଯେତ ବଡ଼ାଇ ଦୁର୍ଲଭ ।୧୯
ଅଶ୍ୱ ହୋଇଂ ଭାଷଇ ମନୁଷ୍ୟର ବାଣୀ
ପାଣ୍ଡବଂକ ନାମ ଧରନ୍ତେ ଛାଡ଼ିଲା ନୃପମଣି ।୨୦
ତାହାର ତହୁଂ ମଣ୍ଡିଲା ଅଶ୍ୱକୁ ଲକ୍ଷେ ରତନ
ଅର୍ଜୁନର ଛାମୁରେ ନେଇ ସମର୍ପଇ ରାଜନ ।୨୧
ଛାମୁରେ କର୍ଣ୍ଣକେଶରୀ ସହସ୍ର ପରିଣାମି
କିଞ୍ଚିତେ ଅନେକ ଦୋଷ ଅର୍ଜିଲି ଦେବସ୍ୱାମୀ ।୨୨
ଶୁଣିଣ ସାନନ୍ଦ ସେ ବୀର ଫାଲଗୁନି
ଅଶ୍ୱମେଧ ଯାଗକୁ ଯାଅ ତୋର ଥାଟସନ୍ୟ ଘେନି ।୨୩
ବଦୟନ୍ତି ଅଗସ୍ତି ତୁମ୍ଭେ ଶୁଣ ହୋ ବଇବସ୍ୱତ ମନୁ
ପବନ ଗତିରେ ଚଳେ ସେ ବାସବର ତନୁ ।୨୪
ପଛିମ ଦେଶେ ଗମଇ ସେ ଗହନ ବନ କନ୍ଦରେ
ବିଜୟେ ବୀରମଣି ଯାଇଂ ମଗଧ ଦେଶରେ ।୨୫
ନନ୍ଦଗୋପାଳ ରାଜା ବୃହଧ୍ୱଜର ପିତା
ଯେହାର ନନ୍ଦନ ସେ ଜରାସନ୍ଧ ଜଗଜିତା ।୨୬
ଜରାସନ୍ଧକଇଂ ଯେ ମାଇଲା ବିକୋଦର
ଜୟଦେବ ସହଦେବ ବୋଲି ବେନି ସୁତ ଯେ ତାହାର ।୨୭

ତାହାନ୍ତ ରାଜପଦ ଦିଲେ ସେହୁ ରାଷ୍ଟ୍ରେ
ମହାଭାରଥ ଯୁଦ୍ଧେ ସେ ପଡ଼ିଲେ ସମରାଷ୍ଟ୍ରେ ।୧୨୮
ସେ ସହଦେବର ନନ୍ଦନ ମହାଦେବ ନରପତି
ତାହାର ରାଜ୍ୟେ ଯାଇ ଅଶ୍ୱ ମିଳଇ ତତକ୍ଷଣାନ୍ତି ।୧୨୯
ବିଚକ୍ଷଣ ଅଶ୍ୱ ସେ ଅନେକ ରତ୍ନ ଖଞ୍ଜିଲା ଅଛି
ଯୋଦ୍ଧା ହୋଇକରି କେହୁ ସେ ଅଶ୍ୱକୁ ମୁରୁଛି ।୧୩୦
ଅଶ୍ୱକୁ ଧଇଲା ସେ ଦୁର୍ମୁଖ ସେନାପତି
ବାରାସକଙ୍କ ଦିଲା ନେଇ ସେ ମହାଦେବର କତି ।୧୩୧
ରାଜାକୁ ଦେଖିଣ ସେହୁ ହସିଲାକ ହୟେ
କୁବଳୟା ନାମ ମୋର ମୋତେ ଆଣିଛି ଧନୁର୍ଦ୍ଧରେ ।୧୩୨
ଅଶ୍ୱମେଧ ଯାଗ ଯେବେ କରିବେ ପାଣ୍ଡବେ
ରାଜନ୍ତ ବରିନେବେ ତହିଁର ନିମନ୍ତେ ଯେବେ ।୧୩୩
ଶୁଣିଣ ସାନନ୍ଦ ବଡ଼ ହୋଇଲା ମହାରାଜା
ସେ ପାଣ୍ଡବେ ନାଶ କଲେ ମୋହୋର ପିତୃଅଜା ।୧୩୪
ପିତା ପଡ଼ିଲା ମୋର ମହାଭାରଥର ଯୁଦ୍ଧେ
ମାରିବି ପାଣ୍ଡବନ୍ତ ମୋହୋର ବଂଶବଧ କ୍ରୋଧେ ।୧୩୫
ଯେତେ ବୋଲି ଅଶ୍ୱକଇଂ ଦୃଢ଼କରି ଧରି
ଅର୍ଜୁନ ବାଟ ଚାହାଂଇ ସେ ବେଳ ପଞ୍ଚ ଦଶ ଘଡ଼ି ।୧୩୬
ବାଟ ଚାହଂନ୍ତେଣ ତହିଁ ଅଶ୍ୱ ନୁଆସଇ
ଯେକସରେ ଅର୍ଜୁନ ସେ ରାଜ୍ୟରେ ପଶଇ ।୧୩୭
ଦେଖିଣ ଓଗାଳିଲେ ତାଂକୁ ଅନେକ ସଇନି
ନାରାଚ ବିଘାତେ ତାହାନ୍ତ ହାଣିଲା ଫାଲଗୁନି ।୧୩୮
ଯେକଇ ପ୍ରହାରକେ ଅନେକ ସନ୍ୟମାନ ଲୋଟି
ଦେଖିଣ ରାଜ ଇନ୍ଦ୍ର ସେ ଆପଣେ ରଣେ ଉଠି ।୧୩୯
ଅର୍ଜୁନ ବୋଇଲା ହୋ ଶୁଣିମାକ ତୁମ୍ଭେ
ରାଜାନ୍ତ ନିମନ୍ତ୍ରଣ କରି ଆସିଅଛୁ ଆମ୍ଭେ ।୧୪୦
ଅଦୋଷେ ନାଶ ନ କର ତୁହି ସନ୍ୟବଳ
ସନ୍ୟବଳ ଘେନି ତୁମ୍ଭେ ଅଶ୍ୱମେଧ ଯାଗେ ଚଳ ।୧୪୧
ମନ୍ତ୍ରୀ ବୁଝାଇଲା ତୁମ୍ଭେ ଶୁଣ ହୋ ନରପତି
ତ୍ରଇଲୋକ୍ୟର ମଧ୍ୟେ ଯେ ଅଟଇ ଯେକଛତ୍ରୀ ।୧୪୨
ସମସ୍ତ ମହିମାଂ ଯହୁଂ ଶୁଣିଲାକ ରାୟେ
ଜାଣିଣ ମହାଦେବ ଦ୍ରଶନ ଯାଇଂ କୟେ ।୧୪୩
ନିମନ୍ତ୍ରଣ କରି ଯେ ବୋଲଇ ଫାଲଗୁନି
ଯେହିକ୍ଷଣି ଚଳ ତୋର ମନ୍ତ୍ରୀ ଅମନତ୍ୟ ଘେନି ।୧୪୪
ଲକ୍ଷେ ରାଜା କର ତୁଲେ ତୁ ଘେନ ଅର୍ଘ୍ୟଧାର
ଚଳଇ ମହାଦେବ ହସ୍ତିନା ନାମେ ପୁର ।୧୪୫
ତହୁଂଣ ଅର୍ଜୁନ ଗଲା ଅଶ୍ୱ ବେଗେ ଚଳାଇ
ଭାନୁବନ୍ତ ପୁରେ ପଶିଲାକ ସେହୁ ଯାଇଂ ।୧୪୬
ଅଭୟେମନୁ ବୋଲି ତହିଂର ନୃପତି
ଅଶ୍ୱକଇଂ ଦେଖି ଆସି ବେଢ଼ିଲେ ଚଉକତି ।୧୪୭
ଅପୂର୍ବ ହୟେ ଦେଖି ଧରିତେ କରନ୍ତି ଇଚ୍ଛା
ଅଶ୍ୱ ବୋଇଲା ତୁ ହୋ ରାଜନ ନକର ମୃତୁକୁ କଇଛା ।୧୪୮
ପାଣ୍ଡବେ କରନ୍ତି ଯେ ଅଶ୍ୱମେଧ ଯାଗ
ଯୋଦ୍ଧାନ୍ତ ଘେନିଣ ରାୟେ ଚଳି ଯାଅସି ବେଗ ।୧୪୯
ଅର୍ଜୁନ ରହିଛନ୍ତି ଗଙ୍ଗା ନଦୀ କୂଳେ
ଶୁଣିଣ ଦଣ୍ଡ ଘେନି ଚଳଇ ମହୀପାଳେ ।୧୫୦
ଅନେକ ପୂଜା ରାୟେ କରଇ ଫାଲଗୁନି
ବହୁତ ସମ୍ଭ୍ରେ ସେ କରଇ ବିନୟ ଦଇନି ।୧୫୧
ନିମନ୍ତ୍ରଣ କରି ପାଥ କହଇ ସର୍ବ କଥା
ସମଦଣ୍ଡ ଘେନି ହସ୍ତିନାକୁ ଚଳ ହୋ ମହାରଥା ।୧୫୨
ଅଶ୍ୱମେଧ ଯାଗର ଯେବଣ ବିଧାନ
ଅନେକ ରତ୍ନମାନ ମଣ୍ଡିଲେ ହୟେମାନ ।୧୫୩
ଅଶ୍ୱ ଯୋଦ୍ଧାମାନେ ତହୁଂ ସର୍ବେ ଚଳିଯାନ୍ତି
ରଥ ଗଜ ଆଉ ନାହିଂ ସଇନି ପାଦାନ୍ତି ।୧୫୪
ଶୁଣ ଆହୋ ଚଇତନ ବେଳାଉଳ ଦେଶେ ବିଜୟେ ସର୍ବସାଚୀ
ଦେବ ଅଶ୍ୱ ଦେଖି ନରେନ୍ଦ୍ର ମନେ ମନେ ପାଞ୍ଚି ।୧୫୫
ଅଶ୍ୱ ବୋଇଲା ମୁଂ ଅର୍ଜୁନଂକର ହୟେ
ଅଶ୍ୱମେଧ ଯାଗକୁ ତୁମ୍ଭେ ଚଳ ହୋ ମହାରାୟେ ।୧୫୬
ଅର୍ଜୁନହିଂ ବିଜେକଲେ ଅଶ୍ୱର ପଛେ ପଛେ
ରାଜାକଇଂ ଅର୍ଘ୍ୟ ନେଇ ଦିଲାକ ବିବସ୍ତେ ।୧୫୭
ମୁଣୋହି ଯୋଗାଡ଼ କରି ଲୋଡ଼ଇ ଯେ ରାୟେ
ନାସ୍ତି କରି ତହୁଂ ଚଳଇ ଧନୁର୍ଦ୍ଧରେ ।୧୫୮
ଯେବଣ ନୃପତିର ଯେବଣ ଅଶ୍ୱ ଅଛଇ
ସମସ୍ତ ଘେନିଯିବ ବୋଲି ବୋଲଇ ବିବସ୍ତଇ ।୧୫୯
ତହୁଂଣ ଡାହାଳ ଦେଶରେ ଯାଇଂ ପାଇ
ଅଶ୍ୱକୁ ଦେଖି ସେ ରାଜା ମନରେ ହରଷ ହୋଇ ।୧୬୦
ଅଶ୍ୱକୁ ଧଇଲେ ସେ ସୁରବର ରାୟେ
ଅଶ୍ୱ ବୋଇଲା ହୋ ଆସୁଅଛନ୍ତି ପଛେ ଧନୁର୍ଦ୍ଧରେ ।୧୬୧
ଶୁଣିଣ ଡାହାଳେଶ୍ୱର ଅଶ୍ୱକୁ କଲା ପୂଜା
ସନ୍ନିଧ୍ୟେ ପ୍ରବେଶ ଆସି ଇନ୍ଦ୍ରର ଆତ୍ମଜା ।୧୬୨
ଅନେକ ଗଉରୋବ କଲା ପଣ୍ଡୁର ତନୁଜା
ଅର୍ଜୁନ ବୋଇଲେ ହସ୍ତିନା ଯାଅ ରାଜା ।୧୬୩
ପାଞ୍ଚକୋଟି ତୁରଙ୍ଗମ ଘେନିଣ ଡାହାଳ
ପ୍ରଚଣ୍ଡ ମଣ୍ଡଳ କରି ଚଳଇ ମହୀପାଳ ।୧୬୪

କ୍ଷୀରଦେଶେ ପ୍ରବେଶ ହୋଇଲା ଫାଲଗୁନି
ଅଶ୍ୱ ପଶିଲା ଦେଶେ ଅନେକ ରତ୍ନ ଘେନି ।୧୬୫
ଧ୍ରୁବସେନ ବୋଲି ତହିଂର ନୃପତି
ସେ ରାଜାର ଅଶ୍ୱକୁ ଯାଇଂ ଧଇଲାକ ଧାତି ।୧୬୬
ଅଶ୍ୱ ବୋଇଲା ମୋତେ ନ ଧର ହୋ ରାୟେ
ଅଶ୍ୱମେଧ ଯାଗ ନିମନ୍ତେ ଦିଗମାନନ୍ତ ବିଜୟେ ଧନୁର୍ଜୟେ ।୧୬୭
ଶୁଣିଣ ସାନନ୍ଦ ସେ କ୍ଷୀର ଦେଶର ରାଜା
ଅନେକ ସମ୍ଭର୍ବେ ଅଶ୍ୱକଇଂ ରାୟେ କଲା ପୂଜା ।୧୬୮
ଅର୍ଜ୍ଜୁନ ବିଜୟେ ଯେ କଲା ତହିଂ ଯାଇଂ
ଅନେକ ଭଗତି ହୋଇଲା ନରସାଇଂ ।୧୬୯
ନିମନ୍ତଣ ବେଭାର ସେ କରଇ ବିବହି
ଚଳିଣ ଯାଅ ତୁମ୍ଭେ ଅଶ୍ୱମେଧ ଯାଗକୁ ଯେତେକ ସନ୍ୟ ଅଛି ।୧୭୦
ଶୁଣି ନରେନ୍ଦ୍ର ଅଶ୍ୱବଳ ସାଜି
ତୁଳେଣ ଘେନିଲା ଯେ ଦଶଲକ୍ଷ ବାଜୀ ।୧୭୧
ଅଶ୍ୱମେଧ ଯାଗକୁ ଚଳିଲା ନରପତି
ସମସ୍ତ ରାଜାମାନେ ସମ୍ଭରେ ଚଳିଯାନ୍ତି ।୧୭୨
ମାଧୁର୍ଯ୍ୟ ଦେଶର ରାଜା ମାଧବସେନ ରାୟେ
ତାହାର ରାଜ୍ୟରେ ଯାଇ ପଶିଲାକ ହୟେ ।୧୭୩
ଅଶ୍ୱକୁ ଧରନ୍ତେ ସେ କହିଲା ସର୍ବକଥା
ପାଣ୍ଡବଂକ ଅଶ୍ୱମେଧ ଯାଗର ବାରତା ।୧୭୪
ଅର୍ଜ୍ଜୁନକଇଂ ଦ୍ରଶନ କରଇ ଯାଇ ରାଜା
ଅର୍ଜ୍ଜୁନ ବୋଲଇ ରାଜା ତୋର ଅଶ୍ୱବଳ ଘେନି ଯା ଯା ।୧୭୫
ସକଳ ଅଶ୍ୱନ୍ତ ସେ କରିଣ ରତ୍ନ ମୟେ
ଚଳଇ ଇନ୍ଦ୍ର ପ୍ରଶସ୍ତେ ମାଧବସେନ ରାୟେ ।୧୭୬
ତହୁଂଣ ଅର୍ଜ୍ଜୁନ ଯେ ଅଶ୍ୱନ୍ତ ଚଳାଇ
ମାନଭଙ୍ଗ ଦେଶେ ପ୍ରବେଶ ହେଲା ଯାଇ ।୧୭୭
ଧୀରଅର୍ଜ୍ଜୁନ ବୋଲି ତହିଂର ନୃପତି
ତାହାର ରାଜ୍ୟେ ଅଶ୍ୱ ପଶିଲା ଯାଇଂ ଧାତି ।୧୭୮
ଧରନ୍ତେ ତାହାକଇଂ କହିଲା ସର୍ବ ହୟେ
ଶୁଣିଣ ପୂଜାକଲା ଅର୍ଜ୍ଜୁନ ମହାରାୟେ ।୧୭୯
ନିମନ୍ତ୍ରଣ ଯୋଗାଡ଼ ଦିଲାକ ଅର୍ଜ୍ଜୁନ
ଅଶ୍ୱ ଘେନିଣ ତହୁଂ ସେ ଚଳଇ ବହନ ।୧୮୦
ଅସକନ୍ଦ ବନର ରାଜା ନାମ ବୃହନାଳୀ
ଅଶ୍ୱ ଘେନିଣ ଅର୍ଜ୍ଜୁନ ତାହାର ରାଜ୍ୟେ ମିଳି ।୧୮୧
ଅଶ୍ୱକଇଂ ଧରନ୍ତେ ସେ କହିଲା ସର୍ବକଥା
ଅଶ୍ୱବଳ ଘେନି ତହୁଂ ଯାଗକୁ ଚଳିଲା ମହାରଥା ।୧୮୨
ନନ୍ଦୀବନେ ଯାଇଂ ବିଜୟେ ସର୍ବସାଚୀ
ନନ୍ଦକେଶ୍ୱର ରାଜା ତହିଂ ବିଜେ କରିଅଛି ।୧୮୩
ସେ ନନ୍ଦିକେଶ୍ୱର ରାଜା ଗୁହାଇଲେ ଅର୍ଜ୍ଜୁନଂକୁ
ଅମୃତସମ ଭୋଜନ ଦିଲେ ଯେ ତାହାଂକୁ ।୧୮୪
ଯଥାବିଧିରେ ସେ କରାନ୍ତି ଭୋଜନ
ଆଞ୍ଚୋବନ ସାରି କର୍ପୂର ତାମ୍ବୋଳ ଭକ୍ଷଣ ।୧୮୫
ନନ୍ଦିକେଶ୍ୱର ରାଜା ତାଂକୁ କହିଲେ ପରମାର୍ଥ
ଭୋଜନ ସଞ୍ଚ ଘେନି ଯାଇଥାଅ ଯେଥ ।୧୮୬
ଅମୃତ ଲଡୁ ଥୋକାଯେକ ଦିଲେ ମହାଯତି
ଯେହାକୁ ନିଅ ଯତନେ ପିପାସା ନୁଆସଇ ତୋରକତି ।୧୮୭
ନନ୍ଦିକେଶ୍ୱରେ ସମାର୍ଜ୍ଜଇ ବୀର ପାଥ
ଉଡ଼ଙ୍ଗ ଦେଶରେ ଯାଇ ବିଜୟେ ତୁରିତ ।୧୮୮
ତାହାନ୍ତ ନିମନ୍ତ୍ରଣ କରି ଚଳଇ ବହନ
ବିରାଳାଖ୍ୟ ଦେଶରେ ଯାଇ ପଶଇ ଅର୍ଜ୍ଜୁନ ।୧୮୯
ରାଜାକୁ ଚଳାଇ ତହୁଂ ଚଳଇ ଧନୁର୍ଜୟେ
କାମପୁର ନଗ୍ରେ ଯାଇଂ କଲେକ ବିଜୟେ ।୧୯୦
କନ୍ଦର୍ପ ରାଜାକୁ ଯାଇଂ କରଇ ନିମନ୍ତ୍ରଣ
ଅଶ୍ୱ ଘେନିଣ ରାଜା ତୁ ଚଳ ହୋ ଯେହିକ୍ଷଣ ।୧୯୧
କଳିଙ୍ଗ ଦେଶେ କଳିଙ୍ଗସେନକୁ ନିମନ୍ତି
ତହୁଂ ଚଳିଯାଇ ସେ ବୀରବର ସୁତ କୋନ୍ତୀ ।୧୯୨
ମହୀନ୍ଦ୍ର ଦେଶର ଯେ ଯୋଗେଶ୍ୱର ରାଜା
ସନ୍ୟ ଘେନିଣ ତୁହୋ ବହନ ଚଳି ଯା ଯା ।୧୯୩
ତହୁଂଣ ଚଳଇ ଯେ ବୀର ଫାଲଗୁନି
ଚଉରମଣ୍ଡଳ ଦେଶେ ପଶଇ ଅଶ୍ୱ ଘେନି ।୧୯୪
ପାଣିମଣ୍ଡଳ ଘେନି ଯେ କାଞ୍ଚନଗ୍ର ତିନି
ସେ ରାଜ୍ୟରେ ଅର୍ଜ୍ଜୁନ ଯେ ପଶଇ ଅଶ୍ୱ ଘେନି ।୧୯୫
ଲକ୍ଷଣବନ୍ତ ହୟ ବୋଲି ଧଇଲେ ନରେନ୍ଦ୍ର
ଅଶ୍ୱ ବୋଇଲା ରାଜାୟେ ମୋତେ ଧଇଲେ ହୋଇବ
ଅନେକ ଦ୍ୱନ୍ଦ ।୧୯୬
ବୋଲଇ ମହୀପତି ମୋତେ ତ୍ରଇଲୋକ୍ୟେ କେହୁ ସରି
ଅତି ଲକ୍ଷଣବନ୍ତ ହୟେ ତୋତେ କେହି ମୂର୍ଚ୍ଛି ପାରି ।୧୯୭
ବାଟ ଚାହିଂଣ ପାଥ ଯେଣେ ବିରସ ହୋଇଲା
ଯେତେବେଳ ପରିଯନ୍ତେ ଅଶ୍ୱ କିମ୍ପାଇ ନଇଲା ।୧୯୮
ଧନୁଶର ଭାରତୀ ଘେନିଣ ସର୍ବସାଚୀ
ରାଜ୍ୟ ଭିତରକୁ ବୀର ପଶିଣ ଯାଉଅଛି ।୧୯୯
ଅର୍ଜ୍ଜୁନ ବୋଲନ୍ତି ଆରେ ଶୁଣ ଦେଶାଉର
ଯାଇଂଣ କହ ତୋର ରାଜାର ଛାମୁର ।୧୦୦
ପାଣ୍ଡବଂକ ଅଶ୍ୱମେଧ ଯାଗ ବୋଲି କହ

ଆକାଶର ଅଶ୍ୱକଙ୍କ ବେଗେ ଛାଡ଼ିଦିଅ ।୧୦୧
ରାଜାର ଅଗ୍ରତେ ଯାଇ କହିଲେ ଚାର ଗଣ
ବୋଲଇ ମହୀକେଶରୀ ତାର ଶିର ଛେଦିଆଣ ।୧୦୨
ରାଜାର ବଚନେ ଗଲେ ଯୋଦ୍ଧା ବେନିକୋଟି
ଶତେପୁର କରି ଆସି ବେଢ଼ିଲେ କିରୀଟୀ ।୧୦୩
କାମ୍ୟେକ ଶରେ ଅର୍ଜୁନ ବେଗେ ତାଂକୁ ଭେଦି
ବେନିକୋଟି ଯୋଦ୍ଧାଂକର ଶିର ପକାଇଲା ଛେଦୀ ।୧୦୪
ଜଗତୀରେ ଥାଇଂ ତାହା ଦେଖିଲା ଭୂଅପାଳ
ଆପଣେ ବାହିଲା ଘେନି ତୁଲେ ଚତୁରଙ୍ଗ ବଳ ।୧୦୫
ଅଶ୍ୱେକ ଚଢ଼ିଣ ମିଳିଲା ଯାଇଂ ଅର୍ଜୁନର ପାଶ
କିମ୍ପାତେ ସଇନି ମୋର କଲୁ ଯେ ବିନାଶ ।୧୦୬
ଅର୍ଜୁନ ବୋଇଲା କିମ୍ପେ ଧଇଲୁ ଦେବ ହୟେ
ସେ ଅଶ୍ୱ ଧଇଲେ ହୋ ନ ସହନ୍ତି ଦେବତାୟେ ।୧୦୭
ମହୀକେଶରୀ ବୋଇଲା ତୁ ଅଶ୍ୱମେଧ ଯାଗକରି
ବେଳେକେ ନ ସହିଲୁ କିମ୍ପେ ଯେତେ ସନ୍ୟ ମୋର ମାରି ।୧୦୮
ତୁହି ଯେବେ ସନ୍ୟ ମୋର କଲୁ ଯେଥେ ନାଶ
ତିରଣ ପ୍ରମାଣେ କରି କାଟିବି ତୋର ମାଂସ ।୧୦୯
ଯେମନ୍ତ ଶୁଣି ହାବୋଡ଼ା ଶରେକ ମାଇଲା ଅରଜୁନ
ଅଶ୍ୱ ଉପରେ ପଡ଼ିଲା ସେ ରାଜା ହୋଇଣ ଉତାନ ।୧୧୦
ରାଜାର ପଡ଼ନ୍ତେ ବହୁତ ପଳାଇଲେ ସଇନି
ଆରେ ରହ ରହ ବୋଲି ଡାକ ଦିଅଇ ଫାଲଗୁନି ।୧୧୧
ଶ୍ରୀକରେ ପାଶେକ ଘେନିଣ ଅର୍ଜୁନ
ମହୀକେଶରୀ ରାଜାଂକୁ କଲେକ ବନ୍ଧନ ।୧୧୨
ଶିର ଛେଦନ୍ତେ ସେ ପ୍ରଣପତ୍ୟ ଅମନାତ୍ୟେ
ରଖ ହୋ ପାଥ ବୋଲି ବୋଲନ୍ତି ପାତ୍ର ଯେ ସାମନ୍ତେ ।୧୧୩
ରାଜାର ଶିର ଛେଦନ୍ତେ ହତ୍ୟାଦୋଷ ହୋଇବ ବହୁତ
ଭୋ ଦେବ ଯେହାକୁ ଛାଡ଼ିଦିଅ ବୀର ପାଥ ।୧୧୪
ରାଜାଂକୁ ତୁମ୍ଭର ଘେନି ଯାଅ ଯେହିମତେ
ଯାଗ ବରଣେ ଯାଉଛନ୍ତି ରାଜାୟେ ତାହାଂକ ସଙ୍ଗତେ ।୧୧୫
ଯେହି ବିଧାନ କରିଣ ତୁମ୍ଭେ ରଜାକଇଂ ଘେନିଯିବ
ବାଟରେ ଫେଡ଼ିଲେ ଶିର ଛେଦନ ହୋଇବ ।୧୧୬
ବନ୍ଧନ କରିଣ ନିଅନ୍ତେ ତାର ଯୋଦ୍ଧାମାନେ
ଦେଖିଣ ସମସ୍ତ ରାଜାୟେ ଭୟ କଲେ ମନେ ।୧୧୭
ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ଭୟେଣ ଚଳନ୍ତି ସମସ୍ତ ଦେଶର ମହୀପତି ।୧୧୮
ଅନେକ ଧନରତ୍ନ ମଣ୍ଡନ୍ତି ହୟମାନ
ଶ୍ୱେତ ଚାମର ଡାଳିମ୍ୟା ଲମ୍ୱନ୍ତି ନାନା ବର୍ଣ୍ଣ ।୧୧୯
ପାଟ ପତନୀ ଯେ ସିନ୍ଧୁଆ ନେତମାନ
ଲମ୍ୱନ୍ତି ଗଜ ମୁକୁତା ମାଣିକ୍ୟ ମଣିମାନ ।୧୨୦
ପଛିମେ ଦୁଇ ଊଣା ପଞ୍ଚାଶ ସହସ୍ର ରାୟେ
ସମସ୍ତ ରାଜାନ୍ତ ପଠିଆଇଲେ ଧନୁର୍ଦ୍ଧୟେ ।୧୨୧
ଦକ୍ଷିଣ ସାତ ସହସ୍ର ରାଜାୟେକ ଊଣା ଯୁଗତେ
ଅଶ୍ୱ ଚଳାଇ କରି ଯାଆନ୍ତି ଯେହିମତେ ।୧୨୨
ପୂର୍ବ ଦିଗର ତିନି ସହସ୍ର ନୃପତି
ଅଶ୍ୱନ୍ତ ଚଳାଇ ପାଥ ରାଜାନ୍ତ ନିମନ୍ତ୍ରି ସବୁନ୍ତି ।୧୨୩
ଗଙ୍ଗାପୁର ବିରୂପାକ୍ଷ ବୋଲି ରାୟେ
ତାହାର ନଗ୍ରେ ଯାଇ ପଶିଲାକ ହୟେ ।୧୨୪
ଦିବ୍ୟ ଅବତାର ରୂପ ଦିଶଇ ବାରାସ
ଲକ୍ଷେ ଭଣ୍ଡାର ଧନ ତାର ଶରୀରେ ବିକାଶ ।୧୨୫
ଲୀଳାଗତି କରି ଅଶ୍ୱ ଚଳଇ ରାଜ୍ୟର ଭିତରେ
ଧରି ନେଇ ଅଶ୍ୱକଲେ ରାଜାର ଛାମୁରେ ।୧୨୬
ଅଶ୍ୱଦେଖି ରାଜା ଚନ୍ଦ୍ରଶାଳା ପୁରେ ଥୋଇ
ଅଶ୍ୱ ବୋଇଲା ରାଜା ଛାଡ଼ିଦିଅ ମୁକୁଇଂ ।୧୨୭
ଆକାଶର ଅଶ୍ୱ ମୋତେ ଅର୍ଜୁନ ମର୍ତ୍ତ୍ୟପୁରେ ଆଣି
ତୋହୋର ରାଜ୍ୟରେ ଅରିଷ୍ଟି ପଡ଼ିବ ଯେହିକ୍ଷଣି ।୧୨୮
ତିନିଦିଗ ନିମନ୍ତ୍ରଣ କରି ଅଇଲେଣି ପାଥ
ତିନି ଉଉର ତିନି ସହସ୍ର ରାଜା ହୋଇଲେ ନିପାତ ।୧୨୯
କହନ୍ତେଣ ଅର୍ଜୁନ ରାଜ୍ୟରେ ତାର ପଶି
ଦେଖିଣ ଯୋଦ୍ଧାମାନେ ଆଗେ ଓଗାଳିଲେ ଆସି ।୧୩୦
ପାଞ୍ଚ ଅହିବ୍ରତ ଯୋଦ୍ଧା କଲେ ଆବରଣ
ଦେଖିଣ ଅର୍ଜୁନ ଯେ ପେଶିଲେ ହାବୋଡ଼ା ଶରବାଣ ।୧୩୧
ସମସ୍ତେ ପଡ଼ିଲେ ଯେ ଉତାନଶାୟୀ ହୋଇ
ନିଚେଷ୍ଟ ହୋଇଲେ ଯେ କାହାର ଗ୍ୟାଂନ ନାହିଂ ।୧୩୨
ଯାଗ ଧର୍ମ ନିମନ୍ତେ ପାଥ ନ ମାରଇ ପ୍ରାଣେ
ଦେଖିଣ ନରେନ୍ଦ୍ର ଯେ ଆସଇ ଆପଣେ ।୧୩୩
ଦଶ ସହସ୍ର ଯୋଦ୍ଧା ଘେନିଣ ମହୀପତ୍ୟେ
ଅର୍ଜୁନକଇଂ ବେଢ଼ିଲେ କରିଣ ପୁର ଶତେ ।୧୩୪
ଅବିଛନ୍ନେ ନାରାଜ ପେଷଇ ଫାଲଗୁନି
ମୋହନା ଶରେ ପଡ଼ିଲେ ବିରୂପାକ୍ଷର ସଇନି ।୧୩୫
ରାଜାହିଂ ପଡ଼ିଲେ ଶହସ୍ରଜାଳା ଘାୟେ
ଅସାକ୍ଷମ ହୋଇଣ ପଡ଼ିଲାକ ମହାରାୟେ ।୧୩୬
ରାଗେଣ ବିକେକର୍ଣ୍ଣକଟାର ଘେନି ପାଥ
କେଶ ଆକ୍ରେଷି ବୋଇଲା ଛେଦିବି ଯେହାର ମାଥ ।୧୩୭
କୁବଳୟା ନାମେ ଯେବଣ ଦେବ ଅଶ୍ୱେ

ସେ ବୋଇଲା ଅନ୍ୟୋଅନ୍ୟେ ନ କର ବିନାଶ ।୧୩୮
ଅଶ୍ୱର ବଚନେ ସେ ଛାଡ଼ିଲେ ତତକ୍ଷଣ
ଦଶଲହ ମୁଖେ ଭରି ରାଜା ପଶଇ ଶରଣ ।୧୩୯
କ୍ରୋଧ ଶାନ୍ତି କରି ନିମନ୍ତ୍ରଣ ଯୋଗାଡ଼ ଦିଲେକ ଫାଲଗୁନି
ଅଶ୍ୱମେଧ ଯାଗେ ଯାଆ ତୋର ଥାଠସନ୍ୟ ଘେନି ।୧୪୦
ତହୁଂ ଉତ୍ତର ଦିଗରେ ଚଳଇ ଫାଲଗୁନି
ତ୍ରିଗର୍ତ୍ତ ରାଜ୍ୟେ ପ୍ରବେଶ ହୋଇଲେ ବହନି ।୧୪୧
ତ୍ରିଗର୍ତ୍ତର ପୁତ୍ର ବ୍ରହ୍ମଗତ ବୋଲି ରାଜା
ଅଶ୍ୱକୁ ଦେଖି ସେ ଅନେକ କଲା ପୂଜା ।୧୪୨
ନିମନ୍ତ୍ରଣ ଘେନି ଯେ ଚଳଇ ଅଶ୍ୱ ତୁଲେ
ଇନ୍ଦ୍ରପ୍ରଶସ୍ତରେ ରାଜା ଯାଇଂଣ ବିଜେ କଲେ ।୧୪୩
ଅରବିନ୍ଦ ଦେଶକୁ ବିଜୟେ ଧନୁର୍ଜୟେ
ଦେଖିଣ ପୂଜାକଲା ମାଧବସେନ ରାୟେ ।୧୪୪
ଅଶ୍ୱମାନନ୍ତ ଘେନି ଯାଅ ଯାଅ ବହନ
ତହୁଂ ଚଳଇ ସେ ଯେ ବାସବ ନନ୍ଦନ ।୧୪୫
ମନ୍ଦାର ଦେଶରେ ବିଜୟେ ଫାଲଗୁନି
ଚଉରାଶି ସହସ୍ର ରାଜାମାନନ୍ତ ସଙ୍ଗେ ଘେନି ।୧୪୬
ମନ୍ତ୍ରୀ କହନ୍ତେଣ ଜାଣିଲା ନରପତି
ଧନେଣ ପୂଜାକଲା ଧର୍ମର ସେନାପତି ।୧୪୭
ନିମନ୍ତ୍ରଣ ପାଇଣ ସେ ଚଳଇ ଅଶ୍ୱ ଘେନି
ଚଳଇ ମହାରାଜା ତୁଲେ ଘେନିଣ ସଇନି ।୧୪୮
ନିମନ୍ତ୍ରଣ ପାଇଣ ସେ ହସ୍ତିନାକୁ ଗଲେ
ତହୁଂ କୁଶମଣ୍ଡଳେ ଅର୍ଜୁନ ପ୍ରବେଶ ହୋଇଲେ ।୧୪୯
ସେ ରାଜ୍ୟ ରାଜାକୁ ପୂଜାକରି ପେଶିଲେ ଯାଗକୁ
ତହୁଂ ଅର୍ଜୁନ ଚଳିଲେ ପଞ୍ଚାଳ ରାଜ୍ୟକୁ ।୧୫୦
ପଞ୍ଚାଳ ଦେଶରେ ଯାଇ ବିଜୟେ ଧନୁର୍ଜୟେ
ଦେଖି ମଧୁକେଶର ନଗ୍ରେ ଅନେକ ଉତ୍ସବ କରାୟେ ।୧୫୧
ମୁଣୋହି କରଇ ତହିଂ ବୀର ସର୍ବସାଚୀ
ଦ୍ରୁପଦ ନାତି ଧୃଷ୍ଟଦ୍ୟୁମନର ସୁତ ମଧୁକେଶର ତହିଂ ରାଜ୍ୟ
କରୁଅଛି ।୧୫୨
ନିମନ୍ତ୍ରଣ ପାଇ ଚଳଇ ନରନାଥ
ତୁଲେଣ ଘେନିଲା ତାର ଯୋଦ୍ଧା ଅଶ୍ୱମାନନ୍ତ ।୧୫୩
ଶିବପୁର ନଗ୍ରେ ପାଥ ଚଳଇ ତଡ଼ତି
ବିଷ୍ଣୁକର ପଣ୍ଡା ତହିଂ ରାଜ୍ୟ କରୁଛନ୍ତି ।୧୫୪
ଅଶ୍ୱ ପଶନ୍ତେଣ ଧଇଲା ତତକ୍ଷଣେ
ରତ୍ନମାଳା କାଞ୍ଚନ କାଢ଼ି ଘେନିଲା ବ୍ରାହ୍ମଣେ ।୧୫୫
ଅଶ୍ୱ ବୋଇଲା ତୁହୋ ଶୁଣସି ବିଷ୍ଣୁକର
ମୁହିଂ ହାଦେ ଦିଗବିଜେ କରଇ ପାଣ୍ଡବଂକ ସଙ୍ଗତର ।୧୫୬
ମତ୍ତ ଗର୍ବେ ତାହା ନ ଶୁଣଇ ଦ୍ୱିଜ
ଧନଦ୍ରବେ ଚାମର ସବୁ କଲାକ ଗ୍ରାହିଜ ।୧୫୭
ଅଶ୍ୱର ବିଳମ୍ବ ଦେଖିଣ ବୀରବର ପାଥ
ରାଜ୍ୟେ ପ୍ରବେଶ ହୋୟେ ଧନୁ ଶହସ୍ର ହାଥ ।୧୫୮
ଉପାଧି ଯୋଦ୍ଧା ଦେଖି ଧାଇଂଲେ ବ୍ରାହ୍ମଣେ
ବେଢ଼ିଲେ ଅର୍ଜୁନକୁ ବିନ୍ଧିଲେ ଯନ୍ତ୍ରବାଣେ ।୧୫୯
କ୍ରୋଧେ ତିମ୍ଭର ଶହସ୍ରେକ ବିନ୍ଧିଲା ସର୍ବସାଚୀ
ମୋହେଣ ଦ୍ୱିଜବରେ ପଡ଼ିଗଲେ ନ ଚେତନ୍ତି କିଛି ।୧୬୦
ସଇନି ନିଚେଷ୍ଟ ଦେଖିଣ ବିଷ୍ଣୁକର
ଆପଣେ ବିଜେ କଲେ ପାଞ୍ଚଲକ୍ଷ ବଳ ଯେ ସଙ୍ଗର ।୧୬୧
ମନ୍ତ୍ରକେତନ ପ୍ରାୟେକ ଦିଶଇ ସବୁଂକରି କାୟେ
ଦିଶଇ ବିଷ୍ଣୁକର ଅଳକା ପତି ପ୍ରାୟେ ।୧୬୨
ଉଚ୍ଛସର୍ବା ପ୍ରାୟେକ ଆରୋହୀ ବାରାସ
ଅର୍ଜୁନ ଛାମୁରେ ଆସି ବିଜେ କଲେ ବିଷ୍ଣୁଦାସ ।୧୬୩
ଅନେକ ବୀର ତୁର ଟମକ ନିଶାଣ ବଜେଣୀ
ଦେଖିଣ ବିଚାରଇ ଯେ ବୀର ଫାଲଗୁନି ।୧୬୪
ବିଷ୍ଣୁକର ପଣ୍ଡାୟେ ମୋତେ ନୁଆରିଲ ଚିହ୍ନି
ମୁହିଂ ସେ ଅର୍ଜୁନ ସିନା ଅଟଇ ବୀର ଫାଲଗୁନି ।୧୬୫
ବିଷ୍ଣୁକର ବୋଇଲା ତୋର ଯେଡ଼େକ ସାହସ
କିମ୍ଭୁତ ମାୟାରେ ତୁ ପାଇଲୁ ବାରାସ ।୧୬୬
ମୁହିଂ ଯେ ମହା ଅରଣ୍ୟେ ଅଟଇ ଅଧିକାରୀ
ଚଣ୍ଡାଳ ବଳଧ୍ୱଂସନ ଅଟଇ ମୋହୋରି ।୧୬୭
ସମସ୍ତ ରାଜାମାନେ ଆସନ୍ତି ମୋର ପୁର
ଯେମନ୍ତେ କଥାମାନ କହୁଛି ତୁମ୍ଭର ଆଗର ।୧୬୮
ଦଇତ ଦାନବ ନାଶ କରଇ ତୁମ୍ଭରି
ଯେ ମହା ଅରଣ୍ୟେ ମୁଂ ଅଟଇ ଅଧିକାରୀ ।୧୬୯
ବିଷ୍ଣୁକର ବୋଲଇ ମାନବ ହୋଇ ମୋହୋର ରାଜ୍ୟେ ପଶୁ
ଯେକାମାତ୍ର ହୋଇ ତୁ କିସ ଯେ ଭରସୁ ।୧୭୦
ଆମ୍ଭର ପ୍ରାୟେ ବ୍ରାହ୍ମଣ ଆଶକଲା ଅଶ୍ୱକୁ
ଛାଡ଼ିଯାଅ ମହାତ୍ମା କଲ୍ୟାଣ ହୋଉ ତୁକୁ ।୧୭୧
ଶୁଣିଣ ଦ୍ରହସିତ ହୋଇଲେ ଧନୁର୍ଜୟେ
ଆମ୍ଭନ୍ତ ଚିହ୍ନି ନୁଆରିଲ କି ବିଷ୍ଣୁ ପଣ୍ଡାୟେ ।୧୭୨
ତୁମ୍ଭେ ଥିଲ ଯେହି ନଗ୍ର ବାହିଜ ହୋଇ
ଭିକ୍ଷାପାତ୍ରେ ତୁମ୍ଭ ଘରେ ଆମ୍ଭ ରହିଥିଲୁ ପାଞ୍ଚ ଭାଇ ।୧୭୩
ଗଉତମୀକି ଆମ୍ଭେ ଯେ ଗଲୁ ସ୍ନାହାନ କରି
ଭୀମସେନ ଠାକୁରେ ଯେଥି ଚାଣ୍ଡାଳ ବଳ ମାରି ।୧୭୪

ଯେହ୍ନା ଶୁଣିକରି ବିଷ୍ଣୁକର ତେଜିଲେ ତୁରଙ୍ଗ
ପାଦା ଅର୍ଘ୍ୟ ଦିଅଇ ଅର୍ଜ୍ଜୁନ ପାଦଯୁଗ ।୧୭୫
ଅନେକ ବିନୋୟୀ ସେ ଭଗତିଭାବ ବହି
ଅର୍ଜ୍ଜୁନ ବୋଇଲେ ମୋତେ ରହିତେ ବେଳ ନାହିଂ ।୧୭୬
ମକର ମାସେ ହୋଇବ ଅଶ୍ୱମେଧ ଯାଗ
ଯେକା କ୍ଷଣକେ ମୁଂ ନିମନ୍ତ୍ରଣ କରିବି ଚାରିଦିଗ ।୧୭୭
ଅଶ୍ୱନ୍ତ ଘେନି ତୁମ୍ଭେ ଯାଅ ଯା ବହନେ
ସମସ୍ତ କଥାମାନ ହୋଇ ସିନା ଯାଗଥାନେ ।୧୭୮
ଯେତେ ବୋଲିଣ ଚଳଇ ପାଥ ଅତି ଖରେ
ଅଶ୍ୱ ବଳ ଘେନି ତହୁଂ ଚଳଇ ବିଷ୍ଣୁକରେ ।୧୭୯
ତହୁଂ ଯାଇଂ ପ୍ରବେଶ ହୋଇଲେ ନଗ୍ର ଉଜାଣକାନ୍ତି
ଅଶ୍ୱ ଚଳାଇ ସେ ରାଜାକୁ ଆଣିବେ ନିମନ୍ତି ।୧୮୦
ଚଳଇ ଅର୍ଜ୍ଜୁନ ଯେ ଦେଶ ମରହଟ୍ଟ
ସେ ରାଜାକଇଂ ନିମନ୍ତ୍ରିଣ ଚଳଇ ଗରିଷ୍ଟ ।୧୮୧
ମଦହୁଳ ଦେଶେ ଯାଇଂ ବିଜୟେ ଫାଲଗୁନି
ସେ ରାଜାକଇଂ ଚଳଇ ମହାଅଶ୍ୱ ଘେନି ।୧୮୨
ଅଶ୍ୱନ୍ତ ଚଳାଇ ତହୁଂ ଚଳଇ ବିବସ
କାଶୀନଦୀ କୂଳେ ଦେବ ଅଟଇ ଦେଶ ମତ୍ସ୍ୟ ।୧୮୩
ଉତ୍ତମ କୁମର ପୁତ୍ର ବୃଷସେନ ବୋଲି ରାୟେ
ତହିଂ ଅର୍ଜ୍ଜୁନ ଯେ ମୁଣୋହି ଯାଇଂ କଯେ ।୧୮୪
ସେ ରାଜାକୁ ଚଳାଇ ଚଳଇ ବାସବି
ପ୍ରବେଶ ହୋଇଲେ ଯାଇଂ ମାଳବ ନାମେ ଭୁବି ।୧୮୫
ଚନ୍ଦ୍ରବ୍ରହ୍ମ ନାମେ ଯେ ତହିଂର ନରପତି
ଅଶ୍ୱ ଚଳାଇ ଅର୍ଜ୍ଜୁନ ତାହାନ୍ତ ନିମନ୍ତି ।୧୮୬
ତହୁଂ ବନ ଗହନେ ଚଳଇ ଫାଲଗୁନି
ଯେକା ଚକ୍ର ନଗ୍ରେ ପ୍ରବେଶ ଅଶ୍ୱ ଘେନି ।୧୮୭
ବେଦ ଶ୍ରବଣ ପଣ୍ଡାୟେ କରନ୍ତି ତହିଂ ରାଜ୍ୟ
ମହାସମ୍ଭରେ ତାର ବଡ଼ାଇ ଅଇଶୂର୍ଯ୍ୟ ।୧୮୮
ଯହୁଂ ଡଗର ମୁଖେଣ ପାଇଲେ ବାରତା
ଅର୍ଜ୍ଜୁନକଇଂ ଦ୍ରଶନ କଲା ଯାଇଂ ବ୍ରହ୍ମବେତ୍ତା ।୧୮୯
ଅନେକ ପୂଜା ବିଧି କରଇ ବେଦଶ୍ରବଣ
ତାହାର ପୁରେ ମୁଣୋହି କଲେକ ଅର୍ଜ୍ଜୁନ ।୧୯୦
ନିମନ୍ତ୍ରଣ କରଇ ବୀର ଫାଲଗୁନି
ଇନ୍ଦ୍ର ପ୍ରଶସ୍ତେ ଚଳ ପଣ୍ଡାୟେ ଅଶ୍ୱ ବଳ ଘେନି ।୧୯୧
ତହିଂରୁ ଚଳାଇ ଗଲା ଧନୁର୍ଜ୍ଜୟ ପାଥ
କାଉଂରୀ ଦେଶରେ ଆସି ହୋଇଲା ପ୍ରବେଶ ତୁରିତ ।୧୯୨
ମାଳବସେନ ବୋଲି ତହିଂର ଦଣ୍ଡଧାରୀ
ଅର୍ଜ୍ଜୁନଙ୍କୁ ଦେଖି ସେହି ନମସ୍କାର କରି ।୧୯୩
ନିମନ୍ତ୍ରଣ କରି ତାକୁ ବୀର ଫାଲଗୁନି
ଚଳଇ ସେହୁ ରାଜା ତାହାର ସୈନ୍ୟ ଘେନି ।୧୯୪
ତହିଂରୁ ଚଳାଇ ଗଲା ବୀର ସର୍ବସାଚୀ
କର୍ଣ୍ଣାଟ ବୋଲିଣ ରାଜ୍ୟ ମର୍ତ୍ତ୍ୟର ବାରସ୍ୱତୀ
ତହିଂ ଯାଇଂ ପ୍ରବେଶ ବିଚିତ୍ରବାର୍ଯ୍ୟର ନାତି ।୧୯୫
ଅଶ୍ୱ ଦେଖିଣ ରାଜା ଧରିଲା କୁତୂହୋଳେ
ଯତନେ ଥୋଇଲା ରାଜାର ରତ୍ନ ଦେଖି ଭୋଳେ ।୧୯୬
ଅଶ୍ୱ ବୋଇଲା ତୁ ରାଜା ନ ଧରସି ମୋତେ
ଅନେକ ରାଜା ନାଶ ଗଲେନି ମୋ କଥା ଲଂଘତେ ।୧୯୭
ମନ୍ତ୍ରୀ ବୋଇଲା ଯାକୁ ଛାଡ଼ ହୋ ନୃପମଣି
ଅଶ୍ୱ ହୋଇ କହଇ ଯେ ମନୁଷ୍ୟର ବାଣୀ ।୧୯୮
ଶୁଣିଣ ନରେନ୍ଦ୍ର ଯେ କଲାକ ମୁରାଟ
ଯେହାପାଇଁ ଦେଖିବା ଆସୁ କାହାର କେତେ ଥାଠ ।୧୯୯
ମନ୍ତ୍ରୀ ବୋଇଲା ରାଜା ତୁ ନକଲୁ ମୋର ବୋଲ
କାଳେଣ ଜାଣିମା ନା ନୋହିବା କିଛି ଭଲ ।୨୦୦
ଯେସନେକ ସମୟେ ଆସି ବୀର ଧନୁର୍ଜ୍ଜୟେ
ରାଜ୍ୟେ ପଶନ୍ତେଣ ଓଗାଳିଲେ ପାରିଦଣ୍ଡ ଶୟେ ।୨୦୧
ସେ ରାଜାର ପାରିଦଣ୍ଡ ବଳ ଅପ୍ରମିତ
ମହା ମହା ଅଶ୍ୱ ଚଢ଼ିଣ ବଳବନ୍ତ ।୨୦୨
ଥାଠ ବେଢ଼ନ୍ତେ ତାକୁ ଦେଖିଲା ଫାଲଗୁନି
ଗନ୍ଧର୍ବା ଶହସ୍ରେକ କରେଣ ବୀର ଘେନି ।୨୦୩
ମନଭେଦୀ ଶହସ୍ରକୁ ତିଆରଇ ସର୍ବସାଚୀ
ସନ୍ୟ ସକଳ ପାଦାନ୍ତି ମାର ତୁହି ବାଛି ।୨୦୪
ଅଶ୍ୱମାନେ ଥାଆନ୍ତୁ ଯେଣେ ଆମ୍ଭର ଅଛି କାର୍ଯ୍ୟ
ତିଆରି ପେଷିଲା ସେ ଗନ୍ଧର୍ବା ନାରାଜ ।୨୦୫
ଅକାଶରୁ ଶର ସେ ଯେ ପଡ଼ିଲା ତୀକ୍ଷମୁନା
ନିମିଷକେ ଛେଦିଲା ସେ ସବୁଂକରି ସେହ୍ନା ।୨୦୬
ଯେକା ନାରାଜକେ ସବୁଂକରି ସେହ୍ନା ଫୁଟି
କଳପି ରାଜା ବଳ ପଡ଼ିଲେ ମହୀଲୋଟି ।୨୦୭
ଯେ ଅବା ଉବୁରି ପଳାଇଲେ ପ୍ରାଣ ଘେନି
ରାଜାର ଅଗ୍ରତେ କହନ୍ତି ବିନୟେ ଦୟିନି ।୨୦୮
ଶୁଣିଣ କୋପେ ପ୍ରଜ୍ୱଳିତ ମହାରାଜ
ଦଣ୍ଡ ସାଜଇ ସେ ରାଜା ଲକ୍ଷେକ ମତ୍ତଗଜ ।୨୦୯
ଗଜବଳ ଦେଖି ସେ କୋପେଣ ବୀରମଣି
ଖୁର୍ପ ନାରାଜେକ ସେ ବିନ୍ଧିଲା ବେଗେ ଟାଣି ।୨୧୦
ଲକ୍ଷେ ଗଜଂକର ସେ ଛେଦିଲା କୁମ୍ଭସ୍ଥଳ

ଗଜ ତେଜିକରି ତହୁଁ ପଳାଇଲା ମହୀପାଳ ।୨୧୧
ଛିଣି ନୁଆରିଣ ରାଜା ପଳାଇଲା ଭୟେ
ଢେଙ୍କାବଳୀ ନଗ୍ରେ ଯାଇଂ ଶରଣ ସମ୍ଭାୟେ ।୨୧୨
ସେ ଢେଙ୍କାବଳୀ ନଗ୍ରେ ବଭ୍ରୁବାହାନ ବୋଲି ରାଜା
ବଡ଼ାଇ ଧାର୍ମିକ ସେହୁ ହେଙ୍ଗୁଳା କରଇ ପୂଜା ।୨୧୩
ଗୋଡ଼ାଇ ଅର୍ଜୁନ ଯେ ପଶଇ ତାର ଦେଶେ
ଆଗହୋଇ କଟକେ ପଶଇ ବାରାସେ ।୨୧୪
ଅଶ୍ୱ ଦେଖିକରି ଯେ ନେଲେ ତାହାକଇଂ ଧରି
ଚନ୍ଦ୍ରଶାଳା ମନ୍ଦିରେ ନେଇ ରାଜା ରଖାୟେ ଯତ୍ନକରି ।୨୧୫
ଅଶ୍ୱ ବୋଇଲା ମୋତେ ନଧର ତୁ ବାବୁ
ଯେ ସୁକୁମାର ଦେହ ଗୋଟି ତୁ ନାଶ କରାଇବୁ ।୨୧୬
ଶୁଣିକରି ତାକୁ ବୋଇଲା ବଭ୍ରୁ ଯେ ବାହନ
ତ୍ରଇଲୋକ୍ୟେଣ ମୋତେ କେହି ନାହିଂନା ସମାନ ।୨୧୭
ଗଜ ଅଶ୍ୱ ପାଦାନ୍ତି ସଇନି ମୋର ଦେଖ
ପାଟ ଅଶ୍ୱ ନ ପାଇ ମୁଂ ହୋଇଥିଲି ବିମୁଖ ।୨୧୮
ତୋତେ ଘେନିକରି ମୁଂ ବସିବି ହସ୍ତିନା
କଉରୋବେ ମଲେ ସେ ମୋହୋର ରାଜ୍ୟ ସିନା ।୨୧୯
ଯେତେ ବୋଲିକରି ରାଜା ପ୍ରତଗ୍ୟାଂ କରନ୍ତେ
ରାଜ୍ୟର ଭିତରେ ଯାଇଂ ପଶିଲା ବୀର ପାଥେ ।୨୨୦
ଲକ୍ଷେକ ଗଜ ଯେ ବେନିଲକ୍ଷ ହୟେ
ଅର୍ଜୁନକଇଂ ଓଗାଳନ୍ତି ପାରିଦଣ୍ଡ ରାୟେ ଶୟେ ।୨୨୧
ରାଗେଣ ନାରାଜ ଯେ ପେଶିଲା ମନଭେଦୀ
ଗଜ ଯୋଦ୍ଧାମାନନ୍ତ ସେ ପକାଇଲା ଛେଦି ।୨୨୨
ସୂଚିମୁନା ନାରାଚେକ ବିନ୍ଧଇ ମହାବଳୀ
ଗଜର କୁମ୍ଭ ସ୍ଥଳେ ପଡ଼ି ଛଇଛାତେ ଗଲା ନିକିଳି ।୨୨୩
କଣ୍ଠ ଗରଜନ ଦେଇ ପଡ଼ିଲେବ ଲକ୍ଷେ ଗଜ
ଦେଖିଣ ବାହାର ସେ ହେଲା ବଭ୍ରୁ ବାହାନ ରାଜ ।୨୨୪
ଅଶ୍ୱମାନେ ଯେ କିଛି ନୋହିଛନ୍ତି କ୍ଷୟେ
ଗଜ ପାଦାନ୍ତିଂକୁ ଯେ ବିକୋଟିଲା ଧନୁର୍ଜୟେ ।୨୨୫
ଅନେକ ସଇନି ଘେନି ବଭ୍ରୁବାହନ ରାଜେ
ସାତଲକ୍ଷ ସଇନି ଛେଦିଲା ଅର୍ଜୁନ ପାଶୁପତ୍ର ନାରାଜେ ।୨୨୬
ଅପାର ସଇନି ପଡ଼ିଲେ ଯହୁଂ ଲୋଟି
ଯେକସରେ ବଭ୍ରୁବାହନ ରାୟେ ଉଠି ।୨୨୭
ବଭ୍ରୁବାହନଇ ଯେକା ଅର୍ଜୁନହିଂ ଯେକା
ସମରେ ଯେକମୁଖ ଅଟନ୍ତି ଦୁହେଂ ଯେ ନିଶଂକା ।୨୨୮
ବଭ୍ରୁବାହାନ ପେଷିଲା ଯେ ପନ୍ନଗା ଶର ବାଣ
ଗରୁଡ଼ା ଶରେ ଅର୍ଜୁନ ତାହା କଲାକ ଭଙ୍ଗାଣ ।୨୨୯
ମନୋହର ଶରେକ ବିନ୍ଧିଲା ବୀର ଧରି
କମ୍ୟୋକ ଶରେ ତାହା ଅର୍ଜୁନ ନିବାରି ।୨୩୦
ପୁଣି ବିନ୍ଧିଲା ସେ ଅମୋହ ଶକତି
ବଜ୍ରାଶରେ ତାହା ଅର୍ଜୁନ ନିପାତି ।୨୩୧
ରାଗେଣ ଅର୍ଜୁନ ବିନ୍ଧିଲାକ ଅଗ୍ନିବାଣ
ମେଘା ଶରେ ତାହା ଛେଦିଲା ବଭ୍ରୁ ଯେ ବାହାନ ।୨୩୨
ବଭ୍ରୁ ବାହାନ ପୁଣ ଆବ୍ରତେକ ଶର ଯେ ପେଷଇ
ପବନା ଶରେ ତାହା ଅର୍ଜୁନ ଛେଦଇ ।୨୩୩
ବଭ୍ରୁ ବାହାନ ରାଜା ଯେ ମାଇଲାକ ଶୂଳେ
ଅର୍ଜୁନ ନିବାରିଲା ତାହା ଶହସ୍ର କୋଦାଳେ ।୨୩୪
ଶୁଣ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ରଣେ ବିମୁଖ ପାଥ ନୋହିଲା ନିବୃତ୍ତି ।୨୩୫
ନାରାୟଣ ଶହସ୍ର ସେ ଧଇଲା ସର୍ବସାଚୀ
ବ୍ରହ୍ମ ଶହସ୍ରେକ ବଭ୍ରୁ ବାହାନ ଦେଖି ଯୋଚି ।୨୩୬
ବେନି ଶହସ୍ର ଯେ ଅଟନ୍ତି ଅପାଳଟ
ଇନ୍ଦ୍ର ରୁଦ୍ର ହୋଇଲେ ଅବଶ୍ୟ ହୋଇବ ତାହାର ଶିର କାଟ ।୨୩୭
ଅର୍ଜୁନ ତିଆରଇ ଦେବଶହସ୍ର ନାରାୟଣ
ଯେ ମୋଡ଼ାର ଯେହିକ୍ଷଣି ଘେନସି ପରାଣ ।୨୩୮
ବଭ୍ରୁ ବାହାନ ତିଆରଇ ବ୍ରହ୍ମ ଯେ ଶରକୁ
ଯେହିକ୍ଷଣି ଯାଇଣ ତୁ ମାରିପକା ଯେ ମୋଡ଼ାକୁ ।୨୩୯
ଯେକଇ ବେଳେ ଦୁହେଂ ବିନ୍ଧିଲେ ଯେ ଶହସ୍ର ବେନି
ବ୍ରହ୍ମଶର ବିଘାତେ ଯେ ପଡ଼ିଲା ଫାଲଗୁନି ।୨୪୦
ନାରାୟଣା ଶହସ୍ର ଘାତେ ବଭ୍ରୁ ବାହାନ ଯେ ପଡ଼ି
ଯେକା କ୍ଷଣକେ ଦୁହେଂ ହୋଇଲେ ନିବାରି ।୨୪୧
ଯେ ବିଧିରେ ଦୁହେଂ ହୋଇଲେ ପ୍ରାଣ ନାଶ
ଧନୁମାସ ଅନ୍ତେ ମକର ମାସ ପରିବେଶ ।୨୪୨
ମହୀମଣ୍ଡଳ ମଧ୍ୟେ ଲକ୍ଷେକ ନୃପତି
ସମସ୍ତେ ଇନ୍ଦ୍ର ପ୍ରଶସ୍ତେ ପ୍ରବେଶ ହୁଅନ୍ତି ।୨୪୩
ଯାଗରେ ବସିଲେ ଯେ ମୁନି ମାନନ୍ତ ବରି
ବ୍ୟାସ ବଶିଷ୍ଠ ଅଗସ୍ତି ମାରକଣ୍ଡ ବିଶ୍ୱାମିତ୍ର ଆଦିକରି ।୨୪୪
ଯୁଧିଷ୍ଠି ବୋଇଲେ ତୁ ଶୁଣରେ ସହଦେବ
ହୃଦୟ ବଇକୁଳ୍ୟ କିମ୍ପେ ମୋର ବିଚଳିତ ଭାବ ।୨୪୫
ଉତ୍ତର ଦିଗନ୍ତ ମୋତେ ଅନ୍ଧାରମୟେ ଦିଶି
ପ୍ରାଣ ଶେଷକାଳ ପ୍ରାୟେତ ନିଶ୍ୱାସ ନ ପଶି ।୨୪୬
ସହଦେବ ବୋଇଲା ଦେବ ହୋଇଲା ବିପଦ
ଅର୍ଜୁନ ଠାକୁରଂକୁ ତ ପଡ଼ିଲା ପ୍ରମାଦ ।୨୪୭
ଢେଙ୍କାବଳୀ ରାଜ୍ୟେ ବଭ୍ରୁବାହାନ ବୋଲି ରାୟେ

ଦୁହେଂ ପଡ଼ିଲେ ଯେ ବ୍ରହ୍ମଶର ନାରାୟଣା ଶର ଘାୟେ ।୨୪୮
ଶୁଣି ବିଚାରନ୍ତି ଧର୍ମରାୟେ ଯୁଝେଷ୍ଟି
ପୃଥିବୀରେ ଯେତେ ବଳବନ୍ତ ସେ କେତି ।୨୪୯
ସହଦେବ ବୋଇଲେ ସ୍ୱାମୀ ଶୁଣିମା ଗତ କଥା
ଯେବଣ କାଳେ ବନକୁ ଗଲେ ଅର୍ଜ୍ଜୁନ ବଳବନ୍ତା ।୨୫୦
ଖାଣ୍ଡବ ବନ ଦହନ କଲେ ଯେବଣ ବନବାସେ
ଶତଧନୁର ନିମନ୍ତେ କୃଷ୍ଣେ ଅବିଶ୍ୱାସେ ।୨୫୧
ସେ ବେଳରେ ଥିଲେ ପାଥ ତ୍ରିୟମ୍ବକ ବନେ
ତିନି ବରଷ ରହିଲେ ପାଥ ହିଙ୍ଗୁଳା ପ୍ରସନ୍ନେ ।୨୫୨
ଚିତ୍ରାଂକୁର ନାମେଣ ଯେ ଯେକଇ ଶବର ନୃପତି
ମହ୍ଲାର ଦେଶର ସେ ଅଟଇ ଚକ୍ରବ୍ରତୀ ।୨୫୩
ସେ ଚିତ୍ରାଂକୁର ରାଜ୍ୟ ବଳେ ଘେନିଲା ମରହଟ୍ଟ
ସମସ୍ତ ସମ୍ପଦ ଛାଡ଼ି ପଳାଇଲା ମରହଟ୍ଟଂ ବଇରାଷ୍ଟ ।୨୫୪
ଅର୍ଜ୍ଜୁନ ରହିଅଛି ହିଙ୍ଗୁଳା ପରଖି
ଚିତ୍ରାଂକୁର ରାଜା ଶରଣ ପଶିଲା ଅର୍ଜ୍ଜୁନକଇଂ ଆସି ।୨୫୫
ଚିତ୍ରାଂକୁର ପାଇଂ ମାରିଲା ପାଥ ସମରେ ମରହଟ୍ଟ
ପଞ୍ଚଘଡ଼ି ସମୟେ ଯେ ପଡ଼ିଲେ ତାର ଥାଟ ।୨୫୬
ଚିତ୍ରାଂକୁର ରାଜାକୁ ଦିଲା ସଦଗତି
ମହ୍ଲାର ମରହଟ୍ଟ ଦୁଇ ରାଜ୍ୟରେ କଲା ଚକ୍ରବ୍ରତୀ ।୨୫୭
ହେଙ୍ଗୁଳାକ୍ଷୀ ବୋଲିକରି ତାହାର ପ୍ରମଦା
ତାହାର ଦୁହିତା ଯେ ଉଲୁପି ଚିତ୍ରାଙ୍ଗଦା ।୨୫୮
ଅନେକ ବିନୟ କରି ତହୁଂ ପାଥକଇଂ ଘେନିଗଲା
ଉଲୁପୀ କନ୍ୟାକୁ ଆଣି ପ୍ରଦାନ କରାଇଲା ।୨୫୯
ଯଉତୁକ କରି ଦିଲା ସେ ଚିତ୍ରାଙ୍ଗଦାକୁ
ସମରାଜ୍ୟ ଘେନି ତିନି ବରଷ ସେବା କଲା ପାଥକୁ ।୨୬୦
ସେ ଉଲୁପୀର ଗର୍ଭେ ଅର୍ଜ୍ଜୁନର ବୀର୍ଯ୍ୟେ ରହିଲା ସନ୍ତାନ
ବେନିମାସ ଗର୍ଭେ ତହୁଂ ଅଇଲେ ଅରଜୁନ ।୨୬୧
ସୋହୋଦ୍ରା ବିଭା ହୋଇଲେ ଦ୍ୱାରିକା
ପିତା ଘରେ ରହିଥିଲେ ବେନି ଯେ ନାୟେକା ।୨୬୨
ସେ ଉଲୁପୀର ଗର୍ଭୁଂ ଉପୁଜିଲା ନାନ
ସେ ପୁତ୍ର ନାମ ଦିଲେକ ବଭ୍ରୁ ଯେ ବାହାନ ।୨୬୩
ଶୁଣ ଯୁଝେଷ୍ଟି ଦେବ ସହଦେବ କହଇ
ପିତା ପୁତ୍ର ବୋଲି ଦେବ ନ ଜାଣନ୍ତି କେହି ।୨୬୪
ଦୁହେଂ ସମାନ ଦେବ ନୁହନ୍ତି କେହି ଓଛ
ତେଣୁକରି ତା ସମରେ ପଡ଼ିଲେ ବିବଛ ।୨୬୫
ବଡ଼ ବଳବନ୍ତା ସେ ବଭ୍ରୁ ଯେ ବାହାନ
ମନ୍ଦର ଲୋକାଲୋକି ମଧରେ ତାହାର ଯେ ଥାନ ।୨୬୬
କଟକ ନାମ ତାର ଜେନାବଳୀ ଅଟଇ
ବଡ଼ାଇ ସମର୍ବେ ରାଜା ରାଜ୍ୟ ତା ପାଳଇ ।୨୬୭
କଳପି ରାଜା ହୋୟେ ଅର୍ଜ୍ଜୁନେ ବିବାଦୀ
ପଳାଇ ଯାଇ ବଭ୍ରୁ ବାହାନ ଶରଣ ସମ୍ପାଦି ।୨୬୮
ତାହାର ନିମନ୍ତେ ଦେବ ହୋଇଲା ଅନ୍ୟୋଅନ୍ୟି
ଯେକ ସମରେ ସେ ଦେବ ପଡ଼ିଲେ ଯେ ବେନି ।୨୬୯
ବ୍ୟାସେ ବୋଇଲେ ଯୁଝେଷ୍ଟି ଯାଗ କରୁଥାଅ ତୁମ୍ଭେ
ସେହି ରଣସ୍ଥାନକୁ ଯାଉଅଛୁଂ ଆମ୍ଭେ ।୨୭୦
ଯୁଝେଷ୍ଟି ଦେବେ ବୋଇଲେ ସେ ଅଛି ଅଶୀ ସହସ୍ର ଯୋଜନେ
ତୁମ୍ଭେ ଯାଇଂ ସେଠାରେ ମିଳିବ କେତେ ଦିନେ ।୨୭୧
ଆବର ସୋଦର କି ମୁଂ ନୟନେ ଦେଖଇ
ପାଞ୍ଚଭ୍ରାଥ ଥିଲୁଂ ଆଛୁଂ ଯେକ ଉପେଖଇଂ ।୨୭୨
ବ୍ୟାସେ ବୋଇଲେ ତୁ ଆଉ ନ କର କାରୁଣ୍ୟ
ଆମ୍ଭେ ଯାଇଂ ପ୍ରବେଶ ହୋଇବୁ ଯେହିକ୍ଷଣ ।୨୭୩
ଜୟତୁ ବେଦବ୍ୟାସେ ମାହାନ୍ଦ୍ର ଯୋଗ କାୟେ
ପିତା ପାରେଶ୍ୱର କଇବର୍ତ୍ତୀ ଯାର ମାୟେ ।୨୭୪
ଅନୁବ୍ରତେ ଭାବନା ଯେ ବିଷ୍ଣୁନାଥ ମହିମାଂ
ଯାହାକଇଂ ହୃଦରେ ସୁମରଇ ବେଦବ୍ରହ୍ମା ।୨୭୫
ମନ ଯେତେ କର୍ମ ତେତେ ତାହାର ତେତେ କାୟା
କୋଟି ବ୍ରହ୍ମାଣ୍ଡେ ଯେକା କ୍ଷଣକେ ହୋୟେ ମାୟା ।୨୭୬
ଅଛି ଅଛି ନାହିଂ ନାହିଂ ଯେବଣ ପୁରୁଷ
ମନ ପବନ ଯାହାର ଯେକତହିଂ ଅଭ୍ୟାସ ।୨୭୭
କେ ସ୍ୱର୍ଗ କେ ପାତାଳ କେ ରାତ୍ରକେ ଦିବସ
ଯାହାର ଗର୍ଭଅନ୍ତ କରି ନୁଆରନ୍ତି ତ୍ରିଦଶ ।୨୭୮
ମୁହିଂ କିସ ସଞ୍ଚପି କହିବି ତାହାଂକ ମହିମାଂ
ଅକାଳ ଅମୃତୁ ଯେବଣ ମହାତମା ।୨୭୯
ସେ ବ୍ୟାସ ଚରଣେ ମୁହିଂ ଜନ୍ମେ ଜନ୍ମେ ସେବି
ପ୍ରଣପତ୍ୟ ଶତ ସହସ୍ର ସାରୋଳ ଦାସ କବି ।୨୮୦
ଯୁଝେଷ୍ଟିଂକ ସଙ୍ଗେ କଥା ହୋଉଥିଲେ ସଧେ
ଅଶୀ ସହସ୍ର ଯୋଜନ ଗଲେ ନିମିଷକର ମଧ୍ୟେ ।୨୮୧
କ୍ଷଣେକେ ପ୍ରବେଶ ହୋଇଲେ ଯାଇଂ ରଣସ୍ଥାନ
ଦେଖିଲେ ପଡ଼ିଛନ୍ତି ଯହିଂ ଅର୍ଜ୍ଜୁନ ବଭ୍ରୁ ଯେ ବାହାନ ।୨୮୨
ନାତି ଅଣନାତି ଦେଖିଲେ ଯେକଠାବେ
ଅର୍ଜ୍ଜୁନକଇଂ କୋଳକରି ଧଇଲେ ବ୍ୟାସ ମୁନି ଦେବେ ।୨୮୩
ଶହସ୍ର ଦ୍ରୋହନାୟେ ଅର୍ଜ୍ଜୁନ ହୋଇଥିଲେ ମୋହ
ବ୍ୟାସଂକର ଦ୍ରଶନେ ସେ ପାଇଲେ ସ୍ୱଦେହ ।୨୮୪
କମଣ୍ଡଳୁଂ ପାଣି ଯେ ସିଞ୍ଚିଲେ ବ୍ରହ୍ମଯତି

ସାଷ୍ଟାମ ହୋଇ ବସିଲେ ଅର୍ଜୁନ ଯେ ଧାତି ।୨୮୫
ବ୍ୟାସଂକର ମୁଖ ଚାହିଁ ଧାତିକାରେ ଉଠି
ଚରଣେ ପ୍ରଣମିତ ହୋଇଲେ କିରୀଟୀ ।୨୮୬
ସାଷ୍ଟାମ କରି ବ୍ୟାସେ ବସାଇଲେ କୋଡ଼ର
କିମ୍ପାଇଁ କାରଣେ ଅସାଷ୍ଟମ କଲୁଟି ତୋ ଶରୀର ।୨୮୭
ବ୍ୟାସେ ବୋଇଲେ ତୋତେ ଜିଣିଲା ଯେହୁ ପାର୍ଥ
ଦେଖ ଯେ ବବ୍ରୁ ବାହାନ ତୋହୋର ନିଜ ସୁତ ।୨୮୮
ଚିତ୍ରାଂକୁର ରାଜାର ଦୁହିତା ଉଲୁପୀ ଚିତ୍ରାଙ୍ଗଦା
ବନବାସ କାଳେ ପ୍ରଦାନ ହୋଇଲୁ ସେ ତୋହୋର ପ୍ରମଦା ।୨୮୯
ତୋହୋର ବୀର୍ଯ୍ୟେ ବାବୁ ଉଲୁପୀର ଗର୍ଭେ
ବବ୍ରୁବାହାନଟି ଉପୁଜିଲା ତୋହୋର ଆତ୍ମଜେ ।୨୯୦
ଅର୍ଜୁନ ବୋଇଲା ମୁଂ ନିସ୍ତରିଲି ନିସ୍ତରିଲି
ଆନର ହାଥେ ଯାହା ମୁଂ ପ୍ରାଭବ ନ ପାଇଲି ।୨୯୧
ମୋହୋର ନନ୍ଦନ ମୋତେ କଲାଟି ଝିଂଘାସ
ପୁତ୍ରକୁ କୋଳେ ଯାଇଂ ଧଇଲେ ମୁନି ବ୍ୟାସ ।୨୯୨
ମୃତ ସଞ୍ଜୀବନୀ ମନ୍ତ୍ରେ ଜୀବଦାନ ଦେଲେ
ବେଗେ ବବ୍ରୁବାହାନ ଯେ ଉଠିଣ ବସିଲେ ।୨୯୩
ପୁତ୍ରକଇଂ ଅର୍ଜୁନ ଯେ ବସାଇଲେ କୋଳେ
ଅନେକ ପୁରସରି କହଇ ପ୍ରିୟବୋଲେ ।୨୯୪
ଆଗହୁ ତୋତେ ଯେବେ ଜାଣନ୍ତି ରେ ପୁତ୍ର
ଯେତେ କଟାଳ କିଂପେ କରନ୍ତି ତୁମ୍ଭନ୍ତ ।୨୯୫
ବ୍ୟାସ ବୋଇଲେ ଯେବେ ଜାଣନ୍ତୁ ଆଦିହୁଂ
ଯେତେଦିନ ଯାୟେ ବ୍ରତି ଥାଆନ୍ତା ଯେ କାହୁଂ ।୨୯୬
ପୃଥିବୀର ମଧ୍ୟେ ଯେ ଶକତା ବଳବନ୍ତା
ଭାରଥ ଯୁଦ୍ଧରେ ସେହୁ ପ୍ରଥମ ଦିନରେ ପଡ଼ନ୍ତା ।୨୯୭
ରଣସ୍ତମ୍ଭ ଗତେ କେନାବଳୀ ନାମେ ପୁର
ହିଙ୍ଗୁଳା ବୋଇଲେ ତୁ ଯେଥି ରାଜ୍ୟ କର ।୨୯୮

ହିଙ୍ଗୁଳାର ପ୍ରସନ୍ନେ କୁମର ମହାଦକ୍ଷ
ଶୁଣିଣ ସାନନ୍ଦ ଯେ ହୋଇଲେ ବିବସ୍ୱ ।୨୯୯
ବୋଇଲେ ଆନ ମୋତେ ନୋହିଲା ପରାଭବ
ତୁ ମୋହୋର ପୁତ୍ର ସିନା ଯେଥକୁ କିସ କ୍ଷୋଭ ।୩୦୦
ବବ୍ରୁ ବାହାନ ବୋଲେ ମୋତେ ସୁଦୟା କରିବା
ମୁହିଂ ଯେ ଦୋଷ କଲି ମୋ ଦୋଷ ନ ଘେନିବା ।୩୦୧
ଯେତେ କହି ଚଳିଗଲା ସେ ବବ୍ରୁ ବାହାନ
କପିଳ ରାଜାକୁ ଆଣି କରାଇଲା ଦ୍ରଶନ ।୩୦୨
ଶତେ ଶହସ୍ର ଦଣ୍ଡବତ ପ୍ରଣମିତ ହୋଇ
ବେନି ରାଜାୟେ ଶୁତିଲେକ ଦଣ୍ଡ ଲାଇଂ ।୩୦୩
ଦେବ ଅଶ୍ୱକୁ ଆଣି ବବ୍ରୁ ବାହାନ ସମର୍ପିଲା
ସେ ବେନି ରାଜାଂକୁ ଅର୍ଜୁନ ନିମନ୍ତ୍ରଣ ଦିଲା ।୩୦୪
ଭଗତି ଭାବ ହୋଇ ବବ୍ରୁ ବାହାନ ରୁହାଇଲା ଦିନାତିନି
ପୁତ୍ରକୁ ରାଜ୍ୟ ଦେଇ ସେ ଅଶ୍ୱମାନନ୍ତ ଯେ ଘେନି ।୩୦୫
ବ୍ୟାସେ ପାଦୁକା ବାହାନେ ଚଳନ୍ତି ବହନ
କୁବଳୟା ପିଠିରେ ଯେ ବିଜୟେ ଅର୍ଜୁନ ।୩୦୬
ରାତ୍ରକ ମଧ୍ୟେ ଗଲେ ଅଶୀ ଶହସ୍ର ଯୋଜନ
ବ୍ୟାସେ ପ୍ରବେଶ ହୋଇଲେ ଯାଇଂ ଇନ୍ଦ୍ରପ୍ରଶସ୍ତ ଥାନ ।୩୦୭
ଅର୍ଜୁନ ବିଜେ କଲେକ ଦ୍ୱାରାବତୀ ଭୁବନ
ନିମନ୍ତ୍ରଣ ଯୋଗାଡ଼ ଦିଲେ ନେଇ ରାମକୃଷ୍ଣ ସନ୍ନିଧାନ ।୩୦୮
ଯୁଧିଷ୍ଠି ଦେବଂକର ଅଶ୍ୱମେଧ ଯାଗର ଚରିତ
ଶୁଣିଣ ସାନନ୍ଦ ହୋଇଲେ ପଦ୍ମନେତ୍ର ।୩୦୯
ଉଗ୍ରସେନ ସହିତେ ସାତ ବଂଶର ଯେତେକ ସଇନି
ରାମକୃଷ୍ଣ ବିଜେ କଲେ ନିଜବଳ ଘେନି ।୩୧୦
ଦ୍ୱାରିକା ଭୁବନେ ଯେ ହୋଉଛନ୍ତି ସଜ
ଅର୍ଜୁନକଇଂ ଘେନି ଧନୁଉତ୍ସବ ଯାତ୍ରା କରନ୍ତି ଦେବରାଜ ।୩୧୧



# ମୂଷଳୀ ପର୍ବ

## ୧୧୨. ଶ୍ରୀକୃଷ୍ଣଙ୍କର ଭାବନା, ଅକ୍ରୂରଙ୍କୁ ଜ୍ଞାନୋପଦେଶ ଏବଂ ଅକ୍ରୂରର ଏକାମ୍ର-କାନନେ ଗମନ

ଯେଥୁ ଅନନ୍ତରେ କଳିଙ୍ଗ ଦେଶ ରାଜା
ଅଗସ୍ତି ମହାଋଷିଙ୍କ ଚରଣେ କଲେ ଦିବ୍ୟ ପୂଜା ।୧
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ଲକ୍ଷେକ ହୀରା ଦିଲା ସେ ମୁନିଙ୍କର ପାଦ ।୨
ଭୋ ମୁନି ମହାଭାରଥ ଶୁଣିଲି ତବ ମୁଖେ
ତେଜିଲି ମାୟା ମୋହ ବସିବି ସ୍ୱର୍ଗେ ସୁଖେ ।୩
ବିଷ୍ଣୁଙ୍କୁ କହିଣ ହରି ଅର୍ଜୁନ ଅଇଲେ
ସେହୁ ପୁଣ କେବଣ ଚରିତ ବୁଦ୍ଧି କଲେ ।୪
ଶୁଣ ବଇବସୁତମନୁ ବଦଯନ୍ତି ବ୍ରହ୍ମବେତ୍ତା
ଶ୍ରୀକୃଷ୍ଣର ଚରିତ ଯେ ଅଗୋଚର କଥା ।୫
ଯେବଣ ଦିନୁଂ ଅଇଲେ କୃଷ୍ଣ ବଇକୁଣ୍ଠେ କଥା ହୋଇ
ସେ ନିରାକାର ବିଷ୍ଣୁନାଥର ଠାରୁ ଆଜ୍ଞାଂ ପାଇ ।୬
ସେହି ଦିନରୁ ହରି ମନରେ ହରଷ
କେମନ୍ତେ ଯାଦବ ବଳ କରିବି ବିନାଶ ।୭
କେସନେକେ ତେଜିବଇଂ ଯେ ମଧ୍ୟପୁର ବଇଭୋଗ
ବତିଶ ସହସ୍ର କନ୍ୟାଂକର କେ ସାରିବ ଶୋଗ ।୮
ଯେହି ପୃଥୀରେ ଲକ୍ଷ ଲକ୍ଷ ରାଜା ଭୋଗ କରୁଥିଲେ
ଯେବେ ଯେକାଙ୍ଗ ପୃଥୀ ହୋଇଲା ମୋହର ନିଶ୍ଚଳେ ।୯
ଯେସନେକ ଭାଳନ୍ତେ କେତେହେଂ ଦିନ ଯାଯେ
ମନେ ମନେ ଶ୍ରୀକୃଷ୍ଣଂକ ବଡ଼ ଚିନ୍ତା ଭାବ ହୋଯେ ।୧୦
ଶୁଣ ହୋ ରାଜନ କୃଷ୍ଣଂକର ଦଶସହସ୍ର ବରଷ ଭୋଗଗଲା
ଅନୁଭବ ବୋଲିଣ ଯେକଇ ସମ୍ୱତ୍ସର ହୋଇଲା ।୧୧
କୃଷ୍ଣପକ୍ଷ ତ୍ରୟୋଦଶୀ ସଉରି ବାସର
ଅଶ୍ୱିନୀ ନକ୍ଷତ୍ର ଭୋଗ ଅଟେ ସେ ଦିନର ।୧୨
ସମ୍ବର୍ବ ଆସ୍ଥାନେ ଯେ ବିଜୟେ ଚକ୍ରଧାରୀ
ଅନେକ ରତ୍ନ ଦିଅନ୍ତି କଉତୁକ କରି ।୧୩
କେ ରୁଷନ୍ତି ବସନ୍ତି କେ ଘେନିଯାନ୍ତି ବଳେ
ସମୁଦ୍ର ଉଲ୍ଲୋଳ ପ୍ରାୟେ ଶୁଭଇ ଚହଳେ ।୧୪
ଗୁଆ ନଡୀକାଳ ତାଳ ସକଳ ଦ୍ରବ୍ୟ ମାନ
ସୁବର୍ଣ୍ଣର ଉପହାର ଦେବାଙ୍ଗ ବସନ ।୧୫
କପୂର ତାମ୍ବୋଳ ଯେ ଅନେକ କଉତୁକ ରଙ୍ଗ
କେହୁ ବିଲୋହନ୍ତି ଫରହର ଅନେକ ପାଟନେତ ଦେବାଙ୍ଗ ।୧୬
କୋଟିଯେ ଭଣ୍ଡାର ଧନ ଯେ ଥିଲା ଦ୍ୱାରିକାଯେ
ସବୁ ବିଧଂସିଲେ ଦେବାଧିଦେବ ରାଯେ ।୧୭
ଲକ୍ଷେ ଷାଠିଯେ ସହସ୍ର ଅଶୀଯେ କୃଷ୍ଣର ନନ୍ଦନ
କୋଟିଯେ ପଞ୍ଚ ଅହିବ୍ରତ ହୋଯେ ନାତିଗଣମାନ ।୧୮
ମର୍ତ୍ତ୍ୟେ ତିନିଲକ୍ଷ ତିନିସହସ୍ର ପଣନାତି
ପଣନାତିଂକର ପୁତ୍ର କେ କରୁ ଗଣନ୍ତି ।୧୯
ଚଉଦଲକ୍ଷ ଯାଦବ ବୀର ଅଛନ୍ତି ଛପନ କୋଟି
ଯଦୁବଂଶ ଭୋଜବଂଶ ଅନ୍ଧକବଂଶ ଘୋଟି ।୨୦
କୁକୁରବଂଶ ବୃଷ୍ଣୀବଂଶ ଚଉହାଣବଂଶ ଆଦି
ଦଶପଦ୍ମ ଯୋଦ୍ଧା ଯେ ପାଦାନ୍ତି ପଦ୍ମେକ ସମ୍ପାଦି ।୨୧
ଦ୍ୱାଦଶ କ୍ଷଉଣୀ ସେ ଘେନିଣ ସଇନବଳ
ସମସ୍ତେ ପୂରି ଅଛନ୍ତି ଆସ୍ଥାନର ତଳ ।୨୨
ପୁତ୍ରଂକର ଲେଖା କେ କହୁ ଆଦି କରି
ଯେସନେକ ସମ୍ବର୍ବ ହୋଯେ ଦ୍ୱାରାବତୀ ପୁରୀ ।୨୩
ଅନେକ ଆନନ୍ଦ ସେ ବନ୍ଧୁ କୁଟୁମ୍ବନ୍ତ ଦେଖି
ଲୋତକରେ ପୂରିତ ସେ କୃଷ୍ଣର ବେନି ଆଖି ।୨୪
ଢଳଇ କ୍ରୋଧଜଳ ମୁକୁତା ଫଳ ପ୍ରାଯେ
ଦେଖିଣ କରପାତ୍ରେ ସମ୍ଭାଳନ୍ତି କୃଷ୍ଣ ଲୋଯେ ।୨୫
ଶ୍ରୀକୃଷ୍ଣ ହୃଦଗତେ ପୂର୍ବକଥା ସୁମରି
ଆପଣେ ଆପଣେ ଯେ କ୍ରୋଧ ଦେବ କରି ।୨୬
ଅକ୍ରୂର ଚାମର ଧରି ଅଛନ୍ତି ସନ୍ନିଧ୍ୟେ
ସେ ଦେଖିଲା କୃଷ୍ଣର ମନ ବହୁତ ଯେ କ୍ରୋଧେ ।୨୭
ଅକ୍ରୂର ବୋଇଲା ଦେବ କେବଣ ଚରିତ
ଚରିତ କିମର୍ଥେ ଶୋକ ଦେବ କରୁ ପଦ୍ମନେତ୍ର ।୨୮
କେବଣ ଅସଂଖ୍ୟ ତୋତେ ହୋଇଲା ଦେବରାଜ
କି ଅବା ଛାଡ଼ିବ ତୁମ୍ଭେ ଯେ ସକଳ ଅଇଶ୍ୱର୍ଯ୍ୟ ।୨୯
ଯେତେ ବୋଲି ସେ ଅକ୍ରୂର ଥୋଇଲା ଆଲଟଇ
ଶ୍ରୀକୃଷ୍ଣ ଚରଣ ତଳେ ଯାଇଣ ଲୋଟଇ ।୩୦
ଅକ୍ରୂରକୁ ଆଶ୍ୱାସନା କରନ୍ତି ଚଉବାହା
ଦ୍ୱାରିକାରେ ବିସ୍ତାର ତୁ ନ କର ବାବୁ ଯେହା ।୩୧

ଅକ୍ରୂର ବୋଇଲା ଦେବ କେବଣ ଚରିତ
ବଡ଼ାଇ ଅଶ୍ରିଜତ ଦେଖିଲି ତୋହର କୃତ ।୩୨
ଅନାଥ ଜନଂକର ନାଥ ତୁ ମୁରାରି
ତୁମ୍ଭେ ଯେ ଜଗତଭୂତ ଦେବ ଦଇତାରି ।୩୩
କାହାକୁ ଯେତେ ଭୟ ଭ୍ରାନ୍ତି ଯେ ତୋହରି
ତୁହି ଯେ ଚତୁର୍ଦ୍ଦଶ ଭୁବନ ଅଧିକାରୀ ।୩୪
ତୁମ୍ଭେ ସେ ହେଳେ ନିବାରିଲ ମହୀଭାରା
ଯମ ନ ପଶଇ ଯେଥେ ନାହିଂ ରୋଗ ପୀଡ଼ା ।୩୫
ଭାରା ନିବାରଣ ଅର୍ଥେ ଉପୁଜିଲ ମହୀ
ନିଜ ଭୁବନକୁ ଯାଇ ଲୋଡ଼ୁ କି ନ କହି ।୩୬
ମୁହିଂ ତୁମର ବାଳୁତ କାଳୁଂ ଭୃତ୍ୟ ମୋତେ କର କ୍ଷମା
ଭୋ କୃଷ୍ଣ ତୁମ୍ଭର ତୁଲେ ଯେବେ ମୋତେ ନେମା ।୩୭
ଯେ ସର୍ବ ଜନକଇଂ ତୁମ୍ଭେ ଆତ୍ମା କରି ଦେଖ
କେବଣ କାରଣେ ଦେବ ହୋଇଲ ବିମୁଖ ।୩୮
ବୋଲନ୍ତି ଶ୍ରୀକୃଷ୍ଣ ତୁ ଅକ୍ରୂର ହୋଇଲୁ କି ବାଇ
ଯେ କୁଟୁମ୍ବ ଭାରା ଛାଡ଼ି କାହିଂ ଯିବି ମୁହିଂ ।୩୯
ଯେ ବଚନ ଅକ୍ରୂର ତୁ ମନେ ନ ଧରିବା
କାହାକୁ ଯେ ବଚନମାନ ପ୍ରଘଟ ନ କରିବା ।୪୦
କାର୍ପୁଣ୍ୟ ବଚନ ଯେ ବୋଲଇ ଅକ୍ରୂର
ମୋତେ ଛାଡ଼ିଣ ହରି ଯିବ କି ନିଜ ପୁର ।୪୧
ଶ୍ରୀକୃଷ୍ଣ ବୋଇଲେ ମୁଂ କହୁଅଛି ତୋତେ
ନିଚୟେ ବଇକୁଣ୍ଠକୁ ମୁଂ ଯିବଇଂ ନିୟତେ ।୪୨
ଅକ୍ରୂର ବୋଇଲା ମୋତେ ନେମା ଯଦୁନାଥ
ମୁହିଂ ତୋହର ଅନେକ କାଳର ଯେ ଭୃତ୍ୟ ।୪୩
ଶ୍ରୀକୃଷ୍ଣ ବୋଇଲେ ତୁ ଗୋପ୍ୟ କରି ଥାଆସି
ଯିବାବେଳେ ଆମ୍ଭର ତୋତେ ନେମା ଆସି ।୪୪
ଆହୋ ଅକ୍ରୂର ପୃଥୀକି ଭାରା ହୋଇଲା ଯେତେବେଳେ
ବିଷ୍ଣୁନାଥକଇଂ ଗୁହାରି କଲେ ଦିଗପାଳେ ।୪୫
ସେ ବିଷ୍ଣୁ ଜାନୁରୁ ଉପାଡ଼ିଲେ ବେନିରୋମ
କଳା ଶୁକଳ ମୂର୍ତ୍ତି ହୋଇଲୁ ଆମ୍ଭେ ବେନି ଜନ୍ମ ।୪୬
ମୀନରୂପ ଧରି କରି ଶଙ୍ଖାସୁର ମାରି
ପିତାମହର ବେଦପୋଥି ଉଦ୍ଧରିଲୁ ଅବତରି ।୪୭
କୂର୍ମ ରୂପେ ଅବତରିଲୁ ଆମ୍ଭେ ଅତି ଗାଢ଼େ
ଅବନୀ ଦତ୍ୟ ବଧକଲୁ ବରେହା ରୂପ ଦାଢ଼େ ।୪୮
ନରସିଂଘ ରୂପେ ଦେଖି ହିରଣ୍ୟକଶିପୁ
ନହେଣ ବିଦାରିଣ ଭାଙ୍ଗିଲୁ ତାହାର ବପୁ ।୪୯
ବାବନ ରୂପ ଧରି ଚାପିଲୁ ଯେ ବଳି
ତିନିପାଦରେ ଘୋଟିଲୁ ସପତ ମହୀସ୍ଥଳୀ ।୫୦
ପ୍ରଶୁରାମ ରୂପେ ଅବତରିଲୁ ଜମଦଗ୍ନିର ଘରେ
ପୃଥିବୀ ନିଛତ୍ର କଲୁ ଯେକବିଂଶ ବାରେ ।୫୧
ଶ୍ରୀରାମ ରୂପେ ଜନ୍ମିଲୁ ଦଶରଥ ଘରେ
ଯାଗ ରଖି ବିଧଂସିଲୁ ଲଂକାଗଡ଼େ ଦଶଶିରେ ।୫୨
ଯେବେ କାହ୍ନୁ ସଂକ୍ରିଷେଣ ବସୁଦେବ ଘରେ
କଂସର ଅଷ୍ଟମଲ୍ଲ ଧଂସିଲୁ ମହୀଭାରେ ।୫୩
ପୁଣ ଆତଯାତ ହେଉ ଆମ୍ଭେ କୁତୂହୋଳେ
ଯେ କୁଟୁମ୍ବ ମାୟା ମୋହ ଲାଗିଲା ଯେତେକାଳେ ।୫୪
ସେ କାଳେ ମତ୍ତଗର୍ବେ ବହୁତ ରତି କଲୁ
କୁଟୁମ୍ବ ବଢ଼ନ୍ତେ ଯେବେ ମାୟା ମୋହେଣ ପଡ଼ିଲୁ ।୫୫
ଛାଡ଼ିଯିବାକୁ ଯେବେ ନ ବଳଇ ଚିତ୍ତ
ତେଣୁକରି କ୍ରୋଧେ ଲୋତକ ବହଇ ବେନି ନେତ୍ର ।୫୬
କେମନ୍ତେ ଅକ୍ରୂର ହୋ ଛାଡ଼ିବାକ ଯେହା
ଯେ ମୋର ପୁତ୍ରନ୍ତ ଯେ ସମର୍ପିବି କାହା ।୫୭
ପିତାମାତାହିଂ କରିବେ ବହୁତ ଶୋକଇଂ
ବତିଶ ସହସ୍ର କନ୍ୟା ପାଇବେ ଦୁଃଖହିଂ ।୫୮
ପଦ୍ମନ ପରା ପୁତ୍ର ତେଜିବି କେମନ୍ତେ
ଛାଡ଼ିଯିବାକୁ ମନ ନ ବଳଇ କଦାଚିତେ ।୫୯
ବିଷ୍ଣୁନାଥ ତହୁଂ ମୁଂ ଯେ ଅଇଲି ଅଗ୍ୟାଂ ପାଇ
ସେ କାରଣେ ମନ ଅଥିର କେମନ୍ତେ ଯେଥୁ ଯାଇଂ ।୬୦
ପରିଣାମି ବହୁତ କହଇ ଅକ୍ରୂର
ତୁମ୍ଭେ ଯେବେ ସ୍ୱାମୀ ଯିବ ବଇକୁଣ୍ଠପୁର ।୬୧
ତୁମ୍ଭର ତୁଲେ ମୋତେ ନିଅ ଯଦୁସାଇଂ
ଅନେକ କାଳରୁ ସେବା କରିଛି ଗୋସାଇଂ ।୬୨
ଶ୍ରୀକୃଷ୍ଣ ବୋଲନ୍ତି ତୋତେ ନିଅଇ ସିନା ଅକ୍ରୂର
ଯେ ଦେହ ଘେନି ନ ଯାଇ ବଇକୁଣ୍ଠପୁର ।୬୩
ପୁଣ୍ୟ କରିଥିଲେ ବାଟ କଢ଼ାଇ ନିଆଇ
ପାପ କରିଥିଲେ ସିନା ଯାଇ ତ ନୁଆରଇ ।୬୪
ଯେ ଯାହାର ପୁଣ୍ୟେ ସେ କଢ଼ାଇ ନିଅଇ ବାଟ
ଯାଇତ ନୁଆରି ହୋ ପଥ ବଡ଼ାଇ ମୁରାଟ ।୬୫

ଶରୀର ଘେନିଣ ହୋ ଯାଇତ ଲୋକ ନାହିଁ
ଯେବଣ ଲୋକ ହୋ ଅନେକ ପୁଣ୍ୟ କରଇ ମହୀ ।୬୬
ବ୍ରହ୍ମଗ୍ୟାଂନ ଯେବେ ସାଧି ପାରଇ ଯୋଗୀ
ସେହି ଶରୀର ଘେନି ପରମ ଅଇଶ୍ୱର୍ଯ୍ୟ ଭୋଗି ।୬୭
ଆମ୍ଭେ ତୋତେ ବ୍ରହ୍ମଗ୍ୟାଂନ ବାଟ କହିଥିବୁ
ତାହା ସାଧୁଥାଅ ବଇକୁଣ୍ଠେ ଯେବେ ଯିବୁ ।୬୮
ଅନେକ କାଳରୁ ତୁ ଆମ୍ଭନ୍ତ କଲୁ ସେବା
କହିଲେ ବ୍ରହ୍ମଗ୍ୟାଂନ ଅନାଦି ନାଥ ଦେବା ।୬୯
ଅକ୍ରୂର ବୋଇଲା ସ୍ୱାମୀ ମୋତେ ବ୍ରହ୍ମଗ୍ୟାଂନ କହୁ
ତୁହି କିମ୍ପେ ଦେହ ଘେନି ଯୁଗେ ଯୁଗେ ନ ରହୁ ।୭୦
କୃଷ୍ଣ ବୋଇଲେ ମୁଂ ହୋଇଥିବି ଚ୍ରିଜୀବୀ
ଭାରାଭର ନିବାର କେ କରିବାକ ପୃଥିବୀ ।୭୧
ନିଚଳ ଆସନ ଆମ୍ଭର ଅଟଇ ଅଭୟେ ବଇକୁଣ୍ଠ
ସହି ନୁଆରୁ ଆମ୍ଭେ ଦେବତାଂକ କଷ୍ଟ ।୭୨
ପୃଥୀର ନିମନ୍ତେ ଆମ୍ଭେ ମନୁଷ୍ୟ ଜନ୍ମ ହେଉଂ
ମୋହ ବନ୍ଧେ ପଡ଼ି ଅନେକ ଦୁଖ ସହୁ ।୭୩
ବିଷ୍ଣୁନାଥ ବୋଇଲେ ତୁ ବହନ ହୋଇ ଆସ
କେମନ୍ତ ଛାଡ଼ିଯିବି ଅନେକ ମୁହାଂସ ।୭୪
ଶ୍ରୀକୃଷ୍ଣ ବୋଇଲେ ପବନ କର ତୁ ଆହାର
ପ୍ରଳୟ ବିଧାନ ସମାଧି ଅଷ୍ଟ ଯେ ପ୍ରକାର ।୭୫
ପବନ ଶୂନ୍ୟ ମାର୍ଗେ କରିବୁ ତୁ ବସା
ଛନ୍ଦିଲେ ମନ ପବନ ତାପ ହୋଯେ ଆଶା ।୭୬
ଯୋଗ ଆସନ ଯେ ଚଉଷଠି ମୁଦ୍ରା
ପଞ୍ଚମନ ଛନ୍ଦି ତୁ ରହିବୁ ଅନିଦ୍ରା ।୭୭
କାମକଇଂ ବଞ୍ଚାଇବୁ ଦଶଦ୍ୱାରକୁ ନିରୋଧି
ପଦ୍ମରେ ପବନ ନେଇ ପକାଇବୁ ସାଧି ।୭୮
ଇଙ୍ଗଳା ପିଙ୍ଗଳା ଶୁଷୁମ୍ନା ତିନି ନାଡ଼ି ଧରି
ପବନ ନିରୋଧିବୁ ଯେକ ଦ୍ୱାର କରି ।୭୯
ଘଟିକା ଲେଉଟାଇ ଛନ୍ଦ ଖେଚରୀ ମୁଦ୍ରା
ଯେଣୁ କରି ଅନ୍ତର୍ଗତ ହୁଅଇ ଅନିଦ୍ରା ।୮୦
ନିଦ୍ରା ଛନ୍ଦିଲେଣ ଆଉ ନ ଲାଗଇ ଭୋଖ
ଭୋଖ ନ ଭେଟିଲେ ଶରୀର ଗୋଟି ରଖ ।୮୧
ଆହାର ନିଦ୍ରା ଯେବେ ହୋଅଇଟି ଉପେକ୍ଷା
ଛାଡ଼ଇ ଆସନ ସେ ଶରୀର ହୋଯେ ରକ୍ଷା ।୮୨
ଆହାର ଭାଙ୍ଗନ୍ତେ ଆଉ କାଳ ନୁଆରଇ ଭୋଗୀ
ଯେହା ବୁଝି ସାଧନ କରଇ ଯେ ଯୋଗୀ ।୮୩
ତୁ ଆମ୍ଭର ସୋଦର ହୋ କହିବାନା ତୁକୁ
ଆପଣା ସାଧନା ବାଟ କହିଲେ ଅକ୍ରୂରକୁ ।୮୪
ଯେହିକ୍ଷଣି ଯାଅ ଯା, ନ ରହନି ଯେଥ
ବିଂଝଗିରି ସନ୍ନିଧ୍ୟେ ଯେକାମ୍ବର ବୋଲି ତୀର୍ଥ ।୮୫
ଲାଟକେଶ୍ୱର ଲିଙ୍ଗ ବୋଲି ଅଛଇ ଗହନ ଅଟବ୍ୟା
ତହିଂ ଯାଇଂ ନିଜ ଥାନେ ଯୋଗ ସାଧନ କର ବାବା ।୮୬
ଦେହ ସିଦ୍ଧି ହୋଇଲେ ସେ ବଇକୁଣ୍ଠପୁର ଯାଇ
ନୋହିଲେ କେବେହେଂ ଯେ ମୁକତ ବାଟ ନାହିଂ ।୮୭
ଅକ୍ରୂର ବୋଇଲେ ହରି ଯାଉଅଛି ମୁହିଂ
ପୁନରପି ଦ୍ରଶନ ପାଇବଇଂ ତୋତେ କାହିଂ ।୮୮
ଶ୍ରୀକୃଷ୍ଣ ବୋଇଲେ ମଉଦଧି ଉତ୍ତରେ ଯମନିକ ତୀର୍ଥେ
ନୀଳ କଳପବଟେ ନୀଳ ସୁନ୍ଦର ପରବତେ ।୮୯
ଯେ ପିଣ୍ଡ ଯେହି ଠାବରୁ ଘେନିଯିବ ଯମ
ତହିଂ ଯାଇଂ ଥାପିବ ନା ଶ୍ରୀପୁରୁଷ ଉତ୍ତମ ।୯୦
ଗାଲମାଧବ ବୋଲାଇବ ଯେଥିର ରଜା ଗୋଟି
ତହିଂ ମୋତେ ରଖିବ ସେ ତେବେ ତୋତେ ଭେଟି ।୯୧
ଆହୋ ଅକ୍ରୂର ନୀଳମାଧବ ବୋଲି ଯେକଇ ପ୍ରତିମା ଗୋଟି
ତାହାକଇଂ ଦେଖିବ ମୁଂ ପ୍ରତକ୍ଷେ ସେହିଟି ।୯୨
ଯେ ପିଣ୍ଡ ଆମ୍ଭର ଯେ ହୋଇବ ଦାରୁବ୍ରହ୍ମ
ନୀଳକନ୍ଦରେ ପୂଜା ପାଇବୁ ଚତୁର୍ଦ୍ଧା ରୂପେଣ ।୯୩
ଇନ୍ଦ୍ରଦ୍ୟୁମନ ରାଜା ପ୍ରାସାଦ ତୋଳାଇବ
ଆମ୍ଭର ରୂପଗୋଟି ନେଇ ବିଜେ କରାଇବ ।୯୪
ତହିଂ ଦେଖିବୁ ତୁ ପ୍ରତକ୍ଷେ ମୋର ରୂପ
ଦ୍ରଶନେ ଖଣ୍ଡିବୁଟି ତୁ କୋଟି ଜନ୍ମ ପାପ ।୯୫
ଅକ୍ରୂରକୁ ଶ୍ରୀକୃଷ୍ଣ ଯହୁଂ କହିଲେ ସନ୍ଦେହ
ଗୃହବାସେ ନ ଯିବୁଟି ଲାଗିବ ତୋତେ ମୋହ ।୯୬
ରାତ୍ର ଅର୍ଦ୍ଧେ ଦ୍ୱାରିକାରୁ ବାହାର ଅକ୍ରୂର
ଭଗତମସଳ ନାଥ କରିଦିଲେ ତାକୁ ପାର ।୯୭
ହେ ବୁଧଜନମାନେ ବୁଝ କୃଷ୍ଣର କଥା
ଭଗତଜନକଇଂ ସେ ଯେସନେକ ଉଦ୍ଧାରନ୍ତା ।୯୮
ପ୍ରଦ୍ୟୁମ୍ନ ପରା ପୁତ୍ର ସାତ୍ୟକୀ ପ୍ରାୟେ ଭାଇ
ଯେହାନ୍ତ ମୁକ୍ତ ପଥ ସେ ନ ଦିଲେ ଦେଖାଇ ।୯୯

ସେ ହରି ଚରିତ ସର୍ବଦା ଥାଉ ମୋର ଚିତ୍ତେ
ଯେ ମାୟାମୋହ ସାଗରୁ ସେ ଉଦ୍ଧରିବେ ଅଚ୍ୟୁତେ ।୧୦୦୦
ଭକତ ଜନ ମଙ୍ଗଳ ଚରଣେ ପରିଣାମି
ଯେ ଅନ୍ଧ ପଟଳୁଂ ଉଦ୍ଧରି ଧର ଦେବ ସ୍ୱାମୀ ।୧୦୦୧
ମୁହିଂ ତୋହର ଦାସର ଦାସ ଭୃତ୍ୟର ଯେ ଭୃତ୍ୟ
ଯେ ତୋହର ଚରିତ ଲେଖି ମୁଂ ହୋଇବି ମୁକତ ।୧୦୦୨
ସୁଗ୍ୟାନୀ ପୁରୁଷ ଭଗତ ଜନକଂର ବନ୍ଧୁ
ବଦୟନ୍ତି ଶୂଦ୍ରମୁନି ସାରୋଳ ଦାସ ଜୀବନ ମୋ ସାଧୁ ।୧୦୦୩
ହୋ ପଣ୍ଡିତ ଜନେ ସମସ୍ତ ଜଞ୍ଜାଳ ଉପେକ୍ଷିବା
ମନ ବଚନ କର୍ମବ୍ୟେ ହରିଂକି କର ସେବା ।୧୦୦୪
ଅକ୍ରୂର ବୋଲିଣ ଯେହୁ କଂସାସୁର ମନ୍ତ୍ରୀ
ଧନୁଯାତ୍ରା ନିମନ୍ତେ ନେଲା ରାମକୃଷ୍ଣ ଦୁହିଂନ୍ତି ।୧୦୦୫
ଅନେକ ବିନୋୟୀଣ ନନ୍ଦ ଅକ୍ରୂରକୁ କହିଲା
ପୁତ୍ରକଇଂ ଛାଡ଼ିଯାଅ ବୋଲି ଅନେକ ଧନ ଦିଲା ।୧୦୦୬
ସାମାନ୍ୟ ବାଳକ ମୋର କାହ୍ନୁ ସଂକ୍ରିଷେଣ
ଯେ କିସ ଜାଣିମେଟି ମାଲଯୁଦ୍ଧର ବିନ୍ଧାଣ ।୧୦୦୭
ଅକ୍ରୂର ବୋଇଲା ହୋ ନନ୍ଦ ହୋଇଲୁକି ବାଇ
କଂସ ରାଜାର ଆଗ୍ୟାଂ ହୋ ମେଣ୍ଟଣ ନ ଯାଇ ।୧୦୦୮
ନିରାପକ୍ଷ କରିଣ ଯେ ଅକ୍ରୂର ଘେନିଗଲା
ନନ୍ଦ ଯଶୋଦାଂକର କଥାହିଂ ନ ରହିଲା ।୧୦୦୯
ଯମୁନା ସ୍ରାହାନେ ସେ ଦେଖିଲା ଚତୁର୍ଭୁଜ
ଶଙ୍ଖ ଚକ୍ର ଗଦା ଶାରଙ୍ଗ ଦେବରାଜ ।୧୦୧୦
ଜଳ ଭିତରେ ହେୟେନେକ ରୂପ ଦେଖି
କୃଷ୍ଣଂକୁ ଆରାଧନା କଲା ସମସ୍ତ ଉପେକ୍ଷି ।୧୦୧୧
ଅକ୍ରୂର ବୋଲନ୍ତି ହରି ନ ନେବି ମୁହିଂ ତୋତେ
ନନ୍ଦ ବୋଇଲା ଯେ ଅପାର କରି ମୋତେ ।୧୦୧୨
କୃଷ୍ଣ ବୋଇଲେ ଅକ୍ରୂର ମାମୁଂକ ଧନୁଯାତ
ଦେଖିବାର ଆମ୍ଭର ତାହା ମିଳଇ ଯୁଗତ ।୧୦୧୩
ହେ ପଣ୍ଡିତ ଜନେ ଅକ୍ରୂର ଗୋଡ଼ାଇଲା ସେଦିନୁଂ
ଦ୍ୱାପର ଯୁଗଯାକ ଖଟିଲା ଯେକମନୁ ।୧୦୧୪
ସେ କୃଷ୍ଣର ପ୍ରସାଦେ ପାଇଲା ପରମ ଗତି
ଯୋଗ ଅଭ୍ୟାସି ସେ ଯେ ଯୁଗେ ଯୁଗେ ବ୍ରତି ।୧୦୧୫
ଅକ୍ରୂର ବୋଲିଣ ଯେ ହିଂସା ହୃଦେ ତାର ନାହିଂ
ତେଣୁ କରି ଦୟା କଲେ ଜଗତ ଗୋସାଇଂ ।୧୦୧୬
ମହାଭାରଥ ଯୁଦ୍ଧେ ରହିଲେ ଯେ କୃପ ଅଶତ୍ଥମା
ଉଦ୍ଧବ ଅକ୍ରୂର ରହିଲେ ସେ ନାରାୟଣଂକ ମହିଂମା ।୧୦୧୭
ଶ୍ରୀକୃଷ୍ଣ ଅନୁଗ୍ରହେ ତରିଲାକ ଅକ୍ରୂର
ନିଗମେ ରହିଲାକ ସେ ଯାଇ ଯେକାମ୍ର ବନସ୍ତର ।୧୦୧୮
ହେମ ପଡ଼ନ୍ତେଣ ଯେହ୍ନେ ପଦ୍ମବନ ଯାଇ କ୍ଷୟେ
ଦ୍ୱାରିକା ଭୁବନ କଇଂ ତେହ୍ନେ ପଡ଼ିଲା ଅପଚୟେ ।୧୦୧୯
ଶ୍ରୀକୃଷ୍ଣଂକର ବଇକୁଣ୍ଠ ଯିବାକଇଂ ମନ
ଅଥିର କାୟା ତାଂକର ଚିତ୍ତ ଛନ୍ନ ଛନ୍ନ ।୧୦୨୦

**

## ୧୧୩. ଦ୍ୱାରିକାରେ ନାନା ଉତ୍ପାତ ଦର୍ଶନ, ଯଦୁବଂଶ ଧ୍ୱଂସ ଏବଂ ବଳରାମଙ୍କ ଦେହତ୍ୟାଗ

ଯେଥୁ ଅନ୍ତରେ କେତେହେଂ ଦିନ ତହିଂ ଗଯେ
ଯିବାକଇଂ ଉଦବେଗ ଶ୍ରୀକୃଷ୍ଣଂକର ନିଜ କାୟେ ।୧
ଭାଳନ୍ତି ଶ୍ରୀକୃଷ୍ଣ ଯେବେ କେଉଂଣ ଉପାୟେ କରିବି
କେବଣ ମତେ ଯେ ସମସ୍ତ କ୍ଷୟ କରାଇବି ।୨
ମୁହିଂ ଅରଜି ଅଛି ନାଶ କରିବି କେମନ୍ତେ
ବଡ଼ାଇ ଦୁରାପଦ ତ ଲାଗିଲାକ ମୋତେ ।୩
ଶୁଣ ହୋ ରାଜନ ଭାଳିଣ ଶ୍ରୀକୃଷ୍ଣ ଯେ ରଚ୍ଛିଲେକ ଉପାୟେ
ଦ୍ୱରିକା ଭୁବନ କଇଂ ଲାଗିଲାକ କୋକୁଆ ଭୟେ ।୪
ଅଦଭୁତେ ଶୁଭିଲା ଅଇଲା କୋକୁଆ
ଦ୍ୱାରିକା ଲୋକଯାକ ହୋଇଲେ ଅଚାଭୁଆ ।୫
ଭୟେଣ କଅଂଳା ପୋୟେ ରହନ୍ତି ଭିତରେ
ଯାଇଂଣ ପଶନ୍ତି କେହୁ ମାତାଂକ କୋଡ଼ରେ ।୬
କୋକୁଆ ଭୟେ ବୋଲି ସମସ୍ତେ ହେଲେ କହି
ବାଳ ପୋୟେ ଲୁଚିଲେ ଘର କୋଣେ ଯାଇ ।୭
ଦଶ ବିଂଶ ପଞ୍ଚାଶ ଲୋକେ ଦେଖି କରି ଭାଳି
କୋକୁଆ ବୋଲିଣ ସେ କେମନ୍ତ ମହାବଳୀ ।୮
ଦେବକୀ ପଚାରିଲେ ଶୁଣ ହୋ ବସୁଦେବ
କୋକୁଆ ବୋଲି କରି ସେ ଅଟଇ କେବଣ ଜୀବ ।୯
ଗୋବିନ୍ଦେ ବୋଇଲେ ମା ଗୋ ସତେ ସେ ଅଟଇ କୋକୁଆ
ଅପାର କାଳରୁ ତ ଶୁଣିଲା ଅଛି ଯେହା ।୧୦
ଚାରିଯୁଗ ଯାକେ ଥାଇ ସ୍ୱର୍ଗପୁରେ

ଆମ୍ଭର ପୁରକୁ ଡରେ ଆସି ନୁଆରିଲା ଥରେ ।୧୧
କଳିଯୁଗ ପ୍ରବେଶ ହୋଇଲାକ ଯହୁଁ
ତେଣୁ କରି ଦ୍ୱାରିକାକୁ ଅଇଲାକ ତହୁଁ ।୧୨
ଯୋଜନେ ଯୋଜନେ ଭୁଜ ତାର ସପତଗୋଟି ଆଖି
ଅନ୍ତରୀକ୍ଷେ ଉଡୁଥାଇ ଅଛଇ ତାର ନବପକ୍ଷୀ ।୧୩
ଯୋଜନେ ଯୋଜନେ ତୁଣ୍ଡ ତାର ପାଞ୍ଚ ଯୋଜନ ଗର୍ଭ
ଚିରୀ ପୁରୁଷ ନ ଯାଇ ପଡ଼ିଲେ ଭକ୍ଷଇ ସର୍ବ ।୧୪
ଶ୍ରୀକୃଷ୍ଣ ମୁଖରୁ ଯହୁଁ ଶୁଣିଲେ ଯେସନେକ ବାଣୀ
ଲାଗିଲା ମହାଭୟେ ସମସ୍ତେ ତହିଁ ଶୁଣି ।୧୫
ଦିବସେ କୋକୁଆ ବୋଲି ଦେଖନ୍ତି ସ୍ୱପନେ
ଅଦଭୁତେ ଡରି ପଡ଼ି ଚିଆଁନ୍ତି ସର୍ବ ଜନେ ।୧୬
କେ ବୋଲଇ ମତେ ଗୋ କୋକୁଆ ଗିଳୁଥିଲା
କେ ବୋଲଇ କାହାକୁ କେଣେ ଗିଳିଗଲା ।୧୭
କେ ବୋଲଇ ଅନ୍ତରୀକ୍ଷେ ଉଡ଼ିଗଲା ଧରି
କେ କାହାକୁ ତ ଆଉ ନୁଆରିଲେ ବାରି ।୧୮
ଶୁଣ ହୋ ରାଜନ ଦ୍ୱାରିକାପୁର ଲୋକେ କାହାକଇଁ
ନ କରନ୍ତି ଶଂକା
କୋକୁଆ ଭୟ ବୋଲି ସର୍ବେ ହୋଇଲେ ଟାଟକା ।୧୯
ବେଳ ପ୍ରହରେକ ଥାଉଂ ପଡ଼ଇ କପାଟ
ରାତ୍ରେ ଡରି କରି କେହୁ ନ ଚାଲନ୍ତି ବାଟ ।୨୦
ପୁରଯାକ ଲୋକେ ଯେ ଦେଖିଲେ ଅତିହିଁ ସଂକଟ
ରାତ୍ରେ ଡରି କରି କେହି ନ ଫିଟାନ୍ତି କପାଟ ।୨୧
ପୁର ଯାକ ସବୁଂକରି ପଡୁ ଥାୟେ ମାଡ଼ି
ପଳାଇ ମନକଲେ ଦ୍ୱାରିକାପୁର ଛାଡ଼ି ।୨୨
ଅମର ପଦକୁ କେହି ନ କରନ୍ତି ବାଞ୍ଛା
ଭାଳିଣ ସମସ୍ତେ ମରଣକୁ କଲେ ଇଚ୍ଛା ।୨୩
କେ ବୋଲଇ କେଣିକି ଆମ୍ଭେ ଯିବା ତ ପଳାଇ
କୋକୁଆ ଭୟ ଲାଗିଲାନି ଯିବାକୁ ବାଟ ନାହିଁ ।୨୪
ସମସ୍ତ ଯାଦବେ ଯାଇ ଶ୍ରୀକୃଷ୍ଣଙ୍କଇଁ କରନ୍ତି ପୁଚ୍ଛା
ବୋଲନ୍ତି ନାରାୟଣେ ମୋହରେ ନୋହଇ ସେ ରକ୍ଷା ।୨୫
ଅନେକ ମନେ ଚିନ୍ତା କରନ୍ତି ଚକ୍ରପାଣି
ମହାଭୟେ ଲାଗିଲା ଶ୍ରୀହରି ନିରାଶ ବାକ୍ୟ ଶୁଣି ।୨୬
ବୁଧଜନମାନେ ବସି ଭାଳନ୍ତି ବିକଳ୍ପେ
ଅପୂର୍ବ କଥା ଯେତ ଶୁଣିଲୁ ବୃଦ୍ଧ କାଳେ ।୨୭
କୋକୁଆ ବୋଲି କରି ହୋ କେବଣ ଜୀବଗୋଟି
କେହି ତ ତାହାକୁ ଆଉ ନ ଦେଖନ୍ତି ଦୃଷ୍ଟି ।୨୮
କାର୍ତ୍ତିକ କୃଷ୍ଣପକ୍ଷର ଅମାବାସ୍ୟା ଦିନ
ସଉରିବାର ସ୍ୱାତୀ ଆଉ ଋକ୍ଷ ବିଦ୍ୟମାନ ।୨୯
ନାଗ ନାମରେ କରଣ ଆୟୁଷ୍ମାନ ଯୋଗ
ତୁଳ ସଂକ୍ରାନ୍ତିକି ଅଠର ଦିନ ଭୋଗ ।୩୦
ସେହିଦିନ ରାତିରେ ଯାଦବେ ସମସ୍ତେ ଶୋଇଛନ୍ତି
ଅଦଭୁତେ ଦେଖିଲେ ଯେ କୋକୁଆର ମୂର୍ତ୍ତି ।୩୧
ମାର ମାର ବୋଲି ପାଡ଼ିଲେକ ବୋବି
ଲଉଡ଼ି ବୁଲାଇଣ ମାରନ୍ତି ଅସମ୍ଭବି ।୩୨
ରେ ରେ କାର ଶବଦେ ହୋଇଲେ ବାହାର
ଗୋଡ଼ାବନ୍ତି ସମସ୍ତେ କୋକୁଆକୁ ମାର ମାର ।୩୩
କୃଷ୍ଣ ବଳରାମ ଧାମନ୍ତି ତାହାଂକର ତୁଳେ
ଯମୁନା ନଦୀକୂଳ ଯାୟେ ଗୋଡ଼ାଇଣ ଗଲେ ।୩୪
କାଳନ୍ଦୀ ତୀରେ ଯାଇ କଦମ୍ବ ବୃକ୍ଷମୂଳେ
ଲଉଡ଼ିମାନ ଧରି ଧାମନ୍ତି ଗୋପାଳେ ।୩୫
କଡ଼ା ମର୍ଦ୍ଦଳ ବାଜେ ବିଜିଘୋଷ ଦାଉଣ୍ଡି
ମଭାରସେ ନାଚନ୍ତି ଖେମଟା ନାଟ ଖଣ୍ଡି ।୩୬
ବୁଲାଇ ଲଉଡ଼ି କେହୁ ହୁଅନ୍ତି ପିଟାପିଟି
ଭାଙ୍ଗିଣ ଲଉଡ଼ିମାନ ଗୁଣ୍ଡା ହୋଇ ଉଠି ।୩୭
ଲଉଡ଼ି ସାଧନ୍ତି ସମର୍ଥ ଶାମ ସାତ୍ୟକୀ
ଅସ୍ତୁକାର ବାକ୍ୟରେ ହୁଅନ୍ତି ଡକାଡ଼କି ।୩୮
ବୁଲାଇଣ ଲଉଡ଼ି ଶାମ ପ୍ରହାର ଯେ କଲା
ଦେଖିଣ ସାତ୍ୟକୀ ତହୁଂ ଆଡ଼ ହୋଇଗଲା ।୩୯
ଶାମର ଲଉଡ଼ି ଘାତ କଦମ୍ବ ବୃକ୍ଷରେ ବାଜିଲା
ଫେନକୃତ ଆକାରେ କ୍ଷୀର ତହୁଂ ସ୍ରବିଲା ।୪୦
କାଦମ୍ବରୀ କ୍ଷୀର ଯହୁଂ ବୃକ୍ଷରୁ ବହିଲା
ଅପୂର୍ବ ଦେଖିଣ ଶାମ କୃଷ୍ଣଂକୁ ଜଣାଇଲା ।୪୧
ଶ୍ରୀକୃଷ୍ଣ କହିଲେ ବଳରାମଂକ ଛାମୁର
କେବଣ ପ୍ରକାରେ ଯେଥୁଂ ବହିଲାକ କ୍ଷୀର ।୪୨
କୃଷ୍ଣ ବୋଇଲେ ଯେ କେବଣ ଚରିତ ହୋଇ
ବହୁକାଳ ପରିଯନ୍ତେ ଯେ କଦମ୍ବ ତଳେ ମୋହର ଥାନହିଁ ।୪୩
ଗୋପୀନ୍ତ ଘେନିଣ ମୁଂ କ୍ରୀଡ଼ା କରଇ ଯେବଣ କାଳେ
ଡାଳେ ଡାଳେ ଭାଙ୍ଗି ମୁଂ ବୁଲଇ ସର୍ବକାଳେ ।୪୪

ସେତେବେଳେ ଯେଥିରୁ ବାହାର ନୋହିଲାକ କ୍ଷୀର
କେବଣ ପ୍ରକାରେ ଯେଥୁ କ୍ଷୀର ହୋଇଲା ବାହାର ।୧୪୫
କିସ ବିପରୀତ ଯେହା କେବଣହିଂ ମତ
ଆପ୍ୟାନ କରି ସ୍ୱାମୀ ଜାଣିମା ତଦନ୍ତ ।୧୪୬
କେମନ୍ତ ଲାଗଇ ବୋଲି ଭକ୍ଷିଲେକ ତାହା
ସମସ୍ତେ ହେଂ ପିବନ୍ତି ତାହା ମନର ଉଛାହା ।୧୪୭
ବିଶେଷ କ୍ଷୀର ପାନ ଲାଗିଲାକ ମଧୁ
ସମସ୍ତେ ଆପ୍ୟାନ କଲେ ପାଇଣ ତା ସ୍ୱାଦୁ ।୧୪୮
ଶୁଣ ହେ ମନୁରାୟେ ବିଷ୍ଣୁଂକ ମହିମାଂରୁ
ଅନେକ କ୍ଷୀର ସେ ତହୁଂ ବାହାରିଲା ବିଷ୍ଣୁଂକ ମାୟାରୁ ।୧୪୯
ଅମୃତହୁଂ ଅଧିକ ସୁସ୍ୱାଦୁ ଅଟଇ
ଯେଥକୁ କେଉଂଣସି ପଦାର୍ଥ ନ ଘଟଇ ।୧୫୦
ଯେମନ୍ତ ଶୁଣିଣ ସେ ସମସ୍ତେ ସରାଗେ
କୃଷ୍ଣ କାମପାଳ କ୍ଷୀର ପିବନ୍ତି ସେ ବେଗେ ।୧୫୧
କାଦମ୍ବରୀ ପାନେ ସର୍ବେ ହୋଇଲେ ମତୁଆଳୀ
ଲାଗିଲେ ମତ୍ତରସେ ହୋଇଲେ ମହାବଳୀ ।୧୫୨
କାଦମ୍ବରୀ ପାନେ ଅଚେତନ ହୋଇଲେ କାମପାଳ
ଶ୍ରୀକୃଷ୍ଣ ମହାମଦେ ହୋଇଲେକ ଭୋଳ ।୧୫୩
କେଶ ବାସ ଅସମ୍ଭାଳ କାହାକୁ କେ ନ ଚିହ୍ନି
ଲଉଡ଼ି ପିଟାପିଟି ହୋଇଲେ ଅନ୍ୟୋଅନ୍ନି ।୧୫୪
ପୁଣ ପୁଣ କଦମ୍ବ ବୃକ୍ଷେ ମାରନ୍ତି ଯେ ଡିହ
ଧବଳ ବର୍ଣ୍ଣ ପ୍ରାୟେ ବହଇ କ୍ଷୀରରେହ ।୧୫୫
ପିବନ୍ତି ସରାଗେ ଯେ ମହାମତ୍ତ ହୋଇ
ହୋଇଲେ ଅସାଷମ ଚେତନା କାର ନାହିଂ ।୧୫୬
ଯେ ଯାହାର ବଳବୀର୍ଯ୍ୟ କହନ୍ତି ଅନୁରୂପେ
ସାତୁକୀ ପ୍ରତଗ୍ୟାଂ ଯେ କରଇ ମହାତାପେ ।୧୫୭
ମୁହିଂ ଯେ ମହାଭାରଥ ଯୁଦ୍ଧରେଣ ଥିଲି
ଯେହି ଭୁଜେ ଅନେକ ରାଜାନ୍ତ ମାଇଲି ।୧୫୮
ଯୋଧା ଅମାନତ୍ୟଂକର ଭାଞ୍ଜଇ ସର୍ବରଥ
ମୋହର ସମାନେ କେହୁ ଅଛି ଯେ ସାମରଥ ।୧୫୯
ତ୍ରଇଲୋକ୍ୟର ମଧ୍ୟେ ମୋତେ ଅଛି କେହୁ ସରି
ବଳରେ ସାମାନ୍ୟ ମୋତେ ଅର୍ଜୁନ ମୁରାରି ।୧୬୦
ଶକଟଭୂଅ ଯେତେବେଳେ ଦ୍ରୋଣ ଗୁରୁ ରଚ୍ଛିଲା
ଶ୍ରୀକୃଷ୍ଣ ପ୍ରସାଦେ ଯେ ଅର୍ଜୁନ ଭେଦିଗଲା ।୧୬୧

ମୁଂହି ତ ପୁଣ ପଛେ ଗଲି ଭୂଅ ଭେଦି
ସାଧୁ ସାଧୁ ବୋଲି ସ୍ୱର୍ଗେ କହିଲେ ବିବୁଧାଦି ।୧୬୨
ଅର୍ଜୁନ ମୋହର ପ୍ରାଣୁ ଅଧିକ ଅଟଇ
ତାହା ଶୁଣି ପଦ୍ମନର ମନ ଉକ୍ରଟଇ ।୧୬୩
ଭୂରିସ୍ରବା ଯେ ତୋର ବାଳ ଧରିଥିଲା
ଖଡଗ ହମ୍ଭାଳି ଯେ ଶିର କାଟୁଥିଲା ।୧୬୪
ଅର୍ଜୁନ ଯେବେ ତାର ଶିର ନ ଛେଦନ୍ତା
କାନ୍ଧରେ ଶିର ତୋର କାହିଂ ହାଦେ ଥାନ୍ତା ।୧୬୫
ଶୁଣିଣ ସାତୁକୀ ବଡ଼ କୋପଭରେ ଉଠି
ଖଡ଼ଗ ପ୍ରହାରି ପଦ୍ମନର ମୁଣ୍ଡ କାଟି ।୧୬୬
ବେନିଖଣ୍ଡ ହୋଇ ତହିଂ ପଦ୍ମନ ପଡ଼ିଲା
ସମସ୍ତେ ଚାହୁଂଛନ୍ତି ବ୍ୟଥା ନ ଲାଗିଲା ।୧୬୭
ପଦ୍ମନ ପରାୟେକ ପୁତ୍ରକଇଂ ମାରି
ଓପ୍ରୋଧ ନ କଲେ କୃଷ୍ଣ ମତ୍ତଭୋଳେ କିଛିହିଂ ନ ବୋଲି ।୧୬୮
ସାତୁକୀ ଦୁଷ୍ଟପଣ ଦେଖି ଗୋବିନ୍ଦର ସୁତେ
ଯେ ଯାହାର ଶହସ୍ତ୍ର ଧଇଲେ ନିଜ ହାଥେ ।୧୬୯
ଶାମକୁମର ଯେ କୋପେ ଖଡ଼ଗ ଧରି ଝୁଣି
ସାତୁକୀର ମୁଣ୍ଡ ଯେ ପକାଇଲା ହାଣି ।୧୭୦
ବେନି ଧାର ହୋଇ କରି ଯହୁଂ ବହିଲାକ ଶ୍ରୋଣି
ସୋଦରେ ସୋଦରେ ସେ ଯେ ହୋଇଲେ ହଣାହଣି ।୧୭୧
ଯେ ଯାହାର ଶହସ୍ତ୍ର ଧରି ନିଜ କରେ
ଯେକ ପ୍ରହାର ଯେ କରଇ ଆରୋକ ଉପରେ ।୧୭୨
ତର୍ଜନ୍ତି ଗର୍ଜନ୍ତି ସେ ଯୁଝନ୍ତି ଭାଂଜନ୍ତି
ସମୋଦ୍ର ତଟେ ଯାଇ ସମସ୍ତେ ହେଂ ମିଳନ୍ତି ।୧୭୩
ଯେକ ଆଖଡ଼ାରେ ଯେ ସମସ୍ତେ ଯୋଦ୍ଧା ସାଧି
କେହି କାହାକଇଂ ସେ ନୁଆରିଲେ ଛେଦି ।୧୭୪
ବାତୁଳ ପ୍ରାୟେ ହୋଇ ବିନ୍ଧନ୍ତି ଶସ୍ତ୍ରମାନ
ଥୋକେ ମଲେ ଥୋକେ ହୋଇଲେ ଅଚେତନ ।୧୭୫
ହାଣନ୍ତେ ଶ୍ୱରୀରେ ସେ ପଡ଼ଇ ଅଶୀପତ୍ର
ଭାଂଗିଣ ଶରଧନୁ ହୋଇଲା ଚୂର୍ଣ୍ଣୀଭୂତ ।୧୭୬
ଯେ ଯାହାକୁ ଯେହ୍ନେ ଅଛଇ ଭବିଷ୍ୟ
କେ ତାହା ଆନ କରିବାକ ଶେଷ ।୧୭୭
କେ ତହିଂ ଶହସ୍ର ପକାଇ ହୋଇଲେକ ବାଇ
କାହାରି ହାଥେ ଆଉ ଧନୁଶସ୍ତ୍ର ନାହିଂ ।୧୭୮

ଦେଖିଲେ ଆଗରେ ଅଛି ସନ୍ତରାବଣ ଗୋଟି
ଦାଢ଼ ସଲଖ ଦେଖି ଉପାଡ଼ିଣ ପିଟି ।୭୯
ଖଣ୍ଡ ଖଣ୍ଡ ହୋଇ ସେ ହୋଅନ୍ତି ଅପହାର
ପଡ଼ିଲେ ସାଂଗ୍ରାମେ ଅନେକ ମହାବୀର ।୮୦
ରୋଧିରେ କର୍ଦ୍ଦନ ଯେ ହୋଇଲା ବସୁମତୀ
ପାଞ୍ଚକୋଶ ମାଟି ହୋଇଲେ ବିନେଶ୍ୱତି ।୮୧
ଭୋ ରାଜନ ଯେବଣ ଶାପ୍ୟହିଂ ଅଷ୍ଟବକ୍ର ଋଷି ଦିଲେ
ଲୋହାର କୋପରା ଭୀମର ହାଥେ ଘୋରାଇଲେ ।୮୨
ଲୋହ ଛିଡ଼ିଣ ତହୁଂ ଭାସିଲାକ ଫେଣ
ତହୁ ଉପୁଜିଲା ଯେ ସନ୍ତରାର ବନ ।୮୩
ଗଦା ମୁଦୁଗର ଅସିପତ୍ର ତୀକ୍ଷମୁନା
ଯେବଣ ଶରୀରେ ବାଜି ହୋୟେ ଶତ ଚୂନା ।୮୪
ଦଇବର ଭବିଷ୍ୟ ଦେଖ ହୋ ମହୀପାଳ
ସନ୍ତରା ବଣେ ନାଶ ଗଲେ ଯାଦବ ସକଳ ।୮୫
ଛପନ କୋଟି ଯାଦବେ ପଡ଼ିଲେ ସର୍ବେ କ୍ଷିତି
ଯେକ ଜଣକେ କେହୁ ନ ରହିଲେ ବ୍ରତି ।୮୬
ଯଦୁ ଭୋଜବଂଶ ତଳେ ଯେତେକ ଯେ ବଂଶ
କୃଷ୍ଣ ବଂଶ ସହିତରେ ହୋଇଲେ ସର୍ବେ ନାଶ ।୮୭
ହରି ବଳରାମେ ଯାଦବଂକ ହତ ଚାହିଂ
ପର୍ବତ ଉପରେ ବସି ଭାଳନ୍ତି ବେନି ଭାଇ ।୮୮
ଯେଥୁ ଅନନ୍ତରେ ଶୁଣ ହୋ ମହୀପତି
ଅମ୍ୱାସୁର ବୋଲିଣ ଯେ ବାଣାସୁର ପଣନାତି ।୮୯
ସେହିଦିନ ସେ ଆସିଥିଲା ବେଣ୍ଟ ବିନୋଦରେ
ଦେଖିଲା ସମସ୍ତେ ମରିଛନ୍ତି ଯଦୁବୀରେ ।୯୦
ମନ୍ତ୍ରୀ ବୋଇଲା ତୁ ଶୁଣ ହୋ ଦଣ୍ଡଧାରୀ
ଯେମାନେ ଅଟନ୍ତି ସର୍ବେ ତୋହର ବଇରୀ ।୯୧
ମାଇଲେ ହିରଣ୍ୟ ହିରଣାକ୍ଷ ବଇଲୋଚନ ବଳି
ବାଣାସୁର ମୋଢ଼ାସୁର କଦମ୍ୱାସୁର ଦର୍ପ ଦଳି ।୯୨
ବୋଇଲ ଅମ୍ୱାସୁର ଯେହୁତତ କୁଢ଼ ମହୁ ମାଂସ
ଭକ୍ଷ ହୋ ଅସୁର ତୁମ୍ଭେ ଶ୍ୱରୀର କର ତୋଷ ।୯୩
ରାଜାର ବଚନଶୁଣି ସେ ପଦ୍ମେକ ସେନା
କରନ୍ତି ଆହାର ସେହୁ ପରପଞ୍ଚ ନାନା ।୯୪
କ୍ରୀଡ଼ାରଙ୍ଗ କରିଣ ଭକ୍ଷନ୍ତି ସର୍ବ ବଳ
ଗିରିଶିଖରେ ଥାଇ ତାହା ଦେଖିଲେ ଶ୍ରୀକୃଷ୍ଣ କାମପାଳ ।୯୫

ଗୋବିନ୍ଦ ବୋଇଲେ ଶୁଣ ହେ ପରମ ଯୋଗୀ
ଆମ୍ଭର ଥାଆନ୍ତେ କୁଟମ୍ୱେ ହୋଇଲେ ଅସୁର ଭୋଗୀ ।୯୬
ରେବତୀ-ବଲ୍ଲଭ ହୋଏ କାଳାନଳ ତେଜ
କାଦମ୍ୱରୀ ପାନେ ସେତ ମତ୍ତ ଦେବରାଜ ।୯୭
ଦକ୍ଷିଣ କରେ ମୂଷଳ ବାମକରେ ବଜ୍ର ଲଙ୍ଗଳ
ବ୍ରହ୍ମାଣ୍ଡ କମ୍ପଇ ସେ ଗର୍ଜନ ମତ୍ତକାଳ ।୯୮
କାଳଚକ୍ର ଜାଣି ଯେ ବୁଲାଇ ବେନି ଦୃଷ୍ଟି
ବଜ୍ର ମୂଷଳ ଘେନି ରାମ ଅସୁରନ୍ତ ପିଟି ।୯୯
ଅସୁର ବଳେ ଧାଇଂ ପିଟିଲେ ଶସ୍ତ୍ର ଧରି
ରାମର ଅଙ୍ଗେ ପଡ଼ି ହୋଇଲା ସର୍ବ ଚୂରି ।୧୦୦
ଶହସ୍ରମାନ ଯହୁଂ ନ ଭେଦିଲା ରାମ କାୟେ
ଭାଜିଲେ ଅସୁରେ ବାସଭଗ୍ନ ପକ୍ଷୀ ପ୍ରାୟେ ।୧୦୧
ପଳାବନ୍ତେ ଗୋଡ଼ାଇ ଯେ ପିଟିଲେ କାମପାଳ
ଯେସନେକ ନିର୍ଘାତ ପଡ଼ଇ ରବିତଳ ।୧୦୨
ରାମର ବିଘାତେ ପଡ଼େ ଅସୁର ସଇନି
ମେଦମେଦା ମାୟେଂସେ କର୍ଦ୍ଦନ ହୋଇଲା ମେଦିନୀ ।୧୦୩
ଶତେ ଯୋଜନେ ଯାୟେ ପଡ଼ିଲା ପୟେତଇ
ମତ୍ତଭରେ ଗୋଡ଼ାଇଲେ ରେବତୀର ସାଇଂ ।୧୦୪
ପାଲଟି ସାଂଗ୍ରାମ ଯେ କରଇ ଦଇତାରି
ଆପଣେ ଅମ୍ୱାସୁର ମୁଦୁଗର ପ୍ରହାରି ।୧୦୫
ରାମ ଶ୍ୱରୀରେ ପଡ଼ି ମୁଦୁଗର ଗଲା ଭାଂଜି
କାଦମ୍ୱରୀ ପାନେ ନିଳାମ୍ୱର ଗଳଗାଜି ।୧୦୬
ଶହସ୍ର ଭଗ୍ନ ଦେଖି ପଳାଇଲା ଅମ୍ୱାସୁର ଦଇତେ
ପଳାଇ ପଶିଲା ଯାଇ ବାଇବା ପର୍ବତେ ।୧୦୭
ପଛେ ପଛେ ଗୋଡ଼ାଇ ଅଛନ୍ତି କାମପାଳ
କାଦମ୍ୱରୀ ପାନେ ପ୍ରଭୁ ହୋଇଛନ୍ତି ମତ୍ତଭୋଳ ।୧୦୮
ହେଠମାଥେ ବଳରାମ ଧାମନ୍ତି ମତ୍ତଭୋଳେ
ଆକାଶେ ତ୍ରାସିଲେ ସମସ୍ତ ଦିଗପାଳେ ।୧୦୯
ଆହୋ ଚଇତନ ବାଇବା ନାମେ ପର୍ବତର ତଳେ
ତପସ୍ଥାନ କଲେ ସେ ଉତ୍ତରଭାଗ କୂଳେ ।୧୧୦
ରାମର ମତ୍ତଭୋଳ ମଉଳି ହେଠ ଦେଖି
ପଳାଇଲେ ମୁନିମାନେ ତପସ୍ଥାନ ଉପେକ୍ଷି ।୧୧୧
ପଳାନ୍ତେଣ ଗୋଡ଼ାନ୍ତି ଯେ ଦେବ ବଳରାମ
କାଦମ୍ୱରୀ ପାନେ ନ ଜାଣିଲେ ଧର୍ମ ଯେ ଅଧର୍ମ ।୧୧୨

ଅଣ୍ଣ ଅଷ୍ଟ ମହାଋଷି ଅପାର କାଳର ଯତି
ପଳାବନ୍ତେ ମୁଖି ମାଡ଼ି ପଡ଼ିଲେ ବସୁମତୀ ।୧୧୩
କେ ବ୍ରାହ୍ମଣ କେ ଅସୁର କେହୁ ଅଟେ ଚାଣ୍ଡାଳ
ଜାଣିତ ନୁଆରିଲେ ଦେବ କାଦମ୍ବରୀ ପାନେ ମତ୍ତଭୋଳ ।୧୧୪
ଯହୁଂ ସେ ମହାତମା ପଡ଼ିଲେ ମୁହଂ ମାଡ଼ି
କୋପେଣ ନୀଳାମ୍ବର ପିଟିଲେ ନେଇ ବାଡ଼ି ।୧୧୫
ରାମର ବିଘାତେ ଯେ ଋଷି ପ୍ରାଣତ୍ୟାଗ
ବ୍ରହ୍ମହତ୍ୟା କରି ରାମ ତହୁଂ ଗଲେ ବେଗ ।୧୧୬
ବାଇବା ପର୍ବତେ ଯେ ଉଠିଲେକ ଦେବ ଯାଇଂ
ଭୟେଣ ଅମ୍ବାସୁର ଗଲାକ ପଳାଇ ।୧୧୭
କୋପେଣ ଗୋଡ଼ାଇଲେ ତାକୁ ରେବତୀର ସାଇଂ
ପବନ ଗତି କରି ସେ ଅସୁର ପଳାଇ ।୧୧୮
ବାଇବା ପର୍ବତକୁ ଛାଡ଼ିଣ ହଳପତି
ସହସ୍ରେ ଯୋଜନ ଗୋଡ଼ାଇଲେ ଦକ୍ଷିଣ ମୂରତି ।୧୧୯
ବାଲୁଂକା ନାମେ ଗିରି ଦକ୍ଷିଣ ମରହଟ୍ଟ
କୁଣ୍ଡଳୀ ନାମେ ଗିରି ନଦୀ ସେ ନିକଟ ।୧୨୦
ସେ ନଦୀରେ ଯାଇଣ ପଶିଲା କଉଣୋପି
ଯେକ ନିମିଷେକେ ରାମ ତହିଂ ଯାଇ କ୍ଷେପି ।୧୨୧
କୋଟିଯେ ସୂର୍ଯ୍ୟର ତେଜ ରାମର ବେନି ଆଖି
ତହିଂରୁ ଅମ୍ବାସୁର ପଳାଇଲା ଉପେକ୍ଷି ।୧୨୨
ଅଗ୍ନି କୋଠାର ପର୍ବତେ ପଶିଲା ଦଇତ
ପଳାଇ ଗୋପ୍ୟ ଗଲା ପର୍ବତର କ୍ରୋଟ ।୧୨୩
ତହିଂରେ ପଡ଼ିଲା ଆସି ନୀଳାମ୍ବର ଧାଡ଼ି
ତହୁଂଣ ଦଇତ ପଳାଇଲା ଗିରିବର ଛାଡ଼ି ।୧୨୪
ପୁଣିହିଂ ଲୁଚିଲା ଯାଇ ମହାସୁର ପର୍ବତ
ଗୋଡ଼ାବନ୍ତି ବଳେବର କାଦମ୍ବରୀ ପାନେ ମତ୍ତ ।୧୨୫
ପାଦର ବ୍ୟଗ୍ରେ କାମପାଳ କ୍ଷେପି
ଯେକା ନିମିଷେକେ ତହିଂ ରାମ ଯାଇଂ ବ୍ୟାପି ।୧୨୬
ମହାସୁର ପର୍ବତରୁ ପଳାଇଲା ଅମ୍ବାସୁର
ଗୁପତେ ପୁଣିହିଂ ପଶିଲା ଯାଇ ମାହେନ୍ଦ୍ର ପର୍ବତର ।୧୨୭
ମାହେନ୍ଦ୍ର ପର୍ବତେ ପଡ଼ିଲା ରାମଂକର ଧାଡ଼ି
ତହୁଂ ପଳାଇ ପଶିଲା ନିସ୍ତର ନାମେ ଗିରି ।୧୨୮
ପୁଣିହିଂ ପଳାଇଲା ତହୁଂ ଅମ୍ବାସୁର ବୀର
ପ୍ରବେଶ ହୋଇଲା ଯାଇ ମୃତ୍ତିକା ପର୍ବତର ।୧୨୯
ପ୍ରାଚୀ ନଦୀ କୂଳେ ଯେ ଗୋଲକ ପର୍ବତ ବନିକା
ଅର୍ବୁକା ନାମେ ଅସୁର ତହିଂ ରାଜ୍ୟ କରଇ ଯେକା ।୧୩୦
ଅମ୍ବାସୁର ଯାଇଣ ସେ ବନେ ମିଳିଲା
ଅର୍ବୁକାର ତହିଂ ଯାଇ ଶରଣ ପଶିଲା ।୧୩୧
ଅର୍ବୁକା ବୋଇଲା ତୁ ମୋହର ପିତା ଶଳା
ଦୁହେଂ ନାଶ ଯିବା ତୁ ବହନ ଯେଥୁଂ ପଳା ।୧୩୨
ଅମ୍ବାସୁର ବୋଇଲା ସେ ଯେକା ବଳରାମ
କାଦମ୍ବରୀ ପାନେ ସେ ମତୁଆଳ ଅସାଷ୍ଟମ ।୧୩୩
ଦୁହେଂ ସମରେ ତାକୁ ପକାଇବି ମାରି
ଯୁଗତେ ବଳରାମ ଅସୁରଂକ ବଇରୀ ।୧୩୪
ଆହୋ ଚଇତନ ଅର୍ବୁକା ଅମ୍ବାସୁର ବେନି ଯେ ଦଇତେ
ସମରେ ରହିଲେ ସେ ମୃତ୍ତିକା ପରବତେ ।୧୩୫
କୋପେଣ କୋହାନଳ ହୋଇଣ କୁଣ୍ଡଳୀ
ମୃତ୍ତିକା ଗିରି ଉପରେ ଉଠିଲେ ଦେବ ହଳୀ ।୧୩୬
ଅର୍ବୁକା ଅମ୍ବାସୁର କରେ ଧରିଣ ଆୟୁଧ
ରାମର ତୁଲେ ସେହୁ ରହିଣ କଲେ ଯୁଦ୍ଧ ।୧୩୭
ଅସୁର ଦୁରାନ୍ତେକ ଅତୁଳାୟିତ ମଲ
ଅସୁର କୁଳ ନିଶୋଧନ ଅଟନ୍ତି କାମପାଳ ।୧୩୮
ଯେକମୁଖ ହୋଇଣ ଯେ ବେନି ବୀର ଉଠି
ଲୋହସାର ଗଦା ଘେନି ରାମ ଅଂଗେ ପିଟି ।୧୩୯
ଅଭେଦ କବଚ ବଜ୍ର ଛଉରୀ ଶ୍ୱରୀରେ ଯାହାର
ଲୋହସାର ଗଦା ଭାଜି ହୋଇଲା ଶତେ ଚୂର ।୧୪୦
ଭୟେ ଅର୍ବୁକା ଡେଇଂଣ ସେ ପର୍ବତେ ଗୋପ୍ୟ ହେଲା
ତହୁଂ ଅମ୍ବାସୁର ଭୟେଣ ପଳାଇଲା ।୧୪୧
ଗୋଡ଼ାବନ୍ତି କାମପାଳେ ରେବତୀର ପ୍ରହୁ
ମନ୍ଦର ଗିରି ସମାନେ ଶୋଭିତ ବେନି ବାହୁ ।୧୪୨
ହୁଂକାର ଶବଦ କରି ଦଇତ ପଳାଇଲା
ଅମ୍ବୁ ବନିକାରେ ଯାଇ ସେହୁ ଗୋପ୍ୟ ହେଲା ।୧୪୩
ଶୁଣ ଆହୋ ଚଇତନ ବଦୟନ୍ତି ଅଗସ୍ତି
ଜମ୍ବୋଦୀପ ଭ୍ରଥଖଣ୍ଡ ଅଗ୍ନିଶାନ୍ୟ କୋଣ କତି ।୧୪୪
ଓଡ଼ରାଷ୍ଟ୍ର ବୋଲିଣ ସେ ଯେବଣ ମଣ୍ଡଳ
ଅମ୍ବୁବନ ଅଛି ଚିତ୍ର ଉତ୍ପଳା ନଦୀ ତୀର ।୧୪୫
ଈଶାନ ବାହିନୀ ଯେ ଅଳକା ନାମେ ନଦୀ
ଚିତ୍ର ଉତ୍ପଳାହୁଂ ସେ ପୂର୍ବ ଦିଗେ ଭେଦି ।୧୪୬

ପଞ୍ଚକୋଶ ଓସାର ଯେ ସେ ଅମ୍ବୁ ବନିକା
ତହିଂରେ ଅମ୍ୟାସୁର ଗୋପ୍ୟାନ ହେଲା ନିଂଶକା ।୧୪୭
ମୃତ୍ତିକା ଗିରିକି ଯେ ଧାଡ଼ିଦିଲେ କାମପାଳ
ଅମ୍ୟାସୁରକୁ ଠାବ କଲେ ବଦରୀ ବଟ ତଳ ।୧୪୮
ଫୁଟିଣ ଅମ୍ୟାସୁର ତହିଂ କରିଛି ବିଶ୍ରାମ
ଧାଡିକାରେ ବିଜେ କଲେ ତହିଂ ବଳରାମ ।୧୪୯
ଦେଖିଣ ଦାନବ କୋପେଣ ଗଳଗାଜି
କୋଦାଳ ଆୟୁଧ ତାର ଘେନିକରି ଗର୍ଜି ।୧୫୦
ବଳରାମ ଅଗ୍ରତେ ଯେ ଗର୍ଜଇ କଉଣୋପ
ହେଠମାଥେ କାମପାଳ କାଦମ୍ବରୀ ଦର୍ପ ।୧୫୧
ଦକ୍ଷିଣ କରେ ଆୟୁଧ ଧରିଣ କୋଦାଳ
କୋପେଣ ପ୍ରହାର କଲା ବଳରାମଂକ ବକ୍ଷସ୍ଥଳ ।୧୫୨
ପୁଣ ପୁଣ ପ୍ରହାର କରଇ ଗଳଗାଜି
ଶତେଖଣ୍ଡ ହୋଇଣ କୋଦାଳ ଗଲା ଭାଙ୍ଗି ।୧୫୩
ଅସୁରର କୋପ ଯେ ଦେଖିଣ ବଳରାମ
ବଜ୍ର ମୂଷଳ ନେଇ ପିଟିଲେ ଅତି ତମ ।୧୫୪
ମୂଷଳ ବାଜିଲା ଯେ ଅସୁର ବକ୍ଷ ସ୍ଥଳେ
ଶତଖଣ୍ଡ ହୋଇ ଯେ ବାଜିଲା ମୂଷଳେ ।୧୫୫
ଦେଖିଣ ଅମ୍ୟାସୁର ଧାମଇଂ ଆନନ୍ଦେ
ବେନିଭୁଜେ ରାମଂକୁ ଧଇଲା ମାଳବନ୍ଧେ ।୧୫୬
କୋପେଣ ଅମ୍ୟାସୁର ରାମଂକୁ ବେଗେ ଧରି
ମାଳବନ୍ଧେ ଧରି ନେଇ ରାମଂକୁ ହଠି ପାଡ଼ି ।୧୫୭
ଅଚେତ ସେ କାମପାଳ କାଦମ୍ବରୀ ଭୋଳେ
ମୁଷ୍ଟି ପ୍ରହାର କରଇ ରାମଂକ ବକ୍ଷସ୍ଥଳେ ।୧୫୮
କୋଠାର ବୁଲାଇ ତାଂକୁ ମାରିଲା ଦଇତ
ଅସାଷ୍ଟମ କାଳେ ରାମ ହୋଇଲେ ଅଚେତ ।୧୫୯
କୋଟିଯେ ସିଂହର ବଳ ଯେବଣ ବଳରାମ
ସାଷ୍ଟାମେ ଅସୁରେ ଲେଉଟାଇ ବସିଲେ ମାଡ଼ିଣ ।୧୬୦
ଦୁସହ ପ୍ରତଗ୍ୟାଂ ଯେ କଲେ କାମପାଳ
ମାଡ଼ିଣ ବସିଲେ ଦେବ ଅମ୍ୟାସୁରର ବକ୍ଷସ୍ଥଳ ।୧୬୧
ହଳେଣ ପିଟନ୍ତେ ଯେ ନ ମଲା ଦଇତାରି
ହଳମୁନେ ଶ୍ୱରୀର ଖଣ୍ଡ ଖଣ୍ଡ କରିଣ ବିଦାରି ।୧୬୨
କାଦମ୍ବରୀ ପାନେ ମତ୍ତ ରେବତୀର ପତି
ଅମ୍ୟାସୁର ଉପରେ ଅମୃତ ହୋଯେ ବୃଷ୍ଟି ।୧୬୩
ବାହୁଡ଼ି କଅଂଳଇ ତାହାର ଶ୍ୱରୀର
ତହୁଂ ଅଧିକ ବଳ ହୋଇଲା ଅସୁରର ।୧୬୪
ଦେଖିଣ କାମପାଳ ନ ପୁରଇ କିଛି
ରାମଂକୁ ଅମୃତ ପାନ କରାଇଲେ ବିରଞ୍ଚି ।୧୬୫
ଅମୃତ ପାନ ପରେ ଦେବ କାଳାନ୍ତକ ତେଜ
ବ୍ରହ୍ମାଣ୍ଡ କମ୍ପିଲା ଯେ କୋପେଣ ଦେବରାଜ ।୧୬୬
ପଞ୍ଚକୋଶ ଓସାର ଯେବଣ ଅମ୍ବୁବନ
ମାଲବନ୍ଧେ ଧୂଳି ଉଡ଼ିଲା ନ ରହିଲା ଚିହ୍ନବର୍ଣ୍ଣ ।୧୬୭
ରାଗେଣ ରାମ ବଜ୍ର ହଳକୁ ଘେନି ପିଟି
ତଥାପି ଦୂରାନ୍ତେକ ଶ୍ୱରୀରହିଂ ନ ଫୁଟି ।୧୬୮
ଆକାଶର ବାଣୀ ଯେ ଶୁଭିଲା ଅଦଭୁତେ
ଅସୁରକୁ ମାଡ଼ିବସ ଦେବ ହଳହାଥେ ।୧୬୯
ଛାଡ଼ିଲେ ଅବଧ୍ୟ ପୁଣି ହୋଇବାକ ଯେହି
ବୃନ୍ଦାଅର୍କମାନେ ସ୍ୱର୍ଗେ ନ ରହିବୁ କେହି ।୧୭୦
ବିରଞ୍ଚିର ବରେ ଯେହି ଅଟଇ ତ୍ରିଜୀବୀ
ଶହସ୍ର ବିଘାତେ ନୁହଇ ପରାଭବି ।୧୭୧
ମାଡ଼ିଣ ବସି ରାମ ଅସୁର ବକ୍ଷ ସ୍ଥଳେ
ତେବେ ସେ ଅସୁର ସିନା ରହିବ ନିଷ୍ଟଳେ ।୧୭୨
ଦେବତାଂକ ମୁଖରୁ ଯେସନେକ ବାଣୀ ଶୁଣି
ଦଇତ ବକ୍ଷ ସ୍ଥଳେ ମାଡ଼ି ବସିଲେ ହଳପାଣି ।୧୭୩
ଆହୋ ଚଇତନ ତୁଳ କୃଷ୍ଣ ପକ୍ଷ ତ୍ରୟୋଦଶୀ ଉତ୍ତାରେ ଚତୁର୍ଦ୍ଦଶୀ
ଭୃଗୁବାର ସେଦିନ ପୁନର୍ବସୁ ନକ୍ଷତ୍ର ମିଥୁନ ରାଶି ।୧୭୪
ବାଳବ ନାମେ କରଣ ପ୍ରିତୀ ନାମେ ଯୋଗ
ଅମ୍ୟାସୁରକୁ ରାମ ଚାପିଲେ ପାତାଳ ସ୍ୱର୍ଗ ।୧୭୫
ଯହୁଂଣ ଅମ୍ୟାସୁର ହୋଇଲା ପ୍ରାଣ ଭ୍ରଷ୍ଟ
ଦେଖିକରି ଦେବଲୋକେ ହୋଇଲେ ମହାତୁଷ୍ଟ ।୧୭୬
ଆହୋ ଚଇତନ ଦେବବୃନ୍ଦ ଘେନିଣ ଆପଣେ ବେଦପତି
ଶ୍ରୀରାମଂକୁ ଆସି କଲେକ ବହୁ ସ୍ତୁତି ।୧୭୭
ଜୟତୁ ଜୟତୁ କାମପାଳ ହଳୀ
ଅନନ୍ତ କୋଟି ବ୍ରହ୍ମାଣ୍ଡେ ତୁହି ସେ ମହାବଳୀ ।୧୭୮
ନୀଳ ବସ୍ତ୍ର ପରିହରଣ ଶିରେ ସପ୍ତଫେଣୀ
ଲଲାଟେ ଅଛି ତିମିର ବିଦାରଣ ମଣି ।୧୭୯
କୁରୁବଇ ବିବାଦେ ତାଡ଼ିଲୁ ହଳମୁନରେ ହସ୍ତିନା
ବକ୍ରକରି ଥାପିଲୁ ରଖିଲୁ କଥା ସିନା ।୧୮୦

ଶ୍ୱେତ ପୀତ ରକତ କୁଂକୁମ ଚାରିବର୍ଣ୍ଣ
ଧବଳ ଲୋହିତ ସେ ସହସ୍ରଫଣୀ ଚିହ୍ନ ।୧୮୧
ଆହୋ ଚଇତନ ଆଦିଅନ୍ତ ମଧ୍ୟେ ଯାର ଅବସାନ ନାହିଁ
ନିରାକାର ପୁରୁଷକୁ ଦେଖିବା ଆଉ କାହିଁ ।୧୮୨
ଜାନୁଦଣ୍ଡ ବିଘାତେ ବ୍ରହ୍ମାଣ୍ଡ ଖଣ୍ଡ ବ୍ୟାପି
ସଂସାର ନ ରହଇ ଯାହାର କଲେ କୋପୀ ।୧୮୩
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଯାହାର ତେଜ ଶକ୍ତି
ମୁହିଁ ତାହା ବର୍ଣ୍ଣିବି କିସ ମୋ ଶକତି ।୧୮୪
ଭାବେ ଭଗତର ପୂରାଅ ମନ ବାଞ୍ଛା
କୋଟିଯେ ବ୍ରହ୍ମାଣ୍ଡ ତୋ ଫଣୀରେ କରୁ ରକ୍ଷା ।୧୮୫
ଶ୍ରୀ ବଳରାମଂକ ପଦ୍ମପାଦେ ସେବି
ବାକ୍ୟଦେବୀ ଭଣ୍ଡାର ବୟେକଲା ସାରୋଳଦାସ କବି ।୧୮୬

**

## ୧୧୪. ଶ୍ରୀକୃଷ୍ଣଙ୍କୁ ଜାରାଶବରର ଶରାଘାତ ଓ ଶବର ଶବରଣୀଙ୍କ ସ୍ତୁତି

ଶୁଣ ବଇବସୁତ ମନୁ ବଦନ୍ତି ଅଗସ୍ତି
ଅମ୍ବାସୁରକୁ ମାଡ଼ି ବସିଲେ ହଳପତି ।୧
ଅମ୍ବାସୁର ବଧ ଯହୁଁ ଶୁଣିଲୁ ତପୋନିଷ୍ଠି
ଅନେକ ଜନ୍ମର ଆମ୍ଭର ପୂରିଲା ଅରିଷ୍ଟି ।୨
ବନ୍ଧୁ ଗଣମାନେ ଯହୁଁ ନାଶିଲେ ସମସ୍ତ
କେବଣ ଚରିତ ତହୁଁ କଲେ ସେ ଅନନ୍ତ ।୩
ବଦନ୍ତି ଅଗସ୍ତି ତୁ ଶୁଣ ହେ ମନୁରାୟେ
ସମସ୍ତେହେଂ ନାଶ ଗଲେ କୃଷ୍ଣର ତନୟେ ।୪
ଦେଖିକରି ଆକୁଳ ହୋଇଲେ ପଦ୍ମନାଭ
କ୍ଷଣକେ ନାଶ ଗଲେ ମୋହର ବନ୍ଧୁ ସର୍ବ ।୫
ତ୍ରଇଲୋକ୍ୟ ମୋହନ୍ତି ସେ ଯେବଣ ଦେବତା
ଯେହି ନୟନରେ ଦେଖିବା ତାଂକର ଅବସ୍ଥା ।୬
ଯେତେ ଭାଳି କୃଷ୍ଣଂକର ଉତ୍ସୁକ ହେଲା ମନ
ଅଶ୍ରୁଜଳେ ପୂରିତ ସେ କମଳଲୋଚନ ।୭
ପୁଣିହିଁ ବିଚାରନ୍ତି ଯିବା ପିତାମାତାଂକ କତି
ତାହାଂକୁ ଚିଆରି ମୁଂ ଆସିବି ତତ୍‌ପତି ।୮
ଯେତେକ ବିଚାରି ମନରେ ଦେବ ଚକ୍ରଧାରୀ
ଅନ୍ତରୀକ୍ଷେ ବିଜେକଲେ ବସୁଦେବ ପୁରୀ ।୯
ଦେଖିଣ ବସୁଦେବ ଆକୁଳ ପଞ୍ଚମନ
ବାବୁରେ ଚନ୍ଦ୍ରବଦନ ମୁଖ ତୋର କିମ୍ପେ ଦିଶଇ ମଳିନ ।୧୦
ଶ୍ରୀକୃଷ୍ଣ ବୋଇଲେ ତାତ ଆମ୍ଭ ଶସ୍ତ୍ରଘାତେ
ସମସ୍ତ ଯାଦବ ମାନେ ଗଲେ ଗତ ପଥେ ।୧୧
ମୁହିଁ ଯିବଇଂ ଯେବେ ପ୍ରଭାସ ନାମେ ତୀର୍ଥେ
ତପ ଆରମ୍ଭିବି ଯାଇ ବ୍ରହ୍ମଜ୍ଞାଂନ ପଥେ ।୧୨
ତୁମ୍ଭଂକୁ କହିବାକୁ ଅଇଲଇଂ ଯେଥେ
ମୁହିଁ ଯାଇଂ ଯେଠାକୁ ପଠିଆଇବି ବୀର ପାର୍ଥେ ।୧୩
ଷୋଳସହସ୍ର କନ୍ୟାମାନେ ଯେ ଅଷ୍ଟନାୟେକା
ଶତେ ଅଷ୍ଟଉତ୍ତର ତହିଂରେ ସୁନ୍ଦର ବିବେକା ।୧୪
ଅର୍ଜ୍ଜୁନ ଗୋଚରରେ ଯେହା ସମର୍ପିବ ତାତ
ମୁହିଁ ଆସିବି ପୁଣି ସମୟେ ଉଚିତ ।୧୫
ଯେତେ କଥା ହରି ବସୁଦେବଂକ ଆଗେ କହି
ସ୍ୱପନ ପ୍ରାୟେ କୃଷ୍ଣ ତାର ମନ ମୋହି ।୧୬
ତହୁଂ ଉଦବେଗ ଗମନ ପଦ୍ମନେତ୍ର
ସମୁଦ୍ର କଇଛାଡେ ମିଳିଲେ ଚନ୍ଦ୍ରଭାଗା ତୀର୍ଥ ।୧୭
ଅଟବ୍ୟା ଗିରିବର ବିପୁଣ୍ୟ ଗହନ
ଶୁଣି ଚକିତ ଦଇବକୀ ବସୁଦେବ ମନ ।୧୮
ଯେତେ ବୋଲି ମନର ଉଦବେଗେ ବୁଲନ୍ତି ଅନ୍ତରାଳେ
ବସିଲେ ଗହନେ ଯାଇ କାଳନ୍ଦୀ ନଦୀ କୂଳେ ।୧୯
ଯେସନେକ ସମୟେ ଯେ ଦେବ ହଳଧର
ଅମ୍ବାସୁର ବଧକରି ଦେବ ଅଇଲେ ଧାତିକାର ।୨୦
ପରମ ଆତ୍ମାକୁ ସେ ଘେନିଣ ଶୁଦ୍ଧଦେହୀ
ଗୋବିନ୍ଦଂକ ପାଶରେ ବସିଲେ ଦେବ ଯାଇ ।୨୧
ଦେଖିଲେ ବିରସ ସେ ଦେବ ଭଗବାନ
ସମାସ୍ୟା ନାହିଁ ଆଉ ହୋଇଅଛନ୍ତି ମଉନ ।୨୨
କୃଷ୍ଣର ମୁଖ ଚାହିଁ ବିମର୍ଷ ଦେବହଳୀ
ଥମ୍ଭାଭୁତେ ବସିଲେ ଅଶ୍ରୁଜଳ ଢାଳି ।୨୩
ଯେମନ୍ତର ଭାବେଣ ସେ ଦେବ କାମପାଳ
ଶ୍ରୀକୃଷ୍ଣ ମୁଖ ଦେଖି ଆତ୍ମା ବଇକୁଳ୍ୟ ।୨୪
ଆଉ କିମ୍ପେ ଯେହା ମନେ ବିଚାର ବନମାଳୀ
କୃଷ୍ଣ ମୁଖ ଚାହିଂଣ ବିକଳ ଦେବହଳୀ ।୨୫
ଆତ୍ମା ବିକଳଇ ତହିଂ ହୋଇଲେ ବଳେବର

ସର୍ପେକ ହୋଇଣ ସେ ଯେ ଗମନ୍ତି ଅତି ଖର ।୧୨୬
କ୍ଷୀର ଜଳଧିରେ ଯହିଁ ଶୟନେ ମୁରାରି
ଶ୍ରୀକୃଷ୍ଣ ଦେଖନ୍ତେ ସେ ବଳରାମେ ବିଜେକରି ।୧୨୭
ବଳରାମ ନିଧନ ଦେଖିଣ ଭଗବାନ
ଅସମୟେ ମୋତେ ଛାଡ଼ି ଗଲ ହେ ସଂକ୍ରିଷେଣ ।୧୨୮
ଯେ ମୋହର ଆତ୍ମା ତୁ ଅଟୁ ନୀଳାମ୍ବର
କୋଟିୟେ ସିଂହର ହୋୟେ ପ୍ରାକ୍ରମ ତୁମ୍ଭର ।୧୨୯
ହରି ବଳରାମ ବୋଲି ବୋଲନ୍ତି ଜଗତେ
ଯେକାକରି ମୋତେ ଗଲ ହେ ହଳ ହସ୍ତେ ।୧୩୦
ଯେତେ ବୋଲିଣ ଦେବ ଚାହିଁଲେ ହାଥକୁ
ଶଙ୍ଖ ଚକ୍ର ଦୁହେଁ ଗଲେ ବଇକୁଣ୍ଠ ପୁରକୁ ।୧୩୧
ବିଶହସ୍ର ହୋଇଲେ ସେ ଦେବ ଭଗବାନ
ଆତ୍ମାକୁ ଭୟେ କରି ସେ ପଶିଲେ ବିପିନ ।୧୩୨
ଗହନ ଅଟବ୍ୟା ସେ କାଳନ୍ଦୀ ନଦୀକୂଳେ
ବୁଲନ୍ତି ନାରାୟଣ ଚିତ୍ତର ଅନ୍ତରାଳେ ।୧୩୩
ଯାଇଣ ସେ ଦେଖିଲେ ଶିଆଳିଲତା ଦୋଳି
ତହିଁର ଉପରେ ଫୁଟି ବସିଲେ ବନମାଳୀ ।୧୩୪
ଅସାଷମ ହୋଇଣ ଉତ୍ତାନଶାହୀ ହୋଇ
ଧାରାଶ୍ରାବଣ ପ୍ରାୟେ ନୟନୁ ଲୁହ ବୋହି ।୧୩୫
ସେ ଲତା ଭିତରେ ଯେ ଶୟନ ନାରାୟଣ
ପୂର୍ବର କଥା ବିଚାର କରନ୍ତି ମନେ ମନ ।୧୩୬
ମୁହିଁ ସେ ମୀନ ରୂପେ ଜଳଧିରେ ଅବତରି
ବେଦ ଉଦ୍ଧାରିଲି ତହିଁ ଶଙ୍ଖାସୁର ମାରି ।୧୩୭
କୂର୍ମ ରୂପେ ମାଇଲି ଅସୁର ଅବନୀ
ଯେ କାୟେ ଧଇଲି ବ୍ରହ୍ମାଣ୍ଡ ଖଣ୍ଡ ତିନି ।୧୩୮
ବରେହା ରୂପ ଧରି ମାଇଲି ହିରଣାକ୍ଷ
ସେ ବେଳେ ଅବା ମୋତେ ହୋଇଲା ସଂପକ୍ଷ ।୧୩୯
ପୃଥ୍ୱୀକି ଭାରା ହୋଇଲା ହିରଣ୍ୟକଶିପୁ
ନରସିଂହ ରୂପ ଧରି ବିଦାରିଲି ତାର ବପୁ ।୧୪୦
ବାମନ ଶରୀର ମୁଂ ହୋଇଲି କାୟାଗୋଟି
ବଳିକି ଦାନ ମାଗି ପାତାଳେଣ ଘୋଟି ।୧୪୧
ମାଙ୍କତୀ ସ୍ୱରୂପ ଧରି ଯେ ହୋଇଲି ତିରିଅଙ୍ଗ
ବଇଲୋଚନ ଦର୍ପ ଯେକାୟେ କରି ଭଙ୍ଗ ।୧୪୨
ଗରୁଡ଼ ନାରାୟେଣ ରୂପେ ରକ୍ଷ ଭକ୍ଷ ମାରି
କୃଷ୍ଣ ଅବତାରେ ହେତି ପ୍ରହେତି ସଂହାରି ।୧୪୩
ପୁଣି ଜନାର୍ଦ୍ଦନ ରୂପେକ ବିକାଶି
ମାଳୀ ସୁମାଳୀ ମୂଳେ ଅନେକ ଦତ୍ୟ ଧ୍ୱଂସି ।୧୪୪
ପ୍ରଶୁରାମ ଅବତାରେ ଜମଦଗ୍ନି ଘରେ
ମନିଷ ସ୍ୱରୂପ ମୁଂ ଧଇଲି ସେବେଳେ ।୧୪୫
ଯେକୋଇଶି ବାର ନିଛତ୍ର କଲି ମହୀ
ଯେହେନେକ ଅବସ୍ଥା ନ ପାଇଲି କାହିଁ ।୧୪୬
ଶ୍ରୀରାମ ଅବତାର ମୁଂ ହୋଇଲି ସୂର୍ଯ୍ୟବଂଶେ
ରାବଣ କୁମ୍ଭକର୍ଣ୍ଣ ଛେଦିଲି ଜାନକୀର ଦୋଷେ ।୧୪୭
ବାବୁ ପରମ ସାଧେବୀ ସେ ଜନକ ଦୁହିତା
ଆଗହୁଂ ବଇକୁଣ୍ଠ ଗାମୀ ହୋଇଲେ ଦେବୀ ସୀତା ।୧୪୮
ସ୍ୱଦେହ ଘେନିଣ ମୁଂ ସ୍ୱର୍ଗକଇଂ ଗଲି
ସେବେଳେ ଯେହେନେକ ଅବସ୍ଥା ନ ପାଇଲି ।୧୪୯
କହ୍ଲୀ ଅବତାର ଯେ ହୋଇଲି କୁତୂହୋଳେ
କ୍ଷୀରପାନେ ବଢ଼ିଲି ଯେ ଗୋପାଳଂକ ମେଳେ ।୧୫୦
ଦାରାରେ ପ୍ରମତ୍ତ ହୋଇଲି ବାଳକାଳୁ
ପରଦାରା ରମଣ ଆଦି ଗୋପୀଂକର ମେଳୁ ।୧୫୧
ଅବିକ୍ଷଣେ ଶୃଙ୍ଗାରେ ମୁଂ ବଢ଼ାଇଲି ମତି
ବତିଶ ସହସ୍ର ଶତେ ଅଷ୍ଟ ଉତ୍ତର ଯୁବତୀ ।୧୫୨
ଯେତେ କନ୍ୟାଂକର ଯେ ଦଶ ଦଶ ପୁତ୍ର ଦଶ ଦଶ ନାତି ଲେଖାୟେଂ
ଯେ ବିଧି ତନୟେ ଯେ ହେଲା ଅପ୍ରମୟେ ।୧୫୩
ଲକ୍ଷେ ଷାଠିୟେ ସହସ୍ର ଅଶିୟେ ନନ୍ଦନ
ଦୋହିତାମାନେ ଯେ ଯେତେକ ବିଦ୍ୟମାନ ।୧୫୪
ଯେହାଂକର ପୁତ୍ର ପଉତ୍ରୀ କେହୁ ପାରେ କଳି
ଚଉବିଂଶ ଯୋଜନ ଦ୍ୱାରିକା ନୂଆରଇ ସମ୍ଭାଳି ।୧୫୫
ଯେହାନ୍ତ ଯୁଗତେ ମୁଂ କରିଥିଲି ସେନେହ
ପଡ଼ିଲି ଅଗାଧ ଜଳେ ଛାଡ଼ିଲି ମାୟାମୋହ ।୧୫୬
ହୋ ପଣ୍ଡିତ ଜନେ ବହୁତ କୁଟୁମ୍ବେ
ବହୁତ କ୍ରୋଧୀ ସିନା ହୋଇଲେ ଶ୍ରୀବାସୁଦେବେ ।୧୫୭
ଯେକା ଯେତେକ କୁଟୁମ୍ବ ଅର୍ଜିଲି ସିନା ମୁହିଁ
ପୁଣି ମରାଇଲି ଅନ୍ୟୋଅନ୍ୟି କରାଇ ।୧୫୮
ସବୁନ୍ତି ମରାଇ ମୁହିଁ ହୋଇଲଇଂ ଯେକା
ଦଶଦିଶ ଅନ୍ଧାର ମୋତେ ଲାଗଇ ତାଟକା ।୧୫୯
ଜୀବନ୍ତେ କାର୍ଯ୍ୟ ନାହିଁ ମରଣ ମନାସଇ
ଯେ କଥା ସୁମରନ୍ତେ ମୋର ଶ୍ୱରୀର ରୋମାଞ୍ଚଇ ।୧୬୦

ଯେସନେକ ବଇକୁଳେ ଭାଳନ୍ତି ଦେବ ଶିରୀପତି
ଅରୁଣ ପ୍ରକାଶନ୍ତେ ପ୍ରସର ହୋଇଲାକ ରାତି ।୬୧
ଶୁଣ ବଇବସୁତ ମନୁ ବଦନ୍ତି ଅଗସ୍ତି ବ୍ରହ୍ମବେରା
କାଳ ନିଦ୍ରା ଘୋଟିଲା କୃଷ୍ଣ ପାଇଲେ ବଡ଼ ଚିନ୍ତା ।୬୨
ବିଶେଷ କାଳନ୍ଦୀ ନଦୀ କୂଳେ କାଳନ୍ଦି ଲତା କାଳେବର ପର୍ବତ
କଳିକାଳ ଭୋଗ ତହୁଂ କୃଷ୍ଣଂକୁ କାଳନିଦ୍ରା ଉପଗତ ।୬୩
ଶ୍ୱରୀର ଅଶକତ ଚିନ୍ତାରେ ଦେହ ଘୃମ
ପାଦର ଉପରେ ପାଦ ଦେଇ ଶୋଇଲେ ମହାଶ୍ରମ ।୬୪
ଯେ ପୁଣି ଭବିଷ୍ୟ ଅଛଇ ମୁନିର ଶାପ୍ୟ
ସ୍ୱୟଂ କୃଷ୍ଣ ଜାଣଇ ତପେ ଥାଇ ଲୋପ୍ୟ ।୬୫
ଦଇବର ବିପରୀତ ଦେଖ ହୋ ଶ୍ରୀହରି ଚରିତ
ବନରେ ବୁଲଇ ସେ ଦାରା ନାମେ କିରାତ ।୬୬
ଅଜର ନାମଣ ଯେ ଶବର ଯେକ ବୀର
ଅଜପତି ବୋଲିଣ ପୁତ୍ରେକ ତାହାର ।୬୭
ଅଜପତିର ନନ୍ଦନ ଅଟଇ ଜରଜ
ଜରଜର ପୁତ୍ର ଯେ ଅଟଇ ବିରାଜ ।୬୮
ବିରାଜର ନନ୍ଦନ ଅଟଇ କାଳକେତୁ
କାଳକେତୁର ନନ୍ଦନ ଜରା ନାମେ ତନ୍ତୁ ।୬୯
ମନୋହର ବନ ଯେ ଅଟଇ ତାର ପଲ୍ଲୀ
ଜୀବ ବେଣ୍ଟ ପାରିଧିରେ କାଳନ୍ଦୀ ତୀରେ ବୁଲି ।୭୦
ସେ ଶବର ହାଥରେ ଢାମଣା କାଠର ଧନୁ
ଜୀବ ହେରି କାଳନ୍ଦୀ ତୀରେ ବୁଲେଇ କିରାତର ତନୁ ।୭୧
ଅନ୍ୟ ଦିନେ ଜୀବ କ୍ଷଣିକେ ସେହୁ ପାଇ
ସେ ଦିନରେ କିଛି ନ ପାଇଲା ଜୀବହିଂ ।୭୨
ବେଳ ଅବସାନ ଯାଯେ ନ ପାଇଲା ଜୀବ
ଶ୍ରମେଣ ଖୋଜି ସେ ନ ପାଇଲା ସର୍ବଠାବ ।୭୩
ତୃଷା ଅର୍ଥେଣ ଯେ ସେ ମହାଶ୍ରମ ପାଇ
ବନେ ବୁଲନ୍ତେ ସେ କୃଷ୍ଣଂକୁ ଦେଖଇ ।୭୪
ଶ୍ରୀକୃଷ୍ଣ ଶୋଇଅଛନ୍ତି ହୋଇ ଉତ୍ତାନରେ
ଦେଇଣ ଯେକ ପାଦ ଆରେକ ପାଦ ଉପରେ ।୭୫
ପଦ୍ମପାଦ ଚିହ୍ନ ଦିଶଇ ଯେ ଲତାର ଭିତରେ
ବୃକ୍ଷର ଉହାଡ଼େ ଥାଇ ତାହା ନିରୋପଇ ଶବରେ ।୭୬
ବୃକ୍ଷର ଉହାଡ଼େ ଥାଇ ପୁଣ ପୁଣ ନିରେକ୍ଷିଣ ଚାହିଂ
ମୃଗ କର୍ଣ୍ଣ ପ୍ରାଯେତ ଦିଶଇ ମୋତେ ଯେହି ।୭୭

ଅତି ଗୋପ୍ୟ ହୋଇଣ ସେ ଚିଆର ସନ୍ଧିଲା
ଆକର୍ଣ୍ଣ ପରିଯନ୍ତେ ଓଟାରି ନାରାଜ ଛାଡ଼ିଦିଲା ।୭୮
ଚିଆର ସନ୍ଧିଣ ସେ ବିନ୍ଧିଲା ସହସ୍ର ସ୍ତ୍ରାଗେ
ଯେହ୍ନେ ସେ ବିପତ୍ତି ଅଛି ଦଇବର ଯୋଗେ ।୭୯
ଧାତିକାରେ ନାରାଜ ପୂରୋଇ ବିନ୍ଧିଲାକ ହାଦେ
ସେ ନାରାଜ ପଡ଼ିଲା ଯାଇଂ ଶ୍ରୀକୃଷ୍ଣଂକ ପଦ୍ମପାଦେ ।୮୦
ବାମପାଦେ ବାଜିଣ ସେ ଉପରକଇଂ ଫୁଟି
ଭାଜିଲା କାଳନିଦ୍ରା ଯେ ଶ୍ରୋଣିତ ହୋଯେ ବୃଷ୍ଟି ।୮୧
ଶରୀର ଅଶକତେ ସ୍ୱାମୀ ଚାହାନ୍ତି ଚଉକତି
ଭାଳନ୍ତି କେଶବ ଯେହା ମୋତେ ସ୍ରିଜିଲୁ ପ୍ରଜାପତି ।୮୨
ଧନୁଶର ଭାରତୀ ଘେନିଣ ବେଣ୍ଟକାର
ଫାରସି ଉଶ୍ବାଇ ହୋଇଲା ଶ୍ରୀକୃଷ୍ଣଂକ ଛାମୁର ।୮୩
ଦେଖଇ ଜଗବନ୍ଧନ ଶ୍ରୀକୃଷ୍ଣ କମ୍ବୁପାଣି
ଦେଖିଣ ମୃଷାଗତେ ପଡ଼ିଲା କିରାତ କିରାତୁଣି ।୮୪
ଭୋ ସ୍ୱାମୀ କେଶବ ମୁଂ ତୋତେ କଲି ଦ୍ରୋହ
ତୋହୋର କୋପକୁ ମୋହର କିସ ଯେ ବିରୋହ ।୮୫
ସ୍ୱାମୀ ମୁହିଂ ହୀନଜନ ଅଟଇ ନିଶାଚର
ବ୍ରହ୍ମା ଇନ୍ଦ୍ର ରୁଦ୍ର ପୁଛନ୍ତି ନାମଟି ଯାହାର ।୮୬
ସେବା ଭଗତି ହୋ ଦେବ ନୁଆରିଲି କରି
ନାରାଜ ଘାତ କଲି ମୁଂ ଶ୍ରୀଅଙ୍ଗେ ତୋହରି ।୮୭
ମୁଂ ଅବା ମୂଢ଼ ତୁ ଭୂତ ଭବିଷ୍ୟ ଗ୍ୟାଂତା
ତୋତେ କି ଅଦୃଶ୍ୟ ଯେ ନାରାଜ ଘାତ କଥା ।୮୮
ସ୍ୱାମୀ ତୋହର ଚରଣୁ ମୁଂ ନାରାଜ କାଢ଼ିବି
ଜାଣଇ ମଉଷଧିମାନ ମୁଂ ଯେହିକ୍ଷଣି ଆଣିଦେବି ।୮୯
ଶ୍ରୀକୃଷ୍ଣ ବୋଇଲେ ହୋ କାଢ଼ିଲେ ତୋହର ଶର
ଯେହିକ୍ଷଣି ପ୍ରାଣ ବିସର୍ଜନ ହୋଇବ ମୋହର ।୯୦
କାନ୍ଦଇ କିରାତ ଯେ ଭୂମିରେଣ ଲୋଟି
ସ୍ୱାମୀ ନିଉଛାଳି ଯାଇ ତୋହର ପାଦପଦ୍ମ ଗୋଟି ।୯୧
ସ୍ୱାମୀ ତୋହର ଯେ ପଦ୍ମପାଦ ତଳେ
ଲଲାଟ ଲୋଟାନ୍ତି ଯେ ସକଳ ଦିଗପାଳେ ।୯୨
ସ୍ୱାମୀ ଯେବଣ ପଦ୍ମପାଦେ ଗୋପ୍ୟ ଗଲା ମେରୁ
ସେ ପଦ୍ମପାଦର ଉଦକ ମାଥେ ମୋର ପଡ଼ୁ ।୯୩
ସ୍ୱାମୀ ଯେ ପଦ୍ମପାଦରୁ ବହଇ ଶ୍ରୋଣିତ
ମୋହର ମାଥେ ପଡ଼ୁ ତହିଁର ଦୁଷ୍ଟକୃତ ।୯୪

ସର୍ବଦେବଙ୍କର ଯେ ଲଲାଟ ବନମାଳୀ
ଚନ୍ଦ୍ର ଚକୋର ମୁଖ ଗୋଟି ପଡ଼ିଲାକ କାଳି ।୯୫
ଭରଣିର ତାଡ଼ନ୍ତି ଯେ ପୋଡୁ ଆମ୍ଭର ଆତ୍ମା
ନିର୍ଲ୍ଲଜ ଆତ୍ମା ରହିଅଛି ହୋ ମହାତ୍ମା ।୯୬
ଶ୍ରୀକୃଷ୍ଣ ବୋଇଲେ ହୋ ଶୁଣ ଶବରଣୀ
ମୁଖେ ସିଞ୍ଚୁକିନା ମୁଠାନ୍ତେକ ପାଣି ।୯୭
ଧାତିକାରେ ଶବରଣୀ ମୁଖରେ ପାଣି ସିଞ୍ଚି
ମୟୂର ପୁଚ୍ଛ ଧରି ଆଲଟ କରି ବିଞ୍ଚି ।୯୮
ଜଳ ସିଞ୍ଚନ୍ତେ ପ୍ରଭୁ ହୋଇଲେ ସାଷମ
ଶବରକୁ ପ୍ରତିବାକ୍ୟ ଦିଲେ ପୁରୁଷ ଉତ୍ତମ ।୯୯
ଯେ ଚିଆର ଗୋଟି ଶବର ପାଇଲୁ ତୁ କାହିଁ
ଅସୁର ଗନ୍ଧର୍ବ ଦେବତା ଆଦି ହୋ ମୋହୋରେ ବଧ ନାହିଁ ।୧୦୦
ବୋଲଇ ଶବର ଯେ ଯୋଡ଼ିଣ ବେନିକର
କହଇ ସରୂପ ତୁ ଶୁଣ ତ୍ରଇଲୋକ୍ୟ ଠାକୁର ।୧୦୧
ମୋହର ମଇତ୍ରେକ ଯେ କଇବ୍ରତେକ ଥିଲା
ଭାରିଯା ହାଥେ ତାର ମୀନେକ ଦେଇ ପଠିଆଇଲା ।୧୦୨
ସେ ମାଛ କେଳାବନ୍ତେ ମୋହର ଘରଣୀ
ଦିବ୍ୟ ଲୁହା ଖଣ୍ଡିଯେକ ପାଇଲା ଚକ୍ରପାଣି ।୧୦୩
ତାହା ନାରାଜ ଗଢ଼ାଇଲି କମାର ଶାଳେ ନେଇ
କେବେହେଁ ଦିନେ ଯେହି ନାରାଜ ନମାରଇ ।୧୦୪
ଭୋ ଦେବ ବୁଲି ଆଜି ମୁଂ ବଡ଼ ଶ୍ରମ ପାଇଲଇଂ
ନପୁଣ ମୃଗଜୀବ ପଳାଇଣ ଯାଇ ।୧୦୫
ଯେହୁ ବିଚାରିଣ ନାରାଜ କରଇଂ ସନ୍ଧାନ
ଦ୍ରୋହ କଲଇଂ ଦେବ ଶ୍ରୀମଧୁସୂଦନ ।୧୦୬
ଶ୍ରୀକୃଷ୍ଣ ବିଚାରନ୍ତି ଶବର ବଚନ ଶୁଣି
ସେ ଲୋହା କପୋରା ବୋଲି ମୁଂ ନ ଜାଣି ।୧୦୭
ଅଷ୍ଟବକ୍ର ଋଷି ଯେବଣ ଶାପ ଦିଲା
ତାହାର କୃତେ ମୋତେ ଯେ ନାରାଜ ଲାଗିଲା ।୧୦୮
ଆହୋ କିରାତ ତୁ କଥାଯେ କରିବୁ
ଧାତିକାରେ ଇନ୍ଦ୍ରପ୍ରଶସ୍ତ ଯାଯେ ତୁହି ଯିବୁ ।୧୦୯
ଯୁଧିଷ୍ଠିରଙ୍କ ଅନୁଜ ଅଟଇ ଭୀମସେନ
ତାହାର ସାନୁଜ ଯେ ଅଟଇ ଅରଜୁନ ।୧୧୦
ଧାତିକାରେ କିରାତ ତୁ କରସି ଗମନ
ଅର୍ଜୁନକୁ ଘେନିଣ ତୁ ଆସିବୁ ବହନ ।୧୧୧
ଯେ ମୋହର ଅବସ୍ଥା ତୁ ପାଣ୍ଡବଂକୁ କହ
ଯେକା ଅର୍ଜୁନକୁ ଘେନି ଆସିବୁ ବେଗେଂ ଯାଅ ।୧୧୨
ଦ୍ୱାରିକା ବାଟରେ ତୁ ଘେନି ନ ଆସିବୁ ତାହା
ଯେତେ ବିଚାରିଣ ବୋଲନ୍ତି ଚଉବାହା ।୧୧୩
କିରାତ ବୋଲଇ ତୁ ଶୁଣ ଗୋ ଜରତା
ଶ୍ରୀକୃଷ୍ଣ ସନ୍ନିଧ୍ୟେ ବସିଥାଅ ଗୋ ବନିତା ।୧୧୪
ଘାଆରେ ମାଛିବସି ନ ପୁଣ ହୋଅନ୍ତିଟି କୃମି
ସନ୍ନିଧ୍ୟେ ବସି ବିଞ୍ଚୁଥାଅ ଲୋ ଭାବିନୀ ।୧୧୫
ଶବରୁଣୀ କରେ ଦିଲେ ଧନୁଶର ଭାରଥୀ
ବ୍ୟାଘ୍ର ଭାଲୁଂକ କେହି ନୁଆରିବେ ତୋର କତି ।୧୧୬

**

## ୧୧୫. ଜାରା ଶବର ଇନ୍ଦ୍ରପ୍ରସ୍ଥେ ଶ୍ରୀକୃଷ୍ଣଙ୍କର ସମ୍ବାଦ ଦେବା ଓ ପାର୍ଥଙ୍କୁ ସଙ୍ଗେ ଘେନି ଆସିବା

ଘରଣୀକି ଜଗାଇଣ ଚଳିଗଲା ବୀର
ହସ୍ତିନା କଟକେ ଯାଇଂ ବିଜୟେ ଶବର ।୧
ଦ୍ୱାରେ ଫୁକାରିଲା ଅର୍ଜୁନଂକୁ ଜଣାଅ
ଜାରା ଶବର ଆସିଅଛି ବୋଲିଣ ଯାଇ କହ ।୨
ଯେମନ୍ତ କରି ଚାରେ କହିଲେ ଅର୍ଜୁନକଇଂ ରାଇ
ଜାରା ଶବର ଆସି ଦ୍ୱାରେ ଉଭା ହୋଇ ।୩
ସ୍ୱାମୀ ଜାରା ନାମେ ଶବର ଉଭା ହୋଇଅଛି ଦ୍ୱାରେ
ଶ୍ରୀକୃଷ୍ଣ ଆଦେଶ ବୋଲି ବୋଇଲା ଛାମୁରେ ।୪
ତକ୍ଷଣେ ଅର୍ଜୁନ ଦ୍ୱାରେ ପ୍ରବେଶ ହୋଇଲେ ଯାଇଂ
ନମସ୍କାର କରି ଯେ ଶବର କହଇ ।୫
ଯେକାନ୍ତ କରି ଅର୍ଜୁନକଇଂ ହକରାଇ
କାଳନ୍ଦୀ କୂଳଯାଯେ ଆସସି ଗୋସାଇଂ ।୬
ଶ୍ରୀକୃଷ୍ଣ ବିଜେ କରିଛନ୍ତି କାଳେବର ଲତାଯେ
ବୋଇଲେ ଯେହିକ୍ଷଣି ଘେନି ଆସିବୁ ଧନୁଜଯେ ।୭
ଯଥା ଉତ୍ତର ନ କରି ବାବୁ ବହନ ହୋଇଯିବୁ
ନ ଗଲେ ଆରବେଳେ କୃଷ୍ଣଂକୁ ନ ଦେଖିବୁ ।୮
ଜାରା ଶବରକଇଂ ପାର୍ଥ ସଂଗେ ଘେନି
ଯୁଧିଷ୍ଠିରଂକ ଚରଣେ ପ୍ରଣମିତ ଫାଲଗୁନି ।୯
ଅର୍ଜୁନ ବୋଇଲା ସ୍ୱାମୀ ଶ୍ରୀକୃଷ୍ଣ ବିଜେ କରିଛନ୍ତି କାଳେବର ଲତାଯେ
ବୋଇଲେ ଯେହିକ୍ଷଣି ଘେନି ଆସିବୁ ଧନୁର୍ଜଯେ ।୧୦
ଜାରା ଶବର କଇଂ ପଠିଆଇଲେ ଆପଣ

ବଚନେ କହିଲେ ଅର୍ଜୁନ ଆସିବୁ ବହନ ।୧୧
ବଡ଼ ଆରତେ ଆସି କହଇ କିରାତ
ସହଦେବଂକୁ ଯୁଝେଷ୍ଟି ପଚାରିଲେ କହିବାକୁ ଯେଥିର ତଦନ୍ତ ।୧୨
ସହଦେବ ବୋଇଲା ଦେବ ଯେ ଜାରା ବେଷ୍ଟକାର
ମନୋହର ବନରେ ଯେ ଅଟଇ ତାର ଘର ।୧୩
କାଳନ୍ଦୀ ବନକଇଂ ମୃଗୟା ବିନୋଦେଣ ଗଲା
ବନେ ବନେ ବୁଲିଣ ଯେ ଜୀବ ଗୋଟିଯେ ନ ପାଇଲା ।୧୪
କାଦମ୍ବରୀ ପାନେଣ ଯେ ହୋଇଣ ମତିଭୋଳ
ଯାଦବ ବଂଶ ନାଶ ଗଲେକ ସକଳ ।୧୫
ସନ୍ତରା ବଣେ ପଶି ଦେବ ହୋଇଲେ ସର୍ବେ ପିଟାପିଟି
ତିରଣ ପ୍ରମାଣେ ଛିଡ଼ିଲେ ଯାଦବ ଛପନଗୋଟି ।୧୬
ପୁତ୍ର ବନ୍ଧୁ କୁଟୁମ୍ବ ଯହୁଂ ସମସ୍ତେ ଗଲେ ନାଶ
ଯେକା ନାରାୟଣେ ଥାଇଂ କରିବେଟି କିସ ।୧୭
କାଦମ୍ବରୀ ପାନେ ସ୍ୱାମୀ ମତ୍ତଭୋଳ ହୋଇଂ
ଶିଆଳୀ ଲତାରେ ସେ ଅଛନ୍ତି ଦେବ ଶୋଇ ।୧୮
ଜୀବ ନ ପାଇଯେ ଶବର ବନେ ହେରି
ପଦ୍ମପାଦ ଚିହ୍ନ ଯେ ଦିଶିଲା ତାହାଂକରି ।୧୯
ମୃଗର କର୍ଣ୍ଣ ପ୍ରାୟେକ ବୁଝିକରି ବିନ୍ଧିଲାକ ବାଣ
ପଦ୍ମପାଦେ ଶରଘାତ ହୋଇଲେ ଦେବ ନାରାୟଣ ।୨୦
କୃଷ୍ଣ ଯେହାକୁ ପଠିଆଇଲେ ବହନ
ଆଗ୍ୟାଂ ଦିଅ ଅର୍ଜୁନ ଯେବେ ଯାଆନ୍ତୁ ଶୀଘ୍ରେଣ ।୨୧
ନାରାଜ ଘାତେ ଦେବ ଅଛନ୍ତି ଯେ ଶୋଇ
ଅର୍ଜୁନ ଠାକୁରଂକୁ ଦିଅ ହୋ ପଠିଆଇ ।୨୨
ଅର୍ଜୁନ ଯିବା ଯାଏ କୃଷ୍ଣ ଧରିଛନ୍ତି ପ୍ରାଣ
ଯେହାଂକର ଗଲେ ପ୍ରାଣ ବିସର୍ଜିବେ ଦେବ ନାରାୟଣ ।୨୩
ଯେହା ଶୁଣି ମୂର୍ଚ୍ଛାଗତ ହୋଇଲେ ଯୁଝେଷ୍ଟି
ଚାଲ ଦେଖିଯିବା ଶ୍ରୀକୃଷ୍ଣ ଶ୍ରୀଚରଣ ଗୋଟି ।୨୪
ସହଦେବ ବୋଇଲେ ସ୍ୱାମୀ ଆମ୍ଭେ ଯେ ନ ଯିବା
କୃଷ୍ଣର ବଇକୁଲ୍ୟ ଦେଖି ଆମ୍ଭେ କେମନ୍ତେ ବ୍ରତିବା ।୨୫
ଅର୍ଜୁନଂକୁ ଦେବ ଯେବେ ପଠିଆଇଂ ଦେବା
ଯେହାଂକର ଅଇଲେ ସମସ୍ତ ତଦନ୍ତ ବୁଝିବା ।୨୬
ଶୁଣି ଯୁଝେଷ୍ଟିଦେବ ଯେ କ୍ରୋଧ ଭର ହୋଇ
ଅର୍ଜୁନକଇଂ ବୋଇଲେ ବାବୁ ଯାଅ ବେଗେ ତୁହି ।୨୭
ସହଦେବ ବୋଇଲେ ସ୍ୱାମୀ ତୁମ୍ଭେ ଯେବେ ଯିବ
କଦାଣ୍ଡିତେ ଶ୍ରୀକୃଷ୍ଣଂକ ଅଂଗ ନ ଛୁଇଂବ ।୨୮
ଯେତେକ ତିଆରନ୍ତେ ଗମନ କରଇ ଫାଲଗୁନି
ଚଳଇ କିରାତ ଯେ ଅର୍ଜୁନକଂଇ ସଙ୍ଗେ ଘେନି ।୨୯
ଚାଲନ୍ତେ ପ୍ରବେଶ ହେଲେ କାଳନ୍ଦୀର ତଟେ
ରାଜମାର୍ଗ ତେଜିଣ ଯେ ପଶିଲେ ବନ ପଥେ ।୩୦
ଅର୍ଜୁନ ବିଚାରଇ ଯେ ଚରିତ ଅଟଇ କେମନ୍ତ
ଗହନ ବନ ଭିତରେ ମୋତେ କଢ଼ାଉଛିତ ପଥ ।୩୧
ବଡ଼ାଇ ଅଟବ୍ୟା ଯେ ଗହନ ଘୋର ଲତା
ଗମଇ ଅତି ବେଗେ ବନଚର ଶବତା ।୩୨
ମନେ ବିକୃତେଣ ଯେ ପଣ୍ଡୁ ରାଜାର ତନୁ
କ୍ଷଣେ କ୍ଷଣେ ଆମଞ୍ଚଇ ଗାଣ୍ଡିମ ନାମେ ଧନୁ ।୩୩
ବୋଲଇ ଅର୍ଜୁନ ଯେ ଶବରର ପାଶ
ତୋହର ଚରିତ ମୁଂ ମଣିଲି ଅବିଶ୍ୱାସ ।୩୪
ନିଜ ପଥ ତେଜି କିମ୍ପେ ପଶୁ ବନ ମାର୍ଗେ
ତାହା ଶୁଣି ଶବର ଅର୍ଜୁନକୁ ବୋଲଇ ଯେ ବେଗେ ।୩୫
ଶ୍ରୀକୃଷ୍ଣ ଦ୍ୱାରିକାଯେ ନାହିଂ ହୋ ଅର୍ଜୁନ
ବନସ୍ତରେ ବିହରଇ ଦେବ ଜନାର୍ଦ୍ଦନ ।୩୬
ଶବର ବୋଲଇ ଶୁଣ ହୋ ଦୁତି ଗୋବିନ୍ଦ
ବନେ ଥାଇ ହରି ଆଗ୍ୟାଂ ମୋତେ ଧନ୍ଦ ।୩୭
ଶୁଣିଣ ଅର୍ଜୁନ ବିକୃତ ମନେ ଭାଳି
ଭଲା ସହଦେବ କହିଲା ପରିକଳି ।୩୮
ତୁମ୍ଭକୁ କିସ ଚରିତ ବୋଲଇ ଗୋବିନ୍ଦ
ବିଷାଦେ ଶବରକୁ ପୁଛନ୍ତି ସେହୁ ସାଧ୍ୟ ।୩୯
ମୋତେ ଶବର ହୋ ଗୁପତ ନ କର
କେମନ୍ତ ଚରିତ ହୋ କହ ଶ୍ରୀହରିର ।୪୦
ବୋଲଇ ଶବର ନ ଜାଣଇ ତଥ୍ୟ ବାଣୀ
ଆଗ୍ୟାଂ ଦିଲେ ମୋତେ ତାହିଂ ଦେବ ଚକ୍ରପାଣି ।୪୧
ତୁ ଯାଇ ଅର୍ଜୁନକଇଂ ବେଗେ ଆଣ ରାଇ
ତାହାର ଆଗ୍ୟାଂରେ ଯେ ଅଇଲି ତୋତେ ନେଇଂ ।୪୨
ଶୁଣ ରାଜନ ପତ୍ର ବିଞ୍ଚଣୀ ଘେନି ଶବରୁଣୀ
ସନିଧ୍ୟେ ବସି ବିଞ୍ଚୁଅଛି ଯହିଂ ଚକ୍ରପାଣି ।୪୩
ଗୋବିନ୍ଦେ ବୋଇଲେ ମୁଂ ବଡ଼ାଇ ଆରତି
ବେଳ ଅବସାନ ହୋଇଲା ନଇଲା ତୋର ପତି ।୪୪
କାଳେବର ପର୍ବତେ ଉଠି ଚାହିଂଲା କିରାତୀ

ଶବରଙ୍କୁ ନିରୋପି ଚାହଂଇ ଚଉକଟି ।୪୫
ଯେମନ୍ତର ସମୟେ ଆୟେ ଢାରା ଫାଲଗୁନି
ସନ୍ନିଧ୍ୟେ ପ୍ରବେଶ ହୋଇଲେ ଅର୍ଜୁନ କିରାତକଇଂ ଘେନି ।୪୬
ଦେଖିଲେ ଅର୍ଜୁନ ଶ୍ରୀକୃଷ୍ଣ ଆଉଜି ପଡ଼ିଛନ୍ତି
ମୁଖ ଅପ୍ରସନ୍ନ ଯେ ନେତ୍ର ହତଭଙ୍ଗ ଓଳି ଦିଶୁଛନ୍ତି ।୪୭
ନିରେଖିଣ ଅର୍ଜୁନ ଯେ ଚାହଂଇ ବଦନ
ଚରଣ ଫୁଟି ନାରାଜେ ଦିଶୁଛି ରଙ୍ଗ ବର୍ଣ୍ଣ ।୪୮
ଅର୍ଜୁନକଇଂ ଦେଖି ହରି କ୍ରୋଧ ଘନ ଘନ
ବେନି ଚକ୍ଷୁରୁ ଲୋତକ ବହଇ ଅବିଛନ୍ନ ।୪୯
ଅରୁଣ ଉଲ୍ଲୋଳ ପ୍ରାୟେ ହୋଇଅଛି ବେନି ଆଖି
ଶୋକେ ଅସମ୍ଭାଳ ଦେବ ଅର୍ଜୁନକଇଂ ଦେଖି ।୫୦
ସନ୍ନିଧ୍ୟକୁ ଯାଇଣ ଯେ ପୁଛଇ ଧନୁର୍ଜୟେ
ସମସ୍ତ ଉପେକ୍ଷା କଲୁକି ପ୍ରଭୁ ଦୟାମୟେ ।୫୧
ଶ୍ରୀକୃଷ୍ଣ ବୋଇଲେ ହୋ ଶୁଣ ସର୍ବସାଚୀ
ଦଇବର ଘଟସୂତ୍ର ମୋତେ ଯେସନେକ ଅଛି ।୫୨
ଅଷ୍ଟାବକ୍ର ଋଷି ମୋତେ ଯେ କଲେ କୋପ
ଗତି ନ ଗଲାତ ମୋତେ ତାହାଂକର ଶାପ ।୫୩
ଅର୍ଜୁନ ବୋଇଲେ ସ୍ୱାମୀ ଜଗବନ୍ଦନ ନାଥ ତୁ ଭୂତ ଭବିଷ୍ୟ ଗ୍ୟାଂତା
ତୁମ୍ଭଂକୁ ଯେ ପୃଥୀରେ କେହୁ ଶାପ ଯେ ବିହନ୍ତା ।୫୪
କାଳ ଉଚିତେଣ ନାଥ ନ ଥିବୁ ତୁ ମହୀ
କଳିକାଳ ଅନୁରୂପେ ବିକାର କଲୁ ଦେବ ଦେହୀ ।୫୫
ମୁଂହି ତୋର ତୁଲେ କି ନ ଥିଲି ଚକ୍ରପାଣି
ସମସ୍ତ ବୃତ୍ତାନ୍ତ ତୋର ଅଛଇ ଦେବ ଜାଣି ।୫୬
ଶ୍ରୀକୃଷ୍ଣ ବୋଇଲେ ମୁଂ ହୋଇଲି ଶରଘାତ
କୋଳକରି ମୋତେ ଧର କିନା ବୀର ପାଥ ।୫୭
ଅର୍ଜୁନ ବୋଇଲେ ସ୍ୱାମୀ ଦେଖିଲି ତୋର କାୟେ
ଶରୀର ଦିଶଇ ତୁମ୍ଭର ଅବଶେଷ ପ୍ରାୟେ ।୫୮
ତୁହି ଅଟୁ ହୋ ନାଥ ଅନାଦି ନାରାୟଣ
ମୁହିଂ ମନୁଷ୍ୟ ମାତ୍ରକ ହୋଇ କେମନ୍ତେ ଛୁଇଂ ତୋ
ପଦ୍ମଚରଣ ।୫୯
ବୋଇଲ ଅର୍ଜୁନ ଯେ କୃତାଞ୍ଜଳି ହୋଇ
ଯେ ବଚନ ମୋତେ ତୁ ନ ବୋଲ ଗୋସାଇଂ ।୬୦
ଭୋ ରାଜନ ପାଦରୁ ଶର ଓପାଡ଼ିଲା ଢାରା
ନିଜ ପ୍ରାଣ ବଇକୁଲ୍ୟ ହୋଇଲା କଣ୍ଠହାରା ।୬୧
ଆସ ଆସ ଅର୍ଜୁନ ହୋ କିମ୍ପେ ହୋଉ ତୁ ନିର୍ଦ୍ଦୟେ
ମୁହିଂ ତୋତେ ଅନୁଗ୍ରହ କରଇ ସର୍ବଦାୟେ ।୬୨
ମୋହର ଆତ୍ମାରେ ତୋତେ ଦୋଷ କଲା ନାହିଂ କିଛି
ତୁ କି ନ ଜାଣୁ ପାଥ ତୋତେ ମୋର ବିକାର କି ଅଛି ।୬୩
ଦ୍ୱାରିକାୟେ ପଶି ତୁ ଯେ ହରିଲୁ ସୋହଦ୍ରାଂକୁ
ତୋହର ପାଇଂ ଛାଡ଼ିଲି ମୁଂ ବଳରାମଂକୁ ।୬୪
ବେଳେ ବେଳେ ଅର୍ଜୁନ ଅଟୁ ମୋର ସଖା
ତୋ ତହୁଂ ସୋଦର ମୋର ଆନେ କେ ଅଛି ଯେକା ।୬୫
ଗୋସିଂହ ମାରିଣ ତୁ ରଖିଲୁ ଦ୍ୱାରିକା
ଦତ୍ୟଂକର ତୁ ତୁ ସମର କଲୁ ଯେକା ।୬୬
ପୁଣି ଉଦ୍ଧରିଲୁ ବାବୁ କଦମ୍ବାସୁର ବିବାଦେ
ନିଚିନ୍ତ ଥିଲୁ ଆମ୍ଭେ ତୋହୋର ପରସାଦେ ।୬୭
ଅର୍ଜୁନ ବୋଲନ୍ତି ମ୍ଳେଛ ପାପ ଅଙ୍ଗ ମୋର
କେସନେ ଛୁଇଂବି ହରି ପୟର ତୋହର ।୬୮
ଜାଣିଲେ ଶ୍ରୀହରି ଅର୍ଜୁନର କୃତ୍ୟ
ଯେହାକୁ ସହଦେବ କହିଲା ନିରୁତାନ୍ତ ।୬୯
ତେଣୁ କରି ପାଥ ମୋତେ ବିକୃତ ଚିନ୍ତଇ
ଆସ ଆସ ପାଥ ମୋତେ କର ତ୍ରାହି ତ୍ରାହି ।୭୦
ଶୁଣ ହେ ବୁଧ ଜନେ ଶ୍ରୀମହାଭାରଥ କଥା
ଶ୍ରୀକୃଷ୍ଣ ଅବସାନ ଲୀଳାର ବାରତା ।୭୧
ଯାହା ସେ କହିଲେ ଧାର୍ମିକ ଅଗସ୍ତି
ମୁହିଂ ତାହା ଭାବିଲି ଶୟଳ ଜନ ମତି ।୭୨
ଯେ ଯେହା ପଢ଼ନ୍ତି ଶୁଣନ୍ତି ଯେକମନେ
ଯମଦଣ୍ଡ ଛେଦି ସେ ବସନ୍ତି ବଇକୁଣ୍ଠ ଭୁବନେ ।୭୩
ଅପାର ବିନୋଦ ଯେ ବୋଲଇ ଫାଲଗୁନି
ଦୂରେ ଥାଇ ଅରଜୁନ କରଇ ଦୟିନୀ ।୭୪
ଶ୍ରୀକୃଷ୍ଣ ବୋଇଲେ ଅର୍ଜୁନ ତୁ ମୋହର ପଞ୍ଚପ୍ରାଣ
ଯେତେବେଳେ ତୁହି ମୋତେ ନ କଲୁ ଉଦ୍ଧାରଣ ।୭୫
ଅର୍ଜୁନ ବୋଇଲେ ସ୍ୱାମୀ ତୁ ପରମ ବିଷ୍ଣୁକାୟେ
ମନୁଷ୍ୟ ଜନମ ମୁହିଂ ଛୁଇଂତେ ରଇ ଭୟେ ।୭୬
ଶ୍ରୀକୃଷ୍ଣ ବୋଇଲେ ମୋତେ ଛାଡ଼ିଲୁ କିରୀଟୀ
ମୃତୁ ଗତ ଜନଂକୁ ଆବର କାହିଂ ଗୋଷ୍ଠୀ ।୭୭
ଦୂରେ ଥାଇ ମୋତେ ତୁ ବଢ଼ାଇ ଦିଅ ହାଥ
କିଞ୍ଚିତେ ଲାଗିଲେ ମୋର ଦେହ ହେବ ସୁସ୍ଥ ।୭୮
ଅର୍ଜୁନ ବୋଇଲେ ଯୁଝେଷ୍ଠିଦେବଂକର ତୋତେ ଛୁଇଂତେ
ଆଗ୍ୟାଂ ନାହିଂ
ମୁହିଂ ତା କିମର୍ଥେ ଅବଗ୍ୟାଂ କରିବଇଂ ।୭୯

ଶ୍ରୀକୃଷ୍ଣ ବୋଇଲେ ଯେବେ ନ ଛୁଇଂବୁ ମୋର ତନୁ
ତଳେ ଥାଇ ମୋତେ ବଢ଼ାଇ ଦିଅ ଧନୁ ।୮୦
ବାବୁ ଆବର ବଚନେକ ମୋହର କରିବୁ
ମୋହର ନିଧନେ ଯେ ଦ୍ୱାରିକା ପୁର ଯିବୁ ।୮୧
ଅନେକ ସ୍ତିରୀ ରତ୍ନ ଅଛନ୍ତି ସେ ପୁରେ
ତାହାଂକୁ ଛାଡ଼ିବୁ ନେଇ ବାଲୁଂକା ନଦୀ ତୀରେ ।୮୨
ନନ୍ଦ ବସୁଦେବ ଆଗେ କହିବୁ ମୋହର ବିଯୋଗ
ଯେତେକ ଅର୍ଜ୍ଜୁନ କି ନ କରୁ ମୋତେ ସୋଗ ।୮୩
ଯେତେକ ବିନୋୟୀ କରି କହିଲେ ଜଗୁନାହା
ମାନବ ମାତ୍ରକ କେହୁ ପ୍ରକାଶିବ ତାହା ।୮୪
ବ୍ୟାକୁଳ ବଚନେ ଯେ ଅର୍ଜ୍ଜୁନ ହେଲେ ଶମ
କୃଷ୍ଣର ହାଥକୁ ବଢ଼ାଇ ଦିଲା ଧନୁ ଯେ ଗାଣ୍ତିମ ।୮୫
ଦକ୍ଷିଣଭୁଜେ କୃଷ୍ଣ ତାର ଧଇଲେ ଯେ ଧନୁ
ଅର୍ଜ୍ଜୁନ ମୁଖ ଚାହିଂ ଛାଡ଼ିଲେ ଦେବ ତନୁ ।୮୬
ଅର୍ଜ୍ଜୁନ ଦେଖନ୍ତେ ଦେବ ପୁଷ୍ପେକ ବିବାନେ ବସି
ପୁଷ୍ପ ବୃଷ୍ଟି କରାନ୍ତି ଯେ ବଇକୁଣ୍ଠ ବାସୀ ।୮୭
ବିଷ୍ଣୁର ଅଙ୍ଗେ ଦେବ ହୋଇଲେକ ଲୀନ
କହ୍ନା ଅବତାର ଯେ ହୋଇଲା ସମ୍ପୂର୍ଣ୍ଣ ।୮୮
ଅର୍ଘ୍ୟ ବନ୍ଦାପନା କରନ୍ତି ସକଳ ବିଦ୍ୟାଧରୀ
ଜୟ ଜୟ ମଙ୍ଗଳ କରନ୍ତି ସିଉକାରୀ ।୮୯
ଯହୁଂ ଦେବ ଅଇଲେ ତହିଂକି ପୁଣ ଗଲେ
ଯେ ସଂସାର ଜନନ୍ତ ସେ ମୁକତି ବାଟ ଦିଲେ ।୯୦
ହେ ବୁଧଜନେ ଅନୀତି ଅଟଇ ଯେ କାୟେ
ଯେସନେ ଜଳ ବିମ୍ବ ବିଜୁଳି ଛାୟା ପ୍ରାୟେ ।୯୧
ବୁଡ଼ିଲା ସଂସାର ଯେ ସ୍ତିରୀ ଲୋଭ ବଶେ
ମୋହ ପାଶ ବନ୍ଧନ ଯେ କୁଟୁମ୍ବର ଆଶେ ।୯୨
ଶୁଣ ହେ ସୁଗଂଯ୍ୟଜନେ ଯେ ମାୟା ମୋହ ସଂସାର
ନୋହେ କିଛି
ଅନମିରେ ଦ୍ୱନ୍ଦ ପରମାଦ ପଡୁଅଛି ।୯୩
କୃଷ୍ଣହୁଂ କୁଟୁମ୍ବ ଯେ କାହାର ଅଛି ବୁଦ୍ଧି
ଯେବଣ ପୁରେ କାଳଦୂତ ନ ପଶଇ ବ୍ୟାଧି ।୯୪
ଆନ କାହାକୁ ବିହନ୍ତା ନାହିଂ ଯେ ସର୍ବଥା
ଅନମିତେ ବଂଶ ଲୋପ କରାଇଲା ବିଧାତା ।୯୫
ଜଗବନ୍ଦନ ନାଥ ଯେଥୁଂ ନୁଆରିଲେ ତରି
ମନୁଷ୍ୟ ଜନ୍ମ ହୋଇ ଯେଥୁ କେ ଉବୁରି ।୯୬
ଦାତବ୍ୟ ଦୟାଶୀଳ ସନ୍ଥଜନେ ହୋଅ ଗୋଷ୍ଟୀ
ଶାହାସ୍ରେ ନିର୍ଜ୍ଜିତ ହୋଇ ପୂରାଅ ସର୍ବ ଅଭିଷ୍ଟି ।୯୭
କର ନାନା ତୀର୍ଥ ସକଳହିଂ ଧର୍ମ
ହୃଦଗତେ ସୁମରୁଥିବ ନରେ ଶ୍ରୀରାମର ନାମ ।୯୮
ଭବଜଳ ସାଗରକୁ କରଇ କାରଣ
ଯେକଲଯେ କରି ଶ୍ରୀବିଷ୍ଣୁ ପୁରାଣ ଶୁଣ ।୯୯
ହେ ପଣ୍ଡିତ ଜନେ ଜାତ ହେଲେ ଅବଶ୍ୟ ହୋୟେ ମୃତୁ
ପରଲୋକ ବାନ୍ଧବ ବିଷ୍ଣୁହିଂ ସେ ପରମ ତତ୍ତ୍ୱ ।୧୦୦
ଶ୍ରୀ ବାସୁଦେବ ଚରଣ କମଳେ
ଶୂଦ୍ରମୁନି ସାରୋଳାଦାସ ଭଜଇ ଭ୍ରସଳେ ।୧୦୧



# ସ୍ୱର୍ଗାରୋହଣ ପର୍ବ

## ୧୧୬. ପ୍ରଜାଙ୍କଠାରୁ ଯୁଧିଷ୍ଠିରଙ୍କର ବିଦାୟ, ପରୀକ୍ଷିତଙ୍କୁ ରାଜନୀତି ଶିକ୍ଷା, ରତ୍ନଜାଲି ଓ କଳିଯୁଗ ବିବରଣ, ସୁହାଣୀ କନ୍ୟା ବିବାହ

ଯେଥୁ ଅନନ୍ତରେ ବଇବସ୍ୱତ ମନୁ ରାଜା
ଅଗସ୍ତି ମୁନିଂକ ଚରଣେ କଲାକ ଦିବ୍ୟ ପୂଜା ।୧
ଅଶ୍ୱମେଧ ଯାଗ କୃଷ୍ଣ ସ୍ୱର୍ଗାରୋହଣ ଉତରେଣ କଥା
କହିବା ଭୋ ଋଷି ମୋତେ ପାଣ୍ଡବଂକ ବ୍ୟବସ୍ଥା ।୨
ଅଗସ୍ତି ବୋଇଲେ ହୋ ସାବଧାନେ ଶୁଣ
ମହାଭାରଥ ଅନ୍ତେ ଯେ ସ୍ୱର୍ଗ ଆରୋହଣ ।୩
କଥୟନ୍ତି ମହାତମା ଅଗସ୍ତି ବ୍ରହ୍ମଋଷି
କଳିଯୁଗ ପ୍ରବେଶ ଯେ ହୋଇଲାକ ଆସି ।୪
ଅନୀତି ଗତି ଲୋକେ ହେଲେ ଗରୁହଂସୀ
କଳିଯୁଗ ସିଦ୍ଧ ଯେ ଅଭୟେ ସୋମବଂଶୀ ।୫
ଦ୍ରିଯୋଧନ ମାରି ରାଜ୍ୟ କଲେ କଳିଯୁଗର ମଧ୍ୟେ
ଆଠଶତ ବରଷ ହେଲା ଯେଣେ କୃଷ୍ଣ ଗଲେ ବଧେ ।୬
ରାଜ୍ୟ କରୁଛନ୍ତି ଯେ ପାଣ୍ଡବ ପାଞ୍ଚଭାଇ
ଯେକ ଛତ୍ରେ ସେ ମହୀଭାର ରାଜ୍ୟର ସମ୍ପଦ ଦେଇ ।୭
କହ ମହାମୁନି ମୋତେ ସ୍ୱର୍ଗ ଆରୋହଣ ବାଣୀ
ଅଗସ୍ତି ବୋଇଲେ ହୋ ଶୁଣ ନୃପମଣି ।୮
ଏକ ଦିନେ ରାତ୍ର ପ୍ରଭାତେଣ ଆସ୍ଥାନେ ବିଜୟେ ଦଣ୍ଡଧାରୀ
ଯୁଝେଷ୍ଠି ଦେବେ ସକଳ ଜନନ୍ତ ହକାରି ।୯
ପାତ୍ର ମନ୍ତ୍ରୀ ଅମନାତ୍ୟ ସନ୍ୟ ଯେ ପ୍ରୋହିତ
ରାଇଣ ବଚନ ଯେ ବୋଲନ୍ତି ଧର୍ମସୁତ ।୧୦
ବାବୁ ତୁମ୍ଭେ ସକଳ ଜନେ ଶୁଣିମା ମୋର ବାଣୀ
ଆମ୍ଭଂକୁ ସଖା ଥିଲେ ଦେବ ଚକ୍ରପାଣି ।୧୧
କୃଷ୍ଣର ଅଭାବେ ଆମ୍ଭର କିସ ରାଜ୍ୟ
କହଇ ତୁମ୍ଭନ୍ତ ଯେବେ ଆମ୍ଭର ପୂର୍ବ କାର୍ଯ୍ୟ ।୧୨
ଯେତେକ ଦୋଷ ତୁମ୍ଭନ୍ତ ଅଛଇ ମୁଂ କରି
କ୍ଷମା କରିବାକୁ ଯେବେ ସେ ଦୋଷ ମୋହୋରି ।୧୩
ମୋହୋରେ ଅପମାନ ପାଇଲେ ବହୁତ
ଯେ ଦୋଷ ମୋହର କ୍ଷମା କରିବା ସମସ୍ତ ।୧୪
ସମସ୍ତ ଦୋଷ ମୋର କରିବା ଉପେକ୍ଷା
କିଞ୍ଚିତ ପୁଣ୍ୟେ ମୋର ବହୁତ ଧର୍ମ ବାଞ୍ଛା ।୧୫
ମହତ୍ ପ୍ରାଣୀମାନେ ନ ଘେନନ୍ତି ଦୋଷ
କିଞ୍ଚିତ ଲୋକେ ଯେ ବୁଝନ୍ତି ବିଶେଷ ।୧୬
ମୋତେ ଆଜହୁଂ ତୁମ୍ଭେ ଉପେକ୍ଷା କରିବା
ପରୀକ୍ଷ ଅନୁମତେ ସକଳେ ରହିବା ।୧୭
ଚନ୍ଦ୍ରେଣ ଯେସନେକେ ଅଟଇ ତାରା ଯେ ବିଦିତ
ତେସନେକ ହୋଇ ନରେ ତୁମ୍ଭର ନିୟତ ।୧୮
ଯେ ମୋହୋର ଲକ୍ଷ୍ମୀ ଯେବେ ପରୀକ୍ଷକୁ ଦେଇ
ବନେଣ ଗମନ କରିବୁଂ ପଞ୍ଚୁ ଭାଇ ।୧୯
ଯୁଝେଷ୍ଠି ବଚନ ଶୁଣି ସମସ୍ତ ବିସ୍ମୟ ମନ
ଆମ୍ଭନ୍ତ ଛାଡ଼ି ନୃପତି କାହିଂକି କରିବୁ ଗମନ ।୨୦
ଆମ୍ଭେ ବନେ ଯାଇ ସମସ୍ତେ ତୁମ୍ଭନ୍ତ କରିବୁଂ ସେବା
ଅନୁରାଗ କେତେକ ଅଛଇ ଆଗ୍ୟାଂ ଦେବା ।୨୧
ବଦୟନ୍ତି ଯୁଝେଷ୍ଠି ନିର୍ମଳ ଯେହୁ ବାଣୀ
ରାଜ୍ୟ କର ତୁମ୍ଭେ ପରୀକ୍ଷକୁ ଘେନି ।୨୨
ମୋତେ ଯେତେ ଭଗତି ପରୀକ୍ଷକୁ ଦେବା
ତାହାର ଯେତେ ଦୋଷ କଲେ ମୋତେ ଉପେକ୍ଷିବା ।୨୩
ପରୀକ୍ଷକୁ ରାଜ୍ୟ ଦିଲେ ହସ୍ତିନା ନଗରୀ
ପଞ୍ଚୁ କଟକ ମଧ୍ୟେ ଯେକାଙ୍ଗ ଦଣ୍ଡଧାରୀ ।୨୪
ପାତ୍ର ବୃହସେନ ମନ୍ତ୍ରୀ ସୋମଦାସ
ରାଜ୍ୟର ସୁବିଧାନ କରନ୍ତି ସର୍ବ ଯଶ ।୨୫
ପରୀକ୍ଷକୁ ଡିଆରନ୍ତି ଦେବ ଧର୍ମ ଶିକ୍ଷେ
ବାବୁ ପ୍ରଜା ପାଳିଲେ ବର୍ଦ୍ଧିତ ହୋଅଇ ଯଶଶ୍ରୀ ଆୟୁଷେ ।୨୬
ପରଜାକୁ ଯେବଣ ରାଜା ପାଳଇ ପୁତ୍ର ତୁଲେ
ଦେବ ଇନ୍ଦ୍ର ତହିଂ ପାଳଇଟି ଭଲେ ।୨୭
ରାଜା ପାଳିଲେ ସେ ପରଜା ହୋଇ ସୁସ୍ଥ
ପ୍ରଜା ପାଳନେ କୃଷି ଉପୁଜଇ ବହୁତ ।୨୮
କୃଷି ଉପୁଜିଲେ ଭଣ୍ଡାର ହୋୟେ ପୁଷ୍ଟ
ଜନ ଜନ୍ତୁମାନେ ନ ପାବନ୍ତି କଷ୍ଟ ।୨୯
ଆପଣେ ଶ୍ରୀକରେ ମାପିଲେ ଯୁଝେଷ୍ଠି
ଅଷ୍ଟାଦଶ ହାଥ ହୋଇଲା ନଳକାଠି ।୩୦
ଦୀର୍ଘ ପଞ୍ଚବିଂଶ ପ୍ରତି ପଞ୍ଚବିଂଶ ନଳ ଉଠି
ଯେମନ୍ତ ଘନ କରନ୍ତେ ହୋଇବ ଯେକ ବାଟି ।୩୧
ଯେଥକୁ କର ଭିଆଣ କଲେ ସେଟି

ବାଟିକରେ ସଂଜ୍ଞା ଘେନିମ ଯେକ ଯେ ପଡଟି ।୩୨
ଯୁଧିଷ୍ଠିର ଦେବେ କହିଲେ ରାଜ୍ୟର ବିଧାନ
ଯତନେ କହିଲେ ସମସ୍ତ ରାଜ୍ୟର ସୁବିଧାନ କଥାମାନ ।୩୩
ସୁଜନ ଦେଖିଲେ ନିଯୋଗ ଦେଉଥିବୁ
ଜୀବ ଥିବାଯାଏ ତାହାକୁ ନ ଛୁଡ଼ିବୁ ।୩୪
ତାହାର ଅନ୍ତରେ ଦେବୁ ପୁଅକୁ ଅଧିକାର
ଯୁଧିଷ୍ଠିର ଦେବ ତିଆରିଲେ ଅନେକ ବେଭାର ।୩୫
ସଂଚପି କହିଲେ ଯେ ଅନେକ ବିଧାନ
ଅନ୍ତକରି ପାରିବା କି ପଠନ ଲେଖନ ।୩୬
ଯେମନ୍ତର ସମୟେ ବଇତରଣୀ ନଦୀ କୂଳେ
ବେଦପୁର ବୋଲି ଯେ ନଗ୍ର ପରିମଳେ ।୩୭
ସେ ନଗ୍ରେ ସୁରେଶ୍ୱର ବୋଲିଣ ବ୍ରାହ୍ମଣ
ଯେକଦିନେ ପ୍ରବେଶ ହୋଇଲେ କୃଷି କର୍ମେଣ ।୩୮
ତନ୍ତୀପା ବୋଲିଣ ତାହାର କିରିଷାଣ
ଲଙ୍ଗଳ ଘେନିଣ ସେ ଭୂମି କରଇ କରଷଣ ।୩୯
ଲଙ୍ଗଳ ଫେଡ଼ିଲା ଉତ୍ତାରେ ପଣ୍ଡାୟେ ଦିଲେକ କୋଦାଳ
ଖେତର ଟିକର ଖାଲ କର ସମତୁଲ ।୪୦
ଯେ ବୁଦା ହାଣିଣ ତୁ ପକାଅ ଭୂମିକି
ଖେତ ସମତୁଲ ହୋଉ ଭୂମି ହୋଉ କୃଷିକି ।୪୧
ଆଗ୍ୟାଂ ଦେଇ ବିଦୁଜନ ଗଲା ନିଜ ପୁରେ
ଖେଳାଇ କିରିଷାଣ ବୁଦାଇ ପକାଇ ଦୂରେ ଦୂରେ ।୪୨
ହାଣନ୍ତେ ପାଷାଣେ ଯାଇ ବାଜିଲାକ କୋଡ଼ି
ପଥର କାଢ଼ନ୍ତେ ପାଇଲାକ ରତ୍ନ ଜାଲି ।୪୩
ଧନ ଦେଖିଣ ସେ ମହାବଳବନ୍ତା
ମଥାରେ ଘେନିଲା ସେ ଦୁଗୁଣ ଶକତା ।୪୪
ମୁଣ୍ଡିଆଇ ପଣ୍ଡାଂକ ଛାମୁରେ ନେଇ ଦେଇ
ପଣ୍ଡାୟେ ବୋଇଲେ ନିଅ ଯା ତୋହୋର ଘରକଇଂ ।୪୫
କୃଷି ସେ ଆମ୍ଭର ନା ଅଟଇ ଯୁଗତେ
କର୍ମେ ସେ ଯେବେ ପାଇଲୁ ବେଭାର ଅଟଇ ତୋତେ ।୪୬
ବୋଲଇ ତନ୍ତୀପା ଗୋସାଇଂ କହିଲ ଅନୀତି
ତୁମ୍ଭର ତୋଟା ବାସ୍ତୁ ତୁମ୍ଭର ବାଡ଼ିବୃତ୍ତି ।୪୭
ତୁମ୍ଭର ଉପର ବଂଶେ କେବଣ ସାଧେବ
ଗୁପତେ ଥୋଇଲା ଆନ କେ ହରିବ ।୪୮
ମୁହିଂ କୃଷିକାରୀ ଉପୁଜାଇବି ବିତ୍ତ
ଧନ ମୋହୋର କିସ ମୂଲ୍ୟହିଂ ଯୁଗତ ।୪୯
ଅନ୍ନ ବସ୍ତ୍ର ବର୍ତ୍ତନ ହୁଅଇ ଯେତେ ମୋତେ
ତୁମ୍ଭର ଆୟେ ବିତ୍ତ ମୁଂ ନେମଇଂ କେମନ୍ତେ ।୫୦
ବ୍ରାହ୍ମଣ ବୋଲଇ ତୁହୋ ଶୁଣସି ସମ୍ବାଦ
କୃଷାଣ ହୋଇ ମୋତେ କରାଇ ଅପବାଦ ।୫୧
ଯେହାର କର୍ମେ ସେ ଉପୁଜିଲା ବିତ୍ତ
ମୁହିଂ ଯେହା କେସନେକେ କରିବି ଗ୍ରାହିତ ।୫୨
କିରିଷାଣ ବୋଇଲା ତୁମ୍ଭେ ପୁଣ୍ୟବନ୍ତ ଜନ
ଯେତେକ ଛନ୍ଦ କଲେକି ରହଇ ତୁମ୍ଭର ବଡ଼ପଣ ।୫୩
ବାର ଚିନା ବର୍ତ୍ତନେ ମୁଂ ହିଂ ସେ କାରେଣି
ରାଜାର ଛାମୁରେ ଯାଇଂ ଗୁହାରି କରିବି ଯେହିକ୍ଷଣି ।୫୪
ବ୍ରାହ୍ମଣ ବୋଇଲା ବେଗେ ମଥାରେ ଘେନ ଯେହା
ରାଜାର ଛାମୁକୁ ଯିବା ଚାଲରେ ଦୋରେହା ।୫୫
ଆହୋ ଚଇତନ ବ୍ରାହ୍ମଣ କିରିଷାଣ ଦୁହିଂକର କଳି
ଧନ ଘେନି ଦୁହେଂ ଯୁଧିଷ୍ଠିର ଦେବଂକ ଛାମୁରେ ଯାଇଂ ମିଳି ।୫୬
ସିଂଘଦ୍ୱାରେ ନେଇ ଥୋଇଲେକ ନିଧି
କିରିଷାଣ ବୋଇଲା ମୋତେ ହୋଇଲା ଅବିଧି ।୫୭
ବ୍ରାହ୍ମଣ ବୋଇଲା ଦେବ ଯେ ମୋହୋର କିରିଷାଣଇ
କୋଦାଳ ଘେନିଣ ଯେ ବୁଦାନ୍ତ ହାଣଇ ।୫୮
ହାଣନ୍ତେ ତହିଂରୁ ପାଇଲା ଯେ ଅମୂଲ୍ୟ ରତ୍ନ ନିଧି
ଭୋ ଦେବ ରତ୍ନ ଯେହାର ହୋଇବନା ବିଧି ।୫୯
ଯେଡ଼େ ଛନ୍ଦୁଆଳ ନିକି ଚଷାଲୋକ ହୋଇ
ଯେହାର ଅରିଜିଲା ଧନ ଯେ ମୋହୋର ଉପରେ ପକାଇ ।୬୦
ଯୁଧିଷ୍ଠିର ଦେବେ ବୋଇଲେ ଯେବେ ପାଇଲୁ ରତ୍ନଜାଲି (ଝରି)
ଧନ ନ ନେଇ କିମ୍ପେ ବ୍ରାହ୍ମଣ ତୁଲେ ଦ୍ୱନ୍ଦ କରି ।୬୧
କିରିଷାଣ ବୋଇଲା ଦେବ ମୁଂ କି କରିବି ବେପାର
ଅନ୍ନ ବସ୍ତ୍ର ବରତନ ହୋଅଇ ସିନା ମୋର ।୬୨
ଭୂମିରେ ଯେବଣହିଂ ଉପୁଜଇ ଆୟେ
ଯେହାଂକର ହୋଇ ସିନା ବିଚାର ଦେବରାୟେ ।୬୩
ଯୁଧିଷ୍ଠିର ବୋଇଲେ ହୋ ଅଧେ ଅଧେ କର
ବାଣ୍ଟିନିଅ ଧନ ତୁମ୍ଭେ ବିଚାର ଆମ୍ଭର ।୬୪
କିରିଷାଣ ବୋଇଲା ଦେବ ତୁମ୍ଭେ ସେ ଧର୍ମରାୟେ
ମୋହୋର ବେଳେତ ନେଇ ନୋହଇ ଚିନାୟେ ।୬୫
ବ୍ରାହ୍ମଣ ବୋଇଲା ମୁଂ ଚିନାୟେ କିମ୍ପେ ନେବି

ଯେହୁ ଦୁଃଖେ ଅର୍ଜ୍ଜିଲା ମୁହିଂ କେସନେ ହରିବି ।୧୬୬
ଶୁଣିଣ ଆଶ୍ରିଙ୍କ ହୋଇଲେ ଯୁଧେଷ୍ଠି ନୃପବର
ସହଦେବଙ୍କୁ ବୋଇଲେ ଯେ କେବଣ ବିଚାର ।୧୬୭
ସହଦେବ ବୋଇଲା ଦେବ ବୁଝିବା ଯେହିକ୍ଷଣି
ଯେଥିର ତଦନ୍ତ ମୁଂ ଅଛଇନା ଜାଣି ।୧୬୮
ଶୁଣ ଦେବ ଯୁଧେଷ୍ଠି ଯେଥିର ବ୍ୟବସ୍ଥା
କଳିଯୁଗ ପ୍ରବେଶ ହୋଇଲା ଶୁଣିମା ତଥ୍ୟ କଥା ।୧୬୯
ଉଦିଯୋଗେ ଶ୍ରୀକୃଷ୍ଣ ହୋଇଗଲେ ଦୂତ
ସେହିଦିନୁଂ କଳିଯୁଗ ହୋଇଲା ଉଦିତ ।୧୭୦
ହରି ଅର୍ଜ୍ଜୁନର ଭୟେଣ ପଶିତ ନୁଆରିଲା
ମହାଭାରଥ ଯୁଦ୍ଧେ କଳି ପ୍ରବେଶ ହୋଇଲା ।୧୭୧
ଆମ୍ଭର ସମୟେ ସୁଖ ଭୋଗ ନିମନ୍ତେ
କଳିକି ପଶି ନଦିଲେ ଦେବ ଜଗନ୍ନାଥେ ।୧୭୨
ଆକାଶର ବାଣୀ ପଡ଼ିଲା ଶୁଣ ହେ ସହଦେବ
ଅନୀତି ପଡ଼ିବଟି ତୁମ୍ଭେ ନ ଥାଅ ଯେବ ।୧୭୩
କୃଷ୍ଣ ଅଇଲେ ଅର୍ଜ୍ଜୁନ ନାହିଂ ସ୍ୱର୍ଗେ
ପୁଣ ଜାତ ହୋଇବନା କଳିଯୁଗ ଭୋଗେ ।୧୭୪
ଯୁଧେଷ୍ଠି ଦେବ ଆକାଶେ ଯେ ନଇଲେ ନୋହଇ
ଧର୍ମରାଜା ନ ଥିଲେ ଆକାଶ ନ ଶୋହଇ ।୧୭୫
ଆକାଶର ବାଣୀ ଶୁଣି ମନ୍ତ୍ରୀ ଉଦ୍‌ବେଗ
କଳିକାଳ ଫାଶି ଫେଇଦିଲେ କଳିଯୁଗ ।୧୭୬
ଯେକା ନିମିଷକେ ସୟଳ ଜଳ ଘୋଟି
ଲାଗିଲା ମାୟାମୋହ ଘୋଟିଲା ନବସୃଷ୍ଟି ।୧୭୭
ସୁରେଶର ବ୍ରାହ୍ମଣ ବୋଇଲା ଯେ ଧନ ମୋହୋର ବୋଲି
ପଳା ଯାଅ ସାଧୁତ ବୋଲି କିରିଷାଣ ଦିଲା ପେଲି ।୧୭୮
ବ୍ରାହ୍ମଣ ବୋଲଇ ଦେବ ତୁମ୍ଭେ ଯେ ଧର୍ମରାୟେ
କିରଷାଣ ମାତ୍ର ହୋଇ ସାଧୁକୁ ବଳ କୟେ ।୧୭୯
ବ୍ରାହ୍ମଣ କୋଳକରି ଧରଇ ଯାଇଂ ଜାଲି
ବଳେଣ କିରିଷାଣ ଯେ ନିଅଇ ଉଛୁଡ଼ି ।୧୮୦
ଦେଖିଣ ଯୁଧେଷ୍ଠି ନାସିକାୟେ ଦିଲେ ହାଥ
ଯେହିକ୍ଷଣି ସହଦେବ ରେ ହୋଇଲା କେମନ୍ତ ।୧୮୧
ସହଦେବ ବୋଇଲା ଯେଉଁ ଦିନୁଂ କୃଷ୍ଣ ଦୂତପଣେ ଗଲେ
ସେହିଦିନୁ କଳିଯୁଗ ପ୍ରବେଶ ହୋଇଲେ ।୧୮୨
ମହାଭାରଥ ଯୁଦ୍ଧ ଯହୁଂ ଶେଷ ହୋଇଲା
ମୋତେ ହକାରି ଦେବ କୃଷ୍ଣ ଯେ ବୋଇଲା ।୧୮୩
କାଳେକ ଯୁଧେଷ୍ଠି ଦେବ ବନେଣ ମହାଦୁଃଖୀ
ରାଜକୁମାର ହୋଇ ନୋହିଲେ କିଛି ସୁଖି ।୧୮୪
ଯେତେ ବୋଲି ଦେବ କଳିଯୁଗ ବନ୍ଧନ କଲୁ ଆମ୍ଭେ
ସମୟେକ ସୁଖଭୋଗ ପାଇଲ ଦେବ ତୁମ୍ଭେ ।୧୮୫
କଳିଯୁଗ ଫେଡ଼ନ୍ତେ ଦେବ ହୋଇଲା ଯେମନ୍ତ
ଯୁଧେଷ୍ଠି ବୋଇଲେ କିମ୍ପେ କଳିଯୁଗ ହୋଇବ ଅନିତ୍ୟ ।୧୮୬
ପରୀକ୍ଷ ବୋଇଲେ ଦେବ ପୃଥୀରେ ଥିଲା ସୁନା
ବିଚାରିଲେ ଯୁଗତେ ଯେ ରାଜାର ଭଣ୍ଡାର ଧନ ସିନା ।୧୮୭
ସାଧବ କିରିଷାଣ ଗଲେ ମନ ମୂଛି
ଭଣ୍ଡାରେ ଧନ ଥୋଇଲେ ଯୁଧେଷ୍ଠି ନ ବୋଇଲେ କିଛି ।୧୮୮
ସହଦେବ ବୋଇଲା ଦେବ ଶୁଣିମା ସାବଧାନେ
କଳିଯୁଗର ଚରିତ ହୋଇବ ଯେମନ୍ତ ବିଧାନେ ।୧୮୯
ଅନେକ କଷ୍ଟେ ପରଜାୟେ ଉପୁଜାଇବେ କୃଷି
ନାନା ଛନ୍ଦ ପାତି ରାଜା ନେମ ଦୁଇରାଶି ।୧୯୦
ଯହୁଂ ସେ ଅବିଧି କରିବାକୁ ରାୟେ
ଇନ୍ଦ୍ର ବୃଷ୍ଟି ନ କରିବ ପୃଥୀ ନୋହିବ ଫଳଦାୟେ ।୧୯୧
ପରଜା ଦୁଇରାଶି ନ ଅଣ୍ଟିବ ରାଜାକୁ
କଟାକ୍ଷ କରିବେ ସେ ଦେବତା ବ୍ରାହ୍ମଣଂକୁ ।୧୯୨
ରାଜା ହୋଇବେ ଶାଗୁଣା ପରଜା ହୋଇବେ ମଡ଼ା
ଠାବ ଠାବ ହୋଇ ସେ ଉଠିବାକ ପଡ଼ା ।୧୯୩
ଶୂଦ୍ରକଙ୍ଗ ବ୍ରାହ୍ମଣେ ଯେ ମାଗିବେ ତଳହାଥେ
ନିତ୍ୟକର୍ମ ତେଜିବେ ଅନ୍ନ ଅଭ୍ୟାଗତେ ।୧୯୪
ଆଚାର ତେଜି ବ୍ରାହ୍ମଣେ ହୋଇବେ ଅନାଚାରୀ
ରାଜସେବା କରିବେ ଯେ ଦଣ୍ଡପାଟ ଆବୋରି ।୧୯୫
କୃଷି କର୍ମେଣ ଯେ ଦଳିବାକ ମହୀ
ଶହସ୍ର ଧରି ଶିର ଛେଦିବାକୁ ସେହି ।୧୯୬
ବେଦମନ୍ତ୍ରମାନ ସେ ଯେ ହୋଇବ ଅଗ୍ରାହିକ
ବ୍ରାହ୍ମଣ ସ୍ତିରୀ ଯୋନିରେ ଚାଣ୍ଡାଳେ ଦେବେ ବୀର୍ଯ୍ୟ ।୧୯୭
ବିଧବା ବ୍ରାହ୍ମଣୀ ଯେ ହୋଇବେ ଅନ୍ୟାଚାରୀ
କୁଳସ୍ତିରୀମାନେ ଯେ ହୋଇବେ ଅଭିସାରୀ ।୧୯୮
ବିଭାଇତ ପତ୍ନୀକି କରିବେ ଉପେକ୍ଷା
ବିଧବା ସ୍ତିରୀ ଘେନି କରିବେ କୁଳ ରକ୍ଷା ।୧୯୯
ବିଧବା ଗମଣେ ଯେ ପୁତ୍ର ହୋଇବାକ ଜାତ

ପିତା ମାତାକଙ୍କଂ ସେ ନୋହିବେ ଭଗତ ।୧୦୦
ସୁଖେ ସ୍ତ୍ରୀ ରତି କରିବେ ଚାରି ଜାତି
ପୁତ୍ର ସାଧବ ପିତା ମରିବ ଅନ୍ନ ଶାସ୍ତି ।୧୦୧
ଶାହାସ୍ତ୍ର ନିନ୍ଦା କରିବେ କଳିଯୁଗ ଲୋକେ
ଭଣ୍ଡପଣ କରି ତହିଂ ବ୍ରତିବେ ଯେ ଥୋକେ ।୧୦୨
କିଞ୍ଚିତ କଥାକୁ କଳି ଭଗିବେ ବହୁତେ
ଦ୍ୱନ୍ଦେଣ ପ୍ରବର୍ତ୍ତି ହୋଇବେ ପିତା ପୁତ୍ରେ ।୧୦୩
ପିତା ପୁତ୍ର ପତ୍ନୀରେ ହୋଇବେ ଯେକ ସଙ୍ଗ
ମାତା ପୁତ୍ର ଯେ ହୋଇବେ ରତି ରଙ୍ଗ ।୧୦୪
ଆପଣାର ନିଜ ବୃତ୍ତି ଛାଡ଼ିବେ ଶକ୍ୟ ହୀନେ
ଶୃଙ୍ଗାରେ ଅନ୍ୟୋଅନ୍ୟି ହୋଇବେ ହାଦେ ଜନେ ।୧୦୫
କଳିର ପ୍ରାନ୍ତକୁ ଯେ ହୋଇବେ ଯେକଯୋଗ
କଳିଯୁଗେ ଜନେ ପାଇବେ ହୀନଭୋଗ ।୧୦୬
ବାମା ପୂଜ୍ୟଜନେ କରିବେ ଅକୀର୍ତ୍ତି
ବ୍ରାହ୍ମଣ ଚାଣ୍ଡାଳ ଯେ ଯେକତ୍ୱେ ମଦିରା ରସେ ଅର୍ଥୀ ।୧୦୭
ସ୍ୱାମୀକି ସେବକ ଯେ ମାରିବାକ ବେଳେ
ଚଉର୍ଯ୍ୟକର୍ମେ ବ୍ରତୀ ହୋଇବେ ବିକଳେ ।୧୦୮
ମିଛହୁଂ ସତ ଜନେ ନ କହିବ ବାଣୀ
ଓଛ ଲୋକେ ସିଂଘାସନେ ବସିବେ ପାତ୍ର ମନ୍ତ୍ରୀ ଜାଣି ।୧୦୯
ପଚ୍ଛଶ୍ରାନ୍ତି ଲୋକଂକୁ ହୋଇବାକ ଦ୍ୱନ୍ଦ
ଅଦଭୁତେ ଲୋକକୁ ହୁଅଇ କୂଟ ଛନ୍ଦ ।୧୧୦
ପରଧନ ଚଉର୍ଯ୍ୟେ ମରିବେ ଅନେକ ପ୍ରାଣୀ
ଅବିଚାରେ ରାଜା ଯେ ଅନେକ ଶିର ହାଣି ।୧୧୧
ଆପଣାର ଭୂମି ଯେ କରିବେ ପରିତେଜ୍ୟା
ପରସୀମା ହରି ମରିବାକ ରାଜା ।୧୧୨
ନିୟତ କ୍ରିୟା ଛାଡ଼ି ନରେ ହୋଇବେ ଅନ୍ୟାଚାରୀ
ଅଶଉଚ କର୍ମ ସେ ବ୍ରତିବେ ସଂସାରୀ ।୧୧୩
ବାର ବ୍ରତ ତେଜିଣ ଅନୁବ୍ରତେ ଭୋଗୀ
ଅବିଚ୍ଛନେ ଶୃଙ୍ଗାରେ ଜନେ ହୋଇବାକ ରୋଗୀ ।୧୧୪
ଗଉରବ ସ୍ତିରୀକି ଯେ କରିବେ ରମଣ
ସଂକ୍ରାନ୍ତି ଅମାବଇ ରାତ୍ରେ କରିବେ ଅନ୍ନ ଭୋଜନ ।୧୧୫
ଜୁଅ ଆଚାରେ ଯେ ପୋଷିବେ କୁଟୁମ୍ବ
ନିଜ ଆଷ୍ୟ ଘେନି ଯେ କେହି ନ ବ୍ରତିବ ।୧୧୬
ବିପ୍ର ଚାଣ୍ଡାଳ ଯେ ହୋଇବେ ଯେକତ୍ୱ

ଗୁରୁ ମାନୀତ ଜନେ ଅନୁବ୍ରତେ ରତ ।୧୧୭
ରାଜାକଙ୍କଂ ମାରିତେ ପାଞ୍ଚ କରିବେ ଅମନାତ୍ୟ
ସୁଜନେ ଅନ୍ୟାଚାର ଯେ କରିବେ ନିୟତ ।୧୧୮
ବ୍ରାହ୍ମଣେ ତିଳଦାନ ଘେନିମାକ ହାଦେ ଲୋଭେ
ସଚରାଚରେ ଗୋଳକୁଣ୍ଡା ହୋଇବେ ଠାବେ ଠାବେ ।୧୧୯
ସନ୍ତାନ ନିମନ୍ତେ ବ୍ରାହ୍ମଣୀ ଶୂଦ୍ର ସଙ୍ଗେ ରତ
ସେ ଚାଣ୍ଡାଳ ପୁତ୍ରେ ହୋଇବେ ବେଦ ପାରଗ ନିୟତ ।୧୨୦
ଅନେକ ଅନ୍ୟାୟ ଯେ ହୋଇବ କଳିଯୁଗେ
ସହଦେବ କହିଲେ ଯୁଧିଷ୍ଠି ଦେବଂକର ଆଗେ ।୧୨୧
ଧର୍ମ ଆଚାରେ ଯେ ବ୍ରତିବାକ ଜନ
ତାହାକଙ୍କଂ ନ ମିଳିବ ଅନ୍ନବସ୍ତ୍ର ଧନ ଯେ ସନ୍ତାନ ।୧୨୨
ବୋଲନ୍ତି ଯୁଧିଷ୍ଠି ଯେ ତ ବଡ଼ାଇ ଅନିର୍ଯ୍ୟାପ
ଯେ ଭୂମିରେ ଥାଇଂ କିମ୍ପେ ବାବୁ ଅରଜିବା ପାପ ।୧୨୩
ସହଦେବ ମୁଖୁଂ କଳିର ବାକ୍ୟ ଶୁଣି
ପରୀକ୍ଷକୁ ଡିଆରିଣ ଯୁଧିଷ୍ଠି ଅନକୂଳ ଘେନି ।୧୨୪
ଭୋ ରାଜନ କୋଇନ୍ତାର ପୁତ୍ରେ ଯେ ରାଜ୍ୟ ତେଜ୍ୟା କରି
ବଇତରଣୀ ନଦୀକୂଳେ ଅଛି ଯାଜନଗ୍ର ପୁରୀ ।୧୨୫
ଯହୁଂ ଯୁଧିଷ୍ଠି ଦେବ ଚଳିଲେ ପ୍ରସ୍ଥାନେ
ରହିଲେ ଧର୍ମପୁରେ ପଣ୍ଡୁର ନନ୍ଦନେ ।୧୨୬
ଯାଇଂଣ ଧର୍ମପୁରେ ପ୍ରବେଶ ପଞ୍ଚବୀରେ
ଦ୍ରୌପଦୀ ମାତ୍ରକ ଅଛନ୍ତି ସଙ୍ଗତରେ ।୧୨୭
ଅମରାବତୀ ନଗ୍ରେ ହରିସାହୁ ବଣ୍ୟ ଜାତି
ସୁହାଣୀ ବୋଲିଣ ଯେ ତାହାର ଦୁହିତୀ ।୧୨୮
ମାଘ ଶୁକଳ ତୃତୀୟା ତିଥି ବୁଧବାର
ତଇତିଳ ନାମେ କରଣ ଅଟଇ ଆବର ।୧୨୯
ଶତଭିଷା ନକ୍ଷତ୍ର ଯେ ବରୀୟାନ ଯୋଗ
ସେହି ଦିନ କନ୍ୟା ଜନ୍ମ ହୋଇଥିଲା ଭୋଗ ।୧୩୦
ଉଦାଳେକ ନାମେ ସେ ଯେକଇ ଦଇବଗ୍ୟଂ
ବଡ଼ାଇ ସପତାଙ୍ଗ ସେ ଗଣିତ ମହିଭିଗ୍ୟଂ ।୧୩୧
ତାହାକୁ ରାଇଣ ଯେ ଗଣାଇଲେ ହରି ସାହୁ
ଦୋହିତାର ଜନ୍ମ ନକ୍ଷତ୍ର ନାମ ଯାହା କହୁ ।୧୩୨
ବୋଲଇ ଗଣକ ଶୁଣସି ହୋ ବଣ୍ୟ
ବଡ଼ାଇ ଭାଗ୍ୟବନ୍ତୀ ଯେ ତୋତେ ପୁଣ୍ୟ ଯଶ ।୧୩୩
ଯେକା କଥାଯେ ମାତ୍ର ତୋତେ କହଇ ବିଶ୍ୱାସ

ବିଭା ହୋଇଲେ ମରିବ ଯେ ଅବଶ୍ୟ ।୧୩୪
ଯେହା ଶୁଣି ବିଭା ନ କରଇ ହରି ସାହୁ
ପଞ୍ଚଦଶ ବରଷ କନ୍ୟା ହୋଇଲାନି ଯହୁଂ ।୧୩୫
ଯୁଧିଷ୍ଠେ ଦେବ ବିଜେ କଲେକ ଯେତେବେଳେ
ହରି ସାହୁ ପାଣ୍ଡବଂକ ଛାମୁରେ ଯାଇଂ ମିଳେ ।୧୩୬
ପିତାର ପଛକଟି ଗୋଡ଼ାଇ ଦୋହିତା
ଚନ୍ଦ୍ର ଉଦୟ ପ୍ରାୟେ ଦିଶଇ ସେ ବାଳ ବନିତା ।୧୩୭
ଯୁଧିଷ୍ଠି ପଚାରନ୍ତି ଶୁଣସି ହୋ ହରି ବଶ୍ୟ
ଯେ କୁମାରୀ ଗୋଟିର କାହିଂ ଗୃହବାସ ।୧୩୮
ଶୁଣିଣ ବଶ୍ୟ ଯେ ତାହାଂକ ଚରଣେ ପରିଣାମି
ବିଭା ନିହାଇ ହୋଇ ଯେ ଦୋହିତା ମୋର ସ୍ୱାମୀ ।୧୩୯
ଯୁଧିଷ୍ଠି ବୋଇଲେ ତୁ ଶୁଣସି ହୋ ବଶ୍ୟ
ଯେ ତୋହୋର ବଂଶକୁ ଅଟଇ ବଡ଼ ଦୋଷ ।୧୪୦
ଦୋହିତା ପିତା ଘରେ ହୋଇଲେ ରଜୋବତୀ
ପିତୃଲୋକମାନଙ୍କୁ ହୋଅଇ ଅସଦ ଗତି ।୧୪୧
ହରି ସାହୁ ବୋଇଲା ଦେବ ମୋହୋର ମନ୍ଦ କର୍ମ
କେବଣ ପାପକ୍ଷଣେ ଯେ ହୋଇଲାକ ଜନ୍ମ ।୧୪୨
ଦଇବଗ୍ୟଂ ବୋଇଲା ଯେ ବିଭାକାଳେ ମରିବ
ତେଣୁକରି ବିଭା ଯେହାକୁ ନ କରଇ ଭୋ ଦେବ ।୧୪୩
ଯୁଧିଷ୍ଠି ଚାହିଂଲେ ଯେ ସହଦେବ ମୁଖ
ଯେ କଥା ସତ କି ବାବୁ ବୁଝନି ପ୍ରତକ୍ଷ ।୧୪୪
ସହଦେବ ବୋଇଲେ ଦେବ ନିଶ୍ଚୟ ଯେ ଅଟଇ
ହସ୍ତଗଣ୍ଠି କାଳେ ଯମ ଯେହାକୁ ଭେଟଇ ।୧୪୫
ସହଦେବର ବଚନେ ଦେବ ହୋଇଲେକ ତୁନି
ହରି ସାହୁ କରଇ ଚରଣେ ବିନୟ ଦୟିନୀ ।୧୪୬
ଆନେ ପ୍ରଦାନେ ଦେବ ନାହିଂନା କାରଣ
ଯେବେ ଦୋହିତାକୁ ଘେନି ତୁମ୍ଭରେ ଶରଣ ।୧୪୭
ତୁମ୍ଭରେ ପ୍ରଦାନ ମୁଂ କରିବି ଦୋହିତା
ଯାବତ ଚନ୍ଦ୍ରାର୍କେ ଗୁହାଇବି କଥା ।୧୪୮
ସ୍ୱାମୀର ସତ୍ୟ ବାଚା ହେଉ ଉଦିତ ହେଉ ଧର୍ମ
ବଶ୍ୟ କୁଳକୁ କଥା ରହୁ ଜନ୍ମ ଜନ୍ମ ।୧୪୯
ଉଠିଣ ପ୍ରଇମ୍ପିତ ହୋଇଲେ ଚାରି ଭାଇ
ଯେ କଥାକୁ ଦେବ ନକର ତୁମ୍ଭେ ନାହିଂ ।୧୫୦
ଯୁଧିଷ୍ଠି ବୋଇଲେ ଆମ୍ଭର ଗଳିତ ବୟସ
ରାଜ୍ୟ ଭୋଗ ତେଜି ଅଇଲୁ ଆସି ଆତ୍ମା ହୋଯେ ଶେଷ ।୧୫୧
ରାଜ୍ୟ ସମ୍ପଦ ତେଜି ଆମ୍ଭର ତୀର୍ଥଯୋଗ
ବିଭା ଦାରାଯେ ଆମ୍ଭର କିସ ଭୋଗ ।୧୫୨
ସହଦେବ ବୋଲନ୍ତି ଦେବ ଶୁଣ ଗୁଣନିଧି
ଯାଚିଲା କନ୍ୟା ପ୍ରଦାନ ହେବା ମିଳଇ ଯେହି ବିଧି ।୧୫୩
ଯାଚିଲା କନ୍ୟା ଯେ ଅର୍ଚ୍ଚିଲା ଭୋଜନ
ଯେହା ଉପେକ୍ଷିଲେ ଦେବ କୁଳକଇଂ ଦୂଷଣ ।୧୫୪
ଯୁଧିଷ୍ଠି ଦେବ ବୋଇଲେ ଯେ ଯେହାକୁ ହୋଇବା ପ୍ରଦାନ
ଯମ ଭୟରୁ ସେ କନ୍ୟା ରଖିବାକୁ କେ ହୋଇବ ଭାର୍ଜନ ।୧୫୫
କରପତ୍ର ଯୋଡ଼ିଣ ବୋଲଇ ସର୍ବସାଚୀ
ଯମର ଭୟରୁ ଦେବ ପାରଇ ମୁହିଂ ରଖି ।୧୫୬
ରାଜୁସି ଯଗ୍ୟଂ କାଳେ ମୁଂ ନିମନ୍ତ୍ରଣେ ଗଯେ
ଅନେକ ବିନୋୟୀ ମୋତେ ବୋଇଲା ଜନ୍ତୁରାଯେ ।୧୫୭
ତାହାର ମୋହୋର ଦେବ ଅନେକ ପୀରତି
ତା ତହୁ ରକ୍ଷା କରିବି ନକର ମନେ ଭ୍ରାନ୍ତି ।୧୫୮
ତୁ ଯେବେ ରକ୍ଷା କରିପାରିବୁ ଯମକୁ
ଆମ୍ଭେ ପ୍ରଦାନ ହୋଇବୁଂ ଯେ କନ୍ୟାକୁ ।୧୫୯
ମୁହିଂ ପଦାନ ହୋଇବି ଯଶ ରହିବ ମହୀସ୍ଥଳୀ
ସର୍ବଗୁଣେ ସୁଲକ୍ଷଣୀ ଯାଚିଲା ଯେବେ ବାଳୀ ।୧୬୦
ଯୁଧିଷ୍ଠି ବୋଇଲେ ଶୁଣ ହରିଦାସ
ଯେ କୁମାରୀ ଗୋଟିକି ବିଭା ଆମ୍ଭେ ହୋଇବୁ ଅବଶ୍ୟ ।୧୬୧
ଯୁଧିଷ୍ଠି ଦେବଙ୍କ ବଚନେ ହରି ସାହୁ ଆନନ୍ଦ
ବିଭାକଇଂ ଉଦିଯୋଗ କଲେକ ପରମ ସାନନ୍ଦ ।୧୬୨
ବନ୍ଧୁ ବାନ୍ଧବନ୍ତ ରୁଣ୍ଡ କଲାକ ହରି ସାହୁ
ମୋହୋର କୁଆଇଂ ହୋଇଲେ ଯୁଧିଷ୍ଠି ମହାବାହୁ ।୧୬୩
ଜୀଇଂଲେ ଜାଉଂ ପଛେ ମଲେ ମରୁ ବାଳୀ
ଯେ କଥା ଚିରାଞ୍ଜନ ରହିବ ମହୀଆଳି ।୧୬୪
ଧଉମ୍ୟ ରୋହିତଂକୁ ଦେବ କଲେକ ସୁମରଣ
ପ୍ରୋହିତ ତୁଲେ ମିଳିଲେ ଲକ୍ଷେକ ବ୍ରାହ୍ମଣ ।୧୬୫
ଷାଠିଯେ ସହସ୍ର ତୁଲେ ବାଳଖିଲା ଋଷି
ଆପଣେ ବ୍ୟାସ ମୁନି ପ୍ରବେଶ ହେଲେ ଆସି ।୧୬୬
ସାଉକାର ବରଣ ଯେ ହରି ସାହୁ କଲା
ଯଥାବିଧି ମହାବାକ୍ୟେ ବର କନ୍ୟାନ୍ତ ବରିଲା ।୧୬୭
କୁମ୍ଭ ମାସ ଶୁକ୍ଳପକ୍ଷ ସପତମୀ ତିଥି

ରୋହିଣୀ ନକ୍ଷତ୍ର ପୁଣି ବାର ବୃହସ୍ପତି ।୧୬୮
ବାଣିଜ୍ୟ ନାମେ କରଣ ପ୍ରୀତି ନାମେ ଯୋଗ
ଧର୍ମପୁର ନଗରରେ ବଡ଼ାଇ ସୁଯୋଗ ।୧୬୯
ଯେମନ୍ତ ସମୟେ ତାଂକୁ ହେଲା ଶୁଭଯୋଗ
ଅମୃତ ବେଳା ସେକାଳେ ହେଉଥିଲା ଭୋଗ ।୧୭୦
ପ୍ରଥମ ବେନି ଘଡ଼ି ବୃହସ୍ପତି ବେଳେ
ବିଭାର ସମଯୋଗ ଭବାନୀ ନଦୀ କୂଳେ ।୧୭୧
ଛାୟା ମଣ୍ଡୋପରେ ହୋଯେ କଣୟ ରତ୍ନବେଦୀ
ସୃଷ୍ଟିକର ଖମ୍ବ ଗୁଅ ରୂପାରେ ସମ୍ପାଦି ।୧୭୨
ସୁବର୍ଣ୍ଣର କଳସ ନେତର ପାତାଙ୍ଗ ଉଡ଼ାନ୍ତି
ଦିବ୍ୟ ବସ୍ତ୍ରମାନ ଛାୟାଘରମାନ ମଣ୍ଡାନ୍ତି ।୧୭୩
ଯୁଗତେ ହରି ସାହୁ ଗନ୍ଧ ଯେ ବଣିଆ
କସ୍ତୁରୀ ପିଚିକାମାନେ ମାରନ୍ତି ଛାମୁଣ୍ଡିଆ ।୧୭୪
ଗନ୍ଧରାଜ କୁଆଦ ଅଗର କସ୍ତୁରୀ ଚନ୍ଦନ ଗୁଗୁଳି
କୁଂକୁମର ତୁଳେ ଯେ କର୍ପୁର ଗୁଣ୍ଡି ବୋଳି ।୧୭୫
ମଙ୍ଗଳ ସୀଉକାର ସାରିଲେ ଯେତେବେଳେ
ଯୁଝେଷ୍ଟି ବିଜେ କଲେ ବ୍ୟାସଂକର କୋଳେ ।୧୭୬
ହରି ସାହୁ ବଣିଆ କୋଳେ ସେ ସୁହାଣୀ
ମଙ୍ଗଳ ଧ୍ୱନି ବ୍ୟାସେ ଉଚ୍ଚାରନ୍ତି ବାଣୀ ।୧୭୭
କୁଂକୁମ ଆଭରଣ କର ବୋଇଲେ ପ୍ରୋହିତେ
କନ୍ୟାକଇଂ ନିଅ ହୋ ଅହିଗ୍ୟଂ ପୂଜାକୁ ଯୁଗତେ ।୧୭୮
କଣୟ ହାଦୋଳାରେ ବିଜୟେ ସୁହାଣୀ
ବାଜନ୍ତି ବୀରତୂର ଟମକ ନିଶାଣି ।୧୭୯
ସୁଲଭ କାମିନୀଯେ ଘେନିଣ ଦୀପାବଳୀ
ମଙ୍ଗଳ ଗୀତ ଗାଇ ଦିଅନ୍ତି ହୁଳହୁଳି ।୧୮୦
ଗାଣ୍ଡିମ ଧନୁ କରେ ଘେନିଣ ବିବନ୍ଧ
ଗୋଡ଼ାଇ ଅର୍ଜୁନ ଯେ କନ୍ୟାର ପଛ ପଛ ।୧୮୧
ଦିବ୍ୟ ଗନ୍ଧୁ ଘେନି ଚାହଂାଇ ସବ୍ୟସାଚୀ
ଯମ ଭୁବନ ପରିଯନ୍ତେ ନିର୍ମଳ ଦିଶୁଅଛି ।୧୮୨
ଦେବୀଂକର ସନ୍ନିଧ୍ୟେ ଯେ ବିଜୟେ ସୁହାଣୀ
ଅହିଗ୍ୟଂ ସ୍ଥାନେ ବାଞ୍ଛା ସାରି କନ୍ୟାକୁ ବେଗେ ଆଣି ।୧୮୩
ପିତାର କୋଳେ ଆଣି ବସାଇଲେ ଯୁବତୀ
ଯଥାବିଧି ପ୍ରୋହିତେ ଗୋତ୍ର ଉଚ୍ଚାରନ୍ତି ।୧୮୪
ଦେଶଂକାଳ ବାକ୍ୟ ସାରିଲେ ପୁରୋହିତେ
ଯେକଯୋଗ କରନ୍ତି ବର କନ୍ୟାଂକର ହାଥେ ।୧୮୫
ଯହୁଂ କୁଶ ବନ୍ଧନ କଲେକ ବେନି ହାଥ
ଶୂନ୍ୟେଣ ମିଳିଲେ କାଳ ବିକାଳ ଯମର ବେନି ଦୂତ ।୧୮୬
ଖାଣ୍ଡେବ ବନ ଦହନ୍ତେ ଯେ ଅର୍ଜୁନ ପାଇ କାଳଫାଶି
ସେ ଶର ଘେନି ଅର୍ଜୁନ ବିନ୍ଧିଲା ଆକ୍ରେଷି ।୧୮୭
କାଳଫାଶି ଶର ଯହୁଂ ବିନ୍ଧଇ ଅର୍ଜୁନ
କାଳ ବିକାଳ ବେନି ଦୂତଂକୁ କଲାକ ବନ୍ଧନ ।୧୮୮
ଭୟେ ପଳାଇଲେ ତହୁଂ ଚିତ୍ର ଯେ ଗୁପତେ
ଯାଇଣ କହିଲେ ଯମ ଦେବତା ଅଗ୍ରତେ ।୧୮୯
ସ୍ୱାମୀ ହରି ସାହୁ ଝିଅ ନାମ ତା'ର ସୁହାଣୀ
ପ୍ରଜାପତି ଘଟସୂତ୍ର ବିଭାକାଳେ ଗଲୁ ଆଣି ।୧୯୦
ସେ କନ୍ୟାକୁ ବିଭା ଯେ ହୋଇଲେ ଯୁଝେଷ୍ଟି
କାଳ ନିଶୋଧନ ଦେବ କଲାକ କିରଟୀ ।୧୯୧
କାଳଫାଶି ଘେନିଣ କାଳ ବିକାଳନ୍ତ ବାନ୍ଧି
ଦୂତ ଦେଖି ନାରାଜ ପୁରୋଇ ମନଭେଦି ।୧୯୨
ଶୁଣିଣ କୋପ ଯେ କଲାକ ଜନ୍ତୁ ନାଶକର
ମଇଂଷୀ ବାହନେ ଯେ ବିଜେ କାଳ ଦଣ୍ଡଧର ।୧୯୩
କରେଣ କାଳଦଣ୍ଡ ଫାଶ ଘେନିଣ ବେଗେ ଆସି
ଦିବ୍ୟ ଚକ୍ଷୁରେ ତାହା ଅର୍ଜୁନଂକୁ ଦିଶି ।୧୯୪
ବିରସ ହୋଇଲା ମନେ ସହଦେବ ମନ୍ତ୍ରୀ
ଦେଖିଣ ବିଚାରନ୍ତି ଧର୍ମରାୟେ ନୃପତି ।୧୯୫
କରପତ୍ର ଯୋଡ଼ିଣ ସହଦେବ ଯୁଝେଷ୍ଟିଂକି ବୋଇଲା
ବିଭା ଦେଖି ଯମ କାଳ ବିକାଳନ୍ତ ପେଷିଦିଲା ।୧୯୬
ଅର୍ଜୁନ ଠାକୁରେ ବନ୍ଧନ କଲେ କାଳି ବିକାଳଂକୁ
ଆପଣେ ବିଜେ କଲେ ନାଶକର କନ୍ୟା ପ୍ରାଣ ହରିବାକୁ ।୧୯୭
ଶୁଣିଣ ହରି ସାହୁ ଯେ ହୋଇଲା ତାଟକା
ଯୁଝେଷ୍ଟି ଦେବଂକ ମନେ ଲାଗିଲା ବଡ଼ ଶଂକା ।୧୯୮
ଧଉମ୍ୟ ପ୍ରୋହିତେ ଯେ ବ୍ୟାସଂକ ସହିତେ
ବିଧବା ଆତ୍ମା ପ୍ରାୟେ ହୋଇ ବିସରିଲେ ସମସ୍ତେ ।୧୯୯
ଅର୍ଜୁନ ବୋଇଲା ଦେବ ସୁଖେ ହୋଅ ବିଭା
ଯମର କଥାକୁ ଦେବ ଭୟ ନ କରିବା ।୨୦୦
ଅର୍ଜୁନର ବଚନେ ଯେ ଫିଟିଲା ମନ ଭ୍ରାନ୍ତି
ହୁଳହୁଳି ଶବଦ ଯେ ଶୁଭିଲା ଗଗନ ଗତି ।୨୦୧
ବଦୟନ୍ତି ଅଗସ୍ତ ଶୁଣ ବଇବସ୍ୱତ ମନୁ

ଯମଦେବତାଂକୁ ବିନୟେ ହୋଇଲେ ଫାଲଗୁନ୍ୟ ।୨୦୨
ସକଳ ଜୀବଜନ୍ତୁଂକର ତୁହି ସେ ବିହନ୍ତା ବିଧାତା
ତୋହୋର ଭୟେ ହରି ସାହୁ ଯୁଦ୍ଧେଷ୍ଟିଂକି ଦିଲାକ ଦୁହିତା।୨୦୩
ଦୋହିତା ଗୋଟିକି ଦେଇ ପଶଇ ଶରଣ
ତୁ ଯେବେ ଯୋହକଇଂ ନକର ହରଣ ।୨୦୪
ତୁହି ଦେବ ଜଗତ ଜନ୍ତୁ କର ନାଶ
ନିର୍ଭୟେ ପୁରୁଷ ସଂଜୀବନୀ ଭୁବନ ଯାହାର ବାସ ।୨୦୫
ତୁ ଦେବ ନାଶକର ମହା ଅନର୍ଗଳା
ପ୍ରଚଣ୍ଡ ଦୁର୍ଦ୍ଦଣ୍ଡ ତୋର କାଳ ଯେ ବିକାଳା ।୨୦୬
ତୁ ଦେବ ଅଯାଚେକ ଅଟୁ ବିଶ୍ୱମୂର୍ତ୍ତି
ତୁ ଦେବ କାଳାନଳ ଅଟୁ ଯେ ଅଶାନ୍ତି ।୨୦୭
ତାରଣ ପୁରୁଷ ତୁହି ଅଟୁ ହୋ ନିର୍ଦ୍ଦୟେ
ପୃଥ୍ୱୀ ଆପ ତେଜ ବାୟବ୍ୟ ଆକାଶ ନିର୍ଭୟେ ।୨୦୮
ସଦ ଅସଦ ତୁହି ଯେ ନାଶକର
ଅନନ୍ତ କୋଟି ବ୍ରହ୍ମାଣ୍ଡ ତୋହୋର ଉଦର ଭିତର ।୨୦୯
ଆତ୍ମାର ପ୍ରିୟବତୀ ହୋୟେ ଯାହାର କରାଳୀ
ପୁତ୍ର ନାମ ଯାହାର କରାଳ ବିକିରାଳୀ ।୨୧୦
ଛାୟାର ବଚନେ ଯାହାର ଚରଣେ ଗଳୁତକୁଷ୍ଟ ବ୍ୟାଧି
ପଣ୍ଡୁର ହରଣେ ଯେ ହୋଇଲା ସଂସିଦ୍ଧି ।୨୧୧
ଭୂତ ପ୍ରେତ ପିଚାଶ ଗଣରେ ଯାହାର ହୋୟେ ଠଣା
ବିହନ୍ତା ପୁରୁଷ ତୁ ପିତାମହର ଆପଣା ।୨୧୨
ବାମ ନୟନ ଯମ ଡାହାଣ ନୟନ ଅନଳ
ଅମରନାଥ ତୁହି ଶରଣ ଲୋକପାଳ ।୨୧୩
ସ୍ୱାମୀ ଅନଙ୍ଗ ସୁନ୍ଦର ପୁରୁଷ ତୁ କଳା ଗୋରା ଧବଳା ଶ୍ୟାମଳା
ନାନା ବର୍ଣ୍ଣ ରୂପ ତୁହି ସେ ମହାଖଳା ।୨୧୪
ମେଦ ମେଦା ମାହେଂସେ କର୍ଦ୍ଦନ ଯାର ପିଣ୍ଡ
ସର୍ବ ସଞ୍ଚିଲା ନାଥ ଅଭୟେ ମାରତଣ୍ଡ ।୨୧୫
ଯେକା ଶରୀର ତୋହୋର ସତ୍ୱ ରଜ ତମ
ସମସ୍ୱାମୀ ବ୍ରହ୍ମ ଯେକ ବର୍ଣ୍ଣ ଯମ ।୨୧୬
ମାତା ରଜ ପିତା ବୀର୍ଯ୍ୟ ଯେତେବେଳେ ମାତା ଗର୍ଭେ ରହୁ
ଅଢ଼ାଇପନ୍ତି ଅକ୍ଷର ଲେଖ କପାଳେଣ ଲିହୁ ।୨୧୭
ଜନ୍ମ କର୍ମ ଆଧାନ ଯେକା ବଇରାଶି
ଚଉରାଶି କୋଟି ଜୀବଜନ୍ତୁ ଯେକା କାଳଫାଶି ।୨୧୮
ଯେକା ଫାଶକେ ତୋର ବନ୍ଧନ ସମସ୍ତ
ଭାବଗ୍ରାହୀ ଜନ୍ତୁନାଥ କରନ୍ତା ଆତଯାତ ।୨୧୯
ସ୍ୱାମୀ କେଶ ଉର୍ଦ୍ଧ୍ୱ ବନ୍ଧନ ଘନ ଉର୍ଦ୍ଧ୍ୱଦନ୍ତ
ଉର୍ଦ୍ଧ୍ୱ ଚରଣେ ହୋୟେ ଉର୍ଦ୍ଧ୍ୱ ଯାର ରେତ ।୨୨୦
ପ୍ରଳୟ ଉଦ୍ଧାରେଣ କଶ୍ୟପର ଗୋତ୍ର
ଛାୟାର ନନ୍ଦନ ତୁ କାଳରୁଦ୍ର ମରୁତ ।୨୨୧
ଦିବିଭୁବି ପାତାଳ ତୋହୋରେ ହୁୟେ ସୀମା
ମୁଂ କେହ୍ନେ ବର୍ଣ୍ଣିବି ହାଦେ ତୋହୋର ମହିମାଂ ।୨୨୨
ଯେ ଯାହାର ପାପକର୍ମେ ନାଶଯାନ୍ତି ପ୍ରାଣୀ
ଅପଛାତି ପୁରୁଷ ତୋହୋର କଥାମାନ ଶୁଣି ।୨୨୩
ବ୍ୟାକୁଳ ଆକୁଳ ଯେ ହୋଇଲେ ତୋର ପିତା
ଅପାପୀ ଅକ୍ରୋଧୀ ତୁହି ବିହନ୍ତା ଦେବତା ।୨୨୪
ମୁହିଂ ଯାହା ସ୍ରଜିବି ତୁହି ସିନା ସାକ୍ଷୀ
ବିହନ୍ତା ତାରନ୍ତା ତୁହି ସିନା ନାଥ ଯେକୀ ।୨୨୫
ସ୍ୱାମୀ ମୁହିଂ ସେ ଯେ ଦ୍ୱାରପାଳ କପିଳା ସ୍ୱର୍ଗେ
ମାନେବ ଜନ୍ମ ମୁହିଂ ଶ୍ରୀରାମଂକ କିଞ୍ଚିତ ଅନୁରାଗେ ।୨୨୬
ଅଭୟେ ପିଙ୍ଗଳାକ୍ଷୀ ବଚନେ ମୁହିଂ ଅଛି
ଯେ ମୋହୋର କଥାକୁ ନାଥ ତୁହି ସେ ଅଟୁ ସାକ୍ଷୀ ।୨୨୭
ଗତ ଆଗତ ସଞ୍ଚିତ ନାଥ ମୁହିଂ ତୋହୋର ଅନୁରାଗୀ
ଭଣ୍ଡାର ଅଧିକାରପଣେ ମୋତେ ଆଗ୍ୟାଂଦିଲେ
ବାକ୍ୟଦେବୀ ।୨୨୮
ହରଣ ତାରଣ ନାଥ ତୁହି ସେ ଅଟୁ ଯେକା
ହତ ଗତ ପାଞ୍ଜିରୁ ମୋର ନାମ କିଳିପକା ।୨୨୯
କଳି ଧର୍ମ ଉଦିତ ବୋଲି ନ କର ମୋତେ କୋପ
ଆପଣେ କିଳିପକା ମୋର ଅଗ୍ୟାନ ବେଳ ପାପ ।୨୩୦
ପ୍ରସନ୍ନେ ଦୁରାନ୍ତେକ ଦେବକାର୍ଯ୍ୟେ ଦୁଖୀ
ତ୍ରିୟମ୍ବେକ ଲୋଚନ ଜଗତ ତୁହି ଦେଖି ।୨୩୧
ଗ୍ୟାନ ଅଗ୍ୟାନେ ମୋର ଯେତେକ ଥିଲା ପାପ
ନ କଲଇଂ ଗୋପ୍ୟାନ ମୁଂ ତୁମ୍ଭଂକୁ କହିଲି ସରୂପ ।୨୩୨
ମାନବ ଜନ୍ମ ମୁହିଂ ମାଗିବାକୁ ନୁହଇ କ୍ଷମ
ତବ ଦଣ୍ଡୁ ମୋତେ ଉଦ୍ଧରି ଧର ଦେବ ଯମ ।୨୩୩
ସଞ୍ଚିତ ମହାଭାରଥ ଯେ ବେଦମୟ ବାକ୍ୟେ
ମୁହିଂ କି ସଞ୍ଚିପି କହି ପାରିବାକୁ ଶକ୍ୟେ ।୨୩୪
ଶ୍ରବଣେ ଶୁଣଇ ମାତ୍ର ତୁହି ଅଣଉପ୍ରୋଧୀ
ତୋହୋର ଆଗ୍ୟାଂୟେ ମୋହୋରେ ପ୍ରାପତ ରଦ୍ଧି ସିଦ୍ଧି ।୨୩୫

ମାୟା ପଟଳ ସଂସାରେ ଯେ ନ ସରଇ କାଳ
କଳିକାଳ କୃତାନ୍ତେକ ଯେ ତୋର ଦ୍ୱାରପାଳ ।୨୩୬
ତୋର ଚରଣେ ଶରଣ ଆହେ ନାଶକର
ଶ୍ରୀକୃଷ୍ଣର ଦାସ ମୁଂ ଯେ ମୁନି ଅବତାର ।୨୩୭
ତୁଳସୀର ବଲ୍ଲଭ ମୋର ମାଳା ହୃଦଗତେ
ବଦୟନ୍ତି ଶୂଦ୍ରମୁନି ସାରୋଳ ଦାସ ଶରଣ ଯମ ଦଇବତେ।୨୩୮
ହେ ବୁଧଜନେ ଯମ ଦେବତାର ବଚନ ଶୁଣ
ନିତ୍ୟ ସାଧନ କଲେ ଯେକତ୍ୱ ପିଣ୍ଡ ପ୍ରାଣ ।୨୩୯
ଅନେକ ବିନୟେ ଯେ ହୋଇଲେ ଫାଲଗୁନି
ଯମ ଦେବତା ନ ଘେନିଲା ତାହାର ଦୟିନୀ ।୨୪୦
ମଇଂଷୀ ବାହାନୁଂ ଉତ୍ତୁରିଲା ନାଶକର
ଅଦୃଶ୍ୟେ ବିଜୟେ ଯାଇଂ ଛାୟା ମଣ୍ଡପର ।୨୪୧
ଅର୍ଜୁନ ବୋଇଲା ସ୍ୱାମୀ ଯେମନ୍ତ ନୁହଇ ମୁହିଂଟି ଦୋଷୀ
ରାଗେ ଧନୁର୍ଜୟେ ପେଷିଲା କାଳଫାଶୀ ।୨୪୨
କାଳଫାଶୀ ତୁଳେ ଶହସ୍ର ମନଭେଦୀ
ସହସ୍ରେ ପୁର କରି ଯମ ଦେବତାକୁ ପକାଇଲା ବାନ୍ଧି ।୨୪୩
ବଡ଼ ସୁମେରୁ ବୋଲି ଯେକଇ ପରବତ
ତହିଂ ବନ୍ଧନ କଲେ ନେଇ ଯମ ଦଇବତ ।୨୪୪
ବିଭାର ଉଚ୍ଛବ ତହିଂ ସାରିଲେ ଯୁଝେଷ୍ଟି
ଧର୍ମେ ଯେ ରହିଲେ ତହିଂ ନାମ ଧର୍ମ ପୁରଟି ।୨୪୫
ସୁହାଣୀକି ଦେଇ ଯେ ହରି ସାହୁ ବଶ୍ୟ
ସକୁଟୁମ୍ବଯାକ ଯେ ହୋଇଲେ ହରଷ ।୨୪୬
ଯମ ଦର୍ପ ଭାଙ୍ଗିଲା ଯେବଣ ରାଜଦେବ
ଯମଦଣ୍ଡ ଶାସ୍ତି ନାହିଂନା ମୋହୋର କୁଟୁମ୍ବ ।୨୪୭
ହରି ସାହୁ ଯୁଝେଷ୍ଟି ଦେବଂକୁ କରଇ ଯେ ପୁଚ୍ଛା
ଯମଦଣ୍ଡ କେମନ୍ତେ ହେଲା ରକ୍ଷା ।୨୪୮
ସହଦେବ ବୋଇଲା ହୋ ଶୁଣ ହରି ସାହୁ
ଯେଥେ ଯମ ଦେବତାର ଯେତେ ଦର୍ପ କାହୁଂ ।୨୪୯
ଯମ ଦେବତାର ଗଳୁତ କୋଷ୍ଟ ବ୍ୟାଧି ହୋଇଥିଲା ପାଦେ
ସେ ବ୍ୟାଧିରୁ ପାରଗଲା ଅର୍ଜୁନ ପରସାଦେ ।୨୫୦
ନିର୍ଦ୍ଦୟେ ନିପ୍ରୋହି ସେ ଅଟଇ ନାଶକର
ଗାଢ଼େଣ ପଶିଲା ଆସି ଯେ ତୋହୋର ପୁର ।୨୫୧
ତୋହୋର ଦୋହିତାର ପ୍ରାଣ ଆପଣେ ନିଅନ୍ତେ ବାନ୍ଧି
କୋପେଣ ଅର୍ଜୁନ ଯେ ତାହାକୁ କଲେ ବନ୍ଦୀ ।୨୫୨
ବନ୍ଧନ କରିଛି ସେ ସୁମେରୁ ପର୍ବତେ
ହରି ସାହୁ ବୋଇଲା ଯମ ଦେବତାଂକୁ ଦେଖାଇବା ସ୍ୱାମୀ ମୋତେ ।୨୫୩
ବିଭା ଯୋଗାଡ଼ମାନ ସାରିଲେ ଯୁଗତେ
ହରି ସାହୁକଇଂ ନେଲେ ଯମର ଅଗ୍ରତେ ।୨୫୪
ଅର୍ଜୁନ ସହଦେବ ଦେଖାଇଲେ ଯମଦେବତାନ୍ତ ହରିସାହୁକୁ
ସ୍ୱାମୀ ବନ୍ଧନ ଫେଡ଼ିବା ଯେ ଯମଦେବତାଂକୁ ।୨୫୫
ଅର୍ଜୁନ ବୋଇଲେ ତୁମ୍ଭେ ଆମ୍ଭ ଶ୍ୱଶୁରନ୍ତ
ତୁମ୍ଭର ବୋଲେ ଫେଡ଼ିବା ଯେ ଯମଦେବତାନ୍ତ ।୨୫୬
ଅର୍ଜୁନ ବୋଇଲେ ଯମ ଦେବତାଂକୁ
ହରି ସାହୁ ବୋଲେ ଛାଡ଼ିଲି ତୁମ୍ଭଂକୁ ।୨୫୭
ଯେତେ ଦିନ ପରିଯନ୍ତେ ଆମ୍ଭେ ଥିବୁଟି ଯେଥ
ଯେ ଭୁବନକୁ ତୁମ୍ଭର ନ ପଶିବଟି ଦୂତ ।୨୫୮
ଯମ ଦେବତା ବୋଇଲା ଯେ ମୋର ସତ୍ୟସତ୍ୟ
ମୃତୁ ମଣ୍ଡଳେ ଯେ ନଗ୍ର ନାମ ଅମରାବତୀ ।୨୫୯
ଶୁଣ ଆହେ ବୁଧଜନେ ମୁ ଯାହା କହିଲି
ତେଣୁ ସେ ଅମରାବତୀ ନାମ ଧର୍ମପୁର ବୋଲି ।୨୬୦
ବନ୍ଧନୁ ମୁକତ ଯେ ହୋଇଲେ ନାଶକର
ହରି ସାହୁକୁ ବୋଇଲେ ମାଗ ମୋତେ ବର ।୨୬୧
ହରି ସାହୁ ବୋଇଲା ମୋହୋର ଯେ ବଶ୍ୟ ଜାତି
ତୋହୋର ଯମଦଣ୍ଡେ କେହି ନ ପାଇବେ ଶାସ୍ତି ।୨୬୨
ହରି ସାହୁ ବୋଇଲା ଶତେ ଅଷ୍ଟଉତ୍ତର ଆୟୁଷ
ଯେତେକ ପୁରିଲେ ଯେ ଆମ୍ଭେ ଯିବୁଂ କପିଳାସ ।୨୬୩
ଯମହିଂ ବୋଇଲେ ମୁହିଂ ସତ୍ୟକଲି ଯେବେ
ଯେ କଥା ଆଉ ଅନ୍ୟଥା ନୋହିବାକ ତେବେ ।୨୬୪
ତୋହୋର ଜାତିକି ତିଆରି ଥାଅ ଯେ ସବୁନ୍ତି
ସ୍ୱ ଜାତିରେ ଆଉ କେହି ନୋହିବେ ଅନୀତି ।୨୬୫
ବଣିକେ ସ୍ୱରୂପ କରି କହିବାନା କଥା
ଲାଭ ଲାଇ କହିବ ସେ ନ କହିବ ମିଥ୍ୟା ।୨୬୬
ଗଣ୍ଡାକରେ କଡ଼ାଯେ ଲାଭ ବୋଡ଼ିକରେ ଗଣ୍ଡାଯେ
ପଣକରେ ବୋଡ଼ିଯେ କାହାଣକରେ ପଦିକାଯେ ।୨୬୭
ଚାରିପାଦେ କିଣିବ ବିକିବ ପାଞ୍ଚ ପାଦେ
ପୁଣ୍ୟ ମାର୍ଗେ ଥିବ ନ ପଶିବ ଅପ୍ରମାଦେ ।୨୬୮
ଯଦି ବୋଇଲ ଯେ ମୋହୋର ସ୍ୱରୂପ

ଯେତେକ କରିବୁ ଯେହୁ ତହିଁ ନାହିଁ ପାପ ।୧୨୬୯
ଯମ ବୋଇଲା ଯେ ମୃତ୍ୟୁ ମଣ୍ଡଳେ ଦେଶ ମରହଟ୍ଟ
ସେ ନଗ୍ର ଭିତରେ ବସଇ ମହା ମହା ହାଟ ।୧୨୭୦
ଯେଳକଇ ତପୋଧନଂକ ନାମ ସୁଜାଣେଶ୍ୱର ଯତି
ସର୍ବଦା ସଂସ୍ଥାରେ ସେ ଅଟଇ ସତ୍ୟବ୍ରତୀ ।୧୨୭୧
କନ୍ଥା କଉପୁନୀ ତୁଳସୀ ରୁଦ୍ରାକ୍ଷର ମାଳ
ଅଂଶା ଲେପନ ଯେ ଜଟା କମଣ୍ଡଳ ।୧୨୭୨
ଶବର ତହୁଂ ମାଂସ ଘେନି ବିକଇ ହାଟରେ
ପାଞ୍ଚକଡ଼ା ମାଗଇ ମାଯେଂସ ପଣକରେ ।୧୨୭୩
ସବୁଦିନେ ବାଣିଜ୍ୟ ବ୍ରତ ହେତୁ କଲା
ମାଯେଂସ ବଣିକୁଂ ସେ ଆନ ନ ଶିଖିଲା ।୧୨୭୪
କାହାଣକରେ ପଣେ ଦେବଇ ବଣିଜ
ସତ କହି ଚାରି କାହାଣରେ ଚାରିପଣ ଅରଜ ।୧୨୭୫
ଭାରିଜା ପୁତ୍ର ଗୋଟିଯେ ଆପଣେ ତିନି ପ୍ରାଣୀ
ସତ୍ୟହୁଂ ମିଥ୍ୟା କେହି ନ କହନ୍ତି ବାଣୀ ।୧୨୭୬
ସମଯେକ ପ୍ରାଣତ୍ୟାଜ ସୁଜାଣେଶ୍ୱର ଯତି
ନକ୍ଷତ୍ର ହୋଇ ବସିଲା କାର୍ତ୍ତିକ ପୂର୍ଣ୍ଣ କତି ।୧୨୭୭
ତୋହୋର ଲୋକନ୍ତ ସମସ୍ତ ତିଆରିବୁ
ପର ଦାରା କଥାକୁ ପଣିତ ନ ଦେବୁ ।୧୨୭୮
ଅନ୍ୟ ଜାତି ସ୍ତିରୀଂକ ତୁମ୍ଭେ ନ ଛୁଇଂବ ଅଂଗ
ଆପଣା ଜାତିରେ ସେ ହୋଇବ ସତସଂଗ ।୧୨୭୯
ପ୍ରାତ ଆହାର୍ଣ୍ଣିକ ସାରିବ ତିନିକାଳ
ଅବସର ଥିଲେ ପଶିବ ଦେବଆଳ ।୧୨୮୦
ବିଷ୍ଣୁଂକୁ ଉପାସନା କରିବ ନିତ୍ୟ ଯେ ବିଧାନେ
ଶାହାସ୍ର ସଂଗତେ ଯେ ବସିବ ମଧାହ୍ନେ ।୧୨୮୧
ହତ୍ୟା ବିବାଦ ବଧ ନ ଯିବାକ ଦେଖି
ବେନିଜନ କଳହେଣ ନୋହିବାକ ସାକ୍ଷୀ ।୧୨୮୨
ବହୁତ ଲାଭ ଦେଖି ନ ଯିବାକ ବିଦେଶେ
ଷାଠିଯେ ବରଷ ହେଲେ ଯିବ ତୀର୍ଥବାସେ ।୧୨୮୩
ଆହୋ ସୁଗ୍ୟଂଜନେ ଶୁଣ ଶାହସ୍ର ବିଧାନେ
ମୁଂ ଯେହା କହିଛି ସିଦ୍ଧ ସାରୋଳା ପ୍ରସନ୍ନେ ।୧୨୮୪
ବ୍ରାହ୍ମଣ ପାପ କଲେ କରିବାକ ଯାଗ
କ୍ଷତ୍ରୀ ପାପକଲେ ପଶିବ ରଣଯାଗ ।୧୨୮୫
ଶୂଦ୍ର ପାପ କଲେ ଉପୁଜାଇ କୃଷି
ବଶ୍ୟ ପାପ କଲେ ମୁକତ ବାଟ ନ ଦିଶି ।୧୨୮୬
ଯାହା ସେ ଯମ ଦେବତା କହିଲେ ସରୂପ
ଆପଣାର ନିଜ କର୍ମେ ଥିଲେ ନ ଲାଗଇ ପାପ ।୧୨୮୭
ମୁହିଂ ମୂର୍ଖ ଯେହା ନିର୍ଭାଇଇଲି ଭଲେ
କବି ସାରୋଳ ଦାସ ଏହା ଅଭ୍ୟାସଗତେ କହିଲେ ।୧୨୮୮

**

## ୧୧୭. ସୁହାଣୀ କନ୍ୟା ଶିଖରେଶ୍ୱର ଶିବ ସେବାରେ ନିଯୁକ୍ତ, ପାଣ୍ଡବଙ୍କର ତୀର୍ଥ ଯାତ୍ରା ଓ ଅସ୍ତ୍ରଶସ୍ତ୍ରାଦି ତ୍ୟାଗ,

ଶୁଣ ହୋ ବଇବସୁତ ମନୁ ବଦୟନ୍ତି ଅଗସ୍ତି
ପାଣ୍ଡବେ ରହିଲେ ଯେ ନଗ୍ର ଅମରାବତୀ ।୧
ସୁହାଣୀ କନ୍ୟାକଇଂ ବିଭା ହୋଇଲେ ଧର୍ମସୁତେ
ରହିଲେ ପାଣ୍ଡବେ ପଞ୍ଚତିରିଶ ବର୍ଷ ପରିଯନ୍ତେ ।୨
ଯୁଝେଷ୍ଟି ବୋଲନ୍ତି ଶୁଣ ଅରଜୁନ
ତୀର୍ଥ ସେବି ଯିବା ଯେଥେ କିସ ପ୍ରୟୋଜନ ।୩
ଲୋମଶଂକୁ ରାଇ ବୋଲନ୍ତି ଧର୍ମସୁତ
ଯେ ଭ୍ରଥଖଣ୍ଡ ମଧ୍ୟେ ଅଛି କେବଣ ଗୁପତ ତୀର୍ଥ ।୪
ଲୋମଶ ବୋଇଲେ ତୁମ୍ଭେ ଆମ୍ଭର ତୁଲେ ଆସ
ଓଡ୍ରରାଷ୍ଟ୍ର ମଧ୍ୟେ ଅଛି ଭୁବନ କପିଳାସ ।୫
ସାତ ପର୍ବତ ତଳେ ଅଛଇ ଧବଳାଙ୍ଗୀ
ଉର୍ଦ୍ଧ୍ୱରେତା ହୋଇ ବହଇ ସଉଭାଗୀ ।୬
ଗନ୍ଧର୍ବ ନୃପତିର ନାମ ବିଶ୍ୱାବସୁ
ତାହାର ଭାରିଜାର ନାମ ଅଟେ ପ୍ରସୂ ।୭
କାଳ କାମ ସମ ସୋମ ଆଧାନ ପ୍ରିୟ ନିଦା ସାତପୁତ୍ର
ନିଶାରେ କଟୁଆଳ ଯେ ରଖନ୍ତି ବନସ୍ତ ।୮
ଅପକ୍ଷରୀଂକର ତୁଲେ ହୋଇଲେ ପୀରତି
ଧନ ଦେଇ ତାଂକୁ ତ୍ରିପୁତି କରି ନୁଆରନ୍ତି ।୯
ସ୍ତ୍ରୀ ଆକ୍ଷ୍ୟ ଧନ ଦେଇ ପୋଷଇ ଯେହୁ ବେଶ୍ୟା
ଗୋତ୍ରେ ଅବରଣି ସେ ଜାତିରେ ଅମନିକ୍ଷ୍ୟା ।୧୦
କୋବେର ଭଣ୍ଡାରୁ ଯେ ଧନ ଚଉର୍ଯ୍ୟ କଲେ
ଅମୂଲ୍ୟ ରତ୍ନମାନ ବେଶ୍ୟାନ୍ତ ନେଇ ଦିଲେ ।୧୧
ଯେସନେକ ବୃତ୍ତାନ୍ତ ଜାଣିଣ ଧନେଶ୍ୱର
ସାତକଇଂ କଲା ନେଇ ସଦାଶିବଂକ ଆଗର ।୧୨

ଅନୀତି ଦେଖି କୋପକଲେ ଦେବରାୟେ
ଯାଅରେ ସାତଂକର ପାଷାଣ ହୋଉ କାୟେ ।୧୩

ସଦାଶିବ ସ୍ୱାମୀଂକି ସାତେହେଂ କରେ ସେବା
ଭୋ ସ୍ୱାମୀ ବିଶ୍ୱନାଥ ଆମ୍ଭନ୍ତ ତବ ଭୁବନ ଦେବା ।୧୪

ଶଂକର ବଦୟନ୍ତି ଇଚ୍ଛିଲେ ଯେବେ ଯେହା
ମୋହୋର କପିଳ ସେ ତୁମ୍ଭେରେ ପାବଚ୍ଛ ହୋଇଥାଆ ।୧୫

ମୋତେ ଦ୍ରଶନ କରି ଆସିବେ ଯେତେ ନର
ସବୁରି-ପାଦରଜ ପଡୁ ତୁମ୍ଭର ଉପର ।୧୬

ଲୋମଶ କହିଲେ ଶୁଣ ହୋ ଯୁଢେଷ୍ଟି
ବିଶ୍ୱାବସୁଂକର ପୁତ୍ର ଯେ ପର୍ବତ ସାତଗୋଟି ।୧୭

ଯେ ପର୍ବତ ସାତଗୋଟି ଉପୁଚି ଉଠିଆସି
ଦେଖ ଯାଇ କପିଳାସେ ଶିଖରେଶ୍ୱର ବସି ।୧୮

କୁମ୍ଭମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥି
ଶତଭିଷା ନକ୍ଷତ୍ର ଶଉରିବାର ରାତି ।୧୯

ଭୀମକଇଂ କହିଲେ ତୁ ତଣ୍ଡୁଳ ଗୁଡ଼ାଏ ଆଣ
ସହସ୍ର ମାଣ ତଣ୍ଡୁଳ ପଚ୍ଚନ କର ଅନ୍ନ ।୨୦

ରାତ୍ରକ ବଞ୍ଚିବା ଆମ୍ଭେ ଭୁଞ୍ଜି ଶତପଳ ପଞ୍ଚାମୃତେ
ଧର୍ମପୁର ନଗ୍ରେ ଭୀମା ମିଳିଲା ତୁରିତେ ।୨୧

କାଟିଣ ଧାନମାନ ଥୋଇଛନ୍ତି ଖଳା
ଭାରେକ ତହୁଂଣ ଆଣିଲାକ ଅମଳା ।୨୨

ବନସ୍ତ ଭିତରେ ଯାଇ ଭୀମସେନ ବୁଲି
ସାତଗୋଟି ବ୍ରାଘ ତହିଂ କଲାକ ଯେକପଲ୍ଲି ।୨୩

ତାହାନ୍ତ ଘେନିଣ ସେ ମଳିଲାକ ଧାନ
ବାଛିଣ ପାଳଧାନ ଘେନଇ ଭୀମସେନ ।୨୪

ପଥରେ ପକାଇଣ କରେ ମୁଥ ମାରି
ସହସ୍ରେ ମାଣ ଚାଉଳ ଘେନିଲା ସମ୍ପାଦି କରି ।୨୫

ଆପଣେ ରାନ୍ଧଣା ତାହା କଲାକ ଅତି ବେଗେ
ନେଇଣ କୁଢ଼ାଇଲା ଭାତ ଶିଖରେଶ୍ୱର ଆଗେ ।୨୬

ଯୁଢେଷ୍ଟି ଦେବଙ୍କ ପଛ କନିଆ ସୋହାଣୀ
ସେ ପର୍ବତ ତଳେ ତାକୁ ଗୁହାଇଲେ ଆଣି ।୨୭

ବୋଇଲେ ଯେହି ପର୍ବତରେ ଥାଇ ତୁ ଈଶ୍ୱରଂକୁ କର ସେବା
ବାହୁଡ଼ା ବେଳେ ତୋତେ ବାହୁଡ଼ାଇ ନେବା ।୨୮

ସୋମବଂଶ ମଧ୍ୟେ ଗୋ କନିଆ ନାୟେକାଣୀ
ତହୁଂ ସେ ନାୟେକାଣୀ ପଦହିଂ ନିର୍ବାଣି ।୨୯

କଳିଯୁଗ ବାନ୍ଧିଥିଲେ ଯେବଣ ପର୍ବତରେ
କଳିକଲା ଗଡ଼ ସେହୁ ବନସ୍ତ ଭିତରେ ।୩୦

ତହୁଂଣ ପାଣ୍ଡବେ ଯେ ଗଲେ ଦକ୍ଷିଣ ମୂରତି
ଚିତ୍ରଉତପଳା ନଦୀ ପାରି ହୋଇଣ ଯାଆନ୍ତି ।୩୧

ଚିତ୍ରଉତପଳା ତୀରେ ଉପ୍ରଳେଶ୍ୱର ପୁଜି
ଅମରେଶ୍ୱର ଦ୍ରଶନେ ଅନେକ ତୋଷ ଭଜି ।୩୨

ପ୍ରବେଶ ହୋଇଲେ ଯାଇ ଯେକାମ୍ରର ତୀର୍ଥେ
ବିନ୍ଦୁ ସାଗରେ ସ୍ନାନ କରି ଦେଖିଲେ ବିଶ୍ୱନାଥେ ।୩୩

ଯେକାମ୍ରେଶ୍ୱର ଦେବତାଂକୁ ତହିଂ କଲେ ପୂଜା
ପଞ୍ଚଲିଙ୍ଗ ଥାପିଲେ ଧର୍ମଂକର ତନୁଜ ।୩୪

ତହିଂରୁ ଚଳିଯାନ୍ତେ ଅଗ୍ନିକୋଣ ମୁଖି
ପରାଚୀ ନଦୀକୁଳେ ଯାଇ ପ୍ରବେଶ ହୁଅନ୍ତି ।୩୫

ଲୋମଶ କହିଲେ ଯେ ଗୋପ୍ୟା ନ ତୀର୍ଥ ପ୍ରାଚୀ
ସତ୍ୟଯୁଗେ ସ୍ନାହାନ ଯେଣେ କରୁଥିଲେ ଶଚୀ ।୩୬

ଅମର ସ୍ୱର୍ଗ ଭୁବନୁଂ ଆସନ୍ତି ଓହ୍ଲାଇ
ଯେ ନଦୀରେ ସ୍ନାହନ କରି ଅଷ୍ଟଶମ୍ଭୁ ଦାହି ।୩୭

ଅସୁର ଭୟେ ବୋଲି ଇନ୍ଦ୍ର ଦେବନ୍ତା ଦିଲେ ଦୀକ୍ଷା
ଅଶି ସହସ୍ର ଗନ୍ଧର୍ବ କରନ୍ତି ତହିଂ ରକ୍ଷା ।୩୮

ଯୁଢେଷ୍ଟି ଦେବ ବୋଇଲେ ଶୁଣିମା ଲୋମଶ୍ୟେ
ସତ୍ୟଯୁଗେ ଥିଲେ ଯେଥେ କେବଣ ରାକ୍ଷସେ ।୩୯

ଲୋମଶେ କହିଲେ ଶୁଣିମା ଦେବରାଜ
ରକ୍ଷ ଭକ୍ଷ ବୋଲି ଥିଲେ ଯେଥେ ବେନି ଯେ ଦନୁଜ ।୪୦

ରକ୍ଷ ଭକ୍ଷଂକର ପୁତ୍ର ହେତି ଯେ ପ୍ରହେତି
ବଜ୍ରାଙ୍ଗ କାଳାନଳ ଯେ ତାଂକର ସନ୍ତତି ।୪୧

ବଜ୍ରାଙ୍ଗର ନନ୍ଦନ ମାଳୀ ଯେ ସୁମାଳୀ ମାଲ୍ୟବନ୍ତ
କେତୁମାଳୀ ବୋଲିକରି ମାଲ୍ୟବନ୍ତର ପୁତ୍ର ।୪୨

କେତୁମାଳୀର ପୁତ୍ର ହୋଇଲା ଅଶୁଂମାଳୀ
ଯେହାଂକର ପୁତ୍ର ହୋୟେ କାଳୀ ଯେ ଗୋପାଳୀ ।୪୩

ସେ ଗୋପାଳୀର ନନ୍ଦନ ଯେ ଉଦୟେ ଭାନୁବନ୍ତ
ଭାନୁବନ୍ତ ଦତ୍ୟର ହୋଇଲା ତିନି ପୁତ୍ର ।୪୪

କୀର୍ତ୍ତନ କୀର୍ତ୍ତିବାସ ଆରଡ଼େକ ତିନି
ଯେକାମ୍ରର ବନେ ରହିଲେ କୀର୍ତ୍ତନ କୀର୍ତ୍ତିବାସ ବେନି ।୪୫

ଆରଡ଼େକ ରହିଲା ପ୍ରାଚୀକୂଳ ମାଡ଼ି
ମୃତିକା ପର୍ବତକୁ ସେ ନ ଗଲାକ ଛାଡ଼ି ।୪୬

ଗୁପତ ହୋଇଣ ସେ ବନେଣ ଥାଇ ଟାକି
ସ୍ନାହାନ କରି ଅଇଲେ ହରିନେବ ଶଚୀକି ।୧୪୭
ନାରଦ କହିଲେ ଇନ୍ଦ୍ରକଇଂ ମଣ୍ଟେଣ ନଯାଉ ଶଚୀ
ଆରଡ଼େକ ଦଇତ ଯେ ଜଗିଅଛି ପ୍ରାଚୀ ।୧୪୮
ଯୁଝେଷ୍ଟି ବୋଇଲେ ହୋ ଚାଲ କରିବା ତୀର୍ଥ
ଦେଖିଲେ ମାରିବା ଆମ୍ଭେ ଆରଡ଼େକ ଦଇତ ।୧୪୯
ଲୋମଶନ୍ତ ଘେନି ତୀର୍ଥ କଲେ ପଞ୍ଚୁଭ୍ରାଥ
ତହୁଂ ସେ ହୋଇଲା ପାଣ୍ଡବ ନାମେ ତୀର୍ଥ ।୧୫୦
ପ୍ରାଚୀନଦୀ ତୀର୍ଥେ ପାଣ୍ଡବେ ପ୍ରବେଶ ହୋଇଲେ
ପାଣ୍ଡବେ ପଞ୍ଚ ତୀର୍ଥ ତହୁଂ ସେ ବୋଇଲେ ।୧୫୧
ନଦୀରେ ପଶି ସ୍ନାହାନ କରନ୍ତେ ଦେବ ଧର୍ମେ
ଦେଖିଲେ କୃଷ୍ଣବର୍ଣ୍ଣ ମାଧବ ପ୍ରତିମେ ।୧୫୨
ଶଙ୍ଖ ଚକ୍ର ଗଦା ଯେ ଶୋହଇ ପଦ୍ମହସ୍ତ
ଯୁଝେଷ୍ଟି କୋଳକରି ଧଇଲେ ମାଧବ ଦେବତାନ୍ତ ।୧୫୩
ପାଣ୍ଡବ ଘାଟରେ ଯେ ଥୋଇଲେ ତାଂକୁ ଆଣି
ପ୍ରତକ୍ଷେ ନାରାୟଣ ବୋଲି ଶୁଭିଲା ଆକାଶର ବାଣୀ ।୧୫୪
ଉଚ୍ଚବାଚ ଶୁଣି ଆରେଡ଼କ ଦଇତ
ଧାମଇ ଦୁରାନ୍ତେକ କୋଠାର ବେନି ହାଥ ।୧୫୫
ଭୀମସେନ ବୋଇଲା ତୁମ୍ଭେ ମାଧବେ କର ପୂଜା
ମୁହିଂ ଚୂର କରିବି ଆରେଡ଼କ ଦନୁଜା ।୧୫୬
ନିଞ୍ଜନ ବଳ ଦେଖି ଅସୁର କଲାକ କଟାଳ
ଗଦାବର ବୁଲାଇଲା ପାଣ୍ଡବ ମହାବଳ ।୧୫୭
ଆରେଡ଼କ ପିଟିଲା ଯେ ବେନି କୋଠାର ଘେନି
ଭୀମସେନ ବାମଅଙ୍ଗେ ପଡ଼ି ଉଠିଲା ବହନି ।୧୫୮
ପୁଣିହିଂ ଭୀମସେନ ପିଟିଲା ବେନି ଗଦା
ଅଙ୍ଗରେ ପଡ଼ି ଭାଜିଲା ରହିଲାକ ଅଧା ।୧୫୯
ଖଣ୍ଡିତ ଗଦା ପକାଇ ବ୍ରିକୋଦର
ଅସୁରକୁ ଧଇଲା ସେ ମାଲବନ୍ଧ ସମର ।୧୬୦
ଧରାଧରି କୋଡ଼ାକୋଡ଼ି ଗଡ଼ାଗଡ଼ି ଯାନ୍ତି
ନଖ ଦନ୍ତ ଘାତେଣ ଶ୍ୱରୀର ବିଦାରନ୍ତି ।୧୬୧
ତିନିକୋଶ ଓସାର ଯେ ବନସ୍ତ ଚୂର ଗଲା
ମୃତ୍ତିକା ଗିରି ଶିଖରେ ଭୀମକଇଂ ଆରଡ଼େକ ମାଡ଼ିବସିଲା ।୧୬୨
ବଜ୍ରମୁଥ ପ୍ରହାର କଲାକ ଦତ୍ୟ ତମେ
ବହଇ ଶ୍ରୋଣିତ ଯେ ଗଳଇ ରୋମେ ରୋମେ ।୧୬୩

କୋପେଣ ଦଇତ ଯେ ଗର୍ଜଇ ମହାଘୋର
ଧାତିକାରେ ବସିଲା ପୁଣ ଭୀମସେନର ଉପର ।୧୬୪
କୀରଣ୍ଡ ବୋଲି ଯହୁଂ ବୋଇଲାକ ପାବେନି
ଛାଡ଼ିଲା ଡାକ ଆରଡ଼େକ ବିନ୍ଧାଣ କର୍ମ ଘେନି ।୧୬୫
ଦୁଜ ଯୁଦ୍ଧକୁ ଭୀମ ଅଟଇ ବଳବନ୍ତା
ଶତସିଂଘ ପ୍ରାକର୍ମେ ତ୍ରଇଲୋକ୍ୟ ଯାକ ଜିତା ।୧୬୬
ଆରଡ଼େକ ଧରି ତଳେ ପାଡ଼ିଲା ମାରୁତି
ମନ୍ଦର ଗିରି ଜାଣି ମାଡ଼ିବସିଲା ନିଭ୍ରାନ୍ତି ।୧୬୭
ଚଳ ପ୍ରଚଳ ହୋଇ ଯେ ଦଇତ ନୁଆରିଲା
ବିନ୍ଧାଣେ ହାରିଲି ବୋଲି କିରଣ୍ଡ ବୋଇଲା ।୧୬୮
ଭୀମସେନ ବୋଇଲା ଦଇତ ହୋଇଲୁକି ବାଇ
ଯେକୋ ଜଣକହିଂ କିରଣ୍ଡ ବୋଲି ପାଇ ।୧୬୯
ଗଦା ନାହିଂ ଯେଣୁ ମାରଇ ବଜ୍ର ମୁଥ
ଅଗ୍ନି ବୃଷ୍ଟି ହୋଇଲା ଦାନବର ଗାତ୍ର ।୧୭୦
ବେନି ପାଦ ଧରି ଭୀମ ବୁଲାଇଲା ଅନ୍ତରୀକ୍ଷେ
ପର୍ବତ ଉପରେ ନେଇ ପିଟିଲା ପ୍ରତକ୍ଷେ ।୧୭୧
ଅଣତଳ ଉସର୍ଗ ଯେ ମୃତ୍ତିକା ନାମେ ଗିରି
ଅସୁରକଇଂ ପିଟନ୍ତେ ସେ ହୋଇଲାକ ଚୂରି ।୧୭୨
ଆକାଶବାଣୀ ଶୁଭିଲା ନ ମରଇ ଦଇତ
ତୁହୋ ବ୍ରିକୋଦର ମାଡ଼ି ବସିଥାଅ ଯେଥ ।୧୭୩
ବ୍ରିକୋଦର ନ ଦେଖି ଧାମନ୍ତି ତିନି ଭାଇ
ଦେଖିଲେ ବ୍ରିକୋଦର ମାଡ଼ିବସିଛି ଦଇତକଇଂ ।୧୭୪
ଆକାଶର ବାଣୀ ସେ ଦିଲେ ଦେବରାଜା
ଆହୋ ଯୁଝେଷ୍ଟି ତୁ ମାଧବ ଘେନି ଯା ଯା ।୧୭୫
ପ୍ରାଚୀନଦୀ ତୀରେ ମୃତ୍ତିକା ଗିରି ଶିଖର
ଆରେଡ଼କ ଦତ୍ୟକୁ ମାଡ଼ି ବସିଛି ବ୍ରିକୋଦର ।୧୭୬
ଯେ ମାଧବ ପ୍ରତିମା ତହିଂ ଉପରେ ବିଜେକର
ତେବେ ସେ ଦାନବ ଯେ ହୋଇବ ଅପହାର ।୧୭୭
ଚାରି ଯୁଗକଇଂ ତୋହର କଥା ରହୁ
ଯୁଝେଷ୍ଟି ମାଧବ ବୋଲି ଯେହାର ନାମ ହେଉ ।୧୭୮
ବ୍ରହ୍ମାଂକ ବଚନ ଶୁଣି ଯୁଝେଷ୍ଟି ରାଜଦେବ
ଶିରେଣ ବସାଇଲେ ଯୁଝେଷ୍ଟି ମାଧବ ।୧୭୯
ମୃତ୍ତିକ ଶିଖରେ ଆରଡ଼େକ ଉତ୍ତାନଶାୟୀ
ଶିରେଣ ମାଧବ ବିଜେ ଜଗତ୍ର କଲେ ତ୍ରାହି ।୧୮୦

ଯୁଝେଷ୍ଟି ଦେବ ବିଜେ ମାଧବ ପାଦତଳେ
ତୁ ଦେବ ମହାଶମ୍ଭୁ ଅଟୁ ସର୍ବକାଳେ ।୮୧
ବାଳ ବୃଦ୍ଧ ତରୁଣ ପ୍ରତକ୍ଷେ ତିନି ରୂପ
ସନ୍ଦେଶ ଗାରେଡ଼ି ଦେବ ବିଷହରଣ ଦର୍ପ ।୮୨
ହେ ପଣ୍ଡିତ ଜନେ ହାଦେ ମୁଂ ନୁହଇ ଗ୍ୟାଂତା
ବିଦୁଜନ ମୁଖେ ନ ଶୁଣିଲି ଶାହାସ୍ର ସଂଘିତା ।୮୩
ସେ ପାଣ୍ଡବ ଘାଟେ ସ୍ରାହାନ ସାରିଣ ଯୁଝେଷ୍ଟି
ସେ ମୃତ୍ତିକା ଗିରି ଉପରେ ଯାଇ ଉଠି ।୮୪
ସେ ପର୍ବତେ ଉଠିଣ ମାଧବ ଦ୍ରଶନେ
ବାଳ ବୃଦ୍ଧ ତରୁଣ ରୂପ ଦେଖୁ ଯେକ ଦିନେ ।୮୫
ଜନ୍ମଯାକେ ଆଉ ନ ଲାଗଇ ପାପ
ହରଇ ସର୍ବଦୋଷ ନାଶ କରଇ ତାପ ।୮୬
କିସ କରିବ ହୋ ନାନା ତୀର୍ଥ ଗବନେ
ଧର୍ମ ଅର୍ଥ କାମ ମୋକ୍ଷ ଯୁଝେଷ୍ଟି ମାଧବ ଦ୍ରଶନେ ।୮୭
ମାଧବ ସୁମର ନରେ ରୋଗ ବ୍ୟାଧି ନ ପୀଡୁ
ମାଧବ ସୁମର ନରେ କାଳଦଣ୍ଡ ନ ପଡୁ ।୮୮
ମାଧବ ସୁମର ନରେ ହରୁ ସର୍ବ ପାପ
ମାଧବ ସୁମର ନରେ ସିଦ୍ଧ ହୋଉ ଜପ ।୮୯
ମାଧବ ସୁମର ନରେ ପ୍ରାପତ ହୋଉ ସିଦ୍ଧି
ମାଧବ ସୁମର ନରେ ପ୍ରସାର ହୋଉ ବୁଦ୍ଧି ।୯୦
ମାଧବ ସୁମର ନରେ କାଳ କଳଂକ ନ ପଡୁ
ମାଧବ ସୁମର ନରେ ହତ୍ୟାହିଂ ନ ପୀଡୁ ।୯୧
ମାଧବ ସୁମର ନରେ ଅଇଶ୍ୱର୍ଯ୍ୟ ଭୁଞ୍ଜ
ମାଧବ ସୁମର ନରେ ସିଦ୍ଧ ହୋଉ ସର୍ବ କାର୍ଯ୍ୟ ।୯୨
ମାଧବ ସୁମର ନରେ ବଦ୍ଧ ବନ୍ଧନ ଫିଟୁ
ମାଧବ ସୁମର ନରେ ଆୟୁଷ ନ ତୁଟୁ ।୯୩
ମାଧବ ସୁମର ନରେ ଧନ ସନ୍ତାନ ହୋଉ
ମାଧବ ସୁମର ନରେ ଦୁଖ ଅପାଦ କ୍ଷୟ ଯାଉ ।୯୪
ଅନନ୍ତ କୋଟି ମହିମାଂ ଯେବଣ ଯୁଝେଷ୍ଟି ମାଧବ
ପଞ୍ଚୁଭୂତେ ଲୟକରି ମାଧବ ଚରଣେ ସେବ ।୯୫
ବାଳବୃଦ୍ଧ ତରୁଣ ତିନିମୂର୍ତ୍ତି ଦେଖି
ପରଲୋକ ବାନ୍ଧବ ସହି ଅଟଇ ସାକ୍ଷୀ ।୯୬
ପ୍ରତକ୍ଷେ ନାରାୟଣ ସନ୍ଦେଶ ଗାରେଡ଼ି
ପ୍ରସନ୍ନେ ଅବତାର ଯେ ବଳି ଦର୍ପ ମାଡ଼ି ।୯୭

ଶ୍ୱେତ ପୀତ କୁଂକୁମ ଅଟଇ ତିନିରୂପ
କଳିକାଳ ଜାଣି ସ୍ୱାମୀ ହୋୟେ ଯେବଣ ସରୂପ ।୯୮
ଅସଂଖ୍ୟ ମହିମାଂ ଯାର ନ ସରଇ କହନ୍ତେ
ମୁହିଂ କିସ ଅନ୍ତ କରିବି ଲେଖନ୍ତେ ।୯୯
ଅପଣ୍ଡିତ ଲୋକ କିସ ମୋର ବୁଦ୍ଧି
ଯୁଝେଷ୍ଟି ମାଧବ ଚରଣେ ସୟଳ ଜନ ବନ୍ଦି ।୧୦୦
ମନ ବଚନ କର୍ଣ୍ଣବ୍ୟେ ନ ପଶୁ ମୋର ଆନ
ସର୍ଜ୍ଜନ ଶୂଦ୍ରମୁନି ସାରୋଳା ଦାସ ଧ୍ୟାନ ।୧୦୧
ଶ୍ରୀ ମହାଭାରତ ଯେ ମୁନି ଅଂଶ ବାକ୍ୟେ
ଯେହା ମୁଂ ଘଟଣ କରଇ ଯେହ୍ନେ ମୋର ଶକ୍ୟେ ।୧୦୨
ଯୁଝେଷ୍ଟି ମାଧବ ଚରଣାରବିନ୍ଦେ
ବଦୟନ୍ତି ଶୂଦ୍ରମୁନି ସାରୋଳା ଦାସ ତୁଳୁସାର ବଲ୍ଲଭ
ମମହୃଦେ ।୧୦୩

ଚତ୍ରୋପ୍ୱଳା ପାର ହୋଇ ଉତ୍ତର ମୂରତି
ବଇତରଣୀ ନଦୀତୀରେ ରହିଲେ ପଞ୍ଚୁରାତି ।୧୦୪
ତହିଁରୁ ପାଣ୍ଡବେ ହୋଇଲେ ପଶ୍ଚିମ ମୂରତି
ଫଲୁକି ଦ୍ରଶନ କଲେ ଯାଇଣ ସେ ଧାତି ।୧୦୫
ରାମଗୟା ତୀର୍ଥେ ଯାଇଂ ରହିଲେ ପାଞ୍ଚଦିନ
ସାରିଲେ ସଂକଳ୍ପ ଶ୍ରାଦ୍ଧ ପିତୃକାର୍ଯ୍ୟମାନ ।୧୦୬
ଯଥାବିଧି କରି ତହିଂ ବାଲିପିଣ୍ଡ ଦିଲେ
ଶ୍ରୀଗଦାଧରଂକ ପ୍ରସନ୍ନେ ପିତୃକାର୍ଯ୍ୟ କଲେ ।୧୦୭
ଗୟାରେ ଶ୍ରାଦ୍ଧକଲେ ଯେ କୁଟୁମ୍ବ ବନ୍ଧୁମାନେ
ପିତୃ ସୁହୃଦ କଲେ ଦେବଗଣ ଆପ୍ୟାନେ ।୧୦୮
ତହୁଂଣ ପାଣ୍ଡବେ ଯେ ବିଜୟେ କରି ଆସି
ମଣିକା ତୀର୍ଥେ ପ୍ରବେଶ ବାଣରାସୀ ।୧୦୯
ମଣି ହଜାଇ ଯାହା ଖୋଜିଲେ ସୁଢ଼ଳ
ତହିଂ ସେ ଛାଡିଲେ ଶିବ କରୁ ବ୍ରହ୍ମ କପାଳ ।୧୧୦
ସେ ତୀର୍ଥ ସ୍ରାହାନ ସାରି ଦେଖିଲେ ବିଶ୍ୱନାଥ
କାଶୀପୁର ନଗ୍ରେ ଧର୍ମେ ରହିଲେ ଦିନା ସାତ ।୧୧୧
ସେଠାରୁ ଯାନ୍ତି ମକର ପ୍ରତିପଦା ଦିନ
ସେ ଦିନ ପୁଷ୍ୟା ନକ୍ଷତ୍ର ଥିଲା ବିଦ୍ୟମାନ ।୧୧୨
ବାୟିବ୍ୟ ନାମେ କରଣ ବିତପାତ ଯୋଗ
ମକର ସଂକ୍ରାନ୍ତିକି ସତର ଦିନ ଭୋଗ ।୧୧୩

ପାଣ୍ଡବେ ଯାଇଂ ବିଜେକଲେ କାଶୀପୁର
ମକର ମାସେ ଦ୍ରୋପଦୀ ଅଛନ୍ତି ସଙ୍ଗତର ।୧୧୪
ବ୍ୟାସ ମାରକଣ୍ଡ ଯେ ପ୍ରବେଶ ହେଲେ ଆସି
ଦେଖିଣ ଧର୍ମ ନନ୍ଦନ ଚରଣ ସମ୍ଭାଷି ।୧୧୫
ମାରକଣ୍ଡ ବୋଇଲେ ଯୁଝେଷ୍ଠି ପଞ୍ଚୁରାଜ୍ୟ ତେଜି ଆସି
ତପୋଧନ ଲୋକେ ସେ ଆସନ୍ତି ବାରଣାସୀ ।୧୧୬
ଶୁଣିଣ ଯୁଝେଷ୍ଠି ଦେବ ଦିଅନ୍ତି ପ୍ରତିବାଚ
ପଞ୍ଚୁ କଟକ ରାଜ୍ୟେ କରଇ ପରୀକ୍ଷ ।୧୧୭
ଆମ୍ଭେ ଯେ ଅନେକ ସୋଦରନ୍ତ ବଧ କଲୁ
ହତ୍ୟା ବିମୋଚନ ଅର୍ଥେ ତୀର୍ଥେ କରି ଅଇଲୁ ।୧୧୮
ମାରକଣ୍ଡେ ବୋଇଲେ ଯେବେ ହୋଇଲ ତୀର୍ଥବାସୀ
ମାରକଣ୍ଡେ ବୋଇଲେ କିସ ଧର୍ମ ଆସି ।୧୧୯
ଯେହୁ ପଞ୍ଚଧନୁ ଦଶଦ୍ରୋଣ ଦେବଂକ ଭଣ୍ଡାର
ଭାରା ନିବାରଣେ ସିନା ତୁମ୍ଭର ହାଥର ।୧୨୦
ତୀର୍ଥବାସେ ବାନପ୍ରସ୍ଥେ ହୋଇବ ଅଶକତ
ଅସୁରେ ହରିନେବେମ ତୁମ୍ଭର ତହୁଂ ଦେବ ଶହସ୍ରନ୍ତ ।୧୨୧
ବ୍ରହ୍ମା ପେଷିଲେ ଯେ ଦୃଭାସ୍ୟା ମହାଋଷି
ଯେ ଶହସ୍ରମାନଂକୁ କପିଳାସ ନିଅସି ।୧୨୨
ଦୁର୍ଭାସ୍ୟା କହିଲେ ଆସି ଯୁଝେଷ୍ଠିଂକ ଅଗ୍ରତେଣ
ଯେ ଧନୁ କ୍ରୋଣେ ଦିଅ ଆମ୍ଭେ ନେମୁ କପିଳାସ ଭୁବନ ।୧୨୩
ଶୁଣିଣ ଯୁଝେଷ୍ଠି ଦେବ କଲେକି ସନମତ
ଚାରିଧନୁ ଅଷ୍ଟଦ୍ରୋଣ ଦିଲେ ଦୁଭାସ୍ୟାଂକ ହାଥ ।୧୨୪
ଅର୍ଜୁନ ନ ଦିଲା ଯେ ଗାଣ୍ଡିମ ନାମେ ଧନୁ
ମୁଂ ଯେହାନ୍ତ ଛାଡିତ ନୁଆରଇ ଧର୍ମତନୁ ।୧୨୫
ଆତ୍ମାହୁଂ ଅଧିକ ଯେ ଅଟଇ ମୋହାର ସେନେହା
ପ୍ରାଣ ଥିବାଯାଏ ଛାଡି ନୁଆରଇ ଯେହା ।୧୨୬
ଚାରିଧନୁ ଅଷ୍ଟଦ୍ରୋଣ ଦୃଭାସ୍ୟାଯେ ନେଲେ
କୁବେର ଭଣ୍ଡାରେ ଯେ ନେଇଣ ଥୋଇଲେ ।୧୧୭
ଅଗ୍ନି ଦେବତାଯେ ବ୍ରାହ୍ମଣେକ ହୋଇ
ପାଣ୍ଡବଂକ ସନ୍ନିଧେ ପ୍ରବେଶ ହେଲେଯାଇଂ ।୧୧୮
ପ୍ରତିଗ୍ରହ କରିଣ ସେ ମାଗିଲେଗାଣ୍ଡିମ
ତୋହୋର କରେ ଥିଲେ ନାଶଯିବଟି ଧର୍ମ ।୧୧୯
ଯୁଝେଷ୍ଠି ଦେବ ବୋଇଲେ ଆମ୍ଭେ ଯିବା ବାନପ୍ରଶସ୍ତେ
ଯେ ଧନୁ ଶହସ୍ର ରଖିବାର ନୁହଂଇ ଯୁଗତେ ।୧୨୦
ଯେ ଧନୁ ଶସ୍ତ୍ରକୁ ଯେବେ ତୋର ଇଚ୍ଛା
ବାହୁଡ଼ିଯାଅ ବାବୁ ଯହିଂ ଅଛଇ ପରୀକ୍ଷ ବଚ୍ଛା ।୧୨୧
ଅର୍ଜୁନ ବୋଇଲେ ସ୍ୱାମୀ ନ ଦେଖିଲେ ଯେତେ
କୃଷ୍ଣଗଲେ ଅର୍ଜୁନ ବତିବ କେମନ୍ତେ ।୧୨୨
ସ୍ୱାମୀ ଅଗ୍ନି ଦେବତାଯେ ଯେହା ହାଦେ ଦେଇଛନ୍ତି ମୁକୁ
ତାହାଂକ ବିତ୍ରକେ ଯେହା ନ ଦିଅଇ ଆନକୁ ।୧୨୩
ବ୍ରାହ୍ମଣ ବୋଇଲେ ତୁ ଦିଅ ମୋ ହାଥେ
ଅଗ୍ନି ଦେବତାଯେ ତୋଷ ହୋଇବେଯୁଗତେ ।୧୨୪
ଅର୍ଜୁନ ବୋଇଲା ଯେବେ ନୟନେ ନ ଦେଖଇ
ଯେ ଧନୁ ଦ୍ରୋଣ ମୁଂ କେସନେକେ ଉପେକ୍ଷଇ ।୧୨୫
ବଦୟନ୍ତି ଦ୍ୱିଜବର ଆମ୍ଭେ ସେ ବଶ୍ୟାନର ଅଗ୍ନି
ଦେଖାଅ ତୋହୋର ନିଜ ରୂପ ବୋଇଲା ଫାଲଗୁନି ।୧୨୬
ତତକ୍ଷଣି ବହନି ବିକାଶିଲେ ରେଖା
ପଞ୍ଚସ୍ତରୀ ତାଳ ହୋଇଲା ଲାଗିଲାକ ଶିଖା ।୧୨୭
ଦେଖିଣ ଅର୍ଜୁନ ଯେ ଅନେକ ବିନୟେ
ବେନି ଲୋଚନରୁ ଅନେକ ଅଶ୍ରୁ ଜଳ ବହେ ।୧୨୮
ଗାଣ୍ଡିମ ଧନୁ ଦ୍ରୋଣ ପକାଇଲା ଅନଳେ
ଘେନିଣ ଗଗନ ଗତି ଗଲେ ବଶ୍ୟାନରେ ।୧୨୯
ଅନ୍ତରୀକ୍ଷେ ଥାଇଣ ଯେ ବୋଇଲେ ବହନି
ତୁ ଯେଥକୁ ବିକୃତ ନ ପାଅ ଫାଲଗୁନି ।୧୩୦
ଭାରା ନିବାରଣେ ପୁଣ ହୋଇବ ତୁ ଜାତ
ତୋହୋର ହାଥେ ଦେବା ଯେ ଧନୁ ଶହସ୍ରନ୍ତ ।୧୩୧
ଯେତେ କହି ତହୁଂ ଗଲେକ ବହତି
ଶୁଣିଣ ଅର୍ଜୁନ ଯେ ହୋଇଲା ତ୍ରିପୁତି ।୧୩୨
ମାରକଣ୍ଡ ବୋଇଲେ ଶୁଣ ହୋ ଧର୍ମରାୟେ
ଯେହୁ ବାଣରାସୀ ତୀର୍ଥ ପାପ କର କ୍ଷୟେ ।୧୩୩

**

## ୧୧୮. ହିମବନ୍ତ ପର୍ବତେ ଦ୍ରୌପଦୀ, ସହଦେବ, ନକୁଳ, ଅର୍ଜୁନ ଓ ଭୀମଙ୍କର ତନୁତ୍ୟାଗ ଯୁଧିଷ୍ଠିରଙ୍କର ସଶରୀରେ ସ୍ୱର୍ଗ ଗମନ

ଯେଥୁ ଅନନ୍ତରେ ଯେ ବିଳଂକ ଦେଶ ରାଜା
ଅଗସ୍ତି ମହର୍ଷିଂକ ଚରଣେ କଲେ ପୂଜା ।୧

ବସନ କୁଣ୍ଡଳ ନବରତ୍ନମାଳା ପୁଷ୍ପ ଚନ୍ଦନ ଦେଇ
ଶତେ ସହସ୍ର ଦଣ୍ଡ ପ୍ରଣମିତ ହୋଇ ।୨
ମୁନିଯେ ଶୁଣିମା ଯୁଝେଷ୍ଠି ସ୍ୱର୍ଗ ଆରୋହଣ କଥା
କେବଣ ପ୍ରକାରେ ହୋଇ ଜଣେ ଜଣେ ମଲେ ପଞ୍ଚୁ ମହାରଥୀ ।୩
ଯେହା ମୋତେ ସଞ୍ଚପି କହିବା ମହାମୁନ୍ୟ
ତବ ମୁଖୁଂ ଶୁଣି ପାପ ମୋହୋର ହୋଇବ ଦହନ ।୪
ହିଙ୍ଗୁଳା ପରୀକ୍ଷ ବୋଲି ବୋଇଲେ ବିଶ୍ୱାମିତ୍ରେ
କର୍ଣ୍ଣ ମହରଷି ଅଛନ୍ତି କର୍ଣ୍ଣକୂଟ ପରବତେ ।୫
ଗଙ୍ଗା ଯମୁନା ସରସ୍ୱତୀ ତିନିଧାର
ତିନିହେଂ ପଶୁଛନ୍ତି ସେ ଋଷିଂକ ଗର୍ଭର ।୬
ଦୁଇ କର୍ଣ୍ଣରେ ଦୁଇଧାର କଣ୍ଠରେ ସରସ୍ୱତୀ
ଡାହାଣ ଜାନୁ ପୁଂରି ବାହାର ତିନି ମୂର୍ତ୍ତି ।୭
ତପକରି ସତ୍ୟଯୁଗେ ଆଣିଲେ ଗଙ୍ଗା ଭଗୀରଥି
କର୍ଣ୍ଣ ଋଷି ଗଣ୍ଡୁଷ କଲେ ଗଙ୍ଗା ଯମୁନା ସରସ୍ୱତୀ ।୮
ସେ ଗର୍ଭୁଂ ବହିଣ ଅଛଇ ସତ୍ୟଯୁଗେ
ସହଦେବ କହିଲେ ଯୁଝେଷ୍ଠି ଦେବ ଆଗେ ।୯
ତହିଂକି ହେମବନ୍ତ ବିଶାଶଯେ ଯୋଜନ
ମହାହିମ ତହିଂ ଯେ ପଡ଼ଇ ଅବିଛିନ୍ନ ।୧୦
ଘୋଳ ମନ୍ଥନେ ଯେହ୍ନେ ବାହାର ହୋଅଇ ଫେନ
ସେହିମତି ପ୍ରାଯେ ମେଦିନୀ ଉତପନ୍ନ ।୧୧
ଚାଲନ୍ତେ ଚରଣ ମିଳାଇ ହାଡ଼ ମାଯେଂସ
ଦ୍ରୋପତୀ ବୋଲନ୍ତି ଦେବ ଯେଣେ କାର୍ଯ୍ୟ କିସ ।୧୨
ଯୁଝେଷ୍ଠି ବୋଲନ୍ତି ଦେବୀ ଗୋ ଯିବା ହିମବନ୍ତେ
ତହିଂକି ନିକଟ ସ୍ୱର୍ଗ ଦେଖିବ ଦଇବତେ ।୧୩
ଆମ୍ଭର ପଞ୍ଚଭୂତ ଆତ୍ମାହିଂ ଭଗବାନ
ସେ ଯେବେ ତେଜ୍ୟାକରି ଗଲେ ଯେ ଭୁବନ ।୧୪
ଆମ୍ଭର ଜୀବନେ ଆଉ କିସ ପିରୋଜନ
ଅଥବା ଯେଥେ ଥିଲେ ଅର୍ଜିବା ପାପମାନ ।୧୫
ପବନହୁଂ ବେଗେ ସେ ଚଳନ୍ତି ଯୁଝେଷ୍ଠି
ହେମବନ୍ତ ପର୍ବତ ଉପରେ ବେଗେ ଉଠି ।୧୬
ସୁମରନ୍ତି ଭଗବାନ ବିଷ୍ଣୁ ଯେ ଦେବତା
ତୁହି ସେ କାରଣ ନାଥ ବିହନ୍ତା ଉଦ୍ଧାରନ୍ତା ।୧୭
କ୍ଷୁଧାରେ ଦ୍ରୋପତୀ ପର୍ବତକୁ ନୁଆରିଲେ ଉଠି
ଦ୍ରୋପତୀ ବୋଲନ୍ତି ଦେବ ଶୁଣିମା ଯୁଝେଷ୍ଠି ।୧୮
କ୍ଷୁଧା ତୃଷା କଲା ମୋତେ ନୁଆରଇ ଯାଇ
ଆଜକ ରହିବା ଯେଥି ସ୍ୱାମୀ କାଲି ଯିବା ପଥ ବାହି ।୧୯
ଯୁଝେଷ୍ଠି ବୋଇଲେ ଅନ୍ନେ କାର୍ଯ୍ୟ କିସ
ପୁଣ୍ୟ ଭୁବନ ଯେଥି କରିବା ଉପବାସ ।୨୦
ପ୍ରାଣ ଯେବେ ଆମ୍ଭେ ଯେ ତୀର୍ଥେ କରିବାନା ତ୍ୟାଗ
ଆବର ଶରୀରକୁ କିସ ଦେବା ଭୋଗ ।୨୧
ଆସ ଗୋ ଦ୍ରୋପତୀ ତୁମ୍ଭେ ଅନ୍ନକୁ ନକର ଆଶ
ପର୍ବତ ଉପରେ କରିବା ଅନେକ ଫଳମୂଳ ଗ୍ରାସ ।୨୨
ଆସ ବୋଲି ରାଯେ ଦ୍ରୋପତୀଂକି ଗଲେ ଛାଡ଼ି
ପାଦ ଢଳି ଦ୍ରୋପତୀ ପଡ଼ିଲେ ମୁହଂ ମାଡ଼ି ।୨୩
ସ୍ୱାମୀ ରଖ ରଖ ବୋଲି ଢଳି ପଡ଼ିଲେକ ସତୀ
କୋଳକରି ତୋଳି ବେଗେ ଧଇଲା ମାରୁତି ।୨୪
ଭୀମସେନ ହାକ ଦିଅଇ ରାଯେ ବାହୁଡ଼ିଣ ଆସ
ପ୍ରାଣର ଭାବିନୀ ତୁମ୍ଭର ହେଉଛି ବିନାଶ ।୨୫
ଯୁଝେଷ୍ଠି ବୋଇଲେ ହୋ ଦ୍ରୋପତୀକି ଛାଡ଼ିଆସ ଭୀମ
ଯେ ଯାହାର ଗତିରେ ନିର୍ଜିତ କଲା କର୍ମ ।୨୭
ଆସ ଆସ ଭୀମ ଛାଡ଼ ତାକୁ କୋଳ
ମାଯା ମୋହ ବନ୍ଧନ ଯେ ନୋହଇ ଯେତେବେଳ ।୨୮
କେ କାହାର ସୋଦରେ କେ କାହାର ଭାରିଜା
କେ କାହାର ପୁତ୍ର ବନ୍ଧୁ କେ କାହାର ଆତ୍ମଜା ।୨୯
ଶୁଣିଣ ଭୀମସେନ ବୋଲଇ ଦୁଃଖ ମନେ
ଯେଡ଼େକ ନିପ୍ରୋହି କିମ୍ପେ ହୋଇଲୁ ରାଜନେ ।୩୦
ମହା ଭୃତ୍ୟପଣେ ଯେ ତୋତେ କଲାକ ସେବା
ନିକଳଂକ ନିର୍ଦ୍ଦୋଷୀ ଯେହାକୁ କେମନ୍ତେ ଛାଡ଼ିଯିବା ।୩୧
କୋଟିଯେ ଋଷିନ୍ତ ଘେନି ବ୍ୟାସ ମହାମୁନି
ମହା ଅନଳୁଂ ଜାତ କଲେ ଜିଗ୍ନସେନୀ ।୩୨
ସ୍ୱାମୀ ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମନ ଅଟନ୍ତି ଯାର ଭ୍ରାଥ
ଅନେକ ସମ୍ଭରେ ଯେହାକୁ ଆମ୍ଭନ୍ତ ଦିଲେଟି ଦ୍ରୋପତ ।୩୩
ଯେକା ସ୍ତିରୀଯେ ହୋଇ ସହିଲା ପାଞ୍ଚ କରି ଆର୍ଦ୍ଧୋଳି
ଯେହାକୁ ଛାଡ଼ିଯିବାକୁ ତୁମ୍ଭର ସତ କେହେନେକ ବଳି ।୩୪
ସ୍ୱାମୀ ଚାମରୀକି ନିନ୍ଦଇଟି ଯାହାର ଯେ କେଶ
ଲୁବୁଧେ ମଧୁକରେ ଯେ ନ ଛାଡ଼ନ୍ତି ଯାର ପାଶ ।୩୫
କୁସୁମ ନ ଗଛଇ ମଥାକୁ ହୋଯେ ଭାରି
ଅଳଂକାର ନ ବହଇ ଶରୀରକୁ ଭାରା ପାଇବ ବୋଲି ।୩୬

ଭ୍ରୂଲତା ଶୋଭାବନ ଜାଣି ମଦନର ଚାପ
ଦେଖିଲେ ମନ ତ୍ରାସ କରଇ କନ୍ଦର୍ପ ।୩୭
ସ୍ୱାମୀ ନୀଳେନ୍ଦୀ ଦଳ ଜାଣି ଦିଶଇ ଯାର ଆକ୍ଷି
ମୁନିଗଣେ ଧ୍ୟାନ ଛାଡ଼ିବେ ଯାହାର ରୂପ ଦେଖି ।୩୮
ତାମ୍ବୁଳ ବିହୁନେ ଯେ ଅଧର ପଂକୁବିମ୍ବୁ
ନାସାଫୁଲ ତିଳ ଜାଣି ମାଣିକ୍ୟ ଦନ୍ତ ସବୁ ।୩୯
କମ୍ବୁ ଜିଣିକରି ସ୍ୱାମୀ କଣ୍ଠ ଯାହର ଶୋଭା
ବାହୁ ବେନି ମୃଣାଳ କି କଣୟର ପ୍ରଭା ।୪୦
ସୁବର୍ଣ୍ଣ କୁମ୍ଭ ଜାଣି ଯାହର କୁଚ ଯୁଗଳ
ସିଂହ ମଝା ଜାଣି ଯାର ହୃଦୟ ବୃଶାଳ ।୪୧
ଉଲଟ କଦଳୀ ଜାଣି ଦିଶଇ ବେନିଜାନୁ
ଶରତ ଚନ୍ଦ୍ର ଜାଣି ଯାହାର ଦିଶେ ତନୁ ।୪୨
ଚମ୍ପା କଢ଼ି ଜାଣିଣ ଯାହାର ଅଙ୍ଗୁଷ୍ଠି
କୁନ୍ଦ ପାଖୁଡ଼ା ଜାଣି ଦଶଳହ ଉକୁଟି ।୪୩
ସ୍ୱାମୀ ଚାଲନ୍ତେଣ ଶୋଭା ଯେ ମତ୍ତଗଜ ଠାଣି
ବଚନ ସୁଲଳିତ ଯେ ଅଣ୍ଡିର କୋକିଳ ଜାଣି ।୪୪
ସ୍ୱାମୀ ଯେତେକ ଲକ୍ଷଣ ଜାଣି ଅଗ୍ନିରୁ ହେଲେ ଜାତ
କେମନ୍ତେ ଛାଡ଼ିବାକୁ ବଳଇ ତୁମ୍ଭର ସତ ।୪୫
ସୋମବଂଶକୁ ଯେ ଶତେଗୁଣେ ଗରୁହଂସୀ
ଆବର ଭୋ ଦେବ ଯେ ତୁମ୍ଭର ପାଟବଂଶୀ ।୪୬
ସ୍ୱାମୀ ପ୍ରିୟବନ୍ତୀ ପୁତ୍ରବନ୍ତୀ ରାଜାର ନନ୍ଦିନୀ
ଅନେକ ଯାଗ ଯଗ୍ୟଂ କଲ ଯେହାନ୍ତ ଘେନି ।୪୭
ସ୍ୱାମୀ ପ୍ରିୟବତୀ ଭାର୍ଯ୍ୟାକୁ ଯେଡ଼େକ ନିର୍ଦ୍ଦୟା
ଧର୍ମରାଜାପଣ କେଣେ ଗଲା ପାଷାଣ କଲ ହିୟା ।୪୮
ଆମ୍ଭନ୍ତ ତେଜ୍ୟାକରି ଯିବଟି କାହିଂକି
ପ୍ରିୟବତୀ ତେଜ୍ୟାକଲେ ଧର୍ମ ରହେ ଟିକି ? ।୪୯
ଯୁଧେଷ୍ଠି ବୋଇଲେ କହିଲୁ ନିଜ ଗୁଣ
ଅବଶ୍ୟ ଯେହାର ଅଛଇ ଅବିଗୁଣ ।୫୦
ଯେହାର ଛାର ପାଇଂ ଭାଇରେ ଯେତେ ତୋର ଶୋକ
ଯେହା ଛାର ପାପୀରେ ଅଟଇ ଘୋର ନର୍କ ।୫୧
ପର ଉପୁଗାରୀ ହୋଇଯେ ସର୍ବଦା ଯାର ଚିତ୍ତ
ତାହାକୁ ଜାଣିମା ସିନା ପରମ ପଣ୍ଡିତ ।୫୨
ଛାଡ଼ିଆସ ଭୀମରେ ଦ୍ରୋପଦୀ ବଡ଼ ପାପୀ
ଯେହା ଛାର ପାପକର୍ମ ଶୁଣରେ ଅଦ୍ୟାପି ।୫୩

ମଧ ଭୁବନରେ ଯେହୁ କରିନାହିଂ ଧର୍ମ
ଯେଥେ ସେ ଜାଣିମାନା କାହାର କେତେ ପୁଣ୍ୟ ।୫୪
ଯେ ଯାହାର ପୁଣ୍ୟ ଘେନି ଯାଇ ସିନା ସ୍ୱର୍ଗ
ଆରେ ଭୀମସେନ ଛାଡ଼ ଦ୍ରୋପଦୀକୁ ମାର୍ଗ ।୫୫
ଶୋକ କଲେ କାୟା ତୁହି ହାରିବୁ ନ ଜାଣି
ଛାଡ଼ରେ ଭୀମସେନ ଧର୍ମ ନ କର ହାନି ।୫୬
କେ ଯେଥେ ଅମର ହୋଇ ରହିବରେ ଭାଇ
ପୁଣ୍ୟ କରିଥିଲେ ଯେଥେ ଦୁଖନ୍ତ ନ ପାଇ ।୫୭
ପାପରେ ନର୍କ ଯାଇ ପୁଣ୍ୟରେ ସ୍ୱର୍ଗପଥ
ଯେଥେ ଜାଣିମାନା ବନବାସ କେମନ୍ତ ।୫୮
ଭୀମସେନ ବୋଇଲା ତୁମ୍ଭେତ ସର୍ବ ଜାଣ
କିସ ପାତକ ଯେହାର କୁହ ହେ ଧର୍ମରାଣ ।୫୯
ଯୁଧେଷ୍ଠି ବୋଇଲେ ହୋ ଯେହାର ପାପଭାର
ଯେ ମହାପାପୀ ପୁଣ ଶୁଣରେ ବ୍ରିକୋଦର ।୬୦
ଯେତ ସହକେ ପଞ୍ଚୁ ପାଣ୍ଡବଙ୍କ ନାରୀ
ଅଭୟଂକରୀ ହୋଇ ଯେହି ଅଟଇ ଦୁଷ୍ଟାଚାରୀ ।୬୧
ସଦୟେ ସେନେହେ ଯେ ନ କରଇ ତୁମ୍ଭର
ଆବର ମଧମଟି ଯେ କରଇ ମୋହୋର ।୬୨
ଯେ ଛାରକୁ ତୋର ଯେଡ଼େକ ମୁହାଂସ
ଆମ୍ଭର ବିଚାରେ ଯେହାକୁ ଧର୍ମ କିସ ।୬୩
ଯେଣୁ ସେ ଯେହାକୁ ହୋଏ ମୃତ୍ୟୁ ପରାପତ
ପୁଣ୍ୟ ଥିଲେ ଯାଆନ୍ତାନା ଆମ୍ଭର ସଙ୍ଗତ ।୬୪
ଯେତେ ବୋଲି ଯୁଧେଷ୍ଠି ଯାଆନ୍ତି ଆଗସରି
ଦେଖୁଂ ଦେଖୁଂ ଦ୍ରୋପଦୀ ସେଠାରେ ପ୍ରାଣହାରି ।୬୫
ଯୁଧେଷ୍ଠି ବୋଇଲେ ସେ ଦ୍ରୋପଦୀ ବଡ଼ ଦୋଷୀ
ସୋଦରପଣରେ କଉରବନ୍ତ ଅମରିଷି ।୬୬
ପଞ୍ଚଦଶ ବରଷ କେଶ ବନ୍ଧନ ନ କଲା
ଅନେଶ୍ୱତ ଭାଇନ୍ତ ବଧକରି କେଶତ ବାନ୍ଧିଲା ।୬୭
ବାବୁ ଦ୍ରୋପଦୀ ଯୋଗୁଂ ହେଲା ଯେତେକ ଅନର୍ଥ
ଯେହାରେ ନାଶଗଲେ କୁଟୁମ୍ବ ସମସ୍ତ ।୬୮
ତାହା ଶୁଣି ଭୀମସେନ ପକାଇଣ ଆସି
ସ୍ୱାମୀ ତୋହୋର ବିଚାରେ ତ ସମସ୍ତ ହେଲୁଂ ଦୋଷୀ ।୬୯
ଯେମନ୍ତେ କହିଣ ସେ ଚଳନ୍ତି ବେଗେଂ
କେତେଦେହେଂକ ଦୂରେ ଯାଇ ପଡ଼ିଲେ ସହଦେବେ ।୭୦

ଭୀମସେନ କୋଳ କରି ଧଇଲାକ ତାହା
ସ୍ୱାମୀ ବିଶ୍ରାମ କର କ୍ଷଣେ ପାଣ୍ଡବ ନରନାହା ।୭୧
ମନ୍ତ୍ରୀ ଚୂଡ଼ାମଣି ସହଦେବ ଅଶକତ
କେମନ୍ତ କରିବା ଯେବେ କହିବା ନିରୁତାନ୍ତ ।୭୨
ସ୍ୱାମୀ ଯାହାର ବୁଦ୍ଧିବଳେ ଜିଣିଲୁ ସର୍ବ ପୃଥୀ
ଗୁଣବନ୍ତ ଶ୍ରୀବନ୍ତ ମହାମନ୍ତ୍ରୀ ଆଗତ କହନ୍ତି ।୭୩
ଯୁଝେଷ୍ଠି ବୋଇଲେ ଛାଡ଼ିଆସ ସହଦେବକୁ
ତା ପୁଣ୍ୟବଳେ ଅଇଲା ସେ ଯେତେକ ଦୂରକୁ ।୭୪
ଭୀମସେନ ବୋଲେ ସୋହୋଦ୍ର ଛାଡ଼ିଲୁ କେମନ୍ତେ
ସହଦେବ ପ୍ରାୟେ ମନ୍ତ୍ରୀ ତୁ ମୂର୍ଚ୍ଛିଗଲୁ ଯେଥେ ।୭୫
ଯୁଝେଷ୍ଠି ବୋଇଲେ ସହଦେବ ବଡ଼ ଦୋଷୀ
ଜାଣୁ ଜାଣୁ ନ କହଇ ମଉନେ ଥାଇ ବସି ।୭୬
ଯେହାର ମରନ୍ତେ ଭୀମ ନାହିଂ କିଛି ବ୍ୟଥା
ଛାଡ଼ିଆସ ଭୀମରେ ନ କହ ତାକୁ କଥା ।୭୭
ସହଦେବକୁ ଭୀମ ଛାଡ଼ିଲା ଯେମନ୍ତେ
ଚାଲନ୍ତି ଚାରି ବୀରେ ପବନୁ ଆପାତେ ।୭୮
ଧର୍ମର ନନ୍ଦନ ଯେ ଆଗେ ଯାନ୍ତି ଛାଡ଼ି
ହିମବନ୍ତ ପର୍ବତେ ଉଠନ୍ତି ଆଗ ବଢ଼ି ।୭୯
ଚଳନ୍ତି ତିନିବୀରେ ଦୁଖ ଅପ୍ରମିତ
ହିମ ଲାଗି କମ୍ପମାନ ହେଉଅଛି ଗାତ୍ର ।୮୦
ଚଳନ୍ତେ ଚରଣ କି ପଡୁଅଛି ଛିଡ଼ି
ନକୁଳ ଝୁଣ୍ଟି କରି ଗଳଗାଜି ପଡ଼ି ।୮୧
ଆରେ ଆରେ ନକୁଳ ବୋଲି ଭୀମ କୋଳ କରି
ସ୍ୱାମୀ ନକୁଳ ଯେ ତୋହୋର ପ୍ରାଣ ଅପହାରି ।୮୨
ସ୍ୱାମୀ କୁନ୍ତ ମୁନରେ ଯେ ଧଇଲା ବସୁନ୍ଧରା
ଛତ୍ର ଆକାର କରି ଧଇଲା ମହାଭାରା ।୮୩
ସ୍ୱାମୀ ! ଆକାଶେ ଯେହାକୁ ଯେ ସଞ୍ଚିତ ଥିଲା ପାଟ
ଦକ୍ଷିଣ ଦିଗ ରାଜାନ୍ତ ଜିଣିଲା ମୁରାଟ ।୮୪
ଅତିୟ ସୁକୁମାର ଅଟଇ ଯେହାର ଅଙ୍ଗ
ଲକ୍ଷେ ରାଜା ମୁଖେ ଯେ ବୋଲାଇ ଭୁଜଙ୍ଗ ।୮୫
ବୟସେ ସାନ ଧାର୍ମିକ ବୋଲାୟେ ବଳିଷ୍ଠ
କୁମାର ଅଭିମୁଖେ ଆକାଶେ ଅଛି ପାଟ ।୮୬
ବଇମାତ୍ରୀ ପୁତ୍ର ବୋଲି ନ ବିଚାର ଚିରେ
ଆମ୍ଭ ତହୁଂ ସ୍ନେହ ନକୁଳ ସହଦେବ ତୋତେ ।୮୭
ସ୍ୱାମୀ ! ଧର୍ମ ପରାୟଣ ତୁମ୍ଭେ କେ ପଶିଲା ଗର୍ଭେ
ଯେତେକ ନିର୍ମୋହ ହେଲ କେବଣ ଅଭାବେ ।୮୮
ସ୍ୱାମୀ ମାଛି ଗୋଟାୟେକ ବସିଲେ ଯେହାର ହୃଦଗତେ
ଲେପନ କରେ ଅଙ୍ଗେ ଚନ୍ଦନ ପଳେ ଶତେ ।୮୯
ସୁକୁମାର ଶରୀର ଯାର ସୁନ୍ଦର ଦେହଗୋଟି
ନକୁଳକଇଂ ଦେଖିଣ ମୁଂ ହୋଇଲି ବଡ଼ କଷ୍ଟି ।୯୦
ଯୁଝେଷ୍ଠି ବୋଇଲେ ହୋ ନ କର ଶୋଚନା
କି ସୁନ୍ଦର ବଳବନ୍ତ ମୃତୁ ଆଗ ସିନା ।୯୧
ବାବୁ ଆପଣା ସୁନ୍ଦର ଆପଣେ ବଖାଣଇ
ନକୁଳ ପଡ଼ିଲା ହାଦେ ଶୋଚନା କିସ ପାଇଂ ।୯୨
ଯୁଝେଷ୍ଠି ବୋଇଲେ ନକୁଳରେ ନ ଲଗା ମୁହାଂସ
ନକୁଳକୁ ଛାଡ଼ି ଭୀମ ବହନ ହୋଇ ଆସ ।୯୩
ନକୁଳକୁ ଶୁଆଇ କରନ୍ତେ ଗମନ
କେତେହେଂକେ ଦୂରେ ଯାଇଂ ପଡ଼ିଲେ ଅର୍ଜୁନ ।୯୪
ଆହୋ ମୋର ଭ୍ରାଥ ଅର୍ଜୁନ ବୋଲି ଭୀମ
କାନ୍ଦନ୍ତି ଯୁଝେଷ୍ଠିର ଗମନ୍ତି ପେଲି ହିମ ।୯୫
ଭୀମସେନ ଅର୍ଜୁନକୁ ଧଇଲା କୋଳ କରି
ରୋଦଇ ମାରୁତି ଯେ ଅର୍ଜୁନ ସୁମରି ।୯୬
ଦେଖ ଦେଖ ଧର୍ମରାୟେ ପଡ଼ିଲା ଫାଲଗୁନି
ଯାହାର ବାହୁବଳେ କଲୁ ୟେକଛତ୍ର ମେଦିନୀ ।୯୭
ସ୍ୱାମୀ ଜଗତ ସୋଦର ଜଗତ ହିତକାରୀ
ସାଂଗ୍ରାମେ ବୀରଧ୍ୱ ବାନା ଅଟଇ ଯାହାରି ।୯୮
ନିର୍ବାତକପଚ ଯେ ସେ ମାଇଲା କଉଣୋପ
ସୁରରାଜା ଦେବତାଙ୍କୁ ଥାପିଲା ସେ ସ୍ୱର୍ଗ ।୯୯
ସ୍ୱାମୀ ଗୋସିଂହ ବଧ କରି ଦ୍ୱାରିକା ରଖିଲା
ହନୁମନ୍ତ ବିବାଦେ ଶରେ ସାଗର ବାନ୍ଧିଲା ।୧୦୦୦
ଉତ୍ତର ଦିଗ ରାଜାନ୍ତ ଜିଣିଲା ବାହୁବଳେ
ନବଦ୍ୱୀପ ସପତ ସାଗର ଧଇଲା ଧନୁହୁଳେ ।୧୦୦୧
ସ୍ୱାମୀ ହନୁମନ୍ତ ସଙ୍ଗେ ହୋଇଲା ବିବାଦ
ଶରେ ଶରେ ସାଗର ଯେ ବାନ୍ଧିଲା ସେତୁବନ୍ଧ ।୧୦୦୨
ସୁଭଦ୍ରା ହରଣେ ସେ ରାମକୃଷ୍ଣ ଜିଣି
ଗୋଧନ ହରଣେ ସେ କରରୋବନ୍ତ ଜିଣି ।୧୦୦୩
ଯେବେ ସେ ଅର୍ଜୁନ ପଡ଼ିଲା ତୋର ସାଖା
କ୍ଷଣେ ବିଶ୍ରାମ କର ଯେହାକୁ ମୁଖ ଦେଖା ।୧୦୦୪

ଯୁଷ୍ଠେଷ୍ଠି ବୋଇଲେ ଶୁଣରେ ଭୀମସେନ
ମରନ୍ତେ କିସ ଆଉ ସୁମରୁ ପୁଣ ମନ ।୧୦୫
ଆରେ ଭୀମ ଯଦ୍ୟପି ରୋଦନ କରିବା ଉର ଶିର ତାଡ଼ି
ମଲାର ପ୍ରାଣୀ କେହୁ ଆସିବ ବାହୁଡ଼ି ।୧୦୬
ବାବୁ ବହୁତ କାର୍ଯ୍ୟ ଯେ ଅଛି ଯେହାର କଲା
ତେଣୁକରି ବାବୁରେ ଯେତକ ଅଇଲା ।୧୦୭
ବାବୁ ଅଥବା ସଂସାରେ ସେ ପର ଉପକାରୀ
ତେଣୁ ସେ ନ ଉଠିଲା ହିମବନ୍ତ ଗିରି ।୧୦୮
ଅର୍ଜୁନକୁ ଛାଡ଼ିଣ ଆସ ଆସ ଭାଇ
ଅପାର ଶୋକ କଲେ ମଲାର ନ ପାଇ ।୧୦୯
ଆହୋ ଭୀମସେନ ଛାଡ଼ିଆସ ବୀର ପାର୍ଥ
ଧର୍ମବଳ ଥିଲେ ଆସିବ ଅବଶ୍ୟ ତ ।୧୧୦
ଆପଣାର ଶଉର୍ଯ୍ୟ ଆପଣେ କହୁଥାଇ
ବୋଲଇ ଯେକାଯେ ମୁଂ ଜିଣିଲି ରୁଦ୍ରକଇଂ ।୧୧୧
ବୋଲଇ ଏକଛତ୍ର କଲାଇ ମେଦିନୀ
ଆପଣାର ପ୍ରତଗ୍ୟାଂ କହଇ ଫାଲଗୁନି ।୧୧୨
ସେ ଯେବେ ପଡ଼ିଲା ହୋ ଶୋଚନା ପୁଣ କିସ
ଆଜର ଦିନ ଅର୍ଦ୍ଧେ ଆମ୍ଭେ ଯିବା ନାଶ ।୧୧୩
ଶୁଣିଣ ଭୀମସେନ ଅର୍ଜୁନକୁ ଗଲା ଛାଡ଼ି
ଯୁଷ୍ଠେଷ୍ଠିଂକର ପଛେ ଚଳଇ ପଥ ମାଡ଼ି ।୧୧୪
ଭୀମସେନ ବୋଲେ ଦେବ ଆମ୍ଭର ପ୍ରାୟେ ସୋଦର ଛାଡ଼ିବୁ
ହିମବନ୍ତ ଶିଖରେ ଯେକାକୀ କି କରିବୁ ।୧୧୫
ହସିଣ ଯୁଷ୍ଠେଷ୍ଠି ଯେ ବୋଲନ୍ତି ଧୀର ବାଣୀ
ସଂସାରେ ମାୟା ମୋହ ନ ଛାଡ଼ନ୍ତି ପ୍ରାଣୀ ।୧୧୬
ମୃତ୍ୟୁ ମଣ୍ଡଳେ ଜାତ ହୋଇଲେ ଅବଶ୍ୟ ପ୍ରାଣ ହାରି
ଦେହ ଘେନି ସ୍ୱର୍ଗକଇଂ ଯାଇ ତ ନୁଆରି ।୧୧୭
ଆରେ ଭୀମ ପରକଇଂ କ୍ରୋଧକରୁ ବାବୁ
ଆପଣାର ଦେହ ଘେନି ଯାଇ ତ ନୁଆରିବୁ ।୧୧୮
ଯୁଷ୍ଠେଷ୍ଠି ଦେବଂକ ବଚନେ ଭୀମସେନ କ୍ରୋଧବାଣୀ
ଯେସନେକ ବିହି ଯେବେ ଅଛଇ ନିର୍ବାଣି ।୧୧୯
ସ୍ୱାମୀ ଅନେକ ଅବିକାରେ ତୋତେ କଲୁ ସେବା
ଆମ୍ଭନ୍ତ ଛାଡ଼ି ତୁ କେମନ୍ତ ଯେକା ଯିବା ।୧୨୦
କେବଣ ଦଇବ ଯେ ହରିଲା ତୁମ୍ଭ ଚିତ୍ତ
ତେଣୁ କରି ଆମ୍ଭଠାରେ ଧରିଲା ବିକୃତ ।୧୨୧

ଯୁଷ୍ଠେଷ୍ଠି ଆଲିଙ୍ଗନ କଲେକ ବୀର ଭୀମ
ତୁମ୍ଭେ ପାଞ୍ଚେହେଂ ମୋର ଅଟ ଯେ ଅଭିନ୍ନ ।୧୨୨
ଯେମନ୍ତ ଶରୀରେ ମୋର ଅଛ ପଞ୍ଚ ଆତ୍ମା
ତୁମ୍ଭେ ତେମନ୍ତ ମୋର ଅଟ ବାବୁ ଭୀମା ।୧୨୩
ଯେ ଯାହା ଅର୍ଜଇ ଯେ ତହିଂର ଫଳ ପାଇ
ଆପଣାର ପାପ ପୁଣ୍ୟ ପରକୁ ଦିଅଇ ।୧୨୪
ଯଦ୍ୟପି ତୁମ୍ଭେ ମୋର ଅଟ ପଞ୍ଚଭୂତ
ସବୁଂକରି ପ୍ରକୃତିକି ଏକଇ ସଂଯାତ ।୧୨୫
ଅର୍ଜୁନକୁ କ୍ଷୋଭ ଆଉ ନକର ବାବୁ ଭୀମ
ତୁ ଯେହିକ୍ଷଣି ବାବୁରେ ହୋଇବୁ ନିଧନ ।୧୨୬
ଭୀମସେନ ବୋଇଲେ ସ୍ୱାମୀ ନିଅ ତୋର ତୁଲେ
ମୁହିଂ ନାଶଗଲେ ଯେକା କି କରିବ ଶିଖେ ଗଲେ ।୧୨୭
ଅନେକ ବିନୋୟି ଯେ ଖଟୁଛି ତୁମ୍ଭଂକୁ
ତୁମ ତୁଲେ ସମ୍ଭାଳି ନିଅସି ହାଦେ ମୁକୁ ।୧୨୮
ଯୁଷ୍ଠେଷ୍ଠି ବୋଇଲେ କେହ୍ନେ ସମ୍ଭାଳି ନେବି ଭାଇ
ଧର୍ମବଳ ନ ଥିଲେ ସ୍ୱର୍ଗକଇଂ ନ ଯାଇ ।୧୨୯
ତୁ ଯେବେ ଭୀମସେନ ନୁଆରିଲୁ ଚାଲି
ଶେଷକାଳ ଆସି ଯେ ହୋଇଲା ତୋହୋରି ।୧୩୦
ଯେତେ କହିଣ ଯେ ଚାଲଇ ଦେବ ବେଗ
ପବନୁଂ ଆପାତେ ଯେ ଯୁଷ୍ଠେଷ୍ଠିର ଆଗ ।୧୩୧
ହେମବନ୍ତ ଶିଖ ଅଛଇ ଅଳ୍ପ ଦୂର
ଧାତିକାରେ ଯୁଷ୍ଠେଷ୍ଠି ଯେ ଉଠନ୍ତି ଧୀର ଧୀର ।୧୩୨
ଯୁଷ୍ଠେଷ୍ଠିଂକି ଭୀମସେନ ଗୋଡ଼ାଇ ଯାଉଥିଲେ
ବାମପାଦ ଖସିଲା ଭୀମ ହୁଡ଼ିଣ ପଡ଼ିଲେ ।୧୩୩
ଭୀମସେନ ପଡ଼ନ୍ତେ ବଜ୍ରଘାତ ଜାଣି
ଭଇରୋବ ଶବଦ ଶୁଭିଲା ଘୋର ଧ୍ୱନି ।୧୩୪
ଭୀମସେନ ବୋଇଲା ସ୍ୱାମୀ ସମ୍ଭାଳି ମୋତେ ନେସି
ଯେହେନ୍ନେକ ନିର୍ଦ୍ଦୟା କିମ୍ପେ ହୋଇଲୁ ସୋମବଂଶୀ ।୧୩୫
ଯେହା ଶୁଣି ଧର୍ମସୁତ ଚାହିଂଲେ ଲେଉଟି
ହସିଣ ପ୍ରତିବାକ୍ୟ ଦିଲେକ ଯୁଷ୍ଠେଷ୍ଠି ।୧୩୬
ଯେ ଯାହାର ପୁଣ୍ୟଗତି ଘେନି ସ୍ୱର୍ଗ ପାଅ
ଆସି ଯେବେ ନୁଆରୁ ତୁନି ହୋଇ ରହ ।୧୩୭
ଦେଖୁ ଦେଖୁ ଭୀମସେନ ହୋଇଲା ମୋହଗତ
ଭୋ ଦେବ ଯୁଷ୍ଠେଷ୍ଠିର ରହିଲି ମୁଂ ଯେଥ ।୧୩୮

ଯେହା ଶୁଣି ଯୁଝେଷ୍ଟିର ପଛକୁ ନ ଚାହିଁ
ହେମବନ୍ତ ପର୍ବତେ ଉଠନ୍ତି ତୋଷ ହୋଇ ।୧୩୯
ଯୁଝେଷ୍ଟିଂକି ନ ଦେଖି ସେ ପବନର ବସ୍ତ
ପୁଣି ଉଠି ଭୀମସେନ ଗୋଡ଼ାଇ ପଛ ପଛ ।୧୪୦
ଭୀମସେନ ବାମ ଅଙ୍ଗେ ଯାଉଅଛି ପେଲି
ସନ୍ନିଧେ ଦେଖି ତାକୁ ଯୁଝେଷ୍ଟିର ବୋଲି ।୧୪୧
ବାବୁ ତୋହୋର ପରା କ୍ଷତ୍ରୀ ନିସତ ହୋଇଣ
ସ୍ତିରୀ ଅଙ୍ଗେ ପେଲି ଆସୁ ଯେ ସର୍ଗ ଭୁବନ ।୧୪୨
ଯେମନ୍ତ ଶୁଣିଣ ସେ ଯେ ବେଗେଣ ମାରୁତି
ଡାହାଣ ଅଙ୍ଗେ ପେଲି ବ୍ରିକୋଦର ମୂର୍ତ୍ତି ।୧୪୩
ବ୍ରିକୋଦର ମୂର୍ତ୍ତି ଧରିଣ ବୀର ଭୀମ
ଯୁଝେଷ୍ଟିଂକି ଗୋଡ଼ାଇଛି ପେଲିଣ ମହାହିମ ।୧୪୪
ଯୁଝେଷ୍ଟି ବିଚାରନ୍ତି ଯେ ଦେହେ ସର୍ଗ ଗଲେ
ଆଉ କି ଦେବଗଣେ ରହିବେ ସର୍ଗେ ଭଲେ ।୧୪୫
ଭାରଥ ସମରେ ଯେତେ କ୍ଷତ୍ରୀ ରଣେ ଦିଲେ ଝାସ
ନିଶ୍ଚେନ୍ତେ ରହିଲେ ସେ ଅକ୍ଷୟେ ସ୍ୱର୍ଗ ବାସ ।୧୪୬
ତାହାଂକୁ ଦେଖି ପୁଣ କରିବ ମହତମ
ଯେମନ୍ତ ଭାଳି ଯୁଝେଷ୍ଟି ସୁମରନ୍ତି ଧର୍ମ ।୧୪୭
ଭୀମ ପଛେ ଗୋଡ଼ାଇଛି ମହାମାୟା ହେଙ୍ଗୁଳାକ୍ଷି
ଆଉ କାହିଁ ଯିବ ଭୀମ ଡାହାଣ ଅଙ୍ଗେ ପେଲୁଛି ।୧୪୮
ଡାହାଣ ଅଙ୍ଗ ପେଲନ୍ତେ ଅପ୍ରମିତ ହେମ
ପୁଣିହିଁ ପର୍ବତରୁ ପଡ଼ିଲା ବୀର ଭୀମ ।୧୪୯
ଭୀମସେନ ଆରତେ ଡାକଇ ଯୁଝେଷ୍ଟିର
ମୋତେ ସମ୍ଭାଳି ନିଅ ରହିଲି ଯେଥିର ।୧୫୦
ଯୁଝେଷ୍ଟି ଦେବ ବୋଇଲେ ବଇକୁଳ୍ୟ କିଂକେ ହେଉ
ଦୁନି ହୋଇ ଶୋଇଥାଆ କଥା କିଂକେ କହୁ ।୧୫୧
ଯେତେବେଳେ ଭୀମସେନ ପଡ଼ିଲାକ ହୁଡ଼ି
ଆକ୍ରେଷି ମହାମାୟା ବସିଲାକ ମାଡ଼ି ।୧୫୨
ଭୀମସେନ ନିଷ୍ଟେଷ୍ଟେ ପଡ଼ିଲାକ ତଳେ
ଭୀମସେନକୁ ବିଦାରି ଖାଇଲେ ଅବହେଳେ ।୧୫୩
ଯେମନ୍ତେ ଚାରିଭାଇ ପଡ଼ିଲେ ତାର ଦାଢ଼େ
ଯୁଝେଷ୍ଟିର ଉବୁରିଲେ ଶ୍ରୀକୃଷ୍ଣ ବୁଦ୍ଧିବଳେ ।୧୫୪
ପୂର୍ବେ ଯୁଝେଷ୍ଟିଂକି କହିଥିଲେ ଚକ୍ରଧର
ଦ୍ରୋପଟୀଂକି ଯୁଝେଷ୍ଟିର ମାଗିଥିଲେ ବର ।୧୫୫
ସେ ଘେନି ଯୁଝେଷ୍ଟିର ମାତ୍ରକ ରହିଲେ
ଆଉ ଚାରି ପାଣ୍ଡବେ ତାର ଦାଢ଼ରେ ପଡ଼ିଲେ ।୧୫୬
ଯେତେବେଳେ ଭୀମସେନ ପଡ଼ିଲାଲ କୋଟି
ହିମବନ୍ତ ଶିରେ ଉଠିଲେ ଯୁଝେଷ୍ଟି ।୧୫୭
ପାଞ୍ଚଶତ ଯୋଜନ ସେ ଉପରେ ରହିଲେ
ପର୍ବତ ଉପରେ ଉଠି ତଳକୁ ଚାହିଂଲେ ।୧୫୮
ତେତିଶ କୋଟି ଦେବେ ଦେଖନ୍ତି ଶୂନ୍ୟ ପଥେ
ସାଧୁ ସାଧୁ ଯୁଝେଷ୍ଟି ତୁ ମହତ୍ତ୍ୱ ପବିତ୍ରନ୍ତେ ।୧୫୯
ଦେଖନ୍ତି ଯୁଝେଷ୍ଟି ଯେ ଆକାଶ ସମୀପେ
ଦେବ ଦୁନ୍ଦୁଭି ଶବଦେ ଶୁଭଇ ମହାଦର୍ପେ ।୧୬୦
ବଇବସୁତ ମନୁ ଅଗସ୍ତିଂକି କଲେ ପୂଜା
ହିମବନ୍ତ ଶିଖରେ ଉଠିଲେ ଯୁଝେଷ୍ଟି ମହରାଜା ।୧୬୧
ଦେବତାମାନଂକୁ ସେ ନ ଦେଖିଲେ ଆଗେ
ସ୍ୱର୍ଗକଇଂ ପୁଣି ସେ ଗଲେ କେବଣ ବାଗେ ।୧୬୨
ବଦନ୍ତି ଅଗସ୍ତି ଯେ ମହା ବ୍ରହ୍ମବେତ୍ତା
ତୁ ଯାହା ପୁଛାକଲୁ ଯୁଝେଷ୍ଟିର ବାରତା ।୧୬୩
ପୂର୍ବେ ସେ ହିମଗିରି ଲକ୍ଷେକ ଯୋଜନ
ସେ ପର୍ବତ ଉପରେ ବସେ ଭାସ୍କର ରାଜନ ।୧୬୪
ତହିଂରୁ ସେ ଉଦୟ ହୁଅଇ ଦିନକର
ତିମିରି ତୁଟଇ ସେ ଜଗତ ସଂସାର ।୧୬୫
ଅନନ୍ତ ଗିରି ପର୍ବତ ବସଇ ଦକ୍ଷିଣେ
ସେ ପର୍ବତ ବସାଇ ଯେ ଯେହି ପରମାଣେ ।୧୬୬
ତହିଂ ବସନ୍ତି ଯେ ଅନନ୍ତ ନାରାୟଣ
ପଶ୍ଚିମେ କନ୍ଦର ଗିରି ଯେହି ପରିମାଣ ।୧୬୭
ସେ ପର୍ବତ ଉପରେ ଯେ ବସଇ ସୁରପତି
ଉପରେ କପିଳାସ ଯେମନ୍ତ ଆକୃତି ।୧୬୮
ସେ କପିଳାସ ପର୍ବତେ ବସନ୍ତି ସଦାଶିବ
ଯେ ଚାରି ପର୍ବତ ମଧ୍ୟେ ଆକାଶଟି ଧ୍ରୁବ ।୧୬୯
ଯେ ଚାରି ପର୍ବତ ମଧ୍ୟେ ନବଦ୍ୱୀପ ସପତ ସାଗର ସ୍ଥିତି
ଯେ ଚାରି ପର୍ବତ ଚାରିଦିଗ ଆବୋରି ଅଛନ୍ତି ।୧୭୦
ସେ ପର୍ବତ ହେମବନ୍ତ ଉପରେ ଯୁଝେଷ୍ଟି
ମଧ୍ୟପୁରକଇଂ ଦେବ ଦିଲେକ ହାଦେ ଦୃଷ୍ଟି ।୧୭୧
ତହିଂର ତଳରେ ଯେ ଅଛଇ ଜୀର୍ଣ୍ଣ କୂପ
ତହିଂ ପଡ଼ିଛନ୍ତି ଛୟାଣୋଇ ସସ୍ର ନୃପ ।୧୭୨

ଯୁଧେଷ୍ଠିଙ୍କ ଦ୍ରଶନେ ପାଇଲେ ସଦଗତି
ରଉରବୁଂ ତରିଲେ ସେ ସକଳ ନୃପତି ।୧୭୩
ଅଗସ୍ତିଂକି ପୁଚ୍ଛାକଲେ ବଇବସୁତ ମନୁ ରାଜା
କିମ୍ପେ ରଉରବେ ପଡ଼ିଲେ ଛୟାଣୋଇ ସସ୍ର ରାଜା ।୧୭୪
ଅଗସ୍ତି ବୋଇଲେ ସେ ଦ୍ରିଯୋଧନ କତିରେ ଥିଲେ
ପ୍ରଥମ ଦିନ ଯୁଧେଷ୍ଠି ପଡ଼ା ମାଗି ଗଲେ ।୧୭୫
ମାଗନ୍ତେ ଯୁଧେଷ୍ଠିଂକି ପଡ଼ା ସେ ନ ଦିଲେ
ତେଣୁ ସେ ରାଜାମାନେ ରଣ ଇଛା କଲେ ।୧୭୬
ନିସତ ହୋଇ ରାଜାମାନେ ପଡ଼ିଲେ ସାଂଗ୍ରାମେ
ତେଣୁ କରି ଆକାଶକୁ ପଶି ନ ଦିଲେ ଦେବ ଧର୍ମେ ।୧୭୭
ଜୀର୍ଣ୍ଣକୂପ ଭିତରେ ରଖିଲା ସବୁନ୍ତି
ସେ ଦିନ ଯୁଧେଷ୍ଠିଂକି ପାଇଲା ସଦଗତି ।୧୭୮
ସେ ଧର୍ମ ଦେବତାର ବଦନ ଦେଖିଲେ
ରଉରବ ଦ୍ରଶନ ଯୁଧେଷ୍ଠି ପାଇଲେ ।୧୭୯
ଅଗସ୍ତି ବୋଇଲେ ହୋ ଶୁଣ ମନୁରାୟେ
ସତ୍ୟ ପାଳିଥିଲେ ସେ ଯେ ଦେବ ଧର୍ମରାୟେ ।୧୮୦
ଧର୍ମହୁଂ ଆନ ସେ ଯେ ନ ଜାଣନ୍ତି ବାଣୀ
ତେଣୁ ଚରଣେ ଖଟିଲେ ଶଙ୍ଖ ଚକ୍ରପାଣି ।୧୮୧
ମହାଭାରଥ ଯୁଦ୍ଧେ ନ ମରନ୍ତି ଦ୍ରୋଣ
କରେ ଶହସ୍ର ଥିଲେ ତାହାନ୍ତ କେହୁ ନ ଜିଣଇ ଜାଣ ।୧୮୨
ଅଶସ୍ତମା ହତ ବୋଲି ଶୁଣନ୍ତି ସେ କର୍ଣ୍ଣେ
ତେବେ ସେ ଶହସ୍ର ଛାଡ଼ିବେ ଜିଣିମା ତାଂକୁ ରଣେ ।୧୮୩
ପାଣ୍ଡବେ କୂଟ କପଟ ଭିଆଇଲେ ଶ୍ରୀପତି
ଭୀମସେନ ମାଇଲା ଯେ ଅଶସ୍ତମା ହାଥୀ ।୧୮୪
ଅଶସ୍ତମା ରଥ ଧରି ଭୀମ ଫିଙ୍ଗିଦିଲା
ସରସ୍ୱତୀ ନଦୀ ତୀରେ ଅଶସ୍ତମା ପଡ଼ିଲା ।୧୮୫
ଅଶସ୍ତମା ହତ ବୋଲି ଶୁଭିଲାକ ବାଣୀ
ଓହୋବଳ ଥାଠେ ଦ୍ରୋଣ ଲୋଡ଼ି ନ ପାଇଲେ ପୁଣି ।୧୮୬
କୁରୁ ପାଣ୍ଡବ ଥାଠେ ପଚାରିଲେ ଗୁରୁ
ସମସ୍ତେ ବୋଇଲେ ଅଶସ୍ତମା ହତ କିଂକେ ଲୋଡୁ ।୧୮୭
ଯୁଧେଷ୍ଠିଂକି ଚାହିଂଣ ଯେ ପଚାରିଲେ ଦ୍ରୋଣ
ବାବୁ ଅଶସ୍ତମା ହତ ସତ ଟିକି ତୁମ୍ଭେ ଜାଣ ।୧୮୮
ଅଶସ୍ତମା ହତ ବୋଲି କହିଲେ ଯୁଧେଷ୍ଠି
ନର କି କୁଞ୍ଜର ବୋଲି ନ କହିଲେ ଫୁଟି ।୧୮୯
ଆନ ପାପ ଯୁଧେଷ୍ଠିଂ କର ନାହିଂ ଆଉ କିଛି
ଗୁରୁଂକର ଛାମୁରେ କପଟ କହିଲେ ଧର୍ମବଛି ।୧୯୦
ତତଦୋଷ କରି ନରକ ଦରଶନେ
ତେଣେ ମୁକତି ଗତି ପାଇଲେ ରାଜାମାନେ ।୧୯୧
ଶୁଣି ସାନନ୍ଦ ବୋଇଲେ ବଇବସୁତ ମନୁ ରାଜା
ପାଦାର୍ଘ୍ୟ ଦିଲେ ଅଗସ୍ତିଂକି ପାଦେ କରି ପୂଜା ।୧୯୨
ଭ୍ରାଥ ସହୋଦର ନାହିଂ ରହିଲେ ଯୁଧେଷ୍ଠି
କିସ କାର୍ଯ୍ୟ କଲେ ସେ ଯେ ହିମବନ୍ତେ ଉଠି ।୧୯୩
ଶୁଣ ହେ ମହାରାଜା ବଦନ୍ତି ମହା ବ୍ରହ୍ମଯତି
ଚାହାନ୍ତି ଯୁଧେଷ୍ଠି ଦେବ ଶୂନ୍ୟ ଚଉକତି ।୧୯୪
ବଂଧୁ ସୋଦର ମରାଇଂ ମୁଂ ହୋଇଲଂଇ ଯେକା
ଯେ ମାନୁଷ ଜନ୍ମରେ ନୋହିଲଇଂ ଲେଖା ।୧୯୫
ଯୁଧେଷ୍ଠି ଦେବ ଶୂନ୍ୟ ଦେଖି ଧର୍ମ ଦଇବତ
ଶ୍ୱାନ ଗୋଟିଯେ ହୋଇ ଭେଟିଲେ ନିଜ ସୁତ ।୧୯୬
ଶୁଣ ହୋ ଚଇତନ ଶୁକ୍ଳାମ୍ବର କାୟେ
ଧବଳ କମଳ ସେ ଶୁଦ୍ଧ ସ୍ଫଟିକ ପ୍ରାୟେ ।୧୯୭
ଅଦଭୂତ ହୋଇଣ ଛାମୁରେ ଯାଇ ଭେଟି
ଦେଖିଣ ଆଶ୍ଚର୍ଯ୍ୟ ଯେ ଧର୍ମରାୟେ ଯୁଧେଷ୍ଠି ।୧୯୮
ଯେ ମହା ହିମବନ୍ତେ ମିଳାଇଲେ ତେଡ଼େ ତେଡ଼େ ବୀର
ଯେଡ଼େ ହିମ ପର୍ବତରେ କେହ୍ନେ ମିଳିଲେ ଶ୍ୱାନ ଆର ।୧୯୯
ଯୁଧେଷ୍ଠି ବୋଇଲେ ମୁଁ ହୋଇଲି ନିରେଖା
ଯେ ଶ୍ୱାନ ଗୋଟିକ ମୋତେ ହୋଇଲା ଯେଥେ ସାଖା ।୨୦୦
ଯେତେ ଭାଳିଣ ଦେବ ବିଜୟ ବଟ ତଳେ
ବସିଣ ଧର୍ମରାୟେ କ୍ଷୋଭନ୍ତି ବିକଳେ ।୨୦୧
ଯୁଧେଷ୍ଠି ଛାମୁରେ ଉଭା ହୋଇଅଛି ଶ୍ୱାନ
ନିରୋପି ଚାହାଂଇ ସେ ଯୁଧେଷ୍ଠିଂକ ବଦନ ।୨୦୨
ସାଖା ସୋଦର ବାନ୍ଧବ ମୋହୋର କେହି ନାହିଂ
ଦିଗ ତ ନ ଦିଶଇ ଯିବି ଆଉ କାହିଂ ।୨୦୩
ଯୁଧେଷ୍ଠି ବିସରିଲେ ଜାଣିଲେ ଦେବପିତା
ଅମରନାଥ ରାଇ ଆଗ୍ୟାଂ ଦିଲେ ଧାତା ।୨୦୪
ପୁଷ୍ପେକ ଘେନି ବେଗେ ଯାଅ ହୋ ସହସ୍ରାକ୍ଷ
ହିମବନ୍ତ ବଟ ତଳେ ଯୁଧେଷ୍ଠିଂକି ଯାଇ ଭେଟ ।୨୦୫
ବିମାନେ ବସାଇଣ ଘେନିଆସ ତାହା
ଅମରେ ଧର୍ମସ୍ୱାମୀ ପୂଜାକର ସୁରନାହା ।୨୦୬

ପିତାର ଆଗ୍ୟାଂରେ ଯେ ଚଳିଲେ ସସ୍ତ୍ରଯୋନି
ହିମବନ୍ତେ ବିଜେକଲେ ଅମରଗଣନ୍ତ ଘେନି ।୨୦୭
ସେ ବାସବ ଦେବତାଂକୁ ଦେଖିଲେ ଯୁଦ୍ଧେଷ୍ଟି
ବଟ ତଳରୁ ଦେବ ଆସନ ତେଜି ଉଠି ।୨୦୮
ବାସବ ଦେବତାଙ୍କୁ ବିନୟ ଭଗତି
ଜୟତୁ ସୁନାସୀର ବୃନ୍ଦାର୍କ ଚକ୍ରବର୍ତ୍ତୀ ।୨୦୯
ଆବର୍ତ୍ତେକ ସଂବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଯେମାନେ ବରଗଣ ଭୃତ୍ୟପଣେ ଯାହାର ।୨୧୦
ଅନଳ ବଜ୍ରସୂଚି ଯାହର ତୀକ୍ଷବାଣ
ଆଦ୍ରାବଳୀ ଧନୁ ଯାହାର ଆଞ୍ଚମନ ।୨୧୧
ଯେ ଦେବ ଶହସ୍ରନ୍ତ ତୋର ବଚନେଣ ଯାଇ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ଦେବ ତୁହି ।୨୧୨
ସ୍ୱାମୀ ହେଳେଣ ଜିଣିଲୁ ତୁ ଶୂନ୍ୟ ଅଣଚାଶ
ପରମ ଧର୍ମ ଯେ କର୍ମ ବିଶେଷ ।୨୧୩
ପଞ୍ଚଦଶ କୋଟି ଅନନ୍ତ କୋଟି ରେଖା
ଯେ ବିଷ ପ୍ରକୃତି ଅଟୁ ଦେବ ସାଖା ।୨୧୪
ତୋ ତହୁଂ ବିକ୍ରକେ କେ ଆନ କରୁ ରକ୍ଷା
ତୁହି ସେ ଜଗତ ସୟଳ ପୁରୁ ମନବାଞ୍ଛା ।୨୧୫
ସ୍ୱାମୀ ମାତା ଅବିକାରେ ସୋଦର ଶିର କାଟି
ମହା ମୋହିନୀ ଖଟନ୍ତି ଯାକୁ ଚଉଷଠି କୋଟି ।୨୧୬
ସ୍ୱାମୀ ମହାଲିଙ୍ଗ ଆଭରଣ କଲୁ ଗୁନ୍ଥି ମାଳି
ବ୍ରହ୍ମାଣ୍ଡର ନାଥ ତୁହି ସେ ଆଖଣ୍ଡଳି ।୨୧୭
ସ୍ୱାମୀ ଦିନକର ସଙ୍ଗେ ହରିଲୁ ଋଷିଂକର ପତ୍ନୀ
ସେ ଅଣ୍ଡ ଛିଡ଼ିଣ ଶରୀରେ ହେଲା ସସ୍ତ୍ରଯୋନି
ସେ ସହସ୍ର ଯୋନି ସହସ୍ର ଲୋଚନ ହେଲା ପୁଣି ।୨୧୮
ସ୍ୱାମୀ ସଚରାଚର ପାଳି କଉଣପ ଦର୍ପ ଦଳି
ଗଜରାଜ ଆରୋହି ଆରମ୍ଭ ମହାବଳୀ ।୨୧୯
ସ୍ୱାମୀ ଅମର ମଣ୍ଡଳେ ତୁ ଇନ୍ଦ୍ରାଧି ଦେବତା
ତୁ ଦେବ ଚରାଚର ପାଳନ୍ତା ଉଦ୍ଧାରନ୍ତା ।୨୨୦
ସୁର ସିଦ୍ଧ ନାଗ ରକ୍ଷଣ ଦେବରାଜା
ଯାଗ ଯଗ୍ୟଂ ହୋମ ମଙ୍ଗଳେ ତୋତେ ପୂଜା ।୨୨୧
ଶ୍ରୀ ଇନ୍ଦ୍ର ଦେବତାଂକୁ ପାଦଯୁଗେ ସେବି
ବଦନ୍ତି ଶୂଦ୍ରମୁନି ସାରୋଳା ଦାସ କବି ।୨୨୨
ଯେଥୁ ଅନନ୍ତରେ ଯେ ବିଳଂକ ଦେଶ ରାଜା
ଅଗସ୍ତି ଋଷିଂକ ଚରଣେ କଲେ ପୂଜା ।୨୨୩
ବସନ କୁଣ୍ଡଳ ଗନ୍ଧ ପୁଷ୍ପ ରତ୍ନ ଦେଇ
ଶତ ସହସ୍ର ଦଣ୍ଡ ପ୍ରଣମିତ ହୋଇ ।୨୨୪
ଭୋ ମୁନି କହିବା ଯୁଦ୍ଧେଷ୍ଟିଂକ ସ୍ୱର୍ଗ ଆରୋହଣ କଥା
କିସ ପ୍ରତିଉତ୍ତର ଦିଲେ ଇନ୍ଦ୍ର ଯେ ଦେବତା ।୨୨୫
ଶୁଣ ହୋ ମହାରାଜା ବଦନ୍ତି ଅଗସ୍ତି
ଯୁଦ୍ଧେଷ୍ଟିଂକି କୋଳ କରି ଧଇଲେ ସୁରପତି ।୨୨୬
ବାବୁ ପିତାମହ ଆଗ୍ୟାଂ ଦିଲେ ଯିବୁ ତୁ ଆକାଶ
ପୁଷ୍ପେକ ବିମାନେ ବସି ଯିବା ସ୍ୱର୍ଗବାସ ।୨୨୭
ତ୍ରିଦଶ ଦେବତାୟେ ବସିଛନ୍ତି ସ୍ୱର୍ଗେ
ତୋତେ ବାଟ ଚାହିଂଛନ୍ତି ଯିବା ଚାଲ ବେଗେ ।୨୨୮
ଯୁଦ୍ଧେଷ୍ଟି ବୋଇଲେ ମଲେ ସକଳ ସହୋଦର
ଯେକା ହୋଇ କେମନ୍ତ ଆମ୍ଭେ ଯିବା ସ୍ୱର୍ଗପୁର ।୨୨୯
ଇନ୍ଦ୍ର ବୋଇଲେ ତୋହୋର ସହୋଦର ଭ୍ରାଥେ
ଦେବସଭାରେ ବସିଛନ୍ତି ଶ୍ରୀକୃଷ୍ଣ ସହିତେ ।୨୩୦
ପୁଷ୍ପେକ ବିମାନେ ବସ ବିଳମ୍ବ ନ କରି ତୁହି
ତୋହୋର ଯିବାକୁ ସର୍ବେ ଅଛନ୍ତି ବାଟ ଚାହିଂ ।୨୩୧
ଇନ୍ଦ୍ର ଦେବତା ବଚନରେ ଉଠିଲେ ଯୁଦ୍ଧେଷ୍ଟିର
ଯେକା ହୋଇ କେମନ୍ତ ମୁଂ ଯିବି ସ୍ୱର୍ଗପୁର ।୨୩୨
ଶୁକ୍ଳାମ୍ବର କୁକୁରକୁ ଧଇଲେ କୋଳରେ
ପୁଷ୍ପେକ ବିମାନରେ ବିଜୟେ ସଧୀରେ ।୨୩୩
ଇନ୍ଦ୍ର ବୋଇଲେ ପ୍ରତ୍ୟକ୍ଷେ ବାବୁ ଦେଖୁ ଶ୍ୱାନ
ଯେହାକୁ ଘେନି କେମନ୍ତ ବସିବୁ ଦେବ ଯେ ଭୁବନ ।୨୩୪
ଯେତେ ବସ୍ତୁ ଛୁଇଂ ତେତେ ବସ୍ତେ ସ୍ରାହାନ କରି
ଯେହାକୁ କେମନ୍ତ ତୁ ଛୁଇଂବୁ ଦଣ୍ଡଧାରୀ ।୨୩୫
ଯାତ୍ରା ଯୋଗେ ଛୁଇଂଲେ ଅଯାତ୍ରା ହୁଅଇ
ପାଦ ରଜ ପଡ଼ିଲେ ଅଧେ ଆୟୁଷ ତୁଟଇ ।୨୩୬
ଯୁଦ୍ଧେଷ୍ଟି ଦେବେଂକର ମନ ବିଡ଼ିବାକୁ
ଅନେକ ଭ୍ରଛନା ଇନ୍ଦ୍ର ବୋଇଲେ ଶ୍ୱାନକୁ ।୨୩୭
ଯେ ଦେବ ବିମାନ ଦେଖ ହେ ଯୁଦ୍ଧେଷ୍ଟି
ଶ୍ୱାନ ପାମର କେନ୍‌ହେ ଯେଥିରେ ଯିବ ଉଠି ।୨୩୮
ଯୁଦ୍ଧେଷ୍ଟି ଦେବେ ବୋଇଲେ ଶୁଣ ମଘବାନ
ବଡ଼ାଇ ମହତ୍ୱ ଯେ ହୋଅଇ ଜାଣ ଶ୍ୱାନ ।୨୩୯
ଅନେକ ସୋଦର ଯେ ଥିଲେମୋର ସାହା

ଶେଷ କାଳକୁ କେହି ନୋହିଲେ ମୋତେ ଆହା　　।୨୪୦
ଯେ ଶ୍ୱାନଗୋଟି ମୋର ରକ୍ଷା କଲା ଧର୍ମ
ନିରେଖ ବେଳେ ମୋତେ ସାଖା ହେଲା ଶ୍ୱାନ　　।୨୪୧
ଯେ ଯେବେ ଶ୍ୱାନଗୋଟି ନ ଯିବ ମଘବାନ
ଯେବେ ବିମାନେ ବସାଇ ନ ଦେବ ତୁମ୍ଭେ ଶ୍ୱାନ　　।୨୪୨
ମୋତେ କେନ୍‌ହେ ସ୍ୱର୍ଗ ହୋଇବ ପରାପତ
ଯେ ଶ୍ୱାନଗୋଟିକ ଛାଡ଼ି ନ ବଳେ ମୋର ସତ　　।୨୪୩
ଯେ ଶ୍ୱାନଗୋଟିକି ଯେବେ ସ୍ୱର୍ଗକୁ ନ ନେବ
ମୁହିଂ କେନ୍‌ହେ ସ୍ୱର୍ଗକୁ ଯିବି ହେ ବାସବ　　।୨୪୪
ଯେତେ ବୋଲି ଶ୍ୱାନକୁ ଧଇଲେ ବେନି ଭୁଜେ
ଦେବ ବିମାନ ଉପରେ ଯୁଝେଷ୍ଠି କଲେ ବିଜେ　　।୨୪୫
ଇନ୍ଦ୍ର ଦେବତା ଯୁଝେଷ୍ଠିଂକି କଲେ ଅନେକ ପ୍ରଶଂସା
ସଦା ସଦୟେ ତୋର ବାକୁ ଯେସନ ମନୀଷା　　।୨୪୬
ସତ୍ୟ ଧର୍ମେ ସଂସାର ପାଳିଲୁ ସମସ୍ତ
ପାଷାଣେ ନ ଲାଗେ ଯେନ୍‌ହେ ଜଳରେ ଯେ ଘାତ　　।୨୪୭
ଅଭେଦ ସେହ୍ନାରେ ଯେହ୍ନେ ନ ଭେଦଇ ଶର
ଅନେକ ଦୟା ଦୋଷ ହେଲା ଦୂରାନ୍ତର　　।୨୪୮
କୃଷ୍ଣ ଯେ ଉତପତ୍ତି ହୋଇଲେ ମେଦିନୀ
ସେହି ସ୍ୱର୍ଗକୁ ଯାଇ ନୁଆରିଲେ ନିଜ ଦେହ ଘେନି　　।୨୪୯
ଇନ୍ଦ୍ର ବୋଇଲେ ତୁ ଶୁଣ ହୋ ଯୁଝେଷ୍ଠି
ଚିହ୍ନି କି ନୁଆରିଲୁ ଯେହୁ ଶ୍ୱାନଗୋଟି　　।୨୫୦
ଯୁଝେଷ୍ଠି ଦେବ ବୋଇଲେ ମୋହାର ଚର୍ମ ଚକ୍ଷୁ
ଅନ୍ତ କରି ନୁଆରି କେମନ୍ତେ ଶ୍ୱାନ ଇଚ୍ଛୁ　　।୨୫୧
ଇନ୍ଦ୍ର ବୋଇଲେ ଯାହାକୁ ସୁମରିଲେ ତୋର ମାତା
ନିରାକାର ପୁରୁଷ ଯେ ଧର୍ମ ଦେବତା　　।୨୫୨
ଶୂନ୍ୟେଣ ଶବଦ ଯେ ଶୁଭଇ ଯାହାର
ଚିହ୍ନ ବର୍ଣ୍ଣ ନ ଦିଶଇ ପ୍ରତକ୍ଷେ ନିରାକାର　　।୨୫୩
ଅଶେଷ କୋଟି ବ୍ରହ୍ମାଣ୍ଡେ ଧର୍ମ ପ୍ରଚାରଣ
ଯେ ସେ ଧର୍ମ ସ୍ୱରୂପ ପ୍ରତ୍ୟକ୍ଷେ ନାରାୟଣ　　।୨୫୪
ଶୁଦ୍ଧ ସ୍ଫଟିକ ପ୍ରାୟେ ଯାହାର ରୂପଗୋଟି
ଯେ ସେ ଧର୍ମ ଦେବତା ଶୁଣ ହେ ଯୁଝେଷ୍ଠି　　।୨୫୫
ସଞ୍ଚପି କରି ଯହୁଂ କହିଲେ ଦେବରାୟେ
ଶ୍ୱାନ ରୂପ ତେଜି ଧର୍ମ ହୋଇଲେ ଅନ୍ତର୍ଦ୍ଧାୟେ　　।୨୫୬
ଶୂନ୍ୟେ ଯାଇ ଶବଦ ପ୍ରକାଶନ୍ତ ବାଣୀ
ବିମାନ ଆରୋହି ବେଗେ ଆସ ନୃପମଣି　　।୨୫୭
ଶୂନ୍ୟେ ଥାଇ ଶବଦ କରନ୍ତି ଦେବ ଧର୍ମ
ଭୋ ଯୁଝେଷ୍ଠି ଯେସନେ ଯେ ହୋଇଲା ତୋର ଧର୍ମ　　।୨୫୮
ତୁ ହିମବନ୍ତ ପର୍ବତେ ହୋଇଲୁ ଆସି ଏକା
ବାବୁ ଦିଗାମ୍ବର ହୋଇଲୁ କେହି ନାହିଂ ସାଖା　　।୨୫୯
ଆମ୍ଭେ ବନ୍ଧୁ ରୂପେକ ଧଇଲୁ ତୋର ଆଗେ
ବିମାନେ ବସି ବିଜେ କର ଯାଇ ସର୍ଗେ　　।୨୬୦
ଭୀମ ଅରଜୁନ ନକୁଳ ସହଦେବ
ସେ ତୋତେ ନ ଦେଖି ଯେ ବିସ୍ମୟେ ମତି ଭାବ　　।୨୬୧
ଯେ ଭବ ସଂସାରେ ଯେ ଉତପତ୍ତି ପ୍ରଳୟେ
ପୁଣି ଉତପତ୍ତି ହୋଇବ ଗଲେକ ସମୟେ　　।୨୬୨
ଯେତେକ ଆଗ୍ୟାଂ ଦେଇ ଗଲେକ ନିରାକାର
ତହୁଂ ବିମାନେ ବସାଇଲେ ଯୁଝେଷ୍ଠି ନୃପବର　　।୨୬୩
ବାସବର ପୁତ୍ରମାନେ ଚଉଷଠି କୋଟି
ଉଦଣ୍ଡ ଯେକଲକ୍ଷୀ ପାଟଛତ୍ର ଖଟି　　।୨୬୪
ଅମର ଗଣମାନେ କରନ୍ତି ଶଙ୍ଖଧ୍ୱନି
ବେଦ ଆଧ୍ୟାୟନ କରନ୍ତି ସକଳ ସୁର ମୁନି　　।୨୬୫
ଅମର ବିଦ୍ୟାଧର ଚଉଷଠି କୋଟି
ନୃତ୍ୟରଙ୍ଗେ ଆରମ୍ଭେ ସେମାନେ ସେ ଖଟି　　।୨୬୬
ତାଳ ମର୍ଦ୍ଦନ ପଞ୍ଚସ୍ୱର ସପ୍ତସ୍ୱର ବୀଣା
ଅଧାଟି ସରହଗୁଣା ହରଷେ ଗାୟେଣା　　।୨୬୭
ଚଳଇ ବିମାନ ଯେ ସଧୀରେ ସଧୀରେ
ଆଗରେ ରତ୍ନ ବୃଷ୍ଟି କରନ୍ତି କୁବେରେ　　।୨୬୮
ହରି ହରି ଡାକ ତହିଂ ପଡ଼ଇ ଅପାର
କୁସୁମ ବୃଷ୍ଟି ତହିଂ କରନ୍ତି ସୁନାସୀର　　।୨୬୯
ବିଜିଘୋଷ ଟମକ ମର୍ଦ୍ଦଳ ଦୁନ୍ଦୁଭି
ଗମନ୍ତେଣ ଶୋଭାବନ ଯେ ଦିଶୁଅଛି ଦିବି　　।୨୭୦
ଧର୍ମର ନନ୍ଦନ ଯେ ଗମନ୍ତି ଶୂନ୍ୟପଥେ
ଜୟ ଜୟ ଧ୍ୱନି ତହିଂ କରନ୍ତି ସମସ୍ତେ　　।୨୭୧
କେହୁ ଖଦୀ ଚାମର କେହୁ ଆଲଟ ଧରି ବିଞ୍ଚି
ନନ୍ଦନ ବନ କୁସୁମ ମାର୍ଗେଣ ନେଇ ବିଞ୍ଚି　　।୨୭୨
ଶ୍ରୀକରେ ବିଦ୍ୟାଧରୀ ଘେନିଣ ଅର୍ଘଥାଳୀ
ସାନନ୍ଦେ ସୁର ନାୟିକାୟେ ଦିଅନ୍ତି ହୁଳହୁଳି　　।୨୭୩
ଯାନ ବାହନ ଆରୋହି ତେତିଶ ଦେବ କୋଟି

ସାନନ୍ଦେ ଦେବତାମାନେ କରନ୍ତି ପୁଷ୍ପ ବୃଷ୍ଟି ।୧୨୭୪
ଧର୍ମର ନନ୍ଦନ ଯେ ଗମନ୍ତେ ଶୋହଇ
ପ୍ରସନ୍ନ ଅବତାର ସେ ଜଗୁଜନ ମୋହଇ ।୧୨୭୫
ଅମର ସଭାରେ ବିଜୟେ ଯୁଧେଷ୍ଠି ରାଜଦେବେ
ସମସ୍ତେ ଦ୍ରଶନ କଲେ ଧର୍ମଂକର ପାୟେ ।୧୨୭୬
ସମୋଦ୍ର ମନ୍ଥନ କରିବାର କାଳେ
ଅମୃତ ଆପ୍ୟାନେ ବ୍ରତନ୍ତି ସକଳ ଦିଗପାଳେ ।୧୨୭୭
ବିହନ୍ତା ପୁରୁଷମାନେ ଆସ୍ଥାନ ଗଲେ ଛାଡ଼ି
ବସିଲେ ଧର୍ମ ନନ୍ଦନ ଅମର ସଭା ମାଡ଼ି ।୧୨୭୮
ଯେମନ୍ତ ସମୟେ ନକୁଳ ସହଦେବ
ଆସ୍ଥାନ ତଳେ ବିଜୟେ ଚାରି ଯେ ପାଣ୍ଡବ ।୧୨୭୯
ଆସ୍ଥାନେ ଧର୍ମସୁତେ ସମ୍ଭର୍ବେ ବିଜୟେ
ଅମଳାନ ବସ୍ତ୍ର ପିନ୍ଧି ଅମୃତ ପାନ କାୟେ ।୧୨୮୦
ପାରିଜାତକ କୁସୁମ ହୃଦୟେଣ କରି ହାର
ଶ୍ରୀଖଣ୍ଡି ଚନ୍ଦନ ସେ ଲେପନ ହୃଦୟର ।୧୨୮୧
ସାକ୍ଷାତେ ଧର୍ମ ରୂପେ ବିଜୟେ ଯୁଧେଷ୍ଠିର
ଚାରି ଭ୍ରାଥଂକୁ ଦେଖିଲେ ସେ ଆସ୍ଥାନ ତଳର ।୧୨୮୨
ଭୀମ ଅର୍ଜୁନ ନକୁଳ ସହଦେବ ସାନ
ଯେଂହାକୁ ଦେଖି ହରଷ ଯୁଧେଷ୍ଠି ରାଜନ ।୧୨୮୩
ଶୁଣ ବଇବସୁତ ମନୁ ଅଗସ୍ତି କହିଲେ
ଦ୍ରିଯୋଧନ ଶତେ ଭ୍ରାଥାଙ୍କୁ ଯୁଧେଷ୍ଠି ଦେଖିଲେ ।୧୨୮୪
ପନ୍ନଗା ନାରାୟଣ ବିଜୟେ ଆସ୍ଥାନରେ
ଶତେ ଭ୍ରାଥ ଖଟିଛନ୍ତି ଆସ୍ଥାନ ତଳରେ ।୧୨୮୫
ଭୀଷ୍ମ ଦ୍ରୋଣ ଶଲ୍ୟ ଯେ ଶଂକୁନି
ବସିଲେ ଅମରେ ସେ ନକ୍ଷତ୍ର ରୂପ ଘେନି ।୧୨୮୬
ମହାଭାରଥ ଯୁଦ୍ଧେ ପଡ଼ିଲେ ଯେତେ ଜନ
ସତେ ନିସତେ ହୋଇଲେ ଅମର ଭୁବନ ।୧୨୮୭
ସଞ୍ଚୟେ ଲକ୍ଷ୍ମଣକୁମର ଅଭିମନ୍ୟୁ
ପଞ୍ଚାଳ କୁମର ଘଟୋତ୍କଚ ଅଳମ୍ବୁଷ ତନୁ ।୧୨୮୮
ବିରାଟ ଦ୍ରୋପଦ ଯେ ଶଙ୍ଖ ଶ୍ୱେତ ଉତ୍ତର
ଶିଖଣ୍ଡୀ ଧୃଷ୍ଟଦ୍ରୁମନ ମନ ଅନେକ ନୃପବର ।୧୨୮୯
ଲକ୍ଷେକ ରାଜନେ ଯେ ଦେଖିଲେ ଧର୍ମବଚ୍ଛେ
ଯେକାମାତ୍ର ଧୃତିରାଷ୍ଟକଇଂ ନ ଦେଖି ପ୍ରତକ୍ଷେ ।୧୨୯୦
କୁରୁ ପାଣ୍ଡବ ସମର ଯେତେ କଲେ ଓହୋବଳ ସନ୍ୟ ଘେନି
ଲକ୍ଷେ ରାଜାର ଯେତେକ ପଡ଼ିଲେ ସଇନି ।୧୨୯୧
ମୃତ୍ୟୁ ମଣ୍ଡଳେ ଯେହ୍ନେ ହୋଇଲେ ଆତଜାତ ।
ସେହି ସ୍ୱର୍ଗେ ସ୍ୱରୂପେ ବସିଲେ ସମସ୍ତ ।୧୨୯
ଶୁଣ ହେ ସୁଗ୍ୟଂଜନେ ମହାଭାରଥ ପୁଣ୍ୟରାଶି
ପଢ଼ନ୍ତେ ଶୁଣନ୍ତେ ଯେହି ସରୂପେ ସର୍ଗବାସୀ ।୧୨୯୩
ଶ୍ରୀମହାଭାରଥ ଅମୃତ ରସ ବାଣୀ
ତୃଷାରେ ରୋଚନ୍ତି ଯେହ୍ନେ ସୁଶୀତଳ ପାଣି ।୧୨୯୪
କର୍ଣ୍ଣରେ ପିବନ୍ତେ ଯେ ନିର୍ମଳ ହୋୟେ କାୟେ
ପାପ କଳୁଷ ଗଲେ ଯମକୁ କିମ୍ପା ଭୟେ ।୧୨୯୫
ଯେବଣ ମହାଭାରଥ ଚାରିବେଦର ଅର୍ଥ
ମୁଂ ତାହା ବଖାଣିଲି ସର୍ବ ଜନ ହିତ ।୧୨୯୬
ଯେବଣ ଜନେ ଶୁଣନ୍ତି ଶ୍ରୀମହାଭାରଥ ବାଣୀ
ପାପାଧି ମହାପାପ ଖଣ୍ଡନ୍ତି ଚକ୍ରପାଣି ।୧୨୯୭
ଅପୁତ୍ରିକ ଜନେ ପାବନ୍ତି ପୁତ୍ରଗତି
ଅମୋକ୍ଷ ମୋକ୍ଷ ହୋନ୍ତି ପାବନ୍ତି ସଦଗତି ।୧୨୯୮
ଧର୍ମ ଅର୍ଥ କାମ ମୋକ୍ଷ ଯାହାର ଯିସ ବାଞ୍ଛା
ଶ୍ରୀମହାଭାରଥ ଶୁଣି ପୁରାଥ ମନୀଷା ।୧୨୯୯
ଆସ୍ୟଧନ ବର୍ଦ୍ଧିତ ହୋଅଇ ଶୁଣିଲେ ଶୁଦ୍ଧଚିତ୍ତେ
ବିଷ୍ଣୁ ଲୋକେ ବସନ୍ତି ପୁରାଣ ଉକତେ ।୧୩୦୦
ଜୟତୁ ନାରାୟଣ ସୃଷ୍ଟିର କରତା
ଯେବଣ ଜନେ ଶୁଣନ୍ତି ବିଷ୍ଣୁରେ ଭଗତା ।୧୩୦୧
ଜୟତୁ ଦାମୋଦର କେଶବ ତୋର ନାମ
ଗଳିତ ସୁଧାରସ ସଞ୍ଚିତ ଚଉଧର୍ମ ।୧୩୦୨
ଖେଡ଼ କଉତୁକେ ନାଥ ଯମୁନାର ତଟେ
ସମସ୍ତ କଉତୁକ ବିଷ୍ଣୁ ରସ ଭେଟେ ।୧୩୦୩
ଜୟତୁ ଦାମୋଦର କେଶବ ତୋର ନାମ
କେୟୂର କଂକଣ ଯେ ବିବିଧ ହାରମାନ ।୧୩୦୪
କିଂଶୁକ ପୁଷ୍ୟଚଳ ବିଚିତ୍ର କୁସୁମରେ ଜଡ଼ି
ଚୂଳର ଚାରିପାଖେ ମୟୂର ଚନ୍ଦ୍ରିକା ବେଢ଼ି ।୧୩୦୫
ଯାମଳା ଅର୍ଜୁନ ବେନି ଭାଙ୍ଗିଲୁ ଅବହେଳେ
ଶକଟାସୁର ଯେ ଭାଞ୍ଜିଲୁ ପାଦରୋଳେ ।୧୩୦୬
ଗୋଗୋଷ୍ଠରେ ପଶି ଷଣ୍ଢାସୁର ଦର୍ପ ଗଞ୍ଜି
ବକା ବିଦାରିଣ ମୁଷ୍ଟିକାସୁର ଭାଞ୍ଜି ।୧୩୦୭
ଚାଣୁର ଅଘା କଦମ୍ବା ଅସୁର ଦର୍ପ ଧ୍ୱଂସି

ନୟନେ ଦେଖିଣ ନାଶଗଲା କଂସକେଶୀ ।୩୦୮
କମଳ ତୋଳନ୍ତେ ଯେ କାଳୀୟ ନାଗ ଦଳି
ବଇନେତ୍ର ପ୍ରସାଦେ ବିଷ ଅଗ୍ନି ହରି ।୩୦୯
ଅକ୍ରୂରକୁ ନିଜ ଦେହ ଦେଖାଇଲ ଭଗତି
ପ୍ରସନ୍ନ ରୂପ ଦେଖି ପାଇଲା ପରମ ଗତି ।୩୧୦
ଧନୁ ଉଚ୍ଛବରେ ଦେଖିବାରେ ହୋଇଲା ତୋର ଇଚ୍ଛା
ଜଗତାରୁ ପଡ଼ିଣ ଯେ କଂସାସୁର ଗଲା ମୂର୍ଚ୍ଛା ।୩୧୧
ଗୋସିଂହ ମଯେସିଂହ ବଜ୍ରସିଂହ ସଉନିକ
କୁମ୍ଭ ନିକୁମ୍ଭ ସେ ମୟେସୁର ଦନ୍ତବକ୍ର ।୩୧୨
ବଜ୍ରନାଭ କାଳଦମନ ପୁଣ୍ଡରୀକ
ବାଣାସୁର ସୁରନାଭ ଦାସ ରାଜା ତାରାଖ୍ୟ ।୩୧୩
ମୁଢ଼ାସୁର ନାରକା ପ୍ରତ୍ୟକ୍ଷେ ଯେ ଜାରା
କୃତକେଶୀ ସହିତ ଯେ ନାଶିଲ ଅସୁରା ।୩୧୪
ଦୁର୍ଯ୍ୟୋଧନ ମୂଳେ ଲକ୍ଷେକ ରାଜା ନାଶି
ପୃଥ୍ୱୀର ଭାରାଭର ଆପଣେ ଉଶ୍ୱାସି ।୩୧୫
ନିଜର ବଂଶ ସ୍ୱାମୀ ଆପଣେ ନାଶ କରି
ଖେଡ଼ଲୀଳା ଭାବିଣ ନୀଳଗିରି ବିଜେ କରି ।୩୧୬
ପରମ ଆତ୍ମା ନିରଞ୍ଜନ ଆପଣେ ଦେବ ଗୋପ୍ୟ
ପିଣ୍ଡ ଆତ୍ମା ନୀଳଗିରି ବଉଦ ଶରୀର ସରୂପ ।୩୧୭
ହେ ବୁଧଜନେ ଯାବତ ପୁଣ୍ୟଥିବ ତାବତ ଭଜ ହରି
ମହାଘୋର ନର୍କରୁ ସେହି ସେ କରିବ ପାରି ।୩୧୮
ଶ୍ରୀ ନାରାୟଣ ଦେବଂକ ଚରଣେ ଲୟେ ଘେନି
ବଦୟନ୍ତି ସାରୋଳ ଦାସ ଗ୍ରନ୍ଥିକ ଶୂଦ୍ର ମୁନି ।୩୧୯
କୃପାଜଳ ନନ୍ଦିନୀ ଯେ ନର୍ମଦା ସରସ୍ୱତୀ
ପଶ୍ଚିମ କୋଣଳେ ଗୋ ହୋଇଲ ଉତପତି ।୩୨୦
ସଂସାର ସାଗର ଯେ କଳିକାଳ ଫାସି
ଯାହାର ନାମ ଧରନ୍ତେ ହରଇ ପାପରାଶି ।୩୨୧

ଯେବଣ ମହାଭାରଥ ମୁନିଂକର ପୁଣ୍ୟବାକ୍ୟେ
ତାହା ଲେଖନ କରିବାକୁ କିସ ମୋର ଶକ୍ୟେ ।୩୨୨
ନୋହଇ ପଣ୍ଡିତ ମୁ ନ ଜାଣଇ ଶାସ୍ତ୍ରବିଦ୍ୟା
ଜନମେ ଜନମେ ମୂର୍ଖ ମୁହିଂ ନ ଜାଣଇ ପଦସିଦ୍ଧା ।୩୨୩
ଜପମନ୍ତ୍ର ଶାସ୍ତ୍ର ମୁଂ ନ ଜାଣଇ କିଛି
ଯେସନେକ ଆଗ୍ୟାଂ ମୋତେ ଦିଲେକ କାମାକ୍ଷୀ ।୩୨୪
ହେ ବୁଦ୍ଧଜନେ ଜମ୍ବୋଦୀପ ଭ୍ରଥଖଣ୍ଡ ଓଡ଼ରାଷ୍ଟ ମଣ୍ଡଳେ
ଠାବ କଣୟାବତୀ ନଗ୍ର ଚନ୍ଦ୍ରଭାଗା ନଦୀକୂଳେ ।୩୨୫
ମହୋଦଧି ଉତ୍ତର ତଟେ ପ୍ରଶୁରାମଂକ ପାଟଣା
ପ୍ରଶୁରାମ ପୂଜାକଲେ ଯେବଣ ପ୍ରତିମା ।୩୨୬
ପ୍ରତକ୍ଷେ ଭାବାନୀ ସେହି ଶ୍ରୀଚଣ୍ଡୀ ସାରଳେ
ସେ ମୋର ତୁଳସୀମାଳା ହୋଇ ଲୁଲୁ ବକ୍ଷସ୍ଥଳେ ।୩୨୭
ହେ ପଣ୍ଡିତ ଜନେ ପ୍ରସନ୍ନ ହୋଇଲେ ପିଙ୍ଗଳା
ସେ ସର୍ବମଙ୍ଗଳା ହୃଦେ ମୋର ହାରା ।୩୨୮
ମୁଂ ତାହାର ପୁତ୍ର ହୋଇ ସେ ମୋହୋର ମାତ
କର ଅନଗ୍ରହ ମୋତେ ତୁଳୁସାର କାନ୍ତ ।୩୨୯
ସେହି ମାଳା ମୋହୋର ଗଳାର ଅଛି ଭରି
ଯେବଣ ନାମ ଧରି ସଂସାର ଜନେ ତରି ।୩୩୦
ବାଲୁତ ରୂପ ମୁହିଂ ତାର ପ୍ରତକ୍ଷେ ଦେଖଇ
ସେ ଯାହା କହଇ ତାହା ମୁଂ ଲେଖଇ ।୩୩୧
ସେ ସାରଳା ପ୍ରସନ୍ନେ ହୋଇଲା ମୋର ଗ୍ୟାନ
ଅଷ୍ଟାଦଶ ପର୍ବ ଗ୍ରନ୍ଥ କଲଇଂ ଲେଖନ ।୩୩୨
ସାରଳା ଚଣ୍ଡୀ ଚରଣେ ମୋହୋର ହୋଯେ ସେବା
ସାରୋଳା ଦାସକୁ ଅନଗ୍ରହ କରିବା ।୩୩୩
ସିଦ୍ଧ ସାରଳା ଚଣ୍ଡୀ ଚରଣେ ଅଭ୍ୟାସ
ସେବଇ ଶୂଦ୍ରମୁନି ସାରୋଳ ନିଜ ଦାସ ।୩୩୪
ଅଷ୍ଟାଦଶ ପର୍ବ ଯେ ହୋଇଲା ସମ୍ପୂର୍ଣ୍ଣ
ପଢ଼ିଲେ ଶୁଣିଲେ ଯେ ହୋଅଇ ବହୁତ ପୁଣ୍ୟ ।୩୩୫

■■

# ସୂଚୀ

# ଶ୍ରୀ ଚଣ୍ଡୀ ଯୁଦ୍ଧ ମହାପୁରାଣ ଲେଖନଃ

ଶ୍ରୀ ଗଣେଶାୟ ନମଃ
ଶ୍ରୀ ଚଣ୍ଡୀ ଦେବ୍ୟୈ ନମୋ ନମଃ
ଓଁ ଭଗବତେ ବାସୁଦେବାୟ ନମଃ ।

## ଗଣେଶ ବନ୍ଦନା

ବନ୍ଦଇ ଦଧିବାବନ ମଙ୍ଗଳ ବିଘ୍ନରାଜ
ଦର୍ଶନେ ସୁଫଳ ପ୍ରସନ୍ନେ ସିଦ୍ଧ କାର୍ଯ୍ୟ ॥୧॥
ଗିରିଜାର ନନ୍ଦନ ଭଗତ ମଛଳା
ତାଣ୍ଡବ ଆରୋପଣେ ଯେ ନୃତ୍ୟ ରଙ୍ଗେ ଭୋଳା ।
କାର୍ତ୍ତିକ ବିବାଦେ ଭଗ୍ନ ଯାର ଦନ୍ତ
ଖେଚରୀ ମଉରଙ୍ଗେ ଯେ ଅନେକ ନିପାତ ।
ଅଷ୍ଟାଦଶ ପୁରାଣ ଲେଖକ ଆଦିଭୂମି
ଜପ ମନ୍ତ୍ର ଜିତା ଯେ ବରଦ ନାମ ସ୍ୱାମୀ ।
କଉତୁକେ ବଞ୍ଚାଇଲା କାଳ କାମ ନିଦ୍ରା
ଅସାଧନେ ଯେହୁ ସାଧିଲା ମହାମୁଦ୍ରା ।
ମେରୁ ତତୁଲ୍ୟ କିଞ୍ଚିତ ବେନି ଡୋଳା
ଭାବେଣ ରସ ନାଏକ ସଦା ରସେଣ ଭୋଳା ।
ଯାବତ ଚନ୍ଦ୍ର ଦିବାକର ଆଦି ମୂଳ
ଦୁରାନ୍ତକ ଧଂସନ ଦେବ ଭଗତ ମଙ୍ଗଳ ।
ଶୁକ୍ଳାମ୍ବର ଶରୀର ନୀଳନ୍ଦିଦଳ ଶାଖା
ଯାବତ ଚନ୍ଦ୍ର ଯାନ୍ତି ତୁହି ସେ ଥାଉ ଯେକା ।
ତୁ ଦେବ ଜଗତ ଯେ ଧାରଣ ଦେବତା
ବ୍ୟାସର ଲେଖନ୍ତେ ଦେବ ତୁହି ସେ ଆଦି ବକ୍ତା ।
ଗିରିଜାର ନନ୍ଦନ ବାଳୁତ କୁତୁହୋଳେ
ବାରାନିଧି ଗଣ୍ଡୁଷ ଯେ କଲୁ ଖେଡ଼-ରସ-ମେଳେ ॥୧୦॥
ସମୁଦ୍ର ଗୋପ୍ୟ ଗଲା ଯାହାର ଥୋର ହସ୍ତେ
ନ ରହିଲା ଚିହ୍ନ ବର୍ଣ୍ଣ ତୋହୋର ଦେଖନ୍ତେ ।
ଜୟ ଜୟ ରାଜୀବ ଲୋଚନ ଜୀବଧନ
ମୁହିଁ ତାହା ଲୋଟିଲି ସ୍ୱାମୀର ବୟାଣ ।
ଗିରିଜାର ପ୍ରସନ୍ନେ ଯେ ଗିରିଜାନନ୍ଦନ
ସଦା ସମ୍ପଦ ନାଥ ପାଇଲି ଦର୍ଶନ ।
ସ୍ୱାମୀ ଅଜପା ମନ୍ତ୍ର ଯାହାର ଯୋଗଲୟେ
ତୋହାର ପ୍ରସନ୍ନେ ହୋଇଲି ନର୍ଭୟେ ।
ଶ୍ରୀ ବିଘ୍ନରାଜ ଚରଣ ହୃଦେ ଭାବି
ସଜନ ଜନ ସୋଦର ସାରଳା ଦାସ ସେବି ।

## ସାରଳାଦେବୀ ବନ୍ଦନା

ଆହୋ ଶୟଳ ସ୍ଥାପନକୁ କୃପାଜଳ ନାମେ ବ୍ରହ୍ମା
ସୃଷ୍ଟି କରତା ଯେବଣ ମହାତମା ।
ତାହା କୁଳେ ଉତପତ୍ତି ଯେବଣ ମହାଦେବୀ
ମନୁକାଳ ବଞ୍ଚାଇଲା ଯେବଣ ବୈଷ୍ଣବୀ ।
ନାମ ସଂକେତ ନର୍ମଦା ସରସ୍ୱତୀ
ଶାହାସ୍ରେଣ ପରିପୂର୍ଣ୍ଣ ଶ୍ରୀୟାରସେଣ ତ୍ରିପୁତି ।
କିଞ୍ଚିତ ଦ୍ରୋହେ ପିତାର ଅଭିଶାପ୍ୟେଂ
କିଞ୍ଚିତେ ହିଙ୍ଗୁଳାର ରୂପ ବହିଲାକ ଗୋପ୍ୟେଂ ।
ଜମ୍ବୁଦ୍ୱୀପ ଭ୍ରଥଖଣ୍ଡ ଓଡ଼ରାଷ୍ଟ୍ର ଈଶାନ୍ୟେ
ଗୋପ୍ୟେନ ଭାଗେନି ଚନ୍ଦ୍ରଭାଗା ତୀର୍ଥସ୍ଥାନେ ॥୨୦॥
ପ୍ରଶୁରାମ ପଟଣା କନକା ନାମେ ନଗ୍ରି
କଳିଯୁଗ ଚାରିଲକ୍ଷ ବତିଶ ସହସ୍ର ବରଷକୁ
ଦେବୀରୂପେଣ ସ୍ୱଭାଗ୍ୟକରି ।
ଶୟଳ ଜନ ତାରଣ ଶ୍ରୀ ସାରୋଳ ଚଣ୍ଡୀନାମ
ସଜନଜନ ସୋଦର ସେ ଯୋଗେଣ ଆଦିବ୍ରହ୍ମ ।
ଅଭୟେ ମାତାଙ୍ଗୀ ସେ ଶ୍ରୀ ସାରୋଳା ଚଣ୍ଡୀଦେବୀ
ଶୂଦ୍ରମୁନି ସାରୋଳା ଦାସ ଜନ୍ମେ ଭାବି ।
ହେ ବୁଧଜନେ ନ ଘେନିବା ମୋହୋର ଦୋଷ
କିଞ୍ଚିତ କର୍ମେ ମୋହୋର ଜନ୍ମେ ଜନ୍ମେ ଆଶ ।
ଜନ୍ମେଣ ମୂରୁଖ ଅଛଇ ଅସାଧି
ଅପଣ୍ଡିତ ଗୋତ୍ର ଯେ କିସ ମୋର ବୁଦ୍ଧି ।
ଅଭୟେ କାନ୍ତାନି ସେ ଜଂଖେର ପୁରବାସୀ
ସେ ମୋତେ ପ୍ରସନ୍ନେ କହଇ ବିଶ୍ୱାସି ।
ସେ ଦେବୀର ଆଜ୍ଞା ପ୍ରମାଣେ କରି
ଶାହାସ୍ର କହିତ ଯିବଇ ମୁଁ ଦେବୀର ନାମଧରି ।

ହେ ବୁଧଜନେ ସେ ପ୍ରସନେ ମୋତେ ଯାହା କହଇ
ଅଗୁଣ ପ୍ରକାଶେ ମୁଁ ତାହା ଲିହଇ ।
ଯେହ୍ନେ ମୋତେ ଆଜ୍ଞା ଦେଲେ ଭାବାନୀ
ତାହାର ଆଜ୍ଞାରେ ମୁଁ ଅଟଇ ଶୂଦ୍ର ମୁନି ।

## ମହିଷାସୁରର ତପସ୍ୟା

କୌରବ ମଣ୍ଡଳେ ପଚାରିଲେ ପରୀକ୍ଷରାୟେ
ଅଜ୍ଞାନୀ ବାଳୁତ ଭାବେ ତକ୍ଷେକ ସର୍ପଘାଏ ।।୩୦।।
ନାସିକା ବାମପୁଡ଼ା ତକ୍ଷେକର ଘାତ
ଅନ୍ତର୍ଜାଳେ ଥାଇଁ ରାଜା ହୋଏ ବିକଳିତ ।
ବିଷଘାତେ ଶରୀର ମହାଜାଳା
ନାରାୟଣ ଚିନ୍ତନ୍ତି ସେ ଅଭିମନ୍ୟୁ ବଳା ।
ନାରାୟଣ ସୁମରି ସେ କହିଲା ବିଷ୍ଣୁ ବାତ
ଶୁକ ମୁନି ଭେଟିଲେ ପରୀକ୍ଷ ଅଗ୍ରତ ।
ବେଦ ଶାହାସ୍ତ୍ରେ ନିର୍ଜିତ ଯେବଣ ମହାତମା
ଧର୍ମ ଉତପତ୍ତି କାଳେ ଭେଟିଲା ଶୁକ ବ୍ରହ୍ମା ।
ଅନ୍ତର୍ଜଳେ ଥାଇ ପ୍ରଣପତ୍ୟ କରଇ ରାଜା
ବସ୍ତ୍ର କୁଣ୍ଡଳ ରତ୍ନମାନ ଦେଇଣ କରଇ ପୂଜା ।
ଅନେକ ବିନୋୟି ଯେ ପରୀକ୍ଷ କରଇ ପୁଚ୍ଛା
ଜୟ ତପ ବାସୀ ପୂରାଅ ମନବାଞ୍ଛା ।
ଭୋ ମୁନି ଅପୁତ୍ରିକ ହୋଇଲି ନବଢ଼ିଲା ବଂଶ
ଦାଢ଼େ ମୃତ୍ୟୁ ଦେଖ ତକ୍ଷେକର ଦଂଶ ।
ଶୁକ ମୁନି ବୋଇଲେ ହୋଇବ ତୋତେ କାରଣ
ଏକ ଲଏ କରି ତୁ ବିଷ୍ଣୁପୁରାଣ ଶୁଣ ।
ପୁରାଣୁ ଜାତ ତୋ କରିବୁ ସନ୍ତତି
ବିଷ୍ଣୁଲୋକେ ବସିବୁ ଲଭିବୁ ସଦ୍‌ଗତି ।
ସଂକଳ୍ପ କରିଣ ହୋ ଶୁଣ ପାର୍ଥବୀର ନାତି
ଶୁକ ମୁନିକି ପୁଚ୍ଛାକଲା ଧର୍ମ ଶାସ୍ତ୍ର ଗତି ।।୪୦।।
ମୁନି ହେ ଅନନ୍ତକୋଟି ଅବତାର ହୋଇଲେ ନିଜେ ନାରାୟଣ ।
ଅନେକ ଦାନବ ସେ ଧଂସନ କରିଣ ।
ବଡ଼ ଅପୂର୍ବ କଥାଏ ମୁଁ ମନେ ସୁମରିଲି
ଅଦ୍‌ଭୁତ ଅବତାର ମୁଁ ଯେ ଦୁର୍ଗାରୂପ ବୋଇଲି ।
ମଂଷାସୁର ଦାନବ ଯେ ବଧ କଲାରଣେ
କହ ମୁନି ହେ ଶୁଣିବା ତୁମ୍ଭର ପୁରାଣେ ।
ଚଣ୍ଡୀର କଥା ଯେ ଶୁଣିତ ମୋର ଇଚ୍ଛା
ସଂକ୍ଷେପି କରିଣ ମୋର ପୂରାଅ ମନବାଞ୍ଛା ।

ଶୁଣିମା ସାନନ୍ଦ ବଦନ୍ତି ମହାତମା
ଶୁଣଇ ପରୀକ୍ଷ ଯେ କହଇ ଶୁକ ବ୍ରହ୍ମା ।
ଶୁଣ ହୋ ରାଜନ କାଶ୍ୟପଗୋତ୍ରେ ଯେ ଶିଂଘକାଗର୍ଭଗତେ
ରାହୁ ବୋଲିକରି ଉତପତ୍ତି ଏକ ପୁତ୍ରେ ।
ରାହୁର ପୁତ୍ର ଜମ୍ଭୁ ଦତ୍ୟ ବୋଲି
ଜମ୍ଭୁ ଦତ୍ୟର ପୁତ୍ର ଜପାସୁର ବୋଲି ।
ଜପାସୁର ନନ୍ଦନ ଖଜରାବୋଲି ବୀରା
ତାହାର ନନ୍ଦନ ଅସୁର ଅଙ୍ଗିରା ।
ଅଙ୍ଗିରା ନନ୍ଦନ ଯେ ଅମୟେ ବୋଲି ବୀରା
ଅମୟର ନନ୍ଦନ ଯେ ଉତପତ୍ତି ଲୋହସୁରା ।
ଲୋହସୁରର ହୋଇଲା ଯେ ଅନ୍ଧେକ ବୋଲି ପୁତ୍ରେ
ତାହାର ନନ୍ଦନ ଯେ ହୋଇଲା ତାଡ଼କା ଅସୁରେ ।।୫୦।।
ତାଡ଼କାର ନନ୍ଦନ ଯେ ହୋଇଲା ମଏ ଦାନବ
ତାହାର ନନ୍ଦନ ଯେ ଅସୁର ବଜ୍ରନାଭ ।
ଏହାର ନନ୍ଦନ ଯେ ଅସୁର ମାରୁଚି
ଆହୋ ମାରୁଚିର ନନ୍ଦନ କାଳିଂଚି ।
ଶିବ ପରତୋଷେ ନାମ ସତ୍ୟଯୁଗ କାଳେ
ନାରାୟଣ ଯୋଗଲୟେ ସେବା ବାକ୍ୟ ଦେବୀର କୋଳେ ।
ତାଡ଼େକା ବୋଲିଣ ହାବେ ଯେବଣ-କଉଣୋପ
ନାନା ତୀର୍ଥ ଭାଙ୍ଗିଲା ସେ ନାଶିଲା ସବୁ ତପ ।
କାମ ଯେ ଦହନ କଲା ମହାଦେବ
ତହୁଁତା ହୋଇଲା କୁମାର ସମ୍ଭବ ।
କୁମାର ନାଶକଲା ଯେ ତାଡ଼କା ଦର୍ପିଷ୍ଟ
ତହୁଁ ଜାତ ହୋଇଲା ସଉଦାସ ବଳିଷ୍ଟ ।
ସେ ବିରୋଧିଲା ସେ ଅଜୟେ ସ୍ୱର୍ଗପୁର
ଅମର ତେଜି ପଳାଇଲା ସୁନାସୀର ।
ଏହାଶୁଣି ଆଶ୍ରିଜ ହୋଇଲା ପରୀକ୍ଷରାଜା
ଶୁକ ମୁନି ଚରଣେ କଲା ଅର୍ଘ୍ୟ ପୂଜା ।
ଆହୋ ପରୀକ୍ଷ ଷାଠିଏ ଦୁହିତା ହୋଇଲା ଦକ୍ଷ ପ୍ରଜାପତିର
ପୁତ୍ର ଉପୁଜିଲା ଷାଠିଏ ଦୋହିତା ତାଙ୍କର ।
ଅସୁର ଅଂଶେ ଜାତ ହୋଇ ସେ ପିତା
ପୁତ୍ରେକ ଉତପତ୍ତି ହୋଇଲାକ ଏକା ।।୬୦।।
ବିବାଦକାଳେ ନାଶ ଗଲାକ ରାହୁ
ବେନି ଖଣ୍ଡ ହୋଇ ଗଲାକ ସହସ୍ର ବାହୁ ।
ବଡ଼ ଦୁରାପଦ ତ କହିଲ ମୁନିରାୟେ
ଲୋଖନ୍ତେ ଅସୁର ବଂଶ ବଡ଼ାଇ ଗହୀନ ହୋଏ ।

ବଦନ୍ତି ବ୍ରହ୍ମଋଷି ବ୍ୟାସ ସୁତ ମହାଋଷି ବ୍ରହ୍ମା
ଶୁଣହୋ ସାବଧାନେ ପରୀକ୍ଷ ମହାତମା ।
ଶିବ ପ୍ରତୋଷ କାଳେ ସତ୍ୟଯୁଗେ
ପ୍ରଳୟନ୍ତେ ଜଳମୟେ ହୋଇଲା ତିନି ସ୍ୱର୍ଗେ ।
ନିରଞ୍ଜନ ନାଥ ଯେ ଶୟନେ ଯୋଗ ବଳେ
ଅନାଦି ମହେଶ୍ୱରୀ ବାକ୍ୟଦେବୀର କୋଳେ ।
ନାସିକାରେ ରସ ପୂରାଇଲେ ଦେବନାରାୟଣ
ବେନି ବୀର ଉତପତ୍ତି ହୋଇଲେ ତତକ୍ଷଣ ।
ଆକାଶେ କ୍ଷେପନ୍ତି ସେ ବଢ଼ନ୍ତି କୌଣୋପ
ନାମ ସଂକେତ ଅଟଇ ଦୁଇଙ୍କରି ମଧୁ କୈଟଭ ।
ନାରାୟଣ ଶିରସ୍ଥାନ ପାଖେଣ ବାକ୍ୟଦେବୀ
ବିଷ୍ଣୁର କୋଳେ ସେ ଅଛି ପରମ ବୈଷ୍ଣବୀ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଜଳମୟେ ଅଗାଦ
ସେ ବେନି ଦତ୍ୟଙ୍କର ତହିଁ ନଡିନ୍ତିଲା ପାଦ ।
ଅତିୟ ସୁନ୍ଦର ଦେଖିଣ ଧବଳାଙ୍ଗୀ
ସେ ବେନି ବୀରେ ଯାଇ ଶୃଙ୍ଗାର ରସ ମାଗି ॥୭୦॥
ସରସ୍ୱତୀ ବୋଇଲେ ଉଠ ଦେବରାଏ
ମୋତେ ଅଭିଳାଷ ମାଗନ୍ତି ଏ ଦୁହେଁ ।
ଶୁଣିଣ ଶେଯ୍ୟା ଛାଡ଼ିଲେ ଯୋଗ ବଳେ
କାଳ ଅନଳ ଜାଣି ସେ ଭ୍ରମଇ ବେନି ଡୋଳେ ।
କରେଣ ଚକ୍ର ଘେନି ଯେ ବିକ୍ରମ ଅନାଦି
ଭୟେକରି ମଧୁକୈଟଭେ ବର ପ୍ରସାଦି ।
ସ୍ୱାମୀ ନଜାଣି ଆମ୍ଭେ ଯେ ମାତାକୁ କଲୁ ଦ୍ରୋହ
ତହିଁକି ଉଚିତ ଶାସ୍ତି ଦେବ ଆମ୍ଭକୁ ବିହ ।
ଭଗତି ମନାଇ ଯେ ମାଗିଲେ ବେନି ବୀର
ଯହିଁ ପାଣି ନାହିଁ ତହିଁ ଆମ୍ଭନ୍ତ ମାର ।
ଶୁଣି ନାରାୟଣ ଧଇଲେ ଭୁଜେ ତନୁ
ଦୁଇ ଦାନବ ପାତିଲେ ବେନି ଜାନୁ ।
ଗଦା ମାରିଣ ଯେ ମାଂସ କଲେ ଲୋଚା
ଜଳ ଉଦ୍ଦେଶି ପୃଥ୍ୱୀ କଲେ ସଞ୍ଚା ।
ମେଦାସୁର ମାରି ଯେ ସ୍ରିଜିଲେ ମେଦନୀ
ଆଦି ପୃଥିବୀଏ ମଧୁକୈଟଭ ବେନି ।
ଶ୍ରୀ ଶୁକ ବୋଇଲେ ହୋ ଶୁଣ ପରୀକ୍ଷଇଁ
ଅସୁର ମାଂସ ସେ ମେଦନୀ ହୋଇ ଅଛଇ ।
ପୃଥିବୀ ମଞ୍ଜି ସେ ଅଟଇ କୌଣୋ'ପ
ଏ ମେଦନୀରେ ପଡ଼ିଲେ ତାହାଙ୍କର ତେଜ ଦର୍ପ ॥୮୦॥
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରି ଜାତି
ଏସନେ ସେ ପୃଥ୍ୱୀ ଆବୋରି ଅଛନ୍ତି ।
ମହୀଦାସ ରାଜାର ଅଟଇ ମହୀସ୍ଥଳୀ
ତେଣୁକରି ନାମ ବହିଲା ମହିଆଳି ।
ପରୀକ୍ଷ ନୃପତି ଶୁଣିଲା ସନ୍ଦେହ
ବୋଇଲା ମୁନି ହେ ମୋତେ ସଂଚପିଣ କହ ।
ଶୁଣ ହୋ କଉରବ ବଂଶର ଆଦିପତି
ତୁ ଯାହା ପୁଚ୍ଛାକଲୁ ଏସନ ଅଟଇ ପୃଥ୍ୱୀ ।
ମହୀ ଦାସର ନନ୍ଦନ ସଉଦାସ ରାକ୍ଷସ
ଜଳତରଙ୍ଗ ବୋଲି ଯେ ହୋଇଲା ତାର ଶିଷ୍ୟ ।
ଜଳ ତରଙ୍ଗ ନନ୍ଦନ ଅସୁର ବୀର ମେଧା
ଏସେ ଆକାଶକୁ କଲା ବଡ଼ ଶରଧା ।
ମେଧାର ନନ୍ଦନ ଯେ ଅସୁର କୃତକେଶୀ
ସଂସାର ଦହିଲା ସେ ନାଶିଲା ସକଳ ଋଷି ।
କୃତକେଶୀର ସୁତ ଯେ ତ୍ରିଜଟାସୁର ନାମ
ଏହାର ଭୟେ ସେ ଦେବ ପଳାଇଲେ ଅତିଶ୍ରମ ।
ତ୍ରିଜଟାସୁରର ଯେ ପୁତ୍ରେକ ହୋଇଲା
ଭାସ୍କର ସେବି ସେ ଭାସ୍କର ନାମ ପାଇଲା ।
ଭାସ୍କର ପୁତ୍ର ସେ ପିଙ୍ଗଳେଶ୍ୱର ଦାନେବ
ବଜ୍ରସୁର ବୋଲିକରି ତାହାର ପୁତ୍ରେ ହୋଇବ ॥୯୦॥
ବଜ୍ରସିଂହର ପୁତ୍ର କପିଳ ସିଂହ ନାମ ଦନୁଜ
କପିଳ ସିଂହର ପୁତ୍ର ମଂଷାସୁର ରାଜ ।
କପିଳ ସିଂଘ ଦାନବ ଯେ ଈଶ୍ୱର କଲା ପୂଜା
ନୀର ଆହାର ସେ ଖଟଇ ଦେବ ରାଜା ।
ଚତୁଃବିଂଶ ବରଷ ଘୋର ତପ କଲା
ଅତି ଘୋର ତପେ ସେ ଈଶ୍ୱର ବିଜେ କଲା ।
ବର ମାଗ ବୋଲି ସେ ବୋଇଲା ଈଶ୍ୱର ଦେବତା
କପିଳ ସିଂଘ ବୋଇଲା ମୁଁ ହୋଇବି ସ୍ତିରୀ ଜିତା ।
ସ୍ତମ୍ଭନ ବିଦ୍ୟା ଯେ କହିଲେ ଦେବରାଜ
ଶୃଙ୍ଗାର ରତିରସେ କେହି ସମାନ ନୋହିବ ।
ଏସନେକ ବୋଲି ବର ଦେଲେକ ଈଶାନ
ଅନେକ ବିଳସିଲା ସେ ଦାନେବ ଯାତୁଧାନ ।
ଆହୋ ପରୀକ୍ଷ ରାଜା କପିଳ ସିଂହର ଧର୍ମରତ୍ନ ବୋଲି ଭାରିଜା
ଶୃଙ୍ଗାରର ଭୟେ ସେ ସ୍ୱାମୀକି କଲା ତେଜ୍ୟା ॥୯୭॥

ମହିଷି ରୂପ ଧରି ପଳାଇ ଯୁବତୀ
ସିଂହଳ ଦେଶେ ଯାଇଁ ସେ ଗୋପ୍ୟ କଲା ସ୍ଥିତି ॥୯୮॥
ଲୋଡ଼ିଣ ଅନେକ ଦୀପ ଖୋଜଇ କପିଳ ସିଂହ
ଭାର୍ଯ୍ୟାକୁ ନପାଇ ସେ ବହୁତ ଉଦବେଗ ॥୯୯॥
ଯମର ବାହାନ କୃତାନ୍ତେକ ନାମେ ମହିଷା ।
ସିଂଘଳଦ୍ୱୀପେ ଚଳଇ ସେ ତହିଁ ତାର ବସା ॥୧୦୦॥
ଶୁଣ ହୋ ପରୀକ୍ଷ ସିଂଘ ମାସ ଅମାବଇ ଦିନ ।
ରବିବାର ମଘା ନକ୍ଷେତ୍ର ସେ ସେଦିନ
ଯମର ବାହନ ସେ ସିଂଘଳ ଦେଶେ ଭ୍ରମଇ
ମଇଁଷି ଦେଖିଣ ସେ ଗାତ୍ରେ ଉଲ୍ଲସଇ ।
ସେ କପିଳ ସିଂଘର ଭାରିଜା ମଇଁଷି ରୂପ ଧରିଥିଲା
ଯମର ବାହନ ମଇଁଷିକି ଦେଖିଲା
ପଳାଇ ମଇଁଷି ଯେ ସିଂଘଳ ଦେଶ ଭ୍ରମି
ଗୋଡ଼ାଇ ବାହନ ସେ ପବନହୁଁ ଉତ୍‌କର୍ମୀ
ନବ ଲକ୍ଷ ଯୋଜନ ସେ ପଳାଇଲା ଭୟେ
ଛିଦ୍ରେ ନଛାଡ଼ଇ ସେ ଗୋଡ଼ାଇ ତଳୟେ
ସିଂଘଳ ଦ୍ୱୀପେ ଏକ ବନସ୍ତେକ ଅଛି
ତହିଁର ଭିତରେ ନଦୀ ବହଇ କାମାକ୍ଷୀ
ସେ କାମାକ୍ଷୀ ନଦୀ ତଟେ ସୁବର୍ଣ୍ଣ ଗିରି ପର୍ବତ
ଶିଶୁନାମେ ବଟ ତହିଁର ତୁଲେ ପ୍ରଶସ୍ତ
ସେ ପର୍ବତର ଉପରେ ଶିଶୁବଟ ତଳେ
ମଇଁଷିକି ମାଡ଼ିବସିଲା ତହିଁବଳେ
ରାଗେଣ ଶୃଙ୍ଗାର କଲା ଯମର ବାହନ
ଅକ୍ଷୟେ ବୀର୍ଯ୍ୟେକ ସେ ଛାଡ଼ିଲା ତୋଷ ମନ
ଅତିଅନ୍ତ ଶୃଙ୍ଗାରେ ଛାଡ଼ିଲା ମହାବୀର୍ଯ୍ୟ
ସଇନ୍ଦୁ ଉତପତି ଯେ ହୋଇଲା ତନୁଜ ॥୧୦୦॥
ମହାବଳବନ୍ତା ଯେ ମାତାର ମହାତେଜ
ମଇଁଷିର ଗୋଟି ଶରୀର ସାନୁଜ
କଣୟ ନିର୍ବାଣ ସେ ବାଳଅର୍କ ଜାଣିତେଜ
ନିର୍ଧୁମ ଅଗ୍ନିଜାଣି ତେଜ ଯେ ବିରାଜ
କପିଳ ସିଂଘ ବନେ ସେ ଭ୍ରମଇଁ ଚଉକତି
ଅନେକ ଶ୍ରମେ ସେ ଲୋଡ଼ଇ ଚଉକତି
ଲୋଡ଼ନ୍ତେ ଭେଟିଲା ସେ କପିଳ ମହରଷି
ମଇତ୍ର ଯୋଗ ହୋଇଣ ସେ ପ୍ରୀତି ହୋଇଲେ ବସି
କପିଳସିଂଘ ବୋଇଲା ମୋର ଧର୍ମରେଖା ଭାରିଜା
ପ୍ରୌଢ଼ା ବୟସେ କଲା ମୋତେ ତେଜ୍ୟା
ତାହାକୁ ନ ପାଇ ସେ ଆକାଶକୁ ଧାଡ଼ି
ତାହାର ରାଗେ ଅନେକ ହରିଲି ଦେବସ୍ତିରୀ ।
କପିଳ ଋଷି ବୋଇଲେ ଆପଣା ଭାରିଜା ପ୍ରିୟବତୀ
ତାହାର ନ ଥିଲେ ସେ କାହାକୁ ହିଁ ନାହିଁ ଗତି ।
ଋଷି ବୋଇଲେ ମୁଁ ସିଂଘଳ ଦେଶେ ଥିଲି
ମହିଁଷି ମହିଷାର ଶୃଙ୍ଗାର ଦେଖିଲି ।
ସେ ମହିଁଷି ବୋଇଲା ମୁଁ ନୋହଇ ଏହେନ୍ନେକ ଜୀବ
କପିଳ ସିଂଘର ଭାରିଜା ମୁଁ ଧର୍ମରେଖା ସମ୍ଭବ ।
ତୁ ଦେବ ବାହାନ ମୁଁ ଅଟଇ ଅସୁରୀ
ମୋତେ ଛୁଅନ୍ତେ ଅନେକ ଦୋଷ କାରୀ ॥୧୨୦॥
ଯମରାଜ ବାହନ ଯେ ନଶୁଣଇ ତାହା
ବଳେ ଶୃଙ୍ଗାର କଲା ସେ ମନର ଉସାହା ।
କହିଣ କପିଳ ଋଷି ଯେ ଗଲେ ଅଂନ୍ତର୍ଦ୍ଧାୟେ
କପିଳ ସିଂଘ ଯାଇ ସିଂଘଳ ଦୀପ ପାଏ ।
ସୁବର୍ଣ୍ଣକୁଟ ପର୍ବତେ ଭେଟିଲା ଭାରିଜା
କଣୟଗିରି ସମାନେ ସଙ୍ଗେ ଅଛି ତନୁଜା ।
କପିଳ ସିଂଘ ଦନୁଜ ତୁଷ୍ଟ ହୋଏ ଦେଖି
ପରଦାରା ଦୋଷମାନ ପୁତ୍ରକୁ ଦେଖି ଉପେକ୍ଷି ।
ସ୍ୱାମୀକି ଦେଖି ଯେ ଅନେକ ସଂକୋଚିତ
ନିଜ ରୂପ ଧଇଲା ସେ ଛାଡ଼ିଣ ବିକୃତ ।
ଧର୍ମରେଖା ବୋଇଲା ସ୍ୱାମୀ ତୋହର ତେଜ ନୋହଇ ସହି
ତଦ ନିମନ୍ତେ କରି ଅଇଲଇଁ ମୁହିଁ ।
ଯମର ବାହନ କୃତାନ୍ତକ ମହିଷି
ସେ ମୋତେ ବଳକ୍ରାରେ କଲାକ ଯେ ନାଶି ।
ମୁହିଁ ପରଦାରିଣୀ ହୋଇଲି ତୁ ବାହୁଡ଼ିଣ ଯା ଯା
ମୋହର ଦେଖନ୍ତେ ଅସୁର କୁଳର ହୋଇଲା ଲଜ୍ୟା ।
କପିଳ ସିଂଘ ବୋଇଲା ମୁଁ ନ ଯିବି ନିଜ ଦେଶ
ଏ ପୁତ୍ର ଘେନି ଆମ୍ଭେ କରିବା ଗୃହ-ବାସ ।
ଶୁଣ ହୋ ପରୀକ୍ଷ ବୋଲନ୍ତି ଶୁକ ବ୍ରହ୍ମା
ସିଂଘଳ ଦେଶରେ ରହିଲା ସେ ମହାତମା ॥୧୩୦॥
କାମାକ୍ଷୀ ନଦୀ କୂଳେ ରହିଲା ନଗ୍ରକରି
କଟେକ ରଂଚିଲା ସେ ଜେନାବତୀ ନଗ୍ରି ।
ପୁତ୍ରକୁ କୋଳେ ଧରି କପିଳ ସିଂଘ
ପୁତ୍ରର ନାମ ଦେଲାକ ମହିଷା ସିଂଘ ।
କପିଳ ସିଂଘ ଧର୍ମରେଖା ମହିଷାକୁ ଘେନି
ଏବିଧି ରାଜ୍ୟ ସେ କରନ୍ତି ଜନତିନି ।

ମହିଷାସୁର ହୋଇଲା ଶହସ୍ରଧାରୀ
ବ୍ରହ୍ମାକୁ ତପସ୍ୟା କଲା ନୀର ଆହାର କରି ।
ନବ ସହସ୍ର ବରଷ ନିରାଶ ମହାତପ
ଅନେକ ସ୍ତୁତି ସେ କରଇ କଉଣପ ।
ମହା ଅନଳ ସ୍ଥାପି ସେ ମାଂସ କାଟି ପକାଇ
ଅଗ୍ନିର ଭିତରେ ସେ ରୁଧିର ମାଂସ ଦେଇ ।
ପୁଣ କଅଁଳଇ ସେ ପିତାର ନିରାଶେ
ପୁଣ ଆହୁତିରେ କାଟିଦିଅଇ ମାଂସେ ।
ଏତେକ ପ୍ରମାଣେ ସେ ତପ କରଇ ଦାନେବ
ନବ ସହସ୍ର ବରଷ ରାତ୍ର ଦିବ ।
ଏତେକ କଷ୍ଟୋର ସେ ଦାନେବ ଦେଖିଲା ବର୍ଣ୍ଣଚିହ୍ନ
ପ୍ରାଣ ବହିଲା ସେ ଶରୀର ଯାତୁଧାନ ।
ଏକବିଂଶ ସହସ୍ର ବରଷେ ଯାଏ ଧ୍ୱଂସି
ଆହୁତିଏ କରି ସେ ଅଗ୍ନିରେ ଯାଇ ପଶି ॥୧୪୦॥
ଅନଳ ଭିତରେ ନେଇ ନିବେଶିଲା କାୟା
ଦହନ ନୋହିଲା ସେ ପିତାମହର ମାୟା ।
ଦହଇ ବହନି ଯେ ନିଜ କାୟା ଲାଗି
ଦୁରାପଦ କଠୋର ଯେ ଜୀବନ ପରିତ୍ୟାଗି ।
ଏସନ ନିରାଶ ଯହୁଁ ଦେଖିଲା ପିତାମହ
ଅଶୀ ସହସ୍ର ବରଷେ ଜାଣିଲେ ସନ୍ଦେହ ।
ମହାଘୋର କଷ୍ଟୋର ତପ ଦେଖି ବୃନ୍ଦାଅର୍କେ
ସମସ୍ତେ ଜଣାଇଲେ ସେ ବ୍ରହ୍ମାର ସମୀପେ ।
ରୁଦ୍ର ଚନ୍ଦ୍ର ଯମ ପବନ ବୃହସ୍ୟତି
ଇନ୍ଦ୍ର ସୂର୍ଯ୍ୟ ବରୁଣ କୁବେର ପ୍ରଭୃତି ।
ଗ୍ରହଗଣ ଆଦିକରି ସମସ୍ତ ଦେବଲୋକେ
ସମୁପେତ ସମସ୍ତେ ହେଁ ମହାଶୋକେ ।
ଯଶୋବନ୍ତୀ ଭୁବନେ ବିଜୟେ ବେଦବର
ଆସ୍ଥାନର ତଳେ ସମସ୍ତେ ଦେବାସୁର ।
ଶତ ସହସ୍ର ଦଣ୍ଡବତ ପ୍ରଣମିତ ଦଇନି
ଦେଖିଣ ପ୍ରତିବାକ୍ୟ ଦିଅନ୍ତି ପଦ୍ମଯୋନି ।
ଇଦଂବାକ୍ୟ ପିତା ତୋର ବାକ୍ୟ ରୁଚି
ସଦୟ ଭାବେଣ ଯେ କହନ୍ତି ବିରଞ୍ଚି ।
କିମ୍ଭୂତ କାରଣ କହସି ଦେବଲୋକେ
ମୁଖେଣ ଅଙ୍ଗୁଳି ଭରି ସେ କହନ୍ତି ମହାଶୋକେ ॥୧୫୦॥
ବୃହସ୍ୟତି ବୋଇଲେ ତୁ ଦେବ ଜଗତର ବନ୍ଧୁ
କାରଣ ନାରାୟଣ ତୁ କୃପାବାରିସିନ୍ଧୁ ।
ତୁ ଦେବ ଶୟଳ ଜନ ନାଥ ଚିନ୍ତା
ତୁ ଦେବ ନବସୃଷ୍ଟି ବିହନ୍ତା ବିଧାତା ।
ତୁ ଦେବ ସଞ୍ଚିଲେ ଛପନ କୋଟି ଜୀବଜନ୍ତୁ
ତବ ଚିନ୍ତାଏ ଶୟଳ ଦୃଢ଼ ହେତୁ ।
ତୁ ଦେବ ଅନାଦି ସିଦ୍ଧ ଅବିକାର ଚିନ୍ତା
ପ୍ରଳୟ ଉଦ୍ଧାରଣ ନାଥ ବିହନ୍ତା ବିଧାତା ।
ତୋହୋର ବିହିଲେ ସକଳ ଜୀବ ଚଳି
ତୋହୋର ନିଦ୍ରାଗଲେ ସମସ୍ତେ ହେଁ ଢଳି ।
ସ୍ୱାମୀ ପ୍ରଳୟ ଗତେ ଯାଇ ଏକ ଦିବ
ଏ ତୋହର ମହିମା ଲେଖନ ନ ଯିବ ।
ଶ୍ରୀବହ୍ନ ଦେବତା ଚରଣେ ଶରଣେ
ବଦନ୍ତି ସାରୋଳ ଦାସ ମୁକତ ବାଟ ଯେଣେ ।

* * *

ଶୁଣ ହୋ ପରୀକ୍ଷ ରାଏ ବୋଲନ୍ତି ଶୁକ ମୁନି
ଦେବତାଙ୍କ ବିନୟେ ଦେଖି ବୋଲନ୍ତି ପଦ୍ମଯୋନି ।
ହେ ଦେବତାମାନେ ସ୍ତୁତି କି କାରଣ
ବଇକୁଳ୍ୟ ହୋଇ କହୁଅଛ କେବଣ ବୟାଣ ।
ବୃହସ୍ୟତି ବୋଇଲେ ତୁ ସଚରାଚର ଆଦିପତି
ରାହୁର ବଂଶେ ମହିଷାସୁର ଦତ୍ୟ ଉତ୍ପତି ॥୧୬୦॥
ବଡ଼ାଇ ନିରାଶ ତପ କରଇ ସିଂହଳ ଦ୍ୱୀପେ
କାହାର ସମାନ୍ୟ ରୂପ ଘେନିମ ସେ ଭଗତି ଅନରୂପେ ।
ଦଇବେ ଦୁରାନ୍ତେକ ସେ ଅଟଇ ରାକ୍ଷସ
ତୋତେ ସେବିଣ ସେ ଅମର ପଦ ଆଶ ।
ଇନ୍ଦ୍ର ବୋଇଲା ମୋର ଘେନିବ ଅମର
ମୋହୋର ପଦ ଘେନିମ ବୋଇଲା କୁବେର ।
ଯମ ବୋଇଲା ଯେ ଘେନିମ ମୋର ପଦ
ବୃହସ୍ୟତି ବୋଇଲେ ସେ ଅନେକ କରିବ ପ୍ରମାଦ ।
ଦେବଙ୍କର ମୁଖୁଁ ଏସନ ବାଣୀ ଶୁଣି
ପିତା ବୋଇଲେ ମୁଁ ଯିବି ଏହିକ୍ଷଣି ।
ବଡ଼ାଇ କଷ୍ଟୋର ସେ କରିଅଛି ତପ
ଅବଶ୍ୟ ଦେବଇ ମୁଁ ତହିଁକି ଅନରୂପ ।
ଅଥବା ଯେ ଅବା ପାର ବୁଦ୍ଧିକର
ଯେମନ୍ତେ ସମ୍ପଦହେ ନ ହରଇ ତୁମ୍ଭର ।
ଇଦଂ ବାକ୍ୟ କହିଲେ ସେ ଦେବବର ବିରଞ୍ଚି
ଆମ୍ଭେ ବୁଝି ସିନା ହୋ କିସ ଅର୍ଥେ କରୁଅଛି ।
ବାଞ୍ଛିତ କର୍ମ ବୁଝିବା କିସ ବୋଲଇ

କଥା ସମୁଝି ଜାଣିମା ନା କିସ କହଇ ।
ଚଳ ହେ ବୃନ୍ଦାଅର୍କେ ନକର କିଛି ଚିନ୍ତା
ମୁହିଁ ସେ ସମସ୍ତଙ୍କୁ ହିଁ ବିହି ବିଧାତା ॥୧୭୦॥
ଅନେକ ସମାର୍ଜନା କରି ଦେବତାଙ୍କୁ ପଠିଆଇଁ
ଯେ ଯାହାର ଭୁବନେ ବିଜେକଲେ ଯାଇଁ ।
ଶୁଣ ହୋ ପରୀକ୍ଷ ବୋଲନ୍ତି ଶୁକମୁନି
ଘନ ଘନ ଆସନ କମ୍ପଇ ପଦ୍ମଯୋନି ।
ବିଜୟେ ବେଦବର ମରାଳ ବାହନେ
ତୁଲେ ଗୋଡ଼ାବନ୍ତି ବ୍ରହ୍ମ ଋଷିମାନେ ।
ବଶିଷ୍ଠ ବିଶ୍ୱାମିତ୍ର ବାମଦେବ ଅଗସ୍ତି
ପୌଲସ୍ତି ଶତମନୁ ବାଲମୀକ ବ୍ରହ୍ମଯତି ।
ନାରଦ ବିଭାଣ୍ଡେକ ମାରକଣ୍ଡ ସୁଦେବ
ଭାରଦ୍ୱାଦଶ ସୁମନ୍ତେକ ବାମଦେବ ।
ଋଷିସିଂଘ କୌଶିକ ଭୃଗୁ ମୁନି ତୁଲେ
ହାହା ହୁହୁ ତିନିକୋଟି ଦକ୍ଷଗଣ ମେଳେ ।
ଏହାଙ୍କ ମୂଳେ ବହୁତ ବାଳଖିଳା
ଚଳନ୍ତି ବ୍ରହ୍ମଦେବତା ଭଗତ ଜନଭୋଳା ।
ସପ୍ତ ବ୍ରହ୍ମାଣ୍ଡ ଭିତରୁ ବାହାର ବେଦବର
ଆସି ପ୍ରବେଶ ହୋଇଲେ ସିଂଘଳ ଦ୍ୱୀପର ।
କାମାକ୍ଷୀ ନଦୀ ତଟେ ସୁବର୍ଣ୍ଣଗିରି ପର୍ବତ
ଶିଶୁପା ବୃକ୍ଷ ତଳେ ତପ ଆଶ୍ରମ ନିର୍ମିତ ।
ସେହୁ ସ୍ଥାନ ମହେଷାର ତପ ଆଶ୍ରମ
ଦେଖିଣ ଆଶ୍ରିଯ ସେ ହୋଇଲେ ଦେବବ୍ରହ୍ମ ॥୧୮୦॥
ସାଧୁରେ ଦାନେବ ବୋଲିଣ ପରଶଂସି
ମଯେଷାର ସନିଧେ ବିଜେ କଲେ ଆସି ।
ଦେଖିଣ ପ୍ରଶଂସା କରନ୍ତି ଦେବାଦେବ
ଗତେଣ ନଥିଲାର ଆଗତେଣ ନୋହିବ ।
ପର୍ବତର ଉପରେ ରହିଲେ ବ୍ରହ୍ମଚାରୀ
ମରାଳ ବାହାନୁ ଦେବ ବେଗେଣ ଉତୁରି ।
କମଣ୍ଡଳୁ ପାଣି ନେଇ ନିବାଇଲେ ବହନି
ଦେଖିଲେ ଲୋହିତ ବର୍ଣ୍ଣ ମଏଁଷାର ଜ୍ୟୋତି ଜାଣି ।
ନଖମୁଖ ନାସିକ ଚାରି ଚରଣ ନାହିଁ
ମଣିସ୍ତମ୍ଭ ପ୍ରାୟେ ଦିଶଇ ତାର ଦେହିଁ ।
ଚାହିଁଲେ ପିତାମହ ଅବଲୋକନ ଦୃଷ୍ଟି
ଦକ୍ଷିଣ କରେ ଦେବ ଅମୃତ କଲେ ବୃଷ୍ଟି ।
ଅମୃତ ପାଇ କଉଁକିଲା ଚରଣ ଭୁଜ
ଅମୃତ ଲେପନ୍ତେ ତେଜ ବିକାଶିଲା ଦ୍ୟୁତିଦନୁଜ ।
ଲୋହିତ ବର୍ଣ୍ଣ ଶରୀର ମଂଯେଷାର ମୁଣ୍ଡ ଗୋଟି
ପିତାର ଦେଖନ୍ତେ ସୂର୍ଯ୍ୟମଣ୍ଡଳେ ଥାଇ ଘୋଟି ।
ପିତା ବୋଇଲେ ବର ମାଗ କୌଣୋପ
ଶୁଣି କୋପ କଲା ମଂଷା ଅତିହିଁ ଦୁରାତପ ।
ଦୁଃଖେ ଅରଜିଲିଏ ମୋହର ଯେବଣ ତପ
ତାହା କେବଣ ମହାତମା ଭାଙ୍ଗିଲା ଏତେ ଚାପ ॥୧୯୦॥
କେବଣ ମହାତମା ତୋର କାହିଁ ଗୃହବାସ
ଏଡ଼େବଡ଼ କଷ୍ଟୋର ତପ କଲୁ ନାଶ ।
ନିଶ୍ଚୟେ ଆଜ ତୋରେ ଘେନଇଁ ମୁହିଁ ପ୍ରାଣ
ଏଡେକ ମତ୍ତ ଗର୍ବରେ କେବଣ ବ୍ରାହ୍ମଣ ।
ଧାତା ବୋଇଲେ ରେ ତୁ ଯାହାକୁ ତପ ସଞ୍ଚି
ମୁହିଁ ସେ ପିତାମହ ଅଭୟେ ବିରଞ୍ଚି ।
ମହିଷାସୁର ବୋଇଲା ଦେବ ତୁହି ଯେବେ ପିତା
ନିଜ ରୂପ ତୋର ଦେଖଇ ଦେବଧାତା ।
ଶୂନ୍ୟ ଶବଦ ଶୁଭାଇ ଉଠାଉକିନା ମୋତେ
ବ୍ରହ୍ମ ଚିହ୍ନ ନ ଦେଖିଲେ ପ୍ରତେଯିବି କେମନ୍ତେ ।
ମହିଷାସୁର ବଚନେ ପିତାମହ ପ୍ରକାଶି
ଅଭୟେ ଶରୀର ନାଥ ସ୍ୱରୂପ ଦେଖାସି ।
କଷ୍ଟୋର ବଚନେ ସେ ନିଜ ରୂପ ବିଧାତା
ସ୍ୱରୂପ ପ୍ରକାଶିଲେ ସେ ଜଗତ କରତା ।
ବାମେଣ ସୁବନ୍ତି ଯେ ଡାହାଣେ ବିଧାତା
ଆଗେଣ ବ୍ରହ୍ମର ବଦନ ପଛେ ବିରଞ୍ଚି କରତା ।
ଅଇରି ଜ୍ୟୋତିରୁ ଧନୁର ଶିଶୁମନା
ନିରାକୁଳ ଶରୀର ଏକାଦ୍ୱାଦଶ ସାଧନା ।
ଚତୁର ବଦନେ ଯେ ଶୋଭିତ ଅଷ୍ଟ ଭୁଜ
ଦଣ୍ଡ କମଣ୍ଡଳୁ ଜପାମାଳ ସଜ ॥୨୦୦॥
ବ୍ରହ୍ମା ଶକତି ଅଗ୍ନାଅଗ୍ନି ପ୍ରଜୋତିଶର
ଅଭୟେ କବଚସେନାହ ବଜ୍ରମୁଦୁଗର ।
କରକେ ଉଜ କରେଣ ବ୍ରହ୍ମବେଣୀ
ଚର୍ତୁସମଧେକ ଅଭୟେ ବେଦବାଣୀ ।
ପରମ ନିରାକୁଳ ପବିତ୍ର ବେଦପୋଥି
ଲୋହିତ ବର୍ଣ୍ଣ ଶରୀର ବିଜେ ବେଦପତି ।
ଦ୍ୱାଦଶ ଶ୍ରୀବସ୍ତ୍ର ଯେ ତ୍ରିକସ୍ତ୍ର ବସନ
ଲମ୍ବିତ କବେରୀ ଗୋପୀ ଚନ୍ଦନ ଚିହ୍ନ ।
ଗୋପ୍ୟାନ ଜପା ଅଜପା ମହାମନ୍ତ୍ରେଣ ଯୁକ୍ତା

ମହାପ୍ରୋଖିଣୀ ବିଜୟେ ନିରାକୁଳ ଦେବତା ।
ଗାଏତ୍ରୀ କବଚ ପବିତ୍ର ନାମବନ୍ତ ।
ଅନନ୍ତ ଅବ୍ୟୟ ଅବିକାର ଯେ ସତତ ।
ଅହୋ ପରୀକ୍ଷ ଅନନ୍ତ କୋଟିବ୍ରହ୍ମାଣ୍ଡକୁ ଯେବଣ ବହନ୍ତା
ମୁହିଁ ତାହା ବର୍ଣ୍ଣିବାକୁ କିସ ଯେ ଲେଖନ୍ତା ।
ଅସୁର ଦେଖନ୍ତେ ଯେ ନାରାୟଣ ବିରଞ୍ଚ
ଏକ ଶରୀର ଶୂନ୍ୟ ଭୁବନଯାକ ସଞ୍ଚ ।
ଦେଖିଣ ପ୍ରଳୟ ଦାନବ ମହାବଳି
କଲ୍ୟାଣ ବାଞ୍ଛାଦେବ କରନ୍ତି ବ୍ରହ୍ମକୁଣ୍ଡଳୀ ।
କରତଳ କଲ୍ୟାଣ କରନ୍ତି ବ୍ରହ୍ମବାଦୀ
ମାଗରେ ବର ବୋଲି ପିତାମହ ସମାଦି ॥୨୧୦॥
ମହିଷା ବୋଇଲା ଦେବ ଦେବୁ ଯେବେ ବର
ଯୁଗାନ୍ତେକ ପୁରୁଷଟି ସାକ୍ଷ୍ୟ ମୋହୋର ।
ଯମ ପବନ ଅଗ୍ନି ଜଳ ଶୂନ୍ୟ
ଏମାନେ ସାକ୍ଷୀଟି ଦୃଢ଼ ଯେ ବଚନ ।
ବର ମାଗ ବର ମାଗ ବୋଲି ପିତାମହ ବୋଲି
ସମାସ୍ୟା ମୋହୋର ଯେ ତୋତେ ହାଦେ କଲି ।
ମହିଷା ବୋଇଲା ଦେବ ଦୃଢ଼ ଯେବେ ତୋର ବର
ଚାରି ଯୁଗେଂ ମୁଁ ଯେ ହୋଇବି ଅମର ।
ଅନେକ ମତେ ମୁଁ ତୋହୋର ଚରଣେ ସେବି
ପ୍ରଳୟକାଳ ଯାଏ ମୁଁ ହୋଇବି ତ୍ରିଜୀବୀ ।
ସମର କାଳଦଣ୍ଡେ ମୁ ନୋହିବି କ୍ଷଏ
ନାନା ରୋଗମାନ ନପୀଡ଼ିବେ ମୋର କାଏ ।
ଶରୀର ବଜ୍ରଯେ ହୋଇଥିବ ମୋହୋର
ଅଙ୍ଗେଣ ଘାତ ଯେ ନୋହିବ ନାନା ଶର ।
ଦେବ ସହସ୍ର ମାନ ସହିବ ମୋର ଅଙ୍ଗ ।
ପର୍ବତ ପଡ଼ି ଅଙ୍ଗେ ହୋଇବାକ ଭଙ୍ଗ ।
ଅଗ୍ନିରେ ପୋଡ଼ିଲେ ମୁହିଁ ନ ପୋଡ଼ିବି
ଜଳେଣ ପଡ଼ିଲେ ମୁହିଁ ନ ବୁଡ଼ିବି ।
ଋଷିଙ୍କର ଶାପ ମୋତେ ନ ପଡ଼ିବ ବାଧା
ତପୀଙ୍କର ସମାନ୍ୟେ ହୋଇବି ମୁହିଁ ସିଦ୍ଧ୍ୟା ॥୨୨୦॥
ଦେବଲୋକ ନାଗଲୋକ ନରଲୋକ ସହିତେ
ଦକ୍ଷ କିନର ଦାନବ ନ ଅଣ୍ଟିବେ ମୋତେ ।
ଇନ୍ଦ୍ର ରୁଦ୍ର ବରୁଣ ଯମ ସୂର୍ଯ୍ୟ
ତ୍ରୈଲୋକ୍ୟ ବିକାଶିବ ଏ ମୋହୋର ତେଜ ।
ଉଲୁକ ବିଦ୍ୟାରେ ମୁଁ ଅଦୃଶ୍ୟ ହୋଇବି
ଯେଉଁରୂପ ବାଞ୍ଛା ମୁଁ ସେ ରୂପ ଧରିବି ।
ଦେବତାଏ ନ ରହିବେ ଏ ମୋହୋର ଡରେ
ପବନ ଅଗ୍ନିଂ ନ ପଶିବ ମୋହୋର ପୁରେ ।
ଶ୍ୟରୀରେ ନ ପଡ଼ିବ ମୋର କାଳ କାମନିଦ୍ରା
ଅସାଧନେ ସାଧିବି ମୁଁ ଚଉଷଠି ମୁଦ୍ରା ।
କାଳ ଗରଳ ମୋତେ ନ ଲାଗିବ ବିଷ
ଦିବ୍ୟ ଅବଲୋକନେ ହୋଇବ ମୋତେ ଦୃଶ ।
ତ୍ରୈଲାକ୍ୟର ମଧ୍ୟେଂ ମୁଁ ଏକା ହୋଇବି ରାଜା
ଋଷି ବିପ୍ର ତପୋଧନ କରିବେ ମୋତେ ପୂଜା ।
ସ୍ୱାମୀ ବ୍ରହ୍ମା ବିଷ୍ଣୁ ମହେଶ୍ୱର ସହିତେ
ସମରେ ସାମାନ୍ୟ ନୋହିବେ ଜାଣ ମୋତେ ।
ଯାବତ ଚନ୍ଦ୍ର ଦିବାକର ଆଦି କରି
କିଞ୍ଚିତ ସମରେ ଜିଣିବି ସର୍ବଧରି ।
ସ୍ୱାମୀ ଶବଦରେ ଶୁଣିଲି କୃଷ୍ଣଭଏ ବୋଲି
ତାହାର ଭଏ ମୁଁ ତପ ଆଚରିଲି ॥୨୩୦॥
ନିଷ୍ଟଏ ପ୍ରସନ ଯେବେ ହୋଇଲୁ ତୁ ମୋତେ
ମୁହିଁ ବଧ ନୋହିବି ନାରାୟଣର ହସ୍ତେ ।
ବିଷ୍ଣୁର ଚକ୍ରେ ମୁଁ ନୋହିବଇ କ୍ଷଏ
କୃଷ୍ଣକୁ ଜିଣିଲେ ମୋର ସିଦ୍ଧହୋଉ କାଏ ।
ଆବର ବର ଯେ ମାଗଇ ତୋତେ ସାଧ
ପୁରୁଷର ହସ୍ତେ ମୁଁ ଯେ ନୋହିବଇ ବଧ ।
ପିତା ବୋଇଲା ଯାହା ମାଗିଲୁ ମୋତେ ବର
ସମସ୍ତ ସିଧ ହୋଉ ଯେ ତୋହୋର ।
ବ୍ରହ୍ମା ବୋଇଲେ ମୁଁ ଯେତେ କାଳ ବ୍ରତିଥିବି ଭଲେ
ତେତେ କାଳ ପରିଯନ୍ତେ ତୋହୋର ବଳ ଥାଉ ତୁଲେ ।
ମଏଁଷାଂର ବର ମାଗନ୍ତେ ଆଦିତ ଅସ୍ତ ଗଲା
ଯଶୋବନ୍ତୀ ପୁରେ ଯାଇଁ ବ୍ରହ୍ମା ବିଜେ କଲା ।
ବର ପାଇ ମଏଷାଁସୁର ହୋଇଲାକ ରାଏ
ସମ୍ଭବଂ କରି ସେ କଟେକ ଭିଆଏ ।
ଜେନାବଳୀ କରି ରଞ୍ଜିଲାକ ଭୁବନ
ବାରସ୍ୱତୀ ଭୁବନ ତହିଁକି ନୋହଇ ସମାନ ।
ଅଲୋକିତ ବର ଶୁଣିକରି ସକଳ ଅସୁର ରାଜା
ଅନେକ ଅସୁର ଆସି କରନ୍ତି ପାଦ ପୂଜା ।

## ମହିଷାସୁର ଦିଗ୍‌ବିଜୟ

ମଏ ଦାନବର ପୁତ୍ର କାନ୍ତିମାଳା
ସେ ଆସି ଦର୍ଶନ କଲା ମହାବଳା ॥୨୪୦॥
ବଜ୍ରାଙ୍ଗ ଦଇତର ସୁତ ଚାମର ବେମାଳ
ସେ ଆସି ଦର୍ଶନ କଲାକ ମହୀପାଳ ।
କାନ୍ତିମାଳା ଦାନେବ ଚାମର ବେମାଳ ବେନି
ଏହାଙ୍କର ତୁଲେ ପ୍ରବେଶ ସଇନି ।
ବିଲଙ୍କ ଦେଶର ସେ ଠାକୁର ଅଟଇ
ମଏଁଷାର ପୁରେ ଆସି ଶରଣ ପଶଇ ।
ମାଧୁର୍ଯ ଦେଶର ଅସୁର ହିରଣାକ୍ଷ
ସେ ଅଇଲା ବଳ ଘେନିଣ ନବଲକ୍ଷ ।
ମୁଖାଏକ ଦେଶର ରାଜା ଧୂର୍ମଲୋଚନ ।
ସେ ଆସି ଦର୍ଶନ କଲା ସାତ କ୍ଷେଉଣି ଘେନି ସନ୍ୟ ।
ଅଜାନ ଦେଶର ରାଜା ଚନ୍ଦ୍ର ଯେ ନଉମି
ବେନି ସାଗର ଯୋଧା ଘେନି ଦର୍ଶନ କଲାକ ଉତ୍ତମି ।
ଏତେକ ସନ୍ୟ ଘେନି ମାହେଶ୍ୱରୀ ରାଜ୍ୟେ
ସିଂଘଳଦୀପ ମଧ୍ୟେଂ କରଇ ଦିଗବିଜେ ।
ସିଂଘଳ ଦ୍ୱୀପରେ ଯେତେ ରାଜାଗଣମାନେ
ସବୁନ୍ତି ଜିଣିଲା ସେ ଅସୁର ଯାତୁଧାନ୍ୟେ ।
ମହା ସମ୍ପର ରାଜ୍ୟ ଯେ ଜେନାବଳୀ ନଗରୀ
ବଡ଼ାଇ ସମ୍ପରେ ତହିଁ ମହିଷା ରାଜ୍ୟ କରି ।
ଚାରିଲକ୍ଷ ଯୋଜନ ସେ ସିଘଳ ଦୀପ ସ୍ଥଳୀ
ବେନି ଲକ୍ଷ ରାକ୍ଷସ ବସଇ ଚାରି ସହସ୍ର ଅଙ୍ଗୁଳି ॥୨୫୦॥
ଅନେକ ଅଛନ୍ତି ରାଜା ମହା ବଳବନ୍ତା
ମହିଁଷାର ତୁଲେ କେହି ନୋହିବ ଶହସ୍ର ଧରନ୍ତା ।
ଆହୋ କୁରାଞ୍ଚେକ ବୋଲି ଏକ ରାଜ୍ୟେ ଅଛି
ତହିଁର ନୃପତି ସେ ଅଟଇ ତାରାକ୍ଷୀ ।
ବତିଶ ସାଗର ସେ ଅଟଇ ସଇନି
ବଡ଼ ବଳବନ୍ତା ସମାନ୍ୟ ନାହିଁ ମେଦନି ।
କୁରାଞ୍ଚେକ ନଗ୍ରିକି ବିଜେ କଲାକ ମହିଷା
ତ୍ରୈଲୋକ ତ୍ରାସିଲେ କେହି ନକଲେ ଭରସା ।
ସ୍ୱାଧବୀ ନାମେଣ ନଦୀ ଉତ୍ତର କୂଳେ
ନବ ଯୋଜନ ମାଡ଼ି ଯେ ରହିଲାକ ବଳେ ।
ବାଦ୍ୟ ନାଦ ଶବଦେ ଗଗନ ଉଚ୍ଛୁଳଇ
ମୁଖରାବ ଶବଦେ କୁରୁମ ଟଳଇ ।

ରାଜାର ଅଗ୍ରତେ ଜଣାନ୍ତି ମୁନେହିଁ
ତୋହୋର ପୁରକୁ ଦେବ ମହିଷାସୁର ବାହି ।
ବ୍ରହ୍ମାର ବରେ ଦାନେବ ମହାବଳୀ
ସକଳ ନୃପତିକି ଦେବ ଜିଣିଲା ମହାବଳୀ ।
ସିଘଳ ଦୀପରେ ଯେତକ ମହୀପତି
ମହିଁଷାକୁ ସମସ୍ତେ ଖଟିଲେ ବେଶ୍ୟାବୃତ୍ତି ।
ଶୁଣିଣ କୋପ ଯେ କଲା ସେ ତାରାକ୍ଷୀ
କେବଣ ଡର୍ପରେ ମଏଁଷାସୁର ଆସୁଅଛି ॥୨୬୦॥
କହୁଁ କହୁଁ ନରେନ୍ଦ୍ର କୋପେଣ ପ୍ରଚଣ୍ଡ
ବୋଇଲାରେ ଯେହିକ୍ଷଣି ସାଜ ମୋର ଦଣ୍ଡ ।
ନୃପତି ବଚନେ ସମସ୍ତେ ଦଣ୍ଡ ସାଜି
ଅମାପତ ସନ୍ୟ ସମୁଦ୍ର ପ୍ରାଏ ଗର୍ଜି ।
ବିଜଏ ଦାନବ ଯେ ଶାର୍ଦ୍ଦୂଳର ପିଠି
ତୁଲେଣ ସମର ଯେ ସେନା ପାଞ୍ଚକୋଟି ।
ପାଞ୍ଚ କୋଟି ଯୋଧା ଯେ ଶାର୍ଦ୍ଦୂଳ ବାହାନ
ସମସ୍ତେ ହେଁ ଦିଶନ୍ତି କୁବେର ସମାନ ।
ତର୍ଜନ୍ତି ଗର୍ଜନ୍ତି ଚଳାବନ୍ତି ଥାଠ
ଉଭଏ ବଳ ସଇନି ହୋଇଲେ ଯାଇ ଭେଟ ।
ଦେଖଇ ତାରାକ୍ଷୀ ମହିଷାସୁର ବଳ
ସମୁଦ୍ର ପ୍ରାଏକ ସେ ଦିଶନ୍ତି ଉଲ୍ଲୋଳ ।
ପଞ୍ଚ ମର୍ଭୁତ ଯୋଧା ତୁଲେଣ ଯେ ଘେନି
ଏକ ମୁଖ ହୋଇ ଯେ ଉଠିଲେ ସଇନି ।
ମହାବଳବନ୍ତ ଯହୁଁ ପ୍ରତଜ୍ଞା ଗଳଗାଜି ।
ତାରାକ୍ଷୀର ବଳ ପଳାଇଲେ ଭାଜି ।
କାନ୍ତିମାଳା ଦାନେବ ବଳକୁ ବଜ୍ରଦଣ୍ଡେ ହାଣି
କଦଳୀବନ ଯେସନେ ମତ୍ତନାଗ ଜିଣି ।
ଅନେକ ସନ୍ୟ ଯେ ପାରିଲେ ମହାଯୋଧି
ବେଢ଼ିଲା ଦୁରାନ୍ତେକ ବଳ ପବନ ନିରୋଧି ॥୨୭୦॥
ତାରାକ୍ଷୀ ଦେଖନ୍ତେ ପଡ଼ିଲେ ବହୁତ ଥାଠ
ଲକ୍ଷେକ ଯୋଧା ଘେନି ତୁଲେ ରହିଲା ମୁରାଟ ।
ପାଞ୍ଚ ସାଗର ସନ୍ୟ ଯେ ତାରାକ୍ଷୀର ଥିଲା
ଅସୁର ବଳ ସଇନି ଯେ ସମସ୍ତ ଭାଙ୍ଗିଲା ।
ଶାର୍ଦ୍ଦୂଳମାନ ଯେ ସେ ଘେନିଲେ ଛଡ଼ାଇ
ମହିଷାର ଯୋଧାଏ ଚଢ଼ିଲେ ବେଗେ ଧାଇଁ ।
ସନ୍ୟ ପଡ଼ନ୍ତେଣ ଦେଖିଲା ତାରାକ୍ଷୀ ।
ଜୀବନ ଉପେଖି ପଶିଲା ରଣେ ଧାସି ।

ଲକ୍ଷେକ ଯୋଧା ଘେନି ଏକ ମୁଖ ହୋଇ
ମହିଷାର ଥାଠେ ପଶିଲେ ବେଗେ ଧାଇଁ ।
ଆରେ ଆରେ ରହ ରହ ବୋଲି ସେ ଉଠିଲା କାନ୍ତିମାଳା
ବଜ୍ର ମୁଦ୍ଗର ଘେନିଣ ମତ୍ତଭୋଳା ।
ତାରାକ୍ଷୀ ଯୋଧାର ଉପରେଣ ପିଟି
ଏକା ପ୍ରହାରକେ ସେ ବାଏ ପଡ଼ନ୍ତି ନୋଟି ।
ଲକ୍ଷେକ ଯୋଧାଙ୍କୁ ଚାରି ଯୋଧାଏ ଜିଣି
ନିଦ୍ରାଗତ ଶୟନ ଜାଣି ଶୁତିଲେ ଧରଣୀ ।
ଅସାଷ୍ଟମ ହୋଇ ସେ ପଡ଼ିଲେ ତାରାକ୍ଷୀ ବଳ
କୋନ୍ତେକ ଘେନିଣ ସେ ଉଠିଲେ ମହୀପାଳ ।
ରାଜାକଇ ଦେଖିଣ ସେ ଉଠିଲେ କାନ୍ତିମାଳା
ବଜ୍ରେଣ ପ୍ରହାର କଲା ସେ ଅସୁର ଅନର୍ଗଳା ॥୨୮୦॥
ତାରାକ୍ଷୀ ନୃପତି ଯେ ମୁଦ୍ଗରେକ ଘେନି ପିଟି
ତାରାକ୍ଷୀର ପ୍ରହାରେ କାନ୍ତିମାଳା ପଡ଼ଇ ଲୋଟି ।
ରଣ ଭଙ୍ଗ ହୋଇଲା ଯହୁଁ ପଡ଼ିଲା କାନ୍ତିମାଳା
ରଥ ଆରୋହି ଧାଇଁଲା ଚାମର ବେମାଳା ।
ବିଜେ କର୍ଣ୍ଣ କୁଠାର ଘେନିଣ ଆଉଧ
ଏକ ଶରେଣ ତାରାକ୍ଷୀ ଅନେକ କଲା ଯୁଧ୍ୟ ।
ଅନେକ ନାରାଯ ଯେ ଚାମର ବେମାଳ ପିଟଇ
ତାରାକ୍ଷୀର ଉପରେ ପଡ଼ି ସେ ଗୁଣ୍ଡା ଉଠଇ ।
ବିଜେ କର୍ଣ୍ଣ କୋଠାର ଯେ ବିରଞ୍ଚିର ଦେଲା
ମହିଷାର ହସ୍ତରୁ ଚାମର ବେମାଳ ଆଣିଲା ।
ତାରାକ୍ଷୀର ସମାନ୍ୟେ ପୃଥିବୀରେ ନାହିଁ ଯୋଧି
ସେ ବ୍ରହ୍ମଶର ନିବାରିବାକୁ ନାହିଁ ବୁଧି ।
ସେ ବ୍ରହ୍ମଶର ଘେନି ଚାମରବେମାଳ ହାଣି
ଏକ ପ୍ରହାରକେ ଛିଡ଼ିଲା ତାର କପାଳି ।
ମୁଣ୍ଡା ବୃକ୍ଷ ପ୍ରାଏ ତାରାକ୍ଷୀ ପଡ଼ଇ ଢଳି
ପୁଣ ପ୍ରହାରିଲେ ଦଇତ କରେ ତୋଳି ।
ବିଜେ କର୍ଣ୍ଣ କୁଠାର ପଡ଼ି ହୋଏ ବେନି ଖଣ୍ଡ
ସମୁଦ୍ର ଭିତରେ ଯାଇ ପଡ଼ିଲା ତାର ମୁଣ୍ଡ ॥୨୯୦॥
ଅନେକ ଧନରତ୍ନ ଥିଲା କୁରାଞ୍ଚଳ ନଗ୍ରି
ମହିଷାସୁର ସଇନି ତାହା ସୁଖେଣ କ୍ରୁର କରି ।
ଅନେକ ଦେଶର ଯେ ରାଜାମାନେ ଥିଲେ
ତାରାକ୍ଷୀର ଅବସ୍ଥା ଦେଖି ସମସ୍ତେ ଭଏ କଲେ ।
ଅନେକ ଧନ ରତ୍ନ ଘେନିଣ ସଇନି
ସିଙ୍ଘଳ ଦେଶର ରାଏ ଆଣି କରନ୍ତି ଦଇନି ।

ଅନେକ ସନ୍ୟବଳ କଳଣା ନ ଯାଇ
ସେହି ବଳ ଘେନି ମହିଷା ଦର୍ପିଷ୍ଟ ବ୍ରହ୍ମାଣ୍ଡ ପୁରକୁ ବାହି ।
ସିଙ୍ଘଳ ଦୀପରେ ଯେ ଚାରିଲକ୍ଷ ରାଏ
ସମସ୍ତେହେଁ ଖଟିଲେ ସେ ମହିଷାସୁର ପାଏ ।
ଦେଖିତ ଅସଙ୍ଖ ମହିଷାସୁରର ମହିମା
ଯାହାକୁ ସଞ୍ଚିତ କଲେ ବେଦପତି ବ୍ରହ୍ମା ।
ଏକାଦଶ ଯୋଜନ ତାର କଟକ ସ୍ଥଳୀ
ପଞ୍ଚାଶ ସାଗର ସନ୍ୟ ଏକୁ ଏକ ବଳି ।
ବଜ୍ର ସମାନ୍ୟେ ସେ ତାହାର ନିଜ କାଏ
ବ୍ରହ୍ମାର ବରେଣ ଯମ ଦଣ୍ଡେ ଅଭଏ ।
ତାହାର ରାଜ୍ୟରେ ନପଶଇ କାଳଦଣ୍ଡ
ମହା ମହା ଯୋଦ୍ଧାଏ ଏକୁ ଏକ ପ୍ରଚଣ୍ଡ ।
ଆଦିତ୍ୟ ତହିଁ ସେ ନଲାଗଇ ଡରେ
ପବନ ନପଶଇ ସେ ଜେନାବଳୀ ନଗ୍ରରେ ॥୩୦୦॥
ଯମଦଣ୍ଡ ଯହୁଁ ନ ପଶିଲା କାଳ
ଅନର୍ଗଳ ଦାନବେ ଏକ ଏକ ଅଚାର୍ଗଳ ।

## ମେରୁଶୂଳ ସହିତ ଯୁଦ୍ଧ ଓ ପରାଜୟ

ଆଶିନ୍ୟ ଶୁକ୍ଳ ଅଷ୍ଟମୀର ଦିନ
ଅର୍କବାର ମୂଳାନକ୍ଷତ୍ର ବିଦ୍ୟମାନ ।
ଗ୍ରହନାମେ କରଣ ଅତି ଗଣ୍ଡ ନାମେ ଯୋଗ
ସେଦିନ ମହିଷାସୁର ଦିଗ୍‌ବିଜେ ମେରୁ ସ୍ୱର୍ଗ ।
ମେରୁର ତଳେ ବଜ୍ର ବୋଲିଣ ରାଜ୍ୟ
ତହିଁର ନୃପତି ମେରୁଶୂଳ ମହାରାଜ ।
ସେ ରାଜାର ତୁଲେ ସେ ଅନେକ କଲା ଦ୍ୱନ୍ଦ
ଶତେକ ଦିନ ପରିଯନ୍ତେ ଉଭୟ ବଳ ବିବାଦ ।
ଅନେକ ସନ୍ୟ ଥାଟ ପଡ଼ିଲେ ଉଭୟ ବଳ
ରୋଧିର ନଦୀ ଯେ ବହିଲାକ ଉଲ୍ଲୋଳ ।
ପୃଥୀ ଢଳ ଢଳ ହୋଇଲା ଦୁହିଁଙ୍କରି ବିବାଦେ
ଗିରିବରମାନେ ଶରୀରୁ ଛାଡ଼ିଲେ ମହାନାଦେ ।
କାନ୍ତିମାଳା ଚାମରବେମାଳ ମହିଁଷାସୁର ସେନାପତି
ଦେବଙ୍କୁ ଦୁଲଭ ଯେ ଏହାଙ୍କର କୀରତି ।
ମେରୁଶୂଳର ସନ୍ୟ ମନ୍ଥିଲେ ବେନି ବୀରେ
ଅନେକ ସନ୍ୟେ ଯେ ପଡ଼ିଲେ ସମରେ ।
ଦେଖିଣ ଆଶ୍ରିଯ ଯେ ହୋଇଲେ ଦେବପୁରେ

ଧନୀ ଧନୀ ମହିମାରେ ଅଟଇ ପାମରେ ॥୩୧୦॥
ଧାମଇ ମେରୁଶୂଳ କରେଣ ଘେନି ଗଦା
ମହେଷାସୁର ସନ୍ୟ ମାରିଣ କଲା ପଦା ।
ବଳ ଭାଗନ୍ତେ ସେ ଭାଙ୍ଗିଲା କାନ୍ତିମାଳା
ସନ୍ୟକୁ ସମାର୍ଜଇ କାହିଁକି ତୁମ୍ଭେ ପଳା ।
ରହିଣ ସମର ଦେଖସି ଆମ୍ଭର
ସଇନି ସମାର୍ଜି ସେ ଉଠିଲେ ବେନି ବୀର ।
ତୁଲେଣ ସନ୍ୟ ଯେ ବତିଶ ଲକ୍ଷ୍ୟ ବଳ
ସମରେ ରହିଅଛି ସେ ଦାନେବ ମେରୁଶୂଳ ।
ଆହୋ ପରୀକ୍ଷ ହେମବନ୍ତ ସେବି ସେ ପାଇଅଛି ବର
ଶ୍ୟରୀର ବଜ୍ର ସେ ଅଟଇ ଅମର ।
ଲୋଚନ ରୁଧିପା ବୋଲିଣ ବୀର ବେନି ।
ସିଙ୍ଘଳଦୀପ ରାଜାର ତୁଲେ ସାତ ମର୍ଭୁତ ସଇନି ।
ରୁଧିପା ଲୋଚନ ବେନି ସେନାପତି
ମେରୁଶୂଳ ଥାଠ ସେ ଛାଡ଼ିଲେ ସେ ଘାନ୍ତି ।
କୋପେଣ ମେରୁଶୂଳ ସେନାନ୍ତ ଘେନି ଉଠି
ଲୋଚନ ଉପରେ ବଜ୍ର କୋଠାର ଘେନି ପିଟି ।
ଘାଏଣ ଲୋଚନ ଯେ ପଡ଼ିଲାକ ଢଳି
ପୁଣ ପ୍ରହାର ସେ କଲା ଶୂଳ ତୋଳି ।
ମେରୁଶୂଳ ପ୍ରହାରନ୍ତେ ଲୋଚନସୁର ଗୁଣ୍ଡା
ରଣେ ବିହଡ଼ଇ ସେ ଛତ୍ରୀ ବୀରଷଣ୍ଡା ॥୩୨୦॥
ଲୋଚନସୁର ଛାଡ଼ି ଉଠଇ ମେରୁଶୂଳ
ରୁଧିପା ରାଜାକୁ ନେଇ ପିଟିଲା ଲୋହ କୋଦାଳ ।
କୋଦାଳ ଘାତେ ଯେ ପଡ଼ଇ ରୁଧିପା
ବେନି ଶାଖା ପଡ଼ନ୍ତେ କାନ୍ତିମାଳା ଏକା ।
ତାହା ଦେଖି ଧାଇଲେ ଯେ ଚାମର ବେମାଳ
ରୁଧିରେ କର୍ଦ୍ଦନ କରି ସେ ଉଠଇ ମେରୁଶୂଳ ।
ଲକ୍ଷେ ପୁର କରି ବେଢ଼ିଲେ ବେମାଳକୁ
ଅନେକ ଶହସ୍ର ପ୍ରହାର କଲେ ଚାମର ବେମାଳକୁ ।
ସନ୍ୟ ଭଗ୍ନ ଦେଖି ସେ ଉଠଇ ମହିଁଷା
ହାକ ଦିଅଇ କିମ୍ପୁତେ ଏଡ଼େକ ଭରସା ।
ମହିଷାର ଉଠନ୍ତେ ମେରୁଶୂଳ ଦୁଇ ଭାଗ
ଚାମର ବେମାଳ ଦୁଇ ମିଳିଲେ ଆସି ଆଗ ।
ଗହନ ସମରେ ସେ ଆଦିତ୍ୟ ଅସ୍ତଗଲା
ଦଣ୍ଡ ଘେନି ମହିଷା ସିଙ୍ଘଳ ଦୀପେ ବିଜେକଲା ।
ମେରୁଶୂଳ ରହିଁ ସେ ବଜ୍ରଗିରି ଦେଶେ
ରାଜ୍ୟରେ ପଶଇ ମଏଷାସୁର ବୀର ସେ ।
ଆରେକ ବୀର ସେ ଭାଳଇ ବୀରପତି
ପିତାର ବର ମୋତେ ହୋଇଲା ଅନୀତି ।

## ଧୂମଲୋଚନକୁ ସାରଥିପଣେ ଶାଢ଼ୀଦାନ

ଆହୋ ପରୀକ୍ଷ ରାଜ କୃଷ୍ଣ ଚଉଠିର ଦିନ ।
ପଣ୍ଡିତ ବାର ନକ୍ଷତ୍ର ହସ୍ତକ ଅନ୍ୟ
ନବ ନାମେ କରଣ ଆୟୁଷ ନାମେ ଯୋଗ ।
ସେଦିନ ମହିଷାସୁର ବିଜେକଲା ସ୍ୱର୍ଗ
ଯାନ୍ତେଣ ଭେଟିଲା କରଞ୍ଜ ନାମେ ଦେଶ ।
ଦେଖଇ ମହିଷା ଯେ ସେ ସମ୍ଭବଂ ଦେଶ ।
ସୁବର୍ଣ୍ଣ କଳସ ପାତାଙ୍ଗେ ଉଡ଼ନ୍ତି
ସମସ୍ତ ସୁବର୍ଣ୍ଣମଏ ମଣ୍ଡପ ଜଗତୀ ।
ସମଦଣ୍ଡ ସଇନି ଦୁନ୍ଦଭି ଶବଦ ବାଜେ
ସନ୍ୟ ଘେନିଣ ମହିଷା ଚଳଇ ଦିଗ୍‌ବିଜେ ।
ଉଦେସ ମନ୍ତ୍ରୀ କହିଲା ନୃପତି ଧୂମଖେତ
ତୋହର ରାଜ୍ୟରେ ବିଜେକଲା କପିଳ ସିଙ୍ଘର ସୁତ ।
ଧୂମଖେତୁ ପଚାରଇ କିସ ଅର୍ଥେ ଆସଇ
ପ୍ରୀତି କି ବିଗ୍ରହଣ ମୋହୋର ରାଜ୍ୟେ ପଶଇ ।
ରାଜାର ଆଗେ କହିଲା ମନ୍ତ୍ରୀ ଉଦେସ
ତୋହୋର ସୋଦର ଅଟଇ ଉପର ବଂଶ ।
ଅସୁର ବଂଶ ଯେ କଚ୍ଛାସୁର ରଜା
ବଶିଷ୍ଟଙ୍କର ଶାପ୍ୟେ ସେ ହୋଇଲା ଦନୁଜା ।
କଚ୍ଛାସୁର ରାଜା ଯେ ହୋଇଲା ରାକ୍ଷସ
ତାହାର ନନ୍ଦନ ଯେ ହୋଇଲା ମନୁଦକ୍ଷ ।
ମନୁର ପୁତ୍ର ଯେ ହୋଇଲା ରକ୍ଷ ଭକ୍ଷ
ହେତି ପ୍ରହେତି ବୋଲି କରି ଏହାଙ୍କର ବେନି ବସ ॥୩୪୦॥
ଏହାଙ୍କର ପୁତ୍ର ଯେ ହୋଇଲା କାଳାନଳ
ମାଳି ସୁମାଳି ମାଲ୍ୟବନ୍ତ ତିନିବାଳ ।
ମାଲ୍ୟବନ୍ତର ପୁତ୍ର ମଦନ ମହାଦେବ
ତାହାର ନନ୍ଦନ ମାତାଙ୍ଗ ସଦାଶିବ ।
ମାଲ୍ୟବନ୍ତ ଥିଲା ଯେ ଲଙ୍କାପୁର ଗଡ଼େ
କରଞ୍ଜ ଦୀପେ ରହିଲା ସେ ମାଧବର ଡରେ ।
ମାତାଙ୍ଗର ପୁତ୍ର ସେ ବିଲୋଚନ
ବିଲୋଚନର ପୁତ୍ର ଯେ ହୋଅଇ ହିରଣ୍ୟ ।
ହିରନ୍ୟର ପୁତ୍ର ଯେ ବଜ୍ରଲୋଚନ

ବଇଲୋଚନର ପୁତ୍ର ବଳୀ ଉତପନ ।
ବଳୀର ପୁତ୍ର ମଦ ଲୋଚନ
ମଦଲୋଚନ ପୁତ୍ର ଯେ କାଳ ବିମୋଚନ ।
କାଳ ବିମୋଚନର ପୁତ୍ର ଧୂମଖେତ
ଧୂମକେତୁର ନନ୍ଦନ ଧୂମଲୋଚନ ଜାତ ।
ମନ୍ତ୍ରୀ କହିଲା ଏସନେକ ବୃତ୍ତାନ୍ତ
ତାହାର ତୋହର ଏକ ବଂଶେ ଜାତ ।
ମନ୍ତ୍ରୀର ବଚନେ ସାନନ୍ଦ ଧୂମଖେତା
ଧୂମଲୋଚନର ନାମେ ହକାରିଲା ତାହାର ସୁତା ।
ପାରିଦଣ୍ଡମାନନ୍ତ ଘେନିଣ ବାବୁ ଯା ଯା
ମହିଷାସୁର ଦାନବକୁ କର ଯାଇ ପୂଜା ।।୩୫୦।।
ପିତାର ବଚନେ ସେ ଧୂମଲୋଚନ
ଅନେକ ରତ୍ନ ଘେନି ଦଣ୍ଡ ଯେ ବିମାନ ।
ବିଜୟେ ମହିଷାସୁର ଯେ କରଞ୍ଜ ଦୀପର କୂଳେ
ଧୂମଲୋଚନ ପ୍ରବେଶ ହୋଇଲା ପ୍ରାତକାଳେ ।
ଅନେକ ଦରଶନି ଯୋଗାଡ଼ ଯେ ଦେଖି
ମହିଷାସୁର ରାଜା କୋପ ଯେ ଉପେଖି ।
ରାଜାକୁ ବୁଝାଇ ମନ୍ତ୍ରୀ କାନ୍ତିମାଳା
ଏ ସେ ଧୂମଲୋଚନ ଧୂମଖେତୁର ବଳା ।
ତୋତେ ସେ ପ୍ରୀତି ଉପୁଜାଇବା ଅର୍ଥେ
ଦେଖା ଦରଶନି ଉପହାର ଘେନି ଭେଟଇ ତୋତେ ।
ସେ ଧନ ଦେଇ ତୋତେ ନୃପତି ବିନଏ
କରଞ୍ଜ ଦୀପ ତୋତେ ସାଧ ହୋଇଲା ରାଏ ।
ଶୁଣିଣ ସଦଏ କଲା ମହିଷାସୁର କଉଶୋପ
ଦେଖିଣ ଦ୍ରହସିତ ହୋଇଲାକ ନୃପ ।
ଛାମୁରେ ଧୂମଲୋଚନ ପରିଣାମି
ଦର୍ଶନେ ସିଦ୍ଧନାଥ ଉଦ୍ଧର ଦେବ ସ୍ୱାମୀ ।
ବିନୟ ଦେଖି ଯେ ସାନନ୍ଦ ହୋଏ ରାଏ
ଆସ ଆସ ତୁ ମୋର ପ୍ରାଣସଖାଏ ।
ଅନେକ ବିନୋଇ ଧୂମଲୋଚନ କରଇ ସେବା
ଆମ୍ଭର ଆସ୍ଥାନେ ଦେବ ବିଜଏ କରିବା ।।୩୬୦।।
ସମଦଣ୍ଡ ଘେନି ଯେ ମହିଷାସୁର ବୀରା
ଆସନେ ବିଜେ କଲା ପ୍ରତାପ ଅସୁରା ।
କାଳବିମୋଚନ ପୁତ୍ର ଧୂମଖେତ ରାଜନ
ମହିଷାସୁର ଅନେକ ପୂଜା ବିଧି ବିଧାନ ।
ରାଜ୍ୟରେ ଉଚ୍ଛବ କରାଇଲେ ରାଏ
ବଡ଼ାଇ ସମ୍ଭରେ ସେ କରଇ ବିଜଏ ।
କରଞ୍ଜ ଦୀପେ ମହିଁଷାସୁର ପଞ୍ଚ ଦିବସ ରହି
ବଡ଼ାଇ ସମ୍ଭରେ ସେ କରଇ ମୁଣୋହିଁ ।
ବେନି ପଦ୍ମ ସେନାପତି ଦେଲାକ ସଇନି
ମହିଷାସୁର ଯେ ଧୂମଲୋଚନ ଘେନି ।
ଶ୍ରୀଭୁଜେ ମହାରାଜା ଆପଣେ ଦେଲା ଶାଢ଼ୀ
ଆଜହୁଁ ମୋହୋର ଅର୍ଥେ ଅଧିକାରୀ ।
ଅନେକ ସମ୍ଭର୍ବେ ଯେ ନିଶାଣ ବାଜେ
ବାହୁଡି ମହିଷାସୁର ସିଘଳ ଦୀପେ ବିଜେ ।

## ଚଣ୍ଡମୁଣ୍ଡ ସହ ମହିଷାସୁରର ଯୁଦ୍ଧ ଓ ପରାଜୟ

ପୁଣି ସମୟେକ ପଳାସ କଲା ଥାଠ ।
ଦିଗେ ବିଜେ କରଇ ଘେନିଣ ସମରାଷ୍ଟ ।
କାର୍ତ୍ତିକ ଶୁକଳ ପଞ୍ଚମୀ ଚନ୍ଦ୍ରବାର
ରୋହିଣୀ ନକ୍ଷତ୍ର ଅଟଇ ସେ ଦିନର ।
ବାଣିଜ ନାମେ କରଣ ପ୍ରୀତି ନାମେ ଯୋଗ
ଦଣ୍ଡ ସାଜଇ ମହିଷା ସାନନ୍ଦ ଉଦ୍‌ବେଗ ।।୩୭୦।।
ବୀରତୂର ଘଣ୍ଟ ଟମକ ନିଶାଣ
ଚରଣ ରେଣୁ ଘାତେ ଅଦୃଶ୍ୟ ବିରଞ୍ଚି ନାରାୟଣ ।
ଆଶୀ ଖର୍ବ ଯୋଦ୍ଧା ସାତପଦ୍ମ ବଳ
ଯୋଦ୍ଧାମାନଙ୍କର ବାହାନ ଶାର୍ଦ୍ଦୂଳ ।
ସମସ୍ତ ଯୋଦ୍ଧାଏ ଚଢ଼ିଣ ବାହାନ
କୋନ୍ତ ଖଡ଼ଗ ନାରାଯ ଛେଲ ଚକ୍ର ଶରମାନ ।
ଶକତି ପରିଘ ଗଦା ତୀକ୍ଷମୁନା
ଏକକୁ ଆରେକ ନଯାନ୍ତି ଗଣନା ।
ବହୁତ ବଳ ଚଞ୍ଚଳ ଚଳନ୍ତେଣ ଥାଠ
ଆକାଶ କମ୍ପଇ ସେ କମ୍ପଇ ବଇକୁଣ୍ଠ ।
ଏସନେକ ସମ୍ପଦେ ଥାଠ ଯେ ପଲାଣି
ସମୁଦ୍ର ଗର୍ଜନ ପ୍ରାଏକ ଶୁଭଇ ତୁଣ୍ଡର ବାଣୀ ।
ଦେବଙ୍କୁ ଦୁଲଭ ଯେ ମହିଷାସୁରର ମହିମା
ଯାହା ସେ ସଞ୍ଚିତ କଲାକ ବେଦପତି ବ୍ରହ୍ମା ।
ବିରୋଚନ ବର ପ୍ରସାଦରୁ ବିଧାତା
ତେଣୁ ସେ ମହିଷାସୁର ଜଗତେ ଜଗଜିତା ।
ତର୍ଜନ୍ତି ଗର୍ଜନ୍ତି ବାଜନ୍ତି ନିଶାଣ

କାର୍ତ୍ତିକ ପୌର୍ଣ୍ଣମୀଦିନ ମୈଷାଂ କୁଶଳ ଦୀପକୁ କରଇ ପୟାଣ ।
ସିଂହଳ ଦୀପରୁ ବାହର ହୋଇ କରଞ୍ଚ ଦୀପେ ମିଳଇ
ନୀଳ ସମୋଦ୍ର ପ୍ରାୟେ ଦିଶନ୍ତି ରାକ୍ଷସଇ ।।୩୮୦।।
ଧାତାର ବଚନେ ସେ ହୁଅନ୍ତି ଶୂନ୍ୟଗାମୀ
ସମୋଦ୍ର ସହିତେ ଜିଣିଲେ କୁଶଦୀପ ସ୍ଥଳି ।
କୁଶ ଦୀପରେ ରାଜା ପ୍ରଚଣ୍ଡସୁର ରାୟେ
ଭସ୍ମ ଲେପନ ମଥାରେ ଜଟାଭାରୟେ ।
କଷା ବସନ ପରିହରଣ ଅଙ୍ଗେଣ ପବିତା
ଖଟ୍ୱାଙ୍ଗ ଡମ୍ବରୁ ତ୍ରିଶୂଳ କରେଣ ଶୋଭିତା ।
ଚଉଦ କୋଟି ସଇନି ତାହାର ସମସ୍ତେ ତପୋଧନି
ମୃତୁ ନ ଗଛନ୍ତି ସେ ନ ଦିଶନ୍ତି ସଂଜୀବନୀ ।
ଚାଳିଶ ଲକ୍ଷ ଯୋଜନ ସେ ଦୀପର ଆୟେତନ
ଅଷ୍ଟାଦଶ ଜାତି ମୂଳେ ବସନ୍ତି ଅନେକ ଜନ ।
ଦଣ୍ଡ ସାଧ ଦେଇଁ ସେ ଖଟନ୍ତି ରାଜାକୁ
ସମସ୍ତେହେଁ ଖଟନ୍ତି ସେ ପ୍ରଚଣ୍ଡାସୁରକୁ ।
ଶିବର ପ୍ରସାଦେ ସେ ଅଟଇ ମାହାରାଜା
ଈଶ୍ୱର ଦେବାତାଙ୍କୁ ସେ ନିତ୍ୟେ କରଇ ପୂଜା ।
ଅନେକ ବାଇତ୍ରର ଅନେକ ନିଶାଣ ବାଜେ
ବିଜୟେ ମଂୟେଷାସୁର ପ୍ରଚଣ୍ଡ ସୁରରାଜ୍ୟେ ।
ରାଜାର ଅଗ୍ରତେ ସେ କହନ୍ତି ଚାରଗଣ
ସ୍ୱାମୀ ତୋହୋର ରାଜ୍ୟକୁ ମଂୟେଷାସୁର କରଇ ପୟାଣ ।
ବଡ଼ାଇ ପ୍ରତାପୀ ସେ ମଂଷାସୁର ରାଜା
ବ୍ରହ୍ମାର ବରେ ସେ ନ ଲେଖଇ କାହା ଦୂଜା ।।୩୯୦।।
ଅବ୍ୟକ୍ତ ନାରାୟେଣ ସେ କଇଛା ଜଗଯେଠି
ତ୍ରଇଲୋକେ ବିଦିତ ତୋହୋର ନାମଗୋଟି ।
ସତ୍ୟଯୁଗ ଅନ୍ତେ ତୁ କଲୁ କର୍ମବଳେ
ତୋତେ ପରଥାଠ ହୋଇଲା ଏତେକାଳେ ।
ସମର କରିବା କି କରିବା ଦେବ ସନ୍ଧି
ତୁ ସର୍ବଜ୍ଞ ଧାର୍ମିକ ଜାଣୁ ସର୍ବ ବୁଧି ।
ଶିବର ପୁତ୍ର ଦେବ ବହୁତ କାଳର ରାଏ
ସେ ବ୍ରହ୍ମାର ପୁତ୍ର ସିନା ନିକଟେ ବରପାଏ ।
ମନ୍ତ୍ରୀର ନାମ ସେ ଶିବପାଳ ଅଟଇ
ସତ୍ୟ ଯୁଗେ ଯେ ପ୍ରଚଣ୍ଡସୁର ଖଟଇ ।
ମହିଁଷାସୁର ରହିଅଛି ନର୍ମଦା ନଦୀକୂଳେ
କରୁଣାକର ପର୍ବତ ଶିବବଟର ତଳେ ।

ରାଜାକଇ ବୁଝାବଇ ସେ ଶିବପାଳ ମନ୍ତ୍ରୀ
ମୁଁ ଯିବିକି ସେ ମହିଷାସୁରକୁ ନିବର୍ତ୍ତି ।
କିସ ଅର୍ଥେ ଆଗମ ସେ ଆମ୍ଭର ପୁରକୁ
ସଂକ୍ଷେପ କରି ଦେବ ପୂଜିବା ତାହାକୁ ।
ପ୍ରୀତି ହୋଇଲେ ସେ ସନ୍ଧି ନ କରିବା
ଅଥବା କାର୍ଯ୍ୟ ହିଁ ନଗଲେ ଯୁଦ୍ଧ କି କରିବା ।
ଆଜ୍ଞା ଦେଲା ସେ ପ୍ରଚଣ୍ଡସୁର ରାଏ
ଅନେକ ଉପହାର ଯୋଗାଡ଼ ଘେନ ଆଏ ।।୪୦୦।।
ଶିବପାଳ ମନ୍ତ୍ରୀ ଚଳିଲା ଛଡ଼ ପାଏ
ଯାଇଁଣ ତୁରିତେ ମହିଷାର ଥାଠରେ ସମ୍ପାଏ ।
ଆଗିଆଣି ଥାଠରେ ଲୋଚନ ବେମାଳ ବେନି
ତେତିଶ ମର୍ଭୁତ ତୁଲେ ଅଛଇ ସଇନି ।
ଅନେକ ରତ୍ନ ଯେ ଆରମ୍ଭିତ କାଏ
ସମସ୍ତ ଯୋଦ୍ଧାଏ ଦିଶନ୍ତି ଯମ ଦେବତାର ପ୍ରାଏ ।
ଉପହାର ଆଗମ ଦେଖି ଚାମର ବେମାଳ ହି
ଶିବପାଳ ମନ୍ତ୍ରୀ ଯାଇଁ ଛାମୁରେ ମିଳଇ ।
ଚାମର ବେମାଳ ପ୍ରୀତିଯୋଗ ବେନି
ରାଜାର ଆଗେ ଯାଇ କହିଲେ ସଇନି ।
ସ୍ୱାମୀ ପ୍ରଚଣ୍ଡସୁରର ମୁଁ ପ୍ରୀତିଭାବ ଅଟଇ
ମନ୍ତ୍ରୀର ବିନୟ ଦେଖି ମହିଷାସୁର ରୋମାଞ୍ଚଇ ।
ଚାମର ବେମାଳ ଯେ କହିଲେ ମହିଷାକୁ
ସ୍ୱାମୀ ଶିବପାଳ ମନ୍ତ୍ରୀ ଦର୍ଶନ କରିବ ତୁମ୍ଭକୁ ।
ଅପାର କାଳର ସେ ମହା ବୈଷ୍ଣବୀ
ସତ୍ୟବନ୍ତ ପଣେ ସେ ରାଜା ମହେଶ୍ୱର ସେବି ।
ଛାମୁରେ ଜଣାଇ ଦର୍ଶନ କଲା ମନ୍ତ୍ରୀ
ଉପହାରମାନ ଥୋଇଲେ ଯୁଗତି ।
ମନ୍ତ୍ରୀ ବୋଇଲା ଦେବ ଶୁଣ ଦେବ ବଚନ ମୋହୋର
ପ୍ରଚଣ୍ଡସୁର ରାଜା ଯେ ପୀରତି ତୋହୋର ।।୪୧୦।।
ସେ ଶିବର ପୁତ୍ର ତୁ ଅଟୁ ବ୍ରହ୍ମାର ନନ୍ଦନ
ତାହାରେ ତୋହୋରେ ସେ ଅନେକ ପ୍ରୀତିମାନ ।
ମହିଷାସୁର ବୋଇଲା ଶୁଣ ମନ୍ତ୍ରୀବର
ରାଜାର ଆଗେ ଯାଇ ଜଣାଅ ତୋହୋର ।
ମୋହୋର ସେନାପତି ବୀର କାନ୍ତିମାଳ
ସିଂହଳ ଦୀପରେ ସେ ଅଟଇ ମହୀପାଳ ।
ମୋତେ ଖଟିଲା ସେ ଧନ ଭଣ୍ଡାର ଘେନି

କରଞ୍ଚ ଦୀପର ରାଜା ଖଟିଲା ଥାଠ ସନ୍ୟ ଘେନି ।
କୁଶଳ ଦୀପରେ ସେ ପ୍ରଚଣ୍ଡସୁର ରାଜା
ଚଣ୍ଡ ମୁଣ୍ଡ ବୋଲି ତାହାର ଆତ୍ମଜା ।
ତାହାର ମୋହୋର ଯେବେ ହୋଇଲା ଏକପ୍ରୀତି
ମୁକୁଇ ଦେଉ ସେ ଚଣ୍ଡ ମୁଣ୍ଡ ଦୁହିନ୍ତି ।
ତାହାର ମୋହର ଥାଉ ପ୍ରୀତି ସଦା
ଯେମନ୍ତେ ଯୁଗତେ ସେ ହୋଅଇ ଅଭେଦା ।
ଅଥବା ନ ଦେବ ସେ ଚଣ୍ଡ ମୁଣ୍ଡନ୍ତ
ମୋହୋର ତୁଲେ ସେ ସମର କରିବ ନିର୍ଭାନ୍ତ ।
ମାରିବଇଁ ସମରେ କାଟିବଇଁ ମାସଂ
ଖାଇବି ସବୁକୁହିଁ ଉଜାଡ଼ିବି ଦେଶ ।
ଏସନ ପ୍ରତିଜ୍ଞା କରି ସେ ଅଧର ଦନ୍ତ ଚାପି
ଆକାଶ ମଣ୍ଡଳେ ତେଜ ତାହାର ବ୍ୟାପି ॥୪୨୦॥
ବେନି ନୟନୁ ଜାତ କି ଅନଳ ବହନି
ବ୍ରହ୍ମାଣ୍ଡ ଘୋଟିଲା ସେ ମହିଷାସୁରର କୋଟି ଘେନି ।
ବାହୁଡ଼ଇ ମନ୍ତ୍ରୀ ସେ ମହିଁଷାସୁରର ଆଜ୍ଞା ପାଇଁ
ପ୍ରଚଣ୍ଡସୁର ଆଗେଁ କହିଲାକ ଯାଇଁ ।
ନିମିଷେକ ଜିଣିତ ପାରଇ ସମସ୍ତ ଦୀପ
ନିଶ୍ଚଏ ପ୍ରସନ ତାକୁ ହୋଇଲେ ବିଧାତ ।
ମନ୍ତ୍ରୀ ବୋଇଲା ବ୍ରହ୍ମାଣ୍ଡ ନ ସହଇ ମହିଷାସୁରର କୋପ
ଅଜାତି ଜନ ମନୁଷ୍ୟ ମହିଷି ସଂଜାତ ସ୍ୱରୂପ ।
ବୋଇଲା ତାହାର ମୋହୋର ଯେବେ ହୋଇବାକ ପ୍ରୀତି
ମୋତେ ଦେଉ ତାହାର ଚଣ୍ଡ ମୁଣ୍ଡ ଦୁହିନ୍ତି ।
ମୋହୋର ସେନାପତି ହୋଇଥିବେ ବେନି
ତାହାନ୍ତ ଘେନିଣ ମୁଁ ସାଧିବି ମେଦିନି ।
ପ୍ରଚଣ୍ଡ ସୁର ବୋଇଲା ଯେ ତାହାର ମୋହୋର ପୀରତି
ପୁଅନ୍ତ ଦେଇ ମୋହୋର କିସ ଜୀବନ୍ତି ।
ସନ୍ୟ ଦେବି ଅନେକ ଧନରତ୍ନ ଦେବି
ଯେତେବେଳେ ଯହିଁକି ପେଷିବ ତହିଁକି ଦଣ୍ଡ ସାଜି ଚଳିବି ।
କହୁଁ କହୁଁ ରାଜାଏ ହୃଦଏ ବିକଳ
ବେନି ଲୋଚନୁ ରାଜାର ବହଇ ଅଶ୍ରୁଜଳ ।
ନିସତ ହୋଇଁ ଯେବେ ଦେବି ମୋହୋର ଆତ୍ମଜା
ମନ୍ତ୍ରୀକି ବୋଇଲା ମୋର ଦଣ୍ଡ ସାଜ ବେଗେ ଯାଅଯା ॥୪୩୦॥
ରାଜାର ଆଜ୍ଞା ପାଇ ଶୁଭିଲା ତୂରୀ ଧ୍ୱନି
ସାଜିଲା ରଦ୍ରବଳ ଯେ ପ୍ରଚଣ୍ଡ ବହନି ।
ସନ୍ୟଙ୍କର ସବୁଙ୍କରି ତ୍ରିଶୂଳ ଶକତି
ବାମକରେ ଡମରୁ ବାଜଇ ଧବଳ ମୂର୍ତ୍ତି ।
ଧବଳ ଶ୍ୱରୀର ଏକ ଚରଣ ଚତୃଭୁଜା
ପୃଥୀରେ ବ୍ୟାପିଲେ ସମସ୍ତ ଯୋଦ୍ଧା ତେଜା ।
ଚଉଦ କୋଟି ଡମ୍ବରୁ ବାଜଇ ହମ୍ପାଳି
ଆକାଶ ମଧ୍ୟେ ଯେ ତିନିପୁର ପାତାଳ ଉଚ୍ଛୁଳି ।
ବଇଲେ ବଇଲେ ଚଢ଼ିଅଛନ୍ତ ସର୍ବବୀରେ
ବିଭୂତି ବିଲୋପନ ହୋଇ ଅଛନ୍ତି ଶରୀରେ ।
ପ୍ରଚଣ୍ଡ ବଳୀୟାର ସେ ମହା ମହା ସେନା
ସମର ସମ୍ପର୍ବେ ସେ ନଯାନ୍ତି ଗଣନା ।
ମହିଷାର ସଇନି ଦୁତୀୟ ସାଗର ଜାଣି
ଗଗନ ଉଚ୍ଛୁଳିଲା ସେ ମୁଖରାବ ବାଣି ।
ଏ ବିଧି ବେନି ବଳ ହୋଇଲା ଏକ ଭେଟ
ଲାଗିଲା ରଣରଙ୍ଗ ସିନ୍ଧୁ ନଦୀର ତଟ ।
ଆହୋ ପରୀକ୍ଷ ବ୍ୟାଘ୍ରେକ ଚଢ଼ିଣ ବୀର ଚଣ୍ଡ ମୁଣ୍ଡ
କରେ କୋଟିଏକବଳ ଘେନିଣ ମହାଦଣ୍ଡ ।
ପ୍ରତଜ୍ଞା କରି ଯାଇଁ ହୋଇଲା ପିତାର ଅଗ୍ରତେ
ତୋହୋର କିସ ବିନା ଆମ୍ଭ ଦେଖନ୍ତେ ॥୪୪୦॥
ପ୍ରଚଣ୍ଡସୁର ପୁତ୍ରନ୍ତ ବସାଇଁ ପୁଛଇ
ମହିଷାସୁର ଦାନବ ତୁମ୍ଭନ୍ତ ମାଗୁଅଛଇ ।
ତୁମ୍ଭେ ପଛହୋଇ ଆସରେ ବେନିବାଳ
ପୁତ୍ରନ୍ତ ଘେନି ଆସଇ ନୃପତି ଚଞ୍ଚଳା ଅନର୍ଗଳ ।
ବାଜିଲା ସଜାଉ ଦୁନ୍ଦଭି ତୂର ଢୋଲ
ଚଞ୍ଚଳ ବଳ ଯେ ବିକାଶନ୍ତି ଗହଳ ।
ଏ ବେନି ଭେଟ ସଇନି ଏକ ମୁଖେ
ବିହଡ଼ନ୍ତି ଦାନବ ବଳ ପରମ ସାନନ୍ଦ ସୁଖେ ।
କାନ୍ତିମାଳା ଜଣାଇଲା ଶୁଣ ହୋ ଗରୁହଂସୀ
ପୁତ୍ର ମାଗନ୍ତେ ଦେବ ସମରେ ନିରାଶି ।
ମହିଷାସୁର ବୋଇଲା ବେମାଳ କାନ୍ତିମାଳ
ପ୍ରଚଣ୍ଡାସୁର ରାଜାକୁ ଯାଇଁରେ ଓଗାଳ ।
ପିତାର ମନ୍ତ୍ରବଳେ ମୁଁ ଯିବି ଅନ୍ତରୀକ୍ଷେ
ଚଣ୍ଡ ମୁଣ୍ଡ ଦୁହିଁକି ମୁଁ ଭୋଟିବାକୁ ପ୍ରତ୍ୟକ୍ଷେ ।
ଚଣ୍ଡ ମୁଣ୍ଡ ନଧଇଲେ ମୋହର କିସ ଯିବ
ବ୍ରହ୍ମାର ବରେ ମୋହୋର ନିଷ୍ଫଳ ହୋଇବ ।
ପାଞ୍ଚ ମେବକ୍ଷ ସେନା ତୁଲେଣ ଅଛି

ଶୂନ୍ୟେଣ ମହିଷାସୁର ହୋଏ ଅନ୍ତରୀକ୍ଷି ।
କଟକର ପାଗୁଣେ ଅଛନ୍ତି ଚଣ୍ଡ ମୁଣ୍ଡ ବେନି
ପକ୍ଷୀ ପ୍ରାୟେକ ମହିଷାସୁର ଘୋଟେ ବଳ ଘେନି ।୪୫୦।
ଗଙ୍ଗାକୂଳେ କ୍ରୀଡ଼ା ସେ କରନ୍ତି ଚଣ୍ଡମୁଣ୍ଡେ
ଅସୁର ବଳ ଦେଖି କରେଣ ଘେନିଲେ ଲୌହ ଦଣ୍ଡେ ।
ଗଦା ବୁଲାଇଣ ନଦୀ ଭିତରେଣ ଉଠି
କେଶବାସ ଅସମ୍ଭାଳ ଦଇତେ କରନ୍ତି ଦୃଢ଼ ମୃଷ୍ଟି ।
ମରଭୁତେ ଯୋଦ୍ଧାକୁ ଚଣ୍ଡ ମୁଣ୍ଡ ବେନି
କରନ୍ତି ରଣରଙ୍ଗ ସେ ଗାଦାମାନ ଘେନି ।
ଆରେ ଆରେ ରହ ରହ ବୋଲି ବୋଲଇ ମହିଷା
ବାଳୁତ କାଳେ ତୁମ୍ଭରରେ ଏଡ଼େକ ଭରସା ।
ସେନାନ୍ତ ରାଇଯେ ମହିଷାସୁର ପୁଛଇ
ଏହା ଦେଖି ଶରୀର ମୋହୋର ରୋମାଞ୍ଚଇ ।
ପ୍ରାଣେ ନମାରରେ ଧର ଏହା ବେଢ଼ି
ମୋହର ରାଜ୍ୟକୁରେ ନେମା ଦଣ୍ଡ ଚଢ଼ି ।
ରାଜାର ବଚନେ ଯେ ବେଢ଼ିଲେ ସର୍ବସେନା
ମହା ପ୍ରତାପୀ ସେ ନଯାନ୍ତି ଗଣନା ।
ବଜ୍ର ଦଣ୍ଡ ପ୍ରାୟେକ ସେ ଚଣ୍ଡ ମୁଣ୍ଡଙ୍କର ବେନି ମୁଷ୍ଟି
ଅନର୍ଗଳାକରି ପରିଘ ପିଟନ୍ତି ।
ଗଦା ପିଟନ୍ତେଣ ସଇନି ହୁଏ ଗୁଣ୍ଡା ।
ରଣେ ରସେ ବିହଡ଼ଇ ସେ କୁଶଦୀପର ଷଣ୍ଢା ।
ଅଧର ପୃଷ୍ଠ କରନ୍ତେଣ ବୀରଭାରାଭର ଚଳଇ
ଅସୁର ବଳ ସଇନି ଛାମୁରେ କେହି ନମିଳଇ ।୪୬୦।
ବୁଲାଇଣ ଗଦା ସେ ପ୍ରହାର କରନ୍ତି
ଏକ ପ୍ରହାରକେ ଅସୁର ବଳ ଯେ ଅନେକ ପଡ଼ନ୍ତି ।
କରନ୍ତି ସମର ଯେ ମରଣରେ ଉପ୍ରୋଧି
ଘଡ଼ିକର ମଧ୍ୟେ ପଡ଼ିଲେ ବେନି ସହସ୍ର ଯୋଦ୍ଧି ।
ମହିଷାର ସଇନି ହୋଇଲେ ଛାଗଳ ଯୂଥ ପ୍ରାୟେ
ବଜ୍ର ଜାଣି ସେ ଅସୁର ବେନି ତନୟେ ।
ରୁଧିର ଦର୍ଶନେ ଦୁଗୁଣ ଗୁଣ ବିକାଶଇ
ସୈନ୍ୟବଳ ମାରି ସେ ଚଣ୍ଡ ମୁଣ୍ଡ ବିକାଶଇ
ସୈନ୍ୟବଳ ମାରି ସେ ଚଣ୍ଡ ମୁଣ୍ଡ ଗର୍ଜ୍ଜଇ ।
କଷୋର ଯୁଦ୍ଧ ଦେଖି ମହିଷାସୁର ଉଠି
କୋପେଣ ଯୋଦ୍ଧା ସେ କଲେ ଶର ବୃଷ୍ଟି ।
ଶହସ୍ର ପଡ଼ନ୍ତେ ସେ ନକରନ୍ତି ଭୟେ
ଈଶ୍ୱର ସେବିଣ ସେ ଅମର ବର ପାଏ ।
ବକ୍ରେ ନିର୍ବାଣ ସେ ଚଣ୍ଡ ମୁଣ୍ଡଙ୍କର ବେନି ଅଙ୍ଗ
ସମସ୍ତ ଶହସ୍ରମାନ ପଡ଼ି ହୁଅନ୍ତି ଭଙ୍ଗ ।
ପୁଣ ଉଠନ୍ତେ କୁମର ମହାବଳି
ମହିଷାର ସଇନି ସବୁ ପିଟି କଲେ ଧୂଳି ।
ଅପାର ସନ୍ୟ ଯହୁଁ ହୋଇଲେ ବଧି
ପ୍ରହରକ ମଧ୍ୟେ ସେ ପାରିଲେ ଲକ୍ଷେ ଯୋଦ୍ଧି ।
ରଣେ ଅନିବାରଣ ସେ ଚଣ୍ଡ ମୁଣ୍ଡ ବେନି ।୪୭୦।
ପୁଣ ପ୍ରହାର କଲେ ଅନେକ ସଇନି
ମରଭୁତେ ଯୋଦ୍ଧା ଯେ ମହିଷାସୁରର ଥିଲା ।
ଚଣ୍ଡ ମୁଣ୍ଡଙ୍କର ପ୍ରହାରେ ସମସ୍ତ ପଡ଼ିଲା
ପବନହୁଁ ବେଗ କରି ପହୁଡ଼ଇ ଗଦା ।
ସମରେ ସଇନି ଯେ ସବୁକଲା ପଦା
ରକତେ କର୍ଦ୍ଦନ ଯେ ସେ ବେନି ହୋଇଲା ।
ସହସ୍ରେ ତିନି ଶତ ଯୋଦ୍ଧା ମାତ୍ର ରହିଲା
ଦେଖିଣ ମହିଷାସୁରର ଯେ ନପୁରଇ କିଛି ।
ଭଗ୍ନ ବଳ ଘେନି ଯେ ମହିଷାସୁର ରହିଅଛି
ଚଣ୍ଡ ମୁଣ୍ଡ ଦୁହେଁ ଯେ ଗୋଡ଼ାଇ ଅଛନ୍ତି ପଛେ ।
ମହିଷାସୁର ରାଜା ଗଲାକ ଅନ୍ତରୀକ୍ଷେ
ମହିଷାସୁର ଚାମର ବେମାଳ ସଇନି
ଭଗ୍ନବଳ ଘେନି ମହିଷାସୁରକୁ ଭେଟନ୍ତି ।
କାନ୍ତିମାଳା ଆଗରେ କହିଲା ସମର କଥା
ଶୁଣି କାନ୍ତିମାଳା ଯେ ପାଇଁଲା ବଡ଼ବ୍ୟଥା ।
ମହିଷାସୁର ବୋଇଲା ଯେ ସମର ଛାଡ଼ ବୁଦ୍ଧି
ଏହାର ଆମ୍ଭର ହୋ କରନା ପ୍ରୀତି ସନ୍ଧି ।
ନିଶହସ୍ର ହୋଇ ଛାମୁକୁ ତା ଯିବା
ବିନୟ ହୋଇଣ ପୁରସରି କହିବା ।
ବନ୍ଧୁ ଗୁଣ ଉପୁଜାଇ ବସିବା ସନ୍ନିଧାନେ
ଅବା ସନ୍ଧି ନୋହିଲେ ସମର ହୋଉ ଅନ୍ୟେ ଅନ୍ୟେ ।
ଏତେ ବୋଲିଣ ସେ ଛାଡ଼ିଲେ ଶହସ୍ର ମାନ
ପାଦଗତି ହୋଇ ସେ କରନ୍ତି ଗମନ ।୪୮୦।
ରାଜାର ଅଗ୍ରତେ ସେ ମନ୍ତ୍ରୀ କହିଲା ଶିବପାଦ
ସମର ସମ୍ବାଦ ଶୁଣି ଦଣ୍ଡଭେଦ ମନ୍ତ୍ର ଭେଦ ।
ସମର ଛାଡ଼ିଲେ ମହିଷାସୁର ଆସଇ
ସନ୍ଧି ହୋଇଲା ଦେବ ଛାଡ଼ି ଅମରିଷଇ ।

ଅଥବା ରାଜା ଯେବେ କରିବ ନାହିଁ ସନ୍ଧି
ପ୍ରୀତିଭଗ୍ନ ହୋଇଲେ ଦେବକାର୍ଯ୍ୟ ନୋହିବ ତା ସିଦ୍ଧି ।
ମନ୍ତ୍ରୀର ବଚନ ଶୁଣି ପ୍ରଚଣ୍ଡାସୁର ଉଠଇ
ଶିବପାଦ ମନ୍ତ୍ରୀ ମହିଷାସୁର ଚରଣେ ପଡଇ ।
ମୋହର ବଚନ ତୁ କର ମହାରଥୀ
ବେନିକୁଳ ରାୟେ ହୋଇଲେ ପୀରତି ।
କଟେକରେ ବିଜେକଲେ ଶରଧା ଧୀର ମତି
ମାୟେଙ୍କର ଲେଖାରେ ସେ ମହିଷାସୁର ନାତି ।
ପ୍ରୀତି ମୋହୋର ହୋଇଲା ଚଣ୍ଡ ମୁଣ୍ଡ ନୃପତି
ଅନେକ ଯୋଗାଡ଼ ସେ ଯେ ଭୋଜନ ସମ୍ଭାର
ପ୍ରାଣୁ ଅଧିକ କରିସେ କରଇ ବେଭାର ।
ଆହୋ ଚାରି ପାଞ୍ଚ ଦିବସ ଯାଏ ରହିଲା ମହିଷା
ପୁଣି ସିଂହଳ ଦୀପକୁ ବଳାଇଲା ମନସା ।
ମହିଷା କୋଇଲା ମୋତେ ଦେବ ଦେବରାଜ
ଥାଠ ସଇନି ଦେବୁ ମୋର ଯେତେବେଳେ କାର୍ଯ୍ୟ ।୪୯୦।
ରାଗ ଉପେକ୍ଷି ସେ ମହିଷାସୁର ନୃପତି
ଅନେକ ପ୍ରୀତି ଉପୁଜୁଆଇଲା ଚଣ୍ଡ ମୁଣ୍ଡ ଦୁହିଁନ୍ତି ।
ଭୋଜନ ସଂଭାର ମହିଷାସୁର ସଂଗର
ଅହନିଶି ବିଶ୍ୱାସ ଯେ ରାଜାର ଆମ୍ଭର ।
ପାଞ୍ଚ ମରଭୁତ ଯେ ଥିଲା ସେନାପତି
ସମସ୍ତ ମୁକୁଟ ଯୋଦ୍ଧା ଚଣ୍ଡ ମୁଣ୍ଡ ସାମାନ୍ୟ କ୍ଷତି ।
ଏତେକେ ସୈନ୍ୟ ଘେନି ମହିଷାସୁର ଚଳଇ
ବଢ଼ାଇ ସମ୍ଭରେ ଯାଇ ସିଂହଳ ଦୀପରେ ମିଳଇ ।
ଅନେକ ଉଛବ ସେ କରିଣ ଯେ ରାଜା
ଆପଣା ରାଜ୍ୟେ ସେ ଚଣ୍ଡ ମୁଣ୍ଡ କଲା ପୂଜା ।
ସିଂହଳ ଦୀପ ପୃଥୀ କଟେକ ଜେନାବତୀ
ଚାରିଲକ୍ଷ ପ୍ରଜା ଜନେ ସେ ଚଣ୍ଡ ମୁଣ୍ଡ ନୃପତି ।
ନବରେଣ ଆସଇ ସେ ମହିଷାସୁର ମହାରାଜ୍ୟେ
ଚଣ୍ଡ ମୁଣ୍ଡ ଦୁହେଁ କରନ୍ତି ଦିଗ ବିଜେ ।
ଜୟତୁ ଭଗବାନ ଭଗତ ମଙ୍ଗଳା
ରାଜୀବ ଲୋଚନ ଷୋଳ ସମ୍ପୂର୍ଣ୍ଣ କଳା ।
ସ୍ୱାମୀ ମନ ପ୍ରକୃତି ପରମ ସାନନ୍ଦେ
ତୋହର ଭଗତି ଥିବ ମମ ହୃଦେ ।
ଅକାରଣ ଲୋକକୁ କାରଣ କରତା
ପର ଦୁଃଖେଣ କାତର ଅହନିଶି ବର ଦ୍ୟନ୍ତା ।୫୦୦।
କୃପାଜଳ ନନ୍ଦନୀ ଶ୍ରୀ ଶାରୋଳା ଚଣ୍ଡୀଦେବୀ
ମୁହିଁ ତାହାର ପୁତ୍ର ଶାରୋଳା ଦାସ କବି ।
ଏ ମହାସାଗରକୁ କିସ ମୁହିଁ ଜ୍ଞାତା
ସେହି ଦେବୀ ଯାହା କହଇ ମୁହିଁ ତାହା ଲେଖନ୍ତା ।
ପଦ୍ମଜଳ ଲୋଚନୀ ଚନ୍ଦ୍ରମା ମୁଖ ଗୋଟି
ଅନିର୍ଯ୍ୟାପରେ ଥାପନ ସେ ମୋର ଦେବୀପାଦଗୋଟି ।୫୦୩।

## ମହିଷାସୁରର ଦକ୍ଷିଣ ଦିଗେ ଗମନ ଓ ଚନ୍ଦ୍ରାବତୀ ବିବାହ

ଏଥୁ ଅନନ୍ତରେ ଯେ ପରୀକ୍ଷ ନାମେ ରାଜା
ଶୁକମୁନି ଚରଣେ ଯେ କଲେ ଦିବ୍ୟ ପୂଜା ।
ସିଂହଳ ଦୀପ କରଞ୍ଚ ଦୀପ କୁଶ ଦୀପ ତିନି ଦୀପ ହୋଇଲା ତା ସାଧି
ପୁଣ ମହିଷାସୁର କଲା କେବଣ ବୁଦ୍ଧି ।
ଏହା ସଞ୍ଚପି ମୋତେ କହିବା ତପୋନିଧି
ଅନେକ ଜନ୍ମ ଦୁଷ୍କୃତ ହୋଉ ମୋହୋର ସିଦ୍ଧି ।
ବଦନ୍ତି ଶୁକ ମୁନି ଶାହାସ୍ର ଆଦି ବ୍ରହ୍ମା
ଶୁଣ ହୋ ମହିଷା ଆଦି ବଂଶର ମହିମା ।
ମକର ଶୁକଳ ପକ୍ଷ ଏକାଦଶୀର ଦିନ
ବୃହସ୍ପତି ବାର ପୁଷ୍ୟା ନକ୍ଷେତ୍ର ବିଦ୍ୟମାନ ।
ସେଦିନ ହୋଇଅଛି ଶୁଭ ନାମେ ଯୋଗ
ସେଦିନ ମହିଷା ବିଜୟେ ପଶ୍ଚିମ ଦିଗ ।
ବୀରତୂର ବିଜିଘୋଷ ନିଶାଣ ତୂର ବାଜେ
ଦଧି ମଙ୍ଗଳ ଅନକୂଳ ମହିଷାସୁର କରଇ ଦିଗବିଜେ ।୫୧୦।
ଗୋଡ଼ାଇ ସମ୍ଭର୍ବେଣ ଚଳନ୍ତେଣ ବଳ
ଆଗିଆଣି ଥାଠରେ ଚଳନ୍ତି ଚାମର ବେମାଳ
ଡାହାଣ ପାଖ ଥାଠେ ଚଳଇ କାନ୍ତିମାଳା ।
ବାମ ପାରୁଶେ ଚଳନ୍ତି ମହା ବୀରା ।
ରାଜାର ବେନି ପାଖେ ଅଛନ୍ତି ଚଣ୍ଡ ମୁଣ୍ଡ
ଅସୁର ଚଳନ୍ତେ କମ୍ପଇ ବ୍ରହ୍ମାଣ୍ଡ ।
ଆକାଶ ମଣ୍ଡଳେ ଥାଇ ଦେଖନ୍ତି ଦେବ ଲୋକେ
ତ୍ରାସିଣ ସ୍ୱର୍ଗ ଛାଡୁଥାନ୍ତି ଥୋକେ ।
ସିଂହଳ ଦୀପ ଜିଣି ଲବଣ ସମୁଦ୍ରେ ପାଇ
ଛବିଶ ଯୋଜନ ଜିଣି କରଞ୍ଚ ଦୀପେ ଭ୍ରମଇ ।
କରଞ୍ଚ ଦୀପ ଅଟଇ ଚାଳିଶ ଯୋଜନ
ନୀଳ ନାମେ ସମୁଦ୍ର ତିରିଶ ଲକ୍ଷ ଯୋଜନ ।

ପ୍ରମାଣି ନୀଳ ସମୁଦ୍ର କୁଶ ଦୀପରେ ପଶଇ
ପ୍ରଚଣ୍ଡାସୁର ଶିବପାଦ ଦେଖିଣ ହସଇ ।
ଚଣ୍ଡ ମୁଣ୍ଡଙ୍କର ସମ୍ପର୍ବ ଦେଖିଣ ନୃପତି
ଅନେକ ପୂଜା କଲା ଫିଟିଲା ମନଭ୍ରାନ୍ତି ।
ତହୁଁଣ ଜିଣି ମହିଷାସୁର କରଇ ପୟାଣ
ନୀଳ ସମୁଦ୍ର ଜିଣିଲା ତିନି ଲକ୍ଷ ଯୋଜନ ।
ନୀଳ ସମୁଦ୍ର ଜିଣି ଚନ୍ଦ୍ର ସମୁଦ୍ରେ ପଶଇ
ଅଖାଇଯ ଖାଇଯ ଯେ କରନ୍ତି ସର୍ବଇ ।୫୨୦।
ଉଜାଡ଼ନ୍ତି ଦେଶ ଭାଙ୍ଗନ୍ତି ପର ସମ୍ପଦ
ଚନ୍ଦ୍ର ଦୀପ ଧ୍ୱଂସିଣ କଲେକ ପ୍ରମାଦ ।
ଚନ୍ଦ୍ର ଦେଶର ରାଜା ଚନ୍ଦ୍ର ଯେ ନଉମି
ଭୁଷଣ୍ଡ କାକର ବଂଶେ ସେ ଅଟଇ ମହାବ୍ରହ୍ମି ।
ଚନ୍ଦ୍ର ନଉମିର ଭାରିଯା ଚନ୍ଦ୍ରରେଖା ନାମ ଯୁବତୀ
ତାହା ତହୁଁ ଉପୁଜିଲା ଦୁହିତା ଏକ ନାମ ଚନ୍ଦ୍ରାବତୀ ।
ସେ ଚନ୍ଦ୍ରାବତୀ ନିମନ୍ତେ ରାଜା ନପାଇଲା ବର
ମଧପୁରେ ନାହିଁ ତାହାକୁ ପଟାନ୍ତର ।
ଚନ୍ଦ୍ର ଦୀପ ଯେ ତିରିଶ ଯୋଜନ ଥଳୀ
ପଞ୍ଚ ଲକ୍ଷ ରାଜା ବସଇ ଦଶ ସହସ୍ର ଅଗୁଳି ।
ଏତେକ ରାଜା ନିମନ୍ତି ଅଣାଇ ନୃପବର
ଦୋହିତାର ନିମନ୍ତେ ରାଜା କଲା ସଏମ୍ବର ।
ଚନ୍ଦ୍ରଗିରି ନାମେ ସେ ଏକଇ ପରବତ
ତହିଁର ଭିତରେ ରାଜା ଥୋଇଛି ସାତକୁଣ୍ଡ ଅମୃତ ।
ପର୍ବତର ରକ୍ଷାକାରୀ ପାଞ୍ଚକୋଟି ଗନ୍ଧର୍ପ
ତହୁଁଣ ସେ ଉଦାଏ ହୋଏ ଚନ୍ଦ୍ରଦେବ ।
ସେ ଚନ୍ଦ୍ର ଦୀପର ରାଜା ଚନ୍ଦ୍ର ଅଟଇ
ସେ ଚନ୍ଦ୍ର ଦୀପକୁ ଚନ୍ଦ୍ର ଜାଣି ଘୋଟଇ ।
ପଦ୍ମ ଦୀପେକ ବୋଲି ଦୀପେକ ଉପମା
ସେ ଦୀପ ସମୋଦ୍ରେ ରାଜା ଯେ ବେଦବ୍ରହ୍ମା ।୫୩୦।
ଅନନ୍ତ ବୋଲି କରି ଈଶାନ୍ୟ କୋଣେ ହାବେ
ସେ ଦୀପରେ ଯାଇ କୋଣୁ ଆଦିତ ହୋଏ ଉଦେ ।
କୁଶଦୀପ ବୋଲି କରି ଯେବଣ ଦୀପ ଗୋଟି
ସେ ଦୀପରେ ରାଜା ସେ ଅଟଇ କପଟି ।
କୁରଂଟନ ବୋଲି କରି ଅଟଇ ଯେବଣ ଦୀପ
ସେ ଦୀପ ସମୁଦ୍ରେ କୁବେର ଅଟଇ ନୃପ ।
ଜମ୍ବୁଦୀପ ବୋଲିକରି ଯେବଣ ଦୀପ ଉପମା
ସେ ଦୀପ ସମୁଦ୍ରେ ଅଟଇ ହାଦେ ଯମ ।
ଚନ୍ଦ୍ରଗିରି ପର୍ବତ ତଳେ ମହିଷାସୁର ରହଇ
ପରୀକ୍ଷ ଆଗରେ ଶୁକମୁନି କହଇ ।
ମହିଷାସୁର ଯହୁଁ ଚନ୍ଦ୍ର ଦୀପରେ ରହଇ
ଭାଗଇ ଦେଶ ଉଜାଡ଼ନ୍ତି ଦେଶଇ ।
ପରୀକ୍ଷ ପୁଛାକଲା ଶୁକ ମହାମୁନି
ସେ ଚନ୍ଦ୍ରାବତୀ ସଏମ୍ବର କେବଣ ବିଧାନି ।
ଶୁଣ ହୋ ମହାରାଜା ପୁଛାକଲୁ ଯାହା
ସାବଧାନେ ଶୁଣ କହଇ ମୁଁ ତାହା ।
ସେ ଚନ୍ଦ୍ର ନଉମି ରାଜା ଦୋହିତାଏଣ କରି
ଲକ୍ଷେ ଦଶ ସହସ୍ର ରାଜା ଆଣିଲାକ ବରି ।
କାମୋଦ ନଗ୍ରପୁରେ ସେ ଆରଣ୍ୟକ ନୃପତି
ବେନି ଅଙ୍କୁଶ ତୁଲେଣ ମିଳିଲା ଚକ୍ରବ୍ରତୀ ।୫୪୦।
ଚଣ୍ଡପୁର ଦେଶର ନୃପତି କାଳବଳୀ
ତିନି ପଦ୍ମ ଯୋଦ୍ଧା ତୁଲେ ଆସି ତହିଁମିଳି ।
ମାତାଙ୍ଗପୁର କାନ୍ତି ନାମେ ମହାରାଜା
ତିନି ସାଗର ସନ୍ୟ ତୁଲେଣ କଲା ପୂଜା ।
ଆଖ୍ୟାନ ଦେଶରେ ଯେ ଚନ୍ଦ୍ରାକ୍ଷ ବୋଲି ରାଏ
ଅଷ୍ଟାଦଶ ଖର୍ବ ସନ୍ୟ ଘେନି ସେହୁ ଆଏ ।
ଅନଙ୍ଗ ଦେଶର ଅନିମିଶ ଚକ୍ରବର୍ତ୍ତୀ
ସେ ପ୍ରବେଶ ହେଲା ଚନ୍ଦ୍ରନଉମିର କ୍ଷିତି ।
ନିରଞ୍ଜନ ଦେଶର ନିରଞ୍ଜନ ବୋଲି ବୀରା
ସାତ ପଦ୍ମବୀର ଘେନି ଆସଇ ଅଙ୍ଗିରା ।
କଳିଙ୍ଗ ଦେଶର ନିର୍ମଳସେନ ନୃପ
ସମଦଣ୍ଡ ଘେନି ପ୍ରବେଶ ପ୍ରତାପ ।
ପଲାଶ ଦେଶର ଇଛାପଦ୍ମ ବୋଲି ବୀର
ସେ ଆସି ପ୍ରବେଶ ଚନ୍ଦ୍ରନଉମି ପୁର ।
ଅଜମାତ୍ର ନଗ୍ରେ ଯୁଗାନ୍ତ ନୃପତି
ବଡ଼ାଇ ସମ୍ଭରେ ସେ ଅଇଲାକ କତି ।
ନୀଳମାଧବ ବୋଲି ଚଣ୍ଡପୁର ରାଜା
ଅଶୀ ଖର୍ବ ବଳ ଘେନି କଲା ପାଦ ପୂଜା ।
ଯୁଗାନ୍ତ ଦେଶର ରାଜା ସଉଦାସ
ତିନି ପଦ୍ମ ଯୋଧା ଘେନି ଯଶୋବନ୍ତୀପୁରେ ପ୍ରବେଶ ।୫୫୦।
ଚନ୍ଦ୍ରରେଖା ବୋଲି କରି ଚନ୍ଦ୍ରନଉମିର ଭାରିଜା
ବିତୁଳାକ୍ଷ ରକ୍ତବୀର୍ଯ୍ୟ ତାହାର ଆତ୍ମଜା ।

ପୁତ୍ରକ ରାଇ ଆଜ୍ଞା ଦେଲା ନଉମି
ଅନେକ ଦେଶର ରାଜାମାନେ ଆସୁଛନ୍ତି ମୃତୁଭୂମି ।
ସନମାନ ଗଉରୋବେ କରୁଥିବ ପୂଜା
କନେକ ଆସନେ ବିଜେ କରିଥିବେ ସର୍ବରାଜା ।
ପିତାର ବଚନ ଶୁଣି ସେହୁ ରକ୍ତବୀର୍ଯ୍ୟ
ଅନେକ ରତ୍ନ ଘେନି ସେ ହୁଅଇ ବୀର ସଜ ।
ମେଳ ହୋଇଅଛନ୍ତି କୁଶ ଦୀପରେ ସର୍ବରାଜା
ଅନରୂପ ସାମାନ୍ୟେ କରୁଛନ୍ତି ପାଦପୂଜା ।
ସର୍ବମଙ୍ଗଳ ଦେଶର ରାଜା କଲମାସିଙ୍ଘ ରାଏ
ତୁଲେଣ ସାତ ମର୍ଭୁତ ସଇନି ଘେନି ଆଏ ।
ବହୁତ ଚହଳ ସେ ମୁଖରାବ ଧୁନି
ତିନି ସାଗର ସନ୍ୟ ଘେନି ମହାବଳୀ ।
ସମଥି ଦେଶର ରାଜା ନିଉଧ
ସମଦଣ୍ଡଘେନି ପ୍ରବେଶ ହୋଇ ରାଏ ସାଧ ।
ଶରଦ ଦେଶର ଅଇନ୍ଦ୍ର ନାମେ ନୃପତି
ତୁଲେ ଅଛନ୍ତି ତାର ପାଞ୍ଚଲକ୍ଷ କ୍ଷତ୍ରି ।
ଜଳନ୍ଧର ଦେଶର ରାଜା ଜଳତରଙ୍ଗ
ବହୁତ ବଳ ଘେନି ସେ ମିଳିଲାକ ବେଗ ।୫୬୦।
ବହୁତ ଚହଳ ସେ ମୁଖରାବ ଧୁନି
ରାଜାମାନଙ୍କର ଅକଳିତ ସଇନି ।
ନିଉଧ ଦେଶର ରାଜା ପ୍ରବାଳ ସିଂଘ ରାଏ
ସମଦଣ୍ଡ ଘେନି ଯଶୋବନ୍ତୀ ପୁରେ ପାଏ ।
ସୁଦର୍ଶନ ଦେଶର ନୃପତି କୃତସେନ
ତାହାର ତୁଲେ ସାତ ମର୍ଭୁତ ସଇନ ।
ମାତାଙ୍ଗ ଦେଶର ରାଜା ରିଧିପତି
ସାତ ପଦ୍ମ ଯୋଦ୍ଧା ଘେନି ପ୍ରବେଶ ଯଶୋବନ୍ତୀ ।
ଦୁସହ ବନ୍ତକ ବୋଲିଣ ଏକ ଦେଶ
ବେନି ମେବକ୍ଷ ଯୋଦ୍ଧା ଘେନି ସଏମ୍ୱରେ ପ୍ରବେଶ
ପରାର୍ଦ୍ଧ ଦେଶର ହରିସେନ ରାଏ
ସମସଣ୍ଡ ଖେନି ଆସି ସୟମ୍ୱରେ ସମ୍ଭାଏ ।
ବର୍ଦ୍ଧମାନ ଦେଶର ନୃପତି ଅଶ୍ୱମାଳି
ସାଗରେକ ଯୋଦ୍ଧା ଘେନି ସଏମ୍ୱରେ ମିଳି ।
ଅତୁଟ ଦେଶ ନୃପତି ଭୋଗସେନ ବୀର
ସମଦଣ୍ଡ ଘେନି ପ୍ରବେଶ ହୋଏ ଚନ୍ଦ୍ରନଉମି ପୁର ।
ଶ୍ରୀଖଣ୍ଡି ଦେଶର ରାଜା ଶତସିଂଘ
ପଦ୍ମେକ ସନ୍ୟ ଘେନି ରକ୍ତବୀର୍ଯ୍ୟେ ସଙ୍ଗ ।
ରକ୍ତବୀର୍ଯ୍ୟ ବିଡ଼ୋଳାକ୍ଷ ବେନି ଭାଇ
ରାଜାମାନଙ୍କୁ ସବୁ ସମାଧାନ କରାଇ ।୫୭୦
ମାତାଙ୍ଗ ଦେଶର ନୃପ ରଣକେଶୀ
ସମଦଣ୍ଡ ଘେନି ସମରେଣ ଆସି ।
କାଶ୍ୟପ ଦେଶର ରାଜା ବସନ୍ତ ଦେବ
ପାଞ୍ଚଲକ୍ଷ ସନ୍ୟ ଘେନି ସୟମ୍ୱରେ ମିଳିବ ।
ଆଦିତ ଦେଶର ପଦ୍ମସେନ ନୃପତି
ସେ ପ୍ରବେଶ ହେଲା ଆସି ସୟମ୍ୱରେ ତଡ଼ତି ।
ମୁର୍ଦ୍ଧୂଳ ଦେଶର ରାଜା ସୂର୍ଯ୍ୟୋଦଏ
ଶିଖରେଶ୍ୱର ବୋଲି ଅଟଇ ତହିଁର ରାଏ ।
ସପ୍ତ ମର୍ଭୁତ ସନ୍ୟ ଅଛଇ ତାର ତୁଲେ
ଅସଙ୍ଖ ସନ୍ୟ ଘେନି ଯଶୋବନ୍ତୀ ପୁରେ ମିଳିଲେ ।
ମାଧୁର୍ଯ ଦେଶର ରାଜା ଶରଯତି
ସମଦଣ୍ଡ ଘେନି ଆସି ବିଜଏ ନୃପତି
ମଧୁବନ ଦେଶର ରାଜା ଯେ ବିରଞ୍ଚି
ସମଦଣ୍ଡ ଘେନିଣ ସେ ସଙ୍ଗରେ ଆସିଅଛି ।
ଷଟ ପଦ୍ମଦେଶର ରାଜା କର୍ଣ୍ଣମାଳି
ପାଞ୍ଚ ମେବକ୍ଷ ସନ୍ୟ ଘେନି ସଏମ୍ୱରେ ମିଳି ।
ତଳମ ଦେଶର ମଧୁ ଇନ୍ଦୁ ରଜା
ବେନି ପଦ୍ମ ସନ୍ୟ ଘେନି ଆସି କରଇ ପାଦ ପୂଜା ।
କିକଳି ଦେଶର ରାଜା କିକଳିଶ୍ୱର ବୋଲି
ପନ୍ଦରଲକ୍ଷ ଯୋଦ୍ଧା ଘେନିଣ ବୀରମିଳି ।୫୮୦।
ମର୍ବଳ ଦେଶର ରାଜା ମାଳ ଚକ୍ରବର୍ତ୍ତୀ
ଦଶଖର୍ବ ଯୋଦ୍ଧା ଘେନି ତୁଲେ ଆସଇ ତଡ଼ତି ।
ଚକ୍ରବ୍ରତେକ ଦେଶର ରାଜା ଯେ ସରଯି
ବେନି ପଦ୍ମ ଯୋଦ୍ଧା ଘେନି ତୁଲେଣ ବଳ ସାଜି ।
ବିରାଜ ଦେଶର ରାଜା ହିରଣକପଟ
ତାହର ତୁଲେଣ ସେନା ଖଟଇ ନବ ଲକ୍ଷ ।
ସଂମିଧ ଦେଶର କଳିଙ୍ଗସେନ ରାଜା
ସମଦଣ୍ଡ ଘେନି କରଇ ସେହୁ ପୂଜା ।
ଡେହୁକ ଦେଶର ରାଜା କୃତାନ୍ତେକ ନୃପତି
ବେନି ପଦ୍ମ ଯୋଦ୍ଧା ଘେନି ସେ ମିଳିଲା ତଡ଼ତି ।
ଭୋ ମାତ ଅଭଏ କାନ୍ତାନୀ ଶଶିମୁଖୀ
ଅନିର୍ଯାପ ଲେଖନକୁ ତୁହି ସେ ମୋତେ ସାକ୍ଷୀ ।

ଯେବଣ ଭାଗବତ ବିଷ୍ଣୁପୁରାଣ ପୋଥି
ବେଦ ଯାହା ଲିହିଲା ସେ ନିର୍ଯାପି ।
ଅଷ୍ଟଦଶ ପୁରାଣ ଯାହା ହାଦେ ବାଛି
ମୁହିଁ ତା ମନୁଷ୍ୟ ମାତ୍ରକେ ଲେଖନ କରୁଅଛି ।
ତିରିଶ ଲକ୍ଷ ଯୋଜନ ଯେବଣ ଚନ୍ଦ୍ର ଦୀପ
ମୃଧନା ଅବିଷେକ ବସଇ ପାଞ୍ଚଲକ୍ଷ ଦଶ ସହସ୍ର ନୃପ ।
ଏହାଙ୍କର ମୂଳେ ଯେ ଅନେକ ପାରିଦଣ୍ଡ
ବାର ଅଇବ୍ରତ ପାଞ୍ଚ ସହସ୍ର ଖର୍ବ ।୫୯୦।
ଯେତେ ରାଜାବଳ ଲେଖନ୍ତେ ଗହଳ ପଡ଼ିବ
ମୋହୋର ମନ ବୁଧି କେତେକ ହୋଇବ ।
ପଣ୍ଡିତ ଲୋକେ ଗାଳିବେ ବୋଲିବେ ସତ କଥା
ମୃଖ ଲୋକେ ବୋଲିବେ ଏ ଅଟଇ ବହୁତ ଲତା ।
ଇଦଂ ବାଚ ଯେ ନିମନ୍ତେଣ ମୁହିଁ
ଉଚଂ ଉଚଂ ରାଜା ମାନନ୍ତେ ଥୋକାଏ କହିଲଇଁ ।
ଜମ୍ବୋଦୀପରେ ମୁହିଁ କହୁଅଛି କୁଶ ଦୀପର କଥା
ବ୍ୟାସଙ୍କ ବଚନେ ମୁଁ ହୋଇଲି ବକତା
ନିର୍ଯାପ କରି ଲିହି ପାରିବଇଁକି ମୁହିଁ
ଅପାର ଲେଖନ ଯହୁଁ ଅଛଇ ମୁ କହିଁ ।
ପାରିଦଣ୍ଡ ଘେନିଣ କୋଟିଏ ପାଞ୍ଚ ଲକ୍ଷଇଁ
ଏତେକ ନୃପତି ସମ୍ଭରେଣ ମିଳି ଅଛଇଁ ।
ରକ୍ତ ବୀର୍ଯ୍ୟ ବିଦ୍ରୁଳାକ୍ଷ ବେନିବୀର
ଅନରୂପେ ପୂଜା କରନ୍ତି ମହୀପାଳ ।
ଚନ୍ଦ୍ରଭାଗା ବୋଲି କରି ଏକ ନଦୀ ଗୋଟି
ଅନନ୍ତ ଶେଯ୍ୟା ପାଦୁକା ତହିଁ ଭେଟି ।
ଚନ୍ଦ୍ର ଯେ କ୍ଷଏ ଗଲା ପ୍ରଜାପତି ଶାପେ
ଦିନେ ଦିନେ କ୍ଷଏ ହୋଇଲା ସେ ସୁରାନ୍ତେକର କୋପେ ।
ତୁଳ ଶୁକଳ ଯେ ପୂର୍ଣ୍ଣମୀର ଦିନ
ଚନ୍ଦ୍ରଶାପ ପାଇଲା ପଖ ଚତୃର୍ଦ୍ଦଶୀ ଦିନ ।୬୦୦।
ଶରୀର ଛାଡ଼ି ନହ ରେଖେ ରହିଲା
ଚନ୍ଦ୍ର ଦେବାତାର ଦେହ ଅତି କ୍ଷୀଣ ହେଲା ।
ସେ ଚନ୍ଦ୍ର ଦୀପେଂ କାନ୍ତି ନାମେ ନଦୀର
ତହିଁ ଯାଇଁ ବୁଡ଼ି ଯେ ପଡ଼ିଲା ସୋମଦର ।
ସେ ନଦୀ ଭିତରେ ଯହୁଁ ଦେଲା ଝାସ
ସେ ଖିଦ୍ର କାୟା ଗୋଟି ଯେ ନ ଗଲା ତାର ନାଶ ।
ଅମାବଛ ଅନ୍ତରେ ପ୍ରତିପଦା ଦିନେ
ଦୁତୀଅ ଦିନ ଅନ୍ତରେ ନହ ରେହ ପ୍ରମାଣେ ।
ଏହିମତି ପ୍ରମାଣେ ଉଦେ ହୋଏ ବେନି ଘଡ଼ି
ରାତ୍ର ତିନି ଘଡ଼ି ଉତ୍ତାରେ ସେ ନଦୀରେ ପଡ଼ଇ ବୁଡ଼ି ।
ଦିନକୁ ଦିନ ତାହାର କାୟା ବଢ଼ି ଆସଇ
ପୌର୍ଣ୍ଣମୀର ଦିନକୁ ଯେ ସମ୍ପୂର୍ଣ୍ଣ ଅଟଇ ।
ଚନ୍ଦ୍ରଭାଗା ପ୍ରାପତ ହୋଇ ସେହି ଦିନ
ତଦ ନିମନ୍ତେ ଚନ୍ଦ୍ରଭାଗା ବିଦ୍ୟମାନ ।
ସେ ନଦୀର କୂଳେ ସଏମ୍ବର ସ୍ଥାନ
ତହିଁ ସେ ଗୁଣ୍ଡ ହୋଇଅଛନ୍ତି ରାଜାଗଣମାନ ।
ଉତ୍ତରକୁ ପାଦୁକା ସେ ବହଇ କାନ୍ତାନୀ
ତହିଁ ସେ ରହିଅଛି ରାଜାମାନଙ୍କ ସଇନି ।
ରାଜାମାନେ ବସିଅଛନ୍ତି ଶୁଭକର୍ମି
ପାଦଅର୍ଘ ଦେଇଁଟି ଘେନି ଅଇଲା ଚନ୍ଦ୍ର ନଉମି ।୬୧୦।
ଚନ୍ଦ୍ର ନଉମି ବୋଇଲା ସେ ବିନୟ ଭଗତି ଭାବେ ।
ପୂର୍ବେଣ ବ୍ରତେକ କରିଅଛି ଶୁଣିମା କି ଏବେ ।
ଜମ୍ବୋଦୀପେ ମୁହିଁ ଯେ ଦିଗବିଜେ କଲି
ନଇରତ ରାଜାର ମୁଁ ଯେ ସଏମ୍ବର ଦେଖିଲି ।
ତାହାର ପୁରେଣ ଜାତ ଯେ ଅବଳା
ସେ କନ୍ୟାର ନାମ ଯେ ଅଟଇ ସୁକୋନ୍ତଳା ।
ତାହା ନିମନ୍ତେ ସଏମ୍ବର କରିଛି ରାଏ
ସବୁ ନୃପତି ଯେ ସଏମ୍ବରେ ଆଏ ।
ମକର ମାସ ଶୁକଳ ପକ୍ଷ ତ୍ରୟୋଦଶୀ ରବିବାର
ପୁଷ୍ୟା ନକ୍ଷତ୍ରକୁ ଭୋଗ ସେ ଦିନର ।
ବାବ୍ୟ ନାମେ କରଣ ନଇରତ ନାମେ ଯୋଗ
ସେଦିନ ଦିଗ ବିଜେ କଲି ମୁଁ ମଧ ସ୍ୱର୍ଗ ।
ଗହଳ ଧନ୍ଦୋଳ ଦେଖି ଗୁହାଇଲି ମୋହୋର ରଥ
ସମସ୍ତ ରାଜା ଦେଖି ହୋଇଲେ ସ୍ତମ୍ଭୀଭୂତ ।
ତାହା ଦେଖି ଆନନ୍ଦ ହୋଇଲା ସକୋଂତୋଳା
ମୋହୋର କଣ୍ଠେ ନେଇ ଦେଲା ରତ୍ନମାଳା ।
ବରଣ ହୋଇ ମୁଁ ଆଣିଲି ସକୋଂତଳାକୁ
ଘେନିଣ ଅଇଲି ମୋହୋର ଚନ୍ଦ୍ରଦୀପକୁ ।
ଏଥେ ଆଣି ମୁହିଁ ତାହା ହେଲି ପ୍ରଣଇତା ।
ସକୋଂତଳା ତହିଁ ଉପୁଜିଲା ଏକ ଦୋହିତା ।୬୨୦।
ତାହାର ନାମ ମୁହିଁଦେଲି ଚନ୍ଦ୍ରବତୀ
ତଇଲୋକେ ବର ନ ପାଇଲି ତେଜ କାନ୍ତି ।

ତାହାର ନିମନ୍ତେ ମୁହିଁ କଲି ସଏମ୍ବର
ପଞ୍ଚଲକ୍ଷ ଦଶ ସହସ୍ର ରାଜାଙ୍କୁ ଏକା ଦୁହିତା ଗୋଟି ମୋର ।
ଅଗ୍ନି ବାଇବ ମାହିନ୍ଦ୍ର ବରୁଣ ଚାରି ଯୋଗ
ମାହିଁନ୍ଦ୍ର ଯୋଗେ ମୋହୋର ସଏମ୍ବର ମଧ ସ୍ୱର୍ଗ ।
ଏ ମୋହୋର ଦୋହିତା ଯେ ଅଟଇ ଚନ୍ଦ୍ରବତୀ
ତଇଲୋକ ମୋହିନୀ ସେ ମଦନ ମୂରତି ।
ତହିଁକି ବ୍ରତେକ ଯେ କରିଅଛି ମୁହିଁ
ରାଜା ବୋଇଲେ ହୋ କହୁ କିନା ତୁହି ।
ଚନ୍ଦ୍ରଦୀପ ଈଶ୍ୟାଣେ ଯେ କଲା ଚନ୍ଦ୍ରଦେବ
ଏ ଦୀପର ଈଶ୍ୟାଣେ ପୋତିଲା ମଣି ଖମ୍ବ ।
ଏ ନଦୀ ଦୀପ ସପତ ସାଗରକୁ ଯେ ରହିଲା ଅଷ୍ଟକିଳା
ଚନ୍ଦ୍ରଦୀପକଇ ମଣି ସ୍ତମ୍ଭ କଲାକ ନିଚଳା ।
ଅଷ୍ଟରତ୍ନ ଜଡ଼ିତ ଶତେ ପଞ୍ଚବିଶ ଯୋଜନ ଆଏତନ
ଉପରକୁ ଉଭା ଲକ୍ଷେ ଯୋଜନ ପ୍ରମାଣ ।
ଏଥର ଉତ୍ତାରେ ବସଇ ବରୁଣ
ଏଥୁ ସେ ବିକାଶଇ ସେ ସହସ୍ର କିରଣ
ଏ ମଣିସ୍ତମ୍ଭକୁ ବିନ୍ଧିବ ଆକ୍ରୁଷି ଶର
ପଶ୍ଚିମ ଭାଗେ ପଡ଼ି ପୂର୍ବଭାଗେ ହୋଇବ ବାହାର ।୬୩୦।
ଯେବଣ ରାଜାର ଶର ଯେ ଫୁଟଇ ସ୍ତମ୍ଭକୁ
ମୋହୋର ଦୋହିତା ଦେବି ଚନ୍ଦ୍ରାବତୀ ତାହାକୁ
ଏ ମଣିସ୍ତମ୍ଭ ବିନ୍ଧି ପାରିବ ଅବା ଯେହୁ
ମୋହୋର ଦୁଲଣି ପ୍ରଦାନ ହୋଇବାକ ସେହୁ
ଏହେନେକ ସତ୍ୟବ୍ରତ ମୋହୋର ଦୃଢ଼ବ୍ରତ
ସ୍ୱୟମ୍ବର ଆମ୍ଭର ଅଛି ଦିନା ସାତ ।
ସାତ ଦିନ ପର୍ଯ୍ୟନ୍ତେ ରାଜାଙ୍କର ଆର୍ଦ୍ଦୋଳି
ମୋହୋର ଯେତେମାନ ସଞ୍ଚିଥିବ ସମ୍ଭାଳି ।
ଆହୋ ପରୀକ୍ଷ କୋଟିୟେ ପାଞ୍ଚଲକ୍ଷ ଦଶ ସହସ୍ର ରାଜାଙ୍କୁ
ନିତ୍ୟେ ଯେ ମୁଣୋହି ଦେଉଁ ଯେ ସମସ୍ତ ସନ୍ୟମାନଙ୍କୁ ।
ରଥ ଗଜା ଅଶ୍ୱ ବାହାନ ନ କରନ୍ତି ନୃପେ
ବଳେହା ବାହାନେ ଚଳନ୍ତି ସମସ୍ତ ଅମନାତ୍ୟେ ।
କାହାର ପଦ୍ମେକ ବଳୟା କାହାର ସାଗରେକ ବଳୟା
ପବନୁ ଅତିବେଗେ ଚଳନ୍ତି ଅତିଛାୟା ।
ବଳୟା ବାହାନେ ଚଳନ୍ତି ସମସ୍ତ ମହୀପତ୍ୟେ
ମଣିସ୍ତମ୍ଭ ସନ୍ନିଧ୍ୟେଂ ବିଜେ କଲେ ତୁରିତେ ।
ସହସ୍ରେ ଯୋଜନ ମାଡ଼ି ଚଳଇ ସଇନି
ସିନ୍ଧୁ ଉଛୁଳଇ ମୁଖ ରାବ ଧ୍ୱନି ।
ସବୁଙ୍କରି ହୃଦେ ଭୂଷଣ ଚନ୍ଦ୍ର କିରଣ ମଣି
ତିମିରି ଦିଶଇ ସେ ଆଦିତ ତେଜ ଜାଣି ।୬୪୦।
ରାଜାମାନେ ଯାଇଁ ଦେଖନ୍ତି ମଣିସ୍ତମ୍ଭ
ଦେଖି ଭାଗିଲା ସେ ସବୁଙ୍କରି ଦମ୍ଭ ।
ସୁଦୀର୍ଘ ରଜା ବୋଇଲା ଶୁଣହୋ ଚନ୍ଦ୍ରନଉମି
ବଡ଼ ଦୁଲଭ କଥାଏ ଦେଖାଇଲୁ ତୁମି ।
ଇହଲୋକ ରାଜାଏ ବିନ୍ଧି ନୁଆରିବେ କ୍ଷେମ
ଯମଦଅଗ୍ନି ପୁତ୍ର ବିନ୍ଧି ପାରଇ ପ୍ରଶୁରାମ ।
ସମସ୍ତ ରାଜାଏ ଆଶିର୍ଯ୍ୟ ହେଲେ ତାହା ଚାହିଁ
ଏହା ବିନ୍ଧିବାକୁ କ୍ଷେମ ଅଛି କାହିଁ ।
ଶତେ ପଞ୍ଚବିଂଶ ମଣିସ୍ତମ୍ଭ ସ୍ଥୁଳୀ
ଏହା ବିନ୍ଧନ୍ତେ କେମନ୍ତେ ଯିବ ନିକିଳି ।
ଅଥବା ଏହା କେହି ବିନ୍ଧି ନୁଆରିଲେ
ଆନ କିସ ଅଛି ରାଜାଏ ବୋଇଲେ ।
ରାଜାଙ୍କର ବଚନ ଶୁଣିଲା ମହୀଦଇତ
ଦୋହିତାକୁ ଆଣ ତୋର ସଭାର ଅଗ୍ରତ
କେମନ୍ତ ସ୍ୱରୂପ ତୋର ଦେଖିବା କୁମାରୀ
କନ୍ୟା ଦେଖିଲେ ସେ ଲାଖ ବିନ୍ଧି ପାରି ।
ଶୁଣିଣ ଆନନ୍ଦ ହୋଇଲା ଚନ୍ଦ୍ରକେଶୀ
ରକ୍ତବୀର୍ଯ୍ୟ ବତୁଳାକ୍ଷ ରାଇଲା ବେନି ଶିଷି ।
ବାବୁ ଚନ୍ଦ୍ରାବତୀକି ବିଜେ କରାଇ ଆଣ ସଏମ୍ବର ସ୍ଥାନକୁ
ନିରୋପି କରିଣ ଦେଖାଅ ରାଜାମାନଙ୍କୁ ।୬୫୦।
ପିତାର ଆଜ୍ଞାରେ ଚଳଇ ରକ୍ତବୀର୍ଯ୍ୟ
ଅଳଙ୍କାର ଯୁଗତେ ଚନ୍ଦ୍ରାବତୀକି କଲେ ସଜ ।
ଉଦଣ୍ଡ ପାଟଛତ୍ର ଅନେକ ଉଡ଼ନ୍ତି
ଦୁନ୍ଦଭି ଶବଦ ଯେ ଛାମୁରେ ବଜାନ୍ତି ।
ସରଗୁଣା ବେଣୁ ବୀଣା ବାଇଁଶୀ ଅଧାଟି
ଜଗୁଜନ ମୋହିନି ଛାମୁରେ ତାଣ୍ଡବ ନୃତ୍ୟ ଗୀତେ ଖଟି ।
କନେକର ଚମ୍ପେକ ଆଲଟ ବିଞ୍ଚଣୀ
ଢାଳନ୍ତି କାମେନୀ ମୋହୋନି କାମସେଣି ।
କରେଣ ଅର୍ଘ୍ୟ ଘେନି ଦିଅନ୍ତି ହୁଳହୁଳି
ଅଭଏ ବିଳାସୁଣୀ ମଙ୍ଗଳ ଧ୍ୱନି କରି ।
ରାଜାମାନେ ବୋଇଲେ ଏ ତ କନ୍ୟା ରତ୍ନ ମଣି
ରୂପ ନିରୋପନ୍ତେ ଏ ପାର୍ବତୀ ତୁଲ ଜାଣି ।

ଦିନ ନଅଣ୍ଟିବ ଏହା ସ୍ୱରୂପ ବର୍ଣ୍ଣିବାକୁ
ନ ଥିଲା ଉପରେ ନ ଥିଲା ତଳକୁ ।
ଏହାର ମୁଖ ଚନ୍ଦ୍ରମାକୁ ପଟାନ୍ତରି ନ ପାରି
ଚନ୍ଦ୍ରମା ତନୁ ତ ଦେଖିଣ ଖିନ କରି ।
ରତ୍ନକୁ ପଟାନ୍ତର କରନ୍ତୁ ଅବା କାଏ
ସେହି ମଳିଣ ଦିଶଇ ଏହାର ତେଜମଏ ।୬୬୦।
ବିଚାର ଯୁଗତେ ନୋହିଲୁ ଆମ୍ଭେ କିଛି
କି ଅବା ବିଜେ କଲା ଏଥି ପରମ ଲକ୍ଷ୍ମୀ ।
ଆମ୍ଭେ ରାଜାଗଣେ ହୋଇଲୁ ତାରା ବୃନ୍ଦ
ଏ ଭାବାନି କନ୍ୟା ଆମ୍ଭଙ୍କୁ ହୋଇଲାକ ଚନ୍ଦ୍ର ।
ଏହେର୍ଣ୍ଣେକ ବିଡ଼ମ୍ବଣ ଯେବେ ହୋଇଲା ଆମ୍ଭଙ୍କୁ
କଥା ରହିଲାକ ଚାରି ଯେ ଯୁଗକୁ ।
ଆହୋ ଚଞ୍ଚଳ ଦେଶର ରାଜା ଚନ୍ଦ୍ରମଉଳି
ସେ ବୋଇଲା ଗୋସାଇଁ ଶୁଣିମା ସର୍ବବଳୀ ।
ଯାହାର ଯେହ୍ନେ ସକ୍ଷ ମଣିସ୍ତମ୍ଭ ବିନ୍ଧିବ
ସୁନ୍ଦର ହୋଉ କି ବିରୂପ ହୋଉ କନ୍ୟା ଘେନିଯିବ ।
କନ୍ୟାର ରୂପ କିମ୍ପା ନିରୋପିଣ ଦେଖ
କେ ବଳବନ୍ତା ଅଛି ବିନ୍ଧିକିନା ଲାକ୍ଷ ।
ଏହେର୍ଣ୍ଣେକ ବିଚାର କରନ୍ତି ରାଜା ମହାବଳବନ୍ତା
ଧରୁ ଧନୁ ଭୁଜେ ପ୍ରାକର୍ମେ ଶକତା ।
ଅନ୍ତୁଶର ଦେଶର ରାଜା କର୍ଣ୍ଣକେଶୀ
ଧନୁ ଏକ ଧରି ସେ ସଭାରୁ ଉଠିଆସି ।
ଅତି କମ୍ପିତ କରି ବିନ୍ଧିଲାକ ଶର
ବେନି ତାଳ ନାରାଜେକ ପଶିଲା ମଣିସ୍ତମ୍ଭ ଭିତର ।
କିନ୍ଦୁକ ଦେଶର ରାଜା କର୍ଣ୍ଣମାଳି
ସେହି ନାରାଜେକ ବିନ୍ଧିଲା ମହାବଳୀ ।୬୭୦।
ତାଳେକ ଗଭୀରେ ପେଷିଲାକ ଶରେ
ଲାଖ ସରି ନୋହିଲା ସେ ଲାଖର ଉପରେ
ଆହୋ ପରୀକ୍ଷ ରାଏ ପ୍ରତଗ୍ୟା ସମରଥା
ଏସନ ସମଏ ମହିଷାସୁର ଶୁଣିଲା ବାରତା ।
ଯେବେଣ ରାଜାମାନେ ନାରାଜ ବିନ୍ଧନ୍ତି ନାରାଜ ଅତି ଗହନେ
ଲଖେ ନଫୁଟିଲା ଲଜ୍ୟା ପାଇଲେ ସେହିମାନେ ।
ଏସନ ସମଏ ମଏଷାଂସୁର ଆସଇ
ଧାତାର ମନ୍ତେ ସେ ଗୋପ୍ୟେ ଆକାଶଇ ।
କନ୍ୟା ରୂପ ଦେଖଇ ସେ ହୋଇ ଶୂନ୍ୟବାସୀ
ଧାଡିକାରେ ପ୍ରବେଶ ହୋଇଲାକ ଆସି ।
ସୁର ଦୁନ୍ଦଭି ଯେହ୍ନେ ବାଜିଲା ଶବଦ
ରାଜାମାନେ ଦେଖି ହୋଇଲେ ବିଷାଦ ।
କେଶ ଉର୍ଦ୍ଧ୍ୱ ବିକଟ ଦନ୍ତ ଉର୍ଦ୍ଧ୍ୱବାହୁ
ଚନ୍ଦ୍ରକୁ ଦେଖି ଯେହ୍ନେ ଘୋଟି ଯାଇ ରାହୁ ।
ଅଦଭୁତେ ସ୍ତମ୍ଭୀଭୂତ ଅସୁର ଦେଖି
ଭଏଣ ରାଜାମାନେ ପଳାଇଲେ ସଏମ୍ବର ଉପେଖି ।
ସଭାର ଭିତରେ ଯାଇ ପ୍ରବେଶ ହେଲା ମଏଷାଂ
ପଳାବନ୍ତି ସନ୍ୟ କେହି ନ କରନ୍ତି ଭରସା ।
ମହିଷାସୁର ଦେଖି ପଳାବନ୍ତି ରାଜାଙ୍କର ଥାଠ
ଆରେ ରହ ରହ ବୋଲି ରକ୍ତବୀର୍ଯ୍ୟ କରଇ ମୁରାଟ ।
ମହିଷାସୁର ବୋଲଇ ରହ ରହ ଚନ୍ଦ୍ରନଉମି
ସଇନିକି ରୁହାଇ ସମର୍ଥନା କର ତୁମି ।୬୮୦।
ମୁହିଁ ତୋର ବ୍ରତ ପୂରାଇବି ନରପତି
ମୋହୋର ଲାଖ ବିନ୍ଧିଲେ ନିଅଇ କିନା ଚନ୍ଦ୍ରାବତୀ ।
ଚନ୍ଦ୍ରନଉମି ବୋଇଲା ଆମ୍ଭେ ଅଟୁଁ ସୋମବଂଶୀ
ପିତା ତୋର ରାକ୍ଷସ ମାତା ତୋର ରାକ୍ଷସୀ ।
ଡରେ ଅବା ତୋତେ ବର ଦେଲେ ପିତା
ଚାଣ୍ଡାଳ ହରିବ କି ମୋହୋ ଦୋହିତା ।
ତାହାର ବଚନେ ସେ ଦାନବ ବୀର କୋପେ
ଲୋହଦଣ୍ଡ ଧନୁ ଏକ ଧଇଲା ବୀର ତାପେ ।
ଯେବେ ବ୍ରତ କରିଅଛି ବିନ୍ଧଇ ଆଗ ଲାଖ
ବାଞ୍ଛାସିଦ୍ଧ କରଇ ତଲେ କରି ଦେଖ ।
ଅଗାଦ ସମୁଦ୍ର ଯେ ଗର୍ଜଇ ଅସୁର
ବ୍ରହ୍ମା ରୁଦ୍ର କଶ୍ୟପ ପ୍ରଚଣ୍ଡ ବଜ୍ରଶିର ।
ଏ ଚାରି ନାରାଯ ବସାଇଁ ପ୍ରଚଣ୍ଡ
ବିନ୍ଧଇ ଅତି କୋପେ ବସାଇଁ କୋଦଣ୍ଡ ।
ବ୍ରହ୍ମାଣ୍ଡ ଉଛୁଳିଲା ଅସୁର ଗୁଣ ଘୃଷ୍ଟି
ନିର୍ଘାତ ଜାଣିକରି ଚଳିଲା ମଣିସ୍ତମ୍ଭ ଫୁଟି ।
ଶତେକ ପଞ୍ଚବିଶ ଯୋଜନ ଅଟଇ ସ୍ଥଳୀ
ମଏଷାଂର ଚାରି ନାରାଯେ ମଣିସ୍ତମ୍ଭେ ଗଲେ ଗଳି ।
ନାରାଯ ପରୀକ୍ଷ ଦେଖିଲେ ସ୍ୱର୍ଗବାସୀ
ସାଧୁରେ ମଏଷାଂ ବୋଲି ଧନ୍ୟ ଧନ୍ୟ ଭାଷି ।୬୯୦।
ଯହୁଁ ସେ ଧ୍ୱନିକଲେ ଆକାଶେ ଦେବ ବାଣୀ
ମଏଷାଂ ଦାନେବ ସେ କନ୍ୟାକୁ ଯାଇଁ ଆଣି ।

ଆପଣାର ବର୍ଣ୍ଣ ଚିହ୍ନ ସେ କରିଅଛି ଗୋପ୍ୟ
କାମରୂପୀ ଦାନେବ ଅନଙ୍ଗ ସ୍ୱରୂପ ।
ଭଏଣ କନ୍ୟାକୁ ସେ ଘେନିଣ ଚନ୍ଦ୍ରନଉମି
ମଏଷାଂସୁର ଚନ୍ଦ୍ରାବତୀକି ପରିମାଣି ।
ଅନେକ ଉଛବ ସେ କରିଣ ନୃପବର
ସଜ କଲା ଦାନେବ ସେ ଯଶୋବନ୍ତୀ ପୁର ।
ବିଭାର ଯୋଗାଡ଼ ସେ କରନ୍ତି ସର୍ବ ମଙ୍ଗଳ
ଅସୁର ପୁରେ ଶୁକ୍ରେ କଲେ ଅନକୂଳ ।
ସିଙ୍ଘମାସ ଶୁକଳ ପକ୍ଷ ପଞ୍ଚମୀର ତିଥି
ସ୍ୱାତୀ ନକ୍ଷତ୍ର ଭୂମି ବାର ଯୁଗତି ।
ତାରା ନାମେ କରଣ ପ୍ରୀତି ନାମେ ଯୋଗ
ସେ ଦିନ ଅନକୂଳେ ଯେ ବିଭା କରନ୍ତି ଶୁଭ ।
କନ୍ୟା ବିଭାହୋଇ ସେ ଦାନେବ ବୀରମଣି
ଅନେକ ଉଛବ ସେ ମଙ୍ଗଳ ଧ୍ୱନିବାଣୀ ।
କନ୍ୟା ଘେନି ମଏଷାଂସୁର ନିଜ ରାଜ୍ୟେ ସଜ
କୋଳାଗ୍ରତ କରି ଧରଇ ସେ ରକ୍ତବୀର୍ଯ୍ୟ ।
ହୃଦେ ଅଭେଦ ତୁମ୍ଭେ ଅଟ ମୋର ସାଖା
ତ୍ରଇଲୋକ ଜିଣିମି ମୁଁ ତୁମ୍ଭର ଭରସା ।୭୦୦।
ମଏଷାଂସୁର ବୋଇଲା ଭୋ ପିତା ମୋତେ ଆଜ୍ଞାଦେବା ମହାରାଜ
ମୋହୋର ସଙ୍ଗେ ଦେବୁ ବିଡୁଳାକ୍ଷ ରକ୍ତବୀର୍ଯ ।
ଶୁଣି ଆନନ୍ଦ ଯେ ହୋଇଲେ ନରପତି
ରକ୍ତବୀର୍ଯ୍ୟ ବିଡୁଳାକ୍ଷ ଦେଲା ଦୁହିନ୍ତି ।
ବଳେହା ବାହାନେ ସେ ତିନିପଦ୍ମ ଯୋଧି
ମଏଷାଂସୁର ଆସଇ ସେ ସର୍ବକାର୍ଯ୍ୟ ସାଧି ।
ମହା ପ୍ରତାପୀ ହୋଇ ସେ କଉଁଣୋପ
ଅନେକ ସମ୍ଭରେ ସେ ବିଜଏ କୋଶଳ ଦୀପ ।
ରତି ଘେନି ଯେହ୍ନେ କାମଦେବ କରଇ ବିଜେ
ତେସନେକ ମଏଷାଂସୁର ପଶଇ ନିଜ ରାଜ୍ୟେ ।
ରକ୍ତବୀର୍ଯ୍ୟ ବିଡୁଳାକ୍ଷ ଦୁହିନ୍ତି ଘେନି ରାଜା
ଆପଣା ସମାନ୍ୟେ ସେ ଦୁହିନ୍ତି କରଇ ପୂଜା ।

## ମହିଷାସୁରର ଜମ୍ବୁ ଦ୍ୱୀପେ ଗମନ

ଚାମର ବେମାଳ କାନ୍ତିମାଳା ରକ୍ତବୀର୍ଯ୍ୟ ବିଡୁଳାକ୍ଷ
ଏହାଙ୍କର ମୂଳେ ଯେ ପନ୍ଦର ମେବକ୍ଷ ।
ଏତେକ ସନ୍ୟ ଘେନି ମହିଷାଂର ମହାରାଜ୍ୟେ
ସମଦଣ୍ଡ ଘେନି ସେ ଜମ୍ବୋଦୀପେ ବିଜେ ।
ଧନୁମାସ ଶୁକଳ ପକ୍ଷ ପୂର୍ଣ୍ଣମୀର ଦିନ
ଅର୍କବାର ପୁଷ୍ୟା ନକ୍ଷତ୍ର ଉତ୍ତମ ।
ଅନେକ ବୀରତୂର ଯେ ଟମକ ନିଶାଣ ବାଜେ
ସମଦଣ୍ଡ ଘେନି ସେ ମଏଷାଂସୁର ବିଜେ ।୭୧୦।
ମନ୍ତ୍ରୀଙ୍କର ମୁଖରେ ରାକ୍ଷସଙ୍କ ଭଏ ଶୁଣି
ସମସ୍ତ ଦେଶମାନଙ୍କରେ ତ୍ରାସିଲେ ନୃପମଣି ।
ଭାଙ୍ଗନ୍ତି ନଗ୍ର ଯେ ଉଜାଡ଼ନ୍ତି ଦେଶ
ଗୋ ବ୍ରାହ୍ମଣ ପଡ଼ିଲେ ସେ ଭକ୍ଷନ୍ତି ରାକ୍ଷସ ।
ମନ୍ଦର ସମାନ୍ୟେ ଯେ ଅସୁରଙ୍କର କାୟା
ଶାର୍ଦ୍ଦୋଳ ବାହାନେ କେ ବାଘ ବଳେହା ।
ରକ୍ତବୀର୍ଯ ବିଡୁଳାକ୍ଷ ଚାମର ବେମାଳ କାନ୍ତିମାଳା
ବିହଡ଼ନ୍ତି ଦାନେବ କାଦମ୍ବେରୀ ପାନେ ଭୋଳା ।
ବଜାବନ୍ତି ବିଜିଘୋଷ ମର୍ଦ୍ଦଳ କଂସାଳ ଦାଉଣ୍ଡି
କଡ଼ା ଘୁମୁରା ଶବଦେ ମତୁଆଳ ନାଟଖଣ୍ଡି ।
ଏସନେକ ଦାନେବ ବିହଡ଼ନ୍ତି ସୁଖେ
ବ୍ରହ୍ମାର ବରେ ସେ ନ ଯାନ୍ତି ଯମର ମୁଖେ ।
ଶରୀର ବଜ୍ର ଯେ ନ ବହନ୍ତି ଶର
ଗିରିବର ପଡ଼ିଲେ ହୋଅନ୍ତି ଶତେଚୂର ।
ନର ବାନର ଅଶ୍ୱ ଗଜ ସହିତେ
ସମସ୍ତ ଭକ୍ଷନ୍ତି ସେ ମଦିରା ସଙ୍ଗତେ ।
ବାଆନ ସାଗର ସଇନି ପାଞ୍ଚ ସାଗର ସେନା
କାଳଯମ ଦଣ୍ଡେ ସେ ନଯାନ୍ତି ଗଣନା ।
କାଶୀଦେଶ କଉଶିକ ଦେଶ କୁବୁଜ ଦେଶ କନାଉଜ
ଯେତେ ବିଖ୍ୟାତ ଦେଶ ଜିଣିଲା ସର୍ବରାଜ୍ୟ ।୭୨୦।
ଭଏଣ ପଳାନ୍ତି ଦନ୍ତେ କୋଠାର ତିରଣ
ଧନ ଭଣ୍ଡାର ଦେଇ କେ ପଶନ୍ତି ଶରଣ ।
ଆହୋ ପରୀକ୍ଷ କାଷ୍ଠ ପାଷାଣ ଯେତେ ମୃର୍ତ୍ତିକା ଦେବତା
ସମସ୍ତ ଭାଙ୍ଗିଣ ସେ କରନ୍ତି ନାଶଗତା ।
ମେଢ଼ ମଣ୍ଡପ ଯେ ଦେଉଳ ଜଗତୀ
ଧର୍ମ କୀର୍ତ୍ତିମାନ କାହିଁ ନ ଥୋଅନ୍ତି ।
ଆହୋ ଜମ୍ବୋଦୀପେ ଦେବତା ବ୍ରାହ୍ମଣଙ୍କର ବାସ
ସୁଜନ ପଣ୍ଡିତମାନେ କରନ୍ତି ଅଭ୍ୟାସ ।
ଯେତେବେଳେ ଦୁରାନ୍ତକ ମାଡ଼ି ଯାଉଅଛି
ଜନ ମନୁଷ୍ୟ ସହିତେ ନ ରହନ୍ତି କିଛି ।

ଯେସନେକ ବନସ୍ତ ଭାଙ୍ଗନ୍ତି ବାତ ଘାତେ
ସେହିମତି ହୁଅନ୍ତି ଦଇତର ପାଦ ଘାତେ ।
ଦେବେ ଅପସରନ୍ତି ଯେବଣ ବଳ ଦେଖି
ମାନବ ମାତ୍ରକୁ ଛାର କିସ ତାହା ଲେଖି ।
ଗାନ୍ଧାର ଦେଶ ପାରିକାତେଜ ଦେଶନେ ପାଳି ଦେଶ ବାରସ୍ୱତୀ
ସକଳ ଦେଶମାନେ ହୋଉଁଛନ୍ତି ସନ୍ଧନ୍ତି ।
ନାଟ ଚୋଟ କର୍ଣ୍ଣାଟ ତିହୁତି ଚୁନ୍ଦେରୀ
ଭାଗିଣ ନଗ୍ରନ୍ତ ଭଣ୍ଡାର ଲୁରକରି ।
ସାଖାବତୀପୁରେ ରାଜା ପଦ୍ମଲାଭ
ବିରଞ୍ଚି ବରେ ତାହାର ମହିମା ଦୁଲଭ ।୭୩୦।
ପ୍ରତାପ ଦାନେବ ତୁଲେ ଚତୁରାଙ୍ଗ ବଳ
ସାଖାବତୀପୁରେ ସେ ଚଳନ୍ତି ସକଳ ।
ରାଜାର ଆଗରେ ଯେ କହନ୍ତି ମୁନେହିଁ
ସ୍ୱାମୀ ତୋହୋର ରାଜ୍ୟକୁ ମଏଷାଂସୁର ବାହି ।
ସିଙ୍ଗଳ ଦୀପ ରାଜା ଜିଣି ଜମ୍ବୋଦୀପେ ପଶଇ
ଅନେକ ଉଜାଡ଼ କରି ଭାଙ୍ଗଇ ଦେଶହି ।
ଡାହାଳ ଚୁଡ଼ଙ୍ଗ ସମସ୍ତ ଦେଶ ବହିଁ
ଛାମୁରେ ମିଳନ୍ତା ତାର କେହି ନାହିଁ ।
ନଗ୍ରମାନ ତେଜିଣ ବନସ୍ତେ ପଶନ୍ତି ରାଏ
ସମସ୍ତ ରାଜାଙ୍କୁ ଲାଗିଲା ବଡ଼ ଭଏ ।
ସମର କରିବା କି ଅଥବା ଯିବା ଘୁଞ୍ଚ
ଦଣ୍ଡଭଙ୍ଗ ହୋଇଲେ ପଶିଲେ ତ ଠାବ କାହିଁ ଅଛି ।
ମନ୍ତ୍ରୀ ବଚନେ ସେ ବୋଲଇ ପଦ୍ମଲାଭ
ଦଣ୍ଡ ସଜ କରିଥାଅ ଦେଖିବା ସମ୍ଭବଂ ।
ବାହାରପୁରେ ଯେ ଉଚଂ ଜଗତୀ
ଜଗତୀ ଉପରେ ଉଠିଲା ପଦ୍ମଲାଭ ନୃପତି ।
ଚାମର ବେମାଳ କାନ୍ତିମାଳ ଥାଠରେ ଆଗିଆଣି
ରାକ୍ଷସ ବଳ ଦିଶଇ ଦୁତୀ ସମୋଦ୍ର ଜାଣି ।
ମନ୍ତ୍ରୀ ଆଗେ ପଦ୍ମଲାଭ ଦାନେବ ପ୍ରକାଶଇଁ
ପଶ୍ଚିମଦିଗ ମାତ୍ର ସମୋଦ୍ର ମାଡ଼ି ବସଇ ।୭୪୦।
ମନ୍ତ୍ରୀ ବୋଇଲା ସେ ସମୋଦ୍ର ନୁହଇ ରାଏ
ମଂଷାର ସଇନି ସେ ଦିଶଇ ଜଳ ପ୍ରାଏ ।
ମନ୍ତ୍ରୀ ବୋଇଲା ନେତ ପାତାଙ୍ଗ ଉଡ଼ନ୍ତି ପୟାଣେ
ବକ ପକ୍ଷୀ ପ୍ରାଏ ସେ ଛତ୍ର ଚାମର ଗହଣେ ।
ସଇନି ଆସୁଅଛି ସେ ପାଞ୍ଚକୋଷ ମାଡ଼ି
ସିନ୍ଧୁ ଘୋଷ ପ୍ରାଏକ ସେ ଶୁଭୁଅଛି ମୁଖ ରଡ଼ି ।
ପଞ୍ଚବିଂଶ ଯୋଜନ ଦିଶିଲାକ ସଇନି
ଘଡ଼ିକର ମଧେ ହୋଇଲେ ଯୋଜନ ତିନି ।
ପୁଣି ନିମିଷକେ ଜଗତୀରୁ ଓହ୍ଲାବନ୍ତେ
ଗଡ଼ ବେଢ଼ିଲେ ଆସିଣ ଦୁରାନ୍ତେ ।
ଗଡ଼ କପାଟ ପାଡ଼ିଣ ସେ ରହିଅଛନ୍ତି ମହାରାଜା
ଭିତରେ ଥାଇ ଡାକନ୍ତି ବାହୁଡ଼ିଣ ଯା ଯା ।
ସେ ରାଜା ଅରୁଣ ରାଜାର ବଂଶୀ
ଅନନ୍ତ ଅଭଏ ବର ପାଇଲା ବିରଞ୍ଚିକି ତୋଷି ।
ତାହାର ନନ୍ଦନ ହୋଅଇ ଅନନ୍ତ ଦଇତ
ମାତାଙ୍ଗପୁର ବୋଲି ତାହାର ନିଜ ସୁତ ।
ମାତାଙ୍ଗର ସୁତ ଅଟଇ ତ୍ରିଶିରା
ଏହାର ନନ୍ଦନ ଦୁନ୍ଦଭି ନାମେ ବୀରା ।
ଦୁନ୍ଦଭି ନନ୍ଦନ ଅସୁର ଦୁମାଳା
କଙ୍କାସୁର ବୋଲି ତାହାର ପୁତ୍ର ହୋଇଲା ।୭୫୦।
କଙ୍କାସୁର ନନ୍ଦନ ଧଙ୍କାସୁର ବୋଲି
ବକାସୁର ବୋଲି ତାହାର ପୁତ୍ରେକ କହିଲି ।
ବକାସୁରର ପୁତ୍ର ବିକ୍ରାସୁର ବୀର
ଶକ୍ରାସୁର ବୋଲି ଯେ ଏହାର କୁମର ।
ଶକ୍ରାସୁରର ପୁତ୍ର ଯେ ଅସୁର ସୁଲାଭ
ଏହାର ନନ୍ଦନ ଯେ ଅଟଇ ପଦ୍ମଲାଭ ।
ପଦ୍ମଲାଭ ରାଜାର ଦୁଇପୁତ୍ର ବୋଲି
ବଜ୍ରଲାଭ ସିଉଲାଭ ପୁତ୍ରଏ କହିଲି ।
ଆମ୍ଭେ ଅଟୁଁ ଯେ କଉଣପ ବଂଶୀ
ତୁମ୍ଭର ଆମ୍ଭର ଏକ ଗୋତ୍ର ଏକ ରାଶି ।
ବିଡ଼ଳାକ୍ଷ ବୋଇଲା ଆମ୍ଭେ ତାହା ନ ଜାଣୁ
ଶରଣ ପଶିଲେ ସେ ଭାବ ବୋଲି ଜାଣୁ ।
କୋପେଣ ଆଜ୍ଞା ଯେ ଦେଲା କାନ୍ତିମାଳି
ଧାଆଁରେ ଗଡ଼ରେ ଲଗାଅ ଶବେଳୀ ।
ଯହୁଁ ସେ ଆଜ୍ଞା ଦେଲା ସେନାପତି ବଡ଼
ଲାଗିଲେ ଯେ ସଇନି ଶାଖାପୁର ଗଡ଼ ।
ପଦ୍ମଂଲାଭ ସଇନି ଗଡ଼ର ଭିତରେ
ବିନ୍ଧନ୍ତି ଶର ସେ ଅନିର୍ଯାପ ସମରେ ।
ବଜ୍ରବାଣ ବିଘାତ ଅବାର ଅଗ୍ନିଶରେ
ଅନିର୍ଯାପ ବାଣ ପଡ଼ନ୍ତି ଉପରେ ।୭୬୦।

ଯହୁଁ ସଇନି ବିନ୍ଧିଲେ ଗଳଗାଜି
ମଗଁଷାର ସଇନି ପଳାଇଲେ ଭାଜି ।
ସଇନି ପଳାନ୍ତେ ଉଠିଲେ ରକ୍ତବୀର୍ଯ
ଦ୍ୱାରେ କପାଟ ଲାଗିଲା ମହାରାଜ ।
ବିଡୁଲାକ୍ଷ କାନ୍ତିମାଳା ଚାମର ବେମାଳ
ପାଞ୍ଚ ମର୍ଭୁତ ସଇନି ଉଠିଲେ ଅଚାର୍ଗଳ ।
ବଜ୍ରେ ନିର୍ବାଣ ଏହାଙ୍କର କାୟେ
ଶକ୍ତି ଅଗ୍ନିବାଣେ ଅଟନ୍ତି ନିର୍ଭଏ ।
ପଦ୍ମଲାଭ ସଇନି ବିନ୍ଧନ୍ତେଣ ଶର
ଦେହେ ପଡ଼ି ନାରାଯ ହୋଉଛନ୍ତି ଚୂର ।
ଗର୍ଜନ୍ତି ଦାନେବ ଯେ ପ୍ରଚଣ୍ଡ ମହାବଳୀ
ତାଡ଼ିଲେ ପାଚେରୀ ଲଗାଇଲେ କାଙ୍କାଶାବେଳି ।
ଖଣାର ଭିତରେ ଗଡ଼ ପକାଇଲେ ଭାଙ୍ଗି
ଦାନେବ ବଳ ସଇନି ପଶିଲେ ଗଳଗାଜି ।
ପଦ୍ମଲାଭ ରାଜା ସନ୍ୟବଳ ଦେଖି
କୋପେଣ ବୋଇଲା ମାର ଜୀବନ ଉପେଖି ।
ଏକ ମୁଖହୋଇଣ ଉଠିଲେ ସନ୍ୟବଳ
ବାରଣ ନ ଗଲା ସଇନି ହୋଇଲା ମହାଗୋଳ ।
ଉଭଏ ବଳ ସଇନି ହୋଇଲା ଏକ ଭେଟ
ଗଦା ଖଡ଼ଗ ପ୍ରହାର କରନ୍ତି ଦର୍ପିଷ୍ଟ ।୭୭୦।
ମଂଷାର ସଇନି ପ୍ରହାର କଲେ ଶର
ଭାଜିଲା ସଇନି ପଦ୍ମଲାଭ ରାଜାର ।
ଅଶୀ ସହସ୍ର ପଡ଼ିଲେ ଦତ୍ୟବୀର
ପଦାନ୍ତି ଅଗଣିତା ସଇନି ଅକଳ ।
ଋକତେ କର୍ଦ୍ଦନ ହୋଇଲି ବଂସନ୍ଧରୀ
ସଖି ନଗ୍ର ଭାଙ୍ଗି ହୋଇଲାକ ଚୂରି ।
ପାଚେରୀ ଖାଇ ଖଣା ଜଗତୀ ଅଟ୍ଟାଳି
ମଷାଂର ସଇନି ଭାଙ୍ଗି ସମସ୍ତ କଲେ ଧୂଳି ।
ଅସୁର ସଇନି ପଳାଇତ ନାହିଁ ବାଟ
ଜୀବନ ନିଆଶି ହୁଅନ୍ତି ଦୁଇ ବଳ ଭେଟ ।
ସଇନ ସମର ସମ୍ବବଂ କହିଁତ କି ପାରି
ଉଭଏ ବଳ ସଇନି ଅନ୍ୟୋଅନ୍ୟୋ ପଡ଼ି ।
କେହି କାହାକୁହି ନୋହନ୍ତି ବୀରେ ଓଛେ
ବେନି ଥାଠରୁ ପଡ଼ନ୍ତି ଲକ୍ଷେ ଲକ୍ଷେ ।
ସଇନି ହତ ଦେଖି ଉଠଇ କାତିମାଳ
ରକ୍ତବୀର୍ଯ ବିଡୁଲାକ୍ଷ ଚାମର ମହାବଳ ।
ଏ ପାଞ୍ଚ ଯୋଧାଏ ଜିଣି ପାରନ୍ତି ସ୍ୱର୍ଗ
ମହୀ ଟଳ ଟଳ ଘୋଟିଲେ ସର୍ବ ଦିଗ ।
ପଦ୍ମଲାଭର ସନ୍ୟ ସମରେଣ ଆସି
କକଡ଼ା ବୃଷ୍ଟିକାଣି ଶରନ୍ତ ବରଷି ।୭୮୦।
ଅଶୀ ମର୍ଭୁତ ଯୋଦ୍ଧା ତୁଳେଣ ଘେନି
ଯାବତେ ଭୋଟିଲେ ଚାମର ବେମାଳ ବେନି ।
ଲୋହ ଶର ଶକତି ନ କରନ୍ତି ଭଏ
ବଜ୍ର ସମାନ୍ୟେ ଯେବଣ ବୀରଙ୍କର କାଏ ।
କାନ୍ତିମାଳା ପ୍ରହାରେ ଉଡ଼ି ପଡ଼ିଲେ ଅନେକ ଯୋଧି
ଶାଖାପୁରେ ଆଲୋଳ ବହିଲା ରକ୍ତ ନଦୀ ।
କାନ୍ତିମାଳାର ତେଜ ମନ୍ଦର ଗିରି ପ୍ରାଏ
ପଦ୍ମଲାଭ ସନ୍ୟ ଦେଖି କଲେ ଭଏ ।
ଅନେକ ଯୋଦ୍ଧା ପଡ଼ିଲେନି ରଣେ
ଦେଖି ପଦ୍ମଲାଭ ଉଠଇ ଆପଣେ ।
ପଞ୍ଚଷଠୀ କୋଟି ବଳ ଅଛଇ ତାର ତୁଳେ
କାନ୍ତିମାଳା ଅଗ୍ରତେ ଆସିଣ ମିଳିଲେ ।
ଦେଖି ପଦ୍ମଲାଭ ପଚାରନ୍ତି କାନ୍ତିମାଳ
ଆହୋ ଅନମିତ କାରଣେ କିମ୍ପା ଧ୍ୱଂସିଲୁ ମୋର ବଳ ।
କାନ୍ତିମାଳା ବୋଇଲା ନ ଜାଣକି ତୁମ୍ଭେ
ବ୍ରହ୍ମାଣ୍ଡଜିତା ମଏଷାସୁରଟି ଆମ୍ଭେ ।
ସମସ୍ତ ଦିଗ ଜିଣିଲୁ ଆମ୍ଭେ ଧରି
ଏ ମଏଷାସୁରକୁ କେ ଅବା ନୋହିଲା ସାଧକାରୀ ।
ଜମ୍ବୋଦୀପେ ଜିଣିଲୁ ସମସ୍ତ ରାଜା ଗଣ
ଏକା ନାରାଜକେ ତୋହୋର କିସ ବଡ଼ପଣ ।୭୯୦।
ଏବେ ହୋ ଆସ କରାଇବା ଦର୍ଶନ
ମହୀମନ୍ଥନ ସ୍ୱାମୀ ହୋଇବେ ପ୍ରସନ ।
ପଦ୍ମଲାଭ ବୋଇଲା ଛାଡ଼ିଲି ଅନେକ ଶାଖା
ଆବର ସନ୍ଧି ପଣ କି ଆମ୍ଭର ଇଚ୍ଛା ।
ପଚାରୁ ପଚାରୁ ମହିଷା ବଳହି
ପାଞ୍ଚ ଲକ୍ଷ ଯୋଦ୍ଧା ଘେନି ପଦ୍ମଲାଭ ଘୋଟଇ ।
ଦେଖିଣ କୋପ କଲା ଯେ ରକ୍ତବୀର୍ଯ
ଅନେକ ଯୋଦ୍ଧା ଘେନି ଯେ ଧାମଇ ମହାରାଜ ।
ପଦ୍ମଲାଭ ରାଜାର ଯାଇଁ ଧଇଲାକ କେଶ
ଖଡ଼ଗେ ମାରି ତାହାକୁ ପ୍ରାଣେ କଲା ନାଶ ।

ପଦ୍ମଲାଭ ରାଜା ହୋଇଲା ପ୍ରାଣତେଜା
ବେଢ଼ିଣ ମାଇଲା ସେ ଅନେକ ଦନୁଜା ।
ବଜ୍ରଲାଭ ସିଉଲାଭ ଧଇଲେ ଦୁହିନ୍ତି
ଛାମୁରେ କଲେ ନେଇଁ ମଏଷାସୁର ନୃପତି ।
ଯୁଦ୍ଧର ବେଭାର କହିଲେ ରକ୍ତବୀର୍ଯ୍ୟ
ଆମ୍ଭର ଅନେକ ପଡ଼ିଲେ ଦନୁଜ ।
ମୁହିଁ ନାଶକଲି ଦେବ ପଦ୍ମଲାଭ ରାଜାଙ୍କୁ
ଧରି ଆଣିଲି ତାର ଦୁଇ କୁମାରଙ୍କୁ ।
ବାଲୁତ ହୋଇ ଏ ଅଟନ୍ତି ମହାବିଜ୍ଞା
ତୁମ୍ଭର ମହିମା ଏ ଜାଣନ୍ତି ସର୍ବଗ୍ୟା ।୮୦୦।
ସ୍ୱାମୀ ଆମ୍ଭର ହୋଇ ଏ ଶାଖାପୁରେ ହୋନ୍ତୁ ରାଜା
ଥାଠ ସନ୍ୟ ଘେନି ଏ କରିବ ଆମ୍ଭନ୍ତ ପୂଜା ।
ବହୁତ ପୁରସରି କହିଲେ ରକ୍ତବୀର୍ଯ ।
ଶୁଣି ଦୟା କଲା ଦୁଷ୍ଟ ଦନୁଜ ।
ଆପଣା ଶ୍ରୀ ହସ୍ତେ ଦେଲେ ରାଏ ଶାଢ଼ୀ
ଶାଖାପୁର ନଗ୍ରେ ତାହାଙ୍କୁ ଅଧିକାରୀ ।
ଚାରି ଲକ୍ଷ ରଥ ପାଞ୍ଚ ଲକ୍ଷ ହଏ
ଏତେକ ସନ୍ୟ ଖଟଇ ଶିଉଲାଭ ରାଏ ।
ଜୟ ତୁ ଆଦି ପ୍ରମ ଯୋଗ ରାଶି
ଉଗ୍ର ତାରା ଓଦରୁ ଯାହାର ଅମୃତ ପ୍ରକାଶି ।
ଚିହ୍ନିତ ନୁଆରି ବାନ୍ଧିଲା ଯାହାର ଭବ
ତହୁଁ ସେ ନାମ ବହିଲୁ ମହାଦେବ ।
ଜୟ ତୁ ସକଳ ଧବଳ ମହାବଳୀ
ଆକାଶ ନିରାଳମ୍ବ ନାମ ଦେବ ଶୂଳୀ ।
ସଂସାର ସୁନ୍ଦର ଯେ ଦହିଲା ମହାଦେବ
ଭ୍ରୂକୁଟି ରୂପ ଧରି ଦର୍ଶନ ସଦାଶିବ ।
ସ୍ୱାମୀ ସକଳ ଜନ ହିତେ କାଳ କୂଟ ବିଷ ଖାଉ
ବଇଲ ବାହାନେ ଦେବ ଡମ୍ବରୁ ବଜାଉ ।
ନିରାକାର ମାୟାଧର ମଦନ ଦହନ ନେତ୍ର
ଅନନ୍ତ ନାଗ ଭୂଷଣ ଅଙ୍ଗେଣ ପବିତ୍ର ।୮୧୦।
ଯାବତ ଜୀବରେ ଦେବ ତୁହି ସେ ତ୍ରିଅୟେକା ।
ତ୍ରିବେଣୀ ତ୍ରିପୁଣ୍ଡ ବିରାଜଇ ମଉଳି
ପାଦେଣ ପାଦୁକା ଯାହାର ଶିରେଣ ଧବଳୀ ।
ଧାତୁ ବାଦ୍ୟ ପୁରୁଷ ଗୋପ୍ୟାନ ପଞ୍ଚଘଟ
ମଉ ରସ ଅଙ୍ଗେ ତାଣ୍ଡବ ନୃତ୍ୟ ନାଟ ।
ବାରାନିଧି ଠାକୁର ମହେଶ୍ୱର ଯାର ନାମ
ଜାତ ଅନ୍ତ ମଧକୁ ତୁହି ସେ ମୂଳସ୍ତମ୍ଭ ।
ନୀଳକଣ୍ଠ ଚରଣେ ମମ ହୃଦେ
ବଦୟନ୍ତି ସାରୋଳ ଦାସ ନୀଳକଣ୍ଠ ପଦ୍ମ ପାଦେ ।
ମଏଁଷାସୁର ଦିଗବିଜେ ହୋଇଲା ସମ୍ପୂର୍ଣ୍ଣ
ଏକ ଲଏ କରି ଶୁଣ ହୋ ସର୍ବ ଜନ ।
ଶାହାସ୍ତ ସଂଗତେ ଭଗତି ହୋଏ ଯେହ୍ନେ
କେ ଅନ୍ତ କରି ପାରିବି ଲେଖନେ ।
ଅପାର କାଳରୁ ମୁ ଅପଣ୍ଡିତ ଗୋତ୍ରୀ
ଶହାସ୍ତ କରି କିସ ମୋହୋର ଶକତି ।
ଆୟୁର ବେଦରୁ ଯେ ହୋଇଁଛି ଉକତ
ତାହା ମୁହିଁ ଯେ ଲେଖଇ ସଞ୍ଚିତ ।
ଜଙ୍ଘେନିପୁର ବାସେନୀ ପ୍ରସନ୍ନ ହିଙ୍ଗୁଳା
ସେ ମୋହୋର ଶରୀରକୁ ତୁଳସୀ ବନମାଳା ।୮୨୦।
ଅନିନ୍ଦିତ କର୍ମେ ମୋହୋର ସାରୋଳା ଚଣ୍ଡୀ ଖଟି
ମୂର୍ଖ ହୋଇଁ ପାରିଲି ମୁଁ ଶାହାସ୍ତ ପୋଥି ଗୋଟି ।
ଅଭଏ ନିରାକୁଳ ଗୋ ଜଙ୍ଘେରପୁର ବାସୀ
ଯୋଗ ଅଭ୍ୟାସି କଳିକାଳ ଦର୍ପ ଧ୍ୱଂସି ।
ପରମ ଗତି ମୋତେ କହିଲାକ ବୁଧି
ତାହାର ସଙ୍ଗେ ମୁଁ ଜାଣିଲି ସର୍ବସିଦ୍ଧି ।
ବିଙ୍ଘସିତ ନୀଳନ୍ଦ୍ରିଦଳ ଲୋଚନୀ
ବୀର ଅବୀର ଶ୍ୟରୀର ପ୍ରସନ୍ନ କାନ୍ତାନୀ ।
ହେ ବୁଧ ଜନେ ଶାହାସ୍ତ ମୋତେ ସକ୍ଷ ନୋହଇ
ସେ ମୋତେ ରାତ୍ରେ ଯାହା କହଇ ମୁଁ ତାହା ଦିବସେ ଲେଖଇଁ
ପ୍ରସନ୍ନ ମହାମାଇ ହେ ପର ଦୁଖେଣ ଦୁଖି
ସଦୟେ ଭଗତ ଜନଙ୍କର କଷ୍ଟ ଯେ ଉପେଖି ।
ପ୍ରସନ୍ନେ ବରଦାତ୍ରୀ ସିଧ ସାରୋଳେ
ଶୂଦ୍ର ମୁନି ସାରୋଳା ଦାସ ତୁଳସୀ ବଲ୍ଲଭ ପାଦ ତଳେ ।

## ଶୁମ୍ଭ ଓ ନିଶୁମ୍ଭ ସଙ୍ଗେ ଯୁଦ୍ଧ ଓ ପରାଜୟ

ଏଥୁ ଅନନ୍ତରେ ପରୀକ୍ଷ ନାମେ ରାଜା
ଶୁକ ମୁନି ପାଦତଳେ କଲେ ଦିବ୍ୟ ପୂଜା ।
ମଏଷାସୁର ଜୟୋଦୀପେ ଦିଗେବିଜେ
ଅନେକ ଧ୍ୱଂସନେ କଲେକ ଦନୁଜେ ।
କହସି ମହାତମା ଅମୃତମଏ ବାଣୀ

ଆନନ୍ଦ ଆତ୍ମା ସାନନ୍ଦ ହୋଇ ଶୁଣି ।୮୩୦।
ଶୁଣ ପରୀକ୍ଷ ବଦୟନ୍ତି ବ୍ରହ୍ମଂବେତା
ତୁ ଯାହା ପୁଚ୍ଛାକଲୁ ବିଷ୍ଣୁପୁରାଣର ବାରତା ।
କନାଟ ଗଉଡ଼ ମାଳେବ ତିରିହୁତି
ଚିହ୍ନ୍ୟ ମହାଚିହ୍ନ୍ୟ ନେପାଳ ବାରସ୍ଵତୀ ।
କୋଧ ମଲାର କାଉଁରୀ ବଙ୍ଗାଳ
ଭୋଟ ମରହଟ ଲୋହିତ ଭୋପାଳ ।
ଯେତେକ୍ ଦେଶ ମଏଷାସୁର ଜିଣି
ଅନେକ ଧ୍ଵଂସି ମଏଷା ବନ୍ଦୀ କରି ସମସ୍ତ ଆଣି ।
ହସ୍ତୀ ଘୋଡ଼ା ଯୁଦ୍ଧାଂ ପୁତ୍ର ପଉତ୍ରୀ ଦେଇଁ
ରାଜାମାନେ ଖଟିଲେ ସମସ୍ତେ ବିନୋଇଁ ।
ଆହୋ ପରୀକ୍ଷ ସାଗର ସଙ୍ଗମ ମଉଦଧି ଦକ୍ଷିଣ କୁଳେଂ
କୁଳାବତୀ ବୋଲି ଏକ ନଗ୍ର ପରିମଳେ ।
ଛତ୍ରୀ ବଡ଼ ସୋହୋଡ଼ ଅନିର୍ଯାପ ମହାଦାନି
ସେ ନଗ୍ର ରାଜା ଶମ୍ଭୁ ନିଶମ୍ଭୁ ବୋଲି ବେନି ।
ସାଗର କୂଳେ ବାରାନିଧି ବଟ ତଳେ
ବ୍ରହ୍ମାଙ୍କୁ ତପ ଦୁହେଁ କଲେ ବାଳ କାଳେ ।
ସହସ୍ର ବରଷେ ଲୋହଗଡ଼େ ପଶି
ସହସ୍ର ବରଷେ ନୀର ଆହାର ତୁଳସୀ ।
ସହସ୍ର ବରଷେ ପବନ ଆହାର
ସହସ୍ରେ ବରଷେ ଲୋଟିଲା ଶରୀର ।୮୪୦।
ପାଞ୍ଚ ସହସ୍ର ବରଷେ ଶରୀର ମିଳାଇ
ଉଇ ପୋକ ଚଢ଼ିଲା ଧୂଳି ମତ ହୋଇଁ ।
ସହସ୍ରେ ବରଷେ ହୋଇଲା ବଣ ବୁଦା
ଫୁଟିଣ ଦିଶିଲା କାୟା ମହାସିଧ୍ୟା ।
ପରମ ନିରାକୁଳ ମହାତପ ସଞ୍ଚ
ନବ ସହସ୍ର ବରଷେ ବିଜେ କଲେ ବିରଞ୍ଚ ।
ପିତା ବୋଇଲେ ସେ ଦାନେବଙ୍କର ଆଗ
ମୁହିଁ ସେ ବେଦବର ବର ମୋତେ ମାଗ ।
କମୋଣ୍ଡଳ ଜଳେ ଅମୃତ କଲେ ବୃଷ୍ଟି
ସାଷ୍ଟାମ ହୋଇଲେ ବୀରେ ଶମ୍ଭୁ ନିଶମ୍ଭୁ ଉଠି ।
ବର ମାଗ ବୋଲି ବୋଲନ୍ତି ବିରଞ୍ଚ
ମାଗରେ ବର ମନେ ଯାହା ତୋର ଚିନ୍ତି ।
ସାଷ୍ଟାମ ହୋଇଁ ପଚାରନ୍ତି ଶମ୍ଭୁ ନିଶମ୍ଭୁ
ସ୍ଵାମୀ ପ୍ରତେ କରିବୁ ନିଜ ରୂପ ଦେଖିବୁ ।
ଆପଣା ନିଜ ରୂପ ଦେଖାଇଲେ ପିତା
ଶ୍ରୀ ବ୍ରହ୍ମ ବିରଞ୍ଚ ଧାତା ବ୍ରହ୍ମ ଚେତା ।
ଆଇରି କୋଟି ଧନୁରୁ ଶିଶୁମୁନା
ଋକ୍ ଯଜୁ ସାମ ଅର୍ଥ ବେଦ ସାଧନା ।
ନିଜ ରୂପ ଦେଖି ସେ ଶମ୍ଭୁ ନିଶମ୍ଭୁ
ସତ୍ୟ କର ଦେବ ବର ଯେବେ ଦେବୁ ।୮୫୦।
ପିତା ବୋଇଲେ ହୋ ମମ ସତ୍ୟ ସତ୍ୟ
ଯାହା ମାଗିବ ତାହା ଦେବି ନିତାନ୍ତ ।
ଶମ୍ଭୁ ନିଶମ୍ଭୁ ପ୍ରସନେ ବର ଭାବି
ଭୋ ଦେବ କମଳ ଆସନେ ଆମ୍ଭେ ହୋଇବୁଁ ଚିରଜୀବୀ ।
ପ୍ରଳୟ କାଳରେ ନ ସରିବ ଶରୀର
ଚାରି ଯୁଗେ ଆମ୍ଭେ ହୋଇବୁଁ ଅମର ।
ପିତା ବୋଇଲେ ତୁମ୍ଭର ସର୍ବ ହୋଉ ସିଦ୍ଧି
ଯାହା ବାଞ୍ଛିଲ ତାହା ଅବଶ୍ୟ ହୋଇବ ବୋଧି ।
ଶୁଣି ସାନନ୍ଦ ହୋଇଲେ ଶମ୍ଭୁ ନିଶମ୍ଭୁ
ଏହେନେହ ସମ୍ପଦ ନାଥ ପ୍ରସନ ହୋଇଂ ଦେବୁ ।
ଏତେକ ବର ଯେ ଦେଲେକ ବିରଞ୍ଚ
ଶମ୍ଭୁ ନିଶମ୍ଭୁ ମନେ ସବୁ ସଞ୍ଚ ।
ଏଥୁଁ ଅନନ୍ତରେ ବିହନ୍ତା ପୁରୁଷେ
ଯାଇଁ କହିଲେ ସେ ନାରାୟଣ ପାଶେ ।
ସ୍ଵାମୀ ପ୍ରତାପୀ ଦାନେବ ଶମ୍ଭୁ ନିଶମ୍ଭୁ ବୋଲି
ବ୍ରହ୍ମା ତାହାକୁ ପ୍ରସନ ହୋଇଲେ କାଲି ।
ଅପାର ବର ମାଗିଲା ତାକୁ ଦେଲେ କମଳ ଆସନ
କୋଟି କଳ୍ପ ବର ପାଇଲା ଯାତୁଧାନ ।
ଅମର ବର ଯେ ମାଗିଲା ବିଦୁଟି
ଆବର ସଂସାରେ କି ହୋଇବ ଦ୍ରପିଷ୍ଟି ।୮୬୦।
ବିହନ୍ତା ପୁରୁଷଙ୍କର ଇଦଂ ବାକ୍ୟ ଶୁଣି
ଚିନ୍ତା ବସିଲା ଯେ ଦେବ ଚକ୍ରପାଣି ।
ଖୁର୍ପ ରୂପେକ ସେ ହୋଇଲେ ନାରାୟଣ
ଅତିଅନ୍ତ ଖିନ ଦୁର୍ବଳ ଅଚଳ ।
ଶମ୍ଭୁ ନିଶମ୍ଭୁ ପଶୁଅଛନ୍ତି ଯେବଣ ବାଟେ
ପଥ ଆବୋରି କରି ଶୋଇଅଛନ୍ତି ଜଳ ଘାଟେ ।
ଅବସ୍ଥା ପୁରୁଷ ଦେଖି ପଚାରନ୍ତି ଶମ୍ଭୁ ନିଶମ୍ଭୁ
ବୋଇଲେ କାହିଁର ତୁମ୍ଭେ ଅଟରେ ବାବୁ ।
ନୟନ ଚାହିଁ କହିଁ ନ ପାରଇ କଥା

ପୁଣି ପୁଣି ଦାନବେ ପଚାରନ୍ତି ବାରତା ।
ମୁହିଁ ଅଟଇଁ ଅନନ୍ତ ଦୀପର ରାଜା
ନିରାକାର ନୃପତିର ଅଟଇ ଆତ୍ମଜା ।
ଯମର ଭଏ ଯହୁଁ ଲାଗିଲା ଆମ୍ଭଙ୍କୁ
ମୁହିଁ ତପ କଲି ବ୍ରହ୍ମା ଦେବତାଙ୍କୁ ।
ଲକ୍ଷେ ଶତଷଠୀ ବରଷ ତପ କଲି
ଅନେକ ନିରାଶ ହୋଇ ଏବେ ବସିଲି ।
ମୋତେ ପ୍ରସନ ଯେ ହୋଇଲେ ବିରଞ୍ଚି
କଞ୍ଚ କଞ୍ଚ କରି ଆଇଷ ମୋତେ ସଞ୍ଚି ।
ସତ୍ୟ କରି କହିଲା ସେ ମୋହୋର ଯେତେକ ଆଇସ୍ୱେ
ତୋହରି ହୋଇବ ସେତେକ ବୟେସ ।୮୭୦।
କୋଟିଏ ବ୍ରହ୍ମାଣ୍ଡେ କେହି ତୋତେ ନୋହିବେ ସରି
ସମରେ ହାରିବେ ବ୍ରହ୍ମା ରୁଦ୍ର ହରି ।
ବ୍ରହ୍ମ ଶକତି ତ୍ରିଶୂଳ ଶକତି ଅମୋହ ଶକତି
ନାରାଏଣ ଶର ପଶୁପତ୍ର ଶର କାନ୍ତି ।
ମୋର ବର ପାଇଲାର ହେଲା ପାଞ୍ଚ ବରଷ ଛଡ଼ମାସ
ଏଡ଼େ ଦୁଖେ ଅରଜିଲାର କିଞ୍ଚିତେ ଗଲା ନାଶ ।
ସେ ଧାତା ବର ମୋତେ ଦେଲେ ଯେଉଁ ଦିନୁ
ରୋଗ ପ୍ରବଳ ହୋଇଲା ମୋର ତନୁ ।
ଏକା ପୁତ୍ର ଗୋଟିଏ ମୋର ଥିଲା
ବ୍ରହ୍ମାର ବରେ ତାହା ଇଶ୍ୱର ନାଶ କଲା ।
ବେନି ଗୋଟି ଭାରିଯା ଅଗାଦ ଜଳେ ବୁଡ଼ି
ଏହେର୍ନ୍ନେକ ଲକ୍ଷଣେ ମୋର ସମସ୍ତ ଗଲା ଛାଡ଼ି ।
ଆହୋ ଶମ୍ଭୁ ନିଶମ୍ଭୁ ଜାତ ହୋଇଲେ ମୃତୁ ଅଛି
ସେହି ବ୍ରହ୍ମା ପୁଣି ଜୀବ ପରିତ୍ୟାଗି ।
ତାହାଙ୍କୁହି ପ୍ରାପତ ନୋହଇ ପରମ ପଦ
ରକ୍ତ ମାଂସ ବହିଥିଲେ ଅବଶ୍ୟ ପଡ଼ଇ ପରମାଦ ।
ଅନେକ ଦୁଖି ହୋଇଲି ମୁଁ ପୁଣ ଜାଣ
ଦୟାକରି ମୋହିଲା ମୋତେ ନୋହିଲା କାରଣ ।
ଯତନେ ପଡ଼ିଲି ଆସି ତ୍ରିପଥାର ପନ୍ଥେ
ଦୟାକରି ଅବା ପୋଷି ପାରିବକି ମୋତେ ।୮୮୦।
ଅଷ୍ଟାଙ୍ଗ ଶରୀର ଯାକ ମୋର ରୋଗୀ
ଏହା ଭଲ କରିବ ବୋଲି ଖୋଜୁଥାଇ ଯୋଗୀ ।
ଆହୋ ମହାତମାଏ ତାହାକୁ ଯଶୋବନ୍ତୀ ବ୍ରହ୍ମାଣ୍ଡ
ଦେବଙ୍କର ମଧ୍ୟେ ସେ ଅଟଇ ବିଭଣ୍ଡ ।
ଆହୋ ଏକ ମୁଖେ ନୁଆରିଲା ବ୍ରତି
ଦେଖୁ ଦେଖୁ ଚାରି ବଦନ ଅନିର୍ଯାପ ତା ଗତି ।
ଈଶ୍ୱରହିଁ ଜାଣଇ ତାହାର ମର୍ମଖଣ୍ଡି
ଚାପୋଡ଼େ ମାଇଲା ମୁଣ୍ଡ ଖଣ୍ଡି ଛିଡ଼ି ।
ଆହୋ ସଭିଏଁ ବୁଝିଅଛ ଏହାର ସର୍ଜନ ଜନପଣ
ଅପୂର୍ବ୍ୟେକ ଦେବତାଟି ଏ ମଧ୍ୟ ଭୁବନେଣ ।
ବହୁତ ମନ୍ଦପଣ ଅଟଇ ପଦ୍ମଯୋନି
ବେଶ୍ୟା ରମଣେ ଜାତ କଲା ବଶିଷ୍ଟ ମହାମୁନି ।
ଅନିର୍ଯାପ ଅକର୍ମୀ ଯେ ଅଟଇ ବିରଞ୍ଚି
ତାହାକୁ ସେବା କଲେ ହୋ ଫଳଶ୍ରୁତି ନାହିଁ କିଛି ।
ମନୁଷ୍ୟ ମଧ୍ୟେ ସେ ଅଟଇ କୁପୁରୁଷ
ସେ ବ୍ରହ୍ମାଙ୍କୁ ତୁମ୍ଭେ ତପ ଅଭ୍ୟାସ ।
ଆହୋ କହୁଁ କହୁଁ ବଇକୁଳ ହୋଇ ଉଠଇ ପୁଣ ପୁଣ
ମହା ବଇକୁଳ ହୋଇ ଛାଡ଼ିଲା ନିଜ ପ୍ରାଣ ।
ଆଶ୍ରିଯ ହୋଇଲେ ଦେଖିଣ ଦୁହେଁ
ବଇକୁଳ ହୋଇ ବେନି ଭାଳନ୍ତି ସନ୍ଦେହେଁ ।୮୯୦।
ବାହୁଡ଼ି ପଶିଲେ ବଦ୍ରିକା ଆଶ୍ରମେ
ଦୁହେଁ ପୁଣି ତପକଲେ ବ୍ରହ୍ମାର ନାମେ ।
କହିଣ ଅନ୍ତରୀକ୍ଷେ ହୋଇଲେ ଯାଇଁ ହରି
ଜ୍ଞାନ କହିଣ ଗଲେ ବୈକୁଣ୍ଠ ପୁରୀ ।
ଅନେକ ଲଏ କଲେ ଯାତୁଧାନ
ପିତାମହ ଧାତାର ନ ଦେଖିଲେ ବର୍ଣ୍ଣ ଚିହ୍ନ ।
ତପ ସ୍ଥାନ ସେହୁ ଛାଡ଼ିଲେ ବେନି ଜନ
ଆକାଶ ଭୁବନେ ପୁଣି ଲୋଡ଼ନ୍ତି ପଦ୍ମଯୋନ ।
ବ୍ରହ୍ମାଙ୍କୁ ଲୋଡ଼ି ପଶନ୍ତି ଯେବଣ ପୁରେ
ଦେବତାମାନେ କେହି ନ ରହନ୍ତି ଡରେ ।
ଅନେକ ପୁର ଧସଂନ କଲେକ ମହାବଳୀ
ଆକାଶ ଭୁବନେ ବହୁତ ହୋଇଲା ହାଲୋହୋଳି ।
ଶୂନ୍ୟପଥେ ଗଲେ ବିହନ୍ତା ପୁରୁଷେ
ବିନୟ ହୋଇ କହନ୍ତି ପିତାର ପାଶେ ।
ସ୍ୱାମୀ ଆକାଶ ଦିଗେ ବିଜେ ଶୁମ୍ଭ ନିଶୁମ୍ଭ ବେନି
ଯମ ଦେବତା ସହିତେ ଛାଡ଼ିଲା ସଂଯମନୀ ।
ତପବର ପାଇଁ ଦେବ ନ ଦେଖନ୍ତି କାହା
ଉପାଏ ଚିନ୍ତା କରିବା ଦେବ ତାହା ।
ସମସ୍ତଙ୍କର ବଚନ ଶୁଣି ଦେବ ଧାତା

କରେଣ ବ୍ରହ୍ମଶର ଘେନିଣ ପବିତ୍ରା ।୯୦୦।
ବେନି ଭୁଜେ ଧନୁ ବେନି ଭୁଜେ ଶର
ମହା କୋପିତ ହୋଇ ସେ ହୋଇଲେ ବାହାର ।
ବେଦବର କୋପ ଦେଖି ଶମ୍ଭୁ ନିଶମ୍ଭୁ ବେନି
ପିତାର ଉପରକୁ ଧାଇଁଲେ ଶର ଘେନି ।
ଯହୁଁଣ ଦେଖିଲେ ଅସୁରଙ୍କର ମୂର୍ତ୍ତି
କୋପ ଦେଖି ଧାତା ହୋଇଲେକ ଶାନ୍ତି ।
ପିତା ଶାନ୍ତି ଦେଖି ଧଇଲେ ଚାଣ୍ଡାଳ
ଆକ୍ରୋଶି ବ୍ରହ୍ମାଙ୍କୁ ମାଇଲେ କରତାଳ ।
ଚାପୋଡ଼ ଘାତେଣ ଅସାଷ୍ଟମ ପଦ୍ମଜାଏ
କୋପେଣ ତ୍ରିପଣ୍ଡ ଯେ ଗଳିତ ପିତା କାଏ ।
କ୍ଷଣକେ ମୋହ ସେ ଛାଡ଼ିଣ ପଦ୍ମଯୋନି
ଦେଖିଲା ନୟନେ ଶମ୍ଭୁ ନିଶମ୍ଭୁ ବେନି ।
କହୁଁ କହୁଁ ପିତାମହ କୋପିତ ପ୍ରତାପ
ଶମ୍ଭୁ ନିଶମ୍ଭୁକୁ ଦେଲା ଅଭିଶାପ ।
ଆରେ ମୂର୍ଖ ଦାନବେ ମଣିତ ନୁଆରିଲ
ମୋହୋର ଶିରେ ଆଣି ଆକର୍ନ୍ନ ଘାତ କଲ ।
ଏହି ଅସ୍ତ୍ରରେ ବେଳେ ତୁମ୍ଭ ଶିର
ଭସ୍ମହୋଇ ଦହନ ହୋଉ ତୁମ୍ଭ ଶ୍ୟରୀର ।
ଶାପ ପାଇ ଦୁହେଁ ତାଟେକା କଲେ କାଏ
ପ୍ରଳମ୍ବିତ ହୋଇଲେ ସେ ପିତାମହର ପାଏ ।୯୧୦।
ଭୋ ପିତାମହ କୋପ କରିବାକ ଶ୍ୟାନ୍ତି
ବିନୟ ଦେଖି ସେ ଶ୍ୟାନ୍ତି ହୋଏ ପ୍ରଜାପତି ।
ଶୂନ୍ୟେଣ ବାଚା ଯେ ଶୁଭଇ ଶବଦ
ଶିଷ ହୋଇ ସ୍ୱାମୀକିରେ ଚିନ୍ତିଲ ପରମାଦ ।
ବହୁତ ପାତେକ ହୋଇଲା ବୋଲି କରନ୍ତି ବିନଏ
ପୁଣି ଉଭାହୋଏ ରହିଲେ ବସିଲା ସଦଏ ।
ଶମ୍ଭୁ ନିଶୁମ୍ଭୁ ବୋଇଲେ ଅବଧାରି ଦେବ ପିତା
ଅଦ୍ଭୁଭୁତେ ପୁରୁଷେକ ଦେଖିଲୁ ଅବସ୍ଥା ।
ତୋର ବର ନିନ୍ଦାକଲା ଦେବପିତା
ଆମ୍ଭକୁ ସଦଏ ଯେବେ କରସି କରତା ।
ଶମ୍ଭୁ ନିଶମ୍ଭୁ ଦୁହିଁଙ୍କର ବାକ୍ୟ ଶୁଣି
ଧ୍ୟାନେଣ ଜାଣିଲେ ଦେବ ଅଟନ୍ତି ଚକ୍ରପାଣି ।
ସଦଏ ଚିତ୍ତେଣ ବୋଇଲେ ପଦ୍ମଯୋନି
ଚକ୍ରକୂଟ ବୁଦ୍ଧିରେ ପଡ଼ିଲ ତୁମ୍ଭେ ବେନି ।
ଆହୋ ବ୍ରହ୍ମ ଈଶ୍ୱର ଆମ୍ଭେ ଅଟୁଁ ବରଦାତା
ବିଷ୍ଣୁକୁ ଲାଗଇ ସେ ଭାରାଭାର ଚିନ୍ତା ।
ମୁହିଁ ସେ ଅନିର୍ଯାପ ଦେଲି ଅମର ବର
ତେଣୁକରି ଚିନ୍ତା ଯେ କଲେ ଦାମୋଦର ।
ଆରେ ଶମ୍ଭୁ, ନିଶମ୍ଭୁ, ତୁମ୍ଭେ ଅମରହିଁ ସେ ହୋଇବ
ବ୍ରହ୍ମା ବିଷ୍ଣୁ ରୁଦ୍ର ସୁର ଲୋକନ୍ତ ଜିଣିମ ।୯୨୦।
ଏକର ଶିରେ ତୁମ୍ଭେ ଆରେକ ଦେବ ହସ୍ତ
ଶ୍ୟରୀର ଜଳିବ ତୁମ୍ଭର ହୋଇବ ଭସ୍ମୀଭୂତ ।
କହିଣ ବେଦବର ଗଲେ ଅନ୍ତରୀକ୍ଷେ
ନିରାଧାର ବାକ୍ୟ ଫିଟିଲା ଚତୁର୍ମୁଖେ ।
ବାହୁଡ଼ି ଶମ୍ଭୁ ନିଶୁମ୍ଭ ଗଲେ ତତକ୍ଷଣେ
ପ୍ରବେଶ ହୋଇଲେ ଯାଇଁ କୁଳାବତୀ ପାଟଣେ ।
ମହା ସମ୍ଭରେ ସେ କରନ୍ତି ରାଜ୍ୟ
ଅନେକ ରାଜ୍ୟ ଜିଣି ଭୋଗ କରନ୍ତି ଅଇଶ୍ୱର୍ଯ୍ୟ ।
କୁଳାବତୀ ପାଟଣା ଶମ୍ଭୁ ନିଶମ୍ଭୁ ରାଜ୍ୟେ
ତାହାଙ୍କର ରାଜ୍ୟକୁ ମଏଷାଂସୁର ଦିଗ ବିଜେ ।
ଅନେକ ବାଦ୍ୟ ଯେ ବାଜଇ ନିଶାଣ
ତୁଲେଣ ଅଛନ୍ତି ଯେ ବେନି କୋଟି ରାଜାଗଣ ।
ଯୋଦ୍ଧା ଅମନାତ୍ୟ କେ ପାରିବ କଳି
ପାଦ ଘାତେ କମ୍ପଇ ମହିଅଳୀ ।
ଆସ୍ତାନର ତଳେ କହିଲେ ମୁନେହି
ସ୍ୱାମୀ ତୋହୋର ରାଜ୍ୟକୁ ମଏଷାଂସୁର ବାହି ।
ପ୍ରତାପ ମହୀପତି ସେ ସିଙ୍ଘଳ ଦେଶର ରାଜା
ସମସ୍ତ ଦେଶ ନଗ୍ରେ ପାଇଲା ବହୁତ ପୂଜା ।
ହଟକଲା ପଦ୍ମଲାଭ ଶାଖାପୁର ଭାଜିଂ
ରାଜା ନାଶ ଗଲା ସେ ରାଜ୍ୟ ଗଲା ଭାଙ୍ଗି ।୯୩୦।
କାନ୍ତିମାଳା ଦାନେବ ସେ ଚାମର ବେମାଳ
ରକ୍ତବୀର୍ଯ୍ୟ ସେ ଧୂମଲୋଚନ ମହାବୀର ।
ଏହାଙ୍କର ମୂଳେ ଅନେକ ବକ୍ରସେନା
ଏକେଂ ମହୀ ଜିଣନ୍ତି ସେ ନ ଜାଣନ୍ତି ଗଣନା ।
ମୁନେହିଁଙ୍କ ବଚନ ଶୁଣି ଦନୁଯ ବୀର
ଶମ୍ଭୁ ନିଶମ୍ଭୁ ବୋଇଲେ ରେ ଆମ୍ଭର ଦଣ୍ଡ ସଜକର ।
ରାଜାର ବଚନେ ସେ ସାଜିଲେ ସଇନି
ଅନେକ ବାଦ୍ୟ ଯେ ଶୁଭଇ ଶଙ୍ଖଧ୍ୱନି ।
ବେନି ମର୍ଭୁତ ରଥ ପାଞ୍ଚ ମର୍ଭୁତ ନାଗ

ବାଇଶି କ୍ଷେଉଣି ବଳ ସାତ ବୃନ୍ଦ ତୁରଙ୍ଗ ।
ଏତେକ ସନ୍ୟ ସାଜିଲେ ଶମ୍ଭୁ ନିଶମ୍ଭୁ ବେନି
କଟେକରୁ ବାହାର ହୋଇଲେ ସଇନି ।
ପାଞ୍ଚ ଯୋଜନ ମାଡ଼ି ରହିଲା ଏ ଥାଟ
ମହା ମହା ଦାନେବ ଏକ ଆରେକ ବଳିଷ୍ଠ ।
ଖଡ଼ଗ କୋନ୍ତ ନାରାଯ ଅଶିପତ୍ର ଯଷ୍ଟି
ଶାବେଳି କୋଦାଳ କୋଠାର ତେଜ ଯାଠୀ ।
ଝଟକନ୍ତି ନାଙ୍କିଆ ଯେ ବିଜୁଳି ତେଜ ଜାଣି
ସେନୀଙ୍କର ଜଡ଼ିଲା ଅଛି ବାଳଅର୍କ ମଣି ।
ଚୋଖାର ତୁରଙ୍ଗମ ପବନୁ ବେଗେ ବାଜୀ
ଖେଦନ୍ତି ଖୁରୁସାଣି ଘଣ୍ଟା ରାବେ ମହାତେଜି ।୯୪୦।
ଅସିପତ୍ର ବୁଲାଇ ଉଠନ୍ତି ରାଉତେ
ଗଜନ୍ତ ଚଳାଇଁ ତର୍ଜନ୍ତି ମହୁନ୍ତେ ।
ହାକନ୍ତି ଦାନେବରେ ହୋଇଲ ନିରେଖଇ
ଦୂରେ ଥାଇ ମଏଷାଂସର ବଳ ଦେଖଇ ।
ଯହୁଁ ଚୂମ୍ବାଇଲେ ଶମ୍ଭୁ ନିଶମ୍ଭୁଙ୍କର ବଳ
ଆଗିଆଣି ଦଣ୍ଡରେ ଉଠିଲେ ଚାମର ବେମାଳ ।
କାନ୍ତିମାଳା ବିଡୁଲାକ୍ଷ ଆବର ରକ୍ତବୀର୍ଯ
ଏକ ମୁଖ ହୋଇ ଉଠିଲେ ସମସ୍ତ ଦନୁଜ ।
ଉଭଏ ବଳ ସଇନି ଯେ ହୁଅନ୍ତି ଭେଟାଭେଟି
ଗଦା ମୁଦୁଗୁର ଲାଙ୍କିଆ ସେ ହୋଇଲେ ପିଟାପିଟି
ରଣ ରଙ୍ଗ ଧନ୍ଦୋଳ ଯେ ଅକଳିତ ବଳ
ଆକାଶ ତ୍ରାସୁଅଛି ମୁଖର ଚହଳ ।
ଏସନେକ ସମର ସେ ଲାଗିଲାକ ବେନି
ରାଉତେ ରାଉତେ ହୋଇଲେ ଅନ୍ୟୋଅନ୍ୟି ।
ଶମ୍ଭୁ ନିଶମ୍ଭୁଙ୍କର ସନ୍ୟ ସେ ବଜ୍ରାଙ୍ଗ ବୀରଘଣ୍ଟ
ଚାମର ବେମାଳ ତୁଳେ ହୋଇଲେ ଏମାନେ ଭେଟ ।
ବଜ୍ରଘଣ୍ଟ ଧରିଅଛି ଯେ ଲୁହାର ବେନି ଗଦା
ମଏଷାଂସୁର ସନ୍ୟ ଯେ ମାରି କଲା ପଦା ।
ଯେସନେକେ ଆରତ ବାସଭଗ୍ନ ପକ୍ଷୀ
ମଷାଂସୁର ସଇନି ସେ ବୀରଘଣ୍ଟ ଦେଖି ।୯୫୦।
ସନ୍ୟ ଭଗ୍ନ ଦେଖି ସେ ବିଡୁଲାକ୍ଷ କାନ୍ତିମାଳା
ବୀରଘଣ୍ଟ ଛାମୁରେ ମିଳିଲେ ମହାବୀରା ।
ଲକ୍ଷେକ ନାରାଯ ପୂରାଇ ରକ୍ତବୀର୍ଯ
ବଜ୍ରାଙ୍ଗ ଉପରେ ସେ ପେଷଇ ଦନୁଜ ।
ନାରାଯ ପଡ଼ିଲା ସେ ବଜ୍ରାଙ୍ଗର ଅଙ୍ଗେ
ସମସ୍ତ ନାରାଯେ ପଡ଼ି ହୋଇଲେ ଭଙ୍ଗେ ।
ପୁଣ ପୁଣ ନାରାଯ ଯେ ପେଷଇ ରକ୍ତବୀର୍ଯ୍ୟ
ଶ୍ୟରୀରେ ନ ବହଇ ସେ ଦର୍ପିଷ୍ଟ ଦନୁଜ ।
ହସ୍ତର ବେଗ ସେ ଦେଖିତ ନୁଆରି
ଲୋହ ଶର ଘାତେ ସେ ହୋଇଲେ ମରାମରି ।
ଈଶ୍ୱର ସେବି ସେ ସବୁଙ୍କରି ଦେହ ବଜ୍ର ଅଙ୍ଗ
ସମସ୍ତ ନାରାଯ ପଡ଼ି ହୋଇଲେକ ଭଙ୍ଗ ।
ଚାମର ବେମାଳ ଯୁଧ କରନ୍ତି ବୀରଘଣ୍ଟର ତୁଳେ
ନବଲକ୍ଷ ଯୋଦ୍ଧା ଘେନି ଏକମୁଖ ହୋଇ ବୀରଘଣ୍ଟ
ଉପରକୁ ଧାଇଲେ
ବୀରଘଣ୍ଟର ତୁଳେ ଅଛନ୍ତି ପାଞ୍ଚ ଯୋଧ୍
ନବ ଲକ୍ଷ ଯୋଦ୍ଧାକୁ ପଞ୍ଚ ମୁଖ ଶର ବିନ୍ଧି ।
କାମେକ ନାରାଯ ଭୃଗୁ ଋଷିଙ୍କର ଦେଲା
ତାହା ଘେନି ସେ ବୀରଘଣ୍ଟ ମଂଷାସୁର ସନ୍ୟ ମାଇଲା ।
ଏକା ପ୍ରହାରକେ ପଡ଼ିଲେ ଲକ୍ଷେ ଯୋଧି
ରୋଧିରେଣ କର୍ଦ୍ଦନ ହୋଏ ରଣ ମଝି ।୯୬୦।
ମାନେବ ସଖ୍ୟାଂ କାହିଁ ବୀରଘଣ୍ଟର ସମର
ବୃନ୍ଦାଅର୍କ ଲୋକଙ୍କୁ କଳାକ ଅଗୋଚର ।
ବେନି ବଳ ଶର ବୃଷ୍ଟି ଗହନ ଶର ଘାଏ
ସବୁଙ୍କରି ଶରୀର ମନ୍ଦାର ପୁଷ୍ପ ପ୍ରାଏ ।
ଏସନେକ ସମର କରନ୍ତେଣ ବେନି
କାନ୍ତିମାଳା ପ୍ରାହାର କଲା ବୀରଘଣ୍ଟକୁ ବଜ୍ରାବଳୀ ଗଦା ଘେନି ।
ଭାଜିଣ ଗଦା ଯେ ହୋଇଲା ବେନି ଖଣ୍ଡ
ପୁଣି ମୁଦୁଗରେ ଘେନି ପ୍ରହାର କଲାକ ଦୃଦଣ୍ଡ ।
ବୀରଘଣ୍ଟ ବକସ୍ଥଳେ ପଡ଼ି ହୋଏ ଚୂନା
ତେଡ଼େ ଗଦା ଘାତକୁ ସେ ନ କଲା ଗଣନା ।
ବେଳେ ବେଳେ ସମର ହୋଇଲା ମହାଗୋଳ
ବେନି ବେଳ ସଇନି ହୋଇଲେ ମହାରୋଳ ।
ପର ଆପଣା କେହି ବାରିତ ନୁଆରି
ଆପଣେ ଆପଣେ ହୋଅନ୍ତି ମରାମରି ।
ମଷାଂସୁର ସଇନି ଯେ ପଳାନ୍ତି ବଳ ଭାଜି
ଶମ୍ଭୁ ନିଶମ୍ଭୁ ଯେ ଉଠିଲେ ଗଳଗାଜି ।
ପାଞ୍ଚ ଯୋଯନ ପରିଯନ୍ତେ ପଳାଇଲେ ମଷାଂସୁର ସଇନି
ଅନେକ ବଳ ଗୋଡ଼ାଇଁ ମାଇଲେ ଶମ୍ଭୁ ନିଶମ୍ଭୁ ବେନି ।

ଭଗ୍ନ ବଳ ହୋଇ ସେ ମଷାଂସୁର ଆସଇ
ବନସ୍ତ ଭିତରେ ବିଷ୍ଣୁମାନେ ପଶଇ ।୯୭୦।
ମଷାଂସୁର ରହିଲା ବିଞ୍ଚଗିରି ପର୍ବତେ
ଶମ୍ଭୁ ନିଶମ୍ଭୁ ବେନି ରହିଲେ ନିଜ ପ୍ରଶସ୍ତେ ।
ଜୟତୁ ଭଗବାନ ହେ ନୀଳନ୍ଦିଦଳ ରଚି
ଶ୍ରୀବତ୍ସ ଲାଞ୍ଛନ ଯାହାର ନାମ ଶ୍ରୀବଛି ।
ସ୍ୱାମୀ ନିରାକୁଳ ପୁରୁଷ ହୋଇ ଭଗତ ମସଳା
ଗୋପେଣ ଗୋପୀ ରମଣେ ମଉଭୋଳା ।
ସ୍ୱାମୀ ଏ ତବ ସଂସାର କଇ ହୋଇଲା ଅପରଚେ
ତବ ପଥ ନିରୋପିବି ମୋହୋର ମନ ବାଞ୍ଛେ ।
ସ୍ୱାମୀ ଏ ଭବ ସଂସାର କଳି କାଳ ଫାଶି
ଏ ଭବ ବନ୍ଧନୁ ପାରି କରି ମୋତେ ତବ ପୁରେ ଠାବ ଦେସି
ମୁହିଁ ଏହା ଚିହ୍ନି ନ ପାରିବି ମଉ ଗର୍ବେ
ମାୟା ମୋହ ଅନ୍ଧକାରରୁ ଉଦ୍ଧର ବାସୁଦେବେ ।
ସ୍ୱାମୀ ଦିବାରାତ୍ରେ ମୁହିଁ ଜାଗଇ ତବ ଆଶେ
କଳି କାଳ ତରିବି ନାଥ ତବ ଉଦ୍ଦେଶେ ।
ସ୍ୱାମୀ ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ସମସ୍ତ ବୃନ୍ଦାଅର୍କେ
ଯାହାର ବକ ସ୍ଥଳେ ମାଳା ଉଦକେ ।
ନମାମି ନାରାୟଣ ଯାବତ ଚନ୍ଦ୍ର ଯିବ
ସମସ୍ତ ଯିବ ନାଥ ତୁହି ସେ ଏକା ଥିବ ।
ସ୍ୱାମୀ ଅଭିନ୍ନ ଚନ୍ଦ୍ର ଚକୋର ବଦନ ଗୋଟି
ତଥି ଅମିଅ ରସ ପିବଇ ତବ ସୃଷ୍ଟି ।୯୮୦।
ଆହୋ ମନ ବଚନ କର୍ତ୍ତବ୍ୟେ ଦେଖିଲି ସଂସାର
ଆପଣେ ଆପଣେ ଦେଖିଲି ଅନିକାର ।
ସ୍ୱାମୀ ତବ ଶୟଳ ସଞ୍ଚିତ ସର୍ବ ରସ
ଅହୋ ଅହୋରାତ୍ରେ ନରେ ନାରାୟଣ ଅଭ୍ୟାସ ।
ଅକର୍ମଣ ଆପାଦ ଅଗ୍ୟାନ ମନ୍ଦ ଦୋଷୀ
ପାଇଲା ପରମଗତି ତବ ନାମ ଅଭ୍ୟାସି ।
ଶ୍ରୀକୃଷ୍ଣ ନାଥର ଚରଣେ ସତତେ
ବଦୟନ୍ତି ସାରୋଳ ଦାସ ଶୂଦ୍ରମୁନି ତୁଳସୀ ହୃଦଗତେ ।
ହେ ବୁଧଜନେ ବିଚାର କର ଏହା
ଯଙ୍ଗେର ଭୁବନ ବାସୀ ସାରୋଳା ଚଣ୍ଡୀ ସାହା ।
ବଇକୁଣ୍ଠର ଦ୍ୱାରପାଳ ଜଏ ବିଜୟେ ବେନି
ତାହାକୁ ଭେଟିଲେ ମନୁ ମହାମୁନି ।
ଅନାକାର ପୁରୁଷକୁ ଦେଖିବାକୁ ମୁନି କଲେ ଶରଧା
ଜଏ ବିଜଏ ତହିଁ କଲେକ ନିରୋଧା ।
କରପତ୍ର କଇଲାଣେ ମୁନିମ୍ବର ବୋଇଲେ
ଖୀନ ରୂପ ଦେଖି ତାକୁ ଜଏ ବିଜଏ ପେଲି ଦେଲେ ।
ଜଏ ବିଜଏ ବେନିଙ୍କର କର ଘାତେ
ମନୁ ମହାରଷି ଉଡ଼ିଲେ ଗଗନ ଗତେ ।
ଉଡ଼ିଣ ପଡ଼ିଲେ ଯାଇ ନବ ସହସ୍ର ଯୋଜନେ
ବିଚାରନ୍ତି ଏତେ ଦୂରେ ପଡ଼ିଲୁ ପୟାଣେ ।୯୯୦।
ଚେତନା ପାଇଲେ ନବ ସହସ୍ର ଯୋଜନେ ପଡ଼ି
ପୁଣି ବଇକୁଣ୍ଠକୁ ସେ ଅଇଲେ ବାହୁଡ଼ି ।
ପୁଣି ବେଦ ଆଧାନେ କରପତ୍ରେ କଲ୍ୟାଣ କୟେ
ଅନେକ ଭ୍ରଛନା ବୋଲନ୍ତି ଜଏ ବିଜଏ ।
କୋପେଣ ଶାପ୍ୟ ମୁନି ଦେଲେ ବ୍ରହ୍ମ ସୁତ
ଏ ସାର ବଇକୁଣ୍ଠ ଦ୍ୱାରପାଳ ହୋଇ ତୁମ୍ଭେ ଏଡ଼େକ ନିଦତ୍ୟ
ମୁହିଁ ବାଳଖିଳା ମୋତେ କଲ ଏଡ଼େ କର୍ମ
ବେଳୁଁ ବେଳ ମୁନି ଯେ ବଢ଼ିଲା ଅତି ତମ ।
ବୋଇଲେ ଜଏ ବିଜଏ ତୁମ୍ଭେ ଅସୁର କୁଳେ ଜନ୍ମ ହୁଅ
ନ ଜାଣି ଦ୍ୱାରନ୍ତ ନିରୁଧିଲ ତହିଁର ଫଳ ପାଅ ।
ଶାପ୍ୟ ବିହନ୍ତେ ଯେ ଜଏ ବିଜଏ ଭାଷି
ବ୍ରହ୍ମା ପୁତ୍ର ଯେ ତୁମ୍ଭେ ମନୁ ମହାରଷି ।
ନି ଚିହ୍ନି ତୁମ୍ଭନ୍ତ ଆମ୍ଭେ କଲୁ ମହାଦ୍ରୋହ
ଭୋ ମୁନି ଆମ୍ଭନ୍ତ ପ୍ରତିକାର କହ ।
ମୁନି ବୋଇଲେ ଆମ୍ଭନ୍ତ କଲ ଘଞ୍ଚାଳ
ଅବଶ୍ୟ ଅସୁର ତୁମ୍ଭେ ହୋଇବ ରବି ତଳ ।
ମୁନି ବୋଇଲେ ଅବଶ୍ୟ ହୁଅ ଅସୁର
ବିଷ୍ଣୁ ଭଗତି କଲେ ଶତେ ଜନ୍ମେ ହୋଇବ ବଇକୁଣ୍ଠ ପୁର ।
କୃଷ୍ଣର ତୁଲେ ଯେବେ ହୋଇବ ବଇରି ।
ତିନି ଜନ୍ମେ ଆସି ବିଜେ ବୈକୁଣ୍ଠ ପୁରୀ ।୧୦୦୦।
ପ୍ରଥମ ଜନ୍ମେ ଯେ ହୋଇବ ହିରଣାକ୍ଷ
ବିଷ୍ଣୁର ଭାରିଯା ହରିବ ପ୍ରତକ୍ଷ ।
ଦୁତୀଏ ଜନ୍ମେ ରାବଣ କୁମ୍ଭକର୍ଣ୍ଣ
ସୀତୟା ହରଣେ ଶିର କମଳ ଛେଦିବେ ଶ୍ରୀରାମ ।
ତୃତୀୟ ଜନ୍ମେ ତୁମ୍ଭେ ହୋଇବ ଦନ୍ତବକ୍ର ଶିଶୁପାଳ
ରକ୍ମିଣୀ ହରି ଲୋଡ଼ିଲେ ନାରାୟଣ ଛେଦିବେ ଶିର କମଳ ।
ତିନି ଜନ୍ମେ ଦାରା ହରଣ ଚକ୍ରପାଅ
ମମ ଶାପ୍ୟ ପୂରାଇଁ ବଇକୁଣ୍ଠ ଦ୍ୱାର ପାଅ ।

ଜଏ ବିଜଏ ଦ୍ୱାରପାଳ ମନୁ ଋଷିଙ୍କର ଶାପେ
ଦୁହେଁ ଜନ୍ମ ହୋଇଲେ ସେ ଅସୁର ସ୍ୱରୂପେ ।
ଦ୍ୱାର ଶୂନ୍ୟ ଯହୁଁ ହୋଇଲା ବଇକୁଣ୍ଠକୁ
ବିଷ୍ଣୁ କୋପ କଲେ ବ୍ରହ୍ମ ପୁଅମାନଙ୍କୁ ।
ଆରେ ଅଳ୍ପ ଦୋଷେ ଯେ ମୋର ଦ୍ୱାରପାଳନ୍ତ ନାଶି ।
ଯାଅ ମନୁ ମୃତ୍ୟୁମଣ୍ଡଳେ ଜନ୍ମ ହୋଅସି ।
ମନୁ ମହାଋଷି ସେ ବୋଇଲେ ବିନୋଇଁ
ସ୍ୱାମୀ ପିତାର ଆଜ୍ଞା ପାଇ ଅଇଲୁ ଦୁଇଭାଇ ।
ତୋହୋର ଆଜ୍ଞାରେ ସେ ହୋଇବା ମନୁଷ୍ୟ
ପ୍ରଥମ ଜନ୍ମେ ସେ ନାମ କାଳିଦାସ ।
ସେ ଜନ୍ମେ ପ୍ରସନ୍ନ ହୋଇଲେ ଗିରିଜା
ବିଷ୍ଣୁର ଚରିତ୍ର କହିବାକୁ ମୁଁ ହୋଇଲି ଅଗ୍ରଜା ।୧୦୧୦।
ଦୁତୀୟ ଜନ୍ମେଣ ମହାକାଳୀ ନାମେ କବି
କୁଞ୍ଜର ନନ୍ଦନୀ ପ୍ରସନ ବାକ୍ୟଦେବୀ ।
ତୃତୀୟ ଜନ୍ମେ ମୁଁ ସାରୋଳ ଦାସ କବି
ମୋତେ ପ୍ରସନ୍ନ ହେଲେ ସାରୋଳ ଚଣ୍ଡୀଦେବୀ ।
ସେ ଦେବୀ ପସନ୍ନ ହୋଇ କହିଲେ ଆଦିଗ୍ରନ୍ଥ
ପ୍ରଥମେ ରାମାୟଣ ଦୁତୀଏ ଭାରଥ ।୧୦୧୩।
ତୃତୀଏ ଲେଖନ ଶ୍ରୀ ଭାଗବତ
ମୂର୍ଖ ଅଜ୍ଞାନ ଯେ ମୁଁ ଅଟଇ ଅପଣ୍ଡିତ ।୧୦୧୪।
ଯଜ୍ଞେଶ୍ୱରପୁର ବାସେନୀ ସାରୋଳ ଚଣ୍ଡୀ ଚରଣେ ଦଇନି
ବନ୍ଦୟନ୍ତି ସାରୋଳ ଦାସ ଶୂଦ୍ରମୁନି ।

## ମହିଷାସୁରର ଶମ୍ଭୁ ଓ ନିଶମ୍ଭୁ ସହ ଯୁଦ୍ଧ ଓ ପରାଜୟ

ଏଥୁ ଅନନ୍ତରେ ଶୁଣ ପରୀକ୍ଷ ରାଏ
ଶ୍ରୀ ଭାଗବତ ଶୁଣି ପାପ କର କ୍ଷଏ ।
ପୁଣି ପ୍ରଭାତେ ପଡ଼ିଲାକ ହାକ
ସାଜ ସାଜ ବୋଲି ଗହଳ ସର୍ବଲୋକ ।
ଅକଳିତ ସନ୍ୟ କେହି ପରିମାଣୁ
ବାହାର ଶମ୍ଭୁ ନିଶମ୍ଭୁ କୁଳାବତୀ ପାଟଣୁ ।
ମଷାଂର ସଇନି ଯେ ବାହାର ବିଝଂମାଳୁ
ବେନି ବଳ ସମର ଲାଗିଲା ହେଲୁ ହେଲୁଂ ।
ବଜ୍ର ପ୍ରାଏ ସେ ବିନ୍ଧୁଅଛି ଶର
ଯେସନେକେ ଗଗନୁ ପଡ଼ଇ ଜଳଧାର ।୧୦୨୦।
ରକ୍ତବୀର୍ଯ ବୀରଘଣ୍ଟ ଚାମର ବେମାଳ
ଲୋହ ଶର ଗଦା ଘେନି ଧାଇଲେ ମହାବଳ ।
ରକ୍ତବୀର୍ଯ ପ୍ରତାପ ଦେଖି ଶମ୍ଭୁ ନିଶମ୍ଭୁ
ହାକନ୍ତି ବେନି ବୀରେ ରହ ରହରେ ବାବୁ ।
ରକ୍ତବୀର୍ଯ୍ୟ ଶମ୍ଭୁ ନିଶମ୍ଭୁ ଭେଟାଭେଟି
ବଜ୍ରାବଳୀ ଗଦା ଘେନି ଶମ୍ଭୁ ନିଶମ୍ଭୁ ରକ୍ତବୀର୍ଯକୁ ନେଇ ପିଟି ।
ଲୋହାର ବେନି ଗଦା ଅଶୀ ସହସ୍ର ଭାର
ରକ୍ତବୀର୍ଯ ବକ୍ଷସ୍ଥଳେ ପଡ଼ି ହୋଇଲାକ ଚୂର ।
ଶତେ ଭାର ଗଦା ଘେନି ରକ୍ତବୀର୍ଯ ଘୋଟି
ଶମ୍ଭୁ ଦତ୍ୟ ଶିରେ ସେ ପିଟନ୍ତେ ଗୁଣ୍ଡା ଉଠି ।
ପୁଣି ହିଁ ଧାତିକାରେ ରକତବୀର୍ଯ ଆକର୍ଷି
ଶମ୍ଭୁଦତ୍ୟ ହସ୍ତକୁ ଧଇଲା ଦୃଢ଼େ ଆସି ।
ମାଲବନ୍ଧେ ଦୋହେଁ ରାଗେ ଭୁଜେ ଭୁଜ ଭିଡ଼ି
ସମରେ ବେନି ବୀର ହୁଅନ୍ତି ଗଡ଼ାଗଡ଼ି ।
ମହା ଆକ୍ରୋଷି ସେ ଶମ୍ଭୁ ଦଇତ ପିଟି
ଘାଏଣ ଚାମର ସେ ପଡ଼ିଲା ମହୀ ଲୋଟି ।
ଚାମର ମୋହଗତେ ଦେଖି ଧାମନ୍ତି କାନ୍ତିମାଳା
ଶମ୍ଭୁର ତୁଲେ ସେ ସମର ମହାଖଳା ।
ଲକ୍ଷେ ଭାର ଗଦା ଘେନି ସେ ଶମ୍ଭୁ ଦଇତ ପିଟଇ
ବଞ୍ଚିତ ନୁଆରି ସେ କାନ୍ତିମାଳା ଲୋଟଇ ।୧୦୩୦।
କାନ୍ତିମାଳାର ମୋହ ଦେଖି ଧାମଇଁ ମଏଷା
ସଖା ବିହୁନେ କରି ଜୀବନକୁ କରି ନିଆଶା ।
ରାଜାକୁ ଦେଖି ଶମ୍ଭୁ ନିଶମ୍ଭୁ ଦାନବେ ମହା କୋପୀ
ମଦନ ସମାନ୍ୟେ ସେ କାୟା କାମ ରୂପୀ ।
ଭୁଜ ବିସ୍ତାର ଲମ୍ବ ଯୋଜନ ବାହୁ
କରତାର ଦେଖି ଯେହ୍ନେ ଘୋଟଇ ରାହୁ ।
ତେସନେକ ଆକର୍ଷଣ କରିଣ ମହାବଳା
ମଷାଂସୁର ଘୋଟିଲା ସେ ରାକ୍ଷସ ଅନର୍ଗଳା ।
ଜଏସିଂଘ ବଜ୍ରସିଂଘ ମଷାଂସୁର ତିନି ବୀରା
ଶମ୍ଭୁ ନିଶମ୍ଭୁ ତୁଲେ ସମର ମହାଭାରା ।
ଲୋହାଶର ଧନୁରେ ବସାଇଣ ଶର ଚାରି
ଲୋହ ଧନୁଏ ଧରିଣ ଦଇତାରୀ ।
ଶର ବୃଷ୍ଟି ଦେଖି ମଷାଂସୁରକୁ ପ୍ରଶଂସି ଶମ୍ଭୁ
ଦୁଲଭ କ୍ଷତ୍ରିଗଣ ଅଟଇ ତୋର ବାବୁ ।
ଆମ୍ଭକୁହିଁ ଅଗୋଚର କି ବ୍ରତଇ ଆନ ଭଳି
ଧାମଇଁ ଶମ୍ଭୁ ସେ ଦୁଇ ଲୋହା ଗଦା ତୋଳି ।

ବୁଲାଇଣ ଗଦା ସେ ମଷାଂସୁରକୁ ପିଟଇଁ
ଗଦା ଘାତେ ମଷାଂସୁର ଲୁହା ରଥ ଗୁଣ୍ଡା ଉଠଇ ।
ରଥ ଭାଙ୍ଗନ୍ତେଣ ମଷାଂସୁର ପାଦ ଗତି
କୋପେ ବୁଲାଇଲା ସେ ବଜ୍ର ଶକତି ।୧୦୪୦।
ଶମ୍ଭୁ ରକ୍ତବୀର୍ଯ୍ୟର ସମର ମହାଘୋର
ମେଦନୀ କମ୍ପିଲା ସେ ଦାନେବ ପାଦଭର ।
ଲକ୍ଷେକ ଗଦା ଭାର ଘେନି ଶମ୍ଭୁ ନିଶମ୍ଭୁ ଦଇତ ଉଠି
ମଷାଂର ସଇନି ଉପରେଣ ପିଟି ।
ଶମ୍ଭୁର ଛାମୁରେ ପଡ଼ିଲେ ଚାମର ବେମାଳ
ଯୁଦ୍ଧେ ଅନର୍ଗଳ ସେ ବେନି ମହାବଳ ।
ଗଦା ପରିତାଳ କରନ୍ତେଣ ବେନି
ପୃଥିବୀ ଉତପାତେ କମ୍ପିଲା ପଦ୍ମଯୋନି ।
ଶକତି ବୁଲାଇ ସେ କପିଳ ସିଂଘର ସନ୍ତତି
ନିଶମ୍ଭୁ ଉପରେ ପିଟିଲା ତଡ଼ତି ।
ଶକତି ପିଟନ୍ତେ ନିଶମ୍ଭୁ ପାତିଲା ଭୁଜ ଦଣ୍ଡ
ମହା ବଜ୍ର ଶକତି ହୋଇଲା ବେନି ଖଣ୍ଡ ।
ଶୂନ୍ୟ ଦଣ୍ଡ ହୋଇ ସେ ମଷାଂସୁର ଘୁଞ୍ଚଇ
ରହ ବୋଲି ଶମ୍ଭୁ ଦଇତ ପୁଛଇ ।
ଲୋହ ଶର ଘେନି ଶମ୍ଭୁ ପହୁଡ଼ନ୍ତେ
ତ୍ରାସେ ମଏଷାଂସୁର ବସନ ଘେନି ଦନ୍ତେ ।
ମରଣ କାକୁସ୍ତ ଦେଖି ସେ ଧାମଇ ନିଶମ୍ଭୁ
ଶମ୍ଭୁ ଦାନେବ ବୋଇଲା ରହ ରହ ବାବୁ ।
ସାନୁଜ ସମାର୍ଜି ଶମ୍ଭୁ ଦଇତ ପୁଛଇ
ଅନାସ୍ତ ଦେଖିଣ ସେ ସମର ଲେଛଇ ।୧୦୫୦।
ଶମ୍ଭୁ ଦଇତ ପୁଛଇ ତୁ ଅଟୁ କେବଣ ଦେଶୀ
କିମ୍ଭୂତ କାରଣେ ତୁ ମମ ରାଜ୍ୟେ ପଶି ।
କୁଳାବତୀ ପାଟଣା ଏ ଜେନାବତୀ ନଗ୍ରି
ଯମ ଆଦିତ୍ୟ ପବନ ଏ ନ ପଶଇ ଭଏ କରି ।
ନିଶଙ୍କା ରଣେ ତୋହୋର ଯେଡ଼େକ ଭରସା
ବିନୟ ଭଗତି ହୋଇ ସେ ବୋଇଲାକ ମଷାଂ ।
ନିରାଲମ୍ବ ମଧ ସ୍ଥାନ ସେ ସିଘଳ ଦେଶ ପୃଥୀ
ଚାଳିଶ ଲକ୍ଷ ଯୋଜନ ସେ ମୁ ତହିଁର ଚକ୍ରବର୍ତ୍ତୀ ।
କରଞ୍ଚ ଦୀପ କୁଞ୍ଜ ଦୀପ ଚନ୍ଦ୍ର ଦୀପ ଜିଣି
ସମସ୍ତ ରାଜାଙ୍କୁ ଖଟାଇଲି ମୋହୋର ପାଦ ତଳେ ଆଣି ।
ରକ୍ତବୀର୍ଯ୍ୟ ବୀରଘଣ୍ଟ ଚାମର କାନ୍ତିମାଳା
ସେ ଦୀପର ରାଜାମାନେ ଛନ୍ତି ଅଟାର୍ଗଳା ।
ନାରଦେ କହିଲେ ଜମ୍ବୋଦୀପ ଈଶାନ ଭୂମି ବୋଲି
ତାହାର ବାକ୍ୟେଣ ମୁଁ ଦଣ୍ଡ ଚଢ଼ିଣ ଅଇଲି ।
ଅନେକ ନୃପତି ମୁଁ ଜିଣିଲି ବାହୁବଳେ
ତୋତେ ହାରିଲି ମୁଁ କର୍ମର ଅବଳେ ।
ଭୋଗ ପୁରନ୍ଦର ଭୂମି ବୋଲି ମୁଁ ଏଥକୁ କଲି ଇଚ୍ଛା
ତୁ ହୋ ମହାପ୍ରଭୁ ପୂରାଅ ମନବାଞ୍ଛା ।
ଅନେକ ବିନୋଇଁ ବୋଇଲା ମଷାଂସୁର ନୃପତି
ଶୁଣି ଦୟା କଲେ ମହୀ ଦାସର ନାତି ।୧୦୬୦।
ବିନୟ ବାକ୍ୟ ଶୁଣି ସେ କୋପ ସହଂରି
ମଷାଂସୁର ରାଜାକୁ ସେ କୋଳ କରି ଶମ୍ଭୁ ଧରି ।
ଉତ୍ତର ଦିଗେ ଶମ୍ଭୁ ନିଶମ୍ଭୁ ଦକ୍ଷିଣ ଦିଗେ ରକ୍ତବୀର୍ଯ୍ୟ
ପଶ୍ଚିମେ ଚାମର ବେମାଳ ବୀରଘଣ୍ଟ ରାଜ ।
ବାରାନିଧି ପ୍ରାଏକ ଅପ୍ରମିତ ବଳ
ମଷାଂସୁର ରାଜ୍ୟ ସମ୍ପଦ ଶମ୍ଭୁ ନିଶମ୍ଭୁ ବାହୁବଳ ।
ରୋଗ ଆପାଦ ସେ ନ ପଶଇ ସେହୁ ପୁରୀ
ଯମ ପବନ ଅଗ୍ନି ତହିଁ ପଶିତ ନ ପାରି ।
ଅନେକ ବର୍ଦ୍ଧିତ ହୋଇଲା ଦଇତ ବଳ
ଚାଲନ୍ତେଣ ହେଳ ଘେନଇ ମହୀସ୍ଥଳ ।
ଦିଗ ବିଜେ କରି ରାକ୍ଷସ ସାଧ କଲେ
ଏକ ଦିନେ ତହିଁକି ନାରଦ ବିଜେ କଲେ ।
ପ୍ରବେଶ ଦେବ ଡଗର ଶୁକ୍ଳାମ୍ବର ଯତି
ନୃତ୍ୟ ଗୀତ କରି ସେ ସମସ୍ତନ୍ତ ବୋଧନ୍ତି ।
ଯେତେ କଥା ସତ କହନ୍ତି ସମସ୍ତ ପଣ
ତେଣୁ କରି ପୂଜା ସମସ୍ତ ବ୍ରହ୍ମ ପୁରେଣ ।
ନମୋ ନାରାୟଣ ନର୍କୁ ଉଧାରନ୍ତା
ଜାତ-ଅନ୍ତ-ପୁରୁଷ ସକଳ ଜନ ଚିନ୍ତା ।
ଯାବତ ଜୀବ ଜନ୍ତୁ ତୁହି ସେ ଆଦିମୂଳ
ଯୋଗୀଜନଙ୍କର ପରମ ନିରାକୁଳ ।୧୦୭୦।
ମହାବ୍ରହ୍ମଦେବତା କୋଟି କଳ୍ପ ପୁନ୍ୟ
ଇଦଂ ଭୂତ ଆତ୍ମା ତୋର ସେ ରଚଂନ ।
ସ୍ୱାମୀ ଯାହା ତୁ କହୁ ମୁଁ ତାହା ଲିହଇଁ
ସେ ଯାହା ଲିହଇଁ ବ୍ୟାସ ତାହା କହଇ ।
ବ୍ୟାସଙ୍କର ମୁଖୁଁ ଶୁଣନ୍ତି ସର୍ବ ଶିଷି
ଜ୍ଞାନଂ ପାଇଁଣ ସେ ଭଗତି କରନ୍ତି ଆସି

ସ୍ୱାମୀ ପରମ ନିରାକୁଳ ପଣ୍ଡିତ ମହାବୁଦ୍ଧି
ଜଗୁଜନ ନାଥ ଜାଣଇ ଗୁଧିବୁଦ୍ଧି ।
ଆହୋ ଯୁଗତେ କଳି ଯୁଗ କଳି କଳୁଷ ପାଶୀ
ସକଳ କଳା ଘେନି ସେ କଳାବର୍ଣ୍ଣ ଦିଶି ।
ସକଳ ଧାରଣ ଏ ନାରାୟଣ ନାମ ଗୋଟି
ଭାବଇ ହୃଦଗତେ କଳି କଳୁଷ ଯାଇ ଫିଟି ।
ଯଜ୍ଞେରପୁର ବାସେନୀ ଗୋ ସାରୋଳ ଚଣ୍ଡୀ ଦେବୀ
କୃପାଜଳ ନନ୍ଦନୀ ଦେବୀ ଶିବର ବଲ୍ଲଭୀ ।
ସେ ମୋତେ ପ୍ରସନେ କହିଲେ ଯେବଣ ବାଣୀ
ମୁହିଁ ତାହା ଲେଖନ କଲି ବ୍ୟାସଙ୍କ ମୁଖୁଁ ଶୁଣି ।
ସେ ସର୍ବ ମଙ୍ଗଳା ଚରଣେ ଲଏ ଭାବି
ମୁନି ନିସ୍ତାର ଭାବେ ବୋଲେ ସାରୋଳା ଦାସ କବି ।
ହେ ବୁଧଜନେ ନେ ଘନିମା ମୋର ଦୋଷ
ସମସ୍ତ ଝଗଡ଼ ଛାଡ଼ି କୃଷ୍ଣନାମ ଘୋଷ ।୧୦୮୦।
ପୁଛନ୍ତେ ଶୁଣନ୍ତେ ମୁକତି ଗତି ଅଛି
ଧନ ପୁତ୍ର ମନେ ଯେ ଯାହା ବାଞ୍ଛି ।
ଆସନ ସମାର୍ଜନା କଲେ ଯେ ନାରଦ ମହାମୁନି
ବସିଲେ ମହାତ୍ମା ପାଦଅର୍ଘ୍ୟ ଘେନି ।
ସକଳ କୁଶଳ ପଚାରନ୍ତି ବ୍ରହ୍ମଋଷି
ଅସୁର ଭୁବନ ସୁଲଭ ଦେଖିଣ ପ୍ରଶଂସି ।
ନାବଦଙ୍କ ଇଦଂ ବାକ୍ୟ ଶୁଣ ହୋ ଶମ୍ଭୁ ନିଶମ୍ଭୁ
ବଡ଼ାଇ ସୁନ୍ଦର ତୋର ଭୁବନ ଗୋଟି ବାବୁ ।
ଯେସନେକ ସମ୍ପଦ ଦେଖିଲୁ ତୋହର ପୁରୀ
ଅସୁର କୁଳ ଦୁଲଭ ଏ ଯେନାବତୀ ନଗ୍ରି ।
ପୂର୍ବେ ରତ୍ନଗିରି ପଶ୍ଚିମେ ସିଙ୍ଘଗିରି
ଦଖିଣେ କୁଣ୍ଡଗିରି ଉତ୍ତରେ ବିଙ୍ଗଂଗିରି
ଏ ଚାରି ପର୍ବତ ଅଟନ୍ତି ଆକାଶ୍ୱ ଭେଦି
ବହଇ କଣୟଭଦ୍ରା ଭୋଗ ନାମେ ନଦୀ ।
ନାରଦେ ବୋଇଲେ ଅପୂର୍ବ ଭୁବନ ଚାହିଁ
ଏସନେକ ଭୁବନ ତୁଲାଇତ ନାହିଁ ।
ନାରଦେ ବୋଇଲେ ଭୁବନ ଅମରାବତୀ
ତହିଁକି ପଟାନ୍ତର ଯେ ଭୁବନ ଜେନାବଳି ନଗ୍ର ହେତି ।
ଅମରପୁରକୁ ପଟାନ୍ତର ଅଟଇ ଏ ଭୁବନ
ଚାରି ପଦାର୍ଥ ମାତ୍ରକ ନାହିଁ ଯେହୁ ସ୍ଥାନ ।୧୦୯୦।
ଶମ୍ଭୁ ନିଶମ୍ଭୁ ପଚାରିଲେ କହ ମୁନିଦେବ
କେବଣ ଚାରି ପଦାର୍ଥଯେ ଏଥକୁ ଅପୂର୍ବ ।
ନାରଦେ ବୋଇଲେ ହୋ ଅଇରାବ୍ରତ ହସ୍ତୀ
ଆଉ ଅପୂର୍ବ ହୋ ରମ୍ଭା ଯୁବତୀ ।
ଉଚ୍ଚିଶ୍ରବା ଅଶ୍ୱ ପାରିଜାତେକ ପୁଷ୍ପଇ
ଏତେକ ପଦାର୍ଥ ଆମ୍ଭ ମନକୁ ଆସଇ ।
ମୁନିଙ୍କର ବଚନି ଶୁଣି ବୋଲନ୍ତି ଶମ୍ଭୁ ନିଶମ୍ଭୁ
ଆମ୍ଭର ଦର୍ପେ କରି ସାଧିକଲୁ ସବୁ ।
ଆସ୍ତାନେ କହିଲେ ଶମ୍ଭୁ ନିଶମ୍ଭୁ ବେନି
ଅମରାବତୀକି ଯାଉ ଦୂତ ଶ୍ରୀମୁଖ ଆମ୍ଭର ଘେନି ।

## ଶ୍ରୀ ମହିଷାସୁରର ଆଜ୍ଞାପତ୍ର

ଶ୍ରୀ ମତ ପ୍ରସନା କରତାର ନାଥ ନମସ୍ତେ
ଅନାଦି ଆଦି କଶ୍ୟପ ଗୋତ୍ରେ ।
ଶ୍ରୀ ରାହୁ ରମଣ ପ୍ରଦୀପ
ସିଙ୍ଘଳା ଗୁଣ କୁଳ ଉତକର୍ମ ।
ପରମାନନ୍ଦ ମାଧୁର୍ଯ ଉର୍ଧବଳ ମୂର୍ତ୍ତି ।
ଶ୍ରୀ ଚତୁର୍ଦ୍ଦଶ ଭୁବନେ ଆଦିଗତି ।
ବିବୁଧ ଭୁବନ ପାତାଳ ଭୁବନ ଉଦେକ ପାଟଣା ଚକ୍ରପାଟଣା
ଶ୍ରୀ ମହାଥାଣୁ ମହାପ୍ରଭୁ । ବିରଞ୍ଚିବର ପ୍ରସାଦ ।
ସିଙ୍ଘଳ ଦୀପକୁ ଉଦିତ ସେ ପଦ ।
ଦେବ ଲୋକ ନର ଲୋକ ଗନ୍ଧର୍ବ ଦକ୍ଷ କିନ୍ନରଇ
ଗ୍ରହଗଣ କାଳଗଣ କଳିକଳଙ୍କ ରିକ୍ଷ ରାକ୍ଷସଇ ।
ଏହାନ୍ତ ଅନର୍ଗଳ ଧୂମାନ୍ତେକ
ଉତ୍ତର ଦଖିଣ ପୂର୍ବ ପଶ୍ଚିମ ଚତୃର୍ଦ୍ଦଶ ଭୁବ ନେ ।
ବ୍ରହ୍ମ କ୍ଷତ୍ରୀ ବଶ୍ୟ ଶୂଦ୍ର ଦତ୍ୟ ଦାନବ
ଏକସାଦ ଲୋକଙ୍କ ଉପର ସ୍ଥାପନ ।
ଚାରଣ, କିନ୍ନର, ଦତ୍ୟ ଅସୁର ମାନମର୍ଦ୍ଦନ
ଅସୁର ଲୋକକଇ ଧାଡ଼ି ଚଢ଼କ ।
ନାଗ ଲୋକକୁ ଗରୁଡ଼ା ଆସନ
ଭୂତ ଭବିଷ ବ୍ରତମାନ ।
ତ୍ରିଗୁଣ ତନ୍ତ ହୃଦଗତ
ଦେବଗୁରୁ ଶହସ୍ର ଗୁରୁ ଶାହାସ୍ର ଗୁରୁ
ଧନୁ ସଙ୍କେତ ଖଡ଼ଗ ଗୁରୁ ।
ପିତାମହର ବର ପ୍ରସାଦେ
ନାଶକର ଉପରେ ବୀରତୂର ।

ଜମ୍ବୁ ଦୀପ ସିଙ୍ଘଳ ଦୀପ କୋଶଳ ଦୀପ
ଉଦେ ଦୀପ ଚନ୍ଦ୍ର ଦୀପ ମଣ୍ଡଳ ।
ନବ ଦୀପ ସପତ ସାଗର ଚୂଡ଼ଣ
ରକ୍ତବୀର୍ଯ ଚାମର ବେମାଳ ବୀରଘଣ୍ଟ ଧୂମଲୋଚନ କାନ୍ତିମାଳ ।
ଚଣ୍ଡ ମୁଣ୍ଡ ଶମ୍ଭୁ ନିଶମ୍ଭୁ ବୀରବର ଶରଣ ଉଧାରଣ
ଲଯ୍ୟା ଚୂଡ଼ଙ୍ଗ କାଶୀ କଉଶିକ ନେପାଳ
ପଶୁପତ୍ର ଗଉଡ଼ ଗାଜଣ ତିହୁଡ଼ି ।
ମଳେବ ଗୁଜ୍ଜର ମଗଧ ମଚ୍ଛ ମରହଟ୍ଟ ଶାଖା ସଉରାଷ୍ଟ୍ର
କାଞ୍ଚି ମହେନ୍ଦ୍ର ମାଳେବ ବିଜାନ୍ତେକ ।
ଯମୁନା ଶବରୀ ଦୁରାନ୍ତେକ
ଏକ ଚକ୍ର ଗହଣ ଖଣ୍ଡ ମଣ୍ଡଳ ।
ବାର ରାଷ୍ଟ୍ର ଛତିଶ ମୋଣ୍ଡୋଳ କୁମାରୀ ଉଜାରି
ମୃତୁ ମଣ୍ଡୋଳ ରାଜାମାନଙ୍କୁ ଥାପନା କରି ।
କଇଛା ଜଗଜେଠୀ ଶରଣ ଈଶ୍ୱର
ସୁର ସିଧା ମୁନି ଜନ ମହାମଲ ।
ସଜନ ଜନ ସୋଦର ଦୁର୍ଜନ ଦର୍ପ ଚୂଡ଼ଣ
ବୋଧିଦେବ ଶିରୋମଣି ।
ରାଜାଧି ରାଜାମାନଙ୍କୁ ଆର୍ଯନା କରି
ପରମ ଯୋଗେଶ୍ୱର ଅଭଏ ମାନଗୋବିନ୍ଦ ।
ତ୍ରିଭଗଂ ପୁର ମଣ୍ଡଣ
କାମେନୀ ମନସିଜ ସିଙ୍ଗାର ମହାନିଧି ।
ସିନ୍ଧୋପସିନ୍ଧୋବାସନି ଧୂମାନ୍ତେକ
ହଇଜ ଚକ୍ର ଚୂଡ଼ାମଣି ।
ଦେବାଧିଦେବ ରାଜ୍ୟେଶ୍ୱର
ବୀରବର ସୋହଡ଼ ସୁନ୍ଦର ।
ଶ୍ରୀ ମଏଷାଂସୁର ପାଦେ ଶତ ତ୍ରିନୟ ନମ
ଅମରାବତୀ ସ୍ୱର୍ଗ ଇନ୍ଦ୍ରକୁ ନାମେ ଶ୍ରୀମୁଖ ପ୍ରସାଦ ।
ଅଏରାବ୍ରତ ମହାନାଗ ପାରିଜାତେକ ଉଚ୍ଛିଶର୍ବା ଅଶ୍ୱ ରମ୍ଭାକନ୍ୟା
ଏ ଚାରି ପଦାର୍ଥ ଘେନି ଉଠି ଆସିବୁ ।
ଶ୍ରୀମୁଖ ସମାପତ ।
ସହସ୍ର ପ୍ରଶସ୍ତ ବୋଲି ବେନି ସେନାପତି
ତାହାନ୍ତ ରାଇ ଶମ୍ଭୁ ନିଶମ୍ଭୁ ଆଜ୍ଞା ଦିଅନ୍ତି ।
ଶ୍ରୀମୁଖ ଘେନି ଯିବ ଅମର ସ୍ୱର୍ଗେ
ଇନ୍ଦ୍ର ଦେବତାକୁ ଘେନି ଆସ ବେଗେ ।
ରାଜାର ଆଜ୍ଞା ବଚନେ ନିରାଧାର
ହୃଦେ ଶ୍ରୀମୁଖ ଘେନି ଗଲେକ ବେନି ବୀର ।
ଆକାଶ ମାର୍ଗେ ଯେ ଚଳନ୍ତି ବେନି ବୀରେ
ବିରଞ୍ଚ ବରେ ପଶନ୍ତି ଶୂନ୍ୟ ପଥରେ ।
ନାରଦେ କହିଲେ ଶୁଣ ହୋ ପୁରନ୍ଦର
ମଏଷାଂସୁର ଶ୍ରୀମୁଖ ଆସଇ ସ୍ୱର୍ଗ ପୁର ।୧୧୦୦।
ଶୁଣି ଦ୍ରହସିତ ହୋଏ ଦେବରାଏ
ହୃଦୟ ମଧରେ ସେ ପାଇଲା ମହାଭଏ ।
ଗଳିତ ତ୍ରିପଣ୍ଡ ଗହନ ନିଶ୍ୱାସ
ଗଗନ ଘୋଟିଲେ ସେ ବେନି ଯେ ରାକ୍ଷସ ।
ଆହୋ ଅସକନ୍ଦ ବୋଲି ଡାକନ୍ତି ରାକ୍ଷସ ଦୃଷ୍ଟ
ତଇଲୋକ୍ୟେ ଈଶ୍ୱର ସେ ମଏଷାଂସୁର ଦ୍ରପିଷ୍ଟ ।
ଆସନ ତେଜି ଆସ ମଘବାନ
ପାୟୋଡ଼ା ପାଡ଼ି ସ୍ୱାମୀର ଶ୍ରୀମୁଖ ଗୋଟି ଘେନ ।
ଶୁଣି କୋପାନଳ ସେ ବଦନ୍ତି ଦେବରାଏ
ଯୁଗତେ ସୁନାସୀର ମହା ତେଜମଏ ।
ସ୍ୱାମୀର ତେଜ ଦେଖି ଅଙ୍ଗାର ପନଙ୍ଗେ
ଅସୁରଙ୍କର ବାଳ ସେ ଧଇଲେ ଅତି ବେଗେ ।
ପ୍ରଶୁ କୋଠାର ଘେନି ସେ ବିଦ୍ୟାଧର
ଦୂତଙ୍କର ଉପରେ ସେ କଲାକ ପ୍ରହାର ।
ମହା ପ୍ରଚଣ୍ଡ ବିଦ୍ୟାଧର ବିଘାତେ
ବେନି ଖଣ୍ଡ ହୋଇଁ ସେ ଲୋଟିଲେ ଦୁରାନ୍ତେ ।
ଅସୁରଙ୍କର ନାଶ ଦେଖି ବୋଇଲେ ନାରଦେ
ଦୂତଙ୍କ ବିନାଶ କିମ୍ପା କଲୁ ହୋ ଅସ୍କନ୍ଦେ ।
ସତ୍ୟ ଦ୍ୱାପର ତ୍ରେତୟା କଳିଯୁଗ ଚାରି
ରାଏବାର ଘାତେ ହୋ ବ୍ରହ୍ମହତ୍ୟା ସରି ।୧୧୧୦।
ନାରଦ ମୁଖେ ଏସନେକ ବାକ୍ୟ ଶୁଣି
ପ୍ରତଜ୍ଞା କରି ସେ ବୋଲନ୍ତି ବଜ୍ରପାଣି ।
ଅମରାଧିପୁରେ ମୁଁ ରାଜା ଦେବାଧି
ଯମ ରାଜା ପୁରେ ଜମ୍ଭୋ ଦଇତ ଭେଦି ।
ତିନି ସ୍ୱର୍ଗରେ ମୁଁ ଅଟଇ ହାଦେ ରାଏ
ଯମ ଦର୍ପ ମର୍ଦ୍ଦନ କାହାକୁ ମୋର ଭଏ ।
କିଞ୍ଚିତ କୋପେ ନାଶ ଗଲେ ସହସ୍ର ପ୍ରଶସ୍ତ
ଅନେକ ଯୁଗ ଭୋଗ କଲେ ବେନି ଦଇତ ।
ଆହୋ ପରୀକ୍ଷ ରଜା କୁମ୍ଭ ମାସ ଶୁକ୍ଲପକ୍ଷ ଦୁତୀଆ ରବିବାର
ଅଶ୍ୱିନୀ ନକ୍ଷତ୍ର ଅଟଇ ସେ ଦିନର ।

ବାବ୍ୟ ନାମେ କରଣ ଆଜୁସ ନାମେ ଯୋଗ
ଅନ୍ତ ସୋଧନ ନାମେ ଅଟଇ ସତ୍ୟ ଯୁଗ ।
ଢେନାବତୀ ନର୍ଗେ ଶମ୍ଭୁ ନିଶମ୍ଭୁ ବେନି
ଆସ୍ଥାନେ ବିଜେ କଲେ ଅମନାତ୍ୟ ପାତ୍ର ଘେନି ।
ଅନ୍ଧେକ ନାମ ମଏଷାଂସୁର ମନ୍ତ୍ରୀ
ଭୂତ ଭବିଷ୍ୟ ଜ୍ଞାତା ସେ ଜାଣଇ ସର୍ବ ପ୍ରୀତି ।
ବଦୟନ୍ତି ପରୀକ୍ଷ ଶୁଣ ଶୁକ ମୁନି ହେ
ଯେ କଥା ଲାଗିଲା ମୋତେ ସନ୍ଦେହେ ।
ନବ ଦୀପ ପୃଥୀ ସାଧିଲା ଯେବଣ ମଷାଂ
ମନ୍ତ୍ରୀ ଅନ୍ଧ ଯେ ତାଙ୍କୁ କିମ୍ପା କଲା ଆଶା ।୧୧୨୦।
ନୟନ ସେ ଯେବେ ଅନ୍ଧ ତାର ଅଟଇ
ସେ କିସ ମନ୍ତ୍ରୀପଣ ବୁଦ୍ଧି ପ୍ରକଟଇ ।
ଏ କଥା ମହାତମା ବଡ଼ାଇ ଅପୂରକ
ଯେ ସନ୍ଦେହ ମୋତେ ଫେଡ ହେ ମୁନି ଦେବ ।
ବଦୟନ୍ତି ଉପାଏନ ସିତ ବ୍ରହ୍ମବେତା
ଶୁଣ ହୋ ମହାରାଜା ପଣ୍ଡିତ ମହାଜ୍ଞାତା ।
ରକ୍ଷ ଭକ୍ଷର ଏ ଅଟନ୍ତି ପଣ ନାତି
ଏହାଙ୍କର ପିଅର ସେ ଅଟଇ ପ୍ରହେତି ।
ଏହାଙ୍କର ଭଗ୍ନୀ ନାମ ସଜବାଳୀ
ମଷାଂର ମାତା ସେ ବାଳୁତ ପ୍ରତିପାଳି ।
ମଷାଂସୁର ରାଜାର ଯହୁଁ-ଦେଖିଲା ଅନୀତି
ଅନେକ ତିଆରି ସେ ଅନ୍ଧେକ ସେନାପତି ।
ବାବୁ ଅନେକ ସମ୍ପଦ ଅରଜିଲୁ ବାହୁବଳେ
କଷ୍ଟ ହୋଇଲେ ମୃତ୍ୟୁ ହୋଅଇ ଅଳପ କାଳେ ।
ଅନେକ ବାଗେ ସେ ତିଆରିଲା ବିରୁପାକ୍ଷ
ଶୁଣି କୋପ କଲା ସେ ଅସୁର କୁଳ ଦକ୍ଷ ।
ମାତୁଳ ନୋହିଲେ ପକାନ୍ତି ମୁଣ୍ଡମୋଡ଼ି
ରାଗେଣ ମଷାଂସୁର ବେନି ଚକ୍ଷୁ ତାର ତାଡ଼ି ।
ଚକ୍ଷୁ ତାଡ଼ନେ ପଡ଼ିଲା ମୁହଁ ମାଡ଼ି
ଭୋ ଈଶ୍ୱର ବୋଲି ଦେଲାକ ସିଂଘ ରଡ଼ି ।୧୧୩୦।
ଅନାସ୍ତ ଲୋକଙ୍କର ବିକଳ ଦେଖି
ବଉଳ ବାହାନେ ବିଜେ କଲେ ବିରୁପାକ୍ଷି ।
ବୋଲନ୍ତି ସୋଡ଼ଳେ କି ନିମନ୍ତେ କାନ୍ଦୁ
ପରଲୋକେ କାତର ମୁଁ ପରଲୋକେ ବନ୍ଧୁ ।
ସ୍ୱାମୀ ରକ୍ଷ ଭକ୍ଷ ଅଂଶେ ହେତି ପ୍ରହେତି
ହେତି ପ୍ରହେତିର ପୁତ୍ର ସୁରକ୍ଷର ପଣ ନାତି ।
ସ୍ୱାମୀ ମଷାଂସୁରର ମୁ ଅଟଇ ମଉଳା
ଉପଦର୍ପ ଦାନେବ ଅନେକ ଅଛାତି କଲା ।
ତିଆରିଣ କହିଲି ମୋତେ ନପାରିଲା ଦେଖି
ରାଗେଣ ମଷାଂସୁର ମୋ ତାଡ଼ିଲା ବେନି ଆଖି ।
ଈଶ୍ୱରେ ବୋଇଲେ ରେ ମୁହିଁ ବିରୁପାକ୍ଷ
ତୋହୋର ନାମ ବିରୁପାକ୍ଷ ଆମ୍ଭର ମଇତ୍ର ପ୍ରତକ୍ଷ ।
କହୁଂ କହୁଂ ଦୟା ବସିଲା ତ୍ରିଲୋଚନ
ଈଶ୍ୱରେ ବୋଇଲେ ତୋତେ ଦେବା ଚକ୍ଷୁ ଦାନ ।
ଅନ୍ଧେକ ବୋଇଲା ମୁଁ ସମ୍ପଦ ବିପଦ ଏହାର ନ ଦେଖିବି
ବେନି ଚକ୍ଷୁ ଅନ୍ଧ ହୋଇ ଏହି ରାଜ୍ୟେ ଥିବି ।
ଅଭଗତେ ପ୍ରସନେ ଯେବେ ହୋଇଲୁ ବିଶ୍ୱନାଥ
ହୃଦରେ ଚକ୍ଷୁ ଦେବ ମୋହୋର ହୋଉ ପରାପତ ।
ମନ୍ତ୍ରୀ ପଣକୁ ମୁଁ ହୋଇବି ଶକତା
ସର୍ବ ଦୃଶ ମୋତେ ଭୂତ ଭବିଷ୍ୟ ଜ୍ଞାତା ।୧୧୪୦।
ପରମ ସାନନ୍ଦ ହୋଇଲେ ଶୀତାଂଶୁ
ଯା ତୋତେ ବୈକୁଣ୍ଠ ଭୁବନ ଯାଏ ଦିଶୁ ।
ଅନ୍ଧର ମହାକଷ୍ଟ ଦେଖିଣ ମହାଦେବ
ଯେ ଅବା ଅନ୍ଧ ହେବ ତାର ହୃଦେ ଚକ୍ଷୁ ଥିବ ।
ଆହୋ ଅରୀକ୍ଷ ରାଜା ଯାହା ପ୍ରସନ୍ନେ ବୋଇଲେ ତିୟମ୍ବେକ
ତେଣୁ କରି ସମସ୍ତ ସେ ଜାଣଇ ଅନ୍ଧେକ ।
ସେ ଅନ୍ଧେକ ମନ୍ତ୍ରୀକି ପଚାରିଲେ ଶମ୍ଭୁ ନିଶମ୍ଭୁ
ଅମରାବତୀ ଦୂତଙ୍କର ବାରତା କହ ସବୁ ।
ହୃଦଗତେ ଚିନ୍ତ ଜାଣିଲେ ଅନ୍ଧେକ
ଶୁଣ ଦେବ ମହାରାଜା ପ୍ରସନ ତ୍ରିଅମ୍ବେକ ।
ଶ୍ରୀମୁଖ ଶୁଣି କୋପ କଲା ବଜ୍ରପାଣି
ସହଶ୍ର ପ୍ରଶସ୍ତକୁ ପକାଇଲା ହାଣି ।
ଅନ୍ଧ ମନ୍ତ୍ରୀ ମୁଖେ ତଥ୍ୟ ବାରତା ଶୁଣି
ସ୍ୱର୍ଗକୁ ଥାଠ ମୋର ସାଜ ଏହିକ୍ଷଣି ।
ରାଜାର ବଚନେ ସାଜିଲେ ସମଦଣ୍ଡ
ଦୁନ୍ଦୁଭି ଶବଦେ ସେ କମ୍ପିଲା ବ୍ରହ୍ମାଣ୍ଡ ।
ସେନାମାନନ୍ତ ରାଇ ବୋଲନ୍ତି ଶମ୍ଭୁ ନିଶମ୍ଭୁ ବେନି
କେବଣ ଦିଗକୁ ଯିବା ଅସୁର ବଳ ଘେନି ।
ବିଜେ କର୍ଣ୍ଣ ରଥ ଯେ ସାଜିଲେ ମହାବଳ
ରଥରେ ଯୋଚିଲେ ସେ ସହସ୍ରେ ଶାର୍ଦ୍ଦୋଳ ।୧୧୫୦।

ମନୁ ପବନୁ ବେଗେ ବାହାର ରଥ
ପବନୁ ବେଗେ ଚଳଇ ଅସୁର ବଳ ପଥ ।
ନାରଦେ କହିଲେ ଯେ ଶୁଣ ପୁରନ୍ଦର
ଶମ୍ଭୁ ନିଶମ୍ଭୁ ବାହିଲେ ତୋର ଅମରାବତୀ ପୁର ।
ଆସ୍ଥାନ ତେଜିଣ ଉଠିଲେ ପୁରୋହିତ
ସାଜରେ ବେଗେ ତୋହର ଅଏରାବ୍ରତ ।
ଶ୍ରୀ ଅଙ୍ଗେ ବଜ୍ର ସାରଙ୍ଗ ଧନୁ ତ୍ରୋଣ
ଚଉଷଠି କୋଟି ତୁଲେ ବୃନ୍ଦାଅର୍କଗଣ ।
ନନ୍ଦାବ୍ରତେକ କୋନ୍ତ କରେ ଚକ୍ର ଯାଠି ।
ମୁଦ୍ଗର ଶକତି ଚକ୍ର ଶସ୍ତ୍ର କୋଟି କୋଟି ।
ମେଘନାଦ ସନ୍ନିଧେ ଚଳଇ ହୟବର
ପ୍ରତଗ୍ୟା ସମ୍ଭର୍ବେ କରି ଯେ କମ୍ପଇ ତିନିପୁର ।
କୋବେର ବାରାନିଧି ଅପୂର୍ବ ରତ୍ନମାନ
ରତ୍ନ ଆଭରଣେ ଦିଶନ୍ତି କୋବେର ସମାନ୍ୟ ।
ଏସନ ସମ୍ଭର୍ବ ସେ ସୁରବର ସେନା
ଚଳନ୍ତି ଗନ୍ଧର୍ବେ ବାନ୍ଧି ବୀରବର ବାନା ।
ଏସନେକ ସମଏ ଇନ୍ଦ୍ର ଥାଠ ପଲାଣି
ବ୍ରହ୍ମାଣ୍ଡ କମ୍ପିଲା ଯେ ଦୁନ୍ଦଭି ବାଦ୍ୟ ଶୁଣି ।
ଶୁମ୍ଭ ନିଶମ୍ଭୁ ଆସି ହୋଇଲେ ନିକଟ
ଦେବେ ଅସୁରେ ହୋଇଲେ ଯେକ ଭେଟ ।୧୧୬୦।
ଇନ୍ଦ୍ର ବୋଇଲା ହୋ ଶମ୍ଭୁ ନିଶମ୍ଭୁ
ମୃତୁ ମଣ୍ଡଳ ରାଜା ତୁମ୍ଭେ ଜିଣିଲ ସବୁ ।
ମୁହିଁ ଦେବରାଜ ଆକାଶ ରକ୍ଷପାଳ
କିମ୍ପୁତ କାରଣେ ତୁମ୍ଭେ ମୋତେ ଖଡ଼ିଆଳ ।
ଶମ୍ଭୁ ନିଶମ୍ଭୁ ବୋଇଲେ ଶୁଣ ହୋ ସୁର ନାହା
ମହେଂଷାସୁର ଦାନେବ ଯେ ନ ଜିଣିଲା କାହା ।
ଦେବ ଦାନବେ ଆମ୍ଭେ ଏକ ସୋଦର ବେନି ଆଦି
ଜମ୍ଭୁ ଦତ୍ୟ ମାରି ତୁ ଅସୁର କୁଳ ବିବାଦି ।
ଦୂତ ପଠି ବେନି ତୋତେ ପେଷିଲା ମହୀଦାସ
ରାଜା ବଲ୍ଲଭ ସେ ପ୍ରାଣକୁ ବିଶ୍ୱାସ ।
ତାହାକୁ ନାଶ ଯେ କଲ ଅନିମିତେ
ଏସନେକ କୃତ କରିବାକୁ ନାହିଁ ନା ଜଗତେ ।
ଅଏରାବତ ହସ୍ତୀ ପାରିଜାତେକ ତରୁ
ରମ୍ଭା ଅପସରୀ ଉଚିଶ୍ରବା ଅଶ୍ୱ ଆମ୍ଭଙ୍କୁ ଦେଲେ ବାହୁଡ଼ିବୁ ।
ଦୂତକୁ ନାଶକଲୁ ଯେ ତୋହୋର ମୂଢ଼ ପଣ
ଦୂତ ଲୋକକୁ ମାଇଲେ ଅତି ଅକାରଣ ।
ଆମ୍ଭେ ଅସୁର ଯେ ଚାଣ୍ଡାଳ ଜନ୍ମ ବହୁ
ଧର୍ମ ଲଙ୍ଘିବାକୁ ପୁଣ ଭୟେ କରିଥାଉ ।
ନାଶନ୍ତ କାଳକୁ ଯେ ଛାଡ଼ିଲୁ ସର୍ବ ଧର୍ମ
ସେ କାଳକୁ ଧର୍ମ ଛାଡ଼ଇ ପ୍ରାଣୀ ହୋନ୍ତି ମତିଭ୍ରମ ।୧୧୭୦।
ଶମ୍ଭୁ ନିଶମ୍ଭୁଙ୍କର ବଚନେ ବୋଲନ୍ତି ଦେବରାୟେ
ମୁହିଁ ସେ ଦେବରାଜା କାହାକୁ ମୋର ଭୟେ ।
ଶମ୍ଭୁ ବୋଇଲା ତୁ କହୁଅଛୁ ମନ୍ଦ
ମହେଷାଂସୁର ଆଜ୍ଞା ତୁ ପାଳିବୁଟିକି ଦେବ ଇନ୍ଦ୍ର ।
ବଦନ୍ତି ଦେବରାଜା ଶୁଣ ତୁମ୍ଭେ ବେନି
ମୁହିଁ କହି ଆସଇ ଦେବ ପଦ୍ମଯୋନି ।
ତାହାଙ୍କର ସିନା ସମସ୍ତ ଯେ ମୁହିଁ ରକ୍ଷ ପାଳେକ
ତାଙ୍କ ଆଜ୍ଞା ଘେନି ତୁମ୍ଭେ ଚଳିବାକ ।
କହିଣ ଦେବରାଏ ଚଳିଲେ ଧାତାର ସମୀପେ
ଅମର ମଣ୍ଡଳ ମାଡ଼ିଣ ବସିଲେ ଦଇତେ ।
ଅପଛରାମାନେ କେହି ନ ରହିଲେ ଡରେ
ସ୍ୱର୍ଗ ଛାଡ଼ି ପଳାଇଲେ ସେ ସ୍ୱର୍ଗର ବିଦ୍ୟାଧରେ ।
ଅପକ୍ଷରାଙ୍କ ମୋକ୍ଷପାନ କାମସେଣା ମୋହୋନୀ
ତାହାନ୍ତ ହରିଲେ ସେ ଶମ୍ଭୁ ନିଶମ୍ଭୁ ବେନି ।
ଏମନ୍ତ ସମଏ ସେ ଦେବ ସୁରପତି
ଇନ୍ଦ୍ର ପ୍ରବେଶ ହୋଇଲା ବ୍ରହ୍ମାଣ୍ଡ ଯଶୋବନ୍ତୀ ।
ନିତ୍ୟକର୍ମ ବିଧି ପିତାର ଲୟ ବେଳେ
ମଘବା ଉଭା ହୋଇ ଅଛନ୍ତି ବ୍ରହ୍ମାର ସଭାତଳେ ।
ସମାଦି ନ ସାରଇଁ ଯେ ଦେବ ପଦ୍ମଯୋନି
କହି ନ ପାରଇ ସେ ଦେବ ବଜ୍ରପାଣି ।୧୧୮୦।
ପିତାକୁ ନବ ଦଣ୍ଡ ହୋଇଲା ପରବେଶ
ଇନ୍ଦ୍ର ଦେବତାକୁ ହୋଇଲା ନବ ସହସ୍ର ବରଷ ।
ସୁଖେଣ ଅମର ବିଳସନ୍ତି ଶମ୍ଭୁ ନିଶମ୍ଭୁ ବେନି
ବିହନ୍ତା ପୁରୁଷନ୍ତ ଘେନି ପାଳନ୍ତି ଭୁବନ ତିନି ।
ମେଘେ ଖଟିଲେ ସେ ଚଳିଲେ ଗ୍ରହଗଣ ମାନ
ନବଦୀପା ପୃଥୀ ସେ ସକଳ ସମ୍ଭାଳିଣ ।
ଯେ ଯାହା ଠାବେ ଦିଗପାଳେ କଲେ ଭୋଗି
ଅକାଳେ ମୃତୁପୁରୁ ସେ ନ ପାରିଲେ ଲଙ୍ଘି ।
ଶମ୍ଭୁ ନିଶମ୍ଭୁ ବସିଲେ ସ୍ୱର୍ଗେ ନବ ସହସ୍ର ବରଷ
ନର ନାଗ କିନ୍ନର ଜଣଙ୍କର ନାହିଁ ନାଶ ।

ନାଶକର ପଳାଇଲା ସେ ଯମର ଭଏ ନାହିଁ
ଜରା ଭୋଗ ମୃତୁ ପଶିବାକୁ ଆଉ କାହିଁ ।
ଏହେନ୍ତେକ କରି ମେଘକୁ ଆଜ୍ଞା ଦେଲା ଅସୁରା
ପ୍ରତିଦିନ ରାତ୍ର ପ୍ରହରକ ବରଷନ୍ତି ଦିବସେଣ ଖରା ।
ଖଣ୍ଡମଣ୍ଡଳ ନାହିଁ ଏକା ମହିଷାଂସୁରହି ସେ ରାଜା
ଯେ ଯାହା ଅରଜନ୍ତି ସୁଖେ ବିଳସନ୍ତି ଜନ ପ୍ରଜା ।
ଦଇତ ଦାନବେ ସେ ଉପଦର୍ପ ନାହିଁ
ଯାଜ୍ଞ ଯାଗନିକ କରନ୍ତି ସେ ମହାସୁପ୍ତ ପାଇଁ ।
ମଷାଂସୁର ରାଜାକୁ ଉଠିଲା ବହୁତ ଧ୍ୱନି
ଅନେକ ପରିପୂର୍ଣ୍ଣେ ପାଳିଲା ଭୁବନ ତିନି ।୧୧୯୦।
ମଷାଂସୁର ପଚାରଇ ସେ ଅନ୍ଧେକ ମନ୍ତ୍ରୀ ଘେନି
ବଡ଼ତି ଦେବତାଏ ପାଳିଲେ ପୃଥିବୀ ତିନି ।
ଅନ୍ଧେକ ମନ୍ତ୍ରୀ କହଇ ଶୁଣ ଜଗୁପତି
ତୋହୋର ରାଜ୍ୟେ ଚାରିକଥା ଅପୂର୍ବ ବୋଲି
କହିଲେ ନାରଦ ନିଭ୍ରାନ୍ତି ।
ଆହୋ ରମ୍ଭାକନ୍ୟା ପାରିଜାତେକ ତରୁ
ଅଜଏ ଅଏରାବ୍ରତ ଉଚ୍ଚିଶର୍ବା ଅଶ୍ୱ ଚାରୁ ।
ଯେହା ଶୁଣି ଶମ୍ଭୁ ନିଶମ୍ଭୁ ଇନ୍ଦ୍ରକୁ ଶ୍ରୀମୁଖ ଦେଲେ
ସହସ୍ର ପ୍ରଶସ୍ତ ଦୁହିଁକି ଦୂତ ବରଗିଲେ ।
ଶ୍ରୀମୁଖ ଘେନି ସେ ଗଲେ ବେନି ଦୂତ
ଦୁଇ ଦୂତକାରଙ୍କୁ ସେ ମାଇଲେ ପ୍ରୋହିତ ।
ତହିଁର ରାଗେ ଶମ୍ଭୁ ନିଶମ୍ଭୁ ବେନି
ଅମର ଆବୋରିଲେ ଘଉଡ଼ି ସହସ୍ରଯୋନି ।
ଅମର ସ୍ୱର୍ଗ ମାଡ଼ି ରହିଲେ ବେନି ବୀର
ବଡ଼ ସୁଲଭ ସେ ପାଳିଲେ ତିନିପୁର ।
ମେଘେ ପ୍ରଭୁତା କରି ନ କରନ୍ତି ବୃଷ୍ଟି
ନିତିଦିନ ରାତ୍ରେଣ ବରଷଇ ଜଳ ଫୁଟି ।
ଯମ ସହିତେ ଦେବ ପଳାଇଲେ ଡରେ
ନବ ସହସ୍ର ବରଷ ହୋଇଲା ମୃତୁ ନ ପାବନ୍ତି ନରେ ।
ଏତେ କାଳ ହୋଇଲା କାହାକୁହିଁ ନାହିଁ ଶଙ୍କା
ଧବଳ ଘର ପୁର କି ସେ ସୁବର୍ଣ୍ଣମଏ ଲଙ୍କା ।୧୨୦୦।
ତପୀ ଜପୀ ତପୋଧନି ଋଷି ବ୍ରାହ୍ମଣ
ଚିର ଆୟୁଷ ହୋଇ ତୋତେ ବାଞ୍ଛା କରନ୍ତି କଲ୍ୟାଣ ।
ଶୁଣି ଉଲ୍ଲସଇ ସେ ମଷାଂସୁର ଅସୁର
ସାଧୁ ଶମ୍ଭୁ ନିଶମ୍ଭୁ ପ୍ରାଣର ସୋଦର ।

ସନ୍ନିଧେ ରାଇଲା ରାଜା ଚାମର ବେମାଳ
ହୃଦେ ହୃଦ ଭୂଷଣ ମକୁଟ ହାର କୁଣ୍ଡଳ ।
ଏ ଭୂଷଣ ମୋହୋର ବେଗେ ଯାଅ ଘେନି
ଏହା ଘେନି ଶମ୍ଭୁ ନିଶମ୍ଭୁକୁ କରିବ ଦଇନି ।
ଆକାଶ ଭୁବନେ ଘେନିମ ତୁମ୍ଭେ ପୂଜା
ସ୍ୱର୍ଗପୁରେ ସେ ନ ପଶୁ ବିଡ଼ୋଜା ।
ରାଜାର ଆଜ୍ଞାରେ ସେ ଚାମର ବେମାଳ
ନବଲକ୍ଷ ଯୋଦ୍ଧା ସଙ୍ଗେ ଘେନି ବଳ ।
ଶମ୍ଭୁ ନିଶମ୍ଭୁଙ୍କୁ ଅନେକ ଉପହାର ମାନ
ଘେନିଣ ପ୍ରବେଶ ହୋଇଲେ ସ୍ୱର୍ଗ ଭୁବନ ।
କହନ୍ତି ଚାମର ବେମାଳ ତୋତେ ବହୁତ ପରଶଂସା
ବହୁତ ବିନୋଇଁ ତୋତେ କହିଲାକ ମଏଷାଂ ।
ଏ ରତ୍ନମାନ ତୁମ୍ଭେ କର ଆଭରଣ
ସୁବିଧାନେ ଯେମନ୍ତେ ପାଳନ୍ତି ଗ୍ରହଗଣ ।
ଏଥୁ ଅନନ୍ତରେ ଯେ ପରୀକ୍ଷ ନାମେ ରାଜା
ଶୁକମୁନିଙ୍କ ପଦ୍ମପାଦେ କଲାକ ଦିବ୍ୟପୂଜା ।୧୨୧୦।
ଇନ୍ଦ୍ର ଦେବତା ଯେ ଧାତା ତହିଁକି ଗଲା ମୁନିହେଁ
କିସ ବିଚାର ଯେ କଲାକ ସନ୍ଦେହେ ।
ଶୁଣ ମହାରାଜା କହନ୍ତି ଶୁକ ମୁନି
ସମାଦି ସରିଲା ସେ ଚାହିଁଲେ ପଦ୍ମଯୋନି ।
ପରୀକ୍ଷ ବୋଇଲା ଦେବ ଶୁଣିମା ଭଗବନ୍ତେ
ବ୍ରହ୍ମାର ସମାଦି ମୁନି ହେ କାହିଁର ନିମନ୍ତେ ।
କରତାର ନାଥ କେ ତା ତହୁଁ ବଡ଼ ଜାଣ
ତାହାର ସମାଦି କିମ୍ଭୂତ କାରଣ ।
ଶୁକମୁନି ବୋଇଲେ ରାଜା ପୁଚ୍ଛାକଲୁ ଯାହା
ସାବଧାନେ ଶୁଣ ହାଦେ କହଇଁ ମୁଁ ତାହା ।
ଚାରିଖାନି ଚଉରାଶୀ କୋଟି ଜୀବଜନ୍ତୁ
ସେହି ସେ ନବ ସୃଷ୍ଟିକର ବର ହେତୁ ।
ନିତ୍ୟେହେଂ ସର୍ଜନ କରୁଥାଇ ଚରଚା
ଯେ ଯେତେ ମାନକୁ ନିତ୍ୟେ କରଇ ଚିନ୍ତା ।
ଚତୃବଦନ ପିତାର ଅଷ୍ଟ ଆଖି
ଧାଏ ଅନୁକର୍ମେ ସବୁକୁହିଁ ଦେଖି ।
ଲଏ କରି ସବୁକୁହିଁ ଦିଅଇ ଯୋଗ କ୍ଷମ
ତହିଁ ସେ କରିଥାଇ ଜନ୍ତୁକର୍ମ ।
ନବ ସୃଷ୍ଟି ଚିନ୍ତା କରିବା ନିମନ୍ତେ

ତହିଁକି ସେ ଲଏ କରିଥାଇ ଅଠର ଦଣ୍ଡ ପରିଯନ୍ତେ ।୧୨୨୦।
ଆହୋ ପରୀକ୍ଷ ପୁଛାକଲୁ ଯେବଣ ବାରତା
ଏଥକୁ ସେ ସମାଦି ବସଇ ଦେବ ଧାତା ।
ଜୟ ତୁ ପିତାମହ ଅଭଏ ବିରଞ୍ଚି
ଅଶେଷ କୋଟି ବ୍ରହ୍ମାଣ୍ଡକୁ ଲଏ ଯାହାର ସଞ୍ଚି ।
ବାମେ ପୂର୍ବେ ବଦନେ ଅର୍ଥବାସୀ
ପଶ୍ଚିମେ ବିରଞ୍ଚି ବଦନେ ଋକବେଦ ଭାଷି ।
ଡାହାଣେ ଧାତାର କରତାର ବଦନ
ଏଣେ କରି ସାମ ବେଦ କରଇ ଧ୍ୟାନ ।
ଆଗେଣ ବ୍ରହ୍ମା ବଦନ ବିହନ୍ତା
ଯଦୁର୍ବେଦ ଭାଷଇ ଅଭଏ ବକତା ।
ଚର୍ତୁମୁଖେ ଚାରି ବେଦ ଆଧାନ
ମହାବ୍ରହ୍ମ ବୋଧତେ ସେ ବାକ୍ୟ ବ୍ରହ୍ମ ।
ଶ୍ରୀ ବ୍ରହ୍ମ ଦେବତା ଚରଣେ ନମସ୍ତେ
ବଦୟନ୍ତି ଶୂଦ୍ରମୁନି ସାରୋଳ ଦାସ ଅଭଗତେ ।

ଏଥୁ ଅନନ୍ତରେ ପରୀକ୍ଷ ନାମେ ରାଏ
ଶୁକ୍ରବ୍ରହ୍ମ ପାଦେ ପ୍ରଳମ୍ଭିତ କଏ ।
ମୁନି ହେ ପିତାର ସମାଦି ଢଳିଲା ଯେତେବେଳେ
କିସ ପ୍ରତିବାକ୍ୟ ସେ ବୋଇଲା ଅଖଣ୍ଡଳେ ।୧୨୩୦।
ବଦୟନ୍ତି ଶୁକବ୍ରହ୍ମ ପାରଶର ନାତି
ବ୍ୟାସଙ୍କୁ ଲଏ କରି ସେ କହଇ ସୁମତି ।
ଏସନେକ ସମଏ ସମସ୍ତ ବିଦ୍ୟାଧରେ
ଅପସରା ଗଣେ ସେ ଅଛନ୍ତି ସଙ୍ଗରେ ।
ସ୍ୱାମୀ ତୁମ୍ଭେ ଯେ ଅମର ଭୁବନ ଅଇଲ ଛାଡ଼ି
ଶମ୍ଭୁ ନିଶମ୍ଭୁ ବସିଲେ ଅମର ସ୍ୱର୍ଗ ମାଡ଼ି ।
ସ୍ୱାମୀ କାମସେଣୀ ମୋହୋନୀ ତୋହୋର ଅପକ୍ଷରା ବେନି
ତାହାନ୍ତ ହରିଲେ ସେ ଶମ୍ଭୁ ନିଶମ୍ଭୁ ବେନି ।
ପୁଣି ହିଁ ଅଇଲେ ଚାମର ବେମାଳ
ଅନେକ ରାକ୍ଷସ ତୁଲେ ସନ୍ୟ ବଳ ।
ବ୍ରହ୍ମାଙ୍କ ଲଏ ତେଜିବାର କାଳେ
ଇନ୍ଦ୍ର ଦେବତା ପ୍ରଣପତ୍ୟ ବ୍ରହ୍ମାଙ୍କ ସଭାତଳେ ।
ଇନ୍ଦ୍ର ପ୍ରଣପତ୍ୟ ଦେଖିଣ ପିତାମହ
ଉଠ ହୋ ପୁରନ୍ଦର କିସ କାର୍ଯ୍ୟ ତୋହୋର କହ ।
ବୋଲଇ ଅମରାଧି ନାଥ ତୁ ବିହି ବିଧାତା
ତୁର ଦେବ ଛାଡ଼ିଲୁ ସୃଷ୍ଟିର ଚିନ୍ତା ।
ତୋହୋର ଆଜ୍ଞାରେ ମୁହିଁ ଅମରାଧି
ମୁ ତଇଲୋକ୍ୟ ପାଳଇଁ ତୋହୋର ବୁଧି ।
ମଷାଂସୁର ବୋଲି କରି କପିଳ ସିଂଘର ବାଳ
ସେ ମୋହୋର ଘେନିଲେ ଅମର ମଣ୍ଡଳ ।୧୨୪୦।
ପାରିଜାତେକ ତରୁ ଅଏରାବ୍ରତ କରୀ
ରମ୍ଭା କନ୍ୟା ଉଚ୍ଚିଶର୍ବା ଅଶ୍ୱ ମାଗିଲେ ମୋତେ ଚାରି ।
ଶ୍ରୀମୁଖ ଦେଇଁଣ ପେଷିଲେ ମୋତେ ଦୂତ
ଧିଘାଂସି ବଚନ ମୋତେ ବୋଇଲେ ବହୁତ ।
ସ୍ୱାମୀ ତୋହୋର ପ୍ରସନେ ମୁହିଁ ଦେବରାଜା
ରାଗେଣ ଦୂତ ଦୁହିଁକି ମୁଁ କଲି ପ୍ରାଣତେଜ୍ୟା ।
ସେ ରାଗ ଘେନି ଶମ୍ଭୁ ନିଶମ୍ଭୁ ବେନି
ସନ୍ୟବଳ ସହିତେ ଅମର ମୋର ଘେନି ।
ନାଶିଲେ ବିଦ୍ୟାଧରୀ ମୋହୋନୀ କାମସେଣୀ
ତୋହୋର ବରେ ସେ ଅସୁର ଜଗଜିଣୀ ।
ଅସକ୍ଷ କରି ଯେ ଦେଲୁ ତାକୁ ବର
ତେଣୁକରି ମଷାଂ ହୋ ଘେନିଲା ତିନିପୁର ।
ମୁହିଁ ତାହା ସମରେ ସହି ନ ପାରି
ପୂର୍ବେ ଅମର ହୋଇବ ବୋଲି ବର ଘେନିଲା କର ପ୍ରସାରି ।
ଅବିଷେକ ଯୋଗାଡ଼ ଥୋଇଁଲା ପିତା ଆଗେ
ଶମ୍ଭୁ ନିଶମ୍ଭୁ ଏବେ ଥାନ୍ତୁ ଅମର ସ୍ୱର୍ଗେ ।
ବିଦ୍ୟାଧରୀ ଅପକ୍ଷରୀ ସମସ୍ତ ବିଧି ଘେନି
ଯଶୋବନ୍ତୀ ବ୍ରହ୍ମାଣ୍ଡେ ରହିଲେ ସହସ୍ରଯୋନି ।
ଆହୋ ପରୀକ୍ଷ ଚନ୍ଦ୍ରକାଳ ଅନ୍ତ ବୋଲି ଏକ ସମକ୍ଷରେ
ସିଙ୍ଘମାସ ଶୁକଳ ପକ୍ଷ ଷଷୀ ଦିବସରେ ।୧୨୫୦।
ଶଉରୀ ବାର ନକ୍ଷତ୍ର ବିଷ୍ଟି ନାମେ କରଣ
ବିସିକୁମ୍ଭ ନାମେଣ ଯୋଗ ସେଦିନ ଘଟଣ ।
ସେ ଦିନ ଶମ୍ଭୁ ନିଶମ୍ଭୁ ବେନି
ଅଳକା ଭୁବନକୁ ବାହିଲେ କୃତାନ୍ତେକ ବଳ ଘେନି ।
ଆଗିଆଣି ଥାଠରେ ଥାନ୍ତି ଚାମର ବେମାଳ
ତାହାଙ୍କର ତୁଲେ ନବ ସହସ୍ର ଭୃତ୍ୟ ବଳ ।
ଶୂନ୍ୟ ପୁରୁଷ କହିଲେ କୁବେର ଦେବତାକୁ
ଶମ୍ଭୁ ନିଶମ୍ଭୁ ବାହିଲେ ତୋହୋର ଭୁବନକୁ ।
ଶୁଣି ଅନେକ ବିଷାଦ ଦେବ ଭଣ୍ଡାର ଅଧିକାରୀ
ସମରେ ମୁହିଁ ତାକୁ ନୋହିବି ସମସରି ।

ସପତ ନିଧି ଦେବଙ୍କର ଅବିଷେକ ଯୋଗାଡ଼ କାଢ଼ି
ପଳାଇଲା ଅଳକା ନାଥ ଦେବ ଭୁବନ ଛାଡ଼ି ।
ଧାଇଁଣ ନିଶାଚରେ ପଶିଲେ ଦେବପୁରୀ
ଦେବ ରତ୍ନମାନ ସମସ୍ତ ଜୁର କରି ।
ପିନ୍ଧନ୍ତି ଦେବ ବସନ ହରନ୍ତି ବାରାଙ୍ଗନା
ଆକାଶ ବିଳସନ୍ତି ଅସୁର ବଳ ସେନା
ଦେବତା ଅବିଷେକ ଯୋଗାଡ଼ ମାନ ପାଇଁ
ଧାଇଁଲେ ରାକ୍ଷସ ବଳ କୁବେରକୁ ଗୋଡ଼ାଇଁ ।
ମହା ବିଶ୍ୱରୂପ ସେ ଦାନେବଙ୍କର ଦେଖି
ପଳାଇଁ ଦେବଲୋକେ ଆଶ୍ରମ ଉପେକ୍ଷି ।୧୨୬୦।
କୋବେର ପଳାବଇ ନଇରତ ପୁରେ
ଗୋଡ଼ାଇଁ କଟାକିଲେ ସେ ବେନି ଅସୁରେ ।
ପଳାଇଲେ କୋବେର ଛାଡ଼ିଣ ଦେବରତ୍ନ
ଘେନନ୍ତି ଦାନେବ ସେ କରିଣ ଅନେକ ଯତ୍ନ ।
ଅବିଷେକ ଯୋଗାଡ଼ ପାଇଲେ ବୀର ଯହୁଁ
ଥାଠ ଘେନି ଚାମର ବେମାଳ ବାହୁଡ଼ିଲେ ତହୁଁ ।
ତୁଲେଣ ତିନି ମର୍ଭୁତ ବଳ
କୋବେର ଅଳକାପୁର ବେଢ଼ି ରହିଲେ ଚାମର ବେମାଳ ।
ଦେବରତ୍ନ ଘେନି ସେ ଅନେକ ହରଷ
ଅମରାବତୀ ଭୁବନେ ଶମ୍ଭୁ ନିଶମ୍ଭୁ ପ୍ରବେଶ ।
ଇନ୍ଦ୍ର ଦେବତାର ଅବିଷେକ ଯୋଗାଡ଼ ମାନ
ମଷାଂର ତହିଁକି ବୋଲି ଘେନିଗଲେ ଯାତୁଧାନ ।
କୁଳାବତୀ ପାଟଣେ ମଷାଂସୁର ବିଜେ
ଆକାଶୁଂ ଦ୍ରସନ ଯାଇ କଲେ ଦନୁଜେ ।
ରତ୍ନମାଳା ଥୋଇଲେ ନେଇ ମହା ନିଶାକାଳେ
ତିମିରି ବିଦାରଣ ହୋଇଲା ମହୀମଣ୍ଡଳେ ।
ଆହୋ ପରୀକ୍ଷ ଆକାଶ ସମ୍ବାଦ କହନ୍ତି ଦୂତମାନେ
ଏହାଙ୍କର ଗଲେ ପଳାଇଲେ ଦେବତାମାନେ ।
ଇନ୍ଦ୍ର ଦେବତାର ଅବିଷେକ ଯୋଗାଡ଼ମାନ
ମଷାଂସୁର ରାଜା ତା କଲା ଆଭରଣ ।୧୨୭୦।
ସମୋଦ୍ର ମନ୍ଥନ କାଳେ ଯେବଣ ରତ୍ନ ପାଏ
ତାହା ବିଙ୍ଘସିଲେ ମଷାଂସୁର ରାଏ ।
ରକ୍ତବୀର୍ଯ ବୀରଘଣ୍ଟ ଅସୁର ବିଡୁଳାକ୍ଷ
ସବୁଙ୍କରି କଣ୍ଠେ ଦେଲା ଦେବତାଙ୍କର ଜଏମାଳା କକ୍ଷ ।
ବଜାନ୍ତି କଡ଼ା ଦାଉଡ଼ି ମର୍ଦ୍ଦଳ ଘୁମୁରା
କାଦମ୍ବରୀ ପାନେ ନାଚନ୍ତି ମହାବୀରା ।
କଉତୁକେ ଆଜ୍ଞା ଦେଲା ମଷାଂସୁର ମହାରାଜ
ମନ୍ତ୍ରୀଙ୍କି ବୋଇଲେରେ ଦଣ୍ଡ ମୋର ସାଜ ।
ରାଜାର ବଚନେ ସେ ରାଜାର ସାରଥି
ମଣ୍ଡିଲା ବିମାନ ସେ ନବରତ୍ନ ଜ୍ୟୋତି ।
ଅହିବ୍ରଢ଼େ ବ୍ରାଘ ନେଇ ଯୋଚିଲାକ ରଥେଂ
ଆକାଶ ମଣ୍ଡଳକୁ ସେ ଚଳଇ ଦ୍ରୁତପାଦେ ।
ବୀରତୂର ଢୋଲ ଟମକ ନିଶାଣ ବାଜେ
କୃତାନ୍ତେକ ସନ୍ୟ ଘେନିଣ ମଏଷାଂସୁର ବିଜେ ।
ବ୍ରହ୍ମାର ବରେ ସେ ଅଟନ୍ତି କାମରୂପୀ
ଜଳ ଭୁବନ ଶୂନ୍ୟ ଭୁବନ କ୍ଷେପି ।
ପବନହୁଁ ବେଗେ ଉଡ଼ନ୍ତି ଶାର୍ଦ୍ଦୋଳ
ବିଜଏ ମହାଅସୁର ସେ ଆକାଶ ମଣ୍ଡଳ ।
ଗନ୍ଧର୍ବ ଦକ୍ଷ କିନର ଯେ ଅବା ଥିଲେ ସ୍ୱର୍ଗପୁରେ
ଅସୁରଙ୍କର ଭଏ ସେ ପଳାଇଲେ ଡରେ ।୧୨୮୦।
ଇନ୍ଦ୍ର ସେ ରକ୍ଷାପାଳେକ କରଇ ସିନା ସ୍ୱର୍ଗ
ତାହାର ଅଭ୍ୟାନ୍ତରେ ଦେବତାଏ ରହିବେ କେବଣ ବାଗ ।
ଅସୁର ଦୁରାନ୍ତେକ ପଡ଼ିଲେ ଯହୁଁ ମାଡ଼ି
ପଳାଇଲେ ବୃନ୍ଦାଅର୍କେ ଗଗନ ମଣ୍ଡଳ ଛାଡ଼ି ।
ସମସ୍ତ ମଣ୍ଡଳେ ଯେ ଖେପଇ ମଷାଂସୁର
ଅସୁର ଭୋଗ୍ୟ ହୋଇଲା ସ୍ୱର୍ଗ ମଣ୍ଡଳ ।
ଅମରାବତୀ ଭୁବନେ ପ୍ରବେଶ ବଳ ସବୁ
ବାନ୍ଧି ଘେନି ଦ୍ରଶନ କଲା ଶମ୍ଭୁ ନିଶମ୍ଭୁ ।
ବାସେବ ଦେବତାର ଅବିଷେକ ଯୋଗାଡ଼
ଆଭରଣ କଲା ସେ ମଷାଂସୁର ହୃଦୟର ।
ରକ୍ତବୀର୍ଯ୍ୟକୁ ଦିଅନ୍ତି ଦେବରତ୍ନ ବାନ୍ଧି
ଅନ୍ଧେକ ମନ୍ତ୍ରୀକି ସେ ଦେଲା ସାତନିଧି ।
ଅନେକ ରତ୍ନଦେଲେ ବୀରଘଣ୍ଟ କାନ୍ତିମାଳା
ଚଣ୍ଡ ମୁଣ୍ଡ ଦୁହିନ୍ତି ପୁଷ୍ପଜଏ ମାଳା ।
ବହୁତ ରତ୍ନ ଦେଲେ ଭାସ୍କର ବିଡୁଳାକ୍ଷ
ସୁରବର ଭାର୍ଗବ ଅବଏ ବିରୁପାକ୍ଷ ।
ବଜ୍ର ଦଣ୍ଡ କାଳ ଦଣ୍ଡ ବିରୂପା ବୀରବାହୁ
ଲୋହସୁର କଙ୍କ ଧଙ୍କ କାଳାନଳ ରାହୁ ସେହୁ ।
ବାହୁ ସୁବାହୁ ଯେ ଚଣ୍ଡ ପ୍ରଚଣ୍ଡ
ଲୋଟି ଗଗନଘୋଟି ଅଭଏ ଦୃଦଣ୍ଡ ।୧୨୯୦।

ଡମ୍ବୁରା ଦୁମ୍ବୁରା ସୁଖା ଦୃମୁଖା
ଗିଳା ମହାଗିଳା ତାଡ଼େକା ବିମୁଖା ।
ମଷାଂସୁର ରାଜାର ଅସୁର ସେନାପତିମାନ
ସବୁନ୍ତି ଭୂଷଣ ସେ ଅମରାବତୀ ରତ୍ନମାନ ।
ଆହୋ ପରୀକ୍ଷ ଅମର ଭଣ୍ଡାର ଯେ ଆଣିଲେ ଲୁରକରି
ଧନବନ୍ତ ପଣେ ତାକୁ କେହି ଆର ସରି ।
ମଷାଂସୁର ପ୍ରଶଂସଇ ସାଧୁରେ ଶମ୍ଭୁ ନିଶମ୍ଭୁ
ତୁମ୍ଭର ପ୍ରସାଦେ ସ୍ୱର୍ଗ ପ୍ରାପତ ହୋଇଲା ବାବୁ ।
କାଳକେତୁ ଦାନେବକୁ ରାଇଣ ଦେଲା ଶାଢ଼ୀ
ଯମ ସଞ୍ଜୀବନୀ ପୁରେ ତୁମ୍ଭେ ହୁଅ ଦଣ୍ଡଧାରୀ ।
ବୀରଘଣ୍ଟ ନାମେଣ ଯେବଣ ସେନାପତି
ହେମବନ୍ତ ଭୁବନେ ତୁମ୍ଭେ ହୁଅ ଚକ୍ରବର୍ତ୍ତୀ ।
ପୁଣ ଆଜ୍ଞା ଦେଲା ସେ ଅସୁର ବିଡୁଳାକ୍ଷ
ହିରଣ୍ୟଗର୍ଭପୁରେ ରହିଲା ବିରୁପାକ୍ଷ ।
ପ୍ରସନେ ଶାଢ଼ୀ ଦେଲା ଚାମର ବେମାଳକୁ
ତୁମ୍ଭେ ଭୋଗ କରସି ଅଳକା ଭୁବନକୁ ।
ପ୍ରସନେ ମଷାଂସୁର ଦେଲେ ଯେତେ ଶାଢ଼ୀ
ଶୁମ୍ଭ ନିଶମ୍ଭୁ ସୁରପୁରେ ଅଧିକାରୀ ।
ନାରଦେ କହିଲେ ଦେବ ଶୁଣ ବେଦପତି
ମଷାଂସୁର ସେନାମାନ ମାଡ଼ିବସିଲେ ବାରସ୍ୱତୀ ।୧୩୦୦।
ଏଥୁ ଅନନ୍ତରେ ସେ ଚଣ୍ଡମୁଣ୍ଡ ବେନି
ପାତାଳ ପୁରକୁ ଯେ ଅବଧାରି ପାଟ ଘେନି ।
ଜଳତରଙ୍ଗ ନାମେ ସେ ଯେବଣ ସେନାପତି
ବରୁଣ ଭୁବନେ ସେ ହୋଇ ଚକ୍ରବର୍ତ୍ତୀ ।
ଯେ ଯାହାର ଭୁବନ ଯେ ତେଜିଲେ ବୃନ୍ଦାଅର୍କେ
ବ୍ରହ୍ମାର ଭୁବନେ ଯାଇ ପଶିଲେ ଦେବଲୋକେ ।
ଚନ୍ଦ୍ର ସୂର୍ଯ ପବନ ବରୁଣ ସ୍ଥାନ ଭ୍ରଷ୍ଟ
ଦେଖନ୍ତି ପିତାମହ ସମସ୍ତଙ୍କର କଷ୍ଟ ।
ତୁଲେ ଘେନିଲେ ସେ ସମସ୍ତ ଦେବାସୁର
ମରାଳ ବାହାନେ ବିଜୟେ ବେଦବର ।
ଇନ୍ଦ୍ର ବିଜେ କଲେ ଯେ ଅଇରାବ୍ରତ ପିଠି
ମଇଁଷି ବାହାନେ ଯମ କାଳାନଳ ଦୃଷ୍ଟି ।
ଗ୍ରହଗଣ ସଙ୍ଗତେ ନକ୍ଷତ୍ରମାନେ ବିଜେ
ବୃଷଭ ବାହାନେ ସଦାଶିବ ସାଜେ ।
ମରୁତ ଦେବତା ବିଜେ କଲେ ମୃଗ ଆସନେ
ବୃହସ୍ପତି ବିଜେ କଲେ ମନ ହଂସ ଯାନେ ।
ଉଚ୍ଚୈଶ୍ରବା ଅଶ୍ୱେ କାମଦେବ କ୍ଷେତ୍ରପାଳ
ସମସ୍ତ ଦେବତାଏ ତରନ୍ତି କ୍ଷିରୋଦ୍ର ମହାଜଳ ।
ଅସୁରନ୍ତ ଦେଖିଣ ସେ ଦେବ ସ୍ତିରୀମାନେ
ଦେବତାଙ୍କ ସଙ୍ଗେ ଗଲେ ନ ରହିଲେ ଗଗନେ ।୧୩୧୦।
ଗଗନ ମଣ୍ଡଳେ ଯେ ନ ରହିଲେ କେହି
ସମସ୍ତ ଦେବତାଏ ହୋଇଲେ ଜଳଶାୟୀ ।
କ୍ଷୀର ସମୁଦ୍ରରେ ଯହିଁ ନାରାୟଣ ବିଜେ
ତହିଁଯାଇ ମିଳିଲେ ସକଳ ଦେବରାଜେ ।
ଦେଖିଲେ ନାରାଏଣ ଅନନ୍ତଯୋଗ ନିଦ୍ରା
ଲକ୍ଷ୍ମୀ ଜାନୁ ସୀମସ୍ଥାନେ ପାଦେଣ ନର୍ମଦା ।
ଆହୋ ପରୀକ୍ଷ ରାଜା ବିରାଜଚକ୍ର ନାମେଣ ମାହାନାଗ
ତାର ଫେଗୁ ଉପରେଣ ନାରାଏଣ ମହାଲଏ ଯୋଗ
ଯେମନ୍ତ ସମଏ ତେତିଶ କୋଟି ଦେବ ।
ବିନୟ ହୋଇ ଉଭା ଶ୍ରୀ ନାରାଏଣଙ୍କ ଆଗ ।
କୃତାଞ୍ଜଳି ହୋଇଣ ସେ ବଦୟନ୍ତି ଦେବ ଧାତା
ନାରାୟଣର ସମାଦି ଭାଙ୍ଗ ଜଗତ ମାତା ।
ପିତାର ବଚନ ଶୁଣି ଅଭୟେ ବାକ୍ୟ ଦେବୀ
ବିଷ୍ଣୁଙ୍କୁ ଭୟେ କରି ସେ ପଞ୍ଚମସ୍ୱରେ ରାବି ।
ଅଜପା ଲୟେ କରି ସଙ୍ଗୀତ ମେଳା
ସପତ ସ୍ୱର ବୀଣା ଚାଳିଲେକ ଅବଳା ।
ସରିମମଗ ଧ୍ୱନି ସପତ ସ୍ୱର ଗୀତ
ଶ୍ରବଣେ ପଶିଲା ବାକ୍ୟ ଦେବୀର ସଙ୍ଗୀତ ।
ବେଣୁ ମଧୁର ଉଙ୍କାର ସ୍ୱର ଚାଳି
ମହା ବ୍ରହ୍ମ ଭେଦିଲା ଚେତିଲେ ବନମାଳୀ ।୧୩୨୦।
ନୟନ ମଳିଣ ଯେ ଚାହିଁଲେ ଅନାଦି
ସୁରଗଣ ଘେନି ପ୍ରଣପତ୍ୟ ଜମ୍ଭୁଭେଦୀ ।
ଯହୁଁଣ ଲୟେ କରି ରହିଲେ ମହାତ୍ମା
ଶତ ସହସ୍ର ଦଣ୍ଡ ପ୍ରଣମ୍ୟ ହୋଇଲେ ଦେବ ବ୍ରହ୍ମା
ବିଷ୍ଣୁନାଥ ଦେଖିଲେ ଯେ ଦେବତାଙ୍କର ମୁଖ
କିମ୍ପାଁତ କାରଣେ ଦେବ ପାଇଲେ ଯେତେ ଦୁଖ ।
ପ୍ରଣପତ୍ୟ ହୋଇଣ ଯେ ବୋଲନ୍ତି ଦେବ ପିତା
କ୍ଷୀରୋଦ୍ରଶାୟୀ ହୋଇ ଛାଡ଼ିଲୁ ସର୍ବଚିନ୍ତା ।
ବିଷ୍ଣୁ ବୋଇଲେ ତୁ ନବସୃଷ୍ଟି କରତା ହୋଇ
କାହାକୁ ଯେଡ଼େ ଭୟେ

କ୍ରୋଧଭର ହୋଇ ବୋଲନ୍ତି ଦେବତାଏ ।
ସହିତ ନ ପାରିଲୁ ଆମ୍ଭେ ଦୈତ୍ୟଙ୍କର ଭାରା
ମୁଖେ ରୁଧିର ଯେ ବହଇ ବସୁନ୍ଧରା ।
ଅଗ୍ନି ଚନ୍ଦ୍ର ସୂର୍ଯ୍ୟ ବରୁଣ କଲେ ଗୁହାରି
ମଷାଂସୁର ଭାରା ଦେବ ସହିତ ନ ପାରି ।
ଆକାଶକୁ ବାହିଁଲେ ସେ ଅସୁର ବଳ ସେନା
ଯମ ପବନ ଜଳ ଅଗ୍ନି ନ କରନ୍ତି ଗଣନା ।
ଅପସରାନ୍ତ ରମିଲେ ଅନ୍ଧେକର ବୁଦ୍ଧି
କୁବେର ପଳାଇଲା ଛାଡ଼ିଣ ଅଷ୍ଟନିଧି ।
ଜଳ ଶୂନ୍ୟ କଲେ ବରୁଣପୁରେ ପଶି
ତିମିରି ବିଦାରଣ ମଣି ନେଲେ ନାଗପୁରୁ ଆସି ।୧୩୩୦।
ନର ଲୋକ ନାଗ ଲୋକ ସୁର ମଣ୍ଡଳେ
ଅମର ମାଡ଼ି ବସିଲେ ଦୁରାନ୍ତେକ ଚାଣ୍ଡାଳେ ।
ସ୍ୱାମୀ ତୁ ଛାଡ଼ିଲୁ ଯହୁଁ ଜଗତର ଚିନ୍ତା
ଦେବ ଲୋକ ନାଗ ଲୋକ ପାଇଲେ ଅବସ୍ଥା ।
ଆହୋ ଦଶନହ ମୁଖେ ଭରିଣ ଦେବତାଯେ ଅଙ୍ଗ କଷ୍ଟି
ବିଜୟେ ଅସୁରାରି ବୈନେତ୍ର ସେ ପିଠି ।
ତେତିଶ କୋଟି ଦେବ ତ୍ରିନେତ୍ର ସଙ୍ଗତେ
ବିଜୟେ ଜଗୁସୋଦର ଅନନ୍ତଗିରି ପର୍ବତେ ।
ତେତିଶି କୋଟି ଦେବେ ପାଇଲେ ବଡ଼ ଦୁଖ
ଏମନ୍ତ କରି ବର କିମ୍ପା ଦେଲୁ ଚତୁର୍ମୁଖ ।
ପୁଣି ଶ୍ରୀହରି ବୋଇଲେ ହୋ ଶୁଣ ବିଶ୍ୱେଶ୍ୱର
ତୁ ଯେ ବଧ କଲୁ ଅସୁର ତ୍ରିପୁର ।
ତୋହର ନାମ ତେଣୁ ହୋଇଲା ତ୍ରିପୁରାରି
ଏବେ ଶମ୍ଭୁ ନିଶମ୍ଭୁ କିମ୍ପା ତୁ ନପାରିଲୁ ମାରି ।
ଈଶ୍ୱରେ ବୋଇଲେ ମହେଷାଂ ତପ କଲା ବିରଞ୍ଚ ଦେବତାକୁ
ପୁରୁଷେ ବଧ୍ୟ ନୋହିବ ବୋଲି ସେ ବର ମାଗିଲା ପିତାକୁ ।
ଦେବ ଲୋକେ ନାଗ ଲୋକେ ନର ଲୋକେ ନ ମରିବ
ନର ବାନରେ ରକ୍ଷେ ରାକ୍ଷସେ ବଧ ନୋହିବ ।
ଯମେ ନ ମରିବ ନ ମରିବ ପ୍ରଳୟ କାଳେ
ବାତେ ନ ଉଡ଼ିବ ନ ପୋଡ଼ିବ ଅନଳେ ।୧୩୪୦।
ଦେବତାଙ୍କର କୋପ ଋଷିଙ୍କର ଶାପ୍ୟ
ଏମାନ ନ ପଡ଼ିବ ନ ଲାଗିବ ଯୋଗ ତପ ।
ସ୍ୱାମୀ ଏର୍ନ୍ତେ କରି ଦୈତ୍ୟ ବର ପ୍ରସାରି
ପୁରୁଷେ ବଧ ନାହିଁ ବ୍ରହ୍ମାର ବରେ କରି ।
ସେ ନାରାଏଣ ବୋଇଲେ ଯେ ନ ମରିବ ମୋର ହସ୍ତେ
ଶ୍ରୀକୃଷ୍ଣେ ଅଭୟେ ବୋଲି ଜାଣିଲେନି ଦୈତ୍ୟେ ।
ନାରାୟେଣଙ୍କର ହସ୍ତେ ଅବଧ ଯହୁଁ ଶୁଣି
ଉଚ୍ଚସ୍ୱରେ ରୋଦନ କଲାକ ଧରଣୀ ।
ଆବର ମୁଇଁ ଯାଇତ ନ ପାରଇ ମହୀତଳେ
ପୋତୁ ସେ ଅବନୀ ଯାଉ ରସାତଳେ ।
ଚନ୍ଦ୍ର ସୂର୍ଯେ ବୋଇଲେ ନୋହିବୁ ଆମ୍ଭେ ଉଦେ
କ୍ଷୀର ସୋମନ୍ଦ୍ରେ ଖଟିବୁଁ ଶ୍ରୀ ନାରାୟଣଙ୍କ ପାଦେ ।
ପବନ ବୋଇଲା ମୁଁ ନ ବହିବି ଶୀତଳ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ମରନ୍ତୁ ସକଳ ।
ଶ୍ରୀ ନାରାୟଣଙ୍କର ମୁଖ ଚାହିଁ ରୋଦନ୍ତି ବୃନ୍ଦାଅର୍କେ
ଖଗେଶ୍ୱର ଆଶ୍ରେ ମଲୁ କିଙ୍କର ଦେବଲୋକେ ।
ଏମନ୍ତ ସମଏ ମହା ନିଶାର କାଳେ
ଦେବଙ୍କର ବିକଳ ଅନନ୍ତ ଅମର ମଣ୍ଡଳେ ।
ଆଶ୍ୱିନ୍ୟ ମାସ କୃଷ୍ଣପକ୍ଷ ଅଷ୍ଟମୀର ତିଥି
ଉତ୍ତର ସ୍ୱାତୀ ନକ୍ଷତ୍ରକୁ ଭୋଗ ସେହୁ ରାତି ।୧୩୫୦।
ବାଲ୍ୟବ ନାମେ କରଣ ସୌଭାଗ୍ୟ ନାମେ ଯୋଗ
ରାତ୍ର ପ୍ରହରକ ମଧେ ଦେବତାଏ ଉଦବେଗ ।
ଏମନ୍ତର ସମୟେ ଯେ ମହେଂଷାସୁର ଦନୁଜେ
ମହାମତ୍ତ ମଇଂଷିଏ ହୋଇ ଅନ୍ଧାର ଦିଗବିଜେ ।
ଶ୍ରୀ ନାରାୟଣ କହୁଛନ୍ତି ବ୍ରହ୍ମାଙ୍କର ଆଗେ
ମହେଷାସୁର ଦାନେବ ବଧ ହୋଇବ କେବଣ ବାଗେ ।
ଏଥିକି ବୁଦ୍ଧି ତୁମ୍ଭେ କର ଏହିକ୍ଷଣି
ଗିରିବର ତଳେ ଥାଇ ତା ମହେଷାଂସିଘ ଶୁଣି ।
ଶୁଣି ପଛଘୁଞ୍ଚା ଦେଇ ସେ ଧାଇଁଲା ଅତି ବେଗେ
ଗିରିରାଜ ଉପରେ ନେଇ ସେ ମାଇଲା ବଜ୍ର ସିଙ୍ଘେ ।
ସିଙ୍ଘେ ମହାବଳ ଦାନେବ ଯହୁଁ ମାଇଲା ଗଳଗାଜି
କି ଅବା ମେରୁଗିରି ପଡୁଅଛି ଭାଜି ।
ତେତିଶ କୋଟି ଦେବେ ହୋଇଲେ ମହାରାଗୀ
ସବୁଙ୍କରି ମୁଖରୁ ଯେ ରୁଧିର ଅଗ୍ନି ଉଚ୍ଛର୍ଗି ।
ମହା ପ୍ରଚଣ୍ଡ ସେ ବିକାଶିଲା ଭୂତ
ମହାବ୍ରହ୍ମ ଅନଳ ଯେ ହୋଇଲା ତହୁଁ ଜାତ ।
ରଦ୍ର ଅଗ୍ନି ବିଷ୍ଣୁ ଅଗ୍ନି ସୂର୍ଯ୍ୟ ଅଗ୍ନି ସବୁ ରଣ୍ଡ
ମହା ପ୍ରଳୟ ଅଗ୍ନି ଯେ ସପତ ବ୍ରହ୍ମାଣ୍ଡ ।
ମହାତେଜ ଦେଖି ମହେଷାସୁର ଘୁଞ୍ଚଇ

ପଳାଇ ଯାଇ ଶମ୍ଭୁ ନିଶମ୍ଭୁକୁ ପୁଛଇ ।୧୩୬୦।
ଦେବଙ୍କର ଚରିତ ହୋ ଦେଖିଲୁ ମାତୁଳ
ମେରୁଗିରି ଶିଖରେ ହୋଇଲେ ଏକ ମେଳ ।
ଅନ୍ଧାରି ବିଜେ ବେଳେ ଶୁଭୁଅଛି ମୋତେ
ବୋଲୁଛନ୍ତି ମହେଷାସୁର ମରିବ କେମନ୍ତେ ।
ଆଜ ସମସ୍ତ ଦାନବେ ଦେବଙ୍କୁ ଦିଅ ଧାଡ଼ି
ଦେବତାମାନଙ୍କୁ ଯେ ପକାଅ ସର୍ବ ମାରି ।
ଶମ୍ଭୁ ନିଶମ୍ଭୁ ବୋଇଲେ ଆକାଶ ଲେଛି ପଳାଇଲେ ବୃନ୍ଦାଅର୍କେ
ଯଶୋବନ୍ତୀ ପୁରେ ଥାନ୍ତି ଦେବଲୋକେ ।
ମହେଷାଂସୁର ବୋଇଲା ଭାଙ୍ଗ ହେ ବ୍ରହ୍ମାଣ୍ଡ
ପିତାର ପୁରେ ନେଇ ବସାଅ ଚଣ୍ଡ ମୁଣ୍ଡ ।
ଶମ୍ଭୁ ନିଶମ୍ଭୁ ବୋଇଲେ ବ୍ରହ୍ମା ବର ଦେଲେକ ତୋତେ
ଅଣଦୋଷେ ପିତାଙ୍କୁ ତୁ ଲଙ୍ଘିବୁ କେମନ୍ତେ ।
ମହେଷାସୁର ବୋଇଲା ହୋ ସେ ଯେବେ ଆମ୍ଭର ପିତା
ଦେବଙ୍କର ଆଳେ ପଶି ସେ ଆମ୍ଭଙ୍କୁ ଚିନ୍ତଇ ମନ୍ଦ ଚିନ୍ତା ।
ପିତାହୋଇ ଯେ କୁଟୁମ୍ବ ନ ସମ୍ଭାଳଇ
ତାହାକୁ ବଧ କଲେ ଦୋଷ ନାହିଁ ସର୍ବ କାଳହିଁ ।
ଶମ୍ଭୁ ନିଶମ୍ଭୁ ବୋଇଲେ ଦେବତାଏ ମେରୁଗିରିରେ ଥିଲେ
କେବଣ ଭୁବନକୁ ସେ ପଳାଇଣ ଗଲେ ।
ମଷାଂ ବୋଇଲା ମୁଁ ଅନଳ ତେଜ ଦେଖି
ମୁହିଁ ଅଇଲି ସେ ଦେବତାନ୍ତ ଉପେଖି ।୧୩୭୦।
ଚଣ୍ଡ ମୁଣ୍ଡ ବୋଇଲେ ଚାଲ ଯିବା ମେରୁଗିରି
ବ୍ରହ୍ମାର ପୁରକୁ ଅଦଭୁତେ ଦେବା ଧାଡ଼ି ।
ଆହୋ ପରୀକ୍ଷରାଜା ବ୍ରହ୍ମାର ପୁରକୁ ମହେଷାସୁର ଥାଠ ପାଞ୍ଚଇ
ନିସ୍ନେହା ହୋଇ ସେ ଶରୀର ଗୁମାଞ୍ଚଇ ।
ଥାଠ ଘେନି ମହେଷାସୁର ନିଜ ରାଜ୍ୟେ ପାଇ
ଅନ୍ଧେକ ମନ୍ତ୍ରୀକି କହିଲା ଶବଦାଇ ।
ଅନ୍ଧେକ ମନ୍ତ୍ରୀ ବୋଇଲା ରାଜା ମନ୍ଦକୃତ କଲୁ
ଅମରାବତୀ ଘେନିଲୁ ଲକ୍ଷ୍ମୀ ଶିରାଗ୍ରତ ବହିଲୁ ।
ତ୍ରିପୁର ତାରକା ରକ୍ଷ ଭକ୍ଷ ଆଦିକରି ତୋହୋର ଉପର ବଂଶେ
ଅମର ଭୁବନ ମାଡ଼ି ନୁଆରିଲେ ରାକ୍ଷସେ ।
ଶୁଣି ମହେଷାଂସୁର କିଞ୍ଚିତେ ଭୟ କଲା
ପୁଣିହିଁ ଗର୍ବପଣେ ପ୍ରତିଜ୍ଞା ଦେଖାଇଲା ।
ସିନ୍ଧୁ ଉପସିନ୍ଧୁ ଘେନି ବେନି ସେନାପତି
ଥାଠ ଗୋଟି ଘେନି ଆସ ସିନ୍ଧୁ ଉଭର କୂଳ କତି ।

ପଳାଇଣ ଦେବତାଯେ ଯେବେ ହୋଅନ୍ତି ଜଳଶାୟୀ
ସବୁନିହିଁ ଧରିବୁଟି ନ ଛାଡ଼ିବୁ କହାକୁହିଁ ।
ଜଳତରଙ୍ଗ ନାମେ ସେ ରାଇଲାକ ସେନା
ତୁ ଯାଇଁ ସମୁଦ୍ର ଭିତରେ ପଶି ଲୋଡ଼ ବହନା ।
ଆପଣେ ରାଇଲା ରାଜା ବିଡ଼ୁଲାକ୍ଷ ରାକ୍ଷସ
ତୁ ଯାଇଁଣ କ୍ଷୀର ସମୁଦ୍ରେ ଆକର୍ଷ ।୧୩୮୦।
ତହିଁ ଭିତରେ ଯାଇ ପଶନ୍ତି ଦେବତାଏ
କ୍ଷୀର ସମୁଦ୍ର ଯାକ ଶୋଷ ନ ଥାଉ ମନ୍ଦାଏ ।
ନୀଳ ସମୁଦ୍ରକୁ ଯାଅ ଚାମର ବେମାଳ
ସେ ସମୁଦ୍ର ଶୋଷ ନଥାଇ ମହାଜଳ ।
ପୁଣ ରାଇଲା ଯେ କୃତାନ୍ତେକ ନାମେ ଦତ୍ୟ
ତୁମ୍ଭେ ବେଗେଣ ଯାଇଁ ଇକ୍ଷୁ ସମୁଦ୍ର ଭକ୍ଷ ।
ମୁଖା ଦୁର୍ମୁଖ ସେ ରାଇଲା ବେନି ଭାଇ
ଖାର ସମୁଦ୍ର ଭକ୍ଷ ତୁମ୍ଭେ ବେଗେ ଯାଇ ।
ପୁଣ ରାଇଲା ଯେ ଚଣ୍ଡ ମୁଣ୍ଡ ବେନି ବୀରା
ତୁମ୍ଭେ ଦୁହେଁ ଲବଣ ସମୁଦ୍ର କର ଆହାର
ଏ ବିଧି ରାଇଲା ସମସ୍ତ ସେନାପତି
ସମସ୍ତ ସମୁଦ୍ର ତୁମ୍ଭେ କ୍ଷେପ ବିନଶ୍ୟତି ।
ଆପଣେ ସମଦଣ୍ଡ ଥାଠ ଅଛି ଭିଡ଼ି
ଦଶମୀ ଦିନରେ ବ୍ରହ୍ମା ପୁରକୁ ଦେବ ଧାଡ଼ି ।
ଯେମନ୍ତ ସମୟେ ଆଜ୍ଞା ସେ ମଷାଂସୁର ଦେଲା
ସମସ୍ତ ଭୁବନକୁ ଥାଠ ଚଳାଇଲା ।
ଏହା ଶୁଣି ବୋଇଲେ ସେହୁ କୁରୁକୁଳ ନାହା
କଥାୟେ ମୁଇ ମୁନି ପୁଛିବି ତୋତେ ଯାହା ।
ଅଦଭୁତେ ଅନଳେ ଯେ ହୋଇଲାକ ବିକାଶ
ତଦ ଅନ୍ତରେ ଦେବେ କଲେ ପୁଣ କିସ ।୧୩୯୦।
ଏକଥା ମୋତେ କହିବ ବ୍ରହ୍ମବେତ୍ତା
ତବ ମୁଖେଁ ଶୁଣିମି ଅମୃତ ରସ କଥା ।
ବୋଲନ୍ତି ଶୁକବ୍ରହ୍ମା ଶୁଣ ହୋ ମହାରାୟେ
ଶ୍ରୀ ଦୁର୍ଗା ଚରିତ ଶୁଣି ପାପ କର କ୍ଷୟେ ।
ଦେବତାଙ୍କର ତହୁଁ ଜାତ ଯେବଣ ବହନି
ତହିଁ ଯାଇ ମିଶ୍ରିତ ହୋଇଲା ସର୍ବ ଅଗ୍ନି ।
ଅନଳ ଶ୍ୟାନ୍ତି ମନ୍ତ୍ରେ ଦିଅନ୍ତି ଆହୁତି
ସୁପ୍ରାଳେକ ମତେ କରନ୍ତି ଅନେକ ତୁଷ୍ଟି ।
ସବୁଙ୍କରି ଜୀବନ ନିଆସିଲେ ଅନଳକୁ

ଧ୍ୟାନ ମନ୍ତ୍ର ତୁଷ୍ଟି କରନ୍ତି ଲୟେକୁ ।
ସମସ୍ତ ଦେବତାଙ୍କର ଜୀବନ୍ୟାସ ଏକାବେଳେ
ଅଗ୍ନି ଘୋଟିଲା ସେ ବ୍ରହ୍ମାଣ୍ଡ ମଣ୍ଡଳେ ।
ସମସ୍ତ ଦତ୍ୟ ଯେ ଥିଲେ ଆକାଶେ
ଅସୁରେ ରହି ନ ପାରିଲେ ଅନଳ ତ୍ରାସେ ।
ଦେବପୁରନ୍ତ ଛାଡ଼ି ପଳାଇଲେ ଅସୁରେ
ସମସ୍ତେ ହୋଇଲେ ଯାଇ ଜେନାବତୀ ନଗ୍ରେ ।
ଦେବଙ୍କର ମହିମା ଯେ ଶୁଣ କୁରୁପତି
ଅଗ୍ନି ଦେବତାଙ୍କୁ କରୁଅଛନ୍ତି ଅନେକ ତୁଷ୍ଟି ।
ଜୟେ ତୁ ଦାବାନଳ ଶୟଳ ଜନ ପରୀକ୍ଷ
ଅନନ୍ତ କୋଟି ବ୍ରହ୍ମାଣ୍ଡରେ ନାଗିଲା ଯାହାର ଶିଖ ।୧୪୦୦।
ଅସକ୍ଷ ମାହାତ୍ମା କୃତାନ୍ତେକ ମହାତେଜା
ଅନେକ କ୍ରୋଧ ବହି ଯେ ବୋଲନ୍ତି ଦେବରାଜା
ଅଦ୍ଭୁତ ଅବୟ ତୁହି ସେ ନିରାକାର
ଅଧାରଣ ଧାରଣ ତୁ ଅନନ୍ତ ତେଜ ତୋର
ଜାତ ଅନ୍ତ ମଧ୍ୟେ ଶୂନ୍ୟ ଭୁବନ ଭେଦ
ସକଳ ଅସାଧ ନାଥ ତୁହି ସେ ଆଦି ସିଦ୍ଧ ।
ଜଡ଼ା ଅର୍ଦ୍ଧ କର୍କଶ ମହା ମଧୁ ପିଙ୍ଗଳ
ଅଦଏ ଅଭାବକୁ ସେ ପ୍ରସନ୍ନ ନିଷ୍କଳ ।
ନ ଶିଖି ନ ଶୁଣିଲି ଅମୃତ ଲିଙ୍ଗ ଗୋଟି
ଶତବିଂଶ ଅଳକାକୁ ଯାହାର ତେଜ ଫୁଟି ।
ତବ ମନ ଭେଦି ସେ ଉତପତ୍ତି ଦେବତାଏ
ତବ ମନ ଭେଦି ସେ କରତା ଦେବତାଏ ।
ଅସଂଖ୍ୟ ଅଧାରଣେ ଦେବ ତୁହି ସେ ମନ୍ଦଭୋଜି
ସମସ୍ତ ଭୁବନ ଭୁଞ୍ଜିଲେ ତ୍ରିପୁତି ନ ଭଜି ।
ଅଭଏ ନିରାକାର ତୁ ଅଭଏ ଅନାମ
ଅନୁବ୍ରତେ ଦହନ ତେଜ ତବ ନାମ ।
ଭୁକତା ପ୍ରିୟ ତୁ ଦରିଦ୍ର ରୋଗ ନାଶି
ଅନୁବ୍ରତେ ଭକ୍ଷନ୍ତେ ଯାହାର ଶରୀର ଅସନ୍ତୋଷି ।
ଉତପତି କରତା ତୁ ଜପ ତପ ବ୍ରହ୍ମ
ଯାବତ ଚନ୍ଦ୍ର ଦିବାକର ତୋହୋର କର୍ମ ।୧୪୧୦।
ଦେବ ଲୋକ ନାଗ ଲୋକ ନର ଲୋକ ତୁ ସବୁରି ଗର୍ଭେଥାଉ
ଅବିକାର କାଳେ ତୁ ସମସ୍ତ ଜଳ ଖାଉ ।
ନାମ ସଙ୍ଗତେଣ ଯାହାର ତେଜ ଲୟେ
ସକଳ ଭୃତ୍ୟଙ୍କର ନାଥ ତୁହି ସେ ନିର୍ଭୟେ ।

ଅଜପା ପୁରୁଷ ତୋର ନାହିଁ ଚିହ୍ନବର୍ଣ୍ଣ
ଏକ ନିମିଷେକେ ତୁ ହୋଉ ଗୋପ୍ୟାନ ।
ପରମ ବ୍ରହ୍ମ ତୁହି ମନ୍ତ୍ରଦେବ ତୁହି
ଅକାତେଣ ଜାତ ମହାତେଜ ବହି ।
ସୁରସିଦ୍ଧ ମୁନି ଚରଣେ ଯାର ବନ୍ଦେ
ସୁରଙ୍କୁ ଅଗୋଚର ସ୍ୱାମୀ ପରମ ସାନନ୍ଦେ ।
ସ୍ୱାମୀ ଆଇଗିବେଦ ଜୋତିବେଦ ଧନୁବେଦ ଶିଶୁମୁନା
ଅଜପା ଗାୟତ୍ରୀ ତୋହୋର ପଞ୍ଚସେହ୍ନା ।
ଅନାଦି ଅଣାକାର ନିରଞ୍ଜନ ମହାପ୍ରଭୁ
ଅମାପ ଅପିତା ଅନଳ ନାମ କହୁ ।
କିଞ୍ଚିତେ ନବସୃଷ୍ଟି କଉତୁକେ ଖାଇଁ
ଅତିଅନ୍ତ ଶାଖା ନାଥ ପଣ୍ଡିତ ଗୁଣଗ୍ରାହୀ ।
ଅକାମେ ମେଖଳା ଶତକୋଟି ଯାହାର ଗର୍ଭ
ଦେବତାଙ୍କ ଉପରେ ତୁହି ସେ ଦେବ ଦେବ ।
ନମୋ ନାରାୟଣ କାଳାନଳ ଅନଳ ପିଙ୍ଗଳ ଜାଳା
ନମୋ ନମୋ ଦିବାକର ମହାକୃଷ୍ଣ ପିଙ୍ଗଳା ।୧୪୨୦।
ନମୋ ନମୋ ଦେବ ଆକୃତି ଦିବାକର
ନମୋ ନମୋ କୃତାନ୍ତକ ଭାସ୍କର ବଇଶ୍ୱାନର ।
ନମୋ ନମୋ ବଡ଼ବାନଳ ଦାବାନଳ ବହତି
ନମୋ ନମୋ ପଣ୍ଡିତ ଅପାପ ପାପ ଖିତି ।
ସ୍ୱାମୀ ପରମ ଯୋଗୀ ଆତ୍ମା ଯାହାର ମହାସଧଇ
ଅକାଳେହେଁ ଆକାଶହେଁ ହୋଇଲେ ଆଇବଧିଇ ।
ପ୍ରିୟା ସଉଭାଗ୍ୟ ପ୍ରସନେଣ ପତି
ତେଣୁକରି ଜାତ ସେ ହୋଇଲେ ସନ୍ତତି ।
ସ୍ୱାମୀ ପରମାନନ୍ଦ ଉଦର ତୁ ପରମବ୍ରହ୍ମ ଉପରେ ବ୍ରହ୍ମ
ଅନାଦି ଦୋହେରା ତୁ ପ୍ରତକ୍ଷେଣ ନିଜକର୍ମ ।
ଗୋପ୍ୟାନ ଭଗ୍ନ ତୁ ପବିତ୍ର ନିତ୍ୟ ସୁର
ଯତ ସତ ମତୋଆଳ ଅନମିତ ନିତ୍ୟଧାର ।
ସ୍ୱାମୀ କ୍ଷୀରୋଦ୍ର ଉତକର୍ମ ତୁ ଯୋଗେଣ ମହା ବ୍ରହ୍ମେ
ସମସ୍ତ ସ୍ଥାପିନ୍ତ ତୁ ବଡ଼ବାନଳ ଗର୍ଭେ ।
ସ୍ୱାମୀ ! ଯେ କର୍ମ ଧର୍ମ ତୁହି ସେ ଆଦି ଦେବତା
ସମସ୍ତ ସହଣ ନାଥ ତୁହି ସେ ମହିନ୍ତା ।
ପ୍ରସନେ ଯୋଗେଶ୍ୱର ଉଦେଶ ଯାହାର ଦେହା
ଜାତ ଅନ୍ତ କାଳେ ତୋହୋର ବ୍ୟାକୁଳ ସ୍ନେହା ।
ସ୍ୱାମୀ ! ବିଷ୍ଣୁ ମହେଶ୍ୱର ଯାହାକୁ କରନ୍ତି ସ୍ତୁତି

ମୁହିଁ ତାହା ନିର୍ଯାପ କରିବାକୁ କିସ ମୋହୋର ମତି ।୧୪୩୦।
ଶ୍ରୀ ଅଗ୍ନି ଦେବତାଙ୍କ ଚରଣେ ଦାସ
ବଦୟନ୍ତି ସାରୋଳା ଦାସ ଜନ୍ମେ ଜନ୍ମେ ଆଶ ।
ଶୁଣ ହୋ ପରୀକ୍ଷ ରାଜା ବଦୟନ୍ତି ଶୁକ ମୁନି
ଧାତାର ବିନୟ ଦେଖି ମହାତୋଷ ବହନି ।
ଦେବତା ବ୍ୟାକୁଳେ କଲେ ମହା ତୁଷ୍ଟି
ମହା ଅନଳ ବିକାଶି ଦିଶିଲା ରତ୍ନକାନ୍ତି ।
କାନ୍ତିହୁଁ ଅଧିକ ବିକାଶିଲା ତେଜ
ଯେକ ଶିର ବେନି ଚରଣ ସହସ୍ରେକ ଭୁଜ ।
ଅଭୟେ କାନ୍ତାନୀ ସେ ଅଭୟେ କାମାକ୍ଷୀ
ଯେ ଦୁର୍ଗତି ତାରେଣୀ ମହା ବୈଇଷବୀ ପ୍ରସନ୍ନ ମୂର୍ତ୍ତି ।
ପ୍ରସନ୍ନ ଅପର୍ଣ୍ଣା ନିରାକାର ରୂପ ଦେଖି
ଭଏଣ ବୃନ୍ଦାଅର୍କେ ପଳାଇଲେ ଆସନ ଉପେଖି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଚନ୍ଦ୍ର ଆଦି ସ୍ୱାମୀ
ଶ୍ରୀ ଦୁର୍ଗାର ମୁଖ ଚାହିଁ ଶତ ସହସ୍ର ଦଣ୍ଡ ପରିଣାମି ।
ତେତିଶ କୋଟି ଦେବତାଏ ବିନୟ ଭଗତେ
ପ୍ରଣାମ କରନ୍ତି ଶ୍ରୀ ଦୁର୍ଗାଙ୍କ ପାଦାଗ୍ରତେ ।
ଦନ୍ତେଣ ତିରଣ ଘେନି ମୁଖେଣ ଆଙ୍ଗୁଷ୍ଟି
ବିନୟ ହୋଇଲେ ତେତିଶ ଦେବ କୋଟି ।
ବଇଷବ ରୂପ ଦେଖି ଦେବତାଏ
ବହୁତ ସ୍ତୁତି ସେ କରନ୍ତି ବିନଏ ।୧୪୪୦।
ବ୍ରହ୍ମର ଅଗ୍ନି ଯେ ହୋଇଲେ ଉତପତ୍ୟ
ସେ ଅନଳ ତେଜ ଘେନି ସେ କପୋଳ ସମ୍ଭୂତ ।
ନାରାୟଣ ଅଗ୍ନିଂ ବଦନ ବିକାଶି
ଈଶ୍ୱର ଅଗ୍ନି ସେ ଦନ୍ତପନ୍ତି ପ୍ରକାଶି ।
ଅଗ୍ନିର ତେଜଘେନି ବେନି ନୟନ
ନାସିକାର ତେଜ ଦେବ ମଘବାନ ।
ଆଦିତ୍ୟର ତେଜ ବଦନ ସରୋଜ
ଜିହ୍ୱା ଅଗ୍ନି ସେ ଦେବ ଚନ୍ଦ୍ରରାଜ ।
ଯମର ଅଗ୍ନି ସେ ହୋଏ ଗଣ୍ଡସ୍ଥଳ
କୋବେର ଅଗ୍ନି ନିର୍ମିତ ବକସ୍ଥଳ ।
ବିଶ୍ୱ ଦେବତାଙ୍କର ଯେ ହୋଏ କୁକ୍ଷି
ସନେକ ଲୋକଙ୍କର ଲାଭି ବକସ୍ଥଳେ ଅଛି ।
ମଝା ଖିନ ତେଜ ବଳିତ ବେନି
ତହିଁର ତେଜ ହୋ କୁମର ଅଶ୍ୱନୀ ।
ବେନି ଫୁଲଣା ଅମୂଲ୍ୟ ତେଜ କାନ୍ତି
ସେ ଅଗ୍ନିଙ୍କର ତେଜ ନାଶକର ବୃହସ୍ୟତି ।
ଅତିଅନ୍ତ ସୁବଳିତ ବେନି ଜାନୁ
ପ୍ରଜାପତି ଦଇବତ ସେ ଅନଳ ତେଜ ଭାନୁ ।
ଅନନ୍ତ ବାସୁକୀ ଅଷ୍ଟକୁଳା ନାଗ କ୍ଷାତି
ଏହାଙ୍କର ତେଜ ହୋଇଲା ପାଦ ଅଙ୍ଗ କାନ୍ତି ।୧୪୫୦।
ପ୍ରସନ ଦେବତା ନବ ଗ୍ରହ ଭୃଗୁ
ବେନି ଚରଣ ଅଙ୍ଗୁଷ୍ଟି ହୋଇଲେ ସବୁ ।
ଅଙ୍ଗୁଳିର ଲଖ କୁନ୍ଦ କଳି ପ୍ରକାଶ
ପିଠି ହେମବନ୍ତ ଅଗ୍ନିର ପ୍ରବେଶ ।
ବିଷ୍ଣୁର ନନ୍ଦନୀ କାମଦେବର ବହନି
ଏତେ ଅଗ୍ନି ଘେନି ସେ ଉପୁଜିଲେ ଭାବାନୀ ।
ଆହୋ ପରୀକ୍ଷ ଏମନ୍ତେଣ ପ୍ରତିମା ମହାବଳୀ
ନକ୍ଷତ୍ର ମାନଙ୍କର ତେଜ ରୋମାବଳି ।
ବରୁଣ ତେଜ ହୋଇଲା ମହାଗର୍ଭ
ମେଘଙ୍କର ତେଜ ହୋଇଲା ଅମ୍ବୁଭାବ ।
ଅଣଞ୍ଚାଶ ପବନ ଦେବତାଙ୍କର ତେଜ
ପବନ ସାମାନ୍ୟେ ଆକର୍ଷଣ ସହସ୍ରେକ ଭୁଜ ।
କୃତାନ୍ତେକ ସାନିଧ୍ୟ ଯେ ବଚନ ପ୍ରକାଶି
ବୈଷ୍ଣବଗଣ ଯେ ଅଟନ୍ତି ଦେବ କାଶୀ ।
ବ୍ରହ୍ମାର ସମାନ୍ୟେ ମହା ବ୍ରହ୍ମଜ୍ଞାନୀ
କାମଦେବ ସମାନ୍ୟେ ଶୟଳ ମୋହୋନୀ ।
କୃଷ୍ଣ ସମାନ୍ୟେ କ୍ଷେତ୍ରି ବାରାନିଧି
ବୃହସ୍ୟତି ସାମାନ୍ୟେ ପଣ୍ଡିତ ମହାବୁଧି ।
ଇନ୍ଦ୍ରର ସମାନ୍ୟେ ଅଟଇ ବଡ଼ିମା
ଚନ୍ଦ୍ରର ସମରୀକ୍ଷେ ଅନେକ ମହିମା ।୧୪୬୦।
ଆଦିତ୍ୟ ସାମାନ୍ୟେ ଅଟଇ ତେଜ କାନ୍ତି
ଯମର ସମାନ୍ୟେ କାଳାନଳ ପ୍ରକୃତି ।
ଅନନ୍ତ କାନ୍ତାନୀ ସେ ନିଜ ବସନ୍ଧରା
ତାହାର ସମାନ୍ୟେ ସେ ସହଣି ମହାଭାରା ।
ପବନ ସମାନ୍ୟେ ସେ ଅଟଇ ଚଞ୍ଚଳା
ମେରୁ ସମାନ୍ୟେ ଧାର୍ମିକ ଅନର୍ଗଳା ।
ମେଘଙ୍କର ସମାନ୍ୟେ ଅଟଇ କାମରୂପୀ
ବରୁଣ ସମାନ୍ୟେ ଅଟଇ ତେଜକାନ୍ତି ।
ମୋହୋନୀ ପଣକୁ ପ୍ରତକ୍ଷେ ପାର୍ବତୀ

କୁମାର ସମାନ୍ୟେ ପ୍ରତଞ୍ଚା ଶକତି ।
ଶୁଣ ହୋ ରାଜନ ଦେବଙ୍କ ତେଜ ଘେନି ଏକ ଶକତି
ତେଣୁକରି ବହିଲା ସେ ସବୁ ପ୍ରକୃତି ।
ତଇଲୋକ୍ୟ ମୋହିଲା ସେ ତେତିଶ ଦେବକୋଟି
ସବୁ ତେଜ ଘେନି ହୋଇଲା ଏକା ଶ୍ୟରୀର ଗୋଟି ।
ଶୂନ୍ୟେଣ ଶବଦ ଶୁଭିଲାକ ବାଣୀ
ନାମ ସଙ୍କେତନ କଲେ ଦୃଗତି ତାରେଣୀ ।
ତ୍ରଇଲୋକ୍ୟ ଦୃଗତିରୁ ଯେ କରିପାରଇ ପାର
ତେଣୁକରି ଦୃଗା ନାମଟି ଏହାର ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନି ମୂର୍ତ୍ତି
କରପତ୍ର ଯୋଡ଼ି ତହିଁ କରନ୍ତି ତୁଷ୍ଟି ।୧୪୭୦।
ଜୟ ତୁ ସବ ମଙ୍ଗଳେ ତୁ କର ସୁବିଧାନି
ଜୟ ତୁ ମଙ୍ଗଳେ ପ୍ରସନେ କାନ୍ତାନୀ ।
ଜୟ ତୁ ମଙ୍ଗଳେ ଶୁଭ ଅବଧାରି
ଜୟ ତୁ ମଙ୍ଗଳେ ଗୋ ଦୁସ୍ତରୁ ନିସ୍ତାରି ।
ଜୟ ତୁ ଅଭଏ ମଙ୍ଗଳା ମହା ଦୁର୍ଗେ
ତବ ମଙ୍ଗଳ ପ୍ରସନେ ଆମ୍ଭର ପ୍ରସଙ୍ଗେ ।
ଭୋ ମାତା ତ୍ରିଦଶ ଦେବତା ଯାହାକୁ ଭଗତି
ମୁହିଁ କିସ ବର୍ଣ୍ଣିବି ଅଜ୍ଞାନ ବାଳ ମୃତି ।
ଶ୍ରୀ ଦୁର୍ଗାର ଜନମ ଶୁଣ ସୁଜ୍ଞଜନେ
ଧର୍ମ ଅର୍ଥ କାମ ମୋକ୍ଷ ଯେଉଁଣ ଦେବୀ ପ୍ରସନେ ।
ଶ୍ରୀ ଦୁର୍ଗା ସୁମର ଜନେ ଦୁର୍ଗତି ଖଣ୍ଡୁ
ଶ୍ରୀ ଦୁର୍ଗା ସୁମର ଜନେ ଦୁର୍ଗତି ନ ପଡୁ ।
ଦୁର୍ଗା ସୁମର ଜନେ ଦୁର୍ଗତି ହେଉ ନାଶ
ଦୁର୍ଗା ସୁମର ଜନେ ଫିଟୁ କାଳଫାଶ ।
ଦୁର୍ଗା ଇଏ କରି ଜ୍ୱର ରୋଗ ଖଣ୍ଡ
ଶ୍ରୀ ଦୁର୍ଗା ସୁମରଣେ ନ ଲାଗିବ ଯମଦଣ୍ଡ ।
ଦୁର୍ଗା ସୁମର ଜନେ ରାଜ ସଦୟ ଭଜି
ଦୁର୍ଗା ସୁମର ଜନେ ସନ୍ତାନ ଉପୁଜି ।
ଦୁର୍ଗା ସୁମର ଜନେ ବାସ୍ତୁ ହୋଉ ଥିର
ଦୁର୍ଗା ସୁମର ଜନେ ଆଇଁଷ ହୋଉ ଚିର ।୧୪୮୦।
ଆଶ୍ୱିନ ମାସ ଶୁକ୍ଳପକ୍ଷ ନବମୀ ପରିଯନ୍ତେ
ଏସନ ଉଛବ ପୂଜା ଆରାଧନା କର ନିତ୍ୟେ ।
ଆୟୁଷ ଧନ ପୁତ୍ର ଯେ ଯାହା କର ଇଚ୍ଛା
ଜଗତ ଜନେ ସୋଦର ସେ ପୂରାଅ ମନବାଞ୍ଛା ।
ମାତା ଗୋ ଲୋଭ ମୋହ ସଂସାର ଅପବାଦୁଁ
ଏଥୁଁ ତରିବା ଶ୍ରୀ ଦୁର୍ଗାଙ୍କ ପ୍ରସାଦୁ ।
ଜୟ ଜୟ ଦୁର୍ଗା ଗୋ ସତତ ମମ ହୃଦେ
ଶୂଦ୍ର ମୁନି ସାରୋଳା ଦାସ ବିନୟ ଦୁର୍ଗାର ପ୍ରସାଦେ ।

ଆହୋ ପରୀକ୍ଷ ଦେବତା ମାନଙ୍କର ଯେସନ ଭଗତି
ସମସ୍ୟା ଫିଟିଲା ଅଭଏ ଶାନ୍ତି ମୃତି ।
ଆହୋ ଦେବତାମାନେ ଅନେକ ବିନୟ ମୋତେ କଲ
କିମ୍ପୁତ କାରଣେ ଯେତେ ବ୍ୟାକୁଳ ହୋଇଲ ।
ବ୍ରହ୍ମାଙ୍କୁ କହିଲେ ଦେବ ଚକ୍ରଧର
ବୁଝାଇ କହ ଧାତା ଦେବୀଙ୍କ ଛାମୁର ।
ଆହୋ ପରୀକ୍ଷ ଦେବତାଙ୍କ ବଚନେ ପିତା ଆଗସରି
ଛାମୁରେ ପ୍ରତିବାକ୍ୟ ହୃଦରେ କର ଯୋଡ଼ି ।
ମାଆଗୋ ଦକ୍ଷ ପ୍ରଜାପତିଙ୍କର ଷାଠିଏ ଦୋହିତା
ଦଶ କନ୍ୟା ପ୍ରଦାନ କଲା ଧର୍ମ ଦେବତା ।
ତନୁ ଭାନୁ ମେଧା ଶରଧା
ଶ୍ରୁତି ମୃତି ଶାନ୍ତି ସୁମେଧା ।୧୪୯୦।
ବୁଦ୍ଧି ଦୃଷ୍ଟି ଏ ଦଶ ଦୋହିତି
ଧର୍ମ ଦେବତାଙ୍କରେ ଦେଲା ଏ ଦକ୍ଷ ପ୍ରଜାପତି ।
ଉମା କନ୍ୟାକୁ ସେ ଈଶ୍ୱରଙ୍କୁ ଦେଲା
ସାବିତ୍ରୀ କନ୍ୟାକୁ ସେ ମୋତେ ପ୍ରଦାନ କଲା ।
ମାଗୋ ବରୁଣ ଦେବତାଙ୍କୁ ପ୍ରଦାନ କଲା ନିରାବତୀ
ଅଗ୍ନି ଦେବତାଙ୍କୁ ଦେଲା ସ୍ୱାହା ସୁଧା ଦୋହିତୀ ।
ବୃହସ୍ପତିକି ପ୍ରଦାନ କଲା ତାରା
କୁବେରଙ୍କୁ ପ୍ରଦାନ କଲା ହାରା ।
ଆଦିତକୁ ଦେଲା ସେ ସଞ୍ଜା ନାମେ ବାଳୀ
ଚନ୍ଦ୍ର ଦେବତାଙ୍କୁ ଦେଲା ସତାଇଶ ବାଳୀ ।
କଶ୍ୟପେଣ ଦେଲା ସେ ତେର ନନ୍ଦନୀ
ହେମା କନ୍ୟା ହୋଇଲା ପରମୀ ଯୋଗ୍ନୀ ।
ବିଭା ନୋହିଲା ଭ୍ରଥା ନ ଇଚ୍ଛିଲା
ତେଣୁକରି କନ୍ୟା ପରମ ଯୋଗ୍ନି ହୋଇଲା ।
ଦିତି ଅଦିତି ବିନନ୍ତା କଦ୍ରୁରୀ କାଳ ଅଂଳା ଗନ୍ଧର୍ବୀ
ଦକ୍ଷା ରକ୍ଷା ଅରଷ୍ଟି ଗୃହିକା ସୁରଭି ସିଙ୍ଗିକା ଏ ଦୋହିତୀ ।
ଭୋ ମାତ ଆଦିତିର ତହୁଁ ଦେବତାଏ ଉତପତି
ଦିତିର ତହୁଁ ପବନ ସମ୍ପାତି ।

ନାଗେ ଜାତ ହୋଇଲେ କଦ୍ରୁରୀ ତହୁଁ
ବିନନ୍ତାର ତହୁଁ ପକ୍ଷୀ ଗରୁଡ଼ ମହାବାହୁ ।୧୫୦୦।
ଗନ୍ଧର୍ବୀ ତହୁଁ ଜାତ ହୋଇଲେ ଗନ୍ଧର୍ବ ଲୋକେ
ଭରହ ରସ କଉତୁକ ନୃତ୍ୟ ସୁଖେ ।
ଦକ୍ଷୁଂ ଉପୁଜିଲେ ଦକ୍ଷ କିନ୍ନରେ
ରକ୍ଷୁଂ ଉପୁଜିଲେ ଚଉପଦ ଜୀବରେ ।
ହସ୍ତୀ ଘୋଡ଼ା ଭାଲୁଙ୍କ ଆଦି କରି
ନାନା ଜୀବମାନେ ଗୁକ୍ଷାଉଁ ଅବତରି ।
କାଳ ତହୁଁ କାଳ ପୁରୁଷ ଉତପନ୍ନ
ଅଂଳାଙ୍କ ତହୁଁ ଆଲେକ୍ଷ ପର୍ବତ ଜନ୍ମ ।
ସୁରଭି ତହୁଁ ଉପୁଜିଲେ ଗୋ ଜୀବ
ଗୃହିଯାର ତହୁଁ ପୂଜା ଲୋକେ ସମ୍ଭର୍ବ ।
ଯେଉଁ ଯେଉଁ ଲୋକଙ୍କୁ ଛୁଇଁଲେ ସ୍ନାହାନ କରି
ଅରଷ୍ଟିର ତହୁଁ ଅଯଗଂ ଲୋକେ ଅବତରି ।
ମାତା ଗୋ ସିଂଘକା ବୋଲିକରି ଯେବଣ କୁମାରୀ
ତାହାର ତହୁଁ ସେ ରାହୁ ଅବତରି ।
ବଦୟନ୍ତି ବେଦ ବ୍ୟାସ ଶୁଣ ସଂଦୁଷ୍ଟି
ଆଦି ମୂଳୀଣଏ ରାହୁ ବଡ଼ କଷ୍ଟି ।
ଅଦିତିର ବିବାଦେ ରାହୁ ନାଶ ଗଲା
ରାହୁର ଅର୍ଧ କେତୁ ହୋଇଲା ।
କେତୁର ତହୁଁ ଉପୁଜିଲେ ଜମ୍ଭୁ ଦଇତ
ଅର୍କ ବିବାଦେ ତାକୁ ନାଶିଲେ ପୁରୁ ଦୂତ ।୧୫୧୦।
ଜମ୍ଭୁ ଦଇତର ତହୁଁ ଉପୁଜିଲେ ହିରଣ୍ୟ କଶ୍ୟପ
ହିରଣ୍ୟ କଶ୍ୟପ ତହୁଁ ଉପୁଜିଲେ ରକ୍ଷ ଭକ୍ଷ ।
ମାଗୋ ରକ୍ଷିତ ସତ୍ୟଯୁଗେ ଅନେକ ସମର ହୋଇଲା
ନାରାୟଣ ଅବତାରେ ବିଷ୍ଣୁ ସବୁଙ୍କୁହିଁ ନାଶ କଲା ।
ମାଗୋ ଦିକ୍ଷ ଭକ୍ଷ ପୁତ୍ର ହେତି ପ୍ରହେତି
ଏହାନ୍ତ ବଧ କଲେ ହରି ଦାମୋଦର ମୂର୍ତ୍ତି ।
ହେତି ପ୍ରହେତିଙ୍କର ପୁତ୍ର ବଜ୍ରାଗଂ କାଳାନଳ
ବିଷ୍ଣୁ ଅବତାରେ ହରି ନାଶି ତାଙ୍କ ବଳ ।
ବଜ୍ରାଗଂର ନନ୍ଦନ ହିରଣ କପଚ ବୀରା
ଜନାର୍ଦ୍ଦନ ଅବତାରେ ତାହାନ୍ତ ନାଶ କଲା ।
ହିରଣ୍ୟର ପୁତ୍ର ବଜ୍ର କପଚ
ଦୁସହ ସମରେ ତା ମାଇଲେ ପୀତବାସ ।
ମାଗୋ ବଜ୍ର କପଚର ପୁତ୍ର ଯେ ଅନ୍ଧେକ ଦଇତ
ଅନିବାରଣ ଯୁଦ୍ଧେଂ ତାହା ନାଶିଲେ ବିଶ୍ୱନାଥ ।
ମାଗୋ ଅନ୍ଧେକର ନନ୍ଦନ ତ୍ରିପୁରା ରାକ୍ଷସ
ଷାଠିଏ ସହସ୍ର ବରଷେ ତାହା ନାଶିଲେ ବିଶ୍ୱବାସ ।
ତ୍ରିପୁରା ଦଇତ ତହୁଁ ଶମ୍ଭୁ ଦଇତ ଉପୁଜିଲା
ବେଦମତୀ ହରଣେ ତାହା କାମଦେବ ନାଶକଲା ।
ଶମ୍ଭୁ ଦଇତ ପୁତ୍ର ଜଳତରଙ୍ଗ ଉପୁଜଇ
କେଶବ ରୂପେ ତା ନାଶିଲେ ଦେବରାଜଇ ।୧୫୨୦।
ଜଳତରଙ୍ଗର ପୁତ୍ର ଶଙ୍ଖାସୁର
ଶଙ୍ଖ ବେଦ ପୋଥି ଚୋରାଇଲା ମୋହର ।
ମୀନ ରୂପ ଧରି ସେ ଦେବ ନାରାୟଣ
ଶଙ୍ଖାସୁର ଦାନବର ଘେନିଲାକ ପ୍ରାଣ ।
ଶଙ୍ଖାସୁର ଦାନେବର ଅବନି ନାମେ ଦତ୍ୟ ।
କୂର୍ମ ରୂପେ ତାହା ମାଇଲେ ଜଗନ୍ନାଥ ।
ଅବନି ଦଇତର ପୁତ୍ର ହିରଣକ ଉପୁଜଇ
ବରେହା ରୂପେ ତାହା ବିଦାରିଲେ ଦେବରାଜ ତହିଁ ।
ହିରଣର ପୁତ୍ର ଉପୁଜିଛି ଦତ୍ୟ କେଶୀ
ଗୋମୁଖ କେଶବ ତାହା ଯମପୁରେ ପେଷି ।
ଅମାୟା ଦାନେବ କେଶୀ ପୁତ୍ରର ପୁତ୍ର
ରାଜୀବ ରୂପେ ତାହା ଦହିଲେ ବିଶ୍ୱନାଥ ।
ଅମାୟା ନନ୍ଦନ ହିରଣ୍ୟକଶ୍ୟପୁ
ନରସିଂହ ଅବତାରେ ହରି ବିଦାରିଲେ ବପୁ ।
ବଇଲୋଚନ ଦଇତ ହିରଣ ସନ୍ତନ୍ତି
କୂଟେଣ ମାଇଲେ କୃଷ୍ଣ ସ୍ତିରୀ ରୂପ ମାଳତୀ ।
ମାଗୋ ବଇଲୋଚନର ପୁତ୍ର ଉପୁଜିଲା ଦାନବ ବଳି
ବାବନ ରୂପେ ତାହା ଚାପିଲେ ପାତାଳି ।
ମାଗୋ ବଳିର ନନ୍ଦନ ମଏ ଦାନେବ
ତାହା ନାଶ କଲେ କୃଷ୍ଣ ସମର ଅସମ୍ଭବ ।୧୫୩୦।
ମଏ ଦାନବର ନନ୍ଦନ ଅମଏ ନାମେ ଦତ୍ୟ
ସୁରୁପାବକ ସତ୍ୟଯୁଗେ ତାକୁ ଚାପିଲେ ହନୁମନ୍ତ ।
ଅମଏର ନନ୍ଦନ ତାଡ଼େକାସୁର ରାଏ
କୁମାର ବେଳେ ତାହା କାର୍ତ୍ତିକ ନାଶ କଏ ।
ତାଡ଼େକାର ନନ୍ଦନ ଲୋହସୁର ଉପୁଜଇ
ବଜ୍ରସିଙ୍ଘ ବୋଲି କରି ଯେ ତାହାର ଆତ୍ମାଜଇ ।
ବଜ୍ରସିଂଘର ପୁତ୍ର କପିଳ ସିଂଘ ରାକ୍ଷସା
କପିଳ ସିଂଘର ପୁତ୍ର ଯେ ଉପୁଜିଲା ମକ୍ଷାଂ ।

ମଷାଂ ଦାନେବ ଗୋ ତପ କଲା ମୋତେ
ପବନ ଆହାରୀ ହୋଇ ସହସ୍ରେ ବରଷ ପରିଯନ୍ତେ ।
ମାତ ଗୋ ଭୋଳ ହୋଇ ବର ଦେଲି ମୁହିଁ
ବୋଇଲା ବିଷ୍ଣୁ ନାଶ କଲା ବଂଶ ମୋରହି ।
ମୋତେ ବୋଇଲା ଯେବେ ବର ଦେବୁ ସାଧ
ପୁରୁଷ ହାଥେଣ ନୋହିବି ମୁହିଁ ବଧ ।
ଭୋଳ ହୋଇଁ ତାକୁ ମୁହିଁ ଦେଲି ବର
ବୋଇଲି ପୁରୁଷ ହସ୍ତେ ନଯିବୁ ତୁ ମାର ।
ବ୍ରହ୍ମା ବିଷ୍ଣୁ ଶିବ ପବନ ଚନ୍ଦ୍ର ସୂର୍ଯ୍ୟ
ଏହାନ୍ତ ଜିଣିମି ମୁ ବର ଦେବା ଦେବ ରାଜ ।
ସେ ଯାହା ବୋଇଲା ମୁଁ ଭୋଳେ ସତ୍ୟ କଲଇଁ
ତେଣୁକରି ମଷାଂସୁର ହୋଇଲା ଅମରଇ ।୧୫୪୦।
ମଷାଂସୁର ଦାନେବର ନବ ମର୍ଭୁତ ସେନା
ଦେବେ ଦାନବେ ମାନବ ନ ଯାଇ ଗଣନା ।
ବଜ୍ର ସିଂହ ଦଇତ ସେ ପଦ୍ମଦୀପେ ରାଜା
ମହାକେତୁ ଦଇତ ଚନ୍ଦ୍ର ଦୀପେ ରାଜା ।
ସୁବାହୁ ଦଇତ ସେ କୁଶ ଦୀପେ ରାଜା
ସିଘଳ ଦୀପେ ସେ ମଷାଂସୁର ରାଜା ।
ଭାସ୍ୱର ଦଇତ କରଞ୍ଚ ଦୀପେ ରାଜା
ଶମ୍ଭୁ ନିଶମ୍ଭୁ ଜମ୍ବୋଦୀପେ ରାଜା ।
ଜଳତରଙ୍ଗ ଦଇତ ବରୁଣ ପୁରେ ରାଜା
ଭୁମି ଦାହାନ ପାତାଳ ସ୍ୱର୍ଗେ ରାଜା ।
ଉତ୍ତର ପଶ୍ଚିମେ ସିନ୍ଧୁ ଅପସିନ୍ଧୁ ରାଜା
ବନସ୍ତ ଆଦିପତି କାଳଜନ ରାଜା ।
ପର୍ବତଙ୍କ ଉପରେ ବଜ୍ରକେତୁ ରାଜା
ନିଶାଦ ପୁରେ ସୁବାହୁ ଦତ୍ୟ ରାଜା ।
ମାତ ଗୋ ଅମରାବତୀ ପୁରେ ଶମ୍ଭୁ ନିଶମ୍ଭୁ ରାଜା
ସଞ୍ଜବନୀ ପୁରେ ବୀରଘଣ୍ଟ ରାଜା ।
ହିରଣଗର୍ଭପୁରେ ରକ୍ତବୀର୍ଯ୍ୟ ରାଜା
ଅଗ୍ନିଙ୍କର ଭୁବନେ ଭାସ୍ୱର ଦତ୍ୟ ରାଜା ।
ମାତ ଗୋ ମୋହୋର ଭୁବନ ଯଶୋବନ୍ତୀ ବ୍ରହ୍ମାଣ୍ଡ
ତହିଁକି ଶାଢ଼ୀ ଘେନି ଅଛନ୍ତି ଚଣ୍ଡ ମୁଣ୍ଡ ।୧୫୫୦।
ଆହୋ ପରୀକ୍ଷ ଅନେକ ବିନୋଇଁ ଯହୁଁ କହିଲେ ବେଦପତି
ତିନି ସ୍ୱର୍ଗେ ମାତ ଗୋ ଅସୁରେ ଅଛନ୍ତି ।
ମାଗୋ ଅନୀତି କର୍ମକଲା ମଷାଂସୁର ଚାଣ୍ଡାଳ
ଯେହି ଦେହ ଘେନି ସେ ଥିବ ଚିରକାଳ ।
ସମସ୍ତଙ୍କର ବଇକୁଳ ଦେଖିଣ ମହାମୂର୍ତ୍ତି
ଅଗ୍ନିରୁ ବିକାଶିଲା ସେ ଅନାଦି ଶକତି ।
ମାତ ଗୋ ବ୍ରହ୍ମାୟଣୀ ଇନ୍ଦ୍ରାୟଣୀ ନାରାୟଣୀ ତୁହି
ପ୍ରସନେ ମାତେଙ୍ଗୀ ନାରାୟଣୀ ନାମ ବହିଁ ।
ଇନ୍ଦ୍ରାୟଣୀ ରଦ୍ରାୟଣୀ ତାରେଣୀ ତାହାଙ୍କ କାୟା
ଯମାୟେଣୀ ମାହେଶ୍ୱରୀ ମହାମାୟା ।
ମାଗୋ ଅଟ୍ଟୁଟାଇ ଅଭୟା ବାସେଳୀ ଉଗ୍ରତାରା
ମାତରସ କାନ୍ତାନୀ ଭାବାନୀ ତ୍ରିପୁରା ।
ଅନନ୍ତ ବିଜୟା ଅମ୍ବିକା ମାଧବୀ ।
କଙ୍କାଳି ବେତାଳି ତୁ କାଳିକା ଭଇରୋବୀ ।
ଚଣ୍ଡୀ ଚାମଣ୍ଡି ଗୋ ଚଣ୍ଡ ପ୍ରଚଣ୍ଡା
ବାରହୀ ବିକରାଳୀ ଗୋ କାମସେଣୀ ଚାମଣ୍ଡା ।
ମାଗୋ କୃତାନ୍ତେକି ନାଗେରୀ ସୁନ୍ଦରୀ କାମାକ୍ଷୀ
ସିଦ୍ଧି ସାଧେବୀ ଗୋ ଶମଶାନ ପିଙ୍ଗଳାକ୍ଷୀ ।
ଆଦିତ୍ୟାହୀ ବାରାହୀ ଇନ୍ଦ୍ରାଏଣୀ ମରୁତାଇ
ଦକ୍ଷିଣାଇ ଉତ୍ତରାଏଣୀ ପଶ୍ଚିମାଇ କରତାଇ ।୧୫୬୦।
ଛାୟା ମାୟା ଅନ୍ନପୂର୍ଣ୍ଣା କୁମାରୀ
ବିକଟାଇ ଘୋରରୂପାଇ ମାତାଙ୍ଗୀ ମାହେଶ୍ୱରୀ ।
ମାତ ଗୋ ସହସ୍ରେକ ଭୁଜରୁ ସହସ୍ରେକ ହେଉ କାଏ
ଯେତେକ ବୋଲି ପ୍ରଣପତ୍ୟ ହୋଇଲେ ଦେବତାଏ ।
ଭଗତି ଦେଖି ପ୍ରସନ ହୋଇଲେ ମହାଦେବୀ
ଶ୍ରୀ ଦୁର୍ଗାର ଚରଣେ ସେବୀ ସାରୋଳ ଦାସ କବି ।

ଆହୋ ପରୀକ୍ଷ ଦେବତାଙ୍କ ବିକଳ ଦେଖି ପ୍ରସନ ହୋଇଲେ କାନ୍ତାନୀ
ଅମୃତ ଦୃଷ୍ଟିରେ ବୋଇଲେ ବର ମାଗ ପଦ୍ମଯୋନି ।
ପୁଣ ପୁଣ ପ୍ରଣପତ୍ୟ ହୋଇ ବଦୟନ୍ତି ଦେବ ବ୍ରହ୍ମା
ମାଗିବି ବର ଏବେ ଦୋଷ କର କ୍ଷେମା ।
ମାଗୋ ତେତିଶ କୋଟି ଦେବତା ତବ ଚରଣେ ଲାଗୁ
ମଷାଂସୁର ବଧ୍ୟ ହୋଇବ ବର ତୋତେ ମାଗୁଁ ।
ଆହୋ ପରୀକ୍ଷ ଦେବତାଙ୍କର ମୁଖରୁ ଏସନକ ବାକ୍ୟ ଶୁଣି
ସଦଏ ସମାସ୍ୟା ଦେଲେ ଦୁର୍ଗତି ତାରେଣୀ ।
ଦୁର୍ଗାଏ ବୋଇଲେ ଦେବ ନିଶ୍ଚିନ୍ତେ ଥାଅ ସ୍ୱର୍ଗେ
ମାରିବି ନିଶାଚର ବଳ କଉତୁକ ରଣ ରଙ୍ଗେ ।
କର ପ୍ରସାରିଲେ ଅନାଦି ଶତଶ୍ରୀଆ

ଶଙ୍ଖ ଚକ୍ର ଗଦା ନେଇଁ ଦେଲେ ଜଗନାହା ।
କୋମଣ୍ଡଳ ଜପାମାଳି ବ୍ରହ୍ମଶର ଶକତି
ଦୁର୍ଗାର ହସ୍ତେ ନେଇଁ ଦେଲେକ ବେଦପତି ।୧୫୭୦।
ତ୍ରିଶୂଳ ଡମ୍ବରୁ ଗିନାକୀ ପଶୁପତ୍ର ଧନୁ
ଦୁର୍ଗାର କରେ ନେଇ ଦେଲେ ଶତମନୁ ।
ଅଜଗବ ଧନୁ ସେ ବ୍ରହ୍ମଶକତି
ଦୁର୍ଗାର ହସ୍ତେ ନେଇଁ ଦେଲେ ସୁରପତି ।
ସୂର୍ଯ୍ୟବ୍ରତେକ ଚକ୍ର ଅମୃତ କୁଣ୍ଡଳ
ଆଦିତ ଦେବତାଏ ନେଇ ଦେଲେ ଜଏମାଳ ।
ଭାର ଦ୍ୱାଦଶ ତିମିର ବିଦାରଣ ମଣି
ବିଶ୍ୱ ଦେବାଏ ଖଡ଼ଗ ଦୁର୍ଗାକୁ ଦେଲେ ଆଣି ।
ଅମୃତାଶର ଯେ ହେମଚକ୍ର ଫାଶ
ଚନ୍ଦ୍ର ଦେବତାଏ ଦେଲେ ମାତ ଅସୁର କର ନାଶ
ଅନିଳେକ ରୁଦ୍ର ନୀଳଚକ୍ର ଦେଲା
କାଳଦଣ୍ଡ ଚକ୍ର ଆଣି ଯମ ସମ୍ପାଦିଲା ।
ସ୍ତମ୍ଭନ ମୋହନ ବଶ ଉଚାଟଣ
ଦୁର୍ଗାର ହସ୍ତେ କାମ ଦେଲା ପଞ୍ଚବାଣ ।
ମୋହୋନା ଶର ସେ ଯେ କାମ ଆଦ୍ରାବଳୀ
ଭୃପୁହି ପୂର୍ଣ୍ଣପାତ୍ରେ ଦୁର୍ଗା କରେ ଦେଲେ ଆଣି ।
ପ୍ରଶୁ ମୃଦୁଗର ଦେଲେ ଜଏଚଣ୍ଡ
ବିହନ୍ତା ପୁରୁଷ ଦେଲେ ଦୀପାନ୍ତେକ ଚକ୍ରଦଣ୍ଡ ।
ଅବିଶ୍ରାମ ଚକ୍ର ଦେଲା ମରୁତ
ପର୍ବତା ଶରେକ ଦେଲା ହେମବନ୍ତ ।୧୫୭୦।
ବରୁଣ ଦେବତା ଦେଲା ଡାଳଫାଶୀ
ମନଭେଦୀ ଶର ଦେଲେକ ସୁରକେଶୀ ।
ନାଗଫାଶ ଶର ଦେଲେକ ଗଣପତି
ଅମୃତ ଲଡୁ ଦେଲେ କାର୍ତ୍ତିକ ମହାଯତି ।
ବଜ୍ରବାଣ ନିର୍ଘାତ ବାଣ ଆବର ଅମୃତ ବାଣ
ମେଘା ଅଗ୍ନିଶର ଦେଲେ ସୁରଗଣ ।
ନିଦ୍ରାଶର ଯେ ଅସାଷ୍ଟମ ବାଣ
ମରୁଦ୍ର ପୁରୁଷ ଦେଲେ ଅକ୍ଷୟ ତ୍ରୋଣ ।
ନୀଳ ଭୁଜବାଣ ଆବର ବଜ୍ର ବାଣ
ଈଶାନ୍ୟ ଦେବତା ଦେଲେ ଦୁର୍ଗାଙ୍କର ହସ୍ତେଣ ।
ରତ୍ନମୁକୁଟ ଭୂଷଣ ହୃଦୟ ସରଳ
ଶତମନୁ ଦେଲେକ ଅଜପା ଜଏମାଳ ।
ଅସର ଶାୟକ ଅଞ୍ଜନ ମଉଷୋଧି
ଅଶ୍ୱିନୀକୁମାରେ କହିଲେ ଗୁଧି ବୁଧି ବ୍ୟାଧି
ଅନନ୍ତ ବାସୁକୀ ତକ୍ଷେକ ଅଷ୍ଟକୁଳାନାଗେ
ନାଗଫାଶ ବାଣ ଦେଲେ ଦୁର୍ଗାର ଅଙ୍ଗେ ।
ମଦନ ମାର୍ଦ୍ଦନ ମୋହୋନ ଶୋଷନ ଆଘ ପବନ
ଏମାନ ସମର୍ପିଲେ ଅନାଦି ଗ୍ରହଗଣ ।
ଆଇରି ଜ୍ୟୋତିରୁ ଧନୁ ଶିଶୁମୁନା
ଜପା ଅଜପା ଯୋଗ ଲଏ ସିନା ।୧୫୯୦।
ଋକ ସାମ ଯଦୁ ଅଥର୍ବ ବେଦମତ
ବିଦ୍ୟା ଗୁରୁ ସେ ନେଇ ଦେଲେ ଜଗତ ମାତ
ଆରାଧିତ ଦେବୀ ଯେ କହିଲେ ଗୁଧି ସିଧି
ଗଉରୀ ସଉରୀ ରନ୍ଧନ ନବବିଧି ।
ସୁମନ୍ତେକ ତିମିରି ବିଦାରଣ ବଇଡୁଜ ମଣି
ସୂର୍ଯ୍ୟ ଦେବତାଏ କରେ ଦେଲେ ଆଣି ।
ଅନଳ ଉଜ୍ଜଳ ମହାମତ ସାର
ଦୁର୍ଗାଙ୍କୁ ଜ୍ଞାନ ଯେ କହିଲେ ବଶ୍ୟାନର ।
ବିଜୁଳୀ ଆଦ୍ରାବଳୀ ଅମରକୋଷ ଧନୁ
ଦୁର୍ଗାର ହସ୍ତେ ନେଇଁ ଦେଲେ ଶତମନୁ ।
ଅମଳାଣ ପତେନୀ ଆଭରଣ ଦେବୀର ଅଙ୍ଗ
ଗିରିରାଜ ହେମବନ୍ତ ସମର୍ପିଲେ ସିଙ୍ଘ ।
ମନପବନ ଦଣ୍ଡ ନାରଦ ମୁନି ଦେଲେ
ଖେଚରୀ ବିବାନ ନେଇଁ ଅନନ୍ତ ସମର୍ପିଲେ ।
ମରୁ ବାହାନ ଯେ ସମର୍ପିଲେ ପିତା
ଜଟାଇସ ସମର୍ପିଲା ନେଇ ବଜ୍ରସେନ୍ହା କପତା
ସନ୍ତୋଷ ମନେ ବେଦ ଈଶାନ
ଦୁର୍ଗାଙ୍କୁ ସମର୍ପିଲେ ବଇଲ ବାହାନ ।
ଅନେକ ହରଷେ ଦେବ ଦଇତାରି
ଦୁର୍ଗାଙ୍କୁ ସମର୍ପିଲେ ଗରୁଡ଼ ନାଗ ଅଇରି ।୧୬୦୦।
ଦେବଙ୍କ ରାଜା ଯେ ଦେବଙ୍କର ପୁରୁହୂତ
ସେ ଇନ୍ଦ୍ର ସମର୍ପିଲା ନାଗ ଅଇରାବ୍ରତ ।
ଶାର୍ଦ୍ଦୋଳ ବାହାନ ସମର୍ପିଲେ ଅନଙ୍ଗ
ପବନ ଦେବତା ନେଇ ସମର୍ପିଲା ମୃଗ ।
କାଳାନଳ ଦେବତା ସେ ଦେବ ବୈଶ୍ୟାନର
ମେଷ ବାହାନ ସମର୍ପିଲା ଦୁର୍ଗାର ଆଗର ।
ଅମୋହ ଶକତି ଅଭଏ କାଳ ଫାଶି

ନାଶକର ଦେବତା ନେଇ ସମର୍ପିଲା ମଇଁଷି ।
ତାଡ଼େକୀ ନିଶୋଧନ କଲା ଯେବଣ କୁମର
ମୟୂର ସମର୍ପିଲା ନେଇ କାର୍ତ୍ତିକେଶ୍ୱର ।
ମଗର ବାହାନ ନେଇ ଦେଲାକ ବରୁଣ
ଗଣନାଥ ଦେବତା ନେଇ ସମର୍ପିଲା ଇନ୍ଦୁର ବାହାନ ।
ଅନେକ ହରଷେ ଦେବ କରତା
ସପତ ଅଶ୍ୱ ସମର୍ପିଲେ ଦେବ ଦୁର୍ଗା ଆଦିମାତା ।
ଦେବଙ୍କ ସଞ୍ଚିଲା ଶମ୍ଭୁ ନାମେ ଦିଗପାଳ
ଦୁର୍ଗାର ଛାମୁରେ ସମର୍ପିଲା ଶାର୍ଦ୍ଦୋଳ ।
ଅମୃତ ଦେବତା ଦେଲେ ବାହାନ ବ୍ୟାଘ୍ରର
ରତ୍ନାବଳୀ ବାହାନ ସମର୍ପିଲେ କୁବେର ।
ସାଧୁର୍ଯ୍ୟ ଦେବତା ଦେଲେ ନାରାଯ ଯଗାରତ
ପନଗାଂ ଅଶ୍ର ସମର୍ପିଲେ ଯତସତ ।୧୬୧୦।
ଆହୋ ସାବଧାନ ହୋଇ ଶୁଣ ପରୀକ୍ଷ ରାଏ
ଯେ ଯାହାର ବାହାନ ଭୂଷଣ ଦେଲେ ଦେବତାଏ ।
ଦେବତାଏ ବୋଇଲେ ମାଗୋ ଆମ୍ଭ ସମସ୍ତଙ୍କର ଦେଲୁ ଆତ୍ମାକାଢ଼ି
ଆପ ଆତ୍ମା ଘେନିଣ ସମୁଦ୍ରେ ଥାଇଁ ବୁଡ଼ି ।
ମାତ ଗୋ ଏ ପାଦ ଗୋଟିର ଜନ୍ମେ ଜନ୍ମେ ଥାଉ ସେବା
ମଷାଂସୁର ବଧ୍ୟ କରି ଗୋ ଅଜଏ ସ୍ୱର୍ଗ ଦେବା ।
ଦୁର୍ଗା ବୋଇଲେ ତୁମ୍ଭନ୍ତ ମୁଁ ହୋଇଲି ପ୍ରସନ
ଆଜହୁଁ ନିଶ୍ଚିନ୍ତ ହୋଇ ତୁମ୍ଭେ ଥାଅ ଗଗନ ।
ଅମର ହୋଇଁ ଯେବେ ଆଶ କଲ ମୋତେ
ଆଜ ଦାନବ ବଳ ମାରିବି ତୁମ୍ଭ ଅର୍ଥେ ।
ଅଗ୍ନି ନିବାରିଣ ମୂର୍ତ୍ତିବନ୍ତ ହୋଇଲେ
ପ୍ରସନ ହୋଇ ଦେବତାମାନଙ୍କୁ ଅଭଏ ବର ଦେଲେ ।

## ଦୁର୍ଗାଙ୍କର ରତ୍ନଗିରିରେ ଅବସ୍ଥିତି

ଆହୋ ପରୀକ୍ଷ ରାଜା ଅନେକ କୋଟି ବ୍ରହ୍ମାଣ୍ଡ ଘୋଟି ଏକ ଦୃଷ୍ଟି
ବିଜଏ ମାହେଶ୍ୱରୀ ଗଜରିପୁ ପିଠି ।
ସହସ୍ରେକ ଭୁଜେ ସହସ୍ରେକ ଆୟୁଧ ସେନା
ବ୍ରହ୍ମାଣ୍ଡେ ଲାଗିଲା ଯାଇଁ ସହସ୍ରେ ମୃଧନା ।
ତେତିଶ କୋଟି ଦେବତାଏ ଦେଖି କଲେ ଭଏ
ବୋଲନ୍ତି ଆମ୍ଭନ୍ତ ଗୋ ରକ୍ଷାକର ମାଏ ।
ବହଇ ମେଖଳା ସେ ଈଶାନ ବାହାନୀ
ମେଦିନୀ ବହୁଅଛି ଯେ ହୋଇଣ ମେରୁ ଗାମୀ ।୧୬୨୦।
ମେରୁ ପଞ୍ଚଷଠି ଯେ ସହସ୍ରେ ଯୋଜନ
ସରସ୍ୱତୀ ନଦୀ ତୀରେ ଉଦ୍ଦାନ ନାମେ ବନ ।
ସେ ଧବଳାଙ୍ଗୀ ନଦୀ ତୀରେ ଈଶାନ ଭାଗ ତଟେ
ତହିଁର ସନ୍ନିଧେ ପର୍ବତ କୋଣ ତଟେ ।
ସେ ପର୍ବତ ଉପରେ ବିଜଏ ଦଇତାରି
ପଞ୍ଚଦଶ ଯୋଜନ ଜେନାବତୀ ନଗ୍ରି ।
ତହିଁର ଉତ୍ତର ତଟେ ଜଟା ନାମେଣ ବଟ
କୃଳାବତୀ ପାଟଣା ତହିଁର ଉତ୍ତର ତଟ ।
ଲବଣ ନାମେ ସମୋଦ୍ର ତହିଁର ସନିଧେ
ଦେଖିଣ ସାନନ୍ଦ ହୋଇଲେ ସକଳ ବିବୁଧେ ।
ସହସ୍ରେକ ଭୁଜ ଦେବୀ ଶ୍ୟରୀରେ ଗୋପ୍ୟ କଲେ
ସମସ୍ତ ଶହସ୍ରମାନ ଖେଚରୀ ବିବାନେ ଥୋଇଲେ ।
ସମସ୍ତ ଗୋପ୍ୟ କରି ଅନ୍ତରୀକ୍ଷେ କାନ୍ତାନୀ
ରତ୍ନସିଙ୍ଘ ପର୍ବତେ ବସିଲେ ଜଗମୋହନ ରୂପ ଘେନି ।
ଅନେକ ରତ୍ନ ଯେ ଆଭରଣ କାଏ
ଝିନବସ୍ତ୍ର ପରିହରଣ କଲେ ମାହାମାୟେ ।
ଏକ ଶରୀର ଅନନ୍ତ ରୂପ ଗୋଟି
ଅସୁର ଭୁବନକୁ କଲେ ଦେବୀ ଦୃଷ୍ଟି ।
ଅମର ଭୁବନ ଜାଣି ଅସୁରଙ୍କର ପୁରୀ
କାଳ ଅନଳ ତେଜ ତହିଁକି ବିକାଶିଲେ ଶାକେମ୍ବରୀ ।୧୬୩୦।
ଦହନ ପାନ ରୋଉଦ୍ର ବିକାଶି ହୁଂକାର ଦୃଷ୍ଟି
ଜେନାବତୀ ନଗ୍ରେ ଉପୁଜିଲା ଅନେକ ଅରଷ୍ଟି ।
ଶୁଣ ହୋ ପରୀକ୍ଷ ରାଜା ବଦନ୍ତି ଶୁକ ମୁନି
ନିଶ୍ଚଳ ଆସନେ ବିଜଏ କାନ୍ତାନୀ ।
ସିଙ୍ଘଳ ଦୀପର ପାରୁଶେ ଅନେକ ରତ୍ନପୁର ।
ମେରୁ ବାହାନୀ ସେ ଲକ୍ଷ୍ମୀ ଭଦ୍ରା ସରସ୍ୱତୀ
ସିଙ୍ଘଳ ଦୀପକୁ ସେ ଈଶାନ୍ୟ ବହନ୍ତି ।
ସେ ବେନି ନଦୀର ମଧରେ ସ୍ଥାନ
ବସଇ ପାଞ୍ଚ ନଗ୍ର ଅତିଅ ବିତପନ ।
ଜେନାବତୀ ନଗ୍ରି ଚଣ୍ଡପୁର ନଗ୍ର
ଶମ୍ଭୁପୁର ନଗ୍ର ବିରିଜାପୁର ନଗ୍ର ଚାଣ୍ଡାଳପୁର ନଗ୍ର ।
ଏ ପାଞ୍ଚ ପୁର ବେଢ଼ି ସେ ବସଇ ସେ ନଗ୍ର ପାଞ୍ଚସ୍ଥଳୀ
ପଞ୍ଚଶତ ଯୋଜନ ପଞ୍ଚଶତ ଅଙ୍ଗୁଳି ।
ସେ ପଞ୍ଚ ନଗ୍ର ବେଢ଼ି ସରସ୍ୱତୀ ଭଦ୍ରା
ଲବଣ ସମୋଦ୍ର ସହିତେ ପଞ୍ଚମୁଦ୍ରା ।

ଏଥିର ମଧ୍ୟେଂ ହର ଉଦ୍ୟାନ ବନ
ଦେବ ଶତେ ନବ ଶତ ଯୋଜନ ସ୍ଥାନ ।
ସେ ବନର ମଧ୍ୟେଂ ଅନେକ ବୃକ୍ଷ ଅଛଇ
ଜାମ୍ବୁ ନଟିକାଳ ଆମ୍ବ ପଣସ ଫଳଇ ।
ଗୁଆ କଦଳୀ ହରିତକୀ ଦାରାକ୍ଷ ଫଳ
ଲେମ୍ବାଉ କଇଥ ଫଳ ବସଇ ସକଳ ।୧୬୪୦।
ତେନ୍ତୁଳି ଜାମ୍ବୁ ଆବର ବରକୋଳି
ମଗାଂ ମାତଗାଂ କରନ୍ଦା ରାଇଁ ଅଏଁଳା କୋଳି ।
କଣ୍ଟ କଣ୍ଟହୋଳ ଯେ ବସନ୍ତ ବକ୍ଷ ମାଳ
ଅନେକ ପୁଷ୍ପ ଭାଙ୍ଗନ୍ତି ତରୁଡ଼ାଳ ।
ଏହେର୍ଣେକ କରି ସେ ସଞ୍ଚିଲା ସୁରସାଇଁ
ଫଳ ବୃକ୍ଷହିଁ ଯେ ଅଛି ଆନ ବୃକ୍ଷ ନାହିଁ ।
ସେ ବନସ୍ତର ଭିତରେ ରତ୍ନଗିରି ପର୍ବତ
ତୁଣ୍ଡଗିରି ପର୍ବତ ଏ ସିଙ୍ଘଗିରି ପର୍ବତ ।
ଏ ଚାରି ପର୍ବତଙ୍କର ମଧ୍ୟେ ବିଝଂନାମେ ଗିରି
ସେ ପର୍ବତଙ୍କର ମଧ୍ୟେ ବିଜଏ ଶାକମ୍ବରୀ ।
ଏହା ଶୁଣି ନୃପତି ପରୀକ୍ଷ ବୋଇଲା
ଭୋ ଶୁକ ବ୍ରହ୍ମବେତ୍ତା ଆଶ୍ଚର୍ଯ୍ୟ କଥା ହୋଇଲା ।
ପଞ୍ଚ ନଗ୍ରି କହିଲ ଯେ ଚାଣ୍ଡାଳ ନଗ୍ରି ବୋଲି
ତାହା ଶୁଣି ମୁହିଁ ଯେ ଆଶ୍ରିଯ ହୋଇଲି ।
କିମ୍ପାଇଁ ସେ ନଗ୍ରି ଚାଣ୍ଡାଳ ପୁର ନାମ
ଏହା ମୋତେ କହିବା ମୁନିଙ୍କ ଉତ୍ତମ ।
ଶୁଣ କୁରୁନାଥ ପଚାରିଲୁ ଯାହା
ସାବଧାନେ କହଇ ଶୁଣ ହାଦେ ତାହା ।୧୬୫୦।
ଏକ ସତ୍ୟ ଯୁଗେ ନଘୋଷ ନାମେ ବଡ଼ ନୃପତି
ତାହାରି ରାଜ୍ୟେ ସେ ମେଘେ କଲେ ହୋ ଅନୀତି ।
ସାର ଦୀପର ମଧ୍ୟେଂ ହୋ ଅପାଳକ କଲା
ପଞ୍ଚ ବରଷ ପରିଯନ୍ତେ ଜଳ ନ ବରଷିଲା ।
ଆହୋ ପରୀକ୍ଷ ସେ ବୁଧିବନ୍ତ ନଘୋଷ ରାଜା
ଦୁଇ ବରଷ ପରିଯନ୍ତେ ପରଜା ବଞ୍ଚିଲେ ଅହିସୂର୍ଯ୍ୟା ।
ରାଜାରହିଁ ସରିଲା ଧନ ଦ୍ରବ୍ୟ
ପରଜାଙ୍କୁ ବାଣ୍ଟିଦେଲା ରାଏ ସର୍ବ ।
ଏମନ୍ତେ ଚାରି ବରଷ ଗଲା ବହି
ପୁଣ ମେଘେ ସେ ନ ପାଳିଲେ ମହି ।
ପରଜାଙ୍କ କଷ୍ଟ ଦେଖି ସେ ନଘୋଷ ନୃପତି
ଦେବତା ବ୍ରାହ୍ମଣ ବରିଲା ନଗଲା ଅନୀତି ।
ଯାଗ ଯଜ୍ଞ କରନ୍ତେ ମେଘେ ନୋହିଲେ ଶାନ୍ତି
ଆବର କିସ ଦେବତା ବ୍ରାହ୍ମଣ ବୋଲି ହରିଲା ସବୁନ୍ତି ।
ଆହୋ ବ୍ରାହ୍ମଣମାନେ ଯେ କହିଲେ ବଶିଷ୍ଟଙ୍କୁ
ସତ୍ୟ ଯୁଗେ ସେ ଅନ୍ୟାଏ ହୋଇଲା ଦେବତା ମାନଙ୍କୁ ।
ଆରଯୁଗ ମାନେ ଯେ ହୋଉଛନ୍ତି ଭ୍ରଷ୍ଟି
ପିତାର ଆଗରେ କହ ଯାଇ ବଶିଷ୍ଟି ।
ବଶିଷ୍ଟେ କହିଲେ ପିତାମହର ଅଗ୍ରତେ
ଇନ୍ଦ୍ର ବୃଷ୍ଟି ନ କଲା ପଞ୍ଚ ବରଷ ପରିଯନ୍ତେ ।୧୬୬୦।
ବେନି ବରଷ ଥିଲା ରାଜାର ଜିନିଷ
ତେଣେ ବଞ୍ଚିଲେ ପରଜା ବେନି ଯେ ବରଷ ।
ଆବର ମେଘେ ନ କଲେକ ବୃଷ୍ଟି
ରାଜାର ଧନ ଥିଲା ପରଜାଙ୍କୁ ଦେଲା ବାଣ୍ଟି ।
ଆରେକ ବରଷ ହିଁ ନ ପାଳିଲା ପୁଣ
ଭଣ୍ଡାରୁ ଧନ ଦେଇ ବୋଲଇ ଧାନ କିଣ ।
ଚାରି ବରଷ ପରିଯନ୍ତେ ବଞ୍ଚିଲେ ଏମନ୍ତେ
ପୁଣି ହିଂସେ ମେଘ ନ ବରଷିଲେ କଦାଚିତେ ।
ସ୍ୱାମୀ ନାଶଗତ ହୋଉଛନ୍ତି ଜଗତ ଜନ ଜନ୍ତୁ
ଆଜ୍ଞା ଦିଅ ପିତା ସେ କେମନ୍ତେ ବ୍ରତନ୍ତୁ ।
ପିତାମହ ଆଜ୍ଞା ଦେଲେ ସେ ନାରଦଙ୍କୁ ରାଇ
ତୁ ଯାଇ ଖୋଜ ଧାନ ଅଛି କାହିଁ ।
ତୁ ସେ ଚାରିପୁରେ ପ୍ରବେଶ ଜାଣୁ ନା ସମସ୍ତ
ନାରଦେ ବୋଇଲେ ମୁଁ ଦେଖିବି ଦୀପ ସାତ ।
ପିତାର ବଚନେ ସେ ଗଲେକ ନାରଦେ
ସାତ ଦୀପର ମଧ୍ୟେ ପ୍ରବେଶ ହୋଇଲେ ହାଦେ ।
ଆହୋ ପରୀକ୍ଷ ପୂର୍ଣ୍ଣତୋୟା ସରସ୍ୱତୀ ନଦୀର କୂଳ
ତହିଁ ରହିଅଛି ଅମ୍ବିକା ନାମେ ଚାଣ୍ଡାଳ ।
ନାରଦେ ବୋଇଲେ ଆହୋ ଏ ତୋହୋର ଅନେକ ଆଏତନ
ଚାଣ୍ଡାଳ ବୋଇଲା ମୁନି ହୋ ଏ ମାନ ସବୁଧାନ ।
ତିନି ଯୁଣ ମାଡ଼ି କୁଦ କୁଦ ହୋଇଅଛି
ତଳେ ପଟା ଉପରେ ଛାଏଣି ନାହିଁ କିଛି ।
ମୋହର ଲେଖା ଧାନ ଅଛି ପାଞ୍ଚ ମେବକ୍ଷ ବସି
ତହିଁର ଉପରେ ହାଦେ ଦେଅ ନ ବରଷି ।
ଖରା ବରଷା ଶୀତରେ ଥାଇ ସେହିଠାରେ
ଚାଣ୍ଡାଳ କହିଲା ପୁଣ ନାରଦ ମୁନିବରେ ।

ନାରଦେ ବୋଇଲେ ହେ ଶୁଣ ଚାଣ୍ଡାଳ
ଏ ଧାନକୁ ସଞ୍ଚିଲୁ ତୁ କେତେ କାଳ ।
ଅମ୍ବିକା ଚାଣ୍ଡାଳ କହିଲା ନାରଦଙ୍କ ଆଗେ
ଯଦୁର ନାମେ ପୁର ହେ ଯେକ ସତ୍ୟ ଯୁଗେ ।
ବଡ଼ାଇ ପ୍ରତାପୀ ରାଜା ଜଳଧର ଜ୍ୟୋତି
ସିଘଳ ଦୀପେ ସେ ଅଟଇ ଚକ୍ରବ୍ରତୀ ।
ସେ ରାଜାର ତହିଁ ମୋହୋର ବାରିଘର ସେବା ଅଟଇ
ମଳ କଢ଼ା ପଣେ ମୁଁ ଦ୍ୱାର ଘରେ ଖଟଇ ।
ତାହାର ମଳ କାଢ଼ି ମୁଁ ଖଟଇ ଯେବଣ ଭୂଇଁ
ତହିଁରେ ଧାନ ଗୋଟାଏ ପଡ଼ି ଉଠିଲାକ ସ୍ୱାମୀ ।
ମୁନି ହେ ସେ ଧାନ ମୁଣ୍ଡାକ ହୋଇଲା ମାଣ ତିନି
ମୁଁ ସେ ଧାନ ତିନି ମାଣ ଶୁଖାଇଲି ଘେନି ।
ସେ ତିନି ମାଣ ବୁଣିଲି ସେହି ଭୂମିର କତି
ସେ ଧାନ ହୋଇଲା ତିନି ନଉତି ଉତପତ୍ତି ।୧୬୮୦।
ମୁନି ହେ ମୋହୋର ସାହି ଲୋକକୁ ମୁଁ ଦେଲି ନିରୋଧି
କୋଡ଼ିକେ ପାଞ୍ଚ ଗଉଣୀ ଘେନଇଁ ବିରୋଧି ।
ସେ ଭୂଇଁରେ ବୁଣଇଁ ତହିଁ ଉପୁଜଇଁ ଏକ ବିଶି
ତାହାଇ ସେହିମତେ ବୃଧି ଦିଅଇ ଦୁଇରାଶି ।
ମୁନି ହେ ଜୀମୁତ ବାହନ ରାଜ୍ୟେ ଅପାଳକ ହୋଇଲା
ମୋହୋର ତହୁଁ ବୃଧି କରି ଧାନ ଲକ୍ଷେ ଭରଣ ନେଲା ।
ବରଷକ ପୂରିଲେ ମୋତେ ଲକ୍ଷେ ଭରଣ ଯାଚି
ମୁହିଁ ବୋଇଲି ଏମନ୍ତେ ମୋତେ ଧର୍ମ ନଗଛି ।
ଆହୋ ଜୀମୁତବାହାନ ମୁନି ହେ ଯେହ୍ନେ ବୃଧି ମୁକୁ
କୋଡ଼କରେ ପାଞ୍ଚ ଗଉଣୀ ଅଧିକ ନମାଗଇ ତୁମ୍ଭଙ୍କୁ ।
ଧାନ ଘେନନ୍ତେ ମୋତେ ସମସ୍ତେ କଲେ ଧନି ଧନି
ବୋଇଲେ ଚାରି ଯୁଗରେ ବ୍ରତିଥାଅ ତୁ ଆମ୍ଭର ଆଇଷ୍ୟ ଘେନି ।
ଏମନ୍ତେ ସତ୍ୟ ଯୁଗେ ବଞ୍ଚିଲି ସମସ୍ତଙ୍କ କଲ୍ୟାଣେ
ଆଇଷ ଧନ ବୃଦ୍ଧି ହୋଇଲାକ ତେଣେ ।
ନାରଦେ ବୋଇଲେ ହୋ ଅମ୍ବିକା ଚାଣ୍ଡାଳ
ପାଞ୍ଚ ବରଷ ଅପାଳେକ କଲା ସେନଘୋଷ ରାଜ୍ୟର
ନ ଉପୁଜିଲା ନୂଆ ସେ ନ ଥିଲା ପୁରୁଣା
ସଂସାର ଗୋଟିକି ତୁହି ସେ ଜଗଜିଣା ।
ଚାଣ୍ଡାଳ ବୋଇଲା ମୁନି ହେ ମୁ ନ ଦିଅଇଁ ବୃଧି
କଥା ଏକ ଅଛି ଶୁଣ ତପୋନିଧି ।୧୬୯୦।
ମୁନିହେ ଦୋହିତା ଗୋଟିଏ ଯେ ଅଛଇ ମୋହର
ତାହା ତୁଲେ ମୁଁ ଯେ ନ ପାଇଲି ବର ।
ସେ କନ୍ୟା ଗୋଟିକି ପ୍ରଦାନ କରିବି
ଏ ଧାନ ଗୁଡ଼ାକ ମୁଁ ଯଉତୁକ ଦେବି ।
ଏହା ଶୁଣି ନାରଦେ ଶର୍ବଣେ ହସ୍ତ ଦେଲେ
ପିତାମହ ଛାମୁରେ ଯାଇଁଣ ଜଣାଇଲେ ।
ଶୁଣ ଦେବ ସାବଧାନେ ବିହନ୍ତା ବିଧାତା
ଚିନ୍ତାମଣି ନାରାୟଣ ତୁ ଜଗତକରତା ।
ସ୍ୱାମୀ ସିଘଳ ଦୀପେ ପୂର୍ଣ୍ଣତୋୟା ସରସ୍ୱତୀ କୂଳେ
ଅମ୍ବିକା ନାମେ ତହିଁ ଥାଇ ଯେ ଚାଣ୍ଡାଳେ ।
ତାହା ତହିଁ ଅଛି ଧାନ ପଞ୍ଚ ମେଦକ୍ଷ ବସିଂ
ମୁଁ ବୋଇଲି ଏ ଧାନ ନଘୋଷକୁ ଦେସି ।
ନାରଦ ବଚନେ ଏସନକ ବାଣୀ ଶୁଣି
ନଘୋଷକୁ ବୋଇଲେ ସେ ସଚରାଚର ମଣି ।
ନାରଦେ ଧାନ କରି ଅଇଲେନ ଠାବ
ଯାଇଁ ତାହା ଘେନି ଆସ ରାଜଦେବ ।
ଯେତେ ଦୂରେ ସେ ହୋଇଲା ଅନାବୃଷ୍ଟି
ସେ ଲୋକଙ୍କୁ ଧାନ ଦିଅ ହାଦେ ବାଣ୍ଟି ।
ପିତାର ବଚନେ ଗଲା ସେ ନଘୋଷ
ପୂର୍ଣ୍ଣତୋୟା ନଦୀ ତୀରେ ହୋଇଲା ପରବେଶ ।୧୭୦୦।
ସନିଧ୍ୟେଂ ରାଇଂଲା ସେ ଅମ୍ବିକା ଚାଣ୍ଡାଳକୁ
ଏ ଧାନଗୁଡ଼ାକ ବୃଧି କରି ଦିଅ ଆମ୍ଭଙ୍କୁ ।
ଅମ୍ବିକା ଚାଣ୍ଡାଳ ବୋଇଲା ତୁମ୍ଭେ ସୋମବଂଶ ଚକ୍ରବ୍ରତୀ
ତୁ ମହାରାଜା ଯେ କରିବୁ ଅନୀତି ।
ତୋହର ବାହୁବଳେ ସବୁରି ତପ ଧର୍ମ
ନଘୋଷ ବୋଇଲା ତୋହର ଆଏ କିଏ ବଳେ ନେମ ।
ଚାଣ୍ଡାଳ ବୋଇଲା ମୋହର ଯୁଗତେ ଅଛି ମହାରାଏ
ମୋହର ଅଛି ହାଦେ ଅବିଭାଇ କନ୍ୟା ଗୋଟିଏ ।
ତାହାକୁ ପ୍ରଦାନ ହୁଅସି ମହୀପତି
ଏ ଧାନଗୁଡ଼ାକ ଯେ ଯଉତୁକ ତୋତେ ଦେବି ମହୀପତି ।
ଏହେନ୍ତିକ ବ୍ରତ କରିଅଛି ମୋହର
ତୁମ୍ଭେ ଜଗତେଶ୍ୱର ମନରେ ବିଚାର ।
ଶୁଣି ନ ଘୋଷ ରାଜା ଶ୍ରବଣେ ହସ୍ତ ଦେଲା ।
ବ୍ରହ୍ମାଙ୍କର ଅଗ୍ରତେ ସେ ବାରତା କହିଲା ।
ସ୍ୱାମୀ ଅମ୍ବିକା ଚାଣ୍ଡାଳର ଧାନ ଅଛି ଯେତେ
ଅପାଳକ ରାଜ୍ୟକୁ ଅଣ୍ଟିବ ସାତ ବରଷ ପରିଯନ୍ତେ ।

ବୋଇଲା ମୋହର ଅଛି ଯେ ଦୋହିତା ଗୋଟିଏ
ତାହାକୁ ପ୍ରଦାନ ତୁ ହୁଅସି ମହାରାଏ ।
ମୁହିଁ ମହାରାଜା ଅଟଇଁ ସୋମବଂଶୀ
ଏଡ଼େ ବଡ଼ ବଂଶ ମୋର ହୋଇବାକ ଧ୍ୱଂସି ।୧୭୧୦।
ନଘୋଷର ବଚନେ ବ୍ରହ୍ମାଏ ହୋଇଲେକ ତୁନି
ସନ୍ନିଧେ ହକାରିଲେ ବଶିଷ୍ଠ ମହାମୁନି ।
ତୁ ଯାଅନି ବଶିଷ୍ଠ ଚାଣ୍ଡାଳ ତହିଁକି
ସେ ଧନଗୁଡ଼ାକ ଦିଅ ନଘୋଷ ନୃପତିକି ।
ଆହୋ ପରୀକ୍ଷ ସ୍ୱାମୀର ଆଜ୍ଞା ନିବେଶି ଶିରର
ଚଳିଲେ ବଶିଷ୍ଠ ପୂର୍ଣ୍ଣତୋୟାର ତୀର ।
ସେ ଅମ୍ବିକା ଚାଣ୍ଡାଳ ଦେଖିଲା ମହାମୁନି
ବଶିଷ୍ଠ ପାଦେ ପୂଜାକଲା ଅନେକ ରତ୍ନ ଘେନି ।
ବଶିଷ୍ଠେ ବୋଇଲେ ଶୁଣ ହୋ ଚାଣ୍ଡାଳ
ତୋହୋର ତହିଁ ଅଛି ସେ ଧର୍ମ ଯେ ଆଚାର
ଆହୋ ଭୋଖିଲାକୁ ଅନ୍ନଗ୍ରାସେ ଦେଲେ ସୁବର୍ନ୍ୟ ବାସ୍ତରିମାଢ଼ ମୂଳ
ଏତେ ସୁବର୍ନ୍ୟ ଦାନ ଦେଲେ ସେ ଅନ୍ନ ବେଳକୁ ସମତୁଲ ।
ତୋହର ତହିଁ ଅଛି ଧାନ ପାଞ୍ଚ ମେବକ୍ଷ ଯେ ବସିଂ
ଏହା ଦେଇ ତୁ ହୋଅ ବଇକୁଣ୍ଠବାସୀ ।
ଚାଣ୍ଡାଳ ବୋଲଇ ମୁ ନ ଜାଣଇଁ ତୁମ୍ଭର ନାମ
ଦୋହିତା ଗୋଟି ଯେ ପ୍ରଦାନ ହୋଇବ ସେ ସୁଖେ ନେବ ଧନ ।
ବଶିଷ୍ଠେ କହିଲେ ଯାଇଁ ପିତାମହର ପାଶ ।
କିମ୍ପା ଆନେ ତହୁଁ ଘୁରି ଅଇଲା ନଘୋଷ ।
ସ୍ୱାମୀ ଚାଣ୍ଡାଳ ବୋଲଇ ମୋହର କୁମାରୀ ଯାହାକୁ ପ୍ରଦାନକରିବି
ଏ ଧାନଗୁଡ଼ାକ ତାକୁ ଯଉତୁକ ଦେବି ।୧୭୨୦।
ବ୍ରହ୍ମାଏ ବୋଇଲେ ବଶିଷ୍ଠ ପ୍ରଦାନ ହୁଅ ତୁ
ସୃଷ୍ଟି ରକ୍ଷା ହୋଉ ସଚରାଚର ବ୍ରତୁ ।
ପିତାର ବଚନେ ଗଲେ ବଶିଷ୍ଠ ମହାମୁନି
ସଙ୍ଗରେ ଗଲେ ମାରକଣ୍ଡ ପଉଲସ୍ତି ଅଗସ୍ତି ମୁନି ।
ବଶିଷ୍ଠ ଚଳନ୍ତେ ବ୍ରହ୍ମ ଋଷିମାନେ ଗଲେ
ଅମ୍ବିକା ଚାଣ୍ଡାଳର ଦ୍ୱାରେ ମିଳିଲେ ।
ଋଷିମାନେ ବୋଇଲେ ହୋ ଅମ୍ବିକା ଚାଣ୍ଡାଳ
ନଘୋଷ ନୃପତି ସେ ତଇଲୋକ୍ୟ ଦିଗପାଳ ।
ଧାନ ଗୁଡ଼ାକ ସେ ମାଗିଲା ରାଏ ତୋତେ
ତୁ ତାହା ବଚନ ଲଙ୍ଘିଲୁ କେମନ୍ତେ ।
ସେ ଚାଣ୍ଡାଳ ବୋଇଲା ଶୁଣିମା ଗୋସାଇଁ
ମୁହିଁ ଯାଚିଲି ଗୋସାଇଁ ସେ କଲା ନାହିଁ ନାହିଁ ।
ଦୋହିତା ଗୋଟି ମୋର ପ୍ରଦାନ କରିବି ଯାହାକୁ
ଏ ଧନ ଗୁଡ଼ାକ ଯଉତୁକ ଦେବଇଁ ତାହାକୁ ।
ବଶିଷ୍ଠେ ବୋଇଲେ ଦେଖିବା ଆଣ ତୋର ଝିଅ
ଯେବେ ମନୋଅର୍ଥ କରିଅଛୁ ସନ୍ଦେହ ।
ଶୁଣି ଚାଣ୍ଡାଳ ଅନେକ ହୋଇଲା ହରଷ
ମଣ୍ଡିଲା ଭୁବନ ସେ ଅନେକ ରତ୍ନକୋଷ ।
ବଶିଷ୍ଠ ମାରକଣ୍ଡ ଅଗସ୍ତି ମହାମୁନି
ବିଭାକୁ ଶୁଭ ଅନକୂଳ ସେହି ସେ ଘେନି ।୧୭୩୦।
ମାର୍ଗଶିର ମାସ ଶୁକ୍ଳ ପକ୍ଷ ପ୍ରତିପଦା ଦିନ
ଅର୍କବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ ।
ଆହୋ ପରୀକ୍ଷ ସେ ଚାଣ୍ଡାଳର ଦୋହିତା ନାମ ଅରୁନ୍ଧତୀ
ତାହାକୁ ପ୍ରଦାନ ହୋଇଲେ ବଶିଷ୍ଠ ବ୍ରହ୍ମ ମହାଯତି ।
ତାର ବାର ନକ୍ଷତ୍ର ଗ୍ରହ କରଣ ଅଶୁଂ ମାହିନ୍ଦ୍ର ଲଗ୍ନ ଘେନି
ବିଭା ହୋଇଲେ ସେ ବଶିଷ୍ଠ ମହାମୁନି ।
ଜଳଧର ଗୋତ୍ର ବଶିଷ୍ଠ ମହାଋଷି
ଅମ୍ବିକା ଗୋତ୍ର ଯେ ଚାଣ୍ଡାଳ କୁଳ ଭାଷି ।
ଆପଣା କାର୍ଯ୍ୟେ ଯେ ଅଗସ୍ତି ତପୋବନ୍ତ
ବେନି କୁଳ ସେ ବିଭା ସେ କଲେ ଉପଗତ ।
ଜୟ ଜୟ ମଙ୍ଗଳ ଶୁଭିଲାକ ଧ୍ୱନି
କୁଶ ବନ୍ଧନ ଯେ କରନ୍ତି ହସ୍ତ ବେନି ।
ବଶିଷ୍ଠଙ୍କର ହସ୍ତ ତଳେ ଚାଣ୍ଡାଳୁଣୀ ହସ୍ତ ଉପରେ
କୁଶ ଗଣ୍ଠିକଲେ ଯେ ଯଥାବିଧି ବେଭାରେ ।
ଶଙ୍ଖେ ଜଳ ତିଳ ଘେନିଣ ଅଗସ୍ତି
ଅମ୍ବିକା ଚାଣ୍ଡାଳ ହସ୍ତରେ ଦେଲେ ତତକ୍ଷଣାତି ।
ଅମ୍ବିକା ଚାଣ୍ଡାଳ ବୋଇଲା ମୋର ନାହିଁ ଆନ
ପଞ୍ଚ ମେବକ୍ଷ ବସିଂ ଅଛି ମୋର ଧାନ୍ୟ ।
ତାହା ମୁଁ ଯଉତୁକ ଦେବି ଯଥାବିଧି
ବଶିଷ୍ଠେ ବୋଇଲେ ଏଣେ ଯେଣେ କାର୍ଯ୍ୟ ହଉ
ଆମ୍ଭର ସାଧି ।୧୭୪୦।
ଯଉତୁକ ସରିଲା ସେ କୁଶଗଣ୍ଠି ପେଡ଼ି
ସ୍ୱାହା ସୁଧା ଉପଗତ ଲଯ୍ୟା ହୋମ କରି ।
ଅଗ୍ନିର ଜ୍ୟୋତି ଦେଖିଲେ ଅଗସ୍ତି ମୁନି ଦେବ
ଘୃତ ଭୋଗ ଦେଲେ ନେଇ ବଶ୍ୟାନର ଜିଭ ।
ତହୁଁ ସେ ପାରଣା କଲେ ବେନି

ତହୁଁ ଚଳନ୍ତି ସେ ବଶିଷ୍ଠ କନ୍ୟା ଘେନି ।
ଆହୋ ନଘୋଷ ନପତି ମାଗିଲେ ସବୁଧାନ
ଗ୍ରାମ ମୂଳେ ବାଣ୍ଟିଲା ସେ ଦିଲାକ ରାଜନ ।
ସେ ଧାନର ଅନ୍ନ ଖାଇ ସମସ୍ତେ କଲେ ଧନି
ଥାଉ ବ୍ରତୁ କୋଟି କଳ୍ପ ସେ ଆମ୍ଭର ଆଇଷ୍ୟ ଘେନି ।
ବହୁତ କଲ୍ୟାଣ ସେ ବହୁତ ଅନୁରାଗେ
ସେ ଅରୁନ୍ଧତୀ ବସିଲା ବଶିଷ୍ଠଙ୍କର ସଙ୍ଗେ ସ୍ୱର୍ଗେ ।
ବହୁତ ଧ୍ୱନି ଉପୁଜିଲା ମହାତ୍ମା ଗୁଣ କଲା
ଚାଣ୍ଡାଳ କୁଳ ସେ ଦୋଷ ନ ଲାଗିଲା ।
ଶୁଣ ହୋ ରାଜା ବ୍ରାହ୍ମଣ ମନ୍ତ୍ରବଳ
ଚାଣ୍ଡାଳୁଣୀ ଅର୍ଦ୍ଧଅଙ୍ଗ ବଶିଷ୍ଠର ସର୍ବକାଳ ।
ସେ ଅରୁନ୍ଧତୀ ଯାହା ରାନ୍ଧଇ ସେହୁ ହୁଅଇ ଅମୃତ ପାଗ
ଦେବ ଋଷି ରାଜ ଋଷି ତାହା ସମସ୍ତେ କଲେ ଭୋଗ ।
ବଶିଷ୍ଠେ ଯାଗ ଯଜ୍ଞ କରନ୍ତି ସେ ଅରୁନ୍ଧତୀକି ଘେନି ।
ବଶିଷ୍ଠର ସଙ୍ଗତେ ସେ ହୋଇଲେ ସ୍ୱର୍ଗଗାମୀ ।୧୭୫୦।
ତେଷଠି ଅପର୍ଣ୍ଣା ତୁଳେ ଯେ ଚଉଷଠି ଅପର୍ଣ୍ଣା
ସେ ବ୍ରହ୍ମ ଦେବସ୍ତିରୀ ପ୍ରଳୟ ଅନ୍ତ ସେହ୍ନା ।
କାଳେ ଗର୍ଭବାସୀ ହୋଇଲେ ଅରୁନ୍ଧତୀ
ସେ ଚାଣ୍ଡାଳୁଣୀ ପୁତ୍ର ଉପୁଜିଲେ ମହାଋଷି ଶକତି ।
ଶକତିର ତହୁଁ ଉପୁଜିଲେ ପାରେଶ୍ୱର
ପାରେଶ୍ୱର ନନ୍ଦନ ବ୍ୟାସ ମୁନିଶ୍ୱର ।
ଆହୋ ପରୀକ୍ଷ ବ୍ୟାସଙ୍କର ଆମ୍ଭେ ଷାଠିଏ ଶସ୍ତ୍ର ଶିକ୍ଷି
ତ୍ରେଲୋକେଣ ପାତେକ ଖଣ୍ଡିଲୁ ସର୍ବଋଷି ।
ତୁ ସେ ପୁଚ୍ଛାକଲୁ ଚାଣ୍ଡାଳ ନଗ୍ର କଥା
ସେ ଅମ୍ବିକା ଚାଣ୍ଡାଳର ସଖ୍ୟ କି ବାରତା ।
ସେ ଅମ୍ବିକା ଚାଣ୍ଡାଳର ଅନ୍ନଖାଇ ଯେତେକ ବ୍ରତିଲେ ସଂସାରେ
ପୃଥିବୀରେ ଶସ୍ୟ ଉପୁଜିଲେ ଅପାରେ ।
ଦେଖି ଆନନ୍ଦ ସେ ନଘୋଷ ନୃପତି
ସ୍ୱାମୀ ସେ ଚାଣ୍ଡାଳକୁଳେ ରହିଲା ବଡାଇଁ କୀରତି ।
ସେ ନଗ୍ର ହୋଇଁ ସରସ୍ୱତୀ ନଦୀ ତୀରେ
ସେ ଚାଣ୍ଡାଳର ପୁର ବୋଲି ରହିଲା ଚିରକାଳେ ।
ଏହା ଶୁଣି ସାନନ୍ଦ ପରୀକ୍ଷ ନୃପତି
ତବ ମୁଖୁଁ ଶୁଣିଲି ମୁନି ହେ ଫିଟିଲା ଦୁର୍ଗତି ।
ସେ ରତ୍ନଗିରି ପର୍ବତେ ଯେ ବିଜୟେ କଲେ ଦୃଗେ
ଦେବତାଙ୍କର କାର୍ଯ୍ୟ ସିଦ୍ଧ କଲେ କେବଣ ବାଗେ ।୧୭୬୦।

ନମୋ ନାରାୟଣ ନରକେଶ୍ୱର ଯାର ନାମ ।
ନର୍କ ତାରଣ ନାଥ ସୁଦୟା ଅନୁପାମ ।
ଅଦଭୁତେ ଅମ୍ବୁ ବ୍ୟାପିଲା ଯାର କାଏ
ବ୍ରହ୍ମାଣ୍ଡ ଘୋଟିଲା ଯେ ଅନେକ ତେଜ ପାଏ ।
ବିଷ୍ଣୁ ଭଗତି ଯହୁଁ ହୋଇଲା କୁମର ପ୍ରହଲାଦ
ତାହାକୁ ଝିଗାଂସ ଯହୁ କଲାକ ଦନୁଜ ।
ଭଗତ ମକ୍ଷଳ ସେ ପରମ ଯୋଗନାହା
ଭାରାଭାର ରଖନ୍ତା ନାଥ ନ ଜାଣଇଁ ଅବା କାହା ।
ପ୍ରଳୟ ଅନ୍ତେକ ସେ ଯାହାର ହାଦେ କାୟା
ଦେବଙ୍କୁ ଅଗୋଚର ଯେବଣ ସ୍ୱାମୀର ମାୟା
ବଡ଼ ଦୃଭାର ସେ ଦନୁଜ ହିରଣାକ୍ଷ
ଜାନୁରେ ପାଡ଼ି ଦେବ ବିଦାରିଲୁ ଯାହାର ବକ୍ଷ ।
ଏକ ଶ୍ୟରୀର ଦେବ କୋଟିଏ ଭୁବନ ବ୍ୟାପି
ଏହା ଲେଖିବି କେତେ ମୁ ସଞ୍ଚପି ।
ଦଶ ସହସ୍ର ଯୋଜନ ଯେବଣ ଦେବର କାଏ
ସବୁ କାୟା ଯାହାର ନଖ ଭିତରେ ସମ୍ପାଏ ।
ହିରଣକୁ ବିଦାରି ପ୍ରହଲାଦକୁ ଇନ୍ଦ୍ରପଦ
ଦେବଙ୍କର କଷ୍ଟ ପାରକରି ଛିଡ଼ିଲୁ ଯେ ବିଷାଦ ।
ଘୋର ରୂପେ ଦେଖି ଯେ ଦେବେ କଲେ ଭୟେ
ଲକ୍ଷ୍ମୀ କି ପେଷି ଯେ ଦେଲେ ଦେବତାଏ ।୧୭୭୦।
ନିଜ ପ୍ରିୟା ଦେଖି ଶ୍ରୀ ନରସିଂହ ଶ୍ୟାନ୍ତି
ଯୋଗ ରୂପ ବିକାଶିଲା ଅନନ୍ତ ମୂରତି ।
ଶ୍ରୀ ନରସିଂହର ଭାବ ଗୋଟି ଥାଉ ମୋର ହୃଦେ
ଲଭଇ ପରମ ଗତି ଶ୍ରୀ ନରସିଂହ ପ୍ରସାଦେ ।
ଶ୍ରୀ ନରସିଂହ ସୁମର ନରେ ଖଣ୍ଡଣ ହୋଉ ବ୍ୟାଧି
ଶ୍ରୀ ନରସିଂହ ସୁମର ନରେ କଳି ହୋଉ ସିଧି ।
ଶ୍ରୀ ନରସିଂହ ସୁମର ନରେ ଆଇଷ୍ୟ ହୋଉ ବର୍ଜି
ଶ୍ରୀ ନରସିଂହ ସୁମର ନରେ ସନ୍ତାନ ଉପୁଜି ।
ଶ୍ରୀ ନରସିଂହ ସୁମର ନରେ ଅମୃତ ହୋଉ ବୃଷ୍ଟି
ଶ୍ରୀ ନରସିଂହ ସୁମର ନରେ ମୁକ୍ଷ ଯେ ମୁକତି
ଶ୍ରୀ ନରସିଂହ ସୁମର ନରେ ଖଣ୍ଡଣ ହୋଉ ପାପ
ଶ୍ରୀ ନରସିଂହ ସୁମର ନରେ ସିଧ ହୋଉ ତପ ।
ଶ୍ରୀ ନରସିଂହ ସୁମର ନରେ ହୋୟେ କ୍ଷଏ
ଶ୍ରୀ ନରସିଂହ ସୁମର ନରେ ନିର୍ମଳ ହୋଉ କାଏ ।
ଶ୍ରୀ ଅଭଏ ନରସଂହାର ଜନ୍ମେ ଜନ୍ମେ ମୁହି ଦାସ
ଶୂଦ୍ର ମୁନି ସାରୋଳ ଦାସ ଜନ୍ମେ ଜନ୍ମେ ଅଭ୍ୟାସ ।

## ମହିଷାସୁରକୁ ଚଣ୍ଡ ମୁଣ୍ଡଙ୍କର ଦୁର୍ଗାଙ୍କ ବାର୍ତ୍ତା ପ୍ରଦାନ

ଏଥୁଅନନ୍ତରେ ଶୁଣ ପରୀକ୍ଷ ରାଏ
ଶ୍ରୀ ଦୁର୍ଗାର ଚରିତ ଶୁଣି ପାପ କର କ୍ଷଏ ।
ରତ୍ନଗିରି ଶିଖରେ ବିଜେ କଲେ ଦୃଗେ
ଜେନାବତୀ ନଗ୍ରେ ଦୃଷ୍ଟି ପଡ଼ିଲା ଅତି ବେଗେ ।୧୭୮୦।
ଅସୁରଙ୍କର ପୁର ହୋଇଲା ସେ ବାମ ଅଙ୍ଗ କତି
ବକ୍ର ନୟନେ ଚାହିଁଲା ସେ ଭଏ ମୃତି ।
ଆଶ୍ୱିନ ମାସ କୃଷ୍ଣପକ୍ଷ ନବମୀ
ଚଣ୍ଡ ମୁଣ୍ଡ ବେନି ଭାଇ ସେ ଆସନ୍ତି ବନଭୂମି ।
ଗିରିବର ଗହନ ସେ ଲତାର ଭିତରେ
ଦେଖନ୍ତି ମୃଗାରି ବିନୋଦ ଅସୁରେ ।
ବେଳ ମଧ୍ୟାନ ସେ ନଦୀର ଜଳ ଚାହିଁ
ଦେଖିଲେ ନଦୀ ଯାକ ଆସୁଛି ସୁବର୍ନ୍ନ ପଦ୍ମ ବହିଁ ।
ଭାଳନ୍ତି ଦାନବେ ଯେ ଅପୂର୍ବ କଥା ଦେଖି
ଗୋଡ଼ାଇଲେ ନଦୀକି ଯେ ସ୍ନାହାନ ଉପେଖି ।
ବିଚାରନ୍ତି ଦାନବେ ଏ ତ ବଡ଼ାଇ ଅପୂର୍ବ
ଆନ ଦିନେ ଦେଖିଲା ନାହିଁ ତ ଏସନେକ ଭାବ ।
ମଳୟ ପବନ ଘେନି ଗନ୍ଧ ଆମୋଦଇ
ବେଳୁ ବେଳ ସରାଗ ବଢ଼ିଲା ଦତ୍ୟଙ୍କର ଦେହୀ
ସେ ନଦୀ ଗୋଡ଼ାଇଁଣ ଯାନ୍ତି ବେନି ବୀରେ
କନ୍ୟାଏକ ବସିଅଛି ଯେ ପର୍ବତ ଉପରେ ।
ତାହାର ପଦ୍ମ ପାଦରୁ ସୁବର୍ଣ୍ଣ ପଦ୍ମ ଉଛୁଟଇ
ବିଚାରନ୍ତି ଦାନବେ ଏ ତ ଲକ୍ଷ୍ମୀଦେବୀ ଅଟଇ ।
କିମ୍ଭୂତ କାରଣେ ଏହାକୁ ନାରାୟଣ ତେଜି
ବଇକୁଣ୍ଠ ତେଜି ଅଇଲା କେବଣ ସେ ବର୍ଜ ।୧୭୯୦।
ଅପୂରୁବ ଦେଖି ବିଚାରନ୍ତି ବେନି
କାହିଁର ସୁନ୍ଦରୀ ଏ ତ୍ରିଜଗତ ମୋହନୀ ।
ଭୂମି ଆକାଶ ମଞ୍ଚ ପାତାଳ ତିନି ସ୍ୱର୍ଗ
ଏସନେକ କନ୍ୟା ତ ନ ଦେଖିଲି କେବଣ ଠାବ ।
ହେଠ ବଦନ ହୋଇ ସେ ଭୂମିକି କରି ଦୃଷ୍ଟି
ଅଞ୍ଚଳ ଓହାଡ଼ି ସେ ନିରୋପଇ କର୍ମ ଗୋଟି ।
ଚଣ୍ଡାସୁର ଦାନବ କରଇ ସମାସି
ଆଗୋ ମା ତୁ ଯେ କେବଣ ସ୍ୱର୍ଗବାସୀ ।
କାହୁଁ ଅଇଲୁ ଗୋ କେ ତୋହର ପତି
କେ ତୋହର ମାତା ପିତା କେବଣ ଦେଶେ ତୋର ସ୍ଥିତି ।
କାମେନୀ ବଏସେ ତୁ ମୋହୋନୀ କାମସେଣୀ
କିଞ୍ଚିତ ଦୋଷ ତୁ କଲୁ କି ବୋଲଣି ।
କେ ତୋହର ମାତା ପିତା କେ ତୋହର ପ୍ରଭୁ
ତୋତେ ଉହୋ ମା ଗୋ କିମ୍ପା କଲା ସେହୁ ।
ଯହୁଁ ତୁ ପ୍ରାଣ ପ୍ରାଭବ କଲୁ କାଏ
ଅତି ରାଗେ ଉପେକ୍ଷା କଲେ ଯେ ତୋତେ ମାଏ ।
କି ତୁ ରାକ୍ଷସଣୀ ପିଚାସୁଣୀ ମୃତି
କି ତୁ ଅଟୁରେ ବନସ୍ତର ମୂରତି
ମଏଷାଂସୁର ରାଜ୍ୟେ ନାହିଁ ଉପଦର୍ପ
ରାକ୍ଷସ ପଚାଶେ ଅଛନ୍ତି ଦୃଷ୍ଟ ଦାନେବ ।୧୮୦୦।
ବାଘ ଭାଲୁ ଯେ ଅଛନ୍ତି ଅପାର
ଆଦିତର ଅସ୍ତେ ଯେ ତୋତେ କରିବେ ଆହାର ।
ଆମ୍ଭେ ଏ ବନସ୍ତକୁ ଅଧିକାରୀ
ଅରନ୍ୟେ ଉତପାତ ହୋଇଲେ ଆମ୍ଭେ ସେ ନିବାରି ।
କେବଣ ବିମୁଖେ ତୁ ଗୃହବାସ କଲୁ ତେଜ୍ୟା
ଅଛି କି ସନମତ ଆମ୍ଭର ହୋଇବୁକି ଭାରିଜା ।
ଅନେକ ଧନ ରତ୍ନ ଅଳଙ୍କାର ଦେବୁ
ପ୍ରାଣୁ ଅଧିକା କରି ପ୍ରତିପାଳି ଥିବୁ ।
ସ୍ୱାମୀ ପଣ ଛାଡ଼ି ତୋତେ ହୋଇବୁ ଭୃତ୍ୟରେ ଭୃତ୍ୟ
ବିନୟ ଭାବ କରି ତୋତେ ହୋଇବୁ ଶିରାଗ୍ରତ ।
ତଇଲୋକ୍ୟ ଠାକୁର ମଷାଂସୁର ଚକ୍ରବର୍ତ୍ତୀ
ଦେବାଧିଦେବଙ୍କର ମଉଡ଼ମଣି ନୃପତି ।
ସେ ରାଜାର ଆମ୍ଭେ ସେନାପତି ଅଟୁଁ
ଅନେକ ବିଶ୍ୱାସେଣ ସନ୍ନିଧେଣ ଖଟୁଁ ।
ଅହୋ ପରୀକ୍ଷ ତାହାଙ୍କର ବାକ୍ୟ ଶୁଣି ମାହେଶ୍ୱରୀ
ଦ୍ରହସିତ ବାକ୍ୟ କହଇ ମଧୁର କରି ।
କିଞ୍ଚିତ ପ୍ରକାରେ ଅବଲୋକନେ ଦୃଷ୍ଟି
ମୋହେଣ ପଡ଼ିଲେ ବୀରେ ହୋଇଣ ଅସାଷ୍ଟି
ମୁଖରେ ଅଙ୍ଗୁଷ୍ଟି ଭରନ୍ତି ବୀରେ ମୋହେ
ବୋଲନ୍ତି କାମ ସାଗରୁ ଉଧରଣ ମାଏ ।୧୮୧୦।
ଦୁର୍ଗା ବୋଲନ୍ତି ଶୁଣ ତୁମ୍ଭେ ବେନି ବୀର
ତୁମ୍ଭେ ଯେ ପୁଛା କଲ କୁଳ ଗୋତ୍ର ମୋହର ।
ମାତାର ନାମ ତାହାର ଅଟଇ ବହତି
ଅନ୍ୟାକାର ଦକ୍ଷରେ ମୁ ଅଟଇଁ ଦୋହିତୀ ।
ତ୍ରିସମାଦି ଉତପରି ମୋହର ନିରାକାର ଗୋତ୍ର

ସ୍ୱାମୀର ନାମ ମୋହର ପରମ ଦଇବତ ।
ଅଟିହିଁ ଅଭୟା ମୋହର ଦୃଭାର ପ୍ରକୃତି
ଅତି ଅସହଣୀ ମୁଁ ସ୍ୱାମୀକି ନୋହିଲି ଭଗତି ।
ପୁରୁଷ ରମଣେ ନାହିଁ ମୋହର ବାଞ୍ଛା
ତେଣୁ କରି ସ୍ୱାମୀ ମୋହର କଲେକ ଉପେକ୍ଷା ।
ଏକା ରାତ୍ରକହିଁ ସେ ସ୍ୱାମୀରେ ନାହିଁ ଶେଯ୍ୟା
ତେଣୁକରି ସ୍ୱାମୀ କଲେକ ପରିତେଜ୍ୟା ।
ଅନୀତି ମୋହେଣ ନୋହିଲି ଘର ବାସୀ
ସମସ୍ତ ଛାଡ଼ିଲି ମୁଁ ଯେ ହୋଇଲି ବନବାସୀ ।
ଆହୋ ଜୀବନକୁ ଭଏ ନିଆଶିଲା ମୋର କାଏ
ରକ୍ଷ ରାକ୍ଷସେଣ ଯେ ନାହିଁ ମୋର ଭଏ
କହୁଁ କହୁଁ କାନ୍ତାନୀ ଭାଷଇ ପ୍ରଚଣ୍ଡ
ଘୁଞ୍ଚଲା ହୋଇ ସେ ରହିଲେ ଚଣ୍ଡ ମୁଣ୍ଡ ।
ମନେ ବିଚାରିଣ ଚିନ୍ତିଲେ ହୃଦଗତେ
ଆମ୍ଭଙ୍କୁ ପ୍ରାପତ ନୋହଇ ନା ଯୁଗତେ ।୧୮୨୦।
ଚଣ୍ଡାସୁର ବୋଇଲା ଗୋ ଶୁଣ ମହାସତୀ
ମଏଷାଂସୁର ରାଜାର ତୁ ହେବୁକି ଯୁବତୀ ।
ରାଜାର ଛାମୁରେ ଜଣାଇବୁ ତୋହ କଥା
ବିଚାରକୁ ଯୋଗାଇଲେ ଆଜ୍ଞା ଦେବୁ ମାତା ।
ଦୁର୍ଗାଏ ବୋଇଲେ ତୁମ୍ଭେ ଜଣାଅ କିନା ପାଶେ
ମୁହିଁ ଏଥିକି ଅଇଲି ମଏଷାଂସୁର ଆଶେ ।
ଏସନକ ବାକ୍ୟ ଶୁଣିଲେ ଯହୁଁ ବାଣୀ
ଶ୍ରବଣେଂ ହସ୍ତ ଦେଇ କାତରେ ରହିଲେ ଧରଣୀ ।
ତୁ ଆମ୍ଭର ଠାକୁରାଣୀ ହୋଇବୁ ଆଗୋ ମାଏ
ଦଶ ଦୋଷ କ୍ଷେମା କର ଫିଟୁ ଆମ୍ଭର ଭଏ ।
ଶିବ ଶିବ ସୁମରି ଚଳନ୍ତି ଚଣ୍ଡ ମୁଣ୍ଡେ
ପବନୁ ବେଗେ ଚଳ ନ ରହନ୍ତି ଦଣ୍ଡେ ।
ମଣୋହି ସାରି ରାଏ ଆସ୍ଥାନରେ ବିଜେ
ଛାମୁରେ ଦ୍ରଶନ କଲେ ବେନି ଯେ ଦନୁଜେ ।
ବିନୟ ଦେଖି ରାକ୍ଷସ ମଏଷାଂସୁର ପୁଛଇ
କିସ ହୋ କେବଣ ଅପୂର୍ବ କାହିଁ କିସ ଅଛଇ ।
ଚଣ୍ଡ ମୁଣ୍ଡ ବୋଲନ୍ତି ଅସୁର କୁଳ ନାହା
ତୁ ସର୍ବଜ୍ଞ ପୁରୁଷ ନ ଜାଣୁ ଅବା କାହା ।
ସ୍ୱାମୀ ଆମ୍ଭେ ମୃଗୟାକୁ ବୋଲି ଗଲୁ
ଇକ୍ଷ୍ମୀଭଦ୍ରା ନଦୀରେ ପଶି ସ୍ନାହନ କଲୁ ।୧୮୩୦।
ସୁବର୍ଣ୍ଣ ପଦ୍ମ ଫୁଟି ନଦୀଯାକ ବହିଁ
ଅତିଅନ୍ତ ରୋଷଭରେ ଚଣ୍ଡ ମୁଣ୍ଡ କହିଁ ।
ଶୁଖିଲା ତରୁବର ପଲ୍ଲବ ହଉଅଛି ବନେ
ଗନ୍ଧ ଆମୋଦଇ ଦେବ ମଳୟ ବସନ୍ତ ପବନେ ।
ସେ ନଦୀ ଗୋଡ଼ାଇଲୁ ଦେବ ଗଗନ ଆକ୍ରେଷି
ରତ୍ନଗିରି ଶିଖରେ କନ୍ୟା ଏକ ଅଛି ବସି ।
ଚାଚର ଚିକୁର ଦେବ ଆକୁଞ୍ଚିତ ବହଳ
ଜମ୍ବୁଧର ମେଘ ପ୍ରାଏ ଦିଶଇ ପରିମଳ ।
ରସାଣ କଣୟ ପ୍ରାଏକ ଯାହାର ଲଲାଟ ପାଟି
ସୁସଞ୍ଚ ନିର୍ମଳ ବେନି ନୟନ ଗୋଟି ।
ସ୍ୱାମୀ ଆକର୍ଷିତ ତାହାର ଦୃଷ୍ଟି
ବକ୍ର ନୟନେ ଚାହାନ୍ତେ ପର୍ବତ ଯିବ ଫୁଟି ।
ତରଳିତ କଜ୍ଜଳ ଲୋଚନ ବାଳ କୁରଙ୍ଗୀ
ସଙ୍ଗ ବିହୁନେ ଯେହ୍ନେ ଚାହାଁଇ ବିଭଙ୍ଗି ।
ସ୍ୱାମୀ ସୁସଞ୍ଚ କଣୟ ଘଟଣ ତାହାର ନାସା
ତାହା ଦେଖନ୍ତେ ଆନେ ନ ବଳଇ ମନୀଷା ।
ସ୍ୱାମୀ ବେନି ଶ୍ରବଣ ଯେ ଢଳନ୍ତି ତାର କନ୍ଧେ
ପୁଂଷ ନାଶଗତେ ଦେବତାଏ ଲୁବ୍ଧେ ।
ସ୍ୱାମୀ ବେନି ଚରଣ ଯେ ପାଣିପତ୍ର ଗୋଟି
ଝଲକ ରତ୍ନ ପ୍ରାଏକ ନୀଳା ରତ୍ନ ଘଟି ।୧୮୪୦।
ବନ୍ଧୁଳ ପୁଷ୍ପ ପ୍ରାଏକ ସେ ଅଧର ସୁରଙ୍ଗ
ହୀରା ଝଳି ଦନ୍ତ କି ବିରାଜଇ ଶଶାଙ୍କ ।
ସ୍ୱାମୀ ! ବାଣୀ ସୁସଞ୍ଚ ଭାଷଇ ଶୀତଳ
ବସନ୍ତ ଋତୁ କି ଭାଷଇ ଶତଗଳ ।
ତାହାର ବାକ୍ୟ ଯେ ମଧୁର ରହସ୍ୟ ବାଣୀ
ମୁନିମାନେ ତପ ଉପେଖିବେ ଶୁଣି ।
କୁନ୍ଦ ଘଟଣ ଜାଣି ସୁବଳିତ କଣ୍ଠ ତଟଇ
ଉଚିତ ସମ୍ଭାଷଣେ ସରୂପେ ଘଟଇ ।
ସ୍ୱାମୀ ! ପ୍ରଲମ୍ବିତ ବଳିତ ତାହାର ଭୁଜ ବେନି
କୁମୋଦ ନାଳ ପ୍ରାଏକ ସୁଶୀତଳ ଧୁନି ।
ସୁରଭିର ତେଜ ପ୍ରାଏ ତାହା ବକ୍ଷସ୍ଥଳୀ
ସୁଭାଙ୍ଗ ସୁଶୀତଳ ମରକତ ଝଳି ।
ସ୍ୱାମୀ ! ରୂପିଲା ରତ୍ନ ପ୍ରାଏକ ଅଙ୍ଗୁଷ୍ଠିର ଜୋତି
ନଖେ ବିରାଜନ୍ତି ପାଖୁଡ଼ା ପୁଷ୍ପ କାନ୍ତି ।
ସ୍ୱାମୀ ! ବିସ୍ତାର ବକ୍ଷସ୍ଥଳ ଆକ୍ରଷଣ ବେନି ବାହୁ

ପୁରୁଷ କୁଳକୁ ସେ ପ୍ରତାପ ଚନ୍ଦ୍ର ରାହୁ ।
ସ୍ୱାମୀ କୁନ୍ଦ ଘଟଣ କଣୟ କୁଚ ବେନି,
ଅଞ୍ଚଳ ଉଡ଼ନ୍ତେଣ ଶ୍ୟରୀର କି ସୂର୍ଯ୍ୟ ଶଶୀ ଘେନି ।
ସ୍ୱାମୀ ! ସେହି ଉଦ୍ୟାନ ବନ ଅନ୍ଧାର ଘୋରମଏ
ତାହାର ତେଜ ଲାଗି ଦିଶଇ ଚନ୍ଦ୍ରମା ଉଦଏ ।୧୮୫୦।
ସ୍ୱାମୀ ! ବିସ୍ତାର ବକସ୍ଥଳ ମଝା ତନୁଖିନ
ମଝା ସଙ୍କଟକୁ କଣୟ ଧର ବେନ ।
ଜାଳେ ଯେସନେକ ଶିଆଳି ପତ୍ର ତଟ
ତେସନ ସଞ୍ଚ ଅମିଅ ସିୟ ତାହାର ପେଟ
ସ୍ୱାମୀ ଶରଦ ଶିଶିର ହେମ ବସନ୍ତ
ଗ୍ରୀଷମ ବରଷା ଛଡ଼ ରିତୁ ଆତଯାତ ।
ବେନି ଭୁଜ ଆକ୍ରଷଣ କରି କରିବ ଯାହାକୁ କୋଳ
ଗ୍ରୀଷମ କାଳେ ଦେହ ଚନ୍ଦନୁ ଶୀତଳ
ସ୍ୱାମୀ ! ତାହାର ବକସ୍ଥଳ ଲାଗିବ ଯାହାର କାଏ
ବରଷା ରିତୁକୁ ସେ ହୋଇବ ହେମ ମଏ
ସ୍ୱାମୀ ବେନି ସ୍ତନ ଲାଗିବ ଯାହାର ବକ ସ୍ଥଳେ ।
ଶରଦ ରିତୁକୁ ହୋଇବ ତେର୍ଣ୍ଣେ କାକର ଶୀତଳେ ।
ସ୍ୱାମୀ ତାହାର ସ୍ତନ ଲାଗିବ ଯାହାର ହୃଦେ
ଶିଶିର ରିତୁକୁ ଅମୀୟ ଜଳ ହାଦେ
ଯାହାକୁ ଆକ୍ରଷଣ କରିବ ବେନି ଭୁଜ ଭିଡ଼ି ।
ହେମ ରିତୁକୁ ଦେବ ଅନଳ ତେଜ ସରି
ସ୍ୱାମୀ ! ଭୁଜେ ଆକ୍ରଷଣ କରି କରିବ ଯାହାକୁ କୋଳ
ବସନ୍ତ ରିତୁକୁ ଯେର୍ଣ୍ଣେ ଗନ୍ଧ ଶୀତଳ ।
ସ୍ୱାମୀ ! ବରଷା ଋତୁକୁ ଅଟଇ ଷଡ଼ ରିତୁ
ତାହା ସ୍ତନ ଭର କି ସେ ଭରିତ କଳପ ତଟୁ ।
ଗଭୀର ନାଭି ସଞ୍ଚିତ ମଧ କୁକ୍ଷି
ଗୁଣ କହିବାର ପଟାନ୍ତର ନାହିଁ କିଛି ।
ସ୍ୱାମୀ ମୃଣାଳ ସୂତ୍ର ନ ପଶଇ ବେନି କୁଚ ମଧ୍ୟେ
ନିଶ୍ଚଏ କାମ ଦେବ ହାରିଲା ତାକୁ ଯୁଦ୍ଧେ ।
ସ୍ୱାମୀ ! ମଧ୍ୟେଣ ବିରାଜଇ କୃଷ୍ଣ ବର୍ଣ୍ଣ ରୋମାବଳୀ
ରତ୍ନ ପନ୍ତି ମଧ୍ୟେ ଯେସନେକେ ନୀଳା ରେଖାବଳି ।
ବେନି ଫୁଲଣି ଯେ ସୁବଳିତ କୃଶାନୁ
ଓଲଟ ରାମ କଦଳୀ ଜାଣି ବେନି ଜାନୁ ।
ଜଘନ ସୁବଳିତ ନୋହଇ ଅତି ଉଚ୍ଚ
ତରକ ମଧ ମାନ ଅତି ଘନ ସୁସଞ୍ଚ ।

ସ୍ୱାମୀ ! ଜଳେ ହଂସ ଗବନୀ ଚାଲନ୍ତେଣ ଠାଣି
ପୃଥିବୀ ଆକ୍ରଷଣ ନିରୋପନ୍ତି ଧରଣୀ ।
ସ୍ୱାମୀ ! ଓଶେକ ପୁଷ୍ପ ପ୍ରାଏକ ପାଦ ତଳି
କନେକ ଚମ୍ପେକ ପ୍ରାୟେକ ଅଙ୍ଗୁଳି ।
ତରାଟ ପୁଷ୍ପ ପ୍ରାଏକ ଲଖପନ୍ତି
ବେନି ପାଦତଳି ପାପଦ୍ମ ବିରାଜନ୍ତି ।
ଚାଲନ୍ତେ ଅବେଷ୍ଟେ ସୁବର୍ଣ୍ଣ ଫୁଲ ଫୁଟଇ
ନୁହଇ ଉଚ୍ଚ ନୀଚ ମଧମାନ ଅଟଇ ।
ସ୍ୱାମୀ ! ବଦନକୁ ଚନ୍ଦ୍ରମା ନୋହଇ ପଟାନ୍ତର
ଉଦେ କାଳେ ବପୁହୀନ ସେ ଅଟଇ ଶଶୀଧର ।୧୮୭୦।
ସ୍ୱାମୀ ! ପୂର୍ଣ୍ଣମୀ ଚନ୍ଦ୍ରମାକୁ କରିବା ଅବା ସଙ୍ଗ
ଶ୍ୟରୀରେ କଳଙ୍କ ସେ ବହିଲା ଶଶାଙ୍କ
ସ୍ୱାମୀ ! ମାୟା ମୃଗ ହାଦେ କିଞ୍ଚିତ ଦ୍ରହାସି
ନୁହଇ ଚିରକୋପୀ କୃପା ଉଦ୍ଦେଶି ।
କୁଳୀନ ଚାରୁହଂସୀ ଧର୍ମ ଶାହାସ୍ରବାଦୀ
ଦ୍ରଶନେ ପ୍ରସନେ ସେ ଚଞ୍ଚଳା ସର୍ବସାଧି ।
ସ୍ୱାମୀ ! କିଞ୍ଚିତ ଚଞ୍ଚଳ ସେ ପରମ ବଇଷବୀ
ଗୁଣନିଧି ସେ କ୍ଷେମାଶୀଳ ସାଧବୀ ।
ଅଶୋରନ୍ତେ ଶୋଭାକର ହସନ୍ତେ ଶୋଭାବନୀ
ସ୍ୱାମୀ ! ଚାଲନ୍ତେ ଶୋଭାକର ତ୍ରଇଲୋକ ମୋହୋନୀ ।
ରମ୍ଭାକୁ ପଟାନ୍ତର କରିବା କି ରୂପ
ରମ୍ଭାଉଁ ଶତେ ଗୁଣ ଦେବ ତାହାର ଯେ ରୂପ ।
ସ୍ୱାମୀ ! ତୋହୋର ପ୍ରସାଦେ ଆମ୍ଭେ ସକଳ କଲୁ ସାଧି
ସ୍ତିରୀ କର୍ମ ଉତ୍ତମୀ ସେ ସଦଏ ବାରାନିଧି ।
ସ୍ୱାମୀ ! ନବସୃଷ୍ଟି ରଞ୍ଚନ୍ତା ଛାଡ଼ିଣ ପ୍ରଜାପତି
କେତେକାଳ ଗଢ଼ିଲା ଅମୂଲ୍ୟ ରତ୍ନକାନ୍ତି ।
ଅତ୍ୟନ୍ତ ସମ ତ ନୋହଇ ବକସ୍ଥଳ
ତଥି ଉପରେ ଭାରା ତାହାର କୁଚ ମଣ୍ଡଳ ।
ଏତେବଡ଼ ଭାରା ଅଟଇ କ୍ଷୀଣ ମଝି
ଉଛର୍ଗ ନୋହଇ ସୂକ୍ଷ୍ମ ଅଟଇ ସୁଭାଗି ।୧୮୮୦।
ଅନେକ ଯୁଗେ ଘଟଣ କଲା ସ୍ତିରୀ ରତ୍ନକାନ୍ତି
ଭାଙ୍ଗି କେତେକାଳ ସେ ଗଢ଼ିବ ପ୍ରଜାପତି ।
ତେଣୁକରି ବଡ଼ ମନ୍ଦେ ନ ଚାଲେ ପାଦଗତି
ତଇଲୋକେ ନ ଦେଖିଲି ଏସନ ଯୁବତୀ ।
ସ୍ୱାମୀ ! ତୁ ରାଜାଧିରାଜେଶ୍ୱର ମହାପ୍ରଭୁ

ତୁମ୍ଭଙ୍କୁ ସେ ଅଭିସାରିକା ଅଟଇ ଦେବ ସେହୁ ।
ସ୍ୱାମୀ ! ଅନେକ ବିନଏ କହିଲୁ ଦେବ ସ୍ତୁତି
ପଇଗଳେ ସମସ୍ୟା ଦେଲା ଶାନ୍ତି ମୂର୍ତ୍ତି ।
ବକ୍ର ନୟନେ ଯେ ଚାହିଁ କଲା ପୁଚ୍ଛା
ତାହା ବାକ୍ୟ ଶୁଣି ପଡ଼ିଗଲୁ ମୂର୍ଚ୍ଛା ।
ଆମ୍ଭଙ୍କୁ ବୋଇଲା ମଷାଂସୁର ରାଜାକୁ କହ ତୁମ୍ଭେ ଯାଇଁ
ତାହାର ବର୍ଣ୍ଣ ଚିହ୍ନ ଦେଖିବଇଁ ମୁହିଁ ।
ତୁ ପୁରୁଷ କୁଳେ ଉତ୍ତମ ସେ ସ୍ତିରୀ କୁଳେ ଉତ୍ତମୀ
ତାହାର ତୋହର ସେ ପ୍ରୀତି ହୋଇବ ସ୍ୱାମୀ ।
ଆହୋ ପରୀକ୍ଷ ଯେତେକ ଗୁଣ ତାହାର କହିଲେ ଚଣ୍ଡ ମୁଣ୍ଡ ବେନି
କାମ ଜଳେ ବୁଡ଼ିଲା ସେ ଅମର ମହାଜ୍ଞାନୀ ।
ଆସ୍ଥାନୁ ଉଠିଲେ ସେ ଅସୁର କପିଳ ସିଙ୍ଘର ସୁତ
ଚଣ୍ଡମୁଣ୍ଡ ଦୁହିଁକି ସେ କଲାକ କୋଳାଗ୍ରତ ।
ଆପଣାର ଅଙ୍ଗେ ଥିଲା ଅବିଷେକ ରତ୍ନମାଳ
ଅବିଷେକ କଲା ସେ ଦୁହିଁଙ୍କରି ବକସ୍ଥଳ ।୧୮୯୦।
ତୁମ୍ଭେ ମୋହୋର ବାନ୍ଧବ ଚରଣେ ଲାଗଇ
ସେ ସ୍ତିରୀରତ୍ନ କାନ୍ତିକି ପ୍ରତିଗହ ମାଗଇ ।
ବାବୁ ଜଣକ ଆସି ଜଣକ ନ ଥିଲ କିମ୍ପା ରଖି
ନ ପୁଣ ସୁନ୍ଦରୀ ନ ପା ତୁମ୍ଭେ ଦେଖି ।
ଆରେ ବେନି ସୋଦର ରଖ ମୋହୋର ପ୍ରାଣ
ସେ ସ୍ତିରୀ ରତ୍ନକାନ୍ତିକି ସନିଧେ ମୋର ଆଣ ।
କନେକ ହାନ୍ଦୋଳାରେ ହୀରା ଜଡ଼ିତ କମ
ନେତର ପାଟାଙ୍ଗ କରନ୍ତି ଆଲମ୍ୱ ।
ଡାଳିମ୍ୱ ନେତର କରନ୍ତି ଉଲାଖ ପାଟଛତ୍ର
ଉଦଣ୍ଡ ଆଲମ୍ୱ ଉଡ଼ନ୍ତି ଗଗନଗତ ।
ଲକ୍ଷେକ ରଥ ସେ ପାଞ୍ଚଲକ୍ଷ ହାଥୀ
ନବଲକ୍ଷ ତୁରଙ୍ଗ ତିନି ଲକ୍ଷ ପାଦାନ୍ତି ।
ନିଶାଣ ଟମକ ବୀରତୂର ବାଜେ
ଅନେକ ରତ୍ନ ଦେଲେ ମଷାଂସୁର ମହାରାଜେ ।
ଆହୋ ପରୀକ୍ଷ ସେ ସନ୍ୟ ଚଳାଇଲା ମଏଂଷାସୁର ରାଏ
ଆପଣା ରାଜ୍ୟେ ସେ ଅନେକ ଉତ୍ସବ କରାଏ ।
ସୁବର୍ଣ୍ଣର କଳସ ନେତ ପାଟାଙ୍ଗ ଉଡ଼ନ୍ତି
ହାଟ ବାଟେ ଦାଣ୍ଡେ ସେ ଚନ୍ଦନ ଛୋର ଦ୍ୟନ୍ତି ।
ନାରୀଗଣମାନେ ସେ ଘେନିଣ ଅର୍ଘ୍ୟସ୍ଥାଳୀ
ଗଗନେ ଉଡାରନ୍ତି କର୍ପୂର ରଜ ଧୂଳି ।୧୯୦୦।
ଉଭା ଶୋଭା ତ୍ରୋଣା କଦଳୀ ତରୁ ଦ୍ୱାର
ସୁବର୍ଣ୍ଣର କଳସ ବସନ୍ତି ଘରେ ଘର ।
ଚନ୍ଦନ କସ୍ତୁରୀ ପନୀର ଜଳେଭରି
ମାରନ୍ତି ପିଚିକା ଦ୍ୱାରେ ଦ୍ୱାରେ ଉଭାରି ।
ନେତ ଚନ୍ଦ୍ରାତପେ ଅଷ୍ଟରତ୍ନେ ଝଳି
ମାଣିକ୍ୟ ପୁଞ୍ଜା ପୁଞ୍ଜା ମୁକୁତା ମାଳି ମାଳି ।
ମେଢ଼ ମଣ୍ଡୋପ ଯେ ଦେଉଳ ଜଗତୀ
ଉଡ଼ନ୍ତି ଚିରାଳ ଅଷ୍ଟରତ୍ନେ କୋଟିକାନ୍ତି ।
ତୁଲେଣ ତାହାର ଯେ ଅନେକ ସନ୍ୟବଳ ଘେନି
ବନ ଗହନେ ଚଳନ୍ତି ଚଣ୍ଡ ମୁଣ୍ଡ ବେନି ।
ଲକ୍ଷ୍ମୀଭଦ୍ରା ନଦୀକୂଳେ କଣୟଗିରି ପର୍ବତ
ତହିଁର ଉପରେ ବିଜେ ଜଗତ ମାତ ।
ସୁଶୀତଳ ଜଳ ମଳୟ ପବନ ବହଇ
ଯାନ୍ତେଣ ବନ ଗହନ ସମସ୍ତ ଜନ ମୋହଇ ।
ଦେଖିଲେ ବିଜେ କରିଅଛନ୍ତି ଅନାଦି ଶକତି
ସହସ୍ରେକ ଯୋଜନେ ବିରାଜଇ କୋଟିକାନ୍ତି ।
ବିଜଏ ଅପର୍ଣ୍ଣା ଯେ ମୋହନୀ ଯୋଗ ସାଧି
ଦେଖିଲେ ଚଣ୍ଡ ମୁଣ୍ଡ ଅମିଅ ପୟୋଧି ।
ଛାମୁରେ ଅନେକ ରତ୍ନମାଳା ଥୋଇଂ
ଚଣ୍ଡ ମୁଣ୍ଡ ଶୁତିଲେ ପ୍ରଣପତ୍ୟ ହୋଇ ।୧୯୧୦।
ଯେସନେକେ ଆଜ୍ଞା ହୋଇଲା ଆମ୍ଭଙ୍କୁ
ସମସ୍ତ କହିଲୁ ମହାରାଜା ପ୍ରଭୁଙ୍କୁ ।
ତାହା ଶୁଣି କାମ ଜଳେ ବୁଡ଼ିଲା ନରନାଥ
ଅନେକ ରତ୍ନ ଅଳଙ୍କାର ଦେଲେ ଆମ୍ଭର ହାଥ ।
ମାଗୋ କର୍ମ ଶାହାସ୍ରେ ଯେ ସ୍ତିରୀଙ୍କି ତିନିଦଶା
ଯେଣେ ତୋର ବାଞ୍ଛା ପୂରିଲା ମନୀଷା ।
ଶୁଣି ନରାଧିପ ଯେ ସମସ୍ତ କଲା ତେଜ୍ୟା
ତୁହି ସେ ଏକାଙ୍ଗ ହୋଇବୁ ଭାରିଯା ।
ମାଗୋ ଶ୍ୟରୀରେ ଅଭରଣ କର ରତ୍ନକୋଷ ।
ବିପୁଳ ହାନ୍ଦୋଳାଏ ବହନ ହୋଇ ବସ ।
ମାଗୋ କାହିଁ ଆସିକରି କାହିଁ ତୋର ଭୋଗ
ସ୍ତିରୀ ତିନି ଦଶା ଏତେକାଳେ ଏହେର୍ନ୍ତେକ ଯୋଗ ।
ମଏଷାଂସୁର ଦ୍ରଶନ ଗୋ କରିବା ଶୁଭବେଳେ
ବିପୁଳ ଲକ୍ଷ୍ମୀ ଗୋ ଭୁଞ୍ଜିବା ସର୍ବକାଳେ ।
ଆମ୍ଭଙ୍କୁ ଦୟା ଗୋ କରିଥିବ କାନ୍ତାନୀ

ଜନ୍ମେ ଜନ୍ମେ ହୁଅ ତୁ ମଷାଂସୁର ଭାବାନୀ ।
ଏତେକ ବଚନ ଶୁଣି ପ୍ରତିବାକ୍ୟ ଦେବୀ ଦୁର୍ଗେ
ମଏଷାଂସୁର ଭାବାନୀ ମୁଁ ହୋଇବି କେବଣ ବାଗେ ।
ଆହୋ ପରୀକ୍ଷ ଚଣ୍ଡ ମୁଣ୍ଡ ତୁମ୍ଭେ ପୁଣିହିଁ ଦୁଖପାଅ
ରାଜାର ତହିଁକି ବାହୁଡ଼ିଣ ଯାଅ ।୧୯୨୦।
ତୁମ୍ଭର ବଚନକୁ ମୋର ପ୍ରତେ ଅଛି କାହୁଁ
ମଏଷାଂସୁର ଆସି ମୋର ଛାମୁରେଣ କାହୁଁ ।
ସନ୍ୟବଳ ସଖା ସମସ୍ତ ଦେଖିବି ତାହାର
ରାଜାର ତୁଲେ ତାହା ରାଜ୍ୟକୁ ଯିବି ଘର ।
ତାହାର ମୋହୋରେଣ ଉପୁଜିବ ପ୍ରୀତି
ମୁହିଁ ତାହାକୁ ଦେଖିବି ସେହି ମୋତେ ଦେଖି ହୋଉ ଧିରତି ।
ତାହାର ମୋହୋର ଯେ ହୋଇବ ଏକ ଇଛ
ତୁମ୍ଭେ ଅବା ମୋତେ ସ୍ତିରୀଲିଙ୍ଗ ବୋଲି ବାଛୁଅଛ ।
ତୁମ୍ଭର ବୋଲକୁ ମୁଁ ସମ୍ପ୍ରତେ ନ ଗଲି
ତୁମ୍ଭେ ମୋହୋର ଛାମୁକୁ ଘେନିଆସ ବୋଧ ବୋଲି ।

## ଚଣ୍ଡ ମୁଣ୍ଡ ବଧ

ଆହୋ ପରୀକ୍ଷ ସ୍ତିରୀ ରତ୍ନ ନାଏକା ସେ ପୁରୁଷ ଗର୍ବ ଲାଗିଁ
ସନ୍ୟ ଛାଡ଼ି ଚଣ୍ଡ ମୁଣ୍ଡ ବାହୁଡ଼ନ୍ତି ବେଗିଁ ।
ଆସ୍ତାନେ ବିଜେ କରିଅଛି ମଏଷାଂସୁର ଦ୍ରପିଷ୍ଟ
ଚଣ୍ଡ ମୁଣ୍ଡଙ୍କର ଗତିପଥ ଚାହିଁ ରାଏ ବାଟ ।
ପବନ ଗତି ସେ ଚଣ୍ଡ ମୁଣ୍ଡ ଗଲେ ବେଗେ
ଯାଇଁ ଦ୍ରଶନ କଲେ ମଏଷାଂସୁର ଆଗେଁ ।
ଶୁଣ ଦେବ ରାଜ୍ୟେଶ୍ୱର ମଣ୍ଡଳ ଆଦିପତି
ବଡ଼ ବଇଷ୍ଣବୀ ସେ ସ୍ତିରୀ ରତ୍ନକାନ୍ତି ।
ଆମ୍ଭର ବଚନକୁ ଦେବ ସମ୍ପ୍ରତେ ନାହିଁ
ବୋଇଲା ମଏଷାଂସୁର ସମଦଣ୍ଡ ଘେନି ଆସୁ ବାହି ।୧୯୩୦।
ପରୀକ୍ଷ କରିଣ ସେ ଘେନିଣ ଯାଉ ମୋତେ
ଦେଖଇଁ ରୂପଗୁଣ ଭାଳିବି ଏକାନ୍ତେ ।
ମଏଷାଂସୁର ବୋଇଲା ନୋହଇ ଦେବ ସ୍ତିରୀ ।
ଜାଣିଲି ନିଶ୍ଚଯେ ସେ ଚଞ୍ଚଳା ନାଗରୀ ।
ପରୀକ୍ଷ କରିବାକୁ ଯେବେ ଲୋଡ଼ଇ ପୁରୁଷକୁ
ନିଶ୍ଚଏ ଅସତୀ ସେ ଜାଣିଲି ତାହାକୁ ।
ମୋହୋର ଚଳନ୍ତେ ତିନି ସ୍ୱର୍ଗ ନ ସହଇ
ସ୍ତିରୀ ଛାର ପାମେରୀ ଏଡ଼େ ଦର୍ପ ବହଇ ।
ଯାଅରେ ଚଣ୍ଡ ମୁଣ୍ଡ ବେଗେଣ ବାହୁଡ଼ି
ଭଲେ ନଇଲେ ଆଣ ତାକୁ ଧରି ।
ଆହୋ ପରୀକ୍ଷ ସ୍ୱାମୀର ଆଜ୍ଞା ପାଇଲେ ବୀରବର
ବଜ୍ର ବୁଲାଇ ସେ ଧାମନ୍ତି ଖରତର ।
ଆକାଶ କମ୍ପିଲା ରେ ରେ କାର ଶବଦେ
ପୃଥିବୀ ହେଳ ଘେନିଲା ଧାମନ୍ତେଣ ପାଦେ ।
ଦୃଗାର ଛାମୁରେ ସେ ହୋଇଲେ ପ୍ରବେଶ
ଆଗୋ ମହାତ୍ମାଣୀ ବେଗ ହୋଇ ଆସ ।
ତୋହର ବୋଲେ ଶୁଣି କୋପ କଲେ ମହାରାଏ
ମଳିଣ ଶ୍ୟରୀର ହୋଇଲା ତେଜ ମଯେ ।
ଭଲେଣ ଯେବେ ତୁ ନୁଆସିବୁ ନାରୀ
ଏହିକ୍ଷଣି ତୋତେ ଆମ୍ଭେ ନେମୁ ବାଳ ଧରି ।୧୯୪୦।
ଦୃଗା ବୋଇଲେ ମୁଁ ସ୍ତିରୀ ରତ୍ନ ଧର୍ମଣି
ତୁମ୍ଭେ ବୀରବର କ୍ଷତ୍ରିଯ ଚୂଡ଼ାମଣି ।
ସମୋଦ୍ର ଯେବେ ଲଙ୍ଘିବାକ ମହୀ
କାହାର ଆଗେର ଆଉ କହିବାକ ଯାଇଁ ।
ରାଜା ହୋଇ ଯେବେ କରିବାକ ଅବିଧି
ପରଜା ମାତ୍ରକ ତହିଁ କିସ କରିବ ବୁଧି ।
ମେଘ ମାନେ ଯେବେ ନ କରିବେ ବୃଷ୍ଟି
ଫଳ ଦାଏକ ଯେବେ ନ ଦେବ ଏ ସୃଷ୍ଟି
ପୁରୁଷ ମାନେ ଯେବେ ନ ଲଙ୍ଘିବେ ସ୍ତିରୀକି
ଏତେ କଥାକୁ ହୋ ଧର୍ମ ହିଁ ସାକ୍ଷୀ ।
କୋପେଣ ଦାନେବ ଯେ ଅଧର କଲା ପୃଷ୍ଠ
ଆମ୍ଭେ କେର୍ନ୍ତେ ଜାଣିମା ତୋହୋର ଧର୍ମବାଟ ।
ଋଷି ମାନୁଷି ତପୋଧନ କରୁ ଭକ୍ଷ
ମଦିରା ପାନ କରି ଆମ୍ଭେ ଧର୍ମ କରୁ ବାଛ ।
ଅଦଭୁତ ହୋଇ ଗୋ କାହୁଁ ତୁ ଅଇଲୁ
ଆପଣା ଦମ୍ଭ ପଣ ଆପଣେ ନାଶ କଲୁ ।
ଦୃଗା ବୋଇଲେ ତୁମ୍ଭେ ରେ ପାମର ମନ୍ଦ ଛାର
ଧର୍ମ ଲଙ୍ଘିଲେ ମରିବ କି ବୁଦ୍ଧି ତୁମ୍ଭର ।
ଏମନ୍ତ ପ୍ରାଏକ ମଣିଲ କିରେ ମତେ ବାଇ
ଅସୁର କୁଳ ଭକ୍ଷାନ୍ତ ଅଟଇରେ ମୁହିଁ ।୧୯୫୦।
ଏହା ଶୁଣି ଚଣ୍ଡ ମୁଣ୍ଡଙ୍କର ବସିଲା ମହାରାଗେ
ପର୍ବତ ଉପରେ ଉଠିଲେ ବୀରେ ବେଗେ ।
ପ୍ରତିଜ୍ଞା କରିଣ ସେ ଅସୁର ମହାମତ

କେଶ ଧରିବାକୁ ବଢ଼ାଇଲେ ହାଥ ।
କାଳାନଳ ନୟନେ ଦେବୀ ଚାହିଁଲେ ହୁଂକାର ଶବଦେ
ଚଣ୍ଡମୁଣ୍ଡ ବେନି ପଡ଼ିଲେ ଘୋର ନାଦେ ।
କ୍ଷଣକେ ବିସ୍ତାରିଲେ ଦେବୀ ଘୋର ରୂପ କାୟା
ଗର୍ଭରୁ ବାହାର ହୋଇଲେ ଛାୟା ମାୟା ।
ଆକାଶେଣ ଓଷ୍ଠ ପାତାଳେଣ ଜିଭ
ଏକ ଶ୍ୱରୀର ସେ ଘୋଟିଲା ତିନି ସ୍ୱର୍ଗ ।
କରେଣ କରବାଳ ବିଜେ କର୍ଣ୍ଣ କାତୀ
ଅଷ୍ଟଅଷ୍ଟ ଭୁଜେ ମୋହେ ଘେନିଛି କାଳ ରାତ୍ରି ।
ଦୃଗା ବୋଇଲେ ଗୋ ଧାଅଁ କିନା ବେଗ
ଅସୁର ସଇନି ବେଗେ କର ଭୋଗ ।
ଦୁର୍ଗାର ଆଜ୍ଞା ପାଇଁଣ ମହାମାଏ
ମହାଭୀଷ୍ମ ରୂପ ସେ ବିକାଶିଲେ ମହାକାଏ ।
ଶେଣା ପକ୍ଷୀ ଯେସନେ ପଡ଼ଇ ଗଗନୁ
ଦଇତ ବଳ ସଇନି ପଡ଼ିଲେ କୋପ ମନୁ ।
ବିକରାଳ ଘୋର ରୂପ ବିକଟାଳ ଦେଖି
ଭାଜିଲେ ଦାନେବ ବଳ ସମର ଉପେଖି ।୧୯୬୦।
ବିଜେ କର୍ଣ୍ଣ କଟାର ଯେ କରନ୍ତି ପ୍ରହାର
ବେନି ଖଣ୍ଡ ହୋଇ ପଡ଼ନ୍ତି ଅସୁର ।
ରକତ ଦେଖି ଦେବୀ ଧାମନ୍ତି ଗଜଗାଜି
କଉତୁକ କ୍ରୀଡ଼ାଏ ରକ୍ତମାଂସ ଭୋଜି ।
ଯେସନେକ ରାହୁ ବିସ୍ତାର କରଇ ଗର୍ଭ
ଗଜ ଅଶ୍ୱ ପାଦାନ୍ତି ନ ଛାଡ଼ନ୍ତି ସର୍ବ ।
ମହାବଳବନ୍ତ ସେ ରହିଲାକ ଲେଉଟି
ଅବିଛନେ ଦାନବେ ସେ ନାରାଚ କଲେ ବୃଷ୍ଟି ।
ତୁଣ୍ଡ ବିସ୍ତାରଣ କଲେ ରଣ କୁତୋହଳୀ
କହୁଁ କହୁଁ ଦାନେବ ବଳ ସର୍ବ ଗିଳି ।
ନାରାଯମାନ ଯହୁଁ ନ ବହିଲା କାଏ
ଭାଙ୍ଗିଲେ ଦାନେବ ବଳ ବାସଭଗ୍ନ ପକ୍ଷୀ ପ୍ରାଏ ।
ରଣଭଗ୍ନଂହୋଇ ସେ ପଳାଇ ଯାନ୍ତି ବନେ
ଭୁଜ ବିସ୍ତାରିଲେ ଯୋଜନେ ଯୋଜନେ ।
ରଥ ଗଜ ଅଶ୍ୱ ପଦାନ୍ତି ଯେତେ ଗଲା
ବେନି ବୀର ମଧ୍ୟରେ ସେ ସମସ୍ତ ଗଡ଼ିଲା ।
ସମସ୍ତ ସଇନି ଯେ ପଡ଼ିଲେକ ରଣେ
ବାହୁଡ଼ି ବାରତା ନବାକୁ ନ ରହିଲେ ଏକ ଜଣେ ।
ଆହୋ ପରୀକ୍ଷ ପୁରୁଷ ଅଭିସାରିକା ହୋଇ ଦାନେବ ମଏଷା
ଚଣ୍ଡ ମୁଣ୍ଡ ଆସିବାକୁ କରିଅଛି ଭରସା ।୧୯୭୦।
କାଳେ ଚଣ୍ଡ ମୁଣ୍ଡ ହୋଇଲେ ଖଣ୍ଡ ଖଣ୍ଡ
ପଡ଼ିଲେ କାଳରାତ୍ରୀ ମୁଖେଣ ବିଖଣ୍ଡ ।
ଜୟ ତୁ କାତ୍ୟାନୀ ଗୋ ରତ୍ନଗିରି ବାସୀ
ଅସୁର କୁଳକୁ ଗୋ କାମ ମୋହ ଫାଶି ।
ନମସ୍ତେ କାତ୍ୟାନୀ ଛାୟା ମାୟା ବେନି ଦେବୀ
ତବ ପାଦ କମଳ ମାମ ହୃଦେ ଭାବି ।
ଚଣ୍ଡ ମୁଣ୍ଡ ନାଶେନୀ ଗୋ ଅସୁର କୁଳ ଖେଦି
ଅକାଳିତ ଚାଣ୍ଡାଳ ବଳ କଲୁ କଉତୁକେ ପ୍ରସାଦି ।
ସେ ମହାମାୟା ଚରଣେ ଶରଣ ମାଗଇ ଅନୁବ୍ରତେ
ବଦୟନ୍ତି ଶୂଦ୍ରମୁନି ସାରୋଳ ଦାସ ବିନୟ ଯୁଗତେ ।

## ଶୁମ୍ଭ ନିଶୁମ୍ଭ ବଧ

ଶୁଣ ହୋ ପରୀକ୍ଷ ରାଜା ବଦୟନ୍ତି ଶୁକ ବ୍ରହ୍ମା
ଶ୍ରୀ ଦୃଗତି ତାରିଣୀର ଏସନ ମହିମା ।
ଅସଂକ୍ଷ୍ୟ ଚରିତ୍ର ଏ ଚଣ୍ଡୀ ଯୁଦ୍ଧର କଥା
ମନୁଷ୍ୟ ଜନ୍ମ କେ କରିବ ଲେଖନ୍ତା ।
ପଥ ଉପଲେସନ୍ତେ ମଏଷାଂ ସୁର ନୃପତି
ଏକେଣ ନବତନ ଆବର ଗୁଣବନ୍ତୀ
ତାହାର ତୁଲେଣ ନା ବଡ଼ିବ ପାରତି ।୧୯୮୦।
ରତି ରଙ୍ଗ ଇଛାଏ ମୋହୋର ମତି
କ୍ଷଣକେ ଆକ୍ରଷଇ କ୍ଷଣକେ ଉଠି ବସଇ
କ୍ଷଣକ ଭିତରେ କ୍ଷଣକେ ବାହାରକୁ ଆସଇ ।
ମନ ଉଦବେଗେ ସେ ଅସ୍ଥିର ହୋଅଇ କାଏ
ବିଶେଷେ ଲାଗଇ ଶ୍ୟରୀରକୁ ମଳୟ ବସନ୍ତ ପ୍ରାଏ ।
ଏସନକ ଅସାକ୍ଷମ ହୋଇ ପ୍ରବେଶ ହୋଇଲାକ ରାତି
ମିଳିଲା ଦାନେବ ବୀର ଶମ୍ଭୁ ନିଶମ୍ଭୁଙ୍କର କତି ।
ଅନିର୍ଯାପ ଶ୍ୟରୀର ବାତୁଳ ଭାବ ତେଜ
ସମସ୍ୟା ଦେଇ ନ ପାରଇ ହୋଇଣ ହୀନବୀର୍ଯ ।
ଦେଖିଣ କୋଳ କରି ଧଇଲେ ଶମ୍ଭୁ ନିଶମ୍ଭୁ
କିମ୍ପୁତ କାରଣେ ବିସ୍ମଏ ହୋଇଲ କି ବାବୁ ।
ମଏଷାଂସୁର ବୋଇଲା ଶୁଣ ହେ ବାଭିଏ
ଚଣ୍ଡ ମୁଣ୍ଡ କହିଲେ ମୋତେ ବଡ଼ାଇ ସନ୍ଦେହେଁ ।
ଅଦଭୁତେ କନ୍ୟାଏ ରତ୍ନଗିରିରେ ଭେଟି

କହିଲେ ନ ସରଇ ତାହାର ଗୁଣ ଗୋଟି ।
ସେ କନ୍ୟାକୁ ଆଣିମାକୁ ଗଲେ ବେନିଭ୍ରାଥ
ଦିବସହିଂ ସରିଲା ରଜନୀ ହୋଇଲା ପ୍ରଭାତ ।
କନ୍ୟାକୁ ଘେନି ନଇଲେ ମୋର ପାଶ
ସେ ଅବା ତାହାକୁ ହରିଣ ଗଲେ ନାଶ ।
ମନକୁ ଉଦବେଗ ମୋହୋର ବଡ଼ ଭ୍ରାନ୍ତି
କ୍ରୋଧେଣ ଗଦ ଗଦ ନିଦ୍ରା ନାହିଁ ରାତ୍ରି ।୧୯୯୦।
ଶମ୍ଭୁ ନିଶମ୍ଭୁ ବୋଇଲେ ରାଜା ହୋଇଲୁକି ବାଇ
ପରସ୍ତିରୀ ଲୁବୁଧେ ହୋ ବହୁତ କଷ୍ଟପାଇ ।
ଜଗତେଶ୍ୱର ଠାକୁର ତୁ ଅଟୁ ମହାପ୍ରଭୁ
ସ୍ତିରୀ ମାତ୍ର ଛାର ବଧ କରିବକି ସେହୁ ।
ବିଜେ କର ସ୍ୱାମୀ ଅନ୍ତେପୁର ଆସ୍ତାନେ
ଆମ୍ଭେ ଦେଖିଯାଉଁ ହର ଉଦ୍ୟାନ ବନେ ।
ରାଜାକୁ ବାହୁଡ଼ାଇ ଶମ୍ଭୁ ନିଶମ୍ଭୁ ବେନି
ଚଳିଲେ ବୀର ସଙ୍ଗେ ଘେନିଣ ସଇନି ।
ମନ୍ଦର ଗିରି ସମାନ୍ୟେ ସେ ଘେନିଣ ବେନି ଗଦା
ବିଚାରନ୍ତି କାହୁଁ ଆଗତ ପ୍ରମଦା ।
ନିଶ୍ଚେ ରାଜାର ତୁଟିଲା ଶ୍ରୀ ଆଇଷ୍ୟଇଁ
ସ୍ତିରୀ ଛାର ପରିଯୋଗେ ଆମ୍ଭକୁ ପେଷଇ ।
ଆହୋ ତ୍ରୈଲୋକ୍ୟେଣ ବେନି ଆମ୍ଭେ ରମ୍ଭକୁ ଏହି ବଡ଼ ଲାଜ
ନିଶ୍ଚେ ସେ ରାକ୍ଷସ ବଳ ହୋଇଲା ହୀନବୀର୍ଯ ।
ଯେତେକ ବିଚାରି ଚଳିଲେ ବେନି ବୀରେ
ଦୁଇ ଭାଇ ଚଳନ୍ତି ସେ ବଡ଼ାଇ ସମ୍ଭରେ ।
ଶୁଣ ହୋ ପରୀକ୍ଷ ଦୃଗାଙ୍କର ଚରିତ୍ର
ଅଷ୍ଟଉତ୍ତର ଶତେ ଯୋଜନେ ଜେନାବତୀ ନଗ୍ରକୁ ରତ୍ନଗିରି ପର୍ବତ
ଜେନାବତୀ ନଗ୍ରରେ ଦୃଗାଙ୍କର ପଡ଼ିଲାକ ଦୃଷ୍ଟି
ସିଂହଦ୍ୱାର ଜଗତୀ ପଡ଼ିଲାକ ତୁଟି ।୨୦୦୦।
ଦୋହୋରା ଘରୁ ଅଦଭୁତେ ଉଠିଲା ବହତୀ
ମଏଷାଂସୁର ନବର ଯାକ ହୋଇଲାକ ଦହାତୀ ।
ଅମେଘେ ବରଷିଲା ହୋଇଲା ଅରଷ୍ଟି
ଭାଜିଲା ଘର ଗ୍ରାମ ସବୁ ଗଲା ତୁଟି
ଆସ୍ତାନ ଜଗତୀ ଉପରୁ ଉଠିଲାକ ସମ୍ପାଦି
ଉତ୍ତରକୁ ମୁଖ କରି ସେ ରକତ ମାଂସ ଖାଦି ।
ରାଣୀହଂସ ନବର ଉପରେଣ ଉଠି
ଉଲୁକ ଗୋଡ଼ାଇଁ ଯେ ରାବନ୍ତି ଅରଷ୍ଟି ।
ନଗ୍ରେ ଉଲୁକାପାତ ହୋଇଲା ବହୁତ
ସେ ତାହା କେମନ୍ତେ ଜାଣିବ ଦରାପଦ ।
ବିକଟାଳ ଫେରଣ୍ଡା ରାବ ଦିଅଇ ନଗ୍ର ବେଢ଼ି
ଥାପିତ ଦ୍ରବ୍ୟ ଯେ ନ ପାବନ୍ତି ଲୋଡ଼ି ।
ମର୍ତ୍ତୁତେକ ବଳ ଯେ ପଡ଼ିଲେ ଚଣ୍ଡମୁଣ୍ଡଙ୍କର ତୁଲେ
ଅସ୍ଥି ଚର୍ମ ମାଂସ କିଛି ନ ରଖିଲେ ।
ଦେଖନ୍ତି ବନ ଗହନ ଯେ ସବୁହିଁ ଅପରୁବ
ଭାଷନ୍ତି କୋକିଳ ମଉଗର୍ବେ ଜୀବ ।
ଗନ୍ଧ ଆମୋଦଇ ମଳୟ ଶୀତଳ
ସମସ୍ତ ଅଶୁଭ ଦେଖନ୍ତି ଅସୁର ମହାବଳ ।
ଚଳନ୍ତି ବେନି ବୀରେ ସମସ୍ତ ଭନେସି
ଦେଖିଲେ ପର୍ବତ ଉପରେ ଅଭୟା ଅଛନ୍ତି ବସି ।୨୦୧୦।
ଆଶ୍ଚର୍ଯ ଶମ୍ଭୁ ନିଶମ୍ଭୁ ସେ କନ୍ୟାର ରୂପ ଚାହିଁ
ନିରୋପନ୍ତି ସନିଧ୍ୟେଂ ସଖା ସୋଦର କେହି ନାହିଁ ।
ଲାଜ ଭୟ ସଙ୍କୋଚ ଛାଡ଼ି ବେନି ବୀରେ
ଧାତିକାରେ ଉଠିଲେ ଯାଇ ପର୍ବତ ଉପରେ ।
ଦେଖିଲେ ପୃଥିବୀକୁ ଅଳଙ୍କାର ଅମୂଲ୍ୟ ରତ୍ନ କାନ୍ତି
ବୀର ମୃତି ଛାଡ଼ି ଦୁହେଁ ହୋଇଲେ ବଶ୍ୟାବୃତି ।
ଝିନ ବସନ ପରିହରଣ ହେଠବଦନ ବାଳୀ
ପଞ୍ଚମନ ଦର୍ପଧ୍ୱସଂନୀ ସେ ନ ଚାହିଁଲା ତୋଳି ।
ମଉଁନବ୍ରତ ହୋଇ ସେ ନ ଦିଅଇ ସମାସି
ଅସୁର କୁଳକୁ ସେ କାଳବନ୍ଧନ ଫାଶି ।
ଶମ୍ଭୁ ନିଶମ୍ଭୁ ସେ ପଚାରନ୍ତି ବାଣୀ
କେବଣ ଭୁବନୁ ସେ ଗୋ ଅଇଲୁ ଗୋସାମଣି ।
ଦୃଗା ବୋଇଲେ ମୁଁ ପରମ ନିରାକୁଳି
ଆଦି ଜନ୍ମ ସ୍ଥାନ ମୋର ଅଟଇ ମେରୁସ୍ଥଳୀ ।
କର୍ମ ବିପାକେ ମୋର ନାହିଁ ଗୃହବାସ
ତେଣୁ କରି ବନବାସ ହୋଇଲି ସ୍ୱାମୀରେ ନିରାଶ ।
ବ୍ୟାଘ୍ର ଭାଲୁକେଂ ରାକ୍ଷସେ ମୋତେ ଭକ୍ଷିବେ ବୋଲି
ଜୀବନ ନିଆଶି ମୁଁ ପର୍ବତେ ବସିଲି ।
ସ୍ୱାମୀକି ମୋହୋର ମୁଁ ହୋଇଲି ମନ୍ଦଭାଗୀ
କ୍ଷଣକ୍ଷଣକେ ଅସହଣୀ ମୁଁ କାହାକୁହିଁ ନୋହିଲି ଲାଗି ।୨୦୨୦।
ଶମ୍ଭୁ ନିଶମ୍ଭୁ ବୋଇଲେ ଗୋ ଅଇଲେ ଚଣ୍ଡ ମୁଣ୍ଡ
ଏଡ଼େ ବଡ଼ ରାଜାଙ୍କୁ କିମ୍ପା ତୁମ୍ଭେ ଭଣ୍ଡ ।
ଦୃଗା ବୋଇଲେ ହେ ମିଛରୁ ପାପ ନାହିଁ

ସତ୍ୟେଣ ସାଗର ହୋ ନଲଘଇ ମହୀ ।
ମଏଷାଂସୁର ରାଜାର ଯେବେ ମୋହୋରେ କାର୍ଯ୍ୟ ହୁଅନ୍ତା
ସନ୍ୟ ବଳ ଘେନି ଆପଣେ ଆସନ୍ତା ।
ମୁହିଁ କାହିଁକି ଯିବି ପର ପୁରୁଷେକ ଯୋଗେ
ଗୁଣ ସ୍ୱରୂପ ଦେଖି କହିବେ ସର୍ବଆଗେ ।
ଦୃଗା ବୋଇଲେ ମୁଁ ନ ଜାଣଇ ଦୁହିଁଙ୍କରି ନାମ
ଆଶା ହୀନ ଲୋକର ଲଘିଲେ ସତ ଧର୍ମ ।
କେଶ ଧରିବାକୁ ବଢ଼ାଇଲେ ଯହୁଁ କର
ଅଦଭୁତ ହୋଇକରି ମୁଣ୍ଡ ଛିଡ଼ିଲା ତାହାଙ୍କର ।
ଆହୋ ଧର୍ମ ଆତ୍ମା ପୁରୁଷ ସେ ନିରାକାର ଜ୍ୟୋତି
ଧର୍ମ ଯେ ଲଘନ୍ତି ସେ ହରନ୍ତି ଜୀବତି ।
ତୁମ୍ଭେ ତ କ୍ଷେମାଶୀଳ ପଣ୍ଡିତ ଦୟାବନ୍ତ
ତୁମ୍ଭନ୍ତ ଦେଖି ଆମ୍ଭେ ଅନେକ ଉଷତ ।
ଶମ୍ଭୁ ନିଶମ୍ଭୁ ବୋଇଲେ ଆମ୍ଭେ ତ ବଡ଼ ଭାଗି
ତୁମ୍ଭ ବିଚାରକୁ ହୋଇଲୁ ଆମ୍ଭେ ଲାଗି ।
ଦୃଗାଏ ବୋଇଲେ ତୁମ୍ଭେ କହୁକିନା ଏମନ୍ତ
ଏବେ ତ ଭଲ କହୁଅଛ ଜାଣିମା ତୁମ୍ଭର ପ୍ରତକ୍ଷ ।୨୦୩୦।
ଶମ୍ଭୁ ନିଶମ୍ଭୁ ବୋଇଲେ ଗୋ ଶୁଣ ଆମ୍ଭର ମହିମା
ତୁ ମାହେଶ୍ୱରୀ ସ୍ତିରୀ କୁଳରେ ଉତ୍ତମା ।
ସୁ ସ୍ତିରୀ ସୁ ଦେବତା ସୁ ଜନ ସୁ ବ୍ରାହ୍ମଣ
ସ୍ୱରୂପ କହିବାନା ଆତ୍ମାର ଯେ ଜ୍ଞାନ ।
ଆମ୍ଭର ପିଅର ଗୋ ମହୀ ଦାସ ନୃପତି
ତାଡ଼କା ଅସୁରର ଗୋ ଅଟୁ ପଣ ନାତି ।
ପ୍ରାକର୍ମେ ଜିଣି ଗୋ ପାରୁ ଦେବରାଏ
ଯାବତ ଜନ୍ମେ ଆମ୍ଭର ବିଷ୍ଣୁକୁ ବଡ଼ ଭଏ ।
ଏକାନ୍ତେ ବସିଲି ଗୋ ସାଗର ସଙ୍ଗମେ
ଶୂନ୍ୟ ପବନ ଭକ୍ଷିଲୁଁ ଗୋ ତୋଷିଲୁ ବେଦ ବ୍ରହ୍ମେ ।
ଏକ ଆସନ ହୋଇ ଗୋ ବସିଲୁ ଦିବାରାତ୍ରେ
ଏକାନ୍ତେ ନବ ସହସ୍ର ପରିଯନ୍ତେ ।
ମାତା ଗୋ ଶ୍ୟରୀର ମିଳାଇଲା ଉତପତି ପୁଣ କାଏ
ବାହୁଡ଼ି ନଖ ମୁଖ ନାସିକା ଚରଣ ହୋଇଯାଏ ।
ଏମନ୍ତେ ନବଲକ୍ଷ ବରଷ କଲୁଁ ଘୋର ତପ
ଯେତେ କଷ୍ଟେ ତପେ ସେ ଦେଖିଲୁ ବ୍ରହ୍ମରୂପ ।
ମାଗୋ ମରୁଳ ବାହାନ ବିଜେ କଲେ ଧାତା
ବର ମାଗ ବୋଲି ବୋଇଲେ ନବ ସୃଷ୍ଟି କରତା ।

ଆମ୍ଭେ ବୋଇଲୁ ବ୍ରହ୍ମା ଯେବେ ଦେବୁ ବର
ପୁରୁଷର ହାଥେଁ ଆମ୍ଭେ ହୋଇବୁ ଅମର ।୨୦୪୦।
କୃଷ୍ଣ ଯେବେ ପୁରୁଷ ରୂପେ ଅବତରି
ତେଣୁକରି ପୁରୁଷେ ଆମ୍ଭଙ୍କୁ ନୋହିବେ ସରି ।
ବ୍ରହ୍ମାଏ ବୋଇଲେ ବିଷ୍ଣୁର ଅନେକ ଅଟଇ ମାୟା
ସ୍ତିରୀ ପୁରୁଷରେ ବିକାଶେ ତାର କାୟା
ବଇଲୋଚନ ଅସୁର ଯେ ନାଶନ ଗଲା ପୁରୁଷେ
ମାଳତୀ କନ୍ୟାଯେକ ହୋଇ ଖଟିଲେ ତାର ପାଶେ ।
ମାଗୋ ଭୋଳ ହୋଇକରି ବୋଇଲେ ସେ ଗୁରୁ
ସ୍ତିରୀ ପୁରୁଷରେ ସେ ତୁମ୍ଭର କନ୍ଧ ନ ସରୁ ।
ଦୃଗା ବୋଇଲେ ତୁମ୍ଭେ ଏହି ଦେହ ଘେନି
ଅନେକ କାଳ ତୁମ୍ଭେ ଥିବ ଏ ମେଦିନୀ ।
ତୁମ୍ଭର ସଙ୍ଗରେ ଯେ ହୋଇବ ମେଳ ଭାବ
ଅନେକ ଭାଗିଯାରେ ତୁମ୍ଭେ ଅନେକ ବିଳସିବ ।
ଶମ୍ଭୁ ନିଶମ୍ଭୁ ବୋଇଲେ ତୁମ୍ଭେ ଶୁଣ ଗୋସାମଣି
ବ୍ରହ୍ମାକଇ ଗୁହାଇ ପୁଛା କଲୁ ପୁଣି
ଭୋ ପିତା ଯେବେ ସେ ଦେଲୁ କୋଟି କଳ୍ପ ପଦ
ଜାଣିଥିବୁ ନା ଆମ୍ଭେ କେମନ୍ତେ ହୋଇବୁ ମୃତୁଭେଦ ।
ମା ଗୋ ତୁ କାହିଁ ନ କହିବୁ ତୋତେ କହୁଛୁଁ ପ୍ରୀତି ଭାବେ
ଏ ଶତୃଭେଦ ଗୋପ୍ୟ ଥିବ ତୋହୋର ହୃଦେ ।
ଶମ୍ଭୁ ନିଶମ୍ଭୁ ବୋଇଲେ ଗୋ ଯେକର ଶିରରେ
ଯେବେ ଆରେକ ଦେବଇ ହସ୍ତ
ତେବେ ସେ ଆମ୍ଭେ ମରିବୁ ସତ୍ୟବ୍ରତ ।୨୦୫୦।
ମା ଗୋ ସିଘଳ ଦୀପରେ ଯେ ଆମ୍ଭର ଚକ୍ରବର୍ତ୍ତୀ
ଆକାଶେଣ ଠାକୁର ଆମର ବାରସ୍ୱତୀ ।
ଆମ୍ଭ ବାହୁବଳେ ସେ ମଏଷାଂସୁର ରାଜା
ଆମ୍ଭର ପ୍ରସନ୍ନେ ତ୍ରୈଲୋକରେ ପୂଜା ।
ଆମ୍ଭେ ସ୍ୱର୍ଗ ମଞ୍ଚ ପାତାଳ କଲୁ ସାଧି
ବରୁଣପୁରେ ପଶି ସାଧିଲୁ ବାରାନିଧି ।
କୁବେର ଭଣ୍ଡାରୁ ଆଣିଲୁ କ୍ଷୁର କରି
ବ୍ରହ୍ମା ବିଷ୍ଣୁ ମହେଶ୍ୱର କେହି ନୋହନ୍ତି ଯେ ସରି ।
ଯେବେଣ ଇଚ୍ଛା ଗୋ ବସିଲା ତବ ହୃଦଏ
ଆମ୍ଭର ରାଜ୍ୟେ ଗୋ ରହିବ କି ମାଏ
ଦୃଗା ବୋଇଲେ ହୋ ଅସୁର କୁଳ ଭଲ
ବଚନେ ସମାର୍ଯ୍ଯି ତୁମ୍ଭେ ମୋତେ ବନ୍ଦୀ କଲ ।

ମଏଷାଂସୁର ରାଜାର ତହିଁକି ଅଇଲି
ତୁମ୍ଭନ୍ତ ଦେଖି ମୁଁ ସମସ୍ତ ପାସୋରିଲି ।
ବନ୍ଧୁବାନ୍ଧବ ମୁଁ ସମସ୍ତ କଲି ତେଜ୍ୟା
ତୁମ୍ଭରି ସେ ଯୁଗତେ ହୋଇବି ଭାରିଯା ।
ଆହୋ ଇଚ୍ଛାମତ ବର ନ ବଳଇ ଧନ ଦ୍ରବ୍ୟେଂ
ନୃତ୍ୟ ଗୀତକୁ ଶରଧା ମୋର ହାଦେ ।
ଆହୋ ପରୀକ୍ଷ ! ଶୁଣି ଉତ୍ତର ଦିଅନ୍ତି ଶମ୍ଭୁ ନିଶମ୍ଭୁ
ଆମ୍ଭେ ଏକଇଶ ମୂର୍ଚ୍ଛନା ପଞ୍ଚ ତାଳୀ ଜାଣି ସବୁ ।୨୦୬୦।
ମା ଗୋ ଭରହ ରସ ନାଏକ ଆମ୍ଭେ ତାଣ୍ଡେବ ନୃତ୍ୟକାରୀ
ନୃତ୍ୟ ଗୀତେ ତୋଷିଲୁ ବେଦ ଚାରୀ ।
ଦୃଗା ବୋଇଲେ ତୁମ୍ଭେ ସମସ୍ତ କହୁଅଛ
ଦଣ୍ଡେକ ନୃତ୍ୟ କର ମୁଁ ଦେଖଇ ପ୍ରତକ୍ଷ ।
ମଦନେ ଅସାଷ୍ଟମେ ବୁଡ଼ିଲେ ବେନି ବୀରେ
ପୂର୍ବ କଥା ପାସୋରିଲେ ସେ କାମ ଅଗୋଚରେ ।
ଏକେ କାମ ସମୋଦ୍ର ଅଚେତ ତହିଁ ଦୃଗାର ବିଶ୍ୱମାୟା
କହୁଁ କହୁଁ ପାସୋରିଲେ ବୁଡ଼ାଇଲେ କାୟା ।
ରାଗେଣ ଯାହା କହନ୍ତି ଗୋସାମଣି
ଦୁହିଁକି ରୁଚଇ ସେ ଅମୃତ ପାନ ଜାଣି ।
ବିଶେଷେ ବନସ୍ତ ଏକାନ୍ତ ଠାବ ମେଳେ
ନୃତ୍ୟକୁ ଆରମ୍ଭ କଲେ କୁତୂହଳେ ।
ହୁଂକାର ଶବଦେଣ ମଧୁର ସଙ୍ଗୀତା
ଆକ୍ରମଣ ଆରମ୍ଭ ସୁସର ରଙ୍ଗିତା ।
ତାହାଙ୍କର କଉତୁକ ସୁରଙ୍ଗ ନୃତ୍ୟ ଦେଖି
କରତାଳି ଦେଇଁ ସେ ହସନ୍ତି ଚନ୍ଦ୍ରମୁଖି ।
ଚଞ୍ଚପୁଟ ଚାଞ୍ଚପୁଟ ଭରହ ରସ କଳା
ତାରଣା ରକ୍ଷଣା ମୂର୍ଚ୍ଛନା ସଙ୍ଗୀତ ଶାଳା
ଧୋଆ ମଠା ପଡ଼ିତାଳ ଝୁମ୍ପା ଯେ ପ୍ରବନ୍ଧ
ସୁଗତି ଆଡ଼ତାଳ ସୁସର ସୁଛନ୍ଦ ।୨୦୭୦।
ଶୃଙ୍ଗାର କାରୁଣ୍ୟ ମାନ ତାଳ ଯନ୍ତି
ନୃତ୍ୟ ଦେଖି କରି ହସନ୍ତି ତାରେଣୀ ଦୃଗତି ।
ତାହାଙ୍କର ହସନ୍ତେ ଦୁଗୁଣେ ନୃତ୍ୟେ ବାଗଁ
ଯେସନେକେ ମଉଗଜ ନ ମଣଇ ଖାଇ ।
ସୁବେଳେ ଭେଟ ଯେ ପାଇଲି ତୁମ୍ଭନ୍ତ
ଏମନ୍ତ ସୁସଞ୍ଚ ଯେ ତୁମ୍ଭର ନୃତ୍ୟ ଗୀତ ।
ତୁମ୍ଭେ ସେ ମୋହୋର ପ୍ରାଣ ଅଟ ସଖା
ଛାଡ଼ିଲି ସକଳ ଆଶା ସର୍ବ କଲି ଉପେକ୍ଷା ।
ଆହୋ ସମସ୍ତ ନୃତ୍ୟ ମୁଁ ଦେଖିଲି ତୁମ୍ଭର
ଏକର ହସ୍ତ ଦିଅ ନେଇଁ ଆରେକ ଶିରର
ଆହୋ ପରୀକ୍ଷ ପୂର୍ବେ ଯାହା ବ୍ରହ୍ମା ବର ଦେଇଅଛି
କାମ ଅର୍ଥ ବିରହେ ସେ ନ ଜାଣିଲେ କିଛି ।
ଦୃଗାର ବଚନ ଶୁଣି ଅପାର ଉଷତ
ଏକର ଶିରେ ଆରେକ ନେଇଁ ଦେଲେ ହସ୍ତ ।
ଭରହ ରଙ୍ଗ କଉତୁକ କରନ୍ତି କରତାଳି
ମଦନ ଭେବଳେ ସେ କିଛି ନ ପାରିଲେ ବାରି ।
ଅବଶେଷ କାଳ ଯେବେ ହୋଇବାକ ପ୍ରାଣୀ
କର୍ମଣି ଚାଲ ହସ୍ତେକ ମୃତ୍ୟୁ ଠାବ ନ ଜାଣି ।
ତ୍ରଇଲୋକ୍ୟରେ ଯେଉଁ ବୀରଙ୍କୁ ନାହିଁ ମୃତୁ
କାମ ଲୁବୁଧେ ବୀରେ ବୁଡ଼ାଇଲେ ହେତୁ ।୨୦୮୦।
ଶମ୍ଭୁ ନିଶମ୍ଭୁ ଯେ ଦାନେବ ବଧ ଦେଖି
ତେତିଶ କୋଟି ଦେବତାଏ ଅଇଲେ ଗଗନ ଉପେଖି ।
ନିଶ୍ୱାସ ଫନ୍ଦିଲା ଗୋ ଦିଶିଲା ସ୍ୱର୍ଗବାଟ
ନିଶ୍ଚିନ୍ତେ ବସିବୁ ଯେ ଯାହାର ରାଷ୍ଟ୍ର ।
ମାତା ଗୋ ତୋହୋର ପ୍ରସନେ ପାଇଲୁ ଆମ୍ଭେ ଗତି
ତୁହି ସେ ତିନି ଭୁବନର ଫେଡ଼ିବୁ ଦୃଗତି ।
ମଏଂଷାସୁର ସାର୍ଥୁକ୍ୟ ସେ ଚଣ୍ଡ ମୁଣ୍ଡ ଶମ୍ଭୁ ନିଶମ୍ଭୁ
ଏ ସେ ବ୍ରହ୍ମା ବର ଦେଇ ନାଶ କଲେ ସବୁ ।
ଶମ୍ଭୁ ନିଶମ୍ଭୁ ବାଧ ଶୁଣି ସମସ୍ତ ଲୋକ
ଅନେକ ସାନନ୍ଦ ହୋଇ ଫିଟିଲା ସର୍ବ ଦୁଖ ।
ଦେବତାଙ୍କର ଆପାଦ ଯେ ଖଣ୍ଡିଲେ ଉପାଏ
ସବୁଙ୍କରି ଆପାଦ ଖଣ୍ଡସି ମହାମାଏ ।
ଦୃଗା ଲୟେ କରି ନରେ ହୃଦେ ଥାଅ ଭାବି
ଯାବତ କଳୁଷ ଏ ଖଣ୍ଡୁ ମହାଦେବୀ ।
ଶ୍ରୀ ଦୃଗାର ଚରଣେ ଶରଣ ପଶ ନିତ୍ୟେ
ମନ ବଚନ କର୍ଭବ୍ୟେ ବୁଝ ପଞ୍ଚଭୂତେ ।
ସହସ୍ରେକ କରେ ଯେ ସହସ୍ରେକ ଆୟୁଧ ଧରି
ଜଗତ ଜନ ନିବେଶି ଦୃଷ୍ଟ ନିବାରି
ଯାହାର ନାମ ସଙ୍କେତେ ଖଣ୍ଡଇ ଯମଦଣ୍ଡ
ଯାହାର ନାମ ସଙ୍କେତେ ବିଘ୍ନ ହୋଏ ଖଣ୍ଡ ।୨୦୯୦।
ଯାହାର ନାମ ସଙ୍କେତେ ଅରଷ୍ଟି ହୋଏ ଶାନ୍ତି
ଯାହାର ନାମ ସଙ୍କେତେ ଫିଟଇ ଦୃଗତି ।

ଯାହାର ନାମ ସଙ୍କେତେ ନ ପଶଇ ଦୁରାରୋଗ୍ୟ ବ୍ୟାଧି
ଯାହାର ନାମ ସଙ୍କେତେ ନ ଖଣ୍ଡଇ ନାନା ବୁଧି ।
ଯାହାର ନାମ ସଙ୍କେତନେ ଆଇଷ୍ୟ ହୋଏ ବିଖ୍ୟାତ
ଯାହାର ନାମ ସଙ୍କେତନେ ଲକ୍ଷ୍ମୀ ହୋଏ ପ୍ରାପତ ।
ଯାହାର ନାମ ସଙ୍କେତନେ ଅପୁତ୍ରିକ ପୁତରୁ ପାର ଯାଇ ।
ସନ୍ତାନ ମୋକ୍ଷ ଗତି ବିପୁଳ ଭୋଗ ପାଇ ।
ଆହୋ ବିପରି କାଳେ ଯାହାର ବେଳ ନ ହୁଟଇ
ଯେବଣ ଦେବୀକି ସୁମରିବା ମାତ୍ରକେ ପାଶ ବନ୍ଧନ ଫିଟଇ ।
ମୁନି ଜନମାନେ ଅଭ୍ୟାସ କରନ୍ତି ଯାହା
ହେ ପଣ୍ଡିତ ଜନମାନେ ଦୃଗା ଯେ ବର ଦିଅନ୍ତି ତାହା ।
ଶୁଣନ୍ତେ ଗୁଣନ୍ତେଣ ଘୋଷନ୍ତେଣ ପ୍ରସନ ହୋଅନ୍ତି
ସେ ମହାମାୟାଙ୍କୁ ଯେହୁ ହୃଦରେ ଘୋଷନ୍ତି ।
ଶ୍ରୀ ଭାଗବତ ସାର ଏ ଯେ ବିଷ୍ଣୁ ପୁରାଣେ
ସଂସାର ଜନଙ୍କୁ ମୁ କରି ବାଟ ଯେଣେ ।
ଶ୍ରୀ ଦୃଗାଙ୍କ ଚରଣେ ଶତଦଣ୍ଡ ପ୍ରଣପତ୍ୟ ନିତ୍ୟେ
ବନ୍ଦନ୍ତି ସାରୋଳ ଦାସ ପଣପତ୍ୟ ସଂସାର ଜନଙ୍କର ହିତେ ।

## ଚାମର ବେମାଳ ବଧ

ଶୁଣ ହୋ ପରୀକ୍ଷ ବଦନ୍ତି ଶୁକ ବ୍ରହ୍ମା
ଶ୍ରୀ ଦୃଗାଙ୍କ ଚରିତ ହାଦେ ଏସନେକ ମହିଁମା ।୨୧୦୦।
ତ୍ରୈଲୋକ୍ୟଂ ଯେବଣ ଶମ୍ଭୁ ନିଶମ୍ଭୁ ସାଧି
ସେ ନାଶ ଗଲେ ଯେ ସ୍ତିରୀ ରତ୍ନ ବୁଦ୍ଧି ।
ହେ ପଣ୍ଡିତ ଜନେ ବିଚାର କର ହୃଦେ
ଚିର ଆଇଷ୍ୟ କ୍ଷଏ ଯାଇଟି ପର ସ୍ତିରୀ ଲୁବୁଧେ ।
ଏହା ଶୁଣି ପୁଚ୍ଛାକଲା ପରୀକ୍ଷ ନୃପତି
ଏ କାଳ ବିଘାତୁ ମୁ ପାଇବି ମୁକ୍ଷ ଗତି ।
ମୁନି ହେ ଚଣ୍ଡ ମୁଣ୍ଡ ଶମ୍ଭୁ ନିଶମ୍ଭୁ ବଧ ଶୁଣି
ପୁଣି କିସ କଲା ସେ ମଏଷାଂସୁର ନୃପମଣି ।
ବଦନ୍ତି ଶୁକ ମୁନି ଶୁଣ ହେ ପରୀକ୍ଷି
ଅଭିସାରିକା ହୋଇଁ ମଏଷାଂସୁର ବସିଅଛି ।
ଯାଇଁଣ ଅଛନ୍ତି ବୀରେ ଆଣିବେ ଯୁବତୀ
ମୋହର ମନ ଇଚ୍ଛାଏ କରିବି ସୁରତି ।
ବାହାର ଦ୍ୱାର ପ୍ରବାଳ ଜଗତୀ ଉପରେ
ପଥ ଉପନେସଇ ସେ ମଏଷାଂସୁର ବୀରେ ।
କାଳ ବିକାଳ ବୋଲି ସେ ବେନି ସେନାପତି
ବିଝଂଗିରି ପର୍ବତୁ ସେ ଅଇଲେ ସେହି ରାତି ।
ସେ ଯାଇ ପ୍ରବେଶ ହୋଇଲେ ମଏଂଷାସୁର ପାଶେ
ସ୍ୱାମୀ ! ଏଡ଼େ ସମ୍ପଦ ବୁଡ଼ାଇଲୁ ସ୍ତିରୀ ଲିଙ୍ଗ ଆଶେ ।
ସ୍ୱାମୀ ! ପ୍ରଥମେ ଗଲେ ରାକ୍ଷସ ବଳ ଦଣ୍ଡ
ଥାଠଯାକ ଘେନି ଗଲେ ଚଣ୍ଡ ମୁଣ୍ଡ ।୨୧୧୦।
ନୃତ୍ୟ ଗୀତ କରି ନାଶ ଗଲେ ଶମ୍ଭୁ ନିଶମ୍ଭୁ
ଏହିମନ୍ତେ ନାଶ ଗଲେ ବଳ ତୋର ସବୁ ।
ଡଗର ମୁଖରୁ ଏସନେକ ବଚନ ଶୁଣି
ସ୍ତମ୍ଭୀଭୂତ ହୋଇକରି ବସିଲା ନୃପମଣି ।
ରେ ରେ କାଳ ବିକାଳ କହିଲ କେମନ୍ତ
ତୁମ୍ଭର ବଚନରେ ନ କଲଇଁ ମୁଁ ସତ ।
ଦେବଙ୍କୁ ଅଗୋଚର ଯାହର ବଳ ବୀର୍ଯ୍ୟା ।
ମାନବ ଜନ୍ମେକେ ତାକୁ କରିବ ପ୍ରାଣ ତେଜ୍ୟା ।
ସ୍ୱାମୀ ! ଅଦଭୁତ ସ୍ତିରୀ ସେ ଅଟଇ ରାକ୍ଷସୀ
ବିଶ୍ୱାସ କୁଟରେ ସେ ତୋର ସନ୍ୟ ବଳ ନାଶି ।
ଶୁଣି ବିଷାଦ ସେ ମଏଷାଂସୁର ମହୀପାଳ
ସଧୀରେ ହକାରିଲା ତାର ଚାମର ବେମାଳ ।
ଆରେ ସହସ୍ରେକ ଯୋଦ୍ଧା ଘେନି ଯାଅ ଏହିକ୍ଷଣି
ଚଣ୍ଡ ମୁଣ୍ଡ ଶମ୍ଭୁ ନିଶମ୍ଭୁଙ୍କ କଥା ତଥ୍ୟ କର ଜାଣି ।
କେମନ୍ତ ଯୁବତୀ ତାର ଚରିତ୍ର କେମନ୍ତ
ଅଛଇ କି ଏମନ୍ତ ଶତ ଯେ ଆଗତ ।
ସତ୍ୟ ଯୁଗ ତ ଶେଷ କଲି ମୋହୋର ବାହୁ ବଳେ
ଏହେର୍ଣେକ ଦୁରାପଦ ତ ନାହିଁ କେହୁଣିସି କାଳେ ।
ଶ୍ରୀ ହସ୍ତେ ରାଜା ସେ ଆପଣେ ଦେଲେ ଶାଢ଼ୀ
କେମନ୍ତ ନାଗେରୀ ସେ ଆଣ ବାଳ ଧରି ।୨୧୨୦।
ରାଜାର ଆଜ୍ଞା ପାଇ ଚାମର ବେମାଳ
ରଥ ଗଜ ପାଦାନ୍ତି ନବ ମର୍ତ୍ତ୍ୟ ବଳ ।
ଚଳନ୍ତି ବଳ ପ୍ରତାପ ମଏଷାଂସୁର ସେନାପତି
ଆକାଶ କମ୍ପଇଁ ହେଳ ଘେନଇ ବସୁମତୀ
ଏକକୁ ପଛ କରି ଆରେକ ହୁଅନ୍ତି ଆଗେ
ହର ଉଦ୍ୟାନ ବନେ ପଶିଲେ ଯାଇଁ ବେଗେ ।
ଅନେକ ବୀର ତୂର ନିଶାଣ ଘନ ରଡ଼ି
ଅଚମ୍ବିତେ ରତ୍ନଗିରି ପର୍ବତ ଯାଇଁ ବେଢ଼ି ।
ଯେ ରତ୍ନଗିରି ଶିଖରେ ବିଜେକରି ବସିଅଛନ୍ତି ଶ୍ରୀ ଦୃଗେ
ଚାମର ବେମାଳ ଦୁହେଁ ଯାଇଁ ହେଲେ ବେଗେ ।

ହେଠବଦନୀ ହୋଇ ଦେବୀର ମାନେନୀ ଅବସ୍ଥା
ତଳକଇ ଦୃଷ୍ଟିକରି ସେ ନ ଟେକଇ ମଥା ।
ଚାମର ବେମାଳ ଦୃଗାଙ୍କୁ ପଚାରି
କେବଣ ଦେଶରୁର ଅଇଲୁ ରେ ନାରୀ
ଚଣ୍ଡ ମୁଣ୍ଡ ଶମ୍ଭୁ ନିଶମ୍ଭୁ ଯେ ଅଇଲେ
ସେ ତ ଆମ୍ଭ ପୁରକୁ ବାହୁଡ଼ି ଯେ ନ ଗଲେ ।
ଦୃଗା ବୋଇଲେ ହୋ ଅତି ଉତକର୍ମେ
ବହୁତ କାଳଯାଏ କି ଥୋଅନ୍ତି ଦେବ ଧର୍ମେ
ଆହୋ ସଂସାର ଯାକ ସେ ଅଦଭୁତେ ରଞ୍ଜନା
ପାପ ପୁଣ୍ୟ ଯା କରଇ ସେହି ରହଇ ସିନା ।୨୧୩୦।
ଯହୁଁ ଆସିଥିଲେ ତହିଁକି ବୋଲି ଗଲେ
ଜଳ ବିମ୍ବପ୍ରାଏକ ମଧ୍ୟେଂ ରୂପ ଦେଖାଇଲେ ।
କେ ଏଥେଂ ଅମର ହୋଇବାକ ଜନ
ତୁମ୍ଭେହେଁ ଆଜି କାଲି ହୋଇବ ନିଧନ ।
ବୋଇଲ ଯେ ମଏଷାଂସୁରକୁ ବ୍ରହ୍ମାଦେଲେ ବର
ସେ ବ୍ରହ୍ମା ଏଥେଂ ହୋଇବ କି ଅମର ।
ଚାମର ବେମାଳ କହିଲେ ନ କହନି ବାଣୀ
ମଏଷାଂସୁର ରାଜାର ହୋଇବୁ କି ଘରଣୀ ।
ଏବେହେଁ ଆସ ତୋତେ ପୁରୁଷାର୍ଥ କରି ନେମା
ଦଶ ଦୋଷ ଅପରାଧ କରିବେ ତୋର କ୍ଷେମା ।
ଅଥବା ରାଜାକୁ ଯେବେ ନାହିଁ ତୋର ଚିତ୍ତ
ଆମ୍ଭର ଭାରିଯା ହୋଇବୁ କି ସଙ୍ଘାତ ।
ଆହୋ ମୁ ଯେ ତୁମ୍ଭ ରାଜାକୁ ବେଳହୁଁ କରଇଁ ଇଚ୍ଛା
ତାହା ବିନୁ ଆନେ ମୋର ନ ବଳଇ ମନ ବାଞ୍ଛା
ଆହୋ ଆମ୍ଭର ଅଛନ୍ତି ଯେ ଦୋହିତା ବେନି ଗୋଟି
ସେ ସେ ତୁମ୍ଭର ରୂପଗୁଣ ଦୁଲଭ ଭେଟି ।
ଆଗୋ ଛାୟା ମାୟା ବେନି ବାଳୀ
ତୁମ୍ଭ ତୁଲେ ବର ପାଇଲି ମନର ହିଆଳି ।
ଦୃଗାର ବଚନେ ସେ ବାହାର ବେନି ସତୀ
ଅଦଭୁତେ ବିକାଶିଲେ ସେ ବେନି ଯୁବତୀ ।୨୧୪୦।
ତଇଲୋକ୍ୟ ମୋହୋନୀ ସେ କାମେଣ କାମାକ୍ଷୀ
ଦେଖିଣ ଚାମର ବେମାଳଙ୍କର ନ ଫୁରଇ କିଛି ।
ଅନେକ ଅଳଙ୍କାର ଅଙ୍ଗେଣ ଆଭରଣ
ନାନା ବର୍ଣ୍ଣେ କୁସୁମେ ଖୋପା ପରିହରଣ ।
କାମେନୀ କାମବତୀ ହୋଇଛନ୍ତି ଗୋପ୍ୟ
ବେଶ ହୀନେ ସଂସାର ମୋହି ପାରନ୍ତି ସରୂପ ।
ଦୃଗା ବୋଇଲେ ହୋ ଚାମର ବେମାଳ
ଏ ମୋହର ଦୋହିତାକୁ ତୁମ୍ଭେ ଯତ୍ନ କରି ପ୍ରତିପାଳ ।
ଶୁଣିଣ ସାନନ୍ଦ ହୋଇଲେ ବୀର ବେନି
ଚାମର ବେମାଳ ଗଲେ ଛାୟା ମାୟାକୁ ଘେନି ।
ଲକ୍ଷ୍ମୀ ଭଦ୍ରା ନଦୀ କୂଳେ ଅଛନ୍ତି ଥାଠ
ନାମ ଗିରି ଜାଣି ସେ ରହିଲେ ପାପିଷ୍ଠ ।
ଅନେକ ସାନନ୍ଦ ସେ ହୋଇଣ ମହାଭୋଳେ
ଲାଗିଲେ ମଦିରାପାନେ ରଙ୍ଗ କୁତୋହୋଳେ ।
ନାନା କଉତୁକେ ସେ ମତ୍ତ ରସ ରଙ୍ଗେ ଖେଳେ
ଅନେକ ପରିହାସ ମଦନ ରସ ଭୋଳେ ।
ରାତ୍ର କାଳେ ଯେ ଶୋଇଲେ ସର୍ବ ସଇନି
ବେନି କୁମାରୀ କି ଚାମର ବେମାଳ ଗଲେ ଘେନି ।
କାଦେମ୍ବରୀ ପାନେ ଦତ୍ୟଙ୍କ ଦେହ ଅସାଷ୍ଟମ ବେଳେ
ରତି ଆଶ ଦେଖାଇଁ ସେ ମାଡ଼ି ବସିଲେ ବକ୍ଷ ସ୍ଥଳେ ।୨୧୫୦।
ଆରେ ପ୍ରାଣ ବଲ୍ଲଭୀ କୋଳାଗ୍ରତ କର ଆମ୍ଭଙ୍କୁ
ଲହେ ବିଦାରିଲେ ସେ ତାହାଙ୍କର ବୁକୁ ।
ମଦିରା ପାନେ ଯେ ପଡ଼ି ଅଛନ୍ତି ଦୁରାପାତେ
କିଛି ହିଁ ନୁହନ୍ତି ସେ ନୁଆରିଲେ ଦଇତେ ।
ଚାମର ବେମାଳ ବଧ କରି ସେ ମାଇଲେ ସଇନି
କାଳ ବିକାଳ ଦୁହେଁ ପଳାଇଲେ ମିତ୍ର ବେନି ।
ବ୍ରହ୍ମାଣ୍ଡ କମ୍ପିଲା ସେ ଦେବୀଙ୍କର ରଡ଼ି
ଅସୁର ବଳ ମାରି ସେ ରକ୍ତ ପାନେ ଖେଡ଼ି ।
କାଳ ବିକାଳ ଦୁହେଁ ପଳାଇଲେ ବେଗେ
ଯାଇଁ ଜଣାଇଲେ ମଏଂଷାସୁରର ଆଗେ ।

## କାନ୍ତିମାଳା, ବିଡ଼ାଳାକ୍ଷ, ରକ୍ତବୀଜ, ବୀରଘଣ୍ଟ ଏବଂ କାଳଦଣ୍ଡ ପ୍ରଭୃତିର ଯୁଦ୍ଧ ଓ ମୃତ୍ୟୁ

ଶୁଣ ଦେବ ଅବଧାରି ଚାମର ବେମାଳଙ୍କର କଥା
ଦଣ୍ଡ ଘେନି ଗଲେ ତୁମ୍ଭର ବେନି ସାମରଥା ।
ଦେଖିଲୁ ଯୁବତୀ ବସିଅଛି ଏକସରେ
ଚାମର ବେମାଳ ଯାଇ କହିଲେ ବଚନ ମଧୁରେ ।
ତାହାଙ୍କର ରୂପ ଦେଖି ମୋହିତ ବେନି ଭାଇ
ବୋଇଲେ ଆମ୍ଭର ଭାରିଯା ହୋଇବୁ କି ଗୋ ଆଇ ।
ବୋଇଲା ମଏଂଷାସୁରର ବଳବୀର୍ଯ୍ୟ ଶୁଣି

ମୁହିଁ ଆସିଅଛି ତାର ହୋଇବି ଘରଣୀ ।
ରାଜାଙ୍କର ଭାରିଯା ତୁମ୍ଭର ଗୁରୁ ପତ୍ନୀ
ମହାଗୁରୁ ହରି ଲୋଡ଼ ଏଡ଼େକ ଅଗ୍ୟାନୀ ।୨୧୬୦।
ଶୁଣିଲେ ଏହିମତି ସେ ଧର୍ମ ଲଙ୍ଘିଲେ
ଏଥିର ପାପେ ଶମ୍ଭୁ ନିଶମ୍ଭୁ ଚଣ୍ଡ ମୁଣ୍ଡ ମଲେ ।
ଦୋହିତା ବେନି ଗୋଟି ଯେ ଥିଲେ ତାହାର ତୁଲେ
ଚାମର ବେମାଳନ୍ତ ସେ ବେନି କନ୍ୟା ଦେଲେ ।
ସେ ଦୁହିଁଙ୍କି ଘେନି ଦେବ ଅଇଲେ ବେନି ବୀରେ
ନିଶାୟେ ପହୁଡ଼ିଲେ ନାମ ଗିରି ପର୍ବତ ଉପରେ ।
ସ୍ୱାମୀ ! ପ୍ରଭାତେ ଦେଖିଲୁ ଚାମର ବେମାଳଙ୍କୁ
ଉତ୍ୟାନଶାହୀ ହୋଇ ପଡ଼ିଛନ୍ତି ବିଦାରିଛନ୍ତି ବୁକୁ ।
ସ୍ୱାମୀ ! ପଞ୍ଚ ଯୋଜନ ମାଡ଼ି ଯେ ରହିଥିଲେ ବଳ
ସବୁଙ୍କରି ଛେଦିଲା ଦେବ ଅଛି ବକ ସ୍ଥଳ ।
ସ୍ୱାମୀ ! ରଥ ଗଜ ପାଦାନ୍ତି ଅନେକ ସଇନି
ଜଣେକଇ ନ ରହିଲେ ଦେହ ଘେନି ।
ଆହୋ ପରୀକ୍ଷ ସେନାଙ୍କର ଯହୁଁ ବିଯୋଗ ଶୁଣି ନିରାଶା
ନିର୍ଘାତ ପ୍ରାଏକ ପଡ଼ିଲା ମଏଂଷା ।
ଆରେ ମୋହୋର ପ୍ରାଣ ସାଖା
ମମ କାର୍ଯେ ପେଷିଲି ମୁଁ ହୋଇଲି ନିରେଖା ।
ବ୍ରହ୍ମାଣ୍ଡ ସାଧ କଲି ଯାହାର ବୁଦ୍ଧି ବଳେ
କିଅଁତେ ନାଶ ଗଲେ ମୋହୋର କର୍ମର ଅବଳେ ।
ମହୀରେ ପଡ଼ି ଲୋଟଇ ମଏଂଷାସୁର ରାଏ
ସାଷ୍ଟାମ ହୋଇ ଉଠିଲା କାଳ ସର୍ପ ପ୍ରାଏ ।୨୧୭୦।
ଅଦଭୁତ ପ୍ରମାଣ ଶୁଣି ସମସ୍ତ ସେନାପତି
ସଭିଏ ଗୁଣ୍ଠ ହୋଇଲେ ମଏଂଷାସୁରର କତି ।
ରକ୍ତବୀର୍ଯ ବୀରଘଣ୍ଟ କାନ୍ତିମାଳା ବିତୁଳାକ୍ଷ
ସଖା ସୋଦର ହୋଇ ତୁମ୍ଭେ ମାତ୍ର ଅଛ ।
ତୁମ୍ଭେ ତହିଁକି ତ ଯାଅ ଦଣ୍ଡ ଚଢ଼ି
ସେ ମୋଢ଼ୀ ନାଗେରୀକ ଆଣ ବାଳ ଧରି ।
କନ୍ୟା ରୂପ ଧରି ଗିରି ଶିଖରେ ଥାଇ ବସି
ବିଶ୍ୱାସ କୂଟରେଣ ସଖାନ୍ତ ମୋର ନାଶି ।
ଆରେ ଭୂମିରେ ପାଦ ନ ପଡ଼ିବ ବହନ ଘେନି ଆସ
ତିଳ ପ୍ରମାଣେ କରି କାଟିବି ତାର ମାଂସ ।
ସେହି ରକତ ମିଶାଇ ତାହା ଭୁଞ୍ଜି
ପୁଣି ରାଗେଣ ସେ ଉଠଇ ଗଜଗାଜି ।

ରକ୍ତବୀର୍ଯ ବୋଇଲା ଦେବ ଏ ଭଲ ଆସର
ତୋହୋର ବୋଲ ଶୁଣି ମୋହୋର ଶ୍ୟରୀର ରୁମାଞ୍ଚଇ ।
ସ୍ୱାମୀ ! ଆମ୍ଭେ ଚାରିହେଁ ଅଟୁଁ ତୁମ୍ଭର ସେନହା
ଦେବେ ଦାନବେ ଆମ୍ଭେ ନ ଯାଉ ଗଣନା ।
ଆମ୍ଭେ କାହିଁକି ସାଜିବୁ ଯେ ଦଣ୍ଡ
ଯାହାର ଚାଲନ୍ତେ କମ୍ପଇ ବ୍ରହ୍ମାଣ୍ଡ ।
ଇନ୍ଦ୍ର ଈଶ୍ୱରଙ୍କୁ ଆମ୍ଭର ଯେ ଧାଡ଼ି
ସେ ଛାର ପାମେରୀ ଅଟଇ ଦେଶାନ୍ତରୀ ।୨୧୮୦।
ମାରନ୍ତେଣ ସ୍ତିରୀ ହତ୍ୟା ଜୀବନ୍ତେ ନାହିଁ ଯଶ
ତୁ ସର୍ବଜ୍ଞ ନାଥ ବିଚାର ଏ ଭବିଷ ।
ତାହା ଶୁଣିଣ ସେ କାଳ ଯେ ବିକାଳ
ସ୍ତିରୀ ଲିଙ୍ଗ ବୋଲି ତୁମ୍ଭେ ନକର ଯେ ହେଳ ।
ଚଣ୍ଡ ମୁଣ୍ଡ ଜିଣିମାକୁ ହୋଇଲେ ସାମରଥା
କୂଟେଣ ପାଡ଼ିଲେ ସେ ଶମ୍ଭୁ ନିଶମ୍ଭୁ ମହାରଥା ।
ଆହୋ ତଇଲୋକ୍ୟେଣ ଅଛି ଏ ଚାମର ବେମାଳ
ତାହାକୁ ସେ ବିଦାରଣ କଲାସେ ବକ୍ଷସ୍ଥଳେ ।
ହିରଣ୍ୟ ବିଦାରଣେ ଯେବଣ ନରସିଂହ
ତାହାକୁ କେମନ୍ତେ ତୁମ୍ଭେ ବୋଇଲ ସ୍ତିରୀ ଲିଙ୍ଗ ।
ମାନନୀ ଅବସ୍ଥା ମୋହୋନୀ କାମସେଣା
ରଣ ଗୋଳ ଧନ୍ଦୋଳ ସେ ଜଗତ ଜଗଜିଣା ।
ସ୍ତିରୀ ଲିଙ୍ଗ ବୋଲି ହୋ ତୁମ୍ଭେ ତାହାକୁ ନ ବୋଲ
ଯେତେ ପାର ତୁମ୍ଭେ ଦଣ୍ଡ ଘେନି ଚଳ ।
କାନ୍ତିମାଳା ବୋଇଲା ତାହା ଛାରକୁ କିସ ଶଙ୍କା
ଏହିକ୍ଷଣି ଘେନି ଆସିବି ନା ଏକା ।
ଏତେ ବୋଲି ଲୁହାର ମୁଦ୍ଗର ବୁଲାଇଁ
ଆସ୍ଥାନ ଉପରୁ ସେ ପଡ଼ିଲାକ ଡେଇଁ ।
ଆହୋ ପରୀକ୍ଷ ! କାନ୍ତିମାଳା ଡେଇଁ ପଡ଼ନ୍ତେ ବାହାର ରକ୍ତବୀର୍ଯ
ବୀରଘଣ୍ଟ ବିତୁଳାକ୍ଷ ବୀର ହୋଇଲେକ ସଜ ।୨୧୯୦।
ରକ୍ତବୀର୍ଯ ତୁଲେ ସେ ବାର ମର୍ଭୁତ ସେନା
ସମସ୍ତେ ବାହାର ହୋଇଲେ ଏକାବେଳକେ ସିନା ।
ବାହାର ରକ୍ତବୀର୍ଯ ଉତ୍ତର ମୂରତି
କାନ୍ତିମାଳା ତୁଲେ ଅଠର ମର୍ଭୁତ ସେନାପତି ।
ତିରିଶି ମର୍ଭୁତ ଯୋଦ୍ଧା ପାଞ୍ଚ ମର୍ଭୁତ ପାଦାନ୍ତି
ଦଣ୍ଡ ଚଳାବନ୍ତେ ଯେ କମ୍ପିଲା ବସୁମତୀ ।
ବିତୁଳାକ୍ଷର ତୁଲେଂ ସେନା କୋଟିଏ ମର୍ଭୁତ

ବୀରା ଅସୁରାଏ ଚାଳିଶି ଅହୀବ୍ରତ ।
ସତୁରି ମର୍ଭୁତ ସେନା ପାଦାନ୍ତି ବଳ ଚଳେ
କାମରୂପୀ ଅସୁର ସେ ବ୍ରହ୍ମାଣ୍ଡ ଘୋଟିଲେ ।
ବୀରଘଣ୍ଟର ତୁଳେ ସେନା ବାଇଶି ମର୍ଭୁତ
ହାମଳା ଅଖଳା ଷାଠିଏ ମର୍ଭୁତ ।
ଅଶୀ ମର୍ଭୁତ ପାଦାନ୍ତି କାଳିମାଳାର ତୁଳେ
ଧାମନ୍ତେ ପୃଥିବୀ ଯେ ହେଳ ଘେନଇଟି ଡରେ ।
ଚଳନ୍ତେ ଚାରି ବୀରେ ନିଦାର୍ଘ ବଳ ଘେନି
ଦେବତାଏ ତ୍ରାସିଲେ ଭଏ ପଦ୍ମଯୋନି ।
ପହଡ଼େକ ରାତ୍ର ଥାଉଁ ପଡ଼ିଲାକ ଅସୁରଙ୍କର ଧାଡ଼ି
ଆଚମ୍ବିତେ ଯାଇ ବେଢ଼ିଲେ ରତ୍ନଗିରି ।୨୨୦୦।
ଧର ଧର ମାର ମାର ପଡୁଅଛି ବୋବି
ଗିରିବର ଉପରେ ଥାଇଁ ଯେ ଦେଖୁଛନ୍ତି ଦେବୀ ।
ସିଘରଡ଼ି ଦେଇଁ ଦାନେବ କହନ୍ତି ବିଖଣ୍ଡ
କାହିଁ ପଶିବ ସେ ଯେ କରିବୁ ଲଣ୍ଡଭଣ୍ଡ ।
ଲଲାଟରୁ ଦେବୀଙ୍କର ଗଳଇ ଯେ ମହାଶର୍ମ
ଲଲାଟରୁ ଦେବୀ ପୋଛି ପକାଇଲେ ଘ୍ରମ ।
ଆହୋ ପରୀକ୍ଷ ରାଜା ଦୃଗା ଝାଳ ଯେ ପଡ଼ିଲା ଧରଣୀ
ପ୍ରଥମହୁଁ ସମ୍ଭୂତ ତହୁଁ ହୋଇଲେ ନାରାୟଣୀ ।
ନୀଳେନ୍ଦି ବରତନୁ ଚନ୍ଦ୍ରମୁଖ ପଙ୍କଜ
ଶଙ୍ଖ ଚକ୍ର ଗଦା ପଦ୍ମ ସାରଙ୍ଗ ଚତୁର୍ଭୁଜ ।
କିରୀଟୀ କୁଣ୍ଡଳ କର୍ଣ୍ଣେ ବିରାଜନ୍ତି ମାଳା
ନାରାୟଣୀ ନାମ ତେଜ ପ୍ରସନ୍ନ ମତିଭୋଳା ।
ହୁଂକାର ଶବଦେ କଲେ ଘୋର ବିକରାଳି
ହୁଙ୍କାରୁ ଜାତ ହୋଇଲେକ ବାଶେଳୀ ।
ପାଦେକ ମଞ୍ଚେଣ ଆର ପାଦ ଗଗନରେ ଖେପି
ମୁକଳିତ କେଶ ଲୋହିତ ବର୍ଣ୍ଣ ଅଭଏ କାମରୂପୀ ।
ନବ ନିଶି କୋନ୍ତ ଦକ୍ଷିଣ ଭୁଜର
ବାମ ଭାଗେ ଶୋଭା ଯେ ରୂପାର ଖପର ।
ନୟନ କଟାକ୍ଷି ଯେ ଚାହିଁଲେ ମହାଦେବୀ
ନୟନରୁ ଜାତ ଯେ ହୋଇଲେ ମହା ଭଇରବୀ ।୨୨୧୦।
ଏକ ଚରଣ ମୁକଳ କେଶ ଚତୁର୍ଭୁଜ
ତ୍ରିଶୂଳ ଡମ୍ବରୁ ଖଟ୍ୱାଙ୍ଗ ଧନୁ ମହାତେଜ ।
ଶୁକ୍ଳାମ୍ବର ତେଜ ଶ୍ୟରୀର ଶୁଦ୍ଧ ସ୍ଫଟିକର କାଏ
ମହା ଭଇରୋବୀ ସେ ଈଶ୍ୱର ତେଜ ପ୍ରାଏ ।
ଘନ ଘନ ନିଶ୍ୱାସ ଯେ ଛାଡ଼ଇ ଗୋସାମଣି
ନାସିକାରୁ ବାହାର ଯେ ହୋଇଲେ ବ୍ରହ୍ମାଏଣୀ ।
କୁଙ୍କୁମ ବର୍ଣ୍ଣ ଅଷ୍ଟଭୁଜ ଚାରିଶିର
ବେନି ଚରଣ ଅଷ୍ଟଭୁଜ ଅଟଇ ତାହାର ।
ଶ୍ରୀ କରେ ଅଜଙ୍ଗମ ଧନୁ ବ୍ରହ୍ମ ଶକତି
ବ୍ରହ୍ମ ଜପାମାଳ ବେନି କରେ ଖପର କାତି ।
ଉର୍ଧବାହୁ କରି ସେ ଉଚ୍ଚ ସ୍ୱରେ ବାଣୀ
ଖଣ୍ଡା ମୁଣ୍ଡରୁ ଜାତ ହୋଇଲେ ଇନ୍ଦ୍ରାଏଣୀ ।
ସୁପଞ୍ଚ ଶରୀର ଅନର୍ଘ ମଣି ମୁକୁଟ
ବଇଜୟନ୍ତୀ ମାଳା ବିରାଜଇ କଣ୍ଠ ତଟ ।
ଶ୍ରୀ ଭୁଜେ ବଜ୍ର ଶକତି ଆର୍ଦ୍ଧାବଳି ଧନୁ
ବିଜୁଳି ରେହ ପ୍ରାଏ ତାହାର କୁରୁଶାନୁ ।
ଏକଶିର ବେନି ଚରଣ ସହସ୍ରେକ ଭୁଜ
କାଳାନଳ ଅନଳ ଜାଣି ବିରାଜଇ ତେଜ
ରେ ରେ ଶବଦ କରିଣ ଡାକିଲା ଉର୍ଧ କରି
ଏ ଶବଦ୍‌ରୁ ଜାତ ହୋଇଲେ ଡାକେଶ୍ୱରୀ ।୨୨୨୦।
ମହାତେଜ କାନ୍ତି ଘୋର ଶବଦ କରି
ନାଭିରୁ ଜାତ ହୋଇଲେ ମାହେଶ୍ୱରୀ ।
ପଞ୍ଚ ବଦନ ତିନି ନୟନ ଲଲାଟେ
ତିମିର ବିଦାରଣ ମଣି ବିରାଜଇ କଣ୍ଠ ତଟେ ।
ଧବଳ କମଳାକ୍ଷି କୁନ୍ଦ କର୍ପୂର ବନି
ବେନି ଚରଣ ଦଶଭୁଜ ଶୋଭାବନି ।
ପିନାକୀ ଧନୁ ନାଗ ଫାଶ ବାଣ
ପ୍ରଶ୍ମ କୋଠାର ଖଡ଼ଗ ଫଳା ଆଡ଼ଣ ।
ବଜ୍ର ମୁଦ୍‌ଗର କୋଦଣ୍ଡ ତ୍ରିଶୂଳ
ମହା ମାହେଶ୍ୱରୀ ପ୍ରସନ ବଦନ ସୋଢ଼ଳ ।
ନାଭିରୁ ବାହାର ହୋଇଲେ ଚନ୍ଦ୍ରକାନ୍ତି
ଅଭଏ ବିକଟାକ୍ଷ ପ୍ରସନ କାଳରାତ୍ରି ।
ପଞ୍ଚମନ ଧାନେ ମହାଲଏ କରି
କଣ୍ଠରୁ ବାହାର ହୋଇଲେ ଯୋଗେଶ୍ୱରୀ ।
ଗଣ୍ଡସ୍ଥଳୁ ବାହାର ହୋଇଲେ କମଳା
ଶୃତି ଶାନ୍ତି ସାଧବୀ ସେ ମେଖଳା ।
ନୟନୁ ବାହାର ହୋଇଲେ ତ୍ରିପୁର ମୋହୋନୀ
ଗଣ୍ଡସ୍ଥଳୁ ବାହାର ହୋଇଲେ ସିଦ୍ଧ କାତ୍ୟାନୀ ।
ଭୁଜ ପ୍ରଲମ୍ବୁ ବାହାର ହୋଇଲେ ଭଦ୍ରକାଳୀ

ଗର୍ଭୁ ଜାତ ହୋଇଲେ ବେନି ବିକରାଳି ।୨୨୩୦।
କୋଦାଳ ଆୟୁଧ କରେଣ କାଳଫାଶି
ଜୀମୂତ ମେଘେ ଯେଷ୍ଣେ ବଳାଅକେ ତ୍ରାସି ।
ବକ୍ର ନୟନ ବକ୍ର ଶରୀର ବକ୍ର ତୁଣ୍ଡୀ
ଲହ ଲହ ଜିଭ୍ୟା ଯେ ସିନ୍ଦୂରେଣ ମୁଖ ମଣ୍ଡି ।
ମଧ୍ୟପୁରେ ଘୋଟିଲା ଆକାଶେ ଦେବୀର କାଏ
ଭୁଜରୁ ଜାତ ହୋଇଲେ ଚଣ୍ଡିକା ମହାତ୍ମାଏ ।
ତିନି ଶିର ତିନି ଭୁଜ ତ୍ରି ଅପାଦ କାପାଳୀ
କୁଚରୁ ଜାତ ସେ ହୋଇଲେ ଭଦ୍ରକାଳୀ ।
ବିସ୍ତାର ବାହୁ ଯେ ତେଜ ମହାଭାରା
ନାଭିରୁ ଜାତ ସେ ହୋଇଲେ ଉଗ୍ରତାରା ।
ପାଦ ଗତି କରି ଦେବୀ ତାଡ଼ିଲେ ଧରଣୀ
ତହୁଁ ଜାତ ହୋଇଲେ ଦେବୀ ତାରିଣୀ ।
ଏକ ପାଦ ଚତୁର୍ଭୁଜ ଚତୃଶିର ତାହାଙ୍କରି
ବିକଚ ପଦ୍ମ ସରୋଜ ମହା ଯାଚିତ ଅଇରି ।
ସିଂଘବାହାନି ମଝାଖିନ ଅଷ୍ଟଭୁଜ
ପର୍ବତ ଶର ଅଗ୍ନିଶର ତେଜ ।
ଶୁଣ ହୋ ପରୀକ୍ଷ ବଦନ୍ତି ଶୁକ ମୁନି
ଏକ ଶ୍ୱରୀରୁ ଜାତ ହୋଇଲେ ଚଉଷଠି ଯୋଗ୍ନୀ ।
ଯେକକୁ ଆରେକ ଯେ ଅଧିକ ମହାତେଜଇ
ଗଗନ ମାର୍ଗେଣ ସବୁଙ୍କରି ତେଜ ବିରାଜଇ ।୨୨୪୦।
ମହା ଘୋର ରୂପ ଅଭଏ ବିକଟ ପିଙ୍ଗଳା
କ୍ଷଣକେ ମୋହୋନୀ କ୍ଷଣକେ ଭଇରି ମହା ଖଳା ।
ଅସୁର ଅନ୍ତେଣ ଜାତ ହୋଇଲେ ମହାମାୟା
କ୍ଷଣକେ ଗୋପ୍ୟ କ୍ଷଣକେ ବିଯୁତ ଜାଣି କାୟା ।
ଖପର କଟାର କରେ ଲହ ଲହ ଜିହ୍ୱା
ମହା ତେଜ କାନ୍ତି ଯେ ଦେବଙ୍କୁ ଦୁର୍ଲଭା ।
ଆହୋ ପରୀକ୍ଷ ଆଶିନ୍ୟ ମାସ ଶୁକଳ ପକ୍ଷ ଅଷ୍ଟମୀର ତିଥି
ଭୃଗୁବାର ନକ୍ଷତ୍ର ପୂର୍ବ ଆଷାଢ଼ ଇତି
ବାଲ୍ୟବ ନାମେ କରଣ ଧୃତି ନାମେ ଯୋଗ
ବରଷା ଅନ୍ତେ ଶରଦ ବସନ୍ତ ଋତୁ ଭୋଗ ।
ସେ ଦିନ ଜାତ ହୋଇଲେ ଗୋ ମାହେଶ୍ୱରୀ
ଏକେ ଅନେକ କାୟା ବିସ୍ତାରିଲେ ତିନିପୁରୀ ।
ଜୟତୁ ପ୍ରସନ ଗୋ ପରମ ମାହେଶ୍ୱରୀ
ଯୋଗ୍ନୀ ବୃନ୍ଦ ଘେନି ସେ ସଏଂ ଅବତରି ।
ଜୟ କାତ୍ୟାୟନୀ ଗୋ ପରମ ନିରାକୁଳି
ଅସୁର ବଳ ଧଂସଂନି ଗୋ ମଦିରା ରସଭୋଳି ।
ପରମ ପରମାର୍ଥି ଗୋ ପରମ ଗତି ଦ୍ୟନ୍ତି
ପରମ ନିରାକୁଳି ଗୋ ଅସୁର ବଳ ଧୂମଖେତି ।
ପ୍ରସନ କାମାକ୍ଷି ଗୋ ସୁଜନ ଜନ ଚିନ୍ତା
ବୁଡ଼ନ୍ତେ ମେଦିନି ଗୋ ତୁହି ସେ ଉଧରନ୍ତା ।୨୨୫୦।
ଏକେଣ ଅନେକ ବିକାଶିଲୁ କାୟା
ଦେବଙ୍କୁ ଦୁଲଭ ଯେବଣ ଦେବୀ ମାୟା
ନମୋ ନମୋ ଚଉଷଠି ଯୋଗ୍ନୀ ଯାହାର ପାଦ ତଳେ
ଜନ୍ମେ ଜନ୍ମେ ଭାବଇ ନମଇଁ ସର୍ବକାଳେ ।
ଯାବତ ଜୀବକୁ ତୁହି ସେ କାରେଣୀ
ତବ ଲଏ ଭାବି ମୁଁ ରଖିଲି ଠାକୁରାଣୀ ।
ଶ୍ରୀ ଚଉଷଠି ଯୋଗ୍ନୀଙ୍କର ଚରଣେ ଲୟନ୍ତେ
ସର୍ବପଦେ ମନେ ଭାବଇ ହୃଦଗତେ
ବୀର ବିକରାଳି ଗୋ କଙ୍କାଳୀ ବେତାଳୀ
ଅସ୍ତି ଚର୍ମ ଭୂଷଣ ଗୋ ଗଳାର ମୁଣ୍ଡ ମାଳି ।
ଶ୍ରୀ କରେ ଶୋଭାବନ ଗୋ କାତୀ ଖପର ଖଣ୍ଡି
ରୋଧିରେ ବିଲୋପନ ଗୋ ଜୟ ତୁ ରାମ ଚଣ୍ଡୀ ।
ମରୁଳ ବାହାନେ ଗୋ ବ୍ରହ୍ମାଏଣୀ ମୃତି ।
ଖଗଇନ୍ଦ୍ର ବାହାନେ ଯେ ନାରାୟଣୀ ଚଳନ୍ତି ।
ଇନ୍ଦ୍ରାଏଣୀ ବିଜେ ମତ୍ତନାଗ ପିଠି
ବଇଲ ବାହାନେ ରୁଦ୍ରାଏଣୀ ଘୋଟି ।
ଭଇରୋବୀ ବିଜେ ସମ୍ପାଦି ବାହାନେ
ବ୍ୟାଘ୍ରେକେ ଭଦ୍ରକାଳୀ ଚଳନ୍ତି ବିଦ୍ୟମାନେ ।
ଚାଚିକା ବାହାନ ଯେ ମୃତୁ ପିଣ୍ଡ ଗୋଟି
ଉଗ୍ରତାରା ବିଜେ ବଳୟାର ପିଠି ।୨୨୬୦।
ଗଜରିପୁ ବାହାନେ ଯେ ପ୍ରସନ ମହାମାଏ
ବାଘ ବାହାନେ ଯେ ବିରଜାଏ ଚଳିଯାଏ ।
ଶ୍ରୀ ଭୁଜେ ଶୋଭାବନ କାତୀ ଖପର ଖଣ୍ଡା
ଭାଲୁଙ୍କ ବାହାନେ ଦେବୀ ଚଳିଲେ ଚାମୁଣ୍ଡା ।
କାଙ୍କାଳୀ ବାହାନ ଯେ ମୟୂରର ପିଠି
ଉଟ ବାହାନେ ଯେ ବିଜଏ ସମରାଷ୍ଟି ।
ମାତାଙ୍ଗୀ ବିଜଏ ଗଧର ବାହାନେ
ମହମାୟା ଚଳନ୍ତି ଯେ ହରିଣ ବାହାନେ ।
ଶ୍ୱାନ ବାହାନେ ଯେ ଚଳଇ ବାରାହୀ

ବିକରାଳି ଜୀମୃତ ବାହାନେ ଅବଗ୍ରାହୀ ।
ମେଷ ଆସନେ ଯେ ଚଳଇ ବହତୀ
ଛାଗଳ ବାହାନେ ଯେ ଚଳଇ ଚନ୍ଦ୍ରକାନ୍ତି ।
ମହା ବିକରାଳି କୃତାନ୍ତେକ ବାହାନେ ଘୋଟି ।
ମହାନାଗ ଆସନେ ଚଳଇ ଅରଷ୍ଟି ।
ମର୍କଟ ଆସନେ ଚଳଇ କାମାକ୍ଷି
ବାହୁଟିଆ ବାହାନେ ଚଳଇ ତାରାକ୍ଷି ।
ବିରାଳ ବାହାନେ ଚଳଇ ବେତାଳି
ଶାର୍ଦ୍ଦୋଳ ବାହାନେ ବିଜଏ ଭଦ୍ରକାଳୀ ।
ଚଞ୍ଚଳା ଗମନ ମଇଷିଁର ପିଠି
ସଏମ୍ବର ବାହାନେ କାନ୍ତାନୀ ଗଗନ ଘୋଟି ।୨୨୭୦।
ବିଜେ କର୍ଣ୍ଣ କଟାର ଘେନିଣ ଘୋର ଚଣ୍ଡୀ
ମତ୍ତ ରସ ନାଟେ ମତୁଆଳ ନାଟ ଖଣ୍ଡି ।
ଘଣ୍ଟି ମର୍ଦ୍ଦଳ ସେ କଂସାଳ କରତାଳି
ନାଚନ୍ତି ହରଷେ ବିହରନ୍ତି ମତୁଆଳି ।
କ୍ଷଣକେ ମୋହୋନୀ ସେ କ୍ଷଣକେ ଧିର ମତି
କ୍ଷଣକେ ଅଭଏ କ୍ଷଣକେ ନୃତ୍ୟ ଗୀତ ସେ କରନ୍ତି ।
କ୍ଷଣକେ ସାଧବୀ ସେ କ୍ଷଣକେ ଦିବ୍ୟରୂପୀ
କ୍ଷଣକେ ବାଳଭାବ କ୍ଷଣକେ ଗଗନ ଖେପି ।
କ୍ଷଣକେ ଜପ ତପ କ୍ଷଣକେ ଦୃଷ୍ଟ ପ୍ରକୃତି
ବିଶ୍ୱ ବିକଟାଳି ସେ କ୍ଷଣକେ ଶାନ୍ତମୂର୍ତ୍ତି ।
ଖେଚରୀ ଭୂଚରୀ ଯେ ନାଦ କିଳି କିଳି
ମୃତୁ ପିଣ୍ଡ ଆସନୀ ମଦିରା ରସ ଭୋଳି ।
ଆହୋ ପରୀକ୍ଷ ଏସନେକ ବିକଟାଳି ଘୋର ଧୁନି ଚଉଷଠି ଯୋଗ୍ନୀ
ଶରଣ ଉଦ୍ଧାରଣ ବାନା ବୋଲନ୍ତି ସାରୋଳ ଦାସ ଶୂଦ୍ରମୁନି ।
ହେ ବୁଧଜନେ ମୁ ନୁହଇ ପଣ୍ଡିତ
ମୂରୁଖ ଅପାଠେକ ଜନ ମୁ ଅଭଗତ ।
ଜନମହୁଁ କୃଷିକାରୀ ମୁ ନ ଜାଣଇଁ ଶାସ୍ତ୍ର ବିଧି
ପଣ୍ଡିତ ଜନ ବୋଧିବାକୁ ମୋହୋର କିସ ବୁଦ୍ଧି ।
ଅଗାଦ ସାଗର ବିଷ୍ଣୁ ପୁରାଣ ଯାହା ବୋଲି
ଗଣିଲେ ଅନ୍ତ ହୋଇବ କି କୃପାର କୂଳ ବାଲି ।୨୨୮୦।
କୃପା ଜଳ ନନ୍ଦନୀ ନର୍ମଦା ସରସ୍ୱତୀ ।
କଳିକାଳ ଧ୍ୱଂସନି ଯେ ସାରୋଳ ଚଣ୍ଡୀମୂର୍ତ୍ତି ।
ମହା ବ୍ରହ୍ମ ଦେବ ସ୍ତିରୀ ପରମ ହେଙ୍ଗୁଳା
ଆହୋ ଶଯଳ ଜନ ତାରିବା ନିମନ୍ତେ ନାମ ସର୍ବ ମଙ୍ଗଳା ।

ଆହୋ ମୁହିଁ କେମନ୍ତେ ଜାଣିମି ଗହନ ସାଗର ବାଟ
ଅଣସେବାଏ ଭଗତି ପାଇଲି ମୁହିଁ ଭେଟ ।
ମୋତେ ଆଜ୍ଞା ସେ ଦେଇଛନ୍ତି ଯାହା
ଦୁର୍ଗା ପ୍ରସନେ ମୁଁ ଲେଖନ କରଇଁ ତାହା
ହେ ପଣ୍ଡିତ ଜନେ ନ ଘେନିମା ମୋର ଦୋଷ
ଅଶ୍ୱମେଧ ଯାଜ୍ଞ ଏ ଶୁଣନ୍ତେ ହରିବଂଶ ।
ଇତି ହରିବଂଶ ଏ ଚଣ୍ଡୀଯୁଦ୍ଧର କଥା
ସଂସାର ଜନ ହିତ କାରଣେ ମୁଁ ଅବଏ ବକତା ।
ଯଜ୍ଞେର ପୁରବାସେନୀ ସାରୋଳା ଚଣ୍ଡୀ ଦେବୀ
ମୁହିଁ ତାର ଦାସ ସାରୋଳ ଦାସ କବି ।
ଯେକ ଲଏ କରି ଯେ ପାରଇ ଏହା ଶୁଣି
ଅନେକ ଆପାଦୁ ପାର କରିବେ ଗୋସାମଣି ।
ଶୁଣ ହେ ବୁଧଜନେ ଚଉଷଠି ଯୋଗ୍ନୀଙ୍କର କଥା
ଆଶ୍ୟ ଧନ ପୁତ୍ର ପରମଗତି ଦିଅନ୍ତା ।

ଆହୋ ପରୀକ୍ଷ ଶୁଣ ବଦୟନ୍ତି ଶୁକ ବ୍ରହ୍ମା
ସଞ୍ଚପି ଶୁଣ ହୋ ଚଉଷଠି ଯୋଗ୍ନୀଙ୍କର ମହିମା ।୨୨୯୦।
ଛାୟା ମାୟା ନାରାୟଣୀ ବ୍ରହ୍ମାୟେଣୀ
ରଦ୍ରାଏଣି ଭଇରୋବି ଭଦ୍ରାଏଣି
ମାହେଶ୍ୱରୀ ବାଶେଳି ଉଗ୍ରତାରା ତାରେଣି
ଚାଚିକା ଅମ୍ବିକା ଖେଚରି ଭଗବତୀ ବିଳାସଣି ।
କମଳା ଶାନ୍ତି କାନ୍ତାନି ମାଧବି ଅମ୍ବିକା ଚାମଣ୍ଡା
ମାହେଶ୍ୱରୀ ଆନନ୍ଦୀ ମଦାନନ୍ଦୀ ସରୂପା ବରାହୀ ପେରୁଣ୍ଡା
ନାଗେରି କେଶରୀ ଖେଚରୀ ଭୂଚରି
କରାଳି ବେତାଳି ଭଦ୍ରକାଳି କେଶରୀ ।
କଙ୍କାଳି ବେତାଳି କାଳିକା ପିତାସୁଣି ଭାଲୁକିଂ
ବାଶେଳି ଭଦ୍ରକାଳି କାଙ୍କମୁଖି ଭଲୁକି ।
ସମ୍ପାଦି ସାମୁଦି ଯେ ମେଖଳା
ତରାହି ବରାହୀ ଅନୁଛାୟା ମହାବଳା ।
ଗୋପାଳୀ ବନ ଦେବତୀ ମୋହୋନୀ କାମସେଣୀ
ଦତ୍ୟବଳ ଅନ୍ତ କୋଟି ବ୍ରହ୍ମାଣ୍ଡକୁ ଧାରେଣୀ ।
କାମରୂପୀ କାମାକ୍ଷୀ ଚଣ୍ଡୀ ଚତୁରାଏଣୀ
କୁଭଦ୍ରାୟଣୀ କାପାଳୀ କୁହୁ କୁହୁ ବଦନ ଭାଷଣୀ ।
ଗୁଦ୍ର ଶ୍ୟାମା ଗଉରୀ ଭଦ୍ରାକ୍ଷୀ ଚତୁରାଇ
ତଇଲୋକ୍ୟନି ଡାକେଶ୍ୱରୀ ନିମଜାଇ ।

ଉର୍ଦ୍ଧନେତ୍ରା ବିମଳା ନିର୍ମଳି ପିଙ୍ଗଳାକ୍ଷରୀ
ସିଦ୍ଧାଙ୍ଗୀ ପୋଏଲଣୀ ମାଧବୀ ସୁରେଶ୍ୱରୀ ।୨୩୦୦।
ଶୁଣ ହୋ ପରୀକ୍ଷ ରାଏ ବଦୟନ୍ତି ଶୁକମୁନି
ଏହେର୍ଣ୍ଣକ ନାମ ସେ ଚଉଷଠି ଯୋଗ୍ନୀ ।
ଅସ୍ଥି ଚର୍ମ ମାଂସ ନର ଗଜ ତୁରଙ୍ଗମ ରୋଧିର
ପଡ଼ିଲେ ନ ରହନ୍ତି ଏହାଙ୍କର ଆଗର ।
ଲହ ଲହ ଜିଭ ଯେ ଅସୁର ବଳ ଦେଖି
ଦୃଗାଙ୍କୁ ଭେଟିଲେ ଯାଇଁ ରୁଦ୍ରା ପଦ୍ମା ଆଖି ।
ବିକଟାକ୍ଷୀ ଘୋରରୂପା ବିକଳୀ ମାହେଶ୍ୱରୀ
କଙ୍କାଳି ବେତାଳି ଅକାଶେଣ ଶିର ଟାଙ୍କରି ।
ମଞ୍ଚପୁରୁ ଆକାଶପୁର ପରିଯନ୍ତେ ତୁଣ୍ଡ ବିସ୍ତାର
ଦୃଗାର ମୁଖ ଚାହିଁ ସେ ମାଗନ୍ତି ଆଧାର ।
ଦେବୀମାନେ ବୋଇଲେ ଗୋ ଜାତ କଲୁ ତବ ଦେହୁଁ
ଆହାର ନ ଦେଲେ ବୃତିବୁ ଆଉ କାହୁଁ ।
ଦୃଗାଏ ବୋଇଲେ ଦତ୍ୟବଳ ସଇନି
ଏହାନ୍ତ ବାଣ୍ଟି ଭୁଞ୍ଜିଲେ। ଚଉଷଠି ଯୋଗ୍ନୀ ।
ଅସ୍ଥି ଚର୍ମ ମାଂସ କିଛିହିଁ ନ ଥୁଅ
ନ ଅଣ୍ଟିବ ବୋଲିନିକି ଅନାଅନି ହୁଅ ।
ଏଥକୁ ଭ୍ରାନ୍ତି ତୁମ୍ଭେ ନ କର ଯେ କିଛି
ଅହୁରି ହିଁ ଆହାର ଅପାର ତୁମ୍ଭକୁ ହିଁ ଅଛି ।
ଏସନେକ ଆଜ୍ଞା ଯହୁଁ ଦେଲେ ଦେବୀ ଦୃଗେ
ସେଣା ପକ୍ଷୀ ପ୍ରାଏକ ଖେପିଲେ ଅତି ବେଗେ ।୨୩୧୦।
ବାଜିଲା ବୀରଘୋଷ ବୀର ମର୍ଦ୍ଧଳି
ଧାଇଁଲେ କ୍ରୋଣେହା ରୂପେ କଙ୍କାଳି ବେତାଳି ।
ଗଗନ ମେଖଳା ଖେପିଲେ କାମରୂପୀ
ଆକାଶ ବାହାନି ଦେବୀ ସେ ବ୍ରହ୍ମାଣ୍ଡଯାକ ଖେପି ।
ଯେସନେକ ରୂପ ଯହୁଁ ହୋଇଲେ ମହାମାଏ
ଘୋଟିଲେ ରାକ୍ଷସ ବଳ ବିକଟାଳ ଘୋର କାଏ ।
ତଇଲୋକ ବ୍ୟାପିଲା ସେ ମହାଘୋର ରଡ଼ି
ଅସୁରବଳ ଥାଠକୁ ପଡ଼ିଲେ ଦେବୀ ମାଡ଼ି ।
ଦାନବ ବଳ ସଇନିକି ପଡ଼ିଲେ ଆକ୍ରେଷି
ଧରି ଦାନେବ ବଳ କ୍ଷଣ କ୍ଷଣକେ ଗ୍ରାସି ।
ରଥ ଗଜ ଅଶ୍ୱ ନ ଜାଣନ୍ତି କିଛି
ଯେ ଯାହାର ଇଚ୍ଛାଏ ସେ ଧରୁଛନ୍ତି ବାଛି ।
ରୋମାବଳିମାନେ ଯେ ହୋଅନ୍ତି ବଜ୍ର ସେନହା
ଖଟ୍ୱାଙ୍ଗ କୋନ୍ତ ଗଦା ଯୁଦ୍ଧ ନ ଯାଇ ଗଣନା ।
ବିନ୍ଧନ୍ତି ଦାନେବବଳ ଅବିଛନେ ବାଣ
ପାଡ଼ନ୍ତି ଗଦା ଯେ ଭୁଷଣ୍ଡି କୋନ୍ତ ପୁଣ ।
କ୍ଷଣକେ ଉଭା ସେ କ୍ଷଣକେ ଅଦୃଶ୍ୟ
ଡିଅନ୍ତି ଧରନ୍ତି ଜଣେ ଜଣେ ଗ୍ରାସ ।
ଆହୋ ଏକା ରାକ୍ଷସକେ ପର୍ବତ ପାରନ୍ତି ଗିଳି
ତାହାନ୍ତ ଧରିଣ ସେ ବେନି ଚରଣେ ମଳି ।
ମହା ମହା ଅସୁର ସେ ପ୍ରବଳ ମହାଯୋଧି
ସହସ୍ରେକ ଅହିବ୍ରତେକ ଲକ୍ଷେକ ନାରାଯ ବିନ୍ଧି ।୨୩୨୦।
କକଡ଼ା ବୃଷ୍ଟି ପ୍ରାଏ ଅସୁରେ ବିନ୍ଧନ୍ତି କାଣ୍ଡ
ନାରାଯମାନଙ୍କୁ ଦେବୀ ପାତୁଛନ୍ତି ତୁଣ୍ଡ ।
ମହା ବାତ ଅନଳ ପ୍ରାଏକ ଗର୍ଭେ ଯାନ୍ତି ଜଳି
ଯେତେ ଶହସ୍ର ବିନ୍ଧନ୍ତି ସମସ୍ତ ଧରି.ଗିଳି ।
ମହା ଅନଳ ଗର୍ଭେ ପଡ଼ି ହୋଅନ୍ତି ଦହିଜ
ସମରେ ନ ଭାଜନ୍ତି ଦୃଷ୍ଟ ଦନୁଜ ।
ଗୁରୁଜ ପ୍ରହାର କରନ୍ତି ଦୂରଘାତେ
ଅନ୍ତରୀକ୍ଷେ ଥାଇଁ ଦେବୀ ପେଷନ୍ତି ଶୂନ୍ୟ ପଥେ ।
ଧାଡିକାରେ ବସନ୍ତି ସେ ଅସୁରଙ୍କର ମୁଣ୍ଡେ
ମୁଣ୍ଡ ମାଡି ଚାଲନ୍ତି ସେ ଅସୁରଙ୍କର ପିଣ୍ଡେ ।
କେବଣ ଅସୁରଙ୍କୁ କରନ୍ତି ଯାଇ କୋଳ
ଦାନ୍ତେଣ ବିଦାରନ୍ତି ତାହାଙ୍କ ବକ୍ଷ ସ୍ଥଳ ।
ପୁଣ ପୁଣ ଅସୁରଙ୍କୁ ସେ ଧରନ୍ତି ଦରାଣ୍ଡି
ଅଧେକ ଗିଳି କରି ମଣ୍ଡୋଆଳ ନାଟ ଖଣ୍ଡି ।
ମୋହୋନୀ ରୂପେ ସେ ହକାରନ୍ତି କତି
ରତି ରସ ଦେଖାଇଁ ବଢ଼ାନ୍ତି ପୀରତି ।
ଅନେକ ଅବସ୍ଥା ଦୃସହ ସଙ୍କଟ
ବିଡୁଳାକ୍ଷ ଭଗବତୀ ଦୁହେଁ ହୋଇଲେ ଭେଟ ।
ଯଉବନବତୀ ଅଭେଦ ରୂପ ଯୁବା
ଦେଖିଲା ବିଡୁଳାକ୍ଷ କାମେନୀ ନବ ଯୁବା ।
ଶହସ୍ର ପକାଇଁ ଦନ୍ତେଣ ତିରଣ
ରେ ପ୍ରାଣବନ୍ଧୁ ରଖ ମୋର ପ୍ରାଣ ।
ବୁଡ଼ିଲି କାମଜଳେ ତବ ରୂପ ଦେଖି
ତୁ ଅଗାଦ ଜଳୁଂ ରଖ ଚନ୍ଦ୍ରମୁଖୀ ।
ଦନ୍ତରେ ତିରଣ ଧରିଲା ତାର ହସ୍ତ
ମାଧର୍ବୀ ଲତା ତଳକୁ ଯିବା ଗୋ ସଘାତ ।

ସଂଗ୍ରାମ ଛାଡ଼ି ଦୁହେଁ ହାଥ ଧରାଧରି
ପତି ପତ୍ନୀ ପ୍ରାଏକ ହୋଇଗଲେ ଅପସରି ।
ଲକ୍ଷ୍ମୀଭଦ୍ରା ନଦୀ ତୀରେ ଗହଳ ମାଧେବୀ ଲତା
ତହିଁ ଯାଇଁ ପଶିଲେ ହାସ୍ୟ ରସ କଥା ।
ବିଡ଼ାଳାକ୍ଷ ପଡ଼ିଅଛି ମଦନ ରସ ଭୋଳେ
ନହୁଲି ଭଗବତୀ ଅକ୍ରୁଷି କଲା କୋଳେ ।
ମୁଖେ ଚୁମ୍ବନ ଦେଇ ଭିଡ଼ିଲେ ବକ୍ଷସ୍ଥଳ
ବେନି ପାଟି ଚାପିଲା ମୁଣ୍ଡ ହୋଇଲା ବେନି ଫାଳ ।
ମୁଣ୍ଡ ଛିଡ଼ନ୍ତେ ଅସାଷ୍ଟମ ବିଡ଼ାଳାକ୍ଷ
ପୁଣ ଏକା ଗ୍ରାସକେ ଗିଳିଲା ତାର ବକ୍ଷ ।
ଯେବଣ ବିଡ୍ରୁଳାକ୍ଷ ଜିଣିଲା ଯମଦଣ୍ଡ
ଶୃଙ୍ଗାର ରସେ ସେ ହୋଇଲା ଖଣ୍ଡ ଖଣ୍ଡ ।
ଅନେକ ଉଶ୍ବାସ ହୋଇଲା ମେଦନୀ
ବିଡ୍ରୁଳାକ୍ଷ ପଡ଼ିଲାକ ଆକାଶେ ପଡ଼ିଲା ଧ୍ଵନି ।୨୩୪୦।
ରକ୍ତବୀର୍ଯ ବୀରଘଣ୍ଟକୁ ବାରତା ନୋହିଲା
ବିଡ୍ରୁଳାକ୍ଷ ପଡ଼ିଲା ବୋଲି କେହି ନ ଜାଣିଲା ।
ବିଡ୍ରୁଳାକ୍ଷ ମାରି ଭଗବତୀ କଲେ ଜଏ
ବାଞ୍ଛା ସିଧ ହୋଇଲା ସେ କହିଲେ ଦେବତାଏ ।
ମହା ବଳିଷ୍ଟ ଦାନେବ ସେ ନାଶ ଗଲା କପଟେ
ବାହୁଡ଼ି ଭଗବତୀ ଯାଇ ମିଳିଲାକ ଥାଠେ ।
ଆହୋ ପରୀକ୍ଷ ପ୍ରାକର୍ମେ ଅବା ବଳିଷ୍ଟ ହୁଅନ୍ତି
କାମରସ ଦେଖାଇ ସେ ଲହୁଲି ଭଗବତୀ ।
ବିଶ୍ୱାସେ ଖାଇଲା ସେ ସମସ୍ତ ଦାନେବ ବୀର
ଏମନ୍ତ ହେଁ ମାରି ସେ ନ ସରଇ ଦାନେବ ସାଗର ।
ଜଳ ଫାଶୀ ନାଗଫାଶୀ କାଳ ଫାଶୀ ଘେନି
ଦତ୍ୟକୁ ବାନ୍ଧନ୍ତି ସେ ମୃତ ବାହେନୀ ।
କଣ୍ଟେଣ ତୋର ଦେଇ ବିଦାରନ୍ତି ବୁକୁ
ସମରେଣ ଭୟ ନାହିଁ ସେ ନାନା ଶସ୍ତ୍ରମାନଙ୍କୁ ।
ରଣ ରଙ୍ଗେ ପଶନ୍ତି ବାଶେଳୀ ବଜ୍ର ତୁଣ୍ଡୀ
ଅନେକ ବଳ ବିଧଂସିଲେ ରଣ ଚାମୁଣ୍ଡୀ ।
ଫିଟନ୍ତେଣ ଶସ୍ତ୍ର ଧରନ୍ତି ଉର୍ଧବାହୁ
କରତାରକୁ ଦେଖି ଘୋଟଇ ଯେହ୍ନେ ରାହୁ ।
ମାୟା ମୋହନୀ ସେ ଅଭଏ କାମାକ୍ଷୀ
ମୁଣ୍ଡନ୍ତ ଛିଣ୍ଡାଇ ସେ କଳେବରନ୍ତ ଭକ୍ଷି ।୨୩୫୦।
ରୁଧିରେ ତ୍ରିପଣ୍ଡ ସେ ଦିଶଇ ବାଶେଳୀ
ବକ୍ଷସ୍ଥଳେ ଲମ୍ବାଇଲେ ଅସୁରଙ୍କର ମୁଣ୍ଡମାଳି ।
ଆହୋ କାଳଦଣ୍ଡ ନାମେ ମଷାଂସୁର ସେନା
ଦେବେ ଦାନବେ ସେ ନ ଯାଇ ଗଣନା ।
ନାଗଲୋକ ଜିଣି ସେ ପାତାଳେ ଅଧିପତି
ବାଶେଳୀର ତୁଲେ ଯୁଦ୍ଧ କଲାକ ଅପ୍ରମିତି ।
ବଜ୍ର ସମାନ୍ୟେ ସେ ବାଣ ଘେନି ପଞ୍ଚଶର
କୋଦଣ୍ଡ ସନ୍ଧି ବିନ୍ଧିଲା ସେ ବାଶେଳୀ ଉପର ।
ପାଞ୍ଚ ନାରାଯକୁ ସେ ପାତିଲା ପାଞ୍ଚ ଆଙ୍ଗୁଳି
ସେ ବ୍ରହ୍ମଶସ୍ତ୍ର ମାନେ ପଡ଼ି ହୋଇଲେ ଧୂଳି ।
ପୁଣି ଦାନେବ ସେ ପାଞ୍ଚ ନାରାଯ ପେଷି
ପୁଣ ତହିଁର ଉପରେ ବିଷ ବରଷି ।
ଅଷ୍ଟାଦଶ ବାଣ ପୁଣ ମାଇଲା କାଳ ଦଣ୍ଡ
ବାଶେଳୀ ଉପରେ ପଡ଼ି ହୋଇଲା ଶତ ଖଣ୍ଡ ।
ପୁଣ ନାରାଯ ବିନ୍ଧିଲା ଚଉଷଠି
ବାମ କରେ ବାଶେଳୀ ତା ସବୁ କରେ ମୁଠି ।
ବିଶାଶତେ ବାଣ ପୂରାଇଁ କାଳ ଦଣ୍ଡ
ଗୁଣ ଘୋଷ ଶବଦେଣ କମ୍ପିଲା ବ୍ରହ୍ମାଣ୍ଡ ।
ପୁଣ ପୂରାଇଲା ଶହସ୍ରେକ ନାରାଯ
ବାଶେଳୀ ଉପରକୁ ସେ ବିନ୍ଧିଲା ଦନୁଜ ।୨୩୬୦।
ହୁଂକାର ଶବଦେକ ସେ କଲାକ ବାଶେଳୀ
ଧନୁ ତ୍ରୋଣ ଗଦା ଖଡ଼ଗ ସମସ୍ତ ଗଲା ଜଳି ।
ଶୂନ୍ୟ ହସ୍ତ ହୋଇ ସେ ରାକ୍ଷସ ବୀର ଉଠି
ବାଶେଳୀ ବକ୍ଷ ସ୍ଥଳେ ମାଇଲା ବଜ୍ର ମୁଠି ।
ଯେସନେକେ ଗଗନୁ ପଡ଼ଇ ନିର୍ଘାତ
ଆକାଶ କମ୍ପିଲା ଶଙ୍କିଲେ ବିଧାତ ।
ଆହୋ ପରବତ ଚୂର ହୋଇଲା ଯାହାର ମୁଠି ଘାତେ
ବାଶେଳୀ ବକ୍ଷସ୍ଥଳେ ପଡ଼ି ବହଇ ରକତେ ।
ମହା ବଜ୍ରସେହ୍ନାଏ ପଡ଼ିଣ ଅଙ୍ଗଫୁଟି
ମୋହଗତ ହୋଇଁ ସେ ଦାନେବ ବଳ ଲୋଟି ।
ମୋହଗତ ହୋଇ ଯହୁଁ ଦାନେବ ବୀରମଣି
ଖଡ଼ଗ ବୁଲାଇଁ ସେ ପିଟିଲା ଗୋସାମଣି ।
ଦତ୍ୟର ବକ୍ଷସ୍ଥଳେ ପଡ଼ିଲା ବାଶେଳୀର ଖଣ୍ଡା
କାଳଦଣ୍ଡ ହୃଦେ ପଡ଼ି ହୋଇଲା ମସୀଗୁଣ୍ଡା ।
ନବ ନିଶୀ ଖଡ଼ଗ ଗଲା ଯହୁଁ ଭାଜି
ବିଜେ କର୍ଣ୍ଣ କଟାରେ ହାଣିଲେ ଗଳଗାଜି ।

ବିଜ୍ଜେ କର୍ଣ୍ଣ କଟାର ଭାଜି ଚୂନା ହୋଇଲା
ଆକ୍ରୋଷି ବାଶେଳୀ ତାକୁ ମାଲ ଯୁଦ୍ଧେ ପାଟିଲା ।
ଦଶ ନହ ଘେନି ତାର ବିଦାରିଲା ବୁକୁ
ତଦାପି କିଛି ନୋହିଲା ସେ ଅସୁର ଶ୍ୟରୀରକୁ ।୨୩୭୦।
ଆହୋ ପରୀକ୍ଷ ମୁଣ୍ଡ ମୋଡ଼ନ୍ତେଣ ନ ଛିଡ଼ିଲା ତାର ଶିର
ଶହସ୍ର ଘେନି ପିଟନ୍ତେ ଶହସ୍ର ହୋଇଲା ଚୂର ।
ଅନେକ ପ୍ରହାର ଯେ ଦେବୀ କଲେ ବେଗେ
ଅସୁର କାୟା ନ ତୁଟିଲା କଉଣିସି ବାଗେ ।
ଭାଳଇ ବାଶୋଳୀ ଯେ ଛାଡ଼ିବଇଁ ଏହା
ବଜ୍ରରେ ନିର୍ବାଣ ଏ ଅସୁରର ଦେହା ।
ବାଶେଳୀର ଶ୍ୟାନ୍ତି ଯହୁଁ ହୋଇଲାକ ତମ
ଆକାଶରେ ଥାଇଁ ଡାକନ୍ତି ଦେବ ଧର୍ମ ।
ମାତ ଗୋ ଯମ କାଳ ଜିଣି ନାମ ଏହାର କାଳକଣ୍ଡ
ଅଗ୍ନିରେ ଦହିଙ୍କ ନୋହଇ ଏହାର ପିଣ୍ଡ ।
ଯଦ୍ୟପି ଏହାକୁ ଛାଡ଼ିବୁ ବାଶେଳୀ
ଆମ୍ଭ ପଦ ସରିଲାଟି ଗୋ ବିଚାର ମନେ ଭାଳି ।
ଆହୋ ପରୀକ୍ଷ କୋପେ ସେ ଦେବତାନ୍ତ ବିକଳେ
ମାଡ଼ି ବସିଲା ସେ କାଳଦଣ୍ଡ ବକ୍ଷସ୍ଥଳେ ।
ଶୁଣ ପରୀକ୍ଷ ଶୁକମୁନି କହିଲା
ସେ କାଳ ଦଣ୍ଡ ସେନାପତି ବାଶେଳୀର ବାହାନ ହୋଇଲା ।
ବିଜଏ କାନ୍ତାନୀ ନିଶାଚର ପିଠି
ପୁଣ ସମରେ ପଶିଲା ଗଗନ ଘୋଟି ।
କାଳ ଦଣ୍ଡ ପଡ଼ିବାର ନାଶକର ଦେଖି
ଅନେକ ବିନୟ କଲା ସେ ବାଶେଳୀ ଦେବୀଙ୍କି ।୨୩୮୦।
ଜୟ ଜୟ ଅଭୟା ଗୋ ପରମ ନିରାକୁଳି
ଗଜରିପୁ ବାହାନୀ ଗୋ ପ୍ରସନ କାପାଳୀ ।
ଲୋହିତ ବର୍ଣ୍ଣ ଶରୀର ରକତ ମୁଖ ଗୋଟି
ବିହଡ଼ ଦାନ୍ତ ବକ୍ରତୁଣ୍ଡ କାଳାନଳ ଦୃଷ୍ଟି ।
ଲହ ଲହ ଜିଭ ଗୋ ବକସ୍ଥଳେ ମୁଣ୍ଡ ମାଳି
ପାଦେକ ମୃତୁପୁରେ ପାଦେକ ଗଗନ ମେଖଳି ।
ରକତ ମୁଖୀ ଗୋ ରକ୍ତ ବସ୍ତ୍ର ପିନ୍ଧି
ଯୁଗ ଅନ୍ତକାଳେ ଯାହାର କେଶ ବାନ୍ଧି ।
ତଇଲୋକ୍ୟ ଭକ୍ଷି ପାରଇ ଯାହାର ଘୋର ମୁଖ
କାମଦେବ ମୋହୋନୀ ସୁନ୍ଦର ରୂପ ରେଖ ।
ପରମ ନିରାକୁଳି ଅଭଏ ଅପର୍ଣ୍ଣା
ଦୁରାନ୍ତେକ ବଳକୁ କୃତାନ୍ତେକ ଫାଶ ସିନା ।
ପ୍ରଳୟ ବିୟୋଷି ଗୋ କ୍ଷୀନ କାପାଳୀ
ଅନୁବ୍ରତେ ଯାହାର ମନ୍ଦାର କୁସୁମ ମାଳି ।
ବିପ୍ର ଚାଣ୍ଡାଳ ନ ଜାଣଇ ଯେ କାମଅର୍ଥେ ପୂଜି
ମଇଁଷି ମେଷ ଛାଗଳ ବରେହା ମାଂସ ଭୋଜୀ ।
ରୋଧିରେ ସ୍ନାହାନ ରକତ ତ୍ରିପଣ୍ଡୀ
ବିରସ ବିକଟାକ୍ଷୀ କାଙ୍କାଳି ବକ୍ରତୁଣ୍ଡୀ ।
ଅପାର ମହିମା ଯାର ନ ସରଇ କହନ୍ତେ
ଶୂଦ୍ରମୁନି ସାରୋଳ ଦାସ ବିନୟ ଭାବ ନିତ୍ୟେ ।୨୩୯୦।
ଆହୋ ପରୀକ୍ଷ କାଳଦଣ୍ଡ ବଧ ଶୁଣନ୍ତେ ଏକ ଚିତ୍ତେ
ଯମ ଭୁବନକୁ ସେ ନଇଲା କଦାଞ୍ଚିତେ ।
ଯାହାର ଭଏ ଯମ ଦେବତା ଛାଡ଼ିଲେ ସଂଯମନୀ
ଯାହାର ଭଏ ପଳାଇଲେ କାଳ ବିକାଳ ବେନି ।
ଆହୋ ପରୀକ୍ଷ ସତ୍ୟ ଯୁଗେ ପନ୍ଦର ସହସ୍ର ବରଷ ବ୍ରତିଥିଲା
ତେତେ କାଳ ପରିଯନ୍ତେ ଯମର ଆତଯାତ ନ ଥିଲା ।
କାଳ ଦଣ୍ଡ ପଡ଼ିଲା ଉଷତ ଯମରାଜା
ବାଶେଳୀର ଚରଣେ ସେ କଲା ପାଦପୂଜା ।
ମାଗୋ ଆପାଦ ଖଣ୍ଡିଲୁ ମହାମାଇ
ମୁହିଁ ଯେ ତୋହୋର ଚରଣେ ଜନ୍ମେ ଜନ୍ମେ ଭାବଇଁ ।
କାଳ ଦଣ୍ଡର ବଧ ଯେହୁ ସେ ଶୁଣନ୍ତି
ପଢ଼ନ୍ତେ ମୁକତି ଶୁଣନ୍ତେ ପରମ ଗତି ।
ମନ ଅବିଳାଷେ ବାଶେଳୀ ପଦ୍ମ ପାଦେ
ସେ ବାଶେଳୀ ପ୍ରସାଦେ ମମ ଦୁଖ ପାର ମାତ୍ର ହାଦେ ।
ଯେକ ମନେ ଶୁଣନ୍ତେ ବିପତ୍ତି ପାପ ଖଣ୍ଡୁ
ଅନେକ କଳୁଷ ଅତି ଆପାଦ ଦୁରିତ ଯମ ଦଣ୍ଡୁ ।
ସେ ବାଶେଳୀର ଚରଣେ ଶରଣ ମୁ ପଶିଲଇ ନିତ୍ୟେ
ବଦୟନ୍ତି ସାରୋଳ ଦାସ ତୁଳସୀ ହୃଦଗତେ ।

ଆହୋ ପରୀକ୍ଷ କାଳଦଣ୍ଡ ବଧ ଅନ୍ତରେଣ ଯେ କଥା
ଶୁଣ ସାବଧାନେ ହୋ ସଂଗ୍ରାମର ବାରତା ।୨୪୦୦।
ଅସଂଖ୍ୟ ସମର ଯେ କଳଣା ନ ଗଲା
କାଳଦଣ୍ଡ ପଡ଼ିଲା ହୋ କେହି ନ ଜାଣିଲା ।
ଅସୁର ବଳ ଯହୁଁ ମାଡ଼ିଣ ପଡ଼ିଲେ
ଉଗ୍ରତାରା ଯୁଦ୍ଧ କଲେ ସେ କାନ୍ତିମାଳା ତୁଲେ ।
କାନ୍ତିମାଳାର ତୁଲେ ସଇନି ପାଞ୍ଚ ଲକ୍ଷେ

ଅବିଛନ୍ନେ ବାଣ ବିନ୍ଧିଲେ ଉଗ୍ରତାରାଙ୍କୁ ସମର କରନ୍ତେ ।
ଲକ୍ଷେ ପୁର କରି ସେ ଅଛନ୍ତି ତହିଁ ବେଢ଼ି
ଆକାଶ ଉଛୁଳୁଅଛି ସେ ଅସୁରଙ୍କର ରଡ଼ି ।
ମହା ଘୋର ଶବଦ ଶୁଣିଣ ଉଗ୍ରତାରା
ଏ ସେ କାନ୍ତିମାଳା ପୃଥୀକି ମହାଭାରା ।
ରୁଦ୍ର ତୋଷି ଏ ପାଇଅଛି ବର
ସମରେ ମୃତୁ ଯେ ନାହିଁ ଏହାଙ୍କର ।
ଅତି ଅସୁନ୍ଦର ବିକାଶିଲା ଦେବୀର କାଏ
ମୋହୋନୀ କାମସେଣୀ ସେ ବିଜୁଳି ତେଜ ପ୍ରାଏ ।
ଉଗ୍ରତାରା ରୂପ ସେ କାନ୍ତିମାଳା ଚାହିଁ
ଆତ୍ମାକୁ ଅଶକତେ ସେ ପଡ଼ିଲାକ ମହୀ ।
ଚେତନା ପାଇଁଣ ସେ ସାଷ୍ଟାମ ହୋଇ ବସଇ
ରେ ପ୍ରାଣ ବଲ୍ଲଭୀ ବୋଲି ବଚନ ପ୍ରକାଶଇ ।
କାନ୍ତିମାଳା ବୋଇଲା ମୋହେଣ ବଶ୍ୟ ମୋହୋର ପଞ୍ଚଆତ୍ମା
ମଦନ ସାଗରୁ ରକ୍ଷାକର ମହାତ୍ମା ।୨୪୧୦।
ମୁହିଁ ତୋହୋର ଚରଣ ପଦ୍ମେ ଲାଗଇ
ଦଶ ଲହ ମୁଖେ ଭରି ସୁରତି ମାଗଇ ।
ଉଗ୍ରତାରା ବୋଇଲେ ମୁଁ ବ୍ରତ କରିଅଛି ପୂର୍ବେ
ମମ କାର୍ଯ୍ୟ ଅର୍ଥେ ଯେ ବ୍ରତ ପୂରାଇ ପାରଇ ଏବେ ।
ସେ ବ୍ରତ ପୂରାଇଲେ ମୁଁ ହୋଇବି ତାର ପତ୍ନୀ
ତେବେ ଗୃହବାସ କରିବି ତାହା ଘେନି ।
କାନ୍ତିମାଳା ବୋଇଲା ବ୍ରତକ ପୂରାଇବାକୁ ମୁହୂର୍ତ୍ତେ ରହ
ଗୋ ପ୍ରିଏ ମୋତେ ବ୍ରତର ବିଧାନ ଯେ କହ ।
ଉଗ୍ରତାରା ବୋଇଲା ମୋତେ କାନ୍ଧରେ ବସାଇଁ
ଲଜ୍ୟା ଉପେଖିଣ ମୋତେ ମନ୍ଦରକୁ ପାରଇ ନେଇ ।
ପୁରୁଷ କୁଳ ଯେ ଉପେକ୍ଷା କରଇ ଲଜ୍ୟା
ତେବେ ସେ ତାହାର ମୁଁ ହୋଇବି ଭାରିଯା ।
କାନ୍ତିମାଳା ବୋଇଲା ଏ ମୋହୋର ସତ୍ୟ ସତ୍ୟ
ଆସ ଆସ ମମ କାନ୍ଧରେ ବସରେ ସଘାତ ।
ଉଗ୍ରତାରା ବୋଇଲା ଆଦିତ୍ୟ ଅସ୍ତ ହୋଉ
କେହି ନ ଦେଖୁ ସେ କାନ୍ଧରେ ବସି ଯାଉଁ ।
ଚାଟୁ ବଚନ କହୁଁ କହୁଁ ସେ ଆଦିତ୍ୟ ଅସ୍ତ ଗଲା
କାନ୍ତିମାଳା ଉଗ୍ରତାରାଙ୍କୁ କାନ୍ଧରେ ବସାଇଲା ।
ବିଝଂଗିରି ତଳେ ସେ ପର୍ବତ ପଛଆଡ଼େ
ଲକ୍ଷ୍ମୀଭଦ୍ରା ଦକ୍ଷିଣ ଭାଗ ଆଡ଼େ ।୨୪୨୦।
କାନ୍ତିମାଳା ଉଗ୍ରତାରାଙ୍କୁ ବହିଅଛି କଣ୍ଠତଟେ
ଦୁହେଁ ଯାଉଛନ୍ତି ସେ ପର୍ବତ ଗହନ ବାଟେ ।
ଅନେକ କଉତୁକ ସେ ହରଷ ଆନନ୍ଦେ
କୁଳାବତୀ ପାଟଣା ସେ ଯାଉଛନ୍ତି ହାଦେ ।
ଉଗ୍ରତାରା ବୋଇଲା ବସି ନ ପାରଇ ହୋ ବୀର
ଦଣ୍ଡେକ ଠିଆ ହୋଇବି ତୋହୋ କାନ୍ଧର ଉପର ।
କାନ୍ତିମାଳା ବୋଇଲା ଯେବେ ନ ସହିବ ହିଆ
ମୁଣ୍ଡର ଉପରେ ଗୋ ହୁଅ ମୋର ଠିଆ ।
ହେ ପଣ୍ଡିତ ଜନମାନେ ବିଚାର କର ଏହା
ପୁରୁଷ ବିରହିତା ନ କରଇ କାହା ।
ଯେତେ ପ୍ରାକର୍ମ ଥିଲେ ବୁଡ଼ଇ ମଦନ ଜଳେ ପଡ଼ିଲେ
ଦଉଡ଼ି ଲାଗି ଯେହ୍ନେ ଗମଇ ବଇଲେ ।
ଆହୋ କାନ୍ତିମାଳା ଅବସ୍ତା ମଦନ ଲୁବୁଧେ
କର ଭାର ମାଡ଼ି ବସିଲେ ଦୁଇ କନ୍ଧେ ।
ଆକାଶମଣ୍ଡଳେ ଉଗ୍ରତାରା ଦିଶିଲା ତେଜ ବ୍ୟାପି
ହୁଂକାର ଶବଦ କରି ସେ କାନ୍ତିମାଳାକୁ ଚାପି ।
ମାହା ବଇଷବୀ ସେ ମାହା ଅନର୍ଗଳା
ପାତାଳଗାମୀ ହୋଇଲେ ସେ ଅସୁର କାନ୍ତିମାଳା ।
ଆହୋ ପରୀକ୍ଷ କାନ୍ତିମାଳା ନିଧନ ଦେଖି ସେ ଦେବତାଏ କରନ୍ତି ତୁଷ୍ଟି
ସନ୍ତୋଷେ ଦେବଗଣେ କଲେକ କନେକ ବୃଷ୍ଟି ।୨୪୩୦।
ତେତିଶ କୋଟି ଦେବତାଏ ଯେ ବିଜୟ ଭାବେ ସେବି
ଦେବତାଙ୍କର କଲୁଷ ଗୋ ବିନାଶ କଲ ଦେବୀ ।
ଅନେକ ସମର କରୁଅଛନ୍ତି ଦନୁଜ
କାନ୍ତିମାଳା ପଡ଼ିଲାକ ନ ଜାଣନ୍ତି ରକ୍ତବୀର୍ଯ୍ୟ
ମଷାଂର ଆଜ୍ଞା ପାଇ ଯେ ଅଇଲେ ପାଞ୍ଚସେନା
ତିନି ସେନା ପଡ଼ିଲେ ଅତୁଳାଇ ବୀର ଜେନା ।
ରକ୍ତବୀର୍ଯ ବୀରଘଣ୍ଟ ଅଛନ୍ତି ବୀରବେନି
ନବ ମର୍ଭୁତ ବଳ ଅଛନ୍ତି ଯେ ରାକ୍ଷସ ବଳ ସଇନି ।
ଦେବଙ୍କୁ ଦୁର୍ଲ୍ଲଭ ଯେ ବୀରଘଣ୍ଟ ବୀର ଦୃଢ଼ ପଣଇ
ଇନ୍ଦ୍ର ଚନ୍ଦ୍ର ରୁଦ୍ର ସେ କାହାକୁ ହିଁ ନ ଗଣଇ ।
ପଞ୍ଚ ମର୍ଭୁତ ଯୋଦ୍ଧା ତୁଲେଣ ରକ୍ତବୀର୍ଯ
ନାରାୟେଣୀ ଛାମୁରେ ମିଳିଲା ଦନୁଜ ।
ଲୁହାର ଧନୁ ଯେକ କରେ ମୁଷଳୀ ଶର ଆଉଧ
ମତ୍ତ ନାଗ ପ୍ରାୟେକ ସେ ଆରମ୍ଭିଲେ ଯୁଦ୍ଧ ।

ଯେସନେକେ ଗିରିବର ଆବୋରଇ ଜଳ
ରକ୍ତବୀର୍ଯର ତୁଳେ ନବ ମର୍ଭୁତ ବଳ ।
ତିନି କୋଟି ବଳ ଯେ ଲୋହଶର ଧନୁ
ନାରାଯ ବିଶନ୍ତି ଯେ ଅନଳ ସାମାନ୍ୟ ।
ସହସ୍ରେକ ନାରାଯ ଘେନିଣ ରକ୍ତବୀର୍ଯ
ନାରାୟେଣୀ ଛାମୁରେ ମିଳିଲାକ ଦନୁଜ ।୨୪୪୦।
ଆହୋ ପରୀକ୍ଷ ଶ୍ୟରୀର ବିରାଜଇ ଡାଳିମ୍ବ ପୁଷ୍ପ ପ୍ରାୟେ
ରଙ୍ଗ ପୁଷ୍ପ ପରିହରଣ କଣ୍ଠେ ମନ୍ଦାର ପୁଷ୍ପ ମାଳା ଗୋଟାୟେ ।
କର୍ଣ୍ଣେ ମନ୍ଦାର ପୁଷ୍ୟ ଚୂଟବନ୍ଧ ମନ୍ଦାରକୁମ୍ଭ ପୁଷ୍ପେ ଉତ୍ତମ
ବାଳ ଅର୍କ ପ୍ରାୟେ ବିରାଜଇ ଉତକର୍ମ ।
ସୂର୍ଯ ମଣ୍ଡଳ ରଥେ କୋଟିୟେ ଶର ଯୋଚି
ବାହୁ ବିସ୍ତାରି ସାରଥି ରଥ ବାହୁଅଛି ।
ସମର ଆବୋରିଲା ସେ ଅସୁର ସାମରଥ
ସୂର୍ଯ୍ୟମଣ୍ଡଳେ ନେଇ କଲା ସୂର୍ଯ୍ୟମଣ୍ଡଳ ରଥ ।
ଝିଙ୍କ ପକ୍ଷୀ ବାହାନୀ ହୋଇଣ ନାରାୟେଣୀ
ବିଜୟାମାଳା ସେ ଶଙ୍ଖଚକ୍ର ପାଣି ।
ଗାଣ୍ଡିମ ଧନୁ କରେ କଉମୋଦୀ ଗଦା ଧରି
ଚତୁର୍ଭୁଜେ ସୁଦ୍ରଶେନ ବାହାନେ ନାଗର ଅଇରି
ରକ୍ତବୀର୍ଯ ନାରାୟେଣୀ ହୋଇଲେ ବେନି ଭେଟ
ଧାଅଁଲୋ ଖାଅଲୋ ଅସୁର ବଳ ଥାଟ ।
ନାରାୟେଣୀ ଆଜ୍ଞା ପାଇଣ ଦେବୀମାନେ
ଶ୍ରୋଣେହା ଯୂଥ ପ୍ରାୟେ ସେ ଘୋଟିଲେ ଗଗନେ ।
କେଶରୀ ବାହାନେ କରେଣ ଖପର କାତୀ
ବ୍ୟାଘ୍ର ବାହାନେ କେହୁ ଭାଲୁଙ୍କ ଚଢ଼ନ୍ତି ।
ବିକରାଳି ଘୋରରୂପୀ ରଣ ବେତାଳୀ
ଅସୁର ବଳକୁ ଧାଇଁଲେ ସେ ଦେଇଁଣ ହୁଳହୁଳି ।୨୪୫୦।
କେ ବିଭୂତି ବିଲୋପନ ଗଳାରେ ଚୀରକୁଟି
କାହାର କଟିରେ କାଛେଟା କେହୁ ନଗୁଂଟି ।
କରେଣ ତ୍ରିଶୂଳ ବିଜେ କର୍ଣ୍ଣ କଟାରି
ଶେଣା ପକ୍ଷୀ ପ୍ରାୟେ ହୋଇଁ ଦତ୍ୟଙ୍କୁ ଆବେରି !
କରେଣ ଧନୁ ଧରି ମିଳିଲେ ଦନୁଜେ
ସହସ୍ରେକ ଶର ଗିଳି ଯାନ୍ତି ସେ ନାରାୟଣୀଙ୍କର ତେଜେ ।
ଅନ୍ତରୀକ୍ଷେ କୋନ୍ତ ବୁଲାଇ ମାଇଲେ ନେଇ ରଥେ
ନବ ନିଶୀକୋନ୍ତ ନ ରହଇ ବେନି ହାଥେ ।
ସେ ଗଦା ପଡ଼ନ୍ତେଣ ପାତନ୍ତି ଦେବୀଙ୍କର ମୁଣ୍ଡ
ଶିରେ ପଡ଼ି ଗଦା ହୋଅନ୍ତି ମସୀ ଗୁଣ୍ଡ ।
ଗଦା ଭାଜନ୍ତେ ସେ ହୁଅନ୍ତି ଶୂନ୍ୟ ହସ୍ତ
ଧାଇଁ ମାହେଶ୍ୱରୀ ପ୍ରହାର କରନ୍ତି ମୁଥ ।
ହାବୋଡ଼ା ଘାଏଣ ପଡ଼ନ୍ତି ଉତ୍ତାନ ସାହୀ
ବକ ସ୍ଥଳେ ମାଡ଼ି ବସନ୍ତି ବରାହୀ ।
ତୁଣ୍ଡ ବିସ୍ତାରିଣ ଦିଅନ୍ତି ଘୋର ରଡ଼ି
ହିଆ ବିଦାରିଣ ସେ ବେନି ଫାଳ କରି ।
ଆଞ୍ଜୁଳା କରି ସେ ଧରନ୍ତି ରୋଧିର
ଏକାଇ ଉଡ଼ଇ ଆରେକ ଉପର ।
କେଶ ଧରିଣ ସେ ବୁଲାନ୍ତି ଅନ୍ତରୀକ୍ଷ କରି
ମାଂସ ଖାଉଛନ୍ତି ସେ ଅନ୍ତରୀକ୍ଷେ ଦନ୍ତେଣ ବିଦାରି ।୨୪୬୦।
ପୁଣ ବଜ୍ର ମୁଦୁଗର ପିଟନ୍ତେ ଦଇତେ
ପଡ଼ନ୍ତେ ଦେବୀମାନେ ଧରନ୍ତି ତାହା ହସ୍ତେ ।
ଭୁଜ ଧରିଣ ସେ ମାରନ୍ତି ନେଇ ନାତେ
ବୁଲାଇ ପିଟନ୍ତି ଗଦାବର ବିଘାତେ ।
ନିର୍ଘାତ ଜାଣିଣ ସେ ପଡ଼ନ୍ତି ନିଶାଚରେ
ଧାଇଁଣ ମାଡ଼ି ବସନ୍ତି ସେ ହିଆ ଭିତରେ ।
ଦାନ୍ତେଣ କାମୋଡ଼ି କାଢ଼ନ୍ତି କାହାରବୁକୁ
ଖଣ୍ଡେକ କାମୋଡ଼ି ଦିଅନ୍ତି ଖଣ୍ଡେ ଆରେକକୁ
ରକତ ମାଂସ ଖାଇଁଣ ପକାବନ୍ତି ହାଡ଼
ଭୂମି କମ୍ପଇ ସେ ଦିଅନ୍ତେଣ ରଡ଼ ମଡ଼ ।
ଇଚ୍ଛାଏ ରକ୍ତ ମାଂସ କରନ୍ତି ଦେବୀ ଭୋଜି
କାମ୍ୟେକ ମେଘ ପ୍ରାଏକ ଯେତେ ଯେ ଗଳ ଗାଜି ।
ଆହୋ ପରୀକ୍ଷ ସେ ରକ୍ଷଣ ଭକ୍ଷଣ ତୋଷଣ କରି ଧରିଥାନ୍ତି ତୁଣ୍ଡ
ଅସୁର ଗଦା ଦେଇଁ ତାଡ଼ନ୍ତି ତାର ମୁଣ୍ଡ ।
ତହିଁକି ତ ଲଏ ସେ ନ କରନ୍ତି ଭୁଜଦଣ୍ଡ
ପିଠି ଆଡ଼େଣ ଗଦାଏ ପଡ଼ି ହୋଅନ୍ତି ଖଣ୍ଡ ଖଣ୍ଡ ।
ଲକ୍ଷ ଲକ୍ଷ ନାରାଯ ବିନ୍ଧନ୍ତି ଦାନବେ
ନରାଯ ଦେଖି ସେ ଧାମନ୍ତି ଉଦବେଗେଁ ।
ଉତସଳ କରି ସେ ଦିଅନ୍ତି ରୋମାବଳୀ
ନାରାଜମାନେ ପଡ଼ି ହୋଉଛନ୍ତି ଯେ ଧୂଳି ।୨୪୭୦।
ନାରାଯ ବିନ୍ଧି ଦାନବେ ହୋଇଲେ ବିମୁଖେ
ଧନୁ ଶହସ୍ର ଛାଡ଼ି ସେ ପଳାନ୍ତି ଅତି ଦୁଖେ ।
ପଳାବନ୍ତେ ଗୋଡ଼ବନ୍ତେ ଅତି ବିକରାଳ
ପଛକଟି ଯାଇ ସେ ଧରୁଛନ୍ତି ବାଳ ।

ଉତ୍ତାନ ସାହୀ ହୋଇ ସେ ଯେ ଡାକନ୍ତି ଯେତେବେଳେ
ପାଟି ଆକର୍ଷି ଧରନ୍ତି ବକସ୍ଥଳେ ।
ପାଟି ଚାପନ୍ତି ସେ ହୋଇଣ ବେନି ଖଣ୍ଡ
ରୋଧିର ବୃଷ୍ଟି ହୁଅଇ ଶରୀର ତ୍ରିପଣ୍ଡ ।
ମଞ୍ଜୁଳ ପୁଷ୍ପ ପ୍ରାଏ ବିରାଜଇ କାଏ
ବିହଡ଼ ଦାନ୍ତ ଦେଖି କେ ପଳାବନ୍ତି ଭୟେ ।
ସମରେ ଦାନବେ ଯେ ପାଇଲେ ଅତି ଦୁଖ
ଭାଙ୍ଗିଣ ପଳାବନ୍ତି ସେ ପାଇଣ ବିମୁଖ ।
କ୍ଷଣକେ ମୋହନୀ ସେ କ୍ଷଣକେ କାମସେଣା
ମୋହ ଫାଶ ଲଗାଇ ସେ କରନ୍ତି ଅତି ବଣା ।
ଅସୁର ବଳ ସଇନି ସେ ନାନା ଅବସ୍ଥା
କହିଲେ ନ ସରଇ ସେ ଦେବୀଙ୍କର କଥା ।
ପଶୁ ପତ୍ର ବହ୍ନଶର ବାବର ତୀକ୍ଷ ମୁନା
ବିନ୍ଧନ୍ତେଣ ନ ଭେଦନ୍ତି ସେ କପଟ ବଜ୍ରସେହ୍ନା ।
ଗଦା ମୁଦ୍‌ଗର ଗୁରୁଯ ଶାବେଳି ଲୁହାଳି
ଏମାନେହେଁ ପଡ଼ି ହୋଉଛନ୍ତି ଧୂଳି ।୨୪୮୦।
ପ୍ରଶୁ କୋଠାର ବଜ୍ର ଅସୀପତ୍ର ଯାଠୀ
ହାଣନ୍ତେ ଶ୍ୱରୀରେଣ ପଡ଼ି ଗୁଣ୍ଡା ଉଠି ।
ଶରେଣ ଭେଦିତ ଯହୁଁ ନୋହିଲାକ କାଏ
ଭାଗିଲେ ଦାନେବ ବଳ ବାସ ଭଗ୍ନ ପକ୍ଷୀ ପ୍ରାଏ ।
ରଣେ ଦାନେବେ ସେ ପାଇଲେ ଅତି ଦୁଖ
ଭାଗିଲେ ଅସୁର ବଳ ସେ ହୋଇଣ ନିରେଖ ।
ଗୋଡ଼ାଇ ଭେଟିଲେ ସେ ଅଭଏ କାନ୍ତାନୀ
ଧର ଧର ମାର ମାର ବୋଲି ହାକନ୍ତି ବିକଟାଳ ରୂପ ଘେନି ।
ପଳାବନ୍ତେ ଧରି ବିଦାରନ୍ତି ବକସ୍ଥଳ
ରୁଧିର ମାଂସ ଗୁନ୍ଧି ସେ କରନ୍ତି କୁତୋହୋଳ ।
ସହସ୍ରେ କୋଟି ଦାନବେ ସେ ପଡ଼ିଛନ୍ତି ରଣେ
ଭକ୍ଷଣ କରନ୍ତେଣ ଦେବୀଙ୍କର ସେ ନ ରହନ୍ତି ଏକ ଜଣେ ।
ରକ୍ତ ମାଂସ କିଛିହିଁ ନ ପଡ଼ଇ ତଳେ
କରନ୍ତି ଆହାର ସେ ଅନେକ କୁତୋହୋଳେ ।
ମହା ବୈଷ୍ଣବୀ ସେ ରଣ ରଙ୍ଗେ ଚଞ୍ଚଳା
କ୍ଷଣକେ ଯୋଗେଶ୍ୱରୀ ସେ କ୍ଷଣକେ ଅନର୍ଗଳା ।
ତ୍ରିପୁର ମହା ମେଖଳା ସେ ମହା ବୈଷ୍ଣବୀ
ନାଚନ୍ତି କିଳି କିଳି ମାରନ୍ତି ରଣେ ବୋବି ।
କ୍ଷଣକେ ମୋହୋନୀ ସେ କ୍ଷଣକେ ବିକଟାକ୍ଷୀ
ରଣ ରଙ୍ଗ ଧନ୍ଦୋଳ ସେ ମହୁ ମାଂସ ଭକ୍ଷି ।୨୪୯୦।
ରକ୍ତବୀର୍ଯ୍ୟ ନାରାୟଣୀର ବହୁତ ସଂଗ୍ରାମ
ନାରାଯ ବିନ୍ଧନ୍ତେ କ୍ଷଣକେ ନାହିଁଟି ବିଶ୍ରାମ ।
ଗାଣ୍ଡିମ କୋଦଣ୍ଡ ଧନୁ ନାରାୟଣୀର ହସ୍ତେ
ଆକାଶ ଅନ୍ଧାର ହୋଇଲା ଶର ବିନ୍ଧନ୍ତେ ।
ରକ୍ତବୀର୍ଯ୍ୟ ବିନ୍ଧଇ ସେ ଅବିଛନ୍ନେ ବାଣ
ଶୂନ୍ୟ ଭୁବନ ମଧ୍ୟେ ଘୋଟିଲା ନ ଦିଶଇ ପୟାଣ ।
ରଣରଙ୍ଗେ ବିଜଏ ସେ କଙ୍କାଳୀ ବେତାଳୀ
କ୍ଷଣ କ୍ଷଣକେ ଗିଳନ୍ତି ଦତ୍ୟଙ୍କର ଜାଳାବଳୀ ।
ଆହୋ ପରୀକ୍ଷ ବାରୁଣା ଶହସ୍ରେକ ମାଇଲା ରକ୍ତବୀର୍ଯ୍ୟ
ଅଗ୍ନିରେ ଦହିଯ ହେଲା ସେ ରକ୍ତବୀର୍ଯ୍ୟର ତେଜ ।
ଅଗ୍ନିବାଣେକ ଯେ ମାଇଲା ଦାନେବ
ଆକାଶ ଭୁବନ ପରିଯନ୍ତେ ଘୋଟିଲାକ ସର୍ବ ।
ଲୁହାର କୋଟିଏକ ଶର ରକ୍ତବୀର୍ଯ୍ୟ ବିନ୍ଧି
ଏକା ନାରାଯକେ ତାହା ନାରାୟଣୀ ଛେଦି ।
ପର୍ବତା ଶରେକ ଯେ ବିନ୍ଧିଲା ରକ୍ତବୀର୍ଯ୍ୟ
ଉଗ୍ରତାରା ଉପରେ ପଡ଼ି ହୋଇଲା ଦହିଯ ।
ପୁଣି ବିନ୍ଧିଲା ସେ ବେନି କୋଟି ବାଣ
ଏକା ନାରାୟଣୀ ଯେ ଛେଦିଲେ ତତକ୍ଷଣ ।
କୋପେଣ ମେଘାଶର ଯେ ଅସୁରେଶ୍ୱର ମାରି
ତଇଲୋକ୍ୟ କମ୍ପିଲା ସେ ମେଘା ଶହସ୍ର ପ୍ରହାରି ।୨୫୦୦।
ଦେଖିଣ ନାରାୟଣୀ ପବନା ଶରେକ ବିନ୍ଧଇ
ପବନ ବିଘାତେ ସେ ମେଘା ବାଣ ଉଡ଼ଇ ।
ବହନ୍ତେ ପବନ ମୃତୁମଣ୍ଡଳ ଘୋଟି
ଦଶ ଦିଗେ ମେଘେ ସେ ପଡ଼ିଗଲେ ଫାଟି
ରଦ୍ରା ଅସ୍ତ୍ରେକ ଯେ ବିନ୍ଧିଲା ରକ୍ତବୀର୍ଯ୍ୟ
ନାରାୟଣୀ ଆସ୍ତ୍ରେ ସେ ନାରାୟଣୀ କଲେ ଦହିଯ ।
ପୁଣ ରକ୍ତବୀର୍ଯ୍ୟ ନିର୍ଘାତ ବାଣେକ ବିନ୍ଧି
ବଜ୍ରସୂଚୀ ଶରେ ତାହା ନାରାୟଣୀ ନିରୋଧି ।
ନାରାୟଣୀ ବିନ୍ଧିଲେ ଅସି ପତ୍ର ତୀକ୍ଷମୁନା
ନାରାଯ ଭେଦନ୍ତେ ଯେ ରକ୍ତବୀର୍ଯ୍ୟ ସେନ୍‌ହା ।
ରୋମକେ ବେନି ଶର ଯେ ହୋଇଲାକ ବୃଷ୍ଟି
ଅକ୍ଷଏ ଶ୍ୟରୀରେ ଯେ ରକ୍ତ କର୍ଦ୍ଦନ ଉଠି ।
ଆହୋ ପରୀକ୍ଷ ଘାଏଣ ଘୁମାଇଲା ସେ ଦୃଗାର ଆତ୍ମାନି
ଚେତନା ଶରୀରେ ପୁଣ ଉଠିଲେ କାନ୍ତାନୀ ।

ତୀକ୍ଷମୁନା ଶରେକ ଯେ ବିନ୍ଧିଲା ଗୋସାମଣି
ରକ୍ତବୀର୍ଯ୍ୟ ଧନୁ ଯେ ପକାଇଲା ହାଣି ।
ଆହୋ ପରୀକ୍ଷ ପୁଣ ପୁଣ ନାରାଯ ବିନ୍ଧନ୍ତି ପବନ ବହନୁ
ନାରାୟଣୀ ଛେଦିଲେ ରକ୍ତବୀର୍ଯ୍ୟ ଧନୁ ।
ହେ ବୁଧ ଜନେ ସଞ୍ଚପି କହିବାକୁ କିସ ମୋହର ଶକତା
ଲେଖନ୍ତେ ନ ସରଇ ଚଣ୍ଡୀ ଯୁଦ୍ଧର କଥା ।୨୫୧୦।
ଧନୁ ଛେଦନ୍ତେଣ ଦାନବ ରକ୍ତବୀର୍ଯ
ଖଡ଼ଗ ଫଳା ଘେନି ଯେ ଧାମଇ ଦନୁଯ ।
ଦେବଙ୍କୁ ଦୁଲଭ ଯାହାର ବିକ୍ରମ ସିଙ୍ଘଗତି
ରକ୍ତବୀର୍ଯ୍ୟ ମୂର୍ତ୍ତି ଦେଖି ସେ ଧାଇଲେ ଭଗବତୀ ।
ଅଜଗବ ଧନୁ ଧରି ସେ ବିନ୍ଧିଲେ ପଞ୍ଚୁବାଣ
ରକ୍ତବୀର୍ଯ ଛେଦିଲା ସେ ଫଳା ଆଡ଼ଣ ।
ଏକ କର ଶୂନ୍ୟ ଆରେକ କରେ ଖଣ୍ଡା
ସମରେ ବିହରଇ ସେ ଅସୁର କୁଳ ଷଣ୍ଡା
ଖଡ଼ଗ ବୁଲାଇ ସେ ଧାମଇ ରକ୍ତବୀର୍ଯ
ଆକ୍ରେଷି ହାଣିଲା ନେଇ ସେ ଭଗବତୀର ମସ୍ତକ ପାଣିଜ ।
ଆସି ପଡ଼ନ୍ତେ ସେ ଭଗବତୀ ଅନ୍ତର୍ଧ୍ୟାଏ
ଚଉକତି ରକ୍ତବୀର୍ଯ ଲୋଡ଼ଇ ମହାମାଏ ।
ଶୂନ୍ୟ ହସ୍ତ ଯହୁଁ ରକ୍ତବୀର୍ଯ ଦେଖି
ଆ ଲୋ ଧାଆଁ ଲୋ ବୋଲି ସେ ନାରାୟଣୀ ହାଙ୍କି ।
ନାରାୟଣୀ ହାଙ୍କତେ ଧାମଇଁ ଅସୁର ପ୍ରଚଣ୍ଡା
ଧାଇଁ ପିଟିଲା ସେ ଅସିପତ୍ର ଖଣ୍ଡା ।
ବଜ୍ର ଶକତି ଯେ ଘେନି ମାହେଶ୍ୱରୀ
ରକ୍ତବୀର୍ଯ ଉପରେ ନେଇ ପ୍ରହାର କରି ।
ପ୍ରଳୟ କାଳେ ଗର୍ଜନ ପ୍ରାଏକ ଶୁଭିଲା
ରକ୍ତବୀର୍ଯ ଖଡ଼ଗ ଉପରେ ସେ ବାଣ ଭେଦିଲା ।୨୫୨୦।
ଧାଇଁଣ କୋଠାର ସେ ମାଇଲେ ପ୍ରମଦା
ତତକ୍ଷଣେ ରକ୍ତବୀର୍ଯ ଘେନିଲେକ ଗଦା ।
ଧାଇଁଣ ନାରାୟଣୀ ଉପରେ ନେଇଁଣ ପିଟଇ
ବାହାନ ଖଗଇନ୍ଦ୍ର ପକ୍ଷୀ ପଡ଼ି ସେ ଲୋଟଇ ।
ବାହାନ ବିହୁନେ ନାରାୟଣୀ ରହଇ ସ୍ୱର୍ଗେ
ସିଙ୍ଘ ପେଷି ଦେଲେ ଦେବୀ ଦୃଗେ ।
ବିଜେ କଲେ ନାରାୟଣୀ କେଶରୀ ଆରତେ
ରକତବୀର୍ଯର ତୁଲେ ସେ ସମର ନାନା ମତେ ।
ସହସ୍ରେ ସହସ୍ରେକ ଭାର ଲୁହାର ଗଦା ଘେନି
ରକ୍ତବୀର୍ଯ୍ୟ ପିଟିଲା ସେ ମେଣ୍ଟି ଲେ କାନ୍ତାନୀ ।
ଗଦା ବିଘାତେ ନ ପାନ୍ତେ ଅସୁର ମହାବଳୀ
ବିଜେ କର୍ଣ୍ଣ କୋଠାର ଘେନି ନାରାୟଣୀ ହାଣିଲେ ତୋଳି ।
ଲୁହାଗିରି ପ୍ରାଏକ ଯାହାର ଲୁହା ଦଣ୍ଡ
ନାରାୟଣୀ ହାଣନ୍ତେ ସେ ହୋଇଲା ଦୁଇଖଣ୍ଡ ।
ଦେବ ଦଳନ ଗଦା ଯହୁଁ ଭାଙ୍ଗିଲା ରକ୍ତ ବୀର୍ଯ
ବେନି ମୁଥା ଉଞ୍ଚାଇ ସେ ଆସଇ ଦନୁଯ ।
ଆହୋ ପ୍ରଚଣ୍ଡ ଖଣ୍ଡା ଘେନି ନାରାୟଣୀ
ରକ୍ତବୀର୍ଯ ଉପରେ ଦୁର୍ଦ୍ଦଣ୍ଡ ଭୁଜେ ହାଣି ।
ଶିରେଣ ପଡ଼ିଲା ସେ ବିଜେ କରବାଳ
ରକ୍ତବୀର୍ଯ ଦାନବ ସେ ହୋଇଲା ବେନି ଫାଳ ।୨୫୩୦।
ବେନି ପର୍ବତ ଯେସନେକେ ଆକାଶୁ ଖସି ପଡ଼ି
ମେରୁ ସିଙ୍ଘ ଗିରିକି ପଡ଼ିଲାକ ଝଡ଼ି ।
ରକତବୀର୍ଯ ଧଂସିନୀ ଗୋ ଅଭଏ ସ୍ୱର୍ଗବାସୀ
ବୃନ୍ଦାଅର୍କ ଲୋକେ ସେ ଅନେକ ସନ୍ତୋଷି ।
ପୃଥିର ଭାରା ଗୋ ହୋଇଲାକ ନାଶ
ଦେବତାଏ ଅଚିନ୍ତେ ବସିଲେ ସ୍ୱର୍ଗବାସ ।
ତ୍ରିଦଶ୍ୟ ଦେବେ ସେ କରନ୍ତି ଅନେକ ସ୍ତୁତି
ନମୋ ନାରାୟଣୀ ଗୋ ଅନାଦି ଶକତି ।
ତୁ ଦେବୀ ଅବତାର ବ୍ରହ୍ମା ବିଷ୍ଣୁ ଘେନି
ରକତବୀର୍ଯ ଧଂସନୀ ଗୋ ଅଭଏ କାନ୍ତାନୀ ।
ଦିବ୍ୟ ଅବତାର ଗୋ ଶଙ୍ଖ ଚକ୍ର ଧାରୀ
ଗଦା ଗାଣ୍ଡିମ ଗୋ ପ୍ରଶୁ ଅସି ବାରି ।
ଆହୋ ମୋହ ଶକତି ପ୍ରଶୁ ଫାଶି କୋନ୍ତ
କିଞ୍ଚିତ ସମରେ ଯାହାର ନାଶ ଗଲେ ଦାନବ କୃତାନ୍ତ ।
ଦନୁଜ ବଳ ନିଶୋଧନି ଗୋ ମତୁଆଳ ନାଟ ଖେଡ଼େ
ବଧିଲୁ ଦାନବ ବଳ ମତୁଆଳ ନାଟ ଯେଡ଼େ
ଯୋଗ୍ନୀବୃନ୍ଦେ ବାହାର ମତୁଆଳ ନାଟ
ରକତ ମାଏଂସ ଭୁଞ୍ଜି ମଉରସ ନାଟ ନିକଟ ।
ଖେଚରୀ ଭୂଚରୀ ଗୋ ଶବଦ କିଳି କିଳି
ମତୁଆଳ ମାତାଙ୍ଗୀ ଗୋ ମଦିରାପାନେ ଭୋଳି ।୨୫୪୦।
ଜାତ ଅନ୍ତ ମଧେ ଗୋ ଆଦି ଶାନ୍ତ ରୂପୀ
କଙ୍କାଳୀ ବେତାଳୀ ଗୋ ଡାକେଶ୍ୱରୀ ଗଗନ ଖେପି ।
ମେଦନୀ ପୂରିତ ଗୋ କିଳିକିଳା ନାଦେ
ଆକାଶ କମ୍ପିଲା ଗୋ ଡାକି ଡମ୍ବରୁ ଶବଦେ

ରକ୍ତ ବସ୍ତ୍ର ପରିହରଣି ଗୋ ମୁଣ୍ଡ ମାଳା ବଛେ
ଶରଦଶଶୀ ମୁଖୀ ଗୋ ମୋହୋନୀ ସାରୁକ୍ଷେ ।
କହନ୍ତେ ନ ସରଇ ଯାହାରି ଅନନ୍ତ ମହିମା
ପ୍ରକୃତି ଅନ୍ତ କରି ନ ପାରିଲା ବ୍ରହ୍ମା ।
ମୁହିଁ ମାନବ ତାହାକୁ ମୁଁ କିସ କହିବି ସାମରଥି
ଶରଣ ଉଦ୍ଧାରଣୀ ଗୋ ନର୍ମଦା ସରସ୍ୱତୀ ।
ଯଜ୍ଞେରପୁର ବାସେନୀ ଗୋ ଶ୍ରୀ ସାରୋଳ ଚଣ୍ଡୀ ଦେବୀ
ଭାବେଣ ଭାବିଲା ନିତ୍ୟେ ସାରୋଳ ଦାସ କବି ।
ଶୁଣ ହୋ ଅପୂର୍ବ ରସ ପରୀକ୍ଷ ରାଜା
ଶୁକ ମୁନିଙ୍କ ପାଦେ କଲେ ଛଡ଼ ଅର୍ଘ ପାଦ ପୂଜା ।
ତବ ମୁଖେ ନିର୍ମିତ ଅପୂର୍ବ ରସ ବାଣୀ
ପ୍ରତଞ୍ଚା ସାମରଥା ହୋଇବି ଦୃଗାର ଚରିତ ଶୁଣି ।
ମୁନି ହେ ରକ୍ତବୀର୍ଯ ଯେ ବଧ ହୋଇଲା ସମରେ
ପୁଣି କେବଣ କୃତ୍ୟ ହୋଇଲା କହିବା ମୁନିବରେ ।
ବଦୟନ୍ତି ଶୁକ ବ୍ରହ୍ମ ଶୁଣ ପରୀକ୍ଷ ରାଏ
ଦୃଗାର ଚରିତ୍ର ଶୁଣି ପାପ କରକ୍ଷଏ ।୨୫୫୦।
ପଢ଼ନ୍ତେ ଶୁଣନ୍ତେଣ ଆପାଦ ଦୁଖ ଖଣ୍ଡଇ
ଜରାରୋଗ ମୃତୁ ଖଣ୍ଡଇ ବିପୁଳ ପୁର ମଣ୍ଡଇ ।
ସମରେ ପଡ଼ିଲେ ରକ୍ତବୀର୍ଯ ଦାନବ
ରୋଧିରେ ବୃଷ୍ଟି ଯେ ହୋଇଲେ ସର୍ବଠାବ ।
ଯେତେକ ରୋଧିର ଟୋପା ପଡ଼ିଲାକ ପୃଥି
ଟୋପାକେ ଶତକେ ସେ ହୋଇଲା ଉତପତ୍ତି ।
ଖାଙ୍କେର କେଶ ବିକଟ ଲୋହିତ ବର୍ଣ୍ଣ
ପୃଥିବୀ ପୂରିଲା ସେ ପଞ୍ଚ ଯୋଜନ ।
ଗଦା ମୁଦୁଗର ଯେ ଯାଠୀ ଶକତି
କୋନ୍ତ ଅସିପତ୍ର ଯେ କୋଦାଳ ଧରିଛନ୍ତି ।
କ୍ରୀଡ଼ନ୍ତି ଗର୍ଜନ୍ତି ରେ ରେ କାର ଶବଦେ
ଦିବ୍ୟ ଅଙ୍ଗ ମୃର୍ଧୁନା ବିକାଶିଲେ ସର୍ବ ନାଦେ ।
ପୃଥିବୀ ପୂରିଲା ସେ ସଭିଁ ରକ୍ତବୀର୍ଯ
ସମୋଦ୍ର ପାଏ ସେ ପୂରିଲେ ଦନୁଯ ।
ରକ୍ତଗିରି ଶିଖରେ ଥାଇ ଦୃଗେ ଦେଲେ ଡାକ
ଧାଅ ଲୋ ମାର ଲୋ ବୋଲି ଦିଅନ୍ତି ହାକ ।
ମାର ଲୋ ଦାନବ ବଳ କେମନ୍ତେ ଲୋ ଦେଖ
ସମୋଦ୍ର ପ୍ରାଏକ ଯେ ହୋଇଲେ ଅନେକ ।
ଦୃଗାର ଆଜ୍ଞା ପାଇ ଚଉଷଠି ଯୋଗ୍ନୀ
ରଣ ରଙ୍ଗ ଯେ କଲେ କଉତୁକେ କାନ୍ତାନୀ ।୨୫୬୦।
ମଞ୍ଚେଣ ଓଷ୍ଟ ଆକାଶେଣ ଦୃଷ୍ଟି
ବିଜଏ ନାରାୟଣୀ ଗଜ ରିପୁ ପିଠି ।
ବିଶ୍ୱ ରୂପ ବିକାଶି ଯେ ମାରନ୍ତି କରବାଳ
ମୁଣ୍ଡ ଛିଡ଼ି ତାହାର ପଡ଼ଇ ବକସ୍ଥଳ ।
ଛିଡ଼ିକି ଯେତେ ରକତ ପଡ଼ଇ ପୃଥୀ
ପୁଣ ପୁଣ ରକତରୁ ହୁଅନ୍ତି ଉତପତି ।
ପୃଥିବୀ ପୂରିଲା ରକ୍ତବୀର୍ଯ ମଏ
ଆକାଶରେ ଥାଇଁ ଯେ ବୋଇଲେ ଦେବତାଏ ।
ଖଡ଼ଗେ ହାଣନ୍ତେ ତଳେ ପଡ଼ଇ ଶିର
ରୁଧିରୁ ଜାତ ହୋଉଅଛନ୍ତି ଅସୁର ।
ଯେମନ୍ତେଟି ମୁଣ୍ଡମାନ ନ ପଡ଼ଇ ତଳେ
ତେସନେକ ଉପାୟ ଗୋ କଏ ବୁଧିବଳେ ।
ଦେବୀମାନେ ଶୁଣିଲେ ଯେ ଦେବଙ୍କ ଉତ୍ତର
କ୍ଷୁଧାରେ ଆରତ ହୋଇ ସେ ପାତିଲେ ଖପର ।
ମହା ଭୟଙ୍କର ମୂର୍ତ୍ତି ରଣେ କାମାକ୍ଷୀ
ରକ୍ତ ମାଂସ ଅସ୍ଥି ନ ଥୋଅନ୍ତି କିଛି ।
ପୁଣ ଉପୁଜଇ ସେ ନାଚନ୍ତି ରକ୍ତବୀର୍ଯ
ମାଇଲେ ନ ମରଇ ସେ ଦୃଷ୍ଟ ଦନୁଜ ।
ପଞ୍ଚ ଯୋଜନ ସ୍ଥଳୀ ସମସ୍ତେ ରକ୍ତବୀର୍ଯ
ଆକାଶେ ମୃଧୁନା ନାଚୁଅଛନ୍ତି ଦନୁଜ ।
ଦେଖିଣ ବିମୁଖ ଯେ ହୋଇଲେ ମହାମାଏ
ଆକାଶେଣ ଥାଇ ତହିଁ ବୋଇଲେ ଦେବତାଏ ।
ରୋଧିର ଟୋପାଏ ନ ପଡୁ ମାତ୍ର ପୃଥୀ
କ୍ଷତିରେ ପଡ଼ନ୍ତେଣ ପୁଣ ହୁଅନ୍ତି ଉତପତ୍ତି ।୨୫୭୦।
କୋପେଣ କାଳାନଳ ତେଜେଣ ମହାଭାରା
ସନିଧେ ରାଇଲେ ଦେବୀ ତ୍ରିପୁରା ।
ଲକ୍ଷେକ ଡାକେଣୀ ସେ ଶ୍ରୋଣେହା ମୂରତି
ଗୁହ୍ମୁଂ ଏହାନ୍ତ ଦେବୀ କଲେ ଉତପତି ।
ଯାଅ ଲୋ ତୁମ୍ଭେ ହୁଅ ମହୀଗାମୀ
ରୁଧିର ପଡ଼ନ୍ତେଣ ଲିହ ଯାଇଁ ଭୂମି
ଦୃଗାର ବଚନ ସେ ଅଲଘିତ ଶିର
ଆବର ବିଶେଷେ ଶ୍ରୋଣେହା ଅବତାର ।
ପୃଥିବୀ ଆକ୍ରେଷି ଦେଲେ ଘୋର ରଡ଼ି
ଅସୁର ବଳ ସଇନି ପଡ଼ିଲେ ଦେବୀ ମାଡ଼ି ।

ଚଉଷଠି ଯୋଗ୍ମୀ ଯାଉଁଛନ୍ତି ହାଣି
ତଳେ ଖପର ଦେବୀ ପାଡ଼ନ୍ତି ବେଗେ ଆଣି ।
ଯିସ ରକ୍ତ ପଡ଼ଇ ଖପରେ ତାହା ଧରି
ପିଅନ୍ତି ରକ୍ତ ଯେ ଅମିଅ ପାନ କରି ।
ରକ୍ତବୀର୍ଯ ସଇନି ନିଦାଘ ବଳ ପ୍ରାଏ
ତହିଁ ସେ ଅନଳ ଅଟନ୍ତି ମହାମାଏ ।
କହନ୍ତେ ନସରଇ ବଚନ ଗହନ
ମାଇଲେ ନ ମରଇ ସେ ରକ୍ତବୀର୍ଯ୍ୟ ସନ୍ୟ ।
ଖଡ଼ଗେ ମାରନ୍ତି ସେ ଚଉଷଠି ଯୋଗ୍ମୀ
ରକ୍ତ ଧରନ୍ତି ସେ ଖପରେ ପିଚାସୁଣୀ ।୨୫୮୦।
ଶ୍ରୋଣେହା ମୂରତି ସେ ଲକ୍ଷେକ ଡାକେଣୀ
ଜିଭନ୍ତ ଘେନିଣ ସେ ଲିହନ୍ତି ଧରଣୀ ।
ଏମନ୍ତେ ଦନୁଜ ବଳ ନ ସରଇ ମାରୁ
ଦିବା ରାତ୍ରେ ତିନି ଦିବସ ଯୁଦ୍ଧ କରୁ ।
କ୍ଷଣେକ ହିଁ ଅସର ନୋହିଲା ମହାଘୋର ଯୁଦ୍ଧ
ଲକ୍ଷେ କୋଟି ମର୍ଭୁତ ଅଗଣିତା ପରାୟୁଧ ।
ବିଶାଶତେ କ୍ଷେଉଣି ବଳ ମଷାଂର ନୋହିଲାକ ଗଣିତା
ରକ୍ତବୀର୍ଯ୍ୟ ବଳ ସଂଖ୍ୟା ନୋହିଲା ଲେଖନ୍ତା ।
ଦୃଗା ଦେଖନ୍ତେ ଦାନବ ବଳ ନୋହିଲେକ ଲେଖା
ଖଡ଼ଗ ଝଡ଼ନ୍ତେଣ ଜାତ ହୋଇଲେ କାଳିକା ।
ଉର୍ଦ୍ଧ ବାହୁ ଖାଙ୍ଗର କେଶ ଅନ୍ଧାର ଘୋରରୂପ
ନାରାୟଣୀ ଖଡ଼ଗେ ହୋଇଲେ ସେ ଗୋପ୍ୟ ।
ଖଡ଼ଗ ହାଣନ୍ତେ କାଳିକା ରକ୍ତ ଭକ୍ଷି
ଅନ୍ତ ଫୁଟି ମାଂସ ନ ରହଇ କିଛି ।
ଦୃଗାର ବର ପାଇ ସେ ଅନାଦି ଶକ୍ତି
ଧାଇଁଲେ ନାରାୟଣୀ ସେ ହୋଇଁଣ ଗଗନ ଗତି ।
ଚାମଣ୍ଡା କାଳିକା କାଳୀ ବେତାଳୀ
ମାହେଶ୍ୱରୀ ମହାମାୟା ଡାକେଶ୍ୱରୀ ଭଦ୍ରକାଳୀ ।
ଦୃଗାର ବାରତା ଏସନ ଯହୁଁ ଶୁଣି
ମାଡ଼ି ପଡ଼ିଲେ ସେ ଶ୍ରୋଣେହା ମୂରତି ଧରି ପିଡାଶୁଣୀ ।୨୫୯୦।
ରଣ ରଙ୍ଗ ଧନ୍ଦୋଳ ସେ ଅଖଇ ଡାକେଶ୍ୱରୀ
ରଣେ ଅଭୟା ସେ ନିର୍ଭୟା ମାହେଶ୍ୱରୀ ।
ମତୋଆଳ ନାଟେ ସେ ରକ୍ତ ମାଂସ ଭକ୍ଷି
ଖାଇଲେ ପେଟ ନ ପୂରଇ ସେ ଥାଇ ପେଟ ଚାପି ।
ବିସ୍ତାର ପେଟ ସେ ଯୋଜନେକ ବାହୁ
ତୁଣ୍ଡ ବିସ୍ତାରି ଯେହ୍ନେ ଚନ୍ଦ୍ରକୁ ଗିଳଇ ରାହୁ ।
ଦଶ ବିଂଶ ତିରିଶ ସେ ଧରିଣ ଦରାଣ୍ଡି
କର ପଲ୍ଲବ ଯେ କରନ୍ତି ବେନି ଖଣ୍ଡି ।
ଖଣ୍ଡ ଖଣ୍ଡ କରି ନିଅନ୍ତି କାମୋଡ଼ି
ଖାଙ୍ଗର କେଶେ ନେଇ ରକତ ନିଉଡ଼ି ।
ଟହ ଟହ ହାସ୍ୟେ ସେ ମତୁଆଳ ନାଟ ଖଣ୍ଡି
ହୁଁ ହୁଁ ଗରଜନ କୁହୁ କୁହୁ ରଡ଼ି ।
ରଟ ରଟ ମଟ ମଟ ବାଜନ୍ତି ହସ୍ତ ଖଣ୍ଡା
ରେ ରେ କାର ଶବଦେ ଡାକନ୍ତି ଚାମଣ୍ଡା ।
ଅମାପତ ମାତେଙ୍ଗୀ କିଳିକିଳା ଶବଦେ ବ୍ରତି
ନାଟ ଡିମ୍ବୁର ସେ ଖେମଣ୍ଡା ଗୀତ ଗାନ୍ତି ।
ଭରହ ରସ କଳା ସେ ଅଷ୍ଟବକ୍ର ନାଟ
ବିକଟ ବାଡ଼ କଙ୍କାଳ ଅକଳିତ ସମୋଦ୍ର ପେଟ ।
ମୁଣ୍ଡ ମୋଡ଼ି ଧରି ଯେ କାମୋଡ଼ନ୍ତି ହିଆ
ଗିଳନ୍ତି ଗୋଡ଼ କାହାର ଲମ୍ବିଥାଇ ବାହା ।୨୬୦୦।
ଶରୀର ଯାକ ଗିଳିଣ ଦିଶୁଥାଇଁ ମୁଣ୍ଡ
ଗର୍ଭୁ ବାହାର ହୋଇ ଲମ୍ବୁଥାଇ ତୁଣ୍ଡ ।
ମଧ କଙ୍କାଳ ଖଣ୍ଡେ ଦନ୍ତେ ଥାଇ ଧରି
ମୁଣ୍ଡ ପେଟ କେ ଗୋଡ଼ ଦୁଇ ବାହାର କରି ।
ମୁଣ୍ଡ ମୋଡ଼ିଣ କେ କାଖେ ଚାପି
ରୋଧିର ବଦନ କେ ଅନ୍ଧାର ଘୋର ରୂପୀ ।
ହୋ ବୁଧଜନେ କ୍ଷଣେ କ୍ଷଣକେ ସେ ଶତେ ରୂପ
ଧରନ୍ତି ଯେବଣ ଦେବୀ ।
ମୁହିଁ ତାହା କେତେ ଲେଖନ କରିବି ।
ଅଭଏ କାତ୍ୟାୟେନୀ ସେ କହିଲେ ଯାହା ମୋତେ
ଅନ୍ତ ହୋଇବ କି ସେ ଲେଖନ କରନ୍ତେ ।
ଅପାର ସାଗର ସେ ଲେଖନ କଲେ ନ ସରଇ
ଶୁଣନ୍ତେ ଲକ୍ଷେ ଜନ୍ମର ପାତେକ ହରଇ ।
ଚଣ୍ଡିକା ଶାହାସ୍ର ଲଏ କର ବାବୁ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ଅଛି ସବୁ ।
ଧନ ସନ୍ତାନ ବର୍ଦ୍ଧିତ ଦିଅନ୍ତି ମହାମାଏ
ବଦୟନ୍ତି ସାରୋଳ ଦାସ କରନ୍ତି ଜଏ ଜଏ ।
ଆହୋ ପରୀକ୍ଷ ଯେବଣ ଭୁବନେ ପଢ଼ିବ ଏହି ଶାସ୍ତ୍ର ଗୋଟି
ଜରା ରୋଗ ନ ଲାଗିବ ଅମୃତ ହୋଇବ ବୃଷ୍ଟି ।

ଏଥୁ ଅନନ୍ତରେ ରକ୍ତବୀର୍ଯର କଥା
ତିନି ରାତ୍ର ତିନି ଦିବସ ଅନ୍ତେ ନୁହଇ ସମର କହନ୍ତା ।୨୬୧୦।
ଏହା ଶୁଣି ନୃପତି ପରୀକ୍ଷ ବୋଇଲା
ବଡ଼ ଦୁଲଭ ମୁନି ହେ ନାହିଁତ ଶୁଣିଲା ।
ବୋଇଲ ଯେ ମଷାଂସୁର ସନ୍ୟ କଳିତ ନ ପାରି
କେତେଟା ରକ୍ତବୀର୍ଯ ଗଣି ଲେଖିତ ନ ପାରି ।
ମୁନି ହେ କାହାକୁ ସେବା କରି ଉପୁଜଇ ରକ୍ତବୀର୍ଯ
ରୁଧିର ମନ୍ଦାକେ କିମ୍ପା ଉପୁଜଇ ଶତେ ଶତେ ଦନୁଜ ।
ଏହା ମୋତେ ସଞ୍ଚପି କହିବା ବ୍ୟାସ ଦେବଙ୍କର ଶିଷ
ମନ ଭ୍ରାନ୍ତି ଫିଟୁ ଶୁଣିଣ ହରିବଂଶ ।
ରାଜାଙ୍କର ବଚନେ ସେ ପରାଶରଙ୍କର ନାତି
ବ୍ୟାସଙ୍କୁ ଲଏ କଲେ ସେ ଶୁକ ମହାଯତି ।
ବ୍ୟାସଙ୍କର ପରସନେ କରି ସବୁ ହୋଏ ଦୃଶ
ଯେବଣ ମହାତମ କହିଲେ ଭୂତ ଭବିଷ ।
ଶୁକମୁନି କହିଲେ ସତ୍ୟଯୁଗର ଆଦି କଥା
ଶୁଣ ପରୀକ୍ଷ ବିଷ୍ଣୁ ପୁରାଣ ଆଦି ଯଥା ।
ସର୍ବକାଳେ ଦଇତେ ବିଷ୍ଣୁ ଭଏ କରି
ଈଶ୍ୱର ବ୍ରହ୍ମାଙ୍କୁ ଯାବତ କାଳେ ତପ କରି ।
ଅନେକ କାଳ ସେ ତପକଲାକ ପିତାଙ୍କୁ
ନବ ସହସ୍ର ବରଷ ଜପିଲା ପିତାଙ୍କୁ ।
ଭୋଳେ ପ୍ରସନ ହୋଇଲେ ବିରଞ୍ଚି
ବର ମାଗ ରକ୍ତବୀର୍ଯ ଯହିଁକି ମନ ବାଞ୍ଛି ।୨୬୨୦।
ରକ୍ତବୀର୍ଯ ବୋଇଲା ବିଷ୍ଣୁଭଏ ସିଦ୍ଧ
ବିଷ୍ଣୁର ଚକ୍ରରେ କେବେ ହେଁ ନୋହିବି ମୁଁ ବଧ
ବଜ୍ରରେ ନିର୍ଜିତ ହୋଇବ ମୋର କାଏ
ଦେବ ଶହସ୍ର ମାନଙ୍କରେ ଦେବ ନୋହିବି ମୁ କ୍ଷଏ ।
ଅଗ୍ନିରେ ନ ପୋଡ଼ିବ ଜଳରେ ନ ବୁଡ଼ିବ
ଦେବଙ୍କର ଶାପ୍ୟ ନ ପଡ଼ିବ ଭସ୍ମଇ ନୋହିବ ।
ତ୍ରୈଲୋକ୍ୟେ ତ୍ରିଜୀବୀ ହୋଇବ ମୋର ପିଣ୍ଡ
ଚନ୍ଦ୍ର ସୂର୍ଯ୍ୟ ଜିଣିମି ନ ପଡ଼ିବି କାଳଦଣ୍ଡ ।
ଆରେକ କଥାଏ ମାଗଇ ଦେବ ତୋତେ
କାଳେ ହେଁ ନ ମରିବି ମୁଁ ପୁରୁଷଙ୍କର ହାଥେ ।
ମୋହୋର ରୁଧିର ଯେବେ ପଡ଼ିବାକ କ୍ଷିତି
ମନ୍ଦାକେ ଶତେ ଗୋଟା ଦେବ ହୋଇବି ଉତପତି ।
ସ୍ୱାମୀ ମୋହର ରକ୍ତ ଦେବ ମୋତେ ହୋଇବାକ ବୀର୍ଯ
ଅଦରାଏ ମୋହୋର ଏକେ ଅନେକ ହୋଇବାକ ତେଜ ।
ସତ୍ୟ ମନାଇ ସେ ମାଗିଅଛି ଯାହା
ଭୋଳେ ବର ସେ ଦେଇ ଅଛନ୍ତି ପିତା ତାହା ।
ବ୍ରହ୍ମାଙ୍କୁ ସତ୍ୟ ମନାଇ ସେ ମାଗିଅଛି ପୂର୍ବେ
ସେ ବର ଅନ୍ୟସ୍ଥା କି ହୋଇବକି ଏବେ
ଶୁଣିଣ ସନ୍ତୋଷ ପରୀକ୍ଷ ମହାରାଜା
ଶୁକମୁନି ପାଦ ତଳେ କଲେକ ଅନେକ ପୂଜା ।୨୬୩୦।
ପରୀକ୍ଷେ ବୋଇଲେ ମୁନି ହେ ସାଧୁ ସାଧୁ ମହିମା
ଏହ୍ନେକ ନିରାକୁଳ ଅଟୁ ମହାତମା ।
ଏମନ୍ତେ ରକ୍ତବୀର୍ଯ ମାରୁ ତିନି ରାତି ତିନି ଦିବସ ଗଲା
ଅଷ୍ଟ ଉତ୍ତର ଶତେ ଶତେ ଜନ୍ମ ରକ୍ତବୀର୍ଯ ହୋଇଲା ।
ଦୃଗା ବୋଇଲେ ଶୁଣ ଗୋ କାତ୍ୟାୟନୀ
ଜଣେ ଜଣେ ମାଡ଼ି ବସ ରକ୍ତବୀର୍ଯ ହୋଉ ହାନି ।
ଡାକେଣୀ ମୂର୍ତ୍ତିଏ ଅଷ୍ଟଉତ୍ତର ଶତେକ ପିଚାଶୁଣୀ
ଏମାନେ ହେ ହୋଇଲେ ଅସୁରକୁ ବାହାନୀ ।
ଶୁଣ ହୋ ପରୀକ୍ଷ ଶୁକମୁନି ବୋଇଲା
ଦୃସହ ସମରେ ରକ୍ତବୀର୍ଯ ବଧ ହୋଇଲା ।
ରକ୍ତବୀର୍ଯ ବଧ ଯେ ପଢ଼ନ୍ତି ଶୁଣନ୍ତି
କିସ କରିବାକ ସେ ଯମର ଶକତି ।
ଅଶୀଲକ୍ଷ ଯୋଦ୍ଧା ଘେନି ସେ ଅସୁର ବୀରଘଣ୍ଟ
ନାରାୟଣୀ ଉପରକୁ ସେ ଧାଇଲା ପାପିଷ୍ଟ ।
ମାର ଲୋ ବୋଲି ଯେ ଡାକନ୍ତି ନାରାୟଣୀ ।
ଥାଠଯାକ ବେଢ଼ିଲେ ଯେ ଶ୍ରୋଣେହା ଯୂଥ ଜାଣି
ଏକ ଦଇତକେ ଶତେକ ପିଚାସୁଣୀ
ଅସ୍ତି ଚର୍ମ ମାଂଏସ ସମସ୍ତ ଆକ୍ରଷଣ କରି ।
ମେଖଳା ମହାଖଳା ଡାଙ୍କେଣୀ ଡାକେଶ୍ୱରୀ
ଧାଅ ଲୋ ଖାଅ ଲୋ ଅସୁର ବଳ ବେଢ଼ି ।୨୬୪୦।
ପାଶୁ ପରଶୁ କୋଠାର ଅସିପତ୍ର କାତି
ମାରିଣ ଅସୁରଙ୍କ ଶରୀର ବିକୋତି ।
ଧାତାର ବରେଣ ବଜ୍ର ତାହାଙ୍କର କାଏ
ଦେବୀଙ୍କର ଲଖ ଲାଗନ୍ତେ ହୋଇଲା ଲବଣ ମାଂସ ପ୍ରାଏ ।
ଅସୁର ମାରନ୍ତି ଯେ ଛେଲ ଚକ୍ର ଭୁଷଣ୍ଡି
ଦେବୀଙ୍କର ଶ୍ୟରୀରେ ଯେ ପଡ଼ି ହୋଅନ୍ତି ଖଣ୍ଡି ଖଣ୍ଡି ।
ଅମାପତ ଦାନବ ସେ ନ ଘୁଞ୍ଚନ୍ତି ରଣେ
ପୁଣି ପୁଣି ନାରାଚ ବିନ୍ଧନ୍ତି ଜଣେ ଜଣେ ।

ଜଣେ ପଡ଼ିଲେ ଦଶ ବିଂଶ ଉଠି
ମାରନ୍ତି ଗୁରୁଜ ଲାଙ୍କିଆ କୋନ୍ତ ଯାଠୀ
ଦେବୀମାନେ ଜାତ ଯେ ଶୂନ୍ୟ ଶବଦ ସେନ୍ ହା
ସେ କିମ୍ବା ଶହସ୍ର ଘାତକୁ ଯିବେ ଗଣନା ।
ଜାଉଁ ଜାଉଁ ଗିଳୁଅଛନ୍ତି ଅସୁରଙ୍କୁ
ଏମନ୍ତେ ହେ ରକ୍ତ ମାଂସ ନ ଅଣ୍ଟିଲା ତାହାଙ୍କୁ ।
ମେଦ ମେଦା ମାଏଁସ ଅଖାଦ ଯାର ଖାଦି
ଆଦି ଅନାଦି ସମାର୍ଗେ ସମସ୍ତ ପାରଇ ଯେ ବୋଧି ।
ଘୋର ରୂପ ବିକଟାଳ ଆକାଶକୁ ଦାଢ଼
ବେନି ପାଟି ଚାପନ୍ତେଣ ସମସ୍ତ ହୋଅଇ ଚୂଡ଼ ।
ଲହ ଲହ ଜିଭ ସିନ୍ଦୂରେଣ ମୁଖ ମଣ୍ଡି
ସମସ୍ତ ଯୁଦ୍ଧକୁ ସେ ଏକା ଦେବୀ ଚଣ୍ଡୀ ।୨୬୫୦।
ପିଚାଶୁଣୀ ବୃନ୍ଦ ଯେ ଉଠିଲେ ଗଳଗାଜି
ଭଏଣ ଦାନେବ ବଳ ପଳାଇଲେ ଭାଜି ।
ସନ୍ୟ ପଳାବନ୍ତେ ରହିଲେ ବୀରଘଣ୍ଟ
ଲକ୍ଷେକ ନାରାଯ ସେ ବିନ୍ଧିଲା ଦ୍ରପିଷ୍ଟ ।
ନାରାୟଣୀ ବୋଇଲେ ଶୁଣ ଗୋ ଭଦ୍ରକାଳୀ
ବୀରଘଣ୍ଟର ତୁଲେ ତୋହୋର ଏ ଯୁଦ୍ଧ ପାଳି ।
ଚାମଣ୍ଡା ଚାର୍ଚ୍ଚିକା ଅମ୍ବିକା ଉଗ୍ରତାରା
କଙ୍କାଳୀ ବେତାଳୀ ଆବର ଉଗ୍ରତାରା ।
ଏତେକ ଦେବୀ ଯେ ଭଦ୍ରକାଳୀର ତୁଲେ
କୃତାନ୍ତେକ ବଳକୁ ସେ ତୁରିତେ ବେଢ଼ିଲେ ।
ଯେସନକେ କଦଳୀ ବନ ଛେଦଇ କୃପାଣେ
କହୁ କହୁ ହାଣିଲେ ସେ ଦେବୀ ରକତ ଭୂଷଣେ ।
ସହସ୍ରେକ ଯୋଦ୍ଧା ତୁଲେ ବୀରଘଣ୍ଟ
ଭଦ୍ରକାଳୀର ତୁଲେ ଯୁଦ୍ଧ କରଇ ଦ୍ରପିଷ୍ଟ ।
ସହସ୍ରେକ ଦାନେବ ଲକ୍ଷେକ ଯେ ଶର ବିନ୍ଧି
କୋଟିଏ ନାରାଯେ ଭଦ୍ରକାଳୀ ତାହା ଛେଦି ।
ମୃତୁପିଣ୍ଡ ବାହାନେ ଯେ ଧାଇଁଲେ ଭଦ୍ରକାଳୀ
ଦତ୍ୟ ବୀରଘଣ୍ଟ ତୁଲେ ତାହା ପ୍ରହାର କଲେ ତୋଳି
ମହାମତ୍ତ ଉଟେ ଚଢ଼ିଥିଲା ବୀରଘଣ୍ଟି
ଭଦ୍ରକାଳୀର ପ୍ରହାରନ୍ତେ ପଡ଼ିଲାକ ନେଉଟି ।୨୬୬୦।
ଧାଡିକାରେ ଅଇଲା ସେ ଅସୁର ସାମରଥ
ଡେଙ୍ଗି ଉଠିଲା ସେ ଯାଇଁ ଲୋହଶର ରଥ
ରଥେ ବସି ପଞ୍ଚ ସହସ୍ର ନାରାଯ ମାରି ।
ସହସ୍ରେ ନାରାଯେ ତାହା ତ୍ରିପୁରା ନିବାରି ।
ଅସୁର ପ୍ରବଳ ଦେଖିଣ ଚାମଣ୍ଡା
ରୋଷେ ବୁଲାଇ ସେ ପିଟିଲାକ ଖଣ୍ଡା
ଏସନେକେ ଗଗନୁ ପଡ଼ଇ ବଜ୍ରତାଳ
ବୀରଘଣ୍ଟ ରଥ ସେ ହୋଇଲା ବେନି ଫାଳ
ରଥ ଭାଙ୍ଗତେ ସେ ହୋଇଲା ଭୂମିଗତି
ଚଉଷଠି ଯୋଗ୍ନି ସେ ଧାଇଁଲେ ତତ୍କ୍ଷଣାନ୍ତି
ବାମ ଭୁଜେ ଧଇଲେ ଦେବୀ ଯେ ତିପୁରା
ଡାହାଣ ଭୁଜେ ଆକ୍ରେଷି ଧଇଲେ ଉଗ୍ରତାରା ।
ଦ୍ଦଟ ବନ୍ଧ ଧଇଲା ଯେ ଦେବୀ ବାଶେଳୀ
ଖଣ୍ଡି ଖଣ୍ଡି କରି ବିଦାରିଲା ଭଦ୍ରକାଳୀ ।
ଦୁଇ ଭୁଜ ଉପାଡ଼ିଲେ ଦୁଇଚଣ୍ଡୀ
ମୁଣ୍ଡ ଚରଣ ଘେନି ଗଲେ ରହିଲେ ମାତ୍ର ଗଣ୍ଡି
ସେ ଗଣ୍ଡି ଫିଙ୍ଗି ଦେଲେ ଅସୁର ବଳ ଉପରେ
ଲକ୍ଷ କୋଟି ଅନ୍ତରେ ପଡ଼ିଲେ ଅସୁରେ ।
ବେନି ଚରଣ ବେନି ଭୁଜ ହୋଇଲା ବିପକ୍ଷ
ପିଟନ୍ତେ ସେ ଦାନବେ ପଡ଼ିଲେ ଲକ୍ଷ ଲକ୍ଷ ।୨୬୭୦।
ତଇଲୋକ୍ୟ ଜିଣିମାକୁ ଯେବଣ ବୀରଘଣ୍ଟ
ଚନ୍ଦ୍ର ଉପରେ ଚନ୍ଦ୍ର ବୋଲାଇ ଦ୍ରପିଷ୍ଟ ।
ଯେତେ ବଡ଼ ଦ୍ରପିଷ୍ଟ ପଡ଼ିଲାକ ରଣେ
ଭାଜିଲା ଅସୁର ବଳ ନ ରହନ୍ତି ଜଣେ ।
ଅସୁର ଭାଗନ୍ତେ ଧାଇଁଲେ ପିଚାଶୁଣୀ
ଗୋଡ଼ାଇ ଅସୁରନ୍ତ ସେ ଯାଉଛନ୍ତି ହାଣି ।
ଶ୍ରୋଣେହା ଦେବୀମାନେ ଗୋଡ଼ାଉଛନ୍ତି କତି
ମେଦ ମେଦା ମାଂସ ସମସ୍ତ ଭକ୍ଷି ଯାନ୍ତି ।
ନବ କୋଶ ପରିଯନ୍ତେ ପାଏଡ଼ା ପଡ଼ିଲା
ଛାମୁରେ ଏକ ଜଣେକ କେହି ନ ରହିଲା ।
ଦଶ ବିଂଶ ପଞ୍ଚାଶତ ଧରି ଗିଳନ୍ତି ଅବନୀଲେ
ମୃତ ପିଣ୍ଡ ଗୋଟାଏ ନ ପଡ଼ନ୍ତି ତଳେ ।
ରୋଧିର ମନ୍ଦାଏ ନ ପଡ଼ିଲା ପୃଥୀ
ପଞ୍ଚ ସେନାପତି ମୂଳେ ଏତେକ ହୋଇଲେ ବିନେଶ୍ୟତି ।
ପର୍ବତ ଉପରେ ଉଠିଲେ କାଳ ବିକାଳ ଦୂତେ
ପଳାଇ ପଶିଲେ ଯାଇ ମଷାଂସୁରର ଅଗ୍ରତେ ।
ଶୁଣ ଦେବ ସାବଧାନେ ଅସୁଳ କୁଳ ଶ୍ରେଷ୍ଟ
ସମର୍ଥ କରି ନ ଜାଣିଲେ ତୋହୋର ଦଳ ଥାଠ ।

ରକ୍ତବୀର୍ଯ କାନ୍ତିମାଳା ବିଡୁଲାକ୍ଷ ବୀରଘଣ୍ଟ କାଳଦଣ୍ଡ
ଚର୍ମ ମାଂସ ଅସ୍ତି ନ ରହିଲା ପିଣ୍ଡ ।୨୬୮୦।
ଏସନକ ବାରତା ସେ ଶୁଣିଣ ଅସୁର କୁଳ ରାଏ
ଜଗତୀରୁ ପଡ଼ିଲା ସେ ବଜ୍ରଘାତ ପ୍ରାଏ ।
ଟେକି ଧଇଲେ ସେ କାଳ ଦମନ
ମୁଖେ ଜଳ ସିଞ୍ଚ ସେ ବିଞ୍ଚନ୍ତି ପବନ ।
ସାଷମ ହୋଇକରି ମଷାଂସୁର ବସଇ
ସନ୍ଦେହ କାଳ ପ୍ରାଏ ନିଶ୍ୱାସ ଛାଡ଼ଇ ଘନ ଘନଇ ।
ଶ୍ୟରୀରେ ସିଞ୍ଚିଲେ ସେ ଶୀତଳ ଜଳ ପାଣି
ଆସ୍ତାନ ଉପରେ ସେ ବସାଇଲେ ଆଣି ।
ଆସ୍ତାନ ତଳେ ସେ ପୂରିତ ଗହଳ
ମୀରା ଅମୀରା ଜରା ଖାସ ମଲିକ ସକଳ ।
ଦୁଇ ଆଣ୍ଠୁ ପାଡ଼ି ଭୂମିରେ କର ହାଣି
ଆପଣାର ଲଲାଟେ ତାଡ଼ଇ ବେନି ପାଣି ।
ଉତପତ୍ତି ହୋଇଲେ ରାହୁର ଅଂଶ ଘେନି
କୁଳ ଗୋତ୍ର କ୍ଷେତ୍ର ପିତା କଶ୍ୟପ ମହାମୁନି ।
ଦକ୍ଷର ନନ୍ଦନୀ ସିଂଘିକା ଆଦିପାଟ
ଇନ୍ଦ୍ର ବିବାଦ କରି ସେ ହୋଇଲେ ଦ୍ରପିଷ୍ଟ ।
ପୁଣି ବିପକ୍ଷ ସେ ହୋଇଲେ ଚନ୍ଦ୍ର ସୂର୍ଯ
ଜମ୍ଭୁ ଦତ୍ୟ ବଧ କରି ମହା ଦାନେବ ରାଜ ।
ତେଣୁ କରି ଘେନି ଲୋଡୁ ଆମ୍ଭେ ଅମର ସ୍ଥାନ
ତହିଁକି ଏମାନ ହୋଇଁଛି ବ୍ରତମାନ ।୨୬୯୦।
ଅମର ପଦକୁ ଯେହ୍ନେ କରି ଇଚ୍ଛା
କାୟା କକଥନା କରି ଆମ୍ଭେ ମନ ବାଞ୍ଛା ।
ଅମର ବର ପାଇ ଆମ୍ଭେ ହୋଉ ବଡ଼ ଦୃଷ୍ଟ
ଅସୁର କୁଳକୁ ସେ କାଳ କୃତାନ୍ତକ ହୋଅଇ ସବୁକରି ନଷ୍ଟ ।
ଯମର କାଳ ଦଣ୍ଡେ ନାହିଁ ଆମ୍ଭର ମୃତୁ
ଏଡ଼େ ବଂଶ ବୁଡ଼ିଲା ନାରାୟଣରି ହେତୁ ।
ଅନେକ ଘୋର ତପ କଲି ଯେ ବ୍ରହ୍ମାଙ୍କୁ
ବିଷ୍ଣୁ ଚକ୍ରେ ବଧ୍ୟ ନୋହିବୁ ବର ମାଗିଲୁ ପିତାଙ୍କୁ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ ସହିତେ
କଳିକାଳ ଅନଳ ନ ଲାଗିବ ମୋତେ ।
ପ୍ରଳୟ କାଳରେ ମୁହିଁ ନୋହିବଇ ବଧ୍ୟ
ତ୍ରୈଲୋକ୍ୟରେ ମୁହିଁ ନୋହିବଇ ସାଧ୍ୟ ।
ଏଡ଼େ ବଡ଼ ତପ ମୋର ନିଷ୍ଫଳ ହୋଇଲା
ସଭାଜନଙ୍କର ମଧ୍ୟେ ମଷାଂସୁର କହିଲା ।
ଆହୋ ଅନ୍ଧେକ ମନ୍ତ୍ରୀ ଯେ ମଷାଂସୁରର ଅଛି
କର ଦୁଇ ଯୋଡ଼ି ସେ ରାଜାଙ୍କଇ ପୁଛି ।
ଏଡ଼େ ବଡ଼ ସମ୍ପଦ ତୋ ହୋଇ ହରାଇଁ ହାଦେ
ଦେବ ସମ୍ପଦ ତୋହର ହରାଇଲେ କୂଟ ଛନ୍ଦେ ।
ସ୍ତିରୀ କୂଟକୁ ଯେ ବିଶ୍ୱାସ କଲୁ ରାଜନ ।
କର୍ମେ ଅବଶ୍ୟ ଫଳିଲା କର୍ମର ଲେଖନ ।୨୭୦୦।

## ବୈଲୋଚନ ଚରିତ

ଆହୋ ବଇଲୋଚନ ନାମେ ଏକଇ ନୃପତି
ବଡ଼ାଇ ଦ୍ରପିଷ୍ଟ ରାଜା ତିନିପୁରେ ବିଖ୍ୟାତି ।
ଅନେକ ତପ ଯେ କଲା ପଦ୍ମଯୋନି
ଏକ ଲଏ ତପ କଲା ବରଷ ଶହସ୍ର ତିନି ।
ପ୍ରସନେ ବର ସେ ଯାଚଇ ଦେବବର
ବଇଲୋଚନ ବୋଇଲା ମୁଁ ହୋଇବି ଅମର
ନାଗଫାଶ କାଳଫାଶ ଜଳଫାଶ ତିନି
ଏଣେ ଅବଧ ହୋଅ ବୋଇଲେ ପଦ୍ମଯୋନି ।
ସୁଦ୍ରିସେନ ଚକ୍ର ଆବର ଭୂଷଣ୍ଡୀ
ନାନା ଶହସ୍ର କାଏ ନୋହିବ ମୋର ଖଣ୍ଡି ।
ବ୍ରହ୍ମଶର ନାରାୟଣ ଶର ପଶୁପତ୍ର ଶର
ଯେମାନେ ହେଁ ନଦହିବେ ଏ ମୋହର ଶ୍ୟରୀର ।
ଯମ ପବନ ହୋଉ କି ବ୍ରହ୍ମା ବିଷ୍ଣୁ ହୋଉ
ପୁରୁଷର ହାଥେ ମୋର କାଏ ବଧ ନୋହୁ ।
ଏଡ଼େ ବଡ଼ ଦୁରାପଦ ବର ମାଗିଲା ବଇଲୋଚନ
ତାହାର ଭଏ ସେ ପଳାଇଲେ ଦେବଲୋକମାନ ।
ଆକୁଳ ହୋଇ ସେ ପଶିଲେ ସିନ୍ଧୁ ଜଳେ
ବିଷ୍ଣୁଙ୍କୁ ଗୁହାରି କଲେ ସେ ପ୍ରାଣର ବିକଳେ ।
ଦେବଙ୍କର ବିକଳ ଯେ ଦେଖି ଦାମୋଦର
ସ୍ତିରୀ ରୂପେକ ସେ ହେଲେ ମାୟାଧର ।୨୭୧୦।
ରୂପେଣ ତୈଲୋକ୍ୟ ମୋହଇ ଯୁବତୀ
କାମ ବହିଲା ଅଦଭୁତ ମାଳତୀ ।
ନୀଳନ୍ଦି ନାମେ ବନେ ସେ ମାଳତୀ ରୂପଧରି
ବଇଲୋଚନ ଅଇଲା ମୃଗୟା ବେଣ୍ଟ କରି ।
କୁମ୍ଭ ମାସ ଶୁକଳ ପକ୍ଷ ତ୍ରୟୋଦଶୀ ଅର୍କବାର
ପୁଷ୍ୟା ନକ୍ଷତ୍ର ଉଭାରେ ଅଶ୍ଳେଷା ବେନି ପହର ।

କଉସ୍ତୁଭ ନାମେ କରଣ ଶୁଭ ନାମେଣ ଯୋଗ
ମାଳତୀକି ବଇଲୋଚନ ଭେଟିଲା ବନମାର୍ଗ ।
ଆହୋ ନାରାୟଣ ଯେ ଅଛି ସ୍ତିରୀ ରୂପ ଧରି
ପୁରୁଷ ହୋଇକରି କେ ଯିବାକ ଉବୁରି ।
ତ୍ରେଲୋକ୍ୟ ମୋହୋନୀ ସେ ମୋହୁଅଛି ମାଳତୀ
ବଇଲୋଚନକୁ ମୋହଫାଶ ଲାଗଇଲା ଝାଟି ।
କାକୁସ୍ତ ମତ ହୋଇଂ ସେ ବହୁତ ବିନଏ
ଦନ୍ତରେ ତିରଣ ଘେନି ସେ ପ୍ରଣପତ୍ୟ ହୋଇଲା ପାଏ ।
ଆହୋ ପରୀକ୍ଷ ଅନ୍ଧେକ ମନ୍ତ୍ରୀ ଯେ କହିଲା ଏହୁ କଥା
ତୁମ୍ଭଙ୍କୁ ଯେ ହୋଉଅଛି ଏସନକ ଅବସ୍ଥା ।
ଯୁବତୀ ମୋହେ ସେ ପଡ଼ିଲେ ଚଣ୍ଡ ମୁଣ୍ଡ ବେନି
ସବୁନ୍ତି ହିଁ ବଧିଲେ ସେ ମୋହଫାଶ ଘେନି ।
ସେ ଆପଣେ ମାରି ମରାଇଲା ସମସ୍ତ
ତୁହି ସେ ମହାରାଜା ବୁଝି ନ ପାରିଲୁ ଏସନେକ ବୃତ୍ତାନ୍ତ ।୨୭୨୦।
ଶମ୍ଭୁ ନିଶମ୍ଭୁ ଯେ ଏଡ଼େକ ଛତ୍ରୀ ପଣ
କାମ ଲୁବୁଧେ ହିରାଇଲେ ସେହୁ ପ୍ରାଣ ।
ଏହା ଶୁଣି କରି ସେ ମଏଷାଂସୁର ବୋଇଲା
ସେ ମାଳତୀ ବଇଲୋଚନ ପୁଣ କେମନ୍ତ ହୋଇଲା ।
ଅନ୍ଧେକ ମନ୍ତ୍ରୀ ଯେ କହିଲା ସମ୍ବାଦ
ଚାରି ଯୁଗେ ମନ୍ଦ ଏ ସ୍ତିରୀ ଲିଙ୍ଗଭେଦ ।
ଆହୋ ବଇଲୋଚନ ବିକଳ ଦେଖିଣ ମାଳତୀ
ବୋଇଲା ସତ୍ୟ କରି ପାଳିଲେ ହୋଇବି ତୋହୋର ଯୁବତୀ
ସତ୍ୟ କରି ବୋଇଲା ଏକ ତୁହି ସେ ମୋହୋର ଭାର୍ଯ୍ୟେ ।
ଆଉମାନଙ୍କୁ ସେ କଲି ପରିତେଜ୍ୟା ।
ଯେତେକ ଅବସ୍ତା ହୋଇଲା ବଇଲୋଚନ
କହିବାକୁ ସେ କଥା ନୋହିବ ବେଳ ମାନ ।
ମୁହିଁସେ କାଳେ ତାହାର ମନ୍ତ୍ରୀ ଅଟଇ
ମୋହୋର ଛାମୁରେ କଲା କନ୍ୟା ନେଇଁ
ଆହୋ ବଶ୍ୟ ଗଲି ମୁଁ ତାହାର ରୂପ ଦେଖି
ଜଗୁଜନ ମୋହନୀ ସେ ଶରଦ ଚନ୍ଦ୍ରମୁଖୀ ।
ଆହୋ ନବ ଦୀପ ସାଧ କଲା ଯେବଣ ମହାରଥା
ଛାଡ଼ିଲା ମହାପ୍ରଭୁ ସେ ନବଦୀପର ଚିନ୍ତା ।
ମୋତେ ସମର୍ପିଲା ସମସ୍ତ ରାଜ୍ୟ ଭାର
ମୁହିଁ ଯେ ପାଳିଥିଲି ଶଯଳ ସଂସାର ।୨୭୩୦।
ଅନେକ ପୀରତି ସେ ବଢ଼ିଲା ମାଳତୀ ରଙ୍ଗରସେ
ଦିବାରାତ୍ରେଣ ନ ଛାଡ଼ଇ ତାର ପାଶେ ।
ଏସନେକ ଭାବେ ସେ ବଢ଼ିଲା ପୀରତି
ସମଏକେ ମାଳତୀ ଯେ ହୋଇଲା ଗର୍ଭବତୀ ।
ଏକେଣ ସଉଭାଗୀ ଦୁଜେଣ ଗର୍ଭବାସୀ
ଅନେକ ଭଗତେ ବଇଲୋଚନ ମାଳତୀ ମନ ତୋଷି ।
ରାଜ୍ୟେଣ ଉଛବ କରାଇଲା ନରନାଥ
ବଡ଼ାଇ ସମ୍ପରେ ରଜା କରାଇଲା ସୀମନ୍ତ ।
ଜପ ହୋମ କର୍ମ ସେ ବନ୍ଦାପନା ବିଧି
ଆପାଦ ଅରଷ୍ଟି ଶ୍ୟାନ୍ତିକି ଅନେକ ପୂଜା ବିଧି ।
ଦେବାଦେବୀଙ୍କି ସେ ଶୀତଳ ବଳି ପୂଜା
ଶିବ ଆଳେ ଗୋ ଦୋହନ କରାଇଲା ରାଜା ।
ଏ ବିଧି ମାଳତୀ ହୋଇଲା ଗର୍ଭବାସୀ
ଅତି ଉଛବ ଆନନ୍ଦ ହୋଇଲା ନବ ମାସ ।
ରଷଭ ମାସ ଶୁକଳ ପକ୍ଷ ଏକାଦଶୀ
ମାଳତୀକି କୋଳେ ବସାଇଁ ବଇଲୋଚନ ଭାଷି ।
ପ୍ରୀତି ଭାବ ଉପୁଜାଇ ସେ ବୋଲଇ ମାଳତୀ
ମୁକୁହିଁ ବନ ଦୋହୋଳ ଦେବ ପ୍ରାଣପତି
ବଇଲୋଚନ ବୋଇଲା ତୋତେ କେମନ୍ତେ ଘେନି ଯିବି
ଦିନେକ ମୂର୍ଚ୍ଛି ଥାଅ ମୁଁ ବେଣ୍ଟ ପାରିଧିକି ଯିବି ।୨୭୪୦।
ମାଳତୀ ବୋଇଲା ଲୋ ଶୁଣ ସଘାତ
ତୋତେ ଛାଡ଼ିବାକୁ ଯେ ନ ବଳଇ ଚିତ୍ତ ।
ମାଳତୀ ବୋଇଲା ଯେବେ ଦେବ ଯିବୁ ବେଣ୍ଟ ପାରିଧି ବିନୋଦେ
ତୋହୋର ଆସିବା ଯାଏ ଅନ୍ନ ବେଞ୍ଜନ ନାହିଁ ହାଦେ ।
ଶୁଣ ହୋ ମଷାଂସୁର ସ୍ତିରୀଙ୍କର ଚରିତ୍ର
ପ୍ରୀତି ଉପୁଜାଇ ଏସନେକ ବିଶ୍ୱାସ ସଂଘାତ ।
ମରିବାର ଅର୍ଥେ ସେ ପାତିଅଛି ସେ ଏହେର୍ଣ୍ଣବ ଛନ୍ଦ
ଅବନ୍ଧନେ ବନ୍ଧନ ସେ ହୋଇଲା ପଶୁବଧ ।
ମାଳତୀ ବୋଇଲା ନାଥ ଯିବୁ ଯେବେ ଘୋରବନେ
ତୋହୋର ପ୍ରମାଦ ମୁଁ ଜାଣିମି କେସନେ ।
ବଇଲୋଚନ ବୋଇଲା ମୋତେ ବର ଦେଲା ଧାତା
ବ୍ରହ୍ମାଣ୍ଡ ଧାରଣା ମୁଁ ଅଟଇ ଜଗଜିତା ।
ଅଶ୍ରେ ଶସ୍ତ୍ରେ ନାହିଁ ମୋତେ ମୃତୁପାତ
କହିଲି ବିଶ୍ୱାସ କଥା ଶୁଣିଥାଅ ସଂଘାତ ।
ଯେବଣ କାଳେ ମୋତେ ବ୍ରହ୍ମା ଦେଲା ବର
ବୋଇଲା ଚାରି ଯୁଗେ ତୁ ହୋଇବୁ ଅମର ।

ଯମର କାଳଦଣ୍ଡେ ତୁ ନୋହିବୁ ବଧ୍ୟ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତୁ ଜିଣିମୁ ଯୁଧ୍ୟେ ।
ଅଗ୍ନିରେ ନ ପୋଡ଼ିବୁ ଖଡ଼ଗେ ନ ଛିଡ଼ିବୁ
ପ୍ରଳୟ କାଳେ ହିଁ ଅଗାଦ ଜଳେହେଁ ନ ବୁଡ଼ିବୁ ।୨୭୫୦।
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ପବନ ଆଦି କରି
ଜଳ ଲୋକ ନାଗଲୋକ ତୋତେ ନୋହିବେ ସରି ।
ଅକାଟ ଅଫୁଟ ହୋଇବ ତୋହୋର କାୟା
ଭୂତ ଭବିଷ ଗତ ଆଗତ ଜାଣିବୁ ସବୁ ମାୟା ।
ରାତ୍ରେହେଁ ନ ମରିବୁ ଦିବସେହେଁ ନ ମରିବୁ
ଘର ବାହାରେ ଆବର ନ ମରିବୁ ରେ ବାବୁ ।
ନ ମରିବୁ ବିଷ୍ଣୁ ଚକ୍ରେ ପୁରୁଷଙ୍କ ହସ୍ତେ
କିସ ସମାନ୍ୟ ସ୍ତିରୀ ଛାର ମୋତେ।
ବଇଲୋଚନ ବୋଇଲା ଶୁଣସି ସଂଘାତ
ପିଙ୍ଗଳ ରୋମେ ବ୍ରହ୍ମ ରୂପିଲା ମୋହୋର ମାଥ ।
ଦିବା ରାତ୍ରହିଁ ନୋହିବ ଘରହିଁ ନୋହିବ ବାହାରହିଁ ନୋହିବ
ସ୍ତିରୀ ହୋଇ ଯେବେ ଉପାଡ଼ି ପାରିବ ।
ମୋହୋର ଆତ୍ମା ମୁଁ କହିଲଇଁ ତୋତେ
ଯେହେର୍ଣେକ କରି ଧାତା ସଞ୍ଚିତ କଲା ମୋତେ ।
ଶୁଣି ସାନନ୍ଦ ହୋଇଲାକ ମାଳତୀ
ଜାଣିଲି ସଙ୍ଘାତ ଏବେ ଫିଟିଲା ମନ ଭ୍ରାନ୍ତି ।
ମୁଖେ ଚୁମ୍ବନ ଦେଇ ବାହାର ହୋଇଲା ରାଜା
ମାଳତୀ ବୋଇଲା ମନ ସୁଖେ ଏବେ ଯା ।
ଅଶ୍ୱେକ ଚଢ଼ିଣ ରାଜା କରେ କୃପାଣ
ଅସୀପତ୍ର କୋନ୍ତ ନାରାଯ ବଜ୍ରବାଣ ।୨୭୬୦।
ଆହୋ ମାୟା କଲା ସେ ନାରାୟଣ ମାଳତୀ
ବନ ଜୀବ ମାନନ୍ତ ସେ ନ ଦେଖିଲା ନୃପତି ।
ଏସନେକ କୂଟ କଲା ମାଳତୀ ନାରାୟଣୀ
ବଇଲୋଚନ ମଥାକୁ ସେ ପେଷିଲେ ଉକୁଣି ।
ସୁକୁମାର ଶ୍ୟରୀରେ ସେ ଦିଶନ୍ତେ ଉକୁଣି
ସହି ନପାରିଲା ସେ ବଇଲୋଚନ ନୃପମଣି ।
ଜୀବ ଲୋଡ଼ି ନ ପାଇଲା ସେ ଅନେକ ଦୂର ଭ୍ରମି
ମାଳତୀ ତହିଁକି ମନ ଟେକିଲା ରାଜ ସ୍ୱାମୀ ।
ସ୍ନାହାନ ଭୋଜନ ସେ ସାରିଲା ନବରଇ
ମାଳତୀ କତିରେ ବସିଲେ ଅନେକ ଚାଟୁ କହି ।
ମାଳତୀର ରଙ୍ଗ ରସ ସାରିଣ ନରପତି
ମଥାରେ ମୋହର କିସ ଖାଇଲା ମାଳତୀ ।
ମାଳତୀ ବୋଇଲା ଦେବ ବିଶ୍ରାମ କର ଦଣ୍ଡେ
ଉକୁଣି ଉତପାତ ହୋଇଲା ତବ ମୁଣ୍ଡେ ।
ଶ୍ରୀ ହସ୍ତେ ଘେନିଣ ହସ୍ତୀ ଦନ୍ତର ଚିରୁକୁଣି
କେଶ ବିଦାରି ସେ ମାରଇ ଉକୁଣି ।
ଘରକୁ ପଛକରି ସେ ବାହାରକୁ ଦୃଷ୍ଟି
ମହା ସୁଖ ପାଇଣ ସେ ପଡ଼ିଲା ରାଏ ଲୋଟି ।
ନଖ ପଟୁ ଦେଇଁ ନିରନ୍ତରେ କୃମି ମାରି ।୧।
ବେଳ ଅବସାନ ହୋଇଲା ପଞ୍ଚଦଶ ଘଡ଼ି ।୨୭୭୦।
ଏକୁ ଏକ ହୋଇଁ ସେ ପଡ଼ଇ ରାଏ ଖସି
ଓସଣାର ତଳେ ହୋଇଲାନି ପାଏ ଆସି ।
ନାଭି ଅର୍ଧ ଅଙ୍ଗ ହୋଇଲାନି ବାହାରକୁ
କଟି ଭାଗ ପାଦ ପଶିଅଛି ଭିତରକୁ ।
ମାଳତୀ ବୋଇଲା ନାଥ ହୋଇଲାନି ଗୋଧୂଳିର ବେଳ
ବଇଲୋଚନ ବୋଇଲା ମାର ନ କର ହେଳ ।
କୃମି ଲୋଡୁ ଲୋଡୁ ଲୋଡ଼ଇ ମୃତୁ ବାଳ
ଠାବ କଲା ମାଳତୀ ସେ କେଶ ପିଙ୍ଗଳ ।
ଉବୁରି ହୋଇ ସେ ପଡ଼ିଲା ଦାନବ ।୧।
ମଥା ମଧ୍ୟେ ମାଳତୀ ପିଙ୍ଗଳ ବାଳ କଲା ଠାବ ।
ଲଖ ଘେନି ବଇଲୋଚନର କେଶ ଆମୋରି
ନିଠାଇଁ ସଙ୍ଘାତୁଣୀ ମାର କିନା ସେହି ଠାଇଁ ।
ରହ ରହ ବୋଇଲେ ନୋହଇ ବାହାର
ରାତ୍ର ନୋହଇ ଦିବସ ନୋହଇ ସେହି ଠାର ।
ମାଳତୀ ବୋଇଲା ନାଥ ମାରୁଅଛିନି ମୁ ତୁକୁ
ବଇଲୋଚନ ବୋଇଲା ସଙ୍ଘାତ ବେଗେ ମାର ମୁକୁ ।
ବିଶ୍ୱ ରୂପ ବିକାଶିଲା ମାଳତୀ ଗଗନ ମଣ୍ଡଳେ
କରେ ଧଇଲା ସେ ମୃତୁ ପିଙ୍ଗଳ ବାଳେ ।୨୭୮୦।
ଅଚେତନ ହୋଇଁ ସେ ମଦିରା ରସ ଖାଇଁ
ମାଳତୀ ଉଭା ହୋଇଲା ପିଠିରେ ମୁଣ୍ଡରେ ପାଦ ଦେଇ ।
ହୁଙ୍କାର ଶବଦେ ସେ କମ୍ପିଲା ବ୍ରହ୍ମାଣ୍ଡ
ଚାପନ୍ତେ ପାତାଳେ ପଶିଲା ତାର ପିଣ୍ଡ ।
ବିଶ୍ୱ ରୂପ କରି ଉପାଡ଼ିଲା ମୃତୁ ଭେଦେ କେଶ
ଗର୍ଜନ ନାଦ କରି ସେ ପଡ଼ିଲା ରାକ୍ଷସ ।
ଶୁଣ ମଂଷାସୁର ଅନ୍ଧେକ ମନ୍ତ୍ରୀ କହିଲା
ବିଶ୍ୱାସଘାତକେ ବଇଲୋଚନ ହାଦେ ନାଶ ଗଲା ।

ଆହେ। ଏମନ୍ତ କରିଚି ବର ଦିଅନ୍ତି ହାଦେ ଦେବେ
ଦେଖିଲା କଥାଚି ଅଟଇ ମୋର ପୂର୍ବେ ।
ଦେବଙ୍କୁ ଦୁର୍ଲଭ ସେ ଶମ୍ଭୁ ନିଶମ୍ଭୁଙ୍କର ବର
ଏକ ହାଥ ଦିଅନ୍ତି ଯେବେ ଆରେକର ଶିର ।
ତେବେ ସେ ବଧ ହୋଇବେ ଶମ୍ଭୁ ନିଶମ୍ଭୁ
ଏ କଥା ଜାଣିବାକୁ ଅଛି କେ ରେ ବାବୁ ।
ବାବୁ ଦୁହିଁଙ୍କି ନୃତ୍ୟ କରାଇଲା କୂଟେ
ଶିରରେ ହସ୍ତ ଦେଇ ମରାଇଲା କପଟେ ।
ତଇଲୋକ୍ୟେ ସଖ୍ୟ ନାହିଁ ରକ୍ତବୀର୍ଯର ମହିମା
ତାହାକୁ ମୃତୁ କରିବାକୁ କେ ଅଛି ତ୍ରୈଲୋକ୍ୟରେ କ୍ଷେମା ।
ଆହେ। ଦାନେବ ବୋଲି ଜନ୍ମେ ଜନ୍ମେ ନ ଜାଣିମା କିଛି
ଜାତ ହୋଇଲେ ଅବଶ୍ୟ ମୃତୁ ଅଛି ।୨୭୯୦।
ରାତ୍ରେକ ହୋଇଲେ ଅବଶ୍ୟ ହୋଅଇ ଦିବସ
ସମ୍ପଦେକ ହୋଇଲେ ବିପଦ ହୋଅଇ ଅବଶ୍ୟ ।
ମନ୍ତ୍ରୀବର ବଚନ ସେ ମଷାଂସୁର ବୋଇଲା
ଏହେର୍ଣ୍ଣେକ ଉତପାତ ଜାଣନ୍ତା ନୋହିଲା ।
ସ୍ତିରୀ ମାତ୍ରରେ ସନ୍ୟ ମୋହୋର ଭକ୍ଷି
ରଖନ୍ତା ନୋହିଲା ମୁଁ ହୋଇଲି ନିରିମାଖି ।
ମଷାଂସୁର ବୋଇଲା କେ ପାର ମୋତେ କର ରକ୍ଷା
ସ୍ତିରୀ ମାରି ମୁ ରୁହାଇବି ମନବାଞ୍ଛା ।
ରାଜ୍ୟ ଭାର ଛାଡ଼ିଣ ମୁଁ ବାହୁଡ଼ିଣ ଯିବି
କେବଣ ସମୋଦ୍ରେ ଯାଇଁଣ ରହିବି ।
ରାଜାର ବିକଳ ଦେଖିଣ ଅସୁର ସେନା
ଯମଘଣ୍ଟ କାଳ ବିମୋଚନ କଙ୍କାସୁର ଧୂମଲୋଚନା ।
ଚଣ୍ଡସୁର ପ୍ରଚଣ୍ଡାସୁର ଲୋହାସୁର ଧଙ୍କ
ମତ୍ତ ହସ୍ତୀ ସହସ୍ର ଚରଣ ଉର୍ଦ୍ଧବଙ୍କ ।
ବଙ୍କାସୁର ଧଙ୍କାସୁର ଭାସ୍କର ଦଇତ
ବଜ୍ରାଙ୍ଗ କାଳାନଳ ଆବର ଗର୍ଜନ ବଜ୍ରଘାତ ।
ବାତାସୁର ମେଘାସୁର ବକାସୁର ମହୀଗିଳା
ଅଶ୍ୱ ମୁଖ ଗଜ ମୁଖ ଆବର ଅନର୍ଗଳା ।
ଶ୍ରୀକାଳ ମୁଖ ଗୃଧ ମୁଖ ଘୋର ମୁଖ ବିକଟା
ମଞ୍ଜାରୀ ମୁଖ ଶୋଣେହା ମୁଖ ପାଦ ରୋଟା ।୨୮୦୦।
ଆହେ। ପରୀକ୍ଷ ଯେହାଙ୍କୁ ବାହୁଡ଼ାଇ ଅଠାଇଶ ସେନାପତି
ଏହାନ୍ତ ଘେନି କାଳବିମୋଚନ ଉଠଇ ତତକ୍ଷଣାନ୍ତି ।
ଯୋଧ୍ୟାଏ ବୋଇଲେ ରାଜା ଆଜ୍ଞା ଦିଅ ଆମ୍ଭଙ୍କୁ
ଆମ୍ଭେ ଯାଉଛୁଁ ସେ ସ୍ତିରୀ ଆଣିବାକୁ ।
ମଷାଂସୁର ବୋଇଲା ମୋହୋର ପୋତୁ ବଳ ଗର୍ବ
ଯାହାକୁ ଯାଅ ବୋଲି ବୋଲିବି ସେ ନାଶ ଗଲା ସର୍ବ ।
ମୋହୋର ଆଜ୍ଞା ନାହିଁନା ତୁମ୍ଭଙ୍କୁ
ତୁମ୍ଭର ଇଚ୍ଛା ହୋଇଲେ ଘେନି ଆସ ତାହାକୁ ।
ରାଜାର ଆଜ୍ଞା ପାଇ ସେ ଅଠାଇଶ ସେନା
ଦେବ ଦାନବେ ସେ ନ ଯାନ୍ତି ଗଣନା ।
ଘୋର ନାଦ କରି ସେ ବାହ୍ୱାର ଦତ୍ୟ ବଳ
ପୂର୍ବେଣ ଯେସନେକେ ସମୋଦ୍ର ଉଛଳ ।
ଗଜ ଅଶ୍ୱ ଶାର୍ଦ୍ଦୋଳ ବାହନ ପିଠି
କରେଣ କୃପାଣ ଲାଙ୍କିଆ କୋନ୍ତ ଯାଠି ।
ଧର ଧର ମାର ମାର ଶୁଭୁଅଛି ବୋବି
ମହୀ ହେଳ ଘେନୁଅଛି କମ୍ପଇ ପୃଥିବୀ ।
ଅସୁରଙ୍କର ମଧ୍ୟେ ଅନର୍ଗଳା ମହାବୀରା
ଆଗୁଆଣି ଥାଠରେ ସହସ୍ର ଶିରା ।
ଦୁଇ ସହସ୍ର ଭୁଜ ଦୁଇ ସହସ୍ର ମାଥ
ଶ୍ୟରୀରେ ବିକାଶଇ କି ସୁବର୍ଣ୍ଣ ଚୂଟ ପର୍ବତ ।୨୮୧୦।
ଦୁଇ ସହସ୍ରେକ ଭୁକେ ଦୁଇ ସହସ୍ର ଧନୁ
ଗୁଣ ଘୋଷ ନାଦେ କମ୍ପଇ ଶତମନୁ ।
ମହୀସ୍ଥଳି କମ୍ପିଲା ଚଳନ୍ତେଣ ଥାଠ
ନବ ଯୋଜନ ପରିଯନ୍ତେ ନ ଦିଶଇ ବାଟ ।
ବଳବନ୍ତ ରାଉତେ ଯେ ଖେପନ୍ତି ଖୁରୁସାଣି
ରୋଷେ ଦତ୍ୟବଳ କୃପାଣନ୍ତ ଝୁଣି ।
ବୀରତୂର ଦାଉଣ୍ଡି ଢୋଲ ମହୁରୀ
କଡ଼ା ମର୍ଦ୍ଦଳ ସେ ବାଜନ୍ତି ଘୁଙ୍ଘୁଂରି ।
ଉଛ କେଶ ଖାଙ୍ଗର କେଶ ଜଟି
ମୁହୁରା ଦୁମୁରା ଆକାଶେଣ ଶିର ଘୋଟି ।
ମହା ମତୁଆଳ ସେ ମଦିରା ରସ ଖାଇ
ଅସୁରଙ୍କର ପ୍ରତଜ୍ଞା କହିତ କେ ପାରଇ ।
ତ୍ରଇଲୋକେ କମ୍ପୁଅଛି ଅସୁର ଘୋର ରଡ଼ି
କି ସେ ମେରୁଗିରି ପଡ଼ିଲାକ ଝଡ଼ି ।
ରତ୍ନଗିରି ପର୍ବତ ବେଢ଼ିଲେ ଅସୁର ସେନା
ମୃତୁପୁରେ ଚରଣ ସେ ଦିଗାଙ୍ଗେ ମୃଧୁନା ।
ଆହେ। ପରୀକ୍ଷ ପର୍ବତ ଉପରେ ଥାଇଁ ଦେଖିଲେ କାତ୍ତାୟନୀ
ମଦିରା ପାନ କରନ୍ତି ସେ ଚଉଷଠି ଯୋଗ୍ନୀ ଘେନି ।

ରତ୍ନଗିରି ପର୍ବତ ଶତେ ଯୋଜନ ସ୍ଥଳୀ
ତହିଁକି ଗବନ କରନ୍ତି ମହାବଳୀ ।୨୮୨୦।
ଅସୁରେ ଦେଖିଲେ ଯୋଗ୍ନୀବଳ ଥାଠ
ନିର୍ଭଏ ମାତାଙ୍ଗୀ ମତୋଆଳ ନାଟ ।
ସହସ୍ର ଶିରା ଦାନବ ସେ ପର୍ବତେ ଉଠିଲା ବେଗ
ପ୍ରତଜ୍ଞାବନ୍ତ ଦାନବ ସେ ମିଳିଲା ଯାଇ ନାରାୟଣୀ ଅଗ ।
ଆଗୋ କେବଣ ଦେଶରୁ ଅଇଲୁ ତୁ ଯେ ଅଦଭୁତେ ଯୁବତୀ
ବିଶ୍ୱାସ ଘାତକେ ମାଇଲୁ ସମସ୍ତ ସେନାପତି ।
କ୍ଷଣ କ୍ଷଣକ କହଇ ସେ ମୁଖେ ଉଚ୍ଚବାଚ ବାଣୀ
ତାହାଶୁଣି ହସିଲେ ସେ ଦେବୀ ନାରାୟଣୀ ।
ଆହୋ ସର୍ବଦା ପ୍ରାଣୀଙ୍କର ନୋହଇ ସମ୍ପଦ
ଯେ ବଢ଼ଇ ସେ ଛିଡ଼ଇ ପଡ଼ଇ ପରମାଦ ।
ଆରେ ତୁମ୍ଭଙ୍କୁ ଯେ ବର ଦେଲା ଯେବଣ ମହାତମା
କୋଟିଏ ବେଳ ପ୍ରାଣତ୍ୟାଜ ହୋଇଲା ନିଜେ ବ୍ରହ୍ମା ।
ଆରେ ଈଶ୍ୱରଙ୍କୁ ବୋଲି ଆଦି ଯୋଗବାସୀ
ସହସ୍ରେ ବାସ୍ତରି ବେଳ ଶ୍ୟରୀର ବିନାଶି ।
ପଦ୍ମେକ ବାର ଇନ୍ଦ୍ରହିଁ ନାଶ ଗଲା
ଦିଗପାଳ ମାନନ୍ତ କେହୁ ଗଣିଲା ।
କେଉଁ ବ୍ରହ୍ମା ବର ପାଇଁ ତୁମ୍ଭର ଏଡ଼େକ ଗରବ
ସେ ବ୍ରହ୍ମା ପୁଣି ଅବଶ୍ୟ ନାଶ ଯିବ ।
ନାରାୟଣୀ ବୋଇଲେ ନ ଜାଣି ଅପଖ୍ୟାତି ଦିଅ ତୁମ୍ଭେ ଅବା
ଏ ମୃତୁ ମଣ୍ଡଳେ ସମସ୍ତେ ହେଁ ମରିବା ।୨୮୩୦।
ତୁମ୍ଭେ କେମନ୍ତେ ତ୍ରିଜୀବୀ ପାଇଁଅଛ
ଯେ ତୁମ୍ଭଙ୍କୁ ବର ଦେଲା ସବୁ ତାହାର ମିଛ ।
ଅନେକ କାଳ ତୁମ୍ଭେ ଭୋଗ କରୁଥିଲ ପୃଥୀ
ଏତେ କାଳେ ମୃତୁ ହୋଇଲା ପ୍ରାପତି ।
ଯେତେ ଦର୍ପ କହ ତୁମ୍ଭର ସବୁ ଅକାରଣ
ସମସ୍ତ ଦାନେବ ତୁମ୍ଭେରେ ମରିବ ଏହିକ୍ଷଣ ।
ସାଧ ବଚନ ଶୁଣି ବୋଇଲା କାଳ ବିମୋଚନ
ଆମ୍ଭେ ଯେବେ ମରିବୁ ଲୋ ତୁମ୍ଭର କିସ ଜୀବନ ।
ସ୍ତିରୀ ଜୀବନ ତୁମ୍ଭେ ଅଟ ଲୋ ପାପିଷ୍ଟ
ସଦ ଅସଦବନ୍ତ ଯେ ମନ୍ଦ ବାଟ ।
ଆମ୍ଭେ ଯେବେ ଆଗ ଆସନ୍ତୁ ଜାଣନ୍ତୁ ବଡ଼ପଣ
ସ୍ତିରୀ ମାତ୍ର ଛାର ପାମେରୀ ବୋଲି ନ ମାରି ହୋଇଲୁ ରଣଭଣ ।
ନାରାୟଣୀ ବୋଇଲେ ଶୁଣ ହୋ ଦେବଅରି
ଆମ୍ଭେ ସେ ସ୍ତିରୀ ଉତ୍ତମି ନୋହୁ ରେ ପାମେରୀ ।
ଆରେ କାଳ ବିମୋଚନ ଆମ୍ଭେ ମାତା ରୂପ ହୋଉ
ରାତ୍ର କାଳେ ଆମ୍ଭେ ଭାରିଯା ରୂପେ ରତି ଦେଉ ।
ଅନ୍ତକାଳେ ହୋଉଁରେ କାଳିକା ମୂରତି
ଶେଷ କାଳେ ଦହିଜ କରୁ ଅନଳ ବହତୀ ।
ଆରେ ଆମ୍ଭେ ଜାତ ଅନ୍ତ ମଧ୍ୟରେ ଅବସାନି
ଜାତ ଅନ୍ତ କରାଉଁ ଅନାଦିର ଜାନି ।୨୮୪୦।
ଆରେ ରେତ କାଳେ ତୁମ୍ଭନ୍ତ କରୁ ଉତପତି
ଅନ୍ତକାଳେ ପୁଣ ଭକ୍ଷୁ ଯେ ସବୁନ୍ତି ।
ଅଜ୍ଞାନ ଦୁଷ୍ଟ ପଣେ ମର ତୁମ୍ଭେ ବାଇ
ଆମ୍ଭେ ପରମ ଯୋଗ୍ନୀ ଅଟୁ ମହାମାଇ ।
ଆହୋ କାଳ ବିମୋଚନ ଆମ୍ଭେ ଜାତ ଅନ୍ତ
ମଧ୍ୟରେ ଭୋଗ କରାଉ ତୁମ୍ଭନ୍ତ ।
ଆମ୍ଭର ଚରିତ୍ର ତୁମ୍ଭେ ରେ ନ ପାରିଲ ଜାଣି
ଏହିକ୍ଷଣି ତୁମ୍ଭନ୍ତ ଖାଇବେ ରେ କଳିକାଳ ନାରାଏଣୀ ।
ଏହାଶୁଣି କାଳବିମୋଚନ ଗଳ ଗାଜି
ନାରାୟଣୀ ଉପରକୁ ଧାଇଁଲା ମହାତେଜୀ ।
ଧାଆଁରେ ଦଇତେ ମାର ସ୍ତିରୀ ବଳ
ରାଜାର ଆଜ୍ଞାରେ ବ୍ରତ ଚିରକାଳ ।
ଆହୋ ପରୀକ୍ଷ ଆଜ୍ଞା ଦେଲା ଥାଠର ସେନାପତି
ଧାଇଁ ସେ ଦାନବ ବଳ କାଳାନଳ ମୃତ୍ତି ।
ପର୍ବତ ଉପରକୁ ସେ ଉଠିଗଲେ ଧାଇଁ
ଅମାପତ ବଳ ସନ୍ୟ କଳଣା ନ ଯାଇ ।
କାଳ ବିମୋଚନ ତୁଲେ ସାତ ମର୍ଭୁତ ରଥୀ
ଧୂମଲୋଚନ ତୁଲେ ପାଞ୍ଚ ସେନାପତି ।
ବାଘ୍ର ବାହାନେ ଯେ ପଞ୍ଚ ମର୍ଭୁତ ଯୋଧି
ଶକ୍ରାସୁର ଦାନବ ଅବିଛନେ ନାରାଯ ବିନ୍ଧି ।
ବକାସୁର ମୂଳେ ପଦ୍ମେକ ବୀର
ଧଙ୍ଗାସୁର ମୂଳେ ତିନି ପଦ୍ମ ଅସୁର
ପଦ୍ମେକ ଯୋଧ୍ୟାସେ ଭୋଗାସୁର ଘେନି
ବକ୍ରାସୁର ମୂଳେ ତିନି ପଦ୍ମ ସଇନି ।
ସାତ ଲକ୍ଷ ଯୋଧା ତୁଲେ ଉଦେକ ପଞ୍ଚ ।
ପ୍ରଚଣ୍ଡାସୁର ତୁଲେ ଯୋଧା ଶତେ ମେବକ୍ଷ ।
ତିନି ପଦ୍ମ ଯୋଧ୍ୟା ତୁଲେ ଅସୁର ଚାମର ଦଣ୍ଡା
କୋଦାଳ ଆୟୁଧ ବାମ କରେ ଡାହାଣ କରେ ଖଣ୍ଡା ।

ଚାଣ୍ଡାଳିଆ ତୁଳେ ସେ ନବ ମର୍ଭୁତ ଯୋଧି
ଲୁହାର ଧନୁ ଏକ କଟି ବନ୍ଧରେ ବାନ୍ଧି ।
ନବ ସାଗର ସନ୍ୟ ସେ ବଜ୍ରାଙ୍ଗ ଦତ୍ୟ ତୁଳେ
ସେନାଏ ଅନ୍ତକରି ନ ଯାନ୍ତି କହିଲେ ।
ଉତପାତ ବୋଲି ମକ୍ଷାଂସୁର ନାଟି
ତାହାର ତୁଳେ ପଞ୍ଚ ସାଗର ରଥୀ ।
ରାଜାର ମାତୁଳ ସମୋଦ୍ର ସୁର ବୋଲି
ମନ୍ଦର ପର୍ବତେ ସେ ତାହାକୁ ଠାବ କଲି ।
ତାହାର ତୁଳେ ତିନି ସାଗର ବୀର
ମଞ୍ଜୁରାସୁର ତୁଳେ ଦଶ ମର୍ଭୁତ ବୀର ।
ନବ ସାଗର ବୀରା ଗୋଧାସୁର ମୂଳେ
ଲକ୍ଷେ ସେନା ଘେନି ପର୍ବତ ବେଢ଼ିଲେ ।୨୮୬୦।
ଏକବିଂଶ ସାଗର ସେ ମୈଷା ସଇନି
ଜଳ ମନ୍ଥାନ ତୁଳେ ପଦ୍ମେକ ଯୋଧା ଘେନି ।
ଡେଙ୍ଗାସୁର ଦାନେବର ପଞ୍ଚ ପଦ୍ମ ସେନା
ବେଙ୍ଗାସୁର ତୁଳେ ନବ ସାଗର ସେନା ।
ପଞ୍ଚ ମର୍ଭୁତ ଲଙ୍କାସୁର ସଇନି
ଆକାଶରେ ଘୋଟିଲା ସେ ଟଳିଲା ମେଦନୀ ।
ପଞ୍ଚ ମର୍ଭୁତ ତୁଳେ ଯୋଧା କୋଡ଼ାସୁର
ଲୋହାର ଗଦା ଘେନି ସେ ଧାମଇ ମହାବୀର ।

## କାଳ ବିମୋଚନ ଆଦି ସେନାପତିଙ୍କର ବଧ

ଆହୋ ପରୀକ୍ଷ ମକ୍ଷାଂସୁର ଯୋଦ୍ଧାମାନେ ପଞ୍ଚ ସହସ୍ର ହାଥ
କୋଟି ପଦ୍ମ ସାଗର ସେ ଏହାଙ୍କର ରାଉତ ।
କାକମୁଖ ଘୋଡ଼ାମୁଖ ଗୋମୁଖ ଶଗଡ଼ା
ଗଜ ମୁଖ ଜମ୍ବୁକ ମୁଖ ଧୋକୋଡ଼ା ।
ସହସ୍ର ସେନା ଯେ ଏ ଥାଟରେ ସେନାପତି
ଏହାଙ୍କର ଉପରେ ବିମୋଚନ ଚକ୍ରବର୍ତ୍ତୀ ।
ହେ ବୁଧଜନେ କହିବାକୁ ମୋହୋର ଅଳପ ବୁଧି
ଲେଖନ୍ତେ ସରଇ କି ଅଗାଦ ପୟୋଧି ।
ମକୁଟ ଯୋଦ୍ଧାମାନେ ଅଛନ୍ତି ଯେମନ୍ତ
ପାଦାନ୍ତି ସନ୍ୟ ଲେଖିବାକୁ ନୋହଇଟି ଅନ୍ତ ।
ଆହୋ ପରୀକ୍ଷ ଦୃଗା ବିଜେ କରିଅଛନ୍ତି ରତ୍ନଗିରି
ହାବୋଡ଼େ ପଡ଼ିଲେ ସେ ସହସ୍ରାସୁର ଧାଡ଼ି ।୨୮୭୦।
ସନ୍ୟମାନେ ମାଡ଼ି ରହିଲେ ନ ପୁଣ ଯେତେ
ଲକ୍ଷ୍ମୀଭଦ୍ରା ନଦୀ କୂଳୁଂ ସରସ୍ୱତୀ ନଦୀ ପରିଯନ୍ତେ ।
ପଞ୍ଚଷଠି ଯୋଜନ ଗିରି ପଞ୍ଚଷଠି ସ୍ଥଳୀ
ପୂରିଲା ରାକ୍ଷସ ବଳ ଶବଦ କିଳି କିଳି ।
ଶୁଣ ହୋ ମହାରାଜା ଦୃଗାର ମହିମା
କହନ୍ତେ ନ ସରଇ ସେ ତାହାଙ୍କର ଗରିମା ।
ବୃନ୍ଦାଅର୍କମାନେ ତ୍ରାସିଲେ ରାକ୍ଷସ ବଳ ଦେଖି
ଭଏ ପଳାଇଲେ ସେ ଗଗନ ଉପେଖି ।
ମଳୟ ଗିରି ପର୍ବତ ଦକ୍ଷିଣ ଶୃଙ୍ଗ ଅନ୍ତେ
ତହିଁ ଯାଇ ବିଶ୍ରାମିଲେ ନାରାୟଣ ସହିତେ ।
ବ୍ରହ୍ମା ଛାମୁରେ କହନ୍ତି ଦେବମାନେ
ଏ ଥାଠ ପିତା ଯିବେଟି କେସନେ ।
ଆମ୍ଭେ ତେତିଶ କୋଟି ଦେବତାଏ ପଳାଇଲୁଁ ସ୍ୱର୍ଗ ଉପେଖି
ନ ପୁଣ ତ୍ରିପୁର ବୃନ୍ଦେ ତ୍ରାସନ୍ତି ତାହା ଦେଖି ।
ପିତା ବୋଇଲେ ହୋ ନ ଜାଣ ତୁମ୍ଭେ କିଛି
ଏକା ନିମିଷକେ ଦେବୀ ଯେହାଙ୍କୁ ପାରନ୍ତି ଭକ୍ଷି ।
ଦେବତାନ୍ତ ସମାର୍ଜନା କରନ୍ତି ଦେବରାଜ
ଅନେକ କଉତୁକ ଦେଖିବଟିକି ଆଜ ।
ଆହୋ ପରୀକ୍ଷ ଦେବତାଙ୍କୁ ପ୍ରବୋଧନା କଲେ ଯଥାବିଧି
ଶୁଣି ଭ୍ରାନ୍ତି ଛାଡ଼ିଲେ ସହସ୍ରାଧି ।୨୮୮୦।
ଏହା ଶୁଣି ବୋଇଲେ ପରୀକ୍ଷ ରାଜା
ଶୁକ ମୁନିଙ୍କ ପାଦ ତଳେ କଲେକ ଦିବ୍ୟପୂଜା ।
ଅସୁର ବଳ ସଇନି ପର୍ବତ ବେଢ଼ିଲା ଦେଖି
ଦୃଗା କେମନ୍ତ ବୁଧି କଲେ ଯେ ତହିଁକି ।
ଶୁଣ ହୋ ପରୀକ୍ଷ ରାଜା ବଦୟନ୍ତି ଶୁକ ମୁନି
ଅସୁର ବଳ ଦେଖି କୋପ କଲେ କାନ୍ତାଏନୀ ।
ଚଉଷଠି ଯୋଗ୍ନୀ ଆଗ ହୋଇଁ ଯାଏ
ପୁଣି ଅନେକ ଦେବୀ ଶରୀରୁ ଉପୁଯାଏ ।
ବ୍ରହ୍ମାଏଣୀ ମୂର୍ତ୍ତି ଯେ ଚାରିପଦ୍ମ ଚଣ୍ଡୀ
ଚଉଦ ଅଷ୍ଟଭୁଜେ ଚନ୍ଦନ ଏ ମଣ୍ଡି ।
ଅଜଗବ ଧନୁ ବ୍ରହ୍ମଶର ସର୍ବକରେ ବ୍ରହ୍ମ ଶକତି
ପଦ୍ମକ ଚଣ୍ଡୀ ଯେ ବ୍ରହ୍ମାଏଣୀ ମୂତି ।
କାଳାନ୍ତେକ ଗଦାରେ କାଳଦଣ୍ଡ ଧରି
ପରଶୁ କୋଠାର କୋନ୍ତ ନାରାଯ ଅସୀବାରି ।
ବିଜଏ ପରିମଳା ଯେ ମଡ଼ାବାହାନି
ଦିଗାଙ୍ଗ ମୂର୍ଧନା ଦେବୀ ଘୋଟିଲେ ଭବାନୀ ।

ଛପନ କୋଟି ଦେବୀ ନାରାୟଣୀ ମୂତି
ଚର୍ତୁଭୁଜରେ ଗାଣ୍ଡିମ ଧନୁକାତୀ ।
କଉମୋଦୀ ଗଦା ଯେ ନାରାୟଣୀ ଶସ୍ତ୍ର ଧାରୀ
ବିକଚ ନିରାକୁଳ ଯେ ବାହାନ ନାଗ ଅରି ।୨୮୯୦।
ଇନ୍ଦ୍ରାଏଣୀ ମୂତି ଯେ ଚଉଷଠି କୋଟି ଦେବୀ
ଅଷ୍ଟଭୁଜେ ଶହସ୍ରଧାରୀ ସଭିଏ ହାଦେ ସମ୍ଭବି ।
ଅଜଗବ ଧନୁ ଅଛଏ ତ୍ରୋଣ ବେନି
ମେଘା ଶର ନାଗଫାଶ କରେଛନ୍ତି ଘେନି ।
ବାହାନ ଗଜଶ୍ରେଷ୍ଠ ଆରୋହି ଐରାବତ
ମାତାଙ୍କ ଛାମୁରେ ସେ ହୋଇଲେ ଉପଗତ ।
ଚଉଦ କୋଟି ଦେବୀ ଉପୁଜିଲେ ଭୈରୋବୀ
ଏକ ପାଦ ଚର୍ତୁଭୁଜ ବିରାଜନ୍ତି ଦେବୀ ।
କୋଦଣ୍ଡ ନାମେ ଧନୁ ସେ ପଶୁପତ୍ର ଶୂଳଧାରୀ
ଶୁକଳାମ୍ୱରୀ ଶରୀର ରୁଦ୍ରାୟଣୀ ସହସ୍ର ଅସିବାରୀ ।
କପୋଳେ ତିନି ନୟନ ଶୁଦ୍ଧ ସ୍ଫଟିକର ପ୍ରାଏ
ଅଶୀଲକ୍ଷ ଫଣୀନାଗ ଅଖାଳ ମଏ ।
ଚନ୍ଦ୍ର ଚକୋର ଲୋଚନ ଶିରେଣ ଶୀତାଂଶୁ
ବାମକରେ ଡମ୍ବରୁ ଡାହାଣ କରେ କୋଠାର ପ୍ରଶୁ ।
ଭୂମି କମ୍ପିଲା ଡାକି ଡମ୍ବରୁ ହାଙ୍କି
ଧାଅଁରେ ମାରରେ ଖାଅରେ ଉଚ୍ଚସ୍ୱରେ ଡାକି ।
ବଇଲ ବାହାନେ ସେ ଶ୍ରୀକରେଣ ଶୂଳ
ଚନ୍ଦ୍ର କର୍ପୂର ବର୍ଣ୍ଣ ଅର୍ଦ୍ଧେକ ଧବଳ ।
ନବ କୋଟି ଚଣ୍ଡୀ ସେ ବରାହୀ ମୂରତି
କୋଦାଳ କୋଠାରେ କରେଣ ଖପରୁ କାତୀ ।୨୯୦୦।
ନବ ଜନ୍ମ ଦେବୀ କାଳାନ୍ତେକ ମୂର୍ତ୍ତି
ଶତେ ଶିର ବେନି ଶତଭୁଜ କାଏ ଗଗନ ଖେପି ।
କାଳାନଳ ଜାଣି ବିକାଶନ୍ତି ତେଜ
ରତ୍ନମଣି କୁଣ୍ଡଳ ଶିରେଣ ବିରାଜ ।
ପଞ୍ଚଶତ ମୂରତି ଯେ ଜଳ ଦେବତୀ
କରେଣ ଜଳଫାଶୀ ସେ ଅନର୍ଘ ମଣି ବିରାଜନ୍ତି ।
ଯେ ଥାଠ ସଙ୍ଗେ ଯେ ନବକାନ୍ତାନୀ
ମୁକତ କେଶ ଜିଭ ଲହ ଲହ ଭାବାନୀ ।
ପାଞ୍ଚ ମର୍ଭୁତ ଦେବୀ ଶ୍ରୋଣେହା ଅବତରି
ଏ ଥାଠେ ସେନାପତି ଦେବୀ କୋଠାରୀ ।
ଡାକେଣୀ ଦେବୀ ଯେ ନବକୋଟି ମୂତ୍ତି ଦୁଲଭି

ଏ ଥାଠେ ସେନାପତି ଦେବୀ ଭଇରୋବୀ ।
ପିତାଶୁଣୀ ଦେବୀ ପଞ୍ଚ ସାଗର।
ଏ ଥାଟେ ସେନାପତି ଦେବୀ ଉଗ୍ରତାରା ।
ତିନି ସାଗର ଦେବୀ କାଙ୍କଳୀ
ଏ ଥାଠେ ସେନାପତି ହୋଇଲେ ବାଶୋଳୀ ।
ସାତ ପଦ୍ମ ଦେବୀ ଯେ ଗଗନ ମେଖଳି
ସେ ଥାଠେ ସେନାପତି ମେଖଳା ଭଦ୍ରକାଳୀ ।
ନବ ମର୍ଭୁତ ଚଣ୍ଡୀ ମେଖଳା ମହାଖଳା
ଏଥକୁ ସେନାପତି ସେ ହୋଇଲା ହେଙ୍ଗୁଳା ।୨୯୧୦।
ନବ ସାଗର ଦେବୀ ଯେ ନାଗରୂପ କାଏ
ଏ ଥାଠେ ସେନାପତି ହୋଇଲେ ମହାମାଏ ।
ଆହୋ ପରୀକ୍ଷ ଶ୍ୱାନ ମୂତି ତିନି ସାଗର ରୂପୀ
ମଞ୍ଚେଣ ଶିର ଗଗନେ ଚରଣ କ୍ଷେପି ।
ଅତିଅନ୍ତ ମହା ବଇରାଗ ବରାହୀ ମୁଖ ଚଣ୍ଡୀ
ବିସ୍ତୀର୍ଣ୍ଣ ହସ୍ତୀମୁଖ ସିନ୍ଦୂରେଣ ମଣ୍ଡି
ମହାଘୋର ରୂପ ଏହାଙ୍କର ବଳ ତେଜ ଘେନି
ଏ ଥାଠେ ସେନାପତି ଜମ୍ବୁଶ୍ୱରୀ ହାଥୀ ବାହାନି ।
ଘୋର ରୂପ ବିକଟାଳି ସେ ମନୁଷ୍ୟର କାୟା
ଏ ଥାଠେ ସେନାପତି ସେ ହେଲା ଦେବୀ ଛାୟା ।
ପଦ୍ମେକ ଦେବୀ ଶୂକର ରୂପ ମୁଖୀ
ରୋମ ପିଙ୍ଗଳାକ୍ଷୀ ପୃଥୀ କ୍ଷଣ କ୍ଷଣକେ ଖେପି ।
ତିନି ପଦ୍ମ ଦେବୀ ବାଘ ବାହାନି
ଏ ଥାଠେ ସେନାପତି ଚାଚିକା ରୂପ ଖାନି ।
ଭାଲୁଙ୍କ ବଦନୀ ଚଣ୍ଡୀ ଯେ ପଦ୍ମେକ ଉତ୍ତମା
ଏ ଥାଠେ ସେନାପତି ବିକଳାରି ମହାକାମା ।
ଶାର୍ଦ୍ଦୋଳ ବାହାନୀ ଶତ କୋଟି କାଏ
ଏ ଥାଠେ ସେନାପତି ଗୋଲମା ମହାମାଏ ।
ନବ ପଦ୍ମ ଚଣ୍ଡୀ ରୂପ ଜମ୍ବୁକୀ
ଏ ଥାଠେ ସେନାପତି କୁମାରୀ ମାରିଙ୍କି ।୨୯୨୦।
ନବ ଲକ୍ଷ ଚଣ୍ଡୀ ଯେ ଅଭଏ ଡାକେଶ୍ୱରୀ
ବୀରାସୁରାନାମେ ଯେ ଚଣ୍ଡିକା ଆବୋରି ।
ନବ ଲକ୍ଷ ଚଣ୍ଡୀ ଯେ ବିରାଳ ମୁଖୀ
ଏ ଥାଠେ ରକ୍ଷା ସେ କରଇ ପିଙ୍ଗଳାକ୍ଷୀ ।
କାକ ମୁଖ ଯେ ଶତଲକ୍ଷ ଯେ ବଛା
ଏ ଥାଠେ ସେନାପତି ହୋଇଲେ ବିରଯା ।

ଅନନ୍ତା ବିଜୟା କାତେଶ୍ୱରୀ କେତୁକା
ଷୋଳହ ବହିଣୀ ଏ ଅଷ୍ଟ ବକ୍ର ବିମୁଖା ।
ଦକ୍ଷିଣୀ ଉତ୍ତରାଇ ମହା ବରାହୀ
ପାତାଳ ବାସେନୀ ଏ ଶଙ୍ଖଇ ବାଝାଂଇ ।
ଏହାଙ୍କର ମୂଳେ ଅନନ୍ତ କୋଟି ଦେବତୀ
ସଞ୍ଚପି କହିବାକୁ କିସ ମୋହୋର ମତି ।
ସେ ଦେବୀମାନଙ୍କ ଚରଣେ ଶିର ଲାଗଇ
ଶୂଦ୍ରମୁନି ସାରୋଳ ଦାସ ଅଭଏ ବର ମାଗଇ ।

ଶୁଣ ପରୀକ୍ଷ ରାଜା ବଦୟନ୍ତି ଶୁକ ବ୍ରହ୍ମା
ଏକେଣ ଅନେକ ଉତପତି ହୋଇଲାକ ନାମା ।
ଆକାଶ ମାର୍ଗ ଘୋଟିଲେ ଯହୁଁକାଏ
ଏକ ଶ୍ୱରୀର ଏତେକ ଦେବୀ ଉପୁଜାଏ ।
ଅସୁର ସଇନିକି ପ୍ରତିତୁଲ ଦେବୀ କଲେ
ରତ୍ନଗିରି ବିଝଂଗିରି ମହାଗିରି ଏ ଚାରି ପର୍ବତ ପୂରିଲେ ।୨୯୩୦।
ଲହ ଲହ ଜିଭ ଖାଂଖର କେଶ କାତୀ ଖପର
ଶ୍ରୀ ଦୃଗାର ମୁଖ ଚାହିଁ ସେ ମାଗନ୍ତି ଆହାର ।
ଅସୁର ସଇନିକି ଦେବୀ ଦେଖାଇଲେ ଦୃଷ୍ଟି
ବୋଇଲେ ଅସୁରବଳ ଭୁଞ୍ଜଲୋ ବାଣ୍ଟି ।
ମେଦ ମେଦା ମାଂସ ସମସ୍ତ ଏକ କରି ଖାଅ
ନ ଅଣ୍ଟଇ ବୋଲିନିକି ଅନାଅନି ହୁଅ ।
ଦୃଗା ବୋଇଲେ ଏଥିକି ଭ୍ରାନ୍ତି ନ କର ଭଗ୍ନୀ ।
ଆହୁରି ଅଛି ତୁମ୍ଭଙ୍କୁ ଅନେକ ସଇନି ।
ଅହୋ ପରୀକ୍ଷ ଏସନେକ ଆଜ୍ଞା ଦେଲେ ମହାମାଏ
ଧାଇଁଣ ପଡ଼ିଲେ ଦେବୀ ଶେଣା ପକ୍ଷୀ ପ୍ରାଏ ।
ପର୍ବତ ଉପରୁ ଡେଇଁ ପଡ଼ିଲେ ଚଉଷଠି ଯୋଗ୍ନୀ ।
ଦୃଗା ବୋଇଲେ ସେ ନାରାୟଣୀର ଅଙ୍ଗେ
କାଳ ବିମୋଚନ ଥାଠ ହୋଇଲା ତୋହୋର ଭାଗେ ।
ବାଶେଳୀର ଆଗେ ଯେ ବୋଇଲେ ଦେବୀ ଦୃଗେ
ସହସ୍ରାଶିରା ଯେ ହୋଇଲା ତୋହର ଭାଗେ ।
ସନିଧ୍ୟେଂ ଦୃଗେ ଯେ ହକାରି ଉଗ୍ରତାରା
ତୋହୋର ଭାଗେ ହୋଇଲାଟି ଭାସ୍କର ଅସୁରା ।
ତ୍ରିପୁରାକୁ ବୋଇଲେ ହକାରି ଭାବାନୀ
ପିଙ୍ଗଳାସୁର ଥାଠ ଭୁଞ୍ଜି ଲୋ ନିଜବଳ ଘେନି ।୨୯୪୦।
ଦୃଗେ ବୋଇଲେ ଅସୁର ଶତ ମୁଖ
ଯାଆଲୋ କୋଠାରୀ ତାହାର ବଳ ଭକ୍ଷ ।
ପୁଣ ରାଇଲେ ସନିଧେ ତ୍ରିପୁରା
ତୁ ଯାଇ ଭକ୍ଷ ଲୋ ଅସୁର ଜଏସୁରା ।
ସନିଧେ ରାଇଲେ ଇନ୍ଦ୍ରାଏଣୀ ମୂର୍ତ୍ତି
ଯମଘଣ୍ଟ ଥାଠ ଭୁଞ୍ଜିଲୋ ହୋଅସି ତ୍ରିପୁତି ।
ପୁଣ ଦୃଗା ରାଇଲେ ଯେ ମାରୁତୀ
ଜିଏ ସିଙ୍ଘ ଥାଠ ଲୋ ଆସ ତୁମ୍ଭେ ଭକ୍ଷି ।
ଭଇରୋବୀ କି ସେ ରାଇଲା ସନିଧେ
କପଳ ସିଙ୍ଘର ଥାଠ ଭୁଞ୍ଜଲୋ ତୁ ରେ ଯୁଧ୍ୟେ ।
ପୁଣ ସନିଧ୍ୟେ ରାଇଲେ ଭଗବତୀ
ତୁ ଯାଇ ଭକ୍ଷ ଯା କପାସୁର ସେନାପତି ।
ସନିଧେ ଦେବୀ ଯେ ରାଇଲେ ପିଙ୍ଗଳାକ୍ଷୀ
ମହୀଶିରା ଥାଠ ଲୋ ଆସ ତୁମ୍ଭେ ଭକ୍ଷି ।
ପୁଣ ସନିଧେ ରାଇଲେ ଚାଚିକା
ଯୋଜନ ବାହୁ ଥାଠ ଲୋ ଭକ୍ଷି ଆସ ଏକା ।
ଦୃଗା ବୋଇଲେ ଶୁଣ ଲୋ ମାରକମା
ବକାସୁର ଥାଠ ଲୋ ଭକ୍ଷ ଯାଇ ଅମା ।
ପୁଣ ଦୃଗା ବୋଇଲେ ତୁ ଶୁଣ ଲୋ କାଳିକା
ପର୍ବତାସୁର ଥାଠ ଭକ୍ଷ ଲୋ ଯାଇ ଏକା ।୨୯୫୦।
ଦୃଗା ବୋଲେ ଶୁଣ ଆଲୋ ପୋଲମା
ଜଟାସୁର ଥାଠ ଯାଇଁ ଭକ୍ଷ ଲୋ ଉତକର୍ମା ।
ଆହୋ ପରୀକ୍ଷ ରାଇ ଜଣେ ଜଣେକ ଯୋଗ୍ନୀ ଚଉଷଠି
ଦୃଗା ବୋଇଲେ ଲୋ ଏହାନ୍ତ ଭୁଞ୍ଜ ବାଣ୍ଟି ।
ଦୃଗା ବୋଇଲେ ଯହୁଁ ମୁଁ ଦେଖିଲି ଅସୁର ବଳ କଳକଣ୍ଠ
ତେଣୁ କରି ଜାତ ମୁଁ କଲଇ ଅଳପ ।
ସମୋଦ୍ର ପର୍ବତ ମିଶାଇ ପିଇଲେ ନ ଅଣ୍ଟଇ
ଏ କିସ ବଳ ଥାଠ ଅସୁର ବଳହିଁ ।
ଯେସନେକ ଦୃଗାର ବାକ୍ୟ ଶୁଣି
ବାହାନ ଆରୋହିଁ ସେ ଧାଇଁଲେ ନାରାୟଣୀ ।
ଦେବୀ ଦେଖି ସେ ଅସୁର ବଳ ସଇନି
ଧାଇଁଲେ ପ୍ରବଳେ ସେ ଲୁହାର ଗଦା ଘେନି ।
ପିଟିଲେ ଯୋଗ୍ନୀକି ଯେ ପାତିଲେ ବଜ୍ରଅଙ୍ଗ
ପଡ଼ି ଲୁହାର ଗଦା ସେ ହୋଉଛନ୍ତି ଭଙ୍ଗ ।
ଗଦା ଭଗ୍ନ ହୁଅନ୍ତେ ଅସୁରେ ଶୂନ୍ୟ ହସ୍ତ
ଧାଇଁଣେ କଙ୍କାଳୀ ସେ ଧରଇ ଦତ୍ୟଙ୍କର ହସ୍ତ ।

ମେଦ ମେଦା ମାଂସେ ବସାଇଲେ ହାଟ
ଧରିଣ ଗିଳନ୍ତି ସେ ସକଳ ଦ୍ରପିଷ୍ଟ ।
ନିରାପକ୍ଷ ଦାନବ ସେ ନ ଘୁଞ୍ଚନ୍ତି ରଣେ
ବୀରେକ ପଡ଼ିଲେ ଧାମନ୍ତି ଶତେ ଜଣେ ।୨୯୬୦।
ଯେସନେକେ ଗଗନୁ ପଡ଼ଇ ନୀରଧାର
ତେସନେକେ ଦାନବ ବିନ୍ଧୁଛନ୍ତି ଶର ।
ଲକ୍ଷେ ପଦ୍ମସାଗର ମାରନ୍ତି ବୀର ତୋଳି
ଗଗନେ ଅଦୃଶ୍ୟ ହୋଇଲେ ଅଂଶୁମାଳି ।
ଦେବୀଙ୍କର ସମର ଯେ ଦେବଙ୍କୁ ଅଗୋଚର
ଶରୀରେ ପଡ଼ି ଶରେ ହୋଉଛନ୍ତି ଚୂର ।
କୋନ୍ତ ମୁଦୁଗର ଛେଲ ଶାବେଳୀ
ଯୋଗ୍ନୀଙ୍କର ଉପରେ ପଡ଼ି ହୋଉଛନ୍ତି ଧୂଳି ।
ବିନ୍ଧନ୍ତେ ଜଳନ୍ତି ସେ ନାରାଯ ତୀକ୍ଷ ମୁନା
ଶରୀରେ ନ ବହଇ ନାରାଯ ବକ୍ରମୁନା ।
ସମର କରନ୍ତେ ଦେବ ଦାନେବ ଅଭଏ
ଅସୁର ବଳ ଦିଶଇ ସେ ଛାଗଳ ପଲ ପ୍ରାଏ ।
ଦରାଣ୍ଡି ଧରି ସେ ଆକାଶକୁ ଦିଅନ୍ତି ଫିଙ୍ଗି
ଫିଙ୍ଗି ତୁଣ୍ଡପାତି ସେ ଗିଳନ୍ତି ଅତି ବେଗି ।
ଏକ ଗିଳନ୍ତେ ଆରେକ ନିଅନ୍ତି ଉଛୁଡ଼ି
ପ୍ରଳୟ କାଳ ପ୍ରାଏକ ଶୁଭଇ ଘୋର ରଡ଼ି ।
ପୃଥୀରେ ପାଦେକ.ସେ ଆକାଶେଣ ଦୃଷ୍ଟି
ଭୂମିରେଣ ଲିହି ସେ ଦିଅନ୍ତି ବେନି ପାଟି ।
ଧଙ୍କାସୁର ଦାନବ ସେ ଅଶୀଲକ୍ଷ ଯୋଦ୍ଧା ତୁଲେ
କୋଠାରି ମୁଖେ ସେ ସମସ୍ତେ ପଡ଼ିଲେ ।୨୯୭୦।
ଅଶୀଲକ୍ଷ ଯୋଦ୍ଧା ଯେ ପଡ଼ିଲେ ଏକ ମୁଖେ
ଅଗ୍ନୁ ଝଳକନ୍ତି ସେ ନାରାଯ ମୁନ ତୀକ୍ଷେ ।
ପ୍ରଳୟାନ୍ତ ଅଗ୍ନି ତେଜ ପ୍ରାଏକ ପ୍ରଚଣ୍ଡ
ସେ ଶହସ୍ରମାନଙ୍କୁ ଦେବୀ ପାତିଥାନ୍ତି ତୁଣ୍ଡ ।
ଏଲମା ପୋଲମା ମାକରମା
ଦାନବ ଚାହିଁ ଏହାଙ୍କର ଗାରିମା ।
ଯୋଜନେକ ବିସ୍ତାରି ସେ ବେନିକର ଦରାଣ୍ଡି
ଯାନ୍ତି କେ ଅଶୀ ପଞ୍ଚାଶ ମାରି କଚାଡ଼ି ।
ଆହୋ ପରୀକ୍ଷା ପର୍ବତ ପ୍ରାଏକ ରାକ୍ଷସେ
ଶତେ ଦୁଇଶତ ଏକ ନିମିଷକେ ହୋଅନ୍ତି ଗ୍ରାସେ ।
ତୁଣ୍ଡେ ପୂରାଇଣ ଚାପନ୍ତି ବେନି ପାଟି
ହାଡ଼ ଚର୍ମ ମାଂସ ଯେ ସମସ୍ତ ଧୂଳି ଉଠି ।
ଶୁଣନ୍ତେ ଅନିର୍ଯାପ ଦେବୀଙ୍କର ଯୁଦ୍ଧ କଥା
ସଞ୍ଚପି କହିବାକୁ କେ ଅବା ଶକତା ।
ନାଚନ୍ତି ଧାମନ୍ତି ଗାବନ୍ତି କୁତୂହଳେ
ବିହଡ଼ ବିକଟାଳି ସେ ମଦିରା ପାନ ଭୋଳେ ।
ମହା କଉତୁକ ହୁଳହୁଳି ନାଦେ
ପୃଥିବୀ ପୂରିଲା ସେ ଡାକି ଡମ୍ବରୁ ଶବଦେ ।
ରଥ ଗଜ ଅଶ୍ୱ ସେ ବାଛିଣ ଧରି ଜଳନ୍ତି
ମୁଣ୍ଡ ଗିଳି ଗୋଡ଼ ବାହାର ହୋଇଥାନ୍ତି ।୨୯୮୦।
କଙ୍କାଳ ଖଣ୍ଡ ସେ ଚାପନ୍ତି ବିକଟ ଦାଢ଼
ଗୁଣ୍ଡା ହୋଇ ଉଠଇ ପର୍ବତ ମହାହାଡ଼ ।
ଚାପନ୍ତେ ଦାନ୍ତ ଯେ ବାଜଇ ରଟମଟ
ଉପରକୁ ଫିଙ୍ଗିଲେ ଅସୁରେ ହୁଅନ୍ତି ଛଟପଟ ।
ଅଶୀଲକ୍ଷ ଯୋଦ୍ଧା ଯେ ଧଙ୍କାସୁର ସଙ୍ଗେ ଥିଲା
ପହରକ ମଧ୍ୟେ ସେ ଥାଠଯାକ ନିମଞ୍ଜିଲା ।
ଏଲମା ପୋଲମା ମାକରମା କୋଠାରୀ
ଅଶୀଲକ୍ଷ ଯୋଦ୍ଧା ଯେ ଭକ୍ଷନ୍ତି ଜଣ ଚାରି ।
ସଇନି ପଡ଼ନ୍ତେ ସେ ଧଙ୍କାସୁର ଉଠି
କୋଠାରୀ ଉପରେ ଲକ୍ଷେକ ଭାର ଗଦା ନେଇ ପିଟି ।
ଲୋହାର ଗଦା ସେ ପାଡ଼ିଲା କୋଠାରୀ କାପାଳୀ
ପର୍ବତ ସମାନ୍ୟେ ଗଦା ସେ ହୋଇଗଲା ଧୂଳି ।
ଗଦା ଭାଙ୍ଗତେ ସେ ହୋଇଲେ ଶୂନ୍ୟ ହସ୍ତ
ତୁଣ୍ଡ ବିସ୍ତାରି ଧାଇଁଲା ସେ ଧଙ୍କାସୁର ଦଇତ ।
ଚାରି ଦେବୀଙ୍କି ଯେ ଆକ୍ରେଷି ଧଙ୍କାସୁର ଦଳି
ଧାଇଁ ଦେବୀମାନେ ଯେ ଆଗରେ ଓଗାଳି ।
ଦରାଣ୍ଡି ଅସୁର ପାଦ ଧଇଲେ ପୁଳମା ମାରକମା
ଦୁଇ ଫାଳ ହୋଇଲା ସେ ଅସୁର ବିକ୍ରମା ।
ପୁଳମା ମାରକମା ସେ ଗିଳିଲେ ଦୁଇ ଖଣ୍ଡ
ଅନେକ ଆନନ୍ଦ ହୋଇଲେ ସପତ ବ୍ରହ୍ମାଣ୍ଡ ।୨୯୯୦।
ଆକାଶେଣ ଥାଇଁ ସେ ଦେବ ବେଦପତି
ସେ କୋଠାରୀ କି ଧାତା ଯେ କରଇ ଅନେକ ସ୍ତୁତି ।
ଜୟତୁ କରବାଳ କୋଠାର କଟାକ୍ଷୀ
ପ୍ରସନେ ଅଭଏ ତୁ ମାତାଙ୍ଗୀ କାମାକ୍ଷୀ ।
ଭଗତ ଜନ ମଛଳୀ ଗୋ ମୋହୋନୀ କାମସେଣୀ
ବେନି କୁଳ ପାଳେଣୀ ସେ ଖେଳନ୍ତା ଦୁଲଣି ।

ଆପାଦ ଅବସ୍ଥା ଘୋର ଦୁଖ ଖଣ୍ଡି
ଅସୁରନ୍ତ ବଧ କରି ଦେବଙ୍କର ପୁର ମଣ୍ଡି ।
ଏ କଳିକାଳ ସାଗର ସଂସାର ମୋହୋନୀ
ପ୍ରସନ ମାହେଶ୍ୱରୀ ପାତେକ ଦୁଖ ନାଶିନୀ ।
ମାଗୋ ଯେବଣ ଧଙ୍କାସୁର ଗିଳିଲା ପୃଥିବୀ ଜନମାନ
ଏହାର ଭଏ ପଡ଼ିଲା ସମସ୍ତ ଯାଗ ଯଜ୍ଞ ।
ତପୀମାନନ୍ତ ଯେ ଜଳି ଅଦ୍ୟାପି
ଧଙ୍କାସୁର ନାଶନେ ସେ ତରିଲେ ସକଳ ତପୀ ।
ଆହୋ ବ୍ରହ୍ମା ଯାହାକୁ ଅନେକ ବିନୟ ଯୁଗତି
ମୁହିଁ ମନୁଷ୍ୟ ଜନ୍ମେ କିସ କରିବି ଭଗତି ।
ଶ୍ରୀ କୋଠାରୀ ଚରଣେ ଶରଣ ନିତ୍ୟେଂ
ବଦନ୍ତି ସାରୋଳ ଦାସ ତୁଳସୀ ହୃଦଗତେ ।
ଶୁଣ ପରୀକ୍ଷ ରାଜା କୋଠାରୀ ମହିମା
ମୋହୋନୀ ନାମ ଦେଲା ସେ ବେଦବ୍ରହ୍ମା ।୩୦୦୦।
ତପୀଙ୍କର ଆଶ୍ରମ କଲୁ ମାତ ରକ୍ଷା
ଭଗତି ଜନମାନଙ୍କୁ ପୂରାଇଲୁ ମନବାଞ୍ଛା ।
ଧଙ୍କାସୁର ଦଇତ ଯହୁଁ ହୋଇଲା ନିଧନ
ତପୀମାନେ କରନ୍ତି ଶାନ୍ତି ମନ୍ତ୍ର ଧ୍ୟାନ ।
ଧଙ୍କାସୁର ନିଧନ ଦେଖି ଅସୁର ତ୍ରିଅମ୍ବକା
ଅଷ୍ଟବକ୍ର ହୋଇ ଧାମଇ ଦନୁଜ ଏକା ।
ଆକାଶ ମଣ୍ଡଳେ ଲାଗୁଅଛି ତ୍ରିଅମ୍ବକାସୁର
ଯୋଜନେ ଯୋଜନେକ ବେନି ଭୁଜ ତାହାର ।
ମଞ୍ଚପୁରେ ପାଟି ସେ ଆକାଶେଣ ଓଷ୍ଟ
ଭୁବନ ମଧେ ଏକାକୀ ତ୍ରିଅମ୍ବକା ଘୋଟ ।
ତ୍ରିଅମ୍ବକା ମୂରତି ଦେଖି ଦେବୀ ଦୂର୍ଗେ
ଆଦିତ ଅଦୃଶ ହୋଇଅଛି ସ୍ୱର୍ଗେ ।
ଦୃଗା ବୋଇଲେ ମୋହୋର ଛାମୁରେ ଅସୁରର ଏଡ଼େକ ଗାରିମା
ତ୍ରିଅମ୍ବକାସୁରକୁ ଲୋ ମାର ମାରକମା ।
ଦୃଗାର ବଚନେ ମାରକମା ଉଠି
ବାମ କରେ ଶୂଳ ଯେ ଡାହାଣ କରେ ଯାଠୀ ।
ଧନୁ ଡ୍ରୋଣ ଧରି କୋଠାର ଧରି
ମହା ମଇଗଜ ପିଠିରେ ବିଜେ କରି ।
ଲହ ଲହ ଜିଭ ମୂରତି ଶାକମ୍ବରୀ
ତ୍ରିଅମ୍ବକା ସମାନେ ତାର କାୟା ବିସ୍ତାରି ।୩୦୧୦।
ବ୍ରହ୍ମାଣ୍ଡ ଘୋଟିଲା ସେ ଅଭଏ କାମରୂପୀ
ଅସୁର ଉପରେ ନେଇ ବଜ୍ରଶୂଳ ପିଟି ।
କୋଟିଏ ସୂର୍ଯ ତେଜ ଦେଖିଣ ଦୁରାପାତେ
ପଡ଼ନ୍ତେଣ ଶୂଳ ଯେ ଧଇଲେ ବାମହସ୍ତେ ।
ସେହି ଶୂଳ ବୁଲାଇଣ ଲେଉଟାଇ ପିଟି
ମାରକମାର ଯେ ପଡ଼ିଲା ଲଲାଟ ପାଟି ।
ପର୍ବତ କମ୍ପିଲେ ପଡ଼ନ୍ତେଣ ଶୂଳ
ଶତେ ଚୂର ହୋଇ ପଡ଼ିଲା କପୋଳ ।
ଶୂଳ ଭାଗନ୍ତେଣ ପ୍ରଶଂସଇ ଦ୍ରପିଷ୍ଟଇ
ବଜ୍ର ମୁଦୁଗରେଣ ଧରିଣ ନେଇ ପିଟଇ ।
ମୁଦୁଗର ପଡ଼ନ୍ତେଣ କମ୍ପିଲାକ ପୃଥୀ
ମାରକମା ଉପରେ ପଡ଼ି ଭାଙ୍ଗିଗଲା ତତକ୍ଷଣାନ୍ତି ।
ପୁଣ କପଟେକ ଧରି ତ୍ରିଅମ୍ବେକ
ଦେବୀର ଉପରେ ନେଇଁ ପ୍ରହାର କଲାକ
ଲୋହାର ପ୍ରାଏକ ଯେ ଦେବୀର ବଜ୍ର ସେନହା
ଅଭେଦ କପଟେ ପଡ଼ି ହୋଇଲାକ ଚୂନା ।
ପୁଣ ଅଗ୍ନିବାଣେକ ଘେନି ତ୍ରିଅମ୍ବେକାସୁର ପ୍ରଭାବି
ମାରକମା ଉପରେ ପଡ଼ି ସେ ଅଗ୍ନି ଗଲା ଲିବି ।
ଲୁହାର ବେନି ଗଦା କୋଟିୟେ ସହସ୍ର ଭାର
ତାହା ଘେନି ପିଟିଲା ଦତ୍ୟ ଦେବୀର ଉପର ।୩୦୨୦।
ଦୁଇ ଗଦା ପଡ଼ିଲା ସେ ପଞ୍ଜରା ବେନି କାଠି
ଗିରିବର ସମାନ୍ୟେଣ ଗଦା ଗୁଣ୍ଡମଏ ଉଠି ।
ପବନୁ ବେଗ ମାରଇ ଦେଖିଣ ନୁଆରି
ଗୁରୁଜ କୋନ୍ତ ଯାଠୀ ଘେନି ତ୍ରିଅମ୍ବକା ମାରି
ଆହୋ ପରୀକ୍ଷ ସମର କରନ୍ତେଣ ତ୍ରିପହର ରାତି
ଶହସ୍ର ବିଘାତେ ସେ ଅଗ୍ନି ଝଲକନ୍ତି ।
ଦିବସ ପ୍ରାଏ ସେ ଦିଶଇ ରଣଭୂମି
ନ ଭାଜନ୍ତି ଦାନବେ ସେ ବେଳେ ବେଳେ ଉତକର୍ମି ।
ଶତେ ବାର ପରିଯନ୍ତେ ପ୍ରହ୍ୱାର କଲା ତ୍ରିଅମ୍ବକା
ଅସୁର ବିଘାତ ଦେବୀ ମାରକମା ସହଇ ଏକା ।
ସହସ୍ର ସରନ୍ତେ ଯେ ହୋଇଲା ଶୂନ୍ୟହସ୍ତ
ପୋଡ଼ିଲା ପର୍ବତ ପ୍ରାଏ ଉଭା ହୋଇଅଛି ଦତ୍ୟ ।
ନବ ନିଶୀ କରବାଳେକ ବୁଲାଇ ମାରକମେ
ଅସୁର ବକ୍ଷସ୍ଥଳେ ସେ ହାଣିଲା ମହାତମେ ।
ଦେହରେ ନ ବାଜି ସେ ହାବୋଡ଼ି ଗଲା ବାଜି
ଉତ୍ୟାନ ସାହୀ ହୋଇଁ ଅସୁର ପଡ଼ିଲା ଗଳଗାଜି ।

ମାରକମା ମାଡ଼ି ବସିଲା ଅସୁର ବକ୍ଷସ୍ଥଳ
ଦୁଇ ପାଟି ଚାପିଲା ସେ ହୋଇଲା ବେନିଫାଳ ।
ଅସ୍ଥି ଚର୍ମ ମାଂସ ରୋଧିର ସହିତେ
ଅସୁର ଶରୀର ଗିଳିଲା ଗର୍ଭଗତେ ।୩୦୩୦।
ଆହୋ ପରୀକ୍ଷ ତ୍ରିଅମ୍ବକ ଜିଣି ସେ ତ୍ରିଅମ୍ବେକା ନାମ
ନେଉଟାଇଁ ଯୁଦ୍ଧେ ତାହାକୁ ଭକ୍ଷିଲେ ମାରକମ ।
ଅନେକ ହୁଲାସ ହୋଇଲା ବସୁମତୀ
ଅମୃତ ବୃଷ୍ଟି ପ୍ରାଏକ ହୋଇଲା ପୃଥୀ ।
ଶ୍ରୀ ମାରକମା ଚରଣେ ଶରଣ ଯୁଗତେ
ଶୂଦ୍ରମୁନି ସାରୋଳ ଦାସ ପ୍ରଣମିତ ନିତ୍ୟେ ।
ଆହୋ ତ୍ରିଅମ୍ବକାସୁର ଯେ ପଶିଲାକ ରଣେ
ଅନେକ ଉଷତ ଯେ ହୋଇଲେକ ଦେବ ଗଣେ ।
ପଞ୍ଚଦଶ କ୍ଷୌଣି ଯେ ତ୍ରିଅମ୍ବକା ଥାଠ
ଏକୁ ଏକ ଦାନବେ ମହା ବଳିଷ୍ଠ ।
ପାଶ ପ୍ରଶୁ ଗଦା ମୁଦୁଗର ଘେନି ଉଠି
ନାନା ଆୟୁଧ ଘେନି ମାରକମାହିଁ ନେଇ ପିଟି ।
ଦେଖିଲେ ଅସୁର ବଳ ସନ୍ୟ ମହାମାଏ
ତିନି କୋଶ ଯେତେ ମାଳ ରକ୍ତ ବର୍ଣ୍ଣ ପ୍ରାଏ ।
ବିନ୍ଧ୍ୟ ଗିରି ପ୍ରର୍ବତୁଂ ପଡ଼ିଲେ ଦେବୀ ଡେଇଁ
ସ୍ୱର୍ଗ ମଞ୍ଚ ତୁଣ୍ଡ କରିଣ ଅସୁରନ୍ତ ଖାଇଁ ।
ଯେସନେକ ଜଳ ପର୍ବତୁ ପଡ଼ଇ ଖସି
ନିଶ୍ୱାସକେ ସଂଘରିଲେ ଗର୍ଭେ ଥାନ୍ତି ପଶି ।
କେ ଶର ବିନ୍ଧନ୍ତି କେ ହାଣନ୍ତି ଧରି ଖଣ୍ଡା
କେ କୋନ୍ତେ ଯାଠୀ ମାରନ୍ତି ପ୍ରଚଣ୍ଡା ।୩୦୪୦।
ସମସ୍ତ ଶହସ୍ର ମାନ ଯେ ପଡୁଅଛି ଗର୍ଭେ
ତୁଣ୍ଡ ନ ପୂରଇ ଧାମନ୍ତି ମଉ ଗର୍ବେ ।
ଏକା ଘାତିକେ ପାରନ୍ତି ବେନି ବେନି ପାଟି
ଗର୍ଭରେ ପଶନ୍ତି ଅସୁର ହୋଇଣ ଲକ୍ଷ କୋଟି ।
ପଞ୍ଚଷଠି ସହସ୍ର ଯେ ତ୍ରିଅମ୍ବକାର ବଳ
ନବ ଘଡ଼ି ମଧ୍ୟେ ସେ ଭକ୍ଷିଲେ ସକଳ ।
ରକତ ଲିଡାକେହି ନାହିଁ ହାଡ଼ ଗୋଡ଼
ଅନ୍ତ ପୁଟି ଆଦି କରି ସେ ହୋଇଲେ ସର୍ବ ଗୁଣ୍ଡ ।
ଆହୋ ପରୀକ୍ଷ ଏସନକ ସମରି ଚଣ୍ଡୀ ଯୁଦ୍ଧ କଥା
ମନୁଷ୍ୟ ଜନ୍ମ ହୋଇ କେ ପାରିବ ଲେଖନ୍ତା ।
ବଜ୍ରାଙ୍ଗ ଦଇତ ଭାସ୍କର ଅସୁର
ଦୁହିଁଙ୍କରି ତୁଲେ ଯୋଦ୍ଧା ପନ୍ଦର ସାଗର ।
ରଣେ ଅଜଏ ହୋଇ ଅସୁରେ ଆସୁଛନ୍ତି ଭାଜି
ବଜ୍ରାଙ୍ଗ ଦଇତ ଭାସ୍କର ଦଇତ ଦୁହେଁ ରହିଲେ ଗଳଗାଜି ।
ଆହୋ ପରୀକ୍ଷ ଯେସନେକେ ସିନ୍ଧୁ ଆବୋରଇ କୂଳ
ସାତଗୋଟା ମନ୍ଦର କି ରହିଲ ଅଚଳ
ଦେଖିଲେକ ଦୃଗା ଅସୁର ରୂପ ଖଣ୍ଡି
କଣ୍ଠରୁ ଜାତ କଲେ ଜୟଚଣ୍ଡୀ ରାମଚଣ୍ଡୀ ।
ବିଝଂାସୁଣୀ କୁମାରୀ ମାରୁଚୀ ଅମରାଇ
ଚମାଇ ଚିନାଇ କାପଡ଼ାଇ ବିପୁଳାଇ ।୩୦୫୦।
ଏ ସାତ ଭଉଣୀକି ବୋଇଲେ ତୁମ୍ଭେ ଯାଅ
ବଜ୍ରାଙ୍ଗ ଭାସ୍କରର ଲୋ ସଇନି ବାଣ୍ଟି ଖାଅ ।
ଦୃଗାର ଆଜ୍ଞା ପାଇଣ ସେ ସାତଭଉଣୀ
ବ୍ରହ୍ମାଣ୍ଡ ଘୋଟିଲେ ସେ ଶ୍ରୋଣେହା ଯୂଥ ଜାଣି ।
ଶୁଣ ହୋ ପରୀକ୍ଷ ଜୟ ଚଣ୍ଡୀର ମହିମା
ଯୁବା ବୟସ ହେଲେ ଷାଠିଏ ବାମା ।
ମଦନ ଶର ବାଣେ ଚାହିଁଲେ ଅପାଙ୍ଗେ
କାମ ଶର ଭେଦିଲା ସେ ଦଇତଙ୍କ ସର୍ବାଙ୍ଗେ ।
ମଦନ ଶରେ ସଭିଏଁ ହୋଇଲେ ଅସାଷମ
ଶସ୍ତ୍ର ବାହାନ ତେଜି ହୋଇଲେ ମତିଭ୍ରମ ।
ମାତାଙ୍ଗୀ କାମାକ୍ଷୀ ମୋହନୀ କାମସେଣା
କାମଅର୍ଥେ ଦାନବେ ହୋଇଲେ ସର୍ବ ବଣା ।
ଶୃଙ୍ଗାର ଦେବା ବୋଲି ଆସୁଛନ୍ତି ଭଣ୍ଡି
ବିଂଝଗିରି ପର୍ବତେ ବସି ସୁଖେ ଥାନ୍ତି ଚଣ୍ଡୀ ।
ସଙ୍ଗାତ ସଙ୍ଗାତ ବୋଲି କେ ଭୁଜେ କରନ୍ତି କୋଳ
ନଖେଁ ବିଦାରି କେ ଚିରନ୍ତି ବେନି ତୋଳ ।
ଆକାଶକୁ ପକାଇ ଦେଇ ତଳେ ପାତନ୍ତି ତୁଣ୍ଡ ।
ଚାପନ୍ତେ ଧୂଳି ହୋଅଇ ଗୋଡ଼ ମୁଣ୍ଡ ।
ହସ୍ତ ଦେହେ ଦେଇ ମୁଖେ ଚୁମ୍ବନ୍ୟ ଦେଇଁ
ତୁଣ୍ଡ ଭିତରେଣ ଦେଇ ମୁଣ୍ଡ ତ ଚୋବାଇ ।୩୦୬୦।
ଆରେକ ଚଣ୍ଡୀ ଖଣ୍ଡେ ଛିଣ୍ଡାଇଣ ନେଲା
ତାହା ତହୁଁ ପୁଣ ଆନ ଖାଇଲା ।
ଏକ ସଙ୍ଗତେ ଆରେକ ତୁଣ୍ଡ ପାତଇ
ନାନା କଉତୁକ କରି ସେ ଭକ୍ଷିଲେ ଦୁରାନ୍ତକ ହିଁ ।
ଏକା କ୍ଷଣକେ ଲକ୍ଷେ ଜଣ ଖାଇ
ତଦାପି ନ ଅଣ୍ଟଇ କ୍ଷୁଧାରେ ବୋବୀ ଦେଇ ।

ଆହୋ ଅସୁର ବଳ ସଇନି ଯେ ବକ ଯୂଥ ପ୍ରାଏ
ଶେଣା ପକ୍ଷୀ ପ୍ରାଏ ହୋଇଲେ ମହା ମାଏ ।
ଆହୋ ଜଏଚଣ୍ଡୀ ବୋଲି ଯେବଣ ଚଣ୍ଡୀ ଗୋଟି
ସମୁଦ୍ର ସମାନ୍ୟେ ରୁଧିର ତହାକୁ ନ ଅଣ୍ଟି ।
ଯୁଦ୍ଧ ନ କଲା ନ ହାଣିଲା ଏକାଜଣେ
ସବୁଙ୍କୁହିଁ ପକାଇଲା ଯେ ମୋହୋନା ଶରବାଣେ ।
ଅସୁର ବଳ ସଇନିକି ସେ ଲଗାଇଲା ଭେଳକି
ଯୁଦ୍ଧ କରି ନ ପାରି ସେ ମୋହ ହେଲେ ଦେଖି ।
ଆହୋ ପରୀକ୍ଷ ରାଜା ବଦନ୍ତି ବରାହୀ ବଳାଇ
ତରାଇ, ଢରାଇ, ରଙ୍କାଇ, ଶାମଳାଇ ।
ଦୁଲଣାଇ, ଅମରାଇ ହରାଇ
କାମାଇ, ବିମଳାଇ ବଣାଇ ଚାଚିକାଇ ।
ଏମାନନ୍ତ ରାଇଁ ଆଜ୍ଞା ଦେଲେ ଦୃଗେ
ନାନା ଅବସ୍ଥା କରି ଲୋ ଦଇତଙ୍କୁ ଭକ୍ଷ ବେଗେ ।୩୦୭୦।
ଏସନେକ ଆଜ୍ଞା ଦେଲେ ଜଗତ ମାତା
ଆକାଶେ ଖେପିଲେ ସେ ହୋଇଲେ ଇତିଷ୍ଣାତା ।
ଖିନ ମୁଣ୍ଡା ବୋଲି ଉଗ୍ରତାରା ମାରକମା
ଅସୁର ବଳ ସଇନି କି ସେ ଏହାଙ୍କ ବଡ଼ିମା ।
ବିଜେ କର୍ଣ୍ଣକଟାରି କାତୀ ଖପର ଖଣ୍ଡା
ଭଇରୋବୀ ବାଶେଳୀ ଚାରି ଅମ୍ବିକା କୋଠାରୀ ଚାମଣ୍ଡା ।
ଅଠାଇଶି ଦାନବଙ୍କୁ ସେ ଅଠାଇଶି ଚଣ୍ଡୀ
ରୋଧିରେ ବିଲୋପନ ସିନ୍ଦୂରେ ମୁଖ ମଣ୍ଡି ।
କଡ଼ା ଚାଙ୍ଗୁ ଘୁମୁରା ମର୍ଦ୍ଦାଳ ଦାମଣ୍ଡି
ମଦିରା ରସପାନେ ମତୋଆଳ ଖେମଟା ନାଟ ଖଣ୍ଡି ।
ଲାଗିଲା ମହାରସ ମତାରଙ୍ଗ ମତୁଆଳ ନାଟ
ପଣ ପଣ ଘୁମୁରା ଯେ ମୃଦଙ୍ଗ ତରାଟ ।
ଆପାଦ ବିନାଶନୀ ସେ ମଦିରା ରସେ ଖେଡ଼ି
ବ୍ରହ୍ମାଣ୍ଡ ଉଛୁଳୁଛି ମୁଖରାବ ରଡ଼ି ।
ଅସୁରଙ୍କ ଶହସ୍ରକୁ ନ କରନ୍ତି ଭଏ
ବଜ୍ର ନିର୍ମିତ ସେ ବଜ୍ରଶିଳା ପ୍ରାଏ ।
ସମର କରନ୍ତେ ସେ ଯେ ବେନି ପହର ଖରା
ଲକ୍ଷେକ ଦାନବ ସେ ଜଳିଲା ଉଗ୍ରତାରା ।
ଯେକ ଘାନ୍ତିକେ କୋଳ କରନ୍ତି ଦରାଣ୍ଡି
ଯୋଜନେକ ବିସ୍ତରି ସେ ବେନି ଭୁଜ ଖଣ୍ଡି ।୩୦୮୦।
ଲକ୍ଷକ ବେନି ଲକ୍ଷେକ ତିନି ଲକ୍ଷ ଦାନବ
କାଳରୁଦ୍ର ପେଟକୁ ଏତେକେହେଁ ନୋହିଲା ଠାବ ।
ଏକାଥରକେ ଯେ ଏତେକ ଦତ୍ୟ ଦଳି
ଶ୍ୱରୀରେ ଦିଶନ୍ତି ରେଙ୍କୁ ପେଟ କଙ୍କାଳୀ ।୧
କ୍ରୋଟ ଅଗ୍ନି ଜାଣି କାଳାନୀଳ ବହତି
ପିଙ୍ଗଳ ଜ୍ୱାଳାବଳୀ ଯେ କାଳ ରୁଦ୍ର ଜ୍ୟୋତି ।
ମହା ଭଇରୋବ ଅଗ୍ନି ପ୍ରଳୟାନ୍ତ ଅଗ୍ନି
ବଶ୍ୟାନର ଅଗ୍ନି ଉରୁମିଳା ଦହନିଂ ।
ଯୋଗଅନଳ ଦାବାଅନଳ ବଶ୍ୟାନର ଅନଳ
ମହାଅନଳ ବାଡ଼ବାନଳ ଲୋହିତ ପିଙ୍ଗଳ ଜାଳି ।
ଏ ପଞ୍ଚବିଂଶ ଅଗ୍ନି ଯେ ଦେବୀଙ୍କ ପେଟଇ
ଏସନକ ଉଦର ଦେବୀଙ୍କର ଅଟଇ ।
ଜଏଚଣ୍ଡୀ ରାମଚଣ୍ଡୀ ମାରୁଚୀ ବହେଣୀ ତିନି
ଅସୁର କୁଳ ବନସ୍ତ ଏ ଦାବାଅନଳ ବହନି ଅଗ୍ନି ।
ଚାଚିକା ବାଶେଳୀ କୋଠାରୀ ପ୍ରଚଣ୍ଡ ନିଦାଘ ବନ
ଅନ୍ତକାଳେ ଦହିଲେ ସେ ଅସୁର ବନ ସନ୍ୟ ।
ସନ୍ୟବଳି ପଡ଼ନ୍ତେ ବକ୍ରାନ୍ତ ଭାଷ୍କର
କୋଟି କୋଟି ବଳ ତନୁ ଧରିଛନ୍ତି ବୀର ।
ପଞ୍ଚକୋଟି ନାରାଯ କଙ୍କପକ୍ଷୀ ତୀକ୍ଷମୁନା
ରାମଚଣ୍ଡୀ ଜଏଚଣ୍ଡୀ କି ସେ ବିନ୍ଧିଲେ ବହନା ।୩୦୯୦।
ରାମଚଣ୍ଡୀର ସମର ଯେ ବକ୍ରାଙ୍ଗ ଦତ୍ୟ ତୁଲେ
ଭାଷ୍କର ଦତ୍ୟର ତୁଲେ ଜଏଚଣ୍ଡୀ ଯୁଦ୍ଧ କଲେ ।
ଆଉ ଦେବୀମାନେ ଯେ ପଡୁଛନ୍ତି ମାଡ଼ି
ଅସୁର ବଳ ଧ୍ୱସିଂଲେ ଏ ଦୁହିଁକି ଛାଡ଼ି ।
ଅସୁର ବଳ ନାରାଯ ବିନ୍ଧନ୍ତି ଏକ ମୁଖ
ଅବିଛନ୍ନେ ବିନ୍ଧିଲେ ନ ଭେଦନ୍ତେ ଅତି ଦୁଖ ।
ରୋଧିର ବିଲୋପନ ସେ ଦେବୀଙ୍କର ଅଙ୍ଗେ
ଅବିଛନ୍ନେ କୁତୂହଳ ନାଚନ୍ତି ବିଷମ ରଣ ରଙ୍ଗେ ।
ଆହୋ ପରୀକ୍ଷ ବକ୍ରାଙ୍ଗ ଦତ୍ୟ ତୁଲେ ରାମଚଣ୍ଡୀର ସମର
ଦେବଙ୍କୁ ଦୁଲଭ ସେ ମାନବେ ଅଗୋଚର ।
ଏକାଦଶ ମୁଖ ଯେ କାଳାନଳ ଶକତି
ହୃଦେଣ ପଡ଼ି ଫୁଟି ପିଠି କତି ।
ଘାଏଣ ଦାନବ ଯେ ହୋଇ ଉତ୍ୟାନ ସାହୀ
ବକସ୍ଥଳେ ମାଡ଼ି ବସିଲେ ମହାମାଇ ।
ଆହୋ ପରୀକ୍ଷ ବ୍ରହ୍ମାଙ୍କୁ ନବ ସହସ୍ର ବରଷ ତପ କଲା
ଅଭଏ ବର ମାଗି କ୍ଷଣକେ ପାଇଲା ।

ବଜ୍ରାଙ୍ଗ ଦତ୍ୟକୁ ଯେ ବଜ୍ରାଙ୍ଗ ଶକତି
ଏଣେ ସେ ମୃତୁ ତାହାକୁ ହୋଇଲା ପ୍ରାପତି ।
ବଜ୍ରାଙ୍ଗ ପଡ଼ିବା ଦେଖି ବୃନ୍ଦାଅର୍କେ
ରାମଚଣ୍ଡୀର ଶିରେ ସୁବର୍ଣ୍ଣ ବୃଷ୍ଟିକଲେ ଦେବଲୋକେ ।୩୧୦୦।
ଦ୍ରଶନେ ପ୍ରସନ ନମୋ ଶାନ୍ତି ମୃତି
ରାମଚଣ୍ଡୀ ସୁମରନ୍ତେ ଦୃଗତି ମାୟା ଫିଟି ।
ନାମକୁ ସୁଲଭ ଯେ ଶୁଣିମାକୁ ସରସ
ଅନୁବ୍ରତେ କହୁଁ କହୁଁ ଖଣ୍ଡଇ ମହାକ୍ଲେଶ ।
ତାହାର ନାମ ସୁମରନ୍ତେ ଯମର ଅର୍ଗଳ ଭାଜଇ
ଦାରିଦ୍ର୍ୟ ଅବସ୍ଥା ନାଶ ଯାଇ ସନ୍ତାନ ଉପୁଜଇ ।
ଦୁସ୍ତର ତାରଣୀ ଶ୍ରୀ ରାମଚଣ୍ଡୀ କର ରକ୍ଷା
ହୃଦଗତେ ଚିନ୍ତ ନରେ ପୂରାଉ ମନବାଞ୍ଛା ।
ଯୋଗେ ଯୋଗେଶ୍ୱର ଜଗତଜନ ମାତାଏ
ସୁମରନ୍ତେ ମାତାଙ୍ଗୀ ସେ ଅଭଏ ବର ଦିଏ ।
ଶ୍ରୀ ରାମଚଣ୍ଡୀ ଚରିତ୍ର ପଢ଼ନ୍ତେ ଶୁଣନ୍ତେ
ବଦନ୍ତି ସାରୋଳ ଦାସ ତୁଳସା ଅଭଗତେ ।

ଶୁଣ ପରୀକ୍ଷ ବଦନ୍ତି ଶୁକ ବ୍ରହ୍ମା
କହିଲେ ନ ସରଇ ସେ ରାମଚଣ୍ଡୀର ମହିମା ।
ଜଏ ଚଣ୍ଡୀ ଭାସ୍କର ଦତ୍ୟର ସମର
ଶର ବରଷନ୍ତେ ଅସ୍ତ ଗଲା ଦିବାକର ।
ଗଦା ମୁଦୁଗର କୋନ୍ତ ଶାବେଳୀ ଖଡ଼ଗ ଯାଠୀ
ମାରନ୍ତେ ଜୟଚଣ୍ଡୀର ଶରୀର ନ ଫୁଟି ।
ଅସୁରେଶ୍ୱର ଯେ ମାଇଲା ଆଦ୍ରାବଳୀ
ଗୁଣ ଘୃଷ୍ଟ ଶବଦେ କମ୍ପିଲା ମହୀସ୍ଥଳୀ ।୩୧୧୦।
ଲୋହାର ବେନି ଗଦା ଘେନି ଭାସ୍କର ଅସୁର
ମଉଗଜ ପ୍ରାଏକ ଧାଇଁଲା ଦାନେବ ମହାବୀର
ବେନି ମୁଦୁଗର ଘେନି ଭାସ୍କର ଦତ୍ୟ ହସ୍ତେ
ଧାଇଁଣ ଆକ୍ରେଷି ପିଟିଲା ଜଏଚଣ୍ଡୀକି ଦଇତେ ।
ଗଦା ପଡ଼ନ୍ତେ ସେ ଦେଖିଲା କାନ୍ତାନୀ
ପିଟିଲେ ଦେବୀ ମୁଦୁଗରେକ ଘେନି ।
ଚାରି ଗଦା ହୁଅନ୍ତେ ପରିତାଳ
ଝଣ ଝଣନ୍ତ ହୋଇ ଉଠିଲାକ କାଳାନଳ ।
ପ୍ରଳୟାନ୍ତ ଅଗ୍ନି ପ୍ରାଏକ ହୋଇ ବିକାଶିଲାକ ଜୋତି
ବ୍ରହ୍ମାଣ୍ଡ ଝଳକଇ ସେ ହୁତାଶନ ବହତୀ ।

ଭାସ୍କର ଦଇତ ଜଏଚଣ୍ଡୀର ସମରେ
ଯାନ ବାହାନ ଆରୋହି ସେ ଦେଖନ୍ତି ଦେବାସୁରେ ।
ବେନି ପରିତାଳ ସେ ବେନି ଗଦା ଭାଜଇ
ଖଡ଼ଗ ଫଳା ଘେନି ଭାସ୍କର ଦଇତ ଗଳଗାଜଇ ।
ଗଗନ ଘୋଟିଲା ସେ ଅସୁର କାମରୂପୀ
ମଞ୍ଚପୁରେ ଚରଣ ଆକାଶେଣ ଶିର ବ୍ୟାପୀ ।
ଅସୁର ବ୍ୟାପିଲା ସେ ମହାକାଏ ଦେଖି
ଦେବତାୟେ ପୁଷ୍ୟ ବିମାନ ଦେଲେ ଜଏଚଣ୍ଡୀ କି ।
ହାର ରତ୍ନ କୁଣ୍ଡଳ ଅନଗ୍ରହ ମଣି
ଅନେକ ରତ୍ନ ଅଳଙ୍କାର ଯେ ମାତେଳି ଦେଲା ଆଣି ।୩୧୨୦।
ମାତେଳି ବୋଇଲା ମାତ ଗୋ ଉଧର ଦେବତାଙ୍କୁ
ଭାସ୍କର ଭଏ ଦେବେ ନ ପଶନ୍ତି ଅକାଶକୁ ।
ଏ ହାଦେ ତପ କଲା ଭାସ୍କର ନାମ ତୀର୍ଥେ
ଲୋହଚୂର୍ଣ୍ଣ ଭକ୍ଷିଲା ପଞ୍ଚଦଶ ସହସ୍ର ବରଷ ପରିଯନ୍ତେ ।
ପହରକ ପରିଯନ୍ତେ ଶରୀର ମାଂସ କାଟଇ
ରକତ ମାଏଂସ ଅଗ୍ନିରେ ଭରି ବାଣ୍ଟଇ ।
ଶରୀରୁ ମାଂସ ମାନ କାଟଇ ସର୍ବକାଳେ
ଆଦିତ୍ୟର ମାୟାରେ ସେ କଉଁଳଇ ବେଳ ଉଦେ ବେଳେ ।
ଏହି ମତେ ପଞ୍ଚଦଶ ସହସ୍ର ବରଷ ପରିଯନ୍ତେ କାଟି ଦିଅଇ ଆହୁତି
ଅବିଶ୍ରାମ କରି ପୁଣ ଦିଅଇ ଆହୁତି ଦିବା ରାତ୍ରି ।
ଆହାର ମୈଥୁନ ନିଦ୍ରା ତିନିହିଁକି କଲେ ତେଜ୍ୟା
ନିର୍ଧୁମ ଅଗ୍ନି ସେ କରଇ ଶେଯ୍ୟା ।
ଦୁରାପଦ କଷ୍ଟୋର ତପ ଦେଖିଣ ଦିବାକର
ଉତରାକୁର କୂଳରୁ ଦେବ ହୋଇଲେ ବାହାର ।
ମକର ମାସ ଶୁକଳ ପକ୍ଷ ପଉର୍ଣ୍ଣମୀ ଅର୍କବାର
ମଘା ନକ୍ଷେତ୍ର ଅଟଇ ସେ ଦିନର ।
ତତୁଲ୍ୟ ନାମେ କରଣ ଆୟୁଷ ନାମେ ଯୋଗ
ବିରଞ୍ଚ ନାରାୟଣ ସେ କଲେ ଅନୁରାଗ ।
ଆପଣାର ପଦ୍ମ କରେ ଅମୃତ ବୃଷ୍ଟି
ନବାଙ୍ଗ ସହସ୍ର ବଳ ଘେନିଣ ସେ ଭାସ୍କର ଦତ୍ୟ ଉଠି ।୩୧୩୦।
ମାତଳି କହଇ ଶୁଣ ଗୋ ଜଏଚଣ୍ଡୀ ମାତା
ଭାସ୍କର ଦତ୍ୟର ଆଦି ଜନ୍ମ କଥା ।
ପ୍ରସନ ହୋଇଣ ବୋଲଇ ଭାସ୍କର
ଯେତେ କାମାର୍ଥ କଲୁ ଆଗତ ଏବେ ବର ।
ଦନୁଜ ବୋଇଲେ ଦେବ ନାମ ଯେ ମୋହୋର

ଭାସ୍କର ନାମ ଯେ ହୋଇବ କରତାର ।
ଆଦିତ ବୋଇଲେ ରେ ତୋତେ ଦେବି ନାମ
ଅସୁର ଚାଣ୍ଡାଳ ହୋଇଁରେ ମାଗିଲୁଁ ଉତକର୍ମ ।
ସ୍ୱାମୀ ତୁ ଅଟୁ ଯେ ତ୍ରୈଲୋକର ଜଗଜିତା
ମୋତେହେଁ ତ୍ରୈଲୋକ୍ୟେ କେହି ନୋହିବେ ଜିଣନ୍ତା ।
ରାତ୍ରେହେଁ ନ ମରିବି ଦିବସହେଁ ନ ମରିବି
ପୁରୁଷ ହସ୍ତେ ମୁଁ ବଧ ଯେ ନୋହିବି ।
ବଜ୍ରେ ନିର୍ମିତ ହୋଇବ ମୋର କାଏ
ସମରେ ସମାନ ମୋତେ ନୋହିବ ଦେବତାଏ ।
ଯେତେ କାଳ ପରିଯନ୍ତେ ତୁ ବ୍ରତିଥାଉ
ତେତେକାଳ ପରିଯନ୍ତେ ଦେହ ମୋର ନ ଯାଉ ।
ଆଦିତ୍ୟ ବୋଇଲା ବର ମାଗ ଯା ହେଉ ଅସ୍ତୁ
ଯାହା ମାଗିଲୁରେ ସେ କଥା ହେଉ ତତୁ ।
ମାତେଳି ବୋଇଲା ମାତ ଗୋ ବର ମାଗତେ ଅସ୍ତଗଲା
ସଞ୍ଚାର ବଲ୍ଲଭ ନିଜ ପୁରେ ଚଳିଗଲା ।୩୧୪୦।
ବରପାଇ ଦାନବ ଯେ ଚଳଇ ନିଜ ପୁରେ
ଯାଇ ମିଳିଲା ସେ ସ୍ୱଦେଶ ମନ୍ଦିରେ ।
ମାତଳି ବୋଇଲା ମାତଗୋ ଅନେକ ଝିଙ୍ଗାସ କରିବଟି ତୋତେ
ଶହସ୍ର ପରିତାପ ସଞ୍ଚୁଥିବୁଟି ଦିବାରାତ୍ର ଅନ୍ତେ ।
ଏ ଦେବ ରଥ ଚଢ଼ି ଶୂନ୍ୟେ ଥିବୁ ଗୋ ମହାମାଏ
ଆଦିତ ଦେବତା ଅସ୍ତ ହେବା ଯାଏ ।
ନୋହିବ ଦିବସ ନୋହିବ ରାତି
ସନ୍ଧ୍ୟାକାଳେ ଭେଟିବୁ ଆସି ଝାଟି ।
ସନ୍ଧ୍ୟାକାଳେ ହୋଉଥିବ ସତାବନ ଲିତା
ତେତେବେଳେ ମାଇଲେ ମରଇ ଦଇତା ।
ଦିବସେ ନ ମରଇ ରାତ୍ରେ ନୋହଇ ମୃତୁ
ଏ କଥାକୁ ହେଳ ନକର ଗୋ ଏହୁ ଅଟଇ ତତୁ ।
ଆହୋ ପରୀକ୍ଷ ସଂଗ୍ରାମ କରନ୍ତେ ଅସୁରଙ୍କର ତୁଲେ
ତଇଏ କରି ଶୁଣୁଅଛି ମାତଳିର ବୋଲେ ।
କହିଣ ମାତଳି ଦେଲାକ ପୁଷ୍ପେକ ବିମାନ
ଜଏଚଣ୍ଡୀ ବିଜେ କଲେ ଦେବ ଯାନ ।
କାମରୂପୀ ହୋଇଁ ଦେବୀ ପରମା ମହାମାଏ
ଆକାଶେଣ ଲାଗିଲା ସେ ମହା ତେଜ କାୟେ ।
ପଞ୍ଚାଶ ଧନୁ ସେ ବାମ କରେ ଧରି
ଦୁରାନ୍ତକ ବଳକୁ ସେ ଶର ବୃଷ୍ଟି କରି ।୩୧୫୦।
ଅନେକ ଦେବ ଶର ଯେ ବିନ୍ଧିଲା ଅସୁର
ଜଏଚଣ୍ଡୀ ହୃଦେ ପଡ଼ି ସମସ୍ତ ହୋଇଲେ ଚୂର ।
ଆହୋ ପରୀକ୍ଷ ସୂର୍ଯ୍ୟବ୍ରତେକ ଶର ଯେ ଆଦିତର ଦେଲା
ଅଷ୍ଟାଙ୍ଗେ ଦଇତ ନେଇ ଚଣ୍ଡୀକି ମାଇଲା ।
ଅପାଲଟକ ଶର ଯେ ଅବଶ୍ୟ କରଇ କାର୍ଯ୍ୟ
ଯାହାକୁ ପେଷଇ ସେ ଅବଶ୍ୟ ହୁଅଇ ଦହିଯ ।
ସେ ଚକ୍ର ଘେନି ମାଇଲା ଦୁରାନ୍ତେକଇ
ଜଳରେ ଗୋପ୍ୟ କଲା ସେ ଜଏଚଣ୍ଡୀର ରଥଇ ।
ଦେବେ ବୋଇଲେ ଯାବତ ଚନ୍ଦ୍ର ଦିବାକର ଥାଉ
ଜଏଚଣ୍ଡୀ ସୁମରନ୍ତେ ଶତୃକ୍ଷଏ ଯାଉ ।
ଆହୋ ଖଡ଼ଗ ବର୍ଗ ଲୋକେ ଜଏଚଣ୍ଡୀ ସୁମରି ହୃଦେ
ରଣେ ଜଏ ହୋଉ ଜଏଚଣ୍ଡୀର ପ୍ରସାଦେ ।
ଜଏ ଜଏ କାତ୍ୟାୟନୀ ଗୋ ଅଭଏ ଜଏଚଣ୍ଡୀ
ସର୍ବେ ଜଏ ହରି ଗୋ ଆପାଦ ଦୁଖ ଖଣ୍ଡି ।
ଶ୍ରୀ ଜଏଚଣ୍ଡୀର ଚରଣାର ବିନ୍ଦେ
ଶୂଦ୍ରମୁନି ସାରୋଳ ଦାସ ତୁଳସାର ପଦ୍ମପାଦେ ।

କହନ୍ତି ଶୁକ ମୁନି ଦେବଙ୍କର କଥା
ଶ୍ରୀ ଦେବ ବ୍ରହ୍ମାଙ୍କ ମୁଖେ ସର୍ଜିତା ପୁରାଣ ସଙ୍ଗିତା ।
ପରୀକ୍ଷ ପୁଛାକଲେ ସେ ଶୁକ ମୁନିଙ୍କର ପାଶେ
ଲଭିବି ବିଷ୍ଣୁଭୁବନ ତୁମ୍ଭ ପାଦରଜ ଆଦେଶେ ।୩୧୬୦।
ଭାସ୍କର ଦତ୍ୟ ଯହୁଁ ରଣେ ନିମଜି
ଅପ୍ରାଜଏ ବଳ ପଳାଇଲେ ଭାଜି ।
ଆହୋ ପରୀକ୍ଷ ଆଦିତ୍ୟ ବିହୁନେ ଅନ୍ଧାର ମଏ ବାଟ
ଦଣ୍ଡ ଭଗ୍ନ ହୋଇ ଯେ ପଳାଇଲେ ଅସୁର ବଳ ଥାଠ ।
ଧାମନ୍ତି ଦେବୀମାନେ ସମରେ ଅନର୍ଗଳା
ଘୋର ଅନ୍ଧାର ଦେଖି ଧାମନ୍ତି ମହାଖଳା ।
ଯାହାର ମୁହେଁ ପଡ଼ଇ ଯେ ରଣେ
ଲକ୍ଷେ କୋଟି ରକ୍ତ ମାଂସ ଭକ୍ଷଇ ଏକା ଜଣେ ।
ରଣ ସଂଗ୍ରାମ ନାହି ଗିଳନ୍ତି ଦରାଣ୍ଡି
ମଦିରା ରସପାନେ ମତୋଆଳି ନାଟ ଖଣ୍ଡି ।
ମେଦିନୀ କମ୍ପିଲା ସେ କିଳି କିଳି ଶବଦେ
ଘୋର ରୂପ ଦେଖି ସେ ଭାଙ୍ଗିଲେ ଦଇତେ ।
ଆହୋ ପରୀକ୍ଷ ଆଶ୍ୱିନ ମାସ ଶୁକଳ ପକ୍ଷ ଅଷ୍ଟମୀର ଦିନ
ଭୌମବାର ସେଦିନ ନକ୍ଷତ୍ର ହସ୍ତା କନ୍ୟ ।

ତାର ନାମେ କରଣ ଆୟୁଷ ବାମେଣ ଯୋଗ
ସମର ହୋଇଲାନି ଚତୁର୍ଦ୍ଦଶ ଦିବସ ଭୋଗ ।
ଆଦିତ୍ୟ ପଶିଲା ଯେ ନିମଞ୍ଜାଇ ଗର୍ଭଗତେ
ଅନ୍ଧାର ହୋଇଲାନି ନବ ଦିବସ ପରିଯନ୍ତେ ।
ଦେବଙ୍କ ବିଶ୍ୱରୂପ କେ କହିବାର କ୍ଷେମ
ଆକାଶ ମଞ୍ଚ ବୋଲି ନଗଲା ଗମ୍ୟ ଉତକର୍ମ ।୩୧୭୦।
ଏମନ୍ତ ସମଏ ଦେବୀ ବସନ୍ଧରା
ଉଶ୍ୱାସ ପାଇଲେ ଦେବୀ ଦତ୍ୟଙ୍କର ଭାରା ।
କରେ କମ୍ବୁ ଧରି ଆସଇ ବସୁମାତା
ଦୃଗାର ଛାମୁରେ ବିଜଏ ତୁରିଆ ।
ଅନେକ ବିନୟ କରି ଦେବୀ ଭୂମି
ଦୃଗାର ଛାମୁରେ ସେ ହୋଇଲେ ପରିଣାମି ।
ଦୃଗା ଦେଖିଲେ ପୃଥିବୀର ରୂପ
ତୁ ତ ବସୁଧା ଗୋ ଦିଶିଲୁ ବିରୂପ ।
କୁଙ୍କୁମ ରୂପ ଜାଣି ଦିଶଇ ତୋର କାଏ
ଏବେ ତ ଦିଶିଲୁ ଶୋ ସ୍ଫଟିକ ବର୍ଣ୍ଣ ପ୍ରାଏ ।
ରସ ପ୍ରତୀତି ଶରୀର ତୋର ଦିଶିଲାକ ସିଠା
ଏବେ କେହ୍ନେ ବସୁଧା ଗୋ ହୋଇ୍ଲୁ ତୁ ପୁଷ୍ଟା ।
ପୁଣ ପୁଣ ଦୃଗା ପଚାରନ୍ତି ବସୁଧାଙ୍କୁ
ପୃଥୀ ବୋଇଲା ମାତା ଗୋ କହିବି ନା ତୁମକୁ ।
ମହେଷା ଶମ୍ଭୁ ନିଶମ୍ଭୁ ଅସୁରଙ୍କର ଭୟେ
ଏଡ଼େକ ଶେତବର୍ଣ୍ଣ ହୋଇଲି ମହା ମାଏ ।
ମାତା ଗୋ ଯେତେବେଳେ ଭୂମିକି ଅସୁର ଚାହାନ୍ତି ଆକ୍ରେଷି
ଦଣ୍ଡେ ପରିଯନ୍ତେ ଯାଇ ପାତାଳେଣ ପଶି ।
ମାତା ଗୋ ସତ୍ୟ ଯୁଗେଣ ଯେ ଲାଗିଲା ବଡ଼ ଭଏ
ତେଣୁ କରି ଶ୍ୱେତ ବର୍ଣ୍ଣ ହୋଇଲା ମୋର କାଏ ।୩୧୮୦।
ଦୃଗା ବୋଇଲେ ଏବେ ତ ମରୁଅଛି ଦୃଷ୍ଟ
ଯେବେ ଦିନକୁ ଦିନ ଶରୀର କରିବୁ ନା ପୁଷ୍ଟ ।
ଏହା ଶୁଣି ପ୍ରଣପତ୍ୟ ହୋଇଲା ବସୁମତୀ
ମହେଷା ମାଏଂସ ରକ୍ତ ଯେ ନ ପଡ଼ିଲା ପୃଥୀ ।
ଏହାଙ୍କର ରକତ ଯେବେ ମୋହୋର ହୃଦରେ ପଡ଼ନ୍ତା
ତେବେ ସେ ଶ୍ୟରୀର ମୋହୋର ଉତସଲ୍ୟ ହୁଅନ୍ତା ।
ଲୋହିତ ବର୍ଣ୍ଣକାଏ ହୋଅନ୍ତା ମୋହୋର
ଏବେ ହେ ମହାଦେବୀ ମୋତେ ପ୍ରତିକାର କର ।
ବସୁଧା ବୋଇଲେ ମୋତେ ଯେବେ ହୋଇବା ଭାରାଇ
ସଜ୍ଜନ ଲୋକଙ୍କୁ ସେ ରୋଗ ପୀଡ଼ା କରଇ ।
ମୋହୋର ଉପରେ ଅନୁବ୍ରତେ ଥାଇଁ ଯେହୁ ପ୍ରାଣୀ
ତାହାରି ହିଁ ଅଣହିତ ହୁଅଇ ଗୋସାମଣି ।
ମୋହୋର ଉପରେ ଚାଲଇ ଯେ ପାଦଭରା ଦେଇଁ
ତହୁଁଣ ତୀକ୍ଷ ଜାତ କରାବଇଁ ମୁହିଁ ।
ମୋହୋର ଉପରେ ଯେ ଜାତ ସମସ୍ତ ପଦାର୍ଥ
ମୋହୋର ବିକାରେ ସେ ହୁଅଇ ଅଣହିତ ।
ଅଦଭୁତେ ପଥ ଶ୍ରାନ୍ତି ହରଇ ଯେଉଁ ମନୁଷ୍ୟ
ରୋଗ ଆଶ୍ରେ କରଇ ସେ ହୋଅଇ ଅଳପ ଆଶ୍ୟ ।
ବହୁତ ପୀଡ଼ା ସେ କରାବଇ ବ୍ୟାଧି
ଅଣହିତେ ମରଇ ସେ ନ ପାଇ ମଉଷୋଧି ।୩୧୯୦।
କାକର ବାଧା କରଇ ସେ ହୋଅଇ ଲସମ
ତହୁଁ ସେ ବାତପିତ କରଇ ଉତକର୍ମ ।
ବାତ ପିତ୍ତ ଶ୍ଳେଷ୍ମା ଅମ୍ଳ ପିତ୍ତ ଜ୍ୱରା
ମୁହିଁ ସେ ମନୁଷ୍ୟକୁ କରଇ ରୋଗ ପୀଡ଼ା ।
ମୋହୋର ଅବିକାରେ ନ କାଟଇ ପଦ ମନ୍ତ ମୌଷଧି
ଓଷଧ ନ କାଟିଲେ ସେ ପ୍ରବଳ ହୋଅଇ ବ୍ୟାଧି ।
ବ୍ୟାଧି ପ୍ରବଳ କରି ସେ ନ ଗୁଚଇ ଗ୍ରାସ
କ୍ରୋଟ ଅଗ୍ନି ମନ୍ଦ ବ୍ୟାଧି ନୋହଇ ବିନାଶ ।
ମାତା ମନ୍ଦ ଅଗ୍ନି ହୋଇଲେ ଆୟୁଷ ବଳ ତୁଟଇ
ପ୍ରାଣୀ ଖିନ୍ନ ହୋଇଲେ ବ୍ୟାଧି ବଳ ଘୋଟଇ ।
ମାତା ଗୋ ଶାହାସ୍ର ସଂଗିତା କଥା ଗୋ ନ ପାରନ୍ତି ଜାଣି
ଦ୍ରବ୍ୟ କ୍ଷଏ କରାନ୍ତି ସେ ବେଜ ବଦ୍ୟ ଆଣି ।
ମୋହୋର ଅବିକାରେ ଉତପତ୍ତି ହୋଅନ୍ତି ସର୍ବ ରୋଗ
ମୁହିଁ ଛଡ଼ାବଇଁ ବନ୍ଧୁ ବାନ୍ଧେବର ସୋଗ ।
ମାତ ଗୋ ମାୟା ମୋହେ ଯେତେବେଳେ ପ୍ରାଣୀ କରନ୍ତି ତେଜ୍ୟା
ବହଇ ମନ୍ଦ ପବନ ଭୂମିରେ କରଇ ଶେଜ୍ୟା ।
ମାଗୋ ଉତପନ ରୋଗେ ମରନ୍ତି ସର୍ବ ଲୋକ
ଛାଡ଼ଇ ମେଦ ମେଦା ଉପୁଜଇ ଶୋକ ।
ମାଗୋ ଅଦଭୁତେ କରାବଇ ଉତପାତ ମନ୍ଦ ଯୋଗ
ଲୋଟନ୍ତି ପିଣ୍ଡେ ଏହିମତି ଭାଗ ।୩୨୦୦।
ମାଗୋ କାଳ ହୋଇ ପଶଇଁ ଶହସ୍ର ଧାରୀଙ୍କର ଗାତ୍ରେ
ଅନେକ ଜୀବ ଜନ୍ତୁ ସେ ହାଣନ୍ତି ବଇରାଗେ ।
ମାଗୋ ପ୍ରତି ଲୋକ ହାଦେ କରାବଇ ମନ୍ଦ
କୁଳେଣ ଖଳ ବଳ ବର୍ଗ କରାବଇ ବାଦ ।

ଜାଣିଚ ନ ପାରି ସେ ହୁଅନ୍ତି ହଣାହଣି
ସେ ରକ୍ତ ମାଂସ ଯେ ପଡ଼ଇ ଧରଣୀ ।
ଜରା ରୋଗ ବ୍ୟାଧି ଦେଖନ୍ତି ଯେତେ ବେଳେ
ମେଷ ଛାଗଳ ବଳି ଦିଅନ୍ତି ତେତେବେଳେ ।
ମା ଗୋ ସେହି ରକତ ମାଂସ ପଡ଼ଇ କ୍ଷିତି
ତେଣୁ କରି ଶରୀର ମୋହୋର ହୁଅଇ ତ୍ରିପୁତି ।
ମା ଗୋ ଯେତେବେଳେ ବର ପାଇଲେ ସେ ଦୁରାନ୍ତକ ବଳ
ଜରା ରୋଗ ପୀଡ଼ା ଯେ ରହିଲା ସକଳ ।
ମା ଗୋ ଏମାନେ ପତନ ହୋଇଲେ ଯହୁଁ ମେଦନୀ
ବେଳେ ବେଳେ ଭୋଗୁଛନ୍ତି ମୋହୋର ହୋଇଲାକ ହାନି ।
ବସୁଧାର ବଚନେ ସେ ବୋଇଲେ ଦେବୀ ଦୃଗେ
ତୁହି ସେ ପ୍ରଳୟ କରାଉ ମହୀଭାଗେ ।
ଦୃଗା ବୋଇଲେ ତୁ ସଚରାଚର ହେଲୁ ଲାଗି
ସବୁଙ୍କରି ବ୍ୟାକୁଳ ଘେନି ହେଲୁ ବଇରାଗୀ ।
ପୁଣ ପୁଣ ପ୍ରଣମିତ ହୋଇଁ ବୋଲଇଁ ବସୁମତୀ
ତୋହୋର ଆଜ୍ଞାରେ ମୋ ଶରୀର ହୋଉ ଶାନ୍ତି ।୩୨୧୦।
ଦୃଗା ବୋଇଲେ ବସୁଧା ତୁ ମାଗୁଅଛୁ ଯାହା
ମୁହିଁ ସେ ଦୃଗତି ତାରଣୀ ଦେବୀ ତୋତେ ଦେବି ତାହା ।
ବସୁଧା ବାଚାଏ ଏମାନ କଲେ ଯେ ଅରଷ୍ଟି
ତୁ ଯହିଁ ଶ୍ୟାନ୍ତି ହେବୁ ପୂରାଇବି ଏ ଘାନ୍ତି ।
ତୁ ପରମ ଯୋଗେଶ୍ୱରୀ ତୁ କିମ୍ପା ନ ବିଚାରୁ
ଏ ଦତ୍ୟଙ୍କ ମାଂସ ରୁଧିର ଉପରେ ମୋର ପଡୁ ।
ମାଗୋ ମାରନ୍ତି ଧରନ୍ତି ଯେ ପାଟନ୍ତି ଖପର
ପ୍ରାଣ ଥାଉଁଣ ଯେ ଗିଳନ୍ତି ଖରତର ।
ମାତ ଗୋ ଯୋଗ୍ନୀମାନଙ୍କୁ ଦେବ ତୁମ୍ଭେ ଆଜ୍ଞା
ଏ ତୋହୋର ବଚନ କେ କରିବ ଅବଜ୍ଞା ।
ମାତ ଗୋ ଆଜୁଁ ଏଣିକି ଯେ ହୋଉଥିବ ଯୁଧ
ଆଜୁଁ ଅସୁରଙ୍କର ମାଂସ ପଡୁ ମହୀ ମଧ ।
ମେଦ ମାଂସ ପଡ଼ିଲେ ସମ ହୋଇବ ମୋର କାଏ
ପାଇବି ନିଜ ଶ୍ୟରୀର ହୋଇବି ତେଜ ମଏ ।
ହୁଅସି ପ୍ରସନ ମାଗୋ ଦରିଦ୍ର ମୋର ଫିଟୁ
ହୋଇବି କୁଙ୍କୁମ ବର୍ଣ୍ଣ ଦୟା ମୋତେ ଅଟୁ ।
ଏତେ ବୋଲି ପ୍ରଣପତ୍ୟ ହୋଇଲେ ବସୁଧେ
ଦୃଗା ବୋଇଲେ ଆସ ଦେଖସି ମୋର ଯୁଧେ
ବସୁଧା ବୋଇଲେ ଦେବୀ ଲୋ ନୁହଇ ତ୍ରିପୁତି
ଆହାରେ ଶ୍ୟରୀର ମୋର ହୋଇବାକ ଯେ ଶ୍ୟାନ୍ତି ।୩୨୨୦।
ଆହୋ ପରୀକ୍ଷ ରାଜା ଆଜ୍ଞା ଦେଲେ ମହାମାଏ
ଯା ଯା ବସୁଧା ପ୍ରାପତ ହୋଉ ତୋର କାଏ ।
ଭାରା ନିବାରଣୀ କି ନିରାଧାର ଆଜ୍ଞା ମାଗି
ରୋଧିରେ ନିଜ କାୟା ପାତିଲା ଯାଇଁ ବେଗି ।
ଦୃଗାଏ ବୋଇଲେ ନାରାୟଣୀ ବାଶେଳୀ ଭଗବତୀ
ଯୋଗ୍ନୀମାନ ଲୋ ଆହାର କର ଶ୍ୟାନ୍ତି ।
ଦୟା ବସିଲା ମୋର ପୃଥିବୀର ବିକଳେ
ଆଜୁଁ ଅସୁରଙ୍କର ରକ୍ତ ମାଂସ ପଡୁ ସବୁ ତଳେ ।
ଆହୋ ଆହାର ଅବା ଯେ କରଇ ନ ଜାଣି
ମାନୁଷ ଶରୀର ସେ ହୋଅ ତୁ ଡାକେଣୀ ।
ଦୃଗା ବୋଇଲେ ଜନ୍ମ ହିଁ ନୋହିବ ସେ ତାହାଙ୍କ ଦିନ ସରୁ
ବସୁଧାଙ୍କର ଅବସ୍ଥା ସେ ତାହାଙ୍କର ଶିରେ ପଡୁ ।
ଆହୋ ପରୀକ୍ଷ ମହାଦେବୀଙ୍କ ଯହୁଁ ଏସନକ ବାଣୀ
ନାରାୟଣୀ ହକାରିଲେ ଡାକେଶ୍ୱରୀକି ପୁଣି ।
ଅସୁରଙ୍କର ରକ୍ତ ମାଂସ ନ ଭକ୍ଷ ଆଜ୍ଞା ଦେଲେ ମହାମାଏ
ସେ ଡାକେଶ୍ୱରୀ ଦେଲା ଡାକ ଯେ ଗୋଟାଏ ।
ଆଗୋ ଅନନ୍ତ କୋଟି ଦେବୀ ଯେ ସର୍ବଠାରେ ଅଛ
ଆଜୁଁ ଅସୁରଙ୍କର ରକ୍ତ ମାଂସ ନ ଭକ୍ଷ ।
ଡାକେଶ୍ୱରୀ ବଚନ ପଶିଲା ସବୁଙ୍କରି କର୍ଣ୍ଣେ
ରଣ ରଙ୍ଗ ଲାଗୁଥିଲା ଯେ ଚଉଷଠି ଯୋଜନେ ।୩୨୩୦।
ଠାକୁରାଣୀଙ୍କର ଆଜ୍ଞା ପାଇଣ ଗୋସାମଣୀ ।
କଦଳୀ ବନ ପ୍ରାଏକ ସେ ଯାଉଛନ୍ତି ହାଣି ।
ଆହୋ ପରୀକ୍ଷ ଭକ୍ଷନ୍ତି ବୋଲି ଅପ୍ରତେ କଲେ ଦୃଗେ
ମହାଖଳା ବୀରନ୍ତ ଜାତ କଲେ ପାଦ ଯୋଗେ ।
ପ୍ରଥମେ ଜାତ ହୋଇଲା ଗୋରେଆ କ୍ଷେତ୍ରଆଳ
ଦୁଜେ ଜାତ ହୋଇଲା ଖାଂଖଣି କ୍ଷେତ୍ରପାଳ ବିକାଳ ।
ତୃତୀଏ ଜାତ ହୋଇଲେ ରଙ୍କା କ୍ଷେତ୍ର ପାଳ
ଚତୁର୍ଥେ ଜାତ ହୋଇଲେ ଖଣ୍ଡିଆ କ୍ଷେତ୍ରପାଳ ।
ପଞ୍ଚମେ କାମଦେବ କ୍ଷେତ୍ରପାଳ ଜାତ କଲେ ପୁଣି
ଯେ କ୍ଷେତ୍ର ରକ୍ଷା କର ବୋଇଲେ ଠାକୁରାଣୀ ।
ଯେ କ୍ଷେତ୍ର ରକ୍ଷା କରିବ ସକଳ
ତେଣୁକରି ନାମ ହୋଇଲା କ୍ଷେତ୍ରପାଳ ।
ଢାଡୁଆ କ୍ଷେତ୍ରପାଳ ହନୁମନ୍ତ କ୍ଷେତ୍ରପାଳ
ଆମ୍ବୁଆ କ୍ଷେତ୍ରପାଳ ଭାଲୁଙ୍କା କ୍ଷେତ୍ରପାଳ ।

ଏହାଙ୍କର ତୁଳେ ଜାତ ଯାତ୍ରୁ ମଲ
ହସଣି ମଲ କାନ୍ଦଣି ମଲ ଆବର ମହାକାଳ ।
ଆମୁଆ ଖାଙ୍ଗର ମାଣିକା କାଳତୁଣ୍ଡା
ବାବନା ବିଜୟା ମଲ୍ଲ ତୁଡୁକା ଚାମଣ୍ଡା ।
ଦହନା ଶୋଷନା ସୁକୁଟା ଝାଂଝାରି
ଏହ୍ନେ ବୀର ମାନନ୍ତ ଯେ ଦୃଗା ଜାତକରି ।୩୨୪୦।
ମର୍ଭୁତେକ ଚଣ୍ଡୀ ଚାମଣ୍ଡା ଉର୍ଧକେଶ
ପ୍ରାଣେ ନ ମାରନ୍ତି ଯେ ରକ୍ତ ମାଂସ ଶୋଷ ।
ଆରେ ରଣ କ୍ଷେତ୍ର ଆବୋର ବୋଲି ଆଜ୍ଞା ଦେଲେ ବେଗି
ଏହାଙ୍କର ଉପରକୁ ଚାଣ୍ଡାଳୀ ଆବର ରଖି ।
ଯୋଧି ବରାଢ଼ କେ ଆଡ଼ କେ ମାଂସ ସୂତା
ଗୋରୁ ଚର୍ମ ଦଉଡ଼ି କଟି କେ ହାତେ ମୁଠା ।
ଆରେକ ହାଥେ ଘେନି ସେ ଲୁହାର ବାଡ଼ି
ଗୋ ଚର୍ମ ଦଉଡ଼ି ଦେହ ପରେ ଘୋଡ଼ି ।
ନିର୍ଦୟା ନିର୍ଦାଘ ଅଟଇ ବଡ଼ ରାତି
ମହାଖଳା ବିଦ୍ୟା କୁମୁଟିଆ ନାମେ ହାନ୍ତି ।
ଦୃଗା ବୋଇଲେ ରେ ଯେ ମୋହୋର ଆଜ୍ଞା ବଞ୍ଚନ୍ତି
ଦେଖିବି ବୀର ମାନନ୍ତ ବାଛିବୁ ସବୁନ୍ତି ।
ରଣ ମଣ୍ଡଳ ଆଧିପତି ସେ ବୀର ମହାଖଳା
ଆବୋରିଲା ରଣ କ୍ଷେତ୍ର ସେ ବୀର ଅନର୍ଗଳା ।
ଆହୋ ପରୀକ୍ଷ ଦେବୀମାନେ ଯହୁଁ ନ ଭକ୍ଷିଲେ ଆଶାନ୍ତି
ଦୁରାନ୍ତକ ବଳ ହୋ କତିକି ଯାଇ ନ ପାରନ୍ତି ।
ଶୁଣ ହୋ ପରୀକ୍ଷ ସମର ସମ୍ଭର୍ବ
ରଣେ ନ ଘୁଞ୍ଚନ୍ତି ସେ ଅମାପତ ଦାନବ ବଳ ସର୍ବ ।
ଏକ ପଡ଼ନ୍ତେଣ ଆରେକ ପିଟଇ
ଗିରିବର ସମାନେ ଗଦା ପଡ଼ି ଚୂଇ ଉଠଇ ।୩୨୫୦।
କାଳକେତୁ ବୋଲି ଏକଇ ଅସୁର
ମର୍ଭୁତେକ ସନ୍ୟ ଘେନି ସେ ଚଣ୍ଡିକା ତୁଳେ ସମର ।
ବକ୍ର କେତୁ ଏକ ଦାନବ ମହାବୀର
ବେନି ମର୍ଭୁତକ ଘେନି ସେ ଭଇରବୀ ତୁଳେ ସମର ।
ବୀରବର ଅସୁରା ସେ ଅସୁର ଯୋଜନ ବାହୁ
ବେନି ମର୍ଭୁତକ ଯୋଧା ଘେନି ତ୍ରିପୁରା ସଙ୍ଗେ ଯୁଧେ ସେହୁ ।
ବୀରବାହୁ ବୋଲି କରି ଅସୁର ମହାବଳୀ
ମର୍ଭୁତେକ ଯୋଧା ଘେନି ସେ ଭଦ୍ରକାଳୀ ତୁଳେ ମିଳି ।
ସୁବାହୁ ବୋଲି କରି ଏକଇ ଅସୁର
କୋଟିଏ ଯୋଦ୍ଧା ଘେନି ସେ ଭଇରବୀ ତୁଳେ ସମର ।
ପଦ୍ମେକ ଯୋଦ୍ଧା ଘେନି ସେ ରାକ୍ଷସ ଚଣ୍ଡବାହୁ
ବ୍ରହ୍ମାୟେଣୀ ତାହାକୁ ଆବୋରେ ଯେହ୍ନେ ରାହୁ ।
ନବ ଲକ୍ଷ ଯୋଦ୍ଧା ଘେନି ଚନ୍ଦ୍ର ଗଗନ ଘୋଟି
ଇନ୍ଦ୍ରାଏଣୀ ଭାଗେ ହୋଇଲା ରଣେ ଭେଟି ।
ଲୋଟାସୁର ବୋଲି କରି ଏକଇ ରାକ୍ଷସ
ତିନି କୋଟି ଯୋଦ୍ଧା ଘେନି ଉଗ୍ରତାରା ପାଶ ।
ପଦ୍ମେକ ଯୋଧା ଘେନି ସେ ଘୋଟଇ ଦଇତ
କୋଠାରୀ ତୁଳେ ସମର କଲାକ ବହୁତ ।
ଅନ୍ଧାର ଘୋର ବୋଲି କରି ଏକଇ ରାକ୍ଷସ
ମର୍ଭୁତେକ ସେନା ଘେନି ସେ ବରାହୀର ପାଶ ।୩୨୬୦।
ପଦ୍ମେକ ଯୋଦ୍ଧା ଘେନି ସେ ଉର୍ଧ କେଶ
ମାରକମା ତୁଳେ ହୋଇଲା ପ୍ରବେଶ ।
ସାତ ଲକ୍ଷ ଯୋଦ୍ଧା ଘେନି ଚନ୍ଦ୍ରଜିତ
ଭଇରବୀ ଛାମୁରେ ସେ ସମର ଅପ୍ରମିତ ।
ବେନି ପଦ୍ମ ଯୋଦ୍ଧା ଘେନି ସେ ଘଣ୍ଟସୁର ତୁଳେ
କାଳିକା ସଙ୍ଗତେ ଦାନବ ଯୁଦ୍ଧ କଲେ ।
ବକାସୁର ଦାନବ ଯେ ଦତ୍ୟ ପାଞ୍ଚ କୋଟି ।
ସମାୟେଣୀ ଦେବୀ ତାହା ନିମିଷକେ ଘୋଟି ।
ତ୍ରିଜଟା ସୁର ବୋଲି ଯେ ଅତି କାମରୂପୀ
ଆରେ ଆରେ ବୋଲି ଯେ କାମାକ୍ଷୀ ତୁଳେ ବ୍ୟାପୀ ।
ଉନ୍ମତ ତୁଳେଣ ସାତ ଲକ୍ଷ ଯୋଦ୍ଧା ଅଛି
ତାହାକୁ ଆବୋରିଲା ସେ ଗଗନ ପିଙ୍ଗଳାକ୍ଷି ।
ବୀରବର ସୋହୋଡ଼ ମନ୍ଦର ମାଳାଅଞ୍ଚ ନାମ
ତାଡ଼େକୀ ଦେବୀର ତୁଳେ ତାହାର ଯୁଦ୍ଧ ଅବିଶ୍ରାମ ।
ପଞ୍ଚ ଲକ୍ଷ ଯୋଦ୍ଧା ତୁଳେ ଦାନବ ଘୋଡ଼ାମୁଖ
ଡାକେଶ୍ୱରୀ ଛାମୁରେ ପଡ଼ିଲା ପ୍ରତ୍ୟକ୍ଷ ।
ନବଷଠି ଯୋଦ୍ଧା ଘେନି ଅସୁର ବିରୂପାକ୍ଷ
ଅମ୍ବିକାର ତୁଳେ ପଡ଼ିଲା ପଚାଶ ।
ପଦ୍ମେକ ଯୋଦ୍ଧା ଘେନି ସେ ତାରାକ୍ଷି
ତାହାର ତୁଳେ ସମର କରଇ ମାରୁତୀ ।୩୨୭୦।
ଗଜମୁଖ ଦଇତ ତିନି ପଦ୍ମ ବୀର
ହାଡ଼ି ବାଶେଳୀ ମୁଖେ ସେ ପଡ଼ିଲା ଅସୁର ।
ବିମଳା ସୁର ବୋଲି ଏକଇ ରାକ୍ଷସ
ଥାଠ ଘେନି ପଡ଼ିଲା ସେ ମହାମାୟାର ପାଶ ।

ସିଙ୍ଘନ ସୁର ବୋଲି ଗୋମୁଖର କାୟା
ନବଲକ୍ଷ ଯୋଦ୍ଧାକୁ ଘେନିଲା ଏକା ଦେବୀ ଛାୟା ।
ରଣ ଧନ୍ଦୋଳ ବୋଲି ଦେବୀ ମାତାଙ୍ଗୀ
ଲୋହସର ଦାନବକୁ ସେ ଘୋଟିଲା ଯାଇ ବେଗି ।
ବିସ୍ମରୂପ ବିକାଶି ସେ ଦେବୀ ଚନ୍ଦ୍ରକାନ୍ତି
ସେ ଯାଇଁ ଓଗାଳିଲା ତିନିଲକ୍ଷ ସେନାପତି ।
ମର୍ତ୍ତ୍ୟୁତକ ଯୋଦ୍ଧା ଘେନି ସେ ମୋଡ଼ାସୁର
ଶ୍ରୀ ଚଣ୍ଡୀ ତୁଲେ ସେ କରଇ ସମର ।
ଅଙ୍ଗିରା ସୁର ଦାନବର ତିନିପଦ୍ମ ସେନା
ରାମଚଣ୍ଡୀ ଛାମୁରେ ସେ ପଡ଼ିଲେ ସର୍ବଜେନା ।
ତ୍ରିଜଟାସୁର ବୋଲି ଏକଇ ଦଇତ
ତାହାର ତୁଲେ ଯୋଦ୍ଧା ଯେ ପଞ୍ଚମର୍ତ୍ତ୍ୟୁତ ।
ଗଦା ବୁଲାଇ ସେ ଧାମଇ ଅତି ବେଗେ
ସମସ୍ତେ ହେଁ ପଡ଼ିଲେ ଯାଇଁ ଗେଲମା ଦେବୀର ଆଗେଁ ।
ଚିରାସୁର ବୋଲି ସେ ଦାନେବ ମହାବଳୀ
ସାତ ଲକ୍ଷ ଯୋଦ୍ଧା ଘେନି ମର୍ତ୍ତ୍ୟୁତେ ଅଗୁଳି ।୩୨୮୦।
କୋଦାଳୀ ଆୟୁଧ ସେ ଧରିଛନ୍ତି କରେ
ହାବୋଡ଼େ ପଡ଼ିଲେ ସେ ଚାମଣ୍ଡା ଆଗରେ ।
ଆହୋ ପରୀକ୍ଷ ଅପାର ପ୍ରବଳ ସେ ଅସୁର ବଳ ଥାଠ
ଆଦିତ୍ୟ ଅଭାବେ ସେ ନ ଦିଶଇ ବାଟ ।
ଯେହ୍ନେକ ଆଜ୍ଞା ଦେଲେ ସେ ଦୃଗତି ତାରେଣୀ
ଅନ୍ଧକାର ଉପେଖି ସେ ପକାବନ୍ତି ହାଣି ।
ପ୍ରବନାଇ ଦୁଲଣାଇ ସେ ବେନି ଯେ ଭଏଣୀ
ରକତ ମାଂସ ଭକ୍ଷନ୍ତି ସେ ଦେବୀ ଶ୍ରେଣୀ ।
ବିଳାଇ ବିଛଳାଇ ନୀଳା ବଳାଇ ଉପାଇ
ଉତକଳାଇ ମଙ୍ଗଳାଇ ସାତ ନାମ ବହି ।
ଏ ସପତ ମାତ୍ରୀଙ୍କି ଧରି ନ ପାରିଲେ ଚଣ୍ଡ
ରକତ ମାଂସ ଖାଇଲେ ସେ କରିଣ ଖଣ୍ଡ ଖଣ୍ଡ ।
ସେ ସପତ ମାତ୍ରୀଙ୍କର ଅନୁ ଭ୍ରମଣୀ ଦେଖି
ଖଣ୍ଡାଏକ ଧରି ଧାଇଁ କ୍ଷେତ୍ରପାଳ ତାହାର ତହିଁକି ।
ନ ଖାଇ ବୋଇଲା ତୋର ମୁହଁ ପୋଡୁ
ଶ୍ରୋଣେହା ରୁଷ୍ଟ ହୋଇଁ ମାତାର ଆଜ୍ଞା ମେଣ୍ଟୁ ।
କ୍ଷେତ୍ରପାଳ ବଚନ ନ ପଶିଲା ତାର କର୍ଣ୍ଣେ
ସେ ସପ୍ତ ମାତ୍ରୀ, ଲାଗିଲେ ରକ୍ତ ମାଂସ ଭକ୍ଷଣେ ।
ଯାଇଣ କ୍ଷେତ୍ରପାଳ ବିଜୟାକୁ ମାଇଲା ଖଣ୍ଡା
କପୋଳେ ପଡ଼ିଣ ଖଣ୍ଡା ହୋଇଲା ମସୀଗୁଣ୍ଡା ।୩୨୯୦।
ସେହି ଶହସ୍ର ଲେଉଟାଇଁ ମାଇଲେ ଦେବୀ ଚଣ୍ଡୀ
ସେ କ୍ଷେତ୍ରପାଳ ବେନି ଭୁଜ ପଡ଼ିଲାକ ଛିଡ଼ି ।
ଦୁର୍ଗାର ଛାମୁରେ ମିଳିଲା ଖଣ୍ଡିତ ହସ୍ତା ।
କେ ତୋତେ କଲା ଏସନେକ ଅବସ୍ଥା ।
ସେ କ୍ଷେତ୍ରପାଳ ବୋଇଲା ଗୋ ଶୁଣ ଜଗତ ଧାତ୍ରୀ
ରକତ ମାଂସ ଭକ୍ଷଣ କରନ୍ତି ସପତ ମାତ୍ରୀ ।
ତବ ଆଜ୍ଞାରେ ନିରୋଧ କଲି ଯହୁଁ
କଟାରରେ ପ୍ରହାର କଲା ମୋତେ ତହୁଁ ।
କୋପେଣ ଶାପ୍ୟ ଦେଲେ ଦୃଗତି ତାରଣୀ
ଯାଅ ଲୋ ସପତ ମାତ୍ରୀ ତୁମ୍ଭେ ହୁଅ ଲୋ ଡାକେଣୀ ।
ଏହିକ୍ଷଣି ତୁମ୍ଭେ ମୋହୋର ସମରରୁ ଯାଅ
ପ୍ରପଞ୍ଚ ଅବସ୍ଥାରେ ଲୋ ରକ୍ତମାଂସ ଖାଅ ।
ମୋହର ବୀରକୁ ଯେ କଲ ଯେଡ଼େ ଶାସ୍ତି
ମହାଜାଳ ମନ୍ତ୍ରେ ଲୋ ବନ୍ଧନ ହୁଅ ସପତ ମାତ୍ରୀ ।
ଦୃଗାଙ୍କ ଛାମୁରେ ସେ କହନ୍ତି ବିକଳେ
ପାଷାଣ ହୋଇଥାଅ ଲୋ ବୈତରଣୀ ନଦୀ କୂଳେ ।
ପ୍ରାଚୀକେଶ୍ୱର ଯେ ହୋଉ ତୁମ୍ଭର ପତି
ମାନୁଷ୍ୟ ମନ୍ତ୍ରେ ଯେ କରାଉ ଆରତି ।୩୩୦୦।
ଦୃଗାଏ ବୋଇଲେ ଲୋ ବୈତ୍ରଣୀ ନଦୀକୂଳେ ଶୁକ୍ର ରୂପେ କୃଷ୍ଣ
ତାହାଙ୍କୁ ଦ୍ରଶନ କରୁଥାଅ ଫିଟୁ ତୁମ୍ଭ କଷ୍ଟ ।
କଳି ଯୁଗେ ଚାଳିଲକ୍ଷ ବରଷ ମାନୁଷ୍ୟନ୍ତ ଲାଗ
ଡାକେଣୀ ରୂପେ ଲୋ ପୋଡ଼ାବଳୀ ସଙ୍ଗ ।
ହେ ବୁଧ ଜନେ ପୂର୍ବେ ଏସନେକ କଥା
ଉପାଏ ଲେଖନ ଯେ ମୁହିଁ କିସ ଜ୍ଞାତା ।
ଜନ୍ମେଣ ମୂର୍ଖ ମୁଁ ଅପଣ୍ଡିତ ଗୋତ୍ରୀ
ବଳରାମ ଶହସ୍ର ଧରି କୃଷିକାରେ ବୃତି ।
ଜନେମଣ ଶୂଦ୍ର ମୁଁ ଅପଣ୍ଡିତ ଜ୍ଞାତା
ବ୍ୟାସଙ୍କୁ ଥାନ ନ ପାଇ କିସ ମୁହିଁ ବକତା ।
ନ ପଢ଼ିଲି ଶାସ୍ତ୍ର ମୁଁ ବିଦ୍ୟାରେ ଅପାଠେକ
ଅଣ ଅକ୍ଷର ହୋଇ ଅମର୍ଯ୍ୟାଦା ଅବିବେକ ।
ଆହୋ ଆଶ୍ୱିନ ଶୁକଳ ଦଶମୀ ଅପରାଜିତେ
ରାତ୍ରେଣ ସ୍ତିରୀ ଏକ ଭେଟଇ ଆସି ମୋତେ ।
ତୁଳସୀ ମାଳ ଗୋଟିଏ ହୃଦରେ ମୋର ଦେଇ
ଶାହାସ୍ର କଥା ମୋତେ ରାତ୍ରେଣ ବସି କହି ।

ସେ ମୋତେ ରାତ୍ରେଣ ବସି କହଇ ଯାହା
ସମସର ପରିଯନ୍ତେ ମୁଁ ଲେଖନ କରଇ ତାହା ।
ସେ ଅଭୟା ଆଶରେ ମୁଁ ପୂରାଇ ମନବାଞ୍ଛା
ସେହୁ ମହଜ୍ଞାତା ମୋତେ ଯାହ ଦେଲେ ଦୀକ୍ଷା ।୩୩୧୦।
ଏ ଲେଖନରୁ ଆମେଳ ପଦ ହୋଅଇ ଅବା
ହେ ପଣ୍ଡିତ ଜନେ ମୋତେ ମିଳାଇ ତାହା ଦେବା ।
ଅଭିସାର ନନ୍ଦନୀ ପୂର୍ବର ଅଭିଶାପ୍ୟ
ପୂର୍ବ ଦିଗ ଭ୍ରଥ ଖଣ୍ଡ ଜଙ୍ଗେର ଯୋଗ ରୂପ ।
ଜନ୍ମେ ଜନ୍ମେ ଭାବନା ମୋର ସାରୋଳ ଚଣ୍ଡୀ ପଦ ପାଉ
ଯେହା ଲେଖନ୍ତେ ପଢନ୍ତେ ଦିନ ମୋର ଯାଉ ।
ଏ ଶାହାସ୍ର ବକତା ମୁହିଁ ଶ୍ରୀ ଶାରୋଳାଙ୍କ ପାଦେ
ବଦନ୍ତି ଶୂଦ୍ରମୁନି ସାରୋଳ ଦାସ ତୁଳସାଙ୍କ ହୃଦେ ।

ଏଥୁ ଅନନ୍ତରେ ଯେ ପରୀକ୍ଷ ନୃପତି
ଶୁକ ମୁନି ଚରଣେ ବିନୟ ଯୁଗତି ।
ଯେବେ ମହାତମା ମୋତେ କଲୁ ଅନୁଗ୍ରହ
ସଞ୍ଚପି କରି ମୋତେ ଚଣ୍ଡୀ ଶାସ୍ତ କହ ।
ଆଦିତ୍ୟ ଗୋପ୍ୟ ଗଲା ସେ ଦେବୀ ନିମଞ୍ଜାର ଗର୍ଭେ
ପୁଣ କେମନ୍ତ କଲେ ସେ ତେତିଶ କୋଟି ଦେବେ ।
ବଦନ୍ତି ପରୀକ୍ଷ ଶୁଣ ହୋ ଶୁକବ୍ରହ୍ମା
ଚାରି ଯୁଗେ ନାହିଁ ନା ଏ ଦେବୀଙ୍କର ମହିମା ।
ଯେତେ ରାମାୟଣ ମହାଭାରତ ମହାରଣ
କଛ କଛ କରି ଶିଖାଏ ଦେବୀଙ୍କର ଘଣ୍ଟଣ ।
କୃଷହଂ ତିନି ଅବତାର ସାତ ରୂପ ମହୀ
ଶ୍ରୀ ଚଣ୍ଡିକା ଯୁଦ୍ଧକୁ ସମାନ ନାହିଁ କେହି ।୩୩୨୦।
ଅଦୃଷ୍ଟି ଅଶୃତି ଯେ ହୋଇଛି ଅଗୋଚର
ଲେଖନ୍ତେ ଅନ୍ତ ନ ଯିବ ଦେବୀଙ୍କର ସମର ।
ଏକ ଦିନକର ସମର ନ ଭକ୍ଷିଲେ ରକ୍ତମାଂସ
ଯୁଦ୍ଧେ ଲୋଟିଲେ ଅନେକ ରାକ୍ଷସ ।
ଅସ୍ତି ଚର୍ମ ମାଂସ ସେ ପଡ଼ିଲେ ଯେକ ଗଦି
ଶତେ ତାଳ ଉଚ୍ଛର୍ଗ ସେ ବହିଲେ ରକ୍ତ ନଦୀ ।
ବିଙ୍ଗଗିରି ପର୍ବତ ଯେ ଶତେ ଅଷ୍ଟଉତ୍ତର ଯୁଣ ଉଚ୍ଛର୍ଗ
ବେନି ଯୋଜନର ଆଏତନ ପ୍ରତିଦୀର୍ଘ ।
ଶ୍ରୋଣିତ ବହନ୍ତେ ସେ ବୁଡ଼ିଲା ବିଂଝଗିରି
ପର୍ବତ ଉପରେ ସେ ମାଇଲା ଲହରୀ ।
ତହିଁର ଉପରେ ଯେ ଥିଲେ ଶାଳବୃକ୍ଷ
ପାଞ୍ଚ ପାଞ୍ଚ ତାଳ ସେ ଉଚ୍ଛର୍ଗ ଅଟଇ ପ୍ରତକ୍ଷ ।
ସେ ବୃକ୍ଷଙ୍କରେ ଆଉଜିଲେ ମୃତୁ ପିଣ୍ଡ ଭେଳା
ଲହଡ଼ି ମାରନ୍ତେ ସେ ବୃକ୍ଷଙ୍କର ପତ୍ର ନ ଦିଶିଲା ।
କହନ୍ତି ଶୁକ ବ୍ରହ୍ମ ଶୁଣ ହୋ ପରୀକ୍ଷ ନୃପମଣି
ସେ ଦୀର୍ଘ ତାଳେ ବସି ଉର୍ଧ ମୃତି ରୂପଧରି ପିଇଲେ ଗ୍ରିଧିଣୀ ।
ଲକ୍ଷ୍ମ ଭଦ୍ରା ନଦୀଠାରୁ ପୂର୍ଣ୍ଣତୋୟା ନଦୀ ପରିଯନ୍ତେ
ଏକ ଖଣ୍ଡ ହୋଇଁ ବୁଡ଼ିଲେ ହୋ ବୃକ୍ଷ ପରବତେ ।
ସେ ଦୀର୍ଘ ତାଳେ ବୁଡ଼ିଲେ ରକ୍ତ ନଦୀ
ଉଡ଼ିଣ ରକ୍ତ ମାଂସ ଖାଇଲେ କାକ ସମ୍ପାଦି ।୩୩୩୦।
ଆଦିତ ନଥିବାରୁ ସେ ତଇଲୋକ ଅନ୍ଧାର
ଦିବ୍ୟ ଚକ୍ଷୁ ଅଟଇ ସେ ଦେବୀ ମାନଙ୍କର ।
ଦେବୀମାନଙ୍କୁ ସର୍ବଦୃଷ୍ଟି ଅସୁରଙ୍କୁ ଅବୃଷ୍ଟି
ବାରଣ ନ ଗଲା ସେ କେ କାହାକୁ ଭେଟି ।
ଏକୋଶତ ନବ ଦିବଶ ପରିଯନ୍ତେ
କେ ଏହା ପ୍ରମାଣ କରିବ ଲେଖନ୍ତେ ।
ଅସୁର ବଳ ଶାନ୍ତ ନୋହିଲା ସମରେ
ଆଦିତ୍ୟ ଅଛି ନିମଞ୍ଜାର ଗର୍ଭରେ ।
ଆହୋ ପରୀକ୍ଷ ଶତେ ମେରୁ ଆଏତନ ଯେବଣ କାଏ
ସେ ନିମଞ୍ଜାର ଗର୍ଭେ ରହିଲା କିଞ୍ଚିତ ପ୍ରାଏ ।
ଅସୁର ବଳ ସଇନି ଯେ ଆଶିର୍ଯ ଏହା ଦେଖି
ଦେବତାଏ ବିଜଏ କଲେ ଦୃଗାର ତହିଁକି ।
ଅନେକ ବିନୋଇ ସେ ଦୃଗାଙ୍କୁ କଲେ ସ୍ତୁତି
ତବ ପ୍ରସନେ ମତା ଗୋ ବଞ୍ଚିଲୁ ଦୃଗତି ।
ଦୃଗା ବୋଇଲେ ଅମରେ ଏଡ଼େକ ଭରସା
ଅନେକ ବାନ୍ଧେବ ଘେନିଣ ଅଛି ସେ ମହିଷା ।
ବ୍ରହ୍ମା ବୋଇଲେ ଗୋ ଶୁଣ ମାତ ଦୃଗେ
ମହେଷାଂ ଉତପାତ ପଡ଼ୁକିନା ଆମ୍ଭ ଅଙ୍ଗେ ।
ମାଗୋ ତୈଲୋକେ ବଳବନ୍ତ ଯେ ଶମ୍ଭୁ ଯେ ନିଶମ୍ଭୁ
ଭାସ୍କର କାଳବିମୋଚନ ରକ୍ତବୀର୍ଯ୍ୟ ସେ
ନାଶଗଲେ ସବୁ ।୩୩୪୦।
ତୈଲୋକ୍ୟ ଜିତା ସେ ଚଣ୍ଡ ମୁଣ୍ଡ ବୀର
ସ୍ୱର୍ଗ ତେଜ୍ୟା କରି ପଳାଇଲେ ସୁନା ସୀର ।
ଏମାନେ ନାଶ ଗଲେ ତବ ପ୍ରସାଦେ
ଏବେ ନିମଞ୍ଜାକୁ ଆଜ୍ଞା ଦିଅ ଆଦିତ ହେଉ ଉଦେ ।

ଏଚେକ ବଚନେ ନିମଞ୍ଜୀ ବିକାଶିଲେ ତୁଣ୍ଡ
ଗର୍ଭୁ ବାହାର ହୋଇଲେ ମାରତଣ୍ଡ
ଆଦିତ ଦେବତା ଯହୁଁ ବିକାଶିଲେ ଜୋତି
ସପତ ବ୍ରହ୍ମାଣ୍ଡର ଫିଟିଲା ଦୃଗତି ।
ସୁଖେଣ ରହିଲେ ସେ ସମସ୍ତ ବୃନ୍ଦାଅର୍କେ
ରକତ ନଦୀ ଦେଖି ଆଶ୍ଚର୍ଯ୍ୟ ଦେବ ଲୋକେ ।
ଆହୋ ପରୀକ୍ଷ ଅନେକ ଉତସଲ୍ୟ ହୋଇଲା ବସନ୍ଧରୀ
ବହୁତ ମୃତୁପିଣ୍ଡ ଲାଗନ୍ତେ ହୋଇଲା ପୁଣ ଭାରି ।
କରେ କମ୍ବୁ ଧରି ବିଜଏ ବସୁମତୀ
ଦୃଗାର ଛାମୁରେ ସେ ବହୁତ କରଇ ସ୍ତୁତି ।
ଦୃଗାଏ ବୋଇଲେ ବସୁଧା ହୋଇଲୁ ତ୍ରିପୁତି
ଶରୀର ତ ଦିଶିଲା ଏବେ କନକ ମଏ ଜୋତି ।
ଛାଡ଼ିଲା ଶେତ ଭାବ ହୋଇଲୁ ଅରୋଗୀ
ବସୁଧ୍ୟା ବୋଇଲେ ଏବେ ହୋଇଲି ବଡ଼ ଭୋଗୀ ।
ଦୃଗାଏ ବୋଇଲେ ତୋହର ଇଚ୍ଛାଏ ରକତ ମାଂସ ଶୋଷ
ଗତକଥା ପାସୋରିଯାଉ ତୋ ଶରୀର କର ତୋଷ ।୩୩୫୦।
ବସୁଧ୍ୟା ବୋଇଲେ ମା ଗୋ ମୃତୁପିଣ୍ଡ ରୋଧିର ମହାଜାଳା
ଶରୀର ହୋଉଅଛି ମୋର ଲୋହିତ ପିଙ୍ଗଳା ।
ଆଜ୍ଞା ଦେ ଦେବୀମାନେ ଯାଆନ୍ତୁ
ଦେଖିବାକୁ ଶରଧା ମୋର ରକ୍ତ ମାଂସ ଖାନ୍ତୁ ।
ଦୃଗା ବୋଇଲେ ଯେ ନାରାୟଣୀଙ୍କର ଆଗେ
ଆଜ୍ଞା ଦିଅ ଶ୍ରୋଣେହା ପିଚାସୁଣୀମାନେ ରକ୍ତ ମାଂସ ଖାନ୍ତୁ ବେଗେ ।
ଆହୋ ପରୀକ୍ଷ ରାଜା ଆଦିତ୍ୟ ଦେବତା ଯହୁଁ ଉଦେ
ହୋଇ ନ ଥିଲା
ନବଦିନ ନବ ରାତ୍ର ଏକ ରାତ୍ର ହୋଇଥିଲା ।
ଯେତେକ ମେଦ ମେଦା ମାଏଂସ ପଡ଼ିଅଛି ପୃଥୀ
ବ୍ରହ୍ମାଣ୍ଡ ପରିଯନ୍ତେ ଗନ୍ଧାଉଅଛି ଫୁଟି ।
ଦୃଗା ପୁଚ୍ଛାକଲେ ଦେବୀମାନନ୍ତ ରାଇଁ
କେତେ କେତେ ରାକ୍ଷସ ମାଇଲ ରଣଭୂଇଁ ।
ପ୍ରଥମେ କର ଯୋଡ଼ି ବୋଇଲେ ନାରାୟଣୀ
ମୁହିଁ ମାଇଲି ଯମ ଘଣ୍ଟର ତୁଲେ ପାଞ୍ଚ କ୍ଷେଉଣୀ ।
ବ୍ରହ୍ମାଏଣୀ ବୋଇଲେ ଗୋ ଶୁଣ ଜଗତ ମାତା
ଧଙ୍କାସୁର ସଇନି ମାଇଲି ମୁଁ ନବ ସହସ୍ର ମର୍ଭୁତା ।
କରପତ୍ର ଯୋଡ଼ି ଯେ ବୋଇଲେ ମାହେଶ୍ୱରୀ
ଛପନ କୋଟି ରାକ୍ଷସ ମାଇଲି ଜଙ୍କାସୁର ଔନ୍ଦି କରି ।

ପୁଣ କହିଲେ ସେ ଦେବୀ ବାଶେଳୀ
ଯୋଜନ ବାହୁ ତୁଲେ ମାଇଲି ତିନି ମର୍ଭୁତ ଅଗୁଳି ।୩୩୬୦।
କୃତ ଆଞ୍ଜୋଳି ହୋଇ ସେ ବୋଇଲେ ବିରିଜା
ମୋହର ମୁଖେ ପଡ଼ିଲେ ଛତାନ୍ତେକ ଦନୁଜା ।
ତାହାର ତୁଲେ ଗୋ ବେନି ସାଗର ସେନା
ସଇନି ମଡ଼ା ଗୋ ନ ଯାଇ ଗଣନା ।
ପୁଣ ପ୍ରଣପତ୍ୟ ହୋଇ କହଇ ଡାକେଶ୍ୱରୀ
ପଦ୍ମେକ ରାକ୍ଷସ ମାଇଲି ନିବାରି ।
ବିନୟ ଭାବ ହୋଇଁ ବୋଲଇ ମାରକମା
ତିନି ସାଗର ଦାନବ ଗୋ ବଧିଲି ମୁହିଁ ଖେମା ।
ଦୃଗାର ବଚନେ ବୋଇଲେ ବେନି ଚଣ୍ଡୀ
ସାତ ମର୍ଭୁତ ଦାନବ ସମରେ ମୁହିଁ ଖଣ୍ଡି ।
ପ୍ରଣପତ୍ୟ ହୋଇ ଯେ ବୋଲଇ କାଳିକା
ସାଗରେକ ଦାନବ ମୁଁ ମାଇଲଇ ଏକା ।
ବାହାସ୍ଫୋଟ ଦେଇ ସେ ବୋଲଇ କୋଠାରୀ
ମୋହୋର ମାଇଲାର କେତେଟି ଅନ୍ତ କରି ନ ପାରି ।
ବେଲମା ଗୋଲମା କହିଲେ ବେନି ଭଉଣୀ
ଦୁହେଁ ମାଇଲୁ ଆମ୍ଭେ ବେନି କ୍ଷେଉଣୀ ।
କରପତ୍ର ଯୋଡ଼ି ଯେ ବୋଲଇ ଉଗ୍ରତାରା
ସୁବାହୁ ତୁଲେ ମାଇଲି ମେବକ୍ଷ ବୀରା ।
ମସ୍ତକେ ହାଥ ଦେଇଁ କହଇ ଭଇରବୀ
ତିନି ବୃନ୍ଦ ସଇନି ଗୋ ମାଇଲି ମାହାଦେବୀ ।୩୩୭୦।
ଦୃଗାର ଅଗ୍ରତେ ଇନ୍ଦ୍ରାକ୍ଷି କହିଲା
କୋଶେକ ପରିଯନ୍ତେ ହାଣିଲି ଗୋ କେହୁ ଅନ୍ତ କଲା ।
କରପତ୍ର ଯୋଡ଼ି ଯେ କହଇ ତ୍ରିପୁରା
ସୁବାହୁ ତୁଲେ ମାଇଲି ପଞ୍ଚଶତ ଅସୁରା ।
ଦୃଗାର ଅଗ୍ରତେ ରୋଷଭରି କହଇ ଅମ୍ବିକା
ନବ ସାଗର ସନ୍ୟ ଯେ ମାଇଲି ମୁହିଁ ଏକା ।
କରପତ୍ର ଯୋଡ଼ି ଯେ କହଇ ମାତଙ୍ଗେ
ତେଇଶି ମର୍ଭୁତ ଯେ ମୁଁ ମାଇଲି ସମଯୋଗେ ।
ଦୃଗାର ଛାମୁରେ ଯେ କହଇ ଭଗବତୀ
ଅଶୀ ଲକ୍ଷ ଯୋଧା ମୁ ମାଇଲି ଅନ୍ତ ନାହିଁ ପାଦାନ୍ତି ।
ଅବଲମ୍ବନ ବୋଲି ସେ ଅସୁର ତୁଲେ ମାରୁଚୀ
ଚାମୁଣ୍ଡାର ତୁଲେ ସମର ମର୍ଭୁତେକ ପାଚୀ ।
ମାତାର ଛାମୁରେ ସେ କହଇ ଭାଲୁଙ୍କି

ଅବିଛନ୍ନେ ହାଣୁଥିଲି କେହୁ ତାହା ଲେଖି ।
ଦୃଗାର ଛାମୁରେ ଯେ କହଇ କମଳା
ସାଗରେକ ସଇନି ପଡ଼ିଲେ ସେ ଲକ୍ଷେକ ଅଖଳା ।
କରପତ୍ର ଯୋଡ଼ି ଯେ କହଇ ବରାହୀ
ଜଟାସୁର ତୁଲେ କୋଟି ଯୋଦ୍ଧା ମାଇଲି ପାହାନ୍ତି ଅନ୍ତ ନାହିଁ ।
କରପତ୍ର ଯୋଡ଼ି ଯେ କହଇ ଭଦ୍ରକାଳୀ
ପଞ୍ଚମର୍ଭୁତ ସେନା ମୁଁ ମାଇଲି ନିରୋଳି ।୩୩୮୦।
ଦୃଗାଙ୍କ ଛାମୁରେ ସେ ବେତାଳୀ ବୋଇଲା
ମୋହୋର ମାଇଲା ବେନି ମର୍ଭୁତ ହୋଇଲା ।
ସମ୍ୟ ଅମ୍ବିକା କହିଲେ ଗୋ ଶୁଣ ମହାଦୃଗେ
ପଦ୍ମେ ମର୍ଭୁତ ଯୋଦ୍ଧା ମୁଁ ମାଇଲି ରଣରଙ୍ଗେ ।
କରପତ୍ର ଯୋଡ଼ି ଯେ କହଇ କାମାକ୍ଷି
ତିନି ସାଗର ଯୋଦ୍ଧା ମୁଁ ମାଇଲି ବାଛି ।
କରପତ୍ର ଯୋଡ଼ି ଯେ କହଇ ବିଝାଂସୁଣୀ ।
ଅସଂକ୍ଷେପ ହାଣିଲି ଗୋ କେ ପାରି ତାହା ଜାଣି ।
ଦୃଗାର ଛାମୁରେ ଯେ କହଇ ଶଙ୍ଖେଶ୍ୱରୀ
ମୁହିଁ ରଣେ ମାଇଲି ଗୋ ଯୋଦ୍ଧା ଖର୍ବ ଚାରି ।
ପ୍ରଣପତ୍ୟ ହୋଇ କହଇ ଅନନ୍ତା
ଶତପଦ୍ମ ସେନା ମାଇଲି କେ କରିବ ଗଣିତା ।
ପୁଣି ବିନୟ ହୋଇ କହଇ ବିଜୟା
ପଞ୍ଚ ସାଗର ସଇନି ମୁଁ ମାଇଲି ଶତେ ବାହା ।
ଦୃଗାର ଛାମୁରେ ମହାମାୟା ବୋଇଲା
ଅପାର ସନ୍ୟ ମାଇଲି ଯେ କେହୁ ଅନ୍ତ କଲା ।
ମାତ ଗୋ ଯେତେକ ସଇନି ମାଇଲି ଆଜର ରଣେ
ଅଷ୍ଟଉତ୍ତର ଶତେ ଯୋଜନ ଗୋ ପକାଇଲା ପ୍ରୟାଣେ ।
ମହା ବିଶ୍ୱବାସେନୀ ଗୋ ତୁ କିଅବା ବିଚାରୁ
ଅସୁର ବଳ ସଇନି ଗୋ କେ ସେ ଅନ୍ତକରି ପାରୁ ।୩୩୯୦।
ଆଗେ ଦେବୀମାନେ ଆଦି କରି ଚଉଷଠି ଯୋଗ୍ନୀ
ଆକାଶେ କ୍ଷେପନ୍ତି ଯେ ନବକୋଟି କାତ୍ୟାନୀ ।
ବ୍ରହ୍ମାଏଣୀ ମୃତି ଯେ ତିନି ପଦ୍ମ ଦେବୀ
ଏହାଙ୍କର ମାଇଲେ କିସ ଅନ୍ତ କରି ପାରିବି ।
ନାରାୟଣୀ ମୃତି ଛପନ କୋଟି ଦେବୀ ଚଣ୍ଡୀ
କଦଳୀ ବନ ପ୍ରାଏ କରି ଗୋ ଦାନେବ ବଳ ଖଣ୍ଡି ।
ଇନ୍ଦ୍ରାଏଣୀ ମୃତି ଚଉଷଠି କୋଟି ଯୋଗ୍ନୀ ଦେବୀ
ଏହାଙ୍କର ସମର କିସ ଅନ୍ତ ପାଇବି ।
କୃତାନ୍ତେକ ଦେବୀ ଆଲୋକିତ କାମ ରୂପୀ
ପଦ୍ମେକ ଦେବୀ ହୋଇଲେ ଗଗନ ମଣ୍ଡଳ ଖେପି ।
ଷାଠିଏ ଲକ୍ଷ ଦେବୀ ହୋଇଲେ ବଗୁଣାଇ
ଏହାଙ୍କରେ ଯେ କହଣା ନ ଯାଇ ।
ପନ୍ଦର ମେବକ୍ଷ ସେ ଶ୍ରୋଣେହା ମୂରତି
ଏହାଙ୍କରେ ସମର ଅସକ୍ଷ ଅଗତି ।
ମାତା ଗୋ ଏହାଙ୍କୁ ସଞ୍ଚପି କିସ ଯେ ପଚାରୁ
ଏକ ଚଣ୍ଡୀକେ ଶଙ୍ଖେକ ବଳ ସଘାରୁ ।
ପାଞ୍ଚ ପଦ୍ମ ସଇନି ଏକା ହୋଇଲା ରକ୍ତ ବୀର୍ଯ
ମରଣ ନ ସରିଲା ସେ ଦୃଷ୍ଟ ଯେ ଦନୁଜ ।
ମାଇଲେ ଖାଇଲେ ଗୋ କେହି ତାହା ଗଣି
ମୁହିଁ ମାଇଲି ଏକା ହୋଇଁ ତିନି ଯେ କ୍ଷେଉଣୀ ।୩୪୦୦।
ତୋହୋର ସଞ୍ଚେ ଜାତ ହୋଇଲୁଁ ତୋହୋର ଗର୍ଭୁଁ
ତେଣୁକରି ଭୂତ ଭବିଷ୍ୟ ଦିଶଇ ସେ ସବୁ ।
ଭବିଷ୍ୟକୁ କହିଲି ସିନା ସମସ୍ତ ନିର୍ଯପି
ଦୁଲଭ ସମରେ ସେ ଅକୂଳ କୂଳ ବ୍ୟାପି ।
ବସୁଧ୍ୟା ବୋଇଲା ମାତ ଗୋ ମୁଁ ଜାଣଇ ସମସ୍ତ
ମୋହୋର ପରେ ହୋଇଲାନି ଅନେକ ରାମାୟଣ ମହାଭାରଥ ।
ଅନେକ ବଳ ଦାନବ ସେ ମାଇଲେ ଚକ୍ରପାଣି
ତୋହୋର ଯୁଦ୍ଧକୁ ସାମାନ୍ୟ ନୁହଇ ଗୋସାମଣି ।
ବସୁଧ୍ୟା ବୋଇଲେ ଦେବୀମାନନ୍ତ ରାଇଁ ଆଜ୍ଞା ଦେବାକୁ
ଏ ମେଦ ମେଦା ଅସ୍ତି ଚର୍ମ ମାଂସ ଭଖିବାକୁ ।
ବହୁତ ତ୍ରିପୁତି ମାତଗୋ ନୋହଇ ନାଶହିଁ
ପୁଣି ବିନୋଇ ନ ପାରଇ ପ୍ରକାଶଇ ମହୀ ।
ବସୁଧ୍ୟାର ବଚନ ଶୁଣି ଜଗତ ମାତ
ପୁଣ ଶ୍ରୋଣେହା ଦେବୀମାନଙ୍କୁ ପାଦରୁ କଲେ ଜାତ ।
ବିଝାଂସୁଣୀ ଜାତ ପ୍ରଥମେଣ କାଏ
ଦୁଜେଣ ଜାଗୁଳାଇ ପୁଣ ଉପୁଜଏ ।
ପୁଣ ଜାତ ହାଦେ ହୋଇଲେ ବିଳାଶୁଣୀ
କାମାସୁଣୀ ଜାତ ହୋଇଲେକ ପୁଣି ।
ଆମାସୁଣୀ ଦାମାଗୁଣୀ ହାଦେ ସୁରାସୁଣୀ
ଖେମାସୁଣୀ କୈଷ୍ଣାସୁଣୀ ବସୁଧ୍ୟାସୁଣୀ ଅହନ୍ତାସୁଣୀ ।୩୪୧୦।
ଏ ଦେବୀମାନେ ସବୁ ଶ୍ରୋଣେହା ମୂରତି
ଦୃଗାର ମୁଖ ଚାହିଁ ସେ ଆଧାର ମାଗନ୍ତି ।
ରକତ ନଦୀ ଲୋ ଯାଇଁ ପିଅ ଜାଗୁଳାଇ

ପରମାର୍ଥ ବଚନ ଯହୁଁ ଦେଲେ ଜଗତଆଇ ।
ଏସନେକ ଆଜ୍ଞା ଯହୁଁ ଦେଲେ ଦେବୀ ଦୃଗେ
ଧାଇଁଣ ରକତ ଯେଂ ଘୋଟିଲେ ଅତିବେଗେ ।
ଗିରିବର ସମାନ୍ୟେ ଯହୁଁ ବଢ଼ାଇଲେ କାଏ
ଭୁଞ୍ଜନ୍ତି ମୁଖେ ଦେବୀ ସମରେ ଅଭଏ ।
ଯେସନେକେ ଗଙ୍ଗା ମେରୁ ମେଖଳେ ପଶଇ
ସେହି ରୂପେ ଦେବୀ ରକତ ମାଂସ ଶୋଷଇ ।
ଜଳନ୍ତି ଅସ୍ତି ଚର୍ମ ମାଂସ ଫୁଟି ଆଦି କରିଣ ସେହି
ଏକ ନିଶ୍ୱାସକେ ସେ ଘୋଟୁଛନ୍ତି ମହୀ ।
ଚଉଷଠି ଯୋଜନ ଉଞ୍ଚ ରକତ ନଦୀ ଥିଲା
ରାତ୍ର ଦିବସକେ ସବୁ ଯେ ଶୋଷିଲା ।
ମହା ଭୀଷ୍ମରୂପ କହୁଁ କହୁଁ ସର୍ବ ଭକ୍ଷି
ସମସ୍ତ ଖାଇଲେ ସେ ନ ରହିଲା କିଛି ।
ବସୁଧ୍ୟା ଦେଖନ୍ତେ ସେ ସରିଲା ସମସ୍ତ
ଯେ ଅବା ଜୀବନ୍ତେଣ ଥିଲେକ ଦଇତ ।
ତାହାନ୍ତ ସମରେ ସେ ମାଇଲେ ବିଳାସୁଣୀ
ଅନେକ ସମର କଲେ ହାଥିଆସୁଣୀ ବ୍ରହ୍ମାଏଣୀ ।୩୪୨୦।
ଥୋର ହସ୍ତ ଧରି ସେ କଚାଡ଼ିଲେ ସମସ୍ତ
ରଣେ ମହାଦେବୀ ହୋଅନ୍ତି ପ୍ରମତ୍ତ ।
ଦଇତଙ୍କ ଶହସ୍ରକୁ ସେ ନ କରନ୍ତି ଭଏ
ବଜ୍ରେଣ ନିର୍ମିତ ସେ ଯେବଣ ଦେବୀଙ୍କର କାଏ ।
ଶହସ୍ର ନ ବହିଲେ ନ ପାଇଲେ ବିମୁଖ
ପଳାବନ୍ତି ଦାନେବେ ସେ ହୋଇଣ ଅତିଦୁଃଖ ।
ମହା ବିଶ୍ୱରୂପ ସେ ହାଥିଆସେଣୀ
ଭାଜିଲା ଦାନବ ବଳ ଗୋଡ଼ାଇଲା ହାଣି ।
ବିଝଂଗିରି ପର୍ବତେ କଚାଡ଼ଇ ତୋଳି
ଅସ୍ଥି ଚର୍ମ ମାଂସ ହୁଅନ୍ତି ସର୍ବଧୂଳି ।
ରଣରଙ୍ଗ କଉତୁକେ କହିଂତ ନ ପାରି
ଏକା ହସ୍ତୀବାହାନି କେ ଅନେକ ସନ୍ୟ ମାରି ।
ଜପାସୁର ବୋଲି ସେ ଦଇତ ସେନାପତି
ଜପେଣ ତୋଷିଲା ସେ ପୂର୍ବେ ବେଦପତି ।
ଏକ ଲଏ କରି ବସିଲା ବେନି ବରଷ ଦୃଢ଼ ବ୍ରତ
ପ୍ରସନ ହୋଇଲେ ତାକୁ ପଞ୍ଚ ଯେ ବକତ୍ର ।
ବ୍ରହ୍ମା ବୋଇଲେ ରେ ଯାହା ଇଛା କଲୁ ଯାତୁ ଧାନ
ମାଗ ତୁ ବର ତୋତେ ହୋଇଲି ପ୍ରସନ ।
ଦାନେବ ବୋଇଲା ନାଥ ଯେବେ ତୁ ଦେବୁ ବର
ଜପ ତପ ଇଛା ଅନେକ ବଳଇ ମନ ମୋର ।୩୪୩୦।
ସ୍ୱାମୀ ଯେବେ ପ୍ରସନ ହୋଇଲୁ ବିରଞ୍ଚି
ଅଗତିକି ପ୍ରାପତ ଆନ ନ ବଳଇ କିଛି ।
ପିତା ବୋଇଲେ ତୁ ନିଜ ପୁରେ ଯା ଯା
ବଇତ୍ରଣୀ କୂଳେ ତୁ ତପ କରୁଥା ଯା ।
ଯେ ତୋହୋର ଜପ ଭାଙ୍ଗଇ ବଳାତ୍କାରେ
ତୋହୋର ଚାହିଁଲେ ଦହିଜ ହୋଇବ ତାହାର ଶ୍ୟରୀରେ ।
ଯଦାପି ହରିହର ହୋଇବ ପୁରନ୍ଦର
ତୋହୋର ବକ୍ରାନ୍ତରେ ଚାହିଁଲେ ଭସ୍ମାନ୍ତର ।
ଏସନେକ ବର ଯହୁଁ ଦେଲେ ବହୁବିଧି
ସତ୍ୟ ଯୁଗ ତାହାକୁ ହୋଇଲା ଗୁଧି ସିଧି ।
ମହୀନ୍ଦ୍ର ମଣ୍ଡଳେ ସେ ଅଟଇ ଅଧିପତି
ମଏ ଦାନବକୁ ପ୍ରଦାନ କଲା ତାହାର ଦୋହିତୀ ।
ସେ କନ୍ୟାର ନାମ ହୋଇଲାକ ରାଧି
ତାହାର ତହୁଁ ଜାତ ହୋଇଲାକ ବକ୍ରାଧି ।
ବଜ୍ରସିଂଘର ନନ୍ଦନ ଯେ କପିଳ ସିଂଘର ରାଏ
ମଏଷାଂସୁର ଦାନବ ଯେ ତାହାର ତନଏ ।
ଏମନ୍ତ ଜପାସୁର ମଏଷାଂସୁର ପଣ ଅଜା
ପୀରତି ବଢ଼ାଇ ସେ କଲା ଅନେକ ପୂଜା ।
ଯୋଗେଣ ଭୋଗ କରାଇଲା ଦତ୍ୟପତି
ଜପ ତପ ଛାଡ଼ି ସେ ମଏଷାଂସୁର ସେନାପତି ।୩୪୪୦।
ଦକ୍ଷିଣ କୋଶଳ ମଣ୍ଡଳ ଅଧିକାରୀ
ପାଞ୍ଚକୋଟି ଦାନେବ ଉପରେ ଦଣ୍ଡଧାରୀ ।
ଆହୋ ପରୀକ୍ଷ ଅନେକ ଭୋଗ କଲା ସେ ଜପାପାଦ
କର୍ମର ବିପାକେ ଆସି ପଡ଼ିଲା ପରମାଦ ।
ଆହୋ ପରୀକ୍ଷ ନଦୀ ବନସ୍ତ ଜାଣି ଜପାସୁର ସଇନି
ଥୋର ହସ୍ତ ଗୁଡ଼ିଆଇଁ ସବୁ ମାଇଲା ହସ୍ତୀବାସେନୀ ।
ସଇନି ପଡ଼ନ୍ତେ ଜପାସୁର ବିମୁଖ
ବୋଇଲା କି ବୋଲି ଚାହିଁବି ଆହୋ ଦାନେବଙ୍କର ମୁଖ ।
ସମରେ ଧନୁ ଶହସ୍ର ସେ ନ ପାରଇ ଧରି
ପିତାକୁ ଲଏ କରି ବସିଲା କୁମଣ୍ଡଳ ଗିରି ।
ଆହୋ ପରୀକ୍ଷ ଅସୁର ନିଷ୍ପାପର ଦେଖି ସେ ହସ୍ତୀ ବାସେନୀ
ଆକ୍ରେଷି ଧଇଲା ସେ ଥୋର ହସ୍ତ ଘେନି ।
ଆକ୍ରେଷି ଜପାସୁର ସେ ଚାହୁଁଛି ତାହକୁ

ନିମିଷକେ ଗିଳିଲା ସେ ଜପାସୁରକୁ ।
ପରୀକ୍ଷ ଅଗ୍ରତେ ଶୁକ ମୁନି ବୋଇଲେ
ବେନି ଅହିବ୍ରତେ କ୍ଷଣକେ ନାଶ ଗଲେ ।
ଜପାସୁର ନାଶ ଗଲା ହାଥିବାସେନୀର ହାଥେ
ପୁରନ୍ଦର ପୁଷ୍ପ ବୃଷ୍ଟି କଲା ସୁବର୍ଣ୍ଣ ତାହାର ମାଥେ ।
ଆହୋ ମଏଷାଂସୁରର ସମ୍ପତ୍ତି ଏକା ଜପାସୁରର ଧର୍ମେ
ଶ୍ରୀ ଆଶ୍ୟ ହୋଇଲା ଅତି ଉତକର୍ମେ ।୩୪୫୦।
ଜପାସୁରର ପଡ଼ନ୍ତେ ଅମଙ୍ଗଳ ହୋଇଲା ରାଜ୍ୟ
ଦାନବ ବପୁ ସେ ହୋଇଲା ହୀନ ବୀର୍ଯ ।
ଦାନବ କୁଳେ ପୁଣ ଲାଗିଲାକ ପୋକ
ଅନେକ ସମ୍ପର୍ବ ସେ କଲେ ବୃନ୍ଦାଅର୍କ ।
ଆହୋ ପରୀକ୍ଷ ଅଠାଇଶ ସେନାପତି ଯେ ଏ ତାହାର ଗଲା
ସତାଇଶ ମାତାଙ୍କର ବଳରୁ ଜଣେ ହେଁ କେହି ନ ଉବୁରିଲା ।
ମେଦ ମେଦା ପୀଡ଼ିତ ହୋଇଲାକ ପୃଥୀ
ଅନେକ ଆନନ୍ଦେ ଚଳଇ ବସୁମତୀ ।
ଏଥିଅନ୍ତରେ ସେ କାଳ ବିକାଳ ଦୁହେଁ
ଗୁପତେ ଥିଲେ ସେ ରଣଗିରି ନିକଟେ ହେ ।
ସନ୍ୟ ନିଧନେ ସେ ଅଇଲେ ଅତିବେଗେ
ଯାଇ ଜଣାଇଲେ ସେ ମଏଷାଂସୁରର ଆଗେ ।
ଅବଧାରିବା ଗୋସାଇଁ ଥାଠଯାକ ନିମଜ୍ଜିଲେ ତୋର
କର୍ଣ୍ଣେଣ ବଚନ ନ ଶୁଭିଲା ତାହାର ।
ପୁଣ ଦାନେବ ଯେ କହଇ ବେଗ ବେଗ
ଅଠେଇଶ ସେନାପତି ହୋଇଲେ ଓଳେଗ ।
ମଷାଂସୁର ବୋଇଲା ଓଳଗତି କି ନିମନ୍ତେ
ସ୍ତିରୀବୃନ୍ଦ ସାଧ ମୋତେ ହୋଇବ ଯେମନ୍ତେ ।
ଛାମୁରେ ଜଣାଇଲା ସେ କାଳ ବିମୋଚନ
ସ୍ୱାମୀ ପ୍ରାଣତ୍ୟାଗ ହୋଇଲେ ତୋର ସେନାପତିମାନ ।୩୪୬୦।
ଆହୋ ପରୀକ୍ଷ ରାଜା ବୁଡ଼ିଲା ସମ୍ପଦ ବୋଲି ପଡ଼ିଲା ନୃପମଣି
କାଳ ବିମୋଚନ ଧରି ନିଉଡ଼ନ୍ତି ପାଣି ।
ସାଷ୍ଟମ ପାଏ ହୋଇ ସେ ଦତ୍ୟ କୁଳ ରାଏ
ଛାଡ଼ଇ ନିଶ୍ୱାସ ସେ ଗତ ପ୍ରାଣ ପ୍ରାଏ ।
ମୁଖେ ଜଳ ସିଞ୍ଚଇ ସେ ଧୂମଲୋଚନ
ଉଚ୍ଚସ୍ୱରେ ନିଶ୍ୱାସ ଛାଡ଼ଇ ଘନ ଘନ ।
ବିଞ୍ଚନ୍ତେଣ ମହାରାଜା ହୋଇଲା ସାଷ୍ଟମ
ଏବେ ସେ ବେହେରଣ କଲା ମୋର ପୁରେ ଯମ ।
ତିନି ବ୍ରହ୍ମାଣ୍ଡ ଜିଣିପାରନ୍ତି ଏକା ଜଣେ
ସ୍ତିରୀ ଲିଙ୍ଗ ଯୋଗେସେ ପଡ଼ିଲେ ଅକାରଣେ ।
ମଣିତ ନ ଗଲି ମୁହିଁ ଦେବତାଙ୍କର କୃଟଛନ୍ଦ
କର୍ମକଇ ନିନ୍ଦଇ ସେ ରୋଦଇ ନରେନ୍ଦ୍ର ।
କଳ ବିମୋଚନ ବୋଇଲା ଯେବେ ବିଷ୍ଣୁଙ୍କୁ ଭୟେ ଜାଣୁ
ଚକ୍ରେଣ ବଧ ବୋଲି ଯେ ପରିମାଣୁ ।
ମଏଷାଂ ବୋଇଲା ମୁଁ ଅପାରକାଳ ବ୍ରହ୍ମାଙ୍କୁ ତପକଲି
ପୁରୁଷେଣ ଅବଧ ବୋଲି ବର ମାଗିଲି ।
ଅନ୍ଧେକ ମନ୍ତ୍ରୀ ଯେ କହିଲେ ନିରାଧାର
ବିଷ୍ଣୁ ହୋଇଲା ସେ ସ୍ତିରୀ ଲିଙ୍ଗ ଅବତାର ।
ଅନ୍ଧ ବୋଲିଣ ମୁଁ ତାହାକୁ କଲି ମନ୍ଦ
ଅନମତି କାରଣେ ବୁଡ଼ିଲା ମୋର ପଦ ।୩୪୭୦।
ମତ୍ତଗର୍ବ କରି ସ୍ତ୍ରୀଲିଙ୍ଗ କଲି ଛାର
ଯାହା ନିନ୍ଦା କଲି ତେଣେ ହୋଇଲା ଅପହାର ।
ଆହେ ବାଢିଏ ମୋର ପ୍ରାଣର ସଂଘାତ
ଏକାବେଳେକେ ମୋତେ କରିଗଲ ଅନାସ୍ତ ।
ଆରେ କାଳ ବିମୋଚନ ମୋତେ ଲାଗିଲା ବଡ଼ ଭଏ
କେବଣ ସମୁଦ୍ରେ ମୋର ଲୁଚାଇବି କାଏ ।
ଯେବଣ ଯେବଣ ସେନା ପ୍ରାଣ ତେଜ୍ୟା ହେଲେ ରଣେ
ଆବର ଜୀବନ କିମୂତ କାରଣେ ।
କର୍ମ ଆଦରି କରି ସେ ଶିରେ ବେନି ଭୁଜ ତାଡ଼ଇ
ବଜ୍ରପାତ ପ୍ରାଏକ ସେ ଭୂମିରେ ପଡ଼ଇ ।
ରାଜାର ବଚନେ ସେ କାଳ ବିମୋଚନ
ଆପଣାର ଅଧମ ପଣେ ମରାଇଲୁ ସେନାପତି ମାନ ।
ଆଗହୁଁ କହିଲେ ତୋତେ ଚଣ୍ଡ ମୁଣ୍ଡ ଯେବଣ ଦୀକ୍ଷା
ଆପଣେ ନ ଜାଣି ତୁ ଯେ କଲୁ ମୃତୁବାଞ୍ଛା ।
ତୁ ଆପଣେ ଯାଇଁ ଯେ ମିଳନ୍ତୁ ତାହାର ଛାମୁରେ
ପରାକର୍ମ ରୂପ ତୋର ଦେଖନ୍ତା ପ୍ରଥମରେ ।
ପାମର ଦର୍ପ ବହି କଲୁ ବଡ଼ପଣ
ବଡ଼ିମା ପଣେ ବୋଇଲୁ ଚଣ୍ଡ ମୁଣ୍ଡ ବାଳ ଧରି ଆଣ ।
ତୁହି ସେ ଆପଣେ କଲୁ ହାଦେ ଦ୍ୱନ୍ଦ
ସେହି ବାକ୍ୟ ଗୋଟି ତୋତେ ହୋଇଲା ପ୍ରମାଦ ।୩୪୮୦।
ଏବେ ନିସତ କଥା ଦେବ କଦାଶ୍ଚିତେ ନ ବୋଲ
ଦଣ୍ଡ ସାଜ ସ୍ତିରୀ ବୃନ୍ଦ ଦେଖିବା ବେଗେ ଚାଲ ।
ବିଚାରକୁ ଯୋଗାଇଲେ ହୋଇବାକ ଦୃଦ୍ଧି

ନଉଚେତ ନଗଲେ କରିବା ଚାଲ ସନ୍ଧି ।
ହେ କାଳ ବିମୋଚନ ମୁଖରୁ ଏସନକ ଶୁଣି
ମଏଷାଂସୁର ଦାନବ ସନମତ କଲା ପୁଣି ।
ଦୁନ୍ଦୁଭି ଶବଦ ବଜାଇଲେ ମହାରାଜା
ଆପଣେ ବୋଇଲେ ରେ ଦଣ୍ଡ ମୋର ସଜା ।
ସାରଥିର ନାମ ଯେ ଧୂମଲୋଚନ
ଅବିକାର ଦାନବ ସେ ତାହାର ନାହିଁ ବର୍ଣ୍ଣ ଚିହ୍ନ ।
ଆହୋ ଖରା ତାରେଣ ଯେହ୍ନେ ଆକାଶେ ଖେପଇ ଧୂମ
ଗଗନ ମେଖଳା ସେ ଦାନବଙ୍କର ବିକ୍ରମ ।
ତାହାକୁ ରାଇଁ ଆଜ୍ଞା ଦେଲେକ ଦନୁଜ
ଆରେ ଧୂମ ରଥ ମୋହୋର ସାଜ ।
ରାଜା ଆଜ୍ଞାଏ ସେ ରଥ ସାଜିଲେ ସାରଥି
ସୂର୍ଯ ମଣ୍ଡଳ ରଥ ଯେ ଆଦିତର ଜୋଡି ।
ଅନେକ ରତନ ସେ ମଣ୍ଡିଲାକ ହୟ
ଉଡ଼ନ୍ତି ପାତାଙ୍ଗ ଗଗନେ ବିଜୁ ରେହ ।
ଝଟକାନ୍ତି ଝରାଏ ରଥର ଚଉପାଶ
ଶାମଳ ମେଘେ ଯେଷ୍ଣେ ଗମନ୍ତି ବଳାଅର୍କ ।୩୪୯୦।
ରଥର ଆଏତନ କହିତ ନ ପାରି
ଦେବ ଦଳଣ ରଥ ଆଏତନ ସହସ୍ର ଚାରି ।
ମାରାଗର ଥମ୍ଭ ନୀଳା ରେଖ ଖଞ୍ଜିଲା
ମାଣିକ ଧାଡ଼ି ଧାଡ଼ି ସେ ପାଦେକର ପୋଏଲା ।
ଝଲକନ୍ତି ରତ୍ନ ବଇଡୁଯ ଛାଏଣୀ ପାଣ ପାଟି
ରୂପାର ନିର୍ମାଣ ସେ ପାବଛ ଚଉଷଠି ।
ଲମ୍ବନ୍ତି ଗଜ ମୁକୁତା ଚଉଫେର
ଅଷ୍ଟରତ୍ନ କଳସ ବସନ୍ତି ରଥର ଉପର ।
ନେତର ପାତାଙ୍ଗ ଯେ ଉଡ଼ନ୍ତି ଏକ ଲକ୍ଷ
ବାଳ ଅର୍କ କୋଟି ଜାଣି କିରଣ ପ୍ରତକ୍ଷ ।
ରତ୍ନଗିରି ସମାନ୍ୟେ ଅଦ୍ଭିବ୍ରତେକ ରଥ ସାଜି
ରଥେ ଯୋଚିଲା ମେଘନାଦ ସାରିକ୍ଷେ ନବ ସହସ୍ର ବାଜୀ।
ରାୟେଟ ପାଟ ଗହଳେ ରଥ ଯେ ମୁରାଟ
ଡାଳିମ୍ବ ଚାମର ସେ ରୂପାର ବନ୍ଧ ବେଷ୍ଟ ।
ମାଣିକ୍ୟର ପୁଞ୍ଜି ପୁଞ୍ଜି ଝଡ଼ା ମାଳେ ଝଳି
ଲମ୍ବନ୍ତି ଚାମର ମୁକୁତା ମାଳି ମାଳି ।
ହୀରା ରତ୍ନ ପ୍ରବାଳ ଯେ ମୁକୁତାର ଝରା
ଇନ୍ଦ୍ର ଗୋବିନ୍ଦ ପାଟରେ ଚଉକଡି ଟେରା ।
ନାନା ରତ୍ନ ମଣି ଯେ ଲମ୍ବନ୍ତି ଚଉପାଶ
ଯେସନେ ତାରାଗଣେ ଉଦଏ ଆକାଶ ।୩୫୦୦।
ଦେବ ଭାଣ୍ଡରୁ ଯେତେକ ଆଣିଥଲା ରତ୍ନ
ନେଇଣ ସାରଥି ରଥେ ମଣ୍ଡିଲା ଅତି ଯତ୍ନ ।
ରଥରେ ଖଞ୍ଜିଲା ନେଇ ରତ୍ନ ବାରାନିଧି
ସେ ରଥ ବର୍ଣ୍ଣିବାକୁ କିସ ମୋର ବୁଦ୍ଧି।
ତ୍ରୈଲୋକ୍ୟ ମଧ୍ୟେ ସେ ଅମୂଲ୍ୟ ରତ୍ନସାର
ବିଶ୍ୱକର୍ମା ଖଞ୍ଜିଲା ଆଣି ସେ ରଥର ଉପର ।
ସଞ୍ଚକେତୀ ବିମାନ ଏହାକୁ ସମ ନୋହିଲା
ଏହା ଶୁଣି ନରେନ୍ଦ୍ର ଯେ ପରୀକ୍ଷ ବୋଇଲା ।
ହେ ପଣ୍ଡିତ ତୁମ୍ଭେ ସୁବୁଦ୍ଧି ବ୍ୟାସ ସୁତ
ବୋଇଲ ଯେ ଆଦିତ ଦେବତାର ଏ ରଥ ।
ଅସମ୍ଭବ କଥା ତ ଶୁଣିଲା ମୋର ନାହିଁ
ଏ ରଥ ମଏଷାଂସୁର ପାଇଲାକ କାହିଁ ।
ଶୁଣ ହୋ ମହାରାଜ ବଦନ୍ତି ଶୁକବ୍ରହ୍ମା
ଯାହା ତୁ ପଚାରିଲୁ ଶୁଣସି ମହିମା ।
ଆଦିତ ଦେବତାର ସୂର୍ଯ୍ୟ ମଣ୍ଡଳ ରଥ
ଏଥେ ଆରୋହଣ କରଇ ଦିନକର ନାଥ ।
ଉଦଏ ଗିରି ଭେଦି ପ୍ରକାଶଇ ନିତି
ସପ୍ତ ଅଶ୍ୱ ଯୋଚି ବାହାଇ ଅରୁଣ ସାରଥି ।
ଗୋଲେକ ନାମ ବୃକ୍ଷ ଚକ ସେହୁ ରଥେ
ସେହୁ ପ୍ରତାକ୍ଷଣ କରଇ ଦେବ ନିତ୍ୟେଂ ।୩୫୧୦।
ଆହୋ ପରୀକ୍ଷ ଆଦିତ ଦେବତାକୁ ଧାଡ଼ି ଦେଲାକ ରାହୁ
ରଥ ଘେନି ସେ ଯେ ଅଇଲାକ ତହୁଁ ।
ବିଛାମାସ ଶୁକଳ ପୂର୍ଣ୍ଣମୀର ଅନ୍ତେ
ପୂର୍ଣ୍ଣମୀ ତିଥି ସେ ବାଇଶି ଦଣ୍ଡ ପରିଯନ୍ତେ ।
ଭୂମିବାର ସେ ଦିନ ଦୁଜା ଯେ ନକ୍ଷେତ୍ର
ଦୁଜା ମେଷ ରାଶି ରାହୁ ଘରେ ଚନ୍ଦ୍ର ଉଦିତ ।
ସମ୍ପୂର୍ଣ୍ଣ ବେଳ ଯେ ଏକାଦଶ ଘଡ଼ି
ରାହୁ ଆଦିତି ଯେ ହୋଇଲା ଭେଟା ଭେଟି ।
ଦେଖିଣ ଧାଇଁଲା ସେ ଦୃପିଷ୍ଟ ଚାଣ୍ଡାଳ
ରଥ ଛାଡ଼ି ପଳାଇଲା ସେ ଦିଗପାଳ ।
କ୍ଷୀର ସମୋଦ୍ରେ ଆଦିତ ଦେବତା ଲୁଚଇ
ସୂର୍ଯ୍ୟ ମଣ୍ଡଳ ରଥ ଗିଳି ରାହୁ ଘୁଞ୍ଚଇ ।
ଆଦିତକୁ ନ ପାଇଲା ସେ ପକାଇଲା ରଥ ଉଦ୍‌ଗାରି

ରତନ ଗିରି ଶିଖରେ ସେ ଥିଲା ହାଦେ ପଡ଼ି ।
ବିଶ୍ୱକର୍ମା ସହିତେ ରଥେ ଆଦିତ ଦେବତା ଚଢ଼ି
ଉଛାଳିଲା ରଥ ବୋଲି ତାହା ଆଦିତ ନ ଚଢ଼ି ।
ରାହୁର ପୁତ୍ର ତା ଜମ୍ଭୁ ଦଇତ ନେଲା
ସମୟେକ ରଥ ହାଦେ ତାହାର ତହିଁ ଥିଲା ।
ଜମ୍ଭୁ ଦଇତକୁ ଯେ ମାଇଲେ ସୁନାସୀର
ସେ ରଥ ଥୋଇଲା ନେଇ ଅମର ସ୍ୱର୍ଗପୁର ।୩୫୨୦।
ଜମ୍ଭୁ ଦଇତର ପୁତ୍ର ମଏ ଦାନବ
ତାହାକୁ ବର ଦେଲା ଦେବ ସଦାଶିବ ।
ଅମରାବତୀ ପୁରକୁ ସେ ମଏ ଦାନବ ଦେଲା ଧାଡ଼ି
ଇନ୍ଦ୍ର ପଳାଇଲା ତେଜି ଅମରାବତୀ ପୁରୀ ।
ଅନେକ ରତ୍ନ ବସ୍ତ୍ର ଅସୁର କଲେ ଜୁର
ସୂର୍ଯ୍ୟ ମଣ୍ଡଳ ରଥ ନେଲା ମଏ ଦାନବ ଅସୁର ।
ଆହୋ ପରୀକ୍ଷ ଗୋମୁଖ କେଶବ ରୂପେ ଅବତାର ହରି
ସେ ମଏ ଦାନବକୁ ମାଇଲେ ଚକ୍ରଧାରୀ ।
ସେ ମଏ ଦଇତର ଅନ୍ଧେକ ସନ୍ତତି
ସେ ଅନ୍ଧେକ ଦତ୍ୟକୁ ରଣେ ମାଇଲେ ବିକୋଟି ।
ଅନ୍ଧେକର ନନ୍ଦନ ଯେ ହୋଇଲା ରକ୍ଷ ଭକ୍ଷ
ତାହାକୁ କୃଷ୍ଣ ରୂପେ ମାଇଲେ ଶ୍ରୀବତ୍ସ ।
ସେ ସୂର୍ଯ୍ୟ ମଣ୍ଡଳ ରଥ ଯେ ଆଣିଲା ଦାମୋଦର
ଯତନେ ଥୋଇଲେ ନେଇ ହିରଣ୍ୟ ଗର୍ଭପୁର ।
ରକ୍ଷ ଭକ୍ଷ ପୁତ୍ର ଯେ ହେତି ପ୍ରହେତି
ବିରଞ୍ଚିର ବରେ ସେ ଅନେକ କଲେ ଅନୀତି ।
ସେ ହେତି ପ୍ରହେତି ଧାଇଁଲେ ହିରଣ୍ୟ ଗର୍ଭ ପୁରକୁ
ସମରେ ଆଖଣ୍ଡଳ ଯେ ହାରିଲେ ତାହାଙ୍କୁ ।
ଦାନବର ଭୟେ ଇନ୍ଦ୍ର ସମର କଲା ତେଜ୍ୟା
ସେ ସୂର୍ଯ୍ୟ ମଣ୍ଡଳ ରଥ ଆଣିଲା ଦନୁଜା ।୩୫୩୦।
ଆହୋ ପରୀକ୍ଷ ଦ୍ୱତୀୟ ଅବତାରେ ସେ ଦେବ ଶିରୀପତି
ସମରେ ମାଇଲେ ସେ ହେତି ପରହେତି ।
ସେ ସୂର୍ଯ୍ୟମଣ୍ଡଳ ରଥ ଆଣିଲେ ଚକ୍ରପାଣି
ଯଶୋବର୍ନ୍ତୀ ପୁରେ ସେ ଥୋଇଲେକ ପୁଣି ।
ହେତି ପ୍ରହେତି ପୁତ୍ର ବକ୍ରାଙ୍ଗ କାଳାନଳ
ଯମକଇ ଜିଣି ଆଣିଲେ ରଥ ସୂର୍ଯ୍ୟ ମଣ୍ଡଳ ।
ସେ ରଥ ଉପରେ ସେ ଅସୁର ଆରୋହୀ
ତାହାର ଭଏ ଦେବ ନ ରହିଲେ କେହି ।
ଅନୀତି କର୍ମ ଦେଖି ଦେବତାଙ୍କ ଗୁହାରି
ନାରାୟଣ ଅବତାର ସେ ହୋଇଲେ ଚକ୍ରଧାରୀ ।
ସେ ବକ୍ରାଙ୍ଗ କାଳାନଳକୁ ମାଇଲେ ଦେବ ଯୁଦ୍ଧେ
ସେ ସୂର୍ଯ୍ୟମଣ୍ଡଳ ରଥ ଥୋଇଲେ ନେଇ ପାତାଳ ବୈକୁଣ୍ଠେ ।
ବକ୍ରାଙ୍ଗର ପୁତ୍ର ମାଳି ସୁମାଳି
ତାହାକୁ ବର ସେ ଦେଲେ ଅଶ୍ୱମାଳୀ ।
ଆଦିତର ବରେ ସେ ହୋଇଲେ ଜଗଜିତା
ସମସ୍ତ ଋଷି ବ୍ରାହ୍ମଣଙ୍କର ଘେନିଲେ ସେ ହତ୍ୟା ।
ବିଷ୍ଣୁ, ଅବତାର ହୋଇଲେ ଜନାର୍ଦ୍ଦନ ରୂପେ
ହେଳେ ମାଇଲେ ସେ ବେନି କଉଣୋପେ ।
କୃଷ୍ଣ ତହୁଁ ଅଇଲେ ଦେବ ରଥ ଘେନି
ନେଇଁ ସମର୍ପିଲେ ସେ ଦେବତା ପଦ୍ମଯୋନି ।୩୫୪୦।
ମାଲ୍ୟବନ୍ତ ପୁତ୍ର ମଧୁ ନାମେ ଦତ୍ୟ
ତପେଣ ତୋଷିଲା ସେ ଦେବ ଶୂଳହସ୍ତ ।
ସ୍ୱର୍ଗପୁରକୁ ସେ ବହୁତ ଦେଲା ଧାଡ଼ି
ପଳାଇଲେ ସ୍ୱର୍ଗଛାଡ଼ି ଗଗନ ଅଧିକାରୀ ।
ଅନେକ ଅପକ୍ଷରୀ ହରି ଆଣିଲାକ ବଳେ
ଷୋଳ ସହସ୍ର କନ୍ୟା ହରି ଆଣିଲେ ଚାଣ୍ଡାଳେ ।
ସେ କନ୍ୟାନ୍ତ ବସାଇ ଆଣିଲେ ସୂର୍ଯ୍ୟ ମଣ୍ଡଳ ରଥେ
ଅନେକ କଉତୁକେ ସେ ବିହର୍ନ୍ତି ଦଇତେ ।
ଗରୁଡ଼ ନାରାୟଣ ସେ ଆସନ୍ତି ଆକାଶେ
କନ୍ୟାଙ୍କୁ ଘେନି ରାକ୍ଷସେ ପଡିଲେ ଆଗେ ସେ ।
ସେ ମଧୁ ନାମେ ଦତ୍ୟକୁ ମାଇଲେ ଜନାର୍ଦ୍ଦନ
ତହୁଁ ସେ ନାମ ବହିଲେ ଶ୍ରୀମଧୁସୋଦନ ।
ଷୋଳ ସହସ୍ର ନାଏକା ଯେ ଆଣିଲେ ଦେବହରି
ସୂର୍ଯ୍ୟ ମଣ୍ଡଳ ରଥ ଆଣିଲେ ଆଦି କରି ।
କନ୍ୟାନ୍ତ ଅମରେ ଛାଡ଼ିଲେ ଦାମୋଦର
ସେ ସୂର୍ଯ୍ୟ ମଣ୍ଡଳ ରଥ ଥୋଇଲେ ବରୁଣ ପୁର ।
ସେ ମଧୁ ଅସୁର ପୁତ୍ର ଜଳତରଙ୍ଗ
ତପେଣ ତୋଷିଲା ସେ ଦେବ ଶଶାଙ୍କ ।
ବରୁଣ ପୁରକୁ ସେ ଜଳ ତରଙ୍ଗ ଦେଲା ଧାଡ଼ି
ଜଳ ଅନ୍ଧାର ନାଏକାକୁ ସେ ବଳେ ନେଲା ହରି ।୩୫୫୦।
ସୂର୍ଯ୍ୟ ମଣ୍ଡଳ ରଥ ବରୁଣ ପୁରୁ ନେଲା
ଜଳ ଅନ୍ଧାର ନାଏକାକୁ ସେ ବେଳେ ଭୋଗ୍ୟ କଲା ।
ପୁଣ ଅବତାର ହରି ଦାମୋଦର ରୂପେ ଜଳେ

ଜଳ ତରଙ୍ଗ ରାଜାଙ୍କୁ ସେ ମାଗଲେ କୁତୋହଳେ ।
ସୂର୍ଯ୍ୟ ମଣ୍ଡଳ ରଥ ଆଣିଲେ ହରି ଏକା
ଏହାର ନନ୍ଦନ ଉପୁଜିଲା ତାଡ଼କା ।
ସେ ବିରୋଧିଲା ଯେ ଆକାଶ ଭୁବନ
ସ୍ୱର୍ଗ ତେଜ୍ୟା କରି ପକାଇଲେ ମଘବାନ ।
ସେ ସୂର୍ଯ୍ୟମଣ୍ଡଳ ରଥ ଘେନିଲାକ ବଳେ
ଅନେକ ଅନୀତି କଲା ତ୍ରୈଲୋକ ମଣ୍ଡଳେ
ଆହୋ ପରୀକ୍ଷ କାମ ଦହନ କାଳେ କାର୍ତ୍ତିକ ଅବତାରେ
ଶୁକ ବ୍ରହ୍ମାର ପାଦେ ସେ କଲାକ ଦିବ୍ୟପୂଜା ।
ସେ ତାଡ଼କା ଦଇତକୁ ମାଇଲେ କୁମାରେ ।
ସୂର୍ଯ୍ୟ ମଣ୍ଡଳ ରଥ ନେଇଁଣ ଦେବ ହରେ
ସେ ରଥ ଥୋଇଲେ ନେଇ ଅଳକାବତୀ ପୁରେ ।
ଆହୋ ଶମ୍ଭୁ ନିଶମ୍ଭୁ ଯେ ଆକାଶେ ହେଲେ ରାଜା
ସେ ସୂର୍ଯ୍ୟମଣ୍ଡଳ ରଥ ଘେନି ଗଲେ ଦନୁଜା ।
ଏ ରଥ ଘେନିକଲେ ଆକାଶ ଦିଗ ବିଜେ
ଅନେକ ସମ୍ପରେ ମଏଂଷାସୁରକୁ ଦେଲେ ମହାରାଜେ ।
ବ୍ୟାସଙ୍କର ନନ୍ଦନ ବଦନ୍ତି ଶୁକବ୍ରହ୍ମା
ଏ ରଥ ହାଦେ ଏସନକ ମହିମା ।୩୫୬୦।
ତୁ ଯେ ପୁଛାକଲୁ ଏ ରଥ କାହୁଁ ପାଇଲା ମଏଂଷାସୁର
ତେଣୁ କରି କହିଲି ମୁଁ ଶାହାସ୍ର ବିଚାର ।
ଶୁଣି ସାନନ୍ଦ ଯେ ହୋଇଲେ ପରୀକ୍ଷ ରାଜା ।
ଶୁକବ୍ରହ୍ମାର ପାଦେ ସେ କଲାକ ଦିବ୍ୟ ପୂଜା ।
ଅବିକାର ପୁରୁଷ ସେ ଶୁକମୁନି
ଋଷିକୁଳ ମଧେ ଯେ ମହିମା ତାର ଧନି ।
ଯାର ବାକ୍ୟ ଗୋଟି ଯେ ପାଷାଣର ରେଖା
ଯାବତ ଚନ୍ଦ୍ର ଦିବାକର ଯେହ୍ନେ ସାଖା ।
ସେ ମୁନି ପଣ୍ଡିତ ସୁବୁଦ୍ଧି ମହାଭିଜ୍ଞ
ଭୂତ ଭବିଷ୍ୟ ଜ୍ଞାତା ଯେ ଅଟଇ ସର୍ବଜ୍ଞ ।
ଅସକ୍ଷ ସାଗରକୁ ଯେବଣ ମୁନି ଜ୍ଞାତା
ଗଙ୍ଗାବାଲି ସଂକ୍ଷେପ କରିବାକୁ କେହ୍ନେ ସମରଥା ।
କଉତୁକ ପୁରୁଷ ତୁ ସର୍ବଦା ଆନନ୍ଦ
ମାନବ ଜନ୍ମକୁ ଭାବନା ମହାବନ୍ଧ ।
ବ୍ୟାସକୁ ସକ୍ଷ ନାହିଁ ଯାହାର ମହିମା
ଶୂଦ୍ରମୁନି ସାରୋଳା ଦାସକୁ କରିବାକୁ କ୍ଷେମା ।

## ମହିଷାସୁରର ଯୁଦ୍ଧେ ଗମନ

ଶୁଣ ହୋ ପରୀକ୍ଷ ଶ୍ରୀ ଦୂର୍ଗାର ଚରିତ୍ର
ଯେ ମନେ ବାଞ୍ଛା ହୋଇବାକ ପ୍ରାପତ ।
ଏଥୁ ଅନନ୍ତରେ ମଏଷାଂସୁର ରାଏ
ଶ୍ରୀ ବ୍ରହ୍ମା ଦେବତାକୁ ସୁମରି ରଥେ ବିଜେ କଏ ।୩୫୭୦।
ଦୁତୀ ସମୋଦ୍ର ପ୍ରାଏକ ଦିଶଇ ଅସୁର ବଳ ଥାଠ
ଗଗନ ଅନ୍ଧାର ହେଲା ଉଲ୍କାପାତ ସମରାଷ୍ଟ ।
ଆଗିଆଣି ଥାଠରେ କାଳ ବିମୋଚନ
ଦଶ ସହସ୍ର ସେନାପତି ତୁଲେ ନବ ସାଗର ସନ୍ୟ ।
ମଏଷାଂସୁର ଡାହାଣ ପଖାଏ ଅସୁର ସିଂଘନାଦ
ସିନ୍ଧୁ ଉଛୁଳୁଛି ଥାଠ ଚଳିବା ଶବଦ ।
ସିଙ୍ଘନାଦର ତୁଲେ ଗଜ ତୁରଙ୍ଗ ବେନି
ଦୁଇ ଲକ୍ଷ ଯୋଧା ସେ ପାଞ୍ଚ ମର୍ଭୁତ ସଇନି ।
ଆହୋ ଅସୁର ବାମ ପାଖେ ସେ ଦୁନ୍ଦୁଭି
ଆକାଶ କମ୍ପଇ ସେ ଶବଦେ କମ୍ପଇ ଭୂମି ।
ଏହାର ତୁଲେ ସେ ଚାରିକୋଟି ବୀର
ବେନି ସାଗର ସନ୍ୟ ଯେ କୋଟିଏକ ଅସୁର ।
ସିଂଘମୁଖ ଗୋମୁଖ ବେନି ସେନାପତି
ପଛିଆଣି ଥାଠେ ଏକାମ୍ବର ଚକ୍ରବର୍ତ୍ତୀ ।
ଏହାଙ୍କର ତୁଲେ ବୀରା ଲକ୍ଷେ ଥାଠ
ପୃଥିବୀ କମ୍ପିଲା ଯେ ସାଜନ୍ତେଣ ଥାଠ ।
ମଏଂଷାସୁର ସଙ୍ଗେ ଏଗାର କୋଟି ପାଞ୍ଚ ମର୍ଭୁତ
ଅଠଷଠି ଲକ୍ଷ ସଇନି
ଏକାଦଶ ଦିବସ ଯୁଦ୍ଧେ ଅନ୍ତେ ଅଇଲେ ଯେତେକ ବଳ ଘେନି ।
ଅହିବ୍ରତେକ କଳାଚାମର ଢାଳନ୍ତି ବେନି ପାଖେ
ତାହାଙ୍କର ସଙ୍ଗତେ ଗଜ ମୁକୁତା ଲକ୍ଷେ ଲକ୍ଷେ ।୩୫୮୦।
ତିନି ଅହିବ୍ରତେକ ଯେ ମୟୂର ଝାଲ ଛତା
ନବଲକ୍ଷେ ଶୁକଳ ବର୍ଣ୍ଣ ଚାଷର କୋଟିଏ ଗଣିତା ।
ଆଲମ୍ବ ଅହିବ୍ରତେକ କଳା ପାଟ ଉପରେ କୋଟି କୋଟି
କୃଷ୍ଣ ରାଏଟ ପାଟର ମେରିଆ ଛତ୍ରୀ ବେନି କୋଟି ।
ଅନ୍ତରତେ ହାଦେ ଲକ୍ଷେକ ଉଦଣ୍ଡ
ଏମନ୍ତେ ସମସ୍ତେ ହେଁ ଧାମନ୍ତି ଗନ୍ଧର୍ବ ବାହାନେ ପ୍ରଚଣ୍ଡ ।
ପଞ୍ଚଷଠି ସହସ୍ର ବୀରତୂର ପଞ୍ଚଷଠୀ ସହସ୍ର ବୀର ଢୋଲ
ପଞ୍ଚ ସହସ ନିଶାଣ ପଞ୍ଚ ସହସ୍ର ଟମକ ବାଜନ୍ତି ଏମାନେ
ହୋଇ ଯମ ତୁଲ ।

କଢ଼ା ଦାଉଁଡି ବିଜିଘୋଷ ସମର ମର୍ଦ୍ଦଳ
ପଞ୍ଚଷଠି ସହସ୍ର ଝଂଝାଳ ପାଞ୍ଚ ସହସ୍ର କାହାଳ ।
ବଦନ୍ତି ଶୁକ ମୁନି ଶୁଣ ହୋ ପରୀକ୍ଷ
ଛତ୍ରୀ ହାର ମାନେ ତିନି କୋଟି ଆଠ ଅହୀବ୍ରତ ବେନି ଲକ୍ଷ ।
ବାଦ୍ୟକାର ମାନେ ତିନି ଲକ୍ଷ ଆଠ ଅହିବ୍ରତ
ପାଞ୍ଚଲକ୍ଷ ଅଶ୍ୱ ଚଢ଼ି ସବୁଙ୍କର ଆଗତ ।
ଆଗିଆଣି ଥାଠେ ସେ ସେ ଭାଲୁଙ୍କ ବାହାନ
କଳା ଚାମର ଧରି ବଳ ସମସ୍ତେ ବାଘ ବାହାନ ।
କଳା ବଗଲା କଳା ପରିହରଣ କଳା ତନୁ ଲୁହା ସାଞ୍ଜୁ ଅଙ୍ଗେ
କକଡ଼ା ମାସେ ଯେହ୍ନେ ଉଠନ୍ତି ହାସେ ମେଘେ ।
ତଥିର ଉପରେ ରତ୍ନ ମେଖଳା ପଙ୍ଖେ
ଶାମଳ ମେଘେ ଯେହ୍ନେ ଖେପନ୍ତି ବଳାହକେ ।୩୫୯୦।
ଅସୁର ବଳ ଉଠନ୍ତି ଏକ ମୁଖ ହୋଇ
ମେଦନୀ ଦଲ ଦଲ ହୋଉଅଛି ମହା ଭାର ପାଇଁ ।
ଅମ୍ବିକା କହିଲେ ଗୋ ଶୁଣ ଦେବୀ ଦୃଗେ
ମଏଂଷାସୁର ବିଜେ କଲା ମହା ସାଗ୍ରାଂମେ ।
ଯେସନେକେ ଅଧିର ହୋଅଇ କ୍ଷୁଧାର୍ଥ ପ୍ରାଣୀ
ପିଚାଶୁଣୀ ବୃନ୍ଦ ତେସନ ହୋଇଲେ ଶୁଣି ।
ଯେମନ୍ତେ ସେ ଆଜ୍ଞା ଦେବୁ ମହାଦେବୀ
ବିନୁ ଆଜ୍ଞା ଏକେ ନୋହୁନା ପ୍ରାଭବି ।
ମହାବଳୀ ଦାନବ ବିସ୍ମ ରୂପୀ ପ୍ରାକର୍ମ
ବସୁଧ୍ୟା ଶ୍ୱରୀରୁ ଗଳଇ ତ୍ରିପଣ୍ଡ ମହାଘର୍ମ ।
ଦୃଗାର ଛାମୁରେ ବିନୋଇଂ କହଇ ବସୁନ୍ଧରା
ମାଗୋ ଦୁଗୁଣ ଲାଗିଲା ମୋତେ ଅସୁରଙ୍କର ମହାଭାର ।
ଦଲଦଳିତ ହୋଇ ମାଗୋ କମ୍ପଇ ନବ ସୃଷ୍ଟି
ଦେଖ ମୋହୋର ରୋମେ ରୋମେ ରୁଧିର ବୃଷ୍ଟି ।
ଦୃଗା ବୋଇଲେ ଆଜକ ତୁ ସହିବୁ ବସୁନ୍ଧରା
କାଲିକ ଆଉ ତୋହର ତହିଁ ନ ଥିବ କିଛି ଭାରା ।
ଦୃଗାର ମୁଖରୁ ଏସନକ ଶୁଣି
ଶରୀର ବଥାତ ଉପେଖିଲାକ ଧରଣୀ ।
ପୁଣ ହାଦେ ଦୁର୍ଗା ମୋହିନୀ ରୂପେକ କଲା
ପରମା ବଇଷବୀ ପଣ ଯେ ଆପଣେ ସ୍ରିଜିଲା ।୩୬୦୦।
ଗହ ଗହ କରି ଡାକିଲେ ମହାମାଏ
ଅନନ୍ତ କୋଟି ମୃତିରୁ ଅନନ୍ତ କୋଟି ଉପୁଜାଏ ।
ପରୀକ୍ଷ ପୁଛାକଲେ ଶୁଣହେ ମହାବ୍ରହ୍ମ
ସେହୁ ଦେବୀଙ୍କର ହାଦେ କିସ କିସ ନାମ ।
କେବଣ ବର୍ଣ୍ଣ କାନ୍ତି କେବଣ ରୂପ
ଶୁଣି ଆପାଦ କ୍ଷଏ ଯାଉ ଉପେଖ ସର୍ବ ପାପ ।
ଶୁକ ମୁନି ବୋଇଲେ ହୋ ମହାରଥୀ
ସଞ୍ଚପି ଶୁଣ ତୁ ଦେବୀଙ୍କର କଥା ।
ପ୍ରଥମେ ଜାତ ଯେ ହୋଇଲେ ନର୍ମଦା ସରସ୍ୱତୀ
ଦୁଜେ ଜାତ ହେଲେ ସାରୋଳ ଚଣ୍ଡୀ ମୃତି ।
ପୁଣ ଜାତ ହେଲେ ଅମ୍ବିକା ବଉଳାଇ
ଶାନ୍ତି କାନ୍ତି ମାଧବୀ ଉଖୁଳାଇ ଧାଇ ।
ରୁଖାଇ ରଖାଇ ଯେ ଅବତାରିକା
ମଧୁ ମାଧବୀ ତରାଳି ବିକଳା ଜଳୋକା ।
ଦ୍ରାମି ସାମି ଉତ୍ତମା ପଳାଇ
ବୀରଣାଇ ବିରଙ୍ଗମାଳୀ ପିଙ୍ଗଳାଇ ।
ସଦାଇ ବିଦାଇ କାପରାଇଁ ତନାଇ
ଧମନ୍ତି ସୁମନ୍ତି ହାଥୀ ହିଙ୍ଗଳାଇ ।
ଜେତାଇ ମତାଇ ଅନନ୍ତାଇ ବିଜୟ
କାଳନ୍ଦୀ ତୁଳସୀ କାନ୍ତି ଯେ ଅଭୟ ।୩୬୧୦।
ଅନ୍ଧାରି ସ୍ରାମୁକି ସାରେଆ ବିପୁଳା
ଗଙ୍ଗା ଯମୁନା ମେଖଳା ମହାଖଳା ।
ଜପ ଲୁପାଇ ମାନନୀ ଚନ୍ଦ୍ରରେଖା
ମରୁଆ ମାରୁଆ ଗୋପାଳୀକା ମଦନିକା ।
ସୁମତି ନିଦ୍ରାବତୀ କୃଷ୍ଣ ବର୍ଣ୍ଣ ପିଙ୍ଗଳା
ଅରୁଖା, ସୁରଧା ମହାଜାତ ତରକୀ ଦେବୀ ଅବଳା ।
ପ୍ରିୟମତୀ କୋଳ କମଳା ଶାଏନ୍ତା ।
ଧରମାଇ ଯମାଇ ଡାଙ୍କେଣୀ ଭୟାଙ୍କାରୀ ଚିତ୍ରପଦା
ଗାରଖି ସଦାରଖି ବନ ଦେବତୀ ବିପଦା ।
ଧବଳି ମଉଳି କୁରୁଳି ପାରେଖା ।
ସୁରସିଦ୍ଧ ମହାଜିତା ଆରେକ ଦ୍ରଶନୀ
ସୁରାସୁରି ଉଦାଉଣ୍ଡୀ ଭଣ୍ଡି ଅପୂର୍ଣ୍ଣା ।
ସଞ୍ଝାଇ ବିଂଝାଇ ମାହାନି ସାନିକଳି
ମୁକଳି ଦଣ୍ଡୀ ପ୍ରଚଣ୍ଡୀ ବିକରାଳି ।
ବୀର ବିତକ୍ଷି ବିପଦା ବିକୁଛି
ସୁମତି ବିମତି ଭାନୁମତୀ ପରୀକ୍ଷି ।
ସୁମତି ବିମତି ଧନୁମତୀ ରେବତୀ ଗିରିଜା
ସିଙ୍ଘାରି ବିଙ୍ଘାରି ଉଙ୍ଗାରି ସଚଳା ତନୁଜା ।

ଶାକେମ୍ବରୀ ବାଙ୍କେଶ୍ୱରୀ ଯଯାତି ମାଳତୀ
ବାସୀ ସୁବାସୀ ରେବତୀ ଯଶୋବନ୍ତୀ ।୩୬୨୦।
ଧରମାଇ ଜେମାଇ ଅଙ୍ଗିରାଇ ଅମାଇ
ଆନନ୍ଦାଇ ମୁରାଳ ଚିଂରାଈ ବୀରାଇ ।
ବିପାକ୍ଷି ଇନ୍ଦ୍ରାକ୍ଷି ଜଳରୋଦ୍ରୀ ପାର୍ବତୀ
ଉମା ଉପମା ବାସନୀ ମାଳବତୀ ।
ଚଣ୍ଡସୁରୀ ବୀରାସୁରୀ ଶୂନ୍ୟେସୁରୀ ଅନେକ ଦେବୀ
ଲେଖନ୍ତେ ଅନ୍ତ ନୁହଇ କେତେ ମୁ ସଞ୍ଚପି କହିବି ।
ଶ୍ୱେତ ପୀତ କୁଙ୍କୁମ ଶ୍ୟାମଳ ଗଉରୀ ବର୍ଣ୍ଣ
ପଞ୍ଚବର୍ଣ୍ଣ ଘେନି ସେ ଉପୁଜିଲେ ମୋହୋନୀ ଦେବୀ ମାନ ।
ଏହାଙ୍କର ନାମ ସଂକେତ ନ କଲେ ପରମ ଧର୍ମ ମୋକ୍ଷ
ଏହି ସେ ମୋହନ୍ତି ମୋହନୀ ଇଚ୍ଛାଏ ସବୁ କରନ୍ତି ଭକ୍ଷ ।
ଏ ଦେବୀମାନନ୍ତ ନାମ ସଙ୍କେତ ନ କରନ୍ତେ
ନାଶକର ଭୟରୁ କିସ ଚିନ୍ତା ନିମନ୍ତେ ।
ଏତେ ଦେବୀଙ୍କର ପାଦପଦ୍ମ ରଜ ଘେନି
ବଦନ୍ତି ସାରୋଳା ଦାସ ଗ୍ରହ୍ଣିକ ଶୂଦ୍ରମୁନି ।

## କାଳବିମୋଚନ ବଧ

ଶୁଣହୋ ପରୀକ୍ଷ ରାଜା ବଦୟନ୍ତି ଶୁକବ୍ରହ୍ମା
ନାନା ଆପଦ ପଡ଼ିଲେ ଏହି ସେ କରନ୍ତି କ୍ଷେମା ।
ଏକ ଆରକେ ସେ ରୂପେଣ ଜଗୁଜିଣା
ତେଲୋକ୍ୟ ମୋହିନୀ ସେ କାମେନୀ କାମସେଣା ।
ଜାତ ଅନ୍ତ ମଧେଣ ଅବସାନେଣ ଏହି
କରନ୍ତି ଗୃହବାସ ଏ ମାନୁଷ୍ୟନ୍ତ ମୋହି ।୩୬୩୦।
ଋଷି ବିପ୍ର ତପୋଧନଙ୍କର ଧ୍ୟାଏ ଭଞ୍ଜନୀ
ମତ ଗର୍ବ ପୁରୁଷଙ୍କର ଦ୍ରପ ଗଞ୍ଜନୀ ।
ହରନ୍ତି ହରାନ୍ତି ହସନ୍ତି ଗାବନ୍ତି
ଇଚ୍ଛାରଙ୍ଗେଣ କଉତୁକେଣ ଥାନ୍ତି ।
ଜାତ କାଳେ ଏମାନେ ମାତା ରୂପ ହୋଅନ୍ତି
ରତିକାଳେ ରୂପ ଏଯେ ହୋଅନ୍ତି ପ୍ରିଅବତୀ ।
ଅନ୍ତକାଳ ରୂପ ଏ ହୋଅନ୍ତି କାଳିକା
ଶେଷକାଳେ ହିଙ୍ଗୁଳା ବହନି ହୋନ୍ତି ସଖା ।
ଏତେକ ରୂପ ଧରି ଏ ମୋହନ୍ତି ସଂସାର
ଏହି ସେ ନାଶପାନ କରନ୍ତି ମହୀଭାର ।
ଏହାଙ୍କର ରୂପ ଗୁଣ ସେ ଦେଖିଣ ଆଦିନାରୀ
ଦୃଗା ଆଜ୍ଞାଦେଲେ ଦେବୀନ୍ତ ହକାରି ।
ଆଲୋ ଅସୁରଙ୍କର ଭାରା ଯେ ମେଦିନୀ ନ ସହଇ
ଯାଅଲୋ ଦାନବ ବଳ ତୁମ୍ଭେ ମୋହ ଯାଇ ।
ରାତ୍ରେଣ ସବୁଙ୍କରି ରୂପ ଖାଅ କାଢ଼ି
ଏକାମାତ୍ର ଦାନବ ମଏଷାସୁରକୁ ଛାଡ଼ି
ଆହୋ ପରୀକ୍ଷ ଦୃଗାର ଏସନ ଆଜ୍ଞା ପାଇଁ
ସର୍ବ ଦେବୀ ଅବତାର ହେଲେ ସେ ମାତଙ୍ଗୀ ପରମ
ବୈଷ୍ଣବୀର ତହିଁ ।
ଆହୋ ଦେବୀମାନେ ସୁନ୍ଦର ଏକୁ ଏକ ଯୁବା
ଦାନବ ବଳ ସଇନିର ଆଗେ ହେଲେ ଉଭା ।୩୬୪୦।
ଏକୁଏକ ବଳୀ ସେ ଦାନବ ମହାବଳୀ
ହୁଂକାର ଶବଦେ ସେ କରନ୍ତି କିଳିକିଳି ।
ଗିରିବର ସମାନ୍ୟେ ରହିଥିଲେ କଉଣୋପେ
ଆକାଶ ଭୁବନ କମ୍ପୁଅଛି ଦାନବଙ୍କର କୋପେ ।
ଧାଡିକାରେ ପଡ଼ିଲା ଯେହ୍ନେ ଖଗବର ପକ୍ଷୀ
ଅସୁରଙ୍କର ମତ୍ତଗର୍ବ ଭଗ୍ନହେଲା କାମାକ୍ଷି ଦେବୀଙ୍କି ଦେଖି ।
ଆହୋ ଅସ୍ତ୍ର ଶହସ୍ର ପକାଇ ଛାଡ଼ିଲେ ରଥ ଯାନ
ହୋଇଲେ କାମ ବଶ୍ୟ ପୀଡ଼ିଲା ମଦନ ।
କେ ମଦନେ ଭଳଇ କେ ମଦନ ରସେ ବାଇ
କେ ବୋଲଇ ମାତା ଗୋ କରସି ତ୍ରାହି ତ୍ରାହି ।
ବୁଡ଼ିଲେ କାମ ଜଳେ ହୋଇଲେ ମତ୍ତ ଭୋଳ
ଯେ ଯାହାର ମନ ଇଚ୍ଛାଏ କରି ଲୋଡ଼ନ୍ତି କୋଳ ।
ପ୍ରତିଜ୍ଞା କରି ସେ ନିଶରେ ହସ୍ତ ଦେଇଂ
ବାହାସ୍ୟଟ ଦେଇ ସେ ବକ୍ଷସ୍ଥଳେ ତାଡ଼ି ।
କେ ବୋଲଇ ପ୍ରୟାଗେ ଝାସ କଲା ପୂର୍ବେ
ଏ ବାରଙ୍ଗନା ସ୍ତିରୀକି ଭୋଗ କରିବ ଏବେ ।
ଅଥବା ଭୃତ୍ୟପଣେ ତୋଷିଲାକ କାଶୀ
ସେହି ସେ ଏମାନଙ୍କୁ ପାରିବେ ବିଳସି ।
ଛାଡ଼ିବି ଗୃହବାସ ଛଡ଼ ରଙ୍ଗ ଭୋଗ
ପ୍ରାଣ ହିଁ ପଛେଯାଉ ଏମାନଙ୍କ ସଙ୍ଗ ।୩୬୫୦।
ସ୍ତିରୀ ବୃନ୍ଦ ଦେଖି ସେ ମଏଷାଂସୁର ବୋଇଲା
ଏଣେ ସେ ଅସୁର ବଳ ମୋହୋର ନାଶଗଲା ।
ଏହାଙ୍କର ରୂପ ଦେଖି ସେ ନ ପାରିଲେ ଉବୁରି
ଅନ୍ୟେ ଅନ୍ୟେ ଆପଣେ ସେ ହୋଅନ୍ତି ମରାମରି ।
ଏଣେ ସେ ନାଶ ଗଲେ ସମସ୍ତ ଦନୁଜ

ମୁହିଁ ବୋଇଲି ସ୍ତିରୀ ମାତ୍ରକେ କିସ ବଳ ବୀର୍ଯ୍ୟ ।
ବକ୍ର ନୟନେ ଚାହିଁଲେ ପର୍ବତ ଉଠଇ
ଅବଲୋକନେ ଚାହିଁଲେ ପାଷାଣ ଫୁଟଇ ।
ଆପଣେ ମଏଂଷାସୁର ଦେଲାକ ହାଦେ ଡାକେ
ସ୍ତିରୀ ବୃନ୍ଦମାନନ୍ତରେ ଭୋଗ କର ସୁଖେ ।
ରାଜାର ବଚନେ ସେ ଦାନବେ ଉଷତ
ଆନନ୍ଦେ ଧରନ୍ତି ଯାଇ କାମେନୀଙ୍କର ହସ୍ତ ।
ମାନନୀ ରୂପ ସେ ହୋଇଛନ୍ତି ତୁନି
ଇଛାଏଁ ଗଲେ ସେ କାମେନୀ ମାନନ୍ତ ଘେନି ।
ବହଇ ସରସ ବସନ୍ତ ଉଦ୍ଦାଳେକ ବନେ
କନ୍ୟାନ୍ତ ଘେନି ପଶିଲେ ସ୍ତମସ୍ତ ବୀର ମାନେ ।
ବନେ କଉତୁକେ ସେ ରାତ୍ର ହିଁ ହୋଇଲା
ମଦିରା ରସରଙ୍ଗେ ମତାଇ ଲାଗିଲା ।
ମାତା ଗୋ ସିନ୍ଧୋ ଉପ ସିନ୍ଧୋ କାଳ ବିମୋଚନ
କାଳ ବିକାଳ ଦୁହେଁ ଧୂମଲୋଚନ ।୩୬୬୦।
ଆବର ରହିଲେ ବାଦ୍ୟକାରମାନ
ଏତେକ ମାତ୍ର ଅଛନ୍ତି ମଏଂଷାସୁର ସନିଧାନ ।
ପୁଣ ସେ ଆନନ୍ଦେ କହଇ ବସୁମତୀ
ଛତା ହାରମାନେ ରହିଅଛନ୍ତି ମଏଂଷାସୁର କତି ।
ବସୁଧ୍ୟା ବୋଇଲେ ମାତ ମଏଂଷା ବଶ୍ୟ ଗଲାନି
ତାହାଙ୍କର ରୂପ ଦେଖି
ତୋହୋର ଆଜ୍ଞା ମାତ୍ରକେ ଅଛନ୍ତି ତାହା ରଖି ।
ଏଥୁ ଅନନ୍ତରେ ଯେ ପାହିଲାକ ରାତି
ମଏଂଷାସୁର ଛାମୁକୁ ସେ ନଇଲେ ସେନାପତି ।
ବୋଇଲା ଦାନବ ଦେଖିବା ଦଳବଳ
କେମନ୍ତ ରଙ୍ଗ ଉପୁଜୁଅଛି କୋତୋହୋଳ ।
ଶାର୍ଦ୍ଦେଳେକ ଆରୋହି ଶ୍ରୀକରେ ରତ୍ନ ଯାଠି
ବିଜଏ ମଏଂଷାସୁର ତୁଳେ ସନ୍ୟ ଲକ୍ଷେ କୋଟି ।
ଆହୋ ଲକ୍ଷ୍ମୀଭଦ୍ରା ନଦୀ ଦଖିଣ ଭାଗ ଆଡ଼େ
ସନ୍ୟ ଦେଖିଲା ଯାଇଁ ମନୋହର ବନ କଛାଡ଼େ ।
ରକ୍ତ ମାଏଂସ କର୍ଦ୍ଦନ ହୋଇଁ ବଳ ଅଛି
ଦେଖିଣ ଅସୁର ସେ ନ ପୁରଇ କିଛି ।
ଏସନେକ ଛନ୍ଦ ନୋହିଲା ସେ କାହାରି ହିଁ ହେତୁ
ଏବେ ସେ ଜାଣି ପାରିଲି କଥା ତତ୍ତ୍ୱ ହେତୁ ।
ଯେସନେକେ ମାନୁଷେ ଚିରଇ ନିଶାଚର ।

ସେହିମତି ହୋଇ ପଡ଼ିଅଛନ୍ତି ଅସୁର ।୩୬୭୦।
ଅସୁରଙ୍କ ବଧ ଦେଖିଣ ମଏଂଷାସୁର ରାଏ
ଶାର୍ଦ୍ଦୋଳ ପିଠିରୁ ପଡ଼ିଲା ସେ କାଳ ଅକ୍ରସ ପ୍ରାଏ ।
ଅସୁର ବଳ ମାନନ୍ତ ସେ କୋଳ କରିଣ ଧରଇ
କାହାକୁ ବଛସ୍ଥଳେ ପକାଇ ଉପରେ ପଡ଼ଇ ।
ନିଲଜ ଆତ୍ମା କିମ୍ପା ରହିଅଛି ମୁକୁଂ
ଭୂମିରେ କର ଦେଇ ସନ୍ତାପ କର୍ମକୁ ।
ଏସନ ହୋଇ ପ୍ରାଣୀକି ପଡ଼ଇ ପ୍ରମାଦ
ନାହିଁ ତ ଦେଖିଲା ମୋର ଏସନକ କୂଟ ଛନ୍ଦ ।
ଧିକ ଧିକ ହୋଉ ଯେ ମୋହୋର କପାଳ
ଛାଡ଼ିବି ନିଜ ପ୍ରାଣ ପଶିବି ଅନଳ ।
ମଷାଂର ବିକଳ ଦେଖି କାଳ ବିମୋଚନ
କୋପେଣ ଧାଇଁଲେ ସେ ଦେବୀଙ୍କ ସନିଧ୍ୟାନ ।
କାଳ ବିମୋଚନର ମହା ବିସ୍ମରୂପ ଦେଖି
ସମରେ ଆଗିଆଣି ହେଲେ ସେ ଶରଦ ଚନ୍ଦ୍ର ମୁଖୀ ।
ଯେବଣ ଦେବୀମାନେ ସେ ଜଗତ ମୋହନୀ
ସେ କାଳ ବିମୋଚନ ଆଗେ ମିଳିଲେ କରେ ପଦ୍ମ ଘେନି ।
ଦେଖିଣ ବିଚାରଇ ସେ କାଳ ବିମୋଚନ
ଏ ସନେକ କୂଟେ ଖାଇଲେ ସେ ଦାନେବ ବୀରମାନ ।
ତାହାନ୍ତ ଦେଖି ସେ ଅସୁର ରଥ କଲା ତେଜ୍ୟା
ନିଶହସ୍ତ ହୋଇ ସେ ଧାଇଲା ଦନୁଜା ।୩୬୮୦।
ସମରେ ସମ୍ପର୍ବେ ସେ ତ୍ରିଜଟାସୁର ନାତି
କୋଳ କରି ଧଇଲା ଦେବୀ ପଞ୍ଚଷଠି ମୂର୍ତ୍ତି ।
କୋପେଣ କାଳାନଳ ସେ ଦଖିଣକୁ ମୃତି କରି
ଫିଙ୍ଗି ପକାଇଲା ଦେବୀମାନଙ୍କ ଚରଣ ଧରି ।
ଆକାଶ ମାର୍ଗେ ସେ ଅସୁରଙ୍କ ପରିତାପେ
ନିର୍ଘାତ ପ୍ରାଏକ ହୋଇ ପଡ଼ିଲେ ରକତ ଦୀପେ ।
ଅନନ୍ତା ବିଜୟା ତାରଣୀ କାମାକ୍ଷି
ବିରାଳି କରାଳି ମାତାଙ୍ଗୀ ତାରାକ୍ଷି ।
ଶାମା ସୁବାମା କଳିକାଳ ବାସୀ
ବୃଷାଳୀ ଅତାଗ୍ନି ମାରୁତ ସୁକେଶୀ ।
ସୀତା ଶାଏନ୍ତା ମାଳତୀ ମୁକ୍ତ ବେଣୀ
ଚକ୍ରା ଚନ୍ଦ୍ରାବତୀ ନଇରତ ପ୍ରସନି ।
ମତି ମାତାଙ୍ଗି ଶରଧା ବିମଳାଇ
କୃତାଙ୍ଗି ଷଷାଗ୍ନି ତାରାକ୍ଷି ତନୁଆଇଁ ।

ତନୁ ଭାନୁ ମେଧା ସୁମେଧା ଶରଧା
ହୀରା ପ୍ରରା ରାଧା ସୁରାଧା
ଲଳିତା ସୁଲିତା ସୁପ୍ରରେଖା
ଶରଣ ଶଶୀମୁଖୀ ବାଶେଳୀ ଚନ୍ଦ୍ରରେଖା ।
ଛନ୍ଦ୍ରାଇ ଚନ୍ଦ୍ରାଇ ବିନ୍ଦାଇ ଭୋଟାଇ
ସଗୁଆ ପାଗୁଆ ଷଡ଼ଙ୍ଗି ମୋଟାଇ ।୩୬୯୦।
ଉଛୁରି ଛଳଦୁର୍ଗୁଣୀ ଆବର ବିକଟାଳି
ଭୁଟାଇ ଅଟୁଟାଇ କାପାଳୀ କଟାଳୀ ।
ଶୁଣ ହୋ ପରୀକ୍ଷ କାଳିବିମୋଚନର ପ୍ରଥମ ଯୁଦ୍ଧେ
ଏତେକ ଦେବୀ ପଡ଼ିଲେ ରକତ ଦୀପର ମଧ୍ୟେ ।
ପୁଣ ସେ ଦେବୀମାନଙ୍କୁ ଧଇଲା ଅତିବେଗି
ଦକ୍ଷିଣ ଦିଗକୁ ସେ ପକାଇଲା ଫିଙ୍ଗି ।
ଗଗନେ ଉଡ଼ିଲେ ସେ କାଳବିମୋଚନର କୋପେ
ସେ ମୋହନୀ ଦେବୀମାନେ ପଡ଼ିଲେ କୁଶଦୀପେ
ଶଙ୍କୁନି ସଉନି ଧତକାତକ ପରବାଟୀ
କାମୀ ଭାମୀ ବିଷଆଡ଼କି ଉତକାଟି ।
ଆସିତା ଦମିତା ଆବର କାଳିକା
ଛାକିନୀ ସାତମୁଗୁ କାମ୍ପି କାମିକା ।
ଅଦ୍ରାବଳୀ ରେଖି ସୁରେଖି ନମାମି ନଟକୁଟ
ଚଣ୍ଡୀ ଚାମଣ୍ଡି ବଦରିକା ସବୁ ନଷ୍ଟ ।
ମାଧବୀ ସାଧବୀ ତାରା ସୁତା ହାରା
ରେଖା ଦେଖି ଅମୃଥ ମୂଳା ବିକରା ।
ଗବନ ଗବନା ଦୃଷ୍ଟାଇ ମାରତଣ୍ଡ
ବିରହ ବିଧାତା କାଳଘଣ୍ଟ ପ୍ରଚଣ୍ଡ ।
ତାନୁକି ଜାନୁକି ପ୍ରିୟ କାଳନ୍ଦୀ
ଧାମା ସଉରମା ଧମାଇ କିଷ ମୁକୁନ୍ଦୀ ।୩୭୦୦।
ଚାମରି ମଇତ୍ରୀ ବିଷ୍ଣୁଭଦ୍ରା ଦମାଇସୀତା
ଭଦ୍ରାତା ଆଡ଼ଙ୍ଗି ବିମଳାଇ ମାରଜିତା ।
ଆବର ଜୀଗ୍ନ ଜାଇତ୍ରୀ କାନ୍ତାନୀ ଶୁକ ମୁନି
ଶୁକଦୀପେ ପଡ଼ିଲେ ସେ ସହସ୍ରେକ କାନ୍ତାନୀ ।
ପୁଣି ଦରାଣ୍ଡି ଧରି ଯେ ଫିଙ୍ଗିଦେଲା ଅନ୍ତରୀକ୍ଷେ
ସିଂଘଦୀପେ ପଡ଼ିଲେ ଯାଇ ଲକ୍ଷେ କୋଶେ ।
ଧାଇଁ ସେ ଦେବୀମାନଙ୍କୁ ଧରଇ ଅନ୍ତରୀକ୍ଷେ
ଅବିଶ୍ରାମ ଚକ୍ର ଜାଣି ବୁଲାଇଲା ତମେ ।
ବଳାଇଁଣ ଫିଙ୍ଗି ଦେଲା ମହା କୋପେ
ନବ ସହସ୍ର ଦେବୀ ପଡ଼ିଲେ କରଞ୍ଚ ଦୀପେ ।
ପୁଣ ବୁଲାଇଁଣ ଫିଙ୍ଗିଦେଲା ରାକ୍ଷସେ
ନବ ସହସ୍ର ଦେବୀ ପଡ଼ିଲେ ଯାଇ ବିଲଙ୍କ ଦେଶେ ।
ପୁଣ ଦେବୀନ୍ତ ଯେ ଧଇଲା ଦରାଣ୍ଡି
ଉତ୍ତରକୁ ଫିଙ୍ଗି ଦେଲା ନବ ସହସ୍ର ଚଣ୍ଡୀ ।
ଲୋକା ଅମ୍ବିକା ପୋଲୋକା ସୁଣୀ
ଅଭଏ ବିରୂପା ଆବର ହସ୍ତୀବାସେନୀ ।
ନୀଳା ମତିମିଞ୍ଜା ସରୂପା ବୃକ୍ଷଳାଇ
କାମାରି କାମାକ୍ଷି ତାରାକ୍ଷି ବଉଳାଇ ।
ମେଖଳା ଉପଳା କୋକିଳା ବିକଳା
ଷଠୀ ଦୁଉଛାଇ ଲେଉଟାଇ କମଳା ।୩୭୧୦।
ଅଟାରି ସୁଖାରି ଚକିତାଇ ଅଉରାଇ
ଜାଗେନି ଜାଗେଶ୍ୱରୀ ଚମ୍ପାଇ ରୂପାଇ ।
ସନନ୍ତା ବିନନ୍ତା କେନ୍ଦୁକାଇ ରଜାଇଁ
ପଞ୍ଚାସିନୀ ସୀତାସିନୀ କଙ୍କାଇ ବେଢ଼ାଇ ।
ପଣ୍ଡାଇ ଗଣ୍ଡାଇ ମତି ପ୍ରସନ ହିଙ୍ଗୁଳା
କାଶୀ ଧବଳାଙ୍ଗୀ ମାରୁଚୀ ପିଙ୍ଗଳା ।
ଜାନୁକୀ ତାନୁକୀ ଯୁଗାନୀ କାତିକା
ଦୃଶରୂପା ଅରୂପା ସଉନିକା କତିକା ପ୍ରାର୍ବତ ଲାଗିକା
ଲୋଟାସନୀ ଅବାସନୀ ଡାକେଶ୍ୱରୀ ଭାଲୁଙ୍କା, ଖାଖେଂଣୀ
କାଙ୍କଣୀ ଶତାସନୀ ପ୍ରିୟା ନର୍ମଦା ପିତାସନୀ ।
ମେଖଳା ମଦାଖଳା ଜନିତା ଭୋଗେଶ୍ୱରୀ
ସୁମତି ଚନ୍ଦ୍ରାବତୀ ଘୋରରୂପା ଭୂତରାଇ ।
ଦଖିଣା ମହୀରୂପା ସତୀ ଶାବେତ୍ରୀ
ରତି ଦମତୀ ଜଗତୀ ସଚଳା ସମ୍ପାଦି ଭାନୁମତୀ ।
ଜିତା ଜରତା କ୍ରିପା ବତ୍ସଳା
ସଦା ଆଲଳୀ ହରିଆ କମଳା ।
ଆହୋ ପରୀକ୍ଷ କାଳ ବିମୋଚନର ଘାଏ ପଡ଼ିଲେ ଗଗନ
ମେଖଳା ଦେବୀ
ଏତେ ଦେବୀ ପଡ଼ିଲେ ଜମ୍ବୋଦୀପର ପୃଥିବୀ ।
ଏ ମୋହିନୀ ଦେବୀମାନେ ମୋହୁଥିଲେ କପଟେ
ଅସୁର ବଳ ଭୋଜନ ଯେ କରୁଥିଲେ କୂଟେ ।୩୭୨୦।
ଏମାନେ ହାଦେ ଯେ ମୋହୁଥିଲେ ପୃଥୀ
କିଞ୍ଚିତ କର୍ମ ଦେଖାଇ ସେ ଉପଦର୍ପ କରାନ୍ତି ।
ରୂପେଣ ମୋହୋନୀ ଯେ ଅଟନ୍ତି ନବଯୁବା

ହୁଂକାରି ଖାଆନ୍ତି କାହାକୁ ନୋହନ୍ତି ଭାବା ।
ମଏଂଷାସୁର ଥାଠ ଯାକ କଲେ ସେହୁ ଲୀନ
ଏହାଙ୍କର ପ୍ରସାଦେ ଅସୁର ବଳ ହୋଇଲେ ଚୂର୍ଣ୍ଣ ।
ସକଳ ମୋହିଲେ ଏ ଏକା ଅବତାରେ
କାଳ ବିମୋଚନକୁ ହାରିଲେ ସମରେ ।
ସାତ ଦୀପକୁ ଚଣ୍ଡୀମାନଙ୍କୁ ଦେଲା ଫିଙ୍ଗି
ଅନେକ ଦୃଗମେ ଯାଇ ପଡ଼ିଲେ ସବୁ ଦେବୀ ।
ନିର୍ଘାତ ପ୍ରାଏକ ଯେ ପଡ଼ିଲେ ଦୂରେ ଦୂରେ
ଉଠି ନ ପାରିଲେ ସେ ପଡ଼ିଲେ ସେହିଠାରେ ।
ମୁହଁ ବକ୍ର କହାର ଅଧଖଣ୍ଡ କାଏ
କାହାର ହସ୍ତ କମ୍ପଇ କହାର ଭଗ୍ନ ବେନି ପାଏ ।
ପେଟ କୋଡ଼ କାହାର ପିଠି ହୋଇଲା କୁଜା
କେହୁ ଅଷ୍ଟ ବକ୍ର ହୋଇଲେ ଅପୂଜା ।
ମୁହଁ ଭଗ୍ନ କାହାର ହେଲା ଆଖି କାଣ
ଯେ ଯହିଁ ପଡ଼ିଲେ ରହିଲେ ସେ ଠାବେଣ ।
ବଜ୍ରଶର ପ୍ରାଏ ପଡ଼ିଲେ ବନିତା
କାହାର ଅର୍ଧଅଙ୍ଗ କାହର ଶ୍ୟରୀର ଯାକ ପୋତା ।୩୭୩୦।
ଶୁଣ ହୋ ପରୀକ୍ଷ ରାଜା ବଦନ୍ତି ଶୁକବ୍ରହ୍ମା
କାଳ ବିମୋଚନର ହାଦେ ଏସନେକ ମହିମା ।
ମଏ୍ଷାଂସୁର ଛାମୁରେ ଜଣାଇଲା କାଳିଞ୍ଜନ
ଅସୁର କୁଳ ମଧ୍ୟେଁ ତୋର ଧନ୍ୟ କାଳବିମୋଚନ ।
ପୁଣ ଯେ ଗୋଡ଼ାଇଲା ସହସ୍ରେକ ଦେବୀ
ଆକାଶ ମାର୍ଗକୁ ସେ ଦିଶିଲା ପରାଭବି ।
ପଞ୍ଚ ସମରାଷ୍ଟ୍ରେ ସେ ପଡ଼ିଲେ ଘୋର ବନେ
ବନ ଦେବତୀ ହୋଇଲେ ସମସ୍ତ ଦେବୀମାନେ ।
କାମାକ୍ଷି ରୂପ ଧରି ସେ ଗହନ ବନେ ଥାନ୍ତି
ପ୍ରୀତି ବଢ଼ାଇ ସେ ମାନୁଷ୍ୟ ଭକ୍ଷନ୍ତି ।
ଆବର ଅବଶେଷ ଯେତେକ ଦେବୀ ଥିଲା
କାଳ ବିମୋଚନ ଦତ୍ୟ ସବୁ ହିଁ ମାଇଲା ।
ସମୁଦ୍ରେ ପଡ଼ିଲେ ସେ ତିନି ସହସ୍ର ଦେବନ୍ତୀ
ଏମାନେ ସମସ୍ତେ ହେଁ ହେଲେ ଜଳଦେବତୀ ।
ମଳୟ ବସନ୍ତ ଚିରେଗାତୀ ତିଳଲୋଚନା
ଦ୍ରୁମତା ମଳିକା ଭବିଷ ମଦନା ।
ଗୋକୁଳା ପାଳାଗ୍ନି ଅଦ୍ଭୁତା ସଙ୍ଘିତା
ଶିବ ଭାବେ ସେ ବରେ ହୁଅନ୍ତି ବିରହିତା ।
ପନ୍ନାର ମଦାଗ୍ନି ସିଦ୍ଧ ଯେ ବାସେନୀ
ସାତୀମା ମାରିତା ରସିତା ସତାଇନି ।୩୭୪୦।
ତ୍ରିଜଟା ତ୍ରିକୁଟା ନାଗରୀ ବଉଳ ତିଳା
ତେଜ୍ୟା ସନ୍ତାନୀ ଯେ କର୍କଶ ପିଙ୍ଗଳା ।
ଏମାନଙ୍କ ମୂଳେ ଶତେ ଶତେ ଦେବତୀ
ଏତେକ ଦେବୀ ସେ ହୋଇଲେ ଜଳ ଦେବନ୍ତୀ ।
ଆହୋ ପରୀକ୍ଷ ବିହଡ଼ଇ ଦାନେବ ରଣକ୍ଷେତ୍ର ଭାଗେ
ବୀରବର ପ୍ରତିଜ୍ଞା ବହଇ ଯାଇଁ ମହେଷାସୁରର ଆଗେ ।
ଶତେ କୋଟି ସୁବନ୍ୟ ନେଇ ନିଉଡ଼ିଲା ମାଥେ
ଅନେକ ରତ୍ନ ଦେଇ ସେ କରଇ ପୁରୁଷାର୍ଥେ ।
ତୋହୋରେ ସେ ମୋତେ ମୁକତ ହୋଇଲା ଦଶଦିଶ
ପ୍ରାଣର ଠାକୁର ତୁ ବୋଲିବା ତୋତେ କିସ ।
ଛତ୍ରି ବୀର ସୋହୋଡ଼ ତୁ ଛତ୍ରି ବୀର ବାହୁ
ତୁ ସେ ସିଂଘଜା ଉଧର କୁଳ ରାହୁ ।
ଅଜ୍ଞାନ ମନ୍ଦ ପଣେ ମୁଁ ସକଳ ନାଶକଲି
ପ୍ରଥମ ଯୁଧେ କିମ୍ପା ତୋତେ ମୁକୁଟ ନ ବାନ୍ଧିଲି ।
ତୁ ସେ ଦାନବ ବଂଶକୁ ପରମ ମଉଷୋଧି
ସଖାନ୍ତ ମରାଇଲି କଲି ମନ୍ଦବୁଧି ।
ହରାଇଣ ବୁଦ୍ଧି ଶିଖିଲି କାର୍ଯ୍ୟ ତ କଲି ନାଶ
ତୋହର ବାହୁବଳକୁ ଏବେ କରିଥିବି ଆଶ ।
ଏ ପଞ୍ଚ ନଗ୍ରକୁ ତୁହି ସେ ଦାନବ
ଏକା ଜଣକେ ମାଇଲୁ ପିତାସୁଣୀ ଦୃଷ୍ଟ ବୃନ୍ଦ ।୩୭୫୦।
ଅସୁର ସାଗରକୁ ଅଟୁ ତୁହି ସେ ରଣ ରଙ୍କା
ଏଡ଼େ ବଡ଼ ବଂଶକୁ ଉଧାରିଲୁ ତୁ ଏକା ।
କିସ ଅବା ପୁରୁଷାର୍ଥ କରିବଇଁ ତୋତେ
ସର୍ବଦା ଅନୁଗ୍ରହ କରିଥିବୁ ମୋତେ ।
ପାତାଳ ଆକାଶ ଯେ ଯେ ବେନି ସ୍ୱର୍ଗ
ଦୁଇ ବାହାକୁ ତତେ ମୁଁ ଦେଲି ରାଜ୍ୟ ଭୋଗ୍ୟ
ଅତିଅ ପ୍ରାର୍ଥନା ମାଗଇ ତୋତେ ବାବୁ
ସୋ ମୋଡ଼ୀ ନାଗେରୀକି ଆଣି ମୋତେ ଦେବୁ ।
ରାଜାର ବିନୟ ଦେଖି ସେ ତୋଷ ହୋଏ ମନ
କରପତ୍ର ଯୋଡ଼ି ବୋଲଇ କାଳ ବିମୋଚନ ।
ନିଶ୍ଚିନ୍ତେଣ ଥାଅ ତୁ ଯୁଗେ ଯୁଗେ କରିଣ ରାଜ୍ୟ
ତ୍ରେଲୋକ୍ୟଶ୍ୱର ତୁ ହୁଅ ଅହିସୂର୍ଯ୍ୟ ।
ଯଦ୍ୟପି ସଂଗ୍ରାମେ ମୁ ନ ପାରଇ ଦେବୀ ଦୃଗେ

ବାହୁଡ଼ି ନୁଆସିବି ଜୀବନ୍ତେ ତୋର ଆଗେ ।
ବଦନ୍ତି ଶୁକ ମୁନି ଉପାଏନ ଶୁଣ ହୋ ପରୀକ୍ଷ ରାଜା
ଦୁରାନ୍ତେକ ପ୍ରତଜ୍ଞା କରି ସେ ଦନୁଜା ।
ଥାଠ ସନ୍ୟ ଗଜ ରଥ ନାହିଁ ନା ସଙ୍ଗରେ
ଲୁହାର ବେନି ଗଦା ଧରି ସେ ଧାମଇଁ ଏକ ସରେ ।
ରତ୍ନଗିରି ଶିଖରେ ବିଜଏ ଦେବୀ ଦୃଗେ
ନବକୋଟି କାନ୍ତାଏନୀ ଅଛନ୍ତି ଶୂନ୍ୟ ସ୍ୱର୍ଗେ ।୩୭୬୦।
କେବଣ ହିଁ ଦେବୀ ନାହିଁ ନା ସଙ୍ଗରେ
କାଳବିମୋଚନ ଯାଇଁ ପ୍ରବେଶ ଛାମୁରେ ।
ମନ୍ଦର ତୁଲେ ବିକାଶଇ ତାହାର କାଏ
ଦୃଗାଙ୍କୁ ଘୋଟିଲା ସେ ରାହୁର ତେଜ ପ୍ରାଏ ।
ଗଦା କରେ ବୁଲାଇ ସେ ଅଧରେ ଦନ୍ତ ଚାପି
କୋପେ ପ୍ରତଜ୍ଞା ସେ କରଇ ଅତି କୋପି ।
କାହୁଁଣ ଆସିଲୁ ଲୋ ହୋଇଲୁ ଅଦଭୁତେ
ମରଣକୁ ଆଶ୍ରେ କରୁ ଅନମିତେ ।
ତିନି ଭୁବନେ ଏ ମହାପ୍ରଭୁ ରାଜା
ଅନେକ ଭୋଗ ଭୁଞ୍ଜନ୍ତୁ ତୁ ହୁଅନ୍ତୁ ଯେବେ ଭାରିଯା ।
କାଳବିମୋଚନ ବୋଇଲା ଅଛିକି ତୋର ଇଚ୍ଛା
ନେଇଁ ସମର୍ପିବି ସମଏ ହୋଅ ରକ୍ଷା ।
କାଳବିମୋଚନ ତହୁଁ ଯେ ନିଷ୍ଠୁର ବାଣୀ ଶୁଣି
ଦ୍ରହସିତ ହୋଇ ବୋଇଲେ ଦୃଗତିତାରେଣୀ ।
ତୁ ଯେ ରାଜାର ହୋ ପ୍ରିୟବନ୍ତ ନୋହୁ
ତେଣୁ ସେ ମତେ କଟାଳ କରି କଥା କହୁ ।
ଜାଣିମା ହୋ ରାଜା ଯେବେ ତୋହର ବିଶ୍ୱାସ
ମଏଷାସୁରକୁ ଘେନି ମୋହୋର ଛାମୁକୁ ଆସ ।
କାଳବିମୋଚନ ବୋଇଲା ତୁ ସ୍ତିରୀ ଜନ୍ମ ନୋହୁ
ମଏଷାସୁର ଦାନେବକୁ ମହାଦର୍ପ କହୁ ।୩୭୭୦।
ଯାହାର ଚାଳନ୍ତେ କମ୍ପଇ ଇନ୍ଦ୍ର ରୁଦ୍ର ବ୍ରହ୍ମା ହରି
ତୋହର ତହିଁକି କେମନ୍ତେ ଆସିବ ବିଜେ କରି ।
ଅଥବା ଭଲେ ଯେବେ ନ ଯିବୁରେ ବାଳୀ
ଏହିକ୍ଷଣି ହୋଇବୁ ତୁ ପ୍ରପଞ୍ଚ ଯେ ପଞ୍ଚାଳୀ ।
ତାହା ଶୁଣି କୋପ ଯେ ଦୃଗତିତାରେଣୀ
ଆଲୋ ଉଗ୍ରତାରା ବାଶେଳୀ ନାରାଏଣୀ ।
ଅସୁରଙ୍କ ଦର୍ପ ଧ୍ୱଂସିବାକୁ ରହିଁଥିଲେ ଅନ୍ତରୀକ୍ଷେ
ଶୂନ୍ୟରୁ ଖସି ପଡ଼ିଲେ ଦେବୀ ଲକ୍ଷେ ।
ପାତାଳବାସେନୀ ଆକାଶେଣ ଶିର
ବକ୍ରଧରି କୋଦଣ୍ଡ ଗାଣ୍ଡିମ ମୁଦୁଗର କର ।
ହାଣ ହାଣ ବୋଲି ସେ ଶୁଭିଲାକ ବାଣୀ
ମୁଦୁଗର ନେଇ କାଳବିମୋଚନଙ୍କୁ ମାଇଲେ ନାରାଏଣୀ ।
ତ୍ରିଶୂଳ ନେଇ ସେ ପହୁଡ଼ିଲେ ଭଇରୋବୀ
ବାଶେଳୀ ନେଇ କର୍ଣ୍ଣକଟାରୀ ପ୍ରାଭବି ।
ନାଗଫାଶ ବନ୍ଧନ ସେ ବାନ୍ଧିଲେ ତ୍ରିପୁରା
ବଜ୍ର ଶକତି ଘେନି ଯେ ପିଟିଲେ ଉଗ୍ରତାରା ।
ବ୍ରହ୍ମଶର ଘେନି ସେ ମାଇଲେ ନାରାଏଣୀ
ତ୍ରିଶୂଳ ଶକତି ଘେନି ଭୂଷିଲେ ଇନ୍ଦ୍ରାଏଣୀ ।
ସୂର୍ଯ୍ୟ ବଳିଗଦା ନେଇଁ ମାଇଲେ ଚାମଣ୍ଡା
ମାରକମା ଆକ୍ରେଷି ନେଇ ମାଇଲେକ ଖଣ୍ଡା ।୩୭୮୦।
ଶୁଣ ହୋ ପରୀକ୍ଷ ବଦନ୍ତି ଶୁକବ୍ରହ୍ମା
ଦକ୍ଷିଣ ଭୁଜ ନେଇଁ ତାର ହାଣିଲେ ମାରକମା ।
କୋଠ ରେକ ଘେନି ସେ ମାଇଲା କୋଠାରୀ
ବାମ ଭୁଜେ ନେଇଁ ମାଇଲା ଦଇତାରି ।
ପୁଣ ବାଶେଳୀ ନେଇଁ ମାଇଲା ଅଧାଚନ୍ଦ୍ର ଖଣ୍ଡ
କାଳବିମୋଚନର ଛେଦି ପକାଇଲା ମୁଣ୍ଡ ।
ପିଚାଶୁଣୀମାନେ କଲେ ଆସି କେଳି
ରକତ ମାଂସ ଖାଇବାକୁ ହୋଇଲେ ମତୁଆଳି ।
କାଳବିମୋଚନଙ୍କୁ ତିନି ପଦ୍ମ ଚଣ୍ଡୀ
ଚିତାକୁହିଁ ରକ୍ତ ମାଂସ ନ ଅଣ୍ଟିଲା କଲେ ଖଣ୍ଡି ।
କାଳବିମୋଚନ ଦତ୍ୟ ପଡ଼ିଲାକ ରଣେ
ଆକାଶେ କଣୟ ବୃଷ୍ଟି କଲେକ ଦେବଗଣେ ।
କାଳବିମୋଚନ ପଡ଼ିବା ଦେଖି ସାନନ୍ଦ ଦେବଗଣେ
ମେରୁ ସଭାରେ ଯାଇ ପଶିଲେ ବୃନ୍ଦାଅର୍କ ରଣେ ।
ଲକ୍ଷେ ଶତଷଠି ବରଷ ପରିଯନ୍ତେ ନଥିଲା ଦେବ ସଭା
ଏବେ ସେ ଆକାଶକୁ ଦିଶିଲାକ ଶୋଭା ।
ଅମର ବିଳାସୁଣୀ ଚଉଷଠି କୋଟି
ନାରଦ ନଟ ନାଏକ ସପତ ସ୍ୱରେ ଖଟି ।
ଅନେକ ଉତସଲ୍ୟ ସେ ପୁଣ ପୁଣ ସ୍ୱର୍ଗେ
ମଳୟ ବସନ୍ତ ସେ ହକାରି କହନ୍ତି ଗନ୍ଧର୍ବେ ।୩୭୯୦।

## ମହିଷାସୁର ବଧ

ଏଥୁ ଅନନ୍ତରେ ଅସୁର କୁଳ ଧ୍ୱଂସନ
ମହିଷାଂସୁରକୁ କହିଲେ ବହନ ।
ସ୍ୱାମୀ କାଳବିମୋଚନ ନାଶ ଗଲାକ ଅଖଳେ ।
ସ୍ତିରୀବୃନ୍ଦ ସେ ମାଇଲେ କୁତୂହଳେ ।
ଶୁଣି ମୃକ୍ଷାଗତ ସେ ମହିଷାସୁର ରାଏ
ଆସ୍ତାନୁ ପଡ଼ିଲା ରାଜା ନିର୍ଘାତ ଶର ପ୍ରାଏ ।
କୋଳ କରି ଧରିଲା ସେ ଦାନବ ଧୂମ୍ରଲୋଚନ
ମୁଖରେ ଜଳ ସିଞ୍ଚିଲେକ ହେଲା ଚେତନ ।
ଅନେକ କ୍ରୋଧ କରଇ ସେ ମହିଷାସୁର ନୃପତି
ଆପଣାର ଶରୀର ଆପଣେ ବିକୋତି ।
ନିଲଜ ଆତ୍ମା ମୋର ମିଳାଇଣ ଯାଉ
ଏ କଷ୍ଟ ଦେଖିବାକୁ କିମ୍ପା ରହି ଥାଉ ।
ବାବୁ କାଳବିମୋଚନରେ ପ୍ରାଣର ମୋର ବନ୍ଧୁ
ଜେନାବତୀ ନଗ୍ରକୁ ମୋର ଉଦିତ ପୂର୍ଣ୍ଣ ଇନ୍ଦୁ ।
ଦେହ କିମ୍ପା ରହିଛି ତୋହୋର ଅଭାବେ
ନିଶ୍ଚଏ ଜାଣିଲି ମରଣ ପ୍ରାପତ ଏବେ ।
ଅଥବା ଯଦ୍ୟପି ବ୍ରତିବି ନିଲଜ
କାହାକୁ ଘେନି ମୁଇଁ କରିବଇଁ ରାଜ ।
ଆହୋ ଧୂର୍ମଲୋଚନ ତ ସିନ୍ଧୋ ଉପସିନ୍ଧୋ ତିନି
ସମଏକ ପଳାଅ ଯା ବ୍ରତ ଦେହ ଘେନି ।୩୮୦୦।
ଏ ଘାନ୍ତି ରଣ ଯୁଦ୍ଧ କରିବି ମୁହିଁ ଏକା
ଛାଡ଼ିଲି ମାୟା ମୋହ ମରଣକୁ ନିଶଙ୍କା ।
ଆହୋ ଏଡ଼େ ଏଡ଼େ ଯୋଦ୍ଧାଏ ଥିଲେ ଭୂତ ଭବିଷ ଜ୍ଞାତା
ଏଡ଼େ ବଡ଼ ମନ୍ଦ ବୋଲି କେହି ନୋହିଲେ କହନ୍ତା ।
ଦେବ ଦାନବ ମୁଁ ଜିଣିଲି ବାହୁବଳେ
ଦଇବକୁ ହାରିଲି ମୁଁ କର୍ମର ଅବଳେ ।
ଏହ୍ନେକ ଛନ୍ଦ ସେ ଦେବତାଙ୍କର ଅଛି
କେହି ମୋତେ ଜାଣି ନ କହିଲା ନ ଜାଣିଲି କିଛି ।
ଅପ୍ରାଭବ ନ ଚେତିଲି ମୁଁ ସେନାପତିଙ୍କ ଦର୍ପେ
ଏଥକୁ ଦଇବ ସେ ବିହିଲା ଅନୁକର୍ମେ ।
ମୁହିଁ ସେ ସବୁଙ୍କରି ଦେଖିଲି ମରଣ
ଜୀବ ଧରିଅଛି ମୋହୋର ନିଲଜ ପଣ ।
କାନ୍ଦଇ ମହିଷାସୁର ଶ୍ୟରୀର ବଡ଼ ବ୍ୟଥା
ଛତ୍ରୀ କୁଳେ ସେ ଦୃସହ କର୍ମ କଥା ।
ଅଥବା ଏଡ଼େ ସମ୍ପଦ ଯେ ଗଲା ମୋର ନାଶ
ସାମାନ୍ୟେ ହାରିଲେ ମୋତେ ନାହିଁ ଯଶ ଅପଯଶ ।
ପାମରୀ ଦୁରାନ୍ତରୀ ସ୍ତିରୀ ମାତ୍ର ଛାର
ହୀନ କର୍ମମାନେ ରହିଲେ ଏଡ଼େ ସମ୍ପଦ ମୋହୋର ।
କେ ବୋଲଇ ଅପାର କେ ବୋଲଇ ଏକା
ସ୍ତିରୀ ହୋଇ ପୁରୁଷକୁ କେମନ୍ତେ ନାହିଁ ଶଙ୍କା ।୩୮୧୦।
ଆହୋ ବିଷ୍ଣୁ ଯେ ମୋହୋର ଅଟଇ ବଇରୀ
ତାହାର ଯୋଗେ କିମ୍ପା ନ ଗଲା ମୋର ଶିରୀ ।
ବିଷ୍ଣୁର ହସ୍ତେ ଯେବେ ହୁଅନ୍ତି ମୁହିଁ ବଧ
କାଳଦଣ୍ଡ କୋହେ ନୁହନ୍ତି ନା ବିରୋଧ ।
ମୁହିଁ ଯେବେ ବିଷ୍ଣୁଙ୍କୁ ପାରନ୍ତି ହାଦେ ଜିଣି
ତୈଲୋକେ ଉଠନ୍ତା ମୋତେ ସାଧୁ ସାଧୁ ବାଣୀ ।
ପୁରୁଷେଣ ବଧ୍ୟ ବୋଲି ମାଗନ୍ତି ଯେବେ ପୂର୍ବେ
ବିଷ୍ଣୁର ଚକ୍ର ହାଦେ ପାବନ୍ତି ନା ଏବେ ।
ଏବେ ସେ ନିକଟ ହୋଇଲା ମୋର ମୃତ୍ୟୁ
ଅଦୋଷେ ନାଶ ଯାଉଛି ଏ ଦେବଙ୍କର ହେତୁ ।
କହୁ କହୁ କୋପିତ ସେ ଦାନେବ କୁଳ ଷଣ୍ଢ
ଧବଳ ପର୍ବତ ଉପରେ ନେଇ ପ୍ରହାରିଲା ଖଣ୍ଡା ।
ଆହୋ ପରୀକ୍ଷ ନଉ ଯୋଜନ ଯେବଣ ଧଉଳି ଶୟଳ
ମଏଂଷାସୁର ଖଡ଼୍‌ଗ ପଡ଼ନ୍ତେ ହୋଇଲା ବେନି ଫାଳ ।
ଆକାଶେ ଦେଖିଲେ ସମସ୍ତ ବୃନ୍ଦାଅର୍କେ
ସାଧୁରେ ମଏଷାଂ ବୋଲି ପ୍ରଶଂସା କଲେ ଦେବ ଲୋକେ ।
ସେହି ଖଡ଼ଗ ଧରି ବୁଲାଇ ବାହିଲା ଆକାଶକୁ
ଆଜ ସେ ମାରିବି ସମସ୍ତ ଦେବତାଙ୍କୁ ।
ବ୍ରହ୍ମାର ମୁଣ୍ଡ ମୋଡ଼ିବି ଏହିକ୍ଷଣି
ଏକ ଜଣକେ ନ ଥୋଇବି ବିହନ୍ତାପଣ ପୁଣି ।୩୮୨୦।
ଆହୋ ପରୀକ୍ଷ ଶୂନ୍ୟ ଭୁବନେ ଯହୁଁ ମହିଷାସୁର ରୂପ ଦେଖି
ଦେବତାଏ ପଳାଇଲେ ଗଗନ ଉପେଖି ।
କେଶ ବାସ ଅସମ୍ଭାଳ ହୋଇଣ ବିବୁଧେ
ସମସ୍ତେ ଶରଣ ପଶିଲେ ଯାଇ ଦୃଗାର ସନ୍ନିଧେ ।
ଦେବଙ୍କର କଷ୍ଟ ଦେଖି ସେ ଧାଇଁଲେ ନାରାୟଣୀ

ଆରେ ଆରେ ବୋଲି ଧାଇଁଲେ ଉଚ୍ଚସ୍ୱରେ ବାଣୀ ।
ଅବିଚ୍ଛନ୍ନେ ବାଣ ଯେ ବିନ୍ଧିଲା ଉପର
ଆକାଶ ମଣ୍ଡଳ ଯାକ କଲା ହାଦେ ଶର ।
ଅଶୀ ଶତ ଯୋଜନ ନବ ଶତ ଯୋଜନ ବହଳ
ଏତେ ଆକ୍ରାନ୍ତି କଲା ଶର ପୀଡ଼ା ଆକାଶ ମଣ୍ଡଳ ।
ଯାଇଁ ନ ପାଇଁଣ ଭାଳଇ ଦ୍ରପିଷ୍ଟ
ରୁନ୍ଧିତ ହୋଇଲା ସେ ସ୍ୱର୍ଗପୁର ବାଟ ।
ଅନ୍ଧେକ ମନ୍ତ୍ରୀଙ୍କି କହିଲା କରିବା କେବଣ ବୁଦ୍ଧି
ସ୍ୱର୍ଗକୁ ବାଟ ନାହିଁତ ହୋଇଲା ସର୍ବ ରୁନ୍ଧି ।
ଅନ୍ଧେକ ବୋଇଲା ହୋ ତୁ କହିଲେ ନ ଜାଣି
ସ୍ତିରୀ ଲିଙ୍ଗ ବୋଲି ସେ କହୁ ପୁଣି ପୁଣି ।
ତୁ ଯେ ବୋଇଲୁ ହୋ ଏ ନୋହଇ ବିଷ୍ଣୁ ନାଥେ
ପ୍ରତକ୍ଷେ ଦେଖସି ହାଦେ ଶଙ୍ଖ ଚକ୍ର ଗଦା ଗାଣ୍ଡିମ ଧନୁ ହସ୍ତେ ।
ଏହା ବିଚାରି ସେ ବିସ୍ମଏ ମନେ ପୁଣି
ପ୍ରସନେ ବିଶ୍ୱନାଥ ଅବତାର ହାଦେ ଦେଖି ନାରାୟେଣୀ ।୩୮୩୦।
ଏହ୍ନେକ ବିଚାରନ୍ତେ ହୋଇଲାକ ରାତି
ବାହୁଡ଼ିଲ ମହିଷାସୁର ଆକାଶରୁ ଧାତି ।
ଶଉଚବନ୍ତ ହୋଇ ପିତାଙ୍କୁ ଲଏ କରଇ
ଗିରିବର ସମାନ୍ୟେ ସେ ମଇଁଷି ରୂପ ଧରଇ ।
ରତ୍ନଗିରି ଶିଖରେ ବିଜୟେ ମାହେଶ୍ୱରୀ
ଯୋଗ୍ନୀ ବୃନ୍ଦ ଘେନି ସେ ମଦିରା ପାନ କରି ।
ମଇଁଷି ରୂପ ଧରି ସେ ଦାନେବ ମହାବଳୀ
କଣୟ ଗିରି ପର୍ବତ ସେ ପକାଇଲା ଖୋଳି ।
ଶତେ ଯୋଜନ ପୋତା ସେ ବେନି ଯୋଜନ ସ୍ଥଳୀ
ଉଚ୍ଚର୍ଗ ବେନି ଶତ ଯୋଜନ ପଞ୍ଚଶତ ହସ୍ତ ଅଗୁଳି ।
କେଞ୍ଚକରି ମହିଷାସୁର ସେ ପର୍ବତ ଉପାଡ଼ଇ
ତିଳ ମନ୍ଦା ପ୍ରାଏ କରି ସିଙ୍ଘେଣ ଘୋଟଇ ।
ସାତ ପଦ୍ମ ପନ୍ଦର ମେବକ୍ଷ କୋଟି କାନ୍ତାନୀ ଯୋଗ୍ନୀ
ଦୃଗାର ଛାମୁରେ ଖେଡ଼ କରନ୍ତି ଏତେକ ବଳ ଘେନି ।
ଦେଖ ହୋ ବଳବନ୍ତା ସେ ଦାନବ କୁଳ ରାଏ
ପର୍ବତ ସିଙ୍ଗର ମୂଳେ ଧରିଅଛି ମୃତିକା ଖଣ୍ଡ ପ୍ରାଏ ।
ଭୂମିରେ ହାଣିଲେ ଯେହ୍ନେ ସିଙ୍ଗରେ ଲାଗଇ ମାଟି
ସେହିମତି ପ୍ରାଏ ହୋଇଲା ରତ୍ନଗିରି ପର୍ବତ ଗୋଟି ।

କରପତ୍ର ଯୋଡ଼ି ଯେ କହଇ ମାରକମା
ମହିଷାସୁର ଅନ୍ଧାରି ବିଜେ କରି ଅଇଲା ଗୋ ମା ।୩୮୪୦।
ଉଠିଲେ ଦେବୀମନେ ଡାକିଲେ ବୀର ଡାକେ
ବ୍ରହ୍ମାଣ୍ଡ ଉଚ୍ଛୁଳିଲା ସେ ଦେବୀମାନଙ୍କର ହାକେ ।
ଅନ୍ତରୀକ୍ଷେ ମହିଷାଂସୁର ପର୍ବତ ଘେନି ଆସଇ ବେଗି
ରତ୍ନଗିରି ବେଗେ ପକାଇଲାକ ଫିଙ୍ଗି ।
ଆହୋ ମରହଟକା ବଳ ଯେ ପଶ୍ଚିମ ସଉରାଷ୍ଟ୍ରେ
ସେ ପର୍ବତ ପଡ଼ିଲା ଅସ୍କନ୍ଦ ବନର ତଟେ ।
ଆହୋ ପରୀକ୍ଷ ନବ ସହସ୍ର ଯୋଜନ ଅନ୍ତରେ
ରତ୍ନଗିରି ପର୍ବତ ପଡ଼ିଲା ଯାଇ ଏତେକ ଦୂରେ ।
ନମସ୍ତେ କାନ୍ତାୟନୀ ଗୋ ଅନାଦି ପରମ ଯୋଗୀ
ଭାରା ନିବାରଣ ଅର୍ଥେ ମଦ୍ଦ୍ୟମାଂସ ଭୋଗୀ ।
ଆପାଦର କାଳେ ତୁହି ସେ ହାଦେ ରଖୁ
ଅପାର ଅରଷ୍ଟି ନାଶ କରି ଦୃଭାର ବଳ ଭକ୍ଷୁ ।
ପରମ ମହେଶ୍ୱରୀ ହୋଇଁ ସର୍ବ ଲୋକ କରୁ ଚିନ୍ତା
ବୁଡ଼ନ୍ତେ ମହାଭାରା ଗୋ ତୁହି ସେ ଉଧରନ୍ତା ।
ଯାହାକୁ ଲଏ ଗୋ କରନ୍ତି ବେଦ ବ୍ରହ୍ମା
ମୁହିଁ କିସ ବର୍ଣ୍ଣିବି ଗୋ ତୋହର ମହିମା ।
ଦୃଗାକୁ ଶତ ସହସ୍ର ପ୍ରଣମ୍ୟ ମୋର ନିତ୍ୟେ
ବଦନ୍ତି ଶୂଦ୍ରମୁନି ସାରୋଳ ଦାସ ଭାବନ୍ତି ଦୃଢ଼ ଚିତ୍ତେ ॥

ଶୁଣ ହୋ ମହାରାଜା ବଦନ୍ତି ବ୍ରହ୍ମବେତ୍ତା
ତୁ ଯାହା ପୁଚ୍ଛାକଲୁ ବିଷ୍ଣୁ ପୁରାଣ କଥା ।୩୮୫୦।
ଗିରି ପକାଇଁ ସେ ମହିଷାସୁର ଆସି
ଅର୍ଧ ରାତ୍ର ଆସିଣ ସେ ହୋଇଲାକ ନିଶି ।
ଧୂମ ବୋଇଲା ଦେବ ଚାଲ ଯିବା ନିଜ ଭୁବନେ
ଜଏ କଲା ଭୂମିରେ ନ ଥାଇ ଏକ ଦିନେ ।
ଭଲ ବୁଦ୍ଧି କହିଲା ସେ ମହୀ ଦାସର ନାତି
ନିଜ ପୁରେ ବିଜେ କଲାକ ଦତ୍ୟପତି ।
ସ୍ନାହାନ ଭୋଜନ ସାରିଣ ମହାରାଏ
ନିଅବକାଶ ମନ୍ଦିରେ କଲାକ ବିଜଏ ।
ଆହୋ ଭାଳନ୍ତି ଦେବୀମାନେ ଆସନ ବିହୁନେ
ବିନ୍ଧ୍ୟଗିରି ଶିଖରେ ସେ ରହିଲେ ଦେବୀମାନେ

ଦେବତାଏ ଦେଖିଲେ ସେ ଦୃଗାଙ୍କର ଶୂନ୍ୟ ଗତି
ଖେଚରୀ ବିବାନ ଆଣି ଦେଲେ ସୁରପତି ।
ଏ ବିବାନର ମଧ୍ୟେଂ ବିଜଏ କର ମହାମାଏ
ମନ ପବନ ଦଣ୍ଡ କ୍ଷଣକେ ଅନ୍ତର୍ଧାଏ ।
ଅନେକ ବିନୋଇ ସେ ବୋଇଲେ ମଘବାନ
ଦୃଗା ଆରୋହିଲେ ସେ ସଞ୍ଚକେତୁ ବିମାନ ।
ଏକା କ୍ଷଣକେ ସପ୍ତ ଦୀପକୁ ଅନୁକ୍ରମି
ଘଡ଼ିକର ମଧ୍ୟେ ସେ ଯେ କୋଟି ବ୍ରହ୍ମାଣ୍ଡ ଭ୍ରମି ।
ଖେଚରୀ ବିମାନରେ ବିଜଏ ଜଗତ ମାତା
ଆନେକ ଅବିଷେକ ଆଣି କଲେକ ଆଦି କରତା ।୩୮୬୦।
ଶୁଣ ପରୀକ୍ଷ ରାଜା ବଦନ୍ତି ଶୁକ ମୁନି
ଏକାନ୍ତେ ବିଚାରଇ ମହିଷା ଧୂର୍ମଲୋଚନକୁ ଘେନି ।
କ୍ଷଣକେ ଉଠଇ କ୍ଷଣକେ କୋପ କରଇ
ଆପଣାର ବେନି ଭୁଜ ତାଡ଼ି ସନ୍ତାପ କରଇ ।
ଆଗହୁଁ କିମ୍ପା ମୁଁ ନ ଗଲି ସଂଗ୍ରାମକୁ
କର୍ମର ଅବଳେ ବୁଦ୍ଧି ପ୍ରସର ନୋହିଲା ମୁକୁ ।
ମୁହିଁ ସେ ସ୍ତିରୀ ବୃନ୍ଦ ମାରନ୍ତିନା ରଣେ
ସଖାନ୍ତ ମରାଇଲି ଆପଣା ଅଧମ ପଣେ ।
ଏସନ ବିଚାର କରନ୍ତେ ସେ ପାହିଲାକ ରାତି
ଶଙ୍ଖଧ୍ୱନି ଶବଦ ପୂରିଲା ହୋଇଲା ପାହାନ୍ତି ।
ଶେଯ୍ୟା ତେଜିଣ ରାଏ କୋପ କରି ଉଠଇ
କରେଣ ଗଦା ଘେନିଣ ଯେ ବାହାସ୍ୟଟ ଦିଅଇ ।
ସ୍ନାହାନ ଦେବାର୍ଚ୍ଚନ ସାରିଣ ବିଚାରଇ
ବ୍ରହ୍ମାଙ୍କୁ ସ୍ତୁତି କରି ବିସ୍ବରୂପ ଧରଇ ।
ପିତାକୁ ଲଏ କରିଣ ହୋଇଲା କାମରୂପୀ ।
ମହା ପ୍ରଳୟ ମେଘ କି ହୋଇଲା ବିସ୍ବରୂପୀ ।
ପୃଥିବୀ ଘୋଟିଲା ସେ ଯେ ଏକାକେ ଶରୀର ତାହାରି
ଶରୀର ବଢ଼ାଇଲା ସେ ସୁବନ୍ୟ ଚୂଡ଼ ଗିରି ।
ଯହିଁ ସେ ବିଜେ କରିଅଛନ୍ତି ଦେବୀ ଦୃଗେ
ମହିଷାସୁର ଦାନବ ସେ ମିଳିଲା ଅତି ବେଗେ ।୩୮୭୦।
ଆକାଶ ଘୋଟିଲା କି ସିଙ୍ଘର ପରାକ୍ରମ
ଜାଣି ପଟାନ୍ତର ସେ ବିଶ୍ୱରୂପ ଯମ ।
ଦେବୀମାନେ ସହି ନ ପାରିଲେ ତାହା ଦେଖି
ଧାଇଁଲେ ଦେବୀ ବୃନ୍ଦ ବାହାନ ଉପେଖି ।
ଦୃଗା ବୋଇଲେ ସେ ରହ ରହ ନାରାଏଣୀ
ମହିଷାଂସୁର ସଙ୍ଗେ ଯୁଦ୍ଧ କରିବି ଏହିକ୍ଷଣି ।
ମୁହିଁ ସେ ମହିଷାଂସୁରକୁ ମାରିବଇଁ ସତ୍ୟ
ଆଗହୁଁ ଦେବତାଙ୍କର ଆଗେ କରିଅଛି ବ୍ରତ ।
ଦେବୀନ୍ତ ଗୁହାଇଣ ଆପଣେ କାମରୂପୀ
ମହା ସିଙ୍ଘେକ ହୋଇଲେ ଗପନ ଖେପି ।
ବିଝଂଗିରି ସମାନ୍ୟେ ବଢ଼ାଇଲେ କାଏ
ପୃଥିବୀ ପୂରିଲା ଦୁଇ ସିଙ୍ଘର ତେଜ ମାଏ ।
ଯେସନେକ ମେରୁ ମନ୍ଦର ହୋଅନ୍ତି ଏକ ଭେଟ
ଏ ମହୀ ମଣ୍ଡଳେ ଗୋପ୍ୟ କଲା ବେନି ସିଙ୍ଘର କ୍ରୋଟ ।
ବେନି ସିଙ୍ଘର ଶିର ପଡ଼ିଲା ଏକ ଘାନ୍ତି
ବ୍ରହ୍ମାଣ୍ଡ କମ୍ପିଲା ବସୁମତୀ ରହିଲାକ ଶଙ୍କି ।
ନଖେଣ ବିଦାରଣ କଲେ ବେନି ଅଙ୍ଗ
ଗଳିତ ଶ୍ରୋଣିତ ଜାଣି ଉଦଏ ଶଶାଙ୍କ ।
ତୁଣ୍ଡ ବିସ୍ତାରନ୍ତେ ତ୍ରିଭୁବନ ପଶଇ ଗର୍ଭେ
ଭଏ ଆକାଶ ଛାଡ଼ିଲେ ତ୍ରିଦଶ କୋଟି ଦେବେ ।୩୮୮୦।
ଚରଣ ଚାପନ୍ତେ ପାତାଳ ସର୍ଗ ପୂରି
କର୍ଣ୍ଣ ଟେକନ୍ତେଣ ହୋଇଲା ବ୍ରହ୍ମାଣ୍ଡ ସରି ।
ବେନି ଶରୀର କି ଅଭେଦ କପଟ ସେନ୍ହା
ଲୋହଗିରି ପ୍ରାଏକ ତାହାର ମୂହ୍ନୁନା ।
ନିଶ୍ୱାସ ଘାତେ ଉଡ଼ଇ ବ୍ରହ୍ମାଣ୍ଡ ସର୍ବ
ଗର୍ଜନ ଶୁଭଇ କି ପ୍ରଳୟାନ୍ତ କାଳ ମେଘ ।
ବେନି ଶିର ତଡ଼ାତଡ଼ି ହୋଇଲେ ପଡ଼ିତାଳ
ଉଠିଲାକ ବହନି ପ୍ରଳୟାନ୍ତ କାଳ ଅନଳ ।
ଖରା ଘାତେ ଚରଣ ନ ଲାଗଇ ପୃଥୀ
କର୍ଣ୍ଣ କ୍ରୋଟେ ଲାଗିଲେ ସେ ଦେବୀ ମାନଙ୍କର ମୃତି ।
ଏମନ୍ତ ସମର ହୋଇଲା ଦିବା ରାତ୍ର ପରିଯନ୍ତେ
କ୍ଷୀରୋଦ୍ରେ ପଶିଲେ ସେ ଚନ୍ଦ୍ର ସୂର୍ଯ୍ୟ ସହିତେ ।
ନାହିଁ ଦିବସ ନାହିଁ ରାତ୍ର ନାହିଁ ଚନ୍ଦ୍ର ନାହିଁ ସୂର୍ଯ୍ୟ
ଏକା ମାତ୍ର ବ୍ୟାପିଲା ସେ ଦୁହିଁଙ୍କରି ତେଜ ।
ଶୂନ୍ୟ ଭୁବନ ତେଜି ସେ ଲୁଚିଲେ ଅଜଞ୍ଜା
ନବ ଖଣ୍ଡ ମେଦନୀ ସେ ହୋଇଲେ ତଡ଼କା ।

ଜୀବନ୍ତା ଜୀବମାନେ ମୋହେ ପଡ଼ିଲେ ଜଳଜନ୍ତୁ
ପବନ ବିତ୍ରକେ କାହାରି ହିଁ ନାହିଁ ଜୀବ ହେତୁ ।
ଦାନବ ସିଘଙ୍କୁ ଛାଡ଼ି ଦେବୀ ଦୃଗେ
ବକ୍ଷସ୍ଥଳେ ମାଡ଼ି ବସିଲେ ଅତି ବେଗେ ।୩୮୯୦।
ନଖେଣ ବିଦାରନ୍ତେ ନ ତୁଟଇ ତାହାର କାୟେ
ଦାନ୍ତେ କାମୋଡ଼ନ୍ତେ ସେ ବଜ୍ରଗିରି ପ୍ରାଏ ।
ନଖ ଦନ୍ତେ ବିଦାରନ୍ତେ ନ ତୁଟଇ ଯହୁଁ ତାହାର କାଏ
ବିମୁଖ ପାଇଲେ ଦୃଗା ମହାମାଏ ।
ଅନେକ ବାଗେ ବିଦାରଣ କଲେ ବୁକୁ
ବକ୍ଷ ସ୍ଥଳେ ବସି ସେ ପ୍ରଶଂସା କଲେ ମହିଷାକୁ ।
ସାଧୁରେ ମହିଷାସୁର ଜୀବନ ତୋର ଧନି
କେଡ଼େ ଲକ୍ଷଣେ ମନାଇଲୁ ଦେବ ପଦ୍ମଯୋନି ।
ଯେହ୍ନେକ କରି ତୋତେ ପିତା ଦେଲା ବର
ବଜ୍ରେଣ ନିର୍ମିତ ଯେ ତୋହୋର ଶରୀର ।
ଆରେ ପ୍ରତକ୍ଷେ ଦିଶୁ ତୁ ମୋହୋର ସିଘ ପ୍ରାଏ
ନିରୋପିଣ ଶରୀର ତୋର ବସିଲା ବଡ଼ ଦଏ ।
ଆହୋ ପରୀକ୍ଷ କରଚରଣେ ବସିଥିଲେ ଦାନବ ଶରୀର ମାଡ଼ି
ସଦଏ ଭାବ କରି ତାଙ୍କୁ ଦେଲେ ଛାଡ଼ି ।
ପଳାଇଲା ମହିଷାସୁର ମହାରଣୁ
ଶରୀର ଅସାଷ୍ଟମ ହୋଇଲା ଉଦଏ ହୁଅନ୍ତେ ଭାନୁ ।
ନିଜ ରୂପ ଛାଡ଼ି ପଳାଇଲା ଡରେ
ନିଶ୍ୱାସ ଖରତର ସେ ପଶଇ ଅନ୍ତପୁରେ ।
ଅର୍ଘ ଘେନି ବିଜଏ କାଳୀକରାଳି ବେନି ଭାରିଯା
ମୋହେଣ ଅସାଷ୍ଟମ ଯେ ମହିଷାସୁର ରାଜା ।୩୯୦୦।
ସଖା ସହୋଦର ନାହିଁ ଆନ କେହି
ଏ ମୋହୋର ଅବସ୍ଥା ସେ କାହାର ଆଗେ କହି ।
ରାଜାର ବିଷାଦ ଦେଖି ସେ ବଦନ୍ତି ପ୍ରିଅବତୀ
ଶରଣ ପଶିବା ଯାଇଁ ଛାଡ଼ ମନ ଭ୍ରାନ୍ତି ।
ସ୍ୱାମୀ ଗଳାରେ କୋଠାରି ବାନ୍ଧି ଦାନ୍ତେ ତିରଣ ଘେନି
ଚାଲ ଛାମୁରେ ଯାଇଁ କରିବା ଦଉନି ।
ଅନେକ ବିନୋଇ ବୋଇଲେ ବେନି ବାମା
ତୁଷ୍ଟ ଅନୁମତେ ବସିଲା ଛାଡ଼ିଲା ଗାରିମା ।
ପଶିବଇଁ ଶରଣ ଯେବେ ମାଗିବଇଁ ଧର୍ମ ବାଟ
ଅସୁର କୁଳ ଗୋତ୍ରକୁ ଆମର ହୋଇବ ବଡ଼ ଘାଟ ।
ସ୍ତିରୀ ଲିଙ୍ଗ ହୋଇ ପାଷାଣ ପ୍ରାଏ ତାର ହିଆ
ନ ପୁଣ ମୋତେ ସେ ନ କରଇ ଦୟା ।
ଆହୋ ନାନା ଜନ୍ତୁ ମଧେ ସ୍ତିରୀ ଲିଙ୍ଗ ହିଁ ସେ ହୀନ
ଏଡ଼େ ବଡ଼ ବାଟକୁ କିସ ତାହାର ଜ୍ଞାନ ।
ତୁଷ୍ଟ ହୋଇ ସେ ମୋତେ ନ କରିବ ଦଏ
ନିଷ୍ଟଏ ଜାଣିଲି ମୋର ମରଣ ଯୁଗତଏ ।
ନିସତ ହୋଇକରି କରିବାକ କିସ
ଛତ୍ରି କୁଳକୁ ସେ ଅଟଇ ଉପହାସ ।
ଆହୋ ରାଜନ ମହିଷା ଭାଳନ୍ତେଣ ବସି
ସିନ୍ଧୋ ଉପସିନ୍ଧୋ ଦୁଇ ସେନା ହୋଇଲେ ଆସି ।୩୯୧୦।
ଭାଲୁଙ୍କ ବାହାନ ହୋଇ ସେ ଦଶ ଲକ୍ଷ ରଥୀ ।
ଯୋଜନ ଗିରି ଉପରେ ସେ କଟୁଆଳ ସେନାପତି ।
ନଗ୍ର ଦଣ୍ଡପାଟେ ସେ ନିଶାରେ ଅଧିକାରୀ
ପୁର ରକ୍ଷାପାଳକ ସେ ପ୍ରତାପ ଦଣ୍ଡଧାରୀ ।
ରାଜାର ଆକୁଳ ଶୁଣିଲେ ସେ ନଗ୍ର ଭ୍ରମଣିର ବେଳେ
ନିଉଛାଳି କରି ଶ୍ରୁତିରେ ଚାଣ୍ଡାଳେ ।
ମହା ମତୁଆଳ ସେ ମଦିରା ରସ ଖାଇ
ଅପରାପର ପରଚେ ଚେତନା ଜ୍ଞାନ ଗୋଚର ତାର ନାହିଁ ।
ସିନ୍ଧୋ ଉପସିନ୍ଧୋ ଦୁହେଁ ଛାମୁରେ ପରିଣାମି
ଆମ୍ଭର ଥାନ୍ତେ ଚିନ୍ତା କାହାକୁ ଦେବ ସ୍ୱାମୀ ।
ସ୍ୱାମୀ ଅନେକ ଭୋଗ୍ୟ କଲୁ ତୋହୋର ବାହୁବଳେ
ଭୋକ ଶୋକ ଯମଦଣ୍ଡ ନାହିଁ କେହୁଣିସି କାଳେ ।
ଏତେବେଳେ ଯେ ଅପଚୟେ ନାଥ ତୁମ୍ଭଙ୍କୁ
କେଉଣ କାଳକୁ ଆନେ ପୋଷିଅଛୁ ଯେ ଆମ୍ଭଙ୍କୁ ।
ନାଥ ମାରିବୁ ସ୍ତିରୀ ବୃନ୍ଦ ନ ଥୋଇବୁ ଚିହ୍ନ ବର୍ଣ୍ଣ
ଦେଖ ହୋ ଆମ୍ଭର ପ୍ରତିଜ୍ଞା ବଳମାନ ।
ସେନାଙ୍କର ବଚନେ ମହିଷାସୁର ଭାଳଇ
ଏତେବେଳେ ଉଦିତ ହୋଇବ ଧର୍ମବଳଇ ।
ଏତେ ବିଚାରି ସେ ଅସୁର ଅଧିକାରୀ
ଶ୍ରୀ ହସ୍ତେ ସେନାନ୍ତ ସେ ରାଜା ହେଲା ଶାଢ଼ୀ ।୩୯୨୦।
ରତ୍ନ ବସ୍ତ୍ର ଅଳଙ୍କାର ଅନେକ ଦେଲା ରାଏ
କାର୍ପୁନ୍ୟ ହୋଇ କହଇ ସେ ଭୃତ୍ୟର ଭୃତ୍ୟ ପ୍ରାଏ ।

ବାଭି ହେ ! ବୁଡ଼ିଲା ବଂଶ ଯେବେ ଉଧରିବ ମୋହୋର
ଯୁଗେ ଯୁଗେ ରହିବ କୀରତି କୁମ୍ଭର ।
ରାଜାର ବିନୟ ଦେଖି ସେ ଅସୁର ସେନାପତି
ପର୍ବତର ଦକ୍ଷିଣ ଆଡ଼ରେ ଦଣ୍ଡ ଘେନି ଚଳନ୍ତି ତଡ଼ତି ।
ବାଜନ୍ତି ବିଜିଘୋଷ ଟମକ ନିଶାଣ
ଆକାଶେ କମ୍ପିଲେ ଦେବ ସୁରଗଣ ।
ଆହୋ ସିନ୍ଧୋ ଉପସିନ୍ଧୋ ବୋଲି ଯେବଣ ଦନୁଜ
ଯେକ ଯେକ ଚରଣେ ସେ ଅଷ୍ଟ ଅଷ୍ଟ ଭୁଜ ।
ଗଦା ଶକତି ଯେ କୋନ୍ତ ଅସିବର
ଦଶ ଲକ୍ଷ ଯୋଦ୍ଧା ଘେନି ସେ ହୋଇଲେ ବାହାର ।
ବେନି ଲକ୍ଷ ଯୋଦ୍ଧା ଘେନି ସେ ଧକାସୁରେ
ରତ୍ନ ପର୍ବତେ ସେ ଦେଖିଣ ଆଡ଼ରେ ।
ବେନି ଲକ୍ଷ ଯୋଦ୍ଧା ଘେନି ସେ ଅସୁର ଭକ୍ଷ
ବିଙ୍ଗଗିରି ସନିଧ୍ୟେ ସେ ଲାଗିଲା ରାକ୍ଷସ ।
ବେନି ଲକ୍ଷ ଯୋଦ୍ଧା ଘେନି ସେ ସିନ୍ଧୋ ସେନାପତି
ପର୍ବତ ଦକ୍ଷିଣ ଆଡ଼ରେ ଲାଗିଲେ ମହାରାତି ।
କୋପ ବଢ଼ଇ ଦେବୀର ଅସୁର ବଳ ଦେଖି
ଚାରି ଲକ୍ଷ ବେତାଳ ଘେନି ଲୋ ଯାଅ ଚନ୍ଦ୍ରମୁଖି ।୩୯୩୦।
ଅସୁର ବଳ ସଇନି ଦେଖନି ଲୋ ବେଗେ
ମହିଷାସୁର ଥିଲେ କହ ମୋର ଆଗେ ।
ଗିରିବର ଉପରେ ଉଠଇ ବେତାଳୀ
ଏକା ଦୃଷ୍ଟିକେ ସନ୍ୟ ପରିକଳି ।
ଦେଖଇ ଜଣେ ଜଣେ ମହିଷାସୁର ନାହିଁ
ଦୃଗାର ଛାମୁରେ ସେ କହିଲା ବେଗେ ଯାଇଁ ।
ନଗ୍ର ରକ୍ଷପାଳକ ସେ ସିନ୍ଧୋ ଉପ ସିନ୍ଧୋ ବେନି
ଏହୁ ଦୁହେଁ ତହୁଁ ଅଇଲେ ଥାଠ ଘେନି ।
ସନିଧ୍ୟେ ରାଇଲେ ସେ କୋଠାରୀ ଉଗ୍ରତାରା
କୋଳାଅମ୍ବିକା ନିମଙ୍ଗା ତ୍ରିପୁରା
ତୁମ୍ଭେ ପାଞ୍ଚେ ହେ ଯାଅ ଲୋ ସମରେ
ମାର ଯା ଦାନବ ବଳ ଯାଆନ୍ତୁ ଅସୁରେ ।
ଏସନେକ ଆଜ୍ଞା ପାଇ ସେ ଉର୍ଦ୍ଧ ଦୃଷ୍ଟି
କରେ କୃପାଣ ଘେନି ସେ କଲେ ଦୃଢ଼ ମୁଷ୍ଟି ।
ଆକାଶେଣ ଓଷ୍ଟ କାହାର ପତାଳେଣ ଦୃଷ୍ଟି
ଏକ ନିମିଷକେ ଶୂନ୍ୟ ଭୁବନ ଘୋଟି ।
ଆହୋ ପରୀକ୍ଷ ସନ୍ୟ ବଢ଼ାଇ ପ୍ରତାପ
ଦେବୀମାନଙ୍କର ଭାଜିଲା ଦେଖି ଦର୍ପ ।
ସମୋଦ୍ର ପ୍ରାଏକ ସେ ପଡ଼ିଲେ ଗଳଗାଜି
ଗରୁଡ଼ ଦେଖି ଯେହ୍ନେ ସର୍ପଙ୍କର ଦର୍ପ ଭାଜି ।୩୯୪୦।
ରେ ରେ କାର ଶବଦେ ପାଡିଲେ ଘୋର ରଡ଼ି ଡାକ
ବ୍ରହ୍ମାଣ୍ଡ ଉଛୁଳିଲା ସେ ଡାକେଶ୍ୱରୀ ଡାକ ।
ଧାଇଁଣ ଦାନବ କଲେ ଶର ବୃଷ୍ଟି
ଜଳିଗଲେ ନାରାଯମାନେ ଦେବୀଙ୍କର ଦୃଷ୍ଟି ।
ଧାଇଁଣ ଆକ୍ରେଷି ସେ ଧଇଲେ ଦରାଣ୍ଡି
ହସ୍ତେ ବିଦାରି ସେ କରନ୍ତି ଖଣ୍ଡି ଖଣ୍ଡି ।
ହସ୍ତ ଫେଡ଼େଇଁ ସେ ଧରନ୍ତି ବେନି ହସ୍ତେ
ଯୋଡ଼ି ବେନି ଖଣ୍ଡ ସେ କରନ୍ତି କ୍ଷଣ ମାତ୍ରେ ।
ଶିରେ ନିଉଡ଼ନ୍ତି ରାକ୍ଷସଙ୍କ ଶ୍ରୋଣି
ଯେସନେ ଚଳଇଁ ଆହାନିକ ଜଳ ପାଣି ।
ମୁଣ୍ଡନ୍ତ ମୋଡ଼ି ସେ ଗୁନ୍ଥନ୍ତି ମାଳି ମାଳି
ନାଚନ୍ତି ରଣରଙ୍ଗେ କଉତୁକେ କୁତୋହଳୀ ।
ଆହୋ ପରୀକ୍ଷ ଯାଠି ଶକତି ଗଦା ମୁଦ୍ଗର
ଗିରିବର ସମାନ୍ୟେ ସେ ପିଟନ୍ତି ଅସୁର ।
ବଜ୍ରଘାତ ଜାଣି ପଡ଼ଇ ଦେବୀଙ୍କର ମୁଣ୍ଡ
ଭାଜିଣ ଶହସ୍ରମାନ ହୁଅନ୍ତି ଶତେ ଗୁଣ୍ଡ ।
ଆହୋ ଅଗ୍ନିରେ ପଡ଼ିଲେ ଯେହ୍ନେ ନ ରହଇ ତିରଣ ରାଶି
ଦେବୀଙ୍କର ଶରୀରେ ପଡ଼ି ସେ ହୋଇ ସର୍ବଧ୍ୱଂସି ।
ଶହସ୍ର ଭାଜନ୍ତେ ହୋଇଲେ ଶୂନ୍ୟ ହସ୍ତ
ମାଲ ବିନ୍ଧାଣ ଗୁରୁଦା ପ୍ରହାର କରନ୍ତି ମୁଥ ।୩୯୫୦।
ପାଦ ଉଞ୍ଚାବନ୍ତି ମାରନ୍ତି ନେଇ ବିଧା
ଚାପୋଡ଼େ ମାରି କେ ପ୍ରହାର କରନ୍ତି ଗୁରୁଦା ।
ଆହୋ ପରୀକ୍ଷ ଲୋହ ଗିରି ଚୂଡ଼ ହୋଇଲା ଅଂଗେଣ ପଡ଼ି
କରେ ପ୍ରହାର କରନ୍ତେ କିସ ହୋଇବ ତାହାଙ୍କରି ।
ରକତ ପିବନ୍ତି ସେ ବୁଡ଼ାଇଣ ମୁହଁ
ମହା ବିକଟାକ୍ଷି ରକତ ବର୍ଣ୍ଣ ଦେହ ।
ଚରଣ ଧରି କେ ଫିଙ୍ଗନ୍ତି ଆକାଶେ
ଅସ୍ତି ଚର୍ମ ମାଂସ କେ ଲୋଚା କରନ୍ତି ପୁଣ ଗ୍ରାସେ ।

ବାଜନ୍ତି କଡ଼ା ବିଜିଘୋଷ ମର୍ଦ୍ଦଳ
ମଧୁ ମାଂସ କରି ସେ କରନ୍ତି କୁତୂହଳ ।
ଅତି ହରଷେଣ ସାନନ୍ଦେଣ ଭୋଳି
ଜଣକେ ଗୀତ ଜଣକେ ନାଚ ଜଣକେ ହୁଳହୁଳି ।
ଉଳଗ୍ନ ସାହୀ ହୋଇ କରନ୍ତି ପୁଣ ଗ୍ରାସ
କ୍ଷଣକେ ନିଲକ୍ଷଣ କ୍ଷଣକେ ଘୋଟନ୍ତି ଆକାଶ ।
ଅଦଭୁତେ ହୁଅନ୍ତି ଅଦଭୁତ ଜନ୍ମ
କହନ୍ତେ ଅନ୍ତ କରି ନୁହଇ ମତି ଭ୍ରମ ।
ରଣ ଅଭଙ୍ଗ ସେ ଅଭଏ ମହାମାଇ
ଫେଡ଼ନ୍ତି ଦୁର୍ଗତି ସେ ଭଗତ ଜନଗ୍ରାହୀ ।
ନାହିଁ ନାହିଁ ଚଣ୍ଡୀ ଯୁଦ୍ଧେ ଶୁଣନ୍ତେ ଆପାଦ
ରୋଗ ଶୋକ ବ୍ୟାଧି ଯେ ନ ଥାଇ ପ୍ରମାଦ ।୩୯୬୦।
ଚଣ୍ଡୀର ସଂଗ୍ରାମ ଯେ ଶୁଣ ଏକ ଚିତ୍ତେ
ଜନ ମନ ରଞ୍ଜନ ଏ ପୁରାଣ ସଙ୍ଗତେ ।
ଏ ପ୍ରତଜ୍ଞା ବଡ଼ଇ ସେ ପରମ ସାନନ୍ଦୀ
ଭାବ ହେ ବୁଧ ଜନେ ପ୍ରସର ହେଉ ବୁଦ୍ଧି ।
ନମାମି ଦୃଗେ ସେ ବାଞ୍ଛା ଶିରୋମଣି
ଧନ ପୁତ୍ର ଲବ୍‌ଧ ଯେ ଖଣ୍ଡିକା ଶାସ୍ତ୍ର ଶୁଣି ।
ଶତ ସହସ୍ର ଦଣ୍ଡ ପ୍ରଣମିତ ଦେବୀଙ୍କର ପାଦପଦ୍ମେ
ବନ୍ଦନ୍ତି ଶୂଦ୍ର ମୁନି ସାରୋଳ ଦାସ ଦୁର୍ଗାର ପ୍ରସାଦେ ।

ଏହା ଶୁଣି ବୋଇଲେ ସେ ଅଭିମନ୍ୟୁର ବଛି
ଧର୍ମ ଅର୍ଥ କାମ ମୋକ୍ଷ ଚାରି ବର୍ଗ ଅଛି ।
ତୁମ୍ଭେ ବ୍ରହ୍ମ ଦେବତା ମୋତେ ଧର୍ମ ଦେବତାଙ୍କ ମିତ୍ରରଣ୍ଡା ।
ପାପ ଉପରେ ମୋର ନବ ନିଶୀ ଖଣ୍ଡା ।
ଯିସ ଅବା ମମ ଜ୍ଞାନେ ଅଜ୍ଞାନ ପାପ
ଯେଣେ କରି ଭାଜିଲା ସେ ସବୁ ତାପ ।
ଅମୃତ ନଦୀ ବୁହାଇବାକୁ ମୁନି ହେ ତୁମ୍ଭେ ସେ ଅଟ ରହି
ସଞ୍ଚପି କରିଣ ସେ ମୋତେ ମହିଷାସୁର ବଧ କହି ।
ରାଜାର ବଚନେ ସେ କହନ୍ତି ଶୁକ ଯତି
ଶୁଣ ତୁ ସାବଧାନେ ଅଭିମନ୍ୟୁର ସନ୍ତତି ।
ଆହୋ ପରୀକ୍ଷ ଥିଲା ଯେ ଦଶ ଲକ୍ଷ ଯୋଦ୍ଧା
ରକତ ମାଂସ ଭୋଜନ କଲେକ ସର୍ବ ସିଧ୍ୟା ।୩୯୭୦।

ଖଡ଼ଗେ ହାଣିଲେ ସେ ଛେଦିଲେ ବାଣେ
ଅସ୍ଥି ମାଂସ ଆଦି କରି ସେ ଖାଇଲେ କଉତୁକ ରଣେ ।
ସିନ୍ଧୋ ଅପସିନ୍ଧୋ ଅସୁର ଦେବୀ ଦେଖି
କୋପେଣ ଧାଇଲେ ସେ ଜୀବନ ଉପେଖି ।
ଦେବୀଙ୍କି ଗୁହାଇଲେ ତ୍ରିପୁରା ଉଗ୍ରତାରା
ଧାଇଁଣ ଆବୋରିଲେ ସେ ବେନି ଅସୁରା ।
ଆହୋ ପରୀକ୍ଷା ସେ ଲୁହାର ରଥେ ଦୁହେଁ ଛନ୍ତି ଚଢ଼ି
ରଥରେ ଯୋଚିଲା ଅଛି ଗର୍ଦ୍ଦଭ ସହସ୍ର ଚାରି ।
ରଥ ଦେଖିଣ ଧାଇଁଲେ ବେନି ଦେବୀ
ଉପରେ ଗିରି ତଳ ପାଟି ହୋଇଲାକ ଭୂମି ।
ନବ ସହସ୍ର ହାଥ ଆଏତନ ରଥ
ଏକା ଗ୍ରାସକେ ଗିଳିଲେ ଦେବୀ ସାମରଥ ।
ଆହୋ ପରୀକ୍ଷ ସେ ରଥ ଛାଡ଼ି ପଳାଇଲେ ବେନି
ଧାଇଁଣ ପିଟିଲା ସେ ଲୁହାର ବେନି ଗଦା ଘେନି ।
ଗିରିବର ସମାନ୍ୟେ ତାହାଙ୍କର ଗଦା ଯେବଣ ମୋଟ
ଗଦା ପଡ଼ି ଚୂର ଗଲେ ସେ ଦେବୀଙ୍କର ଶିର ତଟ ।
ଆହୋ ପରୀକ୍ଷ ରେରେକାର କରି ସେ ଉଠିଲେ ଗୋସାମଣି
ବିଜେ କର୍ଣ୍ଣକଟାର ଘେନି ସେ ବେଗେ ହାଣି ।
କଣ୍ଠ ଛିଡ଼ିଣ ସେ ପଡ଼ିଲାକ କ୍ଷିତି
ଗର୍ଭରୁ ମୁଣ୍ଡେକ ହୋଇଲା ଉତପତି ।୩୯୮୦।
ପୁଣ ଶହସ୍ର ଧରି ଯେ ଧାଇଁଲେ ଦନୁଜେ
ଉଗ୍ରତାରା ଉପରେ ପିଟିଲେ ଗୁରୁଜେ ।
ଦେବୀଙ୍କର ଉପରେ ପଡ଼ି ଚୂର ହୋଇ ଗଲେ ଭାଜି
ପୁଣ କଟାର ଘେନି ଉଠିଲେ ଗଳଗାଜି ।
ମୁଣ୍ଡ ଛିଡ଼ିଣ ସେ ପଡ଼ିଲେ ଦନୁଜଇ
ହୁଂକାର ଶବଦ କରି ମୁଣ୍ଡେକ ଉପୁଜାଇ ।
ପୁଣି ହିଁ ଦାନବ କରେ ଘେନିଲେ ମୂଷଳୀ
ତ୍ରିପୁରା ଉଗ୍ରତାରା ଉପରେ ପିଟିଲେ ଗଦା ତୋଳି
ମୂଷଳ ଚୂର ଗଲା ପଡ଼ି ଦେବୀଙ୍କର ଲଲାଟେ
ପୁଣି ହିଁ କଟାର ଦେବୀ ମାଇଲେ କଣ୍ଠ ତଟେ ।
ପୁଣ ଶ୍ୟରୀରେ ପଡ଼ିଲାକ ଢଳି
ଖେଚରୀ ଭୁଚରୀ ହୋଇ ନାଚନ୍ତି ମହୀସ୍ଥଳୀ ।
ହେ ବୁଧ ଜନେ ଦୁରାପଦ କଥା ନ ସରଇ କହନ୍ତେ

କେହୁ ଏହା ଅନ୍ତ କରିବ ଲେଖନ୍ତେ ।
ଆହୋ ପରୀକ୍ଷ ହୁଂକାର ଶବଦେ ସେ ଗର୍ଭୁଂଜାତ ମୁଣ୍ଡ
ଲକ୍ଷେକ ବେଳ ଛେଦିଲେ ସେ ଥାଇ ଏକ ପିଣ୍ଡ ।
ଆହୋ ଯେତେକ ଶିର ଛେଦନ ହୋଅଇ ରଣେ
ସେମାନେ ହୋଇଲେ ନି ମହା ଭୀଷଣେ ।
ଏକ ଶ୍ବରୀରୁଁ ଲକ୍ଷେକ ଶିର ଯାଏ
ରଣେ ବିମୁଖ ହୋଇଲା ମହାମାଏ ।୩୯୯୦।
ଆହୋ ପରୀକ୍ଷ ଚେତନୀ ନାମେ ସେ ଏକଇ ମୂରତି
ଉଗ୍ରତାରା ଛାମୁରେ ହୋଇଲା ଅଦଭୁତେ ଦେବତୀ ।
ସେ ବୋଇଲା ତ୍ରିପୁରା ଗୋ ବିମନ କିମାଧରୁ
ଅସୁରଙ୍କ ତପବଳ ହୃଦରେ ବିଚାରୁ ।
ଏ ହାଦେ ବେନି ଭାଇ ଅମର କପଟର ନାତି
ଜପାସୁର ଦାନବର ଏ ଅଟନ୍ତି ସନ୍ତତି ।
ମାଗୋ ଜପାସୁର ଦାନବ ହୋଇଲା ମହାତପୀ
ରଣସ୍ତମ୍ଭ ପର୍ବତେ ସେ ତପ କରଇ ଅଦ୍ୟାପି ।
କର ପ୍ରସାରିଣ ସେ ଧ୍ୟାନ କରିଣ ଥାଇ
ପବନ ଦେବତାଙ୍କୁ ନିତ୍ୟେ ଅନ୍ନ ଦିଅଇ ।
ଯିସ ଅବା ତାହାର ହସ୍ତରେ ପଡ଼ଇ
କ୍ଷୁଧାଅର୍ଥେ ତାହା ଯେ ଆହାର କରଇ ।
ଶ୍ରୀକରେ ଅଜଗବ ଧନୁ ଘେନି ଗୋ ଉଗ୍ରତାରା
ଦେବ ଶକତି ବେଗେ ଗୋ ଯୋଚ ମହାଭାରା ।
ଲାଭିରେ ପଡ଼ିବ ଯେବେ ଶୂଳ ଶକତି
ହୃଦଗତେ ପଡ଼ିବ ଯେବେ ବଜ୍ର ଶକତି ।
ବ୍ରହ୍ମ ଶକତି ପଡ଼ିବ ଯେବେ କଣ୍ଠ ତଟେ
ଏତେ ବାଣେ ସେ ମରିବ ଦ୍ରପିଷ୍ଟେ ।
ମାଗୋ ତିନି ଶକତି ତିନିଠାରେ ଥିବ ଫୁଟି
ଭାବନା ଶହସ୍ରେ ତାହା ଉଡ଼ାଇବ ପିଣ୍ଡ ଗୋଟି ।୪୦୦୦।
ତାହାର ପିତାର ହାଥରେ ପଡ଼ିବ ଯାଇଁ ବନ୍ଧ
କ୍ଷୁଧାତୁରେ ସେ ତାହା କରିବ ଭକ୍ଷ ।
ଦାବାନଳ ଅଗ୍ନି ଯେ ଅଛି ତାର ଗର୍ଭେ
ତହିଁ ପଡ଼ି ଦହନ ହୋଇବାକ ତେବେ ।
ଆହୋ ପରୀକ୍ଷ ସେ ଚେତନୀ କହିଲା ଏସନେକ ମୃତୁଭେଦ
ଏମନ୍ତେ ସେ ଦାନବକୁ ହୋଇବ ପ୍ରମାଦ ।

ଆହୋ ବ୍ରହ୍ମାକଇ ମାଗିଲେ ବ୍ରହ୍ମ ଶକତି
ଆକାଶୁଁ ଆଣି ଦେଲେ ତତକ୍ଷଣାନ୍ତି ।
ଈଶ୍ୱରଙ୍କୁ ମାଗିଲେ ସେ ଶକତି ତ୍ରିଶୂଳ
ତ୍ରିପୁରା କରେ ନେଇ ଦେଲେକ ସୋଢ଼ଳ ।
ଶତେଧାରା ଶକତି ଦେଲେ ସୁରପତି
ଅଜଙ୍ଗ ଧନୁରେ ଦେବୀ ଯୋଚିଲେ ତିନି ଶକତି ।
ଆହୋ ପରୀକ୍ଷ ମନ୍ଦର ତୂଳେ ଯେ ଶକତି ଗରୁ
ତିନି ଶହସ୍ର ଏକ କରି ଯୋଚିଲେ ଯେକରୁ ।
ଆହୋ ତ୍ରିପୁରା ସେ ଯେ ପ୍ରତକ୍ଷେ ମଣ୍ଡଳ ତ୍ରିପୁରାରି
ଉଗ୍ରତାରା ସେ ଯେ ପିତାମହ ସରି ।
ଆହୋ ତିନି ଶହସ୍ର ଉଗ୍ରତାରା ଯୋଚିଲେ ଯେତେବେଳେ
ଆଦିତ୍ୟ ଦେବତା ରହି ନ ପାରିଲେ ଗଗନ ମଣ୍ଡଳେ ।
ପୃଥିବୀ ଆପ ତେଜ ବାୟୁ ଆକାଶ
ପଞ୍ଚ ଧାତୁ ଜଡ଼ିତ ହୋଇଲା ମହାରସ ।୪୦୧୦।
ଏ ତିନି ଶହସ୍ର ଯହୁଁ ରାଇଲେ ଗୋସାମଣି
ଶୂନ୍ୟ ଭୁବନେ ଶୁଭିଲା ଅଦଭୁତ ବାଣୀ ।
ମାଗୋ ଏ ତିନି ଶକତି ପଡ଼ିବ ଅସୁରଙ୍କର ହୃଦେ
ପୃଥିରେ ପଡ଼ିଲେ ବସୁଧା ପଡ଼ିବ ପାଦେ ।
ଆହୋ ପରୀକ୍ଷ ଆକାଶ ବାଣୀ ଶୁଣିଲେ ମହାମାୟା
ତିନି ଶହସ୍ର ଭେଦିଲା ସେ ଅସୁରଙ୍କର କାୟା ।
ଶହସ୍ରକୁ ବୋଇଲେ ତୁମ୍ଭେ ଅସୁରଙ୍କର କାଏ ପଡ଼
ଜଡ଼ି ରହିବ ସେ ନୋହିବ ବାହାର ।
ମନଭେଦୀ ଶର ସେ ଅଟନ୍ତି ସଭିଏଁ
ଯାଇଁ ଲାଗିଲା ସେ ଦତ୍ୟଙ୍କର ଦେହେ ।
ଦୁଇ ଦେହ ଜଡ଼ିତ ଏକ ହୋଇ ଫୁଟି
ହୃଦଗତେ ପଡ଼ି ସେ ନିକିଳିଲା ପିଠି ।
ନାଭିରେ ପଡ଼ିଲା ସେ ଶୂଳ ଶକତି
ହୃଦଗତେ ପଡ଼ିଲା ସେ ବଜ୍ର ଶକତି ।
ବଜ୍ର ଶକତି ଯେ ପଡ଼ିଲା କଣ୍ଠ ତଟେ
ଦୁଇ କାଏ ଜଡ଼ିତ ହୋଇ ସେ ପଡ଼ିଲେ ଦ୍ରପିଷ୍ଟେ ।
ଉଡ଼ାଇଁଣ ନେଲେ ସେ ପବନର ଘାତେ
ଯାଇଁ ପଡ଼ିଲେ ସେ ଜପାସୁର ହସ୍ତେ ।
ଆହୋ ପରୀକ୍ଷ ପବନର ଅଭ୍ୟାସେ ଜାଣିଣ ଆଚରି

ଧାତିକାରେ ତାହା କରେଣ ଗଣ୍ଡୁଷ କରି ।୪୦୨୦।
ମହା ଅନଳେ ପଡ଼ି ସେ ହୋଇଲେ ଦହିକ
ଉପାଏ ନାଶ ଗଲେ ବେନି ଯେ ଦନୁଜ ।
ସିନ୍ଧୋ ଉପ ସିନ୍ଧୋ ଯେ ନାଶ ଗଲେ ରଣେ
ଅନେକ ଆନନ୍ଦ ସେ ହୋଇଲେ ଦେବଗଣେ ।
ଜୟତୁ ତ୍ରିପୁରା କାଳା ଯେ ବୀରଧ୍ଧୁ
ଅଶେଷ କୋଟି ମହିମା ଯାହାର ସାଧ୍ଧୁ ।
ପିତାମହ ଯାହାର ମହିମା ନ ପାରିଲା ଅନ୍ତକରି
ମୁହିଁ କିସ ତାହା ବର୍ଣ୍ଣନା କରିବି ମାନବ ଦେହ ଧରି ।
ଯମ ଦଣ୍ଡ ନ ଲାଗଇ ଯେବଣ ଦେବୀର ପ୍ରସାଦଏ
ଶୁଦ୍ରମୁନି ସାରୋଳ ଦାସ ବଦନ୍ତି ତ୍ରିପୁରା ପଦ୍ମ ପାଏ ।
ଏ ଟି ବିଷ୍ଣୁ ପୁରାଣ ବଦନ୍ତି ଶୁକ ବ୍ରହ୍ମା
ଅସକ୍ଷ ଅଗୋଚର ଏ ଚଣ୍ଡୀ ଚରିତ୍ର ମହିମା ।
ସିନ୍ଧୋ ଉପସିନ୍ଧୋଉଦ୍ଧାରେଣ କଥା
ମଏଷାଂସୁର ଦାନବକୁ ହୋଇଲା ବାରତା ।
ମଏଷାଂସୁର ବୋଇଲା ଆବର ଜୀବନେ ପ୍ରିୟୋଜନ କିସ
ଦିଅ ମୋତେ ବିଷ ଖାଇ ମରିବି ଅବଶ୍ୟ ।
ଶତେ ପଦ୍ମ ସେନା ଏକୁ ଆରେକ ଜିଣା
ନରଲୋକେ ନାଗ ଲୋକେ ସେ ନ ଯାଇ ଗଣନା ।
କୋଟି କ୍ଷେଉଣି ଯେ ପାଦାନ୍ତି ବଳ ଥିଲା
ଚଉଦ ଦିବସ ସାଗ୍ରାମେ ସମସ୍ତ ନାଶ ଗଲା ।୪୦୩୦।
ପୃଥିବୀ ଘୋଟିଲା ସେ ଯାହାର ସନ୍ୟ ବଳ
ଅସ୍ତି ଚର୍ମ କିଛି ନ ରହିଲେ ସକଳ ।
ଏଡ଼େ ଏଡ଼େ ସୋଦର ମରାଇଲି ଆବର ଜୀବନେ କାର୍ଯ୍ୟ କିସ
ଆଜ ଅବଶ୍ୟ ଯେ ସମରେ ଦେବି ଝାସ ।
ପୁଣି ବୋଇଲା ମୋହର ପାପ ଆତ୍ମା ଥିଲେ
ଦିନେ ଦିନେ ଅନେକ ଚିନ୍ତା ସେ ହେଉଥିବ ଭଲେ ।
ଅବଶ୍ୟ ବେଳକ ସେ ହୋଇବ ମରଣ
ଆବର ଜୀବନ ମୋହର କେବଣ କାରଣ ।
ଅନ୍ତେଶ୍ୱର ପୁରୁ ବାହାର ହୋଇଲା ଦନୁଜ
ଧୂମଲୋଚନ ସାରଥିକି ବୋଇଲା ରଥ ମୋର ସାଜ ।
ଆହୋ ପରୀକ୍ଷ ଆକାଶରୁ ଆଣିଅଛି ସଞ୍ଚକେତୁ ବିମାନ
ମଣ୍ଡିଲା ସାରଥି ଯେ ଧୂମଲୋଚନ ।
କୋବେର ଭଣ୍ଡାର ଯେ ରଥରେ ଅଛି ଖଞ୍ଜି
ସେ ବିମାନକୁ ପଟାନ୍ତର କିସ ଅଛି ନିମଞ୍ଜି ।
ଶୂନ୍ୟେଣ ଚଳଇ ମନ ଯେ ପବନେ
ନିମିଷକେ ତ୍ରୈଲୋକ୍ୟ ଖେପଇ ସେ ବାହାନ ବିହୁନେ ।
ବୀର କେତେନ ମୁକୁଟ ଆଭରଣ କଲା ମାଥେ
ହୀରା ପନ୍ତି ଖଞ୍ଜିତ ଜଡ଼ିତ ମରକତେ ।
ଶିରେଣ ସୀମନ୍ତୁନୀ ଯେ ଲଲାଟ୍ ସେ ପାଟି
ପଦ୍ମେକ ହୀରା ଜଡ଼ିତ ମାଣିକ୍ୟ ନବକୋଟି ।୪୦୪୦।
କୋଟିଏ ସୂର୍ଯ୍ୟ ଜିଣି ରଥ ଦିବ୍ୟ ଜୋତି
ତିମିର ବିଦାରଣ ପ୍ରାଏକ ଶୋଭିତ ତେଜ କାନ୍ତି ।
ପବେକ ଗଜ ମୁକୁତା ଯେ ଗଣ୍ଡସ୍ଥଳ ତଟେ
ଲମ୍ବିତ ଚଉସରା ସେ ବକ୍ଷସ୍ଥଳ ପୁଟେ ।
ହୀରା ଜଡ଼ିତ ଯେ ପଦେକ ମାଣିକ୍ୟ ମଣି
ବେନି ଭୁଜେ ବାହୁଟି ଆଭରଣ କରନ୍ତି ଆଣି ।
ତହିଁର ଉପରେ ହୀରା ପଦେକ ଗୋଟି
କରସ୍ଥଳେ ଶୋହଇ ଏ ବେନି କଟଟି ।
ଜଡ଼ିତ ଅଷ୍ଟ ରତ୍ନେ ଅଙ୍ଗୁଷ୍ଟିର ଦିବ୍ୟ ମୁଦି
ଏକଇ ଶରୀରେ ସେ ଖଞ୍ଜିଲା ଅଷ୍ଟନିଧି ।
ପାଦରେ ନୂପୁର ରେଖରେ ବେନି ଖଞ୍ଜା
ଦିବ୍ୟ ବେଶ ହୋଇଲା ମହେଂଷାସୁର ରାଜା ।
ଶ୍ରୀଭୁଜରେ ଶୋଭାବନ ଧନୁ ଆଦ୍ରାବଳୀ
କୋଟିଏ ସହସ୍ର ବଳ ଧନୁ ନବ ସହସ୍ର ଅଗୁଳି ।
ଧନୁର ଗଣ୍ଠିରେ ମାଣିକ୍ୟ ପୁଞ୍ଜି ପୁଞ୍ଜି
ଗଜ ମୁକୁତା ତୁଲେ ସୁବର୍ଣ୍ଣ ଘଣ୍ଟି ଖଞ୍ଜି ।
ନବଶତ ପଦ୍ମପରେ ମାଣିକ୍ୟର ପନ୍ତି
ବାଳ ଅର୍କ ଜାଣିଣ ଧନୁର ତେଜ କାନ୍ତି ।
ଆହୋ ପରୀକ୍ଷ ଦେବଙ୍କୁ ଦୁଲଭ ଯେବଣ ଧନୁର ମହିମା
ତାହା ସେ ଜାତ କଲା କୁଶ କେତୁ ନାମେ ବ୍ରହ୍ମା ।୪୦୫୦।
ଯେଣେ ସେ ଜିଣିଲା ତେତିଶ ଦେବତାଙ୍କୁ
ସେ ଧନୁ ଦେଲେ ସେ ମଏଷାଁସୁର ଦାନବକୁ ।
ଆହୋ ମେଖଳା ଗିରି ସେ ଜାଣି ଧନୁର ସଙ୍କେତେ
ସେ ଧନୁ ମଏଷାଁସୁର ଧଇଲା ବାମହସ୍ତେ ।
ଆହୋ ପରୀକ୍ଷ ପାଞ୍ଚ କୋଟି ନାରାଜ ଜଟାଇଶ ପକ୍ଷୀଶର

ରତ୍ନେ ଜଡ଼ିତ କରି ଥୋଇଲା ତୋଣର ଭିତର ।
ସହସ୍ରେକ ଗୁରୁଜ ପଞ୍ଚ ସହସ୍ର ଖଣ୍ଡା
ଅଭେଦ ସେହ୍ନା ଆଭରଣେ ବାହାନ କାଳଷଣ୍ଢା ।
ଆହୋ ପରୀକ୍ଷ ଅନନ୍ତ କୋଟି ବ୍ରହ୍ମାଣ୍ଡ ଜିଣିଲା ବାହୁବଳେ
ତାକୁ ଜିଣିମାକୁ ସାମରଥ କେହୁ ରବିତଳେ ।
ଏସନେକ ସ୍ୱରୂପ ବୀରବେଶ ବୀରମଣି
ରଥେ ବିଜଏ ସେ ବଜ୍ରଦଣ୍ଡ ପାଣି ।
ନବଗ୍ରୁଂ ବାହାର ସେ ଅସୁର କୁଳ ବ୍ରହ୍ମା
ରଥେ ବିଜେ କରନ୍ତେ ଆକାଶ ଦିଶଇ ଧୂମା ।
ତପତ ଘେନି ପବନ ବହଇ ଉତ୍ତରେ
କାଳାନଳ ଜିଣି ସେ ମିଳଇ ମଧ୍ୟପୁରେ ।
ଆହୋ ପରୀକ୍ଷ ଅଶିଣ ମାସ ଶୁକଳ ଅଷ୍ଟମୀର ଦିନ
ତିନି ଦିନ ମୂଳା ନକ୍ଷତ୍ର ବିଦ୍ୟମାନ ।
ଆହୋ ପରୀକ୍ଷ ମଳା ନକ୍ଷତ୍ର ଉପରେ ପୂର୍ବାଷାଢ଼ା ନକ୍ଷତ୍ର
ମଏଷାଂସୁର ଦାନବ ବିଜଏ କଲା ରଥ ।୪୦୬୦।
ଯୁଗତେ ଗ୍ରହଗଣ ନୀଚଥାନେ ଅଟଇ
ମଏଷାଂସୁର ଦାନବ ଦକ୍ଷିଣ ମୃତି ବାଟଇ
ବିଷ୍ଟୁ ନାମେ କରଣ ଗଣ୍ଡ ନାମେ ଯୋଗ
ବିଜଏ ମଏଷାଂସୁର କରିବ ରଣ ଯାଜ୍ଞ ।
ବାହିଲା ଯେ ଧୂମଲୋଚନ ସାରଥି
କାମରୂପୀ ଦାନବ ନାହିଁ ଚିହ୍ନ ବର୍ଣ୍ଣ ମୂରତି ।
ଯେସନେକେ ଦିଶଇ ରକ୍ତ ବର୍ଣ୍ଣ ଶାଖା
କ୍ଷଣକେ ଦୃଶ କ୍ଷଣକେ ଅଦୃଶ ଗଗନ ଶିଖା ।
ପବନୁ ବେଗ ହୋଇ ସେ ବାହାଇ ରଥ ଯାନ
ତିନି ଦଣ୍ଡେ କଲା ସେ ରତ୍ନଗିରି ସନିଧାନ ।
ଦୃଗାର ଛାମୁରେ ଯେ କହଇ ନାରାୟଣୀ
ମଏଷାଂସୁର ଦାନବ ଗୋ ବିଜେ କଲା ଗୋସାମଣି ।
ମାତ ଗୋ ସାଙ୍ଗେଣ ତାହାର ଯେ ନାହିଁ ଥାଠ ସଖା
ବିବାନେକ ଆରୋହି ହେ ମଏଷାଂସୁର ଏକା ।
ଆହୋ ପରୀକ୍ଷ ରଥ ଯହୁଁ ଦିଶିଲା ସନିଧାନ
ବିଜେକଲେ ଦେବୀ ଖେଚରୀ ବିମାନ ।
ଶୁଣ ହୋ ପରୀକ୍ଷ ଗଙ୍ଗା ନଦୀର ତଟ
ଖେଚରୀ ବିବାନେ ଦୁହେଁ ହୋଇଲେକ ଭେଟ ।
ଆହୋ ପରୀକ୍ଷ ଜଗୁଜନ ମୋହନୀ ସେ ଦୃଗା ରୂପ ଦେଖି
ମଏଷାଂସୁର ଦାନବ ସେ କହଇ ଦୃଢ଼ ବାକି ।୪୦୭୦।
ଅଦଭୁତ ହୋଇଣ ଆଇଲୁଁ କେବଣ ଦେଶୁ
ସ୍ତିରୀ ଲିଙ୍ଗ ଦେଖାଇ ସଖା ମୋର ନାଶୁଁ ।
ଆଲୋ ଆଲୋ ମୋର ଯୋଧାନ୍ତ ମାଇଲୁ ଅଖଡ଼େ
ସ୍ତନ ଯଉବନ ବହିଁ ତୋର ବିଶ୍ୱାସ ଘାତ ଏଡ଼େ ।
ପୁଣ ପୁଣ ଦାନବ କହଇ ଗଳଗାଜି
ଆଜ ମାଏଂସ ତୋର ଖାଇବି ମୁଇଁ ଭାଜି ।
ଆଲୋ ତୋହର ରୋଧିରେ ଆଜ କରିବି ସ୍ନାହାନ
ତେବେ ସେ ପାସୋରିବି ସଖାନ୍ତ ଦୁଖମାନ ।
ଆହୋ ପରୀକ୍ଷ ମଏଷାଂସୁର ବଚନ ଶୁଣିଲା ମହାମାଏ
କହନ୍ତି ଦୃଢ଼ ବାକ୍ୟ ସେ ଅତିହିଁ ନିର୍ଦ୍ଧଏ ।
ଆରେ ଦେବ ଲୋକ ଉରସଲ କାହିଁକି ଆଜ ଯିବୁ
ସଖାନ୍ତ ମରାଇ ତୁ ଥାଇ ଏକା କିସ କରିବୁ ।
ଏଡ଼େକ ଦର୍ପ ତୁରେ କହୁଛୁ ରାକ୍ଷସ
ତିଳ ପରମାଣେ କାଟିବି ତୋର ମାଏଂସ ।
ଯଶବନ୍ତୀ ପୁରେ ତୁ ଯାଇ କରିବୁ ବାସ
ଗର୍ଦ୍ଧଭ ଜମ୍ବୁକୀରେ କରିବେ ତୋତେ ଗ୍ରାସ ।
ଦୃଗାର ବଚନେ ସେ କରେ ଧଇଲା ଧନୁ
ନାରାଯ ପୂରାଇଲା ସେ କପିଳ ସିଙ୍ଘ ତନୁ ।
ସହସ୍ର ଭୁଜେ ସେ ଦେଖିଲା ଦୃଗାଙ୍କୁ
ସହସ୍ର ସହସ୍ର ନାରାଯ ପେଷିଲା ସେ ଭୁଜକୁ ।୪୦୮୦।
ଆହୋ ପରୀକ୍ଷ ଅସୁର ନାରାଯ ଦେଖି ଗୋସାମଣି
ପାଞ୍ଚ ସହସ୍ର ଭୁଜେ ଧନୁ ଧଇଲେକ ଟାଣି ।
ଦୃଗାର ଶହସ୍ର ଦେଖି ସେ ମଏଷାଂସୁର ରାଏ
ବେନି ଶହସ୍ର ନାରାଯ ପେଷିଲେ ଅଭଏ ।
ଲକ୍ଷେକ ଶର ଘେନି ଦୃଗା ଛେଦିଲା ତାର ସେହ୍ନା
ମଏଷାଂସୁର କପୋଳେ ବାଜି ସର୍ବ ହେଲା ଚୂନା ।
ନବ ଲକ୍ଷ ଶର ଯେ ମଏଷାଂସୁର ବିନ୍ଧି ।
ଶୂନ୍ୟ ଭୁବନ ଆଦି କରି ମଏଷାଂସୁର ଛନ୍ତି
ଆହୋ ପରୀକ୍ଷ ଅସୁରଙ୍କର ଶହସ୍ରେ ଲାଗିଲା ଦୂର୍ଗାଙ୍କର ତେଜ
ଦୂଗୁଂ ସର୍ବ ଶର ହୋଇଲା ଦହିଜ ।
କକଡ଼ା ମାସେ ଯେହ୍ନେ ଗଗନୁ ଜଳ ବୃଷ୍ଟି

ବେନି ବାଣ ଜ୍ୱାଳାବଳୀ ଶୂନ୍ୟ ଭୁବନ ଘୋଟି ।
ଲାଘବ ଶରେ ଯହୁଁ ନ ପାରିଲା ଜିଣି
ଦେବ ଶହସ୍ରମାନ ଆଧାନ କଲା ଆଣି ।
ଆହୋ କୋପେଣ ଦାନବ ପର୍ବତା ଶରେକ ପେଷଇ
ଦୃଗାର ଖେଚରୀ ବିମାନ ଉପରେ ପଥର ବରଷଇ ।
ଶତେ ତାଳ ଉଚଂ ହୋଇ ବରଷନ୍ତି ପାଷାଣ
ଏକ ଏକ ପଥର ଆଏତନ ଏକ ଯୁଣ ।
ପଥର ପଡ଼ନ୍ତେଣ ଦେଖିଲେ ଦେବୀ ଦୃଗେ
ବଜ୍ରାବଳୀ ଶହସ୍ର ଯେ ପ୍ରହାର କଲେ ବେଗେ ।୪୦୯୦।
ଆହୋ ପର୍ବତଙ୍କର ପକ୍ଷ ଛେଦିଲେ ଯେବଣ ଶହସ୍ର ପୂର୍ବେ ।
ସମସ୍ତ ପଥରନ୍ତ ଯେ ଛେଦିଲେକ ବେଗେଁ ।
ଆହୋ ଦୃଗା ମାଇଲେ ଯେ ଅଗ୍ନିବାଣ ଗୋଟାଏ
ସମ୍ଭାଳ ସମ୍ଭାଳ ତୁରେ ମଏଷାଂସୁର ରାଏ ।
ଏକା ଅଗ୍ନି ବାଣ ଯେ ଶତେ ଶତେ ମୃତି
ଦେଖି ପ୍ରଶଂସା ଯେ ବଜ୍ରସିଂଘର ନାତି ।
ଆଗୋ ଏର୍ତ୍ତେକ ସୁଲକ୍ଷଣୀ ତୁ କାହାର କୁଳବଧୂ
ସ୍ତିରୀ ଲିଙ୍ଗ ବହି ତୁ ମହିମା ସାଧୁ ସାଧୁ ।
ନାହିଁ ନାହିଁ ଦେଖିଲା ମହିମା ଭୂଅତଳେ
ଏଡ଼େ ଏଡ଼େ ସେନାନ୍ତ ଜିଣିଲୁ ବାହୁବଳେ ।
କେହୁ ସେ ବୋଲନ୍ତି ଅବଳା ସ୍ତିରୀ ବାମା
ଆଗହୁଁ କହନ୍ତା ନୋହିଲା ଏତେକ ଗାରିମା ।
ପ୍ରଥମହୁଁ ଯେବେ ଜାଣନ୍ତି ତୋର ଏଡ଼େକ କଥା
ମୁଇଁ ଶରଣ ପଶନ୍ତି ଅନେକ କାର୍ଯ୍ୟ ହୁଅନ୍ତା ।
ଏବେରେ ସୁନ୍ଦରୀରେ କହଇ ମୁହିଁ ତୋତେ
ହୋଇବୁ କି ଭାରିଯା ମୋର ଇଚ୍ଛା କଲେ ତୋତେ ।
ମଏଷାଂ ବୋଇଲା ମୋତେ ମାଇଲେ ହେବୁକି ଜଗତେ ସେନାପତି
ତୋତେ ମାଇଲେ ମୁଁ ହେବି ଜଗତେ ବିଖ୍ୟାତି ।
ଅନେକ ଭଗତି ଯେ ହୋଇବି ମୁହିଁ ତୋତେ
ବେଳେକ ସୁନ୍ଦରୀ ଗୋ ରକ୍ଷାକର ମୋତେ ।୪୧୦୦।
ଦୃଗା ବୋଇଲେ ହୋ କିମ୍ପା ହେଉ ନିସତ
ଉଭଏ କୁଳ ବିବାଦେ ତୋତେ ନାହିଁ ଜୀବନ୍ତ ।
ଅଥବା ତତେ ମୁଁ କରଇ ଅବା ରକ୍ଷା
ତୋହୋର ନିମନ୍ତେଣ ଦେବତାଙ୍କର ବଡ଼ କକ୍ଷା ।
ଦେବତାଙ୍କୁ ଦୃଷ୍ଟ କରାଇଲୁ ବଇରାଗ
ତୋତେ ମାଇଲେ ସେ ଥିର ହେବ ସ୍ୱର୍ଗ ।
ଆହୋ ପରୀକ୍ଷ ଦୃଗାର ଏସନ ବାଣୀ ଶୁଣି
କୋପେଣ ଗର୍ଜଇ ମଏଷାଂସୁର ମତ୍ତ ନାଗ ଜାଣି ।
ଆହୋ ଯେବଣ ଅଗ୍ନିବାଣ ପେଷିଲେ ଦେବୀ ଦୃଗେ
ସେ ଅଗ୍ନିଶର ନାଶଗଲା ଧୂମଲୋଚନର ଆଗେ ।
ମଏଷାଂସୁର ପେଷଇ ଅହିଶରା
ଦୃଗାର ଶରୀରେ ସେ କରନ୍ତି ଶର ପୀଡ଼ା ।
ଗରୁଡ଼ାଶର ପେଷିଲେ ପନଙ୍ଗାଶର ଦେଖି
ହେଲେଶ ଗରୁଡ଼ାଶର ଗଲା ପନଙ୍ଗାଶର ଭକ୍ଷି ।
କୋପେଣ ଦୃଗା ଯେ ନିର୍ଘାତ ବାଣ ମାରି
ଧୂମ ଲୋଚନ ସାରଥି ତହା ବାମ ଭୁଜେ ଧରି ।
ପୁଣ ମଏଷାଂସୁର ମେଘାଶରେକ ପେଷଇ
ମୁଷଳ ଧାରା ପ୍ରମାଣେ ମେଘ ବରଷଇ ।
ଗୁଦ୍ର ଶରେକ ଯେ ମାଇଲେ ଦେବୀ ଦୁର୍ଗେ
ମେଘର ବୃଷ୍ଟି ନ ପଡ଼ିଲା ଦଶ ଦିଗେ ।୪୧୧୦।
ଆହୋ ପରୀକ୍ଷ ବ୍ରହ୍ମ ଶରେକ ଯେ ମାଇଲେ ନାରାଏଣୀ
ଧୂମଲୋଚନ ସାରଥି ତାହା ପକାଇଲା ହାଣି ।
ଦୃଗା ଦେଖିଲେ ଧୂମଲୋଚନ ସାରଥି ମହିମା
ସାରଥି ହୋଇ ତୋର ଯେଡ଼େକ ଗାରିମା ।
ହୁଂକାର ଶବଦ କଲେ ଦୃଗତି ତାରେଣୀ
ଶବଦୁଁ ଜାତ ହୋଇଲା କଙ୍କାସୁଣୀ ଲୋମସୁଣୀ ରାକ୍ଷସଣୀ ।
ମଞ୍ଜେଣ ତଳ ପାଟି ଲାଗି ଆକାଶେଣ ଜିଭ
କଙ୍କାଲୋମସୁଣୀଙ୍କର ମହିମା ଯେ ଦେବଙ୍କୁ ଦୁଲଭ ।
ଆହୋ ବସ୍ଥ ବିସ୍ମ ତେଜ ଦେଖିଲେ ପ୍ରତକ୍ଷ
ବୋଇଲେ ତୁମ୍ଭେ ଦୁହେଁଗଲୋ ଧୂମଲୋଚନକୁ ଭକ୍ଷ ।
ସଞ୍ଚକେତୁ ବିମାନ ଗିଳ ତୁମ୍ଭେ ରଥ
ମଏଷାଂସୁର ଦାନବର ଦେଖିବା ନିଜ ଗାତ୍ର ।
ଦିବ୍ୟ ବିମାନ ଚଢ଼ି ଯୁଧ୍ୟ କରି ବସଇ
ତେଣୁ କରି ଆମ୍ଭକୁ ଲୋ ହେଲା ଅଦୃଶଇ ।
କରପତ୍ର ଯୋଡ଼ି ସେ ବୋଲଇ କଙ୍କାସୁଣୀ
ଧୂମଲୋଚନକୁ ମୁ ଗିଳିବି ଏହିକ୍ଷଣି ।
ଲୋମସୁଣୀ ବୋଇଲା ଯେ ଗିଳିବି ମୁହିଁ ରଥ

ପ୍ରତଜ୍ଞା କରିଣ ଦୁହେଁ ଧାଇଁଲେ ଶୂନ୍ୟପଥ ।
ଦେଖି ମଏଷାଂସୁର ବିନ୍ଧିଲାକ ବାଣ
ସମସ୍ତ ପଶିଲା କଙ୍କା ରାକ୍ଷସୀ ତୁଣ୍ଡେଣ ।୨୧୨୦।
ଆହୋ ଅସୁର ଶହସ୍ରକୁ ନାହିଁ ତାହାଙ୍କର ଭୀତି
ଧୂମଲୋଚନକୁ ଯାଇଁ ଗିଳିଲେ ତତକ୍ଷଣାନ୍ତି ।
ତୁରିତେଣ ଗିଳିଲା ଯାଇଁ ସଞ୍ଚକେତୁ ବିମାନ
ଭଏ ମଏଷାଂସୁର ଯେ ହୋଇଲା ଅନ୍ତର୍ଧାନ ।
ଦିବ୍ୟ ଚକ୍ଷୁ ଘେନି ଦେଖିଲେ ଦେବୀ ଦୃଗେ
ମହିଷାସୁର ଦାନବ ରହିଅଛି ଶୂନ୍ୟ ସ୍ୱର୍ଗେ ।
ଆହୋ ଖେଚରୀ ବିବାନୁ ଯେ ଉତୁରି ମହାମାଏ
କେଶରୀ ବିମାନେ ବେଗେ କଲେକ ବିଜଏ ।
ଆକାଶେ ଗମଇ ସେ ଗଜରିପୁ ମହାବଳ
ମଏଷାଂସୁର ଦାନବକୁ ଦେବୀ କଲେକ କଟାଳ ।
ଦେଖି କୋପାନଳ ସେ ବଜ୍ରସିଂଘର ନାତି
କୋପେଣ ପେଷିଲା ସେ ସହସ୍ରଧାରା ଶକତି ।
ଅମୋହ ଶରେ ଯେ ମାଇଲେ ମହାମାଇ
ଦୁଇ ଶହସ୍ର ଯେ ହୋଇଲେ ଅନ୍ତର୍ଧାଇ ।
ପୁଣ ଶହସ୍ର ଯେ ପେଷିଲେ ମହାବଳୀ
ଧାଇଁଣ ପିଟିଲା ଗଦା ସୂର୍ଯ୍ୟବଳୀ ।
ଦୃଗା ମାଇଲେ ଯେ ଗଦା ମୁଦୁଗର
ବେନି ଶର ପଡ଼ି ସେ ହୋଇଲେ ଶତେ ଚୂର ।
ଚାକୁନ୍ଦା ଶରେକ ଯେ ମାଇଲେ ଦତ୍ୟମଣି
ରୁଦ୍ରାଶରେ ତାହା ନିବାରିଲେ ଗୋସାମଣି ।୪୧୩୦।
କୋପେଣ ମଏଷାଂସୁର ଯେ କାଳ ଚକ୍ର ପେଷି
ମଏଷାଂସୁର ଧନୁ ତ୍ରୋଣୁ ପକାଇଲେ ନାଶି ।
ପୁଣ ବାରୁଣା ଶରେକ ଯେ ପେଷିଲେ ଗୋସାମଣି
ମଏଷାଂସୁର ଗଦା ସର୍ବ ସେ ପକାଇଲେ ହାଣି ।
ଧନୁ ତ୍ରୋଣ ଛେଦନ୍ତେ ସେ କପିଳ ସିଂଘର ବଳା
ମହା ମତ୍ତ ମଇଁଷି ଏକ ହୋଇଲା ସେ ଅନର୍ଗଳା ।
ଚାରି ଚରଣ ଘୋଟିଲା ସେ ଜମ୍ବୋଦୀପର ପୃଥୀ
ମୁଣ୍ଡ ବେନି ସିଙ୍ଘ ଲାଗିଲା ଗଗନ ଗତି ।
ଶ୍ୟରୀରେ ଘୋଟିଲାକ ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଚାରିଦିଗ
ଏକ ଶ୍ୟରୀର ସେ ଘୋଟିଲା ଚାରି ସ୍ୱର୍ଗ ।
ଆହୋ ପରୀକ୍ଷ ଅନେକ ରତ୍ନ ଆଭରଣ ସେ ମଇଁଷି ସିଙ୍ଘର କାଏ
ପ୍ରତକ୍ଷେ ଦିଶିଲା ସେ ଉଦଏ ଗିରି ପ୍ରାଏ ।
ସିଙ୍ଘେଣ ତାଡ଼ିତ ଲୋଡ଼ଇ ଚଉକତି
ତିଳ ମନ୍ଦା ପ୍ରାଏକ ସେ ଦିଶଇ ବସୁମତୀ ।
ମହିଷାସୁର ରୂପ ଦେଖି ଦୃର୍ଗାୟେ ବୋଇଲେ
ଉପରକୁ ନ ଥିଲେରେ ତଳକୁ ନ ଥିଲେ ।
ପଞ୍ଚଶତ ଭୁଜେ ଧଇଲେ ଦେବୀ ଧନୁ
ନାରାଯ ପୂରାଇ ସେ ବିନ୍ଧିଲେ ଗଗନୁ ।
ବିସ୍ମ ବ୍ୟାପିତ ଦେବୀ ସହସ୍ରେକ ଭୁଜ
ମଏଷାଂସୁର ଉପରକୁ ଦେବୀ ବିନ୍ଧିଲେ ନାରାଯ ।୪୧୪୦।
ଅବିଛନେ ନାରାଯ ହୁଅନ୍ତେଣ ବୃଷ୍ଟି
ମଏଷାଂସୁର ବଜ୍ର ଛଉଁରୀରେ ପଡ଼ି ନ ଫୁଟି ।
ବିନ୍ଧିଣ ମହାମାଇ ହୋଇଲେ ବିମୁଖ
ଦାନବ ଦେହରେ ନ ଭେଦଇ ଶର ତୀକ୍ଷ ।
ଏକ ଧନୁ ଏକ ଲକ୍ଷେକ ଶର ବିନ୍ଧି
ଶୂନ୍ୟ ଭୁବନ ଆଦି କରି ମେଖଳା ଗିରି ଭେଦି ।
ଯେସନେକେ ନିଶ୍ଚଳେ ରହିଅଛି ମେରୁ
ବେଳକୁବେଳ ତେଜ ବିକାଶଇ ଅଧିକ ମହାମେରୁ ।
ରାଗେଣ ଗୋସାମଣି ଯେ ଦେବ ଶହସ୍ର କଲେ
ପାଶୀ ପ୍ରଶୁ ପରିଘ ହାଦେ ସେ ପେଷିଲେ ।
ଆହୋ ପରୀକ୍ଷ ରାଜା ଶହସ୍ର ମାନ ଯେ ପେଷନ୍ତି କାନ୍ତାନୀ
କପୋଳେ ପଡ଼ି ଶହସ୍ରମାନେ ହୋଅନ୍ତି ତେଜ ହାନି ।
ମହିଷାସୁର ଶରୀରେ ଅଭେଦ କପଟ ସେହ୍ନା
ଦେବ ଶହସ୍ର ମାନେ ପଡ଼ି ହେଉଛନ୍ତି ଚୂନା ।
ନାରାଯକୁ ଭଏ ନ କରି ସେ ମଏଷାଂସୁର ଧାମଇଁ
ଦୃଗାର ଛାମୁରେ ସେ ଦୁଗୁଣ ବିକ୍ରମଇଁ ।
ମୁଖ ରାବ କରି ସେ ଧାମଇଁ ଅତି ବେଗେଁ
ଦୃଗାର ବାହାନ ସିଙ୍ଘକୁ ମାଇଲା ନେଇ ସିଙ୍ଗେ ।
ଦେଖିଣ ଗର୍ଜଇ ସେ କେଶରୀ ମହାବଳ
ଦୃଗା ବୋଇଲେ ରେ କେଶରୀ ତୁ ସମ୍ଭାଳ ।୪୧୫୦।
ମୁହିଁ ଯେ ବ୍ରତ କରିଅଛି ମାରିବି ମହିଂଷାକୁ
ମୋହୋ ହାଥେ ସେ ମାରିବି ଏହାକୁ ।
ଆହୋ ଦୃଗାର ବଚନେ ଶାନ୍ତି ହୋଇଲା କେଶରୀ

ପୁଣ ପୁଣ ମହିଷାସୁର କାୟା ଯେ ବିସ୍ତାରି ।
କୋପେଣ ଦୃଗା ଯେ ଲୁହାର ଗଦା ଘେନି
ମହିଷାସୁର ଉପରେ ପିଟିଲେ କାତ୍ୟାନୀ ।
ଷହସ୍ର ବୁଲାବନ୍ତେ କମ୍ପଇ ବସୁମତୀ
ବୁଲାଇଁ ମହାମାଏ ପ୍ରହାର କଲେ ଧାତି ।
ଗଦା ବେନି ପଡ଼ିଲା ସେ ମହିଷାସୁର ବକ୍ଷସ୍ଥଳେ
ଭାଜିଣ ଗଦା ବେନି ହୋଇଲା ନବସ୍ଥଳେ ।
ମହିଷାସୁର ଉପରେ ସେ ପଡ଼ିଣ ଗଦା ବେନି
ଝଣ ଝଣିତ ପରା ହୋଇ ସେ ଉଠିଲା ବହ୍ନି ।
ଲୁହାର ଗଦା ଯହୁଁ ହୋଇଲା ଭଗ୍ନନଷ୍ଟ
ତ୍ରିଶୂଳ ଘେନି ପିଟିଲେ ଜଗତମାତ ।
ପୁଣ ଦାନବ ସେ କୋପେଣ ଧାଉଁଅଛି
ଶୂଳ ଶକତି ଖଡ଼ଗେ ସେ ନୋହିଲା ତାର କିଛି ।
ପୁଣି ହିଁ ପିଟିଲେ ଦୃଗେ ବଜ୍ର ମୁଦୁଗର
ମହିଷାସୁର ଅଙ୍ଗେ ପଡ଼ିଣ ହୋଇଲା ଶତେଚୂର ।
କୋପେଣ ବୁଲାଇଲେ ଦେବୀ ସୂର୍ଯ୍ୟା ଗଦାବଳି
ମଏଷାଂସୁର ଉପରେ ପ୍ରହାର କଲେ ତୋଳି ।୪୧୬୦।
ଆହୋ ପରୀକ୍ଷ ଯେବଣ ଗଦାଯେ ନାଶଗଲା ଅର୍କନାମେ ଦଇତ
ଗଦା ଚୂର ହୋଇଲା ସେ ମଏଷାଂସୁର ମାଥ ।
ପୁଣ ପ୍ରହାର କଲେ ନୀଳାମ୍ବର ପରିଘ
ସେହି ଚୂର ହୋଇଲା ମଏଷାଂସୁର ସିଙ୍ଗ ।
ବିନ୍ଧନ୍ତେ ଶହସ୍ର ଯହୁଁ ନ ଭେଦିଲା କାଏ
ଦେବ ଶହସ୍ର ଚୂର ଗଲା ପିଟନ୍ତେଣ ମହାମାଏ ।
ଏ ଶହସ୍ର ପଡ଼ନ୍ତେ ମଏଷାଂସୁର କୋପାନଳ
ବେଳେ ବେଳେ ତାହାର ତେଜ ଅନର୍ଗଳ ।
ଅଷ୍ଟାଙ୍ଗ ଦେବୀ ସେ ହୋଇଲେ କୋପାନଳ
କୋଦଣ୍ଡ ଧନୁରେ ବସାଇଲେ ଶର ମହାକାଳ ।
ପୂରାଇ ଶରକୁ ଆଜ୍ଞା ଦେଲେ ଗୋସାମଣି
ତୁ ଯାଇଁ ମଏଷାଂସୁର କନ୍ଧ ପକା ହାଣି ।
ଆହୋ ପରୀକ୍ଷା ଅନିବାରଣ ଶର ଅପାଲଟେକ ଅଟଇ
ଯାହାର ନାମ ଧରି ପେଷଇ ତାହାରି ଶିର ଅବଶ୍ୟ କାଟଇ ।
ମନ୍ଦର ତୁଲେ ଯେବଣ ମଏଷାଂସୁର ଗାଏ
ମହାକାଳ ବାଣ ହୋଇଲା ମେରୁ ତୁଲ୍ୟ ପ୍ରାଏ ।
ଶ୍ରୀକରେ ବଜ୍ରାବଳୀ ନବନିସୀ କୋଠାର
କିଛିତ ପ୍ରାଏ ମଣଇ ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ପ୍ରଳୟାନ୍ତକ ଶର ଯେ କଳିକି ଅବତାର
ଯେଣେ ଦହି ହୋଅଇ ସଚରାଚର ମହୀଭାର ।୪୧୭୦।
ଆହୋ ଦୃଗାର ଆଜ୍ଞା ପାଇ ସେ ଅଶ୍ର ମହାକାଳ
ମଏଷାଂସୁର ଉପରକୁ ଖେପିଲା କରବାଳ ।
ଘୋର ରୂପ ଦେଖି ସେ ଧାଇଁଲା ମଏଂଷା
ବେନି ଶିଙ୍ଗକୁ ମାଇଲା ସେ ଜୀବନକୁ ନିଆଶା ।
ଶିଙ୍ଗେ ମାଇଲା ସେ ଦାନବ ମହାବଳୀ
ବାମ ଭୁଜେ ମହାକାଳ ବାଣ ଧଇଲାକ ତୋଳି ।
ଆହୋ ପରୀକ୍ଷ ମହାକାଳ ବାଣ ଧରନ୍ତେ ଧାଇଁଲେ ଦେବୀ ଦୃଗେ
ଅସୁରକୁ କଟାର ଘେନି ମାଇଲେ ଦେବୀ ବେଗେ ।
କଟାର ପଡ଼ିଲା ସେ ମଏଂଷାସୁର କନ୍ଧ
ବେନି ଖଣ୍ଡ ହୋଇ ସେ ପଡ଼ିଲେ କୋବନ୍ଧ ।
ମନ୍ଦର ଗିରି ପ୍ରାଏକ ହୋଇ ମଏଂଷାସୁର ପଡ଼ଇ
ବ୍ରହ୍ମାଣ୍ଡ କମ୍ପିଲା ସେ ପଡ଼ନ୍ତେଣ ତାହାରଇ
ଆହୋ ପରୀକ୍ଷ ଦେଖି ଆନନ୍ଦ ହୋଇଲେ ବୃନ୍ଦାଅର୍କେ
ସାଧୁ ସାଧୁ ବଚନ ସେ କଲେ ଦେବ ଲୋକେ ।
ଆକାଶୁଁ କଣୟ ହୋଇଲାକ ବୃଷ୍ଟି
ବାଞ୍ଛା ସମାପତ ପୂରୋଇଲେ ଅରଷ୍ଟି ।
ଆହୋ ପରୀକ୍ଷ ଛେଦନ ଯହୁଁ କଲେ ମହାମାଏ
ଗର୍ଭ ଭିତରୁ ସେ ବିକାଶିଲା ନିଜ କାଏ ।
ବାଳ ଅର୍କ ପ୍ରାଏ ମଏଂଷାସୁର ନିଜ ମୂର୍ତ୍ତି
ବାମ କରେ ପରିଘ ଡାହାଣ କରେ କାତୀ ।୪୧୮୦।
ନିଜ ରୂପ ମଏଂଷା ବିକାଶିଲା ହାଦେ
ତ୍ରିଶୂଳ ଘେନିଣ ମାଇଲେ ଦେବୀ ହୃଦେ ।
ପୁଣି ଦେବୀ ଚାପିଲେ ମହାବଳେ
ବିସ୍ବରୂପ ବିକାଶି ବସିଲେ ବକ୍ଷସ୍ଥଳେ ।
ମଏଂଷାସୁର ଉପରେ ସେ ବେନି ପାଦ ଦେଇଁ
ଡାହାଣ ପାଦ ଗଣ୍ଡସ୍ଥଳେ ମାଡ଼ିଲେ ନିଠାଇଁ ।
ଆକ୍ରେଷିଣ ଶୂଳ ମାଇଲେ ନାରାଏଣୀ
ଉର୍ଦ୍ଧ ମୁଖେ ଡାକ ଦେଲେ ଦୃଗତି ତାରେଣୀ ।
ଆହୋ ପରୀକ୍ଷ ଦୃଗାର ତୁଲେ ନବକୋଟି କାତ୍ୟାନୀ

ଛପନ କୋଟି ପିଚାସୁଣୀ ଚଉଷଠି ଯୋଗ୍ମୀ ।
ନବ ମର୍ଭୁତ ଶ୍ରୋଣେହା ତିନିପଦ୍ମ ଚଣ୍ଡୀ
ଚଉଦ କୋଟି ଡାଙ୍କେଣୀ ଛପନ କୋଟି ଚାମୁଣ୍ଡୀ ।
ତ୍ରିପୁରା ଉଗ୍ରତାରା ଚଣ୍ଡୀ ଯେ କୋଠାରୀ
ଗୋଲମା ମାରକମା ଯମକାମା ମାହେଶ୍ୱରୀ ।
କାଳୀ କଙ୍କାଳୀ ବେତାଳୀ ଭୂଇରୋବୀ
କଙ୍କସୁଣୀ ମୂଳେ ସାତ ସାଗର ଦେବୀ ।
ଅଠାର କୋଟି ରଦ୍ରାଏଣୀ ବ୍ରହ୍ମାଏଣୀ ବାବନ କୋଟି
ମଏଂଷା ଉପରେ ମାଡ଼ି ସେ ସଭିଏ ଉଠି ।
ନବ କୋଟି କାନ୍ତାନୀ ଘେନି କୋପାନଳେ
ଏତେ ଦେବୀ ମାଡ଼ି ବସିଲେ ବଛସ୍ଥଳେ ।୪୧୯୦।
ଚଉଷଠି ଦେବୀ ଯେ ଧାଇଲେ ଶୂଳ ଚାପି
ବେନି ଭୁଜ ମାଡ଼ି ବସିଲେ ଶତେ ମର୍ଭୁତ କାମରୂପୀ ।
ପାଞ୍ଚ ପଦ୍ମ ଡାକେଣୀ ମାଡ଼ିବସିଲେ ବେନି ଜାନୁ
ଶତେ ପିଚାସୁଣୀ ମାଡ଼ି ବସିଲେ ତାର ତନୁ ।
ମଏଂଷାର ଚାରି ପାଦ ଧଇଲେ ଛପନ କୋଟି ଦେବୀ
ମୁଣ୍ଡ ମୋଡ଼ିଲେ ଚଉଦ କୋଟି ଭଇରୋବୀ ।
ଆହୋ ପରୀକ୍ଷ ତେତିଶ କୋଟି ଦେବୀ ବାହାରେ
ବସି ପିଠିରେ ମାଏଂସ ଭକ୍ଷି
ସିଂଘ ତୁଣ୍ଡେ ଧଇଲା ବକ୍ଷସ୍ଥଳ କୁକ୍ଷି ।
ଆହୋ ତକ୍ଷେକ ନାଗ ବେଢ଼ାଇଲା ଶତେପୁର
ବେନି ପାଟି ଚାପିଲା ସେ ନାସିକା ଉପର ।
ବିସ୍ନୁ ରୂପ ଧରି ଦେବୀ ମଏଂଷା ଉପରେ ଚାପି
ତଦ୍ୟପି ମଏଂଷାସୁର ନ ରହଇ ବିସ୍ନୁବ୍ୟାପୀ ।
କୋପେଣ ମଏଂଷାସୁର ଦେହ ଦେଲା ସିଞ୍ଚାଡ଼ି
ଛିଡ଼ିକି ଦେବୀମାନେ ବହୁତ ଦୂରେ ପଡ଼ି ।
ଆହେ ପରୀକ୍ଷ ପଦ୍ମଦୀପେ ପଡ଼ିଲେ ଲକ୍ଷେ କୋଟି ଦେବୀ
ଚନ୍ଦ୍ର ଦୀପେ ପଡ଼ିଲେ ଚଉଦ କୋଟି ଭଇରୋବୀ ।
କୁଶଦୀପେ ପଡ଼ିଲେ ନବ ପଦ୍ମ ଚଣ୍ଡୀ
କରଞ୍ଚ ଦୀପେ ପଡ଼ିଲେ ତିନିଶ କୋଟି ଚାମଣ୍ଡୀ ।
ପଦ୍ମ ଦୀପେ ପଡ଼ିଲେ ଶତେ ପଦ୍ମ ପିଚାସଣୀ
କ୍ଷୀର ସମୁଦ୍ରେ ପଡ଼ିଲେ ଚଉଦ କୋଟି ରାକ୍ଷସଣୀ ।୪୨୦୦।
ଆହୋ ଜମ୍ବୋ ଦୀପେ ପଡ଼ିଲେ ନବ କୋଟି କାନ୍ତାନୀ
ପଦ୍ମେକ ଡକେଣୀ ସେ ଚଉଷଠି କୋଟି ଯୋଗ୍ମୀ ।
ବନସ୍ତେ ପଡ଼ିଲେ ତିନି ସାଗର ଦେବତୀ
ସେମାନେ ହୋଇଲେ ଯେ ବନ ଦେବତୀ ।
ବ୍ୟାଘ୍ର ଭଲୁକମାନେ ପଡ଼ିଲେ ବନସ୍ତେ
ସିଙ୍ଘ ଘେନି ଦୃଗା ମାତ୍ର ରହିଲେ ଏକାନ୍ତେ ।
ଯେବଣ ଦେବୀମାନେ ରହିଲେ ଯେବଣ ସ୍ଥାନେ
ଉଠି ନ ପାରିଲେ ସେ କର ଚରଣ ଭଗ୍ନେ ।
ଛୋଟୀ କାଣୀ କୁଜୀ ଅପାରଗ କୁମ୍ଭା
ପଞ୍ଜରା ଭଗନ ହୋଇ ଦିଶନ୍ତି ବିରୂପା ।
ଯେ ଯେଉଁଠାରେ ପଡ଼ିଲେ ହୋ ପରୀକ୍ଷ ରାଜା
ସବୁ ପାଷାଣ ହୋଇ ଘେନିଲେ ତହିଁ ପୂଜା ।
ଆହୋ ପରୀକ୍ଷ ଦେବୀମାନେ ଯହୁଁ ଉଠିଲେ ଗଗନେ
ସିଙ୍ଘକୁ ଘେନି ଦୃଗା ରହିଲେ ମାତ୍ରା ଶୂନ୍ୟେ ।
ତ୍ରିଶୂଳ ମାଡ଼ି ରହିଅଛନ୍ତି କାନ୍ତାନୀ
ଭ୍ରମଇ ମଏଂଷାସୁର ନବ ଖଣ୍ଡ ମେଦନୀ ।
ଆହୋ ପୃଥିବୀର ମଧ୍ୟେଂ ନ ପାରିଲା ରହିଁ
ସମୋଦ୍ର ଭିତରେ ସେ ହୋଇଲେ ଜଳଶାହି ।
ମହାର୍ଣ୍ଣବ ଜଳେ ସେ ବଡ଼ବାଜଳେ ପଡ଼ି
ଅଗାଦ ଗମ୍ଭୀର ଭିତରେଣ ଯେ ବୁଡ଼ି ।୪୨୧୦।
ଆହୋ ପରୀକ୍ଷ ନ ଯାଇ ଜୀବନ ସେ ବୁଡ଼ଇ ବିକଳେ
ଦୃଗା ଦେବୀହିଁ ବୁଡ଼ିଲେ ମହାର୍ଣ୍ଣବ ଜଳେ ।
ଶୂନ୍ୟେ ମାଡ଼ି ବକ୍ଷସ୍ଥଳେ ଅଛନ୍ତି ଦେବୀ ଧରି
ଛାଡ଼ିଲେ କୋଟି କଷ୍ଟ ସେ ହୋଇବ ଦଇତାରି ।
ଯେବେ ନ ମରିବ ସେ ଦୃଗାର ହାଥେ
ତ୍ରୈଲୋକ୍ୟ ନାଶ ସେ ହୋଇବ ଦଇତେ ।
ଆବର ଜଙ୍ଗମ କୀଟ ପତଙ୍ଗ ନ ରହିବ କିଛି
ସଚରାଚର ପୃଥୀ ଯିବ ସବୁ ଭକ୍ଷି ।
ଆହୋ ପରୀକ୍ଷ ଆକାଶେ ବାଣୀ ଦିଅନ୍ତି ସେ ସ୍ୱର୍ଗେ
ଅସୁରକଇ ନ ଛାଡ଼ ଗୋ ଗାଢ଼େ ଚାପ ଦୃଗେ ।
ଏ ଘାନ୍ତି ଫିଟିଲେ ଗୋ ହୋଇବ ତ୍ରିଜୀବୀ
ଆମ୍ଭନ୍ତ ରକ୍ଷା ଗୋ କରିବା ମହାଦେବୀ ।
ଆହୋ ପରୀକ୍ଷ ସେ ଅନେକ ବଇକୁଳ୍ୟ ହୋଅନ୍ତେ ଦେବତାଏ
ବିମୁଖ ହୋଇ ଛାଡ଼ି ଲୋଡ଼ନ୍ତି ଅଭଏ ।

ପୁଣ ବୁଡ଼ଇ ବୀର ପୁଣ ଉପୁଡିଆଇ ମହାଜଳେ
ଶହସ୍ରେକ ମାଡ଼ି ଅଛନ୍ତି ବକ୍ଷ ସ୍ଥଳେ ।
ବିମୁଖ ହୋଇ ଯେ ଭାଳନ୍ତି ବୈଷ୍ଣବୀ
ନାଶ କରୁ ଦେବତାନ୍ତ ଛାଡୁ ଏହାକୁ ଦେବୀ ।
ଦୃଗାର ମନେ ଯେ ଭାଳନ୍ତି ବିକୃତି
ହୃଦରୁ ବାହାର କଲେ ସେ ଅଦ୍ଭୁତ ମୂରତି ।୪୨୨୦।
ଚତୃଭୁଜ ଚତୃବଦନ କୁଙ୍କୁମ ବଦନ
ରଜତ ବସ୍ତ୍ର ପରିହରଣ ପଦ୍ମ ଯେ ଆସନ ।
ବେନି କରେ ଅଭଏ ଦାତା ବେନି ପାଣି
ଦେଖିଣ ପଚାରିଲେ ଦୃଗତି ତାରେଣୀ ।
ମୁହିଁ ତ ଦାନବକୁ ନ ପାରିଇ ମାରି
ଆଗାଦ ଜଳେ ପଡ଼ିଲା ସେ ଜଳ ଆଧାରି ।
ତୁ ଦେବୀ ଅଦ୍ଭୁତେ ଅଇଲୁ ଗୋ କାହୁଁ
ମୁହିଁ ହାଦେ ଜାତ ହୋଇଲୁ ତବ ଦେହୁଁ ।
ଏ ହାଦେ ବଳବନ୍ତା ଅଭଏ ଦଇତାରି
ଏ ଦାନେବ ଛାରକୁ କିମ୍ପା ବିମନ ହୃଦେ ଧରି ।
ଅଥବା ଯଦ୍ୟପି ତୁ ଛାଡ଼ିବୁ ଯେହାକୁ
କ୍ଷଣକେ ଭକ୍ଷିବ ଏ ଦେବତାମାନଙ୍କୁ ।
ମାଗୋ ତୋହୋର ମନେ ଅନ୍ତର ଧରନ୍ତେ
ମୁହିଁ ତାହା ଜାଣିଲି ଗୋ ତୋହୋର ହୃଦଗତେ ।
ଦୃଗାଏ ବୋଇଲେ ଉତପତ୍ତି ହୋଇଲୁ ମୋହୋର ହୃଦରୁ
ମାରିବି ମଏଂଷାସୁର ଯେ ତୋହୋର ପ୍ରସାଦରୁ ।
ଦୃଗାର ବଚନ ସେ ଶୁଣି ଅନନ୍ତ ନାରୀ
ଜଳ ଫାଶ ଘେନି ସେ ବାନ୍ଧିଲେ ଦଇତାରି ।
କ୍ଷୀରୋଦୁଁ ବାହାର ହୋଇଁ ଓଟାରିଲା ଫାଶ
ଜଳର ଭିତରୁ ସେ ବାହାରିଲା ରାକ୍ଷସ ।୪୨୩୦।
ବାରାନିଧିର କୂଳେ କାଶୀ ନାମେ ଦେଶ
ମଏଂଷାସୁରକଇ ଚାପି ରହିଲେ ଉଦେଶ ।
ଆହୋ ପରୀକ୍ଷିତ ମଏଷାଂ ନ ରହଇ ଆକାଶକୁ ଖେଦଇ
ସେ ପଦ୍ମ ଆସନୀ କହିଲେ ମୃତୁ ଭେଦଇ ।
ଶୁଣସି ମାତା ଗୋ ମଏଂଷାସୁରର ପୂର୍ବ କଥା
ସେ ଶିବ ଗର୍ଭୁଂ ସତ୍ୟ ଯୁଗେ ତୋଷିଲା ବ୍ରହ୍ମବେତ୍ତା ।
ଲକ୍ଷେ ଷାଠିଏ ସହସ୍ର ବରଷ କଲା ଘୋର ତପ
ପ୍ରସନେଣ ପିତାମହ ବର ଦେଲେ ତହିଁର ଅନରୂପ ।
ଦକ୍ଷ ଲୋକେ ଅବଧ ମାଗିଲା ଏହୁ ବରେ
ବିଷ୍ଣୁ ସମାନ୍ୟ ମୋତେ ନୋହିବାକ ସମରେ ।
ମନ୍ତ୍ରୀ କହିଲାନି ମଏଂଷାସୁର ଆଗ
ସ୍ତିରୀଙ୍କର ଯୋଗେ ତୋତେ ହୋଇବ ମୃତୁ ଯୋଗ ।
ମଏଂଷାସୁର ବୋଇଲା ତୋହୋ ଛାର ପାମର ବୁଦ୍ଧି
ଏଡ଼େଙ୍କ ପ୍ରଭୁଙ୍କୁ ମାଗିବି ସ୍ତିରୀ ଛାର ଅବଧି ।
ସ୍ତିରୀ ଛାର ପାମେରୀ ହୀନ ଜନ୍ମ କାଏ
ତାହା ଛାରକୁ କିସ ମୋର ଭଏ ।
ବିରୁପାକ୍ଷ ମନ୍ତ୍ରୀ କହଇ ହାଦେ ଦେବତାଙ୍କର ଅଛଇ ଏମନ୍ତ ଭିଆଣ
ସ୍ତିରୀ ରୂପେ ଅବତାରଟି ଦେବ ନାରାଏଣ
ଅନ୍ଧେକ ମନ୍ତ୍ରୀ ବଚନେ ମଏଂଷାକୁ ଲାଗିଲା ବଡ଼ ଚିନ୍ତା
ବୋଇଲା ସ୍ୱାମୀ ମୋତେ କଥାଏ ଦେବ ବ୍ରହ୍ମବେତ୍ତା ।୪୨୪୦।
ପିତାଏ ବୋଇଲେ ତୁ ମାଗିବୁଟି ଯାହା
ଆଦିତ ଅସ୍ତ ଯାଏ ମୁଁ ଦେଉଥିବି ତାହା ।
ସ୍ୱାମୀ ଯେବଣ ସ୍ତିରୀ କିଣିମ ସମରେ ମୋତେ
ମୋହ ବଶ୍ୟ ହେବି ତାହାର ଭବ ଦେଖନ୍ତେ ।
ମାତ ଗୋ ଏସନେକ ବର ବ୍ରହ୍ମାଙ୍କୁ ମାଗିଅଛି ପୂର୍ବେ
ତୁ ତାହା ବଧ କରି ଲୋଡୁ କେମନ୍ତେ ଏବେ ।
ଅଥବା ତୋର ନ ଦେଖିଲେ ଭବ ମାର୍ଗ
କୋଟିଏ ଯୁଗେଁ ଦାନେବକୁ ନାହିଁଟି ବିଯୋଗ ।
ମାତ ଗୋ ଏ ରୂପ ଛାଡ଼ି ତୁ ହୁଅ ଉଲଗ୍ନ ଶାହୀ
ମଏଷାଂ ବଶ୍ୟ ହୋଉ ତୋର ଭବ ମୁଖ ଚାହିଁ ।
ଆହୋ ପରୀକ୍ଷ ଅଦଭୁତେ ଦେବସ୍ତିରୀ କହିଲାକ ବାଣୀ
ଦୃଗା ବିସ୍ମରିଲେ ତାହାର ବାକ୍ୟ ଶୁଣି ।
ଆହୋ ସୁରଲୋକ ନରଲୋକ ନାଗଲୋକ ଦେଖନ୍ତେ
ଉଲଗ୍ନ ଶାହୀ ମୁଁ ହୋଇବି କେମନ୍ତେ ।
ତୁ ଯେବେ ମାତ ଏଥକୁ କରୁ ଚିନ୍ତା
ସରିଲା ତ୍ରୈଲୋକ୍ୟ ଆବର ହୋଇଁ କି ରକ୍ଷା ।
ମାଗୋ ସତ୍ୟ ତ୍ରେତୟା ଦ୍ୱାପର ଯୁଗର କଥା
ମଏଷାଂ ବଧ ନୋହଇ ଗୋ ଜାଣଇ ମୁହିଁ ସର୍ବଥା ।
ଆକାଶ ମାର୍ଗେ ଦେବତାଏ ଦେଲେ ଶୂନ୍ୟ ବାଣୀ
ଏକଥା ସତ୍ୟ ଗୋ ଦୃଗତିତାରେଣୀ ।୪୨୫୦।

ଜୟ ତୁ କାନ୍ତାନୀ ଗୋ ସର୍ବ ମଙ୍ଗଳା ରୂପ
ସଦା ସର୍ବ ମଙ୍ଗଳା ରୂପ ସଦଏ ସ୍ୱରୂପ ।
ଶୟଳ ଜନ ତାରଣ କଲା ଯାହାର ବୁଦ୍ଧି
ଯାହାର ନାମ ମାତ୍ରକେ ତୁଟଇ ସର୍ବ ବ୍ୟାଧି ।
ସର୍ବ ସିଧ ମାତ କାଳେ ଉତପତି ଯାହାର ହେଲୁଁ
ଦୃଗାକୁ ତାରିଲେ ଯେ ଭୁବନ ଆପାଦ ଜଳୁଁ ।
ଏକ ଲଏ କରି ଶୁଣ ହେ ସର୍ବମଙ୍ଗଳାଙ୍କ ଜନ୍ମ କଥା
ଅଗାଦ ଦୁଃଖ ଖଣ୍ଡଇ ସେ ମାତା ।
ଜାତ ମଧେ ଅନ୍ତେ ଯେ ଅବସାନ ଏ ମୂଳ
ପ୍ରସନେ ଦାତ୍ରୀ ଗୋ ଦ୍ରଶନେ ସୁଫଳ ।
ସର୍ବ ମଙ୍ଗଳା ସୁମର ନରେ ପ୍ରସର ହେଉ ବୁଧି
ସର୍ବ ମଗ୍ଳା ସୁମର ନରେ ଖଣ୍ଡଣେ ହୋଉ ବ୍ୟାଧି ।
ଶ୍ରୀସର୍ବ ମଙ୍ଗଳା ଚରଣେ ଆନନ୍ଦେ
ଶୂଦ୍ରମୁନି ପଦ ଏକା ମୋହୋର ସର୍ବ ମଙ୍ଗଳା ପ୍ରସାଦେ ।
ଶୁଣ ହୋ ପରୀକ୍ଷ ବଦୟନ୍ତି ଶୁକବ୍ରହ୍ମା
ଦୁରାପଦ ମଏଂଷାସୁରର ହାଦେ ଏସନେକ ମହିମା ।
ଯେଉଣ ଉପାଏ ସେ କହିଲେ ସର୍ବ ମଙ୍ଗଳେ
ଦୃଗା ତରିଲେ ଯେ ମହାର୍ଣ୍ଣବ ଜଳେ ।
ସିନ୍ଧୁ ଉତ୍ତର ତଟେ ଚଣ୍ଡୀକୁଳ ପାଇଁ
ମଏଂଷାସୁର ନ ରହଇ ପବନୁ ବେଗ ଯାଇ ।୩୨୬୦।
ସର୍ବ ମଙ୍ଗଳା ବୋଇଲେ ଗୋ ବିଳମ୍ବ ନ କର
ଏ ରୂପ ଛାଡ଼ି ବିଭଳିତ ରୂପ ଧର ।
ଦୃଗା ବୋଇଲେ ତ୍ରୈଲୋକେ ଅସମ୍ଭବ କଥା
ଅଦୃଷ୍ଟି ଅଶ୍ରୁତି ପାତେକ କେମନ୍ତେ କରି ମାରିବା ପାମର ଦଇତା ।
ନ ମରଇ କି ନା ଏ ପାମର ଦଇତ ଚାଣ୍ଡାଳ
ନ ଥାନ୍ତୁ କି ନା ଏ ଦେବତାଏ ସ୍ୱର୍ଗ ମଣ୍ଡଳ ।
ନ ରହଇ କି ନା ଏ ନବ ଦୀପା ପୃଥୀ
ତ୍ରୈଲୋକ୍ୟ ଦୃଶ ହୋଇବ ମୋହର ଶକତି ।
ଦୃଗାର ନିରାଶ ପ୍ରତିଉତ୍ତର ଶୁଣି
ଆକାଶ ବାଣୀ ପଡ଼ିଲା ଗୋ ରଖ ଠାକୁରାଣୀ ।
ସର୍ବ ମଙ୍ଗଳାଏ ବୋଇଲେ ଯେହ୍ନେକ କୃତ୍ୟ ନ କରତୁ ଆଦ୍ୟହୁଁ
ନିରାଶ ହୋଇଁ ଦେବେ ଜଳଶାହୀ ହୁଅନ୍ତେ ଆସନ୍ତେ କିମ୍ପା ତହୁଁ ।
ଜନ୍ମ ହୋଇ ପ୍ରସରିଲୁ ସହସ୍ରେକ ଭୁଜ
ଉପର ହସ୍ତ କରି ତୋତେ ଶହସ୍ର ଦେଲେ ଦେବରାଜ ।
ପ୍ରତିଗ୍ରହ କରି ଘେନିଲୁ ଦେବତାଙ୍କର ତହୁଁ
ପାଷାଣ ବଚନ ତୋହୋର ହୋଇବାକ ସେହୁ ।
ମାଗୋ ନିଶ୍ଚିନ୍ତେ ରହିଲେ ସ୍ୱର୍ଗେ ତୋହୋର ବିଶ୍ୱାସୁଁ
ପୁଣ ଅନେକ ଦୋଷଯେ ଏବେ ହୋଇବ ତୁମ୍ଭରି ସକାଶୁଁ ।
ମାଗୋ ପୂର୍ବ ଛାଡ଼ି ପଶ୍ଚିମେ ଯେବେ ଉଦୟ ହୋଇବ କରତାର
ଦକ୍ଷିଣ ଭୂମି ଛାଡ଼ି ସିନ୍ଧୁ ଯଦି ମାଡ଼ିବ ଉତ୍ତର ।୪୨୭୦।
ପ୍ରର୍ବତ ଉପରେ ଯେବେ ଫୁଟିବ ନଳଣୀ
କଦାଷ୍ଟିତେ ଅନ୍ତର ହେବ କି ମହତଙ୍କର ବାଣୀ ।
ଅନେକ କଟାଳ ସେ ଦେବତାଙ୍କୁ କଲେ ଦଇତେ
ତେଣୁ ମହତ କରି ଆଶ୍ରେ କଲେ ତୋତେ ।
ମା ଗୋ ଛାଡ଼ ମନ ଭ୍ରାନ୍ତି ଖଣ୍ଡ ଅପଚଏ
ଏତେ ବୋଲି ସର୍ବ ମଙ୍ଗଳା ପ୍ରଣପତ୍ୟ ଦୃଗାଙ୍କର ପାଏ ।
ଆହୋ ପରୀକ୍ଷ କ୍ଷଣକ ହିଁ ବିଶ୍ରାମ ନାହିଁ ଯାତୁଧାନ
ଦଶ ସହସ୍ର ଯୋଜନ ଗଲାଣି ଫୁଟି କାମେକ ନାମେ ବନ ।
ତାରେଣୀ ନାମେଣ ବହଇ ଏକ ନଦୀ
ସର୍ବ ମଙ୍ଗଳା ସନମତ କରାଇଲେ କଉତୁକେ ସମାଦି ।
ଅନେକ ନିରାକୁଳ ବଚନ ଶୁଣି ସେ ଦୃଗତିତାରେଣୀ
ଚାମଣ୍ଡା ରୂପ ଯେ ଧଇଲେ ଗୋସାମଣି ।
ବିବସନି ହୋଇଲେ ଦେବୀ କେଶ ମୁକୁଳ
କାଛଟାଏ ପିନ୍ଧିଲେ ଦେବୀ ଦିଶଇ ଜାନୁ ଯୁଗଳ ।
ସ୍ତନମାନ ସମସ୍ତ ଯେ ହୋଇଲେକ ଦୃଶ
ତ୍ରଇଲୋକକୁ ମହାଭଏ ଲାଗିଲାକ ତ୍ରାସ ।
ଆହୋ ପରୀକ୍ଷ ସନ୍ଦେହ ଦେଖି ମଏଂଷାସୁର ରହଇ
ପଞ୍ଚଭୂତ ଆତ୍ମା ଦେଖି ହୋଇଲାକ ମୋହି ।
ଦେବଙ୍କୁ ଦୁଲଭ ଯେବଣ ଭବ ସ୍ଥାନ
ତାହା ଦେଖିବାକୁ ମୁଁ ଯେ ହୋଇଲି ଭାର୍ଜନ ।୪୨୮୦।
ସମରେଣ ବଧ୍ୟ ଯେଣୁ ନୋହିଲା ମୋର କାଏ
ମହାକୂଟ ପାତିଲା ସେ ସ୍ତିରୀଙ୍କର ଉପାଏ ।
ଅଥବା ଏହା ଯେବେ ନ କରିବଇଁ ଇଚ୍ଛା
ଅବିସର୍ଜନ କାଳ ହୋଇବକି ଆବର ରକ୍ଷା ।
ମଏଂଷାସୁର ବୋଇଲା ଏ ମୋହୋର ପଞ୍ଚୁ ଆତ୍ମା ପଞ୍ଚୁ ମନ
ତଳଏ ଯାକେ କି ବିଶ୍ରାମ କରିବ ଜାନୁଥନ ।

ଆହୋ ପରୀକ୍ଷ ଆତ୍ମାକୁ ନିବେଶି ମଏଂଷାସୁର ରହଇ
ଦିବ୍ୟ ମୋହନୀ ରୂପ ଦେଖି ମହିଷାସୁର ମୋହି ହୁଅଇ ।
ନିଷେଷ୍ଟେ ରହଇଁ ବୀର ତାରେଣୀ ନଦୀ କୂଳେ
ମାଡ଼ି ବସିଲେ ଦେବୀ ମୟେଷାର ବକ୍ଷସ୍ତଳେ ।
ଆହୋ ଊର୍ଦ୍ଧ ମୁଖ କରି ସେ ଚାହିଁଲା ମଏଂଷା
ସ୍ତିରୀ ଲିଙ୍ଗ ଦେଖି ସେ ହୋଇଲା ନିଆଶା ।
ଆହୋ ପରୀକ୍ଷ ଦୃଗା ଯେ ବୋଇଲେ ଦେବୀଙ୍କ ମୁଖ ଚାହିଁ
ତୋହୋର ପ୍ରାଏ ସବୁ ଚଣ୍ଡୀ ଦେଖିଲା ତ ନାହିଁ ।
ଅନେକ ଦେବୀ ମୁଁ କଲି ନାହିଁ କି ଜନ୍ମ
ତୁହି ସେ ଅଟୁ ନା ଦେବୀମାନଙ୍କର ଉତ୍ତମ ।
ସମସ୍ତ ସୁଲଭ ହୋଅଇନା ତୋହୋର ପ୍ରସାଦେ
ସର୍ବ ମଙ୍ଗଳା ନାମ ହୋଉ ତୁମ୍ଭର ହାଦେ ।
ଦେବଙ୍କ ଆପାଦ ଖଣ୍ଡି ମୋହୋର ଆପାଦ କଲୁ ଶ୍ୟାନ୍ତି
ଏମନ୍ତେ ସକଳ ଜନଙ୍କର ହରିବୁ ଦୃଗତି ।୪୨୯୦।
ସମସ୍ତ ଜନେ ତୋତେ ଆରାଧନା କରନ୍ତୁ
ଅନେକ ଅରଷ୍ଟି ଆପାଦ ଖଣ୍ଡନ୍ତୁ ।
ଆକାଶେଣ ଅନେକ ବିନୋଇଲେ ଦେବ ବ୍ରହ୍ମା
ତୋଷେ ସର୍ବ ମଙ୍ଗଳା ନାମ ଦେଲେକ ଉତ୍ତମା ।
ଆହୋ ପରୀକ୍ଷ ଅଚେଷ୍ଟ ହୋଇ ଯହୁଁ ଅସୁର ଗଲା ମୋହ
ଦୃଗାର ଭବ ଚାହିଁ ବିସର୍ଜିଲା ଦେହ ।
ଦୃଗାଏ ବୋଇଲେ ଲୋ ରତ୍ନଗିରି ପର୍ବତ
ମଏଂଷାସୁରକୁ ମାଡ଼ି ଆମ୍ଭେ ବିଜେ କରିବା ଏଥ ।
ନାରାୟଣୀ ରୁଦ୍ରାଏଣୀ ଇନ୍ଦ୍ରାୟଣୀ ଭଇରୋବୀ
ବ୍ରହ୍ମାଏଣୀ ବାଶେଳୀ ଚାଚିକା ମାଧବୀ ।
କାଳୀ କଙ୍କାଳୀ ବେତାଳୀ ଉଗ୍ରତାରା
ସମାଦୀ ମାତଙ୍ଗୀ ଚଣ୍ଡିକା ତ୍ରିପୁରା ।
ରାମଚଣ୍ଡୀ ନିମଞ୍ଜାଇ ଶ୍ୟାନ୍ତି ମାରକମା
କୋଠାରୀ ଅମ୍ବିକା ଏଲୋମା ଯେ ଗୋଲମା ।
ଭଟାଳେକ କଳମା ରୂପା ବିରୁପା ଶ୍ୟାମା ସୁଭାନ୍ତି
ଏ ନିଶାବଳୀ ବିଝାଂବଳୀ ଅନୀତି ।
ପାଖେଣି ସାରଙ୍ଗୀ ଚମ୍ପାଇଁ ରୂପାଇଁ
ଯମାଇ ବରୁଣାଇ ପିଚିକାଇ ବାହାଡ଼ାଇ ।
ଖୁଦାଇଁ ସଉଭାଗୀ ସଉଡ଼ାଇ ଲେମୁଆ କେନ୍ଦୁଆଶୁଣୀ
ଅନ୍ଧାରୀ ଡାକେଣୀ ହାଥି ଯେ ବାସେନୀ ।୪୩୦୦।
ସାଧେବୀ ଗୁଧି ଶାମୁକା ଶରବିନ୍ଧା
ନୀଳା କମଳା ଯେ ଶୋଣେହା ମକୁନ୍ଦା ।
ଭାଗିତା ମୁଣିତା ଉତାନୀ ନାଙ୍ଗନା ଖେପ
ମେଖଳା ମହାଖଳା ଘୋଟୀ ବହନୀ କାମରୂପ ।
ଚନ୍ଦମା ଯୁଆହୀ ଆବର ତ୍ରିପୁରା
ତାରେଣୀ ସାରେ ଯାତୁଆଳୀ ହିଙ୍ଗୁଳା ।
ଚାରୁ ଚାମଣ୍ଡୀ ବିକାଳ ଭଦ୍ରକାଳୀ
ଯକ୍ଷାରି ସାଗରୀ ରୂପା ନିରାକୂଳି ।
ସିଙ୍ଘଳା ବରାହୀ ଅନନ୍ତାଇ ସାନ ଧ୍ୟାତେଶ୍ୱରୀ
ଏତେ ଦେବୀଙ୍କର ତୁଳେ ଅଇଲେ ଖର୍ବ ଚାରି ।
ଆହୋ ପରୀକ୍ଷ ଦେବୀମାନଙ୍କର ତୁଳେ ନବ କୋଟି କାତ୍ୟାନୀ
ପାଞ୍ଚ ପଦ୍ମ ପିଚାଶୁଣୀ ଚଉଷଠି ଯୋଗ୍ନୀ ।
ଦୃଗା ଆଜ୍ଞାଦେଲେ ସେ ଦେବୀ ମାନନ୍ତ ରାଇଁ
ଜେନାବତୀ ନଗ୍ରକୁ ଲୋ ଧାଅଁ ବେଗ ହୋଇଁ ।
ଯେଣେ ଯେତେ ଦାନବ ଅଛନ୍ତି ପୁତ୍ର ଆଦି କରି
ସୁଖେ ବଳୀ ଭକ୍ଷ ଯାଅ ଅସୁର ଅସୁରୀ ।
ଏସନେକ ଆଜ୍ଞା ଦେଲେ ଦେବୀ ଦୃଗେ
ଶେଣା ପକ୍ଷୀ ପ୍ରାୟେକ ଧାଇଁଲେ ଅତିବେଗେ ।
କୁଳାବତୀ ପାଟଣା ଯେ ଜେନାବତୀ ନଗ୍ରି
ଶତେ ପୁର କରି ସେ ବେଢ଼ିଲେ ମାହେଶ୍ୱରୀ ।୪୩୧୦।
ଯେ ଅବା ଥିଲେ ସେ ଅଶକତ ରାକ୍ଷସ
ନହେ ବିଦାରି ସେ ଭକ୍ଷନ୍ତି ରକ୍ତ ମାଂସ ।
ଅସୁରନ୍ତ ସହିତେ ସେ ଗିଳନ୍ତି ଗଳଗାଜି
ବାଳୁତ ପୁଅନ୍ତ ସେ ଖାନ୍ତି ସର୍ବଭାଜି ।
ଆହୋ ପରୀକ୍ଷ ମେଦ ମେଦା ମାଂସ ଭକ୍ଷନ୍ତି ଦେବୀ ମୁଖେ
ଜଣେ ହେଁ ଉବୁରି ନ ପାରନ୍ତି ତାହାଙ୍କର ମୁଖେ ।
ଆହୋ ପରୀକ୍ଷ ଆଶ୍ୱିନ ମାସ ଅଷ୍ଟମୀର ରାତି
ଉତ୍ତରାଷାଢ଼ା ନକ୍ଷତ୍ର ଭୋଗ୍ୟ ସେହୁ ତିଥି ।
ଯୁଗତେ ସେଦିନ ଅଟଇ ପଣ୍ଡିତ ବାରଇ
ରାତି ଅର୍ଦ୍ଧେ ମହିଁଷାସୁର ପ୍ରାଣ ଯେ ଭ୍ରଷ୍ଟଇ ।
ଅଷ୍ଟମୀ ଉଭାରେ ସେ ନବମୀ ପରବେଶ
ଲାଗିଲା ମହା ମାରୁ ନିଶି ହୋଇଲା ଅବଶେଷ ।

ଶୁଣ ହୋ ପରୀକ୍ଷ ବଦନ୍ତି ଶୁକ ବ୍ରହ୍ମା
ଚଣ୍ଡୀର ଯୁଦ୍ଧ ହାଦେ ଏସନେକ ମହିମା ।
ଅସଂକ୍ଷ ଅଗୋଚର ଅପୂର୍ବ ଚରିତ
ଦେବଙ୍କୁ ଦୁଲଭ ଏ ସମର ଅପ୍ରମିତ ।
ଆଶିନ୍ୟ ମାସ ଶୁକଳ ପକ୍ଷ ଅଷ୍ଟମୀ ଦିନ ଗୋ ହୋଇଲେ ଉତପତ୍ତି
ନିଶାଅର୍ଦ୍ଧରେ ଦେବାତାଏ ସେ କଲେ ଅନେକ ବହୁତ ସ୍ତୁତି ।
ସେହିଦିନ କେଶରୀ ଆରୋଢ଼େ
ରତ୍ନଗିରି ଶିଖରେ ସେ ବିଜେ କଲେ ଦୃଗେ ।୪୩୨୦।
ସେହିଦିନ ସେ ହୋଇଲା ସଂଗ୍ରାମ
ଶୁକଳା ଅଷ୍ଟମୀଯାଏ ମହାଶ୍ରମ ।
ନବମୀ ରାତ୍ରେ ଯେ ଅସୁର ଅସୁରୀ
କୁମାର କୁମାରୀ ଆଦି ଯେତେଥିଲେ ସେ ପୁର ଆଦିକରି ।
ନବମୀ ରାତ୍ରେ ଯେ ହୋଇଲା ମହାମାରୁ
ତେତେ କରି ମହାମେରୁ ସେ ହୋଇଲା ସଂସାରୁ
ଯେତେକ ଅସୁର କୁମାର କୁମାରୀ ଥିଲେ
ଯୋଗ୍ନୀଙ୍କର ମୁଖରେ ସମସ୍ତ ପଡ଼ିଲେ ।
ସକଳ ବିନାଶ ହୋଇଲେ ଅବଶେଷ
ଦେବତା ଉଛବ ଯେ କଲେ ସ୍ୱର୍ଗବାସ ।
ଶ୍ରୀକରେ ଅର୍ଘ ଯେ ଦେଲେ ଦେବତାଏ
ବୋଇଲେ ଶାନ୍ତି ଗୋ ହୋଇବାକ ମହାମାଏ ।
ଆହୋ ସମସ୍ତ ଦେବତାଏ ମହା ଆନନ୍ଦେ
ବିନୟଭର ହୋଇଁ ସେବନ୍ତି ପଦ୍ମପାଦେ ।
ଦିବ୍ୟ ଅବତାର ହୋଇଁ ସେ ଅନେକ ବେଶନେ
ବହୁତ ବିନୟ ହୋଇଁ ସେ ବୃନ୍ଦାଅର୍କମାନେ ।
ଈଶ୍ୱରେ ବୋଇଲେ ତୁହି ସେ ମୋହୋର ଦିବ୍ୟ ଚକ୍ଷୁ
ମାରୁ ଅବା ତାରୁ ଅବା ଦୃଗା ସେ ମୋତେ ରଖୁ ।୪୩୫୦।
ଆବର ସେ ଇଷ୍ଟ ଦେବତା ଅଛି ମୋର କାହିଁ
ମାରିବୁ କି ତାରିବୁ ଦୃଗା ତହୁଁ ଆନ ନାହିଁ ।
ଦୃଗାହିଁ ସେ ଧାତା ଦୃଗାହିଁ ସେ ବିଧାତା
ଦୃଗାହିଁ ସେ ପରମବ୍ରହ୍ମ ଆପ ତେଜ ବାୟୁ ଆକାଶ ଚିନ୍ତା ।
ଦୃଗାହିଁ ସେ ଜ୍ଞାନ ଦୃଗାହିଁ ସେ ଧ୍ୟାନ
ଦୃଗାହିଁ ସେ ପରମ ତତ୍ତ୍ୱ ଧ୍ୟାନ ସାଧନ ।
ଦୃଗାହିଁ ସେ ସବୁ ସିଦ୍ଧି ଦୃଗାହିଁ ସେ ସାଧୁ
ଦୃଗାହିଁ ସେ ଧାରଣ ସେ ଯେ ପୁଣ୍ୟ ଇନ୍ଦୁ ।
ଦୃଗାହିଁ ସେ ତାପ ଦୃଗାହିଁ ସେ ତପ
ଦୃଗାହିଁ ସେ ପରମବ୍ରହ୍ମ ରୂପ ପରମ ରୂପ ।
ଦୃଗାହିଁ ସେ ଉତପତ୍ତି ଦୃଗାହିଁ ସେ ପରମ ଗତି
ଦୃଗାହିଁ ସେ ଭକ୍ଷନ୍ତି ଦୃଗାହିଁ ସେ ଶ୍ୟାନ୍ତି ମୃତି ।
ଦୃଗାହିଁ ସେ କୁଟୁମ୍ବ ଦୃଗାହିଁ ସେ ସମସ୍ତ ବଜ୍ର ରୂପ ଧରନ୍ତା
ଦୃଗାହିଁ ସେ ଚିନ୍ତା ଦୃଗାହିଁ ସେ ଅଚିନ୍ତା ।
ଦୃଗାହିଁ ସେ ଭୁକତି ଦୃଗାହିଁ ସେ ସର୍ବଗତି
ଦୃଗାହିଁ ସେ ପ୍ରସନ ଦୁସ୍ତରୁ ହୁଅଇ ଉଧରନ୍ତି ।
ଜଳ ସ୍ଥଳ ଅନଳ ପବନ ପାଳ ଯେହୁ
ଆଦି ସମ୍ଭୁତ ଦେବ ଦୃଗାର ତହୁଁ ।
ଦୃଗାର ପ୍ରସନେ ସର୍ବଲୋକ ଜୀବନ୍ତି
ଦୃଗାହିଁ ସେ ଉତପତ୍ତି କରତା ଦୃଗାହିଁ ସେ ଉଧରନ୍ତି ।୪୩୬୦।
ଈଶ୍ୱରେ ବୋଇଲେ ମାଗୋ ତୁହି ସେ ସଦାନନ୍ଦି
ସୁର ସିଦ୍ଧ୍ୟ ମୁନି ଗୋ ଚରଣେ ତୋର ବନ୍ଦୀ ।
କ୍ଲେଶ ଜନଙ୍କୁ ତୋହୋର ଅକ୍ଲେଶ କରତା
ବୁଡ଼ନ୍ତେ ଅଗାଦ ଜଳୁଁ ତୁହି ସେ ଉଧରନ୍ତା ।
ଶତ ସହସ୍ର ପ୍ରଣପତ୍ୟ ହୋଇଲେ ଶୂଳପତି
ଦୃଗାହିଁ ସେ ତାରନ୍ତି ସକଳ ଜନଙ୍କ ଦୃଗତି ।
ଜନ୍ମ କର୍ମ ବିପକ୍ଷ ଅର୍ଦ୍ଧ ଅଙ୍ଗେ ବଇରି ବିନାଶି
ଦୃଗାର ସମ୍ପଦ ବିପଦ ଉଦାସୀ ।
ଦୃଗାହିଁ ସେ ବେଦମତୀ ସର୍ବଜନ ସଖା
ଦୃଗାହିଁ ବାକ୍ୟ ଅବଧାନ ତାରଣ ସହୋଦର ଶାଖା ।
ଦୃଗାହିଁ ସେ ଆଇରି ଜୋତି ଶିଶୁମୁନା
ଦୃଗାହିଁ ସେ ଅନ୍ଧେକ ବଚନ ବଜ୍ରସେହ୍ନା ।
ଦୃଗାହିଁ ସେ ଅଜପା ଜପା ଗାୟତ୍ରୀ
ଦୃଗାହିଁ ସେ ଯୋଗ କାଳ ରାତ୍ରୀ ।
ଦୃଗାହିଁ ସେ ଭଗତ ତାରେଣୀ ସର୍ବ କାଳେ
ବଦୟନ୍ତି ସାରୋଳ ଦାସ ଦୃଗାର ପଦ୍ମପାଦ ତଳେ ।

ଶୁଣ ହୋ ପରୀକ୍ଷ ରାଜା ବଦନ୍ତି ଶୁକ ବ୍ରହ୍ମା
ଦୃଗାର ଶାସ୍ତ୍ର ହାଦେ ଏସନେକ ମହିମା ।
ପ୍ରାଣକୁ ଭଏ କରି ସେ ଦେବ ସୋଢ଼ଲେ

ନୃତ୍ୟ ଗୀତ କରି ଯେ ବାଜନ୍ତି ପଞ୍ଚ ତାଳେ ।୪୩୭୦।
ପ୍ରାଣ ଭଏ କରି ସେ କରୁଛନ୍ତି ନୃତ୍ୟ
ପ୍ରାଣ ରକ୍ଷା ନିମନ୍ତେ ସ୍ତୁତି କରୁଅଛନ୍ତି ଅପ୍ରମିତ ।
ବାଆନ୍ତି ସୁସର ସରଗୁଣା ମଧୁର ଅଧାଟି
ପିନାକୀ ସପ୍ତସର ବାଜନ୍ତି କର୍ଣ୍ଣାଟି ।
ପ୍ରାଣ ରକ୍ଷା ନିମନ୍ତେ ଦଶ ନହ ମୁଖେ
ଏସନେକ ଅବସ୍ଥା ହୋଇଲେ ପ୍ରତକ୍ଷେ ।
ଆହୋ ପରୀକ୍ଷ ଈଶ୍ୱରଙ୍କ ଅବସ୍ଥା ଦେଖିଣ ଗୋସାମଣି
ଦୟା ବସିଲା ଦେବୀ ଦୃଗତି ତାରେଣୀ ।
ଦୃଗା ସୟେଂ ବୋଇଲେ ହୋ କଲୁ ତୁହି ମୋତେ ବଶ
ମାଗରେ ଜଟିଆ ବାଞ୍ଛା ତୋର ଯିସ ।
ଆହୋ ପ୍ରଣପତ୍ୟ ହୋଇ ସେ ବୋଇଲେ ଦେବ କାଶୀ
ବିନା ତପେ ବର ଗୋ ହୁଅଇ ଉଦାସୀ ।
ଅନେକ ବିନୟରେ ରଞ୍ଜିଲୁ ମୋର ମନ
ମାଗରେ ଜଟିଆ ସତ୍ୟ ସତ୍ୟ ମୋହୋର ବଚନ ।
ଈଶ୍ୱରେ ବୋଇଲେ ମାତ ଗୋ ଏହ୍ନେକ ପୁଣ୍ୟ ମୋର କାହିଁ
ପରମ ସାଧବୀ ମାତ ଗୋ ମୋତେ ଜୀବନ ଦାନ ଦେଇଁ ।
ଶୁଣିଣ ଦୃଗା ଯେ ମସ୍ତକେ ଦେଲେ ହସ୍ତ
ଆହୁରିହିଁ ଚିରଞ୍ଜୀବ ହୋଇବୁ ତୁ ସୁସ୍ଥ ।
ଶୁଣିଣ ବୋଇଲେ ଯେ ଦୃଗତି ତାରେଣୀ
ଆବରହିଁ ବର ମାଗ ଦେବି ଏହିକ୍ଷଣି ।୪୩୮୦।
ଈଶ୍ୱରେ ବୋଇଲେ ମାତ ଗୋ ମାଗିବି ଯେବେ ବର
ଏ ଦିଗ ବସନ ଛାଡ଼ଟି ତୋହୋର ଶରୀର ।
ଦୃଗାଏ ବୋଇଲେ ଯେ ମୋହୋର ଦୃଢ଼ ବ୍ରତ
ଜଳ ସ୍ଥଳ ପୃଥିବୀ ଜାଣନ୍ତି ସମସ୍ତ ।
ଆହୋ ପରୀକ୍ଷ ଦୀର୍ଘାୟୁଷ ହୋଇ ଯେ ବୋଇଲେ ଦେବରାଜା
ପ୍ରସନ ହୋଇଁ ଯେବେ ହୋଇବୁ ମୋହୋର ଭାରିଜା ।
ବର ମାଗି ଈଶ୍ୱରେ ଯାଉଛନ୍ତି ଆଗ ବଢ଼ି
ରହ ରହ ଈଶ୍ୱର ବୋଲି ବୋଇଲେ ଦେବ ନାରୀ ।
ଦୃଗାର ବଚନ କରି ସେ ରହିଲେ ବିଶ୍ୱନାଥ
ଆନନ୍ଦେ ଦୃଗା ଯାଇ ଧଇଲେ ତାଙ୍କ ହସ୍ତ ।
ଶ୍ରୀ ଭୁଜେଣ ଜୟମାଳା ଘେନିଣ କାତ୍ୟାୟନୀ
ଆନନ୍ଦେ ବରିଲେ ପ୍ରସନେ ଭାବାନୀ ।

ଦୃଗାଏ ବୋଇଲେ ତୁହି ଉଲଗ୍ନ ମୁହିଁ ବିବସନ ଶାହୀ
ପ୍ରଭୁ ଭାରିଯା ପ୍ରାଏ ହୋଇଲେ ତୁହା ଚୋହିଁ ।
ଆନନ୍ଦେ ସଦାଶିବ ଧଇଲେ ତାହାଙ୍କୁ ଯାଇ କୋଳେ
ଭୁଜେଣ ଭିଡ଼ି ସେ ଚାପିଲେ ବକସ୍ଥଳେ ।
ଜଟା ମେଲିଣ ସେ ଦେଲେ ଦେବରାଏ
ଅଦୃଶ ହୋଇଲା ସେ ଦେବୀଙ୍କର କାଏ ।
ଏକାମାତ୍ର ଦିଶିଲା ଚନ୍ଦ୍ର ବଦନ ଗୋଟି
ଭୁଜେଣ ଭିଡ଼ିଣ କୋଳ କଲେକ ଧୂର୍ଜଟୀ ।୪୩୯୦।
ଆହୋ ପରୀକ୍ଷ ସେ ଯେ ହୋଇଲେ ଯେକ ଯୋଗ
ନାରଦ କହିଲେ ସେ ପିତାମହଙ୍କର ଆଗ ।
ଉପାଏ ଜିଣିଲେ ସେ ଦେବ ପଶୁପତି
ନୃତ୍ୟ ଦେଖି ଦେବୀ ହୋଇଲେ ଶ୍ୟାନ୍ତି ମୃତ୍ତି ।
ଦୃଗାଏ ବୋଇଲେ ହୋ ବର ମାଗ ଧୂର୍ଜଟା
ଅନେକ ବିନୋଇଁ ଯେ ବୋଇଲେ ଧୂର୍ଜଟୀ ।
ପୁଣ ପୁଣ ବର ମାଗ ବୋଇଲେ ଗିରିଜା
ଈଶ୍ୱର ବୋଇଲେ ତୁ ମୋହୋର ହୋଇବୁ ଭାରିଯା ।
ସତ୍ୟେଣ ମଜ୍ଜିଲେ ସେ ଯେ ଅଭଏ କାତ୍ୟାନୀ
କୋଳେ ଧଇଲେ ସେ ଦେବୀ ଯେ ଭାବାନୀ ।
ନାରଦ ବୋଇଲେ ଉମା ମହେଶ୍ୱର ଏକ ସ୍ଥାନେ
ଦ୍ରଶନ କଲେ ଯାଇଁ ବୃନ୍ଦାଅର୍କମାନେ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ପବନ
ଆବର ବରୁଣ ସକଳ ଦେବ ଲୋକମାନ
ତେତିଶ କୋଟି ଦେବେ ଅନେକ ଆନନ୍ଦେ
ପ୍ରଣପତ୍ୟ ହେଲେ ଯାଇଁ ଆଦିମାତା ପଦ୍ମପାଦେ ।
ବଞ୍ଚିଲୁ ଦୁରାନ୍ତକ କଷ୍ଟ ତୋହୋର ପରସନେ
ବସିଲୁ ସ୍ୱର୍ଗସ୍ଥାନେ ତୋହୋର ଆଜ୍ଞା ପରମାଣେ ।
ଆହୋ ପରୀକ୍ଷ ଶ୍ରୀକରେ ଅର୍ଘ ଘେନିଣ ପିତାମହ
ଦୃଗାର ସନ୍ନିଧ୍ୟେ ଯାଇ ବିନଏ ସନ୍ଦେହ ।୪୪୦୦।
ଦୃଗା ବୋଇଲେ ତୁମ୍ଭେ ଶୁଣ ଦେବ ଧାତା
ମୋତେ ଅର୍ଘ୍ୟ ନଦିଅ ତୋତେ କହଇ ତତ୍ତ୍ୱକଥା ।
ଆହୋ ଜଳଫାଶୀ ଘେନି ସେ ମହିଷାସୁରକୁ ଗୁଡ଼ିଆଇଁ
ଆକ୍ରୋଷି ଉଛୁଡ଼ିଲା ସେ ଅସକନ୍ଦ ବନେ ଯାଇ ।
ଆହୋ ଦେବତାମାନେ ମୁଁ ହେଠବୁଡ଼ ହୋଉଥିଲି ସିନ୍ଧୁଜଳେ

ମହିଷାସୁରକୁ ଘେନି ମୁଁ ଲାଗିଲି ଆସି କୂଳେ ।
ସମସ୍ତ ଦେବୀମାନେ କାହିଁ ପଡ଼ିଲେ କେହି ନାହିଁ ସାହା
ଶୂଳ ମାତ୍ର ମାଡ଼ି ବସିଛି ମୋହୋର ସହସ୍ର ବାହା ।
ଯେ ମୋତେ ବୋଇଲା ଗୋ ଏ ରୂପ କର ତେଜା
ଏଣେ ବଧ ନୁହଇ ମହିଁଷାସୁର ଦନୁଯା ।
ଦାନବର ମରଣ କହିଲା ଯେ ମୋତେ
ହୋଇଲି ବିବସନ ମୁଁ ତହିଁର ନିମନ୍ତେ ।
ଆହୋ ବିହନ୍ତା ଲୋକେ ବିମୁଖ ହୋଇଁ ଛାଡ଼ିନ୍ତ ଲୋଡ଼ିଲି ମଏଷାକୁ
ଅଦଭୁତେ ଏ ପ୍ରସନ ହୋଇଲାକ ମୁକୁ ।
ମୋତେ ଉଧାରଣ କଲା ଏ ଅଗାଦ ସାଗରୁ
ତ୍ରୈଲୋକଜନଙ୍କର ଏ ଅପାଦ ଦୁଃଖ ହରୁ ।
ଆହୋ ପରୀକ୍ଷ ଦୃଗାର ଆଜ୍ଞା ପ୍ରମାଣେ
ଦେବେ ବିନୋଇଲେ ଦୃଗାର ପଦ୍ମଚରଣେ ।
ନମସ୍ତେ କାତାନୀ ଗୋ ଦଧିମଙ୍ଗଳ ଯାର ରୂପ
ସଦା ସମ୍ପଦ ଗୋ ଦିଅନ୍ତି ଅନରୂପ ।୪୪୧୦।
କୁଙ୍କୁମ ନୀଳ ଜାଣି ଶରୀର ଆକର୍ଷଣୀ (ଅକ୍ରସନୀ)
ସଦା ଅମୃତ ଦୃଷ୍ଟି ଯେ ଜଗୁଜନ ମୋହନୀ ।
ଯାହାର ମହିମା ଅକାଳ କାଳ ବଞ୍ଚା
ସୁବୁଦ୍ଧି ଶୟଳ ତାରଣୀ ଭବ ବାଞ୍ଚା ।
କାଳ ଅନଳ ଯେ ଏ ହାଦେ ଅପର୍ଣ୍ଣା
ଭାଗ୍ୟ ଅଭାଗ୍ୟ କରତା ସେ ଅଭେଦ ଅଭଏ ସେନ୍ହା ।
ଜାତ ଅନ୍ତ ମଧ୍ୟେଂ ତିନି ବର୍ଣ୍ଣ ଅବିକାର
ମହା ଜଏ ସମ୍ପୂର୍ଣ୍ଣ ସେ ନାମ ଯାହାର ।
ଆହୋ ପରୀକ୍ଷ ଦୃଗାଙ୍କ ଅଗୋଚର ଯାହାର ଚରିତ
ମୁହିଁ କିସ କ୍ଷେମ ହୋଇବି ମାନବ ଦେହେ ଜାତ ।
ଆହୋ ପଣ୍ଡିତ ଜନେ ଧନ ସନ୍ତାନ ମନେ ବାଞ୍ଚା
ଆରୋଗ୍ୟ ଆପାଦ ଖଣ୍ଡଇ ସର୍ବ ମଙ୍ଗଳ ବାଞ୍ଚା ।
ହେ ବୁଧ ଜନେ ଆଶିନ୍ୟ ମାସ ଶୁକଳ ପକ୍ଷ ଅଷ୍ଟମୀର ଦିନ
ଭୁବି ବାର ଉତ୍ତରାଷାଢ଼ା ନକ୍ଷତ୍ର ପୁଣ୍ୟମାନ ।
ରାତ୍ରକୁ ଭୋଗ୍ୟ ନବମୀ ଗୁରୁବାର
ରାତ୍ର ଅର୍ଦ୍ଧେ ବିଜେ କଲେ ରତ୍ନଗିରି ଉପର ।
କୃଷ୍ଣ ଅଷ୍ଟମୀ ଦିନ ଚଣ୍ଡ ମୁଣ୍ଡ ନାଶଗଲା
ଷୋଳ ଦିନ ପରିଯନ୍ତେ ସେ ସମର ହୋଇଲା ।

ଆହୋ କୋଟିଏ କୋଟି ବଳ ଯେ ମହିଷାସୁର ବଳ
ପନ୍ଦର ଦିନ ରାତ୍ରରେ ପଡ଼ିଲେ ସକଳ ।୪୪୨୦।
ଆଶ୍ୱିନ ଶୁକ୍ଳ ନବମୀ ଦିନ ହୋଇଲା ମହାମାରୁ
ଉବାର ନୋହିଲା ଅସୁର ଅସୁରୀ ଆଦି କରୁ ।
ସେହୁ ରାଜ୍ୟେ ମହାମାରୁ ଯେ ହୋଇଲା
ତେଣୁ ମହାନବମୀ ବୋଲି ନାମ ଯେ ବଞ୍ଚିଲା ।
ଏହି ଶୁକଳ ଯେ ଦଶମୀର ଦିନ
ବୃହସ୍ପତି ବାର ଶ୍ରବଣା ନକ୍ଷତ୍ର ସେ ପୂର୍ଣ୍ଣ ।
ତତୁଲ୍ୟ ନାମେ କରଣ ପ୍ରୀତି ନାମେ ଯୋଗେ
ଈଶ୍ୱର ଦେବାତଙ୍କ କୋଳେ ବସିଲେ ଦେବୀ ଦୃଗେ ।
ସର୍ବ ଶୁଭ ହୋଇଲା ସେ ଦଶମୀର ତିଥି
ସର୍ବ ଶୁଭ ଯୋଗେଣ ସେ ଏଥୁ ଉତପତ୍ତି ।
ଯାଗ୍ୟରୁ ଜନ୍ମ କୁମାରେକ ହୋଇଲା
ତେଣୁ କରି ଶୁକ ମୁନି ଜନ୍ମଜୟେ ନାମ ଦେଲା ।
ଆହୋ ବଡନ୍ତେ ସୋମ ବଂଶ ଉଧରିଲା ଶାସ୍ତ୍ର ବଳେ
ପୁତ୍ର ଲଭ ନରେ ଶ୍ରୀ ଚଣ୍ଡିକା ଶାସ୍ତ୍ର ଶୁଣିଲେ ।
ଅନେକ ଆନନ୍ଦ ସେ ପରୀକ୍ଷ ମହାରାଜା
ଶୁକମୁନି ପାଦ ତଳେ ସେ କଲାକ ଅନେକ ପୂଜା ।
ବସନ କୁଣ୍ଡଳ ରତ୍ନମାଳା ଧୂପ ଦୀପ
ଦେଇଁ ସହସ୍ର ଦଣ୍ଡବତ ହୋଇଲା ପ୍ରଣପତ୍ୟ ।
ପଞ୍ଚକୋଟି ରତ୍ନ ପାତ୍ରେଣ ଭରି
କରଇ ପାଦ ପୂଜା ସେ ପରୀକ୍ଷ ଦଣ୍ଡଧାରୀ ।୪୪୩୦।
ହେ ପଣ୍ଡିତ ଜନେ ଯେହୁ ଚଣ୍ଡୀ ସେ ଥାପନ କରନ୍ତି ଦେବତାଏ
ଶୁଣନ୍ତେ ଧନ ଜନ ସମ୍ପଦ ଅର୍ଥ ସେ ଯେ ପାଏ ।
ଯିସ ଅବା ପାତକ ଥାଇଁ ତାହାର ଶରୀରେ
ଯେସନେକେ ପଦ୍ମ ପତ୍ରେ ନ ଲାଗଇ ନୀରେ ।
ଅନେକ ଜନ୍ମର ପାପ କ୍ଷଏ ଯାଇ
ଧନ ଜନ ସମ୍ପଦ ସେ ଦିଅଇ ମହାମାଇ ।
ଶତ୍ରୁକୁ ଯେବଣ ଜନ କ୍ଷେମା କରଇଟି ରଣେ
ଏକ ଲଏ କରି ହୋ ଚଣ୍ଡିକା ଶାସ୍ତ୍ର ଶୁଣେ ।
ରାଜ ଦଣ୍ଡ ଯଦି ପଡ଼ିବାକ ଭଏ
ସମସ୍ତ ବାଞ୍ଚା ସିଦ୍ଧ ହୋଅଇ ନିର୍ମଳ ହୋଅଇ କାଏ ।
ଯେବଣ ଜନଙ୍କର ହୋ ନାହିଁଟି ସନ୍ତାନ

ଚଣ୍ଡିକା ଶାସ୍ତ୍ର ଶୁଣିଲେ ହୁଅଇ ବର୍ଦ୍ଧମାନ ।
ଅଥବା ଉତପାତ ମନେଣ ଯାହାର ଭ୍ରାନ୍ତି
ଏ ଶାହାସ୍ତ୍ର ଶୁଣନ୍ତେ ଏ ଉତପାତ ହୁଅଇ ବିନସ୍ୟତି ।
ବ୍ରହ୍ମା ସେ ଧ୍ୟାଏ କରଇ ଯାହାର ନାମ
ମୁହିଁ ତାହା ସଞ୍ଚପି କହିବାକୁ କିସ ହୋଇବି ଯେ କ୍ଷେମ ।
କୃପାଙ୍କଳ ନାମେଣ ଥିଲା ଶୁଣ ମୁନି ବ୍ରହ୍ମା
ସେ ଅନ୍ତ କରି ନ ପାରଇ ଯେବଣ ଦେବୀର ମହିମା ।
ରେଣୁକା ନନ୍ଦନ ପ୍ରଶୁରାମ ସେ ଯାହାକୁ କରନ୍ତି ପୂଜା
ରୋଧିରେ ତର୍ପଣ କରି ସେ ତୋଷିଲା ଗିରିଜା ।୪୪୪୦।
ଭରତ ଖଣ୍ଡ ମଣ୍ଡଳେ ଯେବଣ ଯଜ୍ଞେରପୁର ବାସୀ
ଇହ ହସ୍ତରେ ପର ହସ୍ତରେ ଯେ କଳିକାଳ ଧ୍ୱଂସି ।
ମନୁ ଅନ୍ତ ବଞ୍ଚାଇଲା ଯେବଣ ଦେବୀର ଲଏ
ସେ ଦେବୀର ପ୍ରସନେ ମୋହୋର ହୋଇଲା ଜ୍ଞାନମଏ ।
ଜନ୍ମେ ଜନ୍ମେ ଦାସ ମୁଁ ଦେବୀର ପଦ୍ମପାଦେ
ନ ପଢ଼ି ପଣ୍ଡିତ ମୁହିଁ ସେ ଦେବୀର ପରସାଦେ ।
ନ ଜାଣଇ ଜପ ମନ୍ତ୍ର ବର ତପ କଥା
ଶ୍ରୀ ଚଣ୍ଡୀ ଶାରୋଳା ମୋତେ ଅଭଏ ବର ଦାତା ।
ସେହୁ ମୋତେ ଯାହା କହଇ ବିଦ୍ୟମାନେ
ମୁହିଁ ତାହା ବଞ୍ଚାଇଲି ଦିବ୍ୟ ଯେ ଲେଖନେ ।
ହେ ବୁଧ ଜନେ ନ ଧରିବା ମୋହୋର ଯେ ଦୋଷ
ବହୁତ ଜନ ବାକ୍ୟେ ମୋହୋର ବୁଦ୍ଧି କିସ ।
ଶ୍ରୀ ଶରୋଳା ଚଣ୍ଡୀ ଚରଣେ ନିତ୍ୟେ ସେବି
ବଦଯନ୍ତି ଶୂଦ୍ରମୁନି ସାରୋଳ ଦାସ କବି ।୪୪୫୦।

ଶ୍ରୀ ଚଣ୍ଡୀ ଯୁଧ୍ୟ ମହାପୁରାଣେ ସଦାଜଏ ସମ୍ପୂର୍ଣ୍ଣ



# ସୂଚୀ

# ଶ୍ରୀ ଶୁଭମସ୍ତୁ ଅବିଘ୍ନମସ୍ତୁ
# ବିଚିତ୍ର ରାମାୟେଣ
## ଲିଖିତମିଦଂ ପୁସ୍ତକଂ

### ମଙ୍ଗଳା ଚରଣ

ଜୟ ତୁ ମଙ୍ଗଳ ଅଶେଷ ବିଘ୍ନ ରାଜ ।
ଯାହାର ପ୍ରସନ୍ନେ ସକଳ କାର୍ଯ୍ୟ ସିଦ୍ଧ ॥୧॥
ଜୟ ତୁ ବିଘ୍ନରାଜ ସର୍ବ ବିଘ୍ନ ବିନାଶନ ।
ଜୟ ତୁ ବିଘ୍ନରାଜ ପାପ ବିମୋଚନ ॥୨॥
ମଙ୍ଗଳ ଯୋଗେ (ଶ୍ୱର) ତୁ ପରମ ଆନନ୍ଦ ।
ଜୟତୁ ବିଘ୍ନରାଜ ଅଗ୍ରଜ ଅସ୍ୱନ୍ଦ ॥୩॥
ଜୟ ତୁ ଗଜାନନ ବ୍ରହ୍ମ ସିଂଦୂରେ ମୁଖମଣ୍ଡି ।
ଯମଦଣ୍ଡ ବିନାଶନ ସର୍ବ ଅପରାଧ ଖଣ୍ଡି ॥୪॥
ଜୟ ତୁ ଜୟ ତୁ ଦେବ ଶଶାଙ୍କ ଶିଖର ।
ଜୟ ତୁ ପ୍ରସନ୍ନ ସିଦ୍ଧ ଲମ୍ବୋଦର ॥୫॥
ଜୟ ତୁ ଜୟ ତୁ ଦେବ ଶରଣ ରକ୍ଷନ୍ତା ।
ଜୟ ତୁ ଜୟ ତୁ ଦେବ ପ୍ରତକ୍ଷେ ମତି ଦେନ୍ତା ॥୬॥
ସୀତାଙ୍କର ବନବାସ ବିଚିତ୍ର ରାମାୟେଣ ।
ଶୁଣନ୍ତେ ମହାପାପ ହୁଅଇ ଦହନ ॥୭॥
ଜୟ ତୁ ଜୟ ତୁ ଦେବ ଗଣନାଥ ସ୍ୱାମୀ ।
ଗ୍ରନ୍ଥକାର ସିଦ୍ଧେଶ୍ୱର ଦାସ ପାଦପଦ୍ମେ ପରିଣାମି ॥୮॥

### ଉପକ୍ରମଣିକା

ଏଥୁ ଅନନ୍ତରେ ଶୁଣ ବିଚିତ୍ର ଆଖ୍ୟାନ ।
ସୀତା ଦୋଚାରୀ ବୋଲି ଜନମୁଖେ ଶୁଣିଲେ ରଘୁନନ୍ଦନ ॥୧॥
ସେ କଥା ଶ୍ରୀରାମ ଶୁଣନ୍ତି ହୃଦଗତେ ।
ମୁନିଗଣଙ୍କୁ ଘେନି ଆସ୍ଥାନେ ବିଜୟେ ରଘୁନାଥେ ॥୨॥
ବଶିଷ୍ଠ ଜାବାଳି କାଶ୍ୟପ ସୁମନ୍ତ ।
ଏହାଙ୍କର ମୁଖ ଚାହିଁ ବୋଲନ୍ତି ରଘୁନାଥ ॥୩॥
ଶ୍ରୀରାମ କହନ୍ତି ଶୁଣ ହୋ ମହାମୁନ୍ୟ ।
ସୀତୟା ଥିଲେ ମତେ ଜଗତେ ଅପମାନ ॥୪॥
ପରମୁଖେ ଉପହାସ୍ୟ ମୁଁ ନ ପାରଇ ସହି ।
ସୀତାକୁ ଦେଖିଲେ ଯେ କମ୍ପଇ ମୋହର ଦେହି ॥୫॥
ପବିତ୍ର କୁଳ ଅମଳାଣ ସୂର୍ଯ୍ୟବଂଶର ସାର ହି ।
ଉଘାଣି କଥା ମୁହିଁ ସହି ନ ପାରଇ ॥୬॥
ଅବଶ୍ୟ ସୀତାକୁ ମୁଁ ବାହାର କରିବି ।
ଲୋକ ଅପବାଦ ମୁଁ ସହି ନ ପାରିବି ॥୭॥
ବଶିଷ୍ଠ କହନ୍ତି ଯେ ତୋହର ଇଚ୍ଛା ।
ନୃପତି ଶିରୋମଣି ତୁ ବୀରବର କକ୍ଷା ॥୮॥
ସୀତାକୁଇ ଅନ୍ତପୁର (ଯେବେ) ବାହାର କରିବୁ ।
ଆବର ବେଳେ ସତୀକି ଦେଖି ନ ପାରିବୁ ॥୯॥
ପ୍ରତଗ୍ୟାଂ ଶିରୋମଣି ଅଟନ୍ତି ଜନେକ କୁମାରୀ ।
ଆବର ତୋହର ମୁଖ ନ ଚାହିଁବେଟି ସୁଚାରୀ ॥୧୦॥
ଏସନ କହି ଆସ୍ଥାନୁ ଉଠିଗଲେ ତପୋଧନ ।
ନବରେ ବିଜେ କଲେ ଦଶରଥଙ୍କ ନନ୍ଦନ ॥୧୧॥
ସନ୍ଧ୍ୟାତର୍ପଣ ଦେବାର୍ଚ୍ଚନ ନିତ୍ୟକର୍ମ ସାରି ।
ମଣୋହିରେ ବିଜେ କଲେ କୋଦଣ୍ଡ ଚାପଧାରୀ ॥୧୨॥
ଅନ୍ନ ନ ରୁଚଇ ହୃଦରେ ମହାବ୍ୟଥା ।
ଶୁଣ ହୋ ଯୁଧିଷ୍ଠି ଏଥୁ ସୀତାୟାର ବେବସ୍ଥା ॥୧୩॥
ଜୟ ଜୟ ଦେବ ଗରୁଡ଼ଗବନ ଶ୍ରୀହରି ।
ବାସୁଦେବ ସୁମର ନରେ ଦୁରିତ ନିବାରି ॥୧୪॥
ବାସୁଦେବ ଚରିତ୍ର ସୁମରଇ ଯେହୁ ନିତି ।
ବାରସ୍ୱତି ଭୁବନେ ବସଇ ଯୋଗମୂର୍ତ୍ତି ॥୧୫॥
ବାସୁଦେବ ଚରିତ୍ର କହିବି ମୁଁ କିସ ।
ଯେ ସେ ବାସୁଦେବ ଅନାଦି ପୁରୁଷ ॥୧୬॥
ବାସୁଦେବର ଚରିତ୍ର ଜଗତ୍ରେ ଧାରଣଇ
ବାସୁଦେବର ଚରିତ୍ର ବଡ଼ ପୁନ୍ୟ ଅଟଇ ॥୧୭॥
ଅନେକ ପାତେକ ତାହାରି ଶରୀରେ ନ ରହେ
ବାସୁଦେବର ନାମ ଧରନ୍ତେ ଦୁଷ୍କୃତ ଯାଇ କ୍ଷୟେ ॥୧୮॥
ବାସୁଦେର କଥା ଶୁଣସି ସୁଗ୍ୟଂଜନ ।
ବାବୁ ବାସୁଦେବ ପ୍ରସନ୍ନେ ଦୁରିତ ବିନାଶନ ॥୧୯॥
ବାସୁଦେବ ସୁମରନ୍ତେ ପୁନ୍ୟ ବିଶେଷଇ ।
ବାସୁଦେବ ଚରଣେ ସେବା ସିଦ୍ଧେଶ୍ୱର ଦାସଇ ॥୨୦॥
ଏଥୁ ଅନନ୍ତରେ ଶୁଣ ପଣ୍ଡୁର ତନୟେ ।
ମାରକଣ୍ଡଙ୍କ ଚରଣେ ହୋଇଲେ ବିନୋୟେ ॥୨୧॥

ଉଠି କରଯୋଡ଼ି ଉଭା ହୋଇ ପଚାରଇ ।
ଭୋ ମହରଷି ତୁମ୍ଭେ ଋଷିକୁଳେ ଗରୁଅଂଶଇ ॥୨୨॥
ବିଷ୍ଣୁନାଥ ଗର୍ଭେ ପଶିଲୁ ତୁ ଯହୁଁ ।
ସମ୍ପୂର୍ଣ୍ଣେ ଗରୁଅଂଶ ହୋଇଲୁ ତୁ ତହୁଁ ॥୨୩॥
ଭୂତ ଭବିଷ୍ୟ ବର୍ତ୍ତମାନ ତୋତେ ସେ ଦିଶଇ ।
ସୁଦେବକୁଳ ମଣ୍ଡନ ତୁହି ଋଷିଙ୍କର ଶ୍ରେଷ୍ଠଇ ॥୨୪॥
ତହୁ ଶ୍ରୀରାମ କେବଣ କୃତ୍ୟ କଲେ ।
କେସନେକେ ସୀତୟାକୁ ବନକୁ ପଠିଆଇଲେ ॥୨୫॥
ଏଥିର କଥା ମୋତେ କହସି ତପଚାରୀ ।
ଶୁଣିଣ ଭ୍ରାନ୍ତି ଯେତେ ଯାଉ ନା ମୋହରି ॥୨୬॥

## ସୀତାଙ୍କ ବନଗମନ

କହନ୍ତି ମାରକଣ୍ଡେ ଶୁଣ ତୁ ମହାରାୟେ ।
ଅରିଷ୍ଟି ଉତପାତ ହୋଉ ତୋର କ୍ଷୟେ ॥୧॥
ସୀତା ବନବାସ ଶୁଣଇ ଯେବଣ ଜନ ।
ଶତେ ଜନ୍ମ ତାହାକୁ ନୋହିବ ଦୁଃଖମାନ ॥୨॥
ବିମନେ ଶ୍ରୀରାମ ପଲଙ୍କରେ ସୁତି ।
ନିଦ୍ରା ନ ମାଡ଼ଇ ଯେ ହୃଦରେ ମହାଚିନ୍ତା ଅତି ॥୩॥
ଶୁଭେଣ ରୟଣୀ ପ୍ରଭାତ ହୋଇଲା ଯହୁଂ ।
ଲକ୍ଷ୍ମଣ କହି ଶ୍ରୀରାମ ହକାରିଲେ ତହୁଂ ॥୪॥
ନିଜ ନବରେ ଲକ୍ଷ୍ମଣ ବସି ଯେ ଥିଲେ ।
ଶ୍ରୀରାମ ଆଗ୍ୟାଂ ଶୁଣି ଶୀଘ୍ରେଣ ଅଇଲେ ॥୫॥
ପୟର ଧରି ଓଳଗନ୍ତି ସଉମିତ୍ରି ।
ଲକ୍ଷ୍ମଣର ମୁଖ ଚାହିଁ କହନ୍ତି ସୀତାପତି ॥୬॥
ତୁ ହୋ ଲକ୍ଷ୍ମଣ ସୀତାକୁ ଘେନିଯିବୁ
ଅଗମ୍ୟ ଘୋର ବନେ ଛାଡ଼ିଣ ଆସିବୁ ॥୭॥
କପଟ କରି ରଞ୍ଜିବୁ ସୀତୟାର ମନ ।
ବିପିନ୍ୟେ ତେଜି ଆସିବୁ ସୀତାର ନୋହିବଟି ଗ୍ୟାଂନ ॥୮॥
ଲକ୍ଷ୍ମଣ କହଇ ଶୁଣ ହେ ରଘୁପତି ।
ସୀତାର କୋପକୁ ଦେବ କରଇ ମୁହିଂ ଭୀତି ॥୯॥
ତୋହର ଅର୍ଦ୍ଧଅଙ୍ଗ ସେ ରାଜ୍ୟର କାରେଣୀ ।
ଜିଘ୍ନସମ୍ଭବୀ ସେ ରଘୁବଂଶର ମଣ୍ଡନୀ ॥୧୦॥
ତୋହର ବୋଲେ କିଂପା ସେ ନବରୁ ବାହାର ହୋଇବେ ।
ମନ ବିରଙ୍ଗ କରି ଶ୍ୟାପ ମୋତେ ଦେବେ ॥୧୧॥
ଲକ୍ଷ୍ମଣର କଥା ଶୁଣି କହନ୍ତି ରଘୁନାହା ।
ସୀତାର ମନଭାବନା ବନକଇ ସେ ଉଛାହା ॥୧୨॥
ତୁହି ଯେ ନ ଜାଣୁ ତାହାର ମନ୍ଦପଣ ।
ଦୋଚାରୀ ଯୁବତୀ ସେ ପ୍ରତକ୍ଷଣେ ଶୁଣ ॥୧୩॥
ପରବାସକଇ ସେ ତହାଙ୍କର ମତି ।
ଦୁଚାରୀ ଯୁବତୀ ସେ ପରବାସ ଲୋଡ଼ନ୍ତି ॥୧୪॥
ସ୍ୱାମୀସେବା ଯୁବତୀଙ୍କର ନିଶ୍ଚଳ ମନ ଅଟଇ ।
ବନବାସ ଯିବାକୁ ସୀତୟାର ମନ ଉଦ୍‌ବେଗଇ ॥୧୫॥
ପିତା ବନବାସ ଯେବଣ କାଳେ ପଠିଆଇଲା ।
ପତି ଭକ୍ତୀ ବୋଲି ମୋ ସଙ୍ଗେ ଗୋଡ଼ାଇ ଅଇଲା ॥୧୬॥
ସେ ଯେବେ ପତିଭକ୍ତା ପଣେ ନିଶ୍ଚଳ ହୁଅନ୍ତା ।
ତପସ୍ୱୀ ମାଗନ୍ତେ ସେ କିଂପା ଭିକ୍ଷା ଦେନ୍ତା ॥୧୭॥
ତୋତେ ଧିଙ୍ଗାସି ଯେ ମନ୍ଦକଥା କହିଲା ।
ତୋହର ବଚନ ଲଂଘି କିଂପା ରେଖା ଡେଇଁଗଲା ॥୧୮॥
ରାବଣର ତୁଲେ ସେ କଲା ଅବିଳାଷ ।
ଏବେ ପୁଣି ଇଚ୍ଛା ସେ କରଇ ବନବାସ ॥୧୯॥
ତୋହର ଆଗରେ ଯେ କହଇ ଗୁପ୍ତ କଥା ।
ବିଚାରି ବୁଝସି ସୀତୟା ଚରିତ୍ର ବ୍ୟବସ୍ଥା ॥୨୦॥
ନିଜ-ଅବକାଶ ରୟଣୀର କାଳେ ।
ପଲଙ୍କେ ଶୋଇଲି ମୁଁ ସୀତାର ମେଳେ ॥୨୧॥
ସୀତା ଉପେଖି ମୁଁ ଗଲଇ ଏକସରେ ।
ନଗ୍ର ବୁଲଇ କୋଦଣ୍ଡ ଧରି କରେ ॥୨୨॥
ଜାରାନାରୀ ମୁଖେ ମୁଁ ସୀତାର ସ୍ତିରୀପଣ ଶୁଣିଲି ।
ତହୁଁ ବାହୁଡ଼ି ମୁଁ ନବରକଇ ଅଇଲି ॥୨୩॥
ପଲଙ୍କେ ଶୟନେ ନିଦ୍ରା ନ ମାଡ଼ଇ ମୋତେ ଯହୁଂ ।
ଜାନକୀ ନିବେଶି ପଚାରିଲାକ ତହୁଂ ॥୨୪॥
ବୋଇଲା କିମ୍ପାଇଁ ବିରସ ହୋଇଲେ ମୋର ପତି ।
ବଂଶ ଉଦିତ ମୁହିଂ ଏବେ ହୋଇଲି ଗର୍ଭବତୀ ॥୨୫॥
ଏସନେକ କଥା ଶୁଣି (କହି)ଲି ମୁହିଁ ଯେବେ ।
ପ୍ରସାଦ ମାଗସି ଦେବଇ ମୁହିଁ ଏବେ ॥୨୬॥
ସେ କଇତ(ବ) ଯୁବତୀ ପ୍ରସାଦ ମାଗିଲା ।
ଧନରତ୍ନ ଛାଡ଼ି ବନକୁ ତ ଇଚ୍ଛା କଲା ॥୨୭॥
ନିୟତେ ସେ ରେ ଦୋଚାରୀ କପଟୀ
ତେଣୁ ସେ ବନକୁ ଯିବାକୁ ଉଦେ ମନ ଘୋଟି ॥୨୮॥
ସେ କିଂପାଇ ତୋତେ କୋପ କରିବ ।
ହରଷ ଚିତ୍ତେ ସେ ବାହାର ହୋଇଯିବ ॥୨୯॥

ଅଗମ୍ୟ ବନକୁ ତାହାକୁ ଘେନି ଯିବୁ ।
ଦୁସହ କନ୍ଦରେ ଛାଡ଼ିଣ ଆସିବୁ ॥୩୦॥
ବନଜୀବେ ସୀତାଙ୍କୁ କରନ୍ତୁ ଆଧାର ।
ତେବେ ସେ କଳଙ୍କ ଛାଡ଼ଇ ମୋହର ॥୩୧॥
ଏହିକ୍ଷଣି ତୁହି ସୀତୟା କଥା ଶୁଣୁ ।
ଆମ୍ଭର କଥା ତୁହି ସତମିଛ ମଣୁ ॥୩୨॥
ଏତେ କହି ସେ କୋଦଣ୍ଡ ଚାପଧାରୀ ।
ସନ୍ନିଧେ ହକାରିଲେ ଜନେକ କୁମାରୀ ॥୩୩॥
ସ୍ୱାମୀର ଆଗ୍ୟାଂ ଶୁଣିଲେ ସେ ମହାସତୀ ।
ଶ୍ରୀରାମ ଛାମୁରେ ମିଳିଲା ତଡ଼ତି ॥୩୪॥
ସୀତା ଶ୍ରୀରାମ ପାଶେ ଉଭା ହେଲେ ଯହୁଂ ।
କ୍ଷତ୍ରିବର ସୁନ୍ଦର ପ୍ରକାଶନ୍ତି ତହୁଂ ॥୩୫॥
ତୁ ଯେ ଆମ୍ଭଙ୍କୁ ପ୍ରସାଦ ମାଗିଲୁ ।
ବନକୁ ଯିବୁ ବୋଲି ଆଶ ଯେବେ କଲୁ ॥୩୬॥
ଲକ୍ଷ୍ମଣର ତୁଲେ ବନକୁ ଏବେ ଯାଅ ।
ଯେ ତୋହର ଇଚ୍ଛା ଫଳମୂଳ ଖାଅ ॥୩୭॥
ଶୁଣିଣ ସୀତୟା ମନରେ ହରଷ ।
ସ୍ୱାମୀର ମୁଖ ଚାହିଁ କହଇ ଦ୍ରହାସ ॥୩୮॥
ସ୍ୱାମୀର ଆଗରେ କହଇ ମହାସତୀ ।
ଶାଶୁଙ୍କୁ କହିବି ମୋହର ମିଳଇ ଯୁଗତି ॥୩୯॥
ଏସନକ କହି ସେ ଜନକ ଦୁଲାଳୀ ।
କୌଶୁଲ୍ୟାଙ୍କର ସନିଧେ ତତକ୍ଷଣେ ମିଳି ॥୪୦॥
କଇକୟା ସୁମିତ୍ରା ଏକଇ (ଶ) ଶତ ଯୁବତୀ ।
ସମସ୍ତଙ୍କୁ ବସାଇ କହଇ ମହାସତୀ ॥୪୧॥
ତୁମ୍ଭେ ମୋର ଗୁରୁଜନ ଧର୍ମର ଗୋ ମାତ ।
ବନକୁ ଯିବାକୁ ମୁହିଂ ଶରଧା କଲି ଚିତ୍ତ ॥୪୨॥
ଅନେକ କାଳ ମୁହିଂ ଯେ ବନସ୍ତରେ ଥିଲି ।
ତେଣୁ ସେ ତହିଁକି ଶରଧା ମୁହିଁ କଲି ॥୪୩॥
କଉଶୁଲ୍ୟା କହନ୍ତି କଥା ନୁହଇ ଯୁଗତି ।
ବିଶେଷେଣ ଗର୍ଭିଣୀ ଗୋ ଏକଇ ଯୁବତୀ ॥୪୪॥
ଗର୍ଭେଣ ତୋହର ହୋଇଛି ତିନିମାସ ।
ନିଦ୍ରା କାଳେ ବନେ ପାଇବୁ ନାନା ପ୍ରାସ ॥୪୫॥
କୈକେଇ କହନ୍ତି ତୁମ୍ଭେ କିଛି ହିଂ ନ ଜାଣ ।
ତୁମ୍ଭର ପ୍ରାୟେ ଗୋ ସବୁଙ୍କୁ ହି ମଣ ॥୪୬॥
ଯେବଣ ସ୍ତିରୀଏ ଗୋ ହୁଅନ୍ତି ଗର୍ଭବାସ ।
ପରଗୃହେ ପରଅନ୍ନକୁ ସେ କରନ୍ତି ଆଶ ॥୪୭॥
ଏ କଥାକୁ ତୁମ୍ଭେ ଗୋ କିଛି ହି ନ ଜାଣ ।
ଶୁଣିଣ ସୀତୟାର ଆନନ୍ଦ ହୋଏ ମନ ॥୪୮॥
କଉଶୁଲ୍ୟା କହନ୍ତି ତୁ ଯଦ୍ୟପି ଯିବୁ ।
ଶୀଘ୍ର ହୋଇ ବନସ୍ତରୁ ବାହୁଡ଼ି ଆସିବୁ ॥୪୯॥
ଶୁଣିଣ ହରଷ ଯେ ହୋଇଲା ମହାସତୀ ।
ଭୂମିରେ ଅଞ୍ଚଳ ପାଡ଼ି ଓଳଗଇ ପାଦଗତି ॥୫୦॥
ହାତ ଲୋଳି ଧରନ୍ତି ସୁମିତ୍ରା ମହାଦେଈ ।
ଶୀଘ୍ରେ ବନସ୍ତୁ ବାହୁଡ଼ି ଆସ ଗୋ ବଇଦେହୀ ॥୫୧॥
ତହୁଂ ରାମରାଣୀ ଅଇଲେକ ବେଗେ ।
ପୁଣି ହି ଆସି ହୋଏ ଶ୍ରୀରାମର ଆଗେ ॥୫୨॥
ପୟରେ ନମଇଁ ଯେ ଜନେକ ଦୋହିତା
ପୟର ଧୂଳି ଆଣି ଲଗାଇଲେ ମଥା ॥୫୩॥
ରାଗେଣ ରାମ ନ କହିବେ କିଛି ।
ଛାମୁରେ ଉଭା ହୋଇଅଛି ସୁମିତ୍ରାର ବଛି ॥୫୪॥
ଲକ୍ଷ୍ମଣକୁ କହନ୍ତି ସୀତାୟାର ପତି
ମୋହର କଥା ତୁହି ସୁମରିଥାଅ ସଉମିତ୍ରି ॥୫୫॥
ମନବ୍ୟଥା ତାହାର ତୁ ଆଶ ନ କରିବୁ ।
ଯେତେବେଳେ ଅବକାଶ ହେବ ବାହୁଡ଼ି ଆସିବୁ ॥୫୬॥
ସୀତୟା ସେ କଥା ବୁଝି ନ ପାରିଲେ ।
ଉପୁରାଣ ବସ୍ତେକ ଘେନି ବାହାର ହୋଇଲେ ॥୫୭॥
ଏକର ଆଗରେ ଯେ ଆରେକ କହଇ ଧୀର ଅତି ।
ମାୟା କଥା ସେ ନ ଜାଣଇ ସତୀ ।
ମନ ମୋହିଅଛି ଦେବୀ ସରସ୍ୱତୀ ॥୫୮॥
ଆଗେଣ ଲକ୍ଷ୍ମଣ କୋଦଣ୍ଡ କରେ ଧରି ।
ପଛେଣ ଗମଇ ସେ ଜନେକ କୁମାରୀ ॥୫୯॥
ନଗ୍ର ନରନାରୀ ସୀତାକୁ ଦେଖିଲେ ।
ଯେ ଯାହାର ରତି ଛାଡ଼ି ବାହାର ହୋଇଲେ ॥୬୦॥
ଏକର ଆଗରେ କହନ୍ତି ସଧୀର ।
କେବଣ ବିପରୀତ ଗୋ ହୋଇଲା ଏ ପୁର ॥୬୧॥
ଅତି ଅଗୋଚର ତ ଅସମ୍ଭବ କଥା
ଏକସ୍ୟରେ ଗମଇଁ ଜନେକ ଦୋହିତା ॥୬୨॥
ସୂର୍ଯ୍ୟକିରଣ ତ ନ ଲାଗଇ ଯାହାର କାୟେ ।

ଇତର ଜନଙ୍କର ମତେ ଗମଇଁ ଏକଲାଏ ।।୬୩।।
ଏସନେକ ବୋଲି ଅନେକ ଯୁବତୀ ।
ସୀତଯାର ପଛେ ଯେ ବିମନେ ଗୋଡ଼ାବନ୍ତି ।।୬୪।।
ମୁଖ ଶବ୍ଦ ଶୁଣି ଲକ୍ଷ୍ମଣ ଲେଉଟି ଚାହିଁଲା ।
ପୁରଜନ ଯୁବତୀକି କୋପେଣ ଡାକ ଦେଲା ।।୬୫।।
ରାଜପତ୍ନୀ ପଛେ ଯେ ଗୋଡ଼ାଅ କାହିଁ ପାଇଁ ।
ଜୀବନକୁ ଆଶ କି ତୁମ୍ଭର ଅଙ୍ଗେ ନାହିଁ ।।୬୬।।
ଯେ ଯାହାର ମନ୍ଦିରକୁ ତୁମ୍ଭେ ଚଳିଯାଅ ।
ଶରୀର ରଞ୍ଜାଇ ଅପମାନ ନ ପାଅ ।।୬୭।।
ଲକ୍ଷ୍ମଣ କଠୋର କଥା ଯହୁଂ ପୁରଜନେ ଶୁଣିଲେ ।
ସମସ୍ତ କାମେନୀ ସେଠାରେ ରହିଲେ ।।୬୮।।
କେହି କାହାରି ଗୃହରେ ନ ପଶନ୍ତି ।
ଦଶବିଂଶ ଠାବେ ଠାବେ ରହିଣ ଭାଳନ୍ତି ।।୬୯।।
କେବଣ ବିପରୀତ ହୋଇଲା ନ ଜାଣିଲୁ ଏହା ।
କେ ଅବା ଏ ସୟଳେ ହୁଅ ସାହା ।।୭୦।।
ଏସନେକ ମନେ ବିରସ ସର୍ବ ନାରୀ ।
ବଇକୁଲ୍ୟ ଚିତ୍ତେ ନୟନୁ ଲୁହ ଝରି ।।୭୧।।
ଦେଖି ଆହାକାର କରନ୍ତି ସର୍ବଜନ ।
ତହୁଁ ମହାସତୀ କରନ୍ତି ଗବନ ।।୭୨।।
ବୈଶାଖ ଶୁକଳ ପଞ୍ଚମୀ ଗୁରୁବାର ।
ପୁନର୍ବସୁ ନକ୍ଷତ୍ର ତିନିଘଡ଼ି ଦିବାକର ।।୭୩।।
ଏବେ ମହାସତୀର ହୋଇଛି ତିନିମାସ
ମନର ହରଷେ ନ ବୁଝଇ ପ୍ରାସ ।।୭୪।।
ଆଗେଣ ଲକ୍ଷ୍ମଣ କଡ଼ାବନ୍ତି ବାଟ ।
ଥୋକାଏକ ଧୂରେ ସତୀ ପାଇଲେକ କଷ୍ଟ ।।୭୫।।
ଗହନ ବନେ ବେନି ଜନେ ପଶନ୍ତି ।
ଦେଖି ବନଜୀବେ ଛନଛନ ଚାହାନ୍ତି ।।୭୬।।
ମତ୍ତଗଜ ଯୂଥ ଶରୀର ବୃଶାଳଇ ।
ଗଜଇନ୍ଦ୍ରକୁ ତେଜ ପ୍ରକାଶଇ ।।୭୭।।
ସୁସଞ୍ଚ ଅଶ୍ୱେ ଅଛନ୍ତି ପନ୍ତିପନ୍ତି ।
ଉଚିଶ୍ରବା ପ୍ରାୟେ ଦିଶନ୍ତି ଧବଳ ଜ୍ୟୋତି ।।୭୮।।
ହରିଣ ବାହୁଟିଆ କୋକ ବଳିହା ।
ମତ୍ତଗଜ ସମାନେ ଦିଶନ୍ତି ବରେହା ।।୭୯।।
ଗଣ୍ଡା ଗଇଳ ଯେ କୁରଙ୍ଗ ସୟେମ୍ବର ।
ସିଂହ ଶାର୍ଦୂଳ ଯେ ଅଚଇ ବିସ୍ତାର ।।୮୦।।
ଶୁକ କୋକିଳ ଯେ ଆବର ଝିଙ୍କ ମଞ୍ଜାରି ।
ଭର୍ଦ୍ଧକେଶୀ ମହିଷି ସମୁଖେ କ୍ରୀଡ଼ା ବିହରି ।।୮୧।।
ଆନନ୍ଦେ ମହାସତୀ ଚାହାନ୍ତି ତୋଷମନେ ।
ଅନେକ ପକ୍ଷୀଜନ୍ତୁ ଅଛନ୍ତି ସେ ବନେ ।।୮୨।।
ସୁସ୍ୱରେ ରାବ ଦେଇ ମଂଯୂରଇ ।
କୋକିଳ ରାବ ଶୁଣି ଶରୀର କି ଝଡ଼ଇ ।।୮୩।।
ବନ ଗହନରେ ପବନ ବହଇ ନ ଲାଗଇ ରବିର ତେଜ
ସେ ବନେ ପଶିଲା ଯାଇ ସୁମିତ୍ରା ତନୁଜ ।।୮୪।।

X X X

ଲକ୍ଷ୍ମଣର ପଛେ ଗୋଡ଼ାଇ ସତୀ ଥିଲା ।
ଝାଳେ ଘୁମାଇଁ ମୁଖ ମଉଳିଲା ।।୧।।
ଗୋଡ଼ାଇ ଚାଲି ନ ପାରିଲା ସତୀ ଯହୁଂ ।
ଆସ ବୋଲି ଲକ୍ଷ୍ମଣ ଡାକ ଦେଲା ତହୁଂ ।।୨।।
ତୁମ୍ଭେ ଗୋ ବନକୁ ଅଇଲ ହି ଯେବେ ।
(ନ) ଜାଣିଲି ମୁଁ ତୁମ୍ଭନ୍ତ ପଚାରୁଛି ଏବେ ।।୩।।
କେବଣ ନିମନ୍ତେ ବନକୁ ଶରଧା କଲ ।
ସୁକୁମାର ସ୍ତିରୀ ଗୋ ଚାଲି ତ ନ ପାର ।।୪।।
ଏବେ ତୁମ୍ଭେ ଗୋ ଆସ ଶୀଘ୍ର ହୋଇ ।
ଭଲ ଠାବ ଦେଖି ବିଶ୍ରାମିବା ଯାଇ ।।୫।।
ଲକ୍ଷ୍ମଣର ସମାଦ ଶୁଣିଣ ମହାସତୀ ।
ଆଗଭର ହୋଇଣ ଧାମନ୍ତି ତଡ଼ତି ।।୬।।
ପର୍ବତ ଉପରେ ଅଛି ଏକ ପୁଷ୍କରଣୀ ।
ମୁଖ ପଖାଳନ୍ତି ତହିଁ ଶ୍ରୀରାମର ରାଣୀ ।।୭।।
ଶରୀର ଶ୍ରମେଣ ସତୀ ଜଳପାନ କରଇ ।
ଦେଖିଣ ବିକଳେ ଭାଳନ୍ତି ସୁମିତ୍ରାର କୁମରଇ ।।୮।।
ସହସ୍ରେକ ଭାର ଗଙ୍ଗାର ପାଣି ।
ନିତ୍ୟେ ଗଉଡ଼େ ତୋର ରାଜ୍ୟକୁ ବହି ଆଣି ।।୯।।
ସେ ଜଳେ ସ୍ନାହାନ କରୁ ଗୋ ମହାସତୀ ।
ପାଣି ତୋଳି ଦିଅନ୍ତି ଲକ୍ଷେକ ଯୁବତୀ ।।୧୦।।
କୁଙ୍କୁମ ଘଷନ୍ତି ସହସ୍ରେକ ବାଳୀ ।
ସୁବର୍ଣ୍ଣ ଘଟେ ଶରୀର ପଖାଳି ।।୧୧।।
ସୁସଞ୍ଚ ପାଟୋଳି ପବିତ୍ର ଝୀନ ବାସ ।
ଶରୀର ପୋଛନ୍ତେ ପାଉ ଅତି ପ୍ରାସ ।।୧୨।।

ରତ୍ନଝରୀରେ ସୁବାସିତ ନୀର (ଲା)ଇ ।
ତହୁଁ ସେ ଜାନକୀ ମୁଖ ପଖାଳଇ ॥୧୩॥
ବିହିର ଲେଖନେ ଏବେ କରେ ପିଅଇ ପାଣି ।
ଭୋ ବିହି ବିଧାତା ଏସନେକ ଅଛୁ ନିର୍ମାଣି ॥୧୪॥
ଏ ଦିବ୍ୟ କାମିନୀକି ଛାଡ଼ି ଯଦି ଯିବି ।
କେବଣ ମତେ ମୁହିଂ ଦେହ ଧରିବି ॥୧୫॥
ଯଦ୍ୟପି ରହିବି ଯେ ସୀତାୟାର ତୁଳେ ।
କୋପ କରିବେ ରାମ ଆଜ ମୁହିଂ ନ ଗଲେ ॥୧୬॥
ଏତେ ବିଚାରି ଲକ୍ଷ୍ମଣ ବିକଳେ ଭାଳଇ ମନ ।
ଆସ ଗୋ ମହାସତୀ ଏଥୁ ଯିବାକ ବହନ ॥୧୭॥
ଫଳ ମୂଳ ଯେବଣ ଠାବରେ ପାଇବା ।
ତହିଁ ଯାଇ ଆମ୍ଭେ ବିଶ୍ରାମ କରିବା ॥୧୮॥
ଶୁଣିଣ ମହାସତୀ ପାଣିରୁ ହୋଇଲେ ବାହାର ।
ଜଳି ପିଅନ୍ତେ ପ୍ରାସ ହୋଇଲା ତାହାର ଶରୀର ॥୧୯॥
ଚାଲନ୍ତେ ସୀତୟା ପୟର ନ ଚଳଇ ।
ଆପଣା ହୃଦରେ ଶଶୀମୁଖୀ ଭାଳଇ ॥୨୦॥
କେବଣ ଦଇବ ମୋର ମନକୁ ମୋହିଲା ।
ବନସ୍ତକୁ ଆସିବି ବୋଲି ଉଦବେଗ କଲା ॥୨୧॥
ଅରଷ୍ଟି କଥା ଏହା ବିଚାରି ନ ପାରିଲି ।
ସ୍ୱାମୀକି ଏକାନ୍ତେ ମୁଁ ପ୍ରସାଦ ମାଗିଲି ॥୨୨॥
କାହାକୁ କହିବି ଯେ ମୋହର କୃତ ଦୋଷ ।
ଆପଣେ ମୁହିଂ ହୋଇଲି ଜିଂଘାସ ॥୨୩॥
ଲକ୍ଷ୍ମଣକୁ ମହାସତୀ ଡାକ ଦେଲେ ସଧୀରଇ ।
ସମ୍ଭାଳି ନିଅ ମତେ ମୁଁ ଚାଲି ନ ପାରଇ ॥୨୪॥
ପଥର ଭୂମିରେ ଚାଲନ୍ତେ ପୟର ତୁଟିଲା ।
ଗର୍ଭେଣ ତିନିମାସ ଗର୍ଭ ବ୍ୟଥା କଲା ॥୨୫॥
ଶୁଣିଣ ଲକ୍ଷ୍ମଣ ପ୍ରାଣ ଉଛର୍ଗିଲା ଦେହି
ତରୁ ତଳେ ବସିଲେ ନୟନୁ ଲୁହ ବହି ॥୨୬॥
ସେହି ବୃକ୍ଷତଳେ ବସିଲେ ରାମରାଣୀ ।
ଜାନୁ ଭର ଦେଇ ବସିଲା ଧରଣୀ ॥୨୭॥
ବାହାଡ଼ା ବୃକ୍ଷତଳେ ଅତି ବିତପନ ।
ସୁଶୀତଳ ସମୀର ବହଇ ଘନଘନ ॥୨୮॥
ରବିର ଦ୍ରୋଛନା ଯେ ନ ଲାଗଇ ତହିଁ ଖରା ।
ଲେଉଟି ଆଦିତ୍ୟ ଦେବତା ହୋଇଲେ ଅଢ଼ାଇ ପ୍ରହରା ॥୨୯॥
ବୃକ୍ଷର ତଳେଣ ବସନ୍ତେ ମହାସତୀ ।
ଶରୀର ଶ୍ରମେଣ ପାଇ (ଅ)ଚେତନ ମୂର୍ତ୍ତି ॥୩୦॥
ଅଞ୍ଚଳ ପାଡ଼ି ହସ୍ତ ସୀମସ୍ଥାନ କଲା ।
ନିଦ୍ରାଏଣ ମହାସତୀ ଅଚେତନ ହୋଇଲା ॥୩୧॥
ଦେଖି କରି ଲକ୍ଷ୍ମଣ ମନରେ ବିଚାରି ।
ଏହି ସମୟେ ଉପେକ୍ଷି ମୁଁ ଯିବି ନିଜପୁରୀ ॥୩୨॥
ଯଦ୍ୟପି ନିଦ୍ରାରୁ ଉଠିବେ ଜନେକ କୁମାରୀ ।
ଓପ୍ରଧ ଛାଡ଼ି ଏହାକୁ ଯାଇ ତ ନ ପାରି ॥୩୩॥
ନ ଗଲେ କୋପ ମତେ କରିବେ ରାମଚନ୍ଦ୍ର ।
ବୋଲିବେ ମୋହର ଭାରିଯା ଘେନି ରାତ୍ରେ ରହିଲାକ ମନ୍ଦ
ମନେ ବିକାର ତାର କୋପ କରିଅଛି ।
ତମେ ଭରିତ ସେ ନ ପୂରଇ କିଛି ॥୩୫॥
ନିଗମ ବନେ ସତୀକି ଛାଡ଼ି ଗଲେ ।
ଏ ମତେ କୋପ କରିବ ସନିଧେ (ନ) ଦେଖିଲେ ॥୩୬॥
ସେବକ ଲୋକର ହୋ ଜୀବନ ଧିକ ଯାଉ ।
ପରର ବଶେ ବର୍ତ୍ତଇ ପୁଣ ଯେହୁ ॥୩୭॥
ଏସନେକ ପଞ୍ଚଭୂତେ ଭାଳନ୍ତି ଲକ୍ଷ୍ମଣ ।
ତ୍ରୋଣୁ ଶରେକ କାଢ଼ି ପତ୍ରେ କରଇ ଲେଖନ ॥୩୮॥
ମୋହର କଥା ଗୋ ଶୁଣସି ମହାସତୀ ।
ତୋତେ ଉପେକ୍ଷା ଗୋ କଲେ ତୋର ପତି ॥୩୯॥
ରାବଣ ରାଜ୍ୟେ ତୁ ଚଉଦ ମାସ ଥିଲୁ ।
ଲୋକିତ କଥାରେ ତୁ ଦୋଚାରୀ ହୋଇଲୁ ॥୪୦॥
ବହୁତ ମୁଖରାବ ରାମ ସହି ନ ପାରିଲେ ।
ତେଣୁ ସେ ତୋତେ ଗୋ ବନକୁ ବାହାର କଲେ ॥୪୧॥
ଅଯୋଧ୍ୟା ନଗ୍ରକୁ ତୁ ବାହୁଡ଼ି ନ ଯିବୁ ।
ପିତା ଘରେ ତୋର ଗୋ ଯାଇଣ ରହିବୁ ॥୪୨॥
ତୁହି ମତେ କୋପ ଗୋ ନକର ବଇଦେହୀ ।
ଏସନେକ ବୋଲି ଲକ୍ଷ୍ମଣ ଲେଖ ଲିହି ॥୪୩॥
ଯେବଣ ବୃକ୍ଷ ତଳେ ଶୋଇଛନ୍ତି ମହାସତୀ
ତରୁଡ଼ାଳେ ପତ୍ର ଲମ୍ବାଇ ସଉମିତ୍ରି ॥୪୪॥
ତହୁଁ ବାହୁଡ଼ଇ ଲକ୍ଷ୍ମଣ ମହାବୀର ।
ଆଗଭର ହୋଇ ତାର ନ ଚଳେ ପୟର ॥୪୫॥
ଶରୀରୁ ଝାଳ ବହଇ ଅବିକ୍ଷଣ ।
ଲେଉଟି ଚାହାଇଁ ପୁଣି ସୀତୟା ବଦନ ॥୪୬॥

ଶରଦ ପୌର୍ଣ୍ଣମୀ କି ନିର୍ମଳ ଶଶୀ ।
ତେସନେକ ଜାନକୀର ବଦନ ବିକାଶି ॥୪୭॥
ମୁହିଂ ଏହାକୁ ଛାଡ଼ି ଯିବି ଯେବେ ।
ଏହିକ୍ଷଣି ଏହାକୁ ବନଜୀବେ ଆହାର କରିବେ ॥୪୮॥
ଏସନେକ ବିଚାରି ଆସଇ ଧୀର ଧୀର ।
ମୁକ୍ତା ଛିଡ଼ଇ ଯେସନେ ନୟନରୁ ଲୁହ ଝରେ ॥୪୯॥

X X X

ଏଥୁ ଅନନ୍ତରେ କଥା ଶୁଣ ପଣ୍ଡୁ ସୁତ ।
ସୀତୟାକୁ ତେଜି ଯହୁଁ ଅଇଲା ସୁମିତ୍ରାର ସୁତ ॥୧॥
ଆଦିତ୍ୟ ଯେ ଅଢ଼ାଇ ପ୍ରହର ହୋଇଥିଲା ।
ସେହିଠାବେ ସେ ସ୍ଥିର ହୋଇଣ ରହିଲା ॥୨॥
ସୀତୟା ବନରୁ ବାହାର ହୋଇଲେକ ଯେବେ ।
ଏକଘଡ଼ି ସାତଘଡ଼ି ହୋଇଲାକ ତେବେ ॥୩॥
ବିରଞ୍ଚ ବିଚାରଇ ଏ ଜନେକ ଦୁଲାଳି ।
ସୂର୍ଯ୍ୟବଂଶ ମଣ୍ଡନୀ ଏ ସତୀ ଶୁଦ୍ଧ୍ୟଶାଳୀ ॥୪॥
ଅଦୋଷେ ଏହାକୁ କୋପ କଲେ ଶ୍ରୀରାମ ।
ଲକ୍ଷ୍ମଣ କହିଲେ ଅବା ଉପେଖଇ ତମ ॥୫॥
ବାହୁଡ଼ି ଅବା ସୀତୟାକୁ ନିଅଇଁ ନିଜ ପୁର ।
ମୋହର ଗଲେ ହୋଇବ ଅନ୍ଧକାର ॥୬॥
ଏସନେକ ଭାଳି ରହିଲେ ଗଗନେ ।
ନିଦ୍ରାରେ ସୀତୟା ହୋଇଛି ଅଜ୍ଞାନେ ॥୭॥
ସୀତୟାକୁ ଛାଡ଼ି ଲକ୍ଷ୍ମଣ ହି ଗଲା ।
ଅଯୋଧ୍ୟା ଭୁବନେ ସେ ପ୍ରବେଶ ହୋଇଲା ॥୮॥
ସନିଧେ ଲକ୍ଷ୍ମଣ ମିଳିଲାକ ଯାଇ ।
ମଥା ପୋତି ବସିଛନ୍ତି ରଘୁକୁଳ ସାଇଁ ॥୯॥
ସୀତାର ବଲ୍ଲଭ ଯେ ଲକ୍ଷ୍ମଣକୁ ଦେଖି ।
ଶରୀରୁ ପ୍ରାଣ କି ଯେ ଗଲାକ ଉପେଖି ॥୧୦॥
ମଉନ ହୋଇଣ ଲକ୍ଷ୍ମଣ ଭୂମିକି ଦିଅଇ ଦୃଷ୍ଟି ।
ତବଦ ହୋଇ ଶ୍ରୀରାମ ନଖେ ଚିରନ୍ତି ସୃଷ୍ଟି ॥୧୧॥
ଏକକୁ ଆରକ ନ ଦିଅନ୍ତି ଉତ୍ତର ।
ଘଡ଼ିକେ ଲକ୍ଷ୍ମଣକୁ ପୁଛନ୍ତି ଚାପଧର ॥୧୨॥
ସୀତାକୁ ଘେନି ତୁ ଯେ ବିପିନ୍ୟକୁ ଗଲୁ ।
କେବଣ ଅରଣ୍ୟେ ସୀତାକୁ ଛାଡ଼ିଣ ଆଇଲୁ ॥୧୩॥
ଲକ୍ଷ୍ମଣ କହଇ ଶୁଣ ରଘୁନାନ ।
ଦୁସହ ଘୋର କନ୍ଦର ଅଗମ୍ୟ ବିପିନ୍ୟ ॥୧୪॥
ଏକଧାରା ପର୍ବତ ତହିଁକି ନିକଟ ।
ବାହାଡ଼ା ବୃକ୍ଷ ଅଛି ପୁଷ୍କରଣୀ ତଟ ॥୧୫॥
କେତେବେଳେ କେତେ ଧୂର ଗଲଇ ଦେବ ମୁହିଂ
ମୋତେ ହେ ଅଗୋଚର ମଣଇ ରଘୁସାଇଁ ॥୧୬॥
ସେ ତରୁତଳେ ନିଦ୍ରା ଗଲେ ମହାସତୀ
ପଥଶ୍ରାନ୍ତେ ତାହାର ଅଚେତନ ମତି ॥୧୭॥
ନିଦ୍ରାରେ ଅଚେତ ହୋଇଲେକ ଯହୁଁ
ତାହାକୁ ଉପେଖି ମୁଁ ଅଇଲଇ ତହୁଁ ॥୧୮॥
ଏସନେକ କୃତ ନ କରିବା ରଘୁମଣି ।
ତିନିପୁରେ ସାଧେବୀ ସେ ଜନେକ ଦୁଲଣି ॥୧୯॥
ନଗ୍ରଜନଙ୍କର ମୁଖେ ସ୍ୱାମୀ ପାଇଲୁ ଉପହାସ୍ୟ ।
ସକଳ ମୁଖେ ରାଜ୍ୟେ ପାଇବୁ ଅପଯଶ ॥୨୦॥
କିସ ବୋଲିବେ ମତେ ଋଷିଗଣ ମାନେ ।
ଆତ୍ମା ଉଛର୍ଗିବେ ଶୁଣି ଜନେକ ମହାମୁନ୍ୟେ ॥୨୧॥
କାହାର କଥା ନ ପୁଣି ଉପେଖିଲୁ ସତୀ ।
କେବଣ ଦଇବ ମୋହିଲା ତୋହର ମତି ॥୨୨॥
ଲକ୍ଷ୍ମଣର କଥା ଶ୍ରୀରାମଚନ୍ଦ୍ରେ ଶୁଣିଲେ ।
କପାଳେ କର ଦେଇ ଉଚ୍ଚେ ରୋଦନ କଲେ ॥୨୩॥
ମାତୃଗଣମାନେ ଆସି ସନିଧେ ମିଳିଲେ ।
ଭରତ ଶତୃଘନ କତିରେ ପ୍ରବେଶିଲେ ॥୨୪॥
ଶ୍ରୀରାମ ମୁଖଚାହିଁ ପୁର ନରନାରୀ ।
ରୋଦନ କରନ୍ତି ହୃଦରେ କର ତାଡ଼ି ॥୨୫॥
ନବରେ ମୁଖଗୋଳ ଶୁଭିଲାକ ନାଦ ।
ମନ୍ତ୍ରୀ ଅମନାତ୍ୟଗଣେ ହୋଇଲେ ବିଷାଦ ॥୨୬॥
ବଶିଷ୍ଠ ସୁମନ୍ତ ଗୁଣନିଧି ପାତ୍ର ।
ରାମର ସନିଧେ ଆସି ମିଳିଲେ ସମସ୍ତ ॥୨୭॥
ବଶିଷ୍ଠଙ୍କ ମୁଖ ରାମଚନ୍ଦ୍ର ଚାହିଁଲେ ।
ସମସ୍ୟା ନ ଦେଇ ମଥା ଲୁହାଇଂଲେ ॥୨୮॥
ନୟନୁ ଲୁହ ଗଳି ପଡ଼ଇ ଘନଘନ ।
ପଦ୍ମପତ୍ରେ ଶିଶିର ପଡ଼ଇ ଯେସନ ॥୨୯॥
ସନିଧେ ବଶିଷ୍ଠ ମହରଷି ବସିଲେ ।
ଶରୀର ଆଶ୍ୱାସି କୋମଳ କରିଣ କହିଲେ ॥୩୦॥
ଅନେକ ମଣାଇଁ ବୁଝାଇଲୁ ତୋତେ

କେବଣ ଦୋଷେ ସୀତାକୁ ବିସର୍ଜିଲୁ କୋପ ଚିତ୍ତେ ।।୩୧।।
ଏବେ ସୀତୟାକୁ ପାଇବା ଆଉ କାହିଁ
ବନେଣ ଲକ୍ଷ୍ମଣ ଯେ ଛାଡ଼ି ଅଇଲାକ ଯହିଁ ।।୩୨।।
ବନଜୀବେ ସୀତାକୁ କରିବେ(ନି) ଆହାର
ଆବର ଜାନକୀକି କିସ ମୁହାଁସ ତୋହର ।।୩୩।।
ଏବେ ଆମ୍ଭର ବଚନେକ କରିବା ।
ରାଜାଙ୍କର ନବରକୁ ଡଗର ବରଗିବା ।।୩୪।।
ଯେବଣ ନୃପତିର ଥାଇ ରୂପବନ୍ତୀ ଦୁଲ୍ଲଣି
ତାହାକୁ ବିଭା ତୁ ହୁଅସି ଚାପପାଣି ।।୩୫।।
ପତ୍ନୀ ବିହୁନେ ଯେବଣ ମହିପତି ।
କ୍ରିୟା ହଜଇ ସକଳ ଧର୍ମକୀର୍ତ୍ତି ।।୩୬।।
ଶ୍ରୀରାମ କହନ୍ତି ଶୁଣସି ତପୋଧନି ।
ଯେବଣ ବେଳେ ବିଭା ମୁଁ ହୋଇଲି ଜନେକନନ୍ଦିନୀ ।।୩୭।।
ମହୁଶେଯ୍ୟାରେ ମୁହିଁ ରୟଣୀର ଭାଗେ ।
ସତ୍ୟ ଉଚାରି ଅଛି ସୀତୟାର ଆଗେ ।।୩୮।।
ତୋ ତହୁଁ ପ୍ରୀତି ଆନର ତୁଲେ ନୋହିବି ।
ଆନ ଯୁବତୀର ଦେହ ନ ଛୁଇଁବି ।।୩୯।।
ମୁହିଁ ଯତି ସେ ହି ପତିଭଗତା ।
ଏଥେ ବିଛେଦ ମତେ କଲାକ ବିଧାତା ।।୪୦।।
ପିତାର ବଚନେ ମୁଁ ଗଲଇ ବନବାସ ।
ପତିଭଗତା ସୀତା ନ ଛାଡ଼ଇ ମୋର ପାଶ ।।୪୧।।
କନ୍ଦମୂଳ ଆହାର କରି ବନସ୍ତେଣ ଥିଲା ।
ଦୁଇମୁଣ୍ଡ ହରିଣ ଦେଖି ଶରଧା ସେ କଲା ।।୪୨।।
କୋଦଣ୍ଡ କରେ ଧରି ମୃଗ ମାରି ଗଲି ।
ସୀତାରକ୍ଷଣେ ଲକ୍ଷ୍ମଣକୁ ଥୋଇ ମୁଁ ବାହାର ହୋଇଲି ।।୪୩।।
ମାୟା ହରିଣ ମୋତେ ଦେଖିଲାକ ଯହୁଁ ।
ବହୁତ ଦୂର ସେ ପଳାଇଲାକ ତହୁଁ ।।୪୪।।
ମୃଗକୁ ଯହୁଁ ମୁଁ ଧରି ନ ପାରିଲି ।
କୋଦଣ୍ଡେ ବାଣ ବିନ୍ଧି ଦୁଇମୁଣ୍ଡ ଛେଦିଲି ।।୪୫।।
ମୃଗର ଦୁଇମୁଣ୍ଡ ଯହୁଁ ଛିଡ଼ିଣ ପଡ଼ିଲା ।
ତ୍ରାହି ଲକ୍ଷ୍ମଣ ବୋଲି ଶୂନ୍ୟେଣ ଡାକଦେଲା ।।୪୬।।
ସେ ବୟାଣ ସୀତୟା ଶୁଣିଲାକ ଯେବେ ।
ଲକ୍ଷ୍ମଣକୁ ମୋର ତହିଁକି ପମନ୍ତିଲାକ ତେବେ ।।୪୭।।
ଏତେବେଳେ ଲକ୍ଷ୍ମଣ ଗୋଡ଼ାଇ ଗଲାକ ଯହୁଁ ।
ତପସ୍ୱୀ ରୂପେ ରାବଣ ଅଇଲାକ କାହୁଁ ।।୪୮।।
ଅନେକ ମାୟା କରି ବଚନ କହିଲା ।
ଦଇବ ନିର୍ବାଣେ ସୀତା ମୋହିତ ହୋଇଲା ।।୪୯।।
ରେଖା ଡେଇଁ ଭିକ୍ଷା ଦେଲା ଜନେକ କୁମାରୀ ।
ଯାନେ ବସାଇ ହରି ନେଲାକ ଦଶଗିରି ।।୫୦।।
ଅଶୋକ ବିପିନ୍ୟେ ନେଇଣ ଥୋଇଲା ।
ତୁଲେଣ ଅନେକ ଅସୁରୀ ରଖାଇଲା ।।୫୧।।
ମୃଗ ମାରି ମୁହିଁ ବାହୁଡ଼ି ଅଇଲି ।
ବାଟେ ଆସନ୍ତେ ଯେ ଲକ୍ଷ୍ମଣକୁ ଦେଖିଲି ।।୫୨।।
ଦୁଇ ଭାଇ ଆସି ପର୍ଣ୍ଣକୋଟୀରେ ହୋଇଲୁ ।
ଜନେକ କୁମାରୀକି ଦେଖି ତ ନ ପାରିଲୁ ।।୫୩।।
ଅନେକ ବନ କନ୍ଦରେ ଲୋଡ଼ିତ ନ ପାଇଲୁ ।
ପକ୍ଷୀଜଟା ଠାରୁ ସୀତାର ବାରତା ପାଇଲୁ ।।୫୪।।
ପକ୍ଷୀ ଜଟାକୁ ଦହନ କରିଗଲୁ ।
ପିମ୍ପା ସରୋବରେ ହନୁମନ୍ତକୁ ଦେଖିଲୁ ।।୫୫।।
ଋଷିମୁଖ ପର୍ବତେ ସୁଗ୍ରୀବରକୁ ଭେଟିଲୁ ।
ହନୁମନ୍ତ ଜମ୍ୟେବ ଶତବାଳିକି ଦେଖିଲୁ ।।୫୬।।
ସୁଗ୍ରୀବର ତୁଲେ ଆମେ ହୋଇଲୁ ମଇତ୍ର ।
ସୁଗ୍ରୀବର ଛଳେ ବାଳିକି କଲୁ ପ୍ରାଣହତ ।।୫୭।।
ବାଳିକି ମାରନ୍ତେ କପିସୈନ୍ୟ ହୋଇଲେ ମତେ ସାଧ ।
ବାନର ସୈନ୍ୟ ଘେନିଣ ମୁହିଁ ବାନ୍ଧିଲି ସେତୁବନ୍ଧ ।।୫୮।।
ଅନେକ ଯୁଦ୍ଧ କରି ରାବଣ ମାଇଲି ।
ସୀତାକୁ ମନର ବିକଳ୍ପେ ଅଗ୍ନି ପରୀକ୍ଷା କରାଇଲି ।।୫୯।।
ତଦ୍ୟପି ମନରେ ପ୍ରତେ ନ ଗଲି ଯହୁଁ ।
ଦଶରଥ ନୃପତି ମତେ ସମର୍ପି ଗଲେ ତହୁଁ ।।୬୦।।
ସୀତା ଘେନି ଅଯୋଧ୍ୟା ପୁରେ ପ୍ରବେଶିଲି ।
ତୁମ୍ଭେ ଜାଣ ନା ପାଟେଅଭିଷେକ ହୋଇଲି ।।୬୧।।
ନଗ୍ର ଲୋକେ ମୋତେ ପ୍ରତେ ନ ଗଲେ ।
ଦୋଚାରୀ ବୋଲି ମୋତେ ସମସ୍ତେ ବୋଇଲେ ।।୬୨।।
ତେଣୁ ସେ ମୁହିଁ ବହୁତ ଲଜ୍ଜା ପାଇଲି ।
ତୁମ୍ଭେ କେତେ କହିଲ ତୁମ୍ଭର ବୋଲ ନ କଲି ।।୬୩।।
ତେମନ୍ତେ ସୀତାକୁ ତେଜିଲି ମୁହାଂସ ।
ବନକୁ ପଠିଆଇଲି ପାଇଲି ମହାପ୍ରାସ ।।୬୪।।
ବଶିଷ୍ଠେ କହନ୍ତି ଶୁଣ ରଘୁକୁଳ ଈଶ ।

ଅନେକ ପ୍ରତିମା କରାଇବା ସୀତାର ସାଦୃଶ ॥୬୫॥
ଅନେକ ମଣିଗଣ ତାହାକୁ ଆଭରଣ କରିବା ।
ଅନ୍ତଃପୁର ଭିତରେଣ ବସାଇଣ ଥିବା ॥୬୬॥
ରାଜ୍ୟର ଚିନ୍ତା ତୋର ଦେବ ଦେବାର୍ଚ୍ଚନ ।
କନେକ ପ୍ରତିମାକୁ ପୁଛିବୁ ସକଳ ବିଧାନ ॥୬୭॥
ଶୁଣିଣ ଶ୍ରୀରାମ କଲେକ ସନମତ ।
ବୋଇଲେ ଯୋ ତୋହର ବିଚାର କରସି ତୋପବନ୍ତ ॥୬୮॥
ଶୁଣିଣ ବଶିଷ୍ଟେ ବିଚାରନ୍ତି ମନେ ମନ ।
ମୋହର କଥା ନ କଲା କଉଶୁଲ୍ୟା ନନ୍ଦନ ॥୬୯॥
ସେ ପ୍ରତିମାକୁ ଦେଖି ସୀତାକୁ ଓହନିଶି ସୁମରୁ ।
ଗୁଣ ସୁମରି ଯେ ଓହନିଶି ଝୁରୁ ॥୭୦॥
ଶୁଦ୍ଧ ସୁବର୍ଣ୍ଣର ତୁଳ ପଞ୍ଚବିଂଶ ।
ଅନେକ ପ୍ରତିମା କରାଇଲେ ସୀତାର ସାଦୃଶ ॥୭୧॥
ବିଶ୍ୱକର୍ମା ରୂପେ ଗଢ଼ିଲା ବେଦପତି ।
ଦୁତୀୟ ସୀତା କି ନବଯୁବା ମୂରତି ॥୭୨॥
ନେତ ପଟନି ପରିହରଣ କରାଇଲେ ।
କନେକର ପ୍ରତିମା ଶ୍ରୀରାମର ସନିଧେ ନେଇଣ ଥୋଇଲେ ॥୭୩॥
ଗଜଦନ୍ତ ଖଟେ କରନ୍ତେଣ ନିର୍ବାଣି ।
ତହିଁ ଉପରେ ପ୍ରତିମା ବସାଇଲେ ଆଣି ॥୭୪॥
ସୀତୟାର ରୂପ ଅଣାୟତେ ଚାହିଁ ।
ଦିନେ ଦିନେ ଶ୍ରୀରାମର ମନେଣ ସୃସ୍ତ ନାହିଁ ॥୭୫॥
ଅନ୍ନ ନ ରୁଚଇ ରାତ୍ରେ ନ ମାଡ଼ଇ ନିଦ ।
ରାତ୍ର ଦିବସେ ଶ୍ରୀରାମ ମନେଣ ବିଷାଦ ॥୭୬॥
କାହାକୁ ହୃଦୟର ବ୍ୟଥା ନ କହଇ ।
କ୍ରୋଟାନଳ ଯେସନେ ତରୁବର ଦହଇ ॥୭୭॥
ଏସନେକ ତିନି ଦିବସ ଗଲା ଯେବେ ।
ଶତୃଘନ ହକାରି କହନ୍ତି ରାମ ତେବେ ॥୭୮॥
ତୁ ହୋ କନେଷ୍ଟ ମଧୁବନକୁ ଏବେ ଯାସି ।
ସେ ନଗ୍ରଜନଙ୍କୁ ପ୍ରତିପାଳିଣ ତୁ ଥାସି ॥୭୯॥
ଯହିଁର ଅର୍ଥେ ତୋତେ ଅଣାଇଲି ।
ଏବେ ତ ସୀତୟାକୁ ଉପେକ୍ଷା ମୁଁ କଲି ॥୮୦॥
ଶ୍ରୀରାମର ଆଜ୍ଞାରେ ଶତୃଘନ ବୀର ।
ଶୀଘ୍ରେଣ ମିଳିଲା ସେ ମଧୁବନପୁର ॥୮୧॥
ସୁବାହୁ ବନକୁ ଭ୍ରତକୁ ପଠିଆଇଲେ ।
ଲକ୍ଷ୍ମଣକୁ ମାତ୍ର ସନିଧେଣ ଥୋଇଲେ ॥୮୨॥
କଦଳୀ ବନସ୍ତେଣ ହନୁମନ୍ତ ରାଜ୍ୟ କରଇ ।
ଅଯୋଦ୍ଧ୍ୟାରୁ ଯହୁଁ ଗଲା ପବନକୁମାରଇ ॥୮୩॥
ହନୁମନ୍ତ ଯେବେ ଶ୍ରୀରାମର ସନିଧେଣ ଥାନ୍ତା ।
କିପାଇଁ କ୍ଷତ୍ରିବର ସୀତାକୁ ଉପେଖନ୍ତା ॥୮୪॥
ଦଇବର ନିର୍ବାଣ କି ହୋଇବ ଆନକୃତ
ବିଚିତ୍ର ରାମାୟଣ ଏ ଶୁଣସି ପଣ୍ଡୁସୁତ ॥୮୫॥
ଜୟ ତୁ ଶ୍ରୀଧର ଶ୍ରୀୟାଦେବୀର ପତି
ସାନନ୍ଦେ ଶ୍ରୀଧର ଯେ ସୁମରଇ ନିତି ॥୮୬॥
ଶ୍ରୀଧର ରୂପକୁ କରଇ ମୁହିଁ ଧ୍ୟାନ ।
ଅ(ନ)ନ୍ତପୁରେ ଶ୍ରୀଧର ନାମ ଅନୁପାମ ॥୮୭॥
ଶ୍ରୀଧର ସୁମରନ୍ତେ ଭବଜଲୁ ତରି ।
ଶ୍ରୀଧର ନାମ ଯେ ଦତ୍ୟଙ୍କର ଅରି ॥୮୮॥
ମନର ହରଷେ ଶ୍ରୀଧର ନାମ ସୁମରଇ ।
ତାହାକୁ ଅନୁଗ୍ରହ କରନ୍ତି ଶ୍ରୀଧରଇ ॥୮୯॥
ଶ୍ରୀଧର ସୁମରନ୍ତେ ଭୁଗତି ମୁକତି ।
ସିଦ୍ଧେଶ୍ୱର ଦାସ ଶ୍ରୀଧର ପୟରେ ଭଗତି ॥୯୦॥

## ପରିତ୍ୟକ୍ତା ସୀତାଙ୍କ ଶୋକ

ଏସନେକ କଥା ଶୁଣି ଯୁଧିଷ୍ଠିରଙ୍କର ରାଣୀ ।
ଶିରେ କର ଦେଇ ପଞ୍ଚାଳରାଜାର ଦୁଲ୍ଲଣି ॥୧॥
ଭୋ ମହାମୁନି ତୁମେ ମହତ ମହାଯତି ।
ତୁହି ସେ ବୋଇଲୁ ନା ଧାର୍ମିକ ରଘୁପତି ॥୨॥
ଅଦୋଷେ ସୀତୟାକୁ ଉପେକ୍ଷା ସେହୁ କଲେ ।
ବନେଣ ଲକ୍ଷ୍ମଣ ଛାଡ଼ିଣ ଅଇଲେ ॥୩॥
କି ରୂପେ ପୁରୁଷେ ନିରାପକ୍ଷ ହୁଅନ୍ତି ।
ପରର କଥା ଶୁଣିଲେ ରଘୁପତି ॥୪॥
ଏକଇ ଯୁବତୀ ଗର୍ଭବାସ କାମିନୀ ।
କି ଦୋଷ କଲା ତହିଁ ଯେ ଜନେକ ନନ୍ଦନୀ ॥୫॥
ଏକଥା ଶୁଣି ଦୁଃଖିତ ମୋର ମନ ।
ସୀତାର କଥା ମତେ ଶୁଣାଇବା ତପୋଧନ ॥୬॥
ଯୁଧିଷ୍ଠି ପୁଛନ୍ତି କହସି ତପଶ୍ୟାଳୀ ।
ସୀତାର କଥା ମତେ କହସି ବିରୋଳି ॥୭॥
ବିଶେଷି କହ ମତେ ରାମାୟେଣ ଚରିତ ।
ତୋହର ମୁଖୁ ଶୁଣି ହୋଇବି ପବିତ୍ର ॥୮॥

ଏକଥା ଶୁଣି (ବଦନ୍ତି) ମୃକଣ୍ଡ ନନ୍ଦନ ।
ସାବଧାନେ ଶୁଣ ହେ ଯୁଧିଷ୍ଠି ରାଜନ ॥୯॥
ତଲ୍ୟଯେ କରି ଶୁଣ ବିଦ୍ୟୁଜନମାନ ।
ଶତେ ଜନ୍ମର କଷ୍ଟ ହୁଅଇ ବିନାଶନ ॥୧୦॥
ଆଗତ ଜନ୍ମେ ଉତ୍ତମ କୁଳେ ହୋଇ ଜାତ ।
ଦୟା କରଇ ତାହାକୁ ରତ୍ନାକର ଦୋହିତ ॥୧୧॥
ସ୍ତିରୀ ହୋଇ ଯେବେ ସୀତାର ବନବାସ ଶୁଣନ୍ତି ।
ଦୃଭାଗୀ ନୁହନ୍ତି ସେ ପୁନ୍ୟବତୀ ଯୁବତୀ ॥୧୨॥
ତୁହି ଗୋ ଦ୍ରୌପଦୀ ରାମାୟେଣ ଶୁଣିଲୁ ।
ଦ୍ରୌପଦର ଛୟାଶୋଇ ପୁରୁଷକୁ ମୁକତ କରାଇଲୁ ॥୧୩॥
ମନବାଞ୍ଛା ପୂର୍ଣ୍ଣ ହୋଉ ତୋହର ଆଶ ।
ଯେ ତୋତେ ମନ୍ଦ ଚିନ୍ତଇ ସେ ଯିବଇ ପ୍ରାଣନାଶ ॥୧୪॥
ଦ୍ରୌପଦୀ ବୋଲଇ ତୁମ୍ଭର ବାକ୍ୟ ସିଦ୍ଧ ହୋଉ ।
ଅନ୍ଧରାଜାର ଶତେ ପୁତ୍ର ବେଗେ କ୍ଷୟେ ଯାଉ ॥୧୫॥
ଆବର କ୍ଷୟେ ହୋଉ ଗାନ୍ଧାରୀ ଦେବୀର ଭାଇ ।
ଖଳ ଦୁଷ୍ଟ ଜନେ ବେଗେଣ କ୍ଷୟେ ଯାଇ ॥୧୬॥
ତେବେ ସେ ମହାମୁନି ସରଇ ମୋହର ମାନ ।
ଏହା ହୁଁ ମହରଷି ନ ବାଞ୍ଛଇ ମୁହିଁ ଆନ ॥୧୭॥
ମାରକଣ୍ଡେ କହନ୍ତି ଶୁଣସି ସାବଧାନେ ।
ଲକ୍ଷ୍ମଣ ସୀତୟାକୁ ଛାଡ଼ି ଅଇଲେକ ବନେ ॥୧୮॥
ଏଗାର ଘଡ଼ି ଉପରେ ଆଦିତ୍ୟ ହୋଇ(ଥି)ଲା ।
ଅନେକ ପ୍ରତିମା ଶ୍ରୀରାମ ଯହୁଁ କଲା ॥୧୯॥

X X X

ଶରୀର ଶ୍ରମେ ସତୀ ନିଦ୍ରା ଯାଇଥିଲା ।
ନୟନ ମଳିଣ ଜାନେକୀ ଚଉକତି ଚାହିଁଲା ॥୧॥
ବସିଲା ଠାବରେ ଦେଖିଲାଇ ଲକ୍ଷ୍ମଣ ନାହିଁ ।
ଚମତ୍କାର ହୋଇଲା ସତୀ ଚଉକତି ଚାହିଁ ॥୨॥
ଭାଳଇ ଅବା ପାଣି ଆଣି ପୁଷ୍କରଣୀକି ଗଲା ।
ଲକ୍ଷ୍ମଣ ନାମ ଧରି ଉଚ୍ଛେଣ ଡାକ ଦେଲା ॥୩॥
ଏକଇ ଯୁବତୀ ମୋତେ ଛାଡ଼ି କେମନ୍ତେ ଗଲୁ ।
କନ୍ଦମୂଳ ନିମନ୍ତେ ଅବା ଗହନେ ପଶିଲୁ ॥୪॥
ବେଗକୁ ମୋହର ସନିଧକୁ ଆସ ।
ତୋତେ ନ ଦେଖି ମୁହିଁ କଲଇ ମନେ ତ୍ରାସ ॥୫॥
ଲକ୍ଷ୍ମଣର ସମାସ୍ୟା ଯହୁଁ ନ ପାଇଲା ମହାସତୀ ।
ଚକିତ ହୋଇଣ ଚାହାଁଇ ଚଉକତି ॥୬॥
ବୋଇଲା ଯଦ୍ୟପି ଲକ୍ଷ୍ମଣ ଜୀବନ୍ତେଣ ଥାଇ ।
ମୋତେ ଉପେଖି କି ସେ ଆନ କତିକି ଯାଇ ॥୭॥
ଜନଗମ୍ୟ ନାହିଁ ଅଗମ୍ୟ ବନ ଘୋର ।
କେଉଣ ଜୀବେ ଲକ୍ଷ୍ମଣକୁ କଲେକ ଆଧାର ॥୮॥
ଆହା ଲକ୍ଷ୍ମଣ ତୁହିଁ ରୂପେଣ ମଦନ ।
ତିନି ଜଗତେ କ୍ଷତ୍ରି ତୋତେ ନାହିଁ ସରିସମାନ ॥୯॥
ସମ୍ପୂର୍ଣ୍ଣ ଚନ୍ଦ୍ରମା ଜାଣି ମୁଖ ତୋର ଦିଶଇ ।
ନୟନ ବେନି ଉପାମା ଓଲକାପତ୍ର ସାଦ୍ରିଶଇ ॥୧୦॥
ପୁଷ୍ପଧନୁ ଯେସନ ଭୂଲୁତା ପରିମାଣି ।
ନାସିକା ଦିଶଇ ତୋର ଗରୁଡ଼ ଜାଣି ॥୧୧॥
ଶ୍ରବଣେ କୁଣ୍ଡଳ ତୋର ଦିଶଇ ଢଳହଳ ।
ଓଷ୍ଠ ବିକାଶଇ ସୁସଞ୍ଚ ପକୁ ଫଳ ॥୧୨॥
କ୍ଷୁଦ୍ର ମୋତି ଜାଣି ଯେ ଦିଶଇ ଦନ୍ତପନ୍ତି ।
ଉଜ୍ଜଳ ହୀରା ଯେସନେ ଶୋଭଇ ଦିବ୍ୟରୀତି ॥୧୩॥
ଚାଚର ଚିକୁର କୁଟିଳ ଦିବ୍ୟ କେଶ ।
ଲୁବୁଧେ ମଧୁକରେ ନ ତେଜନ୍ତି ନିଜ ପାଶ ॥୧୪॥
ଅକଣ୍ଟେକ ମୃନାଳ ସାଦ୍ରିଶ ବେନି ଭୁଜ ।
ଚମ୍ପାକଢ଼ି ଯେସନେକ ପଟାନ୍ତର ପାଣିଜ ॥୧୫॥
ରକତ କୁମୋଦ ଜାଣି ତୋହର ପୟରତଳି ।
ଜାଈକଢ଼ି ଯେସନେକ ଦଶନ ଓହଳି ॥୧୬॥
ଉଲଟ କଦଳୀ ପ୍ରାୟେ ଦିଶଇ ତୋହର ଜାନୁ ।
ସ୍ୱରୂପ ସାଦ୍ରିଶ ତୁହି ଦିଶୁ ପୁଷ୍ପଧନୁ ॥୧୭॥
ମୁହିଁ ନିଲକ୍ଷଣୀ ଏସନେକ କର୍ମହୀନ ।
ମୋହର ତୁଲେ ଆସି ଏଥେ ହୋଇଲୁ ବିନାଶନ ॥୧୮॥
ଏକଇ ଯୁବତୀ ମୋତେ ଉପେଖିଣ ଗଲୁ ।
କେବଣ ଜୀବଙ୍କର ମୁଖେ ପଡ଼ିଣ ପ୍ରାଣ ଦେଲୁ ॥୧୯॥
ମୁହିଁ ରାଢ଼େଣୀ ନିଶ୍ଚିନ୍ତେ ନିଦ୍ରାଗଲି ।
ତୋହର ମରନ୍ତେଣ ଦେଖି ନ ପାରିଲି ॥୨୦॥
ଏକଇ ନାରୀ କେସନେ ଅଯୋଦ୍ଧ୍ୟାକୁ ଯିବି ।
ଦୃଗମ ଅଗମ୍ୟ ପଥ କେସନେକ ଚାଲିବି ॥୨୧॥
ଯଦ୍ୟପି ଅନୁସରି ପାରଇ ଅବା ଯାଇ ।
ଲକ୍ଷ୍ମଣ କାହିଁ ଅଛି ବୋଲି ପଚାରିବେ ତୋହର ଆଇ ॥୨୨॥
କକୟା କଉଶୂଲ୍ୟା ପାଇବେ ମନେ ପ୍ରାସ ।

ସକଳ ସ୍ତିରୀମାନେ ମୋତେ କରିବେ ଉପ(ହା)ସ୍ୟ ॥୨୩॥
କିସ ବୋଲି ମୁହିଁ ତାହାଙ୍କର ଅଗ୍ରତେଣ କହିବି
ବହୁତ ସ୍ତିରୀଙ୍କର ମୁଖ କେମନ୍ତେଣ ଚହିଁବି ॥୨୪॥
ସମସ୍ତ ଶାଶୁ ଇ ମୋତେ କିସ ବୋଲିବେ ।
ତିନି ଭଗ୍ନୀ ମୋହର ଦେହ ଧରି ନ ପାରିବେ ॥୨୫॥
ମୋହର ଭଗ୍ନୀର ନାମ ଉର୍ମିଳା ।
ସେ କାମେନୀ ତ ବିଧବା ହୋଇଲା ॥୨୬॥
ଅକଳଙ୍କ ଉର୍ମିଳାର ମୁଖ ଚାହିଁବି କେସନେ ।
ଧିକାର କରିବେ ମୋତେ ସକଳ ଗୁରୁଜନେ ॥୨୭॥
ମରଣୁ ଅଧିକ ପାଇବଇ ଲାଜ
କେଣେ ଗଲୁ ବାବୁ ସୁମିତ୍ରାଙ୍କ ତନୁଜ ॥୨୮॥
ଭୁଜବଳ ପ୍ରତାପ ତୁହି ଅତୁଳାଇତ କ୍ଷତ୍ରି ।
ସମରେ ଶକତା ତୁହିଁ ଅଟୁ ବୀର ମୂର୍ତ୍ତି ॥୨୯॥
ଚଉଦ ବରଷ ତୁହି ସ୍ୱାମୀର ତୁଲେ ଥିଲୁ ।
ଭୃତ୍ୟପଣେ ସ୍ୱାମୀର ମନ ରଞ୍ଜିଲୁ ॥୩୦॥
କାମ କ୍ଷୁଧା ନିଦ୍ରା ତେଜିଲୁ ବନବାସ ।
ଦୃଭାର ଇନ୍ଦ୍ରଜିତକୁ ତୁହି ପ୍ରାଣେ କଲୁ ନାଶ ॥୩୧॥
ଲଙ୍କାର ସମରେ ତୁହି କେତେ ଦୈତ୍ୟ ନ ମାଇଲୁ ।
କାହାର ହାତରେ ଏବେ ବନେ ପ୍ରାଣ ଦେଲୁ ॥୩୨॥
ଉଠି ଡାକ ଦିଅଇ ଜନେକ ଦୁଲ୍ଲଣି ।
କେଣେ ଗଲୁ ଲକ୍ଷ୍ମଣ ବୀରବର ମଣି ॥୩୩॥
କାନ୍ଦଇ ମହାସତୀ ଦଶ ଦିଗ ଚାହିଁ ।
ମୁହିଁ ପାପିଷ୍ଠ ଜୀବନ ଅଛି କାହିଁପାଇଁ ॥୩୪॥
ଏସନେକେ ଉଠଇ ବସଇ ତରୁ ତଳେ ।
ବେନି ନୟନରୁ ଲୁହ ବହଇ ଶରୀରୁ ଝାଳ ଗଳେ ॥୩୫॥
ଚକିତ ଚକିତ ହୋଇଣ ଶଶୀମୁଖୀ ।
ଚକିତ ହୋଇ ଚଉକତି ଗଗନକୁ ଚାହାଁଇ ନିରେଖି ॥୩୬॥
ବୃକ୍ଷ ଡାଳେ ପତ୍ର ଖଣ୍ଡି ଏକ ଦେଖଇ ।
ହସ୍ତରେ ଧରି ସେ ପତ୍ରଖଣ୍ଡି ଉପଲେଖଇ ॥୩୭॥
ଲକ୍ଷ୍ମଣ ସଙ୍କେତ ପତ୍ରରେ ଲେଖନ ।
ତାହା ଦେଖି ସୀତୟା ଅସ୍ଥିର କଲା ମନ ॥୩୮॥
ଅକ୍ଷର ଦିଶଇ ମୁକ୍ତାପନ୍ତି ଜାଣି ।
ଅବଶେଷ କରି ତାହା ପଢ଼ଇ ରାମରାଣୀ ॥୩୯॥
ପତ୍ରପଢ଼ି ଲକ୍ଷ୍ମଣର ତହିଁ ମୁହାଁସ ଛାଡ଼ିଲା ।
ବୋଇଲା ଏଥେ ଆଣି ମୋତେ ନିବାସିଣ ଗଲା ॥୪୦॥
ଯାହା ଅରଜିଛି ଭୁଞ୍ଜିବି ମୁଁ ତାହା ।
ଆଦୋଷେ ଦୟା ଯେବେ ଉପେଖିଲେ ମୋହର ନାହା ॥୪୧॥
ମୁହିଁ ନିଲକ୍ଷଣୀ କିମ୍ପା ପରକୁ ଦୋଷ ଦେବି ।
ଯାହା ଅର୍ଜିଅଛି ଅବଶ୍ୟ ଭୁଞ୍ଜିବି ॥୪୨॥
ଏକ ଅବଗୁଣ ଲକ୍ଷ୍ମଣ କଲା ।
କହି କିମ୍ପା ମୋତେ ଛାଡ଼ିଣ ନ ଗଲା ॥୪୩॥
ଏତକ ହି ତାଙ୍କର ଅଛଇ ନା ଦୋଷ ।
ସ୍ୱାମୀର ଆଗ୍ୟାଂ ପୁଣ କରିବ ସେ କିସ ॥୪୪॥
ମଲା ପ୍ରାୟେ ବୁଝି ବିକଳ ହୋଉଥିଲି ।
ପତ୍ର ପଢ଼ି ସେ କପଟ ବୋଲି ଜାଣିଲି ॥୪୫॥
ମୁହିଁ ଯେବେ ସତୀ ପତିରେ ଭଗତି ।
ପରପୁରୁଷକୁ ଯେବେ ନ ବଳଇ ମୋହର ମତି ॥୪୬॥
ଗୁରୁ ଗଉରବେ ଭଗତି ମୋହର ଯେବେ ।
ଅଯୋଧ୍ୟାକୁ ଲକ୍ଷ୍ମଣ ଯାଉ ଏଥୁ ଶୁଭେ ॥୪୭॥
ଶ୍ରୀରାମଙ୍କ ଆଗେ ଏ କଥା ଯାଇ କହୁ ।
ବାଟେ ଯାନ୍ତେଣ ତାକୁ ବିଘ୍ନ ଜାତ ନୋହୁ ॥୪୮॥
ଶ୍ରୀରାମଙ୍କ ଆଗେ ବାରତା ମୋହର କହୁ ।
ଶୁଣି କରି ରଘୁନାଥ ଯେ ଅରଷ୍ଟି ଶାନ୍ତି ହୋଉ ॥୪୯॥
ଏବେ ମୁହିଁ ଏଥି କିସ କରିବି ।
ବାଟ ନ ଜାଣଇ କେହୁଣ କତି ଯିବି ॥୫୦॥
ରବିର କିରଣ ନିଉନ ତିମିରି ବ୍ୟାପିଲା ।
ସନ୍ଧ୍ୟାଭାଗ ଦିଗ ଯେ ଅନ୍ଧାର ଆଚ୍ଛାଦିଲା ॥୫୧॥

## ସୀତାଙ୍କୁ ବନ୍ୟଜନ୍ତୁଙ୍କ ସହାୟତା

ଭୟେ କରି ସେ ଠାବେ ବସିଲାକ ସତୀ ।
ବନସ୍ତର ଜୀବେ ଆସି ସନିଧେ ମିଳନ୍ତି ॥୧॥
କପି କେଶରୀ ଗଣ୍ଡା ଗଇଳ ।
କୁରଙ୍ଗ ବରିହା ଝିଙ୍କ ଶାର୍ଦ୍ଦୋଳ ॥୨॥
କୋକାଦନ ବଳିଆ ବ୍ରାଘ ମଇଁଷି ।
ସୀତାର ପାରୁଶ୍ୱେ ଉଭା ପାଇଲେକ ଆସି ॥୩॥
ଦେଖି ମହାସତୀ ମହାଭୟ କଲା ।
ମନ ଛନଛନ ହୃଦୟ କମ୍ପିଲା ॥୪॥
ନିଜ ଶିରେ ସତୀ ଦେଲା ନେଇ ହସ୍ତ ।
ଆଜ ଜୀବେ ମୋତେ ଭକ୍ଷିବାକ ଏଥ

ଆଜ ଏ ବନଜୀବେ କରିବେ ଭୋଜନ ॥୫॥
ସାହା ସଙ୍ଗ ତ ଆନ ଲୋକ ନାହିଁ ।
ଏହାଙ୍କୁ ଡରିଲେ ଯିବି ମୁହିଁ କାହିଁ ॥୬॥
ଏତେ ବୋଲି ଦେବୀ ମଥା ପୋତି ବସିଲା ।
ବନଜୀବଙ୍କର କଣ୍ଠେ ସରସ୍ୱତୀ ବସିଲା ॥୭॥
ଆଧାର ଅର୍ଥେଣ ବିକ୍ରମି ଅଇଲେ ।
ସତୀର ମୁଖ ଦେଖି ମୋହେଣ ବଶ୍ୟ ହୋଇଲେ ॥୮॥
ସନିଧ ହୋଇଣ ପଚାରନ୍ତି ବନଜୀବମାନେ
ଏକଇ ଯୁବତୀ କିମ୍ପା ଅଇଲୁ ଏ ବନେ ॥୯॥
ଏ ବନ ଘନେ ପଶି କେସନେକ ଅଇଲୁ ।
କେବଣ ଭରସା ତୋହର ଭୟେଭୀତି ନ କଲୁ ।
କି ଅବା ମହାତ୍ମାଣୀ ବାଟବଣା ହୋଇଲୁ ॥୧୦॥
ମୁଖ ଗୋଟି ଦିଶଇ ତୋର ଶରଦଚନ୍ଦ୍ର ଜ୍ୟୋତି ।
କାହାର ଦୁହିତା ତୁହି କେ ତୋହର ପତି ॥୧୧॥
କେସନେକ ସେ ପୁରୁଷ ଉପେଖିଲା ତୋତେ ।
ଦେହେ ପ୍ରାଣ ସେ ଧରିବ କେମନ୍ତେ ॥୧୨॥
ଦେବକୁମାରୀ ପ୍ରାୟେ ତୋତେ ଦେଖିଲୁ ।
ବନଦେବତୀ ରୂପ ତୋହର ପ୍ରତକ୍ଷେ ମଣିଲୁ ॥୧୩॥
କହସି ଗୋ ରୂପବନ୍ତୀ ଭୟେ ନ କର ମନ ।
ପରକୁ ହତ୍ୟା କଲେ କିସ ପ୍ରୟୋଜନ ॥୧୪॥
ସୀତୟା କହଇ ଶୁଣସି ବନବାସୀ ।
ପିତାର ନାମ ମୋହର ଜନେକ ମହରଷି ॥୧୫॥
ରଘୁବଂଶେ ଦଶରଥ ବୋଲି ଧାର୍ମିକ ନୃପତି ।
ମହାପ୍ରତାପୀ ସେ ତୈଲୋକ୍ୟେଣ ବିକ୍ଷାତି ॥୧୬॥
ତାହାର ଜେଷ୍ଟ ତନୟେ ଶ୍ରୀରାମଚନ୍ଦ୍ର ନାମ ।
ବୀରବର ଗଞ୍ଜନ କ୍ଷତ୍ରି ଅନୁପାମ ॥୧୭॥
ସୀତୟା ନାମ ମୋହର ତ୍ରୈଲୋକ୍ୟେ ବିକ୍ଷାତି ।
କ୍ଷତ୍ରିବର ସୁନ୍ଦର ଏ ଦେହର ଆଧିପତି ॥୧୮॥
ରାଜ୍ୟ କରୁଥିଲୁ ଆମ୍ଭେ ଅଯୋଧ୍ୟା ନଗରୀ ।
ଲୋକିତ କଥା ଶୁଣି ମୋତେ ଦୋଷ ଧରି ॥୧୯॥
ଦୟା ଓପ୍ରଧ ମୋତେ କିଛି ହିଁ ନ କଲେ ।
କପଟେ ମୋତେ ବନକୁ ପଠିଆଇଲେ । ॥୨୦॥
ସ୍ୱାମୀର କନେଷ୍ଟ ଲକ୍ଷ୍ମଣ ନାମେ ବୀର
ସେ ମତେ ଆଣିଲା ଗହନ ବନ ଘୋର ॥୨୧॥
ଏ ତରୁତଳେ ହୋଇଲଇ ଯେତେବେଳେ ।
ଶରୀର ଆଳସ୍ୟେ ମୋହର ନିଦ୍ରା ଲାଗିଲା ତେତେବେଳେ ॥୨୨॥
ସନିଧେ ବସାଇ ନିଦ୍ରା ମୁହିଁ ଗଲି ।
ଚେତି ଲକ୍ଷ୍ମଣକୁ ମୁହିଁ ନ ଦେଖିଲି ॥୨୩॥
ବନଜୀବେ ଖାଇଲେ ବୋଲି ଚିନ୍ତା କରୁଥିଲି ।
ପତ୍ରେକ ଡାଳେ ଲମ୍ବାଇଥିଲା ତାହା ମୁଁ ଦେଖିଲି ॥୨୪॥
ତେବେ ସେ ଲକ୍ଷ୍ମଣକୁ ଛାଡ଼ିଲି ଚିନ୍ତା ମୁହିଁ ।
ଶୁଣ ହେ ବନଜୀବେ ତୁମ୍ଭଙ୍କୁ କହିଲଇ ॥୨୫॥
ଆବର ତାହାକୁ ଚିନ୍ତା ମୋହର କିସ ।
ନ କହି ଛାଡ଼ି ମୋତେ ଗଲା ସୁମିତ୍ରାର ଶିଷ୍ୟ ॥୨୬॥
ସେ ଦୁରାତ୍ମା ନ କହି ଛାଡ଼ି ମୋତେ ଗଲା ବନ ।
ସେ ଲକ୍ଷ୍ମଣର ପଛେ ଗୋଡ଼ାଇଲେ ସରି ପାରେ କି ଦିନ
ଏବେ ରଜନୀ ହୋଇଲା ପ୍ରବେଶ
କାହିଁକି ଯିବି ମୁହିଁ ନ ଜାଣି ଦିଗ ଦେଶ ॥୨୮॥
ବିଶେଷେ ଲଜ୍ଜା କୁଳକୁ ଲାଞ୍ଛନ ।
ଧିକ ଯାଇ କିନା ମୋହର ଜୀବନ ॥୨୯॥
ଏ ଦେହ ଥିବାର ମୋହର କିସ ପ୍ରୟୋଜନ ।
ଯେ ପାର ଜୀବେ ମୋତେ କରସି ଭକ୍ଷପାନ । ॥୩୦॥
ଶୁଣିଣ ବନଜୀବେ କରନ୍ତି ମହାଭୟେ ।
ବାତେଣ କଦଳୀପତ୍ର ଯେସନ ସବୁ କମ୍ପଇ କାୟେ ॥୩୧॥
ଏକ ଆରକ କର୍ଣ୍ଣରେ କହନ୍ତି ।
ଶ୍ରୀରାମର ଭାରିଯା ଏ ସୀତୟା ମହାସତୀ ॥୩୨॥
ସତୀଙ୍କର ମଧ୍ୟେ ଯାହାର ନାମ ଆଗେ ଧରି ।
ସର୍ବ ସୁଲକ୍ଷଣୀ ଏ ଜନେକ କୁମାରୀ ॥୩୩॥
ସତୀଙ୍କର ମୁଖକମଳ ଦେଖିଲୁ ଆମ୍ଭେ ଯେବେ ।
ପଶୁ ଜନ୍ମରୁ ମୁକତ ହୋଇବା ଆମ୍ଭେ ତେବେ ॥୩୪॥
ଆମ୍ଭଙ୍କୁ ହି ପାର କରିବାର ନିମନ୍ତେ ।
କ୍ଷତ୍ରିବର ସୁନ୍ଦର ପଠିଆଇଲେ ଏଥେ ॥୩୫॥
ଏ ମହାସତୀକି ଆମ୍ଭେ ସେବା କରୁଣ ଥିବା ।
ଜନେକ ରଷିଙ୍କର ଆଶ୍ରମେ ନେଇ ଦେବା ॥୩୬॥
ଏସନେକ ବନଜୀବେ ସମସ୍ତେ ଭାଳିଲେ ।
ସତୀର ପୟରେ ଓଳଗି କରଯୋଡ଼ିଣ କହିଲେ ॥୩୭॥
କିପାଇଁ ନିରେଖ ବଚନ କହିଲ ରାମନାରୀ ।
ନିଷ୍ଠିନ୍ତେ ବିଶ୍ରାମ କର ଆମ୍ଭେ ହୋଇବୁ ପାହାରୀ ॥୩୮॥

ରାତ୍ରଦିବା ତୋହର ଗୋ ସନିଧେଣ ଥିବୁ ।
ପିଅର ଆଶ୍ରମକୁ ତୋତେ ବାଟ କଢ଼ାଇଣ ନେବୁ ॥୩୯॥
ଶୁଣିଣ ମହାସତୀ ମନୁ ଶଙ୍କା ତେଜିଲେ ।
ବସିଣ ରାମରାଣୀ ରୟଣୀ ପୁଆଇଲେ ॥୪୦॥

## ବାଲ୍ମୀକି ଆଶ୍ରମରେ ସୀତା

ଆଦିତ୍ୟ ଉଦୟେ ତହୁଁ ଗମନ କରଇ ମହାସତୀ ।
ଆଗ ପଛ ପାରୁଶ୍ୱେ ବନଜୀବେ ଥାନ୍ତି ॥୧॥
ସଧୀରେ ଚାଲଇ ଜନେକର ନନ୍ଦନୀ ।
ଜାତି ପଦ୍ମିନୀ ଦେବୀ ମରାଳ ଗମନୀ ॥୨॥
କେବଣ ଦିନେ ଚାଲଇ ଦୁଇ କୋଶ ।
ଯୋଜନେ ଗମନ୍ତେ ପାବଇ ସେହୁ ପ୍ରାସ ॥୩॥
ମହା ଖରା ଗ୍ରୀଷମ ଅତି ପ୍ରଖର ।
ବାଟ ଚାଲନ୍ତେ ରୋଧିର ଗଳଇ ପୟର ॥୪॥
ଗ୍ରୀଷ୍ମ ଋତୁ ସରିଲା ବରଷା ପ୍ରବେଶ ହୋଇଲା ।
ମେଘ ଦୁରୁଦୁରୁ ପାଣି ବରଷିଲା ॥୫॥
ଧାରା ଶ୍ରାବଣ ବୃଷ୍ଟି ମହାଜଳ ।
ବରଷା ବଞ୍ଚଇ ସତୀ ବୃକ୍ଷଙ୍କର ତଳ ॥୬॥
ଏମନ୍ତେ ଚାରି ମାସ ସତୀ ବନସ୍ତେ ବୁଲିଲା
ବାଲ୍ମୀକ ମହରଷିଙ୍କର ଆଶ୍ରମେ ମିଳିଲା ॥୭॥
ପର୍ଣ୍ଣକୋଟୀ ଦେଖି ସତୀ ହରଷ କଲା ମନ ।
ସୀତୟାକୁ ଦେଖି ଚିହ୍ନିଲେ ବାଲମୀକ ତପୋଧନ ॥୮॥
ପଣତ ପ୍ରସାରି ସତୀ ଓଳଗଇ ପୟର ଧରି ।
ଚରଣ ଧୂଳି ଆଣି ଶିରରେ ଲେପନ କରି ॥୯॥
ମଥା ଲୁହାଇଁ ଦେବୀ ଉଭା ହୋଇଲା ।
ଦେଖି ମହାସତୀର ଶୋକ ବସିଲା ॥୧୦॥
ବେନି ନୟନରୁ ଲୁହ ଗଳଇ ଢଳହଳ ।
ସଠସଠ ପଡ଼ଇ ଯେହ୍ନେ ମୁକୁତାର ଫଳ ॥୧୧॥
ଦେଖିଣ ମହାରଷି ଆସନୁ ଉଠିଲେ ।
ମଥା ଆଉଁସି କ୍ଷମେ କଲ୍ୟାଣ ବାଞ୍ଛିଲେ ॥୧୨॥
କମଣ୍ଡଳୁ ପାଣି ଆଣି ଦେଲେ ତପଶ୍ୟାଳୀ ।
ବୋଇଲେ ମୁଖ ପଖାଳ ଗୋ ଜନେକ ଦୁଲ୍ଲାଳି ॥୧୩॥
ଯେ ତୋହର କଷ୍ଟ ଆଇ ପଛେ ମୋତେ କହ ।
ତୋତେ ଦେଖି ମୋହର ବିକଳ ହୋଏ ଦେହ ॥୧୪॥
ଏବେ ପର୍ଣ୍ଣକୁଟୀରେ ବିଶ୍ରାମ କର ଗୋ ମାତ ।
ଜନକହୁ ଅଧିକ ମୁଁ ଅଟଇ ତୋହର ତାତ ॥୧୫॥
ଋଷିଙ୍କର ବଚନେ ସୀତା ଶୋକ ସମ୍ଭାଳିଲା ।
କମଣ୍ଡଳୁ ପାଣି ଆଣି ପୟର ପଖାଳିଲା ॥୧୬॥
ପୟର ଧୋଇ ଅଞ୍ଚଳେ ପୋଛଇ ମହାସତୀ ।
ପତ୍ରକୋଟୀ ଘରେ ପଶଇ ବଇକୁଣ୍ଠ ମତି ॥୧୭॥
କନ୍ଦମୂଳ ଆଣି ଦେଲେ ବ୍ରହ୍ମସୁତ ।
ଭୁଞ୍ଜିଣ ମହାସତୀ ସନ୍ତୋଷ କଲା ଚିତ୍ତ ॥୧୮॥
ବନଜୀବନ୍ତ ହକାରି କହନ୍ତି ମହାମୁନ୍ୟ ।
ତୁମ୍ଭେ ଯାଅରେ ଏବେ ଯେ ଯାହାର ସ୍ଥାନ ॥୧୯॥
ପଶୁ ଜନ୍ମରୁ ତୁମ୍ଭେ ରେ ପାରି ହୋଇଲ ।
ଶ୍ରୀରାମର ଭାରିଯାକୁ ଯେବେ ଏଥକୁ ଆଣିଲ ॥୨୦॥
ଚାରିଯୁଗେ ଇନ୍ଦ୍ର ଯେ ଆସ୍ଥାନରେ ବସିବ ।
ତହୁଁ ମାନବ କୁଳେ ଉତ୍ତମେ ଉପୁଜିବ ॥୨୧॥
ମନୁଷ୍ୟ ଜନ୍ମ ହୋଇ କରିବ ଦାନ ପୁନ୍ୟ ।
ତେବେ ସେ ବସିବ ବଇକୁଣ୍ଠ ଭୁବନ ॥୨୨॥
ବାଲମୀକଙ୍କର ବଚନ ଶୁଣି ବନଜୀବେ ଗଲେ ।
ନିଜ ବନସ୍ତେ ପ୍ରବେଶ ହୋଇଲେ ॥୨୩॥
ଏଥୁ ଅନନ୍ତରେ ବାଲମୀକ ତପଚାରୀ ।
ସୀତାକୁ ପଚାରନ୍ତି ସନିଧେ ହକାରି ॥୨୪॥
କିସ ଅର୍ଥେ ମାଗୋ ବନକୁ ଅଇଲୁ ।
ମାଗୋ ଏ ଘୋର କାନନେ ତୁ କାହାକୁ ନ ଆଣିଲୁ ॥୨୫॥
ରତ୍ନ ଅଳଙ୍କାର ତୋର ଲେଛିଲୁ ଏକଇ ବସନ ।
ଏକସରେ ଅଇଲୁ ଯେସନେ ଇତର ଜନ ॥୨୬॥
ଏସନେକ ଚରିତ୍ର କେସନେକ ଯୁଗତି ।
ଆବର ବିଶେଷେ ତୁ ଗର୍ଭିଣୀ ଯୁବତୀ ॥୨୭॥
ସୀତୟା କହନ୍ତି ଶୁଣସି ତପୋଧନ ।
କହି ନ ପାରଇ ମୋହର ଶରୀରେ ବସଇ ଶୋକମାନ ॥୨୮॥
ଭୂତ ଭବିଷ୍ୟ ତୋତେ ସକଳ କଥା ଦୃଶ ।
ତୁହି ଜାଣୁ ନା ମୋହର କେବଣ ଦୋଷ ॥୨୯॥
ଭୋ ତପୋଧନ ତୁ ପରମ ମହାଜ୍ଞାତା ।
ଏ ଭବ ସାଗର (ତରିବା)କୁ ତୁହି ସେ ବିଧାତା ॥୩୦॥
ମୋହର ଜ୍ଞାନେ ତ ଦୋଷ କଲା ନାହିଁ ।
କିମ୍ପାଇଁ ବନ ପଠିଆଇଲେ ମୋହର ସାଇଁ ॥୩୧॥

ଏଥିର କଥା ତ ଅଗୋଚର ମୋତେ ।
ଭୋ ତପଚାରୀ ମୁହିଁ ପଚାରଇ ତୋତେ ॥୩୨॥
ସୀତୟାର ବଚନ ବାଲମୀକ ଶୁଣିଲେ ।
ଯୋଗ ଲୟ କରି ଧ୍ୟାନେଣ ବସିଲେ ॥୩୩॥
ଅନନ୍ତ କୋଟି ବ୍ରହ୍ମାଣ୍ଡର ଚରିତ୍ର ଦେଖିଲା ।
ଯୁଗଶେଷ ନିମନ୍ତେ ପଦ୍ମଯୋନି ମିଳିଲା ॥୩୪॥
ସୀତୟା ଶ୍ରୀରାମର ସନିଧେ ଯେବେ ଥାଇ ।
ଦଶରଥ ସୁତ ଯହୁଁ ଲକ୍ଷ୍ମୀ ନ ତେଜଇ ॥୩୫॥
ଅମର କଳପକାୟା ରଘୁକୁଳମଣ୍ଡନ ।
କ୍ଷତ୍ରିବର ସୁନ୍ଦର ବୀରବର ପଣ ॥୩୬॥
ସୀତାର ସମୀପେ ଅଯୋଦ୍ଧ୍ୟାପୁରେ ଥିଲେ ।
ସକଳ ଲୋକେ ମୁକତ ଶ୍ରୀରାମ ମୁଖ ଦେଖିଲେ ॥୩୭॥
ତେଣେ ସେ ଦେବଗଣେ ସରସ୍ୱତୀକି ପମନ୍ତି ।
ଶ୍ରୀରାମର ହୃଦେ ବସି ଶାରଦା କଲା ବିକୃତି ॥୩୮॥
ନଗ୍ର ଲୋକେ ସମସ୍ତେ ହେ ବିପକ୍ଷ ହୋଇଲେ ।
ସୀତୟା ଦୋଚାରୀ ବୋଲି ସମସ୍ତେ ଭାଷିଲେ ॥୩୯॥
ସେ କଥା ଶ୍ରୀରାମ ସହି ନ ପାରିଲେ ।
ତେମନ୍ତେ ସେ ସୀତୟାକୁ ବନସ୍ତେ ନିବାସିଲେ ॥୪୦॥
ଧ୍ୟାନରେ ଜାଣିଲା ବାଲମୀକ ମହାମୁନ୍ୟ ।
ସୀତୟା ମୁଖ ଚାହିଁ କହନ୍ତି ତପୋଧନ ॥୪୧॥
ଶ୍ରୀରାମର ଶିରୀ ଭ୍ରଷ୍ଟ ଏବେ ହୋଇଲା ।
ତେମନ୍ତେ ସେ ତୋତେ ଏତେ କଷ୍ଟ ଦେଲା ॥୪୨॥
ଦଶ ଭାରିଯାକୁ ଯେବେ ଅଦୋଷେ ଦୋଷ ଧରଇ ।
ଲକ୍ଷ୍ମୀ ବିଜେ ନ କରଇ ଗୋ ତାହାର ପୁରକଇ ॥୪୩॥
ତୁହି ମୋହର ମାତା ଗୋ ବଇରାଗ ନୋହିବୁ ।
ମୋହର ଆଶ୍ରମେଣ ତୁହି ନିଶ୍ଚିନ୍ତେଣ ଥିବୁ ॥୪୪॥
ସୀତୟା କହଇ ଶୁଣସି ବିଶେଷ ।
ଦେହ ଅଶକତ ମୋର ଶରୀରେ ସାତମାସ ॥୪୫॥
ବସ୍ତ୍ର ନ ଆଣିଲୁ ବୋଲି ପୁଚ୍ଛିଲୁ ଯେ ମୋତେ ।
ବନକୁ ଅଇଲି ବସ୍ତ୍ର ମାଗିବି କେମନ୍ତେ ॥୪୬॥
ମୁହିଁ ରାଢ଼େଣୀ ଯେ ମୋହର ମୂଳ ଦୋଷ ।
ପ୍ରସାଦ ମାଗିଲି ମୁହିଁ ଯିବଇ ବନବାସ ॥୪୭॥
ଏହି କଥା ତାର ବିଚାରକୁ ଯୋଗାଇଲା ।
ଲକ୍ଷ୍ମଣର ତୁଲେ ମୋତେ ବନକୁ ପଠିଆଇଲା ॥୪୮॥
ଯେବଣ ଯୁବତୀ ତୀର୍ଥ ଯାତ୍ରା ଯାଇ ଲୋଡ଼ନ୍ତି ।
ପୁରୁଷ ଦୟା ଥିଲେ କି ଘରୁ ବାହାର କରି ଦେନ୍ତି ॥୪୯॥
ଅଳଙ୍କାର ବସ୍ତ୍ର ମୋର ସମସ୍ତ ଘେନିଲା ।
ଅନ୍ତଃପୁର ଭିତରୁ ବାହାର କରି ଦେଲା ॥୫୦॥
ମୁହିଁ ଯେବେ ଏକଥା କପଟ ବୋଲି ଜାଣନ୍ତି ।
ଅନ୍ତଃପୁରୁ କିମ୍ବା ବାହାର ହୁଅନ୍ତି ॥୫୧॥
ରାମର ବୋଲେ କି ମୋତେ ପାରଇ ବାହାର କରି ।
ଏତେ ଦୁଃଖ ପାଇଲି ମୁହିଁ ଆପଣେ ନ ବିଚାରି ॥୫୨॥
ଏ ତୋହର ଆଶ୍ରମେ ଯୁବତୀ ଜନ ନାହିଁ ।
ଏକସରେ ମହାତ୍ମା ତୁ ଯୋଗମାର୍ଗ ଦେହୀ ॥୫୩॥
ମୋହର ଥିଲେ ତୁ ଦୁଃଖ ପାଇବୁ ମହାମୁନ୍ୟ ।
ପିତା ଘରକୁ ମୋତେ ନିଅସି ତପୋଧନ ॥୫୪॥
ବନଜୀବମାନେ ପିତା ଘରକୁ ନେଉଥିଲେ ।
ତୋହର ଆଜ୍ଞାରେ ସେ ବାହୁଡ଼ିଣ ଗଲେ ॥୫୫॥
ଏକା ହୋଇ ଯାନ୍ତି ନ ଜାଣଇ ପଥ ।
ବାଟ କଢ଼ାଇ ମୋତେ ନିଅସି ତପୋବନ୍ତ ॥୫୬॥
ସୀତାର ବଚନ ଶୁଣି କହନ୍ତି ମହରଷି ।
କେତେହେକ ଦିବସ ଏଥି ବିଶ୍ରାମ କରସି ॥୫୭॥
ଏ ତୋହର ଅଙ୍ଗଶର୍ମଭାରା କର ଗୋ ଉସ୍ୱାସ ।
ତଦନ୍ତରେ ନେମି ଜନେକର ପାଶ ॥୫୮॥
ଶୁଣିଣ ଜାନକୀ ଯେ ସନମତ କଲା ।
ବାଲମୀକଙ୍କର ଆଶ୍ରମେ ଦଶଦିନ ବିଶ୍ରାମିଲା ॥୫୯॥
ରାତ୍ର ଦିବସେ ରାମ ନାମ ସୁମରଇ ।
ନାନାଦି ଚିନ୍ତାମାନଙ୍କରେ ନିଦ୍ରା ନ ମାଡ଼ଇ ॥୬୦॥

## ସୀତାଙ୍କ ବିଦେହ ଯାତ୍ରା

ଏମନ୍ତେ ଦଶ ଦିବସ ଗଲା ଯହୁଁ ।
ବାଲମୀକ ଋଷିଙ୍କି ବିନୋପନ୍ତି ତହୁଁ ॥୧॥
ଭୋ ତପୋଧନ ପିତାର ଭୁବନକୁ ଚାଲ ଯିବା ।
ମୋତେ ତହିଁ ନେଇ ପଛେ ତୁମ୍ଭେ ଏଥକୁ ଆସିବା ॥୨॥
ସୀତୟାର କଥା ଯହୁଁ ବାଲମୀକ ଶୁଣିଲେ ।
ଦଣ୍ଡ କମଣ୍ଡଳ ଘେନି ବାହାର ହୋଇଲେ ॥୩॥
କାତି ଖଣନ୍ତି ପାଖେ ବିଭୂତି ଆଧାରି ।
କାଠମାଳ ରୁଦ୍ରାକ୍ଷ ଗଳାରେ ଆଣି ଭରି ॥୪॥
କଟିରେ ଭୂଷଣ ବ୍ୟାଘ୍ରଚର୍ମ କାଛଟା ।

କର୍ଣ୍ଣେଣ ତମ୍ଭାର କୁଣ୍ଡଳ ଶିରେ ବୃଶାଳ ଜଟା ।।୫।।
ଆଗେ ବାଲମୀକ ପଛେ ଜନେକ କୁମାରୀ ।
ଅଗମ୍ୟ ବନେ ଯାନ୍ତି ପଛୁ ଅନୁସରି ।।୬।।
ଦୁର୍ଗମ ଅରଣ୍ୟ ବୃଶାଳ ଶାଳ ଶାଖ ।
ଚାଲନ୍ତେ ମହାସତୀ ପାଇଲା ବିମୁଖ ।।୭।।
ପ୍ରାତ ସ୍ନାହାନ ମୁନି ନିତ୍ୟକର୍ମ ସାରି ।
ଶରୀରେ ପବିତ୍ର କରଇ ଜନେକକୁମାରୀ ।।୮।।
ଏକଇ ବସ୍ତ୍ର ତୁଲେ ଅଯୋଦ୍ଧ୍ୟାରୁ ଗଲା ।
ନିତି ପଖାଳନ୍ତେ ସେ ଚିରି ହୋଇଗଲା ।।୯।।
ଏକ ବସ୍ତ୍ରନଇ (ପିନ୍ଧି) ସ୍ନାହାନ କରଇ ନିତି ।
ଅଧେକ ପିନ୍ଧଇ ଅଧେ ପଖାଳଇ ଘିଡି ।।୧୦।।
ବେଳ ପ୍ରହରକେ ନିତ୍ୟକର୍ମ ସାରଇ ଯେବେ ।
ଜପ ସାରି ଋଷି ଆଗ ହୁଅନ୍ତି ତେବେ ।।୧୧।।
ପଛେଣ ଗୋଡ଼ାଇ ଚାଲଇ ସୀତୟା ।
ଗର୍ଭ ଭାରାରେ ତାହାର ବିକଳ ହୋଏ କାୟା ।।୧୨।।
କିଛୁ ବେଳ ଥାଉ ବିଶ୍ରାମ କରନ୍ତି ।
ଫଳ ଆହାରେ ଆତ୍ମାକୁ ତୋଷନ୍ତି ।।୧୩।।
ଶରଦ ସରିଲା ହୋଇଲା ହେମ ମାସ ।
ବାଟ ଚାଲିଲେନି ଅଶିଏ ଦିବସ ।।୧୪।।
ସତଷଠି ଯୋଜନ ତହିଁକି ବହିଦେହୀପୁରୀ ।
ତହିଁ ତପ କରଇ ଜନେକ ତପଚାରୀ ।।୧୫।।
ସିଂହାମଣ୍ଡପ ଅଛଇ ଏକ କୋଶ ।
ବୃଶାଳ ଶାଳଶାଖା ଲାଗନ୍ତି ଆକାଶ ।।୧୬।।
ସେ ତରୁ ତଳେ ସତୀ ବସିଲାକ ଫୁଟି ।
ବାଲମୀକ ମହରଷି ଚାହିଁଲେ ଲେଉଟି ।।୧୭।।

## ଲବକୁଶ ଜନ୍ମ

ସୀତୟା ବସିବାର ଯହୁଁ ମୁନି ଦେଖିଲା ।
ସନିଧେ ମହରଷି ଯାଇଣ ହୋଇଲା ।।୧।।
ଦଣ୍ଡ କମଣ୍ଡଳ ଥୋଇ ବସିଲେ ମହାଯତି ।
ମୟୂରପକ୍ଷୀ ବିଞ୍ଚଣା କରେ ଧରିଣ ବିଞ୍ଚନ୍ତି ।।୨।।
ଯାହା ସେ ବିଧାତା କରି(ଛି) ତ ନିର୍ମିତ ।
ଜନେକ ଦୋହିତା ପେଟ ବଥାଇଲା ତୁରିତ ।।୩।।
ବଇକୁଲ୍ୟେ କହଇ ସୀତୟା ମହାସତୀ ।
ମୋତେ ପ୍ରତିକାର କହସି ମହାଯତି ।।୪।।
ପେଟ ବଥାଇ ମୋହର କରିବଇ କିସ ।
କ୍ଷଣେ କ୍ଷଣେ ଅନ୍ଧାର ମୋତେ ହୋଉଛି ଦଶଦିଶ ।।୫।।
ବାଲମୀକ କହନ୍ତି ଶୁଣ ଗୋ ମୋହର ମାଏ ।
ପିତାର ରାଜ୍ୟ ଆସି ସନିଧେ ଆସି ହୋଏ ।।୬।।
ସଧୀର ହୋଇ ଚାଲ ଏଥୁ ଯିବା ।
ଏହିକ୍ଷଣି ତୋହର ପିତା ପୁରେ ହୋଇବା ।।୭।।
ଶୁଣିଣ ସୀତୟା ଉଠିଲେ ତଡ଼ତି ।
ମୁହଁ ବୁଲାଇ ଚାଲି ନ ପାରି ବସିଲା ମହାସତୀ ।।୮।।
ମୂର୍ଛାଗତ ହୋଇ ସତୀ ଅଚେତନ ହୋଇଲା ।
ଜ୍ଞାନ ହାରି ମହାସତୀ ଧରଣୀ ଉପରେ ଲୋଟିଲା ।।୯।।
ମୁଖେ ପାଣି ସିଞ୍ଚିଲେ ବାଲମୀକ ତପୋଧନ ।
କ୍ଷଣକେ ଜାନକୀ ପାଇଲା ଚେତନ ।।୧୦।।
ବସି ନ ପାରଇ ସତୀ ଉଚେଶ ରାବ ଦେଇ ।
ରାମ ରାମ ସୁମରି କାନ୍ଦଇ ବଇଦେହୀ ।।୧୧।।
କିମ୍ପାଇ ଭୋ ନାଥ ମୋତେ ଏତେକ ଦୁଃଖ ଦେଲୁ ।
ଲୋକଙ୍କର କଥା ଶୁଣି ଶରୀରେ କୋପ କଲୁ ।।୧୨।।
ତୁହି ଯେ ପୁରୁଷ ଧାର୍ମିକ ମହତ ଜନ ।
ବନକୁ ପଠିଆଇଲ କେବଣ କାରଣ ।।୧୩।।
ଏକଇ ସତୀ ମୋତେ ଶାଶୁଇ ଅଛନ୍ତି ।
ତାହାଙ୍କର ଥାନ୍ତେ ମୁହିଁ ପାଇଲି ଏଡ଼େ ଶାସ୍ତି ।।୧୪।।
ଏ ମୋହର ଦୁଃଖ କେହି ନ ଦେଖିଲେ ନୟନେ ।
ତୋହର ବଲ୍ଲଭୀ ହୋଇ ବୁଲଇ ମୁହିଁ ବନେ ।।୧୫।।
କ୍ଷଣେ କାନ୍ଦଇ କ୍ଷଣେ ମୂର୍ଚ୍ଛା ଯାଇ ସତୀ ।
ସୀତାକୁ କହନ୍ତି ବାଲମୀକ ମହାଯତି ।।୧୬।।
ଶୁଣ ଗୋ ମହାସତୀ ମୋହର ବୟାଣ ।
ରୋଦନ କରିବାର ଏବେ ନୁହଇ କାରଣ ।।୧୭।।
ଦୁଃଖ ପାଇଲେ ସେ ଧଇର୍ଯ୍ୟ ହୋଇ ଯେବେ ।
ଆପାଦ ବଥା ପାର ହୋଇବଇ ତେବେ ।।୧୮।।
ତୋହର କାନ୍ଦିଲେ କେ ଘେନିମ ଏଥି ପ୍ରାସ ।
ମହତେ ଦୁଃଖ ସହି ପାରନ୍ତି ବିଧାତାର ବଶ୍ୟ ।।୧୯।।
ନ ରୋଦ ନ ରୋଦ ଗୋ ଜନେକ ଦୋହିତ ।
ଏହିକ୍ଷଣି ପୁତ୍ର ତୋହର ହୋଇବାକ ଜାତ ।।୨୦।।
ଜିଘ୍ନସେନୀ କହଇ ଶୁଣ ତପସାଇଁ ।
ପ୍ରସବର ଧର୍ମ କଥା ନ ଜାଣଇ ମୁହିଁ ।।୨୧।।

ସ୍ତିରୀ ଜଣେକ ତ ନାହିଁ ମୋହର ସଙ୍ଗ ।
ଭୋ ତପିଷ୍ଟ କେ ଧରିବ ମୋହର ଅଙ୍ଗ ॥୨୨॥
ସୀତାର ବଚନ ଶୁଣି କହନ୍ତି ତପଚାରୀ ।
ପ୍ରସବ ହୁଅସି ସିଆଡ଼ି ଲତା ଧରି ॥୨୩॥
ଶୁଣିଣ ଜାନେକୀ ଯେ ବିକଳିତ ଚିତ୍ତେ ।
ସିଆଡ଼ି ଲତା ଧଇଲେ ବେନି କରପତ୍ରେ ॥୨୪॥
ମାର୍ଗଶିର ଶୁକ୍ଳପକ୍ଷ ପଞ୍ଚମୀର ଦିନ ।
ରୋହିଣୀ ନକ୍ଷତ୍ର ଗୁରୁବାର ବିଦ୍ୟାମାନ ॥୨୫॥
ଆଦିତ୍ୟ ଅର୍ଦ୍ଧ ନବ ଘଡ଼ି ଉଦିତ ।
ମାହେନ୍ଦ୍ର ଲଗ୍ନେ କୁମର ହୋଇଲାକ ଜାତ ॥୨୬॥
ବାଳ ସୂର୍ଯ୍ୟ ପ୍ରାୟେକ ଦିଶଇ ଦିବ୍ୟ ଜ୍ୟୋତି ।
ଦେଖି ହରଷ ସୀତୟା ମହାସତୀ ॥୨୭॥
ଅବନୀରେ ପଡ଼ି ତନୟ ରୋଦନ କଲା ।
ପୁଣି ହି ଜିଘ୍ନସେନୀର ପେଟ ବଥାଇଲା ॥୨୮॥
ଆତ୍ମା ଅସ୍ଥିର ହୋଇଲେ ଜନେକ କୁମାରୀ ।
ବାଲମୀକ ମହରଷିଙ୍କି ସେନେହେ ପଚାରି ॥୨୯॥
ଭୋ ମହରଷି ଶୁଣ ମୋହର ବଚନ ।
ପୁତ୍ରେକ ଉପୁଜିଲା ବାଳଅର୍କ ଯେସନ ॥୩୦॥
କିସ ଅର୍ଥେଣ ବଥାଇ ପୁଣି ପେଟ ।
ଏଥକୁ ଉପାୟ କରସି ତପନିଷ୍ଟ ॥୩୧॥
ତୋହର ପ୍ରସାଦେ ଅବା ପାଇବି ଜୀବନ ।
ନଉଚେତେ ପ୍ରାଣ ହୋଇବ ବିସର୍ଜନ ॥୩୨॥
ସୀତାର ବିକଳ କଥା ଯହୁଁ ମୁନି ଶୁଣିଲେ ।
କୁଶବଟୁ ମନ୍ତ୍ରିଣ ହାତରେ ନେଇ ଦେଲେ ॥୩୩॥
ଏ କୁଶବଟୁ ତୋହର ପେଟରେ ବୁଲାବସି ।
ଏହିକ୍ଷଣି ଶରୀରବ୍ୟଥା ଉସ୍ୱାସ ହୋଇବ ଶୁଭ୍ରକେଶୀ ॥୩୪॥
ଋଷିଙ୍କର କଥା ସୀତା ଶୁଣିଲାକ ଯହୁଁ ।
କୁଶବଟୁ ପେଟରେ ଘଷିଲାକ ତହୁଁ ॥୩୫॥
ତପେଣ କୁଶଳ ବିତକ୍ଷଣ ମହାଯତି ।
ବ୍ରହ୍ମାର ଦେହୁ ଯେ ହୋଇଲା ଉତପତି ॥୩୬॥
ରାମାୟେଣ ଗ୍ରନ୍ଥ ଯେହୁ ମୁନି ଉକତ କଲା ।
ସାମବେଦ ମହାମନ୍ତ ଶ୍ଳୋକ ବଞ୍ଚାଇଲା ॥୩୭॥
କୁଶବଟୁ ତାର ଓଦରେ ଲଗାବନ୍ତେ ।
ପୁଣି ହି ପୁତ୍ରେକ ଜନ୍ମ ହୋଇଲା ତ୍ୱରିତେ ॥୩୮॥
ଦୁତୀ ଇନ୍ଦ୍ର ଜାଣି ତାର ତେଜ ଦିଶଇ ।
ଶତେ ଚନ୍ଦ୍ରକାନ୍ତି ବଦନ ବିକାଶଇ ॥୩୯॥
ଦେଖି ସୀତୟା ଆନନ୍ଦ ହୋଏ ମନ ।
ଦୁଇ କୁମାରେ କରନ୍ତି ରୋଦନ ॥୪୦॥
ସନିଧେଣ ଯାଇ ମହରଷି ମିଳିଲେ ।
କୁମରନ୍ତ ଦେଖି ମୁନି ହରଷ ହୋଇଲେ ॥୪୧॥
ରୂପେଣ କୁମାରେ ହରିହର ମୂରତି ।
ରଘୁବଂଶ ମଣ୍ଡନ ଏ ଅଯୋଧ୍ୟାରେ ହୋଇବେ ଆଧିପତି ॥୪୨॥
ବନସ୍ତେ ଆସି ଆଈ ଦୁଃଖ ଯେ ପାଇଲୁ ।
ପୁଣ ଶ୍ରୀରାମ କୁଳ ଉଦ୍ଧାରଣ କଲୁ ॥୪୩॥
ଲାହି କାଟିଣ ପୁତ୍ରନ୍ତ କୋଳେ ଧର ।
କୁମରଙ୍କ ମୁଖେ ଦିଅସି ଏବେ କ୍ଷୀର ॥୪୪॥
ସୀତୟା କହଇ ମୁନିଙ୍କର ମୁଖ ଚାହିଁ ।
କିସ ଦେବଇ ମୋର ସ୍ତନରେ କ୍ଷୀର ନାହିଁ ॥୪୫॥
ତୁହି ସେ ମୋହର ମାତା ହୋଇଲୁନି ଯେବେ ।
ତୋତେ କହି ଲାଜ କଲେ ପାର ହୋଇବି କି ଏବେ ॥୪୬॥
ଶୁଣି ମହରଷି କମଣ୍ଡଳୁ ନୀର ଘେନିଲେ ।
କୁଶେଣ ମନ୍ତ୍ରି ସୀତୟାର ଶରୀରେ ସିଞ୍ଚିଲେ ॥୪୭॥
ଅମୃତ ପୂରିତ ସୀତୟାର ବେନି ସ୍ତନ ।
କୋଳେ ଧଇଲା ସତୀ ବେନି ନନ୍ଦନ ॥୪୮॥
କୁମାରଙ୍କ ମୁଖେ ଖୀରପାନ ଦେଇ ।
ରୂପ ବିଚାରଇ ସତୀ ପୁତ୍ରଙ୍କୁ ଚାହିଁ ॥୪୯॥
କ୍ଷୀରପାନେ କୁମରେ ରୋଦନ ଛାଡ଼ିଲେ ।
ବାଲମୀକ ମହରଷି ସୀତାକୁ କହିଲେ ॥୫୦॥
ପୁତ୍ର ଦୁଇଗୋଟିଙ୍କର ଏବେ କାଟସି ଗୋ ନାହି ।
ବେଣୁ ପାତି ଏକ ସୀତୟା କରେ ଦେଇ ॥୫୧॥
ବେଣୁ ପାତି ଘେନି ସୀତୟା ନାହି କାଟିଲା ।
କମଣ୍ଡଳୁ ମହରଷି ପାଣି ଆଣି ଦେଲା ॥୫୨॥
ଅନେକ ତୀର୍ଥର ଜଳ ସେ କମଣ୍ଡଳେ ଥାଇ ।
ସେ ନୀରେ କୁମାରଙ୍କର ଦେହ ପଖାଳଇ ॥୫୩॥
ସୀତୟା କହଇ ମୁନିଙ୍କର ମୁଖ ଚାହିଁ ।
କାହିଁ ପୁତ୍ରନ୍ତ ଶୁଆଇବି ମୋହର ବସ୍ତ୍ର ନାହିଁ ॥୫୪॥
ମହରଷି କହନ୍ତି ମୋହର ବାଘ୍ରଚର୍ମ କାଛଟା ।
ମୃଗଚର୍ମେ ଶୟନ ନ କରନ୍ତୁ ସେହି ନିତି ଅପାଳଟା ॥୫୫॥

ଏସନେକ କହି ତହୁଁ ମୁନି ଗଲେ ।
କୋମଳ ଶାଳପତ୍ର ଆଣି ସୀତୟାର ସନିଧେଣ ଦେଲେ ॥୫୬॥
ଏଥିରେ ପୁତ୍ରନ୍ତ ଶୁଆବସି ଆଇ ।
ବିହିର ବଶେ ଗୋ ଦୁଃଖସୁଖ ପାଇ ॥୫୭॥
ଜନେକର ପୁରକୁ ଯାଇଥାନ୍ତୁ ଯେବେ ।
ତୁହି କିମ୍ପା ଏତେ କଷ୍ଟ ପାଇଥାନ୍ତୁ ଏବେ ॥୫୮॥
କର୍ମର ନିର୍ବାଣ କେ କରିବାକ ଆନ ।
ଏଥକୁ ମହାସତୀ ନ କର ଅଭିମାନ ॥୫୯॥
ମୁନିଙ୍କର ବଚନେ ସତୀ ପଣନ୍ତ ଓଛାଇଲା ।
କୁମ୍ଭରଙ୍କର ଉପରେ ହସ୍ତ ଦେଇ ପେଟମାଡ଼ି ସୁତିଲା ॥୬୦॥
ବୃକ୍ଷର ପଶ୍ଚିମଭାଗେ ସୁତିଲାକ ସତୀ ।
ତରୁର ପୂର୍ବ ପ୍ରଦେଶେ ବାଲମୀକ ମହାଯତି ॥୬୧॥
ସାକ୍ଷାର ବଲ୍ଲଭ ହୋଇଲେ ଆତରା ।
ପିଠିରେ ଦିମିଦିମି ଲାଗୁଅଛି ଖରା ॥୬୨॥

## ପିତ୍ରାଳୟରେ ସୀତା

ଶୁଣିଲୁ କି ଦ୍ରୌପଦୀ ଗୋ ସୀତାର ଦୁଃଖଭାର ।
ଏସନେକେ ଦୁଇପୁତ୍ରେ ହୋଇଲେ ଅବତାର ॥୧॥
ଶୁଣିଣ ବିକଳ ପାଣ୍ଡବଙ୍କ ରାଣୀ ।
ନୟନୁ ଲୁହ ଗଡ଼ି ପଡ଼ଇ ଧରଣୀ ॥୨॥
କର ପତ୍ର ଯୋଡ଼ି ପଚାରଇ ପଞ୍ଚାଳୀ ।
ଅତି କଷ୍ଟ ପାଇଲା ମୁନି ହେ ଜନେକର ଦୁଲାଳି ॥୩॥
ପିତାର ଆଶ୍ରମକୁ ଗଲାକ କେସନେ ।
କିସ କଲେ ତହିଁ ଯେ ବାଲମୀକ ତପୋଧନେ ॥୪॥
ଏଥିର କଥା ମୋତେ ଶୁଣାଇବା ମହାଯତି ।
ତେବେ ସେ ତେଜଇ ମୁହିଁ ଉଦବେଗ ମତି ॥୫॥
କହନ୍ତି ମାରକଣ୍ଡେ ଶୁଣସି ଜିଘ୍ନସେନୀ ।
ମନବାଞ୍ଛା ପୂରାଅ ତୋହର ଦ୍ରୌପଦ ନନ୍ଦନୀ ॥୬॥
ପାଞ୍ଚ ପାର୍ଥିଏ ତଇୟ କରି ଶୁଣ ।
ଦୁସହ ଶତ୍ରୁ ତୁମ୍ଭର ସମରେଣ ଜିଣ ॥୭॥
ସୀତୟା ପୁତ୍ରନ୍ତ ଜାତ କରି ସୁତିଲାକ ଯେବେ ।
ବାଲମୀକ ମହରଷି ବସି ବିଚାରନ୍ତି ତେବେ ॥୮॥
ଜନକ ନଗ୍ରକୁ କେସନେ ଏହାକୁ ନେବି ।
ଦୁଇ ପୁତ୍ରନ୍ତ କେମନ୍ତେ କୋଳରେ ଧରିବି ॥୯॥
ଆରେକ ଜଣେକ ନାହିଁ ମୋହର ସଙ୍ଗଇ ।
ଜନେକ ମହରଷି କହି ପଠିଆଇବି କି କହି ॥୧୦॥
ଏସନେକ ଭାଳନ୍ତେ ବଇଦେହୀନବର ଶବର ।
କନ୍ଦମୂଳ ଅର୍ଥେଣ ଆସଇ ବନ ଘୋର ॥୧୧॥
ଯେବେଣ ଠାବରେ ଅଛଇ ତପଶାଳୀ ।
ଶବର ଯାଇ ମୁନିଙ୍କର ସନିଧରେ ମିଳି ॥୧୨॥
ତାହାକୁ ଦେଖି ହକାରନ୍ତି ମୁନିବର ।
କତିକି ଆସି ଶବର ଶିରେ ଦେଲା କର ॥୧୩॥
ବାଲମୀକେ କହନ୍ତି ବାସ କାହିଁ ତୋର ।
କିରାତ କହଇ ଶୁଣ ହୋ ମୁନିବର ॥୧୪॥
ବଇଦେହୀମଣ୍ଡୋଳେ ମୋହର ନିଜ ସ୍ଥିତି ।
ଜନେକ ରାଜରଷି ତହିଁର ଆଧିପତି ॥୧୫॥
ସୁରେଖା ନାମ ମୋହର ବିଦ୍ୟମାନ ।
କନ୍ଦମୂଳ ନେଇତ ନିତି ଆସଇ ଏ ବନ ॥୧୬॥
ଫଳମୂଳ ନେଇ ଦିଅଇ ଋଷିଙ୍କର ପାଶ ।
ତାହା ସେ ଜନେକ ଋଷି କରନ୍ତି ଗ୍ରାସ ॥୧୭॥
ଶୁଣିଣ ବାଲମୀକେ ଶବରକୁ ପ୍ରକାଶି ।
ତୁହି ରେ ସୁରେଖା ବାହୁଡ଼ି ବେଗ ଯାସି ॥୧୮॥
ମୋହର କଥା କହିବୁ ଜନେକ ଆଗର ।
ବାଲମୀକ ମହରଷି ବସିଅଛନ୍ତି ବନସ୍ତ ଭିତର ॥୧୯॥
ତୁମ୍ଭର ତହିଁକି ଆସୁଣ ଥିଲେ ।
ଚାଲି ନ ପାରି ଫୁଟିଣ ବସିଲେ ॥୨୦॥
ଏସନେକ କଥା ଜନେକର ଆଗେ କହ ।
ଶୀଘ୍ରେଣ ଚଳିଯାଅ ଏଥି କ୍ଷଣେହେ ନ ରହ ॥୨୧॥
ଏ ଯେ ଶୋଇଅଛି ତାହାର ଦୋହିତା ।
ଜନେକର ଆଗେ (ନ) କହିବୁ ଏହାର କଥା ॥୨୨॥
ରାଜରଷି ସେ ଭୋଗ୍ୟ ବିଳାସ କରଇ ।
ସନିଧେଣ ଖଟଇ ତାହାର ଅନେକ ମୁନିବରଇ ॥୨୩॥
ସୀତାର କଥା ସେ ଶୁଣଇ ଯେବେ ।
ବଇରାଗ ହୋଇ ଦୁଃଖ ପାଇବ ସେ ତେବେ ॥୨୪॥
ମୁହିଁ ଜନେକକୁ ବୁଝାଇ କହିବି ।
ସୀତାର ପୁତ୍ରକୁ ଘେନିଣ ତାହାର ପୁରକୁ ଯିବି ॥୨୫॥
ଶୁଣିଣ ଶବର ଖରେଣ ଚଳିଲା ।
ଜନେକ ଋଷିଙ୍କର ଛାମୁରେ ଘଡ଼ିକେ ମିଳିଲା ॥୨୬॥
ଓଳଗଇ ଶବର ଶିରେଣ ଭୁଜ ଦେଇ ।

ଶରୀରୁ ଶ୍ରମ ଝାଳ ତୁରିତେ ଚଳଇ ॥୨୭॥
ଜନେକ ମହରଷି ପଚାରନ୍ତି ଶବରକୁ ଚାହିଁ ।
କି ରେ ସୁରେଖା ଥିଲୁ ତୁହି କାହିଁ ॥୨୮॥
ଖରତର ନିଶ୍ୱାସ ତୋହର ବହଇ ଘନଘନ ।
ଚିତ୍ତ ଅଥିର ତୋହର ବିସ୍ମୟେ ବଦନ ॥୨୯॥
କନ୍ଦମୂଳ ଫଳ କିଛି ହି ନ ଆଣିଲୁ ।
କାହାର ସଙ୍ଗରେ କିସ ବିଚାର ହୋ କଲୁ ॥୩୦॥
କିରାତ କହଇ ଶୁଣ ହୋ ମହାମୁନି ।
ବନସ୍ତେ ଦେଖିଲି ମୁହିଁ ବାଲମୀକ ତପୋଧନି ॥୩୧॥
ଶାଳ ବୃକ୍ଷର ତଳେ ଅଛନ୍ତି ସେ ବସି ।
ଶ୍ରାନ୍ତେ ବିଶ୍ରାମିଲେ ଏଥକୁ ନ ପାରିଲେ ଆସି ॥୩୨॥
ମୋତେ ପଠିଆଇଲେ କହ ଜନେକ ଆଗ ।
ଯାବତ କର୍ମଛାଡ଼ି ଏଥକୁ ଆସୁ ବେଗ ॥୩୩॥
କନ୍ଦମୂଳ ଆଣିତ ଯାଉ ମୁହିଁ ଥିଲି ।
ତାହାଙ୍କର ଆଜ୍ଞାରେ ବାହୁଡ଼ି ଅଇଲି ॥୩୪॥
ତେଣେ ସେ ନିଶ୍ୱାସ ମୋହର ବହଇ ଘନଘନ ।
ଆସ ଆସ ମହାମୁନି ଚାଲ ଯିବା ବହନ ॥୩୫॥
ଶୁଣିଣ ହରଷ ହୋଇଲେ ଜନେକ ମହରଷି ।
ସନିଧେ ହକାରିଲେ ଚଉଦ ଗୋଟି ଶିଷି ॥୩୬॥
ସୋମକେଶୀ ରବିଦାସୀ ପରିସିମୁନି ।
ସୁର ବିନୟୀ ଶୁଭାଙ୍ଗ ମହରଷି ସୋମ ତପୋଧନି ॥୩୭॥
ଚନ୍ଦ୍ର କରସି ହି ମଙ୍ଗଳ ତପୋସୀ ।
ସୁପ୍ରୀତି ମୁନି ସୁରର୍ଥ ମହରଷି ॥୩୮॥
ଦୀନଜୟେ (ମହରଷି) ଧନଜୟେ ।
ଅଖିଳ ମୁନି ଆବର ତପୋଧନିଏ ॥୩୯॥
ଏ ଚଉଦ ମୁନି ଖଟନ୍ତି ରାଜ ଋଷି ।
ସମସ୍ତ ମୁନିବୃନ୍ଦ ମନ୍ତ ଅଭ୍ୟାସି ॥୪୦॥
ତପସ୍ୱୀଙ୍କର ମଧ୍ୟେ ସେ ପବିତ୍ର ରାଜନ ।
ଲକ୍ଷେକ ମହରିଷି ଯେ ଅଛଇ ସନିଧାନ ॥୪୧॥
ସୁରେଖାକୁ କହନ୍ତି ସେ ଜନେକ ମହରଷି ।
ବାଟ କଢ଼ାଇ ତୁହି ଆଗ ହୋଇଣ ଚାଲସି ॥୪୨॥
ଜନେକ ଆଜ୍ଞାରେ ଶବର ପଥ କଢ଼ାଇ ଆଗେ ।
ସମସ୍ତ ମହରଷି ଚାଲନ୍ତି ତାହାର ଲାଗେ ॥୪୩॥
ଯହି ବସିଛନ୍ତି ବାଲମୀକ ତପୋଧନି ।
ପୁତ୍ରକୁ ଆବୋରି ଶୋଇଅଛି ଜିଘ୍ନସେନୀ ॥୪୪॥
ଶବର ପଠିଆଇ ବାଲମୀକ ତପୋଧନି ।
ଆପଣାର ହୃଦରେ ବିଚାରଇ ମହାମୁନି ॥୪୫॥
ଏ ଅବସ୍ଥା ଯେବେ ସୀତୟାର ଜନେକ ଦେଖିବ ।
ତତକ୍ଷଣେ ସେହୁ ପ୍ରାଣ ଉପେକ୍ଷିବ ॥୪୬॥
ପର୍ଣ୍ଣଡ଼ାଳ ଆଣି କରନ୍ତି ପତ୍ରଘର ଉପାୟେ ।
ତହିଁର ଭିତରେ ସୀତା ପୁତ୍ରନ୍ତ ଘେନି ନିଦ୍ରା ଯାଏ ॥୪୭॥
ଶବର ବାଟ ଯେ କଢ଼ାଇଣ ନେଲା ।
ବୃକ୍ଷର ତଳେ ନେଇ ତପୋଧନନ୍ତ କଲା ॥୪୮॥
ବାଲମୀକ ମହରଷିକି ଜନେକ ଦେଖିଲେକ ଯହୁଁ ।
ଶିରେ କର ଦେଇ କ୍ଷିତିରେ ଲୋଟିଲେକ ତହୁଁ ॥୪୯॥
କରେଣ ପୋଛଇ ମୁନିଙ୍କର ପୟର ।
ଚରଣ ଧୂଳି ଆଣି ଲଗାଇଲେ ଶିର ॥୫୦॥
ଯେତେକ ତପଚାରୀ ସନିଧରେ ଥିଲେ ।
ବାଲମୀକ ପୟରେ ସମସ୍ତେ ଗଡ଼ଘାଲି ସ୍ତୁତିଲେ ॥୫୧॥
ଜନେକର ହାତ ଧରି ତୋଳିଲେ ବିଧାତାର ସୁତ ।
ଉଠିଣ ରାଜରଷି ଯୋଡ଼ଇ ଦୁଇ ହସ୍ତ ॥୫୨॥
କଲ୍ୟାଣ କରନ୍ତି ବାଲମୀକ ତପୋଧନ ।
ଯେ ତୋହର ମନବାଞ୍ଛା ହୋଉ ସମ୍ପୂର୍ଣ୍ଣ ॥୫୩॥
ଜନେକ ମହରଷି କହନ୍ତି ଶୁଣ ବ୍ରହ୍ମରଷି ।
ଯେତେ ମୋହର ଦୁଷ୍କୃତ ଥିଲା ହୋଇଲା ବିନାଶି ॥୫୪॥
ବ୍ରହ୍ମାର ତନୟେ ତୁହି ଭୂତ ଭବିଷ୍ୟ ଜ୍ଞାତା ।
ଯୋଗବଳେ ଦିଶଇ ତୋତେ ଅନନ୍ତ ଭୁବନ (ବାରତା) ॥୫୫॥
ସଂସାର ଚରିତ୍ର ଜାଣୁ ତୁହି ଭଲେ ।
ଦୁଷ୍କୃତ ପାର ଗଲା ତୋହର ମୁଖ ଦେଖିଲେ ॥୫୬॥
ଆସ ଆସ ମହାତ୍ମା ଯିବା ମୋହର ପୁର ।
ଜନେକ ମୁଖ ଚାହିଁ କହନ୍ତି ବ୍ରହ୍ମାଙ୍କ କୁମର ॥୫୭॥
ଯହିଁର ଅର୍ଥେ ଅଇଲି ତୋହର ପୁର ।
କହିଲେ ଶୋକ ତୁହି କରିବୁ ମୁନିବର ॥୫୮॥
ଜନେକ ପଚାରନ୍ତି କହସି କିସ କଥା ।
ତୋହର ପ୍ରସାଦେ କିମ୍ପା ପାଇବଇ ବ୍ୟଥା ॥୫୯॥
ବାଲମୀକେ କହନ୍ତି ଶୁଣସି ତପଶ୍ୟାଳୀ ।
ଜ୍ୟେଷ୍ଠ ଦୋହିତା ତୋହର ସୀତୟା ନାମେ ବାଳୀ ॥୬୦॥
ତାହାକୁ ଶ୍ରୀରାମ ବନେଣ ନିବାସିଲା ।

ଅରଣ୍ୟରେ ଆଣି ଲକ୍ଷ୍ମଣ ଛାଡ଼ିଗଲା ॥୬୧॥
ତୋହର ଆଶ୍ରମକୁ ଆସୁଥିଲା ସତୀ ।
ବନସ୍ତଙ୍କ ଜୀବେ ସେ ଥିଲେ ତାହାଙ୍କ କତି ॥୬୨॥
ମୋହର ଆଶ୍ରମେ ହୋଇଲାକ ଯହୁଁ ।
ବନସ୍ତର ଜୀବନ୍ତ ମୁହିଁ ପଠିଆଇଲି ତହୁଁ ॥୬୩॥
ଗର୍ଭବାସ ଯେ ହୋଇଥିଲା ତୋହର ନନ୍ଦନୀ ।
ତୋହର ଆଶ୍ରମକୁ ଆସୁଥିଲି ଘେନି ॥୬୪॥
ଏ ତରୁତଳେ ପ୍ରବେଶ ହୋଇଲୁ ଆଜ ।
ଜନ୍ମ ହୋଇଲେ ସୀତାର ଦୁଇ ତନୁଜ ॥୬୫॥
ଶୁଣିଣ ଜନେକର ଚିତ୍ତ ଛନଛନ ।
ଅନ୍ତରାଳ ନୟନ କଣ୍ଠାଗ୍ରତ ପ୍ରାଣ ॥୬୬॥
ଜନେକ ହାତ ଧରି ସୀତାର ସନିଧିକୁ ନେଲେ ।
ପର୍ଣ୍ଣକୁଟୀ ଭିତରେ ନେଇଣ ଦେଖାଇଲେ ॥୬୭॥
ପୁତ୍ରକୁ ପତ୍ର ପାଡ଼ି ଶୁଆଇଣ ଅଛି ।
ଦେଖିଣ ଜନେକ ମୁନିକି ନ ପୁରଇ କିଛି ॥୬୮॥
ଧାତିକାରେ ଶରୀର ରସା(ରେ)ଣ ଲାଗିଲା ।
ଶରୀର ଜ୍ଞାନ ନାହିଁ ନିଚେଷ୍ଟ ହୋଇଲା ॥୬୯॥
ଦେଖିଣ ଚକିତ ହୋଇଲେ ବାଲମୀକ ମହାଯତି ।
ବୋଇଲେ ବିପରୀତ ହୋଇଲା ତ ଏଥି ॥୭୦॥
ମୁଖେ ପାଣି ସିଞ୍ଚିଲେ ବାଲମୀକ ଋଷି ।
ଉଚ୍ଚେ ରୋଦନ କଲେ ଚତୁର୍ଦଶ ଶିଷି ।
ମୁଖରାବ ଶବଦ (କି) ଜାଣି ସିନ୍ଧୁ ଘୋଷି ॥୭୧॥
ଯେତେକ ତପଚାରୀ ସନିଧେଣ ଥିଲେ ।
ଜନେକ ନିଚେଷ୍ଟ ହୁଅନ୍ତେ ସର୍ବେହେ ରୋଦନ କଲେ ॥୭୨॥
ମୁଖେ ପାଣି ସିଞ୍ଚିଲେ ବାଲମୀକ ମହାମୁନ୍ୟ ।
କ୍ଷଣକେ ଜନେକ ଋଷି ପାଇଲେ ଚେତନ ॥୭୩॥
ନୟନ ଦିଶଇ ରକତ କୁମୋଦ ଜାଣି ।
ଲୁହ ଗଡ଼ି ଘନଘନ ପଡ଼ଇ ଧରଣୀ ॥୭୪॥
ପୁତ୍ରନ୍ତ ଘେନି ସୀତା ନିଦ୍ରାରେ ଶୋଇଥିଲା ।
ଉଚ୍ଚେଣ ରୋଦନ ଶୁଣି ଉଠିଣ ବସିଲା ॥୭୫॥
ପିତାର ମୁଖ ଚାହିଁଲା ମହାସତୀ ।
କାନ୍ଦନ୍ତି ରାମରାଣୀ ଚନ୍ଦ୍ରବଦନ ପୋତି ॥୭୬॥
ଭୋ ତାତ ଦେଖ ତୁହି ମୋହର ମହାଦୁଃଖ ।
ତୋହର କୋଳେ ଉପୁଜି ମୁହିଁ ହୋଇଲି ନିରେଖ ॥୭୭॥
ଇତର ଲୋକେ ତାତ ନ ସହନ୍ତି ତାହା ।
କେତେ କଷ୍ଟ ପାଇଲି କହିବି ମୁଁ କାହା ॥୭୮॥
ବନଜୀବଙ୍କର ସଙ୍ଗତେ ଚାରିମାସ ବୁଲିଲି ।
ବାଟ ନ ଜାଣଇ ତୋହର ତହିଁକି ଆସୁଥିଲି ॥୭୯॥
କେବଣ ଦଇବ ତୋହର ପୁନ୍ୟ ବଳେ
ଯାଇ ହୋଇଲି ବାଲମୀକଙ୍କର ପର୍ଣ୍ଣଶାଳେ ॥୮୦॥
ତୋହର ତହିଁକି ବାଲମୀକ ଆଣୁଥିଲେ ।
ଏ ବୃକ୍ଷର ତଳେ ଦୁଇ ପୁତ୍ର ଉପୁଜିଲେ ॥୮୧॥
ନିଲଜ ଦେହ ମୋହର କିମ୍ପାଇଁ ପ୍ରାଣ ନ ଗଲା ।
ଏସନ କହି ସୀତା ଉଚ୍ଚେ ରୋଦନ କଲା ॥୮୨॥
ଦୋହିତା କାନ୍ଦନ୍ତେ ଜନେକ ରାଜମୁନି ।
ବେନିକର ନେଇ ତାଡ଼ିଲାକ ମୂଧୁନି ॥୮୩॥
ବାବୁ ବିଧାତା ମୋତେ ଏତେ କଷ୍ଟ ଦେଲୁ ।
ଏ ବୟସେ ଦୋହିତା କଷ୍ଟ ଦେଖାଇଲୁ ॥୮୪॥
କି ଅବା ପୂର୍ବେ ମୁହିଁ ଦାନ ପୁନ୍ୟ ନ କଲି ।
ଗୁରୁ ଅତିଥେ ଅବା ଭଗତି ନୋହିଲି ॥୮୫॥
ଏ ତୋହର ଦୁସହ ଅବସ୍ଥା ଦୁଖ ଦେଖି ।
ମୋହର ଦେହୁ ପ୍ରାଣ କିମ୍ପା ନ ଗଲା ଉପେଖି ॥୮୬॥
ମହତ୍ତ୍ୱ କୁଳ ଜାଣି ତୋତେ ବରିଲଇ ବର ।
ତ୍ରିଭୁବନ ଧାର୍ମିକ ଶୂରସିଦ୍ଧ ରଘୁବୀର ॥୮୭॥
ମହତ ମର୍ଯିତା ବୀରବର ଦାଶରଥି ।
ତାଡ଼କୀ ମାଇଲେ ପ୍ରଭୁ ଭୁଜବଳ କ୍ଷତ୍ରି ॥୮୮॥
ଶିବନାଥର ଧନୁ ଯେ ମୋହର ପୁରେ ଥିଲା ।
କ୍ଷତ୍ରିବର ସୁନ୍ଦର ଅବହେଳେ ଭାଙ୍ଗିଲା ॥୮୯॥
ଶ୍ରୀରାମର ଷଡଐଶ୍ୱର୍ଯ୍ୟଗୁଣ ମୁ ଦେଖିଲି ।
ଚାରି ଭାଇଙ୍କି ଚାରି ଦୋହିତା ବିଭାଏଣ ଦେଲି ॥୯୦॥
ତୋତେ ଯେବେ ଏତେ ଦୁଃଖ ଦେଲେ ଚାପଧାରୀ ।
କିସ ମତେ ଥିବେ ମୋହର ତିନି କୁମାରୀ ॥୯୧॥
କେବଣ ଦୋଷ ସ୍ୱାମୀ ତହିଁ କଲୁ ।
ଶ୍ରୀରାମ ମନରୁ କେସନେ ବାହାର ହୋଇଲୁ ॥୯୨॥
ଏଥିର କଥା ଆଇ ତୁହି ମୋତେ କହ ।
ତେବେ ସେ ଛାଡ଼ଇ ମୋହର ହୃଦୟର କୋହ ॥୯୩॥
ବାଲମୀକେ କହନ୍ତି ଶୁଣ ହେ ଜନେକ ମହରଷି ।
ତାହାର ଦୁଃଖ କଥା ଏବେ ନ ପ୍ରକାଶି ॥୯୪॥

କୁମରନ୍ତ ଅପାର ଦୁଃଖେ ଜାତ କଲା ।
ତୁଲେଣ ସଙ୍ଗ ସାଖା କେହି ନ ଥିଲା ॥୯୫॥
ଏବେ ସୀତୟାର ପୁତ୍ରନ୍ତ ଘେନି ତୋହର ପୁରକଇ ଯାସି ।
ପୁତ୍ରନ୍ତ ପ୍ରତିପାଳି ପଛେ ସୀତୟାକୁ ପଚାରସି ॥୯୬॥
ମାନନୀ ମାନଭରେ ଦୁଃଖ ମହାଗରୁ ।
ମାତାକୁ ଦେଖି ସୀତୟା ଦୁଃଖ ପାସୋରୁ ॥୯୭॥
ବାଲମୀକଙ୍କର ବଚନେ ଜନେକ ତପଚାରୀ ।
ବାଳୁତ ପୁଅ ଗୋଟାଏ ତୋଳି କରେ ଧରି ॥୯୮॥
ଆରକ ପୁତ୍ରକୁ ବାଲମୀକେ ଘେନନ୍ତି ।
ପଛେ ଧୀରେ ଚାଲଇ ସୀତୟା ମହାସତୀ ॥୯୯॥
ଜନେକର ଚଉଦ ଶିଷ୍ୟ ଅଛନ୍ତି ସନିଧାନେ ।
ଅଗ ପଛ ହୋଇ ଯାନ୍ତି ତପୋଧନେ ॥୧୦୦॥
ଆଦିତ୍ୟ ଦ୍ରୋଛନା ହୋଇ(ଲା) ଅବଶେଷ ।
ବଇଦେଇମଣ୍ଡଳେ ଋଷିଗଣ ପ୍ରବେଶ ॥୧୦୧॥
ନଗ୍ର ନରନାରୀ ସୀତୟାକୁ ଯହୁଁ ଦେଖିଲେ ।
ଯେ ଯାହାର ଗୃହନ୍ତ ତେଜି ସମସ୍ତ ଗୋଡ଼ାଇଲେ ॥୧୦୨॥
ବୋଲନ୍ତି ଏ ସୀତୟା ଜନେକର ନନ୍ଦନୀ ।
ଦଶରଥ ସୁତ ଯେ ଶ୍ରୀରାମର ଘରଣୀ ॥୧୦୩॥
କେବଣ ଦଇବ ଏକା ଆସୁଅଛି ।
ଦେଖି ନଗ୍ରଲୋକଙ୍କର(ମୁଖେ) ନ ପୁରୋଇ କିଛି ॥୧୦୪॥
ତହୁଁଣ ଥୋକେ ଲୋକେ ଧାଇଁଣ ଗଲେ ବେଗେ ।
ଅନ୍ତରରେ କହନ୍ତି ଋଷିଆଣିଙ୍କର ଆଗେ ॥୧୦୫॥
ତୁମ୍ଭର ଦୋହିତା ସୀତୟା ମହାସତୀ ।
ଏକଇ ଯୁବତୀ ଅଇଲାକ ଏଥି ॥୧୦୬॥
ଶୁଣି ଚକିତ ଜାନେକୀର ମାତ ।
ଅନ୍ତଃପୁର ଭିତରୁ ସେ ଆସନ୍ତି ତୁରିତ ॥୧୦୭॥
ଆବର ତିନି ଯୁବତୀ ତାହାର ପଛେ ଗୋଡ଼ାଇଲେ ।
ପରିଜନ ସହିତେ ନବର ଦ୍ୱାରେ ମିଳିଲେ ॥୧୦୮॥
ଏସନେକ ସମୟେ ଜନେକ ରାଜଋଷି ।
ସୀତୟା ପୁତ୍ର ସହିତେ ନବରେ ପ୍ରବେଶି ॥୧୦୯॥
ସୀତାକୁ ଯହୁଁ ତାହାର ମାତା ଦେଖିଲା ।
ଅଚେତ ହୋଇଣ ପଡ଼ିଣ ମୂର୍ଚ୍ଛା ଗଲା ॥୧୧୦॥
କ୍ଷଣକେ ଚେତନା ପାଇଲା ଋଷିବାଳୀ ।
ଅନ୍ତଃପୁର ଭିତରୁ ସକଳ କାମେନୀ ଆସି ମିଳି ॥୧୧୧॥
ତାହାର କାନ୍ଦନ୍ତେ କହନ୍ତି ବାଲମୀକ ମହାମୁନ୍ୟ ।
କିମ୍ପାଇଁ ତୁମ୍ଭେ ଗୋ କର ହୋ ରୋଦନ ॥୧୧୨॥
ଶ୍ରୀରାମଙ୍କ ଭାରିଯା ଅଇଲା ତୁମ୍ଭର ପୁର ।
ଯେତେମାନ ପାର ଏହାକୁ କର ଗୋ ଆଦର ॥୧୧୩॥
ଅତ୍ୟନ୍ତ କରି ପୁତ୍ରନ୍ତ ଯତ୍ନ କରି ପ୍ରତିପାଳ ।
କିମ୍ପାଇଁ ରୋଦନ କର ଗୋ ଚହଳ ॥୧୧୪॥
ପୁତ୍ର ଯେସନେକେ ହୁଅନ୍ତି ତେଜମୟେ ।
ତେସନେକ ଚରିତ୍ର ସେ କରିବାକ ଉପାୟେ ॥୧୧୫॥
ତୁମ୍ଭର କାନ୍ଦନ୍ତେ ସୀତୟା ହି କାନ୍ଦିବ ।
ଏ ଚନ୍ଦ୍ର ବଦନୀ ପ୍ରୟାସ ପାଇବ ॥୧୧୬॥
ଏ ଯେତେ କଷ୍ଟ ପାଇଲା ଦୃଭାର ଅଶଖ୍ୟ ।
ବାଲମୀକଙ୍କର ବଚନେ ତେଜିଲେ ସର୍ବ ଶୋକ ॥୧୧୭॥

## ଲବକୁଶଙ୍କର ଶୈଶବ ବିଧାନ

ସୀତୟାର ଜନନୀ ପୁତ୍ରନ୍ତ କୋଳେ ଧରନ୍ତି ।
ଚନ୍ଦ୍ର ସୂର୍ଯ୍ୟ ପ୍ରାୟେକ କୁମରେ ଦିଶନ୍ତି ॥୧॥
ଚନ୍ଦନ ଅଗ୍ର କାଠ କରନ୍ତି ଆତରା ।
ଚିତ୍ର ପାଟ ଅନ୍ତୋଡ଼ି କଲେ ଚଉକତି ପଡ଼ଇ ଟେରା ॥୨॥
ଜନକର ପୁରେ ମଙ୍ଗଳ ହୁଳହୁଳି ।
ତନୟନ୍ତ ବନ୍ଦବନ୍ତି ସ୍ତିରୀଗଣେ ମିଳି ॥୩॥
ନେତର ଚାନ୍ଦୁଆ ବାନ୍ଧନ୍ତି ଉପରେ ।
ମାଣିକ୍ୟର ଦୀପ ଜଳଇ ଅଭ୍ୟନ୍ତରେ ॥୪॥
ଅନେକ ଧାତ୍ରୀ ବହୁତ ପରିବାରୀ ।
କୁମରନ୍ତ ପ୍ରତିପାଳନ୍ତି ଅନ୍ତଃପୁର ନରନାରୀ ॥୫॥
ଦୁଧ ତରଣ କରନ୍ତି ପଞ୍ଚୁଆତି ।
ଷଷ୍ଠୀ ରାତ୍ରେ ଉଜାଗରେ ରୟଣୀ ପୋହାନ୍ତି ॥୬॥
ବିଂଶରାତ୍ର ପ୍ରବେଶ ହୋଇଲାକ ଯହୁଁ ।
ବାଲମୀକକଇ ଜନେକ ପଚାରିଲେ ତହୁଁ ॥୭॥
ଦୁଇ କୁମାରନ୍ତ ବୋଲି(ରେ) ଶୁଆଇବା ।
କିସ କିସ ନାମ ଦେବା ବିଚାରି କହିବା ॥୮॥
ବାଲମୀକ କହନ୍ତି ଶୁଣସି ରାଜମୁନ୍ୟ ।
ଅତି ଦୁଃଖେ ସୀତୟା ଉପୁଜାଇଲେ ବେନି ସୂନ ॥୯॥
ଶିଯାଡ଼ି ଲତା ଧରି ପ୍ରସବିଲେ ଯେବଣ କୁମାରଇ ।
ଲବ ବୋଲି ନାମ ହୋଉ ପଚାରଇ ॥୧୦॥

ପୁଣି ସୀତୟାର ପେଟ ବଥାଇଲା ଯେବେ ।
କୁଶବଟୁ ମନ୍ତ୍ରିଣ ଦେଲଇ ମୁହିଁ ତେବେ ॥୧୧॥
ତେବେ ସେ କୁମର ହୋଇଲାକ ଜାତ ।
କୁଶ ବୋଲି ନାମ ତାହାର ହୋଇବ ବିଦିତ ॥୧୨॥
ଶୁଣି ଜନେକ ମୁନି ମନେ ଆନନ୍ଦ ହୋଇ ।
ପାଟର ଦୋଳି ତହିଁ ରତ୍ନ ଲମ୍ୱାଇ ॥୧୩॥
ଅନ୍ତଃପୁରନଗ୍ରର ଯୁବତୀ ମିଳନ୍ତି ।
ଦିବ୍ୟ ସୁସ୍ୱରେ ହୁଳହୁଳି ଦେନ୍ତି ॥୧୪॥
ସୁବର୍ଣ୍ଣର ଥାଳିରେ ଦୁବ ଅକ୍ଷତ ଘେନି ।
କୁମାରଙ୍କ ଶିରେଣ ଦିଅନ୍ତି କାମେନୀ ॥୧୫॥
ମାଣିକ୍ୟର ଦୀପାବଳୀ ଘେନିଣ ବନ୍ଦାବନ୍ତି ।
ଲବକୁଶ ବୋଲି ଦୁଇ ଭାଇକି ନାମ ଦେନ୍ତି ॥୧୬॥
ବେଦ ଉଚ୍ଚାରନ୍ତି ଋଷିଗଣମାନେ ।
ଶୁଭ କଲ୍ୟାଣ ବାଛନ୍ତି ବାଲମୀକ ତପୋଧନେ ॥୧୭॥
ସମୁଦ୍ର ଘୋଷ ଯେସନ ଶୁଭଇ ଅନ୍ତପୁରେ ।
ଶୁଣିଣ ହରଷ ହୋଇଲେ ବଜ୍ରଧରେ ॥୧୮॥
ବ୍ରହ୍ମଋଷି ଦେବଋଷି ରାଜଋଷି ସିଦ୍ଧ ମୁନି ।
ଯତି ସନ୍ନ୍ୟାସୀ ଭଗବନ୍ତ ତପୋଧନୀ ॥୧୯॥
ସତୀ ପତିଭଗତା ଗୋମାତାର ମୂଳେ ।
ସନେକ ଲୋକ ବିଶ୍ୱଦେବା ଦଶଦିଗ ପାଳେ ॥୨୦॥
ଶୁଣିଣ ହରଷ ଦେବ ଅମରଗଣ ।
ଆନନ୍ଦେ ଉତସଲ୍ୟ ସବୁଙ୍କରି ମନ ।
ପୁଷ୍ପସେନ ହକାରି ଆଜ୍ଞା ଦେଲେ ଶଚୀରରମଣ ॥୨୧॥
ଶ୍ରୀରାମର ତନୟେ ନାମ ଦେଲେ ଲବକୁଶ ।
ତାଙ୍କର ଶିରେ ନେଇ କୁସୁମ ବରଷ ॥୨୨॥
ଇନ୍ଦ୍ର ବଚନେ ଆସଇ ପୁଷ୍ପସେନ ।
ବଇଦେହୀନବରେ କୁସୁମ ବରଷଇ ଘନଘନ ॥୨୩॥
ହରଷ ହୋଇଲେ ସକଳ ନରନାରୀ ।
ଗଲେ କାମେନୀ ଯେ ଯାହାର ପୁରୀ ॥୨୪॥
ଦିନେ ଦିନେ କୁମର ହୋଇଲେ ବର୍ଦ୍ଧମାନ ।
ପୁତ୍ରନ୍ତ ଦେଖି ସୀତୟାର ଆନନ୍ଦମୟେ ମନ ॥୨୫॥

## ସୀତାଙ୍କ ଅଗ୍ନି ପରୀକ୍ଷା

ଏସନେକ ଶୁଭେଣ ଗଲାକ ଛଡ଼ମାସ ।
ଜନେକ ମୁନି ପଚାରନ୍ତି ବାଲମୀକଙ୍କର ପାଶ ॥୧॥
ଭୋ ମୁନି ମୋହର ଦୋହିତା ଶ୍ରୀରାମର ଘରଣୀ ।
କିମ୍ପାଇଁ ଏହାକୁ ତେଜିଲେ ଚାପପାଣି ॥୨॥
ଋଷିଗଣେ ଶୁଣି ବୋଲିବେ ମୋତେ କିସ ।
ସକଳ ଜନମୁଖେ ପାଇବି ଉପହାସ୍ୟ ॥୩॥
ଭୋ ଋଷି ଏଥିର କଥା ମୋତେ କହ ।
ବଡ଼ଇ ବଇରାଗ ହୋଉଛି ମୋହର ଦେହ ॥୪॥
ବାଲମୀକେ କହନ୍ତି ସୀତୟାକୁ ପଚାର ।
ତାହାର ମୁଖେ ଶୁଣି ତୁହି ବିଚାର କର ॥୫॥
ବାଲମୀକଙ୍କର କଥା ଶୁଣି ଜନେକ ମହଋଷି ।
ସୀତୟାକୁ ହକାରି ପୁଛନ୍ତି ଆଶ୍ୱାସି ॥୬॥
ଚାରି ଦୋହିତାଙ୍କର ତୁହି ସେ ମୋହର ଜ୍ୟେଷ୍ଠ ।
କ୍ଷତ୍ରିବର ସୁନ୍ଦର ରାମ ସୂର୍ଯ୍ୟବଂଶ ଗରିଷ୍ଠ ॥୭॥
ଶିବନାଥର ଧନୁ ଆମଞ୍ଚିଲାକ ଯହୁଁ ।
ମୋହର ସତ୍ୟ ଯେ ପୂରିଲାକ ତହୁଁ । ॥୮॥
ତୋହର ବହ୍ଲଭ ସେ ହୋଇଲା ଅଧିକାରୀ ।
ତିନି ଭାଇଙ୍କି ଦେଲି ତିନି କୁମାରୀ ॥୯॥
ତୋତେ ମୁହାଂସ ରାମ ତୋଳିଲାକ ଯେବେ ।
ତିନି ଦୋହିତାଏ ମୋହର କିସ କରିବେ ॥୧୦॥
ହୀରା ମଣି ମାଣିକ୍ୟ ଯେ ଆଭରଣ ହୋଇଥିଲୁ ।
ଅସମୟେ କାଳେ କିମ୍ପା ତାହା ନ ଆଣିଲୁ ॥୧୧॥
ନେତ ବସ୍ତ୍ର ପାଟୋଳି ଝୀନବସନ ।
ତାହା ତେଜି ଏକା ବସ୍ତ୍ରକେ ଅଇଲୁ ବନ ॥୧୨॥
ତୁହି ଶ୍ରୀରାମକୁ ଦୋଷ (ନ) କଲୁ ଯେବେ ।
କିପାଇଁ ଉପେକ୍ଷା ସେ କଲେ ପୁଣ ଏବେ ॥୧୩॥
ମୋହର ଆଗେ ଏଥିର କଥା ସତ କହ ।
ଶରୀରକୁ ବ୍ୟଥା ପାଇଲି ମହା କୋହ ॥୧୪॥
ତୁ ମୋହର ଦୋହିତା କୁଳର ମଣ୍ଡଣୀ ।
କେବଣ ଦୋଷ ତୋତେ ଧଇଲେ ରଘୁମଣି ॥୧୫॥
କେବଣ ନିମନ୍ତେ ତୋତେ ବିହିଲେ ବନବାସ ।
ନିଜନମୁଖେ ମୋତେ ଉପୁଜିଲା ଉପହାସ୍ୟ ॥୧୬॥
ସୀତୟା କହଇ ଶୁଣସି ଭୋ ତାତ ।
କକୟା ନାମେ ଯେ ଭ୍ରଥର ନିଜମାତ ॥୧୭॥
ରାଜ୍ୟରେ ଅଭିଷେକ ସ୍ୱାମୀକି କରିବେ ଯହୁଁ
ରାତ୍ରେ କଇକୟା ରାଜାକୁ ସତ୍ୟ ମନାଇଲାକ ତହୁଁ ॥୧୮॥

ଭ୍ରଥ ଅଯୋଧାରେ ରାଜ୍ୟଧର ହୋଉ ।
ଜ୍ୟେଷ୍ଠ ପୁତ୍ର ରାମ ତୋର ବନବାସ ଯାଉ ॥୧୯॥
ଶୁଣିଣ ନୃପତି ଅନେକ ବିକଳ ହୋଇଲେ ।
ମୋହର ସ୍ୱାମୀକି ସତ୍ୟର କଥା କହିଲେ ॥୨୦॥
ପିତାର ବଚେନ ରାମ ବନକୁ ହି ଗଲା ।
ସୁମିତ୍ରାର ପୁତ୍ର ଲକ୍ଷ୍ମଣ ହି ନ ରହିଲା ॥୨୧॥
ଭୃତ୍ୟ ପଣେ ଗୋଡ଼ାଇଲା ଶ୍ରୀରାମର ତୁଲେ ।
ମୁହିଁ ନ ରହିଲି ଶାଶୁଙ୍କର ବୋଲେ ॥୨୨॥
ତିନିହେଁ ଅଗମ୍ୟ ବନେ ବିଶ୍ରାମ କରୁ ।
କନ୍ଦମୂଳ ଆହାରେ ତରୁତଳେ ଦିନ ହରୁ ॥୨୩॥
ଦଣ୍ଡକାଅରଣ୍ୟେ କଲୁ ଯାଇ ବାସ ।
ଅନେକ ମୃଗ ଦେଖି ମୁହିଁ ଲଗାଇଲି ମୁହାଁସ ॥୨୪॥
ଧନୁଶର ଧରି ରାମ ମୃଗମାରି ଗଲେ ।
ଦୂରକୁ ପଳାବନ୍ତେ ବାଣେ ଦୁଇମୁଣ୍ଡ ଛେଦିଲେ ॥୨୫॥
ମାୟାମୃଗ ସେ ତାଡ଼େକୀର ସୁତ ।
ପ୍ରତିକାର ଲକ୍ଷ୍ମଣ ବୋଲି ଡାକ ଦେଲା ଧର୍ମଗତ ॥୨୬॥
ସେ ବିକଳ ବୟାଣ ମୁହିଁ ଯହୁଁ ଶୁଣିଲି ।
ଶ୍ରୀରାମକୁ ଘେନିଆସ ବୋଲି ଲକ୍ଷ୍ମଣକୁ ପଠିଆଇଲି ॥୨୭॥
ମୋତେ ତେଜିଣ ଲକ୍ଷ୍ମଣ ଯହୁଁ ଗଲା ।
ଋଷି ରୂପେ ରାବଣ ଭିକ୍ଷା ମାଗିଣ ଅଇଲା ॥୨୮॥
କନ୍ଦମୂଳ ଭିକ୍ଷା ଘେନି ପତ୍ରଘରୁ ବାହାର ହୋଇଲି ଯହୁଁ
ରଥେ ବସାଇ ରାବଣ ମୋତେ ହରି ନେଲାକ ତହୁଁ ॥୨୯॥
ମୃଗ ମାରି ରାମ ବାହୁଡ଼ି ଆସନ୍ତେ ।
ଲକ୍ଷ୍ମଣକୁ ଦେଖିଲେ ଅଗମ୍ୟ ବନପଥେ ॥୩୦॥
ତହୁଁ ବିମନେ ଅଇଲେ ବେନି ଭାଇ ।
ପତ୍ରଘରେ ପଶି ମୋତେ ଲୋଡ଼ିଣ ନ ପାଇ ॥୩୧॥
ତହୁଁ ରାମଲକ୍ଷ୍ମଣ ମୋତେ ଲୋଡ଼ିଣ ଗଲେ ।
ପକ୍ଷୀଜଟା ତହୁଁ ରାମ ବାରତା ପାଇଲେ ॥୩୨॥
ସୁଗ୍ରୀବର ତୁଲେ ରାମ ହୋଇଲେ ମଇତ୍ର ।
ସୁଗ୍ରୀବର ଛଳେ ରାମ ବାଳିକି କଲେ ହତ ॥୩୩॥
କପିବଳ ଘେନି ସେତୁବନ୍ଧ ବାନ୍ଧି ।
ଅସୁରନ୍ତ ମାରି ଦଶଶିର ଛେଦି ॥୩୪॥
ବିଭୀଷେଣକୁ ଲଙ୍କାରେ କଲେ ରାଜ୍ୟଧର ।
ମନ୍ଦୋଦରୀ ଭାରିଯା ହୋଇଲା ତାହାର ॥୩୫॥
ଅଗ୍ନି ପରୀକ୍ଷା ମୋତେ ସାତଦିବସ କଲେ ।
ତେବେ ସେ ସ୍ୱାମୀ ମୋତେ କୋପ ତେଜିଲେ ॥୩୬॥
ପୁଷ୍ପେକ ରଥ ଚଢ଼ି ଅଯୋଦ୍ଧ୍ୟାକୁ ଅଇଲୁ ।
ନିଜ ନବରେ ପାଟେ ଅଭିଷେକ ହୋଇ(ଲୁ) ॥୩୭॥
ଯାଙ୍ଗ ତପ ରାମ ଅନେକ ଧର୍ମ କଲା ।
ମୋତେ ଘେନି ରାମ ବାରଣାସୀକି ଗଲା ॥୩୮॥
କାଶୀପୁରୁ ଆସି ନଗ୍ରେଣ ହୋଇଲୁ ।
ନିଶ୍ଚନ୍ତେ ହୋଇ କେତେହେକ କାଳ ରାଜ୍ୟ କଲୁ ॥୩୯॥
ଗର୍ଭେଣ ମୋହର ତିନିମାସ ହୋଇଲାକ ଯହୁଁ ।
ଦୟା ଚିତ୍ତେ ପ୍ରସାଦ ଯାଚି ଦେଲେ ରାମ ତହୁଁ ॥୪୦॥
କେବଣ ଦଇବର ବିଯୋଗେ ମୁହିଁ ମୋହିତ ହୋଇଲି ।
ବନକୁ ଯିବି ବୋଲି ପ୍ରସାଦ ମାଗିଲି ॥୪୧॥
ତହୁଁଣ ଶ୍ରୀରାମ ଲକ୍ଷ୍ମଣକୁ ବୋଇଲା ।
କପଟ କରି ମୋହ ତୁଲେଣ ପମନ୍ତିଲା ॥୪୨॥
ବନସ୍ତକୁ ହି ଯେତେ ମୁହିଁ ଆସିବି ।
ଅଳଙ୍କାର ବସ୍ତ୍ର କେମନ୍ତେ ଆଣିବି ॥୪୩॥
ଧନବସ୍ତ୍ର ଥିଲେ ଦୁଷ୍ଟେ କରନ୍ତି ପ୍ରାଣନାଶ ।
ଏକଇ ବସ୍ତ୍ର ତୁଲେ ମୁହିଁ କଲଇ ବନବାସ ॥୪୪॥
ଏକା ଲକ୍ଷ୍ମଣ ମୋତେ ବନକୁ ଆଣିଲା ।
ନିଦ୍ରାଗଲି ଯହୁଁ ସେ ମୋତେ ତେଜିଣ ଗଲା ॥୪୫॥
ପତ୍ରେକ ଲିହି ଡାଳେ ସେ ଗଲାକ ଲମ୍ବାଇ ।
ରୋଦନ କଲି ମୁହିଁ ଲକ୍ଷ୍ମଣକୁ ଦେଖି ନ ପାଇ ॥୪୬॥
ବନଜୀବେ ଖାଇବେ ବୋଲି ବିକଳ ହୋଇଥିଲି ।
ପତ୍ର ଦେଖି ସେ ତାହାର ଚରିତ୍ର ଜାଣିଲି ॥୪୭॥
ପତ୍ରେଣ ଲିହିଲା ସୀତୟା ତୁହି ଅଯୋଦ୍ଧ୍ୟା ନ ଯିବୁ ।
ପିତାର ଘରେ ତୋହର ଯାଇଣ ରହିବୁ ॥୪୮॥
ସେ ରାତ୍ରେକ ଯାକ ବସିଲି ମୁହିଁ ବନେ ।
ରଖିଥିଲେ ମୋତେ ଅରଣ୍ୟ ଜୀବମାନେ ॥୪୯॥
ତହୁଁ ବନଜୀବେ ବାଟ କଢ଼ାଇ ଆଣିଲେ ।
ବାଲମୀକଙ୍କର ଆଶ୍ରମେ ଛାଡ଼ି ମୋତେ ଗଲେ ॥୫୦॥
ସେ ଯତି ମୋତ୍ତେ ଆଣିଲେକ ଏଥ ।
ତୋହର ନବରକୁ ଆସନ୍ତେ ଉପୁଜିଲା ବେନି ପୁତ୍ର ॥୫୧॥
ବହେଣୀଙ୍କର କଥା ନ ଜାଣଇ ତାତ ମୁହିଁ ।
ତେରମାସ ହୋଇଲା ଦେଖିଲା ମୋର ନାହିଁ ॥୫୨॥

ସତୀର କଥା ଯହୁଁ ଜନକ ଶୁଣିଲା ।
କ୍ଷଣକ ସ୍ତମ୍ଭୀଭୂତ ହୋଇ ଦେହରୁ ଝାଳ ବାହାର ହୋଇଲା ॥୫୩॥
ସୀତାର ମୁଖ ଚାହିଁ କହଇ ମହାମୁନି ।
ତୁହି ଯେବେ ସତୀବ୍ରତେ ଥିଲୁ ଗୋ ନନ୍ଦନୀ ॥୫୪॥
ଋଷିଗଣଙ୍କର ମୁଖେ ଉପୁଜିବ ଲାଜ ।
ମୁହିଁ ଅଗ୍ନି ପରୀକ୍ଷା ତୋତେ କରିବି ଦହିଯ ॥୫୫॥
ଅଗ୍ନିରେ ଦହିଯ ନୋହିବୁ ତୁହି ଯେବେ ।
ସତୀପଣ ଲୋକ ଜାଣିମେ ନା ତେବେ ॥୫୬॥
ଅଗ୍ନିର ପରୀକ୍ଷାରୁ ଯେବେ ହୋଇବୁ ପାର ।
ତେବେ ସେ ଲାଞ୍ଛନ ଫିଟିବ ମୋହର ॥୫୭॥
ସୀତୟା କହଇ ମନେ ଯେବେ ଧଇଲୁ ବିକୃତ ।
ବେଗେଣ ସମ୍ଭାର କରସି ପିତା ବହ୍ନିହୋତ୍ର ॥୫୮॥
ସୀତାର ବଚନ ଶୁଣି ଜନେକ ରାଜମୁନ୍ୟ ।
ତକ୍ଷଣେ ହକାରିଲେ ଚଉଦ ନନ୍ଦନ ॥୫୯॥
ବିଶ୍ୱାସ କରନ୍ତି ଶିଷ୍ୟଙ୍କର ଆଗେ ।
ଅଗ୍ନି ଆରୋପଣ କର ହୋ ନେଇ ବେଗେ ॥୬୦॥
ଗୁରୁଙ୍କର ବଚନ ଶୁଣିଲେକ ଯହୁଁ ।
ଅଗ୍ନି ସମ୍ଭାର କରନ୍ତି ସେ ତହୁଁ ॥୬୧॥
ଚନ୍ଦନ ଅଗର ଦେବଦାରୁ ନେଇ ।
ଘୃତ ପକାନ୍ତେ ଅଗ୍ନି ପ୍ରଖରେ ଜଳଇ ॥୬୨॥
ସ୍ୱାହାନ ସାରି ଜନେକର ଦୁଲାଳି ।
ଅଗ୍ନିର ସନ୍ନିଧେ ମିଳଇ ଶ୍ରୀରାମର ନାରୀ ॥୬୩॥
ସୋମକାନ୍ତି ନାମେ ସୀତୟାର ଜନନୀ ।
ବିକଳେ ରୋଦନ କରଇ ଜନେକର ପତ୍ନୀ ॥୬୪॥
ସୀତୟା କହଇ ମାତାକୁ ରାଇ ।
କିପାଇଁ ରୋଦନ ଗୋ କରୁ ମୋହର ଆଇ ॥୬୫॥
ମନ୍ଦବେଳେ ମୁହିଁ ଯେ ହୋଇଲି ଉତପନ ।
ମୋହର ମଳେ ଏବେ ସରଇ ତୁମର ଅପମାନ ॥୬୬॥
ଏଥକୁ ବିକଳ ନୁହସି ଗୋ ମାତ ।
ମୁହିଁ ଯେବେ ସତୀ ଅଗ୍ନି କିମ୍ପା ଦହିବ ମୋର ଗାତ୍ର ॥୬୭॥
ନଗ୍ର ନରନାରୀ ଦେଖନ୍ତୁ ସର୍ବେ ମିଳି ।
ଅଗ୍ନି ପରୀକ୍ଷା କରନ୍ତି ଜନେକ ତପଶ୍ୟାଳୀ ॥୬୮॥
ହସ୍ତେ ଶ୍ରୀଫଳ ଘେନି ଶ୍ରୀରାମ ଅବିଳାଷୀ ।
ଅଗ୍ନିକି ସ୍ତୁତି କରଇ ଶୁଭକେଶୀ ॥୬୯॥

ଦଶ ଦିଗପାଳେ ହୋଇଥାଅ ସାକ୍ଷୀ ।
ତୁମ୍ଭେ ତ ପାପପୁନ୍ୟ ମୋହର ଅଛ ନା ନିରେଖି ॥୭୦॥
ମୁହିଁ ଯେବେ ମନ ଧାନେ କରି ଅଛଇ ଦୋଷ ।
ଅଗ୍ନିରେ ଯାଇ ହୋଇବି ମୁଁ ଧ୍ୱଂସ ॥୭୧॥
ଭୋ ଅଗ୍ନି ତୁହି ବିଚାର କରି ଜାଣ ।
ମୋହର ଦୋଷ ତୁହି ସଂଶୟ ପରିମାଣ ॥୭୨॥
ସ୍ୱାମୀର କୋପୁ ପୂର୍ବେ ପାର କଲୁ ମୋତେ ।
ଏବେ ବିନୟ କରି କହୁଅଛି ତୋତେ ॥୭୩॥
ବାଳୁତ କାଳେ ପୋଷଇ ପିତାମାତା ।
ଯୁବା ବୟସେ ଆଧିପତି ଅଟନ୍ତି ଭ୍ରଥା ॥୭୪॥
ମାରୁ କି ତାରୁ ସ୍ୱାମୀ ଅଧିକାରୀ ।
ପିତା କାହିଁ ଦୋହିତାକୁ ଏତେ ଜିଂଘାସ କରି ॥୭୫॥
ପୂର୍ବ ଜନ୍ମେ ରାଢ଼େଣୀ ଦାନ ପୁନ୍ୟ ନ କଲି ।
ଶାସ୍ତ୍ର ପୁରାଣ ଯେ କର୍ଣ୍ଣରେ ନ ଶୁଣିଲି ॥୭୬॥
ସ୍ୱାମୀରେ ଦୃଭାଗୀ ଯେ ହୋଇଲି ମୁହିଁ ତହୁଁ ।
ଏବେ ପିତା ଘରେ ଆଶ୍ରମ କଲି ଯହୁଁ ॥୭୭॥
ପିଅର ମହାଗୁରୁ ମୋତେ ପରତେ ନ ଗଲା ।
କୁଳେ କଳଙ୍କ ନିମନ୍ତେ ଅଗ୍ନି ଆରୋପିଲା ॥୭୮॥
ମୁହିଁ ଯେବେ ମନ ଧାନେ କରିଅଛି ଦୋଷ ।
ତୋହର ତେଜେ ମୁହିଁ ହୋଇବଇ ଧ୍ୱଂସ ॥୭୯॥
ଏତେ କହି ଅନଳେ ପଶଇ ମହାସତୀ ।
ଦେଖି ଆହାକାର କରନ୍ତି ନଗ୍ରର ଯୁବତୀ ॥୮୦॥
ଏ ପୁତ୍ରନ୍ତ ଛାଡ଼ି କେହ୍ନେ ବଳିଲା ତୋ ମନ ।
କେ ପ୍ରତିପାଳିବ ତୋହର ବାଳୁତ ନନ୍ଦନ ॥୮୧॥
କିପାଇଁ ଜନେକ ମୁନି ଏସନ କୃତ୍ୟ କଲା ।
ଦୋହିତାକୁ କେସନେକେ ଅଗ୍ନିରେ ଭରିଲା ॥୮୨॥
କୁଳକୁ ଲାଞ୍ଛନ ନିମନ୍ତେ ହୋଇଲାକ ଦହି ।
ବାଲମୀକେ ଅଛନ୍ତି କିମ୍ବା ନ ରୁହାଇଲେ ସେହି ॥୮୩॥
ଏସନକ ବିକଳ ସକଳ ନରନାରୀ ।
ହୃଦୟରେ କରତାଡ଼ି ନୟନୁ ଲୁହ ଝରି ॥୮୪॥
ଋଷିଗଣ ସମେତେ ଜନେକ ରାଜମୁନ୍ୟ ।
ଆବର ଦେଖନ୍ତି ବାଲମୀକ ତପୋଧନ ॥୮୫॥
ରିଷଭ ଶୁକ୍ଳ ଦଶମୀ ଗୁରୁବାର ।
ପୁଷ୍ଯା ନକ୍ଷତ୍ର ସାତ ଘଡ଼ି ଦିବାକର ॥୮୬॥

ସୀତାକୁ ତୁହି ଅଗ୍ନି ପରୀକ୍ଷା କରନ୍ତି ।
ଅନେକ ମହରଷିଗଣେ ବେଢ଼ିଣ ଅଛନ୍ତି ॥୮୭॥
ଏମନ୍ତେ ତିନିରାତ୍ର ତିନିଦିବସ ହୋଇଲାକ ଯହୁଁ ।
ସାମନ୍ତ ହକାରି ଜନେକ କହନ୍ତି ତହୁଁ ॥୮୮॥
ଅଗ୍ନିର ଉପରେ ପାକାବନ୍ତୁ ନୀର ।
ଦେଖିବା ସୀତାର ଅଛି କି ଶରୀର ॥୮୯॥
ଜନେକର ବାକ୍ୟ ଉଛୁଳିଲାକ ଯେବେ ।
ପାଣି ପକାଇ ଅଗ୍ନି ଲିବାଇଲେକ ତେବେ ॥୯୦॥
ଦହନ କାଞ୍ଚନ ଜାଣି ଦିଶଇ ଶରୀର ।
ଦେଖି ହରଷ ହୋଇଲେ ଜନେକ ମୁନିବର ॥୯୧॥
ବାଲମୀକ ସହିତେ ନଗ୍ର ନରନାରୀ ।
ଧନ୍ୟ ଧନ୍ୟ କରନ୍ତି ସକଳ ତପଚାରୀ ॥୯୨॥
ସୀତାର ସନିଧେ କହେ ଜନେକ ରାଜମୁନି ।
କୁଳକୁ କଳଙ୍କ ଏବେ ତେଜିଲୁ ଜିଘ୍ନସେନୀ ॥୯୩॥
ଅଗ୍ନିରୁ ବାହାର ହୋଇ ଆସସି ମହାସତୀ ।
ତ୍ରିଭୁବନେ ବିଖ୍ୟାତ ଏବେ ହୋଇଲା ତୋହର କୀରତି ॥୯୪॥
ପିତାର ବଚନ ଯହୁଁ ସୀତା ଶୁଣିଲା ।
ଅଗ୍ନିର ଭିତରୁ ସତୀ ବାହାର ହୋଇଲା ॥୯୫॥
ସୀତୟାର ଜନନୀ ଦେଖି ହୋଇଲେ ହରଷ ।
ଅନେକ ଋଷିପତ୍ନୀ ତାର ବେଢ଼ିଛନ୍ତି ପାଶ ।
ଯେ ଯାହାର ଚିତ୍ତେ ହୋଇଣ ହରଷ ॥୯୬॥
ଦାନ ଦକ୍ଷିଣା ଦେଇ ଜନେକ ମୁନିବର ।
ସୀତାକୁ ଘେନିଗଲେ ନବର ଭିତର ॥୯୭॥
ପୁତ୍ରନ୍ତ କୋଳେ ଧରି ସୀତୟା ମହାସତୀ ।
ପିତା ଘରେ ଦେବୀ ରହିଲା ନିଭ୍ରାନ୍ତି ॥୯୮॥
ଶୁଣିଲୁ କି ଯୁଧିଷ୍ଠିର ଲବକୁଶଙ୍କର ଜାତ ।
ଏ ଆଛାନ ଶୁଣିଲେ ଦୁଷ୍କୃତ ହୋଏ ହତ ॥୯୯॥
ଜୟ ତୁ ମଧୁସୋଦନ ଲକ୍ଷ୍ମୀଦେବୀର ପତି ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେଣ ସ୍ଥିତି ॥୧୦୦॥
କିରିଟି ମକୁଟ ଶୋଭିତ ପୀତବାସ ।
କର୍ଣ୍ଣେଣ ବେନି କୁଣ୍ଡଳ ସମ୍ପୂର୍ଣ୍ଣ ଚନ୍ଦ୍ର ତ୍ରାସ ॥୧୦୧॥
ଶ୍ୱେତ ପଦ୍ମ ଜାଣି ବେନି ଲୋଚନ ଦିଶନ୍ତି ।
ମଧରେ ଭମରା କି ରାଜୀବ ଚୁମ୍ବନ୍ତି ॥୧୦୨॥
ଶତେସୋରି ମୁକୁତା ଶୋଭିତ ଯାର ଗଳା ।
ହୃଦରେ ଲୁଳଇ ଯାହାର ଅନେକ ପଦ୍ମମାଳା ॥୧୦୩॥
ମଧୁସୋଦନ ରୂପ ସର୍ବଦା ସମ୍ପୂର୍ଣ୍ଣ ।
ମହତ ପୁରୁଷ ସେ ମଧୁସୋଦନ ॥୧୦୪॥
ମଧୁସୋଦନ ନାମ ସୁମରଇ ନିତି ।
ମଧୁସୋଦନ ସୁମରନ୍ତେ ଭୁକତି ମୁକତି ॥୧୦୫॥
ନିତ୍ୟେ ହେ ସୁମରଇ ଯେ ମଧୁସୋଦନ ।
ଅନ୍ତେ ନ ଯାଇ ସେ ଯମର ଭୁବନ ॥୧୦୬॥
ମଧୁସୋଦନ ସୁମରନ୍ତେ ଲଭଇ ମୁକତି ।
ସିଦ୍ଧେଶ୍ୱର ଦାସ ମଧୁସୋଦନ ପୟରେ ଭଗତି ॥୧୦୭॥

## ଲବକୁଶଙ୍କର ବିଦ୍ୟାଲାଭ

ଏଥୁ ଅନନ୍ତରେ ମାରକଣ୍ଡଙ୍କର ବଚନ ଶୁଣି ।
ହରଷ ହୋଇଲେ ଯୁଧିଷ୍ଠିର ନୃପମଣି ॥୧॥
ଚାରି ଭାଇନ୍ତ ଘେନି ପଣ୍ଡୁର ନନ୍ଦନ ।
ଦ୍ରୌପଦୀ ସହିତେ ଯେ ଛଡ଼ଜଣ ॥୨॥
ମାରକଣ୍ଡ ପୟର ଧରି ପଣମ୍ୟ କରନ୍ତି ।
ଚରଣଧୂଳି ନେଇ କପୋଳେ ଲେପନ୍ତି ॥୩॥
କଲ୍ୟାଣ କରନ୍ତି ମୃକଣ୍ଡର ସୁତ ।
ଯେ ମନବାଞ୍ଛା ସୁଫଳ ହୋଉ ଚିତ୍ତ ॥୪॥
ଅରଷ୍ଟି ଉତପାତ ସମସ୍ତ ହୋଉ କ୍ଷୟେ ।
ନିଜ ଭୁବି ଲଭ ରଣେଣ ଅଜୟେ ॥୫॥
ଯୁଧିଷ୍ଠି ପଚାରନ୍ତି ଶୁଣ ହେ କଣ୍ଠମୁନି ।
ଭଲ ଅପୂର୍ବ କଥଏ କହିଲ ରାମାୟେଣ ଧ୍ୱନି ॥୬॥
ବନସ୍ତେ ସୀତୟାର ଦୁସହ କଷ୍ଟ ଶୁଣି ।
ଶରୀର ଦହୁଥିଲା କ୍ରୋଟଅଗ୍ନି ଜାଣି ॥୭॥
ପୁତ୍ରନ୍ତ ଘେନି ପିତାର ଘରେଣ ରହିଲା ।
ଲାକେଣ ମହରଷି ଅଗ୍ନି ପରୀକ୍ଷା କଲା ॥୮॥
କଷଣୁ ମହାସତୀ ହୋଇଲାକ ପାର ।
ପୁତ୍ରନ୍ତ ଘେନି ବିଶ୍ରାମ କଲା ଜନେକର ଘର ॥୯॥
ଏକଥା ଯହୁଁ କର୍ଣ୍ଣରେ ଶୁଣିଲି ।
ସକଳ ବ୍ୟଥା ତେଜି ହରଷ ହୋଇଲି ॥୧୦॥
ତହୁଁ କେବଣ କୃତ୍ୟ କଲେକ ରାମରାଣୀ ।
କହସି ମହାମୁନି ଅପୂର୍ବମୟେ ବାଣୀ ॥୧୧॥
କହନ୍ତି ମାରକଣ୍ଡ ଶୁଣସି ପଣ୍ଡୁ ସୁତ ।

ବିଚିତ୍ର ରାମାୟେଣ ପବିତ୍ରହୁ ପବିତ୍ର ॥୧୨॥
ସଂକଳ୍ପ କରି ଯେ ରାମାୟେଣ ଶୁଣନ୍ତି ।
ଅନ୍ତ୍ୟେ ବଇକୁଣ୍ଠେ ସେମାନେ ବସନ୍ତି ॥୧୩॥
ଶୁଣସି ପାଣ୍ଡବେ ଚିତ୍ତ ସ୍ଥିର କରି ।
ତଳୟେ କରି ଶୁଣ ଗୋ ଦ୍ରୌପଦକୁମାରୀ ॥୧୪॥
ଜନେକର ଘରେ ଥାନ୍ତେଣ ଦେବୀ ସୀତା ।
ପୁତ୍ରକୁ ଦେଖି ରାମକଇ କରଇ ଚିନ୍ତା ॥୧୫॥
ଦୁଇ କୁମରେ ରାମର ସଙ୍ଖାତ ଦିଶନ୍ତି ।
ରୂପଗୁଣ ଦେଖି ଭାଳୁଥାଇ ମତି ॥୧୬॥
ରାମ ରାମ ରାତ୍ର ଦିବସେ ସୁମରଇ ।
ଦୟା ଛାଡ଼ିଲୁ କିମ୍ପା ମୋତେ କ୍ଷତ୍ରିବର ସୁନ୍ଦରଇ ॥୧୭॥
ମୋହର ନ ଥିଲେ ତୋତେ ଦିନେ ହେ ସୁସ୍ଥ ନାହିଁ ।
ମୋ ତହୁଁ ପୀରତି ତୋତେ ଆନ ଯୁବତୀ ନାହିଁ ॥୧୮॥
ଏସନେକ ଭାଳି ରାତ୍ରଦିବସେ ସେ ଝୁରଇ ।
ଲାଜେ କାହାରି ଆଗେ ପ୍ରକାଶମୁ ନ କରଇ ॥୧୯॥
ଏସନେ ବରଷେ ହୋଇଲାକ ଯହୁଁ ।
ଜନେକ ରାଜରଷିକି ବାଲମୀକେ କହିଲେ ତହୁଁ ॥୨୦॥
ଶୁଣସି ଜନେକ ମୋହର ବଚନ ।
ନିୟତ ଆଶ୍ରମକୁ ମୁହିଁ କରିବି ଗବନ ॥୨୧॥
ପୁତ୍ର ଦୁହିନ୍ତି ପ୍ରତିପାଳି ଥିବୁ ।
ପ୍ରାଣୁ ଆଧିକ ସୀତୟାର ତନୟନ୍ତ ଦେଖିବୁ ॥୨୨॥
ରଘୁବଂଶ ଉଦ୍ଧାରଣ ଏ ସୀତୟାର ବେନି ସୁତ ।
ଅଭିନବ ସୁନ୍ଦର ଏ କ୍ଷତ୍ରିବର ସଙ୍ଖାତ ॥୨୩॥
ଯେସନେ କୁମାରେ ହୁଅନ୍ତି ବର୍ଦ୍ଧମାନ ।
ଶହସ୍ରେ ଶାହାସ୍ରେ ପରିପୂର୍ଣ୍ଣ କରା ଶ୍ରୀରାମର ନନ୍ଦନ ॥୨୪॥
ଜନେକ କହଇ ବାଲମୀକଙ୍କର ବଚନ ଶୁଣି ।
ତୁହି କିମ୍ପାଇଁ ମହରଷି କହିଲୁ ଏସନକ ବାଣୀ ॥୨୫॥
ତୁହି ମୋହର ମହାଗୁରୁ ଏଥକୁ ଅଇଲୁ ଯେବେ ।
ସକଳ ପାପ ମୁହିଁ ବିନାଶିବି ଏବେ ॥୨୬॥
ସୀତୟାର କଷ୍ଟ ଦେଖି ମୁହିଁ ହୋଇଲି ବିରସ ।
ତୋହର ଥିଲେ ସେ ପସୋରିବି ହୋଇବି ହରଷ ॥୨୭॥
ତୁହି ମୁନି ମୋହର ରାଜ୍ୟରେ ରହିଥିବୁ ।
ଯଦ୍ୟପି ଅବା ମୋତେ ଓପ୍ରଧ ଛାଡ଼ିବୁ ॥୨୮॥
ରାମ ନାମ ଯାହା ସୁମରିବୁ ନିତି ।
ପ୍ରତକ୍ଷେ ଦେଖ ଦୁଇ କୁମାରେ ଶ୍ରୀରାମର ମୂରତି ॥୨୯॥
ସକଳ ଶାସ୍ତ୍ରେ ନିର୍ଜିତ ତୁମ୍ଭେ ତପୋଧନି ।
ଶାସ୍ତ୍ର ପଢ଼ାଇବ ଶ୍ରୀରାମର ପୁତ୍ର ବେନି ॥୩୦॥
ଏ ବେନି ତନୟନ୍ତ ପ୍ରତିପାଳିବା ।
ଏ ମୋହର ଭଗତି ଘେନି ଏଥେ ରହିଥିବା ॥୩୧॥
ମୋତେ ଯେବେ ଦୟା ନ ଥିବ ତୋହର ।
ଶ୍ରୀରାମର ପୁତ୍ର ଅର୍ଥେ ତୁମ୍ଭେ ଥିବ ମୋହର ପୁର ॥୩୨॥
ଏହାନ୍ତ ଉପେଖିଣ ନ ଯିବ ବ୍ରହ୍ମସୁତ ।
ଏତେ କହି ଜନକ ଶିରେ ଦେଲେ ହସ୍ତ ॥୩୩॥
ବାଲମୀକେ ଜନେକର କଥା ଶୁଣିଲେକ ଯହୁଁ ।
ଜନେକର ମନ୍ଦିରେ ବିଶ୍ରାମିଲେ ତହୁଁ ॥୩୪॥
ଏଥୁ ଅନନ୍ତରେ ଶୁଣ ପଣ୍ଡୁସୂନ ।
ଜନେକର ଘରେ ବଢ଼ନ୍ତି ଶ୍ରୀରାମର ନନ୍ଦନ ॥୩୫॥
ଶ୍ରୀରାମ ସ୍ୱରୂପ ପୁତ୍ରନ୍ତ ଦେଖି ।
ଓହନିଶି ଶ୍ରୀରାମର ତହିଁ ମନ ଥାଇ ସୀତା ଶଶୀମୁଖୀ ॥୩୬॥
ସପତ ବରଷ ଯହୁଁ ହୋଇଲେ ଦୁଇଭାଇ ।
ଜନେକ ରାଜରଷି ଦିନେକ ବାଲମୀକକୁ କହି ॥୩୭॥
ଭୋ ଗୁରୁ ମୋହର ବଚନେକ ଶୁଣସି ।
ଏ ଦୁଇ କୁମରନ୍ତ ଅକ୍ଷର ପଢ଼ାସି ॥୩୮॥
ଜନେକର କଥା ଶୁଣି ବାଲମୀକ ମହାଯତି ।
ଶୁଭ ଅନୁକୂଳ ତିଥି ବିଚାରନ୍ତି ॥୩୯॥
ମକର ଶୁକଳ ପଞ୍ଚମୀ ଗୁରୁବାର ।
ମାହେନ୍ଦ୍ର ଯୋଗେ ରୋହିଣୀ ନକ୍ଷତ୍ର ପ୍ରଚାର ॥୪୦॥
ଆରାଧ(ନା) କରନ୍ତି ଗଉରୀତନୟେ ।
ସରସ୍ୱତୀ ସ୍ଥାପି ଗ୍ରହନ୍ତ ତୋଷ କୟେ ॥୪୧॥
ଖଡ଼ି ଛୁଆଁଇଲେ ରାମ ଦୁଇ ନନ୍ଦନ ।
ହେତୁମତି କୁମାରେ ଗଣପତି ସମାନ ॥୪୨॥
କଣ୍ଠରେଣ ବସଇ ଦେବୀ ସରସ୍ୱତୀ ।
ସକଳ ଶାସ୍ତ୍ରେ କୁମାରେ ନିର୍ଜିତା ହୁଅନ୍ତି ॥୪୩॥
ଏସନେକ ପାଠ କୁମାରେ ଯହୁଁ ପଢ଼ିଲେ ।
ଶାସ୍ତ୍ର ସୁମୃତିରେ ନିର୍ଜିତା ହୋଇଲେ ॥୪୪॥
ଆଠ ବରଷରେ ପାଠ ନିର୍ଜିତା ହୋଇଲେ ଯହୁଂ ।
ଧନୁର୍ବେଦ ବିଦ୍ୟା ମୁନି ପ୍ରକାଶନ୍ତି ତହୁଁ ॥୪୫॥
ଆଧାନ ସନ୍ଧାନ ରଥ ଖଡ଼ଗ ଯୁଦ୍ଧଇ ।

ମାଲଗତି ଗଜଅଶ୍ୱ ସମରେ ମୁରାଟଇ ॥୪୬॥
ରାଜନୀତି ଆଚରଣ ଯେସନେକ ଶ୍ରେଷ୍ଠଇ ।
ସକଳ ବିଦ୍ୟାରେ ପରିପୂର୍ଣ୍ଣ ହୋଇଲେ ଦୁଇଭାଇ ॥୪୭॥
ବେଳେକ ମହାମୁନି କହି ଦିଅନ୍ତି ଯାହା ।
ହୃଦରେ ଗୁଣୁ ଥାନ୍ତି ନ ପାସୋରନ୍ତି ତାହା ॥୪୮॥
ଏସନେକେ ଦଶ ଦଶ ବରଷ ହୋଇଲା ସମ୍ପୂର୍ଣ୍ଣ ।
ନାନା ବିଦ୍ୟାରେ ଦୁଇ କୁମାରେ ହୋଇଲେ ପରିପୂର୍ଣ୍ଣ ॥୪୯॥
କେବଣ ହି ଦିନେକ ଶାସ୍ତ୍ର ପଢି ବାହୁଡ଼ନ୍ତି ।
ଅନ୍ନ ଭୁଞ୍ଜିବାକୁ ଆଶ୍ରମକୁ ଆସନ୍ତି ॥୫୦॥
କୁଶ କୁମର କହଇ ଶୁଣ ଆହୋ ଭାଇ ।
ମାତାକୁ ପଚାରିବା ଆମ୍ଭର ପିତା ଅଛି କାହିଁ ॥୫୧॥
ଜନେକ ଋଷି ଦୋହିତା ଅଟଇ ଆମ୍ଭର ମାତା ।
ପିତାକୁ ନ ଦେଖି ଆମ୍ଭର ବଡ଼ ଚିନ୍ତା ॥୫୨॥
ବଡ଼ ଭାଇ ହୋଇ ତୁମ୍ଭେ କିଛି ହି ନ ବିଚାର ।
କନେଷ୍ଠ ବଚନେ ଜେଷ୍ଠ କହଇ ଉତ୍ତର ॥୫୩॥
ଲବ କୁମର କହଇ ରୟଣୀର କାଳେ ।
ଜନନୀକି ପୁଛିବା ଶୟନର ବେଳେ ॥୫୪॥
ଶୁଣି କୁଶ କୁମର ସନମତ କଲା ।
ଦିବସନ୍ତେ ରୟଣୀ ପ୍ରବେଶ ହୋଇଲା ॥୫୫॥
ନିଶାର ସମୟେ ଦୁଇ କୁମରନ୍ତ ଘେନି ।
ପଲ୍ୟଙ୍କେ ଶୟନ ନିତି ଜନେକନନ୍ଦନୀ ॥୫୬॥
ଯେତେକ ଶାସ୍ତ୍ର ଯେ ଗୁରୁ ମୁଖେ ଶିଖିଛନ୍ତି ।
ମାତାର ଆଗେ ତାହା ବଖାଣ କରନ୍ତି ॥୫୭॥
ସେ ରାତ୍ରେ ଉଠି ଲବ କୁମରଇ ।
କରପତ୍ର ଯୋଡ଼ି ମାତାକୁ ପଚାରଇ ॥୫୮॥
ଜନେକ ରାଜରଷିର ଦୋହିତା ତୁ ଆମ୍ଭର ନିଜ ମାତା ।
କାହିଁକି ଗଲେ ଆନେ ଆମ୍ଭର ନିଜ ପିତା ॥୫୯॥
ପିଅର ଦେଖିତ ଗୋ କଲୁ ଆମ୍ଭ ମନ ।
କହସି ଗର୍ଭଧାରୀ ଗୋ ସ୍ୱରୂପ ବଚନ ॥୬୦॥
ଶୁଣିଣ ସୀତୟାର ଦେହୁ ଆତ୍ମା ଉଛର୍ଗିଲା ।
ମାନନୀ ମାନଭରେ ଶୋକ ବସିଲା ॥୬୧॥
ଘନ ଘନ ଅଶ୍ରୁଜଳ ନୟନୁ ଗଳି ।
ଧଉର୍ଯ ହୋଇ କହଇ ଜନେକ ଦୁଲାଳୀ ॥୬୨॥
ତୁମ୍ଭର ତାତରେ ଜୀବନ୍ତେଣ ନାହିଁ ।
ଆବର ପିତାକୁ ଦେଖିବ ତୁମ୍ଭେ କାହିଁ ॥୬୩॥
ମୁହିଁ ନ ଜାଣଇ ସେ ଜୀଇଛି କି ମଲା ।
ନିର୍ଦ୍ଦୋଷେ ମୋତେ ରେ ବାହାର କରି ଦେଲା ॥୬୪॥
ମୋହର ଗର୍ଭେ ପଡ଼ିଲ ତୁମ୍ଭେ ଯହୁଁ ।
ମୋତେ ମୁହାଁସ ସେ ତେଜିଲାକ ତହୁଁ ॥୬୫॥
ତୁମ୍ଭର ପିତା ଜୀବନ୍ତେ ଯେବେ ଥାନ୍ତେ ।
ମୁହିଁ କିମ୍ପା ରହିଥାନ୍ତି ଏ ବନସ୍ତେ ॥୬୬॥
ଯାହାର ପିତା ବାବୁ ଜୀବନ୍ତେଣ ଥାଇ ।
ତାହାର ମାତା କି ପିତାର ଘରେ ଥାଇ ॥୬୭॥
କୁଳ ଉଦିତ ହୋଇଲା ଆଦିତ୍ୟର ବଂଶ ।
ଦୁଃଖୀର ଗର୍ଭେ କଲ ତୁମ୍ଭେ ବାସ ॥୬୮॥
ପିତାର ମୁଖ ତୁମ୍ଭେ କାହୁଁ ଦେଖିବ ।
ଯାହା ଅରଜିଲ ତୁମ୍ଭେ ତାହା ଭୁଞ୍ଜିବ ॥୬୯॥
ଶୁଣିଣ କୁମରେ ହୋଇଲେ ମଉନ ।
ଲବ କୁମର କହଇ କୁଶର ଚାହିଁଣ ବଦନ ॥୭୦॥
ପିତାକୁ ହି ଆମ୍ଭେ ପଚାରିଲୁ ଏବେ ।
ବହୁତ ଦୁଃଖ ମାତାକୁ ଦେଇଅଛୁ ଯେବେ ॥୭୧॥
ପିତାର ନାମ ଯହୁଁ ପଚାରିଲୁ ।
ମହା ବ୍ୟଥା ଏକ ମାତାକୁ ହିଁ ଦେଲୁ ॥୭୨॥
ଆବର ବେଳେ ପିତାର ନାମ ନ ଧରିବା ।
ଏକମନ ହୋଇ ଆମ୍ଭେ ଶାସ୍ତ୍ର ପଢୁଥିବା ॥୭୩॥
ଶୁଣିଣ କୁଶ କୁମର ହୋଇଲାକ ତୁନି ।
ଶେଯ୍ୟାରେ ଶୋଇ ନିଦ୍ରାଗଲେ କୁମର ବେନି ॥୭୪॥
ରାମ ରାମ ସୁମରନ୍ତେ ଜନେକ କୁମାରୀ ।
ଶୁଭେଣ ପ୍ରଭାତ ଯେ ହୋଇଲାକ ତିମିରି ॥୭୫॥

X X X

ଏଥୁ ଅନନ୍ତରେ ଶୁଣସି ପଣ୍ଡୁ ସୁତ ।
ଦୁଇ କୁମାରେ ଶାସ୍ତ୍ର ପଢ଼ନ୍ତି ଯେ ନିତ୍ୟ ॥୧॥
ରାମାୟେଣ ଚରିତ୍ର ବିଚିତ୍ର ଦିବ୍ୟ ଧ୍ୱନି ।
ଆଦ୍ୟ ଅନ୍ତ ସମସ୍ତ ଶିଖାଇଲେ ମହାମୁନି ॥୨॥
ଦୁଇ କୁମାରେ ଗ୍ରନ୍ଥ ଅଭ୍ୟାସ କଲେ ଯହୁଁ ।
ଲବକୁଶ ହକାରି ମହରଷି କହନ୍ତି ତହୁଁ ॥୩॥
ଗୀତ ବିଦ୍ୟାରେ ମହାଜ୍ଞାତା ହୋଇଲ ବାଳିଶିଷ୍ୟ ।
ଚାଟ ଭିକ୍ଷା ବୁଲି ରେ ତଣ୍ଡୁଳ ଘେନି ଆସ ॥୪॥

ଦେବ ଦେବାର୍ଚ୍ଚନ ପିତୃନ୍ତ ତୋଷିବୁ ।
ଅତିଥିଙ୍କୁ ଦେବୁ ଆମ୍ଭେ ହେ ଭୁଞ୍ଜିବୁ ॥୫॥
ବାଲମୀକଙ୍କର ବଚନ ଶୁଣି ଦୁଇ ଭାଇ ।
ତତକ୍ଷଣେ ଯାଇ ମାତାର ଆଗେ କହି ॥୬॥
ଗୁରୁ ଆଜ୍ଞା ଦେଲେ ତ ଗୀତ ଗାଇ ଯିବୁ ।
ଚାଉଳ ଆଣି ତାହାକୁ ହି ଦେବୁ ॥୭॥
ତୁମ୍ଭେ କିସ ବିଚାର ଆମ୍ଭର ଆଗେ କହ ।
ଶୁଣି ସୀତୟାର ବିକଳ ହୋଇଲାକ ଦେହ ॥୮॥
ପୁତ୍ରଙ୍କର ମୁଖ ଚାହିଁ କହଇ ଜିଘ୍ନସେନୀ ।
ଏହା କିମ୍ପା ବୋଇଲେ ବାଲମୀକ ତପୋଧନି ॥୯॥
ବାଳୁତ ବୁଦ୍ଧି ଚଞ୍ଚଳ ଅଳପ ଅଟଇ ।
ନଗ୍ର ବୁଲନ୍ତେ ତୁମ୍ଭେ ପାଇବ ନାନା କଷ୍ଟଇ ॥୧୦॥
କୁମାରେ କହନ୍ତି ଗୁରୁଙ୍କର ଲଂଘନ୍ତେ ବଚନ ।
ଆମ୍ଭଙ୍କୁ କୋପ କରିବେନା ତପୋଧନ ॥୧୧॥
ଶାସ୍ତ୍ର ବିଦ୍ୟା ସେ କିମ୍ପାଇଁ କହିବେ ।
ଅହୋନିଶି ହୃଦରେ ତାମସ କରିଥିବେ ॥୧୨॥
ସୀତୟା କହନ୍ତି ତୁମ୍ଭନ୍ତ ନ ଦେଖିଲେ ।
ପ୍ରାଣ ଧରିବି କେସନେକେ ତୁମ୍ଭନ୍ତ ଉପେଖିଲେ ॥୧୩॥
ବାଳୁତ ବୟସ ଅଳ୍ୟଳ ମୋହର ପୋଇ ।
ଦୁଃଖ ପାଇବନା ଦ୍ୱାରେ ଦ୍ୱାରେ ଗୀତ ଗାଇ ॥୧୪॥
ଯଦ୍ୟପି ବିଦ୍ୟା ତୁମ୍ଭେ କରିବ ଉକତ ।
ମୋହର କଥାରେ ତୁମ୍ଭେ ଥିବ ବେନି ଭ୍ରାଥ ॥୧୫॥
ଏହି ନଗ୍ରେ ବୁଲି ଗୀତ ଗାଇବ ।
ଦୁଇଗୋଟି ଭାଇ ତୁମ୍ଭେ ଛଡ଼ାଛଡ଼ି ନୋହିବ ॥୧୬॥
ତୁମ୍ଭର ଆସିବା ଯାଏ ମୁହିଁ ଦ୍ୱାରେଣ ବସିଥିବି ।
ବାହୁଡ଼ି ଅଇଲେ ସେ ଭିତରେଣ ପଶିବି ॥୧୭॥
ତେବେ ସେ ମୁହିଁ କରିବି ଭୋଜନ ।
ଯେତେ ପାଅ ତେତେ ଘେନି ଆସିବ ବହନ ॥୧୮॥
ବହୁତ ତଣ୍ଡୁଳ ଯେ(ବେ) ଲୋଡ଼ନ୍ତି ମହରଷି ।
ନବର ଭିତରୁ ମୁହିଁ (ଦେବି) ଚାଉଳ ଦିଅସି ॥୧୯॥
ଲବକୁଶେ କହନ୍ତି ଶୁଣସି ଗୋ ଆଈ ।
ତୁମ୍ଭର କଥାରେ ଥିବୁ ବେନି ଭାଇ ॥୨୦॥
ଶୁଣିଣ ମହାସତୀ ହୋଇଲେ ହରଷ ।
ଧାତ୍ରୀଗଣେ କୁମରନ୍ତ କରନ୍ତି ସୁବେଶ ॥୨୧॥

ହରିଦ୍ରା ଘଂଷି ଶିରେ ପାଡ଼ିଲେକ ବେଣୀ ।
ନୟନେ କଜ୍ଜଳ ଦିଅନ୍ତି ତରୁଣୀ ॥୨୨॥
ରତ୍ନ ଅଳଂକାର ଯେ ଆଭରଣ ହୋଇଥିଲେ ।
ବନ ବାଟ ବୋଲି ତାହା କାଢ଼ିଣ ଥୋଇଲେ ॥୨୩॥
ଶୁକଳ ବସ୍ତ୍ର ପିନ୍ଧାନ୍ତି କାମେନୀ ।
କାଖେ ପାଞ୍ଜି ଚାପି ଯାନ୍ତି ଭାଇ ବେନି ॥୨୪॥
ସିଂହାମଣ୍ଡଳ ପୁରେ ଦ୍ୱାରେ ଦ୍ୱାରେ ଗାବନ୍ତି ଗୀତ ।
ଶୁଣି ନଗ୍ର ନରନାରୀ ହୁଅନ୍ତି ମୋହିତ ॥୨୫॥
ହରଷ ନଗ୍ର ଜନେ କୁମାରନ୍ତ ଦେଖି ।
ରାମାୟେଣ ଶୁଣନ୍ତି ଗୃହକର୍ମ ଉପେଖି ॥୨୬॥
ସୁସ୍ୱରେ ସୁସଞ୍ଚ ଶୁଭଇ ଦିବ୍ୟବାଣୀ ।
ମଧୁ ମାଧେବ ମାସେ କି ଶବଦ କୋକିଳ ଧ୍ୱନି ॥୨୭॥
ଏସନେକେ ସିଂହାମଣ୍ଡଳପୁରେ ଘରେ ଘରେ ଗୀତ ଗାବନ୍ତି ।
ହରଷେ ଋଷିପତ୍ନୀ ତଣ୍ଡୁଳ ନେଇ ଦେନ୍ତି ॥୨୮॥
ବାହୁଡ଼ି କୁମରେ ହୁଅନ୍ତି ମାତାର ପାଶ ।
ପୁତ୍ରନ୍ତ ଦେଖି ସତୀ ହୋଇଲେ ହରଷ ॥୨୯॥
ତଣ୍ଡୁଳ ଘେନି ପୁତ୍ରଙ୍କର ଭୁଜ ଧରି ।
ବାଲମୀକଙ୍କର ସନିଧିକୁ ଗଲେ ଜନେକ କୁମାରୀ ॥୩୦॥
ଚାଉଳ ଥୋଇଣ ପ୍ରଣମିତ ହୋଇ ।
କହଇ ସୀତୟା କୃତକୃତ ହୋଇ ॥୩୧॥
ଭୋ ମୁନି ମୋହର ପୁତ୍ରେ ଗାଇ ଯାଇଥିଲେ ।
ଏ ତଣ୍ଡୁଳ ସେ ଘେନିଣ ଅଇଲେ ॥୩୨॥
ତଣ୍ଡୁଳ ଦେଖି ହରଷ ତପଚାରୀ ।
ବାଲମୀକେ କହନ୍ତି ଶୁଣ ଗୋ ରାମନାରୀ ॥୩୩॥
ସର୍ବ ସୁଲକ୍ଷଣ ତୋହର ଦୁଇ କୁମର ।
ମାହେନ୍ଦ୍ର ବେଳେ ଯେ ହୋଇ ଅଛଇ ଅବତାର ॥୩୪॥
ଏହାଙ୍କର ଅର୍ଜିଲା ଦେବ ଦେବାର୍ଚ୍ଚନ କରିବି ।
ବଳି ଚରୁ ଦେଇ ଆତ୍ମାକୁ ତୋଷିବି ॥୩୫॥
ଶୁଣି ସୀତୟା ଯେ ହୋଇଲା ହରଷଇ ।
ତନୟ ଦୁଇ ଘେନିଣ ତହୁ ବାହୁଡ଼ିଣ ଆସଇ ॥୩୬॥
ତେବେ ସେ ସ୍ନାହାନ କରି ଭୋଜନ କରଇ ।
ପୁତ୍ରଙ୍କର ମୁଖେ ବାକ୍ୟ ବଖାଣ ଯେ ଶୁଣଇ ॥୩୭॥
ବିଧାତା ମୋତେ ଦୟା କରଇ ଯେବେ ।
ପୁତ୍ରଙ୍କର ମୁଖେ ରାମ ବାକ୍ୟ ଶୁଣିବିନା ତେବେ ॥୩୮॥

ଏସନେକେ ମନେ ମନେ ଭାଳୁଥାଇ ସତୀ ।
ଶ୍ରୀରାମର ତହିଁ ସେ ପଞ୍ଚୁ ମନ ସ୍ଥିତି ॥୩୯॥

## ଲବକୁଶଙ୍କର ରାଜ୍ୟାନ୍ତରରେ ଭିକ୍ଷା

ଏସନେକ କଥା ଶୁଣି ପଣ୍ଡୁର ନନ୍ଦନ ।
ମାରକଣ୍ଡ ଋଷିକି ପୁଚ୍ଛନ୍ତି କୁନ୍ତୀର ଜେଷ୍ଠ ସୂନ ॥୧॥
ଭୋ ମହରଷି ଲବକୁଶଙ୍କର ଶାସ୍ତ୍ର ଉକତ ଶୁଣି ।
ଶରୀର ତୋଷ ହୋଇବ ଅମୃତ ଜାଣି ॥୨॥
ଏଥୁ ଉତ୍ତାରେ କଲେ କେବଣ କୃତ୍ୟ ।
କହସି କଳପମୁନି ସୁଦେବର ସୁତ ॥୩॥
ମାରକଣ୍ଡେ କହନ୍ତି ଶୁଣ ପାଞ୍ଚାଳୀର ପତି ।
ବିଚିତ୍ର ରାମାୟେଣ ଏ ଶୁଣ ଦିବ୍ୟ ରୀତି ॥୪॥
ଏସନେକେ ଗୀତ ଗାବନ୍ତି ସୀତୟାର ବେନି ନନ୍ଦନ ।
ତଣ୍ଡୁଳ ଦିଅନ୍ତି ସେ ବାଲମୀକଙ୍କର ସନ୍ନିଧାନ ॥୫॥
ଜନେକ ମହରଷି ଶାସ୍ତ୍ର ନିତି ଶୁଣଇ ।
ନାତିକି ଦେଖଇ ହୃଦୟର ପଞ୍ଚୁ ପ୍ରାଣଇ ॥୬॥
ଅନ୍ତପୁର ଭିତରେ ଜନେକର ବନିତା ।
ଶାସ୍ତ୍ର ଶୁଣୁଥାନ୍ତି ସୀତୟାର ଯେତେ ମାତା ॥୭॥
ଧାଈ ମୁଦୁସୁଲୀ ଅନେକ ପରିବାରୀ ।
ଲବକୁଶଙ୍କର ମୁଖୁ ବାକ୍ୟ ଶୁଣନ୍ତି ସର୍ବବାଳୀ ॥୮॥
ଜନେକ ରା(ଇ)ଙ୍କେ ଯେତେକ ମହରଷି ।
ଲବକୁଶଙ୍କର ମୁଖୁ ବାକ୍ୟ ଶୁଣୁଥାନ୍ତି ବସି ॥୯॥
ଏସନେକ ବରଷେକ ସରିଲାକ ଯହୁଁ ।
ବାଲମୀକେ ଲବକୁଶକୁ ହକାରିଲେ ତହୁଁ ॥୧୦॥
ନିତି ଏ ନଗ୍ରେ ଗୀତ ଗାଅ ତୁମ୍ଭେ ।
ବିଶ୍ୱାସ କଥା ଏକ କହିବୁନା ତେବେ ॥୧୧॥
ଏ ନଗ୍ର ଲୋକେ ହୋଇଲେନି ମୁକତ ।
ଆନ ରାଜ୍ୟେ ପଶି ରାମାୟେଣ କରିବା ନା ଉକତ ॥୧୨॥
ଲବକୁଶେ କହନ୍ତି ତୁମ୍ଭେ ଆଜ୍ଞା ଦେବ ଯହିଁ ।
ଭୋ ଗୁରୁ ହେ କାବ୍ୟ ବଖାଣିମୁ ତହିଁ ॥୧୩॥
ତୁମ୍ଭର ପ୍ରସାଦେ ଜ୍ଞାନବନ୍ତ ହୋଇଲୁ ।
ରାମାୟେଣ ପୁରାଣ ଗର୍ଭଗତ କଲୁ ॥୧୪॥
ବାଲମୀକେ କହନ୍ତି ଶୁଣସି ବେନି ଭ୍ରାତ ।
ଯହିଁ ଯହିଁ ଶାସ୍ତ୍ର କରିବ ଉକତ ॥୧୫॥
ହରିହରପୁରେ ବାକ୍ୟ କରିବ ବଖାଣ ।
ବଇଷବ ମହତ ଲୋକେ ସୁଜ୍ଞ ବ୍ରାହ୍ମଣ ॥୧୬॥
କ୍ଷତ୍ରି ଧାର୍ମିକ ନୃପତିଙ୍କର ଶିଷ୍ଟ ।
ବଇଶ୍ୟ ବାଣିଜ୍ୟ ଲୋକେ ତହିଁ ହୁଅନ୍ତି ଗୋଷ୍ଠୀ ॥୧୭॥
ଶାସ୍ତ୍ର ଉକତ କରିବ ମାଗିବ ଧନ ।
ମନର ହରଷେ ଅବା ଯେ ଦିଅଇ ଦାନ ॥୧୮॥
ଗୁଣେକ ଦେଲେ ତାହାର ସହସ୍ରେ ଗୁଣ ସିଦ୍ଧି ।
ମନ ତୋଷ କରି ହୋଇବ ପ୍ରବୋଧୀ ॥୧୯॥
ଶୁଣି ଲବକୁଶେ କହନ୍ତି କର ଯୋଡ଼ି ।
ବଡ଼ କଥାଏକ କହିଲ ଅକୋଡ଼ି ॥୨୦॥
କାବ୍ୟ ପୁରାଣ ଉକତ କରିବୁ ।
ଆଗତ ଜନ୍ମେ ଯେବେ ବ୍ରିଧିକ ଗୁଣେ ଦେବୁ ॥୨୧॥
କିସ ଅର୍ଥେ ଆବର ଘେନିମୁ ସେ ଧନ ।
ହସିଣ କହନ୍ତି ବାଲମୀକ ତପୋଧନ ॥୨୨॥
ଶାସ୍ତ୍ର ଶୁଣି ଯେବେ ଦକ୍ଷିଣ ଦାନ ଦେନ୍ତି ।
ତେବେ ସେ ଶୁଣିବାର ପାଇବ ଫଳଶ୍ରୁତି ॥୨୩॥
ମନର ସନ୍ତୋଷେ ଯେ ଦକ୍ଷିଣା ଦାନ ଦେଇ ।
ତ୍ରିଭୁବନ ନାଥ ତାହାର ବାଞ୍ଛାସିଦ୍ଧି କରଇ ॥୨୪॥
ସକଳ ଦାନପୁନ୍ୟକୁ ସାଖୀ ଶ୍ରୀହରି ।
ସେ ଅକ୍ଷର ନିରଞ୍ଜନ ତାହାକୁ ଦିଅଇ ତ୍ରିବିଧି କରି ॥୨୫॥
ଶୁଣିଣ କୁମାରେ ହୋଇଲେ ହରଷ ।
ମାତାର ଆଗେ ଯାଇ କରନ୍ତି ପ୍ରକାଶ ॥୨୬॥
ତୁମ୍ଭେ ଯେ ବୋଇଲ ନିକଟେ ଗୀତ ଗାଇ ।
ଗୁରୁ ଆଜ୍ଞା ଦେଲେ ଆନ ନଗ୍ରକୁ ହି ଯାଇ ॥୨୭॥
ମନେଣ ବ୍ୟଥା ବଇକୁଲ୍ୟ ନୋହିବ ।
ଆସିବା ବିଳମ୍ବ ହୋଇଲେ ଭୋଜନ କରିଥିବ ॥୨୮॥
ସୀତୟା କହନ୍ତି ତୁମ୍ଭନ୍ତ ନ ଦେଖିଲେ ।
ଅନ୍ନ ଭୁଞ୍ଜି ହୁଅଇ କି ଆମ୍ଭର ବୋଲେ ॥୨୯॥
ଗୁରୁଙ୍କର ବଚନ ଅନାସ୍ତ ନ କରିବ ।
ଶୀଘ୍ର ହୋଇ ବାବୁ ହେ ବାହୁଡ଼ି ଆସିବ ॥୩୦॥
ଏସନେକ କହନ୍ତେ ପ୍ରଭାତ ରଜନୀ ।
କୁମରନ୍ତ ସୁବେଶ କରାଅ(ନ୍ତି) ପରିବାରୀ କାମେନୀ ॥୩୧॥
ଅନ୍ନ ଭୁଞ୍ଜି କୁମରେ ପାଞ୍ଜି ଚାପନ୍ତି କାଖେ ।
ଘରୁ ବାହାର ହୁଅନ୍ତି ଦ୍ରହସିତ ମୁଖେ ॥୩୨॥

ପୁତ୍ରକୁ ହି ଗୋଡ଼ାଇ ଥୋକାଏ ଦୂର ଦେବୀ ଯାନ୍ତି ।
ତହୁଁ ବାହୁଡ଼ି ଆସିଣ ନବର ଦ୍ୱାରେଣ ବସନ୍ତି ॥୩୩॥
ବିଧାତା ସୁମରି ମନେ ମନେ ଭାଳଇ ।
ଶୁଭେ ଆସନ୍ତୁ ମୋହର ବେନି ଦୁଲ୍ଲାଳଇ ॥୩୪॥
ତହୁଁ ଲବକୁଶେ ନଗ୍ର ବାହାର ହୋଇ ଯାନ୍ତି ।
ଶବର ପଲ୍ଲୀ ସହିତେ ଋଷିଙ୍କର ମନ୍ଦିରେ ଗୀତ ଗାବନ୍ତି ॥୩୫॥
ଯେତେକ ତଣ୍ଡୁଳ ନିତି ଉପୁଜଇ ।
ମାତାର ଗୋଚରେ ଆଣି ଦିଅନ୍ତି ତନୁଜଇ ॥୩୬॥
ପୁତ୍ରନ୍ତ ଘେନି ତଣ୍ଡୁଳ ସହିତେ ।
ନେଇ ଦିଅଇ ସତୀ ଗୁରୁଙ୍କର ଅଗ୍ରତେ ॥୩୭॥
ଦେଖି ବାଲମୀକେ ହୁଅନ୍ତି ହରଷ ।
ଏସନେକ ଦିବସ ହୋଇଲା ଷଡମାସ ॥୩୮॥

## ଯୁଗାନ୍ତ ପାଇଁ ଦେବତାଙ୍କ ମନ୍ତ୍ରଣା

ଦେବପୁରେ ବ୍ରହ୍ମାଦି ସୁର ମେଳେ ।
ସଭାରେ ବିଚାର କରନ୍ତି ସକଳେ ॥୧॥
ଶ୍ରୀରାମ ସୀତା ଯେବେ ବିଛେଦ ହୋଇ ।
ଦୁହିଙ୍କରି ଶରୀରେ ଦିନେ ହେ ସୁସ୍ଥ ନାହିଁ ॥୨॥
ରାବଣ ନିଶାଚର ଦୃଷ୍ଟ ବୁଧି କଲା ଯହୁଁ ।
ପରମଲକ୍ଷ୍ମୀ ମଞ୍ଚେ ଜାତ ହୋଇଲାକ ତହୁଁ ॥୩॥
ଜନେକ ଘରେ ସୀତୟା ନାମ ବୋଲାଇଲା ।
ଦଶରଥ କୋଳେ ରାମ ଜନ୍ମ ହୋଇଲା ॥୪॥
ଯାଗ ରଖାଇ ନେଲେ ଗ୍ୟାଧିର ଦୁଲାଳେ ।
ଶିବନାଥର ଧନୁ ରାମ ଭାଙ୍ଗି ପକାଇଲେ ॥୫॥
ସୀତା ବିଭା ହୋଇ ରାଜ୍ୟକୁ ଅଇଲା ।
ଏ କକୟା ଦେବୀ ସାବତ ହିଂସା କଲା ॥୬॥
ଦଶରଥକୁ ସତ୍ୟ ମନାଇଁ ଭ୍ରଥକୁ କଲା ରାଜା ।
ସୀତା ଘେନି ବନକୁ ଗଲେ କଉଶୁଲ୍ୟା ତନୁଜା ॥୭॥
ପଞ୍ଚବଟୀ ବନେ ବିଶ୍ରାମ କଲେ ଯହୁଁ ।
କପଟେ ରାବଣ ସୀତାକୁ ହରିନେଲା ତହୁଁ ॥୮॥
କପିବଳ ଘେନି ରାମ ସେତୁବନ୍ଧ ବାନ୍ଧି ।
ଅସୁର ବଳ ମାରି ଦଶଶିର ଛେଦି ॥୯॥
ସୀତାକୁ ଅଗ୍ନି ପରୀକ୍ଷା କରି ଆଣିଲା ।
ବହୁତ ମୁଖେ ଦୋଚାରୀ ଶୁଣି ବନବାସ ବିହିଲା ॥୧୦॥
ସୀତାକୁ ବନବାସ ପଠିଆଇଲା ଯହୁଁ ।
ଜନେକ ପ୍ରତିମା ବଶିଷ୍ଟେ କରାଇଲେ ତହୁଁ ॥୧୧॥
ସୀତାର ସାଦୃଶେ ପ୍ରତକ୍ଷେ ଦିଶଇ ।
ତାହା ଦେଖି ରାମ ଅହୋନିଶି ବିରସ ହୋଇ ॥୧୨॥
ଭୋଜନ ଶୟନେ ସୀତା ସୀତା ସୁମରଇ ।
ହୃଦୟ ଆକୁଳେ ବସି ରାମ ଝୁରଇ ॥୧୩॥
ମଥା ପୋତି ବସିଥାଇ ଶରୀରେ ବଇରାଗ ।
ଭାଳି ଭାଳି ଗୋଡ଼ ହୋଇଲା ବାତ ରୋଗ ॥୧୪॥
ସୀତାର ଦୁଃଖ କହନ୍ତେ ନ ସରଇ ।
ରାମର ସାଦୃଶ ଦିଶନ୍ତି ଦୁଇ କୁମାରଇ ॥୧୫॥
ପୁତ୍ରକୁ ଦେଖି ରାମଙ୍କୁ ନ ପାସୋରଇ ସତୀ ।
ଅନ୍ନ ନ ରୁଚଇ ନିଦ୍ରା ନ ମାଡ଼ଇ ରାତି ॥୧୬॥
କେସନେକେ ଶ୍ରୀରାମସୀତା ଆସନ୍ତୁ ନିଜପୁର ।
ସ୍ୱରୂପ ବିଚାରି କହସି ଚଉଶିର ॥୧୭॥
ବିଧାତା ପ୍ରକାଶଇ ଶୁଣସି ଆଖଣ୍ଡଳ ।
ରାମ ଦେଖଇ ଯେବେ ବେନି ଦୁଲାଳ ॥୧୮॥
ତେବେ ସେ ସୀତା ଅଛି ବୋଲି ଜାଣିମେ ରଘୁପତି ।
ଚିନ୍ତାଭରେ ରାମ ଶୋକଭର ମତି ॥୧୯॥
ପୁତ୍ରକୁ ଦେଖି ଯିବ ସୀତୟାକୁ ହି ଆଣି ।
ଦେଖି କୋପ କରିବ ଜନେକ ଦୁଲ୍ଲଣୀ ॥୨୦॥
ମାନ(ନୀ) ଅପମାନ ସହି ନ ପାରିବ ।
ରାଗେ ମହାସତୀ ଅବନୀରେ ପଶିବ ॥୨୧॥
ତହୁଁ ବାହୁଡ଼ିବେ ରାମ ନବରକୁ ବିମନେ ।
ଆସି ହୋଇବେ ରାମ ଅଯୋଧ୍ୟା ଭୁବନେ ॥୨୨॥
ସୀତା ପୃଥିବୀରେ ପଶିଲେକ ପୁଣି ।
କୋପ କରିବେ ଯେ ଦଶରଥଙ୍କର ରାଣୀ ॥୨୩॥
ଶ୍ରୀରାମକୁ ବହୁତ କହିବେ ଜିଂଘାସ ।
ସକଳ ମାତାଏ ଅଗ୍ନିରେ ହୋଇବେ ପ୍ରବେଶ ॥୨୪॥
ତହୁଁ ରାମ ଅଯୋଧାରେ ବରଷେକ ଥିବେ ।
ମାତୃଗଣକୁହି ବରଷିକା ଶ୍ରାଧ କରିବେ ॥୨୫॥
ଦୁଇ କୁମରନ୍ତ ବିଭା ଯୋଗ କରି ।
ଅଯୋଦ୍ଧ୍ୟାରେ ଲବକୁମର ହୋଇବେ ଦଣ୍ଡଧାରୀ ॥୨୬॥
କୁଶକୁମର(କୁ) ମଧୁବନେ ପଠିଆଇବ ।
ଲବଣର ନଗ୍ରେ କୁଶରଜା ହୋଇବ ॥୨୭॥

ତହୁଁଣ ରାମ ଶୋକଭର ଚିତ୍ତେ ।
ତୀର୍ଥେ ଗମନ କରିବ ଭାଇ ମଇତ୍ର ସହିତେ ॥୨୮॥
ତେବେ ସେ ତ୍ରେତୟା ଯୁଗ ହୋଇବାକ ଶେଷ ।
ଦ୍ୱାପର ଯୁଗ ହୋଇବ ପରବେଶ ॥୨୯॥
ଭବିଷ୍ୟ ପୁରାଣ ଏସନେକ ନିର୍ବାଣି ।
ଶୁଣି ହରଷ ହୋଇଲେ ବଜ୍ରପାଣି ॥୩୦॥
ଦେବତାଗଣ କହନ୍ତି ପିତାମହର ଆଗ ।
ଭୋ ପିତା ଏହା ନିର୍ବାଣ କର ବେଗ ॥୩୧॥
ସୀତାର କଷ୍ଟ ଆମ୍ଭେ ନ ପାରୁ ଯେ ଦେଖି ।
ପିତା ଘରେ ଦେବୀ ହୋଇଲା ମହାଦୁଃଖୀ ॥୩୨॥
ଭାରିଯା ବିହୁନେ ରାମ କଷ୍ଟ ବହୁତ ।
ମହାବାଧାଏଣ ଶୋକଭର ଚିତ୍ତ ॥୩୩॥
ତୁହି ସେ ଜାଣୁନା ଯେ ଯହିଁର ରୀତି ।
ଦେବଙ୍କର ବଚନ ଶୁଣିଣ କୁଶକେତି ॥୩୪॥
ଶାରଦା ହକାରି କହଇ ଚଉଶିର ।
ତୁ ଯାଇ ପ୍ରବେଶ ହୁଅସି ଲବକୁଶଙ୍କର ଶରୀର ॥୩୫॥
ଯେସନେକେ ସେ ଅଯୋଧ୍ୟାକୁ ଗମନ କରନ୍ତି ।
ଶ୍ରୀରାମର ଛାମୁରେ ଯେବଣ ମତେ ହୁଅନ୍ତି ॥୩୬॥
ତେସନେକ ଉପାୟ କରିବୁ ମୋର ମାତ ।
ତେବେ ସେ ଦେବଗଣେ ହୁଅନ୍ତି ତୋଷଚିତ୍ତ ॥୩୭॥
ପବନର ମୁଖ ଚାହିଁ ବୋଲନ୍ତି ବେଦପତି ।
ଲବକୁଶକୁ ଅଯୋଧ୍ୟାକୁ ତୁ ନେବୁ ମାରୁତି ॥୩୮॥
ଅଯୋଧ୍ୟା ନବରକୁ ବଇଦେହୀ ଭୁବନ ।
ଯୁଗତେ ହୋଇବ ସେ ଚଉରାଶି ଯୋଜନ ॥୩୯॥
ଏତେ ଦୂର ବୋଲି କୁମରେ ନ ଜାଣିବେ ।
ଘଡ଼ିକର ଭିତରେ ପ୍ରବେଶ ହୋଇବେ ॥୪୦॥
ବ୍ରହ୍ମାର ଆଦେଶେ ଦେବୀ ସରସ୍ୱତୀ ।
ଲବକୁମର ହୃଦରେ ସମ୍ଭାଇଲେ ତଡ଼ତି ॥୪୧॥
ଜୟତୁ ମାଧବ ବଇକୁଣ୍ଠପୁର ନାଥ ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ମାଧବ ଶ୍ରୀ ଅନନ୍ତ ॥୪୨॥
ଯାତ୍ରା ମଙ୍ଗଳ ବିଧି ଯାବତ ଉଛବ ।
ମାଧବ ସୁମରନ୍ତେ ସକଳ ସମ୍ଭବ ॥୪୩॥
ସ୍ୱର୍ଗ ମଞ୍ଚ ପାତାଳ ଅଲେଖ ଯାର ପୁରୀ ।
ଅମର କଳ୍ପସିଦ୍ଧ୍ୟ ମାଧେବ ନାମ ସୁମରି ॥୪୪॥
ମାଧବ ସୁମରି ଯେ କରଇ ଗମନ ।
କାର୍ଯ୍ୟ ସିଦ୍ଧ ହୋଇବ ଉତପାତ ଦହନ ॥୪୫॥
ମାଧେବ ମାଧବ ମୁହିଁ ସୁମରଇ ନିତି ।
ମାଧବ ସୁମରନ୍ତେ ପାପ କରଇ କିସ ଭୀତି ॥୪୬॥
ଚଞ୍ଚଳ ମନିଷା ନୁହଇ ମୋହର ସ୍ଥିର ।
ପୂରଣ ଦିଅ ମୋତେ ମାଧବ ଚକ୍ରଧର ॥୪୭॥
ଲବକୁଶ ଜନ୍ମ ଏ ଅବଶେଷ ଖଣ୍ଡ ।
ପାଣ୍ଡବଙ୍କ ଅଗ୍ରତେ ଯାହା କହିଲେ ମାରକଣ୍ଡ ॥୪୮॥
ଲବକୁଶ ଜନ୍ମ ମୁହିଁ କଲଇ ବଖାଣ ।
ସୁଜନ ଜନ ପ୍ରବୋଧନ ଏ ବିଚିତ୍ର ରାମାୟେଣ ॥୪୯॥
ସଂକଳ୍ପି ଶୁଣନ୍ତେ ଲଭଇ ପୁଣ୍ୟଗତି ।
ବାଞ୍ଛା (ସିଦ୍ଧ) ମୁକତ ଅମରପୁରେ ସ୍ଥିତି ॥୫୦॥
ମାଧବ ସୁମରି କହଇ ରାମାୟେଣ ।
ସିଦ୍ଧେଶ୍ୱର ଦାସ ନିତ୍ୟେ ମାଧବ ଚରଣେ ଶରଣ ॥୫୧॥

## ଲବର ଅଯୋଧ୍ୟା ଗମନ

ଏଥୁ ଅନନ୍ତରେ ଶୁଣସି ନୃପତି ।
ଲବକୁଶଙ୍କର ହୃଦରେ ବସିଲା ସରସ୍ୱତୀ ॥୧॥
କେବଣ ହି ଦିନେ ସେ ଦୁଇ କୁମର ।
ଗୀତ ଗାଇ ଯାନ୍ତେ ପଶିଲେ ବନ ଘୋର ॥୨॥
କଥା କଥାକେ ଅମରିଷ ହୋଇଲେ ଦୁଇ ଭାଇ ।
କୁଶ କୁମର କହଇ ଲବ ମୁଖ ଚାହିଁ ॥୩॥
ଗୀତ ଗାଇ ତୁମ୍ଭେ ନ ଜାଣ ପ୍ରବନ୍ଧ ।
ତୁମ୍ଭର ସଙ୍ଗତେ ମୁହିଁ ହୋଇଲି ସ୍ୱର ଧୋନ୍ଧ ॥୪॥
ଚାଉଳ ଅଳପ ହୋଇଲାକ ଯେବେ ।
ତେବେ ସେ ଗୁରୁ ଆନ ନଗ୍ରକୁ ଯାଅ ବୋଇଲେ ତେବେ ॥୫॥
ଦୁଇ ଭାଇ ଆଜ ଭିନ ଭିନ ହୋଇ ଗୀତ ଗାଇବା ।
କେ କେତେ ଚାଉଳ ଆଣଇ ପ୍ରତକ୍ଷେ ବୁଝିବା ॥୬॥
ଲବ କୁମର କହଇ ଏକ ଏକ ହୁଅନ୍ତେ ।
ମାତାଏ କୋପ କରି ଗାଳି ଦେବେ ମୋତେ ॥୭॥
କିସ ବୋଲିବେ ଯେ ଜନେକ ରାଜମୁନ୍ୟ ।
ଛାଟେ ପିଟିବେ ବାଲମୀକ ତପୋଧନ ॥୮॥
କୁଶ କୁମର କହଇ ତୁମ୍ଭନ୍ତ କିଛି ହିଁ ବାଞ୍ଛା ନାହିଁ ।
ତୁମ୍ଭର ତୁଲେ ଗୀତ ଗାଇତ କେବେ ହେ ନ ଯାଇ ମୁହିଁ ॥୯॥

ଏତେ କହି ପୂର୍ବର ବାଟକୁ କୁଶ ଗଲା ।
ଲବ କୁମର ତହିଁ ମନେ ମନେ ବିଚାରିଲା ॥୧୦॥
ସାନ ଭାଇ ହୋଇ ମୋତେ କହିଲା ଜିଂଘାସ ।
ଆବର କେବଣ ମତେ ଗୋଡ଼ାଇବି ତାର ପାଶ ॥୧୧॥
ମୁହିଁ ଆଜ ଆନ ଦେଶକୁ ହିଁ ଯିବି ।
ଚାଉଳ ଘେନି ମୁହିଁ ଆଗ ହୋଇ ଆସିବି ॥୧୨॥
ବିସ୍ମୟେ ହୋଇ ତହିଁ କ୍ଷଣେକ ରହିଲା ।
ଦକ୍ଷିଣ ଦିଗ ମାର୍ଗକୁ ପଥ ବାହିଗଲା ॥୧୩॥
ପବନ ଉଡ଼ାଇ ନେଲା ଶ୍ରୀରାମର ଜ୍ୟେଷ୍ଠ ନାନ ।
ତୁରିତେ ମିଳଇ କୁମର ଅଯୋଧ୍ୟାଭୁବନ ॥୧୪॥
ଚଉରାଶି ଯୋଜନ ଦୁଗମ ଅଟଇ ପନ୍ଥ ।
ଅର୍ଦ୍ଧ ଘଡ଼ିକେ ମିଳିଲା ସୀତୟାର ସୁତ ॥୧୫॥
ବିଚିତ୍ର ପରିମଳ ଭୁବନ ଶୋଭିତ ଦିଶଇ ଦିବ୍ୟ ରୀତି ।
ଦେଖି କୁମାର ହରଷ ହୋଇ ମତି ॥୧୬॥
ମେଢ଼ ମଣ୍ଡପ ଜଗତୀ ଧବଳହାର ।
ବତିଶ ଯୋଜନ ଅଯୋଧ୍ୟା ନଗର ॥୧୭॥
ସୁବର୍ଣ୍ଣ କଳଶ ସବୁରି ମନ୍ଦିରେ ବସଇ ।
କାହିଁ ଦଶ ବିଂଶ ତିରିଶ ପଞ୍ଚାଶଇ ॥୧୮॥
ଲକ୍ଷେକ ମାଢ଼କୁ ବ୍ରତଇ ଯେବଣ ପ୍ରାଣୀ ।
ସୁବର୍ଣ୍ଣର କଳଶ ବସାଇବ ଆଣି ॥୧୯॥
ନେତର ପାତାଙ୍ଗ ଫରହର ଉଡ଼ଇ ଯେବେ ।
ତେର ଲକ୍ଷ ମାଢ଼କୁ ସାଧବ ହୁଅଇ ତେବେ ॥୨୦॥
ଦେବ ସମାନେ ଦିଶନ୍ତି ନରନାରୀ ।
ଅତି ଶୋଭାବନ ବିଚିତ୍ର ଦିବ୍ୟପୁରୀ ॥୨୧॥
ସାଧୁ ସଦନପୁର ଏକସର ଦୋସର ।
ପାତ୍ର ଅମନାତ୍ୟଙ୍କର ସମ୍ପଦପୁର ॥୨୨॥
ନାଦ ଉଙ୍କାରଇ ସୁସଞ୍ଚ ଦିବ୍ୟରୀତି ।
ଶୁଣି ଅଯୋଧ୍ୟାର ଲୋକେ ହରଷଭର ମତି ॥୨୩॥
ଗଣନାଥ ବନ୍ଦନା ସରସ୍ୱତୀଙ୍କି ସ୍ତୁତି ଭଣଇ ।
ଦୃଶାଙ୍କୁ ବନ୍ଦଇ ଲକ୍ଷ୍ମୀର ବଲ୍ଲଭ ନାରାୟେଣଇ ॥୨୪॥
ବ୍ରହ୍ମାର ନନ୍ଦନୀକି ସ୍ତୁତି କରି ନାଦ ଧରିଲାକ ଯହୁଁ ।
ଅଯୋଧ୍ୟା ନରନାରୀ ଘରୁ ବାହାର ହୋଇଲେକ ତହୁଁ ॥୨୫॥
ଋଷିଶୃଙ୍ଗ ଯେସନେକେ ଜନ୍ମ ହୋଇଲା ।
ଅପଛରୀ ଯେବଣ ମତେ ଶ୍ୟାପ ପାଇଲା ॥୨୬॥

ଅଙ୍ଗଦେଶର ଲୋମପାଦ ରାୟେ ।
ବ୍ରାହ୍ମଣର ତହିଁ ଯେସନେକ ଶ୍ୟାପ ପାଏ ॥୨୭॥
ଦଶରଥଙ୍କର ତୁଲେ ଯେବଣ ବିଧିମତ ।
ଗାବଇ ସୁସ୍ୱରେ ସୀତୟାର ସୁତ ॥୨୮॥
ଶାନ୍ତା କନ୍ୟା ଯେସନେ ବିଧାନେ ଉତପତି ।
ଦଶରଥ ସୟମ୍ବର କଲେ ଯେବଣ ॥୨୯॥
ପ୍ରଶୁରାମ ଧନୁ ଭାଙ୍ଗିଲେ ଯେବଣ ହି ମତେ ।
ଲବକୁମର ତାହା ଗାଉଅଛି ଗୀତେ ॥୩୦॥
ଶୁଣିଣ ଚକିତ ଯେ ଅଯୋଧ୍ୟା ନରନାରୀ ।
ଏକର ଆଗରେ ଆରେକ ବଚନ ପଚାରି ॥୩୧॥
କୁମର ଗୋଟି ପୂର୍ବ କାଳର କଥା ଜାଣିଲା କାହିଁ ।
ଏ ରାଜ୍ୟର ନୋହଇ ଏହାକୁ ଦେଖିଲା ତ ନାହିଁ ॥୩୨॥
କେ ହୋଉ ଏହା ତ ଏକ ଲୟ କରି ଶୁଣ ।
ବଡ଼ ସୁସଞ୍ଚ ଶୁଭଇ ହୋ ଅମୃତ ବୟାଣ ॥୩୩॥
ଏବେ ଉତ୍ତର ସମସ୍ୟା ନ ଦେବା ।
କେବଣ କେବଣ ମତ ଚରିତ୍ର ବୁଝିବା ॥୩୪॥
ପ୍ରଶୁରାମ କଥା କହଇ ଲବ କୁମର ।
ଦେଖି ଡରେ ପଳାଇଲେ ସକଳ ନୃପବର ॥୩୫॥
ଏ ପ୍ରଶୁରାମକୁ ବିଶିଷ୍ଟେ ପ୍ରବୋଧିଲେ ଯହୁଁ ।
ନିଜ ଆଶ୍ରମକୁ ପ୍ରଶୁଧରେ ଗଲେ ତହୁଁ ॥୩୬॥
ଋଷିଶୃଙ୍ଗର ତହିଁକି ଦଶରଥ ପେଷଇ ଦୂତ ।
ବିପୁଳ ପର୍ବତେ ବ୍ରାହ୍ମଣେ ମିଳିଲେ ତୁରିତ ॥୩୭॥
ଋଷିଶୃଙ୍ଗ ଠାବକରି ସନ୍ତେକ ଘେନିଣ ଅଇଲେ ।
ଅଯୋଦ୍ଧ୍ୟା ନୃପତିର ଆଗରେ କହିଲେ ॥୩୮॥
ଶୁଣି ଦଶରଥ ବିରସେଣ ଭାଳଇ ।
କେବଣ ମତେ ଆଣଇ ବିଭାଣ୍ଡକର ବାଳଇ ॥୩୯॥
ବିସ୍ତାର କରି ଗାବଇ ଲବକୁମର ।
ଶୁଣିଣ ହରଷ ନଗ୍ର ଜନଙ୍କର ॥୪୦॥
ଏସନେକ କେତେହେ କାଳ ଯେବେ ଗଲା ।
ଦଶରଥ ରାଜ୍ୟକୁ ଲୋମପାଦ ଅଇଲା ॥୪୧॥
ଦୁଇ ମଇତ୍ରେ କୋଳ (କରି) ବଚନ ହୁଅନ୍ତି ।
ଯେ ଯାହାର ପୂର୍ବ କଥା ଭାଳି ପୁଛନ୍ତି ॥୪୨॥
ଲୋମପାଦ କହଇ ଅପାଳେକ ମୋହର ପୁରୀ ।
ଦଶରଥ କହନ୍ତି ପୁତ୍ର ନାହିଁ ନା ମୋହରି ॥୪୩॥

ଚାଲ ମଇତ୍ର ଆମ୍ଭେ ଦେଶାନ୍ତର କରିବା ।
ପୁତ୍ର ବିହୁନେଣ କିସ ରାଜ୍ୟରେ ଥିବା ॥୪୪॥
ଦୁଇ ରାଜାଙ୍କର କଥା ଶୁଣି କହନ୍ତି ବଶିଷ୍ଠ ।
ଶୁଣ ହୋ ଲୋମପାଦ ନୃପତି ଗରିଷ୍ଠ ॥୪୫॥
ବେଦ ପୁରାଣେ ଯାହା ସେ ବଖାଣି ।
ସେ କି ଅନାସ୍ତ ହୋଇବ ନୃପମଣି ॥୪୬॥
ତୋହର ରାଜ୍ୟକୁ ଯେବେ ଋଷିଶୃଙ୍ଗ ଆସଇ ।
ତାହାର ଅଇଲେ ସେ ଦେଶେ ବରଷଇ ॥୪୭॥
ଏ ଯେ ଦଶରଥର ଶାୟନ୍ତା ନନ୍ଦନୀ ।
ତୋହର ନବରକୁ ନେସି ଏ କାମେନୀ ॥୪୮॥
ଏ କନ୍ୟାକୁ ଋଷିଶୃଙ୍ଗ ବିଭା ହୋଇବ ।
ଦୁଇ ମଇତ୍ରକୁ ସେ ପୁତ୍ର ଦାନ ହେବ ॥୪୯॥
ତହୁଁ କନ୍ୟା ଘେନି ଲୋମପାଦ ଗଲା ।
ଅଙ୍ଗଦେଶେ ଯାଇ ପ୍ରବେଶ ହୋଇଲା ॥୫୦॥
ଅନ୍ତଃପୁରେ ନେଇ କଲେକ ପ୍ରବେଶ ।
ଅନେକ ପରିଜନେ ଖଟନ୍ତି ତାର ପାଶ ॥୫୧॥
ସୁସ୍ୱରେ ଗାବଇ ଗୀତ ସୀତୟାର ସୁତ ।
ଶୁଣି ପୁରଜନେ ଆନନ୍ଦମୟେ ଚିତ୍ତ ॥୫୨॥
ମଦନେ ଭେବଳ ହୋଇ କେବଣ ନାରୀ ।
ସ୍ୱାମୀର ଜେଷ୍ଠଭ୍ରାତା(ର) ଅଛଇ ହାତ ଧରି ॥୫୩॥
ପୁତ୍ର ପୁତ୍ରୀ ତେଜି ଗୋଡ଼ାବନ୍ତି ପଛେ ।
ଗୃହକର୍ମ ତେଜି ବୁଲନ୍ତି ରାଛେ ରାଛେ ॥୫୪॥
ବୃଦ୍ଧା ନାରୀ କିଛି ହି ନ ବୋଲନ୍ତି ।
ସମସ୍ତ ଲୋକେ ଲବର ପଛେ ଗୋଡ଼ାବନ୍ତି ॥୫୫॥
ଅନେକ ଜନ ଗହନ କୁମରର ପାଶ ।
ନବର ନିକଟେ ଲବ ହୋଇଲା ପ୍ରବେଶ ॥୫୬॥
ଦଶରଥଙ୍କର ଉଛବ ଶ୍ରାଧ ସେ ଦିନ ।
ପିତୃକାର୍ଯ୍ୟ ସାରନ୍ତି ଶ୍ରୀରାମରାଜନ ॥୫୭॥
ସୁବାହୁ ବନ୍ଧୁ ଭ୍ରଥକୁ ଅଣାଇଲେ ।
ଦୁଇ ଭାଇନ୍ତ ଘେନି ଶ୍ରାଦ୍ଧ ଦେଇ ତ ବସିଲେ ॥୫୮॥
ବଶିଷ୍ଠେ ମୋକ୍ଷ କରି ବ୍ରାହ୍ମଣେ ଗୋତ୍ର ଉଚାରନ୍ତି ।
ଅନେକ ଦ୍ୱିଜବରେ ବେଢ଼ିଣ ଅଛନ୍ତି ॥୫୯॥
ପାତ୍ର ଅମନାତ୍ୟେ ସୁହୃଦ ବନ୍ଧୁଜନ ।
କଉଶୁଲ୍ୟା ଦେବୀ ଅଛନ୍ତି ରାମର ସନିଧାନ ॥୬୦॥
କନେକ ସୀତାକୁ ବସାବନ୍ତି ଆଣି ।
ମୁଖ ଚାହାନ୍ତି ତାହାର କୋଦଣ୍ଡ ଚାପପାଣି ॥୬୧॥
ସୀତାର ରୂପ ଗୁଣ ବିଚାରି ରଘୁପତି ।
ଚିତ୍ତ ଛନଛନ ଅସ୍ଥିର ସେ ମତି ॥୬୨॥
ଲକ୍ଷ୍ମଣ ସନିଧେ ଅଛନ୍ତି ଉଭା ହୋଇ ।
ଶ୍ରାଦ୍ଧ ଯୋଗାଡ଼ ପ୍ରତିମାକୁ ଛୁଆଇଁ ରାମକରେ ଦେଇ ॥୬୩॥
ଏସନେକ ସମୟେ ଲବ କୁମର ।
ଯାଇଣ ହୋଇଲେ ନବର ସିଂହଦ୍ୱାର ॥୬୪॥
ସୁଲଳିତ ନାଦ ସୁସ୍ୱରେ (ପିକ) ଧ୍ୱନି ମତି ।
ଶ୍ରୀରାମର ହୃଦରେ ବସଇ ସରସ୍ୱତୀ ॥୬୫॥
ସୁଲଳିତ ଧ୍ୱନି ଶୁଭଇ ଅନୁପାମ ।
ଶୁଣିଣ ଶ୍ରବଣ ଯେ ଟେକନ୍ତି ଶ୍ରୀରାମ ॥୬୬॥
ବସନ୍ତ ଗୁଜ୍ଜରୀ ନାଦ ସୁସ୍ୱରେ ଧରଇ ।
ଶୁଣିଣ ମୋହିତ ହୋଇଲେ କ୍ଷତ୍ରିବର ସୁନ୍ଦରଇ ॥୬୭॥
ଶ୍ରାଦ୍ଧ କରନ୍ତେଣ ରାମ ଅଜ୍ଞାନ ଯହୁଁ ।
କର ଯୋଡ଼ି ଲଇକ୍ଷଣ ପଚାରଇ ତହୁଁ ॥୬୮॥
ଭୋ ରଘୁନାଥ ଶୁଣ ମୋହର ବଚନ ।
କିସ ନିମନ୍ତେ ତୁହି ହୋଇଲୁ ବିଚ୍ଛନ ॥୬୯॥
ଶ୍ରୀରାମ କହନ୍ତି ଶୁଣ ଆରେ ଭ୍ରାତ ।
ସିଂଘଦ୍ୱାରେ କେ ଉଙ୍କାରଇ ନାଦ ଗୀତ ॥୭୦॥
ତୁହି ଏହିକ୍ଷଣି ତାହାର ତହିଁକି ଯାସି ।
ଶ୍ରାଦ୍ଧ ସରିବା ଯାଏ ଗୁହାଇଣ ଥାସି ॥୭୧॥
ଶ୍ରୀରାମର ଆଜ୍ଞା ଘେନିଣ ଲକ୍ଷ୍ମଣ ।
ନବର ଦ୍ୱାରେ ଯାଇ ମିଳିଲା ତତକ୍ଷଣ ॥୭୨॥
ଅନେକ ଲୋକେ ଅଛନ୍ତି କତିର ।
ନାଦ ଉଙ୍କାରଇ ଲବ କୁମାର ॥୭୩॥
ବଦନ ଦିଶଇ ଶରଦଇନ୍ଦୁ ଜ୍ୟୋତି ।
ଶ୍ୟାମଳ ସୁନ୍ଦର ବାଳୁତ ମଦନ ମୂରତି ॥୭୪॥
ହୃଦୟ ବିସ୍ତାର ସିଂହର ମଝା ।
ରୂପେଣ ପଟାନ୍ତର ନାହିଁ ଆନ ଦୁଜା ॥୭୫॥
ଲକ୍ଷ୍ମଣ ବିଚାରଇ କୁମର ମୁଖ ଦେଖି ।
ମକରକେତନ ଅଇଲା କି ବିଷ୍ଣୁଭୁବନ ଉପେକ୍ଷି ॥୭୬॥
କି ଅବା କେବଣ ଦିଗପାଳଙ୍କର ନନ୍ଦନ ।
କ୍ରୀଡ଼ା ବିନୋଦେ ଅଇଲା ଏ ଭୁବନ ॥୭୭॥

କୁମର ମୁଖ ଚାହିଁ ଲକ୍ଷଣ ପ୍ରକାଶି ।
କ୍ଷଣେକ ବିଶ୍ରାମ କରି ଏହି ଠାବେଣ ଆସି ॥୭୮॥
ଆମ୍ଭର ଘରେ ଆଜ ପିତୃଉଛବ ।
ଶ୍ରାଧ ସରିଲେ ତୁମ୍ଭେ ଗୀତ ଗାଇବ ॥୭୯॥
ପିଣ୍ଡଦାନ ପରିଯନ୍ତେ ଆନ କଥାରେ ନୋହି ସାବଧାନ ।
ନମସ୍କାର ବିବର୍ଜିତ ଦେବତାଙ୍କୁ ନ କରି ଦରଶନ ॥୮୦॥
ଦନ୍ତ ନ ଘଂଷିବ ତର୍ପଣ ହି ନାହିଁ ।
ନୃତ୍ୟଗୀତ ଶୁଣିଲେ ଶ୍ରାଧର ଫଳ ପାଇ କାହିଁ ॥୮୧॥
କଳହ ନ କରି ଆନ କଥାରେ ନୋହିବ ହରଷ ।
ତେବେ ସେ ପିତୃଗଣେ ହୁଅନ୍ତି ସନ୍ତୋଷ ॥୮୨॥
ଲକ୍ଷ୍ମଣର ବଚନ ଶୁଣି ସୀତୟାର ନାନ ।
ନାଦ ହୁଂକାର ତେଜି ହୋଇଲା ମଉନ ॥୮୩॥
ପଦ୍ମଆସନେ ଲବ କୁମର ବସିଲା ।
ସେଠାରୁ ଲକ୍ଷ୍ମଣ ବାହୁଡ଼ି ଅଇଲା ॥୮୪॥
ଶ୍ରୀରାମ ଆଗରେ କହିଲାକ ଯାଇ ।
ଭୋ ଦେବ ଗାୟେଣ ଗୋଟିକି ଅଇଲି ବସାଇ ॥୮୫॥
ବଡ଼ ସୁନ୍ଦର ସେ ବାଳୁତ ବୟସ ।
ତାହାର ରୂପ ପଟାନ୍ତର ଏଥ ନାହିଁ ସାଦୃଶ ॥୮୬॥
ଶୁଣିଣ ଶ୍ରୀରାମ ମନେ ତୋଷ ହନ୍ତି ।
ପିତୃଶ୍ରାଦ୍ଧମାନ ତୁରିତେ ସାରନ୍ତି ॥୮୭॥
ପ୍ରୋହିତ ବ୍ରାହ୍ମଣ ଯେତେ ତହିଁ ଥିଲେ ।
ଦାନ ଦକ୍ଷିଣା ଦେଇ ସବୁନ୍ତି ତୋଷ କଲେ ॥୮୮॥

## ରାମଙ୍କ ଆଗରେ ରାମାୟଣ ଗାନ

ଆସନକୁ ବିଜୟେ କରନ୍ତି ରଘୁବୀର ।
ବାମକରେ କୋଦଣ୍ଡ ଡାହାଣ କରେ ତୀକ୍ଷ୍ଣ ଶର ॥୧॥
ଆଗେଣ ଅଛନ୍ତି ବଶିଷ୍ଠ ମହାମୁନ୍ୟ ।
ସୁମନ୍ତ ଗୁଣନିଧି ଅନେକ ପାତ୍ର ଅଛନ୍ତି ସନିଧାନ ॥୨॥
ଭରଥ ଲକ୍ଷ୍ମଣ ପଛରେ ଅଛନ୍ତି ।
ଆସ୍ଥାନକୁ ବିଜୟେ କରନ୍ତି ରଘୁପତି ॥୩॥
ସୁବର୍ଣ୍ଣର ଖମ୍ବ ସଟୀକର ପୀଢ଼ଇ ।
ନାନା ମଣିଗଣ ଖଞ୍ଜିତ ବଜ୍ର ବଇଡୂର୍ଯ୍ୟଇ ॥୪॥
ତଥିରେ ରାମଚନ୍ଦ୍ର ବସିଲେକ ଯାଇ ।
ଲକ୍ଷ୍ମଣଙ୍କୁ ଆଜ୍ଞା ଦେଲେ ଆଣ ତାକୁ ରାଇ ॥୫॥

ଶ୍ରୀରାମର ଆଜ୍ଞାରେ ଲକ୍ଷ୍ମଣ ଗଲା ।
ଲବକୁମର ସନିଧେ ତକ୍ଷଣେ ମିଳିଲା ॥୬॥
ଲବର ମୁଖ ଚାହିଁ କହଇ ସୁମିତ୍ରାର ସୁତ ।
ଆସସି ଭିତରକୁ ବାବୁ ପୁଣ୍ୟତୁଣୀର ପୁତ ॥୭॥
ତିନି ଭୁବନେ ଯାହାର ନାମ ଧରି ।
ତୋହର ଗୀତ ଶୁଣିମାକୁ ଶରଧା ସେ କରି ॥୮॥
ଲକ୍ଷ୍ମଣର ବଚନ ଶୁଣିଲା ସେ ଯହୁଁ ।
ଉଠିଣ କୁମର ଗମନ କଲାକ ତହୁଁ ॥୯॥
ବିକ୍ରମ କେଶରୀ ଜାଣି ଅଟଇ ସାଦୃଶ ।
ସଭାର ଉପରେ କୁମର ହୋଇଲା ପ୍ରବେଶ ॥୧୦॥
ନିଶଙ୍କେ ଆସ୍ଥାନେ ବସିଲାକ ଯାଇ ।
ବଶିଷ୍ଟେ ବିଚାରନ୍ତି ବଡ଼ାଇପଣ ଚାହିଁ ॥୧୧॥
କି ଅବା ଜାତ ହୋଇଲାକ ମଦନ ।
ରୂପେଣ ପଟାନ୍ତର ନାହିଁ ତ୍ରିଭୁବନ ॥୧୨॥
ଯୋଗ ତଲ୍ୟେ ଜାଣିଲେ ମୁନିବର ।
ଏହି ସେ ଶ୍ରୀରାମର ଜ୍ୟେଷ୍ଠଇ କୁମର ॥୧୩॥
ଏବେ ସେ ସୀତାପତି ନିଜପୁରକୁ ଯିବ ।
ଅଯୋଦ୍ଧ୍ୟା ନଗ୍ରେ ଏ ନୃପତି ହୋଇବ ॥୧୪॥
ମୁହିଁ ଯେବେ କହିବି ତୋହର ଏ ପୁତ୍ର ।
ଆବର ଗ୍ରନ୍ଥ ଶୁଣଇ କି କଉଶୁଲ୍ୟାର ସୁତ ॥୧୫॥
ହରଷ ଆନନ୍ଦ ହୋଇ ଉଛବ କରିବ ।
ଏସନେକ ପାତେକ କେସନେକେ ହରିବ ॥୧୬॥
ବାଲମୀକ ଯେବଣ ଗ୍ରନ୍ଥ ଉପାୟେ କରିଣ ଅଛି ।
ଶୁଣିଣ ପାତେକ ବିନାଶୁ ରଘୁବଂଶି ॥୧୭॥
ଏସନେକ ବିଚାରି ତବଦ ହୋଇଲେ ମହାମୁନ୍ୟ ।
କୁମର ରୂପ ଉପଲେଖଇ ଦଶରଥ ନନ୍ଦନ ॥୧୮॥
କି ଏ ଦେବଗଣ କି ଦେବ କୁମର ଅଟଇ ।
ବଦନ ଦିଶଇ ଏହାର ଦ୍ୟୁତୀ ପ୍ରଭାକରଇ । ॥୧୯॥
ଲଳିତ କର୍ଣ୍ଣପତ୍ର ନାହିଁ ଆନ ସାଦ୍ରିଶଇ ।
ପଦ୍ମ ମଧୁକର ଜାଣି ବେନି ନୟନ ବିକାଶଇ ॥୨୦॥
ନାସିକା ଦିଶଇ ତଣହୁଳ ଜାଣି ।
ବନ୍ଧୁଲି କୁସୁମ ଯେସନେ ଓଷ୍ଠ ପରିମାଣି ॥୨୧॥
ସିନ୍ଧୁର ମୋତି ସାରିଷ ଦନ୍ତପନ୍ତି ।
ମଦନ ଧନୁ ଯେସନେ ଭୂଲୁତା ଦିବ୍ୟରୀତି ॥୨୨॥

ମୃଣାଳ ସାରିଷ୍ୟ ସୁସଞ୍ଚ ବେନି ଭୁଜଇ ।
ଚମ୍ପାକଢ଼ି ଜାଣି ଦିଶଇ ପାଣିଜଇ ॥୨୩॥
ମତ୍ତଗଜ ମାରଣ ସିଂହ ପଟାନ୍ତର ଓଦର ।
ନାଭି ଗଭୀର ହୃଦୟଭାଗ ବିସ୍ତାର ॥୨୪॥
କେବଣ ପୁଣ୍ୟବନ୍ତ ଏ କୁମରଙ୍କ ତାତ ।
ଧନ୍ୟ ସେ କାମେନୀ ଗର୍ଭଧାରୀ ମାତ ॥୨୫॥
ଏସନେକ ବିଚାରି ରଘୁକୁଳମଣି ।
ସନିଧେ କୁମରକୁ ବସାଇଲେ ଆଣି ॥୨୬॥
ମୋହେଣ ମୋହିତ ହୋଇଲେ ରଘୁପତି ।
ଲବର ମୁଖ ଚାହିଁ ସନିଧରେ ପଚାରନ୍ତି ॥୨୭॥
କେବଣ ଶାସ୍ତ୍ର ତୁ ବଖାଣ କରୁ ବାବା ।
ସ୍ୱରୂପ କରି ମୋର ଆଗରେ କହିବା ॥୨୮॥
ଲବ କୁମର କହଇ ଶୁଣସି ମହାତ୍ମା ।
ରାମାୟଣ ଗ୍ରନ୍ଥ ମୁହିଁ ବଖାଣ କରଇ ଉପମା ॥୨୯॥
ଯେବଣ ଗୁରୁ ମୋତେ ଶାସ୍ତ୍ର ପଢ଼ାଇଲା ।
ରାମାୟଣ ଚରିତ୍ର ସେ ଆମ୍ଭନ୍ତ କହିଲା ॥୩୦॥
ଏ ନଗ୍ରେ ବାକ୍ୟ ମୁହିଁ କଲଇ ପ୍ରକାଶ ।
ଲୋମପାଦର ନବରେ ଦଶରଥର ଦୋହିତା ପ୍ରବେଶ ॥୩୧॥
ଶ୍ରୀରାମ କହନ୍ତି ମୁହିଁ ଗ୍ରନ୍ଥ ଶୁଣିମି
ଆଦି ଅନ୍ତ କରି ମୁଁ ସେ ପୁରାଣ ଶୁଣିମି ॥୩୨॥
ସକଳ ପାତକ ହୋଇବାକ ନାଶ ।
ପ୍ରଥମ ହୁଁ ରାମାୟେଣ କର ହେ ପ୍ରକାଶ ॥୩୩॥
ଶ୍ରୀରାମ ପଚାରନ୍ତି ଶୁଣସି ଭୋ ମୁନି ।
କେବଣ ବିଧାତା ଶୁଣାଇଲା ରାମାୟେଣ ଧ୍ୱନି ॥୩୪॥
ବଶିଷ୍ଟେ କହନ୍ତି ଶୁଣ ରଘୁପତି ।
ସଂକଳ୍ପ କରି ଯେ ବାକ୍ୟ ପୁରାଣ ଶୁଣନ୍ତି ॥୩୫॥
ପୂର୍ଣ୍ଣକୁମ୍ଭ ଉପରେ ଶ୍ରୀଫଳ ଦେଇ ।
ବସ୍ତ୍ର କାଞ୍ଚନ ପୁଷ୍ପ ଚନ୍ଦନ ଥୋଇ ॥୩୬॥
ଦେଶକାଳ ବାକ୍ୟେ ଗୋତ୍ର ଉଚାରି ।
ବାକ୍ୟ ଶୁଣିବ ଉକତାକୁ ବରଣ କରି ॥୩୭॥
ଆମିଷ ନ ଭୁଞ୍ଜିବ ନିୟମେଣ ଥିବ ।
ପୁରାଣ ପରିଯନ୍ତେ ଆନ କଥା ନ କହିବ ॥୩୮॥
ଯତିଇନ୍ଦ୍ର ହୋଇବ ବଇରାଗ ନ ହୋଇବ ।
ଚିତ୍ତ ତଲ୍ୟେଯେ କରି ଗ୍ରନ୍ଥ ଶୁଣୁଥିବ ॥୩୯॥

ବଶିଷ୍ଟଙ୍କର ବଚନ ଯହୁଁ ଶ୍ରୀରାମ ଶୁଣିଲେ ।
ଆସ୍ଥାନ ଉପରକୁ ପୂର୍ଣ୍ଣକୁମ୍ଭ ଅଣାଇଲେ ॥୪୦॥
ଲବକୁମର ଶିରେ ଚନ୍ଦନ ଲେପନ୍ତି ।
କପୋଳେ ସୁବର୍ଣ୍ଣର ଚିତା ଗଳାରେ ପୁଷ୍ପମାଳା ଲମ୍ବାବନ୍ତି ॥୪୧॥
ଝୀନବସ୍ତ୍ରେକ ପାଡ଼ିଲେ ରଘୁପତି ।
ତହିଁ ଉପରେ ପାଞ୍ଜି ଗୋଟି ଥୁଅନ୍ତି ॥୪୨॥
ଧୂପଦୀପ ନୈବେଦ୍ୟ ଶାସ୍ତ୍ର ଉକତ ବିଧି ।
ରାମାୟେଣ ଶୁଣନ୍ତି ସୁସ୍ଥିର ସୁବୁଦ୍ଧି ॥୪୩॥
ବଶିଷ୍ଟ ମହାମୁନିକି କଲେ ବ୍ରହ୍ମାବରଣ ।
ପାତ୍ର ଅମନାତ୍ୟ ସୁମନ୍ତ ଶୁଦ୍ଧ ବ୍ରାହ୍ମଣ ॥୪୪॥
ଭ୍ରଥ ଲକ୍ଷ୍ମଣ ଯେ ଦୁଇଭାଇ ଅଛନ୍ତି କତି ।
ନଗ୍ର ନରନାରୀ ବେଢ଼ିଣ ଅଛନ୍ତି ॥୪୫॥
ଲବକୁମର କହଇ ରାମାୟେଣ ଚରିତ୍ର ।
ଋଷିଶୃଙ୍ଗର ଜନ୍ମକଥା ଆବର କରଇ ଉକତ ॥୪୬॥
ଚିଉମତି ଯେସନେକେ ଶ୍ୟାପ ପାଇଲା ।
ଯେବଣ ମୃଗୁଣୀର ଗର୍ଭେ ଜାତ ହୋଇଲା ॥୪୭॥
ରୂପକେଶୀ ଯେସନେକେ ହୋଇଲା ଶବରୀ ।
ରୂପଦେଖି ରେତ ଛାଡ଼ିଲେ ବିଭାଣ୍ଡକ ତପଚାରୀ ॥୪୮॥
ସେ ବୀର୍ଯ୍ୟ ମହରଷି ଜଳେଣ ମେଲିଲା ।
ତୃଷାର ଆରତେ ତାହା ହରଣୀ ପିଇଲା ॥୪୯॥
ଆଠ ଯୁଗ ଯାହାର ନାହିଁ ମଇଥୁନ ।
ଶବରୀକି ଦେଖି ମୋହିତ ହେଲେ ତପୋଧନ ॥୫୦॥
ଅମୋହ ବୀର୍ଯ୍ୟ ସେ ବିଭାଣ୍ଡେକର ରେତ ।
ତହୁଁ ଶୃଙ୍ଗମୁନି ହୋଇଲେକ ଜାତ ॥୫୧॥
ବିଶେଷି କହଇ ଏହା ସୀତୟାର ନନ୍ଦନ ।
ଶୁଣିଣ ହରଷ ହୁଅନ୍ତି ବଶିଷ୍ଟ ତପୋଧନ ॥୫୨॥
ଶ୍ରୀରାମ ଶୁଣି ଆନନ୍ଦମୟେ ଚିତ୍ତ ।
ଭ୍ରଥ ଲକ୍ଷ୍ମଣ ଆବର ମନ୍ତ୍ରୀ ଅମନାତ୍ୟ ॥୫୩॥
ସଭାର ତଳେରେ ନଗ୍ରର ଲୋକେ ବେଢ଼ିଛନ୍ତି ।
ସମସ୍ତେ ହେ ଶୁଣି ହୃଦୟ ବିଗଂସନ୍ତି ॥୫୪॥

## ଲୋମପାଦଙ୍କ ରାଜ୍ୟରେ ଅପାଳକ

ଅଙ୍ଗଦେଶର ରାଜା ଲୋମପାଦ ।
ପୁତ୍ର ନାହିଁ ତାହାର ମନରେ ବିଷାଦ ॥୧॥

ନିତ୍ୟେହେ ରଜା ଧନ ବସନ ଅନ୍ନଦାନ ଦିଅଇ ।
ଦେବତା ବ୍ରାହ୍ମଣ ବୈଷ୍ଣବ ବିନୋଇ ॥୨॥
ବିପ୍ର ପୁତ୍ର ଯହୁଁ ଧେନୁ ଏକ ମାଗିଲା ।
ଯଦୁ ନାମ ବ୍ରାହ୍ମଣକୁ ଉପହାସ୍ୟ ରାଗେ କଲା ॥୩॥
ମର୍ମ କଥା ଶୁଣି ସମସ୍ତ ବିପ୍ରେ କୋପ କଲେ ।
ତୋହର ରାଜ୍ୟେ ଅପାଳକ ହୋଉ ବୋଲି କୋପେଣ
ଶାପ ଦେଲେ ॥୪॥
ତେବେ ସେ ଅଙ୍ଗଦେଶେ ବରଷଣ ନ କଲା ।
ପ୍ରଜା କଷ୍ଟେ ରାଜା ଅନେକ ବିକଳ ହୋଇଲା ॥୫॥
ଦଶରଥ ଲୋମପାଦ ହୋଇଲେ ଯେମନ୍ତ ମଇତ୍ର ।
ବିଶେଷି କହଇ ତାହା ସୀତୟାର ପୁତ୍ର ॥୬॥
ସୂର୍ଯ୍ୟବଂଶେ ବିଖ୍ୟାତ ଦଶରଥ ନୃପତି ।
ତାହାର କୋଳେ ନାହିଁ ସନ୍ତତି ॥୭॥
ଡଗର ମୁଖେ ଲୋମପାଦ ବାରତା ପାଇଲା ।
ଦଶରଥ ପୁତ୍ର ନାହିଁ ବୋଲି ବିକଳ ହୋଇଲା ॥୮॥
ତେଣେ ସେ ଲୋମପାଦ ଅମନାତ୍ୟ ପଠିଆଇ ।
ଦଶରଥର ତୁଳେ ମଇତ୍ର ପକ୍ଷ ହୋଇ ॥୯॥
ବିସ୍ତାରି କହଇ ଲବ କୁମର ।
ଶୁଣିଣ ସକଳ ଲୋକେ ଉତସଲ୍ୟ ଶରୀର ॥୧୦॥
ଶ୍ରୀରାମ ପଚାରନ୍ତି ଶୁଣ ବାଳପୋଇ ।
କେସନେକେ ଦଶରଥ ଅପୁତ୍ରିକ ହୋଇ ॥୧୧॥
ପୁଣି କେବଣ ମତେ ଉପୁଜିଲାକ ପୁତ୍ର ।
ଏକଥା ଶୁଣିତ ଇଚ୍ଛା ମୋହର ଚିତ୍ତ ॥୧୨॥
ଲବ କୁମର କହଇ ଶୁଣ ସାବଧାନେ ।
ଇନ୍ଦ୍ରପୁରକୁ ଗମଇ ଦଶରଥ ରାଜନେ ॥୧୩॥
ସପତ ଦ୍ୱୀପେ ଏକାଙ୍ଗ ଚକ୍ରବର୍ତ୍ତୀ ।
ତିନି ପାଟ ମହାଦେଈ ଏକୋଇ(ଣ) ଶତ ଯୁବତୀ ॥୧୪॥
ସ୍ୱର୍ଗପୁରେ ଗୋମାତାକୁ ନମସ୍କାର ନ କଲା ।
ତୋହର ପୁତ୍ର ନ(ଉ)ପୁଜୁ ବୋଲି ସୁରଭି ଶ୍ୟାପ ଦେଲା ॥୧୫॥
ବିସ୍ତାର କରି କହଇ ଲବ କୁମରଇ ।
ଶୁଣନ୍ତି ଶ୍ରୀରାମ ବଶିଷ୍ଠ ମୁନିବରଇ ॥୧୬॥
ଶାନ୍ତା ନାମେ କନ୍ୟା ଯେସନେକେ ଜାତ ।
ସକଳ କଥା ଗୀତେ ଗାବଇ ସୀତୟାର ସୁତ ॥୧୭॥
ସେ କନ୍ୟାକୁ ଦଶରଥ ସ୍ୱୟମ୍ବର କଲା ।
ବୀରତୂର ଶୁଣି ଯେ ପ୍ରଶୁରାମ ଅଇଲା ॥୧୮॥
ସକଳ ରାଜାଏ ପଳାଇଲେ ପ୍ରଶୁରାମର ତେଜ ଦେଖି ।
ଦଶରଥକୁ କୋପ କଲେ ଗଉରବ ଉପେଖି ॥୧୯॥
ବଶିଷ୍ଠ ପ୍ରଶୁରାମକୁ ପ୍ରବୋଧିଲେ ଯେବଣ ମତେ ।
କହଇ ଲବକୁମର ଶ୍ରୀରାମ ଅଗ୍ରତେ ॥୨୦॥
ବଶିଷ୍ଠ ମହାମୁନି ଶୁଣି ଆନନ୍ଦମୟେ ଚିତ୍ତ ।
ଧନ୍ୟ ଧନ୍ୟ କରନ୍ତି ସଭାର ଲୋକେ ସମସ୍ତ ॥୨୧॥
ଭ୍ରଥ ଲକ୍ଷ୍ମଣ ଉତସଲ୍ୟ ମନେ ।
ଆସ୍ଥାନର ତଳେ ବେଢ଼ିଛନ୍ତି ନଗ୍ର ଜନେ ॥୨୨॥
ଲବ କୁମର କହଇ ଶାସ୍ତ୍ର ଉକତି ।
ଯହୁଁ ଅପାଳେକ ହୋଇଲା ଲୋମପାଦର କ୍ଷିତି ॥୨୩॥
ହୃଦରେ ଭାଳଇ ଅଙ୍ଗ ଦେଶର ରାଜନ ।
କେସନେକେ ବର୍ତ୍ତିବେ ମୋହର ପ୍ରଜାଇତ ଜନ ॥୨୪॥
ସକଳ ପ୍ରାଣୀ ମୋହର ଦୋଷେ ନାଶ ଗଲା ।
ସବୁରି ହତ୍ୟା ମୋହର ମଥାରେ ବସିଲା ॥୨୫॥
ଦେଶାନ୍ତର କରି ନାନା ତୀର୍ଥ ବୁଲିବି ।
କାହା ଘେନି ଆବର ରାଜ୍ୟେଣ ମୁହିଁ ଥିବି ॥୨୬॥
ଦଶରଥ ରାଜା ଯେ ମୋହର ମଇତ୍ର ।
ଏ କଷ୍ଟ କହିବି ତାହାର ଅଗ୍ରତ ॥୨୭॥
ଏତେ ବୋଲି ଲୋମପାଦ ରାଜ୍ୟ ତେଜଇ ।
ଅଯୋଧ୍ୟା ନଗ୍ରକୁ ଆସଇ ମହାରାଜଇ ॥୨୮॥
ଦଶରଥ ପୁଣି ପାଛୋଟିଣ ଗଲା ।
ଲୋମପାଦ ଘେନି ରାଜ୍ୟକୁ ଅଇଲା ॥୨୯॥
ଦୁଇ ମଇତ୍ର କୋଳ ସମ୍ଭାଷଣ ହୁଅନ୍ତି ।
କନେକ ସିଂହାସନେ ବେନି ରାଜାଏ ବସନ୍ତି ॥୩୦॥
ଲୋମପାଦ କହଇ ରାଜ୍ୟରେ ଅପାଳେକ ମୋହର ।
ରାଜ୍ୟେ ଥାଇ କିସ କରିବି ଯିବଇ ଦେଶାନ୍ତର ॥୩୧॥
ସେ କଥା ତୋହର ଅଗ୍ରତେଣ କହିବି ।
ରାଜ୍ୟ ନ କରିବି ଦେଶାନ୍ତର କରିଯିବି ॥୩୨॥
ଦଶରଥ କହଇ ମୋହର ନାହିଁ ନନ୍ଦନ ।
ଚାଲ ମଇତ୍ରେ ଦୁହେଁ ଯିବାକ ବହନ ॥୩୩॥
ଆବର ବିଶେଷେ ଯୁବା କୁମାରୀ ମୋହର ଘରେ ଥାଇ ।
ପ୍ରଶୁରାମର ଡରେ ବର ଆସନ୍ତା କେହି ନାହିଁ ॥୩୪॥
ବଶିଷ୍ଠେ କହନ୍ତି ଶୁଣ ଲୋମପାଦ ।

ତୁହି ଏବେ ରାଜା ନୁହସି ବିଷାଦ ॥୩୫॥
ଶାନ୍ତା କନ୍ୟା ତୋହର ଘରକୁ ହି ନେସି ।
ଉପାୟେ କରି ଋଷ୍ୟଶୃଙ୍ଗଙ୍କୁ ଅଣାବସି ॥୩୬॥
ତୋହର ରାଜ୍ୟକୁ ଆସିବ ବିଭାଣ୍ଡେକର ସୂନ ।
ଏସନେକ ଭବିଷ୍ୟ ଅଛଇ ଲେଖନ ॥୩୭॥
ତୋତେ ପୁତ୍ର ହୋଇବ ଯେବଣ ବେଳେ ।
ଦଶରଥକୁ ପୁତ୍ର ଉପୁଜିବ ସେ କାଳେ ॥୩୮॥
ଶୁଣି ଦଶରଥ ହରଷ ହୋଇଲା ।
ଅନେକ ଯତ୍ନେ ଲୋମପାଦକୁ ଭୋଜନ ଦେଲା ॥୩୯॥
ଶାନ୍ତା କନ୍ୟାକୁ ଘେନି ତହୁଁ ଲୋମପାଦ ଆସଇ ।
ଅଙ୍ଗ ଦେଶେଣ ସେ ହୋଇଲା ପ୍ରବେଶଇ ॥୪୦॥
ଅନ୍ତଃପୁର ଭିତରେ ଥୋଇଲା ଦଶରଥ କୁମାରୀ ।
ତୁଲେଣ ସମର୍ପିଲା ଅନେକ ପରିବାରୀ ॥୪୧॥
ଲୋମପାଦ ନବରେଣ ଥାନ୍ତେଣ ଶାନ୍ତା ।
ନିତ୍ୟେହେ ମହିପତି କରୁଥାଇ ଚିନ୍ତା ॥୪୨॥

## ଋଷ୍ୟଶୃଙ୍ଗଙ୍କୁ ଆଣିବାକୁ ପ୍ରସ୍ତୁତି

ନଗ୍ରେଣ ସୁବର୍ଣ୍ଣର ତେଣ୍ଟୋହା ବୁଲାଇଲେ ।
କେହି ଧରିବାକୁ ସାମର୍ଥ ନୋହିଲେ ॥୧॥
ନିତ୍ୟେହେ ଭାଳୁଥାଇ ଅଙ୍ଗଦେଶର ରାଜନ ।
କେସନେକେ ଆଣିବି ବିଭାଣ୍ଡେକ ନନ୍ଦନ ॥୨॥
ତାହାର ଅଇଲେହେ ହୋଇବ ଜଳସୃଷ୍ଟି ।
ଯାହା ସେ କହିଅଛନ୍ତି ବଶିଷ୍ଠ ତପନିଷ୍ଠି ॥୩॥
ବିମନେ ନଗ୍ରେ ବୁଲନ୍ତେ ମହିପାଳଇ ।
ନିଶାରେ ହୋଇଲା ଯାଇ ବେଶାର ଆଳଇ ॥୪॥
ଜରତାକୋଷା ନାମେ ଗଣିକାଇ ଶ୍ରେଷ୍ଠ ।
ରୂପେଣ କାମେନୀ ସେ ନଗ୍ରର ଗରିଷ୍ଠ ॥୫॥
ନିଶାର ସମୟେ ସେ ବସିଣ କାମେନୀ ।
ଗର୍ବେଣ କହଇ ବାଳୀ ଦଶବିଂଶ ଘେନି ॥୬॥
ରାଜା ନ ଜାଣଇ ମନେଣ ଅଜ୍ଞାନ ।
ମୋତେ କିମ୍ପା ନ ପେଷଇ ଯହିଁ ଅଛଇ ବିଭାଣ୍ଡେକ ସୂନ ॥୭॥
(ନଗ୍ରେ ଘୋଷଣା ସେ ନିତ୍ୟେହେ ଦିଅଇ ।
କେହି ଧରି ନୁଆରନ୍ତି ସାମରଥ ହୋଇ) ॥୮॥
ବଚନ ମାତ୍ରକେ ମୋହି ଆଣିବି ସେ ଯତି ।
ଏସନେକ କଥା ଶୁଣି ଲୋମପାଦ ନୃପତି ॥୯॥
କଣ୍ଠରେ ମୁକୁତାହାର ଭରିଣ ଯେ ଥିଲା ।
ବେଶାର ମନ୍ଦିର ଉପରେ ତାହା ପକାଇ ଅଇଲା ॥୧୦॥
ନବରେଣ ମହିପତି ହୋଇଲା ପ୍ରବେଶ ।
ନିଶି ପ୍ରଭାତେ ଡଗରକୁ ଦେଲାକ ଆଦେଶ ॥୧୧॥
ହେ ଡଗର ତୁହି ଶୀଘ୍ର ହୋଇଣ ଯାସି ।
ବେଶ୍ୟାଙ୍କର ସାହିରେ ଯାଇ ପ୍ରବେଶ ହୁଅସି ॥୧୨॥
ମୋହର ମୁକୁତାର ହାରା ଯାହାର ମନ୍ଦିରେଣ ଦେଖିବୁ ।
ସେ କାମେନୀକି ମୋହର ସନିଧକୁ ଘେନିଣ ଆସିବୁ ॥୧୩॥
ରାଜାର ଆଜ୍ଞା ପାଇ ଡଗର ବେଗେ ଗଲା ।
ବେଶ୍ୟାର ଆଶ୍ରମ ଉପରେ ମୁକୁତାର ହାରା ଦେଖିଲା ॥୧୪॥
ଜରତକୋଷାକଇ ରାଜାର ଛାମୁକୁ ଆଣନ୍ତି ।
ଡରେ ଥରହର ଦେହ କମ୍ପଇ ଯୁବତୀ ॥୧୫॥
ବୋଲଇ କେବଣ ଦୋଷ ମୁହିଁ କଲଇ ଅପ୍ରାଧ ।
କିମ୍ପାଇଁ ନିଅନ୍ତି ମୋତେ ରାଜାର ସନିଧ ॥୧୬॥
ନୃପତିର ଆଗେ ଆଣି କଲେକ ଯହୁଁ ।
ଜରତକୋଷାକଇ କୋମଳ କଥା କହଇ ରାୟେ ତହୁଁ ॥୧୭॥
ଗନ୍ଧଚନ୍ଦନ ଦେଲା ଧନରତ୍ନବସନ ।
ଅନେକ ପୁରୁଷାର୍ଥ କରାଇଲା ସନମାନ ॥୧୮॥
ପ୍ରଣମିତ ହୋଇ ପୁଛଇ ଯୁବତୀ ।
କେବଣ କାର୍ଯ୍ୟ ମୁହିଁ କରିବି ନୃପତି ॥୧୯॥
ସ୍ତିରୀ ନିଲକ୍ଷଣୀ ମୋତେ କିମ୍ପା କରୁ ସନମାନ ।
ଜରତାର ମୁଖ ଚାହିଁ କହଇ ରାଜନ ॥୨୦॥
ଆଇ କାଲି ରାତ୍ରେଣ କହୁଥିଲୁ ଯାହା ।
ମୁହିଁ ଦୁଇ ଶ୍ରବଣେ ଶୁଣିଲଇ ତାହା ॥୨୧॥
ତୁହି ଯେ ବୋଇଲୁ ଋଷିଶୃଙ୍ଗ ପାରଇ ଆଣି ।
ସେ କଥା ତୋହର ସତଟିକି ତରୁଣୀ ॥୨୨॥
ଏ ମୋହର ରାଜ୍ୟେ ହୋଇଛି ଅନାବୃଷ୍ଟି ।
ଋଷିଶୃଙ୍ଗ ଅଇଲେ ସେ ପାଣି ବରଷିବ ସୃଷ୍ଟି ॥୨୩॥
ତୁ ଯେବେ ଋଷିଶୃଙ୍ଗଙ୍କୁ ଆଣିପାରୁ ହରି ।
ଏ ରାଜ୍ୟରେ ଆଇ ତୁହି ସେ ହିତକାରୀ ॥୨୪॥
ସକଳ ପ୍ରଜାକୁ କରସି ତୁହି ଚିନ୍ତା ।
ତୁ ଗୋ କାମେନୀ ମୋହର ହୋଇବୁ ନିଜ ମାତା ॥୨୫॥
ଜରତ କୋଷା କହଇ ଶୁଣସି ରାଜନ ।
ମୁହିଁ ଯାହା କହଇ ସ୍ୱରୂପ ବଚନ ॥୨୬॥

ଏ ତୋହର ଆଗେ କି କହିବି ମିଛଇ ।
ବାଟ ନ ଜାଣଇ କାହିଁ ମୁନି ଅଛଇ ॥୨୭॥
ଲୋମପାଦ କହଇ ଅଯୋଧ ବ୍ରାହ୍ମଣେ ପୂର୍ବେ ଗଲେ ।
ସେ ଋଷିଶୃଙ୍ଗଙ୍କୁ ଠାବ କରିଣ ଅଇଲେ ॥୨୮॥
ତୁହି ଯେବେ ଯିବାକୁ ସନମତ କରୁ ।
ସେ ବ୍ରାହ୍ମଣଙ୍କୁ ଅଣାଇବି ଅଯୋଧ୍ୟା ନବରୁ ॥୨୯॥
ଜରତା କହଇ ଶୁଣ ନୃପବର ।
ବ୍ରାହ୍ମଣଙ୍କୁ ଅଣାଇ ବି(ଜେ କର) ତୋହର ପୁର ॥୩୦॥
ସେ ବ୍ରାହ୍ମଣଙ୍କର କଥା ମୁହିଁ ଶୁଣିମି ।
ତାହାନ୍ତ ଶୁଣିଣ ଋଷିର ତହିଁକି ମୁହିଁ ଯିବି ॥୩୧॥
ପାରଇ ତୋହର କରିବଇ କାର୍ଯ୍ୟ ।
ନଉଚେତେ ଋଷିର କୋପେ ହୋଇବି ଦହିଯ୍ୟ ॥୩୨॥
ଶୁଣି ଲୋମପାଦ ହରଷ ହୋଇଲା ।
ଦଶରଥଙ୍କୁ ଲେଖ ଲିହି ଦୂତ ପଠିଆଇଲା ॥୩୩॥
ଯେବଣ ବ୍ରାହ୍ମଣେ ଋଷିଶୃଙ୍ଗ ଠାବ କରିଥିଲେ ଯାଇ ।
ଭୋ ମଇତ୍ର ତାହାଙ୍କୁ ବେଗେ ଦେସି ପଠାଇ ॥୩୪॥
ମୋହର ରାଜ୍ୟ ବେଶ୍ୟା ଜରତାକୋଷା ନାରୀ ।
ସେ ବେଶ୍ୟାନ୍ତ ଘେନି ଯିବ ଯହିଁ ଅଛଇ ତପଚାରୀ ॥୩୫॥
ଏସନେକ ଲେଖଇ ଘେନି ଦୂତ ବେଗେ ଗଲା ।
ଦଶରଥ ରାଜାକୁ ଲେଖ ନେଇ ଦେଲା ॥୩୬॥
ଶୁଣି ଦଶରଥ ମନେ ହରଷ ହୋଇ ।
ସେ ବ୍ରାହ୍ମଣ ଚାରିକି ଦେଲା ପଠିଆଇ ॥୩୭॥
ଲୋମପାଦ ରାଜ୍ୟେ ବ୍ରାହ୍ମଣେ ପ୍ରବେଶ ହୋଇଲେ ।
ରାଜାର ଛାମୁରେ ହୋଇ କଲ୍ୟାଣ କଲେ ॥୩୮॥
ସେ ବ୍ରାହ୍ମଣଙ୍କୁ ଲୋମପାଦ ଗଉରୋବ କଲା ।
ଅନେକ ଧନ ବସନ ତ୍ରିପୁର ତାମ୍ବୋଳ ଦେଲା ॥୩୯॥
ଅମୃତ ଆଦି କରି ସେ ବିପ୍ର ଚାରି ।
ସନିଧେ ହକାରଇ ଜରତାକୋଷା ନାରୀ ॥୪୦॥
ସେ ବିପ୍ର ବେଶ୍ୟାଏ ହୋଇଲେ ଏକ ଗୋଷ୍ଠୀ ।
ବ୍ରାହ୍ମଣେ କହନ୍ତି ପଥ ଦୁସହ ଅରଣ୍ଟି ॥୪୧॥
ତୁ ଯେବେ ଦଶ ଯୋଜନ ଖୋଳାଇ ।
ତେବେ ସେ କୃଷ୍ଣବେଣୀକି ନାବବାଟ ହୋଇ ॥୪୨॥
ନାବେଣ ବସିଣ ଯେ ସୁପନ୍ଥେଣ ଯିବା ।
ବିପୁଳ ପର୍ବତେ ପ୍ରବେଶ ହୋଇବା ॥୪୩॥
ବନସ୍ତର ବାଟେ ଗଲେ ଦୁସହ ଦୃଗତି ।
ଚାଲି ନ ପାରିବୁ ତୁହି ସୁକୁମାର ଯୁବତୀ ॥୪୪॥
ବ୍ରାହ୍ମଣେ ଏସନେକ କହିଲେକ ଯହୁଁ ।
ରାଜାକୁ ଜରତାକୋଷା ଜଣାଇଲା ତହୁଁ ॥୪୫॥
ଭୋ ଦେବ ବନସ୍ତର ବାଟ ଯାଇତ ଭୟେ କରି ।
ଯେ ଅବା ଯାଇ ବନସ୍ତର ଜୀବେ ଖାନ୍ତି ଧରି ॥୪୬॥
ଖୋଳାଇ କୃଷ୍ଣବେଣୀକି ନାବ ବାଟ କରାଇବୁ ।
ନାବରେ ବସି ମୁନିର ତହିଁକି ଆମ୍ଭେ ଯିବୁ ॥୪୭॥
ଶୁଣି ଲୋମପାଦ ହରଷ ହୋଇଲା ।
ପରଜାକୁ ଅଣାଇ ନଦୀକି ବାଟ ଦେଖାଇଲା ॥୪୮॥
ତିନି ବରଷେ ନଦୀକି ବାଟ କଲେ ଖୋଳା ।
ଦେଖିଣ ରାଜନ ହରଷ ହୋଇଲା ॥୪୯॥
ଶତେକ ନାବ ସଜ କରଇ ଜରତାକୋଷା ନାରୀ ।
ସମସ୍ତ ଦ୍ରବ୍ୟନ୍ତ ନିର୍ଭା ସେହୁ କରି ॥୫୦॥
ସୁରଭି ଆଦି କରି ଇକ୍ଷୁ ସର୍ବସାର ।
କଦଳୀ ନଡିକାଳ ଅନେକ ଉପହାର ॥୫୧॥
ସହସ୍ରେ ଯୁବତୀ ଅନେକ କାମେନୀ ।
ନାବେ ବସଇ ଜରତାକୋଷା ବ୍ରାହ୍ମଣ ଘେନି ॥୫୨॥
କଇବ୍ରତ ନାବ ଘେନିଣ ତହୁଁ ଗଲା ।
ଉତ୍ତରାଅଙ୍କର ତଟେ ନାବନ୍ତ ଖଟାଇଲା ॥୫୩॥
ବିପୁଳ ବନସ୍ତ ତହିଁକି ଦିଶିଲାକ ଯହୁଁ ।
କନ୍ୟାନ୍ତ ଘେନି ବ୍ରାହ୍ମଣେ ପର୍ବତକୁ ଗଲେ ତହୁଁ ॥୫୪॥
ସୁସର ସ୍ୱରେଣ ଗାବଇ ଦିବ୍ୟରୀତି ।
ଶୁଣିଣ ଶ୍ରୀରାମ ଆନନ୍ଦ ହୋଏ ମତି ॥୫୫॥

## ଋଷ୍ୟଶୃଙ୍ଗ ବେଶ୍ୟାବଶ ହେଲେ

କୁମର ମୁଖ ଚାହିଁ ରାମଚନ୍ଦ୍ର ପଚାରିଲେ ।
କେସନେକେ ଋଷିଶୃଙ୍ଗଙ୍କୁ ବେଶ୍ୟାଏ ବଶ କଲେ ॥୧॥
ଜନମନୁଷ୍ୟ ନାହିଁ ଯାହାର ପୀରତି ।
ତାହାକୁ କେମନ୍ତେ ଆଣିଲେ ଯୁବତୀ ॥୨॥
କହସି ବାଳପୋଇ ବିଚିତ୍ର ଦିବ୍ୟବାଣୀ ।
ଦୁରିତ ବିନାଶଇ ଋଷିଶୃଙ୍ଗର ଗବନ ଶୁଣି ॥୩॥
ଶ୍ରୀରାମର ବୟାଣ ଶୁଣି ଲବ କୁମରଇ ।
ବସନ୍ତ ବରାଡ଼ି ରାଗ ହୁଂକାର କରଇ ॥୪॥
ବସନ୍ତ ପିକନାଦ ଯେସନ ଶୁଭଇ ସୁସ୍ୱର ।

ଶୁଣିଣ ସଭା ଲୋକେ ଚିତ୍ତ କଲେ ସ୍ଥିର ॥୫॥
ଏକୁ ଆରକେ ସମାଦନ୍ତ ନାହିଁ ।
ଏକ ତଲ୍ୟଯେ କରି ଲବକୁମର ମୁଖ ଚାହିଁ ॥୬॥
ସଭାର ତଳେ ଅନେକ ଜନ ଗହନ ।
ଗୀତ ଗାଉଅଛି ସୀତୟା ନନ୍ଦନ ॥୭॥
ବିପୁଳ ପର୍ବତେ ମିଳିଲେ ବାଳୀ ଯାଇ ।
ଯହି ବିଭାଣ୍ଡେକ ମୁନି ଆଶ୍ରମେ ଛନ୍ତି ରହି ॥୮॥
ତହିଁର ଥୋକାଏ ଦୂର ଦକ୍ଷିଣ ଭାଗ କତି ।
ବିଚିତ୍ର ଶାଢ଼ୀଘରେକ ରଚିଲେ ଯୁବତୀ ॥୯॥
ତହିର ଭିତରେ ବାଲୁକା ଲିଙ୍ଗ ସ୍ଥାପି ।
ସେବା କରନ୍ତି ତହିଁ ଚିତ୍ତ ନିରୋପି ॥୧୦॥
ବିଭାଣ୍ଡେକ ଋଷି ତପ କରି ଯାନ୍ତି ବେଗେ ।
ତାଳ ବେଣୀ ଧରି ଗୀତ ଗାଅନ୍ତି ସୁସଙ୍ଗେ ॥୧୧॥
ଶୁଣି ଋଷିଶୃଙ୍ଗ ମନ ଅସ୍ଥିର ହୋଇଲା ।
ଆଶ୍ରମ ଉପେଖି କନ୍ୟାଙ୍କର ସନିଧକଇ ଗଲା ॥୧୨॥
ଟେରା ନିରୋପି ବୁଲଇ ଚଉପାଶ ।
ଗନ୍ଧ ଆମୋ(ଦ ପୁଷ୍ପ ଚନ୍ଦନର ବାସ) ॥୧୩॥
ଗନ୍ଧ ପୁଷ୍ପମାନ ଯେ ବେଢ଼ିଣ ଅଛନ୍ତି ।
ଶରଧାରେ ତୋଳି ତାହା ଘେନଇ ମହାଯତି ॥୧୪॥
ସେହୁ କାମେନୀ ଅପାଙ୍ଗେ ଚାହାନ୍ତି ଯହୁଁ ।
ଡରେ ଋଷିକୁମର ପଳାବନ୍ତି ତହୁଁ ॥୧୫॥
ଶଙ୍କା କରି ବାହୁଡ଼ି ମୁନି ଗଲା ।
ନିଜ ଆଶ୍ରମେ ବିମନେ ପ୍ରବେଶ ହୋଇଲା ॥୧୬॥
ଅନଙ୍ଗବାଣେ ଋଷିଶୃଙ୍ଗ ଅଥିର ଶରୀର ।
ଗାତ୍ରେ ଅଙ୍ଗ ମୁନିର ନ ପଡ଼ଇ ଭୂମିର ॥୧୭॥
ଅନାଭୋଆ ସପନେ ମୁନି ଶାଢ଼ୀ ଘରେ ଦେଖଇ ।
ଉଠଇ ବସଇ ପୁଣ ପୁଣ ନିରେଖଇ ॥୧୮॥
ସୁଗନ୍ଧ ପୁଷ୍ପକୁ ଭଜିଳାକ ଚିତ୍ତ ।
ମଦନ ବିରଙ୍ଗେ ଅସ୍ଥିର ପଞ୍ଚଭୂତ ॥୧୯॥
ଏସନେ ରଜନୀ ବିସରିଲାକ ଯେବେ ।
ପ୍ରାତ ସ୍ନାନ ନିମନ୍ତେ ବିଭାଣ୍ଡେକ ଗଲେ ତେବେ ॥୨୦॥
ଜରତକୋକ୍ଷା କହଇ ଗଣିକାର ଆଗ ।
ଋଷିର ତହିଁକି ଚାଲ ଯିବା ଆମ୍ଭେ ବେଗ ॥୨୧॥
ତାହାକୁ ଆମ୍ଭେ ଯେ ଭୟେ କରିଣ ଥିଲୁ ।
କାର୍ଯ୍ୟ ସୁଫଳ ହେବ ବୋଲି ମନେ ବିଚାରିଲୁ ॥୨୨॥
ଆଶ୍ରମ ଉପେଖି ଯେବେ ହୋଇଲା ଆମ୍ଭ କତି ।
ଆବର ଋଷିଶୃଙ୍ଗକୁ କେନ କରଇ ଭୀତି ॥୨୩॥
ଏସନେକ ବିଚାରୀ କାମେନୀ ସୁବେଶ ହୋଇଲେ ।
ଯହିଁ ଅଛନ୍ତି ବାଳଯତି ତହିଁ ସମସ୍ତେ ମିଳିଲେ ॥୨୪॥
ନାଦ ହୁଂକାରି ଗାଇଲେ ସୁସ୍ୱରେ ଗୀତ ।
ସନିଧେ ମିଳି ବିଚାରଇ ବିଭାଣ୍ଡେକର ସୁତ ॥୨୫॥
କେବଣ ଦେଶୀ ତୁମ୍ଭେ କେବଣ ଦେଶେ ଥିଲ ।
ଆମ୍ଭର ଆଶ୍ରମକୁ କିପାଇଁ ଅଇଲ ॥୨୬॥
କନ୍ୟାଏ କହନ୍ତି ଶୁଣିମା ମହାଯତି ।
ଅନେକ ଘୋର (ବନ) ଜିଣି ଅଇଲୁ ତୋର କତି ॥୨୭॥
ମହତ ମରଯିତା ତୋହର ଶୁଣିଲୁ ।
ନାବେଣ ବଂସିଣ ଶୀଘ୍ରେଣ ଅଇଲୁ ॥୨୮॥
ତୁହ ତପୀକୁମାର ତୋହର ତୁଲେ ଥିବୁ ।
ତୋହର ମନ୍ତ୍ର ଶୃତି ଶିଖିବୁ ତୋତେ ବୁଦ୍ଧି କହିବୁ ॥୨୯॥
ତେବେ ସେ ଅଇଲୁ ତୋହର ସନିଧାନ ।
ଶୁଣି ହରଷେ କହନ୍ତି ବିଭାଣ୍ଡେକର ସୂନ ॥୩୦॥
ତୁମ୍ଭେ ଯତିହେ ମୋହର ଆଶ୍ରମକୁ ଅଇଲ ଯେବେ ।
କନ୍ଦମୂଳ ଦେବଇ ଶରୀର ତୋଷ କର ଏବେ ॥୩୧॥
ମୃଗ ଚର୍ମ ଆଣି ଆସନ ଦେଲେ ।
ପୁଣି ବାଳ ଯତି ପର୍ଣ୍ଣ କୋଟୀରେ ପଶିଲେ ॥୩୨॥
ଛଡ଼ାମୁଗ ଗୁଣ୍ଡି ବାଳ ହରିଡ଼ା ଫଳ ।
କମଣ୍ଡଳେ ଭରି ଦେଲା ଗିରିବର ଝର ଜଳ ॥୩୩॥
ଏହୁ ପଦାର୍ଥ ଭୋଜନ କରସି ।
ଦେଖି ଦ୍ରହାସ୍ୟ କରନ୍ତି ଶୁଭ୍ରକେଶୀ ॥୩୪॥
ପର୍ବତକୁ ସେ ସର୍ବଦା ଆମ୍ଭର ଆଶ ।
ପୁଣି ସୁଦ୍ରବ୍ୟ ପଦାର୍ଥନ୍ତ ସେ କରଉ ଆମ୍ଭେ ଗ୍ରାସ ॥୩୫॥
ତୁମ୍ଭେ ଯେ ଋଷିକୁମାର ବିଚକ୍ଷଣ ତପୋଧନ ।
ଏସନେକ ଫଳସେ କରକି ଭୋଜନ ॥୩୬॥
ଆବର ବିଶେଷେ ତୁହି ତପୀ ଏକସ୍ୟର ।
ଆମ୍ଭେ ଆଗ କିମ୍ବା ତୋହର ଫଳ କରିବୁ ଆହାର ॥୩୭॥
ଯାହା ପାଇ ତାହା ପାଲଟାଇ ଯେବେ ଦେଉ ।
ନଉଚେତ ପରସ୍ତକୁ ମାଥେ ବହିଥାଉ ॥୩୮॥
ତୋହର ଆମ୍ଭର ଏବେ ହୋଇବା ବିଶ୍ୱାସ ।

ଆମ୍ଭେ ଯାହା ଆଣିଲୁ ତୁ ଯେବେ କରିବୁ ଗ୍ରାସ ॥୩୯॥
ଋଷିଶୃଙ୍ଗ କହଇ ତୁମ୍ଭର ତୁଲେ ପ୍ରୀତି ହୋଇବି ।
ଯାହା ତୁମ୍ଭେ ଦେବ ତାହା ମୁଁ ଭକ୍ଷିବି ॥୪୦॥
ତୁମ୍ଭେ ଯତିହେ ଅନେକ ତୀର୍ଥେ ଥିଲ ।
କର୍ମର ସୁଫଳେ ଆମ୍ଭର ଆଶ୍ରମକୁ ଅଇଲ ॥୪୧॥
ଶୁଣିଣ କାମେନୀ ହରଷ ହୋଇଲେ ।
ନାନା ପଦାର୍ଥ ନେଇ ମୁନିବର କତିରେ ଥୋଇଲେ ॥୪୨॥
ସୁରଭି ସର ଇକ୍ଷୁ ସର୍କ ଦିବ୍ୟରୀତି ।
ନଟିକାଳ କଦଳୀ ନେଇ ମୁନିବର ସନିଧେଣ ଦେନ୍ତି ॥୪୩॥
ସୁବାସ କସ୍ତୁରୀ କର୍ପୂରବାସ ପାଣି ।
ମୁକୁତା ହାର ଗଳାରେ ଭରିଲେ କେବଣ ତରୁଣୀ ॥୪୪॥
କେ ହଳଦୀ ଲେପଇ କେ ପିନ୍ଧାନ୍ତି ଝୀନବାସ ।
ନାନା କୁସୁମ ଖୋସନ୍ତି ନେଇ କେଶ ॥୪୫॥
ଲଲାଟେ କେ କସ୍ତୁରୀଟିପା ନେଇ ଦେଲା ।
କେବଣ କାମେନୀ ମୁଖେ ଦ୍ରପଣ ଦେଖାଇଲା ॥୪୬॥
ଦେଖି ବାଳଯତି ହୋଇଲାକ ବଶ ।
ଆପଣାର ମୁଖ ଚାହିଁ ମନେମନେ ହରଷ ॥୪୭॥
ନିଜ ରୂପ ଯହୁଁ ଋଷିଶୃଙ୍ଗ ଦେଖିଲା ।
ଜରତକୋଷାର ମୁଖ ଚାହିଁ ପଚାରିଲା ॥୪୮॥
କି ମନ୍ତ୍ର ତୁମ୍ଭେ ଜାଣ କେମନ୍ତେ ତପ କଲ ।
ଅପୂର୍ବ ପଦାର୍ଥ ତୁମ୍ଭେ କାହୁଁ ପାଇଲ ॥୪୯॥
ଆପଣାର ରୂପ ତ ଏ ତୀର୍ଥର ଭିତରେ ଦିଶଇ ।
ଏଥିର କଥା କହ ଉପନେସଇ ॥୫୦॥
କନ୍ୟାଏ କହନ୍ତି ଆମ୍ଭର ନିଜ ସ୍ଥାନ ।
ଯହିଁ ଏ ପଦାର୍ଥ ହୋଇଛି ଉତପନ ॥୫୧॥
ଏବେ ଆମ୍ଭର ପଦାର୍ଥନ୍ତ ଆଧାର କରସି ।
ଏହୁ ଭଲ ପଦାର୍ଥ ତୋତେ ଦିଆଇସି ॥୫୨॥
ଶୁଣି ଋଷିଶୃଙ୍ଗ ହୋଇଲା ହରଷ ।
ସେ ସୁରଭି କ୍ଷୀର କିଛୁ କରଇ ଗ୍ରାସ ॥୫୩॥
ଯାହା ସେ ବିଧାତା ଅଛି ନିର୍ବାଣ କରି ।
କାହାର ବୋଲେ ତାହା ହୁଅଇ ଆନ କରି ॥୫୪॥
ଋଷିକୁମର ମନ ହରି ସନିଧେଣ ଥିଲେ ।
ବେଳ ଅସ୍ତ ନିକଟେ ଋଷିଶୃଙ୍ଗକୁ କହିଲେ ॥୫୫॥
ପିତା ତୋହର ପ୍ରତାପୀ ତପୋଧନ ।
ପରଶିରୀ କାତର ହିଂସାଧର ମନ ॥୫୬॥
ଆମ୍ଭନ୍ତ ଦେଖିଲେ ସେ କହିବେ ମନ୍ଦଛନ୍ଦ ।
ଆମ୍ଭେ ଏଥେ ପୁଣ କରିବୁ ଦ୍ୱନ୍ଦ ॥୫୭॥
ଏବେ ଆମ୍ଭେ ନିଜ ଆଶ୍ରମକୁ ଯିବୁ ।
ରଜନୀ ପ୍ରଭାତେ ତୋହର ତହିଁକି ଆସିବୁ ॥୫୮॥
ଋଷିଶୃଙ୍ଗ କହଇ ଆସିବ କି ପ୍ରଭାତ କାଳେ ।
ମୋହର ପିତା ତପ କରିତ ଗଲେ ॥୫୯॥
ଆମ୍ଭେ ସମସ୍ତେ ଏକ ସଙ୍ଗତେ ଥିବା ।
କିସ ମନ୍ତ୍ର ବିଦ୍ୟା ଜାଣ ମୋତେ କହିବା ॥୬୦॥
ଏସନେକ ଶୁଣି କନ୍ୟାଏ ବାହୁଡ଼ି ଅଇଲେ ।
ବେଳ ଶେଷେ ବିଭାଣ୍ଡେକ ଆଶ୍ରମେ ହୋଇଲେ ॥୬୧॥
ମୁନିର ନାସାରେଣ ଗନ୍ଧରାଗ ପଶିଲା ।
ଗନ୍ଧାଘ୍ରାଣ କରି ବିଭାଣ୍ଡେକ ବଇରାଗ ହୋଇଲା ॥୬୨॥
ପୁତ୍ରକୁ ପଚାରଇ ସନିଧେଣ ରାଇ ।·
ମଦନମାତୃ ଗନ୍ଧ ଆମୋଦଇ କାହିଁ ॥୬୩॥
କୁମାର କହଇ ଶୁଣସି ଭୋ ତାତ ।
ଭଲ ଭଲ ପୁରାତନ ଯତି ଆସିଥିଲେ ଏଥ ॥୬୪॥
ସୁବାସ ବିଭୂତି ସେ ହୋଇଥିଲେ ଲେପନ ।
ସେ ବିଭୂତିର ଲେପ କରଇ ଆମୋଦନ ॥୬୫॥
ଯୁଗ ଯୁଗାନ୍ତରେ ତୁହିଁ ରହିଅଛୁ ଏଥି ।
ଧନ୍ୟ ସେ ତପଧାର୍ମିକ ମହାଯତି ॥୬୬॥
ଚକ୍ରେ ଜଟା ତାହାଙ୍କର ଲଲାଟପାଟୀ ।
ଶୋଭା ସୁସଞ୍ଚ ଦିଶଇ ଚନ୍ଦନ ଗୋଟି ॥୬୭॥
ତାହା ଦେଖି ମୁହିଁ ତ୍ରିପୁତ ହୋଇଲି ।
କନ୍ଦମୂଳ ଦେଲେ ଅମୃତ ପରାୟେ ବୁଝିଲି ॥୬୮॥
ବିଭାଣ୍ଡେକ କହଇ ଶୁଣସିରେ ନନ୍ଦନ ।
କାମରୂପୀ ଅସୁରେ ଥାନ୍ତି ଘୋରବନ ॥୬୯॥
ତପୀଙ୍କର ବଇରିଟି ସୁରରାଜ ପୁରନ୍ଦ(ର)ଇ ।
ଯୁବତୀ ପେଷି ଲେଶେ ତପ ନାଶ କରଇ ॥୭୦॥
ଶୁଣିଣ କୁମରେ କୋପେ ପ୍ରଜ୍ୱଳି ।
ତୋହର ଦୁଷ୍ଟପଣ ସେ କହିଲେ ତପଶ୍ୟାଳୀ ॥୭୧॥
କିମ୍ପା ବନେ ଏକସ୍ୟରେ ଏକା ଥାଉ ।
ପରଶିରୀ ଦେଖିଲେ ଶରୀରେ ରାଗ ବହୁ ॥୭୨॥
ଶୁଣିଣ ବିଭାଣ୍ଡେକ ତବଦ ହୋଇଲେ ।

ମଉନେ ପିତାପୁତ୍ରେ ରଜନୀ ପୁଆଇଲେ ॥୭୩॥
ପ୍ରଭାତେ ମହରଷି ତପେଣ ଗଲେ ଯହୁଁ ।
ରଷିଶୃଙ୍ଗ ଆଶ୍ରମେ କନ୍ୟାଏ ମିଳିଲେକ ତହୁଁ ॥୭୪॥
ସେ କାମେନୀ ଦେଖି କହଇ ତପୋଧନ ।
ଶୁଣସି ଯତିଏ ହୋ ମୋହର ବଚନ ॥୭୫॥
ଯହୁଁ ଏଥି ଗନ୍ଧବାସ ଆମୋଦିଲା ।
ମୋତେ ଧିଙ୍ଗାସି ତାତ ହକାରିଣ କହିଲା ॥୭୬॥
ମୁହିଁ ତାହାକୁହିଁ ସମସ୍ୟା ନ ଦେଲି ।
ଆନ ବେଳେ ପୟର ମଞ୍ଚାଳଇ କାଲି କତିକି ନ ଗଲି ॥୭୭॥
ଶୁଣିଣ କନ୍ୟାଏ ଶ୍ରବଣ ଛୁଅନ୍ତି ।
ଆମ୍ଭେ ଏଥେ ରହି ନ ପାରୁ ଭୋ ଯତି ॥୭୮॥
ମହା ବଇରାଗୀ ତୋହର ତାତ ।
ଆମ୍ଭଙ୍କୁ ଦେଖିଲେ ସେ ବୋଲିବେ ଦଇତ୍ୟ ॥୭୯॥
ତୋହର ଆଶ୍ରମେ ନ ପାରୁ ଆମ୍ଭେ ରହି ।
ଏସନେକ ବୋଲି ତହୁଁ ଆସନ୍ତି ସର୍ବ ସହୀ ॥୮୦॥
ସେ କାମେନୀଙ୍କର ଯିବାର ଯହୁଁ ରଷିଶୃଙ୍ଗ ଦେଖିଲା ।
ଆଶ୍ରମ ଉପେଖି ତାହାଙ୍କ ପଛେ ଗୋଡ଼ାଇଲା ॥୮୧॥
ଭୋ ଯତି ହେ ମୋତେ କିମ୍ପା କୋପକର ।
ପିତାର ବଚନ ଦୋଷ ମୋହରେ କିମ୍ପା ଧର ॥୮୨॥
ତୁମ୍ଭର ତହୁଁ ମୁହିଁ ଯେ ଶାସ୍ତ୍ର ଶିଖିବି ।
ତୁମ୍ଭେ ଯହିଁକି ଯିବ ତୁମ୍ଭର ସଙ୍ଗତେ ଆସିବି ॥୮୩॥
ଶୁଣି ସୁନ୍ଦରୀ ବେଗେ ବାହୁଡ଼ିଲେ ।
ରଷିଶୃଙ୍ଗଙ୍କୁ ମଧକରି ଶାଢ଼ୀ ଘରକୁ ନେଲେ ॥୮୪॥
ରତ୍ନଖଟ ଉପରେ ନେଇଣ ବସାବନ୍ତି ।
ପୟର ପଖାଳି ଅଞ୍ଚଳେ ପୋଛନ୍ତି ॥୮୫॥
ଜରତକୋଷା କାମେନୀ ସନିଧେଣ ବସି ।
ମୁନିବର ଶରୀର ଆଶ୍ୱାସଇ ଶୁଭ୍ରକେଶୀ ॥୮୬॥
ସେ ଯୁବତୀର ଲାଗନ୍ତେଣ ଅଙ୍ଗ ।
ରସଗଳିତ ହୋଇଲା ମତିଭଙ୍ଗ ॥୮୭॥
କାମବାଣେ ବାଳ ଯତି ଲଜ୍ଜା ଛାଡ଼ିଲା ।
ଜରତକୋଷାକୁ ଗାଢ଼େ ଆଲିଙ୍ଗନ କଲା ॥୮୮॥
ବିବିଧ କୁତୂହଳେ ନାନା ପ୍ରେମରସ ।
କ୍ରୀଡ଼ା କୁତୂହଳ ହାସ୍ୟ ପରିହାସ୍ୟ ॥୮୯॥
ମଦନ ଖଳିତ ମୁନିର ଶ୍ରମଝାଳ ଗଳଇ ।
ସୁବାସ ଜଳ(ରେ) ମୁନିର ଅଙ୍ଗ ସେ ପଖାଳଇ ॥୯୦॥
ଆଲଟ ଘେନି ଅନେକ କାମେନୀ ବିଞ୍ଚିଲେ ।
ପଇଡ଼ ପାଣି ଘେନି ତାମ୍ବୋଳ ଭୁଞ୍ଜାଇଲେ ॥୯୧॥
ନାନା ଅଳଂକାର ଶରୀରେ ଭରନ୍ତି ।
ରଷିର ଛାମୁରେ ଆଣି ଦର୍ପଣ ଦେଖାବନ୍ତି ॥୯୨॥
ଆପଣାର ରୂପ ଦେଖି ଭାଳଇ ମହାମୁନି ।
ମୋହେ ବଶିକୃତ ହୋଇଲା ତପୋଧନି ॥୯୩॥
ଜରତକୋଷାକଇ ପଚାରଇ ମୁନିବର ।
ହେ ଯତି ହେ କାହିଁ ତୁମ୍ଭର ଘର ॥୯୪॥
ସେ ଆଶ୍ରମକଇ ମୋତେ ତୁମ୍ଭେ ନିଅ ।
ଏ ରତିଶାସ୍ତ୍ର ବିଦ୍ୟା ମୋତେ ତୁମ୍ଭେ କହ ॥୯୫॥
ଜରତା କହଇ ଶୁଣ ମୁନିବର ।
ଏ ପର୍ବତ ଉପରେ ଉତ୍ତରାଙ୍କର ତୀର ॥୯୬॥
ସେ ପବିତ୍ର ସ୍ଥାନ ଆମ୍ଭର ନିଜ ବାସ ।
ଶୁଣି ରଷିଶୃଙ୍ଗ ହୋଇଲା ହରଷ ॥୯୭॥
ବୋଲଇ ତୁମ୍ଭର ନିଜ ଆଶ୍ରମକଇ ଯିବି ।
କେସନେକ ସ୍ଥାନ ଫଳ ପୁଷ୍ପ ଦେଖିବି ॥୯୮॥
ଜରତା କହଇ ଶୁଣସି ତପୋଧନ ।
ତୋହର ପିତାର ତେଜ ଯେସନେକ ହୁତାଶନ ॥୯୯॥
ତୋତେ ନ ଦେଖି କୋପ କରିବେ ଯେବେ ।
ସମସ୍ତେ ହେ ବିନାଶ ହୋଇବୁ ନା ଆମ୍ଭେ ଏବେ ॥୧୦୦॥
ମର ବୋଇଲେ ମରି ତର ବୋଇଲେ ତରି ।
ମହାତପୀ ବିଭାଣ୍ଡକ ସମସ୍ତେହେ ଡରି ॥୧୦୧॥
ତୁହି ଯେବେ ପିତାକୁ କହି କରାଇବୁ ସନମତ ।
ତେବେ ସେ ଆମ୍ଭର ଦେଶକୁ ନେଇ ପାରୁ ନା ତୁମ୍ଭନ୍ତ ॥୧୦୨॥
ଏବେ ତୋହର ପିତାଙ୍କର ଆଶ୍ରମକଇ ଯାସି ।
ପାରୁଯେବେ ପିତାକୁ କହି ସଜ ହୋଇଣ ଆସି ॥୧୦୩॥
ଆମ୍ଭେ ହେ ପ୍ରଭାତେ କାଲି ଯିବୁ ନିଜ ସ୍ଥାନ ।
ମାହାଗ ମାସକ ବୁଲିଲୁ ଏ ବିପୁଳ ବନସ୍ଥାନ ॥୧୦୪॥
ବରଷକେ ମାସେ ପୁଣ୍ୟ ଯେ ପବିତ ।
ମାଘ ସ୍ନାହାନ ବରଷେକ କର ପାତେକ ହୋଉ ହତ ॥୧୦୫॥
ମାସେକେ ଏକ ବୁଠେ ସ୍ନାହାନ କରି ।
ଯାବତ ଦୁଷ୍କୃତ ବରଷକର ହରି ॥୧୦୬॥
ଏକ ବୁଠେ ସ୍ନାହାନ କରି ଦେଖଇ ଯେବେ ହରି ।

ଏକ ଘରେ ଏକ ବରେ ତାହାର ଦିନ ସରି ॥୧୦୭॥
ତୋହର ତହିଁକି ଦେଖିତ ଅଇଲୁ ।
ମାଘ ମାସେକ ଏପୁଣ୍ୟ ସ୍ଥାନେ ବଢ଼ିଲୁ ॥୧୦୮॥
ଏବେ କାଲି ଆମ୍ଭେ ଯିବୁ ନିଜ ସ୍ଥାନ ।
ସ୍ୱରୂପ କରି ତୋତେ କହିଲୁ ମହାମୁନ୍ୟ ॥୧୦୯॥
ଏସନେକ କଥା ଶୁଣି ଋଷିଶୃଙ୍ଗ ଯହୁଁ ଆସଇ ।
ବୁକୁ ଦମଦମ ଛାଡ଼ଇ ନିଶ୍ୱାସଇ ॥୧୧୦॥
ଆଗ କରି ପୟର ବଢ଼ାନ୍ତେ ନୁଆରଇ ମୁନି ।
ଥୋକାଏକ ଧୂର ଗଲା ଜରତକୋଷା କାମେନୀ ॥୧୧୧॥
ଶରୀର ଆଶ୍ୱାସଇ ବାହୁଡ଼ଇ ଧାତି ।
ଲେଉଟି ଚାହାଇଁ ତାକୁ ଚଣ୍ଡମୁନିର ନାତି ॥୧୧୨॥
ମଦନ ଶରେ ମୋହେ ଢଳି ପଡ଼ିଲା ଶୃଙ୍ଗମୁନ୍ୟ ।
ଶୁଣିଣ ହସିଲେ ଯେ ଶ୍ରୀରାମ ରାଜନ ॥୧୧୩॥
ବଶିଷ୍ଠ ଆଦି କରି ସଭାର ସର୍ବଜନେ ।
ଲବକୁମର ଗୀତ ଶୁଣି ହରଷ ସବୁ ମନେ ॥୧୧୪॥

## ଋଷିଶୃଙ୍ଗଙ୍କର ଅଙ୍ଗ ରାଜ୍ୟରେ ପ୍ରବେଶ

ଶ୍ରୀରାମ ପୁଛନ୍ତି ବଶିଷ୍ଠଙ୍କ ମୁଖ ଚାହିଁ ।
ଏସନେକ କଥା ଶୁଣିଲା ମୋର ନାହିଁ ॥୧॥
ବାଳୁତ ହୋଇ ଯେ କହଇ ଦୃଢ଼ କଥା ।
ଧନ୍ୟ ଏହାର ମାତା ଧନ୍ୟ ଏହାର ପିତା ॥୨॥
ବଶିଷ୍ଠେ କହନ୍ତି ଏ ବଡ଼ଜଣଙ୍କର ପୁତ୍ର ।
ପଛେ ପଚାରସି ଏହାଙ୍କର ପିଅର ମାତ ॥୩॥
ବଶିଷ୍ଠକଇ ଶ୍ରୀରାମ ସମସ୍ୟା ଦିଅନ୍ତେ ।
ତୁନି ହୋଇ ବସିଲା ସୀତୟାର ସୁତେ ॥୪॥
ବଶିଷ୍ଠେ ପୁଛନ୍ତି ଶୁଣସି ବାଳପୋଇ ।
ବିଭାଣ୍ଡେ(କ)କଇ ଋଷିଶୃଙ୍ଗ କିସ ବୋଲିଣ କହି ॥୫॥
ବିସ୍ତାରି କରି କହସି ଅମୃତମୟେ ବାଣୀ ।
ଆମ୍ଭେ ସମସ୍ତେ ହେ ମୁକତ ହୋଉ ତୋହର ମୁଖେ ଶୁଣି ॥୬॥
ବଶିଷ୍ଠଙ୍କର ବଚନ ଶୁଣି ଲବ କୁମାରଇ ।
ଭୋପାଳପ୍ରିୟ ନାଦ ସଧୀରେ ହୁଂକାରଇ ॥୭॥
ବସନ୍ତ ମାସେ ପିକ ଯେସନେକେ ଭାଷଇ ।
ସୀତୟାର ତନୟ ବଚନ ତେସନେକ ଶୁଭଇ ॥୮॥
କନ୍ୟାକଇ ଉପେଖି ଆସନ୍ତେ ଶୃଙ୍ଗଋଷି ।
ମୁଖ ବିରସ ତାହାର ପଉରୋଷ ନ ଦିଶି ॥୯॥
ବେଳ ଶେଷ ଯହୁଁ ରଜନୀ ହୋଇଲା ।
ତପ ସାରି ବିଭାଣ୍ଡେକ ଆଶ୍ରମକୁ ଅଇଲା ॥୧୦॥
ଦେଖଇ ତ ଏ ପର୍ଣ୍ଣ କୁଟୀରେ କେହି ନାହିଁ ।
ତବଦ ମହାମୁନି ମନ୍ଦିରକଇ ଚାହିଁ ॥୧୧॥
ଉଭା ହୋଇ ଋଷି ଚାହାନ୍ତି ଚଉପାଶଇ ।
ଏସନେକ ସମୟେ ଋଷିଶୃଙ୍ଗ ଆଶ୍ରମକୁ ଆସଇ ॥୧୨॥
ପୁତ୍ରକଇ ଦେଖି କୋପେ ବୋଲଇ ମହାମୁନ୍ୟ ।
ଏତେବେଳେ କାହିଁ ଥିଲୁରେ ନନ୍ଦନ ॥୧୩॥
ଜଳପୁଷ୍ପ ନ ଆଣିଲୁ ଅଗ୍ନି ଲିବାଇଲୁ ।
ଧେନୁକୁ ବାନ୍ଧି ଅଛୁ ଫେଡ଼ି ନ ଚରାଇଲୁ ॥୧୪॥
ବଛା ଗୋଟିକଇ ଅଛଇ ଉପବାସ ।
ଚନ୍ଦ୍ରମସି ମୁଖ ତୋହର ନ ଦୁଶଇ ପଉରୋଷ ॥୧୫॥
ପିତାର ବଚନ ଶୁଣି ଋଷିଶୃଙ୍ଗ ହସି ।
ତୁହି ତାତ ଅନେକ କାଳ ତପ କରୁ ଏଥରେ ବସି ॥୧୬॥
ଧନ୍ୟ ସେହି ତପୀ ଋଷି(ଗ)ଣ ବୃନ୍ଦ ।
ତାହାଙ୍କର ଆଶ୍ରମ ଦେଖି ମୁଁ ହୋଇଲି ଆନନ୍ଦ ॥୧୭॥
ପଦ୍ମବନ ଜାଣି ବଂଶ ବିବର୍ଦ୍ଧତି ।
ପରର ହିତକାରୀ ସେ ସୁଖୀ ଯତି ॥୧୮॥
ଭୋ ତାତ ମୁହିଁ ସେ ଋଷିଙ୍କର ତୁଲେ ଯିବି ।
ବିଦ୍ୟା ଶିଖିବି ନାନା ଦେଶ ବୁଲିବି ॥୧୯॥
ଏ କଥାକଇ ଅନାସ୍ତ ନ କର ମୋହର ।
ଏତେ କହି ବାଳ ଯତି ଶିରରେ ଦେଲା କର ॥୨୦॥
ଶୁଣି କୋପ କରି କହନ୍ତି ତପୋଧନ ।
ତୁହି ଯେ ମନ୍ଦବେଳେ ହୋଇଲୁ ଉତପନ ॥୨୧॥
ମାତାର ସମ୍ଭୋଗେ ଯେବେ ପୁତ୍ର ଉତପତି ।
ସେ ତ(ନ)ୟେ ପିତାର କଥାରେଣ ଥାନ୍ତି ॥୨୨॥
ମୁହିଁ ଦୁଷ୍ଟ ଶବରୀ ଦେଖି ଛାଡ଼ିଲି ଯେ ରେତ ।
ମୃଗୁଣୀର ଗର୍ଭେ ହୋଇଲୁ ତୁହି ଜାତ ॥୨୩॥
ମୋହର ଆଶ୍ରମ ଥାନେ କିମ୍ପାଇଁ ଥିବୁ ।
କର୍ମ ଗୁଣ ଘେନି ଅନେକ ଦେଶ ବୁଲିବୁ ॥୨୪॥
ପିଅର ବଚନ ଶୁଣିଣ ଋଷିଶୃଙ୍ଗ ।
ଶରୀର ଦହଇ ତାର କ୍ରୋଟଅନଳ ଅଙ୍ଗ ॥୨୫॥
କାନ୍ଦି ଋଷିକୁମର ପଡ଼ିଲାକ ଢଳି ।
ଦେଖିଣ ବିଭାଣ୍ଡେକ ଧଇଲେ କରେ ତୋଳି ॥୨୬॥

ଭାଳଇ କିମ୍ଭୁତକାର ଏ କେବଣ ଯୁଗତି ।
ତଲ୍ୟଯେ କରି ବସିଲେ ବିଭାଣ୍ଡେକ ମହାଯତି ॥୨୭॥
ଧ୍ୟାନେଣ ଜାଣିଲେ ଚଣ୍ଡମୁନିର ସୁତ ।
ଲୋମପାଦ ରାଇ ଯେ ଅନାବୃଷ୍ଟିର ଚରିତ ॥୨୮॥
ଅଙ୍ଗ ଦେଶର ରାଜା ଦେଶ୍ୟାନ୍ତ ପେଷିଲା ।
ଜାଣି ବିଭାଣ୍ଡେକ ପୁତ୍ରକୁ କହିଲା ॥୨୯॥
ଯାହାକଇ ତୁ ଋଷିଗଣଏ ବୁଝିଲୁ ।
ବେଶ୍ୟାଙ୍କର ତୁଲେ ସେ ରେ ପୀରତି ହୋଇଲୁ ॥୩୦॥
ସେ ଯୁବତୀଙ୍କର ତୁଲେ ଯେ ହୁଅନ୍ତି ମେଳପକ୍ଷ ।
ପୁତ୍ର ଭାରିଯା ବନ୍ଧୂ ଧନ ପ୍ରାଣ ଉପଲକ୍ଷ ॥୩୧॥
ବେଶ୍ୟାଙ୍କ ସଙ୍ଗରେ ତୁ ରମଣ ରଙ୍ଗକଲୁ ।
ତାହା ସେ ପଦମନ୍ତ ପ୍ରାୟେକ ବୁଝିଲୁ ॥୩୨॥
ମୋତେ ଛାଡ଼ି ତାହାଙ୍କର ସଙ୍ଗତେ ଲୋଡ଼ୁ ଯାଇ ।
ମଦନ ବିରହେ ବଳା ହୋଇଲୁରେ ବାଇ ॥୩୩॥
ସେ କଇତବ ସ୍ତିରୀଙ୍କର ସଙ୍ଗତେ ନ ଯିବା ।
ମୋହର ଆଶ୍ରମ ବାବୁ ତୁଚ୍ଛା ନ କରିବା ॥୩୪॥
ଏସନେକ କଥା ଯହୁଁ ବିଭଣ୍ଡେକ କହିଲା ।
ତତକ୍ଷଣେ ଶୂନ୍ୟେ ଶବଦେକ ଶୁଭିଲା ॥୩୫॥
ତୁ କିପାଇଁ ପୁତ୍ରକୁ ଗୁହାଉ ମହରଷି ।
ଶୃଙ୍ଗଋଷି ଗଲେ ସେ ପୃଥ୍ୱୀର ଭାରା ଉସ୍ୱାସି ॥୩୬॥
ଲୋମପାଦ ରାଜ୍ୟେ ହୋଇଛି ଅନାବୃଷ୍ଟି ।
ଋଷିଶୃଙ୍ଗ ଗଲେ ସେ ମେଘେ କରିବେ ବୃଷ୍ଟି ॥୩୭॥
ଦଶରଥ ରାଜା ସୂର୍ଯ୍ୟବଂଶ ନୃପତି ।
ଋଷିଶୃଙ୍ଗ ଯାଗେସେ ତାହାର ଉପୁଜିବ ସନ୍ତତି ॥୩୮॥
ଦିଗପାଳନ୍ତ ତୋଷି ଯାଗ କରିବ ।
ଏହାର ହେତୁ ବିଷ୍ଣୁ ରାମ ରୂପେ ଉପୁଜିବ ॥୩୯॥
ସେ ରାମ ବିନାଶିବ ଦନୁଜ ଦଶଶିର ।
ତେବେ ସେ ପୃଥ୍ୱୀର ଭାରା ହୋଇବାକ ସ୍ଥିର ॥୪୦॥
(ଆକାଶର ବଚନେ ଯେ ବିଭାଣ୍ଡେକ ଋଷି) ।
ପୁତ୍ରକୁ ତପୋଧନ କହନ୍ତି ଆଶ୍ୱାସି ॥୪୧॥
ଯାଆସିରେ ନନ୍ଦନ ଯୁବତୀଙ୍କର ସଙ୍ଗେ ।
ଆବର କଥାଏ କହଇ ତୋହର ଆଗେ ॥୪୨॥
ମୋତେ ତେଜି ଯେବେ ରାଜାର ତହିଁକି ଯିବୁ ।
ଯେ ଯାହା ଇଚ୍ଛଇ ତାହା ସିଦ୍ଧ୍ୟ କରିବୁ ॥୪୩॥
ଏସନେକ ବୋଲି ମୁନି ପୁତ୍ରକୁ ତିଆରିଲା ।
ରାତ୍ର ପ୍ରଭାତେ ବିଭାଣ୍ଡେକ ତପସ୍ଥାନକୁ ଗଲା ॥୪୪॥
ଋଷିଶୃଙ୍ଗ ଚଳଇ ତହୁଁ ଯୁବତୀଙ୍କର ପାଶ ।
ଦେଖିଣ ବେଶ୍ୟାଏ ହୋଇଲେ ହରଷ ॥୪୫॥
ଋଷିଶୃଙ୍ଗକୁ ମଧ କରି ବେଶ୍ୟାଏ ଗଲେ ।
ଉତରାଅଙ୍କ ତୀରେ ଦୁଇ ଦିନେ ହୋଇଲେ ॥୪୬॥
ନାବେଣ ମୁନିଙ୍କି ଯେ ବସାଇଲେ ନେଇ ।
ପବନ ପୟାତେ ଗଲେ ନାବ ବାହି ॥୪୭॥
ମଦନ ଶରେ ଭୋଳ ହୋଇଛି ତପୋଧନି ।
ବୀଣା ଧରି ଗୀତ ଗାବନ୍ତି କାମେନୀ ॥୪୮॥
ବେଣୀ ନଦୀ ତୀରେ ହୋଇଲେ ପ୍ରବେଶ ।
ଡଗର ଜଣାଇଲା ଲୋମପାଦର ପାଶ ॥୪୯॥
ଭୋ ଦେବ ତୋହର ଆଜ୍ଞାରେ ଜରତକୋଷା ବେଶ୍ୟା ଘେନିଗଲା ।
ଋଷିଶୃଙ୍ଗ ମୁନିଙ୍କି ଘେନିଣ ଅଇଲା ॥୫୦॥
ଶୁଣିଣ ହରଷ ଯେ ଲୋମପାଦ ରାଜନ ।
ଦୂତକଇ ବଧାଇ ଦେଲେ କଣୟ କୋଷ ରତ୍ନ ॥୫୧॥
ପାଦେ ଚାଲି ରାଜା ପାଛୋଟି ଆସଇ ।
ଋଷିଶୃଙ୍ଗର ପୟର ଧରି କହଇ ସମ୍ଭାଷଇ ॥୫୨॥
ଜରତକୋଷାକଇ ପଚାରନ୍ତି ଯତି ।
କିମ୍ପାଇ ମହାତ୍ମା ମୋତେ କରଇ ଭଗତି ॥୫୩॥
କିସ କାର୍ଯ୍ୟେ ଏହାର କିସ ନିମିତ୍ୟ ।
କହସିରେ କାମେନୀ ଏହାର ଚରିତ ॥୫୪॥
ଜରତକୋଷା କହଇ ଶୁଣସି ମହାମୁନ୍ୟ ।
ଏହି ସେ ଲୋମପାଦ ଅଙ୍ଗଦେଶର ରାଜନ ॥୫୫॥
ଏହାର ବଚନେ ତୋହର ତହିଁକି ଗଲି ।
ଅନେକ ମାୟାରେ ତୋତେ ମୋହି ଆଣିଲି ॥୫୬॥
ପିତାକୁ କହି ଅଇଲୁ ତୁହି ଏଥ ।
ଏ ରାଜାକଇ ଅନୁଗ୍ରହ କରସି ପ୍ରମାର୍ଥ ॥୫୭॥
ଶୁଣି ହରଷ ହୋଇଲେ ମହରଷି ।
ଲୋମପାଦକଇ କଲ୍ୟାଣ କରନ୍ତି ଶିର ଆଉଁସି ॥୫୮॥
ଚାଲହେ ରାଜନ ଯିବା ତୋହର ପୁର ।
ମୁନିନ୍ତ ଘେନି ନବରେ ପଶଇ ନୃପବର ॥୫୯॥
ଅନ୍ତଃପୁର ଭିତରେ ନିଷ୍ଟନ୍ତେ ରହିଲା ।
ଫଳମୂଳ କଦଳୀ ଇକ୍ଷୁ ସାକ୍ର ଦେଲା ॥୬୦॥

ପୟଡ଼ ପଣା ଯେ କର୍ପୂର ତାମ୍ବୋଳ ।
ଭୁଞ୍ଜିଣ ତୋଷ ହୋଇଲେ ବିଭାଣ୍ଡେକ ବାଳ ॥୬୧॥
ଅନ୍ତଃପୁରେ ଥାନ୍ତେ ଶରୀର ଜାଳା କରି ।
ଲୋମପାଦଙ୍କର ହକାରି ପୁଛନ୍ତି ତପଚାରୀ ॥୬୨॥
ଦେହ ତାତଇ ମୋହର ପାଣି ଅଛଇ କାହିଁ ।
ଲୋମପାଦ କହଇ ମୁନି ମୋହର ରାଜ୍ୟରେ ବରଷଣ ନାହିଁ ॥୬୩॥
ବାର ବରଷ ହୋଇଛି ଅନାବୃଷ୍ଟି ।
ଜଳକଷ୍ଟ ପାର କର ହେ ତପନିଷ୍ଠି ॥୬୪॥
ଲୋମପାଦର ବଚନ ଶୁଣିଲେ ମୁନି ଯହୁଁ ।
ଇନ୍ଦ୍ରକଇ ତପୋଧନ ସ୍ତୁତି କଲା ତହୁଁ ॥୬୫॥
ଭୋ ସୁରରାଜନ ଶଚୀ ଦେବୀର ରମଣ ।
ଏହିକ୍ଷଣି ଅଙ୍ଗଦେଶେ କରିବୁ ବରଷଣ ॥୬୬॥
ଋଷିଶୃଙ୍ଗ ସ୍ତୁତି ଯହୁଁ ସହସ୍ରାକ୍ଷ ଶୁଣିଲା ।
ଚାରି ମେଘନ୍ତ ତତକ୍ଷଣେ ହକାରି ଆଜ୍ଞା ଦେଲା ॥୬୭॥
ଋଷିଶୃଙ୍ଗ ଅଙ୍ଗଦେଶେ ହୋଇଲା ପରବେଶ ।
ଏହିକ୍ଷଣି ଲୋମପାଦର ରାଜ୍ୟରେ ବରଷ ॥୬୮॥
ସୁରପତି ବାକ୍ୟ ଯହୁଁ ମେଘେ ଶୁଣିଲେ ।
ଘଡ଼ଘଡ଼ି ଶବଦ କରି ବିଜୁଳି ଝଟକିଲେ ॥୬୯॥
ରାତ୍ରକ ଘନଘନ କଲାକ ବରଷଣଇ ।
ଦେଖି ହରଷ ହୋଇଲେ ଲୋମପାଦ ରାଜନଇ ॥୭୦॥
ପ୍ରଜାଜନେ ଆନନ୍ଦ ଉତସଲ୍ୟ ମତି ।
ପାଣି ପାଇ ତିରଣେ ପଲ୍ଲବନ୍ତି ॥୭୧॥
ବେଶ୍ୟାନ୍ତ ହକାରି ଲୋମପାଦ ରାଜନ ।
ପୁରୁଷାର୍ଥକଇ ଦେଲା ଧନବସନ ଦାନ ॥୭୨॥
ହରଷେ କାମେନୀ ଜନେ ନିଜ ପୁର ଗଲେ ।
ଏସନେକ ଋଷିଶୃଙ୍ଗ ଅଙ୍ଗଦେଶେ ବିଶ୍ରାମିଲେ ॥୭୩॥
ଶୁଣିଣ ଶ୍ରୀରାମ ଉତସଲ୍ୟ ମନ ।
ଅମୃତମୟେ ଶୁଭଇ ଲବକୁମର ବଚନ ॥୭୪॥

## ଲବର ବିଦେହ ବାହୁଡ଼ା

ଗ୍ରନ୍ଥ ବଖାଣନ୍ତେ ଅଢ଼ାଇ ପ୍ରହର ହୋଇଲା ।
ଶ୍ରୀରାମର ସନିଧେ ଆସି ଲକ୍ଷ୍ମଣ କହଇଲା ॥୧॥
ମୋହର କଥା ଶୁଣସି ରଘୁରାଜ ।
ସକଳ ଧର୍ମ ଶ୍ରେଷ୍ଠ ଅଟଇ ପିତୃକାର୍ଯ୍ୟ ॥୨॥
ଅଗ୍ରତ ଅର୍ଣ୍ଣ ମେଞ୍ଚନ ପିତୃଲୋକନ୍ତ ଦେବା ।
ବନ୍ଧୁ ବର୍ଗ ସମସ୍ତଙ୍କୁ ଭୋଜନ ବସାଇବା ॥୩॥
ଏବେ ଗାୟେଣ ଗୋଟି ବିଶ୍ରାମିଣ ଥାଉ ।
ତୁମ୍ଭର ମଣୋହି ଉତ୍ତାରେ ପୁଣି ହି ଗୀତ ଗାଉ ॥୪॥
ବଶିଷ୍ଠେ କହନ୍ତି ଏ ଯୁଗତ ବୟାଣ ।
ଯାହା ସେ କହିଲା ତୋହର ଭାଇ ଲକ୍ଷ୍ମଣ ॥୫॥
ବଶିଷ୍ଠଙ୍କର ବଚନ ଯହୁଁ ଶ୍ରୀରାମ ଶୁଣିଲେ ।
ଲବକୁମର ମୁଖ ଚାହିଁ ସଧୀର କରି କହିଲେ ॥୬॥
ମୋହର ବଚନ ଶୁଣ ବାଳ ପୋଇ ।
ଗୀତ ବିଶ୍ରାମି ବାବୁ ଥାସି ଏଥି ରହି ॥୭॥
ଆମ୍ଭର ସଙ୍ଗତେ ତୁହି ଭୋଜନ କରିବୁ ।
ମଣୋହି ଉତାରେ ରମାୟେଣ କହିବୁ ॥୮॥
ଲବକୁମର କହଇ ମୁହିଁ ଏଥେ ନୁଆରଇ ରହି ।
ନ ଦେଖିଲେ ବିକଳ ହୋଇବେ ଆମ୍ଭର ଆଇ ॥୯॥
ଦୁଇ ଭାଇ ଆମ୍ଭେ ଗୀତ ଗାଇତ ଅଇଲୁ ।
ନଗ୍ର ବାହାରେ ଆମ୍ଭେ ବୋଲାବୋଲି ହୋଇଲୁ ॥୧୦॥
ସେ ମୋତେ ଛାଡ଼ି ଏକା ଗଲା ଯହୁଁ ।
ତେବେସେ ଏଥକଇ ଅଇଲି ମୁହିଁ ତହୁଁ ॥୧୧॥
ସେ ତଣ୍ଡୁଳ ଘେନି ଆଗ ହୋଇ ଯିବ ଯେବେ ।
ମୋତେ ଗୁରୁହେ ମାରିବେ ନା ତେବେ ॥୧୨॥
ତୁମ୍ଭେ ଯେ ବୋଇଲ ଆମ୍ଭର ତୁଲେ ଭୋଜନ କର ।
ମୁହିଁ କିମ୍ପା ଅର୍ଣ୍ଣ ଭୁଞ୍ଜିବି ତୁମ୍ଭର ଘର ॥୧୩॥
କୁଳମୂଳ ତୁମ୍ଭର ନ ଜାଣି ଜାତି ଅଂଶ ।
ଅର୍ଣ୍ଣ ଭୁଞ୍ଜିବାର କିସ ପଉରଷ ॥୧୪॥
ମୁହିଁ କିମ୍ପା ଏଥି ବିଶ୍ରାମ କରିବି ।
ରହି ନୁଆରଇ ମୁହିଁ ଶୀଘ୍ର ହୋଇ ଯିବି ॥୧୫॥
କୁମର ବଚନ ଯହୁଁ ଶ୍ରୀରାମ ଶୁଣିଲେ ।
ବଶିଷ୍ଠ ମହରଷିଙ୍କି ଶ୍ରୀରାମ କହିଲେ ॥୧୬॥
ଶୁଣିଲଟିକି ମୁନି ହେ ବାଳୁତର ବଚନ ।
ଆମ୍ଭର ଘରେ ହାନ୍ଦେ ନ କରନ୍ତି ଭୋଜନ ॥୧୭॥
କିସ ଜାତି ଏ କେବଣ କୁଳ ବଂଶ ।
ପଚାର କିନା ଏହାର ହୋଇ କିସ ॥୧୮॥
ବଶିଷ୍ଠେ କହନ୍ତି ଶୁଣସି ରଘୁପତି ।
ମହତ କୁଳେ ଯେ ଉତପନ ହୁଅନ୍ତି ॥୧୯॥

ଦୁଃଖ ପାଇଲେ ସେ ନ ଛାଡ଼ନ୍ତି ଆଚାର ।
ସେ କି ପରଅର୍ଣ୍ଣ କରନ୍ତି ଆହାର ॥୨୦॥
ଭଲ ଜଣଙ୍କର କୁଳରେ ଏହୁ ଜାତ ।
ଗ୍ରନ୍ଥ ବଖାଣ ଶୁଣିଲେ ପୁଛସି ଏହାର ତାତ ॥୨୧॥
ଏବେ କୁମାରକୁ ଚାଉଳ ଦିଅବସି ।
ଏହାକଇ ପଠିଆଇ ପିତୃକାର୍ଯ୍ୟ କରସି ॥୨୨॥
ମୁନିବର ବଚନେ ରାମ ଲକ୍ଷ୍ମଣକୁ ହକାରି ।
ଚାଉଳ ପରିବା ଦିଅ ବୋଲି ଆଜ୍ଞା ଅବଧାରି ॥୨୩॥
ଶ୍ରୀରାମର ବଚନେ ଲକ୍ଷ୍ମଣ ନବରେ ପଶିଲା ।
ତଣ୍ଡୁଳ ଆଣି ରାମର ସନିଧେ ମିଳିଲା ॥୨୪॥
ଭଲ ଭଲ ପଦାର୍ଥ ରାଜଦ୍ରବ୍ୟ ଉପହାର ।
ହରଷେ ଆଣିଲା ସୁମିତ୍ରା କୁମର ॥୨୫॥
ଦିବ୍ୟ ମଡ଼ିଆଲେଣ ତଣ୍ଡୁଳ ଭରି ।
ନାନା ପଦାର୍ଥନ୍ତ ଏକଯୋଗ କରି ॥୨୬॥
ଲବକୁମର ହାଥେ ଦେଲେ ସୀତାପତି ।
କୁମର ମୁଖ ଚାହିଁ କହନ୍ତି ଦାଶରଥି ॥୨୭॥
ମୋହର ବଚନ ଶୁଣ ପୁଣ୍ୟତୃଣୀର ସୁତ ।
ରଜନୀ ପ୍ରଭାତେ ବାବୁ ଆସିବୁଟି ତୁରିତ ॥୨୮॥
ରାମାୟେଣ ଚରିତ ମୁହିଁ ବିଶେଷି ଶୁଣିବି ।
ମନର ବଇରାଗ ଉତପାତ ତେଜିବି ॥୨୯॥
ଭାରିଯା ବିହୁନେ ବାବୁ ଅସ୍ଥିର ମୋହର ମନ ।
ଅମୃତମୟେ ଶୁଣିଲି ତୋହର ବଚନ ॥୩୦॥
ଲବକୁମର କହଇ ନ ଆସିବି କାହୁଁ ।
ବରଣ କରି ଶାସ୍ତ୍ର ଶୁଣିଲ ତୁମ୍ଭେ ଯହୁଁ ॥୩୧॥
ନ ଅଇଲେଣ ଦୋଷ ହୋଇବ ନା ମୋତେ ।
ଅବଶ୍ୟ ଆସିବି କାଲିର ରଜନୀ ପ୍ରଭାତେ ॥୩୨॥
ଏସନେକ କହି ତହୁଁ ଗମଇ ଲବକୁମର ।
ଅଇଲା ବାଟକୁ ହୋଇଲା ଅଗୁସାର ॥୩୩॥
କୁମର ପଠିଆଇ ସୀତୟାର ପତି ।
ବନ୍ଧୁ ବାନ୍ଧେବନ୍ତ ଭୋଜନ ଦିଆବନ୍ତି ॥୩୪॥
ମଣୋହି ଉଭାରେ କରନ୍ତି ଶୟନ ।
ଯେତେ କହିଲା ଲବ ଗୁଣନ୍ତି ମନେମନ ॥୩୫॥

## କୁଶ ନ ବାହୁଡ଼ିବାରୁ ସୀତାଙ୍କ କ୍ରୋଧ

ଏଥୁ ଅନନ୍ତରେ ଶୁଣ ପଣ୍ଡୁ ସୁତ ।
ଅତି ଅପୂରୁବ ଶ୍ରୀରାମ ଚରିତ ॥୧॥
ବନମାର୍ଗେ ପଶି ଲବକୁମର ଗଲା ।
ଅନ୍ତରୀକ୍ଷେ ପବନ ତାକୁ ଉଡ଼ାଇଣ ନେଲା ॥୨॥
କେତେ ଦୂର ଗଲା କିଛି ହିଁ ନ ଜାଣଇଁ ।
ଜନେକ ଭୁବନେ ମିଳିଲା ତକ୍ଷଣଇ ॥୩॥
ଦ୍ୱାରେ ବସି ସୀତୟା ବାଟ ଚାହୁଁଅଛି ।
ଭାଳଇ ଏତେ ବେଳ ହୋଇଲା ନୋଇଲା ମୋର ବସି ॥୪॥
ହୃଦୟ ବିକଳିତ ମନ ଛନଛନ ।
ଏସନେକ ସମୟେ ଲବ ହୋଇଲା ମାତାର ସନିଧାନ ॥୫॥
ଅନ୍ଧରେ ଚକ୍ଷୁଦାନ କି ନିର୍ଧନେ କନେକ ବୃଷ୍ଟି ।
ଦେଖି ମହାସତୀର ମନ ହୋଇଲାକ ତୁଷ୍ଟି ॥୬॥
ଉଠିଣ ଲବକୁମର ମୁଖେ ଚୁମ୍ବନ ଦେନ୍ତି ।
କୁଶ ତ ନଇଲା ବୋଲି ପଚାରନ୍ତି ॥୭॥
ଲବକୁମର କହଇ ମୋତେ ଛାଡ଼ି ଏକା ହୋଇଗଲା ।
ଅନେକ ଜିଂଘାସି ବଡ଼ାଇପଣ କହିଲା ॥୮॥
ବୋଇଲା ମୁହିଁ ସେ ସୁସ୍ୱରେ ଗାବଇ ଗୀତ ।
ଏକା ଗାଇ ଚାଉଳ ଆଣିବି ବହୁତ ॥୯॥
ତୋହର ସଙ୍ଗତେ ମୁଁ ନ ଯାଇ ଗୀତ ଗାଇ ।
ଜାଣିମା ନା କେ କେତେ ଚାଉଳ ଆଣଇ ॥୧୦॥
ମୁହିଁ ବୋଇଲି ମୋତେ ମାତାଏ ଗାଳି ଦେବେ ।
ବାଲମୀକ ମହରଷି ଅନେକ କୋପ କରିବେ ॥୧୧॥
ଜନେକ ମହରଷିଙ୍କି କରଇ ମୁହିଁ ଭୟେ ।
ଅବଜ୍ଞା କରି ମୋତେ ଆନ ଦିଗକୁ ଯାଏ ॥୧୨॥
ଶୁଣିଣ ମହାସତୀର ଆତ୍ମା ଉଛର୍ଗିଲା ।
କ୍ଷଣକେ ଚେତନା ପାଇ ଲବକୁମରକୁ ପଚାରିଲା ॥୧୩॥
ଯିବାର ବେଳେ ତାହାକୁ ଏଥୁ ଘେନି ଗଲୁ ।
ଅଲ୍ୟକ ପୁତ୍ରକୁ ମୋର କେଣେ ଛାଡ଼ି ଅଇଲୁ ॥୧୪॥
ଆବର ପୁତ୍ର ପାଇବି ମୁହିଁ କାହିଁ ।
ତୁହି ଅଇଲୁ ପୁତ୍ର ମୋର ନାହିଁ ॥୧୫॥
ଲବକୁମର କହଇ ଶୁଣ ମୋହର ବଚନ ।
ମୋତେ ଛାଡ଼ି ଗଲା ଯହୁଁ ତୋହର ନନ୍ଦନ ॥୧୬॥

ମୁହିଁ ବନସ୍ତ ଲଘି ଗୋ ନିୟତ ବାଟେ ଗଲି ।
ବିଚିତ୍ର ନବରେ ଖୋଜିଣ ଦେଖିଲି ॥୧୭॥
ସେହୁ ନଗ୍ରେ ମୁହିଁ ଗୀତ ଗାଇ ଗଲି ।
କ୍ଷତ୍ରି ଘରେକଟି ତାହାର ଦ୍ୱାରେଣ ହୋଇଲି ॥୧୮॥
ପିତୃଶ୍ରାଦ୍ଧ ସେ ମହାତ୍ମା କରୁଥିଲା ।
ଗୀତ ଶୁଣି ସେ ମୋତେ ଗୁହାରିଲା ॥୧୯॥
ପିତୃଶ୍ରାଦ୍ଧ କର୍ମ ତାହାର ସରିଲାକ ଯହୁଁ ।
ମୋତେ ହକାରି ଗୀତ ଶୁଣିଲାକ ତହୁଁ ॥୨୦॥
ଅନେକ ଗଉରୋବ ପୁରୁଷାର୍ଥ ମୋତେ କଲା ।
ରାମାୟଣ ଶୁଣିମାକୁ ବ୍ରାହ୍ମଣେକ ବରିଲା ॥୨୧॥
ଶ୍ରାଧକର୍ମ ଭୋଜନ ନିମନ୍ତେ ।
ତାହାର ଘରେ ଭୁଞ୍ଜିବାକୁ ବୋଇଲାକ ମୋତେ ॥୨୨॥
ମୁହିଁ ତାହାର ଘରେ ନ ଭୁଞ୍ଜିଲି ଯହୁଁ ।
ଚାଉଳ ପରିବା ସେ ମୋତେ ଦେଲା ତହୁଁ ॥୨୩॥
ଶୀଘ୍ରେଣ ତହୁଁ ମୁଁ ବାହୁଡ଼ି ଅଇଲି ।
କୁଶ ଆଗ ଆସିବ ପ୍ରାୟେ ବୁଝିଲି ॥୨୪॥
ଏସନେକ ବଚନ ସତୀ ଶୁଣିଲାକ ଯହୁଁ ।
ଲବକୁମର ମୁଖ ଚାହିଁ ବିକଳେ କହଇ ତହୁଁ ॥୨୫॥
ଦୁଇଭାଇ ଯେ ଗମନ୍ତା ଏକତୁଳେ ।
ଆଜ ବିଛେଦ ରେ ହୋଇଲ କାହାର ବୋଲେ ॥୨୬॥
ଦୁଃସହ କନ୍ଦର ଅରଣ୍ୟ ଘୋର ବନେ ।
ବେନି ଭାଇ ଛଡ଼ାଛଡ଼ି ହୋଇଲ କେସନେ ॥୨୭॥
ତୁହି କିମ୍ପା ଲବ ରେ ବଇରାଗ ହୋଇଲୁ ।
ସାନ ଭାଇର କଥାକୁ କେମନ୍ତେ କୋପକଲୁ ॥୨୮॥
ତୋହର ତୁଳେ ପଠିଆଇଲି ମୁହିଁ ।
ମନ ମୁରୁଛିଣ ଥିଲି ଥିର ହୋଇ ॥୨୯॥
ଚଣ୍ଡାଳ ଆତ୍ମା କେମନ୍ତେଣ ଧଇଲୁ ।
ବାଳୁତ କୁମାରକୁ ମୋର ଛାଡ଼ିଣ ଅଇଲୁ ॥୩୦॥
ଶରୀରେ ବିକଳ ଜନେକ ଦୁଲ୍ଲାଳୀ ।
ବେନି ନୟନରୁ ସତୀର ଅଶ୍ରୁଜଳ ଗଳି ॥୩୧॥
ମାତାର କାନ୍ଦନ୍ତେଣ(କାନ୍ଦଇ) ଲବକୁମାର ।
ତାହାର ନୟନରୁ ବହଇ ଲୋତକ ଧାର ॥୩୨॥
ଲବକୁମର କହଇ ଗୋ ନ ରୋଦ ଗର୍ଭଧାରୀ ।
ମୁହିଁ କୁଶ ଗଲା ବାଟେ ଖୋଜିବି ଅନୁସରି ॥୩୩॥
ଯେତେ ଧୂରେ ମୁହିଁ କୁଶକୁ ପାରିବି ଦେଖି ।
ତାହାର ଗଲା କତିକି ଯିବି ମୁଁ ନିରେଖି ॥୩୪॥
ସୀତୟା ବୋଇଲେ ପୁତ୍ରେକ ଅଛଇ ହରାଇ ।
ତୋତେ କେସନେକେ ଛାଡ଼ିବଇ ମୁହିଁ ॥୩୫॥
ମନର ବିଛେଦେ ଲୋଡ଼ି ତୁହି ଯିବୁ ।
ଗହନ ବନେ ଯାଇ ବଣା ହୋଇବୁ ॥୩୬॥
ମାତା ପୁତ୍ର ଚାଲ ଦୁହେଁ ଲୋଡ଼ି ଯିବା ।
ଯେତେ ଦୂରେ ଯାଇ କୁଶକୁ ଦେଖିବା ॥୩୭॥
କୁଶକୁ ଦେଖି ଆଜ ନୋଇବି ତେବେ ।
ଅଗ୍ନି ସଜାଳି ବନେ ମରିବି ତେବେ ॥୩୮॥
ଏସନେକ କହି ଲବ କୁମର ଭୁଜ ଧରି ।
କୁଶକୁ ଲୋଡ଼ି ଗଲେ ଜନେକ କୁମାରୀ ॥୩୯॥
ପଥ ନିରୋପି ମାତା ପୁତ୍ର ଯାନ୍ତି ।
କେଣେ ଗଲୁ କୁଶ ବୋଲି ଦୁହେଁ ଡାକ ଦେନ୍ତି ॥୪୦॥
ଯେବଣ ଠାବେ କୁଶ ଲବକୁ ଛାଡ଼ିଲା ।
ସେ ଠାବରେ ମାତାକୁ ଘେନି ଲବ କୁମର ମିଳିଲା ॥୪୧॥
ଲବକୁମର କହଇ ଶୁଣସି ଗୋ ମାତ ।
ଏ ପୂର୍ବ ଦିଗକୁ ଗଲା ତୋହର ପୁତ୍ର ॥୪୨॥
ଦୀର୍ଘ ବଟ ଯେ ଅଟଇ ବୃଶାଳ ।
ବସିଲା ସୀତୟା ସେ ବଟବୃକ୍ଷ ତଳ ॥୪୩॥
ବୃକ୍ଷର ଶିଖକୁ ଲବକୁମାର ଚଢ଼ିଗଲା ।
କେଣେ ଗଲୁରେ କୁଶ ବୋଲି ଉଚେ ଡାକ ଦେଲା ॥୪୪॥
ଧୂରେ ଲବ ତୁଣ୍ଡ ଶୁଣିଲା କୁରୁଶାଇ ।
ବ୍ୟଗ୍ରରେ ଧାଇଁ ବଟ ସନିଧିକୁ ଆସଇ ॥୪୫॥
ଦେଖିଲା ତରୁତଳେ ବସିଅଛି ମାତା ।
କୁଶକୁ ଦେଖି କରି ହରଷ ଜନେକ ଦୁହିତା ॥୪୬॥
ମାତାର ପୟର ଧରି ଓଳଗଇ କୁଶ ।
ଲବକୁମର ହିଁ ବୃକ୍ଷରୁ ଓହ୍ଲାଇଣ ଆସ ॥୪୭॥
ଟୋଳି କୁଶକୁ ଦେବୀ କାଖରେ ବସାଇଲେ ।
ତିରଣ ନିଉଛାଇ ଧୂରକୁ ପକାଇଲେ ॥୪୮॥
ମଥା ଆଉଁଶି ଶିରେ ଦେଲେ ବୋକ ।
କିମ୍ପାଇ ରେ କୁଶ ମୋତେ ଏତେ କରାଉ ଶୋକ ॥୪୯॥
ଦୁଃଖକୁ ସଂଗାତ ମୋର ଗର୍ଭେ ଉପୁଜିଲ ।
କିମ୍ପାଇ ରେ ଦୁଇଭାଇ ଆଜ ଛଡ଼ାଛଡ଼ି ହୋଇଲ ॥୫୦॥

ତୋହର ନିଉଛୁଣା ପଡୁ ମୋର ମାଥ ।
ଦୁଃଖର ସାଖା ମୋର ପ୍ରାଣର ସଂଗାତ ॥୫୧॥
ମୁହିଁ ଯେ କହଇ ଏକ ସଙ୍ଗତେଣ ଥିବ ।
ଅଗମ୍ୟ ବନେ ଭିନ୍ନ ଭିନ୍ନ ନୋହିବ ॥୫୨॥
ମୋହର ବଚନ ତୁମ୍ଭେ କେବେହେ ନ କର ।
କେବଣ ଗର୍ବେ ରେ ଦୃଷ୍ଟପଣ ତୁମ୍ଭର ॥୫୩॥
ପିତା ରେ ତୁମ୍ଭର ଯେସନ ଦୁଃଖ ଦେଲା ମୋତେ ।
ତହୁଁ ଅଧିକ ରେ ହୋଇଲ ବେନି ସୁତେ ॥୫୪॥
ରାଣ୍ଡର ପୁତ୍ର ହୋଇ ଅଣଆୟତ ।
କିମ୍ପାଇ ଏତେ ଦୁଃଖ ମୋତେ ଦେଉଛୁ ବିଧାତ ॥୫୫॥
ଏସନେକ କହି ସେ ଜନେକ କୁମାରୀ ।
ଉଚ୍ଚେ ରୋଦନ କରଇ ପୁତ୍ରଙ୍କ ହସ୍ତ ଧରି ॥୫୬॥
ମାତାର ଶୋକ ଶୁଣି କାନ୍ଦନ୍ତି ବେନି ସୁତ ।
ପୁତ୍ରନ୍ତ ଘେନି ବସିଲା ତହିଁ ଜନେକ ଦୁହିତ ॥୫୭॥

## ଲବକୁଶ ମିଶିକରି ଗୀତ ଗାଇବା ନିଷ୍ପତ୍ତି

ଏଥୁ ଅନନ୍ତରେ ଶୁଣ ହୋ ପଣ୍ଡୁର କୁମାର ।
ସୀତୟାକୁ ନିରେଖି ଜନେକ ମୁନିବର ॥୧॥
ପରିଜନନ୍ତ ହକାରି ପୁଛନ୍ତି ତପଚାରୀ ।
ଦ୍ୱାରେ ବସିଥିଲା ଯେ ମୋହର କୁମାରୀ ॥୨॥
କେହୁ ଜାଣ କିଲୋ ଗଲାକ ସେ କାହିଁ ।
ଆବର ତ ଲବକୁଶ ଦୁଇ ଭାଇ ନାହିଁ ॥୩॥
ପରିଜନେ କହନ୍ତି ଶୁଣସି ତପୋଧନ ।
ଗୀତ ଗାଇ ଗଲେ ସୀତାର ବେନି ନନ୍ଦନ ॥୪॥
ଏକାରେ ଏଥକୁ ଲବକୁମର ଅଇଲା ।
କୁଶକୁମର ଏତେ ବେଳ ଯାଏ ନ ଅଇଲା ॥୫॥
କୁଶକୁ ନ ଦେଖି ଲବକୁ ଗାଳି ଦେଲେ ।
ତହୁଁ ମାତା ପୋଏ କୁଶକୁ ଖୋଜି ଗଲେ ॥୬॥
ଶୁଣି ବିକଳ ହୋଇଲେ ଜନେକ ମୁନିବର
ତତକ୍ଷଣେ କହିଲେ ବାଲମୀକଙ୍କ ଆଗର ॥୭॥
ଭୋ ମୁନ୍ୟେ ଶୁଣିଲକି ବିପରୀତ କଥା ।
କୁଶ ନ ଆସିବାର ଦେଖି ଲୋଡ଼ିଗଲେ ସୀତା ॥୮॥
ଜନେକର ବଚନ ଯହୁଁ ଶୁଣିଲେ ମହାମୁନ୍ୟ ।
ବେତେକ ଘେନି ସେ ଉଠିଲେ ବହନ ॥୯॥
ବାଲମୀକଙ୍କର ପଛେ ଜନେକ ରାଜରଷି ।
ଅନେକ ତପଚାରୀ ଅଛନ୍ତି ବିଶେଷି ॥୧୦॥
ଋଷିଙ୍କର ପତ୍ନୀ ଦାସୀଗଣ ଧାତ୍ରୀ ସହିତେ ।
ସୀତୟାକୁ ଲୋଡ଼ିଣ ଯାନ୍ତି ସମସ୍ତେ ॥୧୧॥
ବଟବୃକ୍ଷ ତଳେ ହୋଇଲେକ ଯାଇ ।
ପୁତ୍ରନ୍ତ ଘେନି ସୀତୟା ବସିଅଛି ତହିଁ ॥୧୨॥
ଜନେକ ରାଜରଷି ଯହୁଁ ସୀତାକୁ ଦେଖିଲେ ।
ହୃଦର ବ୍ୟଥା ଛାଡ଼ି ହରଷ ହୋଇଲେ ॥୧୩॥
ସୀତୟାର ମୁଖ ଚାହିଁ କହନ୍ତି ତପୋଧନି ।
କିପାଇଁ ଏ ବନକୁ ଅଇଲୁ ଜିଘ୍ନସେନୀ ॥୧୪॥
ତୋହର ବୋଲେ କି ଲୋଡ଼ି ନ ଆସଇ ଆନ ।
ତୁହି କେସନେକେ ଆସୁ ଦୁଃସହ ଘୋରବନ ॥୧୫॥
ସୀତୟା କହଇ ଶୁଣସି ଭୋ ତାତ ।
ଅଜ୍ଞାନ ବୁଦ୍ଧି ସିନା ମୋହର ବେନି ସୁତ ॥୧୬॥
ନିତି ଏକ ସଙ୍ଗେ ଥାନ୍ତି ବେନି ଭାଇ ।
ଆଜ ଏକ ଏକ ହୋଇଣ ଗଲେ ଗୀତ ଗାଇ ॥୧୭॥
ଲବକୁମର ଆଜ ଏକା ଅଇଲା ।
ଅଗମ୍ୟ ବନେ କୁଶ ପଛେ ଅଇଲା ॥୧୮॥
ଲବର କଥା ଶୁଣି ମୁହିଁ ବିକଳ ହୋଇଲି ।
ତେଣୁ ସେ ଉଦ୍‌ବେଗ ଲୋଡ଼ିଣ ଅଇଲି ॥୧୯॥
ଶୁଣି ଜନେକ ମୁନି ହରଷ ହୋଇଲେ ।
କୁଶକୁମରକୁ କାଖେଣ ବସାଇଲେ ॥୨୦॥
ଲବକୁମର ନଡ଼ି ବାଲମୀକ ମୁନି ଧରି ।
ଆସନ୍ତି ବାହୁଡ଼ି ଜନେକ ନିଜ ପୁରୀ ॥୨୧॥
ସ୍ତିରୀଗଣ ସମେତେ ମହାସତୀ ସୀତା ।
ନବରେ ପ୍ରବେଶ ହୋଇଲେ ଲବକୁମରଙ୍କ ମାତା ॥୨୨॥
ଅମୃତ ପାକ ଆବର ଅର୍ଣ୍ଣ ଯେ ମେଞ୍ଜନ ।
ଦୁଇ କୁମରେ ସେ କରନ୍ତି ଭୋଜନ ॥୨୩॥
ପୁତ୍ରଙ୍କର କ୍ଷୁଧା ସରିଲାକ ଯେବେ ।
ଆପଣେ ମହାସତୀ ସ୍ନାହାନ କଲେ ତେବେ ॥୨୪॥
ରଜନୀ ଦୁଇ ଘଡ଼ି ହୋଇଲା ପ୍ରବେଶଇ ।
ତେବେ ସେ ସୀତୟା ମଣୋହିରେ ବସଇ ॥୨୫॥
ସୀତୟା ଭୋଜନେ ବସିଲାକ ଯହୁଁ ।
ଜନେକ ଋଷି କନ୍ଦମୂଳ ଫଳ ଗ୍ରାସ କଲେ ତହୁଁ ॥୨୬॥

ଭୋଜନ ଉତ୍ତାରେ ସତୀ ଆଚୋବନ ସାରି ।
ବେଢ଼ି ଅନେକ ଧାତ୍ରୀ ଅଛନ୍ତି ପରିବାରୀ ॥୨୭॥
ଭୋଜନ ଉତ୍ତାରେ ସତୀ ଆଚୋବନ ସାରି ।
ପ୍ରହରେକ ପ୍ରବେଶ ହୋଇଲା ରଜନୀ ।
ପଲ୍ୟଙ୍କେ ବସଇ ଦେବୀ ପୁତ୍ରନ୍ତ କୋଳେ ଘେନି ॥୨୮॥
ମାଣିକ୍ୟର ଦୀପ ଜଳଇ ଚଉପାଶ ।
ଲବକୁମର କହଇ ଶୁଣସି ହୋ କୁଶ ॥୨୯॥
ତୁହି ଯେ ଏକା ମୋତେ ଛାଡ଼ିଣ ଯେ ଗଲୁ ।
ମୋହର ବଚନ କେବେହେ ନ କଲୁ ॥୩୦॥
ତୋହର ଦୋଷ ମାତାଏ ନ ଜାଣିଲେ ।
କୋପେଣ ମୋତେ ଅନେକ ଗଞ୍ଜଣା ବୋଇଲେ ॥୩୧॥
ଆମ୍ଭେ ଗୀତ ଗାଇ ଆସିଲେଣ ଯେବେ ।
ଆମ୍ଭର ଭୁଞ୍ଜିଲେ ସେ ମାତାଏ ମଣୋହି କରନ୍ତି ତେବେ ॥୩୨॥
ମାତାଏ ଭୋଜନ କଲେ ସେ ଜନେକ ଋଷି ଭୁଞ୍ଜନ୍ତି ।
ତେବେ ସେ ସମସ୍ତ ସ୍ତିରୀ ଭୋଜନ କରନ୍ତି ॥୩୩॥
ମୋହର ସଙ୍ଗତେ କଳହ ଯେ କଲୁ ।
ବିଶେଷ ଚାଉଳ ଆଣିମି ବୋଲି ଗୀତ ଗାଇ ଗଲୁ ॥୩୪॥
କେତେ ଚାଉଳ ଆଣିଲୁ ତୋହର ଦେଖିବା ।
ମାତାଙ୍କର ଛାମୁରେ ପଉରୋଷ ପାଇବା ॥୩୫॥
ପଛେ ଏ କଥା ଗୃହେ ବିଚାରନ୍ତୁ ।
ଆବର ଜନନୀଙ୍କର ପିତା ଋଷିଗଣେ ଜାଣନ୍ତୁ ॥୩୬॥
ଲବକୁମର କଥା ଯହୁଁ କୁଶକୁମର ଶୁଣିଲା ।
ମାତାର ଛାମୁରେ ଆଣି ଚାଉଳ ପୁଡ଼ି ଫେଡ଼ିଲା ॥୩୭॥
କଣ ଭିକ୍ଷା ତଣ୍ଡୁଳ ସେ ଦିଶଇ ଭିନ୍ନ ଭିନ୍ନ ।
ମାପନ୍ତେ ତିନି ମାଣ ହୋଇଲା ସମ୍ପୂର୍ଣ୍ଣ ॥୩୮॥
ଦେଖିଣ ଲବକୁମର କହଇ ଦ୍ରହାସ୍ୟ ।
ମିଛେ ହେ ଯେ ତୁଯେ କହୁଛୁ ପଉରୋଷ ॥୩୯॥
ମୋହର ତଣ୍ଡୁଳ ଦିଶଇ ଗୋକ୍ଷୀର ମଲ୍ଲୀପୁଷ୍ପ ଯେସନ ।
କୁଶକୁମର କହଇ ମିଥ୍ୟା ତୋହର ବଚନ ॥୪୦॥
ମୁହିଁ ଏକଥା କହଇ ସଂପ୍ରତେ ।
ସତେ ଯେବେ ଆଣ ତୁ ମାତାଙ୍କର ଅଗ୍ରତେ ॥୪୧॥
କୁଶର କଥା ଲବ ଶୁଣିଲାକ ଯହୁଁ ।
ଜନନୀର ଆଗେ ତଣ୍ଡୁଳ କଲାକ ବେଗେ ଆଣି ତହୁଁ ॥୪୨॥
ସବୁ ତଣ୍ଡୁଳ ଦିଶଇ ଦିବ୍ୟ ଜ୍ୟୋତି ।
ଦେଖି ହରଷ ସୀତୟା ମହାସତୀ ॥୪୩॥
ମାପନ୍ତେ ଦ୍ୱାଦଶ ମାଣ ଯେ ହୋଇଲା ।
ଲବର ମୁଖ ଚାହିଁ କୁଶକୁମର ପଚାରିଲା ॥୪୪॥
ଏସନେକ ତଣ୍ଡୁଳ ଦେଖିଲା ମୋର ନାହିଁ ।
ଆବର ପଦାର୍ଥନ୍ତ ପାଇଲୁ ତୁ କାହିଁ ॥୪୫॥
କାହାର ଘରେ ଅବା ନ କହି ପଶିଲୁ ।
ଚାଉଳ ପରିବା ଯେ ଘେନିଣ ଅଇଲୁ ॥୪୬॥
ଗୀତ ଗାଇଲେ କେ ଏ ପଦାର୍ଥନ୍ତ ଦେବ ।
ଏକଥା ଅତି ଅଶଖ୍ୟ ଅସମ୍ଭବ ॥୪୭॥
ଲବ କୁମର କହଇ ମୋତେ ତୁହି ଛାଡ଼ି ଗଲୁ ଯହୁଁ ।
ଦକ୍ଷିଣ ଦିଗ ମାର୍ଗେ ମୁଁ ପଶିଗଲି ତହୁଁ ॥୪୮॥
ଏକ ଭଲ ନଗ୍ରଠାରେ ହୋଇଲି ପ୍ରବେଶ ।
ସବୁରି ମନ୍ଦିରେ ବସିଛି ସୁବର୍ଣ୍ଣ କଳସ ॥୪୯॥
ଅତି ଉପାମ ଦିଶଇ ସେ ପୁରୀ ।
ସେ ନଗ୍ରେ ଆନନ୍ଦ ଭାବେ ସକଳ ନରନାରୀ ॥୫୦॥
ସେ ନଗ୍ରର ମଧ୍ୟେ ଶ୍ରେଷ୍ଠ ଏକ ଘର ।
ମହାଧାର୍ମିକ ସେ କ୍ଷେତ୍ରି ପବିତ୍ର ଘର ॥୫୧॥
ସେ ଗ୍ରନ୍ଥ ବରଣ କରି ଶୁଣିଲା ।
ସେ ମହାତ୍ମା ମୋତେ ତଣ୍ଡୁଳ ପଦାର୍ଥନ୍ତ ଦେଲା ॥୫୨॥
ମୁହିଁ ପୁଣି କାଲି ତାହାର ରାଜ୍ୟକୁ ଯିବି ।
ବରଣ ହୋଇଅଛି ତାହାର ଆଗରେ ରାମୟେଣ କହିବି ॥୫୩॥
ଶୁଣି କୁମର ହରଷ ହୋଇଲା ।
ଲବର ମୁଖ ଚାହିଁ କୋମଳ କରି କହିଲା ॥୫୪॥
ଦୁଇ ଭାଇ କାଲି ଏକ ସଙ୍ଗେ ଯିବା ।
କେମନ୍ତ ନଗ୍ର ତାହା ମୋତେ ଦେଖାଇବା ॥୫୫॥
ଲବକୁମର କହଇ ନେମି ତୋତେ ଗଲେ ।
ସେ ଚାରୁ ମନ୍ଦିର ଦେଖାଇବି ତୋତେ ଭଲେ ॥୫୬॥
ହରଷ ସୀତୟା ପୁତ୍ରଙ୍କର ବଚନ ଶୁଣି ।
ପୁତ୍ରକୁ ଆଶ୍ୱାସି କହଇ ଜନେକ ଦୁଲ୍ଲଣୀ ॥୫୭॥
ତୁମ୍ଭେରେ ତନୟେ ମୋହର ଅନାସ୍ତୁଣୀର ପୁଅ ।
ବନସ୍ତେ ଯାଇ ତୁମ୍ଭେ ଭିନ୍ନ ଭିନ୍ନ ନ ହୁଅ ॥୫୮॥
ଦୁଷ୍ଟ ରାକ୍ଷସେ ଯେ ଭୟଙ୍କାର ଜୀବେ ଥାନ୍ତି ।
ଏକା ଦେଖିଲେ ଯେ ଜୀବମାନେ ଆକ୍ରଶନ୍ତି ॥୫୯॥
କାଲି ତୁମ୍ଭେ ଗୀତ ଗାଇତ ନ ଯାଅ ।
ପିତାର ଘରୁ ମୋହର ତଣ୍ଡୁଳ ଦେଉଥାଅ ॥୬୦॥

ଲବକୁମର କହଇ ତୁମ୍ଭେ ଏସନେକ ବୋଲ ।
ଗୀତ ନ ଗାଇଲେ ଋଷି ନ ବୋଲନ୍ତି ଭଲ ॥୬୧॥
ଜନନୀ ବୋଲନ୍ତି ଯେବେ ଗୀତ ଗାଇତ ଯିବ ।
ଏକ ସଙ୍ଗ ହୋଇ ତୁମ୍ଭେ ବାବୁ ଦୁଇଭାଇ ଥିବ ॥୬୨॥
ତନୟ କହନ୍ତି ତୁମ୍ଭର ବଚନ(ନ) ଲଙ୍ଘିବୁ ।
ଦୁଇ ଭାଇ ଏକଠାବରେ ଗୀତ ଗାଉଣ ଥିବୁ ॥୬୩॥
ପୁତ୍ରଙ୍କର କଥା ଶୁଣି ସୀତୟା ହୋଇଲେ ହରଷ ।
ଧାଇ ପରିବାରୀ ବେଢ଼ିଣ ଅଛନ୍ତି ଚଉପାଶ ॥୬୪॥
ସକଳ ସ୍ତିରୀଗଣେ ଲବକୁଶକୁ ତିଆରନ୍ତି ।
ପୁତ୍ର ଦୁଇ କତିରେ ଶୁଆଇ ମଧରେ ଶୁଅଇ ମହାସତୀ ॥୬୫॥
ପଥଶ୍ରାନ୍ତେ କୁମରେ ନିଦ୍ରାରେ ଅଚେତ ।
ଉଚାଟେ ସତୀର ନିଦ୍ରା ନ ମାଡ଼ଇ ନେତ୍ର ॥୬୬॥
ଜୟ ତୁ ନାରାୟେଣ ଲକ୍ଷ୍ମୀଦେବୀର ପତି ।
ଲକ୍ଷ୍ମୀ ନାରାୟେଣ ଯେ ସୁମରଇ ନିତି ॥୬୭॥
ଚଞ୍ଚଳ ମନିଷା ଯେ ନୁଆରଇ ଥିର କରି ।
ତେଣୁ ସେ ନାରାୟେଣ ନାମ ନୋଆରଇ ସୁମରି ॥୬୮॥
ଇନ୍ଦ୍ର ଯମ ଅଗ୍ନି ନୈରୁତ୍ୟ ଆବର କୁବେରେ ।
ନାରାୟେଣ ସୁମରନ୍ତି ବିବୁଧାଦି ମୁନିବରେ ॥୬୯॥
ନାରାୟେଣ ନାମ ଯେ ମୁଖରେ ଉଚାରଇ ।
ଯୁଗେ ଯୁଗେ ଗତି ସେ ଅମୃତ ଆହାର କରଇ ॥୭୦॥
ନାରାୟେଣ ନାମ ତେ ପରମ ମଉଷୋଧି ।
ନାରାୟେଣ ନାମ ସୁମରନ୍ତେ ତୁଟଇ ସକଳ ବ୍ୟାଧି ॥୭୧॥
ନାରାୟେଣ ରୂପକଇ ନିତ୍ୟେହେ କରଇ ଧ୍ୟାନ ।
ନାରାୟେଣ ନାମଇ ସେ ପରଂବ୍ରହ୍ମଜ୍ଞାନ ॥୭୨॥
ନାରାୟେଣ ସୁମରନ୍ତେ ଭୁକତି ମୁକତି ।
ଭବଜଳୁ ଉଦ୍ଧର ଲକ୍ଷ୍ମୀଦେବୀର ପତି ॥୭୩॥
ନାରାୟେଣ ସୁମରି କହଇ ରାବାୟେଣ ।
ଜନ ପ୍ରବୋଧ ବାକ୍ୟ କରଇ ବଖାଣ ॥୭୪॥
ଜନ୍ମେଣ ଶୂଦ୍ର ଚଞ୍ଚଳ ମୋହର ମତି ।
ପୁରୋଣି ଦେସି ନାରାୟେଣ ଅନନ୍ତ ମୂରତି ॥୭୫॥
ନାରାୟେଣ ପୟରେ ମୁହିଁ ଜନ୍ମେ ଜନ୍ମେ ଦାସ ।
ସିଦ୍ଧେଶ୍ୱର ଦାସ ରାବାୟେଣ କରଇ ପ୍ରକାଶ ॥୭୬॥

## ଲବକୁଶଙ୍କ ଅଯୋଧ୍ୟା ଯାତ୍ରା

ଏଥୁ ଅନନ୍ତରେ ଯେ ଯୁଧିଷ୍ଠି ନରିନ୍ଦ୍ର ।
ମାର୍କଣ୍ଡଋଷିଙ୍କି ପୁଛନ୍ତି ସୋମବଂଶଚନ୍ଦ୍ର ॥୧॥
ଭୋ ମୁନି ତୋହରେ ମୁଁ ରାବାୟେଣ ଶୁଣିଲି ।
ଦୃଗମ୍ୟ ଭୂମିରେ ସକଳ ଦୁଃଖ ଉପେଖିଲି ॥୨॥
ଲବକୁଶ ଜନ୍ମ ଯେ କହିଲୁ ବିଚିତ୍ର କଥା ।
ଶରୀରୁ ଉପେଖିଲୁ ବିବିଧ ଚିନ୍ତା ବ୍ୟଥା ॥୩॥
ପୁତ୍ରନ୍ତ ଘେନିଣ ସୁତିଲେ ମହାସତୀ ।
ଏଥୁ ଉତ୍ତାରୁ କଥା କହସି ମହାଯତି ॥୪॥
ରାବାୟେଣ ଶୁଣି ହୋଇଲି ପବିତ୍ର ।
କହନ୍ତି ମାର୍କଣ୍ଡ ଶୁଣସି କୁନ୍ତୀସୁତ ॥୫॥
ଶୁଭେଣ ରୟଣୀ ଯେ ପ୍ରଭାତ ହୋଇଲା ।
ଆଦିତ୍ୟ ଜ୍ୟୋତି ଉଦୟେ (ଗିରିରେ) ବିକାଶିଲା ॥୬॥
ଭ୍ରମର କୋଳାହଳ ପଦ୍ମବନେ ପଶନ୍ତି ।
ତାମ୍ରଚୂଡ଼ ପକ୍ଷୀ ଘନଘନ ରାବ ଦେନ୍ତି ॥୭॥
ବାୟସା ଉଚେ ଘନଘନ ଶବଦ କରେ ।
ବ୍ରାହ୍ମଣେ ମୁନି ଜନେ ସ୍ନାହାନ କରି ଗଲେ ॥୮॥
ଶେଯ୍ୟା ତେଜି ବସନ୍ତି ଜନେକ କୁମାରୀ ।
ଦୁଇ ପୁତ୍ରକୁ ଦେବୀ ତୋଳଇ ନାମ ଧରି ॥୯॥
ନିଦ୍ରା ତେଜି ଦୁଇ କୁମରେ ଉଠନ୍ତି ।
ସୁବାସ ଜଳ ଘେନି ମୁଖ ପଖାଳନ୍ତି ॥୧୦॥
(ପରିବାରୀ ଜନ ମିଳି କୁଙ୍କୁମ ଘଷନ୍ତି ।
ଲଲାଟେ କସ୍ତୁରୀ ଚିତା ଚନ୍ଦନ ଘଷନ୍ତି) ॥୧୧॥
ଝୀନବସନ ପାଟୋଳି ବିଚିତ୍ର ମଢ଼ିଆଳ ।
ପରିହରଣ ହୁଅନ୍ତି ସତୀର ବେନି ଦୁଲ୍ଲାଳ ॥୧୨॥
କେଶ ମଜାଇ ପାଡ଼ିଲେ ଦିବ୍ୟ ଜଟା ବେଣୀ ।
ଲୋଚନେ ଅଞ୍ଜନ ରଞ୍ଜିଲେ ତରୁଣୀ ॥୧୩॥
କଣ୍ଠେ କଣ୍ଠିମାଳ ପଦକ ଲମ୍ବାବନ୍ତି ।
ଲଲାଟ ଶିଖରେ ଯେ ଚନ୍ଦନ ଟୋପି ଦେନ୍ତି ॥୧୪॥
ପୂର୍ଣ୍ଣମୀ ଇନ୍ଦୁ ଜାଣି ଦିଶଇ ବଦନ ।
କୋଳେ ବସାଇ ସତୀ ବେନି ନନ୍ଦନ ॥୧୫॥
ପୁତ୍ରଙ୍କର ମୁଖ ଚାହିଁ ବୋଲନ୍ତି ବଚନ ।
ଶୀଘ୍ର ହୋଇ ତୁମ୍ଭେ ଆସିବ ବହନ ॥୧୬॥
ଶ୍ରୀରାମର ଘରଣୀ ବିଚାରି ଭାଳଇ ମନ ।

ପୁତ୍ରଙ୍କୁ ନ ଦେଖିଲା କଉଶୁଲ୍ୟା ନନ୍ଦନ ॥୧୭॥
ପିତା ଅଛି ବୋଲି ମୋର ପୁତ୍ରେ ନ ଜାଣନ୍ତି ।
ବଡ଼ରାଗେ ରାଢ଼େଣୀ ମୁହିଁ ନ କହି(ଲି) ଦୃଷ୍ଟମତି ॥୧୮॥
ଋଷିଙ୍କର ସଙ୍ଗତେ ଥିଲେ ଏ ହୋଇବେ କିସ ।
ଅଯୋଧ୍ୟା ନଗ୍ରେ ସେ ନୃପତି ପଉରୋଷ ॥୧୯॥
ଶ୍ରୀରାମ ନଜାଣଇ ଦୁଇ ପୁତ୍ରଙ୍କର ଜାତ ।
ଜାଣି ସେ କିମ୍ପାଇ ଥୋଇବାକ ଏଥ ॥୨୦॥
କେ ମୋହର ସ୍ୱାମୀକି କହିବାକ ଯାଇ ।
ମୁହିଁ ବ୍ରତିଅଛି ବୋଲି କ୍ଷତ୍ରିବରର ଜ୍ଞାନ ନାହିଁ ॥୨୧॥
ଅଗମ୍ୟ ବନେ ମୋତେ ଲକ୍ଷ୍ମଣ ଛାଡ଼ିଗଲା ।
ଶ୍ରୀରାମର ଛାମୁରେ କି କହିଲା ନ କହିଲା ॥୨୨॥
ଏସନେକ ଭାଳନ୍ତି ସେ ଜନେକ କୁମାରୀ ।
କମଳନୟନରୁ ସତୀର ଅଶ୍ରୁଜଳ ଗଳି ॥୨୩॥
ଅଞ୍ଚଳେ ପୋଛଇ ଦେବୀର ବେନି ନୟନ ।
ଦେଖିଣ ପଚାରନ୍ତି ବେନି ନନ୍ଦନ ॥୨୪॥
କିମ୍ପାଇଁ ଗୋ ମାତା ମୁଖ ବିରସ କଲୁ ।
ଆମ୍ଭନ୍ତ କୋଳେ ଧରି ତ ବଇକୁଲ୍ୟ ହୋଇଲୁ ॥୨୫॥
ମହାବ୍ୟଥା ପାଇଲୁ ତୋହର ବିରସ ମୁଖ ଦେଖି ।
ଶରୀରୁ ପ୍ରାଣ ଗଲାକ ଉପେଖି ॥୨୬॥
କେବଣ କାରଣେ ଗୋ କରୁଅଛୁ ରୋଦନ ।
କହସି ଗୋ ଗର୍ଭଧାରୀ ସ୍ୱରୂପ ବଚନ ॥୨୭॥
ଜାନକୀ କହନ୍ତି ଶୁଣସି ରେ ଦୁଲ୍ଲାଳେ ।
କାଲି ଯାହା କହିଲି ଶୟନର ବେଳେ ॥୨୮॥
ବାଟ ଭିକ୍ଷା ମାଗି ଯେ ଗୀତ ଗାଇତ ଯାଅ ।
ବନସ୍ତରେ ଯାଇ ତ ଛଡ଼ାଛଡ଼ି ହୁଅ ॥୨୯॥
ତହିଁକି ସେ ମୁହିଁ ବିକଳେ ଭାଳିଲି ।
ଶୋକ ଭରିତ ହୋଇ ରୋଦନ ମୁହିଁ କଲି ॥୩୦॥
ତୁହିରେ ଲବ କୁଶକୁ ନ ଛାଡ଼ିବୁ ।
ତୋତେ ମନ୍ଦ ବୋଇଲେ ମୋତେ ବାହୁଡ଼ି କହିବୁ ॥୩୧॥
ତୋହର କଥା ଶୁଣଇ ମୁହିଁ ଯେବେ ।
ଛାଟେ ପିଟି ଏହାର ଦେହ ପିଙ୍ଗାଇବି ତେବେ ॥୩୨॥
ତୁହି ବାବୁ ଯଦି ସଙ୍ଗ ନ କରିବୁ କୁଶକୁ ।
ମୁହିଁ ଯାଇ କହିବି ତୋହର ବାଲମୀକ ଗୁରୁଙ୍କୁ ॥୩୩॥
ଶୁଣି ଲବ କହଇ ଭୟେ କରି ଚିତ୍ତ ।
ଭଲ କରି ତିଆରି ଥାଅ ଗୋ ତୋହର ନିଜ ପୁତ୍ର ॥୩୪॥
ଏହୁ ସେ ମୋତେ ଗୋ ଆଗ ହିଂସା କରଇ ।
ମୋହର ସଙ୍ଗରେ ଗୋ କେବେହେ ନ ରହଇ ॥୩୫॥
କୁଶ କହଇ ଏବେ ମୁହିଁ କିଛି ହିଁ ନ କରିବି ।
ତୋହର ସଙ୍ଗତେ ଭାଇ ଗୋଡ଼ାଇଣ ଥିବି ॥୩୬॥
ସୀତୟା କହଇ ତୁମ୍ଭେ ଛୁଇଁବ ମୋହର ଦେହ ।
ତେବେ ସେ ତେଜଇ ମୋହର ମନରୁ ସନ୍ଦେହ ॥୩୭॥
ଦୁଇ କୁମରେ ଛୁଇଁଲେ ଜନନୀର ପାଦ ।
ତହୁଁ ସେ ଜାନେକୀ ଛାଡ଼ିଲେ ହୃଦର ବିଷାଦ ॥୩୮॥
ହରଷେ ମହାସତୀ କୁମରନ୍ତ ବସାଇ ।
ଦୁଧ ଦଧି ସାକର କଦଳୀ ପରଷଇ ॥୩୯॥
ଭୁଞ୍ଜନ୍ତି ଅର୍ଣ୍ଣ ପୁତ୍ରେ ମନର ହରଷେ ।
ଆଚୋମନ ସାରି ମିଳିଲେ ତାହାଙ୍କର ପାଶେ ॥୪୦॥
ଦୁଇ ପୁତ୍ରନ୍ତ ସତୀ ତାମ୍ବୋଳ କରେ ଦେଲା ।
ଲବକୁମର ମୁଖ ଆଶ୍ୱାସି ସୀତୟା କହିଲା ॥୪୧॥
ଦୂର ଦେଶକୁ ବାବୁ ଗୀତ ଗାଇତ ନ'ଯିବ ।
ନିକଟେ ଗୀତ ଗାଇ ମୋହର କତିକି ଆସିବ ॥୪୨॥
ଶୁଣି କୁମାରେ ସନମତ କରନ୍ତି ।
ମାତାଙ୍କର ଚରଣ ଧରି ଓଳଗିଣ ସ୍ତୁତନ୍ତି ॥୪୩॥
ପୁତ୍ରଙ୍କର ଅଧର ଧରି ମାତା ଶିରେ ଚୁମ୍ବନ ଦେଇ ।
କାଖେ ପାଞ୍ଜୀ ଚାପି ଯାନ୍ତି ଦୁଇ ଭାଇ ॥୪୪॥
ଯାନ୍ତେଣ ସୀତୟା ନିରେଖଇ ପଥ ।
ଲେଉଟି ମାତା ମୁଖ ଚାହାନ୍ତି ବେନି ସୁତ ॥୪୫॥
ଅଦୃଶ ହୋଇଲେ ଯହୁଁ କୁମର ଲବକୁଶ ।
ଆସିଣ ସୀତୟା ଦେବୀ ଦ୍ୱାରେଣ ପ୍ରବେଶ ॥୪୬॥
ଏକଥା ଶୁଣି ପୁଛଇ ଦ୍ରୌପଦ ଦୁଲାଳୀ ।
ପୁତ୍ର କିମ୍ପା ଗୀତ ଗାଇ ପଠିଆନ୍ତି ଏ ବଡ଼ ଗହଳି ॥୪୭॥
ସ୍ୱାମୀର ବିଚ୍ଛେଦେ ସେ ଅଛଇ ମହାସତୀ ।
ପୁତ୍ରନ୍ତ ଦେଖି ତେଜିବ ନା ବିରସ ମତି ॥୪୮॥
ଯୁଗତେ ବାଳୁତ ଅଟନ୍ତି କୁମାର ।
ବିଶେଷେ ଅରଣ୍ୟବନ ମହାଘୋର ॥୪୯॥
କିମ୍ପାଇଁ ନ ରୁହାନ୍ତି ଜନେକ ତପୋଧନି ।
ଏଥର ଚରିତ ମୋତେ କହସି ମହାମୁନି ॥୫୦॥
କହନ୍ତି ମାରକଣ୍ଡେ ଦ୍ରୌପଦୀର ବଚନ ଶୁଣି ।

ଯାହା ସେ ପୁଛା କଲୁ ଦ୍ରୋପଦ ଦୁଲ୍ଲଣୀ ॥୫୧॥
ତ୍ରିଦଶେ ଦେବ ନିର୍ବାଣ କରିଛନ୍ତି ଯାହା ।
ମନୁଷ୍ୟ ଦେହେ କେ ଆନ କରିବ ତାହା ॥୫୨॥
ତେବେ ସେ ସବୁରି ନ ପ୍ରସରଇ ମତି ।
ସକଳ ଶରୀରେ ଯେ ବସଇ ସରସ୍ୱତୀ ॥୫୩॥
ସମ୍ପଦ ବିପଦ ହୋଇବାକ ଯେଣେ ।
ବିଧାତା ବିହରଇ ନିଜ କର୍ମଗୁଣେ ॥୫୪॥
କୁମରନ୍ତ ଯେବେ ଦେଖଇ କ୍ଷତ୍ରିବର ସୁନ୍ଦରଇ ।
ତେବେସେ ସୀତୟାକୁ ଅନୁଆନ କରଇ ॥୫୫॥
ଦୁଇ ପୁତ୍ରନ୍ତ ସଙ୍ଗେ ଘେନି ଶ୍ରୀରାମଦେବ ।
ସୀତାକୁ ଲୋଡ଼ି ଜନେକ ରାଜ୍ୟକଇ ଯିବ ॥୫୬॥
ଶ୍ରୀରାମର ମୁଖ ଦେଖିବାକ ସତୀ ଯେବେ ।
କୋପେ ସୀତା ଅବନିରେ ପଶିବାକ ତେବେ ॥୫୭॥
ଏସନେକ କାରଣେ ସେ ନିର୍ମିତ ବିଧାତା ।
ଆନ କରିବ ଗୋ ଦଇବର ପରାକୃତ ॥୫୮॥
ଶୁଣିଣ କୃଷ୍ଣା ଯେ ବିଧାତା ସୁମରି ।
ବିଶେଷି କରି ରାମାୟେଣ କହସି ତପଚାରୀ ॥୫୯॥
ମାରକଣ୍ଡେ କହନ୍ତି ଶୁଣସି ପଞ୍ଚାଳୀ ।
ହୁଅସି କୃତାର୍ଥ ଗୋ ଦ୍ରୌପଦର ଦୁଲ୍ଲାଳୀ ॥୬୦॥
ପଞ୍ଚୁ ପାଣ୍ଡବେ ସାବଧାନେ ଶୁଣ ।
ଦୁସହ ଶତୃ ତୁମ୍ଭର ସମରେଣ ଜିଣ ॥୬୧॥
ସୀତାର ସନିଧୁ ଯେ ଲବକୁଶେ ଗଲେ ।
ଅଗମ୍ୟ ଗହନ ବନ ଭିତରେ ପଶିଲେ ॥୬୨॥
ଲବକୁମର କହଇ ଶୁଣ କୁରୁଶାଇଁ ।
କେବଣ କତିକି ଯିବା ଗୀତ ଗାଇ ॥୬୩॥
କୁଶକୁମର କହଇ ଆଜ କିମ୍ପା ପାସୋରିଲ ।
କାଲି ଯହୁଁ ବରୁଣ ହୋଇ ଗୀତ ଶୁଣାଇଲ ॥୬୪॥
ଆଜ ଦୁଇ ଭାଇ ତହିଁକି ଯିବା ।
ରାମାୟେଣ ଚରିତ୍ର ତାହାର ଛାମୁରେ କହିବା ॥୬୫॥
ତୁମ୍ଭର କଥା ଶୁଣି ଉଦବେଗ ମୋହର ମନ ।
କେତେବେଳେ ଦେଖିବୁ ମହାତ୍ମାର ବଦନ ॥୬୬॥
କୁଶର କଥା ଶୁଣି ଲବ ହରଷ ହୋଇଲା ।
ଦକ୍ଷିଣ ବାଟକୁ ଆଗ ହୋଇ କଢ଼ାଇଲା ॥୬୭॥
ପବନ ହୁଁ ଦୁଇଭାଇ ବିକ୍ରମିଣ ଗଲେ ।
ଅଯୋଧ୍ୟା ନଗ୍ରେ ଯାଇ ପ୍ରବେଶ ହୋଇଲେ ॥୬୮॥
ପୁରେ ପଶନ୍ତେ ଦିବ୍ୟ ରୂପ ଶୋହନ୍ତି ।
ଅତି ସୁଲକ୍ଷଣ କୁମାରେ ତିନି ଭୁବନ ମୋହନ୍ତି ॥୬୯॥
ଅଯୋଧ୍ୟା ସ୍ତିରୀଗଣେ କୁମାର(ନ୍ତ) ଦେଖିଲେ ଯହୁଁ ।
ଏକ ଘରେ ଆରେକ ପଶି କହନ୍ତି ତହୁଁ ॥୭୦॥
ଦେଢୋଇ ଖୁଡ଼ଇ ମାଉଂସୀ ପିଉସୀ ।
ସହୀ ସଙ୍ଗାତୁଣୀ ବାଳକାଳର ବୟସୀ ॥୭୧॥
ବେଗ ମିତଣୀ ହୋଉକିନା ବାହାର ।
କାଲି ଗୀତ ଗାଇଲା ଯେବଣ କୁମର ॥୭୨॥
ତାହାର ସଂଗାତ ସାଦ୍ରିଶ ଦିଶନ୍ତି ।
ଦୁଇ କୁମରେ ରାଛରେ ଯାଉଛନ୍ତି ॥୭୩॥
ସଖୀମାନେ କହନ୍ତେ ନିଜ ବ୍ୟାପାର ଛାଡ଼ିଲେ ।
ଦୁଇପାଖେ କୁମରଙ୍କର ତୁଲେ ଗୋଡ଼ାଇଲେ ॥୭୪॥
ବୃଧ ସ୍ତିରୀଗଣ ଯେ ବିଗଳିତ କେଶଇ ।
ଦୃଢ଼ଭର ହୋଇ ଦେଖିତ ଆସଇ ॥୭୫॥
ବାଳୁତ ପୋଏ ଯେ ରାଛେ ଖେଳୁଥିଲେ ।
ଲବକୁମରଙ୍କର ପଛେ କୃଡ଼ା ଛାଡ଼ି ଗୋଡ଼ାଇଲେ ॥୭୬॥
ଜନଗହଳେ ଗଗନେ ଧୂଳି ଉଡୁଣ ଅଛଇ ।
କୁମରଙ୍କୁ ମଧକରି ସ୍ତିରୀପୁରୁଷେ ଯାଉଛନ୍ତି ଆଗପଛ ହୋଇ ॥୭୭॥
ଥୋକେ କହନ୍ତି ବାବୁ ଏଥେ କ୍ଷଣେ ରହ ।
ଶରୀର ତୋଷ କରି ରାମାୟେଣ କହ ॥୭୮॥
ଲବକୁମର କହଇ ଏଥେ ରହିବୁ କେସନେ ।
କାଲି ବଖାଣିଲୁ ଯାହାର ଭୁବନେ ॥୭୯॥
ବରିଅଛି ଗୀତ ଶୁଣିବ ସେ କ୍ଷତ୍ରି ।
ତେଣୁ ସେ ଭାଇ ଗୋଟିକି ଘେନି ଅଇଲି ମୁହିଁ ଏଥି ॥୮୦॥
ଶୁଣିଣ ହରଷ ହୋଇ କହନ୍ତି ସର୍ବଜନ ।
ଚାଲ ହୋ ରାମାୟେଣ ଶୁଣିମା ଶ୍ରୀରାମ ସନ୍ନିଧାନ ॥୮୧॥
ଏସନେକ କହି ଗୋଡ଼ାବନ୍ତି ଚଉପାଶଇ ।
ହୁଡ଼ି ପଡ଼ନ୍ତେ କେ କୁମରଙ୍କର ଚାହାନ୍ତି ମୁଖକଇ ॥୮୨॥

## ଲବକୁଶଙ୍କର ରାମାୟଣ ଗାୟନ

ଏଥୁ ଅନନ୍ତରେ ଶୁଣ ହୋ ପଣ୍ଡୁର ନନ୍ଦନ ।
ପ୍ରାତସ୍ନାହାନ ରାମ ସାରିଲେ ବହନ ॥୧॥
ଦେବ ଦେବାର୍ଚ୍ଚନ ନିତ୍ୟକର୍ମଣି ଏ ନୀତି ।
ତହୁଁଣ ଶ୍ରୀରାମ ବଶିଷ୍ଠଙ୍କୁ ହକାରନ୍ତି ॥୨॥

ସୁମନ୍ତ ସାମନ୍ତଙ୍କୁ ତକ୍ଷଣେ ଗୁହାଇ ।
ଶ୍ରୀରାମର ଛାମୁରେ ଅଛନ୍ତି ଦୁଇଭାଇ ॥୩॥
ତପୀ ବିଦ୍ୟୁଜ୍ଜନ ବୈଷ୍ଣବ ଭଗବନ୍ତ ।
ଆସ୍ଥାନକୁ ବିଜେ କଲେ ରଘୁବଂଶ ରାଜନ ॥୪॥
ବଶିଷ୍ଠଙ୍କର ମୁଖ ଚାହିଁ ପଚାରନ୍ତି ରାମରାଣ ।
ଭୋ ମୁନି ଶୁଣସି ମୋହର ବଚନ ॥୫॥
କାଲି ଯେ ବାଳୁତ ଗୋଟି ଗୀତ ଗାଇଲା ।
ଏତେବେଳ ହୋଇଲା କିମ୍ପାଇ ନଇଲା ॥୬॥
ମୋହର ଆଗେ କହିଲା ପୁଣ୍ୟତୃଣୀର ପୁତ୍ର ।
ଆସିବ ଅବଶ୍ୟ ଏଥ ରଜନୀ ପ୍ରଭାତ ॥୭॥
ବଶିଷ୍ଠେ କହନ୍ତି ଶୁଣ କ୍ଷତ୍ରିବର ସୁନ୍ଦର ।
କିମ୍ପାଇ ନ ଆସିବ ସେ ଧାର୍ମିକ କୁମର ॥୮॥
ଶାସ୍ତ୍ର କହିବାକୁ ହୋଇଅଛି ବରଣ ।
ବେଗ୍ର ନୋହଇ ଆସିବ ଏହିକ୍ଷଣ ॥୯॥
ଶ୍ରୀରାମ କହନ୍ତି ଶୁଣସି ତପୋଧନ ।
ସେ କୁମରକୁ ନ ଦେଖି ଅସ୍ଥିର ମୋର ମନ ॥୧୦॥
ବଶିଷ୍ଠେ କହନ୍ତି ପୂର୍ବେ ଅଭ୍ୟାସ ଯାହାରଇ ।
ସେ ସେ ରାମାୟେଣ କହିତ ପାରଇ ॥୧୧॥
ଶତେକୋଟି ଜନ୍ମର ପାତେକ ହୁଅଇ ନାଶ ।
ଶ୍ରୋତାବକତା ବିଷ୍ଣୁ ପୁରେ ବାସ ॥୧୨॥
ଲକ୍ଷ୍ମଣ ହକାରି କହନ୍ତି ରଘୁପତି ।
ବାଟକୁ ଯାଅ ତୁ ସେ ଆସଇ କେହୁ କତି ॥୧୩॥
ଶ୍ରୀରାମର ଆଜ୍ଞା ସେ ପାଇଲାକ ଯହୁଁ ।
ସଭାରୁ ଉଠି ଲକ୍ଷ୍ମଣ ଗଲାକ ନ୍ଟେ ତହୁଁ ॥୧୪॥
ପୁର ନରନାରୀ ବେଢ଼ି ଗୋଡ଼ାଇ ଅଛନ୍ତି ।
ତହିଁର ମଧରେ ଦୁଇଭାଇ ଆସନ୍ତି ॥୧୫॥
ଜନଗହଳ ଦେଖିଣ ମହାବୀର ।
ବେଗେଣ ଆସି ମିଳଇ କୁମାରଙ୍କ କତିର ॥୧୬॥
ନିରୋପଇ ବେନିକୁମାର ମଧେଣ ଅଛନ୍ତି ।
ବାଳୁତ ନନ୍ଦନ ଏକରୂପ ଦିଶନ୍ତି ॥୧୭॥
ଲବକୁ କୋଳ କରଇ ସୁମିତ୍ରା ନନ୍ଦନ ।
ଶରୀର ଆଶ୍ୱାସି ଶିରେ ଦେଲେକ ଚୁମ୍ବନ ॥୧୮॥
ଆସିବାର ତୋହର ବିଳମ୍ବ ହିଁ କଲୁ ।
କାହାର ପୁତ୍ରକୁ ଦୁଳେଣ ଆଣିଲୁ ॥୧୯॥

ଲବକୁମର କହଇ ଏ ମୋର ସାନ ଭାଇ ।
ଏକ ଗର୍ଭରୁ ଆମ୍ଭେ ଉତପତି ହୋଇ ॥୨୦॥
ଶୁଣି ଲକ୍ଷ୍ମଣ ଯେ ହୋଇଲା ହରଷଇ ।
ତହୁଁ ଦୁଇ ଭାଇନ୍ତ ଘେନି ଆସ୍ଥାନକୁ ଆସଇ ॥୨୧॥
ଦୁଇ କୁମାରଙ୍କର ଭୁଜ ଭୁଜେ ଧଇଲା ।
ଶ୍ରୀରାମର ସନିଧେ ଆଣି ଦୁହିଙ୍କି ଉଭା କଲା ॥୨୨॥
ଲବକୁମର ମୁଖ ଚାହିଁଣ ଶ୍ରୀରାମ ।
କୋମଳ ବଚନେ ସେ ବୋଲନ୍ତି ବଚନ ॥୨୩॥
ଏକ ରୂପ ଏକ ବୟସ ଦିଶନ୍ତି ।
ସଭାଲୋକ ଦେଖି ମୋହେ ବଶ ହୋନ୍ତି ॥୨୪॥
ଶିରେଣ ଲମ୍ବାବେଣୀ ଅନୁପାମ ଦିଶଇ ।
କପୋଳେ ଚନ୍ଦନଟୋପି ନକ୍ଷତ୍ର ଜାଣି ବିକାଶଇ ॥୨୫॥
ପୂର୍ଣ୍ଣମୀର ଚନ୍ଦ୍ର ଜାଣି ବଦନମଣ୍ଡଳ ।
ବେନି ନୟନ ଦିଶଇ ଯେସନ ସମୁଦ୍ର ଉଲ୍ଲଳ ॥୨୬॥
ନାସିକା ଦିଶଇ ଗରୁଡ଼ ଚଞ୍ଚୁ ଜାଣି ।
କ୍ଷୁଦ୍ରମୋତି ଦନ୍ତପନ୍ତି ପରିମାଣି ॥୨୭॥
କର୍ଣ୍ଣ ଦୁଇ ହାନ୍ଦୋଳ ସ୍କନ୍ଧେଣ ଲାଗଇ ।
ନିବିଡ଼ ସୁସଞ୍ଚ ଦିଶଇ ହୃଦୟ ଭାଗଇ ॥୨୮॥
ବିକ୍ରମ ବାଳୁତକେଶରୀ ଯେସନେକ ମଝା ।
ଆନ ପଟାନ୍ତର ନାହିଁ ଆନ ଦୁଜା ॥୨୯॥
ପ୍ରଳମ୍ବ ସୁସଞ୍ଚ ଦୁହିଙ୍କର ଭୁଜଇ ।
ଚମ୍ପାକଢ଼ି ସାଦୃଶ ଦିଶଇ ପାଣିଜଇ ॥୩୦॥
ଦୁଇ ଭାଇଙ୍କର ଜାନୁ ଉଲଟ ରମ୍ଭାଇ ।
ତତୁଲ୍ୟ ସୁନ୍ଦର ଦୁହିଙ୍କର ପୟର ପଲ୍ଲବଇ ॥୩୧॥
ଏକ ଭାଇର ଯେ ମୁଖକୁ ଚାହିଁ ।
କେ ସାନ କେ ବଡ଼ ଦୁହିଙ୍କି ନୋହଇ କହି ॥୩୨॥
(ଏକ ରୂପ ଏକ କୁମର ଏକ ବେନି ବୟସ ।
ସଭାଜନେ ଚାହିଁଣ ଚିତ୍ତ ପରମ ତୋଷ) ॥୩୩॥
ଲବକୁମର ହସ୍ତ ଧରିଣ ଆଣିଲେ ।
ସନିଧେ ବସାଇ ଶ୍ରୀରାମ ପଚାରିଲେ ॥୩୪॥
ଏ ତନୟ ଗୋଟି ତୋହର ହୋଏ କିସ ।
ଦୁହେଁ ଦୃଶ ତ ଏକଇ ସାଦ୍ରିଶ ॥୩୫॥
ଲବକୁମର କହଇ ଆମ୍ଭର ଏକ ଜନନୀ ।
ଯାମଳା ହୋଇ ଉପୁଜିଲୁ ଭାଇ ବେନି ॥୩୬॥

ମୁହିଁ ଜ୍ୟେଷ୍ଠ ଏ ମୋହର କନେଷ୍ଠ ।
ଶାସ୍ତ୍ର ଉକତ କରଇ ଏ ମୋହର ତହୁଁ ଗରିଷ୍ଠ ॥୩୭॥
ଶାସ୍ତ୍ର କହିବାକୁ ବରୁଣ ହୋଇଲି ।
ତେବେ ସେ ଏକା ହୋଇ ମୁଁ ଘେନିଣ ଅଇଲି ॥୩୮॥
ଶୁଣିଣ ହରଷ ହୋଇ କହନ୍ତି ଚାପହସ୍ତା ।
ଧନ୍ୟ ତୁମ୍ଭର ଜନନୀ ଧନ୍ୟ ତୁମ୍ଭର ପିତା ॥୩୯॥
କୁଶକୁମରକୁ ସନିଧକୁ ଆଣି ।
ଛାମୁରେ ବସାଇଲେ କୋଦଣ୍ଡ ଚାପପାଣି ॥୪୦॥
ତହିଁ ଦୁଇ ଭାଇ ତୁରିତେ ଉଠନ୍ତି ।
ବଶିଷ୍ଠଙ୍କର ପୟର ଧରି ପ୍ରଣମ୍ୟ କରନ୍ତି ॥୪୧॥
କଲ୍ୟାଣ କରନ୍ତି ପିତାମହର ସୁତ ।
ରାଜ୍ୟଧର ତୁମ୍ଭେ ହୁଅ ବେନି ଭ୍ରାଥ ॥୪୨॥
ଅବଶ୍ୟ ଇଷ୍ଟ ପୂରୁ ଦୁହେଁ ଲଭ ଶୁଭକାର୍ଯ୍ୟ ।
ମହୀମଧେ ଚକ୍ରବର୍ତ୍ତୀ (ହୋଇ) ବିପୁଳ ଭୋଗ ଭୁଞ୍ଜ ॥୪୩॥
କୁମରଙ୍କୁ କହନ୍ତି ବଶିଷ୍ଠ ମୁନିବର ।
ବାବୁ ହେ ବ୍ରାହ୍ମଣ ବୋଲି ଯେ ମୋତେ ହୋଇଲେ ନମସ୍କାର ॥୪୪॥
ଏ ନଗ୍ରରେ ତ ହୋଇବ ନୃପତି ।
ଏହାକୁ ନମସ୍କାର କରିବାର ହୁଅଇ ଯୁଗତି ॥୪୫॥
ବିଷ୍ଣୁର ତେଜେ ସେ ହୋଇଲା ରାଜା ।
ନୃପତିଙ୍କି ସକଳ ଲୋକେ କରନ୍ତି ପୂଜା ॥୪୬॥
ବାଳୁତ ହୋଇ ତୁମ୍ଭେ ଶାସ୍ତ୍ର ଉକତ କର ।
ତୁମ୍ଭର ଆଗରେ କିସ କହିବି ବିଚାର ॥୪୭॥
ମୋହରେ ପ୍ରଣମ୍ୟ ହୋଇ ବନ୍ଦ ଯେବେ ।
ରାଜାଙ୍କୁ ନମସ୍କାର ହୋଇବ ନା ଏବେ ॥୪୮॥
ବଶିଷ୍ଠଙ୍କର ବଚନ ଯହୁଁ ସେ ଶୁଣିଲେ ।
ଶ୍ରୀରାମର ସନିଧେ ଯାଇ ଶିରେ ହସ୍ତ ଦେଲେ ॥୪୯॥
ମଥା ଆଉଁସି କଲ୍ୟାଣ କରନ୍ତି ରଘୁପତି ।
ମନବାଞ୍ଛା ଲଭ ଅଇଶ୍ୱଯ (ହୋଉ) ବର୍ଦ୍ଧତି ॥୫୦॥
ହାତ ଧରି କୁମରକୁ ସନିଧେ ବସାବନ୍ତି ।
ରାମାୟେଣ କହ ବୋଲି ଲବକୁମରକୁ ପୁଛନ୍ତି ॥୫୧॥
କାଲି ଯଉଁ କଥା କଲୁ ତୁ ପ୍ରକାଶ ।
ଲୋମପାଦ ନଗରେ ଋଷିଶୃଙ୍ଗ ପ୍ରବେଶ ॥୫୨॥
ରାଜ୍ୟରେ ଇନ୍ଦ୍ର ଯାହାର ବରଷିଲାକ ଯହୁଁ ।
ଋଷିଶୃଙ୍ଗ ମହରଷି କିସ କଲେ ତହୁଁ ॥୫୩॥

## ଶାନ୍ତା ବିବାହ

ଶ୍ରୀରାମ ବଚନ ଯହୁଁ ଲବକୁମର ଶୁଣିଲା ।
ସଧୀର ସଧୀର କରି ନାଦ ହୁଂକାରିଲା ॥୧॥
କୁଶକୁମର ନାଦ ଧରି ଦୋହା ନାଦ ଧନାଶୀ ।
ନାଦ ମିଳନ୍ତେ କଣ୍ଠେ ସରସ୍ୱତୀ ବସି ॥୨॥
ଶରଦ କୋକିଳ ଯେସନ ଶୁଭଇ ଦିବ୍ୟ ବାଣୀ ।
ତବଦ ହୋଇଲେ ଯେ ସଭାଲୋକେ ଶୁଣି ॥୩॥
(ନଗ୍ରର ସକଳ ଲୋକ ଗୋଡ଼ାଇ ଯାଇଥିଲେ ।
ସଭାର ତଳେଣ ସେହୁ ବେଢ଼ିଣ ରହିଲେ) ॥୪॥
ତୈଳରେ ଯେସନେ ପଡ଼ିଲେକ ମାଛି ।
ଏକୁ ଆରେକ ନ କହନ୍ତି କିଛି ॥୫॥
ଯେ ଅବା ତହିଁ ସମସ୍ୟା ଦେଉଥିଲା ।
ତାହାର ମୁଖରେ ନେଇ ଆର ହସ୍ତ ଦେଲା ॥୬॥
ଦେବଙ୍କୁ ବନ୍ଦନା ଲବକୁମର କଲା ।
ଦୃଗା ଗଣପତିକି ସରସ୍ୱତୀକି ବନ୍ଦିଲା ॥୭॥
ହରି ହର (ବିରଞ୍ଚି-) ନାରାୟେଣଙ୍କୁ କରଇ ସ୍ତୁତି ।
ଦଶ ଦିଗପାଳଙ୍କୁ ବିନୟେ ଭଗତି ॥୮॥
ବିଚିତ୍ର ରାମାୟେଣ ଲବକୁମର କହଇ ।
କୁଶକୁମର ତାହା ଅର୍ଥ କରିଣ ବଖାଣଇ ॥୯॥
ଲୋମପାଦ ନଗ୍ରେ ଥାନ୍ତେ ଋଷିଶୃଙ୍ଗ ମୁନ୍ୟ ।
ଅନେକ ଭଗତି ହୋଇ ସେବା କରଇ ରାଜନ ॥୧୦॥
ଏସନେକେ କେତେହେଁ ଦିବସ ଗଲା ।
ସମସ୍ତ ଭାରିଯାକୁ ରାଜା ସନିଧକୁ ହକାରିଲା ॥୧୧॥
ଶାୟନ୍ତା କନ୍ୟା ଯେ ନବରେ ତାହାର ଅଛି ।
ତାହାକୁ ସନିଧେ ରାଇ ଲୋମପାଦ ପୁଛି ॥୧୨॥
ଯହିଁର ଅର୍ଥେ ଏଥକୁ ଆଣିଲାଇ ତୋତେ ।
ମୋହର ସନିଧକୁ ପଠାଇଲେ ତୋହର ତାତେ ॥୧୩॥
ଉପାୟେ କରି ଋଷିଶୃଙ୍ଗକୁ ଅଣାଇଲି ଯେବେ ।
ମୋହର ରାଜ୍ୟ ବୃଷ୍ଟି ହୋଇଲାକ ଏବେ ॥୧୪॥
ତୁହି ଯାଇ ଋଷିଙ୍କି ଦର୍ଶନ କରସି ।
କିସ ବିଚାରଇ ସେ ବିଭାଣ୍ଡେକର ଶିଷି ॥୧୫॥
ଏ ମୋହର ରାଣୀଙ୍କର ସଙ୍ଗତେଣ ଯିବୁ ।
ବିନୟେ ଉପଗତେ ଋଷିଙ୍କି ପ୍ରଣମ୍ୟ କରିବୁ ॥୧୬॥
ଶୁଣି ଶାୟନ୍ତା କନ୍ୟା ହରଷ ହୋଇଲା ।

ରାଣୀଙ୍କର ସଙ୍ଗତେ ଋଷିଙ୍କର ସନିଧକୁ ଗଲା ॥୧୭॥
ଯହିଁ ସେ ଅଛନ୍ତି ବାଳୁତ ତପୋଧନି ।
ପଣତ ପାଡ଼ି ଓଳଗନ୍ତି ସକଳ କାମେନୀ ॥୧୮॥
ଶ୍ରୀଫଳ ପୁଷ୍ପ ଥୋଇ ଶାୟନ୍ତା ଋଷିର ପାଦେ ନମଇଁ ।
ଦେଖି ତପୋଧନ ମନମତି ଭ୍ରମଇଁ ॥୧୯॥
ହରଷେଣ ଋଷି କଲ୍ୟାଣ କରନ୍ତି ।
ସୁଲକ୍ଷଣୀ ହୁଅ ତୁମ୍ଭେ ସକଳ ଯୁବତୀ ॥୨୦॥
ଶାନ୍ତା କନ୍ୟାର ମୁଖ ଚାହିଁଣ ମହାମୁନ୍ୟ ।
ମଦନ ରଙ୍ଗେ ଆତ୍ମା ହୋଇଲା ଛନ ଛନ ॥୨୧॥
କିଛି ଦୂରେ ଥିଲେ ଯେ ଲୋମପାଦ ରାୟେ ।
ସନିଧକୁ ହକାରି ପୁଛଇ ବିଭାଣ୍ଡେକର ତନୟେ ॥୨୨॥
ଏ କନ୍ୟା କେବଣ ଯୁବତୀର ଦୋହିତା ।
କହସି ହୋ ରାଜନ ସ୍ୱରୂପ ବ୍ୟବସ୍ଥା ॥୨୩॥
ଲୋମପାଦ କହଇ ଶୁଣସି ମୁନିବର ।
ଦଶରଥ ଅପୁତ୍ରିକ ସେ କନ୍ୟା ପିଅର ॥୨୪॥
ଋଷିଶୃଙ୍ଗ କହନ୍ତି ଶୁଣସି ନୃପତି ।
କିସ ବିଚାରୁ ତୋହର କେବଣ ଯୁଗତି ॥୨୫॥
ପର ଦୋହିତା ହୋଉ କି ଆତ୍ମା ଜାତ ହୋଉ ଏ କୁମାରୀ ।
ଯୁବା କନ୍ୟା ଘରେଣ ଥୋଇ ତ ନ ପାରି ॥୨୬॥
ଯଦ୍ୟପି ସେ ନିୟମ ଆଚାରେଣ ଥାଇ ।
ବହୁତ ମୁଖେ ସେ ଅପମାନ ପାଇ ॥୨୭॥
ତୁହି ବିଚକ୍ଷଣ ବିଧଂସ ରାଜନ ।
କହସି ମୋହର ଆଗେ ସ୍ୱରୂପ ବଚନ ॥୨୮॥
ବେନି କର ଯୋଡ଼ି କହଇ ନୃପବର ।
ଭୋ ମୁନି ଦଶରଥ ନୃପତି ମଇତ୍ର ମୋହର ॥୨୯॥
ତାହାର କୋଳେ ପୁତ୍ର ଜାତ ନାହିଁ ।
ମୁହିଁ ଅପୁତ୍ରିକ ହୋଇଲି ଗୋସାଇଁ ॥୩୦॥
ଦୁହେଁ ଅପୁତ୍ରିକ ଶୁଣସି ଭୋ ମୁନି ।
(ଦୁଇ) ମଇତ୍ରଙ୍କର ଘରେ ଏକା ଏହି ନନ୍ଦନୀ ॥୩୧॥
ତେମନ୍ତେ ସେ କନ୍ୟାକୁ ମୁହାଁସ କରୁ ।
ଏହା ମୁଖ ଦେଖି ଦିନ ଅପହରୁ ॥୩୨॥
ଶୁଣି ହରଷ ହୋଇ ପୁଛଇ ଶୃଙ୍ଗଋଷି ।
କାହିଁର ରାଜା ଦଶରଥ କେବଣ କୁଳବଂଶୀ ॥୩୩॥
ଲୋମପାଦ କହଇ ଶୁଣସି ତପୋଧନ ।
ସୂର୍ଯ୍ୟବଂଶେ ବିଖ୍ୟାତ ବିଦ୍ୟମାନ ॥୩୪॥
ଧାର୍ମିକ ଶୂରବନ୍ତ ବୀରବରଷଣ ।
ଡରେ ସେବା କରନ୍ତି ସକଳ ନୃପଗଣ ॥୩୫॥
କର୍ମର ଗୁଣେ ଯେ ପୁତ୍ର ଜାତ ନୋହିଲା ।
କୁଳମଣ୍ଡନକୁ ଏକା ଦୁହିତା ଉପୁଜିଲା ॥୩୬॥
ପୃଥୀର ରାଜାଏ କେହି ନୋହନ୍ତି ତାକୁ ସରି ।
ତେଣୁ ଅବିଭାଇତ ଏହୁ କୁମାରୀ ॥୩୭॥
ଲୋମପାଦର ବଚନ ଶୁଣି ମୁନିବର ତୋଷ ।
ବୋଇଲେ ପବିତ୍ର ବଂଶ ଯେବେ ହୋଇଲା ସୂର୍ଯ୍ୟବଂଶ ॥୩୮।
କନ୍ୟାକୁହିଁ ମୁହିଁ ବିଭା ହୋଇବି ।
ଦଶରଥକୁ ଏଥକୁ ଅଣାଇ ମୁ ଦୂତ ବରଗିବି ॥୩୯॥
ଶୁଣି ଲୋମପାଦ ତୋଷେ ହରଷ ହୋଇଲା ।
ପାତ୍ରମନ୍ତ୍ରୀକି ତତକ୍ଷଣେ ହକାରିଲା ॥୪୦॥
ବିଶ୍ୱାସପତ୍ର ମୋହର ତୁମ୍ଭେ ଘେନିଯିବ ।
ଅଯୋଧ୍ୟା ନଗ୍ରେଣ ଶୀଘ୍ରେଣ ମିଳିବ ॥୪୧॥
ମଇତ୍ରଙ୍କୁ କହିବ ଋଷିଙ୍କର ଅଇଲା ଏଥି ।
ତୁମ୍ଭଙ୍କୁ ଏଥକୁ ମୁନି ଆଣ ହୋ ବୋଲନ୍ତି ॥୪୨॥
କଉଶିକ ଭଗଦତ୍ତ ଦୁଇ ପାତ୍ରମନ୍ତ୍ରୀ ।
ରହୁବର ଆରୋହି ତତ୍କ୍ଷଣେ ଯାନ୍ତି ॥୪୩॥
ବିଂଶ ଦିବସେଣ ପଥ ବାହି ଗଲେ ।
ଅଯୋଧ୍ୟା ନଗ୍ରେଣ ଯେ ପ୍ରବେଶ ହୋଇଲେ ॥୪୪॥
ସିଂଘଦ୍ୱାରେଣ ବିଶ୍ରାମିଲେ ଯାଇ ।
ଡଗର ତତକ୍ଷଣେ ନୃପତିଙ୍କି ଜଣାଇ ॥୪୫॥
ଅଙ୍ଗଦେଶର ଅମନାତ୍ୟ ଦ୍ୱାରେଣ ଅଛି ରହି ।
ସ୍ୱରୂପ ବଚନ ଭୋ ଦେବ ଜଣାଇଲି ମୁହିଁ ॥୪୬॥
ଶୁଣି ଦଶରଥ ଅନେକ ହରଷ ହୋଇଲା ।
ସିଂଘାସନେ ନୃପତି ତତକ୍ଷଣେ ବିଜେ କଲା ॥୪୭॥
ବଶିଷ୍ଠ ମହରଷିକି ସନିଧେ ହକାରି(ଲା) ।
ସୁମନ୍ତ ସହିତେଣ ଛାମୁରେ ମିଳିଲା ॥୪୮॥
ପାତ୍ର ମନ୍ତ୍ରୀ ଅମନାତ୍ୟ ଅଇଲେ ପାଶର ।
ସମ୍ବର୍ଦ୍ଧେଣ ନୃପତି ଦଶରଥ ଆସ୍ଥାନେଣ ବସଇ ॥୪୯॥
ଦ୍ୱାରପାଳକୁ ଆଜ୍ଞା ଦେଲାକ ମହୀପତି ।
ହକାରି ଘେନି ଆସ ଅଙ୍ଗଦେଶର ପାତ୍ରମନ୍ତ୍ରୀ ॥୫୦॥
ରାଜାର ଆଜ୍ଞାରେ ଦ୍ୱାରପାଳ ଗଲା ।

ଅଙ୍ଗଦେଶର ପାତ୍ରମନ୍ତ୍ରୀ ନେଇ ଅସ୍ମାନେଣ କଲା ॥୫୧॥
ବଶିଷ୍ଠ ମହାମୁନିଙ୍କି ପ୍ରଣମ୍ୟ କରନ୍ତି ।
ଦଶରଥ ନୃପତିଙ୍କି ନମସ୍କାର ହୋନ୍ତି ॥୫୨॥
ଲୋମପାଦର ଲେଖନ ଦଶରଥର ଛାମୁରେ ଦେଲେ ।
କର ଯୋଡ଼ି ଦୁହେଁ ଉଭା ହୋଇଲେ ॥୫୩॥
ଲୋମପାଦର ଲେଖନ ଦଶରଥ ହସ୍ତରେ ଘେନିଲା ।
ପଢ଼ ବୋଲି ସୁମନ୍ତ ହସ୍ତେ ନେଇ ଦେଲା ॥୫୪॥
ମୁଦ ଭାଞ୍ଜି ପଢ଼ି କହଇ ସୁମନ୍ତ ।
ଲେଖର କଥା ଶୁଣ ନୃପନାଥ ॥୫୫॥
ଅଙ୍ଗଦେଶକୁ ଋଷିଶୃଙ୍ଗ ଅଇଲା ।
ତାହାର ବଚନ ମାତ୍ରକେ ଜଳବୃଷ୍ଟି ହୋଇଲା ॥୫୬॥
ଶାନ୍ତା କନ୍ୟାକୁ ଦେଖିଲାକ ଯହୁଁ ।
ବିଭା ହୋଇତ ମୁନି ବିଚାର କରଇ ତହୁଁ ॥୫୭॥
ବେଗେ ଆସସି ମଇତ୍ର ମୋହର ଭୁବନ ।
ଏସନେକ ଚରିତ୍ର ଦେବ ଲେଖର ଲେଖନ ॥୫୮॥
ଶୁଣି ଦଶରଥ ପାତ୍ରମନ୍ତ୍ରୀ ମୁଖ ଚାହିଁ ।
ଭଗଦତ୍ତ କହଇ ଦେବ ସ୍ୱରୂପ ବଚନ ଏହି ॥୫୯॥
ଶୀଘ୍ରେଣ ଆସ ଆମ୍ଭର ରାଜ୍ୟକୁ ଯିବା ।
ତୋହର ଦୋହିତା ମୁନିଙ୍କି ବିଭା କରାଇବା ॥୬୦॥
ଏସନେକ କଥା ଯହୁଁ ବଶିଷ୍ଠେ ଶୁଣିଲେ ।
ଦଶରଥକୁ ମୁନି ହରଷ ହୋଇ କହିଲେ ॥୬୧॥
ଏବେ ସେ ତୋହର ଦୁଷ୍କୃତ ପାର ଗଲା ।
ବିଭାଣ୍ଡେକର ପୁତ୍ର ଯେବେ ଅଙ୍ଗ ଦେଶକୁ ଅଇଲା ॥୬୨॥
ଏହିକ୍ଷଣି ନୃପତି ଶୀଘ୍ର ହୋଇ ଯାସି ।
ସେ ତପୋଧନକୁ ତୋହର କନ୍ୟା ବିଭାଏଣ ଦେସି ॥୬୩॥
ତତକ୍ଷଣେ ସଜ ହୋଇଲେ ଦଶରଥ ନୃପମଣି ।
ବିଭାକୁ ଯେସନ ବେଭାରମାନ ଘେନି ॥୬୪॥
ଅନେକ ଧନରତ୍ନ ଆଭରଣ ବସନ ।
ମନର ହରଷେ ଘେନିଲେକ ରାଜନ ॥୬୫॥
ଉତ୍ତମ ରଥ ବାଜି ମଯେମତ୍ତ ଗଜ ।
ଅଙ୍ଗଦେଶକୁ ପ୍ରୟାଣ କରଇ ମହାରାଜ ॥୬୬॥
ରାତ୍ର ଦିବସେ ଥାଟ ଚଳାଇଲା ।
ଦଶ ଦିବସେ ଅଙ୍ଗଦେଶେ ପ୍ରବେଶ ହୋଇଲା ॥୬୭॥
ନବରେ ନୃପତି ହୋଇଲେ ପ୍ରବେଶ ।
କୋଳାଗ୍ରତ କରି ଲୋମପାଦ ପ୍ରକାଶ ॥୬୮॥
ଭୋ ମଇତ୍ର ମୋହର କଷ୍ଟ ପାର ଗଲା ।
ଋଷିଶୃଙ୍ଗ ପ୍ରବେଶେ ମୋହର ରାଜ୍ୟରେ ବରଷଣ ହେଲା ॥୬୯॥
ସୁସ୍ଥ ହୋଇଲେ ମୋହର ପ୍ରଜାଇତ ଜନ ।
ଏବେ ବାଳୁତ ଯତିକି ଆସ କରିବା ଦ୍ରଶନ ॥୭୦॥
ଶୁଣିଣ ଦଶରଥ ହରଷ ହୋଇଲା ।
ହସ୍ତ ଧରି ଲୋମପାଦ ମୈତ୍ରକୁ ଘେନିଗଲା ॥୭୧॥
ଯହିଁ ସେ ଋଷିଶୃଙ୍ଗ ବସିଣ ଅଛନ୍ତି ।
ପ୍ରଣମ୍ୟ କରି ସ୍ତୁତିଲା ଦଶରଥ ନୃପତି ॥୭୨॥
ଋଷିଶୃଙ୍ଗ ପଚାରନ୍ତି ଲୋମପାଦର ମୁଖ ଚାହିଁ ।
କିସ କାର୍ଯ୍ୟେ ଏ ପୁରାତନ ଅଇଲା ଏ କାହିଁ ॥୭୩॥
ଲୋମପାଦ କହଇ ଶୁଣସି ମହାମୁନ୍ୟ ।
ଏହି ସିନା ସୂର୍ଯ୍ୟବଂଶ ଦଶରଥ ରାଜନ ॥୭୪॥
ଶୁଣିଣ ବାଳଯତି ହଂସିଣ କହନ୍ତି ।
ଉଠିଣ ବସ ହେ ଦଶରଥ ନୃପତି ॥୭୫॥
ସନମାନ ପାଇ ବସିଲାକ ରାଜନ ।
ଦଶରଥ ମୁଖ ଚାହିଁ କହନ୍ତି ମହାମୁନ୍ୟ ॥୭୬॥
ଶାନ୍ତନା ଅବିଭାଇ ଏ ତୋହର ନନ୍ଦନୀ ।
ସେ କନ୍ୟା ମୋତେ ବିଭାଏଣ ଦେସି ନୃପମଣି ॥୭୭॥
ଶୁଣି ଦଶରଥ ଆନନ୍ଦ ହୋଇଲା ।
କୁଳ ଉଦିତ ମୋହର ଏବେ ସେ ହୋଇଲା ॥୭୮॥
(ତେଣୁ ସେ କନ୍ୟା ମାଗିଲ ମୁନି ମୋତେ ।
ଦାନ ପ୍ରତିଗ୍ରହ କରି ସମର୍ପିବି ତୋତେ) ॥୭୯॥
ଏ ମୋହର ଦୋହିତା ଉପୁଜିଲା ଧନ୍ୟି ।
ଉଭୟେ କୁଳ ରାଶି ଖୋଜ ମହାମୁନି ॥୮୦॥
ଋଷିଶିଙ୍ଗ କହନ୍ତି ଭାର୍ଗବ ଗୋତ୍ର ଆମ୍ଭର ।
ଇକ୍ଷ୍ୱାକୁ ବଂଶ ବୋଲି କହଇ ନୃପବର ॥୮୧॥
ଋଷିଶୃଙ୍ଗର ରେବତୀ ମୀନରାଶି ।
ଶାନ୍ତନା(ର) ମୃଗଶିରା ବୃଷ ପ୍ରକାଶି ॥୮୨॥
ତିଥି ବାର ଖୋଜିଣ ଅନକୂଳ ଘେନନ୍ତି ।
ଯେସନେକେ ଦୁଇ କୁଳ ପ୍ରୀତି ଉପୁଜନ୍ତି ॥୮୩॥
ଗୁରୁକୁଳେ ଜାତ ଋଷିଶୃଙ୍ଗ ମୁନି ।
ସୂର୍ଯ୍ୟବଂଶେ ଉତପତି ଶାନ୍ତନା କାମେନୀ ॥୮୪॥
ମାହେନ୍ଦ୍ର ଅନକୂଳ ତିଥି ବିଚାରନ୍ତି ଶୁଭେ ।

ବୈଶାଖ କୃଷ୍ଣପକ୍ଷ ଘେନିଲେ ଶୁଭ ଯୋଗେ ॥୮୫॥
ସୋମ ଶ୍ରବଣା ନକ୍ଷତ୍ର ମକର ଲଗ୍ନ ।
ଏସନ ବେଳେ କରନ୍ତି ହସ୍ତ ବନ୍ଧନ ॥୮୬॥
ସୁଜ୍ଞ ବ୍ରାହ୍ମଣେ ଅନେକ ମିଳନ୍ତି ।
ଉଭୟ କୁଳ ଗୋତ୍ର ନାମ ଧରି ବେଦ ଉଚାରନ୍ତି ॥୮୭॥
କୁଶ ବନ୍ଧନ କରି ଶଙ୍ଖେ ଭରିଲେ ପାଣି ।
ଯଉତୁକ ଦେଲେ ଦଶରଥ କଣୟ କୋଷ ମଣି ॥୮୮॥
ବିଚିତ୍ର ପାଟୋଳି ଦେବାଙ୍ଗ ଝୀନ୍ନବାସ ।
ନବରତ୍ନ ଝରୀ ଆବର ମାଣିକ୍ୟର କୋଷ ॥୮୯॥
ଅନେକ ସୁରଭୀ ବତ୍ସା ଯୁକ୍ତ କରି ।
ସବୁ ଗାଈଙ୍କର ଶୃଙ୍ଗେ ରତ୍ନ ଖୋଳ ଭରି ॥୯୦॥
ଯୁବା ଅନଙ୍ଗ ଜାଣି ସାଦୃଶ ଶୃଙ୍ଗରଷି ।
ଶାନ୍ତନା କନ୍ୟା ରୂପର ପଟାନ୍ତର ଦିଶି ॥୯୧॥
ଲୋମପାଦ ଶତେ ସୁବର୍ଣ୍ଣ ଯଉତୁକ ଦେଲା ।
ତହୁଁ ଦଶରଥ କର ଯୋଡ଼ିଣ କହିଲା ॥୯୨॥
ସମସ୍ତେ ବସିଲ ତୁମ୍ଭେ ବୈଷ୍ଣବ ବିଦ୍ୟୁଜନ ।
ବାଲୁତ ଯତି ଏ ବିଭାଣ୍ଡେକର ନନ୍ଦନ ॥୯୩॥
ଏ ମୋହର କୁମାରୀ ଏହାକୁ ଦେଲି ।
ଉପର ପୁରୁଷଙ୍କର ମୁଁ ପାତେକ ବିନାଶିଲି ॥୯୪॥
ପୁତ୍ର ପଉତ୍ର ମୋହର ବାବୁହେ କେହି ନାହିଁ ।
ଏ କନ୍ୟା ଥିବ ମୁନି ତୁମ୍ଭର ପାଦ ଚାହିଁ ॥୯୫॥
କିଞ୍ଚିତ ଦୋଷେ କୋପ ନ କରିବୁ ଭୋ ମୁନି ।
ସ୍ୱଭବେ ଚଞ୍ଚଳମତି ହୁଅନ୍ତି କାମେନୀ ॥୯୬॥
ସକଳ ଦୋଷ ଏହାର ମୋତେ ଦେବୁ ।
ସର୍ବଦା ଚିତ୍ତେଣ ଯେ ଦୟା କରିଥିବୁ ॥୯୭॥

X X X

ସପ୍ତପୁରୁଷ ଅନ୍ତରେ ସଗର ମହୀପତି ।
ପୃଥ୍ୱୀରେ ବିକ୍ଷାତ ତାହାର ବେନି ଯୁବତୀ ॥୧॥
ସବ୍ୟା ନାମେଣ ଯେବଣ ପାଟରାଣୀ ।
ଲାଉକା ଆକାରେ ମହାପିଣ୍ଡେ ଜାତ କଲା ସେ ତରୁଣୀ ॥୨॥
ଘୃତ କୁମ୍ଭରେ ତାହା ତିଳ ପ୍ରମାଣେ ଭରିଲେ ।
ଷାଠିଏ ସହସ୍ର କୁମର ତହୁଁ ଜାତ କଲେ ॥୩॥
ସୁନ୍ଦର ବିଚକ୍ଷଣ ଯେତେ ବର୍ଦ୍ଧମାନ ।
ପୁତ୍ରଙ୍କୁ ଦେଖି ହରଷ ରାଜନ ॥୪॥

ନୃପତିର ସାନ ଭାରିଯା ବଇର୍ଧବୀ ନାମେ ରାଣୀ ।
ପୁତ୍ର ଜନମିଲା ସମେ ଅନଙ୍ଗ ନାହିଁ ପୁଣି ॥୫॥
ମାତାର ଜନନୀକି ପୂର୍ବେ ଅସୁର ରମିଲା ।
ବିଦ୍ୟୁ ନାମେ ଦନୁଜ ମଦନିକାକୁ ବଳେ ନେଲା ॥୬॥
ସ୍ୱର୍ଗର ଅପଛରାକି ରମଣ କଲା ଯହୁଁ ।
ମଦନିକାର ଗର୍ଭେ ବଇର୍ଧବୀ ଜାତ ତହୁଁ ॥୭॥
ସାରଙ୍ଗ ପକ୍ଷୀ ବିନତାର ନାତି ।
ତାହାକୁ ମାଇଲା ବିଦ୍ୟୁ ଦୁଷ୍ଟମତୀ ॥୮॥
କଙ୍କପକ୍ଷୀ ବୋଲି ସାରଙ୍ଗର ଜ୍ୟେଷ୍ଠ ଭାଇ ।
ତା ତହୁଁ ବଳବନ୍ତ ସେ ନ ଦେଖିଲା କାହିଁ ॥୯॥
ସାରଙ୍ଗ ମରଣ ଯହୁଁ କଙ୍କପକ୍ଷୀ ଦେଖିଲା ।
ବିଦ୍ୟୁ ଦଇତକୁ ସେ ପ୍ରାଣେ ନାଶ କଲା ॥୧୦॥
ମଦନିକାକୁ ଆଣିଲା ନିଜ ପୁରୀ ।
ଗର୍ଭେଣ ଦୁଇମାସ ହୋଇଅଛି ଅପଛରୀ ॥୧୧॥
ପୂର୍ବେ ମଦନିକା ନୃତ୍ୟ କରନ୍ତେ ।
ଶ୍ୟାପ ଦେଲା ଇନ୍ଦ୍ର ପୟର ଟଳନ୍ତେ ॥୧୨॥
ଯାଆଲୋ ଅପସରୀ ତୋହର ଗର୍ବ ସରୁ ।
ବିଦ୍ୟୁ ନାମେ ଦଇତ୍ୟ ତୋତେ ରମଣ କରୁ ॥୧୩॥
ଇନ୍ଦ୍ରର ତହିଁ ଯହୁଁ ଶାପ ପାଇଲା ।
ପୟରେ ଲୋଟି ମଦନିକା ବିନୋଇ କହିଲା ॥୧୪॥
ଅସୁରର ଭାରିଯା କେତେକାଳ ହୋଇବି ।
ସ୍ୱର୍ଗପୁରକୁ ବାହୁଡ଼ି କେତେକାଳେ ଆସିବି ॥୧୫॥
ଅନୁରାଗ କରି କହି ପାକଶାସନ ।
ତୋହରି ଗର୍ଭେ କନ୍ୟା ଏକ ହୋଉ ଉତପନ ॥୧୬॥
ତେବେ ସେ ଶ୍ୟାପରୁ ମୁକତ ହୋଇବୁ ।
ବାହୁଡ଼ି ଅମର ଭୁବନକୁ ଆସିବୁ ॥୧୭॥
ପୂର୍ବର ଶ୍ୟାପେ ଅସୁର ଭୋଗ କଲା ।
ଦୈତ୍ୟକୁ ମାରି କଙ୍କପକ୍ଷୀ ଆଣିଲା ॥୧୮॥
କାଳେ କନ୍ୟା ଏକ ଉପୁଜିଲା ଯହୁଁ ।
ସ୍ୱର୍ଗକୁ ଅପଛରୀ ଗଲାକ ତହୁଁ ॥୧୯॥
ସେ କୁମାରୀଙ୍କି କଙ୍କପକ୍ଷୀ ପାଇଲା ।
ବଇର୍ଧବୀ ନାମ ସେ ତନୟାକି ଦେଲା ॥୨୦॥
ସଗର ମୃଗୟା ଯାଇ ଆଣିଲେ ସେ କଙ୍କପକ୍ଷୀକି ମାଗି ।
ସାନ ଭାରିଯା ନୃପତିର ହୋଇଲା ସଉଭାଗୀ ॥୨୧॥

ବଜ୍ରଧ୍ୱବୀର ଗର୍ଭେ ପୁତ୍ରେକ ହୋଇଲା ।
ଅସୁର ପ୍ରାୟେକ ସେ କୁମର ରୋଦନ କଲା ॥୨୨॥
ଋଷିଗଣଙ୍କୁ ହିଁ ପୁଛଇ ରାଜନ ।
ବିକରାଳ ରାବ ଧରିଲା ମୋହର ନାନ ॥୨୩॥
ଭାର୍ଗବ ମହରଷି ସଗରକୁ କହନ୍ତି ।
ସୁନ୍ଦର ଦେଖି ଯେ ଆଣିଲୁ ଯୁବତୀ ॥୨୪॥
ସ୍ୱର୍ଗର ଅପଛରୀକି ଅସୁର ରମଣ କଲା ।
ଆବର ବିଶେଷେ ପକ୍ଷୀ ପୋଷିଲା ॥୨୫॥
ମାତୃକୁଳ ପିତୃକୁଳ ଯାହାର ସଙ୍ଗେ ବଢ଼ଇ ।
ସେ ପ୍ରକୃତି କେବେହେଁ ନ ଛାଡ଼ଇ ॥୨୬॥
ତେଣୁ ସେ ଅସୁର ପ୍ରାୟେ କଲା ରୋଦନ ।
ପୁଣ ବଳବନ୍ତ ହୋଇବ ତୋହର ନନ୍ଦନ ॥୨୭॥
ଅସୁର ପ୍ରାୟେକ ଶବଦ କଲାକ ଯେବେ ।
ଅଶ୍ୱଜା ନାମ ତୁହି ଏହାକୁ ଦେସି ଏବେ ॥୨୮॥
ମୁନିର ବାକ୍ୟ ଯହୁଁ ସଗର ଶୁଣିଲା ।
ଜ୍ୟେଷ୍ଠ କୁମରକୁ ଅଶ୍ୱଜା ନାମ ଦେଲା ॥୨୯॥
ଅନେକ ଧାତ୍ରୀ ପରିପାଳନ କରନ୍ତି ।
ରୂପେଣ କୁମର କାମଦେବର ମୂରତି ॥୩୦॥
ଏସନେକେ ଅଶ୍ୱଜା ଆଠବରଷ ହୋଇଲାକ ଯହୁଁ ।
ନଗ୍ରେଣ କୁମର ଭ୍ରମଣ କରଇ ତହୁଁ ॥୩୧॥
ସାମନ୍ତାଣୀଙ୍କର ଯେତେକ କୁମାରଇ ।
ଗଳାରେ ଡୋର ଦେଇ କୂପରେ ନେଇ ଭରଇ ॥୩୨॥
କାହାକୁ ଛାଟ ପିଟଇ କାହାର ଚୂଳ ବାନ୍ଧଇ ।
କାହାକୁ ଖଡ଼ଗ ପ୍ରହାରେ ଶିର ଛେଦଇ ॥୩୩॥
ଏସନେକ ଚରିତ୍ର ଯହୁଁ ସଗର ଦେଖିଲା ।
ପର୍ବତେ ପର୍ବତେ ଡେଇଁ ଦେଶ ଛଡ଼ାଇ ଥୋଇଲା ॥୩୪॥
ସହସ୍ରେକ ମାଲ ହକାରି ନୃପତି ପାଶ ।
ଅହୋନିଶି ଥୋଇ ଅଶ୍ୱଜାର ପାଶ ॥୩୫॥
ଏହାକୁ ମୋହର ରାଜ୍ୟକୁ ଆସି ନ ଦେବ ।
ଅହୋନିଶି ଏ ଦୃଷ୍ଟକୁ ଧରି ତୁମ୍ଭେ ଥିବ ॥୩୬॥
ଭାରିଯା ସହିତେ ନବରୁ ବାହାର କଲା ।
ପର୍ବତେ ପର୍ବତେ ଅଶ୍ୱଜାକୁ ରକ୍ଷା କରାଇଲା ॥୩୭॥
ଏମନ୍ତ ଦ୍ୱାଦଶ ବରଷ ହୋଇଲାକ ଯହୁଁ ।
ଦୁଇ ବାହା ଆକ୍ରୋଶି ମାଲ ଧଇଲେକ ତହୁଁ ॥୩୮॥
ଅଶ୍ୱଜା ପଚାରଇ କିମ୍ପା ମୋତେ ଧରନ୍ତି ।
ମାଲେ କହନ୍ତି ଆଜ୍ଞା ଦେଇଛନ୍ତି ନୃପତି ॥୩୯॥
ବଳେ ତୁହି ଯେବେ ନଗ୍ରକୁ ଯିବୁ ।
ତେମନ୍ତେ ଆମ୍ଭେ ଧରି ତୋତେ ଗୁହାଇବୁ ॥୪୦॥
ଶୁଣିଣ ଅଶ୍ୱଜା ଭୁଜ ସିଞ୍ଚାଡ଼ିଣ ଦେଲା ।
ଦଶବିଂଶ ଯୋଜନେ ଯାଇ ସହସ୍ର ମାଲ ପଡ଼ିଲା ॥୪୧॥
ଅଶ୍ୱଜା କହଇ ଡଗରକୁ ରାଇ ।
ପିତାର ବଚନ ନ ଲଂଘଇ ମୁହିଁ ॥୪୨॥
ପିଅର ବାକ୍ୟ ମେଣ୍ଟିଲେଣ ନରକରେ ବାସ ।
ପିତାର କାର୍ଯ୍ୟେ ଥିଲେ ଯଶ ପଉରୋଷ ॥୪୩॥
ଏସନେକ କଥା ଶୁଣିଣ ଡଗର ।
ଆସିଣ ଜଣାଇଁଲା ରାଜାର ଆଗର ॥୪୪॥
ଏସନେକ କଥା ଯହୁଁ ସଗର ଶୁଣିଲା ।
ମନେ ମନେ ଆନନ୍ଦ ଅମୃତ ପାନ କଲା ॥୪୫॥
ପୁତ୍ରର ମହିମା ଶୁଣିଣ ମହୀପତି ।
ହରଷସେନ ନଗ୍ରକଇ ଦୂତ ପେଷଇ ଧାତି ॥୪୬॥
ତୋହର ଦୋହିତା ମୋହର ଅଶ୍ୱଜାକୁ ଦେବା ।
କନ୍ୟା ସମର୍ପିଣ ନିଶ୍ଚିନ୍ତେଣ ଥିବା ॥୪୭॥
ସଗର ବଚନେ ଡଗର ଚଳିଗଲା ।
ଦ୍ୱରିତେଣ ରାଜାକୁ ଯାଇ ଜଣାଇଲା ॥୪୮॥
ହରଷମତି ବୋଲିଣ ଯେବଣ ଦୋହିତ ।
ବିଭାଏଣ ଦେବୁ ତୁ ସଗର ଜ୍ୟେଷ୍ଠସୁତ ॥୪୯॥
ଶୁଣିଣ ସନମତ ହରଷସେନ କଏ ।
କନ୍ୟା ଦେଲା ସେ ସଗରର ଭୟେ ॥୫୦॥
ଅଶ୍ୱଜାକଇ ତାହାର ଦୋହିତା କଲା ବିଭା ।
ଚନ୍ଦ୍ରକୁ ରୋହିଣୀ ଯେସନ ଶୋଭା ॥୫୧॥
ରତ୍ନ ଅଳଙ୍କାର ପୁତ୍ରକୁ ଦେଲା ପଠିଆଇ ।
ଭାରିଯା ସଙ୍ଗତେ କୁମର ପର୍ବତେ ଥାଇ ରହି ॥୫୨॥
ହରଷମତିର ଗର୍ଭେ ତନୟେକ ଜାତ ।
ମୀନକେତନ ଜାଣି ସ୍ୱରୂପ ବାଳୁତ ॥୫୩॥
ଡଗର କହିଲା ସଗର ନୃପତିର ଆଗେ ।
ଅଶ୍ୱଜା ପୁତ୍ରେ ଉପୁଜିଲା ଶୁଭ ଯୋଗେ ॥୫୪॥
ଶୁଣିଣ ରାଜନ ହରଷ ହୋଇଲା ।
ଆପଣାର ଭୁବନକୁ ନାତିକି ଅଣାଇଲା ॥୫୫॥

ନାତିକି ଦେଖିଣ ଅନେକ ଆନନ୍ଦ ହୋଇ ।
ଅଶ୍ୱବନ୍ତ ନାମ ସେ କୁମରକୁ ଦେଇ ॥୫୬॥
ଏଥୁ ଅନନ୍ତରେ ସଗର ନୃପତି ।
ଅନେକ ତପୋଧନ ଦେଖିତ ଆସନ୍ତି ॥୫୭॥
ସଗର କହଇ ଏ ଅଶ୍ୱଜାର ପୁତ୍ର ।
ଋଷି କହନ୍ତି ତୁ ଯେ ମହତ ଗୁଣବନ୍ତ ॥୫୮॥
ପୁତ୍ର ତନୟେକ ହୋଇଲାକ ଯେବେ ।
ତୀର୍ଥକୁ ଗମନ ତୁହି କରସି ହୋ ଏବେ ॥୫୯॥
ସଗର କହଇ ଯାଗ କରିବି ଉପାୟେ ।
ଶ୍ୱେତ ଅଶ୍ୱ ଏକ ରଖାଇ ଅଛନ୍ତି ମୋର ପୋଏ ॥୬୦॥
ଯାଗ କରିବି ଦକ୍ଷିଣା ଦାନ ଦେବି ।
ସକଳ ପାତେକ ମୋହର ବିନାଶ କରିବି ॥୬୧॥
ଋଷି କହନ୍ତି କିମ୍ପା କରିବୁ ତୁହି ଯାଗ ।
ନାତିର ସେ ହୋଇବ ସକଳ ପୁଣ୍ୟଭାଗ ॥୬୨॥
କକ୍ଷାବନ୍ତ ରାଜା ସେ ବଚନ ନ କଲା ।
ଯାଗ ଆରୋପଣ କରି ବ୍ରାହ୍ମଣନ୍ତ ବରିଲା ॥୬୩॥
ଲବକୁଶ କହନ୍ତି ରାମଚନ୍ଦ୍ରଙ୍କର ଆଗର ।
ଅଯୋଧ୍ୟାର ଲୋକେ ଶୁଣନ୍ତି ବଶିଷ୍ଠ ମୁନିବର ॥୬୪॥
ପୂର୍ବ ସମୁଦ୍ର ତଟେ କପିଳ ମହଋଷି ।
ବ୍ରହ୍ମା ହୋଇବି ବୋଲି ତପଧ୍ୟାୟେ କରଇ ବସି ॥୬୫॥
ନାରଦ ମହଋଷି ସେ କଥା ଜାଣିଲା ।
ସଗର ଶ୍ୱେତଅଶ୍ୱ ବାନ୍ଧି ନେଇ ତାହାର ପଛକତି ବାନ୍ଧିଲା ॥୬୬॥
ସଗର ପୁତ୍ରେ ଯେ ଅଶ୍ୱ ରଖିଥିଲେ ।
ଶ୍ୱେତ ଅଶ୍ୱ ନ ଦେଖି ସମସ୍ତେ ଲୋଡ଼ିଗଲେ ॥୬୭॥
ଅଶ୍ୱ ନ ଦେଖି ଷାଠିଏ ସହସ୍ର ପୁତ୍ର ଭାଳନ୍ତି ।
ପାତାଳେ ଅଛି ବୋଲି ପୃଥିବୀ ଖୋଳନ୍ତି ॥୬୮॥
ନାରଦ ମହଋଷି କୁମରନ୍ତ କହିଲା ।
ତୁମ୍ଭର ଅଶ୍ୱ କପିଳ ମହଋଷି ହରିନେଲା ॥୬୯॥
ପିତାକୁ କହି ସକଳ ପୁତ୍ରେ ଗଲେ ।
କପିଳ ମହଋଷି ସନ୍ନିଧେ ଶ୍ୱେତଅଶ୍ୱ ଦେଖିଲେ ॥୭୦॥
ଭର୍ତ୍ସନା କରନ୍ତି କୁରୁଳି ପାଡ଼ନ୍ତି ।
ଧୂଳି ପକାଇ ଜଟା ଉଚ୍ଛୁଡ଼ନ୍ତି ॥୭୧॥
ଧାୟେ ଭଗ୍ନ ହୋଇ ଯହୁଁ କପିଳ ମୁନି ଚାହିଁଲେ ।
ଷାଠିଏ ସହସ୍ର ପୁତ୍ର ସଗରର ଦହନ ହୋଇଲେ ॥୭୨॥
(କପିଳ ଶାପ୍ୟରେ ସେ ଷାଠିଏ ସହସ୍ରେ ତନୟେ ।
ଅଗ୍ନି ଦହନ ହୋଇଲା ସେ ସବୁଙ୍କରି କାୟେ) ॥୭୩॥
ନାରଦ ଆସି ସଗରକୁ କହିଲେ ।
ତୋହର ପୁତ୍ରମାନେ ଦହିଯ୍ୟ ହୋଇଲେ ॥୭୪॥
ଶୁଣିଣ ନୃପତି ଅନେକ ଶୋକ କଲା ।
ଅଜାର ବିକଳ ଯହୁଁ ସେ ଦେଖିଲା ॥୭୫॥
ସଗର ଆଗେ ଅଶ୍ୱବନ୍ତ କହଇ ତହୁଁ ।
ତୋହର ଆଜ୍ଞା ମୋତେ ପ୍ରାପତ ହୋଇଥାଉ ॥୭୬॥
ଭୋ ତାତ କପିଳ ମହଋଷିର ତହିଁକି ମୁଁ ଯିବି ।
ଶ୍ୱେତଅଶ୍ୱ ତାହାର ତହୁଁ ମାଗିଣ ଆଣିମି ॥୭୭॥
ଶୁଣିଣ ହରଷ ସଗର ହୋଇଲା ।
ଯାଯା ବୋଲି ଅଶ୍ୱବନ୍ତକୁ ତିଆରିଲା ॥୭୮॥
ଅନେକ ନିବେଶି ମୁନିଙ୍କି କର ।
ଯେସନେକ ମୁକତ ହୁଅନ୍ତି ମୋହର କୁମାର ॥୭୯॥
ସୂର୍ଯ୍ୟବଂଶେ ବ୍ରହ୍ମ ଦ୍ରୋହ କଥା ନ ରହୁ ।
ଯାବତ କାଳକୁ କଥା ବ୍ରତିଥାଉ ॥୮୦॥
ଅଜାର ବଚନେ ସେ ଅଶ୍ୱବନ୍ତ ଗଲା ।
କପିଳ ମହାମୁନିଙ୍କି ପ୍ରଣମିତ ହୋଇ କହିଲା ॥୮୧॥
ଭୋ ମହଋଷି ତୁ ମହତ ବିଧଂସ ।
ମୋହର ଖୁଡୁତାଙ୍କର କିଛି ନାହିଁ ଦୋଷ ॥୮୨॥
ବହ୍ମ ପଦକୁ ହି ଇଚ୍ଛା କଲୁ ଯହୁଁ ।
ନାରଦ ମହଋଷି ତୋତେ କପଟ କଲେ ତହୁଁ ॥୮୩॥
ତୁହି ତପିଷ୍ଟ ସକଳ କଥା ଜାଣୁ ।
ଗୁଣ ଅବିଗୁଣ କିପାଇଁ ନ ପାରିମାଣୁ ॥୮୪॥
(ଅଶ୍ୱବନ୍ତ ସେ କପିଳ ମୁନିଙ୍କି ବୋଧି ।
ଖୁଡୁତାକଇ ନିମନ୍ତେ ସେ ପଚାରଇ XX ବୁଦ୍ଧି ॥୮୫॥
ଅଶ୍ୱବନ୍ତ କଥା ଯହୁଁ କପିଳ ମୁନି ଶୁଣିଲେ ।
ଧ୍ୟାୟେ କରି ନାରଦ-କପଟ ବୋଲି ଜାଣିଲେ ॥୮୬॥
ଅଶ୍ୱବନ୍ତର ମୁଖ ଚାହିଁ କହଇ ମହଋଷି ।
ଧନ୍ୟରେ କୁମର ଶରଣକୁ ସାହାସୀ ॥୮୭॥
ପାଞ୍ଚ ବରଷର ତୁ ବାଳୁତ ତନୟେ ।
ଆତ୍ମା ନିଆସି ଅଇଲୁ ନ କଲୁ ମୋତେ ଭୟେ ॥୮୮॥
ମୋହର ହୃଦରେ ତୋତେ ହୋଇଲା ଅନୁରାଗ ।
ସତ୍ୟ ଉଚାର ତୁ ମୁଁ ଦେବଇ ବର ମାଗ ॥୮୯॥

ଶୁଣି କରଯୋଡ଼ି କହଇ ଅଶ୍ୱବନ୍ତେ ।
ଭୋ ମୁନି ଦୟା ଯେବେ ତୁହି କଲୁ ନା ମୋତେ ॥୯୦॥
ମୋହର ଖୁଡୁତାଏ କେସନେକେ ସଦଗତି ପାନ୍ତୁ ।
ଅଗ୍ନି ଦହିଯୁ ପାର ହୋଇ ଯାନ୍ତୁ ॥୯୧॥
ମୁନି କହନ୍ତି ତୋହର ପୁତ୍ରର ନନ୍ଦନ ।
ସେ ଏହାକୁ ଦେବ ଗଙ୍ଗାଜଳ ଦାନ ॥୯୨॥
ତହୁଁ ଅଶ୍ୱବନ୍ତ ବାହୁଡ଼ି ଆସଇ ।
ସଗର ଆଗେ ମୁନି ବଚନ ପ୍ରକାଶଇ ॥୯୩॥
ଶୁଣି ନୃପତି ଅଶ୍ୱବନ୍ତକୁ ରାଜ୍ୟେ ଅଭିଷେକ କଲା ।
ଶୋକଭର ହୋଇ ବନସ୍ତେ ପ୍ରାଣ ଛାଡ଼ିଲା ॥୯୪॥
ଅଶ୍ୱବନ୍ତର ତନୟେ ଦିଲିପି ନାମ ହୋଏ ।
ଦିଲିପିର କୋଳେ ଭାଗ୍ୟରଥି ଜାତ ହୋଏ ॥୯୫॥
ସେ ଭାଗ୍ୟରଥି ଆକାଶୁ ଗଙ୍ଗା ଆଣିଲା ।
ସଗର ପୁତ୍ରନ୍ତ ସେ ମୁକତ କଲା ॥୯୬॥
ଭାଗ୍ୟରଥିର ତନୟେ ରଘୁ ନୃପତି ।
ଅଜ ଏ ବୋଲି ରଘୁର ପୁତ୍ର ବିଖ୍ୟାତି ॥୯୭॥
ଅଜ ନୃପତିର ପୁତ୍ର ମୁହିଁ ଦଶରଥ ମହୀପାଳ ।
ପୂର୍ବ କର୍ମଫଳେ ମୋହର ନ ହୋଇଲା ଦୁଲାଳ ॥୯୮॥
ବଂଶ ରକ୍ଷଣକୁ ମୋହର ଉପର ପୁରୁଷେ ।
ଏକ୍ ଏକ ଏ ପୁତ୍ର ଉପୁଜିଲେ ଗତ ଦୋଷେ ॥୯୯॥
ମୋହର କୋଳେ ଉପୁଜିଲା ଏହି ନନ୍ଦନୀ ।
ତୋତେ ବିଭାଏ ଦେଲି ଏହୁ କାମେନୀ ॥୧୦୦॥
ଶୁଣି ହରଷ ହୋଇ କହନ୍ତି ତପୋଧନ ।
ତୁହି ମନେ ଶୋକ ଚିନ୍ତା ଛାଡ଼ସି ରାଜନ ॥୧୦୧॥
ତୋହର ଦୋହିତାର ଯେବେ ଧଇଲି ମୁହିଁ ହସ୍ତ ।
ଯାଗ ଆରୋପି ତୋହରେ କରିବି ପୁତ୍ର ଜାତ ॥୧୦୨॥
ଆନନ୍ଦ ହୋଇଲେ ଶୁଣି ଦଶରଥ ନୃପମଣି ।
ନିଧନେ ଧନ ପ୍ରାପତ ଅନ୍ଧରେ ଚକ୍ଷୁ ଜାଣି ॥୧୦୩॥
ବିଭାର ବିଧାନ ତୁରିତେଣ ସାରି ।
ଲଜ୍ଜାହୋମ ଦାନ ପ୍ରତିକ୍ଷଣ କରି ॥୧୦୪॥
ହରଷ ଉତସଲ୍ୟ ଦଶରଥ ରାଜନ ।
ବର କନ୍ୟାଏ ଅମୃତପାକ କରନ୍ତି ଭୋଜନ ॥୧୦୫॥
ମଧୁଶେଯ୍ୟାଏ ବରକନ୍ୟା ଶୟନ କରନ୍ତି ।
ରୂପେ ପତିପତ୍ନୀ ତିନିଭୁବନ ମୋହନ୍ତି ॥୧୦୬॥
ଯୁବା ଅନଙ୍ଗ ଜାଣି ଋଷିଶୃଙ୍ଗ ମହରଷି ।
ରତି ସମାନ ଶାନ୍ତନା ରୂପ ଦିଶି ॥୧୦୭॥
ମନର ଭାବନା ପ୍ରୀତି କାମରସ ।
ପୁରୁଷ ମନୋହର ବିଭାଣ୍ଡେକର ଶିଷ ॥୧୦୮॥
ଶାନ୍ତନା ବିଳାସଣୀ ମଦନେଣ ପ୍ରୀତି ।
ପତିପତ୍ନୀ ଦୃଷ୍ଟି ସାରି ହୋଇଲେ ଧିରତି ॥୧୦୯॥

X X X

ରଜନୀ ପ୍ରଭାତେ ଉଦୟେ କମଳକୋଷ ।
ଦଶରଥ କହଇ ଯାଇ ଋଷିଶୃଙ୍ଗର ପାଶ ॥୧॥
ଭୋ ମୁନି ଶୁଣ ମୋହର ବଚନ ।
ଅତି ବିଧଂସ ତୁ ବାଳୁତ ତପୋଧନ ॥୨॥
ଦିବ୍ୟ କଣୟକୋଷ ଯେ ଯଉତୁକ ଦେଲି ।
ଲକ୍ଷେକ ସୁରଭି ଦେଇ ତ୍ରିପୁତି ହୋଇଲି ॥୩॥
ଆବର ପାଟୋଳି ବିଚିତ୍ର ଝୀନବାସ ।
ଏ ଅର୍ଥ ସମ୍ପଦ ତୋହର କରିବୁ କିସ ॥୪॥
ଆନ କେହି ତୋହର ତୁଲେଣ ନାହିଁ ।
ଦାନ ଦେଲା ପଦାର୍ଥ ଥୋଇ ତ ନ ଯୋଗାଇ ॥୫॥
ଋଷିଶୃଙ୍ଗ କହନ୍ତି ଶୁଣସି ରାଜନ ।
ପିତାର ଆଶ୍ରମକୁ ଚଳାଅ ଗୋଧନ ରତ୍ନ ॥୬॥
ମୋହର ଯିବାକୁ ତାତ ଅଛନ୍ତି ବାଟ ଚାହିଁ ।
ପିତାକୁ ତେଜି ଅଇଲଇ ମୁହିଁ ॥୭॥
ଗୋଧନ ଯେବେ ମୋହର ପିତା ଦେଖିବ ।
ସକଳ ବଇରାଗ ସେ ଉପେକ୍ଷା କରିବ ॥୮॥
ମହରଷି ବଚନ ଯହୁଁ ଦଶରଥ ଶୁଣିଲା ।
ଅନେକ ଗୋପାଳନ୍ତ ସେ ସନିଧେ ହକାରିଲା ॥୯॥
ଧନରତ୍ନ ବସ୍ତ୍ର ଦେଇ ଅନେକ ପୁରୁଷାର୍ଥ କରଇ ।
ସକଳ ଗୋପାଳନ୍ତ କହଇ ନୃପବରଇ ॥୧୦॥
ଏ ଗୋରୁନ୍ତ ଘେନି ବିପୁଳ ପର୍ବତକୁ ଯିବ ।
ବିଭାଣ୍ଡେକର ସନିଧେ ଦେଇଣ ଆସିବ ॥୧୧॥
ଯେତେକ ଧନ ସେ ଯଉତୁକ ଦେଲା ।
ଘଣ୍ଟ ଘାଗୁଡ଼ି କରି ଗୋବଛାନ୍ତ ମଣ୍ଡିଲା ॥୧୨॥
ପୂର୍ବେ ଯେବଣ କଇବ୍ରତେ ନାଦ ବାହିଣ ଗଲେ ।
ଗୋବଛାମାନ ସେ ନାବେ ବସାଇଣ ଅଇଲେ ॥୧୩॥
ଯଉତୁକ ଧନବସନ ଯେତେକ ଦେଇଥିଲା ।

ସକଳ ପଦାର୍ଥମାନ ନାବରେ ବସାଇଲା ॥୧୪॥
ନଦୀର ଭିତରେ ଗଲେ ନାବ ବାହି ।
ଉତ୍ତରାଙ୍ଗ ତୀରେ ନାବ ଲଗାଇଲେ ନେଇ ॥୧୫॥
ସୁରଭି ବଛାନ୍ତ ଘେନି ଗୋପାଳେ ଗଲେ ।
ବିପୁଳ ପର୍ବତେ ଯେ ପ୍ରବେଶ ହୋଇଲେ ॥୧୬॥
ଅନେକ ତିରଣ ପଲ୍ଲବି ଅଛଇ ସେ ବନେ ।
ସୁଖେ ଚରନ୍ତି ଯାହା ଗୋଧନମାନେ ॥୧୭॥
ପର୍ବତର ପାଣି ଗୋବଛେ ପିଅନ୍ତି ।
ଗୋପାଳେ ବିବିଧ୍ୟ ଫଳ ଯେ ଭୁଞ୍ଜନ୍ତି ॥୧୮॥
ବୃକ୍ଷଙ୍କର ତଳେ ଗୋପାଳେ ବସିଲେ ।
ସୁସର ରାଗେ ଯେ ବଇଁଶୀ ନାଦ କଲେ ॥୧୯॥
ଆଶ୍ରମେ ବସିଥିଲେ ବିଭାଣ୍ଡେକ ମହରଷି ।
ବେଣୁ ଶବଦ ଶୁଣି ହୋଇଲେ ବିରସି ॥୨୦॥
ମନେ ବିଚାରନ୍ତି ଚଣ୍ଡମୁନିର ସୂନ ।
କିସ ଶବଦ ଶୁଭିଲା ମୋହର ବନ ॥୨୧॥
କୋପେଣ ମହରଷି ବାହାର ହୋଇଲେ ।
ନୃତ୍ୟଗୀତ କରୁଛନ୍ତି ଗୋପାଳେ ତାହାନ୍ତ ଦେଖିଲେ ॥୨୨॥
ଧବଳ କୋମଳ ସୁରଭି ବଛାଏ ଦିବ୍ୟରୀତି ।
ଚମତ୍କରିତ ଦେଖି ହୋଇଲେ ମହାଯତି ॥୨୩॥
[ ଦେଖିଣ (ଯତି ବୋଲନ୍ତି) ମନ ଗରୁ କରି ।
ଅଗମ୍ୟ ବନ ଭଗ୍ନ କଲରେ ମୋହରି ] ॥୨୪॥
ଧାଇଁଲେ ତପୋଧନି ତ୍ରିଦଣ୍ଡ ଉଭାରି ।
ଗୋପାଳଙ୍କର ଉପରେ ଶୀଘ୍ରେଣ ପ୍ରହାରି ॥୨୫॥
ଦେଖିଣ ଗୋପାଳ ବିଚିତ୍ର ଗତି କଲା ।
ଲଉଡ଼ିରେ ବଞ୍ଚାଇଲା ତ୍ରିଦଣ୍ଡ ଦେହରେ ନ ବାଜିଲା ॥୨୬॥
ଆରେକ ଗୋପାଳେକ ଅଇଲାକ ଧାଇଁ ।
ବେକରେ ହସ୍ତ ଦେଇ ମୁନିଙ୍କି ନେଲା ପେଲାଇ ॥୨୭॥
କୁରୁଳି ପାଡ଼ିଣ ଦିଅନ୍ତି ଗାଳତୂରି ।
ପୁଣି ହି ପିଟନ୍ତେ ରଷି ପଡ଼ିଲେକ ହୁଡ଼ି ॥୨୮॥
ଗୋପାଳେ ବୋଲନ୍ତି ମୁନି ହୋଇଲ କି ବାଇ ।
ଅକାରଣେ ଆମ୍ଭନ୍ତ ମାର କିସ ପାଇଁ ॥୨୯॥
(ବଇରାଗୀ ତପିଷ୍ଟ ତୁମ୍ଭେ ଛଦ୍ମ ତପଚାରୀ ।
ଅନର୍ଥ କିମ୍ପା କର ତୁମ୍ଭେ ନ ବିଚାରି ॥୩୦॥
କିମର୍ଥ କାରଣେ ତୁ ଲଉଡ଼ି ପିଟିଲୁ ।
ଆପଣା କଥାକଇ ଶଙ୍କା କିମ୍ପାଇଁ ନ କଲୁ ॥୩୧॥
ଆମ୍ଭନ୍ତ ମାରିଣ ପିବ ତୁମ୍ଭେ କାହିଁ ।
ହସନ୍ତି ଗୋପାଳେ କରତାଳି ଦେଇ ॥୩୨॥
ଶୁଣିଣ ମହରଷି କୋପେଣ ଗରୁତାପୀ ।
ନିୟତେ ବ୍ରାହ୍ମଣ ଅଟନ୍ତି କ୍ଷଣକୋପୀ ॥୩୩॥
ବିଭାଣ୍ଡେକ ବୋଇଲେ ଗୋପାଳଙ୍କୁ ରାଇ ।
କାହାର ଧେନୁ ଏ ଥିଲା ପୁଣ କାହିଁ) ॥୩୪॥
ବିଭାଣ୍ଡେକ କହନ୍ତି କିମ୍ପାରେ ଏଥି ଗୋରୁ ଭରିଲ ।
ଅଗମ୍ୟ ବନ ମୋହର କିମ୍ପା ଭାଙ୍ଗି ଉଜାଡ଼ିଲ ॥୩୫॥
ଆବର ବିଶେଷେ ମୋତେ ମାଡ଼ ମାରି ।
କାହାର ଗୋଧନ ଏ ତାହାର ଆଗେ କରିବୁ ଗୁହାରି ॥୩୬॥
ସେହୁ ତୁମ୍ଭଙ୍କୁ(କି) ଓପ୍ରଧ ବିହିବ ।
ଏଥିର ଶାସ୍ତି ସେ ବିଚାରିଣ ଦେବ ॥୩୭॥
ଗୋପାଳେ କହନ୍ତି ଯାହାର ଗୋବଛଇ ।
ସେ ତପୋଧନ ତ ବହୁତ ଦୂରେ ଅଛଇ ॥୩୮॥
ତୁମ୍ଭେ ତାହାକୁ ଜାଣିମ ମୁନିବର ।
ଆମ୍ଭେ ଲୋଡୁଅଛୁ ରଷିଶୃଙ୍ଗର ପିଅର ॥୩୯॥
(ଗୋପାଳେ ବୋଲନ୍ତି ଶୁଣ ତୁମ୍ଭେ ମହାମୁନ୍ୟ ।
ରଷିଶୃଙ୍ଗ ମହରଷିର ଏ ଅଟଇ ଗୋଧନ) ॥୪୦॥
କନ୍ୟାର ସଙ୍ଗତେ ଯେ ଏଥୁ ମୁନି ଗଲା ।
ଦଶରଥର ଦୋହିତାକୁ ବିଭା ହୋଇଲା ॥୪୧॥
ଯଉତୁକ ପାଇଲା ଅନେକ ଗୋଧନ ।
ଆବର ଧନରତ୍ନ ବହୁତ ବସନ ॥୪୨॥
ସୁବର୍ଣ୍ଣର ପଇଲମ ଆବର ରତ୍ନଝରୀ ।
ସବୁ ପଦାର୍ଥନ୍ତ ଦେଇ ଲୋମପାଦ ପଠାଇଲା ଯତ୍ନକରି ॥୪୩॥
ରଷିଶୃଙ୍ଗର ପିତା ତହିଁକି ଗୋରୁ ଦେଇତ ଅଇଲୁ ।
ଅନ୍ତେ ତୋହର ତହିଁ ମାଡ଼ଇ ଖାଇଲୁ ॥୪୪॥
ଶୁଣିଣ ହରଷ ବିଭାଣ୍ଡେକ ତପୋଧନ ।
ଆନନ୍ଦେ ଅଶ୍ରୁଜଳ ନୟନୁ ଗଳଇ ଘନ ଘନ ॥୪୫॥
ତତକ୍ଷଣେ ଗୋପାଳନ୍ତ କୋଳାଗ୍ରତ କଲା ।
ଶରୀର ଆଶ୍ୱାସି ଶିରେ ଚୁମ୍ବନ ଦେଲା ॥୪୬॥
ମୁହିଁ ସେ ବାବୁ ହେ ରଷିଶୃଙ୍ଗର ତାତ ।
ଦୁଇ ମାସ ନିକି ଛାଡ଼ିଗଲା ମୋହର ସୁତ ॥୪୭॥
ତାହାକୁ ନ ଦେଖି ଅନ୍ଧଗତି ହୋଇଥିଲି ।

ତୁମ୍ଭର ବଚନ ଶୁଣି ଅମୃତ ପାନ କଲି ॥୪୮॥
ବାଇବାଉଡ଼ ଥିଲେ ଓଳମ୍ବ ମୋହର ସୁତ ।
ଏସନେକ କଥା ଶୁଣି ହଂସିଲେ ରଘୁନାଥ ॥୪୯॥
ବଶିଷ୍ଠ ସହିତେ ସଭାରେ ଯେତେ ଜନ ।
ଚିତ୍ତ ଆମୋଦେ କଲେ ସୁଧାରସ ପାନ ॥୫୦॥
ଶ୍ରୀରାମ କହନ୍ତି ବଶିଷ୍ଠଙ୍କର ମୁଖ ଚାହିଁ ।
ଏସନେକ ଚରିତ୍ର କହିଲା ଆନ ନାହିଁ ॥୫୧॥
କେବଣ ପୁଣ୍ୟତୃଣୀ ଏହାନ୍ତ ଗର୍ଭେ ଧଇଲା ।
ତାହାର ସେ ଧନ୍ୟ ପୃଥ୍ୱୀରେ ଉପୁଜିଲା ॥୫୨॥
ଯେବଣ ମହାତ୍ମା ଏହାର ତାତ ।
ତାହାକୁ ଦେଖିଲେ ପାତକ ହୋଏ ହତ ॥୫୩॥
ବଶିଷ୍ଠେ କହନ୍ତି ଏବେ ଥିର ହୋଇଣ ଥାସି ।
ଗ୍ରନ୍ଥ କହିସାରିଲେ ମାତାପିତା ପଚାରସି ॥୫୪॥
ବଶିଷ୍ଠଙ୍କର ବଚନେ ରାମ ହୋଇଲେ ମଉନ ।
ତହୁଁ ନାଦ ହୁଁକାରିଲେ ବେନି ସୂନ ॥୫୫॥
ଲବକୁମର କହଇ ସୁସର ଧ୍ୱନି କରି ।
କୁଶକୁମର ଅର୍ଥ ବୁଝାଇ ବିବିଧ କରି ॥୫୬॥
ଗୋପାଳକୁ କୋଳ କରି ମୁନି ନେଲା ।
ନିଜ ଆଶ୍ରମେ ନେଇ କନ୍ଦମୂଳ ଦେଲା ॥୫୭॥
ଗୋପାଳନ୍ତ ମୁନିବର ଯତ୍ନ କରି ଗୁହାଇଲେ ।
ନାବେ ଯେତେ ଧନ ଥିଲା ଆଶ୍ରମକୁ ଅଣାଇଲେ ॥୫୮॥
ବିଭାଣ୍ଡେକ ମହରଷି ସକଳ ଗୋପାଳନ୍ତ ହକାରି ।
ଅନେକ ଆଶ୍ୱାସି କହନ୍ତି ତପଚାରୀ ॥୫୯॥
ତୁମ୍ଭେ ବାବୁ ହେ ବନସ୍ତେ ରହିଥିବ ।
ମୋହର ଆସିବା ଯାଏ ଗୋଧନ ସମ୍ଭାଳିବ ॥୬୦॥
ଏହିକ୍ଷଣେ ନାବେ ବସିଣ ମୁହିଁ ଯିବି ।
ପୁତ୍ର ଗୋଟିକି ମୋର ତିୟାରିଣ ଆସିବି ॥୬୧॥
ଏସନେକ କହି ମୁନି ନାବେଣ ବସିଲେ ।
ପବନୁ ଆପାତେ କଇବ୍ରତେ ନାବ ବାହିଣ ନେଲେ ॥୬୨॥
ଅଙ୍ଗଦେଶରେ ନାବ ଦଶ ଦିନରେ ଲାଗିଲା ।
ତତକ୍ଷଣେ ବିଭାଣ୍ଡେକ ନାବରୁ ଓହ୍ଲାଇଲା ॥୬୩॥
ଯହିଁ ସେ ଅଛଇ ଋଷିଶୃଙ୍ଗ ତପୋଧନ ।
ପୁତ୍ରର ସନିଧକୁ ଗଲେ ମହାମୁନ୍ୟ ॥୬୪॥
ଦେଖିଣ ବାଳଯତି ଆସନୁ ଉଠିଲା ।
ପିତାର ପୟର ଧରି ପ୍ରଣମିତ ହୋଇଲା ॥୬୫॥
ଚରଣ ଧୂଳି ଲେପିଲାକ ଶିର ।
କରପତ୍ର ଯୋଡ଼ି ପଚାରଇ ମୁନିବର ॥୬୬॥
କିସ ନିମନ୍ତେ ତାତ ଏଥକୁ ଅଇଲ ।
ଆଶ୍ରମ ତେଜି ଶରୀରକୁ ଦୁସ୍ତ ଦେଲ ॥୬୭॥
ବିଭାଣ୍ଡେକ କହନ୍ତି ଶୁଣରେ ତନୟେ ।
ତୋତେ ନ ଦେଖି ମୋତେ ଦିଗ ଅନ୍ଧାର ହୋଏ ॥୬୮॥
ଦଶରଥର ଦୋହିତାକୁ ଯେ ବିଭା ହୋଇଲୁ ।
ଯଉତୁକ ଧନ ଆଶ୍ରମକୁ ଚଲାଇଲୁ ॥୬୯॥
ଏ ତୋହର କଥା କହିଲେ ସେ ମୋତେ ।
ତେଣେ ସେ ଦେଖିତ ଅଇଲି ମୁହିଁ ତୋତେ ॥୭୦॥
ନବଯୁବା କନ୍ୟା ସେ ଦାନ ଘେନିଲୁ ।
ମହାଭାରା ଏକ ମଥାରେ ବସାଇଲୁ ॥୭୧॥
ତହିଁକି ପ୍ରତିଗ୍ରହ କରସି ବାଳମୁନ୍ୟ ।
ଦଶରଥ ଅପୁତ୍ରିକ ଦେସି ପୁତ୍ରଦାନ ॥୭୨॥
ଏ ଯେ ଲୋମପାଦ କନ୍ୟାକୁ ହେତୁକୃତା ।
ଧାର୍ମିକ ମହୀପତି ଏ ମହତ ମର୍ଯିତା ॥୭୩॥
ଏହାକଇ ଯେସନେକ ସନ୍ତତି ଉପୁଜଇ ।
ଏହାର ନବରେ ଯାଗ୍ୟ କରସି ତନୁଜଇ ॥୭୪॥
ମୋହର ବଚନ ନ କର ଅନ୍ୟସ୍ଥା ।
ଜନମୁଖେ କ୍ଷିତିରେ ରହୁ ତୋହର କଥା ॥୭୫॥
ଏ ଦୁଇ ରାଜାକୁ ଯେ ପୁତ୍ର ଦାନ ଦେବୁ ।
ଶୀଘ୍ର ହୋଇ ମୋହର ଆଶ୍ରମକୁ ଯିବୁ ॥୭୬॥
ପୁତ୍ରକୁ ତିଆରିଣ ବାହୁଡ଼ି ମୁନି ଅଇଲେ ।
ସେ ନାବେ ବସି ବିପୁଳ ପର୍ବତେ ହୋଇଲେ ॥୭୭॥
ସକଳ ସୁରଭୀକି ମୁନି ରକ୍ଷା କରାବନ୍ତି ।
ଗୋପାଳଙ୍କୁ ହକାରି ବିଭାଣ୍ଡେକ କହନ୍ତି ॥୭୮॥
ମୋହର ପୁତ୍ର ଯେବେ ଏଥକଇ ଆସଇ ।
ତେବେ ସେ ଯିବ ତୁମ୍ଭେ ତୁମ୍ଭର ନିଜ ବାସଇ ॥୭୯॥
ଶୁଣିଣ ଗୋପାଳେ ହରଷ ହୋଇଲେ ।
ବିପୁଳ ପର୍ବତରେ ବିଭାଣ୍ଡେକର ସନିଧେ ରହିଲେ ॥୮୦॥

X X X

ଏଥୁ ଅନନ୍ତରେ ଶୁଣ କୃର୍ଷାର ପତି ।
ଶ୍ରୀରାମର ଆଗେ ଲବ କୁଶ କହନ୍ତି ॥୧॥

ବିଭାଣ୍ଡେକ ମହରଷି ଯେ ଅଙ୍ଗ ଦେଶକଇ ଗଲେ ।
ଦଶରଥ ଲୋମପାଦ ଦୁଇରାଜାଏ ନ ଜାଣିଲେ ॥୨॥
ନିଜ ଆଶ୍ରମକୁ ଅଇଲା ମୁନି ଯହୁଁ ।
ଲୋମପାଦ ହକାରି ଋଷିଶୃଙ୍ଗ କହନ୍ତି(ତହୁଁ) ॥୩॥
ତୋହର କୋଳେ ପୁତ୍ର ଯେବେ ନାହିଁ ।
ଯାଗ କରି ପୁତ୍ର ତୋତେ ଦେବଇ ଏବେ ମୁହିଁ ॥୪॥
ଚରୁ ଭୁଞ୍ଜନ୍ତେ ପୁତ୍ର ହୋଇବ ଉତପତି ।
ତପର ମହିମା ଦେଖ ରୁହାଇବି ଯଶକୀର୍ତ୍ତି ॥୫॥
ଶୁଣି ଲୋମପାଦ ହରଷ ହୋଇଲା ।
ନିଜ ନବର ଭିତରେ ଯାଗ ଆରୋପଣ କଲା ॥୬॥
ମନ୍ତ୍ର ବଳେ ଆହୁତି ଦିଅଇ ମୁନି ଘୃତ ।
ନବଗ୍ରହ ତୋଷି ଜପଇ ଅନଳ ମନ୍ତ୍ର ॥୭॥
ଅଗ୍ନିରେ ସିଦ୍ଧଚରୁ ଉପୁଜିଲାକ ଯହୁଁ ।
ଲୋମପାଦ ହକାରି କହନ୍ତି ମୁନି ତହୁଁ ॥୮॥
ଏ ଚରୁ ଏବେ ଭୁଞ୍ଜନ୍ତୁ ତୋହର ରାଣୀ ।
ଚାରି ପାଟ ମହାଦେଈ ହକାର ନୃପମଣି ॥୯॥
ମିଳିଲେ କାମେନୀ ସ୍ୱାମୀଙ୍କର ପାଶ ।
ମୁନିର ପୟରେ କରନ୍ତି ସଂବେଶ ॥୧୦॥
ଚରୁ କରେ ଦେଇ କହନ୍ତି ମୁନିବର ।
ନାରାୟେଣ ସୁମରି ଚରୁ ପାନ କର ॥୧୧॥
ମୁନିବର ବଚନେ ହରଷ ଚାରିରାଣୀ ।
ଚରୁ ଭୁଞ୍ଜନ୍ତି ସେ ନୃପତିର ଘରଣୀ ॥୧୨॥
ଶ୍ରୀୟା ପଞ୍ଚାଳୀ ମୃଦା ରତ୍ନାବଳୀ ।
ରାଜାର ବଲ୍ଲଭୀ ନୃପତିଙ୍କର ଦୁଲ୍ଲାଳୀ ॥୧୩॥
ସେ ସିଦ୍ଧ୍ୟ ଚରୁ ଯହୁଁଣ ଭୁଞ୍ଜିଲେ ।
ଲୋମପାଦର ଶୋଭିନୀ ଗର୍ଭବାସ ହୋଇଲେ ॥୧୪॥
(ସଏନ୍ଦୁ ତନୟେ ହୋଇଲେ ତହୁଁ ଜାତ ।
ବହୁରତମ୍ୟ ଘେନି ସମ୍ଭୁତ ପଞ୍ଚସୁତ) ॥୧୫॥
ରତ୍ନାବଳୀ ନାମେଣ ଯେବଣ କାମେନୀ ।
ଦୁଇ ବେଳ ଚରୁ ଭୁଞ୍ଜିଲା ଏ କାମେନୀ ॥୧୬॥
ତତକ୍ଷଣେ ତନୟେ ଜାତ ହୋଇଲେ ।
ଅଗ୍ନିର ତେଜ ପ୍ରାୟେ ପାଞ୍ଚପୁତ୍ର ଦିଶିଲେ ॥୧୭॥
ରତ୍ନାବଳୀର ଗର୍ଭେ ଦୁଇପୁତ୍ର ଉତପନ ।
ଏସନେକେ ଲୋମପାଦର ପାଞ୍ଚ ନନ୍ଦନ ॥୧୮॥
ପ୍ରୋହିତ ମନ୍ତ୍ରୀକି ତନୟେ ଉପୁଜିଲା ।
ଲୋମପାଦ ରାଜ୍ୟେ ଉଛବ ଆନନ୍ଦ ହୋଇଲା ॥୧୯॥

X X X

ଲୋମପାଦର ଯହୁଁ ପୁତ୍ର ଉପୁଜିଲା ।
ଦେଖିଣ ଦଶରଥ ନୃପତି ସାନନ୍ଦ ହୋଇଲା ॥୧॥
ଋଷିଶୃଙ୍ଗର ଆଗେ ପୁଛଇ ଦଶରଥ ।
ଭୋ ମହରଷି କେସନେକେ ମୋତେ ଦେଉ ପୁତ୍ର ॥୨॥
ଯାବତ କାଳକୁ ଯେ କଥା ଥାଉ ରହି ।
ତୋହର ପ୍ରସାଦେ ପୁତ୍ରବନ୍ତ ହୋଇଲଇ ମୁହିଁ ॥୩॥
ଋଷିଶୃଙ୍ଗ ବୋଲନ୍ତି ତୁ ହୋ ନୃପତି ଏବେ ବୃଧ ବୟସ ।
ବ୍ରତ ଆଚାର କରିବୁ ଏକ ବରଷ ॥୪॥
ଅନ୍ତଃପୁରେ ତୋହର ଅଛନ୍ତି ଯେତେ ନାରୀ ।
ସମସ୍ତେ ଥିବେ ବ୍ରତ ନିୟମ କ୍ରିୟା ଆଚରି ॥୫॥
ତଦ ଅନ୍ତରେ ଯାଗରେ ଆହୁତି ମୁହିଁ ଦେବି ।
ଦିଗପାଳନ୍ତ ମନାଇଁ ଗ୍ରହନ୍ତ ତୋଷିବି ॥୬॥
ଯେତେ ଯୁବତୀ ତୋହର ବ୍ରତବିଧିରେ ଥିବେ ।
ଚରୁ ଭୁଞ୍ଜନ୍ତେ ସେହୁ ପୁତ୍ର ପାଇବେ ॥୭॥
ସଂସାର ବେଭାର ଯେସନେକ ଆଚାର ।
ଦଶମାସେ ଉପୁଜିବ ଏକ ଏକ କୁମର ॥୮॥
ଶୁଣି ଦଶରଥ ଯେ ହୋଇଲେ ହରଷ ।
କରପତ୍ର ଯୋଡ଼ି କହଇ ମୁନିବର ପାଶ ॥୯॥
ଭୋ ତପୋଧନ ମୋହର ରାଜ୍ୟକଇ ଯିବା ।
ବ୍ରତବିଧାନ କଥା ସମସ୍ତ ରାଣୀମାନଙ୍କୁ କହିବା ॥୧୦॥
ଆବର ବିଶେଷେ ସେ ତୋହର ମୁଖ ଦେଖନ୍ତୁ ।
ଯେତେକ ପାତେକ ତାହାର ବିନାଶ କରନ୍ତୁ ॥୧୧॥
ଦୋହିତାକୁ ପାଳିଲେ ଯେ ମୋହର ସକଳ ଯୁବତୀ ।
ଯାବତ ଦେଖି ହୋଇବେ ତୋଷମତି ॥୧୨॥
ଶୁଣିଣ ମହରଷି ସନମତ କଲେ ।
ଦଶରଥଙ୍କର ତୁଲେ ଯେ ଅଯୋଧ୍ୟାକୁ ଗଲେ ॥୧୩॥
ନବରେ ପ୍ରବେଶ ହୋଇଲେ ମହାମୁନି ।
ଝିଅ ଲୁଆଁଇକି ବନ୍ଦାବନ୍ତି ଦଶରଥ କାମେନୀ ॥୧୪॥
ଅନ୍ତଃପୁରେ ମୁନି ବିଜୟେ କରନ୍ତି ।
ନଗ୍ରର କାମେନୀ ଦେଖିତ ଆସନ୍ତି ॥୧୫॥
ଦୂବା ଅକ୍ଷତ ମୁନିର ଶିରେ ଦେଲେ ।

କନ୍ୟାକୁ ଏ ବର ସାଦ୍ରିଶ ବୋଲି ସକଳେ ବୋଇଲେ ॥୧୬॥
ଲବକୁଶେ କହନ୍ତି ଶ୍ରୀରାମ ଆଗର ।
ଶୁଣନ୍ତି ସଂଜାତ କଥା ବଶିଷ୍ଠ ମୁନିବର ॥୧୭॥
ଅଯୋଧ୍ୟା ନଗର ନାରୀ ଯହୁଁ ସ୍ୱରୂପ ଶୁଣିଲେ ।
ଏକର ଆଗରେ ସେ ଧୀର କରି କହିଲେ ॥୧୮॥
ଏ କଥାମାନ ଏ ଜାଣିଲା କାହିଁଥାଇ ।
ଆମ୍ଭର କଟକର ଦେଖିଲା ଆମ୍ଭର ନାହିଁ ॥୧୯॥
ଥୋକେ କହନ୍ତି ଏ କେବଣ ଦେଶର କୁମାରଇ ।
ଆନର ବାକ୍ୟ ଶୁଭଇ କି ଏସନେକ ସୁସର ଧ୍ୱନିହି ॥୨୦॥
ସଭାରେ ଚହଳ ହୋଇଲାକ ଯହୁଁ ।
ମଉନ ହୋଇ ଲବକୁଶ ବସିଲେକ ତହୁଁ ॥୨୧॥
ତକ୍ଷଣେ ସବୁଙ୍କୁ ହିଁ ନିଶବଦ କଲା ।
ଯେବେ ସେ ଲବକୁମର ନାଦ ହୁଂକାରିଲା ॥୨୨॥
କୁଶକୁମର ଧରଇ ନାଦ ଟାଣି ।
ସଭା ନିଶିବଦ ହୋଇଲା ତେଲରେ ମାଖି ଜାଣି ॥୨୩॥

X X X

ଲବକୁମର ଗାବଇ ଗୁଣ୍ଡରିକେରୀ ଗୀତ ।
ଯହୁଁ ଆସନେ ବିଜୟେ ବିଭାଣ୍ଡେକର ସୁତ ॥୧॥
ତହୁଁ ଦଶରଥଙ୍କୁ ଯେ ହକାରି ସନିଧାନ ।
ବ୍ରତର ବିଧାନ କହନ୍ତି ମହାମୁନ୍ୟ ॥୨॥
ଋଷିର ବାକ୍ୟ ରାଜା ଯହୁଁ ଶୁଣିଲା ।
ଅନ୍ତଃପୁରେ ତତକ୍ଷଣେ ପ୍ରବେଶ ହୋଇଲା ॥୩॥
ଏକଇଶ ଶତ ଦଶରଥର ମହାଦେଇ ।
ମୁନିଙ୍କର ବାକ୍ୟ ବିସ୍ତାରି ତାହାଙ୍କର ଆଗରେ କହି ॥୪॥
ଯତିଇନ୍ଦ୍ର ହୋଇ ବରକ୍ଷେକ ଥିବ ।
ତଇଳ ପୁଷ୍ପ ଆମିଷ ତେଜିବ ବଇରାଗ ନୋହିବ ॥୫॥
ପ୍ରାତ ସ୍ନାହାନ କରିବଇ ନିତି ।
ଉଦୟେ ଅସ୍ତେ ଆଦିତ୍ୟଙ୍କୁ ହୋଇବ ଭଗତି ॥୬॥
ସମୟେ ପାକ ପାଞ୍ଚନ କରିବ ।
ସାୟଂ ବେଳ ମଉନ ହବିଷ୍ୟ ଭୁଞ୍ଜିବ ॥୭॥
ଯେ ଏତେ କରିପାରଇ ସେ ହୋଇବ ପୁତ୍ରବତୀ ।
ଏସନେକ ଆଚାର ମୋତେ କହିଲେ ମହାଯତି ॥୮॥
ରାଜାର ବଚନ ଶୁଣି ସକଳ ଯୁବତୀ ।
ପୁତ୍ର ପାଇବା ନିମନ୍ତେ ସମସ୍ତେ ସନମତ କରନ୍ତି ॥୯॥
ନୃପତି ରାଜ୍ୟରେ କରାବନ୍ତି ଉଛବ ।
ସବୁରି ଦ୍ୱାରେ ବସାବନ୍ତି ପୂର୍ଣ୍ଣକୁମ୍ଭ ॥୧୦॥
ଅଯୋଧ୍ୟା ଦେବତାର ନାମ ଲୋକେଶ୍ୱରୀ ।
ଛାଗଳ ମହିଷି ଦେଇ ତାହାଙ୍କୁ ତୋଷ କରି ॥୧୧॥
ନବର ଚଉକତିକି ବେଢ଼ି କରନ୍ତି ନୃତ୍ୟଗୀତ ।
ବୀର ତୂର ଶବଦ ଶୁଭିଲା ଗଗନ ପଥ ॥୧୨॥
ଜମଦଗ୍ନିର ପୁତ୍ର ଯେ କପିଳ ତୀର୍ଥେ ଥିଲା ।
ବୀର ତୂର ଶୁଣି ସେ କୋପେଣ ଅଇଲା ॥୧୩॥
ଅଯୋଧ୍ୟା ନଗ୍ରରେ ସେ ହୋଇଲେ ପ୍ରବେଶଇ ।
ଦେଖି ଦଶରଥ ଯେ ପୟର ଧରି ସମ୍ଭାଷଇ ॥୧୪॥
ପ୍ରଶୁରାମ ପୁଛଇ କିସ ଉଛବ କରୁ ।
ବୀରତୂର ଶବଦ ଶୁଣି ମୁହିଁ ଅଇଲି ବହୁତ ଦୂରୁ ॥୧୫॥
ଦଶରଥ କହଇ ଶୁଣ ପ୍ରଶୁଧର ।
ଋଷ୍ୟଶୃଙ୍ଗ ମହରଷିକି ଆଣିଲି ମୋହର ପୁର ॥୧୬॥
ଶାନ୍ତନା ନାମେ କନ୍ୟା ବିଭାଏଣ ଦେଲି ଯହୁଁ ।
ମୋତେ ପୁତ୍ର ଉପୁଜାଇବ ବୋଲି ଦୟା କଲା ତହୁଁ ॥୧୭॥
ଯାଗ ଆରମ୍ଭ କରି ମୁନିବର ।
ତେଣୁ ସେ ଉଛବ ହୋଉଛି ମୋହର ପୁର ॥୧୮॥
ଶୁଣିଣ ହରଷ ହୋଇଲେ ଭୃଗୁପତି ।
ଦଶରଥ ରାଜାକୁହି ବିଶ୍ୱାସ କଥା କହନ୍ତି ॥୧୯॥
ତୋହର ନଗରେ ତୁହି ନ କରସି ଯାଗ ।
ଋଷିଶୃଙ୍ଗ ଘେନି ତୁହି କୃଷ୍ଣବେଣୀକି ଯାସି ବେଗ ॥୨୦॥
ସେ ପୁଣ୍ୟସ୍ଥାନ ଜଗତ୍ରେ ବିଦ୍ୟମାନ ସାର ।
ଅନନ୍ତ ଶେଯ୍ୟାରେ ଶୟନ ତହିଁନା କରନ୍ତି ଚକ୍ରଧର ॥୨୧॥
ସେ ପୁଣ୍ୟସ୍ଥାନେ ଯାଗ କଲେ ପୁତ୍ର ପାଇବୁ ।
ମୋହର ନାମ ଜେଷ୍ଠ ତନୟକୁ ଦେବୁ ॥୨୨॥
ଏ ନଗ୍ରେ ଅଛନ୍ତି ଯେ ଚଉବିଂଶ ଡାକେଣୀ ।
ଗର୍ଭବାସ ପୁତ୍ରଙ୍କୁ ସେ ଭକ୍ଷନ୍ତି ରାଢ଼େଣୀ ॥୨୩॥
ପୂର୍ବେ ଇନ୍ଦ୍ର ତହିଁ ଶ୍ୟାପ ପାଇଲେ ।
ସେହି ମୁକତ ହୋଇବେ କୃଷ୍ଣବେଣୀକି ଗଲେ ॥୨୪॥
ଏସନେକ କହି ପ୍ରଶୁରାମ ତହୁଁ ଗଲା ।
ନିଜ ଆଶ୍ରମେ ସେ ପ୍ରବେଶ ହୋଇଲା ॥୨୫॥
ଯେତେ କହିଲେ ରେଣୁକାର ନନ୍ଦନ ।
ଋଷିଶୃଙ୍ଗ ଅଗ୍ରତେ ତାହା କହିଲେ ରାଜନ ॥୨୬॥

ଋଷିଶୃଙ୍ଗ କହନ୍ତି ଶୁଣସି ମହାରାୟେ ।
ପ୍ରତକ୍ଷେ ବିଷ୍ଣୁ ଯେ ଜମଦଗ୍ନିର ତନୟେ ॥୨୭॥
ତାହାର ବାକ୍ୟ ଲଂଘିବ କାହାର ବୋଲେ ।
କୋପ କରିବେ ନା ସେ ବଚନ ଲଂଘିଲେ ॥୨୮॥
ଆବର କଥା ଏକ ଶୁଣସି ନୃପତି ।
ବ୍ରତ ଆଚରିଲେ ଟିକି ତୋହର ଯୁବତୀ ॥୨୯॥
ତାହାକଇ ହକାରି ପୁଛସି ହୋ ଏବେ ।
ବ୍ରତ ପରିମାଣି ଅଛନ୍ତି ସେ ଯେବେ ॥୩୦॥
ସେ ଯୁବତୀଙ୍କୁ ଘେନି କୃଷ୍ଣବେଣୀକି ଯିବା ।
ଶୁଭ ଅନୁକୂଳେ ଯାଇ ତହିଁ ଯାଗ କରିବା ॥୩୧॥
ଯେବଣ କାମେନୀ ବ୍ରତ ଭ୍ରଷ୍ଟ କଲେ ।
କିସ କାର୍ଯ୍ୟ ହୋଇବ ସେ ଯୁବତୀକି ନେଲେ ॥୩୨॥
ଶୁଣି ଦଶରଥ ଅନ୍ତଃପୁରେ ପଶଇ ।
ସକଳ ଭାରିଯାକୁ ସେ ହକାରିଣ ପୁଛଇ ॥୩୩॥
ଯେବଣ ବ୍ରତ କଥା ସଂକଳ୍ପ କଲ ।
ପରିପାଳି ଅଛ ନା ମୁନିଙ୍କର ବୋଲ ॥୩୪॥
ମୋହର ଆଗରେ ସ୍ୱରୂପ କରି କହିବ ।
ମିଥ୍ୟା କହିଲେ ଋଷିଙ୍କର ତହିଁ ଶ୍ୟାପ ପାଇବ ॥୩୫॥
ସ୍ୱାମୀର ବଚନ ଯହୁଁ ନିଷ୍ଠୁର ଶୁଣିଲେ ।
ସମସ୍ତ ଯୁବତୀ ମଥାପୋତି ସମାସ୍ୟା ନ ଦେଲେ ॥୩୬॥
ବ୍ରତ ଆଚରି ନ ପାରିଲେ ସକଳ କାମେନୀ ।
କରଯୋଡ଼ି କହନ୍ତି ପାଟ ମହାଦେଈ ତିନି ॥୩୭॥
(କକୟୀ କଉଶୁଲା ଆବର ସୁମିତ୍ରା ।
ଏହୁ ବୁଝାବନ୍ତି ଶୁଣ ପ୍ରାଣନାହା) ॥୩୮॥
ଆମ୍ଭେ ଅଛୁ ସ୍ୱାମୀର ବଚନେ ।
ଶୁଣି ହରଷ ହୋଇଲେ ଦଶରଥ ରାଜନେ ॥୩୯॥
ତହୁଁ ଆସି କହଇ ନୃପତି ଋଷିଶୃଙ୍ଗର ଆଗେ ।
ପାଟ ମହାଦେଈ ଅଛନ୍ତି ତିନିହେ ବ୍ରତଯୋଗେ ॥୪୦॥
ମୁନି କହନ୍ତି ଯେସନେ ବିଧାତା ନିର୍ମାଣ ।
ସେ କିସ ଅନ୍ୟସ୍ଥା ହୋଇବ ମହାରାଣ ॥୪୧॥
ଚାଲ ଏବେ ଯିବା ସନ୍ୟ ସଜକର ।
ଅନ୍ତଃପୁର ରାଣୀ ସହିତେ କନେକ ଭଣ୍ଡାର ॥୪୨॥
ଋଷିଶୃଙ୍ଗ ସହିତେ ଦଶରଥ ତିନି ମହାଦେଈକି ଘେନିଗଲା ।
ତିରିଶ ଦିବସେ କୃଷ୍ଣବେଣୀରେ ପ୍ରବେଶ ହୋଇଲା ॥୪୩॥
ବଶିଷ୍ଠ ମହାଯତି ଅଯୋଧ୍ୟାରେ ରହିଥିଲେ ।
ଆବର ପାତ୍ରମନ୍ତ୍ରୀ ସଙ୍ଗତେଣ ଥିଲେ ॥୪୪॥
(ଯାଗ୍ୟଂ ଆରୋପ ତହିଁ କରନ୍ତେ ମହୀପାଳ ।
ଶୁଭ ତିଥି ବିଚାରିଣ ଘେନିଲେ ଅନକୂଳ) ॥୪୫॥
ନିଷାଦ ନାମେଣ ସେ ଭୂମିର କାରେଣୀ ।
ତାହାର ତୁଲେ ମଇତ୍ର ହୋଇଲେ ଦଶରଥ ନୃପମଣି ॥୪୬॥
ସେ ଋଷିଶୃଙ୍ଗଙ୍କୁ କରଇ ଭଗତି ।
ଭୋ ମୁନି କେସନେକେ ମୋତେ ହୋଇବ ସନ୍ତତି ॥୪୭॥
ଋଷିଶୃଙ୍ଗ ବୋଲଇ ତୁହି ରଖସି ଯାଗଦ୍ୱାର ।
ତୋହର ଭାରିଯା ଧୂମ କରଉ ଆହାର ॥୪୮॥
ତଦ ଅନ୍ତରେ ଯାଗ ଆରୋପଣ କରନ୍ତି ।
ଗ୍ରହନ୍ତ ତୋଷ ନିମନ୍ତେ ରଙ୍ଗଧାନ ଆହୁତିରେ ଦିଅନ୍ତି ॥୪୯॥
ସମିଧ କାଠ କୁଶ ହବି ରଙ୍ଗପୁଷ୍ପ
ଘୃତ ଯବ ଦେଇ ଦିଗପାଳନ୍ତ କରନ୍ତି ତୋଷ ॥୫୦॥
ନିଷାଦ ଶବର ଯାଗଦ୍ୱାର ରଖଇ ।
ଭାରିଯାକଇ ଘେନଇ ସେ ଧୂମ ପିବଇ ସେ କିରାତସେନଇ ॥୫୧॥
ତେଣେ ସେ ଯୁବତୀ ଗର୍ଭବାସ ହୋଇଲା ।
ଶବରୀ ନାରାୟଣ ନିଷାଦ ଗର୍ଭେ ଉପୁଜିଲା ॥୫୨॥
ଅଯୋଧ୍ୟାରେ ଚଉବିଂଶ ଡାକେଣୀ ଯେ ଥିଲେ ।
ରାଜାର ସନ୍ୟର ସଙ୍ଗତେ କୃଷ୍ଣବେଣୀକି ଗଲେ ॥୫୩॥
ଅଯୋଧ୍ୟା ନଗ୍ର ସେ ତେଜିଲେକ ଯହୁଁ ।
ତେଜ ଡାକେଣୀଙ୍କର କ୍ଷୀନ ହୋଇଲାକ ତହୁଁ ॥୫୪॥
ନିଷାଦକଇ ଦେଖି ଡରେ ପଶିତ ନ ପାରିଲେ ।
ହୋମଘର ଉପରେ ସେ ବେଢ଼ିଣ ବସିଲେ ॥୫୫॥
ଧୂମପାନେଣ ସେ ଗର୍ଭବାସ ହୁଅନ୍ତି ।
ଚଉବିଂଶ ଡାକେଣୀ ବାନର ଉପୁଜାନ୍ତି ॥୫୬॥
ବିମ୍ବ ନାମେଣ ସେ ଯେବଣ ଅପଛରୀ ।
ଦୁଇ ପୁତ୍ର ଗର୍ଭେ ସେ ଧଇଲାକ ସେ ନାରୀ ॥୫୭॥
ପଞ୍ଚବିଂଶ ବାନର ଉପୁଜାଇଲେ ଯହୁଁ ।
ମୁକତ ହୋଇ ସ୍ୱର୍ଗକଇ ଗଲେ ତହୁଁ ॥୫୮॥
(ପୁତ୍ର ଜାତ କରି ସେ ଗଲେ ସ୍ୱର୍ଗପୁରୀ ।
ଅନ୍ତେଣ ସେ ଶ୍ରୀରାମଙ୍କୁ ପୀରତି ସର୍ବେ କରି) ॥୫୯॥
ସେ ପଞ୍ଚବିଂଶ ମର୍କଟ ପର୍ବତେ ରହିଲେ ।
ଯୁଧରବେଳେ ସେ ଯୂଥପତି ହୋଇଲେ ॥୬୦॥

ତାହାନ୍ତ ଘେନି ରାମ ସମର ଘୋର କଲା ।
ବିସର୍ବାର ତନୟେ ଦଶକନ୍ଧ ଛେଦିଲା ॥୬୧॥
(ରକ୍ଷ ବାନର ସେ ଯେତେ ବନସ୍ତରେ ଥିଲେ ।
ଧୂମ ପିବନ୍ତେ ସେ କାମେନୀ ଗର୍ଭ ହୋଇଲେ ॥୬୨॥
ସର୍ବେ ରକ୍ଷ ପ୍ରସବିଲେ ରକ୍ଷପୁତ୍ର ।
ସେ ସେ ରାମଚନ୍ଦ୍ରଙ୍କର ହୋଇଲେ ଭଗତ) ॥୬୩॥
ଶ୍ରୀରାମ ଶୁଣି ବଶିଷ୍ଠଙ୍କ ମୁଖ ଚାହିଁ ।
ଭୋ ମୁନି ସ୍ୱରୂପ କଥା ଏ ତ ପ୍ରକାଶନ୍ତି ଦୁଇଭାଇ ॥୬୪॥
ମୋହର ଜନ୍ମକାଳେ ଆଗେ ମର୍କଟ ଜନ୍ମ ହୋଇଲେ ।
ତେବେ ସେ ସଂଗ୍ରାମେ ମୋହର ତହୁଁ ଆଗ ଯୁଦ୍ଧ କଲେ ॥୬୫॥
ବଶିଷ୍ଠ କହନ୍ତି ଏବେ ଥିର ହୋଇଣ ଥାସି ।
ଗ୍ରନ୍ଥ ଉକତ ବେଳେ ଆନ କଥା ନ ପ୍ରକାଶସି ॥୬୬॥
ଲବକୁମର କହଇ ବିଚିତ୍ର ରାମାୟେଣ ।
ସାବଧାନ ହୋଇ ତୁମ୍ଭେ ସମସ୍ତେ ହେ ଶୁଣ ॥୬୭॥
ଆଷାଢ଼ ଶୁକ୍ଳ ତ୍ରୟୋଦଶୀ ଚନ୍ଦ୍ରବାର ।
ସେ ଦିନ ଶ୍ରବଣା ନକ୍ଷତ୍ର ପ୍ରଚାର ।
(ଶୁଭ ଲଗ୍ନ ବିଚାରିଲା ଋଷିଶୃଙ୍ଗ ମୁନିବର) ॥୬୮॥
ବେଦ ବିଧାନେ ସେ ଋଷି ଯାଗ କଲା ।
ଅନନ୍ତ ଶେଯ୍ୟା ଉପେଖି ବିଷ୍ଣୁନାଥ ଯାଗରେ
ପ୍ରବେଶ ହୋଇଲା ॥୬୯॥
ଗରୁଡ଼ ଚଢ଼ି ନାରାୟଣ ଉଭା ହୋଇଲା ଯହୁଁ ।
ଦଣ୍ଡପ୍ରଣାମ କରି ମୁନି ସୁତିଲାକ ତହୁଁ ॥୭୦॥
ଉଠ ବୋଲି ଆଜ୍ଞା ଦେଲେକ ଶ୍ରୀହରି ।
ତହୁଁ କରପତ୍ର ଯୋଡ଼ି କହନ୍ତି ତପଚାରୀ ॥୭୧॥
ଭୋ ଦେବ ଏଥକୁ କିମ୍ପା ବିଜୟେ କଲୁ ।
ମୁହିଁ ପଶୁ ଯୋନିରେ ଜାତ ମୋତେ ଶଙ୍କା କରାଇଲୁ ॥୭୨॥
ଶ୍ରୀହରି କହନ୍ତି ତୁହି ଭୟେ ନ କର ।
ତୋହର ହୋମେ ସେ ମୁହିଁ ହୋଇବି ଅବତାର ॥୭୩॥
ଏ ଦଶରଥ ଅନେକ ତପ କଲା ।
ମୋତେ ପୁତ୍ର ଇଛାରେ ବର ପ୍ରସାଦ ମାଗିଲା ॥୭୪॥
ଯେତେକ କଥା ଶ୍ରୀହରି ଋଷିଶୃଙ୍ଗକୁ କହିଲେ ।
ଶ୍ରୀରାମର ଆଗେ ଲବକୁଶେ ଗୀତେଣ ଗାଇଲେ ॥୭୫॥
ଋଷିଶୃଙ୍ଗ କହଇ ଶୁଣସି ଗଦାଧାରୀ ।
ତୁହି ଗର୍ଭବାସ କେସନେକେ ହୋଇବୁ ଚକ୍ରଧାରୀ ॥୭୬॥
ଶ୍ରୀକୃଷ୍ଣ କହନ୍ତି ମୁହିଁ ଦୁଃଖ ନ ପାଇଲେ ।
ରାବଣ ମରଇ କି ଆନର ବୋଲେ ॥୭୭॥
ତେତିଶି କୋଟି ଦେବତାଙ୍କୁ କଲାକ ବଶାବୃତ ।
ଏସନେକେ ବର ଦେଲେ ଉମାଦେବୀର କାନ୍ତ ॥୭୮॥
ରାବଣର ବଧ୍ୟ ଅର୍ଥେ ଏ ମୋର ଭାବେନୀ ।
ଜନେକର ଘରେ ଉପୁଜି ଅଛି ସୀତା ନାମେ ଜିଘ୍ନସେନୀ ॥୭୯॥
ମୁଇ ଉପୁଜି ସୀତାକଇ ବିଭା ହୋଇବି ।
ଜାନକୀକି ଘେନି ମୁହିଁ ବନବାସ ଯିବି ॥୮୦॥
ବନସ୍ଥୁ ଜାନେକୀକି ହରିନେମ ଦଶମାଥ ।
ତେବେ ସେ ରାବଣର ବଂଶ କରିବି ନିପାତ ॥୮୧॥
ଋଷିଶୃଙ୍ଗ କହଇ ଯେବଣ ତ ହୋଇବୁ ।
ଦୁଇ ଭୁଜେ ସେ ଧନୁଶର ବହିବୁ ॥୮୨॥
କିଛି ହିଁ ନ ଜାଣିମୁ ଗତଆଗତ ।
ମନୁଷ୍ୟ ଆକାର ସେ ପ୍ରଚରିବ ତୋହର ଚିତ୍ତ ॥୮୩॥
ଚତୁର୍ଭୁଜେ ଦେଖିଲେ ସମସ୍ତେ ହୋଇବେ ମୁକତି ।
ଦେବଗଣମାନେ ମୋତେ ଦେବେ ଅପକ୍ଷାତି ॥୮୪॥
ତୁଇ ବିର୍ଷ୍ଣୁନାଥ ସତ୍ୟ ଉଚାରୁ ଯେବେ ।
ତେବେ ସେ ପ୍ରତେ ମୁହିଁ କରଇ ନା ତେବେ ॥୮୫॥
ଋଷିଶୃଙ୍ଗ ବଚନ ଶୁଣି ହୃଷୀକେଶ ।
ସତ୍ୟ ଉଚାରି ଅଗ୍ନିରେ ଦେଲେ ଝାସ ॥୮୬॥
ବେଦମନ୍ତ୍ରେ ଆହୁତି ଦିଅଇ ବିଭାଣ୍ଡେକ ସୂନ ।
ଅଶୁନି ଶୁକଳ ଦଶମୀ ଯାଗ ହୋଇଲା ସମ୍ପୂର୍ଣ୍ଣ ॥୮୭॥
ଯତିଇନ୍ଦ୍ର ହୋଇ ଋଷିଶୃଙ୍ଗ ଥିଲା ।
ବିର୍ଷ୍ଣୁନାଥ ସୁମରି ପୂର୍ଣ୍ଣଆହୁତି ଦେଲା ॥୮୮॥

X X X

ପଣ୍ଡିତବାର ଅନୁରାଧା ନକ୍ଷତ୍ର ।
ଚରୁ ଅନଳୁ କାଢ଼ନ୍ତେ ତପୋବନ୍ତ ॥୧॥
ମୃତିବନ୍ତ ହୋଇ କହଇ ବହତି ।
ଶୁଣ ଋଷିଶୃଙ୍ଗ ବାଳୁତ ମହାଯତି ॥୨॥
ଏ ଚରୁ ତପୋଧନ ବିନାଶ(ନ) କରିବୁ ।
ଏହି କ୍ଷଣି ଜାତ ହୋଇବ ତୁହି ଯେବେ ପୁତ୍ର ଲୋଡ଼ିବୁ ॥୩॥
ମୁନିବର କହନ୍ତି ତୁହି ନ କହ ଏସନ ବାଣୀ ।
ଅନେକ କଷ୍ଟେ ଅଛନ୍ତି ଦଶରଥର ତିନିରାଣୀ ॥୪॥
ଏ ଚରୁ ସେ ତିନି ଭଗ୍ନୀ ଭୁଞ୍ଜିବେ ।

ସଂସାର ଆଚାରେଣ ଶୃଙ୍ଗାର କଥା ଆଚାରିବେ ॥୫॥
ତେମନ୍ତେ ସେ ପୁତ୍ର ହୋଇବେ ଉତପତି ।
ଶୁଣି ସନମତ କଲେ ବୃତ ହେତି ॥୬॥
ଅନଲୁ ମହରଷି ଚରୁ କାଢ଼ଇ ।
ଦଶରଥକୁ ହକାରି ବିଶ୍ୱାସ କରି କହଇ ॥୭॥
ଏ ଚରୁ ଘେନି ତୁହି ଭିତରକୁ ଯାସି ।
ତିନି ମହାଦେଈଙ୍କି ସେ ଚରୁ ନେଇ ଦେସି ॥୮॥
ଏ ଚରୁ ସେ ଭୋଜନ କରିବେ ।
ତିନି ଭାବାନୀ ତୋହର ପୁତ୍ରବନ୍ତେ ହୋଇବେ ॥୯॥
ନୃପତି(କ)ରେ ଚରୁ ଦେଲେ ତପୋଧନି ।
ଅନ୍ତଃପୁରକୁ ଗଲେ ରାଜା ହସ୍ତରେ ଚରୁ ଘେନି ॥୧୦॥
ତିନି ଭାରିଯାନ୍ତ ସନିଧେ ହକାରଇ ।
ମନ ଉଚ୍ଛାହାରେ ଭୋଳ ହୋଇଲେ ନୃପବରଇ ॥୧୧॥
ପଛେ କକୟା ଆଗେ କଉଶୁଲ୍ୟା ।
ଦୁଇ ଭାରିଯାଙ୍କର ହସ୍ତରେ ନୃପତି ନେଇ ଦେଲା ॥୧୨॥
ପଛେଣ ଅଇଲା ସୁମିତ୍ରା ଦେଈ ।
ରାଜାର ମୁଖ ଚାହିଁ କୌଶଲ୍ୟା ଦେବୀ କହି ॥୧୩॥
ଭୋ ଦେବ କିମ୍ପାଇଁ ତୁହି ଅବିଚାର କଲୁ ।
ଆମ୍ଭକଇ କିମ୍ପା ତୁହି ଚରୁଅର୍ଦ୍ଧ ଦେଲୁ ॥୧୪॥
ସୁମିତ୍ରାହି ଯେ ବ୍ରତ ଆଚରିଣ ଥିଲା ।
ଏହାକଇ କିମ୍ପା ତୋହର ଦୟା ନୋହିଲା ॥୧୫॥
(ସୁମିତ୍ରା ବ୍ରତ ଆଚରି ଅଛଇ ମହାଦୁଃଖୀ ।
ଧାର୍ମିକ ବିବେକ ସେ ଅଟଇ ଚନ୍ଦ୍ରମୁଖୀ ॥୧୬॥
ଦଶରଥ କହଇ ମୁହିଁ ବୁଝି ତ ନ ପାରିଲି ।
ହରଷେ ତୁମ୍ଭ ଦୁଇ ଭଗ୍ନୀକି ଚରୁ ଦେଲି ॥୧୭॥
ତିନି ବହେଣୀଙ୍କର ତୁମ୍ଭର ଏକପିତା ।
ଗର୍ଭେ ତିନିଙ୍କି ଧଇଲା ଏକ ମାତା ॥୧୮॥
ଧର୍ମର ଯୋଗେ ଏକ ଭ୍ରଥା ପାଇଲ ।
ତିନିହେଁ ମହାକଷ୍ଟେ ବ୍ରତ ଆଚରିଲ ॥୧୯॥
ତିନି ଭାଗ କରି ତିନିହେଁ ଚରୁ ପାନ କର ।
ମୋହର କଥାକୁହିଁ ଅଭିମାନ ନ କର ॥୨୦॥
ସ୍ୱାମୀର ବଚନ ଶୁଣିଲେକ ଯହୁଁ ।
କଉଶୁଲ୍ୟା କକୟା ଚରୁ ତିନିଭାଗ କଲେ ତହୁଁ ॥୨୧॥
ସୁମିତ୍ରାର ମୁଖ ଚାହିଁ କଉଶୁଲ୍ୟାଏ କହନ୍ତି ।
ଏ ଚରୁ ଭୁଞ୍ଜ ହରଷ ହୋଇ ମତି ॥୨୨॥
ଚରୁ ତିନିଭାଗ ଯହୁଁ ସୁମିତ୍ରା ଦେଖିଲା ।
କର ପତ୍ର ଯୋଡ଼ି ସୁମିତ୍ରା ଭଗ୍ନୀକି କହିଲା ॥୨୩॥
କିପାଇଁ ଗୋ ଚରୁ ତିନିଭାଗ କଲ ।
ମୋତେ ଭଗ୍ନୀହେ ଅକଲ୍ୟାଣ ଚିନ୍ତିଲ ॥୨୪॥
ସାନ ଭଗ୍ନୀ ମୁହିଁ କନେଷ୍ଟ ସପତଣୀ ।
ଦାସୀଙ୍କର ସଙ୍ଗତେ ଏହାକଇ ଗଣି ॥୨୫॥
ବଡ଼ ସପତଣୀକି ଯେ କରଇ ଅମରିଷ ।
ସକଳ ଧର୍ମ ତାର ହୁଅଇ ବିନାଶ ॥୨୬॥
ସ୍ୱାମୀ ଯେବେ ତୁମ୍ଭ ଦୁହିଁକି ଚରୁ ଦେଲେ ।
ଧର୍ମ ହୋଇବ ନା ମୋହର ସରି ଭାଗ ଭୁଞ୍ଜିଲେ ॥୨୭॥
ତୁମ୍ଭେ ଦୁଇ ଭଗ୍ନୀ ଚରୁ ଭୁଞ୍ଜହ ।
ତୁମ୍ଭର ଉଚିଷ୍ଟ ପଛେ ମୋତେ କୋଣେ କୋଣେ ଦିଅ ॥୨୮॥
ଏସନେକ କହି ସୁମିତ୍ରା ଚରୁ ଏକଭାଗ କଲା ।
ଦୁଇ ଭଗ୍ନୀଙ୍କର ହସ୍ତେ ଚରୁ ଦୁଇ ଭାଗ କରି ଦେଲା ॥୨୯॥
ଡାହାଣ ହସ୍ତର ଚରୁ କଉଶୁଲ୍ୟାକୁ ଦେଇ ।
ବାମ ହସ୍ତର ଚରୁ ଘେନିଲା କକଇ ॥୩୦॥
ହରଷ ଚିତ୍ତେ ଦେବୀ କଉଶୁଲ୍ୟା ।
ବିଷ୍ଣୁ ନାଥକଇ ସୁମରି ଚରୁ ଭୁଞ୍ଜିଲା ॥୩୧॥
ତଦଅନ୍ତରେ କୟେକୟା ମହାଦେଈ ।
ସୁରପତିକି ସୁମରି ସେ ଚରୁ ଭୁଞ୍ଜଇ ॥୩୨॥
କଉଶୁଲ୍ୟା ଦେବୀ ଆଚୋମନ ସାରିଲା ।
ସୁମିତ୍ରାକୁ ନେଇ ଚରୁ କୋଣେକ ଦେଲା ॥୩୩॥
କୟେକୟା ଦେଖଇ କଉଶୁଲ୍ୟାର ଦିଅନ୍ତେ ।
ସେ ହିଁ ଚରୁ ଦେଲେ ନେଇ ସୁମିତ୍ରାଙ୍କର ହସ୍ତେ ॥୩୪॥
ତେବେ ସେ ସୁମିତ୍ରା ହରଷ ହୋଇଲା ।
ଧର୍ମ ନାରାୟଣଙ୍କୁ ସୁମରି ଚରୁ ଭୁଞ୍ଜିଲା ॥୩୫॥
ତହୁଁଣ ବାହୁଡ଼ିଲେ ଦଶରଥ ନୃପତି ।
ଋଷିଶୃଙ୍ଗ ମହରଷି ଯାଗରେ ଅଛନ୍ତି ॥୩୬॥
ଦଶରଥକୁ ସେ କହନ୍ତି ମହାମୁନ୍ୟ ।
ଦାନ ଦକ୍ଷିଣା ଦେଇ ତୋଷ କରହ ବିଦ୍ୟୁଜନ ॥୩୭॥
ବୈଷ୍ଣବ ତପୋଧନ ଯେତେ ଅଛନ୍ତି ମାଗତା ।
ଯେ ଯାହାର ଅନରୂପେ କରସି ତୁହିଁ ଚିନ୍ତା ॥୩୮॥
ମୁନିବର ବଚନ ଶୁଣି ଦଶରଥ ମହୀପତି ।

ଦାନ ଦକ୍ଷିଣା ଦେଇ ରଞ୍ଜାଇ ସକଳ ମତି ॥୩୯॥
ରାଣୀକି ଘେନି ତହିଁ ଦଶରଥ ଅଇଲା ।
ଆଯୋଧା ନଗ୍ରେ ସେ ପ୍ରବେଶ ହୋଇଲା ॥୪୦॥
କଟକେ ଉଛବ କରାଇଲା ନୃପତି ।
ଅନ୍ତପୁରେ ବିଶ୍ରାମ କରନ୍ତି ତିନି ଯୁବତୀ ॥୪୧॥
ବୁଧା ସ୍ତିରୀ ଯେ ରଜବୀର୍ଯ୍ୟ ନ ଥିଲା ।
ଚରୁ ଭୁଞ୍ଜନ୍ତେ ଶରୀର ଉନ୍ମତ ହୋଇଲା ॥୪୨॥
ଦଶରଥ ନୃପତି ଶୃଙ୍ଗାରକୁ ଇଛଇ ।
ତିନି ମହାଦେଇ ତୁଲେ ମେଳ ଗଛଇ ॥୪୩॥
କାର୍ତ୍ତିକ ଶୁକଳ ତ୍ରୟୋଦଶୀ ଦିନ ।
ଶୁଭ ତିଥି ବାର ନକ୍ଷତ୍ର ବିଦ୍ୟମାନ ।
(ବିଛା ସଂକରାନ୍ତି କି ଭୋଗ୍ୟ ସେ ଦିନେଣ) ॥୪୪॥
ସେ ଦିନ କଉଶୁଲ୍ୟାଙ୍କର ତୁଲେ ନୃପତି ମେଳ ହୋଇ ।
ମାହେନ୍ଦ୍ର ଅନକୂଳେ ଗର୍ଭରେ ବୀର୍ଯ୍ୟ ରହି ॥୪୫॥
ମାର୍ଗଶିର କୃଷ୍ଣ ଦ୍ୱାଦଶୀର ରାତି ।
କକୟାଙ୍କର ସଙ୍ଗତେ ରମଣ ମହୀପତି ॥୪୬॥
ତୃତୀୟା ଗୁରୁବାର ପୁଷ୍ୟ ନକ୍ଷତ୍ର ।
ସୁମିତ୍ରା ତୁଲେ ରମଣ ସେ ରାତ୍ର ॥୪୭॥
ତିନି ଯୁବତୀ ଗର୍ଭବାସ ହୋଇଲେ ।
ଦିନେ ଦିନେ ଶରୀରେ ଆଳସ ବୁଝିଲେ ॥୪୮॥
ଅନ୍ତଃପୁରେ ରାଣୀ ମୃଦୁସୁଲୀ ପରିବାରୀ ।
ସମସ୍ତେ ତିନି ମହାଦେଇଙ୍କି ଥାନ୍ତି ମନ ହରି ॥୪୯॥
ସନିଧ୍ୟୁ କ୍ଷଣେ ନ ଛାଡ଼ଇ ରାଜନ ।
ମଧୁର କୋମଳ କହଇ ପ୍ରିୟ ବଚନ ॥୫୦॥
ଶୀତଳ ଆହାର ପୁଷ୍ପ ଝୀନ୍ନବାସ ।
ଅନେକ ପରିବାରୀ ଚାମର ଢାଳନ୍ତି ଚଉପାଶ ॥ ୫୧ ॥

X X X

ଏସନେକେ ଦଶ ମାସ ଯହୁଁ ସମ୍ପୂର୍ଣ୍ଣ ହୋଇଲା ।
ଶୁଭଲଗ୍ନେ କଉଶୁଲ୍ୟାଙ୍କର ପେଟ ବଥାଇଲା ॥୧॥
ଭାଦ୍ରବ ଶୁକ୍ଳ ଏକାଦଶୀ ଅର୍ଧରାତି ସଂଜାତ ।
ସେ ନିଶି କୌଶୁଲ୍ୟାଙ୍କର ଗର୍ଭେଣ ପୁତ୍ର ଜାତ ॥୨॥
ଅନେକ ଯୁବତୀ ସନିଧେଣ ଥିଲେ ।
ସୁସରେ କାମେନୀ ହୁଳହୁଳି ଦେଲେ ॥୩॥
ସ୍ୱର୍ଗକଇ ଶବଦ ଶୁଭିଲାକ ଯହୁଁ ।
ବୃହସ୍ପତି କି ହକାରି ଇନ୍ଦ୍ର ପୁଛଇ ତହୁଁ ॥୪॥
ଅଯୋଧ୍ୟା ନଗ୍ରେ ତ ମଙ୍ଗଳ ଶୁଭିଲା ।
ବୃହସ୍ପତି କହନ୍ତି ଆଜ ବିଷ୍ଣୁ ଜନମ ହୋଇଲା ॥୫॥
ଏବେ ସେ ସବୁଙ୍କରି ସରିଲା ଅରଷ୍ଟି ।
ଇନ୍ଦ୍ର ଆଜ୍ଞା ଦେଲା କର କୁସୁମ ବୃଷ୍ଟି ॥୬॥
ଇନ୍ଦ୍ର ଆଜ୍ଞା ଦେଲା ସେ କୁସୁମସେନ ।
ଅଯୋଧ୍ୟାରେ କୁସୁମ ବୃଷ୍ଟି ସେ କରଇ ଘନ ଘନ ॥୭॥
ହରଷ ହୋଇଲେ ଅଯୋଧ୍ୟା (ନ)ରନାରୀ ।
ଅନେକ ଯୁବତୀ ସେ ଅନ୍ତପୁରେ ପୂରି ॥୮॥
ସୁବର୍ଣ୍ଣର କାତି ଘେନି କୁମରଙ୍କର ନାଭି କାଟନ୍ତି ।
ସୁବାସ ନୀର ଜଳେ ଶରୀର ପଖାଳନ୍ତି ॥୯॥
ଗଜଦନ୍ତ ପଲଙ୍କେ ପାଟ ନେତ ସୁପାତି ପାଡ଼ିଲେ ।
ସ୍ଥଳି ସୁସଞ୍ଚ କରି ଓନ୍ତଡ଼ି ଓଛାଇଲେ ॥୧୦॥
(ସିଂହ ଶୁକଳ ପୌର୍ଣ୍ଣମୀ ସମ୍ପୂର୍ଣ୍ଣ ।
ରାତ୍ର ବେନି ଘଡ଼ିରେ କକୟା ପୁତ୍ର ଜନ୍ମ ॥୧୧॥
ସେହି ରଜନୀ ତିନି ପହରେ ।
ସୁମିତ୍ରା ପ୍ରସବିଲେ ବେନି କୁମରେ ॥୧୨॥
ତିନି କୁମାରଙ୍କୁ ନେଇ ଶୁଆଇଲେ ଜେଷ୍ଠକୁମାର ପାଶ ।
ଓନ୍ତଡ଼ି ଓଛାଇଲେ ବିବିଧ ଝୀନବାସ) ॥୧୩॥
ଉପରେ ଚାନ୍ଦୁଆ ଚଉକତି ପଡ଼ଇ ଟେରା ।
ଚନ୍ଦନ ଅଗର କାଠେ ଜାଳନ୍ତି ଆତରା ॥୧୪॥
ଦଶରଥକଇ ପୁତ୍ର ଦ୍ରଶନ କରାବନ୍ତି ।
ବଶିଷ୍ଠ ମହାମୁନି ଚାରି କୁମରନ୍ତ ଘେନନ୍ତି ॥୧୫॥
ବିଶ୍ୱାସ ଅମନାତ୍ୟ ସୁମନ୍ତ ମଧୁକେଶୀ ।
ରାଜାର ପୁତ୍ରନ୍ତ ସମସ୍ତେ ଦେଖନ୍ତି ଆସି ॥୧୬॥
ବଶିଷ୍ଠ କହନ୍ତି ଶୁଣ ଦଶରଥ ।
ଗୃହମେଧ ତହିଁକି ସେ ପ୍ରମନ୍ତ ଦୂତ ॥୧୭॥
ସେ ତୋହର ତିନି ଭାରିଯାଙ୍କର ଭାଇ ।
ଏହା ଦେଖି ସେ ମୋକ୍ଷ କରୁ ଦେହି ॥୧୮॥
ଶୁଣି ଦଶରଥ ହରଷ ହୋଇଲା ।
ଗୃହମେଧ ତହିଁ ଦୂତ ବରଗିଲା ॥୧୯॥
ରାଜାର ଆଜ୍ଞାରେ ଡଗରେ ଗଲେ ।
ଗୃହମେଧ ନୃପତିକି ଦଶଦିନେ ଯାଇ ଜଣାଇଲେ ॥୨୦॥
ଦଶରଥ ନୃପତିର ଉପୁଜିଲା ନନ୍ଦନ ।

ତୋହର ଭଗ୍ନୀଙ୍କର ଗର୍ଭେ ଉତପନ ॥୨୧॥
ଶୁଣି ଗୃହମେଧ ହରଷ ହୋଇଲା ।
ଦିବ୍ୟ ରତ୍ନ ଝୀନବାସ ବଧାଇ ସେ ଦେଲା ॥୨୨॥
ସାତ ପୁତ୍ର ଘେନି ଗୃହମେଧ ଆସଇ ।
ଅଯୋଧ୍ୟା ନଗ୍ରେ ସେ ତିନି ଦିନେ ପ୍ରବେଶଇ ॥୨୩॥
ଆସ୍ଥାନେ ବିଜୟେ ଦଶରଥ ରାଜନ ।
ଗୃହମେଧ ନୃପତି ଯାଇ କରଇ ଦ୍ରଶନ ॥୨୪॥
ବଶିଷ୍ଠଙ୍କର ଚରଣ ଧରି ପ୍ରଣମିତ ହୋଇଲା ।
ତଦଅନ୍ତରେ ଅନ୍ତଃପୁରକଇ ଗଲା ॥୨୫॥
ତିନି ବହେଣୀଙ୍କି ନମସ୍କାର ହୋଇଲା ।
ଉଠି ଉଭା ହୋଇ ସଧୀରେ ଚାହିଁଲା ॥୨୬॥
ଚାରି କୁମାରଙ୍କ ସନିଧକଇ ଯାଇ ।
ଲକ୍ଷେକ ମଣି ସନିଧେଣ ଥୋଇ ॥୨୭॥
ଚାରି ଭଗ୍ନିଜଙ୍କୁ ସେ କୋଡ଼ରେ ଧଇଲା ।
ସମ୍ମୁଖେ ବିର୍ଷ୍ଣୁର ନିଜ ରୂପ ଦେଖିଲା ॥୨୮॥
ବିଧଂସ ନୃପତି ସେ ମନେ ଉପଲେଖଇ ।
ପୃଥ୍ୱୀର ଭାରା ଏ କରିବ ଉଦ୍ଧାରଣଇ ॥୨୯॥
ପ୍ରତକ୍ଷେ ଜାତ ହୋଇଲା ଶ୍ରୀଧର ନାରାୟେଣ ।
ନାନା ତୀର୍ଥରେ ଯେ ଥିଲେ ଋଷିଗଣ ॥୩୦॥
ବିର୍ଷ୍ଣୁଙ୍କୁ ଦେଖିବାକୁ ଅଯୋଧ୍ୟାକୁ ଅଇଲେ ।
ଚାରି କୁମରଙ୍କୁ ଦେଖି ସନ୍ତୋଷ ହୋଇଲେ ॥୩୧॥
ବେଦ ଧ୍ୱନି କରନ୍ତି ସକଳ ତପୋଧନ ।
କରଯୋଡ଼ି ପୁଛଇ ସେ ଦଶରଥ ରାଜନ ॥୩୨॥
ଭୋ ତପନିଷ୍ଠେ ମୁହିଁ ତୁମ୍ଭକଇ ଦେଖି ।
ନିର୍ମଳ ହୋଇଲା ମୋହର ବେନି ଆଖି ॥୩୩॥
ଛୟାଶୋଇ ପୁରୁଷ ଯେ ହୋଇଲେ ମୁକତ ।
ସକଳ ତପୋଧନେ ଯହୁଁ ବିଜୟେ କଲେ ଏଥ ॥୩୪॥
ମୁନିଜନେ କହନ୍ତି ଶୁଣସି ରାଜନ ।
ତୋହର କୋଳେ ଉପୁଜିଲା ଏ ଚାରି ନନ୍ଦନ ॥୩୫॥
ସୂର୍ଯ୍ୟବଂଶେ ରାଜା ତୁହି ବୀରବର ଗରୁହଂସି ।
ଦେବତା ବ୍ରାହ୍ମଣେ ତହିଁ ଭଗତି ଅହନିଶି ॥୩୬॥
ତେଣୁ ସେ ତୋହର ପୁରକଇ ଅଇଲୁ ।
କୁମରନ୍ତ (ହେବା) ଶୁଣି ହରଷ ହୋଇଲୁ ॥୩୭॥
ତୋହର ପୁତ୍ରନ୍ତ ଦେଖି ତୃଷା ସାରିବୁ ।
ଏ ଆମ୍ଭର ପାତକ ସକଳ ନାଶିବୁ ॥୩୮॥
ଶୁଣି ଦଶରଥ ଯେ ହରଷ ହୋଇଲା ।
ଧାତ୍ରୀଗଣନ୍ତ ହକାରି ତତକ୍ଷଣେ ଆଜ୍ଞା ଦେଲା ॥୩୯॥
ମୁନିର ସନିଧକୁ କୁମରଙ୍କୁ ଘେନି ଆସ ତଡ଼ତି ।
ରାଜାର ବଚନେ ବେଗ ଗଲେ ଚାରି ଧାତ୍ରୀ ॥୪୦॥
ଶ୍ରୀରାମର ଧାତ୍ରୀର ନାମ ଯେ ମୋଚନା ।
ଭ୍ରଥ ଧାତ୍ରୀର ନାମ ଚଞ୍ଚଳା କନ୍ୟା ॥୪୧॥
ଲକ୍ଷ୍ମଣର ଧାତ୍ରୀ ଯେ ଚିନ୍ତା ନାମେ ନାରୀ ।
ଶତୃଘନର ଧାତ୍ରୀ ଉଭାସି ସୁନ୍ଦେରୀ ॥୪୨॥
ଏ ଚାରି ଧାତ୍ରୀ ତନୟେ କୋଳେ ଧରି ।
ଅଇଲେ କାମେନୀ ଯହିଁ ଅଛନ୍ତି ତପଚାରୀ ॥୪୩॥
ସନିଧେଣ ଆଣି ଯହୁଁ କୁମରନ୍ତ କଲେ ।
ଆସନ ଉପେକ୍ଷି ମୁନି ଉଭା ହୋଇଲେ ॥୪୪॥
ଏକଇ ଆରେକ କହଇ ଧୀରଧୀର ।
ଏ ସେ ନିବାରିବ ପୃଥିବୀର ଭାର ॥୪୫॥
ଦେବଙ୍କର ବଇରି ଅସୁର ଦଶକନ୍ଧ ।
ଏହାର ଭାରିଯା ଯେ ହରିବ ଦୃଷ୍ଟ ମନ୍ଦ ॥୪୬॥
କ୍ଷତ୍ରିବର ସୁନ୍ଦର ଏ ବୀର ଚକ୍ରବର୍ତ୍ତୀ ।
ଦନୁଜ ବିଧ୍ୱଂସିବ ଏ ଲଙ୍କାର ନୃପତି ॥୪୭॥
ଏହାରେ ସେ ନିଷ୍ଚିନ୍ତେଣ ବନସ୍ତରେ ଥିବା ।
ନାନା ତୀର୍ଥ ବୁଲି ଧର୍ମ ଅରଜିବା ॥୪୮॥
ଦଶରଥଙ୍କୁ କହନ୍ତି ମୁନିଗଣମାନ ।
ଆମ୍ଭର କଥାଏ ଶୁଣ ତୁ ରାଜନ ॥୪୯॥
ତୋହର ପୁରେ ଆମ୍ଭେ ବିଶ୍ରାମ କରିବୁ ।
ବିଂଶ ରାତ୍ର କୁମରଙ୍କୁ ଦୋଳିରେ ଶୁଆଇବୁ ॥୫୦॥
ସୁଚିତ୍ତେ ଯେବଣ ନାମ ଦେବୁ ବିଚାରି ।
ତେବେ ସେ ଯିବୁ ଆମ୍ଭେ ଯେ ଯାହାର ପୁରୀ ॥୫୧॥
ଶୁଣି ଦଶରଥ ଯେ ହରଷ ହୋଇଲେ ।
ବିଚିତ୍ର ନବରେ ଋଷିଙ୍କି ବସା ଦେଲେ ॥୫୨॥
ଇକ୍ଷୁରସ ବିବିଧ କଦଳୀ ଫଳ ।
ମହରଷିଙ୍କି ଆହାର ଦେଲା ମହୀପାଳ ॥୫୩॥
ହରଷେ ମୁନିବର ରହିଲେ ସେ ପୁରୀ ।
ଶୁଭେ ବିଂଶ ଦିବସ ହୋଇଲା ସମସରି ॥୫୪॥
ବିଂଶ ଦିବସ ରଜନୀ ପ୍ରଥମ ପ୍ରହର ।

ଅନେକ ଆନନ୍ଦ ସେ ନୃପତିର ପୁର ॥୫୫॥
ପାଟର ଢଗଦୋଳି ବିବିଧ ରତ୍ନ ମଣ୍ଡି ।
ନାନା କୁସୁମ ମାଳ କର୍ପୂରର ଗୁଣ୍ଡି ॥୫୬॥
କାମେନୀମାନେ ଯେ ହୁଳହୁଳି ଦେନ୍ତି ।
ଋଷିଗଣ ମିଳି ଯେ ବେଦ ହୁଂକାରନ୍ତି ॥୫୭॥
ବଶିଷ୍ଠ ମହଋଷି ଭାରଦ୍ୱାଦଶ ମୁନି ।
ପୁଲହ ପୌଲସ୍ତି କଵଅଙ୍କୁର ତପୋଧନି ॥୫୮॥
ଜୟେମୁନି ପାରେଶ୍ୱର କପିଳ ଚେବନ ।
ବେଦବ୍ରତ ଗ୍ୟାଧି ଅଷ୍ଟବକ୍ର ମୁନ୍ୟ ॥୫୯॥
ଏହାନ୍ତ ମୋକ୍ଷ କରି ଅନେକ ତପଚାରୀ ।
ଚଉବେଦ ଘୋଷ କରନ୍ତି ସୁସର ନାଦ ଧରି ॥୬୦॥
କିସ ନାମ ଦେବା ବୋଲି ବିଚାର କରନ୍ତି ।
ଦଶରଥ କହଇ ଶୁଣ ଦେବ ସର୍ବ ଯତି ॥୬୧॥
ପୂର୍ବେ ପ୍ରଶୁରାମେ କହିଅଛନ୍ତି ମୋତେ ।
ମୋହର ନାମ ଦେବ ତୋହର ଜେଷ୍ଟ ସୁତେ ॥୬୨॥
ଶୁଣିଣ ଋଷିଗଣେ ହରଷ ହୁଅନ୍ତି ।
କଉଶୁଲ୍ୟାର ପୁତ୍ରକଇ ଶ୍ରୀରାମ ନାମ ଦେନ୍ତି ॥୬୩॥
ତହୁ କକୟାର ପୁତ୍ରକଇ ଦିଅନ୍ତି ନାମ ।
ଭ୍ରଥ ବୋଲି ନାମ ପ୍ରତକ୍ଷେ ଯୁବା କାମ ॥୬୪॥
ସୁମିତ୍ରା ଦେବୀର ବେନି ତନୟେ ।
ଲକ୍ଷେ ଲକ୍ଷଣ ସମ୍ପୂର୍ଣ୍ଣ ଲକ୍ଷଣ ନାମ ହୋଏ ॥୬୫॥
ସୁମିତ୍ରାଦେବୀଙ୍କର କନେଷ୍ଟ ନନ୍ଦନ ।
ସକଳ ସମ୍ପୂର୍ଣ୍ଣେ ନାମ ଥୋଇଲେ ଶତ୍ରୁଘନ ॥୬୬॥
ସମସ୍ତେ ହେ ବିଚାରି ଚାରି କୁମରଙ୍କୁ ନାମ ଦେଲେ ।
ତହୁଁ ନିଜ ଆଶ୍ରମକଇ ମୁନିଗଣ ଅଇଲେ ॥୬୭॥
ଗୃହମେଧ ରାଜା ତାହାର ରାଜ୍ୟକଇ ଗଲା ।
ଲୋମପାଦ ନୃପତି ଅଙ୍ଗଦେଶେ ପ୍ରବେଶ ହୋଇଲା ॥୬୮॥
ଦଶରଥ ହକାରି ଋଷିଶୃଙ୍ଗ କହନ୍ତି ।
ପୁତ୍ରନ୍ତ ଘେନିଣ ପ୍ରତିପାଳି ଏବେ ଥାସି ନୃପତି ॥୬୯॥
ଏବେ ମୁହିଁ ବିପୁଳ ପାର୍ବତକଇ ଯିବି ।
ପିତାକଇ ମୋହର ଦ୍ରଶନ କରିବି ॥୭୦॥
ଶୁଣି ଦଶରଥ କନେକ ହାନ୍ଦୋଳା ଅଣାଇଲା ।
ଝିଅ ଜୁଆଁଇକି ଲୋମପାଦ ରାଜ୍ୟକୁ ଚଳାଇଲା ॥୭୧॥
ତହୁଁ ଲୋମପାଦ (ରାଜ୍ୟ)କଇ ମୁନି ଗଲେ ।
ନାବରେ ବସି ବିପୁଳ ପର୍ବତେ ମିଳିଲେ ॥୭୨॥
ବିଭାଣ୍ଡେ(କ)ଙ୍କର ପୟରେ କରଇ ଭଗତି ।
ପୁତ୍ର ବଧୂ ଦେଖି ହରଷ ମହାଯତି ॥୭୩॥
କଲ୍ୟାଣ କରଇ ଚଣ୍ଡମୁନିର ପୁତ୍ର ।
ସୁଲକ୍ଷଣୀ ହୁଅଗୋ ଦଶରଥର ଦୋହିତ ॥୭୪॥
ସପତ ପୁତ୍ରର ତୁ ହୁଅସି ଗର୍ଭଧାରୀ ।
ଏସନେକ କଲ୍ୟାଣ କଲେ ତପଚାରୀ ॥୭୫॥
ସେ ଋଷିର ବାକ୍ୟ ହୋଇବ କି ଆନ ।
ଋଷିଶୃଙ୍ଗଙ୍କୁ ଉପୁଜିଲା ସପତ ନନ୍ଦନ ॥୭୬॥
ତୁହି ଯେ ଯୁଧିଷ୍ଠିର ପୁଛା କଲୁ ଯାହା ।
ବାଲମୀକ ରାମାୟେଣ ଶୁଣନ୍ତି ସୀତୟାର ନାହା ॥୭୭॥
ଆନନ୍ଦ ଅଶ୍ରୁଜଳ ରାମର ଗଳଇ ଘନ ଘନ ।
ଆପଣାର ଜନମ ଶୁଣିଲେ ରଘୁନାନ ॥୭୮॥
ବଶିଷ୍ଠ ସୁମନ୍ତ ଅନେକ ଆନନ୍ଦ ହୁଅନ୍ତି ।
ଭ୍ରଥ ଲକ୍ଷ୍ମଣ ଶୁଣି ହୃଦୟ ବିଘଂସନ୍ତି ॥୭୯॥
ବଇର୍ଷବ ତପୋଧନ ନଗ୍ରର ଅନେକ ଜନ ।
ଶୁଣନ୍ତେ ଶରୀର କି ଅମୃତମୟେ ପାନ ॥୮୦॥
ମନେ ମନେ ବିଚାରନ୍ତି ବିଧାତାର ଶିକ୍ଷ ।
ଧନ୍ୟ ମହିମାରେ କୁମର ଲବକୁଶ ॥୮୧॥
ବାଲମୀକ ମହାମୁନି ଉପାୟେ କଲେ ଯାହା ।
ଆନର ଶକ୍ତ୍ୟେ କି କହି ହୋଏ ତାହା ॥୮୨॥
ଏସନେକ ବିଚାରି ମୁନି ନ କହନ୍ତି କିଛି ।
ଶୁଣସି ପଞ୍ଚାଳୀ ଗୋ ଦ୍ରୌପଦର ବଛି ॥୮୩॥
ପିତା ଯେ ଶ୍ରୋତା ପୁତ୍ର ଯେ ବକତା ।
ଏସନେକ ନିର୍ମାଣ କରିଅଛି ବିଧାତା ॥୮୪॥
ଏ ଆଛାନ ଶୁଣଇ ଯେବଣ ଜନ ।
ସକଳ ପାତେକ ତାର ହୋଇବ ବିନାଶନ ॥୮୫॥
ଜୟତୁ ଶ୍ରୀହରି ସଂସାରର ସାଇଁ ।
ଶ୍ରୀହରି ସୁମରନ୍ତେ ଭବଜଳୁ ପାରି ହୋଇ ॥୮୬॥
ହରିନାମ ନିତ୍ୟେ କରଇ ଉକତ ।
ହରି ହରଇ ତାର ସକଳ ଦୁଷ୍କୃତ ॥୮୭॥
ହରିହର ନାମ ଗୋଟି ପ୍ରତକ୍ଷେ ପରମପଦ ।
ହରି ନାମ ସୁମରନ୍ତେ ବଞ୍ଚଇ ଆପାଦ ॥୮୮॥
ହରି ଚରିତ୍ର ଯେ ସୁମରଇ ନିତି ।

ହରିର ଭୁବନେ ସେ ପାବଇ ସେ ସ୍ଥିତି ॥୮୯॥
ହରି ହରି ହରି ଶ୍ରୀରଙ୍ଗ ଶ୍ରୀହରି ।
ହରିର ଚରଣେ ନିତ୍ୟେ ଶରଣ ମୋହରି ॥୯୦॥
ହରିନାମ ବେନି ଅକ୍ଷର କରଇ ଅନୁପାମ ।
ହରି ନାମ ସଂକେତେ ନ ଦେଖଇ ଯମଭୁବନ ॥୯୧॥
ହରଷେ ନରହରି ହରି ନାମ ସୁମର ।
ହରି ନାମ ଅହୋନିଶି ହୃଦୟରେ ଧର ॥୯୨॥
ହରି ନାମ ଶୋୟନେ ହରିନାମ ସ୍ନାହାନେ ।
ହରି ନାମ ଗୋଟି ଶୁଣୁଥାଅ କର୍ଣ୍ଣେ ॥୯୩॥
ହରି ମଧୁହାରୀ ସୁମରଇ ଯେ ନିତି ।
ସିଧେଶ୍ୱର ଦାସ ହରି ଚରଣେ ଭଗତି ॥୯୪॥

X X X

ଏଥୁ ଅନନ୍ତରେ ଯୁଧିଷ୍ଠି ନରିନ୍ଦ୍ର ।
ପୁଣି ପୁଛା କରଇ ମାର୍କଣ୍ଡେଙ୍କର ଧରି ଦୁଇ ପାଦ ॥୧॥
ଭୋ ମୁନି ଲବକୁଶ କହିଲେ ଯେ ଶ୍ରୀରାମ ଉତପନ ।
କିସ କଲେ ତହୁଁ ଦଶରଥ ନନ୍ଦନ ॥୨॥
କହସି ମହାମୁନି ଅପୂର୍ବ ଦିବ୍ୟରୀତି ।
ଶୁଣି ଆନନ୍ଦମୟେ ହୋଉଛି ମୋହର ମତି ॥୩॥
ଅଠାଶି ସହସ୍ର ବ୍ରାହ୍ମଣ ଅଛନ୍ତି ମୋହର ତୁଲେ ।
ବାର ସହସ୍ର ଉର୍ଦ୍ଧରେ(ତା) ନାନା ତୀର୍ଥର ଅଇଲେ ॥୪॥
ଆବର ବନ୍ଧୁ ମୈତ୍ର ଅରଦେଶୀ ପରଦେଶୀ ।
ତୋହର ମୁଖେ ରାବାୟେଣ ଶୁଣନ୍ତି ମୋହର ସଙ୍ଗତେ ବସି ॥୫॥
ଏହି ମତେ ନୁହଇ କି ପୁରୁଷାର୍ଥ ଧର୍ମ ।
କହସି ମହାମୁନି ଏ ଗ୍ରନ୍ଥ ଅନୁପାମ ॥୬॥
କହନ୍ତି ମାରକଣ୍ଡେ ଶୁଣ ପଣ୍ଡୁର ତନୟେ ।
ଅରଷି ଉତପାତ ହୋଉ ତୋର କ୍ଷୟେ ॥୭॥
ଇବକୁଶଙ୍କର ମୁଖେ ଆପଣାର ଜନ୍ମ ଶୁଣି ।
ଶରୀର ରୋମାଞ୍ଚଇ ଶ୍ରୀରାମ ନୃପମଣି ॥୮॥
ଶ୍ରୀରାମ ପୁଛନ୍ତି ଶୁଣସି ବଶିଷ୍ଠ ।
ବାକ୍ୟ ବଖାଣନ୍ତି ଏ ଭୁବନଶ୍ରେଷ୍ଠ ॥୯॥
ବାଳୁତ ବୟସ ହୋଇ ବର୍ଣ୍ଣଷ୍ଠବ ପଣ ।
ଅମୃତମୟେ କୋମଳ ଶୁଭଇ ବୟାଣ ॥୧୦॥
ଏ ରାଜ୍ୟର ନୁହନ୍ତି ଏହାରେ ଚିହ୍ନିଲାକ ନାହିଁ ।
ଏସନେକ ଶାହାସ୍ର ଏ ଶିଖିଲେ ସେ ପୁଣ କାହିଁ ॥୧୧॥
ବଶିଷ୍ଠେ କହନ୍ତି ଶୁଣ ଦାଶରଥି ।
ମହତ କୁଳେ ଯେ ହୁଅନ୍ତି ଉତପତି ॥୧୨॥
ସେ ସେ ବଖାଣ କରନ୍ତି କୃତ ବାକ୍ୟ ।
ଇତର ଜନକଇ ଏ ପଦ ଅଶଖ୍ୟ ॥୧୩॥
ଭଲ ଜଣଙ୍କର ଏହି ଦୁହେ ପୁତ୍ର ।
ବାକ୍ୟ କହିବା ସରିଲେ ପୁଛିବ ଏହାର ତାତମାତ ॥ ୧୪ ॥
ବଶିଷ୍ଠଙ୍କର କଥା ଶୁଣି ହରଷ ରଘୁନାନ
କୁମରଙ୍କର ଶିରେ ସେ ଦେଲେକ ଚୁମ୍ବନ ॥୧୫॥
ଶ୍ରୀରାମ ପଚାରନ୍ତି ବାଳୁତ ମୁଖ ଚାହିଁ ।
ଦଶରଥଙ୍କ ପୁତ (ଜନ୍ମ) ଶୁଣି ହରଷ ହେଲି ମୁହିଁ ॥୧୬॥
ଅତି ଅପୂର୍ବ କହିଲ ଯେସନେକ ପୁରାଣବାଣୀ ।
ଶରୀର ଆମୋଦଇ ସୁଧାରସ ଜାଣି ॥୧୭॥
ଯାହାର ଅର୍ଥେ ବୈକୁଣ୍ଠପୁର ତେଜି ।
ସେ ବିଷ୍ଣୁ ପୁରୁଷ ମାନେବ ଉପୁଜି ॥୧୮॥
ଏବେ ରାବଣ ଜନମ ପୁଛିତ ମୋର ଇଛା ।
କହ ତୁ ବିଶେଷି ପୁଣ୍ୟତୂଣୀର ବଛା ॥୧୯॥
ତ୍ରିଭୁବନ ଚଇରି ଦନୁଜ ଦଶାନନ ।
ଅସୁର ଗର୍ଭେ ସେ କେସନେକ ହୋଇଲା ଉଭପନ ॥୨୦॥
ଋଷିର ତନୟେ ହୋଇ ଏଡ଼େ କିମ୍ପା ଦୁଷ୍ଟ ।
ହର ବରେ ପ୍ରତାପ ହୋଇଲା ଗରିଷ୍ଠ ॥୨୧॥
ରାବଣର ଜନ୍ମ କଥା ଶୁଣିତ ବଳିଲା ମୋହର ମନ ।
ତୁମ୍ଭର ମୁଖେ ଶୁଣି ମୁହିଁ ପାଇବଇ ଜ୍ଞାନ ॥୨୨॥
ଶ୍ରୀରାମର ବଚନ ଶୁଣିଲେକ ସେହୁ ।
ଲବକୁମର ଧନାଶ୍ରୀରାଗ ହୁଂକାରିଲାକ ତହୁଁ ॥୨୩॥
କୁଶକୁମର ଧରଇ ଉଚେଣ ନାଦ ।
ଶୁଣି ସକଳ ଲୋକେ ହୋଇଲେ ତବଦ ॥୨୪॥
ଲବକୁମର ଗାବଇ ପୁରାଣ ଉକତି ।
ଲଙ୍କାରେ ରହି ତପ କରୁଥିଲା ବେଦପତି ॥୨୫॥
ଉର୍ବଶୀ ଆଦି କରି ପାଞ୍ଚ କନ୍ୟାଏ ଗଲେ ।
ଲଙ୍କାର ପୁରେ ଯାଇ ପ୍ରବେଶ ହୋଇଲେ ॥୨୬॥
ଜନମାନୁଷ ନାହିଁ ତହିଁ କେହି ।
ନୃତ୍ୟ ଗୀତ ଗାବନ୍ତି ଶରଦ ଚନ୍ଦ୍ରମୁହୀଂ ॥୨୭॥
ମଣିବତୀ ନଦୀତୀରେ ଲିଙ୍ଗେକ ଥାପି ।
ବ୍ରହ୍ମା ବସିଅଛି ତପ ନିରୋପି ॥୨୮॥

ସେ ଅପସରୀ ତପୀ ଦେଖିଲାକ ଯହୁଁ ।
ଜପ ଛାଡ଼ି ବ୍ରହ୍ମା ଚାହିଁଲାକ ତହୁଁ ॥୨୯॥
ସ୍ୱର୍ଗର ମୋହିନୀ ସେ ପଞ୍ଚ ଅପଛରୀ ।
ସେ ପିତାମହ ମଦନ ଶରେ ଘାରି ॥୩୦॥
ତପ ଉପେକ୍ଷି ଯୁବତୀଙ୍କର ସନିଧିକୁ ଗଲା ।
ଲଜ୍ୟା ତେଜି ରମଣରଙ୍ଗ ମାଗିଲା ॥୩୧॥
ଅପସରୀ କହନ୍ତି ତୁହି ପୁରାତନ ଯତି ।
ତୋତେ କିପାଇଁ ଆମ୍ଭର ଭଜିବାକ ମତି ॥୩୨॥
ତୋହର ସାଦ୍ରିଶେ ବୃଧ ସ୍ତିରୀ ଯେବେ ଦେଖିବୁ ।
ତାହାକୁହି ମହାତ୍ମା ରତି ଇଛା କରିବୁ ॥୩୩॥
ନାସ୍ତି କଥା ବ୍ରହ୍ମା ଯହୁଁ ଶୁଣିଲା ।
ମଦନବାଣେ ଶରୀର ଆରତ ହୋଇଲା ॥୩୪॥
କୋମଳ କରି କରେ ଧରି ଲୋଡ଼ଇ ଯହୁଁ ।
ବିଚିତ୍ର ଗତି କରି କନ୍ୟାଏ ସୁରପୁରୀକି ଗଲେ ତହୁଁ ॥୩୫॥
ପାଞ୍ଚ ମନୁ ପରିଯନ୍ତେ ବୀର୍ଯ୍ୟ ଖୋଟ ହୋଇଣ ଥିଲା ।
କାଛଟାର ଉପରେ ଗଳି ତଳେଣ ପଡ଼ିଲା ॥୩୬॥
ଏସନକ କଥା ଯହୁଁ ସଭାଲୋକେ ଶୁଣିଲେ ।
ମନର ଆନନ୍ଦେ ସମସ୍ତେ ହେ ହଂସିଲେ ॥୩୭॥
ବଶିଷ୍ଟେ କହନ୍ତି କିମ୍ପାଇ ହଂସା କର ।
ଅମୃତ ବୟାଣ ହୃଦୟରେ ଧର ॥୩୮॥
ବଶିଷ୍ଟଙ୍କର ବଚନ ଶୁଣି ସର୍ବହେ ହୋଇଲେ ତୁନି ।
ତହୁଁ ଲବକୁଶେ କହନ୍ତି ପୁରାଣ ଧୁନି ॥୩୯॥
ଯେବଣ ପଦ ଅବା ଅଳପ ଅନ୍ତର ହୁଅଇ ।
କୁଶ କୁମର ତାହା ଅର୍ଥ କରିଣ କହି ॥୪୦॥
ବୀର୍ଯ୍ୟ ଖଳିତ ହୋଇ ତଳେ ପଡ଼ିଲା ।
ତକ୍ଷଣେ ଋଷି ଏକ ଜନ୍ମ ହୋଇଲା ॥୪୧॥
ବିଦ୍ୟାଧର ଜାଣି ଦିଶଇ ଦିବ୍ୟ ଜ୍ୟୋତି ।
ପୁତ୍ରକୁ ଦେଖି ଲଜ୍ୟା ପାଇଲେ ପ୍ରଜାପତି ॥୪୨॥
ନିଜ ପୁରକଇ କରନ୍ତେଣ ଗମନ ।
ପଛେଣ ଗୋଡ଼ାଇ ତାହାର ହାକଇ ନନ୍ଦନ ॥୪୩॥
ଭୋ ତାତ ଉପେଖି କାହିଁକି ଯାଉ ।
କେବଣ ବିଚାର ତୋହର ତୁଳେ କିମ୍ପାଇ ନ ନେଉ ॥୪୪॥
ମାତା ନାହିଁ ବ୍ରତିବି କେସନେ ।
ଜନପଦ ନାହିଁ ଏ କନକଭୁବନେ ॥୪୫॥
ପୁତ୍ରର ବଚନ ଯହୁଁ ବ୍ରହ୍ମରଷି ଶୁଣିଲା ।
ଲେଉଟି ଚାହିଁ କୁମରକୁ ବାକ ଦେଲା ॥୪୬॥
ତୁହି ରେ ଯେବେ ମୋହର ପୁତ୍ର ହୋଇବୁ ।
ସେହି ଠାବରେ ଥିବୁ ଗୋଡ଼ାଇ ନ ଆସିବୁ ॥୪୭॥
ବ୍ରହ୍ମାର ବଚନେ ପୁତ୍ର ତବଦେ ରହିଲା ।
ତେଣୁ ସେ ପୁତ୍ରର ନାମ ପୌରସ୍ତି ହୋଇଲା ॥୪୮॥
ପଉଲସ୍ତିକି କହିଲେ ତୁହି ରଦ୍ରାକ୍ଷ ବନକୁ ଯାସି ।
ତହିଁ ଆଶ୍ରମେ ଅଛି ବିଦୁ ମହାରଷି ॥୪୯॥
ତାହାର ଦୁହିତା ପ୍ରିୟବତୀ କାମେନୀ ।
ବିଭା ହୋଅସି ତୁହି ବିଦୁମୁନିର ନନ୍ଦନୀ ॥୫୦॥
ମୋହର ପୁତ୍ର ବୋଲି କହିବ ତୁମ୍ଭେ ଯେବେ ।
ଦୁହିତା ଦେଇ ଗଉରୋବ କରିବ ତୋତେ ତେବେ ॥୫୧॥
ଏସନେକ କଥା ପୌଲସ୍ତିକି କହିଲା ।
ତହୁଁ ବ୍ରହ୍ମା ଯେ ନିଜ ପୁରକଇ ଗଲା ॥୫୨॥
ପଉଲସ୍ତି ମହରଷି ପିତାର ବଚନେ ।
ବିଦୁମୁନିକି ଦେଖଇ ଯାଇ ରୁଦ୍ରାକ୍ଷ ବନେ ॥୫୩॥
ଆଶ୍ରମ ଦ୍ୱାରେ ଉଭା ହୋଇଲେକ ଯହୁଁ ।
କାହାର ତନୟେ ବୋଲି ମୁନି ପଚାରିଲେ ତହୁଁ ॥୫୪॥
ପଉଲସ୍ତି କହଇ ମୁଇ ବ୍ରାହ୍ମଣ କୁଳେ ଜାତ ।
ତୋହର ତହିଁକି ମୋତେ ପଠିଆଇଲେ ତାତ ॥୫୫॥
ଭୋ ମୁନି ତୁହି ମୋତେ ଆଛା ଦାନ କରିବୁ ।
ବେଦବିଦ୍ୟା ଶାହାସ୍ତ୍ର କହି ସୁବୁଧି କରାଇବୁ ॥୫୬॥
ଶୁଣିଣ ବିଦୁମୁନି ହରଷ ହୋଇଲା ।
ନାନା ଶାହାସ୍ତ୍ର ସମସ୍ତ ବେଦବିଦ୍ୟା କହିଲା ॥୫୭॥
ବେଦେ ପଉଲୋସ୍ତି ନିର୍ଜିତ ହୋଇଲା ଯହୁଁ ।
ଦୋହିତା ଗୋଟିକି ଆଣି ସମର୍ପିଲା ତହୁଁ ॥୫୮॥
ପ୍ରିୟବତୀକି ଦେଇ କହଇ ତପଶାଳୀ ।
ଭଲେ ପ୍ରତିପାଳ ଏ ମୋହର ଦୁଲାଳୀ ॥୫୯॥
ଏ କୁମାରୀ ତୋତେ ସେବା କରିଥିବ ।
ଏହାର ସଂଶୟେ ପୁତ୍ର ଜାତ ହୋଇବ ॥୬୦॥
ଆନ ଆଶ୍ରମେ ଯାଇ ବିଶ୍ରାମ କରସି ।
ଭାରିଯା ଘେନି ଗଲା ତହୁଁ ପୌଲସ୍ତି ମହାରଷି ॥୬୧॥
ଭାରଦ୍ୱାଜଙ୍କର ସନିଧେ ରହିଲା ।
କାଳେ ପ୍ରିୟବତୀ ଗର୍ଭବାସ ହୋଇଲା ॥୬୨॥

X X X

ପୁତ୍ରେକ ଉପୁଜିଲା ଅତ୍ୟନ୍ତ ସୁନ୍ଦର ।
ବିଶର୍ବା ନାମ ତାକୁ ଦେଲେ ମୁନିବର ॥୧॥
ସକଳ ବେଦବିଦ୍ୟାରେ ନିର୍ଜିତ ଦେଖି ।
ଭାରଦ୍ୱାଜ ବିଚାରନ୍ତେ ରୂପ ଉପଲେଖି ॥୨॥
ପୌଲସ୍ତିକି କହନ୍ତି ଭାରଦ୍ୱାଜ ମୁନି ।
ସାଲୋକା ନାମେ ଯେ ମୋହର ନନ୍ଦନୀ ॥୩॥
ତୋହର ପୁତ୍ରକୁ ସାଲୋକାକଇ ବିଭାଏଣ ଦେବି ।
ବ୍ରହ୍ମାର ତନୟ ତୁହି ବନ୍ଧୁପଣେ ଥିବି ॥୪॥
ଶୁଣି ପୌଲସ୍ତି ହରଷ ହୋଇଲେ ।
ଅନକୂଳ ଖୋଜି ବିଭା କରାଇଲେ ॥୫॥
ସାଲୋକାର ତୁଲେ ବିଶର୍ବାର ପ୍ରୀତି ବଢ଼ିଲା ।
ବଇଶ୍ରର୍ବଣ ବୋଲି ଦୁଇ ପୁତ୍ର ଉପୁଜିଲା ॥୬॥
ବୈଶ୍ରର୍ବଣ ନାମ ବିଶର୍ବାର ତନୟେ ।
ଈଶ୍ୱରକଇ ସେବି ଶେଷେ କୋବେର ପଦ ପାଏ ॥୭॥
ଭାରଦ୍ୱାଜଙ୍କର ପୁତ୍ର ଯବଅଙ୍କୁରଇ ।
କୋବେର ତୁଲେ ଅତି ପ୍ରୀତି ତାହାରଇ ॥୮॥
ଭୋଜନେ ଶୋୟନେ ଏ(କ) ଠାବେଣ ଥାନ୍ତି ।
ମନର ହରଷେ ଲାଟବାଟ ଖେଳନ୍ତି ॥୯॥
କେବଣ ହି ଦିନେ ଯବଅଙ୍କୁର ଲାଟଇ ।
କୁବେର ଲାଟ ଘାତେ କୂପରେ ଯାଇ ପଡ଼ଇ ॥୧୦॥
ଦେଖି ଯବଅଙ୍କୁର କହଇ କୋପ ଚିତ୍ତ ।
କୂପେ ମୋହର ଲାଟ ପକାଇଲୁ କେବଣ ହି ମତ ॥୧୧॥
ଜୀର୍ଣ୍ଣ କୂପରୁ ଲାଟ କାଢ଼ି ଆଣୁ ଯେବେ ।
ତୋହର ମୋହର ପ୍ରୀତି ହୋଇଥିବ ତେବେ ॥୧୨॥
କୁବେଇ କହଇ କୂପ ବଡ଼ାଇ ଗଭୀର ।
ମୁହିଁ କେହ୍ନେ ପଶିବି ସେ କୂପର ଭିତର ॥୧୩॥
ତୋହର ଲାଟ ତୁହି ଆଣସି କୂପ ଭିତରେ ପଶି ।
ଶୁଣି ଯବଅଙ୍କୁର କହଇ ମହାରୋଷି ॥୧୪॥
ଆମ୍ଭର ଆଶ୍ରମେ ସର୍ବଦା ତୁମ୍ଭେ ଥାଅ ।
ଦୁଇ ପୁତ୍ର ବାପେ କାହିଁକି ନ ଯାଅ ॥୧୫॥
ଯେବଣ ଦିନୁ ପିତା ତୋହର ବିଭା ହୋଇଲା ।
ସେହି ଦିନୁ ଆମ୍ଭର ଆଶ୍ରମେ ରହିଲା ॥୧୬॥
ତୁମ୍ଭେ ଦୁଇ ଭାଇ ଜନ୍ମ ହୋଇଲ ଏଥେ ।
ତୁମ୍ଭଙ୍କୁ ଦୟା କରଇ ମୋହର ତାତେ ॥୧୭॥
ନଉଚେତେ ଆଜି ତୋତେ ମାରନ୍ତେ କରବାଳେ ।
ଶିର ଛିଡ଼ି ତୋହର ପଡ଼ନ୍ତା ଭୂମିତଳେ ॥୧୮॥
ବିଚାରିଲେ ତୁମ୍ଭର ଆମ୍ଭେ ଅର୍ଣ୍ଣଗୁରୁ ।
ତୁହି ହୀନ ଛାର ମୋତେ କୂପରେ ନେଇ ଭରୁ ॥୧୯॥
ଶୁଣିଣ କୁବେର ପାଇଲା ଅଭିମାନ ।
କ୍ରୋଟଅଗ୍ନି ଜାଣି ଦହଇ ପଞ୍ଚୁମନ ॥୨୦॥
କ୍ରୋଧ ଗୁରୁତରେ ଅଭିମାନେ ଲାଜ ପାଇ ।
କ୍ରୋଧମୁଖ ହୋଇ ମାତାର ସନିଧକୁ ଯାଇ ॥୨୧॥
ସହିସଂଘାତକଇ ହକାରଇ ସଙ୍ଗେ ।
ତୁମ୍ଭେ କହିବ ମୋହର ମାତାର ଆଗେ ॥୨୨॥
ଭାଇର କଥା ଶୁଣିମନା ତୁମ୍ଭର କହନ୍ତେ ।
ସଙ୍ଗର କୁମରନ୍ତ ଘେନିଗଲା ସଙ୍ଗତେ ॥୨୩॥
ସାଲୋକା ଦେଖିଲା ପୁତ୍ରର ବଦନ ।
ଲୁହ ଗଳୁଅଛି ବେନି ଯେ ନୟନ ॥୨୪॥
ଦେଖି ମାତାର ନ ପୁରଇ କିଛି ।
ନିଜ ଅଞ୍ଚଳ ଘେନି ବୈଶ୍ରବଣ ମୁଖ ପୋଛି ॥୨୫॥
ବୋଲଇ ତୋହର ଆପାଦ ପଡୁ ମୋର ମାଥ ।
କାହାର ସଙ୍ଗେ କଳି କଲୁ କିରେ ସୁତ ॥୨୬॥
ଯବଅଙ୍କୁର ତୋହର(କି) ସଙ୍ଗତେ ନ ଥିଲା ।
ବୈଶ୍ରବଣ ଆଜ(କି) ଖେଳିତ ନ ଗଲା ॥୨୭॥
କାହାର ତୁଲେ ବାବୁ କଲୁ କିରେ ଦ୍ୱନ୍ଦ ।
କହସି ସ୍ୱରୂପ ବାବୁ ମୋହର ଆଗେ ନ କାନ୍ଦ ॥୨୮॥
କୁବେର କହଇ ତୋହର କନେଷ୍ଟ ଭାଇ ।
ସେହି ମୋତେ ଅନେକ କିଂଘାସ କଥା କହି ॥୨୯॥
ତୁହି କିମ୍ବା ମୋହର ବଚନ କରୁ ମିଛ ।
ଏ ତୋହର ଭାଇକି ସକଳ କଥା ପୁଛ ॥୩୦॥
ସାଲୋକା ପଚାରଇ ସଙ୍ଗର ସଂଘାତ ।
କହସି ଏହାଙ୍କର ଦ୍ୱନ୍ଦର ଚରିତ ॥୩୧॥
ବାଳୁତେ କହି କୂପରେ ଲାଟ ପଡ଼ିଲା ।
ଯବାଙ୍କୁର ଏହାକୁ ଲାଟ ଆଣିତ ବୋଇଲା ॥୩୨॥
ଜୀର୍ଣ୍ଣକୂପରେ ବୈଶ୍ରବଣ ନ ପଶିଲାକ ଯହୁଁ ।
ଅନେକ ମନ୍ଦଛନ୍ଦେ ଗାଳି ଦେଲାକ ତହୁଁ ॥୩୩॥
ପର ପୁତ୍ରଙ୍କର ମୁଖୁ ଶୁଣିଲା ଏସନେକ ବଚନ ।

କୋପ ବସିଲା ସାଲୋକାର ମନ ॥୩୪॥
ପୁତ୍ରର ହସ୍ତ ଧରି ତତ୍‌କ୍ଷଣେ ଗଲା ।
ମାତାର ଆଗରେ ତ ମନ୍ତରେ କହିଲା ॥୩୫॥
ତୋହର ପୁତ୍ର(ର) ଏ କଥା ଶୁଣସି ଗୋ ଆଇ ।
ବଇଶ୍ରବଣକହି ଅନେକ ଜିଂଘାସିଣ କହି ॥୩୬॥
ଆବର ବୋଇଲା ମୋହର ପୁରେ ନ ଥାଅ ।
ଏହିକ୍ଷଣି ଏଥୁ ବାହାର ହୋଇଯାଅ ॥୩୭॥
(ତୁମ୍ଭର ଆଶ୍ରମେ ଆମ୍ଭର କାର୍ଯ୍ୟ ସେ ଅଛଇ ।
ପୁତ୍ର ଘେନିଣ ଦେବୀ ତହୁଣ ଆସଇ) ॥୩୮॥
ସୁକାନ୍ତି ନାମେ ସାଲୋକାର ଜନନୀ ।
ଦୋହିତାଙ୍କୁ ପ୍ରବୋଧନା କରନ୍ତି ଭାରଦ୍ୱାଜଙ୍କ ପତ୍ନୀ ॥୩୯॥
ସୁଶୀତଳ ପାଣି ଘେନି ଋଷିର ବାଳୀ ।
ଝିଅର ପୁତ୍ରର ମୁଖ ପଖାଳି ॥୪୦॥
ତୁହି ଗୋ ସାଲୋକା କାହାକୁ କୋପ କରୁ ।
ତୋହର ସାନ ଭାଇ ଦୋଷ କେସନେକେ ଧରୁ ॥୪୧॥
ଗର୍ଭେ ଅବା ପୁତ୍ରକଇ ଧଇଲୁ ତୁହି ।
ଖୀର ଦେଇ ପୋଷିଲି ମୁଁ ତୋହର ପୁତ୍ର ଦୁଇ ॥୪୨॥
ଯବଅଙ୍କୁରକଇ ଆଡ଼କରି ତୋହର ପୁତ୍ରକଇ ପୋଷିଲି ।
ଦୁଇ ପୁତ୍ରକଇ ତୋହର ଥନୁ କ୍ଷୀର ଦେଲି ॥୪୩॥
ତେଣୁ ସେ ବୈଶ୍ରବଣ ଯବଅଙ୍କୁରକୁ କରଇ ଭେଦ ।
ତୁହି କେହ୍ନେ ସାନ ଭାଇକି ମନେ କରୁ ଖେଦ ॥୪୪॥
ମାତାର ବଚନେ ସାଲୋକାଇ ତୋଷ ।
ପୁତ୍ରନ୍ତ ଘେନି ନିଜ ଭୁବନେ ପ୍ରବେଶ ॥୪୫॥
ବଇଶ୍ରବଣକଇ ଅନେକ ତିଆରି ପ୍ରବୋଧିଲା ।
କୁବେର ଅପମାନ ସହି ନ ପାରିଲା ॥୪୬॥
ଯହୁଁ ସେ ବିଶର୍ବା ମୁନି ଅଛନ୍ତି ତପେ ।
ବଇଶ୍ରବଣ ମିଳିଲା ପିତାର ସମୀପେ ॥୪୭॥
ପୁତ୍ରର ମୁଖ ଚାହିଁଲେ ମହାମୁନ୍ୟ ।
ଲୁହ ଗଳୁଅଛି ବେନି ଯେ ନୟନ ॥୪୮॥
ନିର୍ମଳ ଚନ୍ଦ୍ର ଜାଣି ତୋହର ମୁଖ ଦିଶଇ ।
ଦିବସର ଶଶୀ ପ୍ରାୟେ ତ ଦିଶଇ ବିରସଇ ॥୪୯॥
ପୁତ୍ରକଇ ହକାର ପୁଛନ୍ତି ପୌଲସ୍ତିର ପୁତ୍ର ।
ମନେ ବିରସ କିମ୍ପା କଲୁସିରେ ପୁତ୍ର ॥୫୦॥
ପିତାର ବଚନ ଯହୁଁ ବୈଶ୍ରବଣ ଶୁଣିଲା ।
ଉଚ୍ଚେ ରାବ କରି ହକାରିଣ ଧ୍ୱନି କଲା ॥୫୧॥
ଆସନ ଛାଡ଼ି ଉଠନ୍ତି ତପଚାରୀ ।
ଅନେକ ବିନୟେ ପୁଛନ୍ତି ପୁତ୍ରକୁ କୋଳେ ଧରି ॥୫୨॥
ତୁହି ମୋହର ବଳାରେ କୁଳଶ୍ରେଷ୍ଠର ନନ୍ଦନ ।
କିମଅର୍ଥେ କାରୁଣ ତୋହର ଏତେକ ରୋଦନ ॥୫୩॥
ପିତାର ବଚନ ଶୁଣି ବୋଲଇ ଧନପତି ।
ଶୁଣସି ଭୋ ତାତ ମହତ ମହାଯତି ॥୫୪॥
ମୋହର ଜନନୀ ବିଭା ହୋଇଲୁ ।
ଶଶୁର ଆଶ୍ରମେ କିପାଇଁ ରହିଲୁ ॥୫୫॥
ଭାରିଯାର ପିତା (ଘ)ରେ ଯାହା ସୁସ୍ତେ ଥିବା ।
ଭିକ୍ଷା ମାଗିକରି ଓଦର ପୋଷିବା ॥୫୬॥
ବିବେକ ହୋଇଣ ତୁ କିକେ ନ ବିଚାରୁ ।
ଅପମାନ ପାଇଣ ଏଥେ କେର୍ଣ୍ଣେ ଦିନ ହରୁ ॥୫୭॥
ତୋହର ଶାଳକ ବୋଇଲା ପୁଣ ଯାହା ।
ମୋହର ବେଳେ ତାତ ସହି ନୋହି ତାହା ॥୫୮॥
ଲାଟ ଖେଳନ୍ତେ ମୋହର ତୁଲେ କଲା ଦ୍ୱନ୍ଦ ।
ଅନେକ ଜିଂଘାସି ବୋଇଲା ମୋତେ ମନ୍ଦ ॥୫୯॥
ମୋହର ବଚନକଇ କଲାକ ସେ ଛଳ ।
ତାହାର ସୀମା ବୋଲି କହିଲା ଅଚାର୍ଗଳ ॥୬୦॥
ବୋଇଲା ପିତା ତୋହର ଦରିଦ୍ର ଅଟଇ ହୀନ ଜାତି ।
ସୂନନ୍ତ ଆଧାର ଅର୍ଥେ ତୁମ୍ଭେ ରହିଅଛ ଏଥି ॥୬୧॥
ଲାଜ ବୋଲିକି ତ କିଛି ନାହିଁରେ ତୁମ୍ଭର ।
ଅର୍ଣ୍ଣ ଖାଇ ତୁମ୍ଭେ ରେ ବ୍ରତିଅଛ ଆମ୍ଭର ॥୬୨॥
ଶାସନ ବାଡ଼ ବୃତ୍ତି କିଛି ତୁମ୍ଭର ନାହିଁ ।
ଲାଜେ ନ ଭାଳ ତୁମ୍ଭେ ଏଥି ଅଛ ରହି ॥୬୩॥
ଏସନେକ ବୋଲି ତାତ ମୋତେ ଗାଳି ଦେଲା ।
ଶୁଣିଣ ମୋହର ଦେହେ ଆତ୍ମା ଉଛର୍ଗିଲା ॥୬୪॥
କାହିଁ ଆନେ ପିତା ଆଶ୍ରମ ।
ଏବେ କାହିଁ ତହିଁ କରିବା ବିଶ୍ରାମ ॥୬୫॥
ତୁହି ଯେବେ ତାତ ରହିଥିବ ଏଥେ ।
ନିଶ୍ଚୟ ମୁହିଁ ଆଜ ମରିବି ଆତ୍ମାଘାତେ ॥୬୬॥
ବିଶର୍ବାଏ ବୋଲନ୍ତି ଶୁଣସି ରେ ନନ୍ଦନ ।
ମୋହର ପିତା (ନ) କହିଲେ ବାଡ଼ବୃତ୍ତି ତିଥି ସ୍ଥାନ ॥୬୭॥
ମୁହିଁ ତୁମ୍ଭକଇ ଏହିକ୍ଷଣି ଘେନି ଯିବି ।

ମୋହର ପିତାକଇ ଯାଇ ବାସ୍ତୁବ୍ୟ ପଚାରିବି ॥୬୮॥
ତୋହର ମାତାକଇ ତୁହି ହକାରି ଆଣ ଯାଇ ।
କଇଶ୍ରବଣ ସହିତେ ଆବର ପୁତ୍ର ଦୁଇ ॥୬୯॥
ପିତାର ବଚନେ କୁବେର ବେଗେ ଗଲା ।
ମାତାକଇ ରାଇ ସନିଧିକୁ ଆଣିଲା ॥୭୦॥
ସାଲୋକା ଆଗେ ମୁନି କହନ୍ତି ପୁତ୍ରର କଥା ।
ସ୍ୱରୂପ ବୋଲି ବୋଇଲା କୋବେରର ମାତା ॥୭୧॥
ଘରଣୀର ବଚନେ କୋପିତ ମହାଗ୍ୟାତା ।
ଚାଲ ଯିବା ମୋହର ଯହିଁ ଅଛି ପିତା ॥୭୨॥
କୁବେର ଦୁଇ ଭାଇ ତାହାଙ୍କର ଜନନୀ ।
ଚଳନ୍ତି ବିଶର୍ବାଏ ପୁତ୍ରବଧୂ ଘେନି ॥୭୩॥
ଯହିଁ ସେ ଅଛନ୍ତି ବ୍ରହ୍ମାଙ୍କର ନନ୍ଦନ ।
ତହିଁ ଯାଇ ମିଳିଲେ ବିଶର୍ବା ତପୋଧନ ॥୭୪॥
ପିତାର ପୟରେ ନମଇଁ ତପଚାରୀ ।
ପୁତ୍ର ଭାରିଯା ଆବର ବହୁଅରି ( ? ) ॥୭୫॥
କଲ୍ୟାଣ କରି ପୁଛନ୍ତି ପିତାମହ ସୁତ ।
ପୁତ୍ର ବଧୂ ସହିତେ ଅଇଲୁ ତୁ ଏଥ ॥୭୬॥
ମୁନି କହନ୍ତି ଶୁଣସି ପିଅର ।
ମାତୁଳ ସଙ୍ଗେ କଳି କଲାକ ତନୟ ମୋହର ॥୭୭॥
କାହିଁ ଆଶ୍ରମ କାହିଁ ଆମ୍ଭର ଦେଶ ।
ଏ କଥା ପଚାରି ଅଇଲୁ ତୋହର ପାଶ ॥୭୮॥
ପୌଲସ୍ତି କହନ୍ତି ବିଶର୍ବା ମୁଖ ଚାହିଁ ।
କାହିଁ ଦେଶ ଶାସନ ନ ଜାଣଇ ମୁହିଁ ॥୭୯॥
ଯେବଣ ବେଳେ ପିତା ଜାତ କଲା ।
ଉପେକ୍ଷା କରି ସେ ବ୍ରହ୍ମାମଣ୍ଡଳକଇ ଗଲା ॥୮୦॥
ଯୁଗତ କଥା ଏ ଅଟଇ ବିଚାରେ ।
ଚାଲ ପୁଛିବା ମୋହର ପିତାର ଛାମୁରେ ॥୮୧॥
ପୁତ୍ର ନାତି ଆବର ବଧୂ ସହିତେ ।
ବ୍ରହ୍ମାର ପାଶେ ମିଳିଲେ ସମସ୍ତେ ॥୮୨॥
ଦେଖିଣ ମନେ ବିଚାରଇ ବିଧାତ ।
ସଗୋତ୍ର ସହିତ ଆସଇ ମୋହର ପୁତ୍ର ॥୮୩॥
ଏସନେକ ବିଧାତା ମନେ ଧରନ୍ତେ ଦୌପତି ।
ଯାଇଣ ପ୍ରଣମ୍ୟ କରଇ ପୌଲସ୍ତି ॥୮୪॥
ବିଶର୍ବା ମହରଷି ପୁତ୍ର ବଧୂ ସହିତେ ।
ବ୍ରହ୍ମାର ପୟରେ ସେ ନମନ୍ତି ସମସ୍ତେ ॥୮୫॥
ବଛକୁ କଲ୍ୟାଣ କରନ୍ତି ବେଦପତି ।
ପଉଳସ୍ତିକି ସନିଧେ ହକାରି ପଚାରନ୍ତି ॥୮୬॥
ପୁତ୍ର ନାତି ତୋହର ଆବର ସ୍ତିରୀଜନ ।
ଏହାନ୍ତ ଘେନି କିମ୍ପା ଅଇଲୁ ମୋହର ଭୁବନ ॥୮୭॥
କର ଦୁଇ ଯୋଡ଼ି ବିନୋପି କହଇ ପୌଲସ୍ତି ।
ସଂସାର କରତା ତୁ ଯୁଗେ ଯୁଗେ ପତି ॥୮୮॥
ତୋହର ବୀର୍ଯ୍ୟେ ମୋତେ ଜାତ କଲୁ ।
ମୃତ୍ୟୁ ମଣ୍ଡଳରେ ମୋତେ ଛାଡ଼ି ତ ଅଇଲୁ ॥୮୯॥
ପୁତ୍ର ନାତି ମୋହର ହୋଇଲା ଉତ୍ପତି ।
କାହିଁ ରହିବୁ ଆମ୍ଭର କାହିଁ ବାଡ଼ ବୃତ୍ତି ॥୯୦॥
ବନ୍ଧୁଲୋକ ହେ କହନ୍ତି ଅପମାନ ।
କହସି ହୋ ତାତ କାହିଁ ନିଜ ସ୍ଥାନ ॥୯୧॥
ପଉଳସ୍ତିର ବଚନେ ଶୁଣି କହନ୍ତି ବେଦପତି ।
ତପିଷ୍ଟ ଲୋକଙ୍କର ସବୁହି ବାଡ଼ିବୃତ୍ତି ॥୯୨॥
ଏବେ ଗୋତ୍ର ଯେବେ ହୋଇଲା ବର୍ଧମାନ ।
ବିଶ୍ରାମି ରହ ଯାଇ ଏ ଲଙ୍କା ଭୁବନ ॥୯୩॥

## ଲଙ୍କାରେ ଇତିବୃତ୍ତି

ପୌଲସ୍ତି ପୁଛଇ ସେ କାହାର ନିଜ ଦେଶ ।
ତହିଁର କଥା ମୋତେ କରସି ପ୍ରକାଶ ॥୧॥
ଶଶୁର ଆଶ୍ରମେ ପୁତ୍ର ମୋର ଥିଲା ।
ଭାରଦ୍ୱାଜଙ୍କର ପୁତ୍ର ମୋହର ନାତିକି କିଂଘାସିଲା ॥୨॥
ପରର ଭୂମିରେ ରହିବଉ ଯେବେ ।
ସେ କିମ୍ପା ଆମ୍ଭନ୍ତ ଥୋଇବାକ ଏବେ ॥୩॥
ବ୍ରହ୍ମା କହଇ ସେ ମେରୁ କନେକ ଶୃଙ୍ଗ ।
ମେରୁ ପବନର ବିବାଦ ପରସଙ୍ଗ ॥୪॥
ଶ୍ରୀରାମ ପଚାରନ୍ତି ଶୁଣସି ବେନି ଭ୍ରାଥ ।
ମେରୁ ପବନର ବିବାଦ କେବଣ ଯୁଗତ ॥୫॥
କୁମର କହଇ ଏ ଅପୂର୍ବ ରସ ବାଣୀ ।
ମେରୁର ପୁତ୍ର ମାଦ୍ରି ମାରିଷା ନାମ ଦୁଲ୍ଲଣୀ ॥୬॥
ମାଦ୍ରି ନାମ ତାହାର ଜେଷ୍ଟ ପୁତ୍ର ।
ମହାପ୍ରତାପୀ ସେ ଅତି ବଳବନ୍ତ ॥୭॥
ଭାଇ ଭଗିନୀ ସେ ମେରୁ ଉପେଖି ଥାନ୍ତି ।
ଦିବ୍ୟ ପଦାଏକ ତହିଁ ଆସି ଖେଳନ୍ତି ॥୮॥

ପବନର ତନୟ ଚଣ୍ଡତିଳା ନାମ ।
ତାହାର ତହୁଁ ବଳବନ୍ତ ଆନ ନ ଦେଖଇ ସମ ॥୯॥
ଦେହୀ ଦିବ୍ୟ ଗନ୍ଧର୍ବ ସେ ଖେଳନ୍ତି ନିତି ।
ମାରିଷା ସ୍ୱରୂପ ଦେଖି ମୋହେ ବଶ୍ୟ ହୁଅନ୍ତି ॥୧୦॥
ମାଦ୍ରି ମୁଖ ଚାହିଁ କହଇ ପ୍ରଚଣ୍ଡ ।
କଥାଏ କହିବି ନ କରିବୁ ଖଣ୍ଡ ॥୧୧॥
ମାଦ୍ରି ବୋଇଲା କହୁକିନା କିସ କଥା ।
ଶୁଣଇ ତୋହର କେବଣ ବେବସ୍ଥା ॥୧୨॥
ଚଣ୍ଡ କହଇ ମାଦ୍ରି ତୋହର ବହେଣୀ ।
ଆମ୍ଭକଇ ବିଭା କର ମୋହର ତରୁଣୀ ॥୧୦॥
ମାଦ୍ରି ବୋଇଲା ମୋହର ପିତା ଜଗତେ ବିଖ୍ୟାତି ।
ପିତା ସେ ପ୍ରଦାନ କରିବ ଯୁକତି ॥୧୪॥
ମୋହର ବୋଲେ କି ହୋଏ ବିଭା କରି ।
ଅନୀତି କଥା କିମ୍ପା କହୁ ନ ବିଚାରି ॥୧୫॥
ଚଣ୍ଡତିଳା କହଇ ତୁହି ନ ଦେବୁ ଯେବେ ।
ବଳେ କନ୍ୟାକଇ ନେମୁ ଆମ୍ଭେ ଏବେ ॥୧୬॥
ମାଦ୍ରି କହଇ ରେ କିସ ତୁମ୍ଭର ବଳ ।
କେବଣ ଦର୍ପେରେ ଏକଥା କହ ଖଳ ॥୧୭॥
ଏସନେକ କଥା ଚଣ୍ଡ(କୁ) କହିଲାକ ଯହୁଁ ।
ମାଦ୍ରିକି ବିଧାଏ ମାଇଲାକ ତହୁଁ ॥୧୮॥
ବିଧୀର ଘାଏ ମାଦ୍ରି ଅଚେତ ହୋଇଲା ।
ପହରେ ପରିଯନ୍ତେ ଅଜ୍ଞାନ ହୋଇଲା ॥୧୯॥
ଚେତନା ପାଇ ସେ ମାଦ୍ରି ମହାବୀରଇ ।
ଧାଇଁ ଯାଇ ଦୁଇ ଭାଇଙ୍କର ବାଳ ଧରଇ ॥୨୦॥
ବିଧାଏ ବିଧାଏ କରି ମାଇଲେ କୋପ କରି ।
ନିଚେଷ୍ଟ ହୋଇ ଚଣ୍ଡତିଳାଏ ପଡ଼ିଲେ ପ୍ରାଣ ହାରି ॥୨୧॥
ମାଦ୍ରି ମାରି(ଷା) ସଙ୍ଗେ ତହୁଁ ଗଲେ ।
କ୍ଷଣକେ ଚଣ୍ଡତିଳାଏ ଚେତନା ପାଇଲେ ॥୨୨॥
ଦେଖନ୍ତି ମାଦ୍ରି ମାରିଷା ସଙ୍ଗେ ନାହିଁ ।
ପିଅର ଆଗରେ କାନ୍ଦି କହିଲେ ସେ ଯାଇ ॥୨୩॥
ପୁତ୍ରକଇ ଦେଖି ପଚାରଇ ପବନ ।
କାହାର ତୁଳେ କଳି ଦ୍ୱନ୍ଦନ କଲେ ନନ୍ଦନ ॥୨୪॥
ଧୂଳିଧୂସର ହୋଇଅଛି ଦୁହିଙ୍କରି ଶରୀର ।
ଆବର ମୁଖେ ତ ରୁଧିର ବାହାର ॥୨୫॥

ଚଣ୍ଡତିଳାଏ କହନ୍ତି ଶୁଣସି ହୋ ତାତ ।
ମେରୁର ତନୟେ ମାଦ୍ରି ମାଇଲା ଆମ୍ଭନ୍ତ ॥୨୬॥
ତାହାର ଭଗ୍ନୀ ମାରିଷା ମାଗିଲୁ ଯହୁଁ ।
ଆମ୍ଭଙ୍କୁ ମାରି ସେ ପଳାଇଲେ ତହୁଁ ॥୨୭॥
ଶୁଣିଣ ପବନ ଯେ ମହାକୋପ କରଇ ।
ବୋଇଲା ଆଜ ସେ ଶତେ ଚୂର କରିବି ମେରୁଇ ॥୨୮॥
ମାଦ୍ରିକି ମାରିବି ମାରିଷାକୁ ଆଣିବି ।
ସେ କନ୍ୟା ତୁମ୍ଭକଇ ବିଭା କରାଇବି ॥୨୯॥
ଏସନେକ କହି ତହୁଁ ଗଲାକ ମରୁତ ।
ମେରୁର ସନିଧେ ମିଳିଲାକ ତୁରିତ ॥୩୦॥
ମେରୁକୁ ହାକ ଦେଇ ଅଦିତିକୁମର ।
ପାରୁ ଯେବେ ମୋହର ତୁଳେ ସମର କର ॥୩୧॥
ମୋହର ପୁତ୍ରକୁ ମାଇଲା ତୋହର ମାଦ୍ରି ।
ତେଣୁ ସେ ଆଜ ମୁହିଁ ଅବଶ ତୋତେ ସାଧି ॥୩୨॥
ନ ରହ ତୁ ଏଥେ ଯେବେ ନିଶ୍ଚିନ୍ତେ ଥିବୁ ।
ତୋହର ଦୋହିତା ମୋହର ପୁତ୍ରକଇ ଦେବୁ ॥୩୩॥
ଶୁଣିକରି ମେରୁ ଗିରି କଲାକ ମହାକୋପ ।
କିସରେ ମୋହର ଆଗେ କହୁ ତୁ ବୀବସ୍ଥ ॥୩୪॥
ମୁହିଁ ତୋହର ବଳବୀର୍ଯ୍ୟ ପ୍ରତକ୍ଷେ ଜାଣଇଁ ।
ଦେଖଇ ଶଉର୍ଯ୍ୟ ତୋହର କେତେକ ପ୍ରାକର୍ମଇ ॥୩୫॥
ମାରିଷା କନ୍ୟାକୁ (କି) ତୋହର ପୁତ୍ର ସରି ।
ତିନି ଭୁବନ ମୋହଇ ମୋହର କୁମାରୀ ॥୩୬॥
ପନ୍ଦର ହି ନୁହଇ ସତର ହି ନୁହଇ ।
ଦୁଇ ଅଷ୍ଟ ବରଷ ଜଗୁଜନ ମୋହଇ ॥୩୭॥
ମେରୁର ବଚନ ଯହୁଁ ପବନ ଶୁଣିଲା ।
ଅଣଆଶ ପବନ ସେ ତୁରିତେଣ ବହିଲା ॥୩୮॥
ଧଉର୍ଯ୍ୟପଣେ ସେ ମେରୁ ଅଛି ସହିଁ ।
ରୋମେଏକ ଭୟ ନୋହିଲା ଭୟେ ତାହାର ନାହିଁ ॥୩୯॥
ମେରୁକୁ ଯହୁଁ ଟାଳି ନ ପାରିଲା ।
ଶୂନ୍ୟର ମଧେ ପବନ ଲୁଚିଲା ॥୪୦॥
ଶ୍ରୀରାମର ଆଗେ ଲବକୁଶ କହି ।
ଯେବଣ ପଦ ଅଳପ ଅନ୍ତର ହୁଅଇ ଅର୍ଥ କରି କହଇ କୁଶାଇ ॥୪୧॥
ବ୍ରହ୍ମା ପଉଲସ୍ତିର ଆଗେ କହିଲାକ ଯାହା ।
ତୁମ୍ଭର ଆଗେ ମୁହିଁ କହୁଅଛି ତାହା ॥୪୨॥

ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ଶରୀର ଆଶ୍ବାସି ମୁଖେ ଚୁମ୍ବନ ଦେଲେ ॥୪୩॥
ଶୁଣିଣ ପୃଛାକଲେ ଦଶରଥର ନନ୍ଦନ ।
ମେରୁକୁ ହାରି ଯେ ଲୁଚିଲା ପବନ ॥୪୪॥
ତଦନନ୍ତରେ ହୋଇଲାକ କିସ ।
କହସି ବିସ୍ତାରି ଏ ଅତି ଅମୃତ ରସ ॥୪୫॥
ଲବକୁମର କହଇ ପବନ ଲୁଚିଲାକ ଯହୁଁ ।
ସମସ୍ତେ ଦେବଗଣେ ବିଷାଦ ହୋଇଲେକ ତହୁଁ ॥୪୬॥
ବ୍ରହ୍ମା ବିଷ୍ଣୁ ଦେବଇନ୍ଦ୍ର ସହିତେ ।
ପବନକୁ କହନ୍ତି ଦେବଗଣ ସହିତେ ॥୪୭॥
କିମ୍ପାଇ ମାରୁତି ହୋଇଲୁ ଗୁପତ ।
ନାଶ କରିବୁ କିକି ତୁହି ତିନି ଜଗତ ॥୪୮॥
ପବନ କହଇ ମୋହର ଜୀବନେ କିସ କାର୍ଯ୍ୟ ।
ବଡ଼ ସଙ୍କଟ ମୁହିଁ ପାଇଲଇ ଆଜ ॥୪୯॥
ମେରୁର ସାଦୃଶେ ସମର ଘୋର କଲି ।
ପରାକ୍ରମେ ମୁହିଁ ତାହାକୁ ସାମର୍ଥ ନୋହିଲି ॥୫୦॥
ପବନ ବଚନ ଶୁଣି ଦେବଗଣ ।
ମେରୁର ସନିଧେ ମଳିଲେ ତତକ୍ଷଣ ॥୫୧॥
ବ୍ରହ୍ମା କହଇ ଶୁଣସି ମହାନାଗ ।
ପବନକଇ ମହାତ୍ମା ଛାଡ଼ସି ବଇରାଗ ॥୫୨॥
ସକଳ ଜୀବଜନ୍ତୁକୁ ତୁହି ରକ୍ଷା କରିବୁ ।
ଆମ୍ଭର ବଚନେ ତୁହି ଶିଂଘେକ ଦେବୁ ॥୫୩॥
ଦେବଙ୍କର ବିନୟ କଥା ଯହୁଁ ମେରୁ ଶୁଣିଲା ।
ଶିଂଘକଇ ଦେବି ବୋଲି ସନମତ କଲା ॥୫୪॥
ପୁଣି ଆସି ପବନକୁ କହିଲେ ବେଦବର ।
ଏବେ ମେରୁ ତୁଲେ ତୁହି କରସି ସମର ॥୫୫॥
ସମସ୍ତ ଦେବତାଙ୍କର ତେଜ ବଳ ଦେବୁ ।
ପିଠି ରକ୍ଷା ହୋଇ ତୋହର ପଛେ ଥିବୁ ॥୫୬॥
ବ୍ରହ୍ମାର ବଚନେ ପବନ ପ୍ରଖରେ ବହିଲା ।
ମେରୁର କନେକ ଶିଂଘ ଉଡ଼ାଇଣ ନେଲା ॥୫୭॥
ଏ ଖୀର-ସମୁଦ୍ରେ ପଡ଼ିଲାକ ଯହୁଁ ।
ରକ୍ଷଭକ୍ଷ ଲଙ୍କାପୁର ନିର୍ମାଣ କଲେ ତହୁଁ ॥୫୮॥
ପଉଲସ୍ତ୍ୟଙ୍କର ଆଗେ ଯହୁଁ କହିଲେ ବିଧାତ ।
ଶ୍ରୀରାମର ସଭାରେ କହନ୍ତି ସୀତାଦେବୀସୁତ ॥୫୯॥

ଅସୁର କ୍ଷୟାନ୍ତେ ଦେବ ମୁରାରି ।
ସକଳ ଦନୁଜନ୍ତ ବାରେ ବାରେ ସଂଘାରି ॥୬୦॥
ସୁମାଳି ଦଇତ୍ୟ ଯେ ଲଙ୍କାଏଣ ଥିଲା ।
ଶ୍ରୀହରିର ଡରେ ସେ ପାତାଳେ ପଶିଲା ॥୬୧॥
ତେଣେ ସେ ଲଙ୍କାପୁରେ ଅସୁରବଂଶ ନାହିଁ ।
ତୋହର ପୁତ୍ର ନାତି ଘେନି ତହିଁ ଥାସି ରହି ॥୬୨॥
ପାଞ୍ଚ ମନୁ ପରିଯନ୍ତେ ମୁହିଁ ସେ ପୁରେଣ ଥିଲି ।
ତୋହର ଉପୁଜନ୍ତେ ସେ ତାହା ମୁଁ ଉପେଖିଲି ॥୬୩॥
ଅତି ପବିତ୍ର ସେ ସୁବର୍ଣ୍ଣମୟେ ପୁର ।
ସେ ଭୁବନେ ଏବେ ତୁହି ବିଶ୍ରାମ କର ॥୬୪॥
ବ୍ରହ୍ମାର ବଚନ ଶୁଣି ପଉଲସ୍ତି ମହାରଷି ।
ପୁତ୍ରନାତି ଘେନି ଲଙ୍କାରେ ପ୍ରବେଶ ହୋଇଲେକ ଆସି ॥୬୫॥
ଦେଖିଲେ ସେହୁ କନେକମୟେ ଭୁବନ ।
ବିଶର୍ବାକୁ କହିଲେ ପଉଲସ୍ତି ମହାମୁନ୍ୟ ॥୬୬॥
ପୁତ୍ରବଧୂ ଘେନି ତୁହି ଏଥ ଥାସି ।
ମଞ୍ଜପୁରେ ସ୍ଥିତି କରି ମୁଁ ହୋଇଲି ତୀର୍ଥବାସୀ ॥୬୭॥
ଏସନେକ କହି ତହୁଁ ପଉଲସ୍ତି ଗଲେ ।
ଲଙ୍କାପୁରେ ବିଶ୍ରାମ ମହରଷି କଲେ ॥୬୮॥
ଦୁଇପୁତ୍ର ଘେନି ବିଶର୍ବା ତପଚାରୀ ।
ଶିବର ପୟରେ ଓହନିଶି ସେବା କରି ॥୬୯॥
(ଅତି ସୁସଞ୍ଚ କନକମୟେ ଭୁବନ ।
ହରଷେ ତପ କରନ୍ତି ବିଶର୍ବା ମହାମୁନ୍ୟ ॥୭୦॥
ବୈଶ୍ରବଣ ନାମେଣ ଯେବଣ ପୁତ୍ର ।
କ୍ଷୟ ରୋଗେଣ ସେ ହୋଇଲା ପ୍ରାଣେ ହତ ॥୭୧॥
ବଇଶ୍ରବଣ ନାମେଣ ଯେବଣ କୁମାରଇ ।
ରାତ୍ର ଦିବସରେ ଈଶ୍ବରଙ୍କୁ ସେବା କରଇ ॥୭୨॥
ଭାବେଣ ଭଗତି ସେ ଘେନିଲେ ପଶୁପତି ।
କୁବେର ପଦ ବଇଶ୍ରବଣକୁ ଦେନ୍ତି ॥୭୩॥
ପୁଷ୍ପକ ବିମାନ ରଥ ଆସନ ପାଇଲା ।
ଈଶ୍ବର ପ୍ରସାଦେ ଲକ୍ଷ୍ମୀ ଅଚଳାଚଳ ହୋଇଲା ॥୭୪॥
ଦକ୍ଷ ପୁରୁଷେ ତାହାକୁ କରନ୍ତି ଭଗତି ।
ଦେବଗଣଙ୍କର ସଙ୍ଗେ ତାହାର ବଢ଼ିଲା ପ୍ରୀତି ॥୭୫॥
ଶୂନ୍ୟରେ ରଥ କରଇ ଗମନ ।
ଦିଗପାଳଙ୍କର ମଧ୍ୟେ ସେ ଅଟଇ ମୋକ୍ଷମାନ ॥୭୬॥

ଲଙ୍କା ଭୁବନେ ଦୁଇଶତ ଚଉବିଂଶ ନଦୀ ବହଇ ।
ଶ୍ରୀରାମର ସଭାରେ ଲବ କୁମର କହଇ ॥୭୭॥
ଯେବଣ ପଦ ଅବା ହୁଅଇ ଅନ୍ତର ।
ଅର୍ଥ କରି ବୁଝାଇ ତାହା କୁଶ କୁମର ॥୭୮॥

X X X

ମଧ୍ୟରେ ନଦୀ ଯେ ମଣିବତୀ ନାମ ।
ତହିଁର ତଟେ ବିଶର୍ବା ମୁନିର ଆଶ୍ରମ ॥୧॥
ଜପେ ତପେ ସେ ମନ ନିବୃତି ।
କୁବେର ଭ୍ରମେ ସେ ଖେଳଇ ଚଉକତି ॥୨॥
ଲବକୁଶେ କହନ୍ତି ଶ୍ରୀରାମର ଅଗ୍ରତେ ।
ଶୁଣନ୍ତି ବଶିଷ୍ଠ ଋଷି ଅମନାତ୍ୟେ ॥୩॥
ନଗ୍ର ଲୋକେ ଶୁଣି ସେ ତୋଷ କରନ୍ତି ମନ ।
ଶ୍ରବଣେ ଶୁଣନ୍ତି ଯେ ଅମୃତମୟେ ବଚନ ॥୪॥
ଏସନେକେ କେତେହେଁ ସମୟ ବହିଯିବ ।
ବିଧାତା ନିର୍ମାଣ କେ ଅନ୍ୟସ୍ଥା କରିବ ॥୫॥
ସୁମାଳି ଦଇତ୍ୟ ଯେ ପାତାଳେ ଅଛି ରହି ।
ପୁସ୍ୟଦନ୍ତ ଦୋହିତାକୁ ବିଭା ହୋଇଲା ସେହି ॥୬॥
ସଦାନିକା ନାମ ଯେ ପୁସ୍ୟଦନ୍ତଙ୍କ ନନ୍ଦନୀ ।
ତାହାର ଗର୍ଭେ ଜାତ ଦୋହିତା ତିନି ॥୭॥
ପୁତ୍ରେକ ଉପୁଜିଲା ଯେ ବଳବନ୍ତ କ୍ଷତ୍ରି ।
ଜମ୍ଭୋମାଳି ବୋଲି ଯେ ତାହାର ନାମ ବିଖ୍ୟାତି ॥୮॥
ଅସୁର ବଂଶ ଯେ ପୃଥ୍ୱୀରେ ନ ଥିଲେ ।
ସୁମାଳିକି ଆଶ୍ର(ଯ) କରି ପାତାଳେ ରହିଲେ ॥୯॥
ଏହେର୍ଣ୍ଣେକ ସୁମାଳି ଯେ ପାତାଳେ ବିଶ୍ରାମ କରଇ ।
ପୁଣି ନିତି ଲଙ୍କାପୁରୀ ମନେ ମନେ ଝୁରଇ ॥୧୦॥
କେବଣ ଦିନେକ ଭାଳଇ ଲଙ୍କାପୁରକଇ ଯିବି ।
ଏକସ୍ୟରେ ନଗ୍ର ଭ୍ରମି ଆସିବି ॥୧୧॥
କାଖେ ଶୂଳ ଚାପି ହୁଅନ୍ତେଣ ବାହାରି ।
ନଉକେଶା ନାମେଣ ଯେ ଯେବଣ ଦୋହିତା ତାହାରି ॥୧୨॥
ପିତାର ଯାଆନ୍ତେ ପୁତ୍ରୀ ଧରଇ ହସ୍ତ ।
କାହିଁକି ଗମନ କରୁସି ଗୋ ତାତ ॥୧୩॥
ସୁମାଳି କହଇ ଶୁଣସି ଗୋ ଦୁଲଣୀ ।
ନିଜ ଭୁବନକୁ କରିବି ଭ୍ରମଣି ॥୧୪॥
ତେଣୁ ସେ ତୁଲେ ତୋତେ ନେମଇଁ କାହିଁ ।
ଗୁପତ କଥା ପ୍ରଘଟ ନ କର ଗୋ ଆଇ ॥୧୫॥
ନିଶ୍ଚିନ୍ତ ହୋଇଣ ତୁହି ଥିରେ ରହି ଥାସି ।
କେହି ନ ଜାଣନ୍ତୁ ବାହୁଡ଼ିଣ ଯାସି ॥୧୬॥
ନଉକେଶା ବୋଇଲା ଶୁଣସି ହୋ ତାତ ।
ମୁହିଁ ଦେଖିବି ତୋହର ଦେଶ କେବଣ ଚରିତ୍ର ॥୧୭॥
କେସନେକ କଥା ତୋହର ଭୁବନ ।
ଦେଖିଲେ ଶରଧା ହୋଇବ ମୋହର ମନ ॥୧୮॥
ନ କର ନିଷେଧ ତାତ କହଇ ମୁହିଁ ।
କାନ୍ଦି କହଇ ନଉକେଶା ପିଅର ମୁଖ ଚାହିଁ ॥୧୯॥
କାନ୍ଦନ୍ତେ ସୁମାଳିର ଦୟା ବସିଲା ।
ଝିଅ ହସ୍ତ ଧରି ବିମ୍ବରୁ ବାହାର ହୋଇଲା ॥୨୦॥
ଲଙ୍କାଭୁବନେଣ ତୁରିତେଣ ମିଳନ୍ତି ।
ପୂର୍ବର ସଂକେତ ସୁମାଳି ଚାହାଇଁ ଚଉକତି ॥୨୧॥
କିଛି ହିଁ ନାହିଁ ଭୂମି ମାତ୍ର ଅଛି ।
ଦେଖି ଦାନବରାଜାର ନ ପୂରଇ କିଛି ॥୨୨॥
ବିବିଧ ଜୀବେ ଚଉକତି କି ରଡ଼ନ୍ତି ।
ଜନମନୁଷ୍ୟ ନ ଥିଲେ ପଶୁଜନ୍ତୁ ବିହିଧିତି ॥୨୩॥
ନଉକେଶା କାମେନୀ ବନଜୀବନ୍ତ ଦେଖି ।
ବନଜୀବନ୍ତ ଚାହାଇଁ ଚାଲିବା ଉପେଖି ॥୨୪॥
ଏମନ୍ତେ ପଞ୍ଚାଶ ଯୋଜନ ଭ୍ରମଣି କଲେ ।
କୁବେର ଖେଳୁଅଛି ଯାଇଣ ଦେଖିଲେ ॥୨୫॥
କର୍ଣ୍ଣେଣ କୁଣ୍ଡଳ ବିବିଧ ବିଦ ମୁଦି ହାରଇ ।
ଝୀନବସନ ପିନ୍ଧିଅଛି ବିଶର୍ବାର କୁମରଇ ॥୨୬॥
ଚନ୍ଦନ ଟୋପି ମୃଗନାଭି ଚିତା ।
ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ପିତା ଦୋହିତା ॥୨୭॥
ସନିଧେ ସୁମାଳି ମିଳିଲେ ତୁରିତ ।
ବାମ କରେ ଧରି ଅଛି କୁମାରୀ ହସ୍ତ ॥୨୮॥
ଦେଖିଣ ବଇଶ୍ରବଣ ଦେହ ଶଙ୍କା କଲା ।
ଶୂଳ କରେ ଧରି ଦନୁଜ ଉଭା ହୋଇଲା ॥୨୯॥
କୁବେର ବିଚାରଇ ଏ ସୁମାଳି ଅସୁର ।
ପାତାଳୁ ବାହାର ହୋଇ ଅଇଲା ଲଙ୍କପୁର ॥୩୦॥
ଡରେ କୁବେର ସମାସ୍ୟା ନ ଦେଲା ।
ସୁମାଳି ଦନୁଜ କୋପେ ପଚାରିଲା ॥୩୧॥
କି ହୋ ମହାତମା କାହିଁ ତୁହି ଥିଲୁ ।

ଏ ମୋହର ନଗ୍ରେ କିମ୍ପା ବିଶ୍ରାମିଲୁ ॥୩୨॥
କୁବେର କହଇ ଏ ତୋହର ନିଜ ଦେଶ ।
ତୋତେ ନ ଦେଖି କଲୁ ଏଥି ବାସ ॥୩୩॥
ତୋହର ରାଜ୍ୟ ବୋଲି ବିଧାତା କହିଲା ।
ମଞ୍ଚ ଭୁବନକୁ ତପ କରି ଗଲା ॥୩୪॥
(ଏ ପୁରେ ଜନ୍ମିଲେ ପୌଲସ୍ତି ମହରଷି ।
ତାହାଙ୍କର ତନୟେ ବିଶର୍ବା ମହରଷି ।
ତାହା ଶୁଣି ସୁମାଳି ହୋଇଲାକ ତୋଷି ॥୩୫॥
ପିତାପୁତ୍ରଙ୍କୁ ମୁନି ଆମ୍ଭକଇ ଥୋଇ ।
ନାନା ତୀର୍ଥେ ପୌଲସ୍ତ ଗଲେ ପଛୁ ବହି) ॥୩୬॥
ତୋହର ରାଜ୍ୟେ ତୁହି ବିଶ୍ରାମ କର ।
ଏହିକ୍ଷଣି ନବରୁ ତୋହର ହୋଇବୁ ବାହାର ॥୩୭॥
ଶୁଣିଣ ସୁମାଳି ହୋଇଲା ହରଷ ।
ବାଳୁତ (ହୋଇ) ହୋଇଲୁ ତୁ ପରମ ବିଧ୍ୱଂସ ॥୩୮॥
ତୋହର ପିତା ଏଥେ ଅଛି ଯେବେ ।
ତାହାର ଥାଉ ତୋତେ କିସ ବୋଲିବା ଏବେ ॥୩୯॥
ତୁହି ତ କହିଲୁ ଅମୃତମୟେ କଥା ।
ଶୁଣଇ କିନା ତୋହର ପିତାର ବାରତା ॥୪୦॥
କାହିଁ ଅଛି ମୁନି ଦେଖାଅସି ମୋତେ ।
ତୋହର କଥା ଶୁଣି ବଶ୍ୟ ହୋଇଲି ତୋତେ ॥୪୧॥
ଆସ ବୋଲି କୁବେର ଆଗ ହୋଇଲା ।
ଦୋହିତାର ଭୁଜ ଧରି ସୁମାଳି ପଛେ ଗଲା ॥୪୨॥
ମଣିବତୀ ନଦୀର ଉତ୍ତରାଅଙ୍କର ତୀରେ ।
ଅନେକ ପୁଷ୍ପ ଗନ୍ଧେ କି ଉଡ଼ନ୍ତି ଭ୍ରମରେ ॥୪୩॥
ବେଲବନିକା ଭିତରେ ବିଶର୍ବା ଅଛନ୍ତି ତପେ ।
ସୁମାଳି ମିଳିଲା ବିଶର୍ବାଙ୍କର ସମୀପେ ॥୪୪॥
ପିତାର ସନିଧେ କୋବେର ଉଭା ହୋଇଲା ।
ବିଶର୍ବା ମୁଖ ଚାହିଁ ସୁମାଳି କହିଲା ॥୪୫॥
କିସ ହୋ ଯତି କିସ ଅବିଚାର ତୁମ୍ଭର ।
କାହୁଁ ଆସି ବିଶ୍ରାମିଲ ମୋହର ପୁର ॥୪୬॥
ଯୋଗ ଲୟେ ଅଛନ୍ତି ନ ଶୁଣିଲେ ତପୋଧନ ।
କୋପେ ସୁମାଳି ତରାଟଇ ନୟନ ॥୪୭॥
ପ୍ରଚଣ୍ଡ ମୂର୍ତ୍ତି କରି ଦୀର୍ଘେ ରଡ଼ି ଏକ ଦେଲା ।
ଢଳି ମହରଷି ପଡ଼ି ନିଚେଷ୍ଟ ହୋଇଲା ॥୪୮॥
(କୁବେର ସନିଧେ ଯେ ଥିଲା ଉଭା ହୋଇ)
କୋଳେ ଧରି ପିତାର ମୁଖେ ନୀର ଆଣି ସିଞ୍ଚଇ ॥୪୯॥
ବିଞ୍ଚଣା ଘେନି ସନିଧେ ବିଞ୍ଚିଲା ।
ତେବେ ସେ ମୁନିବର ଦେହରେ ପ୍ରାଣ ପଶିଲା ॥୫୦॥
ଚେତନା ପାଇ ଚାହାନ୍ତି ମହାମୁନି ।
ଶୂଳ ଘେନି ଉଭା ହୋଇଛି ଦନୁଜ ମଣି ॥୫୧॥
ବିଶର୍ବା ମୁଖ ଚାହିଁ ପଚାରଇ ସୁମାଳି ।
କିପାଇଁ ମୋହର ନଗରେ ରହିଛୁ ତପଶ୍ୟାଳି ॥୫୨॥
ବନ କନ୍ଦରେ ସେ ଋଷିଙ୍କର ଆଶ୍ରମ ।
ଧ୍ୱଂସ କରୁ କିମ୍ପା ମୋହର କନେକ ଭୁବନ ॥୫୩॥
ଶୁଣି ବିଚାରଇ ବିଶର୍ବା ମହାଋଷି ।
ଏହି ସେ ସୁମାଳି ପାତାଳେ ଥିଲା ପଶି ॥୫୪॥
ଏହାର ରାଜ୍ୟକଇ ଅଇଲାନି ଯେବେ ।
ଏ ନଗ୍ର ଉପେଖି ଯିବୁ ଆମ୍ଭେ ଏବେ ॥୫୫॥
ବିଶର୍ବା ବୋଇଲେ ଆମ୍ଭେ ଜମ୍ବୁଦୀପେ ଥିଲୁ ।
ଶୂନ୍ୟ ଭୁବନ ଦେଖି ଏଥେ ବିଶ୍ରାମିଲୁ ॥୫୬॥
ପଉଲସ୍ତି ମହରଷି ମୋହର ହୁଅନ୍ତି ପିତା ।
ଏଥେ ରହିବାକୁ ପଠିଆଇଲା ବିଧାତା ॥୫୭॥
ବଂଶାନୁବଂଶ ଏ ତୋହର ନବର ।
ଏବେ କନେକ ପୁରେ ତୁହି ବିଶ୍ରାମ କର ॥୫୮॥
ତୁହି ଯେବେ ବୋଲିବୁ କତିରେ ହୋଇ ଥିବୁ
ନଉଚେତେ ଏହିକ୍ଷଣି ତ ବାହାର ହୋଇଯିବୁ ॥୫୯॥
ଶୁଣିଣ କୋପ ଶ୍ୟାନ୍ତି କଲେକ ସୁମାଳି ।
ମନେ ମନେ ବିଚାରଇ ଅସୁର ଦୁଲାଳୀ ॥୬୦॥
ଏ ଋଷି ଧାର୍ମିକ ବ୍ରହ୍ମାଙ୍କ କୋଳେ ଜାତ ।
ଏହାର ବୀର୍ଯ୍ୟେ ଉପୁଜିବ ଏସନେକ ସୁନ୍ଦର ପୁତ୍ର ॥୬୧॥
ଅତି ରୁଚିର ରୂପେ ମଦନ ମୂରତି ।
ଦହନ କାଞ୍ଚନ ଜାଣି ଦିଶଇ ଦେହ ଜ୍ୟୋତି ॥୬୨॥
ପୂର୍ବେ ତପ କରିଅଛି ଯେବେ ।
ଏହାକୁହି ପିତା ମୋହର ବିଭା କରିବ ଏବେ ॥୬୩॥
ଏସନେକ ନଉକେଶା ହୃଦରେ ବିଚାରନ୍ତେ ।
ସୁମାଳିର କଣ୍ଠେ ଶାରଦା ବସିଲା ତୁରିତେ ॥୬୪॥
ସୁମାଳି ପୁଚ୍ଛଇ ଶୁଣସି ନନ୍ଦନୀ ।
ଏ ମହରଷିର ତୁହି ହୋଇବୁ କି ଭାବେନୀ ॥୬୫॥

ହୃଦୟରେ ଇଚ୍ଛା ଯେବେ ତୋହର ମନ ।
ଆଜ ଏହାକୁ ତୋତେ କରିବି ପ୍ରଦାନ ॥୬୬॥
ଋଷିର ବୀର୍ଯ୍ୟେ ଯେବେ ହୋଇବ (ତନୟ) ଉତପତି ।
ସେ ଭୋଗ୍ୟ କରିବ ମୋହର ନିଜ (ବାଡ଼) ବୃତି ॥୬୭॥
ନଉକେଶା କହଇ ତାତ ତୋହର ଯେ ଇଚ୍ଛା ।
ପିତାର ବଚନ ମୁଁ କି କରଇ ମିଥ୍ୟା ॥୬୮॥
ଶୁଣିଣ ଦନୁଜ ରାଜା ହରଷ ହୋଇଲା ।
ବିଶର୍ବା ମୁଖ ଚାହିଁ ସୁମାଳି କହିଲା ॥୬୯॥
(ବୋଲଇ ଦଇତ ଶୁଣ ମହରଷି ।
ଏ ମୋହର ଦୁହିତାକୁ ପ୍ରଦାନ ହୁଅସି ॥୭୦॥
ଶୁଣିଣ ମଉନ ହୋଇଲେ ତପଶ୍ୟାଳି ।
ଆତ୍ମା ଉସର୍ଗିଲା ମନେମନେ ଭାଳି ॥୭୧॥
ବିଶ୍ରର୍ବା ମୁଖ ଚାହିଁ ସୁମାଳି କହଇ ନିରୁତ ।)
ଭୋ ମହରଷି ତୁ ମହତ ପୁଣ୍ୟବନ୍ତ ।
ତୋ ତହୁଁ ବୁଦ୍ଧି ସୁଶୀଳ ତୋହର ପୁତ୍ର ॥୭୨॥
ପିତା ପୁତ୍ର ଦୁହିଙ୍କରି ଏକ ପରକୃତ ।
ତୁମ୍ଭର ବଚନ ଶୁଣି ହୋଇଲି ଧୃରତି ॥୭୩॥
ଏ ରାଜେ ଏବେ ବିଶ୍ରାମି ଅଛ ଯେବେ ।
ଏହୁ ରାଜ୍ୟ ଭୋଗ କର କିନା ତେବେ ॥୭୪॥
ଯାହା କହିବୁ ନ କରିବୁ ଆନ ।
ଏ ମୋହର ନନ୍ଦନୀକି ତୋତେ କରିବି ପ୍ରଦାନ ॥୭୫॥
ଶୁଣିଣ ମନେ ମନେ ଭାଳଇ ତପଶ୍ୟାଳି ।
ଆତ୍ମ ଉଛର୍ଗିଲା ଶରୀରୁ ଝାଳ ଗଳି ॥୭୬॥
ଅସୁର ପୁରେ ଆମ୍ଭେ କଲୁ ଯେବେ ବାସ ।
ସେ କାରଣେ କରି ହୋଇଲୁ ଜାତିନାଶ ॥୭୭॥
ନୀଚ ସ୍ତିରୀଙ୍କର ତୁଲେ ରମଣ କରନ୍ତେ ।
ନର୍କ ଗତି ତାହାକଇ ଦିଅନ୍ତି ଯମଦୂତେ ॥୭୮॥
ଦୋହରା ଅଗ୍ନି ଛୁଇଁବି କେସନେ ।
ଉପହାସ୍ୟ କରିବେ ମୋତେ ତପୋଧନମାନେ ॥୭୯॥
ଏସନେକ ବିଶର୍ବାଏ ଭାଳୁଛନ୍ତି ଯହୁଁ ।
କୋପେଣ ସୁମାଳି ସମାସ୍ୟା ଦିଅଇ ତହୁଁ ॥୮୦॥
କି ହୋ ଯତି ତବଦ ହୋଇଲୁ ।
ଅସ୍ତି ନାସ୍ତି କଥା କିଛି ହି ନ କହିଲୁ ॥୮୧॥
ମୋହର ବଚନ (ନ) କରିବୁ ଯେବେ ।
ପିତାପୁତ୍ର ଦୁହିନ୍ତି ବିନାଶିବି ଏବେ ॥୮୨॥
ସନମତ ବାକ୍ୟ କହିଲେ ମହାମୁନି ।
ହୋଇବଇ ବିଭା ତୋହର ନନ୍ଦନୀ ॥୮୩॥
ସୁମାଳି କହଇ ଆବର ଅଛଇ ଦୁଇ କୁମାରୀ ।
ତିନି କନ୍ୟାକୁ ବିଭା ହୋଇବୁ ତପଚାରୀ ॥୮୪॥
ଦୋହିତାର ଗର୍ଭେ ପୁତ୍ର ଉପୁଜିବାର ନିମନ୍ତେ ।
ତେସନକଇ ତ ଦେବଇ ସିନା ତୋତେ ॥୮୫॥
ଏ(କ) କୁମାରୀ ଯେବେ ବନ୍ଧ୍ୟା ହୋଇବ ।
ଆରକର କୋଳେ ତନୟ ଉପୁଜିବ ॥୮୬॥
ସତ୍ୟ ଉଚାରୁ ଯେବେ ଇଚ୍ଛା ତୋହର ମନ ।
ସତ୍ୟ ସତ୍ୟ କଲେ ପୌଲସ୍ତି ମହାମୁନ୍ୟ ॥୮୭॥
ଶୁଣିଣ ସଭାଲୋକେ ହଂସିଲେ କୁତୂହଳେ ।
ବିସ୍ତାରି ଗୀତ ଗାବନ୍ତି ସୀତୟାର ଦୁଲାଳେ ॥୮୮॥
ସତ୍ୟ ମନାଇଁ ତହୁଁ ଅସୁର ବୀର ଗଲା ।
ପାତାଳ ବିମ୍ବରେ ପ୍ରବେଶ ହୋଇଲା ॥୮୯॥
ଭାରିଯାକୁ କହଇ ଯଥାବିଧି ବାଣୀ ।
ଶୁଣିଣ ହରଷ ହୋଇଲେ ଦନୁଜ ଘରଣୀ ॥୯୦॥
କନ୍ୟାନ୍ତ ଘେନି ତହୁଁ ଶୀଘ୍ରରେ ଅଇଲା ।
ଲଙ୍କାପୁରେ ଆସି ମୁନିବର ସନିଧେ ମିଳିଲା ॥୯୧॥
ନଉକେଶୀ ପୁଷ୍ପଉତକଟା ପୁଷ୍ପମାଳୁଣୀ ।
(ବିଶର୍ବା ବିଭା ହୋଇଲେ ସେ) ତିନି ଭଗିନୀ ॥୯୨॥
ଗନ୍ଧର୍ବ ବିଧି ବିଭାଯୋଗ କଲା ।
ଅନେକ ମଣିଗଣ ଯଉତୁକ ଦେଲା ॥୯୩॥
ଶଙ୍ଖେଣ ତିଳ ଭରିଣ (ଉ)ଦେକ ।
ଲଙ୍କାପୁର ସହିତେ ଦେଲା ଯଉତୁକ ॥୯୪॥
ତହୁଁଣ ସୁମାଳି ଗଲା ନିଜ ପୁରଇ ।
କନ୍ୟାନ୍ତ ଘେନି ଲଙ୍କାପୁରେ ରହିଲେ ମହାମୁନିହି ॥୯୫॥
ତିନି ଭଗ୍ନୀ ଆଶ୍ରମ କଲେ ଭିନ୍ନ ଭିନ୍ନ ।
ତପ ଆଚାରେ ଥାନ୍ତି ମହାମୁନ୍ୟ ॥୯୬॥
ସାଲୋକା ନାମେଣ ଯେ କୁବେର ଗର୍ଭଧାରୀ ।
ପୁତ ବଧୂ ଘେନି ବିଶ୍ରାମିଲେ ଭାରଦ୍ୱାଜଙ୍କର କୁମାରୀ ॥୯୭॥

X X X

ଏସନେକେ କେତେହେ ମାସ ପଖ ଗଲା ।
ନଉକେଶା କାମେନୀ ପାକାପରଶ ହୋଇଲା ॥୧॥

ତଦଅନ୍ତରେ ପୁଷ୍ପଉତକଟା ପୁଷ୍ପମାଲୁଣୀ ।
ସ୍ତିରୀ ଉପଚାରିକା ହୋଇଲେ ତିନି ଭଉଣୀ ॥୨॥
ଶୃଙ୍ଗର ଇଚ୍ଛା ତାହାଙ୍କୁ ନ କରନ୍ତି ମହାମୁନି ।
କାମେ ଆରତ ସେ ହୋଇଲେ ତନି ଭଗ୍ନୀ ॥୩॥
ଭାଳନ୍ତି କାମେନୀ କିସ ବୁଦ୍ଧି କରିବା ।
ମଦନ ଜାଳାରେ କେସନେ ଦେହ ଧରିବା ॥୪॥
ପିତା ନ ଜାଣି ସେ ବୃଦ୍ଧ ତପୀଙ୍କି ଦେଲା ।
ପୂର୍ବର ପାପ ଆମ୍ଭଙ୍କୁ ଏବେ ସେ ଫଳିଲା ॥୫॥
ବିଚାର ଗୋ ଏବେ କରିବା କିସ ବୁଦ୍ଧି ।
ଦଉଡ଼ି ବନ୍ଧନେ ମରିବା କି ଗଳାରେ ରେଜୁ ଛନ୍ଦି ॥୬॥
କି ଅବା ନଦୀରେ ହୋଇବା ପରବେଶ ।
ନଉକେଶା କହଇ ଆତ୍ମାଘାତେ ମରିବାର ବଡ଼ ଦୋଷ ॥୭॥
ଆବର ବେଳେ ମନୁଷ୍ୟ ଜନ୍ମ ନାହିଁ ।
ପୁଷ୍ପଉତକଟା କହଇ ଭଗ୍ନୀର ମୁଖ ଚାହିଁ ॥୮॥
ନଉଚେତେ ଚାଲ ପିତାଙ୍କୁ କହିବା ।
ସେହି କତି ହୋଇ ଦେଶାନ୍ତର କରିଯିବା ॥୯॥
ପୁଷ୍ପମାଲୁଣୀ କହଇ ଏ କଥା ପିତା ଜାଣଇ ଯେବେ ।
ଏ ମହରଷି ପ୍ରାଣ ପାଇବ କି ତେବେ ॥୧୦॥
ସ୍ୱାମୀ ଦ୍ରୋହୀ କଥା କହଇ ଯହୁଁ ।
ଶତେ ସହସ୍ର ଜନମ ବିଧବା ହୁଅଇ ତହୁଁ ॥୧୧॥
ନଉକେଶା କହଇ ଉପାୟେ କରିବା ।
ନୃତ୍ୟଗୀତ ବିନୋଦେ ସ୍ୱାମୀକି ମୋହିବା ॥୧୨॥
ତାଣ୍ଡେବ ଦେଖି ଅବା ଇଛଇ କାମ ସଦ ।
ତିନି ଭଗିନୀ ଏହୁ କଥା କଲେ ସାଧ୍ୟ ॥୧୩॥
ନାନାବିଦ୍ୟାରେ ପ୍ରସିଦ୍ଧି ଅସୁର କୁମାରୀ ।
ଅନେକ ପରିବନ୍ଧେ ନାଦ ହୁଂକାର କରି ॥୧୪॥
କର ତାଳ ବଜାଇ ଗାଇତ ନୃତ୍ୟ କଲେ ।
ତଦାପି ମହରଷି ଶୁଣି ନ ଶୁଣିଲେ ॥୧୫॥
ଦୋହରା ପୂଜା ନ ତେଜିଲେ ତପୋଧନ ।
ପଞ୍ଚ ପ୍ରକୃତି ତଳ୍ୟେ କରି ମନ ॥୧୬॥
ପୁଣି ବିଚାରନ୍ତି ତିନି ଯୁବତୀ ।
ଶୁକସାରି ହୋଇ ମୁନି ସନିଧେ କରି ଯାନ୍ତି ॥୧୭॥
ଯେବଣ ବୃକ୍ଷର ତଳେ ଧାୟେ କରନ୍ତି ମୁନି ।
ତହିଁ ଉପରେ ହୁଅନ୍ତି ଅନ୍ୟୋନ୍ୟ ॥୧୮॥
ଏକକଇ ଆରେକ ପତ୍ର ଖଣ୍ଡିଏ ପକାଇଲା ।
ସେ ଏହାକଇ କିଂଘାସି କହିଲା ॥୧୯॥
କି ଲୋ ତୁହି ମୋତେ ହୋଉ କି ସରି ।
ତୋହର ମତେ ପାତେକୀ ବିଶର୍ବା ତପଚାରୀ ॥୨୦॥
ଏ ଜନ୍ମେ ମିଛେ ହେ ଯୋଗ ବଖାଣଇ ।
ପାପପୁନ୍ୟର କଥା ଏ କିଛି ହିଁ ନ ଜାଣଇ ॥୨୧॥
ପ୍ରାତ ଅସ୍ତେ ଏହାର ମୁଖ ନ ଦେଖି ।
ତୋତେ ହେ ଦେଖିଲେ ଭୋଜନ ଉପେଖି ॥୨୨॥
ଏହାଗିହି ମତେ ତୁହି ତପୀ ବୋଲାଉ ।
ତୁହି ଛାର ମୋତେ ସରିସମ ହୋଉ ॥୨୩॥
ଏସନେକ କଥା ଯହୁଁ ବିଶର୍ବା ଶୁଣିଲେ ।
ଉପରକଇ ଚାହିଁ ପକ୍ଷୀକି ପଚାରିଲେ ॥୨୪॥
ପୂର୍ବର ଦୋଷେ ତୁମ୍ଭେ ଖଗଜନ୍ମେ ଉତପନ ।
କେସନେକେ ମୁହିଁ ତୁମ୍ଭ ତହୁଁ ହୀନ ॥୨୫॥
ପ୍ରାତସ୍ନାହାନ ଶିବଦ୍ରଶନ କରଇ ।
ପଞ୍ଚାଶ ଅକ୍ଷର ଜପଇ ଗାୟତ୍ରୀ ସୁମରଇ ॥୨୬॥
ଆବର ମହାମନ୍ତ୍ର ଏକାକ୍ଷର କରଇ ତପ ।
ଦୋହରା ପୂଜିଲେ ବ୍ରାହ୍ମଣଙ୍କର ଦେହେ ନ ଥାଇ ପାପ ॥୨୭॥
ଧର୍ମର କଥା ମୋହର ନ କହିଲ କିଛି ।
ମୁହିଁ ନ ଜାଣଇଁ ତ କେବଣ ପାପ କରିଅଛି ॥୨୮॥
ତୁମ୍ଭେ ଜାଣ ଯେବେ କହ ମୋହର ପାପ ।
ନ କହିଲେ ଏହିକ୍ଷଣି ଦେବି ଅବଶ ଶ୍ୟାପ ॥୨୯॥
ପକ୍ଷୀ କହନ୍ତି ଶୁଣସି ତପୋଧନ ।
ପବିତ୍ର ବିଚକ୍ଷଣ ତୁହି ସର୍ବ ଶାସ୍ତ୍ରେଣ ଜ୍ଞାନ ॥୩୦॥
ଆମ୍ଭର କହିଲେ ରାଗ ନ ପୁଣ କରୁ ।
ତୁହି ତପଚାରୀ ପ୍ରମାର୍ଥ ନ ବିଚାରୁ ॥୩୧॥
ତିନି ଭାରିଯାଏ ତୋହର ହୋଇଲେ ଋତୁବତୀ ।
ମଦନ ଆରତେ ଭାଳୁଥାନ୍ତି ନିତି ॥୩୨॥
ତାହାଙ୍କର ତୁଳେ ତୁ ରମଣ ରଙ୍ଗ ନ କରୁ ।
ସୁମାଳି ଦଇତକୁ କିମ୍ବା ଭୟେ ନ କରୁ ॥୩୩॥
ପିତାର ଆଗେ ସେ କହିବେ ଯେବେ ।
ପୁତ୍ର ସହିତେ ପ୍ରାଣ ପାଉ କି ତେବେ ॥୩୪॥
ଝିଅଙ୍କର ପୁତ୍ର ଉପୁଜିବା ନିମନ୍ତେ ।
ତେବେସେ ତିନି କନ୍ୟା ବିଭା କରାଇଲେ ତୋତେ ॥୩୫॥

ତୁହି ସେ ଯୁବତୀଙ୍କର କତିକି ନ ଯାଉ ।
ତାହାଙ୍କର ଗର୍ଭେ ପୁତ୍ର ଜାତ (ନ) କରାଉ ॥୩୬॥
ନବଯୁବତୀକି ରମଣ ନ କରୁ ଯେବେ ।
ସକଳ ଧର୍ମ ନାଶ ତୋହର ଗଲାକ ଏବେ ॥୩୭॥
ଏସନେକ ପକ୍ଷୀର ମୁଖୁ ଶୁଣିଲା ତପଚାରୀ ।
ଦଣ୍ଡକମଣ୍ଡଳ ଘେନି ଆଶ୍ରମକଇ ଗମନ କରି ॥୩୮॥
ମହାରଷି ତପ ଛାଡ଼ିଣ ଯହୁଁ ଅଇଲେ ।
ଗଗନେ ଉଡ଼ି ତିନି ଭଗିନୀ ନିଜ ମନ୍ଦିରକୁ ଗଲେ ॥୩୯॥
ସ୍ୱାମୀର ପୟରେ ତିନି କନ୍ୟାଏ ପ୍ରଣମ୍ୟ କରନ୍ତି ।
କଲ୍ୟାଣ କରନ୍ତି ମୁନି ଓହିୟ ପୁତ୍ରବନ୍ତୀ ॥୪୦॥
ତିନି ଭଗିନୀ ପୁଛନ୍ତି ଶୁଣ ତପୋଧନ ।
ତପ ତେଜି କିମ୍ପା ଅଇଲୁ ଆମ୍ଭର ଭୁବନ ॥୪୧॥
ଋଷି କହନ୍ତି ତୁମ୍ଭେ ଯେ ହୋଇଲ ଋତୁବତୀ ।
ଶୃଙ୍ଗାର କରି ଉପୁଜାଇବା ସନ୍ତତି ॥୪୨॥
କେ କେତେବେଳେ ହୋଇଲନି ପାକାପ୍ରସନ ।
ଆମ୍ଭର ଆଗେ କହ ସ୍ୱରୂପ ବଚନ ॥୪୩॥
ନଉକେଶା କହଇ ମୁହିଁ ନବବେଳ ହୋଇଲି ଋତୁବତୀ ।
ଦଶବେଳ ସମ୍ପୂର୍ଣ୍ଣ ହୋଇବ ଏ ଘାନ୍ତି ॥୪୪॥
ପୁଷ୍ପଉତକଟା କହଇ ମୁନିଙ୍କ ଆଗର ।
ପାଞ୍ଚବେଳ ହୋଇଲାନି ସ୍ତିରୀ ଉପଚାର ॥୪୫॥
ପୁଷ୍ପମାଲୁଣୀ କହଇ ଭୋ ତପୋଧନ ।
ମୁହିଁ ଋତୁବତୀ ହୋଇଲି ତିନିବେଳ ସମ୍ପୂର୍ଣ୍ଣ ॥୪୬॥
ମହରଷି କହନ୍ତି ନଉକେଶାର ଆଗ ।
ତୋହାର ଗର୍ଭେ ଦଶପୁତ୍ର ଜାତ ହୋଉ ବେଗ ॥୪୭॥
ପୁଷ୍ପଉତକଟାର ଗର୍ଭେ ତିନି ପୁତ୍ର ହୋଉ ।
ପୁଷ୍ପମାଲୁଣୀର ଗର୍ଭେ ପୁତ୍ର ଦୋହିତାଏ ଉପୁଜଉ ॥୪୮॥
ନଉକେଶା କହଇ ଶୁଣସି ମହାମୁନ୍ୟ ।
ଦଶପୁତ୍ର ଯେବେ ହୋଇବ ଉତପନ ॥୪୯॥
ତୁମ୍ଭେ ତ ଜପେ ତପେଣ ଥିବ ।
ଦଶ ତନୟ କେ ମୋହର ପ୍ରତିପାଳିବ ॥୫୦॥
ଏତେକ ପୁତ୍ରେ ନାହିଁ ମୋହର କାର୍ଯ୍ୟ ।
ବଳବନ୍ତ କରି ଜାତ କର ଏକ ତନୁଜ ॥୫୧॥
ଆବର ଏକ ଦୋହିତା ସୁନ୍ଦର ହୋଇବ ।
ଏସନେକ ଚିନ୍ତା ମୋତେ କର ଦୟା ଭାବ ॥୫୨॥
ମହରଷି କହନ୍ତି ମୁଖେ ଉଚାରିଲି ଯାହା ।
ଦଶ ବଦନ ହୋଇବ ଆବର ବିଂଶ ବାହା ॥୫୩॥
ତୋହର ବାକ୍ୟ ରହୁ ଭ୍ରଥାର କଥା ରହୁ ।
ଯାବତ କାଳକୁ କଥା ପୁରାଣରେ ଥାଉ ॥୫୪॥
ଶୁଣି ହରଷ ହୋଇଲେ ତିନି କାମେନୀ ।
ଦିବସ ଅନ୍ତେ ବିକାଶିଲା ରଜନୀ ॥୫୫॥
ଯୁବତୀ ତୁଲେ ମୁନି ଶୃଙ୍ଗାର ମନଦେଲେ ।
ଗର୍ଭେଣ ବୀର୍ଯ୍ୟ ରହିଲା ଶୁଭ ଅନକୂଳେ ॥୫୬॥
ଦଶମାସ ସମ୍ପୂର୍ଣ୍ଣ ଯହୁଁ ହୋଇଲା ।
ନଉକେଶାର ଗର୍ଭେ ପୁତ୍ରେକ ଉପୁଜିଲା ॥୫୭॥
ଏକ ଶରୀର ଦୁଇ ପୟର ଦଶବଦନ ।
ବିଂଶ ଭୁଜ ଦେଖି ନଉକେଶା ବିଷାଦ କଲା ମନ ॥୫୮॥
ଯାହା ସେ କହିଲେ ମୋତେ ପ୍ରାଣନାଥ ।
ସ୍ୱରୂପେଣ ପୁତ୍ର ହୋଇଲା ଦଶମାଥ ॥୫୯॥
କେମନ୍ତ କରି ତନୟକଇ ପୋଷିବି ।
କେବଣ ମୁଖେ ଏହାର କ୍ଷୀର ମୁହିଁ ଦେବି ॥୬୦॥
ମହାରଷି କହଇ ଯେବଣ ମୁଖେ ରୋଦନ କରଇ ।
ସେ ମୁଖେ କୁମାରକୁ ଦେସି ଅହାରଇ ॥୬୧॥
ସ୍ୱାମୀର ବଚନ ଶୁଣିଲାକ ଯହୁଁ ।
ନାଭି କାଟି ପୁତ୍ରକୁ ସ୍ନାହାନ କରାଇଲାକ ତହୁଁ ॥୬୨॥
ବାମେ ଚାରି ମୁଣ୍ଡ ଡାହାଣେ ପଞ୍ଚଶିର ।
ମଝିର ବଦନେ ନେଇ ଦେଲାକ କ୍ଷୀର ॥୬୩॥
ଏମନ୍ତେ ଦଶବଦନ ହୋଇଲାକ ତୋଷଇ ।
ଦୋହିତାଏ ଉପୁଜିଲା କନେକ ଦେହ ଦିଶଇ ॥୬୪॥
ପୁଷ୍ପଉତକଟା ଗର୍ଭେ ତିନି ପୁତ୍ର ଅବତରି ।
ପିଙ୍ଗଳନୟନୀ ଉପୁଜିଲା କୁମାରୀ ॥୬୫॥
ପୁଷ୍ପମାଲୁଣୀର ପୁତ୍ର ଏକ ଉପୁଜିଲା ।
ନିର୍ମଳ ତାରା ଜାଣି କନ୍ୟାଏ ଜନ୍ମ ହୋଇଲା ॥୬୬॥
ସବୁ ପୁତ୍ର ଦୋହିତା ଏକ ଥାନେ ଶୁଆଇଲେ ।
ତିନି ଭଉଣୀ ମହରଷିଙ୍କି ପଚାରିଲେ ॥୬୭॥
ଏ ପୁତ୍ରନ୍ତ କିସ କିସ ନାମ ଦେବା ।
ଭୋ ତପୋଧନ ବିଚାରିଣ କହିବା ॥୬୮॥
ମହରଷି କହଇ ନଉକେଶାର ନନ୍ଦନ ।
ନାମ ବିଦିତ ହୋଇବ ଦଶାନନ ॥୬୯॥

କୁମାରୀ ଦେହ ଦିଶଇ ସୁବର୍ଣ୍ଣର ଜ୍ୟୋତି ।
ସୁବର୍ଣ୍ଣରେଖା ତାହାକଇ ନାମ ଦିଅନ୍ତି ॥୭୦॥
ପୁଷ୍ପଉତକଟାର ଯେ ତିନି କୁମାର ।
ଜ୍ୟେଷ୍ଠ କୁମାର ନାମ ଦେଲେ କୁମ୍ଭକର୍ଣ୍ଣ ମୁନିବର ॥୭୧॥
ମଧ୍ୟ ପୁତ୍ରର ନାମ ଖର କନେଷ୍ଟର ନାମ ଧୂଷଣ ।
ଦୋହିତାର ନାମ ଦେଲେ ପିଙ୍ଗଳୀ ମୁନି ପୁଣ ॥୭୨॥
ପୁଷ୍ପମାଲୁଣୀର ଗର୍ଭେ ଯେବଣ ପୁତ୍ର ଉତପତି ।
ବିଭୀଷେଣ ନାମ ଦେଲେ ତାହାକୁ ମହାଯତି ॥୭୩॥
ଦୋହିତାର ରୂପ ଗୁଣ ଲକ୍ଷଣ ବିଚାରିଲେ ।
ତାରା ବୋଲି ନାମ ବିଖ୍ୟାତ ପୁଣ ଦେଲେ ॥୭୪॥
ଏସନେକେ ବଢ଼ନ୍ତି ବିଶର୍ବାର ଅପତି ।
ଏକକୁ ଅରେକ ତେଜ ବିଖ୍ୟାତି ॥୭୫॥
ପୁତ୍ର ଦୋହିତାକୁ ସନିଧେ ବସାବନ୍ତି ।
ଦଶାନନର ମୁଖ ଚାହିଁ ବିଶର୍ବା କହନ୍ତି ॥୭୬॥
ଧର୍ମରେ ପରିମାଣି ଅନୁବ୍ରତେଣ ଥିବୁ ।
ଦେବତା ବ୍ରାହ୍ମଣେ ଭଗତି ହୋଇବୁ ॥୭୭॥
ବନ୍ଧୁ କୁଟୁମ୍ବରେ ନ କରିବୁ ନିରାଶ ।
ଅଗ୍ୟାନ (ନ)ରେ ନୋହିବୁ ତୁ ବିଶ୍ୱାସ ॥୭୮॥
ଦଶାନନ କହଇ ଏ କଥା ନ ଜାଣଇ ତାତ ।
କେସନେକେ ବଶ ହୋଇବ ଗଉରୀର କାନ୍ତ ॥୭୯॥
ତୋହର ଦୟା ଅଛଇ ମୋତେ ଯେବେ ।
ଶିବର ଜପମନ୍ତ କହିବୁ ନା ମୋତେ ଏବେ ॥୮୦॥
ଋଷି ଗୋଋ ମନୁଷ୍ୟ ମୋହର ଆଧାରଇ ।
ତାହାନ୍ତ ଉପେଖିଲେ କିସ ଭୋଗ୍ୟ କରଇ ॥୮୧॥
ଶୁଣି ମନେ ମନେ ବିଚାରନ୍ତି ତପଚାରୀ ।
ଦେବଙ୍କର ବଇରି ଉପୁଜିଲା ଦଶଶିରି ॥୮୨॥
ସବୁ ପ୍ରାଣୀକି ଏ ପ୍ରାଭବ କରାଇବ ।
ଅନୀତି ଆଚରିଣ ବେଗେଣ ମରାଇବ ॥୮୩॥
ପଞ୍ଚାଅକ୍ଷର ମନ୍ତ୍ରଏ ଦଶାନନକୁ କହନ୍ତି ।
ଯେସନେ ତୋଷ ହୋଇବ ଗଉରାର ପତି ॥୮୪॥
ଈଶ୍ୱର ପ୍ରସନ୍ନେ ସକଳ ନିଧି ପାଇବୁ ।
ଗୁରୁ ଦକ୍ଷିଣା ମାଗିବି ପ୍ରସନେ ମୋତେ ଦେବୁ ॥୮୫॥
ଶୁଣିଣ ଦଶାନନ (କହଇ) ହରଷ ଚିତ୍ତେ ।
ଯାହା ମାଗିବୁ ପିତା ଦେବଇ ମୁହିଁ ତୋତେ ॥୮୬॥
ମହରଷି କହନ୍ତି ଶୁଣ ଦଶଶିରି ।
ଏ ଯେ କୁବେର ଜ୍ୟେଷ୍ଠ ଭାଥ ତୋହରି ॥୮୭॥
ଶତେ ଯୋଜନ ଏ ଲଙ୍କାପୁର ସୀମାନ୍ତ ।
ଦୁଇ ଭାଗ କରି ତୁମ୍ଭେ ଥିବ ଦୁଇ ଭ୍ରାତ ॥୮୮॥
ତୋହର ଭାଇ ବନ୍ଧୁ ଘେନି ଅର୍ଦ୍ଧ ଦେଶେଣ ଥିବୁ ।
କୁବେରକୁ ହିଂସା ତୁହି କେବେହେ ନ କରିବୁ ॥୮୯॥
କୁବେର ତୁଲେ ଯେବେ ହୋଇବୁ ଅବିଶ୍ୱାସ ।
ଅଳପ ଦିନେ ତୁ ହୋଇବୁ ପ୍ରାଣେ ନାଶ ॥୯୦॥
ଏସନେକ କହି ଲଙ୍କା ଦୁଇ ଭାଗ କଲେ ।
ପଶ୍ଚିମ ଅଧକଇ କୁବେରକୁ ଦେଲେ ॥୯୧॥
ପୂର୍ବଭାଗ ଦଶାନନ ଘେନଇଁ ।
କୁବେର ହକାରି କହନ୍ତି ତପୋଧନଇ ॥୯୨॥
ଏହାଙ୍କର ବର୍ଦ୍ଧମାନେ ତୁହି ନ ଥିବୁ ଲଙ୍କପୁରୀ ।
ଏହୁ ଦୁରାଆତ୍ମା ଅତି ଛିଦ୍ରକାରୀ ॥୯୩॥
ଲଙ୍କାପୁରେ ତୁହି ବିଶାମ କରିଥିବୁ ।
ଦେବଙ୍କର ତୁଲେ ତୁ ପ୍ରୀତି ହୋଇଥିବୁ ॥୯୪॥
ଏ ନଗ୍ରେ ଆମ୍ଭେ ରହି ନ ପାରିବୁ ।
ନାନା ତୀର୍ଥ କରି ଯାଇ ତପ ଆଚାର କରିବୁ ॥୯୫॥
ପୁତ୍ରକୁ ଲଙ୍କା ଦେଇ ବିଶର୍ବାଏ ଗଲେ ।
ନାନା ଘୋର ବନେ ନିଗମେ ବିଶ୍ରାମିଲେ ॥୯୬॥
ଏସନେକେ ଦଶଶିର ହୋଇଲାକ ଜାତ ।
ବିସ୍ତାରିଣ କହୁଛନ୍ତି ସୀତାର ବେନି ସୁତ ॥୯୭॥
ଶୁଣିଣ ଶ୍ରୀରାମ ଆନନ୍ଦମୟେ ମତି ।
ଧନ୍ୟ ଧନ୍ୟ କରନ୍ତି ବଶିଷ୍ଠ ମହାଯତି ॥୯୮॥
ପାତ୍ର ଆମନତ୍ୟ ଭ୍ରଥ ଲକ୍ଷ୍ମଣ ଦୁଇ ଭାଇ ।
ସଭାତଳେ ଜନଗହଳେ ବସିତ ଠାବ ନାହିଁ ॥୯୯॥

## ରାବଣର ବରଲାଭ

ଏଥୁ ଅନନ୍ତରେ ଲବକୁଶର ମୁଖ ଚାହିଁ ।
ଶ୍ରୀରାମ ପୁଛନ୍ତି ମୁଖେ ଚୁମ୍ବନ ଦେଇ ॥୧॥
ବାବୁ ହେ ଦଶଶିରର ଜନ୍ମ ଜାଣି ମୁଁ ନ ଥିଲି ।
ତୁମ୍ଭର ମୁଖୁ ଦନୁଜଙ୍କର ଜନମ ଶୁଣିଲି ॥୨॥
ବିଶର୍ବା ଋଷି ଯେ ଦଶାନନ ନାମ ଦେଲା ।
ରାବଣର ନାମ ସେ କେସନେକେ ପାଇଲା ॥୩॥
ଏଥିର ଚରିତ୍ର କହ ପୁଣ୍ୟତୃଣୀର ପୁତ୍ର ।

ଶୁଣି ଭ୍ରାନ୍ତି ଉପେଖିବି ମୋହର ଚିତ୍ତ ॥୪॥
ଶ୍ରୀରାମର ବଚନ ଶୁଣି ଲବକୁମରଇ ।
ତହୁଁଣ ବସନ୍ତ ବରାଡ଼ି ରାଗ ହୁଂକାରି ଧରଇ ॥୫॥
ନାଦ ବିଚଳିତ ହୋଇଲାକ ଯହୁଁ ।
କୁଶ କୁମର ନାଦ ହୁଂକାରି ଧଇଲାକ ତହୁଁ ॥୬॥
ଶୁଣିଣ ସକଳ ଲୋକେ ହୋଇଲେ ନିଶ୍ଚଳ ।
ସବୁରି ନୟନେ ଆନନ୍ଦେ ବହଇ ଅଶ୍ରୁଜଳ ॥୭॥
ସଧୀରେ ଗାବଇ ଲବକୁମାରଇ ।
ଯେମନ୍ତ ମତେ ତପ କଲେ ଦଶଶିରଇ ॥୮॥
କେବଣହି ଦିନେ ନଉକେଶାର ସୁତ ।
ଭାଇନ୍ତ ଘେନିଣ ଭ୍ରମଣି କରଇ ଦଶମାଥ ॥୯॥
(ଅମରପୁରକଇ କୋବେର ଥିଲା ଯାଇ ।
ତହୁଁ ବହୁଡ଼ି ଆସି (ଭ୍ରାତା ସନିଧେ) ହୋଇ ॥୧୦॥
ଶୂନ୍ୟେଣ ଗମଇ ସେ ପୁଷ୍ପେକ ରହୁବର ।
ଦେଖିଣ ଚକିତ ହୋଇଲା ଦଶଶିର) ॥୧୧॥
ମନେ ବିରଙ୍ଗ କରି ବାହୁଡ଼ି ଅଇଲା ।
ଗମ୍ଭୀରିରେ ପଶି କବାଟ କିଳିଣ ସୁତିଲା ॥୧୨॥
ମାତା ନଉକେଶା ଜାଣିଲାକ ଯେବେ ।
ପୁତ୍ରର ସନିଧେ ଦୁଆରେ ମିଳିଲାକ ତେବେ ॥୧୩॥
ଉଚେ ଡାକ ଦିଅଇ ଶୁଣସିରେ ସୁତ ।
କବାଟ କିଳି କିମ୍ପା ସୁତିଲୁ ତୁ ଏଥ ॥୧୪॥
ଭୋଜନ ଉଛର ହୋଇଲା ତୋହର ଆଜ ।
କିସ ଅସମ୍ଭବ କହସିରେ ତନୁଜ ॥୧୫॥
ଦଶଶିର କହଇ ଧୀରେ ଶୁଣସି ଗୋ ଆଇ ।
କୁବେର ଶିରୀ ଦେଖି ନ ସହଇ ମୋହର ଦେହି ॥୧୬॥
ଏକ ମହରଷିର ଆମ୍ଭେ ଉପୁଜିଲୁ ପୁତ୍ର ।
ଗଗନ ମାର୍ଗେ କେସନେକେ ଗମଇଁ ତାର ରଥ ॥୧୭॥
ଏଥିର କଥା ମୋତେ କହିବୁ ଗୋ ଆଇ ।
ତାହାର ଶିରୀ ଗୋ ମୁଁ ନୁଆରିଲି ସହି ॥୧୮॥
ସେହି ରଥେ ମୁହିଁ ଆରୋହଣ କରିବି ।
ନଉଚେତେ ଉପବାସେ ପ୍ରାଣ ମୁଁ ହାରିବି ॥୧୯॥
ନଉକେଶା କହଇ ଶୁଣସିରେ ସୁତ ।
ଋଷିର ଦୋହିତା ଯେ କୁବେର ମାତ ॥୨୦॥
ତେଣୁ ସେ ଧାର୍ମିକ ପଣେ ତପ କଲା ।
ବିନୋୟ ଭଗତି କରି ଈଶ୍ୱରଙ୍କୁ ମନାଇଲା ॥୨୧॥
ଶିବଙ୍କ ପ୍ରସନେ ହୋଇଲା କଳପଭୋଗୀ ।
ଶୂନ୍ୟ ପୁରେ ରଥ ଅଛଇ ଆରୋପି ॥୨୨॥
ଦଶଶିର କହଇ ଏବେ ମୁଁ ତପ କରିବି ।
ଈଶ୍ୱରଙ୍କୁ ସେବା କରି ମୁଁ ସେ ରଥ ମାଗିବି ॥୨୩॥
ନଉକେଶା କହଇ ଶୁଣସିରେ ନନ୍ଦନ ।
ଜ୍ୟେଷ୍ଠ ଭ୍ରାତର ଶିରୀ ଦେଖି ନ କର ଅଭିମାନ ॥୨୪॥
ତୋହର ପିତାର ଜ୍ୟେଷ୍ଠ କୁମର ।
ତାହାକଇ ସେବି ତୁହି ସୁଖେଣ ଭୋଗ୍ୟ କର ॥୨୫॥
ଦଶାନନ କହଇ ମୋତେ ନ ରୁଚଇ ଏ ବଚନ ।
ତପ କରି ତୋଷିବି ମୁହିଁ ଦେବ ତ୍ରିଲୋଚନ ॥୨୬॥
ଏତେ କହି କରି (କ)ପାଟ ଫେଡ଼ି ବାହାର ହୋଇଲା ।
କସା ବସନ ପରିହରଣ ବିଭୂତି ଭୂଷଣ କଲା ॥୨୭॥
ଗଳାରେ ରୁଦ୍ରାକ୍ଷମାଳ ଆବର କାଷ୍ଠମାଳଇ ।
କର୍ଣ୍ଣରେ ତମ୍ଭାର କୁଣ୍ଡଳ କମଣ୍ଡଳଇ ॥୨୮॥
ଯେବଣ ଲିଙ୍ଗ ବ୍ରହ୍ମା ପୂଜୁଥିଲା ।
ସେ ଲିଙ୍ଗ ସନିଧେଣ ରାବଣ ମିଳିଲା ॥୨୯॥
କନେକ ଘଟେ ଶିବକଇ ନିଉତଇ ପାଣି ।
ନାନା କୁସୁମ ପୂଜା କରଇ ଆଣି ॥୩୦॥
ପଞ୍ଚାକ୍ଷର ସୁମରି ତପ କରଇ ।
ରାତ୍ର ଦିବସେ ଶିବ ଶିବ ସୁମରଇ ।
ନୃତ୍ୟ ଗୀତ କରିଣ (କର) ତାଳ ବାବଇ ॥୩୧॥
ଆହାର ତେଜିଣ ଈଶ୍ୱରଙ୍କୁ ସେବା କରଇ ।
ହେଠମାଥ ହୋଇ ଉପରକୁ କରଇ ଚରଣଇ ॥୩୨॥
(ଆପଣା ହାଥେ ଦଶ ଶଙ୍ଖ ଶବଦ
ଈଶ୍ୱରଙ୍କୁ ଧାୟି ସେ ବଜାଇ ଦଶକନ୍ଧ) ॥୩୩॥
ଏହେର୍ଣ୍ଣେକ ତପ ଯହୁଁ ଈଶ୍ୱର ଜାଣିଲେ ।
ଦଶାନନର ସନିଧେ ବୃଷଭ ଚଢ଼ିଣ ମିଳିଲେ ॥୩୪॥
ପ୍ରସନ୍ନ ହୋଇଣ ଯେ କହଇ ଗଙ୍ଗାଧର ।
ବର ମାଗସି ହୋ ବିଶର୍ବା କୁମର ॥୩୫॥
ଦଶାନନ କହଇ ଶୁଣ ତ୍ରିପୁରାରି ।
ଯାବନ୍ତ କାଳେ ଅସୁରନ୍ତ ମାରଇ ମୁରାରି ॥୩୬॥
ମୁହିଁ ଯେବେ ସେବା କରଇ ତୋତେ ।
ଶ୍ରୀହରି ରଣେ ଜିଣି ନ ପାରିବ ମୋତେ ॥୩୭॥

ଶୁଣିଣ କୋପେ କହନ୍ତି ଚନ୍ଦ୍ର ମଉଳି ।
ଯାବନ୍ତ ଦୁଷ୍ଟନ୍ତ ମାଗଇ ବର୍ଣ୍ଣମାଳି ॥୩୮॥
ତୁହିରେ ରକ୍ଷିର ବାର୍ଯ୍ୟେ ଜାତ ହୋଇଲୁ ।
ଏସନେକ ଦୁର୍ଣ୍ଣୟେ କଥା କିମ୍ପାଇଁ ମାଗିଲୁ ॥୩୯॥
ମୋହର ବୋଲେ ଏ ବର ନୁଆରଇ ଦେଇ ।
ଦଶଶିର ବୋଲଇ ମୋହର ଆନ ବରେ କାର୍ଯ୍ୟ ନାହିଁ ॥୪୦॥
ତହୁଁ ଅନ୍ତର୍ଧାନେ ହୋଇଣ ଗଲେ ହର ।
ପୁଣ ଏକ ପାଦେ ଉଭା ହୋଇ ନୃତ୍ୟ କରଇ ଦଶଶିର ॥୪୧॥
ଏକ ପାଦେ ନୃତ୍ୟ ଷଡ଼ମାସ କଲା ଯହୁଁ ।
ଦଶାନନର ସନିଧେ ଶିବ ବିଜୟେ କଲେ ତହୁ ॥୪୨॥
ଦଶଶିର ମୁଖ ଚାହିଁ କହନ୍ତି ଶଙ୍କର ।
ହରି ତୁଲେ ବିବାଦ ଛାଡ଼ି ମାଗ ଆନ କର ॥୪୩॥
ଦଶାନନ କହଇ ମୁହିଁ ନ ମାଗଇ ଆନ ।
ବାହୁଡ଼ିଣ ଯାସି ତୋହର ନିଜ ସ୍ଥାନ ॥୪୪॥
ଦଶାନନର କଥା ଯହୁଂ ଦୃଢ଼ ଶୁଣିଲେ ।
କୋପେ ଧୂର୍ଜଟି ଶୂନ୍ୟମାର୍ଗେଣ ଗଲେ ॥୪୫॥
ଈଶ୍ୱରକଇ ନ ଦେଖି ନଉକେଶାର ସୁତ ।
ବହନି ଆରୋପଣ କଲାକ ତୁରିତ ॥୪୬॥
ମୁଣ୍ଡେକ ଛେଦନ କରି ସଂହାତେଣ ଧରଇ ।
ସେ ଅଗ୍ନି ତିନି ବେଳ ପ୍ରଦକ୍ଷିଣ କରଇ ॥୪୭॥
ସେ ମୁଣ୍ଡ ଅଗ୍ନିରେ ପକାଇ ତଡ଼ତି ।
ଆରେକ ମୁଣ୍ଡ କାଟଇ ସେ ଝାଡି ॥୪୮॥
ସେହି ବିଧି ଅନେକ ପକାଇଲେ ।
ଏସନେକ ନବ ମୁଣ୍ଡ ଛିନାଇଂଲେ ॥୪୯॥
ଏସନେକ କୃତ୍ୟ ଯହୁଁ ଦେବଗଣେ ଦେଖିଲେ ।
ବ୍ରହ୍ମାଇନ୍ଦ୍ର ସହିତେ ଈଶ୍ୱର ସନିଧକୁ ଗଲେ ॥୫୦॥
ସମସ୍ତ ଦେବେ କହନ୍ତି ଶୁଣ ପ୍ରସନ୍ନକେଦାର ।
ଦୁସହ ତପ ଯେ କରଇ ଦଶଶିର ॥୫୧॥
ନବମୁଣ୍ଡ କାଟିଲା ଆରକ ମୁଣ୍ଡ ଛିନ୍ନାଇ ଯେବେ ।
ତିନି ଭୁବନେ ବିଷ୍ଣୁ ହୋଇବଟି ଏବେ ॥୫୨॥
ଯେମନ୍ତେ ପାର ତାହାକୁ ତୋଷ କର ।
ଏ ଦୁଷ୍ଟର ତପ ଦେଖି ଆମ୍ଭର ବଡ଼ ଡର ॥୫୩॥
ଛଡ଼ ବରଷ ତପ ତାହାର ପୂର୍ଣ୍ଣ ହୋଇଲା ।
ଏବେ ସେ ମହାକଷ୍ଟରେ ଶିର ଛେଦନ କଲା ॥୫୪॥

ଈଶ୍ୱରେ କହନ୍ତି ଶୁଣ ହୋ ଦେବବୃନ୍ଦମାନ ।
ଶ୍ରୀହରି ଜିଣିତ ମାଗଇ ଦଶାନନ ॥୫୫॥
ପଛନ୍ତେ ତୁମ୍ଭେ ମୋତେ ନ କହ ମନ୍ଦ ।
ସବୁନ୍ତି ଭୃତ୍ୟ ସେ କରିବ ଦଶକନ୍ଧ ॥୫୬॥
ବ୍ରହ୍ମା କହଇ ସେ ତପ କଲା ଯେବେ ।
ଅନେକ ଭୋଗ ସେ ନ ଭୁଞ୍ଜିବ କି ଏବେ ॥୫୭॥
ଦେବଙ୍କର ବୟାଣ ଯହୁଁ ଈଶ୍ୱର ଶୁଣିଲେ ।
ଦଶାନନର ସନିଧେ ବିଜୟେ ଯାଇ କଲେ ॥୫୮॥
କରେ ପାଣି ଘେନି ମାଇଲେକ ହର ।
କ୍ଷଣକେ କଅଁଳିଲା ଦଶାନନର ଶିର ॥୫୯॥
ସହଜେ ଦଶମୁଣ୍ଡ ହୋଇଲାକ ଯହୁଁ ।
ପ୍ରସନ୍ନେ ଚନ୍ଦ୍ରମଉଳି ବର ମାଗ ବୋଇଲେ ତହୁଁ ॥୬୦॥
ବ୍ରହ୍ମା ସରସ୍ୱତୀକି ଦେଲାକ ପେଷି ।
ତୁହି ଗୋ ଦଶଶିର କଣ୍ଠେ ଥିବୁ ବସି ॥୬୧॥
ବିର୍ଷ୍ଣୁଙ୍କୁ ଜିଣିମି ନ ବୋଲିଲେ ଏବେ ।
ଜଗତ ସଂସାର ରକ୍ଷା ହୋଇବାକ ତେବେ ॥୬୨॥
ବ୍ରହ୍ମାର ଆଜ୍ଞା ପାଇଣ ସରସ୍ୱତୀ ।
ଦଶାନନର କଣ୍ଠେ ବସିଲା ତଡ଼ତି ॥୬୩॥
ଦଶାନନ କହଇ ଶୁଣସି ଦେବ ହର ।
ଛପନ ଗଣ୍ଡା ଯୁଗ ରାଜ୍ୟ କରିବି ଲଙ୍କାପୁର ॥୬୪॥
ପୁତ୍ରପୁତ୍ରୀ ମୋହର ଯେତେକ ଉପୁଜିବେ ।
ମୁହିଁ ଯାହା କହଇ ସେ କଥାରେ ସନିଧେ ହେ ଥିବେ ॥୬୫॥
କୁବେରର ରଥ ମୁହିଁ ଆରୋହିବି ।
ତାହାକଇ ଜିଣି ଲଙ୍କପୁରେ ନ ଥୋଇବି ॥୬୬॥
ଇନ୍ଦ୍ର ଯମ କୁବେର ଦଶ ଦିଗ ପାଳେ ।
ସବିହେ ଖଟିବେ ମୋହର ପାଦତଳେ ॥୬୭॥
ପୃଥ୍ୱୀରେ ସମସ୍ତ ରାଜାକଇ ଜିଣିମି ।
ଯାହାକଇ ଦୟା କରିବି ତାହାକଇ ସେ ରଖିବି ॥୬୮॥
ଅକ୍ଷୟେ ଲିଙ୍ଗ ମୋହର ହୃଦରେଣ ଥିବ ।
ଶିର ଛେଦନ ହୋଇଲେ କନ୍ଧୁ ମୁଣ୍ଡ ବହାର ହୋଇବ ॥୬୯॥
ବ୍ରହ୍ମାର ବାଣେ ସେ ବିନାଶ (ନ) ହୋଇବି ।
ଅମର ହୋଇ ଲଙ୍କାରେ ରାଜ୍ୟ କରୁଥିବି ॥୭୦॥
ଅସ୍ତୁ ହୋଉ ବୋଲି ଆଜ୍ଞା ଦେଲେ ତ୍ରିପୁରାରି ।
ତହୁଁ ବାହୁଡ଼ି ଅଇଲା ଦଶଶିରି ॥୭୧॥

ଯେସନେକ ବର ଭୋଳାନାଥ ଦେଲା ।
ମାତା ଆଗେ ତାହା ଦଶାନନ କହିଲା ॥୭୨॥
ନଉକେଶୀ କହଇ ଏ ବର ନୋହଇ ସତ ।
ଅମର କେହି ନୁହନ୍ତି ପୃଥ୍ୱୀରେ ହୋଇ ଜାତ ॥୭୩॥
ବଳି ବେଣୁ ଜାନୁଘଣ୍ଟ ମାନଧାତା ଚକ୍ରବର୍ତ୍ତୀ ଥିଲେ ।
ସବୁହିଁ ମୃତ୍ୟୁମଣ୍ଡଳେ କେହି ନ ରହିଲେ ॥୭୪॥
ବାହୁଡ଼ି ଶିବକଇ ପୁଛାକର ଯାଇ ।
କେମନ୍ତେ ମରିବୁ ଜାଣିଥିବୁ ନା ପରିମାଣଇ ॥୭୫॥
ତକ୍ଷଣେ ଦଶାନନ ଶିବଭୁବନକୁ ଗଲା ।
ଯହିଁ ବିଜୟେ କରିଥିଲା ତହିଁ ନ ଦେଖିଲା ॥୭୬॥
ତହୁଁ ଦଶାନନ କୋପିତ ଶରୀରଇ ।
ତତକ୍ଷଣେ ଶିର ଛେଦନ କରଇ ॥୭୭॥
ଆପଣାର ହସ୍ତରେ ବାନ୍ଧଇ ଆଣି ।
ଶିର କାଟିଣ ଧଇଲାକ ଟାଣି ॥୭୮॥
ହାତେକ କାଟି ଡାହାଣ କରରେ ବାଇଲା ।
ତେବେ ସେ ନାମ ରାବଣହତା ହୋଇଲା ॥୭୯॥
ଚକ୍ଷୁ ଉପାଡ଼ି ଲିଙ୍ଗ ଉପରେ ଦିଅଇ ରକତ ।
ପ୍ରାଣ ତେଜିବାକୁ (ନ) ମଣଇଁ ଦୁଖିତ ॥୮୦॥
ଏସନେକ ତାମସ ତପ ଯହୁଁ ଦେଖିଲେ ।
ଚନ୍ଦ୍ରଶେଖର ଆସି ପ୍ରବେଶ ହୋଇଲେ ॥୮୧॥
ତହିଁ କହନ୍ତି ଦଶାନନର ମୁଖ ଚାହିଁ ।
କି ହୋ ବଶର୍ବାତନୟେ ହୋଇଲୁ କି ବାଇ ॥୮୨॥
କିସ ନାମ ତୋହର ଏଡ଼େ କକ୍ଷା ।
ସଂକଳ୍ପ କରି ଦେଲି ଯେତେକ କଲୁ ଇଚ୍ଛା ॥୮୩॥
ଦଶାନନ କହଇ ଶୁଣ ତ୍ରିପୁରାରି ।
କହସି କେବଣ ମତେ ପ୍ରାଣ ଯିବ ଦେହରୁ ମୋହରି ॥୮୪॥
ଦଶମୁଖର କଥା ଯହୁଁ ଈଶ୍ୱର ଶୁଣିଲେ ।
ହସ୍ତ ଧରି କପିଳାସ ଭୁବନକୁ ନେଲେ ॥୮୫॥
କାନ୍ଥରେ ରାବାୟେଣ ଲେଖିଲା ଅଛି ଚିତ୍ର ।
ସୀତା ହରିଲେ ରାମ ଛେଦିବେ ଦଶମାଥ ॥୮୬॥
ଦେଖିଣ ଦନୁଜକଇ କିଛିହି ନ ପୁରଇ ।
ମହାଭୟେ କଲା କମ୍ପଇ ଶରୀରଇ ॥୮୭॥
କର ଯୋଡ଼ି କହଇ ପୌଲସ୍ତିର ନାତି ।
ମୋହର ବଚନ ଶୁଣସି ପଶୁପତି ॥୮୮॥
କେବେହେ ସୀତାର କତିକି ନ ଯିବି ।
ସୀତା ନ ହରି ସୁମରି ମୁହିଁ ଥିବି ॥୮୯॥
ଯଦ୍ୟପି ସୀତା ଅବା ହରିବଇ ଭୋଳେ ।
ମୋହର ପ୍ରାଣ ନାଶ ହୋଇବ ସେ ବେଳେ ॥୯୦॥
ସ୍ନାହାନ ଭୋଜନେ ଅସ୍ଥାନେ ଯହିଁ ବସିଥିବି ।
ସୀତା ନାମ ତହିଁ ଲେଖନ କରିବି ॥୯୧॥
ଏସନେକ କଥା ଯହୁଁ ଈଶ୍ୱର ଶୁଣିଲେ ।
ପରମାନନ୍ଦ ଚିତ୍ତେ ଦଶାନନକୁ କହିଲେ ॥୯୨॥
ଏ କଥା ଯେବେ ତୋହର ସତଟି ଦଶଶିର ।
ଦୁଗୁଣ କରି ଭୋଗ ଭୁଞ୍ଜିବୁ ଦେଲି ତୋତେ ବର ॥୯୩॥
ରୁଦ୍ରାକ୍ଷମାଳା ଆଣି ଗଳାରେ ଭରିଲେ ।
ଚନ୍ଦ୍ରହାସ ଖଡ଼ଗ ହସ୍ତେ ତୋଷେ ଦେଲେ ॥୯୪॥
ସୁଖେ ଲଙ୍କାଗଡ଼େ ରାଜ୍ୟ କରୁ ଥାସି ।
ତହୁଁ ଦଶାନନ ବାହୁଡ଼ିଣ ଆସି ॥୯୫॥
ନନ୍ଦୀ ଭୃକୁଟୀ ଦୁଆରେ ବସିଣ ଅଛନ୍ତି ।
ଦଶଶିରକଇ ଦେଖିଣ ପୁରସରି ପୁଛନ୍ତି ॥୯୬॥
କି ହୋ ଦଶାନନ କେବଣ ମତେ ତପ କଲୁ ।
କେସନେକେ ଶଙ୍କର ମନ ହରିଲୁ ॥୯୭॥
ଚନ୍ଦ୍ର ହାସ ଖଡ଼ଗ ରୁଦ୍ରାକ୍ଷମାଳା ।
ପୁତ୍ରକଇ ଏହା ନ ଦିଅନ୍ତି ରୁଦ୍ରଭୋଳା ॥୯୮॥
ସେ ମନ୍ତ୍ର ଆମ୍ଭକଇ କହକିନା ଭାଇ ।
ପରମ ଯୋଗୀ ନିରଞ୍ଜନ ଯେମନ୍ତେ ତୋଷ ହୋଇ ॥୯୯॥
ଏସନେକ ବଚନ ଶୁଣିଲାକ ଯହୁଁ ।
କେପେ ଦଶାନନ ସମାସ୍ୟା ନ ଦେଲାକ ତହୁଁ ॥୧୦୦॥
ସରିସମ ପ୍ରାୟେ କି ମୋତେ ବୁଝିଲୁ ।
ଏ କଥା ପଚାରିଲୁ ଭୟେ ଭୀତି ନ କଲୁ ॥୧୦୧॥
ବୀରବରମର୍ଦ୍ଦନ ମୁଁ ଲଙ୍କାରେ ଆଧିପତି ।
ବ୍ରହ୍ମକୁଳେ ଉତପତି ମୁଁ ପୌଲସ୍ତିର ନାତି ॥୧୦୨॥
ସେବକ ହୋଇଣ ହର ଭୃତ୍ୟପଣ କର ।
ମର୍କଟ ମୁଖ ହୋଇ ରଖିଥାଅ ଦ୍ୱାର ॥୧୦୩॥
ଈଶ୍ୱରଙ୍କୁ କହି ତୁମ୍ଭଙ୍କୁ ଘେନି ଯିବି ।
ଲଙ୍କାର ଦ୍ୱାରେ ରକ୍ଷା କରିଣ ଥିବି ॥୧୦୪॥
ଶୁଣି ନନ୍ଦୀ ମହାକାଳ କୋପେଣ ବୋଲନ୍ତି ।
ଆମ୍ଭରେ ତ ମର୍କଟ ବୋଲି କହିଲୁ ଦୁଷ୍ଟମତି ॥୧୦୫॥

ମର୍କଟ ତୋହର ପୁରେ ପଶିବଇ ଯେବେ ।
ସୁବର୍ଣ୍ଣ ଭୁବନ ଦହନ କରିବଇ ତେବେ ॥୧୦୬॥
ବଇଷ୍ଣବ ପଣେ ଶିବଙ୍କୁ ସେବା କରୁ ।
ତହିଁରେ ଦୁରାଶା ଆମ୍ଭଙ୍କୁ ନେଇ ଲୋଡ଼ୁ ॥୧୦୭॥
ବୈଷ୍ଣବ ଯେବେ ତୋହର ପୁରେ ପ୍ରବେଶଇ ।
ଶିରୀସମଛି ତୋହର ଦଶକନ୍ଧ ହୋଇବ ବିନାଶଇ ॥୧୦୮॥
ଏତେକ ଶ୍ୟାପ ଯହୁଁ ପାଇଲା ଦଶଗିରି ।
ବାହୁଡ଼ି ଈଶ୍ୱର ଆଗେ କହଇ କର ଯୋଡ଼ି ॥୧୦୯॥
ଭୋ ଦେବ ନନ୍ଦୀଭୃକୁଟୀ ଦ୍ୱାରେ ଥିଲେ ।
ତୋତେ ସେବା କଲି ବୋଲି ସେ ମୋତେ ଶ୍ୟାପ ଦେଲେ ॥୧୧୦॥
ବୋଇଲେ ତୋହର ତପ ଅଳପ ଦିନେ କ୍ଷୟେ ଯିବ ।
ବୈଷ୍ଣବ ପୁରୁଷ ତୋତେ ଅଳପ ଦିନେ ନାଶ କରିବ ॥୧୧୧॥
ଈଶ୍ୱର ବୋଇଲେ କିମ୍ପା ମନ୍ଦ କୃତ୍ୟ କଲୁ ।
ସେ ମହାବଇଷ୍ଣବନ୍ତ କେମନ୍ତେ ଚାଳିଲୁ ॥୧୧୨॥
ଅନନ୍ତ କୋଟି ଯୁଗେ ତାହାନ୍ତ ମରଣ ନାହିଁ ।
ପରମ ଯୋଗ ସାଧନ୍ତି ସେ ଦ୍ୱାରେ ରହିଥାଇ ॥୧୧୩॥
ଯେ ତୋହର କର୍ମେ ଅଛଇ ଲେଖନ ।
କାହାର ବୋଲେ ସେ କରି ହୋଏ ଆନ ॥୧୧୪॥
ଏବେ ତୋହର ଲଙ୍କା ପୁରକୁ ଯାସି ।
ସୀତା ନ ହରିବୁ ବୋଲି ଯେ ବୋଇଲୁ ଏକଥା ମାତ୍ର
ସୁମରିଣ ଥାସି ॥୧୧୫॥
ସୀତା ନ ହରିଲେ ତୋତେ ମରଣ ନାହିଁ ।
ତଳ୍ୟଯେ କରି ଅହୋନିଶି ଥାସି ପରିଭାଇ ॥୧୧୬॥
ଈଶ୍ୱର ବଚନ ଶୁଣି ଆସଇ ନଉକେଶାର ବଛଇ ।
ଭାବାଙ୍ଗ ବନେ ପାର୍ବତୀ ବସିଣ ଅଛଇ ॥୧୧୭॥
ରୂପେଣ କାମେନୀ ତିନି ଭୁବନ ମୋହଇ ।
ଦେଖି ମଦନଭେଳ ଦଶାନନ ହୋଇ ॥୧୧୮॥
ସନିଧେ ହୋଇଣ କହଇ ଦଶାନନ ।
ଆସରେ କାମିନୀ ଯିବା ମୋହର ଭୁବନ ॥୧୧୯॥
ଶିବଙ୍କୁହି ସେବା କରି ଅମର ହୋଇଲି ।
କନକମୟ ପୁରେ ରାଜା ପଦ ପାଇଲି ॥୧୨୦॥
ଭାରିଯା ମୋହର ହୋଇବୁ ଅଇଶ୍ୱର୍ଯ୍ୟ ପଣେ ଥିବୁ ।
ଯେ ତୋହର ଇଚ୍ଛା ଭୋଗ ଭୁଞ୍ଜିବୁ ॥୧୨୧॥
ଶୁଣି ହସି କହନ୍ତି ହେମବନ୍ତର ଦୁଲାଳୀ ।
ମୋହର ପ୍ରାଣବଲ୍ଲଭ ଚନ୍ଦ୍ର ମଉଳି ॥୧୨୨॥
କାମାକ୍ଷୀ ଦେବୀ ଅଟଇ ମୋହର ନାମ ।
ଅନ୍ୟ ପୁରୁଷେ ଇଚ୍ଛା ନ ବଳେ କାମ ॥୧୨୩॥
ଏ ମୋହର ଦେହେ ଶିବ ଯେ ଅଧିକାରୀ ।
ତାହାର ଦେଲେ ସେ ଯିବି ତୋହର ପୁରୀ ॥୧୨୪॥
ଦଶାନନ କହଇ ତୁ ଏହିଠାରେ ଥିବୁ ।
ମୋହର ଆସିବା ଯାଏ କାହିଁକି ନ ଯିବୁ ॥୧୨୫॥
ତୋହର ଭ୍ରଥାକୁହିଁ ତତେ ମାଗିବି ।
ନଉଚେତ ଶିବର ଆଗେ ପ୍ରାଣ ହାରିବି ॥୧୨୬॥
ଏସନେକ କହି ତହୁଁ ଦନୁଜ ଗଲା ।
ମନେ ମନେ ତହୁଁ ପାର୍ବତୀ ବିଚାରିଲା ॥୧୨୭॥
ଏ ଦୃଷ୍ଟ କକ୍ଷା କରି ମାଗିବଇ ଯେବେ ।
ସେ ଭୋଳାଲିଙ୍ଗ ନାସ୍ତି ନ କରିବ ତେବେ ॥୧୨୮॥
ଏଥି ନ ଥିବି ଗୁପତ ହୋଇଥିବି ।
ଅସୁର ଛାର ତୁଲେ କିମ୍ପା ଧ୍ୱଂସ ହୋଇବି ॥୧୨୯॥
ଏସନେକ ବିଚାରି ଦେବୀ ନିଜ ପୁରକଇ ଗଲା ।
ଈଶ୍ୱର ଆଗେ ଯାଇ ଦଶଶିର କହିଲା ॥୧୩୦॥
ଭୋ ଦେବ କାମାକ୍ଷୀ ଦେବୀ ନନ୍ଦନବନେ ଅଛି ।
ତାହାକଇ ଦେଖି ମୁହିଁ ନୁଆରିଲି ମୃଛି ॥୧୩୧॥
ରାଜପଦ ଅଇଶ୍ୱର୍ଯ୍ୟ ତୁହି ମୋତେ ଦେଲୁ ।
ପାଟରାଣୀ କେ ହୋଇବ ନାମ ନ ଧଇଲୁ ॥୧୩୨॥
ସେ କାମାକ୍ଷୀ ହୋଉ ମୋହର ଘରଣୀ ।
ଶୁଣି କରି କୋପ କରନ୍ତି ଶୂଳପାଣି ॥୧୩୩॥
ଜଗତମାତା ସେ ମୋହର ଭାବେନୀ ।
ତାହାକଇ କାମଇଚ୍ଛା କଲୁ ତୋହର ହୋଇଲା ଶିରୀହାନି ॥୧୩୪॥
ବସିବା ଥାନେ ଦେଖି ପାଉ ଯେବେ ।
ତୋହର ଭୁବନକଇ ଘେନି ଯାସି ଏବେ ॥୧୩୫॥
ଶୁଣିଣ ଦଶାନନ ଶୀଘ୍ର ହୋଇଣ ଗଲା ।
ଯହିଁ ଥିଲା ପାର୍ବତୀ ଦେଖି ନ ପାରିଲା ॥୧୩୬॥
ବନସ୍ତେ ଭମି ଲୋଡ଼ଇ ଚଉକତି ।
ନ ଦେଖି କୋପ କରଇ ଲଙ୍କପତି ॥୧୩୭॥
ଭାଳଇ ଦେଖ ହୋ ଈଶ୍ୱର ମୋତେ କେବଣ କୃତ୍ୟ କଲା ।
ଦେବଇ ଭାରିଯା ବୋଲି କେଣେ ଲୁଚାଇଲା ॥୧୩୮॥
କଇଲାସ ପର୍ବତ ସହିତେ ମୋହର ଲଙ୍କାକଇ ନେମି ।

ଯାବତ କାଳକଇ କଥା ଗୁହାଇବି ॥୧୩୯॥
ଆକ୍ରଷି ବଳେଣ ପର୍ବତ ଉପାଡ଼ିଲା ।
ଆପଣା ମାଥେ ଆଣି ବସାଇଲା ॥୧୪୦॥
ଦେଖି ଶିବଗଣେ ବସିଲେ ଆକ୍ରଷି ।
ଘଡ଼ଘଡ଼ି ପରି ରଡ଼ି ଛାଡ଼ିଲା ନଉକେଶାର ବଛି ॥୧୪୧॥
ଦଶମୁଖେ ରୋଧିର ହୋଇଲା ବାହାରଇ ।
ଜୀବ ଛାଡ଼ିଲା ପ୍ରାୟେ ମୂର୍ଚ୍ଛା ଗଲା ଦଶଶିରଇ ॥୧୪୨॥
ଶୁଣିଣ ସଭାଲୋକେ ହସିଲେ କୁତୂହଳେ ।
ବିଶେଷି କହିଲେ ସୀତୟାର ଦୁଲାଳେ ॥୧୪୩॥
ଶିବଗଣଙ୍କୁ ପଚାରନ୍ତି ଦେବ ହର ।
କିସ ଶବଦେକ ଶୁଭିଲା ମହାଘୋର ॥୧୪୪॥
ଶିବଗଣେ କହନ୍ତି ଦଶଶିର ଏଥି ଥିଲା ।
ଏ ପର୍ବତ ନେମି ବୋଲି ଉପାଡ଼ି ଶିରେ ବସାଇଲା ॥୧୪୫॥
ତେଣେ ସେ ପର୍ବତ ମାଡ଼ି ବସିଲୁ ଆମ୍ଭେ ଯହୁଁ ।
ରଡ଼ି ଦେଇ ପ୍ରାଣ ଛାଡ଼ି ପଡ଼ିଲାକ ତହୁଁ ॥୧୪୬॥
ଶୁଣି ଦୟାକରି କହନ୍ତି ତ୍ରିଲୋଚନ ।
ମୋହର ବର ଦେଲାତ ହୋଇଲାକ ଆନ ॥୧୪୭॥
ତାହାର କଥା କେହି ନ ଜାଣିମେ ।
ଜଗତ ସଂସାରେ ଅପଖ୍ୟାତି କହିବେ ॥୧୪୮॥
ଆବର କେ ମୋତେ କରିବେ ଭଗତି ।
କମଣ୍ଡଳୁ ପାଣି କାଢ଼ି ମୁଖେ ସିଞ୍ଚିଲେ ପଶୁପତି ॥୧୪୯॥
ଉଠ ବୋଲି ଚାପଡ଼େ ମାଇଲେ ଦେବ ହର ।
ଚେତନା ପାଇ ବସିଲା ଦଶଶିର ॥୧୫୦॥
ଦେହରେ ତାହାର ପ୍ରାଣ ପଶିଲାକ ଯେବେ ।
ଦଶାନନ ମୁଖ ଚାହିଁ କହନ୍ତି ବାମଦେବେ ॥୧୫୧॥
ତୁହି ମୋହର ପର୍ବତ ନେଇ ଲୋଡ଼ୁ ଦୁଷ୍ଟ ।
ମନ୍ଦ ଆଚାରେ ହୋଇଲୁ ତୁ ଭ୍ରଷ୍ଟ ॥୧୫୨॥
ମହାଭୟେ ଯେବେ ରାବେକ ଛାଡ଼ିଲୁ ।
ଆଜୁ ତୋହର ନାମ ରାବଣ ବୋଲି ଦେଲୁ ॥୧୫୩॥
ତେବେ ସେ ରାବଣ ନାମ ହୋଇଲା ବିଖ୍ୟାତି ।
ଶ୍ରୀରାମ ଆଗରେ ଲବକୁଶେ ଗୀତରେ ଗାବନ୍ତି ॥୧୫୪॥
ଶୁଣିଣ ଶ୍ରୀରାମଚନ୍ଦ୍ର ହରଷ ହୋଇଲେ ।
ଲବକୁମରଙ୍କ ଦେହ ଆଶ୍ୱାସି ପଚାରିଲେ ॥୧୫୫॥
ବିଚିତ୍ର ଆଛାନ କହିଲ ତୁମ୍ଭେ ମହାବକତା ।
ଧନ୍ୟ ତୁମ୍ଭର ପିଅର ଧନ୍ୟ ତୁମ୍ଭର ମାତା ॥୧୫୬॥
ରାବଣର ନାମ କଥା ନ ଜାଣିଣ ଥିଲି ।
ତୁମ୍ଭର ମୁଖେ ମୁହିଁ ସକଳ ଶୁଣିଲି ॥୧୫୭॥
ଏବେ କହି(ବା) ବାବୁ ହେ ପୁରାଣର କଥା ।
ତଦଅନ୍ତରେ କେବଣ କୃତ୍ୟ କଲାକ ଦଶମଥା ॥୧୫୮॥
ଲବକୁଶେ କହନ୍ତି ରାବଣ ନାମ ପାଇ ।
ଲଙ୍କାପୁରେ ପ୍ରବେଶ ହୋଇଲାକ ଯାଇ ॥୧୫୯॥
ମାତାର ଆଗେ କହଇ ଦଶଶିର ।
ସୀତା ନ ହରିଲେ ମରଣ ନାହିଁ ମୋର ॥୧୬୦॥
ନଉକେଶା କହଇ ଏହି କଥା ପାଳ ।
ଏବେ ଐଶ୍ୱର୍ଯ୍ୟ କଥା ଭୋଗ୍ୟ କର ଦୁଲ୍ଲାଳ ॥୧୬୧॥

X X X

ଏଥୁ ଅନନ୍ତରେ ଶ୍ରୀରାମର ଆଗେ ।
ଲବକୁଶେ କହନ୍ତି ବାକ୍ୟ ସୁବାଗେ ॥୧॥
କୁମ୍ଭକର୍ଣ୍ଣ ତପ କରି ନିଦ୍ରା କର ମାଗିଲା ।
ବିଭୀଷଣ ବୈର୍ଷ୍ଣବପଣ ଇଚ୍ଛା କଲା ॥୨॥
ସମସ୍ତ ଚରିତ୍ର ବିଶେଷ କହିଲେ ।
ଶୁଣିଣ ସକଳ ଲୋକେ ହରଷ ହୋଇଲେ ॥୩॥
ରାବଣ ଲଙ୍କାରେ ବିଖ୍ୟାତ ହୋଇଲାକ ଯହୁଁ ।
ସମସ୍ତେ ହେ ଅସୁରେ ଲଙ୍କାକଇ ଅଇଲେ ତହୁଁ ॥୪॥
ସୁମାଳି ଦଇତ୍ୟର ପୁତ୍ର ଗୋତ୍ର ସହିତେ ।
ରାବଣ ରାଜ୍ୟକଇ ଅଇଲେ ସମସ୍ତେ ॥୫॥
ଏହୁ ଅସୁରବୀରଙ୍କର ନାମ ଧରନ୍ତେ ।
ବହୁତ ଗହନ ହୋଇବ ନା ବିଶେଷି କହନ୍ତେ ॥୬॥
ମୁହିଁ ମୂଖ ମନୁଷ୍ୟ ବୁଧି ମୋହର କିସ ।
ଲବକୁଶେ କହନ୍ତି ଶ୍ରୀରାମର ପାଶ ॥୭॥
କୁବେର ତୁଲେ ରାବଣ ଯୁଦ୍ଧ କଲା ।
ପୁଷ୍ପକ ରଥ ସହିତେ ସମସ୍ତ ଘେନିଗଲା ॥୮॥
ପଳାଇ କୁବେର ଅଳକାପୁରେ ରହଇ ।
ସଭାରେ ବସି ତାହା ଲବକୁମର କହଇଁ ॥୯॥
ଯେବଣ ପଦ ଅଳପ ଅନ୍ତର ହୋଇ ।
କୁଶକୁମର ତାହା ଅର୍ଥ କରି ଦିଅଇ ॥୧୦॥
ପୁଷ୍ପକ ରଥ ଚଢ଼ି ରାବଣ ଦିଗବିଜୟେ କଲା ।
ମନ୍ଦୋଦରୀକି ମନ୍ଦର ପର୍ବତୁ ଆଣିଲା ॥୧୧॥

ମନ୍ଦୋଦରୀ କି ସେ କଲା ପାଟରାଣୀ ।
ସ୍ୱର୍ଗପୁରକଇ ଗଲାକ ଦିନେ ଅସୁର ନୃପମଣି ॥୧୨॥
ଦେଖି ଦେବଗଣେ ସମସ୍ତେ ହେ ପଳାଇଲେ ।
ବିଂଝଗିରି ପର୍ବତେ ମରୁତରାଜା ଯାଗରେ ରହିଲେ ॥୧୩॥
ଦଶ ବିଶ୍ୱଦେବାଙ୍କୁ ସଙ୍ଗତେ ନ ଥୋଇଲେ ଯହୁଁ ।
ରାବଣର ଆଗେ ଠାବ କହିଲେକ ତହୁଁ ॥୧୪॥
ବିଂଝଗିରି ପର୍ବତେ ରାବଣ ପଶିଲା ।
ସକଳ ଦେବତାକଇ ଧରି ଭୃତ୍ୟ କଲା ॥୧୫॥
ଛୟାଶୋଇଁ କୋଟି ଅପଛରାନ୍ତ ଆଣିଲା ।
ସେ କନ୍ୟାକଇ ଦାସୀପଣ କରାଇଲା ।
ନାନା ଅନ୍ୟାୟେ ତ ନିଯୋଗ୍ୟପଣ ଦେଲା ॥୧୬॥
ତ୍ରିଭୁବନକୁ ହୋଇଲା ଏକାଙ୍ଗ ଚକ୍ରବର୍ତ୍ତୀ ।
ଅମରପୁର ରୁଦ୍ରପୁରରେ କରନ୍ତି ଭୀତି ॥୧୭॥
ଗନ୍ଧର୍ବେ ଖଟନ୍ତି ଆସ୍ଥାନର ତଳେ ।
ସୁର ସିଦ୍ଧ ଭୃତ୍ୟ କଲାକ ସେ ପାଦତଳେ ॥୧୮॥
ମରକତ ବଜ୍ର ନୀଳ ମାଣିକ୍ୟ ଆଣି କଲା ।
ଜଗତିରେ ଉଠିବାକୁ ତାହା ପାବଛ କଲା ॥୧୯॥
ପୁଷ୍ପକ ରଥ ଗଢ଼ିଣ ଦଶଶିରି ।
ପଞ୍ଚାଶ କୋଟି ପୃଥିବୀ ରାଜାନ୍ତ ଆଣିଲାକ ଧରି ॥୨୦॥
ଦୟା କରି ତାହାନ୍ତ ପ୍ରାଣେ ନ ମାଇଲା ।
ପଞ୍ଚାଶ କୋଟି ରାଜାନ୍ତ ପାଣ୍ଡିତ କରାଇଲା ॥୨୧॥
ରାବଣର ଦୁହିତା ନାତୁଣୀ ଯେତେ ଥିଲେ ।
ବିଭା ହୋଇଲେ ରାଜାଏ ଦଶାନନର ବୋଲେ ॥୨୨॥
ପୁତ୍ରପୁତ୍ରୀ ତାହାର ହୋଇଲା ଉତପତି ।
ମୁକୁଟବନ୍ଧା ସେ ଆସାନେ ବସନ୍ତି ॥୨୩॥
ଦେବରଷି ବହୁ ଋଷି ନବଗ୍ରହ ସହିତେ ।
ରାବଣର ମୁଖ ଚାହିଁ ଭୟେକଲେ ସମସ୍ତେ ॥୨୪॥
ସୁବର୍ଣ୍ଣରେଖା ନାମେଣ ଯେବଣ ଭଗ୍ନୀ ।
ତ୍ରିଶିରାକଇ ବିଭା କରାଇଲା ତାହା ବିଂଶପାଣି ॥୨୫॥
ତ୍ରିଶିରା ଭାଇ ତ୍ରିଜଟା ଅସୁରଇ ।
କୁମ୍ଭକର୍ଣ୍ଣର ଭଗ୍ନୀକି ବିଭା କରାଇ ॥୨୬॥
ବିଭୀଷଣର ଭଗ୍ନୀ ତାରା ନାମେ ଯୁବତୀ ।
ଏକସ୍ତନୀ ବାମା ସେ ଦୋହରା ପୂଜଇ ନିତି ॥୨୭॥
ସୁବର୍ଣ୍ଣରେଖାର ଗର୍ଭେ ପୁତ୍ର ଉପୁଜିଲା ।
ପାଞ୍ଚବରଷହୁଁ ସେ ତପସ୍ୟା ସେହୁ କଲା ॥୨୮॥
ବାଳୁତ ତନୟ ସେ ଜପତପ ଆଚରଇ ।
ଜପାସୁର ବୋଲି ନାମ ସେ ପ୍ରଚରଇ ॥୨୯॥
ଯେବଣ ଚରିତ୍ର କଲା ଦଶାନନ ।
ଶ୍ରୀରାମ ଆସ୍ଥାନେ କହନ୍ତି ସୀତୟାର ବେନି ନନ୍ଦନ ॥୩୦॥
ରାବଣର ପୁତ୍ରେ ଯେସନେକେ ତପ କଲେ ।
ସଭାର ଲୋକେ ଶୁଣି ହରଷ ହୋଇଲେ ॥୩୧॥
ଲବକୁଶଙ୍କର ବାକ୍ୟ ବଖାଣ କରନ୍ତେ ।
ଆଦିତ୍ୟ ରହିଅଛି ଶୂନ୍ୟ ମାର୍ଗ ପଥେ ॥୩୨॥
ସପତ ଦୀପ ଯେ ସପତ ସାଗର ।
ସବୁ ହୋଇ ଅଛି ବେଳ ଦୁଇ ପ୍ରହର ॥୩୩॥
ସପତଦୀପ ହୋଇଅଛି ଏକତ୍ର ।
ଶ୍ରୀରାମଙ୍କ ଆଗେ ରାବାୟେଣ କହନ୍ତି ସୀତୟାର ବେନି ସୁତ ॥୩୪॥
ନଗ୍ର ନରନାରୀ ଆସ୍ଥାନର ତଳେ ।
ସାନନ୍ଦେ ଶୁଣନ୍ତି ଆନନ୍ଦ ମତି ଭୋଳେ ॥୩୫॥
ଜୟତୁ ତ୍ରିପୁରବିନାଶନ ଉମାପତି ।
ଧବଳ ଜଟା କଳାପେ ଧବଳ ଚନ୍ଦ୍ର ସ୍ଥିତି ॥୩୬॥
ଶରୀର ଧବଳ ତୋହର ବିଭୂତି ଧବଳଇ ।
ଧବଳ ମୁଣ୍ଡମାଳା ତୋହର ଲୁଳଇ ବକ୍ଷସ୍ଥଳଇ ॥୩୭॥
ଧବଳ ବୃଷଭରେ ତୁହି ଆରୋହଣ କରୁ ।
ଧବଳ କର୍ମରେ ହମ୍ବାରୁ ଡମ୍ବରୁ ॥୩୮॥
ଧବଳ ବାସୁକି ନାଗ ଗଳାରେ ତୋହର ।
ଧବଳ ପନଙ୍ଗ କଙ୍କଣ ପୟରନୂପୁର ॥୩୯॥
ଧବଳ ପଦ୍ମ ଜାଣି ଦିଶଇ ବଦନ ।
ଧବଳ ତିନି ନୟନ କି ମଧୁପରେ ଚୁମ୍ବନ ॥୪୦॥
ଧବଳ ଚିତ୍ତେଣ ଯେ କରଇ ଭଗତି ।
ଧବଳ କପିଳାସ ପୁରେ ପାବଇ ସ୍ଥିତି ॥୪୧॥
ସେବକ ଲୋକଙ୍କୁ ଧବଳ ତୋହର ଚିତ୍ତ ।
ସିଦ୍ଧେଶ୍ୱର ଦାସ ଧବଳଲିଙ୍ଗର ପୟରେ ଭଗତ ॥୪୨॥

X X X

ଏଥୁ ଅନନ୍ତରେ ଶୁଣ ପଣ୍ଡୁର କୁମାର ।
ରାବଣର ଜନ୍ମ ଶୁଣି କ୍ଷତ୍ରିବର ସୁନ୍ଦର ॥୧॥
ଶ୍ରୀରାମ ପୁଛନ୍ତି ପୁତ୍ରଙ୍କ ମୁଖ ଚାହିଁ ।
ରାବଣର ଚରିତ୍ର ଶୁଣିଲଇଁ ମୁହିଁ ॥୨॥

ଯାହାର ଅର୍ଥେ ରାବଣ ବୀର ମଲା ।
ସୀତୟା କେସନେକେ ଜନମ ହୋଇଲା ॥୩॥
ଏହାର ଚରିତ୍ର ବିସ୍ତାରିଣ କହ ।
ମନର ଭ୍ରାନ୍ତି ଯେ ଫିଟାଅ ସନ୍ଦେହ ॥୪॥
ଶୁଣିଣ କୁମାରେ ନାଦ ହୁଂକାରନ୍ତି ।
ବିଚିତ୍ର ଦେଶାଖ୍ୟ ରାଗ ସୁସ୍ୱରେ ଧରନ୍ତି ॥୫॥
ଶୁଣିଣ ମୋହିତ ହୋଇଲେ ସଭାର ସର୍ବଜନ ।
ଶ୍ରବଣ ଟେକିଲେ ନ ଚାଳିଲେ ନୟନ ॥୬॥
କୁମରଙ୍କର ମୁଖ ଚାହିଁ ସଧୀରେ କରି ନିରେଖି ।
ଏକଇ ଆରେକ ଆଗସରିଣ ଦେଖି ॥୭॥
ଲକ୍ଷ୍ମଣ ସମସ୍ତଙ୍କୁ ପଛ କରିଣ ପେଲି ଦିଅଇ ।
ଥିର କରି ଶୁଣ ହୋ କକୟା ପୁତ୍ର କହଇ ॥୮॥
ସଭା ନିଶବଦ ହୋଇଲାକ ଯହୁଁ ।
ଲବ କୁମର ଗ୍ରନ୍ଥ ବଖାଣ କରଇ ତହୁଁ ॥୯॥
ବେଦମତୀ କନ୍ୟା ଜନ୍ମର କଥା କହନ୍ତି ଉକତି ।
ସତ୍ୟଯୁଗେ ବେଦ କରଇ ମହାଯତି ॥୧୦॥
ଦୋହରା ଥାପି ମୁନି ବେଦ ଆଦ୍ୟାନ କରଇ
ଘୃତ ଯବ ତିଳ ବହନିରେ ପକାଇ ॥ ୧୧ ॥
ମକର ଶୁକଳ ପଞ୍ଚମୀ ଗୁରୁବାରଇ ।
ପୁନର୍ବସୁ ନକ୍ଷତ୍ର ଏଗାର ଘଡ଼ି ପ୍ରଭାକରଇଁ ॥୧୨॥
ବେଦ ନାଦ କରନ୍ତି ତପଚାରୀ ।
ସୁବର୍ଣ୍ଣ ପଙ୍କୁ ପ୍ରାୟେକ ବେଦରୁ କନ୍ୟାଏ ଅବତରି ॥୧୩॥
ଦେଖିଣ ମହରଷି ହରଷ ହୋଇଲା ।
ବେଦମତୀ ନାମ ସେ କନ୍ୟାକଇ ଦେଲା ॥୧୪॥
ତ୍ରିଭୁବନ-ମୋହିନୀ ମୁନି ମନ ହରଇ ।
ମୁଖ ଦିଶଇ ଶରଦ ପୌର୍ଣ୍ଣମୀ (ଚନ୍ଦ୍ରମା) ଆକାରଇ ॥୧୫॥
ମନ୍ଦାର ବଧୁକି କୋମଦ ଓଷ୍ଠ ।
ଗରୁଡ଼ ନାସିକା କାମବାଣ ଦିଷ୍ଟ ॥୧୬॥
ଏକଖଣ୍ଡ ରଜକପୋଳ ଚାଚର ଦୀର୍ଘ କେଶଇ ।
ସୁବାସ ପଦ୍ମ ଷଟ୍‌ପଦେ ଉଡ଼ଇ ଚଉପାଶଇ ॥୧୭॥
ସୁଲଳିତ କର୍ଣ୍ଣ ବେନି ହୃଦୟ ବିସ୍ତାରଇ ।
ଉମ୍ବରୁ ମଧ ମଝା ପଦ୍ମପତ୍ର ଉଦରଇ ॥୧୮॥
ହଂସୁଳିତୁଳୀ ଜାଣି ଯୁଗଳ ପିଚ ଦିଶଇ ।
କଦଳୀ ବୃକ୍ଷକାଣି ଜାନୁ ବାହା ମୃନାଳ ମାନ୍ଦ୍ରିଶଇ ॥୧୯॥
କନକଚମ୍ପା ଯେସନ ଦିଶଇ ଦେହର ଜ୍ୟୋତି
ପୟର ଚଳନ୍ତେ ଅରବିନ୍ଦ ଫୁଟନ୍ତି ॥ ୨୦ ॥
ଚମ୍ପାକଢ଼ି ଜାଣି ଅଙ୍ଗୁଳି ଦିଶଇ ।
ଜାଇ ଫୁଲ ଯେସନ ଦଶନ ସାଦ୍ରିଶାଇ ॥୨୧ ॥
କନକ କଳସ ଜାଣି ପୟୋଧରଭାରଇ ।
ଅଣ୍ଡୀର କୋକିଳ ଯେସନେ ବଚନ ମଧୁରଇ ॥୨୨॥
କନ୍ୟାର ମୁଖ ଦେଖି ବିଚାରନ୍ତି ମୁନିବର ।
ଏ କନ୍ୟାକଇ ବଲ୍ଲଭ ନାହିଁ ପଟାନ୍ତର ॥୨୩॥
କାହାକଇ ଏ କନ୍ୟା ବିଭା କରାଇବି ।
ଅସାଦ୍ରିଶ ହୋଇଲେ କେମନ୍ତେ ଯାଚି ଦେବି ॥୨୪॥
ବେଦମତୀ କହଇ ଶୁଣସି ହୋ ତାତ ।
ତପ କରି ମନାଇବି ମୁଁ ଶ୍ରୀଜଗନ୍ନାଥ ॥୨୫॥
ଆନବରେ ମୋହର ପ୍ରୟୋଜନ ନାହିଁ ।
ପୁରୁଷଙ୍କର ରତ୍ନ ସେ ଲକ୍ଷ୍ମୀଦେବୀର ସାଇଁ ॥୨୬॥
ଭଗୀରଥି ନଦୀ ପବିତ୍ର ପୁଣ୍ୟ ଜଳ ।
ତପ ଆଚରଇ ଉତ୍ତରମୁଖ କୂଳ ॥୨୭॥
ବିଷ୍ଣୁଙ୍କୁ ଧ୍ୟାୟେ କରି ମଜ୍ଜିଲା ମନ ।
ହୃଦରେ ବିଶ୍ରାମଇ ଶ୍ରୀବତ୍ସଲାଞ୍ଛନ ॥୨୮॥
କସାବସନ ବିଭୂତି ଲେପଇ କପୋଳ ।
ଗଳାରେ ଲୁଳଇ ରୁଦ୍ରାକ୍ଷ କଣ୍ଠମାଳ ॥୨୯॥
ରାବଣ ଚକ୍ରବ୍ରତୀ ଦିଗପାଳ ଚୂଡ଼ାମଣି ।
ଭାଗୀରଥି ନଦୀ ତୀରେ କରଇ ଭ୍ରମଣି ॥୩୦॥
ଦେଖଇ କାମେନୀ ରୂପେଣ ଅନିନ୍ଦିତ ।
ସନିଧେ ମିଳଇ ଯାଇ ଅସୁରବୀର ଦଶମାଥ ॥୩୧॥
ରୂପ ଚାହିଁ ମଦନେ ଅସ୍ଥିର ହୋଇଲା ।
ପୁଷ୍ପକ ରଥରୁ ଓହ୍ଲାଇ କନ୍ୟାର ସନିଧେ ଗଲା ॥୩୨॥
କିସ ଅର୍ଥେ ତପ କରୁ ବୋଲି ପୁଛଇ ଲଙ୍କପତି ।
ମୁହିଁ ସେ ରାବଣ ତିନି ପୁରେ ବିଖ୍ୟାତି ॥୩୩॥
ରଥେ ବସ ମୋହର ରାଜ୍ୟକଇ ଯିବା ।
ଭାରିଯା ହୋଇବୁ ଅନେକ କାମିନୀ କରୁଥିବେ ସେବା ॥୩୪॥
ଶ୍ରୀହରିକି ଧ୍ୟାଇ ଅଛି ନ ଶୁଣିଲା ସେ ନାରୀ ।
ତହୁଁ କୋପେ କହଇ ଦଶଗିରି ॥୩୫॥
ଏଡ଼େ ଭରସା ତୋହର ନ ଶୁଣୁ ମୋହର ବୋଲଇ ।
ମୋହର ନାମେ ସକଳ କ୍ଷତ୍ରିଙ୍କର ହିୟା ସଲଇ ॥୩୬॥

ବଳେଣ କନ୍ୟାକଇ ଆକୁଷି ଧଇଲା ।
ଜଟା କାଟି ତତକ୍ଷଣେ ଉଲଗ୍ନ କଲା ॥୩୭॥
ରମଣ କରଇ ଦନୁଜ ଦଶଗିରି ।
ତେବେ ସେ ଧାୟେ ଚେତିଲା ଋଷିଙ୍କର କୁମାରୀ ॥୩୮॥
ପ୍ରତକ୍ଷେ ଦେଖିଲାକ ଦଶବଦନ ।
ଡରେଣ କାମେନୀ ବୁଜଇ ନୟନ ॥୩୯॥
ଗାଢ଼େଣ ରାବଣ ରମଣ ସାରିଲା ।
ଉତ୍ତର ଦିଗ ବିଜୟେ କରି ଗଲା ॥୪୦॥
କ୍ଷଣକେ ସତୀର ପ୍ରାଣ ପଶଇ ଶରୀର ।
ଯୋନି ଫାଟି ପାଦେ ପଡୁଅଛି ରୁଧିର ॥୪୧॥
କାନ୍ଦଇ କୁମାରୀ ହୋଇଣ ନିର୍ମାକ୍ଷୀ ।
କିମ୍ପାଇ ଆବର ଦେହ ଧରିବି ମୁହିଁ ଦୁଖୀ ॥୪୨॥
ରମଣ କଲା ମୋତେ ଆବର ଦଶାନନ ।
କେମନ୍ତେ ଚାହିଁବି ମୁଁ ପିତାର ବଦନ ॥୪୩॥
ଆତ୍ମାଘାତେ ମଲେ ହୋଇବ ନା ଦୋଷ ।
କୁଳେ କଳଙ୍କ ମୋତେ ଜନମଧେ ଉପହାସ୍ୟ ॥୪୪॥
ବଳାତ୍କାରେ କରଇ ନ ଲାଗଇ ଆତ୍ମାଘାତ ।
ଏ ମୋହର ହତ୍ୟା ପଡୁ ଦଶଶିର ମାଥ ॥୪୫॥
ଏସନେକ ବିଚାରି ଅଗ୍ନି ଏ ସଂଜାଳିଲା ।
ଶୂନ୍ୟକୁ ଚାହିଁ ଦଶଦିଗପାଳକଇ ସାକ୍ଷୀ କଲା ॥୪୬॥
ଭୋ ଦେବଗଣେ ମୋହର ଶୁଣିମା ବଚନ ।
ବିର୍ଷ୍ଣୁକୁ ବର ଇଚ୍ଛା ବସିଥିଲି ଧ୍ୟାନ ॥୪୭॥
ମୋତେ ଜାତିନାଶନ କଲା ଦଶଗିରି ।
ଏଥକଇ ଗତି ମୋତେ କର ହେ ଶ୍ରୀହରି ॥୪୮॥
ଯାହାର କୋଳେ ଉପୁଜଇ ମୁହିଁ ।
ନାରାୟେଣ ପୁରୁଷ ହୋଇବ ମୋହର ସାଇଁ ॥୪୯॥
ସେ ବିର୍ଷ୍ଣୁ ଦଶକନ୍ଧକୁ କରିବ ବିନାଶ ।
ଏତେ କହି ବେଦମତୀ ଅଗ୍ନିରେ ଦେଲା ଝାସ ॥୫୦॥
ବେଦମତୀର ବିନାଶ ଶୁଣିଣ କ୍ଷତ୍ରିବରସୁନ୍ଦର ।
ଦୁଇ ନୟନରୁ ଲୁହ ବହଇ ଝର ଝର ॥୫୧॥
ସଭାର ତଳେ ଯେତେ ଲୋକ ଅଛନ୍ତି ।
ସବିଏ ଶୋକେ ଅଶ୍ରୁପାତ କରନ୍ତି ॥୫୨॥
ଶ୍ରୀରାମ ପୁଛନ୍ତି ପୁତ୍ରଙ୍କର ମୁଖ ଚାହିଁ ।
ଅଗ୍ନି ଭିତରେ ବେଦମତୀ (ପ୍ର)ବେଶ ହୋଇ ॥୫୩॥
ଏଥୁ ହୋଇଲା ବାବିୟେ କେବଣ ଚରିତ ।
ଗୀତେଣ ଗାବନ୍ତି ସୀତୟାର ବେନି ସୁତ ॥୫୪॥
ଅଗ୍ନିରେ ବେଦମତୀ ତହୁଁ ପଶିଲା ।
ଦିଗବୁଲି ରାବଣ ସେ ବାହୁଡ଼ି ଅଇଲା ॥୫୫॥
ଦେଖଇ କନ୍ୟା ଅଗ୍ନିରେ ପୋଡ଼ନ୍ତେ ।
ମନେଣ ବିଚାର ଭାଳଇ କୋପଚିତ୍ତେ ॥୫୬॥
ଏ ମୃତ୍ୟି ପିଣ୍ଡ ମୁହିଁ ଆଧାର କରିବି ।
ମାନେବ ମାଂସ ଭୁଞ୍ଜି ଶରୀର ତୋଷ କରିବି ॥୫୭॥
ଅଗ୍ନିରୁ କାଢ଼ି ରଥରେ ପକାଇଲା ।
ଅନ୍ତଃପୁରେ ଯାଇ ପ୍ରବେଶ ହୋଇଲା ॥୫୮॥
ଯହିଁ ସେ ମନ୍ଦୋଦରୀ ମହାଦେଈ ଅଛଇ ।
ମୃତ୍ୟି ପିଣ୍ଡ ଘେନି ରାବଣେଶ୍ୱର ପୁଛଇ ॥୫୯॥
ତୁହି ମୋହର ଭାବେନୀ ପ୍ରାଣର ଅର୍ଧଅଙ୍ଗ ।
ପକୁମୋଞ୍ଚନ କରି(ବୁ) ତୁହି ଆଜର ମୃତ୍ୟିଶବ ॥୬୦॥
ଆପଣାର ସଂହାତେ ତୁହି ସେ ରାନ୍ଧିବୁ ।
ଆନକଇ ଛୁଇଁତ ଦେଖିତ ନ ଦେବୁ ॥୬୧॥
ଏସନେକ କହି ବୀର ଆସ୍ଥାନକଇ ଗଲା ।
ତାହା ଦେଖି ଇନ୍ଦ୍ର ନାରଦକୁ ପଠିଆଇଲା ॥୬୨॥
ମନ୍ଦୋଦରୀ ସନିଧେ ମିଳଇ ବ୍ରହ୍ମାସୁତ ।
ଦେଖିଣ ମନ୍ଦୋଦରୀ କରଇ ପ୍ରଣମିତ ॥୬୩॥
କର ଯୋଡ଼ି କହଇ ରାବଣର ନାରୀ ।
ଭୋ ତପୋଧନ କିମ୍ପାଇଁ ଅଇଲୁ ମୋହର ପୁରୀ ॥୬୪॥
ବ୍ରହ୍ମାର ପୁତ୍ର ତୁହିଁ ରୁଦ୍ର ମୂରତି ।
ତୋତେ ଦେଖି ମୁହିଁ ହୋଇଲି ମୁକତି ॥୬୫॥
ଆଜ ସେ ମୋହର ଜୀବନ ସୁଫଳ ।
ତୁହି ଯହୁଁ ବିଜୟେ କଲୁ ବ୍ରହ୍ମାର ଦୁଲ୍ଲାଳ ॥୬୬॥
ନାରଦେ କହନ୍ତି ଶୁଣସି ମହାସତୀ ।
ତୋହର ତହିଁକି ପଠିଆଇଲେ ସୁରପତି ॥୬୭॥
ଯହିଁର ଅର୍ଥେ ତୁ ହୋଇଲୁ ରାବଣର ରମଣୀ ।
ସେ କାର୍ଯ୍ୟ ଏବେ ଗୋ ହୋଇଲା ତରୁଣୀ ॥୬୮॥
ଯେବେଣ ମୃତ୍ୟୁପିଣ୍ଡ ଗୋ ଆଣିଲା ଦଶଗିରି ।
ତେଣୁ ସେ ଅସୁର ବଂଶ ହୋଇବ ସଂଘାରି ॥୬୯॥
ସେ କନ୍ୟାର ନା୍ମ ଗୋ ଅଟଇ ବେଦମତି ।
ବଳେ ତାହାକଇ ଗୋ ରମଣ କଲା ଲଙ୍କପତି ॥୭୦॥

ଅପମାନ ନ ସହିଲା ସେ ଋଷିରକୁମାରୀ ।
ଅଗ୍ନିରେ ପଶିଲା ସେ ସତ୍ୟବ୍ରତନାରୀ ॥୭୧॥
ତାହାକଇ ରାବଣ ଗୋ ଭକ୍ଷିବାକୁ ଆଣିଲା ।
ତୋହର ଗୋଚରରେ ଗୋ ଏହିକ୍ଷଣି ଦେଲା ॥୭୨॥
ଏ ମୃତ୍ୟୁପିଣ୍ଡ ରକ୍ଷା କରୁ ଯେବେ ।
ଏ ଦନୁଜ ଦଶମାଥ ବିନାଶ ହୋଇବ ତେବେ ॥୭୩॥
ରହିଥାଉ କଥା ଏ ମୋହର ଶୁଭ୍ରକେଶୀ ।
ଏ ମୃତ୍ୟୁପିଣ୍ଡ ସମ୍ଭାଳିଣ ଥାସି ॥୭୪॥
ନାରଦ ବଚନେ ମନ୍ଦୋଦରୀ ହରଷ ହୋଇଲା ।
ସୁବର୍ଣ୍ଣ ଘଟେ ଭରି ଗୁପତ କରିଣ ଥୋଇଲା ॥୭୫॥
ଆନ ମାଂସ ରାବଣକଇ ରାନ୍ଧିଣ ଦିଅଇ (ଆହାରଇ) ।
ଭୁଞ୍ଜିଣ ହରଷ ହୋଇଲା ଦଶଶିରଇ ॥୭୬॥
ଏମନ୍ତେ କେତେହେକ ଦିନ ଗଲା ।
ପୁଣି ଆସି ମନ୍ଦୋଦରୀକି ନାରଦ କହିଲା ॥୭୭॥
ମୃତ୍ୟୁପିଣ୍ଡ ଥୋଇଲୁ ଯେ ରାବଣର ନାରୀ ।
ଦେଖସି ତାହା ବୁଝସି ପରିମାଣ କରି ॥୭୮॥
ନାରଦ ବଚନ ଶୁଣି ମନ୍ଦୋଦରୀ ବାମା ।
ଘଟର ଭିତରେ ଦେଖଇ କନ୍ୟା ଅନୁପମା ॥୭୯॥
କୁରଙ୍ଗ ଲୋଚନୀ ମୁଖ ପୌର୍ଣ୍ଣମୀ ଚନ୍ଦ୍ର ଜାଣି ଦିଶଇ ।
କର ଚରଣ ଯୁଗଳ ଅରବିନ୍ଦ ବିଂଘସଇ ॥୮୦॥
ଦେଖିଣ ମନ୍ଦୋଦରୀ ଚକିତ ହୋଇଲା ।
ନାରଦ ମହରଷିର ଆଗେ ଆସିଣ କହିଲା ॥୮୧॥
ତୋହର ବାକ୍ୟ ମୁନି ହୋଇଲା ସ୍ୱରୂପ ।
କନ୍ୟାଏକ ଅଛି ଅତୁଳାଇତ ରୂପ ॥୮୨॥
ମହରଷି କହନ୍ତି ଶୁଣସି ମହାସତୀ ।
ଯଦ୍ରପି ଦେଖଇ ତାହା ରାବଣ ପାପମତି ॥୮୩॥
ବଳେ ସେ କାମେନୀକି ବିଭା ହୋଇବ ।
ବାଳୁତ ଯୁବତୀକି ରମଣ କରିବ ॥୮୪॥
ବୃଦ୍ଧ ପୁରୁଷକଇ ଯେବେ ତରୁଣ ଯୁବତୀ ।
ନିଅତ ଭାରିଯା ତାର ନୁହଇନି ପ୍ରୀତି ॥୮୫॥
ତୁହି ଏବେ ସେ କନ୍ୟା ନବରେ ନ ଥୁଅ ।
ମଞ୍ଜୁ ସେ ଭରି ସମୁଦ୍ରେ ମେଲି ଦିଅ ॥୮୬॥
ଏସନେକ ବାକ୍ୟ ଯହୁଁ ମନ୍ଦୋଦରୀ ଶୁଣିଲା ।
ରାତ୍ରକାଳେ ମଞ୍ଜୁଷେ ଭରି ସାହେରେ ନେଇ ମେଲାଇଲା ॥୮୭॥
ତହୁଁ ମନ୍ଦୋଦରୀ ଗଲାକ ନିଜ ପୁରେ ।
ବିସ୍ତାରି କହନ୍ତି ସୀତାର ବେନି କୁମରେ ॥୮୮॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ବଶିଷ୍ଠ ଋଷିଙ୍କର ମୁଖକୁ ଚାହିଁଲେ ॥୮୯॥
ଭୋ ମୁନି ଯାହା ବଖାଣ କରନ୍ତି ଦୁଇ ଭାଇ ।
ପୁରାତନ ଲୋକ ଏହା ନ ପାରଇ କହି ॥୯୦॥
ବଶିଷ୍ଠେ କହନ୍ତି ଏ ବଡ଼ ଲୋକଙ୍କର ପୁତ୍ର ।
ଗ୍ରନ୍ଥ ଶୁଣିତ ସରିଲେ ପଚାରିବା ଏହାର ପିଅର ମାତ ॥୯୧॥
ଏବେ ଥିର ହୋଇ ବାକ୍ୟ ଶୁଣୁ ଥାସି ।
ଆନ କଥା ଏବେ ନ କର ପ୍ରକାଶି ॥୯୨॥
ଶୁଣିଣ ତବଦ ହୋଇଲେ ରାମଚନ୍ଦ୍ର ।
ସଭାରେ ସର୍ବଲୋକେ ହରଷ ଆନନ୍ଦ ॥୯୩॥
ଲବକୁମର କହନ୍ତି ଶୁଣସି ସାବଧାନେ ।
ସମୁଦ୍ରେ ମଞ୍ଜୁସ ଚଳିଲାକ ବହନେ ॥୯୪॥
ଯାହାସେ ବିଧାତା ନିର୍ବାଣ କଲା ।
ବୃହିଦେହି ମଣ୍ଡଳେ ସେ ମଞ୍ଜୁସ ଲାଗିଲା ॥୯୫॥
ବାଲିକୁଦ ହୋଇଲା ତହିଁର ଉପର ।
ଜନେକ ମହରଷିର ସେ ନଗ୍ରେଣ ଘର ॥୯୬॥
ସେ ଜନେକ ଋଷିର ଚାରି ଯୁବତୀ ।
କାହାରି ହି କୋଳେ ପୁତ୍ର ନାହିଁ ଉତପତି ॥୯୭॥
ଋଷିନ୍ତ ଘେନି ବିଚାରଇ ତପସ୍ୱୀ ରାଜନ ।
ମୋହର କୋଳେ ଯେବେ ନୋହିଲା ନନ୍ଦନ ॥୯୮॥
ଯାଗ କରିବା ବୋଲି ହୃଦରେ ଭାଳିଲା ।
ସେ ପଦ୍ରେ ମକର ତିଳ ବୁଣାଇଲା ॥୯୯॥
ତିଳ ପାଚି ଫୁଟି ତହିଁରେ ପଡ଼ଇ ।
ତଦଅନ୍ତରେ ଗୋରୁନ୍ତ ଗୋଷ୍ଟ କରଇ ॥୧୦୦॥
ଏମନ୍ତେ ପଦ୍ରେ ପବିତ୍ର ହୋଇଲା ଯେବେ ।
ଯାଗ୍ୟଶାଳକୁ ଅନକୂଳ ଖୋଜାଇଲା ଏବେ ॥୧୦୧॥
ସୃତ୍ରିକାରେ ଯାଗ ଭୂମି ସୂତ୍ର କରନ୍ତେ ।
କନ୍ୟାଏକ ଶୂନ୍ୟ ମାର୍ଗେ ଯାନ୍ତେ ଗଗନ ଗତେ ॥୧୦୨॥
ଶୀତଳ ହୋଇ ଯହୁଁ ପବନ ବହିଲା ।
ଆକାଶ ମାର୍ଗକଇ ଜନେକ ମୁନି ଚାହିଁଲା ॥୧୦୩॥
ସେ କନ୍ୟାକଇ ଦେଖି ହରଷେ ଭାଳଇ ଯତି ।
ଏମନ୍ତେକ ଦୋହିତା ମୋତେ ହୋଇବାକ ଉତପତି ॥୧୦୪॥

ସେ କନ୍ୟାବିର୍ଷ୍ଣୁଙ୍କୁ ବିଭାଏଣ ଦେବି ।
ସକଳ ପାତେକ ତେଜି ବୈକୁଣ୍ଠେ ବସିବି ॥୧୦୫॥
ଏସନେକ କଥା ଯହୁଁ ଅପଛରୀ ଶୁଣିଲା ।
ରଥ ଗୁହାଇ ସେ ସମ୍ଭାଷଣ ଦେଲା ॥୧୦୬॥
ତୁହି ଯେ ଦୋହିତାକୁ ଇଛା କଲୁ ମହରଷି ।
ଯେବଣ ଠାବରେ ତୁ ଅଛୁ ଏବେ ବସି ॥୧୦୭॥
ଚହିଁର ତଳେ ଖୋଳନ୍ତେ କନ୍ୟାଏ ପାଇବୁ ।
ସେ କନ୍ୟା ବିର୍ଷ୍ଣୁ ନାଥଙ୍କୁ ଦାନ ଦେବୁ ॥୧୦୮॥
ସେ କୁମାରୀର ସେ ବଲ୍ଲଭ ହୋଇବ ।
ପୃଥ୍ୱୀର ଭାରା ସେ ଉଶ୍ୱାସ କରିବ ॥୧୦୯॥
ଶୁଣିଣ ଜନେକ ମୁନି ହରଷ ହୋଇଲା ।
ଖଣା ଖୋଳନ୍ତେଣ ମଞ୍ଜୁଷେକ ପାଇଲା ॥୧୧୦॥
ମଞ୍ଜୁଷର ମୁଦ ଭାଙ୍ଗିଣ ଦେଖଇ ତପଚାରୀ ।
ତ୍ରିଭୁବନେ ତୁଲାଇତ ନାହିଁ ରୂପେଣ ସୁନ୍ଦରୀ ॥୧୧୧॥
ହରଷ ମୁନିବର ଯେ କନ୍ୟାର ମୁଖ ଚାହିଁ ।
ପ୍ରତକ୍ଷେ ଲକ୍ଷ୍ମୀ ଥିଲା ଅବା କାହିଁ ॥୧୧୨॥
ମୋହର ଉପର ବଂଶେ ଶିବନାଥ ରାୟେ ।
ଈଶ୍ୱର ସେବା କରି ସେ ଶିବ ଧନୁ ପାଏ ॥୧୧୩॥
ମୋହର ଉପର ପାଞ୍ଚ ପୁରୁଷେ ଧନୁକୁ ସେବା କରି ।
ମୁହିଁ ଏବେ ପାଇଲି ଯଦି ଏହି କୁମାରୀ ॥୧୧୪॥
ସେ ଧନୁ ଯେ ଆମଞ୍ଚନ କରଇ ।
ସେ କୁମାରୀର ସେ ହୋଇବାକ ବରଇ ॥୧୧୫॥
ସତ୍ୟ ସତ୍ୟ ବାକ୍ୟ ଉଚାରଇ ମୁନି ।
ସ୍ୱର୍ଗରେ ଜୟ ଜୟ ଶୁଭିଲାକ ଧୁନି ॥୧୧୬॥
ଆନନ୍ଦ ହୋଇଲେ ମିଥିଳାପୁର ନରନାରୀ ।
ଅତି ହରଷ ହୋଇଲେ ଜନେକ ତପଚାରୀ ॥୧୧୭॥
ସେ କୁମାରୀଙ୍କି ଘେନି ମୁନି ନବରେ ପଶିଲେ ।
ସକଳ ସ୍ତିରୀବୃନ୍ଦ ଦେଖି ଆନନ୍ଦ ହୋଇଲେ ॥୧୧୮॥
ସିତ୍ୟା ନାମର ସେ କୁମାରୀକି ଦେଲେ ।
ଆନନ୍ଦ ଚିତ୍ତେ ମୁନି ହରଷ ହୋଇଲେ ॥୧୧୯॥
ସୋମକାନ୍ତି ନାମେ ସେ ଜନେକ ଭାବେନୀ ।
ସୀତୟାକୁ ସେ ପ୍ରତିପାଳଇ ମାନନୀ ॥୧୨୦॥
ତହୁଁ ମହରଷି ଯାଗ ଆରୋପିଲା ।
ହବିର୍ଭାଗ ଦିଅନ୍ତେ ତିନି କୁମାରୀ ଉପୁଜିଲା ॥୧୨୧॥
ରତି କି ପାର୍ବତୀ ଦମୟନ୍ତୀ ପ୍ରାୟେଣ ଦିଶନ୍ତି ।
ଦେଖିଣ ହରଷ ଜନେକ ମହୀପତି ॥୧୨୨॥
ସୀତୟାର ରୂପ କନେଷ୍ଠ ଯେବଣ ଦୋହିତ ।
ଭାନୁମତୀ ପ୍ରତିପାଳଇ ତାହାର ଚିତ୍ତ ॥୧୨୩॥
ପୟର ଦିଶଇ ତାର ଅଳିତାପତ୍ର ଓଳି ।
ଅଳକା ନାମ ତାକୁ ଦେଲେ ତପଶ୍ୟାଳି ॥୧୨୪॥
ଦୁଇ ଦୋହିତାର ଯେବଣ କନେଷ୍ଠ କୁମାରୀ ।
ହୃଦୟ ବିସ୍ତାର ମଝା କ୍ଷୀନ ତାହାରି ॥୧୨୫॥
ଦେଖିଣ ଜନେକ ଋଷି ହରଷ ହୋଇଲା ।
ତାହାର ନାମ ଉର୍ମିଳା ବୋଲି ଦେଲା ॥୧୨୬॥
ସାବେତ୍ରୀ ନାମ ଯେ ଜନେକର ଭାବେନୀ ।
ଉର୍ମିଳାକୁ ସେ ଯେ ପ୍ରତିପାଳଇ କାମେନୀ ॥୧୨୭॥
କନେଷ୍ଠ ଦୋହିତା ରୂପ ଅତି ବିତପନ ।
ନିର୍ମଳ ମେଘର ଜ୍ୟୋତି ତାହାର ଯେସନ ॥୧୨୮॥
ତାହାକୁ ଦେଖିଣ ଜନେକ ମୁନିବର ।
ତାରା ନାମ ତାହାକଇ କରନ୍ତି ପ୍ରଚାର ॥୧୨୯॥
ସୀତୟା(କୁ) ପଟାନ୍ତର କେହି ନୁହୋନ୍ତି ସରି ।
ଜନେକ ମହରଷି ଧନୁ ସୟମ୍ବର କରି ॥୧୩୦॥
ଅନେକ ରାଜାଏ ବହିଦେଇ ମଣ୍ଡଳକଇ ଆସନ୍ତି ।
ଅକଳଅବଳ ଧନୁ ଦେଖି ବାହୁଡ଼ିଣ ଯାନ୍ତି ॥୧୩୧॥
ଏମନ୍ତେ ସୀତାକୁ ବିଭାଯୋଗ ନାହିଁ ।
ଆବର କନ୍ୟାକୁ ବିଭା କରିବଇ କାହିଁ ॥୧୩୨॥
ତଦନିମନ୍ତେ ଜନେକର ଚାରି କୁମାରୀ ।
ଅବିଭାଇତ ହୋଇଥାନ୍ତି ଜନେକ ମୁନିର ପୁରୀ ॥୧୩୩॥
ଏସନେକ ସୀତୟା ହୋଇଲା ଉତପତି ।
ସଭାରେ ବିସ୍ତାରି ତାହା ଲବକୁଶେ କହନ୍ତି ॥୧୩୪॥
ଶୁଣିଣ ହରଷ ସୀତୟାର ସାଇଁ ।
କ୍ଷତ୍ରିବର ପୁଛନ୍ତି କୁମରଙ୍କ ମୁଖ ଚାହିଁ ॥୧୩୫॥
ବାବୁ ଜନେକକୁମାରୀ ଜନ୍ମ ଜାଣିଣ ନ ଥିଲି ।
ଅମୃତମୟେ କଥା ତୁମ୍ଭର ମୁଖୁ ଶୁଣିଲି ॥୧୩୬॥
ସୀତୟାର ବିଭା କଥା ଶୁଣିମି ଦିବ୍ୟ ରୀତି ।
ଶୁଣିଣ ମୋହର ଚିତ୍ତ କରିବି ଶ୍ୟାନ୍ତି ॥୧୩୭॥
ଶ୍ରୀରାମ କଥା ଯହୁଁ କୁମରେ ଶୁଣିଲେ ।
ବରାଡ଼ି ରାଗେ ଟୀବିର କରି ଧଇଲେ ॥୧୩୮॥

ଶୁଣି ସଭା ଲୋକେ ହୋଇଲେ ମୋହି ।
ସବୁଙ୍କରି ନୟନ ଅଛି କୁମାରଙ୍କର ତହିଁ ॥୧୩୯॥

X X X

ଲବକୁଶେ କହନ୍ତି ଦିବ୍ୟ ରୀତି ।
ଦଶରଥ କୋଳେ ଯହୁଁ ଚାରି ନନ୍ଦନ ଉତପତି ॥୧॥
ସକଳ ଋଷିଗଣେ ହରଷ ହୋଇଲେ ।
ବିଶ୍ୱାମିତ୍ର ଋଷିଙ୍କି ପୁରସରି କହିଲେ ॥୨॥
ଭୋ ମୁନି ତୁହି ଅଯୋଧ୍ୟାକୁ ଯିବୁ ।
ଦଶରଥ ପୁତ୍ର ରାମକୁ ଘେନିଣ ଆସିବୁ ॥୩॥
ଯାଗ ଦ୍ୱାର ଶ୍ରୀରାମକୁ ରକ୍ଷା କରାଇବା ।
ଶଙ୍କା ତେଜି ଆମ୍ଭେ ଯାଗ ଆରମ୍ଭିବା ॥୪॥
ତୁହି ସ୍ୱୟଂ ମିଥିଳା ନବରେ ଆଧିପତି ।
ତୋହରସେ ଏଥକୁ ଆସଇନା ରଘୁପତି ॥୫॥
ସେ ବିଷ୍ଣୁର ମୂରତି ସମୁଖେଣ ଦେଖି ।
ପାପ ପଳାଉ ଆମ୍ଭର ଶରୀରୁ ଉପେଖି ॥୬॥
ଋଷିଙ୍କର ବଚନ ଶୁଣି ଗ୍ୟାଧିର ନନ୍ଦନ ।
ପ୍ରବେଶ ହୋଇଲେ ଯାଇ ଅଯୋଧ୍ୟା ଭୁବନ ॥୭॥
ରାଜାର ଆସ୍ଥାନେ ବିଜୟେ ମୁନି କଲେ ।
ବଶିଷ୍ଠ ମୁନିଙ୍କି ପ୍ରଣମିତ କଲେ ॥୮॥
ଯେବଣ କଥା ହୋଇଲେ ବଶିଷ୍ଠଙ୍କର ସଙ୍ଗେ ।
ଲବକୁମର କହଇ ଶ୍ରୀରାମର ଆଗେ ॥୯॥
ଯେବଣ ପଦ ଅବା ଅନ୍ତର ହୁଅଇ ।
କୁଶକୁମର ତାହା ଅର୍ଥ କରିଣ କହି ॥୧୦॥
ସଭା ଆସ୍ଥାନେ ବସି ମୁନିବରଇ ।
ଦଶରଥ ରାଜା ମୁନିଙ୍କି ପୂଜା କରଇ ॥୧୧॥
ବିଶ୍ୱାମିତ୍ର ମୁନିଙ୍କ ପୟର ଧୂଳି କପାଳେ ଲଗାଇଲା ।
କରପତ୍ର ଯୋଡ଼ି ବିଶ୍ୱାମିତ୍ରେ ବିନୋଇ କହିଲା ॥୧୨॥
ଭୋ ମୁନି ପବିତ୍ର ହୋଇଲା ମୋହର ରାଜ୍ୟଇ ।
ତୁହି ଯହୁଁ ବିଜୟେ କଲୁ ଗ୍ୟାଧିର ତନୟି ॥୧୩॥
ରାଜଋଷି ହୋଇ ନବସୃଷ୍ଟି ସିର୍ଜିଲୁ ।
ଅତି ତପେଣ ବ୍ରହ୍ମଋଷି ବୋଲାଇଲୁ ॥୧୪॥
କଉଶିକ କହିଲେ ତୁ ସୂର୍ଯ୍ୟବଂଶେଣ ବିଖ୍ୟାତି ।
ନୃପତିଶେଖର ତୁହି ପ୍ରତାପୀ ଚକ୍ରବର୍ତ୍ତୀ ॥୧୫॥
ତୋହର କୋଳେ ପୁତ୍ର ଜାତ ହୋଇଲା ।
ବୃଦ୍ଧ ବୟସେ ତୋହର ଚାରି ପୁତ୍ର ଉପୁଜିଲା ॥୧୬॥
ଅସୁରଙ୍କ ଡରେ ବନସ୍ତେ ଲୁଚିଥାଉ ।
ପ୍ରାଣନ୍ତକେସେ ଦିବସ ନିଶି ବଞ୍ଚଉ ॥୧୭॥
ଯାଗ ଆହୂତି ଆମ୍ଭର ତପ ନ ହୋଇଲା ।
କ୍ରିୟା ଅନ୍ତରେ ବହୁତ ପାତେକ ବଢ଼ିଲା ॥୧୮॥
ରାଜା ବାହୁବଳେ ସେ ମୁନି ତପ କରନ୍ତି ।
ତହିଁର ଅର୍ଦ୍ଧ କାରଣୀ ମହୀପତି ହୁଅନ୍ତି ॥୧୯॥
ତେଣୁ ସେ ରାଜା ସନ୍ଥ ପ୍ରତିପାଳି ଦୃଷ୍ଟନ୍ତ ମାରଇ ।
ନିରେଖ ଲୋକଙ୍କର ଗୁହାରି ବିଚାରଇ ॥୨୦॥
ଜମ୍ବୋଦ୍ୱୀପେ ଯେତେ ନୃପତି ବିଖ୍ୟାତି ।
ତାହାଙ୍କର ଶ୍ରେଷ୍ଠ ତୁ ଭାଗ୍ୟରଥି କୁଳେ ଉତପତି ॥୨୧॥
ତୋହର ଚାରି କୁମରେ ହୋଇଲେ ଉତପତି ।
ରାମଲକ୍ଷ୍ମଣଙ୍କୁ ମୋତେ ଦିଅସି ନୃପତି ॥୨୨॥
କ୍ଷତ୍ରି ମନ୍ତ୍ରବିଦ୍ୟା ସମସ୍ତ କହିବି ।
ଯାଗଶାଳ ମୋହର ରକ୍ଷା କରାଇବି ॥୨୩॥
ଶୁଣିଣ ଦଶରଥ ଯେ ଚମତ୍କାର ହୋଇଲା ।
ରସାଣ ଲାଗିଲା ପ୍ରାଣ ଉଛର୍ଗିଲା ॥୨୪॥
ପାତ୍ର ଅମନାତ୍ୟେ ବଶିଷ୍ଠେ ଯେତେ ଥିଲେ ।
ଦଶରଥଙ୍କୁ ଘେନି ନବରକୁ ଗଲେ ॥୨୫॥
ଦଶରଥଙ୍କୁ ଯେ ସାଷ୍ଟାମ କରାଇ ।
ବଶିଷ୍ଠ ମହାମୁନି କହିଲେ ବୁଝାଇ ॥୨୬॥
ଯଦ୍ୟପି ମୁହାଂସ କରିବୁ କୁମରଙ୍କୁ ନ ଦେବୁ ।
ଅକାତ ସମୁଦ୍ରେ ସୂର୍ଯ୍ୟବଂଶ ବୁଡ଼ାଇବୁ ॥୨୭॥
ଶୁଣିଲା ନାହିଁକି ବିଶ୍ୱାମଇତ୍ରଙ୍କ ତେଜ ।
କୋପେ ନାଶ କଲା ମୋହର ଶତେକ ତନୁଜ ॥୨୮॥
ବିଶ୍ୱାମିତ୍ର କୋପ ଯେ ପ୍ରଖର ବହନି ।
କିଛି ନ ବିଚାରି ଦେସି ପୁତ୍ର ବେନି ॥୨୯॥
ଦଶରଥ କହନ୍ତି ରାମକୁ ଦେଇତ ସତ ନ ବଳଇ ।
ବନସ୍ତକୁ କେସନେ ପଠିଆଇବି ଅଳ୍ପଳ ଦୁଲାଳଇ ॥୩୦॥
ରାମଲକ୍ଷ୍ମଣ ଯେ ଧନୁରେ ଗୁଣ ଦେଉଥିଲେ ।
ଧନୁଶର ଘେନି ପିତାର ସନିଧେ ହୋଇଲେ ॥୩୧॥
ନୃପତିର ବଦନ ଅମରିଷ ଦେଖନ୍ତି ।
କତିରେ ହୋଇ ରାମ ପିତାଙ୍କୁ ପୁଛନ୍ତି ॥୩୨॥
କିସ ନିମନ୍ତେ ଦେବ ବିସ୍ମୟେ ତୋହର ମନ ।

ଦଶ(ରଥ) କହଇ ଶୁଣସି ନନ୍ଦନ ॥୩୩॥
ବିଶ୍ୱାମିତ୍ର ବୋଲଇ ତାହାର ଆଶ୍ରମକୁ ନେବି ।
ତୋତେ ବନ ପଠିଆଇ ମୁହିଁ କେସନେକ ଦେହ ଧରିବି ॥୩୪॥
ନ ଦିଅଇ ତୋତେ ଆଜ ସେ ମୋତେ ମାରୁ ।
ଯାବତ କାଳକୁ କଥା ପୁରାଣେ ପ୍ରଚରୁ ॥୩୫॥
ଶ୍ରୀରାମ କହନ୍ତି ପିତା କିମ୍ପା ହୋଉ ବିମନ ।
ମାତୁଳ ରାଜ୍ୟକୁ ଯାଇ ଆଣ ଭରଥ ଶତୃଘନ ॥୩୬॥
ମୁନିଙ୍କର ତୁଲେ ଆମ୍ଭେ ବନକୁ ଯେବେ ଯିବୁ ।
ଏହାହୁଁ ଭାଗ୍ୟ ଆବର କିସ ଅରଜିବୁ ॥୩୭॥
ଆମ୍ଭେ ବାଳୁତ ମୁନି ନାଶ କରିବ ଯେବେ ।
ପୁରାଣେ ଏ କଥା ରହିବ କିନା ଏବେ ॥୩୮॥
ଭୋ ତାତ ମନେ ନ ବିଚାର ଆନ କିଛି ।
ଆମ୍ଭକଇ ପଠିଆଇ ଥାସି ମନ ମୃଛି ॥୩୯॥
ମୁନିଙ୍କର ତୁଲେ ଆମ୍ଭନ୍ତ ପଠିଆଅ ।
ମନ ଦମ୍ଭ କରି ନିଷନ୍ତେ ରହିଥାଅ ॥୪୦॥
ରାମର ବଚନ ଶୁଣି ଦଶରଥ ମହୀପତି ।
ରାମଲକ୍ଷ୍ମଣଙ୍କୁ ଘେନିଗଲା ବିଶ୍ୱାମିତ୍ରଙ୍କର କତି ॥୪୧॥
ଦାନ୍ତେ ତିରଣ ଧରି ଦଇନି କରଇ ।
ଭୋ ମୁନି ପ୍ରାଣହୁଁ ଅଧିକ ଏ ବାଳୁତ କୁମାରଇ ॥୪୨॥
ତୋହର ତୁଲେଣ ଏ ଗୋଡ଼ାଇଣ ଥିବେ ।
ବନ ଘୋର କନ୍ଦର କେମନ୍ତେ ଚାଲିବେ ॥୪୩॥
ସମସ୍ତେ ଯିବେ କି ରଥ ଆରୋହି ।
ଦଶରଥ ଆଜ୍ଞା ଦେଲା ସାରଥିକି ଚାଇ ॥୪୪॥
ରଥ ମଣ୍ଡିଣ ଏହିକ୍ଷଣି ଘେନି ଆସ ।
ବାଳୁତ ପୋଏ ମୋହର ଚାଲନ୍ତେ ପାଇବେ ପ୍ରାସ ॥୪୫॥
ନୃପତିର ଆଜ୍ଞା ପାଇଣ ସାରଥି ।
ରଥ ବାହିଣ ମୁନିଙ୍କର ସନିଧକୁ ଅଇଲା ତଡ଼ତି ॥୪୬॥
ରଥ ଦେଖିଣ କହନ୍ତି ମହାମୁନ୍ୟ ।
ରଥରେ ଆମ୍ଭର ହୋଇ କିସ ପ୍ରୟୋଜନ ॥୪୭॥
ଆମ୍ଭର କଥା ଶୁଣିଥାଅ ମହୀପାଳ ।
ଶ୍ରମ ନ ପାଇବେ ତୋହର ବେନି ଦୁଲାଳ ॥୪୮॥
ନାନା ଶସ୍ତ୍ରଶାସ୍ତ୍ର ନିର୍ଜିତ କରାଇବି ।
ଦୁଇପୁତ୍ର ତୋହର ସନିଧେ ସମର୍ପିବି ॥୪୯॥
କଣ୍ଟାଖୋଚ ଏହାର ପୟରେ ନ ବାଜିବ ।
ଗିରି କନ୍ଦରେ କିଛି ପ୍ରମାଦ ନ ପଡ଼ିବ ॥୫୦॥
ଶୁଣିଣ ଦଶରଥ ଭ୍ରାନ୍ତି ଛାଡ଼ିଲା ।
ରାମଲକ୍ଷ୍ମଣକୁ ବିଶ୍ୱାମିତ୍ର ଘେନିଗଲା ॥୫୧॥
ଅନ୍ତପୁର ଭିତରେ ଦଶରଥର ରାଣୀ ।
ରୋଦନ କଲେ ରାମର ବନକୁ ଗଲା ଶୁଣି ॥୫୨॥
ନଗ୍ର ନରନାରୀ ବିକଳେ ଚକିତ ।
ସବୁନ୍ତି ପ୍ରବୋଧି ରୁହାଇଲେ ବ୍ରହ୍ମାସୁତ ॥୫୩॥
ଭରଥ ଶତୃଘନେ ଯେ ମଉଳାଘରେ ଥିଲେ ।
ସେହି ଦିନ ଆସି ପିତା ସନିଧେ ମିଳିଲେ ॥୫୪॥
ଦୁଇ ପୁତ୍ରନ୍ତ ଯହୁଁ ଦଶରଥ ଦେଖିଲା ।
ବିଶ୍ୱାମିତ୍ର ରାମଲକ୍ଷ୍ମଣକୁ ନେଲା ବୋଲି ଦୁଇପୁତ୍ରକୁ କହିଲା ॥୫୫॥
ପିତାର ବଚନ ଶୁଣିଲେକ ଯହୁଁ ।
ବନକ (ଭରଥ) ଶତୃଘନ ସଜ ହୋଇଲେକ ତହୁଁ ॥୫୬॥
ବଶିଷ୍ଠେ ଯେମନ୍ତେ ଭରଥ ଶତୃଘନକୁ ରୁହାଇଲେ ।
ଶ୍ରୀରାମର ଆଗେ ଲବକୁଶେ ଗୀତେଣ ଗାଇଲେ ॥୫୭॥
ଶୁଣିଣ ଶ୍ରୀରାମ ବଶିଷ୍ଠଙ୍କ ମୁଖ ଚାହିଁ ।
ଭୋ ମୁନି ସ୍ୱରୂପ କଥାତ କହନ୍ତି ଦୁଇଭାଇ ॥୫୮॥
ମୁହିଁ ଯେବଣ ବଚନ ପିତାକୁ କହିଲି ।
ସେ ବଚନ ଏହାର ମୁଖରେ ଶୁଣିଲି ॥୫୯॥
ବଶିଷ୍ଠେ କହନ୍ତି ତଲ୍ୟେ କରି ଶୁଣସି ।
ପୁରାଣ ବାକ୍ୟ ବେଳେ ଆନ କଥା ନ ପ୍ରକାଶସି ॥୬୦॥
ମହତ କୁଳେ ଜାତ ଏ ବେନି ଭାଇ ।
ଆନରେ ଶକ୍ୟେକି ପାରଇ ଶାସ୍ତ୍ର କହି ॥୬୧॥
ବଶିଷ୍ଠେ ଶ୍ରୀରାମ କଥା ଯହୁଁ ହୋଇଲେ ।
ମଉନ ହୋଇ ଲବକୁଶେ ବସିଲେ ॥୬୨॥
ବଶିଷ୍ଠେ କହନ୍ତି ଶୁଣ ଦୁଇ ଭ୍ରାଥ ।
ରାମଲକ୍ଷ୍ମଣ ଘେନି ଯେ ଗଲେ ଗ୍ୟାଧିସୁତ ॥୬୩॥
ଏଥିର ଚରିତ୍ର କହସି ବିସ୍ତାରି ।
ତହୁଁ ଲବକୁମର ସୁସରେ ନାଦ ହୁଂକାରି ॥୬୪॥
କୁମରେ କହନ୍ତି ସାବଧାନେ ଶୁଣ ।
ବିଶ୍ୱାମିତ୍ରଙ୍କ ସଙ୍ଗେ ଯେ ଗଲେ ରାମଲକ୍ଷ୍ମଣ ॥୬୫॥
ନିର୍ଝର ବନସ୍ତେ ହୋଇଲେ ପ୍ରବେଶଇ ।
ବନଜୀବନ୍ତ ଦେଖି ଦୁଇ ଭାଇ ହରଷଇ ॥୬୬॥
ସିଂହ ଶାର୍ଦ୍ଦୂଳ ହସ୍ତୀ ଯୂଥଯୂଥଇ ।

ବ୍ୟାଘ୍ର ଭାଲୁକ ବରେହା ବହୁତଇ ॥୬୭॥
ପକ୍ଷୀଜନ୍ତୁହି ସୁସରେ ଭାଷନ୍ତି ।
ଶୁଣି ରାମଲକ୍ଷ୍ମଣେ ଆନନ୍ଦମୟେ ମତି ॥୬୮॥
ଗହନ ବନେ ଗଲେ ଲଂଘି ଯେବଣ ବାଗେ ।
ପର୍ବତକ ଛାଡ଼ି ଦୁସହ ବନମାର୍ଗେ ॥୬୯॥
ବଳିର ମାଳେ ଯେ ବନସ୍ତେ ପଡ଼ିଥିଲେ ।
ଶ୍ରୀରାମଙ୍କୁ ଦେଖି ସେ ମୁକତି ହୋଇଲେ ॥୭୦॥
ଯହିଁ ଯେବଣ କୃତ କଲେକ ରଘୁପତି ।
ଶ୍ରୀରାମର ଆଗେ ଲବକୁଶେ କହନ୍ତି ॥୭୧॥
ଅଯୋଧ୍ୟା ଲୋକେ ଯେ ନ ଜାଣିଣ ଥିଲେ ।
କୁମରଙ୍କର କହନ୍ତେ ସମସ୍ତେ ହେ ଶୁଣିଲେ ॥୭୨॥
ନର୍ମଦା ତୀର୍ଥେ ପ୍ରବେଶ ହୋଇଲେ ଯହୁଁ ।
ସ୍ନାହାନ ସାରି (ଶିବ) ଦର୍ଶନ କଲେ ତହୁଁ ॥୭୩॥
ପ୍ରସନେ ଚନ୍ଦ୍ରଶେଖର ଦେଲେ ବର ।
କଲ୍ୟାଣ ହେଉ ତୁମ୍ଭଙ୍କୁ କ୍ଷତ୍ରିବର ସୁନ୍ଦର ॥୭୪॥
ପୃଥ୍ୱୀର ଭାରାଭର କରସି ଉଶ୍ୱାସ ।
ଦୃଭାର ଅସୁରନ୍ତ ସମରେ କର ନାଶ ॥୭୫॥
ବର ଦେଇ ଈଶ୍ୱର ଶୂନ୍ୟେ ବିଜେ କରି ଗଲେ ।
ତହୁଁ ବିଶ୍ୱାମିତ୍ର ଧନୁଶାସ୍ତ୍ର କହିଲେ ॥୭୬॥
ଯେମନ୍ତେ ମନ୍ତ୍ରବିଦ୍ୟା ରାମଲକ୍ଷ୍ମଣଙ୍କୁ କହିଲେ ଗ୍ୟାଧିସୁତ ।
ସଭାରେ ବିସ୍ତାରି କହନ୍ତି ସୀତାର ବେନି ପୁତ୍ର ॥୭୭॥
ନର୍ମଦାରୁ ବାହାର ହୋଇ ମିଥିଳାକୁ ଯାନ୍ତେ ।
ଶ୍ରୀରାମ ମୁଖ ଚାହିଁ କହନ୍ତି ବିଶ୍ୱାମିତ୍ରେ ॥୭୮॥
ତାଡ଼କା ନାମେ ଦୃଭାର ଅସୁରୀ ।
ପୂର୍ବକାଳେ ସେ ତାଡ଼କା ଦନୁଜ ମନୋହାରୀ ॥୭୯॥
ବାଟପାଡ଼ି ସେ ମନୁଷ୍ୟ ଭକ୍ଷଇ ।
ଦେବାସୁର ନରେ ତାହାକୁ ନୋହଇ ସମକଛଇ ॥୮୦॥
ପୂର୍ବ ସମୁଦ୍ର ତୀରେଣ ଆମ୍ଭେ (ଯେବେ) ଯିବା ।
ଛଡ଼ ମାସେ ମୋହର ଆଶ୍ରମେ ହୋଇବା ॥୮୧॥
ସଳଖ ବାଟେ ଗଲେ ତିନି ଦିନେ ହୋଇବା ପ୍ରବେଶ ।
କେମନ୍ତେ ଯିବା ଅସୁରେ କରିବେ ପ୍ରାଣନାଶ ॥୮୨॥
ଶ୍ରୀରାମ କହନ୍ତି ତିନି ଦିନ ବାଟେ ଯିବା ।
କେଡ଼େ ପ୍ରତାପୀ ଅସୁରେ ତାହା ମୋତେ ଦେଖାଇବା ॥୮୩॥
ଶ୍ରୀରାମ ବଚନ ଶୁଣିଣ ମୁନିବର ।
ରାମଲକ୍ଷ୍ମଣନ୍ତ ଘେନି ହୋଇଲେ ଆଗୁସାର ॥୮୪॥
ମନୁଷ୍ୟ ଦେଖି ତାଡ଼କୀ ରାକ୍ଷସୀ ।
ଶ୍ରୀରାମ ସନିଧେ ମିଳିଲାକ ଆସି ॥୮୫॥
ଆକାଶମାର୍ଗେ ଲାଗୁଅଛି ଶିର ।
ପଛେ କନେଷ୍ଠ ଭାଇ ଦୁଇ କୁମାର ॥୮୬॥
ତାହାଙ୍କର ତେଜ ମୂର୍ତ୍ତି ଯହୁଁ ବିଶ୍ୱାମିତ୍ର ଦେଖିଲେ ।
ଶ୍ରୀରାମର ମୁଖ ଚାହିଁ ଉରେଣ କହିଲେ ॥୮୭॥
କିମ୍ପା କ୍ଷତ୍ରିବର ତବଦ ହୋଇଲୁ ।
ଆମ୍ଭର ବଚନ ନ କରି ଯେ ଏ ବାଟେ ଅଇଲୁ ॥୮୮॥
ଯେବଣ ମନ୍ତ୍ରବାଣ କହିଅଛଇ ତୋତେ ।
ଧନୁ ଧରି ସେ ମନ୍ତ୍ର ପଢ଼ି ନାରାଚ ବିନ୍ଧ ତୁରିତେ ॥୮୯॥
ବିଶ୍ୱାମିତ୍ରଙ୍କର ବଚନ ଶୁଣିଣ ରାମଚନ୍ଦ୍ର ।
କୋଦଣ୍ଡ ଆମଞ୍ଚନ କଲେ ସତ୍ୟସନ୍ଧ ॥୯୦॥
ଆକ୍ରୋଷି ଧାଇଁ ଆସନ୍ତେ ଅସୁରୀ ।
ମୁଖକୁ ବଜ୍ରବାଣ ବିନ୍ଧିଲେ ଚାପଧାରୀ ॥୯୧॥
ହାବଡ଼ା ବାଣ ଯହୁଁ ମୁଖରେ ବାଜିଲା ।
ବଦନ ମାଡ଼ି ରାକ୍ଷସୀ ହୁଡ଼ିଣ ପଡ଼ିଲା ॥୯୨॥
ଚେତନା ପାଇ ଉଠିଲାକ ଯେବେ ।
ବାବଲବାଣ ରାମ ଧଇଲେକ ତେବେ ॥୯୩॥
କଟିଭାଗେଣ ବାବଲଶର ପଡ଼ିଲା ।
ଦୁଇ ଖଣ୍ଡ ହୋଇ ଦନୁଜ ଶିର ଛିଡ଼ିଗଲା ॥୯୪॥
ସୁବାହୁ ମାରୁଚି ତାହାର ବେନି ସୁତ ।
କ୍ଷଣେ ରୂପ ଧରି ସେ ଧାଇଁଲେ ତୁରିତ ॥୯୫॥
ବୃଷଭ ରୂପ ଯହୁଁ ରାମଚନ୍ଦ୍ର ଦେଖିଲେ ।
ପବନା ଶରେ ମାରୁଚିକି ସନ୍ଧ କଲେ ॥୯୬॥
ସେ ବାଣ ମାରୁଚି ସହି ନ ପାରିଲା ।
ସମୁଦ୍ରକୂଳେ ପଡ଼ି କୂପେ ଲୁଚିଲା ॥୯୭॥
ପବନାବାଣ ସୁବାହୁ ନ ପାରିଲା ସଂଘରି ।
ଉଡ଼ିଣ ପଡ଼ିଲା ସେ ସମୁଦ୍ରର ପାରି ॥୯୮॥
ବାଳମୋଚନ ନାମେ ତାଡ଼କୀର ସାନଭ୍ରାଥ ।
ବାବଲ ପେଷି ରାମ ଛେଦିଲେ ତାହାର ମାଥ ॥୯୯॥
ଅଯୋଧ୍ୟା ନରନାରୀ ତାଡ଼କୀ ବଧ ଶୁଣି ।
ହରଷ ହୋଇଲେ ଅମୃତପାନ ଜାଣି ॥୧୦୦॥
ଶ୍ରୀରାମଙ୍କୁ ପ୍ରଶଂସା କରନ୍ତି ସର୍ବଜନ ।

ଧନ୍ୟ ମହିମା ତୋହର କଉଶୁଲ୍ୟା ନନ୍ଦନ ॥୧୦୧॥
ବାଳୁତକାଳେ କଲୁ ଏଡ଼େକ ଅସୁର ବଧ ।
କ୍ଷତ୍ରି ଦର୍ପ ତୋହର ଜଗତେ ପ୍ରସିଦ୍ଧ୍ୟ ॥୧୦୨॥
ଏବେ ସେ ଭୋ ନାଥ ଅନୀତିକୃତ୍ୟ କଲୁ ।
ସୀତା ନିବାସିଣ ଅଯଶ କିମ୍ପା କଲୁ ॥୧୦୩॥
ଶୁଣିଣ ଶ୍ରୀରାମ ଲଲାଟେ ଦେଲେ ହସ୍ତ ।
ବଶିଷ୍ଟେ କହନ୍ତି ସ୍ଥିର ହୋଇ ଶୁଣ ସମସ୍ତ ॥୧୦୪॥
ବାକ୍ୟ ବଖାଣନ୍ତେ ଆନକଥା ନ କହି ।
ବଶିଷ୍ଟଙ୍କର ବଚନେ ସମସ୍ତେ ତୁନି ହୋଇ ॥୧୦୫॥

X X X

ତହୁଁ କହନ୍ତି ସୀତାର ବେନି ସୁତ ।
ତାଡ଼କୀ ମାରି ତହୁଁ ଗଲେ ରଘୁନାଥ ॥୧॥
କପାଳ ବିମୋଚନ ତୀର୍ଥେ ସ୍ନାହାନ କରି ।
ଶ୍ରୀରାମଲକ୍ଷ୍ମଣ ଘେନି ଗଲେ ତପଚାରୀ ॥୨॥
ମିଥିଲାପୁରେ ପ୍ରବେଶ ହୋଇଲେ ।
ଶ୍ରୀରାମକୁ ସମସ୍ତ ଋଷଗଣେ ଦେଖିଲେ ॥୩॥
ବିଶ୍ୱାମିତ୍ରକୁ ପ୍ରଶଂସା କରନ୍ତି ଋଷିଗଣମାନେ ।
ତୋହରେ ଦେଖିଲୁ ପ୍ରତକ୍ଷେ ଭଗବାନେ ॥୪॥
ଏବେ ଯାଇ ଯାଗ ଆରୋପଣ କରିବା ।
କ୍ଷତ୍ରିବର ସୁନ୍ଦରକୁ ଯାଗ ଦ୍ୱାର ରଖାଇବା ॥୫॥
ଶୁଣି ବିଶ୍ୱାମିତ୍ର ଯାଗ ଆରୋପିଲେ ।
ମାର୍ଗଶିର ଶୁକ୍ଳ ଏକାଦଶୀକି ଅନକୂଳ ଘେନିଲେ ॥୬॥
ଯାଗ ଦୁଆରେ ଶ୍ରୀରାମ ଲକ୍ଷ୍ମଣକୁ ରଖାଇଲେ ।
ବେଦ ଶବଦ ଶୁଣି ଅସୁରେ ଅଇଲେ ॥୭॥
ଯାଗର ଅଗ୍ନି ଲିବାଇଲେ ଯହୁଁ ।
ଅସୁରଙ୍କର ତୁଲେ ରାମ ଯୁଦ୍ଧ କଲେ ତହୁଁ ॥୮॥
ସମସ୍ତ ଅସୁରେ ବିନାଶ ହୋଇଲେ ।
ଦଶବିଂଶ ମାତ୍ର ପଳାଇଣ ଗଲେ ॥୯॥
ନିଶଙ୍କେ ମୁନିମାନେ ଦିଅନ୍ତି ଆହୁତି ।
ଶ୍ରୀ ଭଗବତେ ବାସୁଦେବର ନାମ ଉଚାରନ୍ତି ॥୧୦॥
ଜିଘ୍ନ ସମାପତ କରି ପୂର୍ଣ୍ଣ ଆହୁତି ଦେଲେ ।
ଶ୍ରୀରାମକୁ କ୍ଷେମେ କଲ୍ୟାଣ ବାଞ୍ଛିଲେ ॥୧୧॥
ସମସ୍ତ ମୁନିବରେ ନିଷ୍ଟନ୍ତେ ରହନ୍ତି ।
ବନମାର୍ଗେ ଅସୁରଙ୍କୁ ଶଙ୍କା ନ କରନ୍ତି ॥୧୨॥
ନନ୍ଦନୀ ହକାରି ବିଶ୍ୱାମିତ୍ର ମହଋଷି ।
ଶରୀର ଆଉଁସି କହନ୍ତି ଆଶ୍ୱାସି ॥୧୩॥
ଦଶରଥ ତନୟେ ରାମଲକ୍ଷ୍ମଣ ଦୁଇଭାଇ ।
କିସ ଇଚ୍ଛା କରନ୍ତି ତାହା ଦେବୁ ଆଇ ॥୧୪॥
ଶୁଣିଣ କାମଧେନୁ ହରଷ ହୋଇଲା ।
ଅମୃତ ଜାଣି ରାମଲକ୍ଷ୍ମଣକୁ ଦେଲା ॥୧୫॥
ଖଣ୍ଡକ୍ଷୀର କଦଳୀ ବିବିଧ ପଦାର୍ଥ ।
ଭୁଞ୍ଜିଣ ସନ୍ତୋଷ ଦଶରଥଙ୍କ ଦୁଇ ପୁତ୍ର ॥୧୬॥
ଏସନେକେ ରାମଲକ୍ଷ୍ମଣ ଥାନ୍ତି ମିଥିଲା ପୁରେ ।
ସେକଥା ଜାଣିଲେ ଗଉତମ ମୁନିବରେ ॥୧୭॥
ସଦାନନ୍ଦର ନାମେ ଗଉତମର ଶିଷି ।
ବିଶ୍ୱାମିତ୍ରରେ ତହିଁ ତାହାକୁ ଦେଲେ ପେଷି ॥୧୮॥
ମୋହର କଥା ବିଶ୍ୱାମିତ୍ରଙ୍କୁ କହିବୁ ।
ରାମଲକ୍ଷ୍ମଣ ସହିତେ ତାହାକୁ ଘେନି ଆସିବୁ ॥୧୯॥
ଗୁରୁ ବଚନେ ସଦାନନ୍ଦ ଅଇଲା ।
ବିଶ୍ୱାମିତ୍ର ମହଋଷିଙ୍କର ଆଗରେ କହିଲା ॥୨୦॥
ତୋହର ତହିଁକି ପଠିଆଇଲେ ତାତ ।
ରାମଲକ୍ଷ୍ମଣ ଘେନି ଆସସି ଗ୍ୟାଧିସୁତ ॥୨୧॥
ସଦାନନ୍ଦ ବଚନ ଶୁଣି ବିଶ୍ୱାମିତ୍ର ମହାମୁନ୍ୟ ।
ଶ୍ରୀରାମଲକ୍ଷ୍ମଣ ମୁଖ ଚାହିଁ କହନ୍ତି ତପୋଧନ ॥୨୨॥
ବ୍ରହ୍ମାର ତନୟ ବାବୁ ହେ ଗଉତମ ମହଋଷି ।
ତୋତେ ଦେଖିବା ନିମନ୍ତେ ଦୂତ ଦେଲେ ପେଷି ॥୨୩॥
ଏହାର ସଙ୍ଗେ ଗୌତମ ଆଶ୍ର(ମ)କଇ ଯିବା ।
ବ୍ରହ୍ମଋଷି ଗଉତମକୁ ଦ୍ରଶନ କରିବା ॥୨୪॥
ଶୁଣିଣ ଶ୍ରୀରାମ ଲକ୍ଷ୍ମଣ ହରଷ ହୋଇଲେ ।
ବିଶ୍ୱାମିତ୍ର ତୁଲେ ସଦାନନ୍ଦ ସହିତେ ଗଲେ ॥୨୫॥
ବାଟେ ଯେବଣ ନଦୀରେ ସ୍ନାହାନ କଲେ ରଘୁପତି ।
ସଭାରେ ଲବକୁଶେ ବିସ୍ତାରି କହନ୍ତି ॥୨୬॥
ଗଉତମଙ୍କ ଆଶ୍ରମେ ପ୍ରବେଶ ହୋଇଲେ ।
ବିଶ୍ୱାମିତ୍ର ସଦାନନ୍ଦ ଗଉତମଙ୍କ ସନିଧିକୁ ଗଲେ ॥୨୭॥
ଗଉତମଙ୍କ ଘରେ ପାଷାଣେ ପଡ଼ିଥିଲା ।
ରାମପାଦ ଲାଗି ଅହଲ୍ୟା ମୁକତ ହୋଇଲା ॥୨୮॥
ବିମାନ ଆରୋହିଣ ଗଲେକ ଗଗନେ ।
ଅମର ସଭାରେ ବସିଲା ବାରସ୍ୱତୀ ଭୁବନେ ॥୨୯॥

ତହୁଁ ରାମଲକ୍ଷ୍ମଣ ପର୍ଣ୍ଣକୁଟୀରେ ପଶନ୍ତି ।
ଗଉତମଙ୍କର ଚରଣ ଧରି ପ୍ରଣମିତ କରନ୍ତି ॥୩୦॥
ଯେବଣ (କଥା) ଗଉତମ ରାମଲକ୍ଷ୍ମଣଙ୍କୁ କହିଲେ ।
ଲବକୁଶେ ଚରିତ୍ର ଗୀତେଣ ଗାଇଲେ ॥୩୧॥
ଶୁଣିଣ ଶ୍ରୀରାମ (ବଶିଷ୍ଠ) ଋଷିର ମୁଖ ଚାହିଁ ।
କ୍ଷତ୍ରିବରସୁନ୍ଦର କହି ହରଷ ଭାବ ହୋଇ ॥୩୨॥
ଭୋ ମୁନି ଯେବଣ ବଚନ ମୋତେ ଗଉତମ କହିଲେ ।
ଏହୁ କୁମରେ ତାହା କେମନ୍ତେ ଜାଣିଲେ ॥୩୩॥
ସେ କଥା ଲକ୍ଷ୍ମଣ ଯେ ନ ଶୁଣିଲା ମୋର ଭାଇ ।
ଅମୃତ ସଂଜାତ ରାମାୟେଣ କହିଲେ ଏହି ॥୩୪॥
ବଶିଷ୍ଟେ କହନ୍ତି ଯେ କାବ୍ୟ କରନ୍ତି ଉକତ ।
ତାହାଙ୍କର କଣ୍ଠେ ବସିଥାନ୍ତି ବ୍ରାହ୍ମାଙ୍କର ଦୋହିତ ॥୩୫॥
ତିନି ଭୁବନର ଚରିତ୍ର ଜାଣଇଁ ।
ତାହାର ମୁଖେ ବଖାଣ କରୁଥାଇ ନାରାୟେଣଇ ॥୩୬॥
ଯେବଣ ଗୁରୁ ଏହାକୁ ପଢ଼ାଇଲା ଶାସ୍ତ୍ର ।
ପ୍ରତକ୍ଷେ ସେ ମହାତମା ବିହି ବିଧାତ ॥୩୭॥
ଏ କୁମର ଦୁଇଗୋଟି ବଡ଼ ଜଣଙ୍କର ପୁତ୍ର ।
ଆନର ବୋଲେ କି କରି ହୁଅଇ ଉକତ ॥୩୮॥
ଶାସ୍ତ୍ର ବଖାଣ ସରିଲେ ଏହାକଇ ପୁଛିବା ।
କେ ଏହାର ଋଷି ପିତା ମାତା ବୁଝିବା ॥୩୯॥
ଏବେ ସ୍ଥିର ହୋଇ ଶୁଣ ସାବଧାନ ଚିତ୍ତେ ।
ତୁନି ହୋଇ(ଥି)ଲେ ଲବକୁଶେ ପୁଣି ଗୀତ
ଗାଇଲେ ଶୁଣନ୍ତି ସମସ୍ତେ ॥୪୦॥
ଗୌତମ ରାମଲକ୍ଷ୍ମଣଙ୍କୁ ଅପୂର୍ବ ଦ୍ରବ୍ୟ ଦିଅନ୍ତି ।
ବିଶ୍ୱାମିତ୍ର ସହିତେ ଏକ ଠାବେ ବିଶ୍ରାମନ୍ତି ॥୪୧॥
ରାତ୍ରେ ରାମ ବିଶ୍ୱାମିତ୍ରଙ୍କୁ ପୁଛିଲା ।
ଭୋ ମୁନି ପାଷାଣ ମାଡ଼ନ୍ତେ କନ୍ୟା ଏକ ହୋଇଲା ॥୪୨॥
ବିଶ୍ୱାମିତ୍ର କହିଲେ ଗୌତମଙ୍କର ଭାବାନୀ ।
ଅହଲ୍ୟା ନାମେଣ ତିନିଭୁବନ ମୋହିନୀ ॥୪୩॥
ଇନ୍ଦ୍ର ଆଦିତ୍ୟ ତା ରୂପ ଦେଖିଲେ ।
କଇତବ ଚରିତେ ରମଣ ରଙ୍ଗ କଲେ ॥୪୪॥
ଦୁହିଙ୍କର ବୀର୍ଯ୍ୟେ ଉପୁଜିଲା ଦୁଇ ପୁତ୍ରେ ।
ବଡ଼ ସଂଜାତ ସ୍ୱରୂପ ତେଜବନ୍ତେ ॥୪୫॥
ସେ ପୁତ୍ରକଇ ଗଉତମେ ଶରଧା କରନ୍ତେ ।
ଅଞ୍ଜନା କୁମାରୀ କହିଲା ରାଗ ଚିତ୍ତେ ॥୪୬॥
ସେ ପୁତ୍ର ମୁନି ଜଳେଣ ପକାଇଲେ ।
ରାଗେ ବ୍ରହ୍ମଋଷି ବିଷାଦ ହୋଇଲେ ॥୪୭॥
ଅହିଲ୍ୟାକୁ କୋପେ ଶାପ ଦେଲେ ଗଉତମେ ।
ସେ ସେ ଏତେ ହୋଇଲାକ ପାଷାଣେ ॥୪୮॥
ବିଶ୍ୱାମିତ୍ରେ ରାମର ଆଗେ କହିଲେକ ଯାହା ।
ଲବକୁମର ସଭାରେ ଅଗ୍ରତେ ଗାଇଲେକ ତାହା ॥୪୯॥
ଯେବଣ ପଦ ଲବ ଅବା ନ ପାରଇ କହି ।
କୁଶକୁମର ତାହା ଅର୍ଥ କରି ବୁଝାଇ ॥୫୦॥
ଅହିଲ୍ୟା ଶ୍ୟାପ ପାଇବାର କାଳେ ।
ଅଞ୍ଜନାକୁ ଶ୍ୟାପ ଦେଲାକ ସେ ବେଳେ ॥୫୧॥
ତେଣୁ ସେ ଅଞ୍ଜନାକୁ ପବନ ରମଣ କଲା ।
ତାହାର ଗର୍ଭେ ହନୁମନ୍ତ ଉପୁଜିଲା ॥୫୨॥
ଆଦି ଅନ୍ତ କରି କହନ୍ତି ଲବକୁଶ ।
ଶୁଣିଣ ଅଯୋଧ୍ୟା ଲୋକେ ସମସ୍ତେ ହରଷ ॥୫୩॥
ଦୁଇ ପହର ଶିଖେ ଆଦିତ୍ୟ ଅଛି ରହି ।
କ୍ଷୁଧା ପିପାସା କାହାର ଦେହେ ନାହିଁ ॥୫୪॥

## ରାମାଦିଙ୍କ ବିବାହ

ଲବକୁଶେ କହନ୍ତି ଗୌତମଙ୍କର ଆଶ୍ରମ ।
ପାଞ୍ଚ ଦିବସ ବିଶ୍ରାମ କଲେକ ଶ୍ରୀରାମ ॥୧॥
ଗୌତମ ମୁନିଙ୍କର କଲ୍ୟାଣ ଘେନି ବିଶ୍ୱାମିତ୍ର ସହିତେ ।
ମିଥିଳାପୁରକଇ ଆସନ୍ତି ତୁରିତେ ॥୨॥
ଯେବଣ ଠାବରେ ବିଶ୍ରାମ କରନ୍ତି ।
ବିଶ୍ୱାମିତ୍ର ମୁନି ନାନା ଶାସ୍ତ୍ର କହନ୍ତି ॥୩॥
ଆସିଯାଇ ହୋଇଲା ତିନି ମାସ ।
ମିଥିଳାପୁରେଣ ହୋଇଲେ ପ୍ରବେଶ ॥୪॥
ଅନେକ ଗୌରବେ ତିନି ଦିବସ ରହିଲେ ।
ରାମଲକ୍ଷ୍ମଣଙ୍କର କଥା ଜନେକ ଶୁଣିଲେ ॥୫॥
ବିଶ୍ୱାମିତ୍ର ତହିଁକି ପଠିଆଇଲେ ଦୂତ ।
ରାମଲକ୍ଷ୍ମଣଙ୍କୁ ଘେନି ମୋହର କତିକି ଆସ ତୁମ୍ଭେ ତୁରିତ ॥୬॥
ଶୁଣି ବିଶ୍ୱାମିତ୍ର ହରଷ ହୋଇଲେ ।
ରାମଲକ୍ଷ୍ମଣଙ୍କୁ ବସାଇ କହିଲେ ॥୭॥
ବଇଦେହି ମଣ୍ଡଳେ ଜନେକ ମହଋଷି ।
ମହାଧାର୍ମିକ ସେ ତପୀ ଗରୁହଂଶୀ ॥୮॥

ସୀତୟା ନାମ ଯେ ତାହାର କୁମାରୀ ।
ରୂପେଣ ପଟ୍ଟାନ୍ତର ନାହିଁ ତିନିପୁରୀ ॥୯॥
ଧନୁ ଏକ ଅଛି ଅକଳିତ ବୋଲି ନାମ ।
କେବଣ ହି ରାଜାଏ ଆମଣ୍ଟିବାକୁ ନୋହିଲେକ କ୍ଷେମ ॥୧୦॥
ଶତେବାରଇ ସୟମ୍ବର କରଇ ।
କେହି ଧନୁ ଧରି ଆମଣ୍ଟି ନ ପାରଇ ॥୧୧॥
ଜନେକ ମହରଷି କରିଛନ୍ତି ସତ୍ୟ ।
ଯେ ଧନୁ ଆମଣ୍ଟି ପାରଇ ଦେବଇ ଦୋହିତ ॥୧୨॥
ଯହୁଁ ସେ ଧନୁ ଆମଣ୍ଟି ନ ପାରନ୍ତି ।
କାହାକଇ ସେ କନ୍ୟା ବିଭା ନ ଦିଅନ୍ତି ॥୧୩॥
ଶୁଣିଣ ଶ୍ରୀରାମ ହରଷେ ମୁନିଙ୍କି ଚାହିଁ ।
ବୋଲନ୍ତି ବଚନ ସେ ରଘୁକୁଳ ସାଇଁ ॥୧୪॥
ଚାଲ ମହରଷିଏ ଜନେକ ରାଜ୍ୟକଇ ଯିବା ।
କେମନ୍ତେଟି ଅକଳିତ ବଳ ଧନୁ ଦେଖିବା ॥୧୫॥
ଶ୍ରୀରାମର ବଚନେ ଗ୍ୟାଧିର ନନ୍ଦନ ।
ତତକ୍ଷଣେ ଦୂତ ତୁଲେ କରନ୍ତି ଗମନ ॥୧୬॥
ରାମଲକ୍ଷ୍ମଣ ମୁନିଙ୍କର ତୁଲେ ଗଲେ ।
ଜନେକ ରାଜ୍ୟରେ ପ୍ରବେଶ ହୋଇଲେ ॥୧୭॥
ଜନେକ ରଷିକି ଓଳଗନ୍ତି ଦୁଇଭାଇ ।
ବିଶ୍ୱାମିତ୍ରକୁ ଜନେକ କୋଳାଗ୍ରତ କରଇ ॥୧୮॥
ଶ୍ରୀରାମକୁ କଲ୍ୟାଣ କରନ୍ତି ଜନେକ ମହାମୁନ୍ୟ ।
ଅମୃତମୟେ ପଦାର୍ଥ ଦେଲେକ ଭୋଜନ ॥୧୯॥
ସୟମ୍ବର ଜନେକ କଲେ ଯେବଣ ବାଗେ ।
କହନ୍ତି ଲବକୁଶେ ଶ୍ରୀରାମର ଆଗେ ॥୨୦॥
ଜନେକ ରାଜାନ୍ତ ନିମନ୍ତଣ କଲା ।
ନାନା ବିଚିତ୍ର (କରି) ନବର ମଣ୍ଡିଲା ॥୨୧॥
ଅନେକ ରାଜାଏ ରାବଣ ସହିତେ ।
ସିଂହାମଣ୍ଡଳେ ମିଳିଲେ ତୁରିତେ ॥୨୨॥
ସ୍ଫଟିକର ମଣ୍ଡପେ ସୀତାକୁ ବସାଇଲେ ।
ଅକଳିତ ବଳଧନୁ ସଭାର ସନିଧିକୁ ଆଣିଲେ ॥୨୩॥
ଦେଉଳ ଭିତରେ ସେ ଧନୁ ଭରି ଥାନ୍ତି ।
ଧନୁ ଦେଖି ରାମ ବିଶ୍ୱାମିତ୍ରକୁ ପଚାରନ୍ତି ॥୨୪॥
ଧନୁର କଥା ଯେ ବିଶ୍ୱାମିତ୍ର କହିଲେ ।
ଲବକୁଶେ ତାହା ଗୀତେଣ ଗାଇଲେ ॥୨୫॥
ଶୁଣିଣ ହରଷ ସଭା ସର୍ବଜନ ।
ବହୁତ ଆନନ୍ଦିତ ବଶିଷ୍ଠ ତପୋଧନ ॥୨୬॥
ଶ୍ରୀରାମ ଲକ୍ଷ୍ମଣ ଶୁଣନ୍ତି ତହିଁର କଥା ।
ଆଶ୍ଚର୍ଯ୍ୟ ହୋଇ ଅଛି ଭ୍ରଥ ମହାରଥା ॥୨୭॥
ସେ ଧନୁ କେହି ଟାଳି ନ ପାରନ୍ତି ।
ଦେଉଳେ ଉଠି ରାମ ଧନୁକୁ କାଢ଼ନ୍ତି ॥୨୮॥
ରାବଣକୁ ରାମଚନ୍ଦ୍ର କହିଲେକ ଯାହା ।
ସଭାରେ ଲବକୁଶେ ଗୀତେଣ ଗାଇଲେ ତାହା ॥୨୯॥
ରାବଣ ଧନୁ ଯେ ଆମଣ୍ଟି ନ ପାରିଲା ।
ଦଶମୁଖେ ତାହାର ରୁଧିର ବାହାରିଲା ॥୩୦॥
ଶୁକସାରଣେ ଲଙ୍କାକୁ ଘେନି ରାବଣକୁ ନେଲେ ।
ସେ ଧନୁ ରାମଚନ୍ଦ୍ର ଆମଣ୍ଟନ କଲେ ॥୩୧॥
ଘାନ୍ତିକ ଆମଣ୍ଟନ ଧନୁ ସହିଲା ।
ଆରକ ଘାନ୍ତି ଉଛୁଡ଼ନ୍ତେ ମଧରୁ ଭଗ୍ନ ହୋଇଲା ॥୩୨॥
ଧନୁଭଗ୍ନ ଦେଖି ଜନେକର ଦୁଲାଳୀ ।
ଶ୍ରୀରାମର ଗଳାରେ (ଦେଲେ) ଜନେକର ପଦ୍ମମାଳି ॥୩୩॥
ଅଯୋଧ୍ୟାକୁ ଶ୍ରୀରାମ ଆମନ୍ତିଲେ ଦୂତ ।
ବିଭା ଯୋଗ ଲଗ୍ନେ ଆସିବେ ଦଶରଥ ॥୩୪॥
ବଶିଷ୍ଠ ମହରଷି ଅମନାତ୍ୟ ତୁଲେ ।
ଗୃହମେଧ ଲୋମପାଦ ଶୁଣିଣ ଅଇଲେ ॥୩୫॥
ଅନେକ ରଥ ଗଜ ଅଶ୍ୱ ସଇନି ।
ଭ୍ରଥ ଶତ୍ରୁଘନ ଦୁଇ କୁମାରନ୍ତ ଘେନି ॥୩୬॥
ନାନା ବାଦ୍ୟେ ନିଷାଣ ଶବଦେ ।
ପର୍ବତ ଚୂର ହୋଇଲା ସୈନ୍ୟର ପାଦେ ॥୩୭॥
ଜନେକ ରାଜାକୁ ଜଣାଇଲେ ଜଗୁଆଳି ।
ଦଶରଥ ରାଜାକୁ ନ ପାରିବୁ ସମ୍ଭାଳି ॥୩୮॥
ବହୁତ ସୈନ୍ୟ ଘେନି ନୃପତି ଆସଇ ।
ଶୁଣିଣ ଜନେକ ରାଜା ହୋଇଲେ ହରଷଇ ॥୩୯॥
ବୋଇଲା ସିଦ୍ଧ୍ୟ ଅର୍ଣ୍ଣ ମୋହର ସମସ୍ତକୁ ଦେବି ।
ଯେ ଯିସ ଇଛଇ ସବୁରି ମନ ରଞ୍ଜିବି ॥୪୦॥
ଏତେକ କହିଣ ପାଗ ସନ୍ଧାଦିଲା ।
ବିଚିତ୍ର ବିଧାନେ ନବର ମଣ୍ଡିଲା ॥୪୧॥
ସନିଧେ ହୋଇଲା ଯହୁଁ ଦଶରଥ ରାଜନ ।
ପାଛୋଟି ଅଇଲେ ଜନେକ ମହାମୁନ୍ୟ ॥୪୨॥

ଦଶରଥଙ୍କୁ ଘେନି ନବରେ ଧୀରେ ଧୀରେ ଗମଇଁ ।
ବଶିଷ୍ଠ ମହାମୁନିକି କରଇ ସମ୍ଭାଷଇ ॥୪୩॥
ସମସ୍ତ ସୈନ୍ୟଙ୍କୁ ଭୋଜନବିଧି ଦେଲା ।
ଯେ ଯାହା ଇଚ୍ଛିଲା ସେ ତାହା ପାଇଲା ॥୪୪॥
ରାମଲକ୍ଷ୍ମଣ ବଶିଷ୍ଠଙ୍କୁ ନମସ୍କାର କରନ୍ତି ।
କଲ୍ୟାଣ କରନ୍ତି ବଶିଷ୍ଠ ମହାଯତି ॥୪୫॥
ଅଇଶ୍ୱର୍ଯ୍ୟ ହୁଅସି ବିପୁଳ ଭୋଗ ଭୁଞ୍ଜ ।
ଭୁଜବଳେ ପୃଥ୍ୱୀର ଦୃଷ୍ଟ ଦନୁଜ ଗଞ୍ଜ ॥୪୬॥
ତଦଅନ୍ତରେ ପିତାର ସନିଧକଇ ଗଲେ ।
ଚରଣ ଧରି ଓଳଗି ସ୍ତୁତିଲେ ॥୪୭॥
ଦଶରଥ ପୁତ୍ରକଇ ଟୋଳି ଧଇଲା ।
ଶରୀର ଆଶ୍ୱାସି ଶିରେ ଚୁମ୍ବ ଦେଲା ॥୪୮॥
ଭ୍ରଥ ଶତୃଘନେ ଶ୍ରୀରାମଙ୍କୁ ପ୍ରଣମ୍ୟ କରନ୍ତି ।
ଚାରି ଭାଇ ପିତାର ସନିଧେ ବସନ୍ତି ॥୪୯॥
ପୁତ୍ରଙ୍କୁ ଯିସ କଥା କହିଲେ ଦଶରଥ ।
ଗୀତେଣ ଗାବନ୍ତି ସୀତାର ବେନି ସୁତ ॥୫୦॥
ଏଥୁ ଅନନ୍ତରେ ଦଶରଥ ମହାରାଜା ।
ବିଶ୍ୱାମିତ୍ରଙ୍କୁ କଲେ ଅନେକ ପାଦପୂଜା ॥୫୧॥
କରଯୋଡ଼ି କହଇ ଶୁଣସି ତପୋଧନ ।
ତୋହର ପ୍ରସାଦେ ମୁଁ ହୋଇଲି ପୁଣ୍ୟମାନ ॥୫୨॥
ବିଶ୍ୱାମିତ୍ର କହଇ ପୁତ୍ର ତୋହର ମହାଯୋଧୀ ।
ଭୁଜବଳେ ଲଭିଲା ଯୁବତୀରତ୍ନନିଧି ॥୫୩॥
ଏବେଇ ଶ୍ରୀରାମଙ୍କୁ ବିଭା ଯୋଗ କର ।
ଏସନେକ କଥା ଶୁଣି କହଇ ଜନେକ ମୁନିବର ॥୫୪॥
କ୍ଷତ୍ରିପଣେ ସେ ଶ୍ରୀରାମ ପାଇଲେ କାମେନୀ ।
ମୋହର ଘରେ ଅଛନ୍ତି ତିନି ନନ୍ଦନୀ ॥୫୫॥
ଚାରି କନ୍ୟା ଦଶରଥର ଚାରିପୁତ୍ରଙ୍କୁ ଦେବି ।
ଯାବତ କାଳକୁ କଥା ଗୁହାଇବି ॥୫୬॥
ଶୁଣିଣ ଦଶରଥ ଯେ ପରମ ଆନନ୍ଦ ମନ ।
ଜନେକଙ୍କୁ ପ୍ରଶଂସା କରନ୍ତି ସକଳ ତପୋଧନ ॥୫୭॥
ଚାରି କନ୍ୟାଙ୍କୁ ସୁବେଶ କରାଇଲେ ।
ଛାୟା ମଣ୍ଡପ ତଳେ କୁମାରୀନ୍ତ ବସାଇଲେ ॥୫୮॥
ସୀତାଙ୍କୁ ବିଭା ହୋଇଲେ କ୍ଷତ୍ରି ବର-ସୁନ୍ଦର ।
ଅଳକାଙ୍କୁ ବିଭା ହୋଇଲେ କକୟାର କୁମାର ॥୫୯॥
ଉର୍ମିଳା ନାମେ ଯେବେଣ କୁମାରୀ ।
ସେ କନ୍ୟାର ହସ୍ତ ଲକ୍ଷ୍ମଣ ବୀର ଧରି ॥୬୦॥
ତାରା ନାମେ କନ୍ୟା ତ୍ରିଭୁବନ ମୋହିନୀ ।
ଶତୃଘନଙ୍କୁ ସେ କନ୍ୟା ବିଭା କଲେ ସେ ମୁନି ॥୬୧॥
ଜନେକ ମହରଷି ବରକନ୍ୟାଙ୍କର ହସ୍ତେ ।
ପାଞ୍ଚ ପାଞ୍ଚ କୋଟି ରତ୍ନ ଦେଲେ ହରଷ ଚିତ୍ତେ ॥୬୨॥
ବିଦ ମୁଦି କଙ୍କଣ ଅନେକ ବସ୍ତ୍ର (ରତ୍ନ ଜଡ଼ିତ) ।
ରତ୍ନ ଜଡ଼ିତ ଶୁଦ୍ଧ ସୁବର୍ଣ୍ଣର ପାତ୍ର ॥୬୩॥
ଶ୍ରୀରାମଙ୍କୁ ଜନେକ ମୁନି ଯିସ ପ୍ରବୋଧି କହିଲା ।
ଲବକୁମର ତାହା ଗୀତେଣ ଗାଇଲା ॥୬୪॥
ଯେବଣ ପଦ ଅଳପ ଅନ୍ତର ହୁଅଇ ।
କୁଶକୁମର ତାହା ଅର୍ଥ କରିଣ ଦିଅଇ ॥୬୫॥
ଶୁଣିଣ ଶ୍ରୀରାମ ବଶିଷ୍ଠଙ୍କର ମୁଖ ଚାହିଁ ।
(ଭୋ ମୁନି ସ୍ୱରୂପ କଥା କହନ୍ତି ବେନି ଭାଇ) ॥୬୬॥
ବଶିଷ୍ଠେ ହସ୍ତ ପଠାରନ୍ତି ଥାସି ସ୍ଥିର ହୋଇ ।
(ଶୁଣି ରାମ ଯେ ରହିଲେ ଥିର ହୋଇ ॥୬୭॥
ବାକ୍ୟ ବାଖଣିଲା ବେଳେ ଆନ କଥା ନ କହି ।
ଏହା ଶୁଣି ରାମ ଯେ ହରଷ ହୋଇ ରହି) ॥୬୮॥
ଲବକୁମର କହଇ ବିଭା ସାରି ସମସ୍ତେ ଭୋଜନ କଲେ ।
ଚାରିକନ୍ୟାନ୍ତ ଘେନି ଚାରି ବରେ ମହୁଶେଯ୍ୟାରେ ସୁତିଲେ ॥୬୯॥
ଶ୍ରୀରାମ ସୀତା ଶେଯ୍ୟାରେ ଯାହା କହିଲେ ।
ସଭାର ମଧ୍ୟେ ତାହା ଲବକୁଶେ ଗାଇଲେ ॥୭୦॥
ଏସନେକ ରୟଣୀ ହୋଇଲା ପ୍ରଭାତ ।
ବରକନ୍ୟାନ୍ତ ଘେନି ଆସଇ ଦଶରଥ ॥୭୧॥
ବିଶ୍ୱାମିତ୍ର କହନ୍ତି ଦଶରଥ ମୁଖ ଚାହିଁ ।
ରାମଲକ୍ଷ୍ମଣଙ୍କୁ ଘେନି ଯେ ଅଇଲଇ ମୁହିଁ ॥୭୨॥
ପୁତ୍ରଙ୍କୁ ଘେନି ଆସିବାବେଳେ ବିଷାଦ ହୋଇଲୁ ।
ପୁନ୍ୟର ବେଳେ ଏବେ ଚାରି ବଧୂ ପାଇଲୁ ॥୭୩॥
ପୁତ୍ର ବଧୂ ଘେନି ଏବେ ରାଜ୍ୟଙ୍କୁ ଯାସି ।
ଏତେ କହି ବିଶ୍ୱାମିତ୍ରେ ତାହାର ସ୍ଥାନଙ୍କୁ ପ୍ରବେଶି ॥୭୪॥

## ପରଶୁରାମ ପରାଭବ

ଦଶରଥ ରାଜା ଅଯୋଧ୍ୟାକୁ ଆସନ୍ତେ ।
ବୀର ତୂର ବାଦ୍ୟ ଶବଦ ଶୁଭନ୍ତେ ॥୧॥

ନନ୍ଦନ ନାମ ତାହାର (ଏକ) ଗିରିବର ।
ସନ୍ୟ ଉଠିଲେ ସେ ପର୍ବତ ଶିଖର ॥୨॥
ନାନା ବାଦ୍ୟେ ସେ ଶବଦ ଉଛୁଳିଲା ।
ଶୁଣିଣ ପ୍ରଶୁରାମ କୋପେଣ ଧାଇଲା ॥୩॥
ବାଟରେ ପ୍ରଶୁରାମ ଓଗାଳିଲେ ଆସି ।
ଦେଖିଣ ସୈନ୍ୟ ଯେ ପଳାଇଲେ ତ୍ରାସି ॥୪॥
ବଶିଷ୍ଠଙ୍କୁ ଘେନି ଯେ ଦଶରଥ ଗଲା ।
ପ୍ରଶୁରାମ ପୟରେ ଗଡ଼ ଘାଲି ସ୍ତୁତିଲା ॥୫॥
ବଶିଷ୍ଟେ ପ୍ରଶୁରାମକୁ ଯେତେ କଥା କହିଲେ ।
ସଭାରେ ଲବକୁଶେ ତାହା ଗୀତେଣ ଗାଇଲେ ॥୬॥
କୋପେ ପ୍ରଶୁଧର ବୋଇଲେ ପ୍ରଚଣ୍ଡ ।
ମିଥିଳାପୁରେ ଭଗ୍ନ କେ କଲା ଈଶ୍ବରକୋଦଣ୍ଡ ॥୭॥
ଦନ୍ତେ ତିରଣ ଧରି ଦଶରଥ ଲୋଟଇ ପ୍ରଶୁଧର ପୟର ତଳେ ।
ସନିଧେ ମିଳିଲେ ରାମ ଏସନେକର ବେଳେ ॥୮॥
କୋପ କଲେ ରାମ ପିତାର ଭଗତି ଦେଖି ।
ମର୍ମ କଥା କହିଲେ ଓପ୍ରଧ ଉପେଖି ॥୯॥
ବ୍ରାହ୍ମଣ ହୋଇଣ କିମ୍ପାଇଁ ଶସ୍ତ୍ର ଧରୁ ।
ରାଜାଙ୍କର ସଙ୍ଗେ କିମ୍ପା ବିବାଦ କରୁ ॥୧୦॥
ଶ୍ରୀରାମ ବଚନେ ପ୍ରଶୁରାମ କୋପ କଲା ।
ଆପଣାର ଐଶ୍ବର୍ଯ୍ୟ ପ୍ରତାପ କହିଲା ॥୧୧॥
ତେଣେସେ ଏହାକୁ ନ କରଇ ପ୍ରାଣଘାତ ॥୧୨॥
ଶ୍ରୀରାମେ କହନ୍ତି ତୁ କିସ କହୁ ପଉରୋଷ ।
ଆଜ ସେ ତୋହର କଥା କରିବି ପ୍ରକାଶ ॥୧୩॥
ବ୍ରାହ୍ମଣ ହୋଇ ତୁ କ୍ଷତ୍ରି ବୋଲାଉ ।
ବୃଧ ବୟସେ ମୋହର ଆଗେ ଗର୍ବ ବହୁ ॥୧୪॥
ମୋହର ପିତା ତୋହରେ ଭଗତି ।
ଦେଖିଣ ଦୟା ତୋର ନ ବସଇ ପାପମତି ॥୧୫॥
ଏଥିର ପ୍ରାଭବ କରି ପାରଇ ତୋତେ ।
ଧର୍ମ ନାଶ ଯିବ ଯେ ବ୍ରାହ୍ମଣ ମାରନ୍ତେ ॥୧୬॥
ଶୁଣି ପ୍ରଶୁରାମ ପ୍ରଜ୍ୱୋଳିତ କୋପେ ।
ଶ୍ରୀରାମ ମୁଖ ଚାହିଁ କହଇ ମହାତାପେ ॥୧୭॥
ଜନେକ ଧନୁ ଭାଙ୍ଗି ପ୍ରତଙ୍ଖା ବହିଲୁ ।
ସବୁନ୍ତି ଏକ ପ୍ରାୟେକ ବୁଝିଲୁ ॥୧୮॥
ବହୁତ କାଳର ଧନୁ ସେ ଘୁଣ ଲାଗିଥିଲା ।
ତୋହର ଆମଞ୍ଚନ୍ତେ ସେ ତେମନ୍ତ ଭାଜିଲା ॥୧୯॥
ମୋହର ଧନୁରେ ଯେବେ ଦେଇପାରୁ ଗୁଣ ।
ତେବେ ଜାଣଇ ନା ତୋହର ବଡ଼ପଣ ॥୨୦॥
ଶୁଣି ହଂସି କହନ୍ତି ଦଶରଥର ସୁତ ।
ଦେଖିବା ଧନୁ ବୋଲି ପ୍ରସାରିଲେ ବାମ ହସ୍ତ ॥୨୧॥
ରାମର ବଚନ ଯହୁଁ ପ୍ରଶୁରାମ ଶୁଣିଲେ ।
ବିଜୟ ଧନୁ ନେଇ ରାମର କରେ ଦେଲେ ॥୨୨॥
ରତ୍ନ ସିଂହାସନେ ବିଜୟ କରିଛନ୍ତି ରଘୁପତି ।
କୋଳେଣ ଶୋହଇ ସୀତୟା ମହାସତୀ ॥୨୩॥
ଶ୍ରୀରାମ କନେଷ୍ଟ ଭ୍ରଥ (ଲକ୍ଷ୍ମଣ) ଶତୃଘନ ।
ଭାରିଯା ସହିତେ ସେ ଅଛନ୍ତି ସନିଧାନ ॥୨୪॥
ଧନୁରେ ଗୁଣ ଦେଲେ ରାମ ବାମ କରେ ନେଇ ।
ଆମଞ୍ଚନ କଲେ ଆକର୍ଣ୍ଣ ପୂରୋଇ ।
ବେନି ଖଣ୍ଡ ହୋଇ ଧନୁ ଭାଜିଯାଇ ॥୨୫॥
ଦେଖିଣ ପ୍ରଶୁରାମ ହୋଇଲେ ଚକିତ ।
ଏ ସେ ଶ୍ରୀରାମ ପ୍ରତକ୍ଷେ ଅଚ୍ୟୁତ ॥୨୬॥
ଯିସ ଭ୍ରାନ୍ତି ପାପ (ମୋହର) ହୃଦରେ ଥିଲା ।
ଶ୍ରୀରାମର ମୁଖ ଦେଖି ଦୁରିତ କ୍ଷୟେ ଗଲା ॥୨୭॥
ଧନୁର୍ବାଣ ଦେଇ ମନ୍ତ୍ରବିଦ୍ୟା ଦେଇ ।
ତୀର୍ଥ ସଙ୍ଗମେ ପ୍ରଶୁ ତପ କରି ଯାଇ ॥୨୮॥
ତହୁଁ ଦଶରଥ ଗମଇ ହରଷେ ।
ପ୍ରବେଶ ହୋଇଲେ ଅଯୋଧ୍ୟା ନିଜ ଦେଶେ ॥୨୯॥
ନବରେ ପଶନ୍ତେ କୁବୁଜାକି ମାଇଲେ ।
ବିସ୍ତାରି କରି ତାହା ଲବକୁଶେ କହିଲେ ॥୩୦॥
ସଭାଲୋକେ ଶୁଣନ୍ତି ସ୍ୱରୂପ ବଚନ ।
ଧନ୍ୟ ଧନ୍ୟ କରନ୍ତି ବଶିଷ୍ଠ ମହାମୁନ୍ୟ ॥୩୧॥
କୁବୁଜାକି ମାରି ନବରେ ପଶନ୍ତେ ରଘୁପତି ।
ପୁତ୍ରବଧୂନ୍ତ ଦେଖନ୍ତି ଦଶରଥର ଯୁବତୀ ॥୩୨॥
ଶ୍ରୀରାମ ଜନନୀର ଚରଣେ ପ୍ରଣମିତ ହୁଅନ୍ତି ।
ସକଳ ମାତାଏ କଲ୍ୟାଣ ବାଞ୍ଛନ୍ତି ॥୩୩॥
ଚାରି ପୁତ୍ରଙ୍କର ଚାରି ଭାରିଯା ଦେଖିଲେ ।
ଅତି ହରଷେ କୃତକୃତ ହୋଇଲେ ॥୩୪॥
ଯେତେ କଥା କହିଲା ଦଶରଥଙ୍କର ଯୁବତୀ ।
ଶ୍ରୀରାମର ଆଗେ ଲବକୁଶେ କହନ୍ତି ॥୩୫॥

ପୁତ୍ରକ ଘେନି ଦଶରଥ ରାଜନ ।
ନିଷ୍କଣ୍ଟେ ରାଜ୍ୟ କରଇ ଅଯୋଧ୍ୟା ଭୁବନ ॥୩୬॥
ଲୋମପାଦ ଗୃହମେଧ ବିଭାକରାଇ ଯାଇଥିଲେ ।
ତାହାଙ୍କର ରାଜ୍ୟକଇ ପଉରୋଷ ପାଇ ଗଲେ ॥୩୭॥
ମାରକଣ୍ଡେ କହନ୍ତି ଶୁଣ ପଣ୍ଡୁସୁତ ।
ଶ୍ରୀରାମର ଆଗେ ରାମାୟେଣ କହନ୍ତି ସୀତୟାର ବେନି ସୁତ ॥୩୮॥
ନଗ୍ର ନରନାରୀ ଆସ୍ଥାନରେ ତଳେ ।
ରାମାୟେଣ ଶୁଣନ୍ତି ଆନନ୍ଦମତି ଭୋଳେ ॥୩୯॥
ଆଦିତ୍ୟ ଶିଖେ ଦୁଇ ପ୍ରହର ଅଛି ରହି ।
ସବୁରି ଚକ୍ଷୁ ଅଛି କୁମରଙ୍କ ତହିଁ ॥୪୦॥
ଜୟତୁ ବିଷ୍ଣୁ ବୈକୁଣ୍ଠେ ଯାର ବାସ ।
ବିଷ୍ଣୁ ସୁମରିଲେ ଦୁରିତ ବିନାଶ ॥୪୧॥
ଜଳେ ବିଷ୍ଣୁ ସ୍ଥଳେ ବିଷ୍ଣୁ ବିଷ୍ଣୁ ନାମ ଧରି ।
ବିଷ୍ଣୁ ନାମ ସୁମରିଲେ ଅସୁର ମାୟାରୁ ତରି ॥୪୨॥
ବିଷ୍ଣୁ ସୁମରନ୍ତି ସୁର ସିଦ୍ଧ ମୁନି ।
ବିଷ୍ଣୁ ନାମ ସୁମରିଲେ ଜନ୍ମ ନୁହଇ ଯୋନି ॥୪୩॥
ବିଷ୍ଣୁ ସୁମର ନରେ ବିଷ୍ଣୁ ନାମ ଉଚାର ।
ବିଷ୍ଣୁ ନାମ ସୁମରିଲେ ଭବସାଗରୁ ହୋଇବ ପାର ॥୪୪॥
ବିଷ୍ଣୁର ଚରିତ ଶ୍ରବଣେ ଶୁଣଇଁ ଯେ ନିତି ।
ବିଷ୍ଣୁର କଥା ଶୁଣିଲେ ସେ ପାପକୁ କିସ ଭୀତି ॥୪୫॥
ବିଷ୍ଣୁ ସୁମରିଲେ କୃତଦୋଷ ନାଶଇ ।
ବିଷ୍ଣୁ ନାଥର ପ୍ରସନେ କହଇ ସିଦ୍ଧେଶ୍ୱର ଦାସଇ ॥୪୬॥

### ରାମଙ୍କ ବନଗମନ

ଏଥୁ ଅନନ୍ତରେ ଶୁଣ ପଣ୍ଡୁ ସୁତ ।
ଶ୍ରୀରାମର ଆଗେ କହନ୍ତି ଲବକୁଶ ବେନିଭ୍ରାଥ ॥୧॥
ଅକଣ୍ଟେକ ରାଜ୍ୟ କରଇ ଦଶରଥ ନୃପତି ।
ଶ୍ରୀରାମର ତେଜ ଜଗତେ ବିଖ୍ୟାତି ॥୨॥
ପୁତ୍ରଙ୍କର ସଉନ୍ଦର୍ଯ୍ୟ ଯହୁଁ ଦଶରଥ ଦେଖିଲା ।
ମନ୍ତ୍ରୀ ଅମନାତ୍ୟ ଦେଖି ବଚାରିଲା ॥୩॥
ବଶିଷ୍ଠ (କହନ୍ତି) ଅନକୂଳ ଖୋଜ ।
ରାଜ୍ୟରେ ଅଭିଷେକ କରାଇବି ମୋହର ଜ୍ୟେଷ୍ଠ ତନୁଜ ॥୪॥
ବଶିଷ୍ଠେ କହନ୍ତି ଅନକୂଳ ବିଧାନ ।
ତହୁଁ ଶ୍ରୀରାମେ ହକାରନ୍ତି ପିତାର ସନ୍ନିଧାନ ॥୫॥
ରାଜ୍ୟପାଳଣ କଥା କହିଲେ ନୃପତି ।
ପ୍ରଜା ପାଳିଲେ ସେ ଧର୍ମ ବିବର୍ଧତି ॥୬॥
ଅଶ୍ୱମେଧ ଯାଗ ଗଜଘଣ୍ଟ ଦାନ ।
ପ୍ରଜା ପାଳିବାକୁ କେହି ନୋହିଲେ ସମାନ ॥୭॥
ଯେତେକଥା ଦଶରଥ ଶ୍ରୀରାମକୁ ତିଆରିଲେ ।
ସଭାରେ ବସି ତାହା ଲବକୁଶେ କହିଲେ ॥୮॥
ପିତାର ବଚନ ଶୁଣିଲେ ରଘୁବୀର ।
ବ୍ରତ ଆଚରିଛନ୍ତି ସୁମିତ୍ରାର ଘର ॥୯॥
ରାମ ଅଭିଷେକ ବୋଲି ରାଜ୍ୟରେ ଚହଟଇ ।
ନଗ୍ରେଣ ଘୋଷଣ ଦ୍ୱାରେ ବସାନ୍ତି ସୁବର୍ଣ୍ଣ ଘଟଇ ॥୧୦॥
ମନ୍ଥରୀ ନାମ ଯେ କକୟାର ଦାସୀ ।
ଭ୍ରଥର ମାତାର ଆଗରେ କହିଲାକ ଆସି ॥୧୧॥
ଯେତେକଥା ମନ୍ଥରୀ ବୁଝାଇ କହିଲା ।
ସଭା ଲୋକଙ୍କର ଆଗେ ଲବକୁମର କହିଲା ॥୧୨॥
ଅର୍ଥ କରି କହଇ କୁମର କୁଶ ।
ଶୁଣିଣ ଶ୍ରୀରାମ ମନ୍ଥରାକୁ କଲେ ରୋଷ ॥୧୩॥
ମନ୍ଥରା ସେ ମୋହର ବଇରି ହୋଇଲା ।
ସେ ସେ ମୋତେ ଏତେକ ଅବସ୍ଥା କରାଇଲା ॥୧୪॥
କିପାଇଁ ଆନେ (ପିତା) ହୋଇଲା ପ୍ରାଣନାଶ ।
ଯେତେ କଷ୍ଟ ପାଇଲା ସେ ମନ୍ଥରୀର ଦୋଷ ॥୧୫॥
ଲବକୁମର କହିଲା ଯହୁଁ ମନ୍ଥରୀ କଥା କକୟା ଶୁଣିଲା ।
ଦଶରଥକଇ ଭଗତି ହୋଇ ସତ୍ୟ ମନାଇଲା ॥୧୬॥
ମୋହର ପୁତ୍ରକଇ ଅଭିଷେକ କରାଇବୁ ।
ଶ୍ରୀରାମକଇ ତୋହର ବନବାସ ପଠିଆଇବୁ ॥୧୭॥
ଚଉଦ ବରଷ ରାମ ବନସ୍ତରେ ଥିବ ।
ମୋହର ତନୟେ ଏଥେ ରାଜ୍ୟ କରିବ ॥୧୮॥
ଶୁଣିଣ ଦଶରଥ ମୂର୍ଚ୍ଛା ଯାଇ ପଡ଼ିଲା ।
କକୟା ଯେତେ (କୂଟ) କଥା କହିଲା ॥୧୯॥
ଗୀତେଣ ଗାବଇ ତାହା ଲବକୁମରଇ ।
ସମସ୍ତ କଥା ଶୁଣନ୍ତି କ୍ଷତ୍ରିବର ସୁନ୍ଦରଇ ॥୨୦॥
ଏସନେକେ ରୟଣୀ ଯହୁଁ ପ୍ରଭାତ ହୋଇଲା ।
ରାମକଇ ହକରାଇ ଦଶରଥ କହିଲା ॥୨୧॥
ତୁହି ରାମ ଏବେ ବନସ୍ତକଇ ଯିବୁ ।
ଚଉଦ ବରଷ ପରିଯନ୍ତେ ତୁହି ଥିବୁ ॥୨୨॥

କନ୍ଦମୂଳ ସେ କରିବୁ ଭୋଜନ ।
ଜଟା କସା କମଣ୍ଡଳ ବିଭୂତି ବିଲୋପନ ॥୨୩॥
ପିତାର ବଚନ ଶୁଣି ରାମ ହରଷ ହୋଇଲେ ।
ସୀତାକୁ ଯାଇ ଏଥିର କଥା କହିଲେ ॥୨୪॥
ଶୁଣିଣ ସୀତୟା ଯେ ବନକଇ ହୋଇଲା ସଜ ।
ଆବର ଗୋଡ଼ାଇଲା ସୁମିତ୍ରାର ତନୁଜ ॥୨୫॥
ଅଲେଖ ଜଟା ରାମଲକ୍ଷଣ ବାନ୍ଧିଲେ ।
ଦଣ୍ଡକମଣ୍ଡଳ ବିଭୂତି ବିଲୋପନ ହୋଇଲେ ॥୨୬॥
ସୀତୟା ରାମର ପଛେ ଅଛଇ ଗୋଡ଼ାଇ ।
ତିନିହେ କୌଶଲ୍ୟାକୁ କହିଲେକ ଯାଇ ॥୨୭॥
ଦେଖିଣ କୌଶଲ୍ୟା ଅନେକ ରୋଦନ କଲା ।
ଶ୍ରୀରାମର ମୁଖ ଚାହିଁ ଯେତେ କଥା କହିଲା ॥୨୮॥
ସଭାର ମଧେ ତାହା ଲବକୁଶେ କହନ୍ତି ।
ଶୁଣିଣ ଶ୍ରୀରାମ ବଶିଷ୍ଟେ ପଚାରନ୍ତି ॥୨୯॥
ଭୋ ମହରଷି ଯେତେ ବଚନ ମାତାଏ କହିଲେ ।
ଏ କୁମର ଦୁଇଗୋଟି ସେକଥା କେମନ୍ତେ ଜାଣିଲେ ॥୩୦॥
ବଶିଷ୍ଟେ କହନ୍ତି ଯାହାର ପୂର୍ବ ଅଭ୍ୟାସଇ ।
ସେ ଲୋକେ କହନ୍ତି ଗ୍ରନ୍ଥ ପ୍ରକାଶଇ ॥୩୧॥
ଏବେ ଥିର ହୋଇ ତୋହର ଚରିତ ଶୁଣ ।
ସ୍ୱରୂପ ମିଥ୍ୟା ଆପଣେ ପରିମାଣ ॥୩୨॥
ତୁହି ଯେତେ କୃତ କଲୁ କହନ୍ତିଟି ଏ ଯେବେ ।
ଏହାଙ୍କର ସ୍ୱରୂପ (ବଚନ ବୁଝ) ସବୁ ତେବେ ॥୩୩॥
ଶଣିଣ ଶ୍ରୀରାମ ଯେ ହୋଇଲେ ମଉନ ।
ନାଦ ଉଙ୍କାରନ୍ତି ସୀତୟାର ନନ୍ଦନ ॥୩୪॥
ମାତାକଇ ପ୍ରବୋଧି ରାମବନକୁ ଗଲେ ।
ଭ୍ରଥ ଶତୃଘନେ ଯେ ମଉଳାଘରେ ଥିଲେ ॥୩୫॥
ପୁତ୍ରନ୍ତ ଯହୁଁ ଦଶରଥ ନ ଦେଖିଲା ।
ସେହି ରଜନୀରେ ପ୍ରାଣନାଶ ହୋଇଲା ॥୩୬॥
ଭ୍ରଥକଇ ଦୂତ ପେଷିଲେ ମନ୍ତ୍ରୀ ପ୍ରୋହିତ ।
ଶୁଣିଣ ଦୁଇ ଭାଇ ଅଇଲେ ତୁରିତ ॥୩୭॥
ଅଯୋଧ ଭୁବନେ ହେଲେଲେ ପ୍ରବେଶ ।
ନବରେ ଦେଖିଲେ ପିତାଙ୍କର ବିନାଶ ॥୩୮॥
ଶ୍ରୀରାମ ଲକ୍ଷ୍ମଣକଇ ନ ଦେଖିଲେ ଯହୁଁ ।
ମୋହର ଭାଇ କାହିଁକି ଗଲେ କାନ୍ଦି ପୁଛିଲେ ତହୁଁ ॥୩୯॥
ବଶିଷ୍ଟ କହିଲେ ଶ୍ରୀରାମକଇ ରାଜ୍ୟ ଦିଅନ୍ତେ ।
ତୋହର ମାତା ସତ୍ୟ କରାଇଲେ ରାତ୍ରେ ॥୪୦॥
ତୁହି ରାଜା ହୋଇବୁ ରାମ ଯିବ ବନ ।
ତେବେ ସେ ଅରଣ୍ୟକଇ ରାମ କଲେ ଗବନ ॥୪୧॥
ଲକ୍ଷ୍ମଣହିଁ ଶ୍ରୀରାମ ସଙ୍ଗତେ ଗୋଡ଼ାଇଣ ଗଲା ।
ପତିଭଗତା ସୀତୟା ଏଥେ ନ ରହିଲା ॥୪୨॥
ତେଣେ ସେ ଦଶରଥ ହୋଇଲା ପ୍ରାଣନାଶ ।
ମୃତ୍ୟୁପିଣ୍ଡ ଦହନ କରି ଏ ରାଜ୍ୟେଣ ତୁହି ବଶ ॥୪୩॥
ଶୁଣିଣ ଭ୍ରଥ ମାତାକଇ କୋପ କଲା ।
ଖଡ଼ଗ ଉପାଡ଼ି ଶିରକମଳ କାଟୁଥିଲା ॥୪୪॥
କଉଶଲ୍ୟା ସୁମିତ୍ରା ଭ୍ରଥକୁ ରୁହାଇଲେ ।
ସଭାରେ ବସି ତାହା ଲବକୁଶେ କହିଲେ ॥୪୫॥
କୌଶଲ୍ୟାଙ୍କ ବଚନେ ଭ୍ରଥ ପ୍ରବୋଧ ହୋଇଲା ।
ମୃତ୍ୟୁପିଣ୍ଡ ପିତାର ଘେନି ରାମ ତହିଁକି ଗଲା ॥୪୬॥
ଏକଇ(ଶ) ଶତ ଦଶରଥର ଭାବେନୀ ।
ଶ୍ରୀରାମକଇ ଦେଖିଗଲେ ସକଳ ଜନନୀ ॥୪୭॥
ପାତ୍ର ଅମନାତ୍ୟ ବଶିଷ୍ଟ ତପୋଧନ ।
ଆବର ଅନେକ ନଗ୍ରର ସାଧୁଜନ ॥୪୮॥
ସମସ୍ତେ ଯାଇଣ ଚିତ୍ରକୂଟେ ହୋଇଲେ ।
ପିତାର ମରଣ ଦେଖି ଶ୍ରୀରାମ ଶୋକ କଲେ ॥୪୯॥
ପିତାକଇ ଦହନ କଲେ ଯେବଣଇ ମତେ ।
କହନ୍ତି ଲବକୁଶେ ଶ୍ରୀରାମର ଅଗ୍ରତେ ॥୫୦॥
ଶୁଣିଣ ଶ୍ରୀରାମ ବଶିଷ୍ଟ ମୁଖ ଚାହିଁ ।
ମହରଷି କହନ୍ତି ଶୁଣସି ଥିର ହୋଇ ॥୫୧॥
ପିତାକଇ ଦଶାକ୍ରିୟା ସେ ପର୍ବତେ ସାରିଲେ ।
ଶାରାମକଇ ଦଇନି କରି ଭ୍ରଥଶତୃଘନେ କହିଲେ ॥୫୨॥
ଦନ୍ତେ ତିରଣ ଘେନି ଭ୍ରଥ ଶ୍ରୀରାମଙ୍କୁ ରାଜ୍ୟକୁ ରାଇଲେ ।
ପିତାର ସତ୍ୟଭଗ୍ନ ନିମନ୍ତେ ରାମ ରାଜ୍ୟକୁ ନଇଲେ ॥୫୩॥
ଭ୍ରଥ ଶତୃଘନେ ରାଜ୍ୟକୁ ନ ଗଲେ ।
ତପ ଆଚରି ସେହି ବନସ୍ତେ ରହିଲେ ॥୫୪॥
ମାତୃଗଣନ୍ତ ଘେନି ମନ୍ତ୍ରୀ ପୁରୋହିତେ ।
ଅଯୋଧ୍ୟାନଗ୍ରକୁ ଅଇଲେ ସମସ୍ତେ ॥୫୫॥
କକୟାକୁ ଜିଂଘାସ ଯେତେକ ବୋଇଲେ ।
ଶ୍ରୀରାମ ଆଗେ ତାହା ଲବକୁଶେ କହିଲେ ॥୫୬॥

ଅଯୋଧ୍ୟାରେ ସମସ୍ତେ ପ୍ରବେଶ ହୁଅନ୍ତି ।
କଉଶୋଲ୍ୟା ରାମକଇ ଅହୋନିଶି ସୁମରନ୍ତି ॥୫୬॥

## ଖରଦୂଷଣ ବଧ

ଚିତ୍ରକୂଟ ପର୍ବତେ ରାମ ବରଷେ ରହିଲେ ।
ତହୁଁ ନାନା ତୀର୍ଥକଇ ଚଳିଗଲେ ॥୧॥
ଯେବଣ ବନସ୍ତରେ କଲେ ଯେବଣ କୃତ ।
ବିସ୍ତାରି କହନ୍ତି ସୀତୟାର ବେନି ସୁତ ॥୨॥
ଯେବଣ ନଦୀରେ ସ୍ନାହାନ କଲେ ।
ରାମର ଆଗେ ତାହା ଲବକୁଶେ କହିଲେ ॥୩॥
ଅଗସ୍ତି ମହରଷି ଶ୍ରୀରାମକଇ ଦେଖନ୍ତି ।
ଅନେକ ସୁବୁଧି ରାମକଇ କହନ୍ତି ॥୪॥
ପଞ୍ଚୁବଟୀ ବନକୁ ଶ୍ରୀରାମକୁ ଘେନିଗଲେ ।
ଶିମୁଳିଲତା ତଳେ ବସାଇ ସେ ବାହୁଡ଼ି ଅଇଲେ ॥୫॥
(ପକ୍ଷୀଜଟା ରାମଙ୍କୁ ଯେତେ କଥା କହିଲେ ।
ଶ୍ରୀରାମ ଆଗେ ତାହା ଲବକୁଶେ ବଖାଣିଲେ ॥୬॥
କୁଶକୁମର କହଇ ଅର୍ଥ କରି ବୁଝାଇ ରଘୁନାଥ ।
ରାମଚନ୍ଦ୍ରେ କହନ୍ତି ସକଳ ଯଥାର୍ଥ) ॥୭॥
ପର୍ଣ୍ଣକୋଟୀକି ଲକ୍ଷ୍ମଣ କାଠ କାଟି ଗଲା ।
ବନସ୍ତେ ଭ୍ରମି ଶୁଖିଲା କାଠ ନ ପାଇଲା ॥୮॥
ଜପାସୁର ବେଣୁଲତାରେ ତପ କରଇ ।
ଉପରକୁ ତାର ଦୁଇ ପୟରଇ ॥୯॥
ଲକ୍ଷ୍ମଣ କାଠ ନ ଦେଖି ମନେଣ ହିଂସା ବହି ।
ବାଉଁଶ କଣ୍ଟା ବହିଲା ଲକ୍ଷ୍ମଣର ଡାହାଣ ପାଦଇ ॥୧୦॥
ବାମ ହସ୍ତେ ବାଉଁଶ କଣ୍ଟା କାଢ଼ିଲାକ ଯେବେ ।
ଶ୍ରୋଣିତ ବହି ମହା ଜ୍ୱାଳା କଲାକ ତେବେ ॥୧୧॥
ଘାଏ ଘୁମାଇଁ ଲକ୍ଷ୍ମଣ ବଇରାଗ ହୋଇଲା ।
କକୟାକଇ କୋପ କରି ଯେତେକ ଗାଳି ଦେଲା ॥୧୨॥
ଲବକୁଶେ ତାହା ସଭାରେ କହି ।
ଶୁଣିଣ ଶ୍ରୀରାମ ଲକ୍ଷ୍ମଣ ମୁଖ ଚାହିଁ ॥୧୩॥
ଲକ୍ଷ୍ମଣ ବୋଲଇ ଦେବ ଏକଥା ସ୍ୱରୂପ ।
ଖୁଞ୍ଚ ବହନ୍ତେ ମୁଁ ପାଇଲି ବହୁତ ଶୋକ ॥୧୪॥
ବଶିଷ୍ଠେ ବୋଲନ୍ତି ହୋ ଏବେ ନ କହ ଆନ କଥା ।
ଥିର ହୋଇ ଶୁଣୁଥାଅ ଏବେ ନୋହିବା ବକତା ॥୧୫॥
ବଶିଷ୍ଠଙ୍କର ବଚନେ ରାମ ମଉନ ହୋଇଲେ ।
ତହୁଁ କୁମାରେ ନାଦ ହୁଂକାରିଲେ ॥୧୬॥
ଘାଏଣ ଲକ୍ଷ୍ମଣ ଯେ କୋପେଣ ଧାଇଁଲେ ।
କାଠ ପ୍ରାୟେ ବୁଝି ଜପାସୁରକୁ ହାଣିଲେ ॥୧୭॥
କଟିଭାଗଠାରୁ ପଡ଼ିଲା ତାର ମୁଣ୍ଡ ।
ଅସୁର କାୟା ହୋଇଲା ବେନି ଖଣ୍ଡ ॥୧୮॥
ଋଷି ପ୍ରାୟେ ବୁଝି ଲକ୍ଷ୍ମଣ ଶୋକ କଲା ଯେତେ ।
ଲବକୁଶେ କହିଲେ ସୁସରନାଦ ଗୀତେ ॥୧୯॥
ଶ୍ରୀରାମର ଆଗରେ ଲକ୍ଷ୍ମଣ କହିଲାକ ଯହୁଁ ।
ସୀତୟାର ହସ୍ତଧରି ରାମ ଦେଖିଗଲେ ତହୁଁ ॥୨୦॥
ରାମକୁ ଦେଖି ଜପାସୁର ମୁକତ ହୋଇଲା ।
ପୂର୍ବ ଜନ୍ମ କଥା କହି ଶୂନ୍ୟମାର୍ଗେଣ ଗଲା ॥୨୧॥
ତହୁଁ କ୍ଷତ୍ରିବରସୁନ୍ଦର ବାହୁଡ଼ି ଅଇଲେ ।
ଶାମୁ(ଳି) ତଳେ ପର୍ଣ୍ଣକୋଟୀ ତୋଳିଲେ ॥୨୨॥
ଏଥୁ ଅନନ୍ତରେ ଜପାସୁର ମାତ ।
ସୂପନେଖି ଅଇଲା ପୁତ୍ରକୁ ଦେଖିତ ॥୨୩॥
ପୁତ୍ରର ପ୍ରାଣନାଶ ଯହୁଁ ଦେଖିଲା ।
ଭୂମିରେ ପଡ଼ି ଅନେକ ରୋଦନ କଲା ॥୨୪॥
କ୍ଷଣକେ ଦନୁଜା ଶୋକ ଉପେଖିଲା ।
ପଦ୍ମ ଅଳଂକୃତ ଚକ୍ର ଚିହ୍ନ ଦେଖିଲା ॥୨୫॥
ଖୋଜ ଗୋଡ଼ାଇଣ ସୂପନେଖୀ ଗଲା ।
ଶାମୁଳିର ତଳେ ରାମ ଲକ୍ଷ୍ମଣଙ୍କୁ ଦେଖିଲା ॥୨୬॥
ଜପାସୁରକୁ ମାଇଲା ଯେବଣ ବାଗେ ।
ଲକ୍ଷ୍ମଣ କହୁଛନ୍ତି ରାମଚନ୍ଦ୍ରଙ୍କର ଆଗେ ॥୨୭॥
ସେ କଥା ସୂପନେଖୀ ଶୁଣିଲାକ ଯହୁଁ ।
ଏହି ସେ ମାଇଲା ବୋଲି ଜାଣିଲାକ ତହୁଁ ॥୨୮॥
ମୁହିଁ ଏହାଙ୍କର ମନ ମୋହିବି ।
ଭାରିଯା ହୋଇଣ ରମଣିରଙ୍ଗ ଦେବି ॥୨୯॥
ଶୃଙ୍ଗାର କରି ହୋଇ ସିନା ହରଷ ।
ନିଦ୍ରା ଗଲେ ପ୍ରାଣେ କରିବି ବିନାଶ ॥୩୦॥
ଏସନେକ ବି(ଚା)ରି ନବଯୁବା ତରୁଣୀଏ ହୋଇଲା ।
ରଜନୀ ପ୍ରଭାତେ ଉଚ ସ୍ୱରେ ରୋଦନ କଲା ॥୩୧॥
ସୀତୟା ମନ ମୋହିଲା ଯେମନ୍ତେ ।
ଲବକୁଶେ କହନ୍ତି ତାହା ସଭାଜନଙ୍କର ଅଗ୍ରତେ ॥୩୨॥

ସୀତା ସୂପନେଖୀକି ଆଶ୍ରମକୁ ଆଣିଲା ।
ରାତ୍ରେ ଲକ୍ଷ୍ମଣଙ୍କୁ ରମଣ ମାଗି ଗଲା ॥୩୩॥
ଲକ୍ଷ୍ମଣ ତାହାକୁ ନ କଲା ରମଣ ।
ଯେମନ୍ତେ ଛେଦିଲା ତାର ନାସା ଶ୍ରବଣ ॥୩୪॥
ଲବକୁଶେ ତାହା ଗାବନ୍ତି ସଧୀର ଗୀତେ ।
ଶୁଣିଣ ସଭାଲୋକେ ହରଷ ସମସ୍ତେ ॥୩୫॥
ହରଷେଣ ଚହଳ ଯହୁଁ ହୋଇଲା ।
ଭ୍ରଥ ମହାବୀର ସବୁନ୍ତି ନିରୋଧ କଲା ॥୩୬॥
ସଭା ନିଶବଦ ହୋଇଲାକ ଯହୁଁ ।
ଲଳିତ ନାଦ ଧରି ଲବକୁଶ କହିଲେ ତହୁଁ ॥୩୭॥
ନାକକାନ ଛେଦିଲେ ସୂପନେଖୀ ଅସୁରୀ ।
ତ୍ରିଶିରା ଆଗେକ ସେ କଲେ ଗୁହାରି ॥୩୮॥
ଖର ଦୂଷଣ ନାମେ ରାବଣର ଭାଇବେନି ।
ଯୁଦ୍ଧ କଲେ ସେ ଚଉଦ ସହସ୍ର ବୀର ଘେନି ॥୩୯॥
ଚଉଦ ସହସ୍ର ସୈନ୍ୟ ତାହାଙ୍କର ତୁଲେ ।
ସମସ୍ତ ଅସୁରନ୍ତ ଶ୍ରୀରାମ ବିନାଶିଲେ ॥୪୦॥
ଖରଦୂଷଣର ଛେଦିଲେକ ଶିର ।
ତ୍ରିଶିରା ତିନିଶିର କାଟିଲେ ରଘୁବୀର ॥୪୧॥

## ସୀତା ହରଣ

ତହୁଁ ସୂପନେଖୀ ଲଙ୍କାକଇ ଗଲା ।
ରାବଣର ଆଗେ ନାକକାନ ଦେଖାଇଲା ॥୧॥
ସୀତୟାର ରୂପ କହିଲାକ ଯହୁଁ ।
ଶୁଣି ଦଶଶିର ଦେଖି ଅଇଲାକ ତହୁଁ ॥୨॥
ରାମର ତେଜେ ଯାଇତ ନ ପାରିଲା ।
ମାରୁଚିକି ମାୟାମୃଗେକ କଲା ॥୩॥
ପଞ୍ଚବଟୀ ବନେ ଶ୍ରୀରାମର ସନିଧାନ ।
ଦୁଇମୁଣ୍ଡ ହୋଇ ଚରୁଥାଇ ପ୍ରତିଦିନ ॥୪॥
ମୃଗ ଦେଖି ସୀତୟା ରାମଙ୍କୁ କହିଲାକ ଯାହା ।
ସଭାରେ ଲବକୁଶେ ବିସ୍ତାରି କହନ୍ତି ତାହା ॥୫॥
ଶ୍ରୀରାମଚନ୍ଦ୍ର ମୃଗ ମାରିବାକୁ ଗଲା ।
ରାମକୁ ଦେଖି ମୃଗ ଦୂରକୁ ପଳାଇଲା ॥୬॥
ସହସ୍ରେ ଯୋଜନ ରାମଚନ୍ଦ୍ର ଗୋଡ଼ାଇଲେ ।
ଗୋଡ଼ାଇ ନ ପାରି ଦୁଇମୁଣ୍ଡ ବାବଲେ ଛେଦିଲେ ॥୭॥
ମାରୁଚି ପ୍ରାଣନାଶ ହୋଇଲାକ ଯହୁଁ ।
ପ୍ରତିକାର ଲକ୍ଷ୍ମଣ ବୋଲି ଶୂନ୍ୟେ ଡାକ ଦେଲା ତହୁଁ ॥୮॥
ସୀତୟା ଶୁଣି ଲକ୍ଷ୍ମଣକୁ ପଠିଆଇଲା ।
ତିନିରେଖା ଲକ୍ଷ୍ମଣ ଧନୁହୁଲେ କାଟିଲା ॥୯॥
ଏ ରେଖା ଡେଇଁ ନ ଯିବୁ ମହାସତୀ ।
ପୁରୁଷ ରାକ୍ଷସେ ନ ଆସିବେ ତୋହର କତି ॥୧୦॥
ଯେ ଡେଇଁ ଆସିବ ସେ ହୋଇବ ପ୍ରାଣନାଶ ।
ଏସନେକ କହି ଗଲା ସୁମିତ୍ରାର ଶିଷ୍ୟ ॥୧୧॥
ଲକ୍ଷ୍ମଣ ସୀତୟାକୁ ଛାଡ଼ିକରି ଗଲା ।
ତପସ୍ୱୀ ରୂପେ ରାବଣ ଭିକ୍ଷା ମାଗି ଅଇଲା ॥୧୨॥
ଯେବଣ ଯେବଣ କଥା କହିଲା ତପୁସ୍ୱୀ ରୂପେ ।
ଲବକୁଶେ କହନ୍ତି ଶ୍ରୀରାମ ସମୀପେ ॥୧୩॥
ରେଖା ଡେଇଁ ଫଳ ଭିକ୍ଷା ଦେଲେ ଜନେକ କୁମାରୀ ।
ତେମନ୍ତେ ସୀତାକୁ ରାବଣ ନେଲା ହରି ॥୧୪॥
ବାଟେଣ ଯାନ୍ତେ ପକ୍ଷୀଜଟା ଦେଖିଲା ।
ରାବଣର ତୁଲେ ଯେତେ ଯୁଦ୍ଧ କଲା ॥୧୫॥
ଲବକୁମର ସେ କଥା ସଭାରେ ପ୍ରକାଶି ।
ଶୁଣି ସମସ୍ତେହେ ପକ୍ଷୀଜଟାକୁ ପ୍ରଶଂସି ॥୧୬॥
ଜଟାୟୁଷ ତୁଲେ ରାବଣ ଯୁଦ୍ଧ କଲେ ।
ବଟର ମୂଳେ ସୀତା ତରସ୍ତେ ଲୁଚିଲେ ॥୧୭॥
ପକ୍ଷୀଜଟାର ଡାହାଣଭୁଜ ଚନ୍ଦ୍ରହାସ୍ୟ ଖଡ଼ଗେ ଛେଦିଲା ।
ବଟମୂଳୁ ସୀତାକୁ କେଶ ଧରିଣ ଆଣିଲା ॥୧୮॥
ଶୁଣିଣ ସଭାଲୋକେ ଆଶ୍ଚର୍ଯ୍ୟ ହୋଇଲେ ।
ବିସ୍ତାରି କରି ତାହା ଲବକୁଶେ ଗାଇଲେ ॥୧୯॥
ତହୁଁ ରାବଣ ଆକା(ଶ)ରେ ରଥ ବାହିଲା ।
ଋଷିମୁଖ ପର୍ବତେ ସୁଗ୍ରୀବରକୁ ସୀତୟା ଦେଖିଲା ॥୨୦॥
କନେକ(ର) ଦୁଇ ଚୁଡ଼ି ଅମଳାଣ ବସ୍ତ୍ର ।
ପକାଇଣ ଗଲା ତହୁଁ ଜନେକ ଦୋହିତ ॥୨୧॥
ସୀତୟାକୁ ଘେନି ଗଲା ଲଙ୍କପତି ।
ଅମନାତ୍ୟଙ୍କୁ ହକାରି ବସିଲା ଜଗତୀ ॥୨୨॥
ସୀତାକୁ ଯେ ପ୍ରାଣନାଶିତ ଲୋଡ଼ିଲା ।
ରାବଣର ଆଗେ ବିଭୀଷେଣ ଯାହା କହିଲା ॥୨୩॥
ରାମର ଆଗେ ଲବକୁଶେ ବିସ୍ତାରିଣ କହନ୍ତି ।
ଶୁଣିଣ ଶ୍ରୀରାମ ବିଭୀଷେଣକୁ ପ୍ରଶଂସନ୍ତି ॥୨୪॥

ଧନ୍ୟରେ ବିଭୀଷେଣ ତୋହର ମହିମା ।
ତୁହି ସେ ଉଦ୍ଧରିଲୁ ମୋହର ଗାରିମା ॥୨୫॥
ଲବକୁଶେ କହନ୍ତି ବିଭୀଷେଣର କଥାଶୁଣି ।
ଅଶୋକ ବନେ ସୀତାକୁ ଥୋଇଲା ବିଂଶପାଣି ॥୨୬॥
ତ୍ରିଜଟା ସୁଷମା ଦୁଇ ଭଗ୍ନୀନ୍ତ ହକରାଇଲା ।
ସହସ୍ରେ ଅସୁରୀ ସୀତାକୁ ରକ୍ଷା କରାଇଲା ॥୨୭॥
କନେକ ମୃଗ ମାରି ରାମ ବାହୁଡ଼ି ଆସନ୍ତେ ।
ଲକ୍ଷ୍ମଣକୁ ଦେଖିଲେ ଗହନ ବନପନ୍ଥେ ॥୨୮॥
ବଇରାଗେ ଲକ୍ଷ୍ମଣକୁ ରାମ କହିଲେକ ଯାହା ।
ଗୀତେଣ ଲବକୁଶେ ଗାଉଛନ୍ତି ତାହା ॥୨୯॥
ତହୁଁ ଆସି ଦୁଇଭାଇ ପର୍ଣ୍ଣକୋଟୀରେ ଲୋଡ଼ିଲେ ।
ବହୁତ ଶୋଭଭର ହୋଇଣ କାନ୍ଦିଲେ ॥୩୦॥
ସୀତୟାକୁ ରାମ ନ ଦେଖିଲେ ଯହୁଁ ।
ପର୍ଣ୍ଣକୋଟୀ ଭିତରେ ରାମ ପଶି ଲୋଡ଼ିଲେକ ତହୁଁ ॥୩୧॥
ଯେତେକ ଶୋକ କଲେକ ସୀତାପତି ।
ସଞ୍ଜାତ ସ୍ୱରୂପ ତାହା ଲବକୁଶେ କହନ୍ତି ॥୩୨॥
ଶୁଣିଣ ଶ୍ରୀରାମ ମନବିରଙ୍ଗ କଲେ ।
ସଭାର ଲୋକେ ସମସ୍ତେ କାନ୍ଦିଲେ ॥୩୩॥
ଭ୍ରଥ ମହାବୀର ଶୁଣିଣ ପାଇଲା ମହାବ୍ୟଥା ।
ଆଶ୍ଚର୍ଯ୍ୟ ହୋଇଲେ ବଶିଷ୍ଠ ମହାଜ୍ଞାତା ॥୩୪॥
ସୀତା ନ ଦେଖି ରାମ ଲକ୍ଷ୍ମଣକୁ କୋପ କଲେ ।
ଖଡ଼ଗ କାଢ଼ିଣ ମାରିତ ଲୋଡ଼ିଲେ ॥୩୫॥
ଲକ୍ଷ୍ମଣ କହଇ କିମ୍ପା ମାରିବୁ ମୋତେ ।
ମୁହିଁ ଆଗେ ଶିରକମଳ କାଟି ଦେବି ତୋତେ ॥୩୬॥
ଆଗହୁଁ ଭାରିଯାକୁ ଗାରିମାପଣେ ବଢ଼ାଇଲୁ ।
ବଚନ ଠେସି ନ ପାରି ମୃଗମାରି ଗଲୁ ॥୩୭॥
ସେ ମୋତେ ଅନେକ କିଂଘାସି କହିଲା ।
ତୋହର ତହିଁକି ପଠିଆଇଣ ଦେଲା ॥୩୮॥
ତିନି ରେଖା କାଟିଲି ମୁହିଁ ଯାହା ।
ଅବଜ୍ଞା କରି ଦେଖ ଡେଇଁ ଗଲା ତାହା ॥୩୯॥
ପୟର ଚିହ୍ନ ଦେଖି ଲକ୍ଷ୍ମଣକୁ କୋପ ଛାଡ଼ିଲେ ।
ଶୋକେ ସୀତୟାକୁ ଲୋଡ଼ି ତହୁଁ ଗଲେ ॥୪୦॥
ଯୋଜନବାହୁକୁ ମାଇଲେ ଯେମନ୍ତେ ।
ଲବକୁଶେ ତାହା ଗାଇଲେ ମଧୁର ଗୀତେ ॥୪୧॥
ତହୁଁ ଯାଇ ରାମ ଜଟାୟୁଷକୁ ଭେଟିଲେ ।
ରାବଣ ହରି ନେଲା ତାହା ତହୁଁ ଶୁଣିଲେ ॥୪୨॥
ସୀତାର କଥା ସମସ୍ତ କହିଲା ।
ରାମର ମୁଖ ଦେଖି ପ୍ରାଣ ଉପେଖିଲା ॥୪୩॥
ଦୁଇଭାଇ ପକ୍ଷୀଜଟାକୁ ଦହନ କଲେ ।
ତହୁଁ ଯାଇ ଗଦାବରୀ କୂଳେଣ ମିଳିଲେ ॥୪୪॥
ଚକୁଆ ଚକୋଇ ବିନୋଦକ୍ରୀଡ଼ା ଶୁଣି ।
ସୀତାର କଥାକୁ ପୁଛିଲେ ରଘୁମଣି ॥୪୫॥
ରାମକୁ ଉପହାସ୍ୟ କଲାକ ସେ ଯହୁଁ ।
ଶୁଣି ରାମଚନ୍ଦ୍ର କୋପ କଲେ ତହୁଁ ॥୪୬॥
ରାତ୍ରେ ଯେବେ ପକ୍ଷୀ ରମଣ କରିବୁ ।
ପ୍ରଭୁଭାରିଯା ଏକ ହୋଇଲେ ମୁଧୁନି ଫାଟି ମରିବୁ ॥୪୭॥
ତାମ୍ରଚୂଡ଼ ପକ୍ଷୀକି ବର ଦେଇଣ ତହୁଁ ଗଲେ ।
ତଦଅନ୍ତରେ ବକକୁ ଦେଖିଲେ ॥୪୮॥
ତହିଁ ଯେବଣ କୃତ୍ୟ କଲେକ ବେନିଭାଇ ।
ବିସ୍ତାରି କରି ତାହା ଲବକୁମର କହି ॥୪୯॥
କୁଶକୁମର ଅର୍ଥ କରି କହଇ ।
ମନ୍ମଥ ବନେ ମିଳିଲେକ ଯାଇ ॥୫୦॥
ଗୋଗୋଷ୍ଠ ଦେଖି ଲକ୍ଷ୍ମଣ ଆନନ୍ଦଇ ।
ତିନିକରକ କ୍ଷୀର ଆଣିଲେ ଚନ୍ଦ୍ର କଳାମଣି ଦେଇ ॥୫୧॥
କ୍ଷୀର ଭକ୍ଷି ତହୁଁ ଶ୍ରୀରାମ କରେ ଦେଲେ ।
ମାହେନ୍ଦ୍ର ବନେ ତରୁତଳେ ବସିଲେ ॥୫୨॥
ସୀତାକୁ ହକାରି ହୋଇଲା ଦଶଦିବସ ।
ବସିଲେକ ରାମ ଦେହେ ହୋଇଲେ ଆଳସ୍ୟ ॥୫୩॥
ଲକ୍ଷ୍ମଣର ଜାନୁ ସୀମସ୍ଥାନ କରି ।
ନିଚେଷ୍ଟ ନିଦ୍ରାଗଲେ ରାମ କରେ ଚାପ ଧରି ॥୫୪॥

## ସୁଗ୍ରୀବ ସଙ୍ଗେ ମିତ୍ରତା

ସୁଗ୍ରୀବର ବାଳିର ତହିଁକି ଯୁଦ୍ଧ କରି ଯାଇଥିଲା ।
ଶ୍ରୀରାମର ତେଜ ଦେଖି ବାହୁଡ଼ି ପଳାଇଲା ॥୧॥
ଋଷିମୂକ ପର୍ବତେ ଲୁଚିଲା ସୁଗ୍ରୀବର ।
ଶ୍ରୀରାମକୁ ଦେଖି ଅଇଲା ପବନକୁମର ॥୨॥
ଶ୍ରୀରାମ ନିଦ୍ରାଏଣ ଶୋଇଣ ଅଛନ୍ତି ।
ବୃକ୍ଷର(ଉପରେ) ଉଠିଲେ ମାରୁତି ॥୩॥

ତରୁବର ହଲାଇ ହନୁମନ୍ତ ଦେଲା ।
ଶ୍ରୀରାମର ଉପରେ ଯେ ବୃତପତ୍ର ପଡ଼ିଲା ॥୪॥
ଦେଖିଣ ଲକ୍ଷ୍ମଣ କଲାକ ମହାକୋପ ।
ବାଣେକ ତ୍ରୋଣୁ କାଢ଼ି ଆମଝିଲାକ ଚାପ ॥୫॥
ଜାନୁ ଚଳନ୍ତେଣ ରାମ ନିଦ୍ରାଭଗ୍ନ ହୋଇଲା ।
କାହାକୁ ନାରାଚ ସନ୍ଧୁ ବୋଲି ଲକ୍ଷ୍ମଣକୁ ପଚାରିଲା ॥୬॥
କରପତ୍ର ଯୋଡ଼ି ଲକ୍ଷ୍ମଣ କହିଲା ।
କାହିଁର ମର୍କଟ ବୃକ୍ଷରେ ଉଠିଲା ॥୭॥
ରକତମୁଖା ବାନର ତରୁବର ହଲାଇ ।
ତେଣୁ ସେ ଭୋ ଦେବ ନାରାଜ ସନ୍ଧଇ
ଶୁଣିଣ ଶ୍ରୀରାମଚନ୍ଦ୍ର ଉପରକୁ ଚାହିଁ ॥ ୮ ॥
ବକ୍ର କଉପୁନି କିରଟି ମୁକୁଟ ଦେଖିଲେ ।
ତହୁଁ ଶ୍ରୀରାମଚନ୍ଦ୍ର ସନିଧକୁ ହକାରିଲେ ॥୯॥
ଶ୍ରୀରାମର ମୁଖ ଯହୁଁ ହନୁମନ୍ତ ଦେଖିଲା ।
ପୟର ଯୁଗଳ ଧରି ଓଳଗି ସୁତିଲା ॥୧୦॥
(ମହାବଳ ଆସି ତ ତକ୍ଷଣେ ହୋଇଲା ।
ସମସ୍ତ ବିଚାର ଆସି ଶ୍ରୀରାମେ କହିଲା) ॥୧୧॥
ଶ୍ରୀରାମର ହନୁମନ୍ତର ଯେବଣ ବଚନ ।
ବିସ୍ତାରି କହନ୍ତି ସୀତାର ବେନି ନନ୍ଦନ ॥୧୨॥
ତହୁଁ ହନୁମନ୍ତ ସୁଗ୍ରୀକି କହିଲା ।
ଅମଳାଣ ବସ୍ତ୍ର ଦୁଇ ରତ୍ନ ଚୁଡ଼ି ଘେନି ରାମଙ୍କୁ ଦ୍ରଶନ କଲା ॥୧୩॥
ସୁଗ୍ରୀବର ତୁଲ(ରେ) ରାମ ମଇତ୍ର ହୋଇଲେ ।
ସୁଗ୍ରୀବର ଛଳେ ବାଳିକି ମାଇଲେ ॥୧୪॥
ସୁଗ୍ରୀବରକୁ କିସ୍କିନ୍ଦାନଗ୍ରରେ ଭୂପତି କରନ୍ତି ।
ନିଜ ଭାରିଯା ତାହାର ତାରାକୁ ଦିଅନ୍ତି ॥୧୫॥
ତହୁଁ ରାମଚନ୍ଦ୍ର ମାଲ୍ୟାବନ୍ତ ପର୍ବତେ ଚତୁର୍ମାସ୍ୟା ରହିଲେ ।
ସୁଗ୍ରୀବର ତହିଁକି ଲକ୍ଷ୍ମଣକୁ ପଠାଇଲେ ॥୧୬॥
କିସ୍କିନ୍ଦାପୁରକୁ ଲକ୍ଷ୍ମଣ ଯହୁଁ ଗଲା ।
ଯେସନେକେ ସେ ରିକ୍ଷକୁ ସୁଗ୍ରୀବରକୁ ଆଣିଲା ॥୧୭॥
ବିସ୍ତାରି କହନ୍ତି ସୀତାର ବେନି ସୁତ ।
ଶୁଣିଣ ଶ୍ରୀରାମଚନ୍ଦ୍ର ହରଷଭର ଚିତ୍ତ ॥୧୮॥
ସକଳ ବାନରକୁ ଦୂତ ବରଗିଲେ ।
ସୁଗ୍ରୀବର ଆଜ୍ଞାରେ ଯେ ବାନରେ ଅଇଲେ ॥୧୯॥
ଶ୍ରୀରାମର ପୟରେ ପ୍ରଣମ୍ୟ କରନ୍ତି ।
ବାନର ସୈନ୍ୟ ରାମ ଗଣିତା ଘେନନ୍ତି ॥୨୦॥
ଜମ୍ବେବର ଭାଇ ତାଳିମ୍ବ ନାମେ ରିକ୍ଷ ।
ରିକ୍ଷ ସୈନ୍ୟ ଘେନି ସେ ହୋଇଲା ସଂପକ୍ଷ ॥୨୧॥

## ଲଙ୍କା ପୋଡ଼ି

ସୀତାକଇ ଲୋଡ଼ିତ ଦୂତ ବରଗିଲେ ।
ଚାରି ଦିଗକଇ ଦୂତମାନ ଗଲେ ॥୧॥
ଜମ୍ବେବ ଶତବାଳି ଗନ୍ଧମାର୍ଦନଇ ।
ପବନ ତନୟ ବାଳିର ଯେ ସୁତଇ ॥୨॥
ଦକ୍ଷିଣ ଦିଗକୁ ଏ ପାଞ୍ଚେହେ ଗଲେ ।
ସମୁଦ୍ରତୀରେ ବସି ବିଚାର ସେ କଲେ ॥୩॥
କାହାରି ଶଉର୍ଯ୍ୟ ନୋହିଲା ସେ ଯାଇ ।
ଶୂନ୍ୟେ ହନୁମନ୍ତ ବିକ୍ରମି ଗଲା ତେଇଁ ॥୪॥
ଉଗ୍ରତାରା ସିଂହିକାକଇ ଯେମନ୍ତ ମାଇଲା ।
ମଣିନାଗ ପର୍ବତ ଯେମନ୍ତେ ଆଦରଣ କଲା ॥୫॥
ଲଙ୍କା ବିନାଶ କଲାକ ଯେମନ୍ତ ମତେ ।
ସଭାରେ ଲବକୁଶ ସେ କଥା କହନ୍ତି ଗୀତେ ॥୬॥
ଅଯୋଧା ଲୋକେ ଯେ ନ ଜାଣିଣ ଥିଲେ ।
ଶୁଣିଣ ସମସ୍ତେ ହନୁମନ୍ତକୁ ଧନ୍ୟ ଧନ୍ୟ କଲେ ॥୭॥
ତହୁଁ ପାବନି ଯେ ଲଙ୍କାପୁରେ ପଶିଲା ।
ରାବଣ ଭୁବନେ ସମସ୍ତ ଠାବେ ଠାବେ ଲୋଡ଼ିଲା ॥୮॥
ତାରାକହି ଦେଖିଲେ ଅହଲ୍ୟାର ନାତି ।
ସେ କହିଲା ଅଶୋକ ବନେ ଅଛି ମହାସତୀ ॥୯॥
ତାରା ବଚନେ ଅଶୋକ ବନେ ପଶିଲା ।
ଅଶୋକ ବନେ ସୀତାକୁ ଠାବ କଲା ॥୧୦॥
ଶ୍ରୀରାମର ସନ୍ତେକ ଦେଲା ଶ୍ରୀମୁଦି ।
ମଥାମଣି ଦେଲା ଯୁବତୀ-ରତ୍ନନିଧି ॥୧୧॥
ଶ୍ରୀରାମ ଲକ୍ଷ୍ମଣଙ୍କର କୁଶଳ ସମସ୍ତ କହିଲା ।
ଆସିବାର ବେଳେ ସୀତାକୁ ଆହାର ମାଗିଲା ॥୧୨॥
ସୀତା ଆଜ୍ଞା ଦେଲେ ମଧୁବନେ ପଶ ।
ପକ୍ୱ ଫଳମାନ କରହୋ ଯାଇ ଗ୍ରାସ ॥୧୩॥
ତହୁଁ ହନୁମନ୍ତ ମଧୁବନେ ପଶିଲା ।
ଦଶ ଯୋଜନ ବନସ୍ତ ସମସ୍ତ ଉଜାଡ଼ିଲା ॥୧୪॥
ଇଚ୍ଛା ସୁଖରେ ଭୁଞ୍ଜିଲା ସମସ୍ତ ଫଳ ।
ତେବେ ସେ ଶେଷ ହୋଇଲା ପବନ ଦୁଲାଳ ॥୧୫॥

ବନସ୍ତ ଭାଙ୍ଗନ୍ତେ ରକ୍ଷା ଲୋକେ ଦେଖିଲେ ।
ଚଉରାଶି ଲକ୍ଷ ତୋଟାଳେ ହନୁମନ୍ତ ତୁଲେ ଯୁଦ୍ଧ କଲେ ॥୧୬॥
ସମସ୍ତ ସୈନ୍ୟ ହନୁମନ୍ତ କିଞ୍ଚିତ ଯୁଦ୍ଧେ ମାଇଲା ।
ତାହା ଶୁଣି ରାବଣ ଅକ୍ଷୟକୁମର ବରଗିଲା ॥୧୭॥
ହନୁମନ୍ତର ତୁଲେ କଲେକ ଅନେକ ଯୁଦ୍ଧ ।
ବୁକୁବାଟେ ପିଠି କାଢ଼ି ଅକ୍ଷୟେ କଲା ବଧ ॥୧୮॥
ଯେ ଅବା ସଂଗ୍ରାମୁ ପୁଣ ପଳାଇଣ ଗଲେ ।
ଅକ୍ଷୟେ ମଲା ବୋଲି ରାବଣକୁ କହିଲେ ॥୧୯॥
ଶୁଣିଣ ଦଶଶିର ଅନେକ ଶୋକ କଲା ।
ବହୁତ ସୈନ୍ୟ ତୁଲେ ଇନ୍ଦ୍ରଜିତକୁ ବରଗିଲା ॥୨୦॥
ହନୁମନ୍ତର ତୁଲେ ଇନ୍ଦ୍ରଜିତ କଲାକ ସମର ।
ଅସୁର ସୈନ୍ୟ ମାଇଲେ ପବନକୁମାର ॥୨୧॥
ତହୁଁ ଇନ୍ଦ୍ରଜିତ ମାୟାଯୁଦ୍ଧ କଲା ।
ନାଗଫାଶ ବାଣେ ହନୁମନ୍ତକୁ ବାନ୍ଧି ଆଣିଲା ॥୨୨॥
ରାବଣର ଛାମୁରେ ସେ କଲାକ ନେଇ ।
ଦେଖିଣ ଆଶ୍ଚର୍ଯ୍ୟ ହୋଇଲା ଲଙ୍କସାଇଁ ॥୨୩॥
ରାବଣ ହନୁମନ୍ତର ଯେବଣ ପ୍ରତିଉତ୍ତର ।
ବିଶେଷି କହଇ ତାହା ଲବକୁମର ॥୨୪॥
ଯେବଣ ପଦ ଅବା ଅକ୍ଷ ଅନ୍ତର ହୁଅଇ ।
କୁଶକୁମର ତାହା ଅର୍ଥ କରିଣ କହଇ ॥୨୫॥
ହନୁମନ୍ତର ଗାରିମା କଥା ଯହୁଁ ଶୁଣିଲା ।
ପ୍ରାଣ ନାଶ କରିବାକୁ ଆଜ୍ଞା ତହୁଁ ଦେଲା ॥୨୬॥
ବିଭୀଷେଣ କହଇ ଏହାକୁ ଆଜ ନ ମାରିବା ।
ରାତ୍ର ପାଇଲେ ଏହାକୁ ପ୍ରାଣେ ନାଶ କରିବା ॥୨୭॥
ଭାଇର ବଚନେ ଶେଷ ହୋଇଲା ଦଶାନନ ।
ସେ ରାତ୍ର ଦୃଢ଼ କରି କରାଇଲା ବନ୍ଧନ ॥୨୮॥
ରୟଣୀ ପ୍ରଭାତେ ଆସ୍ଥାନକଇ ଆଣି ।
ମାର ବୋଲି ଆଜ୍ଞା ଦେଲାକ ବିଂଶପାଣି ॥୨୯॥
ଚନ୍ଦ୍ରହାସ ଖଡ଼ଗେ ଇନ୍ଦ୍ରଜିତ ପ୍ରହାରିଲା ।
ରୋମେକ ଭଗ୍ନ ନୋହିଲା ଖଡ଼ଗ ଉଚ୍ଛୁଳି ପଡ଼ିଲା ॥୩୦॥
ବିସ୍ମୟେ ହୋଇଲା ଅସୁର ରାଜନ ।
ତହୁଁ ହସି ବୋଲଇ ପବନନନ୍ଦନ ॥୩୧॥
ଏମନ୍ତ ପ୍ରାଣନାଶ ନ ହୋଇବି ମୁହିଁ ।
ଯେମନ୍ତେ ମରିବି ଶୁଣ ହୋ ଲଙ୍କ ସାଇଁ ॥୩୨॥
ଏ ମୋହର ଲାଞ୍ଜେ ବସ୍ତ୍ର ଗୋଡ଼ାଅସି ।
ତୈଳ ଲଗାଇ ଅଗ୍ନି ଲଗାଇ ଦିଅସି ॥୩୩॥
ଶୁଣିଣ ହରଷ ହୋଇଲେ ଦନୁଜରାଣ ।
ଏମନ୍ତେ ସେ ତୁଟିବ ତାହାର ନିଜ ପ୍ରାଣ ॥୩୪॥
ବସ୍ତ୍ର ବେଢ଼ାଇ ଦେଇ ତୈଳ ଢାଳିଲେ ।
ହନୁମନ୍ତର ଲାଞ୍ଜେ ଅଗ୍ନି ଲଗାଇଲେ ॥୩୫॥
ଲାଞ୍ଜ ବୁଲାଇଲା ପବନନନ୍ଦନ ।
ଲଙ୍କାଗଡ଼ ସମସ୍ତ କଲାକ ଦହନ ॥୩୬॥
ସୀତୟାମଣି ଘେନି ବାହୁଡ଼ି ଅଇଲା ।
ଶ୍ରୀରାମର ହସ୍ତେ ନେଇ ସୀତାର ମଣିରତ୍ନ ଦେଲା ॥୩୭॥

## ଯୁଦ୍ଧ ପାଇଁ ଉଦ୍‌ଯୋଗ

ବାନର ସୈନ୍ୟ ଘେନି ସୁଗ୍ରୀବର ତୁଲେ ।
ସେତୁବନ୍ଧ ବାନ୍ଧିଲେ ରାମ ବରୁଣର ବୋଲେ ॥୧॥
ଜମ୍ବେବ ଶତବାଳି ନଳ ନୀଳଙ୍କର ହସ୍ତେ ।
ସମୁଦ୍ରେ ଉପୁଚିଆଇଲେ ସକଳ ପର୍ବତେ ॥୨॥
ଏକା ହନୁମନ୍ତ ପର୍ବତ ଆଣିଲା ।
ଶତେ ଯୋଜନ ବିସ୍ତାର ହୋଇଲା ॥୩॥
ବାନର ସୈନ୍ୟ ଘେନି ଲଙ୍କାରେ ପ୍ରବେଶ ହୋଇଲାକ ଯହୁଁ ।
ଦେଖିଣ ରାବଣ ଭୟେ କଲାକ ତହୁଁ ॥୪॥
କବାଟ ପାଡ଼ି ଗଡ଼ ନିରୋଧିଲା ।
ଲଙ୍କାପୁର ସେ ନିବ୍ରତ କରାଇଲା ॥୫॥
ସୁବଳୟା ପର୍ବତେ ରାମଚନ୍ଦ୍ର ବିଶ୍ରାମିଲେ ।
କଙ୍କ ଧଙ୍କ ସୁବଳୟା ଗିରିରେ ସେ ଥିଲେ ॥୬॥
ତକ୍ଷଣେ ଲଙ୍କାପୁରେ ପ୍ରବେଶ ହୋଇଲେ ।
ରାବଣର ଆଗେ ଯାଇ ସେ ବାରତା କହିଲେ ॥୭॥
ଭୋ ଦେବ ଦନୁଜ ରାଜା ଶୁଣ ମୋହର ବାଣୀ ।
ମର୍କଟ ରିକ୍ଷ ସୈନ୍ୟ କେ ପାରେ ପରିମାଣି ॥୮॥
ଶ୍ରୀରାମର ତେଜ ତ କହିଣ ନ ଯାଇ ।
ଶୁଣିଣ ଭୟେକଲା ମନ୍ଦୋଦରୀର ସାଇଁ ॥୯॥
ପୁଷ୍ପେକ ରଥ ଆରୋହଣ କଲା ।
ଲକ୍ଷେ ଛତ୍ର ଧରାଇ ଦଣ୍ଡ ମେଲାଇଲା ॥୧୦॥
ଶ୍ରୀରାମଙ୍କୁ ଦେଖିଣ ଦଶଗିରି ।
ଶୂନ୍ୟେଣ ପୁଷ୍ପେକ ରଥେ ବିଶ୍ରାମ ସେହୁ କରି ॥୧୧॥

ଶ୍ରୀରାମ ସ୍ନାହାନ ସାରି ତର୍ପଣ କରନ୍ତେ ।
ଅର୍ଘ୍ୟ ଆଞ୍ଜୋଳି ସୂର୍ଯ୍ୟକୁ ଦିଅନ୍ତେ ॥୧୨॥
ଛତ୍ରଙ୍କର ଛାୟାରେ ସୂର୍ଯ୍ୟ ନ ଦିଶିଲାକ ଯହୁଁ ।
ଜୟେବ ହକାରି ପଚାରନ୍ତି ତହୁଁ ॥୧୩॥
ଏହିକ୍ଷଣି ଦିବାକର ବିକାଶୁଣ ଥିଲା ।
କିମ୍ପାଇ ଗ୍ରହପତିର ତେଜ ନ ଦିଶିଲା ॥୧୪॥
ଜୟେବ କହଇ ଶୁଣ କ୍ଷତ୍ରିବର ସୁନ୍ଦର ।
ତୋତେ ଦେଖିତ ଅଇଲା ରାବଣ ନୃପବର ॥୧୫॥
ଛତ୍ରଛାୟାରେ ନ ଦିଶିଲା ଛାୟାର ପତି ।
ଶୁଣିଣ ଶ୍ରୀରାମ ସୂର୍ଯ୍ୟକୁ ଅର୍ଘ୍ୟ ଦେନ୍ତି ॥୧୬॥
ତକ୍ଷଣେ ରାମ କୋଦଣ୍ଡ ଧଇଲେ ।
ତ୍ରୋଣୁ ନାରାଚ କାଢ଼ି ଗୁଣରେ ବସାଇଲେ
ଆକର୍ଣ୍ଣ ସରି କରି ନାରାଚ ପୂରୋଇଲେ ॥୧୭॥
ବିଶ୍ୱାମିତ୍ରଙ୍କୁ ସୁମରି ନାରାଚ ବିନ୍ଧିଲେ ରଘୁପତି ।
ଲକ୍ଷେକ ଛତ୍ର ଛିଡ଼ି ସମୁଦ୍ରେ ପଡ଼ନ୍ତି ॥୧୮॥
ରାବଣକୁ ସୂର୍ଯ୍ୟର ତେଜ ଯହୁଁ ଲାଗିଲା ।
ଶୁକସାରଣଙ୍କୁ ଦଶାନନ ପଚାରିଲା ॥୧୯॥
ଅନେକ ଛତ୍ର ମୋହର ଗଲେ କାହିଁ ।
ଶୁକସାରଣେ କହନ୍ତି ଶୁଣ ଲଙ୍କସାଇଁ ॥୨୦॥
ଶ୍ରୀରାମ ଛେଦିଲେ ତୋହର ସକଳ ପାଟଛତ୍ର ।
ଶୁଣିଣ ଭୟେ କଲା ଅସୁର ଦଶମାଥ ॥୨୧॥
ମଥା ଆଉଁସିଣ ଶୀଘ୍ରେଣ ପଳାଇଲା ।
ଅନ୍ତଃପୁରେ ପଶି ପଛକୁ ନ ଚାହିଁଲା ॥୨୨॥
ଯେତେକ ଭାଳିଲା ମନ୍ଦୋଦରୀର ପତି ।
ସଭାରେ ବସି ତାହା ଲବକୁଶେ କହନ୍ତି ॥୨୩॥
ଶୁଣିଣ ଆନନ୍ଦ ଅଯୋଧ୍ୟା ନରନାରୀ ।
ଧନ୍ୟ ଧନ୍ୟ କରନ୍ତି ବର୍ଶିଷ୍ଠ ତପଚାରୀ ॥୨୪॥

## ବିଭୀଷଣଙ୍କୁ ଶରଣ ଦାନ

ଲବକୁଶେ କହନ୍ତି ସାବଧାନେ ଶୁଣ ।
ଯହୁଁ ଡରେ ପଳାଇଲାକ ରାବଣ ॥୧॥
କଙ୍କ ଧଙ୍କ ସୁବଳୟାରେ ଥିଲେ ।
ଶ୍ରୀରାମର ଧନୁ ସେ ନେମାକୁ ଦୁଇଭାଇ ବିଚାରିଲେ ॥୨॥
ତୋଳନ୍ତେ ଧନୁ ସେ ନ ପାରିଲେ ଟାଳି ।
ଦୁହିଁଙ୍କର ମୁଖରୁ ରୁଧିର ପଡ଼ଇ ଗଳି ॥୩॥
ଧନୁର ଗୁଣ ଛେଦନ କଲେ ଯହୁଁ ।
ଦୁଇ ଭାଇ ଧନୁର ହୁଳେ ଫୁଟିଲେକ ତହୁଁ ॥୪॥
ଧନୁରେ ଗୁଣ ଦେଇ ନାରାଚ ଛନ୍ଦନ୍ତି ।
ବିଶ୍ୱାମିତ୍ର ସୁମରି ନାରାଚ ବିନ୍ଧନ୍ତି ॥୫॥
ଯେତେକ ସୈନ୍ୟ କଙ୍କ-ଧଙ୍କର ତୁଳେ ଥିଲେ ।
ଶତ୍ରୁ-ଅନ୍ତେକ ନାରାଚେ ସମସ୍ତେ ପ୍ରାଣ ଦେଲେ ॥୬॥
ଯେ ଅବା ଆଗ ହୋଇଣ ପଳାଇଲା ।
କଙ୍କ ଧଙ୍କର ମରଣ ରାବଣ ଆଗେ କହିଲା ॥୭॥
ଶୁଣିଣ ଶୋକ କରନ୍ତେ ରାବଣ ।
କରପତ୍ର ଯୋଡ଼ି କହଇ ବିଭୀଷେଣ ॥୮॥
ଭୋ ଦନୁଜ ନୃପତି ପ୍ରତାପ ଚକ୍ରବର୍ତ୍ତୀ ।
କଥା ଏକ କହିବି ଛାଡ଼ିବ ଶୋକମତି ॥୯॥
ସୀତାକୁ ଶ୍ରୀରାମର ପାଶେ ସମର୍ପିବା ।
ଅଭୟେ ହୋଇ ଆମ୍ଭେ ଲଙ୍କାପୁରେ ଥିବା ॥୧୦॥
ଯଦ୍ୟପି ମୋହର ବଚନ ନ କରିବୁ ।
ଶିରୀ ସମ୍ପଦ ତୋହର ସମସ୍ତ ହରାଇବୁ ॥୧୧॥
ଶୁଣିଣ ରାବଣ ମନେ ଖଙ୍ଗ କଲା ।
ବିଭୀଷେଣ ହୃଦରେ ଲାତେକ ମାଇଲା ॥୧୨॥
ବାଳଧରି ନେଲାକ ଯେବଣ ମତେ ।
ଲବକୁମର କହନ୍ତି ଶ୍ରୀରାମ ଅଗ୍ରତେ ॥୧୩॥
ଅର୍ଥ କରି କହଇ କୁଶକୁମର ।
ଶୁଣିଣ ହରଷ କ୍ଷତ୍ରିବର ସୁନ୍ଦର ॥୧୪॥
ଲବକୁମର କହଇ ବିଭୀଷେଣ ଅଚେତ ହୋଇ ପଡ଼ିଲା ।
ଶିଶିର ଲାଗନ୍ତେ ସେ ଚେତନା ପାଇଲା ॥୧୫॥
ମନେ ମନେ ବିଚାର ସେ ମନ୍ତ୍ରୀ ବିଭୀଷେଣ ।
ଶ୍ରୀରାମର ଠାରେ ଯାଇ ପଶିବି ଶରଣ ॥୧୬॥
ଏତେକ ବିଚାରି ବିଭୀଷେଣ ଗଲା ।
ଶ୍ରୀରାମ ଚରଣେ ଯାଇ ଶରଣ ପଶିଲା ॥୧୭॥
ଶ୍ରୀରାମ ବିଭୀଷେଣ ଯେବଣ ସିଧ୍ୟାନ୍ତ ।
ସଭାରେ କହନ୍ତି ତାହା ସୀତାର ବେନି ସୁତ ॥୧୮॥
ବିଭୀଷେଣର କଥା ଯହୁଁ ଶ୍ରୀରାମ ଶୁଣିଲେ ।
କୋଳେ ବସାଇ ମଥା ଆଉଁସିଲେ ॥୧୯॥
ଥାଟେ ବିଭୀଷେଣକୁ କଲେକ ସେ ରାଜା ।
ବୋଇଲେ ଲଙ୍କା ଗଡ଼େ ତୋତେ କରାଇବି ପୂଜା ॥୨୦॥

ବିଭୀଷେଣ ଶରଣ ପଶିଲା ବୋଲି ଯହୁଁ ରାବଣ ଜାଣିଲା ।
ହୃଦରେ ଭାଳି ଅନେକ ବିଷାଦ ହୋଇଲା ॥୨୧॥
ଶୁକସାରଣଙ୍କୁ କହି ନିବେଶି ହୋଇ ।
ରାତ୍ରେ ରାମର ତହିଁକି ଦୁଇ ମନ୍ତ୍ରୀକି ଦୂତ ପେଷଇ ॥୨୨॥
ଶୁଣିଣ ଶୁକସାରଣେ ମର୍କଟ ରୂପ ଧଇଲେ ।
ବାନରଙ୍କ ଭିତରେ ପଶି ସମସ୍ତ ଠାବ ବୁଲିଲେ ॥୨୩॥
ବିଭୀଷେଣ ଦୁଇ ମନ୍ତ୍ରୀକୁ ଭୋଟିଲା ।
ଶ୍ରୀରାମର ସନିଧକୁ ବାନ୍ଧି ଘେନିଗଲା ॥୨୪॥
ଶୁକସାରଣଙ୍କୁ ରଘୁପତି କହିଲେ ଯାହା ।
ସଭାରେ ଲବକୁଶେ ଗୀତରେ ଗାଇଲେ ତାହା ॥୨୫॥
ଦୂତ ବୋଲି ଶୁକସାରଣଙ୍କୁ ଗଉରୋବ କଲେ ।
ବନ୍ଧନ ଫେଡ଼ିକରି ଜୟମାଳା ଦେଲେ ॥୨୬॥
ବଚନ ସନମାନ ପାଇଲେ ପଉରୋଷ ।
ବାହୁଡ଼ି କହିଲେ ସେ ଦଶଗ୍ରୀବ ପାଶ ॥୨୭॥

## ମାୟା ମୁଣ୍ଡ

ଶୁଣିଣ ରାବଣ ମନେଣ ଭୟେ କଲା ।
ମାୟାରେ ବେନି ଶିର କରି ସୀତାର ସନିଧକୁ ଗଲା ॥୧॥
କପଟ କଥା କହଇ ଲଙ୍କପତି ।
ରାମ ଲକ୍ଷ୍ମଣ ବେନି ଶିର ଦେଖସି ଗୋ ସତୀ ॥୨॥
ଲଙ୍କାପୁରେ ତୋହର ସ୍ୱାମୀ ପଶିଲାକ ଯହୁଁ ।
ମୁହିଁ ନ ଜାଣଇ ଅସୁର ସୈନ୍ୟ ଏହାକୁ ବିନାଶ କଲେ ତହୁଁ ॥୩॥
ତୁହି ରାମ ଲକ୍ଷ୍ମଣକୁ କରିଥିଲୁ ଆଶ ।
ଏ ମୁଣ୍ଡ ଦୁଇ ଦେଖି ଛାଡ଼ସି ମୁହାଂସ ॥୪॥
ଏବେ ମୋହର ହୁଅସି ମନୋହାରୀ ।
ଶୁଣିଣ କୋପ କଲେ ଯେ ଜନେକକୁମାରୀ ॥୫॥
ମଥା ପୋତି ସତୀ କୋପେଣ କହଇ ।
ତୋହର କଥା ଶୁଣି ଶରୀର ମୋହର ଦହଇ ॥୬॥
ତୁହି ଅସୁର ପାମର ନିଲକ୍ଷଣ ଛାର ।
କେମନ୍ତେ ମାଇଲୁ ମୋହର ପ୍ରଭୁ ଦିଅର ॥୭॥
ତିନି ଭୁବନେ ଯେତେକ ଅଛନ୍ତି କ୍ଷତ୍ରି ।
କ୍ଷତ୍ରିବର ସୁନ୍ଦର ରାମ ପାରଇ ନିପାତି ॥୮॥
ପ୍ରତାପ ଚକ୍ରବର୍ତ୍ତୀ ସୁମିତ୍ରାଙ୍କ ସୁତ ।
ତାହାକୁ ମାରିବାକୁ କେ ଅଛଇ ସାମର୍ଥ ॥୯॥
ଯଦ୍ୟପି କପଟେ ଅବା ମାଇଲୁ ଦୁଇ ଭାଇନ୍ତ ।
ତୋହର ଲକ୍ଷ୍ମୀଜାଣ ହୋଇଲା ଚିର ଗତ ॥୧୦॥
ହନୁମନ୍ତ ଏ କଥା ଜାଣଇ ସେ ଯେବେ ।
ତୋହର ଦଶମୁଣ୍ଡ କାଟଇ ସେ ତେବେ ॥୧୧॥
ଆବର ଅଛନ୍ତି ଯେତେକ ମର୍କଟ ।
ସେ ତୋହର ଅସୁର ସୈନ୍ୟକୁ କରନ୍ତି ସିନା ନଷ୍ଟ ॥୧୨॥
ମର୍କଟ ସୈନ୍ୟ ଯଦି ନ ପାରିବେ ମାରି ।
ମୁହିଁ ଭସ୍ମ କରିବି ତୋହର ଲଙ୍କପୁରୀ ॥୧୩॥
ରାବଣକୁ ମହାସତୀ ଯେତେକ କହିଲେ ।
ଲବକୁଶେ ତାହା ସଭାରେ ଗାଇଲେ ॥୧୪॥
ଯେବଣ ଯେବଣ ପଦ ହୁଅଇ ଅନ୍ତର ।
ବୁଝାଇଣ କହଇ ତାହା କୁଶକୁମର ॥୧୫॥
ଶୁଣିଣ ସଭାଲୋକେ ହରଷ ହୁଅନ୍ତି ।
ସମସ୍ତେ ସୀତାକୁ ଧନ୍ୟ ଧନ୍ୟ କରନ୍ତି ॥୧୬॥
ଅନମିତ୍ତେ ରାମ ସୀତାକୁ କଲେ ରୋଷ ।
ଜାନକୀର ଶରୀରେ କିଛି ହିଁ ନାହିଁ ଦୋଷ ॥୧୭॥
ସୀତା ଯେବେ ରାବଣକୁ ବରଣ କରନ୍ତା ।
ଏମନ୍ତ କଥା ସେ କିପାଇଁ କହନ୍ତା ॥୧୮॥
ଶୁଣିଣ ଶ୍ରୀରାମ ବସିଲେ ମଥା ପୋତି ।
ଭ୍ରଥ ଲକ୍ଷ୍ମଣ ବିଷାଦ କଲେ ମତି ॥୧୯॥
ସଭା ଲୋକେ ଯହୁଁ ଏକଥା କହିଲେ ।
ଲବକୁଶ ଦୁଇ ଭାଇ ତୁନି ହୋଇ ବସିଲେ ॥୨୦॥
ବଶିଷ୍ଠେ ସବୁନ୍ତିକି ନିଶବଦ କରନ୍ତି ।
ତହୁଁ ଲବକୁଶେ ନାଦ ହୁଂକାରନ୍ତି ॥୨୧॥
ସୀତାର ତୁଳେ କଥା ହୁଅନ୍ତେ ଦଶଶିର ।
ରଜନୀ ବିସରିଲା ଉଦୟେ ଭାସ୍କର ॥୨୨॥
ବାନରେ ଲଙ୍କା ପାଚେରୀରେ ଉଠିଲେ ।
ରାବଣର ଆଗେ ଯାଇ ଡଗରେ କହିଲେ ॥୨୩॥
ଭୋ ଲଙ୍କାପତି କିସ କରୁ ଏଥ ।
ମର୍କଟେ ତୋହର ନଗ୍ର କଲେନି ଧୂମାନ୍ତ ॥୨୪॥
ଏକ ଯୁବତୀଏ ଚୋରାଇ ଆଣିଲୁ ।
ତେଡ଼େ ଅଭୟେ ରାଜ୍ୟ ଧ୍ୱଂସ କରାଇଲୁ ॥୨୫॥

## ଯୁଦ୍ଧାରମ୍ଭ

ଡଗର ବଚନ ଶୁଣିଣ ଦଶଶିର ।
ଅଶୋକବନରୁ ବାହୁଡ଼ି ଆସଇ ଲଙ୍କେଶ୍ୱର ॥୧॥
ସୈନ୍ୟ ବଳ ସାଜି ଗଲେକ ଯୁଦ୍ଧ କରି ।
ସଂଗ୍ରାମେ ପଶି ମାଇଲେ ଅନେକ ରକ୍ଷ ହରି ॥୨॥
ଯୂଥପତିମାନେ ସମର ଘୋର କଲେ ।
ଅସୁର ସୈନ୍ୟ ଅବହେଳେ ନାଶିଲେ ॥୩॥
ସମର ଗୋଳ ଶୁଭିଲାକ ଯହୁଁ ।
ଜମ୍ବେବକୁ ଶ୍ରୀରାମ ପୁଛା କଲେ ତହୁଁ ॥୪॥
କିସ କିସ ଶବଦ ଦକ୍ଷିଣ ଦିଗେ ଶୁଭଇ ।
କରପତ୍ର ଯୋଡ଼ି ଜମ୍ବେବ କହଇ ॥୫॥
ଶୁଣ ଦେବ ସୀତାପତି କ୍ଷତ୍ରିବର ସୁନ୍ଦର ।
ବାନରେ ଯହୁଁ ପଶିଲେ ଲଙ୍କାଗଡ଼ ଭିତର ॥୬॥
କୋପେ ଦଶମାଥ ଯୁଦ୍ଧ କରି ଅଇଲା ।
ବହୁତ ମର୍କଟ ସୈନ୍ୟ ସମରେ ମାଇଲା ॥୭॥
ଯୂଥ ପତିମାନେ ସମରେ କରନ୍ତି ରୋଳ ।
ଯେସେ ଭୋ ଦେବ ସମରେ ଶୁଭଇ ଗୋଳ ॥୮॥
ଶୁଣିଣ ଶ୍ରୀରାମ ଧାମନ୍ତି ମହା ରାଗେ ।
ଲକ୍ଷ୍ମଣ ଚାପ ଧରିଅଛି କ୍ଷତ୍ରିବରର ଲାଗେ ॥୯॥
ସଂଗ୍ରାମେ ଯହୁଁ ପଶିଲେ ରଘୁନାଥ ।
ପାଦେ ପଡ଼ି କହଇ ଅଞ୍ଜନାର ସୁତ ॥୧୦॥
ମୁହିଁ ତୋହର ଦାସ ମୋହର ଦେହେ ପ୍ରାଣ ଥାନ୍ତେ ।
ପାଦେ କେମନ୍ତେ ଯୁଦ୍ଧ କରିବୁ ସତୀକାନ୍ତେ ॥୧୧॥
ଏ ମୋହର କନ୍ଧେ ବିଜ(ୟେ) ଦେବ କର ।
ଦୃଷ୍ଟ ନିଶାଚର ମାରି ତୋହର ମାନ ସାର ॥୧୨॥
(ଏବେ କୋପଶାନ୍ତ କର ରଘୁବୀର ।
ଅନେକ କହଇ ସେ ପବନ କୁମାର ॥୧୩॥
ନଉ ଚେତ ଆଜ୍ଞା (ଦିଅ) ଭୁଥଜେଷ୍ଟି ।
ରାବଣର ମୁଣ୍ଡ ମୋଡ଼ି ରକଟଇ ତାହାର ତଣ୍ଟି ॥୧୪॥
ଶୁଣିଣ ହରଷେ କହନ୍ତି ରଘୁନାନ ।
ତୋହର ମାରିଲେ ସରଇ ମୋହର ମାନ ॥୧୫॥
ରାବଣ ନିଶାଚରକୁ ମୁହିଁ ସେ ମାରିବି ।
ତେବେ ସେ ମୋହର ପ୍ରତିଜ୍ଞା ରୁହାଇବି ॥୧୬॥
ଶୁଣିଣ ହରଷ ହୋଇ କହଇ ପବନର ଶିଷ ।
ଆସସି ଭୋ ନାଥ ସ୍କନ୍ଦରେ ମୋର ବସ ॥୧୭॥
ଶୁଣିଣ ଶ୍ରୀ ରାମଚନ୍ଦ୍ର ହରଷ ହୋଇଲେ ।
କୋଦଣ୍ଡ ଧରି ହନୁମନ୍ତର ସ୍କନ୍ଦରେ ବିଜେ କଲେ ॥୧୮॥
ଦାସର ସ୍କନ୍ଧରେ ଶ୍ରୀରାମ ବିଜୟେ କଲେ ଯହୁଁ ।
ତେଣୁ ସେ ଦାଶରଥି ନାମ ବିଖ୍ୟାତ ତହୁଁ ॥୧୯॥
ଲକ୍ଷ୍ମଣଙ୍କୁ ସ୍କନ୍ଧେ ବସାଇ ବାଳିସୁତ ।
ଯୁଦ୍ଧକୁ ଆଗମ ଦଶରଥ ବେନିସୁତ ॥୨୦॥
ଅନେକ ରଥଗଜ ଅସୁର ସୈନ୍ୟ ମାଇଲେ ।
କୋଦଣ୍ଡ ଧରି ରାମ ସମରେ ବିଜେ କଲେ ॥୨୧॥
ଶୁକ ସାରଣେ କହନ୍ତି ଶୁଣ ହୋ ଲଙ୍କ ପତି ।
ଯୁଦ୍ଧ କଲେ ଏହିକ୍ଷଣି ମାରିବ ଦାଶରଥି ॥୨୨॥
ଶୁକସାରଣଙ୍କର ବଚନ ଯହୁଁ ଶୁଣିଲା ।
ସଂଗ୍ରାମ ଉପେଖି ରାବଣ ଡରେଣ ପଳାଇଲା ॥୨୩॥
ଯେତେକ ସଇନ୍ୟ ପ୍ରାଣ ଘେନି ଗଲେ ।
ସମସ୍ତେ ହେ ଶରୀରେ ବାଣଘାତ ହୋଇଲେ ॥୨୪॥
ଲଙ୍କାଗଡ଼ରେ ଅନେକ ଅସୁର ମଲା ।
କିଛୁ କିଛୁ ସୈନ୍ୟ ପ୍ରାଣ ସେ ପାଇଲା ॥୨୫॥
ଶତୃର ଦର୍ପଧଂସନ କୋଦଣ୍ଡଧାରୀ ।
ବାହୁଡ଼ି ବିଜୟେ ରାମ ସୁବଳୟା ଗିରି ॥୨୬॥

## ଅଙ୍ଗଦର ଦୌତ୍ୟ

ତଦଅନ୍ତରେ ରାବଣ ଭାଳଇ ମନ୍ତ୍ରୀ ତୁଲେ ।
ଫଳନ୍ତ ଖାଇ ମର୍କଟ ବଳବନ୍ତ ହୋଇଲେ ॥୧॥
ଗଡ଼ ଦୁଆର ପାଡ଼ି କପିନ୍ତ ପଶି ନ ଦେବା ।
ଅସବଳ ହୋଇଲେ ସମସ୍ତେ ବେଢ଼ି ମାରିବା ॥୨॥
ଗଡ଼ ଦୁଆରେ ରାବଣ ଯାହା ବରିଗଲା ।
ଲବକୁମର ତାହା ଗୀତେଣ ଗାଇଲା ॥୩॥
(ଶତୃ ଦର୍ପ ଧଂସିଲେ କୋଦଣ୍ଡ ଚାପ ପାଣି ।
ବାହୁଡ଼ି ବିଜେ କଲେ ରଘୁକୁଳମଣି ॥୪॥
ଦେବଇନ୍ଦ୍ର ଦେଖିଲା ରାବଣ ଗଡ଼ ନିରୋଧିଲା ।
ଗନ୍ଧର୍ବ ହକାରି ପାକଶାସନ କହିଲା ॥୫॥
ଶ୍ରୀ ରାମର ଆଗେ କହ ମୋହର ବଚନ ।
ମର୍କଟନ୍ତ ସମ୍ଭାଳି ଥାଉ ରଘୁନାନ ॥୬॥
ଇନ୍ଦ୍ରଙ୍କର ଆଜ୍ଞାରେ ଗନ୍ଧର୍ବ ଗଲା ବେଗେ ।
ଶୂନ୍ୟେ ଥାଇ କହଇ ରାମଚନ୍ଦ୍ରଙ୍କର ଆଗେ ॥୭॥

ଭୋ ରଘୁମଣି ରାବଣ ନଗ୍ର କଲା ମୁରାଟ ।
ତୁହି ରକ୍ଷା କରିଥାଅ ତୋହର କପିବଳ ଥାଟ ॥୮॥
ଗନ୍ଧର୍ବ ବଚନ ଶୁଣିଣ ଦାଶରଥି ।
ହନୁମନ୍ତ ଶରୀର ଆଶ୍ୱାସି କହନ୍ତି ॥୯॥
ରାବଣ ତାହାର ନଗ୍ର ରକ୍ଷା କଲା ଯେବେ ।
ତୁହି ହୋ ମର୍କଟନ୍ତ ରକ୍ଷା କର ଏବେ ॥୧୦॥
ଶୁଣିଣ ହନୁମନ୍ତ ହରଷ ହୋଇଲା ।
ଲାଙ୍ଗ ବେଢ଼ାଇ ମର୍କଟନ୍ତ ରକ୍ଷା କଲା ॥୧୧॥
ତାହା ଦେଖି ଗନ୍ଧର୍ବ ଗଲାକ ତୁରିତେ ।
ରାମର କଥ କହିଲା ଦେବତାଙ୍କର ଅଗ୍ରତେ ॥୧୨॥
ଶୁଣି ସୁରଗଣ ହୋଇଲେ ହରଷ ।
ସଭାରେ ବସି ବିସ୍ତାରି କହନ୍ତି ଲବକୁଶ ॥୧୩॥
ଏଥୁ ଅନନ୍ତରେ ରାମ ମନ୍ତ୍ରୀ ଘେନି ବିଚାରିଲେ ।
ଲଙ୍କାକଇ ଅଙ୍ଗଦକୁ ଦୂତ୍ ବରଗିଲେ ॥୧୪॥
ଶ୍ରୀରାମର ଆଜ୍ଞାରେ ସେ ବାଳିର ତନୁଜ ଗଲା ।
ରାବଣ ନଗ୍ରେ ସେ ପ୍ରବେଶ ହୋଇଲା ॥୧୫॥
ଜଗତିରେ ବସି ଅଛଇ ଲଙ୍କପତି ।
ଦେଖିଣ ବିଚାର କରଇ ଅହିଲ୍ୟାର ନାତି ॥୧୬॥
ଏ ଛାର ଅସୁରର କିମ୍ପା ଜଗତିରେ ବସିବି ।
ଏହାର ସହ କରି ଲାଞ୍ଜ ପଦ୍ମପୃଷ୍ଟେ କରିବି ॥୧୭॥
ଶ୍ରୀରାମ ସୁମରି ଲାଞ୍ଜ ଭୂମିରେ ବେଢ଼ାଇଲା ।
ରାବଣର ଜଗତିରୁ ହାତେ ଉଚ ହୋଇଲା ॥୧୮॥
ଜଗତିରେ ବସି ଅଛଇ ଲଙ୍କପତି ।
ଅଙ୍ଗଦ ବସଇ ସେହୁ ଉଚ ଥାନ ଜଗତୀ ॥୧୯॥
ତହୁଁ ଆକ୍ରଷି ବସଇ ବାଳି ସୁତ ।
ରାବଣ ହୃଦକଇ ଉଞ୍ଚାଇଣ ଲାତ ॥୨୦॥
ଦେଖିଣ କୋପ କରଇ ଦଶଗିରି ।
କିରେ ମର୍କଟ କିମ୍ପା ବସିଲୁ ମୋହର ପୁରୀ ॥୨୧॥
ପ୍ରାଣକଇ ତୋହର ଶଙ୍କା ନ କଲୁ ।
ଗୋଡ଼ ମେଲାଇ ମୋହର ଛାମୁରେ ବସିଲୁ ॥୨୨॥
କେ ତୋହର ପିତା କାହାର ତୁହି ସୁତ ।
ସ୍ୱରୂପ କରି କହ ମୋହର ଅଗ୍ରତ ॥୨୩॥
ଅଙ୍ଗଦ କହଇ କେହ୍ନେ ନ ଚିହ୍ନିଲୁ ମୋତେ ।
ମୁହିଁ ସେ ଅଙ୍ଗଦ ଚୂଳେ ଦଉଡ଼ି ଲଗାଇ ଥାଇ ତୋତେ ॥୨୪॥
ମୋହର ପିତା ବାଳି କପି ରାଜନ ।
ବାଳ ଧରି ତୋତେ ଘେନି ଯାଇ ଆପଣା ଭୁବନ ॥୨୫॥
ମୁହିଁ ବାନ୍ଧି ଯେ ବୁଲାଇ ଥାଇ ତୋତେ ।
କେହୁଁଣ ଗର୍ବରେ ରେ ନ ଚିହ୍ନିଲୁ ମୋତେ ॥୨୬॥
ଏବେ ମୁହିଁ ରାମଚନ୍ଦ୍ରଙ୍କର ଦୂତ ।
ସୀତାଙ୍କୁ କିମ୍ପା ହରି ଆଣିଲୁରେ ଅସୁର ପାପ ଚିତ୍ତ ॥୨୭॥
ଦୟାସାଗର ସେ କ୍ଷତ୍ରିବର ସୁନ୍ଦର ।
ତୋହର ତହିଁକି ମୋତେ ପ୍ରମନ୍ତୀଲେ ରଘୁବୀର ॥୨୮॥
ଶ୍ରୀରାମଙ୍କୁ ସେ ସୀତା ସମର୍ପି ନେଇ ।
ଦନ୍ତେ ତିରଣ ଘେନି ଶରଣ ପଶ ଲଙ୍କ ସାଇଁ ।
ନଉଚେତ ମୋହର ଗୋଚରେ ଦେଇ ଥାଅ ସୁସ୍ତ ହୋଇ ॥୨୯
ଯେତେକ କଥା ଅଙ୍ଗଦ ରାବଣକୁ କହିଲା ।
ଲବକୁମର ତାହା ଗୀତରେ ଗାଇଲା ॥୩୦॥
ଅର୍ଥ କରିଣ ବୁଝାବଇ କୁମର କୁଶ ।
ଶୁଣିଣ ସଭାରେ ଲୋକେ ସମସ୍ତେ ହରଷ ॥୩୧॥
ଅଙ୍ଗଦ ବଚନ ଶୁଣି ରାବଣ କୋପ କଲା ।
ଧରି ମାର ବୋଲି ଅସୁରଙ୍କୁ ଆଜ୍ଞା ଦେଲା ॥୩୨॥
ରାବଣର ଆଜ୍ଞାରେ ଅସୁରେ ଧାଇଁଲେ ।
ଲବକୁମର ତାହା ଗୀତରେ ଗାଇଲେ ।
ଅଠର ଲକ୍ଷ ଦନୁଜ ଅଙ୍ଗଦକୁ ଧଇଲେ ॥୩୩॥
ବାନର ମୂରତି ଅଙ୍ଗଦ କାୟା ବିସ୍ତାରିଲା ।
ଲାଞ୍ଜ ବେଢ଼ାଇ ସକଳ ଅସୁର ଧଇଲା ।
ସକଳ ଦନୁଜନ୍ତ ଶିରକମଳ ମୋଡ଼ିଲା ॥୩୪॥
ବାମକରେ ଧରି ଝୁଣିଲାକ ଜଗତୀ ।
ମୁଖ ମାଡ଼ି ତଳେ ପଡ଼ିଲା ଲଙ୍କପତି ॥୩୫॥
ଲାତେକ ମାରି ମକୁଟ ଘେନିଣ ଅଇଲା ।
ଦଶମୁଖେ ରାବଣର ରୁଧିର ବାହାର ହୋଇଲା ॥୩୬॥
ଲବକୁଶେ ଶ୍ରୀରାମଚନ୍ଦ୍ରର ଆଗେ କହନ୍ତି ।
ଶୁଣିଣ ସଭାଲୋକେ ଅଙ୍ଗଦକୁ ପ୍ରଶଂସନ୍ତି ॥୩୭॥
ମକୁଟ ଘେନି ଅଙ୍ଗଦ ବିକ୍ରମିଣ ଅଇଲା ।
ବିରାଜ ମକୁଟ ଶ୍ରୀରାମର ସନିଧେ ଥୋଇଲା ॥୩୮॥
ଶ୍ରୀରାମର ଆଗେ ଅଙ୍ଗଦ କହିଲେକ ଯାହା ।
ଲବକୁମର ଗୀତେଣ ଗାଇଲେକ ତାହା ॥୩୯॥
ମକୁଟ ଘେନି ଯହୁଁ ଅଙ୍ଗଦ ଅଇଲା ।

ଘଡ଼ିକେ ରାବଣର ଦେହେ ଚେତନା ପଶିଲା ॥୪୦॥
ମନ୍ତ୍ରୀ ଅମନାତ୍ୟ ଯେତେକ ପଳାଇଣ ଥିଲେ ।
ଯୂଥପତି ହାତେ ବିନାଶ ହୋଇଲେ ॥୪୧॥
ତହୁଁ ଥୋକାଏଣ ଉବୁରିଣ ଥିଲେ ।
ଶରୀର ଆଶ୍ୱାସି ପ୍ରବୋଧି କହିଲେ ॥୪୨॥
ଆମ୍ଭକଇ ଆଜ୍ଞା ଦିଅସି ଲଙ୍କରାୟେ ।
ରିକ୍ଷ ମର୍କଟ ସବୁ କରିବୁ ସଂହାରେ ॥୪୩॥
ରାମ ଲକ୍ଷ୍ମଣ ଦୁଇ ଭାଇନ୍ତ ମାରି ।
ଦେଖ ଶଉର୍ଯ୍ୟ ତୋହର କାର୍ଯ୍ୟ କରି ॥୪୪॥
ଶୁଣିଣ ରାବଣ ଯେ ହରଷ ହୋଇଲା ।
ସାତ ସେନାପତିକି ଯୁଦ୍ଧକଇ ପେଷିଲା ॥୪୫॥
ମର୍କଟ ସୈନ୍ୟରେ ଯେ ପଶି ଯୁଦ୍ଧ କଲେ ।
ଯୂଥପତିଙ୍କର ହସ୍ତେ ବିନାଶ ହୋଇଲେ ॥୪୬॥
ସାତ ସେନାପତିଙ୍କର ମରଣ(ରାବଣ) ଯହୁଁ ଶୁଣିଲା ।
ସାତଙ୍କରି ନାମଧରି ଅନେକ ରୋଦନ କଲା ॥୪୭॥

## ଇନ୍ଦ୍ରଜିତର ଯୁଦ୍ଧ

ପିତାର ରୋଦନ ଦେଖି କୁମାର ଇନ୍ଦ୍ରଜିତ ।
କର ଯୋଡ଼ି କହଇ ଶୁଣସି ଭୋ ତାତ ॥୧॥
ଆଜ ମୁହିଁ ଘୋର ସମର କରିବି ।
ରକ୍ଷବାନର ସମସ୍ତ ସୈନ୍ୟ ମାରିବି ॥୨॥
ନରାନ୍ତେକ ଦେବାନ୍ତେକ ଦୁଇଭାଇ ମୋତେ ଦେସି ।
ନିଶ୍ଚନ୍ତ ହୋଇ ତୁହି ଜଗତୀରେ ବସି ଥାସି ॥୩॥
ଶୁଣିଣ ଆନନ୍ଦ ଅସୁର ବୀର ରାୟେ ।
ଚନ୍ଦ୍ରସମ ଚନ୍ଦନ ଲେପଇ ପୁତ୍ରର କାୟେ ॥୪॥
ମକୁଟ ବାନ୍ଧି କର୍ଣ୍ଣେ କୁଣ୍ଡଳ ଭରିଲା ।
ଶତେ ସରି ମୁକୁତା ଗଳାରେ ଲମ୍ୱାଇଲା ॥୫॥
ଅନେକ ଛନ୍ଦେ ବୀର ବାଦ୍ୟ ବଜାଇ ।
ସଂଗ୍ରାମକୁ ବିଜେ କଲା ରାବଣ ତନୁଜଇ ॥୬॥
ନରାନ୍ତେକ ଦେବାନ୍ତେକ କରେ ଶୂଳଗଦା ଧରି ।
ରଥ ଆଗେ ଧାମନ୍ତି କାୟା ବିସ୍ତାରି ॥୭॥
ଇନ୍ଦ୍ରଜିତ ରଥ ଚଢ଼ି ଶୂନ୍ୟେଣ ସମ୍ଭାଇ ।
ନରାନ୍ତେକ ଦେବାନ୍ତେକ ଶ୍ରୀରାମର ସୈନ୍ୟ ବିନାଶଇ ॥୮॥
ଯୂଥପତିମାନେ ବାଟ ଓଗାଳିଲେ ।
ଚରଣ ଧରି ଯୂଥପତି(ଙ୍କି) କଚାଡ଼ିଲେ ॥୯॥
କ୍ଷତ୍ରିବର ସୁନ୍ଦର ବସିଅଛି ଯହିଁ ।
ସନିଧେ ମିଳିଲେ ନରାନ୍ତେକ ଦେବାନ୍ତେକ ଦୁଇ ଭାଇ ॥୧୦॥
ଦେଖିଣ ଶ୍ରୀରାମ କୋଦଣ୍ଡ କରେ ଧରି ।
କୃତାନ୍ତେକ ଶରେ ଦୁଇ ଭାଇନ୍ତ ନିବାରି ॥୧୧॥
ନରାନ୍ତେକ ଦେବାନ୍ତେକ ବିନାଶ ଯହୁଁ ଇନ୍ଦ୍ରଜିତ ଦେଖିଲା ।
ଆକାଶରେ ଥାଇ ଅନେକ ଶର ବିନ୍ଧିଲା ॥୧୨॥
ସକଳ ସୈନ୍ୟ ବିନାଶିଲା ଯହୁଁ ।
ସଂଗ୍ରାମେ ଶ୍ରୀରାମ ବିଜୟେ କଲେ ତହୁଁ ॥୧୩॥
ରାମକୁ ଦେଖିଣ ଇନ୍ଦ୍ରଜିତ ମହାବୀର ।
ରଥ ଆଣି କଲା କ୍ଷତ୍ରିବର କଡିର ॥୧୪॥
ମୋହନା ବାଣେକ ରାମଲକ୍ଷ୍ମଣକୁ ମାଇଲା ।
ପ୍ରାଣ ଘେନି ଏକା ବିଭୀଷେଣ ପଳାଇଲା ॥୧୫॥
ସମସ୍ତ ସୈନ୍ୟ ବିନାଶଇ ଇନ୍ଦ୍ରଜିତ ।
ରାମ ଲକ୍ଷ୍ମଣ ଶିର-ବିନାଶିବି ବୋଲି ବିଚାରଇ ପାପଚିତ୍ତ ॥୧୬॥
ଆଦିତ୍ୟ ଯେ ଏଗାର ଘଡ଼ି ହୋଇଥିଲା ।
ତତକ୍ଷଣେ ସେ ମେରୁ ଗିରିରେ ଲୁଚି ରହିଲା ॥୧୭॥
ତିମିର ଦ୍ରୋଛନା ବିକାଶିଲା ଯହୁଁ ।
ନିଜପୁରକୁ ଇନ୍ଦ୍ରଜିତ ଅଇଲାକ ତହୁଁ ॥୧୮॥
ପିତାର ଆଗେ କହିଲା ସବୁରି ବିନାଶ ।
ଶୁଣିଣ ଦଶାନନ ହୋଇଲା ହରଷ ॥୧୯॥
ରାବଣ ପୁଛଇ ଇନ୍ଦ୍ରଜିତର ମୁଖ ଚାହିଁ ।
ନରାନ୍ତେକ ଦେବାନ୍ତେକ ଗଲେ ଯେ ସେ ଅଛନ୍ତି କାହିଁ ॥୨୦॥
ଇନ୍ଦ୍ରଜିତ କହିଲା ଯେ ଅନେକ ସୈନ୍ୟ ମାଇଲେ ।
ରାମର ବାଣେ ସେ ପ୍ରାଣାନ୍ତେକ ହୋଇଲେ ॥୨୧॥
ଶୁଣିଣ ରାବଣ ଶୋକ ଯେତେ କଲା ।
ଲବକୁମର ତାହା ଗୀତେଣ ଗାଇଲା ॥୨୨॥
ଏଥୁ ଅନନ୍ତରେ ଯେ ସାବଧାନେ ଶୁଣ ।
ସୁବଳୟା ଗିରିରେ ଯେ ଲୁଚିଥିଲା ବିଭୀଷେଣ ॥୨୩॥
ଇନ୍ଦ୍ରଜିତ ଯହୁଁ ଲଙ୍କାପୁରକଇ ଗଲା ।
ବିମ୍ୱରୁ ବିଭୀଷେଣ ବାହାର ହୋଇଲା ॥୨୪॥
କପିରାଜକୁ ଦେଖି ରୋଦନ କରଇ ।
ଶିର ଛିଡ଼ି ପଡ଼ଇ ଅଛଇ ସୁଗ୍ରୀବରଇ ॥୨୫॥
ଅଙ୍ଗଦ ସହିତେ ସେନା ଯୂଥପତି ।
ଖଣ୍ଡ ଖଣ୍ଡ ହୋଇ ସବିହେ ପଡ଼ିଣ ଅଛନ୍ତି ॥୨୬॥

ରାମ ଲକ୍ଷ୍ମଣ ଜମ୍ବେବ ହନୁମାନ ।
ଏ ଚାରିହେ ହୋଇ ଅଛନ୍ତି ଅଚେବନ ॥୨୭॥
ରାମଙ୍କୁ ଦେଖି ବିଭୀଷେଣ ରୋଦନ କଲା ଯେତେ ।
ସଭାରେ ଲବକୁଶେ ଗାବନ୍ତି ସେ ଗୀତେ ॥୨୮॥
ଜମ୍ବେବକୁ ବିଭୀଷେଣ ଅନେକ ବୋଇଲା ।
ତୋହର ସଙ୍ଗେ ମରିବି ବୋଲି କୋଳ କରି ସୁତିଲା ॥୨୯॥
ବିଭୀଷେଣର ଦେହ ଜମ୍ବେବ ତହିଁ ଲାଗନ୍ତେ ।
ହୃଦରେ ପ୍ରାଣ ତା'ର ପଶିଲା ତୁରିତେ ॥୩୦॥
ନୟନ ମଳି କରି କଉକତି ଚାହିଁଲା ।
ଜମ୍ବେବ ମୁଖ ଚାହିଁ ବିଭୀଷେଣ କାନ୍ଦି କରି କହିଲା ॥୩୧॥
କିସ ବୁଦ୍ଧ କେବଣ କୃତ୍ୟ କରିବା ।
କେମନ୍ତେ ରାମ ଲକ୍ଷ୍ମଣଙ୍କୁ ଜୀଆଇଁବା ॥୩୨॥
ଜମ୍ବେବ କହଇ ଶୁଣ ବିଭୀଷେଣ ।
ହନୁମନ୍ତକୁ ମୋହ ତେଜି ମୋହର କତିକି ଆଣ ॥୩୩॥
ସେହି ସେ ଆଣି ପାରଇ ନା ମଉଷୋଧି ପତ୍ର ।
ସେ ପତ୍ରେ ବଞ୍ଚିବେ ରକ୍ଷ ମର୍କଟ ସମସ୍ତ ॥୩୪॥
ଜମ୍ବେବ ବଚନେ ବିଭୀଷେଣ ବେଗେ ଗଲା ।
ରାମ ରାମ ସୁମରି ହନୁମନ୍ତର ଦେହ ଆଉଁସିଲା ॥୩୫॥
ବିଭୀଷେଣର ଦେହ ଲାଗିଲାକ ଯହୁଁ ।
ମୋହ ତେଜି ହନୁମନ୍ତ ଉଠିଲାକ ତହୁଁ ॥୩୬॥
ଶ୍ରୀରାମର ବିନାଶ କଥା ବିଭୀଷେଣ କହିଲା ।
ଶୁଣି ହନୁମନ୍ତ ଅନେକ ରୋଦନ କଲା ॥୩୭॥
ହାତ ଧରି ବିଭୀଷେଣ ଘେନିଣ ଆସଇ ।
ଆଣିଣ କରଇ ଜମ୍ବେବ ପାଷଇ ॥୩୮॥
ରିକ୍ଷ ରାଜା କହଇ ଶୁଣସି ମାରୁତି ।
ହେମବନ୍ତ ପର୍ବତକୁ ବାବୁ ଯାଅସି ପବନ ଗତି ॥୩୯॥
ମଉଷୋଧି ବୃକ୍ଷର ପତ୍ର ମାଗି ଆଣ ।
ତେବେସେ ସେ ରାମଲକ୍ଷ୍ମଣ ପାଇବେ ନିଜ ପ୍ରାଣ ॥୪୦॥
ମଉଷୋଧି ବୃକ୍ଷର କଥା ଜମ୍ବେବ କହିଲା ।
ଗଗନ ଲଂଘି ହନୁମନ୍ତ ଶୂନ୍ୟେ ବିକ୍ରମିଣ ଗଲା ॥୪୧॥
ହନୁମନ୍ତ ଯାନ୍ତେ ଦେବଗଣ ଜାଣିଲେ ।
ଗିରିରାଜ ତହିଁକି ଗନ୍ଧର୍ବ ପେଷିଲେ ॥୪୨॥
ଇନ୍ଦ୍ରର ବାକ୍ୟ ହେମବନ୍ତ ଜାଣିଲା ।
କଛବୃକ୍ଷ ଧରି ସେ ଗଗନେ ଲୁଚିଲା ॥୪୩॥
ହନୁମନ୍ତ ହେମବନ୍ତକଇ ଦେଖିଲା ଶୂନ୍ୟେ ଯାଅନ୍ତେ ।
ଗୋଡ଼ାଇ ପର୍ବତକଇ ଧରିଲେ ତୁରିତେ ॥୪୪॥
ହନୁମନ୍ତକଇ ହେମବନ୍ତ ଯେତେକ କହିଲା ।
ଲବକୁମର ତାହା ଗୀତରେ ଗାଇଲା ॥୪୫॥
ମଉଷୋଧି ସହିତେ ହେମବନ୍ତ ଗିରି ।
ଆକ୍ରୋଷି ହନୁମନ୍ତ ଆଣିଲାକ ଧରି ॥୪୬॥
ଜମ୍ବେବର ସନିଧେ ହେମଗିରି କଲା ।
ହନୁମନ୍ତର ମୁଖ ଚାହିଁ ଜମ୍ବେବ କହିଲା ॥୪୭॥
କିପାଇଁ ବାବୁ ଏ ପର୍ବତ ଆଣିଲୁ ।
କଳପ ମଉଷୋଧି ବୃକ୍ଷ ସହିତେ କମ୍ପାଇ ଚାଲିଲୁ ॥୪୮॥
ହନୁମନ୍ତ କହଇ ଶୁଣ ମହାମନ୍ତ୍ରୀ ।
ମଉଷୋଧି ଘେନି ଏ ପଳାଉଥିଲା ଗଗନଗତି ॥୪୯॥
ତେଣୁ ସେ ଘେନି ଅଇଲି ଗିରିରାଜ ।
ମଉଷୋଧି କଥା ତୁମ୍ଭେ ବିଚାରିଣ ବୁଝ ॥୫୦॥
କଳପ ବୃକ୍ଷର ପତ୍ର ଗିରିରାଜ ଦେଲା ।
ଜମ୍ବେବ ପ୍ରବୋଧ ବଚନ ଘେନି ସେ ନିଜ ଠାବକୁ ଗଲା ॥୫୧॥
ସେ ପତ୍ର ହନୁମନ୍ତର ହାତରେ ଦେଲେ ।
ସମସ୍ତଙ୍କ ଏହି ପତ୍ର ଘେନି ବିଞ୍ଚି ଆସସି ବୋଇଲେ ॥୫୨॥
ଏଥର ପବନେ ବ୍ରତିବେ ସମସ୍ତ ।
ଶୁଣିଣ ହରଷ ହୋଇଲା ହନୁମନ୍ତ ॥୫୩॥
ରାମ ଲକ୍ଷ୍ମଣ ଯହୁଁ ମୋହେଣ ପଡ଼ିଛନ୍ତି ।
ତହିଁର ସନିଧେ ଯାଇ ହୋଇଲା ମାରୁତି ॥୫୪॥
ମଉଷୋଧି ପତ୍ର ଘେନି ସନିଧେ ମିଳନ୍ତେ ।
ପବନ ଲାଗନ୍ତେ ରାମଲକ୍ଷ୍ମଣ ବତିଲେ ତୁରିତେ ॥୫୫॥
କପି ରିକ୍ଷ ସୈନ୍ୟ ସମସ୍ତ ଯୂଥପତି ।
ଯେ ଯେତେ ଦୂରେ ଛିଡ଼ିଣ ପଡ଼ିଛନ୍ତି ॥୫୬॥
ସେ ପତ୍ର ଘେନି ହନୁମନ୍ତ ବିଞ୍ଚିଲେ ।
ସକଳ ସୈନ୍ୟ ରାମର ତତକ୍ଷଣେ ବ୍ରତିଲେ ॥୫୭॥
ଦେଖିଣ ଦେବଗଣେ ହରଷ ହୋଇଲେ ।
ରାମର ସୈନ୍ୟରେ କୁସୁମ ବରଷିଲେ ॥୫୮॥
ଶିଶିର କିରଣ ମଣି ଇନ୍ଦ୍ର ରାମଙ୍କୁ ଅକ୍ଷତ ଦେଲେ ।
ରାମର କରେ ଦେଇ ଗନ୍ଧର୍ବ ସ୍ୱର୍ଗ କଇ ଗଲେ ॥୫୯॥
ମଣି ଘେନି ରାମ ଜମ୍ବେବକୁ କହିଲେକ ଯାହା ।
ସଭାରେ ବସି ଲବକୁଶେ ଗୀତେଣ ଗାଇଲେ ତାହା ॥୬୦॥

ଶୁଣିଣ ଶ୍ରୀରାମ ବଶିଷ୍ଠ ମୁଖ ଚାହିଁ ।
ଭୋ ମୁନି ସ୍ୱରୂପ କଥା କହନ୍ତି ଦୁଇ ଭାଇ ॥୬୧॥
ବଶିଷ୍ଠେ ବୋଲନ୍ତି ହୋ ସ୍ଥିର ହୋଇ ଶୁଣ ।
ତୋହର ଯୁଦ୍ଧର କଥା ତୁହି ବିଚାରି ପରିମାଣ ॥୬୨॥

## ନାଗଫାଶରେ ରାମଲକ୍ଷ୍ମଣ

ଲବକୁଶେ କହନ୍ତି ଶୁଣ ସାବଧାନ ହୋଇ ।
ପ୍ରଭାତେ ମଲା ସୈନ୍ୟ ଦେଖି ଆସଇ ଲଙ୍କସାଇଁ ॥୧॥
ରାବଣ ଆସିବାର ଯହୁଁ ବିଭୀଷେଣ ଶୁଣିଲା ।
କରପତ୍ର ଯୋଡ଼ି ଶ୍ରୀରାମର ଅଗ୍ରତେ କହିଲା ॥୨॥
ଭୋ ଦେବ ମଲା ପ୍ରାୟେକ ବୁଝି ଆସଇ ଲଙ୍କରାୟେ ।
ମୋହର ବୁଧି ଦେବ ଅଛଇ ଉପାୟେ ॥୩॥
ମଲା ପ୍ରାୟେ ହୋଇ ସମସ୍ତେ ଶୋଇଥିବା ।
ସୈନ୍ୟ ଭିତରେ ପଶିଲେ ଆଜ ଅସୁରନ୍ତ ମାରିବା ॥୪॥
ଶୁଣିଣ ଶ୍ରୀରାମ ସନମତ କଲେ ।
ଯୂଥପତିମାନନ୍ତ ହକାରି ବିଭୀଷେଣର କଥା କହିଲେ ॥୫॥
ସମସ୍ତେ ହେ ଚକ୍ଷୁ ବୁଜିଣ ଶୋଇଥିବ ।
ଏକଇ ଆରେକ ସମାଦି ନ ଦେବ ॥୬॥
ସୈନ୍ୟ ଧରି ରାବଣ କପିଙ୍କ ଭିତରେ ପଶଇ ଯେବେ ।
ସକଳ ଦନୁଜନ୍ତ ଧରି ମାରିବାକ ତେବେ ॥୭॥
ରାମର ବଚନ ଯହୁଁ କପି ରିକ୍ଷ ଶୁଣିଲେ ।
ନିଶ୍ୱାସ ଗର୍ଭେ ଧରି ନିଶବଦେ ସୁତିଲେ ॥୮॥
ଅସୁର ସୈନ୍ୟ ଘେନି ରାବଣ ରଥ ଚଢ଼ି ଗଲା ।
ସଧୀରେ ରାମଚନ୍ଦ୍ରର ଥାଟରେ ପଶିଲା ॥୯॥
ନିଦ୍ରାଭଙ୍ଗ ହୋଇ କପିରିକ୍ଷ ଉଠିଲେ ।
ଦୁସହ ସଂଗ୍ରାମ ମହାରୋଳ କଲେ ॥୧୦॥
ଅସୁର ସୈନ୍ୟ ମାଇଲେ ଯେବଣ ବିଧି ।
ଶୁଣିଣ ସଭାଲୋକେ ହୋଇଲେ ପ୍ରବୋଧି ॥୧୧॥
ଲଙ୍କାପୁରେ ମର୍କଟେ ସମସ୍ତେ ଧ୍ୱଂସିଲେ ।
ଦେବକନ୍ୟା ଯେତେକ ଥିଲେ ତାହାନ୍ତ ମୁକତ କରି ଦେଲେ ॥୧୨॥
ଯେତେକ କୃତ୍ୟ କଲେ ଲଙ୍କାପୁରେ ପଶି ।
ବହୁବଳ ରାକ୍ଷସେ ସମରେ ସାହସୀ ।
(ଶ୍ରୀରାମଙ୍କ ଅଗ୍ରତେ ଲବକୁଶେ ପ୍ରକାଶି) ॥୧୩॥
ରାବଣ ସମରୁ ପଳାଇ ନ ପାରିଲା ।
ପର୍ବତା ଶସ୍ତ୍ର ପେଶି ରାମ ଓଗାଳିଲା ॥୧୪॥
ଇନ୍ଦ୍ରଜିତ ମିଳିଲା ରାମର ସମୀପେ ।
ତହୁଁ ଘୋର ଯୁଦ୍ଧ କରଇ ଲଙ୍କ ନୃପେ ॥୧୫॥
କାଳିନାଗେଣି ଯମଘଣ୍ଟା ରାବଣର ଦୁଇ ପୁତ୍ର ।
ହନୁମନ୍ତ ତୁଲେ ଯୁଦ୍ଧ କରଇ ବହୁତ ॥୧୬॥
ସେ ଦୁହିଙ୍କି ହନୁମନ୍ତ ମୁଣ୍ଡ ମୋଡ଼ି ପକାଇଲା ।
ସମୁଦ୍ର ଭିତରକୁ ଫବଡ଼ାଇ ଦେଲା ॥୧୭॥
ସେ ପୁତ୍ରଙ୍କ ବିନାଶ ରାବଣ ଶୁଣିଲାକ ଯହୁଁ ।
ସଂଗ୍ରାମ ଉପେଖି ଇନ୍ଦ୍ରଜିତକୁ ଘେନିଗଲା ତହୁଁ ॥୧୭॥
ଲଙ୍କାନଗ୍ର ଭିତରେ ପଶିଲା ।
ଅସୁର ନାରୀଙ୍କର ବିକଳ ଦେଖିଲା ॥୧୮॥
ନାସାଛେଦନ ହୋଇଛନ୍ତି ଅନେକ ନାରୀ ।
ଛୟାଣୋଇ କୋଟି ନାହାନ୍ତି ଦେବ କୁମାରୀ ॥୧୯॥
କିଛି ହି ନ ପୂରୋଇ ମନ୍ଦୋଦରୀର ସାଇଁ ।
ବିସ୍ମୟ ମନ ହୋଇଣ ଭାଳଇ ॥୨୦॥
ମାନ ଅଗ୍ନି ତାହାର ଶରୀରେ ଦହଇ ଘନ ଘନ ।
ଉଚ୍ଚେ ଦଶଶିର କରଇ ରୋଦନ ॥୨୧॥
ଇନ୍ଦ୍ରଜିତ କହଇ ଶୁଣ ହୋ ଭୋ ତାତ ।
ଆଜ ବାନ୍ଧି ଆଣିବି ରାମଲକ୍ଷ୍ମଣ ବେନି ଭ୍ରାଥ ॥୨୨॥
ଶୁଣିଣ ରାବଣ ରୋଦନ ଛାଡ଼ିଲା ।
ଏହିକ୍ଷଣି ଯାଅ ବୋଲି ପୁତ୍ରକଇ ଆଜ୍ଞା ଦେଲା ॥୨୩॥
ପିତାର ଆଜ୍ଞା ସେ ପାଇଣ ଇନ୍ଦ୍ରଜିତ ।
ମାୟା ସୀତା କଲା ଜାନକୀର ସଂଜାତ ॥୨୪॥
ମାୟା ସୀତା ଘେନି ରଜନୀର କାଳେ ।
ଶ୍ରୀରାମ ସନିଧିକଇ ଯାଇ ରାବଣ ଦୂଲାଳେ ॥୨୫॥
ଯେତେକ ବିନୋଇ କହିଲା ଇନ୍ଦ୍ରଜିତ ।
ଗୀତେଣ ଗାଇଲେ ତାହା ସୀତାର ବେନି ସୁତ ॥୨୬॥
(ସାଗ୍ରାମେ ମାଇଲ ରାବଣ ଦୁଲାଳ ।
ଦେଖିଣ ଶ୍ରୀରାମ ଯେ ଶୋକ ଅସମ୍ଭାଳ ॥୨୭॥
ଦେବ ଲୋକେ ଆସି ରାମଙ୍କୁ କହିଲେ ।
ନୋହଇ ସିତ୍ୟା ବୋଲନ୍ତେ ରାମ ପ୍ରତେଗଲେ) ॥୨୮॥
ଦୟା ସାଗର ସେ କ୍ଷେମାଶୀଳ ଦାଶରଥି ।
ଶତୃକୁ ହି କୋପ ନ ବସଇ ତାହାର ମତି ॥୨୯॥
ଶ୍ରୀରାମର ସନିଧେ ସୀତାନେଇଁ ଦେଲା ।
କପଟେ ନାଗଫାଶ ବାଣ ଏକ କଲା ॥୩୦॥

ପାପୀ ଦୁରାତ୍ମା ସେ ରାବଣର ସୁତ ।
ନାଗଫାଶ ବାଣେ ବାନ୍ଧିଲା ରାମଲକ୍ଷ୍ମଣ ବେନିଭ୍ରାଥ ।।୩୧।।
ମନ୍ତ୍ରୀ ସହିତେ ରିକ୍ଷ ବାନର ବଳ ।
ସବୁନ୍ତି ବାନ୍ଧିଲା ରାବଣର ଦୁଲାଳ ।।୩୨।।
ବିଭୀଷେଣ ମାତ୍ର ବନ୍ଧନେ ନ ପଡ଼ିଲା ।
ପଳାଇ ସୁବଳୟାଗିରି ପର୍ବତେ ଲୁଚିଲା ।।୩୩।।
ଇନ୍ଦ୍ରଜିତ ରାମକଇ ମାରିଲୋଡ଼ଇ ଯହୁଁ ।
ଦୃଗାଦେବୀ ସଂଗ୍ରାମେ ବିଜୟେ କଲେ ତହୁଁ ।।୩୪।।
ଯେତେକ କଥା ଦୃଗା ଇନ୍ଦ୍ରଜିତକଇ କହିଲେ ।
ଲବକୁଶେ ତାହା ସଭାରେ ଗାଇଲେ ।।୩୫।।
ତହୁଁ ଇନ୍ଦ୍ରଜିତ ବାହୁଡ଼ିଣ ଗଲା ।
ବନ୍ଧନ କଥା ପିତାର ଆଗେଣ କହିଲା ।।୩୬।।
ଶୁଣିଣ ରାବଣ ହୋଇଲା ହରଷଇ ।
ଓଶୋକ ବନକୁ ତ୍ରିଜଟାକୁ ଦୂତ ପେଷଇ ।।୩୭।।
ତ୍ରିଜଟାକୁ କହ ମୋହର ବାରତା ।
ସଂଗ୍ରାମ ଭୂମିକି ନେଉ ଜନେକ ଦୋହିତା ।।୩୮।।
ଶ୍ରୀରାମର ବନ୍ଧନ ଦେଖାଉ ନେଇ ।
ରାବଣର ଆଜ୍ଞାରେ ଦୂତ କହିଲେକ ଯାଇ ।।୩୯।।
ରାବଣର ସମାଦ ଯହୁଁ ତ୍ରିଜଟା ଶୁଣିଲା ।
ତତକ୍ଷଣେ (ରଥେ) ବସାଇ ସୀତାକଇ ନେଲା ।।୪୦।।
ତ୍ରିଜଟା ସହିତେ ଯେତେ ଅସୁରୀମାନେ ବେଗେ ।
ଶୂନ୍ୟେ ରଥ ଗମଇଁ ଗଗନ ମାର୍ଗେ ।।୪୧।।
ବେଲ ବନେ ବନ୍ଧନ ଦେଖାଇଲା ନେଇ ।
ରୋଦନ କରଇ ସତୀ କପି ସୈନ୍ୟ ଚାହିଁ ।।୪୨।।
ତହୁଁଣ ବିମାନ ଖରରେ ଘେନିଗଲେ ।
ସୁବଳୟା ପର୍ବତେ ରଥ ନେଇ କଲେ ।।୪୩।।
ଶ୍ରୀରାମର ବନ୍ଧନ ଦେଖି ଜନେକର ନନ୍ଦନୀ ।
ଉଚ୍ଚେ କାନ୍ଦନ୍ତି ତାହା ରାମଚନ୍ଦ୍ର ଶୁଣି ।।୪୪।।
ଯେବଣ କଥା ଶ୍ରୀରାମ ଜମ୍ବେବକୁ କହିଲେ ।
ଲବକୁଶେ ତାହାଗୀତରେ ଗାଇଲେ ।।୪୫।।
ତହୁଁ ବାହୁଡ଼ିଲେ ଜନେକ କୁମାରୀ ।
ଯେବଣ ମତେ ଦୁର୍ଗାକୁ ସୁମରିଲେ ଚାପଧାରୀ ।।୪୬।।
ରାମର ସ୍ତୁତି ଶୁଣି ଦେବୀ ତୋଷ ହୋଇଲେ ।
ସର୍ପ ବନ୍ଧନୁ ଦେବୀ ଉସ୍ୱାସ କରାଇଲେ ।।୪୭।।
ଗରୁଡ଼କୁ ଶ୍ରୀରାମ ସୁମରିଲେ ଯହୁଁ ।
ବିନତା ନନ୍ଦନ ସଂଗ୍ରାମେ ମିଳିଲେକ ତହୁଁ ।।୪୮।।
ଗରୁଡ଼କଇ ଦେଖି ସର୍ପ ପଳାଇଲେ ।
ଯେ ଅବା ରହିଲେ ପ୍ରାଣେ ନାଶ ଗଲେ ।।୪୯।।
ଶ୍ରୀରାମକଇ ଖଗପତି କହଇ ମୁଖଚାହିଁ ।
ରାବଣକୁ (ମାରି) ସୀତୟାକୁ ଆଣିମଇ ମୁହିଁ ।।୫୦।।
ଗରୁଡ଼କଇ ପ୍ରବୋଧି କହନ୍ତି ଚାପଧାରୀ ।
ମୁହିଁ ସେ ମାରିବି ଯେ ମୋହର ବଇରି ।।୫୧।।
ଶୁଣିଣ ଖଗେଶ୍ୱର ହରଷ ହୋଇଲା ।
ରମ୍ୟେକ ଦ୍ୱୀପକଇ ବାହୁଡ଼ିଣ ଗଲା ।।୫୨।।
ବିସ୍ତାରି କହନ୍ତି ଗୀତେ ଲବକୁଶ ।
ଶୁଣିଣ ସଭାଲୋକେ ହରଷ ବିରସ ।।୫୩।।
ଭ୍ରଥ ମହାରଥୀର ନୟନୁ ଗଳଇ ପାଣି ।
ରାଗେ ମଥା ନେଇ କୋଡ଼ଇ ଧରଣୀ ।।୫୪।।
ଲକ୍ଷ୍ମଣ ଦୁଇ କରେ ଧଇଲକ ତୋଳି ।
ଭ୍ରଥକଇ କହନ୍ତି ବଶିଷ୍ଠ ତପଶ୍ୟାଳୀ ।।୫୫।।
ତୁହି ଯେ ରାମର ତୁଲେ ବନକୁ ଯାଇ ଲୋଡୁଥିଲୁ ।
ଶୁଣିମା କଥାକୁ ଏଡ଼େ କ୍ରୋଡ଼ କଲୁ ।।୫୬।।
ମହାକଷ୍ଟ ରାମ ଯେ ବନସ୍ତେ ପାଇଲେ ।
ଲକ୍ଷ୍ମଣ ସେ ଧଇର୍ଯ୍ୟ ପଣେ ଦିନ ନେଲେ ।।୫୭।।
ଯୁଦ୍ଧେ ଜୟେ ଯେବେ ଅପ୍ରାଜୟେ ଜାଣ ।
ଗଲାକଥା କଇ ଶୋକକର କେବଣ କାରଣ ।।୫୮।।
ଏବେ ଶୋକ ଉପେଖି ଶୁଣ ହୋ ଦିବ୍ୟରୀତି ।
କୁମାରଙ୍କ ମୁଖ ଚାହିଁ କହନ୍ତି ବୃହ୍ମପତି ।।୫୯।।
କହସିହୋ ଏବେ ଯୁଦ୍ଧର ଚରିତ୍ର ।
ସଭା ନିବୃତ କରଇ ଗାବନ୍ତି ସେ ଗୀତ ବେନି ଭ୍ରାଥ ।।୬୦।।

## ଇନ୍ଦ୍ରଜିତ ବଧ

ଏଥୁ ଅନନ୍ତରେ ରୟଣୀର ସମୟେ ।
ସୀତୟାର ସନିଧ୍ୟକୁ ଗଲେ ଅସୁର ରାୟେ ।।୧।।
ରାମର ବନ୍ଧନ ଦେଖି ରୋଦନ କରଇଣ ସତୀ ।
ପ୍ରବୋଧି କହଇ ଯେ ମନ୍ଦୋଦରୀର ପତି ।।୨।।
ରାମ ଲକ୍ଷ୍ମଣକୁ କିମ୍ପାଇଁ ତୁହି କାନ୍ଦୁ ।
ଆଜ ହୁଁ ହୋଇଲୁ ତୁ ମୋହର ପ୍ରାଣବନ୍ଧୁ ।।୩।।
ନାଗଫାଶେ ମୋହର ପୁତ୍ର ବାନ୍ଧିଲାକ ଯେବେ ।

ରାତ୍ର ପାଇଲେ ସେ ମରନ୍ତି ସିନା ଏବେ ॥୪॥
ଶ୍ରୀରାମଙ୍କୁ ସୀତା ତୁହି ଛାଡ଼ସି ମୁହାଁସ ।
ଭାରିଯା (ମୋହର) ହୋଇ ସୁଖ ଭୋଗ ବିଳସ ॥୫॥
ମନ୍ଦୋଦରୀ ହୁଁ ତୋତେ ପୁରୁଷାର୍ଥ କରିବି ।
ତୋହର ବଚନେ ସର୍ବଦା ମୁହିଁ ଥିବି ॥୬॥
ଶୁଣିଣ ସୀତୟା ମହାକୋପ କଲା ।
ଭୂମିକି ଚାହିଁ ଅନେକ ଜିଂଘାସି କହିଲା ॥୭॥
ଛାର ନିଲକ୍ଷଣ ତୁହି ଅସୁର ପାପମତି ।
କ୍ଷତ୍ରି ବରସୁନ୍ଦର ମୋହର ପ୍ରାଣର ଆଧିପତି ॥୮॥
ଦଶରଥନନ୍ଦନ ମରଣ ପାବଇ ଯେବେ ।
ଏ ମୋହର ଦେହ ଧରିବି କି ତେବେ ॥୯॥
ଯେତକ କଥା ସୀତୟା କହିଲା ।
ଲବକୁମର ତାହା ଗୀତରେ ଗାଇଲା ॥୧୦॥
ଯେବଣ ପଦ ଅବା ଅଳପ ଅନ୍ତର ହୁଅଇ ।
କୁଶ କୁମର ତାହା ଆନ କରି କହଇ ॥୧୧॥
ଅଶୋକ ବନେ ସୀତୟାକୁ କହନ୍ତେ ଦଶଗିରି ।
ଶୁଭେଣ ପ୍ରଭାତ ହୋଇଲା ତିମିରି ॥୧୨॥
ବାନରେ ଡେଇଁ ପାଚେରିରେ ଉଠିଲେ ।
ତରୁଶିଳ ଘେନି ଦ୍ୱାର ରକ୍ଷୀଙ୍କୁ ମାଇଲେ ॥୧୩॥
ଅନେକ ଗୋଳ ଚହଳ ଶୁଭିଲା ।
ରାବଣ ଆଗେ ଯାଇ ଡଗର କହିଲା ॥୧୪॥
ସବୁ ବାନରେ ବନ୍ଧନୁ ଫିଟିଲେ ।
ରାମଲକ୍ଷ୍ମଣ ବନ୍ଧନୁ ମୁକତ ହୋଇଲେ ॥୧୫॥
ଶୁଣିଣ ରାବଣ ଅଶୋକ ବନ ବାହୁଡ଼ି ଅଇଲା ।
ଆସ୍ଥାନେ ବସି ଇନ୍ଦ୍ରଜିତକଇ ହକାରିଲା ॥୧୬॥
ପିତାର ସନିଧେ ମିଳିଲା ଇନ୍ଦ୍ରଜିତ ।
କୋପେଣ ମୁଖ ଚାହିଁ କହଇ ଦଶମାଥ ॥୧୭॥
ସର୍ପ ବନ୍ଧନେ ବିନାଶ ନୋହିଲେ କେହି ।
ଶୁଣିଣ ଇନ୍ଦ୍ରଜିତ କହଇ ପିତାର ମୁଖ ଚାହିଁ ॥୧୮॥
ଆଜ ସମୁଖେ ମୁହିଁ ଯୁଦ୍ଧ କରିବି ।
ରିକ୍ଷ ବାନର ସହିତେ ରାମଲକ୍ଷ୍ମଣଙ୍କୁ ମାରିବି ॥୧୯॥
ଏସନେକ କହି ନିକୁମ୍ଭିଳା ବୀର ତହିଁକି ଗଲା ।
ବ୍ରାହ୍ମଣ ଘେନି ସେ ଯାଗ ଆରୋପ କଲା ॥୨୦॥
ସେହି ଯାଗଭଗ୍ନ ଯୂଥପତିମାନେ କଲେ ।
ବ୍ରାହ୍ମଣକଇ ଅନେକ ପ୍ରପଞ୍ଚଶାସ୍ତି ଦେଲେ ॥୨୧॥
କୋପେ ଯୁଦ୍ଧ କରଇ ଇନ୍ଦ୍ରଜିତ ବୀର ।
ଲକ୍ଷ୍ମଣଙ୍କୁ ସମରେ ରାମ କଲେକ ଆଗୁସାର ॥୨୨॥
ସମରେ ପ୍ରତାପୀ ସେ ରାବଣର ସୁତ ।
ବ୍ରହ୍ମଶରେ ଲକ୍ଷ୍ମଣ ତାହାକୁ କଲେ ହତ ॥୨୩॥
ଇନ୍ଦ୍ରଜିତର ମରଣ ଯହୁଁ ରାବଣ ଶୁଣିଲା ।
ଭୂମିରେ ଲୋଟି ସେ ଅନେକ ରୋଦନ କଲା ॥୨୪॥

## କୁମ୍ଭକର୍ଣ୍ଣ ବଧ

ନିଦ୍ରାରେ କୁମ୍ଭକର୍ଣ୍ଣ ହୋଇଥିଲା ଅଚେତ ।
ତାହାକଇ ନିଦ୍ରାରୁ ତୋଳିଲା ଦଶମାଥ ॥୧॥
ଶୁକସାରଣଙ୍କୁ ବୋଇଲା କିପାଇଁ ମୋତେ ତୋଳ ।
ମରଣକୁ ଶଙ୍କା ତୁମ୍ଭେ କିପାଇଁ ନ କଲ ॥୨॥
ମନ୍ତ୍ରୀ କହଇ ତୋତେ ତୋଳିତ କି ପାରୁ ।
ନୃପତିର ଆଜ୍ଞାକୁ ମହାଭୟେ କରୁ ॥୩॥
ତୋହର ଭାଇ ଯେ ଅଲଂଘିତ କୃତ କଲା ।
ଶ୍ରୀରାମର ଘରଣୀକି ଚୋରାଇ ଆଣିଲା ॥୪॥
ହନୁମନ୍ତ ନାମେ ସେ ପବନର ସୁତ ।
ସୀତାକଇ ଲୋଡ଼ି ସେ ଅଇଲାକ ଦୂତ ॥୫॥
ମଧୁବନ ଭାଙ୍ଗିଲା ଅକ୍ଷୟେ ମାଇଲା ।
ଇନ୍ଦ୍ରଜିତ ତାହାକଇ ବାନ୍ଧିଣ ଆଣିଲା ॥୬॥
ମନ୍ଦବୁଦ୍ଧି କହିଲା ସେ ତୋହର ଜ୍ୟେଷ୍ଠ ଭାଇ ।
ବସ୍ତ୍ର ବେଢ଼ାଇ ତାହାକୁ ଲାଙ୍ଗୁଡ଼େ ତୈଳ ନିଉଡ଼ାଇ ॥୭॥
ବନ୍ଧନ ଫେଡ଼ାଇ ତାହାକୁ ଅଗ୍ନି ଲଗାଇଲା ।
ତେମନ୍ତେ ସେ ଲଙ୍କାପୁର ସମସ୍ତ ଦହିଲା ॥୮॥
ଶ୍ରୀରାମର ଆଗେ ବାରତା କହିଲାକ ଯହୁଁ ।
ସମୁଦ୍ର ବାନ୍ଧି ରାମ ଅଇଲାକ ତହୁଁ ॥୯॥
ଅନେକ ଅସୁର ଏଥେ ଯୁଦ୍ଧରେ ପଡ଼ିଲା ।
ଶ୍ରୀରାମ ଭାଇ ଇନ୍ଦ୍ରଜିତକଇ ମାଇଲା ॥୧୦॥
ତେଣୁ ସେ ନୃପତି ତୋତେ ନିଦ୍ରାରୁ ତୋଳାଇଲେ ।
ତୋହର ତହିଁକି ଆସି ପାରୁକି ଆମ୍ଭର ବୋଲେ ॥୧୧॥
ଶୁକସାରଣେ କୁମ୍ଭକର୍ଣ୍ଣଙ୍କୁ କହିଲେକ ଯାହା ।
ଲବକୁଶେ ଶ୍ରୀରାମର ଆଗେ ଗୀତେ ଗାବନ୍ତି ତାହା ॥୧୨॥
ତହୁଁଣ କୁମ୍ଭକର୍ଣ୍ଣ ଗଲା ତୁରିତେ ।

ପ୍ରଣମ୍ୟ ହୋଇଲା ଯାଇ ରାବଣର ଅଗ୍ରତେ ॥୧୩॥
ଦେଖିଣ ଶୋକ କରଇ ଦଶଗିରି ।
ଦୁଇଭାଇ କାନ୍ଦନ୍ତି ମୁଣ୍ଡ ଧରାଧରି ॥୧୪॥
ରାବଣ କହଇ ଶୁଣସିରେ ଭ୍ରାଥ ।
ଦେଖ ମୋହର ରାଜ୍ୟେ ସର୍ବ ହୋଇଲା ହତ ॥୧୫॥
ବିଭୀଷେଣ ପାପୀ ମୋତେ ଛାଡ଼ିଗଲା ।
ତାହାର ଯୋଗୁଁ ମୋହର ସମସ୍ତ ନାଶଗଲା ॥୧୬॥
ଏ ପ୍ରତାପ କୁମର ଯେ ସୋହେଡ଼ ପଞ୍ଚାଣ ।
ତାହାକଇ ମାଇଲା ରାମର ଭାଇ ଲକ୍ଷ୍ମଣ ॥୧୭॥
ତୁହି ଭାଇ ମୋହର ଅଭିମାନ ସାରିବୁ ।
ଶ୍ରୀରାମ ଲକ୍ଷ୍ମଣକୁ ଯୁଦ୍ଧରେ ମାରିବୁ ॥୧୮॥
ସୁଗ୍ରୀବର ନାମରେ ଯେ ବାଳିର ଭାଇ ।
ମର୍କଟ ବଳ ଘେନି ରାମକୁ ହୋଇଲା ସାହି ॥୧୯॥
କପିଙ୍କର ତେଜେ ରାମ ଏଥକୁ ଅଇଲା ।
ପବନତନୟେ ସେ ମୋହର ବଇର ହୋଇଲା ॥୨୦॥
କୁମ୍ଭକର୍ଣ୍ଣ ବୋଇଲା କିମ୍ପା ପରକୁ ଦୋଷ ଧରୁ ।
ଆପଣେ ଅନୀତି କଲୁ କିମ୍ପାଇଁ ନ ବିଚାରୁ ।
ସୀତା ନ ହରିବି ବୋଲି ଯେ ସକଳ ଠାବେ ଲିହିଲୁ ।
ଶ୍ରୀରାମର ପତ୍ନୀକି କିମ୍ପା ଚୋରାଇ ଆଣିଲୁ ॥୨୨॥
ମତଗର୍ବେ ଅବା କଲୁ ମନ୍ଦ କୃତ୍ୟ ।
ମୋହର କଥା ଏବେ ଶୁଣସି ଭୋ ଭ୍ରାଥ ॥୨୩॥
ଏବେ ଚାଲ ଶ୍ରୀରାମର ପାଶେ ସୀତା ସମର୍ପିବା ।
ଦନ୍ତେ ତିରଣ ଘେନି ରାମର ପୟର ତଳେ ପଡ଼ିବା ॥୨୪॥
ଯାବତ କଥା ପୁରାଣରେ ଥାଉ ।
ଅକ୍ଷୟେ ଆରୋଗ୍ୟ ହୋଇବୁ ଲକ୍ଷ୍ମୀନାଶ ନୋହୁ ॥୨୫॥
ଶୁଣିଣ କୋପକରି କହଇ ଦଶଗିରି ।
କିମ୍ପା ଏସନେକ କଥା କହୁ ନ ବିଚାରି ॥୨୬॥
ଶ୍ରୀରାମର ବାଣେ ଆମ୍ଭେ ଦୁଇଭାଇ ମରିବା ।
ବିଷ୍ଣୁନାଥ ପୁରେ ଯାଇ ବିଶ୍ରାମ କରିବା ॥୨୭॥
ଏହି ଅସୁର ଭୋଗ୍ୟରେ କିସ ଆମ୍ଭର କାର୍ଯ୍ୟ ।
ପୂର୍ବଜନ୍ମର କଥା ପାସୋରିଲୁ କି ରେ ସାନୁଜ ॥୨୮॥
ଏକାନ୍ତେ ଯେବଣ କଥା ହୋଇଲେ ଦୁଇଭାଇ ।
ଶ୍ରୀରାମର ଆଗେ ଲବକୁଶେ କହି ॥୨୯॥
ରାବଣ ବଚନ ଶୁଣି କୁମ୍ଭକର୍ଣ୍ଣ ମହାବୀର ।
ଗ୍ରାସମାନ କଲା ଅନେକ ଫଳାହାର ॥୩୦॥
ଦିନେକ ଷାଠିଏ ପୌଟି ଅନ୍ନ କରଇ ଭୋଗ୍ୟ ।
ଛଡ଼ମାସର ଯେତେକ ନିଯୋଗ ॥୩୧॥
ଅନେକ ମେଷ ଛାଗଳ ମହିଷି ନିଯୋଗ ।
ଏକବେଳେକ ସେ କରଇ ଗ୍ରାସ ଭୋଗ୍ୟ ॥୩୨॥
ସଂଗ୍ରାମେ କୁମ୍ଭକର୍ଣ୍ଣ ପ୍ରବେଶ ହୋଇଲାକ ଯହୁଁ ।
ରିକ୍ଷ ବାନର (ଅନେକ) ପାଦେ ମର୍ଦ୍ଦିଲାକ ତହୁଁ ॥୩୩॥
କୁମ୍ଭକର୍ଣ୍ଣର ତେଜ ଦେଖିଣ ରାମଚନ୍ଦ୍ର ।
କୋଦଣ୍ଡେ ବାଣ ଆମଞ୍ଚିଲେ ସତ୍ୟସନ୍ଧ ॥୩୪॥
ବିଭୀଷେଣ ଶ୍ରୀରାମର ପାଦେଣ ପଡ଼ିଲା ।
ଦାନ୍ତରେ ତିରଣ ଧରି କରଯୋଡ଼ି କହିଲା ॥୩୫॥
ଭୋ ଦେବ କୁମ୍ଭକର୍ଣ୍ଣ ତହିଁକି ମୁହିଁ ଯିବି ।
ପ୍ରବୋଧି ତାହା କଇ ଯୁଦ୍ଧ ଗୁହାଇବି ॥୩୬॥
ଶ୍ରୀରାମ କହନ୍ତି ତୋହର ବୋଲେ ଯେବେ ଆସିବ ।
ଲଙ୍କାଗଡ଼େ ସେ ରାଜା ହୋଇବ ॥୩୭॥
ଶ୍ରୀରାମର ବଚନେ ଯେ ବିଭୀଷେଣ ଗଲା ।
କୁମ୍ଭକର୍ଣ୍ଣକଇ ଅନେକ ପ୍ରବୋଧି କହିଲା ॥୩୮॥
ବିଭୀଷେଣ କୁମ୍ଭକର୍ଣ୍ଣର ଯେବଣ ଯେବଣ ସିଦ୍ଧାନ୍ତ ।
ଗୀତେଣ ଗାବନ୍ତି ତାହା ସୀତୟାର ବେନି ସୁତ ॥୩୯॥
ଶୁଣିଣ ଶ୍ରୀରାମ ଯେ ହରଷ ହୋଇଲେ ।
ବଶିଷ୍ଠ ମହାମୁନିଙ୍କର ମୁଖ ଚାହିଁଲେ ॥୪୦॥
ଶୁଣିଲକି ମୁନି ହେ ବିଭୀଷେଣର ମହତ ପଣ ।
ତେବେ ସେ ଲଙ୍କାପୁରେ ହେଲା ମହାରାଣ ॥୪୧॥
ବଶିଷ୍ଠେ କହନ୍ତି ସ୍ଥିର ହୋଇଣ ଥାସି ।
ଶାସ୍ତ୍ର ଉକତେ ଆନ କଥା ନ ପ୍ରକାଶସି ॥୪୨॥
କୁମର ମୁଖ ଚାହିଁ କହନ୍ତି ରଘୁସୂନ ।
ବିଭୀଷେଣ ବଚନ ଯେ ନ କଲା କୁମ୍ଭକର୍ଣ୍ଣ ॥୪୩॥
ତହୁଁଣ ବିଭୀଷେଣ କଲା ଯେବଣ କୃତ୍ୟ ।
ବିଚାରି କହ ଏବେ ଶୁଣନ୍ତୁ ସମସ୍ତ ॥୪୪॥
ତହୁଁଣ ଲବକୁମର ହୁଂକାରନ୍ତି ନାଦ ।
ଶୁଣିଣ ସଭା ଲୋକେ ହୋଇଲେ ତବଦ ॥୪୫॥
ଲବକୁମର କହଇ ବିଭୀଷେଣ ବାହୁଡ଼ି ଅଇଲା ।
ଶ୍ରୀରାମର ଆଗରେ ବିଭୀଷେଣ କୁମ୍ଭକର୍ଣ୍ଣର କଥା କହିଲା ॥୪୬॥
ତହୁଁ କୁମ୍ଭକର୍ଣ୍ଣ କରନ୍ତେ ସମର ।

ବାବଲ ବାଣେ ରାମ ଛେଦିଲେ ତାର ଶିର ॥୪୭॥
ମୁଣ୍ଡ ଛିଡ଼ି ପଡ଼ିଣ ଭୂମିରେ ଗଡ଼ିଲା ।
ଦୁଇ ଭୁଜ ଦୁଇ ବୀର ହୋଇଣ ଯୁଦ୍ଧ କଲା ॥୪୮॥
ଦୁଇ ଭୁଜ ହୋଇ କରନ୍ତେଣ ଯୁଦ୍ଧ୍ୟ ।
ବିଭୀଷେଣ କହଇ ବ୍ରହ୍ମଶରେ ହୋଇବ ବଦ୍ଧ୍ୟ ॥୪୯॥
ତହୁଁଣ ରାମଚନ୍ଦ୍ର ବ୍ରହ୍ମାକୁ ସ୍ତୁତି କଲେ ।
ବ୍ରହ୍ମଶରେ କୁମ୍ଭକର୍ଣ୍ଣର ଶିର ଛେଦିଲେ ॥୫୦॥
ଅସ୍ଥି ଚର୍ମ ସହିତେଣ ଚୂର୍ଣ୍ଣ ହୋଇଲା ।
ପବନ ବାଣେ ସେ ଗଗନେ ଉଡ଼ିଲା ॥୫୧॥

## ମାୟା ସୀତା

ଭାଇର ମରଣ ଶୁଣିଲା ଲଙ୍କପତି ।
ହୃଦରେ ବିଚାରି ମନରେ କଲା ଭୀତି ॥୧॥
ପାତାଳ ବିମ୍ବରେ ନେଇ ସୀତାକୁ ଲୁଚାଇଲା ।
ମାୟା ସୀତା ଏକ ଅଶୋକ ବନେ ଥୋଇଲା ॥୨॥
ଜୟୋମାଳିକି ଯେ ମଧୁବନେ ରଖାଇ ।
ଶ୍ରୀରାମର ତୁଲେ ଯୁଦ୍ଧ କରଇ ଲଙ୍କସାଇଁ ॥୩॥
ଶ୍ରୀରାମକଇ ରାବଣ ହାରି ପଳାନ୍ତେ ।
ମାୟା ସୀତା ଏକ ଆଣି ମାଇଲା ତୁରିତେ ॥୪॥
ଦେଖିଣ ଶ୍ରୀରାମ ଅନେକ ରୋଦନ କଲେ ।
ମୃତ୍ୟି ପିଣ୍ଡ ଚିହ୍ନି ନୁହଇ ବୋଲିଣ ଜାଣିଲେ ॥୫॥
ହନୁମନ୍ତ ପଠିଆଇଲେ ସୀତାଠାବ କରି ।
ମନ୍ଦୋଦରୀକି ହନୁମନ୍ତ ଆଣିଲା ବାଳ ଧରି ॥୬॥
ମନ୍ଦୋଦରୀକି ଶ୍ରୀରାମ ଯହୁଁ ଦେଖିଲେ ।
ବନ୍ଧନୁ ମୁକତ କରି ଗଉରବ କଲେ ॥୭॥
ହନୁମନ୍ତକୁ କହିଲେ କିମ୍ପା ଆଣିଲୁ ଏ କାମେନୀ ।
ସତୀ ଶୁଦ୍ଧଶାଳୀ ଏ ରାବଣର ଭାବେନୀ ॥୮॥
ସ୍ତିରୀକି କୋପ କଲେ ଯେ ନାହିଁ ପଉରୋଷ ।
ଏ ଯୁବତୀଙ୍କର ହୋ କିଛିହିଁ ନାହିଁ ଦୋଷ ॥୯॥
ଶ୍ରୀରାମର ବଚନ ଯହୁଁ ମନ୍ଦୋଦରୀ ଶୁଣିଲା ।
ପ୍ରଣମ୍ୟ ହୋଇ ଅନେକ ବିନୋଇ କହିଲା ॥୧୦॥
ମନ୍ଦୋଦରୀର ସ୍ତୁତି ଶୁଣି ଶ୍ରୀରାମ ହରଷ ହୋଇଲେ ।
ସୀତୟା କାହିଁ ଅଛି ବୋଲି ପଚାରିଲେ ॥୧୧॥
ମନ୍ଦୋଦରୀ କହଇ ଶୁଣସି ରଘୁବୀର ।
କୁମ୍ଭକର୍ଣ୍ଣ ମରନ୍ତେ ଭୟ କଲା ଦଶଶିର ॥୧୨॥
ପାତାଳ ବିମ୍ବରେ ଲୁଚାଇ ଥୋଇଲାକ ନେଇ ।
ଜନ ମନୁଷ୍ୟ ରାକ୍ଷସ କାହାରି ଗମ୍ୟ ନାହିଁ ॥୧୩॥
ଖେଚର ଭୂଚର ତହିଁକି ଯାଇତ ନ ପାରନ୍ତି ।
ସୁର ସିଦ୍ଧ ଅମରଗଣେ ତହିଁକି ଶଙ୍କା କରନ୍ତି ॥୧୪॥
ଏ ମୋହର ମଣି କରେ ଧରି ଥିବ ।
ପବନ ତନୟେ ସେ ବିମ୍ବରେ ପଶିବ ॥୧୫॥
ଏସନେକ କହି ଗ୍ୟାନବନ୍ତ ମଣି ।
ଶ୍ରୀରାମ କରେ ଦେଲା ମନ୍ଦୋଦରୀ ରାଣୀ ॥୧୬॥
ମଣି ଘେନି ରାମ ହରଷ ହୋଇଲେ ।
ହନୁମନ୍ତର ହସ୍ତରେ ସେ ମଣିରତ୍ନ ଦେଲେ ॥୧୭॥
ହନୁମନ୍ତକଇ ଆଶ୍ୱାସି କହନ୍ତି ରଘୁବୀର ।
ରାବଣ ଭାବେନୀକି ଛାଡ଼ ଏହାର ଭୁବନର ॥୧୮॥
ଏ ମଣି ଘେନି ସେହି କତିରେ ଯିବୁ ।
ସୀତାର ସମାଦ ଘେନି ତୁ ବେଗେଣ ଆସିବୁ ॥୧୯॥
ଶୁଣି ହନୁମନ୍ତ ମନ୍ଦୋଦରୀକି ହସ୍ତରେ ବସାଇଲା ।
ରାବଣର ଅନ୍ତଃପୁର ଭିତରେ ଛାଡ଼ିଲା ॥୨୦॥
ମନ୍ଦୋଦରୀକି ଯିସ ବୋଇଲେ ଲଙ୍କପତି ।
ଶ୍ରୀରାମର ଆଗେ ଲବକୁଶେ ତାହା ବଖାଣନ୍ତି ॥୨୧॥
ଜ୍ଞାନବନ୍ତ ମଣି ଘେନି ପବନର ପୁତ୍ର ।
ପାତାଳ ବିମ୍ବରେ ପଶିଲା ତ୍ୱରିତ ॥୨୨॥
ସୀତୟାକୁ ଦେଖି ଯୁଦ୍ଧର କଥା କହିଲେ ।
ଶୁଣିଣ ଜାନେକୀ ହରଷ ଚିତ୍ତ ହୋଇଲେ ॥୨୩॥
ଶ୍ରୀରାମକୁ ମୁଦି ସନ୍ତକ ଦିଅ ନେଇ ।
ମୁଦି ଘେନି ହନୁମନ୍ତ ତୁରିତେ ଗମଇ ॥୨୪॥
ଶିଳାକଇ ଘେନିଣ ମୁଦିଲାକ ହନୁମନ୍ତ ।
ସୁବଳୟା ପର୍ବତେ ହନୁ ବିସରିଲା ତୁରିତ ॥୨୫॥
ଗୋଲାକ ନାମେ ରାକ୍ଷସ ଦ୍ୱାରେ ରହିଥିଲା ।
ସେ ଆସି ରାବଣର ଆଗରେ କହିଲା ॥୨୬॥
ଭୋ ଦେବ ଲଙ୍କା ଦହିଲା ଯେବଣ ବାନର ।
ସେ ଏକା ପଶିଲା ପାତାଳ ବିମ୍ବର ॥୨୭॥
ସୀତୟାର ତୁଲେ ସେ ହୋଇଥିଲା କଥା ।
ଶୁଣିଣ ମହାଭୟେ କଲାକ ଦଶମଥା ॥୨୮॥
ମନେ ମନେ ଭାଳଇ ଅସୁର ନୃପତି ।
ଭଲା ହନୁମନ୍ତ ଘେନି ନ ଗଲା ମହାସତୀ ॥୨୯॥

ପାତାଳ ବିମ୍ବରେ ସେ ରାବଣ ପଶିଲା ।
ପୁଣ ଆଣି ସିତୟାକୁ ଅଶୋକ ବନେ ଥୋଇଲା ॥୩୦॥

## ଲକ୍ଷ୍ମଣ ଶକ୍ତିଭେଦ

କୋପେ ରାବ ଦିଅଇ ଅସୁର ବୀର ରାୟେ ।
ବେଲାବନେ ପଶି ଦୁସହ ସମର କଏ ॥୧॥
କପି ରକ୍ଷ ସଇନ୍ୟ ମାଇଲାକ ଯହୁଁ ।
ସୁମିତ୍ରାର ତନୟେ ଆଗେ ଓଗାଳିଲା ତହୁଁ ॥୨॥
ଯୁଦ୍ଧକଇ ରାବଣ ମହାଶ୍ରମ ପାଇଲା ।
ମନ୍ତ୍ର ସୁମରି ବ୍ରହ୍ମଶକତି ମାଇଲା ॥୩॥
ଲକ୍ଷ୍ମଣର ହୃଦରେ ପଡ଼ିଲା ବ୍ରହ୍ମଶକତି ।
ଘାଏଣ ଘୁମାଇ ପଡ଼ିଲା ସଉମିତ୍ରି ॥୪॥
ଲକ୍ଷ୍ମଣର ବିଘାତ ଶ୍ରୀରାମ ଦେଖିଲେ ।
ରାବଣର ତୁଳରେ ଦୁସହ ସମର କଲେ ॥୫॥
ରଥ ଗଜ ଅଶ୍ୱ ବିନାଶିଲେ ଅନେକ ସନ୍ୟ ।
ସଂଗ୍ରାମେ ରହି ନ ପାରିଲା ଦଶାନନ ॥୬॥
କେଶ ମୁକୁଳ ଉଲଗ୍ନ ହୋଇ ପଳାଇଲା ।
ତେଣେ ସେ ରଘୁପତି ପ୍ରାଣେ ନ ମାଇଲା ॥୭॥
ସଂଗ୍ରାମରୁ ବାହୁଡ଼ି ଶ୍ରୀରାମ ଅଇଲେ ।
ଲକ୍ଷ୍ମଣକୁ କୋଳେ ଧରି ଅନେକ ରୋଦନ କଲେ ॥୮॥
ଜମ୍ୱେବ କହନ୍ତି ଶୁଣ କ୍ଷତ୍ରିବର ସୁନ୍ଦର ।
ଶକତି ଫୁଟି ଅଛି ଯେ ଲକ୍ଷ୍ମଣର ହୃଦର ॥୯॥
ସମସ୍ତ ଯୂଥ ପତି ବେଢ଼ିଣ ଧଇଲେ ।
କେହି ସେ ଶକତି କାଢ଼ି ନୋଆରିଲେ ॥୧୦॥
ଦେହେ ଶକତି ଥିଲେ ଓଷଧ କରିତ ନପାରି ।
ଜମ୍ୱେବର ବଚନ ଶୁଣିଣ ଚାପଧାରୀ ॥୧୧॥
ବାମ ହସ୍ତେ ରାମ ଶକତି ଧଇଲେ ।
ଶକତି କାଢ଼ିଣ ଗଗନକୁ ଫିଙ୍ଗି ଦେଲେ ॥୧୨॥
ବ୍ରହ୍ମଶକତି ଯହୁଁ ଲକ୍ଷ୍ମଣ ହୃଦରୁ ଗଲା ।
ବିମ୍ବର ପ୍ରାୟେ ତାହାର ହୃଦୟ ଦିଶିଲା ॥୧୩॥
ଦେଖିଣ ଶ୍ରୀରାମ ରୋଦନ କଲେ ଯେତେ ।
ସଭାରେ ଲବକୁଶେ ଗାବନ୍ତି ତାହା ଗୀତେ ॥୧୪॥
ଜମ୍ୱେବ କହଇ ଶୁଣସି ରଘୁମଣି ।
ଗିରିଶୃଙ୍ଗ ପର୍ବତେ ଅଛି ବିଶଲ୍ୟକରଣୀ ॥୧୫॥
ଓଷଧ ଘାଏ ଲଗାଇବ ଯେବେ ।
ତେବେ ସେ ଶକତି ଘାଆ ଭଲ ହୋଇବେ ॥୧୬॥
ଜମ୍ୱେବର କଥା ଯହୁଁ ରାମଚନ୍ଦ୍ର ଶୁଣିଲେ ।
ବିଶଲ୍ୟକରଣୀକି ଯାଅ ବୋଲି ହନୁମନ୍ତକୁ ପଠିଆଇଲେ ॥୧୭॥
ହନୁମନ୍ତ ଯିବାର ଯହୁଁ ରାବଣ ଜାଣିଲା ।
ତ୍ରିଜଟା ଅସୁରକଇ ବାଟକଇ ପେଷିଲା ॥୧୮॥
ରାବଣର ଆଜ୍ଞାରେ ତ୍ରିଜଟା ଅସୁର ଯାଇ ।
ମାୟା ଲିଙ୍ଗେକ ଥାପି ଅସୁର ହନୁମନ୍ତକୁ ଡାକ ଦିଅଇ ॥୧୯॥
ହନୁମନ୍ତ ତାହାର ସନିଧକୁ ଗଲା ।
ଯତି ପ୍ରାୟେ ବୁଝି ନମସ୍କାର କଲା ॥୨୦॥
ହନୁମନ୍ତ ତ୍ରିଜଟାର ଯେବଣ ଯେବଣ ସିଦ୍ଧାନ୍ତ ।
ଶ୍ରୀରାମର ଆଗେ କହ(ନ୍ତି) ସୀତୟାର ବେନି ସୁତ ॥୨୧॥
ଋଷି ପ୍ରାୟେ ବୁଝି ପବନ କୁମର ।
ସ୍ନାହାନ ସାରି ତପ କଲା ଗଣ୍ଡୁକୀ ଭିତର ॥୨୨॥
ସେ ଜଳ ଭିତରେ କୁମ୍ଭୀରୀ ଏକ ଥିଲା ।
ହନୁମନ୍ତକୁ ଧରି ସେ ଗଣ୍ଡରେ ବୁଡ଼ିଲା ॥୨୩॥
ତାହାକୁ ହନୁମନ୍ତ ଆଣିଲାକ ଧରି ।
କୂଳରେ ପକାଇ କୁମ୍ଭୀରୀ ବୁକୁ ଧରି ବିଦାରି ॥୨୪॥
ସେ କୁମ୍ଭୀରୀ ଦେହରୁ ପୁରୁଷେକ ବାହାର ହୋଇଲା ।
ଇନ୍ଦ୍ର ଅପସରୀ ବୋଲିଣ କହିଲା ॥୨୫॥
ପୂର୍ବର ଶାପ ଯେସନେକ ବିଧାନ ।
ବିସ୍ତାରି କହନ୍ତି ତାହା ସୀତୟାର ବେନି ନନ୍ଦନ ॥୨୬॥
ଅପସରୀ କହିଲା ସେ ନୁହଇ ତପଚାରୀ ।
ରାବଣର ଲୋକ ଅଛି ତପସ୍ୱୀ ରୂପ ଧରି ॥୨୭॥
ଏସନେକ କହି ସେ ସ୍ୱର୍ଗକଇ ଗଲା ।
ଶୁଣି ହନୁମନ୍ତ ତ୍ରିଜଟାକୁ ଧଇଲା ॥୨୮॥
କୁରାଳଚକ୍ର ପ୍ରାୟେ ବୁଲାଇଲା ବଳେ ।
ଦୀର୍ଘରଡ଼ି ଛାଡ଼ଇ ଅସୁର ପ୍ରାଣର ବିକଳେ ॥୨୯॥
ମୋଥେକ ମାଇଲା ତାହାର ମୁଣ୍ଡ କଲା ଚୂର ।
ପ୍ରାଣନାଶ ହୋଇଲା ସେ ତ୍ରିଜଟା ଅସୁର ॥୩୦॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ବଶିଷ୍ଠ ମହାମୁନିଙ୍କର ମୁଖକୁ ଚାହିଁଲେ ॥୩୧॥
ଭୋମୁନି ହନୁମନ୍ତ ମୋତେ ଏଡ଼େ ଉପଗାରୀ ।
ତାହାର ଗୁଣ ମୁହିଁକି ପାସୋରି ॥୩୨॥

ହନୁମନ୍ତ ଯେବେ ମୋହର ପାଶେ ଥାନ୍ତା ।
ସେ କିମ୍ପା ସୀତାକୁ ବନବାସ ପଠିଆନ୍ତା ॥୩୩॥
ଗୋରେଖ ହନୁମନ୍ତକୁ କଦଳୀ ବନକୁ ନେଲେ ଯହୁଁ ।
ସକଳ ବିପରୀତ ମୋତେ ହୋଇଲାକ ତହୁଁ ॥୩୪॥
ବଶିଷ୍ଠେ କହନ୍ତି ଏବେ ସାବଧାନେ ଶୁଣ ।
ମେଣ୍ଟି ନୁହଇ ଦଇବର ନିର୍ମାଣ ॥୩୫॥
ଲବକୁମର କହଇ ଅସୁରକୁ ମାରି ।
ଯାଇ ହୋଇଲା ବୀର ପର୍ବତ ଶୃଙ୍ଗଗିରି ॥୩୬॥
ଇନ୍ଦ୍ର ଆଜ୍ଞାରେ ଯେ ପର୍ବତ ଗନ୍ଧର୍ବେ ରଖିଥିଲେ ।
ହନୁମନ୍ତର ତୁଲେ ସେ ଅନେକ ଯୁଦ୍ଧ କଲେ ॥୩୭॥
ସମସ୍ତ ଗନ୍ଧର୍ବଙ୍କୁ ମାଇଲା ହନୁମାନ ।
ଓଷଧର ପବନେ ସେ ପାଇଲେ ଚେତନ ॥୩୮॥
ଅଶି ସହସ୍ର ଗନ୍ଧର୍ବ ହନୁମନ୍ତ ଲାଙ୍ଗୁଡରେ ବାନ୍ଧିଲା ।
ଗିରିଶୃଙ୍ଗ ପର୍ବତ ଉପାଡ଼ି ଆଣିଲା ॥୩୯॥
ପୁଣି ଗନ୍ଧର୍ବନ୍ତ ପେଷିଲେ ସୁରପତି ।
ଲାଙ୍ଗୁଡରେ ଗନ୍ଧର୍ବନ୍ତ ଧରି ମାଇଲା ଅହିଲ୍ୟାର ନାତି ॥୪୦॥
ସମସ୍ତ ଗନ୍ଧର୍ବ ନିମଜ୍ଜିଲେ ଜଳେ ।
ପର୍ବତ ଘେନି ଆସନ୍ତେ ଅଞ୍ଜନା ଦୁଲ୍ଲାଳେ ॥୪୧॥
ରାବଣ ଜାଣି ପେଷିଲା ଅନେକ ଅସୁର ବଳ ।
ସବୁହିଁ ମାଇଲା ତହିଁ ପବନର ବାଳ ॥୪୨॥
ତହୁଁଣ ବନ ମାର୍ଗେ ଆସନ୍ତେ ହନୁମନ୍ତ ।
ସୁବାହୁ ବନେ ଥିଲା ଯେ କକୟାର ସୁତ ॥୪୩॥
ଘୋର ଶବଦେକ ଶୁଭିଲାକ ଯହୁଁ ।
ବାଟୋଳି ଗୋଟାଏ ଭ୍ରଥ ମାଇଲାକ ତହୁଁ ॥୪୪॥
ଲଲାଟେ ବାଜନ୍ତେ ହନୁମନ୍ତର ଆତ୍ମା ଉଛର୍ଗିଲା ।
ଅଚେତ ହୋଇ ହନୁମନ୍ତ ଭ୍ରଥର ଛାମୁରେ ପଡ଼ିଲା ॥୪୫॥
କ୍ଷଣକେ ଚେତନା ପାଇଣ ମାରୁତି ।
ଭ୍ରଥକୁ ପଚାରଇଁ ମହାତ୍ମା କେତେକ ଅଛି ରାତି ॥୪୬॥
ଶୁଣିଣ ଭ୍ରଥର ଦୟା ବସିଲା ।
ହନୁମନ୍ତର ସନିଧେ ଆସି ଉଭା ହୋଇଲା ॥୪୭॥
କିମ୍ପା ହୋ ମର୍କଟ ଗୋଟି ରଜନୀ ପଚାରିଲୁ ।
ଆପଣେ ମରିଥିଲୁ ଏ କଥାକୁ ଭୟେ ନ କଲୁ ॥୪୮॥
ହନୁମନ୍ତ ବୋଲଇ ମୋହରି ମରିବାକୁ ନାହିଁ ତ୍ରାସ ।
ସ୍ୱାମୀର କାର୍ଯ୍ୟ ସେ କଲଇ ମୁହିଁ ନାଶ ॥୪୯॥
ମୁହିଁ ଦୁରାତ୍ମା କିପାଇଁ ଏ ବାଟେ ଅଇଲି ।
ସେ କତିକି କିମ୍ପା ଓଷଧ ଘେନି ନ ଗଲି ॥୫୦॥
ଭ୍ରଥ କହଇ କିସ କରିବୁ ଓଷଧ ।
ହେ କପି ଗୋଟା ତୁହି ମୋତେ କହ ସାଧ ॥୫୧॥
ହନୁମନ୍ତ କହଇ ଶୁଣସି ଭୋ ଯତି ।
ରାବଣର ତୁଲେ ରାମ ଯୁଦ୍ଧ କରନ୍ତି ॥୫୨॥
ବନ୍ଧୁବର୍ଗ ରାବଣର ଯହୁଁ ଅନେକ ମଲା ।
ଶ୍ରୀରାମର ଭାଇକି ଦନୁଜ ଶକତି ମାଇଲା ॥୫୩॥
ଗିରିଶୃଙ୍ଗ ପର୍ବତକୁ ବରଗିଲେ ରାମ ମୋତେ ।
ଓଷଧ ଘେନି ମୁହିଁ ଯିବଇ ତ୍ୱରିତେ ॥୫୪॥
ବାଟେ ଅନେକ ମୋତେ ପ୍ରମାଦ ପଡ଼ିଲା ।
ତେଣେ ସେ ଯିବାର ମୋହର ଉଛର ହୋଇଲା ॥୫୫॥
ରାତ୍ର ପାଇଲେ ସୂର୍ଯ୍ୟ ଉଦୟ ହୋଏ ଯେବେ ।
ହୃଦୟ ଫାଟି ଲକ୍ଷ୍ମଣ ମରିବଟି ତେବେ ॥୫୬॥
ଶୁଣିଣ ଭ୍ରଥ ପଡ଼ିଣ ମୋହ ଗଲା ।
ଆହା ଭାଇ ବୋଲି ଅନେକ ରୋଦନ କଲା ॥୫୭॥
ଯେବଣ କଥା ହନୁମନ୍ତ ଭ୍ରଥକୁ କହିଲେ ।
ଶ୍ରୀରାମର ଆଗେ ତାହା ଲବକୁଶେ ଗାଇଲେ ॥୫୮॥
ଭ୍ରଥ ମହାବୀର ହନୁମନ୍ତକୁ ବାଟୋଳି ମାରିବାର କଥା ।
ଶୁଣିଣ ରାମଚନ୍ଦ୍ର ପାଇଲେ ମହାବ୍ୟଥା ॥୫୯॥
ଭ୍ରଥର ମୁଖ ଚାହିଁ କହନ୍ତି ରଘୁନାହା ।
ମୋହର ଆଗେ ହନୁମନ୍ତ ନ କହିଲା ତ ଏହା ॥୬୦॥
ଭ୍ରଥ କହଇ ଯୋଡ଼ିଣ ବେନି ହସ୍ତ ।
ଭୋ ଦେବ ବିଶଲ୍ୟକରଣୀ ଘେନି ଯାନ୍ତେଣ ହନୁମନ୍ତ ॥୬୧॥
ହୁଂକାର ଶବଦ ଯହୁଁ ଶୁଣିଲି ।
ଗଗନକଇ ମୁହିଁ ବାଟୋଳିଏ ମାଇଲି ॥୬୨॥
ମୋହର ଛାମୁରେ ସେ ଆସିଣ ପଡ଼ିଲା ।
ଲକ୍ଷ୍ମଣର ଶକତିଘାତ ଯହୁଁ କହିଲା ॥୬୩॥
ଶୁଣିଣ ମୁହିଁ ଅନେକ ବିକଳ ହୋଇଲି ।
ହନୁମନ୍ତ(କୁ) ଅନେକ ଆଶ୍ୱାସି କହିଲି ॥୬୪॥
ଭୋ ହନୁମନ୍ତ ତୋହର ଯେବେ ମୋତେ ଅଛି ଅନୁରାଗ ।
ଏ କଥା ନ କହିବୁ ଶ୍ରୀରାମଚନ୍ଦ୍ରଙ୍କର ଆଗ ॥୬୫॥
ତେଣେ ସେ ତୁମ୍ଭର ଆଗେ ନ କହିଲେ ହନୁମାନ ।
ଧନ୍ୟ ଧନ୍ୟ କହନ୍ତି ରାମ ପବନନନ୍ଦନ ॥୬୬॥

ମୋତେ ଯେବେକ ସ୍ନେହ ଉପେଖୁ ।
ମୋହର ସାଦ୍ରିଶେ ମୋହର ତିନି ଭାଇ ଦେଖୁ ॥୬୭॥
ଶ୍ରୀରାମ ଭ୍ରଥର ତୁଲେ କଥା ହୁଅନ୍ତେ ।
ତୁନି ହୋଇ ବସିଲେ ଲବକୁଶ ବେନି ଭ୍ରାଥେ ॥୬୮॥
ଶ୍ରୀରାମ ପୁଛନ୍ତି ଗାଅ ପୁଣ୍ୟତୁଣୀର ପୁତ୍ର ।
ତହୁଁ କେବଣ କୃତ୍ୟ କଲେ ପବନର ପୁତ୍ର ॥୬୯॥
ଲବକୁମର କହଇ ତୁମ୍ଭେ କିସ କିସ ଭାଳ ।
ଗାଇବା ଶୁଭଇ କି କରନ୍ତେ ଚହଳ ॥୭୦॥
ତଲ୍ୟେ କରି ଗ୍ରନ୍ଥ ଯେବେ ଶୁଣି ।
ତେବେ ସେ ଶାସ୍ତ୍ର ପାରି ପରିମାଣି ॥୭୧॥
ଶୁଣିଣ ସକଳ ଲୋକେ ହୋଇଲେ ମଉନ ।
ନାଦହୁଂକାରି ଗାବନ୍ତି ସୀତୟା(ର) ବେନି ସୂନ ॥୭୨॥
ଶ୍ରୀରାମ ଦୂତ ବୋଲି ଭ୍ରଥ ଯହୁଁ ଶୁଣିଲା ।
କୋଳ କରି ହନୁମନ୍ତକୁ ଶିରେ ଚୁମ୍ବନ ଦେଲା ॥୭୩॥
ବାଟୋଳିର ଘାଏ ଯେ ଶରୀର ହୋଉଥିଲା ବ୍ୟଥା ।
ହାତ ଲଗାଇଲା ଭ୍ରଥ ମହାରଥା ॥୭୪॥
ଆତ୍ମାକଇ ଉଶ୍ୱାସ ପାଇଲା ହନୁମନ୍ତ ।
ତହୁଁ ବିକ୍ରମି ଅଇଲାକ ତୁରିତ ॥୭୫॥
ଶୂନ୍ୟ ମାର୍ଗରେ ଗିରିଶୃଙ୍ଗ ପର୍ବତ (ଧରି) ଆସଇ ।
ସୁବଳୟା ପର୍ବତେ ହନୁମନ୍ତ ହୋଇଲା ପ୍ରବେଶଇ ॥୭୬॥
ଲକ୍ଷ୍ମଣକୁ ଶ୍ରୀରାମ ହୃଦରେ ପକାଇ ।
ବସିଛନ୍ତି ସୀତାପତି ବିସ୍ମୟେ ମୁଖ ହୋଇ ॥୭୭॥
ହନୁମନ୍ତକୁ ଦେଖି ଆନନ୍ଦ ରଘୁନାନ ।
ଅନ୍ଧ ଚକ୍ଷୁ ପାଇଲା କି ନିଧନ ଲୋକକୁ ଧନ ॥୭୮॥
ଶ୍ରୀରାମ ପୁଛନ୍ତି ଶୁଣସି ହନୁମନ୍ତ ।
ଆଣି ନ ପାରିଲୁ କି ମଉଷୋଧି ପଦାର୍ଥ ॥୭୯॥
ହନୁମନ୍ତ କହଇ ଶୁଣସି ରଘୁସାଇଁ ।
ଏ ବିଶଲ୍ୟକରଣୀ ନ ଚିହ୍ନଇ ମୁହିଁ ॥୮୦॥
ପର୍ବତ ଆଣିଲି ଦେବ ତୋହର ସନ୍ନିଧାନ ।
କମ୍ଭେବକଇ ଦେବ (ପଚାରନ୍ତି) ମଉଷୋଧି ଚିହ୍ନ ॥୮୧॥
ଏସନେକ କଥା ଶୁଣି ଗିରିଶୃଙ୍ଗ ପର୍ବତ ।
ଶ୍ରୀରାମର କରେ ଦେଲା ବିଶଲ୍ୟକରଣୀ ପଦାର୍ଥ ॥୮୨॥
ପର୍ବତ କହଇ ଶୁଣସି ରଘୁବୀର ।
ପୂର୍ବେ ଆଜ୍ଞା ଦେଇ ଅଛଇ ସୁନାସୀର ॥୮୩॥
ଏ ବିଶଲ୍ୟକରଣୀ ତୁ ସଂଘରିଣ ଥିବୁ ।
ଆନ କାହାରି ହାଥେ ତୁ ନ ଦେବୁ ॥୮୪॥
ଯେ କରେ ଧରିବ ସେ ହୋଇବ ପ୍ରାଣନାଶ ।
ଶ୍ରୀରାମ ନାମେ ଉପୁଜିବ ସେ ବିଷ୍ଣୁ ପୁରୁଷ ॥୮୫॥
ତାହାର ମୁଖ ଦେଖି ଓଷଧ ତାହାରି ହାଥେ ଦେବୁ ।
ଶ୍ରୀରାମ ମୁଖ ଦେଖି ସକଳ ପାପ ଉପେଖିବୁ ॥୮୬॥
ତେଣୁ ସେ ହନୁମନ୍ତର ହାଥରେ ନ ଦେଲି ।
ତୋହର ମୁଖ ଚାହିଁ ଏବେ ପାପ ଉପେଖିଲି ॥୮୭॥
ଏସନେକ କହି ଗିରିଶୃଙ୍ଗ ଗଲା ।
ନିଜ ଥାନେ ସେ ପ୍ରବେଶ ହୋଇଲା ॥୮୮॥
ଓଷଧ କରେ ଘେନିଣ ରଘୁପତି ।
ଜମ୍ଭେବ ହକାରି ବିଶଲ୍ୟକରଣୀ ଚିହ୍ନାନ୍ତି ॥୮୯॥
ଜମ୍ଭେବ କହଇ ଦେବ ଓଷଧ ଅଟଇ ।
ଆବର କଥାଏ ଶୁଣ ରଘୁଚାଟଇ ॥୯୦॥
ତାରାକନ୍ୟା ରାବଣପୁରେ ଅଛି ।
ତାହାକୁ ଘେନି ଆସୁ ପବନର ବଛି ॥୯୧॥
ଥନୁ କ୍ଷୀର ଦେଇ ଓଷଧ ବାଟିବ ।
ତାହାର କରେଣ ସେ ଘାଏଣ ଲଗାଇବ ॥୯୨॥
ତେଣେ ସେ ଶକତି ଘାତ ହୋଇବ ଏହିକ୍ଷଣି ଭଲ ।
ଶୁଣିଣ ହରଷ ହୋଇଲେ ରାଘବ କୁଳ ମଲ୍ଲ ॥୯୩॥
ହନୁମନ୍ତକୁ ବରଗିଲେ ସୀତୟାର ସାଇଁ ।
ତାରାକନ୍ୟାକୁ ଆଣିଲା ହନୁ କାନ୍ଧରେ ବସାଇ ॥୯୪॥
ଶ୍ରୀରାମର ପୟରେ ତାରା କରଇ ପ୍ରଣମିତ ।
ବିଶଲ୍ୟକରଣୀ ତାହାର ହାଥେ ନେଇ ଦେଲେ ରଘୁନାଥ ॥୯୫॥
ଥନୁ ଖୀର ଘେନି ଓଷଧ ବାଟିଲା ।
ଲକ୍ଷ୍ମଣର ଶକତିଘାତେ ତାରା ଲଗାଇଲା ॥୯୬॥
ଅମୃତପାନେ ଯେସନେକ ଶରୀରଇ ।
ଚେତନା ପାଇଲା ସୁମିତ୍ରାର ତନୟି ॥୯୭॥
ଶ୍ରୀରାମର ମୁଖ ଯହୁଁ ତାରା ଦେଖିଲା ।
ଶ୍ୟାପ ମୁକତ ହୋଇ ନିଜ ଭୁବନକଇ ଗଲା ॥୯୮॥
ଶ୍ରୀରାମଙ୍କୁ ଲକ୍ଷ୍ମଣ ଯିସ କଥା କହିଲା ।
ସଭାରେ ବସି ତାହା ଲବକୁମର ଗାଇଲା ॥୯୯॥
ଯେବଣ ପଦ ଅବା ଅଳପ ଅନ୍ତର ହୁଅଇ ।
କୁଶକୁମର ତାହା ଅର୍ଥ କରିଣ କହଇ ॥୧୦୦॥

## ମହୀରାବଣ ବଧ

ଏଥୁ ଅନନ୍ତରେ ଯେ ରାବଣର ଚାର ।
ସଂଗ୍ରାମେ ଥିଲା ଯେ ବିହଡ଼ା ଅସୁର ॥୧॥
ଶକତିଘାତ ଭଲ ହୋଇଲା ଯେବଣ ହି ମତେ ।
ରାବଣ ଆଗେ ଯାଇ କହଇ ତୁରିତେ ॥୨॥
ଶୁଣିଣ ଦଶଶିର ତାରାକଇ କୋପକଲା ।
ବିହଡ଼ା ଦୃଢ଼ କହିଲା ସେ ଶୂନ୍ୟମାର୍ଗକଇ ଗଲା ॥୩॥
ପୁଣି ସଂଗ୍ରାମକୁ ଯାନ୍ତେ ଦଶମାଥ ।
ମହୀରାବଣ କହି ଆଜ୍ଞା ଦେସି ତାତ ॥୪॥
ଶୁଣିଣ ଦଶାନନ ହରଷ ହୋଇଲା ।
ମକୁଟ ବାନ୍ଧି ମହୀରାବଣକୁ ପଠିଆଇଲା ॥୫॥
ପିତାର ଆଜ୍ଞାରେ ମହୀରାବଣ ବୀର ।
ସାତ ଅସୁର ଘେନି ହୋଇଲା ଋଷିଙ୍କ ଆକାର ॥୬॥
ଦଣ୍ଡକମଣ୍ଡଳ ହସ୍ତରେ ତା ଛତି ।
ରୁଦ୍ରାକ୍ଷମାଳ ଲୁଳଇ କପୋଳେ ବିଭୂତି ॥୭॥
ସପତ ଋଷିଙ୍କର ଆକାର ହୋଇଲା ।
ଶ୍ରୀରାମ ସନିଧେ ତକ୍ଷଣେ ମିଳିଲା ॥୮॥
ଅନେକ ମାୟା ସେ କହିଲା ନାନା ଚରିତ ।
ପ୍ରୀତି କଥାକୁ ଯେ ମୋହି ହୋଇଲା ରଘୁନାଥ ॥୯॥
ବିଭୂତି ଦେଇଣ କହଇ ପାପଆଶୀ ।
ଏ ବିଭୂତି ସମସ୍ତ କପୋଳରେ ଲେପନ କରସି ॥୧୦॥
କାଣ୍ଡଖଣ୍ଡା ତୁମ୍ଭର ଦେହରେ ନ ଭେଦିବ ।
ସବୁରି ଶରୀର ବଜ୍ର ହୋଇଥିବ ॥୧୧॥
ଶୁଣିଣ ଶ୍ରୀରାମଚନ୍ଦ୍ର ବିଭୂତି ଯୂଥପତିଙ୍କି ଦେଲେ ।
ଦୁଇଭାଇ ବିଭୂତି କପୋଳେ ଲେପନ କଲେ ॥୧୨॥
ଜମ୍ବେବ ଶତବାଳି ରାମର ଭାଇ ସହିତେ ।
ଏକର ହାତରେ ଆରକେ ଘେନନ୍ତି ତୁରିତେ ॥୧୩॥
ଋକ୍ଷବାନର ଶ୍ରୀରାମର ଯେତେ ସୈନ୍ୟ ।
ସମସ୍ତେ ବିଭୂତି ହୋଇଲେ ଲେପନ ॥୧୪॥
ବିଭୂତି ଲେପନେ ଚେତନା ହାରିଲେ ।
ଏକ ଆରକକୁ ଚିହ୍ନି ନ ପାରିଲେ ॥୧୫॥
ଶ୍ରୀରାମକୁ ଘେନି ମହୀରାବଣ ଗଲା ।
ପାତାଳ ବିମ୍ବରେ ନେଇଣ ଲୁଚାଇଲା ॥୧୬॥
ଶ୍ରୀରାମର ତେଜେ ମାରିତ ନୋଆରଇ ।
ମୁଖ ଚାହିଁଲେ ମହାଭୟେ କରଇ ॥୧୭॥
ଶ୍ରୀରାମ ସମରେ ନାହିଁ ବୋଲି ଯହୁଁ ରାବଣ ଜାଣିଲା ।
ରାମର ରୂପ ଧରି ସଂଗ୍ରାମେ ପଶିଲା ॥୧୮॥
ଅନେକ ମର୍କଟ ଧରିଣ ନାଶ କରଇ ।
ଶ୍ରୀରାମର ମୁଖ ଦେଖି କେହି ଶସ୍ତ୍ର ନ ପେଷଇ ॥୧୯॥
ଦେଖି ଦେବଗଣେ ବିଷାଦ ହୋଇଲେ ।
ବିଭୀଷଣ ନାମ ଧରି ଉଚେ ଡାକ ଦେଲେ ॥୨୦॥
ଆହୋ ବାନର ବିଭୂତି ପୋଛିବ ।
ସମସ୍ତେ ପ୍ରାଣ ପାଇବଟି ଏବ ॥୨୧॥
ଦେବଙ୍କର ବଚନ ବିଭୀଷଣେ ଶୁଣିଲାକ ଯହୁଁ ।
ବିଭୂତି ପୋଛିଣ ଜାଣିଲାକ ତହୁଁ ॥୨୨॥
ଯୂଥପତି କପିବଳେ ବିଭୂତି ପୋଛିଲେ ।
ଅସୁର ବାନର ବୋଲି ତେବେ ସେ ଜାଣିଲେ ॥୨୩॥
ରାବଣକଇ ସଂଗ୍ରାମେ ଲକ୍ଷ୍ମଣ ଜାଣିଲା ।
ହନୁମନ୍ତକଇ ଘେନି ସେ କୋପେଣ ଧାଇଁଲା ॥୨୪॥
ଲକ୍ଷ୍ମଣର ତେଜ ଦଶାନନ ଦେଖି ।
ପ୍ରାଣ ଘେନି ପଳାଇଲା ସଂଗ୍ରାମ ଉପେଖି ॥୨୫॥
ଯେତେକ ଅସୁର ଯୁଦ୍ଧ କରୁଥିଲେ ।
ଯୂଥପତି ତାହାନ୍ତ ସମସ୍ତ ନାଶିଲେ ॥୨୬॥
ଶ୍ରୀରାମ ନ ଦେଖି ଲକ୍ଷ୍ମଣ ଝୁରଇ ।
ବିଭୀଷେଣ କହଇ ଶୁଣସି ମହାବୀରଇ ॥୨୭॥
ମହୀରାବଣ ନାମେ ସେ ଦଶାନନର ସୁତ ।
ମହା କପଟୀ ସେ ଅତି ପାପଚିତ୍ତ ॥୨୮॥
କପଟେ ଋଷିଙ୍କର ରୂପ ଧଇଲା ।
ମାୟା ବିଭୂତି ସେ ସବୁନ୍ତିକି ଦେଲା ॥୨୯॥
ଏବେ ଶ୍ରୀରାମକୁ ଘେନିଗଲା ହରି ।
ପାତାଳ ବିମ୍ବରେ ଥୋଇଛି ଗୁପତ କରି ॥୩୦॥
ଶୁଣିଣ ଲକ୍ଷ୍ମଣ ମନେ ମନେ ଭାଳଇ ।
କର ଯୋଡ଼ି ପୁଛଇ ଅଞ୍ଜନାର ଦୁଲାଳଇ ॥୩୧॥
ମୋତେ ଆଜ୍ଞା ଦିଅସି ସୁମିତ୍ରାର ସୁତ ।
ମୁହିଁ ଯାଇ ଘେନି ଆସଇ ରଘୁନାଥ ॥୩୨॥
ଲକ୍ଷ୍ମଣ କହଇ ବୀର ବେଗ ଯାସି ।
ଦନୁଜ ବିନାଶି ଶ୍ରୀରାମକଇ ଘେନି ବେଗେ ଆସସି ॥୩୩॥
ଲକ୍ଷ୍ମଣର ବଚନେ ହନୁ ବିମ୍ବରେ ପଶିଲା ।

ଲୋହପାଦ ମାରି ଶ୍ରୀରାମ ସନ୍ନିଧକୁ ଗଲା ॥୩୪॥
ହନୁମନ୍ତର ତେଜ ସେ ଦେଖିଲେକ ଯହୁଁ ।
ସମସ୍ତେ ଶ୍ରୀରାମର ରୂପ ଧଇଲେକ ତହୁଁ ॥୩୫॥
ଜ୍ଞାନବନ୍ତ ମଣିର ତେଜେ ହନୁମାନ ।
ଯାଇ ହୋଇଲା ଶ୍ରୀରାମର ସନ୍ନିଧାନ ॥୩୬॥
ଶ୍ରୀରାମର ଶ୍ରୀମୁଦି ଦେଖିଲେ ସେ ଯେବେ ।
କପଟ କଥା ସେ କହିଲେକ ତେବେ ॥୩୭॥
ମହୀରାବଣକୁ ଯେମନ୍ତେ କଲେ ପ୍ରାଣ ନାଶ ।
ପଦେ ଅନ୍ତର ନାହିଁ କହନ୍ତି ଲବକୁଶ ॥୩୮॥
ମହୀରାବଣ ମାରି କ୍ଷତ୍ରିବର ସୁନ୍ଦର ।
ପାତାଳ ବିମ୍ବରୁ ସେ ହୋଇଲେ ବାହାର ॥୩୯॥
ସୂଚୀମୁଖା ଅସୁର ଯେ ସଂଗ୍ରାମେଣ ଥିଲା ।
ମହୀରାବଣ ମଲା ବୋଲି ରାବଣକୁ କହିଲା ॥୪୦॥

## ଜାମ୍ୱୋମାଳି ଯୁଦ୍ଧ

ଶୁଣିଣ ରୋଦନ କଲେକ ଲଙ୍କସାଇଁ ।
ଜାମ୍ୱୋମାଳିକି କହଇ ସନିଧେଣ ବସାଇ ॥୧॥
ଭୋ ମାତୁଳ ଏ ମୋହର ନିଜ ଦେଶ ।
ଋକ୍ଷ ବାନରନ୍ତେ ଏବେ କର ପ୍ରାଣ ନାଶ ॥୨॥
ରାବଣର ବଚନ ଶୁଣି ଜାମ୍ୱୋମାଳି ବୀର ।
ସଂଗ୍ରାମେ ପଶି କରଇ ଦୁସହ ସମର ॥୩॥
ହନୁମନ୍ତକୁ ଧରି ମାଡ଼ି ବସିଲା ।
ସୁଗ୍ରୀବର ଜାମ୍ୱୋମାଳିକି ସମୁଦ୍ରେ ପକାଇଲା ॥୪॥
ଲବଣ ଜଳେ ପଡ଼ନ୍ତେ ନ ତିନ୍ତିଲା ତାହାର କାୟେ ।
ପୁଣି ସମରେ ପଶି ଅନେକ ବାନର କଲା କ୍ଷୟେ ॥୫॥
ସୁଗ୍ରୀବର ଜାମ୍ୱୋମାଳିକି ଲାଞ୍ଜେ ବାନ୍ଧିଲା ।
କିଂଝଗିରି ବନକଇ ଘେନିଣ ତାହାକୁ ଗଲା ॥୬॥
ସୁଗ୍ରୀବର ନ ଦେଖି ଶ୍ରୀରାମ ବିସ୍ମୟେ ହୋଇଲେ ।
ହନୁମନ୍ତକଇ ସୁଗ୍ରୀବର ତହିଁକି ବରଗିଲେ ॥୭॥
ସୁଗ୍ରୀବର ଜାମ୍ୱୋମାଳିକି ନୁଆରଇ ମାରି ।
ସନ୍ନିଧେଣ ମିଳି ହନୁମନ୍ତ ପଚାରି ॥୮॥
ତୋତେ ନ ଦେଖି ରାମ ବିଷାଦ ହୋଇଲେ ।
ତୋହର ତହିଁକି ମୋତେ ଲୋଡ଼ି ବରଗିଲେ ॥୯॥
ସୁଗ୍ରୀବର କହି କିସ ବୁଦ୍ଧି କରିବା ।
କେବଣମତେ ଅସୁରକଇ ମାରିବା ॥୧୦॥
ହନୁମନ୍ତ କହଇ ନ ମରଇ ଯେବେ ।
ପର୍ବତ ଲଦି ଏହାକଇ ପୋତିବାକ ତେବେ ॥୧୧॥
ପର୍ବତ ଲଦି ଜାମ୍ୱୋମାଳିକି ପୋତିଲେ ।
ତହୁଁ ଯାଇ ଶ୍ରୀରାମର ଆଗରେ କହିଲେ ॥୧୨॥
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ବିସ୍ତାରି କହନ୍ତି କୁମର ଲବକୁଶ ॥୧୩॥
ଜାମ୍ୱୋମାଳିର ଚରିତ୍ର ଯହୁଁ ରାବଣ ଶୁଣିଲା ।
ଦୁଇ ପୁତ୍ରନ୍ତ ତାହାର ହକାରିଣ କହିଲା ॥୧୪॥
ପିତାର ସନ୍ନିଧକୁ ବେଗେ ତୁମ୍ଭେ ଯାଅ ।
କାହିଁ ଅଛି ମଉଳା ମୋହର ବେଗେଣ ଲୋଡ଼ହ ॥୧୫॥
ରାବଣର ଆଜ୍ଞା ପାଇ ମୁଖା ଦୃମୁଖା ବେଗେ ଗଲେ ।
କିଂଝଗିରି ବନେ ପଶି ଦୀର୍ଘ ଡାକ ଦେଲେ ॥୧୬॥
ଯେବଣ ଠାବେ ଜମ୍ୱୋମାଳିକି ପୋତିଲା ସୁଗ୍ରୀବର ।
ତହିଁର ଉପରେ ଉଠି ଡାକ ଦିଅନ୍ତି କୁମର ॥୧୭॥
ମହାଭାରା ଯହୁଁ ଅସୁର ପାଇଲା ।
ଅଙ୍ଗ ମୋଡ଼ି ଦଇତ୍ୟ ରଡ଼ିଏକ ଦେଲା ॥୧୮॥
ପିତାର ବଚନ ଯହୁଁ ପୁତ୍ରେ ଶୁଣିଲେ ।
ପର୍ବତମାନ ସବୁ କାଢ଼ି ପକାଇଲେ ॥୧୯॥
ତହୁଁ ଜାମ୍ୱୋମାଳି ବାହାର ହୋଇଲା ।
ଦୁଇ ପୁତ୍ର ଘେନି ରାମ ତହିଁକି ଅଇଲା ॥୨୦॥
ଦୁଇ ପୁତ୍ର ତାହାର ସନ୍ନିଧେଣ ଅଛନ୍ତି ।
ବାନର ବଳେ ପଶି ଅନେକ ସନ୍ୟ ମାରନ୍ତି ॥୨୧॥
ଋକ୍ଷ ମର୍କଟ ବିକଳ ଯହୁଁ ରାମଚନ୍ଦ୍ର ଶୁଣିଲେ ।
କୋଦଣ୍ଡ ଆମଞ୍ଚି ନାରାଜ ସନ୍ଧିଲେ ॥୨୨॥
ଦେଖିଣ ବିଭୀଷେଣ ମହାଭୟେ କଲା ।
ପୟରେ ଲୋଟିଣ କରଯୋଡ଼ି କହିଲା ॥୨୩॥
ଭୋ ଦେବ ଜାମ୍ୱୋମାଳି ମୋହର ଶରୀରଇ ।
ତାହାର ମରନ୍ତେ ମୁହିଁ ସେ ମରଇ ॥୨୪॥
ଜାମ୍ୱୋମାଳିକି ବିନାଶିବୁ ଯେବେ ।
ମୋହର ଜୀବନ ରହଇ କି ତେବେ ॥୨୫॥
ଶୁଣିଣ କ୍ଷତ୍ରିବର ବିରସ ହୋଇଲେ ।
ଜାମ୍ୱୋମାଳିକି ଅନେକ ପ୍ରବୋଧ କହିଲେ ॥୨୬॥
ଶ୍ରୀରାମ ବଚନେ ଜାମ୍ୱୋମାଳି ପ୍ରବୋଧ ହୋଇଲା ।
ଦୁଇ ପୁତ୍ର ଘେନି ସଂଗ୍ରାମେ ନ ପଶିଲା ॥୨୭॥

ଜାମ୍ବୋମାଳିର ବିଭୀଷେଣ ଯେବଣ ସିଦ୍ଧାନ୍ତ ।
ବିସ୍ତାରି କହନ୍ତି ତାହା ସୀତୟାର ବେନି ସୁତ ॥୨୮॥

## ରାବଣ ବଧ

ଏସନେକ କଥା ଶୁଣିଣ ଲଙ୍କପତି ।
ପଉଲସ୍ତିଙ୍କ ଆଶ୍ରମକୁ ଗଲାକ ତଡ଼ତି ॥୧॥
ପ୍ରଣମ୍ୟ ହୋଇ କହଇ ବିସର୍ବାର ସୁତ ।
ଭୋ ମୁନି ସଂଗ୍ରାମେ ମଲେ ମୋହର ସକଳ ପୁତ୍ରଭ୍ରାତ ॥୨॥
ଏକା ମଉଳା ମୋତେ ସାହା ହୋଇଥିଲା ।
ସେହି ଏବେ ରାମର ବୋଲେ ସମର ଛାଡ଼ିଲା ॥୩॥
ମୁହିଁ ଏବେ କେବଣ ଉପାୟ କରିବି ।
ରାମଲକ୍ଷ୍ମଣ ବାନରନ୍ତ କେମନ୍ତେ ମାରିବି ॥୪॥
ତୋହର ମତେ ମୋହର ଶିରୀ ସମ୍ପତି ।
ବିଚାରିଣ ଆଜ୍ଞା ମତେ ଦେସି ମହାଯତି ॥୫॥
ପଉଲସ୍ତି କହନ୍ତି ଶୁଣରେ ଦଶଗିରି ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ରାମଙ୍କୁ ନାହିଁ ସରି ॥୬॥
ବାନରଙ୍କ ତୁଲେ ନ କର ତୁହି ଦ୍ୱନ୍ଦ ।
ସମସ୍ତ ମର୍କଟେ ଦେବଗଣବୃନ୍ଦ ॥୭॥
ତୁହି ମୋହର ବଚନ ପ୍ରତିପାଳୁ ଯେବେ ।
ଲଙ୍କପୁର ରାଜ୍ୟ ଏବେ ଭୋଗ ପାଇବୁଟି ତେବେ ॥୮॥
ଶିରୀ ସମ୍ପତି ତୋହର ନାଶ ନୋହିବ ।
କଦଳୀ ବୃକ୍ଷ ଜାଣି ପୁତ୍ରନାତି ଉପୁଜିବ ॥୯॥
ସୀତାକଇ ସମର୍ପ ନେଇ ଶ୍ରୀରାମର ପାଶ ।
ତେବେ ସେ କ୍ଷତ୍ରିବର ଛାଡ଼ିବ ତୋତେ ରୋଷ ॥୧୦॥
ତୁହି ଅବା ସଂକୁଚ କରୁ ଲଙ୍କପତି ।
ମୁହିଁ ତୋତେ ରାମର ତୁଲେ କରାଇବି ପ୍ରୀତି ॥୧୧॥
ସୀତାକଇ ଘେନି ରାମର ତହିଁକି ଚାଲ ଯିବା ।
ମନେଣ ଆନ କିଛି ବୁଧି ନ ଭାଳିବା ॥୧୨॥
ଶୁଣିଣ କୋପେ କହଇ ଦଶଶିର ।
ଏହା ସେ ପୁଛି ଅଇଲି ମୁନିବର ॥୧୩॥
ରାମର ତହିଁ ମୁହିଁ ଶରଣ ପଶଇ ।
କ୍ଷତ୍ରି ପଣ ମୋହର ହୋଇବ ବିନାଶଇ ॥୧୪॥
ଯେତେ କଥା ପୌଲସ୍ତିଙ୍କର ଆଗରେ କହିଲା ।
ଲବକୁମର ସେ କଥା ଗୀତେଣ ଗାଇଲା ॥୧୫॥
ପୌଲସ୍ତିଙ୍କର ଆଗେ ଯିସ କହିଲେ ଦଶଗିରି ।
କୁଶକୁମର କହଇ ତାହା ଅର୍ଥ କରି ॥୧୬॥
ଯହୁଁ ଆସି ଅନ୍ତଃପୁରେ ପଶଇ ଦଶଶିରଇ ।
ମାତା ମାଉଁସୀନ୍ତ ହକାରି ପାଶଇ ॥୧୭॥
ମାତାକଇ କହଇ ଦନୁଜ ନୃପତି ।
ତୁମ୍ଭର ଭାଇ ଗୋ କଲେ ଅନୀତି ॥୧୮॥
ନଉକେଶା କହଇ ଶୁଣସିରେ ସୁତ ।
ରାମର ଆଗେ ସମର୍ପିବା ଜନେକର ଦୋହିତ ॥୧୯॥
କାହାର କଥା ରାବଣ ନ ଶୁଣିଲା ।
ଯୁଦ୍ଧ କରିବାକୁ ରଣଯାଗ କଲା ॥୨୦॥
ନିକୁମ୍ଭିଲା ବଟତଳେ ଯାଗ କରନ୍ତେ ।
ଛାଗଳ ମହିଷି କୁକୁଟ ବଳି ଦିଅନ୍ତେ ॥୨୧॥
ଧୂମର ତେଜେ ଯେ ମେଘ ଗରଜିଲା ।
ଶ୍ରୀରାମର ଆଟରେ ଅଗ୍ନିପଥର ବରଷିଲା ॥୨୨॥
ତହୁଁ ରାମଚନ୍ଦ୍ର ଯୂଥପତିକି ପେଷିଲେ ।
ଜିଘ୍ନ ନାଶି ବ୍ରାହ୍ମଣନ୍ତ ଅଣାଇଲେ ॥୨୩॥
ନିକୁମ୍ଭିଲା ବଟ ହନୁମନ୍ତ ଉପାଡ଼ିଲା ।
ଶ୍ରୀରାମର ସନିଧେ ସେ ବଟ ନେଇ କଲା ॥୨୪॥
ନିକୁମ୍ଭିଲା ବଟ ରାମକୁ କହିଲେ ଯେବଣ ବଚନ ।
ଗୀତେଣ ଗାଇଲେ ତାହା ସୀତୟାର ବେନି ସୂନ ॥୨୫॥
ବ୍ରହ୍ମା ଦୂତ ପେଷିଲା ଗନ୍ଧର୍ବନ୍ତ ରାଇ ।
ମୋହର କଥା ରାମର ଆଗେ କହସି ବେଗେ ଯାଇ ॥୨୬॥
ସେ ବଟ ରାମ ବିନାଶ ନ କରୁ ।
ଗୋମନ୍ତ ପର୍ବତେ ହନୁମନ୍ତ ଥୋଇ ଆସୁ ସେ ତରୁ ॥୨୭॥
ବ୍ରହ୍ମାର ବଚନେ ଗନ୍ଧର୍ବ ଅଇଲା ।
ଶ୍ରୀରାମର ଆଗେ ସେ ସକଳ କଥା କହିଲା ॥୨୮॥
ଗୋମତ ପର୍ବତେ ଏ ତରୁବର ଥିବ ।
ଦ୍ୱାପର ଯୁଗକୁ ତୋର କଥା ରହିଥିବ ॥୨୯॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ହନୁମନ୍ତ ମୁଖ ଚାହିଁ କ୍ଷତ୍ରିବର କହିଲେ ॥୩୦॥
ନିକୁମ୍ଭିଲା ବଟ ଘେନିଣ ତୁ ଯିବୁ ।
ଗୋମତ ପର୍ବତେ ଛାଡ଼ିଣ ଆସିବୁ ॥୩୧॥
ଶ୍ରୀରାମର ବାକ୍ୟ ଉଚ୍ଚାରିଲା ଯହୁଁ ।
ବଟ ଘେନି ମାରୁତି ବିକ୍ରମି ଗଲା ତହୁଁ ॥୩୨॥
ପୂର୍ବେ ବର ପାଇଅଛି ହନୁମାନ ।

ମନେ ଯାହା ଧରଇ ତହିଁକି କରଇ ଗବନ ॥୩୩॥
ଗୋମତ ପର୍ବତ ତଳେ ନିମଷକେ ମିଳିଲା ।
ନିକୁମ୍ଭିଲା ବଟ ଥୋଇ ରାମର ସନିଧେ ତୁରିତେ ମିଳିଲା ॥୩୪॥
ବଟ ଯାନ୍ତେ ଦେଖିଲା ପୌଲସ୍ତିର ନାତି ।
ଯୁଦ୍ଧକୁ ସଜ ହୋଇଲା ଦନୁଜ ନୃପତି ॥୩୫॥
ପଞ୍ଚାଶ କୋଟି ମକୁଟଯୋଦ୍ଧା ହକରାଇ ।
ପୃଷ୍ପ ଚନ୍ଦନ ଦେଇ କହଇ ଦଶଶିରଇ ॥୩୬॥
ମୋହର ସମାନେ ଭାଗ୍ୟ ତୁମ୍ଭେ ଭୁଞ୍ଜ ।
ପାରତ ମୋହର ବଇରି ତେଜ ଗଞ୍ଜ ॥୩୭॥
ନଉଚେତ ସଂଗ୍ରାମ ଭୂମିରେ ପଶି ମରିବା ।
ଦୋଷ ବିନାଶି ସରଗ ସଭାରେ ବସିବା ॥୩୮॥
ଶୁଣିଣ ଯୋଦ୍ଧାଏ ହରଷ ହୋଇଲେ ।
ଯେ ଯାହାର ଯାନ ରଥ ସଜ କଲେ ॥୩୯॥
ପୁଷ୍ପେକ ରଥ ଚଢ଼ଇ ଦଶମାଥ ।
ସଙ୍ଗେଣ ଅଛନ୍ତି କୁମ୍ଭକର୍ଣ୍ଣର ବେନିସୁତ ॥୪୦॥
ପଞ୍ଚାଶ କୋଟି ଯୋଦ୍ଧା ରାବଣର ଆଗେ ଯୁଦ୍ଧ କଲେ ।
ବାନରଙ୍କ ହାଥେ ସେ ସମସ୍ତ ହେ ମଲେ ॥୪୧॥
ରାମ ରାବଣର ସମର ମହାଘୋର ।
ବାଣର ଆଦ୍ୟାନେ ନ ଦିଶେ ଦିନଙ୍କର ॥୪୨॥
ଗୁଣ ଟଙ୍କାରେ ପୃଥିବୀ କମ୍ପଇ ।
ସମର କରୁଛନ୍ତି କ୍ଷତ୍ରିବର ସୁନ୍ଦରଇ ॥୪୩॥
ଘନ ଘନ କ୍ଷତ୍ରିବର ଧନୁ ଆମଞ୍ଚିଲା ।
ଶ୍ରୀରାମର ତେଜ ଯହୁଁ ରାବଣ ଦେଖିଲା ॥୪୪॥
ପୁଷ୍ପେକ ବିବାନ ଘେନି ଶୂନ୍ୟେଣ ସମ୍ଭାଇଲେ ।
ଯେତେକ ସଇନି ସଂଗ୍ରାମରେ ଥିଲେ ॥୪୫॥
ରିପୁ ଦହନ ନାରାଜନ୍ତ ଘେନି ମାଇଲେ ।
ସୁର ସିଦ୍ଧ ଗଣେ ଯହୁଁ ରାବଣର ରଥ ଶୂନ୍ୟେ ଦେଖିଲେ ॥୪୬॥
ଦେବଙ୍କର ରଥ ଦେଇ ମାତଳିକି କହିଲେ ।
ସୁରସିଦ୍ଧ ଦେବଗଣେ ଜୟ ଜୟ କଲେ ॥୪୭॥
ରାମ ଲକ୍ଷ୍ମଣକୁ ରହୁବର ଦେସି ।
ଶ୍ରୀରାମର ରଥେ ସାରଥି ହୋଇ ଥାସି ॥୪୮॥
ଇନ୍ଦ୍ରର ବଚନେ ମାତଳି ରଥ ଘେନି ଗଲା ।
ରାମ ଲକ୍ଷ୍ମଣକଇ ରଥ ନେଇ ଦେଲା ॥୪୯॥
ନନ୍ଦୀଘୋଷ ରଥରେ ବିଜୟେ କଲେ କ୍ଷତ୍ରିବର ସୁନ୍ଦର ।
ମଙ୍ଗଳ ଯାନ ଆରୋହିଲା ସୁମିତ୍ରା କୁମର ॥୫୦॥
କୁମ୍ଭ ନିକୁମ୍ଭ ଯୁଦ୍ଧ କରନ୍ତେ ।
ମାତଳିକି ପୁଛିଲେ ସୀତୟାର କାନ୍ତେ ॥୫୧॥
ଏ ଦୁଇ ଅସୁରଙ୍କର କିସ କିସ ନାମ ।
ମୁହିଁ ନ ଜାଣଇ ଏହାଙ୍କରେ କିସ ସଂଗ୍ରାମ ॥୫୨॥
ବିଭୀଷେଣକଇ ଏ ରଥେ ବସାଇବ ।
ସେହି ସେ ମୋହର ପ୍ରାଣର ସଦଭାବ ॥୫୩॥
ମାତଳି କହଇ ଏ ଦେବତାଙ୍କର ରଥ ।
ଅସୁରକୁଳେ ଜନ୍ମି କେସନେକ ବସିବ ଏଥ ॥୫୪॥
ଶ୍ରୀରାମ କହନ୍ତି ଶୁଣ ହୋ ମାତଳି ।
ମୋହର ଆତ୍ମାରୁ ସେ ହୋଇଲାନି ଅଗୁଳି ॥୫୫॥
ଯେତେବେଳହୁଁ ମୋହରେ ପଶିଲା ଶରଣ ।
ଜଂଘେ ବସାଇ ବିଭୀଷେଣକୁ କଲି ଆଲିଙ୍ଗନ ॥୫୬॥
ରାବଣକୁ ମାରି ବିଭୀଷେଣକୁ ରାଜା କରିବି ।
ଯାବତ କାଳକୁ କଥା ରୁହାଇବି ॥୫୭॥
ଶୁଣିଣ ମାତଳି ହରଷ ହୋଇଲା ।
ବିଭୀଷେଣକଇ ପାଖେ ବସାଇଲା ॥୫୮॥
ଶ୍ରୀରାମ ପଚାରନ୍ତି ଶୁଣ ବିଭୀଷଣ ବୀର ।
ଏ ଦୁଇ ଦଇତ୍ୟ ଯେ କରନ୍ତି ସମର ॥୫୯॥
ଏ ଦୁହିଁଙ୍କର ନାମ କିସ କିସ ।
କରଯୋଡ଼ି କହଇ ବିଭୀଷେଣ ଶ୍ରୀରାମର ପାଶ ॥୬୦॥
ଭୋ ଦେବ ଏ ଦୁଇ ବୀର କୁମ୍ଭକର୍ଣ୍ଣର ସୁତ ।
କୁମ୍ଭ ନିକୁମ୍ଭ ଏହାଙ୍କର ନାମ ବିଖ୍ୟାତ ॥୬୧॥
ପିତାର ସମାନେ ସମରେ ଶକତ ।
ହେଳ ଯୁଦ୍ଧ ଏହାକୁ ନ କର ରଘୁନାଥ ॥୬୨॥
ବିଭୀଷଣର ବଚନ ଶୁଣି କ୍ଷତ୍ରିବର ସୁନ୍ଦର ।
ବାବଲ ଶର ପେଷି କରି ଦୁହିଙ୍କରି କାଟିଲେକ ଶିର ॥୬୩॥
କୁମ୍ଭ ନିକୁମ୍ଭର ମରଣ ଦେଖିଲା ଦଶମାଥ ।
ଶ୍ରୀରାମର ସନିଧେ ଆଣି କଲା ତତକ୍ଷଣେ ରଥ ॥୬୪॥
ରାମ ରାବଣ ଏକ ମୁଖ ହୋଇଲେ ।
କୁଳ ଉଦଘାଟି ମର୍ମକଥା କହିଲେ ॥୬୫॥
ତହୁଁ ବାଣେ ଘୋର ସମର କରନ୍ତି ।
ଓହୋବଳ ସଂଗ୍ରାମ ଛାଡ଼ିଣ ଦେଖନ୍ତି ॥୬୬॥
ନବ ବାର ରାବଣର ଛେଦିଲେ ରାମ ଶିର ।

କଣ୍ଠରୁ ଆନ ମୁଣ୍ଡ ହୋଇଲା ବାହାର ॥୬୭॥
ବିଷାଦ ହୋଇ ରାମ ଧନୁଶର ଛାଡ଼ନ୍ତେ ।
ବିଭୀଷେଣ କହଇ ଶ୍ରୀରାମ ଅଗ୍ରତେ ॥୬୮॥
ଭୋ ଦେବ ହୃଦରେ ତାର ଅକ୍ଷୟେ ଲିଙ୍ଗ ଅଛି ।
ହୃଦୟକୁ ବାଣ ବିନ୍ଧ ରଘୁବଛି ॥୬୯॥
ଦଣ୍ଡ ମୁଣ୍ଡକୁ ବିନ୍ଧିବ ଦଶ ବାଣ ।
ତେବେ ସେ ମରଇ ନିଶାଚର ରାବଣ ॥୭୦॥
ବିଭୀଷେଣର ବଚନ ଯହୁଁ ଶ୍ରୀରାମଚନ୍ଦ୍ର ଶୁଣିଲେ ।
ଏଗାର ନରାଚ ଧନୁଗୁଣରେ ବସାଇଲେ ॥୭୧॥
ବ୍ରହ୍ମଶର ଯାଇ ହୃଦରେ ଫୁଟିଲା ।
ଦଶ ନାରାଚ ଦଶମୁଣ୍ଡ ଛେଦିଲା ॥୭୨॥
ଦେଖି ଦେବଗଣେ ଜୟେ ଜୟେ କଲେ ।
ସ୍ୱର୍ଗ ଅପଛରୀ ହୁଳହୁଳି ଦେଲେ ॥୭୩॥
ଶ୍ରୀରାମର ଶିରେ କୁସୁମ ବୃଷ୍ଟି କରନ୍ତି ।
ଦଣ୍ଡ ବୁଲାଇ ନାଚଇ ନାରଦ ବ୍ରହ୍ମଯତି ॥୭୪॥
ବ୍ରହ୍ମା ପୁରନ୍ଦର ଦଶ ଦିଗପାଳେ ।
ସିଦ୍ଧ ସାଧ ଆନନ୍ଦ ସକଳେ ॥୭୫॥
ଏଥୁ ଅନନ୍ତରେ ଶୁଣ ଯୁଧିଷ୍ଠି ରାଜନ ।
ରାମର ଆଗେ ଗୀତ ଗାବନ୍ତି ସୀତୟାର ବେନି ନନ୍ଦନ ॥୭୬॥
ରାବଣର ଶିର ଛିଡ଼ି ରଥରେ ଯହୁଁ ପଡ଼ିଲା ।
ସେ ହି ସାକ୍ଷାତ ଅମରପୁରକଇ ଗଲା ॥୭୭॥
ଅପଛରୀ ନୃତ୍ୟ କରନ୍ତି ତାହାର ଆଗେ ।
ତାଳ ମୃଦଙ୍ଗ ବିବିଧ ବାଦ୍ୟ ବାଜଇ ସୁବାଗେ ॥୭୮॥
ଗନ୍ଧର୍ବନ୍ତ ଘେନି ଦେବରାଜା ଅଇଲା ।
ରାବଣକଇ ନେଇ ସୁରସଭାରେ ବସାଇଲା ॥୭୯॥
ରାବଣ ଦଶମାଥ ଯେବଣ ବଚନ ।
ବିସ୍ତାରି କହନ୍ତି ସୀତୟାର ବେନି ନନ୍ଦନ ॥୮୦॥
ଶୁଣିଣ ସଭାଲୋକେ ହୃଦୟ ବିଗଂସି ।
ଧନ୍ୟ ଧନ୍ୟ କରନ୍ତି ବଶିଷ୍ଠ ମହରଷି ॥୮୧॥
ଶ୍ରୀରାମ କହନ୍ତି ଶୁଣସି ବ୍ରହ୍ମସୁତ ।
ଯେସନେକେ ରାବଣର ଛେଦିଲି ଦଶମାଥ ॥୮୨॥
ଯେତେ କହିଲେ ଏ ଦୁଇଭାଇ ।
ଏ ପଦ କହିବା ଭଳି ଏଥେ ଅଭ୍ୟାନ୍ତର ନାହିଁ ॥୮୩॥
ଯେବଣ ପୁରୁଷ ହସ୍ତେ ଏହାକୁ ଶାସ୍ତ୍ର ପଢ଼ାଇଲା ।
କି ଅବା ସେ ମହାତ୍ମା ଯୁଦ୍ଧର ବେଳେ ଥିଲା ॥୮୪॥
କି ଅବା ଭବିଷ୍ୟଜ୍ଞାତା ସେ ଯତି ।
କି ଅବା ବ୍ରହ୍ମା କି ପ୍ରତକ୍ଷେ ସରସ୍ୱତୀ ॥୮୫॥
ବଶିଷ୍ଠେ କହନ୍ତି ଗୁରୁ ସବୁନ୍ତିକି କହନ୍ତି ଶାସ୍ତ୍ର ।
ପୂର୍ବକୃତ ନ ଥିଲେ ବିଦ୍ୟା ନୁହୋଇ ପ୍ରାପତ ॥୮୬॥
ଲଇ ଉତପନେ ଯେ ମାହିନ୍ଦ୍ର ବେଳେ ହୁଅନ୍ତି ଜାତ ।
ସେ ସେ ବାକ୍ୟ ବଖାଣ କରନ୍ତି ବହୁତ ॥୮୭॥
ମହତ କୁଳେ ଏ ଦୁଇଭାଇ ଉତପତି ।
ଶୁଣନ୍ତି ରଘୁନାଥ କଉଶୁଲ୍ୟା ସନ୍ତତି ॥୮୮॥
ବାକ୍ୟ ସମାପତ ହୋଇଲେ ଏହାକୁ ପୁଛିବା ।
କେ ପିତା କେ ମାତା ସ୍ୱରୂପ ବୁଝିବା ॥୮୯॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ଦୁଇ କୁମରନ୍ତ କୋଳ କରି ଶିରେ ଚୁମ୍ବନ ଦେଲେ ॥୯୦॥

## ସୀତାଙ୍କ ଅଗ୍ନି ପରୀକ୍ଷା

ବଶିଷ୍ଠେ କହନ୍ତି ଶୁଣ ଦୁଇଭାଇ ।
ରାବଣେଶ୍ୱର ରାଜା ଯେବେ ପ୍ରାଣନାଶ ହୋଇ ॥୧॥
ତହୁଁ କିସ କଲେ ଦଶରଥର ସୁତ ।
କହସି ବିସ୍ତାରି ଶୁଣନ୍ତୁ ସମସ୍ତ ॥୨॥
ଲବକୁମର କହଇ ରାବଣ ଯହୁଁ ମଲା ।
ଦେଖିଣ ବିଭୀଷେଣ ଅନେକ ରୋଦନ କଲା ॥୩॥
କିମ୍ପାଇଁ ଭ୍ରାଥ ସୀତୟାକଇ ହରିଲୁ ।
କଳପ ବରଷ ସରିଲା ପୁତ୍ରନାତି ମରାଇଲୁ ॥୪॥
ବିଭୀଷେଣର ବଚନ ଯହୁଁ ରାମଚନ୍ଦ୍ର ଶୁଣିଲେ ।
ଶରୀର ଆଶ୍ୱାସି କୋଳରେ ବସାଇଲେ ॥୫॥
ଛାଡ଼ ଛାଡ଼ ଶୋକ ବାବୁ ନ କର ରୋଦନ ।
ତୋହର କାନ୍ଦନ୍ତେ କ୍ରୋଧ ବସଇ ମୋହର ମନ ॥୬॥
ଶ୍ରୀରାମର ବଚନ ଯହୁଁ ବିଭୀଷେଣ ଶୁଣିଲା ।
କୋଳୁ ଓହ୍ଲାଇ ଗଡ଼ଘାଲି ସ୍ତୁତିଲା ॥୭॥
ଶ୍ରୀକରେ ଶ୍ରୀରାମ ବିଭୀଷେଣକୁ ତୋଳିଲେ ।
ସୁଗ୍ରୀବି ହକାରି ଶ୍ରୀରାମ ଆଜ୍ଞା ଦେଲେ ॥୮॥
ଯେତେକ ଅସୁର ପଳାଇ ଅଛନ୍ତି ।
ତାହାଙ୍କୁ ସମ୍ଭାଳଣ କର ମୈତ୍ର ନ ଦିଅ ଶାସ୍ତି ॥୯॥
ସେ ଆମ୍ଭଙ୍କୁ କରିବେ ପୁଣ କିସ ।
ଯେ ମୋହର ବଇରି ତାହା ତ କଲ ପ୍ରାଣନାଶ ॥୧୦॥

ଶ୍ରୀରାମର ବଚନ ଶୁଣି କପି ନୃପତି ।
ଶୁକ ସାରଣକୁ ହକାରି ଆଣଇ ରାମ କତି ॥୧୧॥
ଯେତେକ ଦନୁଜ ପଳାଇଣ ଥିଲେ ।
ସମସ୍ତେ ବିଭୀଷେଣର କତିକି ଅଇଲେ ॥୧୨॥
ଶ୍ରୀରାମ କହନ୍ତି ବିଭୀଷେଣର ମୁଖ ଚାହିଁ ।
ରାବଣକୁ ଦହନ କର ସମସ୍ଥାନେ ନେଇ ॥୧୩॥
କ୍ଷତ୍ରିବର ସୁନ୍ଦର ବଚନ ପ୍ରମାଣେ ।
ରାବଣର ଶରୀର ଦହନ କରନ୍ତି ତତକ୍ଷଣେ । ॥୧୪॥
ତଦଅନ୍ତରେ ସୀତୟାର ପତି ।
ବିଭୀଷେଣକୁ ଲଙ୍କାରେ ଅଭିଷେକ କରନ୍ତି ॥୧୫॥
ମନ୍ଦୋଦରୀକି ପାଟମହାଦେଇ କଲେ ।
କନକଦଣ୍ଡ ଛତ୍ର ଶୁକସାରଣ ଧଇଲେ ॥୧୬॥
ନଗ୍ରଯାକ ବୁଲି ବିଭୀଷେଣ ଅଇଲା ।
ଶ୍ରୀରାମର ପୟର ଧରି ଅକ୍ଷୟ ବିନୋୟି କହିଲା ॥୧୭॥
ଶତ୍ରୁ ମାରି ମୋତେ କଲତ ନୃପତି ।
ଏବେ ତୋହର କତିକି ଅଣାଇବା ସତୀ ॥୧୮॥
ଶ୍ରୀରାମ କହନ୍ତି ତାହାର ମୁଖ ନ ଚାହିଁ ।
ଦୋଚାରୀ ଯୁବତୀ ସେ ଜଗତେ ମହାଦ୍ରୋହୀ ।
ଲୋକିତ ଅପବାଦକୁ ସିନା ରାବଣ ମାଇଲଇ ॥୧୯॥
ତାହାରେ ତ ମୁହିଁ ପାଇଲଇ ଦୁଃଖ ।
ଅନେକ ଅସୁର ମାରି ହୋଇଲି ବିମୁଖ ॥୨୦॥
ବିଭୀଷେଣ କହଇ ସତୀର ଦୋଷ ନାହିଁ ।
ବିଧାତା ପୁରୁଷ ରାବଣକୁ ହୋଇଲା ଅସାହି ॥୨୧॥
ତେଣୁ ସେ ମହାସତୀକି ହରିଣ ଆଣିଲା ।
ଏଣୁ ସେ ରାବଣର ସ୍କନ୍ଧରୁ ଲକ୍ଷ୍ମୀ ଛାଡ଼ିଲା ॥୨୨॥
ସୀତାକୁ ଭୋ ଦେବ ଅଶୋକ ବନୁ ଅଣାଇବା ।
ଦୋଷ ଉପଖି ଗୁଣ ଯେ ଘେନିମା ॥୨୩॥
ଏସନେକ କହି ବିଭୀଷଣ ମନ୍ଦୋଦରୀ ।
ପୟରେ ତଳେ ପଡ଼ନ୍ତି ଦନ୍ତରେ ତିରଣ ଧରି ॥୨୪॥
ଯୂଥପତି ମାନେ ବିଭୀଷଣର ପ୍ରଣମ୍ୟ ଦେଖିଲେ ।
ସମସ୍ତେ ହେ ଗଡ଼ଘାଲି ପୟର ତଳେ ପଡ଼ିଲେ ॥୨୫॥
ଶ୍ରୀରାମ ବୋଇଲେ ତୁମ୍ଭେ କିସ ବୋଲ ।
ଯୂଥପତି ବୋଲନ୍ତି ତୁମ୍ଭେ ଶୁଣ ରଘୁମଲ ॥୨୬॥
ଭୋ କ୍ଷତ୍ରିବର ଆମ୍ଭେ ସୀତୟାକୁ ଦେଖିବୁ ।
ତେବେ ସେ ସମର କଷ୍ଟ ପାସୋରିବୁ ॥୨୭॥
ଯୂଥପତିର ବଚନେ ଶ୍ରୀରାମ ସନମତ କଲେ ।
ହନୁମନ୍ତକୁ ପଠିଆଇ ସୀତୟାକୁ ଅଣାଇଲେ ॥୨୮॥
ସୀତୟାକଇ ଶ୍ରୀରାମ କୋପେ ବୋଇଲେ ଯାହା ।
ସଭାରେ ଲବକୁଶେ ଗୀତେ ଗାଇଲେ ତାହା ॥୨୯॥
ଶ୍ରୀରାମ କହନ୍ତି ସୀତାର ମୁଖ ଚାହିଁ ।
ତୋହର ଜ୍ଞାନେ ଯେବେ ପାପ କଲା ନାହିଁ ॥୩୦॥
ଶତେ ପଳ ତମ୍ବା ହସ୍ତରେ ଘେନିବୁ ତତାଇ ।
ତେବେ ସେ ଶରୀରୁ ପାତେକ ଛାଡ଼ିବଇ ॥୩୧॥
ସୀତୟା କହନ୍ତି ମାଣ୍ଡୁରେ ଅର୍ଥ କିସ ।
ଅଗ୍ନିରେ ମୁହିଁ ହୋଇବି କିନା ପ୍ରବେଶ ॥୩୨॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ସାତରାତ୍ର ସାତଦିବସ ଅନଳେ ଦହନ କଲେ ॥୩୩॥
ସତୀର ରୋମେକ ବିନାଶ ନୋହିଲା ।
ଓଦା ବସ୍ତ୍ରେ ସେ ପାଣି ନ ଶୁଖିଲା ॥୩୪॥
ତଦ୍ଵାପି ରାମଚନ୍ଦ୍ରେ ପ୍ରତେ ନ ଗଲେ ।
ପିତାର କହନ୍ତେ ସେ ପ୍ରବୋଧ ହୋଇଲେ ॥୩୫॥

## ମୃତ ସେନାଙ୍କ ପୁନର୍ଜୀବନ ଲାଭ

ତହୁଁଣ ରାମଚନ୍ଦ୍ର ବିଭୀଷେଣକୁ ହକାରି ।
ମନ୍ଦୋଦରୀକି ଘେନି ତୁହି ରହସି ତୋର ପୁରୀ ॥୧॥
ବିଭୀଷେଣ କହଇ ଶୁଣସି ଭୋ ନାଥ ।
କାହା ଘେନି ରହିବି ମୁଁ ଏଥ ॥୨॥
ଅନେକ ଅସୁର ଯେ ସଂଗ୍ରାମେଣ ମଲେ ।
ଶୂନ୍ୟ ହୋଇବ ଭୁବନ ମୋହର ଏଥୁ ଗଲେ ॥୩॥
ଅନେକ ଧନବସ୍ତ୍ର ପାଣିଦ୍ରବ୍ୟ ଅଛଇ ।
ଦେବ ଭୁବନ ନାହିଁ ସମକଛଇ ॥୪॥
ସନ୍ୟ ନ ଥିଲେ ଭଣ୍ଡାର କାହାଘେନି ରଖିବା ।
ବିଚାରି ଆଜ୍ଞା ଦେବା କିସ ବୁଧି କରିବା ॥୫॥
ଶ୍ରୀରାମ କହନ୍ତି ତୁହି ଭୟ କଲୁ ଯେବେ ।
ଅସୁର ସଇନ୍ୟ ତୁମ୍ଭର ଜିଆଁଇବା ଏବେ ॥୬॥
ଶ୍ରୀରାମର ବଚନ ଯହୁଁ ସୁଗ୍ରୀବର ଶୁଣିଲା ।
ଶିରେ କର ଦେଇ ବିନୋୟି କହିଲା ॥୭॥
ଭୋ ଦେବ ବାବନ ବନସ୍ତରୁ ଯେ ବାନରେ ଅଇଲେ ।
ସଂଗ୍ରାମ କରି ଏଥେ ଅନେକ ମରକଟ ମଲେ ॥୮॥

କିସ୍କିନ୍ଧା ନଗ୍ରକୁ ଯିବି ମୁହିଁ ଯେବେ ।
ସେ କପିଙ୍କରି ଭାରିଯାଏ ରୋଦନ କରିବେ ॥୯॥
କେସନେକେ ତାହାଙ୍କର ଦୁଃଖ ଦେଖିବି ।
ରାଜ୍ୟ ନ କରିବି ମୁହିଁ ଦେଶାନ୍ତର କରିବି ॥୧୦॥
ଶ୍ରୀରାମ କହନ୍ତି ଶୁଣସି ହୋ ମୈତ୍ର ।
ସମସ୍ତ ବାନରେ ପାଇବେ ଜୀବିତ ॥୧୧॥
ସୁଗ୍ରୀ କହନ୍ତେ ଶୁଣିଲେ ରକ୍ଷପତି ।
ଶ୍ରୀରାମ ପୟର ତଳେ ଲୋଟିଲେ ତଡ଼ତି ॥୧୨॥
ଉଠିଣ କହଇ ଶିରେ ଦେଇ କର ।
ଶୁଣସି ବୟାଣ ମୋର ଅଯୋଧ୍ୟାଠାକୁର ॥୧୩॥
ସତଷଠି କୋଟି ଘେନି ମୋହର ଭାଇ ଡାଳିମ୍ବ ଅଇଲା ।
ସମସ୍ତ ରକ୍ଷ ଘେନିସେ ସଂଗ୍ରାମେ ପଡ଼ିଲା ॥୧୪॥
ସେ ଯେମନ୍ତେ ଜୀବନ ପାବନ୍ତି ଭୋ ନାଥ ।
ଏତେ ବୋଲି ଜମ୍ବେବ ଶିରେ ଦେଲା ହସ୍ତ ॥୧୫॥
ଶ୍ରୀରାମ କହନ୍ତି ଯେ ଜମ୍ବେବ ମୁଖ ଚାହିଁ ।
ଯେତେକ ସଂଗ୍ରାମେ ମଲେ ସବୁନ୍ତି ଦେବି ଜୀଆଇଁ ॥୧୬॥
ଏସନେକ କହି ସୀତୟାର ପତି ।
ଊର୍ଦ୍ଧକଇ ଚାହିଁ ଶ୍ରୀରାମ ଇନ୍ଦ୍ରକଇ କଲେ ସ୍ତୁତି ॥୧୭॥
ଭୋ ମଘବା ମୋତେ ଦୟା କରସି ।
ସଂଗ୍ରାମେଣ ଯେତେ ମଲେ ଜୀଆଇଁଣ ଦେସି ॥୧୮॥
ଶ୍ରୀରାମର ସ୍ତୁତି ଶୁଣିଣ ପୁରୁହୂତ ।
ଅମୃତ ବୃଷ୍ଟି କରାଇଲେ ତୁରିତ ॥୧୯॥
ରାବଣ ପୁତ୍ର ନାତି ମକୁଟ ଯୋଦ୍ଧାମାନେ ।
ସଂଗ୍ରାମେ ପଡ଼ିଲେ ସେ ଅସୁର ସିନ୍ଧୁସ୍ଥାନେ ॥୨୦॥
ସଂଗ୍ରାମେ ଭୂମିରେ ଯେତେ ଓହବଳ ମଲେ ।
ଅମୃତ ବରଷିଲା ସେ ସକଳେ ବ୍ରତିଲେ ॥୨୧॥
ବିଭୀଷେଣ ହକାରି କହନ୍ତି ସୀତାପତି ।
ସନ୍ୟ ଘେନି ଏବେ ରହସି ତୋର କ୍ଷିତି ॥୨୨॥
ବିଭୀଷେଣ କହଇ ତୋହର ତୁଲେ ଯିବି ।
ଅଯୋଧ୍ୟା ନବରେ ତୋହର ଗର୍ଭଧାରୀ ଦେଖିବି ॥୨୩॥
ମନ୍ଦୋଦରୀ କହଇ ଯୋଡ଼ିଣ ବେନି କର ।
ଶୁଣ ଦେବ ଶ୍ରୀରାମ ଅଯୋଧ୍ୟା ଠାକୁର ॥୨୪॥
ସୀତାର ଯଦେଣ ହୋଇଥିବି ଭଗତି ।
ଏସନେକ ଆଜ୍ଞା ମୋତେ ଦେବାକ ରଘୁପତି ॥୨୫॥
ମନ୍ଦୋଦରୀ କି ରାମ ଯେମନ୍ତେ ପ୍ରବୋଧିଲେ ।
ଶ୍ରୀରାମର ଆଗେ ତାହା ଲବକୁଶେ କହିଲେ ॥୨୬॥
ଜାମ୍ୱୋମାଳି ପୁତ୍ର ନ ଦେଖି ପ୍ରାଣ ଛାଡୁଥିଲା ।
ବ୍ରହ୍ମାକୁ ସ୍ତୁତି କରି ରାମ ପୁତ୍ରକୁ ଜୀଆଇଁଲା ॥୨୭॥

## ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ

ତଦଅନ୍ତରେ କପି ରକ୍ଷ ସନ୍ୟର ତୁଲେ ।
ପୁଷ୍ପେକ ରଥେ ସୀତୟାକୁ ଘେନିଣ ବସିଲେ ॥୧॥
ଉଥ ତୋଳି ଲଙ୍କାର ଉପରେ ସମସ୍ତେ ଦେଖନ୍ତି ।
ବନ୍ଦୀ ବନ୍ଧନେ ଯେତେକ ଥିଲେ ମୁକତ କରି ଦିଅନ୍ତି ॥୨॥
ଲଙ୍କାରୁ ବରୁଣ କନେକଦଣ୍ଡ ଆଣିଲେ ।
ଲକ୍ଷ୍ମଣର ମୁଖ ଚାହିଁ ଶ୍ରୀରାମ କହିଲେ ॥୩॥
ସେତୁ ବନ୍ଧ ବାନ୍ଧି ଲଙ୍କାଗଡ଼େ ପଶିଲୁ ।
ଅସୁର ବଳ ବିନାଶି ରାବଣ ବଳ ଛେଦିଲୁ ॥୪॥
ଏବେ ବନ୍ଧ ଛେଦ ତୁହି କର ।
ଶ୍ରୀରାମର ଆଦେଶରେ ଦଶରଥ କୁମର ॥୫॥
କନେକ ଦଣ୍ଡ ଯେ ଦୃହି କରେ ଘେନିଥିଲା ।
କାଖେ ଦଣ୍ଡ ଚାପି ଧନୁ କରେ ଧଇଲା ॥୬॥
ତିନି ବାଣ ପେଶି ତିନି ଖଣ୍ଡ କରଇ ।
ତହୁଁ ବିଜୟେ କରି ଅଇଲେ କ୍ଷେତ୍ରିବର ସୁନ୍ଦରଇ ॥୭॥
ବାନର ସୈନ୍ୟକୁ ବନକୁ ପଠିଆଇଲେ ।
ଯୂଥପତିମାନଙ୍କୁ ଘେନିଣ ଅଇଲେ ॥୮॥
ମଣି ଦେଇ ଲକ୍ଷ୍ମଣ ତିନି କରକ ଦୁଧ ନେଇଥିଲେ ।
ସେ ଗୋପାଳକଇ ରାମ ସନ୍ତୋଷ ମଣିଲେ ॥୯॥
ସେ ଗୋଷ୍ଠେ ରାମ ଦିନେକ ବିଶ୍ରାମିଲେ ।
ସେହୁ ଗୋପାଳନ୍ତ ରାମ ରଥରେ ବସାଇଲେ ॥୧୦॥
ନନ୍ଦୀଗ୍ରାମେ ରାମ ପ୍ରବେଶ ହୋଇଲେ ଯାଇ ।
ତହୁଁ ଭ୍ରଥକଇ ଘେନିଣ ଆସଇ ॥୧୧॥
ଭ୍ରଥକଇ ରାମ ଅନେକ ପ୍ରଶଂସିଲେ ।
ନନ୍ଦିକ ବନେ ଶତୃଘନର ସନିଧେ ମିଳିଲେ ॥୧୨॥
ଅନଳେ ଦୁଇଭାଇ ହୋଉଥିଲେ ପ୍ରବେଶ ।
ତାହାନ୍ତ ଘେନି ରାମ ଅଯୋଧ୍ୟାରେ ପ୍ରବେଶ ॥୧୩॥
ନବର ଭିତରେ ଯେ ପ୍ରବେଶ ଚାପଧାରୀ ।
ଗନ୍ଧମୟେଣ ଭାବେନୀ କଲାକ ଗୁହାରି ॥୧୪॥
ଶ୍ରୀରାମ ମଧୁବତୀକି ଯାହା କହିଲେ ।

ଲବ କୁଶେ ତାହା ଗୀତରେ ଗାଇଲେ ॥୧୫॥
ତଦ ଆନ୍ତରେ ରାମ ନବରେ ପଶନ୍ତି ।
ମାତାର ପୟରେ ରାମ ପ୍ରଣମ୍ୟ କରନ୍ତି ॥୧୬॥
ଅଭିଷେକ ହୋଇବାକୁ ଅନକୂଳ ଘେନିଲେ ।
ସପତ ଋଷି ରାମଙ୍କୁ ଅଭିଷେକ କଲେ ॥୧୭॥
ସୁଗ୍ରୀବ ବିଭୀଷେଣ ଯୂଥପତିମାନ ।
ଜୟେବ ଶତବାଳି ସବୁଙ୍କୁହିଁ କଲେ ସନମାନ ॥୧୮॥
ଯେ ଯାହାର ସ୍ଥାନକଇ ସମସ୍ତେ ହେ ଗଲେ ।
ହନୁମନ୍ତକଇ ରାମେ ଅଯୋଧ୍ୟାରେ ରୁହାଇଲେ ॥୧୯॥
ମାନଧାତା କାଳର ସାତ ମଣି ଭଣ୍ଡାରେ ଥିଲା ।
ସେ ମଣି ରାମ ହନୁମନ୍ତ ଲଲାଟେ ବାନ୍ଧିଲା ॥୨୦॥
ସେ ମଣି ପାଇ ହନୁମନ୍ତ ହୋଇଲା ହରଷଇ ।
ସମୁଦ୍ର ତୀରେ ବଟବୃକ୍ଷ ଉପରେ ବସଇ ॥୨୧॥
ଲଙ୍କାର ଯୁଦ୍ଧ ସୁମରି ହନୁମନ୍ତେ ।
ବଟର ତଳେ କୁଆର ପାଣି ପୂରିଲା ତୁରିତେ ॥୨୨॥
ସମୁଦ୍ର ମାଛେ ବାହାର ହୋଇଲେ ।
ସେ ବଟର ତଳେ ଆସି ଆହାର ଚରିଲେ ॥୨୩॥
ମାଛଙ୍କର ଚହଟ ଦେଖି ପବନ ତନୟେ ।
ବଟର ଫଳ ତୋଳି ପାଣିକି ପକାଏ ॥୨୪॥
ସେ ଫଳ ମାଛେ ଘେନିଗଲେ ତହୁଁ ।
ଫଳପତ୍ର ସବୁ ଛିନାଇ ପକାଇଲେ ତହୁଁ ॥୨୫॥
ଅନେକ ମାଛ ଯେ ଦିଶିଲେ ଦିବ୍ୟ ରୀତି ।
ଦେଖି ଭୋଳ ହୋଇଲାକ ମାରୁତି ॥୨୬॥
ଗଛର ଫଳ ପତ୍ର ତହୁଁ ଛନାଇ ପକାଇଲା ।
ଆବର ଦେବାକୁ କିଛି ହି ନ ପାଇଲା ॥୨୭॥
ମାଛଙ୍କର କଉତୁକ ଯହୁଁଣ ଦେଖିଲା ।
କପାଳୁ କାଢ଼ି ସାତ ମଣି ପକାଇଲା ॥୨୮॥
ସପତ ମଣି ମାଛେ ଗିଳିଲେ ।
କୁଆର ଛାଡ଼ିଲା ମାଛେ ସମୁଦ୍ରେ ପଶିଲେ ॥୨୯॥
ମଥା ଆଉଁସିଲା ହନୁ ମଣିରତ୍ନ ନାହିଁ ।
ମନେ ମନେ ଭାଳଇ ଦଶଦିଗ ଚାହିଁ ॥୩୦॥
ଶ୍ରୀରାମର ସନିଧକୁ କେବଣ ମତେ ଯିବି ।
ସୀତାପତିର ମୁଖ କେମନ୍ତେ ଚାହିଁବି ॥୩୧॥
ଏସନେକ କହି ହନୁମନ୍ତ ମନେ ବିଚାରିଲା ।
ବୃକ୍ଷରୁ ଓହ୍ଲାଇ ବନସ୍ତେ ଲୁଚିଲା ॥୩୨॥
ହନୁମନ୍ତଙ୍କକଇ ରାମ ସନିଧେ ନ ଦେଖିଲେ ।
ବଶିଷ୍ଠ ଋଷିଙ୍କି ଚାହିଁ ପଚାରିଲେ ॥୩୩॥
ଭୋ ମୁନି ହନୁମନ୍ତ ନାହିଁ ଅଯୋଧ୍ୟା ଭୁବନେ ।
ବଶିଷ୍ଠେ କହନ୍ତି ଯେ ଶ୍ରୀରାମ ସନିଧାନେ ॥୩୪॥
ସାତ ମଣି ହନୁମନ୍ତ ପାଣିରେ ପକାଇଲା ।
ତେଣୁ ସେ ହନୁମନ୍ତ ଲାଜେ ବନରେ ଲୁଚିଲା ॥୩୫॥
ଶୁଣିଣ ଶ୍ରୀରାମଚନ୍ଦ୍ରେ ତିନି ଭାଇଙ୍କି ପଠିଆଇଲେ ।
ପବନର ତନୟକୁ ହକାରି ଆଣିଲେ ॥୩୬॥
ଶ୍ରୀରାମକୁ ଯିସ କହିଲେ ମାରୁତି ।
ସଭାରେ ବସି ଲବକୁଶେ ଗୀତେଣ ଗାବନ୍ତି ॥୩୭॥
ଭୋଜନ ସାରି ରାମ ପୁଷ୍ପେକ ଆହୋରିଲେ ।
ହନୁମନ୍ତକୁ ଘେନି ବରୁଣ ତହିଁକି ଗଲେ ॥୩୮॥
ଅଗ୍ନିବାଣ କୋଦଣ୍ଡେ ବସାଇଲେ ଯହୁଁ ।
ଦେଖିଣ ବରୁଣ ଭୟେ କଲା ତହୁଁ ॥୩୯॥
ସାତମଣି ସହିତେ ଲକ୍ଷେ ରତ୍ନ ।
ଘେନି ରାମକଇ ପୂଜା କଲେକ ବରୁଣ ॥୪୦॥
ରତ୍ନ ଘେନି ରାମ ଅଯୋଧ୍ୟାକୁ ଅଇଲେ ।
ଲକ୍ଷେ ମଣିରତ୍ନ ସବୁ ହନୁମନ୍ତକୁ ଅଳଂକାର କରାଇଲେ ॥୪୧॥
ସେ ସାତମଣି ଭଣ୍ଡାରେ ଥୋଅନ୍ତି ।
ପୁଷ୍ୟା ଅଭିଷେକକୁ ଅନକୂଳ ଖୋଜନ୍ତି ॥୪୨॥
ସହସ୍ରେକ ମୁନି ମିଳି ଅଭିଷେକ କଲେ ।
ଅଶ୍ୱମେଧ ଯାଗକୁ ମନେ ବିଚାରିଲେ ॥୪୩॥

## ରାମଙ୍କ କୀର୍ତ୍ତି

ସେ କଥା ଶୁଣି ଲବଣ ବାହିଲା ।
ରାବଣକଇ ମାରିବା ଶୁଣି ମନେ କୋପ କଲା ॥୧॥
ଲବଣର ପ୍ରତାପ ଯହୁଁ ରାମଚନ୍ଦ୍ର ଶୁଣିଲେ ।
ପଞ୍ଚରତ୍ନ ଦେଇ ନିବେଶି ହୋଇଲେ ॥୨॥
ଡଗର ବାରତା ଲବଣ ଶୁଣିଲା ।
ପାଞ୍ଚ ରତ୍ନ ଘେନି ସେ ହରଷ ହୋଇଲା ॥୩॥
ତହୁଁଣ ରାମକଇ କୋପ ଛାଡ଼ିଲା ଲବଣ ।
ନିଜ ରାଜ୍ୟକୁ ବାହୁଡ଼ି ଗଲା ତତକ୍ଷଣ ॥୪॥
ତଦଅନ୍ତରେ ରାମ ଶତୃଘନକୁ ପେଷି ।
ବନସ୍ତେ ଶତୃଘନ ଥାଇ ଅହୋନିଶି ॥୫॥

ଶୂଳ ଛାଡ଼ି ଲବଣ ମୃଗୟା ଯହୁଁ ଗଲା ।
ତେବେ ସେ ଶତୃଘନ ତାହାର ତୁଲେ ଯୁଦ୍ଧ କଲା ॥୬॥
ଶତୃଘନର ଲବଣର ଯେବଣ ଯେବଣ ସିଦ୍ଧାନ୍ତ ।
ଗୀତେ ଗାଇଲେ ତାହା ଲବକୁଶ ବେନି ଭ୍ରାଥ ॥୭॥
ମଲ୍ଲଯୁଦ୍ଧେ ଲବଣ ଶତୃଘନକଇ ଜିଣିଲା ।
କାଖେ ଚାପି ନବରକଇ ଘେନିଗଲା ॥୮॥
ସିଂହଦ୍ୱାରେ ପ୍ରବେଶ ହୋଇଲାକ ସେ ଯେବେ ।
ଶତୃଘନର ଦେହେ ଚେତନା ପଶିଲାକ ତେବେ ॥୯॥
କରପଲ୍ଲବରେ ଲବଣର ମୁଣ୍ଡ ମୋଡ଼ିଲା ଶତୃଘନ ।
ଶିର ଛିଡ଼ି ପଡ଼ିଲା ଲବଣ ରାଜନ ॥୧୦॥
ଲବଣର ବଦ୍ଧ କଥା ଯହୁଁ ରାମଚନ୍ଦ୍ର ଶୁଣିଲେ ।
ଧନ୍ୟରେ ଭ୍ରାଥ ବୋଲି ଧନ୍ୟ ଧନ୍ୟ କଲେ ॥୧୧॥
ଲବକୁମର କହଇ ଅମୃତମୟେ ବଚନ ।
ଶୁଣିଣ ହରଷ ହୋଇଲେ ସଭାର ସର୍ବଜନ ॥୧୨॥
ମଧୁବନ ରାଜ୍ୟ କଲାକ ରାମର ସାନ ଭାଇ ।
ଲକ୍ଷେକ ବ୍ରାହ୍ମଣକଇ ଶାସନ ବସାଇ ॥୧୩॥
ଡଗର କହନ୍ତେ ରାମ ହରଷ ହୋଇଲେ ।
ଶାସନ ଦେଖିବାକଇ ମଧୁବନକୁ ଗଲେ ॥୧୪॥
ଭାଇକି ମଧୁବନେ ଅଭିଷେକ କରି ।
ମଧୁବନ ତେଜି ଅଇଲେ ନିଜପୁରୀ ॥୧୫॥
ତଦଅନ୍ତରେ ରାମ ଅଶ୍ୱମେଧଯାଗ କଲେ ।
ଶୂଦ୍ର ତପୀଙ୍କର ଯେସନେକେ ଶିର ଛେଦିଲେ ॥୧୬॥
ବ୍ରାହ୍ମଣ ପୁତ୍ରକଇ ରାମ ଜୀଆଁଇଲେ ଯେବଣ ମତେ ।
ସଞ୍ଜାତ ସ୍ୱରୂପେ କହନ୍ତି ସୀତୟାର ବେନିସୁତେ ॥୧୭॥
ବ୍ରାହ୍ମଣ କୁକୁରକୁ ଲାତେକ ମାଇଲା ଯେବେ ।
ଶ୍ରୀରାମ ଆଗେ ଗୁହାରି କଲାକ ସେ ତେବେ ॥୧୮॥
ତାହାକୁ ରାମଚନ୍ଦ୍ର ଯାହା କହିଲେ ।
ସଭାରେ ଲବକୁଶେ ଗୀତରେ ଗାଇଲେ ॥୧୯॥
ପୂର୍ବର କଥା କୁକୁର ମୁଖେ ଶୁଣି ।
ହରଷ ହୋଇଲେ କୋଦଣ୍ଡ ଚାପପାଣି ॥୨୦॥
ବଶିଷ୍ଠକଇ ଘେନି ଯୂଥପତି ସହିତେ ।
ରାମଲକ୍ଷ୍ମଣ ଯେ ସୀତାହି ସମେତେ ॥୨୧॥
ପ୍ରୟାଗ ଗଙ୍ଗା ବାଣରାସୀକି ଯେ ଗଲେ ।
ନାନା ତୀର୍ଥେ ପାପ ବିନାଶିଲେ ॥୨୨॥
ସିଂଘନାଦର ତୁଲେ ଯେମନ୍ତେ କଲେ ସମର ।
ଗୀତେ ଗାଇଲେ ତାହା ଲବ ଯେ କୁମର ॥୨୩॥
ଯେବଣ ପଦ ଲବକୁମର ବିସ୍ମରଇ ।
କୁଶକୁମର ତାହା ଅର୍ଥ କରି କହଇ ॥୨୪॥
ଶ୍ରୀରାମକଇ ସିଂଘନାଦ କହିଲା ଯୋଗମାର୍ଗ ।
ରାମର ମୁଖ ଚାହିଁ ଗଲାକ ସେ ସ୍ୱର୍ଗ ॥୨୫॥
ବାଣରାସୀ ପୁରେ ଅଶ୍ୱମେଧ ଯାଗ କଲେ ।
ଅନେକ ଦାନ ଦକ୍ଷିଣା ତହିଁ ଦେଲେ ॥୨୬॥
ତହୁଁ ବାହୁଡ଼ି ଅଇଲେ କ୍ଷତ୍ରିବର ସୁନ୍ଦର ।
ପ୍ରବେଶ ହୋଇଲେ ଅଯୋଧ୍ୟା ନବର ॥୨୭॥
ଅମ୍ବର ବଚନେ ଅର୍ଣ୍ଣଦାନ ଦେଲେ ଯହୁଁ ।
ଦଶଗୁଣେ ଧର୍ମ ବର୍ଦ୍ଧିତ ହୋଇଲାକ ତହୁଁ ॥୨୮॥
ସମସ୍ତ ଲୋକେ ଦାନପୁଣ୍ୟ କରନ୍ତି ।
ଅକାଳେ ସେ କେହି ମରଣ ନ ପାବନ୍ତି ॥୨୯॥
ଆୟୁଷ ପୂରିଲେ ଯେ ଅବା ନାଶ ଯାଇ ।
ଇନ୍ଦ୍ର ସ୍ଥାନରେ ବସଇ ସେ ଯାଇ ॥୩୦॥
ଦେବ ସଭାରେ ବସିତ ଠାବ ନୋହିଲା ।
ବୃହସ୍ପତିକି ହକାରି ପାକଶାସନ କହିଲା ॥୩୧॥
କିସ ବୁଧି କରିବା କହସି ବିଚାରି ।
ବୃହସ୍ପତି କହନ୍ତି ଶୁଣ ବଜ୍ରଧାରୀ ॥୩୨॥
ସୀତୟାକଇ ଶ୍ରୀରାମ ଉପେଖଇ ଯେବେ ।
ଶ୍ରୀରାମ ସ୍କନ୍ଧୁ ଲକ୍ଷ୍ମୀ ଛାଡ଼ିବାକ ତେବେ ॥୩୩॥
ଭାରିଯାର ବିହୁନେ ରାମ ମନେ କରିବେ ବିରସ ।
ତେବେ ସେ ସକଳ ଧର୍ମ ହୋଇବ ବିନାଶ ॥୩୪॥
ମନ ବିରଙ୍ଗ କଲେ ଧର୍ମ ନୁହଇ କିଛି ।
ବଇରାଗ ହୋଇ ରାମ ସୀତୟା ଉପେଖି ॥୩୫॥
ଗୁରୁଙ୍କ ବଚନ ଶୁଣି ବଜ୍ରଧର ।
ଦେବଗଣନ୍ତ ଘେନି ଗଲେ ବ୍ରହ୍ମାଙ୍କର ପୁର ॥୩୬॥
ବିଧାତା ଆଗରେ କହଇ ସୁରପତି ।
ଇନ୍ଦ୍ର ବଚନ ଶୁଣି ଧାତା ହକାରି ସରସ୍ୱତୀ ॥୩୭॥
ଅନେକ ଆଶ୍ୱାସି କହଇ ଚତୁରାନନ ।
ତୁ ଆଇ ଦେବଇନ୍ଦ୍ରକୁ ହୋଇବୁ ପ୍ରସନ ॥୩୮॥
ତ୍ରିଦଶଦେବଙ୍କର କାର୍ଯ୍ୟ କରିବୁ ।
ଅଯୋଧ୍ୟା ନଗନାରୀଙ୍କର କଣ୍ଠରେ ବସିବୁ ॥୩୯॥

ସମସ୍ତେ ହେ ସୀତାକୁ ଦୋଚାରୀ ବୋଲିବେ ।
ଦୟା ଓପ୍ରୋଧ କେହି ନ କରିବେ ॥୪୦॥
ସେ କଥା ରାମଚନ୍ଦ୍ର ଶୁଣୁଥିବ ।
ସୀତାକଇ ମନେ ବଇରାଗ ଧରିବ ॥୪୧॥
ଗୁଣ ଉପେଖି ସତୀର ଧରିବ ଦୋଷ ।
ବନେ ନେଇ କରାଇବ ନିବାସ ॥୪୨॥

## ସୀତାଙ୍କ ନିର୍ବାସନ

ବ୍ରହ୍ମାର ବଚନେ ଦେବୀ ସରସ୍ୱତୀ ।
ଅଯୋଧ୍ୟା ଲୋକଙ୍କର ହୃଦରେ ବସିଲା ତତକ୍ଷଣାନ୍ତି ॥୧॥
ଶ୍ରୀରାମଙ୍କ କଣ୍ଠରେ ବସି ବିକାର କରାଇଲା ।
ତେଣେ ରାମ ମନେ ଅନ୍ତର ଧଇଲା ॥୨॥
ଓପ୍ରୋଧେ ସୀତୟାକୁ କିଛିହି ନ ବୋଲଇ ।
ଅହୋନିଶି ମନେ ଛିଦ୍ର ବୁଧି ଧରଇ ॥୩॥
ଗୋରଖନାଥେ ଜ୍ଞାନ ଯେମନ୍ତେ କହିଲେ ।
କଦଳୀବନକଇ ହନୁମନ୍ତକୁ ନେଲେ ॥୪॥
ସମସ୍ତ କଥା କହନ୍ତି ସୀତୟାର ବେନିସୁତ ।
ଶୁଣିଣ ଚକିତ ହୋଇ ଭାଳନ୍ତି ରଘୁନାଥ ॥୫॥
ମୁହିଁତ ହୋଇଲି ଦେବତାଙ୍କର ବଇରି ।
ତାହାଙ୍କର କପଟେ ସ ଉପେଖିଲି ମୋହର ନାରୀ ॥୬॥
ତ୍ରିଭୁବନ ପ୍ରତାପୀ ରାବଣ ଚକ୍ରବ୍ରତୀ ।
ଦେବଦଳଣ ବୀରଧୂ ପୌଲସ୍ତିର ନାତି ॥୭॥
ତାହାର ମନ ହରି ସେବା କରିଥିଲେ ।
ସେ କଥା ପାସୋରିଲେ ମୋତେ ବିଘ୍ନ ସେ ଚିନ୍ତିଲେ ॥୮॥
ଦେବତାଙ୍କର ଛଳେ ରାବଣକଇ ମାଇଲି ।
ଏହାଙ୍କର ବୁଧିରେ ସେ ଭାରିଯା ଉପେଖିଲି ॥୯॥
ମନ ବିରଙ୍ଗ କରି ରାମଚନ୍ଦ୍ରେ ଶୁଣିଲେ ।
ଶ୍ରୀରାମର ବିରଙ୍ଗ ବଶିଷ୍ଠେ ଜାଣିଲ ॥୧୦॥
ଲବକୁମରଙ୍କର ମୁଖ ଚାହିଁ ପୁଛନ୍ତି ବ୍ରହ୍ମସୁତ ।
ବିସ୍ତାରି ଗାଅ ବାବୁ ଶୁଣନ୍ତୁ ସମସ୍ତ ॥୧୧॥
ଲବକୁଶେ କହନ୍ତି ସାବଧାନେ ଶୁଣ ।
ଏସନେକେ ରାଜ୍ୟରେ ଥାଆନ୍ତେ ରଘୁନାନ ॥୧୨॥
ଯହୁଁ ଶ୍ରୀରାମର ହୃଦରେ ଶାରଦା ସମ୍ଭାଇଲା ।
ମନେ ମନେ କ୍ଷତ୍ରିବର ବିକୃତ ଧଇଲା ।
ନଗ୍ର ଭିତରେ ରାମ ଅନ୍ଧାରି ବିଜେ କଲା ॥୧୩॥
ଭାଳଇ ସୀତୟା ବୋଲାବଇ ସତୀ ।
ମୋହର ନଗ୍ରେ ଏହାକଇ କେ କିସ ବୋଲନ୍ତି ॥୧୪॥
ଆଜ ମୁଁ ଏହି ରାଜ୍ୟେ ନିର୍ଜନେ ବୁଲିବି ।
ଜନଙ୍କର କଥା ତଥ୍ୟ କରି ବୁଝିବି ॥୧୫॥
ଏସନେକ ଛିଦ୍ର କଥା ରାମ ମନରେ ଧଇଲେ ।
ନବଗ୍ରୁ ବାହାର ହୋଇ ଶ୍ରୀପୟରେ ବିଜେ କଲେ ॥୧୬॥
ନିବିଡ଼ ଅନ୍ଧାର ତୁଳେଣ କେହି ନାହିଁ ।
କୋଦଣ୍ଡ କରେ ଧରି ଗମନ୍ତି ରଘୁସାଇଁ ॥୧୭॥
ଏମନ୍ତେ କିଛି ଧୂର ରାମ ଗଲେ ।
ସୁକଶୀ ଗୋପାଳୁଣୀ ମନ୍ଦିର ସନିଧେ ମିଳିଲେ ॥୧୮॥
ସୁବେଶ ସୁନ୍ଦର ଗୋପାଳଇ ।
ଦୁଧ ଆଣିବାକୁ ସେ ଗୋଗୋଷ୍ଠକୁ ଚଳଇ ॥୧୯॥
ଗୋଗୋଷ୍ଠେ ଗୋପାଳ ଅଛଇ ତାର ରହି ।
ପରପୁରୁଷେକ ଗୋପାଳୁଣୀ ଘେନି ମନ୍ଦିରେ ଅଛି ଶୋଇ ॥୨୦॥
ନାନା ବିନୋଦ ଶୃଙ୍ଗାରକଥା ଯହୁଁ ଶୁଣିଲେ ।
କୋଦଣ୍ଡ ଘେନି ରାମ ଅନ୍ତରେ ରହିଲେ ॥୨୧॥
ଏସନେକ ସମୟେ ହରିଷା ଗୋପାଳଇ ।
ଦୁଧଭାର ଘେନି ଯାଇ ଦ୍ୱାରେଣ ମିଳଇ ॥୨୨॥
ଭାରିଯା ନାମ ଧରି ଅନେକ ଡାକ ଦେଲା ।
ନିଦ୍ରାଗଲା ଗୋପାଳୁଣୀ ସେ ବଚନ ନ ଶୁଣିଲା ॥୨୩॥
କବାଟ ଫେଡ଼ିଣ ଭିତରେ ପଶଇ ।
ଅଜ୍ଞାନେ ଶୋଇଅଛି ଖରତର ନିଶ୍ୱାସଇ ॥୨୪॥
ଅଗ୍ନି ଆଣି ତତକ୍ଷଣେ ଦୀପେକ ତୋଳିଲା ।
ନିର୍ଭରେ ଶୋଇଅଛି ସେ ପ୍ରତକ୍ଷେ ଦେଖିଲା ॥୨୫॥
ରତିଶ୍ରମେ ଦୁହିଙ୍କରି ଅଚେତନ ଅଙ୍ଗ ।
ଦେଖି ହରିଷା ଗୋପାଳ ମନେ କଲା ବିରଙ୍ଗ ॥୨୬॥
ବେନି କରେ ଧଇଲା ଦୁହିଙ୍କର କେଶ ।
ଚେତିଣ ଗଉଡୁଣୀ କରଇ ମହାରୋଷ ॥୨୭॥
ଆପଣାର ବାଳ ଝାଟିକାରେ ଛଡ଼ାଇଲା ।
ଭ୍ରଥାକଇ ତତକ୍ଷଣେ ପେଲି ପକାଇଲା ॥୨୮॥
ସାଧୁପୁତ୍ରକଇ ବାହାର କରି ଦିଅଇ ।
ସ୍ୱାମୀକି ଅନେକ ଝିଂଘାସି କଥା କହଇ ॥୨୯॥
ତୁହିରେ ନିଲକ୍ଷଣ ହୀନ ଗଉଡ଼ ଜାତି ।
ବେଶ୍ୟାର ସଙ୍ଗେ ତ ଗଉଡୁଣୀ ଯୁବତୀ ॥୩୦॥

ଦଧି ଦୁଧ ବିକୁ ଦ୍ୱାରେ ଦ୍ୱାରେ ବୁଲୁ ନିତି ।
ପୁରୁଷେ ଆମ୍ଭଙ୍କୁ ଦେଖି କାମଇଚ୍ଛା କରନ୍ତି ॥୩୧॥
ସଭାବେ ଯୁବତୀକି ପୀଡ଼ଇ ମଦନ ।
ପୁରୁଷକୁ ଦେଖିଲେ ଅଧିକ ବଳଇ ମନ ॥୩୨॥
ତେଣୁ ସେ ଯୁବତୀକି ଘରୁ ନ କରି ବାହାର ।
ତୁହି କିସ ଜାଣୁ ମୂର୍ଖ ପଶୁ ଛାର ॥୩୩॥
ଏତେ କଥାକଇ ସହିତ ନୋଆରିଲୁ ।
କିସ ନିମନ୍ତେ ଏତେକ ଚହଳ ତୁହି କଲୁ ॥୩୪॥
ଯେ ସେ କୁଳଶୀଳ ଧାର୍ମିକ ପୁରୁଷ ।
ସେ ସେ ସହନ୍ତି ନା ସ୍ତିରୀଙ୍କର ଦୋଷ ॥୩୫॥
ଜଗତେ ବିଖ୍ୟାତ ସେ ଶ୍ରୀରାମ ନୃପତି ।
ତାହାର ଭାରିଯାକୁ ହରି ନେଲା ଲଙ୍କପତି ॥୩୬॥
ଚଉଦ ମାସ ସୀତା ଅସୁର ପୁରେ ଥିଲା ।
କେସନେକେ ଜାନକୀ ସତୀପଣ ରଖିଲା ॥୩୭॥
ଏକ ସ୍ତିରୀ ସେ ସୁନ୍ଦର ଯୁବତୀ ।
ତାହାକୁ କେମନ୍ତେ ରମଣ (ନ) କଲା ଲଙ୍କପତି ॥୩୮॥
କାହାର ଶଖ୍ୟେ ନିରୋଧଇ ମଦନ ।
ସୀତାକଇ ମୁହାସ କଉଶଲ୍ୟାର ନନ୍ଦନ ॥୩୯॥
ସାହେର ବାନ୍ଧି ରାମ ରକ୍ଷ କପିଙ୍କର ମେଳେ ।
ଲଙ୍କାରେ ଅସୁରନ୍ତ ନାଶିଲେ ଅବହେଳେ ॥୪୦॥
ଦଶଶିର ଛେଦି ସୀତୟାକୁ ଆଣିଲା ।
ସେ କାମେନୀକି ଘେନି ଅଭିଷେକ ହୋଇଲା ॥୪୧॥
ଶ୍ରୀରାମ ନ ଜାଣଇ କି ସୀତୟାର ଚରିତ୍ର ।
ଗୁପତ କଥା ଗୋପ୍ୟ କଲେ ରଘୁନାଥ ॥୪୨॥
ଏସନେକ କଥା ଯହୁଁ ରାମଚନ୍ଦ୍ର ଶୁଣିଲେ ।
ମାନଭଗ୍ନ ହୋଇ ବାହୁଡ଼ି ଅଇଲେ ॥୪୩॥
ନିଜ ପଲଙ୍କେଣ ଉତ୍ୟାନେଣ ଶୋଇ ।
ଉଜାଗରେ କ୍ଷତ୍ରିବର ରୟଣୀ ପୁହାଇ ॥୪୪॥
ଦୁଇ ଭାଇନ୍ତ ରାମ ସନିଧେ ହକାରିଲେ ।
ଆବର ମନ୍ତ୍ରୀ ପ୍ରୋହିତ ବସାଇଣ କହିଲେ ॥୪୫॥
ସୀତୟାର ଅବଗୁଣ କହିଲେ ଦାଶରଥି ।
ସକଳ ଲୋକର ମୁଖୁ ଶୁଣିଲି ବିକୃତି ॥୪୬॥
ଦୋସାଧୁ ରାଇ ରାମ ଯାହା ଯାହା ପଚାରିଲେ ।
ସଭାରେ ଲବକୁଶେ ତାହା ଗୀତରେ ଗାଇଲେ ॥୪୭॥
ଏସନେକ ବିଚାରନ୍ତେ କେତେହେକ କାଳ ଯାନ୍ତେ ।
ରଜକୀର ମୁଖେ ମନ୍ଦକଥା ଶୁଣିଲେ ସୀତାକାନ୍ତେ ॥୪୮॥
ତଦଅନ୍ତରେ ରାମ ବଶିଷ୍ଠଙ୍କୁ ପଚାରି ।
ରାମକଇ ପ୍ରବୋଧି କହିଲେ ତପଚାରୀ ॥୪୯॥
ସୀତାକଇ ଓପ୍ରୋଧେ ବାହାର କରି ନ ପାରନ୍ତି ।
ନିଦ୍ରା ନ ମାଡ଼ଇ ଉଚାଟେ ଭାଳନ୍ତି ॥୫୦॥
କେବଣହିଁ ଦିନେ ପଲଙ୍କେ ଶୋଇ ଥାନ୍ତେ ।
ଶେଯ୍ୟାରେ ବସି ସୀତୟା ପାଦ ମଞ୍ଚାଳନ୍ତେ ॥୫୧॥
ଶ୍ରୀରାମ ଦୀର୍ଘନିଶ୍ୱାସ ଛାଡ଼ିଲେକ ଯହୁଁ ।
କରଯୋଡ଼ି ଜାନେକୀ ପଚାରନ୍ତି ତହୁଁ ॥୫୨॥
କିପାଇଁ ଭୋ ନାଥ ନିଶ୍ୱାସ ଛାଡ଼ିଲୁ ।
କେବଣ କଥାକୁ ମନେ ବଇରାଗ ପାଇଲୁ ॥୫୩॥
(ପୃଥିବୀ ଭିତରେ ତୁମ୍ଭଙ୍କୁ କ୍ଷତ୍ରି ନାହିଁ ସରି ।
ତୁମ୍ଭ ନାମ ଧରନ୍ତେ ଯମଦଣ୍ଡରୁ ତରି ॥୫୪॥
ପୁତ୍ର ନୋହିଲା ବୋଲି କଲ ବିସ୍ମୟେ ମନ ।
ଶୁଣସି ଭୋ ନାଥ ମୋହର ବଚନ) ॥୫୫॥
ଏବେ ମୋହର ଗର୍ଭେ ହୋଇଛି ତିନିମାସ ।
ଛାଡ଼ସି ଭୋ ନାଥ ମନର ବିରସ ॥୫୬॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ପ୍ରସାଦ ମାଗ ବୋଲି ଦୟାକରି କହିଲେ ॥୫୭॥
ସୀତୟା ବୋଇଲେ ଧନରତ୍ନ କିସ କରିବି ।
ଆଜ୍ଞା ଦେବା ଦେବ ବନକୁ ମୁହିଁ ଯିବି ॥୫୮॥
ସୀତୟାର ବଚନ ଶୁଣିଣ ରଘୁମଣି ।
ମନେ ମନେ ବିଚାର କରନ୍ତି ଚାପପାଣି ॥୫୯॥
ଦେଖ ହୋ ପାପ ଫାଶ କଇତବ ଯୁବତୀ ।
ବନକଇ ସେ ଇଚ୍ଛା କଲା ଏହାର ମତି ॥୬୦॥
ଏହାର ଇଚ୍ଛାରେ ସେ ମାଗିଲାକ ଯାହା ।
କର୍ମ ଯିସ ଲେଖନ ଭୁଞ୍ଜବଇ ତାହା ॥୬୧॥
ଲକ୍ଷ୍ମଣ ହକାରି କହନ୍ତି ରଘୁମଣି ।
ସୀତୟାକୁ ଘେନି ବନସ୍ତକୁ ଯାଯା ଏହିକ୍ଷଣି ॥୬୨॥
ଅଗମ୍ୟ ବନସ୍ତରେ ଛାଡ଼ିଣ ଆସିବୁ ।
ଦୟା ଓପ୍ରୋଧ କିଛି ହି ନ କରିବୁ ॥୬୩॥
ଶ୍ରୀରାମର ବଚନ ଯହୁଁ ଲକ୍ଷ୍ମଣ ଶୁଣିଲା ।
ସୀତୟାକୁ ଘେନି ସେ ବନସ୍ତକୁ ଗଲା ॥୬୪॥

ବାଟ ଚାଲି ସତୀ ପାଇଲାକ ବ୍ୟଥା ।
ଗୀତେଣ ଲବକୁମର ଗାବଇ ସେ କଥା ॥୬୫॥
ସୀତୟାକୁ ଘେନି ଲକ୍ଷ୍ମଣ ଯାନ୍ତେ ।
ଧୀରେଣ ଅଦିତ୍ୟ ଗମଇ ଶୂନ୍ୟ ପନ୍ଥେ ॥୬୬॥
ଏକ ଦିବସେକ ସରି ଏକ ଘଡ଼ି ହୋଇଲା ।
ସୀତା କଷ୍ଟ ଦେଖି ଦିବାକର ଯାଇତ ନ ପାରିଲା ॥୬୭॥
ବାହାଡ଼ା ବୃକ୍ଷ ତଳେ ବସିଲାକ ଯାଇ ।
ନିଦ୍ରାଗଲା ସତୀ ଶରୀର ଶର୍ମ ପାଇ ॥୬୮॥
ସୀତୟା ନିଦ୍ରା ଗଲା ଯହୁଁ ଲକ୍ଷ୍ମଣ ଦେଖିଲା ।
ଲେଖରେ ସୀତୟାର ବଇଗୁଣ ଲିହିଲା ॥୬୯॥
ଗଛର ଡାଳେ ପତ୍ର ଲମ୍ବାଇଲା ।
ତହୁଁଣ ଲକ୍ଷ୍ମଣ ପ୍ରବେଶ ହୋଇଲା ॥୭୦॥
ଯେବଣ କଥା ଲକ୍ଷ୍ମଣ ମନେଣ ଭାଳିଲା ।
ଲବକୁମର ତାହା ଗୀତେଣ ଗାଇଲା ॥୭୧॥
ଶୁଣିଣ ସକଳ ଲୋକେ ଲକ୍ଷ୍ମଣର ମୁଖ ଚାହିଁ ।
ମଥାପୋତି ବସିଲେ ସୁମିତ୍ରା ନନ୍ଦନ ନୟନୁ ଲୁହ ବହି ॥୭୨॥
ବଶିଷ୍ଠଙ୍କର ମୁଖ ଚାହିଁ କହନ୍ତି ସୁମିତ୍ରାର ସୁତ ।
ଯାହା ଗାବନ୍ତି ଏ କଥା ସ୍ୱରୂପ ସିଦ୍ଧାନ୍ତ ॥୭୩॥
ବଶିଷ୍ଠେ କହନ୍ତି ତୁହି ଯାହା କଲୁ ।
ଏବେ ସେ କଥା ତଥ୍ୟ କରି ଶୁଣିଲୁ ॥୭୪॥
କେହି ନ କରଇ ନା ଏସନେକ କୃତ୍ୟ ।
ଅତି ନିର୍ଦ୍ଦୟାରେ ଯାହା କଲୁ ନିଷ୍ଠୁର ପାପଚିତ ॥୭୫॥
ଲକ୍ଷ୍ମଣ କହଇ ତୁ ଶୁଣସି ମହାମୁନ୍ୟ ।
ସ୍ୱାମୀର ବଚନ କେସନେ କରିବି ମୁହିଁ ଆନ ॥୭୬॥
ତେଣୁ ସେ ବନସ୍ତେ ଛାଡ଼ିଣ ଅଇଲି ।
କୁମାରଙ୍କର କଥା କହନ୍ତେ ବଡ଼ ବ୍ୟଥା ପାଇଲି ॥୭୭॥

## ବାଲ୍ମୀକି ଆଶ୍ରମରେ ସୀତା

ବଶିଷ୍ଠେ ପଚାରନ୍ତି ଶୁଣ ବେନି ଭ୍ରାଥ ।
ବିସ୍ତାରିଣ ଗାଅ ଏବେ ଦିବ୍ୟ ଗୀତ ॥୧॥
ଲବକୁମର କହଇ ଶୁଣ ସାବଧାନ ।
ଯହୁଁ ଲକ୍ଷ୍ମଣ ଛାଡ଼ି ଅଇଲାକ ବନ ॥୨॥
ଆଦିତ୍ୟ ଯେ ତିନି ପ୍ରହର ହୋଇଥିଲା ।
ସେହିଠାରେ ଦିବାକର ଥିର ହୋଇ ରହିଲା ॥୩॥
ମନେ ବିଚାରନ୍ତି ଛାୟାଦେବୀର କାନ୍ତ ।
ଦୟାକରି ସୀତୟାକୁ ନିଅଇ ଅବା ରଘୁନାଥ ॥୪॥
ଲକ୍ଷ୍ମଣ କହିବା ଯାଏ ଏହିଠାରେ ଥିବା ।
ତେବେ ସେ ମେରୁ ପୃଷ୍ଟକଇ ଯିବା ॥୫॥
ତହୁଁଣ ଲକ୍ଷ୍ମଣ ସୀତାକୁ ନିବାସି ଅଇଲା ।
ଶ୍ରୀରାମର ଆଗେ ସେ ଆସିଣ କହିଲା ॥୬॥
ଭୋଦେବ ତୋହର ବଚନ ପ୍ରମାଣେ ଯେ ମୁହିଁ ଗଲି ।
ଅରଣ୍ୟେ ସୀତାକଇ ଛାଡ଼ିଣ ଅଇଲି ॥୭॥
ଶ୍ରୀରାମ ଶୁଣିଣ ଅନେକ ଶୋକ କଲେ ।
ମନ୍ତ୍ରୀ ଅମନାତ୍ୟେ ମାତୃଗଣେ ଶ୍ରୀରାମର ସନିଧେ ମିଳିଲେ ॥୮॥
ବଶିଷ୍ଠ ମହାମୁନି ବୋଲନ୍ତି ଶ୍ରୀରାମର ପୁରୋହିତ ।
ଅନେକ ପ୍ରବୋଧି କହିଲେ ବ୍ରହ୍ମାସୁତ ॥୯॥
ଶୁଦ୍ଧ ସୁବର୍ଣ୍ଣ ତୁଳ ପାଞ୍ଚ ବିଶା ।
କନେକ ପ୍ରତିମା ଏକ କରାଇଲେ ସୀତୟାର ସାଦ୍ରିଶା ॥୧୦॥
ଲବକୁଶେ ଶ୍ରୀରାମର ଆଗେ ଗୀତେଣ ଗାବନ୍ତି ।
ସ୍ୱରୂପ କଥା ନଗ୍ରଲୋକେ ଶୁଣନ୍ତି ॥୧୧॥
ବ୍ରହ୍ମାର ଦୁଲଣୀ କଣ୍ଠେ ବସିଅଛି ।
ଗୀତ ଗାବନ୍ତି କୁମରେ ନ ଜାଣନ୍ତି କିଛି ॥୧୨॥
କେହୁଣ ବଶିଷ୍ଠ କେହୁଣ ବାଲମୀକ ।
କେ ସେ ସୀତା-ସତୀ କେ ଏବେ ଜନେକ ॥୧୩॥
କେବଣ ଶ୍ରୀରାମ କେ ସେ ଦଶରଥ ।
କେବଣ କାଳର କଥା ଏ ନ ଜାଣନ୍ତି ଲବକୁଶ ବେନିଭ୍ରାଥ ॥୧୪॥
ଲବକୁଶେ ନ ଜାଣନ୍ତି (କେ) ଆପଣା କେ ପର ।
ବିସ୍ତାରି କହନ୍ତି ସୀତୟାର ବେନି କୁମର ॥୧୫॥
ଶୁଣିଣ ଶ୍ରୀରାମ ଅଥିର ପଞ୍ଚମତି ।
ଲବକୁମର ମୁଖ ଚାହିଁ ପଚାରନ୍ତି ଦାଶରଥି ॥୧୬॥
ବନସ୍ତେ ଲକ୍ଷ୍ମଣ ଛାଡ଼ିଣ ଅଇଲା ।
ତହୁଁଣ ଜାନେକୀ କେବଣ କତିକି ଗଲା ॥୧୭॥
ଯେ ସେ କୁଳଶୀଳ ଧାର୍ମିକ ପୁରୁଷ ।
ସେ ସେ ସହନ୍ତି ନା ସ୍ତିରୀଙ୍କର ଦୋଷ ॥୧୮॥
ଲବକୁଶେ କହନ୍ତି ଶୁଣ ସାବଧାନେ ।
ନିଦ୍ରା ଗଲେ ଜାନେକୀ ଶରୀର ବଥା ମାନେ ॥୧୯॥
ଏଣେ ଶ୍ରୀରାମ କନେକର ସୀତା କରାଇଲା ଯହୁଁ ।
ବିମନେ ଆଦିତ୍ୟ ଚଳିଗଲେ ତହୁଁ ।୨୦।
ବନସ୍ତେ ସୀତା ଯେ ଶୋଇଣ ଥିଲେ ।

ନିଦ୍ରାଭଙ୍ଗ ହୋଇ ଚଉକତି ଚାହିଁଲେ ॥୨୧॥
ଯେବଣ ଠାବରେ ଲକ୍ଷ୍ମଣ ଥିଲା ବସି ।
ନ ଦେଖି ଉଚେ ଡାକ ଦେଲାକ ଶୁଭ୍ରକେଶୀ ॥୨୨॥
କେଣେ ଗଲୁ ଲକ୍ଷ୍ମଣ ମୋତେ ଉପେଖି ।
ଭୂମିରେ ପଡ଼ି ଲୋଟଇ ଚନ୍ଦ୍ରମୁଖୀ ॥୨୩॥
ମୁହିଁ ଏକାକୀ ସ୍ତିରୀ ଯିବି ଏବେ କାହିଁ ।
ତୋ ତହୁଁ ସାହାପକ୍ଷ ମୋତେ ଆନ ନାହିଁ ॥୨୪॥
ସ୍ୱାମୀର ବଚନେ ମୋତେ ବନକଇ ଘେନି ଅଇଲୁ ।
ଏବେ ବନସ୍ତେ କିପାଇଁ ପ୍ରାଣ ଛାଡ଼ିଲୁ ॥୨୫॥
କି ଅବା ବନଜୀବେ ତୋତେ କଲେ ପ୍ରାଣ ନାଶ ।
ତୋତେ ନ ଦେଖି ମୋତେ ନ ଦିଶଇ ଦଶଦିଶ ॥୨୬॥
ଯେତେକ ରୋଦନ କଲେକ ମହାସତୀ ।
ଲବକୁଶେ ତାହା ଗୀତେଣ ଗାବନ୍ତି ॥୨୭॥
ଯେବଣ ପତ୍ର ଲକ୍ଷ୍ମଣ ଡାଳେ ଲମ୍ୱାଇ ଅଇଲା ।
ସେ ଲେଖ ପଢ଼ି ସୀତୟା ରୋଦନ ଛାଡ଼ିଲା ॥୨୮॥
ବନଜୀବେ ଯହୁଁ ସତୀକି ଦେଖିଲେ ।
ଆଧାର କରିବା ବୋଲି ଧାଇଁଣ ଅଇଲେ ॥୨୯॥
ସୀତୟାର ସ୍ୱରୂପ ଦେଖି ହୋଇଲେ ମୋହି ।
କାହାର ଭାରିଯା ବୋଲି ପୁଛିଲେ ସନିଧେଣ ଯାଇ ॥୩୦॥
ବନ ଜୀବ ଦେଖି ସତୀ ମନେ ଭୟ କଲା ।
ଶ୍ରୀରାମର ଭାରିଯା ବୋଲିଣ ସେ କହିଲା ॥୩୧॥
ରାମର ଘରଣୀ ବୋଲି ଯହୁଁ ବନଜୀବେ ଶୁଣିଲେ ।
ରାତ୍ରେକ ପାହାରୀ ହୋଇ ବେଢ଼ିଣ ବସିଲେ ॥୩୨॥
ରୟଣୀ ପ୍ରଭାତ ହୋଇଲାକ ଯହୁଁ ।
ବନଜୀବେ ବାଟ କଢ଼ାଇ ନେଲେ ତହୁଁ ॥୩୩॥
ଦୁଃଖ ପାଇ ଜାନକୀ ଚାରିମାସ ବୁଲିଲା ।
ବାଲମୀକ ମହରଷିଙ୍କର ଆଶ୍ରମେ ମିଳିଲା ॥୩୪॥
ସୀତୟାକୁ ଦେଖି ବାଲମୀକ ଯିସ ବୋଇଲେ ।
ଲବକୁଶ ତାହା ଗୀତେଣ ଗାଇଲେ ॥୩୫॥
ବାଲମୀକ ବନଜୀବଙ୍କୁ ବାହୁଡ଼ାଇ ।
ସୀତୟାକୁ ପଚାରଇ ସନିଧେ ବସାଇ ॥୩୬॥
କିପାଇଁ ଆଇ ତୋତେ ଶ୍ରୀରାମ କୋପ କଲା ।
ଏ ବନସ୍ତେଣ ତୋତେ କିପାଇଁ ଛାଡ଼ିଲା ॥୩୭॥
ସୀତୟା କହଇ ନାହିଁ ମୋହର ଦୋଷ ।
ଧାୟେ କରି ଜାଣିଲେ ପିତାମହର ଶିଷ ॥୩୮॥
ସୀତୟାକଇ ଆଶ୍ରମେ ଦଶ ଦିବସ ଗୁହାଇଲେ ।
ତଦଅନ୍ତରେ ଜନେକ ଆଶ୍ରମକୁ ନେଲେ ॥୩୯॥

## ଲବକୁଶ ଜନ୍ମ

ବାଲମୀକ ମହରଷି ବାଟ କଢ଼ାଇ ନିଅନ୍ତି ।
ପଛେଣ ମହାସତୀ ଧୀରେ ଧୀରେଣ ଚାଲନ୍ତି ॥୧॥
ଅଶିଏ ଦିବସ ବାଟେ ଚାଲିଲେ ।
ବଇଦେହୀ ମଣ୍ଡଳ ସନିଧେ ହୋଇଲେ ॥୨॥
ବାଟ ଚାଲିବାକୁ କୋଶେ ମାତ୍ର ଅଛି ।
ଶାଳ ବୃକ୍ଷର ତଳେ ଫୁଟି ବସିଲେ ଶୁଭ୍ରକେଶୀ ॥୩॥
ପେଟ ବଥାଇ ବିକଳେ କାନ୍ଦଇ ସୀତା ।
ଦେଖିଣ ବାଲମୀକ ମନେଣ ମହାଚିନ୍ତା ॥୪॥
କଷ୍ଟ ପାଇ ଜାନ୍କେୀ ରାମ ରାମ ସୁମରଇ ।
ଦୁଇ ନୟନରୁ ଲୁହ ଝର ଝର ବହଇ ॥୫॥
ସୀତାର ଦୁଃଖ ଯହୁଁ ରାମଚନ୍ଦ୍ର ଶୁଣିଲେ ।
ଆପଣାର ଶିରେ ନେଇ କର ବେନି ତାଡ଼ିଲେ ॥୬॥
ସଭାରେ ଲୋକେ ସମସ୍ତେ କାନ୍ଦନ୍ତି ।
ଲବକୁଶ ଦୁଇଭାଇ ଗୀତେଣ ଗାବନ୍ତି ॥୭॥
ସୀତାର ରୋଦନ ଯହୁଁ ବାଲମୀକ ଶୁଣିଲେ ।
ମଥା ଆଉଁଷି ମହରଷି କହିଲେ ॥୮॥
କିପା ବିକଳେ ଗୋ ରୋଦନ କରସି ।
ଏ ସିଆଡ଼ି ଲତା ଦୁଇ କରେ ଦୃଢ଼ କରି ଧରସି ॥୯॥
ମୁନିବର ବଚନ ଯହୁଁ ସତୀ ଶୁଣିଲା ।
ଆକୃଷି ଦୁଇ ହସ୍ତେ ସିଆଡ଼ି ଲତା ଧଇଲା ॥୧୦॥
ତତକ୍ଷଣେ କୁମରେ ହୋଇଲାକ ଜାତ ।
ଯେସନେକ ଦିଶଇ ଅବା ବାଳ ଆଦିତ୍ୟ ॥୧୧॥
ପୁଣ ମହାସତୀର ପେଟ ବଥାନ୍ତେ ।
କୁଶବଟୁ ମନ୍ତ୍ରୀ ଦେଲେ ମୁନି ସୀତୟାର ଅଗ୍ରତେ ॥୧୨॥
ଏ କୁଶବଟୁ ତୋହର ପେଟରେ ଘଷ ।
ଏହିକ୍ଷଣି ବଥା ହୋଇବ ଉସ୍ୱାସ ॥୧୩॥
ବାଲମୀକଙ୍କର କଥା ଯହୁଁ ସୀତୟା ଶୁଣିଲା ।
କୁଶବଟୁ ନେଇ ପେଟରେ ଘଂଷିଲା ॥୧୪॥
ତତକ୍ଷଣେ ପୁଣି ପୁତ୍ରେକ ଉପୁଜିଲେ ।

ଏକ ସାଦ୍ରିଶ ଦିଶନ୍ତି ଦୁଇ ତନୁଜ ଭଲେ ॥୧୫॥
ଶୁଣିଣ ଶ୍ରୀରାମ ମନେଣ ଅଥିରଭ ।
ମନେଣ ମଥା ପୋତି ବସିଣ ଝୁରଇ ॥୧୬॥
ବଦନ ଦିଶଇ ମହାଅନଳ ଜ୍ୟୋତି ।
ଦୁଇ ନୟନରୁ ଲୁହ ଗଳି ପଡ଼ଇ ଯାଇ କ୍ଷିତି ॥୧୭॥
ବଶିଷ୍ଟଙ୍କର ମୁଖ ଚାହିଁ କହନ୍ତି ରଘୁନାନ ।
ମୋହ ସରି ପାପୀ ନାହିଁ ଅନ ଜନ ॥୧୮॥
ଭୋ ମୁନି ମୋହର ଦେହେଣ ଥାନ୍ତେ ଜୀବିତ ।
ଏତେ କଷ୍ଟ ପାଇଲା ଜନେକର ଦୋହିତ ॥୧୯॥
ପଶୁଜନ୍ତୁ ଜାଣି ପୁତ୍ରନ୍ତ ଜନ୍ମ କଲା ।
ଅତି ବଡ଼ କଷ୍ଟ ତ ମୋହରେ ପାଇଲା ॥୨୦॥
ଅଦୋଷେ ସୀତୟାକୁ ମୁଁ କଲି ଅପାଂଙ୍କ ।
କୁଳ ମଣ୍ଡଳ ହୋଇଲା ମୋହର ବେନି ତନୁଜ ॥୨୧॥
ତିନି ଭାଇଙ୍କର କୋଳେ ତିନି ତନୁଜ ଜାତ ।
ପଞ୍ଚୁ କୁମ୍ଭରେ ହୋଇଥାନ୍ତେ ବିଖ୍ୟାତ ॥୨୨॥
କେସନେକେ ମୁହିଁ ଦୁଇ ନନ୍ଦନକୁ ଦେଖିବି ।
ଭୋ ମହରଷି କିସ ବୁଧି କରିବି ॥୨୩॥
ବଶିଷ୍ଟେ କହନ୍ତି ସେ କାଳେ ମୋହର ବୁଧି (ନ) କଲୁ ।
ଏବେ କିମ୍ପା ମନେ ବିକଳ ହୋଇଲୁ ॥୨୪॥
ଏବେ ଥିର ହୋଇ ଗ୍ରନ୍ଥ ଶୁଣିମା ।
ତଦଅନ୍ତ କରି ପରିମାଣି ଜାଣିମା ॥୨୫॥
ବଶିଷ୍ଟଙ୍କର ବଚନ ଶୁଣି ପୁଛନ୍ତି ଦାଶରଥି ।
ଦୁଇ ପୁତ୍ରନ୍ତ ଦେଖି କିସ କଲେକ ସତୀ ॥୨୬॥

## ପିତ୍ରାଳୟରେ ସୀତା

ଲବକୁଶେ ଗାବନ୍ତି ସୁସ୍ୱରେଣ ଗୀତ ।
ଯହୁଁ ସେ ଦେଖିଲା ସୀତୟା ଏକ ରୂପ ଦୁଇ ପୁତ୍ର ॥୧॥
ଶ୍ରୀରାମ ପ୍ରାୟେ ଦିଶନ୍ତି ଦୁଇ ମୂରତି ।
ସକଳ କଥା ତେଜି ହରଷ କଲା ମତି ॥୨॥
ଭୂମିରେ ପଡ଼ି କୁମାରେ କରନ୍ତି ରୋଦନ ।
ପୁତ୍ରନ୍ତ ଦେଖି ବାଲମୀକ ତପୋଧନ ॥୩॥
ବାଏଂଶ ବୃକ୍ଷର ପାତିଏ ଆଣିଲେ ।
ସୀତୟାର ହାତେ ଦେଇ ମହରଷି କହିଲେ ॥୪॥
ନାଭି କାଟ ସୀତା ଏବେ ବେଣୁ ପାତିଆ ଘେନି ।
ତୋ ତହୁଁ ଏଥେ ଆନ ନାହିଁ ନା କାମେନୀ ॥୫॥
ମୁନିବର ବଚନ ଯହୁଁ ସତୀ ଶୁଣିଲା ।
ଦୁଇ କୁମରଙ୍କର ନାଭି କାଟିଲା ॥୬॥
ନାନା ତୀର୍ଥଜଳ କମଣ୍ଡଳେ ଭରିଥିଲେ ।
ତାହା ଆଣି କୁମରଙ୍କର ଶରୀର ପଖାଳିଲେ ॥୭॥
କୋମଳ ତରୁପତ୍ର ଦେଇ ପୁଛନ୍ତି ତପୋଧନ ।
ଏଥେ ଶୁଆ ତୋହର ବେନି ନନ୍ଦନ ॥୮॥
ଯେତେ କଷ୍ଟ ତୁହି ବନସ୍ତେ ପାଇଲୁ ।
ରତ୍ନ ପ୍ରତିମା ଜାଣି ପୁତ୍ର ଜାତ କଲୁ ॥୯॥
ତନୟନ୍ତ ଦେଖି ଦୁଃଖ ପସୋର ।
ମନେଣ ବଥା ଆଉ ବଇରାଗ ନ କର ॥୧୦॥
ମୁନିଙ୍କର ବଚନ ଶୁଣି ଶ୍ରୀରାମର ରାଣୀ ।
ଶାଳପତ୍ର ଶେଯ କଲେ ଜନେକ ଦୁଲଣୀ ॥୧୧॥
ଦୁଇ ପୁତ୍ରନ୍ତ ଶୁଆଇ ଉପରେ ପଣନ୍ତ ଘୋଡ଼ାଇଲା ।
ପୁତ୍ରନ୍ତ କୋଳେ ଲାଇ ସତୀ ଆପଣେ ସୁତିଲା ॥୧୨॥
ଶୁଣିଣ ଶ୍ରୀରାମ ଉପରକୁ ଚାହାନ୍ତି ।
କ୍ରୋଟ ଅଗ୍ନି ଜାଣି ଶରୀର ଦହନ୍ତି ॥୧୩॥
ପାଟର ସୁପାତି ହଂସୁଳୀର ତୁଳୀ ।
ତହିଁରେ ଶୟନ କରଇ ଜନେକର ଦୁଲାଳୀ ॥୧୪॥
ତାହାର ପୁତ୍ରକଇ ପତ୍ରେଣ ଶୟନ ।
ଭୋ ବିହି ବିଧାତା ତୁହି ସେ କରୁ ଏସନେକ ହୀନ ॥୧୫॥
ପୁଣ ସାଷ୍ଟାମ ହୋଇ ପୁଛନ୍ତି ଚାପହସ୍ତ ।
ତହୁଁ କିସ କଲା ଜନେକ ଦୋହିତ ॥୧୬॥
ଶ୍ରୀରାମର ବଚନ ଶୁଣି ଲବକୁମର ଗାବଇ ଗୀତ ।
ନିଦ୍ରାଗଲା ସୀତୟା ସୁସ୍ତ ହୋଇଣ ଚିତ୍ତ ॥୧୭॥
ସନିଧେ ବସିଛନ୍ତି ବାଲମୀକ ମହରଷି ।
କନ୍ଦମୂଳ ନିମନ୍ତେ ବନକଇ କିରାତେକ ଆସି ॥୧୮॥
ଜନେକ ରାଜ୍ୟର ଯେ ସୁରେଖା ନାମେ ଶବର ।
ତାହାକର ଦେଖିଲେ ବାଲମୀକ ମୁନିବର ॥୧୯॥
ସନିଧକଇ ହକାରି ପଚାରନ୍ତି ଯତି ।
କି ରେ କିରାତ କାହିଁ ତୋର ସ୍ଥିତି ॥୨୦॥
ଶବର କହଇ ଶୁଣସି ମୁନିବର ।
ବଇଦେହୀ ନଗରେ ଆମ୍ଭର ନିଜ ଘର ॥୨୧॥
ବାଲମୀକ ମହରଷି ଶବରକୁ ରାଇ(ଲେ) ।
ବିଶ୍ୱାସ କଥା ଧୀର କରି କହିଲେ ॥୨୨॥

ମୋହର ବଚନ ଜନେକକୁ କହିବୁ ।
ଏହିକ୍ଷଣି ତାହାକୁ ଘେନିଣ ଆସିବୁ ॥୨୩॥
ବାଲମୀକ ବଚନେ ଶବର ବେଗେ ଗଲା ।
ଜନେକ ରାଜରଷିର ଆଗେଣ କହିଲା ॥୨୪॥
ତୁମ୍ଭର ତହିଁକି ବାଲମୀକ ଆସୁଥିଲେ ।
ଶ୍ରମ ପାଇ ସେ ଆସିତ ନ ପାରିଲେ ॥୨୫॥
ବାଟେଣ ଫୁଟି ସେ ଅଛନ୍ତି ବସି ।
ଶୁଣିଣ ହରଷ ହୋଇଲା ଜନେକ ରାଜରଷି ॥୨୬॥
ଅନେକ ତପୋଧନ ସଙ୍ଗତରେ ଘେନି ।
ଶବର ପଛରେ ଆସନ୍ତି ଜନେକ ମହାମୁନି ॥୨୭॥
ଯେବଣ ତରୁତଳେ ବାଲମୀକେ ବସିଛନ୍ତି ।
ନିଦ୍ରାରେ ସୀତୟା ଓହାଡ଼େ ଅଚେତନ ମତି ।
ସେହି ତରୁତଳେ ବସାଇଲା କିରାତି ॥୨୮॥
ବାଲମୀକକୁ ଜନେକ ଯହୁଁ ଦେଖିଲା ।
ଚରଣ ଧରି ଭୂମିରେ ପ୍ରଣମିତ ହୋଇଲା ॥୨୯॥
ସମସ୍ତକଇ ମହରଷି କଲ୍ୟାଣ ବାଞ୍ଛିଲେ ।
ଜନେକର ହସ୍ତ ଧରି କତିରେ ବସାଇଲେ ॥୩୦॥
ଜନେକ କହଇ ଶୁଣ ବ୍ରହ୍ମାର ନନ୍ଦନ ।
ତୋହର ମୁଖ ଦେଖି ମୋହର ସୁଫଳ ଜୀବନ ॥୩୧॥
ଦୁସହ ଅରଣ୍ୟରେ ଚାଲି ନ ପାରିଲୁ ।
ତୋହର ଶରୀରକଇ ପ୍ରମାଦ ପାଇଲୁ ॥୩୨॥
ଆସ ଆସ ମହାରଷି ମୋହର ପୁରକଇ ଯିବା ।
ତୋହର ଚରଣ ତଳେ ମୁଁ କରିଥିବି ସେବା ॥୩୩॥
ଜନେକର ମୁଖ ଚାହିଁ କହନ୍ତି ବ୍ରହ୍ମାସୁତ ।
ଶୁଣସି ହୋ ତପସ୍ୱୀ ରାଜା ମୋହର ବାରତ ॥୩୪॥
ଯେବଣ ଅର୍ଥେ ଅଇଲି ତୋହର ପୁର ।
ଦେଖିଣ ଶୋଚନା ନ ପୁଣ କରୁ ମୁନିବର ॥୩୫॥
ତୋହର ଦୋହିତା ଶ୍ରୀରାମର ଘରଣୀ ।
ବନସ୍ତେ ତାହାକୁ (ରାମ) ନିବାସିଲା ଆଣି ॥୩୬॥
ବନସ୍ତେ ସୀତୟା ବଡ଼ ଦୁଃଖୀ ହୋଇଲା ।
ଗର୍ଭବାସ ହୋଇ ଅନେକ କଷ୍ଟ ପାଇଲା ॥୩୭॥
ବନଜୀବେ ବାଟ କଢ଼ାଇ ଆଣିଲେ ।
ମୋହର ଆଶ୍ରମେ ଛାଡ଼ିଣ ସେ ଗଲେ ॥୩୮॥
ତୋହର ଆଶ୍ରମକୁ ନେଉଣ ମୁହିଁଥିଲି ।
ସୀତାର ପେଟ ବଥାଇଲା ନେଇ ନ ପାରିଲି ॥୩୯॥
ଦୁଇ ପୁତ୍ର ଏହିଠାରେ ହୋଇଲେକ ଜାତ ।
ତେଣେ ସେ ସୀତୟାକୁ ଘେନି ବସିଅଛି ଏଥ ॥୪୦॥
ଶୁଣିଣ ଜନେକ କହଇ ବାଲମୀକ ମୁଖ ଚାହିଁ ।
କେବଣ ଠାବରେ ଅଛି ମୋହର ତନୟୀ ॥୪୧॥
ବାଲମୀକ ମହରଷି ଧରି ଜନେକର ହସ୍ତ ।
ନେଇଣ ଦେଖାଇଲେ ଦୁଇ ପୁତ୍ରଙ୍କର ମାତ ॥୪୨॥
ଦେଖିଣ ଜନେକ ଦୁଖେ ପଡ଼ିଲାକ ମୂଛି ।
ଶରୀର ଅଚେତନ ହୋଇଲା ନ ଜାଣଇ କିଛି ॥୪୩॥
ମୁଖେ ପାଣି ସିଞ୍ଚିଲେ ବାଲମୀକ ମୁନିବର ।
କୋଳାଗ୍ରତ କରି ତୋଳିଲେ ସଧୀର ॥୪୪॥
କ୍ଷଣେକେ ଜନେକ ପାଇଲେ ଚେତନ ।
ମାନ ଅଗ୍ନି ଜାଣି ଦହଇ ଘନ ଘନ ॥୪୫॥
ଶରୀର ଅଚେତନ ମୁନିର ହୋଇଲା କାୟେ ।
ଦେଖିଣ ରୋଦନ ସମସ୍ତ ରଷି କଏ ।
ପୁଣି ଚେତନା ଲଭି ରୋଦଇ ଜନେକ ମହାରାୟେ ॥୪୬॥
ଉଚେ ରୋଦନ ଦେଖି ଚେତିଲାକ ସୀତା ।
ମୁଖ ତୋଳି ଚାହିଁଲା କାନ୍ଦୁଅଛି ପିତା ॥୪୭॥
ଜନେକ ଦେଖି ସତୀଙ୍କର ରୋଦନ ।
ମଳୀଣ ଚନ୍ଦ୍ର ଜାଣି ଦିଶଇ ବଦନ ॥୪୮॥
ଭୋ ତାତ ପଶୁଜୀବ ଜାଣି ହୋଇଲାକ ମୋହର ଦେହି ।
ବନସ୍ତେ ବୁଲିଲି ସଙ୍ଗେ ନାହିଁ କେହି ॥୪୯॥
ମହତ ବିଚକ୍ଷଣ ଏ ବାଲମୀକ ତପୋଧନ ।
ଏହାର ପ୍ରସାଦେ ପାଇଲି ଜୀବନ ॥୫୦॥
ଶୁଣିଣ ଶ୍ରୀରାମ ବିକଳିତ ମତି ।
ସଭାର ଲୋକ ସମସ୍ତେ ରୋଦନ କରନ୍ତି ॥୫୧॥
ବିଷାଦ ହୋଇଲେ ବଶିଷ୍ଠ ମହାମୁନ୍ୟ ।
ଲୁହ ଗଳି ପଡ଼ଇ ସବୁରି ନୟନ ॥୫୨॥
ଭ୍ରଥ ଲକ୍ଷ୍ମଣ କାନ୍ଦନ୍ତି ମାନଭର ।
ସମସ୍ତ ଜନ ଯହୁଁ ହୋଇଲେ କ୍ରୋଧଭର ।
କାବ୍ୟ ବିଶ୍ରାମିଲେ ଦୁଇ କୁମର ॥୫୩॥
ମନେ ମନେ ଝୁରଇ ଦଶରଥ କୁମର ।
ମୋ ତହୁଁ ନିର୍ଦ୍ଦୟା ନାହିଁ ଆନ ନର ॥୫୪॥
ଏସନେକ ଚଣ୍ଡାଳ କୃତ ମୁହିଁ କଲି ।

ଲୋକଙ୍କର କଥା ଶୁଣି ଭାରିଯା ଉପେଖିଲି ॥୫୫॥
ସାମାନ୍ୟ ଲୋକେହିଁ ନ କରନ୍ତିନି ଏହା ।
କେବଣ ଦଇବ ମୋତେ ହୋଇଲାକ ଅସାହା ॥୫୬॥
ସୀତା ତହିଁ କଷ୍ଟୀ ମୁହିଁ ଏଣେ ଦୁଃଖୀ ।
ମୋହର କୃତେ ସୀତୟା ମୋହର ନିର୍ମାଖୀ ॥୫୭॥
ଶ୍ରୀରାମ ମନେ ବିରସ ବଶିଷ୍ଠ ଜାଣିଲେ ।
ଲବକୁମର ମୁଖ ଚାହିଁ ସମାସ୍ୟା ସେ ଦେଲେ ॥୫୮॥
ଜନେକ ରାଜ ଋଷି ଯେ ସୀତୟାକୁ ଦେଖିଲା ।
ତଦଅନ୍ତରେ ସେ ପୁତ୍ର ଦୁହିଁଙ୍କି କିସ କଲା ॥୫୯॥
ବିସ୍ତାରି କହ ରାମାୟେଣ ଚରିତ୍ର ।
ଅତି ପବିତ୍ର କଥା ଏ ପୁଣ୍ୟ ପବିତ୍ର ॥୬୦॥
ବଶିଷ୍ଠଙ୍କ ବଚନେ ଲବକୁମାରଇ ।
ସୁସ୍ୱରେ ହୁଂକାରନ୍ତି ରାଗ ମଲାରଇ ।
ଉଚେଣ ନାଦ କରଇ ପ୍ରକାଶଇ ॥୬୧॥
ଶୁଣିଣ ସଭାଲୋକେ ତବଦ ହୋଇଲେ ।
ଏକ ଆରେକକଇ ସମାସ୍ୟା ନ ଦେଲେ ॥୬୨॥
ଲବକୁଶେ କହନ୍ତି ଶୁଣ ସର୍ବଜନେ ।
ଜନେକ(ଙ୍କୁ) କହନ୍ତି ବାଲମୀକ ତପୋଧନେ ॥୬୩॥
ମୋହର କଥା ପରିମାଣି ନ ପାରିଲୁ ।
ଦୋହିତାକୁ ଦେଖି ଶୋକଭର ହୋଇ(ଲୁ) ॥୬୪॥
ଏବେ ପୁତ୍ର ଦୁଇ ଗୋଟି ସୀତୟା ସହିତେ ।
ତୋହର ଆଶ୍ରମକୁ ଚାଲ ଯିବା ତୁରିତେ ॥୬୫॥
ତୋହର ଭାରିଯାକୁ ସୀତୟା ଦେଖୁ ।
ଯେତେ କଷ୍ଟ ପାଇଲା ସେ ଦୁଃଖ ଉପେଖୁ ॥୬୬॥
ମାତାର କାନ୍ଦନ୍ତେ ପୁତ୍ରକଇ ପ୍ରୟାସ ।
ଏତେ ଯଶ ତୋହର ହୋଇବ ବିନାଶ ॥୬୭॥
ବାଲମୀକ କଥା ଶୁଣି ଜନେକ ମହାମୁନ୍ୟ ।
ସୀତୟା ଦୁଇପୁତ୍ରନ୍ତ ଘେନି ଅଇଲା ନିଜ ଭୁବନ ॥୬୮॥
ଅନ୍ତଃପୁରେ ନେଇ ପୁତ୍ରନ୍ତ ପ୍ରବେଶ କଲା ।
ଧାଈ ଲଗାଇ ସୀତୟାର ଦୁଇ ପୁତ୍ରନ୍ତ ପ୍ରତିପାଳିଲା ॥୬୯॥
ଅନ୍ତଡ଼ି ଓଛାଇଲେ ନେତର ସୁପାଟି ।
ବିଂଶ ଗାଡ୍ରେ ଦୁଇ କୁମାରନ୍ତ ଦୋଳି ଶୁଆବନ୍ତି ॥୭୦॥
ଋଷିଙ୍କର କାମେନୀ ଜନେକର ନବରେ ମିଳିଲେ ।
ପାଟ ନେତରେ ଦୋଳି ମଣ୍ଡିଲେ ॥୭୧॥
ନାମ ସଙ୍କେତ ବିଚାର କରନ୍ତି ।
ଦୁଇ କୁମାରଙ୍କୁ ଲବ କୁଶ ନାମ ଦେନ୍ତି ॥୭୨॥
ଦିନୁ ଦିନୁ କ୍ରମରେ ହୋଇଲେ ବର୍ଦ୍ଧମାନ ।
ଶ୍ରୀରାମ ସଞ୍ଜାତ ଦିଶନ୍ତି ସୀତୟାର ବେନି ନନ୍ଦନ ॥୭୩॥
ଶୁଣିଣ ସଭା ଲୋକେ ଶ୍ରୀରାମ ମୁଖ ଚାହାନ୍ତି ।
ଦୁଇ କୁମାରନ୍ତ ଉପଲେଖନ୍ତି ॥୭୪॥
ଏକ ଆରେକକୁ କହନ୍ତି ବଚନ ।
ହୃଦରେ ବିଚାରନ୍ତି ଅବା ଶ୍ରୀରାମ ନନ୍ଦନ ॥୭୫॥
ଏଇ ଦୁଇ ପୁତ୍ର ଅବା ସୀତୟାର ସୁତ ।
ଶ୍ରୀରାମ ପଟାନ୍ତର ଏ ଦିଶନ୍ତି ସଞ୍ଜାତ ॥୭୬॥
କେ କହଇ ଅବା କେମନ୍ତେ ବୁଝିବା ।
ଗାୟେଣ ଦୁଇଗୋଟି କେମନ୍ତେ ରାଜାର ପୁତ୍ରକଇ
ପଟାନ୍ତର ଦେବା ॥୭୭॥
କେ କହଇ ରାମ ଯେବେ କରିଅଛି ପୁନ୍ୟ ।
ତେବେ ସେ ଏହାକଇ ପାଇବ ନା ନନ୍ଦନ ॥୭୮॥
ତିନି ଭାଇଙ୍କର ଉପୁଜିଲା ତିନି ନନ୍ଦନ ।
ରାମର ମନ୍ଦପଣେ ତନୟ ନ ଦେଖିଲେ ବେନି ନୟନ ॥୭୯॥
ଏସନେକ କହନ୍ତେ ହୋଇଲା ଚହଳ ।
ସବୁନ୍ତି ନିଶୋଦ କଲେ ବ୍ରହ୍ମାର ଦୁଲାଳ ॥୮୦॥

## ଦ୍ୱିତୀୟ ଅଗ୍ନି ପରୀକ୍ଷା

ସଭାରେ ଲୋକେ ନିଶବଦ ହୋଇଲେ ଯହୁଁ ।
ଲବକୁମର ଗୀତ ବଖାଣ କରନ୍ତି ତହୁଁ ॥୧॥
ଏସନେକେ ଛଡ଼ ମାସ ଯହୁଁ ହୋଇଲା ।
ଜନେକ ମହଋଷି ସୀତାକୁ ହକାରି ପୁଛିଲା ॥୨॥
କେବଣ ଦୋଷ ତୁ ସ୍ୱାମୀକି କଲୁ ।
ଶ୍ରୀରାମ ନବରୁ କେମନ୍ତେ ବାହାର ହୋଇଲୁ ॥୩॥
ଅମଳାଣ ସୂର୍ଯ୍ୟ ବଂଶ ସେ ଜଗତ୍ରେ ବିଦିତ ।
ଶ୍ରୀରାମ ଧାର୍ମିକ ଅକୋପିତ ଚିତ୍ତ ॥୪॥
ନିୟତେ ଯୁବତୀ ହୁଅନ୍ତି ନା ଶତ୍ରୁହୀନ ।
ତୋହର ଦୋଷ ନୋହିଲେକି ଉପେଖିଲେ ରଘୁନାନ ॥୫॥
ସୀତୟା କହଇ ସଲଜିତ ହୋଇ ।
ମୋହର ଜ୍ଞାନେ ତ ଦୋଷ କଲା ନାହିଁ ॥୬॥
ସ୍ୱାମୀର ପୟରେ ମୁଁ ସେବା କରି ଥାଇ ।
ସର୍ବଦା ଗୁରୁଜନଙ୍କର ମନ ହରଇ ॥୭॥

କକୟା ନାମେ ଯେ ଭରଥର ମାତ ।
ଦଶରଥ ନୃପତିକି ମନାଇଲେ ସତ୍ୟ ॥୮॥
ଚଉଦ ବରଷ ରାମ ବନକଇ ଯିବ ।
ମୋହର ପୁତ୍ର ଏଥେ ରାଜ୍ୟଧର ହୋଇବ ॥୯॥
ଶୁଣିଣ ନୃପତି ପଡ଼ିଣ ମୋହ ଗଲେ ।
ମୋହର ସ୍ୱାମୀକି ବନବାସ ପମନ୍ତିଲେ ॥୧୦॥
ପିତାର ବଚନେ ରାମ ବନକଇ ଗଲା ।
ଲକ୍ଷ୍ମଣ ଅଯୋଧ୍ୟା ନଗ୍ରରେ ନ ରହିଲା ॥୧୧॥
ପତି ଭଗତା ମୁହିଁ ମହାସତୀ ।
ସ୍ୱାମୀକି ପାଦ ପୂଜି ଭୋଜନ କରଇ ନିତି ॥୧୨॥
ତିନି ଜଣ ଆମ୍ଭେ ବନକଇ ଗଲୁ ।
ନାନା ତୀର୍ଥେ ଦୁଃଖପଡ଼ି ବୁଲିଲୁ ॥୧୩॥
ଅଗସ୍ତି ମହରଷି ଆମ୍ଭକଇ ଦେଖିଲେ ।
ପଞ୍ଚବଟୀ ବନେ ସେ ଛାଡ଼ିଣ ଅଇଲେ ॥୧୪॥
ଶୁଖିଲା କାଠ ତ କାଟି ଲକ୍ଷ୍ମଣ ଗଲା ।
ରାବଣ ଭଣଜାକୁ ଖଡ଼ଗେ ହାଣିଲା ॥୧୫॥
ସୂପନେଖୀ ନାମେ ଜପାସୁରର ଜନନୀ ।
ପୁତ୍ର ମରଣ ଶୁଣି କୋପ କଲା ସେ କାମେନୀ ॥୧୬॥
ଯୁବତୀ ରୂପେଣ ସେ ମୋତେ ସେ ମୋହିଲା ।
ଲକ୍ଷ୍ମଣ ଭାରିଯା ହୋଇବ ବୋଲି ସେ ମୋହର ତୁଲେ ଅଇଲା ॥୧୭॥
ତାହାର ବଚନକୁ ଲକ୍ଷ୍ମଣ ନୋହିଲାକ ବଶ୍ୟ ।
ଛଦ୍ମ ଚରିତ୍ର ଜାଣି ଛେଦିଲା ନାସା ଶ୍ରବଣ କଲା ନାଶ ॥୧୮॥
ତହୁଁ ସୂପନେଖୀ ପହିଜ କରି ଗଲା ।
ତ୍ରିଶିରା ଆଗେ ଗୁହାରି ଯାଇ ସେ କଲା ॥୧୯॥
ଖର ଦୂଷଣ ଚଉଦ ସେନାପତିର ତୁଲେ ।
ଅନେକ ସୈନ୍ୟ ଘେନି ଯୁଦ୍ଧ କରିତ ଅଇଲେ ॥୨୦॥
ସବୁନ୍ତି ଶ୍ରୀରାମ ପ୍ରାଣେ ନାଶ କଲା ।
ନାସା ଛେଦନ ହୋଇ ସୂପନେଖୀ ରାବଣକୁ କହିଲା ॥୨୧॥
କୋପେଣ ଅଇଲା ଅସୁର ଦଶଗିରି ।
ମାରୁଚି କି କପଟେ ଦୁଇ ମୁଣ୍ଡ ମୃଗ କରି ॥୨୨॥
ମୃଗଦେଖି ମୁହିଁ ହରଷ ହୋଇଲି ।
ମୃଗ ଧରିବାକୁ ସ୍ୱାମୀକି ପଠିଆଇଲି ॥୨୩॥
କନେକ ମୃଗ ଧରିବାକୁ ରାମ ଗଲେ ।
ଦୂରକୁ ପଳାନ୍ତେ ଦୁଇ ମୁଣ୍ଡ ଛେଦିଲେ ॥୨୪॥
ପ୍ରତିକାର ଲକ୍ଷ୍ମଣ ବୋଲି ଶୂନ୍ୟେଣ ଡାକ ଦେଲା ।
ସେ ବୟାଣ ମୋହର କର୍ଣ୍ଣରେ ପଡ଼ିଲା ।
ମୋହର ବଚନେ ଲକ୍ଷ୍ମଣ ଶ୍ରୀରାମର ତହିଁ ଗଲା ॥୨୫॥
ତହୁଁ ରାବଣ ରଷିରୂପେ କପଟେ ଭିକ୍ଷା ମାଗିଲାକ ମୋତେ ।
ପର୍ଣ୍ଣ କୁଟୀରୁ ମୁଁ ବାହାର ନୋହିଲି କଦାଚିତ୍ତେ ॥୨୬॥
ନିଶ୍ଚୟେ ପ୍ରାଣ ଛାଡ଼ି ଲୋଡ଼ିଲାକ ଯେବେ ।
କନ୍ଦମୂଳ ଭିକ୍ଷା ଦେଲଇ ମୁହିଁ ତେବେ ॥୨୭॥
ତହୁଁ ରାବଣ ପଣନ୍ତ ଧଇଲା ମୋହର ।
ଲଙ୍କାକଇ ନେଲା ମୋତେ ବସାଇ ରଥର ॥୨୮॥
ଅଶୋକବନେ ଥୋଇଲାକ ନେଇ ।
ସହସ୍ରେ ଅସୁରୀ ତୁଲେଣ ରଖାଇ ॥୨୯॥
କନେକ ମୃଗ ମାରି ରାମ ବାହୁଡ଼ି ଅଇଲେ ।
ବାଟେ ଆସନ୍ତେ ଲକ୍ଷ୍ମଣକୁ ଦେଖିଲେ ॥୩୦॥
ଆଶ୍ରମେ ମୋତେ ନ ଦେଖିଲେ ଯହୁଁ ।
ଅନେକ ବନ କନ୍ଦରେ ଲୋଡ଼ିଲେକ ତହୁଁ ॥୩୧॥
ସୁଗ୍ରୀବର ତୁଲେ ମଇତ୍ର ହୋଇଲେ ।
ବନପତି ବାଳିକି ବାଣେକ ମାଇଲେ ॥୩୨॥
ବାଳିକି ମାରନ୍ତେ କପିକୁଳ ସାଧି ।
ମର୍କଟ ବଳ ଘେନି ରାମ ସେତୁବନ୍ଧ ବାନ୍ଧି ॥୩୩॥
ସମୁଦ୍ର ପାରି ହୋଇ ଲଙ୍କାଗଡ଼ ବେଢ଼ିଲେ ।
ଅସୁରନ୍ତ ବିନାଶି ଦଶକନ୍ଧ ଛେଦିଲେ ॥୩୪॥
ଅଗ୍ନି ପରୀକ୍ଷା କଲେ ମୋତେ ସାତ ରାତ୍ର ସାତ ଦିନ ।
ତେବେ ସେ କୋପ ତେଜିଲେ ଦଶରଥନନ୍ଦନ ॥୩୫॥
ପୁଷ୍ପେକ ଆରୋହି ଅଯୋଧ୍ୟାକୁ ଅଇଲୁ ।
ନିଜ ରାଜ୍ୟେ ପାଟେ ଅବିଷେକ ହୋଇଲୁ ॥୩୬॥
ପୃଥିବୀ ରାଜାମାନେ ସମକଛ ନୋହନ୍ତି ।
ଶ୍ରୀରାମ ଚରଣେ ଅହନିଶି ସେବା କରିଥାନ୍ତି ॥୩୭॥
ବଶିଷ୍ଟେ ଶିବର କଥା ଯହୁଁ କହିଲେ ।
ସେ ମୋତେ ଘେନି ବାଣରାସୀ ଗଲେ ॥୩୮॥
ତୀର୍ଥ ସାରି ନିଜ ରାଜ୍ୟକଇ ଗଲୁ ।
ନିଶ୍ଚିନ୍ତ ହୋଇ ସମରାଜ୍ୟ କଲୁ ॥୩୯॥
ଗର୍ଭେ ମୋହର ତିନିମାସ ହୋଇଲାକ ଯହୁଁ ।
ଦୟା ଚିତ୍ତେ ସ୍ୱାମୀ ମୋତେ ପ୍ରସାଦ ଯାଚିଲେକ ତହୁଁ ॥୪୦॥

ମୁହିଁ ଚଣ୍ଡାଳୁଣୀ ମୋହିତ ହୋଇଲି ।
ବନକଇ ଯିବି ବୋଲି ପ୍ରସାଦ ମାଗିଲି ॥୪୧॥
ତହୁଁ ମୋତେ ଲକ୍ଷ୍ମଣ ବନକଇ ଆଣିଲା ।
ଅଗମ୍ୟ ବନେ ନ କହି ଛାଡ଼ିଗଲା ॥୪୨॥
ଜନେକର ଆଗେ କହିଲାକ ସୀତା ।
ଗୀତରେ ଲବକୁଶେ ଗାଇଲେ ସେକଥା ॥୪୩॥
ଶୁଣିଣ ଜନେକ ମୁନି ମନରେ ବିଚାରି ।
ତୁହି ଯେବେ ଦୋଚାରୀ ଗୋ ନୋହିଲୁ କୁମାରୀ ॥୪୪॥
ମନ ବଚନେ ବିକାର ନାହିଁ ଯେବେ ।
ତୁହି ଅଗ୍ନି ପରୀକ୍ଷା କର ଏବେ ॥୪୫॥
ତେବେ ସେ ମୁହିଁ ହାନ୍ଦେ ତେଜଇ ନା ଭ୍ରାନ୍ତି ।
ଶୁଣିଣ କହଇ ସୀତୟା ମହାସତୀ ॥୪୬॥
ମନେ ଅନ୍ତରେ ଯେବେ ଧଇଲୁ ତପଶୀଳ ।
ଏହିକ୍ଷଣି ବେଗେ ଅଗ୍ନି ସଂଜାଳ ॥୪୭॥
ଜନେକ ଅଗ୍ନି କଲେକ ବହନ ।
ତିନି ଦିବସ ତିନି ରାତ୍ର କଲାକ ଦହନ ।
ଜଳିତ ଶୁଖିଲା ଦାରୁ ପ୍ରଖର ହୁତାଶନ ॥୪୮॥
ଅନଳେ ଦହନ ନୋହିଲା ମହାସତୀ ।
ମନ ଭ୍ରାନ୍ତି ତେଜିଲା ଜନେକ ମହାଯତି ॥୪୯॥
ପିତାର ଘରେ ନିଷ୍କନ୍ତେ ବିଶ୍ରାମଇ ଜିଜ୍ଞାସେନୀ ।
ପ୍ରାଣ ଲଗାଇ ପାଳଇ ପୁତ୍ର ବେନି ॥୫୦॥

## ରାମାୟଣ ଗାନ ସମାପ୍ତି

ଏଥୁ ଅନନ୍ତରେ ଶୁଣ ହୋ ପଣ୍ଡୁ ସୁତ ।
ରାମାୟେଣ ଗ୍ରନ୍ଥ ଯହୁଁ ହୋଇଲା ସମାପତ ॥୧॥
ଆଦିତ୍ୟ ଯେ ଶିଖେ ଦୁଇ ପ୍ରହର ହୋଇଥିଲା ।
ରାମାୟେଣ କହିବାର ତହୁଁ ସମ୍ପୂର୍ଣ୍ଣ ହୋଇଲା ॥୨॥
ଶୀଘ୍ର ଯେ ଗଗନେ ଗମଇଁ ଅଂଶୁମାଳି ।
ଶୁଣିଣ ଶ୍ରୀରାମ ମନେ ମନେ ଭାଳି ॥୩॥
ଏହା ସେ ନିର୍ମିତ କଲୁ ହୋ ବିଧାତା ।
କେତେ ଦୁଃଖ ସହିବ ଜନେକ ଦୋହିତା ॥୪॥
ମନ୍ଦ ବୁଦ୍ଧିରେ ଭାରିଯା ଉପେଖିଲି ।
ସଂହାତେ ମୁଁ ସୀତାକୁ କଷ୍ଟ ଦେଲି ॥୫॥
ଯଦ୍ୟପି ଜିଗ୍ୟଂସେନୀ ଥାନ୍ତେ ମୋହର ପୁର ।
ଏହି ବୟସ ହୋଇଥାନ୍ତା ନା ଦୁଇ କୁମର ॥୬॥
ଏହାକଇ ପଠିଆଇବି ଜନେକ ଭୁବନ ।
ସ୍ୱଭାବେ ସଂକୁଚ କରଇ ମୋହର ମନ ॥୭॥
କୁମରଙ୍କ ମୁଖ ଚାହିଁ ପଚାରଇ ରଘୁନାଥ ।
ତୁମ୍ଭେ ଦୁଇ ଭାଇ ଅବା ସୀତୟାର ସୁତ ॥୮॥
ଏକ ରୂପ ଦିଶ ଏକଇ ବୟସ ।
ଅମୃତମୟେ ବଚନ କର ପ୍ରକାଶ ॥୯॥
ଲବକୁଶର ମୁଖ ଚାହିଁ ପଚାରନ୍ତି ଦାଶରଥି ।
କେବଣ ଦେଶରେ ବାବୁହେ ତୁମ୍ଭର ନିଜ ସ୍ଥିତି ॥୧୦॥
କେ ତୁମ୍ଭର ପିତା କେ ତୁମ୍ଭର ମାତ ।
କେବଣ ଦେଶରେ ତୁମ୍ଭେ ହୋଇଲ ଉଦିତ ॥୧୧॥
କେବଣ ଗୁରୁ ତୁମ୍ଭଙ୍କୁ ପଢ଼ାଇଲେ ଏହା ।
ମୋହର ଆଗେ ସ୍ୱରୂପ ପ୍ରକାଶିବ ତାହା ॥୧୨॥
ଲବକୁମର ବୋଇଲା ଆମ୍ଭେ ନିତ୍ୟେହେ ଗୀତ ଗାଉ ।
ଯିସ ପାଉ ତାହା ଗୁରୁଙ୍କୁ ନେଇ ଦେଉ ॥୧୩॥
ଗ୍ରନ୍ଥ ବରଣ କରି ଶୁଣିଲ ତୁମ୍ଭେ ଯେବେ ।
ସମ୍ପୂର୍ଣ୍ଣ କରି ତୁମ୍ଭଙ୍କୁ ଶୁଣାଇଲୁ ଏବେ ॥୧୪॥
ଏହିକ୍ଷଣି ଦିବାକର ଗଗନରେ ଥିଲା ।
ଦେଖୁ ଦେଖୁ ଆଦିତ୍ୟ ବିକ୍ରମିଣ ଗଲା ॥୧୫॥
ତୁମ୍ଭର ଆଗେ କହନ୍ତେ ହୋଇବ ଉଛର ।
କହି ନ ପାରୁ ଆମ୍ଭେ ଯିବୁ ନିଜ ପୁର ॥୧୬॥
ପାର ଯେବେ ପୁରାଣ ଦକ୍ଷିଣା ଦିଅ ।
ନଉଚେତେ ଆମ୍ଭଙ୍କୁ ଯାଅ ବୋଲିଣ କହ ॥୧୭॥
ଶୁଣିଣ ଶ୍ରୀରାମ ହୋଇଲେ ମଉନ ।
କୁମର ମୁଖ ଚାହିଁ ପଚାରନ୍ତି ବ୍ରହ୍ମସୂନ ॥୧୮॥
ବଶିଷ୍ଠେ କହନ୍ତି ଶୁଣ ହୋ ଦୁଇ ଭାଇ ।
କଥା ପ୍ରସଙ୍ଗରେ କାର୍ଯ୍ୟ ବିଳମ୍ବରେ ରହି ॥୧୯॥
ତୁମ୍ଭେ ଯେ ଶାସ୍ତ୍ର ଉକତ କର ।
ଦକ୍ଷିଣା ଦେଲେ ଶୁଝିବନା କଷ୍ଟ ଦୁଃଖ ସାର ॥୨୦॥
ଶାସ୍ତ୍ର ଶୁଣି ଯେ ଦାନ ଦକ୍ଷିଣା ନଦିଅଇ ।
ଆଗତ ଜନ୍ମେ ସେ ଦରିଦ୍ର ଘରେ ଜନ୍ମ ହୋଇ ॥୨୧॥
ରୋଗୀ ବଧିର ହୋଇ ସେ ଜାଡ଼ଇ ।
ଇହ ଜନ୍ମରେ ତାର କନ୍ଧୁ ଲକ୍ଷ୍ମୀ ଛାଡ଼ଇ ॥୨୨॥
ରାଜ୍ୟରେ ଏ ମହାତ୍ମା ହୁଅଇ ରାଜନ ।
ମନ୍ତ୍ରୀ ଅମନାତ୍ୟ ଆବର ଧାର୍ମିକ ଜନମାନ ॥୨୩॥

ଅନେକ ଯୁବତୀ ଶାସ୍ତ୍ର ଶୁଣୁଥିଲେ ।
ଅମୃତମୟ ପ୍ରାୟେ ବୁଝୁଥିଲେ ॥୨୪॥
ମୁହିଁ ରାଜ୍ୟରେ ପ୍ରୋହିତପଣ କରଇ ।
ଅନେକ ତପସ୍ୱୀ ଅଛନ୍ତି ଦ୍ୱିଜବରଇ ॥୨୫॥
ଅଷ୍ଟାଦଶ କ୍ଷେଉଣୀ ସ୍ତିରୀ ପୁରୁଷେ ।
ରାମାୟେଣ ଶୁଣିଲେ ବସିବେ ସ୍ୱର୍ଗବାସେ ॥୨୬॥
ଯେ ଯାହାର ଅନରୂପେ ଦାନ ଦକ୍ଷିଣା ଦେବେ ।
ଶାସ୍ତ୍ର ଶୁଣିମାର ସଦଗତି ଲଭିବେ ॥୨୭॥
ରାଜାର ଦାନ ଦେଲେ ସେ ପାରିବେ ସମସ୍ତେ ଦାନଦେଇ ।
ତେଣୁ ସେ ସଭିହେଁ ହୋଇଛନ୍ତି ତବଦ ହୋଇ ॥୨୮॥
ତୁମ୍ଭର ପିତାମାତା କୋଳଗୋତ୍ର ଶୁଣିତ ଇଚ୍ଛା କଲା ।
ଯହୁଁ ତୁମ୍ଭେ ନ କହିଲ ମନ ବିରଙ୍ଗ କଲା ॥୨୯॥
ଯାହାର ଆଗେ ବାକ୍ୟ ପୁରାଣ କହି ।
ତାହାକୁ ବିରସ କରିବାର ଯୁଗତ ନୁହଇ ॥୩୦॥
ବାଳୁତ ହୋଇଲ ଅବା ବାକ୍ୟ ଯେ ବଖାଣ ।
ପରକଇ କହ ଆପଣେ ନ ଜାଣ ॥୩୧॥
କେ ତୁମ୍ଭଙ୍କର ପିତାମାତା ସ୍ୱରୂପ କରି କହ ।
ଦାନ ଦକ୍ଷିଣା ଯାହା ପାଅ ଘେନି ଏଥୁ ଯାଅ ॥୩୨॥
ବଶିଷ୍ଟଙ୍କର ବଚନ ଯହୁଁ କୁଶକୁମର ଶୁଣିଲା ।
ଲବକୁମର ମୁଖ ଚାହିଁଣ କହିଲା ॥୩୩॥
ପଚାରିଲେ ଯେବେ ସତ କରି କହିବା ।
ରାତ୍ର ହେଲେଲେ ପଛେ ଶସ୍ତ୍ର ଘେନିଣ ଯିବା ॥୩୪॥
ସିଂହ ବ୍ୟାଘ୍ର ଗଜ ଶାର୍ଦ୍ଦୋଳ ଛାମୁରେ ପଡ଼ିବେ ଯେବେ ।
ତୁମ୍ଭେ ପଛେ ପଛେ ଥାଅ ମୁହିଁ ମାରିବଇ ଆଗେ ॥୩୫॥
ଋଷିର ପ୍ରସାଦେ କାହାକଇ ଆମ୍ଭର ଭୟେ ।
ଅନେକ ଅସୁର ଯୁଦ୍ଧେ କରି ପାରଇ କ୍ଷୟେ ॥୩୬॥

## ଲବକୁଶଙ୍କ ପରିଚୟ ଦାନ

ଯହୁଁ ଶୁଣିଲା ଲବକୁମର ବଚନ ।
ସଧୀର କହଇ ଶୁଣସି ସର୍ବଜନ ॥୧॥
ମାତାକଇ ଆମ୍ଭେ ପିତା କାହିଁ ଅଛି ବୋଲି ପଚାରିଲୁ ।
ତାହାର କହନ୍ତେ ଯାହା ସେ ଶୁଣିଲୁ ॥୨॥
ସେ ଜନନୀ ଆମ୍ଭକୁ କହିଲା ଯାହା ।
ତୁମ୍ଭର ଆଗେ ମୁହିଁ କହୁଅଛି ତାହା ॥୩॥
ଯେବଣ ବେଳେ ମାତାର ଗର୍ଭେ କଲୁ ଆମ୍ଭେ ବାସ ।
ଯେ ଆମ୍ଭର ପିତା ସେ ହୋଇଲା ପ୍ରାଣ ନାଶ ॥୪॥
ପିତା ଘରକଇ ଅଇଲା ଆମ୍ଭର ଜନନୀ ।
ମାତାର ପିତା ନାମ ଜନେକ ମହାମୁନି ॥୫॥
ମାତାଙ୍କର ନାମ ବିଦିତ ସତୀ ସୀତା ।
ସୀତା ସୀତା ବୋଲି ଡାକୁଥାନ୍ତି ତାହାଙ୍କର ପିତା ॥୬॥
ସୂର୍ଯ୍ୟ ବଂଶେ ଆମ୍ଭେ ହୋଇଲୁ ଉତପନ ।
ଶାସ୍ତ୍ର ପଢ଼ାଇଲେ ବାଲମୀକ ମହାମୁନ୍ୟ ॥୭॥
ପିତାର ନାମ ଆମ୍ଭର ନ କହିଲେ ମାତ ।
ଶୁଣିଣ ଶ୍ରୀରାମ ନ କହି ପାରି ଶୋକଭର ଚିତ୍ତ ॥୮॥
କୁମରଙ୍କୁ କୋଳ କରି କାନ୍ଦନ୍ତି ସୀତାପତି ।
ଭ୍ରଥ ଲକ୍ଷ୍ମଣ ଦୁହେଁ ପଡ଼ିଣ ଲୋଟନ୍ତି କ୍ଷିତି ॥୯॥
ଶ୍ରୀରାମର ଶୋକ ଯହୁଁ ସଭାଲୋକେ ଶୁଣିଲେ ।
ସମସ୍ତେ ହେ ଉଚେ ରୋଦନ ଧ୍ୱନି କଲେ ॥୧୦॥
(ସମୁଦ୍ର ଘୋଷ ପ୍ରାୟେ ଶୁଭିଲା ମୁଖ ରୋଳ ।
ଗଗନ ମଣ୍ଡଳ ଯାଏ ସମୋଦ୍ର ଉଛଳ ॥୧୧॥
ଲବକୁମର କହଇ ଏ କେବଣ ବେଭାର ।
ପରର ପୁଅକୁ କୋଳ କରି ରୋଦନ କିମ୍ପା କର) ॥୧୨॥
ଏହେର୍ଣ୍ଣେକ କଥା ଶୁଣିଲା ଆମ୍ଭର ନାହିଁ ।
କି ଅବା ସମସ୍ତେ ହୋଇଲ ତୁମ୍ଭେ ବାଇ ॥୧୩॥
ଦକ୍ଷିଣା ଦାନ ଦେବ ତୁମ୍ଭେ ଆର କାହିଁ ।
ହରଷ ତେଜି ବିରସ ହୋଇଲ ଯହିଁ ॥୧୪॥
(ହରକ୍ଷେଣ ଦାନ ରୋକ୍ଷେଣ ଶସ୍ତ୍ର ଖଣ୍ଡ ।
ମନ୍ତ୍ରୀ ବୋଲେ ନୃପତି ଚଳାବଇ ଦଣ୍ଡ) ॥୧୫॥
ଦାନ ଦକ୍ଷିଣାରେ ଆମ୍ଭର କାର୍ଯ୍ୟ ନାହିଁ ।
ମହା ଲଜ୍ୟା ପାଇଲୁ ତୁମ୍ଭର ରୋଦନ ମୁଖ ଚାହିଁ ॥୧୬॥
ଛାଡ଼ ଛାଡ଼ ମହାତ୍ମା ବଇଦେହୀ ମଣ୍ଡଳକୁ ଯିବୁ ।
ମାତାକଇ ଦେଖିଲେ ସେ ମନଶ୍ୟାନ୍ତି ପାଇବୁ ॥୧୭॥
କୁମର କଥା ଶୁଣି କହନ୍ତି ବ୍ରହ୍ମସୂନ ।
ଥିର ହୁଅସି ସୀତୟାର ବେନି ନନ୍ଦନ ॥୧୮॥
ଯେବଣ ରାମାୟେଣ ତୁମ୍ଭେ କଲ ଉକତ ।
ବାଲମୀକ ମହାମୁନି ପଢ଼ାଇଲେ ତୁମ୍ଭନ୍ତ ॥୧୯॥
ସୂର୍ଯ୍ୟ ବଂଶେ ବିଖ୍ୟାତ ଦଶରଥ ନୃପତି ।
କଉଶୁଲ୍ୟା ନାମେ ରାମର ଗର୍ଭବତୀ ॥୨୦॥

ସେ ଭ୍ରଥ ହୋ ଏ କକୟାର ସୁତ ।
ଲକ୍ଷ୍ମଣ ଶତୃଘନ ଏ ବେନି କୁମର ସୁମିତ୍ରାର ସୁତ ॥୨୧॥
ସୁମିତ୍ରାର ଯେବଣ କନିଷ୍ଠ କୁମରଇ ।
ଲବଣ ମାରି ସେ ମଧୁବନେ ରାଜ୍ୟ କରଇ ॥୨୨॥
ତୁମ୍ଭର ଜନନୀ ଜନେକ ଦୋହିତା ।
ଶ୍ରୀରାମର ଭାବେନୀ ସେହି ସେ ସତୀ ସୀତା ॥୨୩॥
ଲୋକିତ ଅପମାନ ରାମ ସହି ନ ପାରିଲା ।
ତେଣେ ସେ ତୁମ୍ଭର ମାତାକଇ ଉପେଖିଲା ॥୨୪॥
ବନସ୍ତେ ଜନମିଲ ତୁମ୍ଭେ ବେନି କୁମର ।
ସେହି ସେ ଜନେକ ତୁମ୍ଭର ମାତାର ପିଅର ॥୨୫॥
ଶାସ୍ତ୍ର ତୁମ୍ଭଙ୍କୁ ପଢ଼ାଇଲେ ଯେହୁ ।
ବ୍ରହ୍ମାର ତନୟ ବାଲମୀକ ସେହୁ ॥୨୬॥
ତୁମ୍ଭର ପିତାପୁତ୍ରେ ଭେଟ ହୋଇବା ନିମନ୍ତେ ।
ଗୀତ ଗାଇ ମୁନି ପଠିଆଇ ନିତ୍ୟେ ॥୨୭॥
ଅଷ୍ଟନିଧି ଯାହାର ବଚନେ ସିଧି ।
ତଣ୍ଡୁଳ କିସ ସେହୁ କରିବ ତପୋନିଧି ॥୨୮॥
ଚଉରାଶି ଯୋଜନ ଏଥକୁ ବଇଦେହୀ ଭୁବନ ।
ଶୀଘ୍ରେ ଉଡ଼ାଇ ତୁମ୍ଭଙ୍କୁ ଆଣଇ ପବନ ॥୨୯॥
ତୋତେ ଦେଖି ମୁହିଁ ପ୍ରତକ୍ଷେ ଜାଣିଲି ।
ପୁତ୍ର ବୋଲି ମୁହିଁ ଶ୍ରୀରାମଙ୍କୁ ନ କହିଲି ॥୩୦॥
ଦେବଙ୍କର କଷ୍ଟେ ରାମ ମହୀରେ ଉପୁଜିଲା ।
କ୍ଷତ୍ରିୟ ରାଜାପଣେ କୀର୍ତ୍ତି ଅକୀର୍ତ୍ତି କଲା ॥୩୧॥
ରାମାୟେଣ ଶୁଣନ୍ତେ ଧର୍ମ କୀର୍ତ୍ତି ବର୍ଧମାନ ।
ଅକୀର୍ତ୍ତି ନାଶ ଯାଇ ଯେହ୍ନେ ତୁଳାରେ ହୁତାସନ ॥୩୨॥
ତୁମ୍ଭର ଜନନୀ ଯେ ସୀତୟା ମହାସତୀ ।
ଅଦୋଷେ ଉପେକ୍ଷା ଯେ କଲେ ଦାଶରଥି ॥୩୩॥
ଯେତେକ କଷ୍ଟ ସୀତୟା ବନସ୍ତେ ପାଇଲା ।
ଯେବଣ ଅବସ୍ଥାରେ ତୁମ୍ଭନ୍ତ ଜନ୍ମ କଲା ॥୩୪॥
ସେ ଦୋଷ ଭାରା ଯେ ଶ୍ରୀରାମଙ୍କୁ ଆସଇ ।
ରାମାୟେଣ ଶୁଣିଲେ ପାପ ହୋଇବ ବିନାଶଇ ॥୩୫॥
ପିତାକୁ ନ ଦେଖି ଯେ ଜନେକର ଘରେ ଥିଲ ।
ରାଜା କୁମର ହୋଇ ଅନେକ ଦୁଃଖ ପାଇଲ ॥୩୬॥
ରାମାୟେଣ ବଖାଣନ୍ତେ ହୋଇଲ ରାଜ୍ୟ କରତା ।
ଧର୍ମବର୍ଦ୍ଧୂତେ ଦେଖିଲ ନିଜ ପିତା ॥୩୭॥
ଅଯୋଧ୍ୟା ସ୍ତିରୀ ପୁରୁଷେ ରାମାୟେଣ ଶୁଣିଲେ ।
ସକଳ ପାତେକ ଏହାଙ୍କର ବିନାଶିଲେ ॥୩୮॥
ଶତେ କୋଟି ଯୁଗ ସ୍ୱର୍ଗରେ ବସିବେ ।
ମଞ୍ଚେ ଜାତ ହୁଅନ୍ତେ ଧନେଶ୍ୱର ହୋଇବେ ॥୩୯॥
ଆପଣାର ଧର୍ମ ଅର୍ଥେ ଧନ ବସ୍ତ୍ର ଦେବେ ଦାନ ।
ତେବେ ସେ ବର୍ଦ୍ଧମାନ ହୋଇବ ନା ପୁନ୍ୟ ॥୪୦॥
ବେଦବର ପୁତ୍ର ମୁହିଁ ବ୍ରହ୍ମଋଷି ।
ଧର୍ମକର୍ମ ଉପେଖି ରାଜସଭାରେ ବସି ॥୪୧॥
ଏହି ପାତେକ ନୋହିବାକୁ ମୋତେ ।
ଯତନେ ଉକତ କରାଇ ମୋହର ନିମନ୍ତେ ॥୪୨॥
ସକଳ ପାତେକ ମୁହିଁ ବିନାଶ କଲି ।
ବିଷ୍ଣୁ ପୁତ୍ରଙ୍କର ମୁଖେ ରାମାୟେଣ ଶୁଣିଲି ॥୪୩॥
ଏସନେକ କହି କୁଶକେତୁର ସୁତ ।
ଶିରେ ଚୁମ୍ବନ ଦେଇ ହୋଇଲେ କୁଶହସ୍ତ ॥୪୪॥
ରତ୍ନମଣି କୁଣ୍ଡଳ ଯେ ଆଭରଣ ହୋଇଥିଲେ ।
ଲବକୁମର କର୍ଣ୍ଣରେ କୁଣ୍ଡଳ ଦୁଇ ଖଞ୍ଜିଲେ ॥୪୫॥
କୁଶକୁମର ଅଙ୍ଗୁଷ୍ଠିରେ ଖଞ୍ଜିଲେ ରତ୍ନମୁଦି ।
ସଭା ଲୋକଙ୍କୁ ଚାହିଁ କହନ୍ତି ତପୋନିଧି ॥୪୬॥
ଯେ ଯାହାର ଇଚ୍ଛାରେ ଧନ ବସ୍ତ୍ର ଦାନ ଦିଅ ।
ସକଳ ପାତେକ ତୁମ୍ଭର ବିନାଶ କର ହୋ ॥୪୭॥
ବଶିଷ୍ଠଙ୍କର ବଚନ ଯେହୁଁ ସଭା ଲୋକେ ଶୁଣିଲେ ।
ରତ୍ନ ବସ୍ତ୍ର ଅଳଙ୍କାର ସମସ୍ତେ ହେ ଦେଲେ ॥୪୮॥
କନେକ ରାଶି ଏ କୁଢ଼ ହୋଇ ପଡ଼ିଲା ।
ଅନେକ ବସ୍ତ୍ର ସଭାରେ ପୂରାଇଲା ॥୪୯॥
ଲବକୁମର ମୁଖ ଚାହିଁ ବଶିଷ୍ଠେ କହନ୍ତି ।
ଏହି ସେ ଶ୍ରୀରାମ ହୋ ସୀତୟାର ପତି ॥୫୦॥
ମନରେ ଅନ୍ତର କିଛି ହିଁ ନ ଧର ।
ଏହି ସେ କ୍ଷତ୍ରିବର ତୁମ୍ଭର ପିଅର ॥୫୧॥
ବଶିଷ୍ଠଙ୍କର ବଚନ ଯହୁଁ ଶୁଣିଲେ ବେନି ଭ୍ରାଥ ।
କଣ୍ଠେ ସରସ୍ୱତୀ ବସିଲା ତୁରିତ ॥୫୨॥
ମୋହରେ ମୋହିତ କୁମାରଙ୍କ ଦେହି ।
ନୟନ ଛନ ଛନ କଲେ ଶ୍ରୀରାମ ମୁଖ ଚାହିଁ ॥୫୩॥
ପୁତ୍ରର ବିକଳ ଦେଖି ରଘୁନାନ ।
ନୟନରୁ ଲୁହ ଗଳି ପଡ଼ଇ ଘନଘନ ॥୫୪॥

ଭ୍ରଥ ଲକ୍ଷ୍ମଣ ଆନନ୍ଦେ ନୟନୁ ଲୁହ ଗଳଇ ।
ଶ୍ରୀରାମଙ୍କୁ କହନ୍ତି ବ୍ରହ୍ମାଙ୍କ ଦୁଲାଳଇ ॥୫୫॥
ପୁତ୍ର ଦୁଇ ଘେନି ଏବେ ନବରକୁ ଯାଅ ।
କଉଶଲ୍ୟା ଦେବୀଙ୍କ କୁମରଙ୍କୁ ଦେଖାଅ ॥୫୬॥
କଉଶଲ୍ୟା ସୁମିତ୍ରା ତୋହର ସକଳ ଜନନୀ ।
ସୀତୟାର ପୁତ୍ରନ୍ତ ଦେଖି ପାପକ୍ଷୟେ କରନ୍ତୁ ସେ ବୃଦ୍ଧ କାମେନୀ ॥୫୭॥
ଧାତ୍ରୀ ମୃଦୁସୁଲୀ ଅନ୍ତଃପୁର ପରିବାରୀ ।
ଦୁଷ୍କୃତ ବିନାଶ କରନ୍ତୁ ତୋହର ପୁତ୍ରନ୍ତ କୋଳେ ଧରି ॥୫୮॥
ବଶିଷ୍ଠଙ୍କର ବଚନ ଯହୁଁ ରାମଚନ୍ଦ୍ର ଶୁଣିଲେ ।
ଲବକୁମରକଇ ହୃଦରେ ଚାପିଲେ ॥୫୯॥
ଭ୍ରଥ ମହାବୀର କୁଶକୁ କାଖେ ଘେନଇଁ ।
ଆଗର ଲୋକକୁ ପଛ କରି ଦିଅଇ ସୁମିତ୍ର ନନ୍ଦନଇ ॥୬୦॥
ବଶିଷ୍ଠ ସହିତେ ମନ୍ତ୍ରୀ ଅମନାତ୍ୟଇ ।
ନବର ଭିତରକଇ ପଶନ୍ତି ସମସ୍ତହି ॥୬୧॥
ଅଯୋଧ୍ୟା ନଗରୀ ସମସ୍ତ ନରନାରୀ ।
ଏକଇ ଆରେକ ଧାମନ୍ତି ଆଗସରି ॥୬୨॥
ନବର ଭିତରକଇ ଶୀଘ୍ର ହୋଇ ଗଲେ ।
କଉଶଲ୍ୟା ଆଗରେ ତତକ୍ଷଣେ କହିଲେ ॥୬୩॥
ଶୁଣ ଗୋ ସାବଧାନେ କ୍ଷତ୍ରିବର ମାତ ।
ତୁମ୍ଭର କୂଳବଧୂ ସେ ଜନେକ ଦୋହିତ ॥୬୪॥
ଲକ୍ଷ୍ମଣ ବନସ୍ତେ ନିବାସି ଅଇଲା ।
ଅନେକ ଦୁଃଖ ପାଇ ସେ ପିତା ଘରକୁ ଗଲା ॥୬୫॥
ବନସ୍ତେ ତାହାର ଗର୍ଭେ ଉପୁଜିଲା ବେନି ପୁତ୍ର ।
ପଢ଼ି ଗୁଣୀ ପଣ୍ଡିତ ହୋଇଲେ ଶାସ୍ତ୍ର କରନ୍ତି ଉକତ ॥୬୬॥
କାଲି ସେ ଏ ପୁରେ ଗୀତ ଗାଇଣ ଗଲା ।
ଆଉ ଭାଇ ଗୋଟି ଘେନି ଆଜ ପ୍ରଭାତୁ ଅଇଲା ॥୬୭॥
ଦୁଇ ଭାଇ ଅର୍ଥ କରି ଗୀତ ଗାଇଲେ ।
ରାମାୟେଣ ଚରିତ୍ର ସମସ୍ତଙ୍କୁ କହିଲେ ॥୬୮॥
ଶାସ୍ତ୍ର ଶୁଣି ପୁତ୍ର ବୋଲି ଜାଣିଲେ ସୀତାପତି ।
ପୁତ୍ରକୁ ଘେନିଣ ଏବେ ଆସୁଣ ଅଛନ୍ତି ॥୬୯॥
ଶୁଣି କଉଶଲ୍ୟା ଉସତ ମନ ।
ଆନନ୍ଦେ ଅଶ୍ରୁଜଳ ବହଇ ଘନଘନ ॥୭୦॥
କକୟା କଉଶଲ୍ୟା ସୁମିତ୍ରା ଆବର ଯେତେକ କାମେନୀ ।
ଧାଇ ମୃଦୁସୁଲୀ ପରିବାରୀନ୍ତ ଘେନି ॥୭୧॥
ନବରୁ ବାହାର ହୋଇ କଉଶଲ୍ୟା ଯେ ଦ୍ୱାରେ ହୁଅନ୍ତି ।
ଅନେକ ଯୁବତୀ ସନିଧେଣ ଅଛନ୍ତି ॥୭୨॥
ଏସନେକ ସମୟେ କ୍ଷତ୍ରିବର ସୁନ୍ଦର ।
ପୁତ୍ରନ୍ତ ଘେନି ପଶନ୍ତି ନବର ଭିତର ॥୭୩॥
କଉଶଲ୍ୟା ଦେବୀ ଶ୍ରୀରାମ କୋଳରେ ଦେଖିଲେ ।
ଲବକୁମରକଇ ଆଣି କାଖରେ ବସାଇଲେ ॥୭୪॥
ଭ୍ରଥର ଠହୁଁ କକୟା କୁଶକଇ ଘେନନ୍ତି ।
ସୁମିତ୍ରାଏ ଦୁଇ କୁମର ମୁଖେ ଚୁମ୍ବନ ଦିଅନ୍ତି ॥୭୫॥
ଅନେକ ଯୁବତୀ ହୋଇଲେ ଚହଳ ।
ମହା ଶବଦେକ ହୋଇଲା ମୁଖ ଗୋଳ ॥୭୬॥
ଲବକୁଶ ଦୁଇ କୁମର କାଖରୁ ଓହ୍ଲାଇଲେ ।
ପିତାର ଜନନୀର ପାଦ ଧରି ପ୍ରଣମିତ ହୋଇଲେ ॥୭୭॥
କଲ୍ୟାଣ କରନ୍ତି ଶ୍ରୀରାମର ସର୍ବମାତ ।
ପିତାର ସମ୍ପଦ ଏବେ ଭୁଞ୍ଜ ବେନି ଭ୍ରାଥ ॥୭୮॥
ଲକ୍ଷ୍ମୀ ଭୁଞ୍ଜ ଆୟୁଷ୍ୟ ବର୍ଦ୍ଧମାନ ହୋଉ ।
ଯେ ତୁମ୍ଭର ଶତ୍ରୁ ସେ ବେଗେଣ କ୍ଷୟେ ଯାଉ ॥୭୯॥
ସକଳ ଯୁବତୀ କୁମରଙ୍କୁ ଉପଲେଖନ୍ତି ।
ସଂଜାତ ସ୍ୱରୂପ ଏ ଶ୍ରୀରାମ ପ୍ରାୟେ ଦିଶନ୍ତି ॥୮୦॥
ସୀତାକଇ ସମସ୍ତେ ହେ କରନ୍ତି ଧନ୍ୟ ଧନ୍ୟ ।
ସେ ପୁନ୍ୟବତୀ ଗର୍ଭରୁ ଉପୁଜଇ ନା ଏସନେକ ନନ୍ଦନ ॥୮୧॥

## ଲବକୁଶଙ୍କ ବନ୍ଦାପନା

ତଦ ଅନ୍ତରେ ରାମ ପୁତ୍ରଙ୍କର କଟି ଧଇଲେ ।
କନେକ ସିଂଘାସନେ କେଳେ ଧରି ବସିଲେ ॥୧॥
ମାଣିକ୍ୟର ଦୀପାବଳୀ ଘେନିଣ ହସ୍ତ ।
ପୁତ୍ରକୁ ବନ୍ଦାବନ୍ତି ସମସ୍ତ ମାତ ॥୨॥
ହୃଦରେ ଚନ୍ଦ୍ରସମ ଲେପନ କରନ୍ତି ।
ଲଲାଟେ ଚନ୍ଦନ ଘଷି କସ୍ତୁରୀ ଚିତା ଦେନ୍ତି ॥୩॥
ଭ୍ରଥ ଲକ୍ଷ୍ମଣ (ଶତ୍ରୁଘନର) ତିନି କୁମାର ।
ସେହି ବସିଥିଲେ ଶ୍ରୀରାମ କତିର ॥୪॥
ପଞ୍ଚକୁମାର ଏକ ରୂପ ଦିଶନ୍ତି ।
ପାଞ୍ଚଙ୍କର ଶିରେ ଦୂବ ଅକ୍ଷତ ଦିଅନ୍ତି ॥୫॥
ହରଷେ ଶ୍ରୀରାମ ନଗ୍ର ଉଛବ କଲେ ।
ହାଟକୁର ମତହସ୍ତୀ ମୁକୁଳା କଲେ ॥୬॥

ଏକର ବିତ୍ତ ଆରେକ ନିଅନ୍ତି ।
ଏକର ମାଥେ ଆରେକ ଧୂଳିକି ଉଡ଼ାନ୍ତି ॥୭॥
କେ କାହାକୁ ଧରି ଠେଲି ପକାନ୍ତି ।
ଚୂନ ହଳଦୀ ଗୋଳି କେ କାହାକୁ ନିଉଡ଼ନ୍ତି ॥୮॥
ହରଷେ ନଗ୍ର ଲୋକେ ଆନନ୍ଦମୟେ ହୋନ୍ତି ।
ରଘୁପତିଙ୍କର କୁମରନ୍ତ ଦେଖିଣ ଦୁହିନ୍ତି ॥୯॥
ଧନ ବସନ ଗଲା ବୋଲି ଚିନ୍ତା ନ କରନ୍ତି ଚିତ୍ତ ।
ସବୁରି ହୃଦରେ ଆନନ୍ଦମୟେ ଚିତ୍ତ ॥୧୦॥
ଯେବଣ ସାଧବର ଧନବସ୍ତ୍ର ଲୁର କରିଣ ନେଲେ ।
ତାହାନ୍ତ ପଚାରି ରାମ ଦୁଗୁଣ କରିଣ ଦେଲେ ॥୧୧॥
ଦୁଖିତ ମନ ନ ଧରନ୍ତି କେହି ।
ଆନନ୍ଦ ହୋଇଲେ ଧନରତ୍ନ ପାଇ ॥୧୨॥
ଘରେ ଘରେ ତ୍ରୋଣ ଶ୍ୱେତ ଅମ୍ବର ଉଡ଼ାନ୍ତି ।
ଶଙ୍ଖ କମ ମହୁରି ବିଜିଘୋଷ ବଜାନ୍ତୀ ॥୧୩॥
ଦମା ଦୁନ୍ଦୁଭି ମୃଦଙ୍ଗ ଭେରି ବଜାନ୍ତି ।
ଠାବେ ଠାବେ ନୃତ୍ୟ ଗୀତ କରନ୍ତି ॥୧୪॥
ଈଶ୍ୱରଙ୍କୁ କ୍ଷୀର ସ୍ନାହାନ କରାନ୍ତି ।
ଦରିଦ୍ର ବ୍ରାହ୍ମଣକଇ ଧନବସ୍ତ୍ର ଦାନ ଦେନ୍ତି ॥୧୫॥
ଦେବୀଙ୍କି ବଳି ଛାଗଳ ମହିଁଷି ।
କ୍ଷେତ୍ରପାଳକଇ ସ୍ନାହାନ କରାବନ୍ତି ରଘୁଶିଷି ॥୧୬॥
ତଦଅନ୍ତରେ ଅନ୍ତଃପୁରର ଯୁବତୀ ।
ପାଞ୍ଚ କୁମରଙ୍କୁ କୁଙ୍କୁମ ଘଂଷନ୍ତି ॥୧୭॥
ଚନ୍ଦନ ଲେପନ କଲେ ସବୁଙ୍କରି ଗାତ୍ର ।
କପୋଳେ କସ୍ତୁରୀ ଚିତା ଦେଲେ ରଘୁନାଥ ॥୧୮॥
ସୀତାର ମଣି ମୁକୁତା ମାଳ ଯେ ଭଣ୍ଡାରେ ଥୋଇଥିଲେ ।
ଦୁଇ ପୁତ୍ରଙ୍କର ଗଳାରେ ତାହା ଶ୍ରୀରାମ ଲମ୍ବାଇଲେ ॥୧୯॥
କନେକ କୁଣ୍ଡଳ ବାହାରେ ରତ୍ନବିଦ ।
ମୁଖ ଦିଶଇ ଯେହ୍ନେ ପୂର୍ଣ୍ଣମୀର ଚାନ୍ଦ ॥୨୦॥
ଦିବ୍ୟ ମଡ଼ିଆଳ ପବିତ୍ର ଝୀନବାସ ।
ପରିଧାପନ ହୋଇଲେ ସୀତାର ବେନି ଶିଷ୍ୟ ॥୨୧॥
ଜାତୀ ଯୁବତୀ ସେବତୀ ମଲୀ ମାଳତୀ ।
ପୁତ୍ରଙ୍କର ଶିରେ କୁସୁମ ଆଳମ୍ବ କରନ୍ତି ସୀତାପତି ॥୨୨॥
ଶୀଘ୍ରେଣ ଶ୍ରୀରାମ ଯେ ସ୍ନାହାନ ସାରିଲେ ।
ପାଞ୍ଚ କୁମାରନ୍ତ ଘେନି ମଣୋହିରେ ବସିଲେ ॥୨୩॥

କନେକ ସୀତା ଆଣି ସନିଧେ ବସାନ୍ତି ।
ଦେଖି ଲବକୁଶେ ପ୍ରତିମାକୁ ଚାହାନ୍ତି ॥୨୪॥
ଲବକୁମର ମୁଖ ଚାହିଁ କୁଶକୁମର ପଚାରଇ ।
ଏ ପ୍ରତିମା ଦିଶଇ ଆମ୍ଭର ମାତାର ସାଦ୍ରିଶଇ ॥୨୫॥
ଲବକୁମର ମୁଖ ଚାହିଁ କହନ୍ତି ରଘୁନାନ ।
ଶୁଣ ହୋ ପୁତ୍ର ତଲ୍ୟଯେ କରି ମନ ॥୨୬॥
ତୁମ୍ଭର ମାତାକୁ ଯହୁଁ ବନରେ ନିବାସିଲି ।
ସୀତାର ସାଦ୍ରିଶେ ପ୍ରତିମା କରାଇଲି ॥୨୭॥
ଏହାର ମୁଖ ଦେଖଇ ମୁହିଁ ନିତି ।
ପାସୋର ନ ଯାଇ ମୋତେ କନେକ ଦୋହିତୀ ॥୨୮॥
ଶୁଣିଣ କୁମାରେ ହୋଇଲେ ମଉନ ।
ମାତାକଇ ସୁମରି ନ ରୁଚଇ ଅନ୍ନ ॥୨୯॥
ପଞ୍ଚଭୂତ ଆତ୍ମାରେ ଭାଳନ୍ତି ଦୁଇ ଭାଇ ।
ଶୀଘ୍ରେଣ ଆସିବ ବୋଲି ଯେ ବୋଇଲେ ଆମ୍ଭର ଆଈ ॥୩୦॥
ଏତେବେଳ ଯାଏ ରହିଲୁ ଏ ପୁର ।
ଆଦିତ୍ୟ ହୋଇଲାନି ତୃତୀୟ ପ୍ରହର ॥୩୧॥
ଆମ୍ଭନ୍ତ ନ ଦେଖି କନେକ ଦୋହିତ ।
ଅତି ବିକଳ ହୋଇବନି ତାହାର ଚିତ୍ତ ॥୩୨॥
ପୂର୍ବର ପୁନ୍ୟରେ ପିତାର ମୁଖ ଦେଖିଲୁ ।
ଗର୍ଭଧାରୀ ମାତାକଇ ମହାକଷ୍ଟ ଦେଲୁ ॥୩୩॥
ଏସନେକ ଭାଳୁ ସୀତାର ବେନି କୁମର ।
ଘନଘନ ନୟନୁ ଲୁହ ଗଳି ପଡ଼ଇ ଭୂମିର ॥୩୪॥
ଅନ୍ନ ନ ଭୁଞ୍ଜନ୍ତି ଭରିଛନ୍ତି ହସ୍ତ ।
ଭୂମିକି ଚାହିଁ ବୀର ଲମ୍ବାଇଣ ମାଥ ॥୩୫॥
ପୁତ୍ରଙ୍କର ବିରସ ମୁଖ ଦେଖିଣ ସୀତାପତି ।
ମଣୋହି ସାରି ବେଗେ ଆଚୋମନ କରନ୍ତି ॥୩୬॥
ନବରତ୍ନ ଖଞ୍ଜିତ ଖଟ ଉପରେ ବସିଲେ ।
ଦୁଇ ପୁତ୍ର ଆଣି କୋଳରେ ବସାଇଲେ ॥୩୭॥
କର୍ପୂର ତାମ୍ବୋଳ ଭୁଞ୍ଜନ୍ତି ଦାଶରଥି ।
ପୁତ୍ରଙ୍କର ମୁଖେ ତାମ୍ବୋଳ ଭୁଞ୍ଜାନ୍ତି ॥୩୮॥
ଦୁଇ କୁମରଙ୍କ ମୁଖ ବିରସଇ ।
ଶ୍ରୀରାମ ମୁଖ ଚାହିଁ କହନ୍ତି ଲବକୁଶଇ ॥୩୯॥
ଭୋ ସ୍ୱାମୀ କ୍ଷତ୍ରିବର ରଘୁବଂଶ ବିଖ୍ୟାତି ।
ମହୀ ମଧେ ନୃପତିଶେଖର ବୀରବ(ର) ଚକ୍ରବର୍ତ୍ତୀ ॥୪୦॥

ଅଦୋଷେ ଆମ୍ଭର ମାତାକୁ ଉପେଖିଲୁ ।
ଦେବଙ୍କର ନିର୍ବାଣେ ଅନେକ କଷ୍ଟ ଦେଲୁ ॥୪୧॥
ଶାସ୍ତ୍ର ଉକତେ ନଗ୍ର ପରିଭ୍ରମଣ କରୁ ।
ପର ଅପର କେ ବୁଝିତ ନ ପାରୁ ॥୪୨॥
ବଶିଷ୍ଠଙ୍କର କହନ୍ତେ ଜାଣିଲୁ ସର୍ବସିଦ୍ଧି ।
ଏବେ ସେ ଭୋ ତାତ ପୂରିଲା ଆମ୍ଭର ବୁଦ୍ଧି ॥୪୩॥
କଣ ଭିକ୍ଷା ମାଗି ମାଗି ତଣ୍ଡୁଳ ଆମ୍ଭେ ନେଉ ।
ବାଲମୀକ ମହାମୁନିଙ୍କର ସନିଧେ ନେଇ ଦେଉ ॥୪୪॥
ମାତା ଆମ୍ଭର ନବର ଦ୍ୱାରେ ବସିଥାଇ ।
ଆମ୍ଭନ୍ତ ଦେଖିଲେ ସେ ନବର ଭିତରକୁ ଯାଇ ॥୪୫॥
ତେବେ ସେ ସ୍ନାହାନ ଭୋଜନକୁ ଯାଇ ।
ଆମ୍ଭଙ୍କୁ ନ ଦେଖି ନ ପୁଣ ଆଜ ମରଇ ॥୪୬॥
ଆସିବାର ବେଳେ ଚିଆରିଲେ ମାତ ।
ନିକଟେ ଗୀତ ଗାଇ ଆସିବ ବେନି ଭ୍ରାଥ ॥୪୭॥
ବରଣ କରି ଶାସ୍ତ୍ର ଶୁଣିଲ ତୁମ୍ଭେ ଯହୁଁ ।
ତେଣୁ ସେ କୁଶକଇ ଘେନି ମୁହିଁ ଅଇଲି ତହୁଁ ॥୪୮॥
ପୂର୍ବ ଜନ୍ମେଣ କଲଇ ସାଧୁ ପୁନ୍ୟ ।
ତେଣୁ ସେ ଦେଖିଲୁ ତୋହର ବଦନ ॥୪୯॥
ଏବେ ଯିବଉ ଆମ୍ଭେ ଜନେକର ପୁରୀ ।
ଆଜ୍ଞା ଦେବା ଦେବ ମନେଣ ବିଚାରି ॥୫୦॥
ଶୁଣିଣ ଶ୍ରୀରାମ ତବଦ ହୋଇଲେ ।
ଲବକୁମର ମୁଖ ଚାହିଁ ବିମନେ କହିଲେ ॥୫୧॥
ତୁମ୍ଭେ ଉପେଖି ମୋତେ ଯିବ ଯେବେ ।
ଏ ମୋହର ଦେହେ ପ୍ରାଣ ଥିବକି ତେବେ ॥୫୨॥
ସୀତୟାକଇ ନ ଦେଖି ଅଥିର ମୋର ମନ ।
କ୍ରୋଟଅଗ୍ନି ଜାଣି ଦହଇ ଘନଘନ ॥୫୩॥
ତୁମ୍ଭର ମୁଖରେ ଗ୍ରନ୍ଥ ଶୁଣିଲି ।
ଅମୃତ ରସ ପ୍ରାୟେକ ବୁଝିଲି ॥୫୪॥
ପୁତ୍ରଙ୍କର ମୁଖେ ଯେ ଶୁଣଇ ଗ୍ରନ୍ଥ ।
ଶତେ ପୁରୁଷ ତାହାର ହୁଅଇ ମୁକତ ॥୫୫॥
ସୂର୍ଯ୍ୟବଂଶକଇ ତୁମ୍ଭେ ଭାଗ୍ୟରଥି ସମାନ ହୋଇଲ ।
ମାତୃକୁଳ ପିତୃକୁଳ ଦୁଇକୁଳ ଉଧରିଲ ॥୫୬॥
କଥାଏ କହିବା ଶୁଣ ହେତୁ ମନ ।
ତୁମ୍ଭ କହିବାକୁ ବୁଝଇ ଏମାନ ॥୫୭॥
ବିଧାତାର ନିର୍ବାଣେ ସୀତା ଉପେଖିଲି ।
ଅସହିତ କଷ୍ଟ ଦୁଖଭାର ପାଇଲି ॥୫୮॥
ସୀତାର ଦୋଷ ନାହିଁ ତୁମ୍ଭର କହନ୍ତେ ।
ଦେବତାଙ୍କର କପଟ ମୁହିଁ ମେଣ୍ଟିବି କେମନ୍ତେ ॥୫୯॥
ଏବେ ମୋତେ ଘେନି ଜନେକପୁରକଇ ଯିବ ।
ମୋହର ଭାରିଯାକଇ ନେଇ ଦେଖାଇବ ॥୬୦॥
ସତୀକି ପ୍ରବୋଧି ଏଥିକି ଘେନିଣ ଆସିବା ।
ନିଶ୍ଚନ୍ତ ହୋଇଣ ରାଜ୍ୟ କରିବା ॥୬୧॥
ଶୁଣିଣ ଲବକୁଶେ କହନ୍ତି ଯୋଡ଼ି ହସ୍ତ ।
ଯେ ତୋହର ବିଚାରେ ମିଳଇ ଭୋ ତାତ ॥୬୨॥
ଶାସେକ ନାଶେକ ତୁ ପ୍ରାଣର ଅଧିକାରୀ ।
ସ୍ୱାମୀ ଦୟା କଲେ ଦୋଷ ହୁଅଇ ପାରି ॥୬୩॥
ପୂର୍ବକାଳେ ଦୁର୍ଗାଙ୍କୁ ସେବଇ ଯେବଣ ଯୁବତୀ ।
ଇହଜନ୍ମେ ସେ ସ୍ୱାମୀର ସଉଭାଗୀ ହୁଅନ୍ତି ॥୬୪॥
ଆମ୍ଭେ ଆସ୍ତି ନାସ୍ତି କରିତ ନ ପାରୁ ।
ଯେ ତୋହର ଆଜ୍ଞା ଶିରେ ଘେନି ପାରୁ ॥୬୫॥

## ସୀତାଙ୍କ ନିକଟକୁ ଯାତ୍ରା

ପୁତ୍ରଙ୍କର ବଚନେ ଶ୍ରୀରାମ ହୋଇଲେ ହରଷ ।
ବଶିଷ୍ଠ ମହାମୁନିଙ୍କି ହକାରନ୍ତି ପାଶ ॥୧॥
ମନ୍ତ୍ରୀ ଅମନାତ୍ୟ ତପିଷ୍ଠ ଭଗବନ୍ତଜନ ।
ସୁଜ୍ଞ ସୋଦର ବୈଷ୍ଣବ ବିଦ୍ୟୁଜନ ॥୨॥
ଭ୍ରଥ ଲକ୍ଷ୍ମଣ ଅଛନ୍ତି ଦୁଇଭାଇ ତୁଲେ ।
ଶ୍ରୀରାମର ସନିଧେ ସମସ୍ତେ ମିଳିଲେ ॥୩॥
ବଶିଷ୍ଠଙ୍କର ମୁଖ ଚାହିଁ କହନ୍ତି କ୍ଷତ୍ରିବର ସୁନ୍ଦର ।
ଭୋ ମୁନି ଏହିକ୍ଷଣି ଯିବା ବହିଦେଇ ନଗର ॥୪॥
ପୁଷ୍ପେକ ଆରୋହି ଏହିକ୍ଷଣି ଯିବା ।
ଜନେକ ନନ୍ଦିନୀକି ଘେନିଣ ଆସିବା ॥୫॥
ତୁମ୍ଭର ନ ଗଲେ ସିଦ୍ଧ୍ୟ ନୁହୋଇ କାର୍ଯ୍ୟ ।
ସୀତାକଇ ବୁଝାଇ କହିବ ବ୍ରହ୍ମାର ତନୁଜ ॥୬॥
ବଶିଷ୍ଠେ କହନ୍ତି ଜାଣୁଚିକି ପୂର୍ବକାଳର କଥା ।
ମୋହର ବଚନ ଯେ ନ କଲୁ ସର୍ବଥା ॥୭॥
ଏବେ ଯିବା ନା ଜନେକ ଭୁବନ ।
ଭଲ ଶଂକୁନ୍ୟ ନ ବୁଝଇ ମୋହର ମନ ॥୮॥
ମହାସତୀକି ଅନେକ ଦୁଃଖ ଦେଲୁ ।

ପରାପର କଥା ଯେ ଦୁଇ ନ ଚେତିଲୁ ॥୯॥
ଅପବାଦ୍ୟ ରାଗେ ଯେ କୋପ କରଇ ।
ପଛନ୍ତ କାଳେ ସେ ଝୁରି ଝୁରି ମରଇ ॥୧୦॥
ଶ୍ରୀରାମ କହନ୍ତି ଏବେ ଗଲାକଥାକୁ ଆନ ନ କରଇ ମହାମୁନ୍ୟ ।
କୁମରଙ୍କୁ ଘେନି ଯିବା ଚାଲ ବହନ ॥୧୧॥
ଏସନେକ କହି ରାମ ପୁଷ୍ପେକ ସୁମରିଲେ ଯହୁଁ ।
ତତକ୍ଷଣେ କୋବେର ବିମାନ ଦେଇ ପଠିଆଇଲା ତହୁଁ ॥୧୨॥
ଦେଖିଣ ଶ୍ରୀରାମ ହରଷ ହୋଇଲେ ।
ପୁତ୍ରଙ୍କର କଟି ଧରି ରଥରେ ବିଜୟେ କଲେ ॥୧୩॥
ପ୍ରୋହିତ ମନ୍ତ୍ରୀ ଅମନାତ୍ୟ ସହିତେ ।
ଭ୍ରଥ ଲକ୍ଷ୍ମଣ ସମସ୍ତେ ହେ ବସନ୍ତି ରଥେ ॥୧୪॥
କକୟୀ କଉଶୁଲ୍ୟା ସୁମିତ୍ରା ତିନି ମହାଦେଈ ।
ସୀତାକୁ ଦେଖିବାକୁ ସଜ ହୁଅନ୍ତି ସେହି ॥୧୫॥
ଆବର ଯେତେକ ଅନ୍ତଃପୁରର ଯୁବତୀ ।
ସୀତୟାକୁ ଦେଖିବାକୁ ସମସ୍ତେ ସଜ ହୁଅନ୍ତି ॥୧୬॥
ଧାଈ ମୃଦୁସୁଲୀ ପରିବାରୀ ସହିତେ ।
ସମସ୍ତେ ଅଇଲେ ବସିବି ବୋଲି ରଥେ ॥୧୭॥
ବଶିଷ୍ଟେ ବୋଲନ୍ତି ରାମଚନ୍ଦ୍ର ମାତ ।
ରାଜ୍ୟ ତେଜିବାର ତୁମ୍ଭର ନୁହଇ ଯୁଗତ ॥୧୮॥
ରଥ ଆରୋହି ଶୂନ୍ୟ ମାର୍ଗେ ଆମ୍ଭେ ଯିବୁ ।
ବାହୁଡ଼ି ଆଜ ଏଥକଇ ଆସିବୁ ॥୧୯॥
ରାଜ ଭଣ୍ଡାର ସମ୍ଭାଳି ତୁମ୍ଭେ ଥିବ ।
ମନେ ବଇରାଗ ତୁମ୍ଭେ କିଛିହି ନ ଧରିବ ॥୨୦॥
କଉଶୁଲ୍ୟାଏ କହନ୍ତି ଶୁଣସି ମହରଷି ।
ତିନି ଭଏଣୀ ରଥେ ଯାଉ ଆମ୍ଭେ ବସି ॥୨୧॥
ଜନେକ ନନ୍ଦନୀର ମୁଖ ଆମ୍ଭେ ଦେଖୁ ।
ମାନେବ ଜନମର ପାତେକ ଉପେଖୁ ॥୨୨॥
ବିଶେଷେ ସ୍ତିରୀଙ୍କର କୋପ ମହାଅଗ୍ନି ।
ଅନେକ ବନସ୍ତେ ବୁଲିଲା ଛିଗ୍ନସେନୀ ॥୨୩॥
ଗର୍ଭର ଭାରା ସେ ପାଇଲା ଅତିଦୁଃଖ ।
ନ ପୁଣ ନ ଚାହିଁ ସେ ଶ୍ରୀରାମର ମୁଖ ॥୨୪॥
ମୁହିଁ ସୀତାକୁ ଯେ କହିବି ପ୍ରବୋଧି ।
ମୋତେ ଦେଖିଲେ ସତୀ ଛାଡ଼ିବ କୋପ ବୁଧି ॥୨୫॥
ମୋହର ବଚନ ନ ଲଂଘଇ ସତୀ ସୀତା ।
ଆମ୍ଭନ୍ତ ରଥେ ବସାଇ ନିଅସି ମହାଜ୍ଞାତା ॥୨୬॥
ସ୍ତିରୀ ସେ ଜାଣନ୍ତି ନା ସ୍ତିରୀଙ୍କର ପ୍ରକୃତି ।
ମାତାର ବଚନ ଶୁଣି କହନ୍ତି ସୀତାପତି ॥୨୭॥
ତୁମ୍ଭେ ତାହା କହିଲ ଗୋ ସେ କଥା ନିୟତ ।
ଅତି ଧାର୍ମିକ ସେ ଜନେକର ଦୋହିତ ॥୨୮॥
ଲଙ୍କାରେ ଯେବେଣ ରାବଣ ମାଇଲି ।
ଦୋଚାରୀ ବୋଲି ତାହାକୁ ଅଗ୍ନି ପରୀକ୍ଷା କଲି ॥୨୯॥
ରାତ୍ର ଦିବସ ସାତ ଦିନ ଅଗ୍ନିରେ ରହିଲା ।
ଦେହ ନ ପୋଡ଼ିଲା ଓଦା ବସ୍ତ୍ର ନ ଶୁଖିଲା ॥୩୦॥
ସୁଗ୍ରୀ ଅଙ୍ଗଦକୁ ପଠିଆଇଲି ଦେଖି ।
ତାହାଙ୍କୁ ସମାଦ ନ ଦେଲେ ଶଶୀମୁଖୀ ॥୩୧॥
ଅଗ୍ନିର ସନିଧକୁ ଗଲି ମୁହିଁ ଯେବେ ।
କୋପ ତେଜି ସୀତୟା ସମାସ୍ୟା କଲା ତେବେ ॥୩୨॥
ତାହାର ହୃଦରେ କୋପ ନାହିଁ ମୋତେ ।
ଯଦ୍ୟପି ଜାନେକୀ କୋପ କରଇ ଚିତ୍ତେ ॥୩୩॥
ବଶିଷ୍ଟ ତପୋବନ୍ତ ପ୍ରବୋଧି କହିବେ ।
ଭ୍ରଥ ଲକ୍ଷ୍ମଣ ଯେ ଭଗତି ହୋଇବେ ॥୩୪॥
ଏ ମୋହର ଅମନାତ୍ୟଗଣମାନେ ।
ଆବର ଥିବେ ତ ଜନେକ ତପୋଧନେ ॥୩୫॥
ସମସ୍ତେ ସୀତାକଇ ପ୍ରବୋଧି କହିବେ ।
ଲବକୁଶେ ମାତାର ଚରଣେ ପଡ଼ିବେ ॥୩୬॥
ବହୁତ ବଚନ ସେ ନ ଲଘଇ ସୀତା ।
ମହତ ମର୍ଯିତା ସେ ରଷିର ଦୋହିତା ॥୩୭॥
ଦୁଃଖ ପାଇ ମାତା ତୁମ୍ଭେ କିମ୍ପା ଯିବ ।
ଅନ୍ତଃପୁରେ ମୋହର ବିଜେ କରିଥିବ ॥୩୮॥
ଶ୍ରୀରାମର ବଚନ ଯହୁଁ କଉଶୁଲ୍ୟା ଶୁଣିଲେ ।
ସମସ୍ତ ଯୁବତୀ ଘେନି ନବରେ ପଶିଲେ ॥୩୯॥
ପୁଷ୍ପେକ ଚଢ଼ି ଗମନ୍ତି ରଘୁପତି ।
ମନପବନ ବିମାନ ଗମଇ ଗଗନଗତି ॥୪୦॥
ନମସ୍ତେ ଗୋପାଳସୁନ୍ଦର ଗୋପୀମୋହନ କାନ୍ୟ ।
ନନ୍ଦର ଘରେ ବଢ଼ିଲେ ଯଦୁବଂଶ ଉତପନ ॥ ୪୧ ॥
କଦମ୍ବ ତରୁମୂଳେ ବିରହ ବଇଁଶୀର ଧ୍ୱନି ।
ଶୁଣି ଅଥିର ହୃଦୟ ଗୋପାଳକାମେନୀ ॥୪୨॥
ଗୃହକର୍ମ ତେଜି ଚଳନ୍ତି କୁଞ୍ଜବନେ ।

ଶରୀର ଅଚେତନ ଗୋପୀଙ୍କର ବିରହ ମଦନେ ॥୪୩॥
ଚଞ୍ଚଳ ମନୀଷ୍ୟା ନୁଆରନ୍ତି ଥିର କରି ।
କଦମ୍ବତଳେ ଲୋଡ଼ନ୍ତି ନନ୍ଦନନ୍ଦନ ଶ୍ରୀହରି ॥୪୪॥
କାମସେଣା ଯୁବତୀ ତୋତେ କଲେ ଠାବ ।
ସକଳ କାମେନୀଙ୍କର ମନ ରଞ୍ଜିଲୁ ପଦ୍ମନାଭ ॥୪୫॥
କାହାକଇ ଆଲିଙ୍ଗନ କାହାକଇ ପଉରୋଷ ।
କାହାକଇ ଚୁମ୍ବନ କାହାକଇ ପରିହାସ ॥୪୬॥
କାହାକଇ ଆଶ୍ୱାସନା କାହାକଇ ପ୍ରୀତିମେଳ ।
କାହାକଇ ହାସ୍ୟ କାହାକଇ କରେ କରତାଳ ॥୪୭॥
ଭୁଜେ ଭୁଜେ ସେ କେବଣ ଗୋପୀଙ୍କି ଭିଡ଼ି ।
କେବଣ ଗୋପାଳୁଣୀଙ୍କର କର ଧରି ଉଛୁଡ଼ି ॥୪୮॥
ମୁଖେ ଚୁମ୍ବନ କାହାକଇ ଅଧରେ ଅଧର ପାନ ।
କାହାକଇ ଦନ୍ତ ଘାତ କାହାକଇ ଉଲୋଳ ନୟନ ॥୪୯॥
କାହର ଗଳା ଧରି ପିଠିରେ ଆରୋହଣ କରନ୍ତି ।
କେବଣ ଗୋପୀକି ହରି କୋଳରେ ବସାନ୍ତି ॥୫୦॥
କେବଣ ଗୋପୀଙ୍କି ହାସ୍ୟ ପରିହାସ୍ୟ ବିନୋଦେ ।
କେ ନୃତ୍ୟ କରଇ କେ ଗାବଇ ଧନାଶ୍ରୀ ନାଦେ ॥୫୧॥
ଏସନେକ କୁତୋହଳ ବିନୋଦ ପ୍ରେମ ପୀରତି ।
ଗୋପୀ ମନୋରଞ୍ଜନ ଯୋଶଦାର ତନୟ ଶ୍ରୀପତି ॥୫୨॥
ତବ ଚରଣ ଅରିବିନ୍ଦେ ଲୋଟୁ ମୋହର ଶିର ।
ସିଦ୍ଧେଶ୍ୱର ଦାସକୁ ଭବଜଳୁ କର ପାର ॥୫୩॥

## ସୀତାଙ୍କ ପ୍ରତୀକ୍ଷା

ଏଥୁ ଅନନ୍ତରେ ଶୁଣ ଯୁଧିଷ୍ଠିର ନୃପତି ।
ଚାରି ଭାଇ ସହିତେ ପ୍ରିୟବତୀ ଯୁବତୀ ॥୧॥
ମାରକଣ୍ଡଙ୍କର ପୟର ଧରି କରନ୍ତି ନମସ୍କାର ।
ଭୋ ମୁନି ରାମାୟେଣ ଶୁଣାଇ ନିର୍ମଳ କରାଅ ଶରୀର ॥୨॥
ସୀତାକୁ କହିଯେ ଲବକୁଶେ ଗୀତ ଗାଇତ ଗଲେ ।
ଶୀଘ୍ରେଣ ମାତାର ସନିଧକୁ ବାହୁଡ଼ି ନଇଲେ ॥୩॥
ପିତାର ଆଗେ ଲବକୁଶେ ବାକ୍ୟ କହନ୍ତେ ।
ଦୁଇ ପହର ରହିଥିଲା ଆଦିତ୍ୟ ରଥେ ॥୪॥
ଗ୍ରନ୍ଥ କହିବା ସମାପତେ ବିରଞ୍ଚି ଯେ ଗଲା ।
ଦେଖୁ ଦେଖୁ ଦିବାକର ତିନି ପ୍ରହର ହୋଇଲା ॥୫॥
ବୃତ୍ତାନ୍ତ ନ ଦେଖି ଜନେକ ଦୋହିତ ।
କିସ ବିଚାରିଲେ ଯେ ଲବକୁଶଙ୍କର ମାତ ॥୬॥
ଏଥିର ଚରିତ୍ର ମୁନି କହସି ଉକତି ।
ଶୁଣିଣ ଭ୍ରାନ୍ତି ଯେ ଉପେଖୁ ଆମ୍ଭର ମତି ॥୭॥
ମାରକଣ୍ଡେ କହନ୍ତି ଶୁଣ କୁନ୍ତୀସୁତ ।
ଅନେକ ବ୍ରାହ୍ମଣ ଯେ ଦୌପଦୀ ସହିତ ॥୮॥
ପିତାର ନବର ଦ୍ୱାରେ ଯେ ବସିଣ ସତୀ ଥିଲା ।
ତହୁଁଣ ଓହ୍ଲାଇ ଦେବୀ ଗଗନକୁ ଚାହିଁଲା ॥୯॥
ଭାଳଇ ଆଦିତ୍ୟ ଯେ ହୋଇଲା ତିନି ପ୍ରହର ।
ଏତେବେଳ ହୋଇଲା ନଇଲେ ମୋହର କୁମର ॥୧୦॥
ଚିତ୍ତ ଛନଛନ ଚାହିଁଲା ଚଉକତି ।
ବୋଲଇ ଅତି ଦୃଷ୍ଟ ମୋହର ପୋଏ ଖେଡ଼ାଉଳ ମତି ॥୧୧॥
ଯେତେବେଳେ ଥାନ୍ତି ମୋହର ସନିଧାନେ ।
ଯାହା କହନ୍ତେ ନ ଲଙ୍ଘନ୍ତି ମୋହର ବଚନେ ॥୧୨॥
ମୋହର କତିରୁ ଯେତେବେଳୁ ଯାନ୍ତି ।
ବାଟରେ ଯାଇ ସେ ଦ୍ୱନ୍ଦ ହିଁ ସେ କରନ୍ତି ॥୧୩॥
ମୁହିଁ ମନ୍ଦବୁଦ୍ଧି ଏସନେକ ନିଲକ୍ଷଣୀ ।
ଦିବସେ ପୁତ୍ରକଇ ମୁଁ ନ ଦେଖଇ ରାଢ଼େଣୀ ॥୧୪॥
ମନ ବଇରାଗ ତେଜି ଗାଉଥିବେ ଶାସ୍ତ୍ର ।
ଗୀତ ନ ଗାଇଲେ କୋପ କରନ୍ତି ପିତାମହ ସୁତ ॥୧୫॥
ଦୁଃଖର କାଳେ ମୋତେ ସଂପକ୍ଷ ହୋଇଲା ।
କର୍ମର ଅବଳେ ସେ ଦୟା ଉପେଖିଲା ॥୧୬॥
ତାହାର ବୋଲେ ପୁତ୍ର କ୍ଷଣେହେ ନ ରହନ୍ତି ।
ଅଗମ୍ୟ ଘୋରବନେ ପଶି ଆତଯାତ ହୁଅନ୍ତି ॥୧୭॥
ଖେଳିବାର ଭୁଞ୍ଜିବାର ବାଲୁତ ବୟସ ।
ଗୀତ ଗାଇ ପରମନ କରନ୍ତି ତୋଷ ॥୧୮॥
ରାଜାକୁମର ହୋଇ ଏତେ ଦୁଃଖ ପାଇଲେ ।
ମୁହିଁ ପାପିଷ୍ଠ ଯେ ମୋହର ଗର୍ଭେ ଉପୁଜିଲେ ॥୧୯॥
କ୍ଷତ୍ରିବରସୁନ୍ଦର ଯେ ଯାହାର ତାତ ।
ଏକୋଇଶ ଶତ ଯେ ଶ୍ରୀରାମର ମାତ ॥୨୦॥
କଉଶଲ୍ୟା ଦେବୀ ପୂର୍ବେ ପାପ କଲେ ।
ପୁତ୍ରଙ୍କର ତନୟ ଦେଖି ନ ପାରିଲେ ॥୨୧॥
ଯଦ୍ୟପି କଉଶଲ୍ୟାଏ କରିଛନ୍ତି ପୁନ୍ୟ ।
ତେବେ ସେ ଚାହିଁବେ ନା ଲବକୁଶଙ୍କର ବଦନ ॥୨୨॥
ଏସନେକ ମହାସତୀ ମନେ ବିକଳେ ଭାଳଇ ।

ପବନେ ନାଡ଼କା ଯେସନେ ବୁଲଇ ଅନ୍ତରାଳ ହୋଇ ॥୨୩॥
କ୍ଷଣକେ ଉଠଇ ଦେବୀ କ୍ଷଣକେ ବସଇ ।
ସଙ୍ଗଭଗ୍ନ ହରଣୀ ଜାଣି ଚଉକତି ଦୃଷ୍ଟି ଦିଅଇ ॥୨୪॥
ବିଧାତା ସୁମରଇ ଦେବୀ ସୁମରଇ ବିଶ୍ୱନାଥ ।
କାହିଁ ଗଲେ ମୋହର ଅଲ୍ୟଳ ବେନିପୁତ୍ର ॥୨୫॥
ନୟନରୁ ଲୁହ ଗଳି ପଡ଼ଇ ଘନ ଘନ ।
କ୍ଷଣକେ ପୁତ୍ରଙ୍କୁ ସୁମରଇ କ୍ଷଣକେ ଶାନ୍ତ କରଇ ମନ ॥୨୬॥
କୋପଚିତ୍ତ ହୋଇ କହଇ ବହିଦେଈ ।
ଭଲେ ଯେବେ ଆସନ୍ତି ଆଜ ଦୁଇଭାଇ ॥୨୭॥
ଅଞ୍ଚଳେ ବାନ୍ଧିଣ ଛାଟେଣ ପିଟିବି ।
ମୋହର ପିତାଘରେ ପଶିତ ନ ଦେବି ॥୨୮॥
ତାହାକଇ ପିଟି ଯେ ଗୁହାଇବ ମୋତେ ।
ତାହାଙ୍କର ଉପରେ ମଥା କୋଡ଼ିବି ଭୂମିଗତେ ॥୨୯॥
କାହାକଇ ବୋଲିବି ମୋହର ପୁତ୍ରର ମନ୍ଦପଣ ।
ବାଟେ ଯାନ୍ତେ ଅବା କଲେ କଳି ଦ୍ୱନ୍ଦମାନ ॥୩୦॥
ମରାମରି ହୋଇ ଅବା କେଣିକି ଗଲେ ।
ଲାଜେଣ ମୋହର ସନିଧକୁ ନଇଲେ ॥୩୧॥
କି ଅବା ଆଜ ନ ପାଇଲେ ଭିକ୍ଷା ।
ଯେଣେ ଆସି ନ ପାରନ୍ତି ମୋହର ବଛା ॥୩୨॥
ନିତ୍ୟାପତି ରାମାୟେଣ ଗାବନ୍ତି ସେ ଗୀତେ ।
ଶୁଣି ଲୋକେ ବଇରାଗ ହୁଅନ୍ତି ନିକି ଚିତ୍ତେ ॥୩୩॥
ଦୁତୀୟାର ଚାନ୍ଦ ଯେସନେ ସମସ୍ତେ ବନ୍ଦାଇ ।
ପୂର୍ଣ୍ଣମୀର ଚନ୍ଦ୍ରକୁ କେହି ପ୍ରଣମ୍ୟ ନୁହଇ ॥୩୪॥
ନବତନ ଯୁବତୀ ନବତନ ଗାଈ ।
ଏହାଙ୍କର ମୁଖ ସେ ଜଗତେଣ ଚହିଁ ॥୩୫॥
ନୂଆ ବସ୍ତ୍ର ଆବର ନୂଆ ଅଳଙ୍କାର ।
ତହିଁକି ସେ ଭଲ ବୁଝନ୍ତିନା ସକଳ ସଂସାର ॥୩୬॥
ନୂଆ ଗୀତଇ ସେ ଶୁଭଇ ଦିବ୍ୟ ରୀତି ।
ପୁରୁଣା ଗୀତକଇ କାହାର ନ ବଳିବାକ ମତି ॥୩୭॥
[illegible]ଣ୍ଣୁ ସେ ତଣ୍ଡୁଳ ହୋଇଲାକ ଅଳପ ।
[illegible] ଦେବେ ଆଣି ଗୁରୁଙ୍କ ସମୀପ ॥୩୮॥
[illegible]ତେଣେ ସେ ମୋହର ପୋଏ ଆସିତ ନ ପାରିଲେ ।
ଦୂର ଦେଶକୁ ଅବା ଗୀତ ଗାଇ ଗଲେ ॥୩୯॥
ଆନ ଦେଶରେ ଅବା ପାଇଲେ ସନମାନ ।

ତେଣେ ସେ ନଇଲେ ମୋହର ସନିଧାନ ॥୪୦॥
କି ଅବା ଆଜ ଏକ ଏକ ହୋଇଗଲେ ।
ବନଜୀବଙ୍କର ମୁଖେ ପ୍ରାଣନାଶ ହୋଇଲେ ॥୪୧॥
କି ଅବା କାଲି ଗାଇଲା ଯାହାର ତହିଁ ।
ତାହାର ପୁରକୁ ଅବା ଗଲେ ଦୁଇ ଭାଇ ॥୪୨॥
ଗଉରୋବ ପାଇ ଅବା ତାହାର ଘରେ ରହିଲେ ।
କି ଅବା ମିଷ୍ଟ ଭୋଜନ ତହିଁ ପାଇଲେ ॥୪୩॥
ସ୍ୱଭାବେ ବାଳୁତ ଚଞ୍ଚଳ ମତି ।
ଆଶ୍ୱାସନା ଯହିଁ ପାନ୍ତି ତହିଁ ବିଶ୍ରାମ କରନ୍ତି ॥୪୪॥
କାହାକଇ ପଠିଆଇବି ନ ଜାଣଇ ତଥ୍ୟ ।
ଭାଳିଣ ମହାସତୀ ଅଥିର ପଞ୍ଚୁଭୂତ ॥୪୫॥
କ୍ଷଣେକ ଶୋକ କରଇ କ୍ଷଣେକ କରଇ ରାଗ ।
ବୋଲନ୍ତି ଯଦ୍ରପି ଆସନ୍ତୁ ମୋହର ଆଗ ॥୪୬॥
ତାହାଙ୍କର ଉପରେ ପ୍ରାଣ ମୁଁ ଛାଡ଼ିବି ।
ନଉଚେତ ପୃଥ୍ୱୀ ଫାଟିବ ପାତାଳେ ପଶିବି ॥୪୭॥
ସେ ପୁତ୍ରଙ୍କର ମୁଖ ଚାହିଁଲେ କିସ ମୋହର ସୁସ୍ତ ।
ବେଳେବେଳେ ମୋହର ବଚନ ଲଂଘନ୍ତି ଦୃଷ୍ଟ ଚିତ୍ତ ॥୪୮॥
ପିତା ଯେସନେକ ଦୁଃଖ ଦେଲା ମୋତେ ।
ତହୁଁ ଅଧିକ ହୋଇଲେ ବେନି ପୁତ୍ରେ ॥୪୯॥
ପୁଣି ବିଚାରଇ ଜନେକର ଦୋହିତା ।
ପୁତ୍ରନ୍ତ ଦେଖିଲେ ସେ ଛାଡ଼ିବ ସର୍ବଚିନ୍ତା ॥୫୦॥
ଏଥେ ବସିଥାଇ ମୁଁ କିସ କରିବି ।
ପୁତ୍ରନ୍ତ ଲୋଡ଼ି ମୁହିଁ ବନସ୍ତକୁ ଯିବି ॥୫୧॥
କାଞ୍ଚନା ରତ୍ନା ଦୁଇ ଭଗ୍ନୀ ।
ତାହାକୁ ହକାରି କହଇ ଜିଗ୍ନସେନୀ ॥୫୨॥
ଏତେବେଳ ନଇଲେ ମୋହର ବେନି ନନ୍ଦନ ।
ପୁତ୍ରକଇ ନ ଦେଖି ପୋଡୁଅଛି ମୋହର ମନ ॥୫୩॥
ଚାଲଲୋ ବନକଇ ଲୋଡ଼ିଣ ଯିବା ।
ଯେତେ ଧୂରେ ପାଇବା ଘେନିଣ ଆସିବା ॥୫୪॥
ପୁତ୍ରକୁ ଦେଖିବି ଯେବେ ବାହୁଡ଼ି ଆସିବି ।
ନଉଚେତ ଦଉଡ଼ିର ବନ୍ଧନେ ପ୍ରାଣ ଛାଡ଼ିବି ॥୫୫॥
ଶୁଣିଣ ବିସ୍ମୟେ ସେ ହୋଇଲେ ବେନି ଭଗ୍ନୀ ।
ଆଗ ପଛେ ଚାଲନ୍ତି ଶୋଭନାର ବେନି ନନ୍ଦନୀ ॥୫୬॥
ଯେବଣ ବେଳେ ସୀତୟା ଅଗ୍ନିରୁ ଜାତ ହୋଇଲା ।

ସେ ଶୋଭନା ସୀତୟାକୁ ପ୍ରତିପାଳିଲା ॥୫୬॥
ସୀତୟାର ମୁଖ ଚାହିଁଲେ ଯେତେବେଳେ ।
ଦୁଇ ଦୋହିତା ଉପୁଜିଲା ତାହାର ଗର୍ଭରେ ॥୫୮॥
କାଞ୍ଚନା (ରତ୍ନା) ଦୁହେଁ ଦିଶନ୍ତି ଦିବ୍ୟରୀତି ।
ତେଣେ ସେ କାଞ୍ଚନା ରାତ୍ନା ନାମ ବିଖ୍ୟାତି ॥୫୯॥
ଆଗରେ କାଞ୍ଚନା ପଛେ ରତ୍ନାବଳୀ ।
ମଧେ ବିଜେ କଲେ ଜନେକର ଦୁଲାଳୀ ॥୬୦॥
ମକର ଶୁକଳ ପଞ୍ଚମୀ ବୃହସ୍ପତି ବାର ।
ତୃତୀୟ ପ୍ରହର ଦୁଇଘଡ଼ି ଦିବାକର ॥୬୧॥
ଏସନେକେ କାଳବେଳାରେ ସେ ସତୀ ।
ପୁତ୍ରନ୍ତ ଲୋଡ଼ି ଯାଇ ଅନ୍ତରାଳ ମତି ॥୬୨॥
କାଞ୍ଚନା ରତ୍ନାକୁ କହନ୍ତି ଜିସ୍ନସେନୀ ।
ଏହିବାଟେ ଲେଉଟନ୍ତି ମୋହର ପୁତ୍ର ବେନି ॥୬୩॥
ଲବକୁମର କାଲି ମୋତେ କଢ଼ାଇ ଆଣିଲା ।
ବଟବୃକ୍ଷ ତଳେ ବସାଇ ଆପଣେ ବୃକ୍ଷ ଉପରେ ଉଠିଲା ॥୬୪॥
କୁଶ କୁଶ ବୋଲି ଡାକ ଦେଲା ଯହୁଁ ।
ଧାଇଁଣ କୁଶ ଅଇଲାକ ତହୁଁ ॥୬୫॥
ଏସନେକ କହି ସତୀ ବିମନେଣ ଗଲେ ।
ସେହି ବଟବୃକ୍ଷର ତଳେ ଯାଇଣ ହୋଇଲେ ॥୬୬॥
ସେହିଠାବରେ ଦୁଇ ବାଟ ଅଛଇ ବିଦ୍ୟମାନ ।
ବୃକ୍ଷର ତଳେ ବସଇ ସତୀ କ୍ରୋଧିତ ପଞ୍ଚମନ ॥୬୭॥
କାଞ୍ଚନା ରତ୍ନାକୁ କହନ୍ତି ଜନେକର ଝିଅ ।
ବାଟେ ବାଟେ ହୋଇ ତୁମ୍ଭେ ଦୁଇ ଭଗ୍ନୀ ଯାଅ ॥୬୮॥
ଲବକୁଶକୁ ଯେ ଅବା ଦେଖିବ ।
ସେହିଠାରୁ ଦୁହିଁଙ୍କି ଘେନିଣ ଆସିବ ॥୬୯॥
ସୀତାର ବଚନ ଯହୁଁ ଦୁଇଭଗ୍ନୀ ଶୁଣିଲେ ।
ପଥ ଅନୁସରି ଏକ ଏକ ହୋଇ ଗଲେ ॥୭୦॥
ତରୁତଳେ ବସିଲେ ଜନେକ କୁମାରୀ ।
ମୁକଳ କରି ଦୁଇ କରେ ଚୀରନ୍ତି କବେରୀ ॥୭୧॥
କେଶ ମୁକୁଳା କରନ୍ତେ ସୁସଞ୍ଚ ଗନ୍ଧବାସେ ।
ବେଢ଼ିଣ ଭ୍ରମରେ ଉଡ଼ନ୍ତି ଚଉପାଶେ ॥୭୨॥
ଅବନୀରେ ଲୋଟଇ ଜାନକୀର କେଶ ।
ଚଉକତିକି ଚାହାଁଇ ମନର ବିରସ ॥୭୩॥
ଶୁଣ ହେ ଯୁଧିଷ୍ଠିର କହନ୍ତି ମାରକଣ୍ଡ ।
ଅତି ପ(ବି)ତ୍ର ଏ ଉତ୍ତରା କାଣ୍ଡ ॥୭୪॥
ଯେବେଣ ବେଳେ ସୀତୟାର ପ୍ରତିମା ନିର୍ବାଣିଲା ।
ଶତେ ଲକ୍ଷଣେ ସୀତୟା ଅନୁପାମ ଦିଶିଲା ॥୭୫॥
ଦେଖିଣ ମନେ ବିଚାରଇ ବେଦପତି ।
ଏ ପ୍ରତିମା ହୋଇବ ସୀତୟା ମହାସତୀ ॥୭୬॥
ଏକ ଅବଗୁଣ ତ ଶରୀରେ ଏହା ନାହିଁ ।
ଏହାକଇ ଅନୁଭବ ହୋଇବାକ କାହିଁ ॥୭୭॥
କେବଣ ଉପାୟେ ଏହାକୁ ଦୁଃଖ ଦେବି ।
ଆନ ଅବିଗୁଣ କାହିଁ କେଶ ବୃଶାଳ କରିବି ॥୭୮॥
ତେଣୁ ସେ ଜାନେକୀର ବୃଶାଳ ଚାଚର କେଶ ।
ବିମନେ ବସି ସୀତା ଚାହାଁଇ ଦଶଦିଶ ॥୭୯॥

## ସୀତାରାମ ଭେଟ

ଏଥୁ ଅନନ୍ତରେ ଶୁଣ ପଣ୍ଡୁର ତନୁଜ ।
ପୁଷ୍ପେକ ଆରୋହି ଆସନ୍ତି ରଘୁରାଜ ॥୧॥
ବଟବୃକ୍ଷର ତଳ ନିକଟେ ଯହୁଁ ହୋଇଲେ ।
ଗଗନେ ଥାଇ ଲବକୁଶେ ମାତାକୁ ଚାହିଁଲେ ॥୨॥
ଶ୍ରୀରାମର ଅଗ୍ରତେ କହନ୍ତି ଲବକୁଶ ବେନି ଭ୍ରାଥ ।
ଆମ୍ଭକଇ ଲୋଡ଼ି ଆସିଛନ୍ତି ମାତ ॥୩॥
ବଟବୃକ୍ଷର ତଳେ ଏକା ବସିଅଛି ।
ସୀତୟାକୁ ଦେଖି ଚିହ୍ନିଲେ ରଘୁବଛି ॥୪॥
ଲବକୁଶଙ୍କର ମୁଖ ଚାହିଁ କହନ୍ତି ବ୍ରହ୍ମଯତି ।
ରଥୁ ଓହ୍ଲାଇ ତୁମ୍ଭେ ଯାଅ ଯା ତଡ଼ତି ॥୫॥
କୋପଭର ଚିତ୍ତ ହୋଇଛି ବିରସ ।
ତୁମ୍ଭେ ବେନି ପୁତ୍ର ଯାଅ ମାତା ପାଶ ।
ତୁମ୍ଭଙ୍କୁ ଦେଖି ସେ ହୋଇବ ହରଷ ॥୬॥
ଲତା ଉହାଡ଼େ ଆମ୍ଭେ ରହିଥିବୁ ।
ତୁମ୍ଭେ ପ୍ରବୋଧି କହିଲେ ସେ ଆମ୍ଭେ ପଛେ ଯିବୁ ॥୭॥
ତୁମ୍ଭର ମୁଖ ଦେଖିଲେ ଛାଡ଼ିବ କୋପମନ ।
ତେବେ ସେ ଆମ୍ଭେ କରିବୁ ଗମନ ।
(ତୁମ୍ଭେ ଯାଅ ବାବୁ ମାତାର ସନ୍ନିଧାନ) ॥୮॥
ତୁମ୍ଭେ ତ ହରଷ ହୋଇ କଥା ହୋଇବ ଯେବେ ।
ସତୀର ସନିଧକୁ ଯିବୁ ଆମେ ତେବେ ॥୯॥
ଜନେକ ରାଜରଷିକି ସକଳ କଥା କହିବା ।
ତୁମ୍ଭର ମାତାକୁ ଘେନି ଅଯୋଧ୍ୟାକୁ ଯିବା ॥୧୦॥

ଶୁଣ ଯୁଧିଷ୍ଠି ବଶିଷ୍ଠର ଚରିତ୍ର ।
ସାତ ପ୍ରଳୟ କଥା ଜାଣଇ ଗର୍ଭଗତ ॥୧୧॥
ଶ୍ରୀରାମ ସମ୍ପଦ ଅର୍ଥେ କହନ୍ତି ଏସନ ।
ଭୂତ ଭବିଷ୍ୟ ବର୍ତ୍ତମାନ ଜାଣଇ ସର୍ବଜ୍ଞାନ ॥୧୨॥
ମନେ ମନେ ବିଚାରଇ ବଶିଷ୍ଠ ଜ୍ଞାନଗର୍ଭ ।
ଏହିକ୍ଷଣି ସୀତୟା ପାତାଳକୁ ଯିବ ॥୧୩॥
ଏଥୁ ଅନନ୍ତରେ ଶୁଣ କୁନ୍ତୀସୁତ ।
ବଶିଷ୍ଠ ବଚନ ଶୁଣି ଲବକୁଶ ବେନିଭ୍ରାଥ ॥୧୪॥
ପୁଷ୍ପେକ ରଥରୁ ଧୀର ହୋଇ ଓହ୍ଲାଇଲେ ।
କୃତ କୃତ ଚିତ୍ତ ହୋଇ ମାତାର ସନିଧକୁ ଗଲେ ॥୧୫॥
ବଟବୃକ୍ଷ ତଳେ ସତୀ କ୍ରୋଧଭରେ ବସିଅଛି ।
ମାତାର ସନିଧେ ମିଳିଲେ ବେନି ବଛି ॥୧୬॥
ଓଳଗନ୍ତି ବେନିଭାଇ ମାତାର ଚରଣ ଧରି ।
ତନୟନ୍ତ ଦେଖି ହସ ହସ ହୋଇଲେ ଜନେକକୁମାରୀ ॥୧୭॥
ନିଧନେ ଧନ ପ୍ରାପତ ଅନ୍ଧରେ ଚକ୍ଷୁଦାନ ।
ନୟନୁ ଅଶ୍ରୁଜଳ ଗଳଇ ଘନ ଘନ ॥୧୮॥
ମାରିବି ମରିବି ବୋଲି ଯେ ସତୀ କୋପ କରୁଥିଲା ।
ପୁତ୍ରନ୍ତ ଦେଖି ସକଳ କଷ୍ଟ ପାସୋରିଲା ॥୧୯॥
କାଞ୍ଚନା ଦିଗ ଦକ୍ଷିଣକଇ ଯାଇଥିଲା ଲୋଡ଼ି ।
କୁମାରଙ୍କର ପଛେ ସେ ଅଇଲେ ବାହୁଡ଼ି ॥୨୦॥
ସନିଧେ ଉଭା ହୋଇଲେକ ଯୁବତୀ ।
ଭୁଜ ଧରିଣ କୋଳ କଲେ ପୁତ୍ରକଇ ମହାସତୀ ॥୨୧॥
ରତ୍ନ ଅଳଙ୍କାର ପୁଷ୍ପ ଚନ୍ଦନ ।
ନିୟତେ କସ୍ତୁରୀ ଚିତା ଝୀନ୍ନ ବସନ ପରିହରଣ ॥୨୨॥
ସୀତା ପଚାରନ୍ତି କୁମରଙ୍କ ମୁଖ ଚାହିଁ ।
ଏ ରତ୍ନ ଅଳଙ୍କାର ପାଇଲ ତୁମ୍ଭେ କାହିଁ ॥୨୩॥
ବେଗେ ଆସିବୁ ବୋଲି ଯେ ମୋତେ କହିଗଲ ।
ଏ ଅଳଙ୍କାର ଦେଖି ସେ ମାତେ ପାସୋରିଲ ॥୨୪॥
ଏତେବେଳ ହୋଇଲା ମୋହର ଆହାର ନାହିଁ ।
ଦଶ ଦିଶ ଶୂନ୍ୟ ତୁମ୍ଭର ବାଟ ଚାହିଁ ॥୨୫॥
ଏ ରତ୍ନ ଚଉର୍ଯ୍ୟ କରି ଅବା କାହାର ଘରୁ ଆଣିଲ ।
ବେଳ ଅସ୍ତଯାଏ କାହାର ଘରେ ଥିଲ ॥୨୬॥
ଦଶରଥ ଅନୁରୂପେ କର୍ମେ କଲ ଅବା ଦି ପୋ ।
ଚୋରାଇ ଆଣିଲେ ପାପ ନ ଯାଇରେ ବାପ ॥୨୭॥
ମନର ହରଷେ ଦାନଦକ୍ଷିଣା ଦିଅଇ ଯେବେ ।
ପୂର୍ବ ଜନ୍ମେ ଦେଲେ ପାଇବନା ଏବେ ॥୨୮॥
ଏହି ଜନ୍ମେ ଯେ ଶାସ୍ତ୍ର ଶୁଣି ଦାନ ଦକ୍ଷିଣା ଦିଅଇ ।
ସହସ୍ରେ ଜନ୍ମେ ସେ ଆଗତ କରି ପାଇ ॥୨୯॥
କେବଣ ପୁନ୍ୟବନ୍ତ ଏ ଦ୍ରବ୍ୟନ୍ତ ଦାନ ଦେବ ।
ଶୁଣିମାକୁ ଅଶଖ୍ୟ ଦେଖିବାକୁ ଦୁର୍ଲ୍ଲଭ ॥୩୦॥
ମାତାର ବଚନ ଶୁଣି କୁମାରେ ଲଜ୍ୟା ପାଇଲେ ।
ସଂକୁଚେ କଥା କହି ନ ପାରିଲେ ॥୩୧॥
ରତ୍ନା କାମେନୀ ପୂର୍ବ ବାଟେ ଲୋଡ଼ି ଯାଇଥିଲା ।
କୁମରନ୍ତ ନ ଦେଖି ସେ ବାହୁଡ଼ି ଅଇଲା ॥୩୨॥
ଶରୀରକଇ ବ୍ୟଥା ପାଇଲା ସେ କାମେନୀ ।
ଦେଖିଲା ସୀତୟାଠାରେ ଅଛନ୍ତି ପୁତ୍ରବେନି ॥୩୩॥
କୋପେ ରତ୍ନା କହଇ ଲବର ମୁଖ ଚାହିଁ ।
ତୁମ୍ଭନ୍ତ ନ ଦେଖି ମାତାର ସମାକୁଳ ଦେହି ॥୩୪॥
ବେଳ ଅସ୍ତ ହୋଉଅଛି କିସ କରୁଥିଲ ।
ବନସ୍ତେ ବୁଲି ତୁମ୍ଭେ କଷ୍ଟ ପାଇଲ ॥୩୫॥
ସଂକୁଚେଣ କଥା କହି ନ ପାରିଲେ ।
କୁମରଙ୍କ ମୁଖ ଚାହିଁ ରତ୍ନା ବୋଇଲେ ॥୩୬॥
ନିତି ଗୀତ ଗାଅ ବନସ୍ତେଣ ପଶି ।
ବାଟ ଚାହୁଁଥାଇ ମାତା ଦୁଆରେଣ ବସି ॥୩୭॥
ମଥାକଇ ହସ୍ତ ପାଇଲାକ ତୁମ୍ଭର ଯେବେ ।
ଜନନୀର ପ୍ରାସ ଜାଣିମ କି ତେବେ ॥୩୮॥
ଅତି ନିଷ୍ଠୁର ସେ ନିରାପକ୍ଷ କହିଲା ।
ଶୁଣିଣ ଜାନକୀର ଦେହେ କୋପ ବସିଲା ॥୩୯॥
ସୀତୟା କହଇ ରତ୍ନା ମୁଖ ଚାହିଁ ।
ଭଲ କରି ଛାଟେକ ଭାଙ୍ଗି ଆଣ ଯାଇ ॥୪୦॥
ଛାଟେ ପିଟିଣ ଶରୀର ପିଞ୍ଜିବି ।
ତେବେ ସେ ମୋହର ପ୍ରତାପ ସାରିବି ॥୪୧॥
ଏସନେକ କହି ଦୁହିଁଙ୍କରି ଭୁଜ ଦୃଢ଼ କରି ଧଇଲା ।
ତତକ୍ଷଣେ ରତ୍ନା ଛାଟେକ ଭାଞ୍ଜିଣ ଆଣିଲା ॥୪୨॥
ଛାଟେକ ଦେଖି କୁମରଙ୍କର କମ୍ପିଲାକ ଦେହି ।
କର ଧରି କାଞ୍ଚନ ସତୀର ଆଗେ କହି ॥୪୩॥
ଅକାରଣେ ସୀତୟା ପୁତ୍ରକୁ ନ ମାରିବା ।
କୋପ ଶାନ୍ତି କର ଗୋ କୁମରକୁ ପଚାରିବା ॥୪୪॥

ତୁହି ଉତ୍ତା ଲୋ ନ ଜାଣୁ ତୁ କିଛି ।
ଏହାର ବଚନେ କୋପ ନ କର ମୃଗାକ୍ଷୀ ॥୪୫॥
ରାଗରେ କ୍ଷୀରରେ ଭରିଲା ଆଣି ଖାର ।
ଏହା ବଚନ ଶୁଣି କୋପ ବସିଲା ତୁମ୍ଭର ॥୪୬॥
ଛାଟ ଭାଙ୍ଗିଣ ଆଣିଲାକ ଯହୁଁ ।
ପୁତ୍ରଙ୍କର ନୟନୁ ଲୁହ ଗଳି ପଡ଼ଇ ତହୁଁ ॥୪୭॥
ବାଟ ଚାଲି ପୋଏ ଅଛନ୍ତି କଷ୍ଟ ପାଇ ।
ଏସନେକ କହି କାଞ୍ଚନା ସତୀର ପୟର ଧରି ଲୋଟଇ ॥୪୮॥
କାଞ୍ଚନାର ବଚନ ଶୁଣି ସତୀ କୋପ ଶାନ୍ତି କଲା ।
ଲବକୁଶଙ୍କ ମୁଖ ଚାହିଁ ସଧୀରେ ପଚାରିଲା ॥୪୯॥
ଏ ମୁକୁତା ରତ୍ନମାଳା ମାଣିକ୍ୟର ହାରଇ ।
ଶୁଦ୍ଧ ସୁବର୍ଣ୍ଣର ନୀଳା ପୋଏଳା ପଦ୍ମରାଗଇ ॥୫୦॥
ନୃପତିକି ଦୁର୍ଲ୍ଲଭ ଏହା ଦେଖିବା କାହିଁ ।
ଆନ ରାଜାର ପୁରେ ଏସନେକ ରତ୍ନ ନାହିଁ ॥୫୧॥
ଯେବଣ ବେଳେ ଥିଲି ମୁଁ ସ୍ୱାମୀର ପୁରେ ।
ଏସନେକ ଅଳଙ୍କାର ଅଛି ଶ୍ରୀରାମ ଭଣ୍ଡାରେ ॥୫୨॥
ଏ ମାଳାମାନେ ମୋହର ପ୍ରାୟେ ଦିଶନ୍ତି ।
ତେଣେ ସେ ମୁହିଁ ମନ କରଇ ଭ୍ରାନ୍ତି ॥୫୩॥
ଏ ଦିବ୍ୟମାଳାମାନନ୍ତ ତୁମ୍ଭଙ୍କୁ କେ ଦେଲା ।
କହସି ସ୍ୱରୂପ ମହାସତୀ ପଚାରିଲା ॥୫୪॥
ଲବକୁମର କହଇ ଶୁଣସି ଗୋ ମାତ ।
କହିଲେ ନ ପୁଣ କୋପ କରଇ ତୋହ ଚିତ୍ତ ॥୫୫॥
ସୀତୟା କହଇ ନ ମାରଇ ଏବେ ।
ସ୍ୱରୂପ କରି ତୁମ୍ଭେ କହ ମୋତେ ଯେବେ ॥୫୬॥
ଲବକୁମର କହଇ ଶୁଣସି ସାବଧାନେ ।
ତୋହର ଆଗେ ମିଥ୍ୟା କହିବୁ କେସନେ ॥୫୭॥
କାଲି ଯହୁଁ ନଗ୍ର ଗୀତ ଗାଇ ଗଲୁ ।
କୁଶକଇ ଘେନି ସେ ନଗ୍ରକୁ ଆମ୍ଭେ ଗଲୁ ॥୫୮॥
ଅଯୋଧ୍ୟା ନାମେ କଟକ ରାମ ତହିଁର ନୃପତି ।
ଭରଥ ଲକ୍ଷ୍ମଣ ତାହାଙ୍କର ଭ୍ରାଥ ହୁଅନ୍ତି ॥୫୯॥
ଶତ୍ରୁଘନ ନାମେ ଯେବଣ ଶ୍ରୀରାମର ଭାଇ ।
ଲବଣ ମାରି ସେ ମଧୁବନେ ଅଛି ରହି ॥୬୦॥
ରାବାୟେଣ ଚରିତ ସେ ଶୁଣିଲେ ବିଶେଷି ।
ତାହାର ପ୍ରୋହିତ ଗୋ ବଶିଷ୍ଠ ମହରଷି ॥୬୧॥
ଆମ୍ଭନ୍ତ ପୁତ୍ର ବୋଲି ରାମ ଅନେକ ଶ୍ରଦ୍ଧା କଲା ।
କୋଳେ ଧରି ତାହା ନବରକୁ ଘେନିଗଲା ॥୬୨॥
ଶ୍ରୀରାମ ମାତାର ନାମ କଉଶୁଲା ଦେଈ ।
ଭରଥ ଜନନୀର ନାମ ଅଟଇ କୈକୟୀ ॥୬୩॥
ସୁମିତ୍ରା ଦେଈ ଲକ୍ଷ୍ମଣ ଶତୃଘନ ମାତା ।
ଏକୋଇଶ ଶତ ଯେ ଦଶରଥଙ୍କର ବନିତା ॥୬୪॥
ସମସ୍ତ ବିଧବାଏ ଆମ୍ଭର ମୁଖେ ଚୁମ୍ବନ ଦେଲେ ।
ତୋହର ପୁତ୍ର ବୋଲି ଆମ୍ଭନ୍ତ ଦୟା କଲେ ॥୬୫॥
ବହୁତ ହରଷ ହୋଇଲେ ତୁମ୍ଭର ତିନିଭଗ୍ନୀ ।
ତିନି ପୁତ୍ର ତାହାଙ୍କର ଏକ ସାଦ୍ରିଶ ଜାଣି ॥୬୬॥
ଏ ରତ୍ନମାଳା ଗୋ ଭଣ୍ଡାରୁ ଅଣାଇଲେ ।
ଶ୍ରଦ୍ଧା କରି ଶ୍ରୀରାମ ଆମ୍ଭର ଗଳାରେ ଲମ୍ବାଇଲେ ॥୬୭॥
ଗୀତ ଗାବନ୍ତେ ଯେତେ ଧନବସ୍ତ୍ର ପାଇଲୁ ।
ଅନେକ ବ୍ରାହ୍ମଣକୁ ଦାନ ତାହା ଦେଲୁ ॥୬୮॥
ଯେତେକ ଅଗୁଳି ତାହା ଭଣ୍ଡାରେ ଥୋଇଲେ ।
ଏକ ଆସନେ ରାମ ମଣୋହି କରି ବସିଲେ ॥୬୯॥
ଏକର ଉଚିଷ୍ଟ ନ ଛୁଇଁ ଆନ ଜଣ ।
ପୁତ୍ର ନୋହିଲେ କିମ୍ପା ଶ୍ରୀରାମ କଲେ ଭୋଜନ ॥୭୦॥
ତୋତେ ପିତା ବୋଲି ପୁଛିଲୁ ଯେବଣ କାଳେ ।
ତୁହି କହିଲୁ ପିତା ତୁମ୍ଭର ମଲା ବାଳକାଳେ ॥୭୧॥
ତାହା ଆମ୍ଭେ ଗୋ ସ୍ୱରୂପ ପ୍ରାୟେ ବୁଝିଲୁ ।
ଏବେ ପିତା ମୁଖ ମୋ ପ୍ରତକ୍ଷେ ଦେଖିଲୁ ॥୭୨॥
ତୁମ୍ଭେ ଏବେ କହ ଗୋ ଆମ୍ଭର ଅଟଇ କି ପିତା ।
ତୁମ୍ଭେ ସେ ଜାଣ ନା ଏଥିର ତଥ୍ୟ କଥା ॥୭୩॥
ମନ ସେ ଜାଣଇଁ ଗୋ ଯେ ଯେତେ ପାପ କରଇ ।
ମାତା ସେ ଜାଣଇ ନା ପୁତ୍ରକଇ ଯେ ଅଟଇ ପିଥରଇ ॥୭୪॥
ଲବକୁମର କଥା ସତୀ ଶୁଣିଲାକ ଯହୁଁ ।
ହୃଦୟରୁ ଶ୍ରମ ଝାଳ ଗଳିଲାକ ତହୁଁ ॥୭୫॥
ପୁତ୍ରଙ୍କର ଭୁଜ ସତୀ ଧରିଣ ଯେ ଥିଲା ।
ମାନଭରେ କୁମାରଙ୍କର ବାହା ଛାଡ଼ିଲା ॥୭୬॥
ଭୂମିରେ ବସିଲା ଜନେକର ଦୁଲଣୀ ।
ଅଶ୍ରୁଜଳ ଗଳଇ କମଳ ନୟନ ବେନି ॥୭୭॥
ଲବକୁଶଙ୍କର ମୁଖ ଚାହିଁ କହନ୍ତି ରାମନାରୀ ।
ଦଇବ ସେ କଢ଼ାଇ ନେଲାକ ସେ ପୁରୀ ॥୭୮॥

କହିଲି ମୁହିଁ ମିଥ୍ୟା ପଚାରନ୍ତେ ତୁମ୍ଭର ।
ସେହି ରାମଚନ୍ଦ୍ର ତୁମ୍ଭର ପିଅର ॥୭୯॥
କଉଶୁଲ୍ୟା ଦେବୀ ଶ୍ରୀରାମର ଜନନୀ ।
କକୟା ସୁମିତ୍ରା ଏ କଉଶୁଲ୍ୟାଙ୍କର ଭଗ୍ନୀ ॥୮୦॥
ଦଶରଥ ନୃପତିଙ୍କର ତିନିହେ ପାଟରାଣୀ ।
ଏକୋଇଶ ଶତ ଯେ ଦଶରଥଙ୍କର ଘରଣୀ ॥୮୧॥
ଭ୍ରଥ ନାମ ଯାହାର ସେ କକୟାର ସୁତ ।
ଲକ୍ଷ୍ମଣ ଶତୃଘନ ସୁମିତ୍ରାର ବେନି ପୁତ୍ର ॥୮୨॥
ମୋହର ତିନି ଭଗ୍ନୀଙ୍କର ଯେବେ ପୁତ୍ର ଉପୁଜିଲା ।
ସୂର୍ଯ୍ୟବଂଶ ଏବେ ଉଦିତ ହୋଇଲା ॥୮୩॥
ଚାରି ଦୋହିତାଙ୍କର ଯେବେ କୋଳେ ଦୁଲାଳ ।
ଆନନ୍ଦ ହୋଇବେ ଜନେକ ତପଶୀଳ ॥୮୪॥
ଏସନେକ ମାତାପୁତ୍ର କଥା ହୁଅନ୍ତେ ତହିଁ ।
ବଶିଷ୍ଠ ମହରଷି ଶ୍ରୀରାମ ମୁଖ ଚାହିଁ ॥୮୫॥
ପୁତ୍ରକୁ ସୀତା ବଇରାଗ ଛାଡ଼ିଲା ।
ବିସ୍ମୟେ ତେଜି ଏବେ ହରଷ ହୋଇଲା ॥୮୬॥
ତୋହର କଥା କହଇ ପୁତ୍ରଙ୍କର ଆଗେ ।
ଭଲ ସମୟ ହୋଇଅଛି ଯିବା ଚାଲ ବେଗେ ॥୮୭॥
ଶ୍ରୀରାମ କହନ୍ତି ମୁହିଁ ଏଥେ ଥାଇ ରହି ।
ଭ୍ରଥ ଲକ୍ଷ୍ମଣ ଘେନି ତୁମ୍ଭେ ଯାଅ ବେଗ ହୋଇ ॥୮୮॥
ପ୍ରବୋଧି ସୀତାର ମନ କର ଶାନ୍ତି ।
ଜାନେକୀର କୋପକୁ କରଇ ମୁହିଁ ଭୀତି ॥୮୯॥
ଶ୍ରୀରାମ ବଚନ ଯହୁଁ ବଶିଷ୍ଠେ ଶୁଣିଲେ ।
ଭ୍ରଥ ଲକ୍ଷ୍ମଣ ଘେନି ସତୀର ସନିଧ୍ୟକୁ ଗଲେ ॥୯୦॥
ଦେଖି ଚମତ୍କାର ହୋଇଲେ ମହାସତୀ ।
ଭ୍ରଥ ଲକ୍ଷ୍ମଣ ଦୁଇ ଭାଇ ଶିରରେ କର ଦିଅନ୍ତି ॥୯୧॥
ଲବକୁଶେ ଯେ ମାତାର ସନିଧେ ଥିଲେ ।
ଚରଣ ଧରି ଭୂମିରେ ପଡ଼ିଲେ ॥୯୨॥
ଲକ୍ଷ୍ମଣକୁ ଦେଖି ସତୀର ଉଡ଼ିଲାକ ସାହାସ ।
କୋପେ ଘନ ଘନ ଛାଡ଼ଇ ନିଶ୍ୱାସ ॥୯୩॥
ମନେ ମନେ ବିଚାରଇ ଜନେକ କୁମାରୀ ।
ଏହାର ମୁହ ଚାହାନ୍ତେ ମୋହର ହୃଦୟ ବିଦାରି ॥୯୪॥
ନିର୍ଝର ବନକଇ ମୋତେ ଘେନିଣ ଆସିଲା ।
ନ କହି କରି ମୋତେ ଛାଡ଼ିଣ ଏ ଗଲା ॥୯୫॥
ସ୍ୱାମୀର ଆଜ୍ଞା କରିବ ଏ କିସ ।
ଏହା ନ କହିଗଲା ପାଇଲି ମୁହିଁ ବଡ଼ପ୍ରାସ ॥୯୬॥
ଯେତେ କଷ୍ଟ ପାଇଲି ସେ ଏହାର ପ୍ରସାଦେ ।
ଏ କିପାଇଁ ଆସଇ ମୋହର ସନିଧେ ॥୯୭॥
ସମସ୍ୟା ନ ଦେଇ ସତୀ ବସିଲା ମଥା ପୋତି ।
ସୀତାର ସନିଧେ ବଶିଷ୍ଠେ କହନ୍ତି ॥୯୮॥
ସ୍ୱାମୀର ଦୋଷ ଗୋ ନ ଧର ରାମନାରୀ ।
ଭୁଥା ସ୍ତିରୀଙ୍କର ଗୋ ହୁଅନ୍ତି ଅଧିକାରୀ ॥୯୯॥
ଯୁବତୀକି ଯେବଣ ପୁରୁଷ ଅନିମିତ୍ୟେ ଦୋଷ ବିହଇ ।
ସକଳ କଷ୍ଟ ତାର ମଥାରେ ବସଇ ॥୧୦୦॥
ଏ ମାୟା ସଂସାର ଆବର ମାୟା ଫାଶ ।
ଭାରିଯାକୁ ବେଶ ନ କରନ୍ତି କେବଣ ପୁରୁଷ ॥୧୦୧॥
ତୋତେ ଯେ ରାମଚନ୍ଦ୍ର ଅବସ୍ଥା ବିହିଲା ।
ସେହି ସେ ଗୋ ମହାସତୀ ବଡ଼ ଦୁଃଖ ପାଇଲା ॥୧୦୨॥
ପତିକି କୋପ କଲେ ତୋହର ଧର୍ମ ହୋଇବ ନାଶ ।
କର୍ମର ଅବଳ ତୋତେ ବିଧାତାର ବଶ୍ୟ ॥୧୦୩॥
ବଶିଷ୍ଠଙ୍କର ମୁଖରୁ ଶୁଣି ଜନେକର ଦୁଲଣୀ ।
ହୃଦୟ ଦହଇ ଯେସନ କ୍ରୋଟ ଅଗ୍ନି ଜାଣି ॥୧୦୪॥
ବଶିଷ୍ଠଙ୍କଇ ପୟର ଧରି ସତୀ ପ୍ରଣମ୍ୟ କରଇ ।
ମଥା ପୋତି ଉଭା ହୋଇଲା ନୟନୁ ଲୁହ ଝରଇ ॥୧୦୫॥
କଲ୍ୟାଣ ବାଞ୍ଛନ୍ତି ପିତାମହର ସୁତ ।
ଅଇହୋ ସୁଲକ୍ଷଣୀ ହୁଅ ଜନେକ ଦୋହିତ ॥୧୦୬॥
ଦୁଇପୁତ୍ର ତୋହର ହୋଉନ୍ତୁ ମହୀପତି ।
ମୁହିଁ ତୋତେ ବୋଲଇ ଶ୍ରୀରାମଙ୍କୁ କୋପ ଛାଡ଼ ମହାସତୀ ॥୧୦୭॥
ମୁନିର ବଚନେ ଦେବୀ ମହାସତୀ ସୀତା ।
ପୂର୍ବର କଥା ସୁମରି ମନରେ ଗରୁଚିନ୍ତା ॥୧୦୮॥
ସୀତୟା କୋପ ଯହୁଁ ଶ୍ରୀରାମ ଦେଖିଲା ।
କୋଦଣ୍ଡ କରେ ଧରି ସନିଧେ ମିଳିଲା ॥୧୦୯॥

### ସୀତା ପାତାଳୀ ହେଲେ

ଦେଖିଣ ସୀତୟା କୋପ ଅଗ୍ନି କାୟେ ।
ଘୃତ ପଡ଼ିଥିଲେ ଯେହ୍ନେ ହୁତାଶନ ହୋଏ ॥୧॥
ଲବକୁଶ ମୁଖ ଚାହିଁ କୋପ କରଇ ସତୀ ।
ଏ ଚଣ୍ଡାଳଆତ୍ମା ଏହାକୁ ଘେନି ଅଇଲେ ମୋହର କତି ॥୨॥
ପିତାର ମୁଖ ଯେବେ ନୟନେ ଦେଖିଲ ।

ଆଜହୁଁ ତୁମ୍ଭେରେ ମାତୃଶୂନ୍ୟ ହୋଇଲ ॥୩॥
ଏତେ କହି ଦେବୀ ସୂର୍ଯ୍ୟଙ୍କୁ କରଇ ସାଖୀ ।
ତୁମ୍ଭେ ଜାଣ ନା ମୁହିଁ ଯେତେ ଦୁଃଖୀ ॥୪॥
ଶ୍ରୀରାମର ମୁଖ କିମ୍ପା ନୟେନେ ଦେଖିବି ।
ଏ ଦେହ ଧରି ମୁଁ କିସ ସାର୍ଥ ଅର୍ଜିବି ॥୫॥
ମୁହିଁ ଯେବେ ପତିଭଗତା ମହାସତୀ ।
ପରପୁରୁଷେ ମୋହର ନ ବଳଇ ମତି ॥୬॥
ଭୋ ବସୁମତୀ ତୁ ଦୁଇଭାଗ ହୁଅସି ।
ତୁହି ମୋହର ମାତା ମୋତେ ଠାବ ଦେସି ॥୭॥
ସୀତା ବଚନେ ପୃଥିବୀ ଦୁଭାଗ ହୋଇଲା ।
ଦେଖୁ ଦେଖୁ ମହାସତୀ ପାତାଳେ ପଶିଲା ॥୮॥
ଦେଖିଣ ଶ୍ରୀରାମ କୋଦଣ୍ଡ ପକାଇଲେ ।
ଦୁଇ ଭୁଜେ ଯାଇ କୋଳ କରି ଧଇଲେ ॥୯॥
କରଗତେ ଦେବୀର ରହିଲାକ କେଶ ।
ତତକ୍ଷଣେ ପାତାଳେ ଦେବୀ ହୋଇଲେ ପ୍ରବେଶ ॥୧୦॥
ବୈକୁଣ୍ଠ ପୁରେ ଯାଇ ହୋଇଲେ ତତକ୍ଷଣି ।
ନିଷ୍ଟନ୍ତେ ବିଷ୍ଣୁପୁରେ ରହିଲେ ରାମରାଣୀ ॥୧୧॥
ଜୟତୁ ଜାନେକୀ ଗୋ ଜିଞ୍ଜସମ୍ଭବୀ ।
ପୃଥ୍ୱୀର ଭାରା ଅର୍ଥେ ଥିଲୁ ଗୋ ଜନ୍ମ ଲଭି ॥୧୨॥
ସୀତୟା ନାମ ରୂପେ ଶରୀର ଦୃଶ କଲୁ ।
କାଳର ବଶ୍ୟ ପଣେ ଜନେକର ଘରେ ଥିଲୁ ॥୧୩॥
ଶ୍ରୀରାମର ଘରଣୀ ଗୋ ହୋଇଲୁ ପାଟରାଣୀ ।
ପଞ୍ଚୁବଟୀ ବନେ ତୋତେ ହରି ନେଲା ବିଂଶପାଣି ॥୧୪॥
ପଦ୍ମଆସନୀ ଗୋ ତୋହର ଗନ୍ଧ ଆଶେ ।
ଅନେକ ରିକ୍ଷ ହରି ଗଲେ ଲଙ୍କଦେଶେ ॥୧୫॥
ତୋହର ଛଳେ ଗୋ କ୍ଷତ୍ରିବର ସୁନ୍ଦର ।
ଅସୁର ବଳ ମାରି ରାବଣର ଛେଦିଲେ ଦଶଶିର ॥୧୬॥
ଲଙ୍କାଗଡ଼େ ବିଭୀଷେଣକୁ ରାଜା କଲେ ।
ତୋତେ ଘେନି ରାମ ଅଯୋଧ୍ୟାକୁ ଅଇଲେ ॥୧୭॥
ନିଷ୍ଟନ୍ତେ ରାଜ୍ୟ କରନ୍ତେ ଦାଶରଥି ।
ଶ୍ରୀରାମ ମୁଖ ଚାହିଁ ପାପିଷ୍ଟେ ମୋକ୍ଷ ହୋନ୍ତି ॥୧୮॥
ତେତିଶ କୋଟି ଦେବ ମାୟା କୃତ କଲେ ।
ଅଯୋଧ୍ୟା ନଗରକଇ ଶାରଦା ବରଗିଲେ ॥୧୯॥
ଶ୍ରୀରାମ ହୃଦରେ ଯେବେ ବସିଲା ସରସ୍ୱତୀ ।
ବହୁତ କଥା ଶୁଣି ରାମ ମନେ ମନେ ବିକୃତି ॥୨୦॥
ଅଗମ୍ୟ ଘୋର ବନରେ ନିବାସ କରାଇଲା ।
ଗର୍ଭିଣୀ କାମେନୀ ବୋଲି ଓପ୍ରୋଧ ନକଲା ॥୨୧॥
ଅନେକ କଷ୍ଟେ ଦୁଇ ପୁତ୍ର ଜାତ କଲୁ ।
ଲବକୁଶ ନାମ ସେ ତନୟଙ୍କୁ ଦେଲୁ ॥୨୨॥
ବାଲମୀକ ଋଷି ସେ ଦୁଇଭାଇଙ୍କି ପଢ଼ାଇଲେ ।
ରାମାୟେଣ ଚରିତ୍ର ସକଳ ଶିଖାଇଲେ ॥୨୩॥
ଲବକୁଶ ଦୁଇ ଭାଇ ଗଲେ ଗୀତ ଗାଇ ।
ଦଇବର ନିର୍ମାଣ ଗୋ ମେଣ୍ଟଣ ନ ଯାଇ ॥୨୪॥
ଅଯୋଧ୍ୟାକୁ ଦୁଇ ଭାଇଁ ଗୀତ ଗାଇ ଗଲେ ।
ଶ୍ରୀରାମର ଆଗେ ରାମାୟେଣ କହିଲେ ॥୨୫॥
ଶୁଣିଣ ଶ୍ରୀରାମଚନ୍ଦ୍ର ପାପକ୍ଷୟେ ଗଲା ।
ଲବକୁଶେ କହନ୍ତେ ପୁତ୍ର ବୋଲି ଜାଣିଲା ॥୨୬॥
ତନୟନ୍ତ ଘେନିଣ ଆଇଲେ ତୋତେ ନେଇ ।
ଶ୍ରୀରାମ ମୁଖ ଦେଖି କୋପ କଲୁ ତୁହି ॥୨୭॥
ପାତାଳ ବଇକୁଣ୍ଠ ପୁରେ କଲୁ ସ୍ଥିତି ।
ବିଷ୍ଣୁର ବଲ୍ଲଭୀ ତୁହି ପରମପୀରତି ॥୨୮॥
ତବ ପଦ୍ମପାଦେ ମୋହର ଭଗତିର ବାସ ।
ଭବ ଜଳଧିରୁ ଉଦ୍ଧର କହି ସିଦ୍ଧେଶ୍ୱର ଦାସ ॥୨୯॥

## ରାମାଦିଙ୍କ ଶୋକ

ଏଥୁ ଅନନ୍ତରେ ଶୁଣ ପଣ୍ଡୁର ନନ୍ଦନ ।
ନୟନ ଥନଥନ କରି ପୁଛଇ ଶୁଣସି ମହାମୁନ୍ୟ ॥୧॥
ପୃଥୀର ଭିତରେ ସୀତ୍ୟା ପଶିଲା ।
ତହିଁ ଅନ୍ତେ ରାମ କେବଣ କୃତ୍ୟ କଲା ॥୨॥
ଏଥିର ଚରିତ୍ର ବିସ୍ତାରି କରି କହ ।
ବଡ଼ ବିକଳ ମୁନି ହେ ହେଉଛି ମୋର ଦେହ ॥୩॥
କହନ୍ତି ମାରକଣ୍ଡ ଶୁଣସି କୁନ୍ତୀ ସୁତ ।
ଦୁସହ ଅରଷ୍ଟି ତୋହର ଦୁରିତ ହୋଉ ହତ ॥୪॥
ସୀତୟା ପୃଥ୍ୱୀରେ ପଶିଲା ଶୁଣନ୍ତି ଯେବଣ ନରନାରୀ ।
ଦୟାକରଇ ତାହାକୁ ସିନ୍ଧୁ କୁମାରୀ ॥୫॥
ଶତେକୋଟି ଜନ୍ମର ପାତେକ ହୋଉ ନାଶ ।
ବଇକୁଣ୍ଠପୁରେ ବସଇ ସେ ବିର୍ଷ୍ଣୁନାଥର ପାଶ ॥୬॥
ସୀତାର କେଶ ହସ୍ତରେ ଘେନି ସୀତାପତି ।

ଭୂମିରେ ପଡ଼ି ରାମ ଅଚେତନ ମତି ॥୭॥
ଦୁଇକୁମାରେ ଯହୁଁ ମାତାକୁ ନ ଦେଖିଲେ ।
ହିୟାରେ କର ତାଡ଼ି ଭୂମିରେ ପଡ଼ିଲେ ॥୮॥
ଭରଥ ଲକ୍ଷ୍ମଣ ରୋଦନ କରନ୍ତି ।
ଅମନାତ୍ୟ ମନ୍ତ୍ରୀଗଣେ ଆସି ସନିଧେ ମିଳନ୍ତି ॥୯॥
କ୍ଷଣକେ ଶ୍ରୀରାମ ଚେତନା ପାଇଲା ।
ଦୁଇ ପୁତ୍ରକୁ କୋଳେ ଧରି ଉଚ୍ଚେ ରୋଦନ କଲା ॥୧୦॥
ଆହା ଜାନେକୀ କେବଣ କତି ଗଲୁ ।
ପୁତ୍ରକଇ ମୋହାସ କେମନ୍ତେ ଉପେଖିଲୁ ॥୧୧॥
ମୁହିଁ ମନ୍ଦ ବୁଦ୍ଧି ବୁଝି ତ ନ ପାରିଲି ।
ବିନା ଦୋଷେ ତୋତେ ଉପେକ୍ଷା ମୁଁ କଲି ॥୧୨॥
ବନସ୍ତେ ବୁଲି ଯେ ଅନେକ କଷ୍ଟ ପାଇଲୁ ।
ପୁଣ ରତ୍ନପ୍ରତିମା ଜାଣି ଦୁଇପୁତ୍ର ଜାତ କଲୁ ॥୧୩॥
ଏ ପୁତ୍ର ଉପେଖି ଗଲୁ ଏବେ କାହିଁ ।
ପୃଥୀରେ ପଶିଲୁ ମୋହର ମୁଖ ନ ଚାହିଁ ॥୧୪॥
ଆସିବାର ବେଳେ ଯାହା ମାତା ମୋତେ ବୋଇଲା ।
ଜନନୀ ବୟାଣ ଏବେ ସ୍ୱରୂପ ହୋଇଲା ॥୧୫॥
ମାତାକଇ ଯେବେ ରଥେ ବସାଇ ଆଣନ୍ତି ।
ସୀତୟା ଘେନି ମୋହର ରାଜ୍ୟକଇ ଯାନ୍ତି ॥୧୬॥
କାଳକ ପଛ ବୁଦ୍ଧି ମୋହର ନଷ୍ଟ ।
ଆପଣାର କର୍ମରେ ହୋଇଲି ପତ୍ନୀଭ୍ରଷ୍ଟ ॥୧୭॥
ଏସନେକ ଭାଳି ରୋଦନ କରନ୍ତି ସୀତାପତି ।
ବଶିଷ୍ଠ ସୁମନ୍ତ ସହିତେ ରୋଦନ କରନ୍ତି ॥୧୮॥
ମନ୍ତ୍ରୀ ଅମନାତ୍ୟ ଭରଥ ଲକ୍ଷ୍ମଣ ଦୁଇଭାଇ ।
ସବିହେ କ୍ରୋଧେ ସମାକୁଳ ଦେହି ॥୧୯॥
କାଞ୍ଚନା ରତ୍ନା ଯେ ସନିଧରେ ଥିଲେ ।
ସୀତୟା ଭୂମିରେ ପଶନ୍ତେ ସେହି ଦେଖିଲେ ॥୨୦॥
ଉଚେ କରତାଡ଼ି ଦୁଇ ଭଗ୍ନୀ କାନ୍ଦନ୍ତି ।
କେଶବାସ ଅସମ୍ଭାଳ ଅବନୀରେ ଲୋଟନ୍ତି ॥୨୧॥
କାହିଁକି ଗଲୁ ଗୋ ଜନେକ ଦୋହିତ ।
କିସ ବୋଲି କହିବୁ ତୋହର ପିତାର ଅଗ୍ରତ ॥୨୨॥
ଆମ୍ଭନ୍ତ ଘେନି ଯେ ପୁତ୍ରନ୍ତ ଲୋଡ଼ି ଅଇଲୁ ।
ଲବକୁଶନ୍ତ ଛାଡ଼ି ପୃଥୀରେ ପଶିଲୁ ॥୨୩॥
କାନ୍ଦି କାନ୍ଦିଣ ସେହୁ ଦୁଇ ଯୁବତୀ ।
ବାହୁଡ଼ି ବଇଦେହୀ ମଣ୍ଡଳକୁ ଯାନ୍ତି ॥୨୪॥
ନବର ଭିତରେ ଯାଇ ପ୍ରବେଶ ହୋଇଲେ ।
ଜନେକର ଆଗେ ସେ ବିକଳ ଚିତ୍ତେ କହିଲେ ॥୨୫॥
ସୀତୟାକୁ ନ ଦେଖି ଜନେକ ରାଜମୁନ୍ୟ ।
ଭୋକେ ବସିଛନ୍ତି ଅନେକ ତପୋଧନମାନ ॥୨୬॥
ଚଉକତି ଲୋଡ଼ନ୍ତି ପରିବାରୀ ଦାସୀ ।
ଚିନ୍ତାରେ ଅଥିର ଜନେକ ରାଜରଷି ॥୨୭॥
ଏସନେକ ସମୟେ ଦୁଇ ଭଗ୍ନୀ ।
କାନ୍ଦିଣ କହନ୍ତି ଶୁଣ ହୋ ମହାମୁନି ॥୨୮॥
ତୁମ୍ଭର ନନ୍ଦନୀ ଲବକୁଶଙ୍କର ଗର୍ଭଧାରୀ ।
ବନସ୍ତକଇ ଗଲେ ସେ ପୁତ୍ରନ୍ତ ଅନୁସରି ॥୨୯॥
ସନ୍ତୀରେ ବୁଲେ ଆମ୍ଭେ ଦୁଇ ଭଗ୍ନୀ ଗଲୁ ।
ବଟବୃକ୍ଷ ତଳେ ସବିହେ ହୋଇଲୁ ॥୩୦॥
ତରୁବର ଛାୟାରେ ସତୀ ଏକାନ୍ତେ ବସିଥିଲା ।
କୁମରନ୍ତ ଲୋଡ଼ି ଆମ୍ଭ ଦୁଇ ଭଗ୍ନୀଙ୍କି ପଠିଆଇଲା ॥୩୧॥
ଲବକୁଶେ ଯେ ଗୀତ ଗାଇତ ଗଲେ ।
ଅଯୋଧ୍ୟା ନରନାରୀ ସମସ୍ତେ ହେ ଶୁଣିଲେ ॥୩୨॥
ରାମାୟଣ ଚରିତ କରନ୍ତେ ବଖାଣ ।
ପୁତ୍ର ବୋଲି ଜାଣିଲେ ଶ୍ରୀରାମ ଲକ୍ଷ୍ମଣ ॥୩୩॥
ତନୟନ୍ତ ଦେଖି ସେ ନବରକଇ ଗଲା ।
ଝୀନ୍ନ ବସନ ପିନ୍ଧାଇ ଚନ୍ଦନ ଲେପିଲା ॥୩୪॥
ସୀତାର ସଜ ରତ୍ନ ଅଳଙ୍କାର ।
ଦୁଇ ପୁତ୍ରଙ୍କର ଗଳାରେ ଭରିଲେ ରତ୍ନହାର ॥୩୫॥
ପୁତ୍ରନ୍ତ ଘେନିଣ ସେ ବିବାନରେ ବସି ।
ଭରଥ ଲକ୍ଷ୍ମଣ ଆବର ବଶିଷ୍ଠ ମହରଷି ॥୩୬॥
ମନ୍ତ୍ରୀ ଅମନାତ୍ୟ ବୈଷ୍ଣବ ଅନେକ ଜନଙ୍କର ତୁଳେ ।
ସମସ୍ତେ ହେ ଏଥକଇ ଆସୁଣ ଥିଲେ ॥୩୭॥
ବଟବୃକ୍ଷ ତଳେ ସୀତୟାକୁ ଦେଖିଲେକ ଯହୁଁ ।
ଲତା ଉହାଡ଼େ ସମସ୍ତେ ବିଶ୍ରାମିଲେ ତହୁଁ ॥୩୮॥
ଲବକୁଶ ଦୁଇ ଭାଇ ଆଗ ହୋଇଲେ ।
ମାତାର ସନ୍ନିଧେ ଆସିଣ ମିଳିଲେ ॥୩୯॥
କୋପେଣ ସୀତୟ ତମଭରିତ ହୋଇଲା ।
ତମ ଶ୍ୟାନ୍ତି କଲା ଯହୁଁ ପୁତ୍ରଙ୍କୁ ଦେଖିଲା ॥୪୦॥
ଆମ୍ଭେ ଦୁଇ ଭଗ୍ନୀ କୁମରନ୍ତ ଲୋଡ଼ି ଯାଇଥିଲୁ ।

ସମସ୍ତେ ହେ ଆସି ଏକ ଗୁଣ୍ଡ ହୋଇଲୁ ॥୪୧॥
ରତ୍ନମାଳା ଦେଖି ସୀତୟା ଚିହ୍ନିଲା ।
କାହିଁ ପାଇଲ ବୋଲି ପୁତ୍ରନ୍ତ ପଚାରିଲା ॥୪୨॥
ଲବକୁଶେ କହିଲେ ଆମ୍ଭେ ଗୀତ ଗାଇତ ଗଲୁ ।
ଅଯୋଧ ନଗ୍ରେଣ ଯାଇଣ ହୋଇଲୁ ॥୪୩॥
କ୍ଷତ୍ରିବର ସୁନ୍ଦର ଆମ୍ଭର ଗୀତ ଶୁଣିଲା ।
ପୁତ୍ର ବୋଲିଣ ସେ ମଣିମାଳା ଏକ ଦେଲା ॥୪୪॥
ପୁତ୍ରଙ୍କର କଥା ଶୁଣିଣ ମହାସତୀ ।
ଲବକୁମର ମୁଖ ଚାହିଁ କହଇ ଶାନ୍ତି ମୂର୍ତ୍ତି ॥୪୫॥
ଏସନେକ ସମୟେ ବଶିଷ୍ଠ ମହରଷି ।
ଭ୍ରଥ ଲକ୍ଷ୍ମଣ ଘେନି ସୀତାର ସନିଧକୁ ଆସି ॥୪୬॥
ଲକ୍ଷ୍ମଣକୁ ଦେଖି ସୀତୟା କୋପ କଲା ।
ବହୁତ ପ୍ରବୋଧି ବଶିଷ୍ଠ କହିଲା ॥୪୭॥
ଘନ ଘନ ସତୀ ଛାଡ଼ଇ ନିଶ୍ୱାସ ।
ଏସନେକ ସମୟେ ମିଳିଲା ରାମ ପାଶ ॥୪୮॥
ମନ୍ତ୍ରୀ ଅମନାତ୍ୟ ସନିଧେ ଅଛନ୍ତି ।
ଶ୍ରୀରାମକଇ ଦେଖି କୋପ କଲା ମହାସତୀ ॥୪୯॥
ସ୍ୱାମୀର ମୁଖ ସତୀ କେବେହେ ନ ଚାହିଁଲା ।
ସୀତୟାର ବଚନେ ପୃଥୀ ଦୁଇଭାଗ ହୋଇଲା ॥୫୦॥
ପାତାଳେ ତୁମ୍ଭର ଦୋହିତା ହୋଇଲା ପ୍ରବେଶ ।
ଶ୍ରୀରାମଚନ୍ଦ୍ରର ସନିଧେ ଅଛନ୍ତି ଲବକୁଶ ॥୫୧॥
ସ୍ୱରୂପ କଥାଏ ପ୍ରତକ୍ଷେ ଦେଖିଲୁ ।
ଭୋ ତପିଷ୍ଠ ରାଜା ତୁମ୍ଭର ଆଗେ କହିଲୁ ॥୫୨॥
ଶୁଣିଣ ଜନେକ ମୁନି ଢଳିଣ ପଡ଼ିଲା ।
ଜ୍ଞାନ ହାରିଲା ଅଚେତ ହୋଇଲା ॥୫୩॥
ଋଷିର ଭାବେନୀ ସେ ସନିଧରେ ଥିଲା ।
ମୂର୍ଚ୍ଛା ଯାଇଣ ସେ ଭୂମିରେ ପଡ଼ିଲା ॥୫୪॥
କାନ୍ଦଇ ଉଚସ୍ୱରେ ଜିଘ୍ନସେନୀର ମାତା ।
କ୍ଷଣକେ ଜନେକ ମୁନି ହୋଇଲା ସଚେତା ॥୫୫॥
ଉଚେ ରୋଦନ କରଇ ମହାମୁନି ।
କେଣେ ଗଲୁ ସୀତୟା ଗୋ ଦୁଃଖୀର ନନ୍ଦନୀ ॥୫୬॥
ପତି ବିଛେଦ ହୋଇ ଥିଲୁ ମୋହର ଘରେ ।
ତୋହର ଥାନ୍ତେ ଶୋହିଥିଲାକ ମୋହର ପୁରେ ॥୫୭॥
ତୋତେ ନ ଦେଖି ଜୀବନେ କିସ କାର୍ଯ୍ୟ ।
ନିଲଜ ଆତ୍ମା କିପାଇଁ ନ ଯାଇ ଆଜ ॥୫୮॥
ଜନେକ କାନ୍ଦନ୍ତି ରୋଦନ୍ତି ସକଳ ଋଷି ।
ବେଢ଼ିଣ ରୋଦନ କରନ୍ତି ମୁନିର ଅବିଳାଷୀ ॥୫୯॥
ଧାଇ ପରିବାରୀ ରୋଦନ କରନ୍ତି ।
ଶୁଣି ବେଗେ ଅଇଲେ ବାଲମୀକ ମହାଯତି ॥୬୦॥
ଜନେକକୁ ପ୍ରବୋଧି କହନ୍ତି ତପଚାରୀ ।
ପୃଥୀରେ ପଶିଲା ଯେବେ ତୋହର କୁମାରୀ ॥୬୧॥
ଯହିଁ ଉପୁଜିଲା ସେ ଯେ ତହିଁକି ଗଲା ।
ଦେବଙ୍କର କଷ୍ଟେ ସେ ମାନବେ ଉପୁଜିଲା ॥୬୨॥
ଆବର ସୀତୟାକୁ ଦେଖିବୁ ତୁ କାହିଁ ।
ତୋହର ଦେଶକୁ ଯେବେ ଅଇଲେ ସୀତାସାଇଁ ॥୬୩॥
କ୍ଷତ୍ରିବର ସୁନ୍ଦରର ଚାଲ ମୁଖ ଦେଖି ଯିବା ।
ସଞ୍ଚିତ ପାପ ଭାରା ଦହନ କରିବା ॥୬୪॥
ଶତେ ସହସ୍ର ଜନ୍ମର ଯେତେ ପାପ ହରି ।
ରାମ ମୁଖ ଦେଖିଲେ ସେ ଦୁଃଖ ଅପହରି ॥୬୫॥
ଜନେକ କହଇ ମୋହର ଦେହେ ବସଇ ମାନ ।
କେସନେକେ ଚାହିଁବି ମୁଁ ଶ୍ରୀରାମର ବଦନ ॥୬୬॥
କି ଦୋଷେ ମୋହର ଦୋହିତାକୁ ଦୁଃଖ ଦେଲା ।
ମହତ ପୁରୁଷ ହୋଇ ଅନୀତିକି ଗଲା ॥୬୭॥
ତପ ହି ନ କରିବି ଦେହ ନ ଧରିବି ।
ଅବଶ ଆଜ ମୁହିଁ ଆତ୍ମଘାତେ ମରିବି ॥୬୮॥
ବାଲମୀକ କହନ୍ତି ତହିଁ କୋପ ନ କର ।
ବଇକୁଣ୍ଠ ତେଜି ରାମ ମାନବ ଅବତାର ॥୬୯॥
ପୃଥୀର ହିତ ଅର୍ଥେ ହୋଇଲାକ ଜାତ ।
ଅସୁରନ୍ତ ବିନାଶି ଛେଦିଲେ ଦଶମାଥ ॥୭୦॥
ସୀତାର ସହିତେ ନିଜ ରାଜ୍ୟେ ଥିଲେ ।
ପାପୀ ଲୋକ ମୁକତି ଶ୍ରୀରାମ ମୁଖ ଦେଖିଲେ ॥୭୧॥
ତେଣୁ ସେ ବୈକୁଣ୍ଠପୁର ଯିବା ବିଚାରି ।
ବିଛେଦ କରାଇଲେ ଜନେକ କୁମାରୀ ॥୭୨॥
ସତୀ ଏଥେ ଥିଲେ ନ ସରଇ ଯୁଗ ।
ତେଣୁ ସେ ତୋହର ଦୋହିତା ପଶିଲା ଭୂମିଭାଗ ॥୭୩॥
ଏବେ ଚାଲ ଶ୍ରୀରାମ ସନିଧକୁ ଯିବା ।
ତୋହର ପୁରକଇ ଘେନିଣ ଆସିବା ॥୭୪॥
ଯଦ୍ୟପି ନ ଆସଇ ସୀତୟାର ପତି ।

ସମର୍ପି ଆସିବା ତୋହର ବେନି ନାତି ॥୭୫॥
ଲବକୁଶଙ୍କୁ ପ୍ରତିପାଳଇ ମୁଁ ପୂର୍ବେ ।
କ୍ଷତ୍ରିବର ସୁନ୍ଦର ମୁଖ ଚାହିଁବୁ ତୁ ଏବେ ॥୭୬॥
ବାଲମୀକଙ୍କର ବଚନ ଶୁଣି ତପୋଧନ ।
ସନିଧେ ହକାରିଲା ମୁନିଗଣ ମାନ ॥୭୭॥
(ଅନେକ ଦ୍ରବ୍ୟ ଉପହାର ଘେନି ।
ଆପଣେ ଗମନ୍ତି ବାଲମୀକ ତପୋଧନି) ॥୭୮॥
ଋଷିବୃନ୍ଦ ସହିତେ ବାଲମୀକ ତପୋଧନ ।
କେତେ ଧୂର ଦୁଶିଲେ ରଘୁବର ନନ୍ଦନ ॥୭୯॥
ବଟବୃକ୍ଷ ତଳେ ଅଛନ୍ତି ରାମଚନ୍ଦ୍ର ।
ତହିଁ ଯାଇ ମିଳିଲେ ସକଳ ଋଷିବୃନ୍ଦ ॥୮୦॥
ବଶିଷ୍ଠ ସହିତେ ରଘୁବଂଶମଣି ।
ବସିଛନ୍ତି ସମସ୍ତେ ତଇଳେ ମାଛି ଜାଣି ॥୮୧॥
ଯେ ଯାହାର ମାନଣା ମୁନିଗଣେ କହନ୍ତି ।
ବାଲମୀକଙ୍କର ପୟର ଧରି ଶ୍ରୀରାମ ଓଳଗନ୍ତି ॥୮୨॥
ଜନେକ ମହରଷିଙ୍କର ସନିଧକୁ ଗଲେ ।
ପୟର ଧରି ରାମଚନ୍ଦ୍ର ପ୍ରଣମିତ କଲେ ॥୮୩॥
ଭ୍ରଥ ଲକ୍ଷ୍ମଣ ମୁନିଙ୍କି ପ୍ରଣମିତ କରନ୍ତି ।
ରକତ କୁମୋଦ ଜାଣି ନୟନ ଦିଶନ୍ତି ॥୮୪॥
ଲବକୁଶଙ୍କୁ ଜନେକ ମୁନି କୋଳ କରି ଧରନ୍ତି ।
ଶିର ଆଉଁସିଣ ଯେ ଉଚେ ରୋଦନ କରନ୍ତି ॥୮୫॥
କୁମାରେ କାନ୍ଦନ୍ତି ଦେଖିଣ ମାତାର ତାତ ।
କୁମରଙ୍କ ମୁଖ ଚାହିଁ ରୋଦନ କରନ୍ତି ରଘୁନାଥ ॥୮୬॥
ଶରୀର ଅସମ୍ଭାଳ ସବୁଙ୍କରି ଦେହି ।
ବଶିଷ୍ଠେ ବାଲମୀକେ ରାମଙ୍କୁ ପ୍ରବୋଧିଣ କହି ॥୮୭॥
ତୋହର ଅଧଉର୍ଯ୍ୟେ ଧଉର୍ଯ୍ୟ ହୋଇବ କେ ଆନ ।
ଧାର୍ମିକପଣେ ଶାନ୍ତି କରସି ତୋହର ମନ ॥୮୮॥
ଯେ ଯାହାର ଫଳ ଫଳଇ କାଳଇ ।
କ୍ଷତ୍ରି ପତିପଣ ତୁହି ସେ ସୂର୍ଯ୍ୟବଂଶେ ଉଜଳଇ ॥୮୯॥
ଆତ୍ମା ପରଚେ ନ କରି ତୁ ନ କର ଚିନ୍ତା ।
ଆବର ଦେଖନ୍ତେ ତୁ ପାଇବୁ କି ସୀତା ॥୯୦॥
ବାଲମୀକଙ୍କର କହନ୍ତେ ରାମ ରୋଦନ ଛାଡ଼ିଲେ ।
କରେ କୋଦଣ୍ଡ ଧରି ରାମ ଆମଞ୍ଚନ କଲେ ॥୯୧॥
ରିପୁଦହନ ଶର ତ୍ରୋଣୁ କାଢ଼ନ୍ତି ତଡ଼ତି ।
ଆଜ ବିନାଶିବି ଅଭୟେ ବସୁମତୀ ॥୯୨॥
ମୋହର ପତ୍ନୀକି ଏହି ସେ ସଂଘରିଲା ।
ତମ ଭରିତ ହୋଇ ନାରାଚ ଗୁଣରେ ବସାଇଲା ॥୯୩॥
ଦେଖିଣ ଅମରାଧି ଦେବଗଣେ ଭାଳି ।
ଶ୍ରୀରାମ ନାରାଚ କି ସହିବ ମହୀଆଳି ॥୯୪॥
ରାସାନ୍ତଳେ ଆସି ପୃଥିବୀ ପଡ଼ିବ ।
ସକଳ ଜୀବଜନ୍ତୁ ପ୍ରାଣ ନାଶ ହୋଇବ ॥୯୫॥
ଶୂନ୍ୟେଣ ଡାକ ଦେଲେ ସେ ଅମରଗଣ ।
ଛାଡ଼ ଛାଡ଼ ଆୟୁଧ ପୃଥିବୀକି ନ ବିନ୍ଧ ବାଣ ॥୯୬॥
ତୋହର କୋପ ସହି ପାରଇକି ବସୁମତୀ ।
ସକଳ ହତ୍ୟାରେ କାରେଣୀଟି ହୋଇବୁ ଦାଶରଥି ॥୯୭॥
ପୂର୍ବେ ଖେଦ କଲୁ ଲୋକିତ ବୟାଣେ ।
ଘରଣୀକି ନିବାସିଲୁ କେବଣ କାରଣେ ॥୯୮॥
ବହୁତ କଷ୍ଟ ସତୀ ପାଇଲା ବନ ମଧ ।
ବୃଧ କାଳେ ତୋହର କିସ କାମ ସଧ ॥୯୯॥
ଧର୍ମ ଶାସ୍ତ୍ରକଇ ସେ ଚିନ୍ତିବୁ କାରଣ ।
ପରମ ପୁରୁଷ ତୁ ପ୍ରମାର୍ଥ ଧାରଣ ॥୧୦୦॥
ଦେବଙ୍କର ବଚନ ଶୁଣି ରାମ ତୁଷ୍ଟ ହୋଇଲେ ।
ଧନୁଶର ପକାଇ ସେ ତରୁତଳେ ବସଲେ ॥୧୦୧॥
ଜନେକ ମହରଷି ଯେ କୁମରକୁ ଧରିଥିଲା ।
ଶ୍ରୀରାମର ସନିଧକୁ ସେ ତତକ୍ଷଣେ ଗଲା ॥୧୦୨॥
ଅମୂଲ୍ୟ ରତ୍ନ ନେଇ ଚାପଇ ରାମ ଶିର ।
ନୟନ ଥନଥନ କରି କହଇ ମୁନିବର ॥୧୦୩॥
ଆଦିତ୍ୟ ହୋଇଲା ଶେଷ ପ୍ରବେଶ ଅନ୍ଧାର ।
ଏବେ ଯିବା ବାବୁ ହେ ଆମ୍ଭର ନିଜପୁର ॥୧୦୪॥
ତୋହର ଗଲେ ମୋହର ଦୁରିତ କ୍ଷୟେ ହୋଉ ।
ଦୋହିତା ବିନାଶ କଷ୍ଟ ପାସୋର ମୋତେ ହୋଉ ॥୧୦୫॥
ଶ୍ରୀରାମ କହନ୍ତି ଏ କଥା ନୁହଇଟି ବିହିତ ।
ତୋହର ଦୋହିତାକୁ ଦୁଃଖ ମୁହିଁ ଦେଲଇ ବହୁତ ॥୧୦୬॥
କେସନେକେ ତୁମ୍ଭର ନବରକଇ ଯିବି ।
ସ୍ତିରୀଗଣଙ୍କର ମୁଖ କେସନେ ଚାହିଁବି ॥୧୦୭॥
ନଗ୍ରଲୋକେ ମୋତେ କରିବେ ଧିକାର ।
ବହୁତ ସଂକୋଚ ମୁଁ କରଇ ମୁନିବର ॥୧୦୮॥
ବାଲମୀକେ କହନ୍ତି ଶୁଣ ରଘୁପତି ।

ଜନେକ ଘରକଇ ଯିବାର ମିଳଇ ଯୁଗତି ॥୧୦୯॥
ସନ୍ଧ୍ୟାଭାଗ ଆସି ହୋଇଲା ପ୍ରବେଶ ।
ଅଯୋଧ୍ୟା ନଗ୍ର ଅଟଇ ବାଟ ଦୂର ଦେଶ ॥୧୧୦॥
ଆଜ ଜନେକର ପୁରେଣ ରହିବୁ ।
ପ୍ରଭାତେ ପୁତ୍ରଙ୍କୁ ଘେନି ଅଯୋଧ୍ୟାକୁ ଯିବୁ ॥୧୧୧॥
ଶ୍ରୀରାମ କହନ୍ତି ଏସନ ନୁହଇ ।
ବନ ଅଗ୍ନି ଜାଣି ମୋର ଶରୀର ଦହଇ ॥୧୧୨॥
ଭାରିଯା ନାଶହୋଇଲା ଜନେକ ପୁରକୁ କେସନେକେ ଯିବି ।
ବହୁତ ଲୋକ ମୁଖେ ମୁଁ ଲଜ୍ଜା ପାଇବି ॥୧୧୩॥
ଏବେ ତୁମ୍ଭେ ଆପଣା ନବରକୁ ଯାଅ ।
ଆବର ମୋତେ ଦୁଃଖମାନ ନ କରାଅ ॥୧୧୪॥
ବଶିଷ୍ଟେ କହନ୍ତି ହୋ ଜନେକ ମହାମୁନ୍ୟ ।
ବାହୁଡ଼ି ନିଜ ପୁରକୁ କରିବୁ ଗମନ ॥୧୧୫॥
ପୁଷ୍ପେକ ଆରୋହି ଆମ୍ଭେ ଅଯୋଧ୍ୟାକୁ ଯିବୁ ।
ଏହିକ୍ଷଣି ନଗ୍ରେ ପ୍ରବେଶ ହୋଇବୁ ॥୧୧୬॥
ବଶିଷ୍ଟଙ୍କର ବଚନ ଶୁଣି ଜନେକ ତପଚାରୀ ।
ଶ୍ରୀରାମ ଆଗେ ଲବକୁଶଙ୍କ ସମର୍ପନ୍ତି ଭୁଜ ଧରି ॥୧୧୭॥
ଏ ତୋହର ପୁତ୍ରେ ହୋଇଲେ ମାତୃହୀନ ।
ଏବେ ଏହାନ୍ତ ପ୍ରତିପାଳଣ କର ରଘୁନାନ ॥୧୧୮॥
ମୋହର ଘରେ ବାଳୁତ କାଳେ ଥିଲେ ।
ବାଲମୀକଙ୍କର ପ୍ରସନେ ଜ୍ଞାନବନ୍ତ ହୋଇଲେ ॥୧୧୯॥
ଯେସନେକ ମାତାକଇ ମନେ ଆନ ନ ଧରନ୍ତି ।
କୁମରକୁ ସମର୍ପି ବାହୁଡ଼ଇ ଦୁଃଖମତି ॥୧୨୦॥
ନିଜ ନବରେ ହୋଇଲେ ପ୍ରବେଶ ।
ସୀତାକୁ ସୁମରି ମନରେ ମହାପ୍ରାସ ॥୧୨୧॥
ରାତ୍ରଦିବସେ ସୀତାମୁଖ ଦେଖଇ ।
ତନୁ କ୍ଷୀନ ହୋଇଲା ଆହାର ଉପେଖଇ ॥୧୨୨॥
ବାଲମୀକ କହନ୍ତି ଜନେକ ମୁଖ ଚାହିଁ ।
ଶରୀର ଥିର କରି ଥାସି ଧଉର୍ଯ୍ୟ ହୋଇ ॥୧୨୩॥
ଯୋଗମାର୍ଗେ ଚିନ୍ତ ଦୃଢ଼ ବ୍ରହ୍ମଜ୍ଞାନ ।
ତେଣେ ସେ ଦୁଃଖ ସୁଖ ହୋଇବ ଏକମନ ॥୧୨୪॥
ଏସନେକ କହି ବାଲମୀକ ମୁନି ତହୁଁ ଗଲେ ।
ନିଜ ଆଶ୍ରମେ ଯାଇ ପ୍ରବେଶ ହୋଇଲେ ॥୧୨୫॥
ବାଲମୀକଙ୍କର ବଚନ ହୃଦରେ ଧରି ।
ମନରେ ବ୍ୟଥା ତେଜିଲେ ଜନେକ ତପଚାରୀ ॥୧୨୬॥

## ଅଯୋଧ୍ୟାରେ ଶୋକୋଚ୍ଛ୍ୱାସ

ଏଥୁ ଅନନ୍ତରେ ଶୁଣ ଯୁଧିଷ୍ଠିର ।
ପାତ୍ର ମନ୍ତ୍ରୀ ସହିତେ ବଶିଷ୍ଟ ମୁନିବର ॥୧॥
ପୁଷ୍ପେକ ରଥେ ବସନ୍ତି ରଘୁପତି ।
କୋଳେ ଆଣି ଦୁଇ ପୁତ୍ରନ୍ତ ବସାବନ୍ତି ॥୨॥
ଭ୍ରଥ ଲକ୍ଷ୍ମଣ ଅଛନ୍ତି ସନିଧ୍ୟାନେ ।
ସମସ୍ତେ ବିରସ ଶୋକଭରିତ ମନେ ॥୩॥
ଶୀଘ୍ରେଣ ବିମାନ ଚଳଇ ଘନଘନ ।
ଅନ୍ତରୀକ୍ଷେ ରଥ କରଇ ଗମନ ॥୪॥
ଶଶୀ ନିଭନ ଅନ୍ଧାର ଦଶଦିଶ ।
ଅଯୋଧ୍ୟା ନଗ୍ରେ ବିମାନ ହୋଇଲା ପ୍ରବେଶ ॥୫॥
ନଗ୍ର ନରନାରୀ ଯହୁଁ ରଥ ଦେଖିଲେ ।
ସୀତା ଅଇଲା ବୋଲି ହରଷ ହୋଇ ଧାଇଁଲେ ॥୬॥
ଅନ୍ତପୁରେ ଯାଇ କହିଲେ ତୁରିତ ।
ସୀତାକୁ ଘେନି ଅଇଲେ ତୁମ୍ଭର ପୁତ୍ର ॥୭॥
ବିମନେ କଉଶୁଲ୍ୟାଏ ବସିଣ ଥିଲେ ।
ଭଗ୍ନୀ ଦୁଇ ଘେନି ବାହାର ହୋଇଲେ ॥୮॥
ଏକୋଇଶ (ଶତ) ସତପଣୀ ବସିଣ ଥାନ୍ତି ସନିଧାନେ ।
ଧାତ୍ରୀ ମୁଦୁସୁଲୀ ଆବର ପରିବାରୀମାନେ ॥୯॥
ସମସ୍ତେ ସୀତା ଅଇଲା ପରାୟେ ବୁଝିଥିଲେ ।
ଅନ୍ତଃପୁର ତେଜି ସିଂହଦ୍ୱାରେଣ ମିଳିଲେ ॥୧୦॥
ଯହିଁଣ ଅଛଇ ପୁଷ୍ପେକ ରହୁବର ।
ସୁବର୍ଣ୍ଣର ଦୀପେକ ଘେନି କଉଶୁଲ୍ୟାଏ
ଉଭାହୋଇଲେ ରଥଦ୍ୱାର ॥୧୧॥
ତବଦେ ବିମାନୁ ନ ଓଲାବନ୍ତି କେହି ।
ଏକ ଆରେକରେ ସମସ୍ୟା ନ ଦେନ୍ତି କେହି ॥୧୨॥
ରଥର ଦ୍ୱାରେ ବଶିଷ୍ଟେ ବସିଛନ୍ତି ।
ମୁନିବର ମୁଖ ଚାହିଁ କଉଶୁଲ୍ୟାଏ ପୁଛନ୍ତି ॥୧୩॥
ଭୋ ମୁନି କେବଣ କତି ବସିଛି ଜିଘ୍ନସେନୀ ।
ସ୍ୱରୂପ କରିଣ କହସି ମହାମୁନି ॥୧୪॥
ତବଦ ହୋଇ କେହି ନ କହନ୍ତି କଥା ।
ଅଇଲା କି ନଇଲା ଜନେକ ଦୋହିତା ॥୧୫॥

ସୂର୍ଯ୍ୟକୁଳବଧୂର ଦେଖଇ କିନା ମୁଖ ।
ହୃଦରେ ସମାକୁଳ ଛଡ଼ାଅ ସର୍ବଦୁଃଖ ॥୧୬॥
ବଶିଷ୍ଠେ କହନ୍ତି କକୟା ରାଜାର ଦୋହିତା ।
ତୋହର ବଚନ କି ହୋଇବ ଅନ୍ୟସ୍ଥା ॥୧୭॥
ଅନେକ ପ୍ରବୋଧି କହିଲଇ ମୁହିଁ ।
ସେ କଥା ନ ଶୁଣିଲା ସେ ଅଛଇ କଷ୍ଟ ପାଇ ॥୧୮॥
ଶ୍ରୀରାମକଇ ଦେଖି ସେ ମୁଖ ନ ଚାହିଁଲା ।
କୋପେ ମହାସତୀ ପୃଥିରେ ପଶିଲା ॥୧୯॥
ଶୁଣିଣ କଉଶୁଲ୍ୟାଏ ପଡ଼ିଲେ ଧରଣୀ ।
ଉରେ କରତାଡ଼ନ୍ତି ଦଶରଥର ରାଣୀ ॥୨୦॥
ଉଚସ୍ୱରେ ସମସ୍ତେହେ ରୋଦନ କରନ୍ତି ।
ଆତ୍ମା ଅଚେତ ପଡ଼ିଣ ମୋହ ଯାନ୍ତି ॥୨୧॥
କ୍ଷଣକେ କଉଶୁଲ୍ୟାଏ ଚେତନା ପାଇଲେ ।
ବଶିଷ୍ଠ ମହାମୁନିଙ୍କର ମୁଖକୁ ଚାହିଁଲେ ॥୨୨॥
କୋପେଣ ନିଶ୍ୱାସ ଛାଡ଼ଇ ଘନଘନ ।
ତୁହିସେ ଏସନେକ କଲୁନି ମହାମୁନ୍ୟ ॥୨୩॥
ଯିବାର ବେଳେ କହିଲି ମୋତେ ନିଅ ।
ଜନେକ ଦୋହିତାର ମୁଖ ଦେଖାଅ ॥୨୪॥
ମୁହିଁ ସୀତାକଇ କହଇ ପ୍ରବୋଧି ।
କୋପ ଛାଡ଼ିବ ତେବେ ଯୁବତୀ ରତ୍ନନିଧି ॥୨୫॥
ମୋହର ବଚନ ସେ କି ଲଂଘି ପାରନ୍ତା ।
କିପାଇଁ ଜାନେକୀ ପୃଥୀରେ ପଶନ୍ତା ॥୨୬॥
ମାତାର କଥା ଶୁଣି ଶ୍ରୀରାମ ଶୋକ ଚିତ୍ତେ ।
ପୁତ୍ରଙ୍କର କଟି ଧରି ଓହ୍ଲାଇଲେ ତୁରିତେ ॥୨୭॥
ଭୂମିକି ଚାହିଁଣ ବସିଲେ ରଘୁବୀର ।
ଦୁଇ ନୟନରୁ ଠପଠପ ପଡ଼ଇ ନୀର ॥୨୮॥
ଭ୍ରଥ ଲକ୍ଷ୍ମଣ ଆବର ପ୍ରୋହିତ ମନ୍ତ୍ରୀ ।
ନଗ୍ର ଲୋକେ ଅନେକ ବେଢ଼ିଣ ଅଛନ୍ତି ॥୨୯॥
**କଉଶୁଲ୍ୟାଏ** କହନ୍ତି ଶ୍ରୀରାମ ମୁଖ ଚାହିଁ ।
ମୋହ**ର କଥା** ଶୁଣ ଶୋକ ଶାନ୍ତି ହୋଇ ॥୩୦॥
ସ୍ୱାମୀର **କାର୍ଯ୍ୟ** ମୁହିଁ ପୂର୍ବେ ନ କଲି ।
ତୋହର ବନକଇ ଯାନ୍ତେ ମୁଁ ଦୁର୍ଗା ପୂଜିଲି ॥୩୧॥
ଦୁର୍ଗାର ପ୍ରସନେ ତୁହି ଶୁଭେଣ ଅଇଲୁ ।
ଅଯୋଧ୍ୟା ନଗ୍ରେଣ ତୁହି ମହାରାଜା ହୋଇଲୁ ॥୩୨॥
ତୀର୍ଥ ଗମିଲୁ କଲୁ ଅନେକ ପୁନ୍ୟଧର୍ମ ।
ପୁଣ ମେଣ୍ଟି ନ ପାରିଲୁ ପୂର୍ବ ଜନ୍ମକର୍ମ ॥୩୩॥
ଅନମିତ୍ତେ ରାଗ ବହିଲୁ କାହାରି ବୋଲ ନ କଲୁ ।
ମହାସତୀ ସୀତୟାକୁ ବନବାସ ବିହିଲୁ ॥୩୪॥
ତୋହର ପୁତ୍ର ଦେଖିବାକୁ ଆଶା କରିଥିଲି ।
ଏବେ ସୀତୟାର ଗର୍ଭେ ବେନି ପୁତ୍ର ଦେଖିଲି ॥୩୫॥
ପୁତ୍ରର ପୁତ୍ରରତ୍ନ ଯେବେ ଦେଖନ୍ତି ।
ଶତେ ଜନ୍ମର ସେ ପତେକ ଉପେଖନ୍ତି ॥୩୬॥
ମୋହର ଭଗ୍ନୀର ନନ୍ଦନ ଉପୁଜିଲା ।
ଭ୍ରଥାକୁଳର ମାତୃକୁଳର ପାତେକ କ୍ଷୟେ ଗଲା ॥୩୭॥
ପାଞ୍ଚକୁମାରେ ସୂର୍ଯ୍ୟବଂଶେ ହୋଇଲେ ଉତପତି ।
ଏହାକୁ ପ୍ରତିପାଳି ଭୋଗ କର କ୍ଷିତି ॥୩୮॥
ଏବେ ଚିତ୍ରା ଆରୋପଣ ବେଗେ କର ସଜ ।
ଅନଳେ ପଶିବି ଶରୀର କରିବି ଦହିଯ ॥୩୯॥
ଶ୍ରୀରାମ କହନ୍ତି ଶୁଣ ଗୋ ଜନନୀ ।
ତୁହି କେସନେକେ ଏବେ ପଶିବୁ ବହନି ॥୪୦॥
ଏ ମୋହର ପୁତ୍ରେ ହୋଇଲେ ମାତୃହୀନ ।
ତୁମ୍ଭେ ପ୍ରତିପାଳିବ ଏ ବେନି ନନ୍ଦନ ॥୪୧॥
କଉଶୁଲ୍ୟାଏ କହନ୍ତି ତୁ ମୋତେ ନ ମଣାଅ ଏହା ।
ଯେ ଯାହାର ବ୍ରତିବାକହି ଦଇବ ସେ ସାହା ॥୪୨॥
ମୁହିଁ ତୋତେ କହିଲି ଅନେକ ମଣାଇଁ ।
ପ୍ରବୋଧି ସୀତାକଇ ମୁହିଁ ଘେନି ଆସଇ ଯାଇ ॥୪୩॥
ମୋତେ ନ ନେଲ ତୁମ୍ଭେ ସମସ୍ତେ ହେ ଗଲ ।
ତେଣେ ସେ ସୀତାକଇ ନିବାସି ଅଇଲ ॥୪୪॥
ବେଳେବେଳେ ଉପେକ୍ଷା (କଲୁ) ତୁହି ମୋହର ବଚନ ।
ତୋହର ମୁଖ ଚାହିଁ ମୋତେ ମରଣ ସମାନ ॥୪୫॥
ପିତା ବନବାସ ପଠିଆଇଲା ଯେବଣ ବେଳେ ।
ବନସ୍ତକଇ ନ ଯା ବୋଲି ବୋଇଲି ସେ କାଳେ ॥୪୬॥
ମୋହର ବଚନ ତେଜି ବନସ୍ତକୁ ଗଲୁ ଯହୁଁ ।
ତୋତେ ନ ଦେଖି ପିତା ପ୍ରାଣ ଛାଡ଼ିଲାକ ତହୁଁ ॥୪୭॥
ବନସ୍ତକୁ ଯାଇ ତୁ କେତେ ଦୁଃଖ ପାଇଲୁ ।
କୁବୁଧି ଆଶ୍ରେ କରି ମୃଗ ମାରିତ ଗଲୁ ॥୪୮॥
ଲକ୍ଷ୍ମଣ ଥିଲା ତୋତେ ଲୋଡ଼ିତ ଗଲା ।
ତେଣୁ ସେ ପର୍ଣ୍ଣକୋଟୀ ଅନାସ୍ତ ହୋଇଲା ॥୪୯॥

ତେମନ୍ତେ ସେ ହରି ନେଲାକ ଦଶଗିରି ।
ତୋହରେ ସେ ଦୁଃଖ ପାଇଲା ଜନେକ କୁମାରୀ ॥୫୦॥
ବାନରଙ୍କର ବୁଦ୍ଧି ବଳେ ତୁହି ରାବଣ ମାଇଲୁ ।
ତହୁଁ ଆସି ଅଯୋଧ୍ୟାରେ ପ୍ରବେଶ ହୋଇଲୁ ॥୫୧॥
ଅନେକ ଲୋକ ଥିଲେ ତୋହର ସନିଧାନେ ।
ଅଗ୍ନିରେ ନ ପଶିଲି ବୋଲି ମୋତେ କହିଲୁ ଅପମାନେ ॥୫୨॥
ମରିବାର ବେଳେ ମୋତେ ସ୍ୱାମୀ ହି କହିଲେ ।
ତେଣୁ ସେ ଅଗ୍ନିରେ ନ ପଶିଲୁ ପ୍ରଭୁଙ୍କର ତୁଲେ ॥୫୩॥
ସ୍ୱାମୀର ଅଙ୍ଗ ସଙ୍ଗେ ଦେହ ଯେବେ ଦହି ।
ଶତେକଳପ ପରିଯନ୍ତେ ତାହାର ଜଂଘେ ବସି
ଅମୃତପାନ କରଇ ॥୫୪॥
ଭ୍ରଥାର କୃତ ଦୋଷ ହୁଅଇ ନାଶ ।
ପ୍ରଭୁ ଜଂଘେ ବସନ୍ତେ ସ୍ୱାମୀ ନ ପାଇ ତ୍ରାସ ॥୫୫॥
ପ୍ରଭୁର ସନ୍ତେକ ଘେନି ପଶଇ ହୁତାଶନ ।
ସ୍ୱାମୀକି ଆଚ୍ଛାଦି ବସଇ ଇନ୍ଦ୍ର ଭୁବନ ॥୫୬॥
ଏବେ ସ୍ୱାମୀର କାର୍ଯ୍ୟ କରିବଇ ।
ତୋହର ନାସ୍ତି କଲେ କିମ୍ପା ରହିବି ମୁହିଁ ॥୫୭॥
ସେ କଥା ସମସ୍ତ ପାସୋରି ମୁହିଁ ଥିଲି ।
ଏବେ ସୀତୟାର ମରନ୍ତେ ସମସ୍ତ ସୁମରିଲି ॥୫୮॥
ଯଦ୍ୟପି ଅଗ୍ନି ତୁହି ସଂଯୋଗ ନ କରିବୁ ।
ଏ ମୋହର ହତ୍ୟାରେ କାରେଣୀ ହୋଇବୁ ॥୫୯॥
ନଉଚେତ କୂପରେ ହୋଇବି ପ୍ରାଣନାଶ ।
କିଅବା ନିଜ ଅନଳେ ହୋଇବି ମୁଁ ଭସ୍ମ ॥୬୦॥
ଶୁଣିଣ ଶ୍ରୀରାମ ଚାହାନ୍ତି ବଶିଷ୍ଟଙ୍କର ମୁଖ ।
ଦେଖିଲକି ଭୋ ଯତି ଦୁଃଖ ଉପରେ ଦୁଃଖ ॥୬୧॥
ପତ୍ନୀ ବିଛେଦ (ଲଭି) ରାଜ୍ୟେ ମୁହିଁ ଥିଲି ।
ମାତାକୁ ଦେଖି ସୀତାକୁ ପାସୋରିଲି ॥୬୨॥
ବଶିଷ୍ଟେ କହନ୍ତି ଯାହାର ଯେଉ ଇଚ୍ଛା ।
ଆବର ବିଶେଷେ ସ୍ତିରୀଙ୍କର କକ୍ଷା ॥୬୩॥
ଯାହା କହନ୍ତି ଅନ୍ୟସ୍ଥା ନ କରନ୍ତି ।
ନିୟତେ ବୃଧା ସ୍ତିରୀ ବିଧବା ଯୁବତୀ ॥୬୪॥
ସଦଜ୍ଞାନୀ ତ କାମେନୀ ବିବେକ ମର୍ଯିତା ।
ମହତ କୁଳେ ଉତପତି ପ୍ରତିଜ୍ଞା ନ ଚଳନ୍ତା ॥୬୫॥
ସେ କିପାଇଁ ଆବର ରହିବ ତୋହର ବୋଲେ ।
ଧର୍ମନାଶ ହୋଇବନା ଏବେ ନାସ୍ତି କଲେ ॥୬୬॥
ଶୁଣିଣ ଶ୍ରୀରାମ ଦୁଇଭାଇନ୍ତ ହକାରନ୍ତି ।
ସୁମନ୍ତ ପାତ୍ରକଇ ବିଶ୍ୱାସ କଥା କହନ୍ତି ॥୬୭॥
ଅଗ୍ନି ସମ୍ଭାର କରସି ହୋ ଏବେ ।
ଶ୍ରୀରାମର ବାକ୍ୟ ଉତୁରିଲାକ ଯେବେ ॥୬୮॥
ତତକ୍ଷଣେ ଅଗ୍ନି ଆରୋପଣ କରନ୍ତି ।
ଭ୍ରଥ ଲକ୍ଷ୍ମଣ ଯେ ଆବର ପାତ୍ରମନ୍ତ୍ରୀ ॥୬୯॥
କକୟା ସୁମିତ୍ରା ଦଶରଥଙ୍କ ଯେତେ ରାଣୀ ।
ସମସ୍ତେ କହନ୍ତି ଶୁଣ ଚାପପାଣି ॥୭୦॥
କଉଶୁଲ୍ୟା ସେ ଯେବେ ଅଗ୍ନିରେ ପଶିବ ।
ଆମ୍ଭର ବ୍ରତିଥିଲେ କିସ କାର୍ଯ୍ୟ ହୋଇବ ॥୭୧॥
ତୁହି ଯହୁଁ ରାମ କଲୁ ବନବାସ ।
ଆମ୍ଭର ଭ୍ରଥାଏ ହୋଇଲେ ପ୍ରାଣନାଶ ॥୭୨॥
କଉଶୁଲ୍ୟାକୁ ମାତା ପ୍ରାୟେ ବୁଝିଲୁ ।
ସକଳ କଷ୍ଟ ଏହାର (ପ୍ରସାଦେ) ପାସୋରିଲୁ ॥୭୩॥
କେ ଅବା ଆମ୍ଭକଇ କରିବ ଚିନ୍ତା ।
ଆବର ବ୍ରତିଅଛି କି ଜନେକ ଦୋହିତା ॥୭୪॥
ଏ ସେ ମହାସତୀ ଜାଣଇଁ ଆମ୍ଭର ମନ ।
ତାହାର ବିହୁନେ ଧିକ ଯାଇ କିନା ଜୀବନ ॥୭୫॥
ଏ ଦେହ ରଖିଲେ କିସ ସୁଖ ପାଇବୁ ।
ତୋହର ଛାମୁରେ ମଲେ ସକଳ ପାତେକ ନାଶିବୁ ॥୭୬॥
ଏଥକୁ କ୍ଷତ୍ରିବର ନ କର ତୁହି ଆନ ।
ତୁମ୍ଭେ ପ୍ରତିପାଳ ଏ ପଞ୍ଚୁ ନନ୍ଦନ ॥୭୭॥
ମାତାର ବଚନେ ରାମ ସନମତ କରନ୍ତି ।
ପାତ୍ର ଅମନାତ୍ୟ ମନ୍ତ୍ରୀକି କହନ୍ତି ॥୭୮॥
(ଏକୋଇଶ ଶତ ଭାରିଯା ପାଟ ତିନି ଭଗ୍ନୀ ।
କକୟା ସୁମିତ୍ରା) ଏ ମୋହର ଜନନୀ ॥୭୯॥
ଦୁଇ ଠାବ କରି ଅଗ୍ନି ଆରୋପଣ କର ।
ଆଜ୍ଞା ଦେଲେ ରାମ କ୍ଷତ୍ରିବର ସୁନ୍ଦର ॥୮୦॥
ଶ୍ରୀରାମର ବଚନ ଉତୁରିଲାକ ଯହୁଁ ।
ସମସ୍ତେ ସନ୍ତୋଷ ଯେ ହୋଇଲେକ ତହୁଁ ।
ଦୁଇଠାବ କରି ଅଗ୍ନି ଆରୋପଣ କଲେ ତହୁଁ ।
ଶୁଦ୍ଧ ଦାରୁ ଆଣି କୁଢ଼ କୁଢ଼ କରନ୍ତି ।
ଚନ୍ଦନ ଅଗୋରୁ କର୍ପୂର ସିଞ୍ଚନ୍ତି ॥୮୨॥

ଘୃତ ଯବ ତିଳ ଅଗ୍ନିରେ ଢାଳିଲେ ।
ସ୍ୱାହାନ ସାରି ସକଳ ସ୍ତିରୀଗଣ ଅଇଲେ ॥୮୩॥
ନାନା ରତ୍ନ କୁସୁମ ବୃଷ୍ଟି କରନ୍ତି ।
ଦେହ ପ୍ରାଚିତକଇ ଦାନଦକ୍ଷିଣା ଦିଅନ୍ତି ॥୮୪॥
ନଟ ଭଟ ଆବର ବ୍ରାହ୍ମଣ ମିଳିଲେ ।
ସକଳ ଯୁବତୀ କନେକ ବୃଷ୍ଟି କଲେ ॥୮୫॥
ଅନେକ ଛନ୍ଦେ ଦୁନ୍ଦୁଭି ବାଦ୍ୟ ବଜାନ୍ତି ।
ଅଯୋଧ୍ୟା ନରନାରୀ ବେଢ଼ିଣ ଦେଖନ୍ତି ॥୮୬॥
ହସ୍ତେ ଶ୍ରୀଫଳ ଘେନି ଶ୍ରୀରାମର ଜନନୀ ।
ଦଶରଥ ରାଜାଙ୍କର ମୁଦି ସନ୍ତେକ ଘେନି ॥୮୭॥
ଧର୍ମ ନିରଞ୍ଜନ ଆଦିତ୍ୟ ସୁମରଇ ।
ତିନି ପ୍ରଦକ୍ଷିଣ କରି ଅଗ୍ନିରେ ଡେଇଁ ପଡ଼ଇ ॥୮୮॥
ତଦଅନ୍ତରେ କକୟା ସୁମିତ୍ରା ବେନି ।
ଏକ ଠାବ୍ବେ ବସିଲେ ତିନି କାମେନୀ ॥୮୯॥
ଆରେକ କୁଣ୍ଡରେ ଅଗ୍ନି ପ୍ରଖରେ ଜଳି ।
ତହିଁ ଧାସ ଦେଲେ ଏକୋଇଶ ଶତ ବାଳୀ ॥୯୦॥
ଶ୍ରୀରାମର ମୁଖ ଦେଖି ସଦଗତି ଲଭିଲେ ।
ସକଳ ପାତେକ ଉପେଖି ସୁରସଭାରେ ବସିଲେ ॥୯୧॥
ଯହିଁ ଯାଇ ବସିଛନ୍ତି ଦଶରଥ ନୃପତି ।
ବେଢ଼ି ବସିଲେ ସକଳ ଯୁବତୀ ॥୯୨॥
ଦେଖି ସୁରପତି ଅନେକ ପ୍ରଶଂସା କଲା ।
ଧନ ରତ୍ନ କରି ବସ୍ତ୍ର ଅଳଙ୍କାର ଦେଲା ॥୯୩॥
ଭାରିଯାନ୍ତ ଦେଖି ଦଶରଥ ମନ ତୋଷ କରଇ ।
ଅମର ସ୍ୱର୍ଗ ସଭାରେ ନିଶ୍ଚନ୍ତେଣ ବସଇ ॥୯୪॥

## ସଂସ୍କାର ବିଧି

ଏଥୁ ଅନନ୍ତରେ ଶୁଣ ପଣ୍ଡୁସୁତ ।
ଶୋକଭରେ ନବରେ ପଶନ୍ତି ରଘୁନାଥ ॥୧॥
ପୁତ୍ରଙ୍କୁ କୋଳେଧରି ଶୟନ କରନ୍ତି ।
ଭ୍ରଥ ଲକ୍ଷ୍ମଣ ଦୁଇ ଭାଇ ସନିଧେ ବସିଛନ୍ତି ॥୨॥
ନିଦ୍ରା ନ ମାଡ଼ଇ ଉଚାଣେ ଶୋଇଲେ ।
ଦୁଇ ପୁତ୍ରଙ୍କର ଉପରେ ହସ୍ତ ଦେଲେ ॥୩॥
ଏସନେକେ ଶେଷ ହୋଇଲା ତିମିରି ।
ଶେଯ୍ୟାରୁ ଉଠନ୍ତି ରାମ ଦୁଇ ପୁତ୍ରଙ୍କର କଟି ଧରି ॥୪॥
ମାତାଙ୍କୁ ନ ଦେଖି ଶୋକ ମହାଘୋର ।
ସୀତାର ଗୁଣ ସୁମରି ଦହଇ ଶରୀର ॥୫॥
ବଶିଷ୍ଠ ଶ୍ରୀରାମ ସନିଧିକୁ ଅଇଲେ ।
ମନ୍ତ୍ରୀ ଅମନାତ୍ୟ ବନ୍ଧୁ ଲୋକେ ସନିଧେ ମିଳିଲେ ॥୬॥
ଶ୍ରୀରାମ କହନ୍ତି ଶୁଣସି ତପିଷ୍ଠ ।
ଏ ମୋହର ଆତ୍ମା ପାଇଲା ମହାକଷ୍ଟ ॥୭॥
ପୁତ୍ରଙ୍କୁ ରାଜ୍ୟରେ ଥାପି ମୁଁ ଦେଶାନ୍ତର କରିଯିବି ।
ନାନା ତୀର୍ଥ କରି ମୁଁ ଏ ଦେହ ଝାସିବି ॥୮॥
ଏ ରାଜ୍ୟରେ ଥିବାକଇ ନ ବଳଇ ଚିତ୍ତ ।
ବିଚାରି ଆଜ୍ଞା ଦେବା ପିତାମୟ ସୁତ ॥୯॥
ବଶିଷ୍ଟେ କହନ୍ତି ଶୁଣସି ଚାପହସ୍ତା ।
ବଇରାଗ ନୁହ ତେଜସି ମନବ୍ୟଥା ॥୧୦॥
ଗର୍ଭଧାରୀ ଜନନୀ ତୋହର ଅଗ୍ନିରେ ପଶିଲେ ।
ଆବର ସମସ୍ତ ଜନନୀ ତୋହର ଅଗ୍ନିରେ ଧାସ ଦେଲେ ॥୧୧॥
ସୀତା ବିନାଶ ତୋହର ମନରମଣି ।
ଏ କାଳକଇ ଉଚିତ୍ତ ନୁହଇ ଏ ବାଣୀ ॥୧୨॥
ଅପବିତ୍ର ଶରୀର ମନ୍ଦିରୁ ବାହାର ହୋଇ ନ ଯୋଗାଇ ।
ତୀର୍ଥକୁ ନ ଗମି ପରଅନ୍ନ ଯୁଗତ ନୋହଇ ॥୧୩॥
ବିଶେଷେ କୁମାରେ ହୋଇଲେ ମାତୃହୀନ ।
ତୋତେ ନ ଦେଖି ସେ ଉଛର୍ଗିବେ ମନ ॥୧୪॥
ତୋହର ମାତାଏ ଯେବେ ଜୀବନ୍ତେଣ ଥାନ୍ତେ ।
ଏ କୁମାରଙ୍କୁ ସେ ପ୍ରତିପାଳନ୍ତେ ॥୧୫॥
ପିତା ବୋଲି ନ ଜାଣନ୍ତେ ଜନେକ ଘରେ ଥିଲେ ।
ରାଜ୍ୟର କଥା କିଛି ହିଁ ନ ଜାଣିଲେ ॥୧୬॥
ମାତାର ବିହୁନେ ଏହାଙ୍କର ମନେଣ ଶୋଧ ନାହିଁ ।
କେସନେକ କରିବୁ ପୁତ୍ରଙ୍କର ଭାରିଯା ନାହିଁ ॥୧୭॥
ଆଗତ ବରଷେ ଶରୀର ଶୁଦ୍ଧ ହୋଇବୁ ।
ତେବେ ସେ କୁମରଙ୍କୁ ବିଭା କରାଇବୁ ॥୧୮॥
ତୋହର ତିନି ଭାଇଙ୍କର ତିନି କୁମାର ଅଛନ୍ତି ।
ଏହାଙ୍କୁ ବିଭା କଲେ ସେ ଧର୍ମ ବର୍ଧତି ॥୧୯॥
ତେବେ ସେ ରାଜ୍ୟରେ ଅଭିଷେକ କରିବୁ ।
ଏବେ ଧଇର୍ଯ୍ୟପଣେ ଥିବୁ ବଇରାଗ ନୋହିବୁ ॥୨୦॥
ତଦଅନ୍ତରେ ବିଚାରକୁ ମିଳଇ ଯେବେ ।
ନାନା ତୀର୍ଥକୁ ତୁହି ଯିବୁ ତେବେ ॥୨୧॥

ଏବେ ତୁ ଶତ୍ରୁଘନ ତହିଁକି ବେଗେ ବରଗ ଦୂତ ।
ସେ ଜାଣିମ ନା ତାହାର ଗର୍ଭଧାରୀ ହୋଇବାର ହତ ॥୨୨॥
ବଶିଷ୍ଠଙ୍କର ବଚନ ଯହୁଁ ଶ୍ରୀରାମ ଶୁଣିଲେ ।
ମଧୁକେଶୀ ସାରଥିକି ବେଗେଣ ହକାରିଲେ ॥୨୩॥
ମଧୁବନକଇ ତୁହି ଏହିକ୍ଷଣି ଯିବୁ ।
ଶତ୍ରୁଘନକୁ ମୋହର ଲେଖନ ନେଇ ଦେବୁ ॥୨୪॥
ଶ୍ରୀହସ୍ତେ ପତ୍ର ଲେଖନ କରନ୍ତି ରଘୁନାନ ।
ଏହିକ୍ଷଣି ଆସିବୁ ତୁହି ସୁମିତ୍ରଙ୍କ ନନ୍ଦନ ॥୨୫॥
ସାରଥିର ହସ୍ତରେ ପତ୍ର ରାମ ଦେଲେ ।
ମୁଖ ସମାଦି ବିଶ୍ୱାସ କଥା କହିଲେ ॥୨୬॥
ଏ ମୋହର ମାତା ଅଗ୍ନିରେ ହୋଇଲା ଧାସ ।
ଶତ୍ରୁଘନର ଆଗେ ତୁହି ନ କର ପ୍ରକାଶ ॥୨୭॥
ମାନିତ ଭାଇ ସୋଦର ପ୍ରତାପ ଚୂଡ଼ାମଣି ।
ପ୍ରାଣ ତେଜି ନ ପୁଣ ଏ କଥାନ୍ତ ଶୁଣି ॥୨୮॥
ଶତ୍ରୁଘନକୁ ଆଜର ମଧରେ ଘେନି ଆସିବୁ ।
ମଧୁପୁର ତହିଁର ମନ୍ତ୍ରୀକି ସମର୍ପିବୁ ॥୨୯॥
ଶ୍ରୀରାମର ଫରମାଣ ପାଇଲାକ ଯହୁଁ ।
ତତକ୍ଷଣେ ମଧୁକେଶୀ ରଥେ ବସିଲାକ ତହୁଁ ॥୩୦॥
ନଳର ମନ୍ତ୍ରବିଦ୍ୟା ଉପନେଷଣେ ଗଲା ।
ମଧୁବନ ନଗ୍ରେଣ ଦୁଇ ଘଡ଼ିରେ ପ୍ରବେଶ ହୋଇଲା ॥୩୧॥
ଆସ୍ଥାନେ ବସିଅଛି ଶତ୍ରୁଘନ ବୀର ।
ମଧୁକେଶୀ ମିଳିଲା ସଭାର ଉପର ॥୩୨॥
ମନ ବିରଙ୍ଗ ତାର ପଉରୋଷ ନ ଦିଶଇ ।
ଦେଖି ବିଚାରଇ ଦଶରଥଙ୍କର କନେଷ୍ଟ କୁମରଇ ॥୩୩॥
କେବଣ ଅରଷ୍ଟି ହୋ ଅଯୋଧାରେ ଉପୁଜିଲା ।
ତେଣେ ସେ ମୋହର ତହିଁକି ଦୂତ ଅଇଲା ॥୩୪॥
ଶତ୍ରୁଘନ ପଚାରଇ ଶୁଣ ମଧୁକେଶୀ ।
କିମର୍ଥେ ଅଇଲୁ ତୋହର ମୁଖ ପଉରୋଷ ନ ଦିଶି ॥୩୫॥
ଶୁଭେ ଅଛନ୍ତି ନା ମୋହର ତିନି ଭାଇ ।
ଆରୋଗ୍ୟେ ବ୍ରତନ୍ତି ନା ଆମ୍ଭର ସକଳ ମାତାଇ ॥୩୬॥
କୁମର ତିନି ଗୋଟି କ୍ଷେମେଣ ଅଛନ୍ତି ନା ଭଲେ ।
ସତୀର ବାରତା ରାମ ପାଇଲେ କି ନ ପାଇଲେ ॥୩୭॥
ମଧୁକେଶୀ ବୋଲଇ ଶୁଣସି ମହାବୀର ।
ଲେଖ ଦେଇ ବରଗିଲେ କ୍ଷତ୍ରିବର ସୁନ୍ଦର ॥୩୮॥
ଶୁଣିଣ ଶତ୍ରୁଘନ ଆସ୍ଥାନୁ ଉଠିଲା ।
ପାଏଡ଼ା ପାଡ଼ିଣ ପଣନ୍ତ ପ୍ରସାରି ଶ୍ରୀମୁଖ ଘେନିଲା ॥୩୯॥
ଶ୍ରୀରାମ ଶ୍ରୀମୁଖ ଶ୍ରୀହସ୍ତର ପତ୍ର ।
ମଧୁକେଶୀ ଦେଲା ଶତ୍ରୁଘନର ହସ୍ତ ॥୪୦॥
ପତ୍ର ଘେନି ଶତ୍ରୁଘନ ଶିରେ ଲଗାଇଲା ।
ମୁଦ ଭାଜି ଆପଣେ ଶ୍ରୀମୁଖେ ପଢ଼ିଲା ॥୪୧॥
ପଢ଼ିଣ ଶତ୍ରୁଘନ ଉଦବେଗ ମନ ।
ପାତ୍ର ମନ୍ତ୍ରୀକି କହଇ କୋମଳ ବଚନ ॥୪୨॥
ରାଜ୍ୟ ପ୍ରତିପାଳି ଥିବ ତୁମ୍ଭେ ଭଲେ ।
ସ୍ୱାମୀ ଆଜ୍ଞା ଦେଲେ ଆସିବୁ ଦୂତ ତୁଲେ ॥୪୩॥
ଶୁଣିଣ ମନ୍ତ୍ରୀଗଣେ କହନ୍ତି କର ଯୋଡ଼ି ।
ଭୋ ଦେବ ଶୀଘ୍ରେଣ ଏଥକୁ ଆସିବ ବାହୁଡ଼ି ॥୪୪॥
ଲବଣ ରାଜାର କାଳେ ଯେବଣ ମତେ ଥିଲୁ ।
ତହୁଁ ଅଧିକରେ ଏବେ ଭୋଗ ଭୁଞ୍ଜିଲୁ ॥୪୫॥
ତୁହି ସେ ମାତା ତୁହି ସେ ପିତା ।
ତୁହି ସେ ଆମ୍ଭର ବିହିବିଧାତା ॥୪୬॥
ଶ୍ରୀରାମର ଆଜ୍ଞା ଯେବେ କେମନ୍ତେ ନ ଯିବୁ ।
କ୍ଷତ୍ରିବର ସୁନ୍ଦରକୁ କହି ବେଗେଣ ଆସିବୁ ॥୪୭॥
ମନ୍ତ୍ରୀର ବଚନ ଶୁଣି ଶ୍ରୀରାମର କନେଷ୍ଟ ଭାଇ ।
ତକ୍ଷଣେ ଶତ୍ରୁଘନ ରହୁବର ଆରୋହି ॥୪୮॥
ମଧୁକେଶୀ ରଥ ବାହାଇ ପବନହୁଁ ବେଗ ।
ଶୀଘ୍ରେ ରହୁବର ଗମଇଁ ଗଗନ ମାର୍ଗ ॥୪୯॥
ଅଯୋଧା ନଗ୍ରେ ପ୍ରବେଶ ହୋଇଲେ ଯାଇ ।
ବସିଛନ୍ତି ରାମ ଶୋକ ଭରିତ ହୋଇ ॥୫୦॥
ବଶିଷ୍ଠ ମହାମୁନି ସୁମନ୍ତ ପାତ୍ର ।
ଭ୍ରଥ ଲକ୍ଷ୍ମଣ ଆବର ପାତ୍ର ଅମନାତ୍ୟ ॥୫୧॥
ଲବକୁଶ ଦୁଇଭାଇ ବସିଛନ୍ତି ବିମନେ ।
ତିନି ଭାଇ ବସିଛନ୍ତି ତାହାଙ୍କ ସନିଧାନେ ॥୫୨॥
କାହାରି ମୁଖ ପଉରୋଷ ନ ଦିଶଇ ।
ଦେଖିଣ ଶତ୍ରୁଘନ ଉଡ଼ିଲା ସାହାସଇ ॥୫୩॥
ବଶିଷ୍ଠଙ୍କର ପୟର ଧରି ଓଳଗି ସୁତିଲା ।
ତଦଅନ୍ତରେ ଶ୍ରୀରାମର ସନିଧେ ମିଳିଲା ॥୫୪॥
ଶିରେ କର ଯୋଡ଼ି ଲୋଟଇ ପୟର ତଳେ ।
ଚରଣ ଧୂଳି ସେ ଲଗାଇ କପୋଳେ ॥୫୫॥

ଭ୍ରଥ ଲକ୍ଷ୍ମଣକୁ ହୋଇଲା ନମସ୍କାର ।
ଦେଖିଣ ମଥା ଲୁଆଇଁଲେ କ୍ଷତ୍ରିବର ସୁନ୍ଦର ॥୫୬॥
ଆନ ବେଳେ ଶତ୍ରୁଘନ ଆସଇ ଯେବେ ।
ନଗ୍ର ଉଛବ ରାମ କରନ୍ତି ତେବେ ॥୫୭॥
ଘରେ ଘରେ ଅର୍ଘ୍ୟସ୍ଥାଳି ଘେନିଣ ଆସନ୍ତି ।
ସମସ୍ତ ମାତାଏ ଶତ୍ରୁଘନର ଶିରେ ଦୃବାକ୍ଷତ ଦିଅନ୍ତି ॥୫୮॥
ସେ ଦିନ କଲ୍ୟାଣ ସମାସ୍ୟା ନ ଦେଲା ।
ତହୁଁ ଶତ୍ରୁଘନ ମନେ ବିଚାରିଲା ॥୫୯॥
ନିଶ୍ଚୟ ପ୍ରମାଦ ପଡ଼ିଲାକ ଏଥେ ।
ତେଣୁ ସେ ଦୂତ ବରଗାଇ ଅଣାଇଲେ ଏଥେ ମୋତେ ॥୬୦॥
ଶ୍ରୀରାମର ସନିଧେ ଅଛନ୍ତି ବେନି କୁମାରଇ ।
ତାହାନ୍ତ ଦେଖି ଶତ୍ରୁଘନ ଭ୍ରଥକୁ ପଚାରଇ ॥୬୧॥
ଏ ପୁତ୍ର ଗୋଟିତ ଦେଖିଲା ମୋର ନାହିଁ ।
କାହାର ତନୟେ ଥିଲେ ଅବା କାହିଁ ॥୬୨॥
ପ୍ରତକ୍ଷେଣ ଦିଶନ୍ତି ଏ କ୍ଷେତ୍ରିବର ସାଦ୍ରିଶଇ ।
ରୂପ ଅଭିନବ ଏକ ବୟସଇ ॥୬୩॥
ଭ୍ରଥ କହଇ ହୋ ଶ୍ରୀରାମଙ୍କ ଦୁହେଁ ପୁତ୍ର ।
ବନସ୍ତେ ସୀତାର ଗର୍ଭେ ହୋଇଲେ ଜାତ ॥୬୪॥
ଜନେକ ଋଷିର ରାଜ୍ୟରେ ଥିଲେ ।
ବାଲମୀକ ମହାମୁନି ଶାସ୍ତ୍ର ପଢ଼ାଇଲେ ॥୬୫॥
ଚାଟ ଭିକ୍ଷା ବୁଲି ତଣ୍ଡୁଳ ନିଅନ୍ତି ।
ବାଲମୀକ ମହାଋଷିଙ୍କି ନିତ୍ୟେ ଏହି ଦିଅନ୍ତି ॥୬୬॥
ଏସନେକ କେତେହେ କାଳ ଯେବେ ଗଲା ।
ଆମ୍ଭର ଏଥକଇ ଲବକୁମର ଅଇଲା ॥୬୭॥
ଗୀତ ଶୁଣି ରାମ ହରଷ ହୋଇଲେ ।
ରାମାୟଣ ଗ୍ରନ୍ଥ ସମ୍ପୂର୍ଣ୍ଣ କରି ଶୁଣିଲେ ॥୬୮॥
ସେହି ଦିବସ ଏଥୁ ଲବକୁମର ଗଲା ।
କୁଶକୁମରକୁ ଘେନି ଆରକ ଦିନ ଅଇଲା ॥୬୯॥
ଆଦ୍ୟହୁଁ ରାମାୟଣ ସମସ୍ତେ ହେ ଶୁଣିଲୁ ।
ଏହାଙ୍କ କହନ୍ତେ ପୁତ୍ର ବୋଲି ଜାଣିଲୁ ॥୭୦॥
ଲବକୁଶ ଘେନି କରି ବଶିଷ୍ଠ ସହିତେ ।
ସୀତାମଣ୍ଡଳକଇ ଗଲଇ ସମସ୍ତେ ॥୭୧॥
ଶ୍ରୀରାମକଇ ଦେଖି ସୀତା ମୁଖ ନ ଚହିଁଲା ।
କୋପେ ଜନନୀ ପୃଥିବୀରେ ପଶିଲା ॥୭୨॥
ତହୁଁ ଏଥକୁ କୁମରନ୍ତ ଘେନିଣ ଅଇଲୁ ।
ରଜନୀ ପ୍ରହରକେ କାଲି ପ୍ରବେଶ ହୋଇଲୁ ॥୭୩॥
ସୀତାକଇ ଯହୁଁ ଆମ୍ଭର ମାତାଏ ନ ଦେଖିଲେ ।
ସମସ୍ତ ଜନନୀ ମହାକୋପ କଲେ ॥୭୪॥
ସକଳେ ଅଗ୍ନିରେ ହୋଇଲେ ପ୍ରାଣନାଶ ।
ତେଣେ ସେ ଆମ୍ଭର ସବୁରି ମନ ବିରସ ॥୭୫॥
ତୁହି ଯେ ଏ କଥା ନ ଜାଣିଣ ଥିଲୁ ।
ତେଣୁ ଦୂତ ବରଗି ତୋତେ ଅଣାଇଲୁ ॥୭୬॥
ଶୁଣିଣ ଶତ୍ରୁଘନ ଢଳିଣ ପଡ଼ିଲା ।
ଆତ୍ମା ଉଛର୍ଗିଲା ଚେତନା ହାରିଲା ॥୭୭॥
କ୍ଷଣକେ ଚେତନା ପଶିଲା ଶରୀରଇ ।
ରୋଦନ କରିଣ ସେ ଭ୍ରଥକୁ ପଚାରଇ ॥୭୮॥
ସୀତୟା ଆଣିମାକୁ ଜନେକ ରାଜ୍ୟକୁ ଗଲ ।
ମୋହର ତହିଁକି ଆଗହୁଁ ଦୂତ ନ ପେଷିଲ ॥୭୯॥
ମୁହିଁ ଯାଇ ସତୀକି ପ୍ରବୋଧି କହନ୍ତି ।
ଚରଣେ ପଡ଼ି ଏଥକଇ ଘେନିଣ ଆସନ୍ତି ॥୮୦॥
ସର୍ବଦା ଦୟା କରନ୍ତି ମୋତେ ସୀତା ।
ଯେସନେକ ସୁମିତ୍ରା ଜାନେକୀ ତେସନେକ ମାତା ॥୮୧॥
ଏବେ ଭାଳିଲେ କିସ ପ୍ରୟୋଜନ ।
ଲଲାଟ ଲେଖନ କାହାର ବୋଲେ କରଇ ଆନ ॥୮୨॥
ଏସନେକ କହି ଶତ୍ରୁଘନ ବୀର ।
କୁମରନ୍ତ କୋଳେ ଧରି ଆଶ୍ୱାସଇ ଶରୀର ॥୮୩॥
ଶତ୍ରୁଘନବୋଲି ଯହୁଁ ଲବକୁଶେ ଜାଣିଲେ ।
ଚରଣ ଧରି ଦୁଇ ଭାଇ ପ୍ରଣମିତ ହୋଇଲେ ॥୮୪॥
କଲ୍ୟାଣ କରଇ ସୁମିତ୍ରାର ସାନ ସୁତ ।
ଭୁଜବଳେ କ୍ଷତ୍ରିନ୍ତ କରସି କ୍ଷୟାନ୍ତ ॥୮୫॥
ଲକ୍ଷ୍ମୀ ଅଳଂକୃତ ହୋଉ ଜଗତେ ପାଅ ଧନ୍ୟ ।
ଦୁଇ କୁମରନ୍ତ ଟୋଳି ଧରଇ ଶତ୍ରୁଘନ ॥୮୬॥
ଦୁଇ ଜାନୁରେ ଦୁଇ କୁମରନ୍ତ ବସାଇଲା ।
ଶ୍ରୀରାମର ମୁଖ ଚାହିଁ ଶତ୍ରୁଘନ କହିଲା ॥୮୭॥
ଭୋ ଦେବ ମାତାଏ ମଲେ ସେ ବିଧବା ଯୁବତୀ ।
ମାନଭରେ ପଶିଲା ସୀତୟା ମହାସତୀ ॥୮୮॥
କେସନେକେ ପୁତ୍ର ହୁଅନ୍ତି ଧାରଣ ।
ଏହାକଇ ପୁଣ ସେ କରିବୁ ନା କାରଣ ॥୮୯॥

ମାନଭରେ ହୋଇ କିମ୍ପାଇ ବସିଲୁ ।
ମହତ ପୁରୁଷ ହୋଇ ଅନୀତି କୃତ କଲୁ ॥୯୦॥
କେବଣ ଦୋଷେ ସତୀକି କଲୁ ତେଜ୍ୟା ।
ଇତର ବଚନ ଶୁଣି ଅନମିତେ କଲୁ ଲଜ୍ଜା ॥୯୧॥
ସପତ ପ୍ରଳୟ କଥା ସେ ଜାଣଇ ।
ଏ ବଶିଷ୍ଟଙ୍କର କଥା ଲଂଘିଲୁ କେବଣ କାରଣଇ ॥୯୨॥
ତିନି ଭାଇଙ୍କର ଆମ୍ଭର ଦଇନି ନ ଘେନିଲୁ ।
ତୋହର ସୟଂକୃତେ ଲକ୍ଷ୍ମୀ ତେଜ୍ୟା କଲୁ ॥୯୩॥
କେ ଆନ କରି ପାରଇ ଦଇବର କୃତ ।
ଏକଥା ଶୁଣି ରାମ କପୋଳେ ଦେଲେ ହସ୍ତ ॥୯୪॥
ବଶିଷ୍ଠ କହନ୍ତି ଶୁଣସି ରଘୁପତି ।
ଭ୍ରଥ ଲକ୍ଷ୍ମଣ ଶତୃଘନର ତିନି ଯୁବତୀ ॥୯୫॥
ତାହାଙ୍କର ଗର୍ଭେ ତିନି ପୁତ୍ର ଜାତ ।
ସୀତାର ଭଗ୍ନୀ ଯେ ଜନେକର ଦୋହିତ ॥୯୬॥
ଭ୍ରଥର ନନ୍ଦନ ସୁରଥ ବୋଲି ବିଖ୍ୟାତ ।
ଅଳକାର ଗର୍ଭୁ ହୋଇଅଛି ସମ୍ଭୂତ ॥୯୭॥
ଲକ୍ଷ୍ମଣର ତନୟେ ଉର୍ମିଳାର ଗର୍ଭେ ଜାତ ।
ବିଧଂସରଥ ଯେ ତାହାର ନାମ ବିଖ୍ୟାତ ॥୯୮॥
ତାରା କନ୍ୟା ଗର୍ଭରେ ଶତୃଘନର ନନ୍ଦନ ।
ବୀରବର ନାମ ତାହାର ରୂପେଣ ମଦନ ॥୯୯॥
ଲବକୁଶ ତାଙ୍କର ସେ କନେଷ୍ଟ ହୁଅନ୍ତି ।
ମାସ ମାସକେ ସାନ ଏକ ରୂପ ଦିଶନ୍ତି ॥୧୦୦॥
ସେ ତିନି କାମେନୀ ପଞ୍ଚୁପୁତ୍ର ପାଳିବେ ।
ଏକ ଗର୍ଭରୁ ଉତପତି ପ୍ରାୟେ ବୁଝିବେ ॥୧୦୧॥
ଏବେ ଆମ୍ଭର କଥାଏ ଶୁଣ କ୍ଷତ୍ରିବର ସୁନ୍ଦର ।
କୋପ ଶୋକ ଦେହରୁ ପରିତେଜ୍ୟା କର ॥୧୦୨॥
ଭାଇନ୍ତ କୁମରନ୍ତ ସଙ୍ଗତରେ ଘେନି ।
ଆବର ବିଶେଗ ସୀତୟାର ତିନି ଭଗ୍ନୀ ॥୧୦୩॥
ବନ୍ଧୁ ସୋଦର ତୋହର ଅମନାତ୍ୟ ପ୍ରୀତିଜନ ।
ଏହାଙ୍କର ସମେତେ କରସି ସ୍ନାହାନ ॥୧୦୪॥
ଜଳେ ପଶି ସ୍ନାହାନ କଲେ ଦେହୁ କ୍ରୋଧ ଛାଡ଼ଇ ।
ମାନଭରିତ ଦେହେ ରୋଗ ବଢ଼ଇ ॥୧୦୫॥
ଶୋକଭରିତେ ରାମ ନ ଶୁଣିଲେ ତାହା ।
ତହିଁ ଶୋକ ବସାଇଲେ ଶ୍ରୀରାମ ରଘୁନାହା ॥୧୦୬॥

ଭ୍ରଥ ଲକ୍ଷ୍ମଣ ଶତୃଘନର ତୁଳେ ।
ସନିଧେ ଅଛନ୍ତି ଯେ ପାଞ୍ଚ ଦୁଲାଳେ ॥୧୦୭॥
ବନ୍ଧୁ ସହୋଦର ଏ ଆବର ପାତ୍ର ମନ୍ତ୍ରୀ ।
ସମସ୍ତଙ୍କୁ ଘେନି ସ୍ନାହାନ କରି ଯାନ୍ତି ॥୧୦୮॥
ଅଳକା ଉର୍ମିଳା ତାରା ତିନି କାମେନୀ ।
ଧାତ୍ରୀ ପଣେ ଗମନ୍ତି ତିନି କାମିନୀନ୍ତ ଘେନି ॥୧୦୯॥
ପରିବାରୀମାନ ସମସ୍ତ ଘେନି କରି ।
ଅଳକା ଉର୍ମିଳା ତାରା ଆସନ୍ତି ସ୍ନାହାନକରି ॥୧୧୦॥
ସୀତୟାକୁ ସୁମରି ଜନେକର ତିନି ଦୁଲାଳୀ ।
ଭୂମିରେ ପଡ଼ି ଅଣ୍ଡାଳନ୍ତି ଧୂଳି ॥୧୧୧॥
ହାର ଚିକୁର ଅସମ୍ଭାଳ ବିଗଳିତ କେଶ ।
ଶିରରେ କରତାଡ଼ି ରୋଦନ୍ତି ବିଶେଷ ॥୧୧୨॥
ଭୋ ସତୀ ବିଭା ହୋଇ ଯେ ପିତା ଘରୁ ଅଇଲୁ ।
ତୋତେ ଦେଖନ୍ତେ ପିଅର ଜନନୀ ପାସୋରିଲୁ ॥୧୧୩॥
କକୟା ମହାତ୍ମାଣୀ ମନ୍ଦବୁଧି କଲା ।
ତୋହର ସ୍ୱାମୀକି ବନବାସ ପଠିଆଇଲା ॥୧୧୪॥
ଭ୍ରଥାର ତୁଳେ ତୁହି ବନକଇ ଗଲୁ ।
କନେକ ମୃଗକୁ ତୁହି ଆଶ ବଢ଼ାଇଲୁ ॥୧୧୫॥
ତୋହର ବୋଲେ ରାମଚନ୍ଦ୍ର ଗଲେ ମୃଗମାରି ।
କପଟେ ହରି ତୋତେ ନେଲା ଦଶଗିରି ॥୧୧୬॥
ରାବଣ ଘରେ ତୁହି ବନ୍ଦୀ ପଡ଼ିଥିଲୁ ।
ଅସୁର ଘରେ ଅତି ହିଁ ଦୁଃଖ ପାଇଲୁ ॥୧୧୭॥
କପିବଳ ଘେନି ରାମ ଦଣ୍ଡ କରି ଗଲେ ।
ଅସୁରନ୍ତ ନାଶି ଦଶକନ୍ଧ ଛେଦିଲେ ॥୧୧୮॥
କନେକ ମୃଗଚର୍ମ ଅମଳାଣ ପାଟ ମୃଗନାଭି କସ୍ତୁରୀ ।
ତିନି ଭଉଣୀକି ଦେଲୁ ଯେ ସେନେହେ ଅଧ କରି ॥୧୧୯॥
ତୋହର ଗୁଣ କେସନେକେ ପାସୋରିବୁ ।
ଆବର ତୋହର ପଦ୍ମମୁଖ କାହିଁ ଗୋ ଦେଖିବୁ ॥୧୨୦॥
ଏ ପୁତ୍ର ଦୁଇଗୋଟି ତେଜି କାହିଁକି ତୁ ଗଲୁ ।
କେବଣ ମତେ ମନ ମୁରୁଛି ପାରିଲୁ ॥୧୨୧॥
କାନ୍ଦୁ କାନ୍ଦୁ ଜଳେ ସ୍ନାହାନ କରନ୍ତି ।
ଧାଇ ମୁଦୁସୁଲି ତୁଳେ ଅନେକ ସ୍ତିରୀ ଅଛନ୍ତି ॥୧୨୨॥
ବାହୁଡ଼ି କାମେନୀ ଅନ୍ତଃପୁରେ ପଶିଲେ ।
ନିଜ ମନ୍ଦିରେ ଶ୍ରୀରାମ ପ୍ରବେଶ ହୋଇଲେ ॥୧୨୩॥

ମାତାଙ୍କୁ ନ ଦେଖି ରାମ ମନେ ବିରସ ଛନ ।
ପୁତ୍ରନ୍ତ ଦେଖି ହରଷ ପୁଣି ଘାରଇ ପଞ୍ଚମନ ॥୧୨୪॥
ପୁତ୍ରନ୍ତ କୋଳେ ଧରି ରାମ ସୁତିଲେ ବିମନେ ।
କ୍ଷଣକେ ନିଦ୍ରା ନ ମାଡ଼ଇ କ୍ଷତ୍ରିବରର ନୟନେ ॥୧୨୫॥
ଅରୁଣ ତେଜ ବିକାଶିଲା ଉଦୟେ ଆଦିତ୍ୟ ।
ରାମର ସନିଧେ ମିଳିଲେ ବନ୍ଧୁଜନ ଅମନାତ୍ୟ ॥୧୨୬॥
ପୁରାଣ ବିପ୍ରମାନେ ଅନେକ କଥା କହିଲେ ।
ପ୍ରବୋଧି ରାମକଇ ଅନ୍ନ ଭୁଞ୍ଜାଇଲେ ॥୧୨୭॥
ଜନନୀ ଭାଇ ଆବର ପଞ୍ଚକୁମର ।
ଅନ୍ନ ଭୁଞ୍ଜି ତୋଷ କଲେକ ଶରୀର ॥୧୨୮॥

## ବାର୍ଷିକ ଶ୍ରାଦ୍ଧ

ଏସନେକେ ଦଶ ଦିବସ ବହିଯାନ୍ତେ ।
ପ୍ରେତ କାର୍ଯ୍ୟମାନ ସାରନ୍ତି ବେଦ ଉକତେ ॥୧॥
ଯେ ଯାହାର ମାତାଙ୍କୁ ପିଣ୍ଡ (ସମର୍ପନ୍ତି ।
ବିପ୍ର ପ୍ରୋହିତଙ୍କୁ ଅନେକ) ଦାନ ଦେନ୍ତି ॥୨॥
ଏସନେକ ବଶିଷ୍ଟେ ଦଶ ଦିବସେ କାୟା ଶୁଦ୍ଧ କଲେ ।
ଶତୃଘନକୁ ହକାରି ଶ୍ରୀରାମ କହିଲେ ॥୩॥
ଏବେ ତୁହି ମଧୁବନ ନଗ୍ରକଇ ଯିବୁ ।
ବରଷିକା ଶ୍ରାଧକୁ ବାହୁଡ଼ି ଆସିବୁ ॥୪॥
କୁମରନ୍ତ ବିଭା ବିଧାନ କରିବା ।
ଲବକୁମରକୁ ପାଟ ଦେଇ ରାଜ୍ୟେ ବସାଇବା ॥୫॥
ତହିଁର ଉତ୍ତାରେ ମୁହିଁ ବନକଇ ଯିବି ।
କି ସୁସ୍ଥେ ଆବର ରାଜ୍ୟ ମୁହିଁ ଥିବି ॥୬॥
ଶ୍ରୀରାମର ବଚନ ଏସନେକ ଶୁଣିଲାକ ଯହୁଁ ।
ଶୋକ କରି ଶତୃଘନ କରଯୋଡ଼ି କହିଲାକ ତହୁଁ ॥୭॥
ଭୋ ଦେବ କ୍ଷତ୍ରିବର ପୁଛଇ ମୁହିଁ ତୋତେ ।
ଆବର ମଧୁବନକୁ ପମନ୍ତୁଅଛୁ ମୋତେ ॥୮॥
ସେହି ରାଜ୍ୟରେ କି ମୋହର କାର୍ଯ୍ୟ ।
କ୍ଷଣେକ ତୋତେ ନ ଛାଡ଼ଇ ଦେବରାଜ ॥୯॥
ମୋତେ ଛାଡ଼ି ତୁହି ବନକଇ ଗଲେ ।
ପ୍ରାଣ ହରାଇବିଟି ତୋତେ ନ ଦେଖିଲେ ॥୧୦॥
ଭ୍ରଥ କହଇ ହୋ ସତ୍ୟ ତୋହର ବଚନ ।
ଆବର ସୁଖ ଭୋଗ କିସ ପ୍ରୟୋଜନ ॥୧୧॥
ତାହାଙ୍କର ସଙ୍ଗତେ ତିନି ଭାଇ ଆମ୍ଭେ ଯିବା ।
ଯେଣିକି ଯାଇ କ୍ଷତ୍ରିବର ପଛେ ଗୋଡ଼ାଇବା ॥୧୨॥
ଶୁଣିଣ ଶ୍ରୀରାମ ମଉନ ହୋଇଲେ ।
ଭାଇଙ୍କର କଥା ଅମୃତ ପରାୟେ ବୁଝିଲେ ॥୧୩॥
ଶ୍ରୀରାମ ଲକ୍ଷ୍ମଣ ଭ୍ରଥ ଶତୃଘନ ।
ଅଯୋଧ୍ୟାରେ ବିଶ୍ରାମିଲେ ଦଶରଥର ଚାରି ନନ୍ଦନ ॥୧୪॥
ଚିନ୍ତାରେ ଶରୀର ସରସ ତ ନାହିଁ ।
କ୍ରୋଟ ଅଗ୍ନି ଯେସନେକେ ହୃଦୟ ଦହଇ ॥୧୫॥
ଏସନେକ ଦିନ ଗଣନ୍ତେ ରଘୁପତି ।
ଏକ ବରଷେକ ଯୁଗ ପ୍ରାୟେ ମଣନ୍ତି ॥୧୬॥
ଦିନେକ ଗଲେ କାନ୍ଥେ ଦିଅନ୍ତି ଗାରେ ।
ତିରିଶ ଦିବସ ମାସେକ ପ୍ରକାରେ ॥୧୭॥
ଏସନେକ ବାରମାସ ସମ୍ପୂର୍ଣ୍ଣ ହୋଇଲାକ ଯହୁଁ ।
ପ୍ରୋହିତ ମନ୍ତ୍ରୀକି ହକାରି ରାମ କହନ୍ତି ତହୁଁ ॥୧୮॥
ମୋହର ଭାରିଯା ପାତାଳେ ପ୍ରବେଶ ।
ତାହାର ନିମନ୍ତେ ମାତାଏ ଅଗ୍ନିରେ ଦେଲେ ଧାସ ॥୧୯॥
ବରଷିକା ଯୋଗାଡ଼ କର ହୋ ତଡ଼ତି ।
ଯେସନେକେ ପିତୃଲୋକେ ସନ୍ତୋଷ ହୁଅନ୍ତି ॥୨୦॥
ଆବର ଦେଲେ ମୁହିଁ ଶ୍ରାଧ ନ କରିବି ।
ରାଜ୍ୟ ତେଜି ମୁହିଁ ତୀର୍ଥ କରିଯିବି ॥୨୧॥
ଶ୍ରୀରାମ ଆଜ୍ଞା ଯହୁଁ ମନ୍ତ୍ରୀଗଣେ ଶୁଣିଲେ ।
ଅନେକ ସମ୍ବର୍ବରେ ଶ୍ରାଧ ଯୋଗାଡ଼ କଲେ ॥୨୨॥
କଉଶୁଲ୍ୟାକୁ ଶ୍ରୀରାମ ଶ୍ରାଧ କରନ୍ତି ।
ବେଦ ଉକତେ ପିଣ୍ଡଦାନ ଦିଅନ୍ତି ॥୨୩॥
କକୟାକଇ ଶ୍ରାଧ ବିଧି ଭ୍ରଥ ଦେଲେ ।
ଅନେକ ବ୍ରାହ୍ମଣ ମିଳିଣ ଯେ ଥିଲେ ॥୨୪॥
ଅଳଂକାର ବସ୍ତ୍ର ରତ୍ନ ଦାନ ପାଇଲେ ।
ସୁମିତ୍ରାକୁ ଲକ୍ଷ୍ମଣ ପିଣ୍ଡ ଦାନ ଦେଲେ ॥୨୫॥
ଏକୋଇଶ ଶତ ଦଶରଥଙ୍କର ରାଣୀ ।
ସମସ୍ତକଇ ପିଣ୍ଡଦାନ ଶତୃଘନ କରି ପୁଣି ॥୨୬॥
ସୀତୟାକୁ ଲବ ଶ୍ରାଧ ବିଧି କଲା ।
ସଂସାର ବେଭାରେ ବେଦ ଉକତେ ଦାନ ଦେଲା ॥୨୭॥
ଅନେକ ବ୍ରାହ୍ମଣ ମିଳିଲେ ଅନେକ ଦାନ ପାଇଲେ ।
ଇଷ୍ଟ ବନ୍ଧୁବର୍ଗ ନଗ୍ରର ଯେତେ ଜନ ଆସିଥିଲେ ॥୨୮॥

ସମସ୍ତଙ୍କର ଷଡ଼ରସ ଦେଲେକ ଭୋଜନ ।
ପ୍ରୋହିତ ଅମନାତ୍ୟ ପାତ୍ର ମନ୍ତ୍ରୀମାନ ॥୨୯॥
ସମସ୍ତଙ୍କୁ ବସ୍ତ୍ର ଅଳଂକାର ରାମ ଦେଲେ ।
ଅଯୋଧ୍ୟା ନରନାରୀ ସମସ୍ତେ ହେ ହରଷ ହୋଇଲେ ॥୩୦॥

## କୁମାରଙ୍କ ବିବାହ

ଏସନେକେ ରଜନୀ ହୋଇଲା ପ୍ରଭାତ ।
ମନେ ବିଚାର କରନ୍ତି ରଘୁନାଥ ॥୧॥
ନିତ୍ୟକର୍ମ ସାରି ରାମ ଆସ୍ଥାନେ ବସନ୍ତି ।
ପ୍ରୋହିତ ମନ୍ତ୍ରୀ ଘେନି ବିଚାର କରନ୍ତି ॥୨॥
ସୁନ୍ଦର ବିଚକ୍ଷଣ ଅଛି କାହାର କୁମାରୀ ।
କୁମାରଙ୍କୁ ବିଭା ଯୋଗ କରାଇବି ବିଚାରି ॥୩॥
ଶ୍ରୀରାମ ବଚନ ଶୁଣି ବଶିଷ୍ଠ ତପନିଷ୍ଠି
ଅମନାତ୍ୟ ଘେନି ବସନ୍ତି ସଦଗୋଷ୍ଠୀ ॥ ୪ ॥
ଦୋହିତା ସୁନ୍ଦର ଅଛି କାହାର କହ ।
ମିଥ୍ୟା କହିଲେ ଶ୍ରୀରାମଙ୍କୁ କରିବଟି ଦ୍ରୋହ ॥୫॥
ବଶିଷ୍ଠଙ୍କର ବଚନ ଯହୁଁ ମନ୍ତ୍ରୀଗଣ ଶୁଣିଲେ ।
ସମସ୍ତ ପାତ୍ରମନ୍ତ୍ରୀ ବିଚାରି କହିଲେ ॥୬॥
ସୁମନ୍ତ ମନ୍ତ୍ରୀର ପୁତ୍ର ଶ୍ରାବନ୍ତଇ ।
ତାହର ଭାରିଯା ନାମ ରୂପମୟୀ ॥୭॥
ସେହି କାମେନୀର ଗର୍ଭେ ଦୁଇ କୁମାରୀ ଉତପତି ।
ସୁନ୍ଦର ଦେଖି ନାମ ଦେଲେ ଚନ୍ଦ୍ରକାନ୍ତି ଗୁଣମତି ॥୮॥
ଲବକୁମାରଙ୍କଇ ଚନ୍ଦ୍ରକାନ୍ତି ବରିଲେ ।
ଗୁଣମତି କନ୍ୟାକୁ କୁଶକୁ କରିଲେ ॥୯॥
ଭଗଦତ୍ତ ନାମେ ଅଯୋଧ୍ୟାର ମନ୍ତ୍ରୀ ।
ତାହାର ଭାରିଯାର ନାମ ପ୍ରଭାବତୀ ॥୧୦॥
ସେ ଯୁବତୀର ଗର୍ଭେ ଜାତ ସୁକେଶୀ ନାମ କୁମାରୀ ।
ଭରଥର ତନୟ ସୁରଥଙ୍କୁ ତାହା ବରି ॥୧୧॥
ଗୁଣାକର ପ୍ରଭାକର ପାତ୍ର ଦୁଇ ଭାଇ ।
ଅତିଭକ୍ତ ସେମାନଙ୍କୁ ରାମଚନ୍ଦ୍ର ସାହି ॥୧୨॥
ଗୁଣାକର ଭାରିଯା ନାମ ସାଚିଶୀଳା ।
କୁସୁମରେଖା କନ୍ୟା ତାହାର ଗର୍ଭେ ଜାତ ହୋଇଲା ॥୧୩॥
ରୂପେ କୁସୁମ ରେଖା ସୁବେଶସ୍ତିରୀ ପଟାନ୍ତର ଶଚୀ ସରି ।
ଲକ୍ଷ୍ମଣର ତନୟ ବିଧଂସରଥଙ୍କଇ ତାହା ବରି ॥୧୪॥
ପ୍ରଭାକର ଘରଣୀ କାମସେଣା ଯୁବତୀ ।
ରୂପେଣ ପଟାନ୍ତର ଦିଅନ୍ତି ଦମୟନ୍ତୀ ॥୧୫॥
କାମସେଣାର ଗର୍ଭେ ମଦନାବତୀ ନନ୍ଦନୀ ।
ଶତୃଘନର ନନ୍ଦନ ବୀରବରଙ୍କଇ ବରିଲେ ସେ କାମେନୀ ॥୧୬॥
ମକର ଶୁକ୍ଳ ଦଶମୀ ଗୁରୁବାରଇ ।
ରେବତୀ ନକ୍ଷତ୍ର ମିଥୁନ ଲଗ୍ନ ପ୍ରଚରଇ ॥୧୭॥
ଜେଷ୍ଟ କନେଷ୍ଟଙ୍କଇ କନ୍ୟା ବରିଲେ ।
କ୍ଷତ୍ରିବିଧି ଯୁଗତେ ହସ୍ତବନ୍ଧନ କରାଇଲେ ॥୧୮॥
ବଶିଷ୍ଠ ମହାମୁନି ସନିଧେ ଅଛନ୍ତି ।
ଅନେକ ବ୍ରାହ୍ମଣେ ଗୋତ୍ର ଉଚାରନ୍ତି ॥୧୯॥
କନ୍ୟାନ୍ତ ସମଯୋଗେ କୁସୁମ ବନ୍ଦାଇଲେ ।
ତଦଅନ୍ତରେ ଲଜ୍ଜା ହୋମ ଆରୋପିଲେ ॥୨୦॥
କନ୍ୟାନ୍ତ ଘେନି କୁମରେ ଅନ୍ତଃପୁରେ ପଶନ୍ତି ।
ଅନେକ କାମେନୀ ହୁଳହୁଳି ଦିଅନ୍ତି ॥୨୧॥
ଅଳକା ଉର୍ମିଳା ତାରା ଜନେକର ତିନି କୁମାରୀ ।
ହରଷ ଆନନ୍ଦେ ପୁତ୍ରବଧୂ କୋଳେ ଧରି ॥୨୨॥
ଦୃବାକ୍ଷତ ଦେଇ କୁମରଙ୍କୁ ବନ୍ଦାନ୍ତି ।
ମହୁଶେଯ୍ୟାରେ ବରକନ୍ୟା ଶୟନ କରନ୍ତି ॥୨୩॥
ରଜନୀ ଶେଷ ହୋଇଲାକ ଯହୁଁ ।
ଶେଯ୍ୟା ଛାଡ଼ି କୁମରେ ଉଠିଲେକ ତହୁଁ ॥୨୪॥
ଯହିଁ ବିଜୟେ କରିଛନ୍ତି କ୍ଷତ୍ରିବର ସୁନ୍ଦର ।
ପ୍ରଣମ୍ୟ କରନ୍ତି ଯାଇ ପଞ୍ଚୁକୁମର ॥୨୫॥
ତଦଅନ୍ତରେ ଭ୍ରଥ ସନିଧକୁ ଗଲେ ।
ଚରଣ ଧରି ସେ ନମସ୍କାର କଲେ ॥୨୬॥
ଲକ୍ଷ୍ମଣ ଶତୃଘନ ସନିଧକୁ ଗଲେ ।
ପଞ୍ଚୁକୁମରେ ଓଳଗ ମେଲାଇଲେ ॥୨୭॥
କଲ୍ୟାଣ କରିଣ ଶିରେ ଚୁମ୍ବନ ଦିଅନ୍ତି ।
ଯେ ଯାହାର କୁମରଙ୍କୁ କୋଳରେ ବସାବନ୍ତି ॥୨୮॥

## ଉତ୍ତରାଧିକାର ବ୍ୟବସ୍ଥା

ଏଥୁ ଅନନ୍ତରେ ଶୁଣ ପଣ୍ଡୁସୁତ ।
ଆସ୍ଥାନେ ବିଜେ କଲେ ରଘୁକୁଳନାଥ ॥୧॥
ବଶିଷ୍ଠ ମହାମୁନିଙ୍କି ସନିଧେ ହକାରନ୍ତି ।
ମନ୍ତ୍ରୀ ଅମନାତ୍ୟେ ଅନେକ ଅଛନ୍ତି ॥୨॥
ବଶିଷ୍ଠଙ୍କର ପୟରେ ରାମ ପ୍ରଣମ୍ୟ କରନ୍ତି ।
ଭ୍ରଥ ଲକ୍ଷ୍ମଣ ଶତୃଘନ ଶିରେ କର ଦେନ୍ତି ॥୩॥

ପଞ୍ଚକୁମରେ ମୁନି ସନିଧିକୁ ଗଲେ ।
ପୟର ଯୁଗଳ ଛୁଇଁ ଓଳଗ ମେଲାଇଲେ ॥୪॥
ମସ୍ତକେ କର ଦେଇ ସମସ୍ତେ ହେ ଉଭା ।
ରଜନୀରେ ଯେହ୍ନେ ତାରାଗଣେ ଶୋଭା ॥୫॥
କୁମରଙ୍କୁ କଲ୍ୟାଣ କରନ୍ତି ବ୍ରହ୍ମାସୁତ ।
ଭୁଜବଳେ କ୍ଷତ୍ରିବରଙ୍କୁ କରସି କ୍ଷୟାନ୍ତ ॥୬॥
ତହୁଁ ଆସ୍ଥାନେ ବସିଲେ ବ୍ରହ୍ମଚାରୀ ।
କ୍ଷତ୍ରିବରସୁନ୍ଦର କର ଯୋଡ଼ିଣ ପଚାରି ॥୭॥
ଭୋ ମୁନି ଶୁଭ ଅନକୂଳ ଖୋଜ ।
ଲବକଇ ଅଯୋଧ୍ୟାପୁରେ କରିବି ମହାରାଜ ॥୮॥
ବଶିଷ୍ଟେ କହନ୍ତି ଶୁଣ ଦାଶରଥି ।
ମକର ଶୁକଳ ତ୍ରେତୟା ଶୁଭ ତିଥି ॥୯॥
ଶୁକ୍ରଙ୍କର ବାର ଯେ ପୁଷ୍ୟା ନକ୍ଷତ୍ର ।
ତେଣୁ ତେଣିକି ବିଳମ୍ବେ ପବିତ୍ର ॥୧୦॥
ଶ୍ରୀରାମ କହନ୍ତି ମୋହର ବିଳମ୍ବେ କାର୍ଯ୍ୟ ନାହିଁ ।
ଦେହ ଅଥିର ଏ ନବରକୁ ଚାହିଁ ॥୧୧॥
ମାତା ନ ଥିଲେ ନ ଶୋହଇ ଅନ୍ତଃପୁରୀ ।
ମାଡ଼ି ପଡୁଅଛି ମୋତେ ଅଯୋଧ୍ୟା ନଗରୀ ॥୧୨॥
ଭୋ ମୁନି ସୀତୟାର ରୂପ ଯେ ପ୍ରତିମା କରାଇଲି ।
ଭଲ ନୋହିଲା ମୋତେ ସେ ହୃଦଗତେ ଶଳି ॥୧୩॥
ଏ ପ୍ରତିମା ଦେଖନ୍ତେ ନ ରହଇ ମୋହର ପ୍ରାଣ ।
ଆବର କଥାଏକ ସମସ୍ତେ ହେ ଶୁଣ ॥୧୪॥
ଶତୃଘନ ଯେବେ ମୋହର ତୁଲେ ଯିବ ।
ମଧୁବନ କଟକେ କେହୁ ନୃପତି ହୋଇବ ॥୧୫॥
ଲବଣକଇ (ମାରି ସେ) ମହାରାଜ୍ୟ ଘେନିଲି ।
ମହାଭାରା ଏକ ମଥାରେ ବସାଇଲି ॥୧୬॥
ରାଜ୍ୟ ଅରକ୍ଷଣ କଲେ ହୋଇବନା ଦୋଷ ।
ବିଚାରି କହନ୍ତୁ ଏ ମହତ ବିଧଂସ ॥୧୭॥
ବଶିଷ୍ଟେ କହନ୍ତି ଶୁଣ କ୍ଷତ୍ରିବର ସୁନ୍ଦର ।
ସାନ ତନୟ ତୋହର କୁଶ କୁମର ॥୧୮॥
ଏ ଯାଇ ମଧୁବନ ନଗ୍ରେ ରାଜା ହୋଉ ।
ଲକ୍ଷ୍ମଣ ଶତୃଘନ ପୁତ୍ର ସଙ୍ଗେ ନେଉ ॥୧୯॥
ବଶିଷ୍ଟଙ୍କର ବଚନ ଯହୁଁ ଶ୍ରୀରାମ ଶୁଣିଲେ ।
ଲବକୁମରକୁ ତତକ୍ଷଣେ ରାଜା କରାଇଲେ ॥୨୦॥

ପାତ୍ର ଅମନାତ୍ୟ ପ୍ରୋହିତ ମିଳନ୍ତି ।
ଲବକୁମରକୁ ପାଟେ ଅଭିଷେକ କରାନ୍ତି ॥୨୧॥
ନଗ୍ର ଲୋକେ ହରଷେ ଦେଖିତ ଅଇଲେ ।
ଅନେକ ବ୍ରାହ୍ମଣକଇ ଦାନ ଦକ୍ଷିଣା ଦେଲେ ॥୨୨॥
ସିଂହାସନେ ବିଜୟେ ଶ୍ରୀରାମର ଜ୍ୟେଷ୍ଠପୁତ୍ର ।
ରୂପେଣ କାମଦେବ ସେ ସାଦୃଶେ ପୁରୁହୂତ ॥୨୩॥
ପ୍ରତିଜ୍ଞାରେ ଯମ (ସେହୁ) ଧୈର୍ଯ୍ୟେ ମେରୁ ଅଚଳ ।
ଏସନେକ ସାଦୃଶ ଶ୍ରୀରାମର ବାଳ ॥୨୪॥
ସିଂହାସନ ଉପେଖି ପଶଇ ନବର ଭିତରେ ।
ହୁଳହୁଳି ଦେଇ ଅର୍ଘ୍ୟ ଦେଲେ ଶିରେ ॥୨୫॥
ତଦନ୍ତରେ କୁଶ (କୁମରକୁ ହକାରି ।
କୋଳେ ବସାଇଣ କ)ହନ୍ତି ଚାପଧାରୀ ॥୨୬॥
ମଧୁବନ ଯେ ତୁମ୍ଭେ ଏହିକ୍ଷଣି ଯିବ ।
ସେ ରାଜ୍ୟେ ରାଜା ହୋଇ ସେ ରାଜ୍ୟ ପାଳିବ ॥୨୭॥
ବିଧଂସ ବୀରବରକଇ ଯେ ତୋହର ସଙ୍ଗେ ନେବ ।

x x x

ହୃଦେଣ ଅହର୍ନିଶି ସୁହୃଦ ହୋଇବ ॥୨୮॥
ମଉଗର୍ବେ ନୋହିବ ନିୟମେଣ ଥିବ ।
ଅନ୍ନ ବସ୍ତ୍ର ଦାନ ଅହର୍ନିଶି ଦେବ ॥୨୯॥
ପାତ୍ର ମନ୍ତ୍ରୀକି ନିତ୍ୟେ କରିବ (ତୋଷ ।
ଆଶ୍ରିତ ଲୋକକଇ ନ କ)ରିବୁ ରୋଷ ॥୩୦॥
ମନ୍ତ୍ରୀବର ବଚନ ନ କରିବୁ ଅବଜ୍ଞା ।
ଅହର୍ନିଶି ତେଜ କରିଥିବୁ ପ୍ରତଗ୍ୟା ॥୩୧॥
ତୋହର ବଚନ ଯେ କରିବୁ ମିଷ୍ଟ ।
ଶତ୍ରୁ ଲୋକକୁ ଆଉ ନ ଥୋଇବୁ ତୋହର ରାଷ୍ଟ୍ର ॥୩୨॥

x x x

ସାରଥିକି ରାଇ କହନ୍ତି ରଘୁବୀର ।
କୁଶକୁମରକୁ ଘେନିଯାଅ ମଧୁବନ ପୁର ॥୩୩॥
କୁଶକୁମରକୁ ରଥରେ ବସାଇଲେ ।
ଆବର ବେନି ଭାଇ ରଥ ଆରୋହିଲେ ॥୩୪॥
(ତିନି ଭାଇଙ୍କର ତିନି ଯୁବତୀ) ।
ପରିବାରୀ ସହିତେ ରଥରେ ବସନ୍ତି ॥୩୫॥
ରତ୍ନାକର ନାମେଣ ମଧୁକେଶୀର ପୁତ୍ର ।
(ସାରଥି ହୋଇ ସେ) ବାହାଇ ରଥ ॥୩୬॥

(ମଧୁକେଶୀ ଶିକ୍ଷା ଦେଲା ନଳର) ସେ ମନ୍ତ୍ର ପ୍ରସନେ ।
ବହନ ରହୁବର ଗମଇ ଗଗନେ ॥୩୭॥
(କ୍ଷଣକେ ମଧୁବନପୁରେ ହୋଇଲେ) ପ୍ରବେଶ ।
ଦେଖି ନଗ୍ରଲୋକେ ହୋଇଲେ ହରଷ ॥୩୮॥
(ଦ୍ୱାରେ ଦ୍ୱାରେ) ପୂର୍ଣ୍ଣକୁମ୍ଭ ସୁବର୍ଣ୍ଣ କଳସ ବସାନ୍ତି ।
କାମଦେବ ଯେସନେକେ ରୂପ ବିକାଶନ୍ତି ॥୩୯॥
ରଥରୁ ଓହ୍ଲାଇ ଆସ୍ଥାନେ ବସନ୍ତି ।
ତିନି କନ୍ୟାଏ ଅନ୍ତଃପୁରେ ପଶନ୍ତି ॥୪୦॥
ସିଂହାସନ ଉପରେ କୁଶ କୁମର ବସଇ ।
ଦୁଇଭାଇ ଚାମର ଧରିଛନ୍ତି ଦୁଇ ହସ୍ତଇ ॥୪୧॥
ମନ୍ତ୍ରୀ ଅମନାତ୍ୟେ ଆସି କରନ୍ତି ଦ୍ରଶନ ।
ସମସ୍ତଙ୍କୁ କୁଶକୁମର କରଇ ସନମାନ ॥୪୨॥
ନେତ ପାଟ ବିବିଧ ଅଳଙ୍କାରନ୍ତ ଦେଲା ।
ମୁକୁତାର ହାର କାହାର କାହାର ଗଳାରେ ଲମ୍ୱାଇଲା ॥୪୩॥
ମଧୁବନର ନରନାରୀ ଯେ ହରଷ ହୋଇଲେ ।
କୁଶକୁମରକୁ ପାଟେ ଅଭିଷେକ କଲେ ॥୪୪॥
ଶ୍ରୀରାମ ଆଜ୍ଞାରେ ସୀତାର କନେଷ୍ଟ ନନ୍ଦନ ।
ଶୁଭେଣ ପ୍ରତିପାଳଇ ଯେ ମଧୁପୁର ଭୁବନ ॥୪୫॥
ଏଥୁ ଅନନ୍ତରେ ଶୁଣ ପଣ୍ଡୁସୁତ ।
କୁଶକଇ ପଠିଆଇ ରଘୁବଂଶ ନାଥ ॥୪୬॥
କୋଳ କରି ଲବକୁମାରଙ୍କୁ ବସାନ୍ତି ।
ଶ୍ରୀରାମ ଆଶ୍ୱାସି ଲବକୁମରଙ୍କୁ କହନ୍ତି ॥୪୭॥
ରାଇଜ ଧର୍ମ କଥା ଶୁଣରେ ନନ୍ଦନ ।
ପ୍ରଜାକଇ ଦେଖିବୁ ପୁତ୍ରର ସମାନ ॥୪୮॥
ନିତ୍ୟେଣ ବଶ୍ୱାନର ପାଇବ ଆହୁତି ।
ପରରାଷ୍ଟ୍ର ବାରତା ଶୁଣୁଥିବୁ ନିତି ।
ପରମ ଚାଟୁ ବଚନ କହନ୍ତି ରଘୁପତି ॥୪୯॥
ଶ୍ରୀରାମ କହନ୍ତି ଯେ ପ୍ରଜା ନ ଦଣ୍ଡିବୁ ।
ଦୋଷ ଅନୁରୂପେ ଅପ୍ରାଧ ବିହିବୁ ॥୫୦॥
ଲକ୍ଷେକ ମାଢ଼ ନାଶ କରଇ ଯେବେ ।
ତାହାକୁ ସେ ନାଶ କରିବୁ ତେବେ ॥୫୧॥
ମନ୍ତ୍ରୀ ବ୍ରାହ୍ମଣେ ଯେ କରିବୁ ନିତ୍ୟେ ସାବଧାନ ।
ଗୁହାରି ଯେ କରଇ ତହିଁକି ହେବୁ ଅବଧାନ।
ଦରିଦ୍ର ଲୋକକୁ ଯେ ଅନ୍ନବସ୍ତ୍ର ଦାନ ॥୫୨॥
ଉତପାତ ଅରଷ୍ଟି (ଯେବେ) ଗ୍ରହପୀଡ଼ା ପଡ଼ଇ ।
ଦାନ ଦେଲେ ସେ ଉତପାତ ହରଇ ॥୫୩॥
ମନ୍ତ୍ରୀ ଅମନାତ୍ୟ ଯେ ପାତ୍ର ବିଧଂସେ ।
ତେସନେକ ଧୀରତି ତୁ ଥୋଇବୁ ପାଶେ ॥୫୪॥
ଦେବତା ବ୍ରାହ୍ମଣଙ୍କୁ ଭଗତି ହୋଇବୁ ।
ଦେବାର୍ଚ୍ଚନ ସାରି ସେ ଆସ୍ଥାନେ ବସିବୁ ॥୫୫॥
ଏ ଯେ ସୁରଥ ଭରଥର ନନ୍ଦନ ।
ଏହାକୁ ଦେଖିବୁ ତୁ ପ୍ରାଣର ସମାନ ॥୫୬॥
ମୋହର ପିତା ଭ୍ରଥକଇ ରାଜ୍ୟ ଦେଲା ।
ମୋତେ ଭଗତେ ରାଜ୍ୟରେ (ନ) ରହିଲା ॥୫୭॥
ସୁବାହୁ ବନେ ଯେ ସେ ଥିଲା ତପ ଦାହି ।
କଷା ବସନ ପରିହରଣେ କନ୍ଦମୂଳ ଖାଇ ॥୫୮॥
ମୁହିଁ ଏ ନଗ୍ରକଇ ଅଇଲଇ ଯେବେ ।
ମୋହର ସଙ୍ଗେ ରାଜ୍ୟକୁ ଅଇଲାକ ତେବେ ॥୫୯॥
ଭାଇଙ୍କର ମହତପଣ କିସ କହିବି ବିଶେଷି ।
ମୋହର ବଚନେ ସେ ଥାନ୍ତି ଦିବାନିଶି ॥୬୦॥
ମଧୁବନ ନଗ୍ରକଇ ଡଗର ବରଗୁଥିବୁ ।
ନିତି କୁଶକୁମରର ବାରତା ପାଇବୁ ॥୬୧॥
ସୂର୍ଯ୍ୟବଂଶେ ମୋହର ଅକାଦ ପୟୋଧି ।
ସମସ୍ତ ଆସ୍ତିଯାକ କରୁଥିବୁ ଆଛାଦି ॥୬୨॥
ମନ୍ତ୍ରୀ ପାତ୍ର ଯେବେ କରନ୍ତି ବିତ ନାଶ ।
ତହିଁକି ମନେ କିଛି ନ କରିବୁ ରୋଷ ॥୬୩॥
ପୁତ୍ରକୁ ଡିଆରି ଅଜ ନୃପତିର ନାତି ।
ବଶିଷ୍ଟ ମହାମୁନିଙ୍କି ସନିଧିକୁ ହକାରନ୍ତି ॥୬୪॥
ମନ୍ତ୍ରୀ ଅମନାତ୍ୟେ ଯେ ସୋଦର ବନ୍ଧୁଜନ ।
ସମସ୍ତେ ହେ ମିଳିଲେ ଯେ ଶ୍ରୀରାମର ସନିଧାନ ॥୬୫॥
ସମସ୍ତ ସାମନ୍ତ ଘେନି ଯେ କରନ୍ତି ବିଚାର ।
ଶୁଣସି ସାବଧାନେ ପଣ୍ଡୁର କୁମାର ॥୬୬॥
କିସ୍କିନ୍ଧା ନଗ୍ରେଯେ ସୁଗ୍ରୀବର ଥିଲା ।
ଶ୍ରୀରାମକୁ ଦର୍ଶନ କରିତ ଅଇଲା ॥୬୭॥
କଦଳୀବନେ ଥିଲା ଯେ ହନୁମନ୍ତ ବୀର ।
ରାମର ତହିଁକି ଅଇଲା ପବନକୁମର ॥୬୮॥
ସିଦ୍ଧ କଦଳୀ ଘେନି ଶ୍ରୀରାମଙ୍କୁ କରଇ ଦର୍ଶନ ।
ଦେଖିଣ ସନ୍ତୋଷ ହୋଇଲେ ରଘୁବଂଶ ରାଜନ ॥୬୯॥

ପୟର ଧରି ସୁଗ୍ରୀବର ପ୍ରଣମିତ କରଇ ।
ମଇତ୍ରକୁ କୋଳ କଲେ କ୍ଷତ୍ରିବର ସୁନ୍ଦରଇ ॥୭୦॥
ବଶିଷ୍ଠଙ୍କର ପୟର ଧରି ଓଳଗଇ କପିରାଜ ।
ପ୍ରଣମ୍ୟ କରଇ ମୁନିକି ଅଞ୍ଜନାର ତନୁଜ ॥୭୧॥
କଲ୍ୟାଣ କରନ୍ତି ବଶିଷ୍ଠ ମହରଷି ।
ଶ୍ରୀରାମ କହନ୍ତି ହନୁମନ୍ତର ମଥା ଆଉଁସି ॥୭୨॥
ତୁହି ହନୁମନ୍ତ କଦଳୀବନକୁ ଗଲୁ ଯହୁଁ ।
ସକଳ ଅରଷ୍ଟି ହୋଇଲାକ ମୋତେ ତହୁଁ ॥୭୩॥
ମନ୍ଦ ବୁଧି କରି ଯେ ସୀତୟାକୁ ନିବାସିଲି ।
ବଶିଷ୍ଠଙ୍କ ବଚନ ସହିତେ ଉପେଖିଲି ॥୭୪॥
ବନସ୍ତେ ସୀତୟା ବହୁତ ଦୁଃଖ ପାଇଲା ।
ଦୁଇ କୁମାର ତାହାର ଗର୍ଭେ ଉପୁଜିଲା ॥୭୫॥
ବାଲମୀକ ମହରଷି ସୀତୟାକୁ ନେଲେ ।
ଜନେକ ମହାମୁନି ରାଜ୍ୟରେ ପ୍ରବେଶ ହୋଇଲେ ॥୭୬॥
ମହାଶାସ୍ତ୍ର ପଢ଼ାଇଲେ ପିତାମହ ଶିଷ୍ୟ ।
ରାମାୟଣ ଚରିତ୍ର ଆଭାସିଲେ ଲବକୁଶ ॥୭୭॥
ଏ ରାଜ୍ୟକଇ ଗୀତ ଗାଇତ ଅଇଲେ ।
ରାମାୟଣ କଥା ସେ ସମସ୍ତ କହିଲେ ॥୭୮॥
ତୋହର ଗାରିମା ଯୁଦ୍ଧରେ ଯେବଣ ମତ ।
ସକଳ ଚରିତ୍ର କହିଲେ ସୀତୟାର ବେନି ସୁତ ॥୭୯॥
ଗତ ଆଗତ କଥା ସମସ୍ତ ଶୁଣିଲି ।
ପଚାରନ୍ତେ ପୁତ୍ର ମୋହର ବୋଲି ଜାଣିଲି ॥୮୦॥
ଲବକୁଶ ଘେନି ଯେ ସୀତୟାକୁ ଗଲୁ ଆଣି ।
ମୋହର ମୁଖ ନ ଚାହିଁଲେ ଜନେକ ଦୁଲଣୀ ॥୮୧॥
ପାତାଳେ ପଶିଲେ ଜନେକ ନନ୍ଦନୀ ।
ତହୁଁ ଅଇଲୁ ବାହୁଡ଼ି ଦୁଇ କୁମରନ୍ତ ଘେନି ॥୮୨॥
ସୀତୟାକୁ ନ ଦେଖି ମାତାଏ କୋପ କଲେ ।
ସମସ୍ତ ଜନନୀ ଯେ ଅଗ୍ନିରେ ଧାସ ଦେଲେ ॥୮୩॥
ବରଷିକା ଶ୍ରାଧ ପତ୍ରିକା ସାରିଲୁ ।
ପଞ୍ଚ କୁମରନ୍ତ ଏବେ ବିଭା କରାଇଲୁ ॥୮୪॥
କୁଶକୁମର ମଧୁବନକଇ ଗଲା ।
ଲକ୍ଷ୍ମଣ ଶତୃଘନ ଏ ଦୁହିଁଙ୍କର ପୁତ୍ର ସଙ୍ଗେ ନେଲା ॥୮୫॥
ଏ ମୋହର ପରମ ଆତ୍ମା ଲବକୁମର ।
ଅଯୋଧ୍ୟା ନଗ୍ରକଇ କଲି ରାଜ୍ୟଧର ॥୮୬॥
ଭଲ ହୋଇଲା ତୁହି ଅଇଲୁ ହନୁମନ୍ତ ।
ଆବର ଦେଖିଲି ପ୍ରାଣର ମଇତ୍ର ॥୮୭॥
ଏସନେକ କଥା ଯହୁଁ ରାମଚନ୍ଦ୍ର କହିଲେ ।
ଶୁଣି ସୁଗ୍ରୀ ହନୁମନ୍ତ ବିସ୍ମୟେ ହୋଇଲେ ॥୮୮॥

## ତୀର୍ଥଯାତ୍ରା

ରାମ କହନ୍ତି ଏବେ ତୀର୍ଥକଇ ଯିବି ।
ରାଜ୍ୟରେ ଆବର କି କାର୍ଯ୍ୟେ ଥିବି ॥୧॥
ସୁଗ୍ରୀବର କହଇ ଶୁଣ ରଘୁନାନ ।
ପୂର୍ବେ ଆମ୍ଭେ ଯେ କରିଅଛୁ ପୁନ୍ୟ ॥୨॥
ଯେତେବେଳେ ଇନ୍ଦ୍ରଜିତ ମୋହନା ଶର ମାଇଲା ।
ହେମବନ୍ତ ତହୁଁ ହନୁମନ୍ତ କଳପ ପତ୍ର ଆଣିଲା ॥୩॥
ସେ ପତ୍ର ପ୍ରସନେ ସମସ୍ତେ ବୃତିଲୁ ଯହୁଁ ।
ହନୁମନ୍ତ ହାଥରେ (ପତ୍ର) ଥୋଇଲୁ ତହୁଁ ॥୪॥
ରାବଣ ମାରି ଲଙ୍କାରୁ ଅଇଲୁ ।
ଅଯୋଧ୍ୟା ଦେଶେ ପ୍ରବେଶ ହୋଇଲୁ ॥୫॥
ଅଭିଷେକ ଉଭାରେ ଦାନ ଦେବାର ବେଳେ ।
ତହୁଁ ପତ୍ରେକ ଦେଖିଲୁ ସେ ବେଳେ ॥୬॥
ଚାରି ଭାଇନ୍ତ ଚାରି ପତ୍ର ଘେନି ଦେଲୁ ।
ଆରକ ପତ୍ର ହନୁମନ୍ତ କରେ ଦେଲୁ ॥୭॥
ଅଙ୍ଗଦକଇ ଯାଚନ୍ତେ ସେ ପତ୍ର ଘେନିଲା ।
ସେ ପତ୍ର ଜମ୍ଭେବ ତୋତେ ମାଗି ନେଲା ॥୮॥
ହନୁମନ୍ତ ତହୁଁ କଳପ ହୋଇ ଅଛି ।
ତୋହର ବିପଦ ସେ ନ ଜାଣଇ କିଛି ॥୯॥
ଜମ୍ଭେବ ଯେବେ ଏ କଥା ଜାଣନ୍ତା ।
ସେ ହିଁ ଆମ୍ଭର ତୁଲେ ତୀର୍ଥଯାତ୍ରା ଯାନ୍ତା ॥୧୦॥
ହନୁମନ୍ତ ଘେନି ମୁଁ ତୋହର ତୁଲେ ଯିବି ।
ସର୍ବଦା ଦେବ ତୋତେ ସେବା କରିଥିବି ॥୧୧॥
ତିନି ଭାଇ ତୋହର ତୁଲେ ଯେବେ ଯିବେ ।
ଆମ୍ଭେ ଭୋ ନାଥ କାହିଁକି ଥିବୁ ଏବେ ॥୧୨॥
ଶୁଣିଣ ଶ୍ରୀରାମ କରନ୍ତି ସନମତ ।
ସୁଗ୍ରୀକି କହନ୍ତି ଶୁଣ ମୋହର ମିତ ॥୧୩॥
ମୋତେ ଦେଖିବାର ଅର୍ଥେ ସେ ଅଇଲୁ ।
ପତ୍ନୀ ପୁତ୍ର ଅମନାତ୍ୟ କାହାକୁ ହିଁ ନ କହିଲୁ ॥୧୪॥
ମୋହର ତୁଲେ ଯେବେ ତୀର୍ଥ କରି ଯିବୁ ।

କିସ୍କିନ୍ଧା ବନେ କାହାକଇ ରାଜପଦ ଦେବୁ ॥୧୫॥
ବାହୁଡ଼ି ମୋହର ଯେ ରାଜ୍ୟକୁ ଆସିବାକୁ ନାହିଁ ।
ସୁଖଭୋଗ୍ୟ ରାଜ୍ୟେ ଅଛି ପୁଣ କାହିଁ ॥୧୬॥
ସୀତୟା ମହାସତୀ ଯେବେ ଜୀବନ୍ତେଣ ଥାନ୍ତା ।
କି ଅବା ନବରେଣ ଥାନ୍ତା ମୋହର ମାତା ॥୧୭॥
କିସ ନିମନ୍ତେ ଏ ରାଜ୍ୟକୁ ଆସିବା ।
କାହାର ମୁଖ ଆମ୍ଭେ ନୟନେ ଚାହିଁବା ॥୧୮॥
ସୁଗ୍ରୀବର କହଇ ଶୁଣ କ୍ଷତ୍ରିବରସୁନ୍ଦର ।
ବାଳିର ରାଜ୍ୟ ସିନା କିସ୍କିନ୍ଧା ନବର ॥୧୯॥
ତାହାର ପୁତ୍ର ଅଛଇ ଅଙ୍ଗଦ ବିଦ୍ୟମାନେ ।
ସେ ରାଜା ହୋଇବ କିସ୍କିନ୍ଧା ଭୁବନେ ॥୨୦॥
ତୋହର ପ୍ରସାଦେ ମୁହିଁ ପାଳଇ ରାଜ୍ୟ ।
ତୁହି ଯେବେ ତୀର୍ଥ କରିଯିବୁ ରାଜ୍ୟେ ମୋହର କିସ କାର୍ଯ୍ୟ ॥୨୧॥
ଏସନେକ ଯେବେ କହିଲେ କପିମଣି ।
ଚାଲ ଯିବା ବୋଲି ଆଜ୍ଞା ଦେଲେ ଚାପପାଣି ॥୨୨॥
ବୃକ୍ଷସିଂହ ବୋଲି ବାନରେ ସୁଗ୍ରୀବର ତୁଲେ ଆସିଥିଲେ ।
ତାହାର ମୁଖ ଚାହିଁ କପିରାଜ କହିଲେ ॥୨୩॥
ଏହିକ୍ଷଣି ତୁହି କିସ୍କିନ୍ଧାପୁରକୁ ଯିବୁ ।
ଶ୍ରୀରାମର ଆଜ୍ଞା ଅଙ୍ଗଦକୁ କହିବୁ ॥୨୪॥
କିସ୍କିନ୍ଧା ବନେ ରାଜା ସେ ହୋଉ ।
ସକଳ କପିବଳ ପରିପାଳିଣ ଥାଉ ॥୨୫॥
ତାରା ନାମେଣ ଯେ ମୋହର ଭାବେନୀ ।
ତାହାକୁ କହିବୁ ଚିନ୍ତା ନ କରୁ ସେ କାମେନୀ ॥୨୬॥
ଅଙ୍ଗଦ ରାଜା ହୋଇବ ତାରା ହୋଇବ ରାଜମାତା ।
ଯେମନ୍ତେ ରାଜ୍ୟରେ ବାନରେ ନ ପାଇବେ ଚିନ୍ତା ॥୨୭॥
ଶ୍ରୀରାମର ଆଜ୍ଞାରେ ବୃକ୍ଷସିଂହ ଗଲା ।
କିସ୍କିନ୍ଧା ଭୁବନରେ ପ୍ରବେଶ ହୋଇଲା ॥୨୮॥
ତାରା ଅଙ୍ଗଦକୁ ବସାଇ ଶ୍ରୀରାମର କଥା କହଇ ।
ଶୁଣି ତାରା ଅଙ୍ଗଦ ପଡ଼ିଲେ ମୋହ ଯାଇ ॥୨୯॥
ଚେତନା ପାଇକରି କାନ୍ଦଇ କୁମର ।
କିପାଇଁ ନ ଗଲି ମୁହିଁ ସୁଗ୍ରୀବର ସଙ୍ଗର ॥୩୦॥
ଆଖିରେ ଦେଖନ୍ତି ଶ୍ରୀରାମର ବଦନ ।
ସକଳ ପାତେକ ମୁଁ କରନ୍ତି ଦହନ ॥୩୧॥
ତାରା କହଇ ବୃକ୍ଷସିଂହ ମୁଖ ଚାହିଁ ।
ମୋତେ କିମ୍ପା ସଙ୍ଗେ ନ ନେଲେ ମୋର ସାଇଁ ॥୩୨॥
କ୍ଷତ୍ରିବରର ମୁଁଖ ଯେବେ ଦେଖନ୍ତି ।
ଶତେ କୋଟି ଜନ୍ମର ପାତେକ ହରନ୍ତି ॥୩୩॥
ଏସନେକ ବିଚାରି ତାରା ମନ୍ତ୍ରୀକି ହକାରିଲା ।
ଅଙ୍ଗଦକୁ ରାଜ୍ୟେ ଅଭିଷେକ କରାଇଲା ॥୩୪॥
କିସ୍କିନ୍ଧା ବନେ ଅଙ୍ଗଦ ହୋଇଲା ନୃପତି ।
ରାଜମାତା ହୋଇଲା ତାରା ମହାସତୀ ॥୩୫॥
ଏଥୁ ଅନନ୍ତରେ ଶୁଣ ପଣ୍ଡୁର କୁମର ।
ଶ୍ରୀରାମ କହନ୍ତି ଶୁଣ ବଶିଷ୍ଣ ମୁନିବର ॥୩୬॥
ଏ ମୋହର ତନୟ ଅତି ବାଳମତି ।
ତୁମ୍ଭର ପୟରେ ହୋଇଥିବେ ଭଗତି ॥୩୭॥
ଏହାନ୍ତ ତୁମ୍ଭେ ଆଶ୍ୱାସନା କରିବ ।
ରାଜ୍ୟର ଭାରା ତୁମ୍ଭେ ନିର୍ଭା କରିବ ॥୩୮॥
ମନ୍ତ୍ରୀ ଅମନାତ୍ୟେ ରାଜ୍ୟରେ ଥିବେ ।
ଜନପ୍ରଜାଏ କେହି ଚିନ୍ତା ନ ପାଇବେ ॥୩୯॥
ମୋତେ ଯେମନ୍ତେ ଲବକୁମର ନ ସୁମରଇ ।
ଓହନିଶି ଚିନ୍ତା କରୁଥିବ ମୁନିବରଇ ॥୪୦॥
ପାତ୍ର ମନ୍ତ୍ରୀ ଅମନାତ୍ୟ ସବୁନ୍ତି ଡିଆରିଲେ ।
ଚାରି ମୃତି କଷାବସନ ପରିହରଣ ହୋଇଲେ ॥୪୧॥
ସୁଗ୍ରୀବର ହନୁମନ୍ତ ତପୋଧନ ବେଶ ।
ଦଣ୍ଡ କମଣ୍ଡଳ ଘେନି ମିଳିଲେ ଶ୍ରୀରାମର ପାଶ ॥୪୨॥
ସୀତାର ଚାଚର କେଶ ଯେ ଶ୍ରୀରାମ ଆଣିଥିଲେ ।
ମଥାରୁ ଖୋପା କଟି ଡୋର କଲେ ॥୪୩॥
ବାହେଣ ରୁଦ୍ରାକ୍ଷ ଗଳାରେ କାଠମାଳ ।
ବିଭୂତି ବିଲୋପନ କର୍ଣ୍ଣରେ ତମ୍ଭାର କୁଣ୍ଡଳ ॥୪୪॥
ଏସନେକେ ଷଡ଼ଜଣ ହୋଇଲେକ ସଜ ।
ସୁରମୁନି କହନ୍ତି ରୂପ ଆଦିତ୍ୟ ତେଜ ॥୪୫॥
ଅଳକା ଊର୍ମିଳା ତାରା ତିନି ଭଗନୀ ।
ନବରୁ ବାହାର ହୋଇଲେ ଜନେକ ନନ୍ଦନୀ ॥୪୬॥
ସ୍ୱାମୀଙ୍କର ତୁଲେ ବନକୁ ସଜ ହୋଇଲେ ।
ତାହାକଇ ମଣାଇଁ ବଶିଷ୍ଣ ଋଷି କହିଲେ ॥୪୭॥
ତୁମ୍ଭେ କିମ୍ପା ଗୋ ବନସ୍ତକଇ ଯିବ ।
ଏ ରାଜ୍ୟ ସମ୍ଭାଳି ଅନ୍ତଃପୁରେ ଥିବ ॥୪୮॥
ସ୍ୱାମୀଙ୍କର ତୁଲେ ତୁମ୍ଭେ କି କରିବ ଯାଇ ।

କୌଣସି ସୁଖ ଭୋଗ ଗୋ ବନସ୍ତରେ ନାହିଁ ॥୪୯॥
ଶ୍ରୀରାମ କହନ୍ତି ବଶିଷ୍ଠଙ୍କର ବଚନେ ।
ରାଜମାତା ହୋଇଲ ଏହି ଭୁବନେ ॥୫୦॥
ତୁମ୍ଭର ଗଲେ ଆମ୍ଭନ୍ତ ସୁସ୍ତ ନାହିଁ ।
ନାନା ତୀର୍ଥ କରି ଆମ୍ଭେ ଯିବୁ ତପ ଦାହି ॥୫୧॥
ସୀତଯାକୁ ଘେନି ବନବାସକୁ ଗଲୁ ।
ତାହାର ନିମନ୍ତେ ଅନେକେ ଦୁଃଖ ପାଇଲୁ ॥୫୨॥
ପାପିଷ୍ଠ ରାବଣ ସୀତାକୁ ହରି ନେଲା ।
ବଂଶବର୍ଗ ମରାଇ ଆପଣେ କ୍ଷୟେ ଗଲା ॥୫୩॥
ରାବଣକୁ ମାରି ସୀତାକୁ ଅଗ୍ନି ପରୀକ୍ଷା କଲି ।
ବହୁତ ମୁଖେ ଅପବାଦ ସହି ନ ପାରି ବନବାସ ବିହିଲି ॥୫୪॥
ତେଣେ ସେ ମହାସତୀ ମୋତେ କୋପ କଲା ।
ମୋହର ମୁଖ ନ ଚାହିଁ ପାତାଳେ ପଶିଲା ॥୫୫॥
ଭାରିଯା ସେ ଯେବେ ହୋଇଲା ପ୍ରାଣନାଶ ।
ରାଜ୍ୟରେ ସୁଖ ମୋହର ପ୍ରୟୋଜନ କିସ ॥୫୬॥
ମୋତେ ନ ଛାଡ଼ି ମୋହର ତିନି ଭାଇ ।
ପାର ଯେବେ ତୁମ୍ଭର ସ୍ୱାମୀକି ରୁହାଅ ଗୋ ଆଇ ॥୫୭॥
ନଉଚେତ ବାହୁଡ଼ି ନବରକୁ ଯାଅ ।
ମୋହର ଭାଇକି ମୁହାଁସ ନ ଲଗାଅ ॥୫୭॥
ଶ୍ରୀରାମ ବଚନ ଯହୁଁ ନିଷ୍ଠୁର ଶୁଣିଲେ ।
ଶୋକଭରେ ତିନି ଭଗ୍ନୀ ବାହୁଡ଼ି ଅଇଲେ ॥୫୮॥
ଅନ୍ତଃପୁର ଭିତରେ ହୋଇଲେ ପ୍ରବେଶ ।
ଶୋକଭରେ ତାହାଙ୍କର ମନ ବିରସ ॥୫୯॥
ଏକର ଆଗରେ ଆରେକ କହଇ ।
ଶ୍ରୀରାମ ଯାନ୍ତେ ଆମ୍ଭର ପ୍ରାଣ କିମ୍ପା ରହଇ ॥୬୦॥
ଯାହାର ମୁଖ ସେ ଦେଖିଲେ ମୁକତି ।
ସ୍ୱଦେହେ ବିଷ୍ଣୁ ସେ ମାନବେ ଉତପତି ॥୬୧॥
ଆମ୍ଭର ସୁଖ ଯେବେ ଶେଷ ହୋଇଲା ।
ତେଣେ ସେ ଶ୍ରୀରାମ ଅଯୋଧ୍ୟା ତେଜିଲା ॥୬୨॥
ତେଲରେ ମାଛି ପଡ଼ିଲେ ଯେସନେ ।
ସମସ୍ତେ ହେ ବିଛନ ହୋଇଲେ ତେସନେ ॥୬୩॥
ତଦଅନ୍ତରେ ବଶିଷ୍ଠଙ୍କର ଚରଣ ଧରି ।
ଭାଇନ୍ତ ଘେନି ଶ୍ରୀରାମ ପ୍ରଣମ୍ୟ କରି ॥୬୪॥
ସୁଗ୍ରୀ ହନୁମନ୍ତ ବଶିଷ୍ଠଙ୍କର ଚରଣେ ପ୍ରଣମିତ କରନ୍ତି ।
ଶ୍ରୀରାମ କର ଧରି ତୋଳନ୍ତି ମହାଯତି ॥୬୫॥
କଲ୍ୟାଣ କରନ୍ତି ବ୍ରହ୍ମାଙ୍କର ନନ୍ଦନ ।
ତୋହର ବାଞ୍ଛା ସେ ହୋଉ ସମ୍ପୂର୍ଣ୍ଣ ॥୬୬॥
ପୃଥୀର ଭାରା ସେ ଉଶ୍ୱାସ କରିବୁ ।
ଜନ୍ମେ ଜନ୍ମେ ଉପୁଜି ଦନୁଜନ୍ତ ମାରିବୁ ॥୬୭॥
ତହୁଁଣ ଶ୍ରୀରାମ ଗଲେ ବାହାର ହୋଇ ।
ପିତାର ଯାନ୍ତେ ଲବରାଜା ରୋଦନ କରଇ ॥୬୮॥
ବଶିଷ୍ଠେ କହନ୍ତି ଏ କଥା ନୁହଇ ଉଚିତ ।
ତୋହର କାନ୍ଦନ୍ତେ ପିତା ହୋଇବ ଦୁଃଖିତ ॥୬୯॥
ରାଜ୍ୟରାଷ୍ଟ୍ର କଥାକୁ ମନେଣ ଭାଳିବୁ ।
ଦେହ ଥିର କରି ଶତୃଦର୍ପ ଗଞ୍ଜିବୁ ॥୭୦॥
ବଶିଷ୍ଠଙ୍କର ବଚନ ଶୁଣି ଶୋକ ସମ୍ଭାଳିଲା ।
ସୁରଥକଇ ଘେନି ନବରେ ପଶିଲା ॥୭୧॥
ବଶିଷ୍ଠ ମହାମୁନି ମନ୍ତ୍ରୀ ଅମନାତ୍ୟ ସହିତେ ।
ଜନପ୍ରଜା ଦେଶଘୋଷ ପାଳନ୍ତି ସୁଚିତ୍ତେ ॥୭୨॥

## ସ୍ୱର୍ଗାରୋହଣ

ଏଥୁ ଅନନ୍ତରେ ଶୁଣ ପଣ୍ଡୁସୁତ ।
ନାନା ତୀର୍ଥ ଗମନ୍ତି ଦଶରଥଙ୍କର ସୁତ ॥୧॥
ସୁଗ୍ରୀ ହନୁମନ୍ତ ଅଛନ୍ତି ରାମ ତୁଲେ ।
ଅମାର୍ଗେ ମାର୍ଗେ ନାନା ତୀର୍ଥ ବୁଲିଲେ ॥୨॥
ଯୋଗମାର୍ଗେ କାୟା ସିଦ୍ଧ କଲେ ।
ବ୍ରହ୍ମା ପୁରନ୍ଦର ଯେ ସୁରଗଣ ମେଳେ ॥୩॥
ଦେବରଷି ରାଜରଷି ଦଶଦିଗପାଳେ ।
ସିଦ୍ଧ ସାଧ୍ୟ ଋଷିଗଣ ସକଳେ ॥୪॥
ଗୋମାତ ସହିତେସେ ସୂର୍ଯ୍ୟ ପବନ ।
ଇନ୍ଦ୍ର ଆସ୍ଥାନେ ଅଛନ୍ତି ପୁନ୍ୟ ଲୋକମାନ ॥୫॥
ଶ୍ରୀରାମ ଆସିବାର ସେ ଦୂରହୁଁ ଦେଖିଲେ ।
ଏକ ଆଗରେ ଆରେକ କହିଲେ ॥୬॥
ବିସର୍ବା ଋଷି ପୁତ୍ର ରାବଣ ମହାରାଜା ।
ଦିଗପାଳ ଚକ୍ରବର୍ତ୍ତୀ ପଉଳୋସ୍ତିର ଆତ୍ମଜା ॥୭॥
ମହା ତପ ଆଚାରେ ଈଶ୍ୱର ସେବା କଲା ।
ଈଶ୍ୱର ପ୍ରସନେ ତିନିପୁର ଜିଣିଲା ॥୮॥
ତାହାକଇ ସଂହାତେ କଲାକ ପ୍ରାଣନାଶ ।

ବ୍ରହ୍ମହତ୍ୟା ପାତେକ ଅଲଂଘିତ ଦୋଷ ॥୯॥
ଏ ରାମର କେହି ବଦନ ନ ଚାହଁ ।
ଏ ରାମକଇ କେହି କଥା ନ କହ ॥୧୦॥
ତବଦ ହୋଇ ସମସ୍ତେ ହେ ବସି ।
ଯେ ଯାହାର ମୁଖକୁ ଚାହିଁଣ ହଂସି ॥୧୧॥
ଏମନ୍ତେ ସମସ୍ତେ ହେଟମାଥ କରନ୍ତି ।
ଉତ୍ତର ସମାସ୍ୟା କେହି କାହାକୁ ନ ଦିଅନ୍ତି ॥୧୨॥
ସୁର ସଭାରେ ରାମ ଉଭା ହୋଇଲେ ।
ଦେବତା ଋଷିଙ୍କର ମନ ସେ ଜାଣିଲେ ॥୧୩॥
ସୁଗ୍ରୀବର ମୁଖ ଚାହିଁ କହନ୍ତି ରଘୁନାଥ ।
ଜାଣିଲ କି ମଇତ୍ର ଦେବତାଙ୍କର ଚରିତ୍ର ॥୧୪॥
ଜାନୁରେ ମଥା ଲଗାଇ ହେଟ କରିଣ ବସିଲେ ।
ରାବଣକଇ ମାଇଲି ବୋଲି କେହି କଥା ନ କହିଲେ ॥୧୫॥
ଦଶଗିରି ଆସ୍ଥାନେ ଥିଲେ ଭୃତ୍ୟମତେ ।
ସେ କଥାନ୍ତ ଏବେ ପାସୋରିଲେ ସମସ୍ତେ ॥୧୬॥
ଉପକାର କରନ୍ତେ ହୋଇଲାକ ଦୋଷ ।
ଏହ କଇ କୋପ କଲେ ଧର୍ମ ହୋଇବ ନାଶ ॥୧୭॥
ଗଉରବ ସନମାନ ଯହିଁ ସେ ନପାଇ ।
ସେ ସ୍ଥାନେ ଭୋ ମଇତ୍ର କ୍ଷଣେହେ ନ ଥାଇ ॥୧୮॥
ସୁଗ୍ରୀବର କହଇ ଯୋଡ଼ିଣ ବେନିକର ।
ଭୋ ଦେବ ପୁରୁଷ ପରମାର୍ଥ ମହତକାର ॥୧୯॥
ଯାହା ସେ ନିକରେ କହିଲୁ ବ୍ରହ୍ମଜ୍ଞାନଇ ।
ଉପଗାର କରନ୍ତେ ଯେ ମୂର୍ଖପଣ ଧରଇ ॥୨୪॥
ଅନେକ ପାପ କର୍ମ ସେହୁ ଭୁଞ୍ଜଇ ।
ରଉରୋବ ନର୍କେ ସେ ପାଞ୍ଚ ଯୁଗ ଥାଇ ॥୨୧॥
ସେ ଜନେ ଯେ ପଶୁଯୋନିରେ ଉତପତି ।
ଅନେକ ପାପ କର୍ମ ସେହୁ ଆଚରନ୍ତି ॥୨୨॥
ଦେବୀଙ୍କି ଆଧାର ବଳି ହୁଅନ୍ତି ଭୋଜା ।
ତେବେ ସେ ମାନବେ ଜାତ କରଇ ଜନ୍ତୁ ରାଜା ॥୨୩॥
ମାନବେ ଉପୁଜଇ ଶିବଙ୍କୁ ସେବା କରଇ ।
ଶତେ ପୁରୁଷ ତାକୁ ନର୍କୁ ଉଦ୍ଧରଇ ॥୨୪॥
ସୁଗ୍ରୀବର ବଚନ ଯହୁଁ ରାମଚନ୍ଦ୍ର ଶୁଣିଲେ ।
ସେ ପୁର ଉପେଖି ଛଡ଼ଜଣ ଗଲେ ॥୨୫॥
ଅମର ଭୁବନେ ବିଷ୍ଣୁନାଥର ଯହିଁ ବାସ ।
କନେକମୟ ପୁରେ ହୋଇଲେ ପ୍ରବେଶ ॥୨୬॥
ଅମରପୁର ସେ ନିରହ ନିରଞ୍ଜନ ।
ସେ ଅନାଦି ଦେହରେ ସମସ୍ତେ ଲୀନ ॥୨୭॥
କାୟା କଞ୍ଚ ହୋଇଲେ ଚିରଂଜୀବୀ ।
ଅକ୍ଷୟେ ହୋଇଣ ବୁଲନ୍ତି ତ୍ରିଜୀବୀ ॥୨୮॥
ଯୁଗେ ଯୁଗେ କାୟା ହୋଇଲା ଅମର ।
ଆସି ସମ୍ଭାଇଲେ ଶ୍ରୀ ନାରାୟଣ ଶରୀର ॥୨୯॥
ବିଷ୍ଣୁର ଦେହେ ରାମ ପ୍ରବେଶ ହୋଇଲେ ଯହୁଁ ।
କ୍ଷୀରସମୁଦ୍ରକୁ ଦେବ ବିଜୟେ କଲେ ତହୁଁ ॥୩୦॥
ଅନନ୍ତ ଶେଯ୍ୟାରେ ବିଜୟେ ଶ୍ରୀହରି ।
ପୟର ମଞ୍ଚାଳଇ ରତ୍ନାକର କୁମାରୀ ॥୩୧॥
ଦେଖିଣ ସୀତୟା ଯେ ହରଷ ହୋଇଲେ ।
ମାଣିକ୍ୟର ଦୀପାବଳୀ ଘେନି ଶ୍ରୀହରିଙ୍କି ବନ୍ଦାଇଲେ ॥୩୨॥
କରଯୋଡ଼ି କହଇ ଜନେକ କୁମାରୀ ।
ଭୋ ଦେବ ପୃଥୀର କଷ୍ଟେ ଥିଲୁ ମଞ୍ଚପୁରୀ ॥୩୩॥
ତହିଁ ଯେବେ ମୋତେ ଅପମାନ କଲୁ ।
ଲୋକର କଥା ଶୁଣି ବନସ୍ତକୁ ପଠିଆଇଲୁ ॥୩୪॥
ସେ ମଞ୍ଚପୁରେ ଆମ୍ଭର କାର୍ଯ୍ୟ କିସ ।
ତେବେ ସେ ଭୋ ନାଥ ନ ଧର ସେ ଦୋଷ ॥୩୫॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ସତୀକି ଘେନି ଅନ୍ତଃପୁରକଇ ଗଲେ ॥୩୬॥
କ୍ଷିର ସନିଧେ ବସଇ ବ୍ରହ୍ମାର ଦୁଲଣୀ ।
ସୁସ୍ୱର ନାଦ ଧରି ବାବଇ ବ୍ରହ୍ମବେଣୀ ॥୩୭॥
ଉପରେ ଛାତ୍ରଛାୟା ବିରାଜ ନାମେ ଅହି ।
ମଳୟ ମରୁତ ହିଁ ମନ୍ଦ ମନ୍ଦ ହୋଇ ବହି ॥୩୮॥
ଏସନେକ ନିଦ୍ରା ଶ୍ରୀଜଗନ୍ନାଥ ।
ରାମାୟଣ ଗ୍ରନ୍ଥ ହୋଇଲା ସମାପତ ॥୩୯॥

## ଉପସଂହାର

ମାରକଣ୍ଡେ କହନ୍ତି ଯୁଧିଷ୍ଠି ନୃପତି ।
ସପତକାଣ୍ଡ ରାମାୟଣ ଶୁଣିଲୁ ଦିବ୍ୟ ରୀତି ॥୧॥
ଶତେ ଅଶ୍ୱମେଧ ଫଳ ଲଭିଲୁ ।
କୋଟିଏ ପୁରୁଷ ତୋର ମୁକତି କରାଇଲୁ ॥୨॥
ସୋମବଂଶ ଭୋଜବଂଶ ହୋଇଲା ମୁକତ ।
ଯେତେକ ପାପ ଅର୍ଜିବ ନ ଭେଦିବ ତୋହର ଗାତ୍ର ॥୩॥

ଯିସ ସମ୍ଭବିବ ତୋତେ ଦକ୍ଷିଣା ଦେସି ।
ସାତଖଣ୍ଡ ରାବାୟଣ ଶୁଣିଲା ଫଳେ ସ୍ୱର୍ଗେ ଯାସି ॥୪॥
ଦକ୍ଷିଣା ଦେଲେ ସେ ଫଳଶ୍ରୁତି ପାଇ ।
ଦକ୍ଷିଣା ଦିଅନ୍ତୁ ତୋହର ଚାରିଭାଇ ॥୫॥
ଦୌପଦର ଦୋହିତା ସାଧବୀ ଜିଗ୍ନସେନୀ ।
ଦକ୍ଷିଣା ଦେଉ ଦୃଷ୍ଟଦୁମନର ଭଗ୍ନୀ ॥୬॥
ମାରକଣ୍ଡଙ୍କର ବଚନ ଯୁଧିଷ୍ଠି ଦେବେ ଶୁଣିଲେ ଯହୁଁ ।
ଶଙ୍ଖେ ପାଣି ଭରି ଜଳ ତିଳ ମିଶାଇଲେ ତହୁଁ ॥୭॥
କୁଶହସ୍ତ ହୋଇ ସେ ଗୋତ୍ର ଉଚାରି ।
ଲକ୍ଷେ ସୁବର୍ଣ୍ଣ ବୋଲି ଦକ୍ଷିଣା ନାମ ଧରି ॥୮॥
ଲକ୍ଷେକ ସୁରଭୀ ଯେ ଲକ୍ଷେକ ବସନ ।
ଲକ୍ଷେକ ବ୍ରାହ୍ମଣକଇ ଦେବି ଭୋଜନ ।
ସତ୍ୟ ସତ୍ୟ ବୋଲନ୍ତି ଯୁଧିଷ୍ଠି ରାଜନ ॥୯॥
ସହସ୍ରେକ ବ୍ରାହ୍ମଣକଇ ଶାସନ ମୁହିଁ ଦେବି ।
ହସ୍ତିନାପୁରେ ଯେବେ ରାଜା ହୋଇବି ॥୧୦॥
ଭୀମ ଅର୍ଜ୍ଜୁନ ନକୁଳ ସହଦେବ ଚାରିଭାଇ ।
ଲକ୍ଷେ ଲକ୍ଷେ ରତ୍ନ ଦକ୍ଷିଣା ଶଙ୍ଖେ ପାଣି ତୋଳି ଦେଇ ॥୧୧॥
ଦ୍ରୌପଦ ଦୋହିତା ଯୁଧିଷ୍ଠି ପାଟରାଣୀ ।
ଆପଣାର ହୃଦରେ ବିଚାରଇ ମନେ ଗୁଣି ॥୧୨॥
କିସ ଦକ୍ଷିଣା ମୁହିଁ ମହରଷିକି ଦେବି ।
ମୋହର ପାତେକ କେସନେକେ ବିନାଶିବି ॥୧୩॥
ଲୋକିତ କର୍ମରେ ମୁହିଁ ମହାଦୋଷୀ ।
ପାଞ୍ଚ ଭାଇଙ୍କର ମୁଁ ଏକଇ ବିଳାସୀ ॥୧୪॥
ରାମାୟଣ ଶୁଣିଲି ମୋହର ଦୋଷ ହୋଇଲାକ ପାର ।
ଏତେ ବିଚାରି ଗଳାରୁ କାଢ଼ିଲା ମଣିହାର ॥୧୫॥
ମାରକଣ୍ଡଙ୍କର କରେ ଦେଇ କହଇ ମହାସତୀ ।
ଶୁଣସି ତପୋଧନ ମହାବ୍ରହ୍ମପତି ॥୧୬॥
ପାପ ବିନାଶିଲି ତୋହର ବଚନେ ।
ଅଜ୍ଞାତ ବାସ କେହି ନ ଜାଣନ୍ତି ଆନେ ॥୧୭॥
କୁରୁବୀରନ୍ତ ମାରି ସ୍ୱାମୀ ହସ୍ତିନାଏ ହୋଇବେ ଯେ ରାଜା ।
ସହସ୍ର ସୁବର୍ଣ୍ଣ ତୋତେ ଦେବି ପୟର ପୂଜା ॥୧୮॥
ମାରକଣ୍ଡେ କହନ୍ତି ବାଆ ସିଦ୍ଧ ହୋଉ ।
ଶତ୍ରୁ ବିନାଶି ଯୁଧିଷ୍ଠି ନିଜ ରାଜ୍ୟ ପାଉ ॥୧୯॥
ଶୁଣିଣ ପାଣ୍ଡବେ ଯେ ହରଷ ହୋଇଲେ ।
ମହରଷିର ପୟର ଧରି ଭୂମିରେ ଲୋଟିଲେ ॥୨୦॥
ଶିର ଆଉଁସି କହନ୍ତି ବ୍ରହ୍ମରଷି ।
ମୋହର ବଚନ ଯୁଧିଷ୍ଠି ଦେବ ହୃଦରେ ଧରି ଥାସି ॥୨୧॥
ଦ୍ୱାଦଶ ବରଷ ବନରେ ପାର କଲୁ ।
ରାମାୟଣ ଶୁଣି ସକଳ ପାପ ଦୁଷ୍କୃତ ନାଶ କଲୁ ॥୨୨॥
ଏବେ ଅଜ୍ଞାତବାସ ବରଷେ ଥିବ ।
ମତ୍ସ ଦେଶ ବିରାଟ ରାଜ୍ୟରେ ରହିବ ॥୨୩॥
ଭ୍ରାଥମାନଙ୍କୁ ଚିନ୍ତା ନ ଛାଡ଼ିବୁ ।
ଗୁପତ ପାର ଗଲେ ଯୁଦ୍ଧ ଆରମ୍ଭିବୁ ॥୨୪॥
ସଙ୍ଗତେ ଅଛନ୍ତି ଯେ ସହସ୍ରେ ବିଦ୍ୟୁଜନ ।
ଆବର ଅଛନ୍ତି ଯେ ଅନେକ ବୈଷ୍ଣବ ତପୋଧନ ॥୨୫॥
ଅତିଥ ଅଭ୍ୟାଗତ ଭିକ୍ଷୁକ ପରବାସୀ ।
କାବ୍ୟକୃତ ନଟ ଭାଟ ତପୁସୀ ॥୨୬॥
ତୋହର ସଙ୍ଗତେ ସମସ୍ତେ ହେ ଥିଲେ ।
ରାମାୟଣ ଶୁଣି ପାତେକ ବିନାଶିଲେ ॥୨୭॥
ଏହାକୁ ହିଁ ନିବେଶି ନିଜପୁରକୁ ପଠିଆଅ ।
ମଧୁର କୋମଳ ପ୍ରୀତି ବଚନ କହ ॥୨୮॥
ମାରକଣ୍ଡ ବଚନ ଯୁଧିଷ୍ଠି ଦେବ ଶୁଣିଲେ ।
ଶିରେ କର ଦେଇ ବିନୋଇ କହିଲେ ॥୨୯॥
ଭୋ ମହରଷି ମୋହର ଦୁଃଖ ଦେଖିଲ ।
ନଗ୍ର ଗ୍ରାମ ଉପେଖି ଯେ ବନସ୍ତରେ ଥିଲ ॥୩୦॥
ପଶାରେ ଦୁର୍ଯ୍ୟୋଧନ କପଟ ମୋତେ କଲା ।
ଦ୍ୱାଦଶ ବରଷ ହୋଇଲା ରାଜ୍ୟ ମୋହର ଘେନିଲା ॥୩୧॥
ଆବର ବରଷେକ ଅଜ୍ଞାତେଣ ଥିବୁ ।
ଲୋକିତ ଜ୍ଞାନ ହୋଇଲେ ପୁଣି ବନବାସ ଯିବୁ ॥୩୨॥
ଯେ ଯାହାର ଆଶ୍ରମକୁ ତୁମ୍ଭେ ଯାଅ ।
ଶୁଭ କଲ୍ୟାଣ ବାଞ୍ଛା ମୋତେ ବାଞ୍ଛୁଥାଅ ॥୩୩॥
ସକଳ ବିଦ୍ୟୁଜନେ ଶୁଣି ପରମ ତୋଷ ହୋଇଲେ ।
ବେଦ ଉଚ୍ଚାରିଣ ଯେ ଶୁଭ ଲଗ୍ନ କହିଲେ ॥୩୪॥
ରାମାୟଣ ଶୁଣିଲୁ ଯେ ତୋହର ସରିଲା ବିପଦ ।
ଅଳପ ଦିନେ ଲଭ ସୁଖ ଶିରୀ ସମ୍ପଦ ॥୩୫॥
ମାରକଣ୍ଡେ କହନ୍ତି ବ୍ରାହ୍ମଣଙ୍କୁ ରାଇ ।
ବଶିଷ୍ଠ ତପୋଧନ ସବୁରି ମୁଖ ଚାହିଁ ॥୩୬॥
ଯେ ଯାହାର ଆଶ୍ରମକୁ ତୁମ୍ଭେ ଗମନ କର ।

ହରି ହରି ବୋଲି ରାମାୟଣ ନାମ ଧର ॥୩୭॥
ମାରକଣ୍ଡଙ୍କର ବଚନ ଶୁଣି ସକଳ ତପଚାରୀ ।
ଦୁର୍ଗାମାଧବ ସୁମରି ମଙ୍ଗଳ ଉଚାରି ॥୩୮॥
ହରି ହରି ନରସିଂହ ନାମ କୀର୍ତ୍ତନ କରନ୍ତି ।
ତହୁଁଣ ପାଣ୍ଡବେ ତଦନ୍ତରେ ଉପେଖିଣ ଯାନ୍ତି ॥୩୯॥
ମାରକଣ୍ଡ ମହରଷି ଦ୍ୱାରକାକୁ ଗଲେ ।
ପୁଣ ଇନ୍ଦ୍ର ସଭାରେ ମହରଷି ମିଳିଲେ ॥୪୦॥
ମହରଷିଙ୍କି ପଚାରଇ ମଘବାନ ।
ଯୁଧିଷ୍ଠିରଙ୍କର ତହିଁକି ପଠିଆଇଲୁ ତୋତେ ମହାମୁନ୍ୟ ॥୪୧॥
ପଣ୍ଡୁର ତନୟେ ସେ କଲେ କେବଣ କୃତ୍ୟ ।
ଏଥିର କଥା ମୋତେ କହ ତୁମ୍ଭେ ତଥ୍ୟ ॥୪୨॥
ମାରକଣ୍ଡେ କହନ୍ତି ଶୁଣସି ପୁରନ୍ଦର ।
ଦ୍ୱାଦଶ ବରଷେ ପାଣ୍ଡବେ ବନେ କଲେ ପାର ॥୪୩॥
ଏବେ ବରଷେ ଥିବେ ଗୋପ୍ୟ ହୋଇ ।
ଶୁଣି ହରଷ ହୋଇଲେ ଶଚୀଦେବୀର ସାଇଁ ॥୪୪॥
ପୃଥିବୀର ନିମନ୍ତେ ମାନବ ରୂପ ଧରି ।
ଜନ୍ମେ ଜନ୍ମେ ସେ ଅସୁରନ୍ତ କରିବେ ନିବାରି ॥୪୫॥
ଦୃଷ୍ଟନ୍ତ ଜାତ ତୁ କରାଉ କୁତୂହଳେ ।
ଖେଡ଼ ସରିଲେ ତାହାଙ୍କୁ ବିନାଶୁ ଅବଲୀଳେ ॥୪୬॥
ହରିନାମ ସୁମରିଲେ ଭୁକତି ମୁକତି ।
ସବୁ ବିନାଶି (ପାପ) ପାଇବ ସଦଗତି ॥୪୭॥
ଶ୍ରୀରାମ ରୂପକୁ ଯେ ନିତ୍ୟେ ହେ କରି ଧ୍ୟାନ ।
ଗଙ୍ଗାସ୍ନାହାନେ (କି) ଲଭନ୍ତି ମହାପୁନ୍ୟ ॥୪୮॥
ଶ୍ରୀରାମ ସୁମରିଲେ ଯେ ସମ୍ପଦ ଐଶ୍ୱର୍ଯ୍ୟ ଭୁଞ୍ଜଇ ।
ଭାରିଯା ପରମପ୍ରୀତି ପୁତ୍ରଦୋହିତା ଉପୁଜଇ ॥୪୯॥
ସ୍ତିରୀ ହୋଇଲେ ରାମାୟଣ ଶୁଣଇଁ ଦିବ୍ୟରୀତି ।
ଅଇହୋସୁଲକ୍ଷଣୀ ହୁଅନ୍ତି ସେ ଯୁବତୀ ॥୫୦॥
ଅବସାନ କାଳେ ସେ ନ ଯାଇ ଯମପୁର ।
ଉତ୍ତମ କୁଳେ ଯାଇ ହୁଅଇ ଅବତାର ॥୫୧॥
ଧନଜନ ବିପୁଳ ଭୋଗ୍ୟ ବିଳାସଇ ।
ସର୍ବଦା ଲକ୍ଷ୍ମୀ ତାହା କାନ୍ଧରେ ବସିଥାଇ ॥୫୨॥
ରାମାୟଣ ଚରିତ୍ର ଅକାଦ ପୟୋଧି ।
ସଞ୍ଚପି କହିବାକୁ କିସ ମୋହର ବୁଦ୍ଧି ॥୫୩॥
ଚଞ୍ଚଳ ମନୁଷ୍ୟ ମୁଁ ଶୂଦ୍ରକୁଳେ ଜାତ ।
ଅକ୍ରିୟା ଆଚାର ମନ କି ସଚଇତ ॥୫୪॥
ମୋହର କହନ୍ତେ ଗ୍ରନ୍ଥ ଶୁଦ୍ଧ ହୋଇବ କାହିଁ ।
ରାମ ନାମ ସୁମରନ୍ତେ ପାପ ହୋଇବ ଦହି ॥୫୫॥
ବ୍ରାହ୍ମଣ ବୈଷ୍ଣବ ମହତ ସୁଜ୍ଞଜନ ।
ପଣ୍ଡିତ ଜନମାନେ ମୋହର ଦୋଷ ନ ଘେନ ॥୫୬॥
ସିଦ୍ଧେଶ୍ୱର ଦାସ ମୁଁ ରାମାୟଣ ଗ୍ରନ୍ଥ କହିଲି ।
ଲବକୁଶଙ୍କର ଜନ୍ମ ମୁଁ ପ୍ରକାଶ କଲି ॥୫୭॥
ଉପହାସ୍ୟ କରିବେ ବୋଲି ମୁଁ ଭାଳଇ ମନେମନ ।
କିମ୍ପୂତ ପୁରୁଷେ କହନ୍ତେ କରଇ ଲେଖନ ॥୫୮॥
ତେଣୁ ସେ ହୃଦଗତେ ଭାବନା କଲଇ ।
ଶୁଣ ହେ ସୁଜ୍ଞଲୋକେ ବିଚାରି କହିଲଇ ॥୫୯॥
ରାମାୟଣ କହିବାକୁ କିସ ମୋହର ମତି ।
ରାମାୟଣ ଶୁଣନ୍ତେ ପାପକୁ କିସ ଭୀତି ॥୬୦॥
ଅନନ୍ତ କୋଟି ଭୁବନେ ରାମନାମ ଅନୁପାମ ।
ରାମନାମ ସୁମରନ୍ତେ ସିଦ୍ଧ ହୁଅଇ ଇଷ୍ଟକାମ ॥୬୧॥
ହରି ହର ବ୍ରହ୍ମା ଏ ନୁହନ୍ତି ଭିନ୍ନ ଭିନ୍ନ ।
ରାମାୟଣ ଗ୍ରନ୍ଥ ଏ ପ୍ରତକ୍ଷେ ବ୍ରହ୍ମଜ୍ଞାନ ॥୬୨॥
ଲବକୁଶ ଜନ୍ମ ଶ୍ରୀରାମ ସ୍ୱର୍ଗକୁ ଆରୋହଣ ।
ଏକ ଚିତ୍ତ ହୋଇ ସୁଜ୍ଞ ଜନେ ଶୁଣ ॥୬୩॥
ବେଦ ପୁରାଣେ ରାମନାମ ବିଖ୍ୟାତି ।
ରାମନାମ ସୁମରନ୍ତେ କୋପ ନ କରଇ ଜନ୍ତୁପତି ॥୬୪॥
ସକଳ ଜନଙ୍କର ଜନ୍ମେ ଜନ୍ମେ ପ୍ରବୋଧ ଏହୁ ଗ୍ରନ୍ଥ ।
ମନେ ଯିସ ବିଘଂସଇ ସେ କଥା ହୁଅଇ ପ୍ରାପତ ॥୬୫॥
ରାମାୟଣ ଶୁଣନ୍ତେ ଦୁରତି ବିନାଶ ।
ସିଦ୍ଧେଶ୍ୱର ଦାସ ଗୀତେ ଗାଆନ୍ତି ହରିର ପାଶ ॥୬୬॥
ବିଚିତ୍ର ରାମାୟଣ ବାଲମୀକ କଲା ଗ୍ରନ୍ଥ ।
ପୁସ୍ତକ ଲେଖନେ ହୋଇଲା ସମାପତ ॥୬୭॥

ଶ୍ରୀ ଜଗନ୍ମୋହନ ବିଚିତ୍ର ରାମାୟଣ
ସଦାଜୟେ ସମ୍ପୂର୍ଣ୍ଣ ॥ ଶ୍ରୀ ॥
ଶ୍ରୀରାମ ଚରଣେ ଶରଣ ॥"



## (୧)

## ଗୋପୀନାଥ ନନ୍ଦ

## ଭାଷା ଓ ସାହିତ୍ୟ

...ମହାଭାରତର ବିଷୟବୈଷମ୍ୟର ବିଚାରସନ୍ଦର୍ଭ ଶେଷ ହୋଇଅଛି । ପ୍ରୋକ୍ତ ମହାଗ୍ରନ୍ଥର ପ୍ରସାର ଅସୀମ ଥିବାରୁ ବିଚାରର ସିଦ୍ଧାନ୍ତ ସମାସତଃ ଲେଖି ଯାଉଁ ଯାଉଁ ସୁଦ୍ଧା ତାହାର କଳେବର ଟିକିଏ ବଢ଼ିଯାଇ ଅଛି । ଏପରି ହେବା ମଧ୍ୟ କିଞ୍ଚିତ ଅସମ୍ଭବ ନୁହେଁ । ତଥାପି କେତେକ ପାଠକଙ୍କ ମନରେ ପଠନ ଶ୍ରମରେ ଅସହିଷ୍ଣୁତା ଜନ୍ମି ହୃତ୍କମ୍ପ ପର୍ଯ୍ୟନ୍ତ ଘଟାଇ ଦେଇଅଛି । ଏ ବଡ଼ ଆଶ୍ଚର୍ଯ୍ୟର କଥା । ସେମାନେ ଯତ୍‌କିଞ୍ଚିତ୍ ଦୂରଦର୍ଶିତା ସହ ସମ୍ୟକ୍ ବିଚାର କଲେ ପ୍ରୋକ୍ତ ସନ୍ଦର୍ଭର ଅବୟବମାନ ଅପେକ୍ଷାକୃତ ଆହୁରି କିଞ୍ଚିତ୍ ବଢ଼ିବାର ଥିଲା, ଏହା ଅବଶ୍ୟ ବିଶ୍ୱାସ ସହିତ ସ୍ୱୀକାର କରିବେ । ସେ ଯାହାହେଉ, ବର୍ତ୍ତମାନ ସମାଲୋଚ୍ୟ ଗ୍ରନ୍ଥର ଭାଷା ଓ ସାହିତ୍ୟ ପ୍ରଭୃତିର ବିଚାର ଯଥାସମ୍ଭବ ସଂକ୍ଷିପ୍ତଭାବରେ ଲେଖିବାକୁ ପ୍ରବୃତ୍ତ ହେଉଅଛୁଁ । ଅଭିଜ୍ଞ ପାଠକେ ତଦୀୟ ଗୁଣଦୋଷାହରଣରେ ତତ୍ପର ହେବେ ।

ସାରଳା ମହାଭାରତ ଗ୍ରନ୍ଥର ଭାଷା ସର୍ବତ୍ର ଅତି ସରଳତା ଓ ପ୍ରାଞ୍ଜଳତାରେ ଏକପ୍ରଖ୍ୟ ଅଟେ । ଯେ କୌଣସି ଅଂଶ ଦେଖିବେ, ନିସର୍ଗ ସୌନ୍ଦର୍ଯ୍ୟରେ ମନୋହର । ତତ୍କାଳୀନ ଓଡ଼ିଆ ଭାଷାର ଶୈଶବାବସ୍ଥାରେ ଏତାଦୃଶ ରମଣୀୟତା ଓ ସୌଷ୍ଠବର ଆବିର୍ଭାବ କେବଳ ସାରଳାଦାସ ମହାଶୟଙ୍କର ଅସାଧାରଣ ବୁଦ୍ଧିମତ୍ତା ଓ ସୁହୃଦୟତାର ଫଳ, ଏହା କହିବା ବାହୁଲ୍ୟ ମାତ୍ର । ଏହାଙ୍କ ସମୟର ଖୋଦିତ ଲିପି ଓ ଶାସନପତ୍ର ପ୍ରଭୃତିର ଭାଷା ସହ ଏହି ଭାରତୀୟ ଭାଷାର ତୁଳନା କରିନେଲେ ଏହା ଯେ କବିଙ୍କ ମତିମତ୍ତମତାରୁ ବହୁ ଗୁଣରେ ପରିମାର୍ଜିତ ଓ ପରିବର୍ଦ୍ଧିତ ହୋଇଅଛି, ଏହା ସମସ୍ତେ ଅବଶ୍ୟ ଅକୁଣ୍ଠତାରେ ବିଶ୍ୱାସ କରିବେ । ଏହି ପ୍ରକାଣ୍ଡ ମହାଭାରତ ଗ୍ରନ୍ଥରେ କବି ମହୋଦୟ ନିଜର ପରମାରାଧ୍ୟ ଦେବତାସ୍ୱରୂପ ଅର୍ଭକତ୍ୱାପନ୍ନ ମାତୃଭାଷାକୁ ପରିପୁଷ୍ଟାଙ୍ଗ ଓ ସମାପ୍ତ-ସୌନ୍ଦର୍ଯ୍ୟ କରିବା ପାଇଁ ତାଦୃଶ କୌଣସି ଓଡ଼ିଆ ପୁସ୍ତକାଦିର ଆଶ୍ରୟ କିମ୍ବା ସାହାଯ୍ୟ ମଧ୍ୟ ପାଇପାରି ନ ଥିଲେ । କେବଳ ସ୍ୱକୀୟ ମତିମତ୍ତା ଓ ସୌହୃଦୟବତ୍ତାକୁ ଆଶ୍ରୟ ଓ ସହାୟ କରି ଭାଷାକୁ ଏତେଦୂର ପରିପୁଷ୍ଟ କରିଅଛନ୍ତି ଯେ, ପଞ୍ଚଶତାଧିକ ବର୍ଷ ବ୍ୟାପୀ ସଂସ୍କାର ଓ ସଂବର୍ଦ୍ଧନ ଦ୍ୱାରା ଆଧୁନିକ ସାହିତ୍ୟର ଭାଷା ଯାଦୃଶ ସୌନ୍ଦର୍ଯ୍ୟ ସହ ମସ୍ତକୋତ୍ତଳନ କରି ସ୍ୱୀୟ ରୂପବତୀ ଭଗିନୀମାନଙ୍କୁ ଚମତ୍କୃତ କରୁଅଛି, ତଦପେକ୍ଷା ଏହାର ସୌନ୍ଦର୍ଯ୍ୟ ଅଧିକ ନ୍ୟୂନ ନୁହେଁ । କେତେକ ଅଂଶ ମାତ୍ର ଛାଡ଼ିଦେଲେ ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଭାଷାର ଇଦାନୀନ୍ତନ ରୂପ ଅପେକ୍ଷା ତଦାନୀନ୍ତନ ସହଜ ସୁନ୍ଦର ମୌଳିକ ରୂପରେ ଜାତୀୟତାର ଅଳଙ୍କାରମାନ ସମଧିକତଃ ଜାଜ୍ୱଲ୍ୟମାନ ରହିଅଛି । ଓଡ଼ିଆ ଭାଷାର ଏହି ଜାତୀୟ ଅଳଙ୍କାର ନିଚୟର ପ୍ରଧାନ ସୃଷ୍ଟିକର୍ତ୍ତା ସାରଳାଦାସ କବି କେବଳ, ଏହା କହିବା ଅତ୍ୟୁକ୍ତି ନୁହେଁ । କାରଣ ଏହାଙ୍କ ପୂର୍ବରୁ ଓଡ଼ିଆ ଭାଷାର ପ୍ରଚାର ଗ୍ରନ୍ଥରୂପରେ ନ ଥିଲା, ଏହା କହିଲେ ଚଳେ । ଯାହା କିଛି ଥିବ, ତାହା ଅତି ସାମାନ୍ୟ ଓ ଅତିପ୍ରମିତ । ଏହାଙ୍କ ପୂର୍ବେ 'କେଶବ କୋଇଲି' 'ଗୋପୀଭାଷା' ପ୍ରଭୃତି କେତେକ ଅତି କ୍ଷୁଦ୍ର ପୁସ୍ତକ ଛଡ଼ା ଆଉ କିଛି ଥିବାର କେହି ଜାଣନ୍ତି ନାହିଁ । ଅତଏବ କହୁଁ, ସାରଳାଦାସେ କେବଳ ଓଡ଼ିଆ ଗ୍ରନ୍ଥର ପ୍ରାଥମିକ ପ୍ରବର୍ତ୍ତକ ଏବଂ ଓଡ଼ିଆ ଭାଷାର ପ୍ରଧାନ ପରିପୋଷକ ।

ପାଠକେ ! ବିଚାର କରନ୍ତୁ, ବର୍ତ୍ତମାନ ଯେକୌଣସି ଭାଷା ବା ସାହିତ୍ୟରେ ଲୋକଙ୍କର ଅଭିଜ୍ଞତାର ଉତ୍ପତ୍ତି ସକାଶେ କେତେ ପ୍ରକାର ସୁଗମ ଉପାୟ ଓ ଉପକରଣମାନ ବୁଦ୍ଧି ସମକ୍ଷରେ ଉପସ୍ଥାପିତ ହେଲାଣି; ଏହାର ଶତାଂଶରୁ ଏକ ଅଂଶ ସୌନ୍ଦର୍ଯ୍ୟ ସୁଦ୍ଧା ସାରଳାଦାସଙ୍କ ସମୟରେ ସୁପ୍ରାପ୍ୟ ନ ଥିଲା । ଯେ କୌଣସି ପ୍ରକାର ପ୍ରୟୋଗରେ ହୃଦୟ ସନ୍ଦିହାନ ହେଲେ, ତାହା ଅର୍ହ କି ଗର୍ହ, ଏହା ଭାବିବାକୁ ଆଦର୍ଶରୂପେ ଖଣ୍ଡିଏ ସୁଦ୍ଧା ଓଡ଼ିଆ ପୁସ୍ତକ ନ ଥିଲା, କେବଳ ସ୍ୱକୀୟ ଅସାମାନ୍ୟ ବୁଦ୍ଧିକୁ ସମ୍ବଳ କରି ସାରଳାଙ୍କ ବରପୁତ୍ର ଭାଷାକୁ ଏପରି ସୁନ୍ଦର କରିପାରି ଅଛନ୍ତି, ଏଥିରେ କି କାହାର ଅବିଶ୍ୱାସ ହୋଇପାରେ ? ଆଜିକାଲି ଯେତେ ଲେଖକ ବା କବି ଅଛନ୍ତି, ସେମାନଙ୍କ ମଧ୍ୟରୁ କେତେଜଣ ଏତାଦୃଶ ଅନନ୍ୟାଶ୍ରୟ ରହି ପ୍ରଗାଢ଼ କର୍ମଠବ୍ରତରେ ବ୍ରତୀ ହୋଇ ସିଦ୍ଧିଲାଭ କରିପାରିବେ ? ଆମ୍ଭମାନଙ୍କ ମଧ୍ୟରୁ କେତେଜଣ ଗୋଟିଏ କିଞ୍ଚିତ ଅସାଧାରଣ ଶବ୍ଦ ମାତ୍ରର ନିଃସନ୍ଦିଗ୍ଧ ଅର୍ଥ ପ୍ରତିପତ୍ତି ପାଇଁ ଶବ୍ଦକୋଷ ଆଲୋଡ଼ନ କରୁ ନାହାନ୍ତି ? ଗୋଟିଏ ପ୍ରୟୋଗ ଦୋଷଶୂନ୍ୟ କି ନା, ଜାଣିବା ପାଇଁ ବ୍ୟାକରଣର ପୃଷ୍ଠାମାନ ଲେଉଟାଇ ସୁଦ୍ଧା ସନ୍ଦିଗ୍ଧମନା ହେଉନାହାନ୍ତି ? ଅଥଚ ପ୍ରୟୋଗଟି ରୀତିମତ ରଖି ଜାଣିବା ପାଇଁ ପୂର୍ବ କବିମାନଙ୍କ କାବ୍ୟ ନାଟକାଦିର ଆଶ୍ରୟ ନେଉ ନାହାନ୍ତି କିମ୍ବା ତଦେକଶରଣ ହେଉନାହାନ୍ତି ? ଏସବୁ ଉପାୟ ଓ ଉପକରଣ ସାରଳାଦାସଙ୍କ ସମୟରେ ଥିଲା ? ଏତାଦୃଶ ଆଶ୍ରୟ ସହାୟ ଉପାୟାଦିର ଅଭାବ ସତ୍ତ୍ୱେ ଏ ମହୋଦୟ ନିଜର ନିରଳସ ବୁଦ୍ଧିମତ୍ତା, ପ୍ରତ୍ୟୁତ୍ପନ୍ନମତିମତ୍ତା ଓ ସ୍ମୃତିମତ୍ତାର ବଳରୁ ଏକାଧାରାରେ ପ୍ରାୟ ଷାଠିଏ ସହସ୍ର ପଦ ଏକରୂପ କରି ଲେଖିଯାଇ ଅଛନ୍ତି ।

ଆପଣମାନେ ଏହି ଭାରତର ଯେକୌଣସି ଅଂଶ (ଯାହା କି ଅନୁଲେଖକଙ୍କ କର୍ତ୍ତୃକ କଳୁଷିତ ହୋଇନାହିଁ) ଫିଟାଇ ଦେଖନ୍ତୁ, ସର୍ବତ୍ର ଭାଷା ପରିପାଟୀର ଅନ୍ୟୋଽନ୍ୟତୁଲ୍ୟତା ଏବଂ କବିଙ୍କର ବୁଦ୍ଧି ଓ ଶକ୍ତିର ନିରଳସତା ପରିସ୍ଫୁଟ ପ୍ରତୀୟମାନ ହେଉଅଛି, ଜାଣିପାରିବେ ।

ସାରଳାଦାସ କବିଙ୍କ ସମୟରେ ଓଡ଼ିଆ ଭାଷାର ଶାରୀରିକ ଅବସ୍ଥା ଅତି ଶୈଶବଭାବାପନ୍ନ ଥିଲା । ସେହି ସଂକୀର୍ଣ୍ଣ ଭାଷା ରାଜ୍ୟରେ ସଂସ୍କୃତ ଓ ପ୍ରାକୃତ ଭାଷା ସମ୍ପୂର୍ଣ୍ଣତଃ ଆଧିପତ୍ୟ ସ୍ଥାପନ କରିଥିଲା । ଅତଏବ ସେ ଉଭୟର ଶାସନାନୁସାରେ ଅଥଚ ତଦୀୟ ଦରଦ୍ରବ୍ୟ ବା ସମ୍ପତ୍ତିରେ ଅପରିପୁଷ୍ଟାଙ୍ଗ ଓଡ଼ିଆ ଭାଷାଟିକୁ ପରିପୋଷଣ କରିବାକୁ ହୋଇଥିଲା । ମାତ୍ର ଏହାର ଶାରୀରିକ ଯୋଗଜ ବଳ ଓ ବାହ୍ୟ ଚାକଚିକ୍ୟ ସଂସ୍କୃତ ଭାଷା ଅପେକ୍ଷା ବିଶେଷତଃ ପ୍ରାକୃତର ଅନୁରୂପ ହୋଇଉଠିଲା । ଏହା ଏହି ଭାଷାର ନୈସର୍ଗିକ ଗୁଣ । ସେହି ସମୟରେ ଓଡ଼ିଆ ଭାଷାରେ ପ୍ରାକୃତ ସତ୍ତା ସମଧିକ ଥିବାରୁ ଏହାର ଆଦିମ ଗ୍ରନ୍ଥ ଏହି ମହାଭାରତରେ ବହୁସ୍ଥଳରେ ସଂସ୍କୃତ ଭାଷା ଅପେକ୍ଷା ପ୍ରାକୃତର ରୀତିମତେ ଅନେକଧା ଶାବ୍ଦ ବିଭକ୍ତି କ୍ରିୟା ପ୍ରଭୃତିର ପ୍ରୟୋଗମାନ ନିହିତ କରାଯାଇଅଛି । ବୋଧହୁଏ, ସେହି ସମୟରେ (ପ୍ରାକୃତ ଭାଷାର ଆଘାତପ୍ରାପ୍ତ ଓଡ଼ିଆ ଭାଷାର ଶୈଶବାବସ୍ଥାରେ) ବ୍ୟାବହାରିକ ଭାଷାରେ ଯାହା ଯାହା ଚଳୁଥିଲା, ସେସବୁ ସାରଳାଦାସ କବି ଅବଶ୍ୟ ପ୍ରୟୋଜନାନୁସାରେ କିଛି ସଂସ୍କାର କରି ଲିଖିତ ଭାଷାରେ ଚଳାଇ ଅଛନ୍ତି । ତାହା ନ ହେଲେ ସାମ୍ପ୍ରତିକ ଶାବ୍ଦ ବିଭକ୍ତି ଓ କ୍ରିୟା ପ୍ରଭୃତିରେ ଏତେ ସାଦୃଶ୍ୟ ଲକ୍ଷିତ ହୁଅନ୍ତା ନାହିଁ । ଏହି ମହାଭାରତରେ ଯେଉଁ ଯେଉଁ ବିଭକ୍ତି ପ୍ରତ୍ୟୟାଦିର ପ୍ରୟୋଗ ନିହିତ କରାଯାଇ ଅଛି, ଅଥଚ ସେଥିମଧ୍ୟରୁ ଆଧୁନିକ ଭାଷା ବା ସାହିତ୍ୟରେ ଯାହା ଯାହା ପ୍ରଚଳିତ ନୁହେଁ, ସେସବୁ ତତ୍ପରବର୍ତ୍ତୀ ଶ୍ରୀ ବଳରାମଦାସ ପ୍ରଭୃତି କବିମାନେ ମଧ୍ୟ ପୂର୍ବପ୍ରଦର୍ଶିତ ପନ୍ଥାନୁକରଣରେ ବ୍ୟବହାର କରିଅଛନ୍ତି । ଶ୍ରୀମାନ୍ ସାରଳାଦାସଙ୍କ ପ୍ରଚାରିତ ଓଡ଼ିଆ ପ୍ରୟୋଗ ପ୍ରଣାଳୀର ବିଶେଷତ୍ୱ ଶ୍ରୀମଦ୍‌ଭାଗବତ ରଚୟିତା ଶ୍ରୀ ଜଗନ୍ନାଥଦାସଙ୍କ ସମୟ ପର୍ଯ୍ୟନ୍ତ ପ୍ରାୟତଃ ଅକ୍ଷୁର୍ଣ୍ଣ ଥିଲା । କାବ୍ୟ ପ୍ରବନ୍ଧ ପ୍ରଣେତା ଶ୍ରୀ ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କ ସମୟରୁ ସେଥିରୁ କେତେକ ଅଂଶ ପରିବର୍ତ୍ତିତ ଓ ପରିତ୍ୟକ୍ତ ହୋଇ ଯାଇଅଛି ।

. . . . .

ସାରଳା ଦାସଙ୍କ ସମୟରେ ଓଡ଼ିଆ ଭାଷା ଏକାନ୍ତ ଅସମ୍ପୂର୍ଣ୍ଣ ଥିଲା, ଏହା ସମସ୍ତେ ବିଶ୍ୱାସ କରିବେ । ତଥାପି ଏ ମହାଶୟ ପ୍ରାୟଶଃ ଷଷ୍ଟି ସହସ୍ର ପରିମିତ ପାଠ ମଧ୍ୟରେ କୁତ୍ରାପି ବିଜାତୀୟ ଶବ୍ଦର ଯୋଗ କରିନାହାନ୍ତି । ସେ ସୁପ୍ରାସାଦପୂର୍ଣ୍ଣ ଆକ୍ଷରିକ କୀର୍ତ୍ତିପ୍ରାସାଦ ରଚନାର୍ଥ ତାତ୍କାଳିକ ପ୍ରଚଳିତ ସମଧିକ ଖାଣ୍ଟି ଓଡ଼ିଆ ଶବ୍ଦ ଓ ଅନତିକ୍ଲିଷ୍ଟ ସଂସ୍କୃତ ଶବ୍ଦମାନଙ୍କର ସାହାଯ୍ୟ ନେଇ ଅଛନ୍ତି । ତଥାଚ ଆପଭ୍ରଂଶିକ ତଦ୍ଭବ ଶବ୍ଦ ସୃଷ୍ଟିକ୍ରମରେ ନିଜ ବୁଦ୍ଧିମତ୍ତାକୁ ଅଗ୍ରସର କରି ବର୍ଣ୍ଣଲୋପ, ବର୍ଣ୍ଣାଗମ, ବର୍ଣ୍ଣବିଲୋମ, ବର୍ଣ୍ଣସ୍ଥିତିପରିବୃତ୍ତି, ବର୍ଣ୍ଣପ୍ଲୁତି ପ୍ରଭୃତି ନିୟମରେ ମୂଳ ଶବ୍ଦମାନଙ୍କରୁ ପର୍ଯ୍ୟାପ୍ତ ରୂପେ ତଦ୍ଭବ ଶବ୍ଦସହୋଦର ସୃଷ୍ଟି କରିଅଛନ୍ତି । ଏହାଙ୍କର ଏହି ଶବ୍ଦ ସୃଷ୍ଟି ବଡ଼ ଚମତ୍କାରଜନକ । ଏହାଙ୍କ ପ୍ରୟୋଜିତ ତଦ୍ଭବ ଶବ୍ଦମାନଙ୍କୁ ମୂଳଶବ୍ଦ ସହ ମିଳାଇ ଦେଖିଲେ ଏ ମହାତ୍ମାଙ୍କ ପ୍ରତିଭାର ବଳ କୀଦୃଶ ଥିଲା, ପାଠକେ ତାହା ଅବଶ୍ୟ ବୁଝିପାରିବେ । ଅଥଚ ଓଡ଼ିଆ ଗ୍ରନ୍ଥର ରଚକ ଶ୍ରେଣୀରେ ଏହାଙ୍କର ଆଦିମତ୍ୱ ଥିବାରୁ ଏହାଙ୍କୁ ଓଡ଼ିଆ ତଦ୍ଭବ ଶବ୍ଦ ସୃଷ୍ଟିର ଆଦିବିଧାତା ବୋଲି ଆଦର କରିବେ । ଅତଏବ ଏ ସ୍ଥଳରେ ତତ୍କୃତ କେତେଗୋଟି ତଦ୍ଭବ ଶବ୍ଦର ମାତ୍ର କ୍ରମ ଉଦାହରଣସ୍ୱରୂପ ନିମ୍ନରେ ପ୍ରଦର୍ଶନ କରୁଅଛୁଁ :

ଅମର୍ଷ-ଅମରିଷ, କାତ୍ୟାୟନୀ-କାନ୍ତାନୀ, ପଞ୍ଚାନନ-ପଞ୍ଚାଣ, ଦ୍ୱିତୀୟ-ଦ୍ୱିତି, ଦୁତି, ମୋହପାଶ-ମୁହାଁସ, ଦ୍ରୋହୀ-ଦୋରେହା, ମଦନ-ମୟାଣ, ଉରଗ-ଉଡଙ୍ଗ, ଧିକ୍‌ଭାସ-ଧିଙ୍ଗାସ, ରଜନୀ-ରୟଣୀ, ଉଭୟ-ଓହ,ପତାକା-ପତାଙ୍ଗ, ସାଗର-ସାହେର, ଉରଃଶଲ୍ୟ-ଭରସଲ, ପକ୍ୱ-ପକ୍କୁ, ସଦୃଶ-ସାରିଷ, କନକ-କଣୟ, ଭଗିନୀ-ବହିଣୀ ଇତ୍ୟାଦି ।

ଏସବୁ ଛଡ଼ା ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ଏଥି ମଧ୍ୟରେ ଭୂରି ଭୂରି ବିଶୁଦ୍ଧ ସ୍ୱତନ୍ତ୍ର ଓଡ଼ିଆ ଶବ୍ଦମାନ ପ୍ରୟୋଜିତ କରି ଅଛନ୍ତି । ତତ୍ପରବର୍ତ୍ତୀ ପୌରାଣିକ କବିମାନେ ମଧ୍ୟ ପ୍ରାୟଶଃ ସେ ସମସ୍ତ ଖାଣ୍ଟି ଓଡ଼ିଆ ଶବ୍ଦଗୁଡ଼ିକୁ ନିଜ ନିଜ ପୁରାଣମାନଙ୍କରେ ବ୍ୟବହାର କରିଅଛନ୍ତି । ବିଶେଷତଃ ଏସବୁ ପୁରାଣମାନଙ୍କରେ ପ୍ରଚଳିତ ଥିବାରୁ ଏପରିଗୁଡ଼ିକୁ ପୌରାଣିକ ଶବ୍ଦ କୁହାଯାଇପାରେ । କିନ୍ତୁ ଦୁଃଖର ବିଷୟ, ଏଥି ମଧ୍ୟରୁ ଅନେକ ଶବ୍ଦର ଅର୍ଥାବଗତି ସନ୍ଦେହାସ୍ପଦ ହୋଇ ପଡୁଅଛି । ଅନେକେ ଏପରି ଶବ୍ଦମାନଙ୍କରେ ଅର୍ଥର ଆଭାସ ସୁଦ୍ଧା ଜାଣିପାରୁ ନାହାନ୍ତି । ଏହାର ପ୍ରଧାନ କାରଣ ଆମ୍ଭମାନଙ୍କର ନିଜ ପୁରାଣ ସାହିତ୍ୟ ପ୍ରତି ଅନାସକ୍ତି ମାତ୍ର । ବର୍ତ୍ତମାନ ଆମ୍ଭମାନଙ୍କର ଶିକ୍ଷିତମ୍ମନ୍ୟମାନ ଅଭିମାନ ଏପରି ଏକାନ୍ତ ନିଃସାର ହୋଇ ପଡ଼ିଅଛି ଯେ, ନିଜର ପୂର୍ବସଞ୍ଚିତ ଅଖିଳ ସମ୍ପତ୍ତି ହରାଇ କିମ୍ବା ତାହାର ପ୍ରୟୋଜନମହତ୍ତ୍ୱ ଜାଣି ନ ପାରି ପରଠାରୁ ଭିକ୍ଷାମାର୍ଗଣବ୍ରତରେ ବ୍ରତୀ ହୋଇ ସମ୍ପତ୍ତିଶାଳିତା ଗର୍ବରେ ସ୍ଫୀତ ହେଉଅଛୁଁ - ଗୃହଦେବତାର ପୂଜାର ବ୍ୟତିକ୍ରମ କରୁଅଛୁଁ ।

ଏହାଠାରୁ ବଳି ଲଜ୍ଜାର କଥା କ'ଣ ହୋଇପାରେ ! ଓଡ଼ିଆ ଶବ୍ଦ:

ଅଧାଟି, ଅଗୁଳି, ଅଧାମ, ଅଲଟା, ଉବୁରା, ଆଗବଳି , ଉଚାଉଚ, ଉଡାଉଳ, ଉଦଣ୍ଡ, ତ୍ରିପଣ୍ଡ, ପହିଜ, ତଡ଼କି, ତିହୁଡ଼ି, ବାରାସ, ବିଖଣ୍ଡ, ମେଦ, ଲାଟ(ଖେଳ ବିଶେଷ), ଶୟଳ, ହାଳହୋଳ, ବୃନ୍ଦାହୋଳ, ଖୁରାଣି, ଖୁରୁଷାଣି, ଖୁରିଶାସି, ଖଡିଆଳି, କରାଣ୍ଡି, କଳଟି, କନ୍ଦୁରା, କରୁଣି, କେରଣ୍ଡ, କଳାଟି, ଗୁଆଣି, ଗୁଣ୍ଠୁରି, ଭରହ, ମୁରାଟ, କାକୁଆଳୀ, ଗୁଗୁଚିଆ, ନଡପ, ପଘୁଫଳ, ସୋହଡ, ସିଂହଡା, ସଙ୍କୋଡ଼, ସୋରଡା, ପୋଏଲା, ପାଳଟି, ପରିମୁଣ୍ଡା, ଯୁଆଦ ଇତ୍ୟାଦି । ଏତାଦୃଶ ଅଶେଷ କ୍ଲିଷ୍ଟ ବିଶୁଦ୍ଧ ଶବ୍ଦମାନ ଏହି ଭାରତରେ ବ୍ୟବହୃତ ଅଛି ।

ସଂସ୍କୃତ ପୁରାଣ ରଚୟିତାମାନେ ନିଜ ନିଜ ପୁରାଣମାନଙ୍କର ଚରିତପ୍ରବାହ ମଧ୍ୟରେ ସମାଗତ କେତେକ ଆଖ୍ୟାନପୁରୁଷ ଓ ପ୍ରସିଦ୍ଧ ନଦୀ, ନଗର, କାନନ ପ୍ରଭୃତିର ଅଭିକ୍ଷା ବ୍ୟୁତ୍ପତ୍ତିର ବ୍ୟାଖ୍ୟାନ କରିଥାନ୍ତି । ତଦ୍ଦ୍ୱାରା ସେହି ନାମକରଣର ଐତିହାସିକ ବିବରଣ ସୁସ୍ପଷ୍ଟତଃ ପ୍ରତିପନ୍ନ ହେଉଥାଏ । ଆମ୍ଭମାନଙ୍କର ଆଦିମ ପୁରାଣପ୍ରଣେତା ମଧ୍ୟ ତଦନୁକରଣରେ ଏହି ମହାଭାରତ ବହୁ ସ୍ଥଳରେ ପ୍ରସ୍ତାବାନୁଗତ ଅନେକଗୁଡ଼ିଏ ପଦମାନଙ୍କର ବ୍ୟୁତ୍ପତ୍ତିକ୍ରମ ଦେଇ ଅଛନ୍ତି । ତାହାଙ୍କର ଅଧୀତି-ଜନିତ ପାଣ୍ଡିତ୍ୟ ବା ବ୍ୟୁତ୍ପତ୍ତି-ଶକ୍ତିର ସଦ୍ଭାବ କିମ୍ବା ଅସଦ୍ଭାବ କୀଦୃଶ, ସେଥିରୁ ସ୍ପଷ୍ଟ ଜଣା ଯାଉଅଛି । ପ୍ରଦତ୍ତ ବ୍ୟୁତ୍ପତ୍ତି ସ୍ଥାନମାନ ସମ୍ୟକ୍ ପରିଶୀଳନପୂର୍ବକ ଦେଖିଗଲେ ସୁବିଦିତ ହୁଏ ଯେ ଏହି ମହାକବି ମହାଶୟ ସଂସ୍କୃତ ଶାସ୍ତ୍ରରେ ସମ୍ପୂର୍ଣ୍ଣ ବ୍ୟୁତ୍ପନ୍ନ ନ ଥିଲେ ସୁଦ୍ଧା ତାହାଙ୍କର ଯେ ସଂସ୍କୃତଜ୍ଞାନ ନିତାନ୍ତ ଊଣାଥିଲା, ତାହା ନୁହେଁ । କେତେକ ବ୍ୟୁତ୍ପତ୍ତି ଓ ଯାବତୀୟ ରୂପାଦିବର୍ଣ୍ଣନାର ସ୍ଥାନମାନ ଦେଖିଲେ ଏବଂ ତତ୍ପ୍ରଯୋଜିତ ସଂସ୍କୃତ ଗୂଢ଼ ଶବ୍ଦ ଓ ସମାସାନ୍ତ ପ୍ରଭୃତି ପଦମାନଙ୍କୁ ଦେଖିଲେ ଏବଂ ଓଡ଼ିଆ ଭାଷାର ଶୈଶବାବସ୍ଥାରେ ଏତାଦୃଶ ମହାଗ୍ରନ୍ଥ ରଚନାରେ ତଦୀୟ ମହନୀୟ ସଫଳ ପ୍ରତିଜ୍ଞତାର ସମୁଜ୍ଜ୍ୱଳ ଆଲୋକ ପ୍ରତି ଦୃଷ୍ଟିଦେଲେ ସୁସ୍ପଷ୍ଟ ବୋଧହୁଏ, କବି ମହାଶୟ ସଂସ୍କୃତରେ ଅବଶ୍ୟ କେତେକ ଦୂର ସୁବ୍ୟୁତ୍ପନ୍ନ ଥିଲେ, ଅଥଚ ତାହାଙ୍କର ସୁପ୍ରଗାଢ଼ ଶାସ୍ତ୍ର ଶୁଶ୍ରୂଷା ସମ୍ୟକ୍ ବଳବତୀ ଥିଲା, ଏଥିରେ କଥଞ୍ଚିତ୍ ସନ୍ଦେହ ହୋଇନପାରେ । ବର୍ଣ୍ଣନା ସ୍ଥଳମାନଙ୍କରେ ଦେଖିବାକୁ ପାଇବେ, ସାରଳାଦାସ କବି ରୂପବର୍ଣ୍ଣନାଦିର ସୌନ୍ଦର୍ଯ୍ୟ ସମ୍ପାଦନ ବିଷୟରେ କାବ୍ୟଯୁଗର କେତେକ କବିମାନଙ୍କ ଅପେକ୍ଷା ସୁଦ୍ଧା ଅତିରେକ ଶକ୍ତିସମ୍ପନ୍ନତା ପ୍ରକାଶ କରିଅଛନ୍ତି । ଏହା ତାହଙ୍କର ପ୍ରତିଭାର ପ୍ରଧାନ ପରିଚାୟକ ।

* * * * *

ଅତଃପର ଶ୍ରୀମାନ୍ ସାରଳାଦାସଙ୍କର କବିତ୍ୱଚାତୁରୀ ବା ରୂପାଦି ବର୍ଣ୍ଣନାତ୍ମକ ସ୍ଥଳମାନଙ୍କର ସୌଷ୍ଠବର ବିଚାର କରାଯାଉଅଛି । ଏ ମହାକବିଙ୍କର କବିତ୍ୱ (ଅନୁଲେଖକ-ମତିମାନ୍ଦ୍ୟକାଳିମାଦୂଷିତ ସ୍ଥାନ ଛଡ଼ା) ସର୍ବତ୍ର ମୃଦୁ ମଧୁର, ସୁଲଭାର୍ଥ ଚମତ୍କୃତ, ସଂଯତ ଭାବରେ ସମୁଚିତାଳଂକାର-ପରିଷ୍କୃତ ଓ ଲଳିତ, ରସସ୍ଫୂର୍ତ୍ତିବିଳସିତ ଏବଂ ଦ୍ରାକ୍ଷାପାକସୁଭଗ ଥିବାରୁ ସୁହୃଦୟ ପ୍ରାଚୀନ କବିତ୍ୱ ଭାବୁକମାନଙ୍କର ହୃଦ୍ୟ ଓ କର୍ଣ୍ଣରସାୟନ ପ୍ରାୟ ପ୍ରତୀୟମାନ ହୁଏ । ଏହାଙ୍କ କବିତ୍ୱ ମଧ୍ୟରେ ଭୂରି ଭୂରି ଦୁର୍ଲ୍ଲଭ ବିଶୁଦ୍ଧ ଓଡ଼ିଆ ଶବ୍ଦମାନ ଦୃଷ୍ଟ ହୁଏ । ବିଭାଗତଃ କହିବାକୁ ହେଲେ ସଂସ୍କୃତ ଶବ୍ଦ ଅପେକ୍ଷା ଏହାହିଁ ସମଧିକ । ଏ ମହାଶୟ ବହୁ ସ୍ଥଳରେ ଏପରି ମନୋମୁଗ୍ଧକର ଭାଷାର ଜାତୀୟ ପଦମାନ ପ୍ରୟୋଗ କରିଅଛନ୍ତି ଯେ, ସେଗୁଡ଼ିକ ପଢ଼ିଲାବେଳେ ପରମ ଆହ୍ଲାଦଜନକ ହୋଇଥାଏ । ତନ୍ମଧ୍ୟରୁ ଏହି ସୁପ୍ରଚୁର କବିଙ୍କ ପ୍ରଯୋଜିତ ଓଡ଼ିଆ ଶବ୍ଦମାନଙ୍କ ମଧ୍ୟରୁ ବର୍ତ୍ତମାନ ବହୁଭାଗ ସର୍ବସାଧାରଣଙ୍କର ଅଜ୍ଞାନତିମିରରେ ଲୁକ୍କାୟିତ ହୋଇ ସାରିଲାଣି । ସେସବୁ ତତ୍ସାମୟିକ ବ୍ୟାବହାରିକ ଭାଷାରେ ସୁପ୍ରଚଳିତ ଥିଲେ ସୁଦ୍ଧା ସାମ୍ପ୍ରତିକ ପ୍ରାଚୀନ ସାହିତ୍ୟ ଔଦାସୀନ୍ୟରୁ ଲୋକଙ୍କ ଜ୍ଞାନ ଗୋଚର ହୋଇପାରେ ନାହିଁ । ସେ ଯାହାହେଉ ଏହି କବିଙ୍କ ବର୍ଣ୍ଣନାଗୁଡ଼ିକ ସର୍ବତ୍ର ସରଳ ପ୍ରାଞ୍ଜଳ ଓ ସ୍ୱଭାବ ରମଣୀୟ ହୋଇଅଛି । ସ୍ଥାନେ ସ୍ଥାନେ ସ୍ତ୍ରୀ ରୂପ ବର୍ଣ୍ଣନା ପ୍ରଭୃତି ଅତ୍ୟନ୍ତ ମନୋହର ଓ ଉଚ୍ଚଭାବସମ୍ପନ୍ନ ତଥାଚ ତଦନ୍ତର୍ଗତ କଳ୍ପନାମାନ ଅତି ଚମତ୍କାର ଅଳଂକାରସମେତ ଓ ଭାବଜନକ ଅଟେ । ବର୍ଣ୍ଣନା ସ୍ଥଳମାନ ସଂଯତ ଓ ଅନାଡ଼ମ୍ବରଭାବରେ ଚିତ୍ରିତ ହୋଇଥିବାରୁ ରସ ଭାବୁକମାନଙ୍କର ଅତିରିକ୍ତ ଚିତ୍ତରଞ୍ଜକରୂପେ ପ୍ରଦ୍ୟୋତିତ ହୋଇଅଛି । ପ୍ରାୟଶଃ କବିମାନେ ସ୍ତ୍ରୀ ଅଶୃଙ୍ଖଳ ବା ନିରଙ୍କୁଶଭାବରେ ଅସମଞ୍ଜସରୂପେ ନାନା ପ୍ରକାର ଅଶ୍ଳୀଳ ଶବ୍ଦ ସହ ଚାତୁରୀ ପ୍ରକାଶ କରିଥାନ୍ତି । ଏହି କବି ମହାଶୟଙ୍କ ବର୍ଣ୍ଣନା ସ୍ଥଳମାନଙ୍କ ମଧ୍ୟରେ ତାଦୃଶ ଅସଭ୍ୟତା ଓ ଅସଂଯତତା ନାହିଁ କହିଲେ ଚଳେ । ସାଧାରଣ ଶବ୍ଦମାନଙ୍କରେ ରସସ୍ଫୂର୍ତ୍ତି ହେଲା ଭଳି ସୁହୃଦୟଙ୍କର କର୍ଣ୍ଣ ମଧୁର ହେଲାପରି ଏହାଙ୍କର ବର୍ଣ୍ଣନା ସ୍ଥଳମାନ ପ୍ରକାଶମାନ ହୋଇଥାଏ ।... ପାଠକେ ! ନିମ୍ନରେ ଉଦାହୃତ ସ୍ତ୍ରୀରୂପ ବର୍ଣ୍ଣନାତ୍ମକ ସ୍ଥଳମାନଙ୍କରୁ ଏଥିର ସମ୍ପୂର୍ଣ୍ଣ ପରିଚୟ ପାଇପାରିବେ । ଅଥଚ କବି ଯେପରି ସ୍ଥାନେ ସ୍ଥାନେ ଏହି ମହାଭାରତ ଗ୍ରନ୍ଥ ଶ୍ରବଣରେ ପାଠକଗଣଙ୍କର ପଠନେଚ୍ଛା କ୍ରମଶଃ ବଳବତୀ ହେବାର କହିଅଛନ୍ତି, ତାହା ଏକାନ୍ତ ସତ୍ୟ । ଆପଣମାନେ କ୍ରମଶଃ ଦେଖିନେଲେ, ଅବଶ୍ୟ ବିଶ୍ୱାସ କରିବେ, ଏହି ସୁନ୍ଦର ପ୍ରସାଦ ଗୁଣବିଶିଷ୍ଟ କବିତା ପାଠରେ ଶୁଶ୍ରୂଷା ଉତ୍ତରୋତ୍ତର ବଳବତୀ

ହୋଇଉଠେ । କିନ୍ତୁ ଆଉ ଗୋଟିଏ କଥା ସୁହୃଦୟ ପାଠକଗଣ ସମାହିତ ମନରେ ହୃଦୟଙ୍ଗମ କରିବା ଆବଶ୍ୟକ । ସମ୍ପ୍ରତି ପ୍ରଦର୍ଶିତ ବର୍ଣ୍ଣନା ସ୍ଥଳମାନ ବହୁକାଳ ବ୍ୟାପୀ ଆସ୍ଥାନସ୍ଥିତି ହେତୁରୁ ବହୁ ପରିମାଣରେ ବିକୃତ ହୋଇଯାଇ ଅଛି । କବି ନିହିତ ପଦବିନ୍ୟାସର ସୌଷ୍ଠବ ଓ ଅଯତ୍ନ-ମାଧୁର୍ଯ୍ୟ ଅନେକ ସ୍ଥଳରେ ବିଚ୍ୟୁତ ହୋଇଯାଇଅଛି । ଏହି କବିତାଗୁଡ଼ିକର ପୂର୍ବ ରୂପ ଅପେକ୍ଷାକୃତ ପରିଶୁଦ୍ଧ ଓ ରମଣୀୟ ଥିଲା, ଏଥିରେ କିଞ୍ଚିଦପି ସନ୍ଦେହ ହୁଏନାହିଁ । ମଧ୍ୟପର୍ବରେ ଶାମ୍ବକୁମାରଙ୍କ ପ୍ରତି ନାରଦଙ୍କ ଉକ୍ତି - ଚନ୍ଦ୍ରାବତୀଙ୍କ ସର୍ବାଙ୍ଗ ରୂପ ବର୍ଣ୍ଣନା :

କୁଞ୍ଚିତକେଶ ଯେ ନୀଳାରେଖ ଖଞ୍ଜାଣି,<br>
ଅତି ଛୋଟ ଅତି ଲମ୍ବ ନୁହଇ ଚିକୁର ବେଣୀ ।<br>
ରତ୍ନରଞ୍ଜିତ ଜାଣି ଦିଶଇ ଲଲାଟ ପାଟୀ,<br>
ଚଥିର ଉପରେ କି ନୀଳାରେଖ ଗୋଟି ।<br>
ଲଳିତ ଭ୍ରୂଲତା କି କାମଦେବର ଧନୁ,<br>
ପୁରୁଷ ମାତ୍ରକ ଦେଖି କେ ନିଜ ଶରୀର ଘେନୁ ।<br>
ତାହା ତୀକ୍ଷ ସରୁ ନୟନର ବାଣ,<br>
ରବି ସୋମ ସତ୍ତ୍ୱ ରଜ ତମ ପଞ୍ଚ ଗୁଣ ।<br>
ଏ ପଞ୍ଚ ଗୁଣ ଘେନି ଚାହିଁଲେଣ ଦୃଷ୍ଟି,<br>
ଲୋହ ପାଷାଣ ହୋଇଲେ ତକ୍ଷଣେ ଯିବ ଫୁଟି ।<br>
ସୁନ୍ଦରୀର କିଞ୍ଚିତ ଅବଲୋକନ ଚାହାଣି,<br>
ଅନମିତେ ସହସ୍ରେକ ସଂସାର ପାରଇ ହାଣି ।<br>
ଏକ ଧର୍ମ ମାତ୍ରକ କଲା ପ୍ରଜାପତି,<br>
ମାରି ତାରି ପାରଇ ଅମୂଲ୍ୟ-ରତ୍ନ-କାନ୍ତି ।<br>
ନାସା ପଟାନ୍ତର କଣୟ ଘଟନ ଶୋଭା,<br>
ତିଳଫୁଲ ପଟାନ୍ତର କରନ୍ତି ମୁହିଁ ଅବା ।<br>
ଅଳପ ଦିନେ ସେ ପୁଷ୍ପ ଭୂମିରେ ଲୋଟଇ,<br>
ତେଣୁ କରି ପଟାନ୍ତର ସେ ପୁଷ୍ପ ନ ଘଟଇ ।<br>
ଜୀବ ଘେନି ବହଇ ତହିଁ ପବନ ବେନି,<br>
ମୃଦୁ ନାସା ଭିତରେ ଅଛି ମୃତ୍ୟୁସଞ୍ଜୀବନୀ ।<br>
ମଞ୍ଜୁଳ ପୁଷ୍ପ ପ୍ରାୟେ ତାହାର ଅଧର ବିକାଶି,<br>
ତମ୍ବୁଳ ବିହୁନେ ଝଲକନ୍ତି ରୂପରାଶି ।<br>
ମଞ୍ଜୁଳ ମଞ୍ଜି ପ୍ରାୟେ ଦିଶଇ ଦନ୍ତପନ୍ତି,<br>
ଶାମଳ ମେଘେ ଦିଶଇ ବିଜୁଳୀର ଜ୍ୟୋତି ।<br>
ମଉନେ ସୁନ୍ଦରୀ ନ କହଇ ବଡ଼େଁ କଥା,<br>
ନ ପୁଣ ଇହଲୋକେ ପାବନ୍ତି ଅବସ୍ଥା ।<br>
କୋକିଳ ସେ ଭାଷଇ ମଧୁର ସ୍ୱର ବାଣୀ,<br>
ବସନ୍ତ ଋତୁ ଛାଡ଼ିଲା ସେ ତାହାର ବାକ୍ୟ ଶୁଣି ।<br>
ଶୁଷ୍କ ତରୁ ପଲ୍ଲବଇ ତାହାର ଭାଷନ୍ତେ,<br>
ମଳୟାନିଳ ବହିଲା କି ଏହାର ବାକ୍ୟ ଶୁଣନ୍ତେ ।

ଚାଲନ୍ତେ ସୁନ୍ଦରୀ ନ ପଡ଼ଇ ପାଦଗତି,<br>
ଚକିତ ଚକିତେଣ ପାଦେଣ ପଦଭ୍ରାନ୍ତି ।<br>
ଜଳେ ଯେସନେକ କ୍ରୀଡ଼ନ୍ତି ରାଜହଂସ ପନ୍ତି,<br>
ସେହି ରୂପେ କନ୍ୟା ଚାଲଇ ହଂସଗତି ।

ଆହା ! କି ସୁନ୍ଦର ସରଳ ବିମଳ ଭାବ, କି ସୁନ୍ଦର କଳ୍ପନା । ପାଠକେ ! କେତେଗୋଟି ଆଧୁନିକ କାବ୍ୟରେ ଏତାଦୃଶ ସରଳ ଭାବ ପ୍ରଚୁରତା ଏବଂ ବୃଥାଡ଼ମ୍ବରହୀନ ଭାବଗର୍ଭସୌନ୍ଦର୍ଯ୍ୟାଧାର ବର୍ଣ୍ଣନା ଦେଖିବାକୁ ପାଇବେ ? ଏଥି ମଧ୍ୟରେ ସୁବିନିହିତ ସାରଳାଦାସଙ୍କର ହୃଦ୍‌ଗତ ସୁମଧୁର ଭାବମାନ ଅନେକ ପ୍ରାଚୀନ ଓଡ଼ିଆ ସାଂସ୍କୃତିକ କବିମାନଙ୍କ ଭାବ ସହିତ ଏକପ୍ରଖ୍ୟ ବିଦ୍ୟମାନ ରହିଅଛି । ଏହା ସଙ୍ଗେ ମିଳାଇବା ପାଇଁ ଅନ୍ୟାନ୍ୟ କାବ୍ୟର ପଦ୍ୟମାନ ଉଦ୍ଧୃତ କରି ପ୍ରବନ୍ଧ ବଢ଼ାଇବାର ଆବଶ୍ୟକତା ଦେଖୁନାହୁଁ । ଅଭିଜ୍ଞ ପାଠକଗଣ ଯେକୌଣସି ପ୍ରାଥମିକ ସାହିତ୍ୟିକ ଲେଖାର କବିତା ସଙ୍ଗେ ଏହାକୁ ମିଳାଇ ଦେଖନ୍ତୁ, ସର୍ବଥା ଉତ୍କୃଷ୍ଟ ମନେ କରିବେ । ଏତାଦୃଶ ଆଉ ଗୋଟିଏ ବିଚିତ୍ର ଚିତ୍ରଣ ବର୍ଣ୍ଣନାତ୍ମକ ସ୍ଥଳ ଦେଖନ୍ତୁ । ତହିଁରେ ସୁଦ୍ଧା ଏଭଳି ଅସାଧାରଣ ସୌନ୍ଦର୍ଯ୍ୟ ଚିତ୍ରଣର ପ୍ରତିମା ପ୍ରତିବିମ୍ବିତ ହୋଇଅଛି । ଦେଖିବେ, ତହିଁରେ ମଧ୍ୟ ପୂର୍ବ ପ୍ରଦର୍ଶିତ ଭାବମାନ ଠିକ୍ ବିଦ୍ୟମାନ ରହିଅଛି । ଅତଏବ ପାଠକଗଣ ସମ୍ପୂର୍ଣ୍ଣ ପ୍ରତୀତି କରିବେ ଯେ, ଶ୍ରୀମାନ୍ ସାରଳାଦାସଙ୍କର ଚିତ୍ରିତ ସ୍ତୀରୂପ ବର୍ଣ୍ଣନାତ୍ମକ ଚିତ୍ରଣ ପ୍ରାୟଶଃ ସର୍ବତ୍ର ସମାନ ।

ବନ ପର୍ବରେ ମେରୁଶୃଙ୍ଗ ନାମକ ଦୈତ୍ୟର ନନ୍ଦିନୀ ତ୍ରିପୁରମୋହିନୀଙ୍କର ସର୍ବାଙ୍ଗ ଶୋଭାବର୍ଣ୍ଣନା ନାରଦ ପ୍ରଦ୍ୟୁମ୍ନଙ୍କୁ କହୁଅଛନ୍ତି -

ବାବୁ ତ୍ରିପୁରମୋହିନୀ ସମ ନାହିଁ ତିନିପୁର,<br>
ରୂପେ ଗୁଣେ ତାହାଙ୍କୁ ନାହିଁ ଯେ ପଟାନ୍ତର ।<br>
ଆକୁଞ୍ଚିତ ଚିକୁର କବରୀ ଅଙ୍ଗ ଭାରି,<br>
ପ୍ରବନ୍ଧ ଥୋପ ତାର ବିସ୍ତାରଶାଳୀ କରି ।<br>
କୁସୁମ ନ ଘେନଇ ଗୁରୁ ହେବ ବୋଲି,<br>
ସୁଗନ୍ଧେ ମଧୁକର ବନ୍ଦୀ ହେଲେ ଭୁଲି ।<br>
ରସାଣର ପତ୍ର ପ୍ରାୟେ ଲଲାଟ ପରିପାଟୀ,<br>
ମର୍କତ ରୋମାବଳୀ ନୀଳାରେଖ ଗୋଟି ।

ଲଲାଟର ତଳେ ବକ୍ର ଯେ ରୋମାଞ୍ଚ,
କାମଦେବ ଧନୁ କି ତହିଁରେ ନେଇଁ ସଞ୍ଚ ।
ସେ ଧନୁ ଆମଞ୍ଚ ନୟନ ତୀକ୍ଷ ବାଣେ,
କିଞ୍ଚିତେ ଚାହିଁଲେ ପୁରୁଷେ ଢଳନ୍ତି ତତକ୍ଷଣେ ।
ଯଦ୍ୟପି ପାଷାଣ ହୋଇବ ବକ୍ର ଘୋଟି,
ଅପାଙ୍ଗେ ଚାହିଁଲେ ଯେ ସେହି ଯିବ ଫୁଟି ।
ହତ୍ୟା ଅପବାଦକୁ ଭୟ କରି ସେହି ବାଳୀ,
ତେଣୁ କରି ବଦନ ନ ଚାହେଁ ଦେବୀ ଟେକି ।
କଣୟ ଘଟନ ପ୍ରାୟେ ତିଳପୁଷ୍ପ ନାସା,
ବକ୍ରେ ଚାହିଁଲେ ପୁରୁଷର ଭାଙ୍ଗିବ ଭରସା ।
ତଥିରେ ପବନ କରନ୍ତେ ବିକାଶ,
ମୃଗନାଭୀକସ୍ତୁରୀ ଯେହ୍ନେ କରଇ ବାସ ।
ବଧୁଲୀ ପୁଷ୍ପ ଜାଣି ରଙ୍ଗ ଓଷ୍ଠଗୋଟି,
ବିକାଶିତ ବିଦ୍ୟୁତ ଦଶନ ବେନି ପାଟି ।
ବଚନ ଭାଷନ୍ତେ ନ ରହିଲେ ପିକ ଜନ୍ତୁ,
ଭାକିଲେ ବନ ସ୍ଥାନେ ଅକାଳେଣ ମୃତ୍ୟୁ ।
ନବୀନ କୁନ୍ଦ ଜାଣି ହିରଣ୍ୟ ଗଣ୍ଡସ୍ଥଳ,
ଗଭୀର କଣ୍ଠତଟ ସୁସଞ୍ଚ ସରଳ ।
ବିସ୍ତାର ପ୍ରଲମ୍ବ ଭୁଜ ବେନି ବାହେ,
ହୃଦବିସ୍ତୃତ ସ୍ତନ ସୁଧାକୁମ୍ଭ ପ୍ରାୟେ ।
କୁମୁଦ ନାଳ ଯେହ୍ନେ ଶୀତଳ ସୁସଞ୍ଚ,
ନୁହଇ ସୂକ୍ଷ୍ମ ସେ ନୁହଇ ବଡ଼ ଉଚ୍ଚ ।
ଚମ୍ପା କଢ଼ି ଜାଣି ଦିଶଇ ଅଙ୍ଗୁଷୀ,
କୁନ୍ଦପାଖଡ଼ା ପ୍ରାୟେ ନଖ ରେଖ ଘଟି ।....

ଏହି କବି ମହୋଦୟ ସ୍ୱୟମ୍ବର ସଭାରେ ଉପଗତା ଦ୍ରୌପଦୀ ଦେବୀଙ୍କ ରୂପ ବର୍ଣ୍ଣନାଟିକୁ ପ୍ରାୟ ତିନି ପତ୍ର ପର୍ଯ୍ୟନ୍ତ ସୁବିସ୍ତୃତ କରି ଅପେକ୍ଷାକୃତ ରମଣୀୟ ରୂପେ ବର୍ଣ୍ଣି ଅଛନ୍ତି । ଏଥିରୁ ଅନେକଗୁଡ଼ିଏ ପଦ୍ୟ ବଡ଼ ହୃଦୟସ୍ପର୍ଶୀ । ଏଥିରେ ଦେଖିବେ, କବିଙ୍କର ଖୁବ୍ ଭାବୁକତା ପ୍ରକାଶ ପାଉଅଛି । ବିରାଟ ପର୍ବରେ ମଧ ଦ୍ରୌପଦୀଙ୍କର ରୂପବର୍ଣ୍ଣନା ଏତାଦୃଶ କରିଅଛନ୍ତି । ସ୍ଥୂଳତଃ କହିଲେ ଶ୍ରୀମାନ୍ ସାରଳାଦାସଙ୍କର ସ୍ୱରୂପ ବର୍ଣ୍ଣନାର ଚାତୁରୀ ସର୍ବତ୍ର ଏକପ୍ରଖ୍ୟ ।

ଆମ୍ଭମାନଙ୍କର ଆଦିମ କବି ମହୋଦୟଙ୍କର ଶୃଙ୍ଗାର ରସାତ୍ମକ ବର୍ଣ୍ଣନାରେ ପ୍ରକାଶିତ କୃତିତ୍ୱ ଅପେକ୍ଷା ବୀରାଦି ରସବର୍ଣ୍ଣନାରେ ମଧ କିଛି ଊଣା ନୁହେଁ । ଏହାଙ୍କର ଯେଉଁ ରସାତ୍ମକ ବର୍ଣ୍ଣନାଟି ପଢ଼ିବେ, ତତ୍‌କ୍ଷଣାତ୍ ଭାବୁକଙ୍କ ହୃଦୟରେ ସେହି ରସ ଭାବର ଆବିର୍ଭାବ ହୁଏ । ବିସ୍ତୃତି ଭୟରୁ ବୀରବୀଭତ୍ସାଦି ରସାତ୍ମକ ସମଗ୍ର ବର୍ଣ୍ଣନାମାନ ନ ଦେଇ ନାନା ସ୍ଥାନଗତ କେତେକ ବର୍ଣ୍ଣନା ଅଂଶ ମାତ୍ର ଉଦ୍ଧୃତ କରୁଅଛୁଁ । ପାଠକଗଣ ତଦ୍ୱାରା କବିଙ୍କ କବିତା ଶକ୍ତି ଅବଶ୍ୟ ବୁଝିପାରିବେ । ସୁତରାଂ ଏ କବି ଯେ ସ୍ଥଳରେ ଯେଉଁ ଯେଉଁ ଯୁଦ୍ଧର ବର୍ଣ୍ଣନା କରିଯାଇ ଅଛନ୍ତି, ସେସବୁ ବଡ଼ ସୁନ୍ଦର ଓ ହୃଦୟଗ୍ରାହୀ ହୋଇଅଛି । ଭୀଷ୍ମାଦିପର୍ବପଞ୍ଚକରେ ନିହିତ ଆହବିକ ବର୍ଣ୍ଣନା ଛଡ଼ା ଅନ୍ୟାନ୍ୟ ସ୍ଥଳଗତ ଯୁଦ୍ଧମାନଙ୍କ ପରିପାଟୀରେ ସୁଦ୍ଧା ଏହାଙ୍କର ଖୁବ୍ ସିଦ୍ଧହସ୍ତତା ପ୍ରକାଶ ପାଏ । ସଭା ପର୍ବରେ ଭୀମସେନଙ୍କର ପଶ୍ଚିମ ଦିଗ୍‌ବିଜୟ ସନ୍ଦର୍ଭରେ କାମପାଳ ରାଜାଙ୍କର ସହ ଭୀମକର୍ମା ବୃକୋଦରଙ୍କର, ଉତ୍ତର ଦିଗ୍‌ବିଜୟ ସନ୍ଦର୍ଭରେ ଦରଦସେନ ରାଜାଙ୍କ ସହ ଅର୍ଜ୍ଜୁନଙ୍କର ଏବଂ କାଶୀ ତୀରରେ ପରବର୍ତ୍ତିତ ଅର୍ଜ୍ଜୁନ ଓ ତଦୀୟ ପୁତ୍ର ନାଗାର୍ଜ୍ଜୁନଙ୍କର କୃତ ଲୋମହର୍ଷଣକାରୀ ଯୁଦ୍ଧର ବର୍ଣ୍ଣନା ଅଥଚ ବନ ପର୍ବରେ ସଚଳା ହରଣ ବୃତ୍ତାନ୍ତରେ ପ୍ରବର୍ତ୍ତିତ ଯାଦବାଦିଗଣ ଓ ଦେବତାମାନଙ୍କର ବହୁ ପ୍ରସାରିତ ଯୁଦ୍ଧ ବର୍ଣ୍ଣନା ସର୍ବତୋଭାବେ ସମୁତ୍କୃଷ୍ଟ ହୋଇଅଛି ।

ଭୀମ ଓ ଦୁର୍ଯ୍ୟୋଧନଙ୍କର ଗଦାଯୁଦ୍ଧ ବା ବାହୁଯୁଦ୍ଧ ବର୍ଣ୍ଣନାର ଅଂଶ -

ଡାକହାକ କରି ଯେ ଦିଅନ୍ତି ଘୋର ରଡ଼ି,
ପ୍ରଳୟ ମେଘର କି ସେ ଅଟେ ଘଡ଼ଘଡ଼ି ।
ଅନ୍ୟ ଅନ୍ୟେ କର ଚାପି କରନ୍ତି ପହିଜ,
ନିର୍ଦ୍ଧୂମ ଅନଳ ଜିଣି ବିରାଜଇ ତେଜ ।
ବାହା ନାଦ କରି ବେନି ଚାପନ୍ତି କପାଳେ,
ଝଣଝଣ ଅଗ୍ନି ଯେ ଉଠଇ ଅନ୍ତରାଳେ ।
ଉଲଟ ପାଲଟ ଯେ ହୁଅନ୍ତି କ୍ଷଣେ କ୍ଷଣ,
ମୁଖରାବ ଘାତ ଶୁଭେ ଯଥା ବଜ୍ରବାଣ ।
ପରବତ ପ୍ରାୟେକ ପଡ଼ନ୍ତି ବେନି ବୀର,
ଗିରିବରମାନେ ସର୍ବେ ହେଉଛନ୍ତି ଚୂର ।
ରଟ ରଟ ମଟ ମଟ ଶୁଭେ ବେନି ପାଟି,
ଚାପିଲେ ଅସ୍ଥି ଚର୍ମ ଯେ ଯାଉଥାଇ ଫାଟି ।
ଦୁହେଁ ପିଟାପିଟି ଯେ ହୁଅନ୍ତି ମହାଶ୍ରମେ,
ଝରିଣ ରୁଧିର ଯେ ବହଇ ରୋମେ ରୋମେ ।
ମୁଥ ପ୍ରହାରେ ନାସାରୁ ବହଇ ରୁଧିର,
କଡ଼ି ହୋଇଥାଏ ଯେ ଦୁହିଁଙ୍କ କଳେବର ।
ସତ୍ୟଯୁଗେ ଯେଉଁପରି କେତୁ ଯେ ମଙ୍ଗଳ,
ସେପରି କମ୍ପି ଯେ ମହୀ ହୁଏ ଟଳମଳ ।
ଗିରିବରମାନେ ଯେ ଉଠିଲେ ହୋଇ ଧୂଳି,

ଆକାଶରେ ଅଦୃଶ୍ୟ ଯେ ହୋଇଲେ ଅଶ୍ୱମାଳୀ

(ଗଦାପର୍ବ)

ଏହି ସ୍ଥଳରେ ବୀର ରସର ଅନୁଗୁଣ୍ୟ ବର୍ଣ୍ଣନାମାନଙ୍କରେ ଗଠିତ ଶବ୍ଦମାନଙ୍କ ଯୋଗେ କବିତାଟି ଯଥାଯଥ ଓଜଗୁଣବିଶିଷ୍ଟ ହୋଇଅଛି । ଏତାଦୃଶ ସ୍ଥଳମାନଙ୍କରେ ମୂଳ ଗ୍ରନ୍ଥରେ ଭଟ ପ୍ରତିଭଟଦ୍ୱୟଙ୍କର "ବଳିବାସବଯୋରିବ" "ବୃତ୍ରବାସ ବଯୋରିବ" "ବଳବାସବଯୋରିବ" ଇତ୍ୟାଦି ଉପମା ଧାର୍ଯ୍ୟ ହୋଇଥାଏ । ସାରଳାଦାସ କବି ମଧ ତଦନୁଗୁଣରେ ପ୍ରତିଦ୍ୱନ୍ଦୀ ଦୁହିଁଙ୍କର ସାଦୃଶ୍ୟ କେତୁ ମଙ୍ଗଳରେ ଆରୋପଣ କରି ପୌରାଣିକ ଗାଥାର ସୂଚନା କରିପାରି ଅଛନ୍ତି । ସୈନ୍ୟ ବର୍ଣ୍ଣନା ସେହିପରି ଅନ୍ୟଗୋଟିଏ ଉଦାହରଣ- କୁରୁସେନା ଦେଖି ବୈରାଟି ଉତ୍ତର ସମୁଦ୍ର ଜ୍ଞାନ କଲାରୁ ତତ୍‌ସମର୍ଥନରେ ବୃହନ୍ନଳା କହୁ ଅଛନ୍ତି -

ଶୁଣ ହୋ ଉତ୍ତର ବୋଇଲା ସବ୍ୟସାଚୀ,<br>
ସାଗର ବାକ୍ୟ ତୋର ନାସ୍ତି କେ କରୁଛି ।<br>
ନିଶ୍ଚେ ସାଗର ଅଟଇ ଏ କୁରୁ ସଇନି,<br>
ସିନ୍ଧୁ ଘୋଷ ପ୍ରାୟେ ଶୁଭୁଅଛି ମୁଖଧ୍ୱନି ।<br>
ବୋହିତ ବୋଲି ଯେ ବୋଲୁଅଛୁ ଯହିଁକି,<br>
ରଥମାନେ ସେଟି ଏହା ଏହା ତୁ ବିଚାରୁ କି ?<br>
ମତ୍ସ୍ୟ କୂର୍ମ ବୋଲି ଯା ବିଚାରୁ ହୃଦଗତେ,<br>
ଗଜ ଅଶ୍ୱମାନେ ସେହୁ ଅଟନ୍ତି ଯୁଗତେ ।<br>
ତୁ ଯେ ବୋଇଲୁ ଦେଖ ସ୍ଥିର ଜଳ,<br>
ସୈନ୍ୟ ବେଢ଼ିଛନ୍ତି ତୋର ଗୋଗ୍ରୁକୁଳ ।<br>
ଧବଳ କମଳ ପ୍ରାୟେ ଅଟନ୍ତି ଗୋଧନେ,<br>
ସ୍ଥିର ଜଳ ପ୍ରାୟେ ଅଟନ୍ତି ବିଦ୍ୟମାନେ ।<br>
ଲହରୀ ବୋଲି ଯେ ବୋଲୁଥିଲୁ ଏକା,<br>
ରଥଙ୍କର ଉପରେ ଉଡ଼ଇ ପତାକା । ଇତ୍ୟାଦି । (ଉ.ପ.)

ପାଠକେ ! ସମ୍ୟକ୍ ପରିଶୀଳନ କରନ୍ତୁ । ଏହି ସାଙ୍ଗରୂପକ ଅଳଙ୍କାରରେ ସମେତ ବର୍ଣ୍ଣନାଟିକୁ କବି ମହାଶୟ ନିରାଡ଼ମ୍ବର ଭାବରେ କି ସୁନ୍ଦର ସଙ୍ଗତ କରି ଲେଖିଅଛନ୍ତି । ମହାକାବ୍ୟୋଚିତ ବର୍ଣ୍ଣନାକୁ ଏତାଦୃଶ ସରଳ ଭାଷାରେ ପ୍ରକାଶ କରିବା ସାଧାରଣ ଜ୍ଞାନସାଧ ହୋଇ ନ ପାରେ । ଅଥଚ ଭାଷାର ଶୈଶବାବସ୍ଥାରେ ଏଭଳି ପଦବିନ୍ୟାସ ଚାତୁରୀ ସୁଦ୍ଧା କବିଙ୍କର ମହତୀ ବୁଦ୍ଧିସିଦ୍ଧିର ଫଳ ବୋଲିବାକୁ ହେବ ।

(ଶ୍ରୀଭାରତ ଦର୍ପଣ<br>
ପାରଳା ଖେମୁଣ୍ଡି-୧୯୨୮)

## (୨)
## ମୃତ୍ୟୁଞ୍ଜୟ ରଥ
## ଭାଷା ଓ ଭାବନା

ଏ ପର୍ଯ୍ୟନ୍ତ ଆମ୍ଭେମାନେ ମହାଭାରତର ପ୍ରତିପର୍ବ ପ୍ରତିପାଦିତ ବିଷୟରେ ସଂକ୍ଷିପ୍ତ ଆଲୋଚନା କରି ଆସିଲୁଁ । ବର୍ତ୍ତମାନ ଗ୍ରନ୍ଥର ଭାଷା ଓ ଭାବ ସମ୍ବନ୍ଧରେ ସଂକ୍ଷେପରେ କିଛି କହିବାକୁ ଚେଷ୍ଟା କରିବୁଁ । ଏହି ବିଷୟର ଆଲୋଚନା ପୂର୍ବରୁ ଆମ୍ଭେମାନେ ମହାଭାରତକୁ ଭାବ ଓ ଭାଷା ଦୃଷ୍ଟିରେ ତିନୋଟି ଭାଗରେ ବିଭକ୍ତ କରିଅଛୁଁ । ପ୍ରଥମ ଭାଗରେ ଆଦିପର୍ବ ଠାରୁ ବିରାଟ ପର୍ଯ୍ୟନ୍ତ ପାଞ୍ଚୋଟି ପର୍ବ, ଦ୍ୱିତୀୟଭାଗରେ ଉଦ୍ୟୋଗଠାରୁ ଶଲ୍ୟପର୍ବ ପର୍ଯ୍ୟନ୍ତ ୫ପର୍ବ ଏବଂ ତୃତୀୟ ଭାଗରେ ଅବଶିଷ୍ଟ ପର୍ବଗୁଡ଼ିକ ରହିବା ଉକ୍ତ ଦୃଷ୍ଟିରେ ସଙ୍ଗତ ବିବେଚନା କରୁଅଛୁଁ ।

ଦେହିନୋଽସ୍ମିନ୍ ଯଥ ଦେହେ
କୌମାରଂଯୌବନଂ ଜରା ।
ତଥାତ୍ର ଭାରତେ ଗ୍ରନ୍ଥେ
ପ୍ରେକ୍ଷେଽହମବସ୍ଥାତ୍ରୟଂ ।

ଯଥାର୍ଥରେ ଉଲ୍ଲିଖିତ ତିନିଭାଗରେ ବାଲ୍ୟ, ଯୌବନ ଓ ବାର୍ଦ୍ଧକ୍ୟର ବୈଚିତ୍ର୍ୟ ପ୍ରତ୍ୟକ୍ଷ କରାଯାଏ ।

ଦେଖାଯାଏ ବାଳକ ସଦା ଚଞ୍ଚଳ, ଅସ୍ପଷ୍ଟଭାଷୀ ଏବଂ କଚ୍ଛିତଗଚ୍ଛପ୍ରିୟ । ଆଉ ମଧ ଶିଶୁ ସଦା ଉଲଗ୍ନ ଥାଇ ନିର୍ବିକାର ଭାବରେ ଅଶ୍ଳୀଳତାକୁ ଅଙ୍ଗୀଭୂତ କରିଥାଏ ଏବଂ ଯାହା ଇଚ୍ଛା ତାହା ବିଚାର ନ କରି କରେ । ଯେଉଁମାନେ ଏହି ମହାଭାରତର ପ୍ରଥମ ଭାଗ ପାଠକରିବେ, ସେମାନେ ଦେଖିପାରିବେ ଯେ, ଏଥିରେ ଉକ୍ତ ବାଲ୍ୟସୁଲଭ କ୍ରିୟାଗୁଡ଼ିକ ଅଛି, ଏଥିର ଭାଷା ଯେପରି ଚାଞ୍ଚଲ୍ୟ, ନବନ୍ଧନ, ଅସ୍ପଷ୍ଟ ବା ଅବୋଧ ଓ ଗ୍ରାମ୍ୟ ବର୍ଣ୍ଣନା ତାଦୃଶ ଅଶ୍ଳୀଳ ଏବଂ ଲେଖା ବା ଲିଖିତ ବିଷୟ ସେହିପରି ବିଚାରଶୂନ୍ୟ ଓ ଅସଙ୍ଗତ ।

ଯୌବନ ଉପସ୍ଥିତ ହେଲେ ଲୋକର ଯେପରି ସମଗ୍ର ଜୀବନର ଶକ୍ତି ନବୀନ ଭାବରେ ବିକଶିତ ହୁଏ, ହୃଦୟରେ ଓଜବୀର୍ଯ୍ୟ ଗାମ୍ଭୀର୍ଯ୍ୟାଦିର ସଞ୍ଚାର ହୁଏ; ଏହାର ଦ୍ୱିତୀୟଭାଗରେ ସେହିପରି ଯୌବନସୁଲଭଗୁଣ ପ୍ରତିଫଳିତ ହୋଇଅଛି । ଏହି ଅଂଶର ଭାବ ଯେପରି ମାର୍ଜିତ ଏବଂ ବିଷୟ ବୀରରସରେ ଉର୍ଜସ୍ୱଳ, ଭାଷା ମଧ ସେହିପରି ଓଜସ୍ୱିନୀ । ଯଥାର୍ଥରେ କବିଙ୍କର ପ୍ରତିଭା ଏହି ଅଂଶରେ ପୂର୍ଣ୍ଣ ବିକାଶ ପ୍ରାପ୍ତ ହୋଇଅଛି ।

ବାର୍ଦ୍ଧକ୍ୟରେ ମନୁଷ୍ୟର ସମସ୍ତ ଶକ୍ତି ହ୍ରାସ ପ୍ରାପ୍ତ ହୁଏ ଏବଂ ସେହି ଧର୍ମରେ ମତି ଦୃଢ଼ୀଭୂତ ହେଉଥାଏ; ଆଉ ମଧ ଶରୀର ଜରାବ୍ୟାଧିରେ ଜୀର୍ଣ୍ଣତର ହେବାକୁ ବସେ, ନିତ୍ୟନୈମିତ୍ତିକ କୌଣସି ବିଷୟରେ ଦୃଢ଼ତା ରହେନାହିଁ । ମହାଭାରତର ପ୍ରୋକ୍ତ ତୃତୀୟ ଭାଗରେ ଆମ୍ଭେମାନେ ଉଲ୍ଲିଖିତ ଅବସ୍ଥା ପ୍ରତ୍ୟକ୍ଷ କରୁଁ । ଏଥିରେ ଭାଷାର ଓଜଃ କି ବିଷୟରେ ପୂର୍ଣ୍ଣତା ନାହିଁ କିମ୍ବା ଲେଖାର କୌଣସି କ୍ରମ ନାହିଁ । ଅଛି କେବଳ ବାର୍ଦ୍ଧକ୍ୟୋଚିତ କେତେକ ଧର୍ମ କଥା । ଅଶ୍ଳୀଳତାଦ୍ୱାରା ତାହାର ମଧ ସ୍ଥଳେ ସ୍ଥଳେ ସ୍ଖଳନ ଘଟିଅଛି । ଲେଖାରୁ ଲେଖକଙ୍କୁ ଜାଣିବାକୁ ହେଲେ ପାଠକ ଅନାୟାସରେ ଏହା କହିବାକୁ ସମର୍ଥ ହେବେ ଯେ, ଏହି ବିଭିନ୍ନ ବିଭାଗର ଲେଖକ ଭିନ୍ନ ଭିନ୍ନ । ସେ ଯାହାହେଉ ସ୍ଥୂଳରେ ଏତିକି କୁହାଯାଇପାରେ ଯେ, ପ୍ରାଚୀନ କବିମାନଙ୍କ ଭାଷା ମଧରେ ଶାରଳା ଦାସଙ୍କର ଭଷା ଓଜସ୍ୱିନୀ । ତାଙ୍କର ବୀର-ରସର ଭାଷା ଆଧୁନିକ କବିଙ୍କ ତାଦୃଶ ଭାଷା ଅପେକ୍ଷା କୌଣସି ଅଂଶରେ ହୀନ ନୁହେଁ । ସେ ଭାଷା ବହୁ ଶତବର୍ଷ ପୂର୍ବର ହେଲେ ହେଁ ଅନେକ ସ୍ଥଳରେ ଅବିକଳ ଆଧୁନିକ ଭାଷା ପ୍ରାୟ ଜଣାଯାଏ । ଏଠାରେ ଆଉ ସେଥିର ଆଲୋଚନା ନ କରି, ଆଦି କବିଙ୍କ ଭାଷା ସହିତ ଆଧୁନିକ କବିଙ୍କର ଭାଷାର କିପରି ମେଳ ଅଛି ତାହାର କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଉଅଛି ।

ବନପର୍ବରେ – (ଦ୍ରୌପଦୀ)
ମତେ ସଭାରେ କୁରୁଏ ଦେଲେ ଅପମାନ ।
କେଶ ଧରି ମୋର ନେଲା ଦୁଷ୍ଟ ଦୁଃଶାସନ ।
ଆଣନ୍ତେ ଚରଣ ମୋର ନ ପଡ଼ଇ ତଳ ।
ଆକର୍ଷି ଶିର ଝୁଣିଲା ଦୁଃଶା ମୋର ବାଳ ।
ସେହି ଦିନୁ କେଶ ମୋର ନ କଲି ବନ୍ଧନ ।
ସେ ଭୁଜ ଦୁଃଶାର ଉପାଡ଼ିବେ ଭୀମସେନ ।
ତାହାର ରୁଧିରେ ମୋର କେଶ ପଖାଳିବି ।
ତେବେ ମୁଁ କେଶ ବନ୍ଧନ କରିବି, କେଶବ ।....

କର୍ଣ୍ଣ ପର୍ବରେ –
ନିର୍ଦ୍ଦୟ ନିରପେକ୍ଷ ଅଟଇ ଏ ଚାଣ୍ଡାଳ
ଅନ୍ତଃପୁରେ ପଶି ଯେ ଧଇଲା ମୋର ବାଳ ।
ଅନ୍ତରୀକ୍ଷେ ଆଣିଲା ଯେ ଧରି ମୋତେ ବଳେ
ଆଣନ୍ତେ ଚରଣ ମୋର ନ ଲାଗିଲା ତଳେ ।
ଦ୍ରୌପଦୀର ମୁଖରୁ ଏସନ ବାକ୍ୟ ଶୁଣି

ଗର୍ଜ୍ଜଣ ଉଠିଲା ଭୀମ ମତ୍ତସିଂହ ଜିଣି ।
ଓଷ୍ଟେ ଦନ୍ତ ଚାପି ଗର୍ବେ ପବନ ଆତ୍ମଜ
ଆକର୍ଷି ଧଇଲା ଦୁଃଶାର ଡାହାଣ ଭୁଜ ।
ବୁଲାଇ ଭୁଜ ଯେ ଆକାଶକୁ ଦେଲା ଫିଙ୍ଗି
ଅନ୍ତରୀକ୍ଷେ ଶେଣପକ୍ଷୀ ଧଇଲା ତା ବେଗି ।
ପୁଣି ବାମଭୁଜ ଭୀମ ଉପାଡ଼ିଲା ବଳେ
ଏ ଭୁଜେ ଧର୍ମକୁ ବସାଇଲୁ ସଭାତଳେ ।.....

ସହଦେବ -
ତୁ ଯେ ବାସୁଦେବ ପ୍ରଭୁ ଜଗଜ୍ଜନବନ୍ଧୁ
ଏ ବଡ଼ ବିଚିତ୍ର ଦେବ ଜାଣୁ ଜାଣୁ କାନ୍ଦୁ ।
ତୁ ଦେବ ଚେତନା ଯାଇ କରାଅ ତାହାଙ୍କୁ
ଶତଶୃଙ୍ଗ ବାଦ୍ୟକାର ଶୁଭୁ ଯେ ଭୀମଙ୍କୁ ।
ଏଣେ ପାଞ୍ଚଜନ୍ୟ ଧରି ଫୁଙ୍କିଲେ ଗୋବିନ୍ଦ
ଶତଶୃଙ୍ଗ ଶତଶୃଙ୍ଗ ଉଚ୍ଚେ କଲା ନାଦ ।
ଶତଶୃଙ୍ଗକୁ ସ୍ମରଣା କଲା ଯହୁଁ ଭୀମ
ଏକୋଉର ସିଂହର ହୋଇଲା ପରାକ୍ରମ ।.....

ଭୀମ -
ପାରିଲେ ଏହାକୁ ରକ୍ଷା କର ଦେବଇନ୍ଦ୍ର ।
ସଞ୍ଜୀବନୀ ନାଥ ତୁହି ଅଟୁ ହେ କୃତାନ୍ତ ।
ପାରିଲେ ଦୁଃଶାସନକୁ ରଖ ଜନ୍ତୁନାଥ ।
ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମା ଇନ୍ଦ୍ର ଅଗ୍ନି ଆଦି କରି
ରଣସ୍ଥଳେ ମିଳୁ କେହି କରେ ଶସ୍ତ୍ର ଧରି ।
କାଳଚକ୍ର ପ୍ରାଏକ ବୁଲାଏ ବେନି ଆଖି
ତିନି ଭୁବନ ଲୋକେ ତ୍ରାସିଲେ ତାହା ଦେଖି -
ରେ ରେ ଦୁଃଶା ତୋତେ କେହି ନ ପାରିଲେ ରଖି ।
ପୁଣି କୋପେ ପାତାଳକୁ ଚାହିଁଲା ନିରେଖି ।
ପୁଣି ଚାହିଁ ବୋଲେ ଆରେ ଆରେ କଉରବ
କେ ପାରୁଛ ରକ୍ଷା କର ଦୁଃଶାସନ ଜୀବ ।

.....

ଆଉ ଅଧିକ ଉଦ୍ଧାରର ପ୍ରୟୋଜନ ନାହିଁ । ଯେଉଁମାନେ ସ୍ୱର୍ଗୀୟ ରାୟ କବିଙ୍କର 'ବେଣୀସଂହାର' ପାଠ କରିଅଛନ୍ତି ସେମାନେ କର୍ଣ୍ଣ ପର୍ବର ଏହି ଅଂଶ ଦେଖିଲେ ମନେ କରିବେ ଯେ, ପ୍ରାୟ ଏକା ଭାଷା, ଏକା ଭାବ ଏବଂ ଏକ ଚିତ୍ର । କେବଳ ପ୍ରଭେଦ ଏହି ଯେ ମଧ୍ୟେ ମଧ୍ୟେ ରାୟ କବିଙ୍କ ଭାବ ସୁରଚିସମ୍ପନ୍ନ; ଭାଷା ମାର୍ଜିତ ଏବଂ ଛାନ୍ଦ ସଦୋଷ ବର୍ଜିତ ।

ଧର୍ମାଚାରେ ତୁମ୍ଭେ ବର୍ତ୍ତ ସର୍ବକାଳେ ପୁଣ ।
ଭୀମକୁ ବସାଇ ଖୁଆଇଲ ବିଷ ଲଡୁ
ଖାଇ ବିଷ ମରିଲା ତୁମ୍ଭର ଧର୍ମ ପୋଡୁ ।
ଯାବତ କାଳରେ ତୁମ୍ଭେ ଚଳ ଧର୍ମ ବାଟେ
ଘର କଲ ଜଉ ଗୁଆଘୃତ ଛଣପଟେ ।
ବିକଳେ ପଶିଲେ ଯେ ବିଳରେ ପାଞ୍ଚଭାଇ
ଏମାନ ତୁମ୍ଭର କଣ ଅଧର୍ମ ନୁହଇ ?
ଚଉଦ ବରଷ ଅଟେ ସୁଭଦ୍ରାର ସୂନୁ
ନ ଜାଣି ସମରେ ଯେ ପଶିଲା ଅଭିମନ୍ୟୁ ।
ଧର୍ମଯୁଦ୍ଧେ ମାରି ନ ପାରିଲ ଯେତେବେଳ
ବେଢ଼ି କରି ମାର ବୋଲି ସର୍ବେ କଲା ଗୋଳ । (କ. ପର୍ବ)

ଇତ୍ୟାଦି ପଂକ୍ତି କତିପୟର ଆଭାସ ଭକ୍ତ କବି ମଧୁସୂଦନଙ୍କ 'କର୍ଣ୍ଣବଧ'ରେ ଲକ୍ଷିତ ହୁଏ ନାହିଁକି ?

ଉପମା ଭାବବିଶଦୀକରଣର ଗୋଟିଏ ପ୍ରଧାନ ସାଧନ । ଅନେକ ସ୍ଥଳରେ କବିଙ୍କର ଉପମାଗୁଡ଼ିକ ବଡ଼ ସୁସଙ୍ଗତ । ଯୁଦ୍ଧବର୍ଣ୍ଣନାରେ ଯେଉଁ ଉପମାବଳୀର ଆଗମ ହୋଇଅଛି ତନ୍ମଧ୍ୟରୁ ଅଧିକାଂଶ ପ୍ରାଚୀନ; କିନ୍ତୁ ଅନେକତ୍ର ପ୍ରତିଭାବାନ୍ କବି ପ୍ରାଚୀନ ପଦ୍ଧତିର ଅପେକ୍ଷା ନ ରଖି ଆପଣା ଅବେକ୍ଷଣ ଅନୁସାରେ ନାନା ଉପମା ସୃଷ୍ଟି କରିଅଛନ୍ତି । ସେ ସମସ୍ତ ପ୍ରଦର୍ଶନ କରିବାର ସମ୍ଭାବନା ଏବଂ ସ୍ଥାନ ଏଠାରେ ନାହିଁ । ତଳେ ଦୁଇ ତିନୋଟି ମାତ୍ର ଆକାଙ୍କ୍ଷା ନିବୃତ୍ତି ପାଇ ଉଦ୍ଧୃତ ହେଲା ।

୧. ଖଗବର ଚଞ୍ଚୁପ୍ରାଏ ନାସାର ଯେ ଖେଳା
ଗୁଞ୍ଜଫଳ ଦିଶି ଜ୍ୱଳନ୍ତି ବେନି ଡୋଳା ।
ରଙ୍ଗ ଅଏଁଳାର ପ୍ରାଏ ତଳିପାର କାନ୍ତି
ଘଟଣ ପୋହଳା ଜିଣି ଅଙ୍ଗୁଷ୍ଠି ଦିଶନ୍ତି ।
ସେବତୀ ପାଖୁଡ଼ା ପ୍ରାଏ ତହିଁ କରରୁହ । (ବି,ପ)

ଯୁଦ୍ଧରେ ଶରପାତ ଏବଂ ଶର ଯୋଗେ ଶିରଃପାତାଦିର ବର୍ଣ୍ଣନାରେ କବିଙ୍କର ଉପମା ଯଥାଯଥ ହୋଇଅଛି ।

ଯଥା -

୧. ଶର ମାରନ୍ତି ଯେସନେ ବରଷଇ ପାଣି
ଝଲକଇ ଅସ୍ତ୍ର ବିଜୁଳିର ତେଜ ଜିଣି ।
୨. ସମସ୍ତଙ୍କ ଅଙ୍ଗରୁ ରୁଧିର ବୃଷ୍ଟି ହେଲା
ପଳାଶ ଗଛ କି ଫୁଲେ ମଣ୍ଡିତ ହୋଇଲା ।

୩. ଯେସନେ ତିଳମଞ୍ଜି ବୁଣଇ କୃଷିକାରୀ
ପଡ଼ନ୍ତି ପାଦାନ୍ତିବଳ ସଞ୍ଚିପି ନ ପାରି । (ଦ୍ରୋ,ପ.)
୪. ଯେସନେ କଦଳୀ ବନ ପଡ଼େବାତାଘାତେ
ଏକ ଉପରେ ଆରେକ ପଡ଼େ ଶରପାତେ । (ସ,ପ.)
୫. ମହାବାତେ ଯେସନ ପକ୍ୱଫଳ ଝଡ଼ନ୍ତି
ଏକନାରାଚକେ ବହୁ ସଇନି ଲୋଟନ୍ତି ।
ଗଭୀର ଜଳରେ ଯେଉଁପରି ଭାସେ ଭେଳା
ଗଜ ଅଶ୍ୱ ରଥ ରକ୍ତେ ତଥା ମେଳାମେଳା । (ଦ୍ରୋ,ପ.)

ଶୋଷୋକ୍ତ ଉପମାଟି ରାୟ କବିଙ୍କର ନିମ୍ନୋକ୍ତ ଉପମା ଅପେକ୍ଷା ଅଧିକ ସଙ୍ଗତ ଏବଂ ସୁନ୍ଦର ନୁହେଁ କି ?

ଝଡ଼ିଲା ଯବନ ମୁଣ୍ଡ ସେ କୃପାଣ ଚୋଟେ
ଶତ ଶତ ପକ୍ୱପର୍ଣ୍ଣ ଶୀତାନ୍ତେ ଯେସନ,
କୃଷିବଳ ଦାତ୍ରେ ଅବା ପକ୍ୱଶସ୍ୟାବଳୀ
ମହାଯାତ୍ର ୭ମ ସର୍ଗ ।

ଅନ୍ୟ ଉପମା -

ବସାଭଗ୍ନେ ପକ୍ଷୀଏ ପଳାନ୍ତି ଯେହ୍ନେ ଡରେ
କେ ରହି ନ ପାରେ ନନ୍ଦିଘୋଷର ଛାମୁରେ ।
ବଦନ୍ତି ଅଗସ୍ତି ଯେଉଁପରି କୃଷିକାରୀ,
ବଳଦ ହଜାଇ ଏଣେ ତେଣେ ଖୋଜିବୁଲି
ଭୀଷ୍ମଙ୍କ ଅଭାବେ ରାଜା ହେଲେ ସେହିପରି ।(ଦ୍ରୋ,ପ.)
ଚାଲୁଣିର ପ୍ରାୟେ ତୁ ହୋଇଲୁ ଭୀମ ସେନ ।
ଗୁଣଛାଡ଼ି କେବଣ ବହିଛୁ ଅବିଗୁଣ । (ଆଶ୍ର, ପ.)

.....

ଉପସଂହାର ସ୍ଥଳରେ ଏତିକି ମାତ୍ର କହିବାକୁ ହେବ ଯେ, ଏହି ଶାରଳାଦାସୀୟ ମହାଭାରତ ପ୍ରାଚୀନ ଉତ୍କଳସାହିତ୍ୟର ବିପୁଳସମ୍ପଦ, ଏଥିରେ ମହାଭାରତୀୟ ମହା ବିଷୟ ବ୍ୟତୀତ ଉତ୍କଳର କେତେକ ମୌଳିକ ଚିତ୍ର ସଂଯୋଜିତ ଅଛି । ସେଗୁଡ଼ିକୁ ଅବଲମ୍ବନ କରି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପୁସ୍ତକ ପ୍ରଣୟନ କରାଯାଇପାରେ । ଆଧୁନିକ ସାହିତ୍ୟସେବୀମାନଙ୍କର ଉପଜୀବ୍ୟ ବିଷୟ ମଧ୍ୟ ଏଥିରେ ଅପ୍ରଚୁର ନୁହେଁ । ଅତଏବ ଆଧୁନିକ ଶିକ୍ଷିତ ସମାଜକୁ ଏହା ଅନୁରୋଧ କରିବା ଅସଙ୍ଗତ ହେବ ନାହିଁ, ଯେଉଁମାନେ ଆଦିକବି ଶାରଳା ଦାସଙ୍କର ସମାଦର କରନ୍ତି, ସେମାନେ କବିଙ୍କର ଏହି ମହାଗ୍ରନ୍ଥ ଆମୂଳ ପାଠ କରି ତନ୍ମଧ୍ୟରୁ ଉତ୍କୃଷ୍ଟ ଅଂଶମାନ ଗ୍ରହଣପୂର୍ବକ ଆଧୁନିକ ରୁଚିସମ୍ମତ ଗ୍ରନ୍ଥମାନ ପ୍ରଣୟନ କରନ୍ତୁ । ପକ୍ଷାନ୍ତରେ ଯେଉଁମାନେ ଅନାଦର କରନ୍ତି, ସେମାନେ ମଧ୍ୟ ମାର୍ଜିତ ରୁଚିର ପୁସ୍ତକ ପ୍ରଣୟନ ଦ୍ୱାରା ଏଥିର ଅପକର୍ଷ ପ୍ରଦର୍ଶନ କରି ଆତ୍ମତର୍ପଣ ସମ୍ପାଦନ କରନ୍ତୁ । ଭଗବାନଙ୍କ କୃପାରୁ ଆମ୍ଭମାନଙ୍କର ଏହି କାମନା ପୂର୍ଣ୍ଣତା ଲାଭ କରୁ ।

(ସାରଳା ଚରିତ)

(୧୯୧୧)

## (୩)
## ନୀଳକଣ୍ଠ ଦାସ
## ସାରଳା ଦାସ

ଅଦ୍ଭୁତ କ୍ରିୟା ଯୋଡ଼ି ତାଙ୍କଠାରେ ଦେବତ୍ୱ ଆରୋପ ନ କଲେ କେହି ମହାପୁରୁଷ ହୁଅନ୍ତି ନାଇ । ଭକ୍ତମାନେ ଏଇପରି ଆରୋପ କରି ମହାପୁରୁଷଙ୍କୁ ଭ୍ରଷ୍ଟ କରନ୍ତି । ଭକ୍ତମାନେ ବୁଝନ୍ତି ନାଇ ଯେ, ତାଙ୍କ ନିଜର ଚରମ ଆରାଧ ଈଶ୍ୱରଙ୍କର ଅଦ୍ଭୁତ କ୍ରିୟାରେ ମହାପୁରୁଷଙ୍କୁ ଦେଖାଇ ଲୋକଙ୍କୁ ମନାଇବା ଦରକାର ପଡ଼େ ନାଇ । ମାତ୍ର ଭକ୍ତିରେ ଲୋକ ଅନ୍ଧ ହୁଏ ଓ ଏଇଭଳି କଥାଇ ତାକୁ ଦିଶେ ।

ସେଥିପାଇଁ ସାରଳାଦାସଙ୍କ ସମ୍ବନ୍ଧରେ ପ୍ରବାଦ ଉଠିଚି, ସେ ନିଜେ କିଛି ଜାଣୁ ନ ଥିଲେ; ମୂର୍ଖ ଥିଲେ । କେବଳ ଦେବୀଙ୍କୁ ଭାରି ଭକ୍ତି କରୁଥିବାରୁ ଦେବୀ କହିଲେ, 'ଯାହା ଆସୁଚି, ଲେଖିଯା, ସେଇ ହେବ ମହାଭାରତ ।' ପରେ ତାଳପତ୍ରମାନ ଲେଖି, ଟୋକେଇରେ ପୂରେଇ, କାହା ପରେ କେଉଁ ପତ୍ର ରହିବ, ତା ବି ସାରଳା ଦାସ ଜାଣିପାରିଲେ ନାହିଁ । ତହୁଁ ଦେବୀ ପୁଣି କହିଲେ, 'ପତ୍ରଗୁଡ଼ିକ ବୁଢ଼ାନଈରେ ଭସାଇଦେ; ଯେଉଁ ପତ୍ରଗୁଡ଼ିକ ଭାସି ନ ଯାଇ ସୁଅରେ ଉଜାଣି ଫେରି ଆସିବ, ସେଇଗୁଡ଼ିକ ଯାହାପରେ ଯେ ଆସିବ, ସେଇପରି ଯୋଡ଼ିଦେଲେ ମହାଭାରତ ହେବ ।' ତାହାଇ ସାରଳା ଦାସ କଲେ । ଯେ କାରଣରୁ ହେଉ, ଏପରି ପ୍ରବାଦମାନ ତିଆରିକରି ସାରଳା ଦାସଙ୍କ ମାହାତ୍ମ୍ୟ ବଢ଼ିଚି କି କମିଚି, ଲୋକେ ଏଥିରେ ପ୍ରାଣିତ ହୋଇ ସାରଳା ଦାସଙ୍କ ଦ୍ୱାରା ପ୍ରଭାବିତ ହେବେ, କି ଦେବୀଙ୍କଠାରେ ଅଧା ପଡ଼ିବେ, ଏହା ବୁଝିବାରେ ଅସୁବିଧା ନାହିଁ ।

ପୁଣି ସଂସ୍କୃତପ୍ରେମୀମାନେ ବ୍ୟାସଙ୍କ ସଙ୍ଗେ ତୁଳନା କରି ସାରଳା ଦାସଙ୍କୁ ଅତି ଅସଂସ୍କୃତ ବୃଷଳ, 'ଶୂଦ୍ର' ବୋଲି ମନେ କରନ୍ତି ଓ କହନ୍ତି । ଏଇସବୁ ଦୁର୍ନାମ ଏଡ଼ାଇବାରେ ଏ ପ୍ରବାଦମାନଙ୍କର ମୂଳ ବି ଖୋଜା ଯାଇପାରେ । ତାହାର ସ୍ପଷ୍ଟ ପ୍ରମାଣ ସ୍ୱରୂପ ଗୋଟିଏ କଥା, ଅସ୍ୱାଦ୍ୟ ହେଲେହେଁ, କୁହାଯାଉ । ସାରଳା ଦାସଙ୍କ ନାମ ଥିଲା, ସିଦ୍ଧେଶ୍ୱର ପରିଡ଼ା । ସେ ଥିଲେ, ଶୂଦ୍ର ବା ଚଷା । ଚଷା ବୋଲି ମୂଳରୁ ଜାତି ନ ଥିଲା । ପ୍ରକୃତ ଜାତି ନାମଟି ହେଉଚି ବୋଧହୁଏ, 'ସୁଧ' । ସେ ଯାହାହେଉ, ସିଦ୍ଧେଶ୍ୱର ପରିଡ଼ାଙ୍କ କୁଳେ ବିଧବାବିବାହ ବା 'ଦୁତିଅଘର' ଥିଲା । ଏବେ ଯେଉଁମାନେ ତାଙ୍କ ବଂଶର ବୋଲି ଗର୍ବ କରନ୍ତି, ସେମାନେ ନାମରେ 'ପରିଡ଼ା'ଙ୍କୁ 'ପରିଜା' ବା ପର୍ଯ୍ୟା (ପର୍ଯ୍ୟାୟ ବା ଉଚ୍ଚଶ୍ରେଣୀ ?) କରି 'ଦୁତିଅଘର'ର ସ୍ମୃତି ପର୍ଯ୍ୟନ୍ତ ପୋଛି ଦେଇଛନ୍ତି । ଆଜି ହୁଏତ ସମାଜର ଆଭିମୁଖ୍ୟ ବଦଳି ନ ଥିଲେ, ଏକଥା ଏଠାରେ କହି ହୁଅନ୍ତା ନାହିଁ । ସେଇମାନେ ଏବେ ବିଚାରନ୍ତୁ, ମହାପୁରୁଷ ସିଦ୍ଧେଶ୍ୱର ପରିଡ଼ାଙ୍କର ଏ ସମ୍ମାନ ବା ଅପମାନ ? ଏ ବିଷୟରେ ଆଉ ବେଶି କହିବା ଦରକାର ନାହିଁ ।

ବିଦ୍ରୋହ ଓ ବିପ୍ଳବରେ ସମାଜର ଉନ୍ନତି ଓ ପ୍ରଗତି । ଏଇ ବିଦ୍ରୋହ ଯେତେ ପ୍ରବଳ, ଏଥିରେ ଲୋକକଲ୍ୟାଣର ପ୍ରଚେଷ୍ଟା ଯେତେ ବ୍ୟାପକ ଓ ସ୍ଥାୟୀ, ସେ ବିଦ୍ରୋହୀ ସେତିକି ମହାପୁରୁଷ । ମହାମନିଷୀ ଦ୍ରଷ୍ଟା ସିଦ୍ଧେଶ୍ୱର ଥିଲେ, ଏକ ଯୁଗପ୍ରବର୍ତ୍ତକ ବିଦ୍ରୋହୀ । ସେ ପୁଣି ଥିଲେ, ଏ ଦେଶର ଯଥାର୍ଥ ଦେଶୀ-କଞ୍ଚା ଓ ଖାଣ୍ଟି ଓଡ଼ିଆ । ତାଙ୍କର ଏ ବିଦ୍ରୋହ ଅଣଓଡ଼ିଆ, ବା ଅଣ-ଓଡ଼ିଶୀଙ୍କ ଚୋଟିଚିପା ପ୍ରଭାବ ବିରୁଦ୍ଧରେ ଓଡ଼ିଆ ବୀରର ଆତ୍ମରକ୍ଷାର ବିଦ୍ରୋହ । ଜଗନ୍ନାଥଙ୍କ ସେବକ ଶବର 'ବିଶ୍ୱାବସୁ'ଙ୍କ ବିଦ୍ରୋହ ପୁରାଣ ଓ କିମ୍ବଦନ୍ତୀର କଥା । କିନ୍ତୁ ଶୂଦ୍ର ସିଦ୍ଧେଶ୍ୱରଙ୍କ ବିଦ୍ରୋହ ସତ୍ୟ । ସମାଜ, ସାହିତ୍ୟ ଓ ସଂସ୍କୃତି ରକ୍ଷା ଓ ପ୍ରତିଷ୍ଠା ପାଇଁ ଏହା ଓଡ଼ିଆର ପ୍ରଥମ, ସ୍ପଷ୍ଟ, ପ୍ରଧାନ ସଫଳ ବିଦ୍ରୋହ । ସେ ଏ ଯୁଗ ଓଡ଼ିଆ ସାହିତ୍ୟ ଓ ସଭ୍ୟତାର ଜନ୍ମଦାତା ଓ ନିତ୍ୟପ୍ରେରଣାରେ ଏବେ ବି ଜୀବନ୍ତ । ଇତିହାସ ପୁଣି ଏହାର ସାକ୍ଷୀ । ସେ ଇତିହାସ ଏବେ ନୂଆ କରି ପଢ଼ିବାର ଅଛି ।

ଓଡ଼ିଆ ଏବେ ବଞ୍ଚି ରହିଛି କିପରି ? ଏତେ ଶୋଷଣ ପେଷଣ ଭିତରେ ବଞ୍ଚି ରହିଥିବାର ହେତୁ କ'ଣ ? ତାହାର ହେତୁ ହେଉଚି, ଆତ୍ମରକ୍ଷା ପାଇଁ ବାରମ୍ବାର ବିଦ୍ରୋହ ବା ବିପ୍ଳବ । ପୁରାଣ ଯୁଗ କଥା ଛାଡ଼ିଦିଅ । ଭୌମ ସମ୍ରାଟମାନେ କୁଆଡ଼ୁ ଆସିଥିଲେ ଜଣାନାହିଁ । କିନ୍ତୁ ତାଙ୍କ ଶାସନ ଲେଖରୁ ଦେଖାପଡ଼େ, ସଂସ୍କୃତି ଓ ସାହିତ୍ୟରେ ଅନ୍ତତଃ ସେମାନେ ଓଡ଼ିଆ ନ ଥିଲେ । ନୈଷଧୀୟ ଛଟା ସେ ସବୁ ଲେଖାରେ ପୂର୍ଣ୍ଣ ପ୍ରକାଶ ପାଏ । ତା'ପରେ ଯେତେ ଦୂର ଜଣାଯାଏ, କୋଶଳର କେଶରୀମାନେ । ସେମାନେ ଥିଲେ ଶୈବ । ତେଣୁ ମଧ-ଦେଶର ସ୍ମାର୍ତଧର୍ମରେ ପ୍ରଭାବିତ । ଶୈବଧର୍ମ ଓ ସ୍ମାର୍ତଧର୍ମର ଭିତ୍ତି ଓଡ଼ିଆ ନୁହେଁ । କିମ୍ବଦନ୍ତୀ ମଧ କହେ, ଯାଜପୁରର ପ୍ରସିଦ୍ଧ କେଶରୀ ସମ୍ରାଟ୍ ଯଯାତି ମହାଭବ ଗୁପ୍ତ ଓଡ଼ିଆଙ୍କର ସଭ୍ୟତା ଉପରେ ମଧ-ଦେଶର ସଭ୍ୟତାକୁ ଚିପି ଦେବାପାଇଁ କାନ୍ୟକୁବ୍ଜରୁ ଦଶ ସହସ୍ର ସ୍ମାର୍ତ ବ୍ରାହ୍ମଣଙ୍କୁ ଓଡ଼ିଶାକୁ ଅଣାଇ, ଏବର ସ୍ମାର୍ତ ଉତ୍କଳ ଶ୍ରେଣୀ ବ୍ରାହ୍ମଣମାନଙ୍କର ପ୍ରାଧାନ୍ୟ ଓ ପରମ୍ପରା ସୃଷ୍ଟି କରିଥିଲେ । ତା'ପରେ ଆସିଲେ, ଗଙ୍ଗବଂଶୀୟମାନେ । ଏମାନଙ୍କର ଆଦିସ୍ଥାନ କର୍ଣ୍ଣାଟ । ସେଠାରୁ

ଆଗ ଏମାନେ ଆସିଥିଲେ, ସେ କାଳର କଳିଙ୍ଗକୁ । ସେ କଳିଙ୍ଗ ସେତେବେଳେ ଦକ୍ଷିଣ ଗଞ୍ଜାମ ଡେଇଁ ଏ ଆଡ଼କୁ ନ ଥିଲା । ପ୍ରଥମେ ଅନନ୍ତବର୍ମ ଚୋଡ଼ଗଙ୍ଗ ଓଡ଼ିଶାକୁ ଆସିଲେ । ସେମାନେ ଥିଲେ ବୈଷ୍ଣବ; କିନ୍ତୁ ଯଥାର୍ଥ ଜଗନ୍ନାଥଧର୍ମୀ ନ ଥିଲେ । ଚୋଡ଼ଗଙ୍ଗ ନିଜ ବୈଷ୍ଣବ ଭାବରେ ଜଗନ୍ନାଥଙ୍କୁ ଦେଖି ଏବର ଜଗନ୍ନାଥ ମନ୍ଦିର ତୋଳାଇବା ଆରମ୍ଭ କରିଥିଲେ । ତାଙ୍କ ନାତି ଅନଙ୍ଗଭୀମଦେବ ସେଇ ଜଗନ୍ନାଥ ମନ୍ଦିର ପୂର୍ଣ୍ଣ କରିଥିଲେ । ଏସବୁ ସତ୍ୟ । ମାତ୍ର ଏମାନେ ଜଗନ୍ନାଥ ଧର୍ମର ଯଥାର୍ଥ ତତ୍ତ୍ୱ ବୁଝି ନ ଥିଲେ ଓ ସମ୍ଭବ ଶ୍ରୀବୈଷ୍ଣବଧର୍ମର ପ୍ରତିଷ୍ଠାତା ରାମାନୁଜ ଆଚାର୍ଯ୍ୟ, ଚୋଡ଼ଗଙ୍ଗଙ୍କ ସମୟରେ ପୁରୀକୁ ଆସିଥିଲେ ଓ ଏବର ଏମାରମଠର ଶୁଭଦେଇ ଶ୍ରୀବୈଷ୍ଣବ ମଠମାନ ପୁରୀରେ ବସାଇ ଜଗନ୍ନାଥ ଧର୍ମକୁ ସେଇ ଅର୍ଦ୍ଧସ୍ମାର୍ତ ବୈଷ୍ଣବ ରଙ୍ଗରେ ଚିତ୍ର କରିବାକୁ ଲୋଡ଼ିଥିଲେ । ଏଇ ପ୍ରଭାବ ଫଳରେ ଜଗନ୍ନାଥ ମନ୍ଦିର ଉପରେ ତ୍ରିଶାଖା ରାମାନୁଜ ଚିତ୍ର ହୋଇଥିବାର ଏବେ ବି ଅନେକେ ଲକ୍ଷ୍ୟ କରିଥିବେ । ହେଲେହେଁ, ଶ୍ରୀବୈଷ୍ଣବର ଭେଦଧର୍ମ, ଜଗନ୍ନାଥର ସାମ୍ୟଧର୍ମଠାରୁ ତତ୍ତ୍ୱରେ ଓ କାର୍ଯ୍ୟରେ ଭିନ୍ନ । ପୁଣି ଏଇ ଗଙ୍ଗସମ୍ରାଟ୍‌ମାନେ ଶେଷ ପର୍ଯ୍ୟନ୍ତ କାନାଡ଼ି ଓ ସମ୍ଭବତଃ ତେଲୁଗୁକୁ ନିଜର ଭାଷା କରି ରଖିଥିଲେ । ଆଳଂକାରିକ 'ବିଦ୍ୟାଧର', ନରସିଂହଦେବଙ୍କ ସ୍ତୁତିମାତ୍ରରେ ଶ୍ଳୋକମାନ ଲେଖି, ସେଇ ଶ୍ଳୋକମାନଙ୍କୁ ଉଦାହରଣ ଦେଇ 'ଏକାବଳୀ' ନାମକ ଅଳଙ୍କାର ଶାସ୍ତ୍ର ଲେଖିଲା ପରି, ସେକାଳର ହୁଏତ ଅନ୍ୟ ଓଡ଼ିଆ ପଣ୍ଡିତମାନେ ସଂସ୍କୃତରେ ଗଙ୍ଗସମ୍ରାଟମାନଙ୍କୁ ସ୍ତୁତି କରି ଅଣ-ଓଡ଼ିଆ ପ୍ରଭାବ ଭିତରେ ମୁଣ୍ଡ ଟେକିବାକୁ ଉଦ୍ୟମ କରିଥିଲେ ।

ଠିକ୍ ତାହାରି ପରେ କୁଟା ତଳେ ଗୁମୁଗୁମିଆ ନିଆଁ ଜଳି ଉଠିଲା ପରି ଉଠିଥିଲେ, ସୂର୍ଯ୍ୟବଂଶୀ ସମ୍ରାଟ୍ ଗଜପତି କପିଳେନ୍ଦ୍ର ଦେବ ଭ୍ରମରବର ରାଉତରା ମହାପାତ୍ର । ପ୍ରବାଦ କହେ, କପିଳେନ୍ଦ୍ରଦେବ ଜାତିରେ ଗଉଡ଼ । ସେ ଯାହାହେଉ, ସେ ଥିଲେ ଖାଣ୍ଟି ଓଡ଼ିଆ । ଲାଙ୍ଗୁଳା ନରସିଂହଦେବଙ୍କ ପୁଅ ନିଃଶଙ୍କ ଭାନୁଦେବ ବା ମତ୍ତଭାନୁଦେବ ତାଙ୍କୁ ଭ୍ରମରବର ଉପାଧି ଦେଇ ସେନାପତି କରିଥିଲେ । ଭାନୁଦେବଙ୍କ ପରେ ହାତୀ ତାଙ୍କରି ଉପରେ ସୁନା କଳସ ଢାଳିଲା- ଅର୍ଥାତ୍, ପାତ୍ର, ମନ୍ତ୍ରୀ, ସାମନ୍ତମାନେ ବସି ତାଙ୍କୁଇ ସମ୍ରାଟ୍ କରି ଗାଦିରେ ବସାଇଲେ । ସେ ହେଉଛନ୍ତି ଓଡ଼ିଶାର ବିକ୍ରମାଦିତ୍ୟ । ଖାରବେଳଙ୍କ ପରେ ଓଡ଼ିଶା ସାମ୍ରାଜ୍ୟ ଏଡ଼େ ବିସ୍ତୀର୍ଣ୍ଣ ଆଉ କେବେ ନ ଥିଲା । ପୁରାଣର ଶବର 'ବିଶ୍ୱାବସୁ'ଙ୍କ ପରେ ଏପରି ଜଗନ୍ନାଥଙ୍କର ଏଡ଼େ ଭକ୍ତ ପ୍ରସିଦ୍ଧ ଓଡ଼ିଆ ବି ଆଉ କେହି ବାହାରିଥିବାର ଜଣାନାହିଁ । ଦିଗ୍‌ବିଜୟ ମଧ୍ୟରେ ଥରକୁ ଥର କପିଳେନ୍ଦ୍ର ଜଗନ୍ନାଥଙ୍କୁ ଯେ ଦାନମାନ କରିଛନ୍ତି, ସେଇ ଦାନମାନଙ୍କର ଶିଳାଲେଖ ସବୁ ଏହାର ମୁଖ୍ୟ ସାକ୍ଷୀ ।

ସେତିକି ନୁହେଁ, ଜଗନ୍ନାଥଙ୍କ ସାମ୍ୟଧର୍ମ ତାଙ୍କର ଓ ତାଙ୍କ ସ୍ରାମ୍ରାଜ୍ୟର ପ୍ରାଣର ପ୍ରାଣ ଥିଲା, କହିଲେ ଚଳେ । ଉଦାହରଣ ସ୍ୱରୂପ କୁହାଯାଇପାରେ, ଚୈତନ୍ୟ ଭାଗବତ କହନ୍ତି, ରାଜା 'ଭ୍ରମର'ଙ୍କ ଅର୍ଥାତ୍, କପିଳେନ୍ଦ୍ର ଦେବ ଭ୍ରମରବରଙ୍କ କ୍ରିୟା ଓ ପ୍ରଭାବରେ ବିଶ୍ୱମ୍ଭର ମିଶ୍ର ବା ଚୈତନ୍ୟଙ୍କ ପୂର୍ବପୁରୁଷ ଉପେନ୍ଦ୍ର ମିଶ୍ର ଯାଜପୁର ଛାଡ଼ି ସିଲେଟକୁ ପଳାଇ ଯାଇଥିଲେ । ଯଥାର୍ଥରେ କପିଳେନ୍ଦ୍ରଙ୍କ ସାମ୍ୟଧର୍ମ-ଧାରଣା ଓ କାର୍ଯ୍ୟ ଫଳରେ ବେଦଧର୍ମୀ ସ୍ମାର୍ତ ବ୍ରାହ୍ମଣମାନେ ଉଦ୍ୟକ୍ତ ହୋଇଥିଲେ । ଅନେକେ ଓଡ଼ିଶା ଛାଡ଼ି ଯାଇଥିଲେ । ସେ ଅବଶ୍ୟ ପରମ୍ପରାର ପ୍ରଭାବ ଏଡ଼ି ନ ପାରି ବ୍ରାହ୍ମଣ ଶାସନ ବସାଇଥିଲେ । ପୁରୀରେ ତାଙ୍କର ପ୍ରଧାନ ଶାସନଟି ହେଉଛି, 'କପିଳେଶ୍ୱରପୁର' । କିନ୍ତୁ ସେ ଗ୍ରାମର ବ୍ରାହ୍ମଣ, ଅନ୍ୟ ସ୍ମାର୍ତ ବ୍ରାହ୍ମଣଙ୍କ ପରି ପ୍ରତିଷ୍ଠିତ ବ୍ରାହ୍ମଣ ବୋଲି ଏ ପର୍ଯ୍ୟନ୍ତ ବି ମାନ ପାଇ ନ ଥିଲେ । ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସଙ୍କ ପରି ଦ୍ରଷ୍ଟା ଓ ମନୀଷୀ, ସେଇ କପିଳେଶ୍ୱରପୁର ଗ୍ରାମର ଲୋକ । ସେ କିନ୍ତୁ କରଣ ବଳରାମ ଦାସଙ୍କଠାରୁ ମନ୍ତ୍ର ଘେନିଥିଲେ । ପୁରୀର ସ୍ମାର୍ତ ଶାସନୀ ବ୍ରାହ୍ମଣମାନେ ଏବେବି ସେ ମହାପୁରୁଷଙ୍କ ଭାଗବତକୁ ପଢ଼ନ୍ତି ନାହିଁ, କି ଧର୍ମଗ୍ରନ୍ଥ ବୋଲି ଖାତିର କରନ୍ତି ନାହିଁ । ମହା ସାମ୍ୟଧର୍ମୀ ସ୍ୱୟଂ ଚୈତନ୍ୟ ମଧ୍ୟ ବଙ୍ଗଦେଶରେ ସ୍ମାର୍ତମାନଙ୍କର ଅତ୍ୟାଚାର ସହି ନ ପାରି ନିଜର ସାମ୍ୟଭୂମିକୁ ସ୍ମରଣ କରି କପିଳେନ୍ଦ୍ରଙ୍କ ପ୍ରତିଷ୍ଠିତ ଜଗନ୍ନାଥ କ୍ଷେତ୍ରକୁ, ଅର୍ଥାତ, ନିଜ ପୂର୍ବପୁରୁଷ 'ଉପେନ୍ଦ୍ର' ଛାଡ଼ି ପଳାଇ ଯାଇଥିବା ଭୂମିକୁ ମହାତୀର୍ଥ ରୂପେ ନିଜର ଜୀବନବ୍ୟାପୀ ସାଧନା-କ୍ଷେତ୍ର କରିଥିଲେ ।

ଏହିପରି ଓଡ଼ିଆ କପିଳେନ୍ଦ୍ର ଥିଲେ ସମାଜ ଓ ସଂସ୍କୃତି ହିସାବରେ ମହା ବିଦ୍ରୋହୀ ଓ ବିପ୍ଳବୀ । ସେଇ 'ଗଉଡ଼' କପିଳେନ୍ଦ୍ରଦେବଙ୍କ ସାଙ୍ଗକୁ ସେତିକିବେଳେ ଥିଲେ, ଶୂଦ୍ର ସାରଳା ଦାସ । ସେ ମହାଯୁଗ ପ୍ରବର୍ତ୍ତନରେ ଏଇ ଦୁଇଜଣ ଥିଲେ, ପ୍ରଧାନ ପ୍ରତୀକ । ସଂସ୍କୃତର ନିସନ୍ଧା ଶିକୁଳି ଭିତରୁ ଓଡ଼ିଆକୁ ଫିଟାଇ ଛାଡ଼ିଦେଇ ସାରଳା ଦାସ ପ୍ରଥମେ ଏ ଯୁଗର ଯଥାର୍ଥ ଓଡ଼ିଆ ସାହିତ୍ୟର ମୂଳଦୁଆ ପକାଇଥିଲେ । ସେଇ ହେଉଚି, ତାଙ୍କର ମହାଭାରତ । ଏ କଥାଟି ଏଠାରେ ପୁଣି କହିଦେବାର ଅଛି, ମହାଭାରତ ଏ ଭାରତରେ ଗୋଟିଏ ନୁହେଁ । କୁରୁ ପାଣ୍ଡବ ଯୁଦ୍ଧକୁ ଘେନି ଗୋଟିଏ ପରମ୍ପରାର ଗଳ୍ପ ଅଛି । ସେହି ଗଳ୍ପଟିକୁ ଧରି ନାନା ପ୍ରାଦେଶିକ-ଭାବ-ଭାବିତ ପରମ୍ପରା ଓ ଉପାଖ୍ୟାନମାନ ଲଗାଇ ଭିନ୍ନ ଭିନ୍ନ ମହାଭାରତ ପ୍ରତି ଅଞ୍ଚଳରେ ପ୍ରଚଳିତ ଥିଲା । ଉଦାହରଣ ସ୍ୱରୂପ, ବଙ୍ଗଦେଶର

ମହାଭାରତ ହେଉଚି, କାଶୀରାମ ଦାସଙ୍କ ମହାଭାରତ । ସେଥିରେ ଅଛି, କର୍ଣ୍ଣ, ଅତିଥିସେବା କରିବା ନିମନ୍ତେ ନିଜର ଏକମାତ୍ର ପୁତ୍ର ବିଶ୍ୱକେସନଙ୍କୁ ମାଆଙ୍କ ହାତେ ଧରାଇ ଆପେ ଖଣ୍ଡାରେ ହାଣି ସେଇ ମାଂସକୁ ମାଆଙ୍କ ହାତରେ ରନ୍ଧାଇ, ଅତିଥିଙ୍କୁ ସେଇ ତରକାରୀ ପରଶାଇ ସେଇ ଅତିଥିଙ୍କ ଇଚ୍ଛା ପୂର୍ଣ୍ଣ କରିଥିଲେ । ଅତିଥି ସେବାରେ ଏ ଆତ୍ମବିସ୍ମୃତି, ଏ ଆତ୍ମତ୍ୟାଗ ବ୍ୟାସଙ୍କ ମହାଭାରତ ନୁହେଁ । ଏହା ପୂର୍ବ ଭାରତର ଆଦର୍ଶ ଓ ବଙ୍ଗର କାଶୀରାମ ଦାସଙ୍କ ମହାଭାରତ ଉପାଖ୍ୟାନରେ ପ୍ରତିଫଳିତ ।

ସେଇପରି ସାରଳା ଦାସଙ୍କ ମହାଭାରତର ଗୋଟିଏ ଉପାଖ୍ୟାନ କହୁଚି, ଶୁଣ । ଯୁଧିଷ୍ଠିରଙ୍କ ରାଜ୍ୟରେ ଘୋର ଦୁର୍ଭିକ୍ଷ ପଡ଼ିଲା । ଲକ୍ଷେ ଭରଣ ଧାନ କୁଆଡୁ ନ ଆସିଲେ ଲୋକେ ଅନାହାରରେ ମରିଯିବେ । ଯୁଧିଷ୍ଠିରଙ୍କୁ ବୁଦ୍ଧି ଦିଶିଲା ନାହିଁ । ସେ ବିଚାରି ବିଚାରି ଭୀମଙ୍କୁ ପଠାଇଦେଲେ କୁବେରଙ୍କ ପାଖକୁ, ମାଗିକରି ଲକ୍ଷେ ଭରଣ ଧାନ ଆଣିବାକୁ । ଭୀମ କୁବେରଙ୍କ ପୁରକୁ ଗଲେ । ସେଠାରେ ଯାଇ ଦେଖିଲେ, ଗୋଟିଏ କାଳିଆ କୁତ୍ସିତ ଲୋକ ଗୋଟାଏ ଓଦା ମାଟି ପିଣ୍ଡୁଳା ହାତରେ ଧରି ସେଇ ମାଟି ପୁଣ୍ଡୁଳାଟିକୁ ଦାଣ୍ଡ ଦୁଆରେ ବୁଣି ଯାଇଥିବା ଧାନ ଉପରେ ମଡ଼ାଇ ମଡ଼ାଇ, ବାଁହାତରେ ଗୋଟିଏ ବାଉଁଶିଆ ଭିତରକୁ ଝାଡ଼ିଦେଇ ଧାନ ଗୋଟାଉଛି । ଭୀମ ପଚାରିଲେ, "କୁବେର କାହାନ୍ତି ? ତାଙ୍କ ସାଙ୍ଗରେ ମୋର ଦେଖା ହୋଇପାରିବ କି ?" ସେଇ କୁତ୍ସିତ କଳେବର ଲୋକଟି ମୁଣ୍ଡ ଟେକି ଚାହିଁ କହିଲା, "କାହିଁକି ? କ'ଣ କହିବେ କୁହନ୍ତୁ । ମୁଁ ପରା କୁବେର ।" ଏକଥା ଶୁଣି ଭୀମଙ୍କ ହାଲୁକ ଶୁଖିଲା- ବିଚାରିଲେ, ଗୋଟି ଗୋଟି କରି ମାଟି ପିଣ୍ଡୁଳା ମଡ଼ାଇ ଯେ ଧାନ ସଂଗ୍ରହ କରୁଛନ୍ତି, ସେଇ ପୁଣି ଆମ ଭାଇଙ୍କି ଲକ୍ଷେ ଭରଣ ଧାନ ସାହାଯ୍ୟ କରିବେ ? ତଥାପି କହିଲେ, "ମୁଁ ମହାରାଜ ଯୁଧିଷ୍ଠିରଙ୍କ ଭାଇ ଭୀମ । ଆମ ଦେଶରେ ଦୁର୍ଭିକ୍ଷ ପଡ଼ିଛି । ଭାଇ ପଠାଇଛନ୍ତି, ଆପଣଙ୍କଠାରୁ ଲକ୍ଷେ ଭରଣ ଧାନ ସାହାଯ୍ୟ ମାଗିନେବା ପାଇଁ ।" ସଙ୍ଗେ ସଙ୍ଗେ ଅତି ଆଦରରେ କୁବେର କହିଲେ, "ହଉ ତେବେ ବାପା, ଶଗଡ଼ ଆଣିବାର ଯୋଗାଡ଼ କରିଚ, ନା ମୁଁ ଶଗଡ଼ରେ ପଠାଇଦେବି ?" ଭୀମ ଶଗଡ଼ ଯୋଗାଡ଼ କରି ନ ଥିଲେ । ତହୁଁ କୁବେର ନିଜେ ଲକ୍ଷେ ଶଗଡ଼ ଯୋଗାଡ଼ କରି ଧାନ ମପାଇ ଶଗଡ଼ ଶଗଡ଼ କରି ପଠାଇବାର ଆରମ୍ଭ କଲେ । ଭୀମଙ୍କୁ କହିଲେ, "ଆଗେ ଆଗେ ଶଗଡ଼ ସଙ୍ଗେ ଯାଅ, ଘରେ ଶଗଡ଼ ଗଣିକରି ରଖିବ ।" ପ୍ରାୟ ୧୦ ହଜାର ଖଣ୍ଡେ ଶଗଡ଼ ଯାଇଚି ଅଟକିଗଲା, ପଛରୁ ଆଉ ଶଗଡ଼ ଚାଲିଲା ନାହିଁ । କୁବେର ବ୍ୟସ୍ତ ହୋଇ ପଡ଼ିଲେ । ଏ ମଧରେ ଭୀମ ଫେରି ଆସି ଖବର ଦେଲେ, "ବାଟରେ ପଟ ପଡ଼ିଲା । ସେଥିରେ ଚକ ବୁଡ଼ିଯାଏ ଗଳି ପଡୁଚି । ହଡ଼ା ଓଟାରି ପାରୁନାହାନ୍ତି । ପାଖରେ ବାଲି ନାଇ କି ମାଟି ନାଇ । ଲୋକ ବି ନାହାନ୍ତି । କରାଯିବ କ'ଣ ?" କୁବେର ଟିକିଏ ଭାବିଲେ । ତା'ପରେ କହିଲେ, "ଆଚ୍ଛା ବାପା, ତେବେ, ଗୋଟାଏ କାମ କର । ଆଗ ଶଗଡ଼ର ଧାନସବୁ କାଦୁଅ ଉପରେ ଅଜାଡ଼ିଦିଅ । ସେଥିରେ ଶଗଡ଼ ଚାଲିଯିବ । ଖାଲି ଶଗଡ଼ ସବୁ ଫେରାଇଦିଅ । ମୁଁ ସେଥିରେ ପୁଣି ଧାନ ଭରି ଛାଡ଼ିଦେବି ।" ସେଇପରି ହେଲା । ପାଞ୍ଚହଜାର ଖଣ୍ଡେ ଶଗଡ଼ର ଧାନ କାଦୁଅରେ ପଡ଼ିଗଲା । ଶଗଡ଼ ଚାଲିଗଲା । ଭୀମ ଆଶ୍ଚର୍ଯ୍ୟ ହେଲେ, ଯେ କାଦୁଅ ପିଣ୍ଡୁଳାରେ ଗୋଟି ଗୋଟି କରି ଧାନ ଗୋଟାଇ ରଖୁଥିଲା, ସେ ପୁଣି ପାଞ୍ଚହଜାର ଖଣ୍ଡ ଶଗଡ଼ର ଧାନ କାଦୁଅରେ ଫୋପାଡ଼ି ଦେଲା କିପରି ? ସେ ପୁଣି ଆସି କୁବେରଙ୍କୁ ଏକଥା ପଚାରିଲେ । କୁବେର କହିଲେ, "ବାପା ! ବୁଝିଲ ନାହିଁକି ? ଧନ ସଂଗ୍ରହ କଲାବେଳେ ଏହିପରି କରିବ । କାହିଁକି ? ଖର୍ଚ୍ଚ କଲାବେଳେ ଏହିପରି କରିବ ବୋଲି ।"

ଏ ବ୍ୟାସଙ୍କ ମହାଭାରତ ନୁହେଁ କି କାଶୀରାମ ଦାସଙ୍କ ମହାଭାରତ ନୁହେଁ । ଏ ଓଡ଼ିଆ ମହାଭାରତ । ଯୁଧିଷ୍ଠିର ରାଜ୍ୟରେ ଧାନ ଶଗଡ଼ରେ ବୁହା ହେଉ ନ ଥିଲା, କି ଶଗଡ଼ ପଟରେ ପଡୁ ନ ଥିଲା । କୁବେର ମଧ ଧାନ ଗୋଟାଉ ନ ଥିଲେ, କି ପଠାଉ ନ ଥିଲେ । ଏଇପରି 'ଓଡ୍ରରାଷ୍ଟ୍ରମଣ୍ଡଳ' ବର୍ଣ୍ଣନାଠାରୁ ଭୀମ ଦୁର୍ଯ୍ୟୋଧନଙ୍କ 'ଝିମିଟି ଖେଳ'ରୁ ମହାଭାରତ ପର୍ଯ୍ୟନ୍ତ, ଲକ୍ଷ୍ମୀ ପାର୍ବତୀଙ୍କର ଗାଁ ମାଇପଙ୍କ ପରି, କାହା ବର ବଡ଼ ବୋଲି କଳି କରିବାଠାରୁ ଦେବତାଙ୍କ ଭିତରେ ରାଜସ୍ତୁତି ଓ ମାମଲତକାରୀ ପର୍ଯ୍ୟନ୍ତ, ସବୁ ସାରଳାଦାସଙ୍କ ମହାଭାରତରେ ଅଛି । ତାଙ୍କୁ ଦେବୀ ଲେଖାଇ ନାହାନ୍ତି, କି 'ମୂର୍ଖ' ସିଦ୍ଧେଶ୍ୱର ନ ଜାଣି ଲେଖି ନାହାନ୍ତି । ସଂସ୍କୃତସେବୀ ଓ ସ୍ମାର୍ତ୍ତଙ୍କ ଚୋଟିଚିପା ସହି ନ ପାରି ମନୀଷୀ ସିଦ୍ଧେଶ୍ୱର ମୁକ୍ତ, ସ୍ୱାଧୀନ ଓଡ଼ିଆ ସାହିତ୍ୟ, ଓଡ଼ିଆ ପ୍ରାଣକୁ ଫୁଟାଇ ଛାଡ଼ି ଦେଇଛନ୍ତି । ଏହାହିଁ ସାରଳାଦାସଙ୍କ ମହାଭାରତ ।

ସେ ମହାଭାରତରେ ପୁଣି ଭାଷା । ଏ ବିଷୟରେ ବିଶେଷ କହିବା ଦରକାର ନାହିଁ । ଆଜି ଏତେଦିନ ପରେ ସାରଳାଦାସଙ୍କୁ ମାରିବା ପାଇଁ ଗୌରୀଶଂକର ରାୟ ଓ ଭାଗବତପ୍ରସାଦ ଦାନଙ୍କ ପରି ଲୋକମାନେ ସଂସ୍କୃତିଆ ପଣ୍ଡିତ ବସାଇ, ଚଉଦ ଅକ୍ଷରିଆ ବଂଗଳା ପୟାର ରୀତିରେ ସାରଳାଦାସଙ୍କ 'ଦାଣ୍ଡୀ' ମହାଭାରତକୁ ଚଉଦ ଅକ୍ଷର ପାଦରେ ଗଣି, ଟିକି ଟିକି କରି କାଟିଥିଲେ ମଧ, ତାକୁ ଆଜି ପୁଣି ହର ପାର୍ବତୀଙ୍କର 'ଫୁଲ ପାଣି' ପକାଇ ବଞ୍ଚାଇବାର ଉଦ୍ୟମ ହେଲାଣି । ସେ ଭାଷା ଖାଲି ଓଡ଼ିଆ ଭାଷା ନୁହେଁ । ସଂସ୍କୃତର ନିପୀଡ଼ନ ବେଳେ ସେ ହେଉଚି, ଓଡ଼ିଆ ପ୍ରାଣର

ସ୍ୱାଭାବିକ ସ୍ଫୂର୍ତ୍ତି । ବୈଷ୍ଣବ ଯୁଗରେ, ଭଞ୍ଜ ଯୁଗରେ ତଥା ରାଧାନାଥ - ମଧୁସୂଦନ ଯୁଗରେ ସେ ଭାଷାକୁ ଚିପି, ବୁଡ଼ାଇ ପୁଣି ମାରି ଦେବାର ବହୁ ଉଦ୍ୟମ ହୋଇଚି । ସେ ଉଦ୍ୟମର ଫଳ ରହୁନାଇ, ରହିବ ନାହିଁ । ଓଡ଼ିଶାର ଆଦି ସାହିତ୍ୟିକ ମରିବାର ନୁହନ୍ତି, ସେ ମରିବେ ନାହିଁ । ତାଙ୍କର ଦୂରଦର୍ଶନ ଯେପରି ବ୍ୟାପକ, ସେହିପରି ଚିରନ୍ତନ ।

ଆଉ ଗୋଟିଏ କଥା । ତା ବେଶିକରି କହିବାର ସୁବିଧା ଏଠାରେ ନାହିଁ । ସେ ହେଉଛି, ନିର୍ବାଣ ସାଧନାରେ ପୂର୍ବଭାରତ, ବିଶେଷରେ ଓଡ଼ିଶାର ଅଷ୍ଟାଙ୍ଗ ସାଧନାର ତନ୍ତ୍ରଯୋଗ । ତାହା ଯେପରି ଥିଲା, ଆଜି ସେପରି ନାହିଁ । ସେଥିପାଇଁ ପୁସ୍ତକ ନାହିଁ, କି ତା'ର ଆଲୋଚନା ହୁଏ ନାହିଁ । ଗୁରୁଙ୍କଠାରୁ ମାତ୍ରକ ଦୀକ୍ଷିତମାନେ ସେ ତତ୍ତ୍ୱ ନିଅନ୍ତି । ସେ ଅଷ୍ଟାଙ୍ଗ ସାଧନାରେ ସିଦ୍ଧ ହେଲେ, ଇଚ୍ଛାମୃତ୍ୟୁ ହୁଏ । ଜୀବାତ୍ମା ପରମାତ୍ମା ନାମରେ ସେ ସାଧନାରେ ପଞ୍ଚପ୍ରାଣକୁ ତ୍ରିକୂଟରେ ବା କପାଳତଳେ ରଖି ସିଦ୍ଧଯୋଗୀ ନିର୍ବାଣ ଭଜନ୍ତି । ଶୁଣିବାରେ, ସେ ନିର୍ବାଣ ବେଳେ ତାଳୁ ଉପର ଫୁଟିଯାଏ । ଏବେ ମଧ୍ୟ ପୁରୀରେ ସେଇ ପନ୍ଥୀଙ୍କ ମଠରେ ସେଥିପାଇଁ ମଳା ଉତ୍ତାରୁ ନଡ଼ିଆରେ ମହନ୍ତଙ୍କର ତାଳୁ ପିଟି ଫିଟାଇ ଦିଅନ୍ତି । ତାପରେ ସମାଧି ଦିଆହୁଏ ।

ଓଡ଼ିଶା ଏଇ ଯୋଗ-ସାଧନାର ପରମକ୍ଷେତ୍ର ଥିଲା । ପୁଷ୍ପଗିରି ବିହାରରେ ଏହି ଯୋଗତନ୍ତ୍ରର ସାଧନା ଲୋକେ ଅଭ୍ୟାସରେ ଗ୍ରହଣ କରୁଥିଲେ ବୋଲି ମନେ ହୁଏ । ସିଦ୍ଧେଶ୍ୱର ଏଇ ଯୋଗରେ ସିଦ୍ଧ ହେଲେ । କିମ୍ବଦନ୍ତୀ କହେ, ସେ ନିଜର ମୃତ୍ୟୁକାଳ ନିଜେ ଠିକ୍ କରି ଜାଣିଥିଲେ ଓ ଠିକ୍ ସେତିକିବେଳେ ପଦ୍ମାସନରେ ବସି ଦେହତ୍ୟାଗ କରିଥିଲେ । ଏ କଥାରେ ଅବିଶ୍ୱାସ କରିବାର କିଛି ନାଇ । ସେ କାଳର ଓଡ଼ିଆ ମହାପୁରୁଷମାନଙ୍କ ପକ୍ଷରେ ଏ କିଛି ଆଶ୍ଚର୍ଯ୍ୟ କଥା ନ ଥିଲା ।

ସଂକ୍ଷେପରେ ଏହାହିଁ ଆମର ସାରଳା ଦାସ । ସେ ଦେବତା ନୁହନ୍ତି । ସେ ମନୁଷ୍ୟ । ସେ କେବଳ ଶୂଦ୍ରମୁନି ନୁହନ୍ତି । ସେ ଓଡ଼ିଶାର ଦର୍ଶନବନ୍ତ ମହାପୁରୁଷ । ଆଜି ଓଡ଼ିଆ ସଭ୍ୟତା, ଓଡ଼ିଆ ଭାଷା ତଥା ଓଡ଼ିଆ ସାହିତ୍ୟର ସେ ପିତା ଓ ପ୍ରତିଷ୍ଠାତା । ଏହା ଯେ ଦେଖେ, ସେଇ ଏକା ସାରଳାଦାସଙ୍କୁ ଦେଖେ । ଏଥିରେ ଟିକିଏ ହେଲେ ବୁଝିଲେ, ଲୋକ ସାରଳାଦାସଙ୍କୁ ବୁଝିବ, ଓଡ଼ିଶାକୁ ବୁଝିବ, ଓଡ଼ିଆକୁ ବୁଝିବ ।

(୧୯୪୭)

**(ଓଡ଼ିଆ ଭାଷା ଓ ସାହିତ୍ୟ,**
ବ୍ରହ୍ମପୁର (ଗଂଜାମ), ୧୯୫୪)

## (୪)
## କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
# ଓଡ଼ିଶାର ବିଜୟନଗର ସାମ୍ରାଜ୍ୟ ସହିତ ସଂଘର୍ଷର ଚିତ୍ର

କପିଳେଶ୍ୱର ଗଜପତିଙ୍କ ଦ୍ୱାରା ଦେବରକୋଣ୍ଡା ଦୁର୍ଗ ଅଧିକୃତ ହେବା ସମୟର ଘଟଣାବଳୀ ସାରଳା ମହାଭାରତରେ ଯେପରି ଭାବରେ ପ୍ରକାଶ ପାଇଛି, ତାହା ପ୍ରଥମ ପରିଚ୍ଛେଦ (ଗ)ରେ ଆଲୋଚିତ ହୋଇଛି । ଏହି ଆଲୋଚନାକୁ ପରିତ୍ୟାଗ କରି ଅନ୍ୟ ଆଲୋଚନାରେ ପ୍ରବୃତ୍ତ ହେବା ପୂର୍ବରୁ ଏ ସମ୍ବନ୍ଧରେ ଆଉ କେତୋଟି କଥା କହିବା ଆବଶ୍ୟକ ମନେକରୁଛି । ସାରଳା ଦାସ ଅର୍ଜୁନଙ୍କ ଦ୍ୱାରା ଦରଦସେନ ଓ ଜମାଗୋଷ୍ଠର ପରାଜୟ ବିଷୟକ ଯେଉଁ ଆଖ୍ୟାୟିକା ଲେଖିଛନ୍ତି, ସେପରି ଆଖ୍ୟାୟିକା ସଂସ୍କୃତ ମହାଭାରତରେ ବା ଅନ୍ୟ କୌଣସି ପୁରାଣରେ ନାହିଁ । ଏଣୁ ଏହି ଆଖ୍ୟାୟିକା କବିଙ୍କ ସମ୍ପୂର୍ଣ୍ଣ କଳ୍ପନା-ପ୍ରସୂତ କିମ୍ବା କୌଣସି ଐତିହାସିକ ଘଟଣାବଳୀ ଉପରେ ପ୍ରତିଷ୍ଠିତ । ଏହି ଆଖ୍ୟାୟିକାକୁ ସମ୍ପୂର୍ଣ୍ଣ କଳ୍ପନା-ପ୍ରସୂତ ବୋଲି କହିବା ସମ୍ଭବପର ହେଉନାହିଁ, କାରଣ ଐତିହାସିକ ଯୁଦ୍ଧସ୍ଥଳି ଦେବରକୋଣ୍ଡାକୁ ଏଥିରେ ସାରଳା ଦାସ ଅର୍ଥାନ୍ତରରେ ଅମରଚୂଡ଼ ବୋଲି କହିଛନ୍ତି, ଆଉ ଏଥିରେ ଐତିହାସିକ ରାଜ୍ୟ ବାହାମନୀ ଓ ଐତିହାସିକ ଦୁର୍ଗ ଉଦୟଗିରିର ଅବତାରଣା ମଧ କରିଛନ୍ତି । ତା'ଛଡ଼ା ଐତିହାସିକ ଦେବରକୋଣ୍ଡା ଯୁଦ୍ଧର ଘଟଣାବଳୀ ସହିତ ଆଖ୍ୟାୟିକାର ଘଟଣାବଳୀ ପ୍ରାୟ ମେଳ ଖାଇଯାଉଛି । ଏପରିକି କ୍ଷୁଦ୍ର କ୍ଷୁଦ୍ର ଘଟଣାମାନଙ୍କର ମଧ ମେଳ ଦେଖାଯାଉଛି । ଫେରିସ୍ତା ଲେଖିଛନ୍ତି ଯେ, ଓଡ଼ିଶାର ଯେଉଁ ସୈନ୍ୟ ଦେବରକୋଣ୍ଡା ଯୁଦ୍ଧରେ ନିୟୋଜିତ ହୋଇଥିଲେ, ସେମାନଙ୍କ ମଧରେ ଦଶହଜାର ପଦାତିକ ଓ ଚାରିଶହ ଅଶ୍ୱାରୋହୀ ଥିଲେ । ଏହା ଏକ ଆନୁମାନିକ ସଂଖ୍ୟା ଓ ଏହି ସଂଖ୍ୟା ଗୁପ୍ତଚରମାନଙ୍କ ଦ୍ୱାରା ହିଁ ନିର୍ଣ୍ଣିତ ହୋଇଥିବ । ଶତ୍ରୁ ତରଫରୁ ଗୁପ୍ତଚର ଆସି ଯେ ସୈନ୍ୟ କଳନା କରୁଛନ୍ତି, ଏକଥା ଓଡ଼ିଶାର ରଣ-ବିଶାରଦମାନେ ମଧ ଜାଣିପାରିଥିବେ । ଏହି କ୍ଷୁଦ୍ର ଘଟଣାଟିକୁ ମଧ ସାରଳା ଦାସ ଲେଖି ଯାଇଛନ୍ତି -

ରାଜାର ଆଜ୍ଞାରେ ଦୂତେ ଚଳିଲେ ଗୋପନେ
ରାତ୍ରକାଳେ ପଶିଲେ ସେ ରତୁକା କାନନେ ।
ଗୁପତେ ମିଳିଲେ ଯାଇ ଅର୍ଜୁନର ଥାଟେ
କଳିଲେ ତାଙ୍କର ସୈନ୍ୟ ବୁଲିଣ କପଟେ ।

ସଭାପର୍ବ, ୧-୭

କବି ବର୍ଣ୍ଣିତ ରତୁକାକାନନ ଯେ କେଉଁ ସ୍ଥାନ, ତାହା ଲେଖକ ସ୍ଥିର କରିପାରିନାହିଁ; କିନ୍ତୁ ଏହାକୁ କାଳ୍ପନିକ ବୋଲି ମଧ ଧରିପାରୁନାହିଁ । ସୀମାବଦ୍ଧ ଜ୍ଞାନ ଦ୍ୱାରା ଯାହା ସ୍ଥିରୀକୃତ ହୋଇ ନ ପାରୁଛି, ତାକୁ ଅଳୀକ ବା କାଳ୍ପନିକ ବୋଲି କହିବା ଠିକ୍ ହେବନାହିଁ ।

କେବଳ ବ୍ୟକ୍ତିମାନଙ୍କ ନାମକୁ ସାରଳା ଦାସ ଖୋଲାଖୋଲି ଭାବରେ ଲେଖିପାରି ନାହାନ୍ତି । ଏହି ଆଖ୍ୟାୟିକାରେ ଯଦି ସେ କପିଳେଶ୍ୱର ଓ ମୁସଲମାନ୍ ଯୋଦ୍ଧାମାନଙ୍କ ନାମ ଖୋଲାଖୋଲି ଭାବରେ ଲେଖିଦେଇଥାନ୍ତେ, ତାହାହେଲେ ତାଙ୍କ ଗ୍ରନ୍ଥ ଆଉ ମହାଭାରତ-ପଦବାଚ୍ୟ ହୋଇ ରହି ନ ଥାନ୍ତା । ଏହା ହିଁ ଥିଲା ତାଙ୍କର ବିପଦ ! ତଥାପି ଅର୍ଜୁନ ଦେବରକୋଣ୍ଡାରେ ଯେ, ମୁସଲମାନ୍ ରାଜା ସହିତ ହିଁ ଯୁଦ୍ଧ କରିଥିଲେ, ଏ କଥାର ଆଭାସ ତାଙ୍କ ଆଖ୍ୟାୟିକାରେ ଯଥେଷ୍ଟ ଭାବରେ ରହିଛି । ସେ ଦରଦସେନଙ୍କୁ 'ଭାଖାମଣ୍ଡଳ'ର ରାଜା ବୋଲି କହିଛନ୍ତି । ସାରଳା ଦାସଙ୍କ ଗ୍ରନ୍ଥକୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ସେ ସବୁବେଳେ ଭାରତର ମୁସଲମାନ୍-ଅଧିକୃତ ଅଞ୍ଚଳମାନଙ୍କୁ 'ଭାଖାମଣ୍ଡଳ' ବା 'ଚୋଖାର ମଣ୍ଡଳ' ବୋଲି କହିଛନ୍ତି । ସେ ଏହି ଶବ୍ଦ ଦୁଇଟି ତାଙ୍କ ଗ୍ରନ୍ଥରେ ଏତେଥର ବ୍ୟବହାର କରିଛନ୍ତି ଯେ, ବାହୁଲ୍ୟ ଭୟରେ ଏଠାରେ ଉଦାହରଣ ଦିଆଯାଉନାହିଁ ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ – ସାରଳା ଦାସ ଯେ ଏହି ଶବ୍ଦ ଦୁଇଟିକୁ ମୁସଲମାନ୍ ଅର୍ଥରେ ହିଁ ବ୍ୟବହାର କରିଛନ୍ତି, ତା'ର ପ୍ରମାଣ କଅଣ ? ଏହାର ଉତ୍ତରରେ ଏତିକି କୁହାଯାଇପାରେ ଯେ, ଏହି ଶବ୍ଦ ଦୁଇଟିର ବ୍ୟୁତ୍ପତ୍ତି ମଧରେ ହିଁ ପ୍ରମାଣ ନିହିତ ହୋଇ ରହିଛି । 'ଭାଖା' ଓ 'ଚୋଖା'ର ଶବ୍ଦ ଦୁଇଟି ଯଥାକ୍ରମେ ସଂସ୍କୃତ ଭାକ୍ଷ ଓ ଚୋସ୍କ ଶବ୍ଦରୁ ହିଁ ଉତ୍ପତ୍ତି ହୋଇଛି (Monier-Williams, Sanskrit English Dictionary, ପୃ.-୭୫୧ ଓ ପୃ.-୪୦୩ ଦ୍ରଷ୍ଟବ୍ୟ)। 'ଭାକ୍ଷ' ଶବ୍ଦର ଅର୍ଥ ହେଉଛି ଲୋଭୀ, ସର୍ବଭକ୍ଷ । ମୁସଲମାନ୍‌ମାନେ ସର୍ବଭକ୍ଷ, ଏକଥା ଠିକ୍ ନୁହେଁ, ମାତ୍ର ଯେହେତୁ ସେମାନେ ହିନ୍ଦୁମାନଙ୍କ ଅଭକ୍ଷ୍ୟ ଗୋମାଂସାଦି ଖାଉଥିଲେ ନୈଷ୍ଠିକ ହିନ୍ଦୁ ଚକ୍ଷୁରେ ସେମାନେ 'ଭାକ୍ଷ' ବା 'ଭାଖା' ରୂପେ ପରିଚିତ ହେଉଥିଲେ । 'ଚୋସ୍କ' ଶବ୍ଦର ଅର୍ଥ ହେଉଛି ସିନ୍ଧୁଦେଶୀୟ ଘୋଟକ । ଚୋସ୍କ ଶବ୍ଦରୁ ଚୋଖ ଶବ୍ଦଟିର ଉତ୍ପତ୍ତି ହୋଇଥିଲା, ଆଉ ଏହି ଚୋଖ ବା ସିନ୍ଧୁଦେଶୀୟ ଅଥବା ବିଦେଶୀୟ ଘୋଟକର ବ୍ୟବସାୟରେ ଯେଉଁମାନେ ଲିପ୍ତ ଥିଲେ, ସେମାନଙ୍କୁ ଚୋଖାର ବୋଲି କୁହାଯାଉଥିଲା । ଭାରତକୁ ମୁସଲ୍‌ମାନଙ୍କ ଆଗମନର ବହୁପୂର୍ବେ ସୁଦ୍ଧା ଉତ୍ତମ ଓ ତେଜସ୍ୱୀ ଘୋଟକ ପାଇଁ ସିନ୍ଧୁଦେଶ

ପ୍ରସିଦ୍ଧି ଲାଭ କରିଥିଲା, ସେଥିପାଇଁ ଘୋଡ଼ାର ଅନ୍ୟନାମ ଥିଲା ସୈନ୍ଧବ । ଭାରତରେ ସିନ୍ଧୁଦେଶ ସର୍ବପ୍ରଥମେ ମୁସଲମାନ୍‌ମାନଙ୍କ ଦ୍ୱାରା ଅଧିକୃତ ହେବାପରେ ମଧ ଘୋଟକ ପାଇଁ ତା'ର ପୂର୍ବ ପ୍ରସିଦ୍ଧି ବଜାୟ ରହିଲା । ମୁସଲମାନ୍‌ମାନେ ଖାଲି ସିନ୍ଧୁଦେଶରୁ ନୁହେଁ, ଆରବ ଓ ପାରସ୍ୟ ଦେଶରୁ ମଧ ଉତ୍ତମ ଅଶ୍ୱ ଆମଦାନୀ କରି ଭାରତର ବିଭିନ୍ନ ଅଞ୍ଚଳରେ ବିକୁଥିଲେ । ବସ୍ତୁତଃ ଭଲ ଘୋଡ଼ାର ବ୍ୟବସାୟ ମୁସଲମାନମାନଙ୍କ ଏକପ୍ରକାର ଏକଚାଟିଆ ଥିଲା । ଘୋଟକ-ବ୍ୟବସାୟୀ ରୂପେ ବଖତିୟାର ଖିଲିଜି ଓ ହୋସାଙ୍ଗ୍ ସାହା ଯଥାକ୍ରମେ ବଙ୍ଗ ଓ ଓଡ଼ିଶାକୁ ଆକ୍ରମଣ କରିଥିବା କଥା ଇତିହାସପ୍ରସିଦ୍ଧ ହୋଇ ରହିଛି । ଭଲ ଘୋଡ଼ା ସିନ୍ଧୁଦେଶରୁ, ଆରବରୁ, ପାରସ୍ୟରୁ ବା ଆଉ ଯେଉଁ ଦେଶରୁ ଆସିଲେ ସୁଦ୍ଧା ଜନସାଧାରଣ ତାକୁ ଚୋଖା ବା ସିନ୍ଧୁଦେଶୀୟ ଘୋଡ଼ା ବୋଲି ଭାବୁଥିଲେ, ଆଉ ତା'ର ବ୍ୟବସାୟୀକୁ ଚୋଖାର ବୋଲି କହୁଥିଲେ । ଏହି ହେତୁରୁ ସାରଳାଦାସ ଚୋଖାର ମଣ୍ଡଳ ଓ ଚୋଖାର ଅଶ୍ୱକୁ ମୁସଲମାନ୍ ଦେଶ ଓ ମୁସଲମାନ୍ ଘୋଡ଼ା ଅର୍ଥରେ ହିଁ ବାରମ୍ବାର ବ୍ୟବହାର କରିଯାଇଛନ୍ତି । ଆଲୋଚ୍ୟ ଆଖ୍ୟାୟିକାରେ ଅମରଚୂଡ଼ ପର୍ବତ ବା ଦେବରକୋଣ୍ଡା ଯୁଦ୍ଧରେ ଯେଉଁ ରାଜା ଅର୍ଜୁନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ, ସାରଳାଦାସ ତାଙ୍କୁ ଭାଖାମଣ୍ଡଳ-ଅଧିକାରୀ ଆଉ 'ବ୍ରହ୍ମସାହୀ' ବା ବାହାମନୀ ରାଜ୍ୟ ଓ 'ଅରୁଣଗିରି' ବା ଉଦୟଗିରିର ଧ୍ୱଂସକର୍ତ୍ତା ରୂପେ ବର୍ଣ୍ଣନା କରିଥିବାରୁ, ସେ ଯେ ବାହାମନୀ ରାଜ୍ୟର ମୁସଲମାନ୍ ରାଜା, ଏ ବିଷୟରେ ସନ୍ଦେହ କରିବାର କାରଣ ରହୁନାହିଁ ।

ସାରଳାଦାସ କୌଣସି ଠାରେ ମୁସଲମାନ୍‌ମାନଙ୍କୁ ଯବନ ବା ମ୍ଳେଚ୍ଛ ବୋଲି କହି ତୁଚ୍ଛ ତାଚ୍ଛଲ୍ୟ କରିନାହାନ୍ତି । ଅଧିକାଂଶ ସମୟରେ ସେ ସେମାନଙ୍କୁ 'ଅଲେଖ ପୁରୁଷ' ବା 'ମହାବ୍ରହ୍ମୀ' ବୋଲି କହିଛନ୍ତି । ଅଲେଖଧର୍ମୀମାନେ ଶୂନ୍ୟବାଦୀ ଓ ପିତୁଳା ପୂଜାର ବିରୋଧୀ, ଆଉ ମହାବ୍ରହ୍ମୀମାନେ ଏକେଶ୍ୱରବାଦୀ ଓ ପିତୁଳା ପୂଜାର ବିରୋଧୀ । ମୁସଲମାନମାନେ ମଧ ଏକେଶ୍ୱରବାଦୀ ଓ ପିତୁଳାପୂଜାର ବିରୋଧୀ । ଏହି ହେତୁରୁ ମୁସଲମାନ୍‌ମାନେ ସାରଳାଦାସଙ୍କ ଦ୍ୱାରା ଅଲେଖଧର୍ମୀ ବା ମହାବ୍ରହ୍ମୀ ନାମରେ ଖ୍ୟାତ ହୋଇଛନ୍ତି । ଆଲୋଚ୍ୟ ଆଖ୍ୟାୟିକାରେ ଦରଦସେନ ଜମାଗୋଷ୍ଠୀଙ୍କୁ ଅଲେଖ ପୁରୁଷ ବୋଲି କହିଛନ୍ତି -

ଅସ୍ତ୍ର ଶସ୍ତ୍ର ତା ଶରୀରେ ନ ପାରଇ ଭେଦି
ଅଲେଖ ପୁରୁଷ ତୁମ୍ଭେ ବୃଥା ହେଲ ଧନ୍ଦି ।
('ସଭାପର୍ବ'), ପୃ.-୧୪୭

ଏହିସବୁ ପ୍ରମାଣରୁ ଜଣାଯାଏ ଯେ ଅର୍ଜୁନ ଅମରଚୂଡ଼ ପର୍ବତ ବା ଦେବରକୋଣ୍ଡାରେ ଯେଉଁମାନଙ୍କ ସହିତ ଯୁଦ୍ଧ କରିଥିଲେ, ସେମାନେ ଥିଲେ ମୁସଲମାନ । ଏଣୁ ଏହି ଆଖ୍ୟାୟିକାର ଅର୍ଜୁନ ଯେ କପିଳେଶ୍ୱର ଗଜପତି, ଆଉ ତାଙ୍କ ଶତ୍ରୁମାନେ ଯେ ବାହମନୀ ରାଜ୍ୟର ମୁସଲମାନ ରାଜା, ଅମାତ୍ୟ ଓ ସୈନ୍ୟ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ରାଜସୂୟ ଯଜ୍ଞ ଉପଲକ୍ଷରେ ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଯାଇ ଅର୍ଜୁନ ଅମରଚୂଡ଼ ପର୍ବତଠାରୁ ଜମାଗୋଷ୍ଠକୁ ରଥରେ ବାନ୍ଧି ଯେଉଁ ଯେଉଁ ଦେଶ ଓ ଯେଉଁ ଯେଉଁ ରଜାମାନଙ୍କ ପାଖକୁ ଗଲେ, ତାହା ହିଁ ବର୍ତ୍ତମାନ ଆଲୋଚ୍ୟ ବିଷୟ । ସାରଳା ଦାସ ଖାଲି ମହାଭାରତ ଲେଖିଛନ୍ତି କି ମହାଭାରତ ଛଳରେ ଓଡ଼ିଶାର ଇତିହାସ ଲେଖିଛନ୍ତି, ତାହା ଏହି ଆଲୋଚନାରୁ ଆପେ ଆପେ ଜଣାପଡ଼ିଯିବ ।

ଆଖ୍ୟାୟିକା - 'ଅର୍ଜୁନଙ୍କର ମୃତ ସୈନ୍ୟ ଜୀବିତ ଓ ସଂକଷ୍ଟ, ଭୈରବ, ଉଦୟଗିରି, ଉତ୍ତର କୋଶଳ ଏବଂ ନନ୍ଦୀଗ୍ରାମ ରାଜାମାନଙ୍କୁ ନିମନ୍ତ୍ରଣ, କଞ୍ଚରାଜା ସହିତ ଯୁଦ୍ଧ ।' ('ସଭାପର୍ବ')। ସାରାଂଶ-କାମାକ୍ଷୀ-ଦେବୀଙ୍କୁ ସ୍ତବ କରିବାରୁ ଅମରଚୂଡ଼ ପର୍ବତ ଯୁଦ୍ଧରେ ମରିଯାଇଥିବା ଅର୍ଜୁନଙ୍କ ସୈନ୍ୟ ଜୀବିତ ହୋଇପଡ଼ିଲେ । ତା'ପରେ ଅର୍ଜୁନ ସଂକଷ୍ଟ ବନରେ ପ୍ରବେଶ କଲେ । ସେଠାରେ ସାକଲ୍ୟ ଦେଶରେ ବା ଶାଲରୁ ଦେଶରେ ସର୍ବେଶ୍ୱର ବୋଲି ପର୍ବତ ରହିଛି । ଗନ୍ଧର୍ବ ରାଜା ଶାଲୁ ଅର୍ଜୁନଙ୍କ ଆସିବା କଥା ଶୁଣିବା ମାତ୍ରେ ରଥରେ ବସି ଶୂନ୍ୟ ମାର୍ଗରେ ଥରେ ଦେଖିଗଲେ । ତା'ପରେ ତାଙ୍କ ସାରାଧ ନାମକ ମନ୍ତ୍ରୀଙ୍କୁ ପଚାରିବାରୁ ସେ କହିଲେ ଯେ ଅର୍ଜୁନ କୃଷ୍ଣଙ୍କ ଆଜ୍ଞାରେ ଏ ଦିଗକୁ ଆସିଛନ୍ତି, ଆଉ ସେ ନିଜେ କୃଷ୍ଣ ସ୍ୱରୂପ, ଏଣୁ ତାଙ୍କ ସହିତ ବିବାଦ କରିବା ଉଚିତ ହେବନାହିଁ । ଶାଲୁ ରାଜା ମନ୍ତ୍ରୀଙ୍କ କଥା ମାନି ଅର୍ଜୁନଙ୍କ ନିମନ୍ତ୍ରଣ ଗ୍ରହଣ କଲେ; କିନ୍ତୁ ରଥରେ ବନ୍ଧା ହୋଇଥିବା ଜମାଗୋଷ୍ଠକୁ ଛାଡ଼ିଦେବା ପାଇଁ ତାଙ୍କୁ ଅନୁରୋଧ କଲେ । ଅର୍ଜୁନ କିନ୍ତୁ ଏକଥା ଶୁଣିଲେ ନାହିଁ । ଜମାଗୋଷ୍ଠକୁ ପୂର୍ବ ପରି ରଥରେ ବାନ୍ଧି ରଖିଲେ । ଉଦ୍ଧୃତାଂଶ (ପୃ.୧୫୪-୫୫)-

ଆପଣା ସଇନି ଘେନି ବୀରବର ପାର୍ଥ
ବିଜୟ କରିଲେ ତହୁଁ ସଂକଷ୍ଟ ବନସ୍ତ ।
ସର୍ବେଶ୍ୱର ବୋଲି ଅଛି ଏକଇ ପର୍ବତ
ଶାକଲ୍ୟଦେଶ ସେଠାରେ ଅଛି ଅବସ୍ଥିତ ।
ସେହି ଦେଶକୁ ବିଜୟ କଲେ ଫାଲଗୁନି
ରଥଗଜ-ଚମକାଇ ପଶିଲେ ସଇନି ।
ସେ ଦେଶରେ ରାଜା ଶାଲୁନାମେ ନରପତି

ଗଜଅଶ୍ୱ ନାହିଁ ତା'ର ସଙ୍ଗନି ପଦାତି ।
ଏକଗୋଟି ରଥେ ଶାଲୁ ଚଳେ ଅନ୍ତରୀକ୍ଷେ
ଗନ୍ଧର୍ବ ରାଜା ଅଟଇ ସେହୁ ଯେ ପ୍ରତ୍ୟକ୍ଷେ ।
ଅର୍ଜ୍ଜୁନ ବିଜୟେ କଲେ ସେ ଶାଲୁର ରାଜ୍ୟେ
ବୀରଟମକ ନିଶାଣ ଢୋଲ ଆଦି ବାଜେ ।
କାହିଁର ଶବଦ ଏହୁ ଉଲ୍‌କାପାତ ଜାଣି
ସାରାଧ ନାମ ମନ୍ତ୍ରୀକି ପୁଛେ ନୃପମଣି ।
ସାରାଧ ବୋଇଲା ରାଜସୂୟ ଯଜ୍ଞ ଅର୍ଥେ
ପାଣ୍ଡବ ଅର୍ଜ୍ଜୁନ ଆସେ ଏହି ଦିଗପଥେ ।
ଆଜ୍ଞା ଦେଇଛନ୍ତି ତାଙ୍କୁ ଚଞ୍ଚଳାବଲ୍ଲଭ
ମୁଁ ଜାଣେ ପାର୍ଥ ପ୍ରତ୍ୟକ୍ଷ ଅଟେ ବାସୁଦେବ ।

X X X X

ମନ୍ତ୍ରୀର ବଚନ ଶୁଣି ସାନନ୍ଦ ସେ ରାୟେ
ସମଦଣ୍ଡ ଘେନି କରି ପାଛୋଟିଣ ଯାଏ ।
ଶୁଣି ଶାଲୁ ପ୍ରଣିପାତ ହୋଇ ପାଦତଳେ
ସ୍ୱାମୀ ଜମାଗୋଷ୍ଠ ବନ୍ଧା ମନ୍ଦବୁଦ୍ଧି ବଳେ ।
ଯାହା ଅରଜିଲା ସେହୁ ପାଇଲା ଯୁକତେ
ଏହାକୁ ବନ୍ଧନୁ ମୁକ୍ତ କର ମୋ' ଅଗ୍ରତେ ।

X X X X

ପାର୍ଥ ବୋଲେ ମହାରାଜା ଅଟୁ ତୁହି ଶାଲୁ
ଜମାଗୋଷ୍ଠ ରାଜା ପାଇଁ କିମ୍ପା ତୁହି ବୋଲୁ ।

ଟୀକା- ଇତିହାସରୁ ଜଣାଯାଏ ଯେ କପିଳେଶ୍ୱର ଗୋଦାବରୀ-କୃଷ୍ଣା ଅବବାହିକା ଏବଂ ଦେବରକୋଣ୍ଡା ଓ ଉଆଭଙ୍ଗଲ ଜୟ କରିବା ପରେ ହିଁ ସେ ବିଜୟନଗର ରାଜ୍ୟର ପ୍ରଧାନ ଶତ୍ରୁ ହୋଇପଡ଼ିଥିଲେ । ଏତେଦିନ ଯାଏ ଦାକ୍ଷିଣାତ୍ୟରେ ସାର୍ବଭୌମ କ୍ଷମତା ବିସ୍ତାର ପାଇଁ ବିଜୟନଗର ଓ ବାହାମନୀ ରାଜ୍ୟ ମଧ୍ୟରେ ହିଁ ପ୍ରତିଦ୍ୱନ୍ଦିତା ଚାଲିଥିଲା, ମାତ୍ର ଦାକ୍ଷିଣାତ୍ୟର ରାଜନୀତି କ୍ଷେତ୍ରରେ ବର୍ତ୍ତମାନ କପିଳେଶ୍ୱର ମଧ୍ୟ ନୂତନ ପ୍ରତିଦ୍ୱନ୍ଦ୍ୱୀ ରୂପେ ପରିଣତ ହେଲେ । ବିଜୟନଗରର ରାଜା ମଲ୍ଲିକାର୍ଜ୍ଜୁନ ବାହାମନୀ ରାଜ୍ୟ ପ୍ରତି ତାଙ୍କର ପୂର୍ବବିରୋଧ ଓ ଈର୍ଷା ଭୁଲିଯାଇ ଏହି ନୂତନ ଶତ୍ରୁକୁ କିପରି ପ୍ରତିରୋଧ କରିବେ, ତାହା ହିଁ ଚିନ୍ତା କରିବାକୁ ଲାଗିଲେ । ସେ ବିଜୟନଗରରୁ ଆସି ଆଧୁନିକ ଅନନ୍ତପୁର-ଜିଲାସ୍ଥ ପେଣୁକୋଣ୍ଡାରେ ଉପସ୍ଥିତ ହେଲେ ଓ କପିଳେଶ୍ୱରଙ୍କ ଅଗ୍ରଗତିର ପ୍ରତିରୋଧ ପାଇଁ ତାଙ୍କ ସାମନ୍ତ ରଜା ସାଳୁବ ନରସିଂହଙ୍କ ସହିତ ପରାମର୍ଶ କରିବାକୁ ଲାଗିଲେ । ଏହି ସାଳୁବ ନରସିଂହ ବିଜୟନଗରର ରାଜ୍ୟର ସାମନ୍ତରାଜା ଥିଲେ ହେଁ ଉତ୍ତରରେ ଗୁଣ୍ଟୁର ଜିଲା ଠାରୁ ଦକ୍ଷିଣରେ ତାଞ୍ଜୋର ଜିଲ ପର୍ଯ୍ୟନ୍ତ ସମସ୍ତ ଉପକୂଳ ଅଞ୍ଚଳ ଏହାର ଅଧିନରେ ହିଁ ଥିଲା, ଆଉ ଏହି ଅଞ୍ଚଳରେ ଉତ୍ତର ତରଫରେ ଉଦୟଗିରି ନାମକ ଓ ଦକ୍ଷିଣ ତରଫରେ ଚନ୍ଦ୍ରଗିରି ନାମକ ଦୁଇଟି ସୁଦୃଢ଼ ଦୁର୍ଗ ଅବସ୍ଥିତ ଥିଲା । ବସ୍ତୁତଃ ଏହାଙ୍କ ରାଜ୍ୟ କୃଷ୍ଣା ଓ କାବେରୀ ନଦୀଦ୍ୱୟର ମଧ୍ୟବର୍ତ୍ତୀ ଉପକୂଳ ଅଞ୍ଚଳରେ ହିଁ ଅବସ୍ଥିତ ଥିଲା । ଏହି ରାଜ୍ୟର ରାଜଧାନୀ ଥିଲା କାଞ୍ଚି ବା ଚିଙ୍ଗଲ୍‌ପୁଟ ଜିଲାସ୍ଥ ଆଧୁନିକ କାଞ୍ଚିବେରମ୍ ।

ବିଜୟନଗର ରାଜ୍ୟ ସହିତ ଓଡ଼ିଶା ରାଜ୍ୟର ଯେଉଁ ସଂଘର୍ଷ ଘଟିଥିଲା, ତା'ର ବିବରଣ ବିଜୟନଗର ଇତିହାସରୁ ବା ଓଡ଼ିଶା ଇତିହାସରୁ ମିଳେ ନାହିଁ, ମାତ୍ର ଏହାର ଫଳାଫଳ ସ୍ଥୂଳ ଭାବରେ ଜଣାଯାଇଛି । ଓଡ଼ିଶାର ଆକ୍ରମଣ ଫଳରେ ନେଲୋର ଜିଲ୍ଲାସ୍ଥ ଉଦୟଗିରି ଦୁର୍ଗ ବହୁବର୍ଷ ଧରି ଓଡ଼ିଶା ସାମ୍ରାଜ୍ୟର ଅଙ୍ଗୀଭୂତ ହୋଇ ରହିଥିଲା । କପିଳେଶ୍ୱରଙ୍କ ରାଜତ୍ୱରେ ଓ ତାଙ୍କ ପୁତ୍ର ପୁରୁଷୋତ୍ତମଙ୍କ ରାଜତ୍ୱରେ ଏହି ଦୁର୍ଗ ଓଡ଼ିଶା ସାମ୍ରାଜ୍ୟରେ ସାମିଲ ହୋଇ ରହିଥିଲା, ମାତ୍ର ପ୍ରତାପରୁଦ୍ରଙ୍କ ଅମଳରେ ଏହା ଓଡ଼ିଶା ଅଧୀନରେ କେତେକ ବର୍ଷ ରହି କୃଷ୍ଣଦେବ ରାୟଙ୍କ ଆକ୍ରମଣ ଫଳରେ ପୁଣି ବିଜୟନଗର ରାଜ୍ୟରେ ସାମିଲ ହୋଇଥିଲା ।

ଇତିହାସର ଘଟଣାବଳୀ ସହିତ ସାରଳା ଦାସଙ୍କ ଉଲ୍ଲିଖିତ ଆଖ୍ୟାୟିକାର ଘଟଣାବଳୀ ବହୁ ପରିମାଣରେ ମେଳ ଖାଇଯାଏ । ସାରଳା ଦାସ ଅମରଚୂଡ଼ ପର୍ବତ ବା ଦେବରକୋଣ୍ଡା ରଣାଙ୍ଗନରୁ ଅର୍ଜ୍ଜୁନଙ୍କୁ ଯେଉଁଦେଶକୁ ଘେନି ଆସିଛନ୍ତି, ତା'ର ନାମ ଏକ ଜାଗାରେ 'ସାକଲ୍ୟଦେଶ' ଓ ଅନ୍ୟଜାଗାରେ 'ସାଲୁର ରାଜ୍ୟ' ବୋଲି କହିଛନ୍ତି । ଅତଏବ ଉଭୟ ନାମ ଏକ ରାଜ୍ୟକୁ ହିଁ ବୁଝାଉଛି । ଏହି ରାଜ୍ୟର ରାଜାଙ୍କ ନାମ ଥିଲା 'ସାଲୁ' । ଏହି ସାଲୁ ଯେ ସାଲୁବ ନରସିଂହ ଏ ବିଷୟରେ ସନ୍ଦେହର କାରଣ ନାହିଁ । ସାଲୁକା ସାଲୁଭ ନରସିଂହ ରାଜ୍ୟରେ ପହୁଞ୍ଚି ଅର୍ଜ୍ଜୁନ ଯେଉଁ ପର୍ବତ ଦେଖିଲେ, ସାରଳା ଦାସ ସେଠାରେ ସେ ପର୍ବତର ନାମ ଦେଇଛନ୍ତି ସର୍ବେଶ୍ୱର, ମାତ୍ର ଅନ୍ୟତ୍ର ତାକୁ ଶ୍ରୀଗିରି ବୋଲି ମଧ୍ୟ କହିଛନ୍ତି । ସର୍ବେଶ୍ୱର ବା ଶ୍ରୀଗିରି ଶ୍ରୀଶୈଳମ୍‌ର ରୂପାନ୍ତର ମାତ୍ର । ଲାଲଗୋଣ୍ଡା ଜିଲ୍ଲାର ଦେବରକୋଣ୍ଡା ତରଫରୁ ନେଲୋରର ଉଦୟଗିରିକୁ ଆସିବାବେଳେ ବାଟରେ କୃଷ୍ଣାନଦୀର ଉତ୍ତରରେ ରାଇଚୁର ଜିଲ୍ଲା ଓ ଏହି ନଦୀର ଦକ୍ଷିଣରେ କାରନୁଲ ଜିଲ୍ଲା ପଡ଼େ । ଏହି ନଦୀର ଦକ୍ଷିଣ ପଟରେ ହିଁ ସାଲୁବ ନରସିଂହଙ୍କ ରାଜ୍ୟ ଥିଲା । କୃଷ୍ଣା ନଦୀର ଦକ୍ଷିଣପଟରେ କାରନୁଲ ଜିଲ୍ଲାରେ ଶ୍ରୀଶୈଳମ ବିଦ୍ୟମାନ ରହି ବର୍ତ୍ତମାନ ସୁଦ୍ଧା ଏହି ନାମରେ ଅଭିହିତ ହେଉଛି । ସାଲୁବ ନରସିଂହଙ୍କର ସାରାଧ ନାମକ ମନ୍ତ୍ରୀ ଥିଲେ କି ନା ଏ

କଥା ଇତିହାସରୁ ମିଳୁନାହିଁ । ଏଣୁ ତାଙ୍କ ସମ୍ବନ୍ଧରେ କିଛି କହିବା ସମ୍ଭବପର ହେଉନାହିଁ । ପୌରାଣିକ କାବ୍ୟରେ କବି ସାଲୁରାଜାଙ୍କୁ ଆକାଶମାର୍ଗରେ ଉଡ଼ାଇ ଆଣି ଅର୍ଜ୍ଜୁନଙ୍କୁ ଦେଖାଇ ଦେଇଛନ୍ତି; କିନ୍ତୁ ପ୍ରକୃତ ଘଟଣା ପରମ୍ପରାରୁ ଏହା ହିଁ ସୂଚିତ ହେଉଛି ଯେ ଅର୍ଜ୍ଜୁନ ବା ଓଡ଼ିଶାର ରାଜା ସାଲୁ ବା ସାଲୁବ ନରସିଂହଙ୍କ ରାଜ୍ୟରେ ପହଞ୍ଚିବା ମାତ୍ରେ ସାଲୁବ ଓଡ଼ିଶା ରାଜାଙ୍କ ସୈନ୍ୟ କଳନା କରିବାକୁ ଚେଷ୍ଟା କରିଥିଲେ । ସାଲୁରାଜା କାହିଁକି ଜମାଗୋଷ୍ଟକୁ ଛାଡ଼ି ଦେବା ପାଇଁ ଅର୍ଜ୍ଜୁନଙ୍କୁ ଅନୁରୋଧ କଲେ, ଏ କଥାର ତାତ୍ପର୍ଯ୍ୟ ବୁଝିବାକୁ କଷ୍ଟକର ହୁଏନାହିଁ । ଓଡ଼ିଶା ଓ ବିଜୟନଗର ମଧ୍ୟରେ ବାହାମନୀ ରାଜ୍ୟର ଯେଉଁ ଅଞ୍ଚଳ ଥିଲା, କପିଳେଶ୍ୱରଙ୍କ ଦ୍ୱାରା ଅଧିକୃତ ହୋଇଯିବାରୁ ବିଜୟନଗର ରାଜ୍ୟର ଆକ୍ରମଣ ପାଇଁ ଓଡ଼ିଶାର ପଥ ସୁଗମ ହୋଇଗଲା । ଏହା ବିଜୟନଗର ରାଜ୍ୟ ପ୍ରତି ଏକ ନୂତନ ବିପଦ ହୋଇ ପଡ଼ିଥିଲା, ଆଉ ଏହି ବିପଦ ପ୍ରତି ଯେ ବିଜୟନଗର ରାଜା ମଲ୍ଲିକାର୍ଜ୍ଜୁନ ଓ ତାଙ୍କ ସାମନ୍ତରାଜା ସାଲୁବ ନରସିଂହ ଅବହିତ ଥିଲେ, ଏକଥା ଇତିହାସରୁ ମିଳୁଛି । କମାଗୋଷ୍ଟ ଏଠାରେ ବାହାମନୀ ରାଜ୍ୟର ପ୍ରତୀକ ମାତ୍ର । ବାହାମନୀ ରାଜ୍ୟ ମୁସଲମାନ ରାଜ୍ୟ ହୋଇଥିଲେ ହେଁ ତା'ର ପୂର୍ବ-ଦକ୍ଷିଣାଞ୍ଚଳ ଓଡ଼ିଶା ଦ୍ୱାରା ଅଧିକୃତ ହେବାରେ ବିଜୟନଗର ରାଜା ବା କାଞ୍ଚି ରାଜାଙ୍କର ଆନନ୍ଦିତ ହେବାର କାରଣ ନ ଥିଲା ।

ସାଲୁ ବା ସାଲୁବ ନରସିଂହଙ୍କ ରାଜ୍ୟରେ ପହଞ୍ଚିବା ପରେ ଅର୍ଜ୍ଜୁନ ଯେଉଁ ସ୍ଥାନରେ ଉପସ୍ଥିତ ହୋଇଥିଲେ, ସାରଳା ଦାସ ତା'ର ନାମ ଦେଇଛନ୍ତି ଭୈରବ ଦେଶ ବା ବୈଭବ କଟକ । ଏ ସ୍ଥାନର ରାଜା ରୁଦ୍ରପୂଜକ ଓ ତାଙ୍କ ବେଶଭୂଷା ମଧ୍ୟ ରୁଦ୍ର ଦେବତା ପରି । ଅର୍ଜ୍ଜୁନ ଏକ କଟକରେ ପହଞ୍ଚିବା ମାତ୍ରେ ଭୈରବ ରଥରେ ବସି ଘୋର ରାବରେ ଡାକ ଦେଲା, ମାତ୍ର ପରେ ଅର୍ଜ୍ଜୁନଙ୍କ ବଶ୍ୟତା ସ୍ୱୀକାର କଲା ।

ତହୁଁ ବୀର ଅରଜୁନ ଥାଟକୁ ଚଳାଇ
ଭୈରବ ଦେଶେ ବିଜେ କରିଲାକ ଯାଇ ।
ଭୈରବ ଦେଶେ ମହା ଭୈରବ ନୃପତି
ରୁଦ୍ର ଦେବତାଙ୍କୁ ପୂଜି ବୋଲାଏ ସେ ଯତି ।

X X X X

ଶିବ ସ୍ୱରୂପେ ଅଟନ୍ତି ମହାଯୋଗୀ ତେଜୀ
ଚତୁର୍ଭୁଜ ଡମ୍ବରୁ ଯେ ଘନ ଘନ ବାଜି ।

X X X X

ଭୈରବ ଡାକ ଦେଲା ନିଜ ରଥେ ବସି
ଅଦଭୁତେ ମୋ କଟକେ କିମ୍ବା ପଶୁ ଆସି ।

('ସଭାପର୍ବ',) ପୃ.-୧୫୫

ଅର୍ଜ୍ଜୁନ ବା ଓଡ଼ିଶାର ରାଜା ଶ୍ରୀଶୈଳମ୍ ଠାରୁ ଉଦୟଗିରି ଆଡ଼କୁ ଅଗ୍ରସର ହେବାବେଳେ ପୂର୍ବଘାଟ ପର୍ବତମାଳା ନିଶ୍ଚୟ ଅତିକ୍ରମ କରିଥିବେ । ଏଠାରେ ପୂର୍ବଘାଟ ପର୍ବତ ନିରବଚ୍ଛିନ୍ନ ଭାବରେ ଉତ୍ତରରୁ ଦକ୍ଷିଣ ଆଡ଼କୁ ବିସ୍ତାରିତ ହୋଇଛି ଓ ବର୍ତ୍ତମାନ ଏହା ନାଲ୍ଲମଲାଇସ୍ ପର୍ବତ ଶ୍ରେଣୀ ନାମରେ ଅଭିହିତ ହେଉଛି । ଏଠାରେ ଏହି ପର୍ବତ ଶ୍ରେଣୀର ଏକମାତ୍ର ଗିରିପଥ ହେଉଛି ନନ୍ଦିକନମ୍ ପାସ୍ ବା ଘାଟୀ । ପୌରାଣିକ ସାରଳା ଦାସ ନନ୍ଦି ନାମଟିକୁ ପାଇବା ମାତ୍ରେ ତାକୁ ଭୈରବରେ ପରିଣତ କରି ଭ୍ରମ ସୃଷ୍ଟି କରି ଦେଇଛନ୍ତି । ଆଉ ଏହି କଟକର ରାଜାଙ୍କୁ ମଧ୍ୟ ଶିବୋପାସକ କରିଦେଇଛନ୍ତି । ନନ୍ଦିକନମ୍ ଘାଟି ଅତିକ୍ରମ କରିବା ପରେ ହିଁ ଉପକୂଳ ଅଞ୍ଚଳରେ ଉଦୟଗିରି ଦୁର୍ଗ ପଡ଼େ । ଏଣୁ ଏଠାରେ ସାଲୁବ ନରସିଂହଙ୍କ ରକ୍ଷୀ ଦଳ ସମାବେଶିତ ହୋଇଥିବା ନିତାନ୍ତ ସମ୍ଭବପର କଥା । ଏହି ରକ୍ଷୀଦଳ ହିଁ ଘୋର ରାବ କରି ଅର୍ଜ୍ଜୁନ ବା ଓଡ଼ିଶା ରାଜାଙ୍କ ଗତିପଥ ଅବରୋଧ କରିଥିଲେ । ସାରଳା ଦାସଙ୍କ ବର୍ଣ୍ଣିତ ଭୈରବକଟକ ନନ୍ଦିକନମ୍ ଘାଟୀ ଛଡ଼ା ଯେ ଅନ୍ୟ କୌଣସି ସ୍ଥାନ ହୋଇ ନ ପାରେ, ତାହା ଅର୍ଜ୍ଜୁନଙ୍କ ପରବର୍ତ୍ତୀ ଗତିପଥ ବର୍ଣ୍ଣନାରୁ ପରିଷ୍କାର ଭାବରେ ଜଣାଯାଉଛି –

ଭୈରବକୁ ଚଳାଇଣ ଚଳିଲେ ଅର୍ଜ୍ଜୁନ
ଉଦୟ ମଣ୍ଡଳେ ଯାଇ ପ୍ରବେଶ ବହନ ।
ଉଦୟଗିରି ବୋଲିଣ ପର୍ବତ ଗୋଟିଏ
ସେ ପର୍ବତେ ବିଜେ କଲେ ଯାଇ ଧନଞ୍ଜୟେ ।

ଉଦୟଗିରି ଦୁର୍ଗର ଭଗ୍ନାବଶେଷ ବର୍ତ୍ତମାନ ସୁଦ୍ଧା ନେଲୋର ଜିଲ୍ଲାରେ ରହିଛି ଓ ତାହା ବର୍ତ୍ତମାନ ସୁଦ୍ଧା ପୂର୍ବ ନାମରେ ଅଭିହିତ ହେଉଛି । ଏହି ଦୁର୍ଗ ୧୪୬୩ ଖ୍ରୀଷ୍ଟାବ୍ଦ ଠାରୁ ୧୫୧୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶା ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ ଥିଲା । ଏହି ଦୁର୍ଗରୁ କପିଳେଶ୍ୱର ଗଜପତିଙ୍କର ଦୁଇଟି ଶିଳାଲେଖ ମିଳିଛି, ଆଉ ଏଥିମଧ୍ୟରୁ ଗୋଟିକରେ ତାଙ୍କ ଅମଳରେ ଏଠାରେ ଦୁଇଟି ମନ୍ଦିର ନିର୍ମିତ ହୋଇଥିବା କଥା ଉଲ୍ଲେଖ ରହିଛି । ଏହାର ଉତ୍ତରରେ ମୁନ୍ୟେରୁ ନାମକ କ୍ଷୁଦ୍ର ନଦୀ ଓ ଦକ୍ଷିଣରେ ପେନାର ନଦୀ ପ୍ରବାହିତ ହେଉଛି, ଆଉ ଏହାର ପୂର୍ବରେ ସମୁଦ୍ର ଓ ପଶ୍ଚିମରେ ପୂର୍ବଘାଟର ନାଲ୍ଲମଲାଇସ୍ ପର୍ବତଶ୍ରେଣୀ ରହିଛି । ଏହାର ଭୌଗୋଳିକ ପରିସ୍ଥିତି ହିଁ ଏହାର ରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିଥିଲା ।

ସାରଳା ଦାସ ଅର୍ଜ୍ଜୁନଙ୍କୁ ଦେବରକୋଣ୍ଡାରୁ ଯେପରି ଭାବରେ ଆଣି ଉଦୟଗିରି ଦୁର୍ଗଠାରେ ପହଞ୍ଚାଇଛନ୍ତି, ସେଥିରେ ଜଣେ ସମରନିପୁଣର ଭୌଗୋଳିକ ଜ୍ଞାନ ପ୍ରଦର୍ଶିତ ହୋଇଛି । ଏହି

ସ୍ଥାନମାନଙ୍କୁ ନିଜେ ଦେଖି ସେ ଏପରି ଜ୍ଞାନ ଅର୍ଜ୍ଜନ କରିଥିବେ, କିମ୍ବା କୌଣସି ସମରବେତ୍ତାଠାରୁ ତାହା ସମ୍ୟକ୍ ଭାବରେ ଶୁଣିଥିବେ । ନଚେତ୍ ଏପରି ଯଥାଯଥ ବର୍ଣ୍ଣନା କଦାପି ସମ୍ଭବପର ହୋଇନଥାନ୍ତା । ଓଡ଼ିଶାର ରାଜା ଯେଉଁ ପଥରେ ଆସି ଉଦୟଗିରି ଦୁର୍ଗ ଅଧିକାର କରିଥିଲେ, ସେ ପଥର ବିବରଣ କୌଣସିଥିରୁ ମିଳିନାହିଁ, ମାତ୍ର ସାରଳା ଦାସ ଏଠାରେ ସେହି ପଥର ବିଶଦ ଓ ଯଥାଯଥ ବିବରଣ ଦେଇଛନ୍ତି ।

ତା'ପରେ ସାରଳା ଦାସ ଅର୍ଜ୍ଜୁନଙ୍କୁ ଉଦୟଗିରି ଦୁର୍ଗଠାରୁ ନେଇ ବିଜୟନଗର ରାଜ୍ୟରେ ପହୁଞ୍ଚାଇଛନ୍ତି -

ସେଠାରୁ ପ୍ରୟାଣ କଲେ ପାର୍ଥ ବୀରବର
ବିଜୟ ମଣ୍ଡଳ ବୋଲି ଏକଇ ନଗର ।
ସେ ରାଜ୍ୟ ଭିତରେ ଯାଇ ପଶିଲେ ସଇନି
ବାରତା ପାଇଣ ରାଜା ଆସେ ସୈନ୍ୟ ଘେନି ।

ମାତ୍ର ରାଜାମାନଙ୍କୁ ରାଜସୂୟ ଯଜ୍ଞକୁ ନିମନ୍ତ୍ରଣ କରିବା ପାଇଁ ନକୁଳଙ୍କର ଦକ୍ଷିଣ ଦିଗର ଯାତ୍ରାରେ ହିଁ ବିଜୟନଗର ରାଜ୍ୟର କଥା ବେଶୀ ଭାବରେ ରହିଛି । ଏଣୁ ଏଠାରେ ଏହି ଆଖ୍ୟାୟିକାର ଅବତାରଣା କରିବା ମଧ୍ୟ ଆବଶ୍ୟକ ମନେ ହେଉଛି ।

ଆଖ୍ୟାୟିକା- ଶ୍ରୀ ଗିରିପର୍ବତେ ତ୍ରେତାଯୁଗର ସୁଷେଣଙ୍କ ବିବରଣ ଇତ୍ୟାଦି । ('ସଭାପର୍ବ', ପୃ.୧୮୮-୧୯୯) ।

ସାରାଂଶ : ଏହି ଆଖ୍ୟାୟିକାର ଠିକ୍ ପୂର୍ବ ଆଖ୍ୟାୟିକାରେ ସାରଳା ଦାସ ନକୁଳଙ୍କୁ ଦକ୍ଷିଣ ଦିଗର ବିଭିନ୍ନ ଦେଶରେ ବୁଲାଇ ଆଣି ପଦ୍ମନାଭ ନାମକ ପର୍ବତରେ ପହଞ୍ଚାଇଛନ୍ତି, (ପୃ.୧୮୮)। ଏହି ପର୍ବତରେ ବିଷ୍ଣୁ ମନ୍ଦିର ଅଛି ଓ ତହିଁରେ ଅନନ୍ତଶାୟୀ ବିଷ୍ଣୁ ବିଜେ କରିଛନ୍ତି । ଶେଷଶାୟୀ ବିଷ୍ଣୁଙ୍କୁ ପୂଜା କରି ନକୁଳ ଏହିଠାରୁ ରୁଦ୍ରଗିରିକୁ ଗଲେ ଓ ରୁଦ୍ରଗିରିରୁ କାବେରୀ ରାଜ୍ୟରେ ପ୍ରବେଶ କଲେ । କାବେରୀ ରାଜ୍ୟରେ ପହଞ୍ଚିବା ମାତ୍ରେ ବିଜୟନଗରବାସୀ ସମସ୍ତେ ଜାଣିଗଲେ । ତା'ପରେ ନକୁଳ ଶ୍ରୀଗିରି ପର୍ବତରେ ବିଜେ କଲେ । ଶ୍ରୀଗିରି ପର୍ବତରେ ଥିବାବେଳେ କାଞ୍ଚନଗ୍ରର ରାଜା ଅଜାନୁ ତାଙ୍କ ଚାର ଓ ମନ୍ତ୍ରୀଙ୍କ କଥା ମାନି ନକୁଳଙ୍କ ସହିତ ଏହି ପର୍ବତରେ ଦେଖା କଲେ, ମାତ୍ର ତା' ପୂର୍ବରୁ ସେଠାରେ ସେ ଶ୍ରୀ ମଲ୍ଲିକାନାଥ ବା ଶ୍ରୀ ମଲ୍ଲୀକାର୍ଜ୍ଜୁନ ନାମକ ଲିଙ୍ଗକୁ ଦର୍ଶନ କରିଥିଲେ । ନକୁଳ ମଧ୍ୟ ଶ୍ରୀଗିରି ପର୍ବତରେ କ୍ଷେତ୍ରପାଳ ଶ୍ରୀରାମଜଙ୍ଗମ ନାମକ ରାଜାଠାରୁ ମଲ୍ଲିକାର୍ଜ୍ଜୁନ ଲିଙ୍ଗର ଉତ୍ପତ୍ତି ବିବରଣ ଶୁଣିଥିଲେ ।

ଉଦ୍ଧୃତାଂଶ (ପୃ.୧୮୮-୧୮୯) -

ତହୁଁ ସେ ନକୁଳବୀର ଥାଟକୁ ଚଳାଇ
ପଦ୍ମନାଭ ପରବତେ ବିଜେ କଲେ ଯାଇଁ ।
ସୈନ୍ୟ ଘେନିଣ ଉଠିଲେ ଗିରିର ଉପରେ
ଦେଖି ଏକ ନାରାୟଣ ମନ୍ଦିର ସେଠାରେ ।
ଶିରେ ସପ୍ତଫଣା ହୃଦେ କଉସ୍ତୁଭ ମଣି
ଅନନ୍ତ ଶଯ୍ୟାରେ ନିଦ୍ରା ଦେହ ନୀଳ ଜିଣି ।

X X X X

ଚାରିଶତ ରାଜା ତହିଁ କଲେ ଦରଶନ
ସେ ପର୍ବତରେ ରହିଲେ ସର୍ବେ ଏକଦିନ ।

X X X X

ସେଦିନ ନକୁଳ ବୀର ଦଣ୍ଡକୁ ଚଳାଇ
ରୁଦ୍ରଗିରି ପରବତେ ପ୍ରବେଶିଲା ଯାଇ ।

X X X X

ସେ ନଦୀରେ ସ୍ନାନ କରି ମାଦ୍ରୀର ନନ୍ଦନ
କାବେରୀ ରାଜ୍ୟରେ ଯାଇ ପ୍ରବେଶ ବହନ ।

X X X X

କାବେରୀ ନଦୀ ହୋଇଛି ଐଶାନ୍ୟଗାମିନୀ
ସେ ନଦୀରେ ସ୍ନାନ କଲେ ନକୁଳ ସଇନି ।
ବୀରତୂର ବାଦ୍ୟ ବାଜେ କରିଣ ଶବଦ
ନାନା ରାଜ୍ୟକୁ ଶୁଭିଲା ତାହାର ଯେ ନାଦ ।
ବିଜୟନଗରବାସୀ ସମସ୍ତେ ଜାଣିଲେ
ସମଦଣ୍ଡ ଘେନି ସର୍ବ ଯୋଦ୍ଧା ଦଉଡ଼ିଲେ ।
ନକୁଳ ପ୍ରବେଶ ହେଲା ଶ୍ରୀଗିରି-ପର୍ବତେ
ରାଜାଏ ଦର୍ଶନ କଲେ ଆସିଣ ସମସ୍ତେ ।
କାଞ୍ଚନଗ୍ରର ଅଜାନୁ ରାଜା ଚକ୍ରବର୍ତ୍ତୀ
ତାକୁ ଖଟଇ ପଞ୍ଚାଶ ସହସ୍ର ଯେ ହସ୍ତୀ ।

X X X X

ସ୍ୱାମୀ ଦଣ୍ଡ ସାଜ ବେଗେ ଯଜ୍ଞସ୍ଥଳେ ଯିବା
ତୁଙ୍ଗଭଦ୍ରା ନଦୀକୂଳେ ଦର୍ଶନ କରିବା ।
ଘରଙ୍କ ବଚନେ ରାଜା ମନ୍ତ୍ରୀକି ପଚ୍ଛରି
ବହୁତ କହିଲା ମନ୍ତ୍ରୀ ରାଜାକୁ ଡିଆରି ।
ସ୍ୱାମୀ ସୈନ୍ୟ ଘେନି ଚଳ ଶ୍ରୀଗିରି-ପର୍ବତ
ରାଜ୍ୟ ଆଣିବା ନକୁଳ କରି ପୁରୁଷାର୍ଥ ।

X X X X

ନୃପତି ବିଜୟ ଯାଇ ଶ୍ରୀଗିରି-ପର୍ବତେ
ଆଗେ କରିଲା ଦର୍ଶନ ଶ୍ରୀ ମଲ୍ଲିକାନାଥେ ।
ଏହି ପରକାରେ କରି କାବେରୀର ସାଇଁ
ନକୁଳ ଛାମୁରେ ଆସି ଦର୍ଶନ କରଇ ।

ଅନେକ ରତନ ଘେନି କାଞ୍ଚନଗ୍ର ରାଜା
ନକୁଳ କୁମାରକୁ ସେ କଲା ଦିବ୍ୟ ପୂଜା ।
ଶ୍ରୀ ମଲ୍ଲିକା ଅରଜୁନ ଦର୍ଶନ ନିମନ୍ତେ
ଶ୍ରୀରାମଜଙ୍ଗମ ବୋଲି ତହିଁର ନୃପତେ ।
ରୁଦ୍ର ଚିହ୍ନ ବହଇ ସେ ଜଟା କଷାଧାରୀ
ଶ୍ରୀଗିରି-ପର୍ବତେ ସେହୁ କ୍ଷେତ୍ର ଅଧିକାରୀ ।

ଏହି ପଦଗୁଡ଼ିକ ପଢ଼ିବା ମାତ୍ରେ ହିଁ ଜଣାଯାଏ ଯେ, ଏଥିରେ ଯେଉଁ ନାମମାନ କୁହାଯାଇଛି, ସେ ସମସ୍ତ ବିଜୟ ନଗର ରାଜ୍ୟ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ । ଏଠାରେ ସାରଳା ଦାସ ଏକ ପ୍ରକାର ଖୋଲା ଖୋଲି ଭାବରେ ହିଁ ନାମଗୁଡ଼ିକୁ କହିଦେଇଛନ୍ତି । ଏଣୁ ଏ ନାମଗୁଡ଼ିକର ହିଁ ପ୍ରଥମେ ସଂକ୍ଷିପ୍ତ ପରିଚୟ ଦେଲେ ବିଷୟଟି ଆପେ ଆପେ ସ୍ପଷ୍ଟ ହୋଇଆସିବ ।

ପଦ୍ମନାଭ ପର୍ବତ - ଶ୍ରୀରଙ୍ଗମ୍ । ତ୍ରିଞ୍ଚନାପଲ୍ଲୀ ସହରର ଅଦୂରବର୍ତ୍ତୀ କାବେରୀ ନଦୀ କୂଳରେ ଅବସ୍ଥିତ । ଏଠାରେ ବିଷ୍ଣୁମନ୍ଦିର ଅଛି ଓ ସେଥିରେ ପଦ୍ମନାଭ ବା ଅନନ୍ତଶାୟୀ ବିଷ୍ଣୁମୂର୍ତ୍ତି ଅଦ୍ୟାପି ପୂଜିତ ହେଉଛନ୍ତି । ଏହି ପଦ୍ମନାଭ ମନ୍ଦିରକୁ ହିଁ ପଦ୍ମନାଭ ପର୍ବତ କହି ସାରଳା ଦାସ ସାମାନ୍ୟ ଭ୍ରମ ସୃଷ୍ଟି କରି ଦେଇଛନ୍ତି, ମାତ୍ର ଏ ସ୍ଥାନର ନାରାୟଣ ମନ୍ଦିରରେ ଅନନ୍ତଶାୟୀ ବିଷ୍ଣୁ ପୂଜିତ ହେଉଥିବା କଥା ସେ ସ୍ପଷ୍ଟ ଭାବରେ ଲେଖିବାରୁ, ଏହା ଶ୍ରୀରଙ୍ଗମ ଛଡ଼ା ଯେ ଅନ୍ୟ କୌଣସି ସ୍ଥାନ ନୁହେଁ, ଏହା ସହଜରେ ଧରାପଡ଼ିଯାଉଛି । ଶ୍ରୀରଙ୍ଗମ ମନ୍ଦିର ଗାତ୍ରରେ ଗଜପତି କପିଳେଶ୍ୱରଙ୍କ ଜ୍ୟେଷ୍ଠପୁତ୍ର ହମ୍ବିରଦେବଙ୍କ ଗୋଟିଏ ଶିଳାଲେଖ ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ ଅଛି । ଏହି ଲେଖରେ ହମ୍ବିରଦେବ ଶ୍ରୀରଙ୍ଗମ୍ ମନ୍ଦିରରେ ଅଖଣ୍ଡ ଦୀପ ଜାଳିବା ପାଇଁ କେତେଗୁଡ଼ିଏ ଗାଈ ଦାନ କରିଥିବା କଥା ଉଲ୍ଲେଖ ଅଛି ।

ରୁଦ୍ରପର୍ବତ - ତାଞ୍ଜୋର । ଶ୍ରୀରଙ୍ଗମ୍‌ର ପଦ୍ମନାଭ ମନ୍ଦିରକୁ ପଦ୍ମନାଭ ପର୍ବତ କହି ସାରଳା ଦାସ ଯେପରି ଭ୍ରମ ସୃଷ୍ଟି କରିଛନ୍ତି, ତାଞ୍ଜୋରର ଶିବ ବା ରୁଦ୍ର ମନ୍ଦିରକୁ ରୁଦ୍ରପର୍ବତ କହି ସେହିପରି ଭ୍ରମ ସୃଷ୍ଟି କରିଛନ୍ତି । ଓଡ଼ିଶାର ଗଜପତି ଏ ଅଞ୍ଚଳକୁ ଆକ୍ରମଣ କରିବା ପୂର୍ବରୁ ତାଞ୍ଜୋରରେ ଚୋଳରାଜା ରାଜରାଜ ଚୋଳଙ୍କ ଦ୍ୱାରା ନିର୍ମିତ ସୁବିଖ୍ୟାତ ଶିବମନ୍ଦିର ବିଦ୍ୟମାନ ଥିଲା । ଏହା ବର୍ତ୍ତମାନ ମଧ୍ୟ ବିଦ୍ୟମାନ ଅଛି ।

କାବେରୀ ରାଜ୍ୟ- କାବେରୀ ଓ ତୁଙ୍ଗଭଦ୍ରା ଏହି ନଦୀଦ୍ୱୟର ଅବବାହିକାରେ ହିଁ ବିଜୟନଗର ରାଜ୍ୟ ଅବସ୍ଥିତ ଥିଲା । ଏଣୁ ଏଠାରେ କାବେରୀ ରାଜ୍ୟର ଅର୍ଥ ବିଜୟନଗର ରାଜ୍ୟ ।

କାବେରୀ ନଦୀ- ଏହି ସୁବିଖ୍ୟାତ ନଦୀ ପଶ୍ଚିମଘାଟ ପର୍ବତରୁ ବାହାରି କାରିକେଲ ନିକଟରେ ସମୁଦ୍ରରେ ପଡ଼ିଛି । ଏହାର କୂଳରେ ତ୍ରିଞ୍ଚନାପଲ୍ଲୀ, ତାଞ୍ଜୋର ଓ କୁମ୍ଭକୋଣମ ଇତ୍ୟାଦି ପ୍ରସିଦ୍ଧ ସ୍ଥାନ ଅବସ୍ଥିତ ।

ବିଜୟନଗର- ବିଜୟନଗର ରାଜ୍ୟର ରାଜଧାନୀ ବିଜୟନଗର ଓ ହାମ୍ପି ଏହି ଉଭୟ ନାମରେ ଅଭିହିତ ହେଉଥିଲା । ଏହି ରାଜଧାନୀର ବର୍ତ୍ତମାନ ଯେଉଁ ଧ୍ୱଂସାବଶେଷ ରହିଛି, ତାହା ମଧ୍ୟ ଉଭୟ ନାମରେ ପରିଚିତ ହେଉଛି, ମାତ୍ର ହାମ୍ପି ନାମଟି ହିଁ ବର୍ତ୍ତମାନ ବେଶୀ ଭାବରେ ପ୍ରଚଳିତ । ବେଲାରୀ ଜିଲ୍ଲାର ହସପେଟ୍ ରେଳଷ୍ଟେସନଠାରୁ ୯ ମାଇଲ ଦୂରରେ ତୁଙ୍ଗଭଦ୍ରା ନଦୀ କୂଳରେ ଏହି ପ୍ରାଚୀନ ନଗରୀର ଧ୍ୱଂସାବଶେଷ ୭ ମାଇଲ ଆଭ୍ୟନ୍ତରେ ବ୍ୟାପି ରହିଛି । ଏଠାରେ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ବହୁ ମନ୍ଦିର ଓ ପ୍ରାଚୀନ କୀର୍ତ୍ତି ସୁରକ୍ଷିତ ହୋଇଛି ଓ ଗୋଟିଏ ମିଉଜିୟମ ମଧ୍ୟ ସ୍ଥାପିତ ହୋଇଛି । ହସ୍‌ପେଟ୍ ଠାରୁ ୨ ମାଇଲ୍ ଦୂରରେ ଅଳ୍ପ ଦିନ ତଳେ ଯେଉଁ ସୁବିଖ୍ୟାତ ତୁଙ୍ଗଭଦ୍ରା ବନ୍ଧ ନିର୍ମିତ ହୋଇଛି, ତହିଁରୁ ଉତ୍ପାଦିତ ବିପୁଳ ବିଦ୍ୟୁତଶକ୍ତିର ସଦ୍‌ବ୍ୟବହାର ପାଇଁ ହାମ୍ପିର ଅତି ନିକଟବର୍ତ୍ତୀ କମଳାପୁରମ୍‌ଠାରେ ବର୍ତ୍ତମାନ ଗୋଟିଏ ବିଦ୍ୟୁତ୍ କାରଖାନା ଖୋଲାଯାଇଛି । ବେଲାରୀ ଜିଲ୍ଲା ଦ୍ୱିଭାଷୀ ଅଞ୍ଚଳ (କାନାଡ଼ୀ ଓ ତେଲଗୁ) । ଏହା ପୂର୍ବ ମାନ୍ଦ୍ରାଜ ପ୍ରଦେଶରେ ଥିଲା; କିନ୍ତୁ ବର୍ତ୍ତମାନ ମୈଶୂରରେ ମିଶିଛି ।

ଶ୍ରୀଗିରି- ଶ୍ରୀଶୈଳମ । ଏହା ଆନ୍ଧ୍ରପ୍ରଦେଶର କାର୍ଣ୍ଣୁଲ ଜିଲ୍ଲାରେ କୃଷ୍ଣାନଦୀର ଦକ୍ଷିଣ ତଟରେ ଅବସ୍ଥିତ । ଶ୍ରୀଶୈଳମ୍ ମନ୍ଦିରରେ ବର୍ତ୍ତମାନ ସୁଦ୍ଧା କପିଳେଶ୍ୱର ଗଜପତିଙ୍କ ଶିଳାଲେଖ ବିଦ୍ୟମାନ ଅଛି ।

କାଞ୍ଚନଗ୍ର- ଚିଙ୍ଗଲପୁଟ ଜିଲ୍ଲାର ପୋଲାର ନଦୀକୂଳରେ ଅବସ୍ଥିତ ଆଧୁନିକ କାଞ୍ଚିବେରମ୍ । ଏହା ହିଁ ସାଲୁବ ନରସିଂହଙ୍କ ରାଜଧାନୀ ଥିଲା ।

ଅଜାନୁରାଜା- ଏହା ଏକ ଛଦ୍ମ ନାମ । ଉଦୟଗିରି ଓ କାଞ୍ଚି ଉଭୟ ହିଁ ସାଲୁବ ନରସିଂହ ରାଜ୍ୟରେ ଅବସ୍ଥିତ ଥିଲା । ଉଦୟଗିରି କଥା କହିବାବେଳେ ସାରଳା ଦାସ ଏହାର ରାଜାର ନାମ ସାଲୁ ବା ସାଲୁବ ବୋଲି କହି ପ୍ରକୃତ ଐତିହାସିକ ନାମଟି ପ୍ରକାଶ କରିଛନ୍ତି, ମାତ୍ର ଏଠାରେ ସେହି ସାଲୁବ ନରସିଂହଙ୍କୁ ହିଁ ଅଜାନୁ ଆଖ୍ୟା ଦେଇଛନ୍ତି । ତଥାପି ଏହି ଛଦ୍ମ ନାମରେ ମଧ୍ୟ ତାତ୍ପର୍ଯ୍ୟ ଅଛି । ଅଜାନୁର ଆକ୍ଷରିକ ଅର୍ଥ ହେଉଛି ଜାନୁଶୂନ୍ୟ; କିନ୍ତୁ ଏଠାରେ ଏହାର ଅର୍ଥ ନତଜାନୁ ବା ପରାଜିତ ବୋଲି ହିଁ ବୁଝିବାକୁ ହେବ । କାଞ୍ଚିରାଜା ପ୍ରକୃତରେ ଓଡ଼ିଶାରାଜାଙ୍କ ଦ୍ୱାରା ପରାସ୍ତ ହୋଇଥିଲେ, ନଚେତ୍ ୫୦ ବର୍ଷ ପର୍ଯ୍ୟନ୍ତ ଉଦୟଗିରି ଦୁର୍ଗ ଓଡ଼ିଶାର ଅନ୍ତର୍ଗତ ଥିଲା

କିପରି ?

ତୁଙ୍ଗଭଦ୍ରା- ସୁବିଖ୍ୟାତ ନଦୀ । ଏହା ପଶ୍ଚିମଘାଟ ପର୍ବତରୁ ବାହାରି କାର୍ଣ୍ଣୁଲ ନିକଟରେ କୃଷ୍ଣାନଦୀରେ ପଡ଼ିଛି ।

ଶ୍ରୀରାମଜଙ୍ଗମ୍- ଏହାଙ୍କୁ ଶ୍ରୀଗିରି ପର୍ବତର କ୍ଷେତ୍ରପାଳ ରାଜା ବୋଲି କୁହାଯାଇଛି । ଶ୍ରୀଗିରି ବା ଶ୍ରୀଶୈଳମ ଗୋଟିଏ ସାମରିକ ଘାଟୀ ଥିଲା, ମାତ୍ର ଏହି ସମୟରେ ଏଠାରେ କିଏ କ୍ଷେତ୍ରପାଳ ଥିଲେ, ତାହା ଇତିହାସରୁ ମିଳୁନାହିଁ ।

ଶ୍ରୀମଲ୍ଲିକାନାଥ, ଶ୍ରୀମଲ୍ଲିକାର୍ଜ୍ଜୁନ- ସାରଳାଦାସ ମଲ୍ଲିକାର୍ଜ୍ଜୁନଙ୍କୁ ଶିବଲିଙ୍ଗ ରୂପେ ବର୍ଣ୍ଣନା କରି ଭ୍ରମ ସୃଷ୍ଟି କରିଛନ୍ତି । ମଲ୍ଲିକାର୍ଜ୍ଜୁନ ବିଜୟନଗରର ରାଜା ୨ୟ ଦେବରାୟଙ୍କ ପୁତ୍ର ଥିଲେ ଓ ପିତାଙ୍କ ମୃତ୍ୟୁ ପରେ ସେ ୧୪୪୭ ଖ୍ରୀଷ୍ଟାବ୍ଦ ଠାରୁ ୧୪୬୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହାଙ୍କ ରାଜତ୍ୱ-କାଳରେ ହିଁ ଓଡ଼ିଶାର ଗଜପତି କପିଳେଶ୍ୱର ଦେବ ବିଜୟନଗର ରାଜ୍ୟକୁ ଆକ୍ରମଣ କରିଥିଲେ ।

ଏହି ନାମଗୁଡ଼ିକର ପରିଚୟରୁ ହିଁ ସହଜରେ ଜଣାଯିବ ଯେ ସାରଳାଦାସ ଓଡ଼ିଶା ରାଜାଙ୍କ ରାଜ୍ୟ-ଜୟ କଥା ମହାଭାରତ ଛଳରେ ଲେଖିଯାଇଛନ୍ତି । ଏହି ଆଖ୍ୟାୟିକାର ଐତିହାସିକ ତଥ୍ୟ ଓ ସାରଳାସାହିତ୍ୟର ଅନ୍ୟାନ୍ୟ ଐତିହାସିକ ତଥ୍ୟ ପରବର୍ତ୍ତୀ ପରିଚ୍ଛେଦମାନଙ୍କରେ କ୍ରମଶଃ ଆଲୋଚନା କରାଯିବ ।

ପରିଶେଷରେ ବକ୍ତବ୍ୟ ଏହି ଯେ ସାରଳାଦାସ ତାଙ୍କ ସାହିତ୍ୟର ରଚନା କାଳ ତଥା ସମସାମୟିକ ଇତିହାସ ସମ୍ବନ୍ଧରେ ତାଙ୍କ ଗ୍ରନ୍ଥମାନଙ୍କରେ ଯେତେ ଉପାଦାନ ରଖିଯାଇଛନ୍ତି, ସେପରି ଉପାଦାନ ଭାରତର କୌଣସି ଅନୈତିହାସିକ ପ୍ରାଚୀନ ଗ୍ରନ୍ଥରେ ଦେଖାଯାଏ ନାହିଁ । ଏପରି ମତପ୍ରକାଶରେ ଭାବ-ପ୍ରବଣତା, ଅତିରଞ୍ଜନ ବା ଅତିଶୟୋକ୍ତି ନାହିଁ, ମାତ୍ର ସାରଳା ଦାସଙ୍କ ଦୁର୍ଭାଗ୍ୟ ଯେ ଯେତେବେଳେ ଭାରତରେ ଭାଷାସାହିତ୍ୟର ଉନ୍ମେଷ ମାତ୍ର ଘଟିଥିଲା, ସେତିକିବେଳେ ତାଙ୍କ ସମ୍ମୁଖରେ କୌଣସି ଭାଷା ସାହିତ୍ୟର ଆଦର୍ଶ ନ ପାଇ ସୁଦ୍ଧା, ତାଙ୍କ ତ୍ରିକାଳଦର୍ଶୀ ଅନନ୍ୟସାଧାରଣ ପ୍ରତିଭା ଦ୍ୱାରା ତାଙ୍କ ସମୟର ବିରାଟ ଓଡ଼ିଶା ସାମ୍ରାଜ୍ୟ ପରି ଓଡ଼ିଆ ଭାଷାରେ ହିଁ ବିରାଟ ଭାଷା ସାହିତ୍ୟ ଗଢ଼ି ଦେଇଥିଲେ ଓ ଓଡ଼ିଆ ସାହିତ୍ୟର ଜନ୍ମଦାତା ହୋଇଥିଲେ । ସେ ଯଦି ଓଡ଼ିଆ ଛଡ଼ା ଅନ୍ୟ କୌଣସି ଭାଷାରେ ତାଙ୍କ ଗ୍ରନ୍ଥମାନ ଲେଖିଥାନ୍ତେ, ତାହାହେଲେ ତାଙ୍କ ବିରାଟ ସାହିତ୍ୟ ଏତେବେଳକୁ ବିଶ୍ୱ-ବିଖ୍ୟାତ ହୋଇସାରିଥାନ୍ତା; ଆଉ ତହିଁରେ ଥିବା ଜ୍ଞାନ ବିଜ୍ଞାନ ବହୁ ଭାବରେ ଆଲୋଚିତ, ପ୍ରଚାରିତ ଓ ନିୟୋଜିତ ହୋଇସାରିଥାନ୍ତା । ତା' ଛଡ଼ା ତାଙ୍କ ଜନ୍ମସ୍ଥାନ ବା ତାଙ୍କ ସାହିତ୍ୟର ରଚନାକାଳ ପ୍ରଭୃତି ପରି କ୍ଷୁଦ୍ର କ୍ଷୁଦ୍ର ବିଷୟ ପାଇଁ ବର୍ତ୍ତମାନ ବିତଣ୍ଡାର ଅବକାଶ ମଧ୍ୟ ନ ଥାନ୍ତା । ସାରଳା ଦାସଙ୍କ ମୃତ୍ୟୁପରେ ପ୍ରାୟ ପାଞ୍ଚଶ ବର୍ଷ ଅତୀତ ହୋଇଯାଇଛି, ଆଉ ତାଙ୍କ ସାହିତ୍ୟ କ୍ରମ-ବିକୃତ ଓ କ୍ରମ-ବିସ୍ମୃତ ହୋଇଆସିବା ବେଳେ ଏହାର ଆଲୋଚନା ପ୍ରତି ବର୍ତ୍ତମାନ ଶ୍ରଦ୍ଧା ଦେଖାଯାଉଛି । ଏହା ନିଶ୍ଚୟ ଶୁଭଲକ୍ଷଣ, ମାତ୍ର ତାଙ୍କ ସାହିତ୍ୟ ସମ୍ବନ୍ଧରେ ଯାହା କୁହାଯାଉଛି ତାହା ତାଙ୍କ ଗ୍ରନ୍ଥମାନଙ୍କରେ ମିଳୁଥିବା ଉପାଦାନ ଉପରେ ହିଁ ପ୍ରତିଷ୍ଠିତ ହେବା ଉଚିତ ।

(ସାରଳା ସାହିତ୍ୟର ଐତିହାସିକ ଚିତ, କଟକ, ୧୯୭୬)

## (୫)

## ଗୋପୀନାଥ ମହାନ୍ତି

# ସାରଳା ଦାସଙ୍କର ଘର କେଉଁଠି ?

"ସାରଳା ଦାସଙ୍କ ଘର କେଉଁଠି ?" ଯାହାକୁ ପଚାରିଲେ ସେ ଅବଶ୍ୟ କହିବ- "ତାଙ୍କ ଘର କନକପୁର, ତାଙ୍କ ଇଷ୍ଟଦେବୀ ଝଂକଡ଼ର ମା' ସାରଳା ଠାକୁରାଣୀ ।" ହୁଏତ ସେ ମତେ ଆଶ୍ଚର୍ଯ୍ୟ ହୋଇ ଚାହିଁବ, ଆଉ କହିବ, "ସାଧାରଣ ଜ୍ଞାନ ପରୀକ୍ଷାରେ ଯାଙ୍କୁ ପ୍ରଥମ ସ୍ଥାନ ଦେବା ଉଚିତ । ଯେଉଁ ଲୋକ ଶୂଦ୍ରମୁନି ସାରଳାଙ୍କ ଘର ଝଙ୍କଡ଼ କନକପୁର ଜାଣେନାହିଁ ।" ମହାଭାରତର ବର୍ଣ୍ଣନା ଅନୁସରଣ କରି କହିବାକୁ ଗଲେ କହିବା, ବିଜ୍ଞଜନେ ଏ ପ୍ରଶ୍ନ ଶୁଣି ନାକରେ ହାତଦେଇ ହସିବେ ।

ତା'ର କାରଣ ହେଉଛି, କଟକ ଜିଲ୍ଲାର ଝଙ୍କଡ଼ ଓ ସାରଳା ଠାକୁରାଣୀଙ୍କ ନାଁ ସହିତ ଛପା ମହାଭାରତ ବହିରେ ସାରଳା ଦାସ ଏଭଳି ଭାବେ ଜଡ଼ିତ ଯେ ଏହାକୁ ଅନେକେ ଏକ ଐତିହାସିକ ସତ୍ୟ ବୋଲି ଧରି ନେଇଛନ୍ତି । ସେଠି ଠାଏ ଗୋଟିଏ ବିଲରେ ଗାଁ ପାଖିଆ ହୋଇ ପକ୍କା ଚାନ୍ଦିନୀ ବନ୍ଧା ହୋଇ ଯେଉଁ ଗଛ ଯୋଡ଼ିଏ ଅଛନ୍ତି ସେଠିକି ଗଲେ ଲୋକେ ତାକୁ ଦେଖାଇ କହନ୍ତି ଯେ ସାରଳା ଦାସଙ୍କ ସମାଧି । କାଳକ୍ରମେ ସେ ସ୍ଥଳ ଏକ ତୀର୍ଥରେ ପରିଣତ ହେଲାଣି । ମୁଁ ବି ସେଠି ସାରଳାଙ୍କ ଗୋଡ଼ତଳେ ପଡ଼ି ଆସିଥିଲି । ସେଠି ସାରଳାଙ୍କ ସ୍ମୃତିରକ୍ଷା ପାଇଁ ଏକ ବାର୍ଷିକ ଯାତ୍ରା ବି ଆରମ୍ଭ ହେଲାଣି (ବୋଧହୁଏ ଆଗେ ତାକୁ ଶ୍ରଦ୍ଧେୟ ବନ୍ଧୁ ଅନନ୍ତ ପ୍ରସାଦ ପଣ୍ଡା ଆରମ୍ଭ କରିଥିଲେ ।) ଉଦ୍ୟମ ହେଉଛି ସେଠି ସାରଳା ଦାସଙ୍କର ଗୋଟିଏ ମୂର୍ତ୍ତି ବି ସ୍ଥାପିତ ହେବ, ହେଉ ପଛେ ତା ଏକ କଳ୍ପିତ ମୂର୍ତ୍ତି । ତେନ୍ତୁଳିପଦା ଗାଁର ପରିଜା ପଦବୀଧାରୀ ବନ୍ଧୁଗଣ ନିଜକୁ ସାରଳା ଦାସଙ୍କ ବଂଶଧର ବୋଲି କହିବା ବି ଶୁଣାହୁଏ, ଯଦିଚ ସାରଳା ଦାସଙ୍କ ଜାତି ବଂଶ କିଛି ଜଣାନାହିଁ ।

ଯେଉଁଠି କଳ୍ପନାରେ କଳ୍ପନାରେ ଭାବଧାରା ଏତେ ବାଟ ଗଡ଼ି ଗଡ଼ି ଗଲାଣି ସେଠି ହଠାତ୍ ଯେତେବେଳେ ମୁଁ କହିବାକୁ ଆରମ୍ଭ କଲି ଯେ, ଯେତେଦୂର ସମ୍ଭବ ଲାଗୁଛି ଓଡ଼ିଆ ମହାଭାରତ ଗ୍ରନ୍ଥିକାରଙ୍କ ଘର କଟକ ଜିଲ୍ଲା ଝଙ୍କଡ଼ ନୁହେଁ, ତାଙ୍କ ଘର ପୁରୀ ଜିଲ୍ଲା କାକଟପୁର ଥାନା ସମୁଦ୍ର କୂଳ ପାଖ ପ୍ରାଚୀ ନଦୀ ମୁହାଣ ପାଖେ, ବୋଧହୁଏ ଚିତ୍ରେଶ୍ୱରୀ ଠାକୁରାଣୀଙ୍କ ପାଖରେ ଯେଉଁ କଣିଆଁ ଗାଁ ଅଛି ସେହି । ମୁଁ ଯେତେବେଳେ କହିଲି ଯେ, ସାରଳା ଦାସ ଯେଉଁ ଠାକୁରାଣୀଙ୍କ ବନ୍ଦନା କରିଛନ୍ତି, ଯାହାଙ୍କ ଦୟାରେ ସେ "ମହାଭାରଥ ରଚ୍ଛିଲେ" ସେ ଝଂକଡ଼ ସାରଳା ନୁହନ୍ତି, ସେ ଏକ "ସାରୋଳଚଣ୍ଡୀ", ଯାହାଙ୍କ ମନ୍ଦିର ଥିଲା ଚିତ୍ରେଶ୍ୱରୀଙ୍କ ପାଖରେ ଅଥବା ଯେ ନିଜେ ସେ ଚିତ୍ରେଶ୍ୱରୀ । ଅଥବା ଯାହାଙ୍କ ମନ୍ଦିର ଗୋଲରା ବଣ କି କୈରୀ ଝାଡ଼ ବଣରେ କେଉଁଠି ହଜିଛି କି ଅବା ମରିଯାଇଥିବା ଚନ୍ଦ୍ରଭାଗା ନଦୀର ପରସ୍ତ ପରସ୍ତ ବାଲି ଶେଯ ଘୋଡ଼ିହୋଇ ଦି'ପୁରୁଷ କି ଚାରିପୁରୁଷ ବାଲି ତଳେ ଶୋଇଛି, ଭବିଷ୍ୟତକୁ ସ୍ୱପ୍ନ ଦେଖୁଛି । ମୁଁ ଯେତେବେଳେ ଏପରି କହିଲି ସେତେବେଳେ ଶୁଣିବା ଲୋକେ କେହି କେହି ଟିକିଏ ଚମକିବା ସ୍ୱାଭାବିକ ।

ଅବଶ୍ୟ ଏକଥା ସତ ଯେ କବି କୌଣସି ଏକ ଗାଁ କି ଦେଶରେ ବାନ୍ଧି ହୋଇ ରହନ୍ତି ନାହିଁ, ସେ ସମଗ୍ର ମାନବ ଜାତିର ଏବଂ ଆଜି ଏତେ ଯୁଗପରେ ସାରଳା ଦାସ ପଚାଶମାଇଲ୍ ଉତ୍ତରର କି ପଚାଶ ମାଇଲ୍ ଦକ୍ଷିଣର ଏ କିଛି ସେଭଳି ଗୁରୁତ୍ୱପୂର୍ଣ୍ଣ ନୁହେଁ ।

ସାରଳାଦାସଙ୍କ ଘର ଯେଉଁ ଗାଁରେ ଥାଉ କୋଣାର୍କ ପଛେ ଭାଙ୍ଗି ପଡ଼ିଛି ତାଙ୍କ ମହାଭାରତ ଭାଙ୍ଗି ନାହିଁ, ସେହିପରି ଉନ୍ନତ ଅଛି ତା'ର ମଥା । ଏ ବିଚାର ସେହିମାନଙ୍କ ପାଇଁ ଯେଉଁମାନେ ଏଇ ଛୁଞ୍ଚୁମାଛି ଗବେଷଣାରେ କୁତୂହଳୀ, ଅଥବା ସେହି କଳ୍ପନାବିଳାସୀ ଭାବପ୍ରବଣ ଭାବୁକମାନଙ୍କ ପାଇଁ ଯେଉଁମାନେ କବିଙ୍କର ଜାଗତିକ ସମ୍ପର୍କ ଲାଗିଥିବା କୌଣସି ପଦାର୍ଥ ବା ସ୍ଥାନକୁ ଦେଖିଲାମାତ୍ରେ କବିଙ୍କୁ ସ୍ମରଣ କରିବାକୁ ଆରମ୍ଭ କରି ଦିଅନ୍ତି, କବିଙ୍କ ସ୍ମୃତିରେ ଆପଣାକୁ ମିଶାଇ ଦୂରକୁ ଭସାଇ ଦିଅନ୍ତି । ଅଥବା ସେହିମାନଙ୍କ ପାଇଁ ଯେଉଁମାନେ କବିଙ୍କ କୃତୀ ଉପରେ ପରିସ୍ଥିତିର ପ୍ରଭାବକୁ ପଢ଼ିବା ପାଇଁ ପରିବେଷ୍ଟନୀ ପ୍ରଣିଧାନ କରିବା କାର୍ଯ୍ୟରେ ବ୍ରତୀ ହୁଅନ୍ତି । ଏହିସବୁ କାରଣରୁ ଏଭଳି ଆଲୋଚନାର ମଧ ଆବଶ୍ୟକ ଅଛି ।

ସାରଳାଦାସ କନକପୁର-ତେନ୍ତୁଳିପଦା-ଝଙ୍କଡ଼ର ଏହ ବିଶ୍ୱାସ ମୋର ରହିଥିଲା, ଅର୍ଥାତ୍ ବଳକା କୁତୂହଳ ନ ଥାଇ ଏ ବିଷୟରେ ମୁଁ ଚିନ୍ତା କରି ନ ଥିଲି ଠିକ୍ ସେହିଦିନ ପର୍ଯ୍ୟନ୍ତ ଯେଉଁଦିନ ତାଳପତ୍ର ପୋଥିରେ ଲେଖା ହୋଇଥିବା 'ସ୍ୱର୍ଗାରୋହଣ ପର୍ବ' ଖଣ୍ଡିଏ ମୁଁ ମୋର ଏକ ବନ୍ଧୁ ହରିବନ୍ଧୁ ତ୍ରିପାଠୀଙ୍କ ଠାରୁ ପାଇ ପଢ଼ିବାକୁ ଲାଗିଲି । ପୋଥିଟି ବୋଧହୁଏ ଶହେ ବର୍ଷରୁ କମ୍ ପୁରୁଣା ନୁହେଁ, ତା'ର 'ଆଦର୍ଶ' (ଏହା ଟେକ୍ନିକାଲ୍ ଶବ୍ଦ, ଯେଉଁ ପୂର୍ବବର୍ତ୍ତୀ ପୋଥିଟି ନକଲ ହୋଇଥାଏ, ସମ୍ଭବତଃ ପୂର୍ବବର୍ତ୍ତୀ ପୋଥିଟି 'ବଇତମ' ଅର୍ଥାତ୍ ଖୁବ୍ ପୁରୁଣା ହୋଇ ନଷ୍ଟ ହେଲାଭଳି ହେଲାବେଳେ, ସେହି ପୂର୍ବତନ ପୋଥିକୁ ପରବର୍ତ୍ତୀ ପୋଥିର 'ଆଦର୍ଶ' କୁହାଯାଏ) ତ

ଭାଷା ବିଚାରରୁ ଜଣା ପଡୁଛି ବହୁତ ପୁରାତନ ବୋଲି । 'ସ୍ୱର୍ଗାରୋହଣ ପର୍ବ' । ଏହି ଶେଷ । ଗ୍ରନ୍ଥକାରକ ଏଥର ପାଠକ ଓ ଶ୍ରୋତାମାନଙ୍କ ଠାରୁ ବିଦାୟ ନେବେ। ତା ପୂର୍ବରୁ ଆପଣା ବିଷୟରେ ମଧ୍ୟ ଯାହା କହିବା କଥା ସବୁ ସେ କହିଯିବେ ବୋଲି ବିଶ୍ୱାସ ହେବା କଥା । ତା'ପରେ ମୁଁ ପଢ଼ିଲି, ମହାକବି ଆପଣା ଭାଷାରେ ଆପଣା ବିଷୟ ଏଭଳି ଭାବେ କହିଯାଇଛନ୍ତି ଯହିଁରେ ମନରେ ଆଉ ସନ୍ଦେହ ରହିବ ନାହିଁ । ମୁଁ ତାକୁ ଉଦ୍ଧାର କଲି -

ହେ ବିଜ୍ଞ ଲୋକ ଯମ୍ବୋଦ୍ୱୀପ ଭ୍ରଥଖଣ୍ଡ ଓଡ଼ରାଷ୍ଟ୍ର ମଣ୍ଡଳେ
ଠାବ କଣୟବତୀ ଚନ୍ଦ୍ରଭାଗା ନଦୀ କୂଳେ ।
ମଉଦଧି ପଶ୍ଚିମ ଆଡ଼େ ପ୍ରସୁରାମର ପାଟଣା
ପ୍ରସୁରାମ ପୁଜିଲେ ଯେବଣ ପାସାଣ
ଭାବାନିଭାବ ଗୋ ଶ୍ରୀଚଣ୍ଡୀ ସାରୋଳେ
ତସା ମୋର ତୁଳୁସାମାଳ ଲଳୁ ବକ୍ଷସ୍ଥଳେ ।
ହେ ପଣ୍ଡିତ ଯେନେ ପ୍ରସନ ମତେ ହୋଇଲେ ହେଂଗୁଳା
ସେ ସର୍ବମଙ୍ଗଳେ ହୃଦେ ମୋର ଦ୍ୱାରା ।
ବଉଦ ରୂପ ମୁଁ ତାର ପ୍ରସନ୍ନେ ଦେଖଇଂ
ସେ ଯାହା କହଇ ମୁଁ ତାହା ସେ ଲେଖଇଂ ।
ଯେବଣ ବାକ୍ୟ କଲି ମୁନିଙ୍କର ବାକ୍ୟେ
ମୁହିଁ ଲେଖନ କଲି ମୋହ ଠାବ କଣୟ ଭାଗା ଚନ୍ଦ୍ର ନଦୀ
ତଟେ ।
ମୋହର ସଖ୍ୟ କି ଏହା କହି ପାରଇ
ନର୍ମଦା ସରସ୍ୱତୀ ହୋଇଲେ ମୋତେ ସାହୀ ।
ତାହାର ପ୍ରସନେ ମୁଁ ଏ ଗ୍ରନ୍ଥ କହିଲି
ଅଷ୍ଟାଦଶ ପର୍ବ ଗୀତରେ ରଞ୍ଜିଲି ।
ଶ୍ରୀ ଚରଣାବିନ୍ଦେ ଲାଗିଲା ମୋର ଭକ୍ତୀ
ପୂର୍ବର ବାସନା ଯେ ଥିଲା ହେତୁମତୀ ।
ସେହି ଗୁଣ ଘେନି ବିକଶିଲା ଏବେ
ତେଣୁ ମହାଭାରତ ବିକଶିଲି ତେବେ ।
ସେ ଚଣ୍ଡୀର ଚରଣେ ସର୍ବଦା ମୋର ଆସ
ବନ୍ଦନ୍ତୀ ଗ୍ରନ୍ଥିକାର ଶୂଦ୍ରମୁନି ସାରୋଳ ଦାସ ।
ଅଷ୍ଟାଦଶ ପୁରାଣ ସଦାଇ ସମ୍ପୂର୍ଣ୍ଣ
ଶ୍ରୀ ଶାରୋଳ ଚଣ୍ଡୀ ଚରଣେ ଶୁଦ୍ରମୁନି ସାରୋଳା ଦାସ ଶରଣ ।
ଇତି ଶ୍ରୀ ସ୍ୱର୍ଗାରୋହଣ ପର୍ବ ସଦାସୟେ ସମ୍ପୂର୍ଣ୍ଣ ॥

ପୋଥି ପଢ଼ି ଭାବିବାକୁ ହେଲା, କାହିଁ ଝଙ୍କଡ଼ ପାଖେ ଚନ୍ଦ୍ରଭାଗା କି ସମୁଦ୍ର ? ଶ୍ରୀ ସାରଳା ଦେବୀ ମାତା ତ ମହିଷାସୁର ମର୍ଦ୍ଦିନୀ, କିପରି ତାଙ୍କର ବୌଦ୍ଧ ରୂପ ହେଲା ? ଅରୁଣୋଦୟ ପ୍ରେସ୍‌ର ଛାପା ସାରଳା ମହାଭାରତରେ ସେ ସ୍ଥାନଟି ପଢ଼ିଲି । ଏହିପରି ଛପା ହୋଇଛି -

ହେ ବୁଧେ ଭ୍ରତଖଣ୍ଡର ଉଡ୍ରାଷ୍ଟ ମଣ୍ଡଳେ
କନକାବତୀ ନଗର ଚନ୍ଦ୍ରଭାଗା କୂଳେ
ତାହାର ପଶ୍ଚିମେ ପର୍ଶୁରାମର ପାଟଣା
ପର୍ଶୁରାମ ପୂଜାକଲେ କରିଣ ଘଟଣା
ସେ ଦେବୀ ବିଜୟ ନାହିଁ ଯା ନାମ ଶାରଳା
ଫଳ ସେବା କରି ମୋର କାଳକ ପାହିଲା

ଏ ଛାପା ବହିରେ "ମୋ ଠାବ କଣୟବତୀ ଚନ୍ଦ୍ରଭାଗା ନଦୀ କୂଳେ"- ଏ ସ୍ପଷ୍ଟ ବାକ୍ୟ ନାହିଁ, ଦେବୀଙ୍କ ନାମ "ଶ୍ରୀ ଚଣ୍ଡୀ ସାରୋଳେ", ବା 'ହେଂଗୁଳା' ଏଭଳି ନାହିଁ, ବା ଦେବୀଙ୍କ ଆସ୍ଥାନ ପୀଠ ପାଖେ ସମୁଦ୍ର ଥଲା ସେ କଥା ଛପା ହୋଇନାହିଁ - "ମଉଦଧି ପଶ୍ଚିମ ଆଡ଼େ ପ୍ରସୁରାମର ପାଟଣା ।" ଅଥବା ଦେବୀଙ୍କ ସ୍ୱରୂପର ବିଶିଷ୍ଟତା ଯେ ତାଙ୍କର ବୌଦ୍ଧ ରୂପ ଅର୍ଥାତ୍ ସମ୍ଭବତଃ ଆଦ୍ୟରୁ ସେ ତାରା ମୂର୍ତ୍ତି ଏଭଳି ମଧ୍ୟ ସେ ଛପା ବହିରେ ନାହିଁ । ଯଦିଚ ଏଇ ଯାହା ଛାପା ବହିରେ ଛାଡ଼ିଗଲେ ତାହାହିଁ ସାରଳା ଦାସଙ୍କ ଠାବ ଥୟ କରିବାକୁ ଅତି ମୂଲ୍ୟବାନ୍ ତଥ୍ୟ ।

ଯେ ଛାପା ବହି ତ ସାରଳା ଦାସଙ୍କ ମହାଭାରତ ହିଁ ନୁହେଁ । ସାରଳା ଦାସଙ୍କ ମହାଭାରତରେ ଯେଉଁ ପଦ ସବୁ ଅଛି ଯେ ଛାପା ବହି ତାହାର ଭାଷା ବଦଳାଇ ତା'ର ଭାବକୁ କିଛି ପରିମାଣରେ ପ୍ରକାଶ କରିଛି ଏବଂ ତା ମଧ୍ୟ ନିଜ ଭାଷାରେ ହିଁ କରିଛି । ଏହି ପ୍ରକାରେ ସାରଳା ଦାସଙ୍କ ଲେଖାକୁ ଯେଉଁମାନେ 'ସଂଶୋଧନ' କରି ଅରୁଣୋଦୟ ପ୍ରେସର ଛପା ବହି ତିଆରି କରିଛନ୍ତି ସେମାନେ ନିଜ ପରିଚୟ ଓ 'କୃତିତ୍ୱ'କୁ ପ୍ରକାଶ କରିବାକୁ କୁଣ୍ଠା ଅନୁଭବ କରି ନାହାନ୍ତି -

ଶୁଣ ଶୁଣ ବିଜ୍ଞବର ମୋର ନିବେଦନ
ଅଠର ଖଣ୍ଡ ଭାରତ କଲି ସଂଶୋଧନ

*** *** ***

ମୋହର ଅଟଇ ଘର ଦେବାନ ବଜାରେ
ବ୍ୟବସାୟ ଅଛି ମୋର ଡାକ୍ତର ବିଦ୍ୟାରେ
ପଢ଼ିଲି କଟକ ମେଡ଼ିକେଲ ଇସ୍କୁଲରେ
ଉତ୍ତୀର୍ଣ୍ଣ ହୋଇଲି ତହୁଁ ବହୁ ଆୟାସରେ ।

ପୁନଶ୍ଚ -

ମୂଳ ବସନ୍ତ ନିବାସୀ ଗୋପୀନାଥ କର
ପଣ୍ଡିତ ଅଟନ୍ତି ସେହୁ ଅରୁଣୋଦୟର
ତାହାଙ୍କର ପରିଶ୍ରମ ଅତି ଅକଥନ

ସାହାଯ୍ୟ ସେ କରିଛନ୍ତି କରିଣ ଯତନ
ରାମଚନ୍ଦ୍ର ଦାସ ଆମ୍ଭ ଏକ କର୍ମଚାରୀ
ରଚନା କରିବା ଶକ୍ତି ଅଛଇ ତାଙ୍କରି
ସେ ମଧ ଏ ପୁରାଣରେ ଯତ୍ନଶୀଳ ହୋଇ
ଲେଖିଅଛନ୍ତି ଅନେକ ଦେହକଷ୍ଟ ପାଇଁ । ଇତ୍ୟାଦି

ସାରଳା ମହାଭାରତ ବୋଲି ଆମେ ଯେଉଁ ଛାପା ବହି ପଢ଼ୁଁ ତହିଁର ଭାଷା "ସାରୋଳ ଦାସ"ଙ୍କର ନୁହେଁ । ତାହା ତା'ର ଏକ ବିକୃତ ଛାୟାରୂପ, ସେ ଭାଷା ଏହି କାରିଗରମାନଙ୍କର । ଏ ବିଷୟରେ ଅଧିକ କହିବା ନିଷ୍ପ୍ରୟୋଜନ । ଏତିକି କହିଲେ ଯଥେଷ୍ଟ ହେବ ଯେ ସାରଳା ମହାଭାରତର ବିଷୟବସ୍ତୁ ବିଷୟରେ ପଦେ ବି ଆଲୋଚନା କରିବାକୁ ହେଲେ ଅରୁଣୋଦୟ ପ୍ରେସରେ ୧୯୧୭ରେ ଛାପା ହୋଇଥିବା ବହିକୁ କେବଳ ଉପେକ୍ଷା କ'ଣ ବର୍ଜନ କରିବାକୁ ପଡ଼ିବ । ବାକି ରହିଲା ଆଉ ଗୋଟିଏ ଛାପା ବହି ବିଂଶ ଶତାବ୍ଦୀର ଆରମ୍ଭରେ ଉତ୍କଳ ଟ୍ରେଡ଼ିଂ କୋମ୍ପାନୀ ଦ୍ୱାରା ପ୍ରକାଶିତ । ସେଥିରେ ଦାଣ୍ଡୀ ବୃତ୍ତ ଅଛି, କିନ୍ତୁ ପୋଥିର ଭାଷାଠୁ ସେବି ଅନେକ ତଫାତ୍ ।

ଆମେ ଯେଉଁ ସାରଳା ଦାସଙ୍କୁ ଘେନି ଓଡ଼ିଆ ବୋଲି ଗର୍ବ କରୁ, ତାଙ୍କ ବିରାଟ କୃତି ମହାଭାରତର ଏକ ଯଥାସମ୍ଭବ ଶୁଦ୍ଧ ସଂସ୍କରଣ ଓଡ଼ିଶାରେ ଛାପା ହୋଇନାହିଁ, ଓ ୧୯୫୬ ସାଲରେ ସୁଦ୍ଧା ପ୍ରକୃତ ମହାଭାରତର କିଛି ଭାଗ ପୋଥିରେ ହିଁ ଅଛି, ଛାପା ବହିରେ ନାହିଁ । ଯାଠୁ ଲଜ୍ଜାକର କଥା ଆଉ କ'ଣ ହୋଇପାରେ । ଆମର ସବୁ କଥା ସେମିତି । ହଜାର ହଜାର ଓଡ଼ିଆ ଗ୍ରନ୍ଥ ତାଳପତ୍ର ପୋଥିରେ ହିଁ ସୀମିତ । ଜଗନ୍ନାଥ ଦାସ ଯେଉଁ ଗୁମ୍ଫାରେ ବସି ଭାଗବତ ଲେଖୁଥିଲେ ସେ ଭାଙ୍ଗିଲାଣି, ସେଠି ଘସିପରା ହେଉଛି, ତାଙ୍କ ସମାଧି ମନ୍ଦିରରେ ଦୀପଟିଏ ଜାଳିବାକୁ ମଣିଷ ନାହାନ୍ତି ବରଂ ସେଠି ବାଲିରେ ଲୋକେ ଝାଡ଼ା ଫେରନ୍ତି । ମହାପୁରୁଷମାନଙ୍କ ସ୍ମୃତି ଆମେ ଏହିପରି ରଖୁ, ସାହିତ୍ୟର ଆଦର ତ ଜଣେଇଜଣା । ସାରଳା ଦାସଙ୍କ ମହାଭାରତର ପ୍ରାଚୀନ ପୋଥିମାନ ସଂଗ୍ରହ କରିବାକୁ ଚେଷ୍ଟା କରାଯାଉଛି, ମୁଁ ଆଶାକରୁଛି କେତେଗୁଡ଼ିଏ ପୁରୁଣା ତାଳପତ୍ର ପୋଥିରେ କେତେଗୁଡ଼ିଏ ସମ୍ପୂର୍ଣ୍ଣ ମହାଭାରତ ପାଇପାରିବି ବୋଲି । ପରେ ତହିଁରୁ ଏକ ଶୁଦ୍ଧ ସଂସ୍କରଣ ଛପାଯାଇ ପାରିବ । ଯେପରି ତାହା ମୂଳ ସାରଳା ମହାଭାରତର ଅନ୍ତତଃ ନିକଟତମ ହୋଇପାରିବ ।

ଯେଉଁ ପୁରୁଣା ପୋଥି ଦେଖୁଛି ସେଥିରେ ଅଛି "ସାରୋଳ ଚଣ୍ଡୀ", "ସାରୋଳ ଦାସ" । ସେଥିରେ 'ସାରଳା' ନାହିଁ । ସେଥିରେ ଅଛି "ଝଂଖେର" ବା "ଯକ୍ଷେର", କୌଣସି ପୋଥିରେ "ଝଂକଡ଼" ନା ନାହିଁ । ଅବଶ୍ୟ "ସାରୋଳା"ରୁ "ସାରଳା" ଓ "ଝଂଖେର"ରୁ "ଝଂକଡ଼" ଅପଭ୍ରଷ୍ଟ ହୋଇଥିବା ଅସମ୍ଭବ ନୁହେଁ । କିନ୍ତୁ ନାମର ସାମଞ୍ଜସ୍ୟ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ଭୌଗୋଳିକ ଅବସ୍ଥିତି । କନକାବତୀ ବା କଣୟବତୀ ଚନ୍ଦ୍ରଭାଗା ନଦୀକୂଳରେ ଅବସ୍ଥିତ ହୋଇଥିଲା, ଏବଂ ତାହା ଥିଲା ମହୋଦଧିର ପଶ୍ଚିମ ଆଡ଼େ ।

'ଗୋପୀଭାଷା'ର ସ୍ରଷ୍ଟା ଦନାଇ ଦାସ, 'ମଥୁରାମଙ୍ଗଳ' ସ୍ରଷ୍ଟା ଭକ୍ତଚରଣ, 'ବସନ୍ତ ରାସ'ର ସ୍ରଷ୍ଟା ପିଣ୍ଡିକି ଶ୍ରୀଚନ୍ଦନ, ଆଧୁନିକ ଗ୍ରାମ୍ୟ କବି ଚୌକିଦାର ଶ୍ରୀ ଅନନ୍ତ ପାଉଳାସିଂ ଯେଉଁ ପ୍ରସିଦ୍ଧ ସାନପଦର ଗ୍ରାମରେ ଜନ୍ମ, ଗ୍ରାମ ଚୌକିଆ ବୃଦ୍ଧ କବି ପାଉଳାସିଂ କହିଲାପରି –

ଜିଲେ ପୁରୀ କିଲେ ଖୋରଧା ଅଟଇ
ଥାନା ବେଗୁନିଆ ତିନି ନମ୍ବର
ମଧ୍ୟରେ ନିବାସ କରିଲି ପ୍ରକାଶ
ଗ୍ରାମ ନାମ ମୋର ସାନପଦର,

ସେହି ସାନପଦର ଗାଁର ଶ୍ରୀ ଗଙ୍ଗାଧର ମହାପାତ୍ର ମହାଶୟ ଯେଉଁ ପୋଥି ଆଣିଲେ ତହିଁର ବିରାଟ ପର୍ବରେ ଏପରି ଲେଖା ଅଛି –

ପୂବକୁ ବଦନ ଉତ୍ତରେ ମାହେସ୍ୱରି
ବାଈବ କୋଣେ ମହା ସାରୋଳା ଚଣ୍ଡୀ ମୃତୀ ଧରି
ସେତ ମଙ୍ଗଳ ନିଳଗିରି ମଧ ସ୍ଥାନେ
X X X
ଚତୃମୃତୀ ରୂପେ ବିଜଏ ଭଗବାନେ ।
ପୂବରେ ବାରସ୍ୱତୀ ଜଙ୍ଖେର ଯାହା ବୋଲି
ଗିରିଜାର ଆଗ୍ୟାଂରେ ମୁହିଂ ତ ଜନମିଲି
ଚିତ୍ରଉତ୍ପଳା ଈସାନ୍ୟ ଭାଗେ ମୃତୀ
ଗ୍ରହ ଧ୍ୱଜ ଋଷି ତହିଁ ତପ କରୁଛନ୍ତି
ଫଳ ପରେ ଭେଦି ବହଇ ବୃଧ ନଦି ମାତା
କନକାବତି ପାଟଣା ପ୍ରସୁରାମଙ୍କ ସଜନ୍ତା ।

ଏଥିରୁ ଅର୍ଥ ହେବ, କନକାବତୀପାଟଣାର ଉତ୍ତରରେ ସେହି ମାହେଶ୍ୱରୀ ଯାହାଂକ ମୁହିଁ ପୂର୍ବକୁ (ଅର୍ଥାତ୍ କାକଟପୁରର ମଙ୍ଗଳା) ଓ ସେହି ମାହେଶ୍ୱରୀ ମଙ୍ଗଳାଙ୍କ ଉତ୍ତର ପଶ୍ଚିମ ('ବାଈବ')କୁ ଜଙ୍ଖେର ଯେଉଁଠି ସାରୋଳା ଚଣ୍ଡୀ । ପୁଣି ପୁରାଧାମର ପୂର୍ବକୁ ବାରସ୍ୱତୀ ବା ଜଂଖେର । ସାରୋଳା ମୂର୍ତ୍ତି ଚିତ୍ରୋତ୍ପଳା ନଦୀର ('ଈସାନ୍ୟ') ଉତ୍ତର ପୂର୍ବକୁ । କନକାବତୀକୁ ଲାଗି "ବୃଦ୍ଧ ନଦୀମାତା" ଯହିଁରେ ଗ୍ରହଧ୍ୱଜ ଋଷିଙ୍କ ଆସ୍ଥାନ ରହିଯାଇଛି ।

ପୁରାଧାମର ପୂର୍ବକୁ ଓ ମଙ୍ଗଳାଙ୍କ ଦକ୍ଷିଣକୁ ଗାର ନେଲେ

ଦୁର୍ଗଗାର ଯେଉଁଠି ଭେଟିବ ସେ ସ୍ଥାନର ନାମ କଟକ ଜିଲ୍ଲାର ଝଂକଡ଼ ନୁହେଁ କି କନକପୁର ନୁହେଁ, ତା ନାମ ପୁରୀ ଜିଲ୍ଲା କାକଟପୁର ତଳର କଣିଆ । ତାକୁ ଲାଗି ପ୍ରାଚୀ କାଦୁଆ ଉଭୟେ ବହୁଛନ୍ତି, କାଦୁଆ ତା' ପୂର୍ବରେ ପ୍ରାଚୀ ତା'ର ପଶ୍ଚିମରେ । କାଦୁଆ ବି ପ୍ରାଚୀରହିଁ ଏକ ଧାର । ସେହି କଣିଆର ପୂର୍ବକୁ ଅଧମାଳିଏ ଭିତରେ ପ୍ରସିଦ୍ଧ ପ୍ରାଚୀନ ଦେବୀ ଚିତ୍ରେଶ୍ୱରୀ, ସେ ଦ୍ୱିଭୁଜା ତାଙ୍କ ଆସ୍ଥାନରେ ହାତୀର ଚିତ୍ର ଅଛି, ଶୁଣାଯାଏ ତାଙ୍କୁ ବୌଦ୍ଧ ଅବତାର କହନ୍ତି । ସେହି କଣିଆ ଓ ଚିତ୍ରେଶ୍ୱରୀ ପ୍ରାଚୀ କାଦୁଆର ଏପାଖ ସେପାଖ । ଲୋକେ କହନ୍ତି ଚିତ୍ରେଶ୍ୱରୀଙ୍କ ପାଖରେ ହିଁ ଚନ୍ଦ୍ରଭାଗା ନଦୀ ପ୍ରାଚୀରୁ ବାହାରି ଚାଲିଯାଇଥିଲା । ସେହି ମଲା ନଈର ଗତିପଥ ଏହିପରି ନିର୍ଣ୍ଣୟ କରାହୋଇଛି - ଚିତ୍ରେଶ୍ୱରୀଠୁ ଦକ୍ଷିଣ ପୂର୍ବକୁ ଯଦୁପୁର-ଦର୍ଶନବନ୍ତ-ନୂଆଗାଁ-ଗୋଧନପଡ଼ା-ଜାମାରା-କୁରିଜଙ୍ଗା-ଭାଣପୁର-କୁଞ୍ଜ-କୋଣାର୍କ ଡାକବଙ୍ଗଳାର ପୂର୍ବରୁ ଦକ୍ଷିଣକୁ ଓ ପୁଣି ଉତ୍ତରକୁ କୋଣାର୍କ ଦେଉଳ ଆଡ଼କୁ ବଙ୍କେଇ ପୁଣି ବୁଲିପଡ଼ି ଖଣ୍ଡେ ବାଟ ସିଧା ଦକ୍ଷିଣକୁ ଓ ତା'ପରେ ଦକ୍ଷିଣ ପଶ୍ଚିମକୁ ବୁଲିପଡ଼ି ସମୁଦ୍ରକୁ । ଏହି ଚନ୍ଦ୍ରଭାଗା କୂଳରେ ହିଁ କଣିଆଁ । ଚନ୍ଦ୍ରଭାଗା ଯେ ଅନ୍ୟ ନଦୀ ନୁହେଁ ତା'ର ପ୍ରମାଣ ସାରଳା ମହାଭାରତ ନିଜେ, ସେଠି ଚନ୍ଦ୍ରଭାଗକୁ ଅର୍କତୀର୍ଥ କହି ଶାମ୍ବ ଉପାଖ୍ୟାନ ବିସ୍ତୃତ ଭାବେ ବର୍ଣ୍ଣନା କରାହୋଇଛି । ଚିତ୍ରୋତ୍ପଳା ଚନ୍ଦ୍ରଭାଗା ପରି ପ୍ରାଚୀର ଏକ ବଡ଼ ଶାଖା, ସେ ନଦୀ ବି ମରିଛି । କେହି କେହି କହନ୍ତି ପ୍ରାଚୀର ସମୁଦ୍ରତଳିଆ ଗଭୀର ସୋର ଭୋଗହିଁ ଚିତ୍ରୋତ୍ପଳା । କଣିଆ ଚିତ୍ରେଶ୍ୱରୀର ଦକ୍ଷିଣକୁ ଗୋଲରା ବଣ । ସେଠି ଅନେକ ପ୍ରାଚୀନ କୀର୍ତ୍ତି ଅଛି । କଣିଆର ଦକ୍ଷିଣ ପଶ୍ଚିମକୁ ପ୍ରାଚୀ ମୁହାଣ, ଏଠୁମୋଟେ ମାଇଲିଏ କି ଦିମାଇଲ । ପ୍ରାଚୀର ଅନ୍ୟ ନାମ 'ଗଙ୍ଗା', ସେହି ମଧ 'ବୃଦ୍ଧମାତା' । ସେହି ମୁହାଣ ପାଖେ 'ଗୋମୁଖୀ-କେଶବ', ଏକ ଅଦ୍ଭୁତ ଦେବତା ଯାହାଙ୍କର ମୁହଁ ଗୋରୁ ମୁହଁ କିନ୍ତୁ ବାକି ସବୁ ବିଷ୍ଣୁଙ୍କ ପରି । ସେ ମୂର୍ତ୍ତି ଆଉ ଦିଶୁ ନାହାନ୍ତି କିନ୍ତୁ ସେଠି ସେ ପରିକଳ୍ପନା ଅତି ପ୍ରାଚୀନ । ଗୋମୁଖୀ କେଶବ କିପରି ହେଲେ, କିପରି ମହାଦେବ ନନ୍ଦିନୀ ଗାଈର ମୁଣ୍ଡ କାଟି ପରେ ବିଷ୍ଣୁଙ୍କ ମୁଣ୍ଡଟା କାଟି ସେଠି ଗାଈ ମୁଣ୍ଡ ଯୋଡ଼ିଲେ ସେ ବିଷୟରେ ସାରଳା ମହାଭାରତରେ ବହୁତ ବର୍ଣ୍ଣନା ଅଛି । ଗୋମୁଖୀ କେଶବଙ୍କ କଥା ସଂସ୍କୃତ ମହାଭାରତରେ ନାହିଁ, ଯେ ଦେବତା କଣିଆଠୁ ଦେଢ଼ମାଇଲ ଦୂର । କଳିଙ୍ଗର ପ୍ରସିଦ୍ଧ ଚାରିତ୍ର ବନ୍ଦର ଏଇଠି, ପୁଣି ଟଲେମି ବର୍ଣ୍ଣିତ କନଗର ଚନ୍ଦ୍ରଭାଗା ମୁହାଣରେ, ଏଥୁ ୫/୬ ମାଇଲ୍ ପଶ୍ଚିମକୁ । ଚନ୍ଦ୍ରଭାଗା ମାହାତ୍ମ୍ୟ ବର୍ଣ୍ଣନାକୁ ବି ସାରଳା ଦାସେ ବହୁତ ସ୍ଥାନ ଦେଇଛନ୍ତି । କଣିଆର ଉତ୍ତରକୁ ବାଙ୍ଗୁରିଗାଁ ଲାଗିଛି, ଏଠି ଏକ ପ୍ରାଚୀନ ଜନ ବସତିର ସନ୍ଧାନ ମିଳୁଛି, ଏଠି ବହୁତ ଗଡୁଆ ଇଟା ବହୁତ ବାମ୍ପୀ, କୂଅ ଆଦି ମିଳୁଛି । ପ୍ରାଚୀ ଓ କାଦୁଆର ମଧ୍ୟବର୍ତ୍ତୀ ଯେଉଁ ଅଞ୍ଚଳ କଣିଆଠୁ ଆରମ୍ଭ କରି ୬ ମାଇଲ୍ ଉତ୍ତରକୁ କାକଟପୁର ଯାକେ ଲାଗି ରହିଛି ସେଠି ଗ୍ରାମେ ଗ୍ରାମେ ଅତି ପ୍ରାଚୀନ ଇତିହାସର ଚିହ୍ନ ରହିଛି । ପ୍ରାଚୀ ଉପତ୍ୟକାର ଲୁପ୍ତ ସଭ୍ୟତା ଏହି ଅଞ୍ଚଳରୁ ଉତ୍ତର ପଶ୍ଚିମକୁ ଲାଗି ରହିଛି । ଏଠୁ ୧୨ ମାଇଲ ଉତ୍ତର ପଶ୍ଚିମକୁ ଗଲେ ଅତି ପ୍ରାଚୀନ "ଚୌରାଶୀ" ଗାଁରେ ବାରହୀ ମନ୍ଦିର । ପୁଣି "ମୁଦୁଗଲ", ଯେଉଁ ମୁଦୁଗଲ ଋଷିଙ୍କ କଥା ସାରଳା ମହାଭାରତରେ ବର୍ଣ୍ଣିତ ହୋଇଛି । ଆହୁରି ମଧ, କଣିଆ ଟାପୁର ପଶ୍ଚିମକୁ ନଈ ସେପାରି ଥିବା ଚିତ୍ରେଶ୍ୱରୀଙ୍କ ମନ୍ଦିରରେ ଓ ଉତ୍ତରକୁ ଲାଗିଥିବା ବାଙ୍ଗୁରିଗାଁ ଭଗବତୀଙ୍କଠି ଦଶହରାକୁ ସାରଳା ମହାଭାରତ ପୋଥି ବୋଲା ହୁଏ ବୋଲି ସମ୍ବାଦ ମିଳେ । ଏସବୁ ଚଳଣି ଓ ପାରିପାର୍ଶ୍ୱିକ ବିଷୟ କେବଳ ସମ୍ଭବତା ପ୍ରତିପାଦନ କରିବାକୁ ସହାୟକ ସିନା, ଏସବୁ ଅକାଟ୍ୟ ପ୍ରମାଣ ନୁହେଁ । କିଛି କିଛି ପ୍ରମାଣ ଉପରେ ବର୍ଣ୍ଣିତ ଭୌଗୋଳିକ ଅବସ୍ଥିତି ।

ପୁରୀ ଜିଲ୍ଲା ଖୋର୍ଦ୍ଧା ସବଡ଼ିଭିଜନ୍ ବୋଲଗଡ଼ ପାଖ ପଙ୍କାଳ ସାହିରେ ମିଳିଥିବା ଏକ ପୋଥିର ଆଦିପର୍ବରେ ଏହିପରି ଲେଖା ଅଛି -

ଜମ୍ୱୋ ଦ୍ୱୀପ ଭ୍ରଥ ଖଣ୍ଡ ଓଡ଼ ରାଷ୍ଟ୍ର ମଣ୍ଡଳେ<br>
ଉତ୍ପଳେଶ୍ୱର ଲିଙ୍ଗ ଚିତ୍ର ଉତ୍ପଳା ଦକ୍ଷିଣ କୂଳେ<br>
ଜଇନ୍ତାର ନିଜ ଭୂମି ନଗ୍ର ନିକଟ ବାଣରାସି<br>
କୁଶସ୍ଥଳି ଭୂମି ଦ୍ୱାରକା ପୂର୍ଣ୍ଣବାସି<br>
ଶ୍ରୀ ଜମେଶ୍ୱର ଲିଙ୍ଗ ମହୋଦଧି ଉତର ତଟ<br>
ନୀଳ ସୁନ୍ଦର ପର୍ବତ କଳ୍ପବଟ ନିକଟ<br>
ବିଜଏ ରାମକୃଷ୍ଣ ସୁଭଦ୍ରା ନାମେ ବ୍ରହ୍ମ<br>
ଚାରି ଲକ୍ଷ ବତିଶ ସହସ୍ର ବରଷକୁ ଚଉଦ ଲକ୍ଷ ମାହାର<br>
କଳିକାଳ ମଧ ସନିଭୋଗ ଶତକୋଟି ପୂଜା<br>
ପ୍ରଳମ୍ୱିତେ ଖଟଇ ଶ୍ରୀ କପିଳେଶ୍ୱର ରାଜା<br>
ସେ ନୀଳ ସୁନ୍ଦର ଗିରି ଉତର କକ୍ଷାଡ଼େ<br>
ସାରଭୂମି ତୀର୍ଥ ଖଣ୍ଡ ଈଶାନ୍ୟ ପୂର୍ବ ଆଡ଼େ<br>
ଚନ୍ଦ୍ରଭାଗା ନାମ ଏକଇ ନଦୀ ଗୋଟି<br>
ବୃଦ୍ଧମାତା ଗଙ୍ଗା ସେ ମହୋଦଧି ଯାଇ ଫୁଟି<br>
ସେ ନଦୀର ତୀରେ ଯେ ପ୍ରସୁରାମର ପାଟଣା<br>
କନକାବତୀ ବୋଲି ସେ ନଗର ଘଟନା ।<br>
ତହିଁର ଅନ୍ତରେ ଯକ୍ଷେର ନାମେ ନଗ୍ରେ<br>
ବିଜୟେ ମାହେଶ୍ୱରୀ ସାରଳା ଚଣ୍ଡୀ ଦୁର୍ଗେ

ମହା ଯୋଗେଶ୍ୱରୀ ସେ ପରମ ବୈଷ୍ଣବୀ
ପ୍ରତ୍ୟକ୍ଷ ସର୍ବଦା ସେ ପରମ ସାଧବୀ ।
ବାଞ୍ଛା ସାଧକ ସେ ଦେବୀର ଅଟଇ
ଅପ୍ରମିତ ମହିମା ତାର କହିତ ନୁଆସଇ
ସର୍ବ ମଙ୍ଗଳ ପୁରସାର୍ଥ ମାତାଙ୍କି ସତଭେଳି
ଗ୍ରନ୍ଥରସ ଶୁଣଇ ସେ ହରଷେ କୁତୁହଳି
ସାରୋଳା ଚଣ୍ଡୀ ପ୍ରସନେ ଅଟଇ ଭଇରୋବି
ତାହାର ପୁତ୍ର ମୁଂ ଯେ ସାରୋଳ ଦାସ କବି
ପ୍ରସନେ ଆଗ୍ୟାଂ ମୋତେ ଦେଲେ ସାକମ୍ଭେରି
ଲଭ ତୁ ବିଳାସ ମହାଭାରତ କରି ସିରି ।

ଏଠି ମଧ୍ୟ କବିଙ୍କର ଆସ୍ଥାନକୁ ପୁରୀର ଉତ୍ତର ପୂର୍ବ ଦିଗ ବୋଲି ବର୍ଣ୍ଣନା କରାଯାଇଛି । ଚନ୍ଦ୍ରଭାଗା ନଦୀକୂଳ ବୋଲି କୁହା ହୋଇଛି ଓ ଚନ୍ଦ୍ରଭାଗା ଅର୍ଥାତ୍ ବୃଦ୍ଧ ମାତା ଗଙ୍ଗା ଯେଉଁଠି ସମୁଦ୍ରରେ ପଡ଼ିଛି ସେହି ପାଖରେ ସେ କନକାବତୀ ସହର ବୋଲି ବର୍ଣ୍ଣନା କରାହୋଇଛି । ଏ ବର୍ଣ୍ଣନାରେ କଣିଆ ଆସିପାରେ ସିନା, କିନ୍ତୁ ଝଙ୍କଡ଼ ଆସିବାର କୌଣସି ଆଶା ନାହିଁ ।

ଝଙ୍କଡ଼ ପାଖେ ଚନ୍ଦ୍ରଭାଗା ନାହିଁ କି ନ ଥିଲା, ସମୁଦ୍ର ତ କାହିଁ ୨୦ ମାଇଲ୍ ସେଠୁ । ଉପ୍ଳେଶ୍ୱର କଣିଆଠୁ ୭/୮ ମାଇଲ ଉତ୍ତର ପଶ୍ଚିମକୁ ଅଦ୍ୟାପି ଅଛନ୍ତି ।

ଭଁରାଗଡ଼ର ପ୍ରାଚୀନ ଜମିଦାର ଶ୍ରୀଯୁକ୍ତ କୃଷ୍ଣ ରାୟଙ୍କ ନିକଟରୁ ଖଣ୍ଡିଏ ଉଇ ଖିଆ ଛିଣ୍ଡା ତାଳପତ୍ର ପୋଥି ମିଳିଛି । ଦ୍ରୋଣ ପର୍ବଟି, ଅକ୍ଷର ଓ ତାଳପତ୍ରର ଅବସ୍ଥାରୁ ବିଶ୍ୱାସ ହେଉଛି ଯେ ଯାହା ସେ କହୁଛନ୍ତି ଏ ପୋଥି ଦୁଇଶହ ବର୍ଷରୁ ବେଶୀ ପୁରୁଣା ହୁଏ ତା ସତ୍ୟ । ତା'ର ଦ୍ରୋଣ ପର୍ବରେ ଏହିପରି ଲେଖାଅଛି -

ମହୁଦଧି ଉତ୍ତର ପାରିସେ ଯମ୍ୱୋଦ୍ୱିପ ମହୀଂ
ଭ୍ରଥଖଣ୍ଡ ଓଡ଼ରାଷ୍ଟ ଆଗମେଣ କହୀଂ
ଶୁବିଧାନ କଟେକ ଯାଯପୁର ନଗ୍ରି
ବିଖଳେଶ୍ୱର ଦକ୍ଷିଣ କୋଣେ ବିଜୟେ ସାକାମ୍ଭେରି ।
ପୂର୍ବଦିଗ ଈଶାନ୍ କୋଣରେ ଯଖେଂର ପୁରବାସି
ପ୍ରଶୃରାମ କେଟକ କନକାପୁରବତୀ ନଗ୍ରିବାସି
ବହଇ ଈଶ୍ୱାନ ଭାଗି ଚନ୍ଦ୍ରଭାଗା ନାମ ନଦୀ
ଚିତ୍ରପଳାଉଂ ସଙ୍ଗମ ଈସାନ୍ୟ ବାରାଧି
ଯେ ମାହେଶ୍ୱରୀ ଯେ ସେ ନଦୀକୂଳେ
କୃପା ଯନ୍ତ ନନ୍ଦଂନୀଂନ୍ତୀଂ ମଦା ସ୍ୱରସ୍ୱତୀ
ଋଷି ସାପ୍ୱେ ଗୋ ରଧିର ପାନେ ତ୍ରିପୁତ୍ରୀ
ଯେବଣ ଭାରତ ମୁଂ ରଚିଲି ଷୋଳଖ ଗିତା ବାଗେ
ମୋତେ କି ଅଗୋଚର ଶ୍ରୀ ସାରୋଳା ଅନୁରାଗେ
ଇତି ଦ୍ରୋଣ ପର୍ବ ଶକଟଭୁଅ କଥା
ବେଦ ମନ୍ତ୍ର ପୁରାଣେ ଯେ ସିଧି ପୁରାଣ ସଂଗୀତା ।

ପ୍ରାଚୀ ନଦୀହିଁ କୃପାଜଳ ଋଷିଙ୍କ ଝିଅ ବର୍ଣ୍ଣନା କରାହୋଇଛି । ତାହାରି ସେଠି ଶାଖା ଚିତ୍ରୋତ୍ପଳା ଓ ଚନ୍ଦ୍ରଭାଗା । ଅନ୍ୟତ୍ର ଏମାନଙ୍କୁ ଗଙ୍ଗା, ଯମୁନା, ସରସ୍ୱତୀ ବୋଲି ମଧ୍ୟ କୁହାହୋଇଛି । ପ୍ରଥମେ ଯେଉଁ ଅଠାନ୍ତର ପୋଥି କଥା ଉଲ୍ଲେଖ କଲି ତା ଛଡ଼ା ଅନ୍ୟ କୌଣସି ପୋଥିରେ କଣୟ ବା କଣୟବତୀ ମୁଁ ଦେଖିନାହିଁ । ଏ ବିଷୟରେ ଆହୁରି ଅଧିକ କଥା ଭବିଷ୍ୟତରେ ଆଲୋଚନା କରାଯିବ ।

କିନ୍ତୁ କଣିଆ ଯେ ଏକ ପ୍ରସିଦ୍ଧ ଦେବତାସ୍ଥଳୀ ଏଥିରେ ସନ୍ଦେହ ନାହିଁ । ନିଜ କଣିଆରେ ପ୍ରସିଦ୍ଧ ଭଗବତୀ ଠାକୁରାଣୀ । ସେ ଥିଲେ ପରମ ବୈଷ୍ଣବୀ । ସେଠି ପୂର୍ବେ ଆମିଷ ହେଉ ନଥିଲା । ଶୁଣାଯାଏ ସେଠି ଦଶହରାକୁ ସାରଳା ମହାଭାରତ ବୋଲା ହୁଏ । ଆଦିପର୍ବରେ ଅଛି "ମହାଜୋଗେଶ୍ୱରୀ ସେ ପରମ ବଇଷବୀ", ବିଚାର କରିବାର କଥା । ଗ୍ରାମର ପୂର୍ବ ପଟେ ରାମେଶ୍ୱର ଲିଙ୍ଗ, ଯେ ଏକ ଖରାଖିଆ ମହାଦେବ । ପୂର୍ବ ପଟେ ନଦୀ ଧାର ଯାଇଛି କୋଶେ ଦୂରରେ କେରଳେଇ ଠାକୁରାଣୀଙ୍କ ନଈ ମୁହାଣକୁ । କଣିଆ ଆରପଟେ ସିରେଇ ଗାଁରେ ନାରାୟଣୀ, ସେହି ନିକଟରେ ତେନ୍ତୁଳିଆ ମୌଜାରେ ଦୁଲା ଦେଇ । କଣିଆର ପଶ୍ଚିମରେ ଗୋଟିଏ କେଉଟ ଘର, ତା'ପରେ 'ବଦ୍ରାଳୁ' ମଉଜା, ସେଠି ଗୋଟିଏ ଅତି ପୁରାତନ ବରଗଛ ଅଛି ଯେ ଲଟା ହୋଇ ମାଣେଯାକ ଜମି ମାଡ଼ିଛି, ସେହି ସେଠୁ ୧ ମାଇଲ ଉତ୍ତରକୁ ନାଟେଶ୍ୱର ମହାଦେବ, ସେଠି ବହୁତ ପୁରୁଣା ଭଙ୍ଗା ଇଟା ଦେଉଳ ଅଛି। ନାଟେଶ୍ୱର ଖୁବ୍ ବିଖ୍ୟାତ, ଲୋକେ ସେଠି ଉପାଧିଆ ପଡ଼ନ୍ତି । ନାଟେଶ୍ୱରଠୁଁ ୧ ମାଇଲ ଗଲେ ପୁଣି ପ୍ରାଚୀ ଆରପାରି ନଈରିଝାଡ଼ ବଣ । ସେଠି ପୂର୍ବେ ପୁରୁଣା ନଅର ଥିଲା । ସେଠି "ଜାଗେଶ୍ୱରୀ" ଠାକୁରାଣୀ । ସେହି (ଆଦି ପର୍ବରେ "ମହା ଜାଗେଶ୍ୱରୀ ସେ ପରମ ବଇଷବୀ") କଣିଆଁ ଓ ବାଗୁରୁଗାଁ ମଝିରେ ପୋଡ଼ାଡ଼ିହ ଗାଁ, ସେଠି ଅନେକ ପ୍ରାଚୀନ କୀର୍ତ୍ତି ଅଛି ଓ ସେଠି ୨୩ ହାତ ଦୂର ହାଦୋଳେଇ ଠାକୁରାଣୀ, ଲୋକଙ୍କର ବିଶ୍ୱାସ ଯେ ସେଠି ଉପାଧିଆ ପଡ଼ିଲେ ପାଳିଜ୍ୱର ଛାଡ଼ିଯାଏ, ତେଣୁ ଲୋକେ ସେଠି ଭୋଗରାଗ କରନ୍ତି ।

କଣିଆ ବା ତାହାରି ଆଖ ପାଖର କୌଣସି ସ୍ଥାନରେ ମହାଭାରତ ଲେଖକ ଶୂଦ୍ରମୁନି ସାରୋଳା ଦାସଙ୍କ ଘର ଥିଲା ବୋଲି ଲାଗୁଛି ।

ଝଙ୍କଡ଼ରେ ଝଙ୍କଡ଼ ଓ କନକପୁର ବୋଲି ଗ୍ରାମର ନାଁ, ସାରଳା ବୋଲି ଭଗବତୀଙ୍କ ନାଁ, ସେ ପାଖରେ ବୁଡ଼୍ ନଈ ବା ବୁଡ଼୍ ନଈ ବୋଲି ଦେବୀର ପୁରୁଣା ପୀଠ ଓ "ମୁନି ଗୋସେଇଁ" ମଠ ବୋଲି ଏକ ସ୍ଥାନ ଉପରେହିଁ ସାରଳାଦାସଙ୍କ ଆସ୍ଥାନ ସେଠି ଥିବା ଯୁକ୍ତି ନିର୍ଭର କରିଛି । ବୁଡ଼୍ ନଈକୁ କୌଣସି ମତେ ପ୍ରାଚୀ ନଈ କୁହାଯାଇ

ନ ପାରେ କି ଚନ୍ଦ୍ରଭାଗା କୁହାଯାଇ ନ ପାରେ, ମୁନି ଗୋସେଇଁ ମଠ ଯେ କୌଣସି ଲୋକଙ୍କର ହୋଇପାରେ, ପୁଣ୍ୟଭୂମି ଓଡ଼ିଶାରେ ବହୁତ ମଠ ଥିଲା, ନିଜେ ପ୍ରାଚୀ କୂଳରେ ତ ବହୁତ ଋଷି ମୁନି ଥିଲେ । ତେଣୁ "ମୁନି ଗୋସେଇଁ ମଠ" କୌଣସି ପ୍ରମାଣ ନୁହେଁ । ବାକି ରହିଲେ ତିନୋଟି ଶଙ୍ଖ, ଝଙ୍କଡ଼, ସାରଳା ଓ କନକପୁର । ପୁରୁଣା ନାଁ ଅନୁସାରେ ନୂଆ ସ୍ଥାନର ନାଁ ରଖାଯାଇପାରେ । ଜମ୍ବୁଦ୍ୱୀପରେ ଆମ ପୂର୍ବପୁରୁଷମାନେ ଯେଉଁ ନାଳ ଖୋଳିଲେ ତା ନାଁ ରଖିଲେ ଚନ୍ଦ୍ରଭାଗା । ବ୍ରହ୍ମ ଦେଶରେ ଉତ୍କଳ ଓ ଶ୍ରୀକ୍ଷେତ୍ର ନାଁ ଯୋଡ଼ିଲେ । ରାମାୟଣର ସ୍ଥାନ ନାମଗୁଡ଼ିକ ଭାରତର ଚାରିଆଡ଼େ ବିଞ୍ଛି ହୋଇ ପଡ଼ିଛି । ଅନେକ ସ୍ଥାନ ଅଛି ସେହି ସେହି ନାଁର । ଜଙ୍ଘେର ଅନୁକରଣରେ ଝଙ୍କଡ଼ ଓ "ସାରୋଳଚଣ୍ଡୀ" ଅନୁକରଣରେ ସାରଳା, କଣୟ ବା କନକାବତୀ ଅନୁକରଣରେ କନକପୁର ଏଭଳି ନାଁ ନୂଆ କରି ରଖିବା ମନୁଷ୍ୟ ପକ୍ଷରେ ସମ୍ଭବ ହୋଇପାରେ, କିନ୍ତୁ ଭୌଗୋଳିକ ଅବସ୍ଥିତି ସୃଷ୍ଟି କରିହେବ ନାହିଁ । ଚନ୍ଦ୍ରଭାଗା ନଦୀ କୂଳ । ଗଙ୍ଗାମାତା ବା ପ୍ରାଚୀ ମୁହାଣପାଖ ସମୁଦ୍ରର ପଶ୍ଚିମ ଆଡ଼ । ପୁରୀର ପୂର୍ବ, କାକଟପୁର ମଙ୍ଗଳାଙ୍କ ଦକ୍ଷିଣ, ଚିତ୍ରୋତ୍ପଳା ନଦୀର ଐଶାନ୍ୟ, ଏସବୁ ବଗ ଖୁଣ୍ଟି କାହାରି ହାତଗଢ଼ା ନୁହେଁ । ଆଧୁନିକ ଝଙ୍କଡ଼ ଏଥିରୁ ସୂଚିତ ହେଉନାହିଁ । ପ୍ରାଚୀ ମୁହାଣ ଓ ଝଙ୍କଡ଼ ଏହା ମଝିରେ ବହୁତ ବଡ଼ ବଡ଼ ନଈ, ବହୁତ ଗାଁ । ଦୂରତା ତ ମାଇଲ୍, ତେଣୁ କୌଣସି ସମୟରେ ମଧ ଏ ଦୁହେଁ ଏକାଠି ବା ପାଖ ପାଖ ଥିବା ଅସମ୍ଭବ । ଝଙ୍କଡ଼ ବି ସମୁଦ୍ର କୂଳରୁ ବହୁତ ଦୂର । ଝଙ୍କଡ଼ କୌଣସିମତେ ମହାଭାରତ ବର୍ଣ୍ଣିତ ଯଙ୍ଘେର ହେଲାପରି ଦିଶୁନାହିଁ ।

ସେ ଆଜିକି ଶହ ଶହ ବର୍ଷ ତଳର କଥା । ମହାଭାରତରେ ଆଦ୍ୟପର୍ବରେ ଧାଡ଼ିଏ ଅଛି -

"ପ୍ରଳମ୍ବିତେ ଖଟଇ ଶ୍ରୀ କପିଳେଶ୍ୱର ରାଜା" (ଛପା ବହିରେ ଭୁଲରେ ଅଛି "ପ୍ରଣମିତେ ଖଣ୍ଡଇ କପିଳେଶ .....) କେବଳ 'କପିଳେଶ୍ୱର' ନାଁଟି ପଢ଼ି ସେ ଗଙ୍ଗ ବଂଶ କପିଳେନ୍ଦ୍ର ବା କପିଳେଶ୍ୱର ଦେବ ବୋଲି ଧରି କଥା ହେଉଛି ବୋଲି ସାରୋଳା ଦାସଙ୍କ ମହାଭାରତ ରଚନା କାଳକୁ କପିଳେନ୍ଦ୍ରଙ୍କ ରାଜତ୍ୱ କାଳ ୧୫ଶ ଶତାବ୍ଦୀ ବୋଲି ଧରି ନିଆ ହେଉଛି । କିନ୍ତୁ ଯେଉଁ କବି ଏତେ ବର୍ଣ୍ଣନା କୁଶଳ, ଯେ କେବଳ ସ୍ଥାନ ନୁହେଁ କିମ୍ବଦନ୍ତୀମାନଙ୍କୁ ବି ତାଙ୍କ ମହାଭାରତରେ ଲିପିବଦ୍ଧ କରିଛନ୍ତି, ଯାହାଙ୍କ ଶୈଳୀର ବିଶିଷ୍ଟତାହିଁ ହେଉଛି ଜୀବନ୍ତ ଚିତ୍ର ସୃଷ୍ଟି, ସେ କୋଣାର୍କ ଦେଉଳ, ଭୁବନେଶ୍ୱର ଦେଉଳମାନ, ପୁରୀ ଦେଉଳ, କପିଳେନ୍ଦ୍ରଙ୍କ ସମୟର କିମ୍ବଦନ୍ତୀ ବା ଇତିହାସ, ଏସବୁ ବିଷୟରେ କିଛି ଲେଖି ନାହାନ୍ତି । ସେସବୁ ଦେଉଳ ଦେଖିଥିଲେ ତାଙ୍କଭଳି ରସଗ୍ରାହୀ ବ୍ୟକ୍ତି ଯେ ସେସବୁ ବିଷୟରେ କିଛି ଚିତ୍ର ଦେଇ ନ ଯାଇ ତାକୁ ଉପେକ୍ଷା କରିଥାନ୍ତେ ଏ କଥା ଅସମ୍ଭବ । ତେଣୁ ଲାଗୁଛି, ସରୋଳ ଦାସଙ୍କ ସମୟକୁ ସେ ସବୁ ଦେଉଳ ଗଢ଼ା ହୋଇ ନ ଥିଲା ଅର୍ଥାତ୍ ସେ ତା'ର ପୂର୍ବରୁ ଲୋକ, ଅର୍ଥାତ୍ ମହାଭାରତ କପିଳେନ୍ଦ୍ରଙ୍କ ସମୟର ଲେଖା ତ ନୁହେଁ, ଭୁବନେଶ୍ୱର ଦେଉଳ ତୋଳା ହେବା ପୂର୍ବରୁ ଅର୍ଥାତ୍ କାହିଁ ନବମ ଶତାବ୍ଦୀ ବା ତା ପୂର୍ବର ।

ଅନ୍ତତଃ ହଜାରେ ବର୍ଷ ପୂର୍ବେ ଯେ ଏ ମହାଭାରତ ଲେଖିଥିଲେ ଆଜି ତାଙ୍କ ଘର ଖୋଜି ପାଇବା ସହଜ ନୁହେଁ । ହଜାରେ ବର୍ଷ ତୁଳନାରେ ଦୁଇଶ କି ତିନିଶ ବର୍ଷ ତଳର ପୋଥି ଆଦୌ ପୁରୁଣା ନୁହେଁ । ଏ ହଜାରେ ବର୍ଷ ମଧରେ କେତେଥର ଓଡ଼ିଶାରେ ବଢ଼ି ମାଡ଼ି ଯାଇଛି, କେତେ ଗାଁକୁ ନଈ ଖାଇଯାଇଛି, କେତେ ନଈ ମରିଛନ୍ତି, କେତେ ନଈ ଗତିପଥ ବଦଳାଇଛି । ଅବଶ୍ୟ ପ୍ରାଚୀ, ଦେବୀ, କାଠଯୋଡ଼ି, ସେମାନଙ୍କର ଶାଖା ନଦୀମାନ, ଏତେ ନଦୀ ଡେଇଁ ପଚାଶ ମାଇଲ୍ ଟପି ପୁଣି ସମୁଦ୍ର ତିରିଶ ମାଇଲ୍ ସ୍ଥଳଆଡ଼କୁ ଘୁଞ୍ଚି ପ୍ରାଚୀ ନଦୀର ମୁହାଣ ପାଖ ଅଂଶଟି ଠିକ୍ ଯାଇ କଟକ ଜିଲ୍ଲା ତେନ୍ତୁଳିପଦା ପାଖରେ ଶୁଖିଲାରେ ରହିଗଲା ଏଭଳି ଭାବିବା ଅବାସ୍ତବ, ଏଭଳି ଭାବିବାକୁ କିଛି ପ୍ରମାଣ ମଧ ନାହିଁ । କିନ୍ତୁ ଏକଥା ମୋତେ ଅସମ୍ଭବ ନୁହେଁ ଯେ ଚନ୍ଦ୍ରଭାଗା କୂଳର ଯଙ୍ଘେର ଯାହା ଚିତ୍ରୋତ୍ପଳା, ଚନ୍ଦ୍ରଭାଗା, ପ୍ରାଚୀ ଏ ତିନି ନଦୀର ସଂଗମ ସ୍ଥଳ ନିକଟରେ ପ୍ରାଚୀ ମୁହାଣ ପାଖରେ ଥିଲା ସେ ସେହି ନଈ ଅତଡ଼ା ଖିଆରେହିଁ ଧ୍ୱଂସ ହୋଇଥିବ ଓ ତା ସହିତ ସାରୋଳ ଚଣ୍ଡୀ ଠାକୁରାଣୀ ବି ପୁଣ୍ୟାତିପୁଣ୍ୟା ପ୍ରାଚୀ ନଦୀରେହିଁ ନିମଜ୍ଜିତା ହୋଇଥିବେ ।

ସେତେବେଳେ ପ୍ରାଚୀ ଓଡ଼ିଶାର ସବୁଠୁ ବଡ଼ ନଈ ଥିଲା- ଡାକ୍ତର ରାଧାଚରଣ ପଣ୍ଡାଙ୍କର ମଧ ଏହି ମତ । ଅତି ଗଭୀର, ଅତି ଓସାର 'ବୃଦ୍ଧ ନଦୀ ମାତା'ଙ୍କର ଗ୍ରାମ ଜନପଦକୁ ଆତ୍ମସାତ୍ କରିବା ସ୍ୱଭାବ ଥିଲା, ଏପରିକି ମହାଭାରତ ଲେଖିବା ସମୟକୁ ମଧ ଗ୍ରହଧ୍ୱଜ ଋଷିଙ୍କ ଆଶ୍ରମ ପ୍ରାଚୀ ଗଣ୍ଡରେ ରହି ସାରିଥିଲା,- "ତାଙ୍କ ପରେ ଭେଦ ବହଇ ବୃଧ ନଦୀ ମାତା ।"

କନକାବତୀ ପାଟଣା ପ୍ରସୁରାମଙ୍କ ସୃଜନ୍ତା । ତା ପରେ ସେ ସୁନାବ୍ୟା ନଦୀମାନ ବି ମରିଯାଇଛି । ସେଠି ଚାରିତ୍ର ବନ୍ଦର, କୋଣାର୍କ ବନ୍ଦର, ପ୍ରାଚୀର ଉଭୟ ତଟରେ ଥିବା ଖାରବେଳଙ୍କ ରାଜଧାନୀ, ଶହ ଶହ ବର୍ଷର ଗ୍ରାମମାନ ସହରମାନ ଆଜି ଆଉ ନାହିଁ । କେଉଁଠି ଆଗ ନଦୀ ଗଣ୍ଡରେ ଭୁଷୁଡ଼ିପଡ଼ି ଶହ ଶହ ବର୍ଷ ପରେ ନଦୀ ମରିଯିବା ସଙ୍ଗେ ସଙ୍ଗେ ସାତ ତାଳ ବାଲି ତଳେ ସେ ପୋତି ହୋଇ ରହିଛି, କେଉଁଠି ଅବା ସେ ମାଟିତଳେ ରହିଛି ସେ କାଳର ଭଙ୍ଗା ଇଟା, ଭଙ୍ଗା ଦେଉଳ, ଏଠି ସେଠି କାହିଁ ଗହୀର

ବିଲରେ ମଶାଣି ପଦାରେ ଅତି ଚମତ୍କାର କାରୁକାର୍ଯ୍ୟମୟ ମୂର୍ତ୍ତି, ଅସଂଖ୍ୟ ପଥର କଟା କୂଅ, ବାଂଫି, ପୋଖରୀ - ଏହିସବୁ ତା'ର ସ୍ମୃତି । ସେସବୁ ଯାଇଛି । ତା ବୋଲି କୌଣସି ଏକ ଝଙ୍କା ପୁରୁଣା ଗଛକୁ ଦେଖାଇ ଏଇ ମହାପୁରୁଷ ସାରଳା ଦାସଙ୍କ ସମାଧି ବୋଲି ଆଜି କହିଲେ ଅନ୍ୟ ପ୍ରମାଣ ନ ଥାଇ ତାହା ଗ୍ରହଣଯୋଗ୍ୟ ନୁହେଁ । ଯେ ସେହିପରି, ଯେପରି ବୃନ୍ଦାବନରେ ଏକ କଦମ୍ବ ଗଛକୁ ଦେଖାଇ ପଣ୍ଡାମାନେ କହନ୍ତି ଏହି ସେ କଦମ୍ବ ବୃକ୍ଷ ଯାହା ମୂଳରେ ଶ୍ରୀକୃଷ୍ଣ ବଂଶୀ ବଜାଉଥିଲେ ଓ ବନମାଳିପୁର ସେପାଖେ ତ୍ରିବେଣୀ ତୀର୍ଥରେ ଯେଉଁ ଅତି ପୁରୁଣା ମାଧବୀଲତା ଅଛି ସେଠି ଅନ୍ତର୍ବେଦୀ ମଠର ଲୋକେ କହନ୍ତି ସେହି ସେ ମାଧବୀଲତା ଯାହା ମୂଳେ ଶ୍ରୀକୃଷ୍ଣ ଶୋଇଥିଲାବେଳେ ଜାରାଶବର ତାଙ୍କୁ ମାରିଥିଲା । ଝଙ୍କଡ଼ ସାରଳାଙ୍କ ସେବକମାନେ କୁଆଡ଼େ 'ମୁନି' ବୋଲାନ୍ତି । ପୁଣି ତେନ୍ତୁଳିପଦାର ପରିଜାମାନେ କେହି କେହି ନିଜକୁ ସାରଳାଙ୍କ ବଂଶଧର କହନ୍ତି, କିନ୍ତୁ ମୂଳରୁ ସେଠିକି ସାରୋଳ ଦାସେ ଯାଇଥିଲେ କି ନା ସନ୍ଦେହ । ବରଂ ଯଦି ବାଙ୍ଗରୁ ଗାଁର ଖୁବ୍ ପୁରୁଣା ତେଲି ଜମିଦାର ବଂଶର ସର୍ବ ଶ୍ରୀ ନଟବର ସାହୁ, ପଦ୍ମଚରଣ ସାହୁ, ଲୋକନାଥ ସାହୁ, କାଶୀନାଥ ସାହୁ ଆଦି ନିଜକୁ ସାରଳାଙ୍କ ବଂଶଧର ବୋଲି କହିବେ ତେବେ ସ୍ଥାନର ସାନ୍ନିଧ ହେତୁ ସେ ପ୍ରସ୍ତାବକୁ ବିଚାର ଉପରକୁ ନିଆଯାଇ ପାରେ । ତେଲି ସାହୁ ଅନ୍ୟ କାହାରିଠୁଁ କିଛି କମ୍ ଶୂଦ୍ର ନୁହନ୍ତି । ବରଂ ତାଙ୍କ ଘର କଣିଆ, ଚନ୍ଦ୍ରଭାଗା ପାଖରେ, ପୁରୁଣା ପ୍ରାଚୀ ମୁହାଣଠୁ ଅଳ୍ପ ଦୂରରେ, ପ୍ରାଚୀ ଚିତ୍ରୋତ୍ପଳା ଚନ୍ଦ୍ରଭାଗା ଅର୍ଥାତ୍ ଗଙ୍ଗା-ଯମୁନା-ସରସ୍ୱତୀ ଯେଉଁଠି ପୂର୍ବେ ମିଶିଥିଲେ ସେଇ ପାଖରେ, ଇତ୍ୟାଦି । ହଜାରେରୁ ବେଶୀ ବର୍ଷ ବୋହିଗଲା ପରେ ନଈପୋତି ହୋଇଗଲା ପରେ ପୃଥିବୀରେ ଏତେ ପରିବର୍ତ୍ତନ ଘଟିଗଲା ପରେ ଅମୁକ ଲୋକ ସାରଳା ଦାସଙ୍କ ବଂଶଧର ବୋଲି ବିନା ପ୍ରମାଣରେ କହିବା କି ଭାବିବା ହାସ୍ୟାସ୍ପଦ, ତହିଁରୁ ଆମୋଦ ମିଳିବ, ସତ୍ୟ ନୁହେଁ । ଉପଯୁକ୍ତ ପ୍ରମାଣ ନ ଥାଇ ଭୁଗୋଳର ନିର୍ଦ୍ଦେଶ ବିରୁଦ୍ଧରେ ଯାଇ ଝଙ୍କଡ଼କୁହିଁ ସାରଳା ଦାସ ବର୍ଣ୍ଣନା କରିଥିବା ଜଂଖେର ଓ କନକପୁରକୁ ତାଙ୍କ ଘର ବୋଲି ଭାବିବା ବି ସେହିପରି ଏକ ଅନ୍ଧ ବିଶ୍ୱାସ । ଏଭଳି ବି ବିଶ୍ୱାସ କରାଯାଇପାରେ ଯେ ପ୍ରାଚୀ ନଦୀ ଜଙ୍ଖେରଗଡ଼ର ସାରୋଳ ଚଣ୍ଡୀଙ୍କ ଦେଉଳକୁ ଓ କନକାବତୀ ବା କଣୟ ଗ୍ରାମରେ ସାରଳାଦାସଙ୍କ ଆଦି ଠାବକୁ ଉଦରସ୍ଥ କରିସାରିବାର କିଛି ବର୍ଷ ଅତିବାହିତ ହେଲାପରେ କୌଣସି ସାରଳା ମହାଭାରତ ପ୍ରେମୀ ବାବାଜି ବା 'ମୁନି' ଝଙ୍କଡ଼ରେ ସାରଳା ଠାକୁରାଣୀଙ୍କି ପ୍ରତିଷ୍ଠା କରିଥିଲେ ଓ ସେହି ପାଖରେ ତାଙ୍କର 'ମୁନି ଗୋସେଇଁ' ମଠ ବସାଇଥିଲେ, ସାରଳା ଦାସଙ୍କ ସ୍ମୃତିକୁ ପୁନରୁଜ୍ଜୀବିତ କରିବା ଉଦ୍ଦେଶ୍ୟରେ ଲୁପ୍ତ 'ଯଙ୍ଖେର' ଗଡ଼ର ନାମାନୁସାରେ ସେ ଗ୍ରାମର ନାଁ ରଖିଲେ ଝଙ୍କଡ଼, ଠାକୁରାଣୀଙ୍କ ନାମ ରଖିଲେ 'ସାରଳା', ଓ ସେହି ପାଖର ଗ୍ରାମର ନାମ ରଖିଲେ କନକପୁର । ଚନ୍ଦ୍ରଭାଗା, ମହୋଦଧି, ଗଙ୍ଗାମାତା ମୁହାଣ ଇତ୍ୟାଦି ସ୍ଥାପନ କରିବା ତାଙ୍କ ପକ୍ଷରେ ଅସମ୍ଭବ ବୋଲି ସେ ନିଶ୍ଚୟ ଜାଣିଥିବେ କାରଣ ସେସବୁ ଭୁଗୋଳର ପରିଚିତ ସ୍ମୃତି ସ୍ତମ୍ଭପରି । ତେଣୁ ସେ ଭଳି ନାଁ ସେ ଦେଲେ ନାହିଁ । ସେ ମୁନି ହେଲେ ବି ମଠାଧୀଶ ବୋଧେ ହୋଇଥିବେ, ଯାହା ସାରଳା ଦାସେ କେବେ ନ ଥିଲେ । ସାରଳା ଠାକୁରାଣୀଙ୍କି ସେ ସେଠି ପ୍ରତିଷ୍ଠା କରିଥିବାରୁ ତାଙ୍କ ବନ୍ଧୁବାନ୍ଧବଙ୍କର ସେଠି ସେବା ଅଧିକାର ରହିଥିଲା ସ୍ୱାଭାବିକ ଓ ସେମାନେ ଆପଣାକୁ "ମୁନି" ବୋଲି କହିଥିବା ମଧ୍ୟ ସ୍ୱାଭାବିକ । ଏ କେବଳ ଏକ କଳ୍ପନା, ସତ୍ୟ ନୁହେଁ । କିନ୍ତୁ ଏ କଳ୍ପନା ଚନ୍ଦ୍ରଭାଗା ସମୁଦ୍ର କୂଳ ମୁହାଣ, ଗୋମୁଖୀ କେଶବ, ଚିତ୍ରୋତ୍ପଳା ଉତ୍ପଳେଶ୍ୱର କାକଟପୁର ମଙ୍ଗଳାଙ୍କ ଦକ୍ଷିଣ ପଟ, ପୁରୀର ଉତ୍ତର ପୂର୍ବ ପଟ ଇତ୍ୟାଦି ବିଦ୍ୟମାନ ନ ଥାଇ ଝଙ୍କଡ଼ର ସାରଳାଙ୍କୁ ମହାଭାରତକାରଙ୍କ ଆରାଧ୍ୟା ସାରୋଳ ଚଣ୍ଡୀ କହିବା ଅପେକ୍ଷା ଅଧିକତର ବିଶ୍ୱାସଯୋଗ୍ୟ ।

ଏ କାର୍ଯ୍ୟ ସରିନାହିଁ, ଏହି ତା'ର ଆରମ୍ଭ ମାତ୍ର । ଶୂଦ୍ର ମୁନି ସାରୋଳ ଦାସ କବି ବାରମ୍ବାର ବୋଧହୁଏ ତାଙ୍କ ଇଷ୍ଟଦେବତା ବୋଲି ହିଁ "ତୁଳସୀ ବଲ୍ଲଭ", "ତୁଳସୀର କଥା" ଏହିପରି ନାମରେ ଶ୍ରୀ ବିଷ୍ଣୁଙ୍କୁ ପ୍ରଣତି ଜଣାଇଛନ୍ତି । କଣିଆଠୁ ୧୨ ମାଇଲ ଉତ୍ତର ପଶ୍ଚିମରେ ତୁଳସୀପୁର, ପ୍ରତ୍ନତତ୍ତ୍ୱବିତ୍ ଶ୍ରୀ ନାରାୟଣ ତ୍ରିପାଠୀ ବି.ଏ.ଙ୍କ ଗ୍ରାମ । କିନ୍ତୁ ତୁଳସୀ ବଲ୍ଲଭ୍ କି ତୁଳସୀ ନାଥ ଏଭଳି ନାମର ଠାକୁରଙ୍କୁ ଖୋଜିବାକୁ ପଡ଼ିବ । ଅବଶ୍ୟ ପ୍ରାଚୀ କୂଳରେ ବହୁତ ବିଷ୍ଣୁ ମନ୍ଦିର ଥିଲା ଓ ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିତ୍ ଡାକ୍ତର ରାଧାଚରଣ ପଣ୍ଡା ସେ ଅଞ୍ଚଳ ବୁଲି ବୁଲି ଦ୍ୱାଦଶ ମାଧବଙ୍କ ସନ୍ଧାନ ପାଇଥିଲେ । ତୁଳସୀପୁର ପାଖେ ମୁଦୁପଳ ଗ୍ରାମରେ ଅତି ସୁନ୍ଦର ଯୁଗ୍ମ ରୂପ ଅଛି । ତାକୁ ଲକ୍ଷ୍ମୀନାରାୟଣ ମୂର୍ତ୍ତି କହନ୍ତି ଓ ମୁଦୁଗଳ ମାଧବ ବି କହନ୍ତି । ଯେ ମୂର୍ତ୍ତି ବଜ୍ରସାରା ଆଦିବୁଦ୍ଧ ଓ ପ୍ରଜ୍ଞାପାରମିତା ବି ହୋଇପାରନ୍ତି । ମୁଦୁଗଳ ମାଧବ ଏକଦା ଖୁବ୍ ପ୍ରସିଦ୍ଧ ଥିଲେ । ଏପରିକି ତାଙ୍କର ସେବା କାର୍ଯ୍ୟ କିଏ କରିବ ସେଥିପାଇଁ ବଜ୍ରଯାନୀ ତାନ୍ତ୍ରିକ ଓ ବୌଦ୍ଧମାନଙ୍କ ଭିତରେ ଏକ ମହାଗୋଳ ଉପସ୍ଥିତ ହୋଇଥିଲା ବୋଲି କିମ୍ବଦନ୍ତୀ ଅଛି । ବନମାଳିପୁର ଅଞ୍ଚଳରେ ଏକ ଗ୍ରାମରେ ଏ ଗୋଳର ନିଷ୍ପତ୍ତି ପାଇଁ ଉଭୟ ପକ୍ଷ ବସିଲେ । ତାନ୍ତ୍ରିକମାନେ ଗାରିଡ଼ି ମନ୍ତ୍ର କରି ଏକ "ମାର୍ ମାର୍ ଠେଙ୍ଗା" ବା ପାଞ୍ଚଣକୁ ତାଙ୍କ ଶତ୍ରୁମାନଙ୍କ ବିରୁଦ୍ଧରେ ପେଶିଲେ । ସେ ପାଞ୍ଚଣ ଆପେ ଆପେ ଜୈନମାନଙ୍କୁ ପିଟି ପିଟି ତଡ଼ି ସବୁ ଗୋଳର ସମାଧାନ

କରିଦେଲା । ଯେଉଁ ପ୍ରସିଦ୍ଧ ଗ୍ରାମରେ ଏ ଯନ୍ତତନ୍ତ ଘଟିଲା ସେ ଗାଁର ନାମ "ଗାରିଡ଼ି ପାଞ୍ଚଣ" ଓ ସେଠି ଏକ ଅତି ପ୍ରାଚୀନ ଶିବ ମନ୍ଦିର ଅଛି । ଗାରିଡ଼ି ପାଞ୍ଚଣ ସୁପରିଚିତ ଶ୍ରୀ ନୀଳମଣି ସେନାପତି ଆଇ.ସି.ଏସ୍. ମହାଶୟଙ୍କ ଗାଁ । ମୁଦୁଗଳ ମାଧବ ଏତେ ପ୍ରସିଦ୍ଧ ଥିଲେ ଯେ କାହିଁ କାକଟପୁର ଥାନା ମୁଦ୍‌ଗଳ କାହିଁ ବାଲିପାଟଣା ଅବା ଗାରିଡ଼ି ପାଞ୍ଚଣ ଏ ପ୍ରାୟ ୪୦ ମାଇଲ୍ ଦୂରତାରେ ତାଙ୍କର କିମ୍ବଦନ୍ତୀ ରହିଛି । ଏ ଦୁଇସ୍ଥାନ ପ୍ରାଚୀ ନଦୀରେ ସଂଶ୍ଳିଷ୍ଟ ହୋଇଥିବ, କୁଶଭଦ୍ରାରୁ ଅର୍ନ୍ତବେଦୀରୁ ପ୍ରାଚୀ । କିଏ କହିପାରେ, ଏପରିକି କୋଣାର୍କ କି ରାଜାରାଣୀ ଦେଉଳ କି ଲିଙ୍ଗରାଜ ଦେଉଳର ଶ୍ରେଷ୍ଠତମ ଖୋଦିତ ନାରୀ ମୁହଁରେ ଯେଉଁ ମୃତ୍ୟୁଞ୍ଜୟ ହସ ଯେଉଁ ଅପରୂପ ଠାଣି ଦେଖିବାକୁ ମିଳେ ନାହିଁ ସେହି ଠାଣି ସେହି ହସ ଫୁଟାଇ ଯେଉଁ ମୁଗୁନିପଥରର ଦେବୀ ମୂର୍ତ୍ତି ନାରାୟଣଙ୍କ ବାମଜାନୁ ଉପରେ ବସି ସାଚିକ ଠାଣିରେ ତୀର୍ଯ୍ୟକ୍ ଭାବେ ତାଙ୍କୁ ଚାହିଁରହିଛନ୍ତି, ହୁଏତ ସେ ତୁଳସୀଦେବୀ ଓ ସେହି ଅପୂର୍ବ ସୁନ୍ଦର ଅପୂର୍ବ ଭାବମୟ ପୁରୁଷ ମୂର୍ତ୍ତି ହିଁ "ତୁଳସୀବଲ୍ଲଭ" ଯେ ସାରଳା ଦାସଙ୍କୁ ଅନୁପ୍ରାଣିତ କରୁଥିଲେ । ଆଜି ତାଙ୍କର ମନ୍ଦିର ଭାଙ୍ଗିଯାଇଛି, ଆଠ ଫୁଟ ଉଞ୍ଚପଥର କାନ୍ଥ ବେଢ଼ାଇ ହୋଇ ବରଗଛ ତଳେ ଅପନ୍ତରାରେ ସେ ପଡ଼ିଛନ୍ତି, ତାଙ୍କର ବି ଦିନେ ଦିନଥିଲା ଇତିହାସ ଥିଲା । ଅଥବା ସେ ଅନ୍ୟ କେଉଁ ମାଧବ ହୋଇ ପାରିଥାନ୍ତି । ଜାଣିବା ପାଇଁ ଧୈର୍ଯ୍ୟ ସମ୍ବଳିତ ଗବେଷଣା ଆବଶ୍ୟକ । କନକାବତୀ ବା କଣୟବତୀକୁ ପରଶୁରାମ ସ୍ଥାପନ କରିଥିଲେ ଓ ସେ ମଧ ସାରୋଳଚଣ୍ଡୀଙ୍କୁ ସ୍ଥାପନ କରିଥିଲେ ବୋଲି ସାରୋଳ ଦାସ କହିଛନ୍ତି, ଯଜ୍ଞେଶ୍ୱରର ଅନ୍ୟ ନାମ ବାରସ୍ୱତୀ ଥିଲା, ସାରୋଳାଙ୍କୁ ହିଙ୍ଗୁଳା ଓ ମାତଙ୍ଗୀ ବି ସେ କହିଛନ୍ତି, ଏ ବିଷୟରେ ଗବେଷଣା ଆବଶ୍ୟକ । ଶୂଦ୍ରମୁନି ବର୍ଣ୍ଣିତ "ଜଇନ୍ତା" କାକଟପୁର ଅଞ୍ଚଳର ପ୍ରାଚୀନକାଳରେ ଆଧୁନିକ ଅନ୍ୟ କେଉଁଠି, କି କୁଶସ୍ଥଳି କେଉଁଠି, ବାଣରାସି ନଗର କେଉଁଠି, ଯଜ୍ଞେଶ୍ୱର ନଗର କେଉଁଠି, ପରଶୁରାମ ପାଟଣା କୁଆଡ଼େ ଗଲା, ସୁବିଧାନ କଟକ କେଉଁଠି, ବିଖଳେଶ୍ୱର କେଉଁଠି, ପ୍ରାଚୀନଦୀ କୃପାଜ୍ଜଳଋଷିଙ୍କ ଝିଅ କିପରି ହେଲେ ? ସାରୋଳ ଚଣ୍ଡୀଙ୍କର କଣ ଏପରି କିମ୍ବଦନ୍ତୀ ଯେ ସେ ପୂର୍ବେ ସରସ୍ୱତୀ ଥିଲେ, ପୁଣି କେଉଁ ଋଷିଙ୍କ ଅଭିଶାପରେ 'ରୁଧିର ପାନେ ତ୍ରାପୁତ୍ରୀ' ହେଲେ ଏ ବିଷୟରେ ବହୁତ ତଥ୍ୟ ସଂଗ୍ରହ କରିବା ଆବଶ୍ୟକ ଅଛି । ତାହା ସମୟ ସାପେକ୍ଷ ।

ଚନ୍ଦ୍ରଭଗା ନଦୀ ଓ ପ୍ରାଚୀ ମୁହାଣ ସହିତ ସାରୋଳ ଦାସଙ୍କ ସମ୍ବନ୍ଧ ତାଙ୍କୁ ସେହି ଲୁପ୍ତ ପ୍ରାଚୀ ସଭ୍ୟତା ସହିତ ହିଁ ଜଡ଼ିତ କରି ଦେଉଛି । ସେ କଳିଙ୍ଗର ଏକ ଅତି ସମୃଦ୍ଧିଶାଳୀ ନଗରର ବା ନଗର ଉପକଣ୍ଠର ବାସିନ୍ଦା ଥିଲେ, ଅତି ପ୍ରାଚୀନ ନୌବାଣିଜ୍ୟ କେନ୍ଦ୍ର ଚାରିତ୍ର ବନ୍ଦର ପାଖର ଲୋକ ଥିଲେ ଓ ତାଙ୍କ ସାହିତ୍ୟରେ ନାଗରିକ ମାର୍ଜିତ ରୁଚି, ବିଦ୍ୱତ୍ତା ବୁଦ୍ଧିମତ୍ତା, ମାନବ ଅଭିଜ୍ଞତା ପ୍ରସୂତ ଉଦାରତା ପୂର୍ଣ୍ଣ ମାତ୍ରାରେ ରହିଛି । ସେ ସେହି ବିଖ୍ୟାତ ପ୍ରାନ୍ତର ବାସିନ୍ଦା ଯେଉଁଠି ହୁଏନ୍‌ସାଂ ଓହ୍ଲେଇଥିଲେ । ସେହି ଆଖପାଖରେ କେଉଁଠି ଖାରବେଳଙ୍କ ମହାବିଜୟ ପ୍ରାସାଦ । "ଉଭୟ ପ୍ରାଚୀ ତଟେ" ବୋଲି ଡାକ୍ତର ରାଧାଚରଣ ପଣ୍ଡାଙ୍କ ମତ । ଟଲେମି ବର୍ଣ୍ଣିତ କନ୍ନଗର ସେଠୁ ତିନିକୋଶ । ପ୍ରାଚୀପରି କୌଣସି ଏକ ନଦୀକୂଳରେ ଏତେ ଶିକ୍ଷା ସଂସ୍କୃତି ଏତେ ଋଷି ଏତେ ତପୀ ବିରଳ । 'ଶୂନ୍ୟ ସଂହିତା', 'ପ୍ରାଚୀ ମାହାତ୍ମ୍ୟ' ଆଦିରେ ତା'ର ବହୁଳ ବର୍ଣ୍ଣନା । ବିଶ୍ୱ ସାହିତ୍ୟରେ ତୁଳନାତ୍ମକ ବିଚାରରେ ଏବେ ବି ଦେଖିଲେ ଶୂଦ୍ରମୁନି ସାରୋଳ ଦାସଙ୍କ ମୌଳିକ ରଚନା ମହାଭାରତ ଯେତେ ମହାନ୍ ଯେତେ ବିସ୍ମୟକର ପ୍ରତିଭାସମ୍ପନ୍ନ ଯେତେ ଅସାଧାରଣ ସେଥିରେ ସେହି ମହାକବିମାନଙ୍କ ଗୁରୁଣାଂଗୁରୁ ସାରୋଳ ଦାସଙ୍କ ଉତ୍ପତ୍ତି ଯେ କଳିଙ୍ଗର ଅଦ୍ୱିତୀୟ ସଂସ୍କୃତିପୀଠ ପ୍ରାଚୀ ଉପତ୍ୟକାରେହିଁ ଘଟିଥିଲା ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବୋଇତ, ବନ୍ଦର, ନୌବାଣିଜ୍ୟ, ଉପନିବେଶ, ଜ୍ଞାନବିଜ୍ଞାନ, ବିଜୟ, ସମ୍ମାନମଣ୍ଡିତ କଳିଙ୍ଗର ଗୌରବୋଜ୍ଜ୍ୱଳ ଯୁଗରେହିଁ କଳିଙ୍ଗ ଭାରତୀଙ୍କର ସେହି ନଭୂତୋ ନ ଭବିଷ୍ୟତି ଅମିତ ପରାକ୍ରମୀ ବରପୁତ୍ରଙ୍କର ଜନ୍ମ ହୋଇଥିଲା, ଯାହାଙ୍କର ପ୍ରତ୍ୟେକ ପଦରେ ଅମୃତମୟ ଆନନ୍ଦମୟ ଜୀବନରହିଁ ସ୍ପର୍ଶ ମିଳେ । ସମୁଦ୍ର ତାଙ୍କର ଚେତନା ସହିତ ଗଭୀର ଭାବେ ସଂଶ୍ଳିଷ୍ଟ । ତାଙ୍କର ଦାଣ୍ଡି ବୃତ୍ତରେ ସେହି ସମୁଦ୍ରରହିଁ ଛନ୍ଦ, ଜଗତରେ ଯଦି କେଉଁଠି କିଏ ସମୁଦ୍ରର ପ୍ରବାହରୁ ସଙ୍ଗୀତ ଗ୍ରହଣ କରିଥିଲେ ପୁଣି ତାକୁ ସଙ୍ଗୀତରେ ପ୍ରକାଶ କରିଥିଲେ ତେବେ ସେ ଏହି ସାରୋଳ ଦାସ କବି । ଯଦି କେହି ସମୁଦ୍ରର ପ୍ରବାହର ଶୈଳୀକୁହିଁ ଅଖଣ୍ଡ ଜୀବନର ପ୍ରବହମାନ ଛନ୍ଦକୁ, ଲୀଳାୟିତ ପରିବର୍ତ୍ତନଶୀଳ ରୂପଶ୍ରୀକୁ ଘେନି ସାହିତ୍ୟରେ ପ୍ରୟୋଗ କରିଥିଲେ ତେବେ ସେ ଏହି ସାରୋଳ ଦାସ କବି, ଏବଂ ଯଦି କେବେ ଗଣ୍ଡ ମଫସଲରେ କେହି ପ୍ରକୃତ ସାରଳା ମହାଭାରତ ପୋଥି ପଢ଼ାଳି ମିଳନ୍ତି, ଦାଣ୍ଡି ବୃତ୍ତକୁ ଗାଇବାକୁ ଯାହାଙ୍କ ଛାତିରେ ସୋର ଅଛି, ଗଭୀରତା ଅଛି ବଳ ଅଛି, ଦାଣ୍ଡି ବୃତ୍ତ ସଙ୍ଗେ ସଙ୍ଗେ ସ୍ପନ୍ଦିତ ହେବାକୁ ଲୁହା ପିଣ୍ଡୁଳା ପରି ମାଂସପେଶୀ ହୋଇ ବଳିଷ୍ଠ ଦେହ ଅଛି, ତେବେ ପୁଣି 'ମଉଦା'ର ଝଂକାର ଶୁଣିବାକୁ ମିଳେ ପଲ୍ଲୀ ଗାଁରେ ଖରାବେଳେ ଛାଇ ତଳେ ଆଉ ସମୟ ପଛରୁ ଆଗକୁ ଲହଡ଼ା ଖେଳେ ଆଉ ବାରମ୍ବାର ଶୁଭେ -

"ବୈଜୟନ୍ତୀ ଗ୍ରନ୍ଥୀକାର ଶ୍ରୀ ସୁଦ୍ରମୁନି ସାରୋଳ ଦାସ କବି ।"

(୧୯୫୭)

## (୬)

### ବଂଶୀଧର ମହାନ୍ତି

# ସାରଳା ମହାଭାରତରେ ଓଡ଼ିଶାର ଧର୍ମଧାରା

ଓଡ଼ିଶାର ସାଂସ୍କୃତିକ ପୃଷ୍ଠଭୂମି ପର୍ଯ୍ୟାଲୋଚନାରେ ସାରଳା ମହାଭାରତ ଓ ଚଣ୍ଡୀପୁରାଣର ଧର୍ମଧାରା ବହୁ ନୂତନ ଦିଗ ଉଦ୍‌ଘାଟନ କରିଥାଏ । ସମଗ୍ର ଭାରତରେ ଓଡ଼ିଶା ବହୁ ପ୍ରାଚୀନ କାଳରୁ ଧର୍ମର ଏକ ପ୍ରଧାନ ପୀଠ ଭାବରେ ପରିଗଣିତ ହୋଇ ଆସିଛି । ସୁପ୍ରାଚୀନ ଆଦିବାସୀ ବା ଅଷ୍ଟ୍ରୋ-ଏସିଆଟିକ୍ ସଭ୍ୟତାର ପ୍ରକୃତିଧର୍ମୀ, ପଶୁପକ୍ଷୀ କାଷ୍ଠପାଷାଣ ଭୂତପ୍ରେତ ପୂଜକ ଆଦିମ ଅଧିବାସୀମାନଙ୍କଠାରୁ ଆରମ୍ଭ କରି ଏହି ଭୂମିରେ ବ୍ରାହ୍ମଣ୍ୟ, ଜୈନ, ବୌଦ୍ଧ, ନାଥ, ଶୈବ, ଶାକ୍ତ, ସୌର, ଗାଣପତ୍ୟ ଓ ସର୍ବୋପରି ନିର୍ଗୁଣ ଓ ପ୍ରେମଭକ୍ତି, ବୈଷ୍ଣବ ସମ୍ପ୍ରଦାୟୀମାନଙ୍କର ବିଭିନ୍ନ ଧର୍ମ-ଦର୍ଶନର ସ୍ରୋତ ସମୟର ବାଲୁଚରରେ ରେଖାପାତ କରିଯାଇଛି । ଲୋକାଚାର, ସାହିତ୍ୟ, ଇତିହାସ, ଧର୍ମ, ଦର୍ଶନ କଳା ଓ ସ୍ଥାପତ୍ୟ ସବୁଥିରେ ଏସବୁର ସ୍ପଷ୍ଟ ଆଭାସ ପ୍ରତିଫଳିତ ହୋଇ ରହିଛି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସାରଳାସାହିତ୍ୟ ଏକମାତ୍ର ସାହିତ୍ୟ, ଯେଉଁଥିରେ ଓଡ଼ିଶାର ବିଭିନ୍ନ ଧାର୍ମିକ ଧାରାର ସ୍ୱରୂପ ପ୍ରତିଫଳିତ ହୋଇଛି ।

ତାନ୍ତ୍ରିକ ବୌଦ୍ଧଧର୍ମର ପ୍ରଥମ ବିକାଶ ଓଡ଼ିଶାରେ ଘଟିଥିବାର ପ୍ରମାଣ ଆମ୍ଭେମାନେ ଉଭୟ ହିନ୍ଦୁ ତଥା ବୌଦ୍ଧଧର୍ମସମ୍ବନ୍ଧୀୟ ତନ୍ତ୍ରଶାସ୍ତ୍ର ଓ ପୁରାଣ ପ୍ରଭୃତିରୁ ଲାଭ କରିଥାଉଁ । ତିବ୍ବତୀୟ ଗ୍ରନ୍ଥ ପାଗ୍-ସାମ୍-ଜନ୍-ଜାଙ୍ଗ (Pag-Sam-Jan-Zang)ରୁ ଜାଣିବାକୁ ପାଉ ଯେ ଉଡ୍‌ଡ୍ରୀୟାନ ନାମକ ପୀଠ ତାନ୍ତ୍ରିକ ବୌଦ୍ଧର୍ଧର ପ୍ରଧାନ ଉତ୍ସ ଥିଲା । ହିନ୍ଦୁ ତଥା ବୌଦ୍ଧ ତନ୍ତ୍ରଶାସ୍ତ୍ରରେ ଚତୁଷ୍ପୀଠ ମଧ୍ୟରେ ଉଡ୍‌ଡ୍ରୀୟାନ ପ୍ରଧାନ ପୀଠ ଭାବରେ କୁହାଯାଇଛି । ବହୁ ସିଦ୍ଧାଚାର୍ଯ୍ୟଙ୍କ ମଧ୍ୟରୁ ମହାଚାର୍ଯ୍ୟ ବ୍ରାହ୍ମଣ ରାହୁଲଭଦ୍ର ବା ସରୋହ, ନାଗାର୍ଜୁନ, ଶବରୀପା, ଲୁଇପା, ବଜ୍ରଘଣ୍ଟା, କମ୍ବଳ, ପଦ୍ମବ୍ରଜ୍ର, ଅନଙ୍ଗବଜ୍ର, ଇନ୍ଦ୍ରଭୂତି, ପଦ୍ମ-ସମ୍ଭବ, ଲକ୍ଷ୍ମୀଙ୍କରା, ଜାଳନ୍ଧରିପା, ବିରୂପା, କାହ୍ନୁପା, କୃଷ୍ଣାଚାର୍ଯ୍ୟ ବା କାହ୍ନୁପାଦ, ତିଲୋପା ଓ ନାରୋପା ପ୍ରଭୃତି ସହଜଯାନ, ବଜ୍ରଯାନ ଓ କାଳଚକ୍ରଯାନର ସିଦ୍ଧାଚାର୍ଯ୍ୟମାନେ ଉଡ୍‌ଡ୍ରୀୟାନ ପୀଠ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିଲେ ।

ଖ୍ରୀ: ୧୫ଶ ଶତାବ୍ଦୀ ବେଳକୁ ଓଡ଼ିଶାରୁ ବୌଦ୍ଧଧର୍ମର ବିଲୋପ ଘଟିଥିଲେ ମଧ୍ୟ ସେହି ଧର୍ମର ପରମ୍ପରା ଲୋକକଥା କାହାଣୀ, କିମ୍ବଦନ୍ତୀ ତଥା ଧର୍ମଶାସ୍ତ୍ରମାନଙ୍କରେ ରହିଥିଲା । ଇନ୍ଦ୍ରଭୂତି ତାଙ୍କର ପ୍ରଧାନ ଗ୍ରନ୍ଥ 'ଜ୍ଞାନସିଦ୍ଧି'ରେ ଜଗନ୍ନାଥଙ୍କୁ ବୁଦ୍ଧରୂପେ ସ୍ତୁତିକରି ଗ୍ରନ୍ଥାରମ୍ଭ କରିଅଛନ୍ତି ଓ ଗ୍ରନ୍ଥର ବିଭିନ୍ନ ସ୍ଥଳରେ ବୁଦ୍ଧରୂପୀ 'ଜଗନ୍ନାଥ'ଙ୍କର ଉଲ୍ଲେଖ କରିଅଛନ୍ତି । ସାରଳା ମହାଭାରତର ବିଭିନ୍ନ ସ୍ଥଳରେ କବି ନୀଳାଚଳବିହାରୀ ଜଗନ୍ନାଥଙ୍କୁ କିପରି ବୁଦ୍ଧରୂପେର ବର୍ଣ୍ଣନା କରିଅଛନ୍ତି, ତାହାର କେତେକ ଉଦାହରଣ ଦିଆଗଲା ।

(କ) ବିଜୟେ ରାମକୃଷ୍ଣ ସୁଭଦ୍ରା ନାମେ ବ୍ରହ୍ମ<br>
ଚାରିଲକ୍ଷ ବତିଶସହସ୍ରକୁ ବଉଦରୂପେ ମହାତମା ।<br>
(ଆଦି.ପୃ-୨)

(ଖ) ବନ୍ଦଇ ଜଗନ୍ନାଥ ନୀଳଗିରିବାସୀ<br>
ବଉଦରୂପେ ନୀଳକନ୍ଦରେ ଛନ୍ତି ବସି ।<br>
(ମଧ୍ୟ, ପୃ.-୩୧୬)

(ଗ) ସଂସାରଜନଙ୍କୁ ତାରିବା ନିମନ୍ତେ<br>
ବଉଦ ରୂପେ ନୀଳକନ୍ଦରେ ଛନ୍ତି ବସି ।<br>
(ମଧ୍ୟ, ପୃ.-୬୧୬)

(ଘ) ଅନ୍ୟତ୍ର ମଧ୍ୟପର୍ବରେ ଅଣାକାର ବିଷ୍ଣୁରୂପୀ ଜଗନ୍ନାଥଙ୍କୁ ବର୍ଣ୍ଣନା କରାଯାଇଛି -

ଅଣାକାର ପୁରୁଷ ନାହିଁ ଆକାର ମୂର୍ତ୍ତି<br>
ସିଦ୍ଧରାମ ବୁଦ୍ଧରାମ ଶ୍ରୀରାମଚନ୍ଦ୍ର ମୂର୍ତ୍ତି । (ମଧ୍ୟ, ପୃ.-୫୭୫)

(ଙ) କଳିଯୁଗେ ବଉଦ କେଶବ ପ୍ରତିମା<br>
ମୁହିଂ ହୋଇବି ନୀଳସୁନ୍ଦର ଗିରି ଯେ ଉରମା ।<br>
(ବନ, ପୃ.୩୫୬-୫୭)

(ଚ) ଦ୍ୱାପର ଯୁଗେ ଅନ୍ତେ ବିଜେ କରିବେ ଜଗନ୍ନାଥେ<br>
ହରି ବଉଦରୂପେ ବସିବେ<br>
ଚାରିଲକ୍ଷ ବତିଶ ସହସ୍ର ବର୍ଷ ପରିଜନ୍ତେ ।<br>
(ସଭା, ପୃ.-୩୮୨)

(ଛ) ନୀଳସୁନ୍ଦର ଗିରି ଉପରେ ନୀଳକଳ୍ପତରୁ<br>
ବଉଦ ରୂପେ ଆମ୍ଭେ ବିଜୟେ କରିଥିବୁଂ ।<br>
(ସଭା, ପୃ.-୫୪୩)

(ଜ) କୃଷ୍ଣ ବୋଇଲେ ତୁ ଶୁଣ ହୋ ବିରଞ୍ଚି<br>
କଳିଯୁଗେ ବଉଦରୂପେ ନୀଳଗିରିଯେଂ ପୂଜା ଘେନୁଅଛିଂ ।<br>
(ହରିବଂଶ ପର୍ବ, ପୃ.-୩୮୪)

(ଝ) କବି ଇଷ୍ଟଦେବୀ ସାରଳାଙ୍କୁ ବୌଦ୍ଧଦେବୀଭାବେ ମଧ୍ୟ ବର୍ଣ୍ଣନା କରିଛନ୍ତି । ମହାଭାରତ ଗ୍ରନ୍ଥର ଉପସଂହାରରେ ସେ ଲେଖିଛନ୍ତି -

ବଉଦରୂପ ମୁଂ ତା'ର ପ୍ରସନ୍ନେ ଦେଖଇଂ
ସେ ଯାହା କହଇ ମୁଁ ତାହା ସେ ଲେଖଇଂ ।
(ସ୍ୱର୍ଗାରୋହଣପର୍ବ, ପୃ.-୪୩୫)

ଉଦ୍ଧୃତ ପଦ୍ୟାଂଶରୁ ଜଣାପଡ଼େ ଯେ ବଜ୍ରଯାନ ସହଜଯାନ ଯୁଗର ତାନ୍ତ୍ରିକ ବୌଦ୍ଧଧର୍ମରେ ଜଗନ୍ନାଥ ଓ ବୁଦ୍ଧଙ୍କ ମଧ୍ୟରେ ଯେଉଁ ଅଭେଦତ୍ୱ ରହିଥିଲା ତାହାର ଧାରା ପୂର୍ଣ୍ଣଭାବରେ ସାରଳା ମହାଭାରତରେ ପ୍ରକାଶ ପାଇଛି ଓ ସାରଳା ସାହିତ୍ୟର ଏହି ବିଷୟ ପରବର୍ତ୍ତୀ ଓଡ଼ିଆ ଗ୍ରନ୍ଥ ସାହିତ୍ୟକୁ ମଧ୍ୟ ପ୍ରଭାବିତ କରିଛି । ଜଗନ୍ନାଥ, ଅଚ୍ୟୁତ, ବଳରାମ, ଯଶୋବନ୍ତ, ଦ୍ୱାରିକାଦାସ ପ୍ରଭୃତ ସେମାନଙ୍କର ରଚନାରେ ଜଗନ୍ନାଥଙ୍କୁ ବୁଦ୍ଧଭାବରେ ସ୍ୱୀକାର କରିଅଛନ୍ତି । ଜଗନ୍ନାଥଙ୍କୁ ଅଣାକାରସ୍ୱରୂପୀ ବୁଦ୍ଧରାମ କହିବା ପଛରେ ମହାଯାନ ବୌଦ୍ଧଧର୍ମ ଶୂନ୍ୟବାଦର ସ୍ପଷ୍ଟ ପ୍ରକାଶ ଯେ ରହିଛି ତାହା କହିବା ବାହୁଲ୍ୟମାତ୍ର । ଦଶଅବତାର ମଧ୍ୟରେ ସାରଳାଦାସ ଜଗନ୍ନାଥଙ୍କୁ ବୌଦ୍ଧ ଅବତାର ଭାବରେ ମଧ୍ୟ ବର୍ଣ୍ଣନା କରିଅଛନ୍ତି । ଅନେକ ଆଲୋଚକଙ୍କ ମତରେ ବୌଦ୍ଧଧର୍ମର ତ୍ରିରତ୍ନ, ବୁଦ୍ଧ, ଧର୍ମ ଓ ସଂଘ ପରବର୍ତ୍ତୀ ସମୟରେ ପ୍ରଜ୍ଞା, ଉପାୟ ଓ ଶୂନ୍ୟତା-କରୁଣାରେ ରୂପାନ୍ତରିତ ହେଲେ । ପୁରୁଷରୂପୀ ଉପାୟ ବୁଦ୍ଧ ଭାବରେ, ପ୍ରକୃତିରୂପିଣୀ ଧର୍ମ ପ୍ରଜ୍ଞାଭାବରେ, ପ୍ରଜ୍ଞା ଓ ଉପାୟଙ୍କ ମିଶ୍ରଣରେ ସୃଷ୍ଟିଲାଭ କଲା ସଂଘ ଯାହା ବିଶ୍ୱସୃଷ୍ଟିର ପ୍ରତୀକ ଅଟେ ।

ସହଜଜାନ ଓ ବଜ୍ରଜାନ ଏବଂ ସର୍ବୋପରି ମହାଯାନ ବୌଦ୍ଧଧର୍ମ କିପରି ଓଡ଼ିଆ ସାହିତ୍ୟକୁ ପ୍ରଭାବିତ କରିଛି ଓ ତାହାର ଆଭାସ କିପରି ସାରଳା ସାହିତ୍ୟରେ ପ୍ରତିବିମ୍ବିତ ହୋଇଛି ତାହାର ଆଲୋଚନା ପୂର୍ବବର୍ତ୍ତୀ ଅଧ୍ୟାୟରେ କରାଯାଇଛି । ଜଗନ୍ନାଥ ଦାସଙ୍କ 'ବ୍ରହ୍ମଗୀତା'ରେ ୪ର୍ଥ ଅଧ୍ୟାୟରେ ଜଗନ୍ନାଥ ବା ପୁରୁଷୋତ୍ତମ ଶୂନ୍ୟରୂପେ ପରିକଳ୍ପିତ । ମଧ୍ୟପର୍ବର ସୃଷ୍ଟି ପ୍ରକ୍ରିୟା ପ୍ରସଙ୍ଗରେ ସାରଳାଦାସ ଶୂନ୍ୟ ମଣ୍ଡଳର ଚାରିଗୋଟି ସ୍ତର ଦେଇଅଛନ୍ତି, ଯଥା- ଶୂନ୍ୟ, ମହାଶୂନ୍ୟ, ନିରାକାର ଓ ପରମ ନିରାକାର ମଣ୍ଡଳ । ଚର୍ଯ୍ୟାପଦରେ ସେହିପରି ଶୂନ୍ୟର ଚାରିଗୋଟି ବିଭାଗ ପରିଲକ୍ଷିତ ହୋଇଥାଏ ଯାହା ନାଗାର୍ଜ୍ଜୁନପାଦଙ୍କର ପାଞ୍ଚକର୍ମରେ ପରିଲକ୍ଷିତ ଚାରିଶୂନ୍ୟ, ଯଥା- ଶୂନ୍ୟ, ଅତିଶୂନ୍ୟ, ମହାଶୂନ୍ୟ ଓ ସର୍ବଶୂନ୍ୟର ପ୍ରତୀକ । 'ବିରାଟ ଗୀତା'ରେ ଶୂନ୍ୟର ୫ଟି ବିଭାଗ ଓ ଅନ୍ୟତ୍ର ୯ମ ଅଧ୍ୟାୟରେ ଶୂନ୍ୟର ୧୬ ଗୋଟି ବିଭାଗ ଦିଆଯାଇଛି । ତାନ୍ତ୍ରିକ ବୌଦ୍ଧଧର୍ମରେ ଶୂନ୍ୟତା-କରୁଣା ମିଳନ ଉପରେ ସମଗ୍ର ସାଧନା ପ୍ରତିଷ୍ଠିତ । ଏହି ଶୂନ୍ୟ ସାଧନରେ ସାଧକ ଉତ୍ତୀର୍ଣ୍ଣ ହେବାପରେ ସେ ବୋଧିସତ୍ୱ ହୁଏ ଓ ବୋଧିଚିତ୍ତ ଲାଭ କରିଥାଏ । ଶୂନ୍ୟତା-କରୁଣା ତତ୍ତ୍ୱ ତନ୍ତ୍ରଶାସ୍ତ୍ରରେ 'ସାମରସ' ବା ମିଥୁନତତ୍ତ୍ୱକୁ ବୁଝାଇଥାଏ । ଶୂନ୍ୟତା ହିଁ ପ୍ରଜ୍ଞାସ୍ୱରୂପିଣୀ ଭଗବତୀ ଓ ଉପାୟ ହିଁ ଭଗବାନ । ବୌଦ୍ଧତନ୍ତ୍ରରେ ଭଗବତୀ ନିର୍ବାଣରୂପିଣୀ, ବିନ୍ଦୁରୂପିଣୀ ଓ ସେ ହେଉଛନ୍ତି ନୈରାତ୍ମାଦେବୀ ଓ ପ୍ରଜ୍ଞା ସର୍ବବୁଦ୍ଧମୟ ଭଗବାନ । ବୌଦ୍ଧତନ୍ତ୍ର ଓ ଦୋହା ସାହିତ୍ୟରେ ଏହି ନୈରାତ୍ମା ଦେବୀ ଚାଣ୍ଡାଳୀ, ଡୋମ୍ବୀ, ଶବରୀ, ମାତଙ୍ଗୀ ଓ ବୈରାମଣି ପ୍ରଭୃତି ଭାବରେ କଥିତ । ସାରଳାମହାଭାରତ ଆଦିପର୍ବରେ ବିଭିନ୍ନ ଚଣ୍ଡୀଙ୍କର ବର୍ଣ୍ଣନାରେ ହାଡ଼ି (ଡୋମ୍ବୀ), ଚାଣ୍ଡାଳିଆ (ଚାଣ୍ଡାଳୀ) ପ୍ରଭୃତି ଦେବୀଙ୍କର ନାମକରଣ ପଛରେ ସହଜଯାନ ଓ ବଜ୍ରଯାନ ନୈରାତ୍ମ୍ୟା ଦେବୀଙ୍କର ସୂଚନା ପ୍ରଚ୍ଛନ୍ନ ଭାବରେ ରହିଛି ।

ସହଜଯାନ ଓ ବଜ୍ରଯାନରେ କାୟାସାଧନା ପ୍ରଧାନ ସାଧନା ଭାବରେ ଗୃହୀତ । ସହଜଯାନରେ ଶରୀର ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ପ୍ରତୀକ ରୂପରେ ଗୃହୀତ ।

ବୌଦ୍ଧ କିମ୍ବଦନ୍ତୀରୁ ଜଣାଯାଏ ଯେ କାଳଚକ୍ରଯାନ ଭାରତର ସମ୍ବଳ (ସମ୍ବଲପୁର) ନାମକ ଦେଶରୁ ଆନୁମାନିକ ଖ୍ରୀ: ୯୬୫ରେ ଉଦ୍ଭୁତ ହୋଇଥିଲା । ଅଭିନବ ଗୁପ୍ତଙ୍କର 'ତନ୍ତ୍ରାଲୋକ' କାଳଚକ୍ର ସମ୍ବନ୍ଧରେ କହେ ଯେ ପ୍ରାଣ ଓ ଅପାନ ବାୟୁକୁ ନିୟନ୍ତ୍ରିତ କରି କାଳକୁ ବା ସମୟକୁ ଜୟ କରିବା ହେଲା ଏହି କାଳଚକ୍ରଯାନର ଲକ୍ଷ୍ୟ । 'ଶ୍ରୀ କାଳଚକ୍ରଯାନ' ତନ୍ତ୍ରରେ ପିଣ୍ଡବ୍ରହ୍ମାଣ୍ଡବାଦର ବିଶଦ ଚିତ୍ର ଦିଆଯାଇଛି । କାଳ, ତାହାର ବିଭିନ୍ନ ବିଭାଗ ଓ ଉପବିଭାଗ (ଯଥା- ଦିନ, ରାତ୍ରି, ପକ୍ଷ, ମାସ, ବର୍ଷ ପ୍ରଭୃତି) କିପରି ପ୍ରାଣବାୟୁଦ୍ୱାରା ନିୟନ୍ତ୍ରିତ ତାହା ମଧ୍ୟ କୁହାଯାଇଛି । ସହଜସାଧନା ବର୍ଣ୍ଣନା ପ୍ରସଙ୍ଗରେ ସହଜାନନ୍ଦ ଲାଭ ନିମିତ୍ତ ଯୋଗ ସାହାଯ୍ୟରେ ମୈଥୁନ କ୍ରିୟା (Sexo-yogic practices) କିପରି ସମ୍ପାଦିତ କରିବାକୁ ହେବ ତା'ର ବିବରଣୀ ଦିଆଯାଇଛି । ବଜ୍ରଯାନ ଓ କାଳଚକ୍ରଯାନ ମଧ୍ୟରେ ଯଦି କିଛି ପ୍ରଭେଦ ଥାଏ, ତାହା ହେଉଛି ଯୋଗ ଯାହା ବଳରେ ସମୟ ବା କାଳକୁ ଜୟ କରାଯାଇଥାଏ ।

ସାରଳା ସାହିତ୍ୟ ଓ ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ତାନ୍ତ୍ରିକ ବୌଦ୍ଧଧର୍ମର ବିଭିନ୍ନ ବିଭାଗ ସ୍ପଷ୍ଟ ଭାବରେ ପରିଲକ୍ଷିତ ହୋଇଥାଏ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ କାଳଚକ୍ରଯାନର ସମସ୍ତ ବୈଶିଷ୍ଟ୍ୟ ପୂରି ରହିଛି । ଓଡ଼ିଆ ସନ୍ଥ ସାହିତ୍ୟରେ 'କାଳ' ଶବ୍ଦର କିପରି ବହୁଳ ପ୍ରୟୋଗ ଦେଖାଯାଏ ତାହା କେତେକାଂଶରେ 'ଶିଶୁବେଦ' ପ୍ରସଙ୍ଗରେ ଆଲୋଚିତ ହୋଇଛି । ସହଜଯାନ ପ୍ରସଙ୍ଗରେ ଦେଖିବାର କଥା ଯେ ସାରଳା ମହାଭାରତର ଆଦିପର୍ବରେ କବି 'ଖଲ୍ୟକାର' ବୃତ୍ତାନ୍ତରେ 'ସହଜସୁନ୍ଦରୀ'ର ବର୍ଣ୍ଣନା କରିଅଛନ୍ତି । ମନେହୁଏ ଏହି ସହଜସୁନ୍ଦରୀ ସହଜଯାନର 'ନୈରାତ୍ମାଦେବୀ'ଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ସହଜ

ସାଧନାରେ ଚାରିମୁଦ୍ରା ଅନ୍ତର୍ଭୁକ୍ତ 'ମହାମୁଦ୍ରା' ତଥା ତାନ୍ତ୍ରିକମୁଦ୍ରାର ବହୁଳ ବ୍ୟବହାର ମହାଭାରତରେ ଦେଖାଯାଇଥାଏ । ସହଜଯାନ ଗ୍ରନ୍ଥମାନଙ୍କରେ କାୟାକୁ ବୃକ୍ଷ ସହିତ ତୁଳନା କରାଯାଇ, ପଞ୍ଚସ୍କନ୍ଧ ବା ପଞ୍ଚକର୍ମେନ୍ଦ୍ରିୟକୁ ତାହାର ଶାଖା ସ୍ୱରୂପ ତୁଳନା କରାଯାଇଛି । ରୂପ, ବିଜ୍ଞାନ, ବେଦନା, ସଂଜ୍ଞା ଓ ସଂସ୍କାର ପ୍ରଭୃତି ହେଲେ ପଞ୍ଚସ୍କନ୍ଧ ବା ପଞ୍ଚଶାଖା । ଆମର ଓଡ଼ିଶା ଧର୍ମ-ବୃକ୍ଷର ପଞ୍ଚସଖା ହିଁ 'ପଞ୍ଚଶାଖା'-ଏହି 'ପଞ୍ଚସଖା' ପରମ୍ପରା ଅତୀତର ମହାନ ଐତିହ୍ୟ ଉପରେ ପ୍ରତିଷ୍ଠିତ ଯାହା ଆଜି ଆମ୍ଭେମାନେ ପୂରାପୂରି ପାଶୋରି ଦେଇଛୁ ।

ସହଜଯାନ ଓ ବଜ୍ରଯାନ ଗ୍ରନ୍ଥରେ 'ମହାରସ' 'ମହାସୁଖରସମ୍' ଭାବରେ କଥିତ ହୋଇଅଛି । ତାନ୍ତ୍ରିକ ବୌଦ୍ଧଧର୍ମରେ 'ମହାସୁଖ' ପୂର୍ବବର୍ତ୍ତୀ ବୌଦ୍ଧ ଧର୍ମର ନିର୍ବାଣ ଅବସ୍ଥାକୁ ବୁଝାଇଥାଏ । ମହାସୁଖ ତାନ୍ତ୍ରିକ ବୌଦ୍ଧଧର୍ମରେ ବଜ୍ର ସତ୍ତ୍ୱର ପ୍ରତୀକ ଓ ତାହା ପ୍ରଜ୍ଞା ଓ ଉପାୟର ମିଳନସ୍ଥଳୀ । ସାରଳା ମହାଭାରତରେ ମହାରସ ବା ମହାସୁଖରସ, ଯାହା ପରବର୍ତ୍ତୀ ନିର୍ବିକଳ୍ପ ଆନନ୍ଦର ଆଧାରସ୍ଥଳୀ, ତହାର ମଧ ବର୍ଣ୍ଣନା ରହିଛି । ହରିବଂଶପର୍ବରେ କବି ବର୍ଣ୍ଣନା କରିଛନ୍ତି ଯେ ଦିନେ ଅମାବାସ୍ୟାରେ କୋକୁଆଭୟରେ ଦ୍ୱାରକାରେ ସମସ୍ତେ ଭୟପାଇ ଇତସ୍ତତଃ ହେବା ସମୟରେ ଲଉଡ଼ି ମାଡ଼ରେ କଦମ୍ବଗଛରୁ କ୍ଷୀର ବୋହିଲା ଓ ତାହା କାଦମ୍ବରୀ ରସ ବା ମହାରସ ଭାବରେ ଆଖ୍ୟାତ ହେଲା । ସାରଳା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ 'ଶିଶୁବେଦ'ରେ ଏହି ମହାରସର ଉଲ୍ଲେଖ ଓ ବ୍ୟାଖ୍ୟା ମଧ ରହିଛି ।

## ସାରଳା ସାହିତ୍ୟରେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ :

କାଳଚକ୍ରଯାନ, ସହଜଯାନ ଓ ବଜ୍ରଯାନରେ ଏପରିକି ପରବର୍ତ୍ତୀ ନାଥଧର୍ମ ଓ ବୈଷ୍ଣବଧର୍ମରେ ପିଣ୍ଡ-ବ୍ରହ୍ମାଣ୍ଡବାଦ ପ୍ରାଧାନ୍ୟ ଲାଭ କରିଛି । ଶ୍ରୀ କାଳଚକ୍ର ତନ୍ତ୍ରରେ କଥିତ ଯେ କାୟାସିଦ୍ଧରେ ତ୍ରିଭୁବନର ସମସ୍ତ ସିଦ୍ଧି ସାଧକ ଲାଭ କରିପାରେ । ଅନ୍ୟତ୍ର ସରହ ପାଦ ତାଙ୍କର ଦୋହା କୋଷରେ ଏକ ସ୍ଥଳରେ ଲେଖିଛନ୍ତି- 'ଏହି ଶରୀରରେ ସରସ୍ୱତୀ ରହିଛନ୍ତି । ଏହି ଶରୀର ମଧରେ ଗଙ୍ଗା, ସାଗର-ସଙ୍ଗମ ରହିଛି । ଏହି ଶରୀର ମଧରେ ପ୍ରୟାଗ ଓ ବାରାଣାସୀ, ସୂର୍ଯ୍ୟ, ଚନ୍ଦ୍ର, ପୀଠ, ଉପପୀଠ ପ୍ରଭୃତି ରହିଛନ୍ତି । ଦେହ ସଦୃଶ ତୀର୍ଥ ମୁଁ କେଉଁଠି ଦେଖି ନାହିଁ ।"

ସାରଳା ମହାଭାରତରେ ଏହି ପିଣ୍ଡବ୍ରହ୍ମାଣ୍ଡବାଦ ଧାରା ପ୍ରତିଫଳିତ ହୋଇଛି ଓ ପରବର୍ତ୍ତୀ ଓଡ଼ିଆ ସନ୍ଥ ସାହିତ୍ୟରେ ଏହାର ବହୁଳ ପ୍ରୟୋଗ ପ୍ରାୟ ପ୍ରତ୍ୟେକ ଗ୍ରନ୍ଥରେ ରହିଛି । ଆଦି ପର୍ବରେ ପଣ୍ଡୁ ଭୀମଙ୍କୁ ଗୋଡ଼ାଇବା ବେଳେ ଅଗ୍ନି ଦେବତା ପଣ୍ଡୁଙ୍କୁ ଉପଦେଶ ଦେଇଛନ୍ତି ଓ ପିଣ୍ଡ-ବ୍ରହ୍ମାଣ୍ଡତତ୍ତ୍ୱ ବର୍ଣ୍ଣନା କରିଅଛନ୍ତି । ସେ ନିମ୍ନଲିଖିତ ବର୍ଣ୍ଣନାକରି କହିଛନ୍ତି -

ଦେବତା କାହିଁ ହୁଅନ୍ତି ମହାବୀର।<br>
ଶରୀର ସେ ନିଜ ଦେବତା ବସନ୍ତି ଦୋହୋର। ।<br>
ପ୍ରଥମେଣ ଶିର ଯେ ତାଳୁରେ ବସେ ବ୍ରହ୍ମା<br>
କପାଳ ପାଟିରେ ନାରାୟଣ ମହାତ୍ମା ।<br>
ଚନ୍ଦ୍ର ସୂର୍ଯ୍ୟ ଦେବତାୟେ ଅଛନ୍ତି ଚକ୍ଷୁ ବେନି<br>
ନାସାୟେ ବସଇ ହୋ ପବନ ମହାଜ୍ଞାନୀ ।<br>
ଦୁଇଂ ଆଡ଼େଣ ଯେ କର୍ଣ୍ଣସ୍ଥଳ ବେନୀ<br>
ରୁଦ୍ର ଦେବତା ବସଇଂ ଭ୍ରୁକୁଟୀଗଣ ଘେନି ।

(ଆଦିପର୍ବ, ପୃ.-୧୧୯)

ସେ ପୁଣି ବର୍ଣ୍ଣନା କରିଛନ୍ତି ଯେ ବେନି ଶ୍ରବଣରେ ଚୈତନ୍ୟରାଜା, ଗର୍ଭରେ ନିରଞ୍ଜନ, ଜିହ୍ୱାତଳରେ ଇନ୍ଦ୍ର, ଗଣ୍ଡ ସ୍ଥଳରେ ୩୫ ଦେବତା, କଣ୍ଠରେ ଭୂତ, ଭୂତାଞ୍ଜନ, ହୃଦୟରେ ଅପ୍ରମିତ ନକ୍ଷତ୍ର ଓ ଦ୍ୱାଦଶ ବିଶ୍ୱଦେବା, କରସ୍ଥଳୀରେ ଚତୁର୍ଦ୍ଦଶ ବିଦ୍ୟା ଓ ବେନି ଭୁଜରେ ୨୭ ଦେବତା ରହିଅଛନ୍ତି । ପୁନଶ୍ଚ -

ନାଭିଠାରୁଂ ଉପରକୁ ତାଳୁଯାକେ<br>
ତେତିଶ କୋଟି ଭୋଗ୍ୟ କରନ୍ତି ଦେବଲୋକେ ।<br>
ପିତୃ ଦଇବତ ପୁରୁଷ ବସନ୍ତି ନାଭିମଣ୍ଡଳ କଡ଼ି<br>
ସ୍ୱଚ୍ଛ ଉଦେକୟେ ଅନ୍ତେ ହେଂ ଯାନ୍ତି ଛାଡ଼ି ।<br>
ତିନି ତିହୁଡ଼ି ଯେ ତଳକୁ ବହଇଂ ପାଣି ।<br>
ତୁ ଯେ ବୋଇଲୁଂ ମୁଂ ଦେବତାଙ୍କୁ ଦିଅଇ ଅନ୍ନ<br>
ଶରୀରେଣ ଥାଆନ୍ତି ସକଳ ଦେବତାମାନ ।

(ଆଦିପବ, ପୃ.-୧୧୨)

କ୍ରମାନ୍ୱୟରେ କବି ଦେହରେ ବିଭିନ୍ନ ଋତୁ, ନଦନଦୀର ବର୍ଣ୍ଣନା କରିଛନ୍ତି ଓ ପିଣ୍ଡବ୍ରହ୍ମାଣ୍ଡବାଦର ଏକ ସ୍ପଷ୍ଟ ଚିତ୍ର ପ୍ରଦାନ କରିଛନ୍ତି । ସହଜଯାନ, ବଜ୍ରଯାନ, କାଳଚକ୍ରଯାନ ତଥା ନାଥଧର୍ମରେ ପ୍ରାଧାନ୍ୟ ଲାଭ କରିଥିବା ଏହି ବାଦର ପରମ୍ପରା ଯେ ଓଡ଼ିଶାର ଧାର୍ମିକ ସଂସ୍କୃତିର ନିଜସ୍ୱ କହିବା ବାହୁଲ୍ୟ ହେବ । କବି ଲେଖନୀ ତାନ୍ତ୍ରିକ ବୌଦ୍ଧଧର୍ମର ନିର୍ବାଣୋନ୍ମୁଖ ଦୀପଶିଖାର ଆଲୋକକୁ ଧରି ରଖିବାକୁ ଯେ ଚେଷ୍ଟା କରିଛି ତାହା ମହାଭାରତର ବିଭିନ୍ନ ବର୍ଣ୍ଣନା ପ୍ରତିପାଦନ କରିଥାଏ ।

'ନାୟିକା' ସାହାଯ୍ୟରେ ସହଜ ସାଧନା ସହଜଯାନର ଏକ ପ୍ରଧାନ ବୈଶିଷ୍ଟ୍ୟ । ପ୍ରାଣାୟାମ ସାହାଯ୍ୟରେ ନିଃଶ୍ୱାସ ପ୍ରଶ୍ୱାସ ନିୟନ୍ତ୍ରଣପୂର୍ବକ ବୀର୍ଯ୍ୟସ୍ତମ୍ଭନ ଶକ୍ତିକୁ ଊର୍ଦ୍ଧ୍ୱଦେଶକୁ ପରିଚାଳିତ କରି ମହାସୁଖ ଜନିତ ନିର୍ବିକଳ୍ପ ଆନନ୍ଦ ଲାଭ କରିବା ବର୍ଣ୍ଣିତ ଅଛି ଓ ତାହା ହେଉଛି ସହଜିୟାମାନଙ୍କର ଧର୍ମର ଯଥାର୍ଥ ଲକ୍ଷଣ ।

ଚଣ୍ଡୀଦାସଙ୍କର ପଦାବଳୀର ବିଭିନ୍ନ ପଦ ତଥା ସ୍ୱରୂପଙ୍କର କଡ଼ଚାସମୂହରେ ଏହି ଭାବଧାରା ପରିଦୃଷ୍ଟ ହୋଇଥାଏ । ସାରଳା ମହାଭାରତରେ ଏହି ବିଷୟ ବିଭିନ୍ନ ପ୍ରସଙ୍ଗରେ ବର୍ଣ୍ଣିତ ହୋଇଛି । ବନପର୍ବରେ କାଳଞ୍ଜରାକ୍ଷସୀ ସହିତ ଭୀମର ଶୃଙ୍ଗାର ପୂର୍ବୋକ୍ତ ଉକ୍ତିକୁ କିପରି ପ୍ରତିଫଳିତ କରାଇଛି ତାହା ଜଣା ଯାଇଥାଏ -

ଶୃଙ୍ଗାର ଇଚ୍ଛିଲା ବୀର କାଳର ତୁଲେ
ସୂର୍ଯ୍ୟବେଳେ କାମନେଇଂ ଦୃଢ଼ କରି ଥକାଇଲେ
ପବନ ଉଜାଣିଲା ପାଟଣା ଶ୍ରୀହଟେ
ଲୁଚାଇଲା ନେଇଂ ଶିଶୁମୁନାର ଉଲଟେ ।
ଆତଙ୍ଗରେ କୋଠି ବୁଡ଼ାଇଲା ଇନ୍ଦୁ
ବ୍ରହ୍ମଭେଦି ରହିଂ ନ ଚଳିଲା ବିନ୍ଦୁ ।
ଉଜାଣି ପବନ ଶୃଙ୍ଗାର ଅବିଶ୍ରମ
ରତି ଶାସ୍ତ୍ରେ ଜିଣା ପାଣ୍ଡବବୀର ଭୀମ ।"

(ବନ,ପୃ.-୪୪୫)

ଏହି ପ୍ରକାର ଯୌଗିକ ପ୍ରକ୍ରିୟାରେ ଭୀମ କାଳିମେଘା ପର୍ବତରେ କାଳଞ୍ଜ ରାକ୍ଷସୀ ସହିତ ଦୁଇଦିନ ଦୁଇରାତି ଶୃଙ୍ଗାରରେ ଲିପ୍ତ ହେବା କଥା ଓ ପରିଶେଷରେ ରାକ୍ଷସୀର ମୃତ୍ୟୁ ଘଟିବା ବିଶଦ ରୂପେ ବର୍ଣ୍ଣିତ । ବନ ତଥା ବିରାଟ ପର୍ବରେ ରାଧାକୃଷ୍ଣ କୃଷ୍ଣଚନ୍ଦ୍ରାବଳୀ ଓ ଗୋପୀମାନଙ୍କର ପ୍ରେମ ସମ୍ବନ୍ଧରେ ପ୍ରେମର ଯେଉଁ ସ୍ୱରୂପ ପ୍ରତିଫଳିତ ହୋଇଛି ତହିଁରେ ଯେ ସହଜିୟା ବିଭାବ ପ୍ରକଟିତ କହିବା ବାହୁଲ୍ୟ ମାତ୍ର ।

## ଶକ୍ତି ଉପାସନା ଓ ଓଡ଼ିଶାରେ ଶାକ୍ତଧର୍ମ :

ଭାରତୀୟ ସଂସ୍କୃତିରେ ଶାକ୍ତଧର୍ମ ଏକ ପ୍ରାଚୀନତମ ଧାର୍ମିକ ମତବାଦ । ଏହି ଧର୍ମର ପ୍ରାଚୀନତା ଓ ସଙ୍କେତ ମହେଞ୍ଜୋଦାରୋ ଓ ହରପ୍ପାର କେତେକ ନାରୀ ମୂର୍ତ୍ତିରେ ଦେଖିବାକୁ ମିଳିଥାଏ । ମାତୃକା ପୂଜା କେବଳ ଭାରତରେ ନୁହେଁ, ପ୍ରାଚୀନକାଳରେ ଭାରତ ବାହାରେ ଶିରିଆ, ମଧ୍ୟଏସିଆ ଓ ୟୁରୋପର ବିଭିନ୍ନ ସ୍ଥଳରେ ପ୍ରଚଳିତ ଥିଲା । ପ୍ରାଗ୍ ଐତିହାସିକ ଯୁଗର ଭଗ ଓ ଶିଶ୍ନ ପୂଜାର କ୍ରମ ଆଜି ପର୍ଯ୍ୟନ୍ତ ବିଭିନ୍ନ ଦେଶର ଲୋକ ସଂସ୍କୃତିରେ ରହିଅଛି ।

ଓ.ଏ. ୱାଲ୍ ତାଙ୍କର 'ସେକ୍ସ ଓ ସେକ୍ସ ଓରସିପ୍' ଗ୍ରନ୍ଥରେ ଲେଖିଛନ୍ତି ଜାପାନର ପୂର୍ବାଞ୍ଚଳରେ ୟେଦୋ ନାମକ ପ୍ରଦେଶରେ ଏକ ପାହାଡ଼ର ଖୋଲରେ ପ୍ରସ୍ତର ନିର୍ମିତ ଏକ ବିରାଟ ଭଗ ବା ଯୋନି ମୂର୍ତ୍ତି ରହିଛି । ଶହ ଶହ ବର୍ଷ ଧରି ବହୁ ତୀର୍ଥଯାତ୍ରୀ ଏହି ସ୍ଥାନକୁ ଆସି ଉକ୍ତ ମୂର୍ତ୍ତି ପୂଜା କରିଥାଆନ୍ତି । ଭାରତର ବାମାଚାରୀ ଶାକ୍ତ ସମ୍ପ୍ରଦାୟ ମଧ୍ୟରେ ଏହି ପ୍ରକାର ପୂଜାର ଧାରା ରହିଛି । ସିରିଆର ନେଜାୟାର ଧର୍ମସମ୍ପ୍ରଦାୟ ମଧ୍ୟରେ ପରୋତ୍ସବ ନାମକ ଉତ୍ସବର ପ୍ରତିପାଳନରେ ଯୋନି ପୂଜା ଅତି ଆଡ଼ମ୍ବର ସହକାରେ ପ୍ରତିପାଳିତ ହୋଇଥାଏ ।

ଶାକ୍ତ ଧର୍ମର ଦେବୀ ମାୟାରୂପିଣୀ ମହାଶକ୍ତି ଓ ସେହି ମାୟାବଳରେ ସେ ବିରାଟ ବିଶ୍ୱର ସୃଷ୍ଟି କରିଅଛନ୍ତି । ସେ ମହାମାୟା ଭାବରେ କଥିତା । ସେ ପୁଣି ଅବିଦ୍ୟା ଓ ପ୍ରକୃତି ସ୍ୱରୂପିଣୀ । ସୃଷ୍ଟି ପୂର୍ବରୁ ଶକ୍ତି 'ଆଦ୍ୟାଶକ୍ତି' ଭାବରେ କଥିତ ହୋଇଥାନ୍ତି । ବିଭିନ୍ନ ତନ୍ତ୍ର ଓ ପୁରାଣରେ ସେ ବ୍ରହ୍ମମୟୀ ବୋଲି ଉକ୍ତ ।

ମହାଦେବୀ ସ୍ୱରୂପିଣୀ ଶକ୍ତି - ସରସ୍ୱତୀ, ଲକ୍ଷ୍ମୀ, ଗାୟତ୍ରୀ, ଦୁର୍ଗା, ତ୍ରିପୁରା ସୁନ୍ଦରୀ, ଅନ୍ନପୂର୍ଣ୍ଣା ଓ ଅନ୍ୟାନ୍ୟ ବହୁଦେବୀ ତାଙ୍କ ଶକ୍ତିରୁ ଜାତ ହୋଇଛନ୍ତି । ଅର୍ଥାତ୍ ସେ ଅବତାରୀ ଓ ଅନ୍ୟାନ୍ୟ ଦେବୀଗଣ ଅବତାର ଅଟନ୍ତି । ଏକ ସମୟରେ ଦକ୍ଷଯଜ୍ଞ ପୂର୍ବରୁ ଦେବୀ ନିଜର ଦଶଟି ବିଭିନ୍ନ ରୂପ ଶିବଙ୍କ ସମ୍ମୁଖରେ ପ୍ରକାଶ କରିଥିଲେ ଓ ତାହା ଦଶ ଅବତାରର ପ୍ରତୀକ ମାତ୍ର । ଏହି ଦଶ ମହାବିଦ୍ୟା ହେଉଛନ୍ତି କାଳୀ, ବଗଳା, ଛିନ୍ନମସ୍ତା, ଭୁବନେଶ୍ୱରୀ, ମାତଙ୍ଗିନୀ, ଷୋଡ଼ଶୀ, ଧୂମାବତୀ, ତ୍ରିପୁରାସୁନ୍ଦରୀ, ତାରା ଓ ଭୈରବୀ ।

ମହାଭାରତ ଓ ଅନ୍ୟାନ୍ୟ ପୁରାଣମାନଙ୍କରେ ଦକ୍ଷଯଜ୍ଞ ପ୍ରସଙ୍ଗରେ ପତିନିନ୍ଦା ଶ୍ରବଣରେ ଶିବପତ୍ନୀ ସତୀଙ୍କର ଦେହତ୍ୟାଗ କରିବା ବିଷୟ ବର୍ଣ୍ଣିତ ହୋଇଛି । ସତୀଙ୍କର ମୃତ୍ୟୁରେ ଦେବତାମାନେ ଶୋକାତୁର ହୋଇ ସତୀଙ୍କର ମୃତଦେହ ସ୍କନ୍ଧରେ ଧାରଣକରି ପୃଥିବୀ ପରିକ୍ରମା କଲେ ଓ ସେହି ସମୟରେ ବିଷ୍ଣୁ ଚକ୍ରରେ ସତୀଙ୍କର ଶରୀର ଖଣ୍ଡ ବିଖଣ୍ଡିତ ହୋଇ ବିଭିନ୍ନ ସ୍ଥଳରେ ନିପତିତ ହେଲା । ସତୀ ଅଙ୍ଗର ବିଭିନ୍ନ ୫୧ଟି ଅଂଶ ଯେଉଁଠି ପଡ଼ିଲା ସେଠାରେ ଗୋଟିଏ ଗୋଟିଏ ଶାକ୍ତପୀଠ ବା ଶକ୍ତି ଉପାସନାର କେନ୍ଦ୍ର ଗଢ଼ିଉଠିଲା । 'ଶାକ୍ତପୀଠ' ନାମକ ଗ୍ରନ୍ଥରେ ଏହି ୫୧ଟି ଶାକ୍ତପୀଠର ବର୍ଣ୍ଣନା ରହିଛି । ଯେଉଁଠାରେ ସତୀ ଅଙ୍ଗର ଅଂଶ ପଡ଼ିଲା ସେଠାରେ ଉକ୍ତ ବିଛିନ୍ନ ଅଙ୍ଗର ସୁରକ୍ଷା ନିମିତ୍ତ ଶିବ ଭୈରବ ରୂପେ ଜଗିରହିଲେ ଓ ସତୀଙ୍କର ସାନ୍ନିଧ୍ୟ ଲାଭ କଲେ । ଏହି କିମ୍ବଦନ୍ତୀ ମୂଳରେ ଶୈବ ଓ ଶାକ୍ତ ଧର୍ମର ଘନିଷ୍ଠ ସମ୍ବନ୍ଧ ସୂଚିତ ହୋଇଥାଏ ।

'ପୀଠ ନିର୍ଣ୍ଣୟ' ଗ୍ରନ୍ଥରେ ଓଡ଼ିଶାରେ ବିଶିଷ୍ଟ ଶାକ୍ତପୀଠ ସମୂହର ପ୍ରମାଣ ମିଳିଥାଏ । 'ପୀଠ ନିର୍ଣ୍ଣୟ' ଗ୍ରନ୍ଥରେ ଲେଖାଯାଇଛି ଯେ ସତୀଙ୍କର ନାଭି ଯାଜପୁରର ବିରଜା କ୍ଷେତ୍ରରେ ପଡ଼ିଥିଲା । ସେଠାରେ ଭୈରବ ହେଉଛନ୍ତି 'ଜୟା' ଓ ଦେବୀ ହେଉଛନ୍ତି 'ବିଜୟା' ।

ବିଜୟା ସା ମହାଦେବୀ ଜୟନାମାତୁ ଭୈରବାଃ

ବିଜୟାଚୋତ୍କଳେ ଖ୍ୟାତା ନାଭିର୍ମେ ଜୟ ଭୈରବଃ ।"

ପାଠାନ୍ତରରେ ରହିଛି -

"ଉତ୍କଳେ ନାଭିଦେଶଞ୍ଚ ନିରଜାକ୍ଷେତ୍ରମୁଚ୍ୟତେ

ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ ॥"

'ଜ୍ଞାନାର୍ଣ୍ଣବ' ତନ୍ତ୍ର ଗ୍ରନ୍ଥରେ ଏକାମ୍ର, ବିରଜା, ମହେନ୍ଦ୍ର ପ୍ରଭୃତି ଶାକ୍ତପୀଠ ଭାବରେ ସ୍ଥାନଲାଭ କରିଛି । ସର୍ବୋପରି ତାନ୍ତ୍ରିକ ବୌଦ୍ଧଯୁଗରୁ ଓଡ଼ିଶା ହୋଇଆସିଛି ତନ୍ତ୍ରଚର୍ଚ୍ଚାର ପ୍ରଧାନ କେନ୍ଦ୍ରସ୍ଥଳୀ । ସେଥିପାଇଁ ଉଭୟ ବୌଦ୍ଧ ଓ ହିନ୍ଦୁ ତନ୍ତ୍ର ଗ୍ରନ୍ଥମାନଙ୍କରେ ଚାରିଗୋଟି ତାନ୍ତ୍ରିକ ବୌଦ୍ଧ ଧର୍ମ ଓ ଶକ୍ତି ସାଧନାର ପୀଠ ଭାବରେ 'ଓଡ଼୍ଡ଼ୀୟାନ' ପୀଠ ପ୍ରସିଦ୍ଧି ଲାଭ କରିଛି । ପରେ ଏହି ପୀଠଗୁଡ଼ିକ ଯୋଗ ସାଧନାରେ ଶରୀରର ବିଭିନ୍ନ ସ୍ଥଳକୁ ସୂଚିତ କରିଥିଲା, ଯେପରି -

ମଳାଧାରେ କାମରୂପଂ ହୃଦି ଯାଳନ୍ଧରଂ ତଥା

ଲଲାଟେ ପୂର୍ଣ୍ଣ ଗିର୍ଯ୍ୟାଂସ ଓଡ଼୍ଡ଼ୀୟାନଂ ତଦୂର୍ଦ୍ଧକେ ।

(ରୁଦ୍ରଯାମଳ)

ସଂସ୍କୃତ ମହାଭାରତରେ ଶାକ୍ତପୀଠ ବିରଜା କ୍ଷେତ୍ରର ମାହାତ୍ମ୍ୟ ପ୍ରସଙ୍ଗରେ କୁହାଯାଇଛି -

ତତୋ ବୈତରଣୀଂ ଗଚ୍ଛେତ୍ ସର୍ବପାପପ୍ରମୋଚନୀମ୍

ବିରଜାଂ ତୀର୍ଥମାସାଦ୍ୟ ବିରାଜତି ଯଥା ଶଶୀ ।

ଶାକ୍ତଧର୍ମର ଅନ୍ୟାନ୍ୟ ଉପପୀଠ ମଧ୍ୟରେ କଟକେଶ୍ୱରୀ ଅର୍ଚ୍ଚିତ କଟକ, ଜ୍ଞାନାର୍ଣ୍ଣବ, ବୃହନ୍ନୀଳା ଓ ପ୍ରାଣତୋଷିଣୀ ତନ୍ତ୍ରରେ ମହେନ୍ଦ୍ରପୁର ଓ ବାଲେଶ୍ୱରର ଜଳେଶ୍ୱର ପ୍ରଭୃତି ଉଲ୍ଲେଖଯୋଗ୍ୟ । ବୌଦ୍ଧଯୁଗକୁ ଓଡ଼ିଶାରେ ତନ୍ତ୍ରର ଚର୍ଚ୍ଚା ପ୍ରବଳ ହୋଇଥିଲା ଓ ତାନ୍ତ୍ରିକ ବୌଦ୍ଧଧର୍ମ ଚାରିପୀଠ ମଧ୍ୟରୁ ଉଡ଼୍ଡ଼ୀୟାନ ବା ଓଡ଼ିଶାରେ ବିଶେଷଭାବରେ ବ୍ୟାପ୍ତି ଲାଭ କରିଥିଲା । ବହୁ ଆଲୋଚକ ତାନ୍ତ୍ରିକତାର ଉଦ୍ଭବ ସ୍ଥଳ ଯେ ଓଡ଼ିଶା ଏକଥା ସ୍ୱୀକାର କରିଅଛନ୍ତି । ଖ୍ରୀ: ୭-୮ ଶତକର ପୂର୍ବରୁ ପଶ୍ଚିମ ଓଡ଼ିଶାରେ ରାଜତ୍ୱ କରୁଥିବା ସୁଲକି ରାଜାମାନେ ନିଜକୁ 'ସ୍ତମ୍ଭେଶ୍ୱରୀପାଦଭକ୍ତ' ବୋଲି କହୁଅଛନ୍ତି । ଏଥିରୁ ଅନୁମିତ ହୁଏ ଯେ ଖ୍ରୀ: ୫ମ ଶତକରେ ପଶ୍ଚିମ ଓଡ଼ିଶାରେ ଶାକ୍ତଧର୍ମ ପ୍ରାଧାନ୍ୟ ଲାଭ କରିଥିଲା ଓ ରାଣୀପୁର ଝରିଆଲର ୬୪ ଯୋଗିନୀ ମନ୍ଦିର ଏହାର ପ୍ରମାଣ ମଧ୍ୟ ଦେଇଥାଏ । ଖ୍ରୀ: ୭-୮ ଶତକରେ ଓଡ଼ିଶାରେ ରାଜତ୍ୱ କରୁଥିବା ଭୌମକର ମାନଙ୍କର ରାଜତ୍ୱରେ ଶୈବ-ଶାକ୍ତଧର୍ମ ତଥା ତାନ୍ତ୍ରିକ ବୌଦ୍ଧ ଧର୍ମ ବିଶେଷ ପ୍ରସାରଲାଭ କରିଥିଲା ଓ ବିରଜା ପୀଠ ସେମାନଙ୍କର ରାଜଧାନୀ ଥିଲା, ଯେଉଁଠାରେ ଶୈବଧର୍ମ ସହିତ ଶାକ୍ତଧର୍ମର ସମାନ୍ତରାଳ ବିକାଶ ଘଟିଥିବାର ଜଣାଯାଏ ।

ତିବ୍ବତୀୟ ଗ୍ରନ୍ଥ 'ପାଗ୍-ସାମ୍-ଜୋନ୍-ଜାନ୍' ଅନୁସାରେ ଉଡ଼୍ଡ଼ୀୟାନରେ ତାନ୍ତ୍ରିକ ବୌଦ୍ଧଧର୍ମ ପ୍ରଥମେ ସୃଷ୍ଟି ଲାଭ କରିଥିଲା । ଲାମା ତାରାନାଥଙ୍କର ୮୪ ସିଦ୍ଧାଚାର୍ଯ୍ୟଙ୍କର ବିବରଣୀ ଗ୍ରନ୍ଥରେ (Mystic Tales of Lama Taranath) ଉଡ଼୍ଡ଼ୀୟାନ ଦେଶର ବର୍ଣ୍ଣନା ରହିଛି । ଉକ୍ତ ବିବରଣୀରେ ରହିଛି ଯେ ସେ ଦେଶରେ ୫୦୦,୦୦୦ ନଗର ଅଛି ଓ ତାହା ଦୁଇଟି ରାଜ୍ୟରେ ବିଭକ୍ତ ଥିଲା । ଗୋଟିଏ ରାଜ୍ୟ ଥିଲା ସମ୍ଭଲ ଯେଉଁଠି ଇନ୍ଦ୍ରଭୂତି ନାମରେ ରାଜା ରାଜତ୍ୱ କରୁଥିଲେ ଓ ଅନ୍ୟଟି ଥିଲା ଲଙ୍କାପୁରୀ ଓ ତାହାର ରାଜା ଥିଲେ ଜଳେନ୍ଦ୍ର । ଏହି ଜଳେନ୍ଦ୍ର ସମ୍ଭଲ ରାଜା ଇନ୍ଦ୍ରଭୂତିଙ୍କର ଭଉଣୀ ଲକ୍ଷ୍ମୀଙ୍କରାଙ୍କୁ ବିବାହ କରିଥିଲେ । ଇନ୍ଦ୍ରିଭୂତିଙ୍କ ଧର୍ମ ଗ୍ରହଣ କରି ଲକ୍ଷ୍ମୀଙ୍କରା ପରେ ସିଦ୍ଧ ଭାବରେ ପରିଚିତ ହୋଇଥିଲେ । ସମ୍ଭଲ ଦେଶ ଓଡ଼ିଶାର ସମ୍ବଲପୁର ଓ ଲଙ୍କାପୁରୀ ସୁବର୍ଣ୍ଣପୁର ବା ସୋନପୁର ବୋଲି ଅନୁମାନ କରାଯାଇଛି । ଏହି ପୀଠରେ ହିଁ ତାନ୍ତ୍ରିକ ସିଦ୍ଧାଚାର୍ଯ୍ୟ ଲୁଇପାଦ, ଶବରୀପାଦ ଓ କାହ୍ନୁପାଦ ପ୍ରଭୃତିଙ୍କର ଆବିର୍ଭାବ ଘଟିଥିଲା । ରତ୍ନଗିରି, ଲଳିତଗିରି ପ୍ରଭୃତି ମହାଯାନ ବୌଦ୍ଧ ଧର୍ମର ଗୌରବମୟ ସ୍ତୂପ ଆଦି ତାହାର ପ୍ରମାଣ ଦେଇଥାଏ । ସହଜଯାନ, ବଜ୍ରଯାନ ବୌଦ୍ଧଧର୍ମ ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ଉଡ଼୍ୀୟାନ ଦେଶ ତାନ୍ତ୍ରିକ ପୀଠ ତଥା ଶାକ୍ତ ପୀଠ ଓଡ଼ିଶା ବ୍ୟତୀତ ଅନ୍ୟ କୌଣସି ଅଞ୍ଚଳ ନୁହେଁ । ତାନ୍ତ୍ରିକ ବୌଦ୍ଧଧର୍ମ ପ୍ରଚାର ଉଡ଼୍ୀୟାନରୁ ଜନ୍ମଲାଭ କରି ପରେ ଅନ୍ୟ ପୀଠ ଯଥା ସ୍ୱର୍ଣ୍ଣଗିରି, ଜଳନ୍ଧର, ଶ୍ରୀହଟ୍ଟ ଓ କାମାକ୍ଷାରେ ବିସ୍ତାର ଲାଭ କରିଥିଲା ଓ ପରେ ଶାକ୍ତ ଧର୍ମଗ୍ରନ୍ଥ ତଥା ଅନ୍ୟାନ୍ୟ ତନ୍ତ୍ର ଗ୍ରନ୍ଥରେ ଏହି ୪ଟି ବା ୫ଟି ପୀଠ ଯଥାଯଥ ଭାବରେ ରହିଗଲା ।

ବୈଦିକ କର୍ମ ବ୍ୟତୀତ ଅନ୍ୟ ଯେ କୌଣସି ମତ ତନ୍ତ୍ରର ଅନ୍ତର୍ଭୁକ୍ତ ବୋଲି ଅନେକ ଲୋକ ବିଶ୍ୱାସ କରନ୍ତି । କିନ୍ତୁ ତନ୍ତ୍ର ବୋଇଲେ ତାହା ଯାଥାର୍ଥରେ ଶକ୍ତିପୂଜା ବା ଉପାସନାକୁ ବୁଝାଇଥାଏ । ତନ୍ତ୍ରରେ ନାରୀଶକ୍ତି ସହିତ ପୁରୁଷ ଶକ୍ତିର ମିଳନରେ ପୂଜାବିଧିର ନିର୍ଦ୍ଦେଶ ରହିଛି । ତେଣୁ ତନ୍ତ୍ରର ସାରକଥା ହେଲା ନାରୀ ଓ ପୁରୁଷ ଶକ୍ତିର ପୂର୍ଣ୍ଣ ମିଳନ ।

ଅନେକ ଆଲୋଚକ କହନ୍ତି ଯେ ତନ୍ତ୍ରର ଜନ୍ମ ଭାରତରେ ନୁହେଁ । ଏହା ଭାରତ ବାହାରୁ ଆସିଛି । ବିଶେଷ ଭାବରେ ଶକ ରାଜାମାନଙ୍କର ମାଘୀ ଧର୍ମଯାଜକମାନେ ହେଉଛନ୍ତି ତନ୍ତ୍ରଶାସ୍ତ୍ରର ସ୍ରଷ୍ଟା । 'ନିଶ୍ୱାସତ୍ତ୍ୱେ ସଂହିତା' ନାମକ ପ୍ରାଚୀନ ସଂହିତା ଗ୍ରନ୍ଥରେ ତାନ୍ତ୍ରିକ ବିଧି ଯେ ଏକ ନୂତନ ପଦ୍ଧତି ସେଥିପ୍ରତି ଆଶ୍ଚର୍ଯ୍ୟ ଭାବ ପ୍ରକାଶ ପାଇଛି, କାରଣ ତାହା ବୈଦିକ ବିଧିଠାରୁ ସମ୍ପୂର୍ଣ୍ଣ ନୂତନ । ଭାରତ ବାହାରୁ ଏହି ତାନ୍ତ୍ରିକ ବିଧି ଭାରତକୁ ଆସି କ୍ରମେ ତାହା ୪ଟି ପୀଠରେ ଲୋକପ୍ରିୟତା ଲାଭ କଲା । ବୌଦ୍ଧ ଧର୍ମରେ ତନ୍ତ୍ରର

ସ୍ରଷ୍ଟା ଅସଙ୍ଗ ଗାନ୍ଧାର ଅଞ୍ଚଳର ଲୋକ ଥିଲେ ଓ ଏହା ଆଶ୍ଚର୍ଯ୍ୟ ନୁହେଁ ଯେ ସେ ତନ୍ତ୍ରଶାସ୍ତ୍ରର ମୌଳିକ ପ୍ରେରଣା ଶକ ଧର୍ମଯାଜକମାନଙ୍କ ଠାରୁ ଲାଭ କରିଥିବେ । ଗୁହ୍ୟ ସମାଜ' ତନ୍ତ୍ର ଗ୍ରନ୍ଥରେ ଶକ୍ତି ଉପାସନାର ମୌଳିକ ଉତ୍ସ ଲକ୍ଷ୍ୟ କରାଯାଇଥାଏ । ଯେଉଁଥିରେ ପଞ୍ଚଧ୍ୟାନୀ ବୁଦ୍ଧଙ୍କର ପ୍ରତ୍ୟେକର ଗୋଟିଏ ଗୋଟିଏ ଶକ୍ତି ନିର୍ଦ୍ଦିଷ୍ଟ ହେଲା ।

ଏସବୁ କହିବା ଉଦ୍ଦେଶ୍ୟ ହେଉଛି ଯେ ତନ୍ତ୍ର ଭାରତୀୟ ସଂସ୍କୃତିର ନିଜସ୍ୱ ହେଉ ଅଥବା ତାହା ଭାରତ ବାହାରୁ ଆସିଥାଉ ଏହି ବିଦ୍ୟାର ଚର୍ଚ୍ଚା ଓ ପ୍ରସାର ଓଡ଼ିଶା ଓ ଓଡ଼୍ରୀୟାନ ପୀଠରୁ ଘଟିଥିଲା । ବୌଦ୍ଧତନ୍ତ୍ର ବା ହିନ୍ଦୁତନ୍ତ୍ର ଯାହାହେଉ ପଛେ ତାହାର ମୂଳରେ ରହିଛି ଶକ୍ତି ଉପାସନା ।

### ଓଡ଼ିଶାର ଶାକ୍ତପୀଠ :

'ସାଧନମାଳା' ତନ୍ତ୍ର ଗ୍ରନ୍ଥରେ ବୌଦ୍ଧ ଧର୍ମର ଚାରିଗୋଟି ବଜ୍ରଯାନ ପୀଠ ହେଉଛି ଓଡ଼୍ରୀୟାନ, ଶ୍ରୀହଟ୍ଟ, ପୂର୍ଣ୍ଣଗିରି ଓ କାମାଖ୍ୟା । କିନ୍ତୁ ଶାକ୍ତ ଧର୍ମଗ୍ରନ୍ଥ କାଳିକା ପୁରାଣ ଅନୁସାରେ ପାଞ୍ଚୋଟି ତାନ୍ତ୍ରିକ ପୀଠ ଯଥା ଦେବୀକୂଟ, ଉଡ଼୍ରୀୟାନ, କାମରୂପ, ଜଳନ୍ଧର ଓ ପୂର୍ଣ୍ଣଗିରି । ଉଡ଼୍ରୀୟାନରେ କାତ୍ୟାୟିନୀ, କାମାଖ୍ୟାରେ କାମରୂପିଣୀ, ପୂର୍ଣ୍ଣଗିରିରେ ପୂର୍ଣ୍ଣେଶ୍ୱରୀ, ଜଳନ୍ଧରରେ ଚଣ୍ଡୀ ଓ ଦେବୀକୂଟରେ ମହାଦେବୀ ହେଉଛନ୍ତି ଅଧିଷ୍ଠାତ୍ରୀ ଦେବୀ । କାଳିକା ପୁରାଣରେ ବେତାଳ ଓ ଭୈରବଙ୍କର ପ୍ରଶ୍ନରେ ଦେବୀ କେଉଁଠାରେ ପୂଜା ପାଇବେ, ଏଥିରେ ଶିବ ଉତ୍ତର ଦେଇଥିଲେ ଯେ ବାରାଣାସୀ ଓ ପୁରୁଷୋତ୍ତମ କ୍ଷେତ୍ରର ସନ୍ନିଧରେ ଦେବୀପୂଜା ଫଳଦାୟିନୀ ହୋଇଥାଏ ।

ବାରାଣସ୍ୟାଂ ସଦାପୂଜା ସମ୍ପୂର୍ଣ୍ଣ ଫଳଦାୟିନୀ
ତତ୍ସ୍ଥାନ ଦ୍ୱିଗୁଣା ପ୍ରୋକ୍ତା ପୁରୁଷୋତ୍ତମସନ୍ନିଧୌ ।
(କା: ପୁ:, ଅ: ୫୮-୩୪)

ଓଡ଼ିଶାର ଦୁଇଗୋଟି ଶାକ୍ତପୀଠ ତନ୍ତ୍ରଗ୍ରନ୍ଥରେ ପ୍ରାଧାନ୍ୟ ଲାଭ କରିଛି, ତାହା ହେଉଛି ପୁରୁଷୋତ୍ତମ ବା ଶ୍ରୀକ୍ଷେତ୍ରର ବିମଳା ଓ ଯାଜପୁରର ବିରଜା ଦେବୀ । ଶ୍ରୀଯୁକ୍ତ ଦୀନେଶଚନ୍ଦ୍ର ସରକାରଙ୍କର ଶାକ୍ତପୀଠ ସମ୍ବନ୍ଧୀୟ ଆଲୋଚନାରେ (The Sakta Pithas, J.A.S.B., 1948) ଓଡ଼ିଶାର ଶାକ୍ତପୀଠମାନଙ୍କ ସମ୍ବନ୍ଧରେ ବହୁ ସୂଚନା ରହିଛି । 'ଓଡ଼୍ରୀୟାନେଚ ଭୈରବେ' (ବୃହନ୍ନୀଳାତନ୍ତ୍ର), 'ନାରୀକେଳଞ୍ଚ ବିରଜା ଓଡ଼୍ରୀୟାନଂ ମାହେଶ୍ୱରୀ' (କୁବ୍ଜିକା ତନ୍ତ୍ର) ପୁଣି କାମାର୍ଣ୍ଣବ ତନ୍ତ୍ରରେ ଆଠଗୋଟି ଶାକ୍ତପୀଠ ମଧ୍ୟରେ ଏକାମ୍ର, ବିରଜା, ଉଡ଼୍ରୀଶା ପ୍ରଭୃତି ପୀଠର ବର୍ଣ୍ଣନା ରହିଛି । ବୃହନ୍ନୀଳା ତନ୍ତ୍ରରେ ବର୍ଣ୍ଣନା ରହିଛି ଯେ ଶକ୍ତିଙ୍କର ଦକ୍ଷଜାନୁ ପଡ଼ିଥିଲା ଓଡ଼୍ରୀଶରେ, ଦକ୍ଷିଣ ପାର୍ଶ୍ୱ ମହେନ୍ଦ୍ରରେ, ହୃଦାଦି ଦକ୍ଷକର ଓଡ଼୍ରୀୟାନରେ ପଡ଼ିଥିଲା । ବଂଶୀଦାସଙ୍କର ମନସାମଙ୍ଗଳରେ ବର୍ଣ୍ଣିତ ଯେ ସତୀଙ୍କର ନାଭି ବିରଜା କ୍ଷେତ୍ରରେ ପଡ଼ି ତାହାର ନାମ ନାଭିଗୟା ହୋଇଥିଲା ଓ ନୀଳାଚଳରେ ଯୋନି ଦେଶ ପଡ଼ିଥିଲା । ତାହାର ବର୍ଣ୍ଣନା ହେଉଛି -

ନାଭି କାଟିୟା ବିଷ୍ଣୁ ପାଡ଼ିଲ ଯେଖାନେ
ନାଭିଗୟା ନାମ ତାହା ବିଖ୍ୟାତ ଭୁବନେ ।
ଦୁଇ ଅଙ୍ଗ ଆଛେ ମାତ୍ର କେହ ନାହି ଛାଡ଼େ
ନୀଳାଚଳ ଗିରିଗିୟା ଯୋନିମୁଦ୍ରା ପଡ଼େ ।

ଏହାଛଡ଼ା ପୀଠ ନିର୍ଣ୍ଣୟରେ ଅଛି -

ଉତ୍କଳେ ନାଭିଦେଶଞ୍ଚ ବିରଜାକ୍ଷେତ୍ରମୁଚ୍ୟତେ
ବିମଳା ସା ମହାଦେବୀ, ଜଗନ୍ନାଥସ୍ତୁ ଭୈରବଃ ।

କଟକର କଟକେଶ୍ୱରୀ ଓ ଉତ୍କଳର ଜୟା ବିଜୟା ନାମକ ଦେବୀଙ୍କର ନାମୋଲ୍ଲେଖ ମଧ୍ୟ ତହିଁରେ ରହିଛି । ବଜ୍ରଯାନ ଓ ସହଜଯାନରୁ ବା ତାନ୍ତ୍ରିକ ବୌଦ୍ଧ ଧର୍ମରୁ କ୍ରମେ ଶାକ୍ତ ଧର୍ମର ଉଦ୍ଭବ ହେଲା । ଯଦିଚ ବହୁ ପ୍ରାଚୀନରୁ ଶକ୍ତି ଉପାସନା ଥିଲା, କିନ୍ତୁ ଧର୍ମ ଭାବରେ ଶାକ୍ତ ଧର୍ମ ଏହି ପରବର୍ତ୍ତୀ ବୌଦ୍ଧ ଯୁଗରେ ହିଁ ବିଶେଷ ଲୋକପ୍ରିୟ ଧର୍ମ ହେଲା ଓ ତହିଁରେ ବହୁ ଦେବୀଙ୍କର ସୃଷ୍ଟି ହେଲା । କ୍ରମେ ତାରା, ଉଗ୍ରତାରା, ବରାହୀ, ମାରୀଚ, ଚାମୁଣ୍ଡା, ଚର୍ଚ୍ଚିକା, ଭଟ୍ଟାରିକା, ପର୍ଣ୍ଣଶବରୀ ପ୍ରଭୃତି ବହୁ ଦେବୀ ସୃଷ୍ଟି ଲାଭ କଲେ । ଯାଜପୁରର ସପ୍ତମାତୃକା ମୂର୍ତ୍ତି ଏହି ଖ୍ରୀ.୭ମ-ଅଷ୍ଟମ ଶତାବ୍ଦୀର ମୂର୍ତ୍ତି ।

ଓଡ଼ିଶାରେ ବିଭିନ୍ନ ଶାକ୍ତପୀଠର ବର୍ଣ୍ଣନା ପ୍ରସଙ୍ଗରେ ଭଗବତୀ ଜଣାଣ ପ୍ରସଙ୍ଗରେ ରହିଛି -

ଜୟତୁ ବୃଧାନଦୀ ତଟରେ
ବିହାରିଣୀ ପ୍ରାଚୀ ଉତ୍ତର କୂଳେ ବାସ
ଜୟ ବଇତରଣୀ କୂଳରେ ବିହାରିଣୀ ଜୟତୁ ବକ୍ରଦୁଗେ
ବାସ ଗୋ
ଭଗବତି, ଜୟ ସୋମଳା ସମଲାଇ
ଜୟ ଶ୍ରୀଚଣ୍ଡୀ କର ତ୍ରାହି
ଜୟତୁ ବାଣପୁରେ ଗିରିଜା ଭଗବତୀ
ଜୟତୁ କ୍ଷେତ୍ରେ ବିମଳାଇ ।

ଶାରଳା ପୀଠ, ମଙ୍ଗଳା ପୀଠ, ବିରଜା, ସମଲେଶ୍ୱରୀ ଓ ବାଣପୁରର ଭଗବତୀ ପ୍ରଭୃତି ଶାକ୍ତପୀଠ ଓଡ଼ିଶାର ପ୍ରାଚୀନ ଶାକ୍ତପୀଠ । ମନେହୁଏ ଏହିସବୁ ଶାକ୍ତପୀଠରେ ତାନ୍ତ୍ରିକତାର ବହୁ ପ୍ରଚାର ଘଟିଥିଲା । ଶାକ୍ତଧର୍ମ କୌଳଧର୍ମ ସହିତ ଅନେକାଂଶରେ

ସମ୍ବନ୍ଧାନ୍ୱିତ ଥିଲା । କୌଣସି ତାନ୍ତ୍ରିକ ପୋଥିରେ ରହିଛି -

"ବ୍ରାହ୍ମୀ ମାହେଶ୍ୱରୀ ଚୈବ କାମେରୁ ବୈଷ୍ଣବୀସ୍ତଥା ।
ବାରାହି ଚୈବ ହେମାଦ୍ରି ଚାମୁଣ୍ଡା ନାରସିଂହିକା ତରୁଣଶକ୍ତି ସମ୍ଭବା
କୌଳମାର୍ଗେ କ୍ରୟଂ ବିଦୁ ।" ଇତ୍ୟାଦି

ବିଭିନ୍ନ ସ୍ତୋତ୍ର ଯେପରି ସୂର୍ଯ୍ୟ ଭଟ୍ଟାରିକା ନାମରେ ଦେବୀପୂଜାମାନଙ୍କରେ ବଜ୍ରଯାନର ଧାରା 'ବଜ୍ର' 'ପୁଷ୍ପ' ପ୍ରଭୃତି ଶବ୍ଦରେ ରହିଛି, ଯେପରି "ଓଁ ବଜ୍ରେ ସ୍ୱାହା ଓଁ ଅବଜ୍ରେ ସ୍ୱାହା ଓଁ ଅଚିଳେ ସ୍ୱାହା ଓଁ ଅଚଳେ ସ୍ୱାହା" ଇତ୍ୟାଦି ।

ଓଡ଼ିଶାରେ ଲୋକକଥାରେ କିମ୍ବଦନ୍ତୀରେ ଠାକୁରାଣୀଙ୍କର ଆବିର୍ଭାବ ଏପରିକି ଆଜିକାଲି ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ଠାକୁରାଣୀଙ୍କର ଆବିର୍ଭାବ କାଳେସୀ, ତାରା, ଉଗ୍ରତାରା ପ୍ରଭୃତି ଦେବୀମାନଙ୍କର ନାମରେ ସଂଗଠିତ ହୋଇଥାଏ । କାଉଁରୀ ଓ କାମଚଣ୍ଡୀ ଠାକୁରାଣୀଙ୍କର ନାମ ଓଡ଼ିଶାର ସମାଜରେ ପ୍ରଚଳିତ ବିଭିନ୍ନ ମନ୍ତ୍ର, ଯନ୍ତ୍ର, କୁହୁକ ବିଦ୍ୟାରେ ରହିଥିବା କଥା ଅଜ୍ଞାତ ନୁହେଁ । ଏହିସବୁ ଦୃଷ୍ଟିରେ ଓଡ଼ିଶାର ତାନ୍ତ୍ରିକତାର ସମ୍ବନ୍ଧ କାଉଁରୀଭୂମି, କାମରୂପ ବା ଶ୍ରୀହଟ୍ଟ ସହିତ ସମ୍ବନ୍ଧାନ୍ୱିତ ଥିଲା ।

ଶାକ୍ତଧର୍ମ ସହିତ ପୂର୍ବବର୍ତ୍ତୀ ବଜ୍ରଯାନର ବିଭତ୍ସ ରୂପ ପ୍ରକଟିତ ହୋଇଥିବାର ବିଷୟ ଓଡ଼ିଶାର ପ୍ରାଚୀନ ସାହିତ୍ୟରୁ ମଧ୍ୟ ପ୍ରମାଣିତ ହୋଇଥାଏ । ମୁକୁନ୍ଦ ରଥ ରଚିତ ଏକ ପ୍ରାଚୀନ ଚଉତିଶାରେ ଶକ୍ତି ସାଧନା ପ୍ରସଙ୍ଗରେ ସାଧନାର ବିଭତ୍ସ ରୂପ ବର୍ଣ୍ଣିତ ହୋଇଅଛି । 'ଯୁବା ଯୁବତୀ ଜାନୁ', 'ପାଞ୍ଚୁ ତତ୍ତ୍ୱ', ଦିଗମ୍ବର ଦିବ୍ୟରୂପ ଚିନ୍ତିବ', 'ଭଗମାର୍ଗେ ଭଗାମୃତ କଳେପାନ ଭୟ ନ ଥିବ ଭଗଦ୍ୱାରେ', 'ରଜସ୍ୱଳା ରାମା କରିବ ରମଣ, ରଜସ୍ୱଳା ମୁଖ ଚାହିଁବ, ରଜବତୀ ଅଙ୍ଗ ସଙ୍ଗ ହୋଇବ'-ପ୍ରଭୃତିର ବର୍ଣ୍ଣନାରେ ଭବାନୀପୂଜା ବା କାଳୀପୂଜାର ପ୍ରଚଳନ ଓଡ଼ିଶାର ଧର୍ମ କ୍ଷେତ୍ରରେ ମଧ୍ୟ ଘଟିଯାଇଛି । ସାରଳା ମହାଭାରତରେ ଖଲ୍ୟକାର ବୃତ୍ତାନ୍ତରେ ରାଧାକୃଷ୍ଣଙ୍କର ପ୍ରସଙ୍ଗରେ ସେହି ସହଜଯାନର ସ୍ୱରୂପ ରହିଛି । ଓଡ଼ିଶାରେ ଯେ କେବଳ ନିବୃତ୍ତିମାର୍ଗର ସାଧନାର ଧାରା ପ୍ରଚଳିତ ଥିଲା ତାହା କହିବା ଭୁଲ ହେବ । ଓଡ଼ିଶାର ମନ୍ଦିରମାନଙ୍କର ଶିଳ୍ପ ସ୍ଥାପତ୍ୟରେ ଯେଉଁ ପ୍ରତିମୂର୍ତ୍ତି ସମୂହ ପରିଦୃଷ୍ଟ ହୁଏ ତାହା ସେହି ପ୍ରାଚୀନ ତାନ୍ତ୍ରିକ ବଜ୍ରଯାନ ଓ ସହଜଯାନର ପରମ୍ପରାର ପ୍ରକାଶ କହିବା ଭୁଲ ହେବ ନାହିଁ ।

ବଜ୍ରଯାନ ଓ ସହଜଯାନର କ୍ରମ ପରିଣତି ଶାକ୍ତଧର୍ମରେ ପ୍ରତିଫଳିତ ହୋଇଛି । ଶାକ୍ତଧର୍ମ ସହିତ କୌଳମାର୍ଗ ମଧ୍ୟ ସଂପୃକ୍ତ ଥିଲା । କୌଳଧର୍ମର ବହୁ ପ୍ରଶସ୍ତି ଓଡ଼ିଶାରେ ପ୍ରଚଳିତ ରହିଛି । କୌଳମାର୍ଗର ଉଚ୍ଚପ୍ରଶଂସା କରାଯାଇ କୁହାଯାଇଛି -

ସର୍ବ ଧର୍ମ ପରିତେଜ୍ୟୋ କୌଳଧର୍ମମୁପସ୍ରୟ
କୌଳଧର୍ମ ପରିତେଜ୍ୟୋ ଗୌରବଂ ନରକଂ ବ୍ରଜେତ୍ ।
ବାମେ ରାମାରମଣକୁଶଳା ଦକ୍ଷିଣେ ଶାଳୀପାତଂ
ଅଗ୍ରେ ମୁଦ୍ରାଷ୍ଟତିକବଟୁକଂ ସୁକରା ଚାଷ୍ଟସିଦ୍ଧି ।

ଏସବୁ ଉକ୍ତି ଓଡ଼ିଶାରେ ଏବେ ସୁଦ୍ଧା ପ୍ରଚଳିତ । ତେବେ ଓଡ଼ିଆ ସାହିତ୍ୟର ବିକାଶ ସମୟରେ ଶକ୍ତି ଉପାସନା ବା ଶାକ୍ତଧର୍ମ ବିଶେଷ ଭାବରେ ପରିଦୃଷ୍ଟ ହୋଇଛି । ବଙ୍ଗଳାର ଶାକ୍ତ ସାହିତ୍ୟ ପରି ଓଡ଼ିଶାର ଶାକ୍ତସାହିତ୍ୟର ସଂଖ୍ୟା ଥିଲା ଅଳ୍ପ, କିନ୍ତୁ ମନେହୁଏ ଓଡ଼ିଶାର ଶାକ୍ତଧର୍ମ ଯାହା ବଜ୍ରଯାନ ଓ ସହଜଯାନ ସହିତ ଏକ ସମୟରେ ଓଡ଼ିଶାରେ ପ୍ରାଧାନ୍ୟ ଲାଭ କରିଥିଲା ତାହା ବୈଷ୍ଣବ ଧର୍ମର ଅଭ୍ୟୁତ୍ଥାନରେ ଲୋପ ହୋଇଗଲା । ଶାକ୍ତ ଧର୍ମର ସର୍ବଶେଷ ସ୍ୱରୂପ କେବଳ ଦେଖିବାକୁ ମିଳିଲା ସାରଳା ସାହିତ୍ୟରେ । ସାରଳାଙ୍କ କୃତିସମୂହର ଅଭାବରେ ଓଡ଼ିଶାରେ ଶାକ୍ତଧର୍ମ ଓ ଶାକ୍ତ ସାହିତ୍ୟର ସ୍ୱରୂପ କଅଣ ଥିଲା ତାହା ଦେଖିବାକୁ ମିଳି ନ ଥାନ୍ତା । ମହାଯାନ ବୌଦ୍ଧଧର୍ମର ଶୂନ୍ୟବାଦ ବଜ୍ରଯାନ ଓ ସହଜଯାନର ମଧ୍ୟଦେଇ ଶାକ୍ତଧର୍ମରେ ପ୍ରତିଫଳିତ ହୋଇଛି ।

ଶାକ୍ତଧର୍ମ ଓଡ଼ିଶାର ଏକ ପ୍ରାଚୀନ ଧର୍ମ । ଓଡ଼ିଶାର ସାମାଜିକ ପରମ୍ପରା ଓ ସ୍ଥାପତ୍ୟରେ ଶାକ୍ତ ଧର୍ମର ଇତିହାସ କ୍ଷିପ୍ତବିକ୍ଷିପ୍ତ ଭାବରେ ରହିଅଛି । ଓଡ଼ିଶାରେ ଶାକ୍ତଧର୍ମର ଇତିହାସ ଖ୍ରୀଷ୍ଟୀୟ ସପ୍ତମ ଓ ଅଷ୍ଟମ ଶତାବ୍ଦୀର ତାନ୍ତ୍ରିକ ବୌଦ୍ଧଧର୍ମ ମଧ୍ୟ ଦେଇ ଓଡ଼ିଶାରେ ପ୍ରକାଶ ଲାଭ କରିଛି । ଓଡ଼ିଶାରେ ଶାକ୍ତଧର୍ମର ଲୋକପ୍ରିୟତା ଖ୍ରୀ. ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ରହିଥିବାର ସାରଳା ଦାସଙ୍କର ଶାକ୍ତସାହିତ୍ୟ ପ୍ରମାଣ କରିଥାଏ ।

## ସାରଳା ମହାଭାରତରେ ଶାକ୍ତଧର୍ମ :

ଚଣ୍ଡୀପୁରାଣ ବ୍ୟତୀତ ମହାଭାରତରେ ବିଭିନ୍ନ ପର୍ଯ୍ୟାୟରେ ଶାକ୍ତ ଧର୍ମର ପ୍ରଭୁତ ସୂଚନା ମିଳିଥାଏ । ସର୍ବୋପରି ସାରଳା ଚଣ୍ଡୀଙ୍କର ଉପାସକ ଭାବରେ କବି ଶାକ୍ତଧର୍ମର ଜଣେ ସର୍ବଶ୍ରେଷ୍ଠ ପୂଜକ ବା ଉପାସକ ଥିଲେ । 'ଚଣ୍ଡୀପୁରାଣ' ପରି ମହାଭାରତର ବିଭିନ୍ନ ସ୍ଥାନରେ ଶାକ୍ତଧର୍ମ ସମ୍ବନ୍ଧୀୟ ବହୁ ସୂଚନା ଦେଇଅଛନ୍ତି । ଆଦିପର୍ବ ତଥା ସଭାପର୍ବରେ କବି ଉଲ୍ଲେଖ କରିଛନ୍ତି, ପ୍ରଥମେ ଶୂନ୍ୟ ନିରଞ୍ଜନ ଓ ତହିଁରୁ ଶାକ୍ତ ବା ଶକ୍ତିଯାନର ଉଦ୍ଭବ ହେଲା । ଏହି 'ଶୂନ୍ୟ' ନିଃସନ୍ଦେହ ଭାବରେ ମହାଯାନର ଶୂନ୍ୟବାଦକୁ ବୁଝାଇଥାଏ । କ୍ରମେ ଏହି ଶୂନ୍ୟବାଦରୁ ତାନ୍ତ୍ରିକ ବୌଦ୍ଧଧର୍ମର ଶକ୍ତିଯାନର ସୃଷ୍ଟି ହେଲା । ତାନ୍ତ୍ରିକ ବୌଦ୍ଧଗଣ ମହାଯାନର

ଶୂନ୍ୟତାଜ୍ଞାନର ସାଧନାଦ୍ୱାରା ବ୍ୟକ୍ତିଗତ ମୁକ୍ତିଲାଭ କରିବାର ପନ୍ଥା ସୃଷ୍ଟି କଲେ । ଏହି ଶୂନ୍ୟତା ହେଲା ପ୍ରଜ୍ଞାରୂପିଣୀ ଭଗବତୀ ବା ନୈରାତ୍ମା ଦେବୀ ଓ ସର୍ବଶକ୍ତିମୟୀ । କବିଙ୍କର ଏହି ଉକ୍ତି ତାନ୍ତ୍ରିକ ବୌଦ୍ଧଧର୍ମ ସହିତ ଶାକ୍ତଧର୍ମର ସମ୍ବନ୍ଧ ସ୍ପଷ୍ଟଭାବରେ ସୂଚିତ କରାଇଥାଏ । ପ୍ରାଚ୍ୟତତ୍ତ୍ୱବିଦ୍‌ଙ୍କ ମତରେ ବହୁ ବୌଦ୍ଧଦେବୀ ହିନ୍ଦୁମାନଙ୍କର ତନ୍ତ୍ର ପୁରାଣାଦିରେ ଗୃହୀତ ଓ ସେମାନେ ହେଉଛନ୍ତି ବୌଦ୍ଧତାରା, ଉଗ୍ରତାରା ବା ଏକଜଟା ଦେବୀ, ପର୍ଣ୍ଣଶବରୀ, ବେତାଳ ବା ବଜ୍ର ବେତାଳୀ, ମାୟୁରୀ, ଅପରାଜିତା, ବାରାହୀ, ଭୀମା, କପାଳିନୀ, କୌବେରୀ, ଛିନ୍ନମସ୍ତା, କାଳିକା ଓ ଲୋକେଶ୍ୱରୀ ଇତ୍ୟାଦି ।

ଓଡ଼ିଶା ତାନ୍ତ୍ରିକ ବୌଦ୍ଧଧର୍ମ ଓ ଶାକ୍ତଧର୍ମର ପ୍ରଧାନ ପୀଠରୂପେ ଗୃହୀତ । ଉଡ଼୍‌ଡ଼ୀୟାନ ପୀଠ ପର୍ଯ୍ୟାୟରେ ଏହା ଆଲୋଚିତ ହୋଇଛି । ପ୍ରାଚ୍ୟତତ୍ତ୍ୱବିଦ୍ ଡାଃ ବିନୟତୋଷ ଭଟ୍ଟାଚାର୍ଯ୍ୟ ତାଙ୍କର ସୁପ୍ରସିଦ୍ଧ ଗ୍ରନ୍ଥ 'An Introduction to Buddhist Esoterism' ଗ୍ରନ୍ଥରେ କହିଛନ୍ତି ଯେ ପ୍ରଥମେ ତାନ୍ତ୍ରିକତା ଉଡ଼୍‌ଡ଼ୀୟାନ ପୀଠରୁ ଉତ୍ପତ୍ତି ଲାଭକରି ପରବର୍ତ୍ତୀ ସମୟରେ କାମାକ୍ଷା, ଶ୍ରୀହଟ୍ଟ ଓ ପୂର୍ଣ୍ଣଗିରି ପ୍ରଭୃତି ପୀଠକୁ ପରିବ୍ୟାପ୍ତ ହୋଇଥିଲା ।

ଶାକ୍ତଧର୍ମ ଓ ତନ୍ତ୍ର ପ୍ରସଙ୍ଗରେ କବି ଆସାମର କାମାଖ୍ୟାପୀଠର କାମାଖ୍ୟା ଦେବୀ, ଶ୍ରୀହଟ୍ଟ ଓ ଅନ୍ୟାନ୍ୟ ତାନ୍ତ୍ରିକ ପଦ୍ଧତିର ଯେଉଁ ବିଶଦ ବର୍ଣ୍ଣନା ଦେଇଅଛନ୍ତି ତାହା ପ୍ରକାରାନ୍ତରେ ପ୍ରାଚୀନ ଓଡ଼୍‌ଡ଼ୀୟାନ ପୀଠ ସହିତ କାମାଖ୍ୟା ଓ ଶ୍ରୀହଟ୍ଟପୀଠର ସମ୍ପର୍କ ସୂଚିତ କରାଇଥାଏ ।

ସାରଳା ମହାଭାରତର ଆଦିପର୍ବରେ କବି କୃଷ୍ଣଙ୍କର ପରଦାରା ପ୍ରୀତିକୁ ନିନ୍ଦା କରି କାମାକ୍ଷୀଙ୍କୁ ସ୍ତୁତି କରି କହୁଛନ୍ତି ଯେ ତାଙ୍କର ଯେପରି ପରଦାରା ପ୍ରୀତିରେ ଆସକ୍ତି ନ ବଢ଼େ । ମଧ୍ୟପର୍ବରେ କାମାକ୍ଷୀ ଦେବୀଙ୍କର ବହୁଳ ସୂଚନା ବିଭିନ୍ନ ମନ୍ତ୍ର ଯନ୍ତ୍ର ପ୍ରସଙ୍ଗରେ ରହିଛି ଓ ନାରଦଙ୍କର ଆଦେଶରେ ଦେବକୀଙ୍କର 'କାମାକ୍ଷୀ' ବ୍ରତ ପାଳନରେ ତାନ୍ତ୍ରିକତାର ପ୍ରଭାବ ସ୍ପଷ୍ଟ ଭାବରେ ପରିଲକ୍ଷିତ ହୋଇଥାଏ । ଯଥା- "ମକର ମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ ଶ୍ରବଣା ନକ୍ଷତ୍ରରେ ଏହି ବ୍ରତ ପରିପାଳିତ ହେବ - ଅପୋଡ଼ା ଭୂଇଁରେ ଯଜ୍ଞଶାଳ ହେବ ଓ ୧୬ ଦିନ ପର୍ଯ୍ୟନ୍ତ ଯଜ୍ଞରେ ଆହୁତି ପ୍ରଦାନ କରାଯିବ । ଶିଶୁବେଦୀ ସମେତ ପାଞ୍ଚବେଦର ବ୍ରାହ୍ମଣ ନିମନ୍ତ୍ରିତ ହୋଇ ଆସିବେ । ସୁନାର ଲକ୍ଷେ ଦୀପାଳି, ସୁନାର ଲକ୍ଷେ ଗୁଖା, ଦ୍ୱିଜଙ୍କୁ ଲକ୍ଷେ ଭାରା ସୁନା ଦାନ ଦିଆଯିବ । ସ୍ୱବଂଶର ସୁନ୍ଦରୀ ସୁଲଭ କୁମାର ଯଜ୍ଞରେ ଆହୁତି ପ୍ରଦାନ କରିବେ । ଅଷ୍ଟରତ୍ନରେ ପରିଶୋଭିତ ଏକଲକ୍ଷ କାମାକ୍ଷୀ ମୂର୍ତ୍ତିଙ୍କ ନିକଟରେ ପ୍ରତ୍ୟହ ଲକ୍ଷେ ଛାଗବଳି ଦିଆଯିବ ।" ସଭାପର୍ବରେ କବି କାମାକ୍ଷୀ ଦେବୀଙ୍କ ପ୍ରସଙ୍ଗରେ କହିବାକୁ ଯାଇ ଲେଖିଛନ୍ତି ଯେ କାମାକ୍ଷୀ ଦେବୀ କାଳାନ୍ତକ (କାଳଚକ୍ରଯାନ ?) ଯୋଗାନ୍ତକ, ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ ଓ ଧରଣ ଧାରଣ ପ୍ରଭୃତି ବିଦ୍ୟା ଜାଣନ୍ତି । ସେ ସକାଳରେ କୁମାରୀ, ମଧ୍ୟାହ୍ନରେ ବୃଦ୍ଧା, ସନ୍ଧ୍ୟା କାଳରେ କାମରୂପୀ କାମଶେଣା ଓ ମହାନିଶାରେ ଚାମଣ୍ଡା ମାହେଶ୍ୱରୀରୂପେ ପ୍ରକାଶିତ ହୁଅନ୍ତି । ସଭାପର୍ବରେ ଭୀମ ରାଜସୂୟ ଯଜ୍ଞ ପ୍ରସଙ୍ଗରେ କାଉଁରୀ ଦେଶକୁ ଯାଇ କାଉଁରୀ ଦେଶର କାମପାଳ ରାଜା ସହିତ ଯୁଦ୍ଧ କରିବାକୁ ଯିବାବେଳେ କାମାକ୍ଷୀଙ୍କ ନିର୍ଦ୍ଦେଶରେ କାମପାଳ ଯୁଦ୍ଧରୁ ନିବୃତ୍ତ ହୋଇଛନ୍ତି । 'କାମରୂପୀ ଭୈରବୀ' ଭୀମକୁ ଯୁଦ୍ଧରେ ଜୟ ଲାଭ ନିମିତ୍ତ କାମ୍ୟକ ନାମକ ମନ୍ତ୍ର ଦେଇଛନ୍ତି ଓ 'କୁଡ଼ୋଇକ' ଅନ୍ନରେ ଲକ୍ଷ ଲକ୍ଷ ସୈନ୍ୟଙ୍କୁ ଖାଇବାକୁ ଦେଇଛନ୍ତି । ରାଜସୂୟ ଯଜ୍ଞରେ ସାହାଯ୍ୟ କରିବା ନିମିତ୍ତ କାମାକ୍ଷୀ ଭୀମକୁ ଏହି ମନ୍ତ୍ର ଶିଖାଇଲେ ଓ ତା' ସହିତ ସ୍ତମ୍ଭନ, ଉଲୁକ ପ୍ରଭୃତି ବିଦ୍ୟା ପ୍ରଦାନ କଲେ । କାମାକ୍ଷୀ ନିଜକୁ ହିଙ୍ଗୁଳା ଦେବୀଙ୍କ ଦୁହିତା ଓ ସମସ୍ତ ମନ୍ତ୍ର ବିଦ୍ୟାରେ ସିଦ୍ଧ ବୋଲି କହିଅଛନ୍ତି ।

ଏତଦ୍‌ବ୍ୟତୀତ ଓଡ଼ିଶାର ଲୋକସଂସ୍କୃତିର 'କାମାକ୍ଷୀ-କାଉଁରୀ କାମଚଣ୍ଡୀ' ଓ 'କାଉଁରୀ କାମଚଣ୍ଡୀ', 'କାମାକ୍ଷା ତନ୍ତ୍ରମନ୍ତ୍ର'ର ଯେଉଁ ପ୍ରବଳ ପ୍ରଚଳନ ରହିଛି ତାହା ପ୍ରାଚୀନ କାମାକ୍ଷା ପୀଠ ସହିତ ଓଡ଼୍‌ଡ଼ୀୟାନ ପୀଠର ଘନିଷ୍ଠ ସମ୍ପର୍କରେ ପ୍ରଭୁତ ସୂଚନା ଦେଇଥାଏ ।

ଓଡ଼ିଶାରେ ଶାକ୍ତଧର୍ମର ବହୁ ପ୍ରାଚୀନତା ରହିଛି । ଓଡ଼ିଶାର ଜଗନ୍ନାଥ ଧର୍ମରେ ଜୈନ, ବୌଦ୍ଧ, ହିନ୍ଦୁ ଏପରିକି ପ୍ରାଗୈତିହାସିକ ଆଦିବାସୀ ଧର୍ମ ଓ ସଂସ୍କୃତିର ପ୍ରଭାବ ଲକ୍ଷ୍ୟ କରାଯାଇଥାଏ । ବରାହମିହିରଙ୍କର ବୃହତ ସଂହିତା ଅନୁସାରେ କୃଷ୍ଣ ବଳରାମଙ୍କର ମଧ୍ୟରେ ଏକାନଂଶାଙ୍କର ଆବିର୍ଭାବ ଓଡ଼ିଶାରେ ଶକ୍ତି ଉପାସନାର ସୂଚନା ଦେଇଥାଏ । ଏହି ବୃହତ ସଂହିତାରେ ମାତୃକାଗଣର ମଣ୍ଡଳାକାରରେ ପୂଜାର ବିଧାନ ମଧ୍ୟ ବର୍ଣ୍ଣିତ ହୋଇଛି ଖ୍ରୀ: ୧୦ମ-୧୧ଶ ଶତାବ୍ଦୀରେ ଚଉଷଠି ଯୋଗ୍ନୀମାନଙ୍କର ମଣ୍ଡଳାକାରରେ ପୂଜା ହେବାର ବିଧାନ ରହିଥିଲା । ଏହାର ଉଦାହାରଣ ଭୁବନେଶ୍ୱର ନିକଟସ୍ଥ ଅର୍ଦ୍ଧଭଗ୍ନ ୬୪ ଯୋଗ୍ନୀମନ୍ଦିର ଓ କଳାହାଣ୍ଡି ଜିଲ୍ଲାର ରାଣୀପୁର ଝରିଆଲର ୬୪ ଯୋଗ୍ନୀ ମନ୍ଦିର । ଏହିସବୁ ବିକଟାଳ ଯୋଗିନୀ ମୂର୍ତ୍ତି ତତ୍କାଳୀନ ତାନ୍ତ୍ରିକ ପୂଜାର ବିଭୀଷିକା ପ୍ରତିପାଦନ କରିଥାଏ । ସାରଳା ମହାଭାରତ ତଥା ଚଣ୍ଡୀ ପୁରାଣରେ ୬୪ ଯୋଗିନୀ ପ୍ରସଙ୍ଗ ବହୁ ସ୍ଥଳରେ ଉଲ୍ଲେଖ କରାଯାଇଛି । ୬୪ ଯୋଗିନୀମାନଙ୍କର ନାମ ମଧ୍ୟରୁ ଅନେକଙ୍କ ନାମ ଲୋହିଗୀତାରୁ

ମଧ୍ୟ ମିଳିଥାଏ ।

ସାରଳା ମହାଭାରତ ତଥା ଚଣ୍ଡୀପୁରାଣରେ ପରିଦୃଷ୍ଟ ବିଭିନ୍ନ ଦେବୀମାନଙ୍କର ନାମର କେତେକ ଉଲ୍ଲେଖ କରାଗଲା । ଉକ୍ତ ଦେବୀମାନଙ୍କର ନାମ ହେଉଛି, ଅନାଦି ଶକ୍ତି, ଅନାଦି ଭଗବତୀ, କାତ୍ୟାୟିନୀ, ତ୍ରିପୁରା, ଉଗ୍ରତାରା, ମାହେଶ୍ୱରୀ, ବ୍ରହ୍ମାୟେଣୀ, ଅପର୍ଣ୍ଣା, ଚଣ୍ଡୀଶାରୋଳା, ଅନାଦି ନାରାୟେଣୀ, ହିଙ୍ଗଳାଇ, ବାଶୁଳି, ବାରାହୀ, ଅଷ୍ଟଭଦ୍ରାୟେଣୀ, ତ୍ରିପୁରା, ଭୈରବୀ, ଇନ୍ଦ୍ରାଣୀ, ଡାକିନୀ, ଶ୍ରୋଣିତା, ଦେବୀ, ଚାମଣ୍ଡା, କଙ୍କାଳୀ, ବେତାଳୀ, ଅନନ୍ତା, ବିଜୟା, ତାରିଣୀ, ଅମ୍ବିକା, ହରିଣାଇ, ଅରୁଣାଇ, ସର୍ବମଙ୍ଗଳା, ପିଙ୍ଗଳାକ୍ଷୀ, ଗୋସାମଣୀ, ଚର୍ଚ୍ଚିକା, ଖେଚରୀ, ଭୁଚରୀ, ମାତାଙ୍ଗୀ, ଚଞ୍ଚଳୀ, ଅଭୟା, ପ୍ରଖରା, ବିକଟାଳୀ, ମାଧବୀ, ଚଣ୍ଡପ୍ରଚଣ୍ଡା, କାମସେନୀ, କୃତାନ୍ତକୀ, ଗରୁଡ଼ାଶ୍ୱରୀ, ସିଦ୍ଧା, ସାଧବୀ, କମଳା, କମଳାକ୍ଷୀ, ଆଦିତ୍ୟାଇ କୁବେରାଇ, ମାରୁତୀ, ଦକ୍ଷିଣାୟଣୀ, ଉତ୍ତରାୟଣୀ, ପଶ୍ଚିମା କରତାଇ, ଛାୟା, ମାୟା, କୁମାରୀ, ସୂର୍ଯ୍ୟାୟଣୀ, ଯମୟାଣୀ ଓ ମାହେଶ୍ୱରୀ ଇତ୍ୟାଦି ।

ଚଣ୍ଡୀ ପୁରାଣରେ ସାରଳାଦାସ ବିଭିନ୍ନ ଦେବୀମାନଙ୍କର ନାମୋଲ୍ଲେଖ କରିଅଛନ୍ତି । ଯଥା- ଶାନ୍ତି, କାନ୍ତି, ଜାଗୁଳାଇ, ଚମ୍ପାଇ, ରେଖା, ସୁରେଖ, ମଧୁ, ମାଧବୀ, ଧୀରବତୀ, ତାରା ବିକଳା, ଇନ୍ଦୁମୁଖୀ, ବିଶ୍ୱରୂପା, ଊର୍ଦ୍ଧ୍ୱନେତ୍ର, ମରୁତାଇ, ବିରୂପା, ବିଲୋପା, ପିଙ୍ଗଳା, ମାଳତୀ, ବରୁଣାଇ, ବୁଦ୍ଧାଇ, ମାୟାଦେବୀ, ସୁଲକାଇ, ବିଂଝଇ, ହିଙ୍ଗଳାଇ, ନେତାଇ, ପିତାଇ, ଅନନ୍ତା, ସାମୁକାଇ, ରାମଚଣ୍ଡୀ, ତୁଳସୀ, ଅନ୍ଧାରିଆ, ଚପଳା, କୁସୁମାଇ, ଅବିରୋଳା, ଚନ୍ଦନରେଖା, ଶୀତଳା, ଅରୂପା, ଭୟଙ୍କରୀ, ତାରାକ୍ଷୀ, ବେତାଳୀ, ମାରିଚୀ, ତ୍ରିନେତ୍ରା, ପ୍ରଚଣ୍ଡାଇ, ନୀଳାଇ, ଶୀତଳା, ପୋଲାସୁଣୀ କୁହୁକା, ମେଖଳା, ଷଷ୍ଠୀ ଖାଙ୍କେଣୀ, (କଙ୍କାଳୀ) ପିତାସୁଣୀ, କୋଳାହଳ, କାକେଶ୍ୱରୀ, ଖାଙ୍କେଣୀ, ଭାଲୁଙ୍କୀ, ସାମଳାଇ, କୋଠରୀ, ରାମଚଣ୍ଡୀ, ଚାମଣ୍ଡୀ, ବିଂଝାସୁଣୀ, ମହାଖଳା, ବିମଳା, ବାରାହୀ, ଚାମଣ୍ଡା, ଚାଚେଶ୍ୱରୀ, ଚାମୁଣ୍ଡା, ଭଦ୍ରିକା, ଉଗ୍ରତାରା, ତ୍ରିପୁରା, ଭଗବତୀ, ବକ୍ରେଶ୍ୱରୀ, ମାହେଶ୍ୱରୀ, ଡାକେଶ୍ୱରୀ, ଅମ୍ବିକାଇ, ମୋହିନୀ, କାପାଳୀ, କଙ୍କାଳୀ, କାମାକ୍ଷୀ, ବନଦେବୀ, ଓ ନିମଞ୍ଚାଇ ଇତ୍ୟାଦି । ଆହୁରି ପୁଣି ଏତେ ନାମର ତାଲିକା କବି ଏହି ଗ୍ରନ୍ଥରେ ଦେଇଛନ୍ତି ଯେ ସେ ସବୁର ଏଠାରେ ଉଲ୍ଲେଖ ଯେ ସେ ସବୁର ଏଠାରେ ଉଲ୍ଲେଖ କରିବା ଏକ ବିଷମ ସମସ୍ୟା । କବି ଚଣ୍ଡୀପୁରାଣରେ କହିଛନ୍ତି ଯେ ଦୁର୍ଗାଙ୍କର ଶ୍ରମଝାଳରୁ ନାରାୟେଣୀ, ଡାକରୁ ଡାକେଶ୍ୱରୀ, ନାଭିରୁ ଚନ୍ଦ୍ରକାନ୍ତି, ଗଣ୍ଡସ୍ଥଳୀରୁ କମଳା, ଗର୍ଭରୁ ବିକରାଳୀ, କରଅର୍ଦ୍ଧଳୀରୁ କଙ୍କାଳୀ ଓ ସର୍ବୋପରି ଏକ ଶରୀରରୁ ଏହିପରି ୬୪ ଯୋଗିନୀଙ୍କର ଜନ୍ମ ହେଲା । ପରବର୍ତ୍ତୀ ପର୍ଯ୍ୟାୟରେ କବି ୬୪ ଯୋଗୀଙ୍କର ନାମ ଦେଇଛନ୍ତି । ସଂସ୍କୃତ 'ଚଣ୍ଡୀପୁରାଣ' ବା 'ସପ୍ତଶତୀଚଣ୍ଡୀ'ରେ ଦେବୀଙ୍କର ଶରୀରରୁ ବିଭିନ୍ନ ଦେବଦେବୀଙ୍କର ଆବିର୍ଭାବର ବର୍ଣ୍ଣନା ଦିଆଯାଇଛି ।

(ଓଡ଼ିଆ ସାହିତ୍ୟର ଇତିହାସ ଦ୍ୱିତୀୟ ଭାଗ, କଟକ, ୧୯୭୩)

# (୭)
# କୃଷ୍ଣଚରଣ ସାହୁ
# ସାରଳା ଦାସ ଭୂମିକା

ସାରଳା ଦାସଙ୍କ ଶ୍ରେଷ୍ଠ ଗ୍ରନ୍ଥ ହେଉଛି ମହାଭାରତ । ସଂସ୍କୃତରେ ମହାଭାରତକୁ ଇତିହାସ କୁହାଯାଏ । ଓଡ଼ିଆରେ ଏହା ହେଉଛି, ପୁରାଣ । ସାରଳା ଦାସ ଏହାକୁ ଯେ କେବଳ ପୁରାଣ ରୂପେ ବର୍ଣ୍ଣନା କରିଛନ୍ତି ତାହା ନୁହେଁ, ଅଷ୍ଟାଦଶ ପୁରାଣଠାରୁ ଏହାର ଶ୍ରେଷ୍ଠତା ତଥା ମହନୀୟତା ପ୍ରଚାର କରିଛନ୍ତି । ଆଦ୍ୟ ପର୍ବରେ କବି ଏହାର ସୂଚନା ଦେଇ କହିଛନ୍ତି -

ଶୁଣ ହୋ ବଇବସୁତ ମନୁ ଅଦ୍ୟ ଯେ ଚରିତ
ଦେବତାମାନେ ରଚିଲେ ସର୍ବଗ୍ରନ୍ଥ ।
ତୁଳା ଦଣ୍ଡ କଲେ ଦ୍ୱାଦଶ ଯୋଜନ କାଠି
ତିନି ତିନି ଯୋଜନ କଲେ ବେନି କର୍ଣ୍ଣକୋଟି ।
ବିଷ୍ଣୁ ଅନନ୍ତ କୋଟି ବ୍ରହ୍ମାଣ୍ଡ ଅନନ୍ତ କୋଟି
ସବୁ ପୁରେଇଲେ ନେଇ ତୁଳାଦଣ୍ଡ କାଠି
ଅଷ୍ଟାଦଶ ପୁରାଣ ପଞ୍ଚବିଂଶ ଲକ୍ଷ
ରାମାୟଣ ଚଣ୍ଡୀ ଯୁଦ୍ଧ ସମସ୍ତ ପୁରାଣ ପ୍ରତ୍ୟକ୍ଷ
ବିଷ୍ଣୁ ପୁରାଣ ରାଜା ମାରକଣ୍ଡ ପୁରାଣ ପାତର
ଶିବ ପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର
ଯେ ଚାରି ପୁରାଣ ମୁଖ୍ୟ କରଣ ସମସ୍ତ ପୁରାଣ
ଯେମନ୍ତ ବସାଇଲେ ନେଇ ତୁଳାଦଣ୍ଡ କଡିକେଣ ।
ଆରକ କଛେ ଭାରଥ ଅଷ୍ଟାଦଶ ଥୋଇଲେ
ସମସ୍ତ ପୁରାଣଂ ହେ ମହାଗରୁ ହୋଇଲେ ।
ଯେ ମହାଭାରଥ ଯହୁଂ ହୋଇଲା ମହାଭାରା
ତହୁଁ ମହାଭାରଥ ନାମ ଦେଲେ କଶ୍ୟପ ଅଙ୍ଗିରା ।
ତେଣୁ କରି ହୋଇଲା ମହାଭାରଥ ନାମ
ତୁଳନ୍ତେ ହୋଇଲା ଯେ ମହା ଅସମ୍ଭବ ।

ସଂସ୍କୃତରେ ପୁରାଣର ପଞ୍ଚଲକ୍ଷଣ ନିର୍ଦ୍ଦିଷ୍ଟ ହୋଇଥିଲା । ସେ ସବୁ ହେଉଛି, ୧. ସର୍ଗ (ସୃଷ୍ଟି-ପ୍ରକ୍ରିୟା), ୨. ପ୍ରତିସର୍ଗ (ପ୍ରଳୟ ଓ ସୃଷ୍ଟି), ୩. ବଂଶ (ବଂଶ ପରମ୍ପରା), ୪. ମନ୍ୱନ୍ତର (ମନୁଙ୍କର ବିଭିନ୍ନ ଯୁଗ) ଓ ୫. ବଂଶାନୁଚରିତ (ଭାରତର ପ୍ରାଚୀନ ବଂଶଗୁଡ଼ିକର ଇତିହାସ) । ସଂସ୍କୃତର ପୁରାଣ ଏହିସବୁ ଲକ୍ଷଣ ପରମ୍ପରାକୁ ନ ମାନି ଅନ୍ୟାନ୍ୟ ବହୁ ଲକ୍ଷଣ ଯୋଗ କଲେ । ଫଳରେ ଭାଗବତରେ ପୁରାଣର ଆଉ ପାଞ୍ଚୋଟି ଲକ୍ଷଣ ଯୋଗ କରାଗଲା । ସେ ସବୁ ହେଲା- ବୃତ୍ତି, ରକ୍ଷା, ମୁକ୍ତି, ହେତୁ ଓ ଅପାଶ୍ରୟ । ଏଥିରେ ମଧ୍ୟ ପୁରାଣକାର ମାନଙ୍କର ଇଚ୍ଛା ପୂର୍ଣ୍ଣ ନ ହେବାରୁ କାବ୍ୟ ପରି ଧର୍ମ, ଅର୍ଥ, କାମ ଓ ମୋକ୍ଷକୁ ପୁରାଣର ଆଦର୍ଶରୂପେ ଗ୍ରହଣ କରାଗଲା । ଏସବୁ ଲକ୍ଷଣ ସହ ପୁରାଣରେ ପୁରାଣକାରମାନେ ନିଜ ଧର୍ମମତ, ଆରାଧ୍ୟ ଦେବତାର ମାହାତ୍ମ୍ୟ ପୁଣି ବହୁ ଦେବତାବାଦର ପ୍ରଚାର କଲେ । ସ୍ମୃତିରୁ ତୀର୍ଥ, ବ୍ରତ ଓ ଦାନର ମାହାତ୍ମ୍ୟ, ପାପ ଓ ପୁଣ୍ୟର ବିଚାର, କାମ ଶାସ୍ତ୍ରର ସ୍ତ୍ରୀ ଲକ୍ଷଣ, ସମାଜରୁ ଆଚାର ଓ ବ୍ୟବହାର ଏହିପରି ବହୁ କଥାର ସମାବେଶ କରି ସେମାନେ ପୁରାଣକୁ ବିଶ୍ୱକୋଷରେ ପରିଣତ କଲେ । 'ଯାହା ନାହିଁ ଭାରତେ ତାହା ନାହିଁ ଭାରତେ' ଏହାହିଁ ଥିଲା ସେମାନଙ୍କ ପୁରାଣ ଲେଖାର ଆଦର୍ଶ ।

ସାରଳା ଦାସଙ୍କ ମହାଭାରତ ଏହି ମନୋଭାବର ପରିଣତି । ସେତେବେଳକୁ ସଂସ୍କୃତ ମହାଭାରତରେ ପ୍ରକ୍ଷେପ ପରେ ପ୍ରକ୍ଷେପ ସଂଯୋଜିତ ହୋଇ କେବଳ ଯେ ବିପୁଳକାୟ ହୋଇଛି, ତାହା ନୁହେଁ, ମୂଳର ସୂତକୀର୍ତ୍ତିତ ରଣ କାହାଣୀ, ବହୁ ଭାବେ ବିକୃତ, ଅସମଞ୍ଜସ ପୁଣି ଅନେକ ସ୍ଥଳରେ ମିଥ୍ୟା ଉପାଖ୍ୟାନ ଦ୍ୱାରା ଆବୃତ୍ତ ହୋଇସାରିଛି । ବହୁ କବିର ସମବାୟ କର୍ମ ପୁଣି ବହୁ ଶତାବ୍ଦୀ ମଧ୍ୟ ପରିବ୍ୟାପ୍ତ ହେବା ଫଳରେ ଏଥିରେ ବହୁ ପ୍ରକାର ଧର୍ମଧାରଣା, ବହୁ ପ୍ରକାର ଉପାସ୍ୟ ଦେବତା ଏବଂ ପରସ୍ପର ବିରୋଧୀ ବହୁ ମତବାଦ ସ୍ଥାନ ପାଇଛି । ଏପରିକି ଏହାର ମୁଖ୍ୟ ଚରିତ୍ର ଶ୍ରୀକୃଷ୍ଣଙ୍କ ଆଦର୍ଶ ମଧ୍ୟ ଅବ୍ୟାହତ ରହିପାରି ନାହିଁ । ଭାଷା ଓ କବିତ୍ୱ ଦୃଷ୍ଟିରୁ ମଧ୍ୟ ଏଥିରେ ବହୁ ଅସମାନତା ପରିଦୃଷ୍ଟ ହୁଏ । ଏସବୁକୁ ଦେଖି ସମାଲୋଚକମାନେ ଏଥିରେ ତିନିରୁ ଦଶ ପର୍ଯ୍ୟନ୍ତ ସଂଯୋଗ-ସ୍ତରର ଅନୁମାନ କରିଛନ୍ତି । ସାରଳା ଦାସ ସଂସ୍କୃତ ମହାଭାରତର ଏହି ଦୀର୍ଘ ଇତିହାସ ସହିତ ପରିଚିତ ଥିଲେ ବୋଲି ସ୍ୱୀକାର କରିହୁଏ ନାହିଁ । କାରଣ ଏସବୁ ଜାଣିହୁଏ ଏହି ଶତାବ୍ଦୀରେ । ଦୀର୍ଘ ଦେଢ଼ଶ ବର୍ଷ ଧରି କ୍ରମାଗତ ଭାବେ ଚାଲିଥିବା ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଅଧ୍ୟବସାୟ ଯୋଗୁଁ । ତେବେ ଏକଥା ସତ ଯେ ସଂସ୍କୃତ ମହାଭାରତର କଥାବସ୍ତୁ କେବଳ ଗ୍ରନ୍ଥର କଳେବରରେ ଆବଦ୍ଧ ନ ହୋଇ, ବହୁ ରୂପରେ, ବହୁଧାରାରେ, ଲୋକ ସମାଜରେ ପ୍ରବାହିତ ହେଉଥିଲା । ପ୍ରତ୍ୟେକ ଦିନ ଏଥିରେ ନୂଆ ଉପାଖ୍ୟାନ ସଂଯୋଜିତ ହେବା ସଙ୍ଗେ ସଙ୍ଗେ, ପ୍ରତ୍ୟେକ ନାମ, ପ୍ରତ୍ୟେକ ଉପାଖ୍ୟାନର ନୂଆ ଅର୍ଥ ପ୍ରକାଶ ପାଇଥିଲା । ସାରଳା ଦାସ ସଂସ୍କୃତ ମହାଭାରତକୁ ଶୁଣିବା ସଙ୍ଗେ ସଙ୍ଗେ ଲୋକରେ ପ୍ରଚାରିତ ମହାଭାରତକୁ ମଧ୍ୟ ଶୁଣୁଥିଲେ । ସେ ତାଙ୍କ ମହାଭାରତକୁ ଓଡ଼ିଶାର ଗାଁ ଗହଳିରେ ବାସ କରୁଥିବା ସାଧାରଣ ଜନତାଙ୍କ ପାଇଁ ରଚନା କରୁଥିବାରୁ ମହାଭାରତର ଶାସ୍ତ୍ରୀୟ ରୂପ ଅପେକ୍ଷା, ଲୋକରେ ପ୍ରଚଳିତ ରୂପକୁ ବିଶେଷ ସମ୍ମାନ ଦେଇଥିବା ସ୍ୱାଭାବିକ । ପୁଣି କଥାକୁ ଆହୁରି ରସରସିଆ କରିବା ପାଇଁ ସେ ନିଜ ମନରୁ ଆଉ ଦି'ପଦ ଯୋଡ଼ିଥିବା ଅସମ୍ଭବ ନୁହେଁ । ଏହିପରି ଭାବେ ତାଙ୍କ

ମହାଭାରତ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ, ଅନୁସରଣ ବି ନୁହେଁ – ଏକ ସ୍ୱତନ୍ତ୍ର ନୂତନ ମହାଭାରତ । ସଂସ୍କୃତ ମହାଭାରତର ପଞ୍ଚଦଶ ଶତାବ୍ଦୀୟ ସଂସ୍କରଣ । କଥା ଓ ଚରିତ୍ର-ଉଭୟର ନୂଆ ଅବତାର । ସେ ପୁଣି ପାଣ୍ଡିତ୍ୟର ରୂପ ନୁହେଁ, ଗ୍ରାମ୍ୟ ରୂପ । ସଂସ୍କୃତ ଓ ଓଡ଼ିଆ ମହାଭାରତର ଏହି ପାର୍ଥକ୍ୟ ଜାଣିବା ପାଇଁ ନିମ୍ନରେ ପର୍ବ ଯୋଜନା ତଥା କଥାସବୁର ବିଶ୍ଳେଷଣ କରାଯାଉଛି ।

**ପର୍ବ ଯୋଜନା :** ସଂସ୍କୃତ ମହାଭାରତରେ ୧୮ଟି ପର୍ବ, ୧୦୦ଟି ଉପପର୍ବ ଥିଲା । ସାରଳା ଦାସ ଉପପର୍ବ ବିଭାଗକୁ ପରିତ୍ୟାଗ କରି କେବଳ ପର୍ବ ବିଭାଗ ଗ୍ରହଣ କଲେ ଓ ପର୍ବ ସବୁକୁ ବିଭିନ୍ନ ସଭାରେ ବିଭକ୍ତ କଲେ ।

ସଂସ୍କୃତ ମହାଭାରତର ପର୍ବ ସବୁ ହେଲା -

୧. ଆଦିପର୍ବ, ୨. ସଭା ପର୍ବ, ୩. ବନ ବା ଆରଣ୍ୟକ ପର୍ବ, ୪. ବିରାଟ ପର୍ବ, ୫. ଉଦ୍‌ଯୋଗ ପର୍ବ, ୬. ଭୀଷ୍ମ ପର୍ବ, ୭. ଦ୍ରୋଣ ପର୍ବ, ୮. କର୍ଣ୍ଣ ପର୍ବ, ୯. ଶଲ୍ୟ ପର୍ବ, ୧୦. ସୌପ୍ତିକ ପର୍ବ, ୧୧. ସ୍ତ୍ରୀ ପର୍ବ, ୧୨. ଶାନ୍ତି ପର୍ବ, ୧୩. ଅନୁଶାସନ ପର୍ବ, ୧୪. ଅଶ୍ୱମେଧିକ ପର୍ବ, ୧୫. ଆଶ୍ରମ ବାସିକ ପର୍ବ, ୧୬. ମୌଷଳ ପର୍ବ, ୧୭. ମହା ପ୍ରସ୍ଥାନିକ ପର୍ବ, ୧୮. ସ୍ୱର୍ଗାରୋହଣ ପର୍ବ ।

ସାରଳା ଦାସ ପର୍ବ ସଂଖ୍ୟା ୧୮ ରଖିଥିଲେ ହେଁ, ନାମକରଣରେ କିଛି ପାର୍ଥକ୍ୟ ସୃଷ୍ଟି କରିଛନ୍ତି । ସଂସ୍କୃତର ୧,୨,୩,୪,୫,୬,୭,୮,୯,୧୧,୧୨,୧୪,୧୫, ୧୬ ଓ ୧୮ ପ୍ରଭୃତି ପର୍ବର ନାମ ସାରଳା ଦାସ ଗ୍ରହଣ କରିଛନ୍ତି । ଏହା ବ୍ୟତୀତ ଆଦି ସଭା ମଧରେ ମଧପର୍ବ ଯେଗ କରିବାରୁ କ୍ରମ ରକ୍ଷିତ ହୋଇନାହିଁ । ଅନ୍ୟାନ୍ୟ ପର୍ବ ସବୁର ନାମ ହେଲା, ଗଦା (୧୧) ଓ ଐଷିକ ବା କାଇଁଷିକା (୧୨)। ସେ 'ମଧପର୍ବ'କୁ ଯୋଗ କଲାପରି **ମହାପ୍ରସ୍ଥାନିକ** ପର୍ବକୁ ପରିତ୍ୟାଗ କରିଛନ୍ତି ।

.....

ସାରଳା ମହାଭାରତର ମୁଖ୍ୟ ବୈଶିଷ୍ଟ୍ୟ ହେଉଛି, କଥା କହିବା ।·କଥା କହିବାରେ ସାରଳା ଦାସ ଥିଲେ ଧୁରନ୍ଧର ବ୍ୟକ୍ତି । ସଂସ୍କୃତର କଥାସବୁକୁ ଭାଙ୍ଗି ନୂଆକରି ଗଢ଼ିବାରେ ତାଙ୍କ ମନର କେତେଗୁଡ଼ିଏ ପ୍ରବୃତ୍ତି ଲକ୍ଷ୍ୟ କରିହୁଏ । ସେ ସବୁକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଯାଇପାରେ ।

(୧) ଅନେକ କଥା ।
(୨) କଥାର ଅତିରଞ୍ଜିତ ରୂପ ।
(୩) କଥାରେ ସାମାଜିକ ନୀତି ନିୟମର ସ୍ଥାନ ।
(୪) ସାମାଜିକ ଆଦର୍ଶ ।

**୧. ଅନେକ କଥା :** କଥା କହି ଲୋକମନକୁ ଆକୃଷ୍ଟ କରିବାକୁ ହେଲେ, ବହୁଆଡୁ ବହୁକଥା ଆଣି କହିବାକୁ ହୁଏ । ସଂସ୍କୃତରେ ରଚିତ **ପଞ୍ଚତନ୍ତ୍ର, ହିତୋପଦେଶ** ପ୍ରଭୃତିରେ ଏହି ପ୍ରବୃତ୍ତି ଅନୁସୃତ । ସେଥିପାଇଁ ସେମାନେ କଥା ଭିତରେ କଥା ରଖୁଥିଲେ । ଗୋଟିଏ କଥା ଆରମ୍ଭକରି, ସେଥିରେ ଆଉ ସବୁକଥା ରଖି, ଶେଷରେ ସେମାନେ ମୂଳକଥାକୁ ଫେରୁଥିଲେ । ପୁରାଣର କଥା କହିବା ଭଙ୍ଗୀ ଅନ୍ୟ ପ୍ରକାର । ଏଥିରେ ମୂଳ କଥାକୁ ଫେରିବାର ପ୍ରଶ୍ନ ନାହିଁ । କଥା ଆଗକୁ ହିଁ ବଢ଼ିଥାଏ । ସେଥିପାଇଁ କଥା ସାଙ୍ଗକୁ କଥା କହି ପୁରାଣକାର ଆଗକୁ ଯାଏ । ସାରଳା ଦାସଙ୍କ ମହାଭାରତରେ ଏହି ପ୍ରବୃତ୍ତି 'ଅନେକ' ଶବ୍ଦର ଅନେକ ବ୍ୟବହାରରୁ ହିଁ ଜଣାଯାଏ ।

(୧) ଅନେକ ବାଗେଣ ସେ ମୁନିଙ୍କି କଲେ ପାଦ ପୂଜା
(୨) ଅନେକ ଦୃଷ୍ଟନ୍ତ ମାରି ସେ ଉଶ୍ୱାସିଲେ ମହୀଭାର
(୩) ଅନେକ ସମ୍ଭବେଂ ସେ ରାଜାଧିରାଜ ପତି
(୪) ଅନେକ ତୀର୍ଥ ସେ କଲେ ବିଶ୍ୱକାଶୀ
(୫) ଅନେକ ଜନ୍ମରେ ମୁହିଂ ସଦାଶିବଙ୍କ ମନୋହାରୀ
(୬) ଅନେକ ବାଗେଣ ସେ ଯେ ପୂଜା ବିଧି କଲା
(୭) ଅନେକ ଦୋଷ କଲେ କୋପ ନ କରିବୁ
(୮) ଅନେକ ଦୋଷ କଲେ ସହିବି ତୋତେ ହୋଇବି ଭଗତା
(୯) ଅନେକ ସମ୍ଭରେଣ ସେ ଦେଲେକ ଦୁହିତା
(୧୦) ଅନେକ ସମ୍ପଦେ ଯେ ଖଟନ୍ତି ମହଋଷି
(୧୧) ଯେମନ୍ତେଣ ଅନେକ ବଢ଼ିଲା ପୀରତି ଗଙ୍ଗାର ତୁଳେ
ସେ ଅନେକ ମେଳ ମତି
(୧୨) ଅନେକ ଅଭାବ ବୋଲି ବୋଇଲା ମହାସତୀ
(୧୩) କହଇ ଅନେକ ମତେ ଚାଟୁ ପଟଳେ
(୧୪) ଯେମନ୍ତ ଅନେକ ଯେ ବଢ଼ିଲା ପୀରତି
(୧୫) ଯେମନ୍ତ ସମୟେ ପ୍ରୀତି ଅନେକ ବଢ଼ିଗଲା
(୧୬) ଶାୟେଂତନୁ ଋଷିଙ୍କି ସେ ଅନେକ ଦୁଃଖ ଦିଲା
(୧୭) ଅନେକ ଚାଟୁ ପଟଳ କରନ୍ତି ଗଙ୍ଗାକୁ ବାଉନି
(୧୮) ଯେମନ୍ତେ ଅନେକ ମତେ କରାଇଲେ ବିମୁଖ
ଗୃହବାସ ନିମନ୍ତେ ଋଷି ସହିଲେ ଅନେକ ଦୁଃଖ

ଏହି ଅନେକ କହିବା ପ୍ରବୃତ୍ତି ସାରଳା ମହାଭାରତରେ ବେଳକାଳ, ବିବାହର ବିଭିନ୍ନ ବିଧି, ଋଷି, ବ୍ରାହ୍ମଣ ପ୍ରଭୃତିଙ୍କ ବିଭିନ୍ନ ପ୍ରକାର ବେଶ ପରିଧେୟ, ସୋମବଂଶ, ପାଂଋଷିବଂଶ, କୁନ୍ତୀ, ମାଦ୍ରୀ, ଗାନ୍ଧାରୀ, ଅମ୍ବା ପ୍ରଭୃତି ନାରୀମାନଙ୍କ ବଂଶଲତା, ବିଭିନ୍ନ ପର୍ବତ, ନଦୀ ଓ କାନନ ପ୍ରଭୃତିର ବିସ୍ତୃତ ବର୍ଣ୍ଣନାରେ ଦେଖିବାକୁ ମିଳେ । ଏହି ପ୍ରବୃତ୍ତିରୁ କବି ଗୋଟିଏ ଦୃଷ୍ଟାନ୍ତରେ ସନ୍ତୁଷ୍ଟ ନ ହୋଇ ବହୁ ଦୃଷ୍ଟାନ୍ତ ଦେଉଥିଲେ । ଗୋଟିଏ କଥାରେ ଶେଷ ନ କରି ଆହୁରି କଥା କହୁଥିଲେ । ଟିକିନିଖି କରି କଥା କହିବାର

ଭଙ୍ଗୀ ମଧ୍ୟ ଏହି ପ୍ରବୃତ୍ତିର ଫଳ ।

**୨. କଥାର ଅତିରଞ୍ଜନ ରୂପ :** ଅନେକ କଥା କହିବାକୁ ଇଚ୍ଛା କଲେ, ଜ୍ଞାନ ଓ ପାଣ୍ଡିତ୍ୟ ସାଙ୍ଗକୁ କଳ୍ପନାର ଆବଶ୍ୟକ ହୁଏ । ଏଣୁଥିରୁ ସାରଳା ମହାଭାରତରେ ଅତିରଞ୍ଜନ ପ୍ରବୃତ୍ତି ଅତିମାତ୍ରାରେ ଓ ବିଭିନ୍ନ ଭାବେ ପ୍ରକାଶ ପାଇଛି । ଉଦାହରଣ ପାଇଁ ଭୀମଙ୍କ ବାଲ୍ୟକାଳ ଚରିତକୁ ଗ୍ରହଣ କରାଯାଇପାରେ । ସଂସ୍କୃତ ମହାଭାରତରେ କୁନ୍ତୀ ବାଘ ଗର୍ଜନ ଶୁଣି ହଠାତ୍ ଉଠିଗଲେ । କୋଳରେ ଶୋଇଥିବା ପୁଅ କଥା ମନେନାହିଁ । ଭୀମ ତଳେ ଗୋଟିଏ ପଥର ଉପରେ ପଡ଼ିଗଲେ ଓ ସେ ପଥର ଖଣ୍ଡି ଚୂନା ହୋଇଯାଇଥିଲା । (ଆଦି-୧୧୭-୧୧୮)

ସାରଳାଦାସ ସଂସ୍କୃତ 'ବାଘ' ଓ 'ପଥର'ରୁ ଦୁଇଟି କଥା ସୃଷ୍ଟି କଲେ । ମହାଭାରତର ଘରୋଇ ମଲ୍ଲ ଭୀମଙ୍କର ଶକ୍ତି ଓ ସାମର୍ଥ୍ୟର ପରିଚୟ ଦେବାପାଇଁ ସାରଳା ଦାସ ବାଘ କଥାକୁ ପରିବର୍ଦ୍ଧିତ କରି ଲେଖିଥିଲେ (ଆଦିପର୍ବ)-

ପଡ଼ିଅଛି ନନ୍ଦନ ଉତ୍ତାନଶାୟୀ ହୋଇଂ
କାନ୍ଦଇ ନନ୍ଦନ ଯେ ବାଳୁତ ରାବ ଦେଇ ।
ଗର୍ଜନ ନାଦ କରି ଧାମଇ ମତ୍ତବ୍ୟାଘ୍ର
ପୁତ୍ରକୁ ଘୋଟିଲା ସେ କରିବ ଆଧାର ଯୋଗ ।
କାନ୍ଦଇ ସେ ଭୀମସେନ ଚରଣ ହଲାଇ
ବ୍ୟାଘ୍ରର ମୁଧୂନିରେ ବାଜିଲା ପାଦ ଯାଇ ।
ଭୀମର ଦକ୍ଷିଣ ଚରଣ ବାଜିଲା ବ୍ୟାଘ୍ରର ମୁଧୂନା
ବାଜନ୍ତେ ମୁଧୁନା ତାର ହୋଇଲା ଶତେ ଚୂନା ।

(ପୃ.-୨୩୫-୨୩୬)

ପଥର ଚୂନା ହୋଇଯିବା କଥାକୁ ସାରଳା ଦାସ କିପରି ଅତିରଞ୍ଜନ କଲେ, ତାହା ନିମ୍ନୋକ୍ତ ଉଦ୍ଧୃତାଂଶ ପାଠକଲେ ସ୍ପଷ୍ଟ ହୁଏ-

ଶିଂଗ ଦ୍ୱାଦଶ ଯୋଜନ ତଳି ଶତେ ଯୋଜନ ଶିର
ବାମ ପାଦ ଅଙ୍ଗୁଷ୍ଠି ଲାଗି ହୋଇଲା ଶତେ ଚୂର ।

(ପୃ.-୨୩୭)

ଏତିକି ବର୍ଣ୍ଣନା ବି ସାରଳା ଦାସଙ୍କ ମନକୁ ଗଲା ନାହିଁ । ପଣ୍ଡୁଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରିବାପାଇଁ ଭୀମ ଯେତେବେଳେ ବନ, କନ୍ଦର, ପର୍ବତ, ନିର୍ଝର ଓ ଅଟବୀ ଅତିକ୍ରମକରି ପଳାୟନ କଲେ ସେତେବେଳେ ତାଙ୍କ ପାଦ ବାଜି ବଡ଼ ବଡ଼ ପାହାଡ଼ ମଧ୍ୟ ଚୂନା ହୋଇ ଯାଇଥିଲା । ସାରଳା ଦାସ ଏହି ଦୃଶ୍ୟର ବର୍ଣ୍ଣନା କରି ଲେଖିଛନ୍ତି -

ଯେମନ୍ତେ ପଳାଇ ସେ ଯେ ବାଳୁତ ନନ୍ଦନ
ଭୀମସେନ ପଳାଇଲା ଶତଷଠି ଯୋଜନ ।
ଉର୍ଦ୍ଧ୍ୱବାହୁ ବୋଲିଣ ଯେ ପର୍ବତ ଗୋଟିଏ
ସନ୍ଧ୍ୟାବେଳେ ଝୁଣ୍ଟିଲା ତାହା ବାଳୁତ ତନୟେ ।
ତିନି ଯୋଜନ ଆୟତନ ସେ ପର୍ବତ ପ୍ରଚଣ୍ଡା
ଭୀମସେନ ଝୁଣ୍ଟନ୍ତେଣ ହୋଇଲା ମସିଗୁଣ୍ଡା ।

(ପୃ.-୨୪୩-୨୪୪)

ଭୀମଙ୍କର ପରାକ୍ରମ ବର୍ଣ୍ଣନା କଲାପରି କବି ସାରଳା ଦାସ ଯୁଧିଷ୍ଠିରଙ୍କ 'ଅତି ସନ୍ଥ ପଣ', ପୁଣି ଦୁର୍ଯ୍ୟୋଧନ ଓ ଦୁଃଶାସନ ପ୍ରଭୃତିଙ୍କର ଅତି ଦୁଷ୍ଟ ପଣ ଦର୍ଶାଇବା ପାଇଁ କଥାକୁ ଅତିରଞ୍ଜନ କରି କହିଛନ୍ତି । କେବଳ କେତେକ ନିର୍ଦ୍ଦିଷ୍ଟ ପ୍ରସଙ୍ଗ ନୁହେଁ, ମହଭାରତର ପ୍ରାୟ ପ୍ରତ୍ୟେକ କଥାରେ ଏହି ପ୍ରବୃତ୍ତି ଦେଖିବାକୁ ମିଳେ । କଥା କହିବାରେ ଏହା ଥିଲା ତାଙ୍କର ଏକ ବୈଶିଷ୍ଟ୍ୟ ।

**୩. ସାମାଜିକ ନୀତି ନିୟମର ଅନୁସରଣ :** ସାରଳା ଦାସ ଅନେକ ବାଗରେ ଜୀବନର ଅନେକ ସୁଖ ଦୁଃଖ କଥା କହିବା ଭିତରେ ସମାଜରେ ପ୍ରଚଳିତ ପରମ୍ପରା ପ୍ରତି ବିଶେଷ ସଚେତନ ଥିଲେ । ସେଥିପାଇଁ ସଂସ୍କୃତର ବହୁ ପ୍ରସିଦ୍ଧ କଥାକୁ ସେ ସମାଜ ଦୃଷ୍ଟିରୁ ପରିବର୍ତ୍ତନ କରିଛନ୍ତି ।

କଥାବସ୍ତୁର ଏହି ପରିବର୍ତ୍ତନକୁ ଦୁଇଟି ଦୃଷ୍ଟିରୁ ବ୍ୟାଖ୍ୟା କରାଯାଇପାରେ । ସାରଳା ଦାସ ନିଜକୁ ଅଜ୍ଞ, ମୂର୍ଖ ଓ ଅପଣ୍ଡିତ ଭାବେ ବାରମ୍ବାର ବର୍ଣ୍ଣନା କରିଥିବାରୁ, ଏକଥା ଅନୁମାନ କରାଯାଇପାରେ ଯେ, ସଂସ୍କୃତ ମହାଭାରତ ନ ପଢ଼ି, ଶୁଣାଶୁଣିରୁ ଯେତିକି ମନେ ରଖିଥିଲେ, ତାକୁ ହିଁ ବର୍ଣ୍ଣନା କଲେ । ଫଳରେ କଥାରେ ସଙ୍ଗତି ରହିପାରିଲା ନାହିଁ । ଏକଥା ମଧ୍ୟ କୁହାଯାଇପାରେ ଯେ ସଂସ୍କୃତ ମହାଭାରତର ବହୁ କଥା ଓଡ଼ିଆ ସମାଜ ଦୃଷ୍ଟିରୁ ଦୋଷାବହ ଥିଲା । ସେ ସବୁକୁ ଅବିକଳ ଭାବେ ଓଡ଼ିଆରେ ଗ୍ରହଣ କଲେ, ସମାଜରେ ମହଭାରତ ପରି ଧର୍ମଗ୍ରନ୍ଥର ପ୍ରତିଷ୍ଠା ରହିବ ନାହିଁ । ସେଥିପାଇଁ ସାରଳା ଦାସ ଯେତେ ଦୂର ସମ୍ଭବ ଏସବୁର ପରିବର୍ତ୍ତନ କରି ଓଡ଼ିଆ ସମାଜର ଉପଯୋଗୀ କରିଥିଲେ । ସତ୍ୟବତୀ, ପରାଶର, ଭୀଷ୍ମ ଓ ଶାନ୍ତନୁଙ୍କ ଉପାଖ୍ୟାନକୁ ବିଶ୍ଳେଷଣ କଲେ ଦ୍ୱିତୀୟ ଅନୁମାନ ହିଁ ବିଶେଷ ଯୁକ୍ତିଯୁକ୍ତ ମନେହୁଏ ।

ସଂସ୍କୃତରେ କୈବର୍ତ୍ତ କନ୍ୟା ସତ୍ୟବତୀଙ୍କୁ ପ୍ରଥମେ ପରାଶର ମୁନି ଉପଭୋଗ କରିଥିଲେ । ପରେ ସେ ହେଲେ ଶାନ୍ତନୁଙ୍କର ବିବାହିତା ପତ୍ନୀ । ପରାଶରଙ୍କ ଆଡୁ ସେ ହେଲେ ବ୍ୟାସ ମୁନିଙ୍କର ମାତା ଓ ଶାନ୍ତନୁଙ୍କ ଔରସରୁ ସେ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟଙ୍କୁ ଜନ୍ମ ଦେଲେ । ସତ୍ୟବତୀଙ୍କୁ ବିବାହ କରିବା ପୂର୍ବରୁ ଶାନ୍ତନୁ ଗଙ୍ଗାଙ୍କୁ ବିବାହ କରିଥିଲେ । ଗଙ୍ଗାଙ୍କଠାରୁ ତାଙ୍କର ମଧ୍ୟ ଗୋଟିଏ ପୁତ୍ର ଜନ୍ମ ହୋଇଥିଲେ । ସେ ହେଲେ ଦେବବ୍ରତ ବା ଭୀଷ୍ମ । ଶାନ୍ତନୁ ଓ ସତ୍ୟବତୀଙ୍କ ବିବାହ ବେଳେ କୈବର୍ତ୍ତ ରାଜାଙ୍କର ସର୍ତ୍ତ ଥିଲା ଯେ ସତ୍ୟବତୀଙ୍କ ପୁତ୍ର ହିଁ ଶାନ୍ତନୁଙ୍କ ପରେ ରାଜ୍ୟର ରାଜା ହେବେ । ଏହି ସର୍ତ୍ତରେ ଶାନ୍ତନୁଙ୍କ ବଡ଼ପୁଅ ଭୀଷ୍ମ ରାଜି ହେବାରୁ ବିବାହ ସମ୍ପନ୍ନ ହେଲା । ଫଳରେ ଭୀଷ୍ମ ବିବାହ କଲେ

ନାହିଁ । ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ମଧ୍ୟରୁ ଚିତ୍ରାଙ୍ଗଦ ଅଳ୍ପ ବୟସରେ ମରିଗଲେ । ବିଚିତ୍ରବୀର୍ଯ୍ୟ ଦୁଇଟି ସ୍ତ୍ରୀ ବିବାହ କରିଥିଲେ ସତ, କିନ୍ତୁ ସେ ଅପୁତ୍ରିକ ହୋଇ ପ୍ରାଣତ୍ୟାଗ କଲେ । ଫଳରେ ସୋମବଂଶ ବୁଡ଼ିଯିବାକୁ ବସିଲା । ଏତିକିବେଳେ ସତ୍ୟବତୀ ବଂଶରକ୍ଷା କରିବା ପାଇଁ ବିଚିତ୍ରବୀର୍ଯ୍ୟଙ୍କ ଦୁଇ ପତ୍ନୀଙ୍କୁ ପ୍ରଥମେ ଭୀଷ୍ମଙ୍କ ସହ, ପରେ ବ୍ୟାସଙ୍କ ସହ ମିଳିତ ହୋଇ ବଂଶରକ୍ଷା କରିବାପାଇଁ ପ୍ରବର୍ତ୍ତାଇଲେ । ସତ୍ୟବତୀ ଶାଶୁ ହୋଇ ବୋହୂମାନଙ୍କୁ ଅବାଟରେ ଯିବାପାଇଁ କହିବା ପୁଣି ଭୀଷ୍ମ ଓ ବ୍ୟାସ ଅର୍ଥାତ୍ ଦେଢ଼ଶୁରମାନଙ୍କ ସହ ମିଳିତ ହେବାପାଇଁ ଉପଦେଶ ଦେବା, ଓଡ଼ିଆ ସମାଜ ଦୃଷ୍ଟିରୁ ଅତ୍ୟନ୍ତ ଗର୍ହିତ କାର୍ଯ୍ୟ । ସାରଳାଦାସଙ୍କ ପରି ପୁରାଣକାର ଏକଥା କହିବେ ବା କିପରି ? ସେଥିପାଇଁ ସାରଳା ଦାସ ମୂଳ କଥାରେ କେତେକ ପରିବର୍ତ୍ତନ କରିବାପାଇଁ ବାଧ ହୋଇଥିଲେ । ସେଥିରୁ ପ୍ରଥମ କଥା ହେଲା, ପରାଶର ଓ ସତ୍ୟବତୀଙ୍କର ମିଳନ । ସଂସ୍କୃତ ମହଭାରତ ଓ ବିଷ୍ଣୁପୁରାଣ ଅନୁଯାୟୀ ପରଶର ସକ୍ତିଙ୍କର ପୁତ୍ର ଓ ବଶିଷ୍ଠଙ୍କର ନାତି । ନିରୁକ୍ତରେ ତାଙ୍କୁ ବଶିଷ୍ଠଙ୍କ ପୁତ୍ରଭାବେ ବର୍ଣ୍ଣନା କରାଯାଇଛି । ଯେକୌଣସି ଭାବେ ସେ ବଶିଷ୍ଠଙ୍କ ସହ ସମ୍ପୃକ୍ତ ଥିଲେ । ତେଣୁ ସେ ଜାତିରେ ବ୍ରାହ୍ମଣ । ମୁନି ଭାବରେ ମଧ୍ୟ ତାଙ୍କର ପ୍ରତିଷ୍ଠା କମ୍ ନ ଥିଲା । କିନ୍ତୁ କାମଦେବଙ୍କ ପାଇଁ ଏ ସବୁର କିଛି ମୂଲ୍ୟ ନ ଥିଲା । ଯେତେବଡ଼ ଦେବତା ବା ମୁନି ହୁଅନ୍ତୁ ସମସ୍ତେ କାମର ଅଧୀନ । ପ୍ରତାପଶାଳୀ କାମଦେବଙ୍କ ଶକ୍ତି ଉପରେ ସାରଳା ଦାସଙ୍କର ଅଗାଧ ବିଶ୍ୱାସ ଥିଲା । ସେଥିପାଇଁ ପରାଶରଙ୍କ ପରି ପ୍ରସିଦ୍ଧ ମୁନି ଆସନ୍ନ ଯୌବନା ସତ୍ୟବତୀଙ୍କୁ ଦେଖିବାକ୍ଷଣି କାମାସକ୍ତ ହୋଇପଡ଼ିଲେ ଓ ତଳେ ଧର୍ମ (ଗଙ୍ଗାଜଳ), ଉପରେ ଧର୍ମ (ସୂର୍ଯ୍ୟଦେବ) ଥାଉଁ ଥାଉଁ ମଝିରେ ଧର୍ମ ନୌକାରେ ଦିବସ ବେଳେ, ନଈର ଦୁଇକୂଳରେ ଥିବା ଲୋକଙ୍କ ସମ୍ମୁଖରେ ତାଙ୍କୁ ରମଣ କରିବାପାଇଁ ପ୍ରସ୍ତାବ ଦେଲେ । ସତ୍ୟବତୀ ଏ ପ୍ରସ୍ତାବ ଶୁଣିବା କ୍ଷଣି ବିବ୍ରତ ହୋଇପଡ଼ିଲେ ଓ କାମାସକ୍ତ ମୁନିଙ୍କର ଜ୍ଞାନୋଦୟ ପାଇଁ ଗୋଟିଗୋଟି କରି ସବୁ ଅଧର୍ମର ବର୍ଣ୍ଣନା କଲେ । ଅଥଚ କାମମୋହିତ ପରାଶର ସେ ମୁହୂର୍ତ୍ତରେ ଏସବୁକୁ ଆଉ ମାନିବାକୁ ପ୍ରସ୍ତୁତ ନ ଥିଲେ । ସେ ନିଜର ଅଲୌକିକ ଶକ୍ତି ବଳରେ ଏସବୁ ବାଧା ବିଘ୍ନକୁ ଅପସାରିତ କରି, ମତ୍ସ୍ୟାଗନ୍ଧା ସତ୍ୟବତୀଙ୍କୁ ଯୋଜନଗନ୍ଧାରେ ପରିଣତ କରି ଉପଭୋଗ କଲେ ସତ, କିନ୍ତୁ ସାରଳା ଦାସ ପରାଶରଙ୍କର ଏହି କାର୍ଯ୍ୟକୁ ଅନୁମୋଦନ କରିପାରି ନ ଥିଲେ । କଥାରୁ ପରାଶରଙ୍କୁ ବାଦ୍‌ଦେବା ମଧ୍ୟ ସମ୍ଭବ ନ ଥିଲା । ସେଥିପାଇଁ ସେ ପରାଶର ଓ ସତ୍ୟବତୀଙ୍କୁ ବିବାହ ବନ୍ଧନରେ ଆବଦ୍ଧ କଲେ । କଥାରେ ଏତିକି ପରିବର୍ତ୍ତନ କରିବା ଫଳରେ ସେ ପରାଶରଙ୍କୁ ଦୋଷମୁକ୍ତ କରି, କାମ ପ୍ରବୃତ୍ତିରୁ ହୋଇଥିବା ମିଳନକୁ ସାମାଜିକ-ବ୍ୟବସ୍ଥା ମଧ୍ୟରେ ନିୟନ୍ତ୍ରିତ କଲେ ଏବଂ ପରବର୍ତ୍ତୀ କଥା ସବୁକୁ ସମାଜ ଦୃଷ୍ଟିରୁ ବର୍ଣ୍ଣନା କରିବାରେ ଅସୁବିଧା ରହିଲା ନାହିଁ । ସଂସ୍କୃତ ଓ ଓଡ଼ିଆ ଉଭୟ ମହଭାରତରେ ସତ୍ୟବତୀ ଚରିତ୍ର ରହିଲା ସତ, କିନ୍ତୁ ସମାଜ ଦୃଷ୍ଟିରୁ ସେ ସମ୍ପୂର୍ଣ୍ଣ ଅଲଗା ହୋଇଗଲେ । ସଂସ୍କୃତରେ ସତ୍ୟବତୀ ଥିଲେ ଶାନ୍ତନୁଙ୍କର ସ୍ତ୍ରୀ, ଅମ୍ବିକା ଓ ଅମ୍ବାଳିକାଙ୍କର ଶାଶୁ, ଚିତ୍ରଙ୍ଗଦ ବିଚିତ୍ରବୀର୍ଯ୍ୟଙ୍କର ମାତା ଓ ଭୀଷ୍ମଙ୍କର ବିମାତା । ଅଥଚ ଓଡ଼ିଆ ମହଭାରତରେ ସେ ହେଲେ, ଶାନ୍ତନୁଙ୍କ ବ୍ରାହ୍ମଣ ବନ୍ଧୁ ପରାଶରଙ୍କର ସ୍ତ୍ରୀ, ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କର ପାଳୟିତ୍ରୀ । ଶାନ୍ତନୁଙ୍କ ବନ୍ଧୁପତ୍ନୀ ଭାବରେ ସେ ଅମ୍ବିକା ଓ ଅମ୍ବାଳିକାଙ୍କର ଶାଶୁ ସ୍ଥାନୀୟ ଏବଂ ସୋମବଂଶର ଜନୈକା ହିତୈଷିଣୀ ନାରୀ, ଅଥଚ ଶାଶୁ ନ ଥିଲେ । ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କୁ ବାଲ୍ୟକାଳରେ ପାଳନ କରିଥିବା ହେତୁ ବିପତ୍ନୀକ ଶାନ୍ତନୁଙ୍କ ବୋହୂମାନେ ତାଙ୍କୁ ଶାଶୁ ତୁଲ୍ୟ ସମ୍ମାନ ପ୍ରଦର୍ଶନ କରୁଥିଲେ । ତେଣୁ ବଂଶରକ୍ଷା ପାଇଁ ବଧୂମାନଙ୍କୁ ସତ୍ୟବତୀ ଯେଉଁ ପରାମର୍ଶ ଦେଲେ, ତାହା ସମାଜ ଦୃଷ୍ଟିରୁ ଅସଙ୍ଗତ ହେଲାନାହିଁ ।

ସତ୍ୟବତୀ ଉପାଖ୍ୟାନରେ ପରିବର୍ତ୍ତନ କରିବା ଫଳରେ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କ ଜନ୍ମ ନିଶ୍ଚିତ ଭାବେ ସାରଳା ଦାସଙ୍କ ସମ୍ମୁଖରେ ଏକ ସମସ୍ୟା ରୂପେ ଦେଖା ଦେଇଥିବ । କିନ୍ତୁ ପୁରାଣକାର ସାରଳାଦାସଙ୍କ ପାଇଁ ଏହା ଆଦୌ ସମସ୍ୟା ନ ଥିଲା । ପୁରାଣର ସୀତା, ଦ୍ରୌପଦୀ ଓ ଅହଲ୍ୟା ପ୍ରଭୃତି ଚରିତ୍ର ଅଯୋନି ସମ୍ଭୁତା ହିଁ ଥିଲେ । ସେଥିପାଇଁ ଶବ୍ଦଗତ ସାଦୃଶ୍ୟରୁ ଚିତ୍ର ଓ ବୀର୍ଯ୍ୟର ମିଳନରୁ ଜାତ ହେଲେ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ । ଭୀଷ୍ମଙ୍କ ପୂର୍ବରୁ ଏମାନେ ଜନ୍ମହେବା ଫଳରେ ଭୀଷ୍ମ ହେଲେ ସେମାନଙ୍କର ସାନଭାଇ ଓ ବଧୂମାନଙ୍କର ଦେବର । ତେଣୁ ଭୀଷ୍ମଙ୍କୁ ଅନୁରୋଧ କରିବାରେ ଅସଙ୍ଗତି ନାହିଁ । ସତ୍ୟବତୀ ସୁତ ବ୍ୟାସ ବୟସରେ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କ ଠାରୁ ବଡ଼ ଥିଲେ ହେଁ, ବ୍ୟାସ ଥିଲେ ବ୍ରାହ୍ମଣ ଓ ସେମାନେ ଥିଲେ କ୍ଷତ୍ରୀୟ । ଏସବୁ ପରିବର୍ତ୍ତନ ସତ୍ତ୍ୱେ ପରପୁରୁଷ ସହ ମିଳିତ ହେବା ଯେ ପାପ ଓ ଅନ୍ୟାୟ ଏବଂ ସମାଜ ବିରୋଧୀ କାର୍ଯ୍ୟ, ଏହା ସାରଳା ଦାସ ଭଲଭାବେ ବୁଝିଥିଲେ । ସେଥିପାଇଁ ବ୍ୟାସଙ୍କ ସହ ସହବାସ କାଳରେ ଅମ୍ବିକାର ମୃତ୍ୟୁହେଲା ଏବଂ ଅମ୍ବାଳିକା ପଣ୍ଡୁଙ୍କୁ ଜନ୍ମ ଦେଇସାରି ପାପରୁ ମୁକ୍ତି ପାଇବା ପାଇଁ ପ୍ରୟାଗରେ ଝାସ ଦେଲେ ।

କେବଳ ସତ୍ୟବତୀ ଉପାଖ୍ୟାନ ନୁହେଁ, ମହାଭାରତର ଅସଂଖ୍ୟ ଉପାଖ୍ୟାନରେ ସାରଳା ଦାସଙ୍କ ମାତା-ସଚେତନ ଦୃଷ୍ଟି ସ୍ପଷ୍ଟଭାବେ ପ୍ରକାଶ ପାଇଥାଏ ।

**୪. ସାରଳା ଦାସଙ୍କ ସାମାଜିକ ଆଦର୍ଶ :** ଓଡ଼ିଆ ସମାଜର ଚଳଣିକୁ ଆଖିରେ ରଖି, କଥାର ପରିବର୍ତ୍ତନ କଲାବେଳେ, କବି ସାରଳା ଦାସଙ୍କ ମନରେ ସଂସାରର ବହୁ ବିଚିତ୍ରତା ପ୍ରତିବିମ୍ବିତ

ହେଉଥିଲା । ତାଙ୍କ ମତରେ ସଂସାର ହେଉଛି ଅଣାକାର ଓ ଅଗାଧ ଜଳରାଶି ସଦୃଶ । ଏଥିରେ ମଣିଷ ରାଗ, ମୋହ, ଅହଙ୍କାର, ହିଂସାରେ ବନ୍ଧା । ଏହି ବନ୍ଧନକୁ ସେ 'ଅଦଉଡ଼ି ବନ୍ଧନ' କହିଛନ୍ତି । ଏହି ବନ୍ଧନରୁ ମୁକ୍ତି ପାଇବାକୁ ହେଲେ, ଧର୍ମ ଏକମାତ୍ର ନୌକା । ସେଥିପାଇଁ ସାରଳା ଦାସ ଧର୍ମ ପଥରେ ଚଳି, ସଂଯତ ଜୀବନଯାପନ କରିବା ପାଇଁ ଉପଦେଶ ଦେଇଛନ୍ତି ।

ସାରଳା ଦାସ ସଂସାର କହିଲେ, ସମାଜକୁ ହିଁ ବୁଝୁଥିଲେ । ପୁରୁଷ ଓ ନାରୀର ମିଳନରେ ସମାଜ ସୃଷ୍ଟି । ଏହି ମିଳନର ବହୁ ପ୍ରକାର ଦୃଶ୍ୟ ତାଙ୍କ ମହାଭାରତରେ ଦେଖିହୁଏ । ସେଥିରୁ ମୁଖ୍ୟ ହେଉଛି, ବୈବାହିକ ବନ୍ଧନ । ଗଙ୍ଗା-ଶାନ୍ତନୁ, ଧୃତରାଷ୍ଟ୍ର-ଗାନ୍ଧାରୀ, ପଣ୍ଡୁ-କୁନ୍ତୀ ଓ ମାଦ୍ରୀ ଏହାର ଉଦାହରଣ । ପିତା, ମାତା ଓ ଅନ୍ୟାନ୍ୟ ଗୁରୁଜନଙ୍କ ମଧ୍ୟସ୍ଥତା ତଥା ସ୍ୱୀକୃତି କ୍ରମେ ଏସବୁ ମିଳନ ସମ୍ପାଦିତ ହୁଏ । ଏହି ମିଳନରେ ମଧ୍ୟ ନିୟମ ଅଛି । ବିବାହ ପରେ ଉଚ୍ଛୃଙ୍ଖଳ ଜୀବନଯାପନ କରିବା ଅନୁଚିତ । ବିବାହ ପରେ ଶୃଙ୍ଗାର ବଞ୍ଚାଇବା ଯେପରି ଏକ ଅପରାଧ, ଦିନ ବାର ନ ମାନି ଶୃଙ୍ଗାରରେ ଲିପ୍ତ ହେବା ମଧ୍ୟ ସେହିପରି ଏକ ଦୋଷ । ଅମ୍ବାକୁ ବିବାହ କରି 'ଶୃଙ୍ଗାର ବଞ୍ଚାଇ ପଛେ ଅପବାଦ ଦିଅ' ଉପଦେଶର ବିରୋଧକରି ପାରେଶ୍ୱର ପ୍ରଭୃତି ଗୁରୁଜନମାନଙ୍କୁ ଭୀଷ୍ମ 'ଅଗସ୍ତି ପୁରାଣ'ରୁ ଯେଉଁ ଅଂଶ କହିଥିଲେ, ସେଥିରେ ଅଛି -

ଭୀଷ୍ମେ ବୋଇଲେ ତୁମ୍ଭେ ଶୁଣ ପିତୃଗଣେ
ମୁହିଂ ଶୁଣିଲି ଦେବ ଅଗସ୍ତିଙ୍କ ପୁରାଣେ ।
ତିରିଶ ଦିବସେ ଯେ ଅଶୁଦ୍ଧ ହୋଏ ନାରୀ
ତାହାକୁ ଛୁଇଁଲେ ଯେ ଚାଣ୍ଡାଳ ଛୁଇଁଲା ସରି ।
ଯେତେ ବସ୍ତେ ଛୁଇଁ ତେତେ ବସ୍ତେ ସ୍ନାହାନ କରି
ସେ ଦିନେକ ଉପବାସେଣ ଦିନ ହରି ।
ଦୁତୀୟ ଦିବସେଣ ଛୁଅନ୍ତି ଯେବଣ ନାରୀ
ପ୍ରତକ୍ଷେ ଦୋଷ ହୋଅଇ ବ୍ରହ୍ମ ହତ୍ୟା ପାପ ସଙ୍ଗେ ସରି ।
ତୃତୀୟ ଦିବସେ ଛୁଅନ୍ତି ଯେବଣ ଯୁବତୀ
ପୂଜାଲିଙ୍ଗ ଭାଙ୍ଗିଲେ ହୁଅଇ ଯେବଣ ଗତି ।
ଚତୁର୍ଥ ଦିବସେ ଯେ ହୁଅନ୍ତି ଯୁବତୀଙ୍କର ପାଶ
ଗୋ ହତ୍ୟା ବ୍ରହ୍ମ ହତ୍ୟା ମାତୃହରଣ ସୁରାପାନ ଦୋଷ ।
ଶୁଦ୍ଧ ସ୍ନାହାନ କରିବ ପାଞ୍ଚ ଦିବସେ
ସେଦିନ ଯିବ ପୁରୁଷ ତାହାର ପାଶେ ।
ନାନା ଧର୍ମ ଇଚ୍ଛି ପିତୃକାର୍ଯ୍ୟ ଆଦି କରି
ସମସ୍ତ ତେଜ୍ୟା କରି ତାହାରେ ହୋଇବ ବ୍ରତଚାରୀ ।
ଷଷ୍ଠ ଦିନ ଯେ ସପ୍ତମ ଦିନ ପରିଯନ୍ତେ
ଯେବଣ ପୁରୁଷ ନ ଯାନ୍ତି ଦୋଷକୃତ ଅର୍ଥେ ।
ସେ ବୋହିଲା ଶ୍ରେଣିତ ଆଧାର କରନ୍ତି ତାହାର
ପିତୃଲୋକେ
ଯେସନେକ ଅଛି ଶାହାସ୍ର ଧର୍ମବାକ୍ୟେ ।
(ପୃଷ୍ଠା-୮୧-୮୨)

ଅଗସ୍ତି ପୁରାଣ, ଶାସ୍ତ୍ର, ଧର୍ମବାକ୍ୟ ଓ ବିଭିନ୍ନ ପ୍ରକାର ପାପର ଉଲ୍ଲେଖ କରି ସାରଳା ଦାସ ବିବାହିତ ଦମ୍ପତିଙ୍କୁ ସରଳ ଜୀବନଯାପନ କରିବା ପାଇଁ ଉପଦେଶ ଦେବାପରି, କନ୍ୟା ଋତୁବତୀ ହେବା ପୂର୍ବରୁ ବିବାହ କରିଦେବା ପାଇଁ ପିତାମାତାଙ୍କୁ କହିଛନ୍ତି । ପ୍ରାୟ ପ୍ରତ୍ୟେକ କନ୍ୟାର ବିବାହ ପୂର୍ବରୁ ଏହି ପ୍ରସଙ୍ଗର ଅବତାରଣା କରାଯାଇଛି । ତପତୀର ବିବାହ ବେଳେ ଆଦିତ୍ୟ କହୁଛନ୍ତି -

ଦୋହିତା ପିତା ଘରେଣ ହୋଇଲେ ରଜବତୀ
ପିତୃଲୋକମାନେ ଯେ ହୁନ୍ତି ନର୍କଗତି । (ପୃ.-୧୫)
ଅବିବାହୀ ଦୋହିତା ପିତା ଘରେ ହେଲେ ରଜବତୀ
ଏକୋଇଶ ପୁରୁଷ ପରିଯନ୍ତେ ପିତୃଲୋକଙ୍କୁ ଅଗତି
(ପୃ.-୨୦)

ଅବିବାହୀ କନ୍ୟା ପିତାଘରେ ରଜବତୀ ହେବାପରି କୌଣସି ପୁରୁଷ ସହ ସହବାସ କରିବା ମଧ୍ୟ ଅପରାଧ । ସାରଳା ମହାଭାରତରେ ଏହିପରି ଦୁଇଟି ପ୍ରସଙ୍ଗ ଦେଖିବାକୁ ମିଳେ । ଗୋଟିଏ ହେଲା ପରାଶର ସତ୍ୟବତୀ ମିଳନ ଓ ଅନ୍ୟଟି ହେଲା ସୂର୍ଯ୍ୟ କୁନ୍ତୀଙ୍କର ମିଳନ । ପରାଶର ଓ ସତ୍ୟବତୀଙ୍କ ମିଳନ ବେଳେ ପରାଶର ଅବିବାହିତ ଓ ଅରଜବତୀ ସତ୍ୟବତୀଙ୍କୁ 'କାମ ଅସାଷ୍ଟମେ' ରମଣ କରିଥିଲେ ହେଁ ଏହାପରେ ବିଧିବଦ୍ଧ ବିବାହରେ ପରିଣତ ହୁଏ ।

ଆଗୋ ବାରତା ପାଇଣ ଯେ ଆସଇ ଦାସ ରାୟେ
ପାରେଶ୍ୱରଙ୍କୁ ଆଣିଣ ମୋତେ ପ୍ରଦାନ କୟେ ।
ଆମ୍ଭେ ଆଦି ଜନ୍ମେ ଅଟୁ କଇବ୍ରତୀ
ବ୍ୟାସେ ବଞ୍ଚାଇଲେ ହାଦେ ଅଜାତି ଅଗତି ।
(ପୃ.-୧୦୩)

ସୂର୍ଯ୍ୟ କୁନ୍ତୀଙ୍କ ମିଳନରେ ବଳାତ୍କାର କାମଚେଷ୍ଟା ନ ଥିଲା । ମନ୍ତ୍ର ବଳରେ ସୂର୍ଯ୍ୟ ନିମନ୍ତ୍ରିତ ହୋଇ ଆସିଥିଲେ । କୁନ୍ତୀ ଅରଜବତୀ ଓ ଅବିବାହୀ ଥିଲେ ହେଁ ଏବଂ ଏ ମିଳନରୁ କର୍ଣ୍ଣଜନ୍ମ ହୋଇଥିଲେ ହେଁ ସାରଳା ଦାସ ଏହାକୁ ଏକ ଅଲୌକିକ ଘଟଣା ରୂପେ ବର୍ଣ୍ଣନା କରିଛନ୍ତି । କୁନ୍ତୀଙ୍କର କୁମାରୀତ୍ୱ ନଷ୍ଟ ହୋଇନାହିଁ । କୁନ୍ତୀ ନିଜର ସତୀତ୍ୱ ବିଷୟରେ ସମ୍ପୂର୍ଣ୍ଣ ସଚେତନ ଥାଇ, ସୂର୍ଯ୍ୟଦେବଙ୍କୁ ଅନୁରୋଧ କରି କହିଛନ୍ତି -

କୋଇନ୍ତା ବୋଇଲେ ଭୋ ଦେବ ଭବଦ୍ୱାରୁ ଜାତ ନ
ହୋଉ ସନ୍ତତି
ଭବ ଗଲନ୍ତେ ମୁଁ ଯେ ହୋଇବି ଅସତୀ

କୁଳକୁ ଦୂଷିତ କଲି ଯେ ମୋହୋର ଦୁହିତା ପଣେ
ବିକଳେ ଦେଖି ଦୟା କଲେ ବିରଞ୍ଚ ନାରାୟଣେ ।
(ପୃ.-୧୫୮)

ଦେବତାଙ୍କ ସହ ମିଳିତ ହୋଇ ସନ୍ତାନ ଜାତ କଲେ ନାରୀ ଅସତୀ ହୁଏ ନାହିଁ । ଏହାହିଁ ଥିଲା ସାରଳା ଦାସଙ୍କ ମତ । ତେଣୁ ଏହି ମିଳନ ସମାଜ ଦୃଷ୍ଟିରୁ ଦୂଷଣୀୟ ହେଲେ ହେଁ, ଏଥିରେ ସାମାଜିକ ଆଦର୍ଶ ବ୍ୟାହତ ହୋଇନାହିଁ ।

ବିବାହ ପରେ ପରପୁରୁଷ ଗ୍ରହଣ ଏକ ଗର୍ହିତ କାର୍ଯ୍ୟ । ତେବେ ସଂସ୍କୃତ ମହାଭାରତରେ ଏପରି ବହୁ ପ୍ରସଙ୍ଗର ଅବତାରଣା କରାଯାଇଛି, ଯାହାକୁ ନ ଲେଖିଲେ ନ ଚଳେ । ସୋମବଂଶର ରକ୍ଷାପାଇଁ ଅମ୍ବିକା, ଅମ୍ବାଳିକା, କୁନ୍ତୀ ଓ ମାଦ୍ରୀ ପ୍ରଭୃତି ନାରୀମାନେ ପରପୁରୁଷ ସହ ମିଶି ସନ୍ତାନ ଉତ୍ପତ୍ତି କରିଛନ୍ତି । ସାରଳାଦାସ ଏସବୁ ଗଳ୍ପକୁ ଯେତେଦୂର ସମ୍ଭବ ସମାଜ ଉପଯୋଗୀ କରି ବର୍ଣ୍ଣନା କରିଥିଲେ ହେଁ, ପରପୁରୁଷ ଗହଣ କଥାକୁ ସେ ଆଦୌ ସହ୍ୟ କରି ପାରିନାହାନ୍ତି । ସେଥିପାଇଁ ପ୍ରତ୍ୟେକ କ୍ଷେତ୍ରରେ ସେ ନିଜର ସ୍ୱତନ୍ତ୍ର ବିଚାର ପ୍ରଦାନ କରି, କଥାକୁ ନୂଆ ରୂପ ଦେଇଛନ୍ତି । ସଂସ୍କୃତରେ ନ ଥିବା ସ୍ଥଳେ, ବ୍ୟାସଙ୍କ ସହ ମିଳିତ ହେବା ପରେ ଅମ୍ବିକାର ମୃତ୍ୟୁ, ଆମ୍ବାଳିକାର ପ୍ରୟାଗରେ ଝାସ ପ୍ରଭୃତି ପରପୁରୁଷ ମିଳନଜନିତ ପାପର ପରିଣାମ । କୁନ୍ତୀ ଓ ମାଦ୍ରୀଙ୍କୁ ଏହି ପାପରୁ ମୁକ୍ତ କରିବା ପାଇଁ ସେ ଦେବତା ଓ ମନୁଷ୍ୟ ମଧ୍ୟରେ ପାର୍ଥକ୍ୟ ସ୍ଥିର କରିଛନ୍ତି । ଦେବତା ସହ ମିଳିତ ହେଲେ ନାରୀ ଅସତୀ ହୁଏ ନାହିଁ - ଏହା କହିବା ସତ୍ତ୍ୱେ କୁନ୍ତୀଙ୍କ ମନ ଏହିସବୁ ପାପକର୍ମ ପାଇଁ ଘାଣ୍ଟି ହୋଇଛି । ସେଥିପାଇଁ ସେ କହିଛନ୍ତି -

ଭୋ ଧର୍ମ ପୁରୁଷ ଯେହେର୍ଣେକ ମୋର କର୍ମ
କେବଣ ପାପକ୍ଷଣେ ହୋଇଲି ମୁଂହିଁ ଜନ୍ମ ।
ସ୍ତିରୀ ଜନ୍ମରେ ମୁଁ ହୋଇଲି ଅସତୀ
କେତେ ଭ୍ରଥାରେ ଦିନ ଯିବ କର୍ମରେ ଅଗତି ।
(ପୃ.-୨୩୨)

X X X X

ସଂସାରେ ଉପୁଜି ଦେବ ନ କଲି କିଛି ଧର୍ମ
କେମନ୍ତେ କରି ମୁକତ କରିବଟି ଯମ ।
ରାଗ ମୋହ ଅହଂକାର ଥିଲେ ଉପୁଜିଟି ଅନେକ ପାପ
ରାଜପଦେ ବସିଲେ ବଢ଼ାଇ ପରତାପ । (ପୃ.-୨୩୩)

କାମ ବଶ ହେଲେ, ପାପ ପୁଣ୍ୟର ବିଚାର କରିହୁଏ ନାହିଁ । ଏକଥା ସବୁ କ୍ଷେତ୍ରରେ ସତ ହେଲେ ହେଁ, ସାଧାରଣ ଲୋକ ଅପେକ୍ଷା ଜ୍ଞାନୀ ଓ ପଣ୍ଡିତ ମାନଙ୍କର ଏଥିରେ ଦାୟିତ୍ୱ ବେଶୀ । ସାଧାରଣ ଘରର ନାରୀ ଅପେକ୍ଷା ରାଜା ଘରର ଝିଅ, ବୋହୂ ଏଥିପ୍ରତି ବିଶେଷ ସତର୍କ ହେବା ଉଚିତ । ପରାଶରଙ୍କ ସହ ମିଳିତ ହେବାବେଳେ ସତ୍ୟବତୀଙ୍କ ମୁଖରୁ ସାରଳା ଦାସ ଏହି ନୀତିବାକ୍ୟ ଶୁଣାଇ କହିଛନ୍ତି -

ପରସ୍ତିରୀ, ବ୍ରହ୍ମସ୍ତିରୀ ଆବର ଗୁରୁଙ୍କ ପତ୍ନୀ
ଏଥିରେ ପାପ ପୁଣ୍ୟ ଅଟ ତୁମ୍ଭେ ଜ୍ଞାନୀ ।
ଅଜ୍ଞାନୀ ପ୍ରାଣୀଙ୍କର ପାପ ପୁଣ୍ୟ ନାହିଂ ।
ପଣ୍ଡିତ ହୋଇ ପାପ କଲେ ମୋକ୍ଷ ଅଛି କାହିଂ ।

ବ୍ୟାସଙ୍କ ସହ ମିଳିତ ହେବାପାଇଁ ସତ୍ୟବତୀଙ୍କ ପରାମର୍ଶରେ ରାଜବଧୂ ଅମ୍ବିକା ମଧ କହିଛନ୍ତି -

ଅମ୍ବିକା ବୋଲନ୍ତି ଗୋ ଶୁଣ ସତ୍ୟବତୀ
ସ୍ତିରୀଜନ ଆମ୍ଭେ ଅଟୁ ମନ୍ଦ ଜାତି ।
ସଦାଏଣ ଅଶଉଚ ଅନୀତି ଅକ୍ରିୟା
ସମସ୍ତ ବିଧଂସିଲୁ ନାମ ସତଶ୍ରୀୟା ।
ସୁରା ଖାଇଲେ ଯେହ୍ନେ ହେଂ ମାଥ ଅସମ୍ଭାଳି
ପରପୁରୁଷ ଆମ୍ଭେ ଦେଖିଲେ ହୋଇ ମଉଭୋଳି ।
ତେଣୁଟି ପ୍ରମଦା ନାମ ଯେ ଆମ୍ଭର
ଅନୁବ୍ରତେ ଇଚ୍ଛା କରୁଂ ପରପୁରୁଷ ସୁନ୍ଦର ।
ଆମ୍ଭେ ଅବା ବାଞ୍ଛା କଲୁ ଅନିର୍ଯାପି
ସେ କିମ୍ପାଇ ଲଙ୍ଘିବେ ପଣ୍ଡିତ ମହାତପୀ ।
(ପୃ.-୧୦୩-୧୦୪)

ପାପ, ପୁଣ୍ୟର ବିଚାର କଲାବେଳେ ପଣ୍ଡିତ ଓ ଅପଣ୍ଡିତଙ୍କ ମଧ୍ୟରେ ପାର୍ଥକ୍ୟ ଥିଲେ ହେଁ, ସାଧାରଣ ଲୋକେ ଏଥିରୁ ଏକାବେଳକେ ମୁକ୍ତ ନୁହନ୍ତି । ଦାସରାଜାର ପାଟରାଣୀମାନେ ସନ୍ତାନ ଲାଭ ଆଶାରେ ମଳାଶୁର, ଜ୍ୟେଷ୍ଠାଶୁର, ତାତ, ଭଗ୍ନି-ଜାମାତା ପ୍ରଭୃତିଙ୍କ ସହ ରେତଯୋଗ କରିଥିଲେ ହେଁ ସାରଳା ଦାସ ଏମାନଙ୍କ ପାପକର୍ମକୁ ଅତି ସାଧାରଣ ଦୃଷ୍ଟିରେ ଦେଖିଛନ୍ତି । ସେମାନଙ୍କ ଦୋଷର ପ୍ରାୟଶ୍ଚିତ ପାଇଁ ସେ କୌଣସି ବ୍ୟବସ୍ଥା କରିନାହାନ୍ତି । ସନ୍ତାନ ଉତ୍ପତ୍ତି କରି ସେମାନେ ଯେଉଁ ଧର୍ମ ଅର୍ଜ୍ଜନ କଲେ, ସେଥିରେ ହିଁ ସେମାନଙ୍କ ପାପ ଧୋଇ ହୋଇଯାଇଛି । ଅଥଚ ଅସଦ ମାର୍ଗରେ ଜନ୍ମ କରିଥିବା କନ୍ୟାକୁ ଏସବୁ ପାପରୁ ମୁକ୍ତ କରିବା ପାଇଁ ଧର୍ମ-ନୌକାରେ, ଲୋକଙ୍କର ସେବାକରିବା ପାଇଁ ନିଯୁକ୍ତ କରାଯାଇଛି ।

ନୀଳା ଓ କମଳାଙ୍କ ପାଇଁ ସାରଳା ଦାସ ପ୍ରାୟଶ୍ଚିତ୍ତର କୌଣସି କଠୋର ବ୍ୟବସ୍ଥା କରି ନଥିଲେ ହେଁ, ରାଜବଧୂ ରତ୍ନାବତୀ ପ୍ରସଙ୍ଗରେ ସାରଳାଦାସଙ୍କୁ କୈଫିୟତ୍ ଦେବାକୁ ପଡ଼ିଛି । ତାଙ୍କ ମତରେ ରାଜବଧୂମାନେ ଏପରି କୁକର୍ମରେ ଲିପ୍ତ ହେବା ଅସ୍ୱାଭାବିକ । କିନ୍ତୁ ରତ୍ନାବତୀ ଅନୁରାଧା ନକ୍ଷତ୍ରରେ ଜନ୍ମ ହୋଇଥିବାରୁ ଜନ୍ମକାଳର ପ୍ରଭାବରୁ ଏପରି କାର୍ଯ୍ୟରେ ଲିପ୍ତ ହେଲେ । ତେବେ ବି ଏହା ଏକ ପାପକର୍ମ । ସେଥିପାଇଁ ସେ

ତାଙ୍କ ସ୍ୱାମୀଙ୍କ ହାତରେ ନିହତ ହେଲେ । ସାଧାରଣତଃ ସ୍ତ୍ରୀ ହତ୍ୟା ଏକ ପାପ ରୂପେ ପରିଗଣିତ । ଅଥଚ ଧର୍ମରାଜାଙ୍କ ବିଚାରରେ ଅନଙ୍ଗସେନ ଦୋଷୀ ରୂପେ ସାବ୍ୟସ୍ତ ହେଲେ ନାହିଁ । ସାରଳାଦାସ ଏହାର ବିଚାର କରି ଲେଖିଛନ୍ତି -

ଯମ ଧର୍ମ ପୁରାଣେ ପୁଣ ବିଚାର ହୋଇଲା
ରାଜା ମହାରଷିଙ୍କି ହତ୍ୟା ଦୋଷ ନ ଲାଗିଲା
ଭାରିଜା ହୋଇ ଯେବେ ହେଲା ପରଦାରାଯେଣୀ
ସ୍ୱାମୀ ଦଣ୍ଡିବ ନାହିଂ କି ? ଦୋଷ ପରିମାଣି ।
ଯୁଗତେଣ ରାଜା ଆବରସେ ତାହାର ପ୍ରିୟା
ଦୋଷକୁ ସେ ଶାସ୍ତି ଦିଲା ପାପ ନ ବୋଲିବା ତାହା ।

(ପୃ.-୧୯୨)

ରତ୍ନାବତୀ ପ୍ରସଙ୍ଗ ଲେଖିବା ବେଳେ ସାରଳା ଦାସ ମନୁଷ୍ୟ ଜୀବନକୁ ସ୍ୱାଭାବିକ ରୀତିରେ ବିଶ୍ଳେଷଣ କରିଛନ୍ତି । କାମ ହେଉଛି ମନୁଷ୍ୟ ମନର ଏକ ସହଜାତ ପ୍ରବୃତ୍ତି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ପ୍ରଭୃତି ଦେବତା ମଧ୍ୟ ଏହାର ପ୍ରଭାବରୁ ନିଜକୁ ମୁକ୍ତ କରି ପାରନ୍ତି ନାହିଁ । ଏହା ପ୍ରାୟ ଅଦମନୀୟ । ଏହାର ତୃପ୍ତି ନାହିଁ । ଶାସ୍ତ୍ର ଓ ନୀତି ବାକ୍ୟର ଉପଦେଶ ମଧ୍ୟ ଏହାକୁ ସଂଯତ କରିବାରେ ଅକ୍ଷମ । ସାରଳା ଦାସଙ୍କ ରତ୍ନାବତୀ ଚରିତ୍ର ଏକ ପକ୍ଷରେ ଶାସ୍ତ୍ର ଉପଦେଶ, ସାମାଜିକ ନିୟମ ଓ ଅନ୍ୟପକ୍ଷରେ ମଣିଷର ସହଜାତ ପ୍ରବୃତ୍ତି ମଧ୍ୟରେ ଅହରହ ଚାଲିଥିବା ସଂଗ୍ରାମର ଚିତ୍ର । ରତ୍ନାବତୀର ଦୁର୍ନିବାର କାମ-ବାସନାକୁ ସଂଯତ କରିବାପାଇଁ ରାଜା ଅନଙ୍ଗସେନଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଛି । ବାର ବରଷର ତପସ୍ୟା ଶୁଖୁଆ ପୋଡ଼ାରେ ଗଲା ପରି ଦ୍ୱାଦଶ ବରଷ ଯାଏ ପୁରାଣ ପାଠ ହେଲା, ଭଟ୍ଟ ମିଶ୍ର ବସାଇ କେତେ ଉପଦେଶ ଦିଆଗଲା । ରାତି ନାହିଁ, ଦିନ ନାହିଁ, ସବୁବେଳେ ରାଜା ପରଦାରରେ ଥିବା ଦୋଷସବୁ କହି ରାଣୀଙ୍କୁ ପରଦାର ନ କରିବା ପାଇଁ ବୁଝାଇଲେ । ଏ ଦୋଷରେ ଗତି ମୁକ୍ତି ମିଳିବା କଥା ମଧ୍ୟ କୁହାଗଲା । କିନ୍ତୁ ସବୁ ବ୍ୟର୍ଥ ।

ଶୁଣିମା ପରିଯନ୍ତେ ସେ ଘେନିଥାଇ ହୃଦେ
ରାଜା ଅନ୍ତର ହୋଇଲେ ସେ ଚଳଇ କାମ ଖେଦେ ।

(ପୃ.-୧୯୩)

ସୁସ୍ଥ ସମାଜ ଗଠନରେ ପୁରୁଷ ଅପେକ୍ଷା ନାରୀର ଭୂମିକା ଅଧିକ, ଏହାହିଁ ବୋଧହୁଏ ଥିଲା ସାରଳା ଦାସଙ୍କ ଆଦର୍ଶ । ସେଥିପାଇଁ ପ୍ରତ୍ୟେକ ପ୍ରସଙ୍ଗରେ ସେ ନାରୀର କର୍ମ ଓ ଅକର୍ମର ବିଚାର କରିଛନ୍ତି ଓ ସେମାନଙ୍କ ନିଷ୍ଠା ଓ ପବିତ୍ରତା ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ପୁରୁଷଙ୍କ ପାଇଁ ତାଙ୍କର ଏକମାତ୍ର ଉପଦେଶ ହେଉଛି ଯେ ସେମାନେର ବେଳକାଳ ଦେଖି ସତସଙ୍ଗ କରିବା ଉଚିତ ।

ସଂସ୍କୃତ କଥାକୁ ଭାଙ୍ଗି ଓଡ଼ିଆ ରୂପ ଦେବାବେଳେ, ଓଡ଼ିଆ ସମାଜର ରୀତି, ନିତି ଓ ସାମାଜିକ ଆଦର୍ଶ ପରି ଓଡ଼ିଶାରେ ପ୍ରଚଳିତ ଲୋକକଥା ସବୁ କବିଙ୍କୁ ବିଶେଷ ଭାବେ ଅନୁପ୍ରାଣିତ କରିଥିଲା । ଉଦାହରଣ ପାଇଁ 'ପ୍ରଥମ ଯୁଦ୍ଧରେ ଭୀମ ହାରେ', 'ଧୃତରାଷ୍ଟ୍ର କଇ କନ୍ୟା ନାହିଁ କି ଗାନ୍ଧାରୀ କଇ ବରନାହିଁ', ଋଷିମାନଙ୍କର ବର ଓ ଅଭିଶାପର ଫଳ, ମନୁଷ୍ୟ ଜୀବନରେ ଗ୍ରହ, ନକ୍ଷତ୍ରର ପ୍ରଭାବ ପ୍ରଭୃତିକୁ ଗ୍ରହଣ କରାଯାଇପାରେ । ମହାପରାକ୍ରମଶାଳୀ ଦୁର୍ଯୋଧନଙ୍କ ମୃତ୍ୟୁଭେଦ ବିଷୟରେ ସୂଚନା ଦେଇ ସାରଳା ଦାସ ଲେଖିଛନ୍ତି -

ଶରୀର ଆଉଂଶି ବୋଇଲେ ତୋହୋର ଶରୀର ବଜ୍ରହୋଉ
ଆମ୍ବର ସର୍ଜନ ଯେହାର ତହିଂ କଥଯେ ଥାଉ
ବାଲୁତ ବେନି ଜାନୁ ଯେକଠାରେ ଲାଗିଥିଲା
ତହିଂରେ ହସ୍ତ ନ ଲାଗିଲା ଛିଦ୍ର ଯେ ରହିଲା ।

(ପୃ-୨୨)

ସେହି ଛିଦ୍ରରେ ବ୍ୟାସଙ୍କ ହାତ ନ ଲାଗିବାରୁ ତାହା ବଜ୍ର ହାଇ ପାରିଲା ନାହିଁ । ସେଇଠି ରହିଲା ଦୁର୍ଯୋଧନଙ୍କ ମୃତ୍ୟୁ-ଭେଦ । ସେତକ ଜାଣି ନ ପାରିଲେ ଦୁର୍ଯୋଧନଙ୍କୁ ବଧ କରିବା ସମ୍ଭବ ନୁହେଁ । ଲୋକ କଥାରେ ଏହିପରି ମୃତ୍ୟୁ ରହସ୍ୟ ସମ୍ବନ୍ଧରେ ବହୁକଥା ମିଳିଥାଏ । କେତେବେଳେ ଏହା ଫରୁଆ ଭିତରେ ଥିବା ଲମ୍ବା ବାଳ ଭିତରେ ରୁହେ ତ କେତେବେଳେ ଏହା କଳା ବାଳ ଭିତରେ ଲୁଚିକରି ରହିଥିବା ଧଳାବାଳରେ ।

ମହଭାରତ ଲେଖିବା ବେଳେ ସାରଳାଦାସ 'କଥା କହିବା'କୁ ନିଜ ପୁରାଣ ଲେଖାର ମୂଳଧର୍ମ ରୂପେ ସ୍ୱୀକାର କରିଥିଲେ । ସେଥିପାଇଁ କଥାକୁ ସରସ କରିବା ପାଇଁ ସେ ତାଙ୍କ ସମୟରେ ପ୍ରଚଳିତ ପ୍ରାୟ ସବୁପ୍ରକାର ପଦ୍ଧତିକୁ ନିଜ ମହଭାରତରେ ଗ୍ରହଣ କରିଛନ୍ତି ଓ ସେଥିପାଇଁ ତାଙ୍କ ମହଭାରତ ଯୁଗ ଯୁଗ ବ୍ୟାପୀ ଓଡ଼ିଆ ସମାଜକୁ ଉଦ୍‌ବୁଦ୍ଧ କରି ଆସିଛି ।

(୧୯୭୮)

(ପ୍ରଫେସର କୃଷ୍ଣଚରଣ ସାହୁ
ରଚନା ସମ୍ଭାର ୨, ୧୯୯୯)

# ପରିଶିଷ୍ଟ

## (୧)

## ଆଦିପର୍ବ : ନିବେଦନ

ସାରଳା **ମହାଭାରତ** ଓଡ଼ିଆ ସାହିତ୍ୟର ଆଦିଗ୍ରନ୍ଥ । ଏହି ମହାନ୍ ଗ୍ରନ୍ଥରୁ ପଞ୍ଚଦଶ ଶତାବ୍ଦୀରେ ଓଡ଼ିଆ ଭାଷାର ସମୃଦ୍ଧି ସମ୍ବନ୍ଧରେ ସବିଶେଷ ଜ୍ଞାନପ୍ରାପ୍ତ ହେବା ସଂଗେ ସଂଗେ ଓଡ଼ିଶାର ରାଜନୈତିକ ତଥା ସାମାଜିକ ଜୀବନ, ଓଡ଼ିଶାରେ ପ୍ରଚଳିତ ବିଭିନ୍ନ ଧର୍ମ, ତଥା ଓଡ଼ିଶାର ସାହିତ୍ୟିକ-ଚେତନା ପ୍ରଭୃତି ବହୁ ବିଷୟରେ ସମ୍ୟକ ଧାରଣା ହୋଇଥାଏ । ଏଥିରୁ ମିଳୁଥିବା ଉପଦାନ ସବୁକୁ ଉପଯୋଗ କଲେ, ତତ୍କାଳୀନ ଓଡ଼ିଶାର ଚିତ୍ର ସ୍ପଷ୍ଟ ହୁଏ। ଏହା ହେଉଛି, ଓଡ଼ିଶାର ବିଶ୍ୱକୋଷ। ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଏହି ଗ୍ରନ୍ଥର ମହତ୍ତ୍ୱ ଉପଲବ୍ଧିକରି ବହୁ ପରିଶ୍ରମ ସହକାରେ ଏହାର ସମ୍ପାଦନା କରିଥିଲେ । ବିଭିନ୍ନ କାରଣରୁ ଏଥିରେ କେତେକ ପ୍ରମାଦ ପରିଲକ୍ଷିତ ହୁଏ । ତେବେ ବି ବଜାରରେ ସାରଳା ଦାସ ନାମରେ ପ୍ରଚଳିତ ଥିବା **ମହାଭାରତ** ଠାରୁ ଏହା ଯେ ବହୁ ଗୁଣରେ ଉତ୍କୃଷ୍ଟ ଏହା ଅସ୍ୱୀକାର କରି ହୁଏ ନାହିଁ । ଏହି ବିରାଟ ଗ୍ରନ୍ଥକୁ ପୁଣି ଥରେ ସମ୍ପାଦନା କରିବା ପାଇଁ ଓଡ଼ିଶା ସଦୃଶ ଦରିଦ୍ର ଦେଶରେ ହୁଏତ ସମ୍ଭବ ହେବନାହିଁ। ସେଥିପାଇଁ 'ଆଦି ପର୍ବ'ର କେତେକ ଅଂଶକୁ ପରୀକ୍ଷାମୂଳକ ଭାବେ ସମ୍ପାଦନା କରାଯାଇଛି ।

ପ୍ରସ୍ତୁତ ସମ୍ପାଦନା ପାଇଁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ସମ୍ପାଦିତ ଗ୍ରନ୍ଥ ବ୍ୟତୀତ ଆଉ ଦୁଇଟି ପୋଥିର ଆଶ୍ରୟ ନିଆଯାଇଛି । ଆର୍ତ୍ତବଲ୍ଲଭଙ୍କ ସମ୍ପାଦିତ ଗ୍ରନ୍ଥ ଏଥିରେ (କ) ପୋଥି, ମୁଲୁଗାଁରୁ ପ୍ରାପ୍ତ ପୋଥି (ଖ), ଓ ପଞ୍ଚପଲ୍ଲୀରୁ ସଂଗୃହୀତ ପୋଥି (ଗ) । ପ୍ରଥମ ୧୪୦ ପୃଷ୍ଠାରେ (ଖ) ଆଦର୍ଶ ପୋଥି, ଓ (ଗ) ସାହାଯ୍ୟକାରୀ ପୋଥି । ଶେଷାର୍ଦ୍ଧରେ (କ) ହେଉଛି ଆଦର୍ଶ ପୋଥି ଓ (ଖ) ଓ (ଗ) ସାହାଯ୍ୟକାରୀ ପୋଥି । ଶେଷାର୍ଦ୍ଧର ପାଠାନ୍ତର ମଧ୍ୟ (କ) (ଖ) ଓ (ଗ) ପୋଥିରୁ ଗୃହୀତ ।

ଦୁଇ ପ୍ରକାର ଆଦର୍ଶ ସ୍ଥିର କରିବାର କାରଣ ହେଉଛି, ପ୍ରଥମ ଅଂଶରେ ଆର୍ତ୍ତବଲ୍ଲଭଙ୍କ ସମ୍ପାଦିତ ଗ୍ରନ୍ଥ ବହୁ ପ୍ରମାଦ ପୂର୍ଣ୍ଣ ଓ ଦ୍ୱିତୀୟାର୍ଦ୍ଧରେ ଏହା ଅପେକ୍ଷାକୃତ କମ । ପାଠକମାନଙ୍କୁ ସ୍ୱତନ୍ତ୍ର ପାଠ ଦେଇ ବିଭ୍ରାନ୍ତ କରିବା ମୋର ଉଦ୍ଦେଶ୍ୟ ନଥିବାରୁ ମୁଁ ଯେତେଦୂର ସମ୍ଭବ, ଉପାଖ୍ୟାନର ସଙ୍ଗତି ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଛି । ଯେଉଁଠି (କ) ପାଠକୁ ଗ୍ରହଣ କରିବା ସମ୍ଭବ ହୋଇନାହିଁ, ସେ ସ୍ଥଳରେ ନିମ୍ନରେ ପାଠକମାନଙ୍କ ଅବଗତି ପାଇଁ ପାଠାନ୍ତର ଦିଆଯାଇଛି । ଗୃହୀତ ପାଠ ଓ ପାଠାନ୍ତରର ତୁଳନା କଲେ, ଏହି ଗ୍ରନ୍ଥର ଉପାଦେୟତା ସହଜରେ ଉପଲବ୍ଧି କରିହେବ । ପଟଳ ଓ ସଭା ବିଭାଜନ ବ୍ୟତୀତ ଅନ୍ୟାନ୍ୟ ବିଭାଜନରେ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ବିଭାଗକ୍ରମକୁ ଗ୍ରହଣ କରାଯାଇଛି ।

ପାଠ ଗ୍ରହଣରେ ମତଭେଦ ରହିବା ସ୍ୱାଭାବିକ । ଏଥିରେ ଦୁଇଟି ପ୍ରକ୍ରିୟା କାର୍ଯ୍ୟ କରେ, (କ) ଆଦର୍ଶ ପୋଥି ଗ୍ରହଣ (ଖ) ସଂପାଦକର ବିଚାର-ବିଶ୍ଳେଷଣ । ଆଦର୍ଶ ପୋଥିର ସ୍ଥାନ, କାଳ, ଲିପିକାରର ଶୁଦ୍ଧତା ଓ ଅଶୁଦ୍ଧତା ଏଥିରେ ମୁଖ୍ୟ ହେଲେହେଁ, ଏ ସବୁର ପାଠ-ନିର୍ଣ୍ଣୟରେ ସଂପାଦକଙ୍କ ବିଚାର-ବିଶ୍ଳେଷଣ ପଦ୍ଧତି ବିଶେଷ କାର୍ଯ୍ୟ କରେ । ଉଦାହରଣ ପାଇଁ 'ଆକାଶେ' ଓ 'ଆକାଶରେ' ନିଆଯାଇପାରେ । ଅନୁମାନ କରାଯାଉ ଯେ ସାରଳାଦାସ ଉଭୟ ପ୍ରୟୋଗର ପକ୍ଷପାତୀ ଥିଲେ । ତେବେ ବି ସମ୍ପାଦନା ବିଜ୍ଞାନ ଅନୁଯାୟୀ ସଂକ୍ଷିପ୍ତ ପାଠ ଅର୍ଥାତ୍ 'ଆକାଶେ' ହିଁ ଗ୍ରହଣୀୟ । ସେହିପରି 'ତୋତେ କଲେକ' ଓ 'କଲେ ତୋତେଟି' ପାଠ ମଧ୍ୟରୁ 'କଲେ' ଅପେକ୍ଷା 'କଲେକ' ପ୍ରାଚୀନ ପ୍ରୟୋଗ ହେତୁ ଓଏବଂ ଏହା 'ଖ' ପୋଥି ଅର୍ଥାତ୍ ଆଦର୍ଶ ପୋଥିର ପାଠ ହୋଇଥିବା ହେତୁ

ଗ୍ରହଣ କରାଯାଇପାରେ । ଏଥିରେ ମଧ୍ୟ କେତେକ ବ୍ୟତିକ୍ରମ ପରିଲକ୍ଷିତ ହୁଏ ।

ଆଦର୍ଶ ପୋଥି ଯେତେ ପ୍ରାଚୀନ ହେବ, ମୂଳ ପାଠର ତାହା ସେତିକି ନିକଟବର୍ତ୍ତୀ ହେବାର ସମ୍ଭାବନା ଥାଏ । ଏଠାରେ ପୋଥିର ଶୁଦ୍ଧତା ଓ ଅଶୁଦ୍ଧତା ବିଚାର୍ଯ୍ୟ । ଉଦାହରଣ ପାଇଁ ଅଗ୍ନିବନ୍ଦନା ପ୍ରସଙ୍ଗକୁ ଗ୍ରହଣ କରାଯାଇପାରେ । (କ) ପୋଥିରେ ଏହା (ଖ) ଓ (ଗ) ପୋଥିଠାରୁ ଅପେକ୍ଷାକୃତ ଦୀର୍ଘ ଏବଂ ସ୍ଥାନ ଦୃଷ୍ଟିରୁ ଏହା ଅପ୍ରାସଙ୍ଗିକ ମନେହୁଏ । ସାଧାରଣତଃ ଦୀର୍ଘ ବର୍ଣ୍ଣନାକୁ ପରବର୍ତ୍ତୀ ଯୋଜନା ରୂପେ ଗ୍ରହଣ କରାଯାଉଥିଲେ ହେ, (ଖ) ଓ (ଗ) ପୋଥି ପାଠରେ ସମାନତା ନ ଥିବାରୁ ଏଠାରେ 'କ' ପୋଥିକୁ ହିଁ ଆଦର୍ଶ ରୂପେ ଗ୍ରହଣ କରାଯାଇଛି ।

ପାଠ ନିର୍ଣ୍ଣୟରେ ସାଧାରଣତଃ ପ୍ରାଚୀନ ପ୍ରୟୋଗ ଓ ପରମ୍ପରା ଏବଂ ଅର୍ଥ-ସଙ୍ଗତି ପ୍ରତି ଦୃଷ୍ଟି ରଖି ପାଠ ସଂଶୋଧନ କରାଯାଇଛି । ମୁଁ ମୋର ସ୍ୱାଧୀନତାକୁ ଯେତେଦୂର ସମ୍ଭବ ସଙ୍କୁଚିତ କରି ପାଠ ଗ୍ରହଣ କରିଛି ଏବଂ ଆଶା କରୁଛି, କେତେକ ଭ୍ରମ ପ୍ରମାଦ ସତ୍ତ୍ୱେ ଏହା ସାରଳା ଦାସଙ୍କ ମୂଳ ପାଠର ଅଧିକ ନିକଟବର୍ତ୍ତୀ ହୋଇପାରିଛି ।

ଆଧୁନିକ ଯୁଗରେ ଶୁଦ୍ଧ-ପାଠ ଗ୍ରହଣ ଓ ପାଠର ପ୍ରାମାଣିକତା ପାଇଁ ଲୋକେ ଆଗ୍ରହୀ ହୋଇଥିବା ଅତି ଆନନ୍ଦର କଥା । ଏହି ବିଜ୍ଞାନର ମୂଳ କଥା ହେଉଛି, ପ୍ରତ୍ୟେକ ଶବ୍ଦକୁ ଜିନିଷ ଓଜନ କଲାପରି ଓଜନ କରିବାକୁ ହୁଏ, ମାପ କରି ଦେଖିବାକୁ ହୁଏ । ପୋଥି-ଉତାରିବା, ପାଠ-ନିର୍ଣ୍ଣୟ କରିବା ଓ ପ୍ରେସ ପାଇଁ ନକଲ ପ୍ରସ୍ତୁତ କରିବା ପ୍ରଭୃତି ପ୍ରତ୍ୟେକ କାର୍ଯ୍ୟରେ କେବଳ ସାବଧାନତା ଆବଶ୍ୟକ ତାହା ନୁହେଁ, ଏ ପ୍ରକାର କାର୍ଯ୍ୟ ପ୍ରତି ଅସୀମ ମମତା ଓ ଆଗ୍ରହ ନ ଥିଲେ ଏହା ସମ୍ପନ୍ନ ହୁଏ ନାହିଁ । ଏହା ଜଣକର କାର୍ଯ୍ୟ ନୁହେଁ। ଏଥିପାଇଁ ଅଭିଜ୍ଞ ବ୍ୟକ୍ତିମାନଙ୍କର ସହଯୋଗ ଆବଶ୍ୟକ।

- **କୃଷ୍ଣଚରଣ ସାହୁ**

# (୨)

# ସ୍ୱର୍ଗାରୋହଣ ପର୍ବର ପ୍ରାମାଣିକ ପାଠ-ବିଶ୍ଳେଷଣ

ଅଧ୍ୟାପକ ଆର୍ତ୍ତବଲ୍ଲଭ ଓଡ଼ିଆ ସାହିତ୍ୟର ଆଲୋଚନା କ୍ଷେତ୍ରରେ ଏକ ଅନନ୍ୟ ପ୍ରତିଭା । ସେ ଆମ୍ଭମାନଙ୍କର ନମସ୍ୟ ଓ ପୂଜ୍ୟ । ସେ ଗୁରୁମାନଙ୍କର ଗୁରୁ । ୧୯୨୬ ଖ୍ରୀଷ୍ଟାବ୍ଦରେ ସେ 'ପ୍ରାଚୀ ସମିତି' ପ୍ରତିଷ୍ଠା କରି ନିଜ ସହଯୋଗୀମାନଙ୍କ ସହିତ ମିଶି ୫୬ଖଣ୍ଡ ଗ୍ରନ୍ଥ ସମ୍ପାଦନା କରିଥିଲେ । ତାଙ୍କ ସମ୍ପାଦନାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ- ପୁରାଣ ଓ କାବ୍ୟ। ତାଙ୍କ ସମ୍ପାଦିତ କାବ୍ୟାବଳୀ ଷୋଡଶରୁ ଅଷ୍ଟାଦଶ ଶତାବ୍ଦୀ, ଅର୍ଥାତ୍ ମଧ୍ୟକାଳୀନ ସାହିତ୍ୟ ମଧ୍ୟରେ ସୀମାବଦ୍ଧ। ତାଙ୍କ ପୁରାଣ ସମ୍ପାଦନା ମଧ୍ୟରେ ସାରଳା ଦାସଙ୍କ **ମହାଭାରତ** । ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ସେ ଏହି ସମ୍ପାଦନା କଲେ ଓ ଏହାର ପ୍ରକାଶନ ୧୯୭୦ ମସିହାରେ ସମାପ୍ତ ହେଲା । ସେହିଦିନୁ ଏହା ଉପରେ କାଁ ଭାଁ ଆଲୋଚନା ଦେଖିବାକୁ ମିଳିଥାଏ । ଡକ୍ଟର ପାଣିଗ୍ରାହୀଙ୍କ ପରି ଆଲୋଚକ ଏହାର ପ୍ରାମାଣିକତା ଉପରେ ସନ୍ଦେହ କରି ସାରଳା **ମହାଭାରତର** ଐତିହାସିକ ଚିତ୍ର ରଚନା କଲାବେଳେ ଏହାକୁ ବ୍ୟବହାର କଲେ ନାହିଁ । ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ଏହାର ଭାଷାର ପ୍ରାଚୀନତା ଉପରେ ସନ୍ଦେହ ପ୍ରକାଶ କଲେ । ଏହା ସତ୍ତ୍ୱେ ଏହି କାର୍ଯ୍ୟ ଉପରେ କୌଣସି ବିଧିବଦ୍ଧ ଆଲୋଚନା ହେଲାନାହିଁ । ଅନ୍ୟମାନେ ପ୍ରାୟ ଏହି ଗ୍ରନ୍ଥକୁ ହିଁ ଗ୍ରହଣ କରିନେଲେ । ସମାଲୋଚନା କ୍ଷେତ୍ରରେ, ବିଶେଷକରି ସମ୍ପାଦନାରେ, ସବୁବେଳେ ପ୍ରମାଦ ରହିଯିବା ସ୍ୱାଭାବିକ । ପ୍ରାଚୀନ ପୋଥିର ଆବିଷ୍କାର ଫଳରେ ଏଥିରେ ପରିବର୍ତ୍ତନର ସମ୍ଭାବନାକୁ ଦୂରେଇ ହୁଏନାହିଁ । ମୁଁ ନିମ୍ନରେ ସାରଳା ମହାଭାରତର 'ସ୍ୱର୍ଗାରୋହଣ ପର୍ବ'କୁ ଅନ୍ୟ ପୋଥି ସାହାଯ୍ୟରେ ପରୀକ୍ଷା କରିବା ପାଇଁ ପ୍ରଚେଷ୍ଟା କରିଛି । ଏହି କାର୍ଯ୍ୟ ପାଇଁ ମୁଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ପ୍ରାୟ ୧୧ଟି ପୋଥି ସଂଗ୍ରହ କରି ସେଥିରୁ ଆଦର୍ଶ ପୋଥି ବାଛି, ଏହାର ତୁଳନା କରିଛି ।

ସମ୍ପାଦନା ପାଇଁ ସାଧାରଣତଃ କାତ୍ରେ S.N. Katre ଙ୍କ Textual Criticism ଓ ସୁକ୍ଥଙ୍କର (Sukthankar, S.V) କରଙ୍କ ସଂସ୍କୃତ ମହାଭାରତର ମୁଖବନ୍ଧକୁ ଗ୍ରହଣ କରାଯାଇଥାଏ । ଏ ସବୁ ଗ୍ରନ୍ଥ ସଂସ୍କୃତ ଭାଷାର ସମ୍ପାଦନା ପାଇଁ ଉଦ୍ଦିଷ୍ଟ । ସଂସ୍କୃତ ଏକ ଶୃଙ୍ଖଳିତ ଭାଷା । ଏହା ବ୍ୟାକରଣ ଓ ଛନ୍ଦ ଦ୍ୱାରା ନିୟନ୍ତ୍ରିତ । ଯୋଗ, ବିଯୋଗ, ପ୍ରସଙ୍ଗକ୍ରମ, ଅପପାଠକୁ ବାଛି ନେବା ପରେ ଏହାର ସମ୍ପାଦନା ମୁଖ୍ୟତଃ ବ୍ୟାକରଣ ଓ ଛନ୍ଦ ଉପରେ ନିର୍ଭର କରେ। ଓଡ଼ିଆ ଏକ ପ୍ରବହମାନ ଭାଷା ହୋଇଥିବାରୁ ଓ ସାରଳା **ମହାଭାରତ** ଦାଣ୍ଡୀ ବୃତ୍ତରେ ରଚିତ ହୋଇଥିବାରୁ କଥନ ସ୍ପଷ୍ଟତାହିଁ ଏହାର ମୁଖ୍ୟ ମାନଦଣ୍ଡ । ଛନ୍ଦର କୌଣସି ନିର୍ଦ୍ଦିଷ୍ଟ ଅକ୍ଷର ସଂଖ୍ୟା ନଥିବାରୁ କଥନ-ସ୍ପଷ୍ଟତା ଉପରେ ହିଁ ଛନ୍ଦକୁ ନିର୍ଭର କରିବାକୁ ହୋଇଥାଏ। ଏଥିରେ ଗୋଟିଏ ବର୍ଣ୍ଣ ବା ଗୋଟିଏ ଶବ୍ଦ କଟିଯିବା ବା ଯୋଗଦେବା ବିଚିତ୍ର ନୁହେଁ । ମଧ୍ୟକାଳୀନ କାବ୍ୟର ସମ୍ପାଦନାରେ କଥନ-ସ୍ପଷ୍ଟତା ଅପେକ୍ଷା ଅର୍ଥ ସଙ୍ଗତି ଓ ଛନ୍ଦ ଶୃଙ୍ଖଳା ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ। ଏଥିରେ ଗୋଟିଏ ବର୍ଣ୍ଣ ଲୋପ ପାଇଗଲେ ସ୍ୱତନ୍ତ୍ର ଛନ୍ଦରେ ପରିଣତ ହୁଏ। ପୁଣି ମଧ୍ୟକାଳୀନ କବିମାନେ ଗୋଟିଏ ଶବ୍ଦକୁ ବିଭିନ୍ନ ଅର୍ଥରେ ବ୍ୟବହାର କରୁଥିବାରୁ ଶବ୍ଦଜ୍ଞାନ ନଥିଲେ ଏହାର ସମ୍ଭବ ହୁଏ ନାହିଁ ।

**କୃଷ୍ଣ ଚରଣ ସାହୁ**

# (୩)

## ଚଣ୍ଡୀ ପୁରାଣ ମୁଖବନ୍ଧ

ସାରଳା ଦାସ ଚଣ୍ଡୀ ପୁରାଣରେ କହିଛନ୍ତି-

ସେ ଦେବୀ ପ୍ରସନ୍ନ ହୋଇଂ କହିଲେ ଆଦି ଗ୍ରନ୍ଥ
ପ୍ରଥମେ ରାମାୟଣ ଦୁତୀଏ ଭାରଥ ।
ତୃତୀଏ ଲେଖନ ଶ୍ରୀ ଭାଗବତ
ମୁର୍ଖ ଅଗ୍ୟାଂନ ଯେ ମୁଂ ଅଟଇ ଅପଣ୍ଡିତ ।

କବିଙ୍କର ଏହି ଉକ୍ତି ବହୁ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ । ଏଥିରୁ କବିଙ୍କ ରଚନାବଳୀର ସମୟକ୍ରମ ସମ୍ବନ୍ଧରେ ଏକ ନିର୍ଦ୍ଦିଷ୍ଟ ସୂଚନା ମିଳିଥାଏ । ସଂସ୍କୃତ ଭାଷାରେ ମଧ୍ୟ ରାମାୟଣ, ମହାଭାରତ ଓ ଭାଗବତ ରଚନାକାଳର ଏହା ହିଁ କ୍ରମ ଥିଲା । ପୁଣି ସାରଳା ଦାସ ବୋଧହୁଏ ଏହି କ୍ରମକୁ ମନରେ ରଖି ରାମାୟଣ, ଭାରଥ ଓ ଭାଗବତ ରଚନା କରିଥିଲେ । ଫଳରେ ଏ ସବୁ ଓଡ଼ିଆ ଭାଷାର ଆଦିଗ୍ରନ୍ଥ ଭାବେ ପ୍ରସିଦ୍ଧି ଲାଭ କଲା ।

ସାରଳା ଦାସଙ୍କ ରାମାୟଣ କହିଲେ ଆଲୋଚକମାନେ ବହୁଦିନ ଧରି 'ବିଲଙ୍କା ରାମାୟଣ' କୁ ହିଁ ଗ୍ରହଣ କରୁଥିଲେ । ଏ ଧାରଣା ଏବେ ବି ବଦଳି ନାହିଁ । ତେବେ ଭାଷା ଓ ପ୍ରସଙ୍ଗ ଦୃଷ୍ଟିରୁ ବିଚାର କଲେ 'ବିଚିତ୍ର ରାମାୟଣ' ହିଁ ମହାଭାରତ ଓ ଚଣ୍ଡୀ ପୁରାଣର ଅତି ନିକଟବର୍ତ୍ତୀ । 'ବିଲଙ୍କା ରାମାୟଣ'ରୁ କବିଙ୍କ ଅପୂର୍ବ ଭାଷା ଶୈଳୀର କୌଣସି ସଂକେତ ମିଳେ ନାହିଁ। କବିଙ୍କ ଉକ୍ତ 'ଭାରଥ' ହେଉଛି, ୧୮ଠର ଖଣ୍ଡରେ ସମ୍ପୂର୍ଣ୍ଣ 'ମହାଭାରତ' । କବିଙ୍କ ଭଣିତା ଥିବା 'ଭାଗବତ' ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । ଚଣ୍ଡୀ ପୁରାଣକୁ ଦେବୀ ଭାଗବତ ଅର୍ଥାତ୍ କବିଙ୍କ କଥିତ ଭାଗବତ ରୂପେ ଗ୍ରହଣ କରାଯାଇପାରେ ।

## କୃତଜ୍ଞତା ସ୍ୱୀକାର

ଉତ୍କଳ ବିଶ୍ୱବିଦ୍ୟାଳୟର ଦୁଇଟି କାଗଜ ନକଲ ଅନୁଲିପି ଓ ଡକ୍ଟର ବଂଶୀଧର ଷଡଙ୍ଗୀ (ଅଧ୍ୟାପକ ନିମାପଡ଼ା କଲେଜ)ଙ୍କ ଦ୍ୱାରା ସଂଗୃହୀତ ଗୋଟିଏ ପୋଥି ସାହାଯ୍ୟରେ 'ଚଣ୍ଡୀ ପୁରାଣ'ର ଏହି ସମ୍ପାଦନା ପ୍ରସ୍ତୁତ କରାଯାଇଛି । ଉତ୍କଳ ବିଶ୍ୱବିଦ୍ୟାଳୟର ଦୁଇଟି ପୋଥି ମଧ୍ୟରୁ ଗୋଟିଏ ନିମାପଡ଼ା ପୋଥି ସହ ସାଦୃଶ୍ୟ ରକ୍ଷା କରୁଥିବା ବେଳେ ଅନ୍ୟ ପୋଥିଟି 'ଚଣ୍ଡୀ ପୁରାଣ'ର ଏକ ପରିବର୍ତ୍ତିତ ପାଠ । ତେବେ ବହୁ ସ୍ଥଳରେ ମୂଳ ପାଠ ଉଦ୍ଧାର କରିବାରେ ଏହାର ସାହାଯ୍ୟ ନିଆଯାଇଛି । ଏହି ପୋଥି ତିନୋଟିକୁ ବ୍ୟବହାର କରିବା ପାଇଁ ମୋତେ ସୁଯୋଗ ଦିଆଯାଇଥିବାରୁ ମୁଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ତଥା ଶ୍ରୀମାନ ଷଡଙ୍ଗୀଙ୍କ ନିକଟରେ କୃତଜ୍ଞ।

**କୃଷ୍ଣ ଚରଣ ସାହୁ**

# (୪)
# ବିଚିତ୍ର ରାମାୟଣ : ଭୂମିକା

ଓଡ଼ିଆ ଲୋକ ବିଶ୍ୱାସରେ ସୀତା ମନ୍ଦୋଦରୀର ପାଳିତା କନ୍ୟା - 'ବାପର ମରଣ ପୁଅର ଦଶା, ଦୁଆରେ କରିଛି ବାବାଜି ବସା, ମାଆକୁ ଲାଗିଛି ବର, ଝିଅ ଯିବ ଶାଶୁଘର' (ପ୍ରହେଳିକା) । ଅନ୍ୟ ଏକ ଲୋକ ବିଶ୍ୱାସ ହେଲା ମାୟାମୃଗ (ମାରିଚ) ଏକ ଦୁଇମୁଣ୍ଡିଆ ହରିଣ ଥିଲା । ଓଡ଼ିଶାର ଗାଉଁଲି କଣ୍ଢେଇ ଶିଳ୍ପୀ ଦୁଇମୁଣ୍ଡିଆ ହରିଣ କରିଥାନ୍ତି । ଏହି ପ୍ରକାର ବହୁତ କୌତୂହଳଜନକ ବିଶ୍ୱାସର ମୂଳ ଗ୍ରନ୍ଥ ହେଉଛି ସିଦ୍ଧେଶ୍ୱର ଦାସଙ୍କ 'ବିଚିତ୍ର ରାମାୟଣ' । ଏହି ରାମାୟଣର ପରିଚୟ ପ୍ରଥମେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଦେଲେ- "ସିଦ୍ଧେଶ୍ୱର ଦାସ ଉନ୍‌ହୋନେ ସୀତାବନବାସସେ ଲେକର ରାମାୟଣକେ ଅନ୍ତତକ କଥାଭାଗକୋ ଲେକର 'ବିଚିତ୍ର ରାମାୟଣ' ନାମକ କାବ୍ୟଗ୍ରନ୍ଥ ଲିଖା ହୈ । ୟହ ରଚନା ଉଚ୍ଚକୋଟୀକି ନହିଁ ହୈ । ୟେ ମୁକୁନ୍ଦ ଦାସ କେ ସମସାମୟିକ ଥେ" ('ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ'; ପୃ.-୬୦) ଡଃ ମହାନ୍ତିଙ୍କ ମତରେ "ମୁକୁନ୍ଦ ଦାସ ୧୭ଶ ଶତାବ୍ଦୀ କୋ ମଧ୍ୟଭାଗ କେ କବି ହୈ" ।

'ବିଚିତ୍ର ରାମାୟଣ'ର ତେଲୁଗୁ ଅନୁବାଦକ ଡୋଙ୍କାଡ଼ ଗୋପୀନାଥ ଲେଖିଛନ୍ତି ଯେ ସେ ଏହି ପୁରାତନ ଓଡ଼ିଆ କାବ୍ୟକୁ ତେଲୁଗୁ ଗଦ୍ୟରେ ପ୍ରକାଶ କରୁଛନ୍ତି, 'ପୁରାତନୋତ୍କଳ ବଚ ଶ୍ରୀଶାଳୀ ଗଦ୍ୟାକୃତିନ୍' । ତେଲୁଗୁ ସାହିତ୍ୟର ଐତିହାସିକଙ୍କ ମତରେ ଡୋଙ୍କାଡ଼ ଗୋପୀନାଥ ୧୬ଶ ଶତାବ୍ଦୀର ବ୍ୟକ୍ତି । ତେଣୁ ମୂଳ 'ବିଚିତ୍ର ରାମାୟଣ'ର ରଚନା କାଳ ୧୭ଶ ଶତାବ୍ଦୀ ହୋଇ ନ ପାରେ ବୋଲି ବିଖ୍ୟାତ ତେଲୁଗୁ ସାହିତ୍ୟିକ ଡଃ ପୁରିପଣ୍ଡା ଅପ୍ପଲ ସ୍ୱାମୀ ବ୍ୟକ୍ତିଗତ ଭାବେ ଭେଟି ଡଃ ମହାନ୍ତିଙ୍କୁ ଜଣାଇଥିଲେ । ଭେଟିଲା ବେଳେ ଡଃ ପୁରିପଣ୍ଡା ପୋଥିର ସ୍ଥିତି ବିଷୟ ଜିଜ୍ଞାସା କରିଥିଲେ ହେଁ ଡଃ ମହାନ୍ତି ତାହା ନିଜେ ପାଠ କରିଥିବା ବା ତାହା କେଉଁଠି ଅଛି ଜଣାଇ ନ ଥିଲେ । 'ବିଚିତ୍ର ରାମାୟଣ'ରେ ସୀତା ବନବାସରୁ ରାମାୟଣର ଶେଷଯାଏଁ ବିଷୟ ଅଛି ବୋଲି ସେ ଦେଇଥିବା ମତରୁ ଅନୁମେୟ ଯେ ସେ ନିଜେ ତାହା ପଢ଼ିନାହାନ୍ତି । ପଢ଼ିଥିଲେ ତାହାର ଭାଷାର ପ୍ରାଚୀନତା, କଥାବସ୍ତୁର ଅନନ୍ୟସାମାନ୍ୟତା ଆଦି ବିଷୟ ଆଲୋଚନା ନ କରି ରହିପାରନ୍ତେ ନାହିଁ । ଏହି ପ୍ରକାରେ ଏହାର ରଚନା କାଳ ସମ୍ପର୍କରେ ତାହାଙ୍କ ମତ କୌଣସି ଯୁକ୍ତି ଉପରେ ଆଧାରିତ ନୁହେଁ ।

'ବିଚିତ୍ର ରାମାୟଣ' ପୋଥି ମୁଁ ୧୯୬୭ରେ ଛତ୍ରପୁରରୁ ପାଇଲି (ଏହା ଏହି ସମ୍ପାଦନାର କ-ପୋଥି) । ଓଡ଼ିଆ 'ବିଚିତ୍ର ରାମାୟଣ' ପୋଥି ମିଳିଥିବା କଥା ଡଃ ପୁରିପଣ୍ଡାଙ୍କୁ ଜଣାଇବାରୁ ସେ ଅତ୍ୟନ୍ତ ଆନନ୍ଦିତ ହୋଇ ପୋଥିକୁ ଦେଖିବା ପାଇଁ ସ୍ୱୟଂ ମୋ ଘରେ ପଦାର୍ପଣ କଲେ । ତେଲୁଗୁ ଅନୁବାଦ ସଙ୍ଗେ 'ବିଚିତ୍ର ରାମାୟଣ'କୁ ମିଳାଇ ଦେଖିବା ପରେ ଆଉ ସନ୍ଦେହ ରହିଲା ନାହିଁ ଯେ ଏହା ହିଁ ମୂଳ 'ବିଚିତ୍ର ରାମାୟଣ' ।

ଏହାପରେ ମୁଁ 'ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣ' ଶୀର୍ଷକ ଏକ ଦୀର୍ଘ ପ୍ରବନ୍ଧଟି ଲେଖିଲି । ପ୍ରବନ୍ଧଟି 'ଡଗର'ରେ କ୍ରମାନ୍ୱୟରେ ପ୍ରକାଶ ପାଇଛି । ତାହା ଏହି ସମ୍ପାଦନାର ପ୍ରକୃତ ମୁଖବନ୍ଧ ହୋଇପାରନ୍ତା କିନ୍ତୁ ତାହାକୁ ପୃଥକ୍ ପୁସ୍ତକରେ ଛପାଇବା କଳ୍ପନା ରହିଛି, ଅର୍ଥାଭାବରୁ ତାହାକୁ ଏଠାରେ ଛାପି ପାରିଲି ନାହିଁ । ପ୍ରବନ୍ଧର ପ୍ରଥମ ଭାଗ ('ଡଗର', ୧୯୬୯ ଡିସେମ୍ବର) କ-ପୋଥିର ଅବସ୍ଥା, ତାହାର ଲିପି, ବିଚିତ୍ର ରାମାୟଣର ଛଅଜଣ ତେଲୁଗୁ ଅନୁବାଦକଙ୍କ ସମୟ ଓ ପରିଚୟ, ଅନୁବାଦଗୁଡ଼ିକର ମୂଲ୍ୟାଙ୍କନ, ଅନୁବାଦରେ ମୂଳ ଗ୍ରନ୍ଥ ଓ ସିଦ୍ଧେଶ୍ୱର ଦାସଙ୍କ ବିଷୟରେ ଲିଖିତ ବିବରଣ ଆଦିର ବିଶଦ ଆଲୋଚନା ରହିଛି । ତେଲୁଗୁ ଅନୁବାଦକମାନେ ହେଲେ- ୧. ଡୋଙ୍କାଡ଼ ଗୋପୀନାଥ (ଗଦ୍ୟାନୁବାଦ), ୨. ନରସିଂହ ବେହେରା ବେଙ୍କଟଶାସ୍ତ୍ରୀ (ଗଦ୍ୟପଦ୍ୟାତ୍ମକ ଅନୁବାଦକ), ୩. ବେଲପୁରି ବେଙ୍କେଟେଶ୍ୱର (ଗଦ୍ୟପଦ୍ୟାତ୍ମକ ଅନୁବାଦ), ୪. କାଲ୍ଲେପଲ୍ଲି ବେଙ୍କଟ ନରସିଂହ ମୂର୍ତ୍ତି (ପଦ୍ୟାନୁବାଦ), ୫. କେମ୍ମୋଜ୍ ସୋ ମୟା (ପଦ୍ୟାନୁବାଦକ) ଓ ୬. ମାଚିନା ସୋମୟା । ଏହାଙ୍କ ମଧ୍ୟରୁ ଗୋପୀନାଥ ଓଡ଼ିଆରୁ ଅନୁବାଦ କରିଛନ୍ତି, ବେଙ୍କଟଶାସ୍ତ୍ରୀ ଗୋପୀନାଥଙ୍କ ଅନୁବାଦକୁ ଗଦ୍ୟପଦ୍ୟାତ୍ମକ ରୂପ ଦେଇଛନ୍ତି ଓ ଅନ୍ୟାନ୍ୟ ଅନୁବାଦକ ଗୋପୀନାଥ ଓ ବେଙ୍କଟଶାସ୍ତ୍ରୀଙ୍କୁ ହିଁ ଆଶ୍ରୟ କରିଛନ୍ତି ।

ପ୍ରବନ୍ଧର ଦ୍ୱିତୀୟ ଭାଗ (ଡଗର, ୧୯୭୦ ନଭେମ୍ବର) 'ବିଚିତ୍ର ରାମାୟଣ'ର ରାମକଥାର ବୈଚିତ୍ର୍ୟ ଓ ଅନ୍ୟ ରାମକଥା

ସଙ୍ଗେ ତୁଳନାତ୍ମକ ଆଲୋଚନା ରହିଛି । ପ୍ରବନ୍ଧର ତୃତୀୟ ଭାଗ (ଡଗର ୧୯୭୧ ଜୁଲାଇ) 'ବିଚିତ୍ର ରାମାୟଣ' ସମ୍ପର୍କରେ ଭାଷାତାତ୍ତ୍ୱିକ ଆଲୋଚନା କରି ନିରୂପଣ କରିଛି ଯେ ଏହା ସାରଳା ଦାସଙ୍କ 'ମହାଭାରତ'ର ପୂର୍ବଜ, କିନ୍ତୁ 'ବିଚିତ୍ର ରାମାୟଣ' ଓ ମହାଭାରତର ରଚନା କାଳ ମଧ୍ୟରେ ସମୟ ବ୍ୟବଧାନ ବିଶେଷ ନୁହେଁ । ପ୍ରବନ୍ଧର ଚତୁର୍ଥ ଭାଗ (ଡଗରର ୧୯୭୩ ନଭେମ୍ବର ଓ ଡିସେମ୍ବର ଦୁଇଟି ସଂଖ୍ୟା)ରେ ସିଦ୍ଧେଶ୍ୱର ଦାସଙ୍କ ପରିଚୟ ଓ ସମୟ ନିରୂପଣ କରିଅଛି ଓ ପ୍ରବନ୍ଧର ପଞ୍ଚମ ଭାଗ (ଡଗରର ୧୯୭୪ ଜାନୁଆରୀ ଓ ଫେବୃଆରୀ ଦୁଇଟି ସଂଖ୍ୟା)ରେ ସିଦ୍ଧାନ୍ତ କରିଛି ସେ 'ବିଲଙ୍କା ରାମାୟଣ'କାର ସିଦ୍ଧେଶ୍ୱର ଦାସ ସାରଳା ଦାସ ନୁହନ୍ତି ସେ ସାରଳା ଦାସଙ୍କ ବହୁ ପରକାଳୀନ ବ୍ୟକ୍ତି ।

ପ୍ରବନ୍ଧର ଶେଷ ଭାଗ (ଡଗର ୧୯୭୪ ମାର୍ଚ୍ଚ) ମଧ୍ୟରେ ନାନା ଯୁକ୍ତି ଦର୍ଶାଇ 'ମହାଭାରତ'କାର ସାରଳା ଦାସ ଓ 'ବିଚିତ୍ର ରାମାୟଣ'କାର ସିଦ୍ଧେଶ୍ୱର ଦାସ ଜଣେ ବ୍ୟକ୍ତି ବୋଲି ନିର୍ଣ୍ଣୟ କରିଅଛି ।

ଇତି ମଧ୍ୟରେ 'ବିଚିତ୍ର ରାମାୟଣ'ର ଆଉ ଗୋଟିଏ ପୋଥି ଟିକିଲି (ଶ୍ରୀକାକୁଳମ୍ ଜିଲା)ରୁ ମିଳିଛି । ଏହା ଏହି ସମ୍ପାଦନାର ଖ-ପୋଥି । ବହୁ ସ୍ଥାନରେ ପାଠ ନଷ୍ଟ ହୋଇ ଯାଇଥିବା ଏହି ପୋଥିଟି ବର୍ତ୍ତମାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ରହିଛି...

ଏହି ସମ୍ପାଦନା ପ୍ରକାଶ ପାଇଁ ସରକାର ଆଂଶିକ ଅର୍ଥ ସାହାଯ୍ୟ ଓ ସୁଲଭ ମୂଲ୍ୟରେ କାଗଜ ଯୋଗାଇଥିବାରୁ କୃତଜ୍ଞତା ଜଣାଉଛି । ତଥାପି ଅର୍ଥାଭାବରୁ ମୁଁ ଏହାକୁ ପ୍ରକାଶ କରିପାରି ନଥାନ୍ତି । ଶ୍ରୀ ହୃଦୟାନନ୍ଦ ନାୟକ (ଚାର୍ଟର୍ଡ଼ ଆକାଉଣ୍ଟାଣ୍ଟ) ଉଦାର ଭାବରେ, ଏଥିପାଇଁ ପାଞ୍ଚଶହ ଟଙ୍କା ସାହାଯ୍ୟ ଦେବା ପ୍ରତିଶ୍ରୁତି ଦେବାରୁ ଏହି ପୁସ୍ତକ ମୁଦ୍ରିତ ହୋଇପାରିଲା । ମୋର ଲେଖାର ପ୍ରଥମ ପାଠିକା (ମୋ ପତ୍ନୀ) ସ୍ୱତଃପ୍ରବୃତ୍ତ ହୋଇ ନିଜ ପାଣ୍ଠିରୁ ଅବିଶିଷ୍ଟ ବ୍ୟୟ ଭାର ବହନ କରିଥିବା ଯୋଗୁଁ ପ୍ରତିଦାନ ସ୍ୱରୂପ ଏହାର ସର୍ବସ୍ୱତ୍ୱ ତାହାଙ୍କ ହାତରେ ଦେଉଛି ।

ଏଥିରେ ଗୃହୀତ ପାଠ ସାଧାରଣତଃ କ-ପୋଥିର ପାଠ ଅଟେ । ପୋଥିରେ ପାଠ ଅଭାବ ଥିଲେ ସମ୍ଭାବ୍ୟ ପାଠ ଚନ୍ଦ୍ର ବନ୍ଧନୀ ମଧ୍ୟରେ ଦେଇଛି । କ-ପୋଥିରେ ନଥିବା କିନ୍ତୁ ଖ-ପୋଥିରେ ଥିବା ପାଠ ବର୍ଗବନ୍ଧନୀ ମଧ୍ୟରେ ଯୋଗ କରିଛି । ପୋଥିରେ ଶବ୍ଦ ଶବ୍ଦ ମଧ୍ୟରେ ଅନ୍ତରାଳ, ପରିଚ୍ଛେଦ ବିଭାଗ, ପରିଚ୍ଛେଦର ଶିରୋନାମ ଓ ପଦଗୁଡ଼ିକିର ସଂଖ୍ୟା ଲେଖା ନାହିଁ । ଅଧ୍ୟୟନର ସୁବିଧ ଲକ୍ଷ୍ୟରେ ଏସବୁ ଯୋଗ କରିଛି ।

**ସଚ୍ଚିଦାନନ୍ଦ ମିଶ୍ର**
୧୯୮୦, ଜାନୁଆରୀ

## (୫)

# ବିଚିତ୍ର ରାମାୟଣ

## ପ୍ରାଚୀନ ଶବ୍ଦ ସଂଚୟନ

(ବିଚିତ୍ର ରାମାୟଣରେ ବ୍ୟବହୃତ ପ୍ରାଚୀନ ଶବ୍ଦାବଳୀର ବିଶଦ ଆଲୋଚନା କଲେ ଏକ ସ୍ୱତନ୍ତ୍ର ପୁସ୍ତକ ହେବ । ଏଠାରେ ବନ୍ଧନୀ ମଧ୍ୟରେ ଅର୍ଥ ସହ କେତୋଟି ଶବ୍ଦ ମାତ୍ର ବର୍ଣ୍ଣାନୁକ୍ରମେ ଲେଖାଗଲା ।)

ଅଗୁଳି (ଉଦ୍‌ବୃତ୍ତ); ଅଚେବନ (ଅଚେତନ); ଅଣହିତ (ଅନାୟତ୍ତ); ଅନାତ୍ତୋଆ (ଅନାୟତ୍ତରେ); ଅନାସ୍ତ (ଅନାଥ); ଅନାସ୍ତ, ଅନାସ୍ତା (ଅନ୍ୟଥା); ଅନୁଆନ (ଅନୁଯାନ); ଅନୁସରିବା (ଲୋଡ଼ିବା); ଅପାଂଜ (ଅପାଂକ୍ତେୟ); ଅବିକ୍ଷଣ (ଅବିଚ୍ଛିନ୍ନ); ଅବିଳାଷ (ପ୍ରୀତି); ଅବିଳାଷୀ (ପ୍ରିୟବତୀ); ଅମ୍ବ (ମାତା); ଅମନାତ୍ୟ (ଅମାତ୍ୟ); ଅସ୍କନ୍ଦ (ସ୍କନ୍ଦ);

ଆଇ (ମାତା); ଆକ୍ରଶିବା (ଅକ୍ରୋଶ କରିବା); ଆଚୋବନ (ଆଚମନ); ଆଛାନ (ଆଖ୍ୟାନ); ଆତରା (ନିଆଁ କୁଢ଼); ଆଦ୍ୟାନ (ଆଧାନ); ଆଧାର (ଆହାର); ଆନକୃତ (ଅନ୍ୟଥା); ଆରୋପଣ (ଆୟେଜନ); ଆଶ୍ୱାସିବା (ଆଉଁଶିବା);

ଉତସଲ୍ୟ (ଆନନ୍ଦ); ଉପଗାର (ଉପକାର); ଉପନେସ (ଗୂଢ଼ କଥା); ଉପଲେଖିବା (ଉପଲକ୍ଷ୍ୟ କରିବା); ଉପୁଚିଆଇବା (କୁଢ଼ାଇବା); ଓହନିଶି (ଅୟୋନିଶ); ଓହବଳ (ଉଭୟବଳ);

କଏ (କରେ); କପୋଳ (କପାଳ); କହଣ ନ ଯାଇ (କହି ନ ହୁଏ); କାହା (କିପରି); କିକେ (କିପରି); କେନ (କାହିଁକି); କେର୍ଣ୍ଣେ, କେହ୍ନେ (କିପରି); କୃଡ଼ା (କ୍ରୀଡ଼ା); କୃତେ (ଯୋଗୁଁ); କୋଳ (କୁଳ); କ୍ଷୟାନ୍ତେକ (ଅନ୍ତକ); କ୍ଷେମ (କ୍ଷମା); କ୍ଷେଉଣୀ (ଅକ୍ଷୌହିଣୀ); ଖେଡ଼ାଉଳ (ଖେଳୁଆଡ଼); ଖୋଟ (କୋଠ); ଗଡ଼ଘାଲି (ତଳେ ଲୋଟିବା); ଚନ୍ଦମୂଳ (କନ୍ଦମୂଳ); ଗବନ (ଗମନ); ଗରୁହଂସୀ (ଗରୀୟାନ); ଗହଳି (ଗହନ କଥା); ଗାୟେଣ (ଗାୟକ); ଘୁମାଇବା (ଘର୍ମାକ୍ତ ହେବା);

ଚଉ (ଚରୁ); ଚେବନ (ଚେତନ); ଜିଂଘାସ (ଧିକ୍କାର); ଜିଘ୍ନ (ଯଜ୍ଞ); ଜିଜ୍ଞସେନୀ (ଦ୍ରୌପଦୀ, ସୀତା);

ତଦ୍ୟାପି (ତଥାପି); ତଲୟ, ତଲ୍ୟ (ଲୟ); ତୀକ୍ଷ (ତୀକ୍ଷ୍ଣ); ତରିଜା (ତେଜ); ତେବେସେ (ତେଣୁକରି); ତୋରଣ (ଅଟକାଳି); ତ୍ରିପୁର (ତୃପ୍ତ); ଦକ୍ଷ (ଯକ୍ଷ); ଦଶ (ଯଶ); ଦହିଯ (ଦହ୍ୟ); ଦାତବ୍ୟ (ଦାନ); ଦୁସ୍ତ (ଦୁଃଖ); ଦୃଭାର (ଦୁର୍ବାର); ଦୃଷ୍ଟ (ଦୁଷ୍ଟ); ଦୋସାଧୁ (ଚାର); ଦ୍ରୋଛନା (କିରଣ); ଧାତି, ଧାତିକାରେ (ଶୀଘ୍ର); ଧୃଙ୍ଗାସ (ଧିକ୍କାର); ଧୃରତି (ଧୃତି, ଧୀର); ଧୃନି (ଧ୍ୱନି); ଧୂର (ଦୂର); ଧୋନ୍ଦ (ଦ୍ୱନ୍ଦ); ନଡ଼ି (କଚଟି); ନାଡ଼କା (ଡଙ୍କ); ନାନ (ନନ୍ଦନ); ନିତ୍ୟାପତି (ପ୍ରତିନିତ୍ୟ); ନିମିତ୍ୟ (ନିମିତ୍ତ); ନିରହ (ନିଳୟ); ନିରାପକ୍ଷ (ନିଷ୍ଠୁର); ନିର୍ଝର (ନିଝାଡ଼); ନିର୍ବାଣ, ନିର୍ବାଣି (ନିର୍ମାଣ); ନିର୍ଭା (ନିର୍ବାହ); ନୁଆରିବା (ନ ପାରିବା); ନୋଇବା (ନ ଆସିବା);

ପଇଲମ (ଥାଳି); ପକ୍ୱ (ପକ୍ୱ); ପମନ୍ତିବା (ପଠାଇବା); ପୟାତ, ପୟାନ୍ତ (ପ୍ରଯାତ); ପରସ୍ତ (ପଶ୍ଚାତ୍); ପରିଣାମ, ପ୍ରଣମ୍ୟ (ପ୍ରଣାମ); ପରିମାଣ, ପରିମାଣି (ପ୍ରମାଣ); ପରିହରଣ (ପରିଧାନ); ପାଟୋଳି (ପାଟ); ପାଣିଦ୍ରବ୍ୟ (ସୁନା); ପାତାଙ୍ଗ (ପତାକା); ପାହାରୀ (ପ୍ରହରୀ); ପିଞ୍ଜାଇବା (କ୍ଷତବିକ୍ଷତ କରିବା); ପୁନ୍ୟତ୍ରୁଣୀ (ପୁଣ୍ୟବତୀ); ପୁରଇ, ପୁରୋଇ (ସ୍ଫୁରେ); ପ୍ରକାଶମୁ (ପ୍ରକାଶ); ପ୍ରଜାଇତ (ପ୍ରଜାଦି); ପ୍ରତେ (ପ୍ରତ୍ୟୟ); ଫୁଟିବା (କ୍ଳାନ୍ତ ହେବା);

ବଇସୀ (ବୟସୀ); ବଖାଣ (କଥନ); ବୟାଣ, ବୟାନ (ବଚନ); ବଗୁଣ (ବରଣ); ବଶାବୃତ (ବଶବର୍ତ୍ତୀ); ବସ୍ତ୍ର (ବସ୍ତ୍ର); ବହେଣୀ (ଭଉଣୀ); ବାଇବାଉଡ଼ (ବାଇବାତୁଳ); ବାଣରାସୀ (ବାରାଣସୀ); ବିଘଂସିବା (ବିକାଶିବା); ବିତପନ (ନିର୍ମଳ); ବିତକ୍ଷଣ (ବିଚକ୍ଷଣ); ବିଦୁଜନ, ବିଦ୍ୟୁଜନ (ବିଦ୍ୱଜ୍ଜନ); ବିଧଂସ, ବିଧ୍ୱଂସ (ବିଦ୍ୱେଷ); ବିନୋପି (ବିନୟ ସହ); ବିବର୍ଦ୍ଧିତି (ବିବର୍ଦ୍ଧମାନ); ବିରଙ୍ଗ (ବିରସତା); ବିରୋଳି (ସ୍ୱଷ୍ଟତଃ); ବିଶ୍ୱାସ (ଗୋପନ କଥା); ବିସରିବା (ସରିବା); ବେବସ୍ଥା, ବ୍ୟବସ୍ଥା (ପ୍ରସଙ୍ଗ); ବେଳ (ସୂର୍ଯ୍ୟ);

ବେଲେ (ଦ୍ୱାରା); ବୃଶାଳ (ବିଶାଳ); ବ୍ରତିବା, ବ୍ରତିବାକ (ବର୍ତ୍ତମାନ ହେବା); ବ୍ରିତି (ବୃତ୍ତି); ବ୍ରିଧିକ (ବୃଦ୍ଧିଯୁକ୍ତ); ଭବାନୀ (ଭାବିନୀ); ଭୁଗତି (ଭୋଗ); ଭୂବି (ଭୂମି); ଭେବଳ (ବିହ୍ୱଳ); ଭ୍ରଥା (ଭର୍ତ୍ତା); ଭ୍ରାଥ (ଭ୍ରାତା);

ମଞ୍ଚାଳିବା (ଗୋଡ଼ ହାତ ମୋଡ଼ିବା); ମଞ୍ଜାରି (ବିଲେଇ); ମଂଯୂର (ମୟୂର); ମଡ଼ିଆଳ (ଛୋଟ ଲୁଗା); ମଦନମାତୃ (ବେଶ୍ୟା); ମୟେମତ୍ତ (ମଦମତ୍ତ); ମହତ୍ୱ (ଇଜ୍ଜତ); ମାଖି (ମକ୍ଷିକା); ମାରୁତି (ମରୁତ); ମାହାଗ (ମାଘ); ମିଳିବା (ପହଞ୍ଚିବା); ମୁଖରାବ (ଜନାପବାଦ); ମୁନେହି (ଦୂତ); ମୁନ୍ୟ (ମୁନି); ମୃରାଟ (ନିର୍ଭୟ); ମୁହାଁସ (ଲୋଭ); ମେଞ୍ଜନ (ବ୍ୟଞ୍ଜନ); ମେଳପକ୍ଷ (ସମାନ ହେବା); ମେ଼ଲିବା (ଛାଡ଼ିବା);

ଯିସ (ଯାହା); ଯୁଗତ (ଯୁକ୍ତିଯୁକ୍ତ); ଯୁଗତି (ହେତୁ); ଯୁଗତେ (ସହଜେ); ଯେର୍ଣ୍ଣେ, ଯେହ୍ନେ (ଯେପରି); ରକ୍ଷନ୍ତା (ରକ୍ଷକ); ରୟଣୀ, ରହଣୀ (ରଜନୀ); ରସାଣ (ବିଷ); ରହୁବର (ରଥ); ରାଇ (ରାୟ); ରାଇବା (ଡାକିବା); ରାଇବାର (ଡଗର); ରାଛ (ରାସ୍ତା); ରାବାଏଣ (ରାମାୟଣ); ରିତି (ଇତି); ରେଜ୍ଜୁ (ରଜ୍ଜୁ); ଲୁଳିବା, ଲୋଳିବା (ଓହଳିବା); ଲେଛିବା (ତ୍ୟାଗ କରିବା);

ଶଂକୁନ୍ୟ (ଶକୁନ); ଶାସ୍ର (ଶାସ୍ତ୍ର); ଶିଷି (ଶିଷ୍ୟ, ପୁତ୍ର); ଶିଷ୍ଟି (ଶ୍ରେଷ୍ଠ); ଶ୍ରିପତି, ତ୍ରିପତି (ତୃପ୍ତି); ଶ୍ରୀମୁଖ (ଆଜ୍ଞାପତ୍ର);

ସଂଘରିବା (ସଂହରଣ କରିବା, ସାଇତିବା); ସଂଚପି (ବିଶ୍ଳେଷଣ କରି); ସଂଜାତ (ସାଦୃଶ୍ୟ); ସଂଜାଳିବା (ଜାଳିବା); ସଂପ୍ରତେ (ବିଶ୍ୱାସ କରି); ସଂୟେ, ସୟେ (ସ୍ୱୟଂ); ସଂହାତେ (ନିଜହାତରେ); ସଚଇତ (ସଚେତ); ସମାଦ, ସମାଦି (କଥା); ସମାଦନ୍ତ (କଥାଭାଷା); ସମାସ୍ୟା (ସମ୍ଭାଷ୍ୟ); ସମ୍ଭାଇବା (ସମ୍ଭବିବା); ସୟେନ୍ଦୁ (ସଦ୍ୟ); ସାଦୃଶ, ସାଦ୍ରିଶ (ସଦୃଶ) ସାଧ୍ୟ (ସାହାଯ୍ୟ); ସାନିଧ (ସନ୍ନିଧି); ସାରିକ୍ଷ, ସାରିକ୍ଷ୍ୟ (ସଦୃଶ); ସିମସ୍ଥାନ (ତକିଆ); ସୁତିବା (ଶୋଇବା, ସ୍ତୁତି କରିବା); ସୁଫଳ (ସଫଳ); ସୂନ (ସୂନୁ); ସୋହେଡ଼ ପଞ୍ଚାଣ (ସୁନ୍ଦର ବୀର); ସ୍ୱରୂପ (ସତ୍ୟ);

ହାକିବା (ଡାକିବା); ହାନ୍ଦେ (ନିଶ୍ଚୟାର୍ଥକ ଅବ୍ୟୟ); ହାନ୍ଦୋଳ (ଚଳନ); ହୁଡ଼ି ପଡ଼ିବା (ଝୁଣ୍ଟିବା); ହେଟ (ତଳମୁହାଁ); ହେମ (ହିମ) ।

ସଚ୍ଚିଦାନନ୍ଦ ମିଶ୍ର

# ପୁସ୍ତକ ବିବରଣୀ


## ପ୍ରାଥମିକ ଗ୍ରନ୍ଥ

୧. **ସାରଳା ମହାଭାରତ**
ମୁଖ୍ୟ ସଂଗ୍ରାହକ ଓ ସଂକଳକ : ପଦ୍ମଶ୍ରୀ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଭାରପ୍ରାପ୍ତ ସମ୍ପାଦକ : ଗୌରୀ କୁମାର ବ୍ରହ୍ମା; ସାଂସ୍କୃତିକ ବ୍ୟାପାର ବିଭାଗ, ଓଡ଼ିଶା ସରକାର; ଭୁବନେଶ୍ୱର, ୧୯୬୫

୨. **ସାରଳା ମହାଭାରତ**
ସମ୍ପାଦକ : ଆର୍ତ୍ତ ବଲ୍ଲଭ ମହାନ୍ତି
ଉପସ୍ଥାପନା : ପ୍ରଭାକର ସ୍ୱାଇଁ ଓ ସହଦେବ ସାହୁ
ପ୍ରକାଶକ : ସାରଳା ସାହିତ୍ୟ ସଂସଦ, କଟକ, ୨୦୦୭

୩. **ସାରଳା ମହାଭାରତ : ସମ୍ପାଦନା ଓ ଆଲୋଚନା (ଆଦିପର୍ବ)**
ଡକ୍ଟର କୃଷ୍ଣଚରଣ ସାହୁ;
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୭୮

୪. **ସାରଳା ମହାଭାରତର ସ୍ୱର୍ଗାରୋହଣ ପର୍ବ**
ସମ୍ପାଦନା ଓ ଆଲୋଚନା : ଡକ୍ଟର କୃଷ୍ଣଚରଣ ସାହୁ
ଫ୍ରେଣ୍ଡସ ପବ୍ଲିଶର୍ସ, କଟକ, ୧୯୯୩

୫. **ଚଣ୍ଡୀ ପୁରାଣ,**
ସମ୍ପାଦନା ଓ ଆଲୋଚନା : ଡକ୍ଟର କୃଷ୍ଣ ଚରଣ ସାହୁ
ବୁକ୍ସ ଏଣ୍ଡ ବୁକ୍ସ, କଟକ, ୧୯୮୪

୬. **ବିଚିତ୍ର ରାମାୟଣ : ଶ୍ରୀ ସିଦ୍ଧେଶ୍ୱର ଦାସ ବିରଚିତ**
ସମ୍ପାଦକ : ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର
ପ୍ରକାଶକ : ସଚ୍ଚିଦାନନ୍ଦ ମିଶ୍ର, ଭୁବନେଶ୍ୱର, ୧୯୮୦

୭. **ମହାଭାରତ**
ଅନୁବାଦକ : ଗୋବିନ୍ଦ ଚନ୍ଦ୍ର ମହାପାତ୍ର
ପ୍ରକାଶକ : ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୩-୧୯୬୫

## ଆଲୋଚନା ଗ୍ରନ୍ଥ

୧. **ମହାକବି ସାରଳା ଦାସ** : ଅଧ୍ୟାପକ ସର୍ବେଶ୍ୱର ଦାସ,
ଗ୍ରନ୍ଥ ମନ୍ଦିର, କଟକ, ୧୯୭୯

୨. **ସାରଳା ଦାସ** : ପଠାଣି ପଟ୍ଟନାୟକ
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୯୫

୩. **ସାରଳା ଦାସ : ଏକ ଅଧ୍ୟୟନ**, ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର,
ଗ୍ରନ୍ଥ ମନ୍ଦିର, କଟକ, ୨୦୦୬

୪. **ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୨, ସାରଳା ସାହିତ୍ୟ : ମୁଖବନ୍ଧ**
ସମ୍ପାଦନା : ଯତୀନ୍ଦ୍ର ମୋହନ ମହାନ୍ତି, ସୁବର୍ଣ୍ଣରେଖା, ଭୁବନେଶ୍ୱର, ୧୯୯୯

୫. **ଓଡ଼ିଆ ଭାଷା ଓ ସାହିତ୍ୟ** : ନୀଳକଣ୍ଠ ଦାସ,
ନିଉ ଷ୍ଟୁଡ଼େଣ୍ଟସ ଷ୍ଟୋର୍ସ, ବ୍ରହ୍ମପୁର (ଗଂଜାମ) - କଟକ, ୧୯୫୪ (ଦ୍ୱିତୀୟ ସଂସ୍କରଣ, ୧୯୫୮)

୬. **ସାରଳା ସାହିତ୍ୟର ଐତିହାସିକ ଚିତ** : ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ, ୧୯୭୬ (ନୂତନ ସଂସ୍କରଣ, ୧୯୮୯)

୭. **ଶ୍ରୀ ଭାରତ ଦର୍ପଣ** : ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୪ (ପ୍ରଥମ ପ୍ରକାଶ, ୧୯୨୮)

୮. **ଓଡ଼ିଆ ସାହିତ୍ୟର ଇତିହାସ** : (ଦ୍ୱିତୀୟ ଭାଗ - ସାରଳା ସାହିତ୍ୟ) : ଡକ୍ଟର ବଂଶୀଧର ମହାନ୍ତି
ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ, ୧୯୭୩

୯. **ସାରଳା ସାହିତ୍ୟ ସମୀକ୍ଷା**
ସମ୍ପାଦନା ଓ ସଂକଳନ : ସାରଳା ସାହିତ୍ୟ ସଂସଦ, କଟକ, ତାରାତାରିଣୀ ବୁକ୍ ଷ୍ଟୋର, କଟକ, ୧୯୮୩

୧୦. **ସାରଳା ମହାଭାରତ : ଚରିତ୍ରର ଚିତ୍ରଶାଳା**
ସମ୍ପାଦନା ଓ ସଂକଳନ : ସାରଳା ସାହିତ୍ୟ ସଂସଦ, କଟକ ଗ୍ରନ୍ଥ ମନ୍ଦିର, କଟକ, ୧୯୮୪

୧୧. **ମହାଭାରତର ପଟ୍ଟଭୂମୀ : ବ୍ୟାସଦେବ ଓ ସାରଳା ଦାସ**
ସମ୍ପାଦନା ଓ ସଂକଳନ : ସାରଳା ସାହିତ୍ୟ ସଂସଦ, କଟକ ନାଲନ୍ଦା, କଟକ, ୧୯୮୫

୧୨. **ସାରଳା ସୃଷ୍ଟିର ଦିଗ ଦିଗନ୍ତ**
ସମ୍ପାଦନା ଓ ସଂକଳନ : ସାରଳା ସାହିତ୍ୟ ସଂସଦ, କଟକ ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୬

